ଗୋସ୍ୱାମୀ ତୁଳସୀଦାସ ବିରଚିତ

# ଶ୍ରୀରାମଚରିତ ମାନସ

( ଓଡିଆ ଲିପିରେ ମୂଳପାଠ ଏବଂ ଓଡ଼ିଆ ଲିପି ଓ ଭାଷାରେ ପଦ୍ୟଗଦ୍ୟାନୁବାଦ )

ପଦ୍ୟାନୁବାଦ :-
ବାବାଜୀ ଶ୍ରୀ ବଳରାମ ଦାସ

ଲିପ୍ୟନ୍ତରଣ ଏବଂ ଗଦ୍ୟାନୁବାଦ ,
ଶ୍ରୀ ସୁରେଶଚନ୍ଦ୍ର ନନ୍ଦ, ଅଧ୍ୟାପକ,
ହିନ୍ଦୀ ବିଭାଗ, ଖ୍ରୀଷ୍ଟ ମହାବିଦ୍ୟାଳୟ,
କଟକ-୮

ପ୍ରକାଶକ
ଭୁବନବାଣୀ ଟ୍ରଷ୍ଟ
'ପ୍ରଭାକର ନିଳୟମ୍' , ୪୦୫/୧୨୮,
ଚୌପଟିୟା ରୋଡ , ଲକ୍ଷ୍ନୌ-୩ ( Lucknow—3, U. P. )

# ସମର୍ପଣ

ମୂଳ ରଚୟିତା
ମହାସନ୍ତ ଗୋସ୍ୱାମୀ ତୁଳସୀଦାସଙ୍କ ପୁଣ୍ୟ ସ୍ମୃତିରେ
ସପ୍ରେମ ସମର୍ପିତ ।

ବିଜୟା ଦଶମୀ
ଅକ୍ଟୋବର ୧୧, ୧୯୭୮

ଶ୍ରୀ ସୁରେଶଚନ୍ଦ୍ର ନନ୍ଦ
ଲିପ୍ୟନ୍ତରକାର ଓ ଗଦ୍ୟାନୁବାଦକ

**ଗୋସ୍ୱାମୀ ତୁଳସୀଦାସ**

ବିରଚିତ

**ଶ୍ରୀରାମଚରିତ ମାନସର**

ଓଡ଼ିଆ ଲିପ୍ୟନ୍ତରଣ ସହିତ

ପଦ୍ୟଗଦ୍ୟାନୁବାଦ

# ଉପହାର

ଶ୍ରୀ ରା ମ ଚ ରି ତ ମା ନ ସ

ଓ ଡ଼ି ଆ ଲି ପ୍ୟ ନ୍ତ ର ଣ

ପଦ୍ୟଗଦ୍ୟ

ଅ ନୁ ବା ଦ

ଏହି ପାବନ ଗ୍ରନ୍ଥ
ଉତ୍କଳ ପ୍ରଦେଶର ଗରିମାମୟ ଯୁଗପୁରୁଷ
**ଶ୍ରୀ ରାଧାନାଥ ରଥଙ୍କୁ**
ସାଦର ଉପହୃତ ।

ବିଜୟା ଦଶମୀ,
ତା ୧୧-୧୦-୧୯୭୮

**ଶ୍ରୀ ନନ୍ଦକୁମାର ଅବସ୍ଥୀ**
ମୁଖ୍ୟନ୍ୟାସୀ ସଭାପତି, ଭୁବନବାଣୀ ଟ୍ରଷ୍ଟ, ଲକ୍ଷ୍ନୌ-୩

# ପ୍ରକାଶକୀୟ ବକ୍ତବ୍ୟ

"ଯା ଦେବୀ ସର୍ବଭୂତେଷୁ ବୀଜରୂପେଣ ସଂସ୍ଥିତା,
ନମସ୍ତସ୍ୟୈ ନମସ୍ତସ୍ୟୈ ନମସ୍ତସ୍ୟୈ ନମୋ ନମଃ ।"

## ବିଷୟ ପ୍ରବେଶ

ବିଶ୍ୱ-ବାଙ୍ମୟର ଅଧିଷ୍ଠାତ୍ରୀ ଦେବୀ ଭଗବତୀ ବାଣୀ ସନ ୧୯୭୧ ମସିହାର ହୃଦ୍‌ଗର୍ଭରେ 'ଭୁବନବାଣୀ ଟ୍ରଷ୍ଟ'ରେ ବୀଜ ରୂପରେ ପ୍ରାଣ ପ୍ରତିଷ୍ଠା କଲେ । ସନ ୧୯୪୭ ମସିହାରୁ ଆରମ୍ଭ ହୋଇଥିବା ଏହି ଅକିଞ୍ଚନର ଅନବରତ ସାଧନାଦ୍ୱାରା ପ୍ରସନ୍ନା ବରଦାୟିନୀଙ୍କ ପ୍ରସାଦରୁ ଟ୍ରଷ୍ଟର ବୀଜରୋପଣ ହେଲା । ବିଶ୍ୱଭାଷା-ସେତୁକରଣକୁ ଆଦର୍ଶ ରୂପେ ରଖି ଏବଂ ଅଖିଳ ଭାରତରେ ବ୍ୟବହୃତ ଦେଶୀ ଓ ବିଦେଶୀ ଭାଷାମାନଙ୍କର ଶାଶ୍ୱତ, ଓ ପୁନୀତ ସାହିତ୍ୟର ସାନୁବାଦ ଲିପ୍ୟନ୍ତରଣକୁ ତତ୍କାଳୀନ କାର୍ଯ୍ୟରୂପେ ସ୍ୱୀକାର କରି ମୁଁ କର୍ତ୍ତବ୍ୟପଥରେ ଅଗ୍ରସର ହେଲି । ବିବିଧ ଭାଷାର ବିଶାଳ ଗ୍ରନ୍ଥମାନଙ୍କର ହିନ୍ଦୀ ଅନୁବାଦ ସହିତ ଦେବନାଗରୀ ଲିପ୍ୟନ୍ତରଣ କାର୍ଯ୍ୟ ଏବଂ ଦେବନାଗରୀ ଲିପିରେ ମିଳୁ ନ ଥିବା ବିଶିଷ୍ଟ ଧ୍ୱନି-ମାନଙ୍କର ସୃଜନ କାର୍ଯ୍ୟ ମଧ୍ୟ ହାତକୁ ନେଲି । ଏହି ସମସ୍ତ ଗ୍ରନ୍ଥର ଅଂଶ-ଗୁଡ଼ିକୁ ଧାରାବାହିକ ଭାବରେ ପ୍ରକାଶିତ କରିବା ଉଦ୍ଦେଶ୍ୟରେ ସନ ୧୯୭୦ ମସିହା ଜାନୁଆରୀ ମାସରେ 'ବାଣୀ-ସରୋବର' ନାମକ ଗୋଟିଏ ତ୍ରୈମାସିକ ପତ୍ରିକାର ଶୁଭ ଦିଆଗଲା । ସେତେ-ବେଳେ ମୋର ବୟସ ୭୪ ବର୍ଷ ।

ଶ୍ରୀ ନନ୍ଦକୁମାର ଅବସ୍ଥୀ

ସମ୍ବଳ ସୀମିତ, କିନ୍ତୁ କାମନା ଅସୀମ । ସୁତରାଂ ମନର ଆଶା ଟଳମଳ । ଏହି ଅନିଶ୍ଚିତ ବାତାବରଣ ମଧ୍ୟରେ ଆମେ ଲକ୍ଷ୍ୟସାଧନ ପଥରେ ଆଗେଇଲୁ ।

## ଯଜ୍ଞାରମ୍ଭ ଓ ନାଗରୀ ଅକ୍ଷୟବଟ

ଟ୍ରଷ୍ଟର ସ୍ଥାପନା ପୂର୍ବରୁ ବର୍ଷାନୁବର୍ଷର ପରିଶ୍ରମରୁ ଉଦ୍ଭୂତ ଆରବୀ ଭାଷାର ବିଶାଳ ଧର୍ମଗ୍ରନ୍ଥ 'କୁରାନ' ଏବଂ ବଙ୍ଗଳା ଭାଷାର 'କୃତ୍ତିବାସ ରାମାୟଣ' ଓ ଗୁରୁମୁଖୀ ଭାଷାର 'ଜପୁଜୀ

ତଥା ସୁଖମଣି ସାହିବ' ଆଦିର ସାନୁବାଦ ଲିପ୍ୟନ୍ତରଣ କାର୍ଯ୍ୟରେ ପ୍ରସନ୍ନ ଓ ପ୍ରୋତ୍ସାହିତ ହୋଇ ବିବିଧ ମାତୃଭାଷା ଓ ରାଷ୍ଟ୍ରଭାଷାର ବିଦ୍ୱାନ୍‌ବୃନ୍ଦ ସମାନ ରୂପରେ ବାଣୀମନ୍ଦିରରେ ପୁଷ୍ପାଞ୍ଜଳି ଦେବା ନିମନ୍ତେ ବଦ୍ଧପରିକର ହୋଇ ଉଠିଲେ । ବାଣୀମନ୍ଦିରରୁ ଦେବନାଗରୀ ଅକ୍ଷୟବଟର ଆବିର୍ଭାବ ହେଲା । ନାଗରୀ-ଅକ୍ଷୟବଟର ଦେଶୀ-ବିଦେଶୀ ଆଦି ନାନା ପ୍ରକାଣ୍ଡ ଶାଖାରେ ନାନା ଭାଷା-କିଶଳୟ ପଲ୍ଲବିତ ହେଲା । ସଂସ୍କୃତ, ଆରବୀ, ଫାରସୀ, ଉର୍ଦ୍ଦୁ, ହିନ୍ଦୀ, କାଶ୍ମୀରୀ, ଗୁରୁମୁଖୀ, ରାଜସ୍ଥାନୀ, ସିନ୍ଧୀ ଗୁଜୁରାଟୀ, ମରାଠୀ, କୋକଣୀ, ମଲୟାଲମ୍, ତାମିଲ୍, କନ୍ନଡ, ତେଲୁଗୁ, ଓଡ଼ିଆ, ବଙ୍ଗଳା, ଆସାମୀ, ନେପାଲୀ, ଇଂରାଜୀ, ହିବ୍ରୁ, ଗ୍ରୀକ୍ ଆଦି ବାଙ୍ମୟର ଅନୁପମ ଗ୍ରନ୍ଥ-ପ୍ରସୂନମାନ ଫୁଟି ଉଠିଲେ । କେବଳ ଭାରତୀୟ ଭାଷାବଳୀ ନୁହେଁ, ବିଶ୍ୱର ଅନ୍ୟାନ୍ୟ ପ୍ରମୁଖ ଭାଷାମାନଙ୍କର ଦିବ୍ୟବାଣୀ ମଧ୍ୟ ଅକ୍ଷୟ-ବଟରେ ଉତ୍ତରୋତ୍ତର ଅଙ୍କୁରିତ ହୋଇ ଆସୁଅଛି । ଅକ୍ଷରମାନଙ୍କ ମାଧ୍ୟମରେ ସମସ୍ତ ଭାରତର ଏବଂ ବିଶ୍ୱର ବାଙ୍ମୟକୁ ଏକ ମଞ୍ଚ ଉପରକୁ ଆଣି ଅଖିଳ ରାଷ୍ଟ୍ରକୁ ସମରସତା ଓ ତାଦାତ୍ମ୍ୟ ପ୍ରଦାନ-ପୂର୍ବକ ବିଶ୍ୱବନ୍ଧୁତ୍ୱ ଓ ବିଶ୍ୱ-ସେତୁକରଣ ଦିଗରେ ନିରନ୍ତର ଅଗ୍ରସର ହେବା ଟ୍ରଷ୍ଟ୍‌ର ଅହର୍ନିଶ ସାଧନା ।

## ଓଡ଼ିଆ ଭାଷା ଓ ଶ୍ରୀ ସୁରେଶଚନ୍ଦ୍ର ନନ୍ଦ

ଓଡ଼ିଆ ଭାଷାର କୌଣସି ଶ୍ରେଷ୍ଠ କୃତିକୁ 'ଭୁବନବାଣୀ ଟ୍ରଷ୍ଟ୍' ଅନୁଷ୍ଠାନର ଅନ୍ତର୍ଭୁକ୍ତ କରିବାର ବାସନା ମୋ ମନରେ ଜାଗ୍ରତ ହେଲା । ସେତେବେଳ ପର୍ଯ୍ୟନ୍ତ ଉତ୍କଳ ପ୍ରଦେଶର କୌଣସି ବିଦ୍ୱାନ୍‌ଙ୍କ ସହିତ ମୋର ପରିଚୟ ହୋଇ ନ ଥିଲା । ସୌଭାଗ୍ୟବଶତଃ ଲକ୍ଷ୍ନୌ ସହରସ୍ଥ ରାଜକୀୟ କଳା ମହାବିଦ୍ୟାଳୟ ( Royal College of Arts, Lucknow )ର ଅଧ୍ୟାପକ କଟକ ସହରବାସୀ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସହ ମୋର ପ୍ରଥମ ସମ୍ପର୍କ ସ୍ଥାପିତ ହେଲା । ତାଙ୍କରି ଜରିଆରେ ଓଡ଼ିଶାର ସାଂସ୍କୃତିକ ବିଭାଗର ତତ୍କାଳୀନ ମନ୍ତ୍ରୀ ସମାନନାମା ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କ ସହିତ ମୋର ପତ୍ରାଳାପ ଆରମ୍ଭ ହେଲା । ତାଙ୍କର ଧର୍ମପତ୍ନୀ ମଧ୍ୟ ବିଦୁଷୀ । ଓଡ଼ିଆ ସାହିତ୍ୟର କେଉଁ କୃତିର ହିନ୍ଦୀ ଅନୁବାଦ ସହିତ ଦେବନାଗରୀ ଲିପ୍ୟନ୍ତରଣ କାର୍ଯ୍ୟ ହାତକୁ ନେବା, ଏ ବିଷୟରେ ଆମ୍ଭମାନଙ୍କ ମଧ୍ୟରେ ଚର୍ଚ୍ଚା ଚାଲିଥାଏ । ୧୯୭୯ ମସିହା ଗ୍ରୀଷ୍ମାବକାଶରେ ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ମହୋଦୟ କଟକ ଯାଇଥିଲେ । ସେଠାରେ ତାଙ୍କ ସୁପରିଚିତ ବନ୍ଧୁ, ଅଧ୍ୟାପକ ଶ୍ରୀ ସୁରେଶଚନ୍ଦ୍ର ନନ୍ଦଙ୍କ ସହିତ ତାଙ୍କର 'ଭୁବନବାଣୀ ଟ୍ରଷ୍ଟ୍'ର 'ଭାଷା-ସେତୁକରଣ' ଯୋଜନା ବିଷୟରେ ଚର୍ଚ୍ଚା ହେଲା । ଶ୍ରୀ ନନ୍ଦ ମହାଶୟ 'ଭୁବନବାଣୀ ଟ୍ରଷ୍ଟ୍'ର ବିଦ୍ୱତ୍ ପରିଷଦ୍‌ର ଜଣେ ସଦସ୍ୟ ଓ ସହଯୋଗୀ ହେବାକୁ ସମ୍ମତ ହେଲେ ଏବଂ ଉକ୍ତ ବର୍ଷର ଦୁର୍ଗାପୂଜା ପରଠାରୁ ପରିଷଦ୍‌ର ଜଣେ ସକ୍ରିୟ ସଦସ୍ୟ ରୂପେ ଏହାର ଭାର ସମ୍ଭାଳି ଆସିଅଛନ୍ତି । ସୁତରାଂ ଟ୍ରଷ୍ଟ୍‌ଦ୍ୱାରା କରା ହେଉଥିବା ଓଡ଼ିଆ ଭାଷା-ସମ୍ବନ୍ଧୀୟ କାର୍ଯ୍ୟପାଇଁ ଲକ୍ଷ୍ନୌ କଳା ମହାବିଦ୍ୟାଳୟର ଅଧ୍ୟାପକ ଶ୍ରୀ ନିତ୍ୟାନନ୍ଦ ମହାପାତ୍ର ସର୍ବାଦୌ ପ୍ରଶଂସନୀୟ ।

ଶ୍ରୀ ସୁରେଶଚନ୍ଦ୍ର ନନ୍ଦ ଓଡ଼ିଆ ଏବଂ ହିନ୍ଦୀ ସାହିତ୍ୟରେ ସମଭାବରେ ବିଦ୍ୱାନ୍ । ସମ୍ପ୍ରତି ସେ ଖ୍ରୀଷ୍ଟ ମହାବିଦ୍ୟାଳୟ, କଟକର ହିନ୍ଦୀ ବିଭାଗର ଅଧ୍ୟାପକ ପଦରେ ଆସୀନ । ଶ୍ରୀ ନନ୍ଦଙ୍କ ପକ୍ଷରେ ଅଦ୍ୱିତୀୟ ଗୌରବ ଏହି ଯେ, ସେ ଉତ୍କଳ ବିଶ୍ୱବିଦ୍ୟାଳୟର ହିନ୍ଦୀରେ ସର୍ବପ୍ରଥମ ଏମ୍.ଏ. ଉପାଧିଧାରୀ । ଭବିଷ୍ୟତରେ ଏହି ବିଶ୍ୱବିଦ୍ୟାଳୟ ଅଧୀନରେ ଅନେକ ବିଦ୍ୟାର୍ଥୀ ସ୍ନାତକ ରୂପେ ଅବଶ୍ୟ ଉତ୍ତୀର୍ଣ୍ଣ ହେବେ । କିନ୍ତୁ ଶ୍ରୀ ନନ୍ଦ ହିଁ ସର୍ବପ୍ରଥମ ହିନ୍ଦୀ ଏମ୍.ଏ. ରୂପେ ଚିରକାଳ ଗୌରବ-ବିମଣ୍ଡିତ ହୋଇ ରହିବେ । ଭୁବନବାଣୀ ଟ୍ରଷ୍ଟ୍ ଦ୍ୱାରା ପ୍ରକାଶନାର୍ଥ ଗୃହୀତ ଓଡ଼ିଆ ଭାଷାର ସର୍ବାଧିକ ଲୋକପ୍ରିୟ ଆଲଂକାରିକ ରାମ-କାବ୍ୟ 'ବୈଦେହୀଶ-ବିଳାସ'ର ନାଗରୀ ଲିପ୍ୟନ୍ତରଣ ସହ ହିନ୍ଦୀ ଅନୁବାଦର ଯୋଜନାକୁ କାର୍ଯ୍ୟକାରୀ କରିବା ଦିଗରେ ଶ୍ରୀ ନନ୍ଦ ୧୯୭୦ ମସିହାର ପ୍ରାରମ୍ଭିକ କାଳରୁ ଅଗ୍ରସର ହୋଇଅଛନ୍ତି । ମୋ ବିଚାରରେ ରାମକଥାକୁ ନେଇ ରୀତିକାଳୀନ ଶୈଳୀରେ ଏପରି ଅନୁପମ ଅଲଂକାରମୟ କାବ୍ୟଗ୍ରନ୍ଥ ଅନ୍ୟ କୌଣସି ଭାରତୀୟ ଭାଷାରେ ନାହିଁ । ଶ୍ରୀ ନନ୍ଦଙ୍କ ଦ୍ୱାରା ଦେବନାଗରୀରେ ଲିପ୍ୟନ୍ତରିତ ଓ ହିନ୍ଦୀରେ ଅନୂଦିତ ଏହି 'ବୈଦେହୀଶ ବିଳାସ'ର ହିନ୍ଦୀ ରୂପାନ୍ତର ଅତି ନିକଟ ଭବିଷ୍ୟତରେ ସମ୍ପୂର୍ଣ୍ଣତଃ ପ୍ରକାଶିତ ହେବାକୁ ଯାଉଛି ।

## 'ଶ୍ରୀରାମଚରିତ ମାନସ'ର ଓଡ଼ିଆ ରୂପାନ୍ତର

ରାଷ୍ଟ୍ରଭାଷା ଓ ତାହାର ସହଯୋଗକାରିଣୀ ଓଡ଼ିଆଭାଷା ତରଫରୁ ଶ୍ରୀ ନନ୍ଦଙ୍କର ଏହି ଅଦ୍ଭୁତ ପ୍ରୟାସ ଚାଲିଥିଲା ବେଳେ ପତ୍ରାଳାପ ମାଧ୍ୟମରେ ବିନିମୟ-ସ୍ୱରୂପ ରାଷ୍ଟ୍ରଭାଷା ହିନ୍ଦୀରେ ରଚିତ କୌଣସି ଅନୁପମ କୃତିର ଓଡ଼ିଆ ରୂପାନ୍ତରକୁ ଓଡ଼ିଆଭାଷୀଙ୍କ ସମ୍ମୁଖରେ ପ୍ରସ୍ତୁତ କରିବା ନିମନ୍ତେ ତାଙ୍କର ଉତ୍କଟ ଅଭିଳାଷ ଅଭିବ୍ୟକ୍ତ ହେଲା । ରାଷ୍ଟ୍ରଭାଷା ହିନ୍ଦୀ ଓ ଆଞ୍ଚଳିକ ଭାଷା ଓଡ଼ିଆ, ଉଭୟ ପ୍ରତି ତାଙ୍କର ସମାନ ଅନୁରାଗ ଓ ସମାନ ରୂପେ ଉଭୟଙ୍କୁ ସେବା କରିବାର ଉଦାତ୍ତ ଭାବନାକୁ ମୁଁ ସ୍ୱାଗତ କଲି । ହିନ୍ଦୀ ଭାଷାରେ ଗୋସ୍ୱାମୀ ତୁଳସୀଦାସ-ବିରଚିତ 'ଶ୍ରୀରାମଚରିତ ମାନସ' ଠାରୁ ଅଧିକ ଗୌରବାବହ ଗ୍ରନ୍ଥ ଆଉ କ'ଣ ଅଛି ? ମୋର ଏହି ପ୍ରସ୍ତାବକୁ ଶ୍ରୀ ନନ୍ଦ ଅତି ଆନନ୍ଦରେ ସ୍ୱୀକାର କଲେ ଏବଂ ସେ 'ଶ୍ରୀରାମଚରିତମାନସ'ର ଓଡ଼ିଆ ଲିପ୍ୟନ୍ତରଣ ତଥା ଓଡ଼ିଆ ଗଦ୍ୟାନୁବାଦ କାର୍ଯ୍ୟରେ ତଲ୍ଲୀନ ହେଲେ । ଇତି ମଧ୍ୟରେ ଓଡ଼ିଶାର ଅନ୍ୟତମ ମହାପୁରୁଷ ଓ ମୁଖ୍ୟ ଓଡ଼ିଆ ଦୈନିକ ସମାଚାରପତ୍ର 'ସମାଜ'ର ଯଶସ୍ୱୀ ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ସହିତ କଟକରେ ମୋର ସାକ୍ଷାତ ହେଲା । ତାଙ୍କ ଅନୁଗ୍ରହରୁ ତାଙ୍କ ପାଖରେ ସୁରକ୍ଷିତ 'ତୁଳସୀରାମାୟଣ'ର ବାବାଜୀ ଶ୍ରୀ ବଳରାମ ଦାସକୃତ ଅତି ସୁନ୍ଦର ଓଡ଼ିଆ ପଦ୍ୟାନୁବାଦ ମୋତେ ମିଳିଲା । ପଦ୍ୟାନୁବାଦ ସହିତ ଗଦ୍ୟାନୁବାଦର ଏହି ସଂଯୋଗ ମଣିକାଞ୍ଚନର ସଂଯୋଗ ହେଲା । ଶ୍ରୀ ନନ୍ଦ 'ସମାଜ' କାର୍ଯ୍ୟାଳୟରୁ ବାବାଜୀ ବଳରାମ ଦାସକୃତ ପଦ୍ୟାନୁବାଦର ପାଣ୍ଡୁଲିପି ପାଇଲେ ଓ ତାହାର ପ୍ରତିଲିପି କରିବାର ଶ୍ରମ ସ୍ୱୀକାର କଲେ । ପଦ୍ୟାନୁବାଦରେ ପ୍ରମାଦ-ବଶତଃ ପ୍ରାପ୍ତ କେତେକ ଅସଙ୍ଗତି ଓ ତ୍ରୁଟିକୁ ସେ ସଂଶୋଧନ କରିଅଛନ୍ତି ଏବଂ ଅକ୍ଳାନ୍ତ ଅଧ୍ୟବସାୟ ସହକାରେ ପଦ୍ୟାନୁବାଦ ଓ ଗଦ୍ୟାନୁବାଦ ମଧ୍ୟରେ ସାମଞ୍ଜସ୍ୟ ସ୍ଥାପନ କରିଅଛନ୍ତି ।

ଅନୁବାଦ କାର୍ଯ୍ୟର ପ୍ରଥମ ଅବସ୍ଥାରେ ଶ୍ରୀ ନନ୍ଦଙ୍କର ପାରିବାରିକ ଜଞ୍ଜାଳ ହେତୁ ଉକ୍ତ କାର୍ଯ୍ୟ ଧିମେଇ ଯାଇଥିଲା । ତେଣୁ ସେ ୧୯୭୩ ମସିହା, ଜୁନ୍ ମାସ, ତା ୯ ରିଖରୁ ଜୁଲାଇ ମାସ, ତା ୨୬ ରିଖ ପର୍ଯ୍ୟନ୍ତ ଲକ୍ଷ୍ନୌ ଆସି ଟ୍ରଷ୍ଟ କାର୍ଯ୍ୟାଳୟରେ ଆମର ଆତିଥ୍ୟ ସ୍ୱୀକାର କଲେ ଏବଂ ବାକି ରହିଯାଇଥିବା କାର୍ଯ୍ୟ ଶେଷ କଲେ । ଆମ୍ଭମାନଙ୍କର ସାହଚର୍ଯ୍ୟ ତଥା ଜଣେ ରାଷ୍ଟ୍ରଭାଷା-ପ୍ରେମୀ ବିଦ୍ୱାନ୍‌ଙ୍କ ଅନନ୍ୟ କର୍ତ୍ତବ୍ୟନିଷ୍ଠାର ସୁଖଦ ସ୍ମୃତି ଏବେ ସୁଦ୍ଧା ଆମ ମନରେ ଜାଗ୍ରତ ରହିଛି । ଏହିପରି ଭାବରେ 'ମାନସ'ର ଓଡ଼ିଆ ରୂପାନ୍ତରର ମହାନ୍ କାର୍ଯ୍ୟ ସମ୍ପନ୍ନ ହେଲା ।

## ଡକ୍ଟର ରାଧାନାଥ ରଥ

ଉତ୍କଳ ପ୍ରଦେଶର ଅନନ୍ୟସାଧାରଣ ସମାଜସେବୀ ଉତ୍କଳମଣି ଗୋପବନ୍ଧୁଙ୍କ ସ୍ମାରକ-ସ୍ୱରୂପ 'ଗୋପବନ୍ଧୁ ଟ୍ରଷ୍ଟ' ଓ ତାହାର ଅନ୍ତର୍ଗତ 'ସମାଜ କାର୍ଯ୍ୟାଳୟ' ଦୁଇଟି ବୃହତ୍ ଅନୁଷ୍ଠାନ ରୂପେ ବିଦ୍ୟମାନ । ପରବର୍ତ୍ତୀ କାଳରେ ଉକ୍ତ ଅନୁଷ୍ଠାନ ଦ୍ୱୟ 'ଲୋକ-ସେବକ ମଣ୍ଡଳ' ସହିତ ସଂଲଗ୍ନ ହୋଇଗଲା । ପ୍ରଶଂସିତ ଟ୍ରଷ୍ଟର ପ୍ରଧାନ ସଂଚାଳକ ଏବଂ ଦୈନିକ 'ସମାଜ'ର ଯଶସ୍ୱୀ ସମ୍ପାଦକ ଡକ୍ଟର ରାଧାନାଥ ରଥ କେବଳ ଉତ୍କଳ ପ୍ରଦେଶ କାହିଁକି, ସମଗ୍ର ଭାରତବର୍ଷର ଅତ୍ୟନ୍ତ ବିଦ୍ୱାନ୍‌ମାନଙ୍କ ମଧ୍ୟରେ ଅନ୍ୟତମ । ସରକାର ଓ ଜନତା, ଉଭୟରେ ତାଙ୍କର ଗୌରବମୟ ଆସନ ରହିଛି । କଟକରେ ପହଞ୍ଚିବା ପରେ ମୁଁ ତାଙ୍କୁ ସାକ୍ଷାତ କରିବାର ସୌଭାଗ୍ୟ ଲାଭ କଲି ।

ଡକ୍ଟର ରାଧାନାଥ ରଥ

ଅହର୍ନିଶ କାର୍ଯ୍ୟବ୍ୟସ୍ତ, ଦୃଢ଼ସଂକଳ୍ପ ଓ ସୁଦୃଢ଼ ବ୍ୟବସ୍ଥାର ପ୍ରତିମୂର୍ତ୍ତି ଏହି ମେଧାବୀ ମହାପୁରୁଷ ମହର୍ଷିକୃତ ଆରବୀ 'କୁରାନ' ଓ ବଙ୍ଗଳା 'କୃତ୍ତିବାସ ରାମାୟଣ' ଆଦି ବିଭିନ୍ନ ଭାରତୀୟ ଗ୍ରନ୍ଥର ସାନୁବାଦ ଦେବନାଗରୀ ଲିପ୍ୟନ୍ତରଣ କାର୍ଯ୍ୟ ଦେଖି ଆନନ୍ଦ-ବିଭୋର ହୋଇ ପଡ଼ିଲେ ଏବଂ ପ୍ରେମଗଦ୍‌ଗଦ ସ୍ୱରରେ କହି ଉଠିଲେ, "ଆରେ ! ଆମେ ତ ଖାଲି ଭାବି ଭାବି ରହିଗଲୁ, ଆପଣ ଏତେ କାମ କରି ଦେଲେଣି !" ସେହିକାଳରୁ ଏହି ଅକିଞ୍ଚନ ଓ ଏହାର ସଂସ୍ଥା ତାଙ୍କର ଅସରନ୍ତି ସ୍ନେହ ଓ ସହଯୋଗ ଲାଭ କରି ଆସିଛି ।

## ମୁଦ୍ରଣ-ବ୍ୟବସ୍ଥାପକ ଶ୍ରୀଯୁକ୍ତ ଫକୀରଚରଣ ଦାସ

ବର୍ତ୍ତମାନ ଏତେ ବଡ ଗ୍ରନ୍ଥର ସୁମୁଦ୍ରଣ ବ୍ୟବସ୍ଥା ଗୋଟାଏ ବିରାଟ ସମସ୍ୟା । ସେତେବେଳେ କାଗଜର ସଙ୍କଟମୟ ପରିସ୍ଥିତି । ଲକ୍ଷ୍ନୌଠାରୁ ଏତେ ଦୂରରେ କିଏ ଏ ଦାୟିତ୍ୱ ସମ୍ଭାଳିବ ? ଏତେଗୁଡାଏ କାଗଜ କେଉଁଠି ନିରାପଦରେ ରହିପାରିବ ? କିନ୍ତୁ ପ୍ରଶଂସ୍ୟ ରାଧାନାଥ ବାବୁଙ୍କ ଆନୁଗ୍ରହରୁ ଏ ସମସ୍ୟାର ମଧ୍ୟ ସମାଧାନ ହୋଇଗଲା । 'ସମାଜ' କାର୍ଯ୍ୟାଳୟର ସତ୍ୟବାଦୀ ପ୍ରେସ୍‌ରେ ମୁଦ୍ରଣର ବ୍ୟବସ୍ଥା ହୋଇଗଲା । ନିଶ୍ଚିନ୍ତ ହେଲି ।

'ସମାଜ' କାର୍ଯ୍ୟାଳୟ ଏବଂ ମୁଦ୍ରାଣାଳୟର ପ୍ରଧାନ ବ୍ୟବସ୍ଥାପକ ଶ୍ରୀଯୁକ୍ତ-ଫକୀରଚରଣ ଦାସ ଆଗ୍ରହସହକାରେ ମୁଦ୍ରଣବ୍ୟବସ୍ଥା ଦିଗରେ ଆମକୁ ସକଳ ସୁବିଧା ପ୍ରଦାନ କଲେ । ଫକୀର ବାବୁଙ୍କ ଜୀବନ 'ସରଳ ଜୀବନ ଯାପନ ଓ ଉଚ୍ଚ ବିଚାର' Plain living and high thinktng) ଉପରେ ପ୍ରତିଷ୍ଠିତ । ସେ ସର୍ବଦା 'ଗୋପବନ୍ଧୁ ଟ୍ରଷ୍ଟ'ର ସେବା-କାର୍ଯ୍ୟରେ ବ୍ୟାପୃତ ଏବଂ ଓଡ଼ିଶାର ଜଣେ ଖ୍ୟାତନାମା ସମାଜସେବକ । ଓଡ଼ିଆ 'ମାନସ' ଗ୍ରନ୍ଥର ପ୍ରକାଶନ ବ୍ୟବସ୍ଥା ଦିଗରେ ସେ ଯେଉଁ ଉଦ୍ୟମ କରିଅଛନ୍ତି, ତାହା 'ଭୁବନବାଣୀ ଟ୍ରଷ୍ଟ'ର ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ । ଟ୍ରଷ୍ଟ ତାଙ୍କ ପ୍ରତି ଚିରକୃତଜ୍ଞ । ତାଙ୍କ ବ୍ୟତୀତ କମ୍ପୋଜ ବିଭାଗର ମୁଖ୍ୟ ଶ୍ରୀମାନ ନୀଳକଣ୍ଠ ମିଶ୍ର ଓ ତାଙ୍କର ସହଯୋଗୀମାନେ ମଧ୍ୟ ଆମ ଧନ୍ୟବାଦର ପାତ୍ର । ସେମାନଙ୍କ ଅନନ୍ୟସାଧାରଣ କର୍ତ୍ତବ୍ୟନିଷ୍ଠା ଓ ତତ୍ପରତା ଫଳରେ ଏହି ଗ୍ରନ୍ଥର ମୁଦ୍ରଣ ସୁଚାରୁ ରୂପେ ସମ୍ପନ୍ନ ହୋଇ ପାରିଛି । ଟ୍ରଷ୍ଟ ପକ୍ଷରୁ ମୁଁ ସେମାନଙ୍କୁ କୃତଜ୍ଞତା ଜ୍ଞାପନ କରୁଛି ଏବଂ ସେମାନଙ୍କ ଦୀର୍ଘ ଓ କର୍ମମୟ ଜୀବନ କାମନା କରୁଛି ।

## ଉତ୍ତର ପ୍ରଦେଶର ସାଂସ୍କୃତିକ ବିଭାଗ

ପତିତପାବନ ଶ୍ରୀ ଜଗନ୍ନାଥଙ୍କ ପବିତ୍ର ଓଡ଼ିଶା ପ୍ରଦେଶର ଭାଷା ଓ ଲିପିରେ 'ମାନସ'ର ପ୍ରସ୍ତୁତୀକରଣ ଯୋଜନାକୁ ରୂପାୟିତ କରିବା ଦିଗରେ ଉତ୍ତରପ୍ରଦେଶର ସାଂସ୍କୃତିକ ବିଭାଗ ମୋତେ ଆଂଶିକ ଅର୍ଥ ସାହାଯ୍ୟ ଦେଇ ପ୍ରୋତ୍ସାହିତ ଓ ଅନୁପ୍ରାଣିତ କରି-ଅଛନ୍ତି । ଭାରତର ବିବିଧ ଅଞ୍ଚଳରେ ଲିପି ଓ ଭାଷାର ଆଦାନ-ପ୍ରଦାନ ପରି ମହତ୍ତ୍ୱ କାର୍ଯ୍ୟରେ ସାହାଯ୍ୟ କରି ଉତ୍ତର ପ୍ରଦେଶର ତତ୍କାଳୀନ ନିର୍ଦ୍ଦେଶକ ଓ ସଚିବ ଶ୍ରୀ ଶିରୋମଣି ଶର୍ମା ଓ ସରକାର ବିଶେଷ ରୂପେ ଗୌରବାନ୍ୱିତ ହୋଇଅଛନ୍ତି । ଟ୍ରଷ୍ଟ ସେମାନଙ୍କ ପ୍ରତି ଅତ୍ୟନ୍ତ କୃତଜ୍ଞ ।

## ଶ୍ରୀ ଜୟଦୟାଲ ଜୀ ଡାଲମିଆ

ଦେଶର ଶ୍ରେଷ୍ଠ ଶିଳ୍ପପତିମାନଙ୍କ ମଧ୍ୟରେ ଅତ୍ୟନ୍ତ ଧର୍ମପରାୟଣ ଓ ସଦାଶୟ ଶ୍ରୀ ଜୟଦୟାଲ ଡାଲମିଆଙ୍କ ନାମ କିଏ ନ ଜାଣେ ? ସେ ମହାଶୟ ଦିନରାତି ପୁଣ୍ୟ-

କାର୍ଯ୍ୟରେ ବ୍ୟାପୃତ । ସଂପ୍ରତି ଶ୍ରୀକୃଷ୍ଣ-ଜନ୍ମସ୍ଥାନ ମଥୁରାର ଅଲୌକିକ ଭବ୍ୟ ନବନିର୍ମାଣ ତାଙ୍କ ନିଷ୍କାମ କର୍ମ-ଧର୍ମର ମହତ୍ତ୍ୱକୁ ମୁଖରିତ କରୁଛି । ଓଡ଼ିଆ 'ଶ୍ରୀରାମଚରିତ ମାନସ' ଗ୍ରନ୍ଥର ପ୍ରକାଶନ ଯୋଜନା ମୁଁ ତାଙ୍କ ଆଗରେ ଉପସ୍ଥାପନ କଲି କ୍ଷଣି ସେ ମହାଶୟ ଉଦାରତା ସହକାରେ ତାଙ୍କ ଅନୁଷ୍ଠାନରୁ କାଗଜର ସାହାଯ୍ୟ ଓ ବ୍ୟବସ୍ଥା କରିଦେଲେ । ଭୁବନବାଣୀ ଟ୍ରଷ୍ଟ୍ର ସଦାଗ୍ରର ଗ୍ରନ୍ଥ ପ୍ରକାଶନ ବେଳେ ଯଦା-କଦା ତାଙ୍କ ସାହାଯ୍ୟ ଆମ୍ଭେମାନେ ପାଇ ଆସିଛୁ । ସେ ଓ ତାଙ୍କ ସୁପୁତ୍ର ଆୟୁଷ୍ମାନ୍ ଶ୍ରୀ ବିଷ୍ଣୁହରି ଡାଲମିଆ ଟ୍ରଷ୍ଟ୍ର ମହାନ୍ ପୃଷ୍ଠପୋଷକ ।

## ପଦ୍ୟାନୁବାଦକ ବାବାଜୀ ଶ୍ରୀ ବଲରାମ ଦାସ

ପ୍ରସ୍ତୁତ ଗ୍ରନ୍ଥରେ ଓଡ଼ିଆ ପଦ୍ୟାନୁବାଦର ରଚୟିତା ବାବାଜୀ ବଲରାମ ଦାସ ସପ୍ତଦଶ ବର୍ଷ ବୟସରୁ ଘରଦ୍ୱାର ଛାଡ଼ି ପ୍ରବାସରେ ଅଛନ୍ତି । ଶ୍ରୀ ରାଧାନାଥ ରଥ ମହାଶୟ ତାଙ୍କ କାବ୍ୟର ଅତି ଉଚ୍ଚ ପ୍ରଶଂସା କରନ୍ତି । ତାଙ୍କଠାରୁ ବାବାଜୀଙ୍କ କୌଣସି ସମୟର ଦିଲ୍ଲୀସ୍ଥିତ ଠିକଣା (୩୨୨୨ ଗଲି-ଚରଣ ଦାସ, ମୁହଲ୍ଲା-ଧସାନ, ଦିଲ୍ଲୀ-୭) ପାଇ ମୁଁ ୧୯୭୨ ମସିହାରୁ ତାଙ୍କର ଅନୁସନ୍ଧାନରେ ବହୁଥର ଦିଲ୍ଲୀ ଯାଇଛି । କିନ୍ତୁ ତାଙ୍କ ଦର୍ଶନ ପାଇ ପାରିନାହିଁ । ଶୁଣାଯାଏ, ସେ ଲୋକପ୍ରଖ୍ୟାତ ମହାତ୍ମା ଚରଣ ଦାସଙ୍କ ସଂପ୍ରଦାୟର ଶିଷ୍ୟ ଏବଂ ବହୁ ସମୟ ପୂର୍ବରୁ ଉତ୍କଳ ପ୍ରଦେଶ ଛାଡ଼ି ଉପର୍ଯ୍ୟୁକ୍ତ ଠିକଣାରେ ବହୁଦିନ ରହି-ଥିଲେ । ସେଠାରେ ଭକ୍ତ ଚରଣ ଦାସଙ୍କର ଗୋଟିଏ ମନ୍ଦିର ଅଛି । କିନ୍ତୁ ଶିଷ୍ୟମାନଙ୍କ ମଧ୍ୟରେ ସମ୍ପତ୍ତି ଓ ଉତ୍ତରାଧିକାର ହେତୁ କଳହ ଉପୁଜିବାରୁ ବଲରାମ ଦିଲ୍ଲୀ ଛାଡ଼ିଲେ । ଦିଲ୍ଲୀ ନିକଟବର୍ତ୍ତୀ ମୁଜଫର ନଗରରେ ଚରଣ ଦାସ ସଂପ୍ରଦାୟର କେତେକ ମନ୍ଦିର ଅଛି । ଉତ୍ତର ପ୍ରଦେଶାନ୍ତର୍ଗତ ମିରଟ, ଗାଜିୟାବାଦ ଆଦି ଜିଲ୍ଲାରେ ମଧ୍ୟ ଏହି ସଂପ୍ରଦାୟର ଶିଷ୍ୟ ଓ ଭକ୍ତମାନେ ବାସ କରନ୍ତି । ଆମର ବାବାଜୀ ବଲରାମ ଏବେ ଏହି ସବୁ ସ୍ଥାନରେ ଭ୍ରମଣ ଓ ନିବାସ କରୁଥିବାର ଲୋକମୁଖରୁ ଶୁଣାଯାଏ । ସମସ୍ତଙ୍କ ମୁହଁରୁ ନିର୍ବିବାଦରେ ଏହି କଥା ଶୁଣାଯାଏ ଯେ, ସେ ବାସ୍ତବିକ ସନ୍ଥ ଓ ନିଃସ୍ପୃହସ୍ୱଭାବ-ବିଶିଷ୍ଟ ବ୍ୟକ୍ତି ଏବଂ ବଡ଼ ରାମଭକ୍ତ ।

ବାବାଜୀ ବଲରାମଙ୍କ ଫଟୋ ଓ ପରିଚୟ ଓଡ଼ିଆ 'ମାନସ' ଗ୍ରନ୍ଥରେ ଦେବାପାଇଁ ମୋ ମନରେ ବଳନ୍ତ ଅଭିଳାଷ ଥିଲା । ମୁଁ ତ ଉକ୍ତ ବସ୍ତୁମାନ ଅନୁସନ୍ଧାନ କରି କରି ହାରି ଯାଇଥିଲି । କିନ୍ତୁ 'ମାନସ'ର ଓଡ଼ିଆ ରୂପାନ୍ତରକାର ଶ୍ରୀ ନନ୍ଦ ସାହସ ନ ହାରି ବହୁ ଶ୍ରମ-ସ୍ୱୀକାରପୂର୍ବକ ବାବାଜୀଙ୍କ ଛବି ଓ ପରିଚୟ ସଂଗ୍ରହ କରି ପାରିଛନ୍ତି । ଉକ୍ତ ବିଷୟମାନଙ୍କର ଅବ-ତାରଣା ଶ୍ରୀ ନନ୍ଦ ତାଙ୍କ ବକ୍ତବ୍ୟରେ କରିଅଛନ୍ତି । ବାବାଜୀ ବଲରାମ ନିଶ୍ଚୟ ଜୀବିତ ଅଛନ୍ତି । ପ୍ରଭୁ ତାହାଙ୍କୁ ଦୀର୍ଘାୟୁ କରନ୍ତୁ । ଦିନେ ନା ଦିନେ ସେ ତାଙ୍କ ସାଧନାସ୍ଥଳୀରୁ ବାହାରି ଆସି ଲୋକସମାଜକୁ ଦର୍ଶନ-ପ୍ରଦାନପୂର୍ବକ ଜ୍ଞାନାଲୋକ ବିକୀରଣ କରନ୍ତୁ ଏବଂ ସ୍ୱରଚିତ ପଦ୍ୟାନୁବାଦର ସାକାର ପ୍ରକାଶିତ ରୂପ ସ୍ୱଚକ୍ଷୁରେ ଦେଖନ୍ତୁ । ଏତିକି ଆମର କାମନା । ଶ୍ରୀରାମଙ୍କ ଇଚ୍ଛା ।

ଭକ୍ତ ଚରଣ ଦାସଙ୍କ ରଚିତ 'ଭକ୍ତିସାଗର' ଗ୍ରନ୍ଥ ପ୍ରସିଦ୍ଧ । ଏହି ଗ୍ରନ୍ଥ କ୍ଷେମରାଜ ଭେଙ୍କଟେଶ୍ୱର ପ୍ରେସ, ବମ୍ବେ ଏବଂ ନଓ୍ୱଲକିଶୋର ପ୍ରେସ, ଲକ୍ଷ୍ନୌରୁ ପ୍ରକାଶିତ ହୋଇ-ଅଛି । ତାଙ୍କ ଭଗିନୀ ସହଜୋବାଈ ମଧ୍ୟ ସନ୍ଥ ଥିଲେ । ତାଙ୍କ ରଚିତ ବହୁ ଉପଦେଶମୂଳକ ବାଣୀ ମଧ୍ୟ ପ୍ରକାଶିତ ହୋଇଅଛି ।

## ଉପସଂହାର

ସ୍ୱବକ୍ତବ୍ୟର ପ୍ରାରମ୍ଭରେ ମୁଁ 'ଭୁବନବାଣୀ ଟ୍ରଷ୍ଟ'ର ଭାଷାଗତ ସେତୁକରଣ ଓ ସମସ୍ତ ଭାଷାର ଶାଶ୍ୱତ ସତ୍‌ସାହିତ୍ୟକୁ ଆଞ୍ଚଳିକ ସ୍ତରରୁ ଉଠାଇ ସମଗ୍ର ରାଷ୍ଟ୍ରର ସମ୍ପତ୍ତି କରିବା ଉଦ୍ଦେଶ୍ୟ ବିଷୟରେ ଆଲୋଚନା କରିଅଛି । 'ଶ୍ରୀରାମଚରିତ ମାନସ'ର ପ୍ରସ୍ତୁତ ଓଡ଼ିଆ ଲିପ୍ୟନ୍ତରଣ ଓ ପଦ୍ୟାଗଦ୍ୟାନୁବାଦ ସେହି ପୁନୀତ ଉଦ୍ଦେଶ୍ୟ-ଶୃଙ୍ଖଳାର ଗୋଟିଏ କଡ଼ି । ପୂର୍ବରୁ 'ମାନସ'ର ଦୁଇ ଥରଗୋଟି ଓଡ଼ିଆସଂସ୍କରଣ ପ୍ରକାଶିତ ହୋଇସାରିଛି । କିନ୍ତୁ ତନ୍ମଧ୍ୟରୁ କୌଣସି ଗୋଟିଏ ମଧ୍ୟ ରଚ୍ଚ ପ୍ରସ୍ତୁତ ଗ୍ରନ୍ଥ ସହିତ ତୁଳନୀୟ ନୁହେଁ ।

ପରିଶେଷରେ ଉପରେ ଅନେକ ଥର ଚର୍ଚ୍ଚା କରିଥିଲେ ସୁଦ୍ଧା, ପୁନଃ ଏ ବିଷୟ୍ୱ ନ କହିଲେ ମନକୁ ଶାନ୍ତି ଓ ସନ୍ତୋଷ ମିଳିବ ନାହିଁ,—"ଏହି ମହତ୍ କାର୍ଯ୍ୟରେ ଶ୍ରୀ ନନ୍ଦ ଅକ୍ଳାନ୍ତ ପରିଶ୍ରମ କରିଅଛନ୍ତି । ବର୍ତ୍ତମାନ ତାଙ୍କ ବୟସ ତରୁଣ ବୋଲି କହିବାକୁ ହେବ । ହିନ୍ଦୀର ମୁକୁଟ ଗ୍ରନ୍ଥ 'ଶ୍ରୀରାମଚରିତ ମାନସ'ର ଓଡ଼ିଆ ରୂପାନ୍ତର ଓ ଓଡ଼ିଆର ଅନୁପମ ଲୋକପ୍ରସିଦ୍ଧ ଗ୍ରନ୍ଥ 'ବୈଦେହୀଶ ବିଳାସ'ର ହିନ୍ଦୀ ରୂପାନ୍ତର ଉଭୟ କାର୍ଯ୍ୟ ତାଙ୍କ ପ୍ରତିଭା ଓ ଭବିଷ୍ୟତରେ ତାଙ୍କଠାରୁ ଅପେକ୍ଷିତ ସାଧନାର ଦ୍ୟୋତକ । ସର୍ବାଧିକ ଗୌରବର ସେହିଁ ଅଧିକାରୀ ।"

'ପ୍ରଭାକର ନିଳୟମ୍'
୪୦୬।୧୨୮ ଚୌପଟିୟାଁ ରୋଡ୍
ଲକ୍ଷ୍ନୌ-୩
(Lucknow-3 U.P.)
ବିଜୟାଦଶମୀ, ୧୯୭୮
ତା ୧୧-୧୦-୧୯୭୮

ସ୍ୱା—ନନ୍ଦକୁମାର ଅବସ୍ଥୀ
ମୁଖ୍ୟନ୍ୟାସୀ ସଭାପତି,
ଭୁବନବାଣୀ ଟ୍ରଷ୍ଟ

# ଅନୁବାଦକୀୟ ବକ୍ତବ୍ୟ

## ‘ଭୁବନ-ବାଣୀ ଟ୍ରଷ୍ଟ’ର ମୁଖ୍ୟାନ୍ୟାସୀ -ସଭାପତି
## ଶ୍ରୀଯୁକ୍ତ ନନ୍ଦକୁମାର ଅଓ୍ୱସ୍ଥୀଙ୍କର ସଂକ୍ଷିପ୍ତ ପରିଚୟ

କର୍ମବୀର ଶ୍ରୀ ନନ୍ଦକୁମାର ଅଓ୍ୱସ୍ଥୀ ସନ ୧୯୦୭ ମସିହା, ମେ ମାସ, ଦୁଇ ତାରିଖ (ବିକ୍ରମାବ୍ଦ ୧୯୬୪, ବୈଶାଖ, କୃଷ୍ଣ ପଞ୍ଚମୀ ତିଥି) ଦିନ ଲକ୍ଷ୍ନୌ ସହରସ୍ଥ ରାମକଟୋରି-ନିବାସୀ ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ପିତାଙ୍କର ଅକାଳ ମୃତ୍ୟୁ ହେତୁ ମାତା, ଗୋଟିଏ କନିଷ୍ଠ ଭ୍ରାତା, ଏକ ମାତ୍ର ଭଗିନୀ ଓ ପରିବାରର ଅନ୍ୟାନ୍ୟମାନଙ୍କ ଭରଣପୋଷଣର ଦାୟିତ୍ୱ ଶ୍ରୀଯୁକ୍ତ ନନ୍ଦକୁମାରଙ୍କୁ ଅତି ଅଳ୍ପ ଅୟସରେ ବହନ କରିବାକୁ ପଡିଥିଲା । ସେ ସାଧାରଣ ଶିକ୍ଷା ଲାଭ କରିଥିଲେ ।

୧୯୨୫ ମସିହାରେ ଘୋର ବେକାର ସମସ୍ୟାର କାଳ । ସେତେବେଳେ ନନ୍ଦକୁମାର କଲିକତା ମହାନଗରୀସ୍ଥ ଇଷ୍ଟ ଇଣ୍ଡିଆ ରେଲୱାଇ କମ୍ପାନୀର ଏଜେଣ୍ଟଙ୍କ କାର୍ଯ୍ୟାଳୟରେ ସ୍ଥାୟୀ ଚାକିରିରେ ନିଯୁକ୍ତ ହୋଇଥିଲେ । କିନ୍ତୁ ହୃଦୟରେ ସାର୍ବଜନୀନ ସେବା ମନୋବୃତ୍ତି ଓ ସାହିତ୍ୟିକ ଅଭିରୁଚି ଥିବା ହେତୁ ଉକ୍ତ ଚାକିରି ଜୀବନ ତାଙ୍କର ମନୋନୁକୂଳ ହେଲା ନାହିଁ । ତେଣୁ ସେ ୧୯୨୮ ମସିହାରେ ଉକ୍ତ ଚାକିରିରୁ ଇସ୍ତଫା ଦେଲେ ।

ଶ୍ରୀ ସୁରେଶଚନ୍ଦ୍ର ନନ୍ଦ

ରେଲୱାଇ ଚାକିରି କାଳରେ ନନ୍ଦକୁମାର କଲିକତାରେ ‘ଜୈନଯୁବକ’ ପ୍ରମୁଖ କେତେକ ଆଞ୍ଚଳିକ ପତ୍ରିକାର ସମ୍ପାଦନା କରୁଥିଲେ । ଚାକିରି ଛାଡିବା ପରେ ସେ ଲକ୍ଷ୍ନୌସ୍ଥ ନଓ୍ୱଲ କିଶୋର ପ୍ରେସରେ ‘ମାଧୁରୀ’ ନାମକ ପତ୍ରିକାର ସମ୍ପାଦନା କରିବାକୁ ପ୍ରୟାସ କରିଥିଲେ । କିନ୍ତୁ ଉକ୍ତ କାର୍ଯ୍ୟ ନିମନ୍ତେ ସେ ସମୟରେ ଶ୍ରେଷ୍ଠ ବିଦ୍ୱାନ୍‌ମାନଙ୍କର ପ୍ରବଳ ଭିଡ ଥିଲା । ସମ୍ପାଦନା ନିମନ୍ତେ ତାଙ୍କ ପାଇଁ ଅବକାଶ ନ ଥିଲା । ଏବେ ‘ମାଧୁରୀ’ ସହିତ ସମ୍ପାଦନା-ସୂତ୍ରରେ ସଂଯୁକ୍ତ ନ ହେଲେହେଁ ନଓ୍ୱଲ କିଶୋର ପ୍ରେସ୍ ସହିତ ଜୀବିକା-ସୂତ୍ରରେ ତାଙ୍କର ସସମ୍ମାନ ସମ୍ବନ୍ଧ ସ୍ଥାପିତ ହେଲା । କେବେ ରାଜନୈତିକ, କେବେ ବା ସାମାଜିକ କାରଣରୁ କେତେ ଥର ଛାଡବାଡ ହୋଇଥିଲେହେଁ ଉକ୍ତ କାର୍ଯ୍ୟକାଳ କୋଡିଏ ବର୍ଷରୁ

କମ୍ ସମୟ ହୋଇ ନ ଥିଲା । ତାଙ୍କର ଭାବୀ ସେବା ଉପରେ ଉକ୍ତ କାର୍ଯ୍ୟକାଳର ବହୁତ କିଛି ପ୍ରଭାବ ପଡ଼ିଛି ।

## ରାଜନୀତି

ବାଲ୍ୟକାଳରୁ ତାଙ୍କ ମନରେ ରାଜନୀତି ପ୍ରତି ଆଗ୍ରହ ଜାତ ହୋଇଥିଲା । ଜୀବିକାର୍ଜନର କୌଣସି ସ୍ଥାୟୀ ପନ୍ଥା ନ ହୋଇ ପାରିବାରୁ ତାଙ୍କର ପରିବାରର ସମସ୍ତେ କଷ୍ଟମୟ ଜୀବନ ଯାପନ କରୁଥିଲେ । ତାଙ୍କର ସମଗ୍ର ପରିବାର ବିପ୍ଲବୀ ସୋସାଲିଷ୍ଟ ପାର୍ଟିର ସଭ୍ୟ ଥିଲେ । ସେମାନେ ସନ ୧୯୪୨ ମସିହାର ସ୍ୱାଧୀନତା ଆନ୍ଦୋଳନରେ ଭାଗ ନେଇଥିଲେ । ଉକ୍ତ ଇତିହାସ ଅତି ଦୀର୍ଘ ।

## ସାହିତ୍ୟିକ କୃତି

ଶ୍ରୀ ଅର୍ଯ୍ୟାର୍ଥୀ ଜନ୍ମଗତ ଅଭିରୁଚି ଅନୁସାରେ ଲେଖନପ୍ରକାଶନ କାର୍ଯ୍ୟ 'ଶ୍ରୀ ପ୍ରଭାକର ସାହିତ୍ୟାଲୋକ' ନାମକ ସଂସ୍ଥାଦ୍ୱାରା ଚଳାଇଥିଲେ । ସେ ସ୍ୱାମୀ ରାମତୀର୍ଥଙ୍କ କେତେକ ଭାଷଣର ଉର୍ଦ୍ଦୁ, ଓ ଇଂରାଜୀରୁ ହିନ୍ଦୀରେ ଅନୁବାଦ କରିଥିଲେ । ତାଙ୍କର ମୌଳିକ କୃତିମାନଙ୍କ ମଧ୍ୟରେ 'ରାଷ୍ଟ୍ରୀୟ ଆହ୍ଲା' (ବାଳୋପଯୋଗୀ ସାହିତ୍ୟପୁସ୍ତକ), 'ଖଗପଶୁମୀନମାନବୀ ସଂଘ' (ବ୍ୟଙ୍ଗାତ୍ମକ ଏକାଙ୍କୀ) ଆଦି ଉଲ୍ଲେଖଯୋଗ୍ୟ । ସ୍ୱର୍ଗତ ରୂପନାରାୟଣ ପାଣ୍ଡେୟଙ୍କ ଲେଖନୀରୁ ପ୍ରାପ୍ତ ପ୍ରସିଦ୍ଧ ବଙ୍ଗଳା ଔପନ୍ୟାସିକ ବଙ୍କିମଙ୍କ ସାହିତ୍ୟ ମଧ୍ୟ ସେ ପ୍ରକାଶନ କରିଥିଲେ ।

## ଭାଷା-ସେତୁକରଣ

ଭାରତ ସମ୍ବିଧାନ ଦେଶର ରାଷ୍ଟ୍ରଭାଷା ଓ ରାଷ୍ଟ୍ରଲିପି ବିଷୟ ଆଲୋଚନା କରୁଥିବା ସମୟରେ 'ଶ୍ରୀ ପ୍ରଭାକର ସାହିତ୍ୟାଲୋକ'ର କାମରେ ମଧ୍ୟ ବିଭ୍ରାଟ ଉପୁଜିଲା । ଶ୍ରୀ ଅର୍ଯ୍ୟାର୍ଥୀ ଉକ୍ତ କାର୍ଯ୍ୟ ଛାଡ଼ିଦେଲେ । ତଦ୍ଦ୍ୱାରା ତାଙ୍କୁ ବହୁତ କ୍ଷତି ସହିବାକୁ ପଡ଼ିଲା । ତଥାପି ତାହା ଅତି ଶୁଭ ମୁହୂର୍ତ୍ତ ଥିଲା । ଈଶ୍ୱରଙ୍କ ପ୍ରେରଣାରେ ୧୯୪୭ ମସିହାରେ ସେ ଭାଷା-ସେତୁକରଣର କାର୍ଯ୍ୟ ହାତକୁ ନେଲେ । ୧୯୦୫ ମସିହାରେ ଜଷ୍ଟିସ୍ ଶାରଦା ଚରଣ ମିତ୍ରଙ୍କ ସକଳ ଭାଷାର ସାହିତ୍ୟକୁ ନାଗରୀ ଲିପିରେ ପ୍ରସ୍ତୁତ କରିବାର ପ୍ରସ୍ତାବ ଏବଂ କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ରଜତ ଜୟନ୍ତୀ ଉପଲକ୍ଷେ ଗାନ୍ଧୀଙ୍କ ଲିପି-ସମ୍ବନ୍ଧୀୟ ଭାଷଣ ଉକ୍ତ କାର୍ଯ୍ୟର ମୂଳଦୁଆ ହେଲା ।

ଉଦ୍ଦେଶ୍ୟ :—ସମସ୍ତ ଲିପିକୁ ନିଜ ନିଜ ଅଞ୍ଚଳରେ ବିକଶିତ କରିବା ସଙ୍ଗେ ସଙ୍ଗେ ନିଜ ନିଜର ସତ୍‌ସାହିତ୍ୟକୁ ନାଗରୀ ଲିପିର କଲେବରରେ ସମଗ୍ର ଦେଶରେ ପ୍ରସାରିତ କରିବା—ଫଳରେ ବିନିମୟ-ସ୍ୱରୂପ କୌଣସି ଭିନ୍ନତା ବା ସ୍ପର୍ଦ୍ଧା ବିନା ନାଗରୀ ଲିପି ଓ ରାଷ୍ଟ୍ରଭାଷାକୁ

ସମଗ୍ର ସମ୍ବନ୍ଧ ଯେପରି ସ୍ୱାଗତ କରିବେ ଏବଂ ସମସ୍ତ ଭାଷାର ବାଙ୍ମୟ ପ୍ରତ୍ୟେକ ଅଞ୍ଚଳରେ ଯେପରି ପ୍ରଚାରିତ ହେବ, ଏହାହିଁ ଭାଷା-ସେତୁକରଣର ମହତ୍ତ୍ୱ ଉଦ୍ଦେଶ୍ୟ ଥିଲା । ପରବର୍ତ୍ତୀ କାଳରେ ସେ ଭାଷା-ସେତୁକରଣ ଉପରେ ନିମ୍ନଲିଖିତ ଅଦ୍ୱିତୀୟ କାର୍ଯ୍ୟ-ମାନ କରିଅଛନ୍ତି ।

(କ) ଆରବୀ ଧର୍ମଗ୍ରନ୍ଥ 'କୋରାନ'ର ମୂଳପାଠରୁ ନାଗରୀ ଲିପିରେ ଲିପ୍ୟନ୍ତରଣ ଏବଂ ନାଗରୀ ଲିପିରେ ଅପ୍ରାପ୍ତ ଆରବୀ ଧ୍ୱନି, ବିଶିଷ୍ଟ ବିରାମ ଚିହ୍ନ, ସନ୍ଧି ସମାସ ଓ ଅନ୍ୟାନ୍ୟ ଶାସ୍ତ୍ରୀୟ ପଦ୍ଧତିର ସୃଜନ ତଥା ଟିପ୍ପଣୀ ସହିତ ହିନ୍ଦୀରେ ଅନୁବାଦ ଶ୍ରୀଯୁକ୍ତ ଅଓ୍ୱସ୍ଥୀଙ୍କର ବିଶିଷ୍ଟ କୃତି । ଏହି ଧର୍ମଗ୍ରନ୍ଥର ଶୁଦ୍ଧତା ଏବଂ ପ୍ରାମାଣିକତା ହେତୁ ମୁସଲମାନ ଧର୍ମାଗ୍ରଣୀ ଏବଂ ପ୍ରମୁଖ ଅନୁଷ୍ଠାନମାନେ ତାଙ୍କୁ ପୂର୍ଣ୍ଣପ୍ରାଣରେ ପ୍ରଶଂସା କରନ୍ତି । (ଅଦ୍ୟାବଧି ଦୁଇଟି ସଂସ୍କରଣ ପ୍ରକାଶିତ ହୋଇ ସାରିଲାଣି । )

(ଖ) 'ଶ୍ରୀରାମଚରିତ ମାନସ'ଠାରୁ ଏକ ଶତାବ୍ଦୀ ପ୍ରାଚୀନ ବଙ୍ଗଳା 'କୃତ୍ତିବାସ ରାମାୟଣ'ର ନାଗରୀ ଲିପ୍ୟନ୍ତରଣ ଏବଂ ଅଓ୍ୱଧୀ ଭାଷାରେ ପଦ୍ୟାନୁବାଦ ଅଓ୍ୱସ୍ଥୀଙ୍କର ଅନ୍ୟତମ ପ୍ରୟାସ । ଏହି ପଦ୍ୟାନୁବାଦ ଯୋଗୁ ସେ ଉତ୍ତର ପ୍ରଦେଶର ହିନ୍ଦୀ ସମିତିଙ୍କଦ୍ୱାରା ପୁରସ୍କୃତ ହୋଇଅଛନ୍ତି । ଇତି ମଧ୍ୟରେ ଉକ୍ତ ଗ୍ରନ୍ଥ ଦୁଇଥର ପ୍ରକାଶିତ ହୋଇ ସାରିଲାଣି ।

(ଗ) ଶ୍ରୀଯୁକ୍ତ ନନ୍ଦକୁମାର ତାମିଲ୍ ଭାଷାର ମହାସନ୍ଥ ତିରୁବଲ୍ଲୁବରକୃତ ଦୁଇହଜାର ବର୍ଷର ନୀତିଗ୍ରନ୍ଥ 'ତିରୁକ୍କୁରଲ'ର ହିନ୍ଦୀ ପଦ୍ୟାନୁବାଦ, ଆରବୀ ଭାଷାର ସୁପ୍ରାମାଣିକ କବି ହ୍ୱାଜା ଶମ୍ସୁଦ୍ଦୀନ୍ ହାଫିଜ୍‌ଙ୍କ 'ଜାଦେସଫର' ନାମକ ଉର୍ଦ୍ଦୁ ଅନୁବାଦ ଗ୍ରନ୍ଥର ଦେବନାଗରୀ ଲିପ୍ୟନ୍ତରଣ ଏବଂ ଗୁରୁମୁଖୀ ଭାଷାର 'ଶ୍ରୀଜପୁଜୀ ସୁଖମନୀ ସାହିବ'ର ନାଗରୀ ଲିପ୍ୟନ୍ତରଣ ଆଦି କାର୍ଯ୍ୟ କରି ତାହା ପ୍ରକାଶିତ କରି ସାରିଛନ୍ତି ।

(ଘ) ଦେବନାଗରୀ ଲିପିରେ ମିଳୁ ନ ଥିବା ଅନ୍ୟ ଭାଷାମାନଙ୍କର ଧ୍ୱନି ଓ ମାତ୍ରା-ସମୂହର ସୃଜନ ଓ ନାଗରୀଲିପି-ବିକାଶ-କାର୍ଯ୍ୟକ୍ରମ ସେ ସନ ୧୯୪୭ ମସିହାଠାରୁ ହାତକୁ ନେଇଅଛନ୍ତି । ଏହା ଅଦ୍ୟାବଧି ଚାଲିଛି । ଅଓ୍ୱସ୍ଥୀଙ୍କ ତତ୍ତ୍ୱାବଧାନରେ ବିଭିନ୍ନ ନୂତନ ଅକ୍ଷରର ଗ୍ରାଫନିର୍ମାଣ, ସେଗୁଡ଼ିକର ଢଳାଇ ଏବଂ ସେଗୁଡ଼ିକରେ କାମ କରୁଥିବା ଶିଳ୍ପୀମାନଙ୍କୁ ତାଲିମ-ପ୍ରଦାନ ଆଦି ଯେଉଁ କାର୍ଯ୍ୟମାନ ଚାଲିଛି, ତାହା ଦେଶରେ ଅନ୍ୟତ୍ର ଦୁର୍ଲ୍ଲଭ ।

(ଙ) ସନ ୧୯୬୧ ମସିହାରେ 'ଭୁବନବାଣୀ ଟ୍ରଷ୍ଟ' ସ୍ଥାପନା କରି ଶ୍ରୀଯୁକ୍ତ ଅଓ୍ୱସ୍ଥୀ ମୁଖ୍ୟନ୍ୟାସୀ ସଭାପତି ରୂପେ ତାହାର କାର୍ଯ୍ୟଭାର ଗ୍ରହଣ କଲେ । ଏହି ପଦରେ ସେ ସମସ୍ତ ଭାଷାଗତ କାର୍ଯ୍ୟର ବ୍ୟବସ୍ଥା ଓ ସଂଚାଳନା କରନ୍ତି । ଟ୍ରଷ୍ଟ ଉପରେ କୌଣସି ଆର୍ଥିକ ବୋଝ ନ ପକାଇ କିମ୍ବା ନିଜେ କୌଣସି ପାରିଶ୍ରମିକ ନ ନେଇ ସେ ଅହୋରାତ୍ର ଏହି ସମସ୍ତ କାର୍ଯ୍ୟରେ ମନପ୍ରାଣ ଦେଇ ଲାଗିଥାଆନ୍ତି । ବିଗତ ସାତବର୍ଷ ମଧ୍ୟରେ ଏହି ଟ୍ରଷ୍ଟଦ୍ୱାରା ବିବିଧ ଭାଷାର ବହୁ ବିଶାଳ ଗ୍ରନ୍ଥ ଦେବନାଗରୀ ଲିପିରେ ସାନୁବାଦ ଲିପ୍ୟନ୍ତରିତ ହୋଇ ପ୍ରକାଶିତ ହୋଇସାରିଛି ।

(ଚ) ବିବିଧ ଭାଷାଭାଷୀ ବିଦ୍ୱାନ୍‌ମାନଙ୍କ ସହଯୋଗ ଓ ସାହଚର୍ଯ୍ୟରେ ପ୍ରାୟ କୋଡ଼ିଏଟି ବିଭିନ୍ନ ଭାଷା (ଯଥା—ଆସାମୀ, ଉର୍ଦ୍ଦୁ, ଆରବୀ, ଓଡ଼ିଆ, କନ୍ନଡ଼, କାଶ୍ମୀରୀ ଗୁରୁମୁଖୀ, ତାମିଲ, ତେଲୁଗୁ, ନେପାଳୀ, ଫାରସୀ, ବଙ୍ଗଳା, ମରାଠୀ ମଲୟାଲମ, ରାଜସ୍ଥାନୀ, ସଂସ୍କୃତ, ସିନ୍ଧୀ, ହିନ୍ଦୀ ଆଦି)ର ଲୋକପ୍ରିୟ ଗ୍ରନ୍ଥମାନଙ୍କର ହିନ୍ଦୀ ଅନୁବାଦ ସହିତ ଦେବନାଗରୀ ଲିପ୍ୟନ୍ତରଣ କାର୍ଯ୍ୟ ଭାରତର ଏକମାତ୍ର ତ୍ରୈମାସିକ ପତ୍ରିକା "ବାଣୀ-ସରୋବର"ରେ ସନ ୧୯୭୦ ମସିହାଠାରୁ ଧାରାବାହିକ ଭାବରେ ପ୍ରକାଶ ପାଇ ଆସୁଛି । ଏହି ପତ୍ରିକାର ସମ୍ପାଦକ ଅଟନ୍ତି ଆମର ପ୍ରିୟ ନନ୍ଦକୁମାର ଅଓ୍ୱସ୍ଥୀ ।

(ଛ) ନନ୍ଦକୁମାର ବଙ୍ଗଳା ଭାଷାର ପ୍ରସିଦ୍ଧ ଔପନ୍ୟାସିକ ସ୍ୱର୍ଗତ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟକୃତ 'ଗୀତାଭାଷ୍ୟ'ର ହିନ୍ଦୀ ଅନୁବାଦ କରିଅଛନ୍ତି । ତାହା ଏ ପର୍ଯ୍ୟନ୍ତ ଅପ୍ରକାଶିତ ।

(ଜ) (୧) ଗୋସ୍ୱାମୀ ତୁଳସୀଦାସ-କୃତ 'ଶ୍ରୀରାମଚରିତ ମାନସ'ର ମୂଳପାଠ ସହିତ ପଂକ୍ତି-ଅନୁପଂକ୍ତିର ସଂସ୍କୃତ ପଦ୍ୟାନୁବାଦ, (୨) 'ଶ୍ରୀରାମଚରିତ ମାନସ'ର ଓଡ଼ିଆ ଲିପ୍ୟନ୍ତରଣ ଏବଂ ଓଡ଼ିଆ ଭାଷାରେ ପଦ୍ୟ ଗଦ୍ୟାନୁବାଦ (୩) 'ମାନସ'ର ବଙ୍ଗଳା ଲିପ୍ୟନ୍ତରଣ ଓ ପଦ୍ୟାନୁବାଦ; ଏହି ତିନଗୋଟି ମହତ୍ତ୍ୱ ଗ୍ରନ୍ଥର ପ୍ରକାଶନ କାର୍ଯ୍ୟରେ ଶ୍ରୀ ଅଓ୍ୱସ୍ଥୀ ଗତ କେତେ ବର୍ଷ ହେଲା ଅଧିବସାୟୀ ଏବଂ ଉଦ୍ୟମୀ । ଆଜି ପାଠକମାନଙ୍କ ସମକ୍ଷରେ ତୁଳସୀ 'ମାନସ'ର ଓଡ଼ିଆ ରୂପାନ୍ତର ଆତ୍ମପ୍ରକାଶ ଲାଭ କରୁଅଛି ।

(ଝ) 'କୌରନକ କୋଷ ପଠନକ୍ରମ', 'କୌରନକ କୋଷ ବର୍ଣ୍ଣାନୁକ୍ରମ' ଓ 'ନାଗରୀ ଉର୍ଦ୍ଦୁ-ହିନ୍ଦୀ କୋଷ'ର ପ୍ରକାଶନ-କାର୍ଯ୍ୟରେ ଏବେ ଶ୍ରୀ ଅଓ୍ୱସ୍ଥୀ ବ୍ୟସ୍ତ ।

## ଦେଶରେ ପ୍ରତିକ୍ରିୟା

ଭାରତର ପୂର୍ବତନ ରାଷ୍ଟ୍ରପତି ଡକ୍ଟର ରାଧାକୃଷ୍ଣନ୍, ବନାରସ ହିନ୍ଦୁ ବିଶ୍ୱ-ବିଦ୍ୟାଳୟର ହିନ୍ଦୀ ପ୍ରଫେସର ଆଚାର୍ଯ୍ୟ ହଜାରୀପ୍ରସାଦ ଦ୍ୱିବେଦୀ, ବିଶିଷ୍ଟ ଆଲୋଚକ ଡକ୍ଟର ନଗେନ୍ଦ୍ର, ରାଜସ୍ଥାନର ପୂର୍ବତନ ରାଜ୍ୟପାଳ ଡକ୍ଟର ସମ୍ପୂର୍ଣ୍ଣାନନ୍ଦ, ଉତ୍ତର ପ୍ରଦେଶର ପୂର୍ବତନ ମୁଖ୍ୟମନ୍ତ୍ରୀ ଶ୍ରୀ ଚନ୍ଦ୍ରଭାନୁ ଗୁପ୍ତ ଓ ଉତ୍ତର ପ୍ରଦେଶର ଭୂତପୂର୍ବ ଶିକ୍ଷାମନ୍ତ୍ରୀ ଶ୍ରୀ କୈଳାସ ପ୍ରକାଶ ଅଓ୍ୱସ୍ଥୀ ମହାଶୟଙ୍କ ଅଧିବସାୟର ପ୍ରଶଂସାପୂର୍ବକ ବହୁ ଅବସରରେ ତାଙ୍କ ନିକଟକୁ ସେମାନଙ୍କ ଆଶୀର୍ବାଦ ଓ ଶୁଭକାମନା ପଠାଇଅଛନ୍ତି ।

'ନାଗପୁର ଟାଇମ୍‌ସ' ପତ୍ରିକା ୨୩-୧୧-୧୯୭୫ ତାରିଖରେ ଶ୍ରୀଯୁକ୍ତ ଅଓ୍ୱସ୍ଥୀ ସୁପ୍ରତିଷ୍ଠିତ 'ଟ୍ରଷ୍ଟ' ଦ୍ୱାରା ଭାଷା ଓ ଲିପିର ମାଧ୍ୟମରେ ଦେଶରେ ସଂହତି ପାଇଁ ଯେପରି ଉଦ୍ୟମ ଚଳାଇଛନ୍ତି, ତାହାର ଭୂରିଭୂରି ପ୍ରଶଂସା କରିଅଛନ୍ତି ।

## ସମ୍ମାନ

ଗତ ୧୯୭୫ ମସିହା ଜାନୁଆରୀ ମାସରେ ନାଗପୁରରେ ଆୟୋଜିତ 'ବିଶ୍ୱ ହିନ୍ଦୀ ସମ୍ମେଳନ' ଉପଲକ୍ଷେ ଶ୍ରୀଯୁକ୍ତ ଅଓ୍ୱସ୍ଥୀ ଭାରତର ଉପରାଷ୍ଟ୍ରପତି ଶ୍ରୀଯୁକ୍ତ ବି, ଡି· ଜତିଙ୍କ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ହୋଇଥିଲେ ।

୧୯୭୫ ମସିହା ଜାନୁଆରୀ ମାସରେ ଶ୍ରୀଯୁକ୍ତ ଅଓ୍ୱସ୍ଥୀ ଓ୍ୱାର୍ଦ୍ଧାର ପବନାର ଆଶ୍ରମରେ ଆଚାର୍ଯ୍ୟ ବିନୋବା ଭାବେଙ୍କ ସାନ୍ନିଧିରେ ଓ ଡକ୍ଟର ଶ୍ରୀମନ୍ ନାରାୟଣଙ୍କ ଅଧ୍ୟକ୍ଷତାରେ ଗଠିତ ଅଖିଳ ଭାରତୀୟ ନାଗରୀ ଲିପି ପରିଷଦର ସାତଜଣ ସଂସ୍ଥାପକ-ସଦସ୍ୟଙ୍କ ମଧ୍ୟରେ ଅନ୍ୟତମ ସଦସ୍ୟ ରୂପେ ନିଯୁକ୍ତ ହୋଇଅଛନ୍ତି ।

୧୯୭୭ ମସିହା, ଜାନୁଆରୀ ୨୬ ତାରିଖ ଦିନ ଶ୍ରୀଯୁକ୍ତ ଅଓ୍ୱସ୍ଥୀ 'ପଦ୍ମଶ୍ରୀ' ଉପାଧିରେ ଭୂଷିତ ହୋଇଥିଲେ ।

## ଶ୍ରୀ ଅଓ୍ୱସ୍ଥୀ ଓ ଶ୍ରୀ ନନ୍ଦ

ଗତ ୧୯୬୯ ମସିହାର ଗ୍ରୀଷ୍ମାବକାଶରେ କଟକ ନଗର-ନିବାସୀ, ଲକ୍ଷ୍ନୌ କଳା ମହାବିଦ୍ୟାଳୟର ପ୍ରଖ୍ୟାତନାମା ଅଧ୍ୟାପକ, ବନ୍ଧୁ ଶ୍ରୀ ନିତ୍ୟାନନ୍ଦ ମହାପାତ୍ରଙ୍କଠାରୁ ଶ୍ରୀଯୁକ୍ତ ନନ୍ଦକୁମାର ଅଓ୍ୱସ୍ଥୀଙ୍କ ପ୍ରଥମ ପରିଚୟ ମୁଁ ପାଇଲି । ଶ୍ରୀଯୁକ୍ତ ଅଓ୍ୱସ୍ଥୀଙ୍କ ସହି ମୋର ପତ୍ରାଳାପ ଚାଲିଲା ଏବଂ ସମ୍ପର୍କ କ୍ରମେ କ୍ରମେ ଦୃଢ଼ତର ହେବାକୁ ଲାଗିଲା । ସେତେ-ବେଳେ ତାଙ୍କ 'ଭୁବନବାଣୀ ଟ୍ରଷ୍ଟ' ସଂସ୍ଥାର ପ୍ରତିଷ୍ଠା ପାଇଁ ଯୋଜନା ଓ ପ୍ରସ୍ତୁତି ଚାଲିଥାଏ । ଅଳ୍ପଦିନ ପରେ ଉକ୍ତ ସଂସ୍ଥା ପ୍ରତିଷ୍ଠିତ ହେଲା ଏବଂ ପ୍ରତିଷ୍ଠାତା ଶ୍ରୀଯୁକ୍ତ ଅଓ୍ୱସ୍ଥୀ ୧୯୬୯ ମସିହା, ଅକ୍ଟୋବର ମାସରେ ତାଙ୍କ ବିଦ୍ୱନ୍ମଣ୍ଡଳୀ ମଧ୍ୟରେ ଓଡ଼ିଆଭାଷୀ ଜଣେ ବିଦ୍ୱାନ୍ ରୂପେ ମୋତେ ସ୍ଥାନ ଦେଲେ । ୧୯୭୦ ମସିହା, ଜାନୁଆରୀ ମାସରୁ ଉକ୍ତ ସଂସ୍ଥା ତରଫରୁ ଭାରତୀୟ ଭାଷା-ସମୂହର ସେତୁସ୍ୱରୂପ 'ବାଣୀ-ସରୋବର' ନାମକ ତ୍ରୈମାସିକ ପତ୍ରିକାର ପ୍ରକାଶନ ଆରମ୍ଭ ହେଲା ।

ଏହି ପତ୍ରିକାରେ ବିବିଧ ଭାରତୀୟ ଭାଷାର ଶ୍ରେଷ୍ଠ ସାହିତ୍ୟିକ କୃତିମାନ (Master-pieces of Indian Literatures) ଅଂଶ ଅଂଶ ହୋଇ ଦେବନାଗରୀ ଲିପିର ମାଧ୍ୟମରେ ଓ ହିନ୍ଦୀ ଅନୁବାଦ ସହିତ ୧୯୭୦ ମସିହା, ଜାନୁଆରୀ ମ:ସରୁ ପ୍ରକାଶ ଲାଭ କରି ଆସୁଛି । କୌଣସି ଗୋଟିଏ ଗ୍ରନ୍ଥର ଏହିପରି ସାନୁବାଦ ଲିପ୍ୟନ୍ତରଣର ପ୍ରକାଶନ ସମାପ୍ତ ହେବା ପରେ ତାହା ହିନ୍ଦୀ ଲିପି ଓ ଭାଷାରେ ଲିଖିତ ଏକ ପୂର୍ଣ୍ଣାଙ୍ଗ ଗ୍ରନ୍ଥ ରୂପେ ପ୍ରକାଶିତ ହେଉଅଛି । ଏହି ଗ୍ରନ୍ଥର ପଶ୍ଚାଦ୍ ଭାଗରେ ଏତାଦୃଶ ଗ୍ରନ୍ଥାବଳୀ, ସେଗୁଡ଼ିକର ମୂଳ ଲେଖକ ଏବଂ ଦେବନାଗରୀ ଲିପ୍ୟନ୍ତରକାର ତଥା ହିନ୍ଦୀ ଅନୁବାଦକମାନଙ୍କର ଏକ ବିଶଦ ବିବରଣୀ ପ୍ରଦତ୍ତ ହୋଇଅଛି ।

ଓଡ଼ିଆ ସାହିତ୍ୟର 'ରୀତିଯୁଗ' ବା 'କାବ୍ୟଯୁଗର' ପ୍ରବର୍ତ୍ତକ କବିସମ୍ରାଟ୍ ଉପେନ୍ଦ୍ର ଭଞ୍ଜଙ୍କ ବିରଚିତ ଅନବଦ୍ୟ ଓ ଅନୁପମ ଆଲଙ୍କାରିକ ମହାକାବ୍ୟ 'ବୈଦେହୀଶ-ବିଳାସ'ର ହିନ୍ଦୀ ଅନୁବାଦ ସହିତ ଦେବନାଗରୀ ଲିପ୍ୟନ୍ତରଣ ଦାୟିତ୍ୱ ମୁଁ ଗ୍ରହଣ କରିଅଛି । ସନ ୧୯୭୦ ମସିହା, ଅପ୍ରେଲ ମାସରୁ ଏହା 'ବାଣୀ-ସରୋବର'ରେ ଧାରାବାହିକ ଓ ନିୟମିତ ରୂପେ ପ୍ରକାଶ ଲାଭ କରି ଆସୁଛି । 'ବୈଦେହୀଶବିଳାସ'ର ଚତୁର୍ଥ ଖଣ୍ଡର କାର୍ଯ୍ୟ ଅଧାଅଧି ସମାପ୍ତ ହୋଇଗଲାଣି ଏବଂ ପ୍ରଭୁ ଶ୍ରୀରାମଙ୍କ କୃପା ହେଲେ, ଖୁବ୍ ନିକଟରେ ଏହା ଏକ ପୂର୍ଣ୍ଣାଙ୍ଗ ହିନ୍ଦୀ ଗ୍ରନ୍ଥ ରୂପେ ଭାରତୀୟ ବିଦ୍ୱାନ୍‌ମାନଙ୍କ ସମକ୍ଷରେ ଆତ୍ମପ୍ରକାଶ ଲାଭ କରିବ ।

ଓଡ଼ିଆ ଭାଷାର ଶ୍ରେଷ୍ଠ ସାହିତ୍ୟିକ କୃତିକୁ ଦେବନାଗରୀ ଲିପି ଓ ହିନ୍ଦୀ ଭାଷା ମାଧ୍ୟମରେ ସମଗ୍ର ଭାରତ ଆଗରେ ଉପସ୍ଥାପନ କଲା ଭଳି ହିନ୍ଦୀ ଭାଷାର ଶ୍ରେଷ୍ଠ ସାହିତ୍ୟିକ କୃତିକୁ ଓଡ଼ିଆ ଲିପି ଓ ଓଡ଼ିଆଭାଷା ମାଧ୍ୟମରେ ଓଡ଼ିଆ ପାଠକବର୍ଗଙ୍କ ଆଗରେ ଉପସ୍ଥାପନ କରିବାର ଅଭିଳାଷ ପୋଷଣ କରି ମୁଁ ଏହା ଶ୍ରୀଯୁକ୍ତ ଅଓ୍ୱସ୍ଥୀଙ୍କ ଆଗରେ ପ୍ରକାଶ କଲି । ସେ ହିନ୍ଦୀ ଭକ୍ତିଯୁଗର କାବ୍ୟ-କମଳ-କାନନ-ବିକାଶକ-ଭାସ୍କର ଗୋସ୍ୱାମୀ ତୁଳସୀଦାସ-ବିରଚିତ 'ଶ୍ରୀରାମଚରିତ ମାନସ' ଏଥିପାଇଁ ପ୍ରକୃଷ୍ଟ ଗ୍ରନ୍ଥ ବୋଲି ମୋତେ ସୂଚନା ଦେଲେ ଏବଂ ୧୯୭୨ ମସିହା, ଏପ୍ରିଲ୍ ମାସରେ ଏହି ଉଦ୍ଦେଶ୍ୟରେ ପ୍ରଥମ ଥର ପାଇଁ କଟକ ଆସିଲେ । ସେତିକବେଳେ ମୁଁ ଶ୍ରୀଯୁକ୍ତ ଅଓ୍ୱସ୍ଥୀଙ୍କର ପ୍ରଥମ ଦର୍ଶନ ଲାଭ କଲି । ସତେ ଯେପରି କର୍ମଠତାର ଏକ ପ୍ରତିମୂର୍ତ୍ତି ସେ । ତାଙ୍କର ପ୍ରଶାନ୍ତ ମୁଖମଣ୍ଡଳରୁ ନିରଳସତା ଓ ନିରଭିମାନତାର ଶ୍ରୀ ସ୍ଫୂର୍ତ୍ତି ଉଠୁଥାଏ ଏବଂ ତାହା ଜଡ଼ ଓ ଆଳସ୍ୟପରାୟଣ ମନୁଷ୍ୟର ଜଡ଼ତାକୁ ବହୁଦୂରକୁ ଫିଙ୍ଗି ଦେଇ ତାହାର ଜୀବନକୁ କର୍ମମୟ କରେ ।

ତୁଳସୀକୃତ 'ଶ୍ରୀରାମଚରିତ ମାନସ'ର ଓଡ଼ିଆ ଲିପ୍ୟନ୍ତରଣ ଓ ଓଡ଼ିଆ ଗଦ୍ୟାନୁବାଦ କରିବା ନିମନ୍ତେ ମୋତେ ସେ ପରାମର୍ଶ ଓ ଉପଦେଶ ଦେଇ 'ସମାଜ' ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ସହ ସାକ୍ଷାତ କରିବାକୁ ଚାଲିଲେ । ଗଙ୍ଗା ସଙ୍ଗେ ଯମୁନାର ମିଳନ ହେଲା । ଗୋପବନ୍ଧୁ ଭବନରେ ଗୋପବନ୍ଧୁ ତ ଅନ୍ତରତମ ପ୍ରଦେଶରେ ସରସ୍ୱତୀ ରୂପେ ସହଜରେ ରହିଅଛନ୍ତି । 'ସମାଜ' କାର୍ଯ୍ୟାଳୟରେ କର୍ମପ୍ରବାହର ପୁଣ୍ୟ ତ୍ରିବେଣୀ-ସଙ୍ଗମର ସୃଷ୍ଟି । ପୁନଶ୍ଚ ରାଧାନାଥ, ନନ୍ଦକୁମାର ଓ ଗୋପବନ୍ଧୁ ଏହି ନାମତ୍ରୟ ଶ୍ରୀକୃଷ୍ଣପର୍ଯ୍ୟାୟବାଚକ । ସୁତରାଂ ଶ୍ରୀକୃଷ୍ଣଙ୍କ ମହଦ୍‌ବାଣୀ—

'କର୍ମଣ୍ୟେ ବାଧିକାରସ୍ତେ ମା ଫଳେଷୁ କଦାଚନ'ର ତିନିଜଣଯାକ ଅନୁସରଣକାରୀ । ଆଉ ଗୋପବନ୍ଧୁଙ୍କ ମହଦ୍‌ବାଣୀ—

"ମାନବ ଜୀବନ ନୁହଁଇ କେବଳ ବର୍ଷ ମାସ ଦିନ ଦଣ୍ଡ
କର୍ମେ ଜୀଏ ନର, କର୍ମ ଏକା ତାର ଜୀବନର ମାନଦଣ୍ଡ ।"ର

ଯୋଗ୍ୟ ଅନୁଯାୟୀ କର୍ମୀ ଆମର ବରେଣ୍ୟ ରାଧାନାଥ ବାବୁ ଏବଂ ଶ୍ରୀଯୁକ୍ତ ଅଓ୍ୱସ୍ଥୀ ମହାଶୟ ।

ଶ୍ରୀଯୁକ୍ତ ରଥଙ୍କ ସମ୍ମୁଖରେ ଅଓ୍ବସ୍ଥୀ ମହାଶୟ ସ୍ୱ ଯୋଜନା ବିଷୟ ଉପସ୍ଥାପନ କଲେ । 'ଶ୍ରୀରାମଚରିତ ମାନସ'ର ଓଡ଼ିଆ ଲିପ୍ୟନ୍ତରଣ ଓ ଓଡ଼ିଆ ଗଦ୍ୟାନୁବାଦ ଗ୍ରନ୍ଥର ପ୍ରକାଶନ ବିଷୟ ଶୁଣି ଶ୍ରୀଯୁକ୍ତ ରାଧାନାଥ ରଥ ତାଙ୍କ ପାଖରେ ବହୁଦିନରୁ ସୁରକ୍ଷିତ 'ତୁଳସୀ ରାମାୟଣ'ର ବାବାଜୀ ବଳରାମ ଦାସକୃତ ଓଡ଼ିଆ ପଦ୍ୟାନୁବାଦର କେତେକ କବିତା ପାଠ କଲେ । ଶ୍ରୀଯୁକ୍ତ ଅଓ୍ବସ୍ଥୀ ଉକ୍ତ କବିତା-ଶ୍ରବଣରେ ପ୍ରୀତ ହୋଇ ବଳରାମକୃତ ପଦ୍ୟାନୁବାଦକୁ ସ୍ୱଯୋଜନାର ଅନ୍ତର୍ଭୁକ୍ତ କରିବାକୁ ଇଚ୍ଛା ପ୍ରକାଶ କଲେ ଏବଂ ଏଥି ନିମନ୍ତେ ଶ୍ରୀଯୁକ୍ତ ରଥଙ୍କର ସମ୍ମତି ଲୋଡ଼ିଲେ । ମହାନୁଭବ ଶ୍ରୀଯୁକ୍ତ ରଥ ଏଥିରେ ସମ୍ମତ ହେଲେ । ତୁଳସୀକୃତ 'ଶ୍ରୀରାମଚରିତ ମାନସ'ର ଓଡ଼ିଆ ଲିପ୍ୟନ୍ତରଣ ଓ ଓଡ଼ିଆ ଗଦ୍ୟାନୁବାଦ ସହିତ ମାନସ'ର ବାବାଜୀ ବଳରାମକୃତ ଓଡ଼ିଆ ପଦ୍ୟାନୁବାଦର ସଂଯୋଗ ବାସ୍ତବରେ 'ମଣି କାଞ୍ଚନର ସଂଯୋଗ ।'

"ଶ୍ରେୟାଂସି ବହୁବିଘ୍ନାନି ।" କର୍ମମୟ ଜୀବନକାଳ ମଧ୍ୟରେ ସତ୍‌କର୍ମ ପଥରେ ନାନା ବାଧାବିଘ୍ନ ଆସି ପ୍ରତିବନ୍ଧକ ସୃଷ୍ଟି କରେ । ଦୁର୍ବଳ ମନୁଷ୍ୟ ବେଳେ ବେଳେ ଉକ୍ତ ବାଧାବିଘ୍ନ ହେତୁ ନିରାଶ ହୋଇ କର୍ମପଥରୁ ବିଚ୍ୟୁତ ହୋଇ ପଡ଼େ । ନୈରାଶ୍ୟ-ବିଷାଦଗ୍ରସ୍ତ ମନୁଷ୍ୟଙ୍କୁ କର୍ମର ପ୍ରେରଣା ଦେବାପାଇଁ 'ଶ୍ରୀମଦ୍‌ଭଗବଦ୍‌ଗୀତା' ସତେ ଯେପରି ଏକ ଚିରନ୍ତନ ଉତ୍ସ । ଏହାର ଅଷ୍ଟମ ଅଧ୍ୟାୟରେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ କହିଅଛନ୍ତି—

"ତସ୍ମାତ୍ ସର୍ବେଷୁ କାଳେଷୁ ମାମନୁସ୍ମର ଯୁଧ୍ୟ ଚ ।" "ହେ ଅର୍ଜୁନ ! ସେହି ହେତୁ ତୁମେ ସର୍ବଦା ମୋତେ ସ୍ମରଣ କରୁଥାଅ ଏବଂ ଲଢ଼ୁଥାଅ ।"

ଶ୍ରୀକୃଷ୍ଣଙ୍କ ଏ ଉପଦେଶ କେବଳ କୁରୁକ୍ଷେତ୍ରରେ ଯୁଦ୍ଧବିମୁଖ ହୋଇ ପଡ଼ିଥିବା ଅର୍ଜୁନଙ୍କ ପ୍ରତି ଉଦ୍ଦିଷ୍ଟ ନୁହେଁ । ଏହା ସଂସାରର ବାଧାବିଘ୍ନ-ଘାତପ୍ରତିଘାତଦ୍ୱାରା ନିରାଶ ହୋଇ ଭାଙ୍ଗି ପଡ଼ୁଥିବା ପ୍ରତ୍ୟେକ ମାନବକୁ ପୁନର୍ବାର କର୍ମପଥରେ ଅଗ୍ରଗତି-ପୂର୍ବକ ଜୀବନ-ସଂଗ୍ରାମରେ ନବ ସାହସ ଓ ଉତ୍ସାହର ସହିତ ଲଢ଼ିବା ପାଇଁ ଗୋଟିଏ ଅତି ସଫଳ ଉପଦେଶ ।

୧୯୭୨ ମସିହାର ଦ୍ୱିତୀୟାର୍ଦ୍ଧର ଆରମ୍ଭରେ 'ଶ୍ରୀରାମଚରିତ ମାନସ'ର ଲିପ୍ୟନ୍ତରଣ ଓ ଅନୁବାଦ କାର୍ଯ୍ୟ ଆରମ୍ଭ କରିବାକୁ ଯେତେବେଳେ ମୁଁ ବସେ, ମୋ ପରିବାରରେ ଜଣକ ପରେ ଜଣେ ସାଙ୍ଘାତିକ ଭାବରେ ବ୍ୟାଧିଗ୍ରସ୍ତ ହୋଇ ପଡ଼ିଲେ । ତେଣୁ ନିର୍ଦ୍ଦିଷ୍ଟ ସମୟରେ ଉକ୍ତ କାର୍ଯ୍ୟ ଶେଷ କରିପାରିବି, ଏ ଆଶା ମୋ ମନରେ ରହିଲା ନାହିଁ । ତଥାପି ପ୍ରଭୁଙ୍କ ପ୍ରେରଣାରେ ୧୯୭୩ ମସିହା ଗ୍ରୀଷ୍ମାବକାଶରେ ଲକ୍ଷ୍ନୌ ଯାଇ ମୁଁ ଶ୍ରୀ ଅଓ୍ବସ୍ଥୀଙ୍କର ଆତିଥ୍ୟ ଗ୍ରହଣ କଲି ଏବଂ ତାଙ୍କ ଟ୍ରଷ୍ଟ ଭବନରେ ମୋର ବାକି ପଡ଼ିଥିବା କାର୍ଯ୍ୟ ଶେଷ କଲି । ସେହିଠାରେ ଶ୍ରୀଯୁକ୍ତ ନନ୍ଦକୁମାର ଅଓ୍ବସ୍ଥୀ, ତାଙ୍କ ଅନୁଜ କବିରାଜ ଶ୍ରୀ କୃଷ୍ଣକୁମାର ଅଓ୍ବସ୍ଥୀ, ଆୟୁର୍ବେଦାଚାର୍ଯ୍ୟ ଓ ପୁତ୍ର ଶ୍ରୀମାନ୍ ବିନୟକୁମାର ଅଓ୍ବସ୍ଥୀଙ୍କ

ସ୍ନେହ-ସିକ୍ତ ସୁମଧୁର ବ୍ୟବହାରରେ ମୁଁ ଅଭିଭୂତ ହୋଇ ପଡ଼ିଥିଲି । ବାସ୍ତବିକ ଆଳସ୍ୟ-ପରାୟଣ ଲୋକର ମସ୍ତିଷ୍କ ପିଶାଚ ବା ଦାନବର କର୍ମକ୍ଷେତ୍ର ହୋଇଥାଏ । (An idle brain is the devil's workshop.) ନନ୍ଦକୁମାରଙ୍କ ସଦା-କର୍ମରତ ରୂପ-ଦର୍ଶନରେ ମସ୍ତିଷ୍କରୁ ଉକ୍ତ ଆଳସ୍ୟ-ପିଶାଚ ଆପେ ଆପେ ଅପସରିଯାଏ ଏବଂ ମସ୍ତିଷ୍କ ନବ କର୍ମପ୍ରେରଣାର ଉତ୍ସ ହୋଇପଡ଼େ । ମନୁଷ୍ୟ ନବ ନବ କର୍ମରେ ରତ ହୋଇ ପଡ଼େ । ଫଳରେ ନବ ଆତ୍ମବିଶ୍ୱାସ ଓ ଆତ୍ମପ୍ରସାଦରେ ସେ ପୁନର୍ଜୀବନ ଲାଭ କରେ । ଅର୍ଗୁଲୀଜୀଙ୍କ ସାନ୍ନିଧ-ସାହଚର୍ଯ୍ୟଜନିତ ଏହାହିଁ ମୋର ବ୍ୟକ୍ତିଗତ ଅନୁଭୂତି ।

## ଶ୍ରୀରାମ ଓ ବିଜୟା ଦଶମୀ

ଗୋସ୍ୱାମୀ ତୁଳସୀଦାସ ବିରଚିତ 'ଶ୍ରୀରାମଚରିତ ମାନସ' ଏକ ଅଦ୍ୱିତୀୟ ଗ୍ରନ୍ଥ । ଏହି ଗ୍ରନ୍ଥର ବିଶ୍ୱବ୍ୟାପକତା ସର୍ବଜନ-ବିଦିତ । ରାମାୟଣର ନାୟକ ଶ୍ରୀରାମଚନ୍ଦ୍ର । ଭାରତୀୟ ଧର୍ମ, ସାହିତ୍ୟ ସଂସ୍କୃତି ଓ ରାଜନୀତିରେ ରାମଙ୍କର ସତ୍ତା ଅନୁପମ । ସଂସାରର ଅନ୍ୟ କୌଣସି ଭାଷାର ସାହିତ୍ୟରେ ରାମଙ୍କ ତୁଲ୍ୟ ନାୟକ ଦୁର୍ଲ୍ଲଭ । ଯୁଗ ଯୁଗ ଧରି ରାମଙ୍କର ତ୍ୟାଗ, ସହିଷ୍ଣୁତା, କର୍ତ୍ତବ୍ୟପରାୟଣତା, ପିତୃମାତୃଭକ୍ତି ଆଦି ଗୁଣ ସମଗ୍ର ମାନବସମାଜକୁ ଉଦ୍‌ବୁଦ୍ଧ କରୁଥିବ । ଧନ୍ୟ ଆମର ଭାରତଭୂମି, ଯହିଁରେ ପ୍ରଭୁ ଶ୍ରୀରାମ ମାନବରୂପେ ଅବତୀର୍ଣ୍ଣ ହୋଇ ଲୀଳା କରିଥିଲେ । ଦୁଷ୍ଟନିବାରଣ ଓ ସନ୍ଥପାଳନ କରି ଧରାରେ ଧର୍ମ ସଂସ୍ଥାପନ କରିବା ତାଙ୍କ ଅବତାର-ଗ୍ରହଣର ମୁଖ୍ୟ ଲକ୍ଷ୍ୟ । ରାକ୍ଷସରାଜ ରାବଣକୁ ବଧ କରି ଧରାରେ ଶାନ୍ତି ପ୍ରତିଷ୍ଠା କରିବା ନିମନ୍ତେ ତାଙ୍କର ଜନ୍ମ ।

ପରଂବ୍ରହ୍ମ ରାମ ଲୀଳାବତାର ମନୁଷ୍ୟରୂପେ ଜନ୍ମଗ୍ରହଣ କରି ଜୀବନର ସମସ୍ତ କଷ୍ଟକୁ ହସି ହସି ଯେପରି ବରଣ କରିଥିଲେ, ସେହିପରି ସ୍ୱର୍ଣ୍ଣଲୀଳାବିଳାସସମ୍ପନ୍ନ ଦୁଷ୍ଟ ରାବଣର ବଧ ନିମନ୍ତେ ନିଜ ଦାସୀ ମାୟା-ସ୍ୱରୂପିଣୀ ଦୁର୍ଗାଙ୍କର ମଧ୍ୟ ସାହାଯ୍ୟ ଲୋଡ଼ିଥିଲେ । ଦୁର୍ଗାଙ୍କୁ ପ୍ରସନ୍ନ କରିବା ନିମନ୍ତେ ସେ ଆଶ୍ୱିନ ଶୁକ୍ଳ ସପ୍ତମୀଠାରୁ ନବମୀପର୍ଯ୍ୟନ୍ତ ତିନିଦିନ ତାଙ୍କୁ ପୂଜା କରିଥିଲେ । ଦଶମୀ ତିଥିରେ ସେ ରାକ୍ଷସରାଜ ଉପରେ ବିଜୟ ଲାଭ କରିଥିଲେ । ଆଜି ସେହି ବିଜୟା ଦଶମୀ ତିଥିରେ ସେ ଜଗଦ୍‌ଗ୍ରାସୀ ରାକ୍ଷସୀ ସଭ୍ୟତା ଉପରେ ବିଜୟଲାଭପୂର୍ବକ ମାନବସମାଜକୁ ଶାନ୍ତି ପ୍ରଦାନ କରନ୍ତୁ ଏବଂ ଜୀବନର ସମସ୍ତ ଦୁଃଖକଷ୍ଟ ପ୍ରସନ୍ନ ମନରେ ସହି ମନୁଷ୍ୟ ଯେପରି ସ୍ୱ କର୍ତ୍ତବ୍ୟପଥରେ ଅଗ୍ରସର ହେବ, ସେଥିନିମନ୍ତେ ତାହାକୁ ସାହସ, ଉତ୍ସାହ ଓ ପ୍ରେରଣା ଦିଅନ୍ତୁ ।

ଆଜି ଏହି ପବିତ୍ର ବିଜୟା ଦଶମୀ ତିଥିରେ ମୁଁ ଶ୍ରୀଯୁକ୍ତ ରାଧାନାଥ ରଥ, ଶ୍ରୀଯୁକ୍ତ ନନ୍ଦକୁମାର ଅର୍ଗୁଲୀ ଓ ଶ୍ରୀଯୁକ୍ତ ବଳରାମ ଦାସଙ୍କ ଦୀର୍ଘ, ନିରାମୟ ଓ କର୍ମଠ ଜୀବନ ନିମନ୍ତେ ଶ୍ରୀରାମଚନ୍ଦ୍ରଙ୍କ ପଦାରବିନ୍ଦରେ ପ୍ରାର୍ଥନା କରୁଅଛି ।

# 'ଶ୍ରୀରାମଚରିତ ମାନସ'ର ପଦ୍ୟାନୁବାଦକ
# ଶ୍ରୀ ନିତାଇଚରଣ ଶତପଥୀ
# (ବାବାଜୀ ବଳରାମ ଦାସ)

ଢେଙ୍କାନାଳ ଜିଲ୍ଲାନ୍ତର୍ଗତ ନିସ୍ଥାଭଗୀରଥପୁର ଶାସନ (ଲୋକ-ପରିଚିତ ଧଳପୁର ଗ୍ରାମ) ନିବାସୀ ଏକ ସମ୍ଭ୍ରାନ୍ତ-ବ୍ରାହ୍ମଣ ପରିବାରରେ ସନ ୧୯୧୫ ମସିହା, ଅଗଷ୍ଟ ମାସ ୧ ତାରିଖ (ସନ ୧୩୨୨ ସାଲ, ଶ୍ରାବଣ ମାସର କୃଷ୍ଣପକ୍ଷ, ନବମୀ ତିଥି)ରେ ବାବାଜୀ ବଳରାମ ଦାସ ଜନ୍ମଗ୍ରହଣ କରିଥିଲେ । ଧଳପୁରର ସ୍ୱର୍ଗତ ବିଖ୍ୟାତ ପଣ୍ଡିତ ଶ୍ରୀ ବଳଭଦ୍ର ବାହିନୀପତିଙ୍କର ସେ ପଞ୍ଚମ ବଂଶଧର । ସ୍ୱର୍ଗତ ଶ୍ରୀ ଚନ୍ଦ୍ରଶେଖର ଶତପଥୀ ତାଙ୍କର ପିତା ଓ ସ୍ୱର୍ଗତା ଶ୍ରୀମତୀ ରାଧିକା ଦେବୀ ତାଙ୍କର ମାତା । ବାଲ୍ୟକାଳରେ ତାହାଙ୍କର ପିତୃମାତୃଦତ୍ତ ଶୁଭନାମ ଥିଲା ଶ୍ରୀ ନିତାଇଚରଣ । ଶ୍ରୀ କାହ୍ନୁଚରଣ ତାଙ୍କର ଅଗ୍ରଜ ଏବଂ ସର୍ବଶ୍ରୀ ସତ୍ୟଚରଣ, ଗୋପୀକୃଷ୍ଣ ଓ ଦୀନକୃଷ୍ଣ ତାଙ୍କର ଅନୁଜ ଅଟନ୍ତି । ଶ୍ରୀମତୀ ବୃନ୍ଦଲତା ତାଙ୍କର ଜ୍ୟେଷ୍ଠା ଭଗିନୀ ଏବଂ ଶ୍ରୀମତୀ ନକ୍ଷତ୍ରମାଳୀ ଓ ଶ୍ରୀମତୀ ହୀରମାଳୀ ତାଙ୍କର କନିଷ୍ଠା ଭଗିନୀ ।

ବାବାଜୀ ବଳରାମ ଦାସ

ସ୍ୱର୍ଗତ ବାହିନୀପତିଙ୍କୁ ଏକ ନରଦେବତା ରୂପରେ ଜନସାଧାରଣ ଭକ୍ତି ଓ ସମ୍ମାନ କରୁଥିଲେ । ସେ ଅତିଶୟ ଧର୍ମପ୍ରାଣ ବ୍ୟକ୍ତି ଥିଲେ । ନିଜର ବିଶାଳ ଜମିଦାରୀକୁ ସେ ଦୁଇଭାଗରେ ବିଭକ୍ତ କରି ଗୋଟିଏ ଭାଗ ସ୍ୱପରିବାରର ଭରଣପୋଷଣ ଏବଂ ଅପର ଭାଗଟି ଦରିଦ୍ରନାରାୟଣ ଓ ଅତିଥି-ଦେବତାଙ୍କ ସେବାରେ ବିନିଯୋଗ କରୁଥିଲେ । ତାଙ୍କ ବଂଶଧରମାନେ ଏହି ମନୋବୃତ୍ତିର ଲୋକ ହୋଇଥିବାରୁ ସେମାନେ କାଳକ୍ରମେ ଅକୁଣ୍ଠଚିତ୍ତରେ ଦାରିଦ୍ର୍ୟ ବରଣ କରି ନେଇ-ଅଛନ୍ତି । ଏହି ବଂଶରୁ ଅନେକ ସନ୍ନ୍ୟାସୀଙ୍କର ଉଦ୍ଭବ ହୋଇଥିବାର ଜଣାଯାଏ ।

ବାଲ୍ୟକାଳରୁ ନିତାଇଚରଣଙ୍କଠାରେ ସନ୍ନ୍ୟାସ ମନୋବୃତ୍ତି ଜାତ ହୋଇଥିଲା । ଗ୍ରାମ ପାଠଶାଳାରେ ବାଲ୍ୟଶିକ୍ଷା ସମାପ୍ତି - ପୂର୍ବକ ସେ ଧଳପୁର ମାଧ୍ୟମିକ ବିଦ୍ୟାଳୟରୁ ମିଡ଼ିଲ୍ ଭର୍ଣ୍ଣାକ୍ୟୁଲର ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ ଏବଂ ତଦନନ୍ତର

ମାଇନର ପଢ଼ିବା ନିମନ୍ତେ ଢେଙ୍କାନାଳ ଗଡ଼କୁ ଆସିଲେ । ଢେଙ୍କାନାଳଗଡ଼ସ୍ଥ ମଧ୍ୟ ଇଂରାଜୀ ବିଦ୍ୟାଳୟର ତତ୍କାଳୀନ ଅଷ୍ଟମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାରପୂର୍ବକ ଅଧ୍ୟୟନ କରୁଥିବା ସମୟରେ ଋଷିପ୍ରାଣ ଭକ୍ତକବି ମଧୁସୂଦନ ରାଓଙ୍କ ରଚିତ 'ସାହିତ୍ୟ-ପ୍ରସଙ୍ଗ' ପୁସ୍ତକ ମଧ୍ୟସ୍ଥ 'ଜୀବନଚିନ୍ତା' କବିତା ତାଙ୍କ ହୃଦୟରେ ଗଭୀର ଆଲୋଚନ ସୃଷ୍ଟି କଲା । ପୂଜ୍ୟାସ୍ପଦ ଗୁରୁ ଶ୍ରୀ ବିନାୟକ ମହାପାତ୍ର କବିତାସ୍ଥ 'ଏ ସଂସାରେ ନାହିଁ ସୁଖଶାନ୍ତି', 'ଧୂଳିର ଏ ନର କଳେବର', ଏ ସଂସାର ଅନ୍ଧକାର ସ୍ଥାନ' ଆଦି ସଂସାର ବିତୃଷ୍ଣାଜନକ ତଥା 'ବିରାଜେ ଅମର ଆତ୍ମା ଦିବ୍ୟ ସୌନ୍ଦର୍ଯ୍ୟରେ, କମଳ ଶୋଭଇ ଯଥା ପଙ୍କମୟ ସରେ', 'ହେ ଈଶ୍ୱର ପତିତ ତାରଣ ! ପ୍ରାଣାରାମ ନିରଞ୍ଜନ, ଭୟବିଘ୍ନ ବିନାଶନ, ତୁମ୍ଭେ ପ୍ରଭୁ ସନ୍ତାପିତ ପ୍ରାଣର ଚନ୍ଦନ, ସଂସାର ବିପାକୁ ନେଞ୍ଚ ତୁମ୍ଭେ ହେ ଅନ୍ତର' ଆଦି ପ୍ରଭୁ-ପ୍ରେମ-ପ୍ରେରକ ଉକ୍ତିମାନ ସୁଲଳିତ ଓ ସରସ ଭାବରେ ବ୍ୟାଖ୍ୟା କରୁଥିବା ବେଳେ କୋମଳମତି ଓ ସରଳପ୍ରାଣ କିଶୋର ନିତାଇଚରଣ ଭକ୍ତିଭାବବିହ୍ୱଳ ହୋଇପଡ଼ିଲେ ଏବଂ ସେହି ରାତିରେ ନିଜର ସହପାଠୀମାନଙ୍କ ନିଦ୍ରିତାବସ୍ଥାରେ ତ୍ୟାଗ କଲେ । ସ୍ୱପିତାମାତା, ସଖାସହୋଦର ଓ ଆତ୍ମୀୟ ସ୍ୱଜନବର୍ଗଙ୍କ ବାତ୍ସଲ୍ୟପ୍ରେମ ଉପେକ୍ଷା କରି ସେ ବାନପ୍ରସ୍ଥ ମନୋବୃତ୍ତିରେ ବିଦ୍ୟାଳୟ ଛାଡ଼ିଲେ । ସେତେବେଳେ ୧୯୩୬ ମସିହା, ଫେବୃଆରୀ ମାସ, ୧୭ ତାରିଖର ରଜନୀକାଳ ।

ନିତାଇଚରଣ ସଂସାରସ୍ରଷ୍ଟା ପରମେଶ୍ୱରଙ୍କ ଚରଣାରବିନ୍ଦ-ଦର୍ଶନାକାଙ୍କ୍ଷାରେ ଯୋଗସାଧନା କରିବା ନିମନ୍ତେ ବିଦ୍ୟାଳୟ ତ୍ୟାଗ କରିଅଛନ୍ତି—ଏ ଖବର ଶୁଣିବା ମାତ୍ରେ ପିତାମାତା ବ୍ୟଥିତ ହୃଦୟରେ ଏକମାସ ପର୍ଯ୍ୟନ୍ତ ଇତସ୍ତତଃ ଭ୍ରମଣ ଓ ପତ୍ରାଳାପ ଦ୍ୱାରା ତାଙ୍କର ଅନୁସନ୍ଧାନ କଲେ । ତତ୍ପରେ ପିତା ପ୍ରାୟ ଚାରିମାସ ପର୍ଯ୍ୟନ୍ତ ଉତ୍କଳର ବିଭିନ୍ନ କ୍ଷେତ୍ରସ୍ଥଳୀ ପରିଭ୍ରମଣ କଲେ । କିନ୍ତୁ ନିତାଇଙ୍କୁ ନ ପାଇ ସେ ନିରାଶ ଚିତ୍ତରେ ଗୃହକୁ ଫେରି ଆସିଲେ । ଏହି ଚାରିମାସ କାଳ ଜନନୀ ରାଧିକା ଦେବୀ ସ୍ନାନପାନାହାର ତ୍ୟାଗ କରି ଧରଣୀଶାୟିନୀ ହୋଇ ରହିଲେ । ତଦନନ୍ତର ଆତ୍ମୀୟସ୍ୱଜନଙ୍କ ଆଶ୍ୱାସନା-କ୍ରମେ ଜନନୀ ପଞ୍ଚମ ମାସରେ କିଛି କିଛି ଅନ୍ନ ଭୋଜନ କରି ଷଷ୍ଠ ମାସରେ ପୁନର୍ଜୀବନ ଧାରଣ କଲେ । ଛଅମାସ ପରେ ପିତାମାତା କୃପାସିନ୍ଧୁ, ଭକ୍ତବାଞ୍ଛାକଳ୍ପତରୁ ଜଗନ୍ନାଥଙ୍କ ପଦାରବିନ୍ଦରେ ମନପ୍ରାଣ-ସମର୍ପଣପୂର୍ବକ ପୁନଶ୍ଚ ନିତାଇ-ଅନ୍ୱେଷଣ-କାମନା ସହିତ ଜଗନ୍ନାଥ ଦର୍ଶନ-ଉଦ୍ଦେଶ୍ୟରେ ପୁରୁଷୋତ୍ତମ କ୍ଷେତ୍ରକୁ ବାହାରିଲେ । କରୁଣାବାରିଧିଙ୍କ କୃପାକଟାକ୍ଷରେ ଶ୍ରୀମନ୍ଦିର ମଧ୍ୟରେ ପିତାମାତା ରଙ୍କନିଧି ନିତାଇଙ୍କ ଭେଟ ପାଇ ଆନନ୍ଦାଭିଭୂତ ହୋଇପଡ଼ିଲେ । ପୁତ୍ରଙ୍କ ପରାମର୍ଶକ୍ରମେ ପୁରୀର ସ୍ୱର୍ଗଦ୍ୱାର-ନିବାସୀ ତାଙ୍କ ଗୁରୁ ବାବାଜୀ ରାମଦାସଙ୍କ ଆଦେଶରେ କଣ୍ଠିକୌପୀନଧାରୀ, ଲୁଣ୍ଠିତମସ୍ତକ, ଶ୍ରୀରାମତିଳକଶୋଭୀ ବ୍ରହ୍ମଚାରି-ବେଶ-ଧାରୀ ବଳରାମଦାସାଖ୍ୟ ନିତାଇଙ୍କୁ ଧରି ପିତାମାତା ଗ୍ରାମକୁ ଆସିଲେ । ବାବାଜୀ ଗ୍ରାମରେ ଘର ଭୋଷେଇ ନ ଖାଇ ବିଧବା ପିତାମହୀଙ୍କ ଭୋଗକୃତ ହବିଷ୍ୟାନ୍ନ ଭୋଜନ କଲେ ଏବଂ ଏକ ସପ୍ତାହ ପରେ ପୁଣି ପୁରୀ ଫେରିଆସିଲେ ।

ସନ ୧୯୩୩ ମସିହାଠାରୁ ସନ ୧୯୩୬ ପର୍ଯ୍ୟନ୍ତ ବାବାଜୀ ବଲରାମ ଚନ୍ଦ୍ରକୂଟ ପର୍ବତରେ କଠୋର ତପସ୍ୟା ସାଧନ କଲେ । ସେହି କାଳ ମଧ୍ୟରେ ସେ ଦୈନିକ ଗୋଟିଏ ମାତ୍ର ଫଳାହାର କରି ଜୀବନ ଧାରଣ କରୁଥାଆନ୍ତି । ତପସ୍ୟାରେ ସିଦ୍ଧିଲାଭ କରି ସେ ପୁନଶ୍ଚ ପୁରୀ ଫେରି ଆସିଲେ । ପୁରୀ ଶ୍ରେଷ୍ଠଛତା ମଠରେ କିଛିଦିନ ଅବସ୍ଥାନ କରିବା ପରେ ସେ ପୁଣି କେଉଁଠାକୁ ଚାଲିଗଲେ, କିଛି ଜଣାପଡ଼ିଲା ନାହିଁ । ସନ ୧୯୩୬ ମସିହା ଠାରୁ ସନ ୧୯୪୮ ମସିହା ପର୍ଯ୍ୟନ୍ତ ବାବାଜୀଙ୍କର କୌଣସି ସନ୍ଧାନ ମିଳିଲାନାହିଁ । ଏହି କାଳ ମଧ୍ୟରେ ମହାତ୍ମା ବଲରାମ ଗୋସ୍ୱାମୀ ତୁଳସୀଦାସକୃତ 'ଶ୍ରୀରାମଚରିତ ମାନସ'ର ଓଡ଼ିଆ ପଦ୍ୟାନୁବାଦ ବିଭିନ୍ନ ଓଡ଼ିଆ ଛନ୍ଦ ଓ ରାଗରାଗିଣୀରେ କରିଥିଲେ ।

ସନ ୧୯୪୮ ମସିହା, ମଇମାସରେ ମହାତ୍ମାଙ୍କ ପିତାମାତା ତାଙ୍କ ଭ୍ରାତା, ଭ୍ରାତୃଜାୟା ଓ ଭଗିନୀମାନଙ୍କ ସହିତ ପୁରୀ ଜଗନ୍ନାଥ ଦର୍ଶନରେ ଯାଇଥିଲେ । ଦୈବାତ୍ ସେମାନେ ଶ୍ରେଷ୍ଠଛତା ମଠର ତତ୍କାଳୀନ ମହନ୍ତ ମହାତ୍ମା ଗଙ୍ଗାଦାସଙ୍କ ସୁପାରିଶ କ୍ରମେ ପଞ୍ଜାବର ଜଣେ ଅବସରପ୍ରାପ୍ତ ବାରିଷ୍ଟରପଣ୍ଡିତଙ୍କ ସହ ମହାତ୍ମାଙ୍କ ଦର୍ଶନ ପାଇଲେ । ଏହି ସମୟରେ ବଲରାମ ଜ୍ୟେଷ୍ଠଭ୍ରାତା କାହ୍ନୁଚରଣ ଓ ଅନୁଜ ସତ୍ୟଚରଣଙ୍କ ମଧ୍ୟରେ ଉପୁଜି-ଥିବା ଭ୍ରାତୃବିବାଦକୁ ଉଭୟଙ୍କୁ ଗରୁଡସ୍ତମ୍ଭ ନିକଟରେ ଶପଥ-ପାଠ କରାଇ ସମାଧାନ କରିଥିଲେ ।

ତଦନନ୍ତର ପିତାମାତା ମହାତ୍ମାଙ୍କୁ ସ୍ୱଗ୍ରାମ ଧଲପୁରକୁ ନେଇ ଆସିଲେ । ଏଥର ମହାତ୍ମା ଘରେ ନ ରହି ଗ୍ରାମେଶ୍ୱର ରାମେଶ୍ୱର ମହାଦେବଙ୍କ ମଣ୍ଡପରେ ଅବସ୍ଥାନ କଲେ । ପ୍ରତିଦିନ ସେ ଫଳାହାର ମାତ୍ର କରୁଥାଆନ୍ତି । ଏହିପରି ଭାବରେ ଏଗାର ଦିନ ଅତିବାହିତ କରି ମହାତ୍ମା ପୁଣି ତାଙ୍କ ଗନ୍ତବ୍ୟ ପଥରେ ଚାଲିଗଲେ । ଉକ୍ତ ଏଗାର ଦିନ କାଳ ସେ ନିମ୍ବ ଓ ବେଲପତ୍ର ଆଦି ମଧ୍ୟ ଭୋଜନ କରି କ୍ଷୁଧା ନିବାରଣ କରିଥିଲେ । ସେତେବେଳେ ତାଙ୍କ ବିରଚିତ 'ଶ୍ରୀରାମଚରିତମାନସ'ର ଓଡ଼ିଆ ପଦ୍ୟାନୁବାଦ ପାଠ କରି ତାଙ୍କର ପରିବାରବର୍ଗ ବିମୁଗ୍ଧ ହୋଇପଡ଼ିଥିଲେ ଏବଂ ଭ୍ରାତାମାନେ ଏହାର ପ୍ରକାଶନ ନିମନ୍ତେ 'ସମାଜ' ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ ରଥଙ୍କ ଅନୁଗ୍ରହ-ପ୍ରାର୍ଥନା କରିବା ନିମନ୍ତେ ତାଙ୍କୁ ବାଟ ବତାଇ ଦେଇଥିଲେ ।

ଅନନ୍ତର ସନ ୧୯୫୧ ମସିହାରେ ମହାତ୍ମା ସ୍ୱଇଚ୍ଛାରେ ମାତାଙ୍କଠାରୁ ଭିକ୍ଷା-ଗ୍ରହଣ କରିବା ଆଶାରେ ତାଙ୍କ ଗ୍ରାମକୁ ଆସିଲେ । ଗ୍ରାମରେ ତିନିଦିନ ମାତ୍ର ଅବସ୍ଥାନ କଲେ । ଏହି ସ୍ୱଳ୍ପକାଳ ମଧ୍ୟରେ ସେ ଭଗିନୀମାନଙ୍କ ଦ୍ୱାରା ସିଦ୍ଧ ହବିଷ୍ୟାନ୍ନ ଭୋଜନ କରୁଥିଲେ । ତିନିଦିନ ପରେ ସେ ବ୍ୟାକୁଳହୃଦୟା ଓ ବ୍ୟଥିତପ୍ରାଣା ପରମାରାଧ୍ୟା ମାତାଙ୍କ-ଠାରୁ କେବଳ ଆଶୀର୍ବାଦ ଭିକ୍ଷା ଗ୍ରହଣ କରି କେଉଁଆଡ଼େ ଚାଲିଗଲେ, ତାଙ୍କର ଆଉ ପତ୍ତା ମିଳିଲା ନାହିଁ । ୧୯୫୫ ମସିହାରେ ମାତାଙ୍କର ଓ ୧୯୬୦ ମସିହାରେ ପିତାଙ୍କର ସ୍ୱର୍ଗଗମନବାର୍ତ୍ତା ଉତ୍ତର ପ୍ରଦେଶର ରାଜଧାନୀ ଲକ୍ଷ୍ନୌଠାରେ ପାଇ ମହାତ୍ମା ଘରକୁ

ପନ୍ଦରଟିଏ ମାତ୍ର ଦେଇଥିଲେ । ୧୯୭୦ ମସିହା ପରଠାରୁ ମହାତ୍ମାଙ୍କର ଆଉ କୌଣସି ସନ୍ଧାନ ମିଳିନାହିଁ । ତାଙ୍କ କୃତ 'ଶ୍ରୀରାମଚରିତମାନସ'ର ଓଡ଼ିଆ ପଦ୍ୟାନୁବାଦର ପାଣ୍ଡୁଲିପି ସମ୍ଭବତଃ ୧୯୫୦ କିମ୍ବା ୧୯୫୧ ମସିହାରେ 'ସମାଜ' ସମ୍ପାଦକ ଶ୍ରୀଯୁକ୍ତ ରାଧାନାଥ-ରଥଙ୍କର ହସ୍ତଗତ ହୋଇଥିବ ।

୧୯୭୧ ମସିହା, ଏପ୍ରିଲ୍ ମାସରେ ଶ୍ରୀଯୁକ୍ତ ନନ୍ଦକୁମାର ଅଓ୍ବସ୍ଥୀ ଜଣେ ପ୍ରଥମ ଥର ପାଇଁ କଟକ ଆସିଥିଲେ । ସେ ଶ୍ରୀଯୁକ୍ତ ରଥଙ୍କ ସହିତ 'ଶ୍ରୀରାମଚରିତମାନସ'ର ଓଡ଼ିଆ ସଂସ୍କରଣ ବିଷୟରେ କଥାବାର୍ତ୍ତା କରୁଥିବାବେଳେ ରଥ ମହାଶୟ ମହାତ୍ମା ବଳରାମକୃତ 'ତୁଳସୀ ରାମାୟଣ'ର ଏହି ପଦ୍ୟାନୁବାଦର ପାଣ୍ଡୁଲିପି ତାହାଙ୍କୁ ଦେଖାଇଥିଲେ । ଶ୍ରୀଯୁକ୍ତ ଅଓ୍ବସ୍ଥୀ ଉକ୍ତ ପଦ୍ୟାନୁବାଦକୁ ସ୍ୱଯୋଜନାର ଅନ୍ତର୍ଭୁକ୍ତ କରିବା ନିମନ୍ତେ ଇଚ୍ଛା ପ୍ରକାଶ କଲେ । ଶ୍ରୀଯୁକ୍ତ ରଥ ଏଥିରେ ସମ୍ମତି ପ୍ରକାଶ କଲେ । ( ଏ ବିଷୟର ଅବତାରଣା ମୁଁ ପୂର୍ବରୁ କରି ସାରିଛି । ) ଆଜି ଉକ୍ତ ପଦ୍ୟାନୁବାଦ ଲୋକ ସମ୍ମୁଖରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ମହାତ୍ମା ବଳରାମଦାସଙ୍କ ମହାନ୍ ଜୀବନ ପ୍ରତି ଜନସାଧାରଣଙ୍କ କୌତୂହଳ-ପୂର୍ଣ୍ଣ ଦୃଷ୍ଟି ଆକର୍ଷଣ କରୁଅଛି । ତାହାଙ୍କୁ ଲୋକଲୋଚନକୁ ଆଣିବା ଦିଗରେ ଶ୍ରୀଯୁକ୍ତ-ରଥ ଓ ଶ୍ରୀଯୁକ୍ତ ଅଓ୍ବସ୍ଥୀଙ୍କର ପ୍ରଚେଷ୍ଟା ବାସ୍ତବିକ ପ୍ରଶଂସନୀୟ । ଏହି ଓଡ଼ିଆ 'ମାନସ' ଗ୍ରନ୍ଥ ଓଡ଼ିଶାର ଢେଙ୍କାନାଳ ଜିଲ୍ଲାର ଧଳପୁର ଗ୍ରାମ ଓ କଟକ ସହର ଏବଂ ଉତ୍ତର ପ୍ରଦେଶର ଲକ୍ଷ୍ନୌ ମହାନଗରକୁ ସ୍ନେହ-ସିକ୍ତ ସଂଯୋଗକାରୀ ସୂତ୍ରରେ ଆବଦ୍ଧ କରିପାରିଛି ବୋଲି ଆମ୍ଭମାନଙ୍କର ବିଶ୍ୱାସ ।

## ବାବାଜୀ ବଳରାମ ଦାସଙ୍କର 'ରାମ' ନାମ ଜପ ଉପରେ ବିଶ୍ୱାସ

ଗତ ତା ୧ । ୪ । ୧୯୭୮ ରିଖ ଅପରାହ୍ଣ ପ୍ରାୟ ଦୁଇଟା ସମୟରେ ମହାତ୍ମା ବଳରାମଦାସଙ୍କର ଦ୍ୱିତୀୟ ଅନୁଜ ଶ୍ରୀଯୁକ୍ତ ରାଧାକୃଷ୍ଣ ଶତପଥୀ ମହାତ୍ମାଙ୍କ ଫଟୋ ଆଦି ଧରି ମୋ ବାସଭବନରେ ପହଞ୍ଚିଲେ । 'ରାମ' ନାମ ଜପ ଓ ତଜ୍ଜନିତ ସଦ୍ୟ ସୁଫଳ ଉପରେ ତାଙ୍କର କିପରି ଅଖଣ୍ଡ ବିଶ୍ୱାସ ଥିଲା, ସେ ବିଷୟରେ ସେ ମୋତେ ଗୋଟିଏ କାହାଣୀ କହିଲେ । ତାହା ପାଠକଗଣଙ୍କ ସମ୍ମୁଖରେ ପ୍ରକାଶ ନ କରି ରହି ପାରିଲି ନାହିଁ ।

ବୋଧ ହୁଏ ୧୯୪୮ ମସିହାର ଘଟଣା । ମହାତ୍ମା ବଳରାମ ପିତାମାତାଙ୍କ ସହିତ ଗ୍ରାମକୁ ଯାଇଥା'ନ୍ତି । ଗ୍ରାମରେ ସେ ତାଙ୍କ ନିକଟେଇ ପୁଅ ଭାଇ ଶ୍ରୀମାନ୍ ଦେବେନ୍ଦ୍ର ଶତପଥୀ (ବର୍ତ୍ତମାନ ଲୋକସଭା ସଦସ୍ୟ)ଙ୍କୁ 'ରାମ' ନାମ ଅନ୍ତରର ଗମ୍ଭୀରତମ ପ୍ରଦେଶରୁ ଜପିବାକୁ ପ୍ରେରଣା ଦେଲେ । କିଶୋର ଶ୍ରୀମାନ୍ ଦେବେନ୍ଦ୍ର ପଚାରିଲେ "ରାମ ନାମ ଜପୁଥିଲେ ଲାଭ କ'ଣ ?" ମହାତ୍ମା ଉତ୍ତର ଦେଲେ, "ତୁ ଯାହା ଚାହିଁବୁ, ପାଇଯିବୁ ।"

ଦେବେନ୍ଦ୍ର—ମୋତେ ମିଠାଇ ମିଳିବଟି ?

ମହାତ୍ମା—ନିଶ୍ଚୟ ମିଳିବ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ।

ଦେବେନ୍ଦ୍ର—ଅଚ୍ଛା ଦେଖିବା । ହେ ରାମ ! ହେ ରାମ ! ହେ ରାମ ! (ଗଭୀର ଆନ୍ତରିକତା ସହକାରେ ଜପିଲେ ।)

ମହାତ୍ମା—ଅତି ଉତ୍ତମ ।

ସନ୍ଧ୍ୟାବେଳକୁ ଦେବେନ୍ଦ୍ରଙ୍କ ଦଦେଇ ବଳରାମଙ୍କ ପିତା ଶ୍ରୀଯୁକ୍ତ ଚନ୍ଦ୍ରଶେଖର ଶତପଥୀ ନିକଟବର୍ତ୍ତୀ ଧନ୍ନକ-ଗ୍ରାମ ଝଡଗପ୍ରସାଦରୁ ବହୁ ପରିମାଣର ମିଠାଇ ଧରି ଆସି ଧଳପୁରରେ ପହଞ୍ଚିଲେ । ଦେବେନ୍ଦ୍ର ମନୋବୋଧ କରି ମିଠାଇ ଖାଇଲେ । ବାବାଜୀ ଭାଇନା ତାଙ୍କୁ କହିଲେ—

"ଦେଖିଲୁ ଦେବ ! ରାମ କିପରି ମିଠାଇ ଆଣିଦେଲେ ।"

ଦେବେନ୍ଦ୍ର—କାହିଁ ? ରାମ କେଉଁଠି ଆସିଲେ ମ ?

ବଳରାମ—ତେବେ ଆଉ କିଏ ମିଠାଇ ଧରି ଆସିଥିଲେ ?

ଦେବେନ୍ଦ୍ର—ଦଦେଇ ।

ବଳରାମ—ଆଉ ରାମ କ'ଣ ନିଜ ରୂପରେ ଆସନ୍ତେ ? ସେ ତ ତୁଳସୀଦାସ ଆଦିଙ୍କ ପରି କେତେ କେତେ ମହାତ୍ମାଙ୍କୁ ସୁଦ୍ଧା ନିଜ ସ୍ୱରୂପ ଦେଖାଇ ନାହାନ୍ତି । କେତେ-ବେଳେ ସାଧାରଣ ରାଜକୁମାର ରୂପରେ, କେତେବେଳେ ବାଳକ ରୂପରେ, କେତେବେଳେ କେଳା ରୂପରେ, କେତେବେଳେ ବା ପ୍ରହରୀ ରୂପରେ ସେ ତୁଳସୀଦାସଙ୍କୁ ଦେଖା ଦେଇଛନ୍ତି । କିନ୍ତୁ ତାଙ୍କୁ କଦାପି ଚହ୍ନା ଦେଇ ନାହାନ୍ତି ! ଆଉ ଆମ ତୁମପରି ମଣିଷଙ୍କୁ ସେ କିପରି ଚହ୍ନା ଦିଅନ୍ତେ !

"ରାମ ଦଦେଇଙ୍କ ରୂପରେ ଆସି ମିଠେଇ ଦେଇଛନ୍ତି ।"

ଦେବେନ୍ଦ୍ରଙ୍କ ମନ ମାନିଗଲା ।

## କୃତଜ୍ଞତା ଜ୍ଞାପନ

ମୋର ବାଲ୍ୟବନ୍ଧୁ, ଖ୍ରୀଷ୍ଟ ମହାବିଦ୍ୟାଳୟ, ସଂସ୍କୃତ ବିଭାଗର ଅଧ୍ୟାପକ ଶ୍ରୀ ରଙ୍ଗାଧର ଷଡଙ୍ଗୀ, ଏମ୍. ଏ. (ବାରାଣସୀ ହିନ୍ଦୁ ବିଶ୍ୱବିଦ୍ୟାଳୟ) ସଂସ୍କୃତ 'ଶ୍ରୀମଦ୍‌ଭାଗବତ' ତଥା

'ଶ୍ରୀମଦ୍‌ଭଗବଦ୍‌ଗୀତା' ଏବଂ ହିନ୍ଦୀ 'ଶ୍ରୀରାମଚରିତ ମାନସ'ର ପ୍ରବକ୍ତା ରୂପେ ଅଧୁନା ଉତ୍କଳର ପୁରପଲ୍ଲୀ ସର୍ବତ୍ର ସୁପରିଚିତ । 'ଶ୍ରୀରାମଚରିତ ମାନସ'ର ଓଡ଼ିଆ ଅନୁବାଦ କାର୍ଯ୍ୟରେ ଏହାର ତାତ୍ତ୍ୱିକ ବିଶ୍ଳେଷଣ ଓ ସଂସ୍କୃତ ଶ୍ଳୋକ-ଗୁଡ଼ିକର ବ୍ୟାଖ୍ୟା ଦୃଷ୍ଟିରୁ ସେ ମୋତେ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ କରିଅଛନ୍ତି । ସାଧାରଣ ଜୀବନରେ ମୋ ପ୍ରତି ତାଙ୍କର ଗଭୀର ସ୍ନେହ, ଶ୍ରଦ୍ଧା ଓ ସହାନୁଭୂତି ଥାଏ । ଏହି ସୁମହତ୍ କାର୍ଯ୍ୟରେ ତାଙ୍କର ମୋ ପ୍ରତି ଅନନ୍ୟସାଧାରଣ ସାହାଯ୍ୟ ମୋ ପକ୍ଷରେ ଅବିସ୍ମରଣୀୟ । ମୁଁ ତାଙ୍କୁ ହାର୍ଦ୍ଦିକ କୃତଜ୍ଞତା ଜ୍ଞାପନ କରୁଅଛି ।

ଅଧ୍ୟାପକ ଶ୍ରୀ ରଙ୍ଗାଧର ଷଡ଼ଙ୍ଗୀ

କଟକ ରେଭେନ୍‌ସା ମହାବିଦ୍ୟାଳୟର ଗଣିତ ବିଭାଗର ମୁଖ୍ୟ ଅଧ୍ୟାପକ ଶ୍ରୀଯୁକ୍ତ ମଦନମୋହନ ନନ୍ଦ ବାବାଜୀ ବଳରାମ ଦାସଙ୍କ ପରିଚୟ-ପ୍ରାପ୍ତିରେ ମୋତେ ସାହାଯ୍ୟ କରିଥିବାରୁ ମୋର ଧନ୍ୟ-ବାଦାର୍ହ ।

ଶ୍ରୀଯୁକ୍ତ କାହ୍ନୁଚରଣ ଶତପଥୀ, ଶ୍ରୀଯୁକ୍ତ ସତ୍ୟଚରଣ ଶତପଥୀ ଓ ଶ୍ରୀଯୁକ୍ତ ଗଉରକୃଷ୍ଣ ଶତପଥୀ ଆଦି ବାବାଜୀଙ୍କ ଭ୍ରାତୃବୃନ୍ଦ ତାଙ୍କ ଜୀବନୀ ଯୋଗାଇ ମୋତେ ଯଥାର୍ଥରେ କୃତକୃତ୍ୟ କରିଅଛନ୍ତି । ମୁଁ ସେମାନଙ୍କୁ ସାଧୁବାଦ ଜଣାଉଛି ।

ପରିଶେଷରେ ଡକ୍‌ଟର ରାଧାନାଥ ରଥ, ଶ୍ରୀ ଓଁକାରଚରଣ ଦାସ, ଶ୍ରୀ ଉଦୟନାଥ ଷଡ଼ଙ୍ଗୀ, ଶ୍ରୀ ସୂର୍ଯ୍ୟନାରାୟଣ ଆଚାର୍ଯ୍ୟ, ଶ୍ରୀ ରମେଶଚନ୍ଦ୍ର ମିଶ୍ର, ଶ୍ରୀ ନୀଳକଣ୍ଠ ମିଶ୍ର ପ୍ରମୁଖ 'ସମାଜ'ର କର୍ମକର୍ତ୍ତାବୃନ୍ଦଙ୍କୁ ଓଡ଼ିଆ 'ମାନସ'ର ମୁଦ୍ରଣ କାର୍ଯ୍ୟରେ ସେମାନଙ୍କ ଅମୂଲ୍ୟ ପରାମର୍ଶ ଓ ସହଯୋଗ ନିମନ୍ତେ ଧନ୍ୟବାଦ ଜଣାଉଛି ।

ଜୟ ସୀତାରାମ ! ! !

ଶ୍ରୀ ସୁରେଶଚନ୍ଦ୍ର ନନ୍ଦ

# ଗୋସ୍ୱାମୀ ତୁଳସୀଦାସଙ୍କର ସଂକ୍ଷିପ୍ତ ଜୀବନୀ

ପ୍ରୟାଗ ନିକଟରେ ବାନ୍ଦା ଜିଲ୍ଲାରେ ରାଜାପୁର ନାମକ ଗୋଟିଏ ଗ୍ରାମ ଅବସ୍ଥିତ । ସେଠାରେ ଆତ୍ମାରାମ ଦୁବେ ନାମକ ଜନୈକ ପ୍ରତିଷ୍ଠିତ ସରଯୂପାରୀଣ ବ୍ରାହ୍ମଣ ବାସ କରୁଥିଲେ । ତାଙ୍କ ଧର୍ମପତ୍ନୀଙ୍କ ନାମ ହୁଲସୀ ଦେବୀ । ସମ୍ବତ୍ ୧୫୫୪ (ସନ ୧୪୯୭ ମସିହା) ଶ୍ରାବଣ ମାସ ଶୁକ୍ଳପକ୍ଷ ସପ୍ତମୀ ଦିନ ଅଭୁକ୍ତ ମୂଳା ନକ୍ଷତ୍ରରେ ଏହି ଭାଗ୍ୟବାନ୍ ଦମ୍ପତିଙ୍କ ପରିବାରରେ ମାତୃଗର୍ଭରେ ବାରମାସ ରହିବା ପରେ ଗୋସ୍ୱାମୀ ତୁଳସୀଦାସ ଜନ୍ମଗ୍ରହଣ କରିଥିଲେ । ଭୂମିଷ୍ଠ ହେବାମାତ୍ରେ ଶିଶୁ ତୁଳସୀଦାସ କାନ୍ଦିରେ ନାହିଁ । କିନ୍ତୁ ତାଙ୍କ ମୁଖରୁ 'ରାମ' ଶବ୍ଦ ବାହାରି ପଡ଼ିଲା । ତାଙ୍କ ପାଟିରେ ବତିଶଗୋଟି ଦାନ୍ତ ଥିଲା । ତାଙ୍କର ଆକୃତି ପଞ୍ଚବର୍ଷୀୟ ବାଳକର ଆକୃତି ସଙ୍ଗେ ସମାନ ଥିଲା । ଏହିପରି ଅଦ୍ଭୁତ ବାଳକକୁ ଦେଖି ପିତା ଅମଙ୍ଗଳ ଆଶଙ୍କାରେ ଭୟଭୀତ ହୋଇପଡ଼ିଲେ ଏବଂ ବାଳକ ସମ୍ବନ୍ଧରେ ନାନାପ୍ରକାର କଳ୍ପନାଜଳ୍ପନା କରିବାକୁ ଲାଗିଲେ । ଏହା ଦେଖି ମାତା ହୁଲସୀ ବିଶେଷ ଚିନ୍ତିତା ହେଲେ । ବାଳକର ଅନିଷ୍ଟ ଆଶଙ୍କାରେ ସେ ଦଶମୀ ରାତିରେ ନବଜାତ ଶିଶୁକୁ ତାଙ୍କ ଦାସୀ ସହିତ ତାହାର ଶ୍ୱଶୁରାଳୟକୁ ପଠାଇଦେଲେ ଏବଂ ତତ୍ପରଦିନ ସ୍ୱୟଂ ଏହି ଅସାର ସଂସାରରୁ ବିଦାୟ ନେଲେ । ଦାସୀର ନାମ ଚୁନିୟାଁ । ସେ ଅତିଶୟ ପ୍ରେମରେ ବାଳକର ପାଳନପୋଷଣ କରିବାକୁ ଲାଗିଲା । ତୁଳସୀଦାସଙ୍କ ପ୍ରାୟ ସାଢେ ପାଞ୍ଚବର୍ଷ ବୟସ ହେଲାବେଳେ ଚୁନିୟାଁ ଦାସୀ ବି ପରଲୋକ ଗମନ କଲା । ଏବେ ବାଳକ ଅନାଥ ହୋଇ ପଡ଼ିଲା । ସେ ଦ୍ୱାରେ ଦ୍ୱାରେ ବୁଲିବାକୁ ଲାଗିଲା । ଏହା ଦେଖି ଜଗଜ୍ଜନନୀ ପାର୍ବତୀଙ୍କର ଏହି ଉଦ୍ୱାସ୍ତୁମାନ ବାଳକ ପ୍ରତି ଦୟା ହେଲା । ସେ ବ୍ରାହ୍ମଣୀ ବେଶ ଧାରଣ କରି ପ୍ରତିଦିନ ତାହା ନିକଟକୁ ଯିବାକୁ ଲାଗିଲେ ଏବଂ ନିଜ ହାତରେ ତାହାକୁ ଖୁଆଇବାକୁ ଲାଗିଲେ ।

ଏଣେ ଭଗବାନ୍ ଶଙ୍କରଙ୍କ ପ୍ରେରଣାରେ ରାମଶୈଳ ଉପରେ ବାସ କରୁଥିବା ଶ୍ରୀ ଅନନ୍ତାନନ୍ଦଙ୍କ ପ୍ରିୟଶିଷ୍ୟ ଶ୍ରୀ ନରହର୍ଯ୍ୟାନନ୍ଦ ଏହି ବାଳକକୁ ଖୋଜି ପାଇଲେ ଏବଂ ଏହାର ନାମ 'ରାମବୋଲା' ରଖିଲେ । ତାଙ୍କୁ ସେ ଅଯୋଧ୍ୟାକୁ ନେଇଗଲେ ଏବଂ ସେହିଠାରେ ସମ୍ବତ୍ ୧୫୬୧ ମାଘ ମାସ, ଶୁକ୍ଳପକ୍ଷ ପଞ୍ଚମୀ, ଶୁକ୍ରବାର ଦିନ ତାହାର ଯଜ୍ଞୋପବୀତ ସଂସ୍କାର କରାଇଲେ । ବିନା ଶିକ୍ଷାରେ ବାଳକ ରାମବୋଲା ଗାୟତ୍ରୀ ମନ୍ତ୍ର ଉଚ୍ଚାରଣ କଲେ । ଏହା ଦେଖି ସମସ୍ତେ ଚକିତ ହୋଇଗଲେ । ତଦନନ୍ତର ନରହରି ସ୍ୱାମୀ ପଞ୍ଚବୈଷ୍ଣବ ସଂସ୍କାର କରି ରାମବୋଲାଙ୍କୁ 'ରାମ' ମନ୍ତ୍ରର ଦୀକ୍ଷା ଦେଲେ ଏବଂ ଅଯୋଧ୍ୟାରେ ରହି ତାହାଙ୍କୁ ବିଦ୍ୟାଧ୍ୟୟନ କରାଇଲେ । ବାଳକ ରାମବୋଲାଙ୍କ ବୁଦ୍ଧି ଅତ୍ୟନ୍ତ ପ୍ରଖର ଥିଲା । ଥରେ ମାତ୍ର ଗୁରୁଙ୍କ ମୁଖରୁ ଯାହା ଶୁଣୁଥା'ନ୍ତି, ତାହା ତାଙ୍କର ମୁଖସ୍ଥ ହୋଇ ଯାଉଥାଏ । କେତେଦିନ ପରେ ସେଠାରୁ ଗୁରୁଶିଷ୍ୟ ଉଭୟେ ଶୂକରକ୍ଷେତ୍ର (ସୋରୋଁ) ଠାରେ ପହଞ୍ଚିଲେ । ସେଠାରେ ଶ୍ରୀ ନରହରିଜୀ ତୁଳସୀଦାସଙ୍କୁ ରାମଚରିତ ଶୁଣାଇଲେ । କିଛିଦିନ ପରେ ସେ କାଶୀ ବୁଲି ଆସିଲେ । କାଶୀରେ ଶେଷ ସନାତନଜୀଙ୍କ ପାଖରେ

ରହି ତୁଳସୀଦାସ ପନ୍ଦରବର୍ଷ ପର୍ଯ୍ୟନ୍ତ ବେଦବେଦାଙ୍ଗ ଅଧ୍ୟୟନ କଲେ । ସେହି ସମୟରେ ତାଙ୍କ ମନରେ ଲୋକପ୍ରତିଷ୍ଠାର କିଛି ବାସନା ଜାଗ୍ରତ ହେଲା ଏବଂ ନିଜ ବିଦ୍ୟାଗୁରୁଙ୍କ ଅନୁମତି ମାଗି ସେ ତାଙ୍କ ଜନ୍ମଭୂମିକୁ ଫେରି ଆସିଲେ । ସେଠାକୁ ଆସି ସେ ଦେଖିଲେ ଯେ, ତାଙ୍କର ସମଗ୍ର ପରିବାର ନଷ୍ଟ ହୋଇସାରିଛି । ସେ ତାଙ୍କ ପିତା ପ୍ରଭୃତିଙ୍କ ଶ୍ରାଦ୍ଧ ଯଥାବିଧି ସମ୍ପାଦନ କଲେ ଏବଂ ସେହିଠାରେ ରହି ଲୋକମାନଙ୍କୁ ଭଗବାନ୍ ଶ୍ରୀରାମଙ୍କ କଥା ଶୁଣାଇବାକୁ ଲାଗିଲେ ।

ସମ୍ବତ୍ ୧୫୮୩ ସାଲ, ଜ୍ୟେଷ୍ଠ ଶୁକ୍ଲପକ୍ଷ ତ୍ରୟୋଦଶୀ, ଗୁରୁବାର ଦିନ ଭରଦ୍ୱାଜ-ଗୋତ୍ରୀୟା ରତ୍ନାବଳୀ ନାମ୍ନୀ ଗୋଟିଏ ସୁନ୍ଦରୀ କନ୍ୟାସହ ତୁଳସୀଦାସଙ୍କର ବିବାହ ସମ୍ପନ୍ନ ହେଲା । ସେ ତାଙ୍କ ନବବିବାହିତା ପତ୍ନୀଙ୍କ ସହ ସୁଖରେ କାଳାତିପାତ କରିବାକୁ ଲାଗିଲେ । ଏକଦା ତାଙ୍କ ପତ୍ନୀ ଭାଇଙ୍କ ସହ ବାପଘରକୁ ଚାଲିଗଲେ । ତୁଳସୀଦାସ ପଛେ ପଛେ ଯାଇ ଶ୍ୱଶୁର ଗୃହରେ ପହଞ୍ଚିଲେ । ପତିଙ୍କର ଏପରି ଆଚରଣରେ ପତ୍ନୀ ତାଙ୍କୁ ବହୁତ ଧିକ୍କାର କଲେ । ସେ ତାଙ୍କୁ କହିଲେ "ମୋର ଏହି ଅସ୍ଥି-ମାଂସମୟ ଶରୀରଠାରେ ତୁମର ଯେତିକି ଆସକ୍ତି ଅଛି, ତହିଁର ଅଧା ଯଦି ଭଗବାନ୍ ଶ୍ରୀରାମଙ୍କଠାରେ ଥାଆନ୍ତା, ତେବେ ତୁମର ଭବଭୀତି ରହନ୍ତା ନାହିଁ ଏବଂ ତୁମେ ଭବସାଗର ପାର ହୋଇଯାଆନ୍ତ ।"

ପତ୍ନୀଙ୍କର କଠୋର ବଚନ ତୁଳସୀଦାସଙ୍କ ମର୍ମସ୍ଥଳକୁ ଆଘାତ କଲା । ଗୋଟିଏ ମୁହୂର୍ତ୍ତ ନିମନ୍ତେ ସେ ଆଉ ଅପେକ୍ଷା ନ କରି ସେହି ସ୍ଥାନରୁ ଚାଲିଗଲେ ।

ସେଠାରୁ ତୁଳସୀ ଦାସ ପ୍ରୟାଗକୁ ଆସିଲେ । ସେହିଠାରେ ସେ ଗୃହସ୍ଥବେଶ ପରିତ୍ୟାଗ କରି ସାଧୁବେଶ ଧାରଣ କଲେ । ପୁଣି ତୀର୍ଥାଟନ କରୁ କରୁ ସେ କାଶୀରେ ଆସି ପହଞ୍ଚିଲେ । ମାନସରୋବର ନିକଟରେ ସେ କାକ ଭୁଶୁଣ୍ଡିଙ୍କର ଦର୍ଶନ ଲାଭ କଲେ ।

କାଶୀରେ ତୁଳସୀଦାସ ରାମକଥା କହିବାକୁ ଲାଗିଲେ । ସେଠାରେ ଦିନେ ଗୋଟିଏ ପ୍ରେତ ତାହାଙ୍କୁ ସାକ୍ଷାତ କଲା । ଉକ୍ତ ପ୍ରେତ ତାହାଙ୍କୁ ହନୁମାନ୍‌ଙ୍କ ଠିକଣା ବତାଇ ଦେଲା । ତୁଳସୀଦାସ ହନୁମାନ୍‌ଙ୍କ ସହ ସାକ୍ଷାତ କଲେ ଏବଂ ଶ୍ରୀରାମଚନ୍ଦ୍ରଙ୍କ ସହ ସାକ୍ଷାତ କରାଇ ଦେବା ନିମନ୍ତେ ତାହାଙ୍କୁ ପ୍ରାର୍ଥନା କଲେ । ହନୁମାନ୍ କହିଲେ, "ଚିତ୍ରକୂଟଠାରେ ତୁମ୍ଭଙ୍କୁ ଶ୍ରୀରଘୁନାଥଙ୍କ ଦର୍ଶନ ମିଳିବ ।" ଏହା ଶୁଣି ତୁଳସୀଦାସ ଚିତ୍ରକୂଟ ଆଡକୁ ଅଗ୍ରସର ହେଲେ ।

ଚିତ୍ରକୂଟରେ ପହଞ୍ଚି ତୁଳସୀଦାସ ରାମଘାଟରେ ତାଙ୍କ ଆସନ ଜମାଇଲେ । ଦିନେ ସେ ପ୍ରଦକ୍ଷିଣା କରିବାକୁ ବାହାରିଲେ । ମାର୍ଗରେ ତାହାଙ୍କୁ ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନ ମିଳିଲା । ସେ ଦେଖିଲେ ଯେ, ଦୁଇଟି ଅତି ସୁନ୍ଦର ରାଜକୁମାର ଧନୁବାଣ-ଧାରଣପୂର୍ବକ ଅଶ୍ୱାରୋହଣ କରି ଯାଉଅଛନ୍ତି । ସେମାନଙ୍କୁ ଦେଖି ତୁଳସୀଦାସ ମୁଗ୍ଧ ହୋଇଗଲେ;

କିନ୍ତୁ ଚିହ୍ନି ପାରିଲେ ନାହିଁ । ପଛରୁ ହନୁମାନ୍ ଆସି ତାଙ୍କୁ ସମସ୍ତ ରହସ୍ୟ ବୁଝାଇ ଦେଲେ । ସେତେବେଳେ ସେ ଅତ୍ୟନ୍ତ ଅନୁତାପ କଲେ । ହନୁମାନ୍ ତାଙ୍କୁ ସାନ୍ତ୍ୱନା ଦେଲେ ଏବଂ କହିଲେ ଯେ, ପ୍ରାତଃକାଳରେ ପୁନଃ ଶ୍ରୀରାମଙ୍କ ଦର୍ଶନ ମିଳିବ ।

ସମ୍ବତ ୧୬୦୭ ଅଘର ମୌନୀ ଅମାବାସ୍ୟା, ବୁଧବାର ଦିନ ତାଙ୍କ ସମକ୍ଷରେ ଭଗବାନ୍ ଶ୍ରୀରାମ ପୁନର୍ବାର ଆବିର୍ଭୂତ ହେଲେ । ସେ ବାଳକ ରୂପରେ ତୁଳସୀଦାସଙ୍କୁ କହିଲେ, "ବାବା ! ଅମ୍ଭଙ୍କୁ ଚନ୍ଦନ ଦିଅ ।" କାଳେ ଏଥର ବି ତୁଳସୀଦାସ ପ୍ରତାରିତ ହୋଇଯିବେ, ଏହା ଭାବି ହନୁମାନ୍ ଶୁକ ରୂପ ଧରି ଏହି ଦୋହା ଗାଇଲେ—

ଚିତ୍ରକୂଟ କେ ଘାଟ ପର ଭଇ ସନ୍ତନ କୀ ଭୀର ।
ତୁଲସିଦାସ ଚନ୍ଦନ ଘିସେଁ ତିଲକ ଦେତ ରଘୁବୀର ॥

( ଚିତ୍ରକୂଟ ଘାଟରେ ସନ୍ଥମାନଙ୍କର ଭିଡ଼ ହେଲାଣି । ତୁଳସୀଦାସ ଚନ୍ଦନ ଘୋରି ରଘୁବୀରଙ୍କୁ ତିଳକ ଦିଅନ୍ତୁ । )

ସେହି ଅଦ୍ଭୁତ ଛବିକୁ ଦେଖି ତୁଳସୀଦାସ ଆତ୍ମହରା ହୋଇ ପଡ଼ିଲେ । ଭଗବାନ୍ ନିଜ ହାତରେ ଚନ୍ଦନ ନେଇ ନିଜ ଲଲାଟରେ ଲଗାଉଥାଆନ୍ତି ଏବଂ ତୁଳସୀଦାସଙ୍କ ଲଲାଟରେ ମଧ୍ୟ ଲଗାଇ ଦେଉଥାଆନ୍ତି । ଏହାପରେ ପ୍ରଭୁ ଅନ୍ତର୍ହିତ ହୋଇଗଲେ ।

ସମ୍ବତ୍ ୧୬୨୮ରେ ସେ ହନୁମାନ୍ଙ୍କ ଆଦେଶାନୁକ୍ରମେ ଅଯୋଧ୍ୟା ଆଡ଼କୁ ଅଗ୍ରସର ହେଲେ । ସେହି ସମୟରେ ପ୍ରୟାଗରେ ମାଘମେଳା ଅନୁଷ୍ଠିତ ହେଉଥିଲା । ସେଠାରେ ସେ କିଛିଦିନ ଅବସ୍ଥାନ କଲେ । ପର୍ବର ଛଅଦିନ ପରେ ଗୋଟିଏ ବରଗଛ ତଳେ ସେ ଭରଦ୍ୱାଜ ଓ ଯାଜ୍ଞବଲ୍କ୍ୟ ମୁନିଙ୍କର ଦର୍ଶନ ଲାଭ କଲେ । ସୂକରକ୍ଷେତ୍ରରେ ତୁଳସୀଦାସ ନିଜ ଗୁରୁଙ୍କ ମୁଖରୁ ଯେଉଁ କଥା ଶୁଣିଥିଲେ, ସେହିଠାରେ ସେତେବେଳେ ସେହି କଥାର ଚର୍ଚ୍ଚା ଚାଲିଥିଲା । ସେଠାରୁ ସେ କାଶୀ ଚାଲିଆସିଲେ ଏବଂ ସେଠାରେ ପ୍ରହ୍ଲାଦ ଘାଟସ୍ଥ ଜଣେ ବ୍ରାହ୍ମଣଙ୍କ ଗୃହରେ ନିବାସ କଲେ । ସେହିଠାରେ ତାଙ୍କ ଅନ୍ତରରେ କବିତ୍ୱ ଶକ୍ତିର ସ୍ଫୁରଣ ହେଲା ଏବଂ ସେ ସଂସ୍କୃତରେ ପଦ୍ୟରଚନା କରିବାକୁ ଲାଗିଲେ । କିନ୍ତୁ ଦିନବେଳା ସେ ଯେତେ ପଦ୍ୟରଚନା କରୁଥାଆନ୍ତି, ରାତିରେ ସେ ସବୁ ଲୋପ ପାଇ ଯାଉଥାଏ । ପ୍ରତିଦିନ ଏହି ଘଟଣା ଘଟୁଥାଏ । ଅଷ୍ଟମ ଦିନ ତୁଳସୀଦାସଙ୍କୁ ସ୍ୱପ୍ନ ହେଲା । ଭଗବାନ୍ ଶଙ୍କର ତାଙ୍କୁ ଆଦେଶ ଦେଲେ, 'ତୁମେ ଯାଇ ନିଜ ଭାଷାରେ କାବ୍ୟ ରଚନା କର ।" ତୁଳସୀଦାସଙ୍କ ନିଦ ଭାଙ୍ଗିଗଲା । ସେ ଉଠି ବସି ପଡ଼ିଲେ । ସେତିକିବେଳେ ଭଗବାନ୍ ଶିବ ଓ ପାର୍ବତୀ ତାଙ୍କ ସମ୍ମୁଖରେ ଆବିର୍ଭୂତ ହେଲେ । ତୁଳସୀଦାସ ସେମାନଙ୍କୁ ସାଷ୍ଟାଙ୍ଗ ପ୍ରଣାମ କଲେ । ଶିବ କହିଲେ "ତୁମେ ଅଯୋଧ୍ୟାରେ ଯାଇ ରୁହ ଏବଂ ହିନ୍ଦୀରେ କାବ୍ୟ ରଚନା କର । ମୋର ଆଶୀର୍ବାଦରେ ତୁମ କବିତା ସାମବେଦ ସମାନ ଫଳବତୀ ହେବ ।" ଏତିକି କହି ଶ୍ରୀ ଗୌରୀଶଙ୍କର ଅନ୍ତର୍ହିତ ହୋଇଗଲେ । ତାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ତୁଳସୀଦାସ କାଶୀରୁ ଅଯୋଧ୍ୟା ଚାଲି ଆସିଲେ ।

ସମ୍ବତ୍ ୧୬୩୧ ଆରମ୍ଭ ହେଲା । ସେହି ବର୍ଷ ରାମନବମୀ ଦିନ ତ୍ରେତାଯୁଗରେ ରାମଚନ୍ଦ୍ରଙ୍କ ଜନ୍ମଦିନ ସମାନ ଯୋଗ ପଡ଼ିଥିଲା । ସେହିଦିନ ପ୍ରାତଃ କାଳରେ ତୁଳସୀଦାସ 'ଶ୍ରୀରାମଚରିତ ମାନସ'ର ରଚନା ଆରମ୍ଭ କଲେ । ଦୁଇବର୍ଷ, ସାତମାସ, ଛବିଶଦିନରେ ଗ୍ରନ୍ଥ ସମାପ୍ତ ହେଲା । ସମ୍ବତ୍ ୧୬୩୩ ର ମାର୍ଗଶୀର୍ଷ ମାସ, ଶୁକ୍ଳପକ୍ଷରେ ରାମବିବାହ ଦିନ ସାତକାଣ୍ଡଯାକ ସମ୍ପୂର୍ଣ୍ଣ ହେଲା ।

ଏହାପରେ ଭଗବାନଙ୍କ ଆଦେଶାନୁସାରେ ତୁଳସୀଦାସ କାଶୀ ଚାଲି ଆସିଲେ । ସେଠାରେ ସେ ଭଗବାନ୍ ବିଶ୍ୱନାଥ ଓ ମାତା ଅନ୍ନପୂର୍ଣ୍ଣାଙ୍କୁ 'ଶ୍ରୀରାମଚରିତ ମାନସ' ଶୁଣାଇଲେ । ରାତ୍ରିରେ ଶ୍ରୀ ବିଶ୍ୱନାଥଙ୍କ ମନ୍ଦିରରେ ଉକ୍ତ ପୁସ୍ତକ ରଖି ଦିଆଗଲା । ସକାଳେ ଯେତେବେଳେ ଦ୍ୱାର ଖୋଲାଗଲା, ପୁସ୍ତକ ଉପରେ 'ସତ୍ୟଂ ଶିବଂ ସୁନ୍ଦରମ୍' ଲେଖା ହୋଇଥିବାର ଦେଖାଗଲା ଏବଂ ତଳେ ଭଗବାନ୍ ଶଙ୍କରଙ୍କ ହସ୍ତାକ୍ଷର (ଦସ୍ତଖତ) ଥିଲା । ସେହି ସମୟରେ ଉପସ୍ଥିତ ଲୋକମାନେ 'ସତ୍ୟଂ ଶିବଂ ସୁନ୍ଦରମ୍' ଧ୍ୱନି ମଧ୍ୟ ଶ୍ରବଣ କଲେ ।

ଏଣେ ପଣ୍ଡିତମାନେ ଯେତେବେଳେ ଏହି କଥା ଶୁଣିଲେ, ସେମାନଙ୍କ ମନରେ ଈର୍ଷ୍ୟା ଜାତ ହେଲା । ସେମାନେ ଦଳ ବାନ୍ଧି ତୁଳସୀଦାସଙ୍କର ନିନ୍ଦା କରିବାକୁ ଲାଗିଲେ ଏବଂ ସେହି ପୁସ୍ତକକୁ ମଧ୍ୟ ନଷ୍ଟ କରିଦେବାକୁ ଚେଷ୍ଟା କଲେ । ପୁସ୍ତକଟିକୁ ଚୋରାଇ ନେବା ନିମନ୍ତେ ସେମାନେ ଦୁଇଜଣ ଚୋରଙ୍କୁ ପଠାଇଲେ । ଚୋରମାନେ ଯାଇ ଦେଖିଲେ ଯେ, ତୁଳସୀଦାସଙ୍କ କୁଟୀର ନିକଟରେ ଦୁଇଜଣ ବୀର ଧନୁର୍ବାଣ ଧରି ପହରା ଦେଉଅଛନ୍ତି । ଉଭୟେ ଅତି ସୁନ୍ଦର, ବର୍ଣ୍ଣ ଜଣଙ୍କର ଶ୍ୟାମଳ ଓ ଅନ୍ୟ ଜଣଙ୍କର ଗୌର । ସେ ଦୁହିଁଙ୍କ ଦର୍ଶନରେ ଚୋରଙ୍କର ବୁଦ୍ଧି ଶୁଦ୍ଧ ହୋଇଗଲା । ସେହି ମୁହୂର୍ତ୍ତରୁ ସେମାନେ ଚୌର୍ଯ୍ୟବୃତ୍ତି ପରିତ୍ୟାଗ କଲେ ଏବଂ ଭଜନରେ ମନୋନିବେଶ କଲେ । ତୁଳସୀଦାସ ନିଜ ପାଇଁ ଭଗବାନଙ୍କୁ କଷ୍ଟ ହେଲା ବୋଲି ଭାବି କୁଟୀରର ସମସ୍ତ ଜିନିଷପତ୍ର ଲୁଟାଇ ଦେଲେ । ତଦନନ୍ତର ସେ ଆଉ ଗୋଟିଏ ପାଣ୍ଡୁଲିପି ପ୍ରସ୍ତୁତ କଲେ । ତାହାର ଆଧାରରେ ଅନ୍ୟାନ୍ୟ ପ୍ରତିଲିପିମାନ ପ୍ରସ୍ତୁତ ହେଲା । ଦିନକୁ ଦିନ ପୁସ୍ତକର ପ୍ରଚାର ବୃଦ୍ଧି ପାଇବାକୁ ଲାଗିଲା ।

ଏଣେ ପଣ୍ଡିତମାନେ ଅନ୍ୟ କୌଣସି ଉପାୟ ନ ଦେଖି ଶ୍ରୀ ମଧୁସୂଦନ ସରସ୍ୱତୀଙ୍କୁ ଉକ୍ତ ପୁସ୍ତକ ଦେଖିବା ସକାଶେ ପ୍ରେରଣ କଲେ । ଶ୍ରୀ ସରସ୍ୱତୀ ଉକ୍ତ ପୁସ୍ତକ ଦେଖି ଅତିଶୟ ଆନନ୍ଦ ପ୍ରକାଶ କଲେ ଏବଂ ତାହା ଉପରେ ଏହି ମନ୍ତବ୍ୟ ଲେଖିଦେଲେ—

"ଆନନ୍ଦକାନନେ ହ୍ୟସ୍ମିନ୍ ଜଙ୍ଗମସ୍ତୁଳସୀତରୁଃ,
କବିତାମଞ୍ଜରୀ ଭାତି ରାମଭ୍ରମରଭୂଷିତା ।"

ଏହି କାଶୀରୂପୀ ଆନନ୍ଦ-ବନରେ ତୁଳସୀଦାସ ଚଳନ୍ତା ତୁଳସୀ ତରୁ । ତାହାର କବିତା-ମଞ୍ଜରୀ ସର୍ବଦା ସୁଶୋଭିତା । ତାହା ଉପରେ ଶ୍ରୀରାମ-ଭ୍ରମର ସଦା ଚକ୍ରାକାରରେ ଭ୍ରମଣ କରେ ।

ଏଥିରେ ସୁଦ୍ଧା ପଣ୍ଡିତମାନଙ୍କର ସନ୍ତୋଷ ହେଲନାହିଁ । ତତ୍ପରେ ପୁସ୍ତକ-ପରୀକ୍ଷା ନିମନ୍ତେ ସେମାନେ ଅନ୍ୟ ଏକ ଉପାୟ ଚିନ୍ତା କଲେ । ସେମାନେ ଭଗବାନ୍ ବିଶ୍ୱନାଥଙ୍କ ମନ୍ଦିର ସମ୍ମୁଖରେ ସବା ଉପରେ ବେଦ, ତା ତଳେ ଶାସ୍ତ୍ର, ଶାସ୍ତ୍ର ତଳେ ପୁରାଣ ଏବଂ ସବା ତଳେ 'ଶ୍ରୀରାମଚରିତ ମାନସ' ରଖିଦେଲେ । ମନ୍ଦିର ବନ୍ଦ କରି ଦିଆଗଲା । ସକାଳେ ଯେତେବେଳେ ମନ୍ଦିରର ଦ୍ୱାର ଖୋଲାଗଲା, ଲୋକମାନେ 'ଶ୍ରୀରାମଚରିତ ମାନସ' ବେଦମାନଙ୍କ ଉପରେ ରଖାହୋଇଥିବାର ଦେଖିଲେ । ସେମାନେ ତୁଳସୀଦାସଙ୍କୁ କ୍ଷମା ମାଗିଲେ ଏବଂ ଭକ୍ତିର ସହିତ ତାଙ୍କ ଚରଣୋଦକ ଗ୍ରହଣ କଲେ ।

ତଦନନ୍ତର ତୁଳସୀଦାସ ଅସୀଘାଟରେ ବାସ କରିବାକୁ ଲାଗିଲେ । ଦିନେ ରାତିରେ କଳିଯୁଗ ମୂର୍ତ୍ତି ଧାରଣ କରି ତାଙ୍କ ନିକଟକୁ ଆସିଲା ଏବଂ ତାଙ୍କୁ ଭୟ ଦେଖାଇଲା । ଗୋସ୍ୱାମୀ ହନୁମାନ୍‌ଙ୍କୁ ଧ୍ୟାନ କଲେ । ହନୁମାନ୍ ତାଙ୍କୁ 'ବିନୟପଦ' ରଚନା କରିବାକୁ କହିଲେ । ତାଙ୍କ କଥାନୁସାରେ ଗୋସ୍ୱାମୀ 'ବିନୟ ପତ୍ରିକା' ରଚନା କଲେ ଏବଂ ଭଗବାନ୍‌ଙ୍କ ଶ୍ରୀଚରଣ ତଳେ ତାହା ସମର୍ପଣ କଲେ । ଶ୍ରୀରାମ ତହିଁ ଉପରେ ନିଜ ଦସ୍ତଖତ କରି ଦେଲେ ଏବଂ ତୁଳସୀଦାସଙ୍କୁ ନିର୍ଭୀକ କଲେ ।

ସମ୍ବତ୍ ୧୬୮୦, ଶ୍ରାବଣ କୃଷ୍ଣପକ୍ଷ ତୃତୀୟା ତିଥି, ଶନିବାର ଦିନ ଅସୀଘାଟରେ ଗୋସ୍ୱାମୀ 'ରାମ' 'ରାମ' ଜପ କରୁ କରୁ ସ୍ୱଶରୀର ତ୍ୟାଗ କଲେ ।

---

# ପାରାୟଣବିଧି

'ଶ୍ରୀରାମଚରିତ ମାନସ'କୁ ବିଧିପୂର୍ବକ ପାଠ କରୁଥିବା ସଜ୍ଜନମାନଙ୍କ ପକ୍ଷରେ ପାଠାରମ୍ଭ ପୂର୍ବରୁ ମହାତ୍ମା ତୁଳସୀଦାସ, ମହାମୁନି ବାଲ୍ମୀକି, ଭଗବାନ୍ ଶିବ ଓ ବାୟୁପୁତ୍ର-ଦୂତବର ହନୁମାନ୍‌ଙ୍କର ଆବାହନ-ପୂଜନ କରିବା ପରେ ତିନି ଭାଇଙ୍କ ସହ ସୀତାରାମଙ୍କ ଆବାହନ, ଷୋଡଶୋପଚାର ପୂଜନ ଓ ଧ୍ୟାନ କରିବା ବିଧେୟ । ତଦନନ୍ତର ପାଠାରମ୍ଭ କରିବା ଉଚିତ । ସମସ୍ତଙ୍କ ଆବାହନ, ପୂଜନ ଓ ଧ୍ୟାନର ମନ୍ତ୍ର କ୍ରମାନୁସାରେ ନିମ୍ନରେ ପ୍ରଦତ୍ତ ହେଲା:—

ଅଥ ଆବାହନ ମନ୍ତ୍ରଃ

ତୁଳସୀକ ନମସ୍ତୁଭ୍ୟମିହାଗଚ୍ଛ ଶୁଚିବ୍ରତ ।
ନୈର୍ଋତ୍ୟ ଉପବିଶ୍ୟେଦଂ ପୂଜନଂ ପ୍ରତିଗୃହ୍ୟତାମ୍ ॥ ୧ ॥

ଓଁ ତୁଳସୀଦାସାୟ ନମଃ

ଶ୍ରୀବାଲ୍ମୀକ ନମସ୍ତୁଭ୍ୟମିହାଗଚ୍ଛ ଶୁଭପ୍ରଦ ।
ଉତ୍ତରପୂର୍ବୟୋର୍ମଧ୍ୟେ ତିଷ୍ଠ ଗୃହ୍ଣୀଷ୍ୱ ମେଽର୍ଚନମ୍ ॥ ୨ ॥

ଓଁ ବାଲ୍ମୀକାୟ ନମଃ

ଗୌରୀପତେ ନମସ୍ତୁଭ୍ୟମିହାଗଚ୍ଛ ମହେଶ୍ୱର ।
ପୂର୍ବଦକ୍ଷିଣୟୋର୍ମଧ୍ୟେ ତିଷ୍ଠ ପୂଜାଂ ଗୃହାଣ ମେ ॥ ୩ ॥

ଓଁ ଗୌରୀପତୟେ ନମଃ

ଶ୍ରୀଲକ୍ଷ୍ମଣ ନମସ୍ତୁଭ୍ୟମିହାଗଚ୍ଛ ସହପ୍ରିୟଃ ।
ଯାମ୍ୟଭାଗେ ସମାତିଷ୍ଠ ପୂଜନଂ ସଗୃହାଣ ମେ ॥ ୪ ॥

ଓଁ ଶ୍ରୀସପତ୍ନୀକାୟ ଲକ୍ଷ୍ମଣାୟ ନମଃ

ଶ୍ରୀଶତ୍ରୁଘ୍ନ ନମସ୍ତୁଭ୍ୟମିହାଗଚ୍ଛ ସହପ୍ରିୟଃ ।
ପୀଠସ୍ୟ ପଶ୍ଚିମେ ଭାଗେ ପୂଜନଂ ସ୍ୱୀକୁରୁଷ୍ୱ ମେ ॥ ୫ ॥

ଓଁ ଶ୍ରୀସପତ୍ନୀକାୟ ଶତ୍ରୁଘ୍ନାୟ ନମଃ

ଶ୍ରୀଭରତ ନମସ୍ତୁଭ୍ୟମିହାଗଚ୍ଛ ସହପ୍ରିୟଃ
ପୀଠକସ୍ୟୋତ୍ତରେ ଭାଗେ ତିଷ୍ଠ ପୂଜାଂ ଗୃହାଣ ମେ ॥ ୬ ॥

ଓଁ ଶ୍ରୀସପତ୍ନୀକାୟ ଭରତାୟ ନମଃ

ଶ୍ରୀହନୁମନ୍ନମସ୍ତୁଭ୍ୟମିହାଗଚ୍ଛ କୃପାନିଧେ ।
ପୂର୍ବଭାଗେ ସମାତିଷ୍ଠ ପୂଜନଂ ସ୍ୱୀକୁରୁ ପ୍ରଭୋ ॥ ୭ ॥

ଓଁ ହନୁମତେ ନମଃ

ଅଥ ପ୍ରଧାନପୂଜା ଚ କର୍ତ୍ତବ୍ୟା ବିଧିପୂର୍ବକମ୍ ।
ପୁଷ୍ପାଞ୍ଜଳିଂ ଗୃହୀତ୍ୱା ତୁ ଧ୍ୟାନଂ କୁର୍ଯ୍ୟାତ୍ ପରସ୍ୟ ଚ ॥ ୮ ॥

ରକ୍ତାମ୍ଭୋଜଦଳାଭିରାମନୟନଂ ପୀତାମ୍ବରାଲଂକୃତଂ
ଶ୍ୟାମାଙ୍ଗଂ ଦ୍ୱିଭୁଜଂ ପ୍ରସନ୍ନବଦନଂ ଶ୍ରୀସୀତୟା ଶୋଭିତମ୍ ।
କାରୁଣ୍ୟାମୃତସାଗରଂ ପ୍ରିୟଗଣୈର୍ଭ୍ରାତ୍ରାଦିଭିର୍ଭାବିତଂ
ବନ୍ଦେ ବିଷ୍ଣୁଶିବାଦିସେବ୍ୟମନିଶଂ ଭକ୍ତେଷ୍ଟସିଦ୍ଧିପ୍ରଦମ୍ ॥ ୯ ॥

ଆଗଚ୍ଛ ଜାନକୀନାଥ ଜାନକ୍ୟା ସହ ରାଘବ ।
ଗୃହାଣ ମମ ପୂଜାଂ ଚ ବାୟୁପୁତ୍ରାଦିଭିର୍ଯୁତଃ ॥ ୧୦ ॥

ଇତ୍ୟାବାହନମ୍

ସୁବର୍ଣ୍ଣରଚିତଂ ରାମ ଦିବ୍ୟାସ୍ତରଣଶୋଭିତମ୍ ।
ଆସନଂ ହି ମୟା ଦତ୍ତଂ ଗୃହାଣ ମଣିଚର୍ଚ୍ଚିତମ୍ ॥ ୧୧ ॥

ଇତି ଷୋଡଶୋପଚାରୈଃ ପୂଜୟେତ୍ ।

ଓଁ ଅସ୍ୟ ଶ୍ରୀମଦ୍‌ମାନସରାମାୟଣଶ୍ରୀରାମଚରିତସ୍ୟ ଶ୍ରୀଶିବକାକଭୁଶୁଣ୍ଡି-ଯାଜ୍ଞବଲ୍‌କ୍ୟଗୋସ୍ୱାମିତୁଳସୀଦାସା ଋଷୟଃ ଶ୍ରୀସୀତାରାମୋ ଦେବତା ଶ୍ରୀରାମନାମ ବୀଜଂ ଭବରୋଗହରୀ ଭକ୍ତିଃ ଶକ୍ତିଃ ମମ ନିୟନ୍ତ୍ରିତାଶେଷବିଘ୍ନତୟା ଶ୍ରୀସୀତାରାମପ୍ରୀତିପୂର୍ବକ-ସକଳମନୋରଥସିଦ୍ଧ୍ୟର୍ଥଂ ପାଠେ ବିନିୟୋଗଃ ।

ଅଥାଚମନମ୍

ଶ୍ରୀସୀତାରାମାଭ୍ୟାଂ ନମଃ । ଶ୍ରୀରାମଚନ୍ଦ୍ରାୟ ନମଃ ।
ଶ୍ରୀରାମଭଦ୍ରାୟ ନମଃ ।
ଇତି ମନ୍ତ୍ରତ୍ରିତୟେନ ଆଚମନଂ କୁର୍ଯ୍ୟାତ୍ । ଶ୍ରୀଯୁଗଳବୀଜମନ୍ତ୍ରେଣ
ପ୍ରାଣାୟାମଂ କୁର୍ଯ୍ୟାତ୍ ।

ଅଥ କରନ୍ୟାସଃ

ଜଗ ମଙ୍ଗଲ ଗୁନ ଗ୍ରାମ ରାମ କେ । ଦାନି ମୁକୁତି ଧନ ଧରମ ଧାମ କେ ॥

ଅଙ୍ଗୁଷ୍ଠାଭ୍ୟାଂ ନମଃ

ରାମ ରାମ କହି ଜେ ଜମୁହାହୀଁ । ତିହ୍ନହି ନ ପାପପୁଞ୍ଜ ସମୁହାହୀଁ ॥

ତର୍ଜନୀଭ୍ୟାଂ ନମଃ

ରାମ ସକଲ ନାମନ୍ହ ତେଁ ଅଧିକା । ହୋଉ ନାଥ ଅଘ ଖଗ ଗନ ବଧିକା ॥

ମଧ୍ୟମାଭ୍ୟାଂ ନମଃ

ଉମା ଦାରୁ ଜୋଷିତ କୀ ନାଈଁ । ସବହି ନଚାବତ ରାମୁ ଗୋସାଈଁ ॥

ଅନାମିକାଭ୍ୟାଂ ନମଃ

ସନ୍ମୁଖ ହୋଇ ଜୀବ ମୋହି ଜବହୀଁ । ଜନ୍ମ କୋଟି ଅଘ ନାସହିଁ ତବହୀଁ ॥

କନିଷ୍ଠିକାଭ୍ୟାଂ ନମଃ

ମାମଭିରକ୍ଷୟ ରଘୁ-କୁଲ-ନାୟକ । ଧୃତ ବର ଚାପ ରୁଚିର କର ସାୟକ ॥

କରତଲକରପୃଷ୍ଠାଭ୍ୟାଂ ନମଃ

ଇତି କରନ୍ୟାସଃ

ଅଥ ହୃଦୟାଦିନ୍ୟାସଃ

ଜଗ ମଙ୍ଗଲ ଗୁନ ଗ୍ରାମ ରାମ କେ । ଦାନି ମୁକୁତି ଧନ ଧରମ ଧାମ କେ ॥
ହୃଦୟାୟ ନମଃ ।

ରାମ ରାମ କହି ଜେ ଜମୁହାହୀଁ । ତିହ୍ନହି ନ ପାପପୁଞ୍ଜ ସମୁହାହୀଁ ॥
ଶିରସେ ସ୍ୱାହା ।

ରାମ ସକଲ ନାମନ୍ହ ତେଁ ଅଧିକା । ହୋଉ ନାଥ ଅଘ ଖଗ ଗନ ବଧିକା ॥
ଶିଖାୟୈ ବଷଟ୍ ।

ଉମା ଦାରୁ ଜୋଷିତ କୀ ନାଈଁ । ସବହି ନଚାବତ ରାମୁ ଗୋସାଈଁ ॥
କବଚାୟ ହୁମ୍ ।

ସନ୍ମୁଖ ହୋଇ ଜୀବ ମୋହି ଜବହୀଁ । ଜନ୍ମ କୋଟି ଅଘ ନାସହିଁ ତବହୀଁ ॥
ନେତ୍ରାଭ୍ୟାଂ ବୌଷଟ୍ ।

ମାମଭିରକ୍ଷୟ ରଘୁକୁଲନାୟକ । ଧୃତ ବର ଚାପ ରୁଚିର କର ସାୟକ ॥
ଅସ୍ତ୍ରାୟ ଫଟ୍ ।

ଇତି ହୃଦୟାଦିନ୍ୟାସଃ

## ଅଥ ଧ୍ୟାନମ୍

ମାମବଲୋକୟ ପଙ୍କଜ ଲୋଚନ । କୃପା ବିଲୋକନି ସୋଚ ବିମୋଚନ ॥
ନୀଲ୍ ତାମରସ ସ୍ୟାମ କାମ ଅରି । ହୃଦୟ କଂଜ ମକରଂଦ ମଧୁପ ହରି ॥
ଜାତୁଧାନ ବରୂଥ ବଲ୍ ଭଂଜନ । ମୁନି ସଜ୍ଜନ ରଂଜନ ଅଘ ଗଂଜନ ॥
ଭୂସୁର୍ ସସି ନବବୃଂଦ ବଲାହକ । ଅସରନ ସରନ ଦୀନଜନ ଗାହକ ॥
ଭୁଜବଲ୍ ବିପୁଲ୍ ଭାର ମହି ଖଂଡିତ । ଖର ଦୂଷନ ବିରାଧ ବଧ ପଂଡିତ ॥
ରାବନାରି ସୁଖରୂପ ଭୂପବର । ଜୟ ଦସରଥ କୁଲ କୁମୁଦ ସୁଧାକର ॥
ସୁଜସ ପୁରାନ ବିଦିତ ନିଗମାଗମ । ଗାୱତ ସୁର ମୁନି ସଂତ ସମାଗମ ॥
କାରୁନୀକ ବ୍ୟଲୀକ ମଦ ଖଂଡନ । ସବ ବିଧି କୁସଲ କୋସଲା ମଂଡନ ॥
କଲିମଲ୍ ମଥନ ନାମ ମମତାହନ । ତୁଲସିଦାସ ପ୍ରଭୁ ପାହି ପ୍ରନତ ଜନ ॥

ଇତି ଧ୍ୟାନମ୍ ।

---

# ଶ୍ରୀରାମଶଲାକା ପ୍ରଶ୍ନାବଳୀ

| ସୁ | ପ୍ର | ଉ | ବି | ହୋ | ମୁ | ଗ | ବ | ସୁ | ନୁ | ବି | ଘ | ଧି | ଇ | ଦ |
|---|---|---|---|---|---|---|---|---|---|---|---|---|---|---|
| ର | ରୁ | ଫ | ସି | ସି | ରେଂ | ବସ | ହୈ | ମଂ | ଲ | ନ | ଲ | ୟ | ନ | ଅଂ |
| ସୁଜ | ସୋ | ଗ | ସୁ | କୁ | ମ | ସ | ଗ | ତ | ନ | ଈ | ଲ | ଧା | ବେ | ନୋ |
| ତ୍ୟ | ର | ନ | କୁ | ଜୋ | ମ | ରି | ର | ର | ଅ | କୀ | ହୋ | ସଂ | ର | ୟ |
| ପୁ | ସୁ | ଥ | ସୀ | ଜେ | ଇ | ଗ | ମ୍ମ | ସଂ | କ | ରେ | ହୋ | ସ | ସ | ନି |
| ତ | ର | ତ | ର | ସ | ଇ | ହ | ବ | ବ | ପ | ଚି | ସ | ୟ | ସ | ତୁ |
| ମ | କା | । | ର | ର | ମା | ମି | ମୀ | ହ୍ମା | । | ଜା | ହୁ | ହୀଂ | । | ଜୁ |
| ତା | ର | ରେ | ରୀ | ହ୍ରୁ | ବା | ଫ | ଖା | ଜି | ଈ | ର | ର | ପୂ | ଦ୍ | ଲ |
| ନି | କୋ | ମି | ଗୋ | ନ | ମ | ଜ | ୟ | ନେ | ମନି | କ | ଜ | ପ | ସ | ଲ |
| ହି | ର | ମ | ସ | ରି | ଗ | ଦ | ନ | ଷ | ମ | ଖି | ଜି | ମନି | ତ | ଜଂ |
| ସିଂ | ମୁ | ନ | ନ | କୌ | ମି | ଜ | ର | ଗ | ଧୁ | ଖ | ସୁ | କା | ସ | ର |
| ଗୁ | କ | ମ | ଅ | ଧ | ନି | ମ | ଲ | । | ନ | ବ | ତୀ | ନ | ରି | ଭ |
| ନା | ପୁ | ବ | ଅ | ହା | ର | ଲ | କା | ଏ | ତୁ | ର | ନ | ନୁ | ବ | ଥ |
| ସି | ହି | ସୁ | ହ୍ମ | ର | ର | ସ | ହିଂ | ର | ତ | ନ | ଷ | । | କା | । |
| ର | ସା | । | ଲ | ଧୀ | । | ରୀ | ଜ | ହୂ | ହୀଂ | ଷା | ଜୁ | ଇ | ର | ରେ |

ମାନସାନୁରାଗୀ ମହାନୁଭବମାନଙ୍କୁ ଶ୍ରୀରାମଶଲାକା ପ୍ରଶ୍ନାବଳୀର ବିଶେଷ ପରିଚୟ ଦେବା ଆବଶ୍ୟକ ମନେ ହୁଏ ନାହିଁ । ଏହାର ମହତ୍ତ୍ୱ ଏବଂ ଉପଯୋଗିତ୍ୱ ବିଷୟ ପ୍ରାୟ ସମସ୍ତ ମାନସ-ପ୍ରେମୀ ଜାଣନ୍ତି । ସୁତରାଂ ନିମ୍ନରେ ଏହାର ସ୍ୱରୂପ ମାତ୍ର ଅଙ୍କନ କରାଯାଇଅଛି ଏବଂ ତଦ୍ୱାରା ପ୍ରଶ୍ନୋତ୍ତର ବାହାର କରିବାର ବିଧି ଓ ତାହାର ଉତ୍ତର-ଫଳଗୁଡ଼ିକର ଉଲ୍ଲେଖ କରା ହୋଇଅଛି ।

ଏହି ରାମଶଲାକା ପ୍ରଶ୍ନାବଳୀଦ୍ୱାରା କୌଣସି ବ୍ୟକ୍ତି ଯେତେବେଳେ ନିଜ ଅଭୀଷ୍ଟ ପ୍ରଶ୍ନର ଉତ୍ତର ପାଇବାକୁ ଇଚ୍ଛା କରିବେ, ସେତେବେଳେ ସେହି ବ୍ୟକ୍ତି ସର୍ବପ୍ରଥମେ ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କୁ

ଧ୍ୟାନ କରିବେ । ତଦନନ୍ତର ଶ୍ରଦ୍ଧା ଓ ବିଶ୍ବାସପୂର୍ବକ ମନ ମଧ୍ୟରେ ଅଭୀଷ୍ଟ ପ୍ରଶ୍ନ ବିଷୟରେ ଚିନ୍ତା କରି ପ୍ରଶ୍ନାବଳୀ ମଧ୍ୟସ୍ଥ ନିଜ ଇଚ୍ଛିତ କୋଷ୍ଠକରେ ଅଙ୍ଗୁଳି ବା କୌଣସି ଶଳାକା ରଖିଦେବେ ଏବଂ ସେହି କୋଷ୍ଠକରେ ଯେଉଁ ଅକ୍ଷର ଥିବ, ତାହାକୁ ଅଲଗା କୌଣସି ପରିଷ୍କାର କାଗଜ ବା ସ୍ଲେଟ୍ ଉପରେ ଲେଖିଦେବେ । ପ୍ରଶ୍ନାବଳୀସ୍ଥ କୋଷ୍ଠକରେ ମଧ୍ୟ ଏପରି କୌଣସି ଚିହ୍ନ ଲଗାଇ-ଦେବେ ଯେପରି କି ପ୍ରଶ୍ନାବଳୀ ମଳିନ ନ ହୁଏ କିଂବା ପ୍ରଶ୍ନୋତ୍ତର ପାଇବାଯାଏ ଉକ୍ତ କୋଷ୍ଠକର ଅକ୍ଷର ବିସ୍ମୃତ ହୋଇ ନ ଯାଏ । ବର୍ତ୍ତମାନ ଯେଉଁ କୋଷ୍ଠକର ଅକ୍ଷର ଲେଖା ହୋଇଥିବ, ତାହାର ପରବର୍ତ୍ତୀ ଅକ୍ଷରଠାରୁ ଅଗ୍ରସର ହେବା ବିଧେୟ ଏବଂ ତାହାର ନବମ କୋଷ୍ଠକରେ ଯେଉଁ ଅକ୍ଷର ପଡ଼ିବ, ତାହାକୁ ମଧ୍ୟ ଲେଖି ପକାଇବାକୁ ହେବ । ଏହିପରି ଭାବରେ ପ୍ରତି ନବମରୁ ନବମ ଅକ୍ଷରକୁ କ୍ରମାନ୍ୱୟରେ ପ୍ରଥମ କୋଷ୍ଠକର ଅକ୍ଷର ପର୍ଯ୍ୟନ୍ତ ଅଙ୍ଗୁଳି ବା ଶଳାକା ପହଞ୍ଚିବା ଯାଏ ଲେଖି ଚାଲିବା ଦରକାର । ପ୍ରଥମ କୋଷ୍ଠକର ଅକ୍ଷର ପର୍ଯ୍ୟନ୍ତ ପହଞ୍ଚୁ ପହଞ୍ଚୁ ଗୋଟିଏ ଚୌପାଇ ସଂପୂର୍ଣ୍ଣ ହୋଇଯିବ । ଏହି ଚୌପାଇ ପ୍ରଶ୍ନକର୍ତ୍ତାଙ୍କର ଅଭୀଷ୍ଟ ପ୍ରଶ୍ନର ଉତ୍ତର ହେବ । ଏଠାରେ ମନେ ରଖିବାକୁ ହେବ ଯେ, କୌଣସି କୌଣସି କୋଷ୍ଠକରେ କେବଳ ଆକାର (।) ଓ କୌଣସି କୌଣସି କୋଷ୍ଠକରେ ଦୁଇ ଦୁଇଟି କରି ଅକ୍ଷର ଅଛି । ଅତଏବ ଗଣିବା ସମୟରେ ଆକାର (।) ଥିବା କୋଷ୍ଠକକୁ ଛାଡ଼ିବା ଉଚିତ ନୁହେଁ, କିଂବା ଦୁଇଟି ଅକ୍ଷର ଥିବା କୋଷ୍ଠକକୁ ଦୁଇଥର ଗଣିବା ଉଚିତ ନୁହେଁ । ଯେଉଁଠି ଆକାର (।) ଥିବା କୋଷ୍ଠକ ଆସିବ, ସେଠାରେ ପୂର୍ବଲିଖିତ ଅକ୍ଷର ଆଗରେ ତାହା ରହି ଉକ୍ତ ଅକ୍ଷର ସହ ଯୋଡି ହୋଇଯିବ ଏବଂ ଯେଉଁଠି ଦୁଇଅକ୍ଷରବିଶିଷ୍ଟ କୋଷ୍ଠକ ଆସିବ, ସେଠାରେ ଉଭୟ ଅକ୍ଷରକୁ ଏକା ସଙ୍ଗରେ ଲେଖି ଦେବାକୁ ହେବ ।

ବର୍ତ୍ତମାନ ଉଦାହରଣସ୍ୱରୂପ, ଏହି ରାମଶଳାକା ପ୍ରଶ୍ନାବଳୀରୁ କୌଣସି ପ୍ରଶ୍ନର ଉତ୍ତରରେ ଗୋଟିଏ ଚୌପାଇ କିପରି ବାହାରୁଛି, ଦେଖାଯାଉ । ପାଠକ ଧ୍ୟାନ ସହକାରେ ଦେଖନ୍ତୁ । କୌଣସି ବ୍ୟକ୍ତି ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କୁ ଧ୍ୟାନ କରି ଓ ନିଜ ପ୍ରଶ୍ନ ଚିନ୍ତା କରି ପ୍ରଶ୍ନାବଳୀର ✻ ଚିହ୍ନ ସହିତ ସଂଯୁକ୍ତ ବର୍ଣ୍ଣର କୋଷ୍ଠକରେ ଅଙ୍ଗୁଳି ବା ଶଳାକା ରଖିଦେଲେ । ତେବେ ଉପର୍ଯ୍ୟୁକ୍ତ କ୍ରମ ଅନୁସାରେ ଅକ୍ଷରଗୁଡ଼ିକ ଗଣି ଗଣି ଲେଖି ଚାଲିଲେ ଉତ୍ତରସ୍ୱରୂପ ନିମ୍ନଲିଖିତ ଚୌପାଇ ମିଳିଯିବ —

"ହୋଇ ହେଁ ସୋଇ ଜୋ ରାମ ✻ ରଚି ରାଖା ।
କୋ କରି ତରକ ବଢ଼ାଓୈଁ ସାଖା ॥"

ଏହି ଚୌପାଇ ବାଳକାଣ୍ଡାନ୍ତର୍ଗତ ଶିବପାର୍ବତୀ–ସମ୍ବାଦରେ ଅଛି । ପ୍ରଶ୍ନକର୍ତ୍ତାଙ୍କ ପକ୍ଷରେ ଉତ୍ତରସ୍ୱରୂପ ଏହି ଆଶୟ ବାହାର କରିବା ଆବଶ୍ୟକ—

"କାର୍ଯ୍ୟ ହେବା ସନ୍ଦେହଜନକ । ସୁତରାଂ ତାହାକୁ ଭଗବାନ୍‌ଙ୍କ ଭରସା ଉପରେ ଛାଡ଼ି-ଦେବା ଶ୍ରେୟସ୍କର ।"

ଏହିପରି ଶ୍ରୀରାମଶଳାକା ପ୍ରଶ୍ନାବଳୀରୁ ଆଉ ଆଠଗୋଟି (ମୋଟ ନଅଗୋଟି) ଚୌପାଇ ବାହାରେ । ସେଗୁଡ଼ିକର ସ୍ଥଳ ଓ ଫଳ ନିମ୍ନରେ ପ୍ରଦତ୍ତ ହେଲା ।

(୨) ସୁନୁ ସିୟ ସତ୍ୟ ଅସୀସ ହମାରୀ । ପୂଜିହି ମନ କାମନା ତୁହ୍ମାରୀ ॥

ସ୍ଥଳ—ଏହି ଚୌପାଇ ବାଳକାଣ୍ଡସ୍ଥ ସୀତାଙ୍କ ଗୌରୀପୂଜନ ପ୍ରସଂଗରେ ଅଛି । ଗୌରୀ ସୀତାଙ୍କୁ ଆଶୀର୍ବାଦ ଦେଉଅଛନ୍ତି ।

ଫଳ—ପ୍ରଶ୍ନକର୍ତ୍ତାଙ୍କ ପ୍ରଶ୍ନ ଉତ୍ତମ, କାର୍ଯ୍ୟ ସିଦ୍ଧ ହେବ ।

(୩) ପ୍ରବିସି ନଗର କୀଜେ ସବ କାଜା । ହୃଦୟ ରଖି କୋସଲପୁର ରାଜା ॥

ସ୍ଥଳ—ଏହି ଚୌପାଇ ସୁନ୍ଦରକାଣ୍ଡରେ ବର୍ଣ୍ଣିତ ହନୁମାନଙ୍କ ଲଙ୍କା-ପ୍ରବେଶ ସମୟର ବିଷୟ ।

ଫଳ—ଭଗବାନଙ୍କୁ ସ୍ମରଣ କରି କାର୍ଯ୍ୟାରମ୍ଭ କର । ସଫଳତା ମିଳିବ ।

(୪) ଉଘରେଁ ଅନ୍ତ ନ ହୋଇ ନିବାହୂ । କାଲନେମି ଜିମି ରାବନ ରାହୂ ॥

ସ୍ଥଳ:—ଏହି ଚୌପାଇ ବାଳକାଣ୍ଡ ଆରମ୍ଭରେ ସତ୍ସଙ୍ଗ ବର୍ଣ୍ଣନ ପ୍ରସଂଗରେ ଅଛି ।

ଫଳ:—ଏହି କାର୍ଯ୍ୟରେ କଲ୍ୟାଣ ନାହିଁ । କାର୍ଯ୍ୟସିଦ୍ଧିରେ ସନ୍ଦେହ ଅଛି ।

(୫) ବିଧିବସ ସୁଜନ କୁସଙ୍ଗତ ପରହୀଁ । ଫନି ମନି ସମ ନିଜ ଗୁନ ଅନୁସରହୀଁ ॥

ସ୍ଥଳ:—ଏହି ଚୌପାଇ ମଧ୍ୟ ବାଳକାଣ୍ଡ ଆରମ୍ଭରେ ସତ୍ସଙ୍ଗ ବର୍ଣ୍ଣନ ପ୍ରସଂଗରେ ଅଛି ।

ଫଳ:—ଦୁର୍ଜନଙ୍କ ସଙ୍ଗ ପରିହାର କର । କାର୍ଯ୍ୟ ପୂର୍ଣ୍ଣ ହେବାରେ ସନ୍ଦେହ ।

(୬) ମୁଦ ମଙ୍ଗଳମୟ ସଂତ ସମାଜୂ । ଜିମି ଜଗ ଜଂଗମ ତୀରଥ ରାଜୂ ॥

ସ୍ଥଳ—ଏହି ଚୌପାଇ ବାଳକାଣ୍ଡସ୍ଥ ସନ୍ତ-ସମାଜରୂପୀ ତୀର୍ଥ ବର୍ଣ୍ଣନାରେ ଅଛି ।

ଫଳ:—ପ୍ରଶ୍ନ ଉତ୍ତମ । କାର୍ଯ୍ୟ ସିଦ୍ଧ ହେବ ।

(୭) ଗରଲ ସୁଧା ରିପୁ କରୟ ମିତାଈ । ଗୋପଦ ସିନ୍ଧୁ ଅନଲ ସିତଲାଈ ॥

ସ୍ଥଳ:—ଏହି ଚୌପାଇ ସୁନ୍ଦରକାଣ୍ଡସ୍ଥ ହନୁମାନଙ୍କ ଲଙ୍କା-ପ୍ରବେଶ ସମୟର ବିଷୟ ।

ଫଳ:—ପ୍ରଶ୍ନ ଅତି ଉତ୍ତମ । କାର୍ଯ୍ୟ ସଫଳ ହେବ ।

(୮) ବରୁନ କୁବେର ସୁରେସ ସମୀରା । ରନ ସନମୁଖ ଧରି କାହୁ ନ ଧୀରା ॥

ସ୍ଥଳ—ଏହି ଚୌପାଇ ଲଙ୍କାକାଣ୍ଡରେ ବର୍ଣ୍ଣିତ ରାବଣର ମୃତ୍ୟୁ ପରବର୍ତ୍ତୀ ମନ୍ଦୋଦରୀ ବିଳାପ ପ୍ରସଂଗରେ ଅଛି ।

ଫଳ:—କାର୍ଯ୍ୟ ସମ୍ପୂର୍ଣ୍ଣ ହେବାରେ ସନ୍ଦେହ ଅଛି ।

(୯) ସୁଫଲ ମନୋରଥ ହୋହୁଁ ତୁମ୍ହାରେ । ରାମୁ ଲଖନୁ ସୁନି ଭଏ ସୁଖାରେ ।

ସ୍ଥଳ:—ଏହି ଚୌପାଇ ବାଳକାଣ୍ଡରେ ବର୍ଣ୍ଣିତ । ଏହା ପୁଷ୍ପବାଟିକାରୁ ରାମ ଲକ୍ଷ୍ମଣଙ୍କ ପୁଷ୍ପ ଆନୟନ ପରେ ମୁନି ବିଶ୍ୱାମିତ୍ରଙ୍କର ପୂଜାବିଧାନ ଓ ଦୁଇଭାଇଙ୍କୁ ଆଶୀର୍ବାଦପ୍ରଦାନ ପ୍ରସଙ୍ଗ ।

ଫଳ:—ପ୍ରଶ୍ନ ଅତି ଉତ୍ତମ । କାର୍ଯ୍ୟ ସିଦ୍ଧି ହେବ ।

ଏହିପରି ରାମଶଲାକା ପ୍ରଶ୍ନାବଳୀରୁ ସମୁଦାୟ ନଅଗୋଟି ଚୌପାଇ ବାହାରେ । ଏହି ନଅଟି ଚୌପାଇରେ ସମସ୍ତ ପ୍ରକାର ପ୍ରଶ୍ନର ଉତ୍ତରସବୁ ସନ୍ନିହିତ ।

---

# ଶ୍ରୀରାମଚରିତ ମାନସର

# ବିଷୟ-ସୂଚୀ

| ବିଷୟ | ପୃଷ୍ଠା |
|---|---|


## ଅଯୋଧ୍ୟାକାଣ୍ଡ

| ବିଷୟ | ପୃଷ୍ଠା |
|---|---|

## ଲଙ୍କାକାଣ୍ଡ

## ଉତ୍ତରକାଣ୍ଡ

# ପାରାୟଣ ବିଶ୍ରାମ-ସୂଚୀ

## ନବାହ୍ନପାରାୟଣର ବିଶ୍ରାମ-ସ୍ଥାନ

| ବିଶ୍ରାମ | ପୃଷ୍ଠାଙ୍କ | ବିଶ୍ରାମ | ପୃଷ୍ଠାଙ୍କ |
|---|---|---|---|
| ପ୍ରଥମ ବିଶ୍ରାମ | ୨୦୯ | ଷଷ୍ଠ ବିଶ୍ରାମ | .. ୯୨୭ |
| ଦ୍ୱିତୀୟ ,, | ୩୪୯ | ସପ୍ତମ ,, | – ୧୦୯୧ |
| ତୃତୀୟ ,, | ୪୯୪ | ଅଷ୍ଟମ ,, | . ୧୨୮୧ |
| ଚତୁର୍ଥ ,, | . ୬୩୧ | ନବମ ,, | . ୧୪୫୮ |
| ପଞ୍ଚମ ,, | ୭୬୭ | | |

## ମାସପାରାୟଣର ବିଶ୍ରାମ-ସ୍ଥାନ

| ବିଶ୍ରାମ | ପୃଷ୍ଠାଙ୍କ | ବିଶ୍ରାମ | ପୃଷ୍ଠାଙ୍କ |
|---|---|---|---|
| ପ୍ରଥମ ବିଶ୍ରାମ | ୯୦ | ଷୋଡଶ ବିଶ୍ରାମ | .. ୬୩୧ |
| ଦ୍ୱିତୀୟ ,, | ୧୩୦ | ସପ୍ତଦଶ ,, | – ୭୫୦ |
| ତୃତୀୟ , | ୧୬୯ | ଅଷ୍ଟାଦଶ ,, | . ୬୯୮ |
| ଚତୁର୍ଥ ,, | ୨୦୯ | ଊନବିଂଶ ,, | .. ୭୪୨ |
| ପଞ୍ଚମ ,, | . ୨୪୫ | ବିଂଶ ,, | . ୭୬୭ |
| ଷଷ୍ଠ ,, | ୨୮୧ | ଏକବିଂଶ ,, | . ୮୭୦ |
| ସପ୍ତମ ,, | ୩୧୭ | ଦ୍ୱାବିଂଶ ,, | ୯୫୨ |
| ଅଷ୍ଟମ ,, | . ୩୪୯ | ତ୍ରୟୋବିଂଶ ,, | – ୯୯୫ |
| ନବମ ,, | . ୩୮୫ | ଚତୁର୍ବିଂଶ ,, | – ୧୦୭୩ |
| ଦଶମ ,, | ୪୨୨ | ପଞ୍ଚବିଂଶ ,, | – ୧୧୪୧ |
| ଏକାଦଶ ,, | ୪୫୭ | ଷଡ୍‌ବିଂଶ ,, | – ୧୨୧୮ |
| ଦ୍ୱାଦଶ ,, | .. ୪୯୮ | ସପ୍ତବିଂଶ ,, | . ୧୨୬୧ |
| ତ୍ରୟୋଦଶ ,, | . ୫୩୨ | ଅଷ୍ଟାବିଂଶ ,, | – ୧୩୪୯ |
| ଚତୁର୍ଦ୍ଦଶ ,, | ୫୬୮ | ଊନତ୍ରିଂଶ ,, | .. ୧୪୨୬ |
| ପଞ୍ଚଦଶ ,, | ୬୦୫ | ତ୍ରିଂଶ ,, | – ୧୪୫୮ |

## ବେନୀ କବିଙ୍କ ବାଣୀ

ବେଦମତ ସୋଧି, ସୋଧି ସୋଧି କୈ ପୁରାନ ସବୈ,
ସନ୍ତ ଔ' ଅସନ୍ତନ କୋ ଭେଦ କୋ ବତାଉତୋ ।
କପଟୀ କୁରାହୀ, କୂର, କଲି କେ କୁଚାଲୀ ଜୀବ,
କୌନ **ରାମ** ନାମହୁ କୀ ଚରଚା ଚଲାଉତୋ ॥
**ବେନୀ** କବି କହୈ, ମାନୋ ମାନୋ ହୋ ପ୍ରତୀତି ୟହ !
ପାହନ-ହିୟେ ମେଂ କୌନ ପ୍ରେମ ଉପଜାଉତୋ ।
ଭାରୀ ଭବସାଗର ଉତାରତୋ କଉନ ପାର,
ଜୋ ପୈ ୟହ **ରାମାୟଣ ତୁଲସୀ** ନ ଗାଉତୋ ॥

## ଓଡ଼ିଆ ପଦ୍ୟାନୁବାଦ

( ରାଗ-ଚୋଖି )

ଶୋଧି ସର୍ବ ବେଦମତ ପୁରାଣ ତତ୍ତ୍ୱ ସମସ୍ତ
ସନ୍ତ-ଅସନ୍ତ-ଚରିତ କିଏ କହନ୍ତା ?
କପଟୀ, କୁମାର୍ଗୀ, କ୍ରୂର କଳିର କୁଚାଳୀ ନର,
ଚରଚା **ରାମ** ନାମର କେ ବା କରନ୍ତା ?
ବୋଲେ **ବେନୀ** କବି ବଚନ—
ମାନ ମାନ ନରେ, ମନେ ବିଶ୍ୱାସ ଘେନ ॥ ୧॥
ଶୈଳ-କଠୋର-ହୃଦୟ କାମନା-ବାସନାମୟ
କଳିକାଳ-ନରଚୟ, ଜାଣ ହେ ଭାଇ,
ସେ ହୃଦେ ପ୍ରେମ-ସରିତା କାହୁଁ ବହି ପାରିଥା'ନ୍ତା
**ତୁଳସୀ** ରାମ-କବିତା ନ ଥିଲେ ଗାଇ ?
ଦୁସ୍ତର ସଂସାର-ସାଗରେ,
**ରାମାୟଣ** ବିନା ନରେ କେ ତାରିପାରେ ? ॥୨॥

—**ଶ୍ରୀ ସୁରେଶଚନ୍ଦ୍ର ନନ୍ଦ**

ଅତୁଲିତବଲଧାମଂ ସ୍ୱର୍ଣ୍ଣଶୈଳାଭଦେହଂ
ଦନୁଜବନକୃଶାନୁଂ ଜ୍ଞାନିନାମଗ୍ରଗଣ୍ୟମ୍ ।
ସକଲଗୁଣନିଧାନଂ ବାନରାଣାମଧୀଶଂ
ରଘୁପତିବରଦୂତଂ ବାତଜାତଂ ନମାମି ॥

ଓଁ

ଶ୍ରୀ ଗଣେଶାୟ ନମଃ

ଶ୍ରୀ ଜାନକୀବଲ୍ଲଭୋ ବିଜୟତେ

ଗୋସ୍ୱାମୀ ତୁଳସୀଦାସକୃତ

# ଶ୍ରୀରାମଚରିତ ମାନସ

( ଓଡ଼ିଆ ଲିପିରେ ମୂଳପାଠ ଏବଂ ଓଡ଼ିଆ ଭାଷାରେ ପଦ୍ୟଗଦ୍ୟାନୁବାଦ )

## ପ୍ରଥମ ସୋପାନ

## ବାଳକାଣ୍ଡ

ବର୍ଣ୍ଣାନାମର୍ଥସଂଘାନାଂ ରସାନାଂ ଛନ୍ଦସାମପି ।
ମଙ୍ଗଳାନାଂ ଚ କର୍ତ୍ତାରୌ ବନ୍ଦେ ବାଣୀବିନାୟକୌ ॥୧॥
ଭବାନୀଶଙ୍କରୌ ବନ୍ଦେ ଶ୍ରଦ୍ଧାବିଶ୍ୱାସରୂପିଣୌ ।
ଯାଭ୍ୟାଂ ବିନା ନ ପଶ୍ୟନ୍ତି ସିଦ୍ଧାଃ ସ୍ୱାନ୍ତଃସ୍ଥମୀଶ୍ୱରମ୍ ॥୨॥
ବନ୍ଦେ ବୋଧମୟଂ ନିତ୍ୟଂ ଗୁରୁଂ ଶଙ୍କରରୂପିଣମ୍ ।
ଯମାଶ୍ରିତୋ ହି ବକ୍ରୋଽପି ଚନ୍ଦ୍ରଃ ସର୍ବତ୍ର ବନ୍ଦ୍ୟତେ ॥୩॥

---

ବିବିଧ ପ୍ରକାର    ବର୍ଣ୍ଣ ଅର୍ଥ ରସ    ଛନ୍ଦ ଆବର ।
ମଙ୍ଗଳଙ୍କ କର୍ତ୍ତା    ବାଣୀ ବିନାୟକେ    ବନ୍ଦେ ସାଦର ॥ ୧ ॥
ବନ୍ଦେ ପୁଣି ଶ୍ରଦ୍ଧା    ବିଶ୍ୱାସ ମୂରତି    ଉମା ମହେଶେ ।
ଯା ବିହୁନେ ସିଦ୍ଧେ    ଦେଖି ନ ପାରନ୍ତି    ସ୍ୱ ହୃଦଈଶେ ॥ ୨ ॥
ବନ୍ଦେ ଜ୍ଞାନମୟ    ନିତ୍ୟ ଶିବ ପ୍ରାୟ    ଶ୍ରୀଗୁରୁ ପଦ ।
ଯାହାଙ୍କୁ ଆଶ୍ରିଣ,    ବକ୍ର ଚନ୍ଦ୍ର ମଧ୍ୟ,    ସର୍ବତ୍ର ବନ୍ଦ୍ୟ ॥ ୩ ॥

---

ବର୍ଣ୍ଣ, ଅର୍ଥ, ରସ, ଛନ୍ଦ ଓ ମଙ୍ଗଳସମୂହର ସୃଷ୍ଟିକାରିଣୀ ବାଣୀ ଓ ସୃଷ୍ଟିକାରୀ ଶ୍ରୀ ଗଣେଶଙ୍କୁ ମୁଁ ବନ୍ଦନା କରୁଅଛି ॥ ୧ ॥ ଯାହାଙ୍କ ବ୍ୟତିରେକେ ସିଦ୍ଧ ପୁରୁଷଗଣ ମଧ୍ୟ ନିଜ ହୃଦୟସ୍ଥିତ ଈଶ୍ୱରଙ୍କୁ ଦେଖି ପାରନ୍ତି ନାହିଁ, ଶ୍ରଦ୍ଧା ଓ ବିଶ୍ୱାସର ମୂର୍ତ୍ତି ସେହି ଦେବୀ ଶ୍ରୀ ପାର୍ବତୀ ଓ ମହାପ୍ରଭୁ ଶ୍ରୀ ଶଙ୍କରଙ୍କୁ ମୁଁ ବନ୍ଦନା କରୁଅଛି ॥ ୨ ॥ ଯାହାଙ୍କ ଆଶ୍ରୟ ବଳରେ ଚନ୍ଦ୍ର ବକ୍ର ହୋଇ ସୁଦ୍ଧା ଜଗତରେ ସର୍ବତ୍ର ବନ୍ଦିତ, ସେହି ଜ୍ଞାନମୟ, ନିତ୍ୟ, ଶଙ୍କରରୂପୀ ଗୁରୁଙ୍କୁ ମୁଁ ବନ୍ଦନା କରୁଅଛି ॥ ୩ ॥

ସୀତାରାମଗୁଣଗ୍ରାମପୁଣ୍ୟାରଣ୍ୟବିହାରିଣୌ ।
ବନ୍ଦେ ବିଶୁଦ୍ଧବିଜ୍ଞାନୌ କବୀଶ୍ୱରକପୀଶ୍ୱରୌ ॥୪॥
ଉଦ୍ଭବସ୍ଥିତିସଂହାରକାରିଣୀଂ କ୍ଲେଶହାରିଣୀମ୍ ।
ସର୍ବଶ୍ରେୟସ୍କରୀଂ ସୀତାଂ ନତୋଽହଂ ରାମବଲ୍ଲଭାମ୍ ॥୫॥
ଯନ୍ମାୟାବଶବର୍ତ୍ତି ବିଶ୍ୱମଖିଳଂ ବ୍ରହ୍ମାଦିଦେବାସୁରାଃ ।
ଯତ୍ସତ୍ତ୍ୱାଦମୃଷୈବ ଭାତି ସକଳଂ ରଜ୍ଜୌ ଯଥାହେର୍ଭ୍ରମଃ ।
ଯତ୍ପାଦପ୍ଲବମେକମେବ ହି ଭବାମ୍ଭୋଧେସ୍ତିତୀର୍ଷାବତାମ୍
ବନ୍ଦେଽହଂ ତମଶେଷକାରଣପରଂ ରାମାଖ୍ୟମୀଶଂ ହରିମ୍ ॥୬॥
ନାନାପୁରାଣନିଗମାଗମସମ୍ମତଂ ଯଦ୍
ରାମାୟଣେ ନିଗଦିତଂ କ୍ୱଚିଦନ୍ୟତୋଽପି ।
ସ୍ୱାନ୍ତଃସୁଖାୟ ତୁଳସୀ ରଘୁନାଥଗାଥା-
ଭାଷାନିବନ୍ଧମତିମଞ୍ଜୁଳମାତନୋତି ॥୭॥

---

ସୀତା ରାମ ଗୁଣ— ଗ୍ରାମ-ପୁଣ୍ୟାରଣ୍ୟେ ଯେ ବିହରନ୍ତି ।
ବନ୍ଦେ ସେ ବିଶୁଦ୍ଧ ବିଜ୍ଞାନୀ କବୀଶ କପିଙ୍କ ପତି ॥ ୪ ॥
ଉଦ୍ଭବ ପାଳନ ପ୍ରଳୟକାରିଣୀ କ୍ଳେଶହାରିଣୀ ।
ପ୍ରଣମଇ ରାମ— ପ୍ରିୟା ସୀତା, ସର୍ବ— ଶ୍ରେୟସ୍କାରିଣୀ ॥ ୫ ॥
ଯାର ମାୟାଧୀନ ନିଖିଳ ଭୁବନ ବ୍ରହ୍ମାଦି ଦେବତା ଦଇତ ।
ଯା ସତ୍ତାରେ ସର୍ବ ସତ୍ୟ ରୂପେ ଭାସେ ରଜ୍ଜୁରେ ଅହିଭ୍ରମବତ ।
ଯା ପଦ-ତରି ଏକ ଭବ-ଅବ୍ଧିକୁ ।
ବନ୍ଦଇ ମୁଁ ସେହି ସର୍ବହେତୁପର ରାମନାମଧାରୀ ହରିଙ୍କୁ ॥ ୬ ॥
ନାନା ଶ୍ରୁତି ଶାସ୍ତ୍ର ମତ ଅନ୍ୟ କାହିଁ କିଛି,
ରାମାୟଣୋକ୍ତ ପ୍ରସଙ୍ଗ ତୁଳସୀ ରଚିଛି,
ରାମକଥା ସୁଭାଷାରେ ।
ନିଜ ଚିତ୍ତ ସୁଖ ପାଇଁ, ଅତି ମଞ୍ଜୁଳରେ ॥ ୭ ॥

---

ଶ୍ରୀ ସୀତାରାମଙ୍କ ଗୁଣରାଶି-ରୂପୀ ପବିତ୍ର ବନରେ ବିହାରକାରୀ, ବିଶୁଦ୍ଧ ଜ୍ଞାନ-ସମ୍ପନ୍ନ କବୀଶ୍ୱର ଶ୍ରୀ ବାଲ୍ମୀକି ଓ କପୀଶ୍ୱର ଶ୍ରୀ ହନୁମାନଙ୍କୁ ମୁଁ ବନ୍ଦନା କରୁଅଛି ॥ ୪ ॥ ଉତ୍ପତ୍ତି, ସ୍ଥିତି (ପାଳନ) ଏବଂ ସଂହାରର କର୍ତ୍ତ୍ରୀ, କ୍ଳେଶସମୂହର ବିନାଶକାରିଣୀ ଏବଂ ସମ୍ପୂର୍ଣ୍ଣ କଲ୍ୟାଣର ବିଧାନକାରିଣୀ ଶ୍ରୀ ରାମଚନ୍ଦ୍ରଙ୍କ ପ୍ରିୟତମା ସତୀ ସୀତାଦେବୀଙ୍କୁ ମୁଁ ନମସ୍କାର କରୁ-ଅଛି ॥ ୫ ॥ ସମ୍ପୂର୍ଣ୍ଣ ବିଶ୍ୱ, ବ୍ରହ୍ମାଦି ଦେବତା ଏବଂ ରାକ୍ଷସଗଣ ଯାହାଙ୍କ ମାୟାରେ ବଶୀଭୂତ, ଯାହାଙ୍କର ଅସ୍ତିତ୍ୱ ଯୋଗେ ରଜ୍ଜୁରେ ସର୍ପ-ଭ୍ରମ-ସମ ଏହି ସମଗ୍ର ଦୃଶ୍ୟଜଗତ ସତ୍ୟରୂପେ ପ୍ରତୀୟମାନ ହୁଏ ଏବଂ ଯାହାଙ୍କ ଚରଣ ହିଁ ଭବ-ସାଗରରୁ ଉଦ୍ଧାର ପାଇବାକୁ

ଜୋ ସୁମିରତ ସିଧି ହୋଇ ଗନନାୟକ କରିବର ବଦନ ।
କରଉ ଅନୁଗ୍ରହ ସୋଇ ବୁଦ୍ଧିରାସି ସୁଭଗୁନ ସଦନ ॥୧॥
ମୂକ ହୋଇ ବାଚାଲ ପଙ୍ଗୁ ଚଢ଼ଇ ଗିରିବର ଗହନ ।
ଜାସୁ କୃପାଁ ସୋ ଦୟାଲ ଦ୍ରବଉ ସକଲ କଲିମଲ ଦହନ ॥୨॥
ନୀଲ ସରୋରୁହ ସ୍ୟାମ ତରୁନ ଅରୁନ ବାରିଜ ନୟନ ।
କରଉ ସୋ ମମ ଉର ଧାମ ସଦା ଛୀରସାଗର ସୟନ ॥୩॥
କୁନ୍ଦ ଇନ୍ଦୁ ସମ ଦେହ ଉମାରମନ କରୁନା ଅୟନ ।
ଜାହି ଦୀନପର ନେହ କରଉ କୃପା ମର୍ଦ୍ଦନ ମୟନ ॥୪॥

---

ଯାହାଙ୍କ ସ୍ମରଣେ ହୁଏ ସର୍ବସିଦ୍ଧି ଗଣେଶ୍ୱର ଗଜାନନ ।
କରନ୍ତୁ କରୁଣା ସେ ବୁଦ୍ଧି-ବାରିଧି ଶୁଭଗୁଣ ନିକେତନ ॥ ୧ ॥
ଯା କୃପାରେ ମୂକ ହୁଅଇ ବାଚାଳ ପଙ୍ଗୁ ଲଙ୍ଘେ ଗିରି ଘନ ।
ହୁଅନ୍ତୁ ଦ୍ରବିତ ସେ କରୁଣାକର କଳି-କଲୁଷ ଦହନ ॥ ୨ ॥
ତରୁଣ ଅରୁଣ ବାରିଜ ନୟନ ନୀଳକଞ୍ଜସମ ଶ୍ୟାମ ।
କରନ୍ତୁ ସଦା ସେ କ୍ଷୀରାବ୍ଧି ଶୟନ ମୋ ହୃଦୟେ ନିଜ ଧାମ ॥ ୩ ॥
ଉମା ପ୍ରାଣପ୍ରିୟ କରୁଣା-ନିଳୟ କୁନ୍ଦ-ଇନ୍ଦୁ-ତନୁଧାରୀ ।
ଦୀନ ପ୍ରତି ଯାର ସ୍ନେହ ଅତିଶୟ କୃପା କରୁ ସେ କାମାରି ॥ ୪ ॥

---

ଇଚ୍ଛୁକ ବ୍ୟକ୍ତିମାନଙ୍କ ପାଇଁ ଏକମାତ୍ର ନୌକା, ସକଳ କାରଣର ଊର୍ଦ୍ଧ୍ୱରେ ଅଧିଷ୍ଠିତ (ସମସ୍ତ କାରଣର କାରଣ ଏବଂ ସର୍ବଶ୍ରେଷ୍ଠ) ସେହି ରାମନାମଧାରୀ ଭଗବାନ୍ ହରିଙ୍କୁ ମୁଁ ବନ୍ଦନା କରୁଅଛି ॥ ୬ ॥ ଅନେକ ପୁରାଣ, ବେଦ ଏବଂ (ତନ୍ତ୍ର) ଶାସ୍ତ୍ର ଦ୍ୱାରା ସମ୍ମତ ତଥା ରାମାୟଣରେ ବର୍ଣ୍ଣିତ ଏବଂ କିଛିଅଂଶ ଅନ୍ୟାନ୍ୟ ସ୍ଥଳରୁ ପ୍ରାପ୍ତ ଶ୍ରୀ ରଘୁନାଥଙ୍କ କଥାକୁ ମୋ ଅନ୍ତଃକରଣର ସୁଖ ନିମନ୍ତେ ଅତ୍ୟନ୍ତ ମନୋହର-ଭାଷା-ସମ୍ପନ୍ନ ରଚନାରେ ମୁଁ ସନ୍ନିବେଶିତ କରୁଅଛି ॥ ୭ ॥ ସୋରଠା —ଯାହାଙ୍କୁ ସ୍ମରଣ କଲେ ସକଳ କାର୍ଯ୍ୟରେ ସିଦ୍ଧି ମିଳେ, ଯେ ଗୁଣରାଶିର ସ୍ୱାମୀ ଏବଂ ସୁନ୍ଦର-ଗଜ-ବଦନ, ସେହି ବୁଦ୍ଧି-ରାଶି ଏବଂ ମଙ୍ଗଳ ଗୁଣସମୂହର ଧାମ ଶ୍ରୀ ଗଣେଶ ମହାପ୍ରଭୁ ମୋଠାରେ ଦୟା କରନ୍ତୁ ॥୧॥ ଯାହାଙ୍କ କୃପାରେ ମୂକ ବାବଦୂକ ହୁଏ, ପଙ୍ଗୁ ଦୁର୍ଗମ ଗିରି ଆରୋହଣ କରିପାରେ, କଳିକାଳର ସକଳ ପାପର ଦହନକାରୀ ସେହି ଦୟାଳୁ ନାରାୟଣ ମୋ ପ୍ରତି ଦ୍ରବୀଭୂତ ହୁଅନ୍ତୁ (ଅର୍ଥାତ୍ ଦୟା କରନ୍ତୁ) ॥ ୨॥ ଯାହାଙ୍କ ଶରୀରର ବର୍ଣ୍ଣ ନୀଳକମଳସମ ଶ୍ୟାମଳ, ନେତ୍ର ବାଲସୂର୍ଯ୍ୟ ଓ ରକ୍ତକମଳତୁଲ୍ୟ ଲାଲ ଏବଂ ଯେ ସଦା କ୍ଷୀରସାଗର ଉପରେ ଶୟନ କରନ୍ତି, ସେହି ଭଗବାନ୍ ନାରାୟଣ ସଦା ମୋ ହୃଦୟରେ ନିବାସ କରନ୍ତୁ ॥ ୩ ॥ ଯାହାଙ୍କ ଶରୀର କୁନ୍ଦପୁଷ୍ପ ଓ ଚନ୍ଦ୍ରମା ସଦୃଶ ଗୌର, ଯେ ପାର୍ବତୀ ଦେବୀଙ୍କର ପ୍ରିୟତମ, ଦୟାର ଧାମ, ଦୀନପ୍ରେମୀ ଏବଂ କାମଦେବଙ୍କ ମର୍ଦ୍ଦନକାରୀ, ସେହି ଶଙ୍କର ମହାପ୍ରଭୁ ମୋ ପ୍ରତି

ବନ୍ଦଉଁ ଗୁରୁପଦ କଞ୍ଜ କୃପାସିନ୍ଧୁ ନରରୂପ ହରି ।
ମହାମୋହ ତମ ପୁଞ୍ଜ ଜାସୁ ବଚନ ରବିକର ନିକର ॥୫॥

ବନ୍ଦଉଁ ଗୁରୁପଦ ପଦୁମ ପରାଗା । ସୁରୁଚି ସୁବାସ ସରସ ଅନୁରାଗା ॥
ଅମିଅ ମୂରିମୟ ଚୂରନ ଚାରୂ । ସମନ ସକଲ ଭବରୁଜ ପରିବାରୂ ॥୧॥
ସୁକୃତି ସମ୍ଭୁ ତନ ବିମଲ ବିଭୂତି । ମଞ୍ଜୁଲ ମଙ୍ଗଲ ମୋଦ ପ୍ରସୂତି ॥
ଜନମନ ମଞ୍ଜୁ ମୁକୁର ମଲହରନୀ । କିଏଁ ତିଲକ ଗୁନଗନ ବସକରନୀ ॥୨॥
ଶ୍ରୀ ଗୁରୁପଦ ନଖ ମନିଗନ ଜୋତି । ସୁମିରତ ଦିବ୍ୟ ଦୃଷ୍ଟି ହିୟଁ ହୋତି ॥
ଦଲନ ମୋହ ତମ ସୋ ସପ୍ରକାସୂ । ବଡ଼େ ଭାଗ ଉର ଆୱଇ ଜାସୂ ॥୩॥
ଉଘରହିଁ ବିମଲ ବିଲୋଚନ ହୀ କେ । ମିଟହିଁ ଦୋଷ ଦୁଖ ଭବ ରଜନୀ କେ ॥
ସୂଝହିଁ ରାମଚରିତ ମନି ମାନିକ । ଗୁପୁତ ପ୍ରଗଟ ଜହଁ ଜୋ ଜେହିଁ ଖାନିକ ॥୪॥

---

କରୁଣାକୂପାର ନରରୂପ ହରି ଗୁରୁ ପାଦ-ପଦ୍ମେ ନମେ ।
ଯାହାଙ୍କ ବଚନ ରବିକର ପରି ମହା ମୋହ-ତମ ଶମେ ॥ ୫ ॥

ବନ୍ଦଇ ଗୁରୁଙ୍କ ପଦ-ପଙ୍କଜ-ପରାଗ । ସୁରୁଚି ସୁବାସ ସୌମ୍ୟରସ ଅନୁରାଗ ।
ସୁଧା-ମୂଳମୟ ଚାରୁ ଚୂର୍ଣ୍ଣ ସେ ଅଟଇ । ସମସ୍ତ ଭବ-ରୋଗର କୁଟୁମ୍ବ ନାଶଇ ॥ ୧ ॥
ସୁକୃତୀ-ଶମ୍ଭୁ-ତନୁର ବିଭୂତି ବିମଳ । ଜନମାଏ ଭବେ ମୋଦ ମଞ୍ଜୁଳ ମଙ୍ଗଳ ॥
ଜନମନ-ମଞ୍ଜୁ-ଦରପଣ-ମଳ ହରେ । ତିଳକ କରନ୍ତେ ଗୁଣ-ଗଣ ବଶ କରେ ॥ ୨ ॥
ଶ୍ରୀଗୁରୁଚରଣ ନଖ-ମଣି-ଗଣତେଜ । ସୁମରନ୍ତେ ଦିବ୍ୟ ଦୃଷ୍ଟି ହୃଦେ ହୁଏ ହେଜ ॥
ଦଳେ ସେହି ସୁପ୍ରକାଶ ମୋହ-ଅନ୍ଧକାର । ବଡଭାଗ୍ୟବାନ, ଉରେ ପ୍ରକାଶେ ଯାହାର ॥ ୩ ॥
ଫିଟିଯାଏ ସୁବିମଳ ମାନସ-ଲୋଚନ । ତୁଟେ ଦୁଃଖଦୋଷ ଭବ-ନିଶିର ବହନ ।
ମଣି-ମାଣିକ୍ୟାଦି ରାମଚରିତ ରୁଚିର । ଦିଶନ୍ତି ଗୁପ୍ତ ପ୍ରକଟ ଯେ ଯେଉଁ ଖଣିର ॥ ୪ ॥

---

ଦୟା କରନ୍ତୁ ॥ ୪ ॥ ଯେ ଦୟାର ସାଗର ଏବଂ ସାକ୍ଷାତରେ ନରରୂପଧାରୀ ଶ୍ରୀହରି, ଯାହାଙ୍କ ବଚନ ସୂର୍ଯ୍ୟକିରଣନିକରସଦୃଶ ମହାମୋହରୂପୀ ଘନ ଅନ୍ଧକାରକୁ ନାଶ କରି ପାରେ, ସେହି ଗୁରୁଙ୍କ ପାଦ-ପଦ୍ମ ମୁଁ ବନ୍ଦନା କରୁଅଛି ॥ ୫ ॥ ଚୌପାଇ—ଗୁରୁଙ୍କ ପାଦ-ପଦ୍ମ-ରଜ ସୁରୁଚି, ସୁଗନ୍ଧ ଓ ଅନୁରାଗ-ରସରେ ପରିପୂର୍ଣ୍ଣ, ତାହା ସଞ୍ଜୀବନୀ ଔଷଧର ସୁନ୍ଦର ଚୂର୍ଣ୍ଣ ଏବଂ ସମସ୍ତ ଭବରୋଗ-ପରିବାରର ବିନାଶକ । ଉକ୍ତ ପାଦ-ପଦ୍ମ-ରଜକୁ ମୁଁ ବନ୍ଦନା କରୁଅଛି ॥ ୧ ॥ ସେହି ରଜ ସୁକୃତି (ପୁଣ୍ୟବାନ୍ ପୁରୁଷ) ରୂପୀ ଶିବଙ୍କର ଶରୀର ଉପରେ ସୁଶୋଭିତ ନିର୍ମଳ ବିଭୂତି, ମନୋହର କଲ୍ୟାଣ ଓ ଆନନ୍ଦର ଜନ୍ମଦାତା ଏବଂ ଭକ୍ତଜନଙ୍କ ମନ-ମୁକୁର-ମଳିନତାର ବିନାଶକ । ତିଳକ ହୋଇ ଉକ୍ତ ରଜ ସକଳଗୁଣର ଆକର୍ଷକ ହୋଇପାରେ ଅର୍ଥାତ୍ ଭକ୍ତଜନ ଗୁରୁଙ୍କ ପାଦ-ପଦ୍ମ-ରଜର ତିଳକ ଲଗାଇ ସମସ୍ତ ଗୁଣର ଆଧାର ହୋଇ ପାରନ୍ତି ॥ ୨ ॥ ଗୁରୁଙ୍କର ପାଦ-ନଖର ଜ୍ୟୋତି ମଣିସମୂହର ଆଲୋକ ପରି । ତାହାକୁ ସ୍ମରଣ କରିବା ମାତ୍ରେ

ଜଥା ସୁଅଞ୍ଜନ ଅଞ୍ଜି ଦୃଗ ସାଧକ ସିଦ୍ଧ ସୁଜାନ ।
କୌତୁକ ଦେଖତ ସୈଲ ବନ ଭୂତଲ ଭୂରି ନିଧାନ ॥୧॥

ଗୁରୁପଦ ରଜ ମୃଦୁ ମଞ୍ଜୁଲ ଅଞ୍ଜନ । ନୟନ ଅମିଅ ଦୃଗଦୋଷ ବିଭଞ୍ଜନ ॥
ତେହିଁ କରି ବିମଲ ବିବେକ ବିଲୋଚନ । ବରନଉଁ ରାମଚରିତ ଭବମୋଚନ ॥୧॥
ବନ୍ଦଉଁ ପ୍ରଥମ ମହୀସୁରଚରନା । ମୋହଜନିତ ସଂସୟ ସବହରନା ॥
ସୁଜନସମାଜ ସକଲ ଗୁନଖାନୀ । କରଉଁ ପ୍ରନାମ ସପ୍ରେମ ସୁବାନୀ ॥୨॥
ସାଧୁ ଚରିତ ସୁଭ ଚରିତ କପାସୂ । ନିରସ ବିସଦ ଗୁନମୟ ଫଲ ଜାସୂ ॥
ଜୋ ସହି ଦୁଖ ପରଛିଦ୍ର ଦୁରାୱା । ବନ୍ଦନୀୟ ଜେହିଁ ଜଗ ଜସୁ ପାୱା ॥୩॥

ଯେପରି ସୁଅଞ୍ଜନ ନୟନେ ରଞ୍ଜିତ ଚତୁର ସାଧକ ସିଦ୍ଧ ।
ଦେଖନ୍ତି ଭୂତଳେ ବିପିନ ଶଇଳେ କଉତୁକ ନାନାବିଧ ॥ ୧ ॥

ଗୁରୁପଦ-ରଜ ମୃଦୁ ମଞ୍ଜୁଳ ଅଞ୍ଜନ । ନେତ୍ରକୁ ଅମୃତ ଚକ୍ଷୁ-ଦୋଷ-ବିଭଞ୍ଜନ ॥
ତହିଁରେ ନିର୍ମଳ କରି ବିବେକ-ଲୋଚନ । ବର୍ଣ୍ଣିବି ରାମ ଚରିତ ଭବ ବିମୋଚନ ॥୧॥
ପ୍ରଥମେ ବନ୍ଦନ କରେ ପଦ ଭୂଦେବଙ୍କ । ଯେ ମୋହ-ଜାତ ସମସ୍ତ ସଂଶୟ-ନାଶକ ॥
ସୁଜନ-ସମାଜ ସର୍ବ ସଦ୍‌ଗୁଣ ଆଗାର । ସାନୁରାଗ ସୁବଚନେ କରେ ନମସ୍କାର ॥୨॥
ସାଧୁଙ୍କ ଚରିତ କପା ସଦ୍‌ଗୁଣ ବିମଳ । ନୀରସ ଉଜ୍ଜ୍ୱଳ ଗୁଣମୟ ଯାର ଫଳ ॥
ଯେ ଦୁଃଖ ସହିଣ ପରଛିଦ୍ର ଦୂର କରେ । ବନ୍ଦନୀୟ, ସୁଯଶ ଯେ ଲଭେ ଜଗତରେ ॥୩॥

ହୃଦୟରେ ଦିବ୍ୟଦୃଷ୍ଟି ଜାତ ହୁଏ । ସେ ଆଲୋକ ଅଜ୍ଞାନ-ଅନ୍ଧକାରର ବିନାଶକାରୀ । ଯାହାର ହୃଦୟ ଉକ୍ତ ଆଲୋକରେ ଆଲୋକିତ ହୁଏ, ସେ ଯଥାର୍ଥରେ ବଡ ଭାଗ୍ୟବାନ୍ ॥୭॥ ହୃଦୟରେ ସେ ଆଲୋକ ବିଚ୍ଛୁରିତ ହେବା ମାତ୍ରେ ତାହାର ନିର୍ମଳ ମାନସ-ନୟନ ବିକଶିତ ହୁଏ । ସଂସାର-ନିଶାର ଦୋଷଦୁଃଖରାଶି ଦୂର ହୋଇଯାଏ । ଶ୍ରୀରାମଚରିତ ରୂପକ ମଣି ଓ ମାଣିକ୍ୟ ଯେ କୌଣସି ଖଣିରେ ଗୁପ୍ତ ଅଥବା ପ୍ରକାଶ୍ୟ ଭାବରେ ଥାଉ ପଛକେ, ଗୁରୁଙ୍କ ପାଦ-ପଦ୍ମର ନଖ-ଜ୍ୟୋତି ଯୋଗେ ସମସ୍ତେ ଉକ୍ତ ମଣି ଓ ମାଣିକ୍ୟକୁ ଦେଖି ପାରନ୍ତି ॥୮॥ ଦୋହା.—ଯେପରି ନେତ୍ରରେ ସିଦ୍ଧାଞ୍ଜନ ଲଗାଇ ସାଧକ, ସିଦ୍ଧ ଓ ସୁଜ୍ଞାନୀ ପର୍ବତ, କାନନ ଓ ଧରଣୀ ମଧ୍ୟସ୍ଥ ବହୁ ଖଣି ଅନାୟାସରେ ଦେଖି ପାରନ୍ତି ॥୧॥ ଚୌପାଈ:—ଗୁରୁଙ୍କର ଚରଣ-କମଳ-ରଜ କୋମଳ ଓ ସୁନ୍ଦର ନୟନାମୃତାଞ୍ଜନ ପରି । ତାହା ଚକ୍ଷୁର ଦୋଷ ନାଶ କରେ । ବିବେକ ରୂପକ ନୟନକୁ ଉକ୍ତ ଅଞ୍ଜନଯୋଗେ ପରିଷ୍କୃତ କରି ମୁଁ ଶ୍ରୀରାମଚରିତ ଭଣୁଅଛି । ସେ ଚରିତ ସଂସାର-ବନ୍ଧନରୁ ମୁକ୍ତ କରେ ॥ ୧ ॥ ପ୍ରଥମେ ପୃଥିବୀର ଦେବତା ବ୍ରାହ୍ମଣମାନଙ୍କୁ ବନ୍ଦନା କରୁଛି । ଅଜ୍ଞାନରୁ ଜାତ ସମସ୍ତ ସନ୍ଦେହକୁ ସେମାନେ ଦୂର କରନ୍ତି । ପୁନଶ୍ଚ ସକଳ ଗୁଣର ଆକର ସାଧୁସନ୍ଥଙ୍କ ସମାଜକୁ ମନୋହର ବାଣୀରେ ପ୍ରେମର ସହିତ ମୁଁ ପ୍ରଣାମ ଜଣାଉଛି ॥ ୨ ॥ କପାର ହୃଦୟ ପରି ସାଧୁଙ୍କ ଚରିତ୍ର ମଙ୍ଗଳମୟ । କପାଫଳର ହୃଦୟ ନୀରସ, ବିଶଦ ଓ ଗୁଣମୟ । ସାଧୁ-ଚରିତରେ ବିଷୟାସକ୍ତି ନ ଥିବାରୁ ତାହା ମଧ୍ୟ ନୀରସ, ଅଜ୍ଞାନ ଓ ପାପାନ୍ଧକାରରୁ ମୁକ୍ତ ।

ମୁଦ ମଙ୍ଗଲମୟ ସନ୍ତସମାଜୂ । ଜୋ ଜଗ ଜଙ୍ଗମ ତୀରଥରାଜୂ ॥
ରାମଭକ୍ତି ଜହଁ ସୁରସରିଧାରା । ସରସଇ ବ୍ରହ୍ମ ବିଚାର ପ୍ରଚାରା ॥୨॥
ବିଧି ନିଷେଧମୟ କଲିମଲ ହରନୀ । କରମ କଥା ରବିନନ୍ଦନି ବରନୀ ॥
ହରିହର କଥା ବିରାଜତି ବେନୀ । ସୁନତ ସକଲ ମୁଦ ମଙ୍ଗଲ ଦେନୀ ॥୩॥
ବଟୁ ବିସ୍ୱାସ ଅଚଲ ନିଜ ଧରମା । ତୀରଥ-ରାଜ ସମାଜ ସୁକରମା ॥
ସବହି ସୁଲଭ ସବ ଦିନ ସବ ଦେସା । ସେୱତ ସାଦର ସମନ କଲେସା ॥୪॥
ଅକଥ ଅଲୌକିକ ତୀରଥରାଊ । ଦେଇ ସଦ୍ୟ ଫଲ ପ୍ରଗଟ ପ୍ରଭାଊ ॥୫॥

---

ଆନନ୍ଦ-ମଙ୍ଗଳମୟ ସାଧୁଙ୍କ ସମାଜ । ଅଟେ ଜଗତେ ଜଙ୍ଗମ ତୀର୍ଥ-ଅଧିରାଜ ॥
ରାମଭକ୍ତି ଅଟେ ତହିଁ ସୁରନଦୀ ଧାର । ସରସ୍ୱତୀ ସମ ବ୍ରହ୍ମ ବିଚାର ପ୍ରଚାର ॥୨॥
ବିଧି ନିଷେଧାଦି ପୂର୍ଣ୍ଣ କର୍ମ ଉପାଖ୍ୟାନ । କଳି-କଲୁଷ-ହାରିଣୀ ଯମୁନା ସମାନ ॥
ହରିହର କଥା ତହିଁ ତ୍ରିବେଣୀ ଶୋଭଇ । ଶୁଣନ୍ତେ ସମସ୍ତ ମୋଦ ମଙ୍ଗଳ ଦିଅଇ ॥୩॥
ଅକ୍ଷୟ ବଟ ସ୍ୱଧର୍ମ ବିଶ୍ୱାସ ଅଚଳ । ତୀର୍ଥରାଜ ପାନ୍ଥ ମିତ୍ର ସୁକର୍ମ ସକଳ ॥
ସମସ୍ତଙ୍କୁ ସଦା ସବୁ ଦେଶରେ ସୁଲଭ । ସାଦରେ ସେବନ୍ତେ ତୁଟେ ଭବ ଦୁଃଖ-ଦମ୍ଭ ॥୪॥
ଅକଥନୀୟ ଏ ଅଲୌକିକ ତୀର୍ଥରାଜ । ବିଦିତ ପ୍ରଭାବ ଦିଏ ସଦ୍ୟ ଫଳ ସାଜ ॥୫॥

---

କପା ସ୍ୱଚ୍ଛ, ସାଧୁ ଚରିତ ମଧ୍ୟ ସ୍ୱଚ୍ଛ । କପାରେ ଗୁଣ (ତନ୍ତୁ) ଥାଏ । ସାଧୁଙ୍କ ଚରିତ ମଧ୍ୟ ସେହିପରି ଗୁଣମୟ (ସଦ୍‌ଗୁଣର ଭଣ୍ଡାର) । କପାସୂତା ସଟୀ ମଧ୍ୟରେ ଥିବା ଛିଦ୍ରକୁ ତାହାର ଶରୀରଯୋଗେ ଆଚ୍ଛାଦିତ କରେ; ଅଥବା ପିଞ୍ଜା, ଭିଣା ଏବଂ ବୁଣା ସମୟରେ କଷ୍ଟ ସହି କପା ଅନ୍ୟର ଗୁପ୍ତ ସ୍ଥାନକୁ ଆଚ୍ଛାଦିତ ରଖେ । ସେହିପରି ସନ୍ଥ ପୁରୁଷ ନିଜେ ଦୁଃଖ ସହି ଅନ୍ୟର ଛିଦ୍ର ବା ଦୋଷ ସବୁକୁ ଘୋଡାଇ ରଖେ । ସେହି ହେତୁ ସେ ଜଗତରେ ବନ୍ଦନୀୟ ହୁଏ ॥ ୧ ॥ ସାଧୁସମାଜ ଆନନ୍ଦ ଓ କଲ୍ୟାଣରେ ପରିପୂର୍ଣ୍ଣ । ଏ ଜଗତରେ ତାହା ଗତିଶୀଳ (ଚଳନ୍ତା) ତୀର୍ଥରାଜ ବା ପ୍ରୟାଗ ପରି । ସେହି ପ୍ରୟାଗରେ ରାମଭକ୍ତି ରୂପିଣୀ ଗଙ୍ଗାଧାରା ବହୁଥାଏ ଏବଂ ବ୍ରହ୍ମ-ସମ୍ବନ୍ଧୀୟ ବିଚାରର ପ୍ରଚାର ତହିଁରେ ସରସ୍ୱତୀଧାରା ସଦୃଶ ॥୨॥ ବିଧିସଙ୍ଗତ ଓ ଅସଙ୍ଗତ (ଅର୍ଥାତ୍ ଏହା କର ଏବଂ ଏହା କର ନାହିଁ)—କର୍ତ୍ତବ୍ୟ ଓ ଅକର୍ତ୍ତବ୍ୟ—କର୍ମସମୂହର କଥା କଳିଯୁଗ-ପାପ-ନାଶିନୀ ସୂର୍ଯ୍ୟସୁତା ଯମୁନା ସମାନ । ଏହିପରି ଭଗବାନ୍ ବିଷ୍ଣୁ ଓ ଶଙ୍କରଙ୍କ କଥା ତ୍ରିବେଣୀ ରୂପରେ ସୁଶୋଭିତ । ଶୁଣିବା ମାତ୍ରକେ ତାହା ଅଶେଷ ଆନନ୍ଦ ଓ କଲ୍ୟାଣ ଦାନ କରେ ॥ ୩ ॥ ଉକ୍ତ ସନ୍ଥସମାଜ ରୂପକ ପ୍ରୟାଗ କ୍ଷେତ୍ରରେ ସ୍ୱଧର୍ମ ପ୍ରତି ଯେଉଁ ଅଟଳ ବିଶ୍ୱାସ, ତାହା ଅକ୍ଷୟବଟ ବା କଳ୍ପବଟ । ଶୁଭ କର୍ମ ହିଁ ସେ ତୀର୍ଥରାଜର ସମାଜ (ପରିଜନ) । ସବୁ ଦେଶରେ, ସବୁ ସମୟରେ ଉକ୍ତ ତୀର୍ଥରାଜ ସମସ୍ତଙ୍କୁ ସୁଲଭ ହୋଇ ପାରେ । ଆଦରପୂର୍ବକ ତାକୁ ସେବନ କଲେ, ତାହା ସକଳ କ୍ଲେଶ ବିନାଶ କରିପାରେ ॥ ୪ ॥ ସେହି ତୀର୍ଥରାଜ ଅଲୌକିକ, ଅକଥନୀୟ ଏବଂ ତତ୍କ୍ଷଣାତ୍ ଫଳଦାୟକ । ତାହାର ପ୍ରଭାବ ପ୍ରତ୍ୟକ୍ଷ ॥ ୫ ॥

ସୁନି ସମୁଝହିଁ ଜନ ମୁଦିତ ମନ ମଜ୍ଜହିଁ ଅତି ଅନୁରାଗ ।
ଲହହିଁ ଚାରିଫଲ ଅଛତ ତନୁ ସାଧୁସମାଜ ପ୍ରୟାଗ ॥୨॥

ମଜ୍ଜନଫଲ ପେଖିଅ ତତକାଲା । କାକ ହୋହିଁ ପିକ ବକଉ ମରାଲା ॥
ସୁନି ଆଚରଜ କରୈ ଜନି କୋଈ । ସତସଂଗତି ମହିମା ନହିଁ ଗୋଈ ॥୧॥
ବାଲମୀକି ନାରଦ ଘଟଜୋନୀ । ନିଜ ନିଜ ମୁଖନି କହୀ ନିଜ ହୋନୀ ॥
ଜଲଚର ଥଲଚର ନଭଚର ନାନା । ଜେ ଜଡ଼ ଚେତନ ଜୀବ ଜହାନା ॥୨॥
ମତି କୀରତି ଗତି ଭୂତି ଭଲାଈ । ଜବ ଜେହିଁ ଜତନ ଜହାଁ ଜେହିଁ ପାଈ ॥
ସୋ ଜାନବ ସତସଂଗ ପ୍ରଭାଉ । ଲୋକହୁଁ ବେଦ ନ ଆନ ଉପାଉ ॥୩॥
ବିନୁ ସତସଂଗ ବିବେକ ନ ହୋଈ । ରାମକୃପା ବିନୁ ସୁଲଭ ନ ସୋଈ ॥
ସତସଂଗତି ମୁଦ ମଙ୍ଗଲ ମୂଲା । ସୋଇ ଫଲ ସିଧି ସବ ସାଧନ ଫୂଲା ॥୪॥

---

ଶୁଣି ଗୁଣୀ ଜନେ ପ୍ରମୋଦିତ ମନେ ଅବଗାହି ଅନୁରାଗେ ॥
ଲଭନ୍ତି ଏ ଦେହେ ଚତୁର୍ବର୍ଗ ଫଳ ସାଧୁ ସମାଜ-ପ୍ରୟାଗେ ॥୨॥

ସ୍ନାନ କରିବାର ଫଳ ଦେଖନ୍ତୁ ତତ୍କାଳ । କାକ ହୁଏ ପିକ, ବକ ହୁଅଇ ମରାଳ ॥
ଶୁଣି ଏକଥା ଆଶ୍ଚର୍ଯ୍ୟ କେହି କରନାହିଁ । ସତ୍ସଙ୍ଗ ମହିମା କେବେ ଗୁପ୍ତ ନାହିଁ କାହିଁ ॥୧॥
ବାଲ୍ମୀକି ମୁନି-ପୁଙ୍ଗବ ନାରଦ ଅଗସ୍ତି । ନିଜ ନିଜ ମୁଖେ ନିଜ କଥା କହିଛନ୍ତି ।
ଜଳଚର ସ୍ଥଳଚର ପ୍ରାଣୀ ନଭଚର । ଜଗତେ ଜଡ଼ ଚୈତନ୍ୟ ଯେ ଜୀବନିକର ॥୨॥
ମତିଗତି କୀର୍ତ୍ତି ଭଲ ବିଭୂତି ବଡ଼ାଇ । ଯେ ଯେଉଁ ଯତନେ ଯେବେ ଯହିଁ ଛନ୍ତି ପାଇ ॥
ସେ ସବୁ ଜାଣ ସତ୍ସଙ୍ଗ ପ୍ରଭାବ ସୁନ୍ଦର । ଲୋକେ ବେଦେ ନାହିଁ ଆଉ ଉପାୟ ଇତର ॥୩॥
ସତ୍‌ସଙ୍ଗ ବିନା ବିବେକ ପ୍ରାପ୍ତ ନ ହୁଅଇ । ରାମ କୃପା ବିନେ ତାହା ସୁଲଭ ନୁହଇ ॥
ସଜ୍ଜନଙ୍କ ସଙ୍ଗ ମୋଦ ମଙ୍ଗଳର ମୂଳ । ସେହି ଫଳ ସିଦ୍ଧି ପୁଷ୍ପ ସାଧନ ବିପୁଳ ॥୪॥

---

ଦୋହା।—ପ୍ରସନ୍ନ ମନରେ ଯେଉଁମାନେ ଉକ୍ତ ପ୍ରୟାଗ (ତୀର୍ଥରାଜ)ର ପ୍ରଭାବ ବିଷୟ ଶୁଣନ୍ତି ଓ ବୁଝନ୍ତି ଏବଂ ତହିଁରେ ସ୍ନାନ କରନ୍ତି, ସେମାନେ ଏହି ଶରୀରରେ ମଧ୍ୟ ଧର୍ମ, ଅର୍ଥ, କାମ ଓ ମୋକ୍ଷ-ଚାରି ଫଳ ଲାଭ କରନ୍ତି ॥ ୨ ॥ ଚୌପାଈ:—ଉକ୍ତ ତୀର୍ଥରାଜରେ ସ୍ନାନ କରିବାର ତତ୍‌କ୍ଷଣାତ୍ ଫଳ ଏହିପରି ଦେଖିବାକୁ ମିଳେ । କୁଆ ସେଥିରେ ଗାଧୋଇବା ସଙ୍ଗେ ସଙ୍ଗେ କୋଇଲିରେ ପରିଣତ ହୁଏ ଏବଂ ବଗ ହଂସ ହୁଏ । ଏହା ଶୁଣି କେହି ବିସ୍ମିତ ନ ହୁଅନ୍ତୁ, କାରଣ ସତ୍‌ସଙ୍ଗର ମହିମା କାହାରିକୁ ଅଜଣା ନୁହେଁ ॥ ୧ ॥ ବାଲ୍ମୀକି, ନାରଦ ଓ ଅଗସ୍ତି ଆଦି ମୁନି ଆପଣା ଆପଣାର ମୁହଁରେ ଆପଣା ଆପଣାର ଜୀବନ-ବୃତ୍ତାନ୍ତ କହି ଯାଇଅଛନ୍ତି । ଜଳଚର, ସ୍ଥଳଚର ଓ ନଭଚର ଆଦି ନାନା ଜାତିର ଓ ଜଡ଼ଚେତନ ଆଦି ନାନା ପ୍ରକାରର ଯେତେ ଜୀବ ଅଛନ୍ତି,...ସେମାନଙ୍କ ମଧ୍ୟରୁ ଯେଉଁମାନେ ଯେ କୌଣସି ପ୍ରକାରର ଉଦ୍ୟମର ଫଳରୂପେ ବୁଦ୍ଧି, କୀର୍ତ୍ତି, ସଦ୍‌ଗତି, ବିଭୂତି (ଐଶ୍ୱର୍ଯ୍ୟ) ଏବଂ କଲ୍ୟାଣ ଆଦି ଯାହା କିଛି ଲାଭ କରି

ସଠ ସୁଧରହିଁ ସତସଂଗତି ପାଈ । ପାରସ ପରସ କୁଧାତୁ ସୁହାଈ ॥
ବିଧିବସ ସୁଜନ କୁସଂଗତ ପରହୀଁ । ଫନିମନି ସମ ନିଜ ଗୁନ ଅନୁସରହୀଁ ॥୫॥
ବିଧି ହରି ହର କବି କୋବିଦବାନୀ । କହତ ସାଧୁମହିମା ସକୁଚାନୀ ॥
ସୋ ମୋ ସନ କହି ଜାତ ନ କୈସେଁ । ସାକବନିକ ମନିଗୁନଗନ ଜୈସେଁ ॥୬॥

ବନ୍ଦଉଁ ସନ୍ତ ସମାନଚିତ ହିତ ଅନହିତ ନହିଁ କୋଇ ।
ଅଞ୍ଜଲିଗତ ସୁଭ ସୁମନ ଜିମି ସମ ସୁଗନ୍ଧ କର ଦୋଇ ॥ ୩(କ) ॥
ସନ୍ତ ସରଲଚିତ ଜଗତହିତ ଜାନି ସୁଭାଉ ସନେହୁ ।
ବାଲବିନୟ ସୁନି କରି କୃପା ରାମଚରନ ରତି ଦେହୁ ॥ ୩(ଖ) ॥

---

ସୁସଙ୍ଗ ପାଇଣ ଶଠ ମାର୍ଜିତ ହୁଅଇ । ସ୍ପର୍ଶମଣି ସ୍ପର୍ଶେ ଯେସନ୍ତେ କୁଧାତୁ ଶୋଭଇ ॥
ଭାଗ୍ୟରୁ ସୁଜନ ଯଦି ପଡେ କୁସଙ୍ଗରେ । ଫଣୀ-ମଣି ସମ ନିଜ ଗୁଣ ଅନୁସରେ ॥୫॥
ବିଧି ହରିହର କବି ବୁଧ ସରସ୍ୱତୀ । କହନ୍ତେ ସାଧୁ ମହିମା ସଙ୍କୋଚ ଲଭନ୍ତି ॥
ତାହା ମୁଁ କଥନ କରି ନ ପାରଇ ତେସନ୍ତେ । ସାଗର ବାସ୍ତୁଡା ମଣି-ଗୁଣଗଣ ଯେସନ୍ତେ ॥୬॥

ବନ୍ଦୁ ଅଛୁ ସନ୍ଥ- ସମ ଚିତ୍ତ ଯାର, ନାହିଁ କେହି ଶତ୍ରୁମିତ୍ର ।
ଯଥା ଅଞ୍ଜୁଳିସ୍ଥ ସୁମନେ ସମାନ କର ଦେନି ସୁବାସିତ ॥୩(କ)॥
ସରଳ ସୁଚିତ୍ତ ହିତକାରୀ ସନ୍ଥ ଶୁଣି ବାଳକ ବିନତି ।
କୃପା କରି ଦିଅ ରାମ ପଦେ ପ୍ରେମ ଦେଖି ସ୍ନେହ ଭାବ ଅତି ॥୩(ଖ)॥

---

ଅଛନ୍ତି, ସେ ସବୁ ସତ୍ସଙ୍ଗର ପରିଣାମ, ଏତିକି ମାତ୍ର ବୁଝିବା ଉଚିତ । ଏସବୁ ପାଇବାର ଅନ୍ୟ କୌଣସି ଉପାୟ ବେଦରେ ନାହିଁ କିମ୍ବା ସଂସାରର ଅନ୍ୟ କୌଣସି କ୍ଷେତ୍ରରେ ନାହିଁ ॥ ୨-୩ ॥ ସତ୍ସଙ୍ଗବିନା ବିବେକର ଉଦୟ ହୁଏ ନାହିଁ । ରାମଙ୍କର କୃପାବିନା ସେ ସତ୍ସଙ୍ଗ ସୁଲଭ ନୁହେଁ । ସେ ସତ୍ସଙ୍ଗତି ଆନନ୍ଦ ଓ କଲ୍ୟାଣର ମୂଳ । ସତ୍ସଙ୍ଗର ସିଦ୍ଧି (ପ୍ରାପ୍ତି) ହିଁ ଫଳ ଏବଂ ଅନ୍ୟାନ୍ୟ ସମସ୍ତ ସାଧନ ଏହାର ଫୁଲ ପରି ॥ ୪ ॥ ପରଶମଣିର ସ୍ପର୍ଶରେ ଲୁହା ସୁନ୍ଦର ସୁନାରେ ପରିଣତ ହେଲା ପରି ଦୁଷ୍ଟ ସୁଦ୍ଧା ସତ୍ସଙ୍ଗତି ପାଇ ସଂଶୋଧିତ ହୁଏ । ମାତ୍ର ଦୈବାତ୍ ଯଦି କେହି ସଜ୍ଜନ କୁସଙ୍ଗରେ ପଡିଯାଏ, ସେ ସାପମଣି ପରି ଆପଣାର ଗୁଣ ଅନୁସରଣ କରେ । (ଅର୍ଥାତ୍ ସାପର ସଙ୍ଗେ ରହି ମଧ୍ୟ ମଣି ତାହାର ବିଷ ଗ୍ରହଣ କରେ ନାହିଁ କିମ୍ବା ଆପଣାର ସ୍ୱାଭାବିକ ଗୁଣ ଜ୍ୟୋତିକୁ ଛାଡି ପାରେ ନାହିଁ । ସେହିପରି ସାଧୁ ଜନମାନେ ଦୁଷ୍ଟ ସଙ୍ଗେ ରହି ମଧ୍ୟ ଅନ୍ୟକୁ ଆଲୋକଦାନ କରନ୍ତି । ଦୁଷ୍ଟଙ୍କର 'ତାଙ୍କ ଉପରେ କୌଣସି ପ୍ରଭାବ ପଡେ ନାହିଁ ॥୫॥ ଏପରି କି ବ୍ରହ୍ମା, ବିଷ୍ଣୁ, ଶିବ, କବି ଓ କୋବିଦଙ୍କ ଭାଷା ସୁଦ୍ଧା ସାଧୁଜନଙ୍କ ମହିମା ବର୍ଣ୍ଣନା କରିବାକୁ ସଙ୍କୁଚିତ ହୁଏ । ଶାଗ ଓ ପରିବାବିକାଳି ମଣିର ଗୁଣମାନ କହିପାରେ ନାହିଁ । (କିମ୍ବା ଅବାବେପାରୀ ତାହାଙ୍କର ମୂଲ୍ୟ କହିପାରେ ନାହିଁ ।) ସେହିପରି କୌଣସି ପ୍ରକାରେ ବି ମୁଁ ସାଧୁଙ୍କ ମହିମା ବର୍ଣ୍ଣନା କରିବା ନିମନ୍ତେ ସମର୍ଥ ନୁହେଁ ॥୬॥ ଦୋହା —ସାଧୁଙ୍କ ହୃଦୟରେ ସାମ୍ୟଭାବ

ବହୁରି ବନ୍ଦି ଖଲଗନ ସତିଭାଏଁ । ଜେ ବିନୁ କାଜ ଦାହିନେହୁ ବାଏଁ ॥
ପରହିତ ହାନି ଲାଭ ଜିହ୍ନ କେରେଁ । ଉଜରେଁ ହରଷ ବିଷାଦ ବସେରେଁ ॥୧॥
ହରିହର ଜସ ରାକେସ ରାହୁ ସେ । ପର ଅକାଜ ଭଟ ସହସବାହୁ ସେ ॥
ଜେ ପରଦୋଷ ଲଖହିଁ ସହସାଖୀ । ପରହିତ ଘୃତ ଜିହ୍ନ କେ ମନମାଖୀ ॥୨॥
ତେଜ କୃସାନୁ ରୋଷ ମହିଷେସା । ଅଘ ଅବଗୁନ ଧନ ଧନୀ ଧନେସା ॥
ଉଦୟ କେତ ସମ ହିତ ସବହୀକେ । କୁମ୍ଭକରନ ସମ ସୋୱତ ନୀକେ ॥୩॥

---

ସ୍ୱଭାବେ ଖଲଙ୍କୁ ପୁଣି ବନ୍ଦଇ ପ୍ରତ୍ୟକ୍ଷ । ଯେ ବିନା କାମେ ହୁଅନ୍ତି ସପକ୍ଷ ବିପକ୍ଷ ॥
ପର ଅହିତରେ ନିଜ ଲାଭ ଯେ ମଣନ୍ତି । ପତନେ ହର୍ଷ, ଉତ୍‌ଥାନେ ବିଷାଦ କରନ୍ତି ॥୧॥
ହରିହର ଯଶ-ପୂର୍ଣ୍ଣ-ଚନ୍ଦ୍ରମାଙ୍କୁ ରାହୁ । ପରକାର୍ଯ୍ୟ ନଷ୍ଟେ ବୀର ଯେହ୍ନେ ସସ୍ରବାହୁ ॥
ସହସ୍ରନେତ୍ରେ ଯେ ଦୋଷ ଦେଖନ୍ତି ପରର । ପରହିତ-ଘୃତେ ମାଛି ମନ ଯାହାଙ୍କର ॥୨॥
କ୍ରୋଧରେ ମହିଷାସୁର ତେଜେ ଯଥା ବହ୍ନି । କୁବେର ତୁଲ୍ୟ ଅଗ୍ରଣ ଅଘ-ଧନେ ଧନୀ ॥
ଉଦୟକେତୁ ସମାନ ସମସ୍ତଙ୍କ ଶଲ । କୁମ୍ଭକର୍ଣ୍ଣ ପ୍ରାୟେ ଶୋଇ ରହୁଥିଲେ ଭଲ ॥୩॥

---

ବିରାଜିତ । ତାଙ୍କର କେହି ମିତ୍ର ନୁହେଁ ବା ଶତ୍ରୁ ନୁହେଁ । ଅଞ୍ଜୁଳିରେ ରଖା ସୁନ୍ଦର ଫୁଲ ତୋଳିଥିବା ଓ ରଖିଥିବା ଉଭୟ ହାତକୁ ସମାନ ଭାବରେ ସୁଗନ୍ଧିତ କରେ । ସେହିପରି ସାଧୁଜନ ଶତ୍ରୁ ଓ ମିତ୍ର, ଉଭୟଙ୍କର ସମାନ ଭାବରେ କଲ୍ୟାଣସାଧନ କରନ୍ତି । ମୁଁ ସାଧୁଜନଙ୍କୁ ପ୍ରଣାମ କରୁଛି ॥ ୩ (କ) ॥ ସାଧୁଜନଙ୍କ ହୃଦୟ ସରଳ ଓ ସେମାନେ ଜଗତର ହିତକାରୀ । ସେମାନଙ୍କ ଏପରି ସ୍ୱଭାବ ଓ ସ୍ନେହ ଜାଣି ମୁଁ ସେମାନଙ୍କୁ ବିନତି କରୁଛି । ମୋର ବାଳକୋଚିତ ବିନତି ଶୁଣି ସେମାନେ ମୋତେ ଶ୍ରୀରାମଙ୍କ ପାଦ-ପଦ୍ମରେ ପ୍ରୀତି ପ୍ରଦାନ କରନ୍ତୁ ॥ ୩ (ଖ) ॥ ଚୌପାଈ:—ଏବେ ମୁଁ ସ୍ୱଭାବ ସହିତ ଦୁଷ୍ଟଜନଙ୍କୁ ପ୍ରଣାମ କରୁଛି । ସେମାନେ ଅକାରଣେ ତାଙ୍କ ହିତକାରୀ ଜନ ପ୍ରତି ପ୍ରତିକୂଳ ଆଚରଣ କରନ୍ତି । ପରର କଲ୍ୟାଣ-ହାନି ସେମାନଙ୍କ ପକ୍ଷରେ ଲାଭଜନକ । ଅନ୍ୟର ଧ୍ୱଂସରେ ସେମାନେ ଆନନ୍ଦ ଓ ସୁଖମୟ ଜୀବନରେ ବିଷାଦ ପାଆନ୍ତି ॥ ୧ ॥ ହରିହରଙ୍କ ଯଶରୂପୀ ପୂର୍ଣ୍ଣଚନ୍ଦ୍ରଙ୍କୁ ଗ୍ରାସ କରିବା ନିମନ୍ତେ ସେମାନେ ରାହୁପରି । (ଅର୍ଥାତ୍ ଭଗବାନ୍ ବିଷ୍ଣୁ ଓ ଶଙ୍କରଙ୍କ ଗୌରବ-ଯଶର ବର୍ଣ୍ଣନା କରା-ଯାଉଥିଲାବେଳେ ସେମାନେ ବାଧା ଦିଅନ୍ତି) । ଅନ୍ୟର ଅହିତ କରିବାରେ ସେମାନେ ସହସ୍ରବାହୁ ସମାନ ବୀର । ସହସ୍ର ନେତ୍ରରେ ସେମାନେ ପରର ଦୋଷ ଦେଖନ୍ତି, ପରର କଲ୍ୟାଣ-ରୂପୀ ଘୃତ ପ୍ରତି ସେମାନଙ୍କ ମନ ମକ୍ଷିକା (ମାଛି) । (ଘିଅରେ ମାଛି ପଡି ତାହାକୁ ଦୂଷିତ କରିଦିଏ ଓ ନିଜେ ମରଣ ଭଜେ । ସେହିପରି ଦୁଷ୍ଟ ଲୋକେ ଆପଣାର କ୍ଷତି ହେଉ ପଛକେ, ଅସତ୍ ଉପାୟ ଦ୍ୱାରା ଅନ୍ୟର କୃତକର୍ମକୁ ବିଗାଡି-ବସନ୍ତି ॥ ୨ ॥ ସେମାନେ ତେଜରେ (ଅନ୍ୟକୁ ଦୁଃଖ-ତାପ ଦେବାରେ) ଅଗ୍ନିପରି ଏବଂ କ୍ରୋଧରେ ମହିଷାସୁର ପରି । ପାପ ଓ ଦୁର୍ଗୁଣ-ଧନରେ ସେମାନେ କୁବେରଙ୍କ ପରି ଧନୀ ।

ପର ଅକାଜୁ ଲଗି ତନୁ ପରିହରହୀଁ । ଜିମି ହିମ ଉପଲ କୃଷୀ ଦଲି ଗରହୀଁ ॥
ବନ୍ଦଉଁ ଖଲ ଜସ ସେଷ ସରୋଷା । ସହସ ବଦନ ବରନଇଁ ପରଦୋଷା ॥୪॥
ପୁନି ପ୍ରନଵଉଁ ପୃଥୁରାଜ ସମାନା । ପର ଅଘ ସୁନଇ ସହସ ଦସ କାନା ॥
ବହୁରି ସକ୍ରସମ ବିନଵଉଁ ତେହୀ । ସନ୍ତତ ସୁରାନୀକ ହିତ ଜେହୀ ॥୫॥
ବଚନ ବଜ୍ର ଜେହି ସଦା ପିଆରା । ସହସ ନୟନ ପରଦୋଷ ନିହାରା ॥୬॥
ଉଦାସୀନ ଅରି ମୀତ ହିତ ସୁନତ ଜରହିଁ ଖଲ ରୀତି ।
ଜାନି ପାନି ଜୁଗ ଜୋରି ଜନ ବିନତୀ କରଇ ସପ୍ରୀତି ॥୪॥
ମୈଂ ଅପନୀ ଦିସି କୀହ୍ନ ନିହୋରା । ତିହ୍ନ ନିଜ ଓର ନ ଲାଉବ ଭୋରା ॥
ବାୟସ ପଲିଅହିଁ ଅତି ଅନୁରାଗା । ହୋହିଁ ନିରାମିଷ କବହୁଁ କି କାଗା ॥୧॥

---

ଯେଉଁମାନେ ଶରୀର ପର ଅକାର୍ଯ୍ୟ ନିମନ୍ତେ । କୃଷିନାଶ କରି ହିମଉପଲ ଯେମନ୍ତେ ॥
ବନ୍ଦଇ ଶେଷ ସଦୃଶ ଖଲଙ୍କର ରୋଷ । ସହସ୍ର ବଦନେ ବର୍ଣ୍ଣନ୍ତି ଯେ ପରଦୋଷ ॥୪॥
ପୁଣି ପ୍ରଣମଇ ପୃଥୁ ନୃପତି ସମାନେ । ପରପାପ ଶୁଣନ୍ତି ସହସ୍ର ଦଶ କାନେ ॥
ଶକ୍ର ସମାନ ଆବର ବନ୍ଦଇ ତାହାଙ୍କୁ । ସୁରା ଅତିଶୟ ପ୍ରିୟ ସତତ ଯାହାଙ୍କୁ ॥୫॥
ବଚନ-ବଜ୍ର ଯାହାଙ୍କୁ ସଦା ପ୍ରିୟତର । ସହସ୍ର ନୟନେ ଦୋଷ ଦେଖନ୍ତି ପରର ॥୬॥
ଶୁଣି ଶତ୍ରୁ ମିତ୍ର ଉଦାସୀନ ହିତ ଜଳିବା ଖଳଙ୍କ ରୀତି ।
ଜାଣି ଜାନୁପାଣି ଯୋଡ଼ିଣ ସାଦରେ ବିନୟ କରେ ସପ୍ରୀତି ॥୪॥
ମୁଁ ନିଜ ପକ୍ଷରୁ କଲି ବିନତି କାକୁତି । ଭୁଲି ସେମାନେ ତେଜିବେ ନାହିଁ ସ୍ୱପ୍ରକୃତି ॥
ବାୟସେ ଅତି ସ୍ନେହରେ ପ୍ରତିପାଳିଲେହେଁ । ହେବ ନିରାମିଷ କାହିଁ କାକ କି କେବେହେଁ ॥୧॥

---

ସମସ୍ତଙ୍କ ହିତକର କାର୍ଯ୍ୟରେ ସେମାନେ କେତୁ ପରି ଆବିର୍ଭୂତ ହୋଇ ବାଧା ସୃଷ୍ଟି କରନ୍ତି ଏବଂ କୁମ୍ଭକର୍ଣ୍ଣ ପରି ସେମାନେ ଶୋଇ ରହିଲେ ଜଗତର କଲ୍ୟାଣ ॥ ୩ ॥ କୁଆପଥର ଫସଲ ନଷ୍ଟ କରି ନିଜେ ବି ତରଳିଯାଏ । ସେହିପରି ପରର କାମ ବିଗାଡ଼ିବା ନିମନ୍ତେ ସେମାନେ ଆପଣାର ଦେହ ସୁଦ୍ଧା ତ୍ୟାଗ କରି ପାରନ୍ତି । ଦୁଷ୍ଟ ଜନମାନେ ସହସ୍ର ମୁଖରେ ଅନ୍ୟର ଦୋଷ ରୋଷ ସହିତ ବର୍ଣ୍ଣନା କରନ୍ତି । ସୁତରାଂ ମୁଁ ସେମାନଙ୍କୁ ସହସ୍ର ବଦନ ଶେଷ ସମାନ ମନେକରି ନମସ୍କାର କରୁଅଛି ॥ ୪ ॥ ପୁନଶ୍ଚ ସେମାନଙ୍କୁ ପୃଥୁରାଜା ମନେକରି ମୁଁ ସେମାନଙ୍କୁ ପ୍ରଣାମ କରୁଅଛି । (ପ୍ରଭେଦ ଏତିକି ଯେ, ଭଗବାନଙ୍କ ଯଶଗାଥା ଶୁଣିବା ପାଇଁ ପୃଥୁରାଜା ଦଶହଜାର କାନ ମାଗିଥିଲେ, ମାତ୍ର ଦୁଷ୍ଟଜନମାନେ ଦଶହଜାର କାନରେ ପରର ପାପ ଶୁଣନ୍ତି) । ପୁଣି ସେମାନଙ୍କୁ ଇନ୍ଦ୍ର ବୋଲି ଭାବି ବିନତି କରୁଛି । କାରଣ ଇନ୍ଦ୍ରଙ୍କ ପକ୍ଷରେ 'ସୁରାନୀକ' ଅର୍ଥାତ୍ ଦେବସେନା ହିତକର । ସେହିପରି ଦୁଷ୍ଟଜନଙ୍କ ପକ୍ଷରେ 'ସୁରା' (ମଦିରା) 'ନୀକ' (ହିତକର) ଅଟେ ॥ ୫ ॥ କଠୋର ବଚନ-ରୂପୀ ବଜ୍ର ସେମାନଙ୍କର ଅତି ପ୍ରିୟବସ୍ତୁ । ସହସ୍ର ନେତ୍ରରେ ସେମାନେ ଅନ୍ୟର ଦୋଷ ଦେଖନ୍ତି ॥ ୬ ॥ ଦୋହା:—ଦୁଷ୍ଟଜନଙ୍କର

ବନ୍ଦଉଁ ସନ୍ତ ଅସଜ୍ଜନ ଚରନା । ଦୁଖପ୍ରଦ ଉଭୟ ବୀଚ କଛୁ ବରନା ॥
ବିଛୁରତ ଏକ ପ୍ରାନ ହରି ଲେହୀଁ । ମିଲତ ଏକ ଦୁଖ ଦାରୁନ ଦେହୀଁ ॥୨॥
ଉପଜହିଁ ଏକ ସଙ୍ଗ ଜଗମାହୀଁ । ଜଲଜ ଜୋଁକ ଜିମି ଗୁନ ବିଲଗାହୀଁ ॥
ସୁଧା ସୁରା ସମ ସାଧୁ ଅସାଧୂ । ଜନକ ଏକ ଜଗ ଜଲଧି ଅଗାଧୂ ॥୩॥
ଭଲ ଅନଭଲ ନିଜ ନିଜ କରତୂତି । ଲହତ ସୁଜସ ଅପଲୋକ ବିଭୂତି ॥
ସୁଧା ସୁଧାକର ସୁରସରି ସାଧୂ । ଗରଲ ଅନଲ କଲିମଲସରି ବ୍ୟାଧୂ ॥୪॥

---

ବନ୍ଦଇ ଚରଣ ସନ୍ତ ଅସଜ୍ଜନଙ୍କର । ଦୁହେଁ ଦୁଃଖପ୍ରଦ କିଛି କହୁଛି ଅନ୍ତର ॥
ବିୟୋଗ ହୁଅନ୍ତେ ଏକ ପ୍ରାଣ ହରିନିଏ । ମିଳନ୍ତେ ଏକ ଦାରୁଣ ଦୁଃଖ ଆଣି ଦିଏ ॥୨॥
ଜଳ ମଧ୍ୟେ ଏକ ସଙ୍ଗେ ଉତ୍ପନ୍ନ ହୋଇଣ । ଜଳଜ ଜୋକଙ୍କ ଗୁଣ ଯେହ୍ନେ ଭିନ୍ନଭିନ୍ନ ॥
ଯଥା ସୁଧା ସୁରା, ସାଧୁ ଅସାଧୁ ତେମନ୍ତ । ଜନକ ଏକ ଜଗତ ଜଳଧି ଅନନ୍ତ ॥୩॥
ଭଲ ମନ୍ଦ ନିଜ ନିଜ କର୍ମ ଅନୁସାରେ । ସୁଯଶ ଅଯଶ ବିତ୍ତ ଲଭନ୍ତି ସଂସାରେ ॥
ସାଧୁ ସୁଧା ସୁଧାକର ସୁରନଦୀ ପରି । ଖଳ ଗରଳ ଅନଳ କର୍ମନାଶା ସରି ॥୪॥

---

ଏହି ସ୍ୱଭାବ । ଉଦାସୀନ (ନିରପେକ୍ଷ), ଶତ୍ରୁ ବା ମିତ୍ର ଯେ କୌଣସି ବ୍ୟକ୍ତିର ହିତକଥା ଶୁଣି ସେମାନେ ଈର୍ଷ୍ୟାରେ ଜଳି ଉଠନ୍ତି । ଏହା ଜାଣି ଏହି ବ୍ୟକ୍ତି (ତୁଳସୀଦାସ) ଦୁଇ ହାତ ଯୋଡ଼ି ପ୍ରେମପୂର୍ବକ ସେମାନଙ୍କୁ ବିନତି କରୁଛି ॥ ୪ ॥ ଚୌପାଈ:— ମୁଁ ମୋଆଡୁ ସେମାନଙ୍କୁ ବିନତି କଲି ସତ । ମାତ୍ର ସେମାନେ ଭୁଲରେ ସୁଦ୍ଧା ସେମାନଙ୍କ ପ୍ରକୃତି ପରିତ୍ୟାଗ କରିବେ ନାହିଁ । ଅତି ଆଦରରେ କୁଆକୁ 'ବାୟସ' (ବିଶାଳ ପକ୍ଷୀ) ନାମ ଦେଇ ପାଳନ କରନ୍ତୁ । ସେ କଦାପି ଆମିଷଭୋଜନ ପରିତ୍ୟାଗ କରିପାରିବ ନାହିଁ ॥ ୧ ॥ ଏବେ ମୁଁ ସାଧୁ ଓ ଅସାଧୁ, ଉଭୟଙ୍କ ପାଦବନ୍ଦନା କରୁଅଛି । ଉଭୟେ ଦୁଃଖପ୍ରଦ । କିନ୍ତୁ ଦୁହିଁଙ୍କ ଦୁଃଖଦାନ ଢଙ୍ଗରେ କିଛି ପ୍ରଭେଦ ରହିଛି । ତାହା ହେଉଛି, ସାଧୁ ବିରହ କାଳରେ ଏପରି ଦୁଃଖ ଦିଅନ୍ତି, ସତେ ଯେମିତି ପ୍ରାଣ ନେଇ ଚାଲିଯାଉଛନ୍ତି ଏବଂ ଅସାଧୁ ମିଳନ ସମୟରେ ନିଦାରୁଣ ଦୁଃଖ ଦିଅନ୍ତି । (ଅର୍ଥାତ୍ ସାଧୁଙ୍କର ବିରହ ମରଣତୁଲ୍ୟ ଦୁଃଖଦାୟକ ଓ ଅସାଧୁଙ୍କର ମିଳନ ସେହିପରି ଦୁଃଖଦ) ॥ ୨ ॥ ସାଧୁ ଓ ଅସାଧୁ ଉଭୟେ ଏକସଙ୍ଗେ ଏ ଜଗତରେ ଜାତ ହୁଅନ୍ତି, ମାତ୍ର ଏକସଙ୍ଗେ ଜାତ ପଦ୍ମଫୁଲ ଓ ଜୋକପରି ସେମାନେ ଭିନ୍ନ ଭିନ୍ନ ଗୁଣ ଧାରଣ କରନ୍ତି । ଦର୍ଶନ ଓ ସ୍ପର୍ଶରେ ପଦ୍ମ ଆମକୁ ସୁଖ ଦିଏ; ମାତ୍ର ଶରୀରକୁ ସ୍ପର୍ଶ କରିବା ମାତ୍ରେ ଜୋକ ରକ୍ତ ଶୋଷଣ କରେ । ସାଧୁ ଅମୃତ ପରି । ମୃତ୍ୟୁରୂପୀ ସଂସାରରୁ ସେ ମାନବକୁ ଉଦ୍ଧାର କରନ୍ତି । ଅସାଧୁ ମଦିରା ପରି । ସେ ମୋହ, ପ୍ରମାଦ ଏବଂ ଜଡ଼ତା ଆଦିର ଜନ୍ମଦାତା । ଅଥଚ ଉଭୟଙ୍କ ଉତ୍ପତ୍ତିସ୍ଥଳ ଜଗତରୂପୀ ଅଗାଧ ସମୁଦ୍ର କେବଳ ଏକ । (ସମୁଦ୍ର ମନ୍ଥନରୁ ଅମୃତ ଓ ବିଷ ଉଭୟର ଉତ୍ପତ୍ତି ଶାସ୍ତ୍ର-କଥିତ) ॥ ୩ ॥ ଭଲ ଓ ମନ୍ଦ ଲୋକେ ଆପଣା ଆପଣାର କର୍ମ ଅନୁସାରେ ସୁନ୍ଦର ଯଶ ଓ ଅପଯଶରୂପୀ ସମ୍ପଦ ଲାଭ

ଗୁନ ଅବଗୁନ ଜାନ ତ ସବ କୋଈ । ଜୋ ଜେହି ଭାବ ନୀକ ତେହି ସୋଈ ॥୫॥

ଭଲୋ ଭଲାଇହି ପୈ ଲହଇ ଲହଇ ନିଚାଇହି ନୀଚୁ ।
ସୁଧା ସରାହିଅ ଅମରତାଁ ଗରଲ ସରାହିଅ ମୀଚୁ ॥୫॥

ଖଲ ଅଘ ଅଗୁନ ସାଧୁ ଗୁନ ଗାହା । ଉଭୟ ଅପାର ଉଦଧି ଅବଗାହା ॥
ତେହି ତେଁ କଛୁ ଗୁନ ଦୋଷ ବଖାନେ । ସଂଗ୍ରହ ତ୍ୟାଗ ନ ବିନୁ ପହିଚାନେ ॥୧॥
ଭଲେଉ ପୋଚ ସବ ବିଧି ଉପଜାଏ । ଗନି ଗୁନ ଦୋଷ ବେଦ ବିଲଗାଏ ॥
କହହିଁ ବେଦ ଇତିହାସ ପୁରାନା । ବିଧିପ୍ରପଞ୍ଚୁ ଗୁନ ଅବଗୁନ ସାନା ॥୨॥
ଦୁଖ ସୁଖ ପାପ ପୁନ୍ୟ ଦିନ ରାତୀ । ସାଧୁ ଅସାଧୁ ସୁଜାତି କୁଜାତୀ ॥
ଦାନବ ଦେବ ଊଁଚ ଅରୁ ନୀଚୂ । ଅମିଅ ସୁଜୀବନୁ ମାହୁରୁ ମୀଚୂ ॥୩॥

---

ଗୁଣ ଅବଗୁଣ ପ୍ରାୟ ଜାଣନ୍ତି ସମସ୍ତେ । ଯାହାର ଯେ ଭାବ, ଭଲ ସେ ତାହା ନିମନ୍ତେ ॥୫॥

ଭଲ ଭଲପଣେ ପଉରୁଷ ଯେସନେ ନୀଚ ନିନ୍ଦା ନୀଚପଣେ ।
ସୁଧା ଅମରତ୍ୱ ଗରଳ ନାଶତ୍ୱ-ଗୁଣେ ପ୍ରଶଂସିତ ଗଣେ ॥୫॥

ସାଧୁଙ୍କ ଗୁଣ ଖଳଙ୍କ ଅବଗୁଣ କଥା । ବେନି ଅପାର ଅଗାଧ ଜଳନିଧି ଯଥା ॥
ତେଣୁ କିଛି ଗୁଣ ଦୋଷ ବର୍ଣ୍ଣନ କରଇ । ନ ଚିହ୍ନି ଯେଣୁ ସଂଗ୍ରହ ତ୍ୟାଗ ନ ହୁଅଇ ॥୧॥
ଭଲମନ୍ଦ ବିଶ୍ୱେ ସବୁ ବିଧି ତିଆରିଛି । ଗୁଣ ଦୋଷ ଗଣି ବେଦ ବିଭାଗ କରିଛି ॥
ସମସ୍ତ ବେଦ-ପୁରାଣ-ଇତିହାସେ ଉକ୍ତ । ବିଧାତା ପ୍ରପଞ୍ଚ ଗୁଣ ଅବଗୁଣେ ଯୁକ୍ତ ॥୨॥
ଦୁଃଖସୁଖ ପାପପୁଣ୍ୟ ଦିନ ଆଉ ରାତି । ସାଧୁ ଅସାଧୁ ଆବର ସୁଜାତି କୁଜାତି ॥
ଦେବତା ଦାନବ ଉଚ୍ଚନୀଚ ସହିତରେ । ସୁଧା ସଂଜୀବନ, ମୃତ୍ୟୁ ମହୁରୀ ସଙ୍ଗରେ ॥୩॥

---

କରନ୍ତି । ଅମୃତ, ଚନ୍ଦ୍ରମା, ଗଙ୍ଗା ଓ ସାଧୁ—ଏମାନେ ହିତକର ଏବଂ ବିଷ, ଅଗ୍ନି କଳିଯୁଗର ପାପ-ନଦୀ (ଅର୍ଥାତ୍ କର୍ମନାଶା) ଓ ହିଂସ୍ରକ ବ୍ୟାଧ—ଏମାନେ ଅହିତକର । ଏମାନଙ୍କର ଗୁଣ-ଅବଗୁଣ ସମସ୍ତେ ଜାଣନ୍ତି । କିନ୍ତୁ ଯାହାକୁ ଯାହା ରୁଚିକର, ସେହିପରି କାର୍ଯ୍ୟ ସେ କରିବାକୁ ପସନ୍ଦ କରେ ॥ ୪-୫ ॥ ଦୋହା—ଭଲଲୋକ ଭଲ ବା ହିତକର କାର୍ଯ୍ୟ କରିବାକୁ ଉଚିତ ମନେକରନ୍ତି ଏବଂ ନୀଚ ନୀଚ କର୍ମ କରିବାରେ ଆଗ୍ରହୀ ହୁଏ । ପ୍ରାଣୀକୁ ଅମର କରିପାରେ ବୋଲି ଅମୃତର ପ୍ରଶଂସା ସର୍ବତ୍ର କଥିତ ଏବଂ ପ୍ରାଣୀକୁ ବଧ କରେ ବୋଲି ବିଷର ନିନ୍ଦା ସର୍ବତ୍ର ଘୋଷିତ ॥ ୫ ॥ ଚୌପାଇ—ଦୁଷ୍ଟଙ୍କର ପାପ ଓ ଅବଗୁଣ-ରାଶି ଏବଂ ସାଧୁଙ୍କ ଗୁଣସମୂହର କାହାଣୀ ଉଭୟ ଅପାର ଓ ଅଗାଧ ସମୁଦ୍ର । ଏହି ହେତୁ କିଛି ଗୁଣ ଓ ଦୋଷର ବର୍ଣ୍ଣନା କରାଗଲା, କାରଣ ନ ଚିହ୍ନିଲେ ସେଗୁଡ଼ିକୁ ଗ୍ରହଣ ବା ପରିହାର କରାଯାଇ ପାରିବ ନାହିଁ ॥ ୧ ॥ ଭଲ ମନ୍ଦ, ସବୁ ବ୍ରହ୍ମାଙ୍କର ସର୍ଜନା । ମାତ୍ର ଗୁଣଦୋଷକୁ ବିଚାର କରି ବେଦ ଉଭୟକୁ ପୃଥକ୍ କରି ଦେଇଅଛି । ବେଦ, ଇତିହାସ ଓ ପୁରାଣ କହନ୍ତି, "ବ୍ରହ୍ମାଙ୍କର ଏହି ସୃଷ୍ଟି ଗୁଣ-ଅବଗୁଣରେ ଓତପ୍ରୋତ "॥ ୨ ॥ ଦୁଃଖ-ସୁଖ, ପାପ-ପୁଣ୍ୟ, ଦିନ-ରାତି,

ମାୟା ବ୍ରହ୍ମ ଜୀବ - ଜଗଦୀସା । ଲଚ୍ଛି ଅଲଚ୍ଛି ରଙ୍କ ଅବନୀସା ॥
କାସୀ ମଗ ସୁରସରି- କ୍ରମନାସା । ମରୂ ମାରବ ମହିଦେବ ଗବାସା ॥୪॥
ସରଗ ନରକ ଅନୁରାଗ ବିରାଗା । ନିଗମାଗମ ଗୁନଦୋଷ ବିଭାଗା ॥୫॥
ଜଡଚେତନ ଗୁନଦୋଷମୟ ବିସ୍ୱ କୀହ୍ନ କରତାର ।
ସନ୍ତ ହଂସ ଗୁନ ଗହହିଁ ପୟ ପରିହରି ବାରି ବିକାର ॥୬॥
ଅସ ବିବେକ ଜବ ଦେଇ ବିଧାତା । ତବ ତଜି ଦୋଷ ଗୁନହିଁ ମନୁ ରାତା ॥
କାଲ ସୁଭାଉ କରମ ବରିଆଈଁ । ଭଲେଉ ପ୍ରକୃତିବସ ଚୁକଇ ଭଲାଈଁ ॥୧॥
ସୋ ସୁଧାରି ହରିଜନ ଜିମି ଲେହୀଁ । ଦଲି ଦୁଖ ଦୋଷ ବିମଲ ଜସୁ ଦେହୀଁ ॥
ଖଲଉ କରହିଁ ଭଲ ପାଇ ସୁସଙ୍ଗୂ । ମିଟଇ ନ ମଲିନ ସୁଭାଉ ଅଭଙ୍ଗୂ ॥୨॥

---

ମାୟାସଙ୍ଗେ ବ୍ରହ୍ମଜୀବ ସହ ଜଗଦୀଶ । ଲକ୍ଷ୍ମୀ ଅଲକ୍ଷ୍ମୀ ଆବର ରଙ୍କ, ଅବନୀଶ ॥
ସୁରନଦୀ କର୍ମନାଶା ମରୁଭୂମି ମାଲ । କାଶୀ ମଗଧ ପ୍ରଦେଶ ବ୍ରାହ୍ମଣ ଗୁଣ୍ଡାଲ ॥୪॥
ସ୍ୱରଗ ନରକ ଅନୁରାଗ ଯେ ବିରାଗ । ଶ୍ରୁତି ଶାସ୍ତ୍ର କରିଛନ୍ତି ଗୁଣ ଦୋଷ ଭାଗ ॥୫॥
ଗୁଣ ଦୋଷ, ଜଡ-ଚୈତନ୍ୟରେ ପୂର୍ଣ୍ଣ, ବିଧି ରଚିଛି ସଂସାର ॥
ସନ୍ଥ-ହଂସ ଗୁଣ-ପୟକୁ ଘେନଇ ତେଜିଣ ବାରି ବିକାର ॥୬॥
ଏମନ୍ତ ବିବେକ ବିଧି ହୋଇଥାନ୍ତି ଯେବେ । ଦୋଷତେଜି ଗୁଣେ ମନ ରତ ହୋନ୍ତି ତେବେ॥
କାଲ କର୍ମ ସ୍ୱଭାବାଦି ଗତି ପ୍ରାବଲ୍ୟରୁ । ପ୍ରକୃତି-ବଶ୍ୟ ଭଲ ବି ଭୁଲନ୍ତି ଭଲରୁ ॥୧॥
ସେ ତ୍ରୁଟିକୁ ଶୀଘ୍ର ମାର୍ଜିନିଏ ହରିଭକ୍ତ । ଦଳେ ଦୁଃଖ-ଦୋଷେ ଶୁଭ୍ର ସୁଯଶ ଯେମନ୍ତ ।
ଖଲ ମଧ ଭଲ କରେ ସୁସଙ୍ଗ ପାଇଣ । ନ ତୁଟେ କିନ୍ତୁ ଅଭଙ୍ଗ ସ୍ୱଭାବ ମଳିନ ॥୨॥

---

ସାଧୁ-ଅସାଧୁ, ସୁଜାତି-କୁଜାତି, ଦାନବ-ଦେବତା, ଉଚ୍ଚ-ନୀଚ, ଜୀବନଦାୟକ ଅମୃତ ଓ ମାରକ ବିଷ, ମାୟା-ବ୍ରହ୍ମ, ଜୀବ-ଈଶ୍ୱର, ଲକ୍ଷ୍ମୀ-ଅଲକ୍ଷ୍ମୀ (ସମ୍ପତ୍ତି-ଦାରିଦ୍ର୍ୟ), ରଙ୍କ-ରାଜା, କାଶୀ-ମଗଧ, ଗଙ୍ଗା-କର୍ମନାଶା, ମରୁ-ମାଳବ, ବ୍ରାହ୍ମଣ-କସାଇ, ସ୍ୱର୍ଗ-ନର୍କ, ଅନୁରାଗ-ବୈରାଗ୍ୟ ଆଦି ସମସ୍ତ ପଦାର୍ଥ ବ୍ରହ୍ମାଙ୍କ ସୃଷ୍ଟିର ଅନ୍ତର୍ଭୁକ୍ତ । ବେଦଶାସ୍ତ୍ର ସେମାନଙ୍କ ଗୁଣ-ଦୋଷର ବିଭାଜନ କରି ଦେଇଛି ॥ ୩-୫ ॥ ଦୋହା—ବିଧାତା ଏହି ଜଡଚେତନ ବିଶ୍ୱକୁ ଗୁଣ-ଦୋଷମୟ କରି ରଚନା କରିଅଛନ୍ତି । କିନ୍ତୁ ସାଧୁପୁରୁଷରୂପୀ ହଂସ ଦୋଷ-ଜଳକୁ ପରିତ୍ୟାଗ କରି ଗୁଣ-ଦୁଗ୍ଧ ଗ୍ରହଣ କରେ ॥ ୬ ॥ ଚୌପାଈ—ବିଧାତା ଯାହାକୁ ହଂସ ସମାନ ବିବେକ ଦିଅନ୍ତି, ଦୋଷ ଛାଡି ତାହାର ଗୁଣରେ ଅନୁରକ୍ତ ହେବା କଥା, କିନ୍ତୁ କାଳର ସ୍ୱଭାବ ଓ ଦୁର୍ଭାଗ୍ୟବଳରୁ ଉତ୍ତମ ସାଧୁ ଲୋକମାନେ ମଧ ମାୟାର ବଶୀଭୂତ ହୋଇ କେବେ କେବେ ଭଲକୁ ଛାଡି ଭେଲ କରି ବସନ୍ତି ॥ ୧ ॥ ହରିଭକ୍ତ ଜନମାନେ ଏପରି ଭେଲ ବା ଭୁଲକୁ ସଂଶୋଧନ କରି ପକାନ୍ତି ଏବଂ ଦୁଃଖ-ଦୋଷ ଆଦିକୁ ଦଳି ନିର୍ମଳ ଯଶ ବିସ୍ତାର କରନ୍ତି । ସେହିପରି ଦୁଷ୍ଟ ମଧ କେବେ କେବେ ଉତ୍ତମ ସଙ୍ଗ ପାଇ ଭଲ ଆଚରଣ

ଲଖି ସୁବେଷ ଜଗ ବଞ୍ଚକ ଜେଊ । ବେଷପ୍ରତାପ ପୂଜିଅହିଁ ତେଊ ॥
ଉଘରହିଁ ଅନ୍ତ ନ ହୋଇ ନିବାହୂ । କାଲନେମି ଜିମି ରାବନ ରାହୂ ॥୩॥
କିଏହୁଁ କୁବେଷୁ ସାଧୁ ସନମାନୂ । ଜିମି ଜଗ ଜାମବନ୍ତ ହନୁମାନୂ ॥
ହାନି କୁସଙ୍ଗ ସୁସଙ୍ଗତି ଲାହୂ । ଲୋକ ହୁଁ ବେଦ ବିଦିତ ସବ କାହୂ ॥୪॥
ଗଗନ ଚଢଇ ରଜ ପବନ ପ୍ରସଙ୍ଗା । କୀଚହିଁ ମିଲଇ ନୀଚ ଜଲସଙ୍ଗା ॥
ସାଧୁ ଅସାଧୁ ସଦନ ସୁକ ସାରୀଁ । ସୁମିରହିଁ ରାମୁ ଦେହିଁ ଗନି ଗାରୀଁ ॥୫॥
ଧୂମ କୁସଙ୍ଗତି କାରିଖ ହୋଈ । ଲିଖିଅ ପୁରାନ ମଞ୍ଜୁ ମସି ସୋଈ ॥
ସୋଇ ଜଲ ଅନଲ ଅନିଲ ସଂଘାତା । ହୋଇ ଜଲଦ ଜଗଜୀବନଦାତା ॥୬॥

---

ସୁବେଶ ରଚି ଜଗତେ ବଞ୍ଚକ ଯେ ଅଛି । ବେଶ ପ୍ରତାପେ ସେମାନେ ପୂଜିତ ହୁଅନ୍ତି ॥
ଫୁଟିଯାଏ ଅନ୍ତେ ହୋଇ ନପାରେ ନିର୍ବାହ । ଯେସନେ କାଲନେମୀ, ରାହୁ, ଲଙ୍କନାହ ॥୩॥
କଲେହେଁ କୁବେଶ ସାଧୁ ଲଭଇ ସମ୍ମାନ । ଯେପରି ଜଗତେ ଜାମ୍ବବନ୍ତ, ହନୁମାନ ॥
କୁସଙ୍ଗେ ହାନି ସୁସଙ୍ଗେ ଲାଭ ଉପୁଜଇ । ଲୋକେ ବେଦେ ସମସ୍ତଙ୍କୁ ବିଦିତ ଅଟଇ ॥୪॥
ଗଗନେ ଚଢଇ ରଜ ପବନ ସଙ୍ଗରେ । ନୀଚ-ଗାମୀ ଜଳଯୋଗେ ମିଳଇ ପଙ୍କରେ ॥
ସାଧୁ ଅସାଧୁଙ୍କ ଗୃହ ଶୁକଶାରୀ ମୁଖେ । ସ୍ମରନ୍ତି ଶ୍ରୀରାମ ଗାଳି ଉଚାରନ୍ତି ମୁଖେ ॥୫॥
କୁସଙ୍ଗ ଲଭିଣ ଧୂଆଁ କଳା କୁହାଯାଏ । ପୁରାଣ ଲେଖନ୍ତେ ମଞ୍ଜୁ ସ୍ୟାହି ସ୍ଥାନ ପାଏ ।
ସେ ପୁଣି ଜଳ ଅନଳ ଅନିଳ ଯୋଗରେ । ଜଳଦ ହୋଇ ଜଗତେ ଜୀବଦାନ କରେ ॥୬॥

---

କରିଥାନ୍ତି । କିନ୍ତୁ ସେମାନଙ୍କ ମଳିନ ଖଳ ସ୍ୱଭାବ କଦାପି ସମ୍ପୂର୍ଣ୍ଣଭାବରେ ଛୁଟେ ନାହିଁ ॥୨॥ ଜଗତରେ ସାଧୁ-ବେଶଧାରୀ ଠକ ବହୁତ ଅଛନ୍ତି, ସେମାନଙ୍କର ଉତ୍ତମ ସାଧୁ ଜନୋଚିତ ବେଶ ଦେଖି ବେଶ ପ୍ରଭାବରେ ଜଗତ ସେମାନଙ୍କୁ ପୂଜା କରେ । ମାତ୍ର ଦିନେ ନା ଦିନେ ସେମାନେ ଧରା ପଡିଯାଆନ୍ତି । କାଲନେମି, ରାବଣ ଓ ରାହୁ ପରି ଶେଷରେ ସେମାନଙ୍କ କପଟ ଚାଲି ପଡିଯାଏ ଏବଂ ସେମାନେ ଉକ୍ତ ରାକ୍ଷସମାନଙ୍କ ପରି ପ୍ରାଣଦଣ୍ଡ ଭୋଗ କରନ୍ତି ॥୩॥ ପ୍ରକୃତରେ ସାଧୁ ଯେ, ସେ ଅସୁନ୍ଦର ବେଶ ଧାରଣ କଲେ ସୁଦ୍ଧା ହନୁମାନ ଓ ଜାମ୍ବବାନଙ୍କ ପରି ଜଗତରେ ସମ୍ମାନ ପାଏ । ଅସତ୍ ସଙ୍ଗ ଯୋଗେ କ୍ଷତି ଓ ସତ୍‌ସଙ୍ଗ ଯୋଗେ ଲାଭ ହୁଏ । ଏହି କଥା ଲୋକରେ ତଥା ବେଦରେ ସାର ଏବଂ ସମସ୍ତ ଲୋକ ଏହା ଜାଣନ୍ତି ॥୪॥ ପବନର ସଙ୍ଗରେ ଧୂଳି ଆକାଶ ଉପରକୁ ଚଢିଯାଏ ଏବଂ ତାହା ନିମ୍ନଗାମୀ ଜଳସଙ୍ଗେ କାଦୁଅରେ ମିଶିଯାଏ । ସାଧୁଙ୍କ ଘରେ ଶୁଆଶାରୀ 'ରାମ' 'ରାମ' ସ୍ମରଣ କରନ୍ତି । କିନ୍ତୁ ଅସାଧୁ ଘରର ଶୁଆଶାରୀ ଗଣି ଗଣି ଗାଳି ଦିଅନ୍ତି ॥୫॥ କୁସଙ୍ଗ ହେତୁ ଧୂଆଁ କଳଙ୍କକାଳିମା ଆଦି ନାମରେ ଅଭିହିତ । ମାତ୍ର ସେହି ଧୂଆଁ ସୁସଙ୍ଗର ସମ୍ପର୍କରେ ସୁନ୍ଦର ସ୍ୟାହି ହୋଇ ପୁରାଣ ଲେଖିବା କାମରେ ଲାଗେ । ସେହି ଧୂଆଁ ପୁଣି ଜଳ, ଅଗ୍ନି ଓ ପବନର ସମ୍ପର୍କରେ ଆସି ମେଘ ହୁଏ ଏବଂ

ଗ୍ରହ ଭେଷଜ ଜଲ ପବନ ପଟ ପାଇ କୁଜୋଗ ସୁଜୋଗ ।
ହୋହିଁ କୁବସ୍ତୁ ସୁବସ୍ତୁ ଜଗ ଲଖହିଁ ସୁଲଚ୍ଛନ ଲୋଗ ॥୭(କ)॥
ସମ ପ୍ରକାସ ତମ ପାଖ ଦୁହୁଁ ନାମଭେଦ ବିଧି କୀହ୍ନ ।
ସସି ସୋଷକ ପୋଷକ ସମୁଝି ଜଗ ଜସ ଅପଜସ ଦୀହ୍ନ ॥୭(ଖ)॥
ଜଡ଼ ଚେତନ ଜଗଜୀବ ଜତ ସକଲ ରାମମୟ ଜାନି ।
ବନ୍ଦଉଁ ସବକେ ପଦକମଲ ସଦା ଜୋରି ଜୁଗପାନି ॥୭(ଗ)॥
ଦେବ ଦନୁଜ ନର ନାଗ ଖଗ ପ୍ରେତ ପିତର ଗନ୍ଧର୍ବ ।
ବନ୍ଦଉଁ କିଂନର ରଜନିଚର କୃପା କରହୁ ଅବ ସର୍ବ ॥୭(ଘ)॥
ଆକର ଚାରି ଲାଖ ଚୌରାସୀ । ଜାତି ଜୀବ ଜଲ ଥଲ ନଭବାସୀ ॥
ସୀୟ ରାମମୟ ସବ ଜଗ ଜାନୀ । କରଉଁ ପ୍ରନାମ ଜୋରି ଜୁଗ ପାନୀ ॥୧॥

---

ଗ୍ରହ ବସ୍ତ୍ର ଜଳ ଔଷଧ ଅନିଳ କୁଯୋଗ ସୁଯୋଗ ମତେ ॥
କୁବସ୍ତୁ ସୁବସ୍ତୁ ହୁଅନ୍ତି ସଂସାରେ ଜାଣନ୍ତି ଲକ୍ଷଣ-ବନ୍ତେ ॥୭(କ)॥
ବେନି ପକ୍ଷେ ତୁଲ୍ୟ ପ୍ରକାଶ ତମିର ନାମ-ଭେଦ ବିଧି କଲି ॥
ବିଚାରିଣ ଶଶୀ-ପୋଷକ ଶୋଷକ ବିଶ୍ୱ ଯଶାଯଶ ଦେଲି ॥୭(ଖ)॥
ଜଡ଼ ଚୈତନ୍ୟାଦି ଜୀବ ଯେ ଜଗତେ ରାମମୟ ସବୁ ଜାଣି ॥
ବନ୍ଦେ ସମସ୍ତଙ୍କ ପଦ-ପୁଣ୍ଡରୀକ ସଦା ଯୋଡ଼ି ଯୁଗ୍ମ ପାଣି ॥୭(ଗ)॥
ଦେବତା ଦାନବ ନର ନାଗ ଖଗ ପିତୃ କିନ୍ନର ଗନ୍ଧର୍ବେ ॥
ବନ୍ଦଇ ଆବର ପ୍ରେତ ନିଶାଚର କୃପା କର ଏବେ ସର୍ବେ ॥୭(ଘ)
ଚାରି ପ୍ରକାରର ଜଳସ୍ଥଳ ନଭବାସୀ । ଚୌରାଅଶୀ ଲକ୍ଷ ଯୋନି ଗତ ଜୀବରାଶି ॥
ସୀତା ରାମ-ମୟ ସାରା ସଂସାରକୁ ଜାଣି । କରଇ ପ୍ରଣାମ ପ୍ରେମେ ଯୋଡ଼ି ଯୁଗ୍ମ ପାଣି ।୧॥

---

ଜଗତର ଜୀବନ-ଦାୟକ ହୁଏ ॥୬॥ ଦୋହା—ଗ୍ରହ, ଔଷଧ, ଜଳ, ବାୟୁ ଓ ବସ୍ତ୍ର- ଏ ସମସ୍ତେ ମନ୍ଦ କୁସଙ୍ଗ ଓ ସୁସଙ୍ଗ ପାଇ ସଂସାରରେ ମନ୍ଦ ଓ ଭଲ ପଦାର୍ଥ ହୋଇ- ଯାଆନ୍ତି । ଚତୁର ଓ ବିଚାରବନ୍ତ ପୁରୁଷ ହିଁ ଏହି ବିଷୟ ଜାଣିପାରେ ॥ ୭ (କ) ॥ ମାସକର ଦୁଇ ପକ୍ଷରେ ଆଲୋକ ଓ ଅନ୍ଧାର ସମାନ ଭାବରେ ଥାଏ । କିନ୍ତୁ ବିଧାତା ଏ ଦୁଇଟିର ନାମରେ ଭେଦ ସୃଷ୍ଟି କରି ଦେଇଅଛନ୍ତି । (ଗୋଟିକର ନାମ ଶୁକ୍ଳ ପକ୍ଷ ଓ ଅନ୍ୟଟିର ନାମ କୃଷ୍ଣପକ୍ଷ) । ଗୋଟିଏ ପକ୍ଷ ଚନ୍ଦ୍ରଙ୍କର ବର୍ଦ୍ଧନକାରୀ ଓ ଅନ୍ୟଟି ଏହାଙ୍କର କ୍ଷୟକାରୀ. ବିଚାରି ଜଗତ ଗୋଟିକୁ ସୁଯଶ ଓ ଅନ୍ୟଟିକୁ ଅପଯଶ ଦେଇଅଛି ॥ ୭ (ଖ)॥ ଜଗତରେ ଜଡ଼ଚେତନ, ଯେତେ ଜୀବ ଅଛନ୍ତି, ସମସ୍ତଙ୍କୁ ରାମମୟ ଜାଣି ମୁଁ ହାତ ଯୋଡ଼ି ସମସ୍ତଙ୍କ ଚରଣ-କମଳ ବନ୍ଦନା କରୁଛି ॥୭ (ଗ) ॥ ଦେବତା, ଦୈତ୍ୟ, ମନୁଷ୍ୟ, ନାଗ, ପକ୍ଷୀ, ପ୍ରେତ, ପିତୃପୁରୁଷ, ଗନ୍ଧର୍ବ, କିନ୍ନର ଓ ନିଶାଚର, ସମସ୍ତଙ୍କୁ ମୁଁ ପ୍ରଣାମ କରୁଛି । ଏବେ ସମସ୍ତେ ମୋ ପ୍ରତି କୃପା କରନ୍ତୁ ॥ ୭ (ଘ) ॥

ଜାନି କୃପାକର କିଂକର ମୋହୂ । ସବ ମିଲି କରହୁ ଛାଡ଼ି ଛଲ ଛୋହୂ ॥
ନିଜ ବୁଧିବଲ ଭରୋସ ମୋହି ନାହୀଁ । ତାତେଁ ବିନୟ କରଉଁ ସବ ପାହୀଁ ॥୨॥
କରନ ଚହଉଁ ରଘୁପତି ଗୁନ ଗାହା । ଲଘୁମତି ମୋରି ଚରିତ ଅବଗାହା ॥
ସୂଝ ନ ଏକୌ ଅଙ୍ଗ ଉପାଊ । ମନ ମତି ରଙ୍କ ମନୋରଥ ରାଊ ॥୩॥
ମତି ଅତି ନୀଚ ଊଁଚି ରୁଚି ଆଛୀ । ଚହିଅ ଅମିଅ ଜଗ ଜୁରଇ ନ ଛାଛୀ ॥
ଛମିହହିଁ ସଜ୍ଜନ ମୋରି ଢିଠାଈ । ସୁନିହହିଁ ବାଲବଚନ ମନ ଲାଈ ॥୪॥
ଜୌଁ ବାଲକ କହ ତୋତରି ବାତା । ସୁନହିଁ ମୁଦିତ ମନ ପିତୁ ଅରୁ ମାତା ॥
ହଁସିହହିଁ କୂର କୁଟିଲ କୁବିଚାରୀ । ଜେ ପର ଦୂଷନ ଭୂଷନ ଧାରୀ ॥୫॥

---

ଆପଣା କିଙ୍କର ଜାଣି ମୋତେ କୃପାକର । ସର୍ବେ ମିଳି ସ୍ନେହ କର ଛଳ ପରିହର ॥
ନାହିଁ ମୋର ନିଜ ବଳ ଭରସା ନିଶ୍ଚୟ । ତେଣୁ ସମସ୍ତଙ୍କ ଆଗେ କରୁଛୁ ବିନୟ ॥୨॥
ରଘୁପତି ଗୁଣଗ୍ରାମ ଗାଇବାକୁ ଇଚ୍ଛଇ । ଚରିତ ଅପାର କ୍ଷୁଦ୍ର-ବୁଦ୍ଧି ମୁଁ ଅଟଇ ॥
ଦୃଶ୍ୟ ନ ହୁଏ କୌଣସି ଉପାୟ ସହାୟ । ମନ ଅତିରଙ୍କ, କିନ୍ତୁ ମନୋରଥ ରାୟ ॥୩॥
ମନ ମୋର ନୀଚ ଅତି ଉଚ୍ଚ ଅଭିଳାଷା । ନ ମିଳେ ଚହ୍ଲା ଜଗତେ ସୁଧା କରେ ଆଶା ॥
ଧୃଷ୍ଟତା ମୋହର କ୍ଷମା କରିବେ ସଜ୍ଜନ । ଶୁଣିବେ ମନ ଲଗାଇ ବାଳକ ବଚନ ॥୪॥
ଯେମନ୍ତେ ତୋତ୍ଲେଇକିଆ କହନ୍ତେ ବାଳକ । ଶୁଣନ୍ତି ବିନୋଦ ମନେ ଜନନୀ ଜନକ ॥
ହସିବେ କ୍ରୂର କୁଟିଳ କୁବିଚାର ମତି । ପର ଦୂଷଣ ଭୂଷଣ ରୂପେ ଯେ ଧରନ୍ତି ॥୫॥

---

ଚୌପାଈ—ଚୌରାଶୀ ଲକ୍ଷ-ଯୋନିଜାତ ଚାରି ପ୍ରକାର (ସ୍ୱେଦଜ, ଅଣ୍ଡଜ, ଉଦ୍ଭିଜ୍ଜ ଓ ଜରାୟୁଜ) ଜୀବ ଜଳ, ସ୍ଥଳ ଓ ଆକାଶରେ ବାସ କରନ୍ତି । ସେ ସମସ୍ତଙ୍କ ଦ୍ୱାରା ପରିପୂର୍ଣ୍ଣ ଏ ସମଗ୍ର ଜଗତକୁ ଶ୍ରୀରାମସୀତାମୟ ଜାଣି ମୁଁ ଦୁଇ କର ଯୋଡ଼ି ସମସ୍ତଙ୍କୁ ପ୍ରଣାମ କରୁଅଛୁ ॥୧॥ ହେ କୃପାକରଗଣ ! ମୋତେ ତୁମମାନଙ୍କର ଦାସ ଜାଣି ସମସ୍ତେ ମିଳି ଛଳକପଟ ଛାଡ଼ି ମୋ ପ୍ରତି କୃପାକର । ଆପଣାର ବୁଦ୍ଧିବଳ ଉପରେ ମୋର ଭରସା ନାହିଁ । ଏଣୁ ମୁଁ ସମସ୍ତଙ୍କୁ ବିନତି କରୁଛୁ ॥୨॥ ଶ୍ରୀ ରଘୁନାଥଙ୍କ ଗୁଣାବଳୀ ବର୍ଣ୍ଣନା କରିବାକୁ ମୁଁ ଇଚ୍ଛୁକ । ମାତ୍ର ମୋର ବୁଦ୍ଧି ଅତି କ୍ଷୁଦ୍ର ଏବଂ ଶ୍ରୀରାମଙ୍କଙ୍କ ଚରିତ ଅଗାଧ । ଏଥି ନିମନ୍ତେ ଉପାୟର ଅଙ୍ଗ ମାତ୍ର (ଅର୍ଥାତ୍ ଲେଶ ମାତ୍ର) ମୋତେ ଦିଶୁ-ନାହିଁ । ମୋର ମନ ଓ ବୁଦ୍ଧି ଅତି ଦରିଦ୍ର, କିନ୍ତୁ ମନୋରଥ ରାଜା ॥୩॥ ମୋର ବୁଦ୍ଧି ଅତି ନୀଚ ଓ ଅଭିଳାଷ ଅତି ଉଚ୍ଚ । ଅମୃତପାନ କରିବା ପାଇଁ ମୋ ଇଚ୍ଛା, କିନ୍ତୁ ଜଗତରେ ଘୋଳଦହି ମିଳିବାକୁ ନାହିଁ । ସଜ୍ଜନମାନେ ମୋ ଧୃଷ୍ଟତାକୁ କ୍ଷମା କରିବେ ଏବଂ ମନ ଲଗାଇ (ପ୍ରେମର ସହିତ) ମୋ ପିଲାଳିଆ କଥା ଶୁଣିବେ ॥୪॥ ଶିଶୁ ବାଳକ ତୋତ୍ଲେଇ କଥା କହିଲାବେଳେ ତାହାର ମାତାପିତା ପ୍ରସନ୍ନ ମନରେ ସେ କଥା ଶୁଣନ୍ତି । ମାତ୍ର ଯେଉଁମାନେ ଅନ୍ୟର ଦୋଷକୁ ଅଳଂକାର ପରି ଧରି ରଖନ୍ତି (ଅର୍ଥାତ୍ ପରର ଦୋଷ ହିଁ ଯେଉଁମାନଙ୍କୁ ଭଲ ଲାଗେ), ଏପରି କ୍ରୂର, କୁଟିଳ ଓ

ନିଜ କବିତ୍ତ କେହି ଲାଗ ନ ନୀକା । ସରସ ହୋଉ ଅଥବା ଅତି ଫୀକା ॥
ଜେ ପର ଭନିତି ସୁନତ ହରଷାହୀଁ । ତେ ବର ପୁରୁଷ ବହୁତ ଜଗ ନାହୀଁ ॥୬॥
ଜଗ ବହୁ ନର ସର ସରି ସମ ଭାଈ । ଜେ ନିଜ ବାଢ଼ି ବଢ଼ହିଁ ଜଲ ପାଈ ॥
ସଜ୍ଜନ ସକୃତ ସିନ୍ଧୁ ସମ କୋଈ । ଦେଖି ପୂର ବିଧୁ ବାଢ଼ଇ ଜୋଈ ॥୭॥

ଭାଗ ଛୋଟ ଅଭିଲାଷୁ ବଡ଼ କରଉଁ ଏକ ବିସ୍ୱାସ ।
ପୈହହିଁ ସୁଖ ସୁନି ସୁଜନ ସବ ଖଲ କରିହହିଁ ଉପହାସ ॥୮॥

ଖଲ ପରିହାସ ହୋଇ ହିତ ମୋରା । କାକ କହହିଁ କଲକଣ୍ଠ କଠୋରା ॥
ହଂସହି ବକ ଦାଦୁର ଚାତକହୀ । ହଁସହିଁ ମଲିନ ଖଲ ବିମଲ ବତକହୀ ॥୧॥
କବିତ ରସିକ ନ ରାମପଦ ନେହୂ । ତିନ୍ହ କହଁ ସୁଖଦ ହାସ ରସ ଏହୂ ॥
ଭାଷା ଭନିତି ଭୋରି ମତି ମୋରୀ । ହଁସିବେ ଜୋଗ ହଁସେଁ ନହିଁ ଖୋରୀ ॥୨॥

---

ନିଜ କବିତା କାହାକୁ ନ ଲାଗେ ପସନ୍ଦ । ସରସ ହେଉ ଅଥବା ହେଉ କେତେ ମନ୍ଦ ॥
ଯେ ପରକୃତି ଶ୍ରବଣେ ହୁଅନ୍ତି ପ୍ରସନ୍ନ । ଅତ୍ୟଳ୍ପ ସଂସାରେ ନର ରତନ ଏସନ ॥୬॥
ଜଗତେ ବହୁତ ନର ନଦୀସର ପରି । ସ୍ୱ ବୃଦ୍ଧିରେ ବଢନ୍ତି ଯେ ଜଳ ଲାଭ କରି ॥
ପୁଣ୍ୟ-ଶ୍ଳୋକ ସିନ୍ଧୁ ସମ ସଜ୍ଜନ କ୍ୱଚିତ । ପୂର୍ଣ୍ଣିମା ଶଶୀକୁ ଦେଖି ଯେ ହୁଏ ବର୍ଦ୍ଧିତ ॥୭॥

ଭାଗ୍ୟ ଅତି ଛୋଟ ଅଭିଲାଷ ବଡ କରଇ ବିଶ୍ୱାସ ଏକ ।
ଶୁଣି ସୁଜନ ହୋଇବେ ପ୍ରସନ୍ନ ହସିବେ ଖଳ ଅନେକ ॥୮॥

ଖଳଙ୍କର ପରିହାସେ ହିତ ହେବ ମୋର । କୋକିଳ କଣ୍ଠକୁ କାକ କହଇ କଠୋର ॥
ହଂସକୁ ବକ ହସଇ ବେଙ୍ଗ ଚାତକକୁ । ହସନ୍ତି ମଳିନ ଖଳ ସୁବାର୍ତ୍ତାଳାପକୁ ॥୧॥
କବିତା-ରସିକ, ପ୍ରେମ ନାହିଁ ରାମପଦ । ତାଙ୍କୁ ହାସ୍ୟରସେ ଏହା ହୋଇବ ସୁଖଦ ॥
ଭାଷା ରଚିତ ମୋହର ଭୋଳାମତି ଯେଣୁ । ହସିବା ଯୋଗ୍ୟ ହସିଲେ ଦୋଷ ନାହିଁ ତେଣୁ ॥୨॥

---

ଅବିବେକୀ ଲୋକେ ଏହି କଥା ଶୁଣି ହସନ୍ତି ॥୫॥ ସରସ ହେଉ ବା ଅତ୍ୟନ୍ତ ନୀରସ ହେଉ, ନିଜକୃତ କବିତା କାହାକୁ ଭଲ ନ ଲାଗେ ? କିନ୍ତୁ ଅନ୍ୟର ରଚନାକୁ ଶୁଣି ଆନନ୍ଦ ଲାଭ କରିବା ଲୋକ ଏହି ସଂସାରରେ ବେଶି ନାହାନ୍ତି ॥ ୬ ॥ ହେ ଭାଇ ! ସଂସାରରେ ପୁଷ୍କରିଣୀ ଓ ନଦୀମାନେ ସେମାନଙ୍କ ଆପଣା ଆପଣାର ଜଳବୃଦ୍ଧିରେ (ଆପଣାର ଉନ୍ନତିରେ) ହିଁ ଆନନ୍ଦିତ ହୁଅନ୍ତି । ସେହିମାନଙ୍କ ପରି ଆପଣାର ଉନ୍ନତିରେ ହିଁ ଆନନ୍ଦଲାଭ କରିବା ମନୁଷ୍ୟଙ୍କ ସଂଖ୍ୟା ଅଧିକ । କିନ୍ତୁ ସମୁଦ୍ର ଚନ୍ଦ୍ରମାକୁ ପରିପୂର୍ଣ୍ଣ ରୂପରେ ଦେଖି ଆନନ୍ଦରେ ଉଚ୍ଛୁଳି ଉଠେ । ସମୁଦ୍ର ପରି ଅନ୍ୟର ଉତ୍କର୍ଷ ଦେଖି ଆନନ୍ଦଲାଭ କରିବା ଲୋକ ଏ ସଂସାରରେ ବିରଳ ॥ ୭ ॥ ଦୋହା.—ମୋର ଭାଗ୍ୟ ଅତି ଛୋଟ ଏବଂ ଇଚ୍ଛା ଖୁବ୍ ବଡ । ମାତ୍ର ମୋର ଏକମାତ୍ର ବିଶ୍ୱାସ, ଏହାକୁ ଶୁଣି ସଜ୍ଜନମାନେ ସୁଖଲାଭ କରିବେ ଏବଂ ଦୁଷ୍ଟମାନେ ଉପହାସ କରିବେ ॥ ୮ ॥ ଚୌପାଇ:—କିନ୍ତୁ ଦୁଷ୍ଟଙ୍କର ଉପହାସରେ ମୋର ହିତ ହିଁ ହେବ । ମଧୁରକଣ୍ଠୀ

ପ୍ରଭୁପଦ ପ୍ରୀତି ନ ସାମୁଝି ନୀକୀ । ତିନ୍ହହି କଥା ସୁନି ଲାଗିହି ଫୀକୀ ॥
ହରିହର ପଦ ରତି ମତି ନ କୁତରକୀ । ତିନ୍ହ କହୁଁ ମଧୁର କଥା ରଘୁବରକୀ ॥୩॥
ରାମଭଗତି ଭୂଷିତ ଜିଅଁ ଜାନୀ । ସୁନିହହିଁ ସୁଜନ ସରାହି ସୁବାନୀ ॥
କବି ନ ହୋଉଁ ନହି ବଚନ ପ୍ରବୀନୂ । ସକଲ କଲା ସବ ବିଦ୍ୟା ହୀନୂ ॥୪॥
ଆଖର ଅରଥ ଅଲଂକୃତି ନାନା । ଛନ୍ଦ ପ୍ରବନ୍ଧ ଅନେକ ବିଧାନା ॥
ଭାବ ଭେଦ ରସ ଭେଦ ଅପାରା । କବିତ ଦୋଷଗୁନ ବିବିଧ ପ୍ରକାରା ॥୫॥
କବିତ ବିବେକ ଏକ ନହି ମୋରେଁ । ସତ୍ୟ କହଉଁ ଲିଖି କାଗର କୋରେଁ ॥୬॥

---

ନାହିଁ ପ୍ରଭୁପଦେ ପ୍ରୀତି ବୁଝିବାର ଶକ୍ତି । ତାହାଙ୍କୁ କଥା ଲାଗିବ ସ୍ୱାଦ-ହୀନ ଅତି ॥
ହରି-ହର ପଦେ ସ୍ନେହ ମତି ଅକୁତର୍କ । ତାଙ୍କୁ ମଧୁର ଲାଗିବ କଥା ଶ୍ରୀରାମଙ୍କ ॥୩॥
ରାମଭକ୍ତି-ବିଭୂଷିତ ମନ ମଧ୍ୟେ ଜାଣି । ଶୁଣିବେ ସଜ୍ଜନ କରି ପ୍ରଶଂସା ସୁବାଣୀ ॥
କବି ନ କୁହାଏ ନୁହେ ବଚନ-ପ୍ରବୀଣ । ସକଳ କଳା ସମସ୍ତ ବିଦ୍ୟାରେ ମୁଁ ହୀନ ॥୪॥
ଅକ୍ଷର ଅର୍ଥ ବହୁତ ନାନା ଅଳଙ୍କାର । ଛନ୍ଦ ପ୍ରବନ୍ଧାଦି କାବ୍ୟ ଅନେକ ପ୍ରକାର ॥
ଭାବ ରସ ଭେଦ ଆଦି ଭେଦ ଅଗଣିତ । କବିତାର ଦୋଷ ଗୁଣ ଅଛଇ ଅମିତ ॥୫॥
କବିତାଜ୍ଞାନ କିଞ୍ଚିତ ନାହିଁ ମୋ ପାଖରେ । ସତ୍ୟ କହୁଅଛି ଲେଖି କାଗଜ ପୃଷ୍ଠାରେ ॥୬॥

---

କୋଇଲିର ସ୍ୱରକୁ କୁଆ ତ ପୁଣି କଠୋର କହେ । ବଗ ହଂସକୁ ଓ ବେଙ୍ଗ ଚାତକକୁ ଉପହାସ କଲାପରି ମଳିନମନା ଦୁଷ୍ଟ ନିର୍ମଳବାଣୀକୁ ଉପହାସ କରିଥାଏ ॥ ୧ ॥ ଯେଉଁମାନେ କବିତା-ରସିକ, ଅଥଚ ଯାହାଙ୍କର ଶ୍ରୀରାମଙ୍କ ଚରଣକମଳରେ ପ୍ରୀତି ନାହିଁ, ସେମାନଙ୍କ ପ୍ରତି ଏ କବିତା ସୁଖଦାୟକ ହାସ୍ୟରସ ହେବ । ପ୍ରଥମେ ତ ଏହା ଭାଷାବଦ୍ଧ ରଚନା, ଦ୍ୱିତୀୟତଃ ମୋର ବୁଦ୍ଧି ସରଳ, ଏହି ହେତୁ ଏହା ହାସ୍ୟର ହିଁ ଯୋଗ୍ୟ । ହସିବାରେ ସେମାନଙ୍କର କୌଣସି ଦୋଷ ନାହିଁ ॥ ୨ ॥ ପ୍ରଭୁ ରାମଙ୍କ ପାଦପଦ୍ମରେ ଯେଉଁମାନଙ୍କର ପ୍ରେମ ନାହିଁ, କିମ୍ବା ଯେଉଁମାନଙ୍କର ଭଲ ବୁଝିବା ଶକ୍ତି ନାହିଁ, ସେମାନଙ୍କୁ ଏକଥା ଶୁଣିଲେ ନୀରସ ଲାଗିବ । ଶ୍ରୀହରି (ଭଗବାନ୍ ବିଷ୍ଣୁ) ଓ ଶ୍ରୀହର (ଭଗବାନ୍ ଶିବ)ଙ୍କ ଚରଣରେ ଯାହାଙ୍କର ପ୍ରୀତି, କୁତର୍କବିତର୍କରେ ଯାହାଙ୍କର ବୁଦ୍ଧିର ଅପବ୍ୟୟ ହୁଏ ନାହିଁ (ଅର୍ଥାତ୍ ଶ୍ରୀହରିହରଙ୍କ ମଧ୍ୟରେ ଯେ ଉଚ୍ଚନୀଚ ଆଦି ଭେଦଭାବର କଳ୍ପନା କରନ୍ତି ନାହିଁ), ସେହିମାନଙ୍କୁ ଶ୍ରୀ ରଘୁନାଥଙ୍କ ଏ କଥା ମଧୁର ଲାଗିବ ॥ ୩ ॥ ସଜ୍ଜନବୃନ୍ଦ ଏହି କଥା ରାମ-ଭକ୍ତିରେ ଭୂଷିତ ବୋଲି ଆପଣା ଆପଣାର ହୃଦୟରେ ଅନୁଭବ କରିବେ ଏବଂ ସୁନ୍ଦର ବାଣୀରେ ଏହାକୁ ପ୍ରଶଂସା କରି ଶୁଣିବେ । ମୁଁ କବି ନୁହେଁ କିମ୍ବା ବାକ୍ୟ-ରଚନାରେ ବି ନିପୁଣ ନୁହେଁ । ମୁଁ ତ ସମସ୍ତ କଳା ଓ ବିଦ୍ୟାରୁ ବଞ୍ଚିତ ॥ ୪ ॥ କବିତାରେ ନାନାବିଧ ଅକ୍ଷର, ଅର୍ଥ ଓ ଅଳଂକାର, ଅନେକ ପ୍ରକାରର ଛନ୍ଦ-ରଚନା, ଭାବ ଓ ରସର ଅପାର ଭେଦ ତଥା ବିବିଧ ଗୁଣଦୋଷ ସନ୍ନିବେଶିତ ହୋଇଥାଏ ॥ ୫ ॥

ଭନିତି ମୋରି ସବ ଗୁନ ରହିତ ବିସ୍ୱ ବିଦିତ ଗୁନ ଏକ ।
ସୋ ବିଚାରି ସୁନିହହିଁ ସୁମତି ଜିନ୍ହ କେଁ ବିମଲ ବିମଲ ବିବେକ ॥୯॥
ଏହି ମହଁ ରଘୁପତି ନାମ ଉଦାରା । ଅତି ପାବନ ପୁରାନ ଶ୍ରୁତି ସାରା ॥
ମଙ୍ଗଲ - ଭବନ ଅମଂଗଲହାରୀ । ଉମା ସହିତ ଜେହି ଜପତ ପୁରାରୀ ॥୧॥
ଭନିତି ବିଚିତ୍ର ସୁକବିକୃତ ଜୋଊ । ରାମ ନାମ ବିନୁ ସୋହ ନ ସୋଊ ॥
ବିଧୁବଦନୀ ସବ ଭାଁତି ସଁଵାରୀ । ସୋହ ନ ବସନ ବିନା ବର ନାରୀ ॥୨॥
ସବ ଗୁନ ରହିତ କୁକବିକୃତ ବାନୀ । ରାମ ନାମ ଜସ ଅଙ୍କିତ - ଜାନୀ ॥
ସାଦର କହହିଁ ସୁନହିଁ ବୁଧ ତାହୀ । ମଧୁକର ସରିସ ସନ୍ତ ଗୁନଗ୍ରାହୀ ॥୩॥
ଜଦପି କବିତ ରସ ଏକଉ ନାହୀଁ । ରାମ ପ୍ରତାପ ପ୍ରଗଟ ଏହି ମାହୀଁ ॥
ସୋଇ ଭରୋସ ମୋରେଁ ମନ ଆଵା । କେହିଁ ନ ସୁସଙ୍ଗ ବଡ଼ପ୍ପନୁ ପାଵା ॥୪॥

---

କୃତି ମୋ ବର୍ଜିତ ସର୍ବଗୁଣହୀନ ଭୁବିଦିତ ଗୁଣ ଏକ ।
ଏହା ବିଚାରିଣ ଶୁଣିବେ ସଜ୍ଜନ ଯାହାଙ୍କ ଶୁଚି ବିବେକ ॥୯॥
ଏଥି ରଘୁପତି ନାମ କୀର୍ତ୍ତିତ ଉଦାର । ପରମ ପାବନ ଶ୍ରୁତି ପୁରାଣର ସାର ।
ମଙ୍ଗଳ ଭବନ ଯେହୁ ଅମଙ୍ଗଳହାରୀ । ଜପନ୍ତି ଯାହାକୁ ଉମା ସହ ତ୍ରିପୁରାରି ॥୧॥
ସୁକବିକୃତ ହେଲେ ହେଁ ବିଚିତ୍ର ରଚନ । ରାମନାମ ବିନା ତାହା ନ ହୁଏ ଶୋଭନ ॥
ବିଧୁମୁଖୀ ଯେସନ୍ତେ ନାନା ସାଜସଜ୍ଜା କରି । ବସନ ବିନା ନ ଶୋଭେ ରମଣୀ ସୁନ୍ଦରୀ ॥୨॥
ସୁକବିକୃତ ସମସ୍ତ ଗୁଣହୀନ ବାଣୀ । ରାମନାମ ଶୁଭ୍ର ଯଶେ ଅଲଙ୍କୃତ ଜାଣି ॥
ସମାଦରେ ବୁଧ ତାହା କହନ୍ତି ଶୁଣନ୍ତି । ମଧୁପ ସଦୃଶ ସନ୍ଥ ଗୁଣ-ଗ୍ରାହୀ ଅତି ॥୩॥
ଯଦ୍ୟପି କବିତାଗୁଣ ନାହିଁ ଏଥି କିଛି । ରାମ ପ୍ରତାପ ତଥାପି ପ୍ରତ୍ୟକ୍ଷ ରହିଛି ॥
ସେହି ଭରସା ଆସଇ ମୋ ମନକୁ ଭାଇ । କିଏ ଲାଭ କରି ନାହିଁ ସୁସଙ୍ଗେ ବଡ଼ାଇ ॥୪॥

---

ଏଗୁଡିକ ମଧ୍ୟରୁ କାବ୍ୟ ସମ୍ବନ୍ଧୀୟ କୌଣସି ଗୋଟିଏ ତତ୍ତ୍ୱ ବିଷୟରେ ବି ମୋର ଜ୍ଞାନ ନାହିଁ । ଏହାଁ ମୁଁ ସାଦା କାଗଜ ଉପରେ ହାତ କାଟି ଲେଖି ଦେଉଅଛି ॥ ୬ ॥ ଦୋହା—ମୋ ରଚନା ସମସ୍ତ ଗୁଣରୁ ରହିତ । ଏଥିରେ ବେଶ୍, ଜଗତ୍ପ୍ରସିଦ୍ଧ ଗୋଟିଏ ମାତ୍ର ଗୁଣ ଅଛି । ତାହା ବିଚାର କରି ଯାହାଙ୍କ ବୁଦ୍ଧି ଉତ୍ତମ ଓ ବିବେକ ନିର୍ମଳ, ସେ ଏହା ଶୁଣିବେ ॥ ୯ ॥ ଚୌପାଇ—ଏଥିରେ ଶ୍ରୀ ରଘୁନାଥଙ୍କ ଉଦାର ନାମ ରହିଛି । ସେହି ନାମ ଅତି ପବିତ୍ର, ବେଦପୁରାଣର ସାର, କଲ୍ୟାଣର ଭବନ ଓ ଅମଙ୍ଗଳର 'ନାଶକାରୀ' । ଏହି ନାମକୁ ପାର୍ବତୀଙ୍କ ସହିତ ଭଗବାନ୍ ଶିବ ସର୍ବଦା ଜପ କରୁଥାନ୍ତି ॥ ୧ ॥ 'ଉତ୍ତମ କବିଙ୍କ ଦ୍ୱାରା ରଚିତ ଅତ୍ୟନ୍ତ' ବିଚିତ୍ର କବିତା ସୁଦ୍ଧା 'ରାମ' ନାମ ବିନା ଶୋଭା ପାଏ ନାହିଁ । ଯେଉଁ ନାରୀର ଚନ୍ଦ୍ର ସଦୃଶ ସୁନ୍ଦର ମୁଖ, ସେ ନାରୀ ସବୁମନ୍ତେ ସୁସଜ୍ଜିତ ହେଲେ ହେଁ ବସ୍ତ୍ରବିନା ଶୋଭାପାଏ ନାହିଁ ॥ ୨ ॥ ପକ୍ଷାନ୍ତରରେ ମନ୍ଦ କବିଙ୍କ ଦ୍ୱାରା 'ରଚିତ,' ସମସ୍ତ ଗୁଣରୁ ରହିତ କବିତା

ଧୂମଉ ତଜଇ ସହଜ କରୁଆଈ । ଅଗରୁ ପ୍ରସଙ୍ଗ ସୁଗନ୍ଧ ବସାଈ ॥
ଭନିତି ଭଦେସ ବସ୍ତୁ ଭଲି ବରନୀ । ରାମକଥା ଜଗ ମଙ୍ଗଲ-କରନୀ ॥୫॥

ମଙ୍ଗଲ କରନି କଲିମଲ ହରନି ତୁଲସୀ କଥା ରଘୁନାଥ କୀ ।
ଗତି କୂର କବିତା ସରିତ କୀ ଜ୍ୟୋଁ ସରିତ ପାବନ ପାଥ କୀ ॥
ପ୍ରଭୁ ସୁଜସ ସଙ୍ଗତି ଭନିତି ଭଲି ହୋଇହି ସୁଜନ ମନ ଭାବନୀ ।
ଭବ ଅଙ୍ଗ ଭୂତି ମସାନ କୀ ସୁମିରତ ସୁହାବନି ପାବନୀ ॥

ପ୍ରିୟ ଲାଗିହି ଅତି ସବହି ମମ ଭନିତି ରାମଜସ ସଙ୍ଗ ।
ଦାରୁ ବିଚାରୁ କି କରଇ କୋଉ ବନ୍ଦିଅ ମଲୟ ପ୍ରସଙ୍ଗ ॥୧୦(କ)॥

---

ଧୂଆଁ ସ୍ୱାଭାବିକ କଟୁଗନ୍ଧ ପରିହରେ । ଅଗର ସଂଯୋଗ ହୋଇ ସୁବାସ ବିତରେ ॥
ନିକୃଷ୍ଟ ରଚନା ବସ୍ତୁ ବର୍ଣ୍ଣିତ ଉତ୍ତମ । ବିଶ୍ୱ ମଙ୍ଗଳ-କାରିଣୀ ରାମକଥା ରମ୍ୟ ॥୫॥

ଶୁଭମଙ୍ଗଳ-କାରିଣୀ କଳି-ଅଘହାରିଣୀ ତୁଳସୀକୃତ ରାମ କଥା ।
ଗତି କୁଟିଳ କ୍ରୂର କବିତା-ସରିତର ଅତି ପବିତ୍ର ଗଙ୍ଗା ଯଥା ।
ରଚନା ରାମଯଶ ଘେନି । ହେବ ସୁଜନ ଆହ୍ଲାଦିନୀ ।
ଯେହ୍ନେ ଶଙ୍କର ଦେହେ ଶ୍ମଶାନଭସ୍ମ ଶୋହେ ସ୍ମରନ୍ତେ ଅଶୁଭ ନାଶିନୀ ॥

ହେବ ପ୍ରୀତିକର ସମସ୍ତଙ୍କୁ ମୋର କୃତ ରାମଯଶ ସଙ୍ଗେ ।
ଦାରୁ ବିଚାର କି କରିପାରେ କେହି ବନ୍ଦ୍ୟ ମଳୟ ପ୍ରସଙ୍ଗେ ॥୧୦(କ)॥

---

ସୁଦ୍ଧା 'ରାମ'ଙ୍କ ନାମ ଓ ଯଶଦ୍ୱାରା ଓତପ୍ରୋତ (ଜଡ଼ିତ) ହୋଇଥିବାର ଜାଣି ବୁଦ୍ଧିମାନ୍ ଲୋକ ତାହାକୁ ଆଦରରେ କହନ୍ତି ଏବଂ ଶୁଣନ୍ତି । କାରଣ ସାଧୁଜନମାନେ ଭ୍ରମର ପରି କେବଳ ଗୁଣକୁ ହିଁ ଗ୍ରହଣ କରିଥା'ନ୍ତି ॥ ୩ ॥ ଯଦ୍ୟପି ମୋର ଏ କବିତାରେ କବିତାର ଗୋଟିଏ ହେଲେ ରସ ସୁଦ୍ଧା ନାହିଁ, ତଥାପି ଏଥିରେ ଶ୍ରୀରାମଙ୍କ ପ୍ରତାପ ପ୍ରକାଶିତ । ମୋ ମନରେ ଏହି ଗୋଟିଏ ମାତ୍ର ଭରସା । ଉତ୍ତମ ସଙ୍ଗଯୋଗେ ସଂସାରରେ କିଏ ବଡ଼ପଣିଆ ନ ପାଇଛି ? ॥୪॥ ଧୂଆଁ ବି ଅଗୁରୁ ସଙ୍ଗରେ ସୁଗନ୍ଧିତ ହୋଇ ତାହାର ସ୍ୱାଭାବିକ କଟୁତାକୁ ପରିତ୍ୟାଗ କରିଦିଏ । ମୋ କବିତା ଅବଶ୍ୟ ନିକୃଷ୍ଟ । ମାତ୍ର ଏଥିରେ ସଂସାରର କଲ୍ୟାଣକାରକ ରାମକଥାରୂପୀ ଉତ୍ତମ ବସ୍ତୁ ବର୍ଣ୍ଣନା କରାଯାଇ ଅଛି । ଏହାରି ଯୋଗେ ଏହାକୁ ମଧ୍ୟ ଉତ୍ତମ ବୋଲି ସମସ୍ତେ ବିବେଚନା କରିବେ ॥ ୫ ॥ ଛନ୍ଦ —ତୁଳସୀ ଦାସ କହନ୍ତି, "ଶ୍ରୀ ରଘୁନାଥଙ୍କ କଥା କଲ୍ୟାଣକାରକ ଓ କଳିଯୁଗର ପାପରାଶିର ବିନାଶକ । ମୋର ଏହି ନିକୃଷ୍ଟ କବିତାରୂପୀ ନଦୀର ଗତି ପବିତ୍ରତୋୟା ନଦୀ (ଗଙ୍ଗା)ର ଗତି ପରି ବକ୍ର । ପ୍ରଭୁ ଶ୍ରୀ ରଘୁନାଥଜୀଙ୍କ 'ସୁନ୍ଦର ଯଶ ସଙ୍ଗରେ ଏହି କବିତା ସୁନ୍ଦର ଏବଂ ସଜ୍ଜନମାନଙ୍କ ମନକୁ ରୁଚିକର ହେବ । ଶ୍ମଶାନର ଅପବିତ୍ର ଭସ ସୁଦ୍ଧା ଶ୍ରୀ ମହାଦେବଙ୍କ ଅଙ୍ଗସଙ୍ଗ ଯୋଗେ ସୁନ୍ଦର ବୋଧ ହୁଏ ଏବଂ ସ୍ମରଣ କରିବା ମାତ୍ରେ ହିଁ ପବିତ୍ର କରି ପକାଏ ॥ " ॥ ଦୋହା:—ଶ୍ରୀରାମଙ୍କ ଯଶସଙ୍ଗଯୋଗେ

ସ୍ୟାମ ସୁରଭିପୟ ବିସଦ ଅତି ଗୁନଦ କରହିଁ ସବ ପାନ ।
ଗିରା ଗ୍ରାମ୍ୟ ସିୟ ରାମ ଜସ ଗାୱହିଁ ସୁନହିଁ ସୁଜାନ ॥୧୦(ଖ)॥
ମନି ମାନିକ ମୁକୁତା ଛବି ଜୈସୀ । ଅହି ଗିରି ଗଜ ସିର ସୋହ ନ ତୈସୀ ॥
ନୃପକିରୀଟ ତରୁନୀତନୁ ପାଈ । ଲହହିଁ ସକଲ ସୋଭା ଅଧିକାଈ ॥୧॥
ତୈସେହିଁ ସୁକବି କବିତ ବୁଧ କହହୀଁ । ଉପଜହିଁ ଅନତ ଅନତ ଛବି ଲହହୀଁ ॥
ଭଗତି ହେତୁ ବିଧିଭବନ ବିହାଈ । ସୁମିରତ ସାରଦ ଆୱତି ଧାଈ ॥୨॥
ରାମଚରିତ ସର ବିନୁ ଅହ୍ନୱାଏଁ । ସୋ ଶ୍ରମ ଜାଇ ନ କୋଟି ଉପାଏଁ ॥
କବି କୋବିଦ ଅସ ହୃଦୟଁ ବିଚାରୀ । ଗାୱହିଁ ହରିଜସ କଲିମଲହାରୀ ॥୩॥

---

ଶ୍ୟାମଧେନୁ ଦୁଗ୍ଧ ସୁଖଦ ଗୁଣଦ ପାନ କରେ ତାକୁ ଗୁଣୀ ॥
ଗ୍ରାମୀଣ ଭାଷାରେ ସୀତାରାମ ଯଶ ଗାଇବେ ସଜ୍ଜନ ଶୁଣି ॥୧୦(ଖ)॥
ମଣି ମାଣିକ ଆବର ମୁକ୍ତା ଛବି ଯେତେ । ଅହି ଗିରି ଗଜ ଶିରେ ନ ଶୋଭନ୍ତି ତେତେ ॥
ଲାଗିଣ ନୃପ କିରୀଟ ତରୁଣୀ ଅଙ୍ଗରେ । ଲଭନ୍ତି ସକଳ ଶୋଭା ପ୍ରଚୁର ଭାବରେ ॥୧॥
ତେମନ୍ତ ବୁଧେ ସୁକବି କବିତା କହନ୍ତି । ଉପୁଜି ଅନ୍ୟତ୍ର ଶୋଭା ଅନ୍ୟତ୍ର ଲଭନ୍ତି ॥
ଭକ୍ତି ହେତୁ ପରିହରି ବ୍ରହ୍ମ ନିକେତନ । ସ୍ମରନ୍ତେ ଶାରଦା ଧାଇଁ ଆସଇ ବହନ ॥୨॥
ରାମକଥା-ସରୋବରେ ସ୍ନାନ ନ କରାଇ । କୋଟି ଉପାୟେ ସେ ଶ୍ରମ ଯାଏ ନାହିଁ ଭାଇ ॥
କବି କୋବିଦ ଏମନ୍ତ ହୃଦୟେ ବିଚାରି । ଗାଆନ୍ତି ଶ୍ରୀହରି ଗୁଣ କଳି-ଅଘହାରୀ ॥୩॥

---

ମୋ କବିତା ସମସ୍ତଙ୍କୁ ଅତ୍ୟନ୍ତ ପ୍ରୀତିକର ବୋଧ ହେବ । ମଳୟ ପବନର ସଙ୍ଗ ଯୋଗେ ସାମାନ୍ୟ କାଷ୍ଠ ମାତ୍ର (ଚନ୍ଦନ ହୋଇ) ବନ୍ଦନୀୟ ହୋଇପାରେ । ସେତେବେଳେ କାଷ୍ଠର ତୁଚ୍ଛତା ବା ହୀନତା କଥା କେହି ବିଚାରକୁ ଆଣେ କି ? ॥ ୧୦ (କ) ॥ ଶ୍ୟାମଳୀ ଗାଈର ବର୍ଣ୍ଣ କଳା ହେଲେ ମଧ୍ୟ ତାହାର ଦୁଧ ଉଜ୍ଜ୍ୱଳ ଓ ବଡ ଗୁଣକାରକ । ଏହା ବିଚାରି ସମସ୍ତ ଲୋକ ତାହା ପାନ କରନ୍ତି । ସେହିପରି ଗାଉଁଲି ଭାଷାରେ ରଚିତ ହେଲେ ମଧ୍ୟ ଶ୍ରୀ ସୀତାରାମଙ୍କ ଯଶକୁ ବୁଦ୍ଧିମାନ୍ ଲୋକ ବିଶେଷ ଆଗ୍ରହର ସହିତ ଗାଆନ୍ତି ଓ ଶୁଣନ୍ତି ॥ ୧୦ (ଖ) ॥ ଚୌପାଈ—ମଣି, ମାଣିକ୍ୟ ଓ ମୁକ୍ତାର ଯେମିତି ସୁନ୍ଦର ଛବି, ତାହା ସର୍ପ, ପର୍ବତ ଓ ହସ୍ତୀର ମସ୍ତକରେ ସେପରି ଶୋଭା ପାଏ ନାହିଁ । ରାଜାଙ୍କର ମୁକୁଟ ଓ ନବଯୁବତୀର ଶରୀରକୁ ହିଁ ପାଇ ଏଗୁଡିକ ଅଧିକ ଶୋଭା ଲାଭ କରିଥାନ୍ତି ॥ ୧ ॥ ସେହିପରି ପଣ୍ଡିତମାନେ କହନ୍ତି—"ଉତ୍ତମ କବିଙ୍କ କବିତା ଗୋଟିଏ ସ୍ଥାନରୁ ଜାତହୁଏ ଓ ଅନ୍ୟତ୍ର ଏହା ଶୋଭା ପାଏ । (ଅର୍ଥାତ୍ ଯେଉଁଠି କବିଙ୍କ ବାଣୀରୁ ସୃଷ୍ଟ କବିତାର ବିଚାର, ପ୍ରଚାର ଓ ତହିଁରେ ବର୍ଣ୍ଣିତ ଆଦର୍ଶର ଗ୍ରହଣ ଓ ଅନୁସରଣ କରାହୁଏ, ସେହିଠାରେ ଉକ୍ତ କବିତା ଶୋଭା ପାଏ) । କବି ସ୍ମରଣ କରିବା ମାତ୍ରେ ତାଙ୍କ ଭକ୍ତି ହେତୁ ସରସ୍ୱତୀ ବ୍ରହ୍ମଲୋକ ଛାଡି ଦଉଡି ଆସନ୍ତି ॥ ୨ ॥ ଶ୍ରୀରାମଚରିତ-ସରୋବରରେ ସ୍ନାନବିନା ଅନ୍ୟାନ୍ୟ କୋଟି

କୀନ୍ହେଂ ପ୍ରାକୃତ ଜନଗୁନ ଗାନା । ସିର ଧୁନି ଗିରା ଲଗତ ପଛିତାନା ॥
ହୃଦୟ ସିନ୍ଧୁ ମତି ସୀପ ସମାନା । ସ୍ୱାତି ସାରଦା କହହିଁ ସୁଜାନା ॥୪॥
ଜୌଁ ବରଷଇ ବର ବାରି ବିଚାରୂ । ହୋହିଁ କବିତ ମୁକୁତାମନି ଚାରୂ ॥୫॥

ଜୁଗୁତି ବେଧି ପୁନି ପୋହିଅହିଁ ରାମଚରିତ ବର ତାଗ ।
ପହିରହିଁ ସଜ୍ଜନ ବିମଲ ଉର ସୋଭା ଅତି ଅନୁରାଗ ॥୧୧॥

ଜେ ଜନମେ କଲିକାଲ କରାଲା । କରତବ ବାୟସ ବେଷ ମରାଲା ॥
ଚଲତ କୁପନ୍ଥ ବେଦମଗ ଛାଁଡେ । କପଟ କଲେବର କଲିମଲ ଭାଁଡେ ॥୧॥
ବଞ୍ଚକ ଭଗତ କହାଇ ରାମକେ । କିଂକର କଞ୍ଚନ କୋହ କାମ କେ ॥
ତିନ୍ହମହଁ ପ୍ରଥମ ରେଖ ଜଗ ମୋରୀ । ଧୀଂଗ ଧରମଧ୍ୱଜ ଧନ୍ଧକ ଧୋରୀ ॥୨॥

---

ପ୍ରାକୃତ ଜନଙ୍କ ଗୁଣ ଗାଆନ୍ତେ ମୁଖରେ । ମୁଣ୍ଡ ପିଟି ସରସ୍ୱତୀ ପଶ୍ଚାତ୍ତାପ କରେ ॥
ହୃଦୟ ସମୁଦ୍ର ପ୍ରାଜ୍ଞ ମତି ସୀପ ସମ । ସ୍ୱାତୀ ଶାରଦା କହନ୍ତି ପ୍ରବୀଣ ଉତ୍ତମ ॥୪॥
ଯେବେ ବରଷଇ ବାରି ବିଚାର ସୁନ୍ଦର । ଉପୁଜେ କବିତା ମୁକ୍ତାମଣି ମନୋହର ॥୫॥

ଯୁକ୍ତିରେ ଫୋଡଣ ଗୁନ୍ଥି ରମ୍ୟ ରାମ-ଚରିତ-ସୂତେ ସଜ୍ଜନ ।
ପିନ୍ଧନ୍ତେ ବିମଳ ହୃଦୟେ ହୁଅଇ ଶୋଭାନୁରାଗ ବର୍ଦ୍ଧନ ॥୧୧॥

ଯେ କଳି କରାଳ କାଳେ ଜନମ ଲଭଇ । ହଂସ ବେଶ ଧରି କାକ କରମ କରଇ ॥
ଶ୍ରୁତି ପଥ ତେଜି କରେ କୁମାର୍ଗେ ଗମନ । କପଟ ଶରୀର କଳି କଳୁଷଭାଜନ ॥୧॥
ବଞ୍ଚକ ଭକ୍ତ କୁହାଏ ଭଗବାନଙ୍କର । କୋପ, କାଞ୍ଚନ, କାମର ସତତ କିଙ୍କର ॥
ତାହାଙ୍କ ମଧ୍ୟେ ସଂସାରେ ପ୍ରଥମେ ମୁଁ ଗଣା । ଧ୍ୱଜ ଧର୍ମ-ଧ୍ୱଜୀ ମୋତେ, ଧନ୍ଧାଜାଲେ ବଣା ॥୨॥

---

ଉପାୟବଳରେ ସୁଦ୍ଧା ସରସ୍ୱତୀଙ୍କର ଏହି କ୍ଳାନ୍ତି ଦୂର ହୁଏ ନାହିଁ । କବି ଓ ପଣ୍ଡିତମାନେ ସେମାନଙ୍କ ହୃଦୟରେ ଏହା ବିଚାର କରି କଳିଯୁଗ ପାପର ହରଣକାରୀ ଶ୍ରୀହରିଙ୍କ ଯଶ ଗାନ କରନ୍ତି ॥ ୩ ॥ କବି ସାଂସାରିକ ମନୁଷ୍ୟମାନଙ୍କ ଗୁଣଗାନ କଲେ ସରସ୍ୱତୀ ଅନୁତାପ କରି ମୁଣ୍ଡ ପିଟନ୍ତି (ଯେ ସେ କାହିଁକି ଏହାଙ୍କ ଆହ୍ୱାନରେ ଆସିଲେ) । ବୁଦ୍ଧିମାନ୍ ଲୋକେ ହୃଦୟକୁ ସମୁଦ୍ର, ବୁଦ୍ଧି ଶାମୁକା ଓ ସରସ୍ୱତୀ ସ୍ୱାତୀନକ୍ଷତ୍ର ସହିତ ସମାନ ବୋଲି କହନ୍ତି ॥୪॥ ଏପରି ବାତାବରଣରେ ଯଦି ଶ୍ରେଷ୍ଠ ବିଚାର-ଜଳ ବରଷେ, ତେବେ ମୁକ୍ତାମଣି ସଦୃଶ ସୁନ୍ଦର କବିତାର ସୃଷ୍ଟି ହୁଏ ॥୫॥ ଦୋହା :—ସେହି କବିତାରୂପୀ ମୁକ୍ତାମଣିକୁ ଯୁକ୍ତିଦ୍ୱାରା ବିଦ୍ଧ କରି ରାମଚରିତ୍ରରୂପୀ ସୁନ୍ଦର ସୂତାରେ ଗୁନ୍ଥି ସଜ୍ଜନମାନେ ସେମାନଙ୍କ ନିର୍ମଳ ହୃଦୟରେ ଧାରଣ କରନ୍ତି । ତଦ୍ୱାରା ଅନ୍ତଃସ୍ଥ ଅନୁରାଗ-ଶୋଭାରେ ସେମାନେ ସୁଶୋଭିତ ହୁଅନ୍ତି । (ଅର୍ଥାତ୍ ସେମାନେ ନିରବଚ୍ଛିନ୍ନ ପ୍ରେମ ଲାଭ କରନ୍ତି) ॥୧୧॥ ଚୌପାଈ—ଯେଉଁ-ମାନେ କରାଳ କଳିକାଳରେ ଜନ୍ମଲାଭ କରିଅଛନ୍ତି, ଯେଉଁମାନେ ହଂସବେଶ ଧରି କୁଆପରି କାମ କରନ୍ତି, ଯେଉଁମାନେ ବେଦମାର୍ଗକୁ ଛାଡି କୁମାର୍ଗରେ ଗତି କରନ୍ତି, ଯେଉଁମାନେ କପଟର ପ୍ରତିମୂର୍ତ୍ତି ଓ କଳିଯୁଗର ପାପ-ଭାଣ୍ଡ, ଯେଉଁମାନେ ନିଜକୁ ଶ୍ରୀରାମଙ୍କ ଭକ୍ତ

ଜୌଁ ଅପନେ ଅବଗୁନ ସବ କହଉଁ । ବାଢ଼ଇ କଥା ପାର ନହିଂ ଲହଉଁ ॥
ତାତେଁ ମୈଂ ଅତି ଅଲପ ବଖାନେ । ଥୋରେ ମହୁଁ ଜାନିହହିଁ ସୟାନେ ॥୩॥
ସମୁଝି ବିବିଧ ବିଧି ବିନତୀ ମୋରୀ । କୋଉ ନ କଥା ସୁନି ଦେଇହି ଖୋରୀ ॥
ଏତେହୁ ପର କରିହହିଁ ଜେ ଅସଙ୍କା । ମୋହିତେଁ ଅଧିକ ତେ ଜଡ଼ ମତିରଙ୍କା ॥୪॥
କବି ନ ହୋଉଁ ନହିଁ ଚତୁର କହାଓ୍ୱଉଁ । ମତି ଅନୁରୂପ ରାମଗୁନ ଗାଓ୍ୱଉଁ ॥
କହଁ ରଘୁପତି କେ ଚରିତ ଅପାରା । କହଁ ମତି ମୋରି ନିରତ ସଂସାରା ॥୫॥
ଜେହିଁ ମାରୁତ ଗିରି ମେରୁ ଉଡ଼ାହୀଁ । କହହୁ ତୂଲ କେହି ଲେଖେ ମାହୀଁ ॥
ସମୁଝତ ଅମିତ ରାମ ପ୍ରଭୁତାଈ । କରତ କଥା ମନ ଅତି କଦରାଈ ॥୬॥
ସାରଦ ସେସ ମହେସ ବିଧି ଆଗମ ନିଗମ ପୁରାନ ।
ନେତି ନେତି କହି ଜାସୁ ଗୁନ କରହିଁ ନିରନ୍ତର ଗାନ ॥୧୨॥

---

ଯେବେ ନିଜ ଅବଗୁଣ ସମସ୍ତ କହିବି । କଥା ଏତେ ବଢ଼ିବ କି ପାର ନ ପାଇବି ॥
ତେଣୁ ମୁଁ ବର୍ଣ୍ଣନ କଲି ସଂକ୍ଷେପେ ଅତ୍ୟନ୍ତ । ସ୍ୱଳ୍ପକେ ଜାଣି ପାରିବେ ସୁବିଚାରବନ୍ତ ॥୩॥
ଧ୍ୟାନ ଦେଇ ମୋ ବିବିଧ ବିନୟ ଉପରେ । କଥା ଶୁଣି ଦୋଷ କେହି ନ ଦେବେ ପଛରେ ॥
ଶଙ୍କା ଯେ କରିବେ ଏତେ କହିଲା ଉତ୍ତାରୁ । ସେ ଜଡ଼ ବୁଦ୍ଧି ଦରିଦ୍ର ଅଧିକ ମୋଠାରୁ ॥୪॥
କବି ନୁହଇ ଚତୁର କିମ୍ବା ନ କୁହାଏ । ନିଜ ମତି ଅନୁସାରେ ରାମଗୁଣ ଗାଏ ॥
କାହିଁ ଶ୍ରୀ ରଘୁନାଥଙ୍କ ଚରିତ ଅନନ୍ତ । କାହିଁ ବା ମତି ମୋହର ସଂସାର-ଆସକ୍ତ ॥୫॥
ଯେଉଁ ମାରୁତରେ ମେରୁ ମନ୍ଦର ଉଡ଼ଇ । କହ ତହିଁ ତୂଳା କେଉଁ ଲେଖାରେ ଆସଇ ॥
ଭାବି ଅସୀମ ପ୍ରଭୁତ୍ୱ ରଘୁପତିଙ୍କର । କଥା କରିବାକୁ ମନ ହୁଅଇ କାତର ॥୬॥
ସରସ୍ୱତୀ ଶେଷ ବିଧାତା ମହେଶ ନିଗମାଗମ ପୁରାଣ ।
'ନେତି' 'ନେତି' କହି ନିତ୍ୟ ନିରନ୍ତର କରନ୍ତି ଯା' ଗୁଣ ଗାନ ॥୧୨॥

---

ବୋଲି କହି ଲୋକଙ୍କୁ ପ୍ରତାରିତ କରନ୍ତି, ଯେଉଁମାନେ ସୁବର୍ଣ୍ଣ ଆଦି ଧନ (ଲୋଭ), କ୍ରୋଧ ଓ କାମର ଦାସ, ଯେଉଁମାନେ ପାଷଣ୍ଡ ଓ ଧର୍ମଧ୍ୱଜ (ବକଧାର୍ମିକ) ଏବଂ କପଟାଚାର ଯେଉଁମାନଙ୍କର ପେଷା, ସଂସାରର ଏପରି ଲୋକମାନଙ୍କ ମଧ୍ୟରେ ମୁଁ ଅଗ୍ରଗଣ୍ୟ ॥ ୧-୨ ॥ ଯଦି ଆପଣାର ଅବଗୁଣ ମୁଁ କହି ଚାଲିବି, ତେବେ କଥା ବହୁତ ବଢ଼ିଯିବ ଏବଂ ମୁଁ ପାର ପାଇବି ନାହିଁ । ଏଣୁ ମୁଁ ବହୁତ କମ୍ ଅବଗୁଣ ବର୍ଣ୍ଣନା କରିଛି । ବୁଦ୍ଧିମାନ୍ ଲୋକ ଅଳ୍ପକେ ସବୁ କଥା ବୁଝି ନେବେ ॥ ୩ ॥ ମୋର ଅନେକ ପ୍ରକାରର ବିନତିକୁ ଉପଲବ୍ଧି କରିବା ପରେ କେହି ହେଲେ ଏହି କଥା ଶୁଣି ମୋତେ ଦୋଷ ଦେବେ ନାହିଁ । ଏହାସତ୍ତ୍ୱେ ଯେଉଁମାନେ ପୁଣି ଆଶଙ୍କା କରିବେ, ସେମାନେ ମୋଠାରୁ ମଧ୍ୟ ବେଶି ବଡ଼ ମୂର୍ଖ, ଜଡ଼ ଓ ହୀନମତି ॥ ୪ ॥ ମୁଁ ନୁହେଁ କବି କିମ୍ବା ନୁହେଁ ଚତୁର । ଆପଣା ବୁଦ୍ଧି ଅନୁସାରେ ଶ୍ରୀରାମଙ୍କ ଗୁଣ ଗାଇବାକୁ ଯାଉଛି । ମାତ୍ର ଶ୍ରୀରଘୁପତିଙ୍କ ଅପାର ଚରିତ କେଉଁଠି ? କେଉଁଠି ମୋ ବିଷୟାସକ୍ତ

ସବ ଜାନତ ପ୍ରଭୁ ପ୍ରଭୁତା ସୋଈ । ତଦପି କହେଁ ବିନୁ ରହା ନ କୋଈ ॥
ତହାଁ ବେଦ ଅସ କାରନ ରାଖା । ଭଜନ ପ୍ରଭାଉ ଭାଁତି ବହୁ ଭାଷା ॥୧॥
ଏକ ଅନୀହ ଅରୂପ ଅନାମା । ଅଜ ସଚ୍ଚିଦାନନ୍ଦ ପରଧାମା ॥
ବ୍ୟାପକ ବିଶ୍ୱରୂପ ଭଗବାନା । ତେହିଁ ଧରି ଦେହ ଚରିତ କୃତ ନାନା ॥୨॥
ସୋ କେବଲ ଭଗତନ ହିତ ଲାଗୀ । ପରମ କୃପାଲ ପ୍ରନତ ଅନୁରାଗୀ ॥
ଜେହି ଜନ ପର ମମତା ଅତି ଛୋହୂ । ଜେହିଁ କରୁନା କରି କୀହ୍ନ ନ କୋହୂ ॥୩॥

---

ପ୍ରଭୁଙ୍କ ସେହି ପ୍ରଭୁତ୍ୱ ଜାଣନ୍ତି ସରବେ । ତଥାପି ନ କହି କେହି ରହି ନାହିଁ ପାରେ ॥
ତହିଁ ବେଦ ଏହିପରି କାରଣ ରଖିଛି । ଭଜନ ପ୍ରଭାବ ନାନା ପ୍ରକାରେ ବର୍ଣ୍ଣିଛି ॥୧॥
କାମନା-ରହିତ ଏକ ଅରୂପ ଅନାମ । ଅଜ ଅବ୍ୟକ୍ତ ସଚ୍ଚିଦାନନ୍ଦ ପରଧାମ ॥
ବ୍ୟାପକ ବିଶ୍ୱ ସ୍ୱରୂପ ସେହି ଭଗବାନ । ଦେହ ଧରି ନାନାଲୀଳା କରନ୍ତି ବିଧାନ ॥୨॥
ତାହା କେବଳ ଭକ୍ତଙ୍କ ଉପକାର ଲାଗି । ପରମ କୃପାଳୁ ଦୀନ ପ୍ରଣତାନୁରାଗୀ ॥
ଯେଉଁ ଜନ ପ୍ରତି ସ୍ନେହ ମମତା ରଖନ୍ତି । ତା ଉପରେ କୃପାକର କୋପ ନ କରନ୍ତି ॥୩॥

---

ବୁଦ୍ଧି ! ॥ ୫ ॥ ଯେଉଁ ପବନରେ ସୁମେରୁ ପରି ପର୍ବତ ସୁଦ୍ଧା ଉଡ଼ିଯାଏ, କୁହନ୍ତୁ ତ ତାହାର ଆଗରେ ତୂଳାର ଶକ୍ତି କାହିଁରେ ଗଣା ? ଶ୍ରୀରାମଙ୍କ ଅସୀମ ପ୍ରଭୁତ୍ୱକୁ ବୁଝି କଥା ରଚନା କରିବାକୁ ମୋ ମନ ବଡ଼ କୁଣ୍ଠାବୋଧ କରୁଛି ॥ ୬ ॥ ଦୋହା.—ସରସ୍ୱତୀ, ଶେଷ, ଶିବ, ଶାସ୍ତ୍ର, ବେଦ ଓ ପୁରାଣ—ଏ ସମସ୍ତେ 'ନେତି' 'ନେତି' କହି (ଭଗବାନ୍ ରାମଙ୍କ ମହିମାର ପାର ନ ପାଇ "ଏତିକି ନୁହେଁ", "ଏତିକି ନୁହେଁ" କହି) ସର୍ବଦା ତାଙ୍କ ଗୁଣଗାନ କରନ୍ତି ॥ ୧୨ ॥ ଚୌପାଈ:—ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପ୍ରଭୁତ୍ୱ ଏପରି ଭାବରେ ଅକଥନୀୟ ବୋଲି ଆମେ ଜାଣୁ । ତଥାପି ତାହା ନ କହି କେହି ରହିପାରି ନାହାନ୍ତି । ବେଦ ତାହାର ଏପରି ଗୋଟିଏ କାରଣ ଦେଇଛି । ତହିଁରେ ଭଜନର ପ୍ରଭାବ ବହୁ ପ୍ରକାରେ କୁହାଯାଇ ଅଛି । (ଅର୍ଥାତ୍ ଭଗବାନ୍ଙ୍କ ମହିମାକୁ ସମ୍ପୂର୍ଣ୍ଣତଃ କେହି ବର୍ଣ୍ଣନା କରିପାରନ୍ତି ନାହିଁ; ମାତ୍ର ଯାହାଙ୍କ ଦ୍ୱାରା ଯେତିକି ସମ୍ଭବ, ତା'ପକ୍ଷରେ ସେତିକି ତାଙ୍କ ଗୁଣଗାନ କରିବା ଉଚିତ ।) ଭଗବାନ୍ଙ୍କ ଗୁଣଗାନ ବା ଭଜନର ପ୍ରଭାବ ବଡ଼ ବିଚିତ୍ର ଏବଂ ଶାସ୍ତ୍ରରେ ନାନା ପ୍ରକାରେ ତାହାର ବର୍ଣ୍ଣନା ଦିଆଯାଇ ଅଛି । ଅତି ଅଳ୍ପ ମାତ୍ରାରେ ସୁଦ୍ଧା ଭଗବାନ୍ଙ୍କ ଭଜନ ମନୁଷ୍ୟକୁ ଅତି ସହଜରେ ଭବସାଗରରୁ ଉଦ୍ଧାର କରିଦିଏ ॥ ୧ ॥ ଯେଉଁ ପରମେଶ୍ୱର ଏକ, ଯାହାଙ୍କର କୌଣସି ଇଚ୍ଛା ନାହିଁ, ଯାହାଙ୍କର କୌଣସି ରୂପ ଓ ନାମ ନାହିଁ, ଯେ ଅଜନ୍ମା, ସଚ୍ଚିଦାନନ୍ଦ ଓ ପରମଧାମ, ଯେ ସମସ୍ତଙ୍କଠାରେ ବ୍ୟାପି ଅଛନ୍ତି ଓ ବିଶ୍ୱରୂପ ଅଟନ୍ତି, ସେହି ଭଗବାନ୍ ଦିବ୍ୟଶରୀର ଧାରଣ କରି ନାନା ପ୍ରକାରର ଲୀଳା କରିଅଛନ୍ତି ॥ ୨ ॥ ସେହିସବୁ ଲୀଳା କେବଳ ଭକ୍ତଜନଙ୍କ ହିତ ପାଇଁ । କାରଣ ଭଗବାନ୍ ପରମଦୟାଳୁ ଓ ବଡ଼ ଶରଣାଗତ-ପ୍ରେମୀ । ଭକ୍ତଙ୍କ ପ୍ରତି ତାଙ୍କର ବିଶେଷ ମମତା ଓ କୃପା । ଥରେ ସେ

ଗଈ ବହୋର ଗରୀବ ନେୱାଜୂ । ସରଲ ସବଲ ସାହିବ ରଘୁରାଜୂ ॥
ବୁଧ ବରନହିଁ ହରିଜସ ଅସ ଜାନୀ । କରହିଁ ପୁନୀତ ସୁଫଲ ନିଜ ବାନୀ ॥୪॥
ତେହିଁ ବଲ ମୈଂ ରଘୁପତିଗୁନଗାଥା । କହିହଉଁ ନାଇ ରାମପଦ ମାଥା ॥
ମୁନିନ୍ହ ପ୍ରଥମ ହରିକୀରତି ଗାଈ । ତେହିଁ ମଗ ଚଲତ ସୁଗମ ମୋହି ଭାଈ ॥୫॥

ଅତି ଅପାର ଜେ ସରିତବର ଜୌଁ ନୃପ ସେତୁ କରାହିଁ ॥
ଚଢ଼ି ପିପୀଲିକଉ ପରମ ଲଘୁ ବିନୁ ଶ୍ରମ ପାରହି ଜାହିଁ ॥୧୩॥

ଏହି ପ୍ରକାର ବଲ ମନହି ଦେଖାଈ । କରିହଉଁ ରଘୁପତି କଥା ସୁହାଈ ॥
ବ୍ୟାସ ଆଦି କବିପୁଙ୍ଗବ ନାନା । ଜିନ୍ହ ସାଦର ହରି ସୁଜସ ବଖାନା ॥୧॥

---

ଗତ ପୁନଃ ପ୍ରଦାୟକ ଗରିବ-ପାଳକ । ସରଳ ସବଳ ସ୍ୱାମୀ ଶ୍ରୀ ରଘୁନାୟକ ॥
ବୁଧ ବଖାଣନ୍ତି ହରି ଯଶ ଏହା ଜାଣି । ପବିତ୍ର କରିବା ହେତୁ ଆପଣାର ବାଣୀ ॥୪॥
ମୁଁ ସେହି ବଳରେ ରଘୁପତି ଗୁଣ ଗ୍ରାମ । କଥା କହିବି ରାମଙ୍କୁ କରିଣ ପ୍ରଣାମ ॥
ମୁନିଗଣ ପୂର୍ବେ ହରି କୀର୍ତ୍ତି ଗାଇଛନ୍ତି । ସେ ପଥେ ଗଲେ ସୁଗମ ହେବ ମୋତେ ଅତି ॥୫॥

ଅତ୍ୟନ୍ତ ଅପାର ସରିତ ଉପରେ ନୃପ ଯେବେ ସେତୁ କରେ ।
ଚଢି ଅତି କ୍ଷୁଦ୍ର ପିପୀଲିକା ପାରି ହୋଇଯାଏ ଅକ୍ଲେଶରେ ॥୧୩॥

ଏହି ପ୍ରକାର ବଳେ ମୁଁ ଦୃଢ଼ କରି ମନ । କହିବି ରଘୁପତିଙ୍କ କଥା ସୁଶୋଭନ ॥
ବ୍ୟାସ ଆଦି ନାନା କବି ବିଜ୍ଞାନୀ ପ୍ରବରେ । ବଖାଣିଛନ୍ତି ଯେ ହରି ସୁଯଶ ସାଦରେ ॥୧॥

---

ଯାହାଠାରେ ଦୟା ଆରମ୍ଭ କରି ଦିଅନ୍ତି, ପୁଣି ତାହା ଉପରେ କଦାପି କ୍ରୋଧ କରନ୍ତି ନାହିଁ ॥ ୩ ॥ ସେହି ପ୍ରଭୁ ରଘୁନାଥ ହୃତ (ହଜି ଯାଇଥିବା) ବସ୍ତୁକୁ ପୁଣି ଲାଭ କରାଇ ଦିଅନ୍ତି । ସେ ଦୀନଦୟାଳୁ, ଦୀନବନ୍ଧୁ, ସରଳସ୍ୱଭାବ, ସର୍ବଶକ୍ତିମାନ୍ ଓ ସମସ୍ତଙ୍କ ସ୍ୱାମୀ । ଏହା ଜାଣି ପଣ୍ଡିତମାନେ ଶ୍ରୀହରିଙ୍କ ଯଶ ବର୍ଣ୍ଣନାପୂର୍ବକ ଆପଣା ଆପଣାର ବାଣୀକୁ ପବିତ୍ର ଓ ସଫଳ କରନ୍ତି । ଉକ୍ତ ପବିତ୍ରବାଣୀ ଭକ୍ତ ଓ ପାଠକଙ୍କୁ ମୋକ୍ଷ ତଥା ଭଗବତ୍ପ୍ରେମ ଆଦି ଉତ୍ତମ ଫଳ ଦେଇଥାଏ ॥ ୪ ॥ ସେହି ବଳରେ (ମହିମାର ଯଥାର୍ଥ ବର୍ଣ୍ଣନା ନ ହେଲେ ମଧ୍ୟ ମହାନ୍ ଫଳଦାୟକ ଭଜନ ବିଚାରି, ତାହାଦ୍ୱାରା ଭଗବତ୍ କୃପାଲାଭର ବିଶ୍ୱାସ ଓ ଭରସାରେ) ମୁଁ ଶ୍ରୀରାମଚନ୍ଦ୍ରଙ୍କ ଚରଣରେ ମୁଣ୍ଡ ନୁଆଁଇ ଶ୍ରୀ ରଘୁନାଥଜୀଙ୍କ ଗୁଣକଥା କହିବି । ଏହି ବିଷୟରେ (ବାଲ୍ମୀକି, ବ୍ୟାସ) ଆଦି ମୁନିମାନେ ପୂର୍ବରୁ ହରିଙ୍କ କୀର୍ତ୍ତିଗାଥା ଗାଇଅଛନ୍ତି । ଭାଇ ! ସେହିମାନଙ୍କ ପ୍ରଦର୍ଶିତ ମାର୍ଗରେ ଚାଲିବା ମୋ ପକ୍ଷରେ ସହଜ ହେବ ॥ ୫ ॥

ଦୋହା.—ଶ୍ରେଷ୍ଠ ନଦୀ ଅତି ଅପାର, ଅର୍ଥାତ୍ ତାହା ପାର କରିବା ଅସମ୍ଭବ । କିନ୍ତୁ ଯଦି ରାଜା ତାହା ଉପରେ ସେତୁ ବନାଇ ଦିଅନ୍ତି, ତାହା ହେଲେ ଅତି ଛୋଟ ପିମ୍ପୁଡ଼ି ମଧ୍ୟ ତାହା ଉପରେ ଚଢି ବିନା ପରିଶ୍ରମରେ ତାହାକୁ ପାର ହୋଇଯାଏ । (ସେହିପରି ମୁନିମାନଙ୍କ ବର୍ଣ୍ଣନା ସାହାଯ୍ୟରେ ମୁଁ ମଧ୍ୟ ରାମଚରିତର ବର୍ଣ୍ଣନା ସହଜରେ

ଚରନ କମଲ ବନ୍ଦଉଁ ତିନ୍ହ କେରେ । ପୁରଓ୍ୱହୁ ସକଲ ମନୋରଥ ମେରେ ॥
କଲିକେ କବିହ୍ନ କରଉଁ ପରନାମା । ଜିହ୍ନ ବରନେ ରଘୁପତି ଗୁନଗ୍ରାମା ॥୨॥
ଜେ ପ୍ରାକୃତ କବି ପରମ ସୟାନେ । ଭାଷାଁ ଜିହ୍ନ ହରିଚରିତ ବଖାନେ ॥
ଭଏ ଜେ ଅହହିଁ ଜେ ହୋଇହହିଁ ଆଗେଁ । ପ୍ରନଓ୍ୱଉଁ ସବହି କପଟ ସବ ତ୍ୟାଗେଁ ॥୩॥
ହୋହୁ ପ୍ରସନ୍ନ ଦେହୁ ବରଦାନୂ । ସାଧୁସମାଜ ଭନିତି ସନମାନୂ ॥
ଜୋ ପ୍ରବନ୍ଧ ବୁଧ ନହିଁ ଆଦରହୀଁ । ସୋ ଶ୍ରମ ବାଦି ବାଲକବି କରହୀଁ ॥୪॥
କୀରତି ଭନିତି ଭୂତି ଭଲି ସୋଈ । ସୁରସରି ସମ ସବକହଁ ହିତ ହୋଈ ॥
ରାମ ସୁକୀରତି ଭନିତି ଭଦେସା । ଅସମଂଜସ ଅସ ମୋହି ଅଁଦେସା ॥୫॥

---

ବନ୍ଦୁଅଛୁ ସମସ୍ତଙ୍କ ଚରଣ-କମଳ । ମୋର ମନୋରଥ ପୂର୍ଣ୍ଣ କରନ୍ତୁ ସକଳ ॥
କଳି-ଭ୍ରମର କବିଙ୍କୁ କରୁଛୁ ପ୍ରଣାମ । ଯେ ବର୍ଣ୍ଣିଅଛନ୍ତି ରଘୁପତି ଗୁଣଗ୍ରାମ ॥୨॥
ଯେ ପ୍ରାକୃତ କବିବର ପରମ ନିପୁଣ । ଭାଷା-ବନ୍ଧେ ଯେ ବଖାଣିଛନ୍ତି ହରିଗୁଣ ॥
ହୋଇଛନ୍ତି ଅଛନ୍ତି ଯେ ହୋଇବେ ଆଗକୁ । କପଟ, ଛଳ ତେଜିଣ ନମେ ସମସ୍ତଙ୍କୁ ॥୩॥
ପ୍ରସନ୍ନ ହୋଇ ଦିଅନ୍ତୁ ଏହି ବରଦାନ । ସାଧୁ ସମାଜରେ ପାଉ ଭଣିତ ସମ୍ମାନ ॥
ଆଦର ଯେ ପ୍ରବନ୍ଧକୁ ବୁଧ ନ କରନ୍ତି । ବୃଥାରେ ବାଳକ କବି ସେ ଶ୍ରମ କରନ୍ତି ॥୪॥
ସେହି କୀରତି ବିଭୂତି କବିତା ଉତ୍ତମ । ଯେ ସର୍ବ ହିତ-କାରିଣୀ ହୁଏ ଗଙ୍ଗାସମ ॥
ରାମ କୀର୍ତ୍ତି କଳ, ମନ୍ଦ କବିତା ଅଟଇ । ଅସଙ୍ଗତ ହେତୁ ମୋତେ ସନ୍ଦେହ ହୁଅଇ ॥୫॥

---

କବିପାଇବି ॥ ୧୩ ॥ ଚୌପାଇ—ଏହିପରି ମନକୁ ବଳ ଦେଖାଇ ମୁଁ ଶ୍ରୀ ରଘୁନାଥଙ୍କ ସୁନ୍ଦର କଥା ରଚନା କରିବି । ବ୍ୟାସ ଆଦି ଅନେକ ଶ୍ରେଷ୍ଠ କବି ଜନ୍ମଲଭି କରି ଶ୍ରୀହରିଙ୍କ ସୁଯଶ ଅତି ଆଦରରେ ବର୍ଣ୍ଣନା କରିଅଛନ୍ତି ॥ ୧ ॥ ମୁଁ ସେ ସମସ୍ତ ଶ୍ରେଷ୍ଠ କବିଙ୍କ ପାଦ-ପଦ୍ମରେ ପ୍ରଣାମ କରୁଛି । ସେମାନେ ମୋର ସକଳ ମନୋରଥ ପୂର୍ଣ୍ଣ କରନ୍ତୁ । କଳିଯୁଗରେ ଯେଉଁ କବିମାନେ ଶ୍ରୀ ରଘୁନାଥଙ୍କ ଗୁଣାବଳୀ ବର୍ଣ୍ଣନା କରିଅଛନ୍ତି, ସେହି କବିମାନଙ୍କୁ ମଧ୍ୟ ମୁଁ ପ୍ରଣାମ କରୁଛି ॥ ୨ ॥ ଅତି ବୁଦ୍ଧିମାନ୍ ପ୍ରାକୃତ କବି ଅତୀତରେ ଜାତ ହୋଇଥିଲେ, ଏବେ ମଧ୍ୟ ବର୍ତ୍ତମାନ ଏବଂ ଭବିଷ୍ୟତରେ ବି ଜନ୍ମଗ୍ରହଣ କରିବେ । ସେମାନେ ଭାଷାରେ ହରିଚରିତ ବର୍ଣ୍ଣନା କରି-ଅଛନ୍ତି, କରୁଅଛନ୍ତି ଏବଂ କରିବେ ମଧ୍ୟ । ସେ ସମସ୍ତଙ୍କୁ ମୁଁ ସମସ୍ତ କପଟ ପରିହାର-ପୂର୍ବକ ପ୍ରଣାମ କରୁଅଛି ॥ ୩ ॥ ବର୍ତ୍ତମାନ ସମସ୍ତେ ପ୍ରସନ୍ନ ହୋଇ ମୋତେ ବରଦାନ ଦିଅନ୍ତୁ, ଯାହା ଫଳରେ କି ସାଧୁସମାଜରେ ମୋ କବିତା ସମ୍ମାନ ଲାଭ କରିବ । କାରଣ, ବୁଦ୍ଧିମାନ୍ ବା ପଣ୍ଡିତ ଲୋକେ ଯେଉଁ କବିତାକୁ ଆଦର ନ କରନ୍ତି, ମୂର୍ଖ କବି ହିଁ ତାହା ରଚନା କରି ବୃଥା ପରିଶ୍ରମ କରିଥା'ନ୍ତି ମାତ୍ର ॥ ୪ ॥ କୀର୍ତ୍ତି, କବିତା ଓ ସମ୍ପତ୍ତି—ଏହି ତିନୋଟି ମଧ୍ୟରୁ ଦେବସରି ଗଙ୍ଗାଙ୍କ ପରି ଯେଉଁଟି ସମସ୍ତଙ୍କର ହିତକାରକ, ସେଇଟି ହିଁ ସବୁଠାରୁ ଉତ୍ତମ । ଶ୍ରୀରାମଚନ୍ଦ୍ରଙ୍କ କୀର୍ତ୍ତି ତ ବଡ ସୁନ୍ଦର

ଭୂଷ୍ଣସ କୃପାଁ ସୁଲଭ ସୋଉ ମୋରେଁ । ସିଅନ ସୁହାବନ ଟାଟ ପଟୋନରେଁ ॥୭॥

ସରଲ କବିତ କୀରତି ବିମଲ ସୋଇ ଆଦରହିଁ ସୁଜାନ ।
ସହଜ ବୟୁର ବିସରାଇ ରିପୁ ଜୋ ସୁନି କରହିଁ ବଖାନ ॥ ୧୪(କ)
ସୋ ନ ହୋଇ ବିନୁ ବିମଲ ମତି ମୋହି ମତି ବଲ ଅତି ଥୋର ।
କରହୁ କୃପା ହରିଜସ କହଉଁ ପୁନିପୁନି କରଉଁ ନିହୋର ॥ ୧୪(ଖ)
କବି କୋବିଦ ରଘୁବରଚରିତ ମାନସ ମଞ୍ଜୁ ମରାଳ ।
ବାଲବିନୟ ସୁନି ସୁରୁଚି ଲଖି ମୋ ପର ହୋହୁ କୃପାଳ ॥ ୧୪(ଗ)

ବନ୍ଦଉଁ ମୁନିପଦ କଞ୍ଜୁ ରାମାୟନ ଜେହିଁ ନିରମୟଉ ।
ସଖର ସୁକୋମଲ ମଞ୍ଜୁ ଦୋଷ ରହିତ ଦୂଷନ ସହିତ ॥ ୧୪(ଘ)

---

ତୁମ୍ଭ କୃପାବଳେ ତାହା ସୁଲଭ ହୋଇବ । ଅଖାରେ ରେଶମ ହିଁଅ ସୁନ୍ଦର ଦିଶିବ ॥୭॥

ସରଳ କବିତା ବିମଳ କୀରତି ସୁଜ୍ଞଜନେ ଆଦରନ୍ତି ।
ଯାହା ଶୁଣି ଶତ୍ରୁ ସହଜ ଶତ୍ରୁତା ପାଶୋରି ଗାଇ ହୁଅନ୍ତି ॥୧୪ (କ)॥
ସୁମତି ବିହୁନେ ତାହା ନ ହୁଅଇ ମୋ ମତି ବଳ ନଉନ ।
କୃପା କର, ହରି ସୁଯଶ ଗାଇବି ନିହୋରଇ ପୁନଃପୁନ ॥୧୪ (ଖ)॥
ରାମଙ୍କ ଚରିତ ମାନ-ସରୋବର ମରାଳ କବି ପଣ୍ଡିତ ।
ବାଳକ ବିନତି ଶୁଣି ଦେଖି ପ୍ରୀତି କରନ୍ତୁ ଅନୁଗୃହିତ ॥୧୪ (ଗ)॥

ବନ୍ଦଇ ମୁନିଙ୍କ ପଙ୍କଜ-ପୟର ଯେ ରଚିଲେ ରାମାୟଣ ।
ହେଲେହେଁ ସଖର କୋମଳ ସୁନ୍ଦର ଦୋଷହୀନ ସଦୂଷଣ ॥୧୪ (ଘ)॥

---

(ସମସ୍ତଙ୍କ ଅନନ୍ତ କଲ୍ୟାଣକାରକ) । ମାତ୍ର ମୋ କବିତା ଅତି ନିକୃଷ୍ଟ । ଏ ଦୁହିଙ୍କର ଅସାମଞ୍ଜସ୍ୟ (ଅର୍ଥାତ୍ ଏ ଦୁଇଟିର ଅମେଳ) ବିଷୟରେ ମୁଁ ଚିନ୍ତିତ ॥ ୫ ॥ ମାତ୍ର ହେ କବିଗଣ ! ଆପଣମାନଙ୍କ କୃପାରେ ଏ ମେଳ ମୋ ପାଇଁ ସୁଲଭ ହୋଇ ପାରିବ । ପାଟଲୁଗାକୁ ଅଖାରେ ସିଲାଇ କଲେ ପାଟ ଯୋଗୁ ହିଁ ଅଖା ଆଦରଲାଭ କରିଥାଏ ॥ ୭ ॥ ଦୋହା—ଯେଉଁ କବିତା ସରଳ, ଯେଉଁଥିରେ ନିର୍ମଳ ଚରିତ୍ରର ବର୍ଣ୍ଣନା ଥାଏ ଏବଂ ଯାହାକୁ ଶୁଣି ଶତ୍ରୁ ମଧ୍ୟ ସ୍ୱାଭାବିକ ଶତ୍ରୁତାକୁ ଭୁଲି ପ୍ରଶଂସା କରିବାକୁ ଲାଗନ୍ତି, ଚତୁର ପଣ୍ଡିତମାନେ ସେହିପରି କବିତାକୁ ହିଁ ଆଦର କରନ୍ତି ॥ ୧୪ (କ) ॥ ନିର୍ମଳ ବୁଦ୍ଧି ବିନା ଏପରି କବିତା ହୋଇପାରେ ନାହିଁ ଏବଂ ମୋ ବୁଦ୍ଧିର ବଳ ବହୁତ କମ୍ । ଏଣୁ ବାରମ୍ବାର ନେହୁରା ହୋଇ କହୁଛି, "ହେ କବିମାନେ ! ଆପଣମାନେ କୃପା କରନ୍ତୁ, ଯାହା ଫଳରେ ମୁଁ ହରିଙ୍କ ଯଶ ବର୍ଣ୍ଣନା କରି ପାରିବି ॥ ୧୪ (ଖ) ॥ କବି ଓ ପଣ୍ଡିତଗଣ ! ରାମଚରିତ ମାନସ-ସରୋବରରେ ଆପଣମାନେ ସୁନ୍ଦର ହଂସ । ମୋପରି ବାଳକର ବିନୟ ଶୁଣି ଓ ସୁନ୍ଦର ରୁଚି ଦେଖି ଆପଣମାନେ ମୋ ଉପରେ କୃପା କରନ୍ତୁ ॥ ୧୪ (ଗ) ॥ ସୋରଠା—ଯେଉଁ ବାଲ୍ମୀକି ମୁନି, ରାମାୟଣ ରଚନା

ବନ୍ଦଉଁ ଚାରିଉ ବେଦ ଭବବାରିଧି ବୋହିତ ସରିସ ।
ଜିହ୍ନହି ନ ସପନେହୁଁ ଖେଦ ବରନତ ରଘୁବର ବିସଦ ଜସୁ ॥୧୪(ଙ)
ବନ୍ଦଉଁ ବିଧିପଦ ରେନୁ ଭବସାଗର ଜେହିଁ କୀହ୍ନ ଜହଁ ।
ସନ୍ତ ସୁଧା ସସି ଧେନୁ ପ୍ରଗଟେ ଖଲ ବିଷ ବାରୁନୀ ॥୧୪(ଚ)

ବିବୁଧ ବିପ୍ର ବୁଧ ଗ୍ରହ ଚରନ ବନ୍ଦି କହଉଁ କର ଜୋରି ।
ହୋଇ ପ୍ରସନ୍ନ ପୁରଵହୁ ସକଲ ମଞ୍ଜୁ ମନୋରଥ ମୋରି ॥୧୪(ଛ)
ପୁନି ବନ୍ଦଉଁ ସାରଦ ସୁରସରିତା । ଜୁଗଲ ପୁନୀତ ମନୋହର ଚରିତା ॥
ମଜ୍ଜନ ପାନ ପାପ ହର ଏକା । କହତ ସୁନତ ଏକ ହର ଅବିବେକା ॥୧॥
ଗୁରୁ ପିତୁ ମାତୁ ମହେସ ଭବାନୀ । ପ୍ରନଵଉଁ ଦୀନବନ୍ଧୁ ଦିନ ଦାନୀ ॥
ସେବକ ସ୍ୱାମି ସଖା ସିୟ ପୀକେ । ହିତ ନିରୁପାଧି ସବ ବିଧି ତୁଲସୀ କେ ॥୨॥

ଭବସିନ୍ଧୁକୁ ଯେ ବୋଇତ ସଦୃଶ ବନ୍ଦଇ ସେ ଚାରିବେଦ ।
ନ ହୁଏ ବର୍ଣ୍ଣନ୍ତେ ରାମଙ୍କ ସୁଯଶ ସ୍ୱପ୍ନେହେଁ ଯାହାଙ୍କୁ ଖେଦ ॥୧୪ (ଙ)॥
ଭବ-ସାଗର ଯେ ନିର୍ମାଣ କରିଲେ ବନ୍ଦେ ବିଧିପଦ ରେଣୁ ।
ସାଧୁ ସୁଧା ଶଶୀ ଖଳ ପ୍ରକଟିଲେ ଗରଳ ବାରୁଣୀ ଧେନୁ ॥୧୪ (ଚ)॥

ବ୍ରାହ୍ମଣ ବିବୁଧ ବୁଧ ଗ୍ରହ ପଦ ବନ୍ଦି କହେ ଯୋଡ଼ି ହସ୍ତ ।
ତୋଷ ହୋଇ ମୋର ମଞ୍ଜୁ ମନୋରଥ ପୂର୍ଣ୍ଣ କରନ୍ତୁ ସମସ୍ତ ॥୧୪ (ଛ)॥
ପୁଣି ବନ୍ଦଇ ଶାରଦା ଅମର ସରିତା । ଯୁଗଳ ସୁମନୋହର ପବିତ୍ର ଚରିତା ॥
ସ୍ନାନ ପାନ କଲେ ପାପ ଅପହରେ ଏକ । କହନ୍ତେ ଶୁଣନ୍ତେ ଏକ ହରେ ଅବିବେକ ॥୧॥
ଗୁରୁ ପିତା ମାତା ସମ ମହେଶ ଭବାନୀ । ପ୍ରଣମଇ ଦୀନବନ୍ଧୁ କାଶି ଦିନଦାନୀ ॥
ସେବକ ସ୍ୱାମୀ ସଖା ଯେ ସୀତାପତିଙ୍କର । ସର୍ବଭାବେ ତୁଳସୀର ସଦା ହିତକର ॥୨॥

କରିଅଛନ୍ତି, ମୁଁ ସେହି ମୁନିଙ୍କ ପାଦ-ପଦ୍ମ ବନ୍ଦନା କରୁଛି । ଉକ୍ତ ରାମାୟଣ ସଖର (ଖରରାକ୍ଷସ ସହିତ) ହୋଇଥିଲେ ହେଁ ('ଖର' ଅର୍ଥାତ୍ 'କଠୋର'ର ବିପରୀତ) ସୁକୋମଳ ଓ ସୁନ୍ଦର ଏବଂ ଦୂଷଣ ରାକ୍ଷସ ସହିତ ହୋଇ ମଧ୍ୟ ଦୂଷଣ ରହିତ (ଅର୍ଥାତ୍ ଦୋଷବିମୁକ୍ତ) ॥ ୧୪ (ଘ) ॥ ସଂସାର-ସମୁଦ୍ରକୁ ପାର ହେବା ନିମନ୍ତେ ଯେଉଁ ବେଦସମୂହ ଜାହାଜ ପରି ଏବଂ ଶ୍ରୀରାମଚନ୍ଦ୍ରଙ୍କ ନିର୍ମଳ ଯଶ ବର୍ଣ୍ଣନା କରି କରି ସ୍ୱପ୍ନରେ ସୁଦ୍ଧା ଯେଉଁ ବେଦମାନ ଖିନ୍ନ ବା ଅବସନ୍ନ ହୋଇ ନାହାନ୍ତି, ସେହି ଚାରି ବେଦଙ୍କୁ ମୁଁ ବନ୍ଦନା କରୁଛି ॥ ୧୪ (ଙ) ॥ ବ୍ରହ୍ମା ଭବ-ସାଗର ସୃଷ୍ଟି କରିଅଛନ୍ତି । ସେହି ଭବ-ସାଗରରୁ ଗୋଟିଏ ଦିଗରେ ସନ୍ତରୂପୀ ଅମୃତ, ଚନ୍ଦ୍ରମା ଓ କାମଧେନୁ ବାହାରିଅଛନ୍ତି ଏବଂ ଅନ୍ୟ ଦିଗରେ ଦୁଷ୍ଟମନୁଷ୍ୟ-ରୂପୀ ବିଷ ଓ ମଦିରା ଜାତ ହୋଇଅଛନ୍ତି ॥ ୧୪ (ଚ) ॥ ଦୋହା —ଦେବତା, ବ୍ରାହ୍ମଣ, ପଣ୍ଡିତ ଓ ଗ୍ରହ—ଏ ସମସ୍ତଙ୍କ ଚରଣ ବନ୍ଦନା କରି ହାତ ଯୋଡ଼ି କହୁଛି, "ଆପଣମାନେ ସମସ୍ତେ ମୋ ସୁନ୍ଦର ମନୋରଥ ପୂର୍ଣ୍ଣ କରନ୍ତୁ ॥ ୧୪ (ଛ) ॥ ଚୌପାଇ—ପୁଣି ମୁଁ

କଲି ବିଲୋକି ଜଗହିତ ହରଗିରିଜା । ସାବର ମନ୍ତ୍ରଜାଲ ଜିନ୍ହ ସିରଜା ॥
ଅନମିଲ ଆଖର ଅରଥ ନ ଜାପୂ । ପ୍ରଗଟ ପ୍ରଭାଉ ମହେସ ପ୍ରତାପୂ ॥୩॥
ସୋ ଉମେସ ମୋହି ପର ଅନୁକୂଲା । କରିହିଁ କଥା ମୁଦ ମଙ୍ଗଲମୂଲା ॥
ସୁମିରି ସିବା ସିବ ପାଇ ପସାଊ । ବରନଉଁ ରାମଚରିତ ଚିତ ଚାଊ ॥୪॥
ଭନିତି ମୋରି ସିବକୃପାଁ ବିଭାତୀ । ସସି ସମାଜ ମିଲି ମନହୁଁ ସୁରାତୀ ॥
ଜେ ଏହି କଥହି ସନେହ ସମେତା । କହିହହିଁ ସୁନିହହିଁ ସମୁଝି ସଚେତା ॥୫॥
ହୋଇହହିଁ ରାମଚରନ ଅନୁରାଗୀ । କଲି ମଲ ରହିତ ସୁମଙ୍ଗଲଭାଗୀ ॥୬॥

---

କଲି ବିଲୋକିଣ ଯେଉଁ ଉମା ବୃଷକେତୁ । ସୃଜିଲେ ଶାବର ମନ୍ତ୍ର ବିଶ୍ୱହିତ ହେତୁ ॥
ଅମେଳାକ୍ଷର ଅନର୍ଥ ଜପ ମାନେ ଆପେ । ପ୍ରତ୍ୟକ୍ଷ ପ୍ରଭାବଶାଳୀ ମହେଶ ପ୍ରତାପେ ॥୩॥
ସେ ଉମାନାଥକ ମୋ ଉପରେ ଅନୁକୂଳ । କହିଲ କଥା ଆନନ୍ଦ ମଙ୍ଗଳର ମୂଳ ॥
ସ୍ମରଣ ଶିବାଶିବଙ୍କୁ ତାହାଙ୍କ ପ୍ରସାଦେ । ବର୍ଣ୍ଣିଇ ରାମ ଚରିତ ହୃଦୟ ଆହ୍ଲାଦେ ॥୪॥
ଶିବକୃପାରେ ଶୋଭିବ କବିତା ମୋହର । ଶଶିସମାଜେ ମିଳିବ ଯାରୁ ବିଭାବରୀ ॥
ଯେଉଁ ଜନ ଏ କଥାକୁ ସ୍ନେହର ସହିତେ । କହିବେ ଶୁଣିବେ କମ୍ବା ବୁଝିବେ ସୁଚିତେ ॥୫॥
ହୋଇବେ ସେ ରଘୁପତି ଚରଣାନୁରାଗୀ । କଳି-କଳ୍ମଷ-ରହିତ ସୁମଙ୍ଗଳ-ଭାଗୀ ॥୬॥

---

ଦେବୀ ସରସ୍ୱତୀ ଓ ଦେବନଦୀ ଗଙ୍ଗାଙ୍କୁ ବନ୍ଦନା କରୁଛି । ଉଭୟେ ପବିତ୍ର ଓ ମନୋହର ଚରିତ୍ର-ସମ୍ପନ୍ନା । ଗୋଟିଏ (ଗଙ୍ଗା) ସ୍ନାନ ଓ ଜଳପାନ ଯୋଗେ ପାପ ହରଣ କରନ୍ତି ଓ ଅନ୍ୟ ଜଣକ (ସରସ୍ୱତୀ) ତାଙ୍କ ଗୁଣ-ଯଶକଥନ ଓ ଶ୍ରବଣରେ ଅଜ୍ଞାନ ନାଶ କରନ୍ତି ॥ ୧ ॥ ମୋର ଗୁରୁ ଓ ମାତାପିତା, ଦୀନବନ୍ଧୁ ଓ ନିତ୍ୟ-ଦାନଶୀଳ, ସୀତାପତି ଶ୍ରୀରାମଚନ୍ଦ୍ରଜୀଙ୍କ ସେବକ, ସ୍ୱାମୀ ଓ ସଖା ଏବଂ 'ତୁଳସୀ ଦାସର ସବୁମତେ ନିଷ୍କପଟ (ପ୍ରକୃତ, ବାସ୍ତବ) ହିତକାରୀ ଶ୍ରୀମହେଶ ଓ ପାର୍ବତୀଙ୍କୁ ମୁଁ ପ୍ରଣାମ କରୁଛି ॥ ୨ ॥ କଳିଯୁଗକୁ ଦେଖି ସେହି ଶିବ-ପାର୍ବତୀ ଜଗତର ହିତ ଦୃଷ୍ଟିରୁ ଶାବର ମନ୍ତ୍ରାବଳୀ ରଚନା କରିଅଛନ୍ତି । ସେହି ସବୁ ମନ୍ତ୍ରର ଅକ୍ଷରଗୁଡ଼ିକ ଅମେଳ । ମନ୍ତ୍ରଗୁଡ଼ିକର କୌଣସି ଠିକ୍ ଅର୍ଥ ବା ଜପ ହୋଇପାରେ ନାହିଁ । ତଥାପି ଶିବଙ୍କ ପ୍ରତାପରେ ଉକ୍ତ ମନ୍ତ୍ରଗୁଡ଼ିକର ପ୍ରଭାବ ପ୍ରତ୍ୟକ୍ଷ ॥ ୩ ॥ ସେହି ଉମାପତି ଶିବ ମୋ ଉପରେ ପ୍ରସନ୍ନ ହୋଇ (ଶ୍ରୀରାମଙ୍କ) ଏହି କଥାକୁ ଆନନ୍ଦ ଓ ମଙ୍ଗଳର ମୂଳ କାରଣ (ପ୍ରସବିନୀ) କରିବେ । ଏହିପରି ଶିବ ଓ ପାର୍ବତୀ ଉଭୟଙ୍କୁ ସ୍ମରଣପୂର୍ବକ ତାଙ୍କ ପ୍ରସାଦ ଲାଭ କରି ଉତ୍ସାହପୂର୍ଣ୍ଣ ହୃଦୟରେ ମୁଁ ଶ୍ରୀରାମଚରିତ ବର୍ଣ୍ଣନା କରୁଛି ॥ ୪ ॥ ତାରାଗଣ ଓ 'ଚନ୍ଦ୍ର ସହିତ ରାତି ସୁଶୋଭିତ ହେଲା ପରି ଶ୍ରୀ ଶିବଙ୍କ କୃପାରୁ ମୋ କବିତା ସୁଶୋଭିତ ହେବ । ଯେଉଁମାନେ ଏହି କଥାକୁ ପ୍ରେମ ସହିତ ଏବଂ ସାବଧାନ ହୋଇ କହିବେ ବା ଶୁଣିବେ, ସେମାନେ କଳିଯୁଗର ସମସ୍ତ ପାପରୁ ବିମୁକ୍ତ ହେବେ ଏବଂ ସୁନ୍ଦର କଲ୍ୟାଣର ଅଧିକାରୀ ହୋଇ ଶ୍ରୀରାମଚନ୍ଦ୍ର ଙ୍କ ପାଦ-ପଦ୍ମପ୍ରେମୀ

ସପନେହୁଁ ସାଚେହୁଁ ମୋହିପର ଜୌଁ ହରଗୌରି ପସାଉ ।
ତୌ ଫୁର ହୋଉ ଜୋ କହେଉଁ ସବ ଭାଷା ଭନିତି ପ୍ରଭାଉ ॥୧୫॥

ବନ୍ଦଉଁ ଅଓ୍ୱଧପୁରୀ ଅତି ପାଓ୍ୱନି । ସରଜୂ ସରି କଲିକଲୁଷ ନସାଓ୍ୱନି ॥
ପ୍ରନଓ୍ୱଉଁ ପୁରନର ନାରି ବହୋରୀ । ମମତା ଜିହ୍ନପର ପ୍ରଭୁହି ନ ଥୋରୀ ॥୧॥
ସିୟନିନ୍ଦକ ଅଘ ଓଘ ନସାଏ । ଲୋକ ବିସୋକ ବନାଇ ବସାଏ ॥
ବନ୍ଦଉଁ କୌସଲ୍ୟା ଦିସି ପ୍ରାଚୀ । କୀରତି ଜାସୁ ସକଲ ଜଗ ମାଚୀ ॥୨॥
ପ୍ରଗଟେଉ ଜହଁ ରଘୁପତି ସସି ଚାରୂ । ବିସ୍ୱ ସୁଖଦ ଖଲ କମଲ ତୁସାରୂ ॥
ଦସରଥ ରାଉ ସହିତ ସବ ରାନୀ । ସୁକୃତ ସୁମଙ୍ଗଲ ମୂରତି ମାନୀ ॥୩॥
କରଉଁ ପ୍ରନାମ କରମ ମନ ବାନୀ । କରହୁ କୃପା ସୁତସେବକ ଜାନୀ ॥
ଜିହ୍ନହି ବିରଚି ବଡ଼ ଭୟଉ ବିଧାତା । ମହିମା ଅବଧି ରାମ ପିତୁ ମାତା ॥୪॥

ସତ୍ୟ ସ୍ୱପନରେ ଯେବେ ମୋ ଉପରେ ଉମା ହର କୃପା ଥିବ ।
ତେବେ ଭାଷାବନ୍ଧେ କହୁଛି ମୁଁ ଯାହା ପ୍ରଭାବ ସତ୍ୟ ହୋଇବ ॥୧୫॥

ବନ୍ଦଇ ଅଯୋଧ୍ୟାପୁରୀ ପରମ ପାବନୀ । ସରଯୂ ସରିତ କଳି-କଲୁଷ-ନାଶିନୀ ॥
ପ୍ରଣମଇ ପୁର-ନର-ନାରୀଙ୍କୁ ଆଦର । ପ୍ରଭୁଙ୍କ ମମତା ଅତି ଯାହାଙ୍କ ଉପର ॥୧॥
ସୀତା ନିନ୍ଦୁକର ପାପ ସକଳ ହରଣ । ପରଲୋକେ ବାସ ଦେଲେ ବିଶୋକ କରଣ ॥
ବନ୍ଦଇ କଉଶଲ୍ୟାଙ୍କୁ ପ୍ରାଚୀ ଦିଗ ମଣି । ବିସ୍ତୃତ କୀର୍ତ୍ତି ଯାହାଙ୍କ ସମଗ୍ର ଧରଣୀ ॥୨॥
ପ୍ରକଟିଲେ ଯହିଁ ଚାରୁ ଶଶୀ ରଘୁବୀର । ବିଶ୍ୱ ସୁଖ-ଦାତା ଖଳ-କମଳ ଶିଶିର ॥
ଦଶରଥ ନୃପସହ ଅନ୍ୟ ସବୁ ରାଣୀ । ସୁକୃତ ମଙ୍ଗଳମୟ ଦିବ୍ୟ ମୂର୍ତ୍ତି ଜାଣି ॥୩॥
ମନ କର୍ମ ବଚନରେ ନମେ ଯୋଡ଼ି କର । କରନ୍ତୁ କରୁଣା ଜାଣି ସୁତ ଅନୁଚର ॥
ଯାହାଙ୍କୁ ରଚିଣ ବଡ଼ ହୋଇଛି ବିଧାତା । ମହିମାର ସୀମା ଯେହୁ ରାମ ପିତା ମାତା ॥୪॥

ହେବେ ॥ ୫-୬ ॥ ଦୋହା—ଯଦି ଶିବ ପାର୍ବତୀଙ୍କର ସ୍ୱପ୍ନରେ ବା ସତ୍ୟରେ ମୋ ପ୍ରତି ଅନୁଗ୍ରହ ଥାଏ, ତାହାହେଲେ ଏହି ଭାଷାକବିତାର ଯେଉଁ ପ୍ରଭାବ ବିଷୟ ମୁଁ କହୁଛି, ତାହା ସବୁ ସତ୍ୟ ହେଉ ॥ ୧୫ ॥ ଚୌପାଇ—ଅତି ପବିତ୍ର ଅଯୋଧ୍ୟାପୁରୀ ଓ କଳିଯୁଗର ପାପରାଶିର ବିନାଶକାରିଣୀ ଶ୍ରୀ ସରଯୂ ନଦୀକୁ ମୁଁ ବନ୍ଦନା କରୁଛି । ପୁଣି ଯେଉଁ ନରନାରୀଙ୍କ ପ୍ରତି ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ମମତା ଅଳ୍ପ ନୁହେଁ (ଅର୍ଥାତ୍ ବେଶି), ଅଯୋଧ୍ୟାପୁରୀର ସେହି ନରନାରୀଙ୍କୁ ବନ୍ଦନା କରୁଅଛି ॥ ୧ ॥ ପ୍ରଭୁ ରାମଚନ୍ଦ୍ର ତାଙ୍କ ଅଯୋଧ୍ୟାପୁରୀ-ନିବାସୀ (ଧୋବା ଓ ତାହାର ସମର୍ଥକ) ସୀତା-ନିନ୍ଦୁକ ନରନାରୀଗଣଙ୍କ ପାପରାଶି ନାଶ କରି ସେମାନଙ୍କୁ ଶୋକମୁକ୍ତ କରିଥିଲେ ଏବଂ ସେମାନଙ୍କୁ ଆପଣାର ଲୋକ (ବୈକୁଣ୍ଠଧାମ)ରେ ବାସ ଦେଲେ । ସମଗ୍ର ସଂସାରରେ ଯାହାଙ୍କର କୀର୍ତ୍ତି ପରିବ୍ୟାପ୍ତ, ସେହି କୌଶଲ୍ୟା ରୂପିଣୀ ପୂର୍ବଦିଶାକୁ ମୁଁ ବନ୍ଦନା କରୁଅଛି ॥ ୨ ॥ ସେହି କୌଶଲ୍ୟା ରୂପିଣୀ ପୂର୍ବଦିଶାରେ ସମଗ୍ର ବିଶ୍ୱର ସୁଖଦାତା ଓ ଦୁଷ୍ଟରୂପୀ

ବନ୍ଦଉଁ ଅଵଧ ଭୂଆଲ ସତ୍ୟ ପ୍ରେମ ଜେହି ରାମପଦ ।
ବିଛୁରତ ଦୀନଦୟାଲ ପ୍ରିୟ ତନୁ ତୃନ ଇବ ପରିହରେଉ ॥୧୬॥
ପ୍ରନଵଉଁ ପରିଜନ ସହିତ ବିଦେହୂ । ଜାହି ରାମପଦ ଗୂଢ ସନେହୂ ॥
ଜୋଗ ଭୋଗ ମହଁ ରାଖେଉ ଗୋଈ । ରାମ ବିଲୋକତ ପ୍ରଗଟେଉ ସୋଈ ॥୧॥
ପ୍ରନଵଉଁ ପ୍ରଥମ ଭରତ କେ ଚରନା । ଜାସୁ ନେମ ବ୍ରତ ଜାଇ ନ ବରନା ॥
ରାମଚରନ ପଙ୍କଜ ମନ ଜାସୂ । ଲୁବୁଧ ମଧୁପ ଇବ ତଜଇ ନ ପାସୂ ॥୨॥
ବନ୍ଦଉଁ ଲଛିମନ ପଦ ଜଲଜାତା । ସୀତଲ ସୁଭଗ ଭଗତ ସୁଖଦାତା ॥
ରଘୁପତି କୀରତି ବିମଲ ପତାକା । ଦଣ୍ଡ ସମାନ ଭଯେଉ ଜସ ଜାକା ॥୩॥

---

ବନ୍ଦେ ଅବଧେଶ ଯେ ସଦା କରିଲେ, ରାମପଦେ ସତ୍ୟ ସ୍ନେହ ।
ଦୀନ ଦୟାଳୁଙ୍କ ବିୟୋଗେ ତେଜିଲେ ତୃଣପ୍ରାୟେ ପ୍ରିୟ ଦେହ ॥୧୬॥
ପ୍ରଣମଇ ପରିଜନ ସହିତ ବିଦେହ । ରାମ ଚରଣେ ଯାହାଙ୍କ ଥିଲା ଗୂଢ ସ୍ନେହ ॥
ଯୋଗ ଭୋଗ ମଧ୍ୟେ ଗୁପ୍ତ କରି ରଖିଥିଲେ । ପ୍ରଭୁଙ୍କୁ ବିଲୋକି ତାହା ପ୍ରକଟ କରିଲେ ॥୧॥
ପ୍ରଥମେ ଭରତଙ୍କର ଚରଣ ବନ୍ଦଇ । ଯାହାଙ୍କ ନିୟମ ବ୍ରତ ବର୍ଣ୍ଣି ନ ହୁଅଇ ॥
ରାମ ଚରଣ ପଙ୍କଜ ଯାହାଙ୍କର ମନ । ନ ତେଜଇ ପାଶ ଲୁବ୍ଧ ମଧୁପ ଯେସନ ॥୨॥
ବନ୍ଦଇ ଲକ୍ଷ୍ମଣଙ୍କର ସରୋରୁହପଦ । ଶୀତଳ କୋମଳ ଭକ୍ତ-ସଜ୍ଜନ-ସୁଖଦ ॥
ରଘୁପତି କୀର୍ତ୍ତି ଶୁଭ ପତାକା ସଦୃଶ । ଦଣ୍ଡ ସମାନ ହୋଇଛି ଯାହାଙ୍କ ସୁଯଶ ॥୩॥

---

ପଦ୍ମସମୂହର ତୁଷାର ସମାନ ବିନାଶ-କାରୀ ଶ୍ରୀରାମଚନ୍ଦ୍ର ରୂପକ ସୁନ୍ଦର ଚନ୍ଦ୍ରମା ଉଦିତ ହୋଇଥିଲେ । ସମସ୍ତ ରାଣୀଙ୍କ ସହ ରାଜା ଦଶରଥଙ୍କୁ ପୁଣ୍ୟ ଓ ସୁନ୍ଦର କଲ୍ୟାଣର ପ୍ରତମୂର୍ତ୍ତି ମାନି ମୁଁ ସେ ସମସ୍ତଙ୍କୁ ମନ, ବଚନ ଓ କର୍ମରେ ପ୍ରଣାମ କରୁଅଛି । ତାଙ୍କ ସୁନ୍ଦର ସେବକ ଜାଣି ସେମାନେ ମୋତେ ଦୟା କରନ୍ତୁ । ତାଙ୍କୁ ରଚନା କରି ବ୍ରହ୍ମା ବଡ ହୋଇଥିଲେ ଏବଂ ଶ୍ରୀରାମଙ୍କ ମାତା ଓ ପିତା ହୋଇଥିବା ହେତୁ ସେମାନେ ମହିମାର ଶେଷ ସୀମା ॥୩-୪॥ ସୋରଠା:—ଯାହାଙ୍କର ଶ୍ରୀରାମ-ପାଦ-ପଦ୍ମରେ ପ୍ରକୃତ ପ୍ରେମ ଥିଲା ଏବଂ ଦୀନଦୟାଳୁ ପ୍ରଭୁଙ୍କ ବିଚ୍ଛେଦ ମାତ୍ରେ ଯେଉଁ ପିତା ତାଙ୍କ ପ୍ରିୟ ଶରୀରକୁ ସାମାନ୍ୟ ତୃଣ ପରି ତ୍ୟାଗ କରିଥିଲେ, ଅଯୋଧ୍ୟାର ରାଜା ସେହି ଦଶରଥଙ୍କୁ ମୁଁ ବନ୍ଦନା କରୁଅଛି ॥୧୬॥ ଚୌପାଈ:—ସପରିବାର ରାଜା ଜନକଙ୍କୁ ମୁଁ ପ୍ରଣାମ କରୁଛି । ଜନକଙ୍କର ଶ୍ରୀରାମଙ୍କ ପାଦ-ପଦ୍ମରେ ଗୂଢପ୍ରେମ ଥିଲା । ଉକ୍ତ ପ୍ରେମକୁ ସେ ଯୋଗ ଓ ଭୋଗରେ ଗୁପ୍ତ ରଖିଥିଲେ । କିନ୍ତୁ ଶ୍ରୀରାମଚନ୍ଦ୍ରଙ୍କୁ ଦେଖିବା ମାତ୍ରେ ତାହାର ପରିପ୍ରକାଶ ହୋଇଗଲା ॥୧॥ ଭାଇମାନଙ୍କ ମଧ୍ୟରେ ସର୍ବପ୍ରଥମେ ମୁଁ ଶ୍ରୀ ଭରତଙ୍କ ପାଦ-ପଦ୍ମକୁ ପ୍ରଣାମ କରୁଛି । ସେ ଭରତଙ୍କ ନିୟମ ଓ ବ୍ରତ ଅବର୍ଣ୍ଣନୀୟ । ତାଙ୍କ ମନ ଭ୍ରମର ପରି ଶ୍ରୀରାମଙ୍କ ପାଦ-ପଦ୍ମର ମଧୁ ପ୍ରତି ସର୍ବଦା ଲାଲାୟିତ ଏବଂ କେବେ ହେଲେ ଉକ୍ତ ପାଦ-ପଦ୍ମର ସାମୀପ୍ୟ ଛାଡେ ନାହିଁ ॥୨॥

ସେଷ ସହସ୍ରସୀସ ଜଗକାରନ । ଜୋ ଅବତରେଉ ଭୂମିଭୟ ଟାରନ ॥
ସଦା ସୋ ସାନୁକୂଲ ରହ ମୋପର । କୃପାସିନ୍ଧୁ ସୌମିତ୍ରି ଗୁନାକର ॥୩॥
ରିପୁସୂଦନ ପଦକମଲ ନମାମୀ । ସୂର ସୁସୀଲ ଭରତ ଅନୁଗାମୀ ॥
ମହାବୀର ବିନଓ୍ୱଉଁ ହନୁମାନା । ରାମ ଜାସୁ ଜସ ଆପୁ ବଖାନା ॥୫॥

ପ୍ରନଓ୍ୱଉଁ ପବନକୁମାର ଖଲ ବନପାବକ ଜ୍ଞାନଘନ ।
ଜାସୁ ହୃଦୟ ଆଗାର ବସହିଁ ରାମ ସର ଚାପଧର ॥୧୭॥

କପିପତି ରୀଛ ନିସାଚର ରାଜା । ଅଙ୍ଗଦାଦି ଜେ କୀସ ସମାଜା ॥
ବନ୍ଦଉଁ ସବକେ ଚରନ ସୁହାଏ । ଅଧମ ସରୀର ରାମ ଜିହ୍ନ ପାଏ ॥୧॥
ରଘୁପତି ଚରନ ଉପାସକ ଜେତେ । ଖଗ ମୃଗ ସୁରନର ଅସୁର ସମେତେ ॥
ବନ୍ଦଉଁ ପଦ ସରୋଜ ସବକେରେ । ଜେ ବିନୁ କାମ ରାମ କେ ଚେରେ ॥୨॥

---

ସହସ୍ର-ଫଣ ଯେ ଶେଷ ଜଗତ କାରଣ । ଅବତରିଲେ ଅବନୀ ଭୟ ନିବାରଣ ॥
ସଦା ସେ ରହନ୍ତୁ ଅନୁକୂଳ ମୋ ଉପର । କରୁଣା ସିନ୍ଧୁ ସୌମିତ୍ରି ସଦ୍‌ଗୁଣ ଆକର ॥୩॥
ଶତ୍ରୁ-ସୂଦନଙ୍କ ପଦ-କମଳେ ନମାମି । ଶୂର ସୁଶୀଳ ଭରତଙ୍କର ଅନୁଗାମୀ ॥
ମହାବୀର ହନୁମାନେ କରୁଛି ବିନତି । ସ୍ୱୟଂ ରାମଚନ୍ଦ୍ର ଯାର କୀର୍ତ୍ତି ବର୍ଣ୍ଣିଛନ୍ତି ॥୫॥

ବନ୍ଦେ ଜ୍ଞାନ-ଘନ ପବନ ନନ୍ଦନ ଖଳ-ବନ-ହୁତାଶନ ।
ବସନ୍ତି ଶ୍ରୀରାମ ଯା ହୃଦ ସଦନ ଧରି ବାଣ ଶରାସନ ॥୧୭॥

କପୀଶ୍ୱର ଋକ୍ଷପତି ନିଶାଚର ରାଜ । ଅଙ୍ଗଦ ଆଦି ଯେ ଋକ୍ଷ ମର୍କଟ-ସମାଜ ॥
ସମସ୍ତଙ୍କ ସୁଚରଣ ବନ୍ଦନ ମୁଁ କରେ । ଯେ କଲେ ରାମଙ୍କୁ ପ୍ରାପ୍ତ ଅଧମଦେହରେ ॥୧॥
ରଘୁପତିଙ୍କ ଚରଣ-ଉପାସକ ଯେତେ । ପଶୁପକ୍ଷୀ ସୁରନର ଅସୁର ସମେତେ ॥
ବନ୍ଦନ କରେ ସରୋଜ ପଦ ସମସ୍ତଙ୍କ । ନିଷ୍କାରଣ କିଙ୍କର ଯେ ଅଟନ୍ତି ରାମଙ୍କ ॥୨॥

---

ଶୀତଳ, ସୁନ୍ଦର ଓ ଭକ୍ତଗଣଙ୍କ ସୁଖଦାନକାରୀ ଶ୍ରୀ ଲକ୍ଷ୍ମଣଙ୍କ ପାଦ-ପଦ୍ମକୁ ମୁଁ ପ୍ରଣାମ କରୁଛି । ଶ୍ରୀରାମଙ୍କ କୀର୍ତ୍ତିରୂପୀ ବିମଳ ପତାକାରେ ଲକ୍ଷ୍ମଣଙ୍କ ଯଶ ଦଣ୍ଡସଦୃଶ ହୋଇ ଉକ୍ତ ପତାକାକୁ ଉଚ୍ଚରେ ଉଡାଇଥିଲା ॥ ୩ ॥ ଯେ ଶେଷ ରୂପରେ ଜଗତ ନିମନ୍ତେ ସହସ୍ର ମସ୍ତକ ଧାରଣ କରନ୍ତି, ପୃଥିବୀର ଭୟ ଦୂର କରିବା ନିମନ୍ତେ ଯେ ସୂର୍ଯ୍ୟବଂଶରେ ଅବତୀର୍ଣ୍ଣ ହୋଇଥିଲେ, ଗୁଣରାଶିର ଖଣି, କୃପାସିନ୍ଧୁ, ସୁମିତ୍ରାନନ୍ଦନ ସେହି ଲକ୍ଷ୍ମଣ ମୋ ପ୍ରତି ସର୍ବଦା ପ୍ରସନ୍ନ ରହନ୍ତୁ ॥ ୪ ॥ ବଡ ବୀର, ସୁଶୀଳ ଓ ଭରତଙ୍କର ଅନୁଗାମୀ ଶ୍ରୀ ଶତ୍ରୁଘ୍ନଙ୍କ ପାଦ-ପଦ୍ମରେ ମୁଁ ପ୍ରଣାମ କରୁଛି । ଯାହାଙ୍କ ଯଶ ପ୍ରଭୁ ଶ୍ରୀରାମ ସ୍ୱୟଂ ଆପଣା ଶ୍ରୀମୁଖରେ ବର୍ଣ୍ଣନା କରିଥିଲେ, ସେହି ମହାବୀର ହନୁମାନଙ୍କୁ ମୁଁ ବିନତି କରୁଅଛି ॥ ୫ ॥ ସୋରଠା—ପବନ କୁମାର ଶ୍ରୀ ହନୁମାନଙ୍କୁ ମୁଁ ପ୍ରଣାମ କରୁଛି । ଦୁଷ୍ଟରୂପୀ ବନକୁ ଭସ୍ମ କରିବା ନିମନ୍ତେ ସେ ଅଗ୍ନିସ୍ୱରୂପ । ଜ୍ଞାନର ଘନମୂର୍ତ୍ତି ସେ, ତାଙ୍କ ହୃଦୟଭବନରେ ଧନୁର୍ବାଣ ଧରି ଶ୍ରୀରାମ ସଦା ନିବାସ କରନ୍ତି ॥ ୧୭ ॥

ସୁକ ସନକାଦି ଭଗତ ମୁନି ନାରଦ । ଜେ ମୁନିବର ବିଜ୍ଞାନବିସାରଦ ॥
ପ୍ରନଵଉଁ ସବହି ଧରନି ଧରି ସୀସା । କରହୁ କୃପା ଜନ ଜାନି ମୁନୀସା ॥୩॥
ଜନକସୁତା ଜଗ ଜନନି ଜାନକୀ । ଅତିସୟ ପ୍ରିୟ କରୁନାନିଧାନ କୀ ॥
ତାକେ ଜୁଗ ପଦ କମଲ ମନାଵଉଁ । ଜାସୁ କୃପାଁ ନିରମଲ ମତି ପାଵଉଁ ॥୪॥
ପୁନି ମନ ବଚନ କର୍ମ ରଘୁନାୟକ । ଚରନ କମଲ ବନ୍ଦଉଁ ସବ ଲାୟକ ॥
ରାଜିବନୟନ ଧରେଁ ଧନୁ ସାୟକ । ଭଗତ ବିପତି ଭଞ୍ଜନ ସୁଖଦାୟକ ॥୫॥

ଗିରା ଅରଥ ଜଲ ବୀଚି ସମ କହିଅତ ଭିନ୍ନ ନ ଭିନ୍ନ ।
ବନ୍ଦଉଁ ସୀତା ରାମ ପଦ ଜିନ୍ହହିଁ ପରମ ପ୍ରିୟ ଖିନ୍ନ ॥୧୮॥

---

ଶୁକ ସନକାଦି ଭକ୍ତ ନାରଦ ଆଦର । ବିଜ୍ଞାନ-ବିଶାରଦ ଯେ ଋଷି ମୁନିବର ॥
ନମେ ସମସ୍ତଙ୍କୁ ଧରି ଧରଣୀରେ ଶିର । ସେବକ ଜାଣି କରୁଣା କର ମୁନି ଧୀର ॥୩॥
ଜଗତ ମାତା ଜାନକୀ ଜନକ-ନନ୍ଦନୀ । କରୁଣାନିଧିଙ୍କ ଅତି ପ୍ରିୟ ପ୍ରଣୟିନୀ ॥
ବନ୍ଦେ ତାହାଙ୍କ ଯୁଗ୍ମ ଚରଣ-କମଳ । ଯାହାଙ୍କ କୃପାରୁ ପାଉଁ ମତି ସୁନିର୍ମଳ ॥୪॥
ପୁଣି ମନ କର୍ମ ବାକ୍ୟେ ଶ୍ରୀରଘୁପତିଙ୍କ । ବନ୍ଦଇ ସର୍ବ ସୁଯୋଗ୍ୟ ପଦ-ପୁଣ୍ଡରୀକ ॥
ରାଜୀବ-ନୟନ ଧୃତ କୋଦଣ୍ଡ ଶାୟକ । ଭକ୍ତ-ବିପତ୍ତି-ଭଞ୍ଜନ ସୁଖ-ପ୍ରଦାୟକ ॥୫॥

ସଲିଳ ଲହରୀ ଶବ୍ଦ ଅର୍ଥପରି କହିବାକୁ ଭିନ୍ନାଭିନ୍ନ ।
ବନ୍ଦେ ସୀତାରାମ-ପଦ, ପ୍ରିୟତମ ଅଟନ୍ତି ଯାହାଙ୍କୁ ଦୀନ ॥୧୮॥

---

ବାନରଗଣଙ୍କ ରାଜା ସୁଗ୍ରୀବ, ଭଲ୍ଲୁକରାଜ ଜାମ୍ବବାନ୍, ରାକ୍ଷସରାଜ ବିଭୀଷଣ ଏବଂ ଅଙ୍ଗଦାଦି ଯେତେ ବାନରସମାଜ ଅଛନ୍ତି, ସମସ୍ତଙ୍କ ସୁନ୍ଦର ଚରଣ ମୁଁ ବନ୍ଦନା କରୁଅଛି । କାରଣ, ସେମାନେ ଅଧମ (ପଶୁ ଓ ରାକ୍ଷସ ଆଦି) ଶରୀରରେ ମଧ୍ୟ ଶ୍ରୀରାମଚନ୍ଦ୍ରଙ୍କୁ ପାଇ ପାରିଅଛନ୍ତି ॥୧॥ ପଶୁ, ପକ୍ଷୀ, ଦେବତା, ମନୁଷ୍ୟ, ଅସୁର ସମେତ ଯେତେ ଶ୍ରୀରାମଙ୍କ ଚରଣର ଉପାସକ ଅଛନ୍ତି, ମୁଁ ସେ ସମସ୍ତଙ୍କ ପାଦ-ପଦ୍ମ ବନ୍ଦନା କରୁଛି । ସେମାନେ ଶ୍ରୀରାମଚନ୍ଦ୍ରଙ୍କ ନିଷ୍କାମ ସେବକ ॥ ୨ ॥ ଶୁକଦେବ, ସନକାଦି, ନାରଦ-ମୁନି ଆଦି ଯେତେ ଭକ୍ତ ଓ ପରମଜ୍ଞାନୀ ମୁନିଶ୍ରେଷ୍ଠ ଅଛନ୍ତି, ସେ ସମସ୍ତଙ୍କୁ ପୃଥିବୀରେ ମୁଣ୍ଡ ଲଗାଇ ମୁଁ ପ୍ରଣାମ କରୁଅଛି । ହେ ମୁନୀଶ୍ୱରବୃନ୍ଦ ! ଆପଣମାନେ ସମସ୍ତେ ମୋତେ ଆପଣଙ୍କ ଦାସ ବୋଲି ବିଚାରି ଦୟା କରନ୍ତୁ ॥ ୩ ॥ ରାଜା ଜନକଙ୍କ କନ୍ୟା, ଜଗତର ମାତା ଓ କରୁଣାନିଧାନ ଶ୍ରୀରାମଚନ୍ଦ୍ରଙ୍କ ପ୍ରିୟତମା ଶ୍ରୀ ଜାନକୀଙ୍କ ପାଦ-ପଦ୍ମ ଦ୍ୱୟରେ ବିନତି ଜଣାଉଛି । ତାଙ୍କର କୃପାବଳରେ ମୁଁ ନିର୍ମଳ ବୁଦ୍ଧି ପାଇବି ॥ ୪ ॥ ପୁଣି ମୁଁ ମନ, ବଚନ ଓ କର୍ମରେ କମଳନୟନ, ଧନୁଶରଧାରୀ ଭକ୍ତମାନଙ୍କ ବିପତ୍ତିବିନାଶକ ଓ ସୁଖଦାୟକ ଭଗବାନ୍ ଶ୍ରୀ ରଘୁନାଥଙ୍କ ସର୍ବସମର୍ଥ ଚରଣ-କମଳକୁ ବନ୍ଦନା କରୁଅଛି ॥ ୫ ॥ ଦୋହା :—ଯେଉଁ ପ୍ରଭୁଦ୍ଧମଳୀ ବାଣୀ ଓ ତାହାର ଅର୍ଥ ଏବଂ ଜଳ ଓ ଜଳର ଲହରୀ ତୁଲ୍ୟ କଥାରେ କହିବାକୁ ଭିନ୍ନ, ମାତ୍ର ବାସ୍ତବରେ

ବନ୍ଦଉଁ ନାମ ରାମ ରଘୁବର କୋ । ହେତୁ କୃସାନୁ ଭାନୁ ହିମକରକୋ ॥
ବିଧି ହରି ହରମୟ ବେଦ ପ୍ରାନ ସୋ । ଅଗୁନ ଅନୁପମ ଗୁନନିଧାନ ସୋ ॥୧॥
ମହାମନ୍ତ୍ର ଜୋଇ ଜପତ ମହେସୂ । କାସୀଁ ମୁକୁତି ହେତୁ ଉପଦେସୂ ॥
ମହିମା ଜାସୁ ଜାନ ଗନରାଉ । ପ୍ରଥମ ପୂଜିଅତ ନାମ ପ୍ରଭାଉ ॥୨॥
ଜାନ ଆଦିକବି ନାମ ପ୍ରତାପୂ । ଭୟଉ ସୁଦ୍ଧ କରି ଉଲଟା ଜାପୂ ॥
ସହସ ନାମ ସମ ସୁନି ସିବ ବାନୀ । ଜପତି ସଦା ପିୟ ସଙ୍ଗ ଭବାନୀ ॥୩॥
ହରଷେ ହେତୁ ହେରି ହର ହୀ କୋ । କିୟ ଭୂଷନ ତିୟ ଭୂଷନ ତୀ କୋ ॥
ନାମ ପ୍ରଭାଉ ଜାନ ସିବ ନୀକୋ । କାଲକୂଟ ଫଲୁ ଦୀହ୍ନ ଅମୀକୋ ॥୪॥

---

ବନ୍ଦଇ ଶ୍ରୀରାମ ନାମ ରଘୁବରଙ୍କର । ହେତୁ ଯେ କୃଶାନୁ ଭାନୁ ହିମକରଙ୍କର ॥
ବିଧି ହରି ହରମୟ ବେଦ ପ୍ରାଣସମ । ଅଗୁଣ ଗୁଣ ନିଧାନ ପୁଣି ଅନୁପମ ॥୧॥
ଯେଉଁ ମହାମନ୍ତ୍ର ସଦା ଜପନ୍ତି ମହେଶ । କାଶୀ, ମୁକ୍ତି ହେତୁ କରନ୍ତି ଏ ଉପଦେଶ ॥
ମହିମା ଯାହାର ଗଣ-ନାୟକ ଜାଣନ୍ତି । ନାମ ପ୍ରଭାବେ ପ୍ରଥମେ ପୂଜିତ ହୁଅନ୍ତି ॥୨॥
ଜାଣିଛନ୍ତି ଆଦିକବି ନାମ ପରାକ୍ରମ । ଓଲଟା ଜପିଣ ସିଦ୍ଧି ଲଭିଲେ ପରମ ॥
ସହସ୍ର ନାମ ସମାନ ଶୁଣି ଶିବବାଣୀ । ଜପି ସ୍ୱାମୀ ସଙ୍ଗେ କଲେ ଭୋଜନ ଶର୍ବାଣୀ ॥୩॥
ହୃଦଭାବ ଦେଖି ହର ହରଷ ହୋଇଲେ । ନାରୀ-ଭୂଷଣ ନାରୀଙ୍କୁ ଭୂଷଣ କରିଲେ ॥
ନାମ ପ୍ରଭାବ ଜାଣନ୍ତି ଭଲ ରୂପେ ଈଶ । ଅମୃତ ଫଳ ଦିହଲି କାଳକୂଟ ବିଷ ॥୪॥

---

ଅଭିନ୍ନ (ଏକ), ଦୀନ ଦୁଃଖୀ ଯାହାଙ୍କର ପରମପ୍ରିୟ, ସେହି ସୀତାରାମଙ୍କର ଚରଣ ମୁଁ ବନ୍ଦନା କରୁଅଛି ॥ ୧୮ ॥ ଚୌପାଇ —ଶ୍ରୀ ରଘୁନାଥଙ୍କ ନାମ 'ରାମ'କୁ ମୁଁ ବନ୍ଦନା କରୁଅଛି । ସେହି ନାମ କୃଶାନୁ (ଅଗ୍ନି), ଭାନୁ (ସୂର୍ଯ୍ୟ) ଓ ହିମକର (ଚନ୍ଦ୍ରମା)ର ହେତୁ ଅର୍ଥାତ୍ 'ର', 'ଆ' ଓ 'ମ' ରୂପରେ ମୂଳବୀଜ । ସେହି 'ରାମ' ନାମ ବ୍ରହ୍ମା, ବିଷ୍ଣୁ ଓ ଶିବରୂପ । ତାହା ବେଦସମୂହର ପ୍ରାଣ, ନିର୍ଗୁଣ, ଉପମାରହିତ ଓ ଗୁଣସମୂହର ଭଣ୍ଡାର ॥ ୧ ॥ ସେହି 'ରାମ' ନାମ ମହାମନ୍ତ୍ର । ସ୍ୱୟଂ ମହେଶ ଉକ୍ତ ମହାମନ୍ତ୍ର ଜପନ୍ତି ଏବଂ ଏହାହିଁ ମୁକ୍ତିର କାରଣ ବୋଲି କାଶୀରେ ଉପଦେଶ ଦିଅନ୍ତି । ଏହି ମହାମନ୍ତ୍ରର ମହିମା ଗଣେଶ ଜାଣନ୍ତି । ଏହି 'ରାମ' ନାମର ପ୍ରଭାବରୁ ଗଣେଶ ସର୍ବପ୍ରଥମେ ପୂଜିତ ହୁଅନ୍ତି ॥ ୨ ॥ ଆଦିକବି ବାଲ୍ମୀକି 'ରାମ' ନାମର ପ୍ରଭାବକୁ ଜାଣନ୍ତି । ଓଲଟା ନାମ ମାତ୍ର (ମରା, ମରା,) ଜପି ମଧ୍ୟ ସେ ପବିତ୍ର ହୋଇଗଲେ । "ଏକମାତ୍ର ରାମନାମ ସହସ୍ର ନାମ ସଙ୍ଗେ ସମାନ"—ଶିବଙ୍କର ଏହି ବଚନ ଶୁଣି ସ୍ୱୟଂ ପାର୍ବତୀ ସର୍ବଦା ନିଜ ପତିଙ୍କ ସହ ରାମନାମ ଜପ କରି ଆସୁଅଛନ୍ତି । ['ମାନସ'ର ମୂଳପାଠରେ କେଉଁଠି କେଉଁଠି 'ଜପତସଦା'ର ସ୍ଥାନରେ 'ଜପି ଜେଇଁ' ପାଠାନ୍ତର ମିଳେ ଏହାର ଅର୍ଥ "ପାର୍ବତୀ ଶିବଙ୍କ ସହ 'ରାମ' ନାମ ଜପି ଭୋଜନ କଲେ ।"] ॥ ୩ ॥ ନାମପ୍ରତି ପାର୍ବତୀଙ୍କ ହୃଦୟରେ ଏପରି ପ୍ରୀତି ଦେଖି ଶିବ ଆନନ୍ଦରେ ଗଦ୍‌ଗଦ ହୋଇ ପଡ଼ିଲେ ଏବଂ ସେ

ବରଷା ଋତୁ ରଘୁପତି ଭଗତି ତୁଳସୀ ସାଲି ସୁଦାସ ।
ରାମ ନାମ ବର ବରନ ଜୁଗ ସାବନ ଭାଦବ ମାସ ॥୧୯॥
ଆଖର ମଧୁର ମନୋହର ଦୋଊ । ବରନ ବିଲୋଚନ ଜନ ଜିୟ ଜୋଊ ॥
ସୁମିରତ ସୁଲଭ ସୁଖଦ ସବ କାହୂ । ଲୋକ ଲାହୁ ପରଲୋକ ନିବାହୂ ॥୧॥
କହତ ସୁନତ ସୁମିରତ ସୁଠି ନୀକେ । ରାମ ଲଖନ ସମ ପ୍ରିୟ ତୁଲସୀକେ ॥
ବରନତ ବରନ ପ୍ରୀତି ବିଲଗାତୀ । ବ୍ରହ୍ମ ଜୀବ-ସମ ସହଜ ସଁଘାତୀ ॥୨॥
ନର ନାରାୟନ ସରିସ ସୁଭ୍ରାତା । ଜଗପାଲକ ବିସେଷି ଜନତ୍ରାତା ॥
ଭଗତି ସୁତିଅ କଲ କରନବିଭୂଷନ । ଜଗ ହିତ ହେତୁ ବିମଲ ବିଧୁ ପୂଷନ ॥୩॥

---

ବର୍ଷା ଋତୁ ସମ ରଘୁପତି ଭକ୍ତ ତୁଳସୀ ଧାନ୍ୟ ସୁଦାସ ।
ରାମ ନାମ ବେନି ବର୍ଣ୍ଣ ମନୋରମ ଶ୍ରାବଣ ଭାଦ୍ରବ ମାସ ॥୧୯॥
ମଧୁର ସୁମନୋହର ଉଭୟ ଅକ୍ଷର । ବର୍ଣ୍ଣ ବିଲୋଚନ ପ୍ରାଣ ଭକ୍ତବୃନ୍ଦଙ୍କର ॥
ସ୍ମରନ୍ତେ ସମସ୍ତଙ୍କୁ ସୁଲଭ ସୁଖଦ । ଇହଲୋକେ ଲାଭ ପରଲୋକେ ମୋକ୍ଷପ୍ରଦ ॥୧॥
ଶ୍ରବଣ କଥନ ପୁଣି ମନନେ ଉତ୍ତମ । ତୁଳସୀଙ୍କୁ ପ୍ରିୟ ରାମ ଲକ୍ଷ୍ମଣଙ୍କ ସମ ॥
ବର୍ଣ୍ଣନ୍ତେ ଭିନ୍ନ ଲାଗଇ ବର୍ଣ୍ଣଙ୍କର ପ୍ରୀତି । ବ୍ରହ୍ମଜୀବ ସମ ସ୍ୱତଃ ସ୍ୱାଭାବିକ ସ୍ଥିତି ॥୨॥
ନରନାରାୟଣ ତୁଲ୍ୟ ଅଟନ୍ତି ସୁଭ୍ରାତା । ବିଶ୍ୱପାଳକ ବିଶେଷ ଭକ୍ତଜନ-ତ୍ରାତା ॥
ଭକ୍ତି-ସୁବାଳାର କର୍ଣ୍ଣଭୂଷଣ ସୁନ୍ଦର । ଜଗତ ହିତେ ବିମଳ ରବି-ସୁଧାକର ॥୩॥

---

ସ୍ତ୍ରୀମାନଙ୍କ ମଧ୍ୟରେ ଭୂଷଣରୂପିଣୀ (ପତିବ୍ରତାଶିରୋମଣି) ପାର୍ବତୀଙ୍କୁ ତାଙ୍କ ଭୂଷଣ କରି ପକାଇଲେ । (ଅର୍ଥାତ୍ ତାଙ୍କୁ ଆପଣାର ଅଙ୍ଗରେ ଧାରଣ କରି ଅର୍ଦ୍ଧାଙ୍ଗିନୀ କରିନେଲେ ।) ଶିବ ମହାପ୍ରଭୁ ନାମର ପ୍ରଭାବକୁ ଭଲ ରୂପେ ଜାଣନ୍ତି । ତାହାର ପ୍ରଭାବରେ କାଳକୂଟ ବିଷ ତାହାଙ୍କୁ ଅମୃତ ଫଳ ଦେଇଥିଲା ॥୮॥ ଦୋହା :— ଶ୍ରୀ ରଘୁନାଥଙ୍କ ଭକ୍ତି ବର୍ଷାଋତୁ, ଉତ୍ତମ ସେବକବୃନ୍ଦ ଧାନ ଓ 'ରାମ' ନାମର ଅକ୍ଷର ଦୁଇଟି ଶ୍ରାବଣ ଓ ଭାଦ୍ର ମାସ ବୋଲି ତୁଳସୀଦାସ କହନ୍ତି ॥୧୯॥ ଚୌପାଈ —ଉଭୟ ଅକ୍ଷର ମଧୁର ଓ ମନୋହର । ବର୍ଣ୍ଣମାଳାରୂପୀ ଶରୀରର ଉଭୟେ ନେତ୍ର, ଭକ୍ତବୃନ୍ଦଙ୍କ ଜୀବନ ଏବଂ ଏହାର ସ୍ମରଣ ସମସ୍ତଙ୍କ ପକ୍ଷରେ ସୁଲଭ ଓ ସୁଖଦ । ତାହା ଇହଲୋକରେ ଲାଭ ଓ ପରଲୋକରେ ମୁକ୍ତି ପ୍ରଦାନ କରେ । (ଅର୍ଥାତ୍ ଭଗବାନଙ୍କ ଦିବ୍ୟ-ଧାମରେ ଦିବ୍ୟ ଦେହରେ ପ୍ରାଣୀଙ୍କୁ ସର୍ବଦା ଭଗବତ୍ ସେବାରେ ନିୟୋଜିତ ରଖେ ।) ॥୧॥ କହିବାକୁ, ଶୁଣିବାକୁ ଓ ସ୍ମରଣ ରଖିବାକୁ ଏ ଦୁଇଟି ଅକ୍ଷର ଅତ୍ୟନ୍ତ ସୁଖକର ଓ ଉତ୍ତମ (ସୁନ୍ଦର ଓ ମଧୁର) । ଏ ଦୁଇଟି ଅକ୍ଷର ରାମ ଓ ଲକ୍ଷ୍ମଣଙ୍କ ପରି ତୁଳସୀଦାସର ଅତି ପ୍ରିୟ । ଦୁଇଟି ବର୍ଣ୍ଣର ପୃଥକ୍ ବର୍ଣ୍ଣନା କରିବାରେ ଉଭୟଙ୍କ ପାରସ୍ପରିକ ପ୍ରୀତିର-ପ୍ରଭେଦ ପରିଲକ୍ଷିତ ହୁଏ । (ଅର୍ଥାତ୍ ବୀଜମନ୍ତ୍ରର ଦୃଷ୍ଟିରୁ ଏ ଦୁଇଟିର ଉଚ୍ଚାରଣ, ଅର୍ଥ ଓ ଫଳରେ ଭିନ୍ନତା ପରିଲକ୍ଷିତ ହୁଏ ।)

ସ୍ୱାଦ ତୋଷ ସମ ସୁଗତି ସୁଧାକେ । କମଠ ସେଷ ସମ ଧର ବସୁଧାକେ ॥
ଜନ ମନ ମଞ୍ଜୁ କଞ୍ଜ ମଧୁକର ସେ । ଜୀହ ଜସୋମତି ହରି ହଲଧର ସେ ॥୪॥
ଏକୁ ଛତ୍ର ଏକୁ ମୁକୁଟମନି ସବ ବରନନି ପର ଜୋଉ ।
ତୁଲସୀ ରଘୁବର ନାମ କେ ବରନ ବିରାଜତ ଦୋଉ ॥୨୦॥
ସମୁଝତ ସରିସ ନାମ ଅରୁ ନାମୀ । ପ୍ରୀତି ପରସପର ପ୍ରଭୁ ଅନୁଗାମୀ ॥
ନାମ ରୂପ ଦୁଇ ଈସ ଉପାଧୀ । ଅକଥ ଅନାଦି ସୁସାମୁଝି ସାଧୀ ॥୧॥

---

ସୁଗତି ସୁଧାର ସ୍ୱାଦ ସନ୍ତୋଷ ପରାୟେ । ବସୁଧା ଭାର ବହନେ କୂର୍ମ ଅହିରାୟେ ॥
ଭକ୍ତଜନ-ମନ - ମଞ୍ଜୁ -କଞ୍ଜ-ମଧୁକର । ଜିହ୍ୱା-ଯଶୋଦାଙ୍କୁ ଯେସନେ କାହ୍ନୁ ହଲଧର ॥୪॥
ଏକ ଛତ୍ର ଏକ ମୁକୁଟର ମଣି ସବୁ ବର୍ଣ୍ଣଙ୍କ ଉପରେ ।
ତୁଲସୀ ବିବେକ ଶୋଭେ ବେନି ବର୍ଣ୍ଣ ରଘୁବରଙ୍କ ନାମରେ ॥୨୦॥
ବୁଝିବା ନିମନ୍ତେ ତୁଲ୍ୟ ନାମ ଆଉ ନାମୀ । ପ୍ରୀତି ପରସ୍ପର ଦୁହେଁ ପ୍ରଭୁ ଅନୁଗାମୀ ॥
ନାମ ରୂପ ବେନି - ଈଶ ଉପାଧି ଅଟନ୍ତି । ଅକଥ୍ୟ ଅନାଦି ବିଜ୍ଞେ ବୁଝି ରଖିଛନ୍ତି ॥୧॥

---

ମାୟିକ ପ୍ରକୃତିରେ ଜୀବ ଓ ବ୍ରହ୍ମ ସଦୃଶ ଏ ଦୁଇଟି ଅକ୍ଷର ସର୍ବଦା ସହବାସୀ, ସଦା ଏକରୂପ ଓ ଏକରସ ॥ ୨ ॥ ଏ ଦୁଇଟି ଅକ୍ଷର ନରନାରାୟଣ ପରି ଉତ୍ତମ ସହୋଦର ଭାଇ । ଉଭୟେ ଜଗତକୁ ପାଳନ ଓ ବିଶେଷ କରି ଭକ୍ତମାନଙ୍କୁ ରକ୍ଷା କରନ୍ତି । ଭକ୍ତି ରୂପିଣୀ ସୁନ୍ଦରୀ ନାରୀର ଉଭୟେ କର୍ଣ୍ଣାଭୂଷଣ (କାନଫୁଲ) ଓ ଜଗତର ହିତ ସାଧନ ନିମନ୍ତେ ନିର୍ମଳ ଚନ୍ଦ୍ରମା ଓ ସୂର୍ଯ୍ୟ ॥ ୩ ॥ ଉଭୟ ଅକ୍ଷର ସୁଗତି (ମୋକ୍ଷ) ରୂପୀ ଅମୃତର ସ୍ୱାଦୁ ଓ ତୃପ୍ତି ସଦୃଶ । ଉଭୟେ କଚ୍ଛପ ଓ ଶେଷଦେବଙ୍କ ତୁଲ୍ୟ ପୃଥିବୀକୁ ଧାରଣ କରିଅଛନ୍ତି । ଦୁହେଁ ଭକ୍ତଗଣଙ୍କ ମନରୂପୀ ସୁନ୍ଦର କମଳରେ ବିହାର କରୁଥିବା ଭ୍ରମର ଯୋଡିଏ ଏବଂ ଜିହ୍ୱାରୂପିଣୀ ଯଶୋଦାଙ୍କ ପକ୍ଷରେ ଶ୍ରୀକୃଷ୍ଣ ଓ ବଳରାମଙ୍କ ତୁଲ୍ୟ ଆନନ୍ଦପ୍ରଦାନକାରୀ ॥ ୪ ॥ ଦୋହା '—ତୁଳସୀଦାସ କହନ୍ତି,— ଶ୍ରୀ ରଘୁନାଥଙ୍କ ନାମର ଦୁଇଟି ଅକ୍ଷର ବଡ ଶୋଭା ଦିଏ । ଏ ଦୁଇଟିରୁ ଗୋଟିଏ ('ର'କାର) ରେଫ୍ ( ʼ ) ହୋଇ ଛତ୍ର ରୂପେ ଏବଂ ଅନ୍ୟଟି ('ମ' କାର) ଅନୁସ୍ୱାର ( ଂ ) ହୋଇ ମୁକୁଟମଣି ରୂପେ ସମସ୍ତ ଅକ୍ଷର ଉପରେ ବିରାଜିତ ॥ ୨୦ ॥ ଚୌପାଈ —ବୁଝିବାକୁ ଗଲେ ନାମ ଓ ନାମୀ ଉଭୟେ ଏକ, କିନ୍ତୁ ଦୁହିଙ୍କ ମଧ୍ୟରେ ସ୍ୱାମୀ ଓ ସେବକର ପ୍ରୀତି ବିଦ୍ୟମାନ । (ଅର୍ଥାତ୍ ନାମ ଓ ନାମୀ ମଧ୍ୟରେ ପୂର୍ଣ୍ଣ ଐକ୍ୟ ଥିଲେ ମଧ୍ୟ ସ୍ୱାମୀ ପଛରେ ସେବକ ଚାଲିଲା ପରି ନାମ ପଛରେ ନାମୀ ଚାଲନ୍ତି ।) ପ୍ରଭୁ ଶ୍ରୀରାମଚନ୍ଦ୍ର ଆପଣା 'ରାମ' ନାମକୁ ହିଁ ଅନୁଗମନ କରନ୍ତି । ନାମ ନେବା ମାତ୍ରେ ସେ ସେଠାରେ ଆସି ପହଞ୍ଚିଯାଆନ୍ତି । ନାମ ଓ ରୂପ ଦୁହେଁ ଈଶ୍ୱରଙ୍କ ଉପାଧି; ଏ ଦୁହେଁ । (ଭଗବାନଙ୍କ ନାମ ଓ ରୂପ) ଅନିର୍ବଚନୀୟ ଓ ଅନାଦି ଏବଂ ସୁନ୍ଦର (ଶୁଦ୍ଧ ଭକ୍ତିଯୁକ୍ତ) ବୁଦ୍ଧି ଦ୍ୱାରା ହିଁ ଏହାଙ୍କର (ଦିବ୍ୟ, ଅବିନାଶୀ)

କୋ ବଡ଼ ଛୋଟ କହତ ଅପରାଧୂ । ସୁନି ଗୁନ ଭେଦ ସମୁଝିହହିଁ ସାଧୂ ॥
ଦେଖିଅହିଁ ରୂପ ନାମ ଆଧୀନା । ରୂପ ଜ୍ଞାନ ନହିଂ ନାମ ବିହୀନା ॥୨॥
ରୂପ ବିସେଷ ନାମ ବିନୁ ଜାନେଁ । କରତଲ ଗତ ନ ପରହିଁ ପହିଚାନେଁ ॥
ସୁମିରିଅ ନାମ ରୂପ ବିନୁ ଦେଖେଁ । ଆୱତ ହୃଦୟଁ ସନେହ ବିସେଷେଁ ॥୩॥
ନାମ ରୂପ ଗତି ଅକଥ କହାନୀ । ସମୁଝତ ସୁଖଦ ନ ପରତି ବଖାନୀ ॥
ଅଗୁନ ସଗୁନ ବିଚ ନାମ ସୁସାଖୀ । ଉଭୟ ପ୍ରବୋଧକ ଚତୁର ଦୁଭାଷୀ ॥୪॥

ରାମନାମ ମନିଦୀପ ଧରୁ ଜୀହ ଦେହରୀଁ ଦ୍ୱାର ।
ତୁଲସୀ ଭୀତର ବାହେରହୁଁ ଜୌଁ ଚାହସି ଉଜିଆର ॥ ୨୧ ॥

ନାମ ଜୀହଁ ଜପି ଜାଗହିଁ ଜୋଗୀ । ବିରତି ବିରଞ୍ଚି-ପ୍ରପଞ୍ଚ ବିଯୋଗୀ ॥
ବ୍ରହ୍ମସୁଖହି ଅନୁଭବହିଁ ଅନୂପା । ଅକଥ ଅନାମୟ ନାମ ନ ରୂପା ॥୧॥

---

କେ ବଡ଼ ଶ୍ରେଷ୍ଠ କହନ୍ତେ ଅପରାଧ ଲାଗେ । ଶୁଣି ଗୁଣ ଭେଦ ସାଧୁ ବିଚାରନ୍ତୁ ଆଗେ ॥
ଭବ ଦେଖ ରୂପ ନାମ-ଅଧୀନ ଅଟଇ । ନାମ ବିନା ରୂପ ଜ୍ଞାନ ହୋଇ ନ ପାରଇ ॥୨॥
ରୂପ ବିଶେଷ ଆବର ନାମ ଜ୍ଞାନବିନା । କରଗତ ହେଲେ ମଧ୍ୟ ନ ପଡ଼ଇ ଚିହ୍ନା ॥
ରୂପ ନ ଦେଖିଣ ଯେବେ ନାମ ସୁମରନ୍ତି । ଉପୁଜେ ହୃଦୟେ ସ୍ନେହ ଅନୁରାଗ ଅତି ॥୩॥
ନାମ ରୂପଙ୍କର ଗୁଣ ଅଗମ୍ୟ କାହାଣୀ । ବୁଝନ୍ତେ ସୁଖ-ଦାୟକ ନ ହୁଏ ବଖାଣି ॥
ନିର୍ଗୁଣ ସଗୁଣ ମଧ୍ୟେ ନାମ ସାକ୍ଷୀ ଭଲ । ଉଭୟ ବୋଧକ ଦକ୍ଷ ଦ୍ୱିଭାଷିଆ ତୁଲ ॥୪॥

ରାମ ନାମ-ମଣି-ଦୀପ ଧର ଗୁଣି ଜିହ୍ୱା-ଏରୁଣ୍ଡି ଉପରେ ।
ତୁଲସୀ ପ୍ରକାଶ ଯେବେ ଅଭିଲଷ ହୃଦ ବାହାର ଭିତରେ ॥୨୧॥

ନାମ ଜିହ୍ୱାରେ ଜପିଣ ଉଜାଗର ଯୋଗୀ । ବିଧି ପ୍ରପଞ୍ଚରୁ ହୋଇ ବିରକ୍ତ ବିୟୋଗୀ ॥
ବ୍ରହ୍ମସୁଖ ଅନୁଭବ କରନ୍ତି ଅନୁପ । ଅକଥନୀୟ ଅନଘ ଅନାମ ଅରୂପ ॥୧॥

---

ସ୍ୱରୂପ ଜାଣିହୁଏ ॥ ୧ ॥ ନାମ ଓ ରୂପ ମଧ୍ୟରେ କିଏ ବଡ଼, କିଏ ସାନ—ଏହା କହିବା ଅପରାଧ । ଏ ଦୁହିଙ୍କ ଗୁଣର ତାରତମ୍ୟ ଶୁଣି ସାଧୁ ପୁରୁଷମାନେ ଆପେ ଆପେ ହିଁ ବୁଝିନେବେ । ରୂପାବଳୀ ନାମର ଅଧୀନରେ ଚଳିବାର ଦେଖାଯାଏ । ନାମ ବିନା ରୂପ ବିଷୟରେ ଜ୍ଞାନ ହୋଇ ପାରିବ ନାହିଁ ॥ ୨ ॥ ନାମ ନ ଜାଣି ଯେ କୌଣସି ବିଶେଷ ରୂପ ବା ପଦାର୍ଥକୁ ହାତ ପାପୁଲିରେ ରଖି ମଧ୍ୟ କେହି ଚିହ୍ନି ପାରନ୍ତି ନାହିଁ । ପକ୍ଷାନ୍ତରରେ ରୂପ ନ ଦେଖି ମଧ୍ୟ କେବଳ ନାମମାତ୍ର ସ୍ମରଣ କଲେ, ସବିଶେଷ ପ୍ରେମ ସହିତ ସେ ରୂପ ହୃଦୟରେ ଆସି ପହଞ୍ଚିଯାଏ ॥ ୩ ॥ ନାମ ଓ ରୂପର ଗତି-ବିଷୟକ କାହାଣୀ (ବିଶେଷତ୍ୱର କଥା) ଅକଥନୀୟ । ବୁଝିବାକୁ ତାହା ଆନନ୍ଦଦାୟକ । ମାତ୍ର ତାହାର ବର୍ଣ୍ଣନା କରାଯାଇ ପାରେ ନାହିଁ । ନିର୍ଗୁଣ ଓ ସଗୁଣ ମଧ୍ୟରେ ନାମ ସୁନ୍ଦର ସାକ୍ଷୀ ଏବଂ ଦୋଭାଷୀରୂପେ ଉଭୟଙ୍କୁ ଯଥାର୍ଥ ଜ୍ଞାନରେ ଚିହ୍ନାଇ ଦିଏ ॥୪॥ ଦୋହା.—ତୁଲସୀଦାସ କହନ୍ତି,—ଯଦି ତୁ ହୃଦୟର ଭିତରେ

ଜାନା ଚହହିଁ ଗୂଢ଼ ଗତି ଜେଊ । ନାମ ଜୀହଁ ଜପି ଜାନହିଁ ତେଊ ॥
ସାଧକ ନାମ ଜପହିଁ ଲୟ ଲାଏଁ । ହୋହିଁ ସିଦ୍ଧ ଅନିମାଦିକ ପାଏଁ ॥୨॥
ଜପହିଁ ନାମୁ ଜନ ଆରତ ଭାରୀ । ମିଟହିଁ କୁସଙ୍କଟ ହୋହିଁ ସୁଖାରୀ ॥
ରାମ ଭଗତ ଜଗ ଚାରି ପ୍ରକାରା । ସୁକୃତୀ ଚାରିଉ ଅନଘ ଉଦାରା ॥୩॥
ଚହୂ ଚତୁର କହୁଁ ନାମ ଅଧାରା । ଜ୍ଞାନୀ ପ୍ରଭୁହି ବିସେଷି ପିଆରା ॥
ଚହୁଁ ଜୁଗ ଚହୁଁ ଶ୍ରୁତି ନାମ ପ୍ରଭାଊ । କଲି ବିସେଷି ନହିଁ ଆନ ଉପାଊ ॥୪॥

---

ଗୂଢତତ୍ତ୍ୱ ଜାଣିବାକୁ ଯେ ଇଚ୍ଛା କରନ୍ତି । ଜିହ୍ୱାରେ ନାମ ଜପିଣ ସେ ଜାଣି ପାରନ୍ତି ॥
ସାଧକ ଲୟ ଲଗାଇ ନାମ ଜପ କରେ । ସିଦ୍ଧ ହୋଇ ଅଣିମାଦି ନିଧିଚୟ ବରେ ॥୨॥
ଜପନ୍ତି ନାମ ଅତ୍ୟନ୍ତ ଆର୍ତ୍ତ ହୋଇ ଜନ । ତୁଟେ କୁସଙ୍କଟ ସୁଖୀ ହୁଅନ୍ତି ବହନ ॥
ରାମଙ୍କର ଭକ୍ତ ଚାରି ପ୍ରକାର ଜଗତେ । ସୁକୃତବନ୍ତ ନିଷ୍ପାପ ଉଦାର ସମସ୍ତେ ॥୩॥
ଚାରି ଚତୁରଙ୍କ ନାମ ଆଧାର ଅଟଇ । ଜ୍ଞାନୀ ଅତିଶୟ ପ୍ରିୟ ପ୍ରଭୁଙ୍କୁ ଲାଗଇ ॥
ଚାରି ଯୁଗେ ଚାରି ବେଦେ ପ୍ରଭାବ ନାମର । ବିଶେଷେ କଳିରେ ନାହିଁ ଉପାୟ ଇତର ॥୪॥

---

ଓ ବାହାରେ—ଉଭୟ ସ୍ଥାନରେ ଆଲୋକ ଚାହୁଁ, ତେବେ ମୁଖରୂପୀ ଦ୍ୱାରର ଜିହ୍ୱାରୂପୀ ଏରୁଣ୍ଡିବନ୍ଧ ଉପରେ 'ରାମ' ନାମ ରୂପୀ ମଣିଦୀପକୁ ରଖ ॥୨୧॥ ଚୌପାଈ—ବ୍ରହ୍ମାଙ୍କ ଦ୍ୱାରା ସୃଷ୍ଟ ଏହି ପ୍ରପଞ୍ଚ (ଦୃଶ୍ୟ ଜଗତ)ରୁ ଭଲ ଭାବରେ ଅବ୍ୟାହତି ପାଇଥିବା ବୈରାଗୀ, ମୁକ୍ତ ଓ ଯୋଗୀ ପୁରୁଷ କେବଳ ଏହି ନାମକୁ ଜିଭରେ ଜପି ତତ୍ତ୍ୱଜ୍ଞାନରୂପୀ ଦିବସରେ ଜାଗ୍ରତ ରହନ୍ତି ଏବଂ ନାମରୂପ-ରହିତ, ଅନୁପମ, ଅନିର୍ବଚନୀୟ ଓ ଅନାମୟ ବ୍ରହ୍ମସୁଖ ଅନୁଭବ କରନ୍ତି ॥୧॥ ଯେଉଁମାନେ ପରମାତ୍ମାଙ୍କର ଗୂଢ ରହସ୍ୟ (ଯଥାର୍ଥ ମହିମା) ଜାଣିବାକୁ ଇଚ୍ଛୁକ, ସେହି ଜିଜ୍ଞାସୁ ଭକ୍ତମାନେ ନାମ ଜିଭରେ ଜପି ତାହା ଜାଣି ନିଅନ୍ତି । (ଲୌକିକ ବା ସାଂସାରିକ ସିଦ୍ଧି ଚାହୁଁଥିବା ଅର୍ଥାର୍ଥୀ) ସାଧକ ଲୟ ଲଗାଇ ନାମ ଜପ କରନ୍ତି ଓ ଅଣିମାଦି ଅଷ୍ଟ ଐଶ୍ୱର୍ଯ୍ୟ ଲାଭପୂର୍ବକ ସିଦ୍ଧ ହୋଇଯାନ୍ତି ॥୨॥ ସଂକଟରେ ବ୍ୟାକୁଳ ଆର୍ତ୍ତ ଭକ୍ତ ଯଦି ନାମ ଜପ କରନ୍ତି, ତେବେ ସେମାନଙ୍କ ବଡ ଭୟଙ୍କର ସଙ୍କଟ ଦୂର ହୋଇଯାଏ ଏବଂ ସେମାନେ ସୁଖୀ ହୁଅନ୍ତି । ଜଗତରେ ଚାରିପ୍ରକାରର ରାମଭକ୍ତ ଅଛନ୍ତି । ପ୍ରଥମ ପ୍ରକାର ହେଉଛନ୍ତି 'ଅର୍ଥାର୍ଥୀ । ସେମାନେ ଧନ ଆଦିର କାମନାରେ ରାମଙ୍କୁ ଭଜନ୍ତି । ଦ୍ୱିତୀୟ ପ୍ରକାର ହେଉଛନ୍ତି ଆର୍ତ୍ତ । ସଙ୍କଟର ନିରାକରଣ ପାଇଁ ସେମାନେ ରାମଙ୍କୁ ଭଜନ୍ତି । ତୃତୀୟ ପ୍ରକାର ହେଉଛନ୍ତି ଜିଜ୍ଞାସୁ ଭକ୍ତ । ଭଗବାନଙ୍କୁ ଜାଣିବା ଇଚ୍ଛାରେ ସେମାନେ ତାହାଙ୍କୁ ଭଜନ କରନ୍ତି । ଚତୁର୍ଥ ଜାତିର ଭକ୍ତ ହେଉଛନ୍ତି ଜ୍ଞାନୀ । ସେମାନେ ତତ୍ତ୍ୱଦ୍ୱାରା ଭଗବାନଙ୍କୁ ଜାଣି ତାଙ୍କୁ ଭଜନ୍ତି । ଏହି ଚାରି ଜାତିର ଭକ୍ତ ପୁଣ୍ୟାତ୍ମା, ପାପରହିତ ଓ ଉଦାର ଅଟନ୍ତି ॥୩॥ ଚାରି ଚତୁର ଭକ୍ତଙ୍କର ଆଶ୍ରୟ ହେଉଛି ନାମ । ଏମାନଙ୍କ ମଧ୍ୟରେ ଜ୍ଞାନୀ ଭକ୍ତ ପ୍ରଭୁଙ୍କର ବିଶେଷ ପ୍ରିୟ । ଏମିତି ତ ଚାରିଯୁଗରେ ଓ ଚାରିବେଦରେ

ସକଲ କାମନା ହୀନ ଜେ ରାମ ଭଗତ ରସ ଲୀନ ।
ନାମ ସୁପ୍ରେମ ପିୟୂଷ ହ୍ରଦ ତିନ୍ହହୁଁ କିଏ ମନ ମୀନ ॥୨୨॥
ଅଗୁନ ସଗୁନ ଦୁଇ ବ୍ରହ୍ମ ସରୂପା । ଅକଥ ଅଗାଧ ଅନାଦି ଅନୂପା ॥
ମୋରେଁ ମତ ବଡ଼ ନାମୁ ଦୁହୂ ତେଁ । କିଏ ଜେହିଁ ଜୁଗ ନିଜ ବସ ନିଜ ବୂତେଁ ॥୧॥
ପ୍ରୌଢ଼ି ସୁଜନ ଜନି ଜାନହିଁ ଜନ କୀ । କହଉଁ ପ୍ରତୀତି ପ୍ରୀତି ରୁଚି ମନ କୀ ॥
ଏକ ଦାରୁଗତ ଦେଖିଅ ଏକୂ । ପାବକ ସମ ଜୁଗ ବ୍ରହ୍ମ ବିବେକୂ ॥୨॥
ଉଭୟ ଅଗମ ଜୁଗ ସୁଗମ ନାମ ତେଁ । କହେଉଁ ନାମୁ ବଡ଼ ବ୍ରହ୍ମ ରାମ ତେଁ ॥
ବ୍ୟାପକୁ ଏକୁ ବ୍ରହ୍ମ ଅବିନାସୀ । ସତ ଚେତନ ଘନ ଆନଁଦ ରାସୀ ॥୩॥

---

ଯେ ଜନ ସମସ୍ତ କାମନାରହିତ ରାମ ଭକ୍ତି-ରସେ ଲୀନ ।
ନାମ-ପ୍ରେମ-ସୁଧା-ହ୍ରଦରେ ସେ ବୁଡ଼ାଇ କଲେ ନିଜ ମନ ମୀନ ॥୨୨॥
ଅଗୁଣ ସଗୁଣ ଦୁଇ ବ୍ରହ୍ମଙ୍କ ସ୍ୱରୂପ । ଅନାଦି ଅକଥନୀୟ ଅନନ୍ତ ଅନୁପ ॥
ଉଭୟଙ୍କଠାରୁ ନାମ ବଡ଼ ମୋ ମତରେ । ସ୍ୱବଳେ ବେନଙ୍କୁ ଯେହୁ ନିଜ ବଶ କରେ ॥୧॥
ନ ଭାବନ୍ତୁ ସୁଜ୍ଞେ ଏହା ଗରିମା ମୋହର । କହୁଛି ପ୍ରୀତି ପ୍ରତୀତି ଶରଧା ମନର ॥
ଏକ କାଷ୍ଠ ମଧ୍ୟେ ଏକ ବାହ୍ୟେ ପ୍ରକାଶଇ । ବେନି ବହ୍ନି ସମ ବ୍ରହ୍ମ ବିବେକ ଅଟଇ ॥୨॥
ଦୁହେଁ ଅଗମ୍ୟ ସୁଗମ୍ୟ ନାମ ଦ୍ୱାରା ପୁଣି । କହେ ବ୍ରହ୍ମ ରାମଠାରୁ ନାମ ବଡ଼ ଗୁଣି ॥
ବ୍ୟାପକ ଏକ ଅନାଦି ବ୍ରହ୍ମ ଅବିନାଶୀ । ସଚ୍ଚିଦାନନ୍ଦ ସଦନ ଘନ ଗୁଣରାଶି ॥୩॥

---

ନାମର ପ୍ରଭାବ କଥିତ । ମାତ୍ର କଳିଯୁଗରେ ନାମର ମହତ୍ତ୍ୱ ସର୍ବାଧିକ । ନାମକୁ ଛାଡ଼ିଦେଲେ ଏ ଯୁଗରେ ଅନ୍ୟ କୌଣସି ଉପାୟ ନାହିଁ ॥୪॥ ଯେଉଁମାନେ ଭୋଗ, ମୋକ୍ଷ ଆଦି ସମସ୍ତ ପ୍ରକାରର କାମନାରୁ ରହିତ ଓ ଶ୍ରୀରାମଭକ୍ତି-ରସରେ ଲୀନ, ସେମାନେ ମଧ୍ୟ ନାମର ସୁନ୍ଦର ପ୍ରେମ-ସରୋବରରେ ଆପଣା ଆପଣାର ମନକୁ ମୀନ କରି ବୁଡ଼ାଇ ରଖିଅଛନ୍ତି । (ଅର୍ଥାତ୍ ସେମାନେ ନାମାମୃତକୁ ନିରନ୍ତର ଆସ୍ୱାଦନ କରୁଥାନ୍ତି । କ୍ଷଣମାତ୍ର ତହିଁରୁ ଅଲଗା ହେବାକୁ ଚାହାନ୍ତି ନାହିଁ ।) ॥୨୨॥
ଚୌପାଇ—ବ୍ରହ୍ମଙ୍କର ଦୁଇଟି ସ୍ୱରୂପ—ନିର୍ଗୁଣ ଓ ସଗୁଣ । ଏ ଉଭୟେ ହିଁ ଅକଥନୀୟ, ଅତଳ, ଅନାଦି ଓ ଅନୁପମ । ମୋ ମତରେ ନାମ ଏ ଉଭୟଙ୍କଠାରୁ ବଡ଼ । ନାମହିଁ ଆପଣାର ବଳରେ ଏ ଉଭୟଙ୍କୁ ଆପଣାର ବଶରେ ରଖିଅଛି ॥୧॥ ସଜ୍ଜନଗଣ ! ଆପଣମାନେ ଏହି କଥାକୁ ମୋ ପରି ଦାସର ଧୃଷ୍ଟତା ବା କେବଳ କାବ୍ୟୋକ୍ତି ଭାବନ୍ତୁ ନାହିଁ । ମୁଁ ମୋ ମନର ବିଶ୍ୱାସ, ପ୍ରେମ ଓ ରୁଚି କଥା କହୁଅଛି । ଉଭୟ ପ୍ରକାରର ବ୍ରହ୍ମଜ୍ଞାନ (ନିର୍ଗୁଣ ଓ ସଗୁଣ) ଅଗ୍ନି ତୁଲ୍ୟ । କାଷ୍ଠ ମଧ୍ୟରେ ଗୁପ୍ତ ଓ ପ୍ରକାଶ୍ୟଭାବରେ ଅଗ୍ନି ଥାଏ । ତହିଁ ମଧ୍ୟରେ ଥିବା ଅପ୍ରକଟ ବା ଗୁପ୍ତ ଅଗ୍ନି ତୁଲ୍ୟ ନିର୍ଗୁଣ ବ୍ରହ୍ମ ସଂସାରର ଦୃଷ୍ଟିର ଅଗୋଚର ଏବଂ ସଗୁଣ ବ୍ରହ୍ମ କାଷ୍ଠସ୍ଥ ପ୍ରକାଶ୍ୟ ଓ ପ୍ରତ୍ୟକ୍ଷ ଅଗ୍ନି ତୁଲ୍ୟ ସଂସାରର ଦୃଷ୍ଟିଗୋଚର ହୁଅନ୍ତି । (ତତ୍ତ୍ୱତଃ ଉଭୟେ ଏକ, କେବଳ ପ୍ରକାଶ୍ୟ ଓ ଅପ୍ରକାଶ୍ୟ

ଅସ ପ୍ରଭୁ ହୃଦୟଁ ଅଛତ ଅବିକାରୀ । ସକଲ ଜୀବ ଜଗ ଦୀନ ଦୁଖାରୀ ॥
ନାମ ନିରୂପନ ନାମ ଜତନ ତେଁ । ସୋଉ ପ୍ରଗଟତ ଜିମି ମୋଲ ରତନ ତେଁ ॥୪॥

ନିରଗୁନ ତେଁ ଏହି ଭାଁତି ବଡ ନାମ ପ୍ରଭାଉ ଅପାର ।
କହେଉଁ ନାମୁ ବଡ ରାମ ତେଁ ନିଜ ବିଚାର ଅନୁସାର ॥୨୩॥

ରାମ ଭଗତ ହିତ ନରତନୁଧାରୀ । ସହି ସଙ୍କଟ କିଏ ସାଧୁ ସୁଖାରୀ ॥
ନାମୁ ସପ୍ରେମ ଜପତ ଅନୟାସା । ଭଗତ ହୋହିଁ ମୁଦ ମଙ୍ଗଲ ବାସା ॥୧॥
ରାମ ଏକ ତାପସ ତିୟ ତାରୀ । ନାମୁ କୋଟି ଖଲ କୁମତି ସୁଧାରୀ ॥
ରିଷି ହିତ ରାମ ସୁକେତୁସୁତା କୀ । ସହିତ ସେନ ସୁତ କୀହ୍ନି ବିବାକୀ ॥୨॥

---

ହୃଦୟରେ ଥାଇଁ ଏମନ୍ତ ପ୍ରଭୁ ଅବିକାରୀ । ସକଲ ଜୀବ ଜଗତେ ଦୀନ ଦୁଃଖୀ ଭାରି ॥
ନାମ ନିରୂପଣ ହୁଏ ନାମ ଯତନରୁ । ସେ ବ୍ରହ୍ମ ପ୍ରକଟେ ଯେସନ୍ତେ ମୂଲ୍ୟ ରତନରୁ ॥୪॥

ନିର୍ଗୁଣ ଅପେକ୍ଷା ଏହିଭାବେ ବଡ ନାମ ପ୍ରଭାବ ଅପାର ।
କହୁଛି ନାମକୁ ରାମଠାରୁ ବଡ ଯେମନ୍ତେ ନିଜ ବିଚାର ॥୨୩॥

ରାମ ଭକ୍ତ ହିତେ ନର ଶରୀର ଧରିଣ । ସାଧୁଙ୍କୁ ସୁଖୀ କରିଲେ ସଙ୍କଟ ସହିଣ ॥
ନାମ ସପ୍ରେମେ ଜପନ୍ତେ ଅନାୟାସେ ଅତି । ଭକ୍ତେ ଆନନ୍ଦ ମଙ୍ଗଳ ନିବାସ ହୁଅନ୍ତି ॥୧॥
ରାମ ତାରିଥିଲେ ଏକ ତାପସ-ପତ୍ନୀକୁ । ନାମ ସୁଧାରନ୍ତି କୋଟି ଖଳ କୁମତିକୁ ॥
ରିଷି ହିତେ ତାଡକାକୁ ଶ୍ରୀ ରଘୁନନ୍ଦନ । ସୁତ-ସହାୟକ ସହ କରିଲେ ନିଧନ ॥୨॥

---

ଭେଦରେ ଉଭୟେ ଭିନ୍ନ ପ୍ରତୀତ ହୁଅନ୍ତି ।) ଏତେ ହେଲେ ମଧ୍ୟ ଉଭୟଙ୍କୁ ଜାଣିବା ବଡ କଷ୍ଟକର । ମାତ୍ର ନାମ ସାହାଯ୍ୟରେ ଉଭୟେ ସହଜ ଓ ସୁବୋଧ ହୋଇଯାଆନ୍ତି । ଏହି ହେତୁ ମୁଁ ନାମକୁ (ନିର୍ଗୁଣ) ବ୍ରହ୍ମ ଓ (ସଗୁଣ) ରାମଙ୍କଠାରୁ ବଡ ବୋଲି କହିଅଛି । ବ୍ରହ୍ମ ବ୍ୟାପକ, ଏକ, ଅବିନାଶୀ ଏବଂ ସତ୍, ଚିତ୍ ଓ ଆନନ୍ଦର ଘନରାଶି ॥୨-୩॥ ଏହିପରି ନିର୍ବିକାର ପ୍ରଭୁ ହୃଦୟରେ ଥାଇ ମଧ୍ୟ ଜଗତର ସମସ୍ତ ଜୀବ ଦୀନ ଓ ଦୁଃଖୀ । ନାମକୁ ନିରୂପଣ କରି (ଅର୍ଥାତ୍ ନାମର ଯଥାର୍ଥ ସ୍ୱରୂପ, ମହିମା, ରହସ୍ୟ ଓ ପ୍ରଭାବକୁ ଜାଣି) ଶ୍ରଦ୍ଧାପୂର୍ବକ ନାମଜପ-ସାଧନା କଲେ ରତ୍ନରୁ ତାହାର ମୂଲ୍ୟ ସ୍ୱତଃ ପ୍ରକାଶିତ ହେଲାପରି ସେହି ବ୍ରହ୍ମ ସ୍ୱତଃ ପ୍ରକାଶିତ ହୁଅନ୍ତି ॥୪॥ ଦୋହା:— ଏହିପରି ନିର୍ଗୁଣ (ବ୍ରହ୍ମ) ଠାରୁ ନାମ ବଡ ଓ ଏହାର ପ୍ରଭାବ ଅପାର । ବର୍ତ୍ତମାନ ମୋ ବିଚାର ଅନୁସାରେ କହୁଛି—ନାମ (ସଗୁଣ) ରାମଙ୍କଠାରୁ ମଧ୍ୟ ବଡ ॥ ୨୩ ॥ ଚୌପାଇ—ଶ୍ରୀରାମଚନ୍ଦ୍ର ଭକ୍ତବୃନ୍ଦଙ୍କ ହିତ ନିମନ୍ତେ ମନୁଷ୍ୟଶରୀର ଧାରଣ କରି ନିଜେ କଷ୍ଟ ସହି ସାଧୁମାନଙ୍କୁ ସୁଖୀ କରିଥିଲେ; ମାତ୍ର ଭକ୍ତଗଣ ପ୍ରେମ ଭାବରେ ନାମଜପ କରି ଅନାୟାସରେ ଆନନ୍ଦ ଓ କଲ୍ୟାଣର ଭବନ ହୋଇ ପାରନ୍ତି ॥୧॥ ଶ୍ରୀରାମ ଗୋଟିଏ ଋଷିଙ୍କ ସ୍ତ୍ରୀ (ଅହଲ୍ୟା)ଙ୍କୁ ତାରଣ କରିଅଛନ୍ତି, କିନ୍ତୁ ନାମ କୋଟି କୋଟି ଦୁଷ୍ଟଙ୍କ ଖଳ-ବୁଦ୍ଧିକୁ ସଂଶୋଧନ କରିଦେଇଛି । ଶ୍ରୀରାମ ଋଷି ବିଶ୍ୱାମିତ୍ରଙ୍କ ହିତ-ସାଧନ

ସହିତ ଦୋଷ ଦୁଖ ଦାସ ଦୁରାସା । ଦଲଇ ନାମୁ ଜିମି ରବି ନିସି ନାସା ॥
ଭଞ୍ଜେଉ ରାମ ଆପୁ ଭବଚାପୂ । ଭବଭୟ ଭଞ୍ଜନ ନାମ ପ୍ରତାପୂ ॥୩॥
ଦଣ୍ଡକ ବନୁ ପ୍ରଭୁ କୀନ୍ହ ସୁହାବନ । ଜନ ମନ ଅମିତ ନାମ କିଏ ପାବନ ॥
ନିସିଚର ନିକର ଦଲେ ରଘୁନନ୍ଦନ । ନାମୁ ସକଲ କଲି କଲୁଷ ନିକନ୍ଦନ ॥୪॥

ସବରୀ ଗୀଧ ସୁସେବକନି ସୁଗତି ଦୀନ୍ହି ରଘୁନାଥ ॥
ନାମ ଉଧାରେ ଅମିତ ଖଲ ବେଦ ବିଦିତ ଗୁନଗାଥ ॥୨୪॥

ରାମ ସୁକଣ୍ଠ ବିଭୀଷନ ଦୋଊ । ରାଖେ ସରନ ଜାନ ସବୁ କୋଊ ॥
ନାମ ଗରୀବ ଅନେକ ନେୱାଜେ । ଲୋକ ବେଦ ବର ବିରଦ ବିରାଜେ ॥୧॥
ରାମ ଭାଲୁ କପି କଟକୁ ବଟୋରା । ସେତୁ ହେତୁ ଶ୍ରମୁ କୀନ୍ହ ନ ଥୋରା ॥
ନାମୁ ଲେତ ଭବ ସିନ୍ଧୁ ସୁଖାହୀଁ । କରହୁ ବିଚାରୁ ସୁଜନ ମନ ମାହୀଁ ॥୨॥

---

ଯେତେ ଦୁଃଖ ଦୋଷ ଦାସ ଦୁରାଶା ସମସ୍ତ । ଦଳେ ନାମ ରବି ନିଶି ନାଶଇ ଯେମନ୍ତ ॥
ଭାଙ୍ଗିଲେ ରାମ ମହେଶ-ଶରାସନ ଆପେ । ଭବ ଭୟ ଭଗ୍ନ ହୁଏ ନାମର ପ୍ରତାପେ ॥୩॥
ଦଣ୍ଡକ ବନକୁ ରାମ କଲେ ସୁଶୋଭନ । ବହୁ ଜନମନ ନାମ କରଇ ପାବନ ॥
ଦଳିଲେ ରଘୁନାୟକ ନିଶାଚର ଦଳ । ନାମ ଧ୍ୱଂସ କରେ କଳି-କଲୁଷ ସକଳ ॥୪॥

ଗୃଧ୍ର ଶବରୀକୁ ନିଜ ସୁଦାସଙ୍କୁ, ସୁଗତି ଦେଲେ ରାମ ।
ନାମ ଉଦ୍ଧାରଇ ଅସଂଖ୍ୟ ଖଳଙ୍କୁ ବେଦ ଭାଷେ ଗୁଣଗ୍ରାମ ॥୨୪॥

ରାମ ରବିସୁତ ବିଭୀଷଣ ଦୁଇଜଣେ । ଜାଣନ୍ତି ସର୍ବେ ରଖିଲେ ଆପଣା ଶରଣେ ॥
ନାମ ଅନେକ ଗରିବ ଜନଙ୍କୁ ରଖଇ । ଲୋକେ ବେଦେ କମନୀୟ କୀର୍ତ୍ତି ବିରାଜଇ ॥୧॥
ରାମ ଲକ୍ଷ କପି ଯୂଥ କରି ଏକତ୍ରିତ । ସେତୁ ହେତୁ ପରିଶ୍ରମ କଲେ ଅପ୍ରମିତ ॥
ନାମ ଉଚ୍ଚାରନ୍ତେ ସୁଖେ ଭବେ ପାରାବାର । ସୁଜନ ମନ ମଧ୍ୟରେ କରନ୍ତୁ ବିଚାର ॥୨॥

---

ଉଦ୍ଦେଶ୍ୟରେ ସୁକେତୁ ଯକ୍ଷର କନ୍ୟା ତାଡ଼କାକୁ ତାହାର ସୈନ୍ୟ ଓ ପୁତ୍ର (ସୁବାହୁ) ସହିତ ବଧ କରିଥିଲେ । କିନ୍ତୁ ନାମ ତାହାର ଭକ୍ତବୃନ୍ଦଙ୍କ ଦୋଷ, ଦୁଃଖ ଓ ଦୁରାଶାରାଶିକୁ ସୂର୍ଯ୍ୟ ରାତ୍ରିକୁ ବିନାଶ କଲାପରି ନାଶ କରିଦିଏ । ଶ୍ରୀରାମ ସ୍ୱୟଂ ଶିବଙ୍କ ଧନୁଭଙ୍ଗ କରିଥିଲେ । କିନ୍ତୁ ନାମର ପ୍ରତାପ ସଂସାରର ସମସ୍ତ ଭୟର ନାଶକାରକ ॥୨-୩॥ ପ୍ରଭୁ ଶ୍ରୀରାମଚନ୍ଦ୍ର ଭୟଙ୍କର ଦଣ୍ଡକାରଣ୍ୟକୁ ସୁନ୍ଦର ଓ ସୁଶୋଭିତ କରିଥିଲେ । କିନ୍ତୁ ନାମ ଅସଂଖ୍ୟ ମନୁଷ୍ୟଙ୍କ ମନକୁ ପବିତ୍ର କରିଦେଇଛି । ଶ୍ରୀରଘୁନାଥଜୀ ରାକ୍ଷସ-ସମୂହଙ୍କୁ ଦଳନ କରିଅଛନ୍ତି । କିନ୍ତୁ ନାମ କଳିଯୁଗର ସମସ୍ତ ପାପକୁ ସମୂଳେ ନାଶ କରିଦିଏ ॥୪॥ ଦୋହା—ଶ୍ରୀରାମ ଶବରୀ, ଜଟାୟୁ ଆଦି କେବଳ ଉତ୍ତମ ସେବକ-ମାନଙ୍କୁ ମୁକ୍ତି ଦେଇଥିଲେ । କିନ୍ତୁ ନାମ ଅଗଣିତ ଦୁଷ୍ଟଙ୍କୁ ଉଦ୍ଧାର କରିଅଛି । ନାମର ଗୁଣ-ଗାଥା ବେଦମାନଙ୍କର ପ୍ରସିଦ୍ଧ ॥୨୪॥ ଚୌପାଇ—ଶ୍ରୀରାମ କେବଳ ସୁଗ୍ରୀବ ଓ ବିଭୀଷଣ ଦୁହିଁଙ୍କୁ ତାଙ୍କ ଚରଣତଳେ ଆଶ୍ରୟ ଦେଇଥିଲେ । ଏହା ସମସ୍ତଙ୍କୁ ଜଣା ।

ରାମ ସକୁଲ ରନ ରାବନୁ ମାରା । ସୀୟ ସହିତ ନିଜ ପୁର ପଗୁ ଧାରା ॥
ରାଜା ରାମୁ ଅୱଧ ରାଜଧାନୀ । ଗାୱତ ଗୁନ ସୁର ମୁନି ବର ବାନୀ ॥୩॥
ସେବକ ସୁମିରତ ନାମୁ ସପ୍ରୀତୀ । ବିନୁ ଶ୍ରମ ପ୍ରବଲ ମୋହ ଦଲୁ ଜୀତୀ ॥
ଫିରତ ସନେହଁ ମଗନ ସୁଖ ଅପନେଁ । ନାମ ପ୍ରସାଦ ସୋଚ ନହିଁ ସପନେଁ ॥୪॥

ବ୍ରହ୍ମ ରାମ ତେଁ ନାମୁ ବଡ଼ ବରଦାୟକ ବରଦାନି ।
ରାମ ଚରିତ ସତ କୋଟି ମହଁ ଲିୟ ମହେସ ଜିୟଁ ଜାନି ॥୨୫॥

## ମାସପାରାୟଣ, ପ୍ରଥମ ବିଶ୍ରାମ

ନାମ ପ୍ରସାଦ ସମ୍ଭୁ ଅବିନାସୀ । ସାଜୁ ଅମଙ୍ଗଲ ମଙ୍ଗଲ ରାସୀ ॥
ସୁକ ସନକାଦି ସିଦ୍ଧ ମୁନି ଜୋଗୀ । ନାମ ପ୍ରସାଦ ବ୍ରହ୍ମସୁଖ ଭୋଗୀ ॥୧॥

---

ରାମ ସବଂଶ ସଂହାରି ରଣେ ରାବଣକୁ । ସୀତା ସହ ବାହୁଡିଲେ ଆପଣା ପୁରକୁ ॥
ରାଜା ରାମ, ରାଜଧାନୀ ଅଯୋଧ୍ୟା ଏସନ । ଗାଆନ୍ତି ଗୁଣ ମଧୁରେ ସୁର ମୁନି ଜନ ॥୩॥
ସେବକ ନାମ ସ୍ମରଣେ କରନ୍ତି ସପ୍ରୀତି । ଶ୍ରମ ବିନା ସୁପ୍ରବଳ ମୋହଦଳ ଜିତି ॥
ସ୍ନେହ-ମଗ୍ନ ହୋଇ ନିଜ ସୁଖେ ବିଚରନ୍ତି । ନାମ ପ୍ରସାଦେ ସ୍ୱପ୍ନେହେଁ ଚିନ୍ତା ନ କରନ୍ତି ॥୪॥

ବ୍ରହ୍ମ ରାମଠାରୁ ନାମ ଅଟେ ବଡ ବରଦାତା ବରଦର ।
ଶତ କୋଟି ରାମ ଚରିତ ମଧ୍ୟରୁ ହୃଦେ ଜାଣି ନେଲେ ହର ॥୨୫॥

ନାମ ପ୍ରସାଦରେ ସଦାଶିବ ଅବିନାଶୀ । ଅମଙ୍ଗଳ ବେଶେ ହେଲେ ସୁମଙ୍ଗଳରାଶି ॥
ଶୁକ ସନକାଦି ସର୍ବେ ସିଦ୍ଧ ମୁନି ଯୋଗୀ । ନାମ ପ୍ରସାଦେ ଅଟନ୍ତି ବ୍ରହ୍ମ-ସୁଖଭୋଗୀ ॥୧॥

---

ମାତ୍ର ନାମ ଅନେକ ଗରିବଙ୍କ ଉପରେ ଦୟା କରିଛି । ନାମର ଏହି ସୁନ୍ଦର ଓ ଶ୍ରେଷ୍ଠ ଯଶ ସଂସାର ଓ ବେଦରେ ବିଶେଷ ରୂପେ ପ୍ରକାଶିତ ॥୧॥ ଶ୍ରୀରାମ ଭାଲୁ ଓ ବାନର ସୈନ୍ୟ-ସଂଗ୍ରହ କରିଥିଲେ ଏବଂ ସମୁଦ୍ର ଉପରେ ସେତୁ ବାନ୍ଧିବା ସକାଶେ କମ ପରିଶ୍ରମ କରି ନ ଥିଲେ । କିନ୍ତୁ ନାମ ନେବା ମାତ୍ରେହିଁ ସଂସାର-ସମୁଦ୍ର ଶୁଖିଯାଏ । ସଜ୍ଜନଗଣ ! ମନରେ ବିଚାର କରନ୍ତୁ—ଦୁହିଁଙ୍କ ମଧ୍ୟରେ କିଏ ବଡ ॥୨॥ ଶ୍ରୀରାମଚନ୍ଦ୍ର ଯୁଦ୍ଧରେ ସକୁଟୁମ୍ବ ରାବଣକୁ ମାରିଥିଲେ । ତାପରେ ସୀତାଙ୍କ ସହିତ ସେ ତାଙ୍କ ନଗର (ଅଯୋଧ୍ୟା)ରେ ପ୍ରବେଶ କରିଥିଲେ । ରାମ ରାଜା ହେଲେ, ଅଯୋଧ୍ୟା ତାଙ୍କ ରାଜଧାନୀ ହେଲା । ଦେବତା ଓ ମୁନି ସୁନ୍ଦର ବାଣୀରେ ତାଙ୍କ ଗୁଣ ଗାନ କରନ୍ତି । କିନ୍ତୁ ସେବକ ଭକ୍ତ ପରିଶ୍ରମ ବିନା କେବଳ ପ୍ରେମଭାବରେ ନାମମାତ୍ର ସ୍ମରଣ କରିବା ମାତ୍ରେ ମୋହରୂପୀ ପ୍ରବଳ ସେନାକୁ ଜିଣି ପାରନ୍ତି ଏବଂ ପ୍ରେମ-ସମୁଦ୍ରରେ ନିମଜ୍ଜିତ ହୋଇ ଆପଣା ସୁଖରେ ବିଚରଣ କରନ୍ତି । ନାମ ପ୍ରସାଦରୁ ତାହାଙ୍କୁ ସ୍ୱପ୍ନରେ ସୁଦ୍ଧା କୌଣସି ଚିନ୍ତା ଘାରେ ନାହିଁ ॥୩-୪॥ ଦୋହା —ଏହିପରି ନାମ (ନିର୍ଗୁଣ) ବ୍ରହ୍ମ ଓ (ସଗୁଣ) ରାମ—ଦୁହିଁଙ୍କଠାରୁ ବଡ । ଏହା 'ବରଦାତା-(ଦେବତା)ମାନଙ୍କୁ' ମଧ୍ୟ ବରଦାନ କରିପାରେ । ଶ୍ରୀ ଶଙ୍କର ମହାପ୍ରଭୁ ହୃଦୟରେ ଏହା ଉପଲବ୍ଧି କରି ଏକଶହ କୋଟି ରାମଚରିତରୁ ଏହି "ରାମ" ନାମକୁ ହିଁ (ସାରସ୍ୱରୂପ ବାଛି) ଗ୍ରହଣ କରିଅଛନ୍ତି ॥ ୨୫ ॥

ନାରଦ ଜାନେଉ ନାମ ପ୍ରତାପୂ । ଜଗ ପ୍ରିୟ ହରି ହରି ହର ପ୍ରିୟ ଆପୂ ॥
ନାମୁ ଜପତ ପ୍ରଭୁ କୀହ୍ନ ପ୍ରସାଦୂ । ଭଗତ ସିରୋମନି ଭେ ପ୍ରହଲାଦୂ ॥୨॥
ଧ୍ରୁବଁ ସଗଲାନି ଜପେଉ ହରିନାଊଁ । ପାୟଉ ଅଚଲ ଅନୂପମ ଠାଊଁ ॥
ସୁମିରି ପବନସୁତ ପାବନ ନାମୂ । ଅପନେ ବସ କରି ରାଖେ ରାମ ॥୩॥
ଅପତୁ ଅଜାମିଲୁ ଗଜୁ ଗନିକାଊ । ଭଏ ମୁକୁତ ହରି ନାମ ପ୍ରଭାଊ ॥
କହୌଁ କହାଁ ଲଗି ନାମ ବଡ଼ାଈ । ରାମୁ ନ ସକହିଁ ନାମ ଗୁନ ଗାଈ ॥୪॥

ନାମୁ ରାମ କୋ କଲପତରୁ କଲି କଲ୍ୟାନ ନିବାସୁ ।
ଜୋ ସୁମିରତ ଭୟୋ ଭାଁଗ ତେଁ ତୁଲସୀ ତୁଲସୀଦାସୁ ॥୨୬॥

ଚହୁଁ ଜୁଗ ତୀନି କାଲ ତିହୁଁ ଲୋକା । ଭଏ ନାମ ଜପି ଜୀବ ବିସୋକା ॥
ବେଦ ପୁରାନ ସନ୍ତ ମତ ଏହୂ । ସକଲ ସୁକୃତ ଫଲ ରାମ ସନେହୂ ॥୧॥

---

ନାରଦ ଜାଣିଅଛନ୍ତି ପ୍ରତାପ ନାମର । ବିଶ୍ୱପ୍ରିୟ ହରି ସ୍ୱୟଂ ପ୍ରିୟ ହରି ହର ॥
ନାମ ଜପିବାରୁ ପ୍ରଭୁ ବାହିଲେ ପ୍ରସାଦ । ଭକ୍ତଙ୍କର ଶିରୋମଣି ହୋଇଲେ ପ୍ରହ୍ଲାଦ ॥୨॥
ଧ୍ରୁବ ଗ୍ଲାନି ସହି ଜପ କରି ହରିନାମ । ପାଇଲେ ନିତ୍ୟ ଅଚଳ ଅନୁପମ ଧାମ ॥
ସ୍ମରି ପବନ-ସୁତ ପାବନ ନାମକୁ । ନିଜ ବଶୀଭୂତ କରି ରଖିଲେ ରାମକୁ ॥୩॥
ପତିତ ଗଣିକା ଗଜ ଅଜାମିଳ ଅତି । ହରିଙ୍କ ନାମ ପ୍ରଭାବେ ଲଭିଲେ ମୁକତି ॥
କହିବି କେଉଁ ପର୍ଯ୍ୟନ୍ତେ ନାମର ବଡ଼ାଇ । ରାମ ନିଜେ ନ ପାରିବେ ନାମ ଗୁଣ ଗାଇ ॥୪॥

ନାମ ରାମଙ୍କର କଳ୍ପତରୁ ବର କଳି କଲ୍ୟାଣ ନିବାସ ।
ଯାହାଙ୍କୁ ସ୍ମରଣ ହୋଇଗଲେ ଭାଙ୍ଗରୁ ତୁଳସୀ ତୁଳସୀଦାସ ॥୨୬॥

ଚାରି ଯୁଗ ତିନି କାଳ ତିନି ଲୋକସ୍ଥିତ । ଜୀବେ ନାମ ଜପି ହେଲେ ଶୋକରୁ ରହିତ ॥
ଶ୍ରୁତି ପୁରାଣ ସନ୍ଥଙ୍କ ଏହାହିଁ ସମ୍ମତ । ସକଳ ସୁକୃତ ଫଳ ରାମ ଅନୁରକ୍ତ ॥୧॥

---

ଚୌପାଇ—ଶିବ ଅବିନାଶୀ ଏବଂ ଅମଙ୍ଗଳ-ବେଶଧାରୀ ହେଲେ ମଧ୍ୟ ନାମ ପ୍ରଭାବରୁ ମଙ୍ଗଳର ରାଶି । ଶୁକଦେବ ଓ ସନକାଦି ସିଦ୍ଧ, ମୁନି ଓ ଯୋଗୀଗଣ କେବଳ ନାମର ପ୍ରଭାବରୁ ବ୍ରହ୍ମାନନ୍ଦ ଭୋଗ କରନ୍ତି ॥୧॥ ନାରଦ ନାମର ପ୍ରତାପ ଜାଣନ୍ତି । ହରି ସମଗ୍ର ସଂସାରର ପ୍ରିୟ ; (ହର ହରିଙ୍କର ପ୍ରିୟ) ଏବଂ ନାରଦ ଆପେ ହରି ଓ ହର, ଉଭୟଙ୍କ ପ୍ରିୟ । ପ୍ରହ୍ଲାଦ ନାମ ଜପିବାରୁ ପ୍ରଭୁ ତାଙ୍କୁ ଅନୁଗ୍ରହ କଲେ । ଫଳସ୍ୱରୂପ ସେ ଭକ୍ତଶିରୋମଣି ହୋଇପାରିଲେ ॥ ୨ ॥ ଧ୍ରୁବ ଗ୍ଲାନିରେ (ବିମାତାଙ୍କ ବଚନରେ ଦୁଃଖୀ ହୋଇ ଏକାଗ୍ର ଭାବରେ) ହରିନାମ ଜପିଲେ ଏବଂ ନାମର ପ୍ରଭାବରେ ଅଚଳ ଓ ଅନୁପମ ସ୍ଥାନ (ଧ୍ରୁବଲୋକ) ପାଇଲେ । ହନୁମାନ ପବିତ୍ର ନାମ ସ୍ମରଣ କରି ଶ୍ରୀରାମଚନ୍ଦ୍ରଙ୍କୁ ଆପଣାର ବଶରେ ରଖିଅଛନ୍ତି ॥ ୩ ॥ ନୀଚ ଅଜାମିଳ, ଗଜ ଓ ଗଣିକା (ବେଶ୍ୟା) ସୁଦ୍ଧା ଶ୍ରୀହରିଙ୍କ ନାମପ୍ରଭାବରୁ ମୁକ୍ତ ହୋଇ ଯାଇଅଛନ୍ତି । ନାମର ବଡ଼ିମା ବା ମାହାତ୍ମ୍ୟ ମୁଁ କେତେ କହିବି ? ସ୍ୱୟଂ ରାମ ସୁଦ୍ଧା ନାମର ଗୁଣରାଶି ଗାଇପାରିବେ

ଧ୍ୟାନୁ ପ୍ରଥମ ଜୁଗ ମଖ ବିଧି ଦୂଜେଁ । ଦ୍ୱାପର ପରିତୋଷତ ପ୍ରଭୁ ପୂଜେଁ ॥
କଲି କେବଲ ମଲ ମୂଲ ମଲୀନା । ପାପ ପୟୋନିଧି ଜନ ମନ ମୀନା ॥୨॥
ନାମ କାମତରୁ କାଲ କରାଲା । ସୁମିରତ ସମନ ସକଲ ଜଗ ଜାଲା ॥
ରାମ ନାମ କଲି ଅଭିମତ ଦାତା । ହିତ ପରଲୋକ ଲୋକ ପିତୁ ମାତା ॥୩॥
ନହିଁ କଲି କରମ ନ ଭଗତି ବିବେକୂ । ରାମ ନାମ ଅବଲମ୍ବନ ଏକୂ ॥
କାଲନେମି କଲି କପଟ ନିଧାନୂ । ନାମ ସୁମତି ସମରଥ ହନୁମାନୂ ॥୪॥

ରାମ ନାମ ନରକେସରୀ କନକକସିପୁ କଲିକାଲ ।
ଜାପକ ଜନ ପ୍ରହଲାଦ ଜିମି ପାଲିହି ଦଲି ସୁରସାଲ ॥୨୭॥

---

ପ୍ରଥମ ଯୁଗେ ଧ୍ୟାନରେ ଯଜ୍ଞେ ଦ୍ୱିତୀୟରେ । ପ୍ରଭୁ ତୋଷ ହେଉଥିଲେ ପୂଜାରେ ଦ୍ୱାପରେ ॥
କଳି ମଳ ମୂଳ ମାତ୍ର କେବଳ ମଳିନ । ପାପ-ସାଗରେ ନିମଗ୍ନ ଜନ ମନ-ମୀନ ॥୨॥
କରାଳ କାଳକୁ ନାମ ଯେସନ୍ତେ କଳ୍ପବଟ । ସ୍ମରନ୍ତେ ହୁଏ ସକଳ ଭବ-ଜାଲ ନଷ୍ଟ ॥
ରାମ ନାମ ଅଟେ କଳି ଅଭିମତ ଦାତା । ପରଲୋକ ହିତକାରୀ ଲୋକ ପିତାମାତା ॥୩॥
ନାହିଁ କଳି ଯୁଗେ କର୍ମ ଭକ୍ତି ବା ବିବେକ । କେବଳ ଅବଲମ୍ବନ ରାମ ନାମ ଏକ ॥
କାଳନେମି ସମ କଳି କପଟ-ଭବନ । ନାମ ସୁମତି ସମର୍ଥ ପବନ-ନନ୍ଦନ ॥୪॥

ରାମ ନାମ ନର-କେଶରୀ ସମାନ ହିରଣ୍ୟ କଶ୍ୟପ କଳି ।
ଜାପକ ସୁଜନେ ପ୍ରହ୍ଲାଦ ଯେସନ୍ତେ ପାଳଇ ଦଇତେ ଦଳି ॥୨୭॥

---

ନାହିଁ ॥ ୪ ॥ ଦୋହା —କଳିଯୁଗରେ 'ରାମ' ନାମ କଳ୍ପତରୁ ଓ କଲ୍ୟାଣର ଭବନ (ମୁକ୍ତିର ଗୃହ) । ତାହାଙ୍କୁ ସ୍ମରଣ କରି ଗଞ୍ଜେଇ ପରି ନିକୃଷ୍ଟ ତୁଳସୀଦାସ ତୁଳସୀପରି ପବିତ୍ର ହୋଇପାରିଛି ॥୨୬॥ ଚୌପାଈ —କେବଳ କଳିଯୁଗରେ ନୁହେଁ । ଚାରିଯୁଗରେ, ତିନି କାଳରେ ଓ ତିନି ଲୋକରେ ନାମ ଜପ କରି ଜୀବଗଣ ଶୋକରହିତ ହୋଇଅଛନ୍ତି । ଜୀବର ସମସ୍ତ ପୁଣ୍ୟର ଫଳ ଶ୍ରୀରାମଙ୍କଠାରେ ବା 'ରାମ' ନାମଠାରେ ପ୍ରେମ । ଏହାହିଁ ବେଦ, ପୁରାଣ ଓ ସାଧୁଙ୍କର ମତ ॥ ୧ ॥ ପ୍ରଥମ ଯୁଗ (ସତ୍ୟ)ରେ ଧ୍ୟାନ, ଦ୍ୱିତୀୟ ଯୁଗ (ତ୍ରେତା)ରେ ଯଜ୍ଞ ଯୋଗେ ଓ ତୃତୀୟ ଯୁଗ (ଦ୍ୱାପର)ରେ ପୂଜା ଦ୍ୱାରା ଭଗବାନ ପ୍ରସନ୍ନ ହୁଅନ୍ତି, କିନ୍ତୁ କଳିଯୁଗ କେବଳ ପାପ-ବୃକ୍ଷର ମୂଳ ଓ ମଳିନ । ଏହି ଯୁଗରେ ମନୁଷ୍ୟର ମନ ପାପରୂପୀ ସମୁଦ୍ରରେ ମୀନ ପରି । (ଅର୍ଥାତ୍ ତାହା ପାପରୁ କଦାପି ଅଲଗା ହେବାକୁ ଇଚ୍ଛା କରେ ନାହିଁ । ଏଣୁ ଏ ଯୁଗରେ ଧ୍ୟାନ, ଯଜ୍ଞ ଓ ପୂଜନ ହୋଇପାରେ ନାହିଁ ।) ॥୨॥ କଳିଯୁଗ ପରି କରାଳ କାଳରେ ନାମ ହିଁ କଳ୍ପବୃକ୍ଷ । ତାହା ସ୍ମରଣ ମାତ୍ରେ ସଂସାରର ସମସ୍ତ ଜଞ୍ଜାଳ ନାଶ କରିଦିଏ । କଳିଯୁଗରେ ଏହି 'ରାମ' ନାମ ମନୋବାଞ୍ଛିତ ଫଳ ଦାନ କରେ । ଏହା ପରଲୋକର ପରମ ହିତୈଷୀ ଓ ଇହଲୋକରେ ମାତାପିତା । (ଅର୍ଥାତ୍ ପରଲୋକରେ ଏହା ପ୍ରାଣୀକୁ ଭଗବାନଙ୍କ ପରମ ଧାମ ଦିଏ ଏବଂ ଇହଲୋକରେ ମାତାପିତା ପରି ସବୁମତେ ପ୍ରାଣୀକୁ ପାଳନ ଓ ରକ୍ଷଣ

ଭାୟଁ କୁଭାୟଁ ଅନଖ ଆଲସହୁଁ । ନାମ ଜପତ ମଙ୍ଗଲ ଦିସି ଦସହୁଁ ॥
ସୁମିରି ସୋ ନାମ ରାମଗୁନ ଗାଥା । କରଉଁ ନାଇ ରଘୁନାଥହି ମାଥା ॥୧॥
ମୋରି ସୁଧାରିହି ସୋ ସବ ଭାଁତୀ । ଜାସୁ କୃପାଁ ନହିଂ କୃପା ଅଘାଁତୀ ॥
ରାମ ସୁସ୍ୱାମି କୁସେବକୁ ମୋ ସୋ । ନିଜ ଦିସି ଦେଖି ଦୟାନିଧି ପୋସୋ ॥୨॥
ଲୋକହୁଁ ବେଦ ସୁସାହିବ ରୀତୀ । ବିନୟ ସୁନତ ପହିଚାନତ ପ୍ରୀତୀ ॥
ଗନୀ ଗରୀବ ଗ୍ରାମ ନର ନାଗର । ପଣ୍ଡିତ ମୂଢ଼ ମଲୀନ ଉଜାଗର ॥୩॥
ସୁକବି କୁକବି ନିଜ ମତି ଅନୁହାରୀ । ନୃପହି ସରାହତ ସବ ନର ନାରୀ ॥
ସାଧୁ ସୁଜାନ ସୁସୀଲ ନୃପାଲା । ଈସ ଅଂସ ଭବ ପରମ କୃପାଲା ॥୪॥

---

ଭାବେ ଅଥବା କୁଭାବେ କ୍ରୋଧେ ବା ଅଳସେ । ନାମ ଜପନ୍ତେ ମଙ୍ଗଳ ହୁଏ ଦିଶି ଦଶେ ॥
ସ୍ମରଣି ସେ ନାମ ରାମକଥା ଗୁଣ ଗ୍ରାମ । ବର୍ଣ୍ଣୁଛି ରଘୁନାଥଙ୍କୁ କରିଣ ପ୍ରଣାମ ॥୧॥
ସଉମାରିବେ ସେ ମୋତେ ସମସ୍ତ ପ୍ରକାରେ । ତୃପ୍ତି ନ ଲଭଇ କୃପା ଯାହାଙ୍କ କୃପାରେ ॥
ରାମ ସୁସ୍ୱାମୀ ମୋସମ କୁତ୍ସିତ ସେବକ । ନିଜ ସ୍ୱଭାବେ ପାଳିଲେ କରୁଣାପାଳକ ॥୨॥
ଲୋକରୁ ବେଦ ପର୍ଯ୍ୟନ୍ତ ସୁସ୍ୱାମୀଙ୍କ ରୀତି । ବିନୟ ଶୁଣି ଚିହ୍ନନ୍ତି ହୃଦୟର ପ୍ରୀତି ॥
ଧନୀ ବା ଗରିବ ଗ୍ରାମ୍ୟ ନର ବା ନାଗର । ପଣ୍ଡିତ ମୂର୍ଖ ଅଥବା ମଳିନ ସୁନ୍ଦର ॥୩॥
ସୁକବି କୁକବି ଆଦି ନରନାରୀ ନୃପେ । ସ୍ତୁତି କରନ୍ତି ଆପଣା ମତି ଅନୁରୂପେ ॥
ସାଧୁ ସୁଶୀଳ ପରମ ସୁବିଜ୍ଞ ନରେଶ । ଈଶ୍ୱର ଅଂଶୁ ଉତ୍ପନ୍ନ କୃପାଳୁ ବିଶେଷ ॥୪॥

---

କରେ ।) ॥ ୩ ॥ କଳିଯୁଗରେ କର୍ମ, ଜ୍ଞାନ ବା ଭକ୍ତି କିଛି ନୁହେଁ, 'ରାମ' ନାମ ହିଁ ଏକମାତ୍ର ଆଧାର । କପଟର ଖଣି କଳିଯୁଗ । ଏହା କାଳନେମି ତୁଲ୍ୟ ଏକ ଭୟଙ୍କର ରାକ୍ଷସ । ଏହାକୁ ମାରିବା ପାଇଁ 'ରାମ' ନାମ ହିଁ ବୁଦ୍ଧିମାନ ଓ ସମର୍ଥ ହନୁମାନ ତୁଲ୍ୟ । ଦୋହା —'ରାମ' ନାମ ନୃସିଂହ ଭଗବାନ, କଳିଯୁଗ ହିରଣ୍ୟକଶିପୁ ଏବଂ ଜପ କରିବା ଲୋକ ପ୍ରହ୍ଲାଦ ପରି । ଏହି 'ରାମ' ନାମ ଦେବ-ଶତ୍ରୁ (କଳିଯୁଗରୂପୀ ଦୈତ୍ୟ)କୁ ମାରି ଜପକାରୀମାନଙ୍କୁ ରକ୍ଷା କରେ ॥ ୨୭ ॥ ଚୌପାଇ —ସଦ୍‌ଭାବ (ପ୍ରେମ), ଅସଦ୍‌ଭାବ (ଶତ୍ରୁତା), କ୍ରୋଧ ବା ଆଳସ୍ୟବଶତଃ—ଯେ କୌଣସି ପ୍ରକାରେ ହେଲେ ନାମ-ଜପ କଲେ ଦଶ ଦିଗ କଲ୍ୟାଣମୟ ହୋଇଥାଏ । ସେହି ପରମ କଲ୍ୟାଣକାରୀ 'ରାମ' ନାମକୁ ସ୍ମରଣ କରି ଏବଂ ଶ୍ରୀ ରଘୁନାଥଙ୍କୁ ମସ୍ତକ ନୁଆଇଁ ମୁଁ ଶ୍ରୀରାମଙ୍କ ଗୁଣ-ଗାଥା ବର୍ଣ୍ଣନ କରୁଅଛି ॥ ୧ ॥ ସେହି ପ୍ରଭୁ ଶ୍ରୀରାମଚନ୍ଦ୍ର ମୋର ଯାବତୀୟ ତ୍ରୁଟି ସଂଶୋଧନ କରି ଦେବେ । ତାଙ୍କ କୃପା କୃପା କରି କେବେ ତୃପ୍ତ ହୁଏ ନାହିଁ । ରାମଙ୍କ ପରି ଉତ୍ତମ ସ୍ୱାମୀ ଓ ମୋ ପରି ମନ୍ଦ ସେବକ । ତଥାପି ସେ ଦୟାନିଧି ମୋ ପ୍ରତି ସଦା ଦୃଷ୍ଟି ରଖି ମୋତେ ପାଳନ କରିଅଛନ୍ତି ॥ ୨ ॥ ଲୋକ ଓ ବେଦରେ ମଧ୍ୟ ଉତ୍ତମ ସ୍ୱାମୀଙ୍କର ଏହି ସ୍ୱଭାବ ପ୍ରସିଦ୍ଧି ଲାଭ କରିଛି । ବିନୟ ଶୁଣିବା ମାତ୍ରେ ସେ ପ୍ରେମକୁ ଚିହ୍ନି ପାରନ୍ତି । ଧନୀ-ଦରିଦ୍ର, ଗାଉଁଲି-ସହରୀ, ପଣ୍ଡିତ-ମୂର୍ଖ, କଳଙ୍କୀ-ଯଶସ୍ୱୀ, ସୁକବି ଓ କୁକବି ସମସ୍ତେ

ସୁନି ସନମାନହିଂ ସବହି ସୁବାନୀ । ଭନିତି ଭଗତି ନତି ଗତି ପହିଚାନୀ ॥
ଯହ ପ୍ରାକୃତ ମହିପାଲ ସୁଭାଊ । ଜାନ ସିରୋମନି କୋସଲରାଊ ॥୪॥
ରୀଝତ ରାମ ସନେହ ନିସୋତେଁ । କୋ ଜଗ ମନ୍ଦ ମଲିନମତି ମୋତେଁ ॥୫॥

ସଠ ସେବକ କୀ ପ୍ରୀତି ରୁଚି ରଖିହହିଁ ରାମ କୃପାଲୁ ।
ଉପଲ କିଏ ଜଲଜାନ ଜେହିଁ ସଚିବ ସୁମତି କପି ଭାଲୁ ॥୨୮(କ)॥
ହୌଁହୁ କହାବତ ସବୁ କହତ ରାମ ସହତ ଉପହାସ ।
ସାହିବ ସୀତାନାଥ ସୋ ସେବକ ତୁଲସୀଦାସ ॥୨୮(ଖ)॥

ଅତି ବଡ଼ି ମୋରି ଢିଠାଈ ଖୋରୀ । ସୁନି ଅଘ ନରକହୁଁ ନାକ ସଁକୋରୀ ॥
ସମୁଝି ସହମ ମୋହି ଅପଡର ଅପନେଁ । ସୋ ସୁଧି ରାମ କୀନ୍ହି ନହିଂ ସପନେଁ ॥୧॥

---

ଶୁଣି ପ୍ରେମେ ସମସ୍ତଙ୍କୁ ସମ୍ମାନ କରନ୍ତି । ଚିହ୍ନି ପ୍ରୀତି ଗତିଭକ୍ତି ବିନତି ଭଣିତି ॥
ଏହି ସ୍ୱଭାବ ପ୍ରାକୃତ ମହୀପାଳଙ୍କର । ଜ୍ଞାନୀ ଶିରୋମଣି ପ୍ରଭୁ କୋଶଳ ଈଶ୍ୱର ॥୪॥
ଅତୁଟ ସ୍ନେହରେ ରାମ ହୁଅନ୍ତି ପ୍ରସନ୍ନ । କିଏ ଜଗତେ କୁମତି ମଳିନ ମୋ ସମ ॥୫॥

ଶଠ ସେବକର ପ୍ରୀତିରୁଚି ରକ୍ଷା କରିବେ କୃପାଳୁ ରାମ ।
ଯେ କଲେ ସୁମତି ଋକ୍ଷ କପି ମନ୍ତ୍ରୀ ପଥରକୁ ଜଳଯାନ ॥୨୮(କ)॥
ସମସ୍ତେ କହନ୍ତି କୁହାଏ ମୁଁ, ରାମ ସହନ୍ତି ଏ ଉପହାସ ।
ଜାନକୀ-ନାୟକ ସଦ୍ଗୁଣ ସ୍ୱାମୀଙ୍କ ସେବକ ତୁଳସୀ ଦାସ ॥୨୮॥ (ଖ)

ଶୁଣି ମୋହର ଧୃଷ୍ଟତା ଦୋଷ ଭାରୀ ଅତି । ପାପ ନର୍କ ହୁହେଁ ନାକ ଘୃଣାରେ ଚପନ୍ତି ॥
ବୁଝି ମୁଁ ଭୟ କରଇ ଆପଣା ଭୟରେ । ସ୍ମରଣ ନ କଲେ ତାହା ରାମ ସ୍ୱପନରେ ॥୧॥

---

ଆପଣା ଆପଣାର ବୁଦ୍ଧି ଅନୁସାରେ ରାଜାଙ୍କୁ ପ୍ରଶଂସା କରନ୍ତି ଏବଂ ସାଧୁ, ବୁଦ୍ଧିମାନ୍, ସୁଶୀଳ ଓ ଈଶ୍ୱରଙ୍କ ଅଂଶରେ ଜାତ ଦୟାଳୁ ରାଜା ସମସ୍ତଙ୍କ ସ୍ତୁତି ଶୁଣି ଓ ସେମାନଙ୍କ ବାଣୀ, ଭକ୍ତି, ବିନୟ ଓ ଗତିବିଧି ଚିହ୍ନି ସୁନ୍ଦର ଓ ମଧୁର ବାଣୀରେ ସମସ୍ତଙ୍କର ଯଥାଯୋଗ୍ୟ ସମ୍ମାନ କରନ୍ତି । ସଂସାରୀ ରାଜାମାନଙ୍କର ତ ଏତାଦୃଶ ସ୍ୱଭାବ । କୋଶଳନାଥ ଶ୍ରୀରାମଚନ୍ଦ୍ର ତ ଚତୁରଶିରୋମଣି ॥୩-୪॥ ଶ୍ରୀରାମ ବିଶୁଦ୍ଧ ପ୍ରେମମାତ୍ର ଦ୍ୱାରା ପ୍ରସନ୍ନ ହୁଅନ୍ତି । କିନ୍ତୁ ଜଗତ୍‌ରେ ମୋଠାରୁ ବଡ ମୂର୍ଖ ଓ ମଳିନବୁଦ୍ଧି କିଏ ହେବ ? ॥୫॥ ଦୋହା:—ତଥାପି କୃପାଳୁ ରାମଚନ୍ଦ୍ର ମୋ ପରି ଦୁଷ୍ଟ ସେବକର ପ୍ରୀତି ଓ ରୁଚି ଅବଶ୍ୟ ସ୍ୱୀକାର କରିବେ । ସେ ପଥରଗୁଡିକୁ ଜାହାଜ ଓ ବାନର-ଭଲ୍ଲୁକମାନଙ୍କୁ ବୁଦ୍ଧିମାନ୍ ମନ୍ତ୍ରୀରେ ପରିଣତ କରି ଦେଇଥିଲେ । ଏଣୁ ତାଙ୍କ ଦୟା ପାଇବି ବୋଲି ମୁଁ ଆଶାୟୀ ॥୨୮ (କ)॥ ସମସ୍ତେ ମୋତେ ଶ୍ରୀରାମଙ୍କ ସେବକ କହନ୍ତି ଏବଂ ମୁଁ ମଧ୍ୟ ଲଜ୍ଜାସଙ୍କୋଚ ବିନା ଆପଣାକୁ ଶ୍ରୀରାମସେବକ କୁହାଏ । ଶ୍ରୀ ସୀତାନାଥଙ୍କ ପରି ସ୍ୱାମୀଙ୍କର ତୁଳସୀଦାସ ପରି ସେବକ । ଶ୍ରୀରାମଚନ୍ଦ୍ରଙ୍କ ଏପରି ଉପହାସ ସହିବା ବିଷୟରେ ଅତି ଉଦାର ॥୨୮ (ଖ)॥ ଚୌପାଈ:—ଏହା

ସୁନି ଅବଲୋକି ସୁଚିତ ଚଖ ଚାହୀ । ଭଗତି ମୋରି ମତି ସ୍ୱାମି ସରାହୀ ॥
କହତ ନସାଇ ହୋଇ ହିଅଁ ନୀକୀ । ରୀଝତ ରାମ ଜାନି ଜନ ଜୀ କୀ ॥୨॥
ରହତି ନ ପ୍ରଭୁ ଚିତ ଚୂକ କିଏ କୀ । କରତ ସୁରତି ସୟ ବାର ହିଏ କୀ ॥
ଜେହିଁ ଅଘ ବଧେଉ ବ୍ୟାଧ ଜିମି ବାଲୀ । ଫିରି ସୁକଂଠ ସୋଇ କୀହ୍ନି କୁଚାଲୀ ॥୩॥
ସୋଇ କରତୂତି ବିଭୀଷନ କେରୀ । ସପନେହୁଁ ସୋ ନ ରାମ ହିୟଁ ହେରୀ ॥
ତେ ଭରତହି ଭେଁଟତ ସନମାନେ । ରାଜସଭାଁ ରଘୁବୀର ବଖାନେ ॥୪॥

ପ୍ରଭୁ ତରୁ ତର କପି ଡାର ପର ତେ କିଏ ଆପୁ ସମାନ ।
ତୁଲସୀ କହୁଁ ନ ରାମ ସେ ସାହିବ ସୀଲନିଧାନ ॥୨୯(କ)॥

---

ଶୁଣି ଅବଲୋକି କରି ସୁଚକ୍ଷେ ବିଚାର । ମୋର ମତିଭକ୍ତି ସ୍ୱାମୀ କଲେ ଅଙ୍ଗୀକାର ॥
କହନ୍ତେ ହାନି ଅଥଚ ଶୁଦ୍ଧ ଥିଲେ ମନ । ଜନ ହୃଦ ଜାଣି ରାମ ହୁଅନ୍ତି ପ୍ରସନ୍ନ ॥୨॥
କୃତ ଅପରାଧ ପ୍ରଭୁ ଚିତ୍ତେ ନ ଧରନ୍ତି । ହୃଦଭାବ ଶତବାର ସ୍ମରଣ କରନ୍ତି ॥
ଯେଉଁପାପେ ବାଳିବଧକଲେ ଯେସନ୍ତେ ବ୍ୟାଧ । ସୁଗ୍ରୀବ କରିଲେ ପଛେ ସେହି ଅପରାଧ ॥୩॥
ବିଭୀଷଣ କଲେ ପୁଣି ସେହି ସ୍ୱାନ କାମ । ସ୍ୱପ୍ନେହେଁ ତାହା ହୃଦୟେ ନ ହେଜିଲେ ରାମ ॥
ଭରତ ଭେଟ ସମୟେ ତାଙ୍କୁ ସମ୍ମାନିଲେ । ରାଜସଭା ମଧ୍ୟେ ରଘୁରାଜ ବଖାଣିଲେ ॥୪॥

ପ୍ରଭୁ ତରୁ ତଳେ କପି ଡାଳେ ଡାଳେ କଲେ ତାଙ୍କୁ ନିଜ ସମ ।
ତୁଲସୀ ରାମଙ୍କ ପ୍ରାୟେ କାହିଁ ନାହିଁ ସୁଶୀଳ ସ୍ୱାମୀ ଉତ୍ତମ ॥୨୯(କ)॥

---

ମୋ ପକ୍ଷରେ ବଡ଼ ଧୃଷ୍ଟତା ଓ ଦୋଷ । ମୋ ପାପ କଥା ଶୁଣି ନର୍କ ସୁଦ୍ଧା ମୋ ପ୍ରତି ନାକ ଟେକୁଛି । (ଅର୍ଥାତ୍ ନର୍କରେ ସୁଦ୍ଧା ମୋ ପାଇଁ ସ୍ଥାନ ନାହିଁ ।) ଏହା ବିଚାରି ମୋର କଳ୍ପିତ ଡରରେ ମୁଁ ଆତଙ୍କିତ । କିନ୍ତୁ ଭଗବାନ୍ ଶ୍ରୀରାମଚନ୍ଦ୍ର ସ୍ୱପ୍ନରେ ସୁଦ୍ଧା ମୋର ଏହି ଧୃଷ୍ଟତା ଓ ଦୋଷ ପ୍ରତି ଧ୍ୟାନ ଦେଇ ନାହାନ୍ତି ॥୧॥ ବରଂ ମୋର ପ୍ରଭୁ ଶ୍ରୀରାମଚନ୍ଦ୍ର ଏ କଥା ଶୁଣି, ଦେଖି ଓ ତାଙ୍କ ସୁଚିତ୍ତ-ଚକ୍ଷୁରେ ନିରୀକ୍ଷଣ କରି ମୋ ଭକ୍ତି ଓ ବୁଦ୍ଧିକୁ (ପକ୍ଷାନ୍ତରରେ) ପ୍ରଶଂସା କରିଅଛନ୍ତି । କହିବା ଦ୍ୱାରା ମନୁଷ୍ୟର ମହତ୍ତ୍ୱହାନି ହୁଏ । ପ୍ରକୃତ ପକ୍ଷେ ହୃଦୟରେ ସଦ୍‌ଗୁଣ ଓ ବିନୟ ରହିବା ଆବଶ୍ୟକ । ମୁଁ ମୋ ହୃଦୟର ସହିତ ଅନୁଭବ କରେ ଯେ ମୁଁ ପ୍ରଭୁ ରାମଙ୍କର ସେବକ ହେବାର ଅଯୋଗ୍ୟ, କାରଣ ମୁଁ 'ପାପୀ' ଓ ହୀନ । ଶ୍ରୀରାମଚନ୍ଦ୍ରଙ୍କ ମଧ୍ୟ ଦାସର ହୃଦୟର ଏ ଦଶା ହୃଦୟଙ୍ଗମ କରି ପ୍ରସନ୍ନ ହୁଅନ୍ତି ॥୨॥ ପ୍ରଭୁଙ୍କ ଚିତ୍ତରେ ତାଙ୍କ ଭକ୍ତବୃନ୍ଦଙ୍କ ଭୁଲ-ତ୍ରୁଟି ସ୍ମରଣ ରହେ ନାହିଁ । ସେ ତାହା ସବୁ ଭୁଲିଯାଆନ୍ତି, ଭକ୍ତବୃନ୍ଦଙ୍କ ସଦ୍‌ଗୁଣାବଳୀ ସେ ଶତଶତବାର ସ୍ମରଣ କରୁଥାନ୍ତି । ଯେଉଁ ପାପ ହେତୁ ସେ ବ୍ୟାଧ ପରି ବାଳୀକୁ ବଧ କରିଥିଲେ, ସେହିପରି ଅସଦାଚରଣ ପୁଣି ସୁଗ୍ରୀବ ଦେଖାଇଥିଲେ ॥୩॥ ସେହିପରି କର୍ମ ବିଭୀଷଣ ମଧ୍ୟ କରିଥିଲେ । ମାତ୍ର ପ୍ରଭୁ ଶ୍ରୀରାମ ସ୍ୱପ୍ନରେ ସୁଦ୍ଧା ଉକ୍ତ ଅପକର୍ମ ସବୁ ହୃଦୟରେ ଧରି ନ ଥିଲେ । ବରଂ ଭରତଙ୍କ ସହିତ ମିଳନ କାଳରେ, ଶ୍ରୀରଘୁନାଥ

ରାମ ନିକାଈଁ ରାଓ୍ରୀ ହୈ ସବହୀ କୋ ନୀକ ।
ଜୌଁ ଯହ ସାଁଚୀ ହୈ ସଦା ତୌ ନୀକୋ ତୁଲସୀକ ॥୨୯(ଖ)॥
ଏହିଁ ବିଧି ନିଜ ଗୁନଦୋଷ କହି ସବହି ବହୁରି ସିରୁ ନାଇ ।
ବରନଉଁ ରଘୁବର ବିସଦ ଜସୁ ସୁନି କଲିକଲୁଷ ନସାଇ ॥୨୯(ଗ)॥

ଜାଗବଲିକ ଜୋ କଥା ସୁହାଈ ।-ଭରଦ୍ୱାଜ ମୁନିବରହି ସୁନାଈ ॥
କହିହଉଁ ସୋଇ ସମ୍ବାଦ ବଖାନୀ । ସୁନହୁ ସକଲ ସଜ୍ଜନ ସୁଖୁ ମାନୀ ॥୧॥
ସଂଭୁ କୀନ୍ହ ଯହ ଚରିତ ସୁହାଓ୍ୱା । ବହୁରି କୃପା କରି ଉମହି ସୁନାଓ୍ୱା ॥
ସୋଇ ସିବ କାଗଭୁସୁଣ୍ଡିହି ଦୀନ୍ହା । ରାମ ଭଗତ ଅଧିକାରୀ ଚୀନ୍ହା ॥୨॥

---

ରାମ ଆପଣଙ୍କ ସୁହୃଦ ସ୍ୱଭାବ ଭଲ ଲାଗେ ସମସ୍ତଙ୍କୁ ।
ଏହା ସଦା ଯେବେ ସତ୍ୟ ହୁଏ ତେବେ ଭଲ ତୁଳସୀ ଦାସଙ୍କୁ ॥୨୯ (ଖ)॥
ଏ ଭାବେ କହୁଣ ନିଜ ଦୋଷ ଗୁଣ ନମି ସମସ୍ତଙ୍କୁ ପୁଣି ।
ବର୍ଣ୍ଣେ ରଘୁବର ସୁଯଶ, କଳିର ପାପ ନାଶ ହୋନ୍ତି ଶୁଣି ॥୨୯ (ଗ)॥

ଯାଜ୍ଞବଲକ୍ୟ ଯେଉଁ କଥା ମନୋହର ଅତି । ଭରଦ୍ୱାଜ ମୁନିବରେ ଶୁଣାଇ ଅଛନ୍ତି ॥
କହିବି ସେହି ସମ୍ବାଦ କରିଣ ବର୍ଣ୍ଣନ । ଆନନ୍ଦମନେ ଶୁଣନ୍ତୁ ସକଳ ସଜ୍ଜନ ॥୧॥
ଏହି ସୁନ୍ଦର ଚରିତ ଶମ୍ଭୁ ବିରଚିଲେ । ପୁଣି କୃପା କରି ପାର୍ବତୀଙ୍କୁ ଶୁଣାଇଲେ ॥
କାକ ଭୁଶୁଣ୍ଡିକି ତାହା ଦେଲେ ତ୍ରିପୁରାରି । ଚିହ୍ନି ରଘୁପତି ଭକ୍ତ କଥା ଅଧିକାରୀ ॥୨॥

---

ସେମାନଙ୍କ ପ୍ରତି ସମ୍ମାନ ଦେଖାଇ ଥିଲେ ଏବଂ ରାଜସଭାରେ ମଧ୍ୟ ସେମାନଙ୍କ ଗୁଣ ବର୍ଣ୍ଣନା କରିଥିଲେ ॥୬॥ ବୃକ୍ଷତଳେ ବିରାଜମାନ ମର୍ଯ୍ୟାଦା-ପୁରୁଷୋତ୍ତମ ସଚ୍ଚିଦାନନ୍ଦ ଘନ ପରମାତ୍ମା ଶ୍ରୀରାମଙ୍କ ସ୍ଥାନ କେଉଁଠି ଏବଂ ବୃକ୍ଷଶାଖାମାନଙ୍କରେ ଡେଇଁ ଡେଇଁ ବୁଲୁଥିବା ବାନରମାନଙ୍କ ସ୍ଥାନ କେଉଁଠି ? ମାତ୍ର ଏପରି ବାନରମାନଙ୍କୁ ମଧ୍ୟ ପ୍ରଭୁ ଆପଣା ସମାନ କରି ପକାଇଥିଲେ । ତୁଳସୀ ଦାସ କହନ୍ତି,—ଶ୍ରୀରାମଙ୍କ ପରି ସଚ୍ଚରିତ୍ରର ଆଧାର ଏପରି ଜଣେ ସ୍ୱାମୀ ଅନ୍ୟତ୍ର କେଉଁଠି ହେଲେ ନାହାନ୍ତି ॥୨୯(କ)॥ ହେ ଶ୍ରୀରାମଚନ୍ଦ୍ର ! ଆପଣଙ୍କ ସଦ୍‌ଗୁଣଯୋଗେ ସମସ୍ତଙ୍କର କଲ୍ୟାଣସାଧିତ ହୁଏ । ଅର୍ଥାତ୍ ଆପଣଙ୍କର କଲ୍ୟାଣମୟ ସ୍ୱଭାବ ସମସ୍ତଙ୍କର କଲ୍ୟାଣକାରକ । ଯଦି ଏହା ସତ୍ୟ ହୋଇଥାଏ, ତେବେ ତୁଳସୀଦାସର ମଧ୍ୟ ସର୍ବଦା କଲ୍ୟାଣ ହେବ ॥୨୯ (ଖ)॥ ଏହିପରି ଆପଣାର ଗୁଣଦୋଷ ବଖାଣି ଏବଂ ସମସ୍ତଙ୍କୁ ପୁଣି ମୁଣ୍ଡ ନୁଆଁଇ ମୁଁ ଶ୍ରୀ ରଘୁନାଥଙ୍କ ନିର୍ମଳ ଯଶ ବର୍ଣ୍ଣନା କରୁଅଛି । ଏହା ଶୁଣିଲେ କଳିଯୁଗର ସମସ୍ତ ପାପ ଆପେ ଆପେ ନଷ୍ଟ ହୋଇଯାଏ ॥୨୯ (ଗ)॥ ଚୌପାଇ—ମୁନି ଯାଜ୍ଞବଲ୍କ୍ୟଙ୍କ ମୁନିଶ୍ରେଷ୍ଠ ଭରଦ୍ୱାଜଙ୍କୁ ଯେଉଁ ସୁନ୍ଦର କଥା ଶୁଣାଇଥିଲେ, ସେହି ସମ୍ବାଦକୁ ମୁଁ ବଖାଣି କହିବି । ସମସ୍ତ ସଜ୍ଜନ ସୁଖ ଅନୁଭବପୂର୍ବକ ତାହା ଶୁଣନ୍ତୁ ॥୧॥ ଶିବ ପ୍ରଥମେ ଏହି ସୁନ୍ଦର ଚରିତକୁ ରଚନା କରିଥିଲେ, ପୁଣି ସେ କୃପାପରବଶ ହୋଇ ପାର୍ବତୀଙ୍କୁ

ତେହ୍ନି ସନ ଜାଗବଲିକ ପୁନି ପାଓ୍ୱା । ତିହ୍ନ ପୁନି ଭରଦ୍ୱାଜ ପ୍ରତି ଗାଓ୍ୱା ॥
ତେ ଶ୍ରୋତା ବକତା ସମସୀଲା । ସବଁଦରସୀ ଜାନହିଁ ହରିଲୀଲା ॥୩॥
ଜାନହିଁ ତୀନି କାଲ ନିଜ ଗ୍ୟାନା । କରତଲଗତ ଆମଲକ ସମାନା ॥
ଔରଉ ଜେ ହରିଭଗତ ସୁଜାନା । କହହିଁ ସୁନହିଁ ସମୁଝହିଁ ବିଧି ନାନା ॥୪॥

ମୈଁ ପୁନି ନିଜ ଗୁରୁ ସନ ସୁନୀ କଥା ସୋ ସୂକରଖେତ ।
ସମୁଝୀ ନହିଁ ତସି ବାଲପନ ତବ ଅତି ରହେଉଁ ଅଚେତ ॥୩୦(କ)॥
ଶ୍ରୋତା ବକତା ଗ୍ୟାନନିଧି କଥା ରାମ କୈ ଗୂଢ଼ ।
କିମି ସମୁଝୌଂ ମୈଁ ଜୀବ ଜଡ଼ କଲିମଲ ଗ୍ରସିତ ବିମୂଢ଼ ॥୩୦ (ଖ)॥

ତଦପି କହୀ ଗୁରୁ ବାରହିଁ ବାରା । ସମୁଝି ପରୀ କଛୁ ମତି ଅନୁସାରା ॥
ଭାଷାବଦ୍ଧ କରବି ମୈଂ ସୋଈ । ମୋରେଁ ମନ ପ୍ରବୋଧ ଜେହିଁ ହୋଈ ॥୫॥

---

ତାହାଠାରୁ ପ୍ରାପ୍ତ କଲେ ଯାଜ୍ଞବଲ୍କ୍ୟ ମୁନି । ଭରଦ୍ୱାଜଙ୍କ ସମ୍ମୁଖେ ବର୍ଣ୍ଣିଲେ ସେ ପୁଣି ॥
ଶୀଲବନ୍ତ ସେ ଉଭୟେ ଶ୍ରୋତାବକ୍ତା ସମ । ସମଦର୍ଶୀ ହରି ଲୀଳା ଜାଣନ୍ତି ଉତ୍ତମ ॥୩॥
ଜାଣନ୍ତି ତିନି କାଳର କଥା ନିଜ ଜ୍ଞାନେ । କରତଳ ସ୍ଥିତ ଫଳ ଅଁଳା ସମାନେ ॥
ଅନ୍ୟ ଯେ ଅନେକ ଜ୍ଞାନଶୀଳ ହରିଭକ୍ତେ । କହନ୍ତି ଶୁଣନ୍ତି ବିଚାରନ୍ତି ନାନାମତେ ॥୪॥

ମୁଁ ପୁଣି ଶୁଣିଲି ନିଜ ଗୁରୁମୁଖୁ ବରାହତୀର୍ଥେ ସେ କଥା ।
ତେବେ ବାଲପଣେ ଥିବାରୁ ଅଜ୍ଞାନ, ବୁଝି ନ ପାରିଲି ତଥା ॥୩୦ (କ)
ଜ୍ଞାନନିଧି ଶ୍ରୋତା ବକ୍ତା ଏଥି ଲୋଡ଼ା କଥା ରାମଙ୍କର ଗୂଢ଼ ।
ବୁଝିବି କେମନ୍ତ କଳି ମଳଗ୍ରସ୍ତ ମୁଁ ଜଡ ଜୀବ ବିମୂଢ଼ ॥୩୦ (ଖ)

ତଥାପି କହନ୍ତେ ଗୁରୁଦେବ ବାରମ୍ବାର । ହୃଦଙ୍ଗମ କଲି କିଛି ମତି ଅନୁସାର ॥
ଭାଷାନିବଦ୍ଧ କରିବି ମୁଁ ସେହି କଥାକୁ । ପ୍ରବୋଧ ଦେବା ନିମନ୍ତେ ଆପଣା ଆତ୍ମାକୁ ॥୫॥

---

ଶୁଣାଇଲେ । କାକଭୁଶୁଣ୍ଡିଙ୍କୁ ରାମଭକ୍ତ ଓ ଅଧିକାରୀରୂପେ ଜାଣି ଶିବ ଉକ୍ତ ଚରିତ ତାହାଙ୍କୁ ପ୍ରଦାନ କଲେ ॥୨॥ ପୁନଶ୍ଚ ଉକ୍ତ କାକଭୁଶୁଣ୍ଡିଙ୍କଠାରୁ ଯାଜ୍ଞବଲ୍କ୍ୟ ମୁନି ତାହା ପାଇଲେ ଏବଂ ପୁଣି ଗାଇ ଭରଦ୍ୱାଜ ମୁନିଙ୍କୁ ଶୁଣାଇଲେ । ଉଭୟେ ବକ୍ତା ଓ ଶ୍ରୋତା (ଯାଜ୍ଞବଲ୍କ୍ୟ ଓ ଭରଦ୍ୱାଜ) ସମଚରିତ୍ରବାନ୍ ଓ ସମଦର୍ଶୀ ଏବଂ ଶ୍ରୀହରିଙ୍କ ଲୀଳା କଥା ଜାଣନ୍ତି ॥୩॥ ସେ ଦୁହେଁ ତାଙ୍କ ଜ୍ଞାନବଳରେ ଭୂତ, ବର୍ତ୍ତମାନ ଓ ଭବିଷ୍ୟ—ଏହି ତିନି କାଳର କଥା କରତଳଗତ ଅଁଳା ପରି ଚନ୍ତ୍ରାମାନଙ୍କେ ଜାଣି ପାରନ୍ତି । ଆଉ ମଧ୍ୟ ଯେଉଁ ହରିଭକ୍ତଗଣ ଭଗବାନଙ୍କ ଲୀଳା-ରହସ୍ୟ ବିଷୟରେ ସୁଜ୍ଞାନୀ, ସେମାନେ ଏହି ଚରିତକୁ ନାନାପ୍ରକାରେ କହନ୍ତି, ଶୁଣନ୍ତି ଏବଂ ବୁଝନ୍ତି ॥ ୪ ॥ ଦୋହା –ପୁନଶ୍ଚ ସେହି କଥା ମୁଁ ବାରାହ-କ୍ଷେତ୍ରରେ ମୋ ଗୁରୁଜୀଙ୍କଠାରୁ ଶୁଣିଲି, କିନ୍ତୁ ସେତେବେଳେ ମୋର ବାଳକ ଅବସ୍ଥା ହୋଇଥିବାରୁ ବୁଝିବାର ସାମର୍ଥ୍ୟ ମୋଠାରେ ନ ଥିଲା । ତେଣୁ ତାହା ସେପରି ଭଲ ଭାବରେ

ଜସ କଛୁ ବୁଧି ବିବେକ ବଲ ମେରେଁ । ତସ କହିହଉଁ ହିୟଁ ହରିକେ ପ୍ରେରେଁ ॥
ନିଜ ସନ୍ଦେହ ମୋହ ଭ୍ରମ ହରନୀ । କରଉଁ କଥା ଭବ ସରିତା ତରନୀ ॥୨॥
ବୁଧ ବିଶ୍ରାମ ସକଲ ଜନ ରଞ୍ଜନି । ରାମକଥା କଲିକଲୁଷ ବିଭଞ୍ଜନି ॥
ରାମକଥା କଲି ପନ୍ନଗ ଭରନୀ । ପୁନି ବିବେକ ପାବକ କହୁଁ ଅରନୀ ॥୩॥
ରାମକଥା କଲି କାମଦ ଗାଈ । ସୁଜନ ସଜୀବନି ମୂରି ସୁହାଈ ॥
ସୋଇ ବସୁଧାତଲ ସୁଧାତରଙ୍ଗିନି । ଭୟ ଭଞ୍ଜନି ଭ୍ରମ ଭେକ ଭୁଅଙ୍ଗିନି ॥୪॥
ଅସୁରସେନ ସମ ନରକ ନିକନ୍ଦିନି । ସାଧୁ ବିବୁଧ କୁଲ ହିତ ଗିରିନନ୍ଦିନି ॥
ସନ୍ତ ସମାଜ ପୟୋଧି ରମା ସୀ । ବିସ୍ୱଭାର ଭର ଅଚଲ ଛମା ସୀ ॥୫॥

---

ଯଥା କିଛି ବୁଦ୍ଧି ବଳ ବିବେକ ମୋହରି । ହୃଦେ' ହରି ପ୍ରେରଣାରେ କହିବି ସେପରି ॥
ନିଜ ମୋହ ଭ୍ରମ ସବୁ ସନ୍ଦେହ ହାରିଣୀ । କହୁଛି କଥା ସଂସାର-ସରିତା ତାରିଣୀ ॥୨॥
ବୁଧ-ବିଶ୍ରାମ ସକଳ ସୁଜନ-ରଞ୍ଜିନୀ । ରାମ କଥା ଅଟେ କଳି କଳୁଷ-ଭଞ୍ଜିନୀ ॥
ରାମ କଥା କଳି-ବିଷଧରକୁ ଭରଣୀ । ପୁଣି ବିବେକାନଳକୁ ଯେସନେ ଅରଣି ॥୩॥
ରାମ କଥା କଳିଯୁଗ କାମଧେନୁ ସମ । ସୁଜନଙ୍କ ସଞ୍ଜୀବନୀ ମୂଳ ମନୋରମ ॥
ବସୁଧା ତଳେ ସେ ଯେହ୍ନେ ସୁଧା-ତରଙ୍ଗିଣୀ । ଭବ-ବିଭଞ୍ଜିନୀ ଭ୍ରମ-ଭେକକୁ ସର୍ପିଣୀ ॥୪॥
ଅସୁର ସୈନ୍ୟ ସମାନ ନରକ-ନାଶିନୀ । ସାଧୁ ସୁରକୁଳ ହିତେ କୈଳାସବାସିନୀ ॥
ସନ୍ତସମାଜ-ପୟୋଧି ମଧ୍ୟେ ରମାପରି । ବିଶ୍ୱଭାର ବହନେ ଅଚଳ ବସୁନ୍ଧରୀ ॥୫॥

---

ବୁଝିପାରି ନ ଥିଲି ॥ ୩୦ (କ) ॥ ଶ୍ରୀରାମଙ୍କ ଗୂଢ଼ କଥାର ବକ୍ତା ଓ ଶ୍ରୋତା ଉଭୟେ ଜ୍ଞାନର ଭଣ୍ଡାର । କଳିଯୁଗର ପାପରାଶି ମୋତେ ଗ୍ରାସ କରିଛି । ମୁଁ ମହାମୂଢ଼ ତଥା ଜଡ଼ ଜୀବ । ସେ କଥା ମୁଁ କିପରି ବୁଝିପାରନ୍ତି ? ॥ ୩୦ (ଖ) ॥ ଚୌପାଈ —ତଥାପି ଗୁରୁଜୀ ଯେତେବେଳେ ବାରମ୍ବାର ଉକ୍ତ କଥା କହିଲେ, ସେତେବେଳେ ବୁଦ୍ଧି ଅନୁସାରେ କିଛି ବୁଝି ହେଲା । ତାହା ହିଁ ବର୍ତ୍ତମାନ ମୋଦ୍ୱାରା ଭାଷାରେ ରଚିତ ହେବ । ତାହାର ଦ୍ୱାରା ମୋ ମନକୁ ସନ୍ତୋଷ ମିଳିବ ॥ ୧ ॥ ମୋଠାରେ ବୁଦ୍ଧି ଓ ବିବେକର ଯେତିକି ବଳ ଏବଂ ହୃଦୟରେ ଶ୍ରୀହରିଙ୍କର ଯେତିକି ପ୍ରେରଣା, ତାହାରି ଅନୁସାରେ ମୁଁ କହିବି । ଯେମିତି ଗୋଟିଏ କଥା ମୋ ମନରୁ ସନ୍ଦେହ, ଅଜ୍ଞାନ ଓ ଭ୍ରମ ଦୂର କରି ପାରିବ, ଠିକ୍ ସେଇମିତି କଥାଟିଏ ମୁଁ ରଚନା କରୁଛି । ସଂସାରରୂପୀ ସରିତା ପାର ହେବା ନିମନ୍ତେ ଏହା ଗୋଟିଏ ନୌକା ॥୨॥ ରାମକଥା ପଣ୍ଡିତମାନଙ୍କୁ ବିଶ୍ରାମ ଦାନ କରେ, ସମସ୍ତ ମନୁଷ୍ୟଙ୍କ ମନୋରଞ୍ଜନ କରେ ଏବଂ କଳିଯୁଗର ସମସ୍ତ ପାପର ବିନାଶ କରେ । କଳିଯୁଗରୂପୀ ସର୍ପ ନିମନ୍ତେ ରାମକଥା ମୟୂରୀ । ବିବେକରୂପୀ ଅଗ୍ନିର ପରିପ୍ରକାଶ ସକାଶେ ଏହା ଗୋଟିଏ ଅରଣି । (ଅର୍ଥାତ୍ ଏହି କଥାଦ୍ୱାରା ଜ୍ଞାନ-ପ୍ରାପ୍ତି ହୁଏ) ॥ ୩ ॥ ରାମକଥା କଳିଯୁଗରେ କାମଧେନୁ ତୁଲ୍ୟ ସକଳ ମନୋରଥ ପୂର୍ଣ୍ଣ କରିପାରେ । ସଜ୍ଜନମାନଙ୍କ ସକାଶେ ଏହା ସଞ୍ଜୀବନୀ ଔଷଧ । ପୃଥିବୀରେ ଏହା

ଜମଗନ ମୁହଁ ମସି ଜଗ ଜମୁନା ସୀ । ଜୀବନ ମୁକୁତି ହେତୁ ଜନୁ କାସୀ ॥
ରାମହି ପ୍ରିୟ ପାବନ ତୁଲସୀ ସୀ । ତୁଲସିଦାସ ହିତ ହିୟଁ ହୁଲସୀ ସୀ ॥୬॥
ସିବପ୍ରିୟ ମେକଲ ସୈଲ ସୁତା ସୀ । ସକଲ ସିଦ୍ଧି ସୁଖ ସମ୍ପତି ରାସୀ ॥
ସଦଗୁନ ସୁରଗନ ଅମ୍ବ ଅଦିତି ସୀ । ରଘୁବର ଭଗତି ପ୍ରେମ ପରମିତି ସୀ ॥୭॥

ରାମକଥା ମନ୍ଦାକିନୀ ଚିତ୍ରକୂଟ ଚିତ ଚାରୁ ।
ତୁଲସୀ ସୁଭଗ ସନେହ ବନ ସିୟ ରଘୁବୀର ବିହାରୁ ॥୩୧॥

ରାମଚରିତ ଚିଂତାମନି ଚାରୂ । ସଂତ ସୁମତି ତିଅ ସୁଭଗ ସିଁଗାରୂ ॥
ଜଗମଂଗଲ ଗୁନଗ୍ରାମ ରାମ କେ । ଦାନି ମୁକୁତି ଧନ ଧରମ ଧାମ କେ ॥୧॥

---

ଯମଦୂତ ମୁଖେ କଳା ଯମୁନା ଲେପନେ । ଜୀବନ ମୁକ୍ତି ନିମନ୍ତେ କାଶୀ ବା ଯେସନେ ॥
ରାମଙ୍କ ପ୍ରିୟ ପବିତ୍ର ତୁଳସୀ ପରାୟେ । ତୁଳସୀ ହିତେ ହୁଳସୀ ମାତା ହୃଦ ପ୍ରାୟେ ॥୬॥
ଶିବ ପ୍ରିୟ ଯେସନ୍ତେ ବିନ୍ଧ୍ୟସୁତା ନରମଦା । ସମସ୍ତ ସିଦ୍ଧି ସମ୍ପତ୍ତି ଶୁଭ ରାଶି-ପ୍ରଦା ॥
ସଦ୍‌ଗୁଣ-ସୁରଙ୍କ ଅମ୍ବା ଅଦିତି ଯେପରି । ରଘୁବର ପ୍ରେମଭକ୍ତି ପରସୀମା ପରି ॥୭॥

ରାମ କଥା ରମ୍ୟ ମନ୍ଦାକିନୀ ସମ ଚିତ୍ତ ଚିତ୍ରକୂଟ ପ୍ରାୟ ।
ତୁଳସୀ ସୁସ୍ନେହ-ବନେ ସୀତା ସହ ବିହରନ୍ତି ରଘୁରାୟ ॥୩୧॥

ରାମଙ୍କ ଚରିତ ଚିନ୍ତାମଣି ମନୋହର । ସନ୍ଥ ସୁମତି-ନାରୀର ଭୂଷଣ ସୁନ୍ଦର ॥
ଜଗତ ମଙ୍ଗଳ ଗୁଣ ଗ୍ରାମ ରାମଙ୍କର । ମୁକ୍ତି ଧରମ ଧନ ଧାମ ଦାନବର ॥୧॥

---

ଅମୃତର ନଦୀ । ଏହା ଜନ୍ମ-ମରଣ-ରୂପୀ ଭୟର ବିନାଶକାରିଣୀ ଓ ଭ୍ରମରୂପୀ ମଣ୍ଡୁକର ଭକ୍ଷଣକାରିଣୀ ସର୍ପିଣୀ ॥ ୪ ॥ ଏହି ରାମକଥା ଅସୁରସେନା ତୁଲ୍ୟ ନର୍କସମୂହର ବିନାଶକାରିଣୀ ଏବଂ ସାଧୁ-ଦେବତାମାନଙ୍କ କୁଳର କଲ୍ୟାଣ-କାରିଣୀ ପାର୍ବତୀ (ଦୁର୍ଗା) । ସନ୍ଥ-ସମାଜରୂପୀ କ୍ଷୀରସାଗର ନିମନ୍ତେ ଏହି କଥା ଲକ୍ଷ୍ମୀତୁଲ୍ୟା ଏବଂ ସମ୍ପୂର୍ଣ୍ଣ ବିଶ୍ୱର ଭାର ବହନ କରିବା ବିଷୟରେ ଅଚଳା ପୃଥିବୀ ସମାନ ॥ ୫ ॥ ଯମଦୂତଗଣଙ୍କ ମୁହଁରେ କାଳିମା ଲଗାଇବା ନିମନ୍ତେ ଏହି କଥା ଜଗତରେ ଯମୁନା ସମାନ ଏବଂ ଜୀବଙ୍କୁ ମୁକ୍ତି ଦେବା ବିଷୟରେ ସତେ ଯେପରି କାଶୀ କ୍ଷେତ୍ର । ଏହା ଶ୍ରୀରାମଚନ୍ଦ୍ରଙ୍କୁ ପବିତ୍ର ତୁଳସୀ ପରି ପ୍ରିୟ ଏବଂ ତୁଳସୀଦାସ ପାଇଁ ହୁଳସୀ [ତୁଳସୀ ଦାସଙ୍କ ମାତା]ଙ୍କ ପରି ସହୃଦୟ ହିତକାରିଣୀ ॥୬॥ ଏହି ରାମକଥା ଶିବଜୀଙ୍କୁ ନର୍ମଦାଙ୍କ ପରି ଅତି ପ୍ରିୟ । ଏହା ସମସ୍ତ ସିଦ୍ଧି ଓ ସୁଖ-ସମ୍ପତ୍ତିର ରାଶି । ସଦ୍‌ଗୁଣରୂପୀ ଦେବତାମାନଙ୍କର ଉତ୍ପତ୍ତି ଓ ପାଳନପୋଷଣ କରିବା ବିଷୟରେ ଏହା ଅଦିତିତୁଲ୍ୟା । ଏହା ରଘୁନାଥଜୀଙ୍କ ପ୍ରତି ଭକ୍ତି ଓ ପ୍ରେମର ପରମ ସୀମା ପରି ॥ ୭ ॥ ଦୋହା :—ତୁଳସୀଦାସ କହନ୍ତି, "ଶ୍ରୀରାମ କଥା ମନ୍ଦାକିନୀ ନଦୀ, ସୁନ୍ଦର [ନିର୍ମଳ] ଚିତ୍ତ ଚିତ୍ରକୂଟ ଓ ସୁନ୍ଦର ସ୍ନେହ ହିଁ ବନ । ସ୍ନେହ-ବନରେ ଶ୍ରୀସୀତାରାମଜୀ ବିହାର କରନ୍ତି ॥ ୩୧ ॥ ଚୌପାଈ :—ଶ୍ରୀରାମଚରିତ ସୁନ୍ଦର ଚିନ୍ତାମଣି ଏବଂ ସାଧୁମାନଙ୍କ ଚିତ୍ତ-ନାରୀର ସୁନ୍ଦର ଶୃଙ୍ଗାର ।

ସଦଗୁର ଜ୍ଞାନ ବିରାଗ ଜୋଗ କେ । ବିବୁଧ ବୈଦ ଭବ ଭୀମ ରୋଗ କେ ॥
ଜନନି ଜନକ ସିଅ ରାମ ପ୍ରେମ କେ । ବୀଜ ସକଲ ବ୍ରତ ଧରମ ନେମ କେ ॥୨॥
ସମନ ପାପ ସଂତାପ ସୋକ କେ । ପ୍ରିୟ ପାଲକ ପରଲୋକ ଲୋକ କେ ॥
ସଚିବ ସୁଭଟ ଭୂପତି ବିଚାର କେ । କୁଂଭଜ ଲୋଭ ଉଦଧି ଅପାର କେ ॥୩॥
କାମ କୋହ କଲିମଲ କରିଗନ କେ । କେହରି ସାବକ ଜନ ମନ ବନ କେ ॥
ଅତିଥି ପୂଜ୍ୟ ପ୍ରିୟତମ ପୁରାରି କେ । କାମଦ ଘନ ଦାରିଦ ଦଓ୍ୱାରି କେ ॥୪॥
ମନ୍ତ୍ର ମହାମନି ବିଷୟ ବ୍ୟାଲ କେ । ମେଟତ କଠିନ କୁଅଂକ ଭାଲ କେ ॥
ହରନ ମୋହ ତମ ଦିନକର କର ସେ । ସେବକ ସାଲି ପାଲ ଜଲଧର ସେ ॥୫॥
ଅଭିମତ ଦାନି ଦେବତରୁବର ସେ । ସେଓ୍ୱତ ସୁଲଭ ସୁଖଦ ହରିହର ସେ ॥
ସୁକବି ସରଦ ନଭ ମନ ଉଡଗନ ସେ । ରାମଭଗତ ଜନ ଜୀବନ ଧନ ସେ ॥୬॥

---

ସଦ୍‌ଗୁରୁ ଜ୍ଞାନ ବୈରାଗ୍ୟ ଆବର ଯୋଗର । ଅଶ୍ୱିନୀକୁମାର ଭବ ଭୀଷଣ ରୋଗର ॥
ଜନନୀ ଜନକ ସୀତା ରାମଙ୍କ ପ୍ରେମର । ବୀଜ ସକଳ ଧରମ ବ୍ରତ ନିୟମର ॥୨॥
ନାଶକ ତ୍ରିବିଧ ପାପ ସନ୍ତାପ ଶୋକର । ପ୍ରିୟ ପାଳି ଇହପର ଉଭୟ ଲୋକର ॥
ସୁମନ୍ତ୍ର ସଚିବ ନରପତି ବିଚାରର । କୁମ୍ଭଜ ଅଟଇ ଲୋଭ-ସିନ୍ଧୁ ଅପାରର ॥୩॥
କାମ-କ୍ରୋଧ-କଳିମଳ-କରିଗଣଙ୍କର । କେଶରୀ ଶାବକ ଜନ-ମନ-କାନନର ॥
ଅତିଥି ପୂଜ୍ୟ ପରମ ପ୍ରିୟ ଶିବଙ୍କର । କାମଦ ମେଘ ଦାରିଦ୍ର୍ୟ ଅରଣ୍ୟାନଳର ॥୪॥
ମନ୍ତ୍ର-ମହାମଣି ଅଟେ ବିଷୟ-ବ୍ୟାଳର । ଲିଭାଇ ଦିଏ କଠିନ କୁଲେଖା ଭାଲର ॥
ମୋହ-ତମ ବିନାଶନେ ଯଥା ରବିକର । ସେବକ-ଧାନ୍ୟ ପାଳନେ ଯେହ୍ନେ ଜଳଧର ॥୫॥
ଅଭିମତଦାନେ ଯଥା ଦେବ ତରୁବର । ସେବା ସୁଲଭ ସୁଖଦ ଯେହ୍ନେ ହରିହର ॥
କବିମନ ଶରଦଭ୍ରେ ତାରକା ନିକର । ପ୍ରାଣଧନ ସମ ରାମ ଭକ୍ତଜନଙ୍କର ॥୬॥

---

ଶ୍ରୀରାମଚନ୍ଦ୍ରଙ୍କ ଗୁଣସମୂହ ଜଗତର କଲ୍ୟାଣକାରକ ଏବଂ ମୁକ୍ତି, ଧନ, ଧର୍ମ ଓ ପରମଧାମର ପ୍ରଦାନକାରୀ ॥ ୧ ॥ ଏହା ଜ୍ଞାନ, ବୈରାଗ୍ୟ ଓ ଯୋଗର ଶିକ୍ଷା-ଦାନ ନିମନ୍ତେ ସଦ୍‌ଗୁରୁ ଏବଂ ସଂସାରରୂପୀ ଭୟଙ୍କର ରୋଗ ନାଶ କରିବା ବିଷୟରେ ଦେବବୈଦ୍ୟ ଅଶ୍ୱିନୀକୁମାରଙ୍କ ପରି । ଶ୍ରୀସୀତାରାମଙ୍କ ପ୍ରତି ପ୍ରେମ ଜନ୍ମାଇବା ଦିଗରେ ଏ ଚରିତ ମାତାପିତା ଏବଂ ସମ୍ପୂର୍ଣ୍ଣ ବ୍ରତ, ଧର୍ମ ଓ ନିୟମର ମୂଳବୀଜ ॥ ୨ ॥ ଏହା ପାପ, ସନ୍ତାପ ଓ ଶୋକର ବିନାଶକାରୀ ଏବଂ ଇହପରଲୋକରେ ପ୍ରିୟ ପାଳନକର୍ତ୍ତା, ବିଚାର [ବିବେକ] ରୂପୀ ରାଜାଙ୍କ ଶୂରବୀର ମନ୍ତ୍ରୀ ଏବଂ ଲୋଭରୂପୀ ଅପାର ସମୁଦ୍ରକୁ ଶୁଖାଇବା ବିଷୟରେ ଅଗସ୍ତ୍ୟ ମୁନି ॥ ୩ ॥ ଭକ୍ତଗଣଙ୍କ ମନ-ବନରେ ବାସ କରୁଥିବା କାମ, କ୍ରୋଧ ଓ କଳିଯୁଗର ପାପ-ରୂପୀ ହସ୍ତିଗଣଙ୍କୁ ମାରିବା ନିମନ୍ତେ ଏହା ସିଂହଶାବକ ସମାନ । ଏହା ଶିବଜୀଙ୍କ ପୂଜ୍ୟ ଓ ପ୍ରିୟତମ ଅତିଥି ଏବଂ ଦାରିଦ୍ର୍ୟରୂପୀ ଦାବାନଳକୁ ଶୀତଳ କରିବା ବିଷୟରେ କାମନା-ପୂରଣକାରୀ ମେଘ ॥ ୪ ॥ ବିଷୟ-ସର୍ପର ବିଷ

ସକଲ ସୁକୃତ ଫଲ ଭୂରି ଭୋଗ ସେ। ଜଗହିତ ନିରୁପଧି ସାଧୁ ଲୋଗ ସେ ॥
ସେବକ ମନ ମାନସ ମରାଲ ସେ । ପାବନ ଗଂଗ ତରଂଗ ମାଲ ସେ ॥୭॥
କୁପଥ କୁତରକ କୁଚାଲି କଲି କପଟ ଦଂଭ ପାଂଷଣ୍ଡ ।
ଦହନ ରାମ ଗୁନଗ୍ରାମ ଜିମି ଇଂଧନ ଅନଲ ପ୍ରଚଂଡ ॥୩୨(କ)॥
ରାମଚରିତ ରାକେସକର ସରିସ ସୁଖଦ ସବ କାହୁ ।
ସଜ୍ଜନ କୁମୁଦ ଚକୋର ଚିତ ହିତ ବିସେଷି ବଡ଼ ଲାହୁ ॥୩୨(ଖ)॥
କୀହ୍ନି ପ୍ରସ୍ନ ଜେହି ଭାଁତି ଭବାନୀ । ଜେହି ବିଧି ସଂକର କହା ବଖାନୀ ॥
ସୋ ସବ ହେତୁ କହବ ମୈଂ ଗାଈ । କଥା ପ୍ରବଂଧ ବିଚିତ୍ର ବନାଈ ॥୧॥

---

ସାର ଭୋଗ ସମ ସର୍ବ ସୁକୃତ ଫଳର । ଭବ ହିତେ ନିରୁପାଧି ଯଥା ସାଧୁନର ॥
ମରାଳ ପ୍ରାୟ ସେବକ ମନ-ମାନସର । ପାବନେ ଯେସନ ଗଙ୍ଗା ତରଙ୍ଗ ନିକର ॥୭॥
କୁତର୍କ କୁମାର୍ଗ କଳି କୁସ୍ୱଭାବ ଦମ୍ଭ କପଟ ପାଷଣ୍ଡ—
ଇନ୍ଧନ ଦହନେ ରାମ ଗୁଣ ଯେସନ୍ତେ ପାବକ ଅତି ପ୍ରଚଣ୍ଡ ॥୩୨ (କ) ॥
ରାମଙ୍କ ଚରିତ ରାକାଶଶିକର- ସମ ସର୍ବ-ସୁଖକାରୀ ।
ତଥାପି ସଜ୍ଜନ- ଚକୋର କୁମୁଦେ ଅତି ହିତ ଲାଭ ଧାରୀ ॥୩୨ (ଖ) ॥
ଯେଉଁ ପ୍ରକାରେ ଭବାନୀ ପ୍ରଶ୍ନ ପଚାରିଲେ । ଯେମନ୍ତ ଭାବେ ଶଙ୍କର ବୁଝାଇ କହିଲେ ॥
ସେହି ସମସ୍ତ କାରଣ କହିବି ବର୍ଣ୍ଣିଣ । ଭାଷା ପ୍ରବନ୍ଧ ଆକାରେ ବିଚିତ୍ର ରଚିଣ ॥୧॥

---

ଫେଡ଼ାଇବା ପାଇଁ ଏହା ମନ୍ତ୍ର ଓ ମହାମଣି । ଲଲାଟରେ ଲିଖିତ ଦୁର୍ଲେପ୍ୟ ମନ୍ଦ ଲିଖନ [ଦୁର୍ଭାଗ୍ୟ]କୁ ଏହା ଲୋପ କରିଦେଇ ପାରେ । ଅଜ୍ଞାନରୂପୀ ଅନ୍ଧକାରକୁ ଦୂର କରିବା ନିମନ୍ତେ ଏହା ସୂର୍ଯ୍ୟକିରଣ ପରି ଏବଂ ସେବକରୂପୀ ଧାନକୁ ପାଳନ କରିବାରେ ମେଘ ସଦୃଶ ॥ ୫ ॥ ମନୋବାଞ୍ଛିତ ବସ୍ତୁ ଦେବା ବିଷୟରେ ଏହା କଳ୍ପବୃକ୍ଷ ସମାନ ଏବଂ ସେବା ଯୋଗେ ହରିହରଙ୍କ ତୁଲ୍ୟ ସୁଲଭ ଓ ସୁଖଦାନକାରୀ । ସୁକବିରୂପୀ ଶରତଋତୁର ମନରୂପୀ ଆକାଶକୁ ସୁଶୋଭିତ କରିବା ବିଷୟରେ ତାରାଗଣ ସମାନ ଓ ଶ୍ରୀରାମଙ୍କ ଭକ୍ତଗଣଙ୍କର ଜୀବନଧନ ॥ ୬ ॥ ଏହା ସକଳ ପୁଣ୍ୟ-ଫଳର ମହା ସାରଭୋଗ । ଜଗତର ନିଷ୍କପଟ [ଯଥାର୍ଥ] ହିତ କରିବାରେ ସାଧୁ-ସନ୍ଥଙ୍କ ସଦୃଶ, ସେବକଙ୍କ ମନରୂପୀ ମାନସରୋବର ନିମନ୍ତେ ହଂସପରି ଏବଂ ପବିତ୍ର କରିବାରେ ଗଙ୍ଗାଙ୍କର ତରଙ୍ଗମାଳା ସମାନ ॥ ୭ ॥ ଦୋହା—ଇନ୍ଧନକୁ ପ୍ରଚଣ୍ଡ ଅଗ୍ନି ଜାଳିଦେଲାପରି ଶ୍ରୀରାମଙ୍କ ଗୁଣରାଶି କୁମାର୍ଗ, କୁତର୍କ ତଥା କଦାଚାର ଏବଂ କଳିଯୁଗର କପଟ, ଦମ୍ଭ ଓ ପ୍ରତାରଣା ଆଦିକୁ ଜାଳିଦିଏ ॥ ୩୨[କ] ॥ ରାମଚରିତ ପୂର୍ଣ୍ଣିମାଚନ୍ଦ୍ରଙ୍କ କିରଣ ପରି ସମସ୍ତଙ୍କୁ ସୁଖଦାନ କରେ । ମାତ୍ର ସଜ୍ଜନରୂପୀ କୁମୁଦ ଓ ଚକୋରଙ୍କ ଚିତ୍ତ ପାଇଁ ଏହା ବିଶେଷ ହିତକାରକ ଓ ମହାନ ଲାଭଦାୟକ ॥ ୩୨[ଖ] ॥ ଚୌପାଈ :—ଯେଉଁ ପ୍ରକାରେ ପାର୍ବତୀ ଶିବଙ୍କୁ ପ୍ରଶ୍ନ କରିଥିଲେ ଏବଂ

ଜେହିଁ ଯହ କଥା ସୁନୀ ନହିଁ ହୋଈ । ଜନି ଆଚରଜୁ କରୈ ସୁନି ସୋଈ ॥
କଥା ଅଲୌକିକ ସୁନହିଁ ଜେ ଜ୍ଞାନୀ । ନହିଁ ଆଚରଜୁ କରହିଁ ଅସ ଜାନୀ ॥୨॥
ରାମ କଥା କୈ ମିତି ଜଗ ନାହୀଁ । ଅସି ପ୍ରତୀତି ତିନ୍ହ କେ ମନ ମାହୀଁ ॥
ନାନା ଭାଁତି ରାମ ଅବତାରା । ରାମାୟନ ସତ କୋଟି ଅପାରା ॥୩॥
କଲପଭେଦ ହରିଚରିତ ସୁହାଏ । ଭାଁତି ଅନେକ ମୁନୀସନ୍ହ ଗାଏ ॥
କରିଅ ନ ସଂସୟ ଅସ ଉର ଆନୀ । ସୁନିଅ କଥା ସାଦର ରତି ମାନୀ ॥୪॥

ରାମ ଅନଂତ ଅନଂତ ଗୁନ ଅମିତ କଥା ବିସ୍ତାର ।
ସୁନି ଆଚରଜୁ ନ ମାନିହହିଁ ଜିନ୍ହକେଁ ବିମଲ ବିଚାର ॥୩୩॥

ଏହି ବିଧି ସବ ସଂସୟ କରି ଦୂରୀ । ସିର ଧରି ଗୁରପଦ ପଂକଜ ଧୂରୀ ॥
ପୁନି ସବହୀ ବିନୱଉଁ କର ଜୋରୀ । କରତ କଥା ଜେହିଁ ଲାଗ ନ ଖୋରୀ ॥୧॥

---

ଶୁଣି ନାହାନ୍ତି ଏକଥା ଯେଉଁ ଲୋକମାନେ । ଅଦ୍ଭୁତ ମଣିବେ ନାହିଁ ଶୁଣନ୍ତେ ସେମାନେ ॥
କଥା ଅତି ଅଲୌକିକ ଶୁଣନ୍ତି ଯେ ଜ୍ଞାନୀ । ଆଶ୍ଚର୍ଯ୍ୟ ସେ ନ କରନ୍ତି ମନେ ଏହା ମାନି ॥୨॥
ରାମକଥାର ଜଗତେ ନାହିଁ କେବେ ଅନ୍ତ । ସେମାନଙ୍କ ମନ ମଧ୍ୟେ ପ୍ରତୀତି ଏମନ୍ତ ॥
ନାନା ପ୍ରକାରେ ହୁଅଇ ରାମ ଅବତାର । ରାମାୟଣ ଶତକୋଟି ଅଟଇ ଅପାର ॥୩॥
କଲ୍ପଭେଦ ଶ୍ରୀହରିଙ୍କ ଚରିତ ପାବନ । ନାନା ରୂପେ ଗାଇଛନ୍ତି ବହୁ ମୁନିଜନ ॥
ଏହା ହୃଦୟେ ବିଚାରି ଶଙ୍କା ନ କରିବେ । ଅନୁରାଗ ମନେ କଥା ସାଦରେ ଶୁଣିବେ ॥୪॥

ରାମ ଅପ୍ରମିତ ଗୁଣ ଅପ୍ରମିତ କଥା ଅମିତ ବିସ୍ତାର ।
ଶୁଣି ନ ମଣିବେ ଆଶ୍ଚର୍ଯ୍ୟ ସଜ୍ଜନ ଯାହାଙ୍କ ଭଲ ବିଚାର ॥୩୩॥

ଏହି ଭାବେ ଦୂର କରି ସଂଶୟ ନିକର । ଶିରେ ଘେନି ରଜ ଗୁରୁ-ପଦ-ପଙ୍କଜର ॥
ପୁଣି ସମସ୍ତଙ୍କୁ କର ଯୋଡି ପ୍ରଣମଇ । କଥା କହନ୍ତେ ଯେପରି ଦୋଷ ନ ଲାଗଇ ॥୧॥

---

ଯେଉଁପରି ଶିବ ବିସ୍ତାରପୂର୍ବକ ତାହାର ଉତ୍ତର ଦେଇଥିଲେ,—ବିଚିତ୍ର କଥା-ରଚନା ମାଧ୍ୟମରେ ତାହା ସବୁ ମୁଁ ଗାଇ କହିବି ॥ ୧ ॥ ଯେଉଁ ବ୍ୟକ୍ତି ପୂର୍ବରୁ ଏହି କଥା ନ ଶୁଣିଛି, ସେ ଏହା ଶୁଣି ଆଶ୍ଚର୍ଯ୍ୟ ପ୍ରକାଶ ନ କରୁ । ଯେଉଁ ଜ୍ଞାନୀ ଜନମାନେ ଏହି ବିଚିତ୍ର କଥାକୁ ଶୁଣନ୍ତି, "ରାମକଥାର କୌଣସି ସୀମା ନାହିଁ [ଅର୍ଥାତ୍ ରାମ କଥା ଅନନ୍ତ]" ଏହା ଜାଣି ସେମାନେ ବିସ୍ମିତ ହୁଅନ୍ତି ନାହିଁ । ସେମାନଙ୍କ ମନରେ ଏପରି ବିଶ୍ୱାସ ଥାଏ । ନାନାପ୍ରକାରେ ଶ୍ରୀରାମଚନ୍ଦ୍ରଜୀ ଅବତାର ଗ୍ରହଣ କରିଅଛନ୍ତି ଏବଂ ରାମାୟଣ ସଂଖ୍ୟା ଶତକୋଟି ଓ ଅପାର ॥ ୨-୩ ॥ କଲ୍ପଭେଦ ଅନୁସାରେ ଶ୍ରୀହରିଙ୍କ ସୁନ୍ଦର ଚରିତାବଳୀକୁ ମୁନୀଶ୍ୱରମାନେ ଅନେକ ପ୍ରକାରେ ଗାଇଅଛନ୍ତି । ହୃଦୟରେ ଏପରି ବିଚାରି କରି ସନ୍ଦେହ କରନ୍ତୁ ନାହିଁ ଏବଂ ଆଦର ଓ ପ୍ରେମ ସହିତ ଏହି କଥା ଶୁଣନ୍ତୁ ॥ ୪ ॥ ଦୋହା—ଶ୍ରୀରାମଚନ୍ଦ୍ରଜୀ ଅନନ୍ତ, ତାଙ୍କ ଗୁଣ ମଧ୍ୟ ଅନନ୍ତ ଏବଂ ତାହାଙ୍କ କଥାସମୂହର ବିସ୍ତାର ମଧ୍ୟ ଅସୀମ । ଅତଏବ ଯେଉଁମାନଙ୍କ

ସାଦର ସିବହି ନାଇ ଅବ ମାଥା । ବରନଉଁ ବିସଦ ରାମ ଗୁନ ଗାଥା ॥
ସଂବତ ସୋରହ ସୈ ଏକତୀସା । କରଉଁ କଥା ହରିପଦ ଧରି ସୀସା ॥୨॥
ନୌମୀ ଭୌମ ବାର ମଧୁ ମାସା । ଅଓ୍ୱଧପୁରୀଁ ୟହ ଚରିତ ପ୍ରକାସା ॥
ଜେହି ଦିନ ରାମଜନମ ଶ୍ରୁତି ଗାଓ୍ୱହିଁ । ତୀରଥ ସକଲ ତହାଁ ଚଲି ଆଓ୍ୱହିଁ ॥୩॥
ଅସୁର ନାଗ ଖଗ ନର ମୁନି ଦେବା । ଆଇ କରହିଁ ରଘୁନାୟକ ସେବା ॥
ଜନ୍ମ ମହୋତ୍ସବ ରଚହିଁ ସୁଜାନା । କରହିଁ ରାମ କଲ କୀରତି ଗାନା ॥୪॥

ମଜ୍ଜହିଁ ସଜ୍ଜନ ବୃଂଦ ବହୁ ପାବନ ସରଜୂ ନୀର ।
ଜପହିଁ ରାମ ଧରି ଧ୍ୟାନ ଉର ସୁଂଦର ସ୍ୟାମ ସରୀର ॥୩୪॥

ଦରସ ପରସ ମଜ୍ଜନ ଅରୁ ପାନା । ହରଇ ପାପ କହ ବେଦ ପୁରାନା ॥
ନଦୀ ପୁନୀତ ଅମିତ ମହିମା ଅତି । କହି ନ ସକଇ ସାରଦା ବିମଲ ମତି ॥୧॥

---

ସାଦରେ ଶିବଙ୍କୁ ଏବେ କରିଣ ପ୍ରଣାମ । ବର୍ଣ୍ଣୁଛି ଉଜ୍ଜ୍ୱଳ ରଘୁପତି ଗୁଣଗ୍ରାମ ॥
ସମ୍ବତ ଷୋହଳ ଶହ ଏକତିରିଶିରେ । କଥା ଆରମ୍ଭଇ ହରି ପଦ ଧରି ଶିରେ ॥୨॥
ଭୌମ ବାସର ନବମୀ ତିଥି ମଧୁ ମାସ । ଅଯୋଧ୍ୟା ପୁରୀରେ କଲେ ଏ କଥା ପ୍ରକାଶ ॥
ଯେଉଁଦିନ ରାମ ଜନ୍ମ ବେଦରେ ବର୍ଣ୍ଣିତ । ତୀର୍ଥ ସବୁ ଅଯୋଧ୍ୟାରେ ହୋନ୍ତି ଏକତ୍ରିତ ॥୩॥
ଦେବତା ଦାନବ ଖଗ ନାଗ ମୁନିନର । ଆସିଣ କରନ୍ତି ସେବା ରଘୁପତିଙ୍କର ॥
ଜନ୍ମ ମହୋତ୍ସବ କରି ସୁବୁଦ୍ଧେ ରଚନ । କରନ୍ତି ପ୍ରଭୁଙ୍କ କଲ କୀରତି ଗାୟନ ॥୪॥

ମିଳି ଯୂଥ ଯୂଥ ସଜ୍ଜନେ ପବିତ୍ର ସରଯୂରେ କରି ସ୍ନାନ ।
ଜପନ୍ତି ଶ୍ରୀରାମ-ମନୋହର ଶ୍ୟାମ-ତନୁ ହୃଦେ କରି ଧ୍ୟାନ ॥୩୪॥

ଦର୍ଶନ ସ୍ପର୍ଶନ ସ୍ନାନ ଆବର ପାନରେ । କହନ୍ତି ବେଦ ପୁରାଣ ପାପ ଅପହରେ ॥
ନଦୀ ପବିତ୍ର ମହିମା ଅପ୍ରମିତ ଅତି । ନିର୍ମଳ ମତି ଶାରଦା କହି ନ ପାରନ୍ତି ॥୧॥

---

ବିସ୍ତରବୁଦ୍ଧି ନିର୍ମଳ, ସେମାନେ ଏହି କଥାକୁ ଶୁଣି ଆଶ୍ଚର୍ଯ୍ୟ ପ୍ରକାଶ କରିବେ ନାହିଁ ॥୩୩॥
ଚୌପାଇ—ଏହିପରି ସମସ୍ତ ସନ୍ଦେହକୁ ଦୂର କରି ଓ 'ଶ୍ରୀଗୁରୁଙ୍କ ଚରଣ-କମଳ-ରଜକୁ ମସ୍ତକରେ ଧାରଣ କରି ମୁଁ ପୁନଃ ହାତଯୋଡ଼ି ସମସ୍ତଙ୍କୁ ବିନତି କରୁଛି । ଫଳତଃ କଥାର ରଚନାକୁ କୌଣସି ଦୋଷ ସ୍ପର୍ଶ କରିପାରିବ ନାହିଁ ବୋଲି ମୋ'ର ଆଶା ॥୧॥ ବର୍ତ୍ତମାନ ମୁଁ ଆଦରପୂର୍ବକ ଶ୍ରୀ ଶିବଜୀଙ୍କୁ ମୁଣ୍ଡ ନୁଆଁଇ ଶ୍ରୀରାମଚନ୍ଦ୍ରଙ୍କ ଗୁଣବିଷୟକ ନିର୍ମଳ କଥା କହୁଛି । ଶ୍ରୀହରିଙ୍କ ଚରଣରେ ଶିର ନୁଆଁଇ 'ସଂବତ୍ ୧୬୩୧ (ସନ ୧୫୭୪ ମସିହା)ରେ ଏହି କଥା ଆରମ୍ଭ କରୁଛି ॥୨॥ ଚୈତ୍ରମାସର ନବମୀ ତିଥି ମଙ୍ଗଳବାର ଦିନ ଶ୍ରୀ ଅଯୋଧ୍ୟାଠାରେ ସେହି 'ଚରିତ' ଆବିର୍ଭୂତ ହୋଇଥିଲେ । ବେଦ କହେ—ଯେଉଁଦିନ ଶ୍ରୀରାମଚନ୍ଦ୍ରଙ୍କ ଜନ୍ମତିଥି ପାଳିତ ହୁଏ, ସେହିଦିନ ସମସ୍ତ ତୀର୍ଥ ସେହି ଅଯୋଧ୍ୟାକୁ ଚାଲି ଆସନ୍ତି ॥ ୩ ॥ ଅସୁର, ନାଗ, ପକ୍ଷୀ, ମନୁଷ୍ୟ, ମୁନି ଓ ଦେବତା ସମସ୍ତେ ଅଯୋଧ୍ୟାକୁ ଆସି ଶ୍ରୀ ରଘୁନାଥଜୀଙ୍କ ସେବା କରନ୍ତି । ବୁଦ୍ଧିମାନ୍ ଲୋକମାନେ

ରାମ ଧାମଦା ପୁରୀ ସୁହାବନ । ଲୋକ ସମସ୍ତ ବିଦିତ ଅତି ପାବନ ॥
ଚାରି ଖାନି ଜଗ ଜୀବ ଅପାରା । ଅୱଧ ତଜେଁ ତନୁ ନହିଁ ସଂସାରା ॥୨॥
ସବ ବିଧି ପୁରୀ ମନୋହର ଜାନୀ । ସକଲ ସିଦ୍ଧିପ୍ରଦ ମଂଗଲ ଖାନୀ ॥
ବିମଲ କଥା କର କୀହ୍ନ ଅରଂଭା । ସୁନତ ନସାହିଁ କାମ ମଦ ଦଂଭା ॥୩॥
ରାମଚରିତମାନସ ଏହି ନାମା । ସୁନତ ଶ୍ରବନ ପାଇଅ ବିଶ୍ରାମା ॥
ମନ କରି ବିଷୟ ଅନଲ ବନ ଜରଈ । ହୋଇ ସୁଖୀ ଜୌଁ ଏହିଁ ସର ପରଈ ॥୪॥
ରାମଚରିତମାନସ ମୁନି ଭାବନ । ବିରଚେଉ ସଂଭୁ ସୁହାବନ ପାବନ ॥
ତ୍ରିବିଧ ଦୋଷ ଦୁଖ ଦାରିଦ ଦାବନ । କଲି କୁଚାଲି କୁଲି କଲୁଷ ନସାବନ ॥୫॥

---

ରାମ ଧାମ ପ୍ରଦାୟିନୀ ପୁରୀ ସୁଶୋଭନା । ସମସ୍ତ ଲୋକ ବିଦିତ ପରମ ପାବନୀ ॥
ଜଗତେ ଅପରିମିତ ଜୀବ ଚାରି ଜାତି । ଅବଧେ ତନୁ ତେଜନ୍ତେ ମୁକ୍ତ ହୋଇଯାନ୍ତି ॥୨॥
ସବୁ ପ୍ରକାରେ ପୁରୀକୁ ଜାଣି ମନୋହର । ସର୍ବ ସିଦ୍ଧି-ପ୍ରଦାୟିନୀ ମଙ୍ଗଳ-ଆକର ॥
ସୁବିମଳ କଥା ଏଥି କରଇ ଆରମ୍ଭ । ଶୁଣନ୍ତେ ନାଶ ଲଭନ୍ତି କାମ ମଦ ଦମ୍ଭ ॥୩॥
ରାମ ଚରିତ ମାନସ ଏ କଥାର ନାମ । ଶୁଣନ୍ତେ ଶ୍ରବଣେ ଲାଭ ହୁଅଇ ବିଶ୍ରାମ ॥
ମନ-ମାତଙ୍ଗ ବିଷୟ-ଦାବାନଳେ ଦହେ । ସୁଖୀ ହୁଅଇ ଯେ ଆସି ଏହି ସରେ ରହେ ॥୪॥
ରାମ ଚରିତ ମାନସ ମୁନି ଆହ୍ଲାଦନ । ବିରଚିଲେ ଶମ୍ଭୁ ଅତି ରୁଚିର ପାବନ ॥
ତ୍ରିବିଧ ଦୋଷ ଦାରିଦ୍ର୍ୟ ଦୁଃଖ ବିନାଶନ । କଳି କୁଚାଳି ସକଳ କଳୁଷ-ଧ୍ୱଂସନ ॥୫॥

---

ଜନ୍ମ-ମହୋତ୍ସବ ପାଳନ କରନ୍ତି ଏବଂ ଶ୍ରୀରାମଙ୍କ ସୁନ୍ଦର କୀର୍ତ୍ତିଗାନ କରନ୍ତି ॥ ୪ ॥

ଦୋହା.- ସଜ୍ଜନଗଣ ସେହିନ ସରଯୂର ପବିତ୍ର ଜଳରେ ସ୍ନାନ କରନ୍ତି ଏବଂ ହୃଦୟରେ ସୁନ୍ଦର ଶ୍ୟାମଶରୀର ଶ୍ରୀ ରଘୁନାଥଜୀଙ୍କ ଧ୍ୟାନ କରି ତାଙ୍କ ନାମ ଜପ କରନ୍ତି ॥ ୩୪ ॥

ଚୌପାଈ -ବେଦ ପୁରାଣ କହନ୍ତି—ସରଯୂର ଦର୍ଶନ, ସ୍ପର୍ଶ, ସ୍ନାନ ଓ ଜଳପାନ ପାପରାଶି କ୍ଷୟ କରେ । ଏହି ନଦୀ ଅତି ପବିତ୍ର, ଏହାର ମହିମା ଅନନ୍ତ । ବିମଳମତି ସରସ୍ୱତୀ ମଧ୍ୟ ଏହାର ମାହାତ୍ମ୍ୟ କହିପାରନ୍ତି ନାହିଁ ॥ ୧ ॥ ଏହି ଶୋଭାମୟୀ ଅଯୋଧ୍ୟାପୁରୀ ଭକ୍ତଙ୍କୁ ଶ୍ରୀରାମଚନ୍ଦ୍ରଙ୍କ ପରମଧାମ ପ୍ରଦାନ କରେ । ସମସ୍ତ ଲୋକରେ ଏହା ପ୍ରସିଦ୍ଧ ଓ ଅତ୍ୟନ୍ତ ପବିତ୍ର । ଜଗତରେ ଚାରି ଜାତି (ଅଣ୍ଡଜ, ସ୍ୱେଦଜ, ଉଦ୍ଭିଜ୍ଜ ଓ ଜରାୟୁଜ)ର ଅସଂଖ୍ୟ ପ୍ରାଣୀ ଅଛନ୍ତି । ଏମାନଙ୍କ ମଧ୍ୟରୁ ଯେ କୌଣସି ଜାତିର ଜୀବ ମଧ୍ୟ ଯଦି ଅଯୋଧ୍ୟାରେ ଶରୀର ତ୍ୟାଗ କରେ, ସେ ପୁଣି ସଂସାରରେ ଜନ୍ମଗ୍ରହଣ କରେ ନାହିଁ । (ଜନ୍ମମୃତ୍ୟୁର ପରିକ୍ରମାରୁ ମୁକ୍ତ ପାଇ ଭଗବାନଙ୍କ ପରମଧାମରେ ବାସ କରେ) ॥ ୨ ॥ ଏହି ଅଯୋଧ୍ୟାପୁରୀକୁ ସକଳ ପ୍ରକାରେ ମନୋହର, ସମସ୍ତ ସିଦ୍ଧିର ଦାତ୍ରୀ ଓ କଲ୍ୟାଣର ଖଣି ମନେକରି ମୁଁ ଏହି ନିର୍ମଳ କଥା ଆରମ୍ଭ କଲି । ଏହା ଶୁଣିବା ଦ୍ୱାରା କାମ, ମଦ ଓ ଦମ୍ଭ ସବୁ ନଷ୍ଟ ହୋଇଯାଏ ॥ ୩ ॥ ଏହାର ନାମ "ରାମଚରିତ ମାନସ" । କର୍ଣ୍ଣରେ ଏହାର ଶ୍ରବଣମାତ୍ରେ ଶାନ୍ତି ମିଳେ । ମନରୂପୀ ହସ୍ତୀ ବିଷୟରୂପୀ

ରଚି ମହେସ ନିଜ ମାନସ ରାଖା । ପାଇ ସୁସମଉ ସିବା ସନ ଭାଷା ॥
ତାତେଁ ରାମଚରିତମାନସ ବର । ଧରେଉ ନାମ ହିଅଁ ହେରି ହରଷି ହର ॥୬॥
କହଉଁ କଥା ସୋଇ ସୁଖଦ ସୁହାଈ । ସାଦର ସୁନହୁ ସୁଜନ ମନ ଲାଈ ॥୭॥

ଜସ ମାନସ ଜେହିଁ ବିଧି ଭୟଉ ଜଗ ପ୍ରଚାର ଜେହିଁ ହେତୁ ।
ଅବ ସୋଇ କହଉଁ ପ୍ରସଂଗ ସବ ସୁମିରି ଉମା ବୃଷକେତୁ ॥୩୫॥

ସଂଭୁ ପ୍ରସାଦ ସୁମତି ହିଅଁ ହୁଲସୀ । ରାମଚରିତମାନସ କବି ତୁଲସୀ ॥
କରଇ ମନୋହର ମତି ଅନୁହାରୀ । ସୁଜନ ସୁଚିତ ସୁନି ଲେହୁଁ ସୁଧାରୀ ॥୧॥
ସୁମତି ଭୂମି ଥଲ ହୃଦୟ ଅଗାଧୂ । ବେଦ ପୁରାନ ଉଦଧି ଘନ ସାଧୂ ॥
ବରଷହିଁ ରାମ ସୁଜସ ବର ବାରୀ । ମଧୁର ମନୋହର ମଂଗଲକାରୀ ॥୨॥

---

ରଚି ମହେଶ୍ୱର ନିଜ ମାନସେ ରଖିଲେ । ସୁସମୟ ପାଇ ଉମା ସମ୍ମୁଖେ ଭାଷିଲେ ॥
ତେଣୁ ଶ୍ରୀରାମ ଚରିତ ମାନସ ସୁନ୍ଦର । ହରଷେ ରଖିଲେ ନାମ ହୃଦେ ହେଜି ହର ॥୬॥
ସେ ରମ୍ୟ ସୁଖଦ କଥା ବର୍ଣ୍ଣନ ମୁଁ କରେ । ଶୁଣନ୍ତୁ ମନ ଲଗାଇ ସୁଜନେ ସାଦରେ ॥୭॥

ଯେମନ୍ତ ମାନସ ହେଲା ଯେଉଁ ଭାବେ ଲୋକେ ପ୍ରଚାର ଯେ ହେତୁ ।
ଏବେ ସବୁ ସେହି ପ୍ରସଙ୍ଗ ଭାଷଇ ସ୍ମରି ଉମା ବୃଷକେତୁ ॥୩୫॥

ଶମ୍ଭୁ ପ୍ରସାଦେ ହୃଦୟେ ସୁମତି ଉଲ୍ଲସି । ରାମ ଚରିତ ମାନସ କବି ଯେ ତୁଳସୀ ॥
କରୁଛି ରୁଚିର ମତି ଅନୁସାରେ ଗୁଣି । ସୁଜନେ ମାର୍ଜି ଦେବେ ସୁଚିତ୍ତରେ ଶୁଣି ॥୧॥
ସୁମତି ଭୂମି ହୃଦୟ ଗମ୍ଭୀର ବିବର । ବେଦ ପୁରାଣ ଜଳଧି ସାଧୁ ଜଳଧର ॥
ବର୍ଷନ୍ତି ରାମଚନ୍ଦ୍ର ସୁଯଶ ସୁବାରି । ମଧୁର ମନୋହର ଯେ ସୁମଙ୍ଗଳକାରୀ ॥୨॥

---

ଦାବାନଳରେ ଦଗ୍ଧ ହେଉଅଛି । ସେ ଯଦି ରାମଚରିତମାନସ ରୂପୀ ସରୋବରରେ ଆସି ପଡ଼େ, ତେବେ ସୁଖ ଓ ଶାନ୍ତି ପାଇପାରିବ ॥୪॥ ଏହି ରାମଚରିତମାନସ ମୁନିଗଣଙ୍କର ପ୍ରିୟ । ଏହି ଶୋଭାୟମାନ ଓ ପବିତ୍ର "ମାନସ" ରଚନା କରିଥିଲେ ଶିବଜୀ । ଏହା ତ୍ରିବିଧ (ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ) ଦୋଷ, ଦୁଃଖ ଓ ଦାରିଦ୍ର୍ୟର ବିନାଶକାରୀ ତଥା କଳିଯୁଗର କୁରୀତିର ଓ ସମସ୍ତ ପାପର କ୍ଷୟକାରୀ ॥୫॥ ଶ୍ରୀ ମହାଦେବଜୀ ଏହା ରଚନା କରି ତାଙ୍କ ମନରେ ରଖିଥିଲେ ଏବଂ ସୁଅବସର ପାଇ ପାର୍ବତୀଙ୍କୁ କହିଲେ । ଆପଣା ହୃଦୟରେ ଏହି ଚରିତର ମାହାତ୍ମ୍ୟ ଦର୍ଶନରେ ପ୍ରସନ୍ନ ହୋଇ ସେ ଏହାକୁ ସୁନ୍ଦର "ଶ୍ରୀରାମଚରିତମାନସ" ନାମରେ ଅଭିହିତ କଲେ ॥୬॥ ମୁଁ ସେହି ସୁଖଦାୟିନୀ ଶୋଭାୟମାନ ରାମକଥାକୁ କହୁଛି, ହେ ସଜ୍ଜନବୃନ୍ଦ ! ଆଦରପୂର୍ବକ ମନଧ୍ୟାନ ଦେଇ ଏହା ଶୁଣନ୍ତୁ ॥୭॥ ଦୋହା.-ଏହି ରାମଚରିତମାନସ ଯେଉଁ ପ୍ରକାର, ଯେଉଁପରି ରଚିତ ହୋଇଛି ଏବଂ ଯେଉଁ କାରଣରୁ ଜଗତରେ ଏହାର ପ୍ରଚାର ହେଲା, ସେହି ସବୁ କଥା ମୁଁ ବର୍ତ୍ତମାନ ଉମାମହେଶ୍ୱରଙ୍କ ନାମ ସ୍ମରଣପୂର୍ବକ କହୁଅଛି । ॥୩୫॥ ଚୌପାଇ .-ଶ୍ରୀ ଶିବଜୀଙ୍କ କୃପାରୁ ହୃଦୟରେ ସୁନ୍ଦର ବୁଦ୍ଧିର ବିକାଶ ଘଟିଲା,

ଲୀଲ ସଗୁନ ଜୋ କହହିଁ ବଖାନୀ । ସୋଇ ସ୍ୱଚ୍ଛତା କରଇ ମଲହାନୀ ॥
ପ୍ରେମ ଭଗତି ଜୋ ବରନି ନ ଜାଈ । ସୋଇ ମଧୁରତା ସୁସୀତଲତାଈ ॥୩॥
ସୋ ଜଲ ସୁକୃତ ସାଲି ହିତ ହୋଈ । ରାମ ଭଗତ ଜନ ଜୀବନ ସୋଈ ॥
ମେଧା ମହି ଗତ ସୋ ଜଲ ପାବନ । ସକିଲି ଶ୍ରବନ ମଗ ଚଲେଉ ସୁହାବନ ॥୪॥
ଭରେଉ ସୁମାନସ ସୁଥଲ ଥିରାନା । ସୁଖଦ ସୀତ ରୁଚି ଚାରୁ ଚିରାନା ॥୫॥
ସୁଠି ସୁଂଦର ସଂବାଦ ବର ବିରଚେ ବୁଦ୍ଧି ବିଚାରି ।
ତେଇ ଏହିଁ ପାବନ ସୁଭଗ ସର ଘାଟ ମନୋହର ଚାରି ॥୩୬॥

---

ସଗୁଣ ଲୀଳା ବିସ୍ତାରି କହନ୍ତି ଯେବଣ । ସେ ସ୍ୱଚ୍ଛତା ଗୁଣ ମଳ କରେ ନିବାରଣ ॥
ଯେଉଁ ପ୍ରେମଭକ୍ତି କଥା ବର୍ଣ୍ଣିତ ନୁହଇ । ମଧୁରତା ଶୀତଳତା ଗୁଣ ସେ ଅଟଇ ॥୩॥
ସେ ଜଳ ହିତକାରକ ସୁକୃତ-ଧାନର । ଜୀବନ ସଦୃଶ ରାମଭକ୍ତ ଜନଙ୍କର ॥
ମେଧା-ମହୀରେ ପଡ଼ିଣ ପବିତ୍ର ସେ ଜଳ । ଏକତ୍ର ବହି ଚଳିଲା ଶ୍ରୁତି ପଥେ କଳ ॥୪॥
ପୂରି ସୁମାନସ-ଗର୍ତ୍ତେ ହୋଇ ସ୍ଥିର ତର । ସୁରୁଚି ଶୀତେ ହୋଇଲା ସୁଖଦ ସେ ନୀର ॥୫॥
ରଚନ୍ତି ଯେ ଅତି ରୁଚିର ସମ୍ବାଦ ନିଜ ବୁଦ୍ଧିରେ ବିଚାରି ।
ସେ ଏହି ପବିତ୍ର ସୁବିମଳ ସରେ ଘାଟ ମନୋହର ଚାରି ॥୩୬॥

---

ଯାହା ଫଳରେ ଏହି ତୁଳସୀଦାସ 'ଶ୍ରୀରାମଚରିତମାନସ'ର କବି ହୋଇ ପାରିଲି । ଆପଣା ବୁଦ୍ଧି ଅନୁସାରେ ତ ସେ ଏହାକୁ ମନୋହର କରିବାକୁ ଚେଷ୍ଟା କରିଅଛି । ତଥାପି ହେ ସଜ୍ଜନଗଣ ! ସୁନ୍ଦର ଚିତ୍ତରେ ଶୁଣି ଏହାକୁ ଆପଣମାନେ ସୁଧାରି ନିଅନ୍ତୁ ॥ ୧ ॥ ସୁନ୍ଦର (ସାତ୍ତ୍ୱିକୀ) ବୁଦ୍ଧି ଭୂମି, ହୃଦୟହିଁ ତହିଁରେ ଗମ୍ଭୀର ସ୍ଥଳୀ, ବେଦପୁରାଣ ସମୁଦ୍ର ଓ ସାଧୁସନ୍ଥ ମେଘ । ସେମାନେ (ସାଧୁରୂପୀ ମେଘମାନେ) ଶ୍ରୀରାମ-ସୁଯଶରୂପୀ ସୁନ୍ଦର, ମନୋହର ଓ ମଙ୍ଗଳକାରୀ ଜଳ ବର୍ଷା କରନ୍ତି ॥ ୨ ॥ ବିସ୍ତାରପୂର୍ବକ ସଗୁଣ ଲୀଳାର ଯେଉଁ ବର୍ଣ୍ଣନା ସେମାନେ କରନ୍ତି, ତାହା ରାମ-ସୁଯଶ ରୂପୀ ଜଳର ନିର୍ମଳତା ଏବଂ ତାହାହିଁ ମଳ ନାଶ କରିଥାଏ । ଯେଉଁ ପ୍ରେମଭକ୍ତିର ବର୍ଣ୍ଣନା କରାଯାଇପାରେ ନାହିଁ, ତାହାହିଁ ହେଉଛି ଏହି ଜଳର ମଧୁରତା ଓ ଶୀତଳତା ॥ ୩ ॥ ସେହି (ରାମସୁଯଶରୂପୀ) ଜଳ ସତ୍କର୍ମରୂପୀ ଧାନ ନିମନ୍ତେ ହିତକର ଏବଂ ଶ୍ରୀରାମଙ୍କ ଭକ୍ତବୃନ୍ଦଙ୍କର ତ ସତରେ ଜୀବନ । ସେହି ପବିତ୍ର ଜଳ ବୁଦ୍ଧିରୂପୀ ପୃଥିବୀ ଉପରେ ପଡ଼ିଲା ଏବଂ ଏକତ୍ରିତ ହୋଇ ସୁନ୍ଦର କର୍ଣ୍ଣପଥରେ ପ୍ରବାହିତ ହେଲା ଏବଂ ଶେଷରେ ମାନସ (ହୃଦୟ) ରୂପୀ ଶ୍ରେଷ୍ଠ ଗହ୍ୱରରେ ପରିପୂର୍ଣ୍ଣ ହୋଇ ସେହିଠାରେ ସ୍ଥିର ହୋଇଗଲା । ସେହିଠାରେ ତାହା ପୁରାତନ ହୋଇ ସୁନ୍ଦର, ରୁଚିକର, ଶୀତଳ ଓ ସୁଖଦାୟକ ହୋଇଗଲା ॥ ୪-୫ ॥ ଦୋହା -ଆପଣା ବିବେକ ବୁଦ୍ଧିରେ ବିଚାର କରି ଏହି କଥାରେ ମୁଁ ଚାରିଗୋଟି ଅତ୍ୟନ୍ତ ସୁନ୍ଦର ଓ ଉତ୍ତମ ଶ୍ରେଷ୍ଠ-ସଂବାଦ (ଭୁଶୁଣ୍ଡି-ଗରୁଡ଼, ଶିବପାର୍ବତୀ, ଯାଜ୍ଞବଲ୍କ୍ୟ-ଭରଦ୍ୱାଜ ଏବଂ ତୁଳସୀଦାସ-ସନ୍ଥ)ର

ସପ୍ତ ପ୍ରବଂଧ ସୁଭଗ ସୋପାନା । ଜ୍ଞାନ ନୟନ ନିରଖତ ମନ ମାନା ॥
ରଘୁପତି ମହିମା ଅଗୁନ ଅବାଧା । ବରନବ ସୋଇ ବର ବାରି ଅଗାଧା ॥୧॥
ରାମ ସୀୟ ଜସ ସଲିଲ ସୁଧାସମ । ଉପମା ବୀଚି ବିଲାସ ମନୋରମ ॥
ପୁରଇନ ସଘନ ଚାରୁ ଚୌପାଈ । ଜୁଗୁତି ମଂଜୁ ମନି ସୀପ ସୁହାଈ ॥୨॥
ଛଂଦ ସୋରଠା ସୁଂଦର ଦୋହା । ସୋଇ ବହୁରଂଗ କମଲକୁଲ ସୋହା ॥
ଅରଥ ଅନୂପ ସୁଭାବ ସୁଭାସା । ସୋଇ ପରାଗ ମକରଂଦ ସୁବାସା ॥୩॥
ସୁକୃତ ପୁଂଜ ମଂଜୁଲ ଅଲିମାଲା । ଜ୍ଞାନ ବିରାଗ ବିଚାର ମରାଲା ॥
ଧୁନି ଅବରେବ କବିତ ଗୁନ ଜାତୀ । ମୀନ ମନୋହର ତେ ବହୁଭାଁତୀ ॥୪॥
ଅରଥ ଧରମ କାମାଦିକ ଚାରୀ । କହବ ଜ୍ଞାନ ବିଜ୍ଞାନ ବିଚାରୀ ॥
ନବରସ ଜପତପ ଜୋଗ ବିରାଗା । ତେ ସବ ଜଲଚର ଚାରୁ ତଡ଼ାଗା ॥୫॥

---

ସପ୍ତକାଣ୍ଡ ଶୁଭ୍ର ସ୍ୱଚ୍ଛ ସୋପାନ ପରାଏ । ଜ୍ଞାନ-ନେତ୍ରେ ନିରେଖନ୍ତେ ମନ ମାନିଯାଏ ॥
ମହିମା ରଘୁପତିଙ୍କ ଗୁଣ-ବାଧାତୀତ । ଜଳ ଅଗାଧତା ରୂପେ ତାହା ହିଁ କଥିତ ॥୧॥
ରାମ ସୀତାଙ୍କ ସୁଯଶ ସୁଧା ସମ ନୀର । ଉପମା ତହିଁ ତରଙ୍ଗ ବିଳାସ ରୁଚିର ॥
ଚୌପଦୀ ସଘନ ପଦ୍ମପତ୍ର ମନୋରମ । ମଞ୍ଜୁ ଯୁକ୍ତି ଶୋଭା ପାଏ ମଣି ସୀପ ସମ ॥୨॥
ସୁନ୍ଦର ଛନ୍ଦ ଦୋହାଦି ସ୍ଥାନେ ସ୍ଥାନେ ସ୍ଥିତ । ବିଭିନ୍ନ ରଙ୍ଗ କମଳ ପ୍ରାୟେ ସୁଶୋଭିତ ॥
ଅର୍ଥ ଅନୁପମ ଭାବ ଭାଷା ଯେ ସରସ । ସେ ପରାଗ ମକରନ୍ଦ ସୌରଭ ସଦୃଶ ॥୩॥
ପୁଣ୍ୟ ସମୂହ ଅଟନ୍ତି ମଞ୍ଜୁ ଅଳିମାଳ । ଜ୍ଞାନ ବୈରାଗ୍ୟ ବିଚାର ଯେସନେ ମରାଳ ॥
କବିତାର ଗୁଣଜାତ ଧ୍ୱନି ବକ୍ର ଗତି । ନାନାବିଧ ମନୋହର ମୀନ ଏ ଅଟନ୍ତି ॥୪॥
ଅର୍ଥ ଧର୍ମ କାମ ମୋକ୍ଷ ଚତୁର୍ବର୍ଗ ଫଳ । ବିଚାର ନିର୍ଣ୍ଣୀତ ଜ୍ଞାନ ବିଜ୍ଞାନ ସକଳ ॥
ନବରସ ଜପଯୋଗ ବୈରାଗ୍ୟ ଆବର । ଏ ସମସ୍ତେ ଜଳଚର ରୁଚିରୁ ତଡ଼ାଗର ॥୫॥

---

ରଚନା ସନ୍ନିବିଷ୍ଟ କରିଅଛି । ଏହି ପବିତ୍ର ଓ ସୁନ୍ଦର ସରୋବରରେ ଉକ୍ତ ଚାରିଗୋଟି ସଂବାଦ ଚାରିଗୋଟି ମନୋହର ଘାଟ ॥ ୩୬ ॥ ଚୌପାଈ :-ସାତଗୋଟି କାଣ୍ଡ ଏହି ମାନସ-ସରୋବରର ସାତଗୋଟି ସୁନ୍ଦର ସୋପାନ, ସେଗୁଡ଼ିକୁ ଜ୍ଞାନ-ନେତ୍ରରେ ଦେଖିବାମାତ୍ରେ ମନ ପ୍ରସନ୍ନ ହୋଇଯାଏ । ଶ୍ରୀରଘୁନାଥଙ୍କ ନିର୍ଗୁଣ (ପ୍ରାକୃତିକ ଗୁଣ ସମୂହରୁ ଅତୀତ) ଓ ନିର୍ବାଧ (ଏକରସ) ମାହାତ୍ମ୍ୟର ଯେଉଁ ବର୍ଣ୍ଣନା କରାଯିବ, ତାହାହିଁ ହେଉଛି ଏହି ସୁନ୍ଦର ଜଳର ଅତଳ ଗଭୀରତା ॥ ୧ ॥ ଶ୍ରୀରାମଚନ୍ଦ୍ର ଓ ଶ୍ରୀସୀତାଙ୍କ ଯଶ ଅମୃତତୁଲ୍ୟ ଜଳ । ଏଥିରେ ଯେଉଁ ଉପମାରାଶି ଦିଆଯାଇଅଛି, ତାହା ତରଙ୍ଗ-ରାଶିର ମନୋହର ବିଳାସ, ସୁନ୍ଦର ଚୌପାଈ ଗୁଡ଼ିକ ଏଥିରେ ଘନଭାବରେ ବିସ୍ତୃତ କମଳିନୀ ଓ କବିତାର ଯୁକ୍ତିଗୁଡ଼ିକ ସୁନ୍ଦରମଣି (ମୋତି)-ଉତ୍ପାଦନକାରିଣୀ ସୁନ୍ଦର ଶାମୁକା ॥ ୨ ॥ ଏଥିରେ ଥିବା ସୁନ୍ଦର ଛନ୍ଦ, ସୋରଠା ଏବଂ ଦୋହାଗୁଡ଼ିକ ବହୁରଙ୍ଗୀ କମଳ-ସମୂହ ସମାନ ସୁଶୋଭିତ । ଅନୁପମ ଅର୍ଥ, ଉଚ୍ଚଭାବ ଓ ସୁନ୍ଦର ଭାଷାହିଁ

ସୁକୃତୀ ସାଧୁ ନାମ ଗୁନ ଗାନା । ତେ ବିଚିତ୍ର ଜଲବିହଗ ସମାନା ॥
ସଂତସଭା ଚହୁଁ ଦିସି ଅଁୱରାଈ । ଶ୍ରଦ୍ଧା ରିତୁ ବସଂତ ସମ ଗାଈ ॥୬॥
ଭଗତି ନିରୂପନ ବିବିଧ ବିଧାନା । ଛମା ଦୟା ଦମ ଲତା ବିତାନା ॥
ସମ ଜମ ନିୟମ ଫୂଲ ଫଲ ଜ୍ଞାନା । ହରିପଦ ରତି ରସ ବେଦ ବଖାନା ॥୭॥
ଔରଉ କଥା ଅନେକ ପ୍ରସଂଗା । ତେଇ ସୁକ ପିକ ବହୁବରନ ବିହଂଗା ॥୮॥
ପୁଲକ ବାଟିକା ବାଗ ବନ ସୁଖ ସୁବିହଂଗ ବିହାରୁ ।
ମାଲୀ ସୁମନ ସନେହ ଜଲ ସୀଁଚତ ଲୋଚନ ଚାରୁ ॥୩୭॥

---

ସୁକୃତବନ୍ତ ସାଧୁଙ୍କ ନାମ ଗୁଣ ଗାନ । ସେ ସବୁ ବିଚିତ୍ର ଜଲ ବିହଙ୍ଗ ସମାନ ॥
ସନ୍ଥ ସଭା ଆମ୍ରବନ ଚତୁର୍ଦ୍ଦିଗ ସ୍ଥିତ । ଶରଧା ବସନ୍ତ ଋତୁ ସଦୃଶ କଥିତ ॥୬॥
ଭକ୍ତି ନିରୂପଣ ଏଥି ନାନା ବିଧାନରେ । କ୍ଷମା ଦୟା ଲତା ଦମ ଲେଖା ବିତାନରେ ॥
ସଂଯମ ନିୟମ ଫୁଲ ଜ୍ଞାନ ଫଲ ସମ । ହରିପଦ ପ୍ରୀତି ରସ ବଖାଣେ ନିଗମ ॥୭॥
ଆଉ ଯେ ଅନ୍ୟାନ୍ୟ କଥା ଅନେକ ପ୍ରସଙ୍ଗ । ସେସବୁ ଶୁକ ପିକାଦି ଖଗ ବହୁରଙ୍ଗ ॥୮॥
ପୁଲକ ଉଦ୍ୟାନ-ଉପବନ ବନ ସୁଖ ବିହଙ୍ଗ ବିହାରେ ।
ସିଞ୍ଚଇ ସୁମନ ମାଲୀ, ସୁନୟନ-ଘଟ ସ୍ନେହ-ସଲିଲରେ ॥୩୭॥

---

ପରାଗ, ମକରନ୍ଦ ଓ ସୁଗନ୍ଧ ॥୩॥ ସତ୍କର୍ମ (ପୁଣ୍ୟ)-ପୁଞ୍ଜ ସୁନ୍ଦର ଭ୍ରମରମାଲା । ଜ୍ଞାନ, ବୈରାଗ୍ୟ ଓ ବିଚାର ହଂସ । କବିତାର ଧ୍ୱନି, ବକ୍ରୋକ୍ତି, ଗୁଣ ଓ ଜାତି ଏହି ମାନସ-ସରୋବର-ନିବାସୀ ବିବିଧ ମନୋହର ମୀନ ॥ ୪ ॥ ଅର୍ଥ, ଧର୍ମ, କାମ ଓ ମୋକ୍ଷ—ଏ ଚାରି ପୁରୁଷାର୍ଥ, ଜ୍ଞାନବିଜ୍ଞାନ ବିଚାର-ଉକ୍ତି, କାବ୍ୟର ନବରସ, ଜପ, ତପ, ଯୋଗ ଓ ବୈରାଗ୍ୟ ପ୍ରସଙ୍ଗ—ଆଦି ବିଷୟ ଏହି ସରୋବରର ସୁନ୍ଦର ଜଲଚର ଜୀବ ॥ ୫ ॥ ପୁଣ୍ୟାତ୍ମା ଜନ, ସାଧୁ-ସମାଜ ଓ ଶ୍ରୀରାମ ନାମର ଗୁଣଗାନ ଏହାର ବିଚିତ୍ର ଜଲଚର ପକ୍ଷୀ ବୃନ୍ଦ, ସନ୍ଥମାନଙ୍କର ସଭା ଏହି ସରୋବରର ଚାରି ଦିଗରେ ଥିବା ଆମ୍ବତୋଟା ଏବଂ ଶ୍ରଦ୍ଧା ବସନ୍ତଋତୁ ବୋଲି ଏଥିରେ କଥିତ ହୋଇଅଛି ॥ ୬ ॥ ନାନା ପ୍ରକାରରେ ଭକ୍ତିର ନିରୂପଣ ଏବଂ କ୍ଷମା, ଦୟା ତଥା ଦମ (ଇନ୍ଦ୍ରିୟନିଗ୍ରହ) ଲତାସମୂହର ବିତାନ । ଶମ (ମନର ନିଗ୍ରହ), ଯମ (ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ), ନିୟମ (ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଈଶ୍ୱର ପ୍ରଣିଧାନ) ହିଁ ସେହି ତୋଟାର ଫୁଲ ଓ ଜ୍ଞାନ ଫଲ ଏବଂ ଶ୍ରୀହରିଙ୍କ ଚରଣରେ ପ୍ରେମ ଭକ୍ତି ଜ୍ଞାନରୂପୀ ଫଲର ରସ । ଏହା ବେଦଗଣ କହିଅଛନ୍ତି ॥ ୭ ॥ ଏହି 'ରାମଚରିତ ମାନସ'ରେ ଆଉ ଯେଉଁ ପ୍ରାସଙ୍ଗିକ କଥା-ଗୁଡ଼ିକ ଅଛି, ସେଗୁଡ଼ିକ ଏଥିରେ ଥିବା ଶୁଆ, କୋଇଲି ଆଦି ବିବିଧ ବର୍ଣ୍ଣର ପକ୍ଷୀ ॥ ୮ ॥ ଦୋହା —କଥାରେ ଯେଉଁ ରୋମାଞ୍ଚ (ପୁଲକ) ସନ୍ନିବେଶିତ ହୋଇଅଛି, ତାହା ବାଟିକା, ଉପବନ ଓ ବନରାଜି । ଏଥିରେ ସନ୍ନିବେଶିତ ହୋଇଥିବା ସୁଖ ସୁନ୍ଦର ,ପକ୍ଷୀମାନଙ୍କର ବିହାର । ନିର୍ମଲ ମନହିଁ ମାଲୀ । ସେହି ମାଲୀ ସୁନ୍ଦର ନେତ୍ରଦ୍ୱାରା ପ୍ରେମ-ଜଲରେ

ଜେ ଗାଓ୍ୱହିଁ ଯହ ଚରିତ ସଁଭାରେ । ତେଇ ଏହି ତାଲ ଚତୁର ରଖଓ୍ୱାରେ ॥
ସଦା ସୁନହିଁ ସାଦର ନରନାରୀ । ତେଇ ସୁରବର ମାନସ ଅଧିକାରୀ ॥୧॥
ଅତି ଖଲ ଜେ ବିଷଈ ବଗ କାଗା । ଏହିଁ ସର ନିକଟ ନ ଜାହିଁ ଅଭାଗା ॥
ସଂବୁକ ଭେକ ସେଓ୍ୱାର ସମାନା । ଇହାଁ ନ ବିଷୟ କଥା ରସ ନାନା ॥୨॥
ତେହି କାରନ ଆଓ୍ୱତ ହିଅଁ ହାରେ । କାମୀ କାକ ବଲାକ ବିଚାରେ ॥
ଆଓ୍ୱତ ଏହିଁ ସର ଅତି କଠିନାଈ । ରାମକୃପା ବିନୁ ଆଇ ନ ଜାଈ ॥୩॥
କଠିନ କୁସଂଗ କୁଂପଥ କରାଲା । ତିହ୍ନକେ ବଚନ ବାଘ ହରି ବ୍ୟାଲା ॥
ଗୃହକାରଜ ନାନା ଜଂଜାଲା । ତେ ଅତି ଦୁର୍ଗମ ସୈଲ ବିସାଲା ॥୪॥
ବନ ବହୁ ବିଷମ ମୋହ ମଦ ମାନା । ନଦୀଁ କୁତର୍କ ଭୟଂକର ନାନା ॥୫॥

---

ସାବଧାନେ ଏ ଚରିତ ଯେ ଗାନ କରନ୍ତି । ସେ ଏହି ସରର ଦକ୍ଷ ରକ୍ଷକ ଅଟନ୍ତି ॥
ସଦା ସାଦରେ ଶୁଣନ୍ତି ଯେଉଁ ନରନାରୀ । ସେହି ସୁରଶ୍ରେଷ୍ଠ ମାନସର ଅଧିକାରୀ ॥୧॥
ଅତ୍ୟନ୍ତ ଖଲ ବିଷୟୀ କାକ ବକ ଯେହୁ । ଏ ସର ପାଶେ ନ ଯାନ୍ତି ହତଭାଗ୍ୟ ସେହୁ ॥
ଭେକ ଗେଣ୍ଡା ପୋକ ଜଲଶୈବାଲ ସଦୃଶ । ଏଥିରେ ନାହିଁ ବିଷୟ କଥା ନାନା ରସ ॥୨॥
ସେହି କାରଣୁ ଆସନ୍ତେ ନିରୁତ୍ସାହ ମନ । ହୁଅନ୍ତି ବିଚରା କାମୀ କାକ-ବକ-ଜନ ॥
ଏ ସରକୁ ଆଗମିବା କଷ୍ଟକର ଅତି । ରାମ କୃପା ବିନା କେହି ଆସି ନ ପାରନ୍ତି ॥୩॥
କଠିନ କୁସଙ୍ଗ ଏଥି କୁପଥ କରାଲ । ତାହାଙ୍କ ବଚନ ଯେହ୍ନେ ସିଂହ ବ୍ୟାଘ୍ର ବ୍ୟାଲ ॥
ଗୃହ କାର୍ଯ୍ୟ ଆଦି ନାନାପ୍ରକାର ଜଞ୍ଜାଲ । ସେ ସବୁ ଅତି ଦୁର୍ଗମ ଶଇଲ ବିଶାଲ ॥୪॥
ଘନ ଅରଣ୍ୟ ବିଷମ ମୋହ ମଦ ମାନ । ବିବିଧ କୁତର୍କ ଭୀମ ସରିତ ସମାନ ॥୫॥

---

ସେମାନଙ୍କୁ ସିକ୍ତ କରେ ॥ ୩୭ ॥ ଚୌପାଈ—ଯେଉଁ ଲୋକମାନେ ଏହି ଚରିତକୁ ସାବଧାନରେ ଗାଆନ୍ତି, ସେହିମାନେ ହିଁ ଏହି ପୁଷ୍କରିଣୀର ଚତୁର ରକ୍ଷକ । ଯେଉଁ ସ୍ତ୍ରୀ-ପୁରୁଷଗଣ ସଦା ଆଦର ସହକାରେ ଏହାକୁ ଶୁଣନ୍ତି, ସେମାନେ ଏହି ସୁନ୍ଦର ମାନସର ଅଧିକାରୀ ଶ୍ରେଷ୍ଠ ଦେବତା ॥ ୧ ॥ ଯେଉଁମାନେ ଅତି ଦୁଷ୍ଟ ଓ ବିଷୟୀ, ସେହି ହତଭାଗ୍ୟ ବ୍ୟକ୍ତିମାନେ ବଗ ଓ କୁଆ ପରି । ସେମାନେ ଏହି ସରୋବର ସମୀପକୁ ଯାଆନ୍ତି ନାହିଁ । କାରଣ ଏହି ସରୋବରରେ ଶଙ୍ଖ, ବେଙ୍ଗ ଓ ଶିଉଳପରି ବିଷୟ-ରସ-ସମ୍ବଳିତ ନାନା କଥା ନାହିଁ ॥ ୨ ॥ ଏହି ହେତୁ ବିଚରା କୁଆ ଓ ବଗ ପରି ଯେଉଁମାନେ ବିଷୟାସକ୍ତ, ସେମାନେ ଏଠାକୁ ଆସୁ ଆସୁ ମନେ ମନେ ଥକି ଯାଆନ୍ତି । ଏହି ସରୋବର ପର୍ଯ୍ୟନ୍ତ ଆସିବାରେ ବହୁତ ବାଧାବିଘ୍ନ ରହିଛି । ଶ୍ରୀରାମଙ୍କ କୃପାବିନା ଏଠାକୁ ଆସିପାରିବା ଅସମ୍ଭବ ॥ ୩ ॥ ଘୋର କୁସଙ୍ଗ ଭୟଙ୍କର ଖରାପ ପଥ । ସେହି କୁସଙ୍ଗୀମାନଙ୍କ ବଚନ ହିଁ ବାଘ, ସିଂହ ଓ ସାପ । ଘରର କାମଦାମ ଓ ନାନାପ୍ରକାର ଜଞ୍ଜାଲ ଅତ୍ୟନ୍ତ ଦୁର୍ଗମ ଓ ବଡ ପାହାଡ ॥ ୪ ॥ ମୋହ, ମଦ ଓ ମାନ ନାନାପ୍ରକାରର ବନ୍ଧୁର ବନଭୂମି ଏବଂ ନାନାପ୍ରକାର କୁତର୍କ ଭୟାନକ ନଦୀ-

ଜେ ଶ୍ରଦ୍ଧା ସଂବଲ ରହିତ ନହିଂ ସଂତନ୍ହ କର ସାଥ ।
ତିନ୍ହ କହୁଁ ମାନସ ଅଗମ ଅତି ଜିନ୍ହହି ନ ପ୍ରିୟ ରଘୁନାଥ ॥୩୮॥
ଜୌଁ କରି କଷ୍ଟ ଜାଇ ପୁନି କୋଈ । ଜାତହିଁ ନୀଁଦ ଜୁଡ଼ାଈ ହୋଈ ॥
ଜଡ଼ତା ଜାଡ଼ ବିଷମ ଉର ଲାଗା । ଗଏହୁଁ ନ ମଜ୍ଜନ ପାଓ୍ୱ ଅଭାଗା ॥୧॥
କରି ନ ଜାଇ ସର ମଜ୍ଜନ ପାନା । ଫିରି ଆଓ୍ୱଇ ସମେତ ଅଭିମାନା ॥
ଜୌଁ ବହୋରି କୋଉ ପୂଛନ ଆଓ୍ୱା । ସର ନିନ୍ଦା କରି ତାହି ବୁଝାଓ୍ୱା ॥୨॥
ସକଲ ବିଘ୍ନ ବ୍ୟାପହିଁ ନହିଁ ତେହୀ । ରାମ ସୁକୃପାଁ ବିଲୋକହିଁ ଜେହୀ ॥
ସୋଇ ସାଦର ସର ମଜ୍ଜନୁ କରଈ । ମହା ଘୋର ତ୍ରୟତାପ ନ ଜରଈ ॥୩॥
ତେ ନର ୟହ ସର ତଜହିଁ ନ କାଊ । ଜିନ୍ହ କେ ରାମଚରନ ଭଲ ଭାଊ ॥
ଜୋ ନହାଇ ଚହ ଏହିଁ ସର ଭାଈ । ସୋ ସତସଂଗ କରଉ ମନ ଲାଈ ॥୪॥

---

ଯେଉଁ ଜନ ଶ୍ରଦ୍ଧା-ସମ୍ବଳ-ବିହୀନ ସାଧୁ ସଙ୍ଗ ନ କରନ୍ତି ।
ତାହାଙ୍କୁ ମାନସ ଅଗମ୍ୟ ଯାହାଙ୍କୁ ରାମ ପ୍ରିୟ ନ ଲାଗନ୍ତି ॥୩୮॥
ଯେବେ କେହି କଷ୍ଟ କରି ଯାଏ ପୁଣି ପାଶେ । ଯିବା ମାତ୍ରେ ନିଦ କମ୍ପ ତାକୁ ଘୋଟି ଆସେ ॥
ଜଡତା ବିଷମ ଜାଡ ହୃଦୟେ ଲାଗଇ । ଗଲେହେଁ ଅଭାଗା ସ୍ନାନ କରି ନ ପାରଇ ॥୧॥
କରି ନ ପାରଣି ସରେ ସ୍ନାନ କିମ୍ବା ପାନ । ବାହୁଡି ଆସଇ ମନେ ଘେନି ଅଭିମାନ ॥
ଯେବେ ପୁଣି ଆସେ କେହି ପହଁରିବା ପାଇଁ । ସର ନିନ୍ଦା କରି ତାକୁ କହେ ସେ ବୁଝାଇ ॥୨॥
ସମସ୍ତ ପ୍ରକାର ବିଘ୍ନ ନ ବାଧନ୍ତି ତାକୁ । ରାମ କୃପାଦୃଷ୍ଟି କରି ଚାହାନ୍ତି ଯାହାକୁ ॥
ସାଦରେ କରଇ ସେହି ସ୍ନାନ ମାନସରେ । ନ ହୁଏ ଦହନ ମହାଘୋର ତ୍ରିତାପରେ ॥୩॥
ସେ ନର ଏ ସରୋବର କେବେ ନ ତେଜନ୍ତି । ରାମ ଚରଣେ ଯାହାଙ୍କ ଭଲ ମତି ଭକ୍ତି ॥
ସ୍ନାନ କରିବାକୁ ଇଚ୍ଛା ଏହି ସରେ ଯେବେ । ମନ ଲଗାଇ ସତ୍ସଙ୍ଗ କର ଭାଇ ତେବେ ॥୪॥

---

ସମୂହ ॥ ୫ ॥ ଦୋହା—ଯେଉଁମାନଙ୍କ ପାଖରେ ଶ୍ରଦ୍ଧାରୂପୀ ପାଥେୟ କିମ୍ବା ସାଧୁସଙ୍ଗ ନାହିଁ ଏବଂ ଯେଉଁମାନଙ୍କର ରଘୁନାଥଙ୍କ ପ୍ରିୟ ନୁହନ୍ତି, ସେମାନଙ୍କ ପକ୍ଷରେ ଏହି 'ମାନସ' ଅତ୍ୟନ୍ତ ଅଗମ୍ୟ । (ଅର୍ଥାତ୍ ଶ୍ରଦ୍ଧା, ସତ୍ସଙ୍ଗ ଓ ଭଗବତ୍ ପ୍ରେମ ବିନା କେହି ଏଠାରେ ପ୍ରବେଶ କରି ପାରିବ ନାହିଁ ॥୩୮॥ ଚୌପାଈ—ଯଦି କୌଣସି ମନୁଷ୍ୟ କଷ୍ଟ ସହି ସେଠାରେ ବା ପହଞ୍ଚି ଯାଏ, ସେଠାରେ ପହଞ୍ଚିବା ମାତ୍ରେ ହିଁ ତାହାକୁ ନିଦ୍ରା-ଜ୍ୱର ଆସିଯାଏ । ହୃଦୟରେ ଜଡତା-ଜାଡ ଜାତ ହୁଏ । ଫଳତଃ ସେଠାକୁ ଯାଇ ମଧ୍ୟ ସେ ଅଭାଗା ସ୍ନାନ କରିପାରେ ନାହିଁ ॥ ୧ ॥ ସେ ସେହି ସରୋବରରେ ସ୍ନାନ କିମ୍ବା ତାହାର ଜଳପାନ କରିପାରେ ନାହିଁ । ଅଭିମାନ ସହିତ ସେ ଲେଉଟି ଆସେ । ଯଦି କେହି ତାକୁ ଉକ୍ତ ସରୋବର ବିଷୟରେ ପଚାରେ, ତେବେ ସେ (ଆପଣା ଦୁର୍ଭାଗ୍ୟ ବିଷୟ ନ କହି) ସରୋବରର ନିନ୍ଦା କରି ତାହାକୁ ବୁଝାଏ ॥୨॥ ଯାହାକୁ ପ୍ରଭୁ ଶ୍ରୀରାମଚନ୍ଦ୍ର ଉତ୍ତମ କୃପାଦୃଷ୍ଟିରେ ଦେଖନ୍ତି, ତାହା ନିମନ୍ତେ ଏ ସମସ୍ତ ବାଧାବିଘ୍ନ ଘଟେ ନାହିଁ । ସେଇ ହିଁ

ଅସ ମାନସ ମାନସ ଚଖ ଚାହୀ । ଭଇ କବିବୁଦ୍ଧି ବିମଲ ଅବଗାହୀ ॥
ଭୟଉ ହୃଦୟଁ ଆନନ୍ଦ ଉଛାହୂ । ଉମଗେଉ ପ୍ରେମ ପ୍ରମୋଦ ପ୍ରବାହୂ ॥୫॥
ଚଲୀ ସୁଭଗ କବିତା ସରିତା ସୋ । ରାମ ବିମଲ ଜସ ଜଲ ଭରିତା ସୋ ॥
ସରଜୂ ନାମ ସୁମଂଗଲ ମୂଲା । ଲୋକ ବେଦ ମତ ମଂଜୁଲ କୂଲା ॥୬॥
ନଦୀ ପୁନୀତ ସୁମାନସ ନଂଦିନି । କଲିମଲ ତୃନ ତରୁ ମୂଲ ନିକଂଦିନି ॥୭॥

ଶ୍ରୋତା ତ୍ରିବିଧ ସମାଜ ପୁର ଗ୍ରାମ ନଗର ଦୁହୁଁ କୂଲ ।
ସଂତସଭା ଅନୁପମ ଅଓ୍ୱଧ ସକଲ ସୁମଂଗଲ ମୂଲ ॥୩୯॥

ରାମଭଗତି ସୁରସରିତହି ଜାଈ । ମିଲୀ ସୁକୀରତି ସରଜୁ ସୁହାଈ ॥
ସାନୁଜ ରାମ ସମର ଜସୁ ପାବନ । ମିଲେଉ ମହାନଦୁ ସୋନ ସୁହାବନ ॥୧॥

---

ଏମନ୍ତ ମନ-ସରକୁ ମନ-ନେତ୍ରେ ଚାହିଁ । ହେଲା କବି ବୁଦ୍ଧି ଶୁଦ୍ଧ ତହିଁ ଅବଗାହି ॥
ହପୁଜଣ ହୃଦ ମଧ୍ୟେ ଆନନ୍ଦ ଉତ୍ସାହ । ଉଚ୍ଛୁଳି ପଡ଼ିଲା ପ୍ରେମ ପ୍ରମୋଦ ପ୍ରବାହ ॥୫॥
ଶୁଭ୍ର କବିତା-ସରିତା ହେଲା ପ୍ରବାହିତ । ରାମଙ୍କ ବିମଳ ଯଶ-ସଲିଳେ ପୂରିତ ॥
ସରଯୂ ନାମ ତାହାର ସୁମଙ୍ଗଳ ମୂଳ । ଲୋକ ବେଦ ମତ ଦେନି ମନୋହର କୂଳ ॥୬॥
ନଦୀ ପରମ ପବିତ୍ର ମାନସ ନନ୍ଦିନୀ । କଳି ମଳ ତୃଣ ତରୁ ମୂଳ-ଉତ୍ପାଟିନୀ ॥୭॥

ତ୍ରିବିଧ ଶ୍ରୋତାଙ୍କ ସମାଜ ନଗର ଗ୍ରାମ ପୁରକୂଳବାସୀ ।
ସନ୍ଥ ସଭା ଅଟେ ଅନୁପ ଅଯୋଧ୍ୟା ସକଳ ମଙ୍ଗଳ ରାଶି ॥୩୯॥

ରାମ-ଭକ୍ତି ରୂପା ଦିବ୍ୟ ସୁର-ସରିତରେ । ମିଳନ୍ତି ଯାଇ ସେ କୀର୍ତ୍ତି-ସରଯୂ ସାଦରେ ॥
ସାନୁଜ ରାମଙ୍କ ରଣ ସୁଯଶ ଉଜ୍ଜ୍ୱଳ । ମିଳନ୍ତି ବା ମହାନଦ ଶୋଣ ସୁବିମଳ ॥୧॥

---

ଏହି ସରୋବରରେ ସ୍ନାନ କରେ ଏବଂ ମହା-ଭୟାନକ ତ୍ରିତାପ (ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ତାପତ୍ରୟ) ଦ୍ୱାରା ସେ ଆଉ ଜଳେ ନାହିଁ ॥ ୩ ॥ ଯେଉଁମାନଙ୍କ ମନରେ ଶ୍ରୀରାମଚନ୍ଦ୍ରଜୀଙ୍କ ଚରଣ-କମଳ ପ୍ରତି ସୁନ୍ଦର ପ୍ରେମ ଥାଏ, ସେହିମାନେ ହିଁ ଏହି ସରୋବରକୁ କଦାପି ଛାଡ଼ନ୍ତି ନାହିଁ । ହେ ଭାଇ ! ଯେ ଏହି ସରୋବରରେ ସ୍ନାନ କରିବାକୁ ଇଚ୍ଛୁକ, ସେ ମନଧ୍ୟାନ ଦେଇ ସତ୍ସଙ୍ଗ କରୁ ॥ ୪ ॥ ଏପରି ମାନସ-ସରୋବରକୁ ହୃଦୟ-ନେତ୍ରରେ ଦେଖି ଏବଂ ତହିଁରେ ବୁଡ଼ ପକାଇ କବିଙ୍କ ବୁଦ୍ଧି ନିର୍ମଳ ହୋଇଗଲା, ହୃଦୟରେ ଆନନ୍ଦ ଉତ୍ସାହ ପୂରିଗଲା ଏବଂ ପ୍ରେମ ତଥା ଆନନ୍ଦର ପ୍ରବାହ ଛୁଟି ଆସିଲା ॥ ୫ ॥ ତହିଁରୁ ସୁନ୍ଦର କବିତା-ସରିତା ବାହାରି ଚାଲିଲା । ସେହି ସରିତାରେ ଶ୍ରୀରାମଜୀଙ୍କ ନିର୍ମଳ ଯଶ-ଜଳ ପୂରି ରହିଛି । ଏହି କବିତା-ନଦୀର ନାମ ସରଯୂ । ଏହା ସୁନ୍ଦର ମଙ୍ଗଳ ରାଶିର ମୂଳ । ଲୋକମତ ଓ ବେଦମତ ଏହାର ଦୁଇଟି ସୁନ୍ଦର ତୀରଭୂମି ॥ ୬ ॥ ଏହି ସୁନ୍ଦର ମାନସ-ସରୋବରର କନ୍ୟା ସରଯୂ ଅତି ପବିତ୍ର । ଏହା କଳିଯୁଗରେ ତୃଣତରୁ ପରି ସାନବଡ଼ ଯେତେ ପାପ ଅଛି, ସେ ସବୁକୁ ସମୂଳେ ଉପାଡ଼ି ନାଶ କରିଦେଇପାରେ ॥୭॥ ଦୋହା.—ଏହି ନଦୀର ଉଭୟ ପାର୍ଶ୍ୱରେ

ଜଗ ହିତ ଭଗତି ଦେବଧୂନିଧାରା । ସୋହତି ସହିତ ସୁବିରତି ବିଚାରା ॥
ତ୍ରିବିଧ ତାପ ତ୍ରାସକ ତିମୁହାନୀ । ରାମ ସରୂପ ସିଂଧୁ ସମୁହାନୀ ॥୨॥
ମାନସ ମୂଲ ମିଲୀ ସୁରସରିହୀ । ସୁନତ ସୁଜନ ମନ ପାବନ କରିହୀ ॥
ବିଚ ବିଚ କଥା ବିଚିତ୍ର ବିଭାଗା । ଜନୁ ସରି ତୀର ତୀର ବନ ବାଗା ॥୩॥
ଉମା ମହେସ ବିବାହ ବରାତୀ । ତେ ଜଲଚର ଅଗନିତ ବହୁ ଭାଁତୀ ॥
ରଘୁବର ଜନମ ଅନଂଦ ବଧାଈ । ଭବଁର ତରଂଗ ମନୋହରତାଈ ॥୪॥
ବାଲଚରିତ ଚହୁ ବଂଧୁ କେ ବନଜ ବିପୁଲ ବହୁରଂଗ ।
ନୃପ ରାନୀ ପରିଜନ ସୁକୃତ ମଧୁକର ବାରି ବିହଂଗ ॥୪୦॥

---

ଉଭୟଙ୍କ ମଧ୍ୟେ ଭକ୍ତି ସୁରନଦୀ ଧାର । ଶୋଭିତ ହୁଅଇ ଯେଣେ ବୈରାଗ୍ୟ ବିଚାର ॥
ତ୍ରିବିଧ ତାପ ନାଶନ ଯେଣୁ ତ୍ରିମୁହାଣ । ରାମ ସ୍ୱରୂପ ସିନ୍ଧୁରେ ପଡ଼ିତ ସେ ଜାଣ ॥୨॥
ମାନସ ଉତ୍ପନ୍ନ ସୁର ସରିତେ ମିଳନ । ଶୁଣନ୍ତେ ପବିତ୍ର କରେ ସୁଜନଙ୍କ ମନ ॥
ମଧ୍ୟେ ମଧ୍ୟେ ବିଚିତ୍ର ଯେ ଅନ୍ୟ କଥା ରସ । ସେ ନଦୀ କୂଳସ୍ଥ ବନ ଉଦ୍ୟାନ ସଦୃଶ ॥୩॥
ଉମାହର ବିବାହେ ଯେ ବରଯାତ୍ରି ଭୂତ । ସେ ଯେଣୁ ନଦୀରେ ନାନା ଜଳଚର ଯୂଥ ॥
ରଘୁବର ଜନ୍ମ ଖୁସି ମଙ୍ଗଳ ବାଜଣା । ତାହା ରୁଚିର ଆବର୍ତ୍ତ ତରଙ୍ଗରେ ଗଣା ॥୪॥
ବାଲ୍ୟଲୀଳା ଚାରି-ଭାଇଙ୍କ ଯେପରି ବାରିଜ ବିବିଧ ରଙ୍ଗ ।
ପରିଜନ ନୃପ ରାଣୀଙ୍କ ସୁକୃତ ମଧୁପ ବାରି ବିହଙ୍ଗ ॥୪୦॥

---

ଅବସ୍ଥିତ ପଲ୍ଲୀ, ଗ୍ରାମ ଓ ନଗରରେ ଭିନ୍ନ ପ୍ରକାର ଶ୍ରୋତାଗଣଙ୍କ ସମାଜ ବିରାଜିତ ଏବଂ ସମସ୍ତ ସୁମଙ୍ଗଳର ମୂଳ ଅନୁପମ ଅଯୋଧ୍ୟା ସନ୍ଥମାନଙ୍କର ସଭାରୂପେ ଅଧିଷ୍ଠିତ ॥ ୩୯ ॥ ସୁକୀର୍ତ୍ତି-ସ୍ୱରୂପିଣୀ ଶୋଭାମୟମାନା ସରଯୂ ରାମଭକ୍ତି ସ୍ୱରୂପିଣୀ ଗଙ୍ଗାଙ୍କ ସହିତ ମିଳିଲା । ସାନୁଜ ଲକ୍ଷ୍ମଣସମେତ ଶ୍ରୀରାମଚନ୍ଦ୍ରଙ୍କ ସୁନ୍ଦର ପବିତ୍ର ଯଶ ସୁନ୍ଦର ମହାନଦ ଶୋଣରୂପେ ଆସି ତହିଁରେ ମିଳିଲା ॥ ୧ ॥ ଉଭୟଙ୍କ ମଧ୍ୟରେ ଭକ୍ତିରୂପିଣୀ ସୁରଧୁନୀ (ଗଙ୍ଗା) ଧାରା ଜ୍ଞାନ ଓ ବୈରାଗ୍ୟ ସହିତ ଶୋଭା ପାଉଅଛି । ଏହିପରି ତ୍ରିତାପ-ନାଶକ (ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ) ଏହି ତ୍ରିମୁହାଣୀ ନଦୀ ରାମସ୍ୱରୂପ-ସମୁଦ୍ର ଆଡକୁ ଅଗ୍ରସର ହେଉଅଛି ॥ ୨ ॥ କୀର୍ତ୍ତିରୂପିଣୀ ସରଯୂର ମୂଳସ୍ରୋତ 'ମାନସ' (ଶ୍ରୀରାମଚରିତ) ଏବଂ ଏହା ରାମଭକ୍ତି-ସ୍ୱରୂପିଣୀ ଗଙ୍ଗାଙ୍କ ସହିତ ଯାଇ ମିଶିଛି । ଏଣୁ ଶୁଣିବା ମାତ୍ରେ ଏହା ସଜ୍ଜନଙ୍କ ମନକୁ ପବିତ୍ର କରିଦେବ । ଏହାର ମଧ୍ୟେ ମଧ୍ୟେ ଭିନ୍ନ ଭିନ୍ନ ପ୍ରକାରର ଯେଉଁ ବିଚିତ୍ର କଥାମାନ ସନ୍ନିବେଶିତ ହୋଇଅଛି, ସେଗୁଡିକ ସବୁ ନଦୀତୀରବର୍ତ୍ତୀ ବନ ଓ ଉପବନ ॥ ୩ ॥ ପାର୍ବତୀ ଓ ଶିବଙ୍କଙ୍କ ବିବାହ-ବରଯାତ୍ରୀମାନେ ଏହି ନଦୀର ଜଳଚର ଜୀବ । ଶ୍ରୀରାମଚନ୍ଦ୍ରଙ୍କ ଜନ୍ମର ଆନନ୍ଦ-ପରିନନ୍ଦନ ଉତ୍ସବ ଆଦି ଏହି ନଦୀର ଭଉଁରୀ ଓ ଲହରୀ ॥ ୪ ॥ ଦୋହା —ଚାରିଭାଇଙ୍କର ବାଲଚରିତ ଏଥିରେ ପ୍ରସ୍ଫୁଟିତ ହୋଇଥିବା ବିବିଧ ରଙ୍ଗର ବହୁତ କମଳ । ମହାରାଜ

ସୀୟ ସ୍ୱୟଂବର କଥା ସୁହାଈ । ସରିତ ସୁହାବନି ସୋ ଛବି ଛାଈ ॥
ନଦୀ ନାବ ପଟୁ ପ୍ରସ୍ନ ଅନେକା । କେବଟ କୁସଲ ଉତର ସବିବେକା ॥୧॥
ସୁନି ଅନୁକଥନ ପରସ୍ପର ହୋଈ । ପଥିକସମାଜ ସୋହ ସରି ସୋଈ ॥
ଘୋର ଧାର ଭୃଗୁନାଥ ରିସାନୀ । ଘାଟ ସୁବଦ୍ଧ ରାମ ବର ବାନୀ ॥୨॥
ସାନୁଜ ରାମ ବିବାହ ଉଛାହୂ । ସୋ ସୁଭ ଉମଗ ସୁଖଦ ସବ କାହୂ ॥
କହତ ସୁନତ ହରଷହିଁ ପୁଲକାହୀଁ । ତେ ସୁକୃତୀ ମନ ମୁଦିତ ନହାହୀଁ ॥୩॥
ରାମ ତିଲକ ହିତ ମଂଗଲ ସାଜା । ପରବ ଜୋଗ ଜନୁ ଜୁରେ ସମାଜା ॥
କାଈ କୁମତି କେକଈ . କେରୀ । ପରୀ ଜାସୁ ଫଲ ବିପତି ଘନେରୀ ॥୪॥

ସମନ ଅମିତ ଉତପାତ ସବ ଭରତ ଚରିତ ଜପଜାଗ ।
କଲି ଅଘ ଖଲ ଅବଗୁନ କଥନ ତେ ଜଲମଲ ବଗ କାଗ ॥୪୧॥

---

ସୀତାଙ୍କ ସ୍ୱୟମ୍ବରର କଥା ମନୋହର । ରୁଚିର ଛବି ଛଟା ସେ ସ୍ରୋତ ସରିତର ॥
ନଦୀ ନାବ ପ୍ରାୟେ ପଟୁ ପ୍ରଶ୍ନ ଯେ ସକଳ । ବିବେକ ଯୁକ୍ତ ଉତ୍ତର ନାବିକ କୁଶଳ ॥୧॥
ଶୁଣି ପରସ୍ପର କଥାବାର୍ତ୍ତା ଯେ ହୁଅନ୍ତି । ପଥିକ ସମାଜ ଯେସନ୍ତେ ତଟରେ ଶୋଭନ୍ତି ॥
ଭୃଗୁପତିଙ୍କର କୋପ ତୀକ୍ଷ୍ଣ ଧାରସମ । ସୁଦୃଢ଼ ଘାଟ ରାମଙ୍କ ବାଣୀ ମନୋରମ ॥୨॥
ଅନୁଜ ସହ ପ୍ରଭୁଙ୍କ ବିବାହ ଆନନ୍ଦ । ସେ ଶୁଭ କଲ୍ଲୋଳ ସମସ୍ତଙ୍କ ସୁଖପ୍ରଦ ॥
କହନ୍ତେ ଶୁଣନ୍ତେ ହର୍ଷ ପୁଲକ ହୁଅନ୍ତି । ସେ ପୁଣ୍ୟଶ୍ଳୋକ ପ୍ରମୋଦେ ସ୍ନାନ ବା କରନ୍ତି ॥୩॥
ରାମ ଅଭିଷେକର ଯେ ସୁମଙ୍ଗଳ ସାଜ । ପର୍ବ ଯୋଗେ ଯେସନ୍ତେ ଜୁଟି ଅଛନ୍ତି ସମାଜ ॥
ଶିଉଳି ସମ କୈକେୟୀ ସୁତାର କୁମତି । ପଡ଼ିଲା ଯାହାର ଫଳେ ବିଷମ ବିପତ୍ତି ॥୪॥

ଭରତ ଚରିତ ଜପ ଯଜ୍ଞ ସମ ସର୍ବ ଉତ୍ପାତନାଶକ ।
କଳି ଅଘଖଳ—ଅବଗୁଣ କଥା କାଇପଙ୍କ କାକବକ ॥୪୧॥

---

ଦଶରଥ, ତାଙ୍କ ରାଣୀ ଓ ପରିଜନଙ୍କ ସୁକୃତ (ପୁଣ୍ୟ) ଭ୍ରମର ଓ ଜଳପକ୍ଷୀ ॥ ୪୦ ॥
ଚୌପାଈ—ଶ୍ରୀ ସୀତାଜୀଙ୍କ ସ୍ୱୟଂବରର ସୁନ୍ଦର କଥା ଏହି ନଦୀରେ ଶୋଭା ପାଉଥିବା ଛବି । ବିବିଧ ବିସ୍ତୃତମସ୍କ ପ୍ରଶ୍ନ ଏହି ନଦୀର ନାବ ଏବଂ ସେଗୁଡ଼ିକର ବିବେକ-ଯୁକ୍ତ ଉତ୍ତର ହିଁ ଚତୁର ନାବିକ ॥ ୧ ॥ ଏହି କଥାକୁ ଶୁଣି ପରସ୍ପର ଆଲୋଚନାରତ ଶ୍ରୋତାମାନଙ୍କର ଚର୍ଚ୍ଚା ନଦୀକୂଳଗାମୀ ପଥିକସମାଜରୂପେ ସୁଶୋଭିତ । ପରଶୁରାମଙ୍କ କ୍ରୋଧ ଏହି ନଦୀର ଭୟାନକ ଧାର ଏବଂ ଶ୍ରୀରାମଚନ୍ଦ୍ରଙ୍କ ଶ୍ରେଷ୍ଠ ବଚନ ତହିଁରେ ବନ୍ଧା ସୁନ୍ଦର ଘାଟ ପରି ॥ ୨ ॥ ସାନୁଜ ରାମଙ୍କ ବିବାହ ଉତ୍ସବ ଏହି କଥା-ନଦୀର କଲ୍ୟାଣକାରିଣୀ ବନ୍ୟା, ଏହା ସମସ୍ତଙ୍କୁ ସୁଖ ପ୍ରଦାନ କରେ । ଏହି କଥା କହି ବା ଶୁଣି ଯେଉଁ ବ୍ୟକ୍ତିମାନେ ହର୍ଷରେ ଗଦ୍‌ଗଦ ଓ ପୁଲକିତ ହୋଇ ଉଠନ୍ତି, ସେହିମାନେ ହିଁ ପୁଣ୍ୟାତ୍ମା ପୁରୁଷ, ସେହିମାନେ ହିଁ ଏହି ନଦୀରେ ସ୍ନାନ କରିବାକୁ ଯୋଗ୍ୟ ବ୍ୟକ୍ତି ॥ ୩ ॥ ରାମଚନ୍ଦ୍ର ଙ୍କ ରାଜ୍ୟାଭିଷେକ ଉପଲକ୍ଷେ ଯେଉଁ ସବୁ ମାଙ୍ଗଳିକ

କୀରତି ସରିତ ଛହୁଁ ରିତୁ ରୂରୀ । ସମୟ ସୁହାବନି ପାବନି ଭୂରୀ ॥
ହିମ ହିମ ସୈଲ ସୁତା ସିବ ବ୍ୟାହୂ । ସିସିର ସୁଖଦ ପ୍ରଭୁ ଜନମ ଉଛାହୂ ॥୧॥
ବରନବ ରାମ ବିବାହ ସମାଜୂ । ସୋ ମୁଦ ମଂଗଲମୟ ରିତୁରାଜୂ ॥
ଗ୍ରୀଷମ ଦୁସହ ରାମ ବନଗୱନୂ । ପଂଥକଥା ଖର ଆତପ ପୱନୂ ॥୨॥
ବରଷା ଘୋର ନିସାଚର ରାରୀ । ସୁରକୁଲ ସାଲି ସୁମଂଗଲକାରୀ ॥
ରାମ ରାଜ ସୁଖ ବିନୟ ବଡାଈ । ବିସଦ ସୁଖଦ ସୋଇ ସରଦ ସୁହାଈ ॥୩॥
ସତୀସିରୋମନି ସିୟ ଗୁନ ଗାଥା । ସୋଇ ଗୁନ ଅମଲ ଅନୂପମ ପାଥା ॥
ଭରତ ସୁଭାଉ ସୁସୀତଲତାଈ । ସଦା ଏକରସ ବରନି ନ ଜାଈ ॥୪॥

---

ଏ କୀର୍ତ୍ତି-ସରିତ ସର୍ବ ଋତୁରେ ଶୋଭିତ । ସମୟ ପାଇ ଅଧିକ ପବିତ୍ର ଲଳିତ ॥
ହେମନ୍ତ ହିମାଦ୍ରି ସୁତା ଶିବଙ୍କ ବିବାହ । ଶିଶିର ସୁଖଦ ପ୍ରଭୁ ଜନମ ଉତ୍ସାହ ॥୧॥
କଥିତ ରାମ ବିବାହ ଅପୂର୍ବ ସମାଜ । ସେ ମୋଦ ମଙ୍ଗଳମୟ ଯେହ୍ନେ ଋତୁରାଜ ॥
ଦୁଃସହ ଗ୍ରୀଷ୍ମ ରାମଙ୍କ ବିପିନ ଗମନ । ପଥ ପ୍ରସଙ୍ଗ ପ୍ରଚଣ୍ଡ ଆତପ ପବନ ॥୨॥
ବରଷା ନିଶାଚରଙ୍କ ସଙ୍ଗେ ରଣରାରି । ବିବୁଧ-କୁଳ-ଧାନ୍ୟର ଅତି ହିତକାରୀ ॥
ରାମରାଜ୍ୟର ଯେ ସୁଖ ବିନୟ ବଡାଇ । ସୁନ୍ଦର ଶରତ ସେହି ଶୁଭ ସୁଖ-ଦାୟୀ ॥୩॥
ସତୀଶିରୋମଣି ଗୁଣ କଥା ସୀତାଙ୍କର । ଅନୁପମ ଗୁଣ ଏହି ନିର୍ମଳ ନୀରର ॥
ଭରତ ସ୍ୱଭାବ ଜଳ ଶୀତଳତା ପରି । ସଦା ସମାନ, ବର୍ଣ୍ଣିନ ନ ହୁଅଇ କରି ॥୪॥

---

ଆୟୋଜନ କରାଯାଇଥିଲା, ସେ ସବୁ ପର୍ବ ଉପଲକ୍ଷେ ସମାବିଷ୍ଟ ଜନସମାଜ ପରି, କୈକେୟୀଙ୍କ ଦୁର୍ବୁଦ୍ଧି ଏହି ନଦୀ-ଜଳରେ କାଇ (ଜଳଘାସ) ପରି । ଫଳସ୍ୱରୂପ ଏଥିରେ ଘୋର ବିପତ୍ତି ଆସି ଦେଖା ଦେଇଛି ॥ ୪ ॥ ଦୋହା –ଅଗଣିତ ସମସ୍ତ ଉତ୍ପାତର ଉପଶମକାରୀ ଭରତଜୀଙ୍କ ଚରିତ ନଦୀତଟରେ ସମ୍ପାଦିତ ହେଉଥିବା ଜପ-ଯଜ୍ଞ । କଳିଯୁଗର ପାପ ଓ ଦୁଷ୍ଟମାନଙ୍କ ଦୁର୍ଗୁଣ ସମ୍ବନ୍ଧୀୟ ବର୍ଣ୍ଣନା ଏହି ନଦୀଜଳର ପଙ୍କ ଏବଂ ବଗକୁଆ ପରି ॥ ୪୧ ॥ ଚୌପାଇ –ଏହି କୀର୍ତ୍ତି-ନଦୀ ଛ’ ଋତୁରେ ସୁନ୍ଦର । ସଦାସର୍ବଦା ଏହା ପରମ ଶୋଭନୀୟ ଓ ଅତି ପବିତ୍ର । ଏଥିରେ ଶିବ-ପାର୍ବତୀଙ୍କ ବିବାହ ହେମନ୍ତଋତୁ । ଶ୍ରୀରାମଚନ୍ଦ୍ରଙ୍କ ଜନ୍ମୋତ୍ସବ ଆନନ୍ଦଦାୟକ ଶିଶିରଋତୁ ॥ ୧ ॥ ଶ୍ରୀରାମଚନ୍ଦ୍ରଙ୍କ ବିବାହ-ସମାଜର ବର୍ଣ୍ଣନା ଆନନ୍ଦ ଓ ମଙ୍ଗଳମୟ ଋତୁରାଜ ବସନ୍ତ । ପ୍ରଭୁଙ୍କ ବନଗମନ ଦୁଃସହ ଗ୍ରୀଷ୍ମଋତୁ ଏବଂ ପଥଯାତ୍ରାର କଥା ପ୍ରଖର ସୂର୍ଯ୍ୟ କିରଣ ଓ ଝାଞ୍ଜି ପବନ ପରି କଷ୍ଟଦାୟକ ॥ ୨ ॥ ରାକ୍ଷସଗଣଙ୍କ ସହ ଘୋର ଯୁଦ୍ଧ ବର୍ଷାଋତୁ ପରି । ଦେବକୁଳରୂପୀ ଧାନକ୍ଷେତ ପ୍ରତି ଏହି ବର୍ଷା ସୁମଙ୍ଗଳକାରକ । ଶ୍ରୀରାମଚନ୍ଦ୍ରଙ୍କ ରାଜତ୍ୱକାଳର ସୁଖ, ବିନୟ ଓ ବଡିମା ନିର୍ମଳ-ସୁଖଦାୟକ ମନୋହର ଶରତଋତୁ ॥ ୩ ॥ ସତୀ-ଶିରୋମଣି ସୀତାଙ୍କର ଗୁଣ-କଥା ଏହି ନଦୀ-ଜଳର ନିର୍ମଳ ଓ ଅନୁପମ ଗୁଣ । ଶ୍ରୀଭରତଙ୍କ ସ୍ୱଭାବ ଏହି ନଦୀର ସୁଶୀତଳତା । ତାଙ୍କ ଶାନ୍ତ, ସୁଶୀତଳ ସ୍ୱଭାବ ସର୍ବଦା ଏକରସ

ଅବଲୋକନ ବୋଲନ ମିଲନ ପ୍ରୀତି ପରସପର ହାସ ।
ଭାୟପ ଭଲି ଚହୁ ବଂଧୁ କୀ ଜଲ ମାଧୁରୀ ସୁବାସ ॥ ୪୨॥
ଆରତି ବିନୟ ଦୀନତା ମୋରୀ । ଲଘୁତା ଲଲିତ ସୁବାରି ନ ଥୋରୀ ॥
ଅଦଭୁତ ସଲିଲ ସୁନତ ଗୁନକାରୀ । ଆସ ପିଆସ ମନୋମଲ ହାରୀ ॥୧॥
ରାମ ସୁପ୍ରେମହି ପୋଷତ ପାନୀ । ହରତ ସକଲ କଲିକଲୁଷ ଗଲାନୀ ॥
ଭବଶ୍ରମ ସୋଷକ ତୋଷକ ତୋଷା । ସମନ ଦୁରିତ ଦୁଖ ଦାରିଦ ଦୋଷା ॥୨॥
କାମ କୋହ ମଦ ମୋହ ନସାଓ୍ୱଁନ । ବିମଲ ବିବେକ ବିରାଗ ବଢ଼ାଓ୍ୱଁନ ॥
ସାଦର ମଜ୍ଜନ ପାନ କିଏ ତେଁ । ମିଟହିଁ ପାପ ପରିତାପ ହିଏ ତେଁ ॥୩॥
ଜିହ୍ନ ଏହିଁ ବାରି ନ ମାନସ ଧୋଏ । ତେ କାୟର କଲିକାଲ ବିଗୋଏ ॥
ତୃଷିତ ନିରଖି ରବିକର ଭବବାରୀ । ଫିରିହହିଁ ମୃଗ ଜିମି ଜୀବ ଦୁଖାରୀ ॥୪॥

---

ପରସ୍ପର ଅବ-ଲୋକନ ମିଳନ ସମ୍ଭାଷଣ ସ୍ନେହ ହାସ୍ୟ ।
ଚାରି ଭାଇଙ୍କର ଭ୍ରାତୃତ୍ୱ ସୁନ୍ଦର ଜଳ ମାଧୁରୀ ସୁବାସ ॥୪୨॥
ଆର୍ତ୍ତିଭାବ ବିନୟ ଅତି ଦୀନତା ମୋହର । ଉଶ୍ୱାସ ଲାଳିତ୍ୟ ଗୁଣ ନିର୍ଦ୍ଦୋଷ ଜଳର ॥
ଅଦ୍ଭୁତ ନୀର ଶୁଣିଲା ମାତ୍ରେ ଗୁଣକାରୀ । ଆଶା ପିପାସାଦି ମନ-କୁବାସନା-ହାରୀ ॥୧॥
ରାମ ପ୍ରେମକୁ ଏ ପାଣି ପୋଷଣ କରଇ । ସମସ୍ତ କଳି କଲୁଷ ଗ୍ଲାନିକୁ ହରଇ ॥
ଭବ ଶ୍ରମର ଶୋଷକ ସନ୍ତୋଷ ତୋଷକ । ଦୁଃଖ ଦାରିଦ୍ର୍ୟ-ଦୂଷଣ-ଦୁରିତ ନାଶକ ॥୨॥
କାମ କ୍ରୋଧ ମଦ ମୋହ ମାନ ବିନାଶନ । ବିମଳ ବିବେକ ତଥା ବୈରାଗ୍ୟ ବର୍ଦ୍ଧନ ॥
ସାଦରେ ଅବଗାହନ୍ତେ ପିଅନ୍ତେ ଏ ପାଣି । ହୁଅଇ ହୃଦୟୁ ପାପ ପରିତାପ ହାନି ॥୩॥
ଏହି ବାରିରେ ମନକୁ ଯେହୁ ନ ଧୁଅନ୍ତି । ସେ ଭୀରୁ କଳି କର୍ତ୍ତୃକ ବଞ୍ଚିତ ହୁଅନ୍ତି ॥
ତୃଷିତ ମୃଗ ନିରେଖି ମରୀଚିକା ବାରି । ମଲାରେ ଭ୍ରମିଲା ପରି ଜୀବ ଦୁଃଖୀ ଭାରି ॥୪॥

---

(ସ୍ଥିର ଓ ଅପରିବର୍ତ୍ତନୀୟ) । ତାଙ୍କ ସ୍ୱଭାବ ଅବର୍ଣ୍ଣନୀୟ ॥ ୪ ॥ ଦୋହା:-ଚାରିଭାଇଙ୍କର ପରସ୍ପର ଦର୍ଶନ, କଥୋପକଥନ, ମିଳନ, ପ୍ରୀତି-ସମ୍ଭାଷଣ, ହାସ-ପରିହାସ ତଥା ସୁନ୍ଦର ଭ୍ରାତୃତ୍ୱ ଏହି ନଦୀଜଳର ମଧୁରତା ଓ ସୁଗନ୍ଧ ॥୪୨॥ ଚୌପାଈ—ମୋ ଆର୍ତ୍ତିଭାବ, ବିନୟ ଓ ଦୈନ୍ୟ ଏହି ସୁନ୍ଦର ଓ ନିର୍ମଳ ଜଳର ଲଘୁତା । ଏହି ଜଳ ଅତି ବିଚିତ୍ର ଓ ଅଦ୍ଭୁତ । ଶୁଣିବା ମାତ୍ରେ ଏହା ଗୁଣ କରେ ଏବଂ ଆଶାରୂପୀ ତୃଷା ଓ ମନର ମଳିନତାକୁ ଦୂର କରିଦିଏ ॥୧॥ ଏହି ଜଳ ଶ୍ରୀରାମଚନ୍ଦ୍ରଙ୍କ ଉତ୍ତମ ପ୍ରେମକୁ ପରିପୁଷ୍ଟ କରେ । କଳିଯୁଗର ସମସ୍ତ ପାପ ଓ ତଜ୍ଜନିତ ଗ୍ଲାନିକୁ ହରଣ କରିନିଏ । ସଂସାରର ଜନ୍ମମରଣ-ଶ୍ରମକୁ ଏହା ଶୋଷିପକାଏ । ସନ୍ତୋଷକୁ ମଧ୍ୟ ଏହା ସନ୍ତୁଷ୍ଟ କରି ପକାଏ ଏବଂ ପାପ, ତାପ, ଦାରିଦ୍ର୍ୟ ଓ ଦୋଷକୁ ନଷ୍ଟ କରିଦିଏ ॥୨॥ ଏହି ଜଳ କାମ, କ୍ରୋଧ, ମଦ ଓ ମୋହର ବିନାଶକାରୀ । ଏହା ନିର୍ମଳ ଜ୍ଞାନ ଓ ବୈରାଗ୍ୟ ବୃଦ୍ଧି କରେ । ଏଥିରେ ଆଦରପୂର୍ବକ ସ୍ନାନ କଲେ ଓ ଏହା ପାନ କଲେ ହୃଦୟରୁ

ମତି ଅନୁହାରି ସୁବାରି ଗୁନ ଗନ ଗନି ମନ ଅନ୍ହୱାଇ ।
ସୁମିରି ଭବାନୀ ସଂକରହି କହ କବି କଥା ସୁହାଇ ॥୪୩(କ)॥
ଅବ ରଘୁପତିପଦ ପଂକରୁହ ହିଅଁ ଧରି ପାଇ ପ୍ରସାଦ ।
କହଉଁ ଜୁଗଲ ମୁନିବର୍ଯ କର ମିଲନ ସୁଭଗ ସଂବାଦ ॥୪୩(ଖ)॥
ଭରଦ୍ୱାଜ ମୁନି ବସହିଁ ପ୍ରୟାଗା । ତିନ୍ହହି ରାମପଦ ଅତି ଅନୁରାଗା ॥
ତାପସ ସମ ଦମ ଦୟା ନିଧାନା । ପରମାରଥ ପଥ ପରମ ସୁଜାନା ॥୧॥
ମାଘ ମକରଗତ ରବି ଜବ ହୋଈ । ତୀରଥପତିହିଁ ଆୱ ସବ କୋଈ ॥
ଦେବ ଦନୁଜ କିଂନର ନର ଶ୍ରେନୀଂ । ସାଦର ମଜ୍ଜହିଁ ସକଲ ତ୍ରିବେନୀଂ ॥୨॥

---

ମତି ଅନୁସାରେ ଗୁଣି ଗୁଣଗ୍ରାମ ଏ ବାରିରେ ଧୋଇ ମନ ।
ଶିବ ଶୈଳସୁତା ସୁମରିଣ କଥା କହଇ କବି ଶୋଭନ ॥୪୩॥ (କ)
ରଘୁପତି ପାଦ-ପଦ୍ମ ହୃଦେ ଧରି ପାଇଣ ଏବେ ପ୍ରସାଦ ।
କହୁଛି ଯୁଗଳ ମୁନିବରଙ୍କର ମିଳନ ଶୁଭ ସମ୍ବାଦ ॥୪୩॥ (ଖ)
ଭରଦ୍ୱାଜ ମୁନି ବାସ ପ୍ରୟାଗେ କରନ୍ତି । ରାମ ଚରଣେ ତାହାଙ୍କ ଅନୁରାଗ ଅତି ॥
ତାପସ ସେ ଶମ ଦମ ଦୟାର ନିଧାନ । ପରମାର୍ଥ ପଥ ପଟୁ ଅତି ଜ୍ଞାନବାନ ॥୧॥
ମାଘ ମାସେ ରବି ଯେବେ ମକରେ ଗମନ୍ତି । ତୀର୍ଥରାଜ ପ୍ରୟାଗକୁ ସମସ୍ତେ ଆସନ୍ତି ॥
ଦେବ ଦାନବ ମାନବ କିଂପୁରୁଷ ଶ୍ରେଣୀ । ସାଦରେ ସକଳେ ସ୍ନାନ କରନ୍ତି ତ୍ରିବେଣୀ ॥୨॥

---

ସମସ୍ତ ପାପ-ତାପ ମେଣ୍ଟିଯାଏ ॥ ୩ ॥ ରାମ-ସୁଯଶ-ଜଳରେ ଯେଉଁମାନେ ଆପଣା ଆପଣାର ଦେହ ଧୋଇନାହାନ୍ତି, ସେମାନେ ଭୀରୁ । କଳିକାଳ ଦ୍ୱାରା ସେମାନେ ପ୍ରତାରିତ । ସୂର୍ଯ୍ୟକିରଣ ଯୋଗେ ବାଲିରେ ଜାତ ଜଳର ଭ୍ରମ ମୃଗତୃଷ୍ଣା ନାମରେ ଅଭିହିତ । ତୃଷାର୍ତ୍ତ ମୃଗ ଏହି ଜଳଭ୍ରମକୁ ସତ ଜଳ ବୋଲି ମନେ କରି ଏହା ପଛରେ ଦୌଡ଼େ । ମାତ୍ର ଜଳ ନ ପାଇ ସେ ବ୍ୟଥିତ ହୁଏ । ସେହିପରି କଳିଯୁଗ ଯେଉଁ ସବୁ ଜୀବଙ୍କୁ ପ୍ରତାରିତ କରିଅଛି, ସେମାନେ ବିଷୟ-ବାସନା ପଛରେ ଭ୍ରମି ଅଶେଷ ଦୁଃଖ ଭୋଗ କରନ୍ତି ॥୪॥ ଦୋହା—ଆପଣା ବୁଦ୍ଧି ଅନୁସାରେ ଏହି ଉତ୍ତମ ବିମଳ ଜଳର ଗୁଣରାଶି ବିଚାର କରି, ତହିଁରେ ଆପଣା ମନକୁ ଧୋଇ ଏବଂ ଶ୍ରୀ ଭବାନୀଶଙ୍କରଙ୍କୁ ସ୍ମରଣ କରି କବି (ତୁଳସୀଦାସ) ମନୋହର କଥା କହୁଛି ॥୪୩(କ)॥ ମୁଁ ବର୍ତ୍ତମାନ ଶ୍ରୀ ରଘୁନାଥଜୀଙ୍କ ପାଦ-ପଦ୍ମ ଦୁଇଟିକୁ ମୋ ହୃଦୟରେ ଧାରଣ କରି ଓ ତାହାଙ୍କର ପ୍ରସାଦ ପାଇ ଶ୍ରେଷ୍ଠ ମୁନି ଦ୍ୱୟଙ୍କ ମିଳନର ସୁନ୍ଦର ସମ୍ବାଦ ବର୍ଣ୍ଣନା କରୁଛି ॥ ୪୩ (ଖ) ॥ ଚୌପାଇ —ଭରଦ୍ୱାଜ ମୁନି ପ୍ରୟାଗରେ ବାସ କରନ୍ତି । ଶ୍ରୀରାମଚନ୍ଦ୍ରଙ୍କ ଚରଣରେ ତାଙ୍କର ପ୍ରଗାଢ଼ ପ୍ରେମ । ସେ ତପସ୍ୱୀ, ସଂଯତମନା, ଜିତେନ୍ଦ୍ରିୟ, ଦୟାର ନିଧାନ ଓ ପରମାର୍ଥ ମାର୍ଗରେ ବଡ଼ ନିପୁଣ ॥ ୧ ॥ ମାଘ ମାସରେ ଯେତେବେଳେ ସୂର୍ଯ୍ୟ ମକରରାଶି ଉପରକୁ ଆସନ୍ତି,

ପୂଜହିଁ ମାଧବ ପଦ ଜଲଜାତା । ପରସି ଅଖୟବଟୁ ହରଷହିଁ ଗାତା ॥
ଭରଦ୍ୱାଜ ଆଶ୍ରମ ଅତି ପାବନ । ପରମ ରମ୍ୟ ମୁନିବର ମନ ଭାବନ ॥୩॥
ତହାଁ ହୋଇ ମୁନି ରିଷୟ ସମାଜା । ଜାହିଁ ଜେ ମଜ୍ଜନ ତୀରଥ ରାଜା ॥
ମଜ୍ଜହିଁ ପ୍ରାତ ସମେତ ଉଛାହା । କହହିଁ ପରସପର ହରିଗୁନ ଗାହା ॥୪॥

ବ୍ରହ୍ମନିରୂପନ ଧରମବିଧି ବରନହିଁ ତତ୍ତ୍ୱ ବିଭାଗ ।
କହହିଁ ଭଗତି ଭଗବନ୍ତ କୈ ସଂଜୁତ ଜ୍ଞାନ ବିରାଗ ॥୪୪॥

ଏହି ପ୍ରକାର ଭରି ମାଘ ନହାହୀଁ । ପୁନି ସବ ନିଜ ନିଜ ଆଶ୍ରମ ଜାହୀଁ ॥
ପ୍ରତି ସଂବତ ଅତି ହୋଇ ଅନଂଦା । ମକର ମଜ୍ଜି ଗଵନହିଁ ମୁନିବୃନ୍ଦା ॥୧॥
ଏକ ବାର ଭରି ମକର ନହାଏ । ସବ ମୁନୀସ ଆଶ୍ରମହ୍ନ ସିଧାଏ ॥
ଜାଗବଲିକ ମୁନି ପରମ ବିବେକୀ । ଭରଦ୍ୱାଜ ରାଖେ ପଦ ଟେକୀ ॥୨॥

---

ପୂଜନ୍ତି ମାଧବ ପଦ-ପୁଣ୍ଡରୀକ ଦ୍ୱୟ । ସ୍ପର୍ଶି ଅକ୍ଷୟ ବଟ ହରଷ ହୃଦୟ ॥
ଭରଦ୍ୱାଜଙ୍କ ଆଶ୍ରମ ପରମ ପାବନ । ଅତି ରମଣୀୟ ମୋହେ ମୁନିଙ୍କର ମନ ॥୩॥
ତହିଁ ଋଷି ମୁନି ସଭା ହୁଏ ନିତ୍ୟ ପ୍ରତି । ସ୍ନାନ ନିମିତ୍ତ ଯେ ତୀର୍ଥରାଜକୁ ଆସନ୍ତି ॥
ପ୍ରଭାତ କାଳରେ ସ୍ନାନ କରନ୍ତି ସାଦର । ହରିଗୁଣ ଗାନେ ରତ ହୋନ୍ତି ପରସ୍ପର ॥୪॥

ବ୍ରହ୍ମ ନିରୂପଣ ଧରମ ବିଧାନ ବର୍ଣ୍ଣନ୍ତି ତତ୍ତ୍ୱ ବିଭାଗ ।
ଭଗବତ ଭକ୍ତି ଆବର ଭାଷନ୍ତି ସଂଯୁକ୍ତ ଜ୍ଞାନ ବୈରାଗ୍ୟ ॥୪୪॥

ଏଭାବେ ସର୍ବେ ସମ୍ପୂର୍ଣ୍ଣ ମାଘେ କରି ସ୍ନାନ । ନିଜ ନିଜ ଆଶ୍ରମକୁ କରନ୍ତି ପ୍ରସ୍ଥାନ ॥
ପ୍ରତିବର୍ଷ ଏହିପରି ହୁଅଇ ଆନନ୍ଦ । ଫେରନ୍ତି ମକର ସ୍ନାନ କରି ମୁନିବୃନ୍ଦ ॥୧॥
ଏକଦା ଅବଗାହନ ସମ୍ପୂର୍ଣ୍ଣ ମକର । ନିଜ ଆଶ୍ରମେ ଗମିଲେ ମୁନୀଶ ନିକର ॥
ପରମ ବିବେକୀ ଯାଜ୍ଞବଲ୍କ୍ୟ ମୁନିରାଜ । ଓଗାଳି ରଖିଲେ ତାଙ୍କୁ ପ୍ରେମେ ଭରଦ୍ୱାଜ ॥୨॥

---

ସେତେବେଳେ ସମସ୍ତ ଲୋକ ତୀର୍ଥରାଜ ପ୍ରୟାଗକୁ ଆସନ୍ତି । ଦେବତା, ଦୈତ୍ୟ କିନ୍ନର ଓ ମନୁଷ୍ୟଗଣ ସମସ୍ତେ ଆଦରପୂର୍ବକ ତ୍ରିବେଣୀରେ ସ୍ନାନ କରନ୍ତି ॥ ୨ ॥ ସମସ୍ତେ ଶ୍ରୀ ବେଣୀମାଧବଜୀଙ୍କ ପାଦ-ପଦ୍ମକୁ ପୂଜା କରନ୍ତି । ଅକ୍ଷୟବଟକୁ ସ୍ପର୍ଶ କରି ସେମାନଙ୍କ ଶରୀର ପୁଲକିତ ହୁଏ । ଭରଦ୍ୱାଜଙ୍କ ଆଶ୍ରମ ଅତି ପବିତ୍ର, ପରମ-ରମଣୀୟ ଓ ମୁନିବରବୃନ୍ଦଙ୍କ ମନୋହରଣକାରୀ ॥ ୩ ॥ ତୀର୍ଥରାଜକୁ ସ୍ନାନ ଉଦ୍ଦେଶ୍ୟରେ ଆ ବା ମୁନିଋଷିମାନଙ୍କର ସମାଜ ଭରଦ୍ୱାଜଙ୍କ ଆଶ୍ରମରେ ଏକତ୍ରିତ ହୁଏ । ପ୍ରାତଃ କାଳରେ ସମସ୍ତେ ଉତ୍ସାହର ସହିତ ସ୍ନାନ କରନ୍ତି ଏବଂ ତତ୍ପରେ ପରସ୍ପର ଭଗବାନଙ୍କ ଗୁଣଗାଥା କୁହାକୁହି ହୁଅନ୍ତି ॥ ୪ ॥ ଦୋହା—ସେମାନେ ବ୍ରହ୍ମ-ନିରୂପଣ, ଧର୍ମର ବିଧାନ ଓ ତତ୍ତ୍ୱସମୂହର ବିଭାଗ ବର୍ଣ୍ଣନ କରନ୍ତି ଏବଂ ଜ୍ଞାନ-ବୈରାଗ୍ୟଯୁକ୍ତ ଭଗବଦ୍‌ଭକ୍ତି କଥା କହନ୍ତି ॥ ୪୪ ॥ ଚୌପାଈ:—ଏହିପରି ଭାବରେ ମାଘ ମାସରେ ସ୍ନାନ କରି ମୁନୀଶ୍ୱରମାନେ ଆପଣା ଆପଣାର ଆଶ୍ରମକୁ ଫେରି ଯାଆନ୍ତି । ପ୍ରତିବର୍ଷ ଏହିପରି

ସାଦର ଚରନ ସରୋଜ ପଖାରେ । ଅତି ପୁନୀତ ଆସନ ବୈଠାରେ ॥
କରି ପୂଜା ମୁନି ସୁଜସୁ ବଖାନୀ । ବୋଲେ ଅତି ପୁନୀତ ମୃଦୁ ବାନୀ ॥୩॥
ନାଥ ଏକ ସଂସଉ ବଡ଼ ମୋରେଁ । କରଗତ ବେଦତତ୍ତ୍ୱ ସବୁ ତୋରେଁ ॥
କହତ ସୋ ମୋହି ଲାଗତ ଭୟ ଲାଜା । ଜୌଂ ନ କହଉଁ ବଡ଼ ହୋଇ ଅକାଜା ॥୪॥
ସଂତ କହହିଁ ଅସି ନୀତି ପ୍ରଭୁ ଶ୍ରୁତି ପୁରାନ ମୁନି ଗାୱ ।
ହୋଇ ନ ବିମଲ ବିବେକ ଉର ଗୁର ସନ କିଏଁ ଦୁରାୱ ॥୪୫॥
ଅସ ବିଚାରି ପ୍ରଗଟଉଁ ନିଜ ମୋହୂ । ହରହୁ ନାଥ କରି ଜନ ପର ଛୋହୂ ॥
ରାମ ନାମ କର ଅମିତ ପ୍ରଭାୱା । ସଂତ ପୁରାନ ଉପନିଷଦ ଗାୱା ॥୧॥

---

ସାଦରେ ପୟର-ପଦ୍ମ କରି ପ୍ରକ୍ଷାଳନ । ବସାଇଲେ ଦେଇ ଅତି ପବିତ୍ର ଆସନ ॥
ପୂଜା କରି ମୁନିଙ୍କର ସୁଯଶ ବଖାଣି । ଭାଷିଲେ ଅତି କୋମଳ ସୁମଧୁର ବାଣୀ ॥୩॥
ନାଥ ଏକ ଅଛି ବଡ଼ ମୋ ମନେ ସଂଶୟ । ତୁମ୍ଭ କରଗତ ବେଦ-ତତ୍ତ୍ୱ ସମୁଚୟ ॥
କହିବାକୁ ମୋତେ ଲଜ୍ଜା ଆଶଙ୍କା ହେଉଛି । ବଡ଼ ହାନି ହେବ ଯେବେ ତାହା ନ କହୁଛି ॥୪॥
ପ୍ରଭୁ ସନ୍ଥ ନୀତି ଏମନ୍ତ କହନ୍ତି ଗାଆନ୍ତି ବେଦ ପୁରାଣ ।
ଗୁରୁଠାରେ ଗୁପ୍ତ ରଖିଲେ ହୃଦୟ ନ ହୁଏ ବିମଳ ଜ୍ଞାନ ॥୪୫॥
ନିଜ ମୋହ ପ୍ରକଟଇ ଏହା ବିଚାରଣ । ହର ନାଥ ଜନ ପ୍ରତି ସ୍ନେହ ଆଚରଣ ॥
ରାମ ନାମର ପ୍ରଭାବ ଅତି ଅପ୍ରମିତ । ପୁରାଣ ଉପନିଷଦ ଶ୍ରୁତି ସୁବିଦିତ ॥୧॥

---

ବିପୁଳ ଆନନ୍ଦ-ଉତ୍ସବ ସେଠାରେ ଲାଗେ । ମକରରେ ସ୍ନାନ କରି ମୁନିଗଣ ଚାଲିଯାଆନ୍ତି ॥ ୧ ॥ ଏକଦା ପୂର୍ଣ୍ଣ ମକରସ୍ନାନ କରି ସମସ୍ତ ମୁନୀଶ୍ୱର ଆପଣା ଆପଣା ଆଶ୍ରମକୁ ଲେଉଟିଗଲେ । ଭରଦ୍ୱାଜ ପରମଜ୍ଞାନୀ ଯାଜ୍ଞବଲ୍କ୍ୟ ମୁନିଙ୍କ ଚରଣ ଧରି ତାଙ୍କୁ ରଖିନେଲେ ॥ ୨ ॥ ଆଦରରେ ତାଙ୍କ ଚରଣ-କମଳ ଧୋଇ ଦେଲେ ଏବଂ ଅତି ପବିତ୍ର ଆସନରେ ତାଙ୍କୁ ବସାଇଲେ । ଉପଯୁକ୍ତ ପୂଜାବିଧାନ କରି ମୁନି ଯାଜ୍ଞବଲ୍କ୍ୟଙ୍କ ସୁଯଶ ବର୍ଣ୍ଣନା କଲେ । ପୁଣି ଅତ୍ୟନ୍ତ ପବିତ୍ର ଓ କୋମଳ ବାଣୀରେ କହିଲେ— ॥ ୩ ॥ "ହେ ନାଥ ! ମୋ ମନରେ ଗୋଟିଏ ବଡ଼ ସନ୍ଦେହ ଜାତ ହୋଇଛି । ବେଦତତ୍ତ୍ୱ ସବୁ ଆପଣଙ୍କ ହାତ ମୁଠାରେ । (ଅର୍ଥାତ୍ ଆପଣ ହିଁ ବେଦତତ୍ତ୍ୱଜ୍ଞାନୀ ହୋଇଥିବା ହେତୁ ମୋ ସନ୍ଦେହ ନିବାରଣ କରିପାରନ୍ତି ) । କିନ୍ତୁ ସେହି ସନ୍ଦେହ ବିଷୟକୁ କହିବାକୁ ମୋତେ ଭୟ ଓ ଲାଜ ମାଡୁଛି । ( ଆପଣ କାଳେ ଭାବିବେ ମୁଁ ଆପଣଙ୍କୁ ପରୀକ୍ଷା କରିବାକୁ ଯାଉଛି, ଏଥିଯୋଗୁ ଭୟ । ଆଉ ଏତେ ବୟସ ଅତିବାହିତ ହୋଇଯାଇଥିଲେ ସୁଦ୍ଧା ଏ ପର୍ଯ୍ୟନ୍ତ ମୋର ଜ୍ଞାନ ହୋଇନାହିଁ । ଏହି ହେତୁ ଲାଜ ମାଡୁଛି ।) ଅନ୍ୟ ପକ୍ଷରେ ଯଦି ନ କହୁଛି, ତେବେ ବଡ଼ କ୍ଷତି ହେଉଛି । ( ଅର୍ଥାତ୍ ଅଜ୍ଞାନୀ ହୋଇ ରହୁଛି । ) ॥ ୪ ॥ ଦୋହା'—ହେ ପ୍ରଭୋ ! ଗୁରୁଙ୍କ ନିକଟରେ କୌଣସି ବିଷୟ ଗୋପନୀୟ ରଖିଲେ ହୃଦୟରେ ନିର୍ମଳ ଜ୍ଞାନ ହୁଏନାହିଁ । ସନ୍ଥଲୋକ,

ସଂତତ ଜପତ ସମ୍ଭୁ ଅବିନାସୀ । ସିବ ଭଗବାନ ଜ୍ଞାନ ଗୁନରାସୀ ॥
ଆକର ଚାରି ଜୀବ ଜଗ ଅହହୀଂ । କାସୀଂ ମରତ ପରମ ପଦ ଲହହୀଂ ॥୨॥
ସୋପି ରାମ ମହିମା ମୁନିରାୟା । ସିବ ଉପଦେସୁ କରତ କରି ଦାୟା ॥
ରାମୁ କଵନ ପ୍ରଭୁ ପୂଛଉଁ ତୋହୀ । କହିଅ ବୁଝାଇ କୃପାନିଧି ମୋହୀ ॥୩॥
ଏକ ରାମ ଅଵଧେସ କୁମାରା । ତିନ୍ହ କର ଚରିତ ବିଦିତ ସଂସାରା ॥
ନାରି ବିରହଁ ଦୁଖୁ ଲହେଉ ଅପାରା । ଭୟଉ ରୋଷୁ ରନ ରାବନୁ ମାରା ॥୪॥

ପ୍ରଭୁ ସୋଇ ରାମୁ କି ଅପର କୋଉ ଜାହି ଜପତ ତ୍ରିପୁରାରି ।
ସତ୍ୟଧାମ ସର୍ବଜ୍ଞ ତୁମ୍ହ କହହୁ ବିବେକୁ ବିଚାରି ॥୪୬॥

---

ଜପନ୍ତି ସତତ ସଦାଶିବ ଅବିନାଶୀ । ଯେଉଁ ଶିବ ଭଗବାନ ଜ୍ଞାନ ଗୁଣ ରାଶି ॥
ଚାରି ପ୍ରକାର ଜୀବ ଯେ ଜଗତେ ଅଛନ୍ତି । କାଶୀରେ ମରନ୍ତେ ପଦ ପରମ ଲଭନ୍ତି ॥୨॥
ତାହା ମଧ୍ୟ ରାମନାମ ମହିମା ମୁନୀଶ । ଦୟା ବହୁ କରନ୍ତି ଏ ଉପଦେଶ ଈଶ ॥
ରାମ କେଉଁ ପ୍ରଭୁ ଏହା ତୁମ୍ଭଙ୍କୁ ପଚାରେ । ବୁଝାଇ କହନ୍ତୁ କୃପାନିଧି ମୋ ଆଗରେ ॥୩॥
ଏକ ରାମ ଅଯୋଧ୍ୟାର ନୃପଙ୍କ କୁମାର । ତାହାଙ୍କ ଚରିତ ଜାଣେ ସମଗ୍ର ସଂସାର ॥
ନାରୀ ବିରହେ ଅପାର ଦୁଃଖ ସେ ସହିଲେ । ରୋଷ ହୋଇ ରାବଣକୁ ରଣେ ସଂହାରିଲେ ॥୪॥

ପ୍ରଭୁ ସେହି ରାମ କିମ୍ବା କେହି ଆନ ଯାହାଙ୍କୁ ଜପନ୍ତି ହର ।
କହନ୍ତୁ ବିବେକେ ବିଚାରି ଆପଣ ସର୍ବଜ୍ଞ ସତ୍ୟ ସାଗର ॥୪୬॥

---

ବେଦ, ପୁରାଣ ତଥା ମୁନିଜନମାନେ ଏହି ମିଠାବାକ୍ୟ କହନ୍ତି ॥ ୪୫ ॥ ଚୌପାଈ— ଏହା ବିଚାର କରି ମୁଁ ମୋ ଅଜ୍ଞାନ ପ୍ରକାଶ କରୁଛି । ହେ ନାଥ ! ସେବକ ପ୍ରତି କୃପା କରି ତାହାର ଏହି ଅଜ୍ଞାନ ନାଶ କରନ୍ତୁ । ସନ୍ଥ, ପୁରାଣ ଓ ଉପନିଷଦ୍‌ଗଣ 'ରାମ' ନାମର ଅସୀମ ପ୍ରଭାବ ବୋଲି ଗାନ କରିଅଛନ୍ତି ॥ ୧ ॥ କଲ୍ୟାଣସ୍ୱରୂପ, ଜ୍ଞାନ ଓ ଗୁଣରାଶି, ଅବିନାଶୀ ଭଗବାନ୍ ଶମ୍ଭୁ ନିରନ୍ତର 'ରାମ' ନାମ ଜପ କରନ୍ତି । ସଂସାରରେ ଚାରି ଜାତିର ଜୀବ ଅଛନ୍ତି । କାଶୀରେ ମୃତ୍ୟୁ ଲଭିଲେ ସମସ୍ତେ ପରମପଦ ଲାଭ କରନ୍ତି ॥ ୨ ॥ ହେ ମୁନିରାଜ ! ତାହା ମଧ୍ୟ 'ରାମ' ନାମର ମହିମା । ଶିବ ମହାରାଜ ଦୟା କରି କାଶୀରେ ଦେହ ତ୍ୟାଗ କରୁଥିବା ଜୀବକୁ 'ରାମ' ନାମ ଉପଦେଶ ଦିଅନ୍ତି । ତଦ୍ଦ୍ୱାରା ତାହାକୁ ପରମପଦ ମିଳେ । ହେ ପ୍ରଭୋ ! ମୁଁ ଆପଣଙ୍କୁ ପଚାରୁଛି—ସେ 'ରାମ' କିଏ ? ହେ କୃପାନିଧାନ ! ମୋତେ ବୁଝାଇ କୁହନ୍ତୁ ॥ ୩ ॥ ଜଣେ 'ରାମ' ତ ଅଯୋଧ୍ୟାନରେଶ ଦଶରଥଙ୍କ କୁମାର । ତାଙ୍କ ଚରିତ ସମସ୍ତ ସଂସାରକୁ ଜଣା । ସେ ସ୍ତ୍ରୀଙ୍କ ବିରହରେ ଅପାର ଦୁଃଖ ଲାଭ କରିଥିଲେ ଏବଂ କ୍ରୋଧର ବଶବର୍ତ୍ତୀ ହୋଇ ଯୁଦ୍ଧରେ ରାବଣକୁ ମାରିଥିଲେ ॥ ୪ ॥ ଦୋହା:—ହେ ପ୍ରଭୋ ! ଶିବ ମହାପ୍ରଭୁ ସେହି ରାମଙ୍କୁ କିମ୍ବା ଅନ୍ୟ କେଉଁ ରାମଙ୍କୁ ଜପ କରନ୍ତି ? ଆପଣ ସତ୍ୟର ଧାମ ଏବଂ ସର୍ବଜ୍ଞ । ବିବେକ ଓ ଜ୍ଞାନ ବଳରେ ବିଚାର କରି ମୋତେ କୁହନ୍ତୁ ॥ ୪୬ ॥

ଜୈସେଁ ମିଟୈ ମୋର ଭ୍ରମ ଭାରୀ । କହହୁ ସୋ କଥା ନାଥ' ବିସ୍ତାରୀ ॥
ଜାଗବଲିକ ବୋଲେ ମୁସୁକାଈ । ତୁମ୍ହହି ବିଦିତ ରଘୁପତି ପ୍ରଭୁତାଈ ॥୧॥
ରାମଭଗତ ତୁମ୍ହ ମନ କ୍ରମ ବାନୀ । ଚତୁରାଈ ତୁମ୍ହାରି ମୈଁ ଜାନୀ ॥
ଚାହହୁ ସୁନୈ ରାମଗୁନ ଗୂଢ଼ା । କୀହ୍ନିହୁ ପ୍ରସ୍ନ ମନହୁ ଅତି ମୂଢ଼ା ॥୨॥
ତାତ ସୁନହୁ ସାଦର ମନୁ ଲାଈ । କହଉଁ ରାମ କୈ କଥା ସୁହାଈ ॥
ମହାମୋହୁ ମହିଷେସୁ ବିସାଲା । ରାମକଥା କାଲିକା କରାଲା ॥୩॥
ରାମକଥା ସସି କିରନ ସମାନା । ସନ୍ତ ଚକୋର କରହିଁ ଜେହି ପାନା ॥
ଐସେଇ ସଂସୟ କୀହ୍ନ ଭବାନୀ । ମହାଦେବ ତବ କହା ବଖାନୀ ॥୪॥

କହଉଁ ସୋ ମତି ଅନୁହାରି ଅବ ଉମା ସଂଭୁ ସଂବାଦ ।
ଭୟଉ ସମୟ ଜେହି ହେତୁ ଜେହି ସୁନୁ ମୁନି ମିଟିହି ବିଷାଦ ॥୪୭॥

---

ଯେମନ୍ତେ ନଷ୍ଟ ହୋଇବ ମୋର ଭ୍ରମ ଭାରୀ । କହନ୍ତୁ ସେ କଥା ମୁନିନାୟକ ବିସ୍ତାରି ॥
ହସି ଭାଷିଲେ ସେ ଯାଜ୍ଞବଲ୍‌କ୍ୟ ମୁନିରାଣ । ରଘୁପତିଙ୍କ ପ୍ରଭୁତା ତୁମ୍ଭେ ଭଲ ଜାଣ ॥୧॥
ରାମଭକ୍ତ ତୁମ୍ଭେ କାୟ ମନ ବାକ୍ୟେ ଅଛ । ଜାଣେ ମୁଁ ତୁମ୍ଭ ଚତୁରପଣ ନିଷ୍କପଟ ॥
ଶୁଣିବାକୁ ଇଚ୍ଛା କର ରାମ ଗୁଣ ଗୂଢ । ପ୍ରଶ୍ନ ପଚାରିଲ ଯେହ୍ନେ ସତେ ଅତି ମୂଢ ॥୨॥
ବତ୍ସ, ସାଦରେ ଶ୍ରବଣ କର ଦେଇ ମନ । କହୁଛୁ ରାମଚନ୍ଦ୍ରଙ୍କ କଥା ସୁଶୋଭନ ॥
ମହାମୋହ ଯେ ମହିଷ ଅସୁର ବିଶାଳ । ରାମ କଥା ତା ନିମନ୍ତେ କାଳିକା କରାଳ ॥୩॥
ରାମକଥା ସୁଧାକର କିରଣ ସମାନ । ସନ୍ଥ-ଚକୋର କରନ୍ତି ସଦା ତାହା ପାନ ॥
ଏମନ୍ତ ସଂଶୟ କରିଥିଲେ ପାର୍ବତୀ । ବିସ୍ତାରି ବଖାଣିଥିଲେ ତେବେ ପଶୁପତି ॥୪॥

ମତି ଅନୁସାରେ କହୁଛୁ ମୁଁ ଏବେ ସେ ଉମା ଶିବ ସମ୍ବାଦ ।
ହେଲା ମୁନି ଯେଉଁ ସମୟେ ଯେହେତୁ, ଶୁଣି ତୁଟିବ ବିଷାଦ ॥୪୭॥

---

ଚୌପାଈ —ହେ ନାଥ ! ଯେଉଁ ପ୍ରକାରେ ମୋର ଏହି ବଡ ଭ୍ରମ ମେଣ୍ଟିଯିବ, ଆପଣ ସେହି କଥା ବିସ୍ତାରପୂର୍ବକ ମୋତେ କହନ୍ତୁ । ଏଥିକୁ ଯାଜ୍ଞବଲ୍‌କ୍ୟ ଋଷି କହିଲେ, "ଶ୍ରୀ ରଘୁନାଥଙ୍କ ପ୍ରଭୁତା ବିଷୟ ତୁମେ ଜାଣ ॥ ୧ ॥ ତୁମେ ମନ, ବଚନ ଓ କର୍ମରେ ଶ୍ରୀରାମଙ୍କ ଭକ୍ତ । ତୁମ ଚାଲାକି ମୁଁ ଜାଣିଗଲି । ତୁମେ ଶ୍ରୀରାମଙ୍କ ରହସ୍ୟମୟ ଗୁଣ ଶୁଣିବାକୁ ଚାହୁଁଅଛ, ଏହି କାରଣରୁ ଏପରି ପ୍ରଶ୍ନ ପଚାରିଛ; ସତେ ଯେମିତି ନିଜେ ନିପଟ ମୂର୍ଖ ! ॥ ୨ ॥ ବାପ ! ତୁମେ ଆଦରରେ ମନ ଲଗାଇ ଶୁଣ । ମୁଁ ଶ୍ରୀରାମଙ୍କ ସୁନ୍ଦର କଥା କହୁଅଛି । ମହାମୋହ ବିଶାଳକାୟ ମହିଷାସୁର ଏବଂ ଶ୍ରୀରାମଙ୍କ କଥା ତାହାର ବିନାଶକାରିଣୀ ଦେବୀ କାଳିକା ॥ ୩ ॥ ଶ୍ରୀରାମଙ୍କ କଥା ଚନ୍ଦ୍ରକିରଣ ସମାନ । ସନ୍ଥ-ଚକୋର ସର୍ବଦା ତାହା ପାନ କରନ୍ତି । ଏପରି ସନ୍ଦେହ ଥରେ ପାର୍ବତୀ କରିଥିଲେ । ଶଙ୍କର ମହାପ୍ରଭୁ ବିସ୍ତାରପୂର୍ବକ ତାହାର ଉତ୍ତର ଦେଇଥିଲେ ॥ ୪ ॥
ଦୋହା —ବର୍ତ୍ତମାନ ମୁଁ ମୋ ବୁଦ୍ଧି ଅନୁସାରେ ସେହି ଉମାଶିବଙ୍କ ସମ୍ବାଦ କହୁଅଛି ।

ଏକବାର ତ୍ରେତା ଜୁଗ ମାହୀଁ । ସଂଭୁ ଗଏ କୁଂଭଜ ଋଷି ପାହୀଁ ॥
ସଂଗ ସତୀ ଜଗଜନନି ଭବାନୀ । ପୂଜେ ଋଷି ଅଖିଲେସ୍ୱର ଜାନୀ ॥୧॥
ରାମକଥା ମୁନିବର୍ଜ ବଖାନୀ । ସୁନୀ ମହେସ ପରମ ସୁଖୁ ମାନୀ ॥
ଋଷି ପୁଛୀ ହରିଭଗତି ସୁହାଈ । କହୀ ସଂଭୁ ଅଧିକାରୀ ପାଈ ॥୨॥
କହତ ସୁନତ ରଘୁପତି ଗୁନ ଗାଥା । କଛୁ ଦିନ ତହାଁ ରହେ ଗିରିନାଥା ॥
ମୁନି ସନ ବିଦା ମାଗି ତ୍ରିପୁରାରୀ । ଚଲେ ଭବନ ସଁଗ ଦଚ୍ଛକୁମାରୀ ॥୩॥
ତେହି ଅବସର ଭଞ୍ଜନ ମହିଭାରା । ହରି ରଘୁବଂସ ଲୀହ୍ନ ଅବତାରା ॥
ପିତା ବଚନ ତଜି ରାଜୁ ଉଦାସୀ । ଦଂଡକ ବନ ବିଚରତ ଅବିନାସୀ ॥୪॥

ହୃଦୟଁ ବିଚାରତ ଜାତ ହର କେହି ବିଧି ଦରସନୁ ହୋଇ ।
ଗୁପ୍ତ ରୂପ ଅବତରେଉ ପ୍ରଭୁ ଗଏଁ ଜାନ ସବୁ କୋଇ ॥୪୮(କ)

---

ଏକଦା ତ୍ରେତାଯୁଗରେ ପାର୍ବତୀପତି । ଗମନ କଲେ ଅଗସ୍ତି ଋଷିବର କତି ॥
ସଙ୍ଗେ ଥିଲେ ସତୀ ଜଗଜ୍ଜନନୀ ଭବାନୀ । ପୂଜିଲେ ଋଷି ଅଖିଳ ଅଧୀଶ୍ୱର ଜାଣି ॥୧॥
ରାମଙ୍କ କଥା ବର୍ଣ୍ଣନ କଲେ ମୁନିବର । ପରମ ସୁଖ ଲଭିଣ ଶୁଣିଲେ ଶଙ୍କର ॥
ସୁନ୍ଦର ଶ୍ରୀ ହରିଭକ୍ତି ଋଷି ପଚାରିଲେ । ଅଧିକାରୀ ପାଇ ପୁଣି ମହେଶ କହିଲେ ॥୨॥
କହନ୍ତେ ଶୁଣନ୍ତେ ରଘୁପତି କୀର୍ତ୍ତିରାଶି । ତହିଁ କିଛି ଦିନ ବାସ କଲେ କାଶୀବାସୀ ॥
ମୁନିଙ୍କଠାରୁ ବିଦାୟ ମାଗି ତ୍ରିଲୋଚନ । ଦକ୍ଷକୁମାରୀ ସହିତେ ଫେରିଲେ ଭବନ ॥୩॥
ସେହି ସମୟେ ହରିବା ହେତୁ ମହୀଭାର । ହରି ରଘୁବଂଶେ ହୋଇଥିଲେ ଅବତାର ॥
ପିତାଙ୍କ ବଚନେ ରାଜ୍ୟ ତେଜିଣ ଉଦାସୀ । ଦଣ୍ଡକ ବନେ ବିଚରୁଥିଲେ ଅବିନାଶୀ ॥୪॥

ହୃଦ୍‌ୟେ ବିଚାର କରୁଥାନ୍ତି ହର ଦର୍ଶନ ହେବ କେମନ୍ତେ ।
ଗୁପ୍ତ ରୂପେ ପ୍ରଭୁ ଅବତରିଛନ୍ତି ଗଲେ ଜାଣିବେ ସମସ୍ତେ ॥ ୪୮ (କ) ॥

---

ତାହା ଯେଉଁ ସମୟରେ ଏବଂ ଯେଉଁ କାରଣରୁ ହୋଇଥିଲା, ହେ ମୁନି ! ତୁମେ ଶୁଣ । ତମ ବିଷାଦ ମେଣ୍ଟିଯିବ ॥ ୪୭ ॥ ଚୌପାଇ:—ଏକଦା ତ୍ରେତାଯୁଗରେ ଶିବ ଅଗସ୍ତ୍ୟ ଋଷିଙ୍କ ପାଖକୁ ଗଲେ । ତାଙ୍କ ସହିତ ଜଗଜ୍ଜନନୀ ଭବାନୀ ସତୀ ମଧ୍ୟ ଥିଲେ । ସମଗ୍ର ଜଗତର ଈଶ୍ୱର ଜାଣି ଋଷି ତାଙ୍କୁ ପୂଜା କଲେ ॥ ୧ ॥ ମୁନିବର ଅଗସ୍ତ୍ୟଜୀ ରାମକଥା ବିସ୍ତାରପୂର୍ବକ କହିଲେ । ମହେଶ୍ୱର ତାହାକୁ ପରମସୁଖ ମନେ କରି ଶୁଣିଲେ । ତତ୍ପରେ ଋଷି ଶିବଙ୍କୁ ସୁନ୍ଦର ହରିଭକ୍ତି ବିଷୟ ପଚାରିଲେ ଏବଂ ଶିବ ତାହାଙ୍କୁ ଯୋଗ୍ୟ ବ୍ୟକ୍ତି ଜାଣି ଭକ୍ତିତତ୍ତ୍ୱ ନିରୂପଣପୂର୍ବକ ବୁଝାଇ କହିଲେ ॥ ୨ ॥ ଏହିପରି ଶ୍ରୀ ରଘୁନାଥଜୀଙ୍କ ଗୁଣଗାଥା ଅଗସ୍ତ୍ୟ ମୁନି କହୁଥାନ୍ତି ଏବଂ ତାହା ଶୁଣି ଶୁଣି ଶିବ ସେଠାରେ କିଛି ଦିନ ରହିଗଲେ । ତତ୍ପରେ ମୁନିଙ୍କଠାରୁ ବିଦାୟ ମାଗି ଦକ୍ଷକୁମାରୀ ସତୀଙ୍କ ସହିତ ଶିବ ତାଙ୍କ ବାସଭବନ (କୈଳାସ)କୁ ଚାଲିଲେ ॥ ୩ ॥ ସେତିକିବେଳକୁ ପୃଥିବୀର ଭାର ହ୍ରାସ କରିବା ପାଇଁ ଶ୍ରୀହରି ରଘୁବଂଶରେ ଅବତାର ଗ୍ରହଣ କରିଥା'ନ୍ତି ।

ସଂକର ଉର ଅତି ଛୋଭୁ ସତୀ ନ ଜାନହିଂ ମରମୁ ସୋଇ ।
ତୁଲସୀ ଦରସନ ଲୋଭୁ ମନ ଡରୁ ଲୋଚନ ଲାଲଚୀ ॥୪୮(ଖ)
ରାବନ ମରନ ମନୁଜ କର ଜାଚା । ପ୍ରଭୁ ବିଧି ବଚନୁ କୀନ୍ହ ଚହ ସାଚା ॥
ଜୌଂ ନହିଂ ଜାଉଁ ରହଇ ପଛିତାଓ । କରତ ବିଚାରୁ ନ ବନତ ବନାଓ ॥୧॥
ଏହି ବିଧି ଭଏ ସୋଚବସ ଈସା । ତେହୀ ସମୟ ଜାଇ ଦସସୀସା ॥
ଲୀନ୍ହ ନୀଚ ମାରୀଚହି ସଂଗା । ଭୟଉ ତୁରତ ସୋଇ କପଟ କୁରଂଗା ॥୨॥
କରି ଛଲୁ ମୂଢ଼ ହରୀ ବୈଦେହୀ । ପ୍ରଭୁ ପ୍ରଭାଉ ତସ ବିଦିତ ନ ତେହୀ ॥
ମୃଗ ବଧି ବଂଧୁ ସହିତ ହରି ଆଏ । ଆଶ୍ରମୁ ଦେଖି ନୟନ ଜଲ ଛାଏ ॥୩॥

---

ତୁଲସୀ ଶିବଙ୍କ ହୃଦୟ କ୍ଷୋଭିତ ମର୍ମ ନ ଜାଣନ୍ତି ସତୀ ।
ଦରଶନ ଲୋଭେ ନେତ୍ର ଲାଳାୟିତ ମନ ଡରୁଥାଏ ଅତି ॥ ୪୮ (ଖ) ॥
ନର ହସ୍ତେ ମୃତ୍ୟୁ ମାଗିଥିଲା ଲଙ୍କପତି । ପ୍ରଭୁ ବିଧି ବାକ୍ୟ ସତ୍ୟ କରିବା ଇଚ୍ଛନ୍ତି ॥
ଯେବେ ନ ଯିବି ରହିବ ପଶ୍ଚାତ୍ତାପ ହୃଦରେ । କଲେହେଁ ବିଚାର କିଛି ଉପାୟ ନ ସ୍ଫୁରେ ॥୧॥
ଏହିଭାବେ ଚିନ୍ତାବଶ ହୋଇଲେ ଈଶ୍ୱର । ସେହି ସମୟରେ ଯାଇ ଲଙ୍କଅଧୀଶ୍ୱର ॥
ନେଲା ନୀଚ ମନ୍ଦମତି ମାରୀଚକୁ ସଙ୍ଗ । ହୋଇଗଲା ତତ୍କ୍ଷଣ ସେହି କପଟ କୁରଙ୍ଗ ॥୨॥
ଛଳ କରି ମୂଢ଼ ବଇଦେହୀଙ୍କି ହରିଲା । ପ୍ରଭୁ ପ୍ରଭାବ ତେମନ୍ତ ଜାଣି ସେ ନ ଥିଲା ॥
ମୃଗ ବଧି ବନ୍ଧୁ ସହ ହରି ବାହୁଡ଼ିଲେ । ଆଶ୍ରମ ଦେଖି ନୟନୁ ନୀର ବୁହାଇଲେ ॥୩॥

---

ସେ ଅବିନାଶୀ ଭଗବାନ୍ ସେହି ସମୟରେ ପିତାଙ୍କ ବଚନ ରକ୍ଷା ନିମନ୍ତେ ରାଜ୍ୟତ୍ୟାଗ-ପୂର୍ବକ ତପସ୍ୱୀ ଓ ସାଧୁ ବେଶରେ ଦଣ୍ଡକାରଣ୍ୟରେ ବିଚରଣ କରୁଥା'ନ୍ତି ॥ ୪ ॥ ଦୋହା —ଶିବ ମନେ ମନେ ବିଚାର କରି ଯାଉଥା'ନ୍ତି—କିମିତି ଭଗବାନଙ୍କ ଦର୍ଶନ ମୋତେ ମିଳିଯାଆନ୍ତା ହେଲେ । ପୁଣି ଚିନ୍ତା କରୁଥା'ନ୍ତି—ପ୍ରଭୁ ଗୁପ୍ତ ରୂପରେ ଅବତାର ଗ୍ରହଣ କରିଅଛନ୍ତି । ମୁଁ ଗଲେ କାଳେ ସମସ୍ତ ରହସ୍ୟ ଜନସାଧାରଣରେ ପ୍ରକଟ ହୋଇଯିବ ' ॥ ୪୮ (କ) ॥ ସୋରଠା —ଶଙ୍କରଙ୍କ ହୃଦୟରେ ଏହି ବିଷୟରେ ପ୍ରବଳ ଆଲୋଡ଼ନ ଜାତ ହେଉଥାଏ । ମାତ୍ର ସତୀ ଏହି ମର୍ମ ଜାଣିପାରୁ ନ ଥା'ନ୍ତି । ତୁଳସୀଦାସଜୀ କହନ୍ତି ଯେ, ପ୍ରଭୁଙ୍କ ଅବତାରର ରହସ୍ୟ କାଳେ ଉଦ୍‌ଘାଟିତ ହୋଇଯିବ, ସେଥି ନିମନ୍ତେ ଶିବଙ୍କ ମନରେ ଭୟ ଜାତ ହେଉଥାଏ ସତ, ମାତ୍ର ପ୍ରଭୁଙ୍କ ଦର୍ଶନ-ଲୋଭରେ ଶିବଙ୍କ ନୟନ ଲାଳାୟିତ ହେଉଥାଏ ॥ ୪୮ (ଖ) ॥ ଚୌପାଇ —ରାବଣ 'ମନୁଷ୍ୟ ହାତରେ ମୋହର ମୃତ୍ୟୁ ହେଉ' ବୋଲି ବ୍ରହ୍ମାଙ୍କୁ ବର ମାଗିଥିଲା । ପ୍ରଭୁ ବ୍ରହ୍ମାଙ୍କ ବଚନର ସତ୍ୟତା ରକ୍ଷା କରିବାକୁ ଚାହାନ୍ତି । ମୁଁ ଯଦି ତାଙ୍କ ପାଖକୁ ନ ଯାଉଛି, ତେବେ ବଡ଼ ଅନୁତାପ ରହିଯିବ । ଏହିପରି ଶିବଙ୍କ ମନରେ ବିଚାରର ଧାରା ବହି ଚାଲିଥାଏ । କିନ୍ତୁ କୌଣସି କଥା ସ୍ଥିର ହୋଇପାରୁ ନ ଥାଏ ॥ ୧ ॥ ଏହିପରି ଭାବରେ ମହାଦେବ ଘୋର ଚିନ୍ତାର ବଶବର୍ତ୍ତୀ ହୋଇପଡ଼ିଲେ । ସେହି

ବିରହ ବିକଲ ନର ଇବ ରଘୁରାଈ । ଖୋଜତ ବିପିନ ଫିରତ ଦୋଉ ଭାଈ ॥
କବହୁଁ ଜୋଗ ବିୟୋଗ ନ ଜାକେଁ । ଦେଖା ପ୍ରଗଟ ବିରହ ଦୁଖୁ ତାକେଁ ॥୪॥
ଅତି ବିଚିତ୍ର ରଘୁପତି ଚରିତ ଜାନହିଁ ପରମ ସୁଜାନ ।
ଜେ ମତିମଂଦ ବିମୋହବସ ହୃଦୟଁ ଧରହିଁ କଛୁ ଆନ ॥୪୯॥
ସଂଭୁ ସମୟ ତେହି ରାମହି ଦେଖା । ଉପଜା ହିୟଁ ଅତି ହରଷୁ ବିସେଷା ॥
ଭରି ଲୋଚନ ଛବିସିଂଧୁ ନିହାରୀ । କୁସମୟ ଜାନି ନ କୀହ୍ନି ଚିହ୍ନାରୀ ॥୧॥
ଜୟ ସଚ୍ଚିଦାନନ୍ଦ ଜଗପାଵନ । ଅସ କହି ଚଲେଉ ମନୋଜନସାଵନ ॥
ଚଲେ ଜାତ ସିବ ସତୀ ସମେତା । ପୁନି ପୁନି ପୁଲକତ କୃପାନିକେତା ॥୨॥

---

ବିରହ ବିକଳ ନର ପ୍ରାୟେ ରଘୁପତି । ଖୋଜି ଖୋଜି ବେନି ଭାଇ ବିପିନେ ବୁଲନ୍ତି ॥
କେବେହେଁ ଯୋଗବିୟୋଗ ନାହିଁ ଯାହାଙ୍କର । ପ୍ରତ୍ୟକ୍ଷ ବିରହ ଦୁଃଖ ଦେଖିଲେ ତାଙ୍କର ॥୪॥
ଅତ୍ୟନ୍ତ ବିଚିତ୍ର ରାମଙ୍କ ଚରିତ୍ର ଜାଣନ୍ତି ପ୍ରବୀଣ ଜନେ ।
ଯେ ମତି ମଳିନ ମୋହବଶ ଅନ୍ୟ-ଭାବ କିଛି ଭାବେ ମନେ ॥୪୯॥
ବିଲୋକି ଶମ୍ଭୁ ରାମଙ୍କୁ ସେହି ସମୟରେ । ଉପୁଜିଲା ଅତି ମୋଦ ହୃଦୟ ମଧ୍ୟରେ ॥
ନିରେଖି ନେତ୍ର ପୂରାଇ ଛବି ରତ୍ନାକର । ଚିହ୍ନା ନ କଲେ ବିଚାରି ମନ୍ଦ ଅବସର ॥୧॥
ଜୟ ଶ୍ରୀ ସଚ୍ଚିଦାନନ୍ଦ ଜଗତ ପାବନ । ଏମନ୍ତ କହି ଚଳିଲେ ଅନଙ୍ଗ ନାଶନ ॥
ଚାଲି ଯାଆନ୍ତି ଶଙ୍କର ସତୀଙ୍କ ସହିତ । ବାରମ୍ବାର କୃପାସିନ୍ଧୁ ହୋଇ ପୁଲକିତ ॥୨॥

---

ସମୟରେ ନୀଚ ରାବଣ ମାରୀଚଙ୍କୁ ସଙ୍ଗରେ ଧରି ଆସିଲା ଏବଂ ମାରୀଚ ଶୀଘ୍ର କପଟ-ମୃଗ ହୋଇଗଲା ॥ ୨ ॥ ମୂର୍ଖ ରାବଣ କପଟ କରି ସୀତାଙ୍କୁ ହରଣ କରି ନେଇଗଲା । ରାମଚନ୍ଦ୍ରଙ୍କ ପ୍ରକୃତ ପ୍ରତାପ ବିଷୟରେ ତାକୁ କିଛି ଜଣା ନ ଥିଲା । ମୃଗ ମାରି ଭାଇ ଲକ୍ଷ୍ମଣଙ୍କ ସହିତ ଶ୍ରୀହରି ଆଶ୍ରମକୁ ଆସିଲେ । ଆଶ୍ରମକୁ ଖାଲି ଦେଖି ତାହାଙ୍କ ନେତ୍ର ଅଶ୍ରୁରେ ପୂର୍ଣ୍ଣ ହୋଇଗଲା ॥ ୩ ॥ ଶ୍ରୀ ରଘୁନାଥଜୀ ମନୁଷ୍ୟଙ୍କ ପରି ବିରହରେ ବ୍ୟାକୁଳ ଏବଂ ଭାଇ ଦୁହେଁ ବନରେ ସୀତାଙ୍କୁ ଖୋଜି ବୁଲୁଅଛନ୍ତି । ଯାହାଙ୍କ ପକ୍ଷରେ ସଂଯୋଗ-ବିୟୋଗ କଦାପି ସମ୍ଭବ ନୁହେଁ, ତାଙ୍କଠାରେ ଆଜି ପ୍ରତ୍ୟକ୍ଷ ବିରହ ଦୁଃଖ ଦେଖାଗଲା ॥ ୪ ॥ ଦୋହା'—ଶ୍ରୀ ରଘୁନାଥଙ୍କ ଚରିତ ବଡ ବିଚିତ୍ର । ପ୍ରକୃତ ଜ୍ଞାନ ଲାଭ କରିଥିବା ଜନେ ସେ ଚରିତ ଜାଣନ୍ତି । ଯେଉଁମାନେ ମନ୍ଦବୁଦ୍ଧି, ସେମାନେ ତ ବିଶେଷ ରୂପେ ମୋହର ଅଧୀନ ହୋଇ ହୃଦୟରେ ଆଉ କିଛି ନା କିଛି ବୁଝି ବସନ୍ତି ॥ ୪୯ ॥ ଚୌପାଈ'—ଶ୍ରୀ ଶିବ ସେହି ସମୟରେ ଶ୍ରୀରାମଙ୍କ ଦର୍ଶନ ଲାଭ କଲେ ଏବଂ ତାଙ୍କ ଦର୍ଶନ ଯୋଗେ ଶିବଙ୍କ ହୃଦୟରେ ଅପାର ଆନନ୍ଦ ଜାତ ହେଲା । ଶୋଭାସମୁଦ୍ର ଶ୍ରୀରାମଙ୍କୁ ଶଙ୍କର ଆଖି ପୂରେଇ ଦେଖିଲେ । ମାତ୍ର କୁସମୟ ଜାଣି ଆପଣାର ପରିଚୟ ଦେଲେ ନାହିଁ ॥ ୧ ॥ "ଜଗତପାବନ ସଚ୍ଚିଦାନନ୍ଦଙ୍କର ଜୟ ହେଉ ।" ଏହା କହି ମଦନନାଶନ ଶିବ ଅଗ୍ରସର ହେଲେ । କୃପାନିଧାନ ଶଙ୍କର

ସତୀଁ ସୋ ଦସା ସଂଭୁ କୈ ଦେଖି । ଉର ଉପଜା ସଂଦେହୁ ବିସେଷୀ ॥
ସଂକରୁ ଜଗତବଂଦ୍ୟ ଜଗଦୀସା । ସୁର ନର ମୁନି ସବ ନାୱତ ସୀସା ॥୩॥
ତିନ୍ହ ନୃପସୁତହି କୀନ୍ହ ପରନାମା । କହି ସଚ୍ଚିଦାନଂଦ ପରଧାମା ॥
ଭଏ ମଗନ ଛବି ତାସୁ ବିଲୋକୀ । ଅଜହୁଁ ପ୍ରୀତି ଉର ରହତି ନ ରୋକୀ ॥୪॥

ବ୍ରହ୍ମ ଜୋ ବ୍ୟାପକ ବିରଜ ଅଜ ଅକଲ ଅନୀହ ଅଭେଦ ।
ସୋ କି ଦେହ ଧରି ହୋଇ ନର ଜାହି ନ ଜାନତ ବେଦ ॥୫୦॥

ବିଷ୍ଣୁ ଜୋ ସୁରହିତ ନରତନୁ ଧାରୀ । ସୋଉ ସର୍ବଜ୍ଞ ଜଥା ତ୍ରିପୁରାରୀ ॥
ଖୋଜଇ ସୋ କି ଅଜ୍ଞ ଇବ ନାରୀ । ଜ୍ଞାନଧାମ ଶ୍ରୀପତି ଅସୁରାରୀ ॥୧॥
ସଂଭୁଗିରା ପୁନି ମୃଷା ନ ହୋଈ । ସିବ ସର୍ବଜ୍ଞ ଜାନ ସବୁ କୋଈ ॥
ଅସ ସଂସୟ ମନ ଭୟଉ ଅପାରା । ହୋଇ ନ ହୃଦୟଁ ପ୍ରବୋଧ ପ୍ରଚାରା ॥୨॥

---

ସେ ଦଶା ସଦାଶିବଙ୍କ ଅବଲୋକି ସତୀ । ହୃଦୟ ମଧ୍ୟେ ସନ୍ଦେହ ଉପୁଜିଲା ଅତି ॥
ଶଙ୍କର ଜଗତ ବନ୍ଦ୍ୟ ଭୁବନ ଈଶ୍ୱର । ଶିର ନୁଆଁନ୍ତି ସମସ୍ତେ ସୁର ମୁନି ନର ॥୩॥
ସେ ଏକ ରାଜପୁତ୍ରଙ୍କୁ କରିଲେ ପ୍ରଣାମ । ଉଚ୍ଚାରି ସଚ୍ଚିଦାନନ୍ଦ ପରମ ବିଶ୍ରାମ ॥
ଛବି ତାର ଅବଲୋକି ହୁଅନ୍ତି ଗଦ୍‌ଗଦ । ଅଦ୍ୟାପି ପ୍ରୀତି ସମ୍ଭାଳି ନ ପାରଇ ହୃଦ ॥୪॥

ବ୍ୟାପକ ଯେ ବ୍ରହ୍ମ ନିଷ୍କଳ ନିଷ୍କାମ ଅଜ ବିରଜ ଅଭେଦ ।
ସେ କି ଦେହଧରି ମନୁଷ୍ୟ ହୋଇବ ଯାହାଙ୍କୁ ନ ଜାଣେ ବେଦ ॥୫୦॥

ବିଷ୍ଣୁ ଯେବେ ସୁରହିତେ ନରତନୁ ଧାରୀ । ସେହୁ ସର୍ବଜ୍ଞ ଅଟନ୍ତି ଯଥା ତ୍ରିପୁରାରି ॥
ଅଜ୍ଞାନୀ ସଦୃଶ କାମୀ ଖୋଜିବେ ସେ ନାରୀ । [illegible]ନିକେତନ ରମାପତି ଅସୁରାରି ॥୧॥
ଶମ୍ଭୁଙ୍କ ବଚନ ପୁଣି ମିଥ୍ୟା ନ ହୁଅଇ । ଶିବ ସର୍ବଜ୍ଞ ବୋଲିଣ [illegible]ର ଜାଣଇ ॥
ଏମନ୍ତ ସଂଶୟ ମନେ ହୋଇଲା ଅପାର । ନ ହୁଏ ହୃଦୟ ମଧ୍ୟେ ପ୍ରବୋଧ ସଞ୍ଚାର ॥୨॥

---

ବାରମ୍ବାର ଆନନ୍ଦରେ ପୁଲକିତ ହୋଇ ସତୀଙ୍କ ସଂଗେ ଚାଲି ଯାଉଥା'ନ୍ତି ॥ ୨ ॥ ଶଙ୍କରଜୀଙ୍କ ଏ ଦଶା ଦେଖି ସତୀଙ୍କ ମନରେ ବଡ଼ ସନ୍ଦେହ ଜାତ ହେଲା । ସେ ମନେ ମନେ ଭାବିବାକୁ ଲାଗିଲେ, "ସମସ୍ତ ସଂସାର ଶିବଙ୍କୁ ବନ୍ଦନା କରୁଛି । ସେ ଜଗତର ଈଶ୍ୱର । ଦେବତା, ମନୁଷ୍ୟ, ମୁନି, ଆଦି ସମସ୍ତେ ତାଙ୍କ ଉଦ୍ଦେଶ୍ୟରେ ମୁଣ୍ଡ ନୁଆଁନ୍ତି ॥ ୩ ॥ ସେ ଜଣେ ରାଜପୁତ୍ରଙ୍କୁ ସଚ୍ଚିଦାନନ୍ଦ ପରମଧାମ କହି ପ୍ରଣାମ କଲେ ଏବଂ ତାଙ୍କ ଶୋଭା ଦେଖି ଏତେ ଦୂର ପ୍ରେମମଗ୍ନ ହୋଇଅଛନ୍ତି ଯେ, ଏବେ ବି ତାଙ୍କ ହୃଦୟରେ ପ୍ରେମର ସୁଅ ଛୁଟି ଚାଲିଛି । ତାଙ୍କୁ ସମ୍ଭାଳିବାକୁ ଯେତେ ଚେଷ୍ଟା କଲେ ହେଁ ତାହା ସମ୍ଭାଳି ହେଉନାହିଁ ॥ ୪ ॥ ଦୋହା—ଯେଉଁ ବ୍ରହ୍ମ ସର୍ବବ୍ୟାପକ, ମାୟାରହିତ, ଅଜନ୍ମା, ଅଗୋଚର, ଇଚ୍ଛାରହିତ ଓ ଭେଦରହିତ ଏବଂ ଯାହାଙ୍କୁ ଏପରି କି ବେଦଗଣ ବି ଜାଣିପାରନ୍ତି ନାହିଁ, ସେ କ'ଣ ଦେହ ଧରି ମନୁଷ୍ୟ ହୋଇ ପାରନ୍ତି ! ॥୫୦॥ ଚୌପାଈ.—ଦେବତାଗଣଙ୍କ ହିତ ନିମନ୍ତେ ମନୁଷ୍ୟ ଶରୀର-ଧାରଣକାରୀ

ଜଦ୍ୟପି ପ୍ରଗଟ ନ କହେଉ ଭବାନୀ । ହର ଅନ୍ତରଜାମୀ ସବ ଜାନୀ ॥
ସୁନହୁ ସତୀ ତବ ନାରି ସୁଭାଊ । ସଂସୟ ଅସ ନ ଧରିଅ ଉର କାଊ ॥୩॥
ଜାସୁ କଥା କୁଂଭଜ ଋଷି ଗାଈ । ଭଗତି ଜାସୁ ମୈଁ ମୁନିହି ସୁନାଈ ॥
ସୋଇ ମମ ଇଷ୍ଟଦେବ ରଘୁବୀରା । ସେଓ୍ୱତ ଜାହି ସଦା ମୁନି ଧୀରା ॥୪॥

ମୁନି ଧୀର ଜୋଗୀ ସିଦ୍ଧ ସନ୍ତତ ବିମଲ ମନ ଜେହି ଧ୍ୟାଓ୍ୱହୀଁ ।
କହି ନେତି ନିଗମ ପୁରାନ ଆଗମ ଜାସୁ କୀରତି ଗାଓ୍ୱହୀଁ ॥
ସୋଇ ରାମୁ ବ୍ୟାପକ ବ୍ରହ୍ମ ଭୁବନ ନିକାୟ ପତି ମାୟା ଧନୀ ।
ଅବତରେଉ ଅପନେ ଭଗତ ହିତ ନିଜତନ୍ତ୍ର ନିତ ରଘୁକୁଲମନୀ ॥

---

ଯଦ୍ୟପି ସତୀ ପ୍ରକାଶ୍ୟେ ନ କଲେ ବ୍ୟକ୍ତ । ହର ଅନ୍ତର୍ଯ୍ୟାମୀ ଜାଣି ପାରିଲେ ସମସ୍ତ ॥
ଶୁଣ ଦକ୍ଷସୁତା ନାରୀ ସ୍ୱଭାବ ତୁମ୍ଭର । ଏମନ୍ତ ସଂଶୟ ହୃଦେ କଦାପି ନ ଧର ॥୩॥
ଯାହାଙ୍କ ଚରିତ କଥା ବର୍ଣ୍ଣିଲେ ଅଗସ୍ତି । ଋଷିଙ୍କୁ ମୁଁ ଶୁଣାଇଲି ଯାହାଙ୍କର ଭକ୍ତି ॥
ସେ ମୋର ଅଟନ୍ତି ଇଷ୍ଟଦେବ ରଘୁବୀର । ସେବନ୍ତି ଯାହାଙ୍କୁ ସଦା ସ୍ଥିର ମୁନି ଧୀର ॥୪॥

ଧୀର ମୁନି ଯୋଗୀଗଣେ ସୁବିମଳ ମାନସେ ଯାହାଙ୍କୁ ସତତ ଧ୍ୟାଆନ୍ତି ।
ନେତି ନେତି କହିଣ ଶ୍ରୁତିଶାସ୍ତ୍ରପୁରାଣ ଯାହାଙ୍କ ସୁଯଶ ଗାଆନ୍ତି ।
ସେ ତ୍ରିଭୁବନ ଈଶ୍ୱର । ବ୍ୟାପକ ବ୍ରହ୍ମ ମାୟାଧର ।
ଅବତରିଲେ ନିଜ ଭକ୍ତ ନିମନ୍ତେ ଅଜ ସ୍ୱତନ୍ତ୍ର ନିତ୍ୟ ରଘୁବର ॥

---

ବିଷ୍ଣୁ ଭଗବାନ୍, ଶିବଙ୍କ ପରି ମଧ୍ୟ ସର୍ବଜ୍ଞ । ଜ୍ଞାନଭଣ୍ଡାର, ଲକ୍ଷ୍ମୀପତି ଓ ଅସୁରଗଣଙ୍କ ଶତ୍ରୁ ଭଗବାନ୍ ବିଷ୍ଣୁ କ'ଣ ଅଜ୍ଞାନୀଙ୍କ ପରି ସ୍ତ୍ରୀଙ୍କୁ ଖୋଜି ବୁଲୁଛନ୍ତି ! ॥ ୧ ॥ ପୁଣି ଶିବଙ୍କ ବଚନ ତ ମିଥ୍ୟା ହୋଇ ନ ପାରେ । ସମସ୍ତେ ଜାଣନ୍ତି ଯେ, ଶିବ ସର୍ବଜ୍ଞ । ସତୀଙ୍କ ମନରେ ଏହି ରୂପେ ଅପାର ସନ୍ଦେହ ଜାତ ହେଲା । କୌଣସି ପ୍ରକାରେ ସୁଦ୍ଧା ତାଙ୍କ ମନରେ ଜ୍ଞାନର ଉଦୟ ହେଉ ନ ଥାଏ ॥ ୨ ॥ ପ୍ରକାଶ୍ୟରେ ଭବାନୀ କିଛି ନ କହିଲେହେଁ ଅନ୍ତର୍ଯ୍ୟାମୀ ଶିବ ସବୁ ଜାଣିପକାଇଲେ । ସେ କହିଲେ, "ହେ ସତି ! ଶୁଣ, ତୁମର ସ୍ତ୍ରୀସ୍ୱଭାବ । ଏପରି ସନ୍ଦେହ ମନରେ ରଖିବା କଦାପି ଉଚିତ ନୁହେଁ ॥ ୩ ॥ ଅଗସ୍ତ୍ୟ ଋଷି ଯାହାଙ୍କ କଥା ଗାଇଲେ ଏବଂ ଯାହାଙ୍କ ଭକ୍ତି ବିଷୟରେ ମୁଁ ମୁନିଙ୍କୁ ଶୁଣାଇଲି, ଏ ମୋର ସେହି ଇଷ୍ଟଦେବ ଶ୍ରୀ ରଘୁବୀର । ସଦାସର୍ବଦା ଜ୍ଞାନୀ ମୁନିଗଣ ତାଙ୍କର ସେବା କରନ୍ତି ॥ ୪ ॥ ଛନ୍ଦ:—ଜ୍ଞାନୀ ମୁନି, ଯୋଗୀ ଓ ସିଦ୍ଧଗଣ ନିରନ୍ତର ନିର୍ମଳ ମନରେ ଯାହାଙ୍କର ଧ୍ୟାନ କରନ୍ତି ଏବଂ ବେଦ, ପୁରାଣ ଓ ଶାସ୍ତ୍ର 'ନେତି-ନେତି' କହି ଯାହାଙ୍କର କୀର୍ତ୍ତିଗାନ କରନ୍ତି, ସର୍ବବ୍ୟାପକ ସମଗ୍ର ବ୍ରହ୍ମାଣ୍ଡର ସ୍ୱାମୀ, ମାୟାପତି, ନିତ୍ୟ ପରମସ୍ୱତନ୍ତ୍ର, ବ୍ରହ୍ମରୂପ ସେହି ଭଗବାନ୍ ଶ୍ରୀରାମ ଆପଣା ଭକ୍ତଗଣଙ୍କ ହିତ ନିମନ୍ତେ ସ୍ୱଇଚ୍ଛାରେ ରଘୁକୁଳମଣି ରୂପରେ ଅବତାର ଗ୍ରହଣ

ଲାଗ ନ ଉର ଉପଦେସୁ ଜଦପି କହେଉ ସିବଁ ବାର ବହୁ ।
ବୋଲେ ବିହସି ମହେସୁ ହରିମାୟା ବଲୁ ଜାନି ଜିୟଁ ॥୫୧॥
ଜୌଁ ତୁମ୍ହରେଁ ମନ ଅତି ସଂଦେହୂ । ତୌ କିନ ଜାଇ ପରୀଛା ଲେହୂ ॥
ତବ ଲଗି ବୈଠ ଅହଉଁ ବଟ ଛାହୀଁ । ଜବ ଲଗି ତୁମ୍ହ ଐହହୁ ମୋହି ପାହୀଁ ॥୧॥
ଜୈସେଁ ଜାଇ ମୋହ ଭ୍ରମ ଭାରୀ । କରେହୁ ସୋ ଜତନୁ ବିବେକୁ ବିଚାରୀ ॥
ଚଲୀଁ ସତୀ ସିବ ଆୟସୁ ପାଈ । କରହିଁ ବିଚାରୁ କରୌଁ କା ଭାଈ ॥୨॥
ଇହାଁ ସଂଭୁ ଅସ ମନ ଅନୁମାନା । ଦଚ୍ଛସୁତା କହୁଁ ନହିଂ କଲ୍ୟାନା ॥
ମୋରେହୁ କହେଁ ନ ସଂସୟ ଜାହୀଁ । ବିଧି ବିପରୀତ ଭଲାଈ ନାହୀଁ ॥୩॥
ହୋଇହି ସୋଇ ଜୋ ରାମ ରଚି ରାଖା । କୋ କରି ତର୍କ ବଢ଼ାବୈ ସାଖା ॥
ଅସ କହି ଲଗେ ଜପନ ହରିନାମା । ଗଈ ସତୀ ଜହଁ ପ୍ରଭୁ ସୁଖଧାମା ॥୪॥

---

କହିଲେହେଁ ବାର-ମ୍ବାର ଶି ସ୍ତ୍ରୀରେ ନ ଲାଗଇ ଉପଦେଶ ।
ହରିମାୟାବଳ ହୃଦୟେ ବିଚାରି ହସି ଭାଷିଲେ ମହେଶ ॥୫୧॥
ଅତ୍ୟନ୍ତ ସନ୍ଦେହ ହୁଏ ତୁମ୍ଭମନେ ଯେବେ । ଯାଇ କିପାଇଁ ପରୀକ୍ଷା ନ ନେଉଛ ତେବେ ॥
ବଟ ଛାୟାତଳେ ବସିଥିବି ସେ ପର୍ଯ୍ୟନ୍ତ । ନ ଆସିବ ତୁମ୍ଭେ ମୋର ପାଶେ ଯେ ପର୍ଯ୍ୟନ୍ତ ॥୧॥
ଯେମନ୍ତେ ନାଶହୋଇବ ମୋହ ଭ୍ରମଭାରୀ । ତେମନ୍ତ ଯତନ କର ବିବେକ ବିଚାରି ।
ଗମିଲେ ପାଇ ଶିବଙ୍କ ଅନୁମତି ସତୀ । କି ପରୀକ୍ଷା ନେବି ବୋଲି ମନେ ବିଚାରନ୍ତି ॥୨॥
ଏଣେ ମହେଶ ଏମନ୍ତ କଲେ ଅନୁମାନ । ଦକ୍ଷସୁତାଙ୍କର ନାହିଁ କଦାପି କଲ୍ୟାଣ ॥
ମୋକହିବାରେସନ୍ଦେହଗଲାନାହିଁଯେବେ । ବିଧି ବିପରୀତ ଏଥି ଭଲ ନାହିଁ କେବେ ॥୩॥
ଯାହା ଇଚ୍ଛା ରାମଙ୍କର ତାହାହିଁ ହୋଇବ । ତର୍କ କରି କିଏ ତହିଁ ଶାଖା ବଢାଇବ ॥
ଏହା କହି ହରିନାମ ଜପ ଆରମ୍ଭିଲେ । ସତୀ ସୁଖଧାମ ରାମ ପାଶେ ପ୍ରବେଶିଲେ ॥୪॥

---

କରିଅଛନ୍ତି ।" ସୋରଠା—ଶିବ ବହୁତ ବୁଝାଇଲେହେଁ ସତୀ ତାଙ୍କ ଶିକ୍ଷା ହୃଦୟଙ୍ଗମ କରିପାରିଲେ ନାହିଁ । ତହୁଁରେ ମହାଦେବ ମନରେ ଭଗବାନଙ୍କ ମାୟାର ବଳ ଜାଣିପାରି ହସି କହିଲେ— ॥ ୫୧ ॥ ଚୌପାଈ —"ତୁମ ମନରେ ଯଦି ଅତି ସନ୍ଦେହ ହେଉଛି, ତେବେ ଯାଇ ପରୀକ୍ଷା କାହିଁକି ନେଉନାହିଁ ? ଯାଅ । ତୁମେ ମୋ ପାଖକୁ ଫେରି ଆସିବା ଯାଏ ମୁଁ ଏହି ବରଗଛ ଛାଇରେ ବସିଛି ॥ ୧ ॥ ଯେଉଁ ପ୍ରକାରେ ତୁମର ଏହି ଅଜ୍ଞାନଜନିତ ଭ୍ରମ ଦୂର ହେବ, ସେଥିର ଉପାୟ ଭଲ ଭାବରେ ବିବେକ ଦ୍ୱାରା ବୁଝିବିଚାରି ସ୍ଥିର କର ଓ ସେହି ଉପାୟ ହିଁ କର ।" ଶିବଙ୍କ ଆଜ୍ଞା ପାଇ ସତୀ ଚାଲିଲେ । ମନରେ ଭାବିବାକୁ ଲାଗିଲେ, "ଆରେ ଭାଇ, ଏବେ ମୁଁ କରେ କ'ଣ ?" ( କିପରି ପରୀକ୍ଷା ଏବେ ନେଉଛି ? ) ॥ ୨ ॥ ଏଣେ ଶିବ ମନରେ ଭାବୁଥା'ନ୍ତି, "ଦକ୍ଷକନ୍ୟା ସତୀଙ୍କର ଭାଗ୍ୟରେ ଆଉ ମଙ୍ଗଳ ନାହିଁ । ଯେତେବେଳେ ମୋ ବୁଝାଇବାରେ ସୁଦ୍ଧା ତାଙ୍କ ସଂଶୟ ଦୂର ହେଲାନାହିଁ, ଜଣାପଡ଼ୁଛି—ବିଧାତା

ପୁନି ପୁନି ହୃଦୟଁ ବିଚାରୁ କରି ଧରି ସୀତା କର ରୂପ ।
ଆଗେଁ ହୋଇ ଚଲି ପଂଥ ତେହିଁ ଜେହିଁ ଆଓ୍ୱତ ନରଭୂପ ॥୫୨॥
ଲଛିମନ ଦୀଖ ଉମାକୃତ ବେଷା । ଚକିତ ଭଏ ଭ୍ରମ ହୃଦୟଁ ବିସେଷା ॥
କହି ନ ସକତ କଛୁ ଅତି ଗଂଭୀରା । ପ୍ରଭୁ ପ୍ରଭାଉ ଜାନତ ମତିଧୀରା ॥୧॥
ସତୀ କପଟୁ ଜାନେଉ ସୁରସ୍ୱାମୀ । ସବଦରସୀ ସବ ଅଂତରଜାମୀ ॥
ସୁମିରତ ଜାହି ମିଟଇ ଅଜ୍ଞାନା । ସୋଇ ସର୍ବଜ୍ଞ ରାମୁ ଭଗବାନା ॥୨॥
ସତୀ କୀନ୍ହ ଚହ ତହଁହୁଁ ଦୁରାଊ । ଦେଖହୁ ନାରି ସୁଭାବ ପ୍ରଭାଊ ॥
ନିଜ ମାୟା ବଲୁ ହୃଦୟଁ ବଖାନୀ । ବୋଲେ ବିହସି ରାମୁ ମୃଦୁ ବାନୀ ॥୩॥

---

ହୃଦେ ବାରମ୍ବାର କରିଣ ବିଚାର ଧରି ସୀତାଙ୍କର ବେଶ ।
ଆଗେ ଆଗେ ସେହି ମାର୍ଗରେ ଚାଲିଲେ ଯେଣେ ଆସନ୍ତି ନରେଶ ॥୫୨॥
ଲକ୍ଷ୍ମଣ ଦେଖନ୍ତେ ସତୀକୃତ ଛଳ ବେଶ । ଚକିତ ହୋଇଲେ ଭ୍ରମ ହୃଦୟେ ବିଶେଷ ॥
ଗମ୍ଭୀର ସ୍ୱଭାବେ କିଛି କହି ନ ପାରନ୍ତି । ପ୍ରଭୁଙ୍କ ପ୍ରଭାବ ମତି ସ୍ଥିର ସେ ଜାଣନ୍ତି ॥୧॥
ସତୀଙ୍କ କପଟ ଜାଣିଗଲେ ସୁରସ୍ୱାମୀ । ସର୍ବଦର୍ଶୀ ସନାତନ ସର୍ବ ଅନ୍ତର୍ଯାମୀ ॥
ଯାହାଙ୍କ ସ୍ମରଣେ ନାଶ ହୁଅଇ ଅଜ୍ଞାନ । ସେହି ସର୍ବଜ୍ଞ ସମର୍ଥ ରାମ ଭଗବାନ ॥୨।
ଲୁଚାଇବାକୁ ଚାହାନ୍ତି ତହିଁ ମଧ୍ୟ ସତୀ । ଦେଖ ନାରୀଙ୍କ ସ୍ୱଭାବ ପ୍ରବଳ ତା ଅତି ॥
ନିଜ ମାୟାବଳ ରାମ ହୃଦେ ପ୍ରଶଂସିଲେ । ମନ୍ଦ ମନ୍ଦ ହସି ମୃଦୁ ବଚନ ଭାଷିଲେ ॥୩॥

---

ତାଙ୍କ ପ୍ରତି ପ୍ରତିକୂଳ ହେଲେଣି । ଆଉ ତାଙ୍କର ଭଲ ଗତି ନାହିଁ ॥ ୩ ॥ ରାମ ଯାହା କିଛି ବିଧାନ କରି ରଖିଅଛନ୍ତି, ତାହାହିଁ ହେବ । ତର୍କବିତର୍କ କରି କିଏ ଶାଖା ବଢାଇବ ? ( କିଏ ଅଯଥା ତର୍କବିତର୍କ କରି କଥାକୁ ବେଶି ଜଟିଳ କରିବ ? ) ମନରେ ଏପରି କହି ଶିବ ଭଗବାନ୍ ଶ୍ରୀହରିଙ୍କ ନାମ ଜପିବାକୁ ଲାଗିଲେ । ସୁଖଧାମ ପ୍ରଭୁ ଶ୍ରୀରାମଚନ୍ଦ୍ର ଯେଉଁଠି ଥିଲେ, ସତୀ ସେହିଠାକୁ ଗଲେ ॥ ୪ ॥ ଦୋହା —ବାରମ୍ବାର ମନରେ ବିଚାରି ସତୀ ସୀତାଙ୍କ ରୂପ ଧାରଣପୂର୍ବକ ଯେଉଁ ପଥରେ ( ସତୀଙ୍କ ବିଚାର ଅନୁସାରେ ) ମନୁଷ୍ୟଙ୍କ ରାଜା ରାମଚନ୍ଦ୍ର ଆସୁଥିଲେ, ସେହି ପଥରେ ଅଗ୍ରସର ହେଲେ ॥୫୨॥ ଚୌପାଇ —ସତୀଙ୍କର କୃତ୍ରିମ ବେଶ ଦେଖି ଲକ୍ଷ୍ମଣ ଚକିତ ହୋଇଗଲେ ଏବଂ ତାଙ୍କ ହୃଦୟରେ ବଡ ଭ୍ରମ ଜାତ ହେଲା । ସେ ବଡ ଗମ୍ଭୀର ହୋଇଗଲେ । କିଛି କହି ପାରିଲେ ନାହିଁ । ଧୀରବୁଦ୍ଧି ଲକ୍ଷ୍ମଣ ପ୍ରଭୁ ରଘୁନାଥଙ୍କଙ୍କ ପ୍ରତାପ ଜାଣିଥା'ନ୍ତି । ସର୍ବଦ୍ରଷ୍ଟା ଓ ସର୍ବ-ଅନ୍ତର୍ଯାମୀ, ଦେବଗଣପତି ଶ୍ରୀରାମଚନ୍ଦ୍ର ସତୀଙ୍କ କପଟ ଜାଣିପାରିଲେ । ଯାହାଙ୍କୁ ସ୍ମରଣ କରିବା ମାତ୍ରେ ଅଜ୍ଞାନ-ଅନ୍ଧକାର ନାଶ ହୋଇଯାଏ, ଏହି ହେଉଛନ୍ତି ସେହି ସର୍ବଜ୍ଞ ଭଗବାନ୍ ଶ୍ରୀରାମଚନ୍ଦ୍ର ॥୨॥ ସ୍ତ୍ରୀସ୍ୱଭାବର କି ପ୍ରଭାବ, ଦେଖ । ସେହି ସର୍ବଜ୍ଞ ଭଗବାନଙ୍କ ଆଗରେ ମଧ୍ୟ ସତୀ କପଟ ଆଚରଣପୂର୍ବକ ତାହାଙ୍କୁ ପରୀକ୍ଷା କରିବାକୁ ଚେଷ୍ଟିତା । ହୃଦୟରେ ଆପଣା ମାୟାର ବଳକୁ ପ୍ରଶଂସା କରି 'ଶ୍ରୀରାମଚନ୍ଦ୍ର ହସି

ଜୋରି ପାନି ପ୍ରଭୁ କୀହ୍ନ ପ୍ରନାମୂ । ପିତା ସମେତ ଲୀହ୍ନ ନିଜ ନାମୂ ॥
କହେଉ ବହୋରି କହାଁ ବୃଷକେତୂ । ବିପିନ ଅକେଲି ଫିରହୁ କେହି ହେତୂ ॥୩॥

ରାମ ବଚନ ମୃଦୁ ଗୂଢ଼ ସୁନି ଉପଜା ଅତି ସଂକୋଚୁ ।
ସତୀ ସଭୀତ ମହେସ ପହିଁ ଚଲୀଁ ହୃଦୟଁ ବଡ ସୋଚୁ ॥୫୩॥

ମୈଁ ସଂକର କର କହା ନ ମାନା । ନିଜ ଅଜ୍ଞାନୁ ରାମ ପର ଆନା ॥
ଜାଇ ଉତରୁ ଅବ ଦେହଉଁ କାହା । ଉର ଉପଜା ଅତି ଦାରୁନ ଦାହା ॥୧॥
ଜାନା ରାମ ସତୀଁ ଦୁଖୁ ପାଓ୍ୱା । ନିଜ ପ୍ରଭାଉ କଛୁ ପ୍ରଗଟି ଜନାଓ୍ୱା ॥
ସତୀଁ ଦୀଖ କୌତୁକୁ ମଗ ଜାତା । ଆଗେଁ ରାମୁ ସହିତ ଶ୍ରୀ ଭ୍ରାତା ॥୨॥
ଫିରି ଚିତଓ୍ୱା ପାଛେଁ ପ୍ରଭୁ ଦେଖା । ସହିତ ବଂଧୁ ସିୟ ସୁନ୍ଦର ବେଷା ॥
ଜହଁ ଚିତଓ୍ୱହିଁ ତହଁ ପ୍ରଭୁ ଆସୀନା । ସେଓ୍ୱହିଁ ସିଦ୍ଧ ମୁନୀସ ପ୍ରବୀନା ॥୩॥

---

ଯୋଡ଼ି ହସ୍ତପାଣି ପ୍ରଭୁ କରି ନମସ୍କାର । ପିତା ସହ ଶୁଣାଇଲେ ନାମ ଆପଣାର ॥
କହିଲେ ଆବର କାହିଁଗଲେ ବୃଷକେତୁ । ବନମଧ୍ୟେ ଏକାକିନୀ ଭ୍ରମୁଛ କି ହେତୁ ॥୪॥

ରାମଙ୍କ ବଚନ ମୃଦୁ ଗୂଢ ଶୁଣି ଲଭିଣ ସଂକୋଚ ଅତି ।
ଭୟ ଚିନ୍ତାତୁର ହୃଦୟେ ଚଳିଲେ ଶମ୍ଭୁଙ୍କ ସମୀପେ ସତୀ ॥୫୩॥

ମୁହିଁ ଶିବଙ୍କ କହିବା କଥା ନ ମାନିଲି । ନିଜ ଅଜ୍ଞାନ ରାମଙ୍କ ଉପରେ ଘେନିଲି ॥
ଏବେ ଫେରିଯାଇ ତାଙ୍କୁ ଦେବିକି ଉତ୍ତର । ହୃଦେ ଉପୁଜିଲା ଦାହ ଦାରୁଣ ପ୍ରଖର ॥୧॥
ସତୀ ମନସ୍ତାପ ରଘୁନାୟକ ଜାଣିଲେ । ନିଜ ପ୍ରଭାବ ପ୍ରକଟି କିଛି ଜଣାଇଲେ ॥
ଦେଖନ୍ତି କୌତୁକ ସତୀ ଯାଆନ୍ତେ ପଥରେ । ସମ୍ମୁଖେ ରାମ ଅନୁଜ ସୀତା ସଙ୍ଗତରେ ॥୨॥
ପଛକୁ ଚାହିଁ ପ୍ରଭୁଙ୍କୁ ଦେଖିଲେ ଆବର । ସହିତ ସୀତା ସୌମିତ୍ରି ବେଶ ମନୋହର ॥
ଯେଉଁଣେ ନିରେଖନ୍ତି ତେଉଁଣେ ଶ୍ରୀରାମ ଆସୀନ । ସେବନ୍ତି ସିଦ୍ଧ ଗନ୍ଧର୍ବ ମୁନିଗଣ ପ୍ରବୀଣ ॥୩॥

---

କୋମଳ ବାଣୀରେ କହିଲେ— ॥ ୩ ॥ ପ୍ରଥମେ ପ୍ରଭୁ ହାତଯୋଡ଼ି ସତୀଙ୍କୁ ପ୍ରଣାମ କଲେ, ପିତା ଓ ତାଙ୍କ ନିଜର ପରିଚୟ ଦେଲେ । ପଚାରିଲେ, "ବୃଷକେତୁ ଶିବ କାହାନ୍ତି ? ଆପଣ ଏଠାରେ ବନରେ ଏକାକିନୀ କାହିଁକି ବୁଲୁଅଛନ୍ତି ?" ॥ ୪ ॥ ଦୋହା —ଶ୍ରୀରାମଙ୍କ କୋମଳ ଓ ରହସ୍ୟମୟ ବଚନ ଶୁଣି ସତୀ ବିଶେଷ ଲଜ୍ଜିତ ହେଲେ । ସେ ଡରି ଡରି ଶିବଜୀଙ୍କ ପାଖକୁ ଫେରି ଚାଲିଲେ । ତାଙ୍କ ହୃଦୟରେ ବଡ଼ ଚିନ୍ତା ହୋଇଗଲା ॥ ୫୩ ॥ ଚୌପାଈ —"ମୁଁ ଶଙ୍କରଙ୍କ କଥା ମାନିଲି ନାହିଁ ଏବଂ ମୋ ଅଜ୍ଞାନ ଶ୍ରୀରାମଙ୍କ ଉପରେ ଆରୋପ କ । ଏବେ ଯାଇ ଶିବଙ୍କୁ କି ଉତ୍ତର ଦେବି ?" ଏହିପରି ଭାବି ଭାବି ସତୀଙ୍କ ହୃଦୟରେ ବଡ଼ ଭୟଙ୍କର ଦାହ ଜାତ ହେଉଥାଏ ॥ ୧ ॥ ଶ୍ରୀରାମଚନ୍ଦ୍ର ଜାଣି ନେଲେ ଯେ ସତୀଙ୍କ ମନରେ ବଡ଼ କ୍ଷୋଭ ଜାତ ହେଲାଣି । ତେଣୁ ସେ ସେତେବେଳେ ତାଙ୍କ ପ୍ରଭାବ କିଛି ପ୍ରକାଶ କରି ସତୀଙ୍କୁ ଦେଖାଇଲେ । ବାଟରେ ଯାଉଥିଲା ବେଳେ ସତୀ ଗୋଟିଏ କୌତୁକ ଦେଖିଲେ । ସେ ଦେଖିଲେ ଯେ, ଶ୍ରୀରାମ

ଦେଖେ ସିବ ବିଧି ବିଷ୍ଣୁ ଅନେକା । ଅମିତ ପ୍ରଭାଉ ଏକ ତେଁ ଏକା ॥
ବଂଦତ ଚରନ କରତ ପ୍ରଭୁ ସେବା । ବିବିଧ ବେଷ ଦେଖେ ସବ ଦେବା ॥୩॥
ସତୀ ବିଧାତ୍ରୀ ଇଂଦିରା ଦେଖୀଁ ଅମିତ ଅନୂପ ।
ଜେହିଂ ଜେହିଂ ବେଷ ଅଜାଦି ସୁର ତେହି ତେହି ତନ ଅନୁରୂପ ॥୫୪॥
ଦେଖେ ଜହଁ ତହଁ ରଘୁପତି ଜେତେ । ସକ୍ତିନ୍ହ ସହିତ ସକଲ ସୁର ତେତେ ॥
ଜୀବ ଚରାଚର ଜେ ସଂସାରା । ଦେଖେ ସକଲ ଅନେକ ପ୍ରକାରା ॥୧॥
ପୂଜହିଁ ପ୍ରଭୁହି ଦେବ ବହୁ ବେଷା । ରାମ ରୂପ ଦୂସର ନହିଂ ଦେଖା ॥
ଅବଲୋକେ ରଘୁପତି ବହୁତେରେ । ସୀତା ସହିତ ନ ବେଷ ଘନେରେ ॥୨॥

---

ଦେଖିଲେ ବିଷ୍ଣୁ ବିଧାତା ମହେଶ ଅନେକ । ଅମିତ ପ୍ରଭାବଶାଳୀ ଏକୁ ବଳି ଏକ ॥
ବନ୍ଦି ଚରଣ କମଳ ସେବନ୍ତି ରାମଙ୍କୁ । ବିବିଧ ବେଶେ ଦେଖିଲେ ସମସ୍ତ ଦେବଙ୍କୁ ॥୩॥
ଅଗଣିତ ସତୀ ଇନ୍ଦିରା ସାବିତ୍ରୀ ଦେଖିଲେ ଅତି ଅନୁପ ।
ଯେଉଁ ଯେଉଁ ବେଶେ ବ୍ରହ୍ମାଦି ତ୍ରିଦଶେ ତାଙ୍କ ତନୁ ଅନୁରୂପ ॥୫୪॥
ବିଲୋକିଲେ ଯେଣେ ତେଣେ ରଘୁପତି ଯେତେ । ଶକ୍ତି ସହିତ ସକଳ ବୃନ୍ଦାରକ ତେତେ ॥
ଚର ଅଚର ଯେ ଜୀବ ଅଛନ୍ତି ସଂସାରେ । ଦେଖିଲେ ସେ ସମସ୍ତଙ୍କୁ ଅନେକ ପ୍ରକାରେ ॥୧॥
ବିବିଧ ବେଶେ ପ୍ରଭୁଙ୍କୁ ପୂଜନ୍ତି ଅମର । ରାମ ରୂପ ନ ଦେଖିଲେ ଅନ୍ୟ ରକମର ॥
ଦରଶନ କଲେ ରଘୁପତି ଅଗଣିତ । ଏକ ପ୍ରକାର ବେଶରେ ଜାନକୀ ସହିତ ॥୨॥

---

ସୀତା ଓ ଲକ୍ଷ୍ମଣଙ୍କ ସହିତ ଆଗେଇ ଚାଲିଛନ୍ତି । (ଏହି ଅବସରରେ ସତୀଙ୍କୁ ଏ ଦୃଶ୍ୟ ଦେଖାଇବାରେ ଶ୍ରୀରାମଙ୍କ ଉଦ୍ଦେଶ୍ୟ ଥିଲା ଯେ, ସେ ତାହାଙ୍କର ସଚ୍ଚିଦାନନ୍ଦମୟ ରୂପ ଦେଖନ୍ତୁ । ବିଯୋଗ ଓ ଶୋକର ଯେଉଁ କଳ୍ପନା ସେ କରିଥିଲେ, ତାହା ଦୂର ହୋଇଯାଉ ଏବଂ ସେ ପ୍ରକୃତିସ୍ଥ ହୋଇଯାଆନ୍ତୁ ।) ॥୨॥ ପୁଣି ସତୀ ପଛଆଡକୁ ମୁହଁ ଫେରାଇ ଚାହିଁଲେ । ସେଠାରେ ମଧ୍ୟ ଭାଇ ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କ ସହିତ ଶ୍ରୀରାମଚନ୍ଦ୍ର ସୁନ୍ଦର ବେଶରେ ଦେଖାଗଲେ । ସେ ଯେଉଁଆଡେ ଚାହୁଁଥାନ୍ତି, ସେଆଡେ ପ୍ରଭୁ ଶ୍ରୀରାମଚନ୍ଦ୍ର ବିରାଜମାନ ଏବଂ ପ୍ରବୀଣ, ସିଦ୍ଧ, ମୁନୀଶ୍ୱରଗଣ ତାଙ୍କ ସେବା କରୁଅଛନ୍ତି ॥୩॥ ସତୀ ଅନେକ ଶିବ, ବ୍ରହ୍ମା ଓ ବିଷ୍ଣୁ ଦେଖିଲେ । ସେମାନେ ଏକୁ ବଳି ଆରେକ ଅପରିମିତ ପ୍ରଭାବଶାଳୀ ଥିଲେ । ସେ ଦେଖିଲେ, ବିବିଧ ବେଶ ଧାରଣପୂର୍ବକ ସମସ୍ତ ଦେବତା ଶ୍ରୀରାମଚନ୍ଦ୍ରଙ୍କ ଚରଣ ବନ୍ଦନା ଓ ସେବା କରୁଅଛନ୍ତି ॥୪॥ ଦୋହା:-ସେ ଅଗଣିତ ଅନୁପମ ସତୀ, ବ୍ରହ୍ମାଣୀ ଓ ଲକ୍ଷ୍ମୀ ଦେଖିଲେ । ବ୍ରହ୍ମା ଆଦି ଦେବତା ଯେଉଁ ଯେଉଁ ରୂପରେ ଉପସ୍ଥିତ ଥିଲେ, ସେହି ସେହି ଅନୁକୂଳ ରୂପରେ ଏ ସମସ୍ତ ଶକ୍ତି ମଧ୍ୟ ବିରାଜିତ ଥିଲେ ॥୫୪॥ ଚୌପାଈ-ସତୀ ଯେଉଁଠି ଯେଉଁଠି ଯେତେ ରଘୁନାଥଙ୍କୁ ଦେଖିଲେ, ଶକ୍ତିଗଣସହ ସେଇଠି ସେଇଠି ସେତିକି ଦେବତାଙ୍କୁ ମଧ୍ୟ ଦେଖିଲେ । ସଂସାରରେ ଚରାଚର ଯେତେ ଜୀବ ଅଛନ୍ତି, ସେହି ବିବିଧ ଜୀବ ସକଳଙ୍କୁ ମଧ୍ୟ ସେ ଦେଖିଲେ ॥୧॥

ସୋଇ ରଘୁବର ସୋଇ ଲଛିମନୁ ସୀତା । ଦେଖି ସତୀ ଅତି ଭଈଁ ସଭୀତା ॥
ହୃଦୟ କଂପ ତନ ସୁଧି କଛୁ ନାହୀଁ । ନୟନ ମୂଦି ବୈଠୀଁ ମଗ ମାହୀଁ ॥୩॥
ବହୁରି ବିଲୋକେଉ ନୟନ ଉଘାରୀ । କଛୁ ନ ଦୀଖ ତହଁ ଦଚ୍ଛକୁମାରୀ ॥
ପୁନି ପୁନି ନାଇ ରାମ ପଦ ସୀସା । ଚଲୀଁ ତହାଁ ଜହଁ ରହେ ଗିରୀସା ॥୪॥

ଗଈଁ ସମୀପ ମହେସ ତବ ହଁସି ପୁଛୀ କୁସଲାତ ।
ଲୀନ୍ହି ପରୀଛା କଵନ ବିଧି କହହୁ ସତ୍ୟ ସବ ବାତ ॥୫୫॥

## ମାସପାରାୟଣ, ଦ୍ୱିତୀୟ ବିଶ୍ରାମ

ସତୀଁ ସମୁଝି ରଘୁବୀର ପ୍ରଭାଊ । ଭୟ ବସ ସିବ ସନ କୀନ୍ହ ଦୁରାଊ ॥
କଛୁ ନ ପରୀଛା ଲୀନ୍ହି ଗୋସାଈଁ । କୀନ୍ହ ପ୍ରନାମୁ ତୁମ୍ହାରିହି ନାଈଁ ॥୧॥

---

ସେହି ରଘୁବର ସେହି ସଉମିତ୍ରି ସୀତା । ବିଲୋକି ସତୀ ହୋଇଲେ ଅତି ଭୟଭୀତା ॥
କମ୍ପିତ ହୃଦୟ ସଂଜ୍ଞା-ବିହୀନ ହୋଇଣ । ପଥ ମଧ୍ୟେ ବସିଗଲେ ନୟନ ବୁଜିଣ ॥୩॥
ପୁଣି ଚକ୍ଷୁ ଫେଡି ଚଉଦିଗେ ନିରେଖିଲେ । ଦକ୍ଷ-ରାଜ-ସୁତା କାହିଁ କିଛି ନ ଦେଖିଲେ ॥
ବାରମ୍ବାର ଶିର ରାମ ଚରଣେ ନୁଆଇଁ । ଚଳିଲେ ସେଠାକୁ ଯହିଁ ଥିଲେ ଗିରିସାଇଁ ॥୪॥

ଯାଆନ୍ତେ ସମୀପ କୁଶଳ ସନ୍ଦେଶ ହସି ପଚାରିଲେ ହର ।
ପରୀକ୍ଷା କିପରି ନେଲ ସତ୍ୟ କରି କହ ବୃତ୍ତାନ୍ତ ନିକର ॥୫୫॥

ସତୀ ସ୍ମରି ରଘୁବୀର ପରାକ୍ରମ ତଥା । ସଭୟେ ଶିବଙ୍କ ଆଗେ ଲୁଚାଇଲେ କଥା ॥
କୌଣସି ପରୀକ୍ଷା ମୁହିଁ ନେଇ ନାହିଁ କାନ୍ତ । କେବଳ ତୁମ୍ଭ ସଦୃଶ କଲି ପ୍ରଣିପାତ ॥୧॥

---

ସେ ଦେଖିଲେ ଯେ, ଅନେକ ବେଶଧାରଣ ପୂର୍ବକ ଦେବତାବୃନ୍ଦ ପ୍ରଭୁ ଶ୍ରୀରାମଙ୍କୁ ପୂଜା କରୁଅଛନ୍ତି । କିନ୍ତୁ ଶ୍ରୀରାମଙ୍କ ଦ୍ୱିତୀୟ ରୂପ କେଉଁଠି ହେଲେ ସେ ଦେଖିଲେ ନାହିଁ । ସୀତାଙ୍କ ସହିତ ଅନେକ ରଘୁନାଥ ଦେଖୁଥା'ନ୍ତି । କିନ୍ତୁ ତାଙ୍କ ରୂପ ବେଶରେ ବିଭିନ୍ନତା ନ ଥିଲା ॥୨॥ ସବୁଠି ସେହି ରଘୁନାଥ, ସେହି ଲକ୍ଷ୍ମଣ ଓ ସେହି ସୀତା-ଏମିତି ଦେଖି ସତୀ ବହୁତ ଡରିଗଲେ । ତାଙ୍କ ଦେହ ଥରିବାକୁ ଲାଗିଲା ଏବଂ ଶରୀରରୁ ସତେ ଯେପରି ଚେତନା ଚାଲିଯାଉଛି, ସେ ଏହିପରି ଅନୁଭବ କଲେ । ସେ ଆଖି ବୁଜି ବାଟରେ ବସି ପଡିଲେ ॥୩॥ ପୁଣି ଆଖି ଖୋଲି ଦେଖନ୍ତି ତ ସେଠାରେ ଦକ୍ଷକୁମାରୀ ସତୀଙ୍କୁ କିଛି ହେଲେ ଦେଖା-ଗଲାନାହିଁ । ସେତେବେଳେ ସେ ବାରମ୍ବାର ଶ୍ରୀରାମଚନ୍ଦ୍ରଙ୍କ ଚରଣତଳେ ମୁଣ୍ଡ ନୁଆଁଇ ଶିବ ଥିବା ସ୍ଥାନକୁ ଚାଲିଲେ ॥୪॥ ଦୋହା.-ପାଖରେ ପହଞ୍ଚିବା ମାତ୍ରେ ଶିବ ହସିଲେ ଏବଂ କୁଶଳ ପ୍ରଶ୍ନ ପଚାରି ସତୀଙ୍କୁ କହିଲେ, "ରାମଙ୍କର ତୁମେ କିମିତି ପରୀକ୍ଷା ନେଲ, ସବୁ କଥା ସତ ସତ କହ"॥୫୫॥ ଚୌପାଇ -ସତୀ ରଘୁବରଙ୍କ ପ୍ରଭାବ ବୁଝି ଭୟ ହେତୁ ଶିବଙ୍କ-ଠାରୁ ତାହା ଗୋପନ ରଖିଲେ । ସେ କହିଲେ "ହେ ସ୍ୱାମି ! ମୁଁ କିଛି ପରୀକ୍ଷା ନେଇନାହିଁ ।

ଜୋ ତୁମ୍ହ କହା ସୋ ମୃଷା ନ ହୋଈ । ମୋରେଁ ମନ ପ୍ରତୀତି ଅତି ସୋଈ ॥
ତବ ସଂକର ଦେଖେଉ ଧରି ଧ୍ୟାନା । ସତୀଁ ଜୋ କୀନ୍ହ ଚରିତ ସବୁ ଜାନା ॥୨॥
ବହୁରି ରାମମାୟହି ସିରୁ ନାୱା । ପ୍ରେରି ସତିହି ଜେହିଁ ଝୂଁଠ କହାୱା ॥
ହରି ଇଚ୍ଛା ଭାବୀ ବଲବାନା । ହୃଦୟଁ ବିଚାରତ ସଂଭୁ ସୁଜାନା ॥୩॥
ସତୀଁ କୀନ୍ହ ସୀତା କର ବେଷା । ସିବ ଉର ଭୟଉ ବିଷାଦ ବିସେଷା ॥
ଜୌଂ ଅବ କରଉଁ ସତୀ ସନ ପ୍ରୀତୀ । ମିଟଇ ଭଗତି ପଥୁ ହୋଇ ଅନୀତୀ ॥୪॥

ପରମ ପୁନୀତ ନ ଜାଇ ତଜି କିଏଁ ପ୍ରେମ ବଡ଼ ପାପୁ ।
ପ୍ରଗଟି ନ କହତ ମହେସୁ କଛୁ ହୃଦୟଁ ଅଧିକ ସଂତାପୁ ॥୫୬॥

ତବ ସଂକର ପ୍ରଭୁ ପଦ ସିରୁ ନାୱା । ସୁମିରତ ରାମୁ ହୃଦୟଁ ଅସ ଆୱା ॥
ଏହିଁ ତନ ସତିହି ଭେଟ ମୋହି ନାହୀଁ । ସିବ ସଂକଲ୍ପୁ କୀନ୍ହ ମନ ମାହୀଁ ॥୧॥

---

ଯାହା କହିଲ ଆପଣ ମିଥ୍ୟା ତା ନୁହଇ । ମୋ ମନ ମଧ୍ୟେ ଏମନ୍ତ ପ୍ରତୀତ ହୁଅଇ ॥
ତହୁଁ ସଦାଶିବ ଧ୍ୟାନ ଧରିଣ ଦେଖିଲେ । ସତୀଙ୍କ କୃତ ସମସ୍ତ ଚରିତ ଜାଣିଲେ ॥୨॥
ପ୍ରଣାମ କଲେ ଆବର ରାମଙ୍କ ମାୟାକୁ । ମିଥ୍ୟା କୁହାଇଲା ପ୍ରେରି ଯେ ଦକ୍ଷସୁତାଙ୍କୁ ॥
ହରିଙ୍କ ଇଚ୍ଛା ଭବିଷ୍ୟ ବଲବାନ ଅତି । ହୃଦୟେ ପ୍ରବୀଣ ଶିବ ବିଚାର କରନ୍ତି ॥୩॥
ସତୀ ଯେ ଧାରଣ କଲେ ସୀତାଙ୍କର ବେଶ । ଶିବ ହୃଦେ ଉପୁଜିଲା ବିଷାଦ ବିଶେଷ ॥
ଯେବେ ଏବେ କରିବି ମୁଁ ସତୀ ସଙ୍ଗେ ପ୍ରୀତି । ନଷ୍ଟ ହେବ ଭକ୍ତି ପଥ ହୋଇବ ଅନୀତି ॥୪॥

ଅତିଶୟ ପ୍ରେମ ତେଜି ନ ପାରନ୍ତି ପ୍ରେମ କଲେ ବଡ ପାପ ।
ପ୍ରତ୍ୟକ୍ଷେ ପ୍ରକାଶ ନ କରନ୍ତି ଈଶ ହୃଦେ ଅଧିକ ସନ୍ତାପ ॥୫୬॥

ତହୁଁ ଶିବ ପ୍ରଭୁପଦେ ହୋଇଣ ବିନତ । ସ୍ମରନ୍ତେ ରାମଙ୍କୁ ଭାବ ସ୍ଫୁରିଲା ଏମନ୍ତ ॥
ଏ ଦେହରେ ସତୀ ସଙ୍ଗେ ଭେଟ ମୋ ନୋହିବ । ମନ ମଧ୍ୟରେ ସଙ୍କଳ୍ପ କଲେ ସଦାଶିବ ॥୧॥

---

ତାଙ୍କ ନିକଟକୁ ଯାଇ ଆପଣଙ୍କ ପରି ପ୍ରଣାମ କଲି ॥୧॥ ଆପଣ ଯାହା କହିଲେ, ତାହା ମିଥ୍ୟା ହୋଇ ନ ପାରେ । ମୋ ମନରେ ସେଥିକି ପୂର୍ଣ୍ଣ ବିଶ୍ୱାସ । ତତ୍ପରେ ଶିବ ଧ୍ୟାନ ବଲରେ ସବୁ ଦେଖିପାରିଲେ ଏବଂ ସତୀଙ୍କ କୃତ ଚରିତ ମଧ୍ୟ ସବୁ ଜାଣିଗଲେ ॥୨॥ ପୁଣି ରାମଙ୍କ ମାୟା-ପ୍ରେରଣାରେ ସତୀଙ୍କ ମୁହଁରୁ ମଧ୍ୟ ମିଛ ବାହାରି ପଡିଲା । ତେଣୁ ସେ ତାଙ୍କ ମାୟାକୁ ମୁଣ୍ଡ ନୁଆଁଇ ଜୁହାର କଲେ । ସୁଜ୍ଞାନ ଶିବ ମନରେ ବିଚାର କଲେ ଯେ, ହରିଙ୍କର ଇଚ୍ଛା ହିଁ ଭବିତବ୍ୟ । ତାହା ଅତି ବଲବତୀ ॥୩॥ ସତୀ ସୀତାଙ୍କ ବେଶ ଧାରଣ କଲେ । ସେ ଭାବିଲେ, "ମୁଁ ଏଣିକି ଯଦି ସତୀଙ୍କ ସଙ୍ଗେ ପ୍ରୀତି କରିବି, ତେବେ ଭକ୍ତିମାର୍ଗ ଲୋପ ପାଇଯିବ ଏବଂ ତଦ୍ଦ୍ୱାରା ବଡ ଅନୀତି (ଅନ୍ୟାୟ) ହେବ ॥୪॥ ଦୋହା -ପ୍ରୀତି ପରମ ପବିତ୍ର । ସୁତରାଂ ତାକୁ ତ୍ୟାଗ କଲେ ଚଲିବ ନାହିଁ ଏବଂ ପ୍ରେମ କଲେ ମଧ୍ୟ ପାପ ହେବ ।" ପ୍ରକାଶ୍ୟରେ ମହାଦେବ କିଛି କହୁ ନ ଥା'ନ୍ତି । କିନ୍ତୁ ତାଙ୍କ ହୃଦୟରେ ବଡ଼ ସନ୍ତାପ ଜାତ ହେଉଥାଏ ॥୫୬॥ ଚୌପାଇ:-ତତ୍ପରେ ଶିବ ପ୍ରଭୁ ଶ୍ରୀରାମଙ୍କ ଚରଣ-କମଳରେ ମୁଣ୍ଡ

ଅସ ବିଚାରି ସଂକରୁ ମତିଧୀରା । ଚଲେ ଭବନ ସୁମିରତ ରଘୁବୀରା ॥
ଚଲତ ଗଗନ ଭୈ ଗିରା ସୁହାଈ । ଜୟ ମହେସ ଭଲି ଭଗତି ଦୃଢ଼ାଈ ॥୨॥
ଅସ ପନ ତୁମ୍ହ ବିନୁ କରଇ କୋ ଆନା । ରାମଭଗତ ସମରଥ ଭଗବାନା ॥
ସୁନି ନଭଗିରା ସତୀ ଉର ସୋଚୂ । ପୂଛା ସିବହି ସମେତ ସକୋଚୂ ॥୩॥
କୀନ୍ହ କବନ ପନ କହହୁ କୃପାଲା । ସତ୍ୟଧାମ ପ୍ରଭୁ ଦୀନଦୟାଲା ॥
ଜଦପି ସତୀଁ ପୂଛା ବହୁ ଭାଁତୀ । ତଦପି ନ କହେଉ ତ୍ରିପୁର ଆରାତୀ ॥୪॥

ସତୀଁ ହୃଦୟଁ ଅନୁମାନ କିୟ ସବୁ ଜାନେଉ ସର୍ବଜ୍ଞ ।
କୀନ୍ହ କପଟୁ ମୈଁ ସଂଭୁ ସନ ନାରି ସହଜ ଜଡ଼ ଅଜ୍ଞ ॥୫୭(କ)॥
ଜଲୁ ପୟ ସରିସ ବିକାଇ ଦେଖହୁ ପ୍ରୀତି କି ରୀତି ଭଲି ।
ବିଲଗ ହୋଇ ରସୁ ଜାଇ କପଟ ଖଟାଈ ପରତ ପୁନି ॥୫୭(ଖ)॥

---

ଏମନ୍ତ ବିଚାରି ଗଙ୍ଗାଧର ମତି ସ୍ଥିର । ଚଳିଲେ ଗୃହେ ସ୍ମରଣ କରି ରଘୁବୀର ॥
ଚଳନ୍ତେ ଗଗନ ବାଣୀ ହେଲ ଚାରୁ ଅତି । ଜୟ ମହେଶ୍ୱର ଭଲ ଦୃଢ଼ କଲ ଭକ୍ତି ॥୨॥
ଏ ପ୍ରତିଜ୍ଞା ତୁମ୍ଭ ବିନା କେ କରିବ ଆନ । ରଘୁପତି ଭକ୍ତ ସମରଥ ଭଗବାନ ॥
ଶୁଣି ନଭବାଣୀ ସତୀ ହୋଇଣ ଚିନ୍ତିତ । ପଚାରିଲେ ମହେଶଙ୍କୁ ସଙ୍କୋଚ ସହିତ ॥୩॥
କେଉଁ ପଣ କଲ କହ କରୁଣା-ବାରିଧି । ସତ୍ୟ ଧାମ ପ୍ରଭୁ ତୁମ୍ଭେ ଦୀନ ଦୟାନିଧି ॥
ଯଦ୍ୟପି ବହୁ ପ୍ରକାରେ ସତୀ ପଚାରିଲେ । ତଥାପି ତ୍ରିପୁର-ଶତ୍ରୁ କିଛି ନ କହିଲେ ॥୪॥

ସତୀ ନିଜ ମନେ କଲେ ଅନୁମାନ ସର୍ବ ଜାଣିଲେ ସର୍ବଜ୍ଞ ।
ଶିବଙ୍କ ସମକ୍ଷେ କପଟ ମୁଁ କଲି ସ୍ୱଭାବେ ସ୍ତ୍ରୀ ଜଡ଼ ଅଜ୍ଞ ॥୫୭(କ)॥
ଦେଖନ୍ତୁ ପ୍ରୀତିର ରୀତି କି ସୁନ୍ଦର ନୀର ବିକେ କ୍ଷୀର ପ୍ରାୟେ ।
କପଟ-ଆମ୍ଳ ପଡ଼ନ୍ତେ ସତ୍ୱର ଛିଡ଼ି ରସ ବ୍ୟର୍ଥ ଯାଏ ॥୫୭(ଖ)॥

---

ଜୁଆଁଇଲେ ଏବଂ ଶ୍ରୀରାମଙ୍କୁ ସ୍ମରଣ କରିବାମାତ୍ରେ ତାଙ୍କ ମନରେ ଏହି ଭାବ ଆସିଲା ଯେ, ସତୀଙ୍କ ଏହି ଶରୀରରେ ତାଙ୍କ ସହିତ ଆଉ ତାଙ୍କର (ଶିବଙ୍କର) ଭେଟ ହୋଇପାରିବ ନାହିଁ । ଶିବ ଆପଣା ମନରେ ଏହି ଦୃଢ଼ ସଂକଳ୍ପ କରିନେଲେ ॥୧॥ ସ୍ଥିରବୁଦ୍ଧି ଶଙ୍କର ଏପରି ବିଚାର କରି ରଘୁନାଥଙ୍କୁ ସ୍ମରଣ କରି ତାଙ୍କ ଘର (କୈଳାସ)କୁ ଚାଲିଲେ । ଚାଲିବା ସମୟରେ ମନୋହର ଆକାଶବାଣୀ ହେଲା, "ହେ ମହେଶ ! ଆପଣଙ୍କର ଜୟ ହେଉ । ଆପଣ ଦୃଢ଼ ଭକ୍ତିର ଆଦର୍ଶ ଦେଖାଇଲେ ॥୨॥ ଆପଣଙ୍କ ଛଡ଼ା ଅନ୍ୟ କିଏ ଏପରି ପ୍ରତିଜ୍ଞା କରିପାରିବ ? ଆପଣ ଶ୍ରୀରାମଙ୍କ ଭକ୍ତ, ସମର୍ଥ ଓ ଭଗବାନ୍ ।" ଏହି ଆକାଶବାଣୀ ଶୁଣି ସତୀଙ୍କ ମନରେ ଚିନ୍ତା ହେଲା । ସେ ସଙ୍କୁଚିତ ହୋଇ ଶିବଙ୍କୁ ପଚାରିଲେ ॥୩॥ "ହେ କୃପାଳୁ ! କୁହନ୍ତୁ, ଆପଣ କି ପ୍ରତିଜ୍ଞା କରିଅଛନ୍ତି ? ହେ ପ୍ରଭୋ ! ଆପଣ ସତ୍ୟର ଧାମ ଓ ଦୀନଦୟାଳୁ ।" ସତୀ ବହୁତ ପ୍ରକାରେ ପଚାରିଲେ । କିନ୍ତୁ ତ୍ରିପୁରାରି କିଛି ହେଲେ କହିଲେ ନାହିଁ ॥୪॥ ଦୋହା:-ସତୀ ମନେ ମନେ ଅନୁମାନ କରି

ହୃଦୟଁ ସୋଚୁ ସମୁଝତ ନିଜ କରନୀ । ଚିନ୍ତା ଅମିତ ଜାଇ ନହିଂ ବରନୀ ॥
କୃପାସିଂଧୁ ସିବ ପରମ ଅଗାଧା । ପ୍ରଗଟ ନ କହେଉ ମୋର ଅପରାଧା ॥୧॥
ସଂକର ରୁଖ ଅବଲୋକି ଭବାନୀ । ପ୍ରଭୁ ମୋହି ତଜେଉ ହୃଦୟଁ ଅକୁଲାନୀ ॥
ନିଜ ଅଘ ସମୁଝି ନ କଛୁ କହି ଜାଈ । ତପଇ ଅଵାଁ ଇବ ଉର ଅଧିକାଈ ॥୨॥
ସତିହି ସସୋଚ ଜାନି ବୃଷକେତୂ । କହୀଁ କଥା ସୁନ୍ଦର ସୁଖ ହେତୂ ॥
ବରନତ ପଂଥ ବିବିଧ ଇତିହାସା । ବିସ୍ୱନାଥ ପହୁଁଚେ କୈଲାସା ॥୩॥
ତହଁ ପୁନି ସଂଭୁ ସମୁଝି ପନ ଆପନ । ବୈଠେ ବଟ ତର କରି କମଲାସନ ॥
ସଂକର ସହଜ ସରୂପୁ ସମ୍ହାରା । ଲାଗି ସମାଧି ଅଖଣ୍ଡ ଅପାରା ॥୪॥

---

ବୁଝି ନିଜ କୃତ କର୍ମ ହୃଦୟ ଦୁଃଖିତ । ବର୍ଣ୍ଣି ନ ହୁଅଇ ଚିନ୍ତା ହୋଇଲା ଅମିତ ॥
ପରମ ଗମ୍ଭୀର ଶିବ କରୁଣା ସାଗର । ପ୍ରକାଶ୍ୟେ କହିଲେ ନାହିଁ ଅପ୍ରାଧ ମୋହର ॥୧॥
ଶଙ୍କରଙ୍କ ମନ ଭାବ ବିଲୋକଣ ସତୀ । ପ୍ରଭୁ ତ୍ୟାଗ କଲେ ଜାଣି ବ୍ୟାକୁଳ ହୁଅନ୍ତି ॥
ନିଜ ଦୋଷ ବୁଝି କିଛି ବାକ୍ୟ ନ ସ୍ଫୁରଇ । ହୃଦ-ଉହା ପରିତପ୍ତ ଅଧିକ ହୁଅଇ ॥୨॥
ସତୀଙ୍କୁ ଅତି ଚିନ୍ତିତ ଜାଣି ବୃଷକେତୁ । କଥା ଆରମ୍ଭିଲେ କିଛି ପ୍ରବୋଧିବା ହେତୁ ॥
ବର୍ଣ୍ଣନ କରନ୍ତେ ପଥେ ନାନା ଇତିହାସ । ବିଶ୍ୱନାଥ ଉପସ୍ଥିତ ହେଲେ କଇଲାସ ॥୩॥
ତହିଁ ପୁଣି ଶମ୍ଭୁ ନିଜ ପ୍ରତିଜ୍ଞା ସୁମରି । ବସିଲେ ବଟ ତଳରେ ପଦ୍ମାସନ କରି ॥
ସହଜ ସ୍ୱରୂପେ ସ୍ଥିତ ହୋଇ ତ୍ରିଲୋଚନ । ହେଲେ ଅଖଣ୍ଡ ଅପାର ସମାଧି ମଗନ ॥୪॥

---

ନେଲେ ଯେ ସର୍ବଜ୍ଞ ଶିବ ସବୁ ଜାଣିପାରିଛନ୍ତି । ମୁଁ ଶିବଙ୍କ ସହିତ କପଟାଚରଣ କଲି । ସ୍ତ୍ରୀ ସ୍ୱଭାବରେ ମୂର୍ଖ ଓ ଅବୁଝାମଣା ॥୫୭(କ)॥ ସୋରଠା:-ପ୍ରୀତିର ସୁନ୍ଦର ରୂପ ଦେଖନ୍ତୁ । ଜଳ ମଧ୍ୟ ଦୁଧ ସହ ମିଶି ଦୁଧ ସମାନ ମୂଲ୍ୟରେ ବିକି ହୁଏ । ମାତ୍ର କପଟ-ଆମ୍ଳ ପଡ଼ିବା ମାତ୍ରେ ଜଳ ଅଲଗା ହୋଇଯାଏ । ଫଳରେ ଦୁଧ ଛିଣ୍ଡି ଯାଏ ଏବଂ ସ୍ୱାଦ (ପ୍ରେମ) ଚାଲିଯାଏ ॥୫୭ (ଖ) ॥ ଚୌପାଇ :—ଆପଣା କୃତିତ୍ୱ ମନେ ପକାଇ ସତୀଙ୍କ ହୃଦୟରେ ଅପାର ଭାବନା ଓ ଚିନ୍ତା ଜାତ ହେଉଥାଏ । ତାହାର ବର୍ଣ୍ଣନା ଅସମ୍ଭବ । ତାଙ୍କର ହୃଦ୍‌ବୋଧ ହେଲା, "ଶିବ କୃପାର ପରମ ଅତଳ ସାଗର । ଏଣୁ ପ୍ରକାଶ୍ୟରେ ସେ ମୋର ଅପରାଧ କହିଲେ ନାହିଁ ।" ॥୧॥ ଶିବଙ୍କର ମୁଖ ଦେଖି "ସ୍ୱାମୀ ମୋତେ ପରିତ୍ୟାଗ କଲେ" ଜାଣି ସତୀ ହୃଦୟରେ ବ୍ୟାକୁଳ ହୋଇ ପଡିଲେ । ଆପଣା ପାପ ସ୍ମରଣ କରି ସେ କିଛି କହି ପାରୁ ନ ଥା'ନ୍ତି । ମାତ୍ର ତାଙ୍କ ହୃଦୟ ଭିତରେ ଭିତରେ କୁମ୍ଭାରର ଉହା ପରି ଅତ୍ୟଧିକ ଜଳିବାକୁ ଲାଗିଲା ॥୨॥ ବୃଷକେତୁ ଶିବ ସତୀଙ୍କୁ ଚିନ୍ତିତ ଥିବାର ଜାଣି ତାଙ୍କୁ ଆନନ୍ଦ ଦେବା ନିମନ୍ତେ ସୁନ୍ଦର ସୁନ୍ଦର କଥାମାନ କହିଲେ । ଏହିପରି ମାର୍ଗରେ ବିବିଧ ଇତିହାସ ବୃତ୍ତାନ୍ତ କହି ବିଶ୍ୱନାଥ କୈଳାସରେ ଯାଇ ପହଞ୍ଚିଲେ ॥୩॥ ସେଠାରେ ଶିବ ଆପଣା ପ୍ରତିଜ୍ଞା ସ୍ମରଣ ପୂର୍ବକ ବରଗଛ ମୂଳରେ ପଦ୍ମାସନ ଲଗାଇ ବସି ପଡ଼ିଲେ । ଆପଣା ସ୍ୱାଭାବିକ ରୂପ ସେ ଧାରଣ କଲେ । ତାଙ୍କର ଅଖଣ୍ଡ ଓ ଅପାର ସମାଧି ଆରମ୍ଭ

ସତୀ ବସହିଁ କୈଲାସ ତବ ଅଧିକ ସୋଚୁ ମନ ମାହିଂ ।
ମରମୁ ନ କୋଊ ଜାନ କଛୁ ଜୁଗ ସମ ଦିବସ ସିରାହିଂ ॥୫୮॥

ନିତ ନବ ସୋଚୁ ସତୀ ଉର ଭାରା । କବ ଜୈହଉଁ ଦୁଃଖସାଗର ପାରା ॥
ମୈଁ ଜୋ କୀହ୍ନ ରଘୁପତି ଅପମାନା । ପୁନି ପତିବଚନୁ ମୃଷା କରି ଜାନା ॥୧॥
ସୋ ଫଲୁ ମୋହି ବିଧାତାଁ ଦୀହ୍ନା । ଜୋ କଛୁ ଉଚିତ ରହା ସୋଇ କୀହ୍ନା ॥
ଅବ ବିଧି ଅସ ବୂଝିଅ ନହିଁ ତୋହୀ । ସଂକର ବିମୁଖ ଜିଆୱସି ମୋହୀ ॥୨॥
କହି ନ ଜାଇ କଛୁ ହୃଦୟ ଗଲାନୀ । ମନ ମହୁଁ ରାମହି ସୁମିର ସୟାନୀ ॥
ଜୌ ପ୍ରଭୁ ଦୀନଦୟାଲୁ କହାୱା । ଆରତି ହରନ ବେଦ ଜସୁ ଗାୱା ॥୩॥
ତୌ ମୈଁ ବିନୟ କରଉଁ କର ଜୋରୀ । ଛୂଟଉ ବେଗି ଦେହ ୟହ ମୋରୀ ।
ଜୌଂ ମୋରେଁ ସିବ ଚରନ ସନେହୂ । ମନ କ୍ରମ ବଚନ ସତ୍ୟ ବ୍ରତୁ ଏହୂ ॥୪॥

---

ସତୀ ଏଣେ ଅତି ବ୍ୟଥିତ ହୃଦୟେ କୈଳାଶେ ବାସ କରନ୍ତି ।
ଯୁଗ ପରି ଦିନ କଟଇ ମରମ କେହି କିଛି ନ ଜାଣନ୍ତି ॥୫୮॥

ନିତ୍ୟ ନବ ଚିନ୍ତା ହୁଏ ସତୀ ଉରେ ଭାର । କେବେ ଏହି ଦୁଃଖ-ସିନ୍ଧୁ ହୋଇବି ମୁଁ ପାର ॥
ରଘୁପତି ଅପମାନ ମୁହିଁ ଯେ କରିଲି । ପୁଣି ପତିଙ୍କ ବଚନ ଅସତ୍ୟ ମଣିଲି ॥୧॥
ତାହାର ଫଳ ବିଧାତା ମୋତେ ପ୍ରଦାନିଲା । ଯେ କିଛି ଉଚିତ ଥିଲା ତାହା ସେ କରିଲା ॥
ଏବେ ବିଧି ଏହା ଭଲ ନ୍ୟାୟ ନୁହେ ତୋର । ଶଙ୍କର-ବିମୁଖ ପ୍ରାଣ ବଞ୍ଚାଉଛୁ ମୋର ॥୨॥
କହି ନ ହୁଅଇ କିଛି ହୃଦୟର ଗ୍ଲାନି । ମନ ମଧ୍ୟରେ ରାମଙ୍କୁ ସ୍ମରନ୍ତି ଭବାନୀ ॥
ଯେବେ ହେ ପ୍ରଭୁ କୁହାଅ ଦୀନ ଦୟାନିଧି । ଆରତ-ହରଣ ନାମ ବେଦରେ ପ୍ରସିଦ୍ଧି ॥୩॥
କର ଯୋଡ଼ିଣ ବିନୟ କରୁଛି ମୁଁ ତେବେ । ଚଞ୍ଚଳ ଏ ଦେହ ମୋର ଗଳିଯାଉ ଏବେ ।
ଯେବେ ମୋର ସ୍ନେହ ଥାଏ ଶିବଙ୍କ ଚରଣେ । ଏହି ସତ୍ୟ ବ୍ରତ ମନ କରମ ବଚନେ ॥୪॥

---

ହେଲି ॥୪॥ ଦୋହା:-ସତୀ କୈଳାସ ଉପରେ ରହିବାକୁ ଲାଗିଲେ । ତାଙ୍କ ମନରେ ବଡ଼ କ୍ଷୋଭ ଥିଲା । ଏହି ରହସ୍ୟ କେହି କିଛି ହେଲେ ଜାଣି ପାରିଲେ ନାହିଁ । ତାଙ୍କର ଗୋଟିଏ ଦିନ ଗୋଟିଏ ଯୁଗ ପରି କଟୁଥିଲା ॥୫୮॥ ଚୌପାଈ:-ଏହି ଦୁଃଖ-ସମୁଦ୍ରକୁ କିପରି ପାରି ହେବେ, ସେ ବିଷୟରେ ସତୀଙ୍କ ହୃଦୟରେ ନିତ୍ୟ ନୂତନ ଓ ପ୍ରବଳତର ଚିନ୍ତା ଜାତ ହେଉଥାଏ । ମୁଁ ରଘୁପତିଙ୍କୁ ଅପମାନିତ କଲି ଏବଂ ସ୍ୱାମୀଙ୍କ କଥାକୁ ମିଛ ବୋଲି ମନେ କଲି—॥୧॥ ତାହାର ଫଳ ବିଧାତା ମୋତେ ଦେଲେ । ମୋ ପ୍ରତି ଯାହା ଉଚିତ, ସେହି ବିଚାର ସେ କଲେ । ହେ ବିଧାତା ! ଶଙ୍କରଙ୍କ ପ୍ରତି ବିମୁଖ ହେବା ପରେ ଏବେ ମଧ୍ୟ ମୋତେ ତୁ ବଞ୍ଚାଇ ରଖିଛୁ ! ଏହା ତୋ ପକ୍ଷରେ ଉଚିତ ନୁହେଁ ॥୨॥ ସତୀଙ୍କ ହୃଦୟର ଗ୍ଲାନି ଭାଷାରେ ପ୍ରକାଶ କରି ହେବ ନାହିଁ । ବୁଦ୍ଧିମତୀ ସତୀ ମନରେ ଶ୍ରୀରାମଚନ୍ଦ୍ରଙ୍କୁ ସ୍ମରଣ କଲେ ଏବଂ କହିଲେ, "ହେ ପ୍ରଭୋ ! ଯଦି ଆପଣ ଦୀନଦୟାଳୁ ନାମରେ କଥିତ ଏବଂ ଆପଣ ଦୁଃଖର ହରଣକାରୀ ବୋଲି ବେଦମାନେ ଆପଣଙ୍କ ଯଶ ଗାଇଅଛନ୍ତି, ॥୩॥

ତୌ ସବଦରସୀ ସୁନଅ ପ୍ରଭୁ କରଉ ସୋ ବେଗି ଉପାଇ ।
ହୋଇ ମରନୁ ଜେହିଁ ବିନହିଂ ଶ୍ରମ ଦୁସହ ବିପତ୍ତି ବିହାଇ ॥୫୯॥
ଏହି ବିଧି ଦୁଖିତ ପ୍ରଜେସକୁମାରୀ । ଅକଥନୀୟ ଦାରୁନ ଦୁଖୁ ଭାରୀ ।
ବୀତେଁ ସଂବତ ସହସ ସତାସୀ । ତଜୀ ସମାଧି ସଂଭୁ ଅବିନାସୀ ॥୧॥
ରାମ ନାମ ସିବ ସୁମିରନ ଲାଗେ । ଜାନେଉ ସତୀଁ ଜଗତପତି ଜାଗେ ॥
ଜାଇ ସଂଭୁପଦ ବଂଦନୁ କୀହ୍ନା । ସନମୁଖ ସଂକର ଆସନୁ ଦୀହ୍ନା ॥୨॥
ଲଗେ କହନ ହରିକଥା ରସାଲା । ଦଚ୍ଛ ପ୍ରଜେସ ଭଏ ତେହି କାଲା ॥
ଦେଖା ବିଧି ବିଚାରି ସବ ଲାୟକ । ଦଚ୍ଛହି କୀହ୍ନ ପ୍ରଜାପତି ନାୟକ ॥୩॥
ବଡ଼ ଅଧିକାର ଦଚ୍ଛ ଜବ ପାୱା । ଅତି ଅଭିମାନୁ ହୃଦୟଁ ତବ ଆୱା ॥
ନହିଂ କୋଉ ଅସ ଜନମା ଜଗ ମାହୀଂ । ପ୍ରଭୁତା ପାଇ ଜାହି ମଦ ନାହୀଂ ॥୪॥

---

ତେବେ ସମଦର୍ଶୀ ଶୁଣ ପ୍ରଭୁ ସେହି ଉପାୟ କର ଝଟିତ ।
ଯେମନ୍ତ ମରଣ ହେଉ ବିନା ଶ୍ରମ ତେଜି ଦୁଃସହ ବିପତ୍ତି ॥୫୯॥
ଏହି ପ୍ରକାରେ ଦୁଃଖିତ ପ୍ରଜେଶ କୁମାରୀ । ଅକଥନୀୟ ଦାରୁଣ ଦୁଃଖ ହୁଏ ଭାରୀ ॥
ବ୍ୟତୀତ ହୁଅନ୍ତେ ବର୍ଷ ସହସ୍ର ସତାଶୀ । ତେଜିଲେ ସମାଧି ସଦାଶିବ ଅବିନାଶୀ ॥୧॥
ରାମଙ୍କ ନାମ ସ୍ମରଣ କରନ୍ତେ ମହେଶ । ଜାଣିଲେ ସତୀ ଜାଗ୍ରତ ହୋଇଲେ ବିଶ୍ୱେଶ ॥
ବନ୍ଦନ କଲେ ଯାଇଣ ଶିବଙ୍କ ପୟର । ସମ୍ମୁଖେ ଆସନ ଦେଲେ ସୁଧାଂଶୁଶେଖର ॥୨॥
କଥନେ ଲାଗିଲେ ହରି କଥା-ସୁଧା ଅତି । ସେହି ସମୟରେ ଦକ୍ଷ ହେଲେ ପ୍ରଜାପତି ॥
ସବୁ ଭାବେ ଯୋଗ୍ୟ ବିଧି ବିଚାରି ଦେଖିଲେ । ଦକ୍ଷେ ପ୍ରଜେଶ-ନାୟକ ପଦ ପ୍ରଦାନଲେ ॥୩॥
ବଡ଼ ଅଧିକାର ଯେବେ ଦକ୍ଷ କଲେ ପ୍ରାପ୍ତ । ଅତି ଅଭିମାନ ତହୁଁ ହୃଦେ ହେଲା ଜାତ ॥
ଜଗତେ ଏମନ୍ତ କିଏ ଜନମ ଲଭିଛି । ପ୍ରଭୁତା ପାଇ ଯାହାଙ୍କୁ ମଦ ନ ଆସିଛି ॥୪॥

---

ତେବେ ମୁଁ ହାତ ଯୋଡ଼ି ବିନତି କରୁଛି—ମୋର ଏ ଦେହର ଶୀଘ୍ର ଅବସାନ ଘଟୁ । ଯଦି ମୋର ଶିବଙ୍କ ଚରଣରେ ପ୍ରେମ ଥାଏ ଏବଂ ଏହି ପ୍ରେମବ୍ରତ ମନ, ବଚନ ଓ କର୍ମରେ ସତ୍ୟ ହୋଇଥାଏ, ॥୪॥ ଦୋହା:-ହେ ସର୍ବଦର୍ଶୀ ପ୍ରଭୋ ! ମୋ ପ୍ରାର୍ଥନା ଶୁଣନ୍ତୁ, ଯେପରି ମୋର ମରଣ ହୋଇଯାଏ ଏବଂ ବିନା ପରିଶ୍ରମରେ ଏହି ପତି-ପରିତ୍ୟାଗଜନିତ ଅସହ୍ୟ ବିପତ୍ତି ମୋର ଦୂର ହୋଇଯାଏ, ତହିଁର ଉଚିତ ଉପାୟ ଶୀଘ୍ର କରନ୍ତୁ ॥୫୯॥ ଚୌପାଈ:- ଦକ୍ଷସୁତା ସତୀ ଏହିପରି ବିଶେଷ ଦୁଃଖିତ ଥିଲେ । ତାଙ୍କ ଦୁଃଖ ଏତେ ଦାରୁଣ ଯେ ତାହା ଭାଷାରେ ପ୍ରକାଶ କରି ହେବ ନାହିଁ । ସତାଶୀ ହଜାର ବର୍ଷ ଅତିବାହିତ ହେବା ପରେ ଅବିନାଶୀ ଶିବ ସମାଧି ତ୍ୟାଗ କଲେ ॥୧॥ ଶିବ 'ରାମ' ନାମ ସ୍ମରଣ କଲେ ଏବଂ ସତୀ ଜାଣିଲେ ଯେ ବର୍ତ୍ତମାନ ଜଗତସ୍ୱାମୀ (ଶିବ) ଜାଗ୍ରତ ହେଲେ । ସେ ଯାଇ ଶିବଙ୍କ ଚରଣରେ ପ୍ରଣାମ କଲେ । ବସିବା ପାଇଁ ଶିବ ତାଙ୍କୁ ଆସନ ଦେଲେ ॥୨॥ ଶିବ ଭଗବାନ୍ ହରିଙ୍କ ରସମୟୀ କଥା କହିବାକୁ ଲାଗିଲେ । ସେହି ସମୟରେ ଦକ୍ଷ ପ୍ରଜାପତି ହେଲେ ।

ଦଚ୍ଛ ଲିଏ ମୁନି ବୋଲି ସବ କରନ ଲଗେ ବଡ଼ ଜାଗ ।
ନେଓ୍ବତେ ସାଦର ସକଲ ସୁର ଜେ ପାଓ୍ବତ ମଖ ଭାଗ ॥୬୦॥
କିଂନର ନାଗ ସିଦ୍ଧ ଗଂଧର୍ବା । ବଧୁନ୍ହ ସମେତ ଚଲେଁ ସୁର ସର୍ବା ॥
ବିଷ୍ଣୁ ବିରଂଚି ମହେସୁ ବିହାଈ । ଚଲେ ସକଲ ସୁର ଜାନ ବନାଈ ॥୧॥
ସତୀଁ ବିଲୋକେ ବ୍ୟୋମ ବିମାନା । ଜାତ ଚଲେ ସୁନ୍ଦର ବିଧି ନାନା ॥
ସୁର ସୁନ୍ଦରୀ କରହିଁ କଲ ଗାନା । ସୁନତ ଶ୍ରବନ ଛୁଟହିଁ ମୁନି ଧ୍ୟାନା ॥୨॥
ପୁଛେଉ ତବ ସିବଁ କହେଉ ବଖାନୀ । ପିତା ଜଜ୍ଞ ସୁନି କଛୁ ହରଷାନୀ ॥
ଜୌଂ ମହେସୁ ମୋହି ଆୟସୁ ଦେହୀଁ । କଛୁ ଦିନ ଜାଇ ରହୌଁ ମିସ ଏହୀଁ ॥୩॥

---

ଦକ୍ଷ ଏକ ଭାରୀ ଯଜ୍ଞ ଆରମ୍ଭିଲେ ଡକାଇ ମୁନିଗଣଙ୍କୁ ॥
ଯେ ସୁରେ ପାଆନ୍ତି ଯଜ୍ଞ ଭାଗ ପ୍ରେମେ ନିମନ୍ତ୍ରିଲେ ସମସ୍ତଙ୍କୁ ॥୬୦॥
କିନ୍ନର ନାଗ ଆବର ସିଦ୍ଧ ଗନ୍ଧର୍ବେ । ବଧୂ ସମେତ ଚଳିଲେ ବିବୁଧ ସର୍ବେ ॥
ବିଷ୍ଣୁ ବିରଞ୍ଚି ସହିତ ଶିବଙ୍କୁ ତେଜିଣ । ଆଗମିଲେ ଦେବବୃନ୍ଦ ଯାନ ସଜାଇଣ ॥୧॥
ଦେଖିଲେ ଦକ୍ଷ ଦୁହିତା ଗଗନେ ସଜ୍ଜିତ । ଉଡ଼ି ଯାଆନ୍ତି ବିବିଧ ବିମାନ ଶୋଭିତ ॥
ସୁର ସୁନ୍ଦରୀ କରନ୍ତି ସୁମଧୁରେ ଗାନ । ଶୁଣନ୍ତେ ଶ୍ରବଣେ ଭାଙ୍ଗିଯାଏ ମୁନି ଧ୍ୟାନ ॥୨॥
ପଚାରନ୍ତେ ଶିବ ତହୁଁ ବୁଝାଇ କହିଲେ । ପିତୃ ଯଜ୍ଞ ଶୁଣି କିଛି ହରଷ ହୋଇଲେ ॥
ଯେବେ ମହେଶ୍ୱର ମୋତେ ଆଦେଶ ଦିଅନ୍ତି । ଏହି ଛଳେ ଯାଇ କିଛି ଦିବସ ରହନ୍ତି ॥୩॥

---

ବ୍ରହ୍ମା ଦକ୍ଷଙ୍କୁ ସବୁ ପ୍ରକାରେ ଯୋଗ୍ୟ ଦେଖି ଓ ବୁଝି ବିଚାରି ତାହାଙ୍କୁ ସମସ୍ତ ପ୍ରଜାପତିଙ୍କ ନାୟକ କରି ଦେଲେ ॥୩॥ ଦକ୍ଷ ଯେତେବେଳେ ଏତେ ବଡ଼ ଅଧିକାର ପାଇଲେ, ସେତେବେଳେ ତାଙ୍କ ମନରେ ଭାରି ଗର୍ବ ଆସିଗଲା । ଜଗତରେ ଏପରି କୌଣସି ଲୋକ ଜନ୍ମଲାଭ କରି ନାହିଁ, ପ୍ରଭୁତ୍ୱ ପାଇ ଯାହାର ଗର୍ବ ଜାତ ହୋଇ ନାହିଁ ॥୪॥ ଦୋହା '—ଦକ୍ଷ ସମସ୍ତ ମୁନିଙ୍କୁ ଡକାଇ ନେଲେ ଏବଂ ବଡ ଯଜ୍ଞ କରିବାକୁ ଲାଗିଲେ । ଯେଉଁ ଦେବତାମାନେ ଯଜ୍ଞରୁ ଭାଗ ପାଆନ୍ତି, ସେ ସମସ୍ତଙ୍କୁ ଦକ୍ଷ ଆଦର ସହିତ ନିମନ୍ତ୍ରିତ କଲେ ॥୬୦॥ ଚୌପାଈ '—ଦକ୍ଷଙ୍କ ନିମନ୍ତ୍ରଣ ପାଇ କିନ୍ନର, ନାଗ, ସିଦ୍ଧ, ଗନ୍ଧର୍ବ ଓ ସମସ୍ତ ଦେବତା ସେମାନଙ୍କ ବଧୂଗଣଙ୍କ ସହିତ ଯଜ୍ଞରେ ଯୋଗ ଦେବାକୁ ଗଲେ । ବିଷ୍ଣୁ, ବ୍ରହ୍ମା ଓ ମହାଦେବଙ୍କୁ ଛାଡି ସମସ୍ତ ଦେବତା ଆପଣା ଆପଣା ବିମାନ ସୁସଜ୍ଜିତ କରି ଚଳିଲେ ॥୧॥ ଅନେକ ପ୍ରକାର ସୁନ୍ଦର ବିମାନ ଆକାଶରେ ଚାଲି ଯାଉଥିବାର ସତୀ ଦେଖିଲେ । ସୁର-ସୁନ୍ଦରୀଗଣ ସେ ସବୁଥିରେ ମଧୁର ଗାନ କରୁଥିଲେ । ସେ ଗାନ ଶୁଣି ମୁନିଗଣଙ୍କ ଧ୍ୟାନ ସୁଦ୍ଧା ଭଗ୍ନ ହୋଇଯିବ ॥୨॥ ଏଥିର ରହସ୍ୟ ସତୀ ଶିବଙ୍କୁ ପଚାରନ୍ତେ, ଶିବ ସମସ୍ତ ବିଷୟ କହିଲେ । ପିତାଙ୍କର ଯଜ୍ଞ ବିଷୟ ଶୁଣି ସତୀ ଟିକିଏ ଆନନ୍ଦିତ ହେଲେ । ସେ ଭାବିଲେ "ଯଦି ମହାଦେବ ମୋତେ ଅନୁମତି ଦିଅନ୍ତେ, ତେବେ ଏହି ବାହାନାରେ କିଛି ଦିନ ବାପଘରେ ଯାଇ ରହନ୍ତି ॥୩॥

ପତି ପରିତ୍ୟାଗ ହୃଦୟଁ ଦୁଖୁ ଭାରୀ । କହଇ ନ ନିଜ ଅପରାଧ ବିଚାରୀ ॥
ବୋଲୀ ସତୀ ମନୋହର ବାନୀ । ଭୟ ସଂକୋଚ ପ୍ରେମ ରସ ସାନୀ ॥୪॥
ପିତା ଭବନ ଉତ୍ସବ ପରମ ଜୌଁ ପ୍ରଭୁ ଆୟସୁ ହୋଇ ।
ତୌ ମୈଁ ଜାଉଁ କୃପାୟତନ ସାଦର ଦେଖନ ସୋଇ ॥୬୧॥
କହେହୁ ନୀକ ମୋରେହୁଁ ମନ ଭାଓ୍ୱା । ୟହ ଅନୁଚିତ ନହିଂ ନେଓ୍ୱତ ପଠାଓ୍ୱା ॥
ଦଚ୍ଛ ସକଲ ନିଜ ସୁତା ବୋଲାଈ । ହମରେଁ ବୟରୁ ତୁମ୍ହଉ ବିସରାଈ ॥୧॥
ବ୍ରହ୍ମସଭାଁ ହମ ସନ ଦୁଖୁ ମାନା । ତେହି ତେଁ ଅଜହୁଁ କରହିଁ ଅପମାନା ॥
ଜୌଁ ବିନୁ ବୋଲେଁ ଜାହୁ ଭବାନୀ । ରହଇ ନ ସୀଲୁ ସନେହୁ ନ କାନୀ ॥୨॥
ଜଦପି ମିତ୍ର ପ୍ରଭୁ ପିତୁ ଗୁର ଗେହା । ଜାଇଅ ବିନୁ ବୋଲେହୁଁ ନ ସଁଦେହା ॥
ତଦପି ବିରୋଧ ମାନ ଜହଁ କୋଈ । ତହାଁ ଗଏଁ କଲ୍ୟାନୁ ନ ହୋଈ ॥୩॥

---

ପତି ତେଜନ୍ତେ ହୃଦୟେ ଦୁଃଖ ହୁଏ ଭାରି । କହନ୍ତି ନାହିଁ ଆପଣା ଦୂଷଣ ବିଚାରି ॥
ତଥାପି ଭାଷିଲେ ସତୀ ବାଣୀ ସୁଲଳିତ । ଭୟ ଲଜ୍ଜା ପ୍ରେମ ରସେ କରି ଅଭିଷିକ୍ତ ॥୪॥
ପିତୃ ଗୃହେ ହୁଏ ପରମ ଉତ୍ସବ ପ୍ରଭୁ ଆଦେଶନ୍ତି ଯେବେ ।
ସାଦରେ ତାହା ମୁଁ ଦେଖିବା ନିମନ୍ତେ ଯାଆନ୍ତି କୃପାଳୁ ତେବେ ॥୬୧॥
କହିଲ ଭଲ ପ୍ରସନ୍ନ ହେଲା ମୋର ଚିତ୍ତ । ନିମନ୍ତ୍ରଣ ଆସିନାହିଁ ଏହା ଅନୁଚିତ ॥
ଅନ୍ୟ ସବୁ ଦୁହିତାଙ୍କୁ ଦକ୍ଷ ଡକାଇଲେ । ମୋସଙ୍ଗେ ଶତ୍ରୁତା ହେତୁ ତୁମ୍ଭଙ୍କୁ ଭୁଲିଲେ ॥୧॥
ବ୍ରାହ୍ମସଭାରେ ମୋଠାରୁ ଦୁଃଖ ମଣିଛନ୍ତି । ସେ କାରଣେ ଅପମାନ ଅଦ୍ୟାପି କରନ୍ତି ॥
ଯେବେ ନିମନ୍ତ୍ରଣ ବିନା ସତୀ ତୁମ୍ଭେ ଯିବ । ଶୀଳ ବା ସ୍ନେହ ମର୍ଯ୍ୟାଦା କିଛି ନ ରହିବ ॥୨॥
ଯଦ୍ୟପି ଅନିମନ୍ତ୍ରିତେ ଗୁରୁ ପ୍ରଭୁ ମିତ । ପିତୃ ଗୃହେ ନିଃସଂଶୟ ଯିବାର ଉଚିତ ॥
ତଥାପି ଯଦି କେ କାହିଁ ବିରୋଧ କରଇ । ସେ ସ୍ଥାନେ ଗଲେ କଲ୍ୟାଣ କେବେ ନହୁଅଇ ॥୩॥

---

ତାଙ୍କ ହୃଦୟରେ ପତିଙ୍କଦ୍ୱାରା ପରିତ୍ୟକ୍ତ ହୋଇ ଥିବାରୁ ଗଭୀର ଦୁଃଖ ଥିଲା । କିନ୍ତୁ ନିଜ ଅପରାଧ କଥା ବିଚାରି ସେ କିଛି କହୁ ନ ଥା'ନ୍ତି । ଶେଷରେ ସତୀ ଭୟ, ସଙ୍କୋଚ ଓ ପ୍ରେମରସରେ ପୂର୍ଣ୍ଣ ମଧୁର ବାଣୀ କହିଲେ- ॥୪॥ ଦୋହା -"ହେ ପ୍ରଭୋ ! ମୋ ପିତୃ-ଗୃହରେ ବଡ ଉତ୍ସବ ହେଉଅଛି । କୃପାସଦନ ! ଆପଣଙ୍କର ଅନୁମତି ହେଲେ, ମୁଁ ଆଦର ସହିତ ତାହା ଦେଖିବାକୁ ଯାଆନ୍ତି ।" ॥୬୧॥ ଚୌପାଈ-ଶିବ କହିଲେ, "ତୁମେ ତ ଭଲ କଥା କହିଲ । ଏହା ମୋ ମନକୁ ପାଇଲା କିନ୍ତୁ ସେ ନିମନ୍ତ୍ରଣ ତ ପଠାଇ ନାହାନ୍ତି । ଏହା ଘୋର ଅନୁଚିତ । ଦକ୍ଷ ତାଙ୍କ ସମସ୍ତ କନ୍ୟାଙ୍କୁ ଡକାଇଅଛନ୍ତି । କିନ୍ତୁ ଆମ ସହିତ ଶତ୍ରୁତା ହେତୁ ସେ ତୁମ୍ଭଙ୍କୁ ମଧ୍ୟ ଭୁଲିଗଲେ ॥୧॥ ଏକଦା ବ୍ରହ୍ମାଙ୍କ ସଭାରେ ସେ ମୋଠାରେ ଅସନ୍ତୁଷ୍ଟ ହୋଇଥିଲେ । ସେହି ହେତୁ ସେ ଏବେ ମଧ୍ୟ ମୋର ଅପମାନ କରୁଅଛନ୍ତି । ହେ ଭବାନି ! ବିନା ଆମନ୍ତ୍ରଣରେ ତୁମେ ଯଦି ସେଠାକୁ ଯିବ, ତେବେ ଶୀଳସ୍ନେହ ରହିବ ନାହିଁ କିମ୍ବା ମାନମର୍ଯ୍ୟାଦା ବି ରହିବ ନାହିଁ । ବିନା ନିମନ୍ତ୍ରଣରେ ମିତ୍ର, ସ୍ୱାମୀ, ପିତା ଓ ଗୁରୁଙ୍କ ଗୃହକୁ

ଭାଁତି ଅନେକ ସଂଭୁ ସମୁଝାଓ୍ୱା । ଭାବୀ ବସ ନ ଜ୍ଞାନୁ ଉର ଆଓ୍ୱା ॥
କହ ପ୍ରଭୁ ଜାହୁ ଜୋ ବିନହିଂ ବୋଲାଏଁ । ନହିଁ ଭଲି ବାତ ହମାରେ ଭାଏଁ ॥୪॥

କହି ଦେଖା ହର ଜତନ ବହୁ ରହଇ ନ ଦଚ୍ଛକୁମାରି ।
ଦିଏ ମୁଖ୍ୟ ଗନ ସଂଗ ତବ ବିଦା କୀନ୍ହ ତ୍ରିପୁରାରି ॥୬୨॥

ପିତା ଭବନ ଜବ ଗଈଂ ଭବାନୀ । ଦଚ୍ଛ ତ୍ରାସ କାହୁଁ ନ ସନମାନୀ ॥
ସାଦର ଭଲେହିଂ ମିଲୀ ଏକ ମାତା । ଭଗିନୀଂ ମିଲୀଂ ବହୁତ ମୁସୁକାତା ॥୧॥
ଦଚ୍ଛ ନ କଛୁ ପୂଛୀ କୁସଲାତା । ସତିହି ବିଲୋକି ଜରେ ସବ ଗାତା ॥
ସତୀଁ ଜାଇ ଦେଖେଉ ତବ ଜାଗା । କତହୁଁ ନ ଦୀଖ ସଂଭୁ କର ଭାଗା ॥୨॥
ତବ ଚିତ ଚଢେଉ ଜୋ ସଂକର କହେଊ । ପ୍ରଭୁ ଅପମାନୁ ସମୁଝି ଉର ଦହେଊ ॥
ପାଛିଲ ଦୁଖୁ ନ ହୃଦୟଁ ଅସ ବ୍ୟାପା । ଜସ ୟହ ଭୟଉ ମହା ପରିତାପା ॥୩॥

---

ନାନାମତେ କହିଲେହେଁ ବୁଝାଇ ମହେଶ । ଭାବୀବଶ ହୃଦେ ଜ୍ଞାନ ନ ହେଲା ପ୍ରବେଶ ॥
କହନ୍ତି ପ୍ରଭୁ ଅନିମନ୍ତ୍ରିତ ଯେବେ ଯିବ । ମୋ ମତରେ ପରିଣାମ ଭଲ ନ ହୋଇବ ॥୪॥

ବହୁ ଯତ୍ନ କରି ଦେଖିଲେ ଶଙ୍କର ଦକ୍ଷସୁତା ନ ରହନ୍ତି ।
ତହୁଁ ମୁଖ୍ୟଗଣ ସଙ୍ଗତେ ଦେଇଣ ବିଦା କଲେ ପଶୁପତି ॥୬୨॥

ସତୀ ଯେତେବେଳେ ପିତାଭବନକୁ ଗଲେ । ଦକ୍ଷତ୍ରାସେ କେହି ତାଙ୍କୁ ସମ୍ମାନ ନ କଲେ ॥
ସାଦରେ କେବଳ ମାତ୍ର ଜନନୀ ମିଳିଲେ । ମୁରୁକି ହସି ବହୁତ ଭଗିନୀ ଭେଟିଲେ ॥୧॥
ଦକ୍ଷ ପଚାରିଲେ ନାହିଁ କୁଶଳାଦି ଲେଶ । ସତୀଙ୍କି ଦେଖି ଶରୀର ଜଳିଲା ବିଶେଷ ॥
ଏଥୁଅନ୍ତେ ସତୀ ଯାଇ ଯଜ୍ଞ ବିଲୋକିଲେ । କାହିଁ ମଧ୍ୟ ଈଶ୍ୱରଙ୍କ ଭାଗ ନ ଦେଖିଲେ ॥୨॥
ତହୁଁ ଶିବବାକ୍ୟ ଚିତ୍ତେ ଚେତନା ହୋଇଲା । ସ୍ୱାମୀ ଅପମାନ ବୁଝି ହୃଦୟ ଦହିଲା ॥
ପଛ ଦୁଃଖ ହୃଦେ ବ୍ୟାପି ନ ଥିଲା ଏମନ୍ତେ । ଏବେ ମହା ପରିତାପ ହୋଇଲା ଯେମନ୍ତେ ॥୩॥

---

ଯିବା ଯେ ଅସଙ୍ଗତ ନୁହେଁ, ଏଥିରେ ସନ୍ଦେହ ନାହିଁ । ତଥାପି ଯେଉଁଠାରେ କେହି କିଛି ବିରୋଧ କରୁଥିବ, ତାହାର ଘରକୁ ଗଲେ ମଙ୍ଗଳ ହୁଏ ନାହିଁ ।" ॥୩॥ ଶିବ ବହୁତ ବୁଝାଇଲେ । କିନ୍ତୁ ଭବିତବ୍ୟ ବଶ ତାହା ସତୀଙ୍କ ହୃଦୟଙ୍ଗମ ହେଲା ନାହିଁ । ପୁଣି ଥରେ ଶିବ କହିଲେ, "ବିନା ନିମନ୍ତ୍ରଣରେ ତୁମେ ଯଦି ଯିବ, ତେବେ ମୋ ବିଚାରରେ ଭଲ କଥା ହେବ ନାହିଁ ।" ॥୪॥ ଦୋହା –ବହୁତ ଯତ୍ନ କରି ଶିବ କହି ଥକି ଗଲେ । କିନ୍ତୁ ସତୀ ମାନିଲେ ନାହିଁ । ଶେଷରେ ଶିବ ତାଙ୍କ ପ୍ରଧାନ ଗଣଙ୍କୁ ସଙ୍ଗରେ ଦେଇ ସତୀଙ୍କୁ ବିଦା କରିଦେଲେ ॥୬୨॥ ଚୌପାଈ:–ଭବାନୀ ଯେତେବେଳେ ପିତୃଭବନରେ ଉପସ୍ଥିତ ହେଲେ, ଦକ୍ଷଙ୍କ ଭୟରେ କେହି ତାଙ୍କୁ ସମ୍ମାନ ଦେଖାଇଲେ ନାହିଁ । କେବଳ ଏକମାତ୍ର ମାତା ଆଦରରେ ଆସି ତାଙ୍କସହ ସାକ୍ଷାତ କଲେ । ଭଗିନୀଗଣ ବହୁତ ହସି ହସି ଆସି ମିଳିଲେ ॥୧॥ ଦକ୍ଷ କିଛି କୁଶଳ ସମାଚାର ବି ପଚାରିଲେ ନାହିଁ । ଓଲଟି ସତୀଙ୍କୁ ଦେଖି ତାଙ୍କ ସାରା ଦେହ ରାଗରେ ଜଳିଗଲା । ତାପରେ ସତୀ ଯାଇ ଯଜ୍ଞ ସ୍ଥଳର ସବୁଆଡ ନିରୀକ୍ଷଣ କଲେ । ମାତ୍ର

ଜଦ୍ୟପି ଜଗ ଦାରୁନ ଦୁଖ ନାନା । ସବ ତେଁ କଠିନ ଜାତି ଅବମାନା ॥
ସମୁଝି ସୋ ସତିହି ଭୟଉ ଅତି କ୍ରୋଧା । ବହୁ ବିଧି ଜନନୀ କୀହ୍ନ ପ୍ରବୋଧା ॥୪॥
ସିବ ଅପମାନୁ ନ ଜାଇ ସହି ହୃଦୟଁ ନ ହୋଇ ପ୍ରବୋଧ ।
ସକଲ ସଭହି ହଠି ହଟକି ତବ ବୋଲୀଁ ବଚନ ସକ୍ରୋଧ ॥୬୩॥
ସୁନହୁ ସଭାସଦ ସକଲ ମୁନିନ୍ଦା । କହୀ ସୁନୀ ଜିହ୍ନ ସଂକର ନିନ୍ଦା ॥
ସୋ ଫଲୁ ତୁରତ ଲହବ ସବ କାହୂଁ । ଭଲୀ ଭାଁତି ପଛିତାବ ପିତାହୂଁ ॥୧॥
ସଂତ ସଂଭୁ ଶ୍ରୀପତି ଅପବାଦା । ସୁନିଅ ଜହାଁ ତହଁ ଅସି ମରଜାଦା ॥
କାଟିଅ ତାସୁ ଜୀଭ ଜୋ ବସାଈ । ଶ୍ରବନ ମୂଦି ନ ତ ଚଲିଅ ପରାଈ ॥୨॥
ଜଗଦାତମା ମହେସୁ ପୁରାରୀ । ଜଗତ ଜନକ ସବ କେ ହିତକାରୀ ॥
ପିତା ମନ୍ଦମତି ନିଂଦତ ତେହୀ । ଦଚ୍ଛ ସୁକ୍ର ସଂଭବ ୟହ ଦେହୀ ॥୩॥

---

ଯଦ୍ୟପି ଜଗତେ ଘୋର ଦୁଃଖ ବିଦ୍ୟମାନ । ସମସ୍ତଙ୍କଠାରୁ ଖରା ଜାତି ଅପମାନ ॥
ସ୍ମରଣ ଏହା ସତୀଙ୍କ ହେଲା କ୍ରୋଧ ଅତି । ବହୁ ପ୍ରକାରେ ଜନନୀ ପ୍ରବୋଧ କରନ୍ତି ॥୪॥
ଶିବ ଅପମାନ ନ ହୁଏ ସହନ ହୃଦ ନ ଲଭେ ପ୍ରବୋଧ ।
ସମସ୍ତ ସଭ୍ୟଙ୍କୁ ତରଜି ବଚନ ବୋଇଲେ ଅତି ସକ୍ରୋଧ ॥୬୩॥
ଶୁଣ ସର୍ବେ ସଭାସଦ ମୁନୀନ୍ଦ୍ର ନିକର । ଯେ କହି ଶୁଣି ଅଛନ୍ତି ନିନ୍ଦା ଶମ୍ଭୁଙ୍କର ॥
ତାହାର ଫଳ ଏକ୍ଷଣି ସମସ୍ତେ ଲଭିବେ । ଭଲରୂପେ ପଶ୍ଚାତ୍ତାପ ପିତା ବି କରିବେ ॥୧॥
ସନ୍ଥ ଶମ୍ଭୁ ଶ୍ରୀପତିଙ୍କ ଅପବାଦ ଯହିଁ । ଶୁଣାଯାଏ ସେ ସ୍ଥାନର ମର୍ଯ୍ୟାଦା ଏହାହିଁ ॥
କାଟିଦିଅ ଜିହ୍ୱା ତାର ଥାଏ ଯଦି ବଳ । ଅନ୍ୟଥା ଶ୍ରବଣ ମୁଦି ପଳାଅ ଚଞ୍ଚଳ ॥୨॥
ଜଗତଆତ୍ମା ଭୁବନେଶ୍ୱର ତ୍ରିପୁରାରି । ଜଗତ ଜନକ ସର୍ବଜୀବ-ହିତକାରୀ ॥
ତାହାଙ୍କୁ ନିନ୍ଦା କରନ୍ତି ପିତା ମନ୍ଦମତି । ଦକ୍ଷ ଶୁକ୍ରରେ ଏ ମୋର ଶରୀର ଉତ୍ପତ୍ତି ॥୩॥

---

କେଉଁଠି ହେଲେ, ଶଙ୍କରଙ୍କ ଭାଗ ତାଙ୍କର ଦୃଷ୍ଟିଗୋଚର ହେଲା ନାହିଁ ॥୨॥ ସେତିକିବେଳେ ଶିବଙ୍କ କଥା ତାଙ୍କ ଚେତାରେ ପଶିଲା । ସ୍ୱାମୀଙ୍କ ଅପମାନ ଜାଣି ସତୀଙ୍କ ହୃଦୟ ଜଳିଉଠିଲା । ବର୍ତ୍ତମାନ ପତି-ଅପମାନ ହେତୁ ତାଙ୍କ ମନରେ ଘୋର ଦୁଃଖ ଜାତ ହେଲା, ପୂର୍ବର ପତି-ପରିତ୍ୟାଗଜନିତ ଦୁଃଖ ସେତେ ପରିମାଣରେ ତାଙ୍କ ହୃଦୟରେ ଘୋଟି ନଥିଲା ॥୩॥ ଜଗତରେ ଅନେକ ପ୍ରକାର ଦାରୁଣ ଦୁଃଖ ଥିଲେ ହେଁ ଜାତି-ଅପମାନ ସବୁଠାରୁ ବଳି କଠିନ । ଏହା ବିଚାରି ସତୀଙ୍କର ବିଶେଷ କ୍ରୋଧ ହେଲା । ମାତା ତାହାଙ୍କୁ ବହୁତ ପ୍ରକାରେ ବୁଝାଇଲେ ॥୪॥ ଦୋହା'-କିନ୍ତୁ ଶିବଙ୍କର ଅପମାନ ସେ ସହିପାରିଲେ ନାହିଁ । ସେହି କାରଣରୁ ତାଙ୍କ ହୃଦୟକୁ ଟିକିଏ ହେଲେ ସାନ୍ତ୍ୱନା ବି ମିଳିଲା ନାହିଁ । ତେଣୁ ସେ ସମସ୍ତ ସଭାକୁ ଦୃଢ଼ଭାବରେ ଧିକ୍କାର କରି କ୍ରୋଧପୂର୍ଣ୍ଣ ବଚନ କହିଲେ-॥୬୩॥ ଚୌପାଈ'-"ହେ ସଭା-ସଦବର୍ଗ ! ହେ ମୁନୀଶ୍ୱରଗଣ ! ସମସ୍ତେ ଶୁଣ । ଯେଉଁ ଲୋକମାନେ ଏଠାରେ ଶିବଙ୍କର ନିନ୍ଦା କଲେ ବା ଶୁଣିଲେ, ସେ ସମସ୍ତେ ତାହାର ପ୍ରତିଫଳ ତୁରନ୍ତ ପାଇଯିବେ ଏବଂ ମୋ ପିତା ଦକ୍ଷ

ତଜିହଉଁ ତୁରତ ଦେହ ତେହି ହେତୂ । ଉର ଧରି ଚନ୍ଦ୍ରମୌଳି ବୃଷକେତୂ ॥
ଅସ କହି ଜୋଗ ଅଗିନି ତନୁ ଜାରା । ଭୟଉ ସକଲ ମଖ ହାହାକାରା ॥୪॥
ସତୀ ମରନୁ ସୁନି ସମ୍ଭୁ ଗନ ଲଗେ କରନ ମଖ ଖୀସ ।
ଜଜ୍ଞ ବିଧଂସ ବିଲୋକି ଭୃଗୁ ରଚ୍ଛା କୀହ୍ନି ମୁନୀସ ॥୬୪॥
ସମାଚାର ସବ ସଂକର ପାଏ । ବୀରଭଦ୍ରୁ କରି କୋପ ପଠାଏ ॥
ଜଜ୍ଞ ବିଧଂସ ଜାଇ ତିହ୍ନ କୀହ୍ନା । ସକଲ ସୁରହ୍ନ ବିଧିବତ ଫଳୁ ଦୀହ୍ନା ॥୧॥
ଭୈ ଜଗବିଦିତ ଦଚ୍ଛ ଗତି ସୋଈ । ଜସି କଛୁ ସଂଭୁ ବିମୁଖ କୈ ହୋଈ ॥
ୟହ ଇତିହାସ ସକଲ ଜଗ ଜାନୀ । ତାତେ ମୈଁ ସଂଛେପ ବଖାନୀ ॥୨॥

---

ତ୍ୟାଗ କରିବି ସତ୍ୱର ଦେହ ସେହି ହେତୁ । ହୃଦୟେ ସ୍ମରି ଚନ୍ଦ୍ରମୌଳି ବୃଷକେତୁ ॥
ଏହା କହି ତନୁ ଦଗ୍ଧ କଲେ ଯୋଗାନଳେ । ହାହାକାର ଶବ୍ଦ ହେଲା ସାରା ଯଜ୍ଞ ସ୍ଥଳେ ॥୪॥
ସତୀଙ୍କ ମରଣ ଶୁଣି ଶମ୍ଭୁଗଣ ଯଜ୍ଞଧ୍ୱଂସ ଆରମ୍ଭିଲେ ।
ଦେଖି ହୋମ ନଷ୍ଟ ଭୃଗୁମୁନିଶ୍ରେଷ୍ଠ ସ୍ୱବଳେ ରକ୍ଷା କରିଲେ ॥୬୪॥
ସମାଚାର ଯେତେବେଳେ ଶଙ୍କର ପାଇଲେ । ଅତି କୋପ କରି ବୀରଭଦ୍ରେ ପଠାଇଲେ ॥
ସେମାନେ ଯାଇ ବିଧ୍ୱଂସ କଲେ ଯଜ୍ଞସ୍ଥଳ । ସମସ୍ତ ସୁରଙ୍କୁ ଦେଲେ ବିଧିମତେ ଫଳ ॥୧॥
ହୋଇଲା ବିଶ୍ୱବିଦିତ ଦକ୍ଷଙ୍କ ସେ ଦଶା । ଶମ୍ଭୁ-ବିରୋଧୀର ହୁଏ ଯେମନ୍ତ ଦୁର୍ଦ୍ଦଶା ॥
ସାରା ସଂସାର ଜାଣଇ ଏହି ଇତିହାସ । ସେ ହେତୁ ସଂକ୍ଷେପେ ତାହା କଲି ମୁଁ ପ୍ରକାଶ ॥୨॥

---

ମଧ ଭଲଭାବରେ ଅନୁତାପ କରିବେ ॥୩॥ ଯେଉଁଠାରେ ସନ୍ଥ, ଶିବ ଓ ଲକ୍ଷ୍ମୀପତି ବିଷ୍ଣୁ ଭଗବାନଙ୍କ ନିନ୍ଦା ଶୁଣାଯାଏ, ସେଠାରେ ଏପରି ମର୍ଯ୍ୟାଦା-ବିଧାନ ଅଛି ଯେ ଯଦି ଶ୍ରୋତାର ବଶ ଚଳେ, ସେ ଉକ୍ତ ନିନ୍ଦୁକର ଜିଭ କାଟି ଦେଇପାରେ; ନାହିଁ ତ କାନ ବୁଜି ସେଠାରୁ ପଳାଇଯିବା ତା'ପକ୍ଷେ ଶ୍ରେୟସ୍କର ॥୨॥ ତ୍ରିପୁରାରି ଭଗବାନ୍ ମହେଶ୍ୱର ସମ୍ପୂର୍ଣ୍ଣ ଜଗତର ଆତ୍ମା । ସେ ଜଗତ୍ର ପିତା ଏବଂ ସମସ୍ତଙ୍କର ହିତକାରୀ । ମୋର ମନ୍ଦ-ବୁଦ୍ଧି ପିତା ତାଙ୍କୁ ନିନ୍ଦା କରୁଅଛନ୍ତି ଏବଂ ମୋର ଏହି ଶରୀର ଦକ୍ଷଙ୍କର ବୀର୍ଯ୍ୟରୁ ଉତ୍ପନ୍ନ ॥୩॥ ଏଣୁ ଚନ୍ଦ୍ରମୌଳି ବୃଷକେତୁ ଶିବଙ୍କୁ ହୃଦୟରେ ଧାରଣ କରି ମୁଁ ମୋର ଏହି ଶରୀର ଶୀଘ୍ର ତ୍ୟାଗ କରିଦେବି । ଏହା କହି ସତୀ ଯୋଗାଗ୍ନିରେ ଆପଣା ଶରୀର ଭସ୍ମ କରିଦେଲେ । ସମଗ୍ର ଯଜ୍ଞଶାଳାରେ ହାହାକାର ବ୍ୟାପିଗଲା ॥୪॥ ଦୋହା'—ସତୀଙ୍କ ମୃତ୍ୟୁ ବିଷୟ ଶୁଣି ଶିବଙ୍କର ଗଣମାନେ ଯଜ୍ଞ ଧ୍ୱଂସ କରିବାକୁ ଲାଗିଲେ । ଯଜ୍ଞ ବିଧ୍ୱସ୍ତ ହେବାର ଦେଖି ମୁନୀଶ୍ୱର ଭୃଗୁ ତାହା ରକ୍ଷା କଲେ ॥୬୪॥ ଚୌପାଈ:—ଏସବୁ ସମାଚାର ଶିବ ପାଇଲେ ଏବଂ ସେ ଅତିଶୟ କୋପ କରି ବୀରଭଦ୍ରଙ୍କୁ ସେଠାକୁ ପଠାଇଲେ । ବୀରଭଦ୍ର ସେଠାକୁ ଯାଇ ଯଜ୍ଞ ବିଧ୍ୱଂସ କରି ପକାଇଲେ ଏବଂ ସମସ୍ତ ଦେବତାଙ୍କୁ ଯଥୋଚିତ ଫଳ (ଦଣ୍ଡ) ଦେଲେ ॥୧॥ ଶିବଦ୍ରୋହୀଙ୍କର ଯେଉଁ ଗତି (ଦଶା) ହୋଇଥାଏ, ଦକ୍ଷପ୍ରଜାପତିଙ୍କର ସେହି ଗତି ହେଲା । ତାହା ଜଗତବିଦିତ । ଏହି

ସତୀଁ ମରତ ହରି ସନ ବରୁ ମାଗା । ଜନମ ଜନମ ସିବ ପଦ ଅନୁରାଗା ॥
ତେହିଁ କାରନ ହିମଗିରି ଗୃହ ଜାଈ । ଜନମୀଂ ପାରବତୀ ତନୁ ପାଈ ॥୩॥
ଜବ ତେଁ ଉମା ସୈଲଗୃହ ଜାଈଂ । ସକଲ ସିଦ୍ଧି ସମ୍ପତି ତହଁ ଛାଈଁ ॥
ଜହଁ ତହଁ ମୁନିନ୍ହ ସୁଆଶ୍ରମ କୀନ୍ହେ । ଉଚିତ ବାସ ହିମ ଭୂଧର ଦୀନ୍ହେ ॥୪॥

ସଦା ସୁମନ ଫଲ ସହିତ ସବ ଦ୍ରୁମ ନବ ନାନା ଜାତି ।
ପ୍ରଗଟୀଁ ସୁଂଦର ସୈଲ ପର ମନି ଆକର ବହୁ ଭାଁତି ॥୬୫॥

ସରିତା ସବ ପୁନୀତ ଜଲୁ ବହହୀଁ । ଖଗ ମୃଗ ମଧୁପ ସୁଖୀ ସବ ରହହୀଁ ॥
ସହଜ ବୟରୁ ସବ ଜୀବନ୍ହ ତ୍ୟାଗା । ଗିରି ପର ସକଲ କରହିଁ ଅନୁରାଗା ॥୧॥
ସୋହ ସୈଲ ଗିରିଜା ଗୃହ ଆଏଁ । ଜିମି ଜନ ରାମଭଗତି କେ ପାଏଁ ॥
ନିତ ନୂତନ ମଂଗଲ ଗୃହ ତାସୂ । ବ୍ରହ୍ମାଦିକ ଗାଓହିଁ ଜସୁ ଜାସୂ ॥୨॥

---

ସତୀ ହରଙ୍କୁ ମାଗିଲେ ମୃତ୍ୟୁକାଳେ ବର । ଶିବ ପଦେ ପ୍ରୀତି ହେଉ ଜନ୍ମଜନ୍ମାନ୍ତର ॥
ସେହି କାରଣରୁ ହିମଗିରି ଗୃହେ ଯାଇ । ପ୍ରସୂତ ଲଭିଲେ ପାରବତୀ ତନୁ ପାଇ ॥୩॥
ଯେଉଁଦିନୁ ଉମା ଶୈଳଗୃହେ ଜନ୍ମନେଲେ । ସମସ୍ତ ସିଦ୍ଧି ସମ୍ପତ୍ତି ତହିଁ ପୂର୍ଣ୍ଣ ହେଲେ ॥
ଇତସ୍ତତଃ ସୁଆଶ୍ରମ କଲେ ମୁନିବର । ଉଚିତ ନିବାସ ଦେଲେ ହିମ ମହୀଧର ॥୪॥

ପୁଷ୍ପଫଳେ ନତ ହୋଇଲେ ସତତ ନବଦ୍ରୁମ ନାନାବିଧ ।
ପ୍ରକଟିଲେ ଶୈଳ ଉପରେ ସୁରମ୍ୟ ମଣି ଆକର ବିବିଧ ॥୬୫॥

ପବିତ୍ର ଜଳ ସକଳ ସରିତା ବହନ୍ତି । ଖଗ ମୃଗ ଅଳି ସୁଖୀ ସମସ୍ତେ ରହନ୍ତି ॥
ଜୀବ ସମୂହ ସହଜ ବୈର କରି ତ୍ୟାଗ । ଶଇଳ ଉପରେ କଲେ ସର୍ବେ ଅନୁରାଗ ॥୧॥
ଶୋଭିଲା ଗିରି ଗିରିଜା ଗୃହକୁ ଆସନ୍ତେ । ରଘୁପତି-ଭକ୍ତ ନର ଲଭିଣ ଯେମନ୍ତେ ॥
ନିତ୍ୟ ନୂତନ ମଙ୍ଗଳ ଭବନେ ତାହାର । ବ୍ରହ୍ମାଦି ଦେବେ ଯଶ ଗାଆନ୍ତି ଯାହାର ॥୨॥

---

ଇତିହାସ ସମଗ୍ର ସଂସାର କାଣେ । ଏଣୁ ସଂକ୍ଷେପରେ ମୁଁ ଏହା ବର୍ଣ୍ଣନା କଲି ॥୨॥ ମରିବା ସମୟରେ ସତୀ ଭଗବାନ୍ ହରିଙ୍କୁ ଏହି ବର ମାଗିଲେ ଯେ, ଜନ୍ମେ ଜନ୍ମେ ଶିବଙ୍କ ଚରଣରେ ତାଙ୍କର ଅନୁରାଗ ରହୁ । ଏହି କାରଣରୁ ହିମାଚଳଙ୍କ ଗୃହକୁ ଯାଇ ସେ ପାର୍ବତୀଙ୍କ ରୂପରେ ଜନ୍ମ ଗ୍ରହଣ କଲେ ॥୩॥ ଯେଉଁଦିନଠାରୁ ଉମା ହିମାଚଳଙ୍କ ଗୃହରେ ଜନ୍ମଗ୍ରହଣ କଲେ, ସେହିଦିନଠାରୁ ସେଠାରେ ସମସ୍ତ ସିଦ୍ଧି ଓ ସମ୍ପତ୍ତି ପୂର୍ଣ୍ଣ ହୋଇଗଲା । ମୁନିମାନେ ସେଠାରେ ଏଣେତେଣେ ଉତ୍ତମ ଆଶ୍ରମ ତିଆରି କରି ପକାଇଲେ ଏବଂ ହିମ ପର୍ବତ ସେମାନଙ୍କୁ ଉପଯୁକ୍ତ ବାସ ଦେଲେ ॥୪॥ ଦୋହା'–ସେହି ସୁନ୍ଦର ପର୍ବତ ଉପରେ ବହୁତପ୍ରକାର ନୂଆ ନୂଆ ବୃକ୍ଷ ଜନ୍ମି ସଦା ପୁଷ୍ପଫଳଯୁକ୍ତ ହୋଇଉଠିଲେ ଏବଂ ନାନାଜାତି ମଣିର ଖଣି ଉଦ୍ଭାସିତ ହେଲା ॥୬୫॥ ଚୌପାଇ –ସମସ୍ତ ନଦୀରେ ପବିତ୍ର ଜଳ ବହିବାକୁ ଲାଗିଲା । ପକ୍ଷୀ, ପଶୁ, ଭ୍ରମର ଆଦି ସମସ୍ତେ ସୁଖରେ ରହିବାକୁ ଲାଗିଲେ । ସକଳ ଜୀବ ପରସ୍ପରର ସ୍ୱାଭାବିକ ଶତ୍ରୁତା ଛାଡିଦେଲେ ଏବଂ ପର୍ବତ ଉପରେ

ନାରଦ ସମାଚାର ସବ ପାଏ । କୌତୁକହୀଁ ଗିରି ଗେହ ସିଧାଏ ॥
ସୈଲରାଜ ବଡ ଆଦର କୀହ୍ନା । ପଦ ପଖାରି ବର ଆସନୁ ଦୀହ୍ନା ॥୩॥
ନାରି ସହିତ ମୁନିପଦ ସିରୁ ନାଓ୍ୱା । ଚରନ ସଲିଲ ସବୁ ଭବନ ସିଂଚାଓ୍ୱା ॥
ନିଜ ସୌଭାଗ୍ୟ ବହୁତ ଗିରି ବରନା । ସୁତା ବୋଲି ମେଲୀ ମୁନି ଚରନା ॥୪॥

ତ୍ରିକାଲଜ୍ଞ ସର୍ବଜ୍ଞ ତୁହ୍ମ ଗତି ସର୍ବତ୍ର ତୁହ୍ମାରି ।
କହହୁ ସୁତା କେ ଦୋଷ ଗୁନ ମୁନିବର ହୃଦୟଁ ବିଚାରି ॥୬୬॥

କହ ମୁନି ବିହସି ଗୂଢ଼ ମୃଦୁ ବାନୀ । ସୁତା ତୁହ୍ମାରି ସକଲ ଗୁନ ଖାନୀ ॥
ସୁଂଦର ସହଜ ସୁସୀଲ ସୟାନୀ । ନାମ ଉମା ଅମ୍ବିକା ଭବାନୀ ॥୧॥

---

ନାରଦ ଯେବେ ଏସବୁ ସନ୍ଦେଶ ପାଇଲେ । କଉତୁକେ ହିମଗିରି ଗୃହକୁ ଆସିଲେ ॥
ପର୍ବତରାଜ ଅପୂର୍ବ କରିଣ ଆଦର । ଚରଣ ପଖାଳି ଦେଲେ ଆସନ ସୁନ୍ଦର ॥୩॥
ନାରୀ ସହ ମୁନିପଦେ ପ୍ରଣାମ କରିଲେ । ଚରଣୋଦକ ସମସ୍ତ ଗୃହେ ସିଞ୍ଚାଇଲେ ॥
ନିଜ ସୌଭାଗ୍ୟ ବହୁତ ଶଇଲ ବଖାଣି । ମୁନିପଦେ ମିଳାଇଲେ ଦୁହିତାକୁ ଆଣି ॥୪॥

ତୁମ୍ଭେ ତ୍ରିକାଲଜ୍ଞ ଆବର ସର୍ବଜ୍ଞ ଗତି ସର୍ବତ୍ର ତୁମ୍ଭର ।
ସୁତା ଦୋଷଗୁଣ ହୃଦେ ବିଚାରିଣ କହ ଆହେ ମୁନିବର ॥୬୬॥

ହସି ମୁନି ମୃଦୁ ଗୂଢ ଭାଷିଲେ ବଚନ । ସୁତା ତୁମ୍ଭର ସକଳ ସଦ୍‌ଗୁଣ ସଦନ ॥
ସହଜେ ସୁନ୍ଦରୀ ପୁଣି ସୁଶୀଳା ଚତୁରୀ । ନାମ ଏହାର ଭବାନୀ ଅମ୍ବିକା ଗଉରୀ ॥୧॥

---

ସମସ୍ତେ ପରସ୍ପର ପ୍ରେମ-ପାଶରେ ଆବଦ୍ଧ ହୋଇ ରହିବାକୁ ଲାଗିଲେ ॥୧॥ ରାମଭକ୍ତି ପାଇ ଭକ୍ତ ଯେପରି ଶୋଭାସମ୍ପନ୍ନ ହୁଏ, ପାର୍ବତୀଙ୍କ ଜନ୍ମ ପରେ ହିମାଚଳ ସେହିପରି ଶୋଭିତ ହେବାକୁ ଲାଗିଲେ । ସେହି ପର୍ବତରାଜଙ୍କ ଗୃହରେ ନିତ୍ୟ ନୂତନ ନୂତନ ମଙ୍ଗଳୋତ୍ସବ ଅନୁଷ୍ଠିତ ହେବାକୁ ଲାଗିଲେ । ବ୍ରହ୍ମାଦି ଦେବଗଣ ଯାହାଙ୍କର ଯଶ ଗାନ କରନ୍ତି, ତାହାଙ୍କର ଆବିର୍ଭାବରେ ପୁରୀ ନିତ୍ୟ ନୂତନ ଶୋଭା ଧାରଣ କଲା ॥୨॥ ଯେତେବେଳେ ନାରଦ ସବୁ ସମାଚାର ଶୁଣିଲେ, ସେ କୌତୁକରେ ହିମାଚଳଙ୍କ ଗୃହରେ ପହଞ୍ଚିଲେ । ପର୍ବତରାଜ ତାଙ୍କୁ ବଡ ଆଦର କଲେ ଏବଂ ପାଦ ଧୋଇ ତାଙ୍କୁ ଉତ୍ତମ ଆସନ ଦେଲେ ॥୩॥ ପୁଣି ସସ୍ତ୍ରୀକ ମୁନିଙ୍କ ପାଦରେ ମୁଣ୍ଡ ନୁଆଁଇଲେ ଏବଂ ତାଙ୍କ ପାଦୋଦକକୁ ଘରର ସବୁଆଡେ ସିଞ୍ଚିଲେ । ହିମାଚଳ ଆପଣାର ସୌଭାଗ୍ୟର ବିଶେଷ ଭାବରେ ବଡାଇ କଲେ ଏବଂ କନ୍ୟାକୁ ଡାକି ମୁନିଙ୍କ ଚରଣତଳେ ତାଙ୍କୁ ଉପସ୍ଥିତ କରାଇଲେ ॥୪॥ ଦୋହା -(ଏବଂ କହିଲେ,) "ହେ ମୁନିବର ! ଆପଣ ତ୍ରିକାଲଜ୍ଞ ଓ ସର୍ବଜ୍ଞ । ଆପଣଙ୍କ ଗତି ସର୍ବତ୍ର । ଅତଏବ ହୃଦୟରେ ବିଚାର କରି ଆପଣ କନ୍ୟାର ଦୋଷ-ଗୁଣ କହନ୍ତୁ ॥୬୬॥ ଚୌପାଈ -ନାରଦ ମୁନି ହସି ରହସ୍ୟମୟୀ କୋମଳବାଣୀରେ କହିଲେ, "ତୁମ କନ୍ୟା ସକଳ ଗୁଣର ଖଣି । ଏ ସ୍ୱଭାବତଃ ସୁନ୍ଦରୀ, ସୁଶୀଳା ଓ

ସବ ଲଚ୍ଛନ ସଂପନ୍ନ କୁମାରୀ । ହୋଇହି ସଂତତ ପିଅହି ପିଆରୀ ।
ସଦା ଅଚଲ ଏହି କର ଅହିବାତା । ଏହି ତେଁ ଜସୁ ପୈହହିଁ ପିତୁ ମାତା ।।୨।।
ହୋଇହି ପୂଜ୍ୟ ସକଲ ଜଗ ମାହୀଁ । ଏହି ସେୱତ କଛୁ ଦୁର୍ଲଭ ନାହୀଂ ।।
ଏହି କର ନାମୁ ସୁମିରି ସଂସାରା । ତ୍ରିୟ ଚଢ଼ିହହିଁ ପତିବ୍ରତ ଅସିଧାରା ।।୩।।
ସୈଲ ସୁଲଚ୍ଛନ ସୁତା ତୁମ୍ହାରୀ । ସୁନହୁ ଜେ ଅବ ଅବଗୁନ ଦୁଇ ଚାରୀ ।।
ଅଗୁନ ଅମାନ ମାତୁ ପିତୁ ହୀନା । ଉଦାସୀନ ସବ ସଂସୟ ଛୀନା ।।୪।।

ଜୋଗୀ ଜଟିଲ ଅକାମ ମନ ନଗନ ଅମଙ୍ଗଲ ବେଷ ।
ଅସ ସ୍ୱାମୀ ଏହି କହଁ ମିଲିହି ପରୀ ହସ୍ତ ଅସି ରେଖ ।।୬୭।।

ସୁନି ମୁନିଗିରା ସତ୍ୟ ଜିୟଁ ଜାନୀ । ଦୁଖ ଦଂପତିହିଁ ଉମା ହରଷାନୀ ।।
ନାରଦହୁଁ ୟହ ଭେଦୁ ନ ଜାନା । ଦସା ଏକ ସମୁଝବ ବିଲଗାନା ।।୧।।

---

ସର୍ବଲକ୍ଷଣ-ସମ୍ପନ୍ନା କୁମାରୀ ତୁମ୍ଭର । ପତି ପ୍ରିୟତମା ଏହୁ ହେବ ନିରନ୍ତର ।।
ଅଚଳ ଅଟେ ଏହାର ଅହି ସୁଲକ୍ଷଣ । ଏହାଦ୍ୱାରା ପିତାମାତା ସୁଯଶ ଭାଜନ ।।୨।।
ସମସ୍ତ ଜଗତ ମଧ୍ୟେ ପୂଜିତା ହୋଇବ । ଏହାଙ୍କୁ ସେବନ୍ତେ କିଛି ଦୁର୍ଲଭ ନୋହିବ ।।
ଏହାର ନାମ ସ୍ମରଣ କରିଣ ସଂସାରେ । ଚଢିବେ ଯୁବତୀ ପତିବ୍ରତ-ଖଡ୍‌ଗଧାରେ ।।୩।।
ଶୈଳ ସୁଲକ୍ଷଣୀ ଅଟେ ତୁମ୍ଭର କୁମାରୀ । ଶୁଣ ଏବେ ଯେଉଁ ଅବଗୁଣ ଦୁଇ ଚାରି ।।
ଅଗୁଣ ଅମାନ ପୁଣି ମାତା ପିତାହୀନ । ସର୍ବ ସଂଶୟ-ରହିତ ସଦା ଉଦାସୀନ ।।୪।।

ଯୋଗୀ ଯେ ଜଟିଳ ବେଶ ଅମଙ୍ଗଳ ଉଲଗ୍ନ ନିଷ୍କାମ ମନ ।
ମିଳିବ ଏମନ୍ତ ପତି ଯାଙ୍କୁ ହସ୍ତ-ରେଖା କହଇ ଏସନ ।।୬୭।।

ଶୁଣି ମୁନିଙ୍କ ବଚନ ସତ୍ୟ ମନେ ଜାଣି । ଦୁଃଖିତ ହେଲେ ଦମ୍ପତି ହରଷ ଶର୍ବାଣୀ ।।
ନାରଦ ତ ନ ଜାଣିଲେ ମରମ ଏହାର । ଦଶା ଏକ ବୁଝିବାକୁ ବିଭିନ୍ନ ପ୍ରକାର ।।୧।।

---

ବୁଦ୍ଧିମତୀ । ଉମା, ଅମ୍ବିକା ଓ ଭବାନୀ ଏହାର ନାମ ।।୧।। ଏହି କନ୍ୟା ସକଳ ସୁଲକ୍ଷଣ-ସମ୍ପନ୍ନା ଏବଂ ଆପଣା ପତିଙ୍କର ସର୍ବଦା ପ୍ରିୟ ହେବ । ଏହାର ହାତକାଚ ସର୍ବଦା ବଜ୍ର ହୋଇ ରହିବ । ଏ ସବୁ ଯୋଗେ ଏହାର ମାତାପିତା ଯଶ ଓ ଗୌରବ ଲାଭ କରିବେ ।।୨।। ସମଗ୍ର ଜଗତରେ ଏ କନ୍ୟା ପୂଜନୀୟା ହେବ ଏବଂ ଏହାର ସେବା କଲେ କିଛି ଦୁର୍ଲ୍ଲଭ ହେବନାହିଁ । ସଂସାରରେ ସ୍ତ୍ରୀମାନେ ଏହାର ନାମ ସ୍ମରଣ କରି ପାତିବ୍ରତ୍ୟରୂପୀ ଅସିଧାର ଉପରେ ଅନାୟାସରେ ଚଢିଯାଇ ପାରିବେ ।।୩।। ହେ ପର୍ବତରାଜ ! ତୁମ କ '। ସୁଲକ୍ଷଣୀ । ଏହାଠାରେ ଯେଉଁ ଦୁଇ-ଚାରିଟି ଅବଗୁଣ ଅଛି, ଏବେ ସେ ସବୁ ମଧ୍ୟ ଶୁଣ । ଗୁଣହୀନ, ସମ୍ମାନହୀନ, ମାତାପିତାହୀନ, ଉଦାସୀନ, ସଂଶୟହୀନ (ବେପରୁଆ' ,।।୪।। ଦୋହା -ଯୋଗୀ, ଜଟାଧାରୀ, ନିଷ୍କାମ ହୃଦୟ, ଉଲଗ୍ନ ଓ ଅମଙ୍ଗଳ ବେଶଧାରୀ—ଏପରି ପତି ଏହାଙ୍କୁ ମିଳିବ ଏହାର ହାତରେ ଏହିପରି ରେଖା ପଡ଼ିଛି ।'' ।।୬୭।। ଚୌପାଇ.-ନା ଦ ମୁନିଙ୍କ ବାଣୀ ଣି ଏବଂ ହୃଦୟରେ ତାହାଙ୍କୁ ସତ୍ୟ

ସକଲ ସଖୀଁ ଗିରିଜା ଗିରି ମୈନା । ପୁଲକ ସରୀର ଭରେ ଜଲ ନୈନା ॥
ହୋଇ ନ ମୃଷା ଦେବରିଷି ଭାଷା । ଉମା ସୋ ବଚନୁ ହୃଦୟଁ ଧରି ରାଖା ॥୨॥
ଉପଜେଉ ସିବପଦ କମଲ ସନେହୂ । ମିଲନ କଠିନ ମନ ଭା ସଂଦେହୂ ॥
ଜାନି କୁଅବସରୁ ପ୍ରୀତି ଦୁରାଈ । ସଖୀ ଉଛଁଗ ବୈଠୀ ପୁନି ଜାଈ ॥୩॥
ଝୁଠି ନ ହୋଇ ଦେବରିଷି ବାନୀ । ସୋଚହିଁ ଦଂପତି ସଖୀଁ ସୟାନୀ ॥
ଉର ଧରି ଧୀର କହଇ ଗିରିରାଉ । କହହୁ ନାଥ କା କରିଅ ଉପାଉ ॥୪॥

କହ ମୁନୀସ ହିମବନ୍ତ ସୁନୁ ଜୋ ବିଧି ଲିଖା ଲିଲାର ।
ଦେବ ଦନୁଜ ନରନାଗ ମୁନି କୋଉ ନ ମେଟନିହାର ॥୬୮॥

---

ସମସ୍ତ ସଖୀ ଗିରିଜା ମଇନା ଶଇଲ । ପୁଲକ ତନୁ ପୂରିଲା ନୟନେ ସଲିଳ ॥
ମିଥ୍ୟା ନ ହୋଇବ ଦେବ ଋଷିଙ୍କ ଭାରତୀ । ସେ ବଚନ ଗଣ୍ଠି ବାନ୍ଧି ରଖିଲେ ପାର୍ବତୀ ॥୨॥
ଉପୁଜିଲା ଶିବ ପଦ-ସରସିଜେ ସ୍ନେହ । ମିଳନ କଠିନ ମନେ ହୁଏ ଏ ସନ୍ଦେହ ॥
କୁସମୟ ଅବଲୋକି ପ୍ରୀତି ଲୁଚାଇଣ । ସଖୀ ଉତ୍ସଙ୍ଗରେ ପୁଣି ବସିଲେ ଯାଇଣ ॥୩॥
ଅସତ୍ୟ ନୋହିବ ବାଣୀ ଦେବ ଋଷିଙ୍କର । ଚିନ୍ତନ୍ତି ଦମ୍ପତି ସଖୀ ଚତୁରା ନିକର ॥
ଭାଷିଲେ ହୃଦୟେ ଧୈର୍ଯ୍ୟ ଧରି ଗିରିରାୟ । କରିବ ମୁଁ ମୁନିନାଥ କହ କି ଉପାୟ ॥୪॥

ବୋଲନ୍ତି ମୁନୀଶ ଶୁଣ ଶଇଳେଶ ଲଲାଟେ ବିଧି ଲେଖନ ।
ଦେବତା ଦାନବ ନର ମୁନି ନାଗ କେ କରିପାରେ ଖଣ୍ଡନ ॥୬୮॥

---

ଜାଣି ପତି-ପତ୍ନୀ (ହିମବାନ୍ ଓ ମେନା) ଦୁଃଖିତ ହେଲେ । କିନ୍ତୁ ଉମା ଆନନ୍ଦିତ ହେଲେ । ନାରଦ ମଧ୍ୟ ଏହି ରହସ୍ୟକୁ ଜାଣିପାରିଲେ ନାହିଁ । ସମସ୍ତଙ୍କ ବାହାର ଅବସ୍ଥା ଏକପ୍ରକାର ହେଲେ ହେଁ ଭିତର ବିଚାର ଭିନ୍ନ ଭିନ୍ନ ଥିଲା ॥୧॥ ସଖୀସମାଜ, ପାର୍ବତୀ, ପର୍ବତରାଜ ହିମବାନ୍ ଓ ମେନା ଆଦି ସମସ୍ତଙ୍କ ଶରୀର ପୁଲକିତ ହେଉଥାଏ । ସମସ୍ତଙ୍କ ନୟନରେ ଜଳ ଭରି ରହିଥିଲା । ଦେବର୍ଷିଙ୍କ ବଚନ ଅସତ୍ୟ ହୋଇ ନ ପାରେ । ଏହା ବିଚାରି କରି ପାର୍ବତୀ ତାଙ୍କ ବଚନକୁ ମନ ମଧ୍ୟରେ ସ୍ମରଣ କରି ରଖିଲେ ॥୨॥ ତାଙ୍କ ମନରେ ଶିବଙ୍କ ପାଦ-ପଦ୍ମ ପ୍ରତି ସ୍ନେହ ଜାତ ହୋଇ ଆସିଲା । କିନ୍ତୁ ତାହା ସଙ୍ଗେ ସଙ୍ଗେ ମନରେ ସନ୍ଦେହ ବି ଉପୁଜିଲା ଯେ, ତାଙ୍କ ସହିତ ମିଳନ ବଡ଼ କଠିନ ବ୍ୟାପାର । ସମୟ ଉପଯୁକ୍ତ ନୁହେଁ, ଏହା ଜାଣି ଉମା ଆପଣାର ପ୍ରେମ ଗୁପ୍ତ ରଖିଲେ । ତତ୍ପରେ ସେ ସଖୀଙ୍କ କୋଳରେ ଯାଇ ବସିଗଲେ ॥୩॥ ଦେବର୍ଷିଙ୍କ ବାଣୀ ମିଥ୍ୟା ହେବ ନାହିଁ—ଏହା ବିଚାରି ହିମବାନ, ମେନା ଓ ସମସ୍ତ ଚତୁରା ସଖୀ ଚିନ୍ତା କରିବାକୁ ଲାଗିଲେ । ପୁନଶ୍ଚ ହୃଦୟରେ ଧୈର୍ଯ୍ୟ ଧାରଣପୂର୍ବକ ପର୍ବତରାଜ କହିଲେ, "ହେ ନାଥ ! କୁହନ୍ତୁ, ଏବେ କି ଉପାୟ କରାଯିବ ?" ॥୪॥ ଦୋହା-ମୁନୀଶ୍ୱର କହିଲେ, "ହେ ହିମବନ୍ତ ! ଶୁଣ, ବିଧାତା ଲଲାଟରେ ଯାହା ଲେଖି ଅଛନ୍ତି, ତାହାକୁ ଦେବତା, ଦାନବ, ମନୁଷ୍ୟ, ନାଗ ଓ ମୁନି କେହି ହେଁ ଲୋପ କରିପାରିବେ ନାହିଁ ॥୬୮॥

ତଦପି ଏକ ମୈଁ କହଉଁ ଉପାଈ । ହୋଇ କରୈ ଜୌଁ ଦୈଉ ସହାଈ ॥
ଜସ ବରୁ ମୈଁ ବରନେଉଁ ତୁହ୍ମ ପାହୀଁ । ମିଲିହି ଉମହି ତସ ସଂସୟ ନାହୀଁ ॥୧॥
ଜେ ଜେ ବର କେ ଦୋଷ ବଖାନେ । ତେ ସବ ସିବ ପହିଂ ମୈଁ ଅନୁମାନେ ॥
ଜୌଁ ବିବାହୁ ସଂକର ସନ ହୋଈ । ଦୋଷଉ ଗୁନ ସମ କହ ସବୁ କୋଈ ॥୨॥
ଜୌଁ ଅହି ସେଜ ସୟନ ହରି କରହୀଁ । ବୁଧ କଛୁ ତିହ୍ନ କର ଦୋଷୁ ନ ଧରହୀଁ ॥
ଭାନୁ କୃସାନୁ ସର୍ବ ରସ ଖାହୀଁ । ତିହ୍ନ କହଁ ମନ୍ଦ କହତ କୋଉ ନାହୀଁ ॥୩॥
ସୁଭ ଅରୁ ଅସୁଭ ସଲିଲ ସବ ବହଈ । ସୁରସରି କୋଉ ଅପୁନୀତ ନ କହଈ ॥
ସମରଥ କହୁଁ ନହିଂ ଦୋଷୁ ଗୋସାଈଁ । ରବି ପାବକ ସୁରସରି କୀ ନାଈଁ ॥୪॥
ଜୌଂ ଅସ ହିସିଷା କରହିଁ ନର ଜଡ଼ ବିବେକ ଅଭିମାନ ।
ପରହିଁ କଲପ ଭରି ନରକ ମହୁଁ ଜୀବ କି ଈସ ସମାନ ॥୬୯॥

ତଥାପି କହୁଛୁ ମୁହିଁ ଗୋଟିଏ ଉପାୟ । ହୋଇବ ଦଇବ ଯେବେ କରିବ ସହାୟ ॥
ତୁମ୍ଭ ସମ୍ମୁଖେ ମୁଁ ବର ବର୍ଣ୍ଣିଛୁ ଯେମନ୍ତ । ନିଃସନ୍ଦେହ ଗିରିଜାଙ୍କୁ ମିଳିବ ତେମନ୍ତ ॥ ୧ ॥
ଯେଉଁ ଯେଉଁ ବରଦୋଷ ବର୍ଣ୍ଣନ ମୁଁ କରେ । ସେ ସବୁ ଶିବଙ୍କ ପାଶେ ମୋ ଅନୁମାନରେ ॥
ଯେବେ ବିବାହ ହୋଇବ ଶିବଙ୍କ ସଙ୍ଗତେ । ଦୋଷ ମଧ୍ୟ ଗୁଣ ସମ କହିବେ ସମସ୍ତେ ॥ ୨ ॥
ଯେଉଁ ହରି ଅହିଶେଯେ କରନ୍ତି ଶୟନ । ଦୋଷ କାହିଁ ନ ଦିଅନ୍ତି ତାଙ୍କୁ ବୁଧ ଜନ ॥
ଭାନୁ କୃଶାନୁ ସକଳ ରସ ଆସ୍ୱାଦନ୍ତି । ତାହାଙ୍କୁ ମନ୍ଦ ବୋଲିଣ କେହି ନ କୁହନ୍ତି ॥୩॥
ଶୁଭ ଅଶୁଭ ସଲିଳ ଯେନି କହିଲେ ହେଁ । ଗଙ୍ଗା ଅପବିତ୍ର କେହି ନ କହେ କେବେହେଁ ॥
ସମର୍ଥଙ୍କୁ ନ ଲାଗଇ ଦୋଷ ଗରିମାୟ । ବିଷ୍ଣୁ ବିଷ୍ଣୁପଦୀ ରବି ପାବକ ପରାୟ ॥୪॥
କରନ୍ତି ଏସନ ସମତାଭିମାନ ଜଡଜ୍ଞାନେ ଯେ ଅଧମ ।
କଲପ ପର୍ଯ୍ୟନ୍ତେ ପଡନ୍ତି ନରକେ ଜୀବ କି ଈଶ୍ୱର ସମ ॥୬୯॥

ଚୌପାଈ'–ତଥାପି ଗୋଟିଏ ଉପାୟ ମୁଁ କହୁଛି । ଯଦି ଦୈବ ସାହାଯ୍ୟ କରେ, ତେବେ ତାହା ସଫଳ ହୋଇପାରେ । ମୁଁ ଯେମିତି ବର ବିଷୟରେ ତୁମ ଆଗରେ ବର୍ଣ୍ଣନା କଲି, ଉମାଙ୍କୁ ଠିକ୍ ସେହିପରି ବର ମିଳିବ, ଏଥିରେ ସନ୍ଦେହ ନାହିଁ ॥୧॥ ବରର ଯେଉଁ ଯେଉଁ ଦୋଷ ମୁଁ କହିଅଛି, ମୋ ଅନୁମାନରେ ସେ ସବୁ ଦୋଷ ଶିବଙ୍କ ଠାରେ ଅଛି । ଯଦି ଶିବଙ୍କ ସଙ୍ଗେ ବିବାହ ହୋଇଯାଏ, ତେବେ ତାଙ୍କ ଦୋଷକୁ ମଧ୍ୟ ସମସ୍ତେ ଗୁଣ ବୋଲି କହିବେ ॥୨॥ ଯେପରି ବିଷ୍ଣୁ ଭଗବାନ୍ ଅନନ୍ତ ବା ଶେଷ ନାଗ-ଶଯ୍ୟା ଉପରେ ଶୁଅନ୍ତି, ପଣ୍ଡିତମାନେ ତାଙ୍କ ଠାରେ କୌଣସି ଦୋଷ ଆରୋପ କରନ୍ତି ନାହିଁ, ସୂର୍ଯ୍ୟ ଓ ଅଗ୍ନିଦେବ ଭଲ-ମନ୍ଦ ସବୁପ୍ରକାର ରସ ଗ୍ରହଣ କରନ୍ତି, କିନ୍ତୁ ସେମାନଙ୍କୁ କେହି ଖରାପ ବୋଲି କହନ୍ତି ନାହିଁ ॥ ୩ ॥ ଗଙ୍ଗାଙ୍କ ମଧ୍ୟରେ ଶୁଭ ଓ ଅଶୁଭ ଉଭୟ ପ୍ରକାର ଜଳ ପ୍ରବାହିତ ହୁଏ । କିନ୍ତୁ ଗଙ୍ଗାଙ୍କୁ କେହି ଅପବିତ୍ର ବୋଲି କହନ୍ତି ନାହିଁ । ସୂର୍ଯ୍ୟ, ଅଗ୍ନି ଓ ଗଙ୍ଗାଙ୍କ ପରି ସମର୍ଥଙ୍କୁ କୌଣସି

ସୁରସରି ଜଲ କୃତ ବାରୁନି ଜାନା । କବହୁଁ ନ ସଂତ କରହିଂ ତେହି ପାନା ॥
ସୁରସରି ମିଲେଁ ସୋ ପାବନ ଜୈସେଁ । ଈସ ଅନୀସହି ଅଂତରୁ ତୈସେଁ ॥୧॥
ସଂଭୁ ସହଜ ସମରଥ ଭଗବାନା । ଏହିଁ ବିବାହଁ ସବ ବିଧି କଲ୍ୟାନା ॥
ଦୁରାରାଧ ପୈ ଅହହିଁ ମହେସୂ । ଆସୁତୋଷ ପୁନି କିଏଁ କଲେସୂ ॥୨॥
ଜୌଁ ତପୁ କରୈ କୁମାରି ତୁମ୍ହାରୀ । ଭାବିଉ ମେଟି ସକହିଁ ତ୍ରିପୁରାରୀ ॥
ଜଦ୍ୟପି ବର ଅନେକ ଜଗ ମାହୀଁ । ଏହି କହଁ ସିବ ତଜି ଦୂସର ନାହୀଁ ॥୩॥
ବରଦାୟକ ପ୍ରନତାରତି ଭଂଜନ । କୃପାସିଂଧୁ ସେବକ ମନ ରଂଜନ ॥
ଇଚ୍ଛିତ ଫଲ ବିନୁ ସିବ ଅବରାଧେଁ । ଲହିଅ ନ କୋଟି ଜୋଗ ଜପ ସାଧେଁ ॥୪॥

---

ସୁରନଦୀ ଜଳେ ସୁରା ଜାଣିଲେ ନିର୍ମାଣ । କେବେହେଁ ସନ୍ଥ ତାହାକୁ ନ କରନ୍ତି ପାନ ॥
ଗଙ୍ଗାରେ ମିଳିଲେ ତାହା ପବିତ୍ର ଯେମନ୍ତେ । ଜୀବ ଈଶ୍ୱରଙ୍କ ମଧ୍ୟେ ଅନ୍ତର ତେମନ୍ତେ ॥୧॥
ସହଜେ ସମର୍ଥ ଭଗବାନ ସଦାଶିବ । ଏହି ବିବାହେ ସମସ୍ତ କଲ୍ୟାଣ ହୋଇବ ॥
କିନ୍ତୁ ଅତି ଦୁରାରାଧ୍ୟ ଅଟନ୍ତି ମହେଶ । ଶୀଘ୍ର ପ୍ରସନ୍ନ ହୁଅନ୍ତି କଲେ ପୁଣି କ୍ଲେଶ ॥୨॥
ଯେବେ ତପସ୍ୟା କରିବ କୁମାରୀ ତୁମ୍ଭର । ଭାବୀକୁ ମେଣ୍ଟନ କରି ପାରିବେ ଶଙ୍କର ॥
ଯଦ୍ୟପି ବର ଅନେକ ଅଛନ୍ତି ଜଗତେ । ଶିବ ତେଜି ଅନ୍ୟ ନାହିଁ ଏହାର ନିମନ୍ତେ ॥୩॥
ବରଦାୟକ ଆରତ ବିପତ୍ତି ଭଞ୍ଜନ । କରୁଣା-ସିନ୍ଧୁ ସେବକ ମାନସରଞ୍ଜନ ॥
ମନୋରଥ ଫଳ ବିନୁ ଶିବ ଆରାଧନେ । ନ ମିଳଇ ଯୋଗଜପ ଅସଂଖ୍ୟ ସାଧନେ ॥୪॥

---

ଦୋଷ ସ୍ପର୍ଶ କରେନାହିଁ ॥୪॥ ଦୋହା -ମୂର୍ଖ ମନୁଷ୍ୟ ଆପଣା ଜ୍ଞାନର ଅଭିମାନରେ ଯଦି ଏପରି ପ୍ରତିସ୍ପର୍ଦ୍ଧା କରେ, ଅର୍ଥାତ୍ ସମସ୍ତଙ୍କ ଠାରେ ସେ ଯଦି ଦୋଷ ଦେଖେ, ତେବେ ସେ କଳ୍ପାନ୍ତ ପର୍ଯ୍ୟନ୍ତ ନର୍କରେ ପଡେ । ଭଲା, ଜୀବ କି କେଉଁଠି ଈଶ୍ୱରଙ୍କ ପରି (ସ୍ୱଆସ୍ୱତନ୍ତ୍ର) ହୋଇପାରେ ? ॥ ୬୯ ॥ ଚୌପାଈ -ଗଙ୍ଗାଜଳ ଆଣି ତହିଁରେ ମଦ ରାନ୍ଧିଲେ, ତାହା ଜାଣି ସାଧୁ ଲୋକେ କେବେହେଲେ ତାହାକୁ ପିଇବେ ନାହିଁ । କିନ୍ତୁ ସେହି ମଦ ଗଙ୍ଗାନଦୀରେ ମିଶିଗଲେ ଯେପରି ପବିତ୍ର ହୋଇଯାଏ, ଈଶ୍ୱର ଓ ଜୀବ ମଧ୍ୟରେ ଠିକ୍ ସେହିପରି ପ୍ରଭେଦ ॥ ୧ ॥ ଶିବ ଭଗବାନ୍ ହୋଇଥିବାରୁ ସହଜରେ ହିଁ ସମର୍ଥ । ଏଣୁ ଏ ବିବାହରେ ସବୁ ପ୍ରକାରେ କଲ୍ୟାଣ ନିହିତ । କିନ୍ତୁ ମହାଦେବଙ୍କ ଆରାଧନା ବଡ଼ କଠିନ । ତଥାପି କ୍ଲେଶ (ତପସ୍ୟା) କଲେ ସେ ବହୁତ ଶୀଘ୍ର ସନ୍ତୁଷ୍ଟ ହୋଇଯାଆନ୍ତି ॥ ୨ ॥ ଯଦି ତୁମର ଏହି କନ୍ୟା ତପସ୍ୟା କରେ, ତେବେ ତ୍ରିପୁରାରି ମହାଦେବ ଭବିତବ୍ୟ (ଭାଗ୍ୟ ଦୋଷ) ମେଣ୍ଟାଇ ପାରିବେ । ସଂସାରରେ ଅନେକ ବର ଥିଲେ ମଧ ଏହାର ନିମନ୍ତେ ଶିବଙ୍କୁ ଛାଡି ଅନ୍ୟ ବର ନାହିଁ ॥ ୩ ॥ ଶିବ ବରଦାୟକ, ଶରଣାଗତ-ଦୁଃଖବିନାଶକ, କୃପାର ସାଗର ଓ ସେବକଙ୍କ ମନୋରଞ୍ଜକ । ଶିବଙ୍କ ଆରାଧନା ବିନା କୋଟି କୋଟି ଯୋଗ

ଅସ କହ୍ହି ନାରଦ ସୁମିରି ହରି ଗିରିଜହ୍ହି ଦୀହ୍ନି ଅସୀସ ।
ହୋଇହି ୟହ କଲ୍ୟାନ ଅବ ସଂସୟ ତଜହୁ ଗିରୀସ ॥୭୦॥

କହି ଅସ ବ୍ରହ୍ମଭବନ ମୁନି ଗୟଊ । ଆଗିଲ ଚରିତ ସୁନହୁ ଜସ ଭୟଊ ॥
ପତିହି ଏକାଂତ ପାଇ କହ ମୈନା । ନାଥ ନ ମୈଁ ସମୁଝେ ମୁନି ବୈନା ॥୧॥
ଜୌଁ ଘରୁ ବରୁ କୁଲୁ ହୋଇ ଅନୂପା । କରିଅ ବିବାହୁ ସୁତା ଅନୁରୂପା ॥
ନ ତ କନ୍ୟା ବରୁ ରହଉ କୁଆରୀ । କଂତ ଉମା ମମ ପ୍ରାନ ପିଆରୀ ॥୨॥
ଜୌଁ ନ ମିଲିହି ବରୁ ଗିରିଜହି ଜୋଗୂ । ଗିରି ଜଡ଼ ସହଜ କହିହି ସବୁ ଲୋଗୂ ॥
ସୋଇ ବିଚାରି ପତି କରେହୁ ବିବାହୂ । ଜେହିଁ ନ ବହୋରି ହୋଇ ଉର ଦାହୂ ॥୩॥
ଅସ କହି ପରୀ ଚରନ ଧରି ସୀସା । ବୋଲେ ସହିତ ସନେହ ଗିରୀସା ॥୩॥
ବରୁ ପାବକ ପ୍ରଗଟୈ ସସି ମାହୀଁ । ନାରଦ ବଚନୁ ଅନ୍ୟଥା ନାହୀଁ ॥୪॥

---

ଏହା କହି ହରି ନାରଦ ସ୍ମରି ଉମାଙ୍କୁ ଦେଲେ ଆଶିଷ ।
ଏଣିକି ଏହାର ହୋଇବ ମଙ୍ଗଳ ସଂଶୟ ତେଜ ଗିରୀଶ ॥୭୦॥

ବ୍ରହ୍ମଲୋକେ ଗଲେ ମୁନି କହିଣ ଏସନ । ଏଥୁଅନ୍ତେ ଶୁଣ ହେଲା ଚରିତ ଯେସନ ॥
ଭାଷିଲେ ମୟନା ପାଇ ପତିଙ୍କୁ ଏକାନ୍ତ । ମୁନି ବଚନ ମୁଁ ବୁଝି ନ ପାରିଲି କାନ୍ତ ॥୧॥
ଯେବେ ବର ଘର କୁଳ ହୁଅଇ ଅନୁପ । ବିବାହ କରନ୍ତୁ ଦେଖି ସୁତା ଅନୁରୂପ ॥
ନୋହିଲେ କୁମାରୀ ବରଂ ରହୁ ମୋ କୁମାରୀ । ନାଥ ଉମା ଅଟେ ମୋର ପ୍ରାଣପ୍ରିୟ ଝିଅ ॥୨॥
ଯେବେ ଗିରିଜାଙ୍କୁ ଯୋଗ୍ୟ ନ ମିଳିବ ବର । ସମସ୍ତେ କହିବେ ଗିରି ସ୍ୱଭାବ ପଥର ।
ତେମନ୍ତେ ବିଚାରି ନାଥ କରନ୍ତୁ ବିବାହ । ଭବିଷ୍ୟକୁ ହୃଦ ଯେସନ୍ତେ ନ ହୋଇବ ଦାହ ॥୩॥
ଏହା କହି ପଦେ ନତମସ୍ତକ ରହିଲେ । ତହୁଁ ସସ୍ନେହ ଶଇଳ-ନାୟକ କହିଲେ ॥
ବରଂ ଶଶୀ ଅଙ୍ଗୁ ଅଗ୍ନି ପ୍ରକଟ ହୋଇବ । ନାରଦ ବଚନ କେବେ ଅନ୍ୟଥା ନୋହିବ ॥୪॥

---

ଓ ଜପ କଲେ ସ୍ୱାଭା ବାଞ୍ଛିତ ଫଳ ମିଳେ ନାହିଁ ॥ ୪ ॥ ଦୋହା.—ଏହିପରି କହି - ଭଗବାନ୍ଙ୍କୁ ସ୍ମରଣ କରି ନାରଦ ପାର୍ବତୀଙ୍କୁ ଆଶୀର୍ବାଦ ଦେଲେ ଏବଂ କହିଲେ, "ହେ ପର୍ବତରାଜ ! ତୁମେ ସନ୍ଦେହ ତ୍ୟାଗ କର, ଏବେ ଏହି ବିବାହ ମଙ୍ଗଳମୟ ହେବ ।" ॥ ୭୦ ॥ ଚୌପାଈ—ଏହିପରି କହି ନାରଦ ବ୍ରହ୍ମଲୋକକୁ ଚାଲିଗଲେ । ବର୍ତ୍ତମାନ ପରବର୍ତ୍ତୀ ଚରିତ ଯାହା ହେଲା, ତାହା ଶୁଣ । ପତିଙ୍କୁ ଏକାନ୍ତରେ ପାଇ ମେନା କହିଲେ, "ହେ ନାଥ ! ମୁନିଙ୍କ କଥାର ଅର୍ଥ ମୁଁ ବୁଝିପାରିଲି ନାହିଁ ॥ ୧ ॥ ଯଦି ଆମ କନ୍ୟାର ଅନୁରୂପ ଯୋଗ୍ୟ ଘର, ବର ଓ କୁଳ ହୋଇଥାଏ, ତେବେ ତାହାର ବିବାହ ସେହିଠାରେ କରନ୍ତୁ । ତାହା ନ ହୋଇଥିଲେ, କନ୍ୟା କୁମାରୀ ହୋଇ ରହୁ ପଛକେ, ଅଯୋଗ୍ୟ ବର ସଙ୍ଗେ ତାହାର ବିବାହ କରାଇବାକୁ ମୁଁ ଇଚ୍ଛା କରେନାହିଁ । ହେ ନାଥ ! ପାର୍ବତୀ ମୋର ପ୍ରାଣ ସମାନ ପ୍ରିୟ ॥ ୨ ॥ ଯଦି ପାର୍ବତୀଙ୍କୁ ଯୋଗ୍ୟ ବର ନ ମିଳେ, ତେବେ ସମସ୍ତ ଲୋକ କହିବେ ପର୍ବତମାନେ

ପ୍ରିୟା ସୋଚୁ ପରିହରହୁ ସବୁ ସୁମିରହୁ ଶ୍ରୀଭଗବାନ ।
ପାରବତିହି ନିରମୟଉ ଜେହିଁ ସୋଇ କରିହି କଲ୍ୟାନ ॥୭୧॥
ଅବ ଜୌଁ ତୁମ୍ହହି ସୁତା ପର ନେହୂ । ତୌ ଅସ ଜାଇ ସିଖାଓ୍ୱନୁ ଦେହୂ ॥
କରୈ ସୋ ତପୁ ଜେହିଂ ମିଲହିଁ ମହେସୂ । ଆନ ଉପାୟଁ ନ ମେଟିହି କଲେସୂ ॥୧॥
ନାରଦ ବଚନ ସଗର୍ଭ ସହେତୂ । ସୁଂଦର ସବ ଗୁନ ନିଧି ବୃଷକେତୂ ॥
ଅସ ବିଚାରି ତୁମ୍ହ ତଜହୁ ଅସଂକା । ସବହି ଭାଁତି ସଂକରୁ ଅକଲଂକା ॥୨॥
ସୁନି ପତିବଚନ ହରଷି ମନ ମାହୀଁ । ଗଈଂ ତୁରତ ଉଠି ଗିରିଜା ପାହୀଁ ॥
ଉମହି ବିଲୋକି ନୟନ ଭରେ ବାରୀ । ସହିତ ସନେହ ଗୋଦ ବୈଠାରୀ ॥୩॥
ବାରହିଁ ବାର ଲେତି ଉର ଲାଈ । ଗଦଗଦ କଂଠ ନ କଛୁ କହି ଜାଈ ॥
ଜଗତ ମାତୁ ସର୍ବଜ୍ଞ ଭବାନୀ । ମାତୁ ସୁଖଦ ବୋଲୀଁ ମୃଦୁ ବାନୀ ॥୪॥

---

ପ୍ରିୟେ ପରିହର ମନୁ ଚିନ୍ତାଭାର ସ୍ମର ଶ୍ରୀ ଭଗବାନ ।
ଯେ ପାର୍ବତୀଙ୍କୁ ନିର୍ମାଣ କରିଲେ କରିବେ ଶୁଭ ବିଧାନ ॥୭୧॥
ଏବେ ସୁତାପ୍ରତି ତୁମ୍ଭ ସ୍ନେହ ଥାଏ ଯେବେ । ଦିଅ ଯାଇଣ ଏମନ୍ତ ଉପଦେଶ ତେବେ ॥
କରୁ ସେ ତପ ଯେମନ୍ତେ ମିଳିବେ ମହେଶ । ଇତର ଉପାୟେ ଦୂର ନ ହୋଇବ କ୍ଳେଶ ॥୧॥
ନାରଦ ବଚନ ଅଟେ ସଗୂଢ ସହେତୁ । ସୁନ୍ଦର ସମସ୍ତ ଗୁଣନିଧି ବୃଷକେତୁ ॥
ଏହା ହେଜି ତେଜ ତୁମ୍ଭେ ସଂଶୟ ନିକର । ସବୁ ପ୍ରକାରେ କଳଙ୍କ-ରହିତ ଶଙ୍କର ॥୨॥
ଶୁଣି ପତିଙ୍କ ବଚନ ମନ ହରଷିତେ । ଗଲେ ଉଠି ପାର୍ବତୀ ନିକଟେ ତୁରିତେ ॥
ଉମାଙ୍କୁ ଦେଖି ନୟନୁ ନୀର ବୁହାଇଲେ । ଅତି ଅନୁରାଗେ ନେଇ କୋଳେ ବସାଇଲେ ॥୩॥
ବାରମ୍ବାର ଆଲିଙ୍ଗନ ହୃଦୟେ କରନ୍ତି । ଗଦ୍‌ଗଦ କଣ୍ଠୁ ବଚନ ବୋଲି ନ ପାରନ୍ତି ॥
ଭାଷିଲେ ଜଗଜ୍ଜନନୀ ସର୍ବଜ୍ଞ ଭବାନୀ । ଜନନୀ ସୁଖଦାୟକ ମୃଦୁ ମଞ୍ଜୁ ବାଣୀ ॥୪॥

---

ସ୍ୱଭାବତଃ ଜଡ (ମୂର୍ଖ) । ହେ ସ୍ୱାମି ! ଏହି କଥାକୁ ବିଚାର କରି ବିବାହ କରନ୍ତୁ, ଯେମିତି ପଛରେ ଆଉ ହୃଦୟରେ ସନ୍ତାପ ଜାତ ନ ହୁଏ ।" ॥ ୩ ॥ ଏହିପରି କହି ମେନା ପତିଙ୍କ ପାଦ ଉପରେ ମସ୍ତକ ରଖି ପଡିଗଲେ । ହିମବାନ୍ ପ୍ରେମରେ କହିଲେ, "ଚନ୍ଦ୍ରମାଙ୍କଠାରୁ ଅଗ୍ନି ଜାତ ହେଉ ପଛକେ, ନାରଦଙ୍କ ବଚନ କଦାପି ମିଥ୍ୟା ହେବ ନାହିଁ ॥ ୪ ॥ ଦୋହା—ହେ ପ୍ରିୟେ ! ସମସ୍ତ ଶୋକ ପରିହାର କରି ଶ୍ରୀ ଭଗବାନଙ୍କୁ ସ୍ମରଣ କର । ଯେଉଁ ପ୍ରଭୁ ପାର୍ବତୀଙ୍କୁ ଗଢିଛନ୍ତି, ସେହି କେବଳ କଲ୍ୟାଣ କରିବେ ॥ ୭୧ ॥ ଚୌପାଇ:—ଏବେ ଯଦି କନ୍ୟାଠାରେ ତୁମର ପ୍ରକୃତ ସ୍ନେହ ଥାଏ, ତେବେ ଯାଇ ତାହାକୁ ଶିକ୍ଷା ଦିଅ—ସେ ଏପରି ତପସ୍ୟା କରୁ ଯେପରି ଶିବ ମିଳିବେ । ଅନ୍ୟ ଉପାୟରେ ଏ କ୍ଳେଶ ମେଣ୍ଟିବ ନାହିଁ ॥ ୧ ॥ ନାରଦଙ୍କ ବଚନ ରହସ୍ୟମୟ ଓ ତହିଁରେ ଯଥାର୍ଥ କାରଣ ମଧ୍ୟ ରହିଛି । ବାସ୍ତବିକ ଶିବ ସମସ୍ତ ଗୁଣର ଭଣ୍ଡାର । ଏହା ବିଚାର କରି ତୁମେ ଆଶଙ୍କା ଦୂର କର । ଶିବ

ସୁନହି ମାତୁ ମୈଁ ଦୀଖ ଅସ ସପନ ସୁନାଓଁ ତୋହି ।
ସୁଂଦର ଗୌର ସୁବିପ୍ରବର ଅସ ଉପଦେସେଉ ମୋହି ॥୭୨॥

କରହି ଜାଇ ତପୁ ସୈଲକୁମାରୀ । ନାରଦ କହା ସୋ ସତ୍ୟ ବିଚାରୀ ॥
ମାତୁ ପିତହି ପୁନି ୟହ ମତ ଭାଓ୍ୱା । ତପୁ ସୁଖପ୍ରଦ ଦୁଖ ଦୋଷ ନସାଓ୍ୱା ॥୧॥
ତପବଲ ରଚଇ ପ୍ରପଂଚୁ ବିଧାତା । ତପବଲ ବିଷ୍ଣୁ ସକଲ ଜଗ ତ୍ରାତା ॥
ତପବଲ ସଂଭୁ କରହିଁ ସଂଘାରା । ତପବଲ ସେଷୁ ଧରଇ ମହିଭାରା ॥୨॥
ତପ ଅଧାର ସବ ସୃଷ୍ଟି ଭବାନୀ । କରହି ଜାଇ ତପୁ ଅସ ଜିୟଁ ଜାନୀ ॥
ସୁନତ ବଚନ ବିସମିତ ମହତାରୀ । ସପନ ସୁନାୟଉ ଗିରିହି ହଁକାରୀ ॥୩॥

ମାତା ମୁଁ ଏସନ ଦେଖିଲି ସ୍ୱପନ ଶୁଣ ଶୁଣାଉଛି ତୋତେ ।
ସୁନ୍ଦର ଗଉର ଏକ ବିପ୍ରବର ଏହୁ ଶିକ୍ଷା ଦେଲେ ମୋତେ ॥୭୨॥

ତପସ୍ୟା କର ଯାଇଣ ଶଇଲ କୁମାରୀ । ନାରଦ କଥନ ସତ୍ୟ ହୃଦୟେ ବିଚାରି ॥
ଏ ମତେ ସମ୍ମତ ପୁଣି ଜନନୀ ଜନକ । ତପ ସୁଖ-ପ୍ରଦ ଦୁଃଖ-ଦୋଷ-ବିନାଶକ ॥୧॥
ତପବଳେ ବିରଚଇ ପ୍ରପଞ୍ଚ ବିଧାତା । ତପବଳେ ବିଷ୍ଣୁ ଅଟେ ଜଗତର ତ୍ରାତା ॥
ତପବଳେ ଶମ୍ଭୁ ସୃଷ୍ଟି କରଇ ସଂହାର । ତପବଳେ ଶେଷ ଧରେ ଧରଣୀର ଭାର ॥୨॥
ତପ ଆଧାର ଭବାନୀ ଏ ସାରା ଜଗତ । କର ଯାଇ ତପ ହୃଦେ ବିଚାରି ଏମନ୍ତ ॥
ବଚନ ଶୁଣି ଜନନୀ ବିସ୍ମିତ ହୋଇଲେ । ହିମାଳୟଙ୍କୁ ଡକାଇ ସ୍ୱପ୍ନ ଶୁଣାଇଲେ ॥୩॥

ସବୁ ପ୍ରକାରେ ନିଷ୍ଫଳଙ୍କ ।" ପଣ୍ଡିତଙ୍କ ବଚନ ଶୁଣି ମେନା ମନରେ ପ୍ରସନ୍ନ ହେଲେ ଏବଂ ଉଠି ଶୀଘ୍ର ପାର୍ବତୀଙ୍କ ପାଖକୁ ଗଲେ । ପାର୍ବତୀଙ୍କୁ ଦେଖି ତାଙ୍କ ଚକ୍ଷୁରେ ଅଶ୍ରୁ ଭରି ଆସିଲା । ସ୍ନେହରେ ସେ ତାଙ୍କୁ କୋଳରେ ବସାଇଲେ ॥ ୩ ॥ ପୁଣି ବାରମ୍ବାର ତାହାଙ୍କୁ ଆଲିଙ୍ଗନ କରିବାକୁ ଲାଗିଲେ । ପ୍ରେମରେ ମେନାଙ୍କ ସ୍ୱର ଗଦ୍‌ଗଦ୍ ହୋଇ ଆସିଲା । ସେ କିଛି କହି ପାରୁ ନ ଥାନ୍ତି । ଜଗଜ୍ଜନନୀ-ଭବାନୀ ତ ସର୍ବଜ୍ଞ । ମାତାଙ୍କ ମନୋବେଦନା ଜାଣି ସୁଖଦ ଓ କୋମଳ ବାଣୀରେ ସେ କହିଲେ ॥ ୪ ॥
ଦୋହା:—"ହେ ମାତା ଶୁଣ । ମୁଁ ଗୋଟିଏ ସ୍ୱପ୍ନ ଦେଖିଛି । ତାହା ତୁମଙ୍କୁ ଶୁଣାଉଛି । ମୋତେ ଜଣେ ସୁନ୍ଦର ଗୌରବର୍ଣ୍ଣ ଶ୍ରେଷ୍ଠ ବ୍ରାହ୍ମଣ ଏହିପରି ଉପଦେଶ ଦେଇ-ଅଛନ୍ତି ॥ ୭୨ ॥ ଚୌପାଇ:—"ହେ ପାର୍ବତି ! ନାରଦଜୀ ଯାହା କହିଅଛନ୍ତି, ତାହାକୁ ସତ୍ୟ ମନେ କରି ତୁମେ ଯାଇ ତପସ୍ୟା କର । ପୁଣି ଏ କଥା ତୁମ ମାତା ପିତାଙ୍କର ପସନ୍ଦ ହୋଇଛି । ତପସ୍ୟା ସୁଖପ୍ରଦ ଓ ଦୁଃଖ-ଦୋଷର ବିନାଶକାରୀ ॥ ୧ ॥ ତପସ୍ୟା ବଳରେ ହିଁ ବିଷ୍ଣୁ ସମଗ୍ର ଜଗତକୁ ପାଳନ କରନ୍ତି । ତପସ୍ୟା ବଳରେ ଶମ୍ଭୁ ରୁଦ୍ର ରୂପରେ ସଂସାରର ସଂହାର କରନ୍ତି । ତପସ୍ୟା ବଳରେ ହିଁ ଶେଷଦେବ ପୃଥିବୀର ଭାର ଧାରଣ କରନ୍ତି ॥୨॥ ହେ ଭବାନି ! ସମସ୍ତ ସୃଷ୍ଟି ତପସ୍ୟାର ଆଧାରରେ ପ୍ରତିଷ୍ଠିତ । ଏହି କଥା ହୃଦୟରେ ଜାଣି ତୁମେ ଯାଇ ତପସ୍ୟା କର ।" ଏ କଥା

ମାତୁ ପିତହି ବହୁବିଧି ସମୁଝାଈ । ଚଲୀଁ ଉମା ତପ ହିତ ହରଷାଈ ॥
ପ୍ରିୟ ପରିବାର ପିତା ଅରୁ ମାତା । ଭଏଁ ବିକଲ ମୁଖ ଆଓ୍ୱ ନ ବାତା ॥୪॥
ବେଦସିରା ମୁନି ଆଇ ତବ ସବହି କହା ସମୁଝାଇ ।
ପାରବତୀ ମହିମା ସୁନତ ରହେ ପ୍ରବୋଧହି ପାଇ ॥୭୩॥
ଉର ଧରି ଉମା ପ୍ରାନପତିଚରନା । ଜାଇ ବିପିନ ଲାଗୀଁ ତପୁ କରନା ॥
ଅତି ସୁକୁମାର ନ ତନୁ ତପ ଜୋଗୂ । ପତିପଦ ସୁମିରି ତଜେଉ ସବୁ ଭୋଗୂ ॥୧॥
ନିତ ନବଚରନ ଉପଜ ଅନୁରାଗା । ବିସରୀ ଦେହ ତପହିଁ ମନୁ ଲାଗା ॥
ସଂବତ ସହସ ମୂଲ ଫଲ ଖାଏ । ସାଗୁ ଖାଇ ସତ ବରଷ ଗୱାଁଏ ॥୨॥
କଛୁ ଦିନ ଭୋଜନୁ ବାରି ବତାସା । କିଏ କଠିନ କଛୁ ଦିନ ଉପବାସା ॥
ବେଲ ପାତୀ ମହି ପରଇ ସୁଖାଈ । ତୀନି ସହସ ସଂବତ ସୋଇ ଖାଈ ॥୩॥

---

ମାତାପିତାଙ୍କୁ ବୁଝାଇ ଉମା ନାନାମତେ । ଚଳିଲେ ହରଷ ମନେ ତପସ୍ୟା ନିମନ୍ତେ ॥
ଜନନୀ ଜନକ ଆଦି ପ୍ରିୟ ପରିଜନ । ହୋଇଲେ ବିକଳ ମୁଖେ ନ ଆସେ ବଚନ ॥୪॥
ବେଦଶିରା ମୁନି ଆସି ସେହିକ୍ଷଣି କହନ୍ତେ କଥା ବୁଝାଇ ।
ଶୁଣି ପାର୍ବତୀଙ୍କ ମହିମା ଅମିତ ରହିଲେ ପ୍ରବୋଧ ପାଇ ॥୭୩॥
ହୃଦେ ଧରି ଉମା ପ୍ରାଣପତିଙ୍କ ଚରଣ । ବନେ ଯାଇ କଲେ ଘୋର ତପ ଆଚରଣ ॥
ଅତି ସୁକୁମାରୀ ତପଯୋଗ୍ୟ ନୁହେ ତନୁ । ପତିପଦ ସ୍ମରି ଭୋଗ ତ୍ୟାଗ କଲେ ମନୁ ॥୧॥
ନିତ୍ୟ ନବ ଅନୁରାଗ ପଦେ ଉପୁଜିଲା । ତନୁ ପାଶୋରିଣ ମନ ତପରେ ଲାଗିଲା ॥
ସହସ୍ର ବରଷ ଫଳ ମୂଳ ସେ ଭୁଞ୍ଜିଲେ । ଶାକ ପତ୍ର ଖାଇ ଶତ ବର୍ଷ କଟାଇଲେ ॥୨॥
କିଛି ଦିନ ପାନ କଲେ ସଲିଳ ବତାସ । ପୁଣି କିଛି ଦିନ କଲେ ଘୋର ଉପବାସ ॥
ବିଲ୍ୱପତ୍ର ଶୁଷ୍କ ହୋଇ ମହୀରେ ପଡିଲେ । ତାହା ଖାଇ ବର୍ଷ ତିନି ସହସ୍ର ବଞ୍ଚିଲେ ॥୩॥

---

ଶୁଣି ମାତାଙ୍କୁ ବଡ ଆଶ୍ଚର୍ଯ୍ୟ ଲାଗିଲା ଏବଂ ସେ ହିମବାନ୍‌ଙ୍କୁ ଡାକି ଏହି ସ୍ୱପ୍ନବୃତ୍ତାନ୍ତ ଶୁଣାଇଲେ ॥ ୩ ॥ ମାତା ପିତାଙ୍କୁ ବହୁତ ପ୍ରକାରେ ବୁଝାଇ ଅତି ଆନନ୍ଦରେ ପାର୍ବତୀ ତପସ୍ୟା କରିବା ପାଇଁ ଚାଲିଲେ । ପ୍ରିୟ ପରିବାର, ମାତା ଓ ପିତା ସମସ୍ତେ ବ୍ୟାକୁଳ ହୋଇଗଲେ । କାହାରି ମୁହଁରୁ କଥା ବାହାରୁ ନ ଥାଏ ॥ ୪ ॥ ଦୋହା:—ଏ ସମୟରେ ବେଦଶିରା ମୁନି ଆସି ସମସ୍ତଙ୍କୁ ବୁଝାଇ କହିଲେ । ପାର୍ବତୀଙ୍କ ମହିମା ଶୁଣି ପୁରଜନମାନେ ସାନ୍ତ୍ୱନା ଲାଭ କଲେ ॥ ୭୩ ॥ ଚୌପାଈ—ପ୍ରାଣପତି (ଶିବ)ଙ୍କ ଚରଣକୁ ହୃଦୟରେ ଧାରଣ କରି ପାର୍ବତୀ ଯାଇ ବନରେ ତପସ୍ୟା କରିବାକୁ ଲାଗିଲେ । ପାର୍ବତୀଙ୍କ ଅତି ସୁକୁମାର ଶରୀର ତପସ୍ୟା-ଯୋଗ୍ୟ ନ ଥିଲା । ତଥାପି ପତିଙ୍କର ଚରଣ ହୃଦୟରେ ସ୍ମରଣ କରି ସେ ସମସ୍ତ ଭୋଗ ତ୍ୟାଗ କରିଦେଲେ ॥ ୧ ॥ ସ୍ୱାମୀଙ୍କ ଚରଣ ପ୍ରତି ତାଙ୍କ ହୃଦୟରେ ନିତ୍ୟ ନୂତନ ଅନୁରାଗ ଉତ୍ପନ୍ନ ହେବାକୁ ଲାଗିଲା । ତପସ୍ୟାରେ ତାଙ୍କ ମନ ଏପରି ଭାବରେ ମଜ୍ଜିଗଲା ଯେ,

ପୁନି ପରିହରେ ସୁଖାନେଉ ପରନା । ଉମହି ନାମୁ ତବ ଭୟଉ ଅପରନା ॥
ଦେଖି ଉମହି ତପ ଖୀନ ସରୀରା । ବ୍ରହ୍ମଗିରା ଭୈ ଗଗନ ଗଭୀରା ॥୪॥
ଭୟଉ ମନୋରଥ ସୁଫଲ ତବ ସୁନୁ ଗିରିରାଜକୁମାରି ।
ପରିହରୁ ଦୁସହ କଲେସ ସବ ଅବ ମିଲିହହିଁ ତ୍ରିପୁରାରି ॥୭୪॥
ଅସ ତପୁ କାହୁଁ ନ କୀନ୍ହ ଭବାନୀ । ଭଏ ଅନେକ ଧୀର ମୁନି ଜ୍ଞାନୀ ॥
ଅବ ଉର ଧରହୁ ବ୍ରହ୍ମ ବର ବାନୀ । ସତ୍ୟ ସଦା ସଂତତ ସୁଚି ଜାନୀ ॥୧॥
ଆଵୈ ପିତା ବୋଲାଵନ ଜବହିଁ । ହଠ ପରିହରି ଘର ଜାଏହୁ ତବହିଁ ॥
ମିଲହିଁ ତୁମ୍ହହି ଜବ ସପ୍ତ ରିଷୀସା । ଜାନେହୁ ତବ ପ୍ରମାନ ବାଗୀସା ॥୨॥
ସୁନତ ଗିରା ବିଧି ଗଗନ ବଖାନୀ । ପୁଲକ ଗାତ ଗିରିଜା ହରଷାନୀ ॥
ଉମା ଚରିତ ସୁଂଦର ମୈଁ ଗାଵା । ସୁନହୁ ସଂଭୁ କର ଚରିତ ସୁହାଵା ॥୩॥

---

ପରିତ୍ୟାଗ କଲେ ଶୁଷ୍କ ସେ ପର୍ଣ୍ଣ ଆଦର । ତେଣୁ ହୋଇଲା ଅପର୍ଣ୍ଣା ନାମ ଉମାଙ୍କର ॥
ତପ-କ୍ଷୀଣ ଗିରିଜାଙ୍କ ଅବଲୋକି ତନୁ । ବ୍ରହ୍ମ ବଚନ ଗମ୍ଭୀର ହୋଇଲା ଗଗନୁ ॥୪॥
ହେଲା ଫଳୀଭୂତ ତୁମ୍ଭ ମନୋରଥ ଶୁଣ ଶଇଲ କୁମାରୀ ।
ସବୁ ଏ ଦୁଃସହ ଦୁଃଖ ତେଜ ଏବେ ପ୍ରାପ୍ତ ହେବ ତ୍ରିପୁରାରି ॥୭୪॥
କେହି କରିନାହିଁ ତପ ଏମନ୍ତ ଭବାନୀ । ହୋଇ ଯାଇଛନ୍ତି ବହୁ ଧୀର ମୁନି ଜ୍ଞାନୀ ॥
ଏବେ ନିଜ ହୃଦେ ଧେନ ବ୍ରହ୍ମବରବାଣୀ । ସଦା ପବିତ୍ର ସତତ ସତ୍ୟ ମନେ ଜାଣି ॥୧॥
ଆସିବେ ନେବାକୁ ତୁମ୍ଭ ପିତା ଯେତେବେଳେ । ହଠ ପରିହରି ଗୃହେ ଯିବ ତେତେବେଳେ ॥
ମିଳିବେ ତୁମ୍ଭଙ୍କୁ ଯେବେ ସପ୍ତ ଋଷୀଶ୍ୱର । ତେବେ ପ୍ରମାଣ ଜାଣିବ ନଭବାଣୀ ବର ॥୨॥
ଶୁଣନ୍ତେ ଗଗନଧ୍ୱନି ବିଧାତା ବଚନ । ପୁଲକ ଶରୀର ଉମା ହୋଇଲେ ପ୍ରସନ୍ନ ॥
ବର୍ଣ୍ଣିଲି ମୁଁ ଗିରିଜାଙ୍କ ରୁଚିର ଚରିତ । ଶୁଣ ଏବେ ଶମ୍ଭୁଙ୍କର ଚରିତ ଲଳିତ ॥୩॥

---

ଶରୀରର ସମସ୍ତ ଖବର ସେ ଭୁଲିଗଲେ । ହଜାରେ ବର୍ଷ ପର୍ଯ୍ୟନ୍ତ ସେ ଫଳମୂଳ ଖାଇ ଓ ଶହେ ବର୍ଷ ପର୍ଯ୍ୟନ୍ତ ପତ୍ର ଖାଇ କଟାଇଲେ ॥ ୨ ॥ କିଛି ଦିନ ଜଳ ଓ ବାୟୁ ଭୋଜନ କଲେ ଏବଂ କିଛି ଦିନ କଠୋର ଉପବାସରେ କଟାଇଲେ । ଯେଉଁ ବେଲପତ୍ର ଶୁଖି ପୃଥିବୀ ଉପରେ ପଡୁଥାଏ, ତିନି ହଜାର ବର୍ଷ ଯାଏ କେବଳ ତାହାହିଁ ଖାଇଲେ ॥ ୩ ॥ ତତ୍ପରେ ଶୁଖିଲା ପର୍ଣ୍ଣ ସୁଦ୍ଧା ଛାଡିଦେଲେ । ସେହି କାଳରୁ ପାର୍ବତୀଙ୍କ ନାମ 'ଅପର୍ଣ୍ଣା' ହେଲା । ତପସ୍ୟା ଯୋଗେ ଉମାଙ୍କ ଶରୀର କ୍ଷୀଣ ହୋଇ ଆସିବାର ଦେଖି ଆକାଶରୁ ଗମ୍ଭୀର ବ୍ରହ୍ମବାଣୀ ହେଲା ॥ ୪ ॥ ଦୋହା—"ହେ ପର୍ବତ-ରାଜକୁମାରି ! ଶୁଣ, ତୁମ ମନୋରଥ ଏବେ ସଫଳ ହେଲା । ତୁମେ ଏଣିକି ସକଳ ଦୁଃସହ କ୍ଳେଶ ତ୍ୟାଗ କର । ଏବେ ତୁମଙ୍କୁ ଶିବ ମିଳିବେ ॥ ୭୪ ॥ ଚୌପାଇ:—ହେ ଭବାନି ! ଧୀର, ମୁନି ଓ ଜ୍ଞାନୀ ଏ ସଂସାରରେ ବହୁତ ଜାତ ହୋଇଅଛନ୍ତି । କିନ୍ତୁ ଏପରି କଠୋର ତପସ୍ୟା କେହି କେବେ କରିନାହାନ୍ତି । ବର୍ତ୍ତମାନ ତୁମେ

ଜବ ତେଁ ସତୀଁ ଜାଇ ତନୁ ତ୍ୟାଗା । ତବ ତେଁ ସିବମନ ଭୟଉ ବିରାଗା ॥
ଜପହିଁ ସଦା ରଘୁନାୟକ ନାମା । ଜହଁ ତହଁ ସୁନହିଁ ରାମ ଗୁନ ଗ୍ରାମା ॥୩॥
ଚିଦାନଂଦ ସୁଖଧାମ ସିବ ବିଗତ ମୋହ ମଦ କାମ ।
ବିଚରହିଁ ମହି ଧରି ହୃଦୟଁ ହରି ସକଲ ଲୋକ ଅଭିରାମ ॥୭୫॥
କତହୁଁ ମୁନିହ୍ନ ଉପଦେସହିଁ ଗ୍ୟାନା । କତହୁଁ ରାମଗୁନ କରହିଁ ବଖାନା ॥
ଜଦପି ଅକାମ ତଦପି ଭଗବାନା । ଭଗତ ବିରହ ଦୁଖ ଦୁଖିତ ସୁଜାନା ॥୧॥
ଏହି ବିଧି ଗୟଉ କାଲୁ ବହୁ ବୀତୀ । ନିତ ନୈ ହୋଇ ରାମପଦ ପ୍ରୀତୀ ॥
ନେମୁ ପ୍ରେମୁ ସଂକର କର ଦେଖା । ଅବିଚଲ ହୃଦୟଁ ଭଗତି କୈ ରେଖା ॥୨॥

---

ଯେଉଁଦିନୁ ସତୀ ଯାଇ ତନୁ କଲେ ତ୍ୟାଗ । ସେ ଦିନୁ ଶିବଙ୍କ ମନେ ଜନ୍ମିଲା ବିରାଗ ॥
ଜପନ୍ତି ସତତ ରଘୁନନ୍ଦନଙ୍କ ନାମ । ଶୁଣନ୍ତି ନାନା ସ୍ଥାନରେ ରାମ-ଗୁଣ-ଗ୍ରାମ ॥୩॥
ଚିଦାନନ୍ଦ ସୁଖସଦନ ମହେଶ ଗତମଦ-ମୋହ-କାମ ।
ଭ୍ରମନ୍ତି ମହୀରେ ହରିଧ୍ୟାୟି ଉରେ ସର୍ବଲୋକ ଅଭିରାମ ॥୭୫॥
କାହିଁ ଜ୍ଞାନ ଉପଦେଶ ମୁନିଙ୍କୁ ଦିଅନ୍ତି । କାହିଁ ରାମ- ଗୁଣ ଗଣ ଗାୟନ କରନ୍ତି ॥
ହେଲେହେଁ ନିଷ୍କାମ ମନ ଶିବ ଭଗବାନ । ଭକ୍ତ ବିରହେ ଦୁଃଖିତ କରୁଣାନିଧାନ ॥୧॥
ଏହି ଭାବେ ବହୁକାଳ ହୋଇଗଲା ଅତୀତ । ଉପୁଜଇ ରାମପଦେ ପ୍ରୀତି ନବ ନିତ୍ୟ ॥
ସଦାଶିବଙ୍କର ପ୍ରେମ ନିୟମ ନିରେଖି । ହୃଦୟ ମଧ୍ୟେ ଅଚଳ ଭକ୍ତିଭାବ ଦେଖି ॥୨॥

---

ବ୍ରହ୍ମାଙ୍କ ଶ୍ରେଷ୍ଠ ବାଣୀକୁ ସଦା ସତ୍ୟ ଓ ନିରନ୍ତର ପବିତ୍ର ଜାଣି ହୃଦୟରେ ଧାରଣ କର ॥ ୧ ॥ ଯେତେବେଳେ ତୁମ ପିତା ଡାକିବାକୁ ଆସିବେ, ତୁମେ ଜିଦ୍ ଛାଡି ଘରକୁ ଚାଲିଯିବ ଏବଂ ଯେତେବେଳେ ତୁମକୁ ସପ୍ତର୍ଷି ମିଳିବେ, ସେତେବେଳେ ଏହି ଶ୍ରେଷ୍ଠ ବାଣୀ ସତ୍ୟ ବୋଲି ବୁଝିବ ॥ ୨ ॥ ଏହି ରୂପେ ଆକାଶରୁ କଥିତ ବ୍ରହ୍ମାଙ୍କ ବାଣୀ ଶୁଣିବା ମାତ୍ରେ ପାର୍ବତୀ ପ୍ରସନ୍ନ ହେଲେ ଏବଂ ପ୍ରସନ୍ନତା ହେତୁ ତାହାଙ୍କ ଶରୀରରେ ପୁଲକ ଜାତ ହେଲା । ଯାଜ୍ଞବଲ୍କ୍ୟ ଭରଦ୍ୱାଜଙ୍କୁ କହିଲେ, "ମୁଁ ପାର୍ବତୀଙ୍କ ସୁନ୍ଦର ଚରିତ ଶୁଣାଇଲି । ବର୍ତ୍ତମାନ ଶିବଙ୍କର ମନୋହର ଚରିତ ଶୁଣ ॥ ୩ ॥ "ସତୀ ଯାଇ ଶରୀର ତ୍ୟାଗ କରିବା ଦିନଠାରୁ ଶିବଙ୍କ ମନରେ ବୈରାଗ୍ୟ ଜାତ ହୋଇଥିଲା । ସେ ସଦାସର୍ବଦା ଶ୍ରୀ ରଘୁନାଥଜୀଙ୍କ ନାମ ଜପିବାକୁ ଲାଗିଲେ ଏବଂ ଏଠିସେଠି ଶ୍ରୀ ରାମଚନ୍ଦ୍ରଙ୍କ ଗୁଣଗ୍ରାମ ଶୁଣିବାକୁ ଲାଗିଲେ ॥ ୪ ॥ ଦୋହା:— ଚିଦାନନ୍ଦ, ସୁଖଧାମ, ମୋହମଦ-କାମ-ରହିତ ଶିବ ସକଳ ସଂସାରାଭିରାମ ଭଗବାନ୍ ଶ୍ରୀହରି (ଶ୍ରୀ ରାମଚନ୍ଦ୍ର)ଙ୍କୁ ହୃଦୟରେ ଧାରଣ କରି ତାଙ୍କ ଧ୍ୟାନରେ ତନ୍ମୟ ହୋଇ ପୃଥିବୀରେ ବିଚରଣ କରିବାକୁ ଲାଗିଲେ ॥ ୭୫ ॥ ଚୌପାଈ:—କେଉଁଠି ସେ ମୁନିମାନଙ୍କୁ ଜ୍ଞାନ-ଉପଦେଶ ଦେଉଥା'ନ୍ତି ତ କେଉଁଠାରେ ଶ୍ରୀ ରାମଚନ୍ଦ୍ରଙ୍କ ଗୁଣ ବର୍ଣ୍ଣନା କରୁଥା'ନ୍ତି । ସୁଜ୍ଞ ଶିବ ଯେ ନିଷ୍କାମ, ଏହା ସତ୍ୟ । ତଥାପି ସେ

ପ୍ରଗଟେ ରାମୁ କୃତଜ୍ଞ କୃପାଲା । ରୂପ ସୀଲ ନିଧି ତେଜ ବିସାଲା ॥
ବହୁ ପ୍ରକାର ସଂକରହି ସରାହା । ତୁମ୍ହ ବିନୁ ଅସ ବ୍ରତୁ କୋ ନିରବାହା ॥୩॥
ବହୁବିଧି ରାମ ସିବହି ସମୁଝାଓ୍ୱା । ପାରବତୀ କର ଜନ୍ମ ସୁନାଓ୍ୱା ॥
ଅତି ପୁନୀତ ଗିରିଜା କୈ କରନୀ । ବିସ୍ତର ସହିତ କୃପାନିଧି ବରନୀ ॥୪॥

ଅବ ବିନତୀ ମମ ସୁନହୁ ସିବ ଜୌଁ ମୋ ପର ନିଜ ନେହୁ ।
ଜାଇ ବିବାହହୁ ସୈଲଜହି ଯହ ମୋହି ମାଗେଁ ଦେହୁ ॥୭୬॥

କହ ସିବ ଜଦପି ଉଚିତ ଅସ ନାହୀଁ । ନାଥ ବଚନ ପୁନି ମେଟି ନ ଜାହୀଁ ॥
ସିର ଧରି ଆୟସୁ କରିଅ ତୁମ୍ହାରା । ପରମ ଧରମୁ ୟହ ନାଥ ହମାରା ॥୧॥
ମାତୁ ପିତା ଗୁର ପ୍ରଭୁ କୈ ବାନୀ । ବିନହିଂ ବିଚାର କରିଅ ସୁଭ ଜାନୀ ॥
ତୁମ୍ହ ସବ ଭାଁତି ପରମ ହିତକାରୀ । ଅଜ୍ଞା ସିର ପର ନାଥ ତୁମ୍ହାରୀ ॥୨॥

---

ପ୍ରକଟ ହେଲେ କୃତଜ୍ଞ ରାମ କୃପାକର । ସୁବିଶାଳ ତେଜ ଶୀଲ ସୌନ୍ଦର୍ଯ୍ୟ-ସାଗର ॥
ପ୍ରଶଂସା ମହେଶ୍ୱରଙ୍କୁ କଲେ ନାନାମତେ । ତୁମ୍ଭ ବିନା କିଏ ବ୍ରତ-ପାଳିବ ଏମନ୍ତେ ॥୩॥
ବହୁତ ପ୍ରକାରେ ସଦାଶିବଙ୍କୁ ବୁଝାଇ । ପୁଣି ପାର୍ବତୀଙ୍କର ଜନମ ଶୁଣାଇ ॥
ଅତି ପବିତ୍ର ଶୈଳସୁତାଙ୍କ ଚରିତ । ବର୍ଣ୍ଣିଲେ କରୁଣାନିଧି ବିସ୍ତାର ସହିତ ॥୪॥

ମୋ ବିନତି ଏବେ ଶୁଣ ଶିବ ଯେବେ ମୋଠାରେ ସ୍ନେହ ତୁମ୍ଭର ।
ଯାଇଣ ବିବାହ କର ଉମା ସହ ଏହି ମାଗୁଣି ମୋହର ॥୭୬॥

ଯଦ୍ୟପି ଅନୁଚିତ ଏହା ବୋଲନ୍ତି ମହେଶ । ଏଡ଼ି ନ ହୁଅଇ ପୁଣି ପ୍ରଭୁଙ୍କ ଆଦେଶ ॥
ଶିରୋଧାର୍ଯ୍ୟ କରି ତୁମ୍ଭ ବଚନ ପାଳନ । ଅଟଇ ନାଥ ମୋହର କର୍ତ୍ତବ୍ୟ ପାଳନ ॥୧॥
ଜନନୀ-ଜନକ ଗୁରୁ ସ୍ୱାମୀଙ୍କର ବାଣୀ । ଅବିଚାରେ କରଣୀୟ ଶୁଭମୟ ଜାଣି ॥
ତୁମ୍ଭେ ସମସ୍ତ ପ୍ରକାରେ ହିତକାରୀ ଅତି । ସଦା ଶିରୋଧାର୍ଯ୍ୟ ନାଥ ତୁମ୍ଭ ଅନୁମତି ॥୨॥

---

ଭଗବାନ୍ ଆପଣା ଭକ୍ତ (ସତୀ)ଙ୍କ ବିରହ ଦୁଃଖରେ ଅତି ଦୁଃଖିତ ॥ ୧ ॥ ଏହି ରୂପେ ବହୁତ ସମୟ ଅତିବାହିତ ହୋଇଗଲା । ଶ୍ରୀ ରାମଚନ୍ଦ୍ରଜୀଙ୍କ ଚରଣରେ ତାଙ୍କ ମନରେ ନିତ୍ୟ ନୂତନ ପ୍ରୀତି ଜାତ ହେଉଥାଏ । ଶିବଙ୍କର କଠୋର ନିୟମ, ଅନନ୍ୟପ୍ରେମ ଓ ତାଙ୍କ ହୃଦୟର ଭକ୍ତିର ଅଟଳ ଦୃଢ଼ତା ଯେତେବେଳେ ଶ୍ରୀରାମ ଦେଖିଲେ ॥ ୨ ॥ ସେତେବେଳେ କୃତଜ୍ଞ, କୃପାଳୁ, ରୂପ ଓ ଶୀଳର ଭଣ୍ଡାର, ମହାତେଜପୁଞ୍ଜ ଭଗବାନ୍ ଶ୍ରୀ ରାମଚନ୍ଦ୍ରଜୀ ଆବିର୍ଭୂତ ହେଲେ । ସେ ବହୁତ ପ୍ରକାରେ ଶିବଙ୍କୁ ପ୍ରଶଂସା କଲେ ଏବଂ କହିଲେ, "ହେ ଶଙ୍କର ! ଆପଣଙ୍କ ବିନା ଏପରି କଠିନ ବ୍ରତ କିଏ ନିର୍ବାହ କରିପାରିବ ?" ॥ ୩ ॥ ଶ୍ରୀ ରାମଚନ୍ଦ୍ର ବହୁତ ପ୍ରକାରେ ଶିବଙ୍କୁ ବୁଝାଇଲେ ଏବଂ ତାଙ୍କୁ ପାର୍ବତୀଙ୍କ ଜନ୍ମ-ବୃତ୍ତାନ୍ତ ଶୁଣାଇଲେ । କୃପାନିଧାନ ଶ୍ରୀ ରାମଚନ୍ଦ୍ର ବିସ୍ତାର-ପୂର୍ବକ ପାର୍ବତୀଙ୍କ ଅତି ପବିତ୍ର କୃତିତ୍ୱ ବିଷୟ ବର୍ଣ୍ଣନା କଲେ ॥ ୪ ॥
ଦୋହା:—ପୁଣି ସେ ଶିବଙ୍କୁ କହିଲେ, "ହେ ଶିବ ! ମୋ ପ୍ରତି ଯଦି ଆପଣଙ୍କର

ପ୍ରଭୁ ତୋଷେଉ ସୁନି ସଂକର ବଚନା । ଭକ୍ତି ବିବେକ ଧର୍ମ ଜୁତ ରଚନା ॥
କହ ପ୍ରଭୁ ହର ତୁମ୍ହାର ପନ ରହେଉ । ଅବ ଉର ରାଖେହୁ ଜୋ ହମ କହେଉ ॥୩॥
ଅନ୍ତରଧାନ ଭଏ ଅସ ଭାଷୀ । ସଂକର ସୋଇ ମୂରତି ଉର ରାଖୀ ॥
ତବହିଂ ସପ୍ତରିଷି ସିବ ପହିଁ ଆଏ । ବୋଲେ ପ୍ରଭୁ ଅତି ବଚନ ସୁହାଏ ॥୪॥

ପାରବତୀ ପହିଁ ଜାଇ ତୁମ୍ହ ପ୍ରେମ ପରିଚ୍ଛା ଲେହୁ ।
ଗିରିହି ପ୍ରେରି ପଠଏହୁ ଭବନ ଦୂରି କରେହୁ ସଂଦେହୁ ॥୭୭॥

ରିଷିନ୍ହ ଗୌରି ଦେଖୀ ତହଁ କୈସୀ । ମୂରତିମଂତ ତପସ୍ୟା ଜୈସୀ ॥
ବୋଲେ ମୁନି ସୁନୁ ସୈଲକୁମାରୀ । କରହୁ କଵନ କାରନ ତପୁ ଭାରୀ ॥୧॥

---

ପ୍ରଭୁ ତୋଷ ହେଲେ ଶୁଣି ଶିବଙ୍କ ବଚନ । ଭକ୍ତି ବିବେକ ଧରମ ସଂଯୁକ୍ତ ରଚନ ॥
କହନ୍ତି ପ୍ରଭୁ ରହିଲା ତୁମ୍ଭ ପଣ ହର । ଏବେ ଯାହା କହିଲି ମୁଁ ହୃଦେ ତାହା ଧର ॥୩॥
ଏମନ୍ତ ଭାଷି ସେଠାରୁ ହେଲେ ଅନ୍ତର୍ହିତ । ଶଙ୍କର ସେ ରୂପ କଲେ ହୃଦୟେ ନିହିତ ॥
ସେହିକ୍ଷଣି ଶିବ ପାଶେ ସପ୍ତର୍ଷି ଆସିଲେ । ପ୍ରଭୁ ତାହାଙ୍କୁ ମଧୁର ବଚନ ଭାଷିଲେ ॥୪॥

ଉମା ସନ୍ନିଧାନେ ଯାଅ ତୁମ୍ଭେମାନେ ପ୍ରେମ ପରୀକ୍ଷା ନେଇଣ ।
ପେଷି ଶଇଳକୁ ପଠାଅ ଗୃହକୁ ସନ୍ଦେହ ଦୂର କରିଣ ॥୭୭॥

ଋଷି ଗଉରୀଙ୍କୁ ଯାଇ ଦେଖିଲେ କେମନ୍ତ । ମନେ ହୁଏ ମୂର୍ତ୍ତିମାନ ତପସ୍ୟା ଯେମନ୍ତ ॥
ବୋଲନ୍ତି ମୁନିଗଣେ ଶୁଣ ଶଇଳ କୁମାରୀ । କେଉଁ କାରଣରୁ ତପ କରୁଅଛ ଭାରି ॥୧॥

---

ହୋଇ ଥାଏ, ତେବେ ଆପଣ ମୋ ବିନତି ଶୁଣନ୍ତୁ । ମୋର ଏତିକି ମାଗୁଣି, ଆପଣ ଯାଇ ପାର୍ବତୀଙ୍କୁ ବିବାହ କରନ୍ତୁ ॥ ୭୬ ॥ ଚୌପାଈ—ଶିବ କହିଲେ, "ଏହା ଉଚିତ ନୁହେଁ, ତଥାପି ସ୍ୱାମୀଙ୍କ ଆଜ୍ଞା ମୁଁ ଟାଳି ପାରିବି ନାହିଁ । ହେ ନାଥ ! ଆପଣଙ୍କ ଆଦେଶ ଶିରୋଧାର୍ଯ୍ୟ କରିବା ମୋର ପରମ ଧର୍ମ ॥ ୧ ॥ ମାତା, ପିତା, ଗୁରୁ ଓ ସ୍ୱାମୀଙ୍କ ବଚନ ବିନା ବିଚାରରେ ଶୁଭ ମନେ କରି ପାଳନ କରିବା ଉଚିତ, ଆପଣ ତ ପୁଣି ସହଜେ ମୋର ପରମ ହିତକାରୀ । ହେ ନାଥ ! ଆପଣଙ୍କ ଆଦେଶ ମୋର-ଶିରୋଧାର୍ଯ୍ୟ ॥ ୨ ॥ ଶିବଙ୍କର ଭକ୍ତି, ଜ୍ଞାନ ଓ ଧର୍ମଯୁକ୍ତ ବଚନ-ରଚନା ଶୁଣି ପ୍ରଭୁ ରାମଚନ୍ଦ୍ର ସନ୍ତୁଷ୍ଟ ହୋଇଗଲେ । ପ୍ରଭୁ କହିଲେ, "ହେ ହର ! ଆପଣଙ୍କ ପ୍ରତିଜ୍ଞା ପୂର୍ଣ୍ଣ ହୋଇଗଲା । ମୁଁ ଯାହା କହିଲି, ଏବେ ତାହାକୁ ହୃଦୟରେ ରଖନ୍ତୁ ॥ ୩ ॥ ଏହିପରି କହି ଶ୍ରୀରାମଚନ୍ଦ୍ର ଅନ୍ତର୍ହିତ ହୋଇଗଲେ । ଶିବ ତାଙ୍କର ସେହି ମୂର୍ତ୍ତି ହୃଦୟରେ ଧାରଣ କଲେ । ସେହି ସମୟରେ ସପ୍ତର୍ଷି ଶିବଙ୍କ ପାଖକୁ ଆସିଲେ । ପ୍ରଭୁ ମହାଦେବ ସେମାନଙ୍କୁ ଅତି ସୁନ୍ଦର ବଚନ କହିଲେ ॥ ୪ ॥ ଦୋହା—"ଆପଣମାନେ ପାର୍ବତୀଙ୍କ ପାଖକୁ ଯାଇ ତାଙ୍କ ପ୍ରେମର ପରୀକ୍ଷା ନିଅନ୍ତୁ । ହିମାଚଳଙ୍କୁ କହି ପାର୍ବତୀଙ୍କୁ ଘରକୁ ପଠାଇବାର ବ୍ୟବସ୍ଥା କରନ୍ତୁ ଏବଂ ମୋ ସନ୍ଦେହ ଦୂର କରନ୍ତୁ ॥ ୭୭ ॥ ଚୌପାଈ—ଋଷିମାନେ ସେଠାକୁ ଯାଇ ପାର୍ବତୀଙ୍କୁ ଦେଖିଲେ, ସତେ ଯେମିତି

କେହି ଅଓ୍ୱରାଧହୁ କା ତୁମ୍ହ ଚହହୂ । ହମ ସନ ସତ୍ୟ ମରମୁ କିନ କହହୂ ॥
କହତ ବଚନ ମନୁ ଅତି ସକୁଚାଈ । ହଁସିହହୁ ସୁନି ହମାରି ଜଡ଼ତାଈ ॥୨॥
ମନୁ ହଠ ପରା ନ ସୁନଇ ସିଖାଓ୍ୱା । ଚହତ ବାରି ପର ଭୀତି ଉଠାଓ୍ୱା ॥
ନାରଦ କହା ସତ୍ୟ ସୋଇ ଜାନା । ବିନୁ ପଂଖହ୍ନ ହମ ଚହହିଂ ଉଡ଼ାନା ॥୩॥
ଦେଖହୁ ମୁନି ଅବିବେକୁ ହମାରା । ଚାହିଅ ସଦା ସିବହିଁ ଭରତାରା ॥୪॥

ସୁନତ ବଚନ ବିହସେ ରିଷୟ ଗିରିସଂଭବ ତବ ଦେହ ।
ନାରଦ କର ଉପଦେସୁ ସୁନି କହହୁ ବସେଉ କିସୁ ଗେହ ॥୭୮॥

ଦଚ୍ଛ ସୁତହ୍ନ ଉପଦେସେହ୍ନି ଜାଈ । ତିହ୍ନ ଫିରି ଭବନୁ ନ ଦେଖା ଆଈ ॥
ଚିତ୍ରକେତୁ କର ଘରୁ ଉନ ଘାଲା । କନକକସିପୁ କର ପୁନି ଅସ ହାଲା ॥୧॥

---

କାହାକୁ ଆରାଧ ତୁମ୍ଭେ କେଉଁ ଇଚ୍ଛା କର । ଆମ୍ଭ ଆଗେ ସତ୍ୟ କହ ମରମ ନିକର ॥
ଲଜ୍ଜ୍ୟା ଲାଗେ କହିବାକୁ ମରମ ବାରତା । ହସିବ ଶ୍ରବଣ କରି ମୋର ଅଜ୍ଞାନତା ॥୨॥
ମନ ହଠ ବଶ ଉପଦେଶ ନ ମାନଇ । ଭିତ୍ତି ତୋଳିବାକୁ ବାରି ଉପରେ ଚାହିଁଇ ॥
ସତ୍ୟ ମଣି ନାରଦଙ୍କ କହିବା କଥାକୁ । ପକ୍ଷବିନା ଆକାଂକ୍ଷା ମୁଁ କରେ ଉଡ଼ିବାକୁ ॥୩॥
ଦେଖ ମୁନି ଅବିବେକ ପଣ ଏ ମୋହର । ପତି ପଦେ ଅଭିଳାଷେ ଅବିନାଶି ହର ॥୪॥

ଶୁଣି ଋଷିଗଣ ଭାଷିଲେ ହସିଣ ଗିରିଜାତ ତୁମ୍ଭ ଦେହ ।
କହ ନାରଦର ଉପଦେଶ ମାନି ରହୁଛି କାହାର ଗୃହ ॥୭୮॥

ଦକ୍ଷସୁତଙ୍କୁ ସେ ଯାଇ ଦେଲେ ଉପଦେଶ । ବାହୁଡ଼ି ସେମାନେ ଗୃହେ ନ କଲେ ପ୍ରବେଶ ॥
ଚିତ୍ରକେତୁ ନୃପତିର ଗୃହ ଉଜାଡ଼ିଲା । ସ୍ୱର୍ଣ୍ଣକଶିପୁର ସେହି ଦୁର୍ଦ୍ଦଶା ହୋଇଲା ॥୧॥

---

ତପସ୍ୟା ମୂର୍ତ୍ତିମନ୍ତ ହୋଇଅଛି । ସେମାନେ କହିଲେ, "ହେ ଶୈଳକୁମାରି ! ତୁମେ କେଉଁଥିପାଇଁ ଏତେ କଠୋର ତପସ୍ୟା କରୁଅଛ ? ॥ ୧ ॥ ତୁମେ କାହାକୁ ଆରାଧନା କରୁଅଛ ଏବଂ କ'ଣ ଚାହୁଁଅଛ ? ଆମ୍ଭଙ୍କୁ ଅସଲ ମରମ କଥା କୁହ । ପାର୍ବତୀ କହିଲେ, "କଥା କହିବାକୁ ମନରେ ବଡ଼ ସଙ୍କୋଚ ଲାଗୁଛି । ମୋ ମୂର୍ଖତା ଶୁଣି ଆପଣମାନେ ହସିବେ ॥ ୨ ॥ ମନ ଜିଦ୍ ଧରିଛି । ସେ ଉପଦେଶ ଶୁଣୁନାହିଁ ଏବଂ ଆକାଶ-ସୌଧ ନିର୍ମାଣ କରିବାକୁ ଚାହୁଁଛି । ନାରଦମୁନି ଯାହା କହି ଯାଇଅଛନ୍ତି, ତାହାକୁ ସତ୍ୟ ମନେ କରି ବିନା ପରରେ ମୁଁ ଉଡ଼ିବାକୁ ଚାହୁଁଛି ॥ ୩ ॥ ହେ ମୁନିଗଣ ! ଆପଣମାନେ ମୋ ଅଜ୍ଞତା ଦେଖନ୍ତୁ ତ । ମୁଁ ଶିବଙ୍କୁ ମୋ ପତି ରୂପେ ପାଇବାକୁ ଚାହୁଁଛି ॥ ୪ ॥ ଦୋହା —ପାର୍ବତୀଙ୍କ କଥା ଶୁଣି ଋଷିମାନେ ହସି ଉଠିଲେ ଏବଂ କହିଲେ, "ତୁମ ଦେହ ପର୍ବତଠାରୁ ଜାତ । ଭଲ କୁହ ତ ନାରଦଙ୍କ ଉପଦେଶ ଶୁଣି ଆଜି ପର୍ଯ୍ୟନ୍ତ କେଉଁ ନର ଘରସଂସାର ବାନ୍ଧି ପାରିଛି ? ॥ ୭୮ ॥ ଚୌପାଈ—ସେ ଯାଇ ଦକ୍ଷଙ୍କ ପୁତ୍ରମାନଙ୍କୁ ଉପଦେଶ ଦେଇଥିଲେ, ଯାହା ଫଳରେ ସେମାନେ ଆଉ ଫେରି ଘର ମୁହଁ ଦେଖିଲେ ନାହିଁ । ନାରଦ ହିଁ ଚିତ୍ରକେତୁର

ନାରଦ ସିଖ ଜେ ସୁନହିଁ ନର ନାରୀ । ଅବସି ହୋହିଁ ତଜି ଭବନୁ ଭିଖାରୀ ॥
ମନ କପଟୀ ତନ ସଜ୍ଜନ ଚୀହ୍ନା । ଆପୁ ସରିସ ସବହୀ ଚହ କୀହ୍ନା ॥୨॥
ତେହି କେଁ ବଚନ ମାନି ବିସ୍ୱାସା । ତୁମ୍ହ ଚାହହୁ ପତି ସହଜ ଉଦାସା ॥
ନିର୍ଗୁନ ନିଲଜ କୁବେଷ କପାଲୀ । ଅକୁଲ ଅଗେହ ଦିଗଂବର ବ୍ୟାଲୀ ॥୩॥
କହହୁ କଵନ ସୁଖୁ ଅସ ବରୁ ପାଏଁ । ଭଲ ଭୂଲିହୁ ଠଗ କେ ବୌରାଏଁ ॥
ପଂଚ କହେଁ ସିଵଁ ସତୀ ବିବାହୀ । ପୁନି ଅବଡେରି ମରାଏନ୍ହି ତାହୀ ॥୪॥

ଅବ ସୁଖ ସୋଵତ ସୋଚୁ ନହିଂ ଭୀଖ ମାଗି ଭବ ଖାହିଁ ।
ସହଜ ଏକାକିନ୍ହ କେ ଭବନ କବହୁଁ କି ନାରି ଖଟାହିଁ ॥୭୯॥

ଅଜହୂଁ ମାନହୁ କହା ହମାରା । ହମ ତୁମ୍ହ କହୁଁ ବରୁ ନୀକ ବିଚାରା ॥
ଅତି ସୁଂଦର ସୁଚି ସୁଖଦ ସୁସୀଲା । ଗାଵହିଁ ବେଦ ଜାସୁ ଜସ ଲୀଲା ॥୧॥

---

ନାରଦ ଶିକ୍ଷା ଶୁଣନ୍ତି ଯେଉଁ ନରନାରୀ । ଅବଶ୍ୟ ଭବନ ତେଜି ହୁଅନ୍ତି ଭିଖାରୀ ॥
ମନ କପଟୀ ଶରୀରେ ସଜ୍ଜନ ଜଣାଏ । ଆପଣା ପରି ଅନ୍ୟଙ୍କୁ କରିବାକୁ ଚାହେଁ ॥୨॥
ଏମନ୍ତ ବଚନେ ତାର ମାନିଣ ବିଶ୍ୱାସ । ତୁମ୍ଭେ ଚାହୁଁଅଛ ପତି ସ୍ୱଭାବେ ଉଦାସ ॥
ନିର୍ଗୁଣ ଲଜ୍ଜ୍ୟା ବିହୀନ କୁବେଶ କପାଳୀ । ଅକୁଳ ଅନିକେତନ ଦିଗମ୍ବର ବ୍ୟାଳୀ ॥୩॥
କହ କେଉଁ ସୁଖ ବର ଏହିପରି ପାଇ । ଭଲ ଭୁଲିଛ ଠକର ଠକାମିରେ ଯାଇ ॥
ପଞ୍ଚ କହନ୍ତି ସତୀଙ୍କୁ ବିଭା ହୋଇ ହର । ତ୍ୟାଗ କରି ମରାଇଲେ ତାହାଙ୍କୁ ଆଦର ॥୪॥

ଏବେ ନିଶ୍ଚିନ୍ତରେ ଶୁଅଇ ସୁଖରେ ଭିକ୍ଷାକରି ଭବେ ଖାଇ ।
ସହଜେ ଏକାକୀ ଭୁବନେ କେବେ କି ନାରୀ ଖଟିପାରେ ଯାଇ ॥୭୯॥

ଏବେ ମଧ ମାନିଯାଅ କହିବା ଆମ୍ଭର । ଆମ୍ଭେ ତୋ ନିମନ୍ତେ ଭଲ ବିଚାରିଛୁ ବର ॥
ଶୁଚି ସୁଶୀଲ ସୁଖଦ ଅତି ସୁଶୋଭନ । ଯାର ଯଶ ଲୀଳା ବେଦ କରଇ ବର୍ଣ୍ଣନ ॥୧॥

---

ଘର ଭାଙ୍ଗିଲେ । ପୁଣି ସେହି ଦଶା ହିରଣ୍ୟକଶିପୁର ହେଲା ॥ ୧ ॥ ଯେଉଁ ସ୍ତ୍ରୀ-ପୁରୁଷମାନେ ନାରଦଙ୍କ ଉପଦେଶ ଶୁଣନ୍ତି, ସେମାନେ ଘରଦ୍ୱାର ଛାଡ଼ି ଅବଶ୍ୟ ଭିକାରୀ ହୁଅନ୍ତି । ତାଙ୍କର ମନ କପଟୀ ଏବଂ ଶରୀରର ବେଶ ସାଧୁ ପରି । ସେ ସମସ୍ତଙ୍କୁ ଆପଣା ପରି ବକଧାର୍ମିକ କରିବାକୁ ଚାହାନ୍ତି ॥ ୨ ॥ ତାଙ୍କ କଥାକୁ ବିଶ୍ୱାସ କରି ତୁମେ ଏପରି ପତି ପାଇବାକୁ ଚାହୁଁଛ, ଯେ ସ୍ୱଭାବତଃ ଉଦାସୀନ, ଗୁଣହୀନ ଓ ନିର୍ଲଜ୍ଜ; ଯେ ଖରାପ ବେଶ ଧାରଣ କରିଥାନ୍ତି, ମନୁଷ୍ୟ କପାଳର ମାଳା ପିନ୍ଧିଥାନ୍ତି, ଯାହାଙ୍କର କୁଳ ଓ ଘରଦ୍ୱାରର ଠିକଣା ନାହିଁ, ଯେ ଲଙ୍ଗଳା ଓ ଶରୀରରେ ସର୍ପ-ଧାରଣ କରିଥା'ନ୍ତି ॥ ୩ ॥ ଏପରି ବର ମିଳିଲେ ତୁମଙ୍କୁ କି ସୁଖ ମିଳିବ ? ତୁମେ ସେ ଠକ (ନାରଦ)ର ମନଭୁଲାଣିଆ କଥାରେ ପଡ଼ି ଖୁବ୍ ଭୁଲିଲ । ପଞ୍ଚଙ୍କ କହିବା ଅନୁସାରେ ପ୍ରଥମେ ଶିବ ସତୀଙ୍କୁ ବିବାହ କରିଥିଲେ । କିନ୍ତୁ ତାଙ୍କୁ ପରିତ୍ୟାଗ କରି ମରାଇ ଦେଲେ ॥ ୪ ॥ ଦୋହା.—ଏବେ ଶିବଙ୍କର କୌଣସି ଚିନ୍ତା ନାହିଁ ।

ଦୂଷନ ରହିତ ସକଲ ଗୁନ ରାସୀ । ଶ୍ରୀପତି ପୁର ବୈକୁଣ୍ଠ ନିବାସୀ ॥
ଅସ ବରୁ ତୁମ୍ହହି ମିଲାଉବ ଆନୀ । ସୁନତ ବିହସି କହ ବଚନ ଭବାନୀ ॥୨॥
ସତ୍ୟ କହେହୁ ଗିରିଭବ ତନୁ ଏହା । ହଠ ନ ଛୂଟ ଛୂଟୈ ବରୁ ଦେହା ॥
କନକଉ ପୁନି ପଷାନ ତେଁ ହୋଈ । ଜାରେହୁଁ ସହଜୁ ନ ପରିହର ସୋଈ ॥୩॥
ନାରଦ ବଚନ ନ ମୈଁ ପରିହରଉଁ । ବସଉ ଭବନୁ ଉଜରଉ ନହିଂ ଡରଉଁ ॥
ଗୁର କେଁ ବଚନ ପ୍ରତୀତି ନ ଜେହୀ । ସପନେହୁଁ ସୁଗମ ନ ସୁଖ ସିଧି ତେହୀ ॥୪॥
ମହାଦେବ ଅବଗୁନ ଭବନ ବିଷ୍ଣୁ ସକଲ ଗୁନ ଧାମ ।
ଜେହି କର ମନୁ ରମ ଜାହି ସନ ତେହି ତେହୀ ସନ କାମ ॥୮୦॥
ଜୌଁ ତୁମ୍ହ ମିଲତେହୁ ପ୍ରଥମ ମୁନୀସା । ସୁନତିଉଁ ସିକ ତୁମ୍ହାରି ଧରି ସୀସା ॥
ଅବ ମୈଁ ଜନ୍ମୁ ସଂଭୁ ହିତ ହାରା । କୋ ଗୁନ ଦୂଷନ କରୈ ବିଚାରା ॥୧॥

---

ଦୋଷ-ରହିତ ସମସ୍ତ ଶୁଭ ଗୁଣ ରାଶି । ଶ୍ରୀପତି ସୁନ୍ଦର ପୁର ବୈକୁଣ୍ଠ ନିବାସୀ ॥
ଏମନ୍ତ ବର ତୁମ୍ଭଙ୍କୁ ମିଳାଇ ଆଣି । ଶୁଣି ମୃଦୁ ମନ୍ଦ ହସି ଭାଷିଲେ ଶର୍ବାଣୀ ॥୨॥
ସତ୍ୟ କହିଲ ଏ ତନୁ ଶଇଳରୁ ଜାତ । ହଠ ନ ଛାଡିବ ବରଂ ଦେହ ହେବ ପାତ ॥
କନକ ମଧ୍ୟ ପାଷାଣୁ ଉତ୍ପନ୍ନ ହୁଅଇ । ଜାଳିଲେ ହେଁ ସ୍ୱାଭାବିକ ଗୁଣ ନ ତେଜଇ ॥୩॥
ତ୍ୟାଗି ନ ପାରେ ବଚନ ବିଧି ସୁତଙ୍କର । ଉଠୁ ବା ଉଜୁଡୁ ଘର ନାହିଁ ତହିଁ ଡର ॥
ଗୁରୁ ବଚନ ପ୍ରତୀତି ନ ହୁଏ ଯାହାଙ୍କୁ । ସ୍ୱପ୍ନେ ସୁଖ ସିଦ୍ଧି ନୁହେ ସୁଲଭ ତାହାଙ୍କୁ ॥୪॥
ଅବଗୁଣ-ଘର ହୁଅନ୍ତୁ ଶଙ୍କର ବିଷ୍ଣୁ ସର୍ବଗୁଣ ଧାମ ।
ଯା ସଙ୍ଗେ ଯାହାର ମିଳଇ ଅନ୍ତର ତା ସଙ୍ଗେ ତାହାର କାମ ॥୮୦॥
ପ୍ରଥମେ ମୁନୀଶ ତୁମ୍ଭେ ମିଳିଥାନ୍ତ ଯେବେ । ତୁମ୍ଭ ଶିକ୍ଷା ଶିରେ ଧେନି ଶୁଣିଥାନ୍ତି ତେବେ ॥
ଏବେ ଶିବ ଅର୍ଥେ ଜନ୍ମ କଲି ମୁଁ ଅର୍ପଣ । ବିଚାର କରୁଛି କିଏ ଗୁଣ ବା ଦୂଷଣ ॥୧॥

---

ଭିକ୍ଷା ମାଗି, ଭିକ୍ଷାନ୍ନ ସେ ଭୋଜନ କରନ୍ତି ଏବଂ ସୁଖରେ ଶୟନ କରନ୍ତି । ଏହିପରି ସହଜେ (ସ୍ୱଭାବତଃ) ଏକାକୀ ରହିବାକୁ ଯେ ପସନ୍ଦ କରନ୍ତି, ତାଙ୍କର ଘରେ ନାରୀ କ'ଣ ତିଷ୍ଠି ପାରିବ ? ॥ ୭୯ ॥ ଚୌପାଈ:—ଏବେ ବି ଆମ କଥା ମାନ । ଆମେ ତମ ପାଇଁ ଉତ୍ତମ ବର ସ୍ଥିର କରିଅଛୁ । ସେ ବଡ ସୁନ୍ଦର, ପବିତ୍ର, ସୁଖଦାୟକ ଓ ସୁଶୀଳ । ବେଦମାନେ ତାଙ୍କ ଯଶ ଓ ଲୀଳା ଗାନ କରନ୍ତି ॥ ୧ ॥ ସେ ଦୋଷ-ରହିତ, ସକଳ ସଦ୍‌ଗୁଣର ରାଶି, ଲକ୍ଷ୍ମୀ-ପତି ଓ ବୈକୁଣ୍ଠପୁରୀର ଅଧିବାସୀ । ଆମେ ଏପରି ଗୋଟିଏ ବର ଆଣି ତୁମଙ୍କୁ ଜୁଟାଇ ଦେବୁ ।" ଏହା ଶୁଣିବା ମାତ୍ରେ ପାର୍ବତୀ ହସି କହିଲେ- ॥୨॥ "ଆପଣ ଯାହା କହିଲେ ଯେ, ମୋର ଏ ଶରୀର ପର୍ବତରୁ ଜାତ, ତାହା ସତ୍ୟ । ପ୍ରାଣ ଛାଡ଼ିଯିବ ପଛକେ, ଜିଦ୍ ଛାଡ଼ିବ ନାହିଁ । ସୁନା ମଧ୍ୟ ପଥରରୁ ଜାତ ହୁଏ । ମାତ୍ର ପୋଡାଗଲେ ସୁଦ୍ଧା ତାହା ଆପଣା ସ୍ୱଭାବ (ସ୍ୱର୍ଣ୍ଣତ୍ୱ) ଛାଡେ ନାହିଁ ॥ ୩ ॥ ସୁତରାଂ ମୁଁ ନାରଦଙ୍କ ବଚନ ପରିହାର କରି ନ ପାରେ । ଘର ବସୁ ବା ଭାଙ୍ଗୁ, ସେଥିପ୍ରତି

ଜୌଁ ତୁମ୍ହରେ ହଠ ହୃଦୟଁ ବିସେଷୀ । ରହି ନ ଜାଇ ବିନୁ କିଏଁ ବରେଷୀ ॥
ତୌ କୌତୁକିଅନ୍ହ ଆଲସୁ ନାହୀଂ । ବର କନ୍ୟା ଅନେକ ଜଗ ମାହୀଁ ॥୨॥
ଜନ୍ମ କୋଟି ଲଗି ରଗର ହମାରୀ । ବରଉଁ ସଂଭୁ ନ ତ ରହଉଁ କୁଆରୀ ॥
ତଜଉଁ ନ ନାରଦ କର ଉପଦେସୂ । ଆପୁ କହହିଁ ସତ ବାର ମହେସୂ ॥୩॥
ମୈଁ ପା ପରଉଁ କହଇ ଜଗଦମ୍ବା । ତୁମ୍ହ ଗୃହ ଗଵନହୁ ଭୟଉ ବିଲଂବା ॥
ଦେଖି ପ୍ରେମୁ ବୋଲେ ମୁନି ଜ୍ଞାନୀ । ଜୟ ଜୟ ଜଗଦଂବିକେ ଭବାନୀ ॥୪॥

ତୁମ୍ହ ମାୟା ଭଗବାନ ସିବ ସକଲ ଜଗତ ପିତୁ ମାତୁ ।
ନାଇ ଚରନ ସିର ମୁନି ଚଲେ ପୁନି ପୁନି ହରଷତ ଗାତୁ ॥୮୧॥

---

ଯେବେ ତୁମ୍ଭ ହୃଦେ ଥାଏ ହଠ ଅତିଶୟ । ରହି ନ ପାରି ନ କରି ସମ୍ବନ୍ଧ ନିଶ୍ଚୟ ॥
ତେବେ ଅଳସ କୌତୁକୀ ଲୋକେ ନ କରନ୍ତି । ଅଗଣିତ ବରକନ୍ୟା ଜଗତେ ଅଛନ୍ତି ॥୨॥
କୋଟି ଜନ୍ମ ପର୍ଯ୍ୟନ୍ତେ ମୁଁ ସଙ୍ଘର୍ଷ କରିବି । ବରିବି ଶମ୍ଭୁ ଅଥବା କୁମାରୀ ରହିବି ॥
ତ୍ୟାଗ ନ କରିବି ନାରଦଙ୍କ ଉପଦେଶ । ନିଜେ ଶତବାର ମଧ କହନ୍ତୁ ମହେଶ ॥୩॥
ବୋଲନ୍ତି ପାର୍ବତୀ ମୁଁ ପୟରେ ପଡୁଛି । ତୁମ୍ଭେ ନିଜ ଗୃହେ ଯାଅ ବିଳମ୍ବ ହେଉଛି ॥
ବିଲୋକି ପ୍ରୀତି ଭଷିଲେ ମୁନିବର ଜ୍ଞାନୀ । ଜୟ ଜୟ ଜୟ ଜଗଜ୍ଜନନୀ ଭବାନୀ ॥୪॥

ତୁମ୍ଭେ ଅଟ ମାୟା ଭଗବାନ ଶିବ ଜଗତ ମାତା ପିଅର ।
ବାରମ୍ବାର ମୁନି ଚଳିଲେ ପ୍ରଣମି ଅତି ହରଷ ଅନ୍ତର ॥୮୧॥

---

ମୋର ଡର ନାହିଁ । ଗୁରୁଙ୍କ ବଚନରେ ଯାହାର ବିଶ୍ୱାସ ନାହିଁ, ସ୍ୱପ୍ନରେ ସୁଦ୍ଧା ତାହାକୁ ସୁଖ ବା ସିଦ୍ଧି ମିଳିବ ନାହିଁ ॥ ୪ ॥ ଦୋହା:—ମାନିଲି, ମହାଦେବ ସବୁ ଅବଗୁଣର ଭଣ୍ଡାର ଏବଂ ବିଷ୍ଣୁ ସକଳ ସଦ୍‌ଗୁଣର ଧାମ । ମାତ୍ର ମନ ଯାହାର ଯାହାଠି ରସିଯାଇଛି, ତାହାର ତାହାରି ପାଖରେ ହିଁ କାମ ॥ ୮୦ ॥ ଚୌପାଈ:—ହେ ମୁନୀଶ୍ୱରଗଣ ! ଯଦି ଆପଣମାନେ ପ୍ରଥମରୁ ମିଳିଥା'ନ୍ତେ, ମୁଁ ଆପଣମାନଙ୍କ ଉପଦେଶ ଶିରୋଧାର୍ଯ୍ୟ କରି ଶୁଣିଥା'ନ୍ତି । କିନ୍ତୁ ମୁଁ ଆପଣାର ଜୀବନ ଜନ୍ମକାଳୁ ଶିବଙ୍କ ପାଦତଳେ ସମର୍ପଣ କରି ଦେଇଅଛି । ଆଉ ଗୁଣ-ଦୋଷ ବିଚାର କରିବାକୁ ବେଳ ନାହିଁ ॥ ୧ ॥ ଯଦି ଆପଣଙ୍କ ହୃଦୟରେ ବେଶି ଜିଦ୍ ଥାଏ ଏବଂ ବିବାହ-ନିର୍ଣ୍ଣୟ ପ୍ରସଙ୍ଗ ଆଦି ଚର୍ଚ୍ଚା ନ କରି ଆପଣମାନେ ରହି ପାରୁ ନ ଥା'ନ୍ତି, ତେବେ ସଂସାରରେ ବହୁତ ବରକନ୍ୟା ତ ଅଛନ୍ତି । ଖେଳ ଖେଳିବା ଲୋକମାନଙ୍କୁ ଆଳସ୍ୟ ଜମା ସ୍ପର୍ଶ କରେ ନାହିଁ । (ଅନ୍ୟତ୍ର ଯାଇ ଏ ପ୍ରସଙ୍ଗ ପକାନ୍ତୁ ।) ॥ ୨ ॥ କୋଟି କୋଟି ଜନ୍ମ ପର୍ଯ୍ୟନ୍ତ ମୋର ଏହି ପ୍ରତିଜ୍ଞା ରହିବ—ଶିବଙ୍କୁ ବରଣ କରିବି ତ କରିବି, ନୋହିଲେ କେବଳ କୁମାରୀ ହୋଇ ରହିବି । ସ୍ୱୟଂ ଶିବ ଆସି ଶହେ ଥର କୁହନ୍ତୁ ପଛକେ, ନାରଦଙ୍କ ଉପଦେଶ ମୁଁ ପରିହାର (ଅମାନ୍ୟ) କରିବି ନାହିଁ ।" ॥ ୩ ॥ ଜଗଜ୍ଜନନୀ ପାର୍ବତୀ ପୁଣି କହିଲେ, "ମୁଁ ଆପଣମାନଙ୍କ ପାଦ ତଳେ ପଡୁଛି । ଆପଣମାନେ ସେଠା ଘରକୁ ଯାଆନ୍ତୁ । ବହୁତ ବିଳମ୍ବ ହୋଇଚାଲୁଛି ।"

ଜାଇ ମୁନିନ୍ହ ହ୍ମିମବନ୍ତୁ ପଠାଏ । କରି ବିନତୀ ଗିରିଜହିଂ ଗୃହ ଲ୍ୟାଏ ॥
ବହୁରି ସପ୍ତଋଷି ସିବ ପହିଁ ଜାଈ । କଥା ଉମା କୈ ସକଲ ସୁନାଈ ॥୧॥
ଭଏ ମଗନ ସିବ ସୁନତ ସନେହା । ହରଷି ସପ୍ତଋଷି ଗୱନେ ଗେହା ॥
ମନୁ ଥିରୁ କରି ତବ ସଂଭୁ ସୁଜନା । ଲଗେ କରନ ରଘୁନାୟକ ଧ୍ୟାନା ॥୨॥
ତାରକୁ ଅସୁର ଭୟଉ ତେହି କାଲା । ଭୁଜ ପ୍ରତାପ ବଲ ତେଜ ବିସାଲା ॥
ତେହିଁ ସବ ଲୋକ ଲୋକପତି ଜୀତେ । ଭଏ ଦେବ ସୁଖ ସଂପତି ରୀତେ ॥୩॥
ଅଜର ଅମର ସୋ ଜୀତି ନ ଜାଈ । ହାରେ ସୁର କରି ବିବିଧ ଲରାଈ ॥
ତବ ବିରଂଚି ସନ ଜାଇ ପୁକାରେ । ଦେଖେ ବିଧି ସବ ଦେବ ଦୁଖାରେ ॥୪॥

---

ତହୁଁ ମୁନିବୃନ୍ଦ ଗିରିରାଜକୁ ପଠାଇ । ବିନୟେ ଉମାଙ୍କୁ ଗୃହେ ଆଣିଲେ ଡକାଇ ॥
ପୁଣି ସପ୍ତଋଷି ଯାଇ ଶିବଙ୍କ ଆଗରେ । ଶୁଣାଇଲେ ଗିରିଜାଙ୍କ ବୃତ୍ତାନ୍ତ ସାଦରେ ॥୧॥
ଶୁଣି ଅତିସ୍ନେହେ ଶିବ ହୋଇଲେ ମଗନ । ଆନନ୍ଦ ମନେ ସପ୍ତର୍ଷି ଗମିଲେ ଭବନ ॥
ମନ ସ୍ଥିର କରି ତହୁଁ ପ୍ରବୀଣ ଶଙ୍କର । ଧ୍ୟାନ ଆରମ୍ଭିଲେ ପୁଣି ରଘୁପତିଙ୍କର ॥୨॥
ସେକାଳେ ତାରକାସୁର ହୋଇଲା ଜନମ । ଲଭିଣ ବିଶାଳ ବଳ ତେଜ ପରାକ୍ରମ ॥
ଜିଣିଲା ସେ ଲୋକ ଲୋକ-ପାଳକ ନିକର । ସୁଖ ସମ୍ପତ୍ତୁ ବଞ୍ଚିତ ହୋଇଲେ ଅମର ॥୩॥
ଅଜର ଅମର ଜିଣା ଯାଇ ସେ ନ ପାରେ । ହାରିଲେ ଦେବେ ଯୁଝିଣ ଅନେକ ପ୍ରକାରେ ॥
ତହୁଁ ଯାଇ ବିରଞ୍ଚିଙ୍କୁ କରନ୍ତେ ଗୁହାରି । ଦେଖିଲେ ବିଧି ବିବୁଧେ ଦୁଃଖାତୁର ଭାରି ॥୪॥

---

ଶିବଙ୍କଠାରେ ପାର୍ବତୀଙ୍କ ଏହି ଅଟଳ ପ୍ରେମ ଦେଖି ଜ୍ଞାନୀ ମୁନିଗଣ କହିଲେ, "ହେ ଜଗଜ୍ଜନନି ! ହେ ଭବାନି ! ଆପଣଙ୍କର ଜୟ ହେଉ ! ଜୟ ହେଉ ! ! ॥ ୪ ॥ ଦୋହା:—ଆପଣ ମାୟା ଏବଂ ଶିବ ଭଗବାନ୍ । ଆପଣ ଦୁହେଁ ସମସ୍ତ ଜଗତର ମାତା ପିତା । (ଏହା କହି) ମୁନିମାନେ ପାର୍ବତୀଙ୍କ ଚରଣରେ ମୁଣ୍ଡ ନୁଆଁଇ ଚାଲି-ଗଲେ । ସେମାନଙ୍କ ଶରୀର ବାରମ୍ବାର ପୁଲକିତ ହେଉଥାଏ ॥ ୮୯ ॥ ଚୌପାଈ — ମୁନିମାନେ ଯାଇ ହିମବାନଙ୍କୁ ପାର୍ବତୀଙ୍କ ପାଖକୁ ପଠାଇଲେ ଏବଂ ସେ ବିନତି କରି ଗିରିଜାଙ୍କୁ ଘରକୁ ନେଇ ଆସିଲେ । ତତ୍ପରେ ସପ୍ତର୍ଷି ଶିବଙ୍କ ପାଖକୁ ଯାଇ ତାଙ୍କୁ ପାର୍ବତୀଙ୍କ ବିଷୟରେ ସବୁ କଥା ଶୁଣାଇଲେ ॥ ୧ ॥ ପାର୍ବତୀଙ୍କ ପ୍ରେମ ବିଷୟ ଶୁଣିବା ମାତ୍ରେ ଶିବ ଆନନ୍ଦମଗ୍ନ ହୋଇଗଲେ । ସପ୍ତର୍ଷି ପ୍ରସନ୍ନ ହୋଇ ଆପଣା ପୁର (ବ୍ରହ୍ମଲୋକ)କୁ ଚାଲିଗଲେ । ତତ୍ପରେ ସୁଜ୍ଞ ଶିବ ମନକୁ ସ୍ଥିର କରି ଶ୍ରୀ ରଘୁନାଥଙ୍କୁ ଧ୍ୟାନ କରିବାକୁ ଲାଗିଲେ ॥ ୨ ॥ ସେହି ସମୟରେ ତାରକ ନାମକ ଅସୁରର ଆବିର୍ଭାବ ହେଲା । ତାହାର ବାହୁର ବଳ, ପ୍ରତାପ ଓ ତେଜ ଖୁବ୍ ବେଶି ଥିଲା । ସେ ସମସ୍ତ ଲୋକ ଓ ଲୋକପାଳଙ୍କୁ ଜୟ କରିନେଲା । ସମସ୍ତ ଦେବତା ସେମାନଙ୍କ ସୁଖ ଓ ସମ୍ପତ୍ତିରୁ ବଞ୍ଚିତ ହୋଇଗଲେ ॥ ୩ ॥ ସେ ଅଜର ଓ ଅମର ହୋଇ ଉଠିଥିଲା । ଏଣୁ ତାହାକୁ କେହି ଜୟ କରି ପାରୁ ନ ଥା'ନ୍ତି । ଦେବତାମାନେ ତାହା ସହିତ ବହୁତ

ସବ ସନ କହା ବୁଝାଇ ବିଧି ଦନୁଜ ନିଧନ ତବ ହୋଇ ।
ସଂଭୁ ସୁକ୍ର ସଂଭୂତ ସୁତ ଏହି ଜୀତଇ ରନ ସୋଇ ॥୮୨॥
ମୋର କହା ସୁନି କରହୁ ଉପାଈ । ହୋଇହି ଈଶ୍ୱର କରିହି ସହାଈ ॥
ସତୀଁ ଜୋ ତଜୀ ଦଚ୍ଛ ମଖ ଦେହା । ଜନମୀ ଜାଇ ହିମାଚଲ ଗେହା ॥୧॥
ତେହିଁ ତପୁ କୀହ୍ନ ସଂଭୁ ପତି ଲାଗୀ । ସିବ ସମାଧି ବୈଠେ ସବୁ ତ୍ୟାଗୀ ॥
ଜଦପି ଅହଇ ଅସମଂଜସ ଭାରୀ । ତଦପି ବାତ ଏକ ସୁନହୁ ହମାରୀ ॥୨॥
ପଠଓ୍ୱ କାମୁ ଜାଇ ସିବ ପାହୀଁ । କରୈ ଛୋଭୁ ସଂକରମନ ମାହୀଁ ॥
ତବ ହମ ଜାଇ ସିବହି ସିର ନାଈ । କରିବାଉବ ବିବାହୁ ବରିଆଈ ॥୩॥
ଏହି ବିଧି ଭଲେହିଂ ଦେବହିତ ହୋଈ । ମତ ଅତି ନୀକ କହଇ ସବୁ କୋଈ ॥
ଅସ୍ତୁତି ସୁରହ୍ନ କୀହ୍ନି ଅତି ହେତୂ । ପ୍ରଗଟେଉ ବିଷମ ବାନ ଝଷକେତୂ ॥୪॥

ସମସ୍ତଙ୍କୁ ବିଧି କହିଲେ ବୁଝାଇ ଦନୁଜ ତେବେ ମରିବ ।
ଶମ୍ଭୁ ଶୁକ୍ରେ ସୁତ ହୋଇଲେ ପ୍ରସୂତ ରଣେ ଏହାକୁ ଜିଣିବ ॥୮୨॥
ମୋ ବଚନ ଶୁଣି କର ଏଥିର ଉପାୟ । ହୋଇବ କାର୍ଯ୍ୟ ଈଶ୍ୱର କରିବେ ସହାୟ ॥
ସତୀ ଯେ ଦକ୍ଷଯଜ୍ଞରେ ତନୁ ତେଜିଥିଲେ । ଯାଇ ହିମାଳୟ ଗୃହେ ଜନମ ଲଭିଲେ ॥୧॥
ତପ ସେ କରିଅଛନ୍ତି ଶମ୍ଭୁ ପତି ଲଗି । ଶିବ ସମାଧିରେ ବସିଛନ୍ତି ସବୁ ତ୍ୟାଗି ॥
ଯଦ୍ୟପି ସଙ୍କଟସ୍ଥାନ ଅଟଇ ଏ କଥା । ତଥାପି ଶୁଣ ମୁଁ ଏକ କହୁଛି ବ୍ୟବସ୍ଥା ॥୨॥
ପଠାଅ କାମକୁ ସେହୁ ଶିବପାଶେ ଯାଉ । ଶଙ୍କରଙ୍କ ମନ ମଧ୍ୟେ କ୍ଷୋଭ ଉପୁଜାଉ ॥
ତେବେ ଆମ୍ଭେ ଯାଇ ତାଙ୍କୁ କରି ନମସ୍କାର । ବିବାହ କରାଇ ଦେବା କରି ବଳାତ୍କାର ॥୩॥
ଦେବହିତ ହୋଇପାରେ ସମ୍ଭବ ଏମନ୍ତେ । ଅତି ଭଲ ମତ ବୋଲି କହିଲେ ସମସ୍ତେ ॥
କରନ୍ତେ ସପ୍ରେମେ ତହୁଁ ସ୍ତୁତି ବୃନ୍ଦାରକ । ପ୍ରକଟ ହୋଇଲା କାମ ବିଷମ ଶାୟକ ॥୪॥

ପ୍ରକାରେ ଲଟାଇ କରି ହାରିଗଲେ । ତା'ପରେ ବ୍ରହ୍ମାଙ୍କ ପାଖରେ ଯାଇ ସେମାନେ ଗୁହାରି ଆରମ୍ଭ କରିଦେଲେ । ବ୍ରହ୍ମା ସମସ୍ତ ଦେବତାଙ୍କୁ ଦୁଃଖିତ ଥିବାର ଦେଖିଲେ ॥ ୪ ॥ ଦୋହା—ବ୍ରହ୍ମା ସମସ୍ତଙ୍କୁ ବୁଝାଇ କହିଲେ, "ଶିବଙ୍କ ବୀର୍ଯ୍ୟରୁ ଉତ୍ପନ୍ନ ପୁତ୍ର ଏହାକୁ ଯୁଦ୍ଧରେ ଜିଣିବ ଏବଂ ସେତିକିବେଳେ ଯାଇ ଏହି ଦୈତ୍ୟର ମୃତ୍ୟୁ ହେବ ॥ ୮୨ ॥ ଚୌପାଈ—ମୋ କଥା ମାନି ଉପାୟ କର । ଈଶ୍ୱର ସାହାଯ୍ୟ କରିବେ ଏବଂ କାମ ହୋଇଯିବ । ସତୀ ଦକ୍ଷ-ଯଜ୍ଞରେ ଦେହ ତ୍ୟାଗ କରିଥିଲେ । ସେ ଏବେ ଯାଇ ହିମାଚଳଙ୍କ ଗୃହରେ ଜନ୍ମ ଲାଭ କରିଅଛନ୍ତି ॥ ୧ ॥ ସେ ଶିବଙ୍କୁ ପତି ରୂପେ ବରଣ କରିବାକୁ ସ୍ଥିର କରିଅଛନ୍ତି । ଏଣେ ଶିବ ସବୁ ଛାଡ଼ିଛାଡ଼ି ସମାଧି ଲଗାଇ ବସି ଅଛନ୍ତି । ଏ ବଡ଼ ଅସମଞ୍ଜସ ସମସ୍ୟା । ଏହାର ସମାଧାନ ବଡ଼ କଠିନ । ତଥାପି ମୋର ଗୋଟିଏ କଥା ମନ ଦେଇ ଶୁଣ ॥ ୨ ॥ ତୁମେମାନେ ଯାଇ କାମଦେବଙ୍କୁ ଶିବଙ୍କ ନିକଟକୁ ପଠାଅ । ସେ ଶଙ୍କରଙ୍କ ମନରେ ବିକାର

ସୁରନ୍ହ କହୀ ନିଜ ବିପତି ସବ ସୁନି ମନ କୀନ୍ହ ବିଚାର ।
ସଂଭୁ ବିରୋଧ ନ କୁସଲ ମୋହି ବିହସି କହେଉ ଅସ ମାର ॥୮୩॥
ତଦପି କରବ ମୈଁ କାଜୁ ତୁମ୍ହାରା । ଶ୍ରୁତି କହ ପରମ ଧରମ ଉପକାରା ॥
ପର ହିତ ଲାଗି ତଜଇ ଜୋ ଦେହୀ । ସଂତତ ସଂତ ପ୍ରସଂସହିଂ ତେହୀ ॥୧॥
ଅସ କହି ଚଲେଉ ସବହି ସିରୁ ନାଈ । ସୁମନ ଧନୁଷ କର ସହିତ ସହାଈ ॥
ଚଲତ ମାର ଅସ ହୃଦୟଁ ବିଚାରା । ସିବ ବିରୋଧ ଧ୍ରୁବ ମରନୁ ହମାରା ॥୨॥
ତବ ଆପନ ପ୍ରଭାଉ ବିସ୍ତାରା । ନିଜ ବସ କୀନ୍ହ ସକଲ ସଂସାରା ॥
କୋପେଉ ଜବହିଂ ବାରିଚରକେତୂ । ଛନ ମହୁଁ ମିଟେ ସକଲ ଶ୍ରୁତିସେତୂ ॥୩॥

---

ଜଣାଇଲେ ସୁରେ ଆପଣା ବିପତ୍ତି ଶୁଣି ମନେ ବିଚାରଇ ।
ଶିବଙ୍କ ବିରୋଧେ ନାହିଁ ମୋ କଲ୍ୟାଣ ହସି ମଦନ ଭାଷଇ ॥୮୩॥
ତଥାପି ମୁଁ ତୁଟାଇବି ତୁମ୍ଭ କାର୍ଯ୍ୟ ଭାର । ଶ୍ରୁତି କହଇ ପରମ ଧର୍ମ ଉପକାର ॥
ପରହିତ ନିମନ୍ତେ ଯେ ଶରୀର ତେଜନ୍ତି । ସଦା ସଜ୍ଜନ ତାହାଙ୍କୁ ପ୍ରଶଂସା କରନ୍ତି ॥୧॥
ଏହା କହି ସମସ୍ତଙ୍କୁ ନମସ୍କାର କରି । ଚଳିଲା ସଙ୍ଗୀଙ୍କୁ ନେଇ ପୁଷ୍ପଧନୁ ଧରି ॥
ଚଳନ୍ତେ ମାର ଏମନ୍ତ ବିଚାରେ ହୃଦୟେ । ଶିବଙ୍କ ବିରୋଧେ ମୋର ମରଣ ନିଶ୍ଚୟେ ॥୨॥
ତହୁଁ ଆପଣା ପ୍ରଭାବ କରିଣ ବିସ୍ତାର । ନିଜ ବଶୀଭୂତ କଲା ସମସ୍ତ ସଂସାର ॥
କୋପିଲା ସେ ଯେତେବେଳେ ବାରିଚର କେତୁ । କ୍ଷଣମଧ୍ୟେ ନଷ୍ଟହେଲା ଦୃଢ ଶ୍ରୁତି-ସେତୁ ॥୩॥

---

ଜାତ କରନ୍ତୁ ଏବଂ ତାଙ୍କର ସମାଧି ଭଙ୍ଗ କରନ୍ତୁ । ସେତେବେଳେ ଆମ୍ଭେମାନେ ଯାଇ ଶିବଙ୍କ ଚରଣରେ ମୁଣ୍ଡ ନୁଆଁଇ ତାଙ୍କୁ ପ୍ରାର୍ଥନା କରିବା ଏବଂ ଜବରଦସ୍ତି ପାର୍ବତୀଙ୍କ ସଙ୍ଗେ ତାଙ୍କ ବିବାହ କରାଇ ଦେବା ॥ ୪ ॥ ଏହି ପ୍ରକାରେ ଭଲ ଦେବତାମାନଙ୍କର ଉପକାର ହେବ । ସମସ୍ତେ କହିଲେ, "ଏହି ମତ (ଉପାୟ) ଅତି ଉତ୍ତମ ।" ତତ୍ପରେ ଦେବତାମାନେ ବଡ ପ୍ରେମରେ କନ୍ଦର୍ପଙ୍କୁ ସ୍ତୁତି କଲେ ଏବଂ ବିଷମବାଣ (ପଞ୍ଚବାଣ) ଓ ମୀନକେତନଙ୍କର ଆବିର୍ଭାବ ହେଲା ॥ ୪ ॥ ଦୋହା:— ଦେବତାମାନେ କାମଦେବଙ୍କୁ ଆପଣାର ସମସ୍ତ ବିପତ୍ତି କଥା କହିଲେ । ସବୁ କଥା ଶୁଣି କନ୍ଦର୍ପ ମନରେ କିଛି ବିଚାର କଲେ ଏବଂ ହସି ଦେବତାମାନଙ୍କୁ କହିଲେ, "ହେ ଦେବଗଣ ! ଶିବଙ୍କ ସହ ବିରୋଧ କଲେ ମୋର ମଙ୍ଗଳ ନାହିଁ ॥ ୮୩ ॥ ଚୌପାଇ:— ତଥାପି ମୁଁ ତୁମ୍ଭମାନଙ୍କର କାମ କରିବି । କାରଣ, ଅନ୍ୟର ଉପକାର କରିବା ପରମ ଧର୍ମ ବୋଲି ବେଦମାନେ କହନ୍ତି । ଅନ୍ୟର ହିତ ନିମନ୍ତେ ଯେଉଁମାନେ ଆପଣା ଶରୀର ତ୍ୟାଗ କରିଦିଅନ୍ତି, ସନ୍ଥ ସାଧୁମାନେ ସଦା ସେମାନଙ୍କୁ ପ୍ରଶଂସା କରନ୍ତି ॥ ୧ ॥ ଏହିପରି କହି ସମସ୍ତଙ୍କୁ କନ୍ଦର୍ପ ମୁଣ୍ଡ ନୁଆଁଇ ପ୍ରଣାମ କଲେ ଏବଂ ପୁଷ୍ପଧନୁକୁ ହାତରେ ଧରି ବସନ୍ତାଦି ଅନ୍ୟାନ୍ୟ ସାଙ୍ଗସାଥୀଙ୍କ ସହ ଚାଲିଲେ । ଯିବା ସମୟରେ କାମଦେବ ମନରେ ବିଚାର କରୁଥାନ୍ତି—"ଶିବଙ୍କ ସହ ଶତ୍ରୁତା ଆଚରଣ କଲେ ମୋର ମରଣ

ବ୍ରହ୍ମଚର୍ଜ ବ୍ରତ ସଂଜମ ନାନା । ଧୀରଜ ଧରମ ଗ୍ୟାନ ବିଗ୍ୟାନା ॥
ସଦାଚାର ଜପ ଜୋଗ ବିରାଗା । ସଭୟ ବିବେକ କଟକୁ ସବୁ ଭାଗା ॥୩॥

ଭାଗେଉ ବିବେକୁ ସହାୟ ସହିତ ସୋ ସୁଭଟ ସଂଜୁଗ ମହି ମୁରେ ।
ସଦଗ୍ରଂଥ ପର୍ବତ କଂଦରହ୍ନି ମହୁଁ ଜାଇ ତେହି ଅବସର ଦୁରେ ॥
ହୋନିହାର କା କରତାର କୋ ରଖୱାର ଜଗ ଖରଭରୁ ପରା ।
ଦୁଇ ମାଥ କେହି ରତିନାଥ ଜେହି କହୁଁ କୋପି କର ଧନୁ ସରୁ ଧରା ॥

ଜେ ସଜୀବ ଜଗ ଅଚର ଚର ନାରି ପୁରୁଷ ଅସ ନାମ ।
ତେ ନିଜ ନିଜ ମରଜାଦ ତଜି ଭଏ ସକଲ ବସ କାମ ॥୮୪॥

---

ବ୍ରହ୍ମଚର୍ଯ୍ୟ ବ୍ରତ ନାନା ସଂଯମ ଆବର । ଧୈର୍ଯ୍ୟ ଧର୍ମ ଦମ ଜ୍ଞାନ ବିଜ୍ଞାନ ନିକର ॥
ସଦାଚାର ଜପ ଯୋଗ ବୈରାଗ୍ୟ ସମସ୍ତେ । ପଳାଇଲେ ବିବେକର ସେନା ଭୟ ତ୍ରସ୍ତେ ॥୪॥

ପଳାଇଲା ବିବେକ ସହିତ ସହାୟକ ସଂଗ୍ରାମ ହାରିଣ ସଭୟେ ।
ସଦ୍‌ଗ୍ରନ୍ଥାଦି ପର୍ବତ-କନ୍ଦର ମଧ୍ୟେ ଗୁପ୍ତ ହୋଇଲେ ଯାଇ ସେ ସମୟେ ॥
ପଡ଼ିଲା ହୁରି କି ହେବ ରେ, ବିଧି କେ ରକ୍ଷିବ ଭବରେ ।
କାହାର ଶିର ଦୁଇ କୋପି କାମ ଯା' ପାଇଁ ଧରିଛି ଧନୁଶର କରେ ॥

ସ୍ଥାବର ଜଙ୍ଗମ ନରନାରୀ ନାମେ ଜଗତେ ଯେ ଜୀବ ଥିଲେ ।
ସର୍ବେ ନିଜ ନିଜ ମର୍ଯ୍ୟାଦା ତେଜିଣ କାମବିବଶ ହୋଇଲେ ॥୮୪॥

---

ଧ୍ରୁବ ।'' ॥ ୨ ॥ ତଥାପି ସେ ଯାଇ ଶିବଙ୍କ ନିକଟରେ ଆପଣା ପ୍ରଭାବ ବିସ୍ତାର କଲେ ଏବଂ ସମସ୍ତ ସଂସାରକୁ ଆପଣାର ବଶୀଭୂତ କରିନେଲେ । ଯେତେବେଳେ ମୀନକେତନ କାମଦେବ କୋପ କଲେ, ସେତେବେଳେ କ୍ଷଣକ ମଧ୍ୟରେ ବେଦ-ମାନଙ୍କର ମର୍ଯ୍ୟାଦା-ସେତୁ ଭାଙ୍ଗିଗଲା ॥ ୩ ॥ ବ୍ରହ୍ମଚର୍ଯ୍ୟ, ନାନା ପ୍ରକାର ସଂଯମ, ଧୈର୍ଯ୍ୟ, ଧର୍ମ, ଜ୍ଞାନ-ବିଜ୍ଞାନ, ସଦାଚାର, ଜପ, ଯୋଗ, ବୈରାଗ୍ୟ ଆଦି ବିବେକର ସମସ୍ତ ସୈନ୍ୟ ଡରି ପଳାଇ ଗଲେ ॥ ୪ ॥ ଛନ୍ଦ :—ବିବେକ ଆପଣାର ସହଚରମାନଙ୍କ ସହିତ ପଳାଇଗଲା । ତାହାର ଯୋଦ୍ଧାମାନେ ରଣ-ଭୂମିରୁ ପଛଘୁଞ୍ଚା ଦେଲେ । ସେତେବେଳେ ସେମାନେ ସଦ୍‌ଗ୍ରନ୍ଥ ରୂପୀ ପର୍ବତ-ଗୁହାମାନଙ୍କରେ ଯାଇ ଲୁଚିଲେ । (ଅର୍ଥାତ୍ ଜ୍ଞାନ, ବୈରାଗ୍ୟ, ସଂଯମ, ନିୟମ, ସଦାଚାରାଦି ଗୁଣାବଳୀ ଗ୍ରନ୍ଥାବଳୀରେ ହିଁ ଲିପିବଦ୍ଧ ହୋଇ ରହିଲେ । ବାସ୍ତବ କ୍ଷେତ୍ରରେ ସେମାନଙ୍କର ଆଚରଣ ନିଷ୍କ୍ରିୟ ହୋଇପଡ଼ିଲା ।) ସମସ୍ତ ଜଗତରେ ବିଶୃଙ୍ଖଳା ଖେଳିଗଲା । ସମସ୍ତେ କହିବାକୁ ଲାଗିଲେ, ''ହେ ବିଧାତା ! ଏବେ କ'ଣ ହେବ ? ଆମମାନଙ୍କୁ ରକ୍ଷା କରିବ କିଏ ? ଏପରି ଦୋମୁଣ୍ଡିଆ ମଣିଷ କିଏ—ଯାହା ପାଇଁ ରତିପତି କାମଦେବ କୋପ କରି ହାତରେ ଧନୁର୍ବାଣ ଉଠାଇ ଧରିଛନ୍ତି ?'' ଦୋହା:—ଜଗତରେ ସ୍ତ୍ରୀ-

ସବ କେ ହୃଦୟଁ ମଦନ ଅଭିଲାଷା । ଲତା ନିହାରି ନୱହିଁ ତରୁ ସାଖା ॥
ନଦୀଁ ଉମଗି ଅଂବୁଧି କହୁଁ ଧାଈଁ । ସଂଗମ କରହିଁ ତଲାବ ତଲାଈଁ ॥୧॥
ଜହଁ ଅସି ଦସା ଜଡ଼ହ୍ନ କୈ ବରନୀ । କୋ କହି ସକଇ ସଚେତନ କରନୀ ॥
ପସୁ ପଚ୍ଛୀ ନଭ ଜଲ ଥଲ ଚାରୀ । ଭଏ କାମ ବସ ସମୟ ବିସାରୀ ॥୨॥
ମଦନ ଅନ୍ଧ ବ୍ୟାକୁଲ ସବ ଲୋକା । ନିସି ଦିନୁ ନହିଂ ଅବଲୋକହିଁ କୋକା ॥
ଦେବ ଦନୁଜ ନର କିଂନର ବ୍ୟାଲା । ପ୍ରେତ ପିସାଚ ଭୂତ ବେତାଲା ॥୩॥
ଇନ୍ହ କୈ ଦସା ନ କହେଉଁ ବଖାନୀ । ସଦା କାମ କେ ଚେରେ ଜାନୀ ॥
ସିଦ୍ଧ ବିରକ୍ତ ମହାମୁନି ଜୋଗୀ । ତେପି କାମବସ ଭଏ ବିୟୋଗୀ ॥୪॥

ଭଏ କାମବସ ଜୋଗୀସ ତାପସ ପାୱଁରନ୍ହି କୀ କୋ କହୈ ।
ଦେଖହିଁ ଚରାଚର ନାରିମୟ ଜେ ବ୍ରହ୍ମମୟ ଦେଖତ ରହେ ॥
ଅବଲା ବିଲୋକହିଁ ପୁରୁଷମୟ ଜଗୁ ପୁରୁଷ ସବ ଅବଲାମୟଂ ।
ଦୁଇ ଦଣ୍ଡ ଭରି ବ୍ରହ୍ମାଣ୍ଡ ଭୀତର କାମକୃତ କୌତୁକ ଅୟଂ ॥

---

ସମସ୍ତଙ୍କ ହୃଦୟରେ ମାତିଲା ମଦନ । ଲତା ନିରେଖି ନମିଲେ ତରୁ ଶାଖା ଗଣ ॥
ନଦୀ ଆନନ୍ଦେ ଧାଇଁଲେ ଅମ୍ବୁନିଧି କତି । ବାପୀ ପୁଷ୍କରିଣୀ ମିଳି ସଙ୍ଗମ କରନ୍ତି ॥୧॥
ଯହିଁ ଜଡଙ୍କ ଅବସ୍ଥା କଥିତ ଏସନ । ଚୈତନ୍ୟଙ୍କ କର୍ମ କରି ପାରେ କେ ବର୍ଣ୍ଣନ ॥
ଯେଉଁ ପଶୁପକ୍ଷୀ ଜଳସ୍ଥଳ ନଭଚର । କାମବଶ ହୋଇଲେ ସେ ବେଳ ନ ବିଚାରି ॥୨॥
ମଦନାନ୍ଧଲୋକସର୍ବେବ୍ୟାକୁଳହୋଇଲେ । ଚକୁଆ ଚକୋଇ ନିଶି ଦିନ ନ ଦେଖିଲେ ॥
ଦେବ ଦାନବ ମାନବ ଗନ୍ଧର୍ବ ବେତାଳ । ଯକ୍ଷ ଗନ୍ଧର୍ବ କିନ୍ନର ଭୂତ ପ୍ରେତ ବ୍ୟାଳ ॥୩॥
ଏମାନଙ୍କ ଦଶା କିଛି ନ କହେ ବଖାଣି । ସଦା ଏ କାମଦେବର ଅନୁଚର ଜାଣି ॥
ସିଦ୍ଧ ତାପସ ବିରକ୍ତ ମହାମୁନି ଯୋଗୀ । ସେ ମଧ୍ୟ କାମବିବଶ ହୋଇଲେ ବିୟୋଗୀ ॥୪॥

ହୋଇଲେ କାମ ବଶ ଯୋଗୀ ମୁନି ତାପସ ପାମର ଗୁରଙ୍କ କି ଶକ୍ତି ।
ବ୍ରହ୍ମମୟ ଜଗତ ଯେ ଦେଖୁଥିଲେ ନିତ୍ୟ ଅବଳାମୟ ସେ ଦେଖନ୍ତି ॥
ନାରୀ ବିଶ୍ୱକୁ ନରମୟେ, ନର ନିରେଖେ ନାରୀମୟେ ।
ବେନି ଦଣ୍ଡ ପର୍ଯ୍ୟନ୍ତ କୌତୁକ ମାୟାକୃତ ବ୍ୟାପିଲା ବ୍ରହ୍ମାଣ୍ଡ ନିଚୟେ ॥

---

ପୁରୁଷ ସଙ୍ଗାଧାରୀ ଯେତେ ଚରାଚର ପ୍ରାଣୀ ଥିଲେ, ସେମାନେ ସମସ୍ତେ ଆପଣା ଆପଣା ମର୍ଯ୍ୟାଦା ତ୍ୟାଗ କରି କାମର ବଶୀଭୂତ ହୋଇପଡିଲେ ॥ ୮୪ ॥ ଚୌପାଈ:—ସମସ୍ତଙ୍କ ହୃଦୟରେ କାମବାସନା ଜାଗ୍ରତ ହେଲା । ଲତାମାନଙ୍କୁ ଦେଖି ବୃକ୍ଷଡାଳମାନେ ନଇଁବାକୁ ଲାଗିଲେ । ନଦୀମାନେ ବଢି ସମୁଦ୍ର ଆଡକୁ ଦୌଡିଲେ । ସରସୀତଡାଗ ସବୁ ପରସ୍ପର ସହ ସଙ୍ଗମ କରିବାକୁ ଲାଗିଲେ ॥୧॥ ଯେତେବେଳେ ଜଡ ପଦାର୍ଥ (ବୃକ୍ଷ, ନଦୀ ଆଦି)-ମାନଙ୍କର ଏ ଦଶା ବର୍ଣ୍ଣନା କରାଗଲା, ତେବେ ଚେତନ ଜୀବମାନଙ୍କର କୃତିତ୍ୱ କିଏ

ଧରୀ ନ କାହୁଁ ଧୀର ସବ କେ ମନ ମନସିଜ ହରେ ।
ଜେ ରାଖେ ରଘୁବୀର ତେ ଉବରେ ତେହିକାଲ ମହୁଁ ॥୮୫॥
ଉଭୟ ଘରୀ ଅସ କୌତୁକ ଭୟଉ । ଜୌ ଲଗି କାମୁ ସମ୍ଭୁ ପହିଁ ଗୟଉ ॥
ସିବହି ବିଲୋକି ସସଙ୍କେଉ ମାରୂ । ଭୟଉ ଜଥାଥିତି ସବୁ ସଂସାରୂ ॥୧॥
ଭଏ ତୁରତ ସବ ଜୀବ ସୁଖାରେ । ଜିମି ମଦ ଉତରି ଗଏଁ ମତବାରେ ॥
ରୁଦ୍ରହି ଦେଖି ମଦନ ଭୟ ମାନା । ଦୁରାଧରଷ ଦୁର୍ଗମ ଭଗବାନା ॥୨॥

ହରିଲା ମଦନ ସମସ୍ତଙ୍କ ମନ ଧୈର୍ଯ୍ୟ କେହି ନ ଧରିଲେ ।
ଯାହାଙ୍କୁ ରାଘବ ରଖିଲେ ସେ ଜନ ସେ କାଳେ ରକ୍ଷା ପାଇଲେ ॥୮୫॥
ଦୁଇ ଘଡି ପର୍ଯ୍ୟନ୍ତ ଏ କୌତୁକ ଚାଲିଲା । ଯେ ପର୍ଯ୍ୟନ୍ତ ଶମ୍ଭୁ ପାଶେ କାମ ପ୍ରବେଶିଲା ॥
ଶିବଙ୍କୁ ବିଲୋକି ହେଲା ସଶଙ୍କିତ ମାର । ଯଥା ତଥା ମତେ ସ୍ଥିତ ହୋଇଲା ସଂସାର ॥୧॥
ଚରାଚର ଜୀବେ ସୁଖୀ ହୋଇଲେ ତତ୍କାଳ । ନିଶା ଛାଡ଼ିଯିବା ପରେ ଯେସନ୍ତେ ମତୁଆଳ ॥
ରୁଦ୍ରଙ୍କୁ ଦେଖିଣ ଭୟ କଲା ଶମ୍ବରାରି । ଦୁରାଧର୍ଷ ଭଗବାନ ଦୁର୍ଗମ ବିଚାରି ॥୨॥

କିଏ ପାରିବ ? ଆକାଶ, ଜଳ ଓ ପୃଥିବୀ ଉପରେ ବିଚରଣ କରୁଥିବା ସମସ୍ତ ପଶୁପକ୍ଷୀ ଆପଣା ଆପଣାର ଉଚିତ ମିଳନ ସମୟ ଭୁଲି, କାମର ବଶ ହୋଇ ପଡ଼ିଲେ ॥୨॥ ସମସ୍ତ ଲୋକେ କାମାନ୍ଧ ହୋଇ ବ୍ୟାକୁଳ ହୋଇ ପଡ଼ିଲେ । ଚକ୍ରବାକ ଓ ଚକ୍ରବାକୀ ରାତି ଦିନର ବିଚାର କରୁ ନ ଥା'ନ୍ତି । ଦେବ, ଦୈତ୍ୟ, ମନୁଷ୍ୟ, କିନ୍ନର, ସର୍ପ, ପ୍ରେତ, ପିଶାଚ, ଭୂତ, ବେତାଳ ଆଦି ସମସ୍ତେ ତ ସଦା କାମର ଦାସ । ଏହା ବିଚାର କରି ମୁଁ ଏମାନଙ୍କ ଦଶା ବର୍ଣ୍ଣନା କଲି ନାହିଁ । ସିଦ୍ଧ, ବୈରାଗୀ, ମହାମୁନି ଓ ମହାଯୋଗୀ ମଧ୍ୟ କାମବଶ ହୋଇ ଯୋଗସାଧନାରୁ ବିରତ ହୋଇ ପଡ଼ିଲେ ॥୩-୪॥ ଛନ୍ଦ :—ଯେତେବେଳେ ଯୋଗୀଶ୍ୱର ଓ ତପସ୍ୱୀ ସୁଦ୍ଧା କାମର ଅଧୀନ ହୋଇ ପଡ଼ିଲେ, ପାମର ମନୁଷ୍ୟଙ୍କ କଥା କ'ଣ କହିବା ? ସମଗ୍ର ଚରାଚର ଜଗତକୁ ଯେଉଁମାନେ ବ୍ରହ୍ମମୟ ଦେଖୁଥିଲେ, ସେମାନେ ତାହାକୁ ଏବେ ସ୍ତ୍ରୀମୟ ଦେଖିବାକୁ ଲାଗିଲେ । ସାରା ସଂସାର ସ୍ତ୍ରୀମାନଙ୍କୁ ପୁରୁଷମୟ ଓ ପୁରୁଷମାନଙ୍କୁ ସ୍ତ୍ରୀମୟ ଦେଖାଗଲା । ଦୁଇ ଘଡ଼ି ପର୍ଯ୍ୟନ୍ତ ସମଗ୍ର ବ୍ରହ୍ମାଣ୍ଡ ଭିତରେ କାମଦେବଙ୍କ ରଚିତ ଏହି କ୍ରୀଡ଼ା-କୌତୁକ ଚାଲିଲା ॥ ସୋରଠା :—କେହି ହେଲେ ସୁଦ୍ଧା ହୃଦୟରେ ଧୈର୍ଯ୍ୟ ଧାରଣ କରି ପାରିଲେ ନାହିଁ । କାମଦେବ ସମସ୍ତଙ୍କ ମନ ହରଣ କରିନେଲେ । ଶ୍ରୀ ରଘୁନାଥ ଯେଉଁମାନଙ୍କୁ ରକ୍ଷା କଲେ, କେବଳ ସେହିମାନେ ହିଁ ସେ ସମୟରେ ରକ୍ଷା ପାଇ-ଥିଲେ ॥୮୫॥ ଚୌପାଈ :—ଦୁଇ ଘଡ଼ି ଯାଏ ଏହିପରି ନାଟ ଲାଗିଲା । ଇତି ମଧ୍ୟରେ କାମଦେବ ଯାଇ ଶିବଙ୍କ ପାଖରେ ପହଞ୍ଚିଗଲେ । ଶିବଙ୍କୁ ଦେଖି କାମଦେବ ଡରିଗଲେ । ସେତେବେଳେ ସାରା ସଂସାର ସ୍ଥିର ହୋଇଗଲା ॥୧॥ ମତୁଆଲା ମଦ୍ୟପଠାରୁ ମଦନିଶା ଛାଡ଼ିଗଲେ ସେ ଯେମିତି ସୁଖ ଅନୁଭବ କରେ, ସଙ୍ଗେ ସଙ୍ଗେ ସମସ୍ତ

ଫିରତ ଲାଜ କଛୁ କରି ନହିଂ ଜାଈ । ମରନୁ ଠାନି ମନ ରଚେସି ଉପାଈ ॥
ପ୍ରଗଟେସି ତୁରତ ରୁଚିର ଋତୁରାଜା । କୁସୁମିତ ନବ ତରୁରାଜି ବିରାଜା ॥୩॥
ବନ ଉପବନ ବାପିକା ତଡ଼ାଗା । ପରମ ସୁଭଗ ସବ ଦିସା ବିଭାଗା ॥
ଜହଁ ତହଁ ଜନୁ ଉମଗତ ଅନୁରାଗା । ଦେଖି ମୁଏହୁଁ ମନ ମନସିଜ ଜାଗା ॥୪॥

ଜାଗଇ ମନୋଭବ ମୁଏହୁଁ ମନ ବନ ସୁଭଗତା ନ ପରୈ କହୀ ।
ସୀତଲ ସୁଗଂଧ ସୁମଂଦ ମାରୁତ ମଦନ ଅନଲ ସଖା ସହୀ ॥
ବିକସେ ସରନ୍ହି ବହୁ କଂଜ ଗୁଂଜତ ପୁଂଜ ମଂଜୁଲ ମଧୁକରା ।
କଲହଂସ ପିକ ସୁକ ସରସ ରବ କରି ଗାନ ନାଚହିଁ ଅପଛରା ॥

---

ଫେରନ୍ତେ ଯେ ଲଜ୍ଜା ଲାଗେ ନହୁଏ ବଖାଣି । ରଚିଲା ଉପାୟ ତହୁଁ ମୃତ୍ୟୁ ମନେ ଠାଣି ॥
ପ୍ରକଟ କଲା ସତ୍ୱର ରମ୍ୟ ଋତୁରାଜେ । କୁସୁମିତ ନବ ତରୁ ନିକର ବିରାଜେ ॥୩॥
ବନ ଉପବନ ବାପୀ ତଡ଼ାଗ ଆଦର । ନିର୍ମଳ ଦିଶିଲେ ସର୍ବ ଦିଗ ଦିଗନ୍ତର ॥
ଚଉଦିଗ୍ର ଅନୁରାଗ ଯେସନ୍ତେ ଉଛୁଳଇ । ଦେଖି ମଡ଼ା ମନେ ସୁଦ୍ଧା ମାର ସଞ୍ଚରଇ ॥୪॥

ସଞ୍ଚରଇ ମଦନ ମଡ଼ାଙ୍କ ମନେ, ବନ-ସୌମ୍ୟତା କହି ନ ହୁଅଇ ।
ସୁଶୀତଳ ସୁଗନ୍ଧ ମରୁତ ମନ୍ଦ ମନ୍ଦ କାମାଗ୍ନି ସଖା ପ୍ରସରଇ ।
ସରଣୀ ସରୋଜେ ଶୋଭନ୍ତି, ଅଳି ଲଳିତ ଗୁଞ୍ଜରନ୍ତି ।
'ଶୁକ' ପିକ ସାରସ ରାବନ୍ତି କଳହଂସ ଅପ୍ସରା 'ଗାଇଣ ନାଚନ୍ତି ॥

---

ପ୍ରାଣୀ ସେହିପରି ସୁଖ ଅନୁଭବ କଲେ । ଦୁର୍ଦ୍ଧର୍ଷ ଓ ଦୁର୍ଗମ ଭଗବାନ୍ (ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟ, ଧର୍ମ, ଯଶ, ଶ୍ରୀ, ଜ୍ଞାନ ଓ ବୈରାଗ୍ୟ ଆଦି ଛଅ ଐଶୀ ଗୁଣଯୁକ୍ତ) ରୁଦ୍ର (ମହାଭୟଙ୍କର) ଶିବ ଶଙ୍କରଙ୍କୁ ଦେଖି କାମଦେବ ଭୟଭୀତ ହୋଇପଡ଼ିଲେ ॥୨॥ ଫେରିଯିବାକୁ ଲାଜ ମାଡୁଛି ଏବଂ ଆଗରେ କିଛି କରି ହେଉନାହିଁ । ପରିଶେଷରେ ମରିବାକୁ ନିଶ୍ଚୟ କରି ସେ ଗୋଟିଏ ଉପାୟ ରଚିଲେ । ସଙ୍ଗେ ସଙ୍ଗେ ସୁନ୍ଦର ଋତୁରାଜ ବସନ୍ତଙ୍କୁ ପ୍ରକାଶ କଲେ । କୁସୁମିତ ନବ ନବ ବୃକ୍ଷ ଓ ଲତାରାଜିରେ ବନଭୂମି ସୁଶୋଭିତ ହୋଇଗଲା ॥୩॥ ବନ-ଉପବନ, ବାପୀ ଓ ତଡ଼ାଗ ଏବଂ ସମସ୍ତ ଦିଗର ବିଭାଗମାନେ ପରମ ଶୋଭାରେ ସୁଶୋଭିତ ହେଲେ । ଯୁଆଡ଼େ ଦେଖିବ, ସିଆଡ଼େ ସତେ ଯେପରି ପ୍ରେମର ବନ୍ୟା ଛୁଟି ଆସୁଥାଏ । ତାହା ଦେଖି ମୃତ ମନରେ ମଧ୍ୟ କାମଦେବ ଜାଗି ଉଠୁଥା'ନ୍ତି ॥୪॥ ଛନ୍ଦ—ମୃତ ମନରେ ମଧ୍ୟ କାମଦେବ ଜାଗି ଉଠିଲେ । ବନର ସୌନ୍ଦର୍ଯ୍ୟ କୁହାଯାଇ ପାରିବ ନାହିଁ । କାମରୂପୀ ଅଗ୍ନିର ପ୍ରକୃତ ସଖାରୂପୀ ଶୀତଳ ମନ୍ଦ-ସୁଗନ୍ଧିତ ପବନ ବହିବାକୁ ଲାଗିଲା । ସରୋବରମାନଙ୍କରେ ଅନେକ କମଳ ବିକଶିତ ହେଲେ । ସେସବୁ ଫୁଲ ଉପରେ ସୁନ୍ଦର ଭ୍ରମରଗଣ ଗୁଞ୍ଜନ କରିବାକୁ ଲାଗିଲେ । ରାଜହଂସ, କୋଇଲି ଓ ଶୁଆମାନେ ସରସ କଳରବ କରିବାକୁ

ସକଲ କଲା କରି କୋଟି ବିଧି ହାରେଉ ସେନ ସମେତ ।
ଚଲୀ ନ ଅଚଲ ସମାଧି ସିବ କୋପେଉ ହୃଦୟନିକେତ ॥୮୬॥
ଦେଖି ରସାଲ ବିଟପ ବର ସାଖା । ତେହି ପର ଚଢ଼େଉ ମଦନୁ ମନ ମାଖା ॥
ସୁମନ ଚାପ ନିଜ ସର ସନ୍ଧାନେ । ଅତି ରିସ ତାକି ଶ୍ରବନ ଲଗି ତାନେ ॥୧॥
ଛାଡ଼େ ବିଷମ ବିସିଖ ଉର ଲାଗେ । ଛୁଟି ସମାଧି ସଂଭୁ ତବ ଜାଗେ ॥
ଭୟଉ ଈସ ମନ ଛୋଭୁ ବିସେଷୀ । ନୟନ ଉଘାରି ସକଲ ଦିସି ଦେଖୀ ॥୨॥
ସୌରଭ ପଲ୍ଲବ ମଦନୁ ବିଲୋକା । ଭୟଉ କୋପୁ କମ୍ପେଉ ତ୍ରୈଲୋକା ॥
ତବ ସିବଁ ତୀସର ନୟନ ଉଘାରା । ଚିତବତ କାମୁ ଭୟଉ ଜରି ଛାରା ॥୩॥
ହାହାକାର ଭୟଉ ଜଗ ଭାରୀ । ଡରପେ ସୁର ଭଏ ଅସୁର ସୁଖାରୀ ॥
ସମୁଝି କାମସୁଖୁ ସୋଚହିଁ ଭୋଗୀ । ଭଏ ଅକଂଟକ ସାଧକ ଜୋଗୀ ॥୪॥

ରଚି ନାନାମତେ ନିଜ କଳା ଅନ୍ତେ ସେନାସହ ହାରିଗଲା ।
ନ ଟଳନ୍ତେ ଶିବ ସମାଧି ଅଟଳ ରତିପତି କୋପ କଲା ॥୮୬॥
ରସାଳ ବିଟପ ଶାଖା ବିଲୋକି ସୁନ୍ଦର । ଚଢିଲା ତହିଁ ଉପରେ କୋପେ ପଞ୍ଚଶର ॥
ସୁମନ ଚାପରେ ନିଜ ଶାୟକ ସନ୍ଧାନି । ଅତି ରୋଷେ ଲକ୍ଷ୍ୟ କରି କର୍ଣ୍ଣେଯାଏ ଟାଣି ॥୧॥
ଛାଡନ୍ତେ ବିଷମ ଶର ହୃଦୟେ ବାଜିଲା । ଜାଗ୍ରତ ହୋଇଲେ ଶମ୍ଭୁ ସମାଧି ଭାଜିଲା ॥
ମହେଶଙ୍କ ମନେ କ୍ଷୋଭ ଉପୁଜିଲା ଅତି । ନୟନ ଫେଡିଣ ଚଉଦିଗେ ନିରେଖନ୍ତି ॥୨॥
ସୌରଭ ପଲ୍ଲବେ ଅବଲୋକିଣ ମଦନ । କରନ୍ତେ କୋପ କମ୍ପିତ ହେଲା ତ୍ରିଭୁବନ ॥
ତୃତୀୟ ନୟନ ତହୁଁ ଫେଡି ମହେଶ୍ୱର । ଚାହିଁବା ମାତ୍ରକେ ଜଳି ଭସ୍ମ ହେଲା ସ୍ମର ॥୩॥
ହାହାକାର ପଡିଗଲା ଜଗତେ ବିପୁଳ । ଡରିଲେ ଦେବେ ହରଷ ହେଲେ ଦୈତ୍ୟକୁଳ ॥
କାମ ସୁଖ ସ୍ମରି ଭୋଗୀ ହୁଅନ୍ତି ଚିନ୍ତିତ । ସାଧକ ଯୋଗୀ ହୋଇଲେ କଣ୍ଟକ ରହିତ ॥୪॥

ଲାଗିଲେ ଏବଂ ଅପ୍ସରାଗଣ ଗୀତ ଗାଇ ଗାଇ ନାଚିବାକୁ ଲାଗିଲେ ॥ ଦୋହା :— କାମଦେବ ତାଙ୍କ ସେନା ସହିତ କୋଟି କୋଟି ପ୍ରକାର କଳା (ଉପାୟ) କରି ହାରିଗଲେ । ତଥାପି ଶିବଙ୍କ ଅଚଳ ସମାଧି ଭାଙ୍ଗିଲା ନାହିଁ । ତେଣୁ କାମଦେବ କ୍ରୁଦ୍ଧ ହୋଇ ଉଠିଲେ ॥୮୬॥ ଚୌପାଈ :—ଆମ୍ବଗଛର ଗୋଟିଏ ସୁନ୍ଦର ଡାଳ ଦେଖି ମନେ ମନେ କ୍ରୋଧରେ ପରିପୂର୍ଣ୍ଣ କାମଦେବ ତା ଉପରେ ଚଢିଗଲେ । ସେ ଫୁଲ-ଧନୁ ଉପରେ ତାଙ୍କ ପଞ୍ଚବାଣ ଚଢାଇଲେ ଏବଂ ଅତ୍ୟନ୍ତ କ୍ରୋଧରେ ଲକ୍ଷ୍ୟ ଆଡକୁ ନିରୀକ୍ଷଣ କରି ଆପଣା କାନ ପର୍ଯ୍ୟନ୍ତ ଗୁଣ ଆକର୍ଷଣ କରି ଆଣିଲେ ॥୧॥ କାମଦେବ ତୀକ୍ଷଣବାଣ ଛାଡିଲେ । ଶିବଙ୍କ ହୃଦୟରେ ସେ ବାଣ ବାଜିଲା । ସେତେବେଳେ ତାଙ୍କ ସମାଧି ଭାଙ୍ଗିଗଲା ଏବଂ ସେ ଜାଗ୍ରତ ହେଲେ । ଈଶ୍ୱର (ଶିବ)ଙ୍କ ମନରେ ବଡ କ୍ଷୋଭ ଜାତ ହେଲା । ସେ ଆଖି ଖୋଲି ସବୁ ଆଡକୁ ଚାହିଁଲେ ॥୨॥ ଆମ୍ବପତ୍ର ଉହାଡରେ ଲୁଚିଥିବା କାମଦେବଙ୍କୁ ଦେଖି ସେ ବଡ କ୍ରୁଦ୍ଧ ହେଲେ ।

ଜୋଗୀ ଅକଂଟକ ଭଏ ପତି ଗତି ସୁନତ ରତି ମୁରୁଛିତ ଭଈ ।
ରୋଦତି ବଦତି ବହୁ ଭାଁତି କରୁନା କରତି ସଂକର ପହିଁ ଗଈ ॥
ଅତି ପ୍ରେମ କରି ବିନତୀ ବିବିଧ ବିଧି ଜୋରି କର ସନ୍ମୁଖ ରହୀ ।
ପ୍ରଭୁ ଆସୁତୋଷ କୃପାଲ ସିବ ଅବଲା ନିରଖି ବୋଲେ ସହୀ ॥
ଅବ ତେଁ ରତି ତବ ନାଥ କର ହୋଇହି ନାମୁ ଅନଂଗୁ ।
ବିନୁ ବପୁ ବ୍ୟାପିହି ସବହି ପୁନି ସୁନୁ ନିଜ ମିଲନ ପ୍ରସଂଗୁ ॥୮୭॥

ଜବ ଜଦୁବଂସ କୃଷ୍ଣ ଅବତାରା । ହୋଇହି ହରନ ମହା ମହିଭାରା ॥
କୃଷ୍ଣ ତନୟ ହୋଇହି ପତି ତୋରା । ବଚନୁ ଅନ୍ୟଥା ହୋଇ ନ ମୋରା ॥୧॥

---

ଯୋଗୀ ହେଲେ ପ୍ରସନ୍ନ ରତି ପତି ମରଣ ଶୁଣନ୍ତେ ମୂର୍ଚ୍ଛିତ ହୋଇଲା ।
ନାନା ଭାବେ ରୋଦନ କରି ସୁମରି ଗୁଣ ଶିବଙ୍କ ସମୀପେ ଗମିଲା ॥
ସମ୍ମୁଖେ କର ଯୋଡ଼ି ଅତି, ସପ୍ରେମେ କରନ୍ତେ ବିନତି ।
ଭାଷିଲେ ଆଶୁତୋଷ କୃପାମୟ ମହେଶ ନିରେଖି ଅବଳାର ଗତି ॥
ଆଜଠାରୁ ରତି ତୋର ପ୍ରିୟ ପତି ନାମ ଲଭିବ ଅନଙ୍ଗ ।
ବ୍ୟାପିବ ଅଦେହ ସମସ୍ତଙ୍କ ଦେହେ ଶୁଣ ମିଳନ ପ୍ରସଙ୍ଗ ॥୮୭॥

ଯେବେ ଯଦୁବଂଶେ କୃଷ୍ଣ ହେବେ ଅବତାର । ହରିବା ନିମନ୍ତେ ମହା ବସୁମତୀ ଭାର ॥
ଶ୍ରୀକୃଷ୍ଣତନୟ ପତି ହୋଇବ ତୋହର । ବଚନ ଅନ୍ୟଥା କେବେ ନୋହିବ ମୋହର ॥୧॥

---

ତାଙ୍କ କ୍ରୋଧଯୋଗେ ତିନିପୁର କମ୍ପି ଉଠିଲା । ତତ୍ପରେ ଶିବ ତୃତୀୟ ନେତ୍ର ଖୋଲିଲେ । ଉକ୍ତ ନେତ୍ରରେ ସେ ଦୃଷ୍ଟି ଦେବା ମାତ୍ରେ କାମଦେବ ଜଳି ଭସ୍ମୀଭୂତ ହୋଇଗଲେ ॥୩॥ ଜଗତଯାକ ବଡ଼ ହାହାକାର ବ୍ୟାପିଗଲା । ଦେବତାମାନେ ଡରିଗଲେ, ଦୈତ୍ୟକୁଳ ସୁଖ ଲାଭ କଲେ । ଭୋଗୀ ଲୋକମାନେ କାମସୁଖକୁ ସ୍ମରଣ କରି ଚିନ୍ତା କରିବାକୁ ଲାଗିଲେ ଏବଂ ସାଧକ ଯୋଗୀମାନେ ନିଷ୍କଣ୍ଟକ ହୋଇଗଲେ ॥୪॥ ଛନ୍ଦ :— ଯୋଗୀମାନେ ନିଷ୍କଣ୍ଟକ ହେଲେ । କାମଦେବଙ୍କ ପତ୍ନୀ ନିଜ ପତିଙ୍କର ଏ ଦୁର୍ଦ୍ଦଶା ବିଷୟ ଶୁଣି ମୂର୍ଚ୍ଛିତ ହୋଇଗଲେ । କାନ୍ଦିବୋବାଇ ବହୁ ପ୍ରକାରେ କାରୁଣ୍ୟ କରି ସେ ଶିବଙ୍କ ପାଖକୁ ଗଲେ । ଅତି ପ୍ରେମରେ ଅନେକ ପ୍ରକାରେ ମିନତି କରି ହାତ ଯୋଡ଼ି ସେ ପ୍ରଭୁଙ୍କ ଛାମୁରେ ଉଭା ହେଲେ । ପ୍ରଭୁ ଆଶୁତୋଷ କୃପାଳୁ ଶିବ ଅବଳା ସ୍ତ୍ରୀକୁ ଦେଖି ସାନ୍ତ୍ୱନା-ବାଣୀ କହିଲେ— ॥ ଦୋହା :—"ହେ ରତି ! ଆଜଠାରୁ ତୋ ସ୍ୱାମୀର ନାମ ଅନଙ୍ଗ ହେବ । ଶରୀରବିନା ସେ ସମସ୍ତଙ୍କଠାରେ ବ୍ୟାପିବ । ବର୍ତ୍ତମାନ ତୁ ଶୁଣ୍, ପତି ସଙ୍ଗେ ତୋର ଯେଉଁପରି ମିଳନ ହେବ ॥୮୭॥ ଚୌପାଈ :— ଯେତେବେଳେ ପୃଥିବୀର ମହାଭାର ଉତାରିବା ପାଇଁ ଯଦୁବଂଶରେ ଶ୍ରୀକୃଷ୍ଣଙ୍କ ଅବତାର ହେବ, ସେତେବେଳେ ତୋର ପତି ତାଙ୍କର ପୁତ୍ର (ପ୍ରଦ୍ୟୁମ୍ନ) ରୂପେ ଜାତ ହେବ ।

ରତି ଗଈଁମା ସୁନି ସଂକର ବାନୀ । କଥା ଅପର ଅବ କହଉଁ ବଖାନୀ ॥
ଦେବନ୍ହ ସମାଚାର ସବ ପାଏ । ବ୍ରହ୍ମାଦିକ ବୈକୁଣ୍ଠ ସିଧାଏ ॥୨॥
ସବ ସୁର ବିଷ୍ଣୁ ବିରଂଚି ସମେତା । ଗଏ ଜହାଁ ସିବ କୃପାନିକେତା ॥
ପୃଥକ ପୃଥକ ତିନ୍ହ କୀନ୍ହି ପ୍ରସଂସା । ଭଏ ପ୍ରସନ୍ନ ଚନ୍ଦ୍ର ଅବତଂସା ॥୩॥
ବୋଲେ କୃପାସିନ୍ଧୁ ବୃଷକେତୂ । କହହୁ ଅମର ଆଏ କେହି ହେତୂ ॥
କହ ବିଧି ତୁମ୍ହ ପ୍ରଭୁ ଅନ୍ତରଜାମୀ । ତଦପି ଭଗତି ବସ ବିନଵଉଁ ସ୍ୱାମୀ ॥୪॥

ସକଲ ସୁରନ୍ହ କେ ହୃଦୟଁ ଅସ ସଂକର ପରମ ଉଛାହୁ ।
ନିଜ ନୟନନ୍ହି ଦେଖା ଚହହିଁ ନାଥ ତୁମ୍ହାର ବିବାହୁ ॥୮୮॥

ୟହ ଉତ୍ସବ ଦେଖିଅ ଭରି ଲୋଚନ । ସୋଇ କଛୁ କରହୁ ମଦନ ମଦ ମୋଚନ ॥
କାମୁ ଜାରି ରତି କହୁଁ ବରୁ ଦୀନ୍ହା । କୃପାସିଂଧୁ ୟହ ଅତି ଭଲ କୀନ୍ହା ॥୧॥

---

ରତି ଗୃହେ ଗଲା ଶୁଣି ଶିବଙ୍କ କଥନ । ଏବେ ମୁଁ ଅନ୍ୟ ବିଷୟ କରୁଛି ବର୍ଣ୍ଣନ ॥
ଏହି ସମାଚାର ଯେବେ ବିବୁଧେ ପାଇଲେ । ବ୍ରହ୍ମାଙ୍କୁ ସଙ୍ଗେନେଇଣ ବୈକୁଣ୍ଠେ ଆସିଲେ ॥୨॥
ବିଷ୍ଣୁ ବିରଞ୍ଚି ସହିତ ଅନ୍ୟ ଦେବମାନେ । ଚଳିଲେ କରୁଣାଳୟ ଶିବ ସନ୍ନିଧାନେ ॥
ପୃଥକ ପୃଥକ ସର୍ବେ ପ୍ରଶଂସା କରିଲେ । ଶୁଣନ୍ତେ ଶଶିଶେଖର ପ୍ରସନ୍ନ ହୋଇଲେ ॥୩॥
ଭାଷିଲେ ତହୁଁ କରୁଣା-ସିନ୍ଧୁ ବୃଷକେତୁ । କହ ଅମରେ ଏଥକୁ ଆସିଲ କି ହେତୁ ॥
ବୋଇଲେ ବିଧାତା ପ୍ରଭୁ ତୁମ୍ଭେ ଅନ୍ତର୍ଯାମୀ । ତଥାପି ବିନୟ କରୁଁ ଭକ୍ତ ବଶ ସ୍ୱାମୀ ॥୪॥

ସମସ୍ତ ସୁରଙ୍କ ହୃଦୟେ ଏମନ୍ତ ହୁଏ ପ୍ରବଳ ଉତ୍ସାହ ।
ଦେଖିବାକୁ ନିଜ ନୟନେ ଚାହାନ୍ତି ନାଥ ତୁମ୍ଭର ବିବାହ ॥୮୮॥

ନେତ୍ର ପୂର୍ଣ୍ଣ କରି ଏହି ଉତ୍ସବ ଯେସନ । ଦେଖିବୁ ତେମନ୍ତ କର ମଦନମର୍ଦ୍ଦନ ॥
କନ୍ଦର୍ପେ ଜାଳି ରତିକୁ ବର ପ୍ରଦାନିଲ । କୃପାସିନ୍ଧୁ ଏହା ଅତି ଉତ୍ତମ କରିଲ ॥୧॥

---

ମୋର ଏ ବଚନ ଅନ୍ୟଥା ହେବନାହିଁ ।" ॥୧॥ ଶିବଙ୍କ ବଚନ ଶୁଣି ରତି ଚାଲିଗଲେ । ବର୍ତ୍ତମାନ ଅନ୍ୟ କଥା ବଖାଣି କହୁଛି । ବ୍ରହ୍ମାଦି ଦେବତାମାନେ ଏ ସବୁ ସମାଚାର ଶୁଣି ବୈକୁଣ୍ଠ ଭବନ ଚାଲିଲେ ॥୨॥ ତତ୍ପରେ ସେଠାରୁ ବିଷ୍ଣୁ ଓ ବ୍ରହ୍ମାଙ୍କ ସହ ସମସ୍ତ ଦେବତା ଯେଉଁଠି କୃପାଧାମ ଶିବ ଥିଲେ, ସେହିଠାକୁ ଗଲେ । ସେମାନେ ସମସ୍ତେ ଶିବଙ୍କୁ ପୃଥକ୍ ପୃଥକ୍ ସ୍ତୁତି କଲେ । ସେମାନଙ୍କ ସ୍ତୁତି ଶୁଣି ଶିବ ପ୍ରସନ୍ନ ହେଲେ ॥୩॥ କୃପାସିନ୍ଧୁ ଶିବ କହିଲେ, "ହେ ଦେବତାମାନେ ! କୁହନ୍ତୁ, ଆପଣମାନେ କେଉଁଥିପାଇଁ ଆସିଅଛନ୍ତି ?" ବ୍ରହ୍ମା କହିଲେ, "ହେ ପ୍ରଭୋ ! ଆପଣ ଅନ୍ତର୍ଯାମୀ । ତଥାପି ହେ ସ୍ୱାମି ! ଭକ୍ତିବଶ ମୁଁ ଆପଣଙ୍କୁ ପ୍ରାର୍ଥନା କରୁଛି ॥୪॥ ଦୋହା:—ହେ ଶଙ୍କର ! ସମସ୍ତ ଦେବତା ସ୍ୱ ସ୍ୱ ଚକ୍ଷୁରେ ଆପଣଙ୍କ ବିବାହ ଦେଖିବାକୁ ଚାହୁଁଅଛନ୍ତି । ଏଥିପାଇଁ ସେମାନଙ୍କ ମନରେ ପରମ ଉତ୍ସାହ ଜାତ ହୋଇଅଛି ॥୮୮॥ ଚୌପାଇ :—ହେ ମଦନ-ମଦମୋଚନ ! ଆପଣ ଏହିପରି କିଛି କରନ୍ତୁ ଯଦ୍ୱାରା ସମସ୍ତ ଲୋକ ଏହି ଉତ୍ସବକୁ

ସାସତି କରି ପୁନି କରହିଁ ପସାଉ । ନାଥ ପ୍ରଭୁନ୍ହ କର ସହଜ ସୁଭାଉ ॥
ପାରବତୀଁ ତପୁ କୀନ୍ହ ଅପାରା । କରହୁ ତାସୁ ଅବ ଅଂଗୀକାରା ॥୨॥
ସୁନି ବିଧି ବିନୟ ସମୁଝି ପ୍ରଭୁ ବାନୀ । ଐସେଇ ହୋଉ କହା ସୁଖୁ ମାନୀ ॥
ତବ ଦେବନ୍ହ ଦୁନ୍ଦୁଭୀଁ ବଜାଈଁ । ବରଷି ସୁମନ ଜୟ ଜୟ ସୁରସାଈଁ ॥୩॥
ଅବସରୁ ଜାନି ସପ୍ତରିଷି ଆଏ । ତୁରତହିଂ ବିଧି ଗିରିଭବନ ପଠାଏଁ ॥
ପ୍ରଥମ ଗଏ ଜହଁ ରହୀଁ ଭବାନୀ । ବୋଲେ ମଧୁର ବଚନ ଛଲ ସାନୀ ॥୪॥

କହା ହମାର ନ ସୁନେହୁ ତବ ନାରଦ କେଁ ଉପଦେସ ।
ଅବ ଭା ଝୁଠ ତୁହ୍ମାର ପନ ଜାରେଉ କାମୁ ମହେସ ॥୮୯॥

## ମାସପାରାୟଣ, ତୃତୀୟ ବିଶ୍ରାମ

ସୁନି ବୋଲୀଁ ମୁସୁକାଇ ଭବାନୀ । ଉଚିତ କହେହୁ ମୁନିବର ବିଜ୍ଞାନୀ ॥
ତୁହ୍ମରେଁ ଜାନ କାମୁ ଅବ ଜାରା । ଅବ ଲଗି ସଂଭୁ ରହେ ସବିକାରା ॥୧॥

---

ତାଡନ କରି ଆଦର କରନ୍ତି ଆଶ୍ୱସ୍ତ । ନାଥ ପ୍ରଭୁଙ୍କ ସହଜ ସ୍ୱଭାବ ଏମନ୍ତ ॥
ପାର୍ବତୀ ତପ କରି ଅଛନ୍ତି ଅପାର । କରିବା ହେଉ ତାହାଙ୍କୁ ଏବେ ଅଙ୍ଗୀକାର ॥୨॥
ଶୁଣି ବ୍ରହ୍ମଙ୍କ ବିନୟ ପ୍ରଭୁ ଆଜ୍ଞା ଗଣି । ଏବମସ୍ତୁ ଉଚ୍ଚାରିଲେ ଶମ୍ଭୁ ସୁଖ ମଣି ॥
ତହୁଁ ଦେବଗଣ କରି ଦୁନ୍ଦୁଭି ବାଦନ । କହି ଜୟ ଜୟ କଲେ ବରଷା ସୁମନ ॥୩॥
ସୁସମୟ ଜାଣି ସପ୍ତ ଋଷି ଆଗମିଲେ । ବ୍ରହ୍ମ ତାଙ୍କୁ ଶୀଘ୍ର ଗିରି ଗୃହେ ପଠାଇଲେ ॥
ପ୍ରଥମେ ଯାଇ ସେମାନେ ଉମାଙ୍କ ନିକଟେ । ଭାଷିଲେ ଛଳି ମୃଦୁଳ ବଚନ କପଟେ ॥୪॥

କହିବା ଆମ୍ଭର ନ ଶୁଣିଲ ତେବେ ଶିକ୍ଷା ମାନି ନାରଦର ।
ଏବେ ତୁମ୍ଭ ପଣ ମିଥ୍ୟା ହେଲା ଜାଣ ଜାଳିଲେ କାମକୁ ହର ॥୮୯॥

ଶୁଣି ମୃଦୁ ମନ୍ଦ ହସି ଭାଷିଲେ ଭବାନୀ । ଉଚିତ କହିଲ ମୁନିନାୟକ ବିଜ୍ଞାନୀ ॥
ତୁମ୍ଭ ଜାଣିବାରେ ହର କାମକୁ ଜାଳିଲେ । ଏ ପର୍ଯ୍ୟନ୍ତ ମହେଶ୍ୱର ସବିକାର ଥିଲେ ॥୧॥

---

ନେଇ ସୁଧାରି ଦେଖନ୍ତି । ହେ କୃପାସାଗର ! କାମଦେବଙ୍କୁ ଭସ୍ମ କରି ଆପଣ ରତିଙ୍କୁ ଯେଉଁ ବର ଦେଇଛନ୍ତି, ତଦ୍ଦ୍ୱାରା ବହୁତ ଭଲ କାମ କରିଅଛନ୍ତି ॥୧॥ ହେ ନାଥ ! ଶ୍ରେଷ୍ଠ ପ୍ରଭୁମାନଙ୍କର ସହଜ ସ୍ୱଭାବ—ସେମାନେ ପ୍ରଥମେ ଦଣ୍ଡ ଦେଇ ପରେ ଦୟା କରନ୍ତି । ପାର୍ବତୀ ଅପାର ତପସ୍ୟା କରିଅଛନ୍ତି । ଏବେ ତାହାଙ୍କୁ ଅଙ୍ଗୀକାର କରନ୍ତୁ ।" ॥୨॥ ବ୍ରହ୍ମାଙ୍କ ପ୍ରାର୍ଥନା ଶୁଣି ଏବଂ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ବଚନ ସ୍ମରଣ କରି ଶିବ ପ୍ରସନ୍ନତା ସହକାରେ କହିଲେ, "ତଥାସ୍ତୁ ।" ସେତିକିବେଳେ ଦେବତାମାନେ ଦୁନ୍ଦୁଭି ବଜାଇଲେ ଏବଂ ପୁଷ୍ପବୃଷ୍ଟି କରି କହିବାକୁ ଲାଗିଲେ, "ଜୟ ହେଉ ! ଦେବସ୍ୱାମୀଙ୍କର ଜୟ ହେଉ !" ॥୩॥ ଉପଯୁକ୍ତ ଅବସର ଜାଣି ସପ୍ତର୍ଷି ଆସିଲେ ଏବଂ ବ୍ରହ୍ମା ଶୀଘ୍ର ସେମାନଙ୍କୁ ହିମାଚଳଙ୍କ ଘରକୁ ପଠାଇଦେଲେ । ପାର୍ବତୀ ଯେଉଁଠାରେ ଥିଲେ,

ହମରେଁ ଜାନ ସଦା ସିବ ଜୋଗୀ । ଅଜ ଅନବଦ୍ୟ ଅକାମ ଅଭୋଗୀ ॥
ଜୌଁ ମୈଁ ସିବ ସେଯେ ଅସ ଜାନୀ । ପ୍ରୀତି ସମେତ କର୍ମ ମନ ବାନୀ ॥୨॥
ତୌ ହମାର ପନ ସୁନହୁ ମୁନୀସା । କରିହହିଁ ସତ୍ୟ କୃପାନିଧି ଈସା ॥
ତୁହ୍ମ ଜୋ କହା ହର ଜାରେଉ ମାରା । ସୋଇ ଅତି ବଡ଼ ଅବିବେକୁ ତୁହ୍ମାରା ॥୩॥
ତାତ ଅନଲ କର ସହଜ ସୁଭାଊ । ହିମ ତେହି ନିକଟ ଜାଇ ନହିଁ କାଊ ॥
ଗଏଁ ସମୀପ ସୋ ଅବସି ନସାଈ । ଅସି ମନ୍ମଥ ମହେସ କୀ ନାଈ ॥୪॥

ହିୟଁ ହରଷେ ମୁନି ବଚନ ସୁନି ଦେଖି ପ୍ରୀତି ବିସ୍ୱାସ ।
ଚଲେ ଭବାନିହି ନାଇ ସିର ଗଏ ହିମାଚଲ ପାସ ॥୯୦॥

---

ମୋ ଜାଣିବାରେ ସର୍ବଦା ସଦାଶିବ ଯୋଗୀ । ଅଜ ଅନିନ୍ଦ୍ୟ ଅ.ବର ଅକାମ ଅଭୋଗୀ ॥
ଯେବେ ମୁଁ କରିଛି ଶିବ ସେବା ଏହା ଜାଣି । ପ୍ରୀତି ସହିତ ଲଗାଇ ମନ କର୍ମ ବାଣୀ ॥୨॥
ତେବେ ମୋହର ପ୍ରତିଜ୍ଞା ଶୁଣହେ ମୁନୀଶ । ସତ୍ୟ କରିବେ କରୁଣା-ପାରାବାରଈଶ ॥
ତୁମ୍ଭେ ଯେ କହ କାମକୁ ଜାଳିଲେ ଶଙ୍କର । ଅତି ଅବିବେକ ତାହା ତୁମ୍ଭମାନଙ୍କର ॥୩॥
ଉତ୍ତାପ ଅଗ୍ନିର ସ୍ୱତଃ ସ୍ୱଭାବ ଅଟଇ । ହିମ ତା ନିକଟେ କେବେ ଯାଇ ନ ପାରଇ ॥
ସମୀପେ ଗଲେ ଅବଶ୍ୟ ଭଜେ ସେ ବିଲୟ । ଏମନ୍ତେ ମନ୍ମଥ ଶିବ ସମ୍ମୁଖେ ନିଶ୍ଚୟ ॥୪॥

ଶୁଣି ମୁନି ହୃଦେ ପ୍ରମୋଦ ଲଭିଲେ ଦେଖି ଶ୍ରଦ୍ଧା ପ୍ରୀତି ଅତି ।
ଉମାଙ୍କୁ ପ୍ରଣମି ବେଗେ ଗଲେ ତହୁଁ ତୁଷାର-ଆଳୟ ପତି ॥୯୦॥

---

ସେମାନେ ପ୍ରଥମେ ସେଠାକୁ ଗଲେ ଏବଂ ଛଳପୂର୍ଣ୍ଣ ମଧୁର ବଚନ କହିଲେ— ॥୪॥
ଦୋହା —"ନାରଦଙ୍କ ଉପଦେଶ ହେତୁ ତୁମେ ସେତେବେଳେ ଆମ କଥା ଶୁଣିଲ ନାହିଁ । ବର୍ତ୍ତମାନ ତ ତୁମ ପଣ ଅକାରଣ ହୋଇଗଲା; କାରଣ ମହାଦେବ କାମଦେବକୁ ଭସ୍ମ କରିଦେଲେ ।" ॥ ୮୯ ॥ ଚୌପାଈ —ଏହା ଶୁଣି ପାର୍ବତୀ ହସି କହିଲେ, "ହେ ବିଜ୍ଞାନୀ ମୁନୀଶ୍ୱରଗଣ ! ଆପଣମାନେ ଉଚିତ କଥା କହିଲେ ! ଆପଣମାନଙ୍କ ଜାଣିବାରେ ଶିବ କାମଦେବଙ୍କୁ ଏବେ ଜାଳିଦେଲେ ! ଆଜିଯାଏ ସେ ଯେପରି ସେ ବିକାରଯୁକ୍ତ (କାମାଧୀନ) ହୋଇ ରହିଥିଲେ ! ॥୧॥ କିନ୍ତୁ ମୁଁ ବୁଝିଛି—ଶିବ କାଳେ କାଳେ ଯୋଗୀ, ଅଜନ୍ମା, ଅନିନ୍ଦ୍ୟ, ଅକାମ ଓ ବୈରାଗୀ । ଶିବଙ୍କୁ ଏପରି ବୁଝି ମୁଁ ମନ, ବଚନ ଓ କର୍ମରେ ପ୍ରେମ ସହିତ ଯଦି ତାହାଙ୍କର ସେବା କରିଥାଏ, ତେବେ ହେ ମୁନୀଶ୍ୱରବୃନ୍ଦ ! ଶୁଣନ୍ତୁ, ସେହି କୃପାନିଧାନ ଭଗବାନ୍ ମୋ ପ୍ରତିଜ୍ଞାକୁ ସତ୍ୟ କରିବେ । ଶିବ କାମଦେବଙ୍କୁ ଯେ ଭସ୍ମ କରିଦେଲେ ବୋଲି ଆପଣମାନେ ଯାହା କହିଲେ, ଏହା ଆପଣମାନଙ୍କ ପକ୍ଷେ ବଡ଼ ଅବିବେକିତା ॥୨-୩॥ ହେ ତାତ ! ଅଗ୍ନିର ସହଜ ସ୍ୱଭାବ ଉତ୍ତାପ, ଏହା ସର୍ବଜନବିଦିତ । ହିମ ତା ନିକଟକୁ କଦାପି ଯାଇପାରେ ନାହିଁ । ଗଲେ ସେ ନିଶ୍ଚୟ ନଷ୍ଟ ହୋଇଯିବ । ମହାଦେବ ଏବଂ କାମ ସମ୍ବନ୍ଧରେ ଏହି ନ୍ୟାୟ ବୁଝିବା ଉଚିତ ॥୪॥ ଦୋହା .—ପାର୍ବତୀଙ୍କ ବଚନ ଶୁଣି ଏବଂ

ସବୁ ପ୍ରସଂଗୁ ଗିରିପତିହି ସୁନାୱା । ମଦନ ଦହନ ସୁନି ଅତି ଦୁଖୁ ପାୱା ॥
ବହୁରି କହେଉ ରତି କର ବରଦାନା । ସୁନି ହିମବଂତ ବହୁତ ସୁଖୁ ମାନା ॥୧॥
ହୃଦୟଁ ବିଚାରି ସଂଭୁ ପ୍ରଭୁତାଈ । ସାଦର ମୁନିବର ଲିଏ ବୋଲାଈ ॥
ସୁଦିନୁ ସୁନଖତୁ ସୁଘରୀ ସୋଚାଈ । ବେଗି ବେଦବିଧି ଲଗନ ଧରାଈ ॥୨॥
ପତ୍ରୀ ସପ୍ତରିଷିନ୍ହ ସୋଇ ଦୀନ୍ହୀ । ଗହି ପଦ ବିନୟ ହିମାଚଲ କୀନ୍ହୀ ॥
ଜାଇ ବିଧିହି ତିନ୍ହ ଦୀନ୍ହି ସୋ ପାତୀ । ବାଚତ ପ୍ରୀତି ନ ହୃଦୟଁ ସମାତୀ ॥୩॥
ଲଗନ ବାଚି ଅଜ ସବହି ସୁନାଈ । ହରଷେ ମୁନି ସବ ସୁର ସମୁଦାଈ ॥
ସୁମନ ବୃଷ୍ଟି ନଭ ବାଜନ ବାଜେ । ମଙ୍ଗଲ କଲସ ଦସହୁଁ ଦିସି ସାଜେ ॥୪॥

ଲଗେ ସଁୱାରନ ସକଲ ସୁର ବାହନ ବିବିଧ ବିମାନ ।
ହୋହିଁ ସଗୁନ ମଂଗଲ ସୁଭଦ କରହିଁ ଅପଛରା ଗାନ ॥୯୧॥

---

ସମସ୍ତ ବୃତ୍ତାନ୍ତ ଗିରିରାଜଙ୍କୁ କହିଲେ । ମଦନ ଦାହନ ଶୁଣି ଦୁଃଖ ସେ ମଣିଲେ ॥
ରତି-ବରଦାନ କଥା କହନ୍ତେ ଆବର । ଅତି ଆନନ୍ଦିତ ହେଲେ ଶୁଣି ଗିରିବର ॥୧॥
ଶିବଙ୍କ ପ୍ରଭୁତ୍ୱ ହୃଦେ କରଣ ସ୍ମରଣ । ସାଦରେ ଡକାଇ ଆଣି ମୁନିବର ଗଣ ॥
ଶୁଭଦିନ ସୁନକ୍ଷତ୍ର ସୁଘଡ଼ି ସଧାଇ । ବେଦ ବିଧାନରେ ଶୀଘ୍ର ଲଗନ ଧରାଇ ॥୨॥
ସେ ପତ୍ରୀ ଦେଇଣ ସପ୍ତଋଷିଙ୍କୁ ସାଦର । ଚରଣ ଧରି ବିନୟ କଲେ ଗିରିବର ॥
ସେମାନେଯାଇସେପତ୍ରୀଦେଲେ ବିଧିକରେ । ପଢନ୍ତେ ପ୍ରୀତି ବର୍ଦ୍ଧିତ ହୋଇଲା ଅନ୍ତରେ ॥୩॥
ଲଗ୍ନ ପଢି ସମସ୍ତଙ୍କୁ ବିଧି ଶୁଣାଇଲେ । ଶୁଣି ସୁର ମୁନିବୃନ୍ଦ ହରଷ ହୋଇଲେ ॥
ଝଡିଲା ସୁମନ ବାଦ୍ୟ ଗଗନେ ବାଜିଲା । ମଙ୍ଗଳ ଶକୁନ ଦଶ ଦିଗେ ବିରାଜିଲା ॥୪॥

ସାଜିଲେ ସୁନ୍ଦର ଅମର ନିକର ନାନା ବାହନ ବିମାନ ।
ହୁଏ ଶୁଭପ୍ରଦ ମଙ୍ଗଲ ଶକୁନ କରନ୍ତି ଅପ୍‌ସରା ଗାନ ॥୯୧॥

---

ତାଙ୍କ ପ୍ରେମ ତଥା ବିଶ୍ୱାସ ଦେଖି ମୁନିଗଣ ହୃଦୟରେ ବଡ଼ ପ୍ରସନ୍ନ ହେଲେ । ଭବାନୀଙ୍କ ଚରଣରେ ମୁଣ୍ଡ ନୁଆଁଇ ସେମାନେ ଗଲେ ଏବଂ ହିମାଚଳଙ୍କ ପାଖରେ ଯାଇ ପହଞ୍ଚିଲେ ॥୯୦॥ ଚୌପାଈ :—ସେମାନେ ପର୍ବତରାଜ ହିମାଚଳଙ୍କୁ ସମସ୍ତ ଘଟଣା ଶୁଣାଇଲେ । କାମଦେବଙ୍କ ଭସ୍ମ ହେବା ସମ୍ବାଦରେ ହିମାଚଳ ବିଶେଷ ଦୁଃଖିତ ହେଲେ । ତତ୍ପରେ ମୁନିମାନେ ତାହାଙ୍କୁ ରତିଙ୍କୁ ଶିବଙ୍କର ବରଦାନ ପ୍ରସଙ୍ଗ କହିଲେ । ତାହା ଶୁଣି ହିମବାନ୍ ସୁଖୀ ହେଲେ ॥୧॥ ଶିବଙ୍କର ପ୍ରଭୁତ୍ୱ ବିଷୟ ମନରେ ବିଚାରି ହିମାଚଳ ମୁନୀଶ୍ୱରଗଣଙ୍କୁ ଆଦରପୂର୍ବକ ଡକାଇ ନେଲେ । ସେମାନଙ୍କ ପରାମର୍ଶରେ ଶୁଭଦିନ, ଶୁଭ ନକ୍ଷତ୍ର ଓ ଶୁଭଘଡ଼ି ସ୍ଥିର କରି ବେଦବିଧି ଅନୁସାରେ ଶୀଘ୍ର ଲଗ୍ନ ମଧ୍ୟ ନିର୍ଣ୍ଣିତ କରାଇଲେ ॥୨॥ ତତ୍ପରେ ହିମାଚଳ ସେହି ଲଗ୍ନ ପତ୍ରିକା ସପ୍ତର୍ଷିଙ୍କୁ ଦେଇ ଦେଲେ ଏବଂ ସେମାନଙ୍କ ଚରଣ ଧରି ବିନତି କଲେ । ସେମାନେ ଯାଇ ସେହି ଲଗ୍ନପତ୍ରିକା ବ୍ରହ୍ମାଙ୍କୁ ଦେଲେ । ତାହା ପଢିବା ସମୟରେ ବ୍ରହ୍ମାଙ୍କ

ସିବହି ସଂଭୁଗନ କରହିଁ ସିଁଗାରା । ଜଟା ମୁକୁଟ ଅହି ମୌରୁ ସଁଵାରା ॥
କୁଂଡଲ କଂକନ ପହିରେ ବ୍ୟାଲା । ତନ ବିଭୂତି ପଟ କେହରି ଛାଲା ॥୧॥
ସସି ଲଲାଟ ସୁନ୍ଦର ସିର ଗଙ୍ଗା । ନୟନ ତୀନି ଉପବୀତ ଭୁଜଂଗା ॥
ଗରଲ କଂଠ ଉର ନର ସିର ମାଲା । ଅସିବ ବେଷ ସିବଧାମ କୃପାଲା ॥୨॥
କର ତ୍ରିସୂଲ ଅରୁ ଡମରୁ ବିରାଜା । ଚଲେ ବସହଁ ଚଢ଼ି ବାଜହିଁ ବାଜା ॥
ଦେଖି ସିବହି ସୁରତ୍ରିୟ ମୁସୁକାହୀଁ । ବର ଲାୟକ ଦୁଲହିନି ଜଗ ନାହୀଁ ॥୩॥
ବିଷ୍ଣୁ ବିରଂଚି ଆଦି ସୁରବ୍ରାତା । ଚଢ଼ି ଚଢ଼ି ବାହନ ଚଲେ ବରାତା ॥
ସୁର ସମାଜ ସବ ଭାଁତି ଅନୂପା । ନହିଂ ବରାତ ଦୂଲହ ଅନୁରୂପା ॥୪॥

---

ଶିବଙ୍କୁ ଶଙ୍କର ଗଣ ସିଂଗାର କରନ୍ତି । ଜଟା ମୁକୁଟରେ ଅହି କିରୀଟ ରଚନ୍ତି ॥
କୁଣ୍ଡଳ କଙ୍କଣ ସ୍ଥାନେ ସର୍ପଙ୍କୁ ରଖିଲେ । ବ୍ୟାଘ୍ର ଚର୍ମାମ୍ବର ଅଙ୍ଗେ ଭସ୍ମ ବିଲେପିଲେ ॥୧॥
ଲଲାଟେ ଶଶାଙ୍କ ଶିରେ ଗଙ୍ଗା ସୁଶୋଭିତ । ତିନି ନୟନ ଭୁଜଙ୍ଗ ଯଜ୍ଞ ଉପବୀତ ॥
ବିଷକଣ୍ଠ ଗଳେ ଲମ୍ବେ ନର ମୁଣ୍ଡହାର । ଅଶୁଭ ବେଶେ କୃପାଳୁ କଲ୍ୟାଣ ଆଗାର ॥୨॥
କରେ ତ୍ରିଶୂଳ ଆବର ଡମ୍ବରୁ ରାଜଇ । ଚଳିଲେ ବୃଷଭ ଚଢ଼ି ବାଦ୍ୟ ଯେ ବାଜଇ ॥
ଶିବଙ୍କୁ ଦେଖି ହସନ୍ତି ଦେବାଙ୍ଗନା ସର୍ବେ । ନାହିଁ ବର ଉପଯୁକ୍ତ ଦୁଲଣୀ ଏ ଭବେ ॥୩॥
ବିଷ୍ଣୁ ବିରଞ୍ଚି ଇତ୍ୟାଦି ଅମର ନିକରେ । ଗଲେ ବରଯାତ୍ର ହୋଇ ଚଢ଼ି ବାହନରେ ॥
ସୁରଙ୍କ ସମାଜ ସର୍ବ ପ୍ରକାରେ ଅନୁପ । ନ ଶୋଭନ୍ତି ବରଯାତ୍ର ବର ଅନୁରୂପ ॥୪॥

---

ଆନନ୍ଦର ସୀମା ରହୁ ନ ଥାଏ ॥୩॥ ବ୍ରହ୍ମା ଲଗ୍ନ ପତ୍ର ସମସ୍ତଙ୍କୁ ଶୁଣାଇଲେ । ତାହା ଶୁଣି ସମଗ୍ର ମୁନି ଓ ଦେବ-ସମାଜ ଆନନ୍ଦମଗ୍ନ ହୋଇଗଲେ । ଆକାଶରୁ ପୁଷ୍ପବୃଷ୍ଟି ହେଲା । ବାଜା ବାଜିବାକୁ ଲାଗିଲା ଏବଂ ଦଶ ଦିଗରେ ମଙ୍ଗଳ-କଳସ ସଜାଇ ଦିଆଗଲା ॥୪॥ ଦୋହା —ସମସ୍ତ ଦେବତା ଆପଣା ଆପଣାର ଅନୁରୂପ ବାହନ ଓ ବିମାନ ସଜାଇବାକୁ ଲାଗିଲେ । କଲ୍ୟାଣପ୍ରଦ ମଙ୍ଗଳ ଲକ୍ଷଣ ଦୃଷ୍ଟିଗୋଚର ହେଲା ଏବଂ ଅପ୍ସରାମାନେ ମଙ୍ଗଳ ସଙ୍ଗୀତ ଗାନ କରିବାକୁ ଲାଗିଲେ ॥୯୧॥ ଚୌପାଈ:— ଶିବଙ୍କ ଗଣମାନେ ଶିବଙ୍କର ଶୃଙ୍ଗାରବିଧାନ କରିବାକୁ ଲାଗିଲେ । ଜଟାର ମୁକୁଟ ତିଆରି କରି ତାହା ଉପରେ ସର୍ପ-ମଉଡ଼ ସଜାଗଲା । ଶିବ ସର୍ପ-କୁଣ୍ଡଳ ଓ ସର୍ପ-କଙ୍କଣ ପିନ୍ଧିଲେ । ଶରୀରରେ ଭସ୍ମ ବୋଳା ହେଲେ ଏବଂ ବସ୍ତ୍ର ରୂପେ ବାଘ ଛାଲ ପିନ୍ଧିଲେ ॥୧॥ ତାଙ୍କର ସୁନ୍ଦର ଲଲାଟରେ ଚନ୍ଦ୍ରମା, ଶିର-ଉପରେ ଗଙ୍ଗା ଓ ତିନି ନେତ୍ର ସୁଶୋଭିତ । ସର୍ପର ଉପବୀତ ସେ ଧାରଣ କରିଥିଲେ । ତାଙ୍କ ଗଳାରେ ବିଷ ଏବଂ ବକ୍ଷ ଉପରେ ନରମୁଣ୍ଡମାଳା ଥିଲା । ଏହିପରି ଭାବରେ 'ତାଙ୍କ ବେଶ' ଅଶୁଭ ଦେଖାଯାଉଥିଲା । ତଥାପି ସେ ଶିବ ବା ମଙ୍ଗଳର ଧାମ ଓ କୃପାଳୁ ॥୨॥ ଗୋଟିଏ ହାତରେ ତ୍ରିଶୂଳ ଓ ଅନ୍ୟ ହାତରେ ଡମରୁ ସୁଶୋଭିତ । ଶିବ ବୃଷଭ ଉପରେ ଚଢ଼ି ଚାଲିଲେ, ବାଜା ବଜୁଥାଏ । ଶିବଙ୍କୁ ଦେଖି ଦେବାଙ୍ଗନାମାନେ ମୁରୁକି ହସୁଥା'ନ୍ତି ଏବଂ କୁହାକୁହି

ବିଷ୍ଣୁ କହା ଅସ ବିହସି ତବ ବୋଲି ସକଲ ଦିସିରାଜ ।
ବିଲଗ ବିଲଗ ହୋଇ ଚଲହୁ ସବ ନିଜ ନିଜ ସହିତ ସମାଜ ॥୯୨॥
ବର ଅନୁହାରି ବରାତ ନ ଭାଈ । ହଁସୀ କରୈହହୁ ପର ପୁର ଜାଈ ॥
ବିଷ୍ଣୁ ବଚନ ସୁନି ସୁର ମୁସୁକାନେ । ନିଜ ନିଜ ସେନ ସହିତ ବିଲଗାନେ ॥୧॥
ମନହିଁ ମନ ମହେସୁ ମୁସୁକାହୀଁ । ହରି କେ ବିଂଗ୍ୟ ବଚନ ନହିଂ ଜାହୀଁ ॥
ଅତି ପ୍ରିୟ ବଚନ ସୁନତ ପ୍ରିୟ କେରେ । ଭୃଙ୍ଗିହି ପ୍ରେରି ସକଲ ଗନ ଟେରେ ॥୨॥
ସିବ ଅନୁସାସନ ସୁନି ସବ ଆଏ । ପ୍ରଭୁ ପଦ ଜଲଜ ସୀସ ତିନ୍ହ ନାଏ ॥
ନାନା ବାହନ ନାନା ବେଷା । ବିହସେ ସିବ ସମାଜ ନିଜ ଦେଖା ॥୩॥
କୋଉ ମୁଖ ହୀନ ବିପୁଲ ମୁଖ କାହୂ । ବିନୁ ପଦ କର କୋଉ ବହୁ ପଦ ବାହୂ ॥
ବିପୁଲ ନୟନ କୋଉ ନୟନ ବିହୀନା । ରିଷ୍ଟପୁଷ୍ଟ କୋଉ ଅତି ତନ ଖୀନା ॥୪॥

---

ବିଷ୍ଣୁ ତହୁଁ ହସି ଭାଷିଲେ ଏସନ ଦିଗପାଳଙ୍କ ଆଗରେ ।
ଭିନ୍ନ ଭିନ୍ନ ହୋଇ ଚାଲ ସର୍ବେ ନିଜ ନିଜ ସମାଜ ସଙ୍ଗରେ ॥୯୨॥
ବର ଅନୁରୂପ ନୁହେଁ ବରଜାତ ଭାଇ । ଉପହାସ କରାଇବ ପରପୁରେ ଯାଇ ॥
ବିଷ୍ଣୁଙ୍କ ବଚନ ଶୁଣି ବିବୁଧେ ହସିଣ । ଭିନ୍ନ ହେଲେ ନିଜ ନିଜ ସେନାଙ୍କୁ ଘେନିଣ ॥୧॥
ମନ୍ଦ ମନ୍ଦ ମନ ମଧ୍ୟେ ହସନ୍ତି ଶଙ୍କର । ନ ଯାଏ କେବେ ବିଦ୍ରୂପ ବାଣୀ ହରିଙ୍କର ॥
ଶୁଣନ୍ତେ ପ୍ରିୟଙ୍କ ଅତି ସୁପ୍ରିୟ ବଚନ । ଭୃଙ୍ଗୀଦ୍ୱାରା ଡକାଇଲେ ଗଣଙ୍କୁ ବହନ ॥୨॥
ଶିବ ଅନୁମତି ଶୁଣି ଆସିଣ ସକଳେ । ଶିର ଆଁଇଲେ ପ୍ରଭୁ ଚରଣ-କମଳେ ॥
ନାନା ପ୍ରକାର ବାହନ ନାନାବିଧ ବେଶ । ନିଜ ସମାଜ ବିଲୋକି ହସିଲେ ମହେଶ ॥୩॥
କାଏ ମୁଖହୀନ ବହୁ ମୁଖ ବା କାହାର । କର ପଦ ଶୂନ୍ୟ, ବହୁ କର ପଦ କା'ର ॥
ବିପୁଳ ନୟନ, କାଏ ନୟନ-ବିହୀନ । କାଏ ହୃଷ୍ଟ ପୁଷ୍ଟ କାଏ ଅତି ତନୁକ୍ଷୀଣ ॥୪॥

---

ହେଉଥା'ନ୍ତି, "ଏହି ବରର ଯୋଗ୍ୟା ବଧୂ ସଂସାରରେ ମିଳିବ ନାହିଁ ॥୩॥ ବିଷ୍ଣୁ ଓ ବ୍ରହ୍ମାଦି ଦେବତା-ସମୂହ ଆପଣା ଆପଣା ବାହନରେ ଚଢି ବାରାତ (ବରଯାତ୍ରୀଙ୍କ ଶୋଭାଯାତ୍ରା)ରେ ଚାଲିଲେ । ଦେବ-ସମାଜ ସକଳ ପ୍ରକାରେ ଅନୁପମ (ପରମ ସୁନ୍ଦର) ଦିଶୁଥାଏ । କିନ୍ତୁ ଶୋଭା-ଯାତ୍ରା ବରର ଅନୁରୂପ ହେଲା ପରି ଦିଶୁ ନ ଥାଏ ॥୪॥
ଦୋହା —ତତ୍ପରେ ବିଷ୍ଣୁ ଭଗବାନ୍ ସମସ୍ତ ଦିଗପାଳଙ୍କୁ ଡାକି ହସି କହିଲେ, "ତୁମ୍ଭେମାନେ, ସମସ୍ତେ ଆପଣା ଆପଣା ଦଳ ସହିତରେ ଭିନ୍ନ ଭିନ୍ନ ଚାଲ-॥୯୨॥
ଚୌପାଈ .—ହେ ଭାଇମାନେ ! ଆମ୍ଭମାନଙ୍କର ଏ ବାରାତ ବରର·ଯୋଗ୍ୟ ନୁହେଁ, । କ'ଣ ପର ପୁରକୁ ଯାଇ ଉପହାସର ପାତ୍ର ହେବ ?" ବିଷ୍ଣୁ ଭଗବାନ୍ଙ୍କ କଥା ଶୁଣି ଦେବତାମାନେ ମୁରୁକି ହସିଲେ ଏବଂ ସେମାନେ ଆପଣା ଆପଣା ସେନା ସହ ଅଲଗା-ଅଲଗା ହୋଇଗଲେ ॥୧॥ ଏହା ଦେଖି, ମହାଦେବ ମନେ ମନେ ହସୁଥା'ନ୍ତି । ଭାବୁଥା'ନ୍ତି—"ହରିଙ୍କ ଏ ଥଟ୍ଟାଳିଆ କଥା ଯାଉନି !" ପ୍ରିୟ (ବିଷ୍ଣୁ)ଙ୍କର ଏହି ଅତିପ୍ରିୟ-

ତନ ଖୀନ କୋଉ ଅତି ପୀନ ପାବନ କୋଉ ଅପାବନ ଗତି ଧରେଁ ।
ଭୂଷନ କରାଲ କପାଲ କର ସବ ସଦ୍ୟ ସୋନିତ ତନ ଭରେଁ ॥
ଖର ସ୍ୱାନ ସୁଅର ସୃକାଲ ମୁଖ ଗନ ବେଷ ଅଗନିତ କो ଗନୈ ।
ବହୁ ଜିନସ ପ୍ରେତ ପିସାଚ ଜୋଗି ଜମାତ ବରନତ ନହିଂ ବନୈ ॥

ନାଚହିଁ ଗାୱହିଁ ଗୀତ ପରମ ତରଂଗୀ ଭୂତ ସବ ।
ଦେଖତ ଅତି ବିପରୀତ ବୋଲହିଁ ବଚନ ବିଚିତ୍ର ବିଧି ॥୯୩॥

ଜସ ଦୂଲହୁ ତସି ବନୀ ବରାତା । କୌତୁକ ବିବିଧ ହୋହିଁ ମଗ ଜାତା ॥
ଇହାଁ ହିମାଚଲ ରଚେଉ ବିତାନା । ଅତି ବିଚିତ୍ର ନହିଂ ଜାଇ ବଖାନା ॥୧॥

---

କାହାର ତନୁ କ୍ଷୀଣ କେ ପୀନ ଅପାବନ ପାବନ କା ଦେହ ଘୃଣିତ ।
ଭୂଷଣ କି କରାଳ କରେ ଧୃତ କପାଳ ସଦ୍ୟ ଶୋଣିତ ତନୁ ଲିପ୍ତ ।
କେ ଶ୍ୱାନ ମୁଖ ଖରାକାର, ଶୃଗାଳ ଶୂକର କାହାର ।
ବର୍ଣ୍ଣି ନ ହୁଏ ପ୍ରେତ ପିଶାଚ ଯୋଗିନିଙ୍କ ସମାଜ ଅସଂଖ୍ୟ ପ୍ରକାର ॥

ଅତ୍ୟନ୍ତ ମଉଜୀ ଭୂତ ପ୍ରେତ ଗଣ ନାଚନ୍ତି ଗାଆନ୍ତି ଗୀତ ।
ବୋଲନ୍ତି ପରମ ବିଚିତ୍ର ବଚନ ଦେଖିବାକୁ ବିପରୀତ ॥୯୩॥

ଯେପରି ବର ସେପରି ହେଲେ ବରଯାତ୍ରୀ । ବିବିଧ କୌତୁକ କରି ମାର୍ଗରେ ଯାଆନ୍ତି ॥
ଏଣେ ହିମାଳୟ କଲେ ବିତାନ ରଚନ । ପରମ ବିଚିତ୍ର କରି ନ ହୁଏ ବର୍ଣ୍ଣନ ॥୧॥

---

ବଚନ ଶୁଣି ଶିବ ମଧ୍ୟ ଭୃଙ୍ଗୀଙ୍କୁ ପଠାଇ ତାଙ୍କର ବାକି ସମସ୍ତ ଗଣଙ୍କୁ ଡକାଇ ନେଲେ ॥୨॥ ଶିବଙ୍କର ଆଜ୍ଞା ପାଇବା ମାତ୍ରେ ସମସ୍ତେ ଚାଲି ଆସିଲେ । ସେମାନେ ଆସି ସ୍ୱାମୀଙ୍କ ଚରଣ-କମଳରେ ମୁଣ୍ଡ ନୁଆଁଇଲେ । ବିଭିନ୍ନ ପ୍ରକାରର ବାହନ ଓ ବିଭିନ୍ନ-ବେଶ-ଧାରୀ ଆପଣା ସମାଜକୁ ଦେଖି ଶିବ ହସିଲେ ॥୩॥ କେହି ମୁଖହୀନ ତ କାହାର ବହୁତ ମୁଖ, କାହାର ହାତପାଦ ନାହିଁ ତ କାହାର ଅନେକ ହାତପାଦ, କାହାର ବହୁତ ଆଖି ତ କାହାର ଗୋଟିଏ ହେଲେ ଆଖି ନାହିଁ, କେହି ଖୁବ ମୋଟାସୋଟା ତ କେହି ଖୁବ୍ ଦୁର୍ବଳ ପତଳା ॥୪॥ ଛନ୍ଦ —କେହି ବହୁତ ଦୁର୍ବଳ, କେହି ବହୁତ ମୋଟା, କେହି ପବିତ୍ର ଓ କେହି ଅପବିତ୍ର ବେଶ ଧାରଣ କରିଅଛନ୍ତି । ସମସ୍ତେ ଭୟଙ୍କର ଅଲଙ୍କାର ପିନ୍ଧିଅଛନ୍ତି, ହାତରେ କପାଳ ଧରିଅଛନ୍ତି ଏବଂ ସମସ୍ତଙ୍କ ଶରୀରରେ ସତେଜ ରକ୍ତ ପ୍ରବାହିତ । ଗଧ, କୁକୁର, ଶୂକର ଏବଂ ଶୃଗାଳର ମୁଖ ପରି ସେମାନଙ୍କ ମୁଖର ଆକୃତି । ଗଣମାନଙ୍କର ଅଗଣିତ ବେଶର ଗଣନା କିଏ କରି ପାରିବ ? ବହୁତ ପ୍ରକାର ପ୍ରେତ, ପିଶାଚ ଓ ଯୋଗିନୀ-ଦଳ ଚାଲିଥା'ନ୍ତି । ସେମାନଙ୍କ ବର୍ଣ୍ଣନା କରିବା ଅତି କଠିନ ବ୍ୟାପାର ॥ ସୋରଠା — ଭୂତପ୍ରେତ ନାଚ ନାଚ ଓ ଗୀତ ଗାଇ ଗାଇ ଚାଲିଥା'ନ୍ତି । ସେମାନେ ବେଶ୍ ମଉଜିଆ

ସୈଲ ସକଲ ଜହଁ ଲଗି ଜଗ ମାହୀଁ । ଲଘୁ ବିସାଲ ନହିଁ ବରନି ସିରାହୀଁ ॥
ବନ ସାଗର ସବ ନଦୀଁ ତଲାଊ । ହିମଗିରି ସବ କହୁଁ ନେଉତ ପଠାଊ ॥୨॥
କାମରୂପ ସୁନ୍ଦର ତନ ଧାରୀ । ସହିତ ସମାଜ ସହିତ ବର ନାରୀ ॥
ଗଏ ସକଲ ତୁହିନାଚଲ ଗେହା । ଗାଵହିଁ ମଙ୍ଗଲ ସହିତ ସନେହା ॥୩॥
ପ୍ରଥମହିଁ ଗିରି ବହୁ ଗୃହ ସଁଵରାଏ । ଜଥାଜୋଗୁ ତହଁ ତହଁ ସବ ଛାଏ ॥
ପୁର ସୋଭା ଅବଲୋକି ସୁହାଈ । ଲାଗଇ ଲଘୁ ବିରଂଚି ନିପୁନାଈ ॥୪॥

ଲଘୁ ଲାଗ ବିଧି କୀ ନିପୁନତା ଅବଲୋକି ପୁର ସୋଭା ସହୀ ।
ବନ ବାଗ କୂପ ତଡ଼ାଗ ସରିତା ସୁଭଗ ସବ ସକ କୋ କହୀ ॥
ମଂଗଲ ବିପୁଲ ତୋରନ ପତାକା କେତୁ ଗୃହ ଗୃହ ସୋହହୀଁ ।
ବନିତା ପୁରୁଷ ସୁନ୍ଦର ଚତୁର ଛବି ଦେଖି ମୁନିମନ ମୋହହୀଁ ॥

---

ଜଗତ ମଧ୍ୟେ ଶଇଲ ଥିଲେ ଯେ ପର୍ଯ୍ୟନ୍ତ । କ୍ଷୁଦ୍ର ବିଶାଳ କେ ଗଣି କରିପାରେ ବ୍ୟକ୍ତ ॥
ନଦୀ ପୁଷ୍କରିଣୀ ବନ ସାଗର ସକଳ । ସମସ୍ତଙ୍କୁ ନିମନ୍ତ୍ରଣ ଦେଲେ ହିମାଚଳ ॥୨॥
ଇଚ୍ଛାନୁରୂପ ସୁନ୍ଦର କଳେବର-ଧାରୀ । ସଙ୍ଗେ ଘେନି ପାଞ୍ଚ ମିତ୍ର ପରିବାର ନାରୀ ॥
ଆଗମନ କଲେ ସର୍ବେ ଗିରି-ରାଜପୁରେ । ସ୍ନେହେ ଗାଇଣ ମଙ୍ଗଳ ଗୀତ ସୁମଧୁରେ ॥୩॥
ପ୍ରଥମରୁ ଗିରି ବହୁ ଗୃହ ରଚିଥିଲେ । ଯଥାଯୋଗ୍ୟ ସ୍ଥାନ ଦେଖି ସମସ୍ତେ ରହିଲେ ॥
ପୁର ଶୋଭା ଅବଲୋକି ଅତି ଶୋଭାମୟ । ବିରଞ୍ଚି ନୈପୁଣ୍ୟ ତୁଚ୍ଛ ଲାଗେ ସେ ସମୟ ॥୪॥

ପୁରଶୋଭା ଦେଖିଣ ବିରଞ୍ଚିର ନୈପୁଣ୍ୟ ଅତ୍ୟନ୍ତ ନିକୃଷ୍ଟ ଲାଗଇ ।
କୂପ ସରିତ ସର ବନ ଉପବନର ରମ୍ୟତା କେ କହି ପାରଇ ॥
ପ୍ରତ୍ୟେକ ଭବନେ ତୋରଣ, କେତୁ ପତାକା ସୁଶୋଭନ ।
ଦେଖି ନରନାରୀଙ୍କ ଛବି ସୁରମଣୀୟ ମୋହିତ ହୁଏ ମୁନିମନ ॥

---

ଜଣା ପଡୁଥା'ନ୍ତି । ଦେଖିବାକୁ ବଡ଼ ବେଢଙ୍ଗିଆ ଏବଂ ବଡ଼ ବିଚିତ୍ର ଢଙ୍ଗରେ କଥା କହୁଥା'ନ୍ତି ॥୯୩॥ ଚୌପାଈ :—ବର ଯେମିତି, ବରଯାତ୍ରୀ ଏବେ ସେମିତି ହୋଇଗଲେ । ବାଟରେ ଯାଉ ଯାଉ ସେମାନେ ବିବିଧ କ୍ରୀଡ଼ା-କୌତୁକ କରୁଥା'ନ୍ତି । ଏଣେ ହିମାଚଳ ମଧ୍ୟ ବିଚିତ୍ର ମଣ୍ଡପ ନିର୍ମାଣ କରିଅଛନ୍ତି । ତାହାର ବର୍ଣ୍ଣନା ଅସମ୍ଭବ ॥୧॥ ଜଗତରେ ସାନବଡ଼ ପର୍ବତ ଯେତେ ଥିଲେ, ଯେଉଁମାନଙ୍କ ବର୍ଣ୍ଣନା କରି ବସିଲେ ସୁଦ୍ଧା ସରିବ ନାହିଁ, ସେ ସମସ୍ତଙ୍କୁ ଏବଂ ଯେତେ ବନ, ସମୁଦ୍ର, ନଦୀ ଓ ସରୋବର ଥିଲେ, ସମସ୍ତଙ୍କ ନିକଟକୁ ହିମାଚଳ ନିମନ୍ତ୍ରଣ ପଠାଇଲେ ॥୨॥ ସେମାନେ ସମସ୍ତେ କାମରୂପ । ସ୍ୱ ସ୍ୱ ଇଚ୍ଛାନୁଯାୟୀ ଶରୀର ଧାରଣପୂର୍ବକ ସେମାନେ ଶ୍ରେଷ୍ଠା ନାରୀ ଓ ସମାଜମାନଙ୍କ ସହିତ ହିମାଚଳଙ୍କ ଘରେ ଯାଇ ପହଞ୍ଚିଲେ । ସ୍ନେହ ଓ ଆଦରରେ ସମସ୍ତେ ମଙ୍ଗଳ ଗୀତ ଗାନ କରୁଥିଲେ ॥୩॥ ହିମାଚଳ ପ୍ରଥମରୁ ବହୁତ ଘର ସଜାଇ ରଖିଥିଲେ ।

ଜଗଦଂବା ଜହଁ ଅବତରୀ ସୋ ପୁରୁ ବରନି କି ଜାଇ ।
ରିଦ୍ଧି ସିଦ୍ଧି ସଂପତ୍ତି ସୁଖ ନିତ ନୂତନ ଅଧିକାଇ ॥୯୬॥
ନଗର ନିକଟ ବରାତ ସୁନି ଆଈ । ପୁର ଖରଭରୁ ସୋଭା ଅଧିକାଈ ॥
କରି ବନାଓ ସଜି ବାହନ ନାନା । ଚଲେ ଲେନ ସାଦର ଅଗଓ୍ୱାନା ॥୧॥
ହିୟଁ ହରଷେ ସୁର ସେନ ନିହାରୀ । ହରିହି ଦେଖି ଅତି ଭଏ ସୁଖାରୀ ॥
ସିବ ସମାଜ ଜବ ଦେଖନ ଲାଗେ । ବିଡରି ଚଲେ ବାହନ ସବ ଭାଗେ ॥୨॥
ଧରି ଧୀରଜୁ ତହଁ ରହେ ସୟାନେ । ବାଲକ ସବ ଲୈ ଜୀବ ପରାନେ ॥
ଗଏଁ ଭବନ ପୂଛହିଁ ପିତୁ ମାତା । କହହିଁ ବଚନ ଭୟ କମ୍ପିତ ଗାତା ॥୩॥

---

ଜଗଦମ୍ବା ଯେଉଁ ପୁରରେ ଅବତାର ଶୋଭା କି ବର୍ଣ୍ଣି ହୁଅଇ ।
ଋଦ୍ଧି ସିଦ୍ଧି ସୁଖ ସମ୍ପତ୍ତି ସମସ୍ତ ନିତ୍ୟ ନୂତନ ବଢଇ ॥୯୬॥
ବରଜାତ ହେଲେ ଯେବେ ନଗରନିକଟେ । କୋଲାହଲେ ପୁରଶୋଭା ଅଧିକ ପ୍ରକଟେ ॥
ସଜବାଜ ହୋଇ ସାଜି ବିବିଧ ବାହନ । ସ୍ୱାଗତ ନିମନ୍ତେ ଗଲେ ସାଦରେ ବହନ ॥୧॥
ସୁର ସେନ୍ୟଙ୍କୁ ନିରେଖି ହେଲେ ହରଷିତ । ହରିଙ୍କୁ ଦେଖନ୍ତେ ସୁଖ ଲଭିଲେ ଅମିତ ॥
ଶିବ ସମାଜକୁ ଯେବେ କଲେ ବିଲୋକନ । ଡରକି ପଳାଇ ଗଲେ ସଭୟେ ବାହନ ॥୨॥
ବୃଦ୍ଧେ ଧୈର୍ଯ୍ୟ ଧରି ତହିଁ ଚତୁରେ ରହିଲେ । ବାଳକବୃନ୍ଦ ଜୀବନ ଘେନି ପଳାଇଲେ ॥
ଗୃହକୁ ଯାଆନ୍ତେ ପିତାମାତା ପଚାରନ୍ତି । ଭୟ କମ୍ପିତ ଶରୀରେ ବଚନ ବୋଲନ୍ତି ॥୩॥

---

ଯଥାଯୋଗ୍ୟ ସ୍ଥାନମାନଙ୍କରେ ସେମାନେ ସମସ୍ତେ ବାସ କଲେ । ନଗରର ସୁନ୍ଦର ଶୋଭା ଦେଖି ବ୍ରହ୍ମାଙ୍କ ସୃଷ୍ଟି-ଚାତୁରୀ ମଧ୍ୟ ତୁଚ୍ଛ ବୋଧ ହେଉଥାଏ ॥୪॥ ଛନ୍ଦ :— ନଗରର ଶୋଭା ଦେଖି ବ୍ରହ୍ମାଙ୍କ ଦକ୍ଷତା ବାସ୍ତବିକ୍ ତୁଚ୍ଛ ଲାଗୁଥାଏ । ବନ, ଉପବନ, କୂପ, ସରସୀ, ନଦୀ ଆଦି ସମସ୍ତେ ସୁନ୍ଦର । ସେମାନଙ୍କର ବର୍ଣ୍ଣନା କିଏ କରି ପାରିବ ? ଘରେ ଘରେ ବହୁତ ମଙ୍ଗଳ-ତୋରଣ ଓ ଧ୍ୱଜା-ପତାକା ସୁଶୋଭିତ ହେଉଥାଏ । ସେଠିକାର ସୁନ୍ଦର ଓ ଚତୁର ସ୍ତ୍ରୀପୁରୁଷମାନଙ୍କ ଛବି ଦେଖି ମୁନିବୃନ୍ଦଙ୍କ ମନ ମଧ୍ୟ ମୋହିତ ହୋଇ ଯାଉଥାଏ ॥ ଦୋହା —ଯେଉଁ ନଗରରେ ସ୍ୱୟଂ ଜଗଦମ୍ବା ଅବତାର ଗ୍ରହଣ କରିଅଛନ୍ତି, ସେହି ନଗରର ବର୍ଣ୍ଣନା କ'ଣ ସମ୍ଭବ ହୋଇପାରେ ? ସେଠାରେ ଋଦ୍ଧି, ସିଦ୍ଧି, ସମ୍ପତ୍ତି ଓ ସୁଖ ନିତ୍ୟ ନୂତନ ଭାବରେ ବଢି ଚାଲିଥାଏ ॥୯୬॥ ଚୌପାଈ :—ବରଯାତ୍ରୀମାନଙ୍କ ଶୋଭାଯାତ୍ରା ପାଖେଇ ଆସିବାର ଶୁଣି ନଗରରେ ସଜାବଟ ଓ ସତେଜତାର ଲହରୀ ଖେଳିଗଲା । ଫଳରେ ନଗରର ଶୋଭା ବଢିଗଲା । ସ୍ୱାଗତକାରୀମାନେ ଆଡମ୍ବର-ଶୃଙ୍ଗାର ସହକାରେ ନାନାପ୍ରକାର ଯାନବାହନ ଆଦି ସଜାଇ ସାଦର ବାରାତକୁ ପାଛୋଟି ଆଣିବାକୁ ଗଲେ ॥୧॥ ଦେବ-ସମାଜକୁ ଦେଖି ସମସ୍ତେ ମନେ ମନେ ଆନନ୍ଦିତ ହେଲେ । ବିଷ୍ଣୁ ଭଗବାନ୍‌ଙ୍କୁ ଦେଖି ସେମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ମାତ୍ର ଶିବଙ୍କ ସମାଜ ଦେଖି ସେମାନଙ୍କ ଯାନ-ବାହନର

କହିଅ କାହ କହି ଜାଇ ନ ବାତା । ଜମ କର ଧାର କଧୌଁ ବରିଆତା ॥
ବରୁ ବୌରାହ ବସହଁ ଅସବାରା । ବ୍ୟାଲ କପାଲ ବିଭୂଷନ ଛାରା ॥୪॥

ତନ ଛାର ବ୍ୟାଲ କପାଲ ଭୂଷନ ନଗନ ଜଟିଲ ଭୟଂକରା ।
ସଁଗ ଭୂତ ପ୍ରେତ ପିସାଚ ଜୋଗିନି ବିକଟ ମୁଖ ରଜନୀଚରା ॥
ଜୋ ଜିଅତ ରହିହି ବରାତ ଦେଖତ ପୁନ୍ୟ ବଡ ତେହି କର ସହୀ ॥
ଦେଖିହି ସୋ ଉମାବିବାହୁ ଘର ଘର ବାତ ଅସି ଲରିକନ୍ହ କହୀ ॥

ସମୁଝି ମହେସ ସମାଜ ସବ ଜନନି ଜନକ ମୁସୁକାହିଁ ।
ବାଲ ବୁଝାଏ ବିବିଧ ବିଧି ନିଡର ହୋହୁ ଡରୁ ନାହିଁ ॥୯୫॥

ଲୈ ଅଗବାନ ବରାତହି ଆଏ । ଦିଏ ସବହି ଜନବାସ ସୁହାଏ ॥
ମୈନାଁ ସୁଭ ଆରତୀ ସଁଵାରୀ । ସଂଗ ସୁମଂଗଲ ଗାଵହିଁ ନାରୀ ॥୧॥

---

କି କହିବୁ କଥା କିଛି କହି ନ ହୁଅଇ । ଯମର ସେନା କି ବରଜାତିଏ ଆସଇ ॥
ବାଇଆ ବର ବୃଷଭ ଉପରେ ବସିଛି । ବ୍ୟାଲ ମୁଣ୍ଡମାଳ ଭସ୍ମ ଭୂଷଣ ସାଜିଛି ॥୪॥

ସାଜେ ଭୂଷଣ ବ୍ୟାଲ ଅଙ୍ଗେ ଭସ୍ମ କପାଳ ଜଟିଲ ଉଲଗ୍ନ ଭୀଷଣ ।
ସଙ୍ଗେ ଛନ୍ନ ବହୁତ ପ୍ରେତ ପିଶାଚ ଭୂତ ଦଇତ ବିକଟବଦନ ॥
ଯେ ଦେଖି ବରଜାତ ଗତ, ବଞ୍ଚିବ ତାର ପୁଣ୍ୟ ଅତ ।
ଦେଖିବ ସେ ଉମାର ବିବାହ ଘର ଘର ବାଳକେ ଏମନ୍ତ କହନ୍ତି ॥

ମନେ ଭାବି ଶିବ ଗଣଙ୍କ ସ୍ୱରୂପ ହସି ହସି ମାତା ପିତା ।
ନିଜ ବାଳକଙ୍କୁ ବୁଝାନ୍ତି ନ ଡର, ନାହିଁ କିଛି ଭୟ ଚିନ୍ତା ॥୯୫॥
ଅଭ୍ୟର୍ଥନା କରି ବରଜାତିଙ୍କୁ ଆଣିଲେ । ସମସ୍ତଙ୍କୁ ଦିବ୍ୟ ବରବାସ ପ୍ରଦାନିଲେ ॥
ମେନା ସଜାଇଲେ ଶୁଭ ସୁନ୍ଦର ଆଳତି । ସଙ୍ଗେ ନାରୀ ସୁମଙ୍ଗଳ ଗାୟନ କରନ୍ତି ॥୧॥

---

ହାତୀ, ଘୋଡା ଓ ବଳଦ ପ୍ରଭୃତି ଡରି ପଳାଇଗଲେ ॥୨॥ କେତେକ ପ୍ରୌଢ଼ ଓ ବୁଦ୍ଧିମାନ୍ ଲୋକ ଧୈର୍ଯ୍ୟ ଧରି ସେଠାରେ ଅଟଳ ରହିଲେ । ବାଳକମାନେ ସମସ୍ତେ ଆପଣା ଆପଣା ଜୀବନ ଧରି ପଳାଇଲେ । ଘରେ ପହଞ୍ଚିଲାରୁ ମାତା-ପିତା ତହିଁର କାରଣ ପଚାରିଲେ । ପିଲାମାନେ କମ୍ପିତ ଶରୀରରେ ବଚନ କହିଲେ—॥୩॥ "କ'ଣ କହିବୁ ? କହିବାକୁ ପାରିବୁ କଥା ବାହାରୁ ନାହିଁ । ଏହା ବାରାତ ନା ଯମରାଜଙ୍କ ସେନା ? ବର ପାଗଳ ଓ ଷଣ୍ଢ ଉପରେ ବସିଛି । ସାପ, କପାଳ ଓ ପାଉଁଶ ତାହାର ଅଳଙ୍କାର ॥୪॥ ଛନ୍ଦ ।—ବର ଶରୀରରେ ପାଉଁଶ ବୋଳି ହୋଇଛି । ସାପ ଓ କପାଳ ଭୂଷଣ; ସେ ଲଙ୍ଗଳା, ପୁଣି ଜଟାଧାରୀ । ଦେଖିବାକୁ ଅତି ଭୟଙ୍କର । ତା ସଙ୍ଗରେ ଭୀଷଣ-ବଦନ ଭୂତ, ପ୍ରେତ, ପିଶାଚ, ଯୋଗିନୀ ଓ ରାକ୍ଷସଗଣ ଅଛନ୍ତି । ବରଯାତ୍ରୀଙ୍କୁ ଦେଖି ଯେ ଜୀବିତ ରହିଯିବ, ବାସ୍ତବରେ ତା'ର ବଡ ପୁଣ୍ୟବଳ, ସେଇ ହିଁ ପାର୍ବତୀ-

କଂଚନ ଥାର ସୋହ ବର ପାନୀ । ପରିଛନ ଚଲୀ ହରହି ହରଷାନୀ ॥
ବିକଟ ବେଷ ରୁଦ୍ରହି ଜବ ଦେଖା । ଅବଲନ୍ହ ଉର ଭୟ ଭୟଉ ବିସେଷା ॥୨॥
ଭାଗି ଭବନ ପୈଠୀଁ ଅତି ତ୍ରାସା । ଗଏ ମହେସୁ ଜହାଁ ଜନବାସା ॥
ମୈନା ହୃଦୟଁ ଭୟଉ ଦୁଖୁ ଭାରୀ । ଲୀନ୍ହୀ ବୋଲି ଗିରୀସକୁମାରୀ ॥୩॥
ଅଧିକ ସନେହଁ ଗୋଦ ବୈଠାରୀ । ସ୍ୟାମ ସରୋଜ ନୟନ ଭରେ ବାରୀ ॥
ଜେହିଁ ବିଧି ତୁମ୍ହହି ରୂପୁ ଅସ ଦୀନ୍ହା । ତେହିଁ ଜଡ଼ ବରୁ ବାଉର କସ କୀନ୍ହା ॥୪॥

କସ କୀନ୍ହ ବରୁ ବୌରାହ ବିଧି ଜେହିଁ ତୁମ୍ହହି ସୁନ୍ଦରତା ଦଈ ।
ଜୋ ଫଲୁ ଚହିଅ ସୁରତରୁହିଁ ସୋ ବରବସ ବବୂରହିଁ ଲାଗଈ ।
ତୁମ୍ହ ସହିତ ଗିରି ତେଁ ଗିରୌଁ ପାବକ ଜରୌଁ ଜଲନିଧି ମହୁଁ ପରୌଁ ।
ଘରୁ ଜାଉ ଅପଜସୁ ହୋଉ ଜଗ ଜୀବତ ବିବାହୁ ନ ହୌଁ କରୌଁ ॥

---

କଞ୍ଚନ ଥାଳୀ ଶୋଭଇ ମନୋହର କରେ । ହର ବନ୍ଦାପନା ହେତୁ ଗଲେ ହରଷରେ ॥
ଦେଖିଲେ ରୁଦ୍ରଙ୍କ ଯେବେ ଭୟଙ୍କରବେଶ । ଅବଳାଙ୍କ ହୃଦେ ଭୟ ହୋଇଲା ବିଶେଷ ॥୨॥
ପଳାଇଯାଇ ପଶିଲେ ଗୃହମଧ୍ୟେ ତ୍ରାସେ । ଗମନ କଲେ ମହେଶ ତାହାଁ ବର-ବାସେ ॥
ମେନାଙ୍କ ହୃଦୟେ ଦୁଃଖ ଉପୁଜିଲା ଭାରୀ । ପାର୍ବତୀଙ୍କୁ ଆପଣା ସମୀପେ ହକାରି ॥୩॥
ଅଧିକବାତ୍ସଲ୍ୟସ୍ନେହେକୋଳେବସାଇଲେ । ଶ୍ୟାମ ସରୋଜ ନୟନୁ ନୀର ବୁହାଇଲେ ॥
ଯେଉଁ ବିଧି ଦେଲା ତୋତେ ରୂପ ଏହିପରି । ବାଉଳ ବର ସେ ଜଡ଼ ଗଢ଼ିଲା କିପରି ॥୪॥

ଏ ସୌମ୍ୟ ରୂପ ତୋତେ ଦେଇ ବିଧି କେମନ୍ତେ ବାଉଳାବର ଯୋଗାଉଛି ।
ଯେ ଫଳ କଳ୍ପଦ୍ରୁମେ ଫଳନ୍ତା ତାହା କର୍ମେ କଣ୍ଟକ ବୃକ୍ଷରେ ଫଳୁଛି ॥
ତୋ ସହ ଗିରିରୁ ପଡ଼ିବି, ବୁଡ଼ିବି ଜଳେ ବା ଜଳିବି ।
ଘର ଭାଙ୍ଗୁ ଜଗତେ ଯଶ ଯାଉ ଜୀଅନ୍ତେ ବିବାହ ତୋର ନ କରିବି ॥

---

ବିବାହ ଦେଖିବ ।'' ପିଲାମାନେ ଘରେ ଘରେ ଏହି କଥା କହିଲେ । ଦୋହା '— ମହେଶ୍ୱରଙ୍କ ସମାଜ କଥା ଶୁଣି ସମସ୍ତ ବାଳକଙ୍କ ମାତା-ପିତା ହସୁଥା'ନ୍ତି । ସେମାନେ ପିଲାମାନଙ୍କୁ ବହୁତ ପ୍ରକାରେ ବୁଝାଇଲେ, "ନିର୍ଭୀକ ହୁଅ, ଡରିବା କଥା କିଛି ନାହିଁ ।'' ॥୯୫॥ ଚୌପାଇ —ଅଭ୍ୟର୍ଥନାକାରୀମାନେ ବରଯାତ୍ରୀମାନଙ୍କୁ ପାଛୋଟି ଆଣିଲେ । ରହିବା ନିମନ୍ତେ ସେମାନଙ୍କୁ ସୁନ୍ଦର ବାସସ୍ଥାନ ଦେଲେ । ପାର୍ବତୀଙ୍କ ମାତା ମେନା ଶୁଭ ଆରତି ସଜାଡ଼ିଲେ ଏବଂ ତାଙ୍କ ସହିତ ଥିବା ନାରୀମାନେ ସୁମଙ୍ଗଳ ଗୀତ ଗାଇବାକୁ ଲାଗିଲେ ॥୧॥ ସେମାନଙ୍କ ଶ୍ରେଷ୍ଠ ହସ୍ତରେ ସୁନ୍ଦର ଥାଳୀମାନ ସୁଶୋଭିତ ହେଉଥାଏ । ଏହିପରି ଭାବରେ ମେନା ସହର୍ଷ ଶିବଙ୍କର ଲବଣଚଉଁରୀ ବିଧାନ କଲେ । ମହାଦେବଙ୍କୁ ଏପରି ଭୟାନକ ବେଶରେ ଦେଖି ସ୍ତ୍ରୀମାନଙ୍କ ମନରେ ବଡ଼ ଭୟ ଜାତ ହେଲା ॥୨॥ ବିଶେଷ ଭୟ ହେତୁ ପଳାଇଯାଇ ସେମାନେ ଘରେ ପଶିଗଲେ ଏବଂ

ଭଇଁ ବିକଲ ଅବଲା ସକଲ ଦୁଖିତ ଦେଖି ଗିରିନାରି ।
କରି ବିଲାପୁ ରୋଦତି ବଦତି ସୁତା ସନେହୁ ସଂଭାରି ॥୯୭॥
ନାରଦ କର ମେଁ କାହ ବିଗାରା । ଭବନୁ ମୋର ଜିନ୍ହ ବସତ ଉଜାରା ॥
ଅସ ଉପଦେସୁ ଉମହି ଜିନ୍ହ ଦୀନ୍ହା । ବୌରେ ବରହି ଲାଗି ତପୁ କୀନ୍ହା ॥୧॥
ସାଚେହୁଁ ଉନ୍ହ କେଁ ମୋହ ନ ମାୟା । ଉଦାସୀନ ଧନୁ ଧାମୁ ନ ଜାୟା ॥
ପର ଘର ଘାଲକ ଲାଜ ନ ଭୀରା । ବାଁଝ କି ଜାନ ପ୍ରସବ କୈ ପୀରା ॥୨॥
ଜନନିହି ବିକଲ ବିଲୋକି ଭବାନୀ । ବୋଲୀ ଜୁତ ବିବେକ ମୃଦୁ ବାନୀ ॥
ଅସ ବିଚାରି ସୋଚହି ମତି ମାତା । ସୋ ନ ଟରଇ ଜୋ ରଚଇ ବିଧାତା ॥୩॥

---

ହୋଇଲେ ବିକଳ ଅବଳା ସକଳ ରାଣୀଙ୍କ ଦୁଃଖ ଦେଖିଣ ।
ବିଳପି ରୋଦନ କରନ୍ତି ବହୁତ ଦୁହିତା ସ୍ନେହ ସ୍ମରଣ ॥୯ ॥
କି ଅବା ନାରଦଙ୍କର ଥିଲି ମୁଁ ବିଗାଡି । ଉଠିଆ ଘରକୁ ମୋର ଦେଲେ ଯେ ଉଜାଡି ॥
ଉମାଙ୍କୁ ଏମନ୍ତ ଉପଦେଶ ପ୍ରଦାନଲେ । ବାତୁଲ ବର ନିମନ୍ତେ ତପ କରାଇଲେ ॥୧॥
ସତ୍ୟ ଏକା ତାହାଙ୍କର ନାହିଁ ମୋହମାୟା । ଉଦାସୀନ ନାହିଁ ଧନ ଧାମ ପୁତ୍ର ଜାୟା ॥
ପର ଘର ବିନାଶକ ଲାଜଭୟ ନାହିଁ । ବନ୍ଧ୍ୟା କି ପ୍ରସବ ପୀଡା ଜାଣିପାରେ କାହିଁ ॥୨॥
ମାତାଙ୍କୁ ବିକଳ ଅବଲୋକିଣ ଭବାନୀ । ଭାଷିଲେ ବିବେକଯୁକ୍ତ ସୁମଧୁର ବାଣୀ ॥
ଏମନ୍ତ ବିଚାରି ଚିନ୍ତା ପରିହର ମାତା । ତାହା ନ ଟଳଇ ଯାହା ରଚିଛନ୍ତି ବିଧାତା ॥୩॥

---

ଶିବ ଆପଣା ବିହାଘରକୁ ଚାଲିଗଲେ । ମେନାଙ୍କ ମନରେ ବଡ ଦୁଃଖ ଜାତ ହେଲା । ସେ ପାର୍ବତୀଙ୍କୁ ଆପଣା ପାଖକୁ ଡାକି ନେଲେ ॥୩॥ ଅତି ସ୍ନେହରେ କୋଳରେ ବସାଇଲେ । ନୀଳକମଳ ସଦୃଶ ଆପଣା ନେତ୍ରରେ ଅଶ୍ରୁ ଭରି କହିଲେ, "ଯେଉଁ ବିଧାତା ତୋତେ ଏପରି ସୁନ୍ଦର ରୂପ ଦେଇଅଛନ୍ତି, ସେହି ମୂର୍ଖ ତୋ ବରକୁ ପାଗଳ କରି ଗଢିଲେ କିମିତି ? ॥୪॥ ଛନ୍ଦ —ଯେଉଁ ବିଧାତା ତୋତେ ସୌନ୍ଦର୍ଯ୍ୟ ଦେଲେ, ସେ ତୋ ବରକୁ ପାଗଳ କିପରି କଲେ ? କଳ୍ପବୃକ୍ଷରେ ଯେଉଁ ଫଳ ଫଳିବା ଉଚିତ, ସେ ତାହାକୁ ନେଇ ଜବରଦସ୍ତ ଗୋଲ୍ବାର ବୃକ୍ଷରେ ଲଗାଉଅଛନ୍ତି । ତୋତେ ଧରି ମୁଁ ପାହାଡରୁ ଡେଇଁ ପଡିବି, ଅଗ୍ନିରେ ଝାସ ଦେବି କିଂବା ସମୁଦ୍ରରେ ବୁଡି ମରିବି । ଘର ଉଜୁଡିଯାଉ ଏବଂ ସାରା ସଂସାରରେ ଅପକୀର୍ତ୍ତି ବ୍ୟାପିଯାଉ ପଛକେ, ବଞ୍ଚି ଥାଉ ଥାଉ ଏ ବିବାହ ମୁଁ କରାଇ ଦେବିନାହିଁ ।" ଦୋହା.—ହିମାଚଳଙ୍କ ପତ୍ନୀ ମେନାଙ୍କୁ ଦୁଃଖିତା ଦେଖି ସମସ୍ତ ସ୍ତ୍ରୀ ବ୍ୟାକୁଳ ହୋଇ ପଡିଲେ । ଆପଣା କନ୍ୟାର ସ୍ନେହ ସ୍ମରଣ କରି ମେନା ବିଳାପ କରି କାନ୍ଦୁଥା'ନ୍ତି ଏବଂ କହୁଥା'ନ୍ତି— ॥୯୭॥ ଚୌପାଈ—"ମୁଁ ନାରଦଙ୍କର କ'ଣ କ୍ଷତି କରିଥିଲି ଯେ ସେ ମୋର ଏ ସୁନାର ସଂସାରକୁ ଉଜାଡି ଦେଲେ ? ସେ ଏପରି ପାଗଳ ବର ନିମନ୍ତେ ତପସ୍ୟା କରିବାକୁ ମୋ କନ୍ୟାକୁ କାହିଁକି ଉପଦେଶ ଦେଲେ ? ॥ ୧ ॥ ବାସ୍ତବିକ୍ ତାଙ୍କ ମନରେ

କରମ ଲିଖା ଜୌଁ ବାଉର ନାହୂ । ତୌ କତ ଦୋଷୁ ଲଗାଇଅ କାହୂ ॥
ତୁହ୍ମ ସନ ମିଟହିଁ କି ବିଧିକେ ଅଂକା । ମାତୁ ବ୍ୟର୍ଥ ଜନି ଲେହୁ କଲଂକା ॥୩॥

ଜନି ଲେହୁ ମାତୁ କଲଂକୁ କରୁନା ପରିହରହୁ ଅବସରୁ ନହୀଁ ।
ଦୁଖୁ ସୁଖୁ ଜୋ ଲିଖା ଲିଲାର ହମରେଁ ଜାବ ଜହଁ ପାଉବ ତହୀଁ ।
ସୁନି ଉମାବଚନ ବିନୀତ କୋମଲ ସକଲ ଅବଲା ସୋଚହୀଁ ।
ବହୁ ଭାଁତି ବିଧିହି ଲଗାଇ ଦୂଷନ ନୟନ ବାରି ବିମୋଚହୀଁ ॥

ତେହି ଅବସର ନାରଦ ସହିତ ଅରୁ ରିଷି ସପ୍ତ ସମେତ ।
ସମାଚାର ସୁନି ତୁହିନଗିରି ଗବନେ ତୁରତ ନିକେତ ॥୯୭॥

---

ବାତୁଳବର କର୍ମରେ ଲେଖାଅଛି ଯେବେ । କାହାକୁ କିପାଇଁ ଦୋଷ ଲଗାଉଛ ତେବେ ॥
ତୁମ୍ଭଦ୍ୱାରା ଲିଭିବ କି ବିଧାତାର ଅଙ୍କ । ବୃଥାରେ ଜନନୀ ଏବେ ନ ନିଅ କଳଙ୍କ ॥୪॥

କଳଙ୍କ ମା ନ ନିଅ କାରୁଣ୍ୟ ତେଜିଦିଅ ସମୟ ଏବେ ଆଉ ନାହିଁ ।
ସୁଖ ଦୁଃଖ ଯେ କିଛି ଲଲାଟେ ଲେଖା ଅଛି ପାଇବି ଗଲେ ମଧ କାହିଁ ॥
ଉମାଙ୍କ ମଧୁର ବଚନ, ଶୁଣି ଚିନ୍ତାନ୍ତ ନାରୀଗଣ ।
ଦୋଷ ନାନା ପ୍ରକାରେ ଦେଇ ବିଧି ଉପରେ ଲୋତକ ବହାନ୍ତି ଲୋଚନ ॥

ସେହି ସମୟରେ ନାରଦ ସଙ୍ଗରେ ଘେନିଣ ସପ୍ତ ଋଷିଙ୍କୁ ।
ଶୁଣି ସମାଚାର ଆସିଲେ ସତ୍ୱର ହିମ ଶଇଳ ପୁରୀକୁ ॥୯୭॥

---

କାହା ପ୍ରତି ମାୟାମୋହ ନାହିଁ, ତାଙ୍କର ଧନ ନାହିଁ, ଘର ନାହିଁ କି ସ୍ତ୍ରୀ ନାହିଁ । ସେ ସବୁଆଡୁ ଉଦାସୀନ । ଏଣୁ ସେ ପର ଘର ଉଜାଡିବାକୁ ଆଗ୍ରହୀ । କାହା ପ୍ରତି ତାଙ୍କର ଲଜ୍ଜା ନାହିଁ କି ଡର ନାହିଁ । ଭଲା, ବନ୍ଧ୍ୟା ସ୍ତ୍ରୀ ପ୍ରସବର ବେଦନା କାହୁଁ ଜାଣିବ ? ॥ ୨ ॥ ମାତାଙ୍କ ବ୍ୟାକୁଳତା ଦେଖି ପାର୍ବତୀ ବିବେକଯୁକ୍ତ କୋମଳ ବାଣୀ କହିଲେ, "ହେ ମାତ ' ବିଧାତାର ସୃଷ୍ଟି କଦାପି ଅନ୍ୟଥା ହୁଏ ନାହିଁ । ଏହିପରି ଭାବି ତୁମେ ଚିନ୍ତା କର ନାହିଁ ॥ ୩ ॥ ମୋ ଭାଗ୍ୟରେ ଯଦି ପାଗଳ ପତି ଲେଖା ହୋଇଛି, ତେବେ କାହାକୁ କାହିଁକି ଦୋଷ ଦିଆଯିବ ? ହେ ମାତ ' ବିଧାତାଙ୍କ ଲିଖନ କ'ଣ ତୁମେ ମେଣ୍ଟାଇ ପାରିବ ? ବୃଥାରେ କଳଙ୍କର ଟୀକା ଧାରଣ କର ନାହିଁ ॥ ୪ ॥ ଛନ୍ଦ—ହେ ମାତ ! କଳଙ୍କ ନିଅ ନାହିଁ, କାନ୍ଦିବା ଛାଡ । ଏ ଅବସରରେ ଦୁଃଖ କରିବାର ନୁହେଁ । ମୋ ଭାଗ୍ୟରେ ଯେଉଁ ଦୁଃଖସୁଖ ଲେଖା ହୋଇଛି, ମୁଁ ଯେଉଁଠିକି ଯାଏ ପଛକେ, ସେହିଠାରେ ସେତିକି ପାଇବି, ସେତିକି ହିଁ ପାଇବି !" ପାର୍ବତୀଙ୍କ ବିନୟ-ପୂର୍ଣ୍ଣ କୋମଳ ବଚନ ଶୁଣି ସମସ୍ତ ନାରୀ ଚିନ୍ତା କରିବାକୁ ଲାଗିଲେ ଏବଂ ବିବିଧ ପ୍ରକାରେ ବିଧାତାଙ୍କୁ ଦୋଷ ଦେଇ ଆଖିରୁ ଲୁହ ଗଡ଼ାଇଲେ । ଦୋହା—ଏହି ସମାଚାର ଶୁଣିବା ମାତ୍ରେ ହିମାଚଳ ସେହି ସମୟରେ

ତବ ନାରଦ ସବହୀ ସମୁଝାୱା । ପୂରୁବ କଥା ପ୍ରସଂଗୁ ସୁନାୱା ॥
ମୟନା ସତ୍ୟ ସୁନହୁ ମମ ବାନୀ । ଜଗଦଂବା ତବ ସୁତା ଭବାନୀ ॥୧॥
ଅଜା ଅନାଦି ସକ୍ତି ଅବିନାସିନି । ସଦା ସଂଭୁ ଅରଧଂଗ ନିବାସିନି ॥
ଜଗ ସଂଭବ ପାଲନ ଲୟ କାରିନି । ନିଜ ଇଛା ଲୀଲା ବପୁ ଧାରିନି ॥୨॥
ଜନମୀଁ ପ୍ରଥମ ଦଚ୍ଛଗୃହ ଜାଈ । ନାମୁ ସତୀ ସୁନ୍ଦର ତନୁ ପାଈ ॥
ତହଁହୁ ସତୀ ସଂକରହି ବିବାହୀଁ । କଥା ପ୍ରସିଦ୍ଧ ସକଲ ଜଗ ମାହୀଁ ॥୩॥
ଏକ ବାର ଆୱତ ସିବ ସଂଗା । ଦେଖେଉ ରଘୁକୁଲ କମଲ ପତଂଗା ॥
ଭୟଉ ମୋହୁ ସିବ କହା ନ କୀନ୍ହା । ଭ୍ରମବସ ବେଷୁ ସୀଅ କର ଲୀନ୍ହା ॥୪॥

ସିୟବେଷୁ ସତୀଁ ଜୋ କୀନ୍ହ ତେହିଁ ଅପରାଧ ସଂକର ପରିହରୀଁ ।
ହର ବିରହଁ ଜାଇ ବହୋରି ପିତୁ କେଁ ଜଗ୍ୟ ଜୋଗାନଲ ଜରୀଁ ॥
ଅବ ଜନମି ତୁମ୍ହରେଁ ଭବନ ନିଜ ପତି ଲାଗି ଦାରୁନ ତପୁ କିୟା ॥
ଅସ ଜାନି ସଂସୟ ତଜହୁ ଗିରିଜା ସର୍ବଦା ସଂକରପ୍ରିୟା ॥

---

ତହୁଁ ସମସ୍ତଙ୍କୁ ବ୍ରହ୍ମାସୁତ ବୁଝାଇଲେ । ପୂର୍ବର କଥା ପ୍ରସଙ୍ଗ କହି ଶୁଣାଇଲେ ॥
ମେନା ହେ, ଶ୍ରବଣ କର ସତ୍ୟ ମୋର ବାଣୀ । ଜଗଦମ୍ବା ଅଟେ ତୁମ୍ଭ ତନୟା ଭବାନୀ ॥୧॥
ଅଜନ୍ମା ଅନାଦି ଶକ୍ତି ସେ ଅବିନାଶିନୀ । ସଦା ଶଙ୍କରଙ୍କ ଅର୍ଦ୍ଧଅଙ୍ଗ ନିବାସିନୀ ॥
ଜଗତ ଉତ୍ପତ୍ତି ସ୍ଥିତି ସଂହାର କାରିଣୀ । ନିଜ ଇଚ୍ଛାମତେ ଲୀଳା ଶରୀରଧାରିଣୀ ॥୨॥
ଜନମିଥିଲେ ପ୍ରଥମେ ଦକ୍ଷ ଗୃହେ ଯାଇ । ସତୀ ନାମ ଥିଲା ତେବେ ଦିବ୍ୟ ତନୁ ପାଇ ॥
ବିଭା ହୋଇଥିଲେ ତହିଁ ଶିବଙ୍କ ସହିତ । ତିନି ଭୁବନର ମଧ୍ୟେ ଏ କଥା ବିଦିତ ॥୩॥
ଏକଦା ଶିବଙ୍କ ସଙ୍ଗେ ଆସନ୍ତେ ମାର୍ଗରେ । ବିଲୋକଣ ରଘୁକୁଳ-କମଳ-ଭାସ୍କରେ ॥
ଉପୁଜିଲା ମୋହ ସ୍ୱାମୀ ଶିକ୍ଷା ନ ମାନିଲେ । ଭ୍ରମବଶ ସୀତାଙ୍କର ବେଷ ବରିଲେ ॥୪॥

ଧରନ୍ତେ ଭ୍ରମବଶ ସତୀ ସୀତାଙ୍କ ବେଶ ସେ ଦୋଷୁ ଶିବ ତେଜି ଦେଲେ ।
ତହୁଁ ହର ବିରହେ ପିତାଙ୍କ ଯଜ୍ଞ ଗୃହେ ଯୋଗାନଳରେ ଭସ୍ମ ହେଲେ ॥
ଏବେ ଏଠାରେ ଜନ୍ମି ଯାଇ, ତପସ୍ୟା କଲେ ପତି ପାଇଁ ।
ମନୁ ସଂଶୟ ଗ୍ଲାନି ତେଜ ସର୍ବଦା ଜାଣି ଶଙ୍କର ଗିରିଜାଙ୍କ ସାଇଁ ॥

---

ନାରଦ ଓ ସପ୍ତର୍ଷିଙ୍କ ସଙ୍ଗରେ ଧରି ଆପଣା ଘରକୁ ଆସିଲେ ॥୯୭॥ ଚୌପାଈ—
ତତ୍ପରେ ନାରଦ ପୂର୍ବ ଜନ୍ମବୃତ୍ତାନ୍ତ ଶୁଣାଇ ସମସ୍ତଙ୍କୁ ବୁଝାଇଲେ ଏବଂ କହିଲେ, "ହେ ମେନା ! ତୁମେ ମୋ ସତ୍ୟ କଥା ଶୁଣ, ତୁମର ଏ କନ୍ୟା ସାକ୍ଷାତ୍ ଜଗଜ୍ଜନନୀ ଭବାନୀ ॥ ୧ ॥ ଏ ଅଜନ୍ମା, ଅନାଦି ଓ ଅବିନାଶିନୀ ଶକ୍ତି । ସଦାସର୍ବଦା ଏ ଶିବଙ୍କ ଅର୍ଦ୍ଧାଙ୍ଗ-ନିବାସିନୀ । ଏ ଜଗତର ଉତ୍ପତ୍ତି, ପାଳନ ଓ ସଂହାର-କାରିଣୀ, କେବଳ ନିଜ ଇଚ୍ଛାନୁଯାୟୀ ହିଁ ଏ ଲୀଳା-ଶରୀର ଧାରଣ କରନ୍ତି ॥ ୨ ॥ ପୂର୍ବେ ଏ ଦକ୍ଷଙ୍କ

ସୁନି ନାରଦ କେ ବଚନ ତବ ସବ କର ମିଟା ବିଷାଦ ।
ଛନ ମହୁ ବ୍ୟାପେଉ ସକଲ ପୁର ଘର ଘର ଯହ ସଂବାଦ ॥୯୮॥
ତବ ମୟନା ହିମବଂତୁ ଅନଂଦେ । ପୁନି ପୁନି ପାରବତୀ ପଦ ବଂଦେ ॥
ନାରି ପୁରୁଷ ସିସୁ ଜୁବା ସୟାନେ । ନଗର ଲୋଗ ସବ ଅତି ହରଷାନେ ॥
ଲଗେ ହୋନ ପୁର ମଂଗଲ ଗାନା । ସଜେ ସବହି ହାଟକ ଘଟ ନାନା ॥
ଭାଁତି ଅନେକ ଭଈ ଜେବନାରା । ସୂପସାସ୍ତ୍ର ଜସ କଛୁ ବ୍ୟବହାରା ॥୨॥
ସୋ ଜେବନାର କି ଜାଇ ବଖାନୀ । ବସହିଁ ଭବନ ଜେହିଁ ମାତୁ ଭବାନୀ ॥
ସାଦର ବୋଲେ ସକଲ ବରାତୀ । ବିଷ୍ଣୁ ବିରଂଚି ଦେବ ସବ ଜାତୀ ॥୩॥

---

ନାରଦଙ୍କ ବାଣୀ ଶୁଣି ସମସ୍ତଙ୍କ ନାଶ ହୋଇଲା ବିଷାଦ ।
କ୍ଷଣକ ମଧ୍ୟରେ ପୁରେ ପ୍ରତି ଘରେ ବ୍ୟାପିଲା ଏହି ସମ୍ବାଦ ॥୯୮॥
ତହୁଁ ମେନା ହିମବନ୍ତ ଲଭିଣ ଆନନ୍ଦ । ବାରମ୍ବାର ବନ୍ଦିଲେ ପାର୍ବତୀଙ୍କ ପଦ ॥
ରମଣୀ ପୁରୁଷ ଶିଶୁ ଯୁବକ ଚତୁର । ନଗର ଲୋକେ ହୋଇଲେ ହରଷିତ ଉର ॥୧॥
ପୁରେ ସୁମଙ୍ଗଳ ଗାନ ହୋଇଲା ସରସ । ସାଜିଲେ ସମସ୍ତେ ସ୍ୱର୍ଣ୍ଣ ମଙ୍ଗଳ କଳସ ॥
ନାନାବିଧ ଭୋଜ୍ୟ ବସ୍ତୁ ହୋଇଲା ନିର୍ମାଣ । ସୂପ ଶାସ୍ତ୍ରରେ ଯେପରି ବର୍ଣ୍ଣିତ ବିଧାନ ॥୨॥
ସେ ଭୋଜବ୍ୟବସ୍ଥା କେହିବର୍ଣ୍ଣି କି ପାରନ୍ତି । ଯେଉଁ ଭବନରେ ମାତା ଭବାନୀ ରହନ୍ତି ॥
ସାଦରେ ବରଯାତ୍ରୀଙ୍କୁ ଡକାଇ ଆଣିଲେ । ବିଷ୍ଣୁ ବ୍ରହ୍ମାଦି ସକଳ ଦେବତା ଆସିଲେ ॥୩॥

---

ଗୃହରେ ଯାଇ ଜନ୍ମ ଲାଭ କରିଥିଲେ । ସେତେବେଳେ ଏହାଙ୍କ ନାମ ସତୀ ଥିଲା । ଅତି ସୁନ୍ଦର ଶରୀର ଏ ପାଇଥିଲେ । ସେଠାରେ ମଧ୍ୟ ସତୀ ଶଙ୍କରଙ୍କୁ ବିବାହ କରିଥିଲେ । ଏ କଥା ସମଗ୍ର ସଂସାରରେ ପ୍ରସିଦ୍ଧ ॥ ୩ ॥ ଥରେ ସତୀ ଶିବଙ୍କ ସଙ୍ଗେ ଆସୁ ଆସୁ ପଥରେ ରଘୁକୁଳ-କମଳ-ଦିବାକର ଶ୍ରୀ ରାମଚନ୍ଦ୍ରଙ୍କୁ ଦେଖିଲେ । ସେତେବେଳେ ତାଙ୍କୁ ମୋହ ଗ୍ରାସ କଲା ଏବଂ ଶିବଙ୍କ କଥା ନ ମାନି ସେ ଭ୍ରମବଶତଃ ସୀତାଙ୍କ ବେଶ ଧାରଣ କରିପକାଇଲେ ॥ ୪ ॥ ଛନ୍ଦ—ସତୀ ସୀତାଙ୍କ ବେଶ ଧାରଣ କରିବା ଅପରାଧ ହେତୁ ଶିବ ତାହାଙ୍କୁ ପରିତ୍ୟାଗ କଲେ, ଶିବଙ୍କ ବିରହରେ ସେ ତାଙ୍କ ପିତାଙ୍କ ଯଜ୍ଞକୁ ଯାଇ ସେହିଠାରେ ଯୋଗାଗ୍ନିରେ ଭସ୍ମ ହୋଇଗଲେ । ଏବେ ସେ ତୁମ ଘରେ ଜନ୍ମଗ୍ରହଣ କରି ଆପଣା ପତିଙ୍କୁ ପାଇବା ପାଇଁ କଠିନ ତପସ୍ୟା କରିଅଛନ୍ତି । ଏହା ଜାଣି ସନ୍ଦେହ ଦୂର କର । ଗିରିଜା (ପାର୍ବତୀ) ସର୍ବଦା ଶିବଙ୍କର ପ୍ରିୟା (ଅର୍ଦ୍ଧାଙ୍ଗିନୀ) ।” ଦୋହା—ନାରଦଙ୍କ କଥା ଶୁଣି ସମସ୍ତଙ୍କ ବିଷାଦ ମେଣ୍ଟିଗଲା ଏବଂ କ୍ଷଣକ ମଧ୍ୟରେ ଏ ସମାଚାର ସାରା ନଗରରେ ଘରେ ଘରେ ବ୍ୟାପିଗଲା ॥ ୯୮ ॥ ଚୌପାଈ—ସେତେବେଳେ ମେନା ଓ ହିମବାନ୍ ଆନନ୍ଦରେ ନିମଜ୍ଜିତ ହୋଇଗଲେ ଏବଂ ସେ ଉଭୟେ ବାରମ୍ବାର ପାର୍ବତୀଙ୍କ ଚରଣ ବନ୍ଦନା କଲେ । ସ୍ତ୍ରୀ ପୁରୁଷ, ବାଳକ-ଯୁବା ଓ ବୃଦ୍ଧ ଆଦି ନଗରର ସମସ୍ତ ଲୋକ ଅତ୍ୟନ୍ତ ପ୍ରସନ୍ନ ହେଲେ ॥ ୧ ॥ ନଗରରେ ମଙ୍ଗଳ

ବିବିଧ ଭାଁତି ବୈଠୀ ଜେବନାରା । ଲଗେ ପରୁସନ ନିପୁନ ସୁଆରା ॥
ନାରିବୃନ୍ଦ ସୁର ଜେଓଁତ ଜାନୀ । ଲଗୀଁ ଦେନ ଗାରୀଁ ମୃଦୁ ବାନୀ ॥୪॥

ଗାରୀଁ ମଧୁର ସ୍ୱର ଦେହିଁ ସୁନ୍ଦରି ବିଂଗ୍ୟ ବଚନ ସୁନାଓହୀଁ ।
ଭୋଜନ କରହିଁ ସୁର ଅତି ବିଲଂବୁ ବିନୋଦୁ ସୁନି ସଚୁ ପାଓହୀଁ ॥
ଜେଓଁତ ଜୋ ବଢ୍ୟୋ ଅନଂଦୁ ସୋ ମୁଖ କୋଟିହୂଁ ନ ପରୈ କହ୍ୟୋ ॥
ଅଚଓଁାଇ ଦୀନ୍ହେ ପାନ ଗଓନେ ବାସ ଜହଁ ଜାକୋ ରହ୍ୟୋ ॥

ବହୁରି ମୁନିନ୍ହ ହିମବଂତ କହୁଁ ଲଗନ ସୁନାଈ ଆଇ ।
ସମୟ ବିଲୋକି ବିବାହ କର ପଠଏ ଦେବ ବୋଲାଇ ॥୯୯॥

---

ବସିଲା ଭୋଜିର ପନ୍ତି ବିବିଧ ପ୍ରକାରେ । ପରଷିବାକୁ ଲାଗିଲେ ଚତୁର ସୁଆରେ ॥
ସୁରେ ଭୋଜନ କରନ୍ତି ନାରୀବୃନ୍ଦ ଜାଣି । ଗାଳି ଦେବାକୁ ଲାଗିଲେ ଭାଷି ମୃଦୁବାଣୀ ॥୪॥

ମଧୁର ସ୍ୱରେ ଗାଳି ଦିଅନ୍ତି ସୁରୁବାଳୀ ବିଦ୍ରୂପ ବଚନ ଶୁଣାଇ ।
ସୁରେ ବସି ଭୁଞ୍ଜନ୍ତି ବିଳମ୍ବ କରି ଅତି ବିନୋଦ ଶୁଣି ସୁଖ ପାଇ ॥
ଯେ ମୋଦ ବଢିଲା ଭୋଜନେ, କହି ନ ହେବ ଶତାନନେ ।
ମୁଖ ଧୋଇ ତାମ୍ବୂଳ ଦେନ ସୁରସକଳ ଗମିଲେ ସ୍ୱବାସଭବନେ ॥

ପୁଣି ମୁନିଗଣ ଆସିଣ ଲଗନ ଜଣାଇଲେ ହିମବନ୍ତଙ୍କୁ ।
ଦେଖି ବିବାହର ସମୟ ସୁନ୍ଦର ଡକାଇଲେ ବିବୁଧଙ୍କୁ ॥୯୯॥

---

ସଙ୍ଗୀତ-ଗାନ ଚାଲିଲା ଏବଂ ସମସ୍ତେ ବିବିଧ ପ୍ରକାର ସୁବର୍ଣ୍ଣ କଳସ ସଜାଇଲେ । ପାକଶାସ୍ତ୍ରରେ ଯେତେ ରୀତିନୀତି, ବିଧି-ବ୍ୟବହାର ଆଦିର ନିର୍ଦ୍ଦେଶ ଅଛି, ସେ ସବୁର ଅନୁସାରେ ବିବିଧ ପ୍ରକାର ଭୋଜନସାମଗ୍ରୀ ପ୍ରସ୍ତୁତ କରାଗଲା ॥ ୨ ॥ ଯେଉଁ ଘରେ ମାତା ଭବାନୀ ସ୍ୱୟଂ ରହନ୍ତି, ସେଠିକାର ଭୋଜନ-ସାମଗ୍ରୀର କି ବର୍ଣ୍ଣନା କରାଯାଇପାରିବ ? ହିମାଚଳ ବିଷ୍ଣୁ, ବ୍ରହ୍ମା ଏବଂ ବିବିଧ ଦେବତା ଆଦି ଯେତେ ବରଯାତ୍ରୀ ଥିଲେ, ସମସ୍ତଙ୍କୁ ଆଦରରେ ଡକାଇଲେ ॥ ୩ ॥ ଭୋଜିଖିଆଙ୍କର ବହୁତ ପ୍ରକାର ପଙ୍ଗତ ବସିଲା । ନିପୁଣ ରାନ୍ଧୁଣିଆମାନେ ପରଷିବାକୁ ଆରମ୍ଭ କଲେ । ଦେବତାମାନେ ଭୋଜନ କରୁଅଛନ୍ତି ଜାଣି ନାରୀବୃନ୍ଦ କୋମଳ ବାଣୀରେ ସେମାନଙ୍କୁ ପରିହାସଗାଳି ଦେବାକୁ ଲାଗିଲେ ॥୪॥ ଛନ୍ଦ –ସୁନ୍ଦରୀ ସ୍ତ୍ରୀମାନେ ମଧୁର ସ୍ୱରରେ ପରିହାସ-ଗାଳିଦେବାକୁ ଲାଗିଲେ ଏବଂ ଛଳୋକ୍ତି ଶୁଣେଇବାକୁ ଲାଗିଲେ । ଦେବତାମାନେ ବିନୋଦ-ପରିହାସ ଶୁଣି ବଡ ଆନନ୍ଦ ଅନୁଭବ କରୁଥା'ନ୍ତି । ଏଣୁ ଭୋଜନ କରିବାରେ ବହୁତ ବିଳମ୍ବ କରୁଥା'ନ୍ତି । ଭୋଜନ ସମୟର ଆନନ୍ଦବୃଦ୍ଧି କୋଟି କୋଟି ମୁଖରେ ସୁଦ୍ଧା ପ୍ରକାଶ କରାଯାଇ ପାରିବ ନାହିଁ । ଭୋଜନ ସମାପ୍ତି ପରେ ସମସ୍ତଙ୍କ ହାତ ମୁହଁ ଧୂଆଇ ପାନ ଦିଆଗଲା । ତତ୍ପରେ ସମସ୍ତ ଲୋକ ଯେଝା ରହଣିସ୍ଥଳକୁ ଚାଲିଗଲେ । ଦୋହା:—

ବୋଲି ସକଲ ସୁର ସାଦର ଲୀହ୍ନେ । ସବହି ଜଥୋଚିତ ଆସନ ଦୀହ୍ନେ ॥
ବେଦୀ ବେଦ ବିଧାନ ସଁୱାରୀ । ସୁଭଗ ସୁମଂଗଲ ଗାୱହିଁ ନାରୀ ॥୧॥
ସିଂଘାସନୁ ଅତି ଦିବ୍ୟ ସୁହାୱା । ଜାଇ ନ ବରନି ବିରଂଚି ବନାୱା ॥
ବୈଠେ ସିବ ବିପ୍ରହ୍ନ ସିରୁ ନାଈ । ହୃଦୟଁ ସୁମିରି ନିଜ ପ୍ରଭୁ ରଘୁରାଈ ॥୨॥
ବହୁରି ମୁନୀସହ୍ନ ଉମା ବୋଲାଈଂ । କରି ସିଂଗାରୁ ସଖୀଂ ଲୈ ଆଈଂ ॥
ଦେଖତ ରୂପୁ ସକଲ ସୁର ମୋହେ । ବରନୈ ଛବି ଅସ ଜଗ କବି କୋ ହୈ ॥୩॥
ଜଗଦଂବିକା ଜାନି ଭବ ଭାମା । ସୁରହ୍ନ ମନହିଂ ମନ କୀହ୍ନ ପ୍ରନାମା ॥
ସୁନ୍ଦରତା ମରଜାଦ ଭବାନୀ । ଜାଇ ନ କୋଟିହୁଁ ବଦନ ବଖାନୀ ॥୪॥

କୋଟିହୁ ବଦନ ନହିଁ ବନୈ ବରନତ ଜଗ ଜନନି ସୋଭା ମହା ।
ସକୁଚହିଁ କହତ ଶ୍ରୁତି ସେଷ ସାରଦ ମଂଦମତି ତୁଲସୀ କହା ।
ଛବିଖାନି ମାତୁ ଭବାନି ଗୱନୀଂ ମଧ୍ୟ ମଂଡପ ସିବ ଜହାଁ ।
ଅବଲୋକି ସକହିଁ ନ ସକୁଚ ପତିପଦ କମଲ ମନୁ ମଧୁକରୁ ତହାଁ ॥

---

ସାଦରେ ହକାରି ଆଣି ସକଳ ସୁରଙ୍କୁ । ଯଥା ଉଚିତ ଆସନ ଦେଲେ ସମସ୍ତଙ୍କୁ ॥
ବେଦବିଧାନରେ ବେଦୀ କଲେ ବିରଚନ । ସୁନ୍ଦର ମଙ୍ଗଳ ନାରୀ କରନ୍ତି ଗାୟନ ॥୧॥
ସିଂହାସନ ଅତି ଦିବ୍ୟ ସ୍ୱଚ୍ଛ ସୁଶୋଭିତ । ବର୍ଣ୍ଣନ କରି ନ ହୁଏ ବିରଞ୍ଚି ରଚିତ ॥
ବିପ୍ରଙ୍କୁ ପ୍ରଣାମ କରି ବସିଲେ ଶଙ୍କର । ହୃଦୟେ ସ୍ମରଣ ନିଜ ପ୍ରଭୁ ରଘୁବର ॥୨॥
ପୁଣି ମୁନିବୃନ୍ଦ ପାର୍ବତୀଙ୍କୁ ଡକାଇଲେ । ବିଭୂଷଣ କରି ସଖୀ ବେଦୀକୁ ଆଣିଲେ ॥
ମୋହିତହୋଇଲେସୁରେରୂପବିଲୋକନ୍ତେ । ବର୍ଣ୍ଣିବ ଛବି ଜଗତେ କବି କେ ଏମନ୍ତେ ॥୩॥
ଭବଙ୍କର ଅର୍ଦ୍ଧାଙ୍ଗିନୀ ଜାଣି ଜଗନ୍ମାତ । ସୁରଗଣ ମନେ ମନେ କଲେ ପ୍ରଣିପାତ ॥
ସୁନ୍ଦରତା ମର୍ଯ୍ୟାଦାର ସୀମା ମା ଭବାନୀ । କୋଟି ବଦନରେ ସୁଦ୍ଧା ନ ହେବ ବଖାଣି ॥୪॥

କୋଟି ମୁଖେ ବଖାଣ ହୋଇ ନ ପାରେ ଜାଣ ଜଗଜ୍ଜନନୀ ଶୋଭାରେଖା ॥
କହନ୍ତେ ଶେଷ ଶ୍ରୁତି ବାଣୀ ଲଜ୍ଜ୍ୟା ଲଭନ୍ତି ତୁଳସୀ ମନ୍ଦ କେଉଁ ଲେଖା ॥
ଛବି ଉଦଧି ପାର୍ବତୀ, ମଣ୍ଡପେ ଗଲେ ଶିବ କତି ।
ଚାହିଁ ନ ପାରି ଲାଜେ ସ୍ୱାମୀଙ୍କ ପଦ-କଞ୍ଜେ ଭ୍ରମନ ମଧୁପ କରନ୍ତି ॥

---

ତତ୍ପରେ ମୁନିମାନେ ଫେରି ହିମବାନ୍‌ଙ୍କୁ ଲଗ୍ନ ଶୁଣାଇଲେ ଏବଂ ବିବାହ ସମୟ ଦେଖି ହିମବାନ୍ ଦେବତାମାନଙ୍କୁ ଡକାଇ ପଠାଇଲେ ॥ ୯୯ ॥ ଚୌପାଇ—ହିମାଚଳ ସମସ୍ତ ଦେବତାଙ୍କୁ ଆଦର ସହିତ ଡକାଇ ପଠାଇଲେ ଏବଂ ସମସ୍ତଙ୍କୁ ଯଥାଯୋଗ୍ୟ ଆସନ ଦେଲେ । ବୈଦିକ ରୀତିରେ ବେଦୀ ସଜାଗଲା ଏବଂ ନାରୀମାନେ ସୁନ୍ଦର ସୁମଙ୍ଗଳ ଗୀତ ଗାଇବାକୁ ଲାଗିଲେ ॥ ୧ ॥ ବେଦିକା ଉପରେ ଗୋଟିଏ ଅତି ସୁନ୍ଦର ଦିବ୍ୟ ସିଂହାସନ ଥିଲା । ତା'ହାର ସୌନ୍ଦର୍ଯ୍ୟ ଅବର୍ଣ୍ଣନୀୟ, କାରଣ ତାହା ବ୍ରହ୍ମାଙ୍କ ଦ୍ୱାରା

ମୁନି ଅନୁସାସନ ଗନପତିହି ପୂଜେଉ ସଂଭୁ ଭବାନି ।
କୋଉ ସୁନି ସଂସୟ କରୈ ଜନି ସୁର ଅନାଦି ଜିୟଁ ଜାନି ॥୧୦୦॥
ଜସି ବିବାହ କୈ ବିଧି ଶ୍ରୁତି ଗାଈ । ମହାମୁନିହ୍ନ ସୋ ସବ କରୱାଈ ॥
ଗହି ଗିରୀସ କୁସ କନ୍ୟା ପାନୀ । ଭବହି ସମରପୀଁ ଜାନି ଭବାନୀ ॥୧॥
ପାନି ଗ୍ରହନ ଜବ କୀହ୍ନ ମହେସା । ହିୟଁ ହରଷେ ତବ ସକଲ ସୁରେସା ॥
ବେଦ ମନ୍ତ୍ର ମୁନିବର ଉଚରହୀଁ । ଜୟ ଜୟ ଜୟ ସଂକର ସୁର କରହୀଁ ॥୨॥

---

ମୁନିଙ୍କ ଆଦେଶେ ଗଣନାୟକଙ୍କୁ ପୂଜିଲେ ଶମ୍ଭୁ ଭବାନୀ ।
ଏହା ଶୁଣି କେହି ସଂଶୟ ନ ମଣ ଅମର ଅନାଦି ଜାଣି ॥୧୦୦॥
ବିବାହ ବିଧାନ ବେଦେ ବିହିତ ଯେସନ । ସେ ସମସ୍ତ କରାଇଲେ ମହାମୁନି ଜନ ॥
ଧରି ହିମାଳୟ ତହୁଁ କୁଶ କନ୍ୟା ପାଣି । ଶଙ୍କରଙ୍କୁ ସମର୍ପିଲେ ଭବବାମା ଜାଣି ॥୧॥
ପାଣିଗ୍ରହଣ ମହେଶ କଲେ ଯେତେବେଳେ । ସୁରେ ହରଷିତହୃଦ ହେଲେ ତେତେବେଳେ ॥
ବହୁ ମୁନିବର ବେଦମନ୍ତ୍ର ଉଚ୍ଚାରନ୍ତି । ଜୟ ଜୟ ଶିବ ବିବୁଧେ କହନ୍ତି ॥୨॥

---

ନିର୍ମିତ ହୋଇଥିଲା । ବ୍ରାହ୍ମଣମଣ୍ଡଳୀଙ୍କୁ ମୁଣ୍ଡ ନୁଆଇ ଏବଂ ମନରେ ଆପଣା ପ୍ରଭୁ ଶ୍ରୀ ରଘୁନାଥଙ୍କୁ ସ୍ମରଣ କରି ଶିବ ସେହି ସିଂହାସନ ଉପରେ ବସିପଡ଼ିଲେ ॥୨॥ ତତ୍ପରେ ମୁନୀଶ୍ୱରଗଣ ପାର୍ବତୀଙ୍କୁ ଡକାଇଲେ । ସଖୀଗଣ ଶୃଙ୍ଗାରବିଧାନ କରି ପାର୍ବତୀଙ୍କୁ ନେଇ ଆସିଲେ । ପାର୍ବତୀଙ୍କ ରୂପ ଦେଖିବା ମାତ୍ରେ ସମସ୍ତ ଦେବତା ମୁଗ୍ଧ ହୋଇପଡ଼ିଲେ । ସେ ସୌନ୍ଦର୍ଯ୍ୟ ବର୍ଣ୍ଣନା କରିପାରିବ—ଏପରି ସଂସାରରେ କିଏ ଅଛି ? ॥ ୩ ॥ ପାର୍ବତୀଙ୍କୁ ଜଗଦମ୍ବା ଓ ଶିବଙ୍କ ପତ୍ନୀ ବୋଲି ଜାଣି ଦେବତାମାନେ ମନେ ମନେ ପ୍ରଣାମ କଲେ । ଭବାନୀ ସୌନ୍ଦର୍ଯ୍ୟର ସୀମା । କୋଟି କୋଟି ମୁହଁରେ ସୁଦ୍ଧା ତାଙ୍କ ଶୋଭା ବର୍ଣ୍ଣନା କରାଯାଇ ପାରିବ ନାହିଁ ॥ ୪ ॥ ଛନ୍ଦ—ଜଗଜ୍ଜନନୀ ପାର୍ବତୀଙ୍କ ମହା ଶୋଭାର ବର୍ଣ୍ଣନା କୋଟି କୋଟି ମୁଖରେ ସୁଦ୍ଧା ସମ୍ଭବ ନୁହେଁ । ଏପରି କି ବେଦ, ଶେଷ ଓ ସରସ୍ୱତୀ ସୁଦ୍ଧା ତାହା କହିବାକୁ ସଙ୍କୋଚ ବୋଧ କରନ୍ତି । ତେବେ ମନ୍ଦବୁଦ୍ଧି ତୁଳସୀ ଅବା କି ଛାର ! ଛବିର ଖଣି ମାତା ଭବାନୀ ମଣ୍ଡପ ମଧ୍ୟରେ ଶିବ ଯେଉଁଠି ଥିଲେ, ସେଠିକୁ ଗଲେ । ସଙ୍କୋଚ ହେତୁ ସେ ଶିବଙ୍କ ଚରଣ-କମଳ ଦେଖିପାରୁ ନ ଥା'ନ୍ତି । କିନ୍ତୁ ତାଙ୍କ ମନ-ଭ୍ରମର ତହିଁରୁ ମକରନ୍ଦରସ ପାନ କରି ଲାଗିଥାଏ । ଦୋହା—ମୁନିମାନଙ୍କ ଆଜ୍ଞାନୁସାରେ ଶିବ ଓ ପାର୍ବତୀ ଗଣେଶଙ୍କୁ ପୂଜା କଲେ । ଦେବତାମାନେ ଅନାଦି । ତେଣୁ ଗଣେଶ ସର୍ବଦା ଅନାଦି । ଏହା ମନରେ ବୁଝି କେହି ସନ୍ଦେହ କରନ୍ତୁ ନାହିଁ ଯେ, ଗଣେଶ ତ ଶିବପାର୍ବତୀଙ୍କ ସନ୍ତାନ; ଏବେ ବିବାହ ପୂର୍ବରୁ ସେ କୁଆଡ଼ୁ ଆସିଲେ ? ॥ ୧୦୦ ॥ ଚୌପାଈ—ବେଦମାନଙ୍କରେ ବିବାହର ଯେଉଁ ରୀତିନୀତି ଉକ୍ତ ହୋଇଅଛି, ମହାମୁନିମାନେ ସେହି ସବୁ ରୀତିନୀତି ପାଳନ କଲେ । ପର୍ବତରାଜ ହିମାଚଳ ହାତରେ କୁଶଗ୍ରହଣ ଏବଂ କନ୍ୟାର ହସ୍ତଧାରଣପୂର୍ବକ ତାହାଙ୍କୁ ଭବାନୀ

ବାଜହିଁ ବାଜନ ବିବିଧ ବିଧାନା । ସୁମନବୃଷ୍ଟି ନଭ ଭୈ ବିଧି ନାନା ॥
ହର ଗିରିଜା କର ଭୟଉ ବିବାହୂ । ସକଲ ଭୁବନ ଭରି ରହା ଉଛାହୂ ॥୩॥
ଦାସୀଁ ଦାସ ତୁରଗ ରଥ ନାଗା । ଧେନୁ ବସନ ମନି ବସ୍ତୁ ବିଭାଗା ॥
ଅନ୍ନ କନକଭାଜନ ଭରି ଜାନା । ଦାଇଜ ଦୀନ୍ହ ନ ଜାଇ ବଖାନା ॥୪॥

ଦାଇଜ ଦିୟୋ ବହୁ ଭାଁତି ପୁନି କର ଜୋରି ହିମଭୂଧର କହ୍ୟୋ ।
କା ଦେଉଁ ପୂରନକାମ ସଂକରଚରନ ପଂକଜ ଗହି ରହ୍ୟୋ ।
ସିବଁ କୃପାସାଗର ସସୁର କର ସଂତୋଷୁ ସବ ଭାଁତିହି କିୟୋ ।
ପୁନି ଗହେ ପଦ ପାଥୋଜ ମୟନାଁ ପ୍ରେମ ପରିପୂରନ ହିୟୋ ॥

ନାଥ ଉମା ମମ ପ୍ରାନ ସମ ଗୃହକିଂକରୀ କରେହୁ ।
ଛମେହୁ ସକଲ ଅପରାଧ ଅବ ହୋଇ ପ୍ରସନ୍ନ ବରୁ ଦେହୁ ॥୧୦୧॥

---

ବିବିଧ ପ୍ରକାର ବାଦ୍ୟ ନିନାଦ ହୁଅଇ । ନାନା ରଙ୍ଗର ସୁମନ ଗଗନୁ ଝଡଇ ॥
ହର ଗଉରୀଙ୍କ ଶୁଭ ବିବାହ ହୋଇଲା । ଚଉଦ ଭୁବନେ ପୂରି ଉତ୍ସାହ ରହିଲା ॥୩॥
ଦାସ ଦାସୀ ଗଜରଥ ଧେନୁ ତୁରଙ୍ଗମ । ନାନାବିଧ ବସ୍ତୁ ମଣି ବସନ ଉତ୍ତମ ॥
ଅନ୍ନ ପୂର୍ଣ୍ଣ କରି ଯାନେ ଅନେକ ପାତ୍ରରେ । ବର୍ଣ୍ଣନାତୀତ ପଦାର୍ଥ ଦେଲେ ଯୌତୁକରେ ॥୪॥

ବିବିଧ ଯଉତୁକ ଦେଇ ଗିରି-ନାୟକ ଭାଷିଲେ ମୋଡି ଯୁଗ୍ମହସ୍ତ ॥
ଦେବି ମୁଁ ତୁମ୍ଭ କିସ ପୂର୍ଣ୍ଣକାମ ମହେଶ ପଦ-ପଙ୍କଜେ ହୁଏ ନତ ॥
ନାନାପ୍ରକାରେ କୃପାକର, ତୋଷିଲେ ଶ୍ୱଶୁରଙ୍କୁ ହର ।
ପ୍ରେମେ ପୁଲକ ପୁଣି ଗିରିରାଜ-ରମଣୀ ଧରିଲେ ପଙ୍କଜ-ପୟର ॥

ପ୍ରଭୁ ଉମା ମୋର ପ୍ରାଣସମ ପ୍ରିୟ ଗୃହ-କିଙ୍କରୀ କରିବ ।
ତୋଷ ହୋଇ ଏବେ ଦିଅ ଏହି ବର ସମସ୍ତ ଦୋଷ କ୍ଷମିବ ॥୧୦୧॥

---

(ଶିବ-ପତ୍ନୀ) ବୋଲି ଜାଣି ଶିବଙ୍କୁ ସମର୍ପଣ କଲେ ॥ ୧ ॥ ଯେତେବେଳେ ମହେଶ୍ୱର ପାର୍ବତୀଙ୍କ ପାଣିଗ୍ରହଣ କଲେ, ଇନ୍ଦ୍ରାଦି ଦେବତାଗଣ ବଡ଼ ଆନନ୍ଦିତ ହେଲେ । ଶ୍ରେଷ୍ଠ ମୁନିମାନେ ବେଦମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲେ । ଦେବତାବୃନ୍ଦ ଶିବଙ୍କର ଜୟ-ଜୟକାର କରିବାକୁ ଲାଗିଲେ ॥ ୨ ॥ ବିବିଧ ପ୍ରକାର ବାଜା ବାଜିବାକୁ ଲାଗିଲା । ଆକାଶରୁ ନାନା ପ୍ରକାରର ପୁଷ୍ପ-ବୃଷ୍ଟି ହେଲା । ଶିବ-ପାର୍ବତୀଙ୍କର ବିବାହ ହୋଇଗଲା । ସମଗ୍ର ବ୍ରହ୍ମାଣ୍ଡରେ ଆନନ୍ଦ ଭରିଗଲା ॥ ୩ ॥ ଦାସୀ, ଦାସ, ରଥ, ଘୋଡା, ହାତୀ, ଗାଈ, ବସ୍ତ୍ର ଓ ମଣି ଆଦି ଅନେକ ପ୍ରକାରର ଦ୍ରବ୍ୟ ଏବଂ ଅନ୍ନ-ପରିପୂର୍ଣ୍ଣ ସୁନାର ବାସନକୁସନ ଗାଡି ଗାଡି ଲଦା ହୋଇ ଯୌତୁକ ରୂପେ ଦିଆଗଲା । ଏ ସବୁର ବର୍ଣ୍ଣନା ଅସମ୍ଭବ ॥ ୪ ॥ ଛନ୍ଦ—ବହୁତ ପ୍ରକାରର ଯୌତୁକ ଦେଇ ହାତ ଯୋଡି ହିମାଚଳ କହିଲେ, "ହେ ଶଙ୍କର ! ଆପଣ ପୂର୍ଣ୍ଣକାମ, ମୁଁ ଆପଣଙ୍କୁ

ବହୁ ବିଧି ସଂଭୁ ସାସୁ ସମୁଝାଈ । ଗୱନୀ ଭବନ ଚରନ ସିରୁ ନାଈ ॥
ଜନନୀଁ ଉମା ବୋଲି ତବ ଲୀହ୍ନୀ । ଲୈ ଉଛଂଗ ସୁନ୍ଦର ସିଖ ଦୀହ୍ନୀ ॥୧॥
କରେହୁ ସଦା ସଂକର ପଦ ପୂଜା । ନାରିଧରମୁ ପତି ଦେଉ ନ ଦୂଜା ॥
ବଚନ କହତ ଭରେ ଲୋଚନ ବାରୀ । ବହୁରି ଲାଇ ଉର ଲୀହ୍ନି କୁମାରୀ ॥୨॥
କତ ବିଧି ସୃଜୀଁ ନାରି ଜଗ ମାହୀଁ । ପରାଧୀନ ସପନେହୁଁ ସୁଖୁ ନାହୀଁ ॥
ଭୈ ଅତି ପ୍ରେମ ବିକଲ ମହତାରୀ । ଧୀରଜୁ କୀହ୍ନ କୁସମୟ ବିଚାରୀ ॥୩॥
ପୁନି ପୁନି ମିଲତି ପରତି ଗହି ଚରନା । ପରମ ପ୍ରେମୁ କଛୁ ଜାଇ ନ ବରନା ॥
ସବ ନାରିହ୍ନ ମିଲି ଭେଟି ଭବାନୀ । ଜାଇ ଜନନି ଉର ପୁନି ଲପଟାନୀ ॥୪॥

---

ନାନାପ୍ରକାରେ ଶାଶୁଙ୍କୁ ଶିବ ବୁଝାଇଲେ । ଚରଣେ ନମି ସେ ତହୁଁ ଗୃହକୁ ଚଳିଲେ ॥
ଏଥୁ ଅନନ୍ତରେ ଅମ୍ବା ଉମାଙ୍କୁ ଡକାଇ । ଦେଲେ ଶୁଭଉପଦେଶ କୋଳରେ ବସାଇ ॥୧॥
କରିବୁ ସଦାଶିବଙ୍କ ପଦ୍ମର ଅର୍ଚ୍ଚନ । ତେଜି ପତିଦେବ ନାରୀଧର୍ମ ନାହିଁ ଅନ୍ୟ ॥
ବଚନ କହନ୍ତେ ନୀର ନୟନୁ ବୁହାଇ । ସ୍ନେହେ କୁମାରୀଙ୍କୁ ନିଜ ବକ୍ଷରେ ଲଗାଇ ॥୨॥
କାହିଁକି ବିଧାତା ନାରୀ ସୃଜନ୍ତି ସଂସାରେ । ସ୍ୱପ୍ନେ ମଧ୍ୟ ସୁଖ ନାହିଁ ପରାଧୀନତାରେ ॥
ଅତ୍ୟନ୍ତ ପ୍ରେମେ ଜନନୀ ହୋଇଣ କାତର । ଅସମୟ ଜାଣି ଧୈର୍ଯ୍ୟ ଘେନଲେ ଆବର ॥୩॥
ବାରମ୍ବାର ମିଳି ପଦ ଧରିଣ ଲୋଟନ୍ତି । ବର୍ଣ୍ଣି ନ ହୁଏ ସେ ପ୍ରେମ ଅଲୌକିକ ଅତି ॥
ସମସ୍ତ ନାରୀଙ୍କୁ ମିଳି ଭବାନୀ ଭେଟିଲେ । ପୁଣି ଜନନୀଙ୍କୁ ଯାଇ ବକ୍ଷେ ଆଲିଙ୍ଗିଲେ ॥୪॥

---

କ'ଣ ଦେଇପାରିବ ?'' ଏତିକି କହି ସେ ଶିବଙ୍କର ଚରଣ-କମଳ ଧରି ରହିଗଲେ । ସେତେବେଳେ କୃପାସାଗର ଶିବ ତାଙ୍କ ଶ୍ୱଶୁରଙ୍କୁ ସବୁ ପ୍ରକାରେ ସନ୍ତୋଷ ବିଧାନ କଲେ । ତତ୍ପରେ ପ୍ରେମ-ପରିପୂର୍ଣ୍ଣ-ହୃଦୟା ମେନା ଶିବଙ୍କ ପାଦ-ପଦ୍ମ ଧରି କହିଲେ । ଦୋହା —''ହେ ନାଥ ! ଏହି ଉମା ପ୍ରାଣସମ ମୋର ପ୍ରିୟ, ଆପଣ ତାହାକୁ ଆପଣା ଘରର ଦାସୀ କରନ୍ତୁ ଏବଂ ତାହାର ସମସ୍ତ ଅପରାଧ କ୍ଷମା କରୁଥିବେ । ଏବେ ପ୍ରସନ୍ନ ହୋଇ ମୋତେ ଏହି ବର ଦିଅନ୍ତୁ ।'' ॥ ୧୦୧ ॥ ଚୌପାଇ —ଶିବ ବହୁତ ପ୍ରକାରେ ତାଙ୍କ ଶାଶୁଙ୍କୁ ବୁଝାଇଲେ । ତତ୍ପରେ ସେ ଶିବଙ୍କ ଚରଣରେ ମୁଣ୍ଡ ନୁଆଁଇ ଘରକୁ ଗଲେ । ଘରେ ପାର୍ବତୀଙ୍କୁ ଡକାଇ କୋଳ କଲେ ଏବଂ ସୁନ୍ଦର ଶିକ୍ଷା ଦେଲେ ॥ ୧ ॥ ''ହେ ପାର୍ବତି ! ତୁ ସର୍ବଦା ଶିବଙ୍କ ପାଦ ପୂଜା କରିବୁ । ନାରୀ-ମାନଙ୍କର ଏହାହିଁ ଧର୍ମ । ସେମାନଙ୍କ ସକାଶେ ପତି ହିଁ ଦେବତା, ଆଉ କୌଣସି ଦେବତା ନାହାନ୍ତି ।'' ଏହିପରି କଥା କହୁ କହୁ ତାଙ୍କ ଚକ୍ଷୁରେ ଲୋତକ ପୂରିଗଲା ଏବଂ ସେ କନ୍ୟାକୁ ଆପଣା ଛାତି ଉପରେ ଆଉଜାଇ ନେଲେ ॥ ୨ ॥ ପୁଣି କହିଲେ, ''ବିଧାତା ଏ ଜଗତରେ ନାରୀଜାତିକୁ କାହିଁକି ସୃଷ୍ଟି କଲେ ? ସେମାନେ ସଦା ପରାଧୀନ, ପରାଧୀନକୁ ସ୍ୱପ୍ନରେ ସୁଦ୍ଧା ସୁଖ ମିଳେନାହିଁ ।'' ଏହା କହୁ କହୁ ମାତା ପ୍ରେମରେ ଅତି ବିକଳ ହୋଇ ପଡିଲେ । ମାତ୍ର ଅସମୟ (ଦୁଃଖ କରିବାପାଇଁ ଏ ଉପଯୁକ୍ତ

ଜନନିହ୍ନି ବହୁରି ମିଲି ଚଲୀଁ ଉଚିତ ଅସୀସ ସବ କାହୂଁ ଦଈଁ ।
ଫିରି ଫିରି ବିଲୋକତି ମାତୁ ତନ ତବ ସଖୀଁ ଲୈ ସିବ ପହିଁ ଗଈଁ ॥
ଜାଚକ ସକଲ ସଂତୋଷି ସଂକରୁ ଉମା ସହିତ ଭବନ ଚଲେ ।
ସବ ଅମର ହରଷେ ସୁମନ ବରଷି ନିସାନ ନଭ ବାଜେ ଭଲେ ॥

ଚଲେ ସଂଗ ହିମବଂତୁ ତବ ପହୁଁଚାବନ ଅତି ହେତୁ ।
ବିବିଧ ଭାଁତି ପରିତୋଷୁ କରି ବିଦା କୀହ୍ନ ବୃଷକେତୁ ॥୧୦୨॥

ତୁରତ ଭବନ ଆଏ ଗିରିରାଈ । ସକଲ ସୈଲ ସର ଲିଏ ବୋଲାଈ ॥
ଆଦର ଦାନ ବିନୟ ବହୁମାନା । ସବ କର ବିଦା କୀହ୍ନ ହିମବାନା ॥୧॥
ଜବହିଂ ସଂଭୁ କୈଲାସହିଂ ଆଏ । ସୁର ସବ ନିଜ ନିଜ ଲୋକ ସିଧାଏ ॥
ଜଗତ ମାତୁ ପିତୁ ସଂଭୁ ଭବାନୀ । ତେହିଁ ସିଂଗାରୁ ନ କହଉଁ ବଖାନୀ ॥୨॥

---

ମାତାଙ୍କୁ ପୁଣି ପୁଣି ମିଳି ହେଲେ ମେଲାଣି ସମସ୍ତେ ସୁଆଶିଷ ଦେଲେ ।
ଗୃହାନ୍ତୁ ଫେରି ଫେରି ସକଳ ସହଚରୀ ଶିବଙ୍କ ପାଶେ ତହୁଁ ନେଲେ ॥
ସନ୍ତୋଷି ଭିକ୍ଷୁକ ନିକର, ଚଳିଲେ ପୁରେ ଉମା ହର ।
ନିଶାଣ ବଜାଇଣ ବରଷିଲେ ସୁମନ ହରଷେ ଅମ୍ବରୁ ଅମର ॥

ତହୁଁ ଅତି ପ୍ରେମେ ଚଳିଲେ ହିମାଦ୍ରି ମେଲାଣି କରିବା ହେତୁ ।
ନାନା ଭାବେ କରି ବିଦାୟ କରିଲେ ପରିତୋଷି ବୃଷକେତୁ ॥୧୦୨॥

ସେହିକ୍ଷଣି ଗିରିରାଜ ଆସି ଭବନକୁ । ଡକାଇ ଆଣି ସମସ୍ତ ସର ଶଇଳଙ୍କୁ ॥
କରି ବହୁ ଦାନ ମାନ ଆଦର ବିନୟ । ବିଦାୟ କଲେ ସପ୍ରେମେ ତାଙ୍କୁ ହିମାଳୟ ॥୧॥
ଯେତେବେଳେ କଇଲାଶେ ଶିବ ପହଞ୍ଚିଲେ । ସୁର ସର୍ବେ ନିଜ ନିଜ ପୁରକୁ ଚଳିଲେ ॥
ଜଗତର ପିତାମାତା ଶଙ୍କର ଭବାନୀ । ତାହାଙ୍କ ଶୃଙ୍ଗାର ତେଣୁ ନ କହେ ବଖାଣି ॥୨॥

---

ସମସ୍ତ ନୁହେଁ) ଜାଣି ସେ ଧୈର୍ଯ୍ୟ ଧାରଣ କଲେ ।।୩।। ମେନା ବାରମ୍ବାର ପାର୍ବତୀଙ୍କୁ ଭେଟୁଥା'ନ୍ତି ଏବଂ ତାଙ୍କ ପାଦ ଧରି ପଡ଼ି ଯାଉଥା'ନ୍ତି । ଏ ପ୍ରେମ ପରମ ଏବଂ ଏହାର ବର୍ଣ୍ଣନା ଅସମ୍ଭବ । ସମସ୍ତ ସ୍ତ୍ରୀଙ୍କ ଭେଟିବା ପରେ ଭବାନୀ ପୁଣି ଯାଇ ତାଙ୍କ ମାତାଙ୍କ ବକ୍ଷରେ ଆଉଜି ପଡ଼ିଲେ ।।୪।। ଛନ୍ଦ :–ପାର୍ବତୀ ଫେରି ମାତାଙ୍କୁ ପୁଣି ଭେଟି ତାଙ୍କଠାରୁ ବିଦାୟ ନେଇ ଚାଲିଲେ । ସେ ମୁହଁ ଫେରାଇ ମା'ତାଙ୍କ ଆଡ଼କୁ ଚାହିଁ ଚାହିଁ ଯାଉଥା'ନ୍ତି । ତତ୍ପରେ ସଖୀମାନେ ତାହାଙ୍କୁ ଶିବଙ୍କ ପାଖକୁ ଘେନି ଗଲେ । ସମସ୍ତ ଯାଚକଙ୍କୁ ସନ୍ତୁଷ୍ଟ କରି ମହାଦେବ ପାର୍ବତୀଙ୍କ ସଙ୍ଗେ ଘର (କୈଳାସ)କୁ ଚାଲିଲେ । ସମସ୍ତ ଦେବତା ଆନନ୍ଦିତ ହୋଇ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ଏବଂ ଆକାଶରେ ସୁନ୍ଦର ଦୁନ୍ଦୁଭି ବଜାଇବାକୁ ଲାଗିଲେ । ଦୋହା :–ତତ୍ପରେ ହିମବାନ୍ ଅତି ପ୍ରେମରେ ଶିବଙ୍କୁ ବାଟେଇ ଦେବା ପାଇଁ ତାଙ୍କ ସହିତ କିଛି ଦୂର ଯାଇଥିଲେ । ବୃଷକେତୁ ଶିବ ବହୁତ ପ୍ରକାରେ ତାହାଙ୍କୁ

କରହିଁ ବିବିଧ ବିଧି ଭୋଗ ବିଲାସା । ଗନନ୍ହ ସମେତ ବସହିଁ କୈଲାସା ॥
ହର ଗିରିଜା ବିହାର ନିତ ନୟଊ । ଏହି ବିଧି ବିପୁଲ କାଲ ଚଲି ଗୟଊ ॥୩॥
ତବ ଜନମେଉ ଷଟବଦନ କୁମାରା । ତାରକୁ ଅସୁରୁ ସମର ଜେହିଁ ମାରା ॥
ଆଗମ ନିଗମ ପ୍ରସିଦ୍ଧ ପୁରାନା । ଷନ୍ମୁଖ ଜନ୍ମୁ ସକଲ ଜଗ ଜାନା ॥୪॥

ଜଗୁ ଜାନ ଷନ୍ମୁଖ ଜନ୍ମୁ କର୍ମୁ ପ୍ରତାପୁ ପୁରୁଷାରଥୁ ମହା ।
ତେହି ହେତୁ ମୈଁ ବୃଷକେତୁ ସୁତ କର ଚରିତ ସଂଛେପହିଁ କହା ।
ୟହ ଉମା ସଂଭୁ ବିବାହୁ ଜେ ନର ନାରି କହହିଁ ଜେଗାଵହୀଁ ।
କଲ୍ୟାନ କାଜ ବିବାହ ମଂଗଲ ସର୍ବଦା ସୁଖୁ ପାଵହୀଁ ॥

---

ବିବିଧ ପ୍ରକାରେ ଭୋଗ ବିଲାସ କରନ୍ତି । ଗଣଙ୍କ ସହ କୈଳାଶ ପର୍ବତେ ରହନ୍ତି ॥
ଉମା ହରଙ୍କ ବିହାର ହୁଏ ନବ ନିତ୍ୟ । ଏହି ଭାବେ ବହୁକାଳ ହୋଇଲା ଅତୀତ ॥୩॥
ଷଡ଼ଆନନ କୁମାର ତହୁଁ ଜନମିଲେ । ତାରକାସୁରକୁ ଯେହୁ ସମରେ ମାରିଲେ ॥
ଶ୍ରୁତି ଶାସ୍ତ୍ର ପୁରାଣରେ ପ୍ରସିଦ୍ଧ ଅଛଇ । କାର୍ତ୍ତିକଙ୍କ ଜନ୍ମ କର୍ମ ଜଗତ ଜାଣଇ ॥୪॥

ଷଣ୍ମୁଖଙ୍କ ଜନମ କରମ ପରାକ୍ରମ ପ୍ରତାପ ଜଗତେ ବିଦିତ ।
ତେଣୁ ମୁହିଁ ସଂକ୍ଷେପେ କହିଲି କଥା ରୂପେ ଶଙ୍କର ସୁତଙ୍କ ଚରିତ ॥
ବିବାହ ଶିବ ଉମାଙ୍କର, ଗାଇବେ ଶୁଣିବେ ଯେ ନର ।
ସେ କଲ୍ୟାଣ କର୍ମରେ ବିବାହ ମଙ୍ଗଳରେ ଲଭିବେ ସୁଖ ନିରନ୍ତର ॥

---

ସନ୍ତୋଷ ପ୍ରଦାନ କରି ବିଦା କଲେ ॥ ୧୦୨ ॥ ଚୌପାଈ.-ପର୍ବତରାଜ ହିମାଚଳ ଶୀଘ୍ର ଘରକୁ ଆସିଲେ ଏବଂ ସମସ୍ତ ପର୍ବତ ଓ ସରୋବରଙ୍କୁ ଡକାଇଲେ । ସେ ଆଦର, ଦାନ, ବିନୟ ଓ ବହୁତ ସମ୍ମାନ ସହିତ ସମସ୍ତଙ୍କୁ ବିଦାୟ ଦେଲେ ॥ ୧ ॥ ଶିବ କୈଳାସ ପର୍ବତ ଉପରେ ପହଞ୍ଚିଲେ ଏବଂ ସମସ୍ତ ଦେବତା ଆପଣା ଆପଣା ଲୋକକୁ ଚାଲିଗଲେ । ତୁଳସୀଦାସ କହନ୍ତି—"ପାର୍ବତୀ ଓ ଶିବ ଜଗତର ମାତା ଓ ପିତା । ଏଣୁ ମୁଁ ସେମାନଙ୍କ ଶୃଙ୍ଗାର ବର୍ଣ୍ଣନା କରିବାକୁ ଯାଉନାହିଁ ।" ॥୨॥ ବିବିଧ ପ୍ରକାର ଭୋଗ-ବିଲାସରେ ରତ ଶିବପାର୍ବତୀ ଆପଣା ଗଣମାନଙ୍କ ସହିତ କୈଳାସ ଉପରେ ବାସ କଲେ । ସେମାନେ ନିତ୍ୟ ନୂତନ ବିହାର କରିବାକୁ ଲାଗିଲେ । ଏହିପରି ବହୁତ ସମୟ ବିତିଗଲା ॥ ୩ ॥ ତତ୍ପରେ ଷଡ଼ବଦନ ପୁତ୍ର କୁମାର ଜନ୍ମଲାଭ କଲେ । ବଡ଼ ହୋଇ ସେ ଯୁଦ୍ଧରେ ତାରକାସୁରକୁ ମାରିଲେ । ବେଦ, ଶାସ୍ତ୍ର ଓ ପୁରାଣମାନଙ୍କରେ ଷଡ଼ାନନ କାର୍ତ୍ତିକଙ୍କ ଜନ୍ମକଥା ପ୍ରସିଦ୍ଧ । ସମଗ୍ର ଜଗତ ସେ କଥା ଭଲ ରୂପେ ଜାଣେ ॥ ୪ ॥ ଛନ୍ଦ-ଷଡ଼ାନନ କାର୍ତ୍ତିକେୟଙ୍କ ଜନ୍ମ, କର୍ମ, ପ୍ରତାପ ଓ ମହାପୁରୁଷାର୍ଥ ବିଷୟ ସାରା ସଂସାର ଜାଣେ, ଏଣୁ ମୁଁ ବୃଷକେତୁ (ଶିବ)ଙ୍କ ପୁତ୍ରର ଚରିତ ସଂକ୍ଷେପରେ କହିଲି । ଶିବପାର୍ବତୀଙ୍କ ଏହି ବିବାହ-ପ୍ରସଙ୍ଗ ଯେଉଁ ସ୍ତ୍ରୀପୁରୁଷ କହିବେ ଓ ଗାଇବେ, ସେମାନେ

ଚରିତ ସିଂଧୁ ଗିରିଜା ରମନ ବେଦ ନ ପାୱହିଁ ପାରୁ ।
ବରନୈ ତୁଲସୀଦାସୁ କିମି ଅତି ମତିମଂଦ ଗୱାଁରୁ ॥୧୦୩॥

ସଂଭୁ ଚରିତ ସୁନି ସରସ ସୁହାୱା । ଭରଦ୍ୱାଜ ମୁନି ଅତି ସୁଖୁ ପାୱା ॥
ବହୁ ଲାଲସା କଥା ପର ବାଢ଼ୀ । ନୟନନ୍ହି ନୀରୁ ରୋମାବଲି ଠାଢ଼ୀ ॥୧॥
ପ୍ରେମ ବିବସ ମୁଖ ଆୱ ନ ବାନୀ । ଦସା ଦେଖି ହରଷେ ମୁନି ଗ୍ୟାନୀ ॥
ଅହୋ ଧନ୍ୟ ତବ ଜନ୍ମ ମୁନୀସା । ତୁମ୍ହହି ପ୍ରାନ ସମ ପ୍ରିୟ ଗୌରୀସା ॥୨॥
ସିବ ପଦ କମଲ ଜିନ୍ହହି ରତି ନାହୀଁ । ରାମହି ତେ ସପନେହୁଁ ନ ସୋହାହୀଁ ॥
ବିନୁ ଛଲ ବିସ୍ୱନାଥ ପଦ ନେହୂ । ରାମ ଭଗତ କର ଲଚ୍ଛନ ଏହୂ ॥୩॥
ସିବ ସମ କୋ ରଘୁପତି ବ୍ରତଧାରୀ । ବିନୁ ଅଘ ତଜୀ ସତୀ ଅସି ନାରୀ ॥
ପନୁ କରି ରଘୁପତି ଭଗତି ଦେଖାଈ । କୋ ସିବ ସମ ରାମହି ପ୍ରିୟ ଭାଈ ॥୪॥

---

ଚରିତ୍ର ସାଗର ଗିରିଜା-ରମଣ ବେଦ ନ ଲଭଇ ପାର ।
ବଖାଣିବ ଅତି ମୂଢ ମନ୍ଦମତି ତୁଲସୀ କେଉଁ ପ୍ରକାର ॥୧୦୩॥

ଶମ୍ଭୁଙ୍କ ଚରିତ ଶୁଣି ସରସ ଶୋଭିତ । ଭରଦ୍ୱାଜ ମୁନି ଅତି ହେଲେ ଆନନ୍ଦିତ ॥
କଥା ଉପରେ ବହୁତ ଲାଲସା ବଢ଼ିଲା । ତନୁ ରୋମାଞ୍ଚିତ ନୀର ନୟନେ ପୂରିଲା ॥୧॥
ମୁଖରୁ ବଚନ ସ୍ଫୁରେ ନାହିଁ ପ୍ରେମବଶ । ଦଶା ଦେଖି ମୁନିଜ୍ଞାନୀ ହୋଇଲେ ହରଷ ॥
ଧନ୍ୟ ମୁନିନାଥ, ଧନ୍ୟ ତୁମ୍ଭର ଜନମ । ତୁମ୍ଭଙ୍କୁ ଗିରିଜାକାନ୍ତ ପ୍ରିୟ ପ୍ରାଣ ସମ ॥୨॥
ଶିବ ପାଦ-ପଦ୍ମେ ଯାର ନାହିଁ ସ୍ନେହମତି । ସ୍ୱପ୍ନେ ମଧ୍ୟ ରାମଙ୍କୁ ସେ ଭଲ ନ ଲାଗନ୍ତି ॥
ଶମ୍ଭୁ ପଦେ ଅକପଟ ସ୍ନେହ ଆଚରଣ । ରାମଭକ୍ତ ଜନଙ୍କର ଅଟେ ଏ ଲକ୍ଷଣ ॥୩॥
ଶିବ ସମ କିଏ ରଘୁପତି ବ୍ରତଧାରୀ । ତେଜିଲେ ପାପ ବିହୁନେ ସତୀ ପରି ନାରୀ ॥
ପଣ କରି ବ୍ରତ କଲେ ରଘୁପତି ଭକ୍ତି । କିଏ ଶିବ ସମ ଭାଇ ରାମପ୍ରିୟ ଅଛି ॥୪॥

---

କଲ୍ୟାଣ-କର୍ମ ଏବଂ ବିବାହାଦି ମାଙ୍ଗଳିକ କ୍ରିୟାନୁଷ୍ଠାନରେ ସଦା ସୁଖ ଲାଭ କରିବେ ।
ଦୋହା -ଗିରିଜାପତି ମହାଦେବଙ୍କ ଚରିତ ସମୁଦ୍ର ପରି ଅପାର, ଏପରିକି ବେଦ ସୁଦ୍ଧା ତହିଁର ପାର ପାଇ ପାରେନାହିଁ । ତେବେ ମନ୍ଦବୁଦ୍ଧି ଓ ନିର୍ବୋଧ ତୁଳସୀଦାସ ତାହା କିପରି ବର୍ଣ୍ଣନା କରିପାରିବ ! ॥୧୦୩॥ ଚୌପାଈ.-ଶିବଙ୍କର, ରସମୟ ତଥା ଶୋଭାମୟମାନ ଚରିତ ଶୁଣି ମୁନି ଭରଦ୍ୱାଜ ବଡ଼ ସୁଖ ଲାଭ କଲେ, କଥା ଶୁଣିବାକୁ ତାଙ୍କର ଲାଳସା ବହୁତ ବଢ଼ିଗଲା, ନେତ୍ରରେ ଜଳ ଭରିଗଲା ଏବଂ ରୋମାବଳୀ ଠିଆ ହୋଇ ଉଠିଲା ॥ ୧ ॥ ସେ ପ୍ରେମରେ ମୁଗ୍ଧ ହୋଇଗଲେ । ମୁହଁରୁ ବାଣୀ ବାହାରୁନାହିଁ । ତାଙ୍କର ଏହି ଦଶା ଦେଖି ଜ୍ଞାନୀ ମୁନି ଯାଜ୍ଞବଲ୍କ୍ୟ ବିଶେଷ ଆନନ୍ଦିତ ହେଲେ ଏବଂ କହିଲେ, "ହେ ମୁନୀଶ ! ଆହା ହା ! ତୁମର ଜନ୍ମ ଧନ୍ୟ ! ଗୌରୀପତି ଶିବ ତୁମର ପ୍ରାଣସମ ପ୍ରିୟ ॥୨॥ ଶିବଙ୍କର ପାଦ-ପଦ୍ମଠାରେ ଯାହାଙ୍କର ପ୍ରୀତିନାହିଁ, ସେ ରାମଚନ୍ଦ୍ରଙ୍କୁ ସ୍ୱପ୍ନରେ ସୁଦ୍ଧା ଭଲ ଲାଗିବେ ନାହିଁ । ବିଶ୍ୱନାଥ ଶିବଙ୍କର ଚରଣରେ ନିଷ୍କପଟ (ବିଶୁଦ୍ଧ) ପ୍ରେମ ରାମ-

ପ୍ରଥମହିଁ ମୈଁ କହି ସିବଚରିତ ବୂଝା ମରମୁ ତୁହ୍ମାର ।
ସୁଚି ସେବକ ତୁହ୍ମ ରାମ କେ ରହିତ ସମସ୍ତ ବିକାର ॥୧୦୪॥

ମୈଁ ଜାନା ତୁହ୍ମାର ଗୁନ ସୀଲା । କହଉଁ ସୁନହୁ ଅବ ରଘୁପତି ଲୀଲା ॥
ସୁନୁ ମୁନି ଆଜୁ ସମାଗମ ତୋରେଁ । କହି ନ ଜାଇ ଜସ ସୁଖୁ ମନ ମୋରେଁ ॥୧॥
ରାମ ଚରିତ ଅତି ଅମିତ ମୁନୀସା । କହି ନ ସକହିଁ ସତ କୋଟି ଅହୀସା ॥
ତଦପି ଜଥାଶ୍ରୁତ କହଉଁ ବଖାନୀ । ସୁମିରି ଗିରାପତି ପ୍ରଭୁ ଧନୁପାନୀ ॥୨॥
ସାରଦ ଦାରୁନାରି ସମ ସ୍ୱାମୀ । ରାମୁ ସୂତ୍ରଧର ଅଂତରଜାମୀ ॥
ଜେହି ପର କୃପା କରହିଁ ଜନୁ ଜାନୀ । କବି ଉର ଅଜିର ନଚାୱହିଁ ବାନୀ ॥୩॥

---

ବୁଝିଲି ମରମ ତୁମ୍ଭର ପ୍ରଥମେ କହି ମୁଁ ଶିବ ଚରିତ ।
ପବିତ୍ର ସେବକ ତୁମ୍ଭେ ଶ୍ରୀରାମଙ୍କ ସର୍ବବିକାରରହିତ ॥୧୦୪॥

ଅବଗତ ହୋଇଲି ମୁଁ ତୁମ୍ଭ ଶୀଲ ଗୁଣ । ରଘୁପତି ଲୀଳା ଏବେ କହୁଅଛି ଶୁଣ ॥
ଶୁଣ ମୁନିବର ଆଜି ତୁମ୍ଭ ସମାଗମେ । କହି ନ ହୁଏ ଯେ ସୁଖ ହୁଅଇ ମୋ ମନେ । ୧॥
ରାମ ଚରିତ ଅତ୍ୟନ୍ତ ଅପାର ମୁନୀଶ । କହି ନ ପାରନ୍ତି କୋଟି ସହସ୍ର ଫଣୀଶ ॥
ତଥାପି ଶୁଣିଛି ଯାହା କହୁଛି ବଖାଣି । ସ୍ମରଣ ବାଣୀନାୟକ ପ୍ରଭୁ ଧନୁପାଣି ॥୨॥
ଶାରଦା ଯେସନେ କାଷ୍ଠ ପିତୁଳା ଯୁବତୀ । ସୂତ୍ରଧର ଅନ୍ତର୍ଯାମୀ ସ୍ୱାମୀ ରଘୁପତି ॥
ସେବକ ଜାଣି କରନ୍ତି କୃପା ଯା'ଉପରେ । ନଚାନ୍ତି ବାଣୀଙ୍କୁ କବି-ହୃଦ-ପ୍ରାଙ୍ଗଣରେ ॥୩॥

---

ଭକ୍ତର ଲକ୍ଷଣ ॥୩॥ ଶିବଙ୍କ ତୁଲ୍ୟ ରଘୁନାଥଙ୍କ ଭକ୍ତ-ବ୍ରତଧାରୀ ଆଉ କିଏ ? ବିନା ପାପରେ ସ୍ତ୍ରୀ ସତୀଙ୍କ ସମାନ ପତ୍ନୀଙ୍କୁ ସେ ପରିତ୍ୟାଗ କରିଥିଲେ ଏବଂ ପ୍ରତିଜ୍ଞା କରି ରଘୁନାଥ-ଭକ୍ତି ଦେଖାଇ ଦେଲେ । ହେ ଭାଇ ! ଶିବଙ୍କ ସମାନ ଶ୍ରୀରାମଚନ୍ଦ୍ରଙ୍କର ଏତେ ପ୍ରିୟ-ପାତ୍ର ଆଉ କିଏ ?" ॥୪॥ ଦୋହା :-ମୁଁ ଶିବଙ୍କ ଚରିତ କହି ତୁମ ମରମ ବୁଝିନେଲି । ତୁମେ ରାମଚନ୍ଦ୍ରଙ୍କର ପରମ ସେବକ ଏବଂ ସମସ୍ତ ଦୋଷରୁ ମୁକ୍ତ ॥୧୦୪॥ ଚୌପାଈ.- ମୁଁ ତୁମ ଗୁଣ ଓ ଚରିତ ବୁଝିନେଲି । ବର୍ତ୍ତମାନ ମୁଁ ଶ୍ରୀ ରଘୁନାଥଙ୍କ ଲୀଳା କହୁଛି । ଶୁଣ, ହେ ମୁନି ' ଶୁଣ । ଆଜି ତୁମ ସାକ୍ଷାତ ଯୋଗେ ମୋ ମନରେ ଯେଉଁ ଆନନ୍ଦ ଜାତ ହୋଇଛି, ତାହାକୁ ଭାଷାରେ ପ୍ରକାଶ କରିବା ମୋ ପକ୍ଷରେ ଅସମ୍ଭବ ॥୧॥ ହେ ମୁନୀଶ୍ୱର । ରାମଚରିତ ଅତ୍ୟନ୍ତ ଅପାର, ଶହେ କୋଟି ଶେଷ (ବାସୁକୀ) ମଧ୍ୟ ତାହା କହି ପାରିବେ ନାହିଁ । ତଥାପି ମୁଁ ଯେମିତି ଶୁଣିଛି, ବାଣୀପତି ତଥା ଧନୁପାଣି ପ୍ରଭୁ ଶ୍ରୀ ରାମଚନ୍ଦ୍ରଙ୍କୁ ସ୍ମରଣପୂର୍ବକ ସେଇମିତି କହୁଛି ॥ ୨ ॥ ସରସ୍ୱତୀ କାଠକଣ୍ଢେଇ ପରି ଏବଂ ଅନ୍ତର୍ଯାମୀ ସ୍ୱାମୀ ରାମଚନ୍ଦ୍ର ସୂତ୍ରଧର । (ସୂତ୍ରଧର କଣ୍ଢେଇକୁ ଧରି ନଚାଇଲା ପରି ପ୍ରଭୁ ରାମଚନ୍ଦ୍ର ସରସ୍ୱତୀଙ୍କୁ ଧରି ନଚାନ୍ତି ।) ଆପଣା ଭକ୍ତ ବୋଲି ଜାଣି ଯେଉଁ କବି ଉପରେ ସେ କୃପା କରନ୍ତି, ତାହାର ହୃଦୟ-ପ୍ରାଙ୍ଗଣରେ ସେ ସରସ୍ୱତୀଙ୍କୁ ନଚାନ୍ତି ॥ ୩ ॥

ପ୍ରନଵଉଁ ସୋଇ କୃପାଲ ରଘୁନାଥା । ବରନଉଁ ବିସଦ ତାସୁ ଗୁନଗାଥା ॥
ପରମ ରମ୍ୟ ଗିରିବରୁ କୈଲାସୂ । ସଦା ଜହାଁ ସିବ ଉମା ନିବାସୂ ॥୪॥

ସିଦ୍ଧ ତପୋଧନ ଜୋଗିଜନ ସୁର କିଂନର ମୁନିବୃନ୍ଦ ।
ବସହିଁ ତହାଁ ସୁକୃତୀ ସକଲ ସେଵହିଁ ସିବ ସୁଖକଂଦ ॥୧୦୫॥

ହରି ହର ବିମୁଖ ଧର୍ମ ରତି ନାହୀଁ । ତେ ନର ତହଁ ସପନେହୁଁ ନହିଁ ଜାହୀଁ ॥
ତେହି ଗିରି ପର ବଟ ବିଟପ ବିସାଲା । ନିତ ନୂତନ ସୁନ୍ଦର ସବ କାଲା ॥୧॥
ତ୍ରିବିଧ ସମୀର ସୁସୀତଲି ଛାୟା । ସିବ ବିଶ୍ରାମ ବିଟପ ଶ୍ରୁତି ଗାୟା ॥
ଏକ ବାର ତେହି ତର ପ୍ରଭୁ ଗୟଊ । ତରୁ ବିଲୋକି ଉର ଅତି ସୁଖୁ ଭୟଊ ॥୨॥
ନିଜ କର ଡାସି ନାଗରିପୁ ଛାଲା । ବୈଠେ ସହଜହିଁ ସଂଭୁ କୃପାଲା ॥
କୁନ୍ଦ ଇନ୍ଦୁ ଦର ଗୌର ସରୀରା । ଭୁଜ ପ୍ରଲଂବ ପରିଧନ ମୁନିଚୀରା ॥୩॥

---

ସେ କରୁଣା-ସିନ୍ଧୁ ରଘୁନାଥଙ୍କୁ ନମଇ । ଯାହାଙ୍କ ଉଜ୍ଜ୍ୱଳ ଗୁଣ ଚରିତ ଭଣଇ ॥
ପରମ ସୁନ୍ଦର ଗିରିବର କଇଲାଶ । ଯହିଁ ସଦା ଉମାହର କରନ୍ତି ନିବାସ ॥୪॥

ସିଦ୍ଧ ତପୋଧନ ମୁନି ଯୋଗୀଜନ ଅମର କିନ୍ନରବୃନ୍ଦ ।
ସକଳ ସୁକୃତୀ ସତତ ସେବନ୍ତି ତହିଁ ଶିବ ସୁଖ-କନ୍ଦ ॥୧୦୫॥

ହରିହର ବିମୁଖ ଯେ ଧର୍ମେ ଶ୍ରଦ୍ଧା ନାହିଁ । ସ୍ୱପ୍ନେ ହେଁ ସେ ନର ଯାଇ ନ ପାରଇ ତହିଁ ॥
ସେ ଗିରି ଉପରେ ବଟ ବିଟପ ବିଶାଳ । ନିତ୍ୟ ନୂତନ ପରମ ରମ୍ୟ ସଦାକାଳ ॥୧॥
ସୁଶୀତଳ ଛାୟା ବହେ ତ୍ରିବିଧ ପବନ । ଶିବଙ୍କ ବିଶ୍ରାମ ତରୁ ଶ୍ରୁତିରେ ବର୍ଣ୍ଣନ ॥
ଏକଦା ତାହା ତଳକୁ ଗଲେ ଉମାପତି । ତରୁ ବିଲୋକି ହୃଦୟେ ସୁଖୀ ହେଲେ ଅତି ॥୨॥
ଗଜ-ଶତ୍ରୁ ଛାଲ ନିଜ ହସ୍ତେ ବିଛାଇଣ । ସହଜେ କୃପାଳୁ ଶମ୍ଭୁ ହୋଇଲେ ଆସୀନ ॥
କୁନ୍ଦ ଇନ୍ଦୁ ଶଙ୍ଖ ସମ ଗଉର ଶରୀର । ପ୍ରଲମ୍ବିତ ଭୁଜ ପରିଧାନ ମୁନିଚୀର ॥୩॥

---

ସେହି କୃପାଳୁ ଶ୍ରୀ ରଘୁନାଥଙ୍କୁ ମୁଁ ପ୍ରଣାମ କରୁଛି ଏବଂ ତାଙ୍କର ନିର୍ମଳ ଗୁଣ-କାହାଣୀ କହୁଛି—"ପର୍ବତମାନଙ୍କ ମଧ୍ୟରେ କୈଳାସ ପର୍ବତ ସର୍ବଶ୍ରେଷ୍ଠ ଏବଂ ପରମ ରମଣୀୟ । ସେହିଠାରେ ଶିବପାର୍ବତୀ ସଦା ନିବାସ କରନ୍ତି ॥ ୪ ॥ ଦୋହା – ସିଦ୍ଧ, ତପସ୍ୱୀ, ଯୋଗିଗଣ, ଦେବତା, କିନ୍ନର ଏବଂ ମୁନିବୃନ୍ଦ ସେହି ପର୍ବତ ଉପରେ ବାସ କରନ୍ତି । ସେମାନେ ବଡ଼ ପୁଣ୍ୟାତ୍ମା ଏବଂ ଆନନ୍ଦକନ୍ଦ ଶ୍ରୀ ମହାଦେବଙ୍କୁ ସେବା କରନ୍ତି ॥୧୦୫॥ ଚୌପାଈ –ଯେଉଁମାନେ ଭଗବାନ୍ ବିଷ୍ଣୁ ଓ ମହାଦେବଙ୍କ ପ୍ରତି ବିମୁଖ ଏବଂ ଯେଉଁ-ମାନଙ୍କର ଧର୍ମରେ ପ୍ରୀତି ନାହିଁ, ସେମାନେ ସ୍ୱପ୍ନରେ ବି ସେଠାକୁ ଯାଇ ପାରିବେନାହିଁ । ସେହି ପର୍ବତ ଉପରେ ଗୋଟିଏ ବିଶାଳ ବଟବୃକ୍ଷ । ଏହା ନିତ୍ୟ ନବୀନ ଏବଂ ସବୁ କାଳେ (ଛଅ ଋତୁଯାକ) ସୁନ୍ଦର ॥୧॥ ସେଠାରେ ତିନି ପ୍ରକାର (ଶୀତଳ, ମନ୍ଦ ଓ ସୁଗନ୍ଧ) ବାୟୁ ବହୁଥାଏ ଏବଂ ତାହାର ଛାୟା ବଡ଼ ଶୀତଳ । ତାହା ଶିବଙ୍କର ବିଶ୍ରାମ-ବୃକ୍ଷ । ବେଦମାନେ ତାହା ବିଷୟରେ ଗାଇଅଛନ୍ତି । ଏକଦା ପ୍ରଭୁ ଶ୍ରୀ ଶିବ ସେହି

ତରୁନ ଅରୁନ ଅଂବୁଜ ସମ ଚରନା । ନଖ ଦୁତି ଭଗତ ହୃଦୟ ତମ ହରନା ॥
ଭୁଜଗ ଭୂତି ଭୂଷନ ତ୍ରିପୁରାରୀ । ଆନନୁ ସରଦ ଚଂଦ ଛବି ହାରୀ ॥୪॥
ଜଟା ମୁକୁଟ ସୁରସରିତ ସିର ଲୋଚନ ନଲିନ ବିସାଲ ।
ନୀଲକଂଠ ଲାବନ୍ୟନିଧି ସୋହ ବାଲବିଧୁ ଭାଲ ॥୧୦୬॥
ବୈଠେ ସୋହ କାମରିପୁ କୈସେଁ । ଧରେଁ ସରୀରୁ ସାଂତରସୁ ଜୈସେଁ ॥
ପାରବତୀ ଭଲ ଅବସରୁ ଜାନୀ । ଗଈଁ ସଂଭୁ ପହିଁ ମାତୁ ଭବାନୀ ॥୧॥
ଜାନି ପ୍ରିୟା ଆଦରୁ ଅତି କୀନ୍ହା । ବାମ ଭାଗ ଆସନୁ ହର ଦୀନ୍ହା ॥
ବୈଠୀଁ ସିବ ସମୀପ ହରଷାଈ । ପୂରୁବ ଜନ୍ମ କଥା ଚିତ ଆଈ ॥୨॥

---

ତରୁଣ ଅରୁଣ କଞ୍ଜ ସଦୃଶ ଚରଣ । ନଖ ଦ୍ୟୁତି ଭକ୍ତ ହୃଦ-ତମିର ହରଣ ॥
ବିଭୂତି ଭୁଜଙ୍ଗ ବିଭୂଷଣ ତ୍ରିପୁରାରି । ବଦନ ଶରଦ ସୁଧାକର-ଛବିହାରୀ ॥୪॥
ଶିରେ ଗଙ୍ଗା, ଜଟା ମୁକୁଟ ସାଜଇ ନେତ୍ର-ନଳିନ ବିଶାଳ ।
କଣ୍ଠ ନୀଲ ବର୍ଣ୍ଣ ଲାବଣ୍ୟନିଧାନ ଭାଲେ ଶୋଭେ ବିଧୁ ବାଳ ॥୧୦୬॥
ବସି କାମରିପୁ ଶୋଭା ପାଆନ୍ତି ତେମନ୍ତ । ଦେହଧାରୀ ଶାନ୍ତରସ ଶୋଭଇ ଯେମନ୍ତ ॥
ଭବ ଅର୍ଦ୍ଧାଙ୍ଗିନୀ ତହୁଁ ସୁସମୟ ଜାଣି । ଗଲେ ଶିବଙ୍କ ସମୀପେ ଜନନୀ ଭବାନୀ ॥୧॥
ପ୍ରିୟା ଜାଣି ଅତି ପ୍ରେମେ କରିଣ ଆଦର । ବାମ ଭାଗରେ ଆସନ ଦେଲେ ଗଙ୍ଗାଧର ॥
ବସିଲେ ହରଙ୍କ ପାଶେ ଉମା ହରଷିତେ । ସ୍ମରଣ ହୋଇଲା ପୂର୍ବ ଜନ୍ମ କଥା ଚିତ୍ତେ ॥୨॥

---

ବୃକ୍ଷ ତଳକୁ ଗଲେ ଏବଂ ତାହାକୁ ଦେଖି ତାଙ୍କ ହୃଦୟରେ ବଡ ଆନନ୍ଦ ଜାତ ହେଲା ॥୨॥ ଆପଣା ହାତରେ ଶିବ ସେଠାରେ ସିଂହଚର୍ମର ଆସନ ବିଛାଇ ତହିଁ ଉପରେ ସହଜ ସ୍ୱାଭାବିକ ରୀତିରେ (କୌଣସି ପ୍ରୟୋଜନ ବିନା) ବସି ପଡିଲେ । କୁନ୍ଦ ଫୁଲ, ଚନ୍ଦ୍ର ଓ ଶଙ୍ଖତୁଲ୍ୟ ତାଙ୍କର ଶରୀର ଗୌର ଦେଖାଯାଉଥିଲା । ଅତି ଲମ୍ବ ବାହୁ ତାଙ୍କର । ମୁନିଙ୍କ ସଦୃଶ ସେ ବଲ୍କଲ ବସ୍ତ୍ର ପରିଧାନ କରିଥା'ନ୍ତି ॥୩॥ ତାଙ୍କ ଚରଣ-ଯୁଗଳ ସଦ୍ୟ-ପ୍ରସ୍ଫୁଟିତ ରକ୍ତପଦ୍ମ ପରି ଲାଲବର୍ଣ୍ଣ, ନଖଜ୍ୟୋତି ଭକ୍ତ ହୃଦୟର ଅନ୍ଧକାର ହରଣ କରି ନେଉଥିଲା । ସର୍ପ ଓ ଭସ୍ମ ତାଙ୍କ ଭୂଷଣ । ତ୍ରିପୁରାରି ଶିବଙ୍କର ମୁଖଶୋଭା ଶରତ ପୂର୍ଣ୍ଣିମାର ଚନ୍ଦ୍ରମାଙ୍କ ଶୋଭାକୁ ମଧ୍ୟ ନିଷ୍ପ୍ରଭ କରିଦେଉଥିଲା ॥୪॥ ଦୋହା :—ତାହାଙ୍କର ଶିର ଉପରେ ଜଟାସମୂହର ମୁକୁଟ ଏବଂ ଗଙ୍ଗା ଶୋଭା-ୟମାନ ଥିଲେ । କମଳ ସଦୃଶ ବିଶାଳ ନେତ୍ର । ନୀଳକଣ୍ଠ ସେ ଏବଂ ଲାବଣ୍ୟ (ସୌନ୍ଦର୍ଯ୍ୟ)ର ଭଣ୍ଡାର । ତାଙ୍କ ମସ୍ତକ ଉପରେ ଦ୍ୱିତୀୟାଚନ୍ଦ୍ର ସୁଶୋଭିତ ॥୧୦୬॥ ଚୌପାଈ :—କାମରିପୁ ଶିବ ସେଠାରେ ବସି ଏପରି ଶୋଭା ପାଉଥା'ନ୍ତି, ସତେ ଯେପରି ଶାନ୍ତରସ ଶରୀର ଧାରଣ କରି ବସିଅଛି । ସୁଅବସର ପାଇ ଶିବପତ୍ନୀ ମାତା ଭବାନୀ ତାଙ୍କ ପାଖକୁ ଗଲେ ॥୧॥ ନିଜ ପ୍ରିୟାପତ୍ନୀ ଆସିବାର ଜାଣି ଶିବ ତାହାଙ୍କର ବଡ ଆଦର-ସତ୍କାର କଲେ ଏବଂ ଆପଣାର ବାମପାର୍ଶ୍ୱରେ ବସିବା ନିମନ୍ତେ ତାଙ୍କୁ ଆସନ

ପତି ହିୟଁ ହେତୁ ଅଧିକ ଅନୁମାନୀ । ବିହସି ଉମା ବୋଲୀଁ ପ୍ରିୟ ବାନୀ ॥
କଥା ଜୋ ସକଲ ଲୋକ ହିତକାରୀ । ସୋଇ ପୂଛନ ଚହ ସୈଲକୁମାରୀ ॥୩॥
ବିସ୍ୱନାଥ ମମ ନାଥ ପୁରାରୀ । ତ୍ରିଭୁବନ ମହିମା ବିଦିତ ତୁମ୍ହାରୀ ॥
ଚର ଅରୁ ଅଚର ନାଗ ନର ଦେବା । ସକଲ କରହିଁ ପଦ ପଙ୍କଜ ସେବା ॥୪॥
ପ୍ରଭୁ ସମରଥ ସର୍ବଜ୍ଞ ସିବ ସକଲ କଲା ଗୁନଧାମ ।
ଜୋଗ ଜ୍ଞାନ ବୈରାଗ୍ୟ ନିଧି ପ୍ରନତ କଲପତରୁ ନାମ ॥୧୦୭॥
ଜୌଁ ମୋ ପର ପ୍ରସନ୍ନ ସୁଖରାସୀ । ଜାନିଅ ସତ୍ୟ ମୋହି ନିଜ ଦାସୀ ॥
ତୌ ପ୍ରଭୁ ହରହୁ ମୋର ଅଜ୍ଞାନା । କହି ରଘୁନାଥ କଥା ବିଧି ନାନା ॥୧॥
ଜାସୁ ଭବନୁ ସୁରତରୁ ତର ହୋଈ । ସହି କି ଦରିଦ୍ର ଜନିତ ଦୁଖୁ ସୋଈ ॥
ସସିଭୂଷନ ଅସ ହୃଦୟଁ ବିଚାରୀ । ହରହୁ ନାଥ ମମ ମତି ଭ୍ରମ ଭାରୀ ॥୨॥

---

ପତିଙ୍କ ହୃଦେ ଅଧିକ ପ୍ରୀତି ଅନୁମାନି । ହସି ଭାଷିଲେ ସୁପ୍ରିୟ ବଚନ ଭବାନୀ ॥
ଯେଉଁ କଥା ସକଲ ଲୋକ ହିତକାରୀ । ପଚାରିବାକୁ ଚାହାନ୍ତି ଶଇଳ କୁମାରୀ ॥୩॥
ବିଶ୍ୱନାଥ ପ୍ରାଣେଶ୍ୱର ସୁଧାଂଶୁ-ଶେଖର । ବିଦିତ ତିନି ଭୁବନେ ମହିମା ତୁମ୍ଭର ॥
ଚର ଅଚର ଆବର ସୁର ନର ନାଗ । ସମସ୍ତେ ସେବନ୍ତି ପଦ-ପଙ୍କଜ ପରାଗ ॥୪॥
ପ୍ରଭୁ ସରବଜ୍ଞ ସମର୍ଥ ଗୁଣଜ୍ଞ ଶିବ ସର୍ବ କଳା-ଧାମ ।
ଯୋଗ ଜପ ଜ୍ଞାନ ବୈରାଗ୍ୟ ନିଧାନ ସାକ୍ଷାତ୍ କଳ୍ପତରୁ ନାମ ॥୧୦୭॥
ଯେବେ ମୋ ଉପରେ ସୁପ୍ରସନ୍ନ ସୁଖରାଶି । ସତ୍ୟ ମନେ କରୁଥାନ୍ତି ମୋତେ ନିଜ ଦାସୀ ॥
ତେବେ ହରଣ କରନ୍ତୁ ପ୍ରଭୁ ମୋ ଅଜ୍ଞାନ । କହି ରଘୁନାଥ କଥା ବିବିଧ ବିଧାନ ॥୧॥
କଳ୍ପବୃକ୍ଷ ତଳେ ଯାର ଭବନ ହୁଅଇ । ଦରିଦ୍ର ଜନିତ ଦୁଃଖ ସେହି କି ସହଇ ॥
ଶଶିଭୂଷଣ, ଏମନ୍ତ ହୃଦୟେ ବିଚାରି । ହରନ୍ତୁ ନାଥ ମୋହର ମତି ଭ୍ରମ ଭାରି ॥୨॥

---

ଦେଲେ । ପାର୍ବତୀ ପ୍ରସନ୍ନ ହୋଇ ଶିବଙ୍କ ପାଖରେ ବସିଗଲେ । ତାଙ୍କର ପୂର୍ବଜନ୍ମର କଥା ସ୍ମରଣ ହୋଇ ଆସିଲା ॥ ୨ ॥ ସ୍ୱାମୀଙ୍କ ହୃଦୟରେ ତାଙ୍କ ପ୍ରତି ପୂର୍ବାପେକ୍ଷା ଅଧିକ ପ୍ରେମ ଜାତ ହୋଇଥିବାର ଅନୁମାନ କରି ପାର୍ବତୀ ହସି ପ୍ରୀତିଭରା ବଚନ କହିବାକୁ ଆଜି ଇଚ୍ଛୁକ । (ଯାଜ୍ଞବଲ୍କ୍ୟ କହୁଛନ୍ତି) ଯେଉଁ କଥା ସମସ୍ତ ଲୋକଙ୍କର କଲ୍ୟାଣକାରିଣୀ, ସେହି କଥା ଆଜି ପାର୍ବତୀ ପଚାରିବାକୁ ଆଗ୍ରହାନ୍ୱିତା ॥୩॥ ପାର୍ବତୀ କହିଲେ "ହେ ବିଶ୍ୱନାଥ ! ହେ ମୋର ନାଥ ! ହେ ତ୍ରିପୁରାରି ! ଆପଣଙ୍କ ମହିମା ତ୍ରିଭୁବନବିଦିତ । ଚରାଚର, ନାଗ, ମନୁଷ୍ୟ, ଓ ଦେବତା ସମସ୍ତେ ଆପଣଙ୍କ ପାଦ-ପଦ୍ମର ସେବା କରନ୍ତି ॥୪॥ ଦୋହା :—ହେ ପ୍ରଭୋ ! ଆପଣ ସମର୍ଥ, ସର୍ବଜ୍ଞ ଓ କଲ୍ୟାଣ-ସ୍ୱରୂପ, ସକଳ କଳା ଓ ଗୁଣର ନିଧାନ ଏବଂ ଯୋଗ, ଜ୍ଞାନ ତଥା ବୈରାଗ୍ୟର ଭଣ୍ଡାର । ଶରଣାଗତମାନଙ୍କ ପାଇଁ ଆପଣଙ୍କ ନାମ କଳ୍ପବୃକ୍ଷ ॥୧୦୭॥ ଚୌପାଇ –ହେ ସୁଖ-ରାଶି ! ଯଦି ଆପଣ ମୋ ପ୍ରତି ପ୍ରସନ୍ନ ଏବଂ ସତରେ ମୋତେ ଆପଣା ଦାସୀ ବୋଲି

ପ୍ରଭୁ ଜେ ମୁନି ପରମାରଥବାଦୀ । କହହିଁ ରାମ କହୁଁ ବ୍ରହ୍ମ ଅନାଦୀ ॥
ସେସ ସାରଦା ବେଦ ପୁରାନା । ସକଲ କରହିଁ ରଘୁପତି ଗୁନ ଗାନା ॥୩॥
ତୁମ୍ହ ପୁନି ରାମ ରାମ ଦିନ ରାତୀ । ସାଦର ଜପହୁ ଅନଁଗ ଆରାତୀ ॥
ରାମୁ ସୋ ଅଵଧ ନୃପତି ସୁତ ସୋଈ । କୀ ଅଜ ଅଗୁନ ଅଲଖଗତି କୋଈ ॥୪॥

ଜୌଁ ନୃପ ତନୟ ତ ବ୍ରହ୍ମ କିମି ନାରି ବିରହଁ ମତି ଭୋରି ।
ଦେଖି ଚରିତ ମହିମା ସୁନତ ଭ୍ରମତି ବୁଦ୍ଧି ଅତି ମୋରି ॥୧୦୮॥

ଜୌଁ ଅନୀହ ବ୍ୟାପକ ବିଭୁ କୋଊ । କହହୁ ବୁଝାଈ ନାଥ ମୋହି ସୋଊ ॥
ଅଜ୍ଞ ଜାନି ରିସ ଉର ଜନି ଧରହୂ । ଜେହି ବିଧି ମୋହ ମିଟୈ ସୋଇ କରହୂ ॥୧॥

---

ପ୍ରଭୁ ପରମାର୍ଥବାଦୀ ଯେଉଁ ମୁନିଜନ । ରାମଙ୍କୁ ଅନାଦି ବ୍ରହ୍ମ କରନ୍ତି କଥନ ॥
ଶେଷ ସରସ୍ୱତୀ ବେଦ ପୁରାଣ ସମସ୍ତେ । ରଘୁପତି ଗୁଣଗାନ କରନ୍ତି ନିରତେ ॥୩॥
ତୁମ୍ଭେ ପୁଣି ରାମଙ୍କର ନାମ ଦିନ ରାତି । ସାଦରେ କରୁଛ ଜପ ଅନଙ୍ଗ-ଅରାତି ॥
ସେ ରାମ କି ଅଯୋଧ୍ୟା ନୃପଙ୍କ କୁମର । ଅବା କେ ଅନ୍ୟ ଅଗୁଣ ଅଜ ଅଗୋଚର ॥୪॥

ଯେବେ ନୃପ ସୁତ ବ୍ରହ୍ମ ସେ କେମନ୍ତ ନାରୀବିରହେ ବ୍ୟାକୁଳ ।
ଚରିତ ଦେଖିଲେ ମହିମା ଶୁଣିଲେ ଭ୍ରମେ ମୋ ବୁଦ୍ଧି ବିପୁଳ ॥୧୦୮॥

ଯେବେ କେହି ଅନ୍ୟ ବିଭୁ ବ୍ୟାପକ ପରମ । ବୁଝାଇଣ ମୋତେ ତାହା କହ ପ୍ରିୟତମ ॥
ଅଜ୍ଞ ବିଚାରି ହୃଦୟେ କ୍ରୋଧ ନ ଧରନ୍ତୁ । ଯେଉଁଥେ ମୋହନାଶ ହେବ ତେମନ୍ତ କରନ୍ତୁ ॥୧॥

---

ଜାଣନ୍ତି, ତେବେ ହେ ପ୍ରଭୋ ! ଆପଣ ଶ୍ରୀ ରଘୁନାଥଙ୍କ ବହୁବିଧ କଥା କହି ମୋର ଅଜ୍ଞାନ ଦୂର କରନ୍ତୁ ॥୧॥ କଳ୍ପବୃକ୍ଷ ତଳେ ଯାହାଙ୍କର ଗୃହ, ଦାରିଦ୍ର୍ୟ-ଜନିତ ଦୁଃଖକୁ ସେ କାହିଁକି ସହିବ ? ହେ ଶଶିଭୂଷଣ ! ହେ ନାଥ ! ହୃଦୟରେ ଏତକ ଜାଣି ମୋର ଅତିଶୟ ବୁଦ୍ଧି-ଭ୍ରମକୁ ଦୂର କରନ୍ତୁ ॥୨॥ ହେ ପ୍ରଭୋ ! ପରମାର୍ଥବାଦୀ ମୁନିମାନେ ଶ୍ରୀ ରାମଚନ୍ଦ୍ରଙ୍କୁ ଅନାଦି ବ୍ରହ୍ମ ବୋଲି କହନ୍ତି ଏବଂ ଶେଷ, ସରସ୍ୱତୀ, ବେଦ ଓ ପୁରାଣାଦି ସମସ୍ତେ ଶ୍ରୀ ରଘୁନାଥଙ୍କ ଗୁଣଗାନ କରନ୍ତି ॥୩॥ ହେ ଅନଙ୍ଗାରି ! ଆପଣ ମଧ ଦିନରାତି ଆଦରପୂର୍ବକ 'ରାମ' 'ରାମ' ଜପ କରୁଅଛନ୍ତି । ଏ ରାମ କ'ଣ ସେହି ଅଯୋଧ୍ୟା-ରାଜାଙ୍କ ପୁତ୍ର ରାମ କିମ୍ବା ଅଜନ୍ମା ନିର୍ଗୁଣ ଓ ଅଗୋଚର ଅନ୍ୟ କେହି ରାମ ? ॥୪॥ ଦୋହା.- ଯଦି ସେ ରାଜପୁତ୍ର, ତେବେ ବ୍ରହ୍ମ କିପରି ? ଯଦି ସେ ବ୍ରହ୍ମ, ତେବେ ସ୍ତ୍ରୀଙ୍କ ବିରହରେ ତାଙ୍କ ମତି ବାଉଳା କିପରି ହେଲା ? ଏଣେ ତାଙ୍କର ଏପରି ଚରିତ ତ ତେଣେ ତାଙ୍କର ମହିମା କଥା ଶୁଣି ମୋ ବୁଦ୍ଧି-ବିଭ୍ରମ ଘଟୁଛି ॥୧୦୮॥ ଚୌପାଇ—ଯଦି ଇଚ୍ଛା-ରହିତ, ବ୍ୟାପକ ଓ ସମର୍ଥ ବ୍ରହ୍ମ ହୋଇ ଅନ୍ୟ ଜଣେ କିଏ ଅଛନ୍ତି, ତେବେ ହେ ନାଥ ! ତାହା ମୋତେ ବୁଝାଇ କୁହନ୍ତୁ । ମୋତେ ଅବୋଧ ଜାଣି ମନରେ କ୍ରୋଧଭାବ ଆଣନ୍ତୁ ନାହିଁ । ଯେପରି ମୋ [illegible]

ମୈଁ ବନ ଦୀଖି ରାମ ପ୍ରଭୁତାଈ । ଅତି ଭୟ ବିକଲ ନ ତୁହ୍ମହି ସୁନାଈ ॥
ତଦପି ମଲିନ ମନ ବୋଧୁ ନ ଆଓ୍ୱା । ସୋ ଫଳୁ ଭଲୀ ଭାଁତି ହମ ପାଓ୍ୱା ॥୨॥
ଅଜହୁଁ କଛୁ ସଂସଉ ମନ ମୋରେଁ । କରହୁ କୃପା ବିନଓ୍ୱଉଁ କର ଜୋରେଁ ॥
ପ୍ରଭୁ ତବ ମୋହି ବହୁ ଭାଁତି ପ୍ରବୋଧା । ନାଥ ସୋ ସମୁଝି କରହୁ ଜନି କ୍ରୋଧା ॥୩॥
ତବ କର ଅସ ବିମୋହ ଅବ ନାହୀଂ । ରାମକଥା ପର ରୁଚି ମନ ମାହୀଂ ॥
କହହୁ ପୁନୀତ ରାମ ଗୁନ ଗାଥା । ଭୁଜଗରାଜ ଭୂଷନ ସୁରନାଥା ॥୪॥

ବନ୍ଦଉଁ ପଦ ଧରି ଧରନି ସିରୁ ବିନୟ କରଉଁ କର ଜୋରି ।
ବରନହୁ ରଘୁବର ବିସଦ ଜସୁ ଶ୍ରୁତି ସିଦ୍ଧାନ୍ତ ନିଚୋରି ॥୧୦୯॥

ଜଦପି ଜୋଷିତା ନହିଂ ଅଧିକାରୀ । ଦାସୀ ମନ କ୍ରମ ବଚନ ତୁହ୍ମାରୀ ॥
ଗୂଢ଼ଉ ତତ୍ତ୍ୱ ସାଧୁ ଦୁରାଓ୍ୱହିଁ । ଆରତ ଅଧିକାରୀ ଜହଁ ପାଓ୍ୱହିଁ ॥୧॥

ବନେ ମୁଁ ରାମଙ୍କ ଯେଉଁ ପ୍ରଭୁତା ଦେଖିଲି । ଅତି ଭୟାତୁରେ ତୁମ୍ଭ ଆଗେ ନ କହିଲି ॥
ତଥାପି ମଳିନ ମନେ ନ ହୋଇଲା ବୋଧ । ପାଇଲି ତାହାର ଭଲ ଫଳ ପ୍ରତିଶୋଧ ॥୨॥
ଏବେ ମଧ୍ୟ ଅଛି କିଛି ମୋ ମନେ ସଂଶୟ । କୃପାକର କର ଯୋଡ଼ି କରୁଛି ବିନୟ ॥
ପ୍ରଭୁନାନାମତେମୋତେବୋଧିଥିଲତେବେ । ତାହା ଭାବି ନାଥକୋପ ନ କରନ୍ତୁ ଏବେ ॥୩॥
ନାହିଁ ପୂର୍ବ ପରି ସେତେ ମୋହ ମୋ ମନରେ । ପ୍ରୀତି ଉପୁଜଇ ରାମ-କଥା ଶ୍ରବଣରେ ॥
କହନ୍ତୁ ପବିତ୍ର ରଘୁପତି ଗୁଣ-ଗଣ । ବିବୁଧନାଥ ଭୁଜଙ୍ଗ-ରାଜ-ବିଭୂଷଣ ॥୪॥

ବନ୍ଦି ପଦ କର ଯୋଡ଼ିଣ ବିନୟ କରେ କରି ନମସ୍କାର ।
କହନ୍ତୁ ସରସ ରଘୁବର ଯଶ ଶ୍ରୁତି ସିଦ୍ଧାନ୍ତର ସାର ॥୧୦୯॥

ଯଦ୍ୟପି ଅଟେ ଅବଳା ଅନଧିକାରିଣୀ । ଦାସୀ ମନ କର୍ମ ବାକ୍ୟେ ତବାନୁଗାମିନୀ ॥
ଗୂଢ ତତ୍ତ୍ୱ ହେଲେ ହେଁବା ସାଧୁ ନ ଲୁଚାନ୍ତି । ଯହିଁ ଆର୍ତ୍ତ ଅଧିକାରୀ ସୁଜନ ପାଆନ୍ତି ॥୧॥

କରନ୍ତୁ ॥ ୧ ॥ ମୁଁ ପୂର୍ବ ଜନ୍ମରେ ଶ୍ରୀରାମଚନ୍ଦ୍ରଙ୍କ ପ୍ରଭୁତା ଦେଖିଥିଲି । କିନ୍ତୁ ଅତ୍ୟନ୍ତ ଭୟଭୀତ ଓ ବିକଳ ହୋଇଥିବା ହେତୁ ମୁଁ ତାହା ଆପଣଙ୍କୁ ଶୁଣାଇ ନ ଥିଲି । ତଥାପି ମୋ ମଳିନ ମନ ବୋଧ ହୋଇ ନ ଥିଲା । ତାହାର ଫଳ ମୁଁ ମଧ୍ୟ ଭଲ ଭାବରେ ପାଇଗଲି ॥ ୨ ॥ ଏବେ ବି ମୋ ମନରେ କିଛି ସନ୍ଦେହ ଅଛି । ଆପଣ କୃପା କରନ୍ତୁ । ମୁଁ ହାତ ଯୋଡ଼ି ପ୍ରାର୍ଥନା କରୁଛି । ହେ ପ୍ରଭୋ ! ଆପଣ ସେତେବେଳେ ମୋତେ ବହୁତ ପ୍ରକାରେ ବୁଝାଇଥିଲେ । ତଥାପି ମୋ ମନରୁ ସନ୍ଦେହ ଦୂର ହୋଇନାହିଁ । ହେ ନାଥ ! ମୋର ଅକ୍ଷମତା ଜାଣି ମୋଠାରେ କ୍ରୋଧ କରନ୍ତୁ ନାହିଁ ॥୩॥ ପୂର୍ବ ପରି ବିଶେଷ ମୋହ ଆଉ ମୋଠାରେ ନାହିଁ । ବର୍ତ୍ତମାନ ମୋ ମନରେ କେବଳ ରାମକଥା ଶୁଣିବା ନିମନ୍ତେ ରୁଚି ଜାତ ହେଉଅଛି । ହେ ଭୁଜଙ୍ଗମ-ରାଜ-ଭୂଷଣ ସୁରନାଥ ! ଆପଣ ଶ୍ରୀରାମଚନ୍ଦ୍ରଙ୍କ ପବିତ୍ର ଗୁଣ-ଗାଥା କୁହନ୍ତୁ ॥ ୪ ॥ ଦୋହା:— ମୁଁ ଭୂମି ଉପରେ ମୁଣ୍ଡ ଲଗାଇ ଆପଣଙ୍କ ଚରଣ ବନ୍ଦନା କରୁଛି ଏବଂ ହାତ ଯୋଡ଼ି

ଅତି ଆରତି ପୂଛଉଁ ସୁରରାୟା । ରଘୁପତି କଥା କହହୁ କରି ଦାୟା ॥
ପ୍ରଥମ ସୋ କାରନ କହହୁ ବିଚାରୀ । ନିର୍ଗୁନ ବ୍ରହ୍ମ ସଗୁନ ବପୁ ଧାରୀ ॥୨॥
ପୁନି ପ୍ରଭୁ କହହୁ ରାମ ଅବତାରା । ବାଲଚରିତ ପୁନି କହହୁ ଉଦାରା ॥
କହହୁ ଜଥା ଜାନକୀ ବିବାହୀଁ । ରାଜ ତଜା ସୋ ଦୂଷନ କାହୀଁ ॥୩॥
ବନ ବସି କୀନ୍ହେଁ ଚରିତ ଅପାରା । କହହୁ ନାଥ ଜିମି ରାବନ ମାରା ॥
ରାଜ ବୈଠି କୀନ୍ହୀଁ ବହୁ ଲୀଲା । ସକଲ କହହୁ ସଂକର ସୁଖସୀଲା ॥୪॥

ବହୁରି କହହୁ କରୁନାୟତନ କୀନ୍ହ ଜୋ ଅଚରଜ ରାମ ।
ପ୍ରଜା ସହିତ ରଘୁବଂସମନି କିମି ଗଵନେ ନିଜ ଧାମ ॥୧୧୦॥

---

ଅତି ଆରତେ ମୁଁ ପଚାରୁଛି ସୁରରାଣ । ରଘୁପତି କଥା କୃପା କରି ବଖାଣ ॥
ପ୍ରଥମେ କହନ୍ତୁ ହେତୁ ଚିନ୍ତି ମୋ ଆଗରେ । ନିର୍ଗୁଣ ବ୍ରହ୍ମ ସଗୁଣ ବପୁ କିପାଁ ଧରେ ॥୨॥
ପୁଣି ପ୍ରଭୁ ବଖାଣନ୍ତୁ ରାମ ଅବତାର । କହନ୍ତୁ ଆବର ବାଲ୍ୟ ଚରିତ ଉଦାର ॥
ଭିଷ ଜାନକୀ ବିବାହ ହୋଇଲା ଯେମନ୍ତ । କେଉଁ ଦୂଷଣରୁ ରାଜ୍ୟ କଲେ ପରିତ୍ୟକ୍ତ ॥୩॥
ବନବାସେ ଅପାର ଯେ ଚରିତ ରଚିଲେ । କହ ନାଥ ରାବଣକୁ କେମନ୍ତେ ମାରିଲେ ॥
ସିଂହାସନେ ବସି ଲୀଳା କଲେ ଯେ ବିପୁଳ । କହନ୍ତୁ ବିସ୍ତାରି ସବୁ ଶିବ ସୁଖ-ମୂଳ ॥୪॥

କହନ୍ତୁ ଆବର କରୁଣା ସାଗର କଲେ ଯେ ଆଶ୍ଚର୍ଯ୍ୟ ରାମ ।
ପ୍ରଜାଙ୍କ ସହିତ ରଘୁକୁଳ-ନାଥ କେମନ୍ତେ ଗଲେ ସ୍ୱଧାମ ॥ ୧୧୦ ॥

---

ବିନତି କରୁଛି । ବେଦଗଣର ସିଦ୍ଧାନ୍ତକୁ ଚିହ୍ନିଛି ଶ୍ରୀ ରଘୁନାଥଙ୍କ ନିର୍ମଳ ଯଶ ବର୍ଣ୍ଣନା କରନ୍ତୁ ॥ ୧୦୯ ॥ ଚୌପାଈ:—ସ୍ତ୍ରୀ ହୋଇଥିବାରୁ ମୁଁ ତାହା ଶୁଣିବାର ଅଧିକାରିଣୀ ନୁହେଁ, ସତ; ତଥାପି ମନ, ବଚନ ଓ କର୍ମରେ ମୁଁ ଆପଣଙ୍କ ଦାସୀ । ସନ୍ଥ ଲୋକମାନେ ଯେଉଁଠାରେ ଆର୍ତ୍ତ ଅଧିକାରୀ ପାଆନ୍ତି, ସେଠାରେ ସେ ତାହାଠାରୁ ନିଗୂଢ ତତ୍ତ୍ୱ ସୁଦ୍ଧା ଗୋପନୀୟ ରଖନ୍ତି ନାହିଁ ॥୧॥ ହେ ଦେବରାଜ ! ବଡ ଆର୍ତ୍ତ ଭାବରେ (ଦୈନ୍ୟ ସହିତ) ମୁଁ ଆପଣଙ୍କୁ ପଚାରୁଛି । ଆପଣ ମୋ ଉପରେ ଦୟା କରି ଶ୍ରୀ ରଘୁନାଥଙ୍କ କଥା କୁହନ୍ତୁ । ପ୍ରଥମେ ନିର୍ଗୁଣ ବ୍ରହ୍ମ କିପରି ସଗୁଣ ରୂପ ଧାରଣ କରେ, ସେଥିର କାରଣ ବିଚାର କରି ମୋତେ କୁହନ୍ତୁ ॥ ୨ ॥ ତତ୍ପରେ ହେ ପ୍ରଭୋ ! ଶ୍ରୀରାମଙ୍କ ଅବତାର (ଜନ୍ମ) କଥା କୁହନ୍ତୁ ଏବଂ ତାଙ୍କ ଉଦାର ବାଲଚରିତ କୁହନ୍ତୁ । ପୁଣି ଯେପରି ଭାବରେ ସେ ଶ୍ରୀମତୀ ଜାନକୀଙ୍କୁ ବିବାହ କରିଥିଲେ, ସେ କଥା କୁହନ୍ତୁ । କେଉଁ ଦୋଷରୁ ସେ ରାଜ୍ୟ ତ୍ୟାଗ କରିଥିଲେ ? ॥ ୩ ॥ ହେ ନାଥ ! ସେ ବନରେ ରହି ଯେଉଁ ଅପାର ଚରିତ (ଲୀଳା) ସବୁ କଲେ ଏବଂ ଯେଉଁପରି ଭାବରେ ରାବଣକୁ ମାରିଲେ, ସେ ସବୁ ପ୍ରସଙ୍ଗ କୁହନ୍ତୁ । ହେ ସୁଖସ୍ୱରୂପ ଶଙ୍କର ! ରାଜସିଂହାସନ ଉପରେ ବସି ଯେଉଁ ସବୁ ଲୀଳା ସେ କରିଥିଲେ, ସେ ସବୁ ମୋତେ ବୁଝାଇ କୁହନ୍ତୁ ॥ ୪ ॥ ଦୋହା:—ହେ କୃପାଧାମ ! ରାମ ଯେଉଁ ଅଦ୍ଭୁତ ଲୀଳା

ପୁନି ପ୍ରଭୁ କହହୁ ସୋ ତତ୍ତ୍ୱ ବଖାନୀ । ଜେହିଁ ବିଜ୍ଞାନ ମଗନ ମୁନି ଜ୍ଞାନୀ ॥
ଭଗତି ଜ୍ଞାନ ବିଜ୍ଞାନ ବିରାଗା । ପୁନି ସବ ବରନହୁ ସହିତ ବିଭାଗା ॥୧॥
ଔରଉ ରାମ ରହସ୍ୟ ଅନେକା । କହହୁ ନାଥ ଅତି ବିମଲ ବିବେକା ॥
ଜୋ ପ୍ରଭୁ ମୈଁ ପୂଛା ନହିଂ ହୋଈ । ସୋଉ ଦୟାଲ ରାଖହୁ ଜନି ଗୋଈ ॥୨॥
ତୁମ୍ହ ତ୍ରିଭୁବନ ଗୁର ବେଦ ବଖାନା । ଆନ ଜୀବ ପାଁବର କା ଜାନା ॥
ପ୍ରଶ୍ନ ଉମା କୈ ସହଜ ସୁହାଈ । ଛଲ ବିହୀନ ସୁନି ସିବ ମନ ଭାଈ ॥୩॥
ହର ହିୟଁ ରାମଚରିତ ସବ ଆଏ । ପ୍ରେମ ପୁଲକ ଲୋଚନ ଜଲ ଛାଏ ॥
ଶ୍ରୀରଘୁନାଥ ରୂପ ଉର ଆଵା । ପରମାନନ୍ଦ ଅମିତ ସୁଖ ପାଵା ॥୪॥

ମଗନ ଧ୍ୟାନରସ ଦଣ୍ଡ ଜୁଗ ପୁନି ମନ ବାହେର କୀହ୍ନ ।
ରଘୁପତି ଚରିତ ମହେସ ତବ ହରଷିତ ବରନୈ ଲୀହ୍ନ ॥୧୧୧॥

---

କହନ୍ତୁ ପ୍ରାଣେଶ ପୁଣି ସେ ତତ୍ତ୍ୱ ବଖାଣି । ଯେଉଁ ବିଜ୍ଞାନରେ ମଗ୍ନ ଯୋଗୀ ମୁନି ଜ୍ଞାନୀ ॥
ଜ୍ଞାନ ବିଜ୍ଞାନ ବୈରାଗ୍ୟ ଭକ୍ତି ନିରୂପଣ । ବିସ୍ତାରି ବିଭାଗ ସହ କହନ୍ତୁ ଆପଣ ॥୧॥
ଅନ୍ୟ ଯେ ରାମ ରହସ୍ୟ ଅଛଇ ଅନେକ । କରନ୍ତୁ ବର୍ଣ୍ଣନ ନାଥ ବିମଲ ବିବେକ ॥
ପଚାରି ପାରି ନାହିଁ ମୁଁ ପ୍ରାଣେଶ୍ୱର ଯାହା । କୃପାସିନ୍ଧୁ ଗୁପ୍ତ କରି ନ ରଖିବ ତାହା ॥୨॥
ତୁମ୍ଭେ ତ୍ରିଭୁବନ ଗୁରୁ ବେଦ ବଖାଣଇ । ଅଧମ ପାମର ଅନ୍ୟ ଜୀବ କି ଜାଣଇ ॥
ପ୍ରଶ୍ନ ଶୈଳ ସୁତାଙ୍କ ସହଜ ସୁନ୍ଦର । ଛଳହୀନ ଶୁଣି ମୋଦ ଲଭିଲେ ଶଙ୍କର ॥୩॥
ହରଙ୍କ ହୃଦୟେ ରାମ ଚରିତ ସ୍ଫୁରିଲା । ପ୍ରେମେ ପୁଲକିତ ନୀର ନୟନୁ ଝରିଲା ॥
ହୃଦେ ରଘୁନାଥ ରୂପ ହେଲା ଉପସ୍ଥିତ । ଲଭିଲେ ପରମାନନ୍ଦ ସୁଖ ଅପ୍ରମିତ ॥୪॥

ଧ୍ୟାନ ରସେ ବେନି ଦଣ୍ଡ ବୁଡି ପୁଣି ବାହାର କରିଣ ମନ ।
ହରଷିତେ ହର ରାମଙ୍କ ଚରିତ ଆରମ୍ଭ କଲେ ବର୍ଣ୍ଣନ ॥୧୧୧॥

---

ପ୍ରକାଶ କରିଥିଲେ, ତାହା ବିଶେଷ କରି କୁହନ୍ତୁ । ସେ ରଘୁକୁଳ-ଶିରୋମଣି ପ୍ରଜା ସହିତ କିପରି ଭାବରେ ଆପଣା ଧାମକୁ ଚଳେ ? ॥ ୧୧୦ ॥ ଚୌପାଈ—ହେ ପ୍ରଭୋ ! ଯେଉଁ ଅନୁଭୂତିରେ ଜ୍ଞାନୀ ମୁନିଗଣ ସଦା ନିମଜ୍ଜିତ ରହନ୍ତି, ଆପଣ ସେହି ତତ୍ତ୍ୱ ବୁଝାଇ କୁହନ୍ତୁ । ପୁଣି ଭକ୍ତି, ଜ୍ଞାନ, ବିଜ୍ଞାନ ଓ ବୈରାଗ୍ୟକୁ ବିଭାଗ ସହିତ ବର୍ଣ୍ଣନା କରନ୍ତୁ ॥ ୧ ॥ ଏତଦ୍‌ବ୍ୟତୀତ ଶ୍ରୀରାମଚନ୍ଦ୍ରଙ୍କର ଆଉ ଯେଉଁ ସବୁ ରହସ୍ୟ ଅଛି, ସେ ସବୁ କୁହନ୍ତୁ । ହେ ନାଥ ! ଆପଣଙ୍କ ଜ୍ଞାନ ଅତି ନିର୍ମଳ । ହେ ପ୍ରଭୋ ! ଯେଉଁ କଥା ବି ମୁଁ ଆପଣଙ୍କୁ ପଚାରି ନାହିଁ, ହେ ଦୟାଳୁ ! ଆପଣ ତାହା ମଧ୍ୟ ମୋଠାରୁ ଗୁପ୍ତ ରଖନ୍ତୁ ନାହିଁ ॥ ୨ ॥ ବେଦଗଣ ଆପଣଙ୍କୁ ତ୍ରିଲୋକର ଗୁରୁ ବୋଲି କହିଅଛନ୍ତି । ଅନ୍ୟାନ୍ୟ ପାମର ପ୍ରାଣୀମାନେ ଏହି ରହସ୍ୟକୁ କୁଆଡୁ ଜାଣିବେ ? ପାର୍ବତୀଙ୍କ ସହଜ-ସୁନ୍ଦର ଓ ଛଳବିହୀନ (ସରଳ) ପ୍ରଶ୍ନ ଶିବଙ୍କ ମନକୁ ବେଶ୍ ଭଲ ଲାଗିଲା ॥ ୩ ॥ ଶ୍ରୀ ମହାଦେବଙ୍କ ହୃଦୟରେ ସମସ୍ତ ରାମଚରିତ

ଝୁଠେଉ ସତ୍ୟ ଜାହି ବିନୁ ଜାନେଁ । ଜିମି ଭୁଜଂଗ ବିନୁ ରଜୁ ପହିଚାନେଁ ॥
ଜେହି ଜାନେଁ ଜଗ ଜାଇ ହେରାଈ । ଜାଗେଁ ଜଥା ସପନ ଭ୍ରମ ଜାଈ ॥୧॥
ବଂଦଉଁ ବାଲରୂପ ସୋଈ ରାମୂ । ସବ ସିଧି ସୁଲଭ ଜପତ ଜିସୁ ନାମୂ ॥
ମଂଗଲ-ଭବନ ଅମଂଗଲହାରୀ । ଦ୍ରବଉ ସୋ ଦସରଥ ଅଜିର ବିହାରୀ ॥୨॥
କରି ପ୍ରନାମ ରାମହି ତ୍ରିପୁରାରୀ । ହରଷି ସୁଧା ସମ ଗିରା ଉଚାରୀ ॥
ଧନ୍ୟ ଧନ୍ୟ ଗିରିରାଜକୁମାରୀ । ତୁମ୍ହ ସମାନ ନହିଁ କୋଉ ଉପକାରୀ ॥୩॥
ପୂଁଛେହୁ ରଘୁପତି କଥା ପ୍ରସଂଗା । ସକଲ ଲୋକ ଜଗ ପାବନି ଗଂଗା ॥
ତୁମ୍ହ ରଘୁବୀର ଚରନ ଅନୁରାଗୀ । କୀହ୍ନିହୁ ପ୍ରସ୍ନ ଜଗତ ହିତ ଲାଗୀ ॥୪॥

---

ମିଥ୍ୟା ମଧ୍ୟ ସତ୍ୟ ଭାସେ ଯା'ଜ୍ଞାନ ବିହୀନେ । ଯେମନ୍ତେ ଭୁଜଙ୍ଗ ରଜ୍ଜୁ ପରିଚୟ ବିନେ ॥
ଯାହାଙ୍କୁ ଜାଣନ୍ତେ ଦୂର ହୁଅଇ ଜଗତ । ସ୍ୱପ୍ନ ଭ୍ରମ ଯାଏ ଯେହ୍ନେ ହୁଅନ୍ତେ ଜାଗ୍ରତ ॥୧॥
ବନ୍ଦନ କରଇ ବାଳରୂପ ସେହି ରାମ । ସମସ୍ତ ସିଦ୍ଧି ସୁଲଭ ଜପନ୍ତେ ଯା' ନାମ ॥
ମଙ୍ଗଳ ଭବନ ଯେହୁ ଅମଙ୍ଗଳ ହାରୀ । ଦ୍ରବନ୍ତୁ ସେ ଦଶରଥ ପ୍ରାଙ୍ଗଣ-ବିହାରୀ ॥୨॥
କରି ପ୍ରଣାମ ରାମଙ୍କୁ ତ୍ରିପୁର ନାଶନ । ଉଚ୍ଚାରିଲେ ସୁଧା ସମ ହରଷେ ବଚନ ॥
ଧନ୍ୟ ଧନ୍ୟ ହିମଗିରି-ନାୟକ-କୁମାରୀ । ତୁମ୍ଭ ସମ ଅନ୍ୟ କେହି ନାହିଁ ଉପକାରୀ ॥୩॥
ପଚାରିଲ ଶ୍ରୀରାମଙ୍କ ସେ କଥା ପ୍ରସଙ୍ଗ । ସକଳ ଲୋକ ପାବନେ ଯେ ଗଙ୍ଗା ତରଙ୍ଗ ॥
ତୁମ୍ଭେ ଅଟ ରଘୁବୀର ପଦାନୁରାଗିଣୀ । ପ୍ରଶ୍ନ କରିଲ ଜଗତ ଉପକାର ମଣି ॥୪॥

---

ଆସିଗଲା । ପ୍ରେମ ହେତୁ ତାଙ୍କ ଶରୀର ପୁଲକିତ ହୋଇଗଲା ଏବଂ ଚକ୍ଷୁରେ ଅଶ୍ରୁ ଭରିଗଲା । ଶ୍ରୀ ରଘୁନାଥଙ୍କ ରୂପ ତାଙ୍କ ହୃଦୟରେ ଆସି ଆବିର୍ଭୂତ ହେଲା । ଏହା ଦ୍ୱାରା ପରମାନନ୍ଦସ୍ୱରୂପ ଶିବ ଅପାର ଆନନ୍ଦ ଲାଭ କଲେ ॥ ୪ ॥ ଦୋହା—ଶିବ ଦୁଇ ଦଣ୍ଡ କାଳ ଧ୍ୟାନ-ରସ (ଆନନ୍ଦ)ରେ ମଗ୍ନ ହେଲେ । ତତ୍ପରେ ମନକୁ ପୁଣି ବାହାରକୁ ଫେରାଇ ଆଣିଲେ । ସେତେବେଳେ ସେ ପ୍ରସନ୍ନ ହୋଇ ରଘୁପତିଙ୍କ ଚରିତ ବର୍ଣ୍ଣନା କରିବାକୁ ଲାଗିଲେ ॥ ୧୧୧ ॥ ଚୌପାଈ—"ରଜ୍ଜୁକୁ ନ ଚିହ୍ନିଲେ ତାହା ସର୍ପଭ୍ରମ ଜାତ କଲା ପରି ଯାହାଙ୍କୁ ନ ଚିହ୍ନିଲେ ମିଛ ସତ୍ୟ ପରି ଲାଗେ ଏବଂ ଯାହାଙ୍କୁ ଚିହ୍ନିବା କ୍ଷଣି ଜାଗରଣ ମାତ୍ରେ ସ୍ୱପ୍ନଭ୍ରମ ଚାଲିଗଲା ପରି ସମଗ୍ର ଦୃଶ୍ୟମାନ ଜଗତ ଲୋପ ପାଇଯାଏ, ମୁଁ ସେହି ଶ୍ରୀରାମଚନ୍ଦ୍ରଙ୍କ ବାଳରୂପକୁ ବନ୍ଦନା କରୁଅଛି ॥ ୧ ॥ ତାଙ୍କର ନାମ ଜପିବାଦ୍ୱାରା ସମସ୍ତ ସିଦ୍ଧି ସହଜରେ ମିଳିଯାଏ । ମଙ୍ଗଳଭବନ ଓ ଅମଙ୍ଗଳହାରୀ ତଥା ଦଶରଥଙ୍କ ପ୍ରାଙ୍ଗଣ-ବିହାରୀ ବାଳରୂପ ଶ୍ରୀରାମଚନ୍ଦ୍ରଜୀ ମୋ ପ୍ରତି ଦୟା କରନ୍ତୁ ॥ ୨ ॥ ତ୍ରିପୁରାରି ଶିବ ଶ୍ରୀରାମଙ୍କୁ ପ୍ରଣାମ କରି ଆନନ୍ଦ-ମନରେ ଅମୃତସମ ବାଣୀ ବୋଇଲେ, "ହେ ଗିରି-ରାଜକୁମାରୀ ପାର୍ବତି ! ତୁମେ ଧନ୍ୟ ! ଧନ୍ୟ ତୁମେ ! ତୁମ ସମାନ ମୋର ଆଉ କେହି ଉପକାରୀ ନାହାନ୍ତି ॥ ୩ ॥ ତୁମେ ଯେଉଁ ଶ୍ରୀ ରଘୁନାଥଙ୍କ କଥା-ପ୍ରସଙ୍ଗ ପଚାରିଅଛ,

ରାମ କୃପା ତେ ପାରବତି ସପନେହୁଁ ତବ ମନ ମାହିଁ ।
ସୋକ ମୋହ ସଂଦେହ ଭ୍ରମ ମମ ବିଚାର କଛୁ ନାହିଁ ॥୧୧୨॥
ତଦପି ଅସଂକା କୀହ୍ନିହୁ ସୋଈ । କହତ ସୁନତ ସବ କର ହିତ ହୋଈ ॥
ଜିହ୍ନ ହରି କଥା ସୁନୀ ନହିଁ କାନା । ଶ୍ରବନ ରଂଧ୍ର ଅହିଭବନ ସମାନା ॥୧॥
ନୟନନ୍ହି ସଂତ ଦରସ ନହିଁ ଦେଖା । ଲୋଚନ ମୋରପଂଖ କର ଲେଖା ॥
ତେ ସିର କଟୁ ତୁଂବରି ସମତୂଲା । ଜେ ନ ନମତ ହରି ଗୁର ପଦ ମୂଲା ॥୨॥
ଜିହ୍ନ ହରିଭଗତି ହୃଦୟଁ ନହିଁ ଆନୀ । ଜୀବତ ସବ ସମାନ ତେଇ ପ୍ରାନୀ ॥
ଜୋ ନହିଁ କରଇ ରାମ ଗୁନ ଗାନା । ଜୀହ ସୋ ଦାଦୁର ଜୀହ ସମାନା ॥୩॥
କୁଲିସ କଠୋର ନିଠୁର ସୋଇ ଛାତୀ । ସୁନି ହରିଚରିତ ନ ଜୋ ହରଷାତୀ ॥
ଗିରିଜା ସୁନହୁ ରାମ କୈ ଲୀଲା । ସୁରହିତ ଦନୁଜ ବିମୋହନସୀଲା ॥୪॥

---

ରାମ କୃପା ବଳେ ଶୁଣ ପାରବତୀ ସ୍ୱପ୍ନେ ହେଁ ତୁମ୍ଭ ମନରେ ।
କିଞ୍ଚିତ ସନ୍ଦେହ ଶୋକ ଭ୍ରମ ମୋହ ନାହିଁ ମୋର ବିଚାରରେ ॥୧୧୨॥
ତଥାପି ହୃଦୟେ ତୁମ୍ଭେ ସେହି ଶଙ୍କା କଲ । କହନ୍ତେ ଶୁଣନ୍ତେ ହେବ ସମସ୍ତଙ୍କ ଭଲ ॥
ଯେ ହରି କଥା କେବେହେଁ ଶୁଣିନାହିଁ କାନେ । ଶ୍ରବଣ ରନ୍ଧ୍ର ଭୁଜଙ୍ଗ ବିବର ସମାନେ ॥୧॥
ନୟନେ ଯେ କରି ନାହିଁ ସନ୍ଥ ଦରଶନ । ମୟୂର ପଙ୍ଖ ସଦୃଶ ଲେଖା ସେ ଲୋଚନ ॥
କଟୁ ତୁମ୍ବା ତୁଲ୍ୟ ସେହି ମସ୍ତକ ଅଟଇ । ହରି ଗୁରୁ ପଦ ମୂଳେ ନତ ଯେ ନୁହଇ ॥୨॥
ହୃଦୟରେ ହରିଭକ୍ତି ନାହାନ୍ତି ଯେ ଆଣି । ଜୀଇ ଥାଇଁ ଥାଇଁ ଶବ ସମାନ ସେ ପ୍ରାଣୀ ॥
ଗୁଣ ଯେ ଗାଆନ୍ତି ନାହିଁ ରଘୁପତିଙ୍କର । ମଣ୍ଡୂକ ଜିହ୍ୱା ସମାନ ଜିହ୍ୱା ତାହାଙ୍କର ॥୩॥
କୁଲିଶ ସମ କଠୋର ନିଷ୍ଠୁର ସେ ହୃଦ । ଶୁଣି ହରି ଚରିତ ଯେ ନ ଲଭନ୍ତି ମୁଦ ॥
ଶୁଣ ରଘୁପତି ଲୀଳା ଗିରିଜା ନନ୍ଦିନୀ । ଦେବଙ୍କ ହିତକାରିଣୀ ଦୈତ୍ୟ ବିମୋହିନୀ ॥୪॥

---

ତାହା ସକଳ ଲୋକର ପବିତ୍ର-କାରିଣୀ ଗଙ୍ଗା ସମାନ । ତୁମେ ରଘୁବୀରଙ୍କ ଚରଣ ପ୍ରତି ସ୍ୱଭାବତଃ ଅନୁରାଗୀ । ଜଗତର କଲ୍ୟାଣ ନିମନ୍ତେ ତୁମେ ଏସବୁ ପ୍ରଶ୍ନ ପଚାରି-ଅଛ ॥ ୪ ॥ ଦୋହା:—ହେ ପାର୍ବତି ! ମୋ ବିଚାରରେ ଶ୍ରୀରାମଚନ୍ଦ୍ରଙ୍କ କୃପା ହେତୁ ତୁମ ମନରେ ସ୍ୱପ୍ନରେ ସୁଦ୍ଧା ଶୋକ, ମୋହ, ସନ୍ଦେହ ଓ ଭ୍ରମ କିଛି ନାହିଁ ॥ ୧୧୨ ॥ ଚୌପାଇ—ତଥାପି ଏ ପ୍ରସଙ୍ଗ କହିବା ଓ ଶୁଣିବା ଦ୍ୱାରା ସମସ୍ତଙ୍କର କଲ୍ୟାଣ ହେବା ବିଷୟରେ ତୁମେ ସେହି ପ୍ରକାରୁଣା ଆଶଙ୍କା କରିଅଛ । ଯେଉଁମାନେ ଆପଣା କାନରେ ଭଗବାନଙ୍କ କଥା ଶୁଣି ନାହାନ୍ତି, ସେମାନଙ୍କର ଶ୍ରବଣ-ରନ୍ଧ୍ର (କର୍ଣ୍ଣକୁହର) ସର୍ପବିଲ ସଙ୍ଗେ ସମାନ ॥ ୧ ॥ ଯେଉଁମାନେ ଆପଣା ନେତ୍ରରେ ସାଧୁଜନଙ୍କ ଦର୍ଶନ କରିନାହାନ୍ତି, ତାଙ୍କ ନେତ୍ର ମୟୂର-ପରର ଚନ୍ଦ୍ରିକା ସମାନ ନକଲି ନେତ୍ର ରୂପେ ପରିଗଣିତ ହୁଏ । ଯେଉଁ ଶିର ଶ୍ରୀହରି ଓ ଗୁରୁଙ୍କ ଚରଣ ତଳେ ନତ ହୁଏ ନାହିଁ, ସେହି ଶିର ପିତା ଲାଉ ପରି ॥ ୨ ॥ ଯେଉଁମାନେ

ରାମକଥା ସୁରଧେନୁ ସମ ସେବତ ସବ ସୁଖ ଦାନି ।
ସତସମାଜ ସୁରଲୋକ ସବ କୋ ନ ସୁନୈ ଅସ ଜାନି ॥୧୧୩॥
ରାମକଥା ସୁନ୍ଦର କର ତାରୀ । ସଂସୟ ବିହଗ ଉଡାଵନିହାରୀ ॥
ରାମକଥା କଲି ବିଟପ କୁଠାରୀ । ସାଦର ସୁନୁ ଗିରିରାଜକୁମାରୀ ॥୧॥
ରାମ ନାମ ଗୁନ ଚରିତ ସୁହାଏ । ଜନମ କରମ ଅଗନିତ ଶ୍ରୁତି ଗାଏ ॥
ଜଥା ଅନଂତ ରାମ ଭଗବାନା । ତଥା କଥା କୀରତି ଗୁନ ନାନା ॥୨॥
ତଦପି ଜଥା ଶ୍ରୁତ ଜସି ମତି ମୋରୀ । କହିହଉଁ ଦେଖି ପ୍ରୀତି ଅତି ତୋରୀ ॥
ଉମା ପ୍ରସ୍ନ ତବ ସହଜ ସୁହାଈ । ସୁଖଦ ସଂତସଂମତ ମୋହି ଭାଈ ॥୩॥

---

ରାମ କଥା କାମ- ସୁରଭି ସମାନ ସେବନ୍ତେ ସୁଖ ଦିଅଇ ।
ସନ୍ଥଙ୍କ ସମାଜ ସୁର ଲୋକ ପ୍ରାୟେ ଜାଣି କିଏ ନ ଶୁଣଇ ॥୧୧୩॥
ରାମକଥା ଅଟେ କରତାଳି ମନୋହର । ଉଡ଼ାଇ ଦିଏ ସଂଶୟ-ବିହଙ୍ଗ ନିକର ॥
ରାମକଥା କଳିକାଳ-ବୃକ୍ଷକୁ କୁଠାର । ସାଦରେ ଶ୍ରବଣ କର ଗିରୀଶ-କୁମାରୀ ॥୧॥
ରାମ ନାମ ଗୁଣ ଜନ୍ମ କରମ ସବୁହି । ଅଗଣିତ ଶ୍ରୁତି ଗାନ କରନ୍ତି ଚରିତ ॥
ଯଥା ଅଟନ୍ତି ଅନନ୍ତ ରାମ ଭଗବାନ । ତଥା ତାହାଙ୍କର କଥା କୀର୍ତ୍ତି ଗୁଣ ଗାନ ॥୨॥
ତଥାପି ଶୁଣିଛି ଯାହା ଯେପରି ମୋ ମତି । କହିବି ଦେଖି ତୁମ୍ଭର ଅନୁରାଗ ଅତି ॥
ସ୍ୱାଭାବିକ ଉମା ତୁମ୍ଭ ପ୍ରଶ୍ନ ରମଣୀୟ । ସୁଖଦ ସାଧୁ ସମ୍ମତ ମୋତେ ଲାଗେ ପ୍ରିୟ ॥୩॥

---

ଭଗବାନଙ୍କ ଭକ୍ତକୁ ସେମାନଙ୍କ ହୃଦୟରେ ସ୍ଥାନ ଦେଇନାହାନ୍ତି, ସେହି ପ୍ରାଣୀମାନେ ଜୀଇ ଥାଇଁ ଥାଇଁ ମଧ୍ୟ ମୁର୍ଦ୍ଦାର ସମାନ । ଯେଉଁ ଜିଭ ଶ୍ରୀରାମଚନ୍ଦ୍ରଙ୍କ ଗୁଣଗାନ ନ କରେ, ତାହା ବେଙ୍ଗର ଜିଭ ପରି ॥ ୩ ॥ ଭଗବାନଙ୍କ ଚରିତ ଶୁଣି ଯେଉଁ ହୃଦୟ ହର୍ଷିତ ହୁଏ ନାହିଁ, ସେ ହୃଦୟ ବଜ୍ର ପରି କଠୋର ଓ ନିଷ୍ଠୁର । ହେ ପାର୍ବତି ! ଶ୍ରୀରାମଚନ୍ଦ୍ରଙ୍କ ଲୀଳା ଶୁଣ । ତାହା ଦେବତାମାନଙ୍କର କଲ୍ୟାଣକାରିଣୀ ଓ ବିଶେଷ ରୂପେ ଦାନବମାନଙ୍କର ମନୋମୋହକାରିଣୀ ॥ ୪ ॥ ଦୋହା:— ଶ୍ରୀରାମଚନ୍ଦ୍ରଙ୍କ କଥା କାମଧେନୁ ସଦୃଶ । ସେବା କଲେ ତାହା ସମସ୍ତ ସୁଖ ଦାନ କରେ । ସାଧୁ ପୁରୁଷଙ୍କ ସମାଜ ସକଳ ଦେବତାଙ୍କ ଲୋକ । ଏପରି ଜାଣି ଏହାକୁ କିଏ ନ ଶୁଣିବ ! ॥ ୧୧୩ ॥ ଚୌପାଈ—ଶ୍ରୀରାମଚନ୍ଦ୍ରଙ୍କ କଥା ସୁନ୍ଦର କରତାଳି । ସଂଶୟରୂପୀ ପକ୍ଷୀକୁ ତାହା ଉଡାଇ ଦିଏ । ପୁନଶ୍ଚ ରାମକଥା କଳିଯୁଗରୂପୀ ବୃକ୍ଷକୁ କାଟିବା ନିମନ୍ତେ କୁରାଢ଼ି । ହେ ଗିରିରାଜକୁମାରି ! ତୁମେ ଏହାକୁ ଆଦର ସହିତ ଶୁଣ ॥ ୧ ॥ ଶ୍ରୀରାମଚନ୍ଦ୍ରଙ୍କ ସୁନ୍ଦର ନାମ, ଗୁଣ, ଚରିତ, ଜନ୍ମ ଓ କର୍ମ ସବୁ ଅଗଣିତ ବୋଲି ବେଦମାନେ ଗାଇଅଛନ୍ତି । ଯେଉଁପରି ଭଗବାନ ଶ୍ରୀରାମଚନ୍ଦ୍ର ଜୀ ଅନନ୍ତ, ସେହିପରି ତାଙ୍କ କଥା, କୀର୍ତ୍ତି ଓ ଗୁଣ ମଧ୍ୟ ଅନନ୍ତ ॥ ୨ ॥ ତଥାପି ତୁମର ଅତ୍ୟନ୍ତ ପ୍ରୀତି ଦେଖି ମୁଁ ଯେମିତି ଶୁଣିଛି, ମୋର ଯେମିତି ବୁଦ୍ଧି, ତାହାରି ଅନୁସାରେ

ଏକ ବାତ ନହିଁ ମୋହି ସୋହାନୀ । ଜଦପି ମୋହବସ କହେହୁ ଭବାନୀ ॥
ତୁମ୍ହ ଜୋ କହା ରାମ କୋଉ ଆନା । ଜେହି ଶ୍ରୁତି ଗାଓ ଧରହିଁ ମୁନି ଧ୍ୟାନା ॥୩॥
କହହିଁ ସୁନହିଁ ଅସ ଅଧମ ନର ଗ୍ରସେ ଜେ ମୋହ ପିସାଚ ॥
ପାଖଣ୍ଡୀ ହରି ପଦ ବିମୁଖ ଜାନହିଁ ଝୁଠ ନ ସାଚ ॥୧୧୪॥
ଅଜ୍ଞ ଅକୋବିଦ ଅଂଧ ଅଭାଗୀ । କାଈ ବିଷୟ ମୁକୁର ମନ ଲାଗୀ ॥
ଲଂପଟ କପଟୀ କୁଟିଲ ବିସେଷୀ । ସପନେହୁଁ ସନ୍ତ ସଭା ନହିଁ ଦେଖୀ ॥୧॥
କହହିଁ ତେ ବେଦ ଅସମ୍ମତ ବାନୀ । ଜିହ୍ନ କେଁ ସୁଝ ଲାଭୁ ନହିଁ ହାନୀ ॥
ମୁକୁର ମଲିନ ଅରୁ ନୟନ ବିହୀନା । ରାମ ରୂପ ଦେଖହିଁ କିମି ଦୀନା ॥୨॥
ଜିହ୍ନ କେଁ ଅଗୁନ ନ ସଗୁନ ବିବେକା । ଜଲ୍ପହିଁ କଳ୍ପିତ ବଚନ ଅନେକା ॥
ହରିମାୟା ବସ ଜଗତ ଭ୍ରମାହୀଁ । ତିନ୍ହହି କହତ କଛୁ ଅଘଟିତ ନାହୀଁ ॥୩॥

---

କିନ୍ତୁ ଏକ ପ୍ରଶ୍ନ ମୋତେ ନ ଲାଗିଲା ଭଲ । ଯଦ୍ୟପି ତାହା କଥନ ମୋହବଶ କଲ ॥
ତୁମ୍ଭେ ଯେ କହିଲ ଉମା ରାମ କେହି ଆନ । ଯାହାଙ୍କୁ କରନ୍ତି ଶ୍ରୁତି ମୁନି ଗାନ ଧ୍ୟାନ ॥୪॥
କହନ୍ତି ଶୁଣନ୍ତି ଅଧମ ଏପରି ମୋହ-ପିଶାଚେ ଯେ ଗ୍ରସ୍ତ ।
ଶ୍ରୀହରିଙ୍କ ପଦ ବିମୁଖ ପାଷଣ୍ଡ ନ ଜାଣନ୍ତି ମିଛ ସତ ॥୧୧୪॥
ଅଜ୍ଞ ଅକୋବିଦ ଅନ୍ଧ ଅଭାଗ୍ୟ ଯେ ଜନ । ବିଷୟ-ମଳେ ଆବୃତ ଯା’ ମୁକୁର ମନ ॥
ଲମ୍ପଟ କପଟୀ ଯେହୁ କୁଟିଳ ନିହାତ । ସ୍ୱପ୍ନେ ମଧ୍ୟ ସନ୍ଥ ସଭା ଦେଖି ଯେ ନାହାନ୍ତି ॥୧॥
କହନ୍ତି ସେମାନେ ଶ୍ରୁତି ଅସମ୍ମତ ବାଣୀ । ଯାହାଙ୍କୁ ବୁଝା ନ ପଡେ ଲାଭ କିମ୍ବା ହାନି ॥
ମୁକୁର ମଳିନ ପୁଣି ନୟନ ବିହୀନ । ରାମ ରୂପ କି ପ୍ରକାରେ ଦେଖିବେ ସେ ଦୀନ ॥୨॥
ନାହିଁ ଯାହାଙ୍କ ଅଗୁଣ ସଗୁଣ ବିବେକ । ପ୍ରଲପନ୍ତି କଳପିତ ବଚନ ଅନେକ ॥
ହରି-ମାୟା ବଶ ହୋଇ ଜଗତ ଭ୍ରମଇ । ତାଙ୍କୁ କହିବାକୁ କିଛି ଆଶ୍ଚର୍ଯ୍ୟ ନୁହଇ ॥୩॥

---

ମୁଁ କହିବି । ହେ ପାର୍ବତି ! ତୁମ ପ୍ରଶ୍ନ ସ୍ୱାଭାବିକ ରୀତିରେ ସୁନ୍ଦର, ସୁଖଦାୟକ ଓ ସନ୍ଥସମ୍ମତ । ଏହା ମୋତେ ବହୁତ ଭଲ ଲାଗିଲା ॥ ୩ ॥ କିନ୍ତୁ ହେ ପାର୍ବତି ' ତୁମର ଗୋଟିଏ କଥା ମୋତେ ଭଲ ଲାଗିଲା ନାହିଁ । ମୋହବଶତଃ ତୁମେ ତାହା କହିଦେଇଛ । ତୁମେ ଯାହା କହିଲ, ସେହି ରାମ ଆଉ କେହି ଜଣେ, ଯାହାଙ୍କ କଥା ବେଦଗଣ ଗାଆନ୍ତି ଏବଂ ମୁନିଜନ ଯାହାଙ୍କର ଧ୍ୟାନ କରନ୍ତି ॥ ୪ ॥ ଦୋହା — ମୋହ-ପିଶାଚ ଯାହାଙ୍କୁ ଗ୍ରାସ କରିଥାଏ, ଯେ ପାଷଣ୍ଡ, ଭଗବାନଙ୍କ ଚରଣପ୍ରତି ଯେ ବିମୁଖ ଏବଂ ଯେ ମିଥ୍ୟା-ସତ୍ୟ କିଛି ହେଲେ ବି ଜାଣନ୍ତି ନାହିଁ, ଏହିପରି ଅଧମ ମନୁଷ୍ୟ ହିଁ ଏହିପରି କଥା ଶୁଣନ୍ତି ଏବଂ କହନ୍ତି ॥ ୧୧୪ ॥ ଚୌପାଈ —ଯେଉଁମାନେ ଅଜ୍ଞାନୀ, ମୂର୍ଖ, ଅନ୍ଧ ଓ ଭାଗ୍ୟହୀନ ଏବଂ ଯେଉଁମାନଙ୍କ ମନ-ମୁକୁର ଉପରେ ବିଷୟ-ବାସନା ରୂପୀ ମଇଳା ଜମିଯାଇଛି, ଯେଉଁମାନେ ବ୍ୟଭିଚାରୀ, କପଟୀ ଓ ବଡ଼ କୁଟିଳ ଏବଂ ଯେଉଁମାନେ ସ୍ୱପ୍ନରେ ହେଲେ ବି କେବେ ସାଧୁସମାଜ ଦର୍ଶନ କରି

ବାତୁଲ ଭୂତ ବିବସ ମତୱାରେ । ତେ ନହିଁ ବୋଲହିଁ ବଚନ ବିଚାରେ ॥
ଜିହ୍ନ କୃତ ମହାମୋହ ମଦ ପାନା । ତିହ୍ନ କର କହା କରିଅ ନହିଁ କାନା ॥୪॥

ଅସ ନିଜ ହୃଦୟଁ ବିଚାରି ତଜୁ ସଂସୟ ଭଜୁ ରାମ ପଦ ।
ସୁନୁ ଗିରିରାଜ କୁମାରି ଭ୍ରମ ତମ ରବି କର ବଚନ ମମ ॥୧୧୫॥

ସଗୁନହି ଅଗୁନହି ନହିଁ କଛୁ ଭେଦା । ଗାୱହିଁ ମୁନି ପୁରାନ ବୁଧ ବେଦା ॥
ଅଗୁନ ଅରୂପ ଅଲଖ ଅଜ ଜୋଈ । ଭଗତ ପ୍ରେମ ବସ ସଗୁନ ସୋ ହୋଈ ॥୧॥
ଜୋ ଗୁନରହିତ ସଗୁନସୋଇକୈସେଁ । ଜଲୁ ହିମ ଉପଲ ବିଲଗ ନହିଁଜୈସେଁ ॥
ଜାସୁ ନାମ ଭ୍ରମ ତିମିର ପତଂଗା । ତେହି କିମି କହିଅ ବିମୋହ ପ୍ରସଂଗା ॥୨॥

---

ବାତୁଳ ଭୂତ ଗ୍ରସିତ ମତୁଆଲ ଖ୍ୟସ୍ତ । ବୋଲନ୍ତି ନାହିଁ ସେମାନେ ବଚନ ବିଚାରି ॥
ଯେ କରି ଅଛନ୍ତି ମହାମୋହ ମଦ ପାନ । ତାହାଙ୍କ କଥନେ କେବେ ଦେବ ନାହିଁ କାନ ॥୪॥

ଏହା ହୃଦେ ହେଜି ତେଜି ସଂଶୟକୁ ଭଜ ଶ୍ରୀରାମ ପୟର ।
ଶୁଣ ପାରବତୀ ଭ୍ରମ-ତିମିରକୁ ମୋ ବଚନ ରବିକର ॥୧୧୫॥

ସଗୁଣ ଅଗୁଣ ମଧ୍ୟେ ନାହିଁ କିଛି ଭେଦ । ଗାଆନ୍ତି ମୁନି ପୁରାଣ କବି ବୁଧ ବେଦ ॥
ଅଜ ଅଗୋଚର ଯେହୁ ଅରୂପ ଅଗୁଣ । ଭକ୍ତ ପ୍ରେମ ବଶ ହୋଇ ହୁଏ ସେ ସଗୁଣ ॥୧॥
ଯେ ଗୁଣ-ରହିତ ସେହି ସଗୁଣ କେମନ୍ତେ । ଜଳ କରକାପଥର ଅଭିନ୍ନ ଯେମନ୍ତେ ॥
ଯାହାଙ୍କର ନାମ ଭ୍ରମ-ତମକୁ ତପନ । କହ ତାଙ୍କଠାରେ ମୋହ ପ୍ରସଙ୍ଗ କେସନ ॥୨॥

---

ନାହାନ୍ତି, ଯେଉଁମାନେ ଆପଣା ଆପଣାର ଲାଭହାନି ସ୍ଥିର କରି ନ ପାରନ୍ତି, ସେହିମାନେ ହିଁ ଏହିପରି ବେଦ-ବିରୋଧୀ କଥା କହନ୍ତି । ଯେଉଁମାନଙ୍କ ହୃଦୟ-ଦର୍ପଣ ମଇଳା ଏବଂ ଯେଉଁମାନେ ଚକ୍ଷୁହୀନ, ସେହି ବିଚାରିମାନେ ଶ୍ରୀରାମଚନ୍ଦ୍ରଙ୍କ ରୂପ ଦେଖିବେ କିପରି ? ॥ ୧–୨ ॥ ନିର୍ଗୁଣ ଓ ସଗୁଣ ସମ୍ବନ୍ଧରେ ଯାହାଙ୍କର ବିଚାର-ବିବେକ କିଛି ନାହିଁ, ଯେଉଁମାନେ ଅନେକ ମନଗଢା କଥା କହନ୍ତି, ଶ୍ରୀହରିଙ୍କ ମାୟାର ବଶୀଭୂତ ହୋଇ ସଂସାରର ଜନ୍ମ-ମୃତ୍ୟୁ-ଚକ୍ରରେ ଭ୍ରମି ହେଉଥା'ନ୍ତି, ସେମାନଙ୍କ ପକ୍ଷରେ କିଛି ନା କିଛି କହିଦେବା ଅସମ୍ଭବ ନୁହେଁ ॥ ୩ ॥ ଯେଉଁମାନେ ବାତରୋଗୀ, ଭୂତପ୍ରେତଙ୍କ ବଶୀଭୂତ ଏବଂ ନିଶା ପିଇ ମାତାଲ, ସେମାନେ ବୁଝି ବିଚାରି କଥା କହନ୍ତି ନାହିଁ । ଯେଉଁମାନେ ମହାମୋହରୂପୀ ମଦିରା ପିଇ ଉନ୍ମତ୍ତ, ସେମାନଙ୍କ କଥା ପ୍ରତି କର୍ଣ୍ଣପାତ କରିବା ଉଚିତ ନୁହେଁ ॥୪॥ ସୋରଠା –ଆପଣା ହୃଦୟରେ ଏପରି ବିଚାରି ସଂଶୟ ତ୍ୟାଗ କର ଏବଂ ରାମପଦ ଭଜ । ହେ ପାର୍ବତୀ ! ଭ୍ରମାନ୍ଧକାର ନାଶ ନିମନ୍ତେ ସୂର୍ଯ୍ୟକିରଣ ସମାନ ମୋ ବଚନ ଶୁଣ ॥୧୧୫॥ ଚୌପାଈ —ସଗୁଣ ଓ ନିର୍ଗୁଣ ମଧ୍ୟରେ କିଛି ହେଲେ ବି ପ୍ରଭେଦ ନାହିଁ । ମୁନି, ପୁରାଣ, ପଣ୍ଡିତ ଓ ବେଦ ସମସ୍ତେ ଏହିପରି କହନ୍ତି । ଯାହା ନିର୍ଗୁଣ, ଅରୂପ (ନିରାକାର), ଅଲକ୍ଷ୍ୟ (ଅବ୍ୟକ୍ତ) ଓ ଅଜନ୍ମା, ଭକ୍ତଗଣଙ୍କ ପ୍ରେମବଶରେ ସେହି ସଗୁଣ ହୋଇଯାଏ ॥୧॥ ଯେ ନିର୍ଗୁଣ

ରାମ ସଚ୍ଚିଦାନନ୍ଦ ଦିନେସା । ନହିଁ ତହଁ ମୋହ ନିସା ଲବଲେସା ॥
ସହଜ ପ୍ରକାସରୂପ ଭଗବାନା । ନହିଁ ତହଁ ପୁନି ବିଜ୍ଞାନ ବିହାନା ॥୩॥
ହରଷ ବିଷାଦ ଜ୍ଞାନ ଅଜ୍ଞାନା । ଜୀବ ଧର୍ମ ଅହମିତି ଅଭିମାନା ॥
ରାମ ବ୍ରହ୍ମ ବ୍ୟାପକ ଜଗ ଜାନା । ପରମାନନ୍ଦ ପରେସ ପୁରାନା ॥୪॥

ପୁରୁଷ ପ୍ରସିଦ୍ଧ ପ୍ରକାସ ନିଧି ପ୍ରଗଟ ପରାବର ନାଥ ।
ରଘୁକୁଲମନି ମମ ସ୍ୱାମି ସୋଇ କହି ସିବଁ ନାୟଉ ମାଥ ॥୧୧୬॥

ନିଜ ଭ୍ରମ ନହିଁ ସମୁଝହିଁ ଅଜ୍ଞାନୀ । ପ୍ରଭୁ ପର ମୋହ ଧରହିଁ ଜଡ଼ ପ୍ରାନୀ ॥
ଜଥା ଗଗନ ଘନ ପଟଲ ନିହାରୀ । ଝାଁପେଉ ଭାନୁ କହହିଁ କୁବିଚାରୀ ॥୧॥

---

ରାମ ଯେ ସଚ୍ଚିଦାନନ୍ଦ ଶାଶ୍ୱତ ଦିନେଶ ; ନାହିଁ ତାଙ୍କଠାରେ-ମୋହ ନିଶା ଲବଲେଶ ॥
ପ୍ରକାଶ ସ୍ୱରୂପ ଭଗବାନ ସେ ସାକ୍ଷାତ । ନାହିଁ ତହିଁ ହେବା ପାଇଁ ବିଜ୍ଞାନ-ପ୍ରଭାତ ॥୩॥
ହରଷ ବିଷାଦ ଜ୍ଞାନ ଆଉର ଅଜ୍ଞାନ । ଜୀବ ଧର୍ମ ଅଟେ ଅହଙ୍କାର ଅଭିମାନ ॥
ରାମ ବ୍ରହ୍ମ ପୁରାତନ ବ୍ୟାପକ ଅଜିତ । ପରମାନନ୍ଦ ପରେଶ ଜଗତ ବିଦିତ ॥୪॥

ପୁରୁଷ ପୁରାଣ ପ୍ରକାଶ ନିଧାନ ମାୟାଜୀବ ଅଧୀଶ୍ୱର ।
ରଘୁକୁଳମଣି ସେ ମୋହର ସ୍ୱାମୀ କହି ପ୍ରଣମିଲେ ହର ॥୧୧୬॥

ବୁଝି ନ ପାରି ଅଜ୍ଞାନୀ ଜୀବ ନିଜ ଭ୍ରମ । ପ୍ରଭୁଙ୍କ ଉପରେ ଦୋଷ ଧରନ୍ତି ଅଧମ ॥
ଯେମନ୍ତେ ବାରିଦ ମାଳ ନିରେଖି ଗଗନେ । ଢାଙ୍କିଲେ ଭାନୁ କହନ୍ତି କୁବିଚାରୀ ଜନେ ॥୧॥

---

ବା ଗୁଣରହିତ, ସେ ସଗୁଣ କିପରି ? ଯେପରି ଜଳ ଓ କୁଆପଥର ଭିତରେ ପ୍ରଭେଦ ନାହିଁ, ଉଭୟେ ମୂଳତଃ ଏକ ହିଁ ଜଳ, ସେହିପରି ନିର୍ଗୁଣ ଓ ସଗୁଣ ମୂଳତଃ ଏକ । ଭ୍ରମାନ୍ଧକାରକୁ ଦୂର କରିବା ପାଇଁ ଯାହାର ନାମ ସୂର୍ଯ୍ୟ ସମାନ, ତାଙ୍କ ସମ୍ପର୍କରେ ବିମୋହର ପ୍ରସଙ୍ଗ କିପରି କୁହାଯାଇପାରେ ? ॥୨॥ ଶ୍ରୀରାମଚନ୍ଦ୍ର ସଚ୍ଚିଦାନନ୍ଦ ସ୍ୱରୂପ ସୂର୍ଯ୍ୟ । ତାଙ୍କ ପାଖରେ ମୋହ-ନିଶାର ଲବଲେଶ ମାତ୍ର ନାହିଁ । ସ୍ୱଭାବତଃ ସେ ପ୍ରକାଶ ସ୍ୱରୂପ ଏବଂ ଷଡୈଶ୍ୱର୍ଯ୍ୟଯୁକ୍ତ ଭଗବାନ୍ । ସେଠାରେ ତ ବିଜ୍ଞାନରୂପୀ ପ୍ରାତଃକାଳ ହୁଏନାହିଁ । (ଅଜ୍ଞାନ-ନିଶା ଥିଲେ ସିନା ବିଜ୍ଞାନ-ପ୍ରାତଃକାଳର ଆବଶ୍ୟକତା ପଡ଼ନ୍ତା । କିନ୍ତୁ ଭଗବାନ୍ ତ ନିତ୍ୟ ଜ୍ଞାନ-ସ୍ୱରୂପ) ॥୩॥ ହର୍ଷ, ଶୋକ, ଜ୍ଞାନ, ଅଜ୍ଞାନ, ଅହମିକା ଓ ଅଭିମାନ—ଏ ସବୁ ଜୀବର ଧର୍ମ । ଶ୍ରୀରାମଚନ୍ଦ୍ର ତ ବ୍ୟାପକ ବ୍ରହ୍ମ, ପରମାନନ୍ଦ ସ୍ୱରୂପ ପରାତ୍ପର ପ୍ରଭୁ ଏବଂ ପୁରାଣପୁରୁଷ । ସମସ୍ତ ଜଗତ ଏ କଥା ଜାଣେ ॥୪॥ ଦୋହା:—ଯେଉଁ ପୁରାଣପୁରୁଷ ପ୍ରସିଦ୍ଧ, ପ୍ରକାଶର ଭଣ୍ଡାର, ସମସ୍ତ ରୂପରେ ପ୍ରକାଶିତ, ଜୀବ, ମାୟା ଓ ଜଗତର ସ୍ୱାମୀ, ସେହି ରଘୁକୁଳମଣି ଶ୍ରୀରାମଚନ୍ଦ୍ର ମୋର ସ୍ୱାମୀ ।'' ଏହା କହି ଶିବ ତାଙ୍କ ଉଦ୍ଦେଶ୍ୟରେ ମସ୍ତକ ନୁଆଁଇଲେ ॥୧୧୬॥ ଚୌପାଈ :—ଅଜ୍ଞାନୀ ମନୁଷ୍ୟ ଆପଣାର ଭ୍ରମ ବୁଝେ ନାହିଁ । ସେହି ମୂର୍ଖମାନେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଉପରେ ତାହାର ଦୋଷ ଆରୋପ କରନ୍ତି । ଆକାଶରେ ସୂର୍ଯ୍ୟଙ୍କ ଉପରେ ମେଘର ଆବରଣ ଦେଖି

ଚତତ୍ତ୍ୱ ଜୋ ଲୋଚନ ଅଙ୍ଗୁଲି ଲାଏଁ । ପ୍ରଗଟ ଜୁଗଲ ସସି ତେହ୍ନି କେ ଭାଏଁ ॥
ଉମା ରାମ ବିଷଇକ ଅସ ମୋହା । ନଭ ତମ ଧୂମ ଧୂରି ଜିମି ସୋହା ॥୨॥
ବିଷୟ କରନ ସୁର ଜୀବ ସମେତା । ସକଲ ଏକ ତେଁ ଏକ ସଚେତା ॥
ସବ କର ପରମ ପ୍ରକାସକ ଜୋଈ । ରାମ ଅନାଦି ଅଵଧପତି ସୋଈ ॥୩॥
ଜଗତ ପ୍ରକାସ୍ୟ ପ୍ରକାସକ ରାମୂ । ମାୟାଧୀସ ଜ୍ଞାନ ଗୁନ ଧାମୂ ॥
ଜାସୁ ସତ୍ୟତା ତେଁ ଜଡ ମାୟା । ଭାସ ସତ୍ୟ ଇବ ମୋହ ସହାୟା ॥୪॥
ରଜତ ସୀପ ମହୁଁ ଭାସ ଜିମି ଜଥା ଭାନୁ କର ବାରି ।
ଜଦପି ମୃଷା ତିହୁଁ କାଲ ସୋଇ ଭ୍ରମ ନ ସକଇ କୋଉ ଟାରି ॥୧୧୭॥

---

ନୟନେ ଅଙ୍ଗୁଳି ଦେଇ ଯେ ଅବଲୋକଇ । ଉଦିତ ଯୁଗଳ ଶଶୀ ତାହାଙ୍କୁ ଲାଗଇ ॥
ଉମା ରାମ ବିଷୟକ ମୋହ ଏହିପରି । ନଭେ ତମ-ଧୂମ-ଧୂଳି ଶୋଭଇ ଯେପରି ॥୨॥
ବିଷୟ ଇନ୍ଦ୍ରିୟ ସୁର ଜୀବଙ୍କ ସମେତ । ଏକୁ ବଳି ଏକ ସର୍ବେ ଏ ଦେହେ ସଚେତ ॥
ସମସ୍ତଙ୍କର ପରମ ପ୍ରକାଶକ ଯେହୁ । ରାମ ଅନାଦି ଅଯୋଧ୍ୟା ଅଧିପତି ସେହୁ ॥୩॥
ଜଗତ ଅଟେ ପ୍ରକାଶ୍ୟ ପ୍ରକାଶକ ରାମ । ମାୟାନାୟକ ସମସ୍ତ ଜ୍ଞାନ ଗୁଣ ଧାମ ॥
ଜଡମାୟା ଯାହାଙ୍କର ସତ୍ୟତା ବଳରେ । ଭାଷଇ ସତ୍ୟ ସଦୃଶ ମୋହ ସାହାଯ୍ୟରେ ॥୪॥
ରଜତ ଶିପରେ ବାରି ଭାନୁକରେ ଆଭାସ ଯେସନ୍ତେ ହୁଅଇ ।
ଯଦ୍ୟପି ତ୍ରିକାଳେ ମିଥ୍ୟା ତାହା, କେହି ଭ୍ରମ ଟାଳି ନ ପାରଇ ॥୧୧୭॥

---

କୁବିଚାରୀ (ଅଜ୍ଞାନୀ) ଲୋକମାନେ ମେଘାଚ୍ଛନ୍ନ ସୂର୍ଯ୍ୟଙ୍କ ଅସ୍ତିତ୍ୱ ବିଷୟରେ ସନ୍ଦେହ ପ୍ରକାଶ କରନ୍ତି । (ସେହିପରି ଭଗବାନ୍‌ଙ୍କ ଉପରେ ସଗୁଣର ଆବରଣ ଦେଖି ମୂର୍ଖମାନେ ତାଙ୍କ ପ୍ରଭୁତ୍ୱ ବା ଭଗବତ୍ତ୍ୱ ଉପରେ ସନ୍ଦେହ କରିଥା'ନ୍ତି ।) ମାତ୍ର ଦିନକର ଚିରନ୍ତନ ଜ୍ୟୋତିର ଆଲୟ । ମେଘ ତାଙ୍କ ଅସ୍ତିତ୍ୱ ନାଶ କରି ନ ପାରେ ॥୧॥ ଆଖିରେ ଅଙ୍ଗୁଳି ଦେଇ ଦେଖିବା ଲୋକକୁ ଦୁଇଟି ଚନ୍ଦ୍ର ପ୍ରତ୍ୟକ୍ଷ ହୁଏ । ହେ ପାର୍ବତି ! ଆକାଶରେ ଅନ୍ଧକାର, ଧୂଆଁ ଓ ଧୂଳିର ଶୋଭା ଦେଖି ଆକାଶର ଅସ୍ତିତ୍ୱ ବିଷୟରେ ସନ୍ଦେହ କରିବା ଯେପରି ମୂର୍ଖତା, ଶ୍ରୀରାମଚନ୍ଦ୍ରଙ୍କ ବିଷୟରେ ମୋହ ପ୍ରକାଶ କରିବା ସେହିପରି ମୂର୍ଖତା । ଆକାଶ ଯେପରି ନିର୍ମଳ ଓ ନିର୍ଲେପ ଏବଂ କୌଣସି ମଳିନତା ତାହାକୁ ଯେପରି ସ୍ପର୍ଶ କରି ନ ପାରେ, ସେହିପରି ଭଗବାନ୍ ଶ୍ରୀରାମଚନ୍ଦ୍ର ନିତ୍ୟ, ନିର୍ମଳ ଓ ନିର୍ଲେପ ॥୨॥ ବିଷୟ, ଇନ୍ଦ୍ରିୟ, ଇନ୍ଦ୍ରିୟ-ଦେବତା ଏବଂ ଜୀବାତ୍ମା—ଏମାନଙ୍କ ମଧ୍ୟରୁ ପ୍ରତ୍ୟେକେ ପରସ୍ପରର ସାହାଯ୍ୟରେ ସଚେତନ । ଅର୍ଥାତ୍ ବିଷୟ-ସମୂହର ଚେତନା ଇନ୍ଦ୍ରିୟ-ସମୂହଦ୍ୱାରା, ଇନ୍ଦ୍ରିୟମାନଙ୍କର ଚେତନା ଇନ୍ଦ୍ରିୟ-ଦେବତାମାନଙ୍କ ଦ୍ୱାରା ଏବଂ ଇନ୍ଦ୍ରିୟ-ଦେବତାମାନଙ୍କର ଚେତନା ଜୀବାତ୍ମାଦ୍ୱାରା ପ୍ରକାଶିତ ହୁଏ । ଏ ସମସ୍ତଙ୍କର ଯେ ପରମ-ପ୍ରକାଶକ, ସେହି ହେଉଛନ୍ତି ଅନାଦି ବ୍ରହ୍ମ, ଅଯୋଧ୍ୟା-ନରେଶ ଶ୍ରୀରାମଚନ୍ଦ୍ର ॥୩॥ ଏହି ଜଗତ ପ୍ରକାଶ୍ୟ ଏବଂ ଶ୍ରୀରାମଚନ୍ଦ୍ର ଏହାର ପ୍ରକାଶକ ।

ଏହି ବିଧି ଜଗ ହରି ଆଶ୍ରିତ ରହଈ । ଜଦପି ଅସତ୍ୟ ଦେତ ଦୁଖ ଅହଈ ॥
ଜୌଁ ସପନେଁ ସିର କାଟୈ କୋଈ । ବିନୁ ଜାଗେଁ ନ ଦୂରି ଦୁଖ ହୋଈ ॥୧॥
ଜାସୁ କୃପାଁ ଅସ ଭ୍ରମ ମିଟି ଜାଈ । ଗିରିଜା ସୋଇ କୃପାଲ ରଘୁରାଈ ॥
ଆଦି ଅଂତ କୋଉ ଜାସୁ ନ ପାଵା । ମତି ଅନୁମାନି ନିଗମ ଅସ ଗାଵା ॥୨॥
ବିନୁ ପଦ ଚଲଇ ସୁନଇ ବିନୁ କାନା । କର ବିନୁ କରମ କରଇ ବିଧି ନାନା ॥
ଆନନ ରହିତ ସକଲ ରସ ଭୋଗୀ । ବିନୁ ବାନୀ ବକତା ବଡ଼ ଜୋଗୀ ॥୩॥
ତନ ବିନୁ ପରସ ନୟନ ବିନୁ ଦେଖା । ଗ୍ରହଇ ଘ୍ରାନ ବିନୁ ବାସ ଅସେଷା ॥
ଅସି ସବ ଭାଁତି ଅଲୌକିକ କରନୀ । ମହିମା ଜାସୁ ଜାଇ ନହିଁ ବରନୀ ॥୪॥

---

ଏ ଭାବେ ହରି ଆଶ୍ରିତେ ରହଇ ଜଗତ । ଯଦ୍ୟପି ଅସତ୍ୟ ଦୁଃଖ ଦଅଇ ଅତ୍ୟନ୍ତ ॥
ସ୍ୱପ୍ନରେ ଯେପରି କେହି ମସ୍ତକ କାଟନ୍ତେ । ନ ଯାଏ ଦୁଃଖ ଜାଗ୍ରତ ନ ହେବା ପର୍ଯ୍ୟନ୍ତେ ॥୧॥
ଯାହାଙ୍କ କୃପାରେ ଏହି ଭ୍ରମ ହୁଏ ନାଶ । ଉମା ସେହି ରଘୁନାଥ କରୁଣା-ନିବାସ ॥
ଆଦି ଅନ୍ତ କେହି ପାଇ ନାହାନ୍ତି ଯାହା'ର । ମତି ଅନୁସାରେ ବେଦ ଭଣେ ଏ ପ୍ରକାର ॥୨॥
ଚରଣ ବିନା ସେ ଚାଲେ ଶୁଣେ ବିନା କାନ । କର ବିନା କର୍ମ କରେ ବିବିଧ ବିଧାନ ॥
ଆନନ-ରହିତ ସଦା ସର୍ବ-ରସ-ଭୋଗୀ । ବାଣୀ ବିନା ବକ୍ତା ସେହି ଅତି ବଡ ଯୋଗୀ ॥୩॥
ତନୁ ବିନା ସ୍ପର୍ଶ ବିନୁ ନୟନ ଦେଖଇ । ଘ୍ରାଣ ବିନା ସର୍ବ ଗନ୍ଧ ଗ୍ରହଣ କରଇ ॥
ଏହି ଭାବେ ଅଲୌକିକ କରମ ସମସ୍ତ । ମହିମା ଯାହାର କରି ନ ହୁଅଇ ବ୍ୟକ୍ତ ॥୪॥

---

ସେ ମାୟାର ସ୍ୱାମୀ ଓ ଜ୍ଞାନ-ଗୁଣ-ରାଶିର ଧାମ । ତାଙ୍କର ସତ୍ତାଯୋଗେ ମୋହର ସାହାଯ୍ୟ ପାଇ ଜଡ ମାୟା ମଧ୍ୟ ସତ୍ୟ ପରି ଉଦ୍‌ଭାସିତ ହୁଏ ॥୪॥ ଦୋହା :— ଶିପରେ ରୂପା କିମ୍ବା ସୂର୍ଯ୍ୟକିରଣରେ ଜଳର (ଅସ୍ତିତ୍ୱ ନ ଥାଇ ମଧ୍ୟ) ଅସ୍ତିତ୍ୱ ପ୍ରତୀତ ହୁଏ । ତିନିକାଳ ଏହି ପ୍ରତୀତ ମିଥ୍ୟା ହେଲେ ମଧ୍ୟ ଏହି ଭ୍ରମକୁ କେହି ଦୂର କରି ପାରିବ ନାହିଁ ॥୧୧୭॥ ଚୌପାଈ :—ଏହିପରି ଏ ସଂସାର ଭଗବାନଙ୍କ ଉପରେ ଆଶ୍ରିତ ରହିଅଛି । ଏହା ଅସତ୍ୟ ବା ମିଥ୍ୟା ହୋଇ ମଧ୍ୟ ଦୁଃଖ ଦିଏ । ସ୍ୱପ୍ନରେ କେହି ଯଦି ଆମର ମୁଣ୍ଡ କାଟି ନିଏ, ଜାଗ୍ରତ ନ ହେବା ପର୍ଯ୍ୟନ୍ତ ସେ ଦୁଃଖ ଦୂର ହୁଏ ନାହିଁ । ସେହି ଦୁଃଖ ପରି ସଂସାରର ଦୁଃଖ ॥୧॥ ହେ ପାର୍ବତି ! ଯାହାଙ୍କ କୃପା ଯୋଗେ ଏହି ଭ୍ରମ ମେଣ୍ଟିଯାଏ, ସେ ହେଉଛନ୍ତି କୃପାଳୁ ଶ୍ରୀରଘୁନାଥଜୀ । ତାଙ୍କ ଆଦିଅନ୍ତ କେହି ପାଇ ପାରି ନାହିଁ । ବେଦଗଣ ଆପଣା ଆପଣା ବୁଦ୍ଧିରେ ଅନୁମାନ କରି ନିମ୍ନଲିଖିତମତେ ତାଙ୍କ ସ୍ୱରୂପ ଗାଇ ଅଛନ୍ତି—॥୨॥ ସେ ବ୍ରହ୍ମ ପାଦ ବିନା ଚାଲନ୍ତି, କାନ ବିନା ଶୁଣନ୍ତି ଏବଂ ହାତ ନ ଥାଇ ନାନାପ୍ରକାର କାମ କରନ୍ତି । ମୁହଁ (ଜିଭ) ତାଙ୍କର ନାହିଁ । ତଥାପି ସେ ସମସ୍ତ ଛଅରସ ଭୋଗ କରନ୍ତି । ବାଣୀ ନାହିଁ, ଅଥଚ ସୁଯୋଗ୍ୟ ବକ୍ତା ସେ ॥୩॥ ଶରୀର (ଚର୍ମ) ବିନା ସ୍ପର୍ଶ କରନ୍ତି, ଆଖି ନାହିଁ, ଅଥଚ ଦେଖନ୍ତି । ନାକ ବିନା ସମସ୍ତ ଗନ୍ଧ ଗ୍ରହଣ (ଆଘ୍ରାଣ) କରନ୍ତି । ସେହି ବ୍ରହ୍ମଙ୍କର

ଜେହି ଇମି ଗାୱହିଁ ବେଦ ବୁଧ ଜାହି ଧରହିଁ ମୁନି ଧ୍ୟାନ ।
ସୋଇ ଦସରଥ ସୁତ ଭଗତ ହିତ କୋସଲପତି ଭଗବାନ ॥୧୧୮॥

କାସୀଁ ମରତ ଜଂତୁ ଅବଲୋକୀ । ଜାସୁ ନାମ ବଲ କରଉଁ ବିସୋକୀ ॥
ସୋଇ ପ୍ରଭୁ ମୋର ଚରାଚର ସ୍ୱାମୀ । ରଘୁବର ସବ ଉର ଅଂତରଜାମୀ ॥୧॥
ବିବସହୁଁ ଜାସୁ ନାମ ନର କହହୀଁ । ଜନମ ଅନେକ ରଚିତ ଅଘ ଦହହୀଁ ॥
ସାଦର ସୁମିରନ ଜେ ନର କରହୀଁ । ଭବ-ବାରିଧି ଗୋପଦ ଇବ ତରହୀଁ ॥୨॥
ରାମ ସୋ ପରମାତମା ଭବାନୀ । ତହଁ ଭ୍ରମ ଅତି ଅବିହିତ ତବ ବାନୀ ॥
ଅସ ସଂସୟ ଆନତ ଉର ମାହୀଁ । ଜ୍ଞାନ ବିରାଗ ସକଲ ଗୁନ ଜାହୀଁ ॥୩॥
ସୁନି ସିବ କେ ଭ୍ରମ ଭଂଜନ ବଚନା । ମିଟି ଗୈ ସବ କୁତରକ କୈ ରଚନା ॥
ଭଇ ରଘୁପତି ପଦ ପ୍ରୀତି ପ୍ରତୀତୀ । ଦାରୁନ ଅସଂଭାବନା ବୀତୀ ॥୪॥

---

ବେଦ ବୁଧ ଯାରେ ବର୍ଣ୍ଣନ୍ତି ଏମନ୍ତ ଧରନ୍ତି ମୁନିଗଣେ ଧ୍ୟାନ ।
ସେହି ଦାଶରଥି ଭକ୍ତ ହିତକାରୀ କୋଶଳେଶ ଭଗବାନ ॥୧୧୮॥

କାଶୀରେ ଅବଲୋକଣ ଜନ୍ତୁଙ୍କ ମରଣ । ଯାର ନାମ ବଳେ ଶୋକ କରେ ମୁଁ ହରଣ ॥
ସେ ମୋର ପ୍ରଭୁ ଅଟନ୍ତି ଚରାଚର ସ୍ୱାମୀ । ରଘୁବର ସମସ୍ତଙ୍କ ହୃଦ ଅନ୍ତର୍ଯାମୀ ॥୧॥
ନାଚାରେ ସୁଦ୍ଧା ଯା ନାମ ନର ଉଚ୍ଚାରଇ । ଅନେକ ଜନ୍ମ ସଞ୍ଚିତ ପାତକ ଦହଇ ॥
ସାଦରେ ଯେବଣ ନର ସ୍ମରଣ କରଇ । ଗୋପଦ ସଦୃଶ ଭବ-ବାରିଧି ତରଇ ॥୨॥
ରାମ ସେହି ପରମାତ୍ମା ଶୁଣ ପାର୍ବତୀ । ତହିଁ ଭ୍ରମ ତୁମ୍ଭ ବାଣୀ ଅବିହିତ ଅତି ॥
ହୃଦେ ଉପୁଜିବା ମାତ୍ରେ ଏମନ୍ତ ସଂଶୟ । ଜ୍ଞାନ ବୈରାଗ୍ୟାଦି ଗୁଣ ହୁଅନ୍ତି ବିଲୟ ॥୩॥
ଶୁଣି ଶିବଙ୍କର ଭ୍ରମ-ଭଞ୍ଜନ ବଚନ । ନାଶ ହୋଇଲା ସମସ୍ତ କୁତର୍କ ରଚନ ॥
ରଘୁପତି ପଦେ ପ୍ରୀତି ପ୍ରତୀତି ଜନ୍ମିଲା । ଦାରୁଣ ଅସମ୍ଭାବନା ସଂଶୟ ତୁଟିଲା ॥୪॥

---

କୃତତ୍ତ୍ୱ ସବୁପ୍ରକାରେ ଏପରି ଅଲୌକିକ ଯେ, ତାହାର ମହିମା ଭାଷାରେ ପ୍ରକାଶ କରି ହେବ ନାହିଁ ॥୪॥ ଦୋହା —ବେଦ ଓ ପଣ୍ଡିତମାନେ ଯାହାଙ୍କର ଏତାଦୃଶ ବନ୍ଦନା କରନ୍ତି ଏବଂ ମୁନିମାନେ ଯାହାଙ୍କୁ ଧ୍ୟାନ କରନ୍ତି, ସେହି ଅଟନ୍ତି ଦଶରଥ ନନ୍ଦନ, ଭକ୍ତଜନଙ୍କର କଲ୍ୟାଣକାରକ, ଅଯୋଧ୍ୟାପତି ଭଗବାନ୍ ଶ୍ରୀରାମଚନ୍ଦ୍ର ॥୧୧୮॥ ଚୌପାଇ —ହେ ପାର୍ବତି ! କାଶୀରେ ମୃତ୍ୟୁ ଭଜୁଥିବା ପ୍ରାଣୀଙ୍କୁ ଦେଖି ଯାହାଙ୍କର ନାମ ବଳରେ ମୁଁ ତାଙ୍କୁ (ରାମମନ୍ତ୍ର ଦେଇ) ଶୋକ-ବିମୁକ୍ତ କରେ, ସେହି ହେଉଛନ୍ତି ମୋର ପ୍ରଭୁ ରଘୁଶ୍ରେଷ୍ଠ ଶ୍ରୀରାମଚନ୍ଦ୍ର, ଜଡଚେତନର ସ୍ୱାମୀ ଏବଂ ସମସ୍ତଙ୍କ ହୃଦୟର ଅନ୍ତର୍ଯାମୀ ॥୧॥ ନିରୁପାୟ ହୋଇ ସୁଦ୍ଧା ମନୁଷ୍ୟ ତାଙ୍କ ନାମ ଜପିଲେ ତାହାକୃତ ଅନେକ ଜନ୍ମର ପାପ ଜଳି ନଷ୍ଟ ହୋଇଯାଏ । ଯେଉଁ ନର ଆଦର ସହିତ ତାଙ୍କ ନାମ ସ୍ମରଣ କରେ, ସେ ତ ସଂସାର-ରୂପୀ ଦୁସ୍ତର ସମୁଦ୍ରକୁ ଗୋଷ୍ପଦ ପରି ତରିଯାଏ ॥୨॥ ହେ ପାର୍ବତି ! ସେହି ପରମାତ୍ମା ହେଉଛନ୍ତି ଶ୍ରୀରାମଚନ୍ଦ୍ରଜୀ । ତାଙ୍କଠାରେ ଭ୍ରମ ଥିବା

ପୁନି ପୁନି ପ୍ରଭୁ ପଦ କମଲ ଗହି ଜୋରି ପଙ୍କରୁହ ପାନି ।
ବୋଲୀଁ ଗିରିଜା ବଚନ ବର ମନହୁଁ ପ୍ରେମ ରସ ସାନି ॥୧୧୯॥
ସସି କର ସମ ସୁନି ଗିରା ତୁମ୍ହାରୀ । ମିଟା ମୋହ ସରଦାତପ ଭାରୀ ॥
ତୁମ୍ହ କୃପାଲ ସବୁ ସଂସଉ ହରେଉ । ରାମ ସ୍ୱରୂପ ଜାନି ମୋହି ପରେଉ ॥୧॥
ନାଥ କୃପାଁ ଅବ ଗୟଉ ବିଷାଦା । ସୁଖୀ ଭୟଉଁ ପ୍ରଭୁ ଚରନ ପ୍ରସାଦା ॥
ଅବ ମୋହି ଆପନି କିଂକରି ଜାନୀ । ଜଦପି ସହଜ ଜଡ ନାରି ଅୟାନୀ ॥୨॥
ପ୍ରଥମ ଜୋ ମୈଁ ପୂଛା ସୋଇ କହହୂ । ଜୌଁ ମୋ ପର ପ୍ରସନ୍ନ ପ୍ରଭୁ ଅହହୂ ॥
ରାମ ବ୍ରହ୍ମ ଚିନମୟ ଅବିନାସୀ । ସର୍ବ ରହିତ ସବ ଉର ପୁର ବାସୀ ॥୩॥

---

ଧରି ବାରମ୍ବାର ପଙ୍କଜ ପୟର ଯୋଡି ସରୋରୁହ-ପାଣି ।
ଅବା ପ୍ରେମରସ ମିଳାଇ ସରସ ଭାଷିଲେ ଗିରିଜା ବାଣୀ ॥୧୧୯॥
ଶଶିକର ସମ ଶୁଣି ବଚନ ତୁମର । ତୁଟିଲା ମୋହ-ଶରଦ-ଆତପ ପ୍ରଖର ॥
ତୁମେ କୃପାଳୁ ସମସ୍ତ ସଂଶୟ ହରିଲ । ରାମଙ୍କ ସ୍ୱରୂପ ମୋତେ ଜ୍ଞାନ କରାଇଲ ॥୧॥
ନାଥଙ୍କ କୃପାରେ ଏବେ ଦୂରହେଲା ଦୁଃଖ । ପ୍ରଭୁ ଚରଣ ପ୍ରସାଦୁ ଉପୁଜିଲା ସୁଖ ॥
ଏବେ ମୋତେ ନିଜ ପରିଚାରିକା ବିଚାରି । ଯଦ୍ୟପି ସ୍ୱଭାବ-ସିଦ୍ଧ ଜଡ ଅଜ୍ଞ ନାରୀ ॥୨॥
ପ୍ରଥମ ପ୍ରଶ୍ନର ମୋର ଦିଅନ୍ତୁ ଉତ୍ତର । ଯେବେ ପ୍ରସନ୍ନ ଦେବେଶ ଅଛ ମୋ ଉପର ॥
ରାମ ଚିଦାନନ୍ଦମୟ ବ୍ରହ୍ମ ଅବିନାଶୀ । ସର୍ବାତୀତ ସମସ୍ତଙ୍କ ହୃଦ-ପୁର-ବାସୀ ॥୩॥

---

କଥା କହିବା ତୁମ ପକ୍ଷେ ଅତ୍ୟନ୍ତ ଅନୁଚିତ । ଏହିପରି ସନ୍ଦେହ ମନରେ ଆଣିବାମାତ୍ରେ ମନୁଷ୍ୟର ଜ୍ଞାନ, ବୈରାଗ୍ୟ ଆଦି ସମସ୍ତ ସଦ୍‌ଗୁଣ ନଷ୍ଟ ହୋଇଯାଏ ।" ॥୩॥ ଶିବଙ୍କର ଭ୍ରମନାଶକ ବଚନ ଶୁଣି ପାର୍ବତୀଙ୍କ ମନରୁ କୁତର୍କବିତର୍କର ଭାବନା ଅପସରି ଗଲା । ଶ୍ରୀରାମଚନ୍ଦ୍ରଙ୍କ ଚରଣରେ ତାଙ୍କର ପ୍ରେମ ଓ ବିଶ୍ୱାସ ଦୃଢ ହୋଇଗଲା ଏବଂ ଦାରୁଣ ଅସମ୍ଭାବନା (ମିଥ୍ୟା ଓ ଅସମ୍ଭବ କଳ୍ପନା) ଦୂର ହୋଇଗଲା ॥୪॥ ଦୋହା :—ସେ ବାରମ୍ବାର ସ୍ୱାମୀ ପ୍ରଭୁ ଶିବଙ୍କ ଚରଣ-କମଳଦ୍ୱୟ ଧରି ଏବଂ ଆପଣା କର-କମଳ ଯୋଡ଼ି ପ୍ରେମରସ-ସିକ୍ତ ବଚନ କହିଲେ—॥୧୧୯॥ ଚୌପାଇ :—"ହେ ପ୍ରଭୋ ! ଚନ୍ଦ୍ରକିରଣ ସମ ଆପଣଙ୍କ ଶୀତଳବାଣୀ ଶୁଣି ମୋର ମୋହରୂପୀ ଶରତ ଆତପର ପ୍ରଖର ତାପ ମେଣ୍ଟିଗଲା । ହେ କୃପାଳୁ ! ଆପଣ ମୋର ସବୁ ସନ୍ଦେହ ହରଣ କରିନେଲେ । ବର୍ତ୍ତମାନ ଶ୍ରୀରାମଚନ୍ଦ୍ରଙ୍କ ଯଥାର୍ଥ ସ୍ୱରୂପ ମୁଁ ବୁଝିପାରିଲି ॥୧॥ ହେ ନାଥ ! ଆପଣଙ୍କ କୃପାଯୋଗେ ଏବେ ମୋର ସବୁ ବିଷାଦ ଚାଲିଗଲା ଏବଂ ଆପଣଙ୍କ ପଦାନୁଗ୍ରହରୁ ମୁଁ ସୁଖୀ ହୋଇପାରିଲି । ସ୍ତ୍ରୀ ହୋଇଥିବାରୁ ମୁଁ ସ୍ୱଭାବତଃ ମୂର୍ଖ ଓ ଅଜ୍ଞାନୀ । ଏହା ଜାଣି ଆପଣ ମୋତେ ଆପଣଙ୍କ ଦାସୀରୂପେ ଗ୍ରହଣ କରନ୍ତୁ ଏବଂ ହେ ନାଥ ! ଯଦି ଆପଣ ମୋ ଉପରେ ସତରେ ପ୍ରସନ୍ନ, ତେବେ ପ୍ରଥମେ ମୁଁ ଆପଣଙ୍କୁ ଯେଉଁ କଥା ପଚାରିଥିଲି, ତାହା ହିଁ କୁହନ୍ତୁ । ଏହା ସତ୍ୟ ଯେ ଶ୍ରୀରାମ ବ୍ରହ୍ମ,

ନାଥ ଧରେଉ ନରତନୁ କେହି ହେତୂ । ମୋହି ସମୁଝାଇ କହହୁ ବୃଷକେତୂ ॥
ଉମା ବଚନ ସୁନି ପରମ ବିନୀତା । ରାମକଥା ପର ପ୍ରୀତି ପୁନୀତା ॥୪॥
ହିଅଁ ହରଷେ କାମାରି ତବ ସଂକର ସହଜ ସୁଜାନ ।
ବହୁ ବିଧି ଉମହି ପ୍ରସଂସି ପୁନି ବୋଲେ କୃପାନିଧାନ ॥୧୨୦ (କ)॥

## ନବାହ୍ନ ପାରାୟଣ, ପ୍ରଥମ ବିଶ୍ରାମ
## ମାସପାରାୟଣ, ଚତୁର୍ଥ ବିଶ୍ରାମ

ସୁନୁ ସୁଭ କଥା ଭବାନି ରାମଚରିତମାନସ ବିମଲ ।
କହା ଭୁସୁଂଡି ବଖାନି ସୁନା ବିହଗ ନାୟକ ଗରୁଡ ।୧୨୦ (ଖ)॥
ସୋ ସଂବାଦ ଉଦାର ଜେହି ବିଧି ଭା ଆଗେଁ କହବ ।
ସୁନହୁ ରାମ ଅବତାର ଚରିତ ପରମ ସୁନ୍ଦର ଅନଘ ।୧୨୦ (ଗ)॥
ହରି ଗୁନ ନାମ ଅପାର କଥା ରୂପ ଅଗନିତ ଅମିତ ।
ମୈଁ ନିଜ ମତି ଅନୁସାର କହଉଁ ଉମା ସାଦର ସୁନହୁ ॥୧୨୦(ଘ)॥

---

ନାଥ ! ନର ତନୁ କଲେ ଧାରଣ କି ହେତୁ । ବୁଝାଇ ମୋତେ କହନ୍ତୁ ତାହା ବୃଷକେତୁ ॥
ଶୁଣି ଉମାଙ୍କ ଉତ୍ତମ ବିନୀତ ବଚନ । ରାମ କଥା ପ୍ରତି ପ୍ରୀତି ପରମ ପାବନ ॥୪॥
ହୃଦୟେ ହରଷ ହୋଇଲେ ଗିରିଶ ସହଜେ ସୁଜ୍ଞ ଶଙ୍କର ।
ପୁଣି ନାନା ଭାବେ ଉମାଙ୍କୁ ପ୍ରଶଂସି ଭାଷିଲେ କରୁଣାକର ॥୧୨୦ (କ) ॥
ଶୁଣ ଉମା ରାମ-ଚରିତ ମାନସ ଶୁଭ ସୁବିମଳ କଥା ॥
ବିସ୍ତାରି କହିଲେ ଭୁଶୁଣ୍ଡି ବାୟସ ଶୁଣିଲେ ଗରୁଡ ଯଥା ॥୧୨୦ (ଖ) ॥
ଆଗେ ଯାଇ ସେହି ସମ୍ବାଦ ଉଦାର କହିବି ହେଲା ଯେସନ ॥
ଶୁଣ ଅକଳଙ୍କ ରାମ ଅବତାର ଚରିତ ଅତି ଶୋଭନ ॥୧୨୦ (ଗ) ॥
ହରି ନାମ ଗୁଣ ଅପାର ଅଟଇ କଥା ରୂପ ଅଗଣିତ ।
ନିଜ ମତି ଅନୁସାରେ ମୁଁ କହଇ ଶୁଣ ଉମା ଦେଇ ଚିତ୍ତ ॥୧୨୦ (ଘ) ॥

---

ଚିନ୍ମୟ (ଜ୍ଞାନସ୍ୱରୂପ), ଅବିନାଶୀ, ସବୁଥିରୁ ରହିତ ଏବଂ ସମସ୍ତଙ୍କ ହୃଦୟ-ନଗରର ନିବାସୀ ॥୨-୩॥ ପୁନଶ୍ଚ ହେ ନାଥ ! ସେ ମନୁଷ୍ୟ ଶରୀର କେଉଁ କାରଣରୁ ଧାରଣ କଲେ ? ହେ ବୃଷକେତୁ ! ସେ ବିଷୟ ମୋତେ ବୁଝାଇ କୁହନ୍ତୁ ।" ପାର୍ବତୀଙ୍କର ବିନମ୍ର ବଚନ ଶୁଣି ଏବଂ ଶ୍ରୀରାମଚନ୍ଦ୍ରଙ୍କ କଥାରେ ତାଙ୍କର ବିଶୁଦ୍ଧ ପ୍ରେମ ଦେଖି—॥୪॥
ଦୋହା :—କାମାରି, ସ୍ୱଭାବତଃ ବିଜ୍ଞ ଓ ସର୍ବଜ୍ଞ, କୃପାନିଧାନ ଶଙ୍କର ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ବହୁତ ପ୍ରକାରେ ପାର୍ବତୀଙ୍କୁ ପ୍ରଶଂସା କରି ପୁଣି କହିଲେ—॥ ୧୨୦ (କ) ॥
ସୋରଠା :—ହେ ପାର୍ବତି ! ନିର୍ମଳ ରାମଚରିତ-ମାନସର ମଙ୍ଗଳମୟୀ କଥା ଶୁଣ । କାକ ଭୁଶୁଣ୍ଡି ଏହି କଥା ବିସ୍ତାରପୂର୍ବକ କହିଥିଲେ ଏବଂ ପକ୍ଷିରାଜ ଗରୁଡଙ୍କ ଏହା

ସୁନୁ ଗିରିଜା ହରିଚରିତ ସୁହାଏ । ବିପୁଲ ବିସଦ ନିଗମାଗମ ଗାଏ ॥
ହରି ଅବତାର ହେତୁ ଜେହି ହୋଈ । ଇଦମିତ୍ଥଂ କହି ଜାଇ ନ ସୋଈ ॥୧॥
ରାମ ଅତର୍କ୍ୟ ବୁଦ୍ଧି ମନ ବାନୀ । ମତ ହମାର ଅସ ସୁନହି ସୟାନୀ ॥
ତଦପି ସନ୍ତ ମୁନି ବେଦ ପୁରାନା । ଜସ କଛୁ କହହିଁ ସ୍ୱମତି ଅନୁମାନା ॥୨॥
ତସ ମୈଁ ସୁମୁଖି ସୁନାୱଉଁ ତୋହୀ । ସମୁଝି ପରଇ ଜସ କାରନ ମୋହୀ ॥
ଜବ ଜବ ହୋଇ ଧରମ କୈ ହାନୀ । ବାଢ଼ହିଁ ଅସୁର ଅଧମ ଅଭିମାନୀ ॥୩॥
କରହିଁ ଅନୀତି ଜାଇ ନହିଁ ବରନୀ । ସୀଦହିଁ ବିପ୍ର ଧେନୁ ସୁର ଧରନୀ ॥
ତବ ତବ ପ୍ରଭୁ ଧରି ବିବିଧ ସରୀରା । ହରହିଁ କୃପାନିଧି ସଜ୍ଜନ ପୀରା ॥୪॥

---

ଶୁଣ ପାର୍ବତି ! ହରି ଚରିତ ପାବନ । ବିପୁଳ ବିମଳ ଶ୍ରୁତି ସ୍ମୃତିଙ୍କ କଥନ ॥
ହରି ଅବତାର ଯେଉଁ କାରଣେ ହୁଅଇ । ତାହା ଏହା ବୋଲି କୁହା ଯାଇ ନ ପାରଇ ॥୧॥
ରାମ ଅତର୍କ୍ୟ ଅଟନ୍ତି ମନ ବୁଦ୍ଧି ବାଣୀ । ଶୁଣ ମୋହର ଏମନ୍ତ ସମ୍ମତ ଶର୍ବାଣୀ ॥
ତଥାପି ବେଦ ପୁରାଣ ସନ୍ତ ମୁନି ଜନେ । ନିଜ ମତି ଅନୁସାରେ କହନ୍ତି ଯେସନେ ॥୨॥
ସୁମୁଖି ! ତେମନ୍ତେ ମୁହିଁ ଶୁଣାଉଛି ଯେତେ । ଯେମନ୍ତ କାରଣ ବୁଝି ପଡ଼ୁଅଛି ମୋତେ ॥
ଯେବେ ଯେବେ ହେଉଥାଏ ଧରମର ହାନି । ବଢ଼ନ୍ତି ଅସୁର ମହା ଅଧମାଭିମାନୀ ॥୩॥
କରନ୍ତି ଅନୀତି କହି ନ ହୁଅଇ ବର୍ଣ୍ଣି । ସନ୍ତାପନ୍ତି ବିପ୍ର ସୁର ସୁରଭି ଧରଣୀ ॥
ତେବେ ତେବେ ପ୍ରଭୁ ଧରି ନାନା କଳେବର । ହରନ୍ତି ସଜ୍ଜନ ପୀଡ଼ା କରୁଣା-ସାଗର ॥୪॥

---

ଶୁଣିଥିଲେ ॥୧୨୦(ଖ)॥ ଭକ୍ତ ଉଦାର ସମ୍ବାଦ ଯେପରି ଘଟିଥିଲା, ତାହା ମୁଁ ପରେ କହିବି । ବର୍ତ୍ତମାନ ତୁମେ ଶ୍ରୀରାମାବତାରର ପରମ-ସୁନ୍ଦର ଓ ପାପନାଶକ (ପବିତ୍ର) ଚରିତ ଶୁଣ ॥ ୧୨୦ (ଗ) ॥ ଶ୍ରୀହରିଙ୍କ ଗୁଣ, ନାମ, କଥା ଓ ରୂପସବୁ ଅପାର, ଅଗଣିତ ଓ ଅସୀମ । ତଥାପି ହେ ପାର୍ବତି ! ମୁଁ ମୋ ବୁଦ୍ଧି ଅନୁସାରେ କହୁଛି । ତୁମେ ଆଦରରେ ଶୁଣ ॥୧୨୦(ଘ)॥ ଚୌପାଈ —ହେ ପାର୍ବତି ! ବେଦ-ଶାସ୍ତ୍ରମାନେ ଶ୍ରୀହରିଙ୍କ ସୁନ୍ଦର, ବିସ୍ତୃତ ଓ ନିର୍ମଳ ଚରିତ ଗାନ କରିଅଛନ୍ତି । ହରିଙ୍କ ଅବତାର ଯେଉଁ କାରଣରୁ ହୁଏ, ସେହି କାରଣ "କେବଳ ଏଇଆ"—ଏହା କୁହାଯାଇ ନ ପାରେ । (ତାଙ୍କ ଅବତାରର ଅନେକ କାରଣ ହୋଇପାରେ ଏବଂ ଅନେକ ଏହିପରି କାରଣ ଥାଇପାରେ, ଯାହାକୁ କେହି ଜାଣି ବି ପାରନ୍ତି ନାହିଁ ।) ॥୧॥ ହେ ଚତୁରେ ! ଶୁଣ; ଆମ ମତ ହେଉଛି, ବୁଦ୍ଧି, ମନ ଓ ବାଣୀରେ ଶ୍ରୀରାମଚନ୍ଦ୍ରଙ୍କ ତର୍କଣା କରାଯାଇପାରେ ନାହିଁ । ତଥାପି ସନ୍ତ, ମୁନି, ବେଦ ଓ ପୁରାଣ ଆପଣା ଆପଣା ମତି ଅନୁସାରେ ଯତ୍କିଞ୍ଚିତ କହନ୍ତି ଏବଂ ଯତ୍କିଞ୍ଚିତ ମୁଁ ବୁଝିଛି, ସେହି କାରଣ ହେ ସୁମୁଖି ! ମୁଁ ତୁମକୁ ଶୁଣାଉଛି । ଯେଉଁ ଯେଉଁ ସମୟରେ ଧର୍ମର ହ୍ରାସ ଘଟେ, ସେତେବେଳେ ଅଧମ ଓ ଅଭିମାନୀ ରାକ୍ଷସମାନେ ବଢ଼ିଯାଆନ୍ତି; ସେମାନେ ଅବର୍ଣ୍ଣନୀୟ ଅନ୍ୟାୟ-ଅନୀତି କରନ୍ତି, ବ୍ରାହ୍ମଣ, ଗୋମାତା, ଏବଂ ପୃଥିବୀ କଷ୍ଟ ପଆନ୍ତି, ସେହି ସେହି ସମୟରେ କୃପାନିଧାନ ପ୍ରଭୁ ବିବିଧ ଦିବ୍ୟ

ଅସୁର ମାରି ଥାପହିଁ ସୁରନ୍ହ ରାଖହିଁ ନିଜ ଶ୍ରୁତି ସେତୁ ।
ଜଗ ବିସ୍ତାରହିଁ ବିସଦ ଜସ ରାମ ଜନ୍ମ କର ହେତୁ ॥୧୨୧॥
ସୋଇ ଜସ ଗାଇ ଭଗତ ଭବ ତରହିଁ । କୃପାସିଂଧୁ ଜନ ହିତ ତନୁ ଧରହିଁ ॥
ରାମ ଜନମ କେ ହେତୁ ଅନେକା । ପରମ ବିଚିତ୍ର ଏକ ତେଁ ଏକା ॥୧॥
ଜନମ ଏକ ଦୁଇ କହଉଁ ବଖାନୀ । ସାବଧାନ ସୁନୁ ସୁମତି ଭବାନୀ ॥
ଦ୍ୱାରପାଲ ହରି କେ ପ୍ରିୟ ଦୋଊ । ଜୟ ଅରୁ ବିଜୟ ଜାନ ସବ କୋଊ ॥୨॥
ବିପ୍ର ଶ୍ରାପ ତେଁ ଦୂନଉ ଭାଈ । ତାମସ ଅସୁର ଦେହ ତିନ୍ହ ପାଈ ॥
କନକକସିପୁ ଅରୁ ହାଟକଲୋଚନ । ଜଗତ ବିଦିତ ସୁରପତି ମଦ ମୋଚନ ॥୩॥
ବିଜଈ ସମର ବୀର ବିଖ୍ୟାତା । ଧରି ବରାହ ବପୁ ଏକ ନିପାତା ॥
ହୋଇ ନରହରି ଦୂସର ପୁନି ମାରା । ଜନ ପ୍ରହଲାଦ ସୁଜସ ବିସ୍ତାରା ॥୪॥

---

ଅସୁରେ ମାରନ୍ତି ସୁରଙ୍କୁ ସ୍ଥାପନ୍ତି ରଖି ନିଜ ଶ୍ରୁତି ସେତୁ ।
ବିଶ୍ୱେ ବିସ୍ତାରନ୍ତି ବିମଳ କୀରତି ରାମ ଜନ୍ମ ଏହି ହେତୁ ॥୧୨୧॥
ସେ ଯଶ ଗାଇଣ ଭକ୍ତେ ଭବରୁ ତରନ୍ତି । କୃପାସିନ୍ଧୁ ଜନ ହିତେ ଶରୀର ଧରନ୍ତି ॥
ରାମଙ୍କ ଜନ୍ମ ଲାଭର କାରଣ ଅନେକ । ପରମ ବିଚିତ୍ର ସବୁ ଏକୁ ବଳି ଏକ ॥୧॥
ଗୋଟିଏ ଯୋଡ଼ିଏ ଜନ୍ମ କହୁଛି ବଖାଣି । ସାବଧାନ ହୋଇ ଶୁଣ ସୁମତି ଶର୍ବାଣୀ ॥
ଥିଲେ ବେନି ଦ୍ୱାରପାଳ ପ୍ରିୟ ହରିଙ୍କର । ଜାଣନ୍ତି ସମସ୍ତେ ଜୟ ବିଜୟ ଆବର ॥୨॥
ବିପ୍ର ଅଭିଶାପ ଘେନି ସେହି ଦୁଇ ଭାଇ । ହେଲେ ଅସୁର ତାମସ କଳେବର ପାଇ ॥
ହିରଣ୍ୟକଶିପୁ ତଥା କନକଲୋଚନ । ବିଶ୍ୱ ବିଦିତ ସୁରେଶ ମଦ ବିମର୍ଦ୍ଦନ ॥୩॥
ସମରବିଜୟୀ ଦୁହେଁ ସୁବିଖ୍ୟାତ ବୀର । ଜଣଙ୍କୁ ବଧିଲେ ଧରି ବରାହ ଶରୀର ॥
ହୋଇ ନରସିଂହ ପୁଣି ଅନ୍ୟଙ୍କୁ ମାରିଲେ । ଭକ୍ତ ପ୍ରହ୍ଲାଦ ଯଶ ବିଶ୍ୱେ ବିସ୍ତାରିଲେ ॥୪॥

---

ଶରୀର ଧାରଣପୂର୍ବକ ସଜ୍ଜନମାନଙ୍କ ପୀଡ଼ା ହରଣ କରନ୍ତି ॥୨,୩,୪॥ ଦୋହା :— ସେ ଅସୁରମାନଙ୍କୁ ମାରି ଦେବତାମାନଙ୍କୁ ସ୍ଥାପିତ କରନ୍ତି ଏବଂ ଆପଣାର (ଶ୍ୱାସରୂପ) ଶ୍ରୁତି-ସେତୁ (ବେଦଗଣଙ୍କ ମର୍ଯ୍ୟାଦା) ରକ୍ଷା କରନ୍ତି । ଏହିପରି ଜଗତରେ ସେ ଆପଣାର ନିର୍ମଳ ଯଶ ବିସ୍ତାର କରନ୍ତି । ଏହା ହେଉଛି ଶ୍ରୀରାମାବତାରର କାରଣ ॥୧୨୧॥ ଚୌପାଈ :— ସେହି ଯଶ ଗାଇ ଗାଇ ଭକ୍ତଜନ ଭବସାଗରକୁ ପାର ହୋଇଯାଆନ୍ତି । କୃପାସାଗର ଭଗବାନ୍ ଭକ୍ତଜନମାନଙ୍କ ହିତ ନିମନ୍ତେ ଶରୀର ଧାରଣ କରନ୍ତି । ଶ୍ରୀରାମଚନ୍ଦ୍ରଙ୍କ ଜନ୍ମଗ୍ରହଣ କରିବାର ଅନେକ କାରଣ ଅଛି । ସେଗୁଡ଼ିକ ଏକୁ ବଳି ଆରେକ ଅଧିକ ବିଚିତ୍ର ॥୧॥ ହେ ସୁମତି ଭବାନି ! ମୁଁ ତାହାଙ୍କର ଗୋଟିଏ ଦୁଇଟି ଜନ୍ମର ବର୍ଣ୍ଣନା ବିସ୍ତାରପୂର୍ବକ କରୁଛି । ତୁମେ ସାବଧାନ ହୋଇ ଶୁଣ । ଶ୍ରୀହରିଙ୍କର ଜୟ ଓ ବିଜୟ ନାମକ ଦୁଇ ଜଣ ପ୍ରିୟ ଦ୍ୱାରପାଳ ଥାଆନ୍ତି । ସେ ଦୁହିଁଙ୍କୁ ସମସ୍ତେ ଜାଣନ୍ତି ॥୨॥ ସେ ଦୁଇଭାଇ ସନକାଦି

ଭଏ ନିସାଚର ଜାଇ ତେଇ ମହାବୀର ବଲବାନ ।
କୁଂଭକରନ ରାବନ ସୁଭଟ ସୁର ବିଜଇ ଜଗ ଜାନ ॥୧୨୨॥
ମୁକୁତ ନ ଭଏ ହତେ ଭଗବାନା । ତୀନି ଜନମ ଦ୍ୱିଜ ବଚନ ପ୍ରୱାନା ॥
ଏକ ବାର ତିନ୍ହ କେ ହିତ ଲାଗୀ । ଧରେଉ ସରୀର ଭଗତ ଅନୁରାଗୀ ॥୧॥
କସ୍ୟପ ଅଦିତି ତହାଁ ପିତୁ ମାତା । ଦସରଥ କୌସଲ୍ୟା ବିଖ୍ୟାତା ॥
ଏକ କଲପ ଏହି ବିଧି ଅବତାରା । ଚରିତ ପବିତ୍ର କିଏ ସଂସାରା ॥୨॥
ଏକ କଲପ ସୁର ଦେଖି ଦୁଖାରେ । ସମର ଜଲଂଧର ସନ ସବ ହାରେ ॥
ସଂଭୁ କୀନ୍ହ ସଂଗ୍ରାମ ଅପାରା । ଦନୁଜ ମହାବଲ ମରଇ ନ ମାରା ॥୩॥
ପରମ ସତୀ ଅସୁରାଧିପ ନାରୀ । ତେହିଁ ବଲ ତାହି ନ ଜିତହିଁ ପୁରାରୀ ॥୪॥

---

ନିଶାଚର ଯାଇ ହେଲେ ସେହି ସ୍ଥାନ ଲଭି ବଳ ଅପ୍ରମିତ ।
ରାବଣ ଆବର କୁମ୍ଭକର୍ଣ୍ଣ ବୀର ସୁର-ଜୟୀ ଭୁବିଦିତ ॥୧୨୨॥
ମୁକ୍ତ ନ ହୋଇଲେ ହତ ହୋଇ ହରିହସ୍ତେ । ବିପ୍ର ଶାପ ଥିଲା ତିନି ଜନମ ପର୍ଯ୍ୟନ୍ତେ ॥
ଏକ ବାର ସେ ଦୁହିଁଙ୍କ ଉପକାର ଲାଗି । ଶରୀର ଧାରଣ କଲେ ଭକ୍ତ ଅନୁରାଗୀ ॥୧॥
କଶ୍ୟପ ଅଦିତି ପିତାମାତା ସେ ଜନ୍ମରେ । ଖ୍ୟାତ ଥିଲେ ଦଶରଥ କୌଶଲ୍ୟା ନାମରେ ॥
ଏକ କଳ୍ପ ଅବତାର ଏ ଭାବେ ହୋଇଣ । ପବିତ୍ର ଚରିତ୍ର କଲେ ସଂସାରେ ରହିଣ ॥୨॥
ଆଉ ଏକ କଳ୍ପେ ଦେଖି ଦେବଙ୍କୁ ଦୁଃଖିତ । ସୁଦ୍ଧେ ଜଳନ୍ଧର ସଙ୍ଗେ ହୋଇ ପରାଜିତ ॥
ଅପାର ସଂଗ୍ରାମ ପୁଣି କଲେ ମହେଶ୍ୱର । ମାରନ୍ତେ ନ ମଲେ ମହାବଳୀ ନିଶାଚର ॥୩॥
ପରମ ସତୀ ଥିବାରୁ ଅସୁରେଶ ନାରୀ । ସେହି ବଳେ ନ ଜିଣିଲେ ତାଙ୍କୁ ତ୍ରିପୁରାରି ॥୪॥

---

ବ୍ରାହ୍ମଣମାନଙ୍କ ଅଭିଶାପରେ ଅସୁରଙ୍କ ତାମସୀ ଶରୀର ପାଇଲେ । ଜଣକର ନାମ ଥିଲା ହିରଣ୍ୟକଶିପୁ ଏବଂ ଅନ୍ୟ ଜଣକର ନାମ ଥିଲା ହିରଣ୍ୟାକ୍ଷ । ଏ ଦୁହେଁ ଦେବରାଜ ଇନ୍ଦ୍ରଙ୍କ ଗର୍ବ ଖର୍ବ କରିଥିଲେ ବୋଲି ଜଗତରେ ପ୍ରସିଦ୍ଧି ଲାଭ କରିଅଛନ୍ତି ॥୩॥ ସେମାନେ ସମର-ବିଜୟୀ ବିଖ୍ୟାତ ବୀର । ଦୁହିଁଙ୍କ ମଧ୍ୟରୁ ଜଣକୁ (ହିରଣ୍ୟାକ୍ଷକୁ) ଭଗବାନ୍ ବରାହ-ଶରୀର ଧାରଣପୂର୍ବକ ବଧ କରିଥିଲେ । ଅନ୍ୟ ଜଣକୁ (ହିରଣ୍ୟକଶିପୁକୁ) ନରସିଂହ ରୂପ ଧାରଣପୂର୍ବକ ବଧ କଲେ ଏବଂ ତାଙ୍କ ଭକ୍ତ ପ୍ରହ୍ଲାଦଙ୍କ ସୁଯଶ ବିସ୍ତାର କରିଥିଲେ ॥୪॥ ଦୋହା —ସେହି ଦୁଇଜଣ ସୁର-ବିଜୟୀ, ମହାଯୋଦ୍ଧା ରାବଣ ଓ କୁମ୍ଭକର୍ଣ୍ଣ ନାମକ ବଳବାନ୍ ଓ ମହାବୀର ରାକ୍ଷସ ହେଲେ । ସମଗ୍ର ଜଗତ ସେ ଦୁହିଁଙ୍କୁ ଜାଣେ ॥୧୨୨॥ ଚୌପାଇ—ବ୍ରାହ୍ମଣଙ୍କ ଅଭିଶାପ-ବଚନର ପ୍ରଭାବ ତିନି ଜନ୍ମ ପର୍ଯ୍ୟନ୍ତ ଥିଲା । ସୁତରାଂ ଭଗବାନ୍‌ଙ୍କ ହାତରେ ନିହତ ହେଲେ ହେଁ ସେ ଦୁହେଁ (ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ) ମୁକ୍ତ ହେଲେନାହିଁ । ଅତଏବ ସେମାନଙ୍କ କଲ୍ୟାଣ ନିମନ୍ତେ ପୁଣି ଥରେ ଭକ୍ତ-ପ୍ରେମୀ ଭଗବାନ୍ ଅବତାର ଗ୍ରହଣ କଲେ ॥ ୧ ॥ ସେ ଜନ୍ମରେ କଶ୍ୟପ ଓ ଅଦିତି ତାଙ୍କର ପିତାମାତା ହେଲେ । ପରଜନ୍ମରେ ସେ ଦଶରଥ ଓ କୌଶଲ୍ୟା ନାମରେ

ଛଲ କରି ଟାରେଉ ତାସୁ ବ୍ରତ ପ୍ରଭୁ ସୁର କାରଜ କୀହ୍ନ ।
ଜବ ତେହିଁ ଜାନେଉ ମରମ ତବ ଶ୍ରାପ କୋପ କରି ଦୀହ୍ନ ।।୧୨୩।।
ତାସୁ ଶ୍ରାପ ହରି ଦୀହ୍ନ ପ୍ରମାନା । କୌତୁକନିଧି କୃପାଲ ଭଗବାନା ।।
ତହାଁ ଜଲଂଧର ରାବନ ଭୟଉ । ରନ ହତି ରାମ ପରମ ପଦ ଦୟଉ ।।୧।।
ଏକ ଜନମ କର କାରନ ଏହା । ଜେହି ଲଗି ରାମ ଧରୀ ନର ଦେହା ।।
ପ୍ରତି ଅବତାର କଥା ପ୍ରଭୁ କେରୀ । ସୁନୁ ମୁନି ବରନୀ କବିହ୍ନ ଘନେରୀ ।।୨।।
ନାରଦ ଶ୍ରାପ ଦୀହ୍ନ ଏକ ବାରା । କଲପ ଏକ ତେହି ଲଗି ଅବତାରା ।।
ଗିରିଜା ଚକିତ ଭଈଁ ସୁନି ବାନୀ । ନାରଦ ବିଷ୍ଣୁଭଗତ ପୁନି ଜ୍ଞାନୀ ।।୩।।

---

ଛଳ ଆଚରଣ ତା ବ୍ରତ ଟାଳିଣ ସୁର କାର୍ଯ୍ୟ କଲେ ହରି ।
ସେ ଯେବେ ଜାଣିଲା ଏହାର ମରମ ଶାପ ଦେଲା କୋପ କରି ।।୧୨୩।।
ତାର ଅଭିଶାପ ସତ୍ୟ କଲେ ଭଗବାନ । କରୁଣାସାଗର ହରି କୌତୁକ ନିଧାନ ।।
ସେ କଳ୍ପେ ରାବଣ ରୂପ ହେଲା ଜଳନ୍ଧର । ରଣେ ବଧି ମୋକ୍ଷପଦ ଦେଲେ ରଘୁବର ।।୧।।
ଏକ ଜନମର ଅଟେ କାରଣ ଏମନ୍ତେ । ଧରିଲେ ନର ଶରୀର ରାମ ଯେ ନିମନ୍ତେ ।।
ପ୍ରଭୁଙ୍କ ପ୍ରତ୍ୟେକ ଅବତାର କଥା ଗୁଣି । କବି ନାନାମତେ ବର୍ଣ୍ଣିଛନ୍ତି ଶୁଣ ମୁନି ।।୨।।
ନାରଦ ଶାପ ପ୍ରଦାନ କଲେ ଏକ ବାର । ଏକ କଳ୍ପେ ସେହି ହେତୁ ହେଲେ ଅବତାର ।।
ବଚନ ଶୁଣି ଚକିତ ହୋଇଲେ ଭବାନୀ । ନାରଦ ବିଷ୍ଣୁଙ୍କ ଭକ୍ତ ମହାମୁନି ଜ୍ଞାନୀ ।।୩।।

---

ପ୍ରସିଦ୍ଧ ହେଲେ । ଗୋଟିଏ କଳ୍ପରେ ଏହିପରି ବିବିଧ ଅବତାର ଗ୍ରହଣପୂର୍ବକ ସେ ସଂସାରରେ ପବିତ୍ର ଲୀଳା ସବୁ କଲେ ।।୨।। ଅନ୍ୟ ଏକ କଳ୍ପରେ ସମସ୍ତ ଦେବତା ଜଳନ୍ଧର ଦୈତ୍ୟ ନିକଟରେ ପରାଜୟ ସ୍ୱୀକାର କରି ଦୁଃଖିତ ହେଲେ । ଏହା ଦେଖି ଶିବ ତାହା ସହିତ ମହାଘୋର ଯୁଦ୍ଧ କଲେ । ମାତ୍ର ସେ ମହାବଳୀ ଦୈତ୍ୟ ଜମା ମରୁ ନ ଥାଏ ।।୩।। ସେହି ଦୈତ୍ୟରାଜର ସ୍ତ୍ରୀ (ବୃନ୍ଦାବତୀ) ପରମ ସତୀ ଥିଲା । ସ୍ତ୍ରୀର ସତୀତ୍ୱ ପ୍ରଭାବରେ ତ୍ରିପୁରାସୁର ପରି ଅଜେୟ ଶତ୍ରୁର ନାଶକାରୀ ଶିବ ମଧ୍ୟ ସେହି ରାକ୍ଷସକୁ ଜୟ କରିପାରିଲେ ନାହିଁ ।।୪।। ଦୋହା '—ପ୍ରଭୁ କପଟ କରି ବୃନ୍ଦାବତୀର ବ୍ରତ ଭଙ୍ଗ କରି ଦେବତାମାନଙ୍କ କାର୍ଯ୍ୟ ପୂରଣ କଲେ । ଯେତେବେଳେ ସେହି ସ୍ତ୍ରୀ ଏହି ରହସ୍ୟ ଜାଣିଲା, ସେ କ୍ରୋଧ କରି ଭଗବାନ୍‌ଙ୍କୁ ଅଭିଶାପ ଦେଲା ।।୧୨୩।। ଚୌପାଇ '—ଲୀଳାନିଧି କୃପାଳୁ ହରି ସେହି ସ୍ତ୍ରୀର ଅଭିଶାପକୁ ସ୍ୱୀକାର କଲେ । ଉକ୍ତ ଜଳନ୍ଧର ରାବଣାସୁର ରୂପରେ ଜନ୍ମ ଗ୍ରହଣ କଲା । ଶ୍ରୀରାମଚନ୍ଦ୍ର ତାହାକୁ ଯୁଦ୍ଧରେ ମାରି ପରମପଦ ପ୍ରଦାନ କଲେ ।। ୧ ।। ଶ୍ରୀରାମଚନ୍ଦ୍ର ମନୁଷ୍ୟ ଦେହ ଧାରଣପୂର୍ବକ ଜନ୍ମଲାଭ କରିବାର ଏହା ଗୋଟିଏ କାରଣ ଥିଲା । ହେ ଭରଦ୍ୱାଜ ମୁନି !, ଶୁଣ, କବିମାନେ ପ୍ରଭୁଙ୍କ ପ୍ରତ୍ୟେକ ଅବତାରର କଥା ନାନା ପ୍ରକାରେ ବର୍ଣ୍ଣନା କରିଅଛନ୍ତି ।।୨।। ଆଉ ଥରେ ନାରଦ ମୁନି ପ୍ରଭୁଙ୍କୁ ଅଭିଶାପ ଦେଇଥିଲେ । ତେଣୁ ଗୋଟିଏ କଳ୍ପରେ ସେଥି

କାରନ କଓ୍ଵନ ଶ୍ରାପ ମୁନି ଦୀନ୍ହା । କା ଅପରାଧ ରମାପତି କୀନ୍ହା ॥
ୟହ ପ୍ରସଙ୍ଗ ମୋହି କହହୁ ପୁରାରୀ । ମୁନି ମନ ମୋହ ଆଚରଜ ଭାରୀ ॥୩॥
ବୋଲେ ବିହସି ମହେସ ତବ ଜ୍ଞାନୀ ମୂଢ଼ ନ କୋଇ ।
ଜେହି ଜସ ରଘୁପତି କରହିଁ ଜବ ସୋ ତସ ତେହି ଛନ ହୋଇ ॥୧୨୪(କ)॥
କହଉଁ ରାମ ଗୁନ ଗାଥ ଭରଦ୍ଵାଜ ସାଦର ସୁନହୁ ।
ଭବ ଭଂଜନ ରଘୁନାଥ ଭଜୁ ତୁଲସୀ ତଜି ମାନ ମଦ ॥୧୨୪(ଖ)॥
ହିମଗିରି ଗୁହା ଏକ ଅତି ପାବନି । ବହ ସମୀପ ସୁରସରୀ ସୁହାବନି ॥
ଆଶ୍ରମ ପରମ ପୁନୀତ ସୁହାଓ୍ଵା । ଦେଖି ଦେବରିଷି ମନ ଅତି ଭାଓ୍ଵା ॥୧॥
ନିରଖି ସୈଲ ସରି ବିପିନ ବିଭାଗା । ଭୟଉ ରମାପତି ପଦ ଅନୁରାଗା ॥
ସୁମିରତ ହରିହି ଶ୍ରାପ ଗତି ବାଧୀ । ସହଜ ବିମଲ ମନ ଲାଗି ସମାଧୀ ॥୨॥

ଅଭିଶାପ ଦେଲେ କେଉଁ କାରଣ୍ତୁ ମୁନୀଶ । କେଉଁ ଅପରାଧ ଅବା କଲେ ରମାଈଶ ॥
ଏହି ପ୍ରସଙ୍ଗ ମୋ ଆଗେ କହ ତ୍ରିପୁରାରି । ମୁନି ମନେ ମୋହ ଏହା ଆଚମ୍ବିତ ଭାରି ॥୩॥
ହସି ତ୍ରିଲୋଚନ ଭାଷିଲେ ବଚନ ଜ୍ଞାନୀ ମୂଢ଼ କେହି ନାହିଁ ।
ଯାହାକୁ ଯେପରି କରନ୍ତି ଶ୍ରୀହରି ତତ୍‌କ୍ଷଣେ ସେ ହୁଏ ତାହି ॥୧୨୪ (କ)॥
ଶୁଣ ଭରଦ୍ଵାଜ କରୁଛୁ ମୁଁ ଗାନ ରଘୁପତି ଗୁଣଗ୍ରାମ ॥
ତୁଲସୀ ତୁ ଭଜ ତେଜି ମଦ ମାନ ଭବ-ବିଭଞ୍ଜନ ରାମ ॥୧୨୪ (ଖ)॥
ହିମାଳୟେ ଏକ ଅତି ପବିତ୍ର କନ୍ଦର । ସମୀପେ ବହଇ ସୁର-ସରିତ ସୁନ୍ଦର ॥
ତହିଁ ଶୋଭା ପାଏ ଏକ ଆଶ୍ରମ ପାବନ । ବିଲୋକି ମୋହିତ ହେଲା ଦେବରୃଷି ମନ ॥୧॥
ନିରେଖି ନଦୀ ଶଇଲ ବିପିନ ବିଭାଗ । ଉପୁଜିଲା ରମାପତି ପଦେ ଅନୁରାଗ ॥
ସ୍ମରନ୍ତେ ହରିଙ୍କୁ ଶାପ ନିର୍ବାଧ ହୋଇଲା । ସହଜ ବିମଲ ମନେ ସମାଧି ଲାଗିଲା ॥୨॥

ନିମନ୍ତେ ପ୍ରଭୁ ଅବତାର ଗ୍ରହଣ କରିଥିଲେ ।" ଏହି କଥା ଶୁଣି ପାର୍ବତୀ ଅତ୍ୟନ୍ତ ଚକିତ ହେଲେ ଏବଂ କହିଲେ, "ନାରଦ ମୁନି ତ ବିଷ୍ଣୁଭକ୍ତ ଓ ଜ୍ଞାନୀ ॥ ୩ ॥ କେଉଁ କାରଣରୁ ମୁନି ଭଗବାନ୍‌ଙ୍କୁ ଅଭିଶାପ ଦେଲେ ? ଲକ୍ଷ୍ମୀପତି ଭଗବାନ୍ ତାଙ୍କର କି ଅପରାଧ କରିଥିଲେ ? ହେ ପୁରାରି ! ମୋତେ ଏ କଥା କୁହନ୍ତୁ । ମୁନି ନାରଦଙ୍କ ମନରେ ମୋହ ଜାତ ହେବା ବଡ ଆଶ୍ଚର୍ଯ୍ୟର କଥା ।" ॥୩॥ ଦୋହା .—ତେଣୁ ମହାଦେବ ହସି କହିଲେ, "କେହି ଜ୍ଞାନୀ ନୁହେଁ କିମ୍ବା ମୂର୍ଖ ନୁହେଁ। ଶ୍ରୀ ରଘୁନାଥଜୀ ଯେତେବେଳେ ଯାହାକୁ ଯିମିତି କରନ୍ତି, ସେହି ମୁହୂର୍ତ୍ତିରେ ସେ ସେହିପରି ହୋଇଯାଏ ।" ॥୧୨୪(କ)॥ ସୋରଠା .—ଯାଜ୍ଞବଲ୍‌କ୍ୟ ମୁନି କହନ୍ତି, "ହେ ଭରଦ୍ଵାଜ ! ମୁଁ ଶ୍ରୀରାମଚନ୍ଦ୍ରଙ୍କ ଗୁଣଗାଥା କହୁଛି, ତୁମେ ଆଦରରେ ଶୁଣ ।"—ତୁଲସୀ ଦାସ କହନ୍ତି, "ମାନ ଓ ମଦ ତ୍ୟାଗ କରି ଭବଭଞ୍ଜନ ଶ୍ରୀ ରଘୁନାଥଙ୍କୁ ଭଜ ।" ॥୧୨୪(ଖ)॥ ଚୌପାଈ —"ହିମାଳୟ ପର୍ବତରେ ଗୋଟିଏ ଅତି ପବିତ୍ର ଗୁମ୍ଫା ଥିଲା । ତାହାର ନିକଟରେ ସୁନ୍ଦର ଗଙ୍ଗା

ମୁନି ଗତି ଦେଖି ସୁରେସ ଡେରାନା । କାମହି ବୋଲି କୀନ୍ହ ସନମାନା ॥
ସହିତ ସହାୟ ଜାହୁ ମମ ହେତୂ । ଚଲେଉ ହରଷି ହିୟଁ ଜଲଚରକେତୂ ॥୩॥
ସୁନାସୀର ମନ ମହୁଁ ଅସି ତ୍ରାସା । ଚହତ ଦେବରିଷି ମମ ପୁର ବାସା ॥
ଜେ କାମୀ ଲୋଲୁପ ଜଗ ମାହୀଁ । କୁଟିଲ କାକ ଇବ ସବହି ଡେରାହୀଁ ॥୪॥

ସୂଖ ହାଡ଼ ଲୈ ଭାଗ ସଠ ସ୍ୱାନ ନିରଖି ମୃଗରାଜ ।
ଛୀନି ଲେଇ ଜନି ଜାନ ଜଡ଼ ତିମି ସୁରପତିହି ନ ଲାଜ ॥୧୨୫॥

ତେହି ଆଶ୍ରମହିଁ ମଦନ ଜବ ଗୟଉ । ନିଜ ମାୟାଁ ବସଂତ ନିରମୟଉ ॥
କୁସୁମିତ ବିବିଧ ବିଟପ ବହୁରଂଗା । କୂଜହିଁ କୋକିଲ ଗୁଂଜହିଁ ଭୃଂଗା ॥୧॥

---

ମୁନିଗତି ଅବଲୋକି ସଭୟେ ସୁରେଶ । କାମକୁ ଡକାଇ କଲା ସମ୍ମାନ ବିଶେଷ ॥
ଯାଅ ସହାୟକ ସଙ୍ଗେ ଘେନିଣ ମୋ ହେତୁ । ଚଳିଲା ହରଷ ହୃଦେ ବାରିଚର କେତୁ ॥୩॥
ସୁନାଶୀର ମନ ମଧ୍ୟେ ହୁଏ ଅତି ତ୍ରାସ । ଚାହୁଁଛନ୍ତି ଦେବର୍ଷି ମୋ ପୁରେ ନିବାସ ॥
ଯେ କାମୀ ଲୋଲୁପ ଅଟେ ଜଗତ ମଧ୍ୟରେ । କୁଟିଳ କାକ ସଦୃଶ ସମସ୍ତଙ୍କୁ ଡରେ ॥୪॥

ଶୁଷ୍କ ଅସ୍ଥି ଘେନି ଯେସନ୍ତେ ଶଠ ଶ୍ୱାନ ପଳାଏ ଦେଖି ସିଂହକୁ ।
ଛଡ଼ାଇ ଏ ନେବ କାଳେ ଭାବି ତେସନ୍ତେ, ଲାଜ ନ ଲାଗେ ଇନ୍ଦ୍ରକୁ ॥୧୨୫॥

ସେହି ଆଶ୍ରମକୁ ଯେବେ ମଦନ ଗମିଲା । ନିଜ ମାୟା ବସନ୍ତକୁ ନିର୍ମାଣ କରିଲା ॥
ବୃକ୍ଷାବଳୀ ପ୍ରସ୍ଫୁଟିତ ହେଲେ ବହୁରଙ୍ଗେ । କୂଜନ୍ତି କୋକିଳ କଳ ଗୁଞ୍ଜରନ୍ତି ଭୃଙ୍ଗେ ॥୧॥

---

ପ୍ରବାହିତ ହେଉଥାନ୍ତି, ସେହି ପରମପବିତ୍ର ସୁନ୍ଦର ଆଶ୍ରମ ଦେଖି ନାରଦ ମୁନିଙ୍କ ମନକୁ ତାହା ବେଶ ପାଇଲା ॥ ୧ ॥ ପର୍ବତ, ନଦୀ ଓ ବନର ମନୋହର ବିଭାଗ ସବୁ ଦେଖି ତାଙ୍କ ମନରେ ଲକ୍ଷ୍ମୀକାନ୍ତ ଭଗବାନଙ୍କ ଚରଣ ପ୍ରତି ପ୍ରେମ ଜାଗ୍ରତ ହେଲା । ଭଗବାନଙ୍କ ନାମ ସ୍ମରଣ ମାତ୍ରେ ନାରଦମୁନିଙ୍କ ଅଭିଶାପ (ଦକ୍ଷ ପ୍ରଜାପତି ତାଙ୍କୁ ଯେଉଁ ଅଭିଶାପ ଦେଇଥିଲେ ଏବଂ ଯାହା ହେତୁ ସେ କୌଣସି ଗୋଟିଏ ସ୍ଥାନରେ ବନ୍ଦ ହୋଇପାରୁ ନ ଥିଲେ ।)ର ଗତି ରୁଦ୍ଧ ହୋଇଗଲା ଏବଂ ମନର ସ୍ୱାଭାବିକ ନିର୍ମଳତା ଯୋଗେ ତାଙ୍କର ସମାଧି ଆରମ୍ଭ ହୋଇଗଲା ॥ ୨ ॥ ନାରଦ ମୁନିଙ୍କ ସେହି ତପୋମୟୀ ସ୍ଥିତି ଦେଖି ଦେବରାଜ ଇନ୍ଦ୍ର ଡରିଗଲେ । ସେ କାମଦେବଙ୍କୁ ଡକାଇ ତାଙ୍କର ଆଦର-ସତ୍କାର କଲେ ଏବଂ କହିଲେ, "ମୋର କଲ୍ୟାଣ ନିମନ୍ତେ ତୁମେ ଆପଣାର ସହାୟକ-ଗଣଙ୍କ ସହିତ ନାରଦଙ୍କ ସମାଧି ଭଙ୍ଗ କରିବାକୁ ଯାଅ । ଏହା ଶୁଣି ମୀନକେତନ କାମଦେବ ମନେ ମନେ ଆନନ୍ଦିତ ହୋଇ ଚାଲିଲେ ॥ ୩ ॥ ଦେବର୍ଷିନାରଦ କାଳେ ତାଙ୍କର ଅମରାବତୀ ପୁରର ନିବାସ ଚାହୁଁଅଛନ୍ତି ବୋଲି ଇନ୍ଦ୍ର ମନରେ ଭୟ କରୁଥିଲେ । ଜଗତରେ ଯେଉଁମାନେ କାମୁକ ଓ ଲୋଭୀ, ସେହିମାନେ କୁଟିଳ କାକପରି ସମସ୍ତଙ୍କୁ ଡରନ୍ତି ॥ ୪ ॥ ଦୋହା :—ଶଠ କୁକ୍କୁର ଶୁଷ୍କ ହାଡ଼ ନେଇ ପଳାଇ ଯାଉଥାଏ । ସେତେବେଳେ ସିଂହକୁ ଦେଖି ସେ ମୂର୍ଖ ମନରେ ଆଶଙ୍କା କରେ, କାଳେ ଏ ସିଂହ

ଚଲୀଁ ସୁହାଵନି ତ୍ରିବିଧ ବୟାରୀ । କାମ କୃସାନୁ ବଢ଼ାଵନିହାରୀ ॥
ରଂଭାଦିକ ସୁର ନାରି ନବୀନା । ସକଲ ଅସମସର କଲା ପ୍ରବୀନା ॥୨॥
କରହିଁ ଗାନ ବହୁ ତାନ ତରଂଗା । ବହୁ ବିଧି କ୍ରୀଡ଼ହିଁ ପାନି ପତଂଗା ॥
ଦେଖି ସହାୟ ମଦନ ହରଷାନା । କୀନ୍ହେସି ପୁନି ପ୍ରପଂଚ ବିଧି ନାନା ॥୩॥
କାମ କଲା କଛୁ ମୁନିହି ନ ବ୍ୟାପୀ । ନିଜ ଭୟଁ ଡରେଉ ମନୋଭବ ପାପୀ ॥
ସୀମ କି ଚାଁପି ସକଇ କୋଉ ତାସୂ । ବଡ଼ ରଖଵାର ରମାପତି ଜାସୂ ॥୪॥

ସହିତ ସହାୟ ସଭୀତ ଅତି ମାନି ହାରି ମନ ମୈନ ।
ଗହେସି ଜାଇ ମୁନି ଚରନ ତବ କହି ସୁଠି ଆରତ ବୈନ ॥୧୨୬॥

---

ବହିଲା ସୁଖଦାୟକ ତ୍ରିବିଧ ପବନ । କାମ-କୃଶାନୁକୁ ଯେହୁ କରେ ଉଦ୍ଦୀପନ ॥
ରମ୍ଭାଦି ଅନେକ ସୁର ରମଣୀ ନବୀନା । ସକଳ ଅସମଶର କଳାରେ ପ୍ରବୀଣା ॥୨॥
ବିବିଧ ତାନ ତରଙ୍ଗେ ଗାୟନ କରନ୍ତି । କରେ କଂର ଘେନି ନାନା ପ୍ରକାରେ କ୍ରୀଡ଼ନ୍ତି ॥
ଦେଖି ନିଜ ସହାୟକ ହରଷିତେ ମାର । ରଚିଲା ପୁଣି ପ୍ରପଞ୍ଚ ଅନେକ ପ୍ରକାର ॥୩॥
କନ୍ଦର୍ପ କଳା ମୁନିଙ୍କୁ କିଛି ନ ବ୍ୟାପିଲା । ତହୁଁ ନିଜ ଭୟେ ପାପୀ ଦର୍ପକ କମ୍ପିଲା ॥
ସୀମା ତାର କେହି ସ୍ପର୍ଶ କରି କି ପାରନ୍ତି । ଯା'ର ରମାପତି ବଡ ରକ୍ଷକ ଅଛନ୍ତି ॥୪॥

ସଙ୍ଗୀଙ୍କ ସହିତେ ଅତି ଭୟଭୀତେ ମାର ମନେ ହାର ମାନି ।
ଧରିଲା ଯାଇଣ ମୁନିଙ୍କ ଚରଣ କହି ଆର୍ତ୍ତ ବର ବାଣୀ ॥୧୨୬॥

---

ମୋଠାରୁ ହାତ ଖଣ୍ଡି ଛଡ଼ାଇ ନେବ । ସେହିପରି "ନାରଦ ମୋ ଇନ୍ଦ୍ରପଦ ଛଡ଼ାଇ ନେବେ" ବୋଲି ମୂର୍ଖ ସୁରପତି ଆଶଙ୍କା କରି ଏ ଉପାୟ କରିଥିଲେ । ତାଙ୍କୁ ଟିକିଏ ଯାହା ଲାଜ ମାଡ଼ୁନାହିଁ ! ॥ ୧୨୫ ॥ ଚୌପାଈ '—କାମଦେବ ସେହି ଆଶ୍ରମକୁ ଯାଇ ଆପଣାର ମାୟାରେ ସେଠାରେ ବସନ୍ତ ଋତୁକୁ ଆବିର୍ଭୂତ କରାଇଲେ । ବିବିଧ ବୃକ୍ଷ ଉପରେ ବିବିଧ ରଙ୍ଗର ଫୁଲ ଫୁଟିଗଲା । ସେମାନଙ୍କ ଉପରେ କୋଇଲିମାନେ ରାବିବାକୁ ଲାଗିଲେ ଏବଂ ଭ୍ରମରମାନେ ଗୁଞ୍ଜନ କରିବାକୁ ଲାଗିଲେ ॥ ୧ ॥ କାମାଗ୍ନିର ଉତ୍ତେଜକ ତିନି ପ୍ରକାର ( ଶୀତଳ, ମନ୍ଦ ଓ ସୁଗନ୍ଧ ) ମନୋହର ପବନ ବହିବାକୁ ଲାଗିଲା । ସକଳ କାମକଳା-ନିପୁଣା ରମ୍ଭା ପ୍ରଭୃତି ନବଯୁବତୀ ଦେବାଙ୍ଗନାମାନେ ନାନାବିଧ ତାନ-ତରଙ୍ଗ ସଙ୍ଗେ ସଙ୍ଗୀତ ଗାନ କରିବାକୁ ଲାଗିଲେ । ହାତରେ କନ୍ଦୁକ ଧରି ନାନା ପ୍ରକାର ଖେଳ ଖେଳିବାକୁ ଲାଗିଲେ । ଆପଣାର ସହଚରମାନଙ୍କୁ ଦେଖି କାମଦେବ ଅତି ପ୍ରସନ୍ନ ହେଲେ ଏବଂ ନାନାବିଧ ମାୟାଜାଲ ବିସ୍ତାର କଲେ ॥ ୨-୩ ॥ ମାତ୍ର କାମଦେବଙ୍କର କୌଣସି କଳା କୌଶଳ ମୁନିଙ୍କ ଉପରେ ପ୍ରଭାବ ପକାଇ ପାରିଲା ନାହିଁ । ପାପୀ ମନୋଭବ (କାମଦେବ) ଆପଣା ବିନାଶର ଭୟରେ ଡରିଗଲେ । ରମାପତି ଭଗବାନ୍ ଯାହାର ବଡ ରକ୍ଷକ, ଭଲା ତାହାର ମର୍ଯ୍ୟାଦାକୁ କିଏ ଡେଇଁ ପାରିବ ? ॥ ୪ ॥ ଦୋହା '—ଭୟରେ କାମଦେବ ବହୁତ ଡରିଗଲେ । ସେ ମନେ

ଭୟଉ ନ ନାରଦ ମନ କଛୁ ରୋଷା । କହି ପ୍ରିୟ ବଚନ କାମ ପରିତୋଷା ॥
ନାଇ ଚରନ ସିରୁ ଆୟସୁ ପାଈ । ଗୟଉ ମଦନ ତବ ସହିତ ସହାଈ ॥୧॥
ମୁନି ସୁସୀଲତା ଆପନି କରନୀ । ସୁରପତି ସଭାଁ ଜାଇ ସବ ବରନୀ ॥
ସୁନି ସବ କେଁ ମନ ଅଚରଜୁ ଆୱା । ମୁନିହି ପ୍ରସଂସି ହରିହି ସିରୁ ନାୱା ॥୨॥
ତବ ନାରଦ ଗୱନେ ସିବ ପାହୀଁ । ଜିତା କାମ ଅହମିତି ମନ ମାହୀଁ ॥
ମାର ଚରିତ ସଂକରହି ସୁନାଏ । ଅତିପ୍ରିୟ ଜାନି ମହେସ ସିଖାଏ ॥୩॥
ବାରବାର ବିନୱଉଁ ମୁନି ତୋହୀ । ଜିମି ୟହ କଥା ସୁନାୟହୁ ମୋହୀ ॥
ତିମି ଜନି ହରିହି ସୁନାୱହୁ କବହୂଁ । ଚଲେହୁଁ ପ୍ରସଂଗ ଦୁରାଏହୁ ତବହୂଁ ॥୪॥

ସଂଭୁ ଦୀନ୍ହ ଉପଦେସ ହିତ ନହିଁ ନାରଦହି ସୋହାନ ।
ଭରଦ୍ୱାଜ କୌତୁକ ସୁନହୁ ହରି ଇଚ୍ଛା ବଲବାନ ॥୧୨୭॥

---

ନ ହୋଇଲା ନାରଦଙ୍କ ମନେ କିଛି ରୋଷ । କହି ପ୍ରିୟବାଣୀ କାମେ କଲେ ପରିତୋଷ ॥
ଚରଣେ ପ୍ରଣାମ କରି ଆଦେଶ ପାଇଣ । ଚଳିଲା ମଦନ ସଙ୍ଗେ ସଙ୍ଗୀଙ୍କୁ ନେଇଣ ॥୧॥
ମୁନି ସୁଶୀଳତା ନିଜ କୃତିତ୍ୱ ଆବର । ସୁରେଶ ସଭାରେ ଯାଇ କହିଲା ନିକର ॥
ଶୁଣନ୍ତେ ଆଶ୍ଚର୍ଯ୍ୟ ବୋଧ ହେଲା ସମସ୍ତଙ୍କୁ । ମୁନିଙ୍କି ପ୍ରଶଂସି କଲେ ପ୍ରଣାମ ଶ୍ରୀମଙ୍କୁ ॥୨॥
ତହୁଁ ନାରଦ ଚଳିଲେ ସଦାଶିବ କତି । ମନେ ଘେନି କାମଜିତ ଅଭିମାନ ଅତି ॥
ମାର ଚରିତ ଶିବଙ୍କୁ କହି ଶୁଣାଇଲେ । ଅତି ପ୍ରିୟ ଜାଣି ମହେଶ୍ୱର ଶିଖାଇଲେ ॥୩॥
ବିନୟେ ତୁମ୍ଭଙ୍କୁ ମୁନି ବାରମ୍ବାର କରେ । ଶୁଣାଇଲ ମୋତେ ଏହି କଥା ଯେ ଭାବରେ ॥
ସେ ଭାବେ ହରିଙ୍କ ଆଗେ କେବେ ନ କହିବ । ପ୍ରସଙ୍ଗ ପଡିଲେ ମଧ୍ୟ ଲୁଚାଇ ରଖିବ ॥୪॥

ହିତ ହେତୁ ଈଶ କଲେ ଉପଦେଶ ନାରଦ ନ ଦେଲେ କାନ ।
ଭରଦ୍ୱାଜ ଏହି କଉତୁକ ଶୁଣ ହରି ଇଚ୍ଛା ବଳବାନ ॥୧୨୭॥

---

ମନେ ହାରି ମାନି ଅତି କରୁଣ ବଚନ କହି ମୁନିଙ୍କର ଚରଣ ଧରି ପକାଇଲେ ॥୧୨୬॥
ଚୌପାଇ :—ନାରଦଙ୍କ ମନରେ ଟିକିଏ ହେଲେ କ୍ରୋଧ ହେଲାନାହିଁ । ପ୍ରିୟ ବଚନ କହି ସେ କାମଦେବଙ୍କର ସନ୍ତୋଷବିଧାନ କଲେ । ତତ୍ପରେ କାମଦେବ ମୁନିଙ୍କ ଚରଣତଳେ ମୁଣ୍ଡ ନୁଆଁଇଲେ ଏବଂ ତାଙ୍କର ଆଜ୍ଞା ପାଇ ଆପଣା ସହଚରଙ୍କ ସହିତ ଫେରିଗଲେ ॥ ୧ ॥ ଦେବରାଜ ଇନ୍ଦ୍ରଙ୍କ ସଭାକୁ ଯାଇ କାମଦେବ ମୁନିଙ୍କ ସୁଶୀଳତା ଏବଂ ଆପଣାର କରାମତି ବିଷୟ ବଖାଣିଲେ । ତାହା ଶୁଣି ସମସ୍ତଙ୍କ ମନରେ ବଡ ଆଶ୍ଚର୍ଯ୍ୟ ହେଲା । ସେମାନେ ସମସ୍ତେ ମୁନିଙ୍କର ପ୍ରଶଂସା କରି ଶ୍ରୀହରିଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲେ ॥ ୨ ॥ ତତ୍ପରେ ନାରଦ ଶିବଙ୍କ ନିକଟକୁ ଗଲେ । କାମଦେବଙ୍କୁ ଜୟ କରି ପକାଇଛନ୍ତି ବୋଲି ତାଙ୍କ ମନରେ ଅହଙ୍କାର ଆସିଯାଇଥିଲା । ସେ ଶିବଙ୍କୁ କାମଦେବଙ୍କ ପ୍ରସଙ୍ଗ ଶୁଣାଇଲେ । ମହାଦେବ ନାରଦଙ୍କୁ ଅତି ପ୍ରିୟ ଜାଣି ଏହି ରୂପେ ଶିକ୍ଷା ଦେଲେ— ॥୩॥ "ହେ ମୁନି ! ମୁଁ ତୁମ୍ଭଙ୍କୁ ବାରମ୍ବାର ପ୍ରାର୍ଥନା କରୁଛି,

ରାମ କୀନ୍ହ ଚାହହିଁ ସୋଇ ହୋଈ । କରୈ ଅନ୍ୟଥା ଅସ ନହିଁ କୋଈ ॥
ସଂଭୁ ବଚନ ମୁନିମନ ନହିଁ ଭାଏ । ତବ ବିରଂଚି କେ ଲୋକ ସିଧାଏ ॥୧॥
ଏକ ବାର କରତଲ ବର ବୀନା । ଗାୱତ ହରିଗୁନ ଗାନ ପ୍ରବୀନା ॥
ଛୀରସିଂଧୁ ଗୱନେ ମୁନିନାଥା । ଜହଁ ବସ ଶ୍ରୀନିବାସ ଶ୍ରୁତିମାଥା ॥୨॥
ହରଷି ମିଲେ ଉଠି ରମାନିକେତା । ବୈଠେ ଆସନ ଋଷିହି ସମେତା ॥
ବୋଲେ ବିହସି ଚରାଚର ରାୟା । ବହୁତେ ଦିନନ କୀନ୍ହି ମୁନି ଦାୟା ॥୩॥
କାମ ଚରିତ ନାରଦ ସବ ଭାଷେ । ଜଦ୍ୟପି ପ୍ରଥମ ବରଜି ସିବଁ ରାଖେ ॥
ଅତି ପ୍ରଚଂଡ ରଘୁପତି କୈ ମାୟା । ଜେହି ନ ମୋହ ଅସ କୋ ଜଗ ଜାୟା ॥୪॥

---

ରାମ ଯାହା କରିବାକୁ ଚାହାନ୍ତି, ହୁଅଇ । ତାହାକୁ ଅନ୍ୟଥା କେହି କରି ନ ପାରଇ ॥
ଭଲ ନ ଲାଗିଲା ଶମ୍ଭୁ ବଚନ ମୁନିଙ୍କୁ । ଏଥୁଅନ୍ତେ ଚଳିଲେ ସେ ବିରଞ୍ଚି ପୁରୀକୁ ॥୧॥
ଏକଦା ସୁମନୋହର କରେ ବୀଣା ଧରି । ପରମ ପ୍ରବୀଣ ହରି ଗୁଣଗାନ କରି ॥
କ୍ଷୀରସିନ୍ଧୁକୁ ଗମନ କଲେ ଯତିପତି । ଯହିଁ ଶ୍ରୀନିବାସ ଶ୍ରୁତି ମସ୍ତକ ରାଜନ୍ତି ॥୨॥
ଉଠିଣ କମଳାକାନ୍ତ ହରଷେ ମିଳିଲେ । ଋଷିଙ୍କ ସହିତ ପୁଣି ଆସନେ ବସିଲେ ॥
ହସି ଭାଷିଲେ ମଧୁର ଚରାଚର ଈଶ । ବହୁ ଦିବସରେ ଦୟା ବିହିଲେ ମୁନୀଶ ॥୩॥
କହିଲେ ନାରଦ କାମ ଚରିତ୍ର ନିକର । ଯଦ୍ୟପି ପ୍ରଥମେ ମନା କରିଥିଲେ ହର ॥
ମାୟା ରଘୁପତିଙ୍କର ପ୍ରଚଣ୍ଡ ପରମ । ଯାହାକୁ ନ ମୋହେ ବିଶ୍ୱେ କାହିଁ କେ ଜନମ ॥୪॥

---

ତୁମେ ମୋତେ ଯେମିତି ଏ କଥା ଶୁଣାଇଲ, ସେହିପରି ଭଗବାନ୍ ଶ୍ରୀହରିଙ୍କୁ କଦାପି ଶୁଣାଇବ ନାହିଁ । ଯଦି ସେ ବିଷୟରେ ଚର୍ଚ୍ଚା ଆରମ୍ଭ ହୁଏ, ତେବେ ବି ଏହାକୁ ଲୁଚାଇ ରଖିବ ।" ॥ ୪ ॥ ଦୋହା ।—ଶିବଙ୍କର ଏ ହିତୋପଦେଶ ହେଲେ ମଧ୍ୟ ନାରଦଙ୍କୁ ତାହା ଭଲ ଲାଗିଲା ନାହିଁ । ହେ ଭରଦ୍ୱାଜ ! ଏ କୌତୁକ କଥା ଶୁଣ । ହରି-ଇଚ୍ଛା ବଳବତୀ ॥ ୧୨୭ ॥ ଚୌପାଈ ।—ଶ୍ରୀରାମଚନ୍ଦ୍ର ଯାହା କରିବାକୁ ଚାହାନ୍ତି, ତାହା ହିଁ ହୁଏ । ତାହା ଅନ୍ୟଥା କରିପାରିବ, ଏପରି କେହି ନାହାନ୍ତି । ଶିବଙ୍କର କଥା ନାରଦଙ୍କ ମନକୁ ଭଲ ଲାଗିଲା ନାହିଁ । ତତ୍ପରେ ସେ ସେଠାରୁ ବ୍ରହ୍ମଲୋକକୁ ଚାଲିଗଲେ ॥ ୧ ॥ ଏକଦା ଗାନବିଦ୍ୟା-ପ୍ରବୀଣ ମୁନିନାଥ ନାରଦ ହାତରେ ଶ୍ରେଷ୍ଠ ବୀଣା ଧାରଣପୂର୍ବକ ହରିଗୁଣ ଗାଇ ଗାଇ କ୍ଷୀରସାଗରକୁ ଗଲେ । ସେହିଠାରେ ବେଦଗଣଙ୍କ ମସ୍ତକ ସ୍ୱରୂପ ଶ୍ରୀନିବାସ ଭଗବାନ୍ ନାରାୟଣ ରହନ୍ତି ॥ ୨ ॥ ରମାନିବାସ ଭଗବାନ୍ ଉଠି ବଡ ଆନନ୍ଦରେ ତାଙ୍କ ସହିତ ସାକ୍ଷାତ କଲେ ଏବଂ ଋଷି ନାରଦଙ୍କ ସହିତ ଆସନ ଉପରେ ବସି ପଡିଲେ । ଚରାଚର ସ୍ୱାମୀ ଭଗବାନ୍ ହସି କହିଲେ, "ହେ ସ୍ୱାମି ! ଆଜି ଆପଣ ବହୁଦିନ ପରେ ଦୟା କଲେ ।" ॥ ୩ ॥ ଶିବ ପ୍ରଥମରୁ ହିଁ ତାଙ୍କୁ ମନା କରିଥିଲେ ମଧ୍ୟ ନାରଦ କାମଦେବଙ୍କ ସାରା ପ୍ରସଙ୍ଗ ଭଗବାନ୍‌ଙ୍କୁ କହି ଶୁଣାଇଲେ । ଶ୍ରୀ ରଘୁନାଥଙ୍କ ମାୟା ବଡ ପ୍ରବଳ ।

ରୂଖ ବଦନ କରି ବଚନ ମୃଦୁ ବୋଲେ ଶ୍ରୀଭଗବାନ ।
ତୁମ୍ହରେ ସୁମିରନ ତେଁ ମିଟହିଁ ମୋହ ମାର ମଦ ମାନ ॥୧୨୮॥
ସୁନୁ ମୁନି ମୋହ ହୋଇ ମନ ତାକେଁ । ଜ୍ଞାନ ବିରାଗ ହୃଦୟ ନହିଁ ଜାକେଁ ॥
ବ୍ରହ୍ମଚରଜ ବ୍ରତ ରତ ମତିଧୀରା । ତୁମ୍ହହି କି କରଇ ମନୋଭବ ପୀରା ॥୧॥
ନାରଦ କହେଉ ସହିତ ଅଭିମାନା । କୃପା ତୁମ୍ହାରି ସକଲ ଭଗବାନା ॥
କରୁନାନିଧି ମନ ଦୀଖ ବିଚାରୀ । ଉର ଅଂକୁରେଉ ଗରବ ତରୁ ଭାରୀ ॥୨॥
ବେଗି ସୋ ମୈଁ ଡାରିହଉଁ ଉଖାରୀ । ପନ ହମାର ସେବକ ହିତକାରୀ ॥
ମୁନି କର ହିତ ମମ କୌତୁକ ହୋଈ । ଅବସି ଉପାୟ କରବି ମୈଁ ସୋଈ ॥୩॥
ତବ ନାରଦ ହରି ପଦ ସିର ନାଈ । ଚଲେ ହୃଦୟଁ ଅହମିତି ଅଧିକାଈ ॥
ଶ୍ରୀପତି ନିଜ ମାୟା ତବ ପ୍ରେରୀ । ସୁନହୁ କଠିନ କରନୀ ତେହି କେରୀ ॥୪॥

---

ନୀରସ ବଦନ କରି ମୃଦୁ ଗିର ଭାଷିଲେ ଶ୍ରୀ ଭଗବାନ ।
ତୁମ୍ଭଙ୍କୁ ସ୍ମରନ୍ତେ ନାଶ ହୋନ୍ତି କ୍ଷଣେ ମୋହ ମାର ମଦ ମାନ ॥୧୨୮॥
ଶୁଣ ମୁନି ମୋହ ମନେ ଉପୁଜେ ତାହାର । ବିବେକ ବୈରାଗ୍ୟ ନାହିଁ ହୃଦୟେ ଯାହାର ॥
ବ୍ରହ୍ମଚର୍ଯ୍ୟ ବ୍ରତରତ ମୁନି ଧୀରମତି । ତୁମ୍ଭଙ୍କୁ କି ପୀଡା ଦେଇପାରେ ରତିପତି ॥୧॥
ନାରଦ କହିଲେ ତହୁଁ ଅଭିମାନ ସହ । ଏ ସମସ୍ତ ଭଗବାନ ତୁମ୍ଭ ଅନୁଗ୍ରହ ॥
କରୁଣାନିଧି ସ୍ୱମନେ ଦେଖିଲେ ବିଚାରି । ହୃଦୟେ ଅଙ୍କୁରିଲାଣି ଗର୍ବତରୁ ଭାରି ॥୨॥
ଉପାଡି ତାହାକୁ ଫିଙ୍ଗିଦେବି ମୁଁ ବହନ । ପଣ ମୋହର ସେବକ ହିତ ସମ୍ପାଦନ ॥
ମୁନିଙ୍କ ହିତ ହୋଇବ ଲୀଳା ମୋର ପୁଣି । ଅବଶ୍ୟ ସେହି ଉପାୟ କରିବି ମୁଁ ଗୁଣି ॥୩॥
ତହୁଁ ନାରଦ ପ୍ରଣମି ହରିଙ୍କ ପୟରେ । ଗମିଲେ ଅଧିକ ଅହଂ ଘେନି ହୃଦୟରେ ॥
ଶ୍ରୀପତି ପ୍ରେରଣା କଲେ ସ୍ୱମାୟାକୁ ତେବେ । ଶୁଣ ତାହାର କଠୋର କ୍ରିୟାକାଣ୍ଡ ଏବେ ॥୪॥

---

ଜଗତରେ ଏପରି କିଏ ଅଛି—ଯାହାକୁ କି ତାଙ୍କ ମାୟା ମୋହିତ କରି ନ ପାରେ ? ॥ ୪ ॥ ଦୋହା —ଭଗବାନ୍ ଶ୍ରୀମୁଖ ଶୁଖାଇ ଅତି କୋମଳବାଣୀ କହିଲେ, "ହେ ମୁନିରାଜ ! ଆପଣଙ୍କୁ ସ୍ମରଣ କଲେ ଅନ୍ୟମାନଙ୍କର ମୋହ, କାମ, ମଦ ଓ ଅଭିମାନ ମେଣ୍ଟିଯାଏ । (ତେବେ ଆପଣଙ୍କ ପକ୍ଷେ ଏ ବିଷୟରେ କହିବାର ଆଉ କ'ଣ ଅଛି ?) ॥୧୨୮॥ ଚୌପାଈ —ହେ ମୁନି ! ଶୁଣନ୍ତୁ, ଯାହାର ମନରେ ଜ୍ଞାନ-ବୈରାଗ୍ୟ ଜାତ ହୋଇନାହିଁ, ତାହାରି ମନରେ ମୋହ ଜାଗ୍ରତ ହୋଇଥାଏ । ଆପଣ ତ ବ୍ରହ୍ମଚର୍ଯ୍ୟ ବ୍ରତରେ ତତ୍ପର ଏବଂ ବଡ ଧୀରବୁଦ୍ଧି । ଭଲା, ଆପଣଙ୍କୁ କାମଦେବ କାହୁଁ କ୍ଲେଶ ଦେଇ ପାରନ୍ତା ! ॥୧॥ ନାରଦ ଅଭିମାନ ସହିତ କହିଲେ, "ଭଗବନ୍ ! ସବୁ ଆପଣଙ୍କ କୃପା ।" କରୁଣାନିଧାନ ଭଗବାନ୍ ମନରେ ବିଚାର କରି ଦେଖିଲେ ଯେ, ନାରଦଙ୍କ ମନରେ ଏକ ବିରାଟ ଗର୍ବତରୁର ଅଙ୍କୁର ଜନ୍ମିଲାଣି ॥୨॥ ସେ ମନେ ମନେ ସ୍ଥିର କଲେ, "ମୁଁ ତାହାକୁ ଶୀଘ୍ର ଉପାଡି ଫୋପାଡି ଦେବି । କାରଣ, ସେବକମାନଙ୍କର ହିତସାଧନ

ବିରଚେଉ ମଗ ମହୁଁ ନଗର ତେହିଁ ସତ ଜୋଜନ ବିସ୍ତାର ।
ଶ୍ରୀନିବାସ ପୁର ତେଁ ଅଧିକ ରଚନା ବିବିଧ ପ୍ରକାର ॥୧୨୯॥
ବସହିଁ ନଗର ସୁଂଦର ନର ନାରୀ । ଜନୁ ବହୁ ମନସିଜ ରତି ତନୁଧାରୀ ॥
ତେହିଁ ପୁର ବସଇ ସୀଲନିଧି ରାଜା । ଅଗନିତ ହୟ ଗୟ ସେନ ସମାଜା ॥୧॥
ସତ ସୁରେସ ସମ ବିଭବ ବିଲାସା । ରୂପ ତେଜ ବଲ ନୀତି ନିବାସା ॥
ବିସ୍ୱମୋହନୀ ତାସୁ କୁମାରୀ । ଶ୍ରୀ ବିମୋହ ଜିସୁ ରୂପୁ ନିହାରୀ ॥୨॥
ସୋଇ ହରି ମାୟା ସବ ଗୁନ ଖାନୀ । ସୋଭା ତାସୁ କି ଜାଇ ବଖାନୀ ॥
କରଇ ସ୍ୱୟଂବର ସୋ ନୃପବାଲା । ଆଏ ତହଁ ଅଗନିତ ମହିପାଲା ॥୩॥

---

ରଚିଲ ସେ ମାର୍ଗ ମଧ୍ୟରେ ନଗର ଶତ ଯୋଜନ ବିସ୍ତାର ।
ଶ୍ରୀନିବାସ ପୁର ଅପେକ୍ଷା ରୁଚିର ରଚନା ବହୁ ପ୍ରକାର ॥୧୨୯॥
ରହନ୍ତି ନଗର ମଧ୍ୟେ ସୌମ୍ୟ ନରନାରୀ । ଅବା ବହୁ ମନସିଜ ରତି ତନୁଧାରୀ ॥
ସେ ପୁରେ ବାସ କରଇ ନୃପ ଶୀଳନିଧି । ଯେଉଁ ଅଗଣିତ ସୈନ୍ୟ ଗଜବାଜି ସିଦ୍ଧି ॥୧॥
ଶତ ସୁରେଶ ସମାନ ବୈଭବ ବିଳାସ । ନୃପ ରୂପ ତେଜବଲ ନୀତିର ନିବାସ ॥
ବିଶ୍ୱମୋହିନୀ ନାମରେ କନ୍ୟା ଏକ ତାର । ଶିରୀ ମୋହିତ ହୁଅଇ ରୂପ ଦେଖି ଯାର ॥୨॥
ସେ ହରି ମାୟା ସମସ୍ତ ଗୁଣ ନିକେତନ । ଶୋଭା କି ତାହାର କରି ହୁଅଇ ବର୍ଣ୍ଣନ ॥
ରଚଇ ସେ ନୃପ ବାଳା ସ୍ୱୟମ୍ବର ଏକ । ତେଣୁ ତହିଁ ଉପସ୍ଥିତ ମହୀପ ଅନେକ ॥୩॥

---

କରିବା ମୋର ପଣ । ଯେଉଁଥିରେ ମୁନିଙ୍କର କଲ୍ୟାଣ ଓ ମୋର କୌତୁକ ହେବ, ମୁଁ ଅବଶ୍ୟ ସେହି ଉପାୟ କରିବି ।" ॥ ୩ ॥ ତତ୍ପରେ ନାରଦଜୀ ଭଗବାନଙ୍କ ପାଦତଳେ ପ୍ରଣାମ କରି ଚାଲିଗଲେ । ତାଙ୍କ ହୃଦୟରେ ଅଭିମାନ ଆହୁରି ମଧ୍ୟ ବଢିଗଲା । ଭଗବାନ୍ ଶ୍ରୀପତି ସେତିକିବେଳେ ତାଙ୍କ ମାୟାକୁ ପ୍ରେରଣ କଲେ । ଏବେ ତାହାର କଠିନ କରାମତି ଶୁଣ ॥ ୪ ॥ ଦୋହା ।—ମାୟା ପଥରେ ଶହେ ଯୋଜନର ଗୋଟିଏ ନଗର ନିର୍ମାଣ କଲା । ସେହି ନଗରର ବିବିଧ ପ୍ରକାରର ରଚନା ଭଗବାନ୍ ବିଷ୍ଣୁଙ୍କର ବୈକୁଣ୍ଠ ନଗରର ରଚନାଠାରୁ ଅଧିକ ସୁନ୍ଦର ଥିଲା ॥ ୧୨୯ ॥ ଚୌପାଈ —ସେହି ନଗରରେ ବହୁ ସୁନ୍ଦର ନର-ନାରୀ ବାସ କରୁଥିଲେ । ସତେ ଯେମିତି ଅନେକ କାମଦେବ ଓ ତାଙ୍କ ପତ୍ନୀ ରତି ମନୁଷ୍ୟ ଶରୀର ଧାରଣ କରିଅଛନ୍ତି । ସେହି ନଗରରେ ଶୀଳନିଧି ନାମକ ଜଣେ ରାଜା ବାସ କରୁଥିଲେ । ତାଙ୍କର ସେଠାରେ ଅସଂଖ୍ୟ ଘୋଡା, ହାତୀ ଓ ସେନାସମାଜ ( ଦଳ ) ଥିଲେ ॥ ୧ ॥ ତାଙ୍କ ବୈଭବ ଓ ବିଳାସ ଇନ୍ଦ୍ରଙ୍କ ସମାନ । ସେ ରାଜା ରୂପ, ତେଜ, ବଳ ଓ ନୀତିର ଭଣ୍ଡାର ଥିଲେ । ତାଙ୍କର ବିଶ୍ୱମୋହିନୀ ନାମକ ଗୋଟିଏ କନ୍ୟା ଥିଲା । ସେ କନ୍ୟାଟି ଏତେ ରୂପବତୀ ଯେ, ତାହାକୁ ଦେଖି ଲକ୍ଷ୍ମୀ ମଧ୍ୟ ବିମୁଗ୍ଧ ହୋଇ ପଡିବେ ॥ ୨ ॥ ସେ ସକଳ ଗୁଣର ଖଣି ଭଗବାନଙ୍କ ମାୟା ମାତ୍ର ଥିଲା । ତାହାର ଶୋଭାର ବର୍ଣ୍ଣନା

ମୁନି କୌତୁକୀ ନଗର ତେହିଁ ଗୟଉ । ପୁରବାସିନ୍ହ ସବ ପୂଛତ ଭୟଉ ॥
ସୁନି ସବ ଚରିତ ଭୂପ ଗୃହଁ ଆଏ । କରି ପୂଜା ନୃପ ମୁନି ବୈଠାଏ ॥୪॥

ଆନି ଦେଖାଈ ନାରଦହି ଭୂପତି ରାଜକୁମାରି ।
କହହୁ ନାଥ ଗୁନ ଦୋଷ ସବ ଏହି କେ ହୃଦୟଁ ବିଚାରି ॥୧୩୦॥

ଦେଖି ରୂପ ମୁନି ବିରତି ବିସାରୀ । ବଡ଼ୀ ବାର ଲଗି ରହେ ନିହାରୀ ॥
ଲଚ୍ଛନ ତାସୁ ବିଲୋକି ଭୁଲାନେ । ହୃଦୟଁ ହରଷ ନହିଁ ପ୍ରଗଟ ବଖାନେ ॥୧॥
ଜୋ ଏହି ବରଇ ଅମର ସୋଇ ହୋଈ । ସମରଭୂମି ତେହି ଜୀତ ନ କୋଈ ॥
ସେବହିଁ ସକଲ ଚରାଚର ତାହୀ । ବରଇ ସୀଲନିଧି କନ୍ୟା ଜାହୀ ॥୨॥
ଲଚ୍ଛନ ସବ ବିଚାରି ଉର ରାଖେ । କଛୁକ ବନାଇ ଭୂପ ସନ ଭାଷେ ॥
ସୁତା ସୁଲଚ୍ଛନ କହି ନୃପ ପାହୀଁ । ନାରଦ ଚଲେ ସୋଚ ମନ ମାହୀଁ ॥୩॥

---

ମୁନି କଉତୁକୀ ଯାଇ ସେହି ନଗରକୁ । ହେତୁ ପଚାରିଲେ ପୁର ନିବାସୀ ଲୋକଙ୍କୁ ॥
ବୃତ୍ତାନ୍ତ ଶୁଣି ଭୂପଙ୍କ ଭବନେ ଆସିଲେ । ପୂଜା କରି ମୁନିଙ୍କୁ ନୃପ ବସାଇଲେ ॥୪॥

ଦେଖାଇଲେ ଆଣି ନାରଦଙ୍କୁ ପୁଣି ଭୂପତି ରାଜକୁମାରୀ ।
କହନ୍ତୁ ଏହାର ଗୁଣ ଦୋଷ ସବୁ ନାଥ ହୃଦୟେ ବିଚାରି ॥୧୩୦॥

ବୈରାଗ୍ୟ ପାଶୋରି ଗଲେ ମୁନି ରୂପ ଦେଖି । ବହୁତ ବେଳ ପର୍ଯ୍ୟନ୍ତ ରହିଲେ ନିରେଖି ॥
ଲକ୍ଷଣ ତାହାର ଅବଲୋକନ ଭୁଲିଲେ । ହୃଦୟେ ହର୍ଷ, ପ୍ରକାଶ୍ୟେ କିଛି ନ କହିଲେ ॥୧॥
ଏହାକୁ ଯେ ବରିବ ସେ ହୋଇବ ଅମର । ନ ଜିଣିବେ ତାକୁ କେହି କରିଣ ସମର ॥
ସେବୁଥିବେ ଚରାଚର ସମସ୍ତେ ତାହାକୁ । ବରିବ ଏ ଶୀଲନିଧି ଦୁହିତା ଯାହାକୁ ॥୨॥
ଲକ୍ଷଣ ସବୁ ବିଚାରି ହୃଦୟେ ରଖିଲେ । ମନୁ କିଛି ଗଢି ଗାଢି ରାଜାଙ୍କୁ କହିଲେ ॥
ସୁତା ସୁଲକ୍ଷଣୀ ବୋଲି ନୃପ ଆଗେ କହି । ନାରଦ ଚଳିଲେ ଅତି ଚିନ୍ତା ମନେ ବହି ॥୩॥

---

କିପରି କରାଯାଇ ପାରିବ ? ସେ ରାଜକୁମାରୀ ସ୍ୱୟଂବର କରିବାକୁ ଚାହୁଁଥିଲା । ଏଥି ନିମନ୍ତେ ସେଠାକୁ ଅଗଣିତ ରାଜା ଆସିଥିଲେ ॥ ୩ ॥ କୌତୁକୀ ମୁନି ନାରଦ ସେହି ନଗରକୁ ଗଲେ ଏବଂ ନଗରବାସୀମାନଙ୍କୁ ସବୁ ଘଟନା ପଚାରିଲେ । ସବୁ ସମାଚାର ଶୁଣି ସେ ରାଜମହଲକୁ ଆସିଲେ । ରାଜା ମୁନିଙ୍କୁ ପୂଜା କରି ଆସନ ଉପରେ ବସାଇଲେ ॥ ୪ ॥ ଦୋହା —ରାଜା ରାଜକୁମାରୀଙ୍କୁ ଆଣି ନାରଦଙ୍କୁ ଦେଖାଇଲେ ଏବଂ ପଚାରିଲେ, "ହେ ନାଥ ! ଆପଣ ଆପଣଙ୍କ ହୃଦୟରେ ବିଚାର କରି ଏହି କନ୍ୟାର ଗୁଣଦୋଷ ସବୁ କୁହନ୍ତୁ ।" ॥ ୧୩୦ ॥ ଚୌପାଇ —ତାହାର ରୂପ ଦେଖି ମୁନି ବୈରାଗ୍ୟ ଭୁଲିଗଲେ । ବହୁତ ସମୟ ତାହା ଆଡକୁ ନିରୀକ୍ଷଣ କରି ରହିଥା'ନ୍ତି । ତାହାର ଲକ୍ଷଣ ଦେଖି ମୁନି ଆପଣାକୁ ମଧ୍ୟ ଭୁଲିଗଲେ ଏବଂ ହୃଦୟରେ ଆନନ୍ଦ ଲାଭ କଲେ । କିନ୍ତୁ ପ୍ରକାଶ୍ୟରେ ସେ କିଛି କହୁ ନ ଥା'ନ୍ତି ॥ ୧ ॥ ଲକ୍ଷଣ ସବୁ ଦେଖି ସେ ମନେ ମନେ ଭାବୁଥା'ନ୍ତି—ଯେ ଏହାକୁ ବିବାହ କରିବ, ସେ ଅମର ହୋଇଯିବ ।

କରୌଁ ଜାଇ ସୋଇ ଜତନ ବିଚାରୀ । ଜେହି ପ୍ରକାର ମୋହି ବରୈ କୁମାରୀ ॥
ଜପତପ କଛୁ ନ ହୋଇ ତେହି କାଲା । ହେ ବିଧି ମିଲଇ କୱନ ବିଧି ବାଲା ॥୪॥

ଏହି ଅବସର ଚାହିଅ ପରମ ସୋଭା ରୂପ ବିସାଲ ।
ଜୋ ବିଲୋକି ରୀଝୈ କୁଅଁରି ତବ ମେଲୈ ଜୟମାଲ ॥୧୩୧॥

ହରି ସନ ମାଗୌଁ ସୁନ୍ଦରତାଈ । ହୋଇହି ଜାତ ଗହରୁ ଅତି ଭାଈ ॥
ମୋରେଁ ହିତ ହରି ସମ ନହିଁ କୋଊ । ଏହି ଅବସର ସହାୟ ସୋଇ ହୋଊ ॥୧॥
ବହୁବିଧି ବିନୟ କୀହ୍ନି ତେହି କାଲା । ପ୍ରଗଟେଉ ପ୍ରଭୁ କୌତୁକୀ କୃପାଲା ॥
ପ୍ରଭୁ ବିଲୋକି ମୁନି ନୟନ ଜୁଡ଼ାନେ । ହୋଇହି କାଜୁ ହିଏଁ ହରଷାନେ ॥୨॥

---

କରିବି ଯାଇ ତେମନ୍ତ ଯତନ ବିଚାରି । ଯେ ଭାବେ ବରିବ ମୋତେ ନରେଶ କୁମାରୀ ॥
ଜପତପ ଏ ସମୟେ କିଛି ନ ହୋଇବ । ହେ ବିଧି, କେଉଁ ଉପାୟେ ସେ ବାଳା ମିଳିବ ॥୪॥

ଏ କାଳେ ପରମ ଶୋଭା ପ୍ରୟୋଜନ ରୂପ ସୌନ୍ଦର୍ଯ୍ୟ ବିଶାଳ ।
ଯାହାକୁ ଦେଖନ୍ତେ କନ୍ୟା ପ୍ରମୋଦତେ ଲମ୍ବାଇବ ଜୟମାଳ ॥୧୩୧॥

ହରିଙ୍କଠାରୁ ମାଗନ୍ତି ସୁନ୍ଦରତା ଯାଇ । କିନ୍ତୁ ଯିବାକୁ ବିଳମ୍ବ ହେବ ଅତି ଭାଇ ॥
ମୋର ହିତକାରୀ ନାହିଁ ହରିସମ କେହି । ହୁଅନ୍ତୁ ଏହି ସମୟେ ସହାୟକ ସେହି ॥୧॥
ନାନାପ୍ରକାରେ ସେ କାଳେ କରନ୍ତେ ବିନୟ । ପ୍ରକଟ ହେଲେ କୌତୁକୀ ପ୍ରଭୁ ଦୟାମୟ ॥
ପ୍ରଭୁଙ୍କୁ ବିଲୋକି ତୃପ୍ତ ହୋଇଲା ଲୋଚନ । କାର୍ଯ୍ୟ ସିଦ୍ଧ ହେବ ଭାବି ମୁନି ମୋଦମନ ॥୨॥

---

ରଣଭୂମିରେ ତାଙ୍କୁ କେହି ଜିଣି ପାରିବ ନାହିଁ । ଏ ଶୀଳନିଧି କନ୍ୟା ଯାହାକୁ ବରଣ କରିବ, ଚରାଚର ଜୀବ ସମସ୍ତେ ତାହାର ସେବା କରିବେ ॥ ୨ ॥ ସମସ୍ତ ଲକ୍ଷଣ ବିଚାର କରି ମୁନି ଆପଣା ହୃଦୟରେ ସେ ସବୁ ବିଷୟ ରଖି ନେଲେ ଏବଂ ଆପଣା ଆଡ଼ୁ କିଛି ବନେଇଚୁନେଇ ରାଜାଙ୍କୁ କହିଦେଲେ । କନ୍ୟାର ସୁଲକ୍ଷଣ ବିଷୟରେ ରାଜାଙ୍କୁ କହି ନାରଦ ଚାଲିଗଲେ । କିନ୍ତୁ ତାଙ୍କ ମନରେ ଚିନ୍ତା ଥାଏ— ॥୩॥ "ମୁଁ ଯାଇ ଭାବିଚିନ୍ତି କିଛି ଗୋଟାଏ ଉପାୟ ସ୍ଥିର କରିବି, ଯଦ୍ଦ୍ୱାରା ସେ କନ୍ୟା ମୋତେ ହିଁ ବରଣ କରିବ । ଏତେବେଳେ ଆଉ ଜପତପରେ କାମ ଚାଲିପାରିବ ନାହିଁ । ହେ ବିଧାତା ' ମୋତେ ଏ କନ୍ୟା କିପରି ମିଳିବ ? ॥ ୪ ॥ ଦୋହା '—ଏତିକିବେଳେ ତ ମୋର ପରମ ଶୋଭା ଏବଂ ବିଶାଳ ରୂପ ଦରକାର । ତାହାକୁ ଦେଖି ରାଜକୁମାରୀ ମୋ ଉପରେ ପ୍ରସନ୍ନ ହୋଇ ମୋ ଗଳାରେ ଜୟମାଳା ଲମ୍ବାଇ ଦେବ ॥ ୧୩୧ ॥ ଚୌପାଇ .— ଗୋଟିଏ କାମ କରିବି, ଭଗବାନ୍‌ଙ୍କ ସୌନ୍ଦର୍ଯ୍ୟ ମାଗିବି । କିନ୍ତୁ ଆରେ ଭାଇ ! ତାଙ୍କ ପାଖକୁ ଏଇଲେ ଗଲେ ବହୁତ ବିଳମ୍ବ ହୋଇଯିବ । କିନ୍ତୁ ଶ୍ରୀହରିଙ୍କ ସମାନ ମୋର ଅନ୍ୟ କେହି ହିତାକାଙ୍‌କ୍ଷୀ ମଧ୍ୟ ନାହାନ୍ତି । ତେଣୁ ଏତେବେଳେ ସେଇ ହିଁ ମୋର ସହାୟ ହୁଅନ୍ତୁ ।'' ॥ ୧ ॥ ସେହି ସମୟରେ ନାରଦ ଭଗବାନ୍‌ଙ୍କୁ ବହୁତ ପ୍ରକାର ପ୍ରାର୍ଥନା କଲେ । ଲୀଳାମୟ କୃପାଳୁ ପ୍ରଭୁ ସେହିଠାରେ ଆବିର୍ଭୂତ ହେଲେ ।

ଅତି ଆରତି କହି କଥା ସୁନାଈ । କରହୁ କୃପା କରି ହୋହୁ ସହାଈ ॥
ଆପନ ରୂପ ଦେହୁ ପ୍ରଭୁ ମୋହୀ । ଆନ ଭାଁତି ନହିଁ ପାର୍ୱୌଁ ଓହୀ ॥୩॥
ଜେହି ବିଧି ନାଥ ହୋଇ ହିତ ମୋରା । କରହୁ ସୋ ବେଗି ଦାସ ମୈଁ ତୋରା ॥
ନିଜ ମାୟା ବଲ ଦେଖି ବିସାଲା । ହିୟଁ ହଁସି ବୋଲେ ଦୀନଦୟାଲା ॥୪॥

ଜେହି ବିଧି ହୋଇହି ପରମ ହିତ ନାରଦ ସୁନହୁ ତୁହ୍ମାର ।
ସୋଇ ହମ କରବ ନ ଆନ କଛୁ ବଚନ ନ ମୃଷା ହମାର ॥୧୩୨॥

କୁପଥ ମାଗ ରୁଜ ବ୍ୟାକୁଲ ରୋଗୀ । ବୈଦ ନ ଦେଇ ସୁନହୁ ମୁନି ଜୋଗୀ ॥
ଏହି ବିଧି ହିତ ତୁହ୍ମାର ମୈଁ ଠୟଊ । କହି ଅସ ଅଂତରହିତ ପ୍ରଭୁ ଭୟଊ ॥୧॥
ମାୟା ବିବସ ଭଏ ମୁନି ମୂଢ଼ା । ସମୁଝୀ ନହିଁ ହରି ଗିରା ନିଗୂଢ଼ା ॥
ଗୱନେ ତୁରତ ତହାଁ ରିଷିରାଈ । ଜହାଁ ସ୍ୱୟଂବର ଭୂମି ବନାଈ ॥୨॥

---

ଅତି ଆର୍ତ୍ତ ହୋଇ କହି ଶୁଣାଇଲେ କଥା । ସୁଦୟା ବିତରଣ କର ମୋର ସହାୟତା ॥
ଆପଣଙ୍କ ରୂପ ମୋତେ ଦିଅନ୍ତୁ ଗୋସାଇଁ । ଅନ୍ୟ ଉପାୟରେ ତାକୁ ନ ପାରିବି ପାଇ ॥୩॥
ଯେଉଁ ଭାବେ ନାଥ, ହିତ ହୋଇବ ମୋହର । କରନ୍ତୁ ତାହା ତୁରିତ, ଦାସ ମୁଁ ତୁମ୍ଭର ॥
ନିଜ ମାୟାବଳ ଅବଲୋକିଣ ବିଶାଳ । ହୃଦୟେ ହସି ଭାଷିଲେ ଦୀନ ଦୟା-ପାଳ ॥୪॥

ଯେମନ୍ତେ ନାରଦ ହୋଇବ ତୁମ୍ଭର ପରମ ହିତ ସାଧନ ।
ତାହା ମୁଁ କରିବି, ଅନ୍ୟ ନ କରିବି, ମିଥ୍ୟା ନୋହେ ମୋ ବଚନ ॥୧୩୨॥

କୁପଥ୍ୟ ମାଗଇ ରୋଗେ ବ୍ୟାକୁଳ ଯେ ରୋଗୀ । ବଇଦ ଦିଅଇ ନାହିଁ ଶୁଣ ମୁନି ଯୋଗୀ ॥
ଏହି ଭାବେ ତୁମ୍ଭର ମୁଁ ଠାଣି ଅଛି ହିତ । ଏହା କହି ପ୍ରଭୁ ତହୁଁ ହେଲେ ଅନ୍ତର୍ହିତ ॥୧॥
ମାୟାବଶ ହୋଇଥିଲେ ମୁନି ଅତି ମୂଢ । ବୁଝି ନ ପାରିଲେ ହରି ବଚନ ନିଗୂଢ ॥
ତରତର ହୋଇ ଗଲେ ଋଷିରାଜ ତହିଁ । ସ୍ୱୟମ୍ବର ଭୂମି ଗଢା ହୋଇଥିଲା ଯହିଁ ॥୨॥

---

ସ୍ୱାମୀଙ୍କୁ ଦେଖି ନାରଦଙ୍କ ନେତ୍ର ଶୀତଳ ହୋଇଗଲା । ଏବେ କାମ ହୋଇଯିବ ବୋଲି ସେ ମନେ ମନେ ବଡ଼ ଆନନ୍ଦିତ ହେଲେ ॥ ୨ ॥ ଶୋକାର୍ତ୍ତ ହୋଇ ନାରଦ ବନସ୍ତର ସମସ୍ତ ସବୁ କଥା ହରିଙ୍କୁ କହି ଶୁଣାଇଲେ । ସେ ପ୍ରାର୍ଥନା କଲେ, "ହେ ନାଥ ! କୃପା କରି ମୋର ସହାୟ ହୁଅନ୍ତୁ । ହେ ପ୍ରଭୋ ! ଆପଣଙ୍କ ରୂପ ମୋତେ ଦିଅନ୍ତୁ । ନୋହିଲେ ଅନ୍ୟ କୌଣସି ଉପାୟରେ ମୁଁ ସେ ରାଜକନ୍ୟାକୁ ପାଇ ପାରିବି ନାହିଁ ॥ ୩ ॥ ହେ ନାଥ ! ଯେଉଁ ପ୍ରକାରେ ମୋର ହିତ ହେବ, ତାହାହିଁ ଆପଣ ଶୀଘ୍ର କରନ୍ତୁ । ମୁଁ ଆପଣଙ୍କ ଦାସ । ନିଜ ମାୟାର ବଳ ଦେଖି ଦୀନଦୟାଳୁ ଭଗବାନ୍ ମନେ ମନେ ହସି କହିଲେ,— ॥୪॥ ଦୋହା —"ହେ ନାରଦ ! ଯେଉଁପରି ଆପଣଙ୍କର ପରମ କଲ୍ୟାଣ ହେବ, ଆମେ ତାହାହିଁ କରିବୁ । ଅନ୍ୟ କିଛି କରିବୁ ନାହିଁ । ଆମ କଥା ମିଛ ହେବ ନାହିଁ ॥ ୧୩୨ ॥ ଚୌପାଇ —ହେ ଯୋଗି ! ଶୁଣନ୍ତୁ, ରୋଗରେ ବ୍ୟାକୁଳ ରୋଗୀ ଯଦି କୁପଥ୍ୟ ମାଗେ, ତେବେ ତାହାର ହିତ ଦୃଷ୍ଟିରୁ ବୈଦ୍ୟ

ନିଜ ନିଜ ଆସନ ବୈଠେ ରାଜା । ବହୁ ବନାଓ୍ବି କରି ସହିତ ସମାଜା ॥
ମୁନିମନ ହରଷ ରୂପ ଅତି ମୋରେଁ । ମୋହି ତଜି ଆନହି ବରହି ନ ଭୋରେଁ ॥୩॥
ମୁନି ହିତ କାରନ କୃପାନିଧାନା । ଦୀହ୍ନ କୁରୂପ ନ ଜାଇ ବଖାନା ॥
ସୋ ଚରିତ୍ର ଲଖି କାହୁଁ ନ ପାଓ୍ବା । ନାରଦ ଜାନି ସବହିଁ ସିର ନାଓ୍ବା ॥୪॥
ରହେ ତହାଁ ଦୁଇ ରୁଦ୍ର ଗନ ତେ ଜାନହିଁ ସବ ଭେଉ ।
ବିପ୍ରବେଷ ଦେଖତ ଫିରହିଁ ପରମ କୌତୁକୀ ତେଉ ॥୧୩୩॥
ଜେହିଁ ସମାଜ ବୈଠେ ମୁନି ଜାଈ । ହୃଦୟଁ ରୂପ ଅହମିତି ଅଧିକାଈ ॥
ତହଁ ବୈଠେ ମହେସ ଗନ ଦୋଊ । ବିପ୍ରବେଷ ଗତି ଲଖଇ ନ କୋଊ ॥୧॥

---

ବସିଥିଲେ ନିଜ ନିଜ ଆସନେ ନରେଶ । ସମାଜ ସହିତ ସାଜ ବହୁବିଧ ବେଷ ॥
ମୁନି ମନ ହରଷିତ ନିଜ ରୂପବାନେ । ମୋତେ ତେଜି ଭୁଲି କନ୍ୟା ନ ବରିବ ଆନେ॥୩॥
ମୁନିଙ୍କ ହିତ କାରଣେ କରୁଣା ନିଧାନ । ଦେଲେ ଯେ କୁରୂପ କରି, ନ ହୁଏ ବର୍ଣ୍ଣନ ॥
ସେ ଚରିତ୍ର କେହି ମଧ୍ୟ ବୁଝି ନ ପାରିଲେ । ନାରଦ ଜାଣି ସମସ୍ତେ ପ୍ରଣାମ କରିଲେ ॥୪॥
ପାଶେ ଥିଲେ ଦୁଇ ରୁଦ୍ରଗଣ ତହିଁ ସେ ସବୁ ଭେଦ ଜାଣନ୍ତି ।
ବିପ୍ରବେଶେ ବୁଲି ବୁଲି ଦେଖୁଥିଲେ ସ୍ୱଭାବେ କୌତୁକୀ ଅତି ॥୧୩୩॥
ବସିଲେ ନାରଦ ଯାଇ ଯେଉଁ ସମାଜରେ । ଅଭିମାନ କରି ନିଜ ରୂପ ସୌନ୍ଦର୍ଯ୍ୟରେ ॥
ବେନି ଶମ୍ଭୁଗଣ ତାଙ୍କ ନିକଟେ ବସିଲେ । ବିପ୍ରବେଶ ଗତି କେହି ବୁଝି ନ ପାରିଲେ ॥୧॥

---

ତାହାଙ୍କୁ କୁପଥ୍ୟ ହିଏ ନାହିଁ । ମୁଁ ସେହିପରି ତୁମ ହିତ କରିବା ନିମନ୍ତେ ବନ୍ଧପରିକର ।" ଏହିପରି କହି ଭଗବାନ୍ ଅନ୍ତର୍ହିତ ହୋଇଗଲେ ॥ ୧ ॥ ଭଗବାନଙ୍କ ମାୟାରେ ବଶୀଭୂତ ହୋଇ ମୁନି ଏତେ ଦୂର ମୂଢ ହୋଇ ପଡ଼ିଥିଲେ ଯେ, ଭଗବାନ୍‌ଙ୍କ ନିଗୂଢ (ରହସ୍ୟମୟୀ) ବାଣୀ ବୁଝି ପାଇଲେ ନାହିଁ । ଋଷିରାଜ ନାରଦ ଶୀଘ୍ର ସ୍ୱୟଂବର ନିମନ୍ତେ ନିର୍ମିତ ହୋଇଥିବା ସ୍ଥାନକୁ ଗଲେ ॥ ୨ ॥ ରାଜାମାନେ ଖୁବ ଆଡମ୍ବର ସହକାରେ ସଜ୍ଜିତ ହୋଇ ସମାଜ ସଙ୍ଗେ ଆପଣା ଆପଣା ଆସନରେ ବସିଥିଲେ । "ମୋର ରୂପ ବଡ ସୁନ୍ଦର ଏବଂ ମୋତେ ଛାଡ଼ି କନ୍ୟା ଅନ୍ୟ କାହାରିକୁ ଭୁଲ୍‌ରେ ସୁଦ୍ଧା ବରଣ କରିବ ନାହିଁ ବୋଲି ନାରଦ ମୁନି ମନେ ମନେ ଆନନ୍ଦିତ ହୋଇଥା'ନ୍ତି । କୃପାନିଧାନ ଭଗବାନ୍ ମୁନିଙ୍କ କଲ୍ୟାଣ ନିମନ୍ତେ ତାଙ୍କୁ ଏପରି କୁରୂପ କରି ଦେଲେ, ଯାହାର ବର୍ଣ୍ଣନା ଅସମ୍ଭବ । କିନ୍ତୁ ଏ ଚରିତ କେହି ହେଲେ ସୁଦ୍ଧା ଜାଣି ପାରିଲେ ନାହିଁ । ସମସ୍ତେ ତାଙ୍କୁ ନାରଦ ରୂପେ ଚିହ୍ନି ପ୍ରଣାମ କଲେ ॥ ୪ ॥ ଦୋହା :— ଶିବଙ୍କର ଦୁଇ ଜଣ ଗଣ ସେଠାରେ ଉପସ୍ଥିତ ଥିଲେ । ସେ ଦୁହେଁ ସବୁ ରହସ୍ୟ ଜାଣିଥିଲେ ଏବଂ ବ୍ରାହ୍ମଣବେଶ ଧରି ସମସ୍ତ ଲୀଳା ବୁଲି ବୁଲି ଦେଖୁଥା'ନ୍ତି । ବଡ ମଉଜିଆ ସେ ଦୁହେଁ ॥ ୧୩୩ ॥ ଚୌପାଈ :—ନାରଦ ଆପଣା ହୃଦୟରେ ରୂପର ବଡ ଗର୍ବ ଧରି ଯେଉଁ ସମାଜ (ପଂକ୍ତି)ରେ ବସିଥିଲେ, ଶିବଙ୍କର ଗଣ ଦୁଇଜଣ ସେହିଠାରେ

କରହିଁ କୂଟି ନାରଦହି ସୁନାଈ । ନୀକି ଦୀହ୍ନି ହରି ସୁନ୍ଦରତାଈ ।।
ରୀଝିହି ରାଜକୁଅଁରି ଛବି ଦେଖୀ । ଇନ୍ହହି ବରିହି ହରି ଜାନି ବିସେଷୀ ।।୨।।
ମୁନିହି ମୋହ ମନ ହାଥ ପରାଏଁ । ହଁସହିଁ ସଂଭୁ ଗନ ଅତି ସଚୁ ପାଏଁ ।।
ଜଦପି ସୁନହିଁ ମୁନି ଅଟପଟି ବାନୀ । ସମୁଝି ନ ପରଇ ବୁଦ୍ଧି ଭ୍ରମ ସାନୀ ।।୩।।
କାହୁଁ ନ ଲଖା ସୋ ଚରିତ ବିସେଷା । ସୋ ସରୂପ ନୃପକନ୍ୟାଁ ଦେଖା ।।
ମର୍କଟ ବଦନ ଭୟଂକର ଦେହୀ । ଦେଖତ ହୃଦୟଁ କ୍ରୋଧ ଭା ତେହୀ ।।୪।।

ସଖୀଁ ସଂଗ ଲୈ କୁଅଁରି ତବ ଚଲି ଜନୁ ରାଜମରାଲ ।
ଦେଖତ ଫିରଇ ମହୀପ ସବ କର ସରୋଜ ଜୟମାଲ ।।୧୩୪।।

ଜେହିଁ ଦିସି ବୈଠେ ନାରଦ ଫୂଲୀ । ସୋ ଦିସି ତେହିଁ ନ ବିଲୋକୀ ଭୂଲୀ ।।
ପୁନି ପୁନି ମୁନି ଉକସହିଁ ଅକୁଲାହୀଁ । ଦେଖି ଦସା ହର ଗନ ମୁସୁକାହୀଁ ।।୧।।

---

ଋଷିଙ୍କୁ ଶୁଣାଇ କୂଟ ବିଦ୍ରୂପ କରନ୍ତି । ଭଲ ହରି ସୁନ୍ଦରତା ଏହାଙ୍କୁ ଦେଇଛନ୍ତି ।।
ଛବି ଦେଖି ରାଜକନ୍ୟା ମୋହିତ ହୋଇବ । ଏହାଙ୍କୁ ବିଶେଷେ ହରି ବୁଝିଣ ବରିବ ।।୨।।
ମୁନି ବିମୋହିତ ପୁଣି ମନ ପରହାତେ । ହସନ୍ତି ଶିବଙ୍କ ଗଣ ଅତି ଆସ୍ତେ ଆସ୍ତେ ।।
ପରିହାସ ବାଣୀ ମୁନି ଯଦ୍ୟପି ଶୁଣନ୍ତି । ଭ୍ରମିତ ବୁଦ୍ଧି କାରଣେ ବୁଝି ନ ପାରନ୍ତି ।।୩।।
କେହି ନ ଜାଣିଲେ ସେହି ଚରିତ ବିଶେଷ । ନୃପକନ୍ୟା ମୁନିଙ୍କର ଦେଖିଲେ ସେ ବେଶ ।।
ମର୍କଟ ବଦନ ତନୁ ଅତି ଭୟାକାର । ଦେଖନ୍ତେ ହୃଦୟେ କ୍ରୋଧ ଉପୁଜିଲା ତାର ।।୪।।

ସଖୀ ସଙ୍ଗେ ନେଇ କୁମାରୀ ଚଳଇ ଯେସନେ ରାଜ-ମରାଳ ।।
ବୁଲି ବୁଲି ଦେଖେ ନୃପ ମଣ୍ଡଳୀଙ୍କୁ କଞ୍ଜ-କରେ ଜୟମାଳ ।।୧୩୪।।

ଯେଉଁ ଦିଗରେ ନାରଦ ବସିଥିଲେ ଫୁଲି । ସେ ଦିଗକୁ ନୃପକନ୍ୟା ନ ଚାହିଁଲା ଭୁଲି ।।
ବାରମ୍ବାର ମୁନି ଉଠି ଆକୁଳ ହୁଅନ୍ତି । ଦଶା ଦେଖି ଶମ୍ଭୁଗଣ ମୁରୁକି ହସନ୍ତି ।।୧।।

---

ବସିଗଲେ । ବ୍ରାହ୍ମଣ ବେଶ ଧରିଥିବାରୁ ତାଙ୍କର ଏହି ଗତିବିଧି କେହି ଜାଣି ପାରିଲେ ନାହିଁ ।। ୧ ।। ସେମାନେ ନାରଦଙ୍କୁ ଶୁଣାଇ ଶୁଣାଇ ବିଦ୍ରୂପ କରୁଥା'ନ୍ତି—"ହରି ଏହାଙ୍କୁ ଭଲ ସୌନ୍ଦର୍ଯ୍ୟ ଦେଇଛନ୍ତି । ଏହାଙ୍କର ଶୋଭା ଦେଖି ରାଜକୁମାରୀ ପ୍ରସନ୍ନ ହୋଇଯିବ ଏବଂ 'ହରି' (ବାନର) ଜାଣି ଏହାଙ୍କୁ ବିଶେଷ ରୂପେ ବରଣ କରିବ ।। ୨ ।। ମନ ଅନ୍ୟର ହାତରେ (ମାୟା ବଶରେ) ଥିବାରୁ ନାରଦ ମୁନି ମୋହଗ୍ରସ୍ତ ହୋଇ ପଡ଼ିଥିଲେ । ଶିବଙ୍କର ଗଣମାନେ ଅତି ଆନନ୍ଦରେ ହସୁଥିଲେ । ମୁନି ସେମାନଙ୍କ ଥଟ୍ଟାଳିଆ କଥା ଶୁଣୁଥିଲେ । ମାତ୍ର ବୁଦ୍ଧି ଭ୍ରମଗ୍ରସ୍ତ ହୋଇଥିବାରୁ ସେମାନଙ୍କ କଥା ବୁଝିପାରୁ ନ ଥା'ନ୍ତି । (ସେମାନଙ୍କ କଥାକୁ ସେ ତାଙ୍କର ପ୍ରଶଂସା ବୋଲି ମନେ କରୁଥିଲେ ।) ।। ୩ ।। ଏହି ବିଶେଷ ଚରିତ ଅନ୍ୟ କେହି ଦେଖି ପାରିଲେ ନାହିଁ । କେବଳ ରାଜକନ୍ୟା ନାରଦଙ୍କର ସେହି ରୂପ ଦେଖିଲା । ବାନରମୁଖ ସଦୃଶ ନାରଦଙ୍କ ମୁହଁ ଓ ଭୟଙ୍କର ଦେହ ଦେଖିବା ମାତ୍ରେ କନ୍ୟାର ହୃଦୟରେ କ୍ରୋଧ ଜାତ ହେଲା ।।୪।।

ଧରି ନୃପତନୁ ତହଁ ଗୟଉ କୃପାଲା । କୁଅଁରି ହରଷି ମେଲେଉ ଜୟମାଲା ॥
ଦୁଲହିନି ଲୈ ଗେ ଲଚ୍ଛିନିବାସା । ନୃପସମାଜ ସବ ଭୟଉ ନିରାସା ॥୧॥
ମୁନି ଅତି ବିକଲ ମୋହଁ ମତି ନାଠୀ । ମନି ଗିରି ଗଈ ଛୂଟି ଜନୁ ଗାଁଠୀ ॥
ତବ ହର ଗନ ବୋଲେ ମୁସୁକାଈ । ନିଜ ମୁଖ ମୁକୁର ବିଲୋକହୁ ଜାଈ ॥୨॥
ଅସ କହି ଦୋଉ ଭାଗେ ଭୟଁ ଭାରୀ । ବଦନ ଦୀଖ ମୁନି ବାରି ନିହାରୀ ॥
ବେଷୁ ବିଲୋକି କ୍ରୋଧ ଅତି ବାଢ଼ା । ତିନ୍ହହି ସରାପ ଦୀନ୍ହ ଅତି ଗାଢ଼ା ॥୩॥

ହୋହୁ ନିସାଚର ଜାଇ ତୁମ୍ହ କପଟୀ ପାପୀ ଦୋଉ ।
ହଁସେହୁ ହମହିଁ ସୋ ଲେହୁ ଫଲ ବହୁରି ହଁସେହୁ ମୁନି କୋଉ ॥୧୩୫॥

---

ଧରି ନୃପ-ତନୁ ତହିଁ ଗଲେ ଜନପାଳ । କୁମାରୀ ହରଷେ ଲମ୍ବାଇଲେ ଜୟମାଳ ॥
ନବ ବଧୂ ନେଇ ଚାଲିଗଲେ ଶ୍ରୀନିବାସ । ନୃପ-ସମାଜ ହୋଇଲେ ଅତ୍ୟନ୍ତ ନିରାଶ ॥୧॥
ମୋହେ ନଷ୍ଟ ମୁନିମତି ବ୍ୟାକୁଳ ହୋଇଲେ । ଗଣ୍ଠି ଫିଟିଯାଇ ମଣି ଖସି କି ପଡ଼ିଲେ ॥
ତହୁଁ ଉପହସି ଶିବଗଣେ ବେଳ ପାଇ । କହିଲେ ଦର୍ପଣେ ନିଜ ମୁଖ ଦେଖ ଯାଇ ॥୨॥
ଏହା କହି ପଳାଇଲେ ଦୁହେଁ ଭୟେ ଅତି । ଜଳରେ ନିରେଖି ମୁନି ବଦନ ଦେଖନ୍ତି ॥
ବେଷ ବିଲୋକି ବଢିଲା କ୍ରୋଧ ଭୟଙ୍କର । ତାଙ୍କୁ ଅଭିଶାପ ଦେଲେ କଷ୍ଟ ଗୁରୁତର ॥୩॥

ହୁଅ ନିଶାଚର କପଟୀ ପାମର ପାପୀ ତୁମ୍ଭେ ଦୁହେଁ ଯାଅ ।
ପୁଣି ନ ହସିବ କେଉଁଣସି ମୁନିଙ୍କୁ ହସିବାର ଫଳ ପାଅ ॥୧୩୫॥

---

ଦୋହା :—ତା ପରେ ରାଜକୁମାରୀ ସଖୀମାନଙ୍କ ସଙ୍ଗରେ ଧୀର ଅନ୍ତସର ହେଉ ସତେ ଯେମିତି ରାଜହଂସୀ ଚାଲୁଅଛି । ସେ ଆପଣାର କର-କମଳରେ ଜୟମାଳା ଧରି ସମସ୍ତ ରାଜାଙ୍କୁ ଦେଖି ଦେଖି ବୁଲିବାକୁ ଲାଗିଲି ॥ ୧୩୪ ॥ ଚୌପାଇ :— ଯେଉଁ ଦିଗରେ ନାରଦ ରୂପଗର୍ବରେ ଫୁଲି ବସିଥିଲେ, ସେ ଦିଗକୁ ସେ ଭୁଲ୍‌ରେ ସୁଦ୍ଧା ଚାହିଁଲେ ନାହିଁ । ନାରଦମୁନି ବାରମ୍ବାର ଉଠି ଏଣ୍ଡି ଉପରେ ଠିଆ ହେଉଥା'ନ୍ତି ଏବଂ ବ୍ୟାକୁଳ ହେଉଥା'ନ୍ତି । ତାଙ୍କର ଏ ଦଶା ଦେଖି ଶିବଙ୍କ ଗଣମାନେ ମୁରୁକି ମୁରୁକି ହସୁଥା'ନ୍ତି ॥ ୧ ॥ କୃପାଳୁ ଭଗବାନ୍ ମଧ୍ୟ ନୃପତନୁ ଧାରଣପୂର୍ବକ ସେଠାରେ ଯାଇ ପହଞ୍ଚିଲେ । ରାଜକୁମାରୀ ଆନନ୍ଦିତ ହୋଇ ତାଙ୍କ ଗଳାରେ ଜୟମାଳା ପକାଇ ଦେଲେ । ଲକ୍ଷ୍ମୀନିବାସ ଭଗବାନ୍ ଦୁଲଣୀକୁ ନେଇଗଲେ । ସମସ୍ତ ରାଜମଣ୍ଡଳୀ ନିରାଶ ହୋଇ ପଡ଼ିଲେ ॥ ୨ ॥ ମୋହ ହେତୁ ମୁନିଙ୍କ ବୁଦ୍ଧି ନଷ୍ଟ ହୋଇ ଯାଇଥିଲା । ଏଣୁ ରାଜକୁମାରୀକୁ ହାତରୁ ଚାଲିଯିବାର ଦେଖି ସେ ଅତି ବିକଳ ହୋଇ ପଡ଼ିଲେ । ସତେ ଯେପରି ଗଣ୍ଠିରୁ ଫିଟି ମଣି ତଳେ ପଡ଼ିଯାଇଛି । ସେତିକି ବେଳେ ଶିବଙ୍କ ଗଣମାନେ ମୁରୁକି ହସି କହିଲେ, "ଯାଇ ଦର୍ପଣରେ ଆପଣାର ମୁହଁ ଦେଖନ୍ତୁ ତ !" ॥୩॥ ଏପରି କହି ସେ ଦୁହେଁ ବଡ଼ ଭୟଭୀତ ହୋଇ ପଳାଇଲେ । ମୁନି ଜଳରେ ଆପଣାର ମୁହଁ ନିରେଖି ଦେଖିଲେ । ଆପଣା ରୂପ ଦେଖି ତାଙ୍କ କ୍ରୋଧ ବହୁତ ବଢ଼ିଗଲା । ସେ

ପୁନି ଜଲ ଦୀଖ ରୂପ ନିଜ ପାୱା । ତଦପି ହୃଦୟଁ ସଂତୋଷ ନ ଆୱା ॥
ଫରକତ ଅଧର କୋପ ମନ ମାହୀଁ । ସପଦି ଚଲେ କମଲାପତି ପାହୀଁ ॥୧॥
ଦେହଉଁ ଶ୍ରାପ କି ମରିହଉଁ ଜାଈ । ଜଗତ ମୋରି ଉପହାସ କରାଈ ॥
ବୀଚହିଁ ପଂଥ ମିଲେ ଦନୁଜାରୀ । ସଂଗ ରମା ସୋଇ ରାଜକୁମାରୀ ॥୨॥
ବୋଲେ ମଧୁର ବଚନ ସୁରସାଈଁ । ମୁନି କହଁ ଚଲେ ବିକଲ କୀ ନାଈଁ ॥
ସୁନତ ବଚନ ଉପଜା ଅତି କ୍ରୋଧା । ମାୟା ବସ ନ ରହା ମନ ବୋଧା ॥୩॥
ପର ସଂପଦା ସକହୁ ନହିଁ ଦେଖୀ । ତୁହ୍ମରେଁ ଇରିଷା କପଟ ବିସେଷୀ ॥
ମଥତ ସିଂଧୁ ରୁଦ୍ରହି ବୌରାୟହୁ । ସୁରହ୍ନ ପ୍ରେରି ବିଷ ପାନ କରାୟହୁ ॥୪॥

ଅସୁର ସୁରା ବିଷ ସଂକରହି ଆପୁ ରମା ମନି ଚାରୁ ।
ସ୍ୱାରଥ ସାଧକ କୁଟିଲ ତୁହ୍ମ ସଦା କପଟ ବ୍ୟବହାରୁ ॥୧୩୬॥

---

ପୁଣି ଜଳକୁ ଚାହିଁ'ନ୍ତେ ସ୍ୱରୂପ ଦେଖିଲେ । ତଥାପି ସନ୍ତୋଷ ନିଜ ହୃଦେ ନ ଲଭିଲେ ॥
କମ୍ପିଲା ଅଧର ମନେ ହୋଇ କୋପାନ୍ୱିତ । ଚଳିଲେ କମଳା-ପତି ସମୀପେ ତ୍ୱରିତ ॥୧॥
ଦେବି ଅଭିଶାପ କିମ୍ବା ମରିବି ମୁଁ ଯାଇ । ଜଗତେ ମୋ ଉପହାସ ଦେଲା ସେ କରାଇ ॥
ପଥ ମଧ୍ୟେ ମିଳିଗଲେ ପ୍ରଭୁ ଦନୁଜାରି । ସଙ୍ଗତେ ରମା ଆବର ସେ ରାଜକୁମାରୀ ॥୨॥
ଭାଷିଲେ ସୁର-ନାୟକ ବଚନ କୋମଳ । ମୁନି କାହିଁ ଯାଅ ଯେସନ୍ତେ ହୋଇଣ ବିକଳ ॥
ଶୁଣନ୍ତେ ବଚନ ଅତି ଉପୁଜିଲା କ୍ରୋଧ । ମାୟା ବିବଶ, ନ ଥିଲା ମୁନି ମନେ ବୋଧ ॥୩॥
ପରର ସମ୍ପଦ ଦେଖି ନ ପାରୁ ତୁ ଲେଶ । ରଖୁ ନିଜ ହୃଦେ ଈର୍ଷା କପଟ ବିଶେଷ ॥
ସିନ୍ଧୁ ମନ୍ଥନ ସମୟେ ରୁଦ୍ରେ ଭୁଲାଇଲୁ । ଦେବତାଙ୍କୁ ପ୍ରେରି ବିଷ ପାନ କରାଇଲୁ ॥୪॥

ସୁରା ଅସୁରଙ୍କୁ ବିଷ ଶଙ୍କରଙ୍କୁ ଆପେ ରମା ମଣି ବର ।
କୁଟିଳ ତୁ ସ୍ୱାର୍ଥ-ସାଧକ ସତତ କପଟ ବୃତ୍ତି ତୋହର ॥୧୩୬॥

---

ଶିବଙ୍କର ସେହି ଗଣମାନଙ୍କୁ କଠୋର ଅଭିଶାପ ଦେଲେ— ॥ ୪ ॥ ଦୋହା :— "ତୁମେ କପଟୀ ଓ ପାପୀ ହୁହେଁ ଯାଇ ରାକ୍ଷସ ହୁଅ । ମୋତେ ଯେମିତି ବିଦ୍ରୂପ କଲ, ତାହାର ଫଳ ପାଅ । ଏବେ ଯାଇ ଆଉ କେଉଁ ମୁନିଙ୍କୁ ଥଟ୍ଟା କରୁଥାଅ" ॥ ୧୩୫ ॥
ଚୌପାଇ.—ମୁନି ପୁଣି ଜଳରେ ଦେଖନ୍ତି ତ, ତାଙ୍କର ଅସଲ ରୂପ ସେ ପାଇ ଯାଇଛନ୍ତି । ତେବେ ବି ତାଙ୍କର ସନ୍ତୋଷ ହେଲା ନାହିଁ । ତାଙ୍କର ଓଠ ଥରୁଥାଏ, ଫଡ଼ୁଥାଏ ଏବଂ ମନରେ କ୍ରୋଧ ପୂରି ରହିଥାଏ । ଶୀଘ୍ର ସେ ଭଗବାନ୍ କମଳାପତିଙ୍କ ପାଖକୁ ଚାଲିଲେ ॥୧॥ ମନରେ ଭାବି ଭାବି ଯାଉଥା'ନ୍ତି—"ଯାଇ ଅଭିଶାପ ଦେବି କି ପ୍ରାଣ ଦେବି ? ସେହି ସଂସାରରେ ମୋତେ ଲୋକହସା କରାଇଲେ !" ଦୈତ୍ୟାରି ଭଗବାନ୍ ହରି ପଥ ମଧ୍ୟରେ ତାଙ୍କୁ ମିଳିଗଲେ । ତାଙ୍କ ସହିତ ଲକ୍ଷ୍ମୀ ଓ ସେହି ରାଜକୁମାରୀ ଥିଲେ ॥୨॥ ସୁରସାଇଁ ଭଗବାନ୍ ମଧୁର ବାଣୀରେ କହିଲେ, "ହେ ମୁନି ! ବ୍ୟାକୁଳ ପରି ହୋଇ କୁଆଡ଼େ ଚାଲିଲ ?" ଏ ଶବ୍ଦ ଶୁଣିବା ମାତ୍ରେ ନାରଦଙ୍କର ବଡ଼ କ୍ରୋଧ ହେଲା; ମାୟାର ବଶୀଭୂତ ହୋଇଥିବା ହେତୁ

ପରମ ସ୍ୱତଂତ୍ର ନ ସିର ପର କୋଈ । ଭାୱଇ ମନହି କରହୁ ତୁମ୍ହ ସୋଈ ॥
ଭଲେହି ମଂଦ ମଂଦେହି ଭଲ କରହୂ । ବିସମୟ ହରଷ ନ ହିୟଁ କଛୁ ଧରହୂ ॥୧॥
ଡହକି ଡହକି ପରିଚେହୁ ସବ କାହୂ । ଅତି ଅସଂକ ମନ ସଦା ଉଛାହୂ ॥
କରମ ସୁଭାସୁଭ ତୁମ୍ହହି ନ ବାଧା । ଅବ ଲଗି ତୁମ୍ହହି ନ କାହୁଁ ସାଧା ॥୨॥
ଭଲେ ଭବନ ଅବ ବାୟନ ଦୀହ୍ନା । ପାୱହୁଗେ ଫଲ ଆପନ କୀହ୍ନା ॥
ବଂଚେହୁ ମୋହି ଜୱନି ଧରି ଦେହା । ସୋଇ ତନୁ ଧରହୁ ଶ୍ରାପ ମମ ଏହା ॥୩॥
କପି ଆକୃତି ତୁମ୍ହ କୀହ୍ନି ହମାରୀ । କରିହହିଁ କୀସ ସହାୟ ତୁମ୍ହାରୀ ॥
ମମ ଅପକାର କୀହ୍ନ ତୁମ୍ହ ଭାରୀ । ନାରି ବିରହଁ ତୁମ୍ହ ହୋବ ଦୁଖାରୀ ॥୪॥

---

ପରମ ସ୍ୱତନ୍ତ୍ର କେହି ତୋ ଉପରେ ନାହିଁ । ମନକୁ ଯାହା ଆସଇ କରୁ ତୁହି ତାହି ॥
ଭଲକୁ ମନ୍ଦ ମନ୍ଦକୁ ଭଲ ପୁଣି କରୁ । ହରଷ ବିସ୍ମୟ କିଛି ହୃଦୟେ ନ ଧରୁ ॥୧॥
ଠକି ଠକି ସମସ୍ତଙ୍କୁ ପରଖି ଯାଇଛୁ । ସଦା ଉତ୍ସାହିତ ମନ ନିଃଶଙ୍କ ହୋଇଛୁ ॥
କର୍ମ ଶୁଭାଶୁଭ ତୋତେ କେବେ ନ ବାଧିଲା । ଅଦ୍ୟାବଧି କେହି ତୋତେ ସାଧି ନ ପାରିଲା ॥୨॥
ଭଲ ଘରେ ଆସି ଏବେ ଦେଇଛୁ ବେଉଁର । ଯାହା କିଛି କଲୁ ଫଳ ପାଇବୁ ତାହାର ॥
ବଞ୍ଚନ କଲୁ ତୁ ମୋତେ ଯେଉଁ ଦେହ ଧରି । ସେହି ତନୁ ଧର ଅଭିଶାପ ଏ ମୋହରି ॥୩॥
କପି ସଦୃଶ ଆକୃତି କଲୁ ତୁ ମୋହର । କରିବେ କପି ନିକର ସାହାଯ୍ୟ ତୋହର ॥
ଅତି ଖରା ଅପକାର କଲୁ ମୋର ଯେଣୁ । ନାରୀ ବିରହେ ଦୁଃଖିତ ହୋଇବୁ ତୁ ତେଣୁ ॥୪॥

---

ମନରେ ଚେତା ନ ଆଏ ॥ ୩ ॥ ମୁନି କହିଲେ, "ତୁମେ ଅନ୍ୟମାନଙ୍କର ଶ୍ରୀସମ୍ପଦ ଦେଖି ପାରନାହିଁ । ତୁମଠାରେ ଈର୍ଷ୍ୟା ଓ କପଟ ବହୁତ । ସମୁଦ୍ରମନ୍ଥନ କାଳରେ ତୁମେ ଶିବଙ୍କୁ ପାଗଳ କରିଦେଲ ଏବଂ ଦେବତାମାନଙ୍କୁ ପ୍ରେରଣ କରି ତାହାଙ୍କୁ ବିଷପାନ କରାଇଲ ॥ ୪ ॥ ଦୋହା '—ଅସୁରମାନଙ୍କୁ ମଦିରା ଓ ଶିବଙ୍କୁ ବିଷ ଦେଇ ତୁମେ ସ୍ୱୟଂ ଲକ୍ଷ୍ମୀ ଓ ସୁନ୍ଦର କୌସ୍ତୁଭମଣି ନେଇଗଲ । ତୁମେ ବଡ ଧପାବାଜ ଓ ସ୍ୱାର୍ଥସାଧକ । ସବୁବେଳେ କପଟ ବ୍ୟବହାର କରୁଥାଅ ॥ ୧୩୭ ॥ ଚୌପାଈ — ତୁମେ ପରମ ସ୍ୱାଧୀନ, ମୁଣ୍ଡ ଉପରେ କୌଣସି ବୋଝ ତ ନାହିଁ । ଏଣୁ ଯେତେବେଳେ ମନକୁ ଯାହା ପାଉଛ, ତାହା ସ୍ୱଚ୍ଛନ୍ଦ ଭାବରେ କରିଯାଉଛ । ଭଲକୁ ମନ୍ଦ ଓ ମନ୍ଦକୁ ଭଲ କରି ଦେଉଛ । ହୃଦୟରେ ହର୍ଷ, ବିଷାଦ, ବିସ୍ମୟ ଆଦି କିଛି ଧରୁନାହଁ ॥ ୧ ॥ ସମସ୍ତଙ୍କୁ ଠକିବାରେ ଏକାବେଳେକେ ଅଭ୍ୟସ୍ତ ହୋଇ ପଡିଛ ଏବଂ ଅତିଶୟ ନିର୍ଭୀକ ହୋଇ ପଡିଛ । ଏଣୁ ଠକାମି କାମ ପାଇଁ ତୁମ ମନରେ ସବୁବେଳେ ଉତ୍ସାହ ପୂରିଥାଏ । ଶୁଭାଶୁଭ କର୍ମ ଯାହା କରି ପଛକେ, ତୁମ ପଥରେ ବାଧାସୃଷ୍ଟି କରିବାକୁ କେହି ନାହିଁ । ଆଜିଯାଏ ତୁମଙ୍କୁ କେହି ଶାସନ କରିପାରି ନାହାନ୍ତି ॥ ୨ ॥ ଏବେ ତୁମେ ମୋ ପରି ଜଣେ ପ୍ରଧାନ ବ୍ୟକ୍ତିକୁ ବିଦ୍ରୂପ କରିଅଛ ! ଏଣୁ ତୁମେ ଆପଣା କର୍ମର ଫଳ ଅବଶ୍ୟ ଭୋଗ କରିବ । ଯେଉଁ ଶରୀର ଧାରଣ କରି ତୁମେ ମୋତେ ଠକିଅଛ,

ଶ୍ରାପ ସୀସ ଧରି ହରଷି ହିୟଁ ପ୍ରଭୁ ବହୁ ବିନତୀ କୀହ୍ନି ।
ନିଜ ମାୟା କୈ ପ୍ରବଲତା କରଷି କୃପାନିଧି ଲୀହ୍ନି ॥୧୩୭॥
ଜବ ହରି ମାୟା ଦୂରି ନିବାରୀ । ନହିଁ ତହଁ ରମା ନ ରାଜକୁମାରୀ ॥
ତବ ମୁନି ଅତି ସଭୀତ ହରି ଚରନା । ଗହେ ପାହି ପ୍ରନତାରତି ହରନା ॥୧॥
ମୃଷା ହୋଉ ମମ ଶ୍ରାପ କୃପାଲା । ମମ ଇଚ୍ଛା କହ ଦୀନଦୟାଲା ॥
ମୈଁ ଦୁର୍ବଚନ କହେ ବହୁତେରେ । କହ ମୁନି ପାପ ମିଟିହିଁ କିମି ମେରେ ॥୨॥
ଜପହୁ ଜାଇ ସଂକର ସତନାମା । ହୋଇହି ହୃଦୟଁ ତୁରତ ବିଶ୍ରାମା ॥
କୋଉ ନହିଁ ସିବ ସମାନ ପ୍ରିୟ ମୋରେଁ । ଅସି ପରତୀତି ତଜହୁ ଜନି ଭୋରେଁ ॥୩॥

---

ଶାପ ଘେନି ଶିରେ ପ୍ରଭୁ ଆନନ୍ଦରେ ବିବିଧ ବିନୟ କରି ।
ପ୍ରବଳ ସ୍ୱମାୟା ବଳକୁ ଆକର୍ଷି ନେଲେ କୃପାଳୁ ଶ୍ରୀ ହରି ॥୧୩୭॥
ଯେଉଁକ୍ଷଣି ହରି ନିଜ ମାୟା ନିବାରିଲେ । ତହିଁ ରାଜକନ୍ୟା କିମ୍ବା ରମା ନ ରହିଲେ ॥
ତହୁଁ ମୁନି ଭୟେ ଧରି ଶ୍ରୀହରି ଚରଣ । ଭାଷିଲେ ପାହି ପ୍ରଣତ ଆରତି ହରଣ ॥୧॥
ମିଥ୍ୟା ହେଉ ମୋର ଶାପ କରୁଣାନିଳୟ । ଏ ମୋର ଇଚ୍ଛା କହିଲେ ଦୀନଦୟାମୟ ॥
କହିଛି ତୁମ୍ଭକୁ ମୁହିଁ ବହୁ ଦୁର୍ବଚନ । କହନ୍ତି ମୁନି ମୋ ପାପ କଟିବ କେସନ ॥୨॥
ଶଙ୍କରଙ୍କ ଶତ ନାମ ଯାଇ ଜପ କର । ହୃଦୟେ ଲଭ ହୋଇବ ବିଶ୍ରାମ ସତ୍ୱର ॥
ଶିବଙ୍କ ସମାନ ମୋର ପ୍ରିୟ ନାହିଁ କେହି । ଭୁଲରେ ପ୍ରତୀତି ତ୍ୟାଗ ନ କରିବ ଏହି ॥୩॥

---

ତୁମେ ସେହି ଶରୀର ଧାରଣ କର । ଏହା ମୋର ତୁମ ପ୍ରତି ଅଭିଶାପ ॥ ୩ ॥ ତୁମେ ମୋ ରୂପ ବାନର ରୂପ ସମାନ କରିଦେଲ । ଏହି ହେତୁ ବାନରମାନେ ହିଁ ତୁମଙ୍କୁ ସାହାଯ୍ୟ କରିବେ । ଯେଉଁ ସ୍ତ୍ରୀକୁ ମୁଁ ପାଇବାକୁ ଆଶା କରିଥିଲି, ସେହି ସ୍ତ୍ରୀକୁ ମୋଠାରୁ ବିଚ୍ଛିନ୍ନ କରାଇ ତୁମେ ମୋର ଘୋର ଅପକାର କରିଅଛ । ଏଣୁ ତୁମେ ମଧ୍ୟ ସ୍ତ୍ରୀ ବିରହରେ ଦୁଃଖ ଭୋଗ କରିବ ।" ॥ ୪ ॥ ଦୋହା '—ଅଭିଶାପକୁ ଶିରୋଧାର୍ଯ୍ୟ କରି ପ୍ରଭୁ ମନେ ମନେ ଆନନ୍ଦିତ ହେଲେ ଏବଂ ନାରଦଙ୍କୁ ବହୁ ବିନତି କଲେ । ତତ୍ପରେ କୃପାନିଧାନ ଭଗବାନ୍ ତାଙ୍କ ମାୟାର ବଳ ଟାଣି ନେଲେ ॥ ୧୩୭ ॥ ଚୌପାଇ '—ଯେତେବେଳେ ଭଗବାନ୍ ଆପଣାର ମାୟା ଅପସାରିତ କରି ନେଲେ, ସେତେବେଳେ ଋହିଁଲ ବେଲକୁ ସେଠାରେ ଲକ୍ଷ୍ମୀ ନାହାନ୍ତି କିମ୍ବା ରାଜକୁମାରୀ ନାହିଁ । ମୁନି ଅତ୍ୟନ୍ତ ଭୟଭୀତ ହୋଇ ଶ୍ରୀହରିଙ୍କ ଚରଣ ଧରିଲେ ଏବଂ କହିଲେ, "ହେ ଶରଣାଗତ-ଦୁଃଖହାରି ! ମୋତେ ରକ୍ଷା କରନ୍ତୁ ॥ ୧ ॥ ହେ କୃପାଳୁ ' ମୋର ଅଭିଶାପ ମିଛ ହୋଇଯାଉ ।" ଦୀନଦୟାଳୁ ଭଗବାନ୍ କହିଲେ, "ଏ ସବୁ ମୋହରି ଇଚ୍ଛାରେ ହିଁ ହୋଇଛି ।" ମୁନି କହିଲେ, "ମୁଁ ଆପଣଙ୍କୁ ବହୁତ କଟୁ କଥା କହିଅଛି । ମୋର ପାପ କିପରି ମେଣ୍ଟିବ ?" ॥ ୨ ॥ ଭଗବାନ୍ କହିଲେ, "ଯାଇ ଶଙ୍କରଙ୍କ ଶତନାମ ଜପ କର । ଏହା ଦ୍ୱାରା ହୃଦୟକୁ ଶୀଘ୍ର ଶାନ୍ତି ମିଳିବ । ଶିବଙ୍କ ପରି ମୋର

ଜେହି ପର କୃପା ନ କରହିଁ ପୁରାରୀ । ସୋ ନ ପାଵ ମୁନି ଭଗତି ହମାରୀ ॥
ଅସ ଉର ଧରି ମହି ବିଚରହୁ ଜାଈ । ଅବ ନ ତୁମ୍ହହି ମାୟା ନିଅରାଈ ॥୪॥

ବହୁବିଧି ମୁନିହି ପ୍ରବୋଧି ପ୍ରଭୁ ତବ ଭଏ ଅଂତରଧାନ ।
ସତ୍ୟଲୋକ ନାରଦ ଚଲେ କରତ ରାମ ଗୁନ ଗାନ ॥୧୩୮॥

ହର ଗନ ମୁନିହି ଜାତ ପଥ ଦେଖୀ । ବିଗତ ମୋହ ମନ ହରଷ ବିସେଷୀ ॥
ଅତି ସଭୀତ ନାରଦ ପହିଁ ଆଏ । ଗହି ପଦ ଆରତ ବଚନ ସୁନାଏ ॥୧॥
ହର ଗନ ହମ ନ ବିପ୍ର ମୁନିରାୟା । ବଡ ଅପରାଧ କୀନ୍ହ ଫଲ ପାୟା ॥
ଶ୍ରାପ ଅନୁଗ୍ରହ କରହୁ କୃପାଲା । ବୋଲେ ନାରଦ ଦୀନଦୟାଲା ॥୨॥
ନିସିଚର ଜାଇ ହୋହୁ ତୁମ୍ହ ଦୋଊ । ବୈଭବ ବିପୁଲ ତେଜ ବଲ ହୋଊ ॥
ଭୁଜବଲ ବିସ୍ୱ ଜିତବ ତୁମ୍ହ ଜହିଆ । ଧରିହହିଁ ବିଷ୍ଣୁ ମନୁଜ ତନୁ ତହିଆ ॥୩॥

---

ଯା ଉପରେ ନି ପୁରାରି କୃପା ନ କରନ୍ତି । ସେ ଲାଭ କରି ନ ପାରେ ମୁନି ମୋର ଭକ୍ତି ॥
ଏହା ହୃଦେ ଭାବି ଯାଇ ଜଗତେ ବିଚର । ଏଣିକି ମାୟା ନ ଯିବ ନିକଟେ ତୁମ୍ଭର ॥୪॥
ପ୍ରଭୁ ନାନା ମତେ ମୁନିଙ୍କୁ ପ୍ରବୋଧି ହେଲେ ତହୁଁ ଅନ୍ତର୍ଦ୍ଧାନ ।
ନାରଦ ସତ୍ତ୍ୱରେ ଗଲେ ସତ୍ୟ ଲୋକେ ରାମ ଗୁଣ କରି ଗାନ ॥୧୩୮॥
ହରଗଣ ପଥେ ଦେଖି ମୁନିଙ୍କୁ ଯିବାର । ବିଗତ ମୋହ ମନରେ ହରଷ ଅପାର ॥
ଅତି ଭୟେ ନାରଦଙ୍କ ନିକଟେ ଆସିଲେ । ଚରଣ ଧରି ଆରତ ବଚନ ଭାଷିଲେ ॥୧॥
ହରଗଣ ଆମ୍ଭେ, ବିପ୍ର ନୋହୁ ମୁନିନାଥ । ବଡ ଅପରାଧ କଲୁ, ଫଳ ହେଲୁ ପ୍ରାପ୍ତ ॥
ଶାପରୁ ଉଦ୍ଧାର କର କରୁଣା ନିଳୟ । ଭାଷିଲେ ତହୁଁ ନାରଦ ଦୀନଦୟାମୟ ॥୨॥
ନିଶାଚର ଯାଇ ତୁମ୍ଭେ ଉଭୟେ ହୋଇବ । ବିପୁଳ ବଳ ପ୍ରତାପ ବୈଭବ ଲଭିବ ॥
ଜିଣିବ ସ୍ୱଭୁଜ ବଳେ ବିଶ୍ୱ ତୁମ୍ଭେ ଯେବେ । ଧରିବେ ବିଷ୍ଣୁ ମାନବ କଳେବର ତେବେ ॥୩॥

---

ଆଉ କେହି ପ୍ରିୟ ନୁହେଁ । ଏହି ବିଶ୍ୱାସକୁ ଭୁଲିରେ ମୁଦ୍ଧା ଛାଡିବ ନାହିଁ ॥ ୩ ॥
ହେ ମୁନି ! ପୁରାରି ଶିବ ଯାହା ଉପରେ କୃପା ନ କରନ୍ତି, ସେ ମୋ ଭକ୍ତି ପାଏନାହିଁ । ହୃଦୟରେ ଏପରି ନିଶ୍ଚୟ କରି ଯାଇ ପୃଥିବୀ ଉପରେ ବିଚରଣ କର । ଏଣିକି ମୋର ମାୟା ଆଉ ତୁମ ନିକଟକୁ ଆସିବ ନାହିଁ ।" ॥ ୪ ॥ ଦୋହା —ବହୁ ପ୍ରକାରେ ମୁନିଙ୍କୁ ସାନ୍ତ୍ୱନା ଦେଇ ପ୍ରଭୁ ଅନ୍ତର୍ହିତ ହୋଇଗଲେ ଏବଂ ନାରଦ ଶ୍ରୀରାମଚନ୍ଦ୍ରଙ୍କ ଗୁଣଗାନପୂର୍ବକ ସତ୍ୟ ଲୋକ (ବ୍ରହ୍ମଲୋକ)କୁ ଚାଲିଗଲେ ॥ ୧୩୮ ॥ ଚୌପାଈ — ଶିବଙ୍କର ଗଣମାନେ ମୁନିଙ୍କୁ ମୋହମୁକ୍ତ ଓ ଅତ୍ୟନ୍ତ ପ୍ରସନ୍ନମନା ହୋଇ ମାର୍ଗରେ ଯାଉଥିବାର ଦେଖିଲେ । ସେମାନେ ଅତ୍ୟନ୍ତ ଭୟଭୀତ ହୋଇ ନାରଦଙ୍କ ପାଖକୁ ଆସିଲେ ଏବଂ ତାଙ୍କ ପାଦ ଧରି କରୁଣ ବଚନ କହିଲେ—॥ ୧ ॥ "ହେ ମୁନିରାଜ ! ଆମ୍ଭେମାନେ ବ୍ରାହ୍ମଣ ନୋହୁ, ଆମେ ଶିବଙ୍କର ଗଣ, ଆମ୍ଭେମାନେ ବଡ ଅପରାଧ କରିଅଛୁ । ତାହାର ଫଳ ଆମ୍ଭେମାନେ ପାଇ ଯାଇଛୁ । ହେ କୃପାଳୁ ! ଏବେ ଅନୁଗ୍ରହ-

ସମର ମରନ ହରି ହାଥ ତୁହ୍ମାରା । ହୋଇହହୁ ମୁକୁତ ନ ପୁନି ସଂସାରା ॥
ଚଲେ ଜୁଗଲ ମୁନି ପଦ ସିର ନାଈ । ଭଏ ନିସାଚର କାଲହି ପାଈ ॥୩॥

ଏକ କଲପ ଏହିଁ ହେତୁ ପ୍ରଭୁ ଲୀହ୍ନ ମନୁଜ ଅବତାର ॥
ସୁର ରଂଜନ ସଜ୍ଜନ ସୁଖଦ ହରି ଭଂଜନ ଭୁବି ଭାର ॥୧୩୯॥

ଏହି ବିଧି ଜନମ କରମ ହରି କେରେ । ସୁନ୍ଦର ସୁଖଦ ବିଚିତ୍ର ଘନେରେ ॥
କଲପ କଲପ ପ୍ରତି ପ୍ରଭୁ ଅବତରହୀଁ । ଚାରୁ ଚରିତ ନାନା ବିଧି କରହୀଁ ॥୧॥
ତବ ତବ କଥା ମୁନୀସହ୍ନ ଗାଈ । ପରମ ପୁନୀତ ପ୍ରବଂଧ ବନାଈ ॥
ବିବିଧ ପ୍ରସଂଗ ଅନୂପ ବଖାନେ । କରହିଁ ନ ସୁନି ଆଚରଜୁ ସୟାନେ ॥୨॥

---

ହରିଙ୍କ ହସ୍ତରେ ତୁମ୍ଭେ ସମରେ ମରିବ । ହୋଇବ ମୁକ୍ତ ପୁନଶ୍ଚ ଭବେ ନ ଆସିବ ॥
ଶୁଣି ଉଭୟେ ମୁନିଙ୍କୁ ପ୍ରଣମି ଚଳିଲେ । ସମୟ ପାଇ ରଜନୀଚର ସେ ହୋଇଲେ ॥୪॥

ଏହି କାରଣରୁ ପ୍ରଭୁ ଏକ କଳ୍ପେ ହେଲେ ନର ଅବତାର ।
ବିବୁଧ ରଞ୍ଜନ ସୁଖଦ ସଜ୍ଜନ ହରି ଭଞ୍ଜନ ଭୂଭାର ॥୧୩୯॥

ଏହି ଭାବେ ହରିଙ୍କର ଜନମ କରମ । ସୁନ୍ଦର ସୁଖ-ଦାୟକ ବିଚିତ୍ର ପରମ ॥
ପ୍ରତ୍ୟେକ କଳ୍ପରେ ପ୍ରଭୁ ହୋଇ ଅବତାର । ଚାରୁ ଚରିତ କରନ୍ତି ଅନେକ ପ୍ରକାର ॥୧॥
ସେହି ସେହି ସମୟର କଥା ମୁନିବରେ । ବର୍ଣ୍ଣିଅଛନ୍ତି ପବିତ୍ର ପ୍ରବନ୍ଧ ରୂପରେ ॥
ଅନୁପମ ବିବିଧ ପ୍ରସଙ୍ଗ ଭଣିଛନ୍ତି । ଶୁଣି ଅଦ୍ଭୁତ ସୁଜ୍ଞ ଜନେ ନ ମଣନ୍ତି ॥୨॥

---

ପୂର୍ବକ ଅଭିଶାପ ଦୂର କରନ୍ତୁ ।" ଦୀନଦୟାଳୁ ନାରଦ କହିଲେ—॥ ୨ ॥ "ତୁମେ ଦୁହେଁ ଯାଇ ରାକ୍ଷସ ହୁଅ । ତୁମ୍ଭମାନଙ୍କୁ ମହାନ୍ ଐଶ୍ୱର୍ଯ୍ୟ, ତେଜ ଓ ବଳ ମିଳୁ । ଆପଣାର ବାହୁ ବଳରେ ଯେତେବେଳେ ତୁମେମାନେ ସମଗ୍ର ବିଶ୍ୱକୁ ଜିଣି ନେବ, ସେତେବେଳେ ଭଗବାନ୍ ବିଷ୍ଣୁ ମନୁଷ୍ୟ ଶରୀର ଧାରଣ କରିବେ ॥ ୩ ॥ ଯୁଦ୍ଧରେ ଶ୍ରୀହରିଙ୍କର ହାତରେ ତୁମର ମୃତ୍ୟୁ ହେବ । ତାହା ଫଳରେ ତୁମେମାନେ ମୁକ୍ତ ହୋଇଯିବ ଏବଂ ସଂସାରରେ ଆଉ ପୁଣି କେବେ ଜନ୍ମ ଗ୍ରହଣ କରିବ ନାହିଁ ।" ସେ ଦୁହେଁ ମୁନିଙ୍କ ପାଦତଳେ ମୁଣ୍ଡ ନୁଆଁଇ ଚାଲିଗଲେ ଏବଂ ସମୟକ୍ରମେ ରାକ୍ଷସ ହେଲେ ॥ ୪ ॥ ଦୋହା :—ଦେବତାରଞ୍ଜନ, ସଜ୍ଜନ-ସୁଖଦାୟକ ଓ ଧରାଭାରଭଞ୍ଜନ ଭଗବାନ୍ ଏହି କାରଣରୁ ଗୋଟିଏ କଳ୍ପରେ ମନୁଷ୍ୟ ଅବତାର ଗ୍ରହଣ କରିଥିଲେ ॥ ୧୩୯ ॥ ଚୌପାଈ :—ଏହି ରୂପେ ଭଗବାନ୍‌ଙ୍କର ଅନେକ ସୁନ୍ଦର, ସୁଖଦାୟକ ଓ ଅଲୌକିକ ଜନ୍ମ ଏବଂ କର୍ମ ଅଛି । ପ୍ରତ୍ୟେକ କଳ୍ପରେ ଯେବେ ଯେବେ ଭଗବାନ୍ ଜନ୍ମ ଗ୍ରହଣ କରନ୍ତି ଏବଂ ନାନାବିଧ ଲୀଳା କରନ୍ତି, ସେହି ସେହି କାଳରେ ମୁନୀଶ୍ୱରମାନେ ପରମ ପବିତ୍ର କାବ୍ୟ ରଚନାପୂର୍ବକ ତାହାଙ୍କର କଥା ଗାନ ଏବଂ ବିବିଧ ପ୍ରକାର ଅନୁପମ ପ୍ରସଙ୍ଗ ବର୍ଣ୍ଣନା କରିଥା'ନ୍ତି । ବୁଦ୍ଧିମାନ୍ ବ୍ୟକ୍ତିମାନେ ତାହା ସବୁ ଶୁଣି

ହରି ଅନଂତ ହରି କଥା ଅନଂତା । କହହିଁ ସୁନହିଁ ବହୁବିଧି ସବ ସଂତା ॥
ରାମଚନ୍ଦ୍ର କେ ଚରିତ ସୁହାଏ । କଲପ କୋଟି ଲଗି ଜାହିଁ ନ ଗାଏ ॥୩॥
ୟହ ପ୍ରସଂଗ ମୈଁ କହା ଭବାନୀ । ହରିମାୟାଁ ମୋହହିଁ ମୁନି ଜ୍ଞାନୀ ॥
ପ୍ରଭୁ କୌତୁକୀ ପ୍ରନତ ହିତକାରୀ । ସେବତ ସୁଲଭ ସକଲ ଦୁଖ ହାରୀ ॥୪॥
ସୁର ନର ମୁନି କୋଉ ନାହିଁ ଜେହି ନ ମୋହ ମାୟା ପ୍ରବଲ ।
ଅସ ବିଚାରି ମନ ମାହିଁ ଭଜିଅ ମହାମାୟା ପତିହି ॥୧୪୦॥
ଅପର ହେତୁ ସୁନୁ ସୈଲକୁମାରୀ । କହଉଁ ବିଚିତ୍ର କଥା ବିସ୍ତାରୀ ॥
ଜେହି କାରନ ଅଜ ଅଗୁନ ଅରୂପା । ବ୍ରହ୍ମ ଭୟଉ କୋସଲପୁର ଭୂପା ॥୧॥
ଜୋ ପ୍ରଭୁ ବିପିନ ଫିରତ ତୁମ୍ହ ଦେଖା । ବନ୍ଧୁ ସମେତ ଧରେଁ ମୁନିବେଷା ॥
ଜାସୁ ଚରିତ ଅବଲୋକି ଭବାନୀ । ସତୀ ସରୀର ରହିହୁ ବୌରାନୀ ॥୨॥

---

ହରି ଅନନ୍ତ ହରିଙ୍କ କାହାଣୀ ଅନନ୍ତ । କହନ୍ତି ଶୁଣନ୍ତି ନାନା ମତେ ସବୁ ସନ୍ଥ ॥
ରାମଚନ୍ଦ୍ରଙ୍କ ଚରିତ୍ର ରୁଚିର ବିଶେଷ । କୋଟି କଳ୍ପେ ସୁଦ୍ଧା ବର୍ଣ୍ଣି ନ ହୋଇବ ଶେଷ ॥୩॥
ଏହି ପ୍ରସଙ୍ଗ ଭବାନୀ କଲି ମୁଁ କଥନ । ହରି ମାୟାରେ ମୋହନ୍ତି ଜ୍ଞାନୀ ମୁନି ଜନ ॥
ପ୍ରଭୁ କୌତୁକୀ ଶରଣାଗତ ହିତକାରୀ । ସେବନ୍ତେ ସହଜେ ଲଭ୍ୟ ଦୁଃଖସମୂହହାରୀ ॥୪॥
ନ ହାନ୍ତି କୌଣସି ସୁର ମୁନି ନର ମାୟା ନ ମୋହେ ଯାହାଙ୍କୁ ।
ଏହା ବିଚାରିଣ ଭଜ ନିରନ୍ତର ସେ ମହାମାୟା-ନାହାଙ୍କୁ ॥୧୪୦॥
ଇତର କାରଣ ଶୁଣ ଶଇଳ କୁମାରୀ । କହୁଛି ବିଚିତ୍ର କଥା ପ୍ରସଙ୍ଗ ବିସ୍ତାରି ॥
ଯେଉଁ କାରଣରୁ ଅଜ ଅଗୁଣ ଅନୂପ । ବ୍ରହ୍ମ ହୋଇଲେ କୋଶଳ ନଗରର ଭୂପ ॥୧॥
ଦେଖିଲ ଯେଉଁ ପ୍ରଭୁଙ୍କୁ ଅନୁଜ ସଙ୍ଗରେ । ମୁନି ବେଶ ଧରି ଭ୍ରମୁଥିବାର ବନରେ ॥
ଯାହାଙ୍କ ଚରିତ୍ର ଦେଖି ଶଇଳ ନନ୍ଦନୀ । ସତୀ ଦେହେ ହୋଇଥିଲ ମୋହେ ଉନ୍ମାଦିନୀ ॥୨॥

---

ବିସ୍ମୟ ପ୍ରକାଶ କରନ୍ତି ନାହିଁ ॥ ୧-୨ ॥ ଶ୍ରୀହରି ଅନନ୍ତ, ତାଙ୍କ କଥା ମଧ୍ୟ ଅନନ୍ତ । ସମସ୍ତ ସନ୍ଥ ଲୋକ ତାହା ବହୁତ ପ୍ରକାରେ କହନ୍ତି ଏବଂ ଶୁଣନ୍ତି । ଶ୍ରୀରାମଚନ୍ଦ୍ରଙ୍କର ସୁନ୍ଦର ଚରିତ କୋଟି କୋଟି କଳ୍ପ ଲାଗି ଗାଇଲେ ସୁଦ୍ଧା ସରିବ ନାହିଁ ॥ ୩ ॥ ଶିବ କହୁଛନ୍ତି, "ହେ ପାର୍ବତି ! ଜ୍ଞାନୀ ମୁନି ସୁଦ୍ଧା ଭଗବାନଙ୍କ ମାୟାରେ ମୋହିତ ହୋଇ ପଡ଼ନ୍ତି । ଏହି କଥା କହିବା ପାଇଁ ମୁଁ ଏହି ପ୍ରସଙ୍ଗର ଅବତାରଣା କଲି । ପ୍ରଭୁ କୌତୁକୀ (ଲୀଳାମୟ) ଅଟନ୍ତି ଏବଂ ଶରଣାଗତର ହିତକାରୀ । ସେବା ଦ୍ୱାରା ସେ ସୁଲଭ ହୁଅନ୍ତି ଏବଂ ସମସ୍ତ ଦୁଃଖ ହରଣ କରନ୍ତି ॥ ୪ ॥ ସୋରଠା :—ଦେବତା, ମନୁଷ୍ୟ ଓ ମୁନିମାନଙ୍କ ମଧ୍ୟରେ ଏପରି କେହି ନାହିଁ ଯାହାକୁ ଭଗବାନଙ୍କ ବଳବତୀ ମାୟା ମୋହିତ କରି ନ ଦିଏ । ମନରେ ଏପରି ବିଚାର କରି ସେହି ମହାମାୟାର ସ୍ୱାମୀ (ପ୍ରେରକ) ଶ୍ରୀ ଭଗବାନଙ୍କ ଭଜନ କରିବା ଉଚିତ ॥୧୪୦॥ ଚୌପାଇ :—ହେ ଗିରିରାଜକୁମାରି ! ବର୍ତ୍ତମାନ ଭଗବାନଙ୍କ ଅବତାରର ଦ୍ୱିତୀୟ କାରଣ ଶୁଣ । ଯେଉଁ କାରଣରୁ ଅଜନ୍ମା,

ଅଜହୁଁ ନ ଛାୟା ମିଟତି ତୁହ୍ମାରୀ । ତାସୁ ଚରିତ ସୁନୁ ଭ୍ରମ ରୁଜ ହାରୀ ॥
ଲୀଲା କୀହ୍ନି ଜୋ ତେହିଁ ଅବତାରା । ସୋ ସବ କହିହଉଁ ମତି ଅନୁସାରା ॥୩॥
ଭରଦ୍ୱାଜ ସୁନି ସଂକର ବାନୀ । ସକୁଚି ସପ୍ରେମ ଉମା ମୁସୁକାନୀ ॥
ଲଗେ ବହୁରି ବରନୈ ବୃଷକେତୂ । ସୋ ଅବତାର ଭୟଉ ଜେହି ହେତୂ ॥୪॥

ସୋ ମୈଁ ତୁହ୍ମ ସନ କହଉଁ ସବୁ ସୁନୁ ମୁନୀସ ମନ ଲାଇ ॥
ରାମକଥା କଲି ମଲ ହରନି ମଂଗଲ କରନି ସୁହାଇ ॥୧୪୧॥

ସ୍ୱାୟଂଭୁ ମନୁ ଅରୁ ସତରୂପା । ଜିହ୍ନ ତେଁ ଭୈ ନରସୃଷ୍ଟି ଅନୂପା ॥
ଦଂପତି ଧରମ ଆଚରନ ନୀକା । ଅଜହୁଁ ଗାୱ ଶ୍ରୁତି ଜିହ୍ନ କୈ ଲୀକା ॥୧॥

---

ଅଦ୍ୟାପି ସେ ଛାୟା ଦୂର ନ ହୁଏ ତୁମ୍ଭର । ତାହାଙ୍କ ଚରିତ ଶୁଣ ଭବ-ରୋଗ-ହର ॥
କଲେ ସେ ଯେମନ୍ତ ଲୀଳା ସେହି ଅବତାରେ । କହିବି ତାହା ସମସ୍ତ ମତି ଅନୁସାରେ ॥୩॥
ଶୁଣ ଭରଦ୍ୱାଜ ଶୁଣି ଶଙ୍କରଙ୍କ ବାଣୀ । ସଙ୍କୋଚ ସପ୍ରେମେ ମନ୍ଦ ହସିଲେ ଶର୍ବାଣୀ ॥
କହିବାକୁ ଆରମ୍ଭିଲେ ତହୁଁ ବୃଷକେତୁ । ପ୍ରଭୁଙ୍କ ସେ ଅବତାର ହେଲା ଯେଉଁ ହେତୁ ॥୪॥

ତାହା ତୁମ୍ଭ ଆଗେ କହୁଛି ମୁଁ ଶୁଣ ମନ ଦେଇ ମୁନିବର ।
ରାମ କଥା କଳି-କଲୁଷ ନାଶିନୀ ଶୁଭଦାୟିନୀ ସୁନ୍ଦର ॥୧୪୧॥

ସ୍ୱାୟମ୍ଭୁବ ମନୁ ଶତରୂପା ପୂର୍ବେ ଥିଲେ । ଯେ ଅନୁପମ ମନୁଷ୍ୟ ସୃଷ୍ଟି ତିଆଇଲେ ॥
ଦମ୍ପତି ଧର୍ମେ ଉତ୍ତମ ଆଚରଣ ସଦା । ଅଦ୍ୟାପି ଶ୍ରୁତି ଗାଆନ୍ତି ଯାହାଙ୍କ ମର୍ଯ୍ୟାଦା ॥୧॥

---

ନିର୍ଗୁଣ ଓ ଅରୂପ (ଅବ୍ୟକ୍ତ ସଚ୍ଚିଦାନନ୍ଦ ଘନ) ବ୍ରହ୍ମ ଅଯୋଧ୍ୟାପୁର.ରେ ରାଜା ହେଲେ, ସେଥିର ବିଚିତ୍ର ପ୍ରସଙ୍ଗ ବିସ୍ତାରପୂର୍ବକ ମୁଁ କହୁଛି ॥ ୧ ॥ ଯେଉଁ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ତୁମେ ଭାଇ ଲକ୍ଷ୍ମଣଙ୍କ ସହିତ ମୁନି-ସଦୃଶ ବେଶ ଧାରଣପୂର୍ବକ ବନରେ ବୁଲୁଥିବାର ଦେଖିଥିଲ ଏବଂ ହେ ଭବାନି ! ଯାହାଙ୍କ ଚରିତ ଦେଖି ସତୀ ଶରୀରରେ ତୁମେ ଏତେ ପାଗଳୀ ହୋଇଯାଇଥିଲ ଯେ ଏବେ ସୁଦ୍ଧା ତାହାର ଛାୟା ତୁମଠାରୁ ଦୂର ହୋଇନାହିଁ, ସେହି ରାମଙ୍କର ଭ୍ରମରୋଗହାରୀ ଚରିତ ଶୁଣ । ସେ ଅବତାରରେ ଭଗବାନ୍ ଯେଉଁ ଯେଉଁ ଲୀଳା କରିଥିଲେ, ସେ ସବୁ ମୁଁ ତୁମ୍ଭଙ୍କୁ ମୋ ବୁଦ୍ଧି ଅନୁସାରେ କହିବି ।" ॥ ୩ ॥ ଯାଜ୍ଞବଲ୍କ୍ୟ କହିଲେ, "ହେ ଭରଦ୍ୱାଜ ! ଶଙ୍କରଙ୍କ କଥା ଶୁଣି ପାର୍ବତୀ ସଙ୍କୁଚିତ ହୋଇ ପଡିଲେ ଏବଂ ପ୍ରେମରେ ମୃଦୁକ ହସିଲେ । ତତ୍ପରେ ବୃଷକେତୁ ଶିବ ଯେଉଁ କାରଣରୁ ଭଗବାନଙ୍କର ସେହି ଅବତାର ହେଲା, ତାହା କହିବାକୁ ଲାଗିଲେ ॥ ୪ ॥ ଦୋହା —ହେ ମୁନୀଶ୍ୱର ଭରଦ୍ୱାଜ ! ମୁଁ ସେ ପ୍ରସଙ୍ଗରେ ସବୁ ତୁମଙ୍କୁ କହୁଛି, ମନ ଲଗାଇ ଶୁଣ । ଶ୍ରୀରାମଚନ୍ଦ୍ରଙ୍କ କଥା କଳିଯୁଗର ପାପହାରିଣୀ, ମଙ୍ଗଳକାରିଣୀ ଓ ଅତି ସୁନ୍ଦର ॥ ୧୪୧ ॥ ଚୌପାଈ —ସ୍ୱାୟମ୍ଭୁବ ମନୁ ଏବଂ ତାଙ୍କ ପତ୍ନୀ ଶତରୂପା— ଏ ଦୁହିଁଙ୍କଠାରୁ ଅନୁପମ ମନୁଷ୍ୟ ଜାତିର ସୃଷ୍ଟି । ଏ ଦମ୍ପତିଙ୍କ ଧର୍ମ ଓ ଆଚରଣ ଅତି ଉତ୍ତମ ଥିଲା । ଆଜି ମଧ୍ୟ ବେଦଗଣ ଉଭୟଙ୍କର ମର୍ଯ୍ୟାଦା ଗାନ କରନ୍ତି ॥ ୧ ॥

ନୃପ ଉତ୍ତାନପାଦ ସୁତ ତାସୂ । ଧ୍ରୁବ ହରିଭଗତ ଭୟଉ ସୁତ ଜାସୂ ॥
ଲଘୁ ସୁତ ନାମ ପ୍ରିୟବ୍ରତ ତାହୀ । ବେଦ ପୁରାନ ପ୍ରସଂସହିଁ ଜାହୀ ॥୨॥
ଦେବହୂତି ପୁନି ତାସୁ କୁମାରୀ । ଜୋ ମୁନି କର୍ଦମ କୈ ପ୍ରିୟ ନାରୀ ॥
ଆଦିଦେବ ପ୍ରଭୁ ଦୀନଦୟାଲା । ଜଠର ଧରେଉ ଜେହିଁ କପିଲ କୃପାଲା ॥୩॥
ସାଂଖ୍ୟ ସାସ୍ତ୍ର ଜିହ୍ନ ପ୍ରଗଟ ବଖାନା । ତତ୍ତ୍ୱ ବିଚାର ନିପୁନ ଭଗବାନା ॥
ତେହିଁ ମନୁ ରାଜ କୀହ୍ନ ବହୁ କାଲା । ପ୍ରଭୁ ଆୟସୁ ସବ ବିଧି ପ୍ରତିପାଲା ॥୪॥
ହୋଇ ନ ବିଷୟ ବିରାଗ ଭବନ ବସତ ଭା ଚୌଥ ପନ ॥
ହୃଦୟଁ ବହୁତ ଦୁଖ ଲାଗ ଜନମ ଗୟଉ ହରିଭଗତି ବିନୁ ॥୧୪୨॥
ବରବସ ରାଜ ସୁତହି ତବ ଦୀହ୍ନା । ନାରି ସମେତ ଗବନ ବନ କୀହ୍ନା ॥
ତୀରଥ ବର ନୈମିଷ ବିଖ୍ୟାତା । ଅତି ପୁନୀତ ସାଧକ ସିଧି ଦାତା ॥୧॥

---

ନୃପତି ଉତ୍ତାନପାଦ ତନୟ ତାହାଙ୍କ । ଧ୍ରୁବ ହରିଭକ୍ତ ସୁତ ହୋଇଲେ ଯାହାଙ୍କ ॥
ପ୍ରିୟବ୍ରତ ଅଟେ ତାଙ୍କ କନିଷ୍ଠ ନନ୍ଦନ । ବେଦ ପୁରାଣେ ଯାହାଙ୍କ ପ୍ରଶଂସା ବର୍ଣ୍ଣନ ॥୨॥
ଦେବହୂତି ଥିଲେ ପୁଣି ତାହାଙ୍କ କୁମାରୀ । ଯେ ମୁନି କର୍ଦ୍ଦମଙ୍କର ହେଲେ ପ୍ରିୟନାରୀ ॥
ଆଦିଦେବ ଦୀନବନ୍ଧୁ ପ୍ରଭୁ ଦୟାକର । କପିଳଙ୍କୁ ଜଠରେ ଯେ ଧରିଲେ ସାଦର ॥୩॥
ସାଂଖ୍ୟ ଶାସ୍ତ୍ରକୁ ପ୍ରକାଶି ଯେ କଲେ ବଖାଣ । ତତ୍ତ୍ୱ ବିଚାରେ ନିପୁଣ ପ୍ରଭୁ ଭଗବାନ ॥
ସେ ମନୁ ବହୁତ କାଳ କରିଲେ ରାଜତ୍ୱ । ପ୍ରଭୁଙ୍କ ଆଦେଶ ପ୍ରତିପାଳି ବିଧିବତ ॥
ବିଷୟ ବୈରାଗ୍ୟ ନ ହୁଏ ଉତ୍ପନ୍ନ ବୃଦ୍ଧ ହୋଇଲି ଭବନେ ।
ହରିଭକ୍ତି ବିନା ବ୍ୟର୍ଥ ଗଲା ଜନ୍ମ ବଡ ଦୁଃଖ ଲାଗେ ମନେ ॥୧୪୨॥
ଅଗତ୍ୟା ରାଜ୍ୟ ପ୍ରଦାନ କରିଣ ସୁତଙ୍କୁ । ରାଣୀଙ୍କ ସହ ଗମନ କଲେ ବନସ୍ତକୁ ॥
ବିଖ୍ୟାତ ନୈମିଷାରଣ୍ୟ ତୀର୍ଥ ଅନୁପମ । ସାଧକ ସିଦ୍ଧି ପ୍ରଦାତା ପବିତ୍ର ପରମ ॥୧॥

---

ରାଜା ଉତ୍ତାନପାଦ ତାଙ୍କର ପୁତ୍ର ଥିଲେ । ତାଙ୍କ ପୁତ୍ର ପ୍ରସିଦ୍ଧ ହରିଭକ୍ତ ଧ୍ରୁବ । ମନୁଙ୍କ କନିଷ୍ଠ ପୁତ୍ରର ନାମ ପ୍ରିୟବ୍ରତ । ବେଦ ଓ ପୁରାଣମାନ ତାଙ୍କ ପ୍ରଶଂସା ଗାନ କରନ୍ତି ॥୨॥ ମନୁଙ୍କର ଦେବହୂତି ନାମ୍ନୀ ଗୋଟିଏ କନ୍ୟା ଥିଲେ । ଉକ୍ତ କନ୍ୟା କର୍ଦ୍ଦମ ମୁନିଙ୍କର ପ୍ରିୟପତ୍ନୀ ହେଲେ । ଦେବହୂତି ଆଦିଦେବ, ଦୀନଦୟାଳୁ, ସମର୍ଥ ଏବଂ କୃପାଳୁ ଭଗବାନ୍ କପିଳଙ୍କୁ ଗର୍ଭରେ ଧାରଣ କଲେ ॥ ୩ ॥ ଭଗବାନ୍ କପିଳମୁନି ତତ୍ତ୍ୱ-ବିଚାରରେ ଅତ୍ୟନ୍ତ ନିପୁଣ ଥିଲେ ଏବଂ ସେ ପ୍ରକାଶ୍ୟ ରୂପରେ ସାଂଖ୍ୟଶାସ୍ତ୍ର ବର୍ଣ୍ଣନା କରିଥିଲେ । ସ୍ୱାୟମ୍ଭୁବ ମନୁ ବହୁତ ସମୟ ପର୍ଯ୍ୟନ୍ତ ରାଜତ୍ୱ କରିଥିଲେ ଏବଂ ସବୁମତେ ଭଗବାନଙ୍କ ଆଜ୍ଞା ପାଳନ କରିଥିଲେ ॥ ୪ ॥ ସୋରଠା —ଘରେ ରହି ଚତୁର୍ଥାବସ୍ଥା (ବାର୍ଦ୍ଧକ୍ୟ) ଆସିଗଲା । କିନ୍ତୁ ବିଷୟ-ବାସନାରୁ ବୈରାଗ୍ୟ ଜାତ ହେଲାନାହିଁ । ଶ୍ରୀହରିଙ୍କ ଭଜନ ବିନା ଜନ୍ମ ଏହିପରି ବ୍ୟର୍ଥ ହୋଇଗଲା—ଏହି କଥା ଚିନ୍ତା କରି ତାଙ୍କ ମନରେ ବଡ ଦୁଃଖ ହେଲା ॥ ୧୪୨ ॥ ଚୌପାଇ —ତେଣୁ ମନୁ ତାଙ୍କ

ବସହିଁ ତହାଁ ମୁନି ସିଦ୍ଧ ସମାଜା । ତହଁ ହିୟଁ ହରଷି ଚଲେଉ ମନୁ ରାଜା ॥
ପଂଥ ଜାତ ସୋହହିଁ ମତିଧୀରା । ଜ୍ଞାନ ଭଗତି ଜନୁ ଧରେଁ ସରୀରା ॥୨॥
ପହୁଁଚେ ଜାଇ ଧେନୁମତି ତୀରା । ହରଷି ନହାନେ ନିରମଲ ନୀରା ॥
ଆଏ ମିଲନ ସିଦ୍ଧ ମୁନି ଜ୍ଞାନୀ । ଧରମ ଧୁରଂଧର ନୃପରିଷି ଜାନୀ ॥୩॥
ଜହଁ ଜହଁ ତୀରଥ ରହେ ସୁହାଏ । ମୁନିନ୍ହ ସକଲ ସାଦର କରୱାଏ ॥
କୃସ ସରୀର ମୁନିପଟ ପରିଧାନା । ସଂତ ସମାଜ ନିତ ସୁନହିଁ ପୁରାନା ॥୪॥

ଦ୍ୱାଦସ ଅଚ୍ଛର ମଂତ୍ର ପୁନି ଜପହିଁ ସହିତ ଅନୁରାଗ ।
ବାସୁଦେବ ପଦ ପଂକରୁହ ଦଂପତି ମନ ଅତି ଲାଗ ॥୧୪୩॥

କରହିଁ ଅହାର ସାକ ଫଲ କଂଦା । ସୁମିରହିଁ ବ୍ରହ୍ମ ସଚ୍ଚିଦାନଂଦା ॥
ପୁନି ହରି ହେତୁ କରନ ତପ ଲାଗେ । ବାରି ଅଧାର ମୂଲ ଫଲ ତ୍ୟାଗେ ॥୧॥

---

ରହନ୍ତି ସେ ସ୍ଥାନେ ସିଦ୍ଧ ମୁନିଙ୍କ ସମାଜ । ଚଳିଲେ ହରଷ ହୃଦେ ତହିଁ ମନୁରାଜ ॥
ପଥ ଯାନ୍ତାକାଳେ ଶୋଭୁଥିଲେ ମତିଧୀର । ଜ୍ଞାନଭକ୍ତି ଯେସନେ ଧରି ଅଛନ୍ତି ଶରୀର ॥୨॥
ପ୍ରବେଶ ହୋଇଲେ ଯାଇ ଧେନୁମତୀ ତୀରେ । ପ୍ରମୋଦିତେ ସ୍ନାନ କଲେ ସୁବିମଳ ନୀରେ ॥
ଆସିଲେ ମିଳିବ ପାଇଁ ସିଦ୍ଧ ମୁନି ଜ୍ଞାନୀ । ଧର୍ମ ଧୁରନ୍ଧର ନରପତି ଋଷି ଜାଣି ॥୩॥
ଯହିଁ ତହିଁ ସୁପବିତ୍ର ତୀର୍ଥ ଯେତେ ଥିଲେ । ସାଦରେ ସେ ସବୁ ମୁନି ତାଙ୍କୁ ଦେଖାଇଲେ ॥
କୃଶତନୁ ମୁନି ଚୀର କରି ପରିଧାନ । ସାଧୁ ସଭା ମଧ୍ୟେ ନିତ୍ୟ ଶୁଣନ୍ତି ପୁରାଣ ॥୪॥

ଦ୍ୱାଦଶ ଅକ୍ଷର ମନ୍ତ୍ର ମନୋହର ପ୍ରେମ ସହିତ ଜପନ୍ତି ।
ବାସୁଦେବ ପଦ- ପୁଣ୍ଡରୀକେ ମନ ନିବେଶି ଅତି ଦମ୍ପତି ॥୧୪୩॥

କରନ୍ତି ଆହାର ଶାକ ଫଳ ମୂଳ କନ୍ଦ । ସ୍ମରନ୍ତି ହୃଦେ ଶାଶ୍ୱତ ବ୍ରହ୍ମ ଚିଦାନନ୍ଦ ॥
ପୁଣି ହରି ହେତୁ ଘୋର ତପ ଆରମ୍ଭିଲେ । ସଲିଳ ଆହାର, ଫଳ ମୂଳ ବିସର୍ଜିଲେ ॥୧॥

---

ପୁତ୍ରଙ୍କୁ ବାଧ୍ୟତା ସହକାରେ ରାଜ୍ୟ ଦେଇ ନିଜ ସ୍ତ୍ରୀ ସହିତ ବନକୁ ଗମନ କଲେ । ପରମ ପବିତ୍ର ଏବଂ ସାଧକଗଣଙ୍କର ସିଦ୍ଧିଦାତା ତୀର୍ଥମାନଙ୍କ ମଧ୍ୟରେ ନୈମିଷାରଣ୍ୟ ପ୍ରସିଦ୍ଧ ॥ ୧ ॥ ଯେଉଁଠାରେ ମୁନି ଓ ସିଦ୍ଧବୃନ୍ଦ ବାସ କରନ୍ତି । ରାଜା ମନୁ ମନେ ମନେ ଆନନ୍ଦିତ ହୋଇ ସେଠାକୁ ଚାଲିଲେ । ଧୀରମତି ରାଜାରାଣୀ ମାର୍ଗରେ ଯିବା ସମୟରେ ଏପରି ସୁଶୋଭିତ ହେଉଥିଲେ, ସତେ ଅବା ଜ୍ଞାନ ଓ ଭକ୍ତି ଶରୀରଧାରଣପୂର୍ବକ ଯାଉଅଛନ୍ତି ॥ ୨ ॥ ଏହିପରି ଯାଉ ଯାଉ ସେମାନେ ଗୋମତୀ ତୀରରେ ପହଞ୍ଚିଲେ । ଆନନ୍ଦିତ ହୋଇ ସେମାନେ ନିର୍ମଳ ଜଳରେ ସ୍ନାନ କଲେ । ରାଜାଙ୍କୁ ଧର୍ମାଗ୍ରଣୀ ରାଜର୍ଷି ବୋଲି ଜାଣି ସିଦ୍ଧ ଓ ଜ୍ଞାନୀ ମୁନିମାନେ ତାଙ୍କ ସହ ସାକ୍ଷାତ କରିବାକୁ ଆସିଲେ ॥ ୩ ॥ ଯେଉଁଠି ଯେଉଁଠି ସୁନ୍ଦର ତୀର୍ଥ ସବୁ ଥିଲା, ମୁନିମାନେ ଆଦରପୂର୍ବକ ସେହି ସେହି ତୀର୍ଥ ସେମାନଙ୍କୁ ଦର୍ଶନ କରାଇଦେଲେ । ତାଙ୍କ ଶରୀର ଦୁର୍ବଳ ହୋଇଗଲା । ସେ ମୁନିମାନଙ୍କ ପରି ବଲ୍କଲ ବସ୍ତ୍ର ପରିଧାନ କରୁଥିଲେ ଏବଂ ସନ୍ଥସମାଜରେ ନିତ୍ୟ ପୁରାଣ

ଉର ଅଭିଲାଷ ନିରଂତର ହୋଈ । ଦେଖିଅ ନୟନ ପରମ ପ୍ରଭୁ ସୋଈ ॥
ଅଗୁନ ଅଖଣ୍ଡ ଅନନ୍ତ ଅନାଦୀ । ଜେହି ଚିଂତହିଁ ପରମାରଥବାଦୀ ॥୨॥
ନେତି ନେତି ଜେହି ବେଦ ନିରୂପା । ନିଜାନଂଦ ନିରୁପାଧି ଅନୂପା ॥
ସଂଭୁ ବିରଂଚି ବିଷ୍ଣୁ ଭଗବାନା । ଉପଜହିଁ ଜାସୁ ଅଂସ ତେଁ ନାନା ॥୩॥
ଐସେଉ ପ୍ରଭୁ ସେବକ ବସ ଅହଈ । ଭଗତ ହେତୁ ଲୀଲାତନୁ ଗହଈ ॥
ଜୌଁ ୟହ ବଚନ ସତ୍ୟ ଶ୍ରୁତି ଭାଷା । ତୌ ହମାର ପୂଜହି ଅଭିଲାଷା ॥୪॥

ଏହି ବିଧି ବୀତେ ବରଷ ଷଟ ସହସ ବାରି ଆହାର ।
ସଂବତ ସପ୍ତ ସହସ୍ର ପୁନି ରହେ ସମୀର ଅଧାର ॥୧୪୪॥

---

ହୃଦେ ଏହି ଅଭିଲାଷ ହୁଏ ନିରନ୍ତର । ଦେଖନ୍ତୁ ନୟନେ ସେହି ପରମ ଈଶ୍ୱର ॥
ଅଗୁଣ ଅଖଣ୍ଡ ଅଜ ଅନନ୍ତ ଅନାଦି । ଯାହାଙ୍କୁ ଲକ୍ଷ୍ୟ କରନ୍ତି ପରମାର୍ଥବାଦୀ ॥୨॥
ନେତି ନେତି ବୋଲି ଯେହୁ ବେଦେ ନିରୂପିତ । ନିତ୍ୟାନନ୍ଦ ନିରୁପମ କାରଣ ରହିତ ॥
ବିଷ୍ଣୁ ଭଗବାନ ବ୍ରହ୍ମା ଆବର ମହେଶ । ଯାହାଙ୍କ ଅଂଶୁ ଉତ୍ପନ୍ନ ହୁଅନ୍ତି ଅଶେଷ ॥୩॥
ଏମନ୍ତ ପ୍ରଭୁ ସେବକ ଅଧୀନ ଅଟନ୍ତି । ଭକ୍ତ ହେତୁ ଲୀଳା ତନୁ ଧାରଣ କରନ୍ତି ।
ଏପରି ବଚନ ଶ୍ରୁତି ସତ୍ୟ ଭାଷେ ଯେବେ । ପୂର୍ଣ୍ଣ ହୋଇବ ଆମ୍ଭର ଅଭିଲାଷ ତେବେ ॥୪॥

ଏହୁ ଭାବେ ଷଡ ସହସ୍ର ବରଷ କଟିଲା ବାରି ଆହାରେ ।
ରହିଲେ ସମୀର ଭକ୍ଷିଣ ଆବର ବରଷ ସାତ ହଜାରେ ॥୧୪୪॥

---

ଶୁଣୁଥିଲେ ॥ ୪ ॥ ଦୋହା —ଏବଂ "ଓଁ ନମୋ ଭଗବତେ ବାସୁଦେବାୟ", ଏହି ଦ୍ୱାଦଶାକ୍ଷର ମନ୍ତ୍ରକୁ ପ୍ରେମ ସହିତ ଜପ କରୁଥିଲେ । ଭଗବାନ୍ ବାସୁଦେବଙ୍କ ଚରଣ-କମଳରେ ସେହି ରାଜାରାଣୀଙ୍କର ମନ ଦୃଢ଼ ଭାବରେ ଲାଗିଗଲା ॥ ୧୪୩ ॥ ଚୌପାଈ —ସେମାନେ ଶାକ, ଫଳ ଓ କନ୍ଦ ଆହାର କରୁଥିଲେ ଏବଂ ସଚ୍ଚିଦାନନ୍ଦ ବ୍ରହ୍ମଙ୍କୁ ସ୍ମରଣ କରୁଥିଲେ । ତତ୍ପରେ ସେମାନେ ଶ୍ରୀହରିଙ୍କ ଉଦ୍ଦେଶ୍ୟରେ ତପସ୍ୟା କରିବାକୁ ଲାଗିଲେ ଏବଂ ଫଳମୂଳକୁ ତ୍ୟାଗ କରି କେବଳ ଜଳପାନ କରି ଜୀବନ ଯାପନ କରିବାକୁ ଲାଗିଲେ ॥ ୧ ॥ ଯେଉଁ ପ୍ରଭୁ ନିର୍ଗୁଣ, ଅଖଣ୍ଡ, ଅନନ୍ତ ଓ ଅନାଦି ଏବଂ ପରମାର୍ଥବାଦୀ (ବ୍ରହ୍ମଜ୍ଞାନୀ, ତତ୍ତ୍ୱବେତ୍ତା) ଲୋକମାନେ ଯାହାଙ୍କର ଚିନ୍ତନ କରନ୍ତି, ସେହି ପରମ ପ୍ରଭୁଙ୍କୁ ଚକ୍ଷୁରେ ଦେଖିବା ପାଇଁ ସେମାନଙ୍କ ହୃଦୟରେ ନିରନ୍ତର ଅଭିଲାଷ ଜାଗ୍ରତ ହେଉଥାଏ ॥ ୨ ॥ ଯାହାଙ୍କୁ ବେଦଗଣ 'ନେତି' 'ନେତି' (ଏତିକି ନୁହେଁ, ଏତିକି ନୁହେଁ) ବୋଲି କହି ନିରୂପଣ କରନ୍ତି, ଯେ ଆନନ୍ଦସ୍ୱରୂପ, ଉପାଧି-ରହିତ ଓ ଅନୁପମ ଏବଂ ଯାହାଙ୍କ ଅଂଶରେ ଅନେକ ଶିବ, ବ୍ରହ୍ମା ଓ ବିଷ୍ଣୁ ଭଗବାନ୍ ଉତ୍ପନ୍ନ ହୁଅନ୍ତି, ଏପରି ମହାପ୍ରଭୁ ସେବକର ବଶୀଭୂତ ହୁଅନ୍ତି ଏବଂ ଭକ୍ତଗଣଙ୍କ ନିମନ୍ତେ ଦିବ୍ୟ ଲୀଳା-କଳେବର ଧାରଣ କରନ୍ତି । ଯଦି ବେଦୋକ୍ତ ଏହି ବାଣୀ ସତ୍ୟ, ତେବେ ଆମ ଅଭିଲାଷ ଅବଶ୍ୟ ପୂର୍ଣ୍ଣ ହେବ ॥ ୩-୪ ॥ ଦୋହା —ଏହି ରୂପେ ଜଳାହାର-

ବରଷ ସହସ ଦସ ତ୍ୟାଗେଉ ସୋଊ । ଠାଢ଼େ ରହେ ଏକ ପଦ ଦୋଊ ॥
ବିଧି ହରି ହର ତପ ଦେଖି ଅପାରା । ମନୁ ସମୀପ ଆଏ ବହୁ ବାରା ॥୧॥
ମାଁଗହୁ ବର ବହୁ ଭାଁତି ଲୋଭାଏ । ପରମ ଧୀର ନହିଁ ଚଲହିଁ ଚଲାଏ ॥
ଅସ୍ଥି ମାତ୍ର ହୋଇ ରହେ ସରୀରା । ତଦପି ମନାଗ ମନହିଁ ନହିଁ ପୀରା ॥୨॥
ପ୍ରଭୁ ସର୍ବଜ୍ଞ ଦାସ ନିଜ ଜାନୀ । ଗତି ଅନନ୍ୟ ତାପସ ନୃପ ରାନୀ ॥
ମାଗୁ ମାଗୁ ବରୁ ଭୈ ନଭ ବାନୀ । ପରମ ଗଭୀର କୃପାମୃତ ସାନୀ ॥୩॥
ମୃତକ ଜିଆୱନି ଗିରା ସୁହାଈ । ଶ୍ରବନ ରଂଧ୍ର ହୋଇ ଉର ଜବ ଆଈ ॥
ହୃଷ୍ଟ ପୁଷ୍ଟ ତନ ଭଏ ସୁହାଏ । ମାନହୁଁ ଅବହିଁ ଭବନ ତେଁ ଆଏ ॥୪॥
ଶ୍ରବନ ସୁଧା ସମ ବଚନ ସୁନି ପୁଲକ ପ୍ରଫୁଲ୍ଲିତ ଗାତ ।
ବୋଲେ ମନୁ କରି ଦଂଡବତ ପ୍ରେମ ନ ହୃଦୟଁ ସମାତ ॥୧୪୫॥

---

ଦଶ ସହସ୍ର ବରଷ ତାହା ବିସର୍ଜିଲେ । ଏକ ପଦେ ଉଭା ହୋଇ ଉଭୟେ ରହିଲେ ॥
ବିଧି ହରି ହର ତପ ବିଲୋକି ଅପାର । ମନୁଙ୍କ ସମୀପେ ଆଗମିଲେ ବହୁବାର ॥୧॥
ବର ମାଗ ବୋଲି ବହୁ ଲୋଭ ଦେଖାଇଲେ । ପରମ ଧୀର ଆପଣା ପଥୁ ନ ଟଳିଲେ ॥
ଅସ୍ଥି ଅବଶିଷ୍ଟ ହୋଇ ଶରୀର ରହିଲା । ତଥାପି ମନେ କିଞ୍ଚିତ ବ୍ୟଥା ନ ହୋଇଲା ॥୨॥
ପ୍ରଭୁ ସର୍ବଜ୍ଞ ସେ ତପୋନିଷ୍ଠ ରାଣୀ ନୃପେ । ଜାଣିଲେ ଅନନ୍ୟ ଗତି ନିଜ ଦାସରୂପେ ॥
"ମାଗ ମାଗ ବର" ନଭ ବାଣୀ ମନୋରମ । ହେଲା କୃପା ମୃତେ ସିକ୍ତ ଗମ୍ଭୀର ପରମ ॥୩॥
ମୃତ ସଞ୍ଜୀବନୀ ମୃଦୁ ବଚନ ମଧୁରେ । କର୍ଣ୍ଣ ରନ୍ଧ୍ର ହୋଇ ଯେବେ ପ୍ରବେଶିଲା ଉରେ ॥
ହେଲା ହୃଷ୍ଟପୁଷ୍ଟ ଦିବ୍ୟ କଳେବର ଅତି । ମନେ ହୁଏ ଏହିକ୍ଷଣି ଘରୁ ଆସିଛନ୍ତି ॥୪॥
ଶୁଣି ସୁଧାସମ ଶ୍ରବଣେ ବଚନ ପୁଲକ ପ୍ରଫୁଲ୍ଲ ତନୁ ।
ଅସମ୍ଭାଳ ପ୍ରେମ ହୃଦୟେ ଭାଷିଲେ କରି ପ୍ରଣିପାତ ମନୁ ॥୧୪୫॥

---

ପର୍ବତ ତପସ୍ୟା କରୁ କରୁ ଛଅ ହଜାର ବର୍ଷ ବିତିଗଲା । ପୁନଶ୍ଚ ସାତ ହଜାର ବର୍ଷ ସେମାନେ କେବଳ ବାୟୁ ଆହାରରେ କାଳାତିପାତ କରିବାକୁ ଲାଗିଲେ ॥ ୧୪୪ ॥ ଚୌପାଇ '—ଦଶ ହଜାର ବର୍ଷ ପର୍ଯ୍ୟନ୍ତ ସେମାନେ ବାୟୁ ଆହାର ମଧ୍ୟ ଛାଡ଼ି ଦେଲେ । ଉଭୟେ ଏକଗୋଡ଼ିକିଆ ଛିଡ଼ା ହୋଇ ରହିଲେ । ସେମାନଙ୍କ ଅପାର ତପସ୍ୟା ଦେଖି ବ୍ରହ୍ମା, ବିଷ୍ଣୁ ଓ ଶିବ ଅନେକ ଥର ମନୁଙ୍କ ନିକଟକୁ ଆସିଲେ ॥ ୧ ॥ ସେମାନେ ଏ ଦୁହିଁଙ୍କୁ ବର ମାଗିବା ପାଇଁ ଅନେକ ପ୍ରକାରେ ପ୍ରଲୋଭନ ଦେଖାଇଲେ । କିନ୍ତୁ ପରମଧୀର ରାଜାରାଣୀ କାହାରି କଥାରେ ତପସ୍ୟାରୁ ବିଚଳିତ ହେଲେ ନାହିଁ । ସେମାନଙ୍କ ଶରୀର ଅସ୍ଥିକଙ୍କାଳସାର ହୋଇ ରହିଲା । ତଥାପି ମନରେ ଟିକିଏ ହେଲେ ପୀଡ଼ା ଜାତ ହେଲାନାହିଁ ॥ ୨ ॥ ସର୍ବଜ୍ଞ ପ୍ରଭୁ ଅନନ୍ୟାଶ୍ରିତ ତପସ୍ୱୀ ରାଜାରାଣୀଙ୍କୁ "ନିଜ ଦାସ" ବୋଲି ଜାଣିଲେ । ସେତେବେଳେ ପରମ-ଗମ୍ଭୀର ଓ କୃପାମୃତ-ସିକ୍ତ ଆକାଶବାଣୀ ଶୁଣାଗଲା—"ବର ମାଗ" ॥ ୩ ॥

ସୁନୁ ସେବକ ସୁରତରୁ ସୁରଧେନୂ । ବିଧି ହରି ହର ବଂଦିତ ପଦ ରେନୂ ॥
ସେବତ ସୁଲଭ ସକଲ ସୁଖଦାୟକ । ପ୍ରନତପାଲ ସଚରାଚର ନାୟକ ॥୧॥
ଜୌଁ ଅନାଥ ହିତ ହମ ପର ନେହୂ । ତୌ ପ୍ରସନ୍ନ ହୋଇ ୟହ ବର ଦେହୂ ॥
ଜୋ ସରୂପ ବସ ସିବ ମନ ମାହୀଁ । ଜେହି କାରନ ମୁନି ଜତନ କରାହୀଁ ॥୨॥
ଜୋ ଭୁସୁଣ୍ଡି ମନ ମାନସ ହଂସା । ସଗୁନ ଅଗୁନ ଜେହି ନିଗମ ପ୍ରସଂସା ॥
ଦେଖହିଁ ହମ ସୋ ରୂପ ଭରି ଲୋଚନ । କୃପା କରହୁ ପ୍ରନତାରତି ମୋଚନ ॥୩॥
ଦଂପତି ବଚନ ପରମ ପ୍ରିୟ ଲାଗେ । ମୃଦୁଲ ବିନୀତ ପ୍ରେମ ରସ ପାଗେ ॥
ଭଗତ ବଛଲ ପ୍ରଭୁ କୃପାନିଧାନା । ବିସ୍ୱବାସ ପ୍ରଗଟେ ଭଗବାନା ॥୪॥

---

ଶୁଣ ସେବକଙ୍କ କଳ୍ପତରୁ କାମଧେନୁ । ବିଧି ହରି ହର ବନ୍ଦନୀୟ ପଦରେଣୁ ॥
ସେବନ୍ତେ ସୁଲଭ ସର୍ବ ସୁଖ-ପ୍ରଦାୟକ । ପ୍ରଣତ-ପାଳକ ଚର-ଅଚର-ନାୟକ ॥୧॥
ଅନାଥ ନାଥ ଆମ୍ଭଙ୍କୁ ସ୍ନେହ ଯେବେ କର । ପ୍ରସନ୍ନ ହୋଇ ଦିଅନ୍ତୁ ତେବେ ଏହି ବର ॥
ଯେଉଁ ସ୍ୱରୂପ ଶିବଙ୍କ ହୃଦେ କରେ ବାସ । ଯାହାଙ୍କ ନିମନ୍ତେ ମୁନି କରନ୍ତି ପ୍ରୟାସ ॥୨॥
ଭୁଶୁଣ୍ଡି ମନ-ମାନସେ ହଂସ ଯେ ଅଟଇ । ସଗୁଣ ଅଗୁଣ ଯା'ରେ ଶ୍ରୁତି ପ୍ରଶଂସଇ ॥
ନେତ୍ର ପୂର୍ଣ୍ଣ କରି ଆମ୍ଭେ ସେ ରୂପ ଦେଖନ୍ତୁ । ଆର୍ତ୍ତି ଦୁଃଖ ହାରି ଏହି କରୁଣା କରନ୍ତୁ ॥୩॥
ଦମ୍ପତି ବଚନ ପ୍ରିୟ ଲାଗିଲା ବହୁତ । ମୃଦୁଳ ବିନୀତ ପକ୍ୱ ପ୍ରେମ ରସ ଯୁକ୍ତ ॥
ଭକ୍ତ ବତ୍ସଳ ସେ ପ୍ରଭୁ କରୁଣା ନିଧାନ । ପ୍ରକଟ ହୋଇଲେ ବିଶ୍ୱବାସ ଭଗବାନ ॥୪॥

---

ମୃତ ଶରୀରରେ ପ୍ରାଣସଞ୍ଚାରକାରିଣୀ ଏହି ମନୋହର ଓ ସୁନ୍ଦରବାଣୀ ରାଜାରାଣୀଙ୍କ କର୍ଣ୍ଣକୁ ଦ୍ୱାର ଦେଇ ଯେତେବେଳେ ହୃଦୟରେ ପ୍ରବେଶ କଲା, ସେତେବେଳେ ଉଭୟଙ୍କ ଶରୀର ହୃଷ୍ଟପୁଷ୍ଟ ହୋଇ ଉଠିଲା, ସତେ ଯେମିତି ସେମାନେ ଏହିକ୍ଷଣି ଘରୁ ଆସିଅଛନ୍ତି ॥ ୪ ॥ ଦୋହା —ଅମୃତ ସମାନ ବଚନ କାନରେ ଶୁଣିବା ମାତ୍ରେ ସେମାନଙ୍କ ଶରୀର ପୁଲକିତ ଓ ପ୍ରଫୁଲ୍ଲିତ ହୋଇଗଲା । ମନୁଙ୍କ ହୃଦୟରେ ପ୍ରେମର ସୀମା ରହିଲା ନାହିଁ । ସେ ଦଣ୍ଡବତ କରି କହିଲେ—॥ ୧୪୫ ॥ ଚୌପାଇ —"ହେ ପ୍ରଭୋ ! ଶୁଣନ୍ତୁ । ଆପଣ ସେବକମାନଙ୍କ ନିମନ୍ତେ କଳ୍ପବୃକ୍ଷ ଓ କାମଧେନୁ । ବ୍ରହ୍ମା, ବିଷ୍ଣୁ ଓ ଶିବ ସୁଦ୍ଧା ଆପଣଙ୍କ ଚରଣ-ରଜ ବନ୍ଦନା କରନ୍ତି । ସେବା କରିବା ଦ୍ୱାରା ଆପଣ ସୁଲଭ ହୁଅନ୍ତି ଏବଂ ଆପଣ ସକଳ ସୁଖର ଦାତା । ଆପଣ ଶରଣାଗତର ରକ୍ଷକ ଏବଂ ଜଡଚେତନ, ସମସ୍ତ ପ୍ରାଣୀଙ୍କର ସ୍ୱାମୀ ॥ ୧ ॥ ହେ ଅନାଥର କଲ୍ୟାଣକାରି ! ଯଦି ଆମ୍ଭମାନଙ୍କଠାରେ ଆପଣଙ୍କ ସ୍ନେହ ଥାଏ, ତେବେ ପ୍ରସନ୍ନ ହୋଇ ଏହି ବର ଦିଅନ୍ତୁ । ଆପଣଙ୍କର ଯେଉଁ ସ୍ୱରୂପ ଶିବଙ୍କ ହୃଦୟରେ ବିଦ୍ୟମାନ ଏବଂ ଯାହାକୁ ପାଇବାକୁ ମୁନିମାନେ ଯତ୍ନ କରନ୍ତି, ଯେଉଁ ରୂପ କାକ ଭୁଶୁଣ୍ଡିଙ୍କ ମନରୂପୀ ମାନସରୋବରରେ ହଂସ ରୂପେ ବିହାର କରୁଥାଏ, ସଗୁଣ ଓ ନିର୍ଗୁଣ କହି ବେଦ ଯାହାଙ୍କର ପ୍ରଶଂସା କରନ୍ତି, ହେ ଶରଣାଗତ-ଦୁଃଖମୋଚନ ! ସେହି ରୂପକୁ ଆମେ ଯେପରି ଆଖି ପୂରେଇ ଦେଖୁ, ସେଥି ନିମନ୍ତେ

ନୀଲ ସରୋରୁହ ନୀଲମନି ନୀଲ ନୀରଧର ସ୍ୟାମ ॥
ଲାଜହିଁ ତନ ସୋଭା ନିରଖି କୋଟି କୋଟି ସତ କାମ ॥୧୪୬॥
ସରଦ ମୟଂକ ବଦନ ଛବି ସୀଁୱାଁ । ରୁଚିର କପୋଲ ଚିବୁକ ଦର ଗ୍ରୀୱାଁ ॥
ଅଧର ଅରୁନ ରଦ ସୁନ୍ଦର ନାସା । ବିଧୁ କର ନିକର ବିନିଂଦକ ହାସା ॥୧॥
ନବ ଅଂବୁଜ ଅଂବକ ଛବି ନୀକୀ । ଚିତୱନି ଲଲିତ ଭାୱଁତି ଜୀ କୀ ॥
ଭୃକୁଟି ମନୋଜ ଚାପ ଛବି ହାରୀ । ତିଲକ ଲଲାଟ ପଟଲ ଦୁତିକାରୀ ॥୨॥
କୁଣ୍ଡଲ ମକର ମୁକୁଟ ସିର ଭ୍ରାଜା । କୁଟିଲ କେସ ଜନୁ ମଧୁପ ସମାଜା ॥
ଉର ଶ୍ରୀବତ୍ସ ରୁଚିର ବନମାଲା । ପଦିକ ହାର ଭୂଷନ ମନିଜାଲା ॥୩॥
କେହରି କଂଧର ଚାରୁ ଜନେଊ । ବାହୁ ବିଭୂଷନ ସୁନ୍ଦର ତେଊ ॥
କରି କର ସରିସ ସୁଭଗ ଭୁଜଦଂଡା । କଟି ନିଷଙ୍ଗ କର ସର କୋଦଂଡା ॥୪॥

---

ନୀଳ ସରୋରୁହ ନୀଳ ନୀରବହ ନୀଳମଣି ସମ ଶ୍ୟାମ ।
ଦେଖି ତନୁକାନ୍ତି ଲଜ୍ଜିତ ହୁଅନ୍ତି କୋଟି କୋଟି ଶତ କାମ ॥୧୪୬॥
ବଦନ ଶରଦ ଚନ୍ଦ୍ର ଛବିକୁ ହରଇ । କପୋଳ ଚିବୁକ କମ୍ବୁ ଗ୍ରୀବା-ସୁଶୋଭଇ ॥
ଅରୁଣ ଅଧର ଦନ୍ତ ନାସିକା ସୁନ୍ଦର । ହାସ୍ୟ ବିନିନ୍ଦକ ବିଧୁ କିରଣ ନିକର ॥୧॥
ନବ ଅମ୍ବୁଜ ନୟନ ଛବି ରମଣୀୟ । ଚାରୁ ଚାହାଣି ମନକୁ ଲାଗେ ଅତି ପ୍ରିୟ ॥
ଭ୍ରୁକୁଟି ମୀନ-କେତନ-ଚାପ ଛବିହାରୀ । ତିଳକ ରେଖା ଲଲାଟ ପଟ ଦ୍ୟୁତିକାରୀ ॥୨॥
ମକର କୁଣ୍ଡଳ ଶିରେ ମୁକୁଟ ବିରାଜେ । କୁଞ୍ଚିତ କେଶ ମଧୁପ ସମାଜ କି ସାଜେ ॥
ହୃଦୟେ ଶ୍ରୀବତ୍ସ ଶୋଭେ ଚାରୁ ବନମାଳ । ମଣି ଭୂଷଣ ପଦିକ ହାର ସୁବିଶାଳ ॥୩॥
କେଶରୀ ସ୍କନ୍ଧ ରୁଚିର ଯଜ୍ଞ ଉପବୀତ । ଭୁଜେ ବିଭୂଷଣ ଅତି ହୁଅଇ ଶୋଭିତ ॥
କରୀ କର ପ୍ରାୟେ କମନୀୟ ଭୁଜଦଣ୍ଡ । କଟିରେ ନିଷଙ୍ଗ କରେ ଶାୟକ କୋଦଣ୍ଡ ॥୪॥

---

ଆପଣ କୃପା କରନ୍ତୁ ।” ॥୨-୩॥ ରାଜାରାଣୀଙ୍କ କୋମଳ, ବିନମ୍ର ଓ ପ୍ରେମରସସିକ୍ତ ବଚନ ଭଗବାନଙ୍କୁ ବହୁତ ଭଲ ଲାଗିଲା । ଭକ୍ତବତ୍ସଳ, କୃପାନିଧାନ, ବିଶ୍ୱବାସ ଓ ସର୍ବସମର୍ଥ ଭଗବାନ୍ ଆବିର୍ଭୂତ ହେଲେ ॥ ୪ ॥ ଦୋହା :—ଭଗବାନ୍‌ଙ୍କର, ନୀଳକମଳ, ନୀଳମଣି ଓ ନୀଳ, ନୀରବହ ମେଘ ସମାନ କୋମଳ, ପ୍ରକାଶମୟ ସରସ ଓ ଶ୍ୟାମବର୍ଣ୍ଣ ବିଶିଷ୍ଟ ଶରୀରର ଶୋଭା ଦେଖି ଶତ କୋଟି କୋଟି କାମଦେବ ମଧ୍ୟ ଲଜ୍ଜିତ ହୁଅନ୍ତି ॥ ୧୪୬ ॥ ଚୌପାଈ :—ତାଙ୍କର ମୁଖ ଶରତ ପୂର୍ଣ୍ଣିମାର ଚନ୍ଦ୍ରଙ୍କ ସମାନ, ଛବିର ସୀମା ସ୍ୱରୂପ ଥିଲା । କପୋଳ ଓ ଚିବୁକ ଅତି ସୁନ୍ଦର । ଗଳା ଶଙ୍ଖ ପରି । ଲାଲ ଓଷ୍ଠ, ଦନ୍ତ ଓ ନାସିକା ଅତ୍ୟନ୍ତ ସୁନ୍ଦର । ହାସ୍ୟ ଚନ୍ଦ୍ରମାର କିରଣାବଳୀକୁ ନିନ୍ଦା କରୁଥାଏ ॥ ୧ ॥ ନେତ୍ରର ଛବି ନବବିକଶିତ ପଦ୍ମ ସମାନ ଅତି ମନୋହର । ଲଳିତ କଟାକ୍ଷ ମନକୁ ହରଣ କରି ନେଉଥାଏ । ବଙ୍କଭ୍ରୂଲତା କାମଦେବଙ୍କ ଧନୁର ଶୋଭାକୁ ତୁଚ୍ଛ କରୁଥାଏ । ଲଲାଟପଟଳ ଉପରେ ଜ୍ୟୋତିର୍ମୟ ତିଳକ ସୁଶୋଭିତ ॥୨॥

ତଡ଼ିତ ବିନିଂଦକ ପୀତ ପଟ ଉଦର ରେଖ ବର ତୀନି ।
ନାଭି ମନୋହର ଲେତି ଜନୁ ଜମୁନ ଭଁୱର ଛବି ଛୀନି ॥୧୪୭॥
ପଦ ରାଜୀବ ବରନି ନହିଁ ଜାହୀଁ । ମୁନି ମନ ମଧୁପ ବସହିଁ ଜେହ୍ନ ମାହୀଁ ॥
ବାମ ଭାଗ ସୋଭତି ଅନୁକୂଲା । ଆଦିସକ୍ତି ଛବିନିଧି ଜଗମୂଲା ॥୧॥
ଜାସୁ ଅଂସ ଉପଜହିଁ ଗୁନଖାନୀ । ଅଗନିତ ଲଚ୍ଛି ଉମା ବ୍ରହ୍ମାନୀ ॥
ଭୃକୁଟି ବିଲାସ ଜାସୁ ଜଗ ହୋଈ । ରାମ ବାମ ଦିସି ସୀତା ସୋଈ ॥୨॥
ଛବିସମୁଦ୍ର ହରି ରୂପ ବିଲୋକୀ । ଏକଟକ ରହେ ନୟନ ପଟ ରୋକୀ ॥
ଚିତୱହିଁ ସାଦର ରୂପ ଅନୂପା । ତୃପ୍ତି ନ ମାନହିଁ ମନୁ ସତରୂପା ॥୩॥

---

ତଡ଼ିତକୁ ନିନ୍ଦେ ପୀତ ପରିଧେୟ ତ୍ରିବଳୀ ରେଖା ଉଦରେ ॥
ନାଭି ସୁଲଳିତ ଯମୁନା ଆବର୍ତ୍ତ ଛବି ଅବା ଅପହରେ ॥୧୪୭॥
ପଦ-ସରୋଜ ବର୍ଣ୍ଣନ କରି ନ ହୁଅଇ । ମୁନି ମନ-ମଧୁକର ଯା ମଧ୍ୟେ ବସଇ ॥
ବାମ ଭାଗେ ଶୋଭାମୟୀ ମାତା ଆଦିଶକ୍ତି । ଅନୁକୂଳା ବିଶ୍ୱମୂଳା ସୁଷମା ଲଭନ୍ତି ॥୧॥
ଯାହାଙ୍କ ଅଂଶୁ ହୁଅନ୍ତି ଜାତ ଗୁଣାକର । ଅଗଣିତ ରମା ଉମା ବ୍ରହ୍ମାଣୀ ଆବର ॥
ଯାର ଭ୍ରୂଭଙ୍ଗୀରେ ସୃଷ୍ଟି ହୁଅଇ ଉତ୍ପତ୍ତି । ରାମ ବାମ ଭାଗେ ସେହି ସୀତା ବିରାଜନ୍ତି ॥୨॥
ଛବି ସମୁଦ୍ର ହରିଙ୍କ ରୂପ ଦେଖି ଭାରି । ଏକାଗ୍ରେ ଚାହିଁ ରହିଲେ ପଲକ ନ ମାରି ॥
ସାନୁରାଗେ ଅନୁପମ ରୂପ ନିରେଖନ୍ତି । ମନୁ ଶତରୂପା ପରିତୃପ୍ତି ନ ଲଭନ୍ତି ॥୩॥

---

କର୍ଣ୍ଣରେ ମକରାକୃତି ବିଶିଷ୍ଟ କୁଣ୍ଡଳ ଓ ଶିର ଉପରେ ମୁକୁଟ ସୁଶୋଭିତ । ସଘନ, କୁଟିଳ ଓ କୃଷ୍ଣ କେଶ ଭ୍ରମରସମାନ ସଦୃଶ ଦେଖାଯାଇଥାଏ । ବକ୍ଷରେ ଶ୍ରୀବତ୍ସ ପଦ, ସୁନ୍ଦର ବନମାଳା, ରତ୍ନଜଟିତ ହାର ଓ ମଣିସମୂହର ଭୂଷଣ ସୁଶୋଭିତ ॥ ୩ ॥ ସିଂହର କାନ୍ଧ ପରି କାନ୍ଧ । ସୁନ୍ଦର ଉପବୀତ । ହସ୍ତିଶୁଣ୍ଢ ତୁଲ୍ୟ ସୁନ୍ଦର ଭୁଜଦଣ୍ଡ । କଟିରେ ତୂଣୀର (ଶରତୂଣା) ଏବଂ ହସ୍ତରେ ଧନୁଶର ଶୋଭା ପାଉଥାଏ ॥ ୪ ॥ ଦୋହା :—ପୀତାମ୍ବର ବିଜୁଳିକୁ ନିନ୍ଦା କରୁଥାଏ । ଉଦରରେ ସୁନ୍ଦର ତିନି-ରେଖା (ତ୍ରିବଳୀ) ଥିଲା । ନାଭି ଏପରି ମନୋହର ଯେ ସତେ ଯେପରି ଯମୁନା-ଭଉଁରୀର ଛବିକୁ ତାହା ଛଡ଼ାଇ ଆଣିଲା ପରି ଜଣା ପଡୁଥାଏ ॥ ୧୪୭ ॥ ଚୌପାଇ :—ମୁନିମାନଙ୍କର ମନ-ଭ୍ରମର ଭଗବାନଙ୍କର ଯେଉଁ ଚରଣ-କମଳରେ ଯାଇ ବସନ୍ତି, ସେ ଚରଣ-କମଳର ବର୍ଣ୍ଣନା ତ କରିଯାଇ ପାରିବ ନାହିଁ । ଭଗବାନଙ୍କ ବାମ ପାର୍ଶ୍ୱରେ ସଦା-ଅନୁକୂଳା, ଶୋଭାଭଣ୍ଡାର, ଜଗତର ମୂଳ କାରଣରୂପା, ଆଦିଶକ୍ତି ଶ୍ରୀ ଜାନକୀ ସୁଶୋଭିତା ॥ ୧ ॥ ଯାହାଙ୍କ ଅଂଶରୁ ଗୁଣଖଣି ଅଗଣିତ ଲକ୍ଷ୍ମୀ, ପାର୍ବତୀ ଓ ବ୍ରହ୍ମାଣୀ (ତ୍ରିଦେବଙ୍କ ଶକ୍ତି) ଉତ୍ପନ୍ନ ହୁଅନ୍ତି ଏବଂ ଯାହାଙ୍କ ଭ୍ରୂଭଙ୍ଗୀ-ସଙ୍କେତରେ ହିଁ ଜଗତର ରଚନା ହୋଇଯାଏ, ଭଗବାନଙ୍କ ସେହି ସ୍ୱରୂପାଶକ୍ତି ଶ୍ରୀସୀତା ଶ୍ରୀରାମଚନ୍ଦ୍ରଙ୍କ ବାମ ପାର୍ଶ୍ୱରେ ବିରାଜିତା ॥୨॥ ଶୋଭାସାଗର ଶ୍ରୀହରିଙ୍କ ରୂପ ଦେଖି ମନୁ ଓ ଶତରୂପା ନିର୍ନିମେଷ ନୟନରେ ସ୍ତବ୍ଧ

ହରଷ ବିବସ ତନ ଦସା ଭୁଲାନୀ । ପରେ ଦଂଡ ଇବ ଗହି ପଦ ପାନୀ ॥
ସିର ପରସେ ପ୍ରଭୁ ନିଜ କର କଂଜା । ତୁରତ ଉଠାଏ କରୁନାପୁଂଜା ॥୪॥
ବୋଲେ କୃପାନିଧାନ ପୁନି ଅତି ପ୍ରସନ୍ନ ମୋହି ଜାନି ।
ମାଁଗହୁ ବର ଜୋଇ ଭାଵ ମନ ମହାଦାନି ଅନୁମାନି ॥୧୪୮॥
ସୁନି ପ୍ରଭୁବଚନ ଜୋରି ଜୁଗ ପାନୀ । ଧରି ଧୀରଜୁ ବୋଲୀ ମୃଦୁ ବାନୀ ॥
ନାଥ ଦେଖି ପଦ କମଲ ତୁମ୍ହାରେ । ଅବ ପୂରେ ସବ କାମ ହମାରେ ॥୧॥
ଏକ ଲାଲସା ବଡ଼ି ଉର ମାହୀଁ । ସୁଗମ ଅଗମ କହି ଜାତି ସୋ ନାହୀଁ ॥
ତୁମ୍ହହିଁ ଦେତ ଅତି ସୁଗମ ଗୋସାଈଁ । ଅଗମ ଲାଗ ମୋହି ନିଜ କୃପନାଈଁ ॥୨॥
ଜଥା ଦରିଦ୍ର ବିବୁଧତରୁ ପାଈ । ବହୁ ସଂପତି ମାଗତ ସକୁଚାଈ ॥
ତାସୁ ପ୍ରଭାଉ ଜାନ ନହିଁ ସୋଈ । ତଥା ହୃଦୟଁ ମମ ସଂସୟ ହୋଈ ॥୩॥

---

ହରଷ ବିବଶ ତନୁ ଦଶା ପାଶୋରିଲେ । ପଦ କରେ ଧରି ଦଣ୍ଡ ସଦୃଶ ପଡ଼ିଲେ ॥
ଶିରେ ସ୍ପର୍ଶ କରି ପ୍ରଭୁ ନିଜ କଞ୍ଜକର । କରୁଣା-ପୁଞ୍ଜ ଉଠାଇ ଆଣିଲେ ସତ୍ୱର ॥୪॥
କରୁଣାନିଧାନ ଭାଷିଲେ ଆବର ମୋତେ ସୁପ୍ରସନ୍ନ ଜାଣି ।
ଅଭିଳାଷ ଯାହା ମାଗି ଘେନ ତାହା ମହାଦାନୀ ଅନୁମାନି ॥୧୪୮॥
ଶୁଣି ପ୍ରଭୁଙ୍କ ବଚନ ଯୋଡ଼ି ଯୁଗ୍ମପାଣି । ଧୈର୍ଯ୍ୟ ଧରି ଉଚ୍ଚାରିଲେ ମୃଦୁ ମଞ୍ଜୁ ବାଣୀ ॥
ନାଥ ନିରେଖିଣ ତୁମ୍ଭ ଚରଣ-କମଳ । ପୂର୍ଣ୍ଣ ହେଲା ଏବେ ଆମ୍ଭ କାମନା ସକଳ ॥୧॥
ମନ ମଧ୍ୟେ ଏକ ଭାରି ଲାଳସା ହୁଅଇ । ସୁଲଭ ଦୁର୍ଲ୍ଲଭ ତାହା କହି ନ ପାରଇ ॥
ତୁମ୍ଭଙ୍କୁ ଦେବାକୁ ପ୍ରଭୁ ଅତ୍ୟନ୍ତ ସୁଲଭ । ନିଜ କୃପଣତା ହେତୁ ଆମ୍ଭଙ୍କୁ ଦୁର୍ଲ୍ଲଭ ॥୨॥
କଳ୍ପତରୁ ପାଶେ ଯାଇ ଦରିଦ୍ର ଯେସନେ । ବହୁ ଧନ ମାଗିବାକୁ ସଙ୍କୋଚଇ ମନେ ॥
ତାହାର ପ୍ରଭାବ ସେହି କିଛି ନ ଜାଣଇ । ତେମନ୍ତ ହୃଦୟେ ମୋର ସଂଶୟ ହୁଅଇ ॥୩॥

---

ରହିଗଲେ । ସେହି ଅନୁପମ ରୂପକୁ ସେମାନେ ଆଦରପୂର୍ବକ ଦେଖୁଥା'ନ୍ତି ଏବଂ ଯେତେ ଦେଖୁଥା'ନ୍ତି, ସେତେ ଅତୃପ୍ତ ରହୁଥା'ନ୍ତି ॥ ୩ ॥ ଅତ୍ୟଧିକ ଆନନ୍ଦର ବଶୀଭୂତ ହେବା ଯୋଗୁ ସେମାନେ ସ୍ୱ ସ୍ୱ ଶରୀର-ଦଶା ଭୁଲିଗଲେ । ହାତରେ ଭଗବାନ୍‌ଙ୍କ ଚରଣ-କମଳ ଧରି ସେମାନେ ଦଣ୍ଡ ପରି ଭୂମି ଉପରେ ସିଧା ପଡ଼ିଗଲେ । କରୁଣାପୁଞ୍ଜ ପ୍ରଭୁ ତାଙ୍କ କର-କମଳରେ ସେମାନଙ୍କ ମସ୍ତକ ସ୍ପର୍ଶ କରି ସେମାନଙ୍କୁ ଉଠାଇଲେ ॥ ୪ ॥ ଦୋହା '—କୃପାନିଧାନ ଭଗବାନ୍ କହିଲେ, "ମୁଁ ତୁମମାନଙ୍କ ତପସ୍ୟାରେ ଅତ୍ୟନ୍ତ ପ୍ରସନ୍ନ ହୋଇଅଛି । ଏହା ଜାଣି ଓ ମୋତେ ମହାଦାନୀ ବୋଲି ବୁଝି, ମନକୁ ଯାହା ରୁଚିକର, ସେହି ବର ମାଗ ।" ॥୧୪୮॥ ଚୌପାଇ '—ପ୍ରଭୁଙ୍କ କଥା ଶୁଣି ଦୁଇ ହାତ ଯୋଡ଼ି, ଧୈର୍ଯ୍ୟ ସହକାରେ ରାଜା କୋମଳବାଣୀ କହିଲେ, "ହେ ନାଥ ! ଆପଣଙ୍କ ଚରଣ-କମଳ ଦୁଇଟି ଦେଖି ଏବେ ଆମର ସକଳ ମନସ୍କାମନା ପୂର୍ଣ୍ଣ ହୋଇଗଲା ॥ ୧ ॥ ତଥାପି ମନରେ ଗୋଟିଏ ବଡ଼ ଲାଳସା ରହିଛି । ତାହା ଅତି ସହଜ ଓ କଠିନ ମଧ୍ୟ ।

ସୋ ତୁମ୍ହ ଜାନହୁ ଅଂତରଜାମୀ । ପୁରଓ୍ୱହୁ ମୋର ମନୋରଥ ସ୍ୱାମୀ ॥
ସକୁଚ ବିହାଇ ମାଗୁ ନୃପ ମୋହି । ମୋରେଁ ନହିଁ ଅଦେୟ କଛୁ ତୋହି ॥୩॥
ଦାନି ସିରୋମନି କୃପାନିଧି ନାଥ କହଉଁ ସତିଭାଉ ।
ଚାହଉଁ ତୁମ୍ହହିଁ ସମାନ ସୁତ ପ୍ରଭୁ ସନ କଓ୍ୱନ ଦୁରାଉ ॥୧୪୯॥
ଦେଖି ପ୍ରୀତି ସୁନି ବଚନ ଅମୋଲେ । ଏବମସ୍ତୁ କରୁନାନିଧି ବୋଲେ ॥
ଆପୁ ସରିସ ଖୋଜୌଁ କହଁ ଜାଈ । ନୃପ ତବ ତନୟ ହୋବ ମୈଁ ଆଈ ॥୧॥
ସତରୁପହି ବିଲୋକି କର ଜୋରେଁ । ଦେବି ମାଗୁ ବରୁ ଜୋ ରୁଚି ତୋରେଂ ॥
ଜୋ ବରୁ ନାଥ ଚତୁର ନୃପ ମାଗା । ସୋଇ କୃପାଲ ମୋହି ଅତି ପ୍ରିୟ ଲାଗା ॥୨॥

---

ତାହା ତୁମ୍ଭେ ଭଲ ରୂପେ ଜାଣ ଅନ୍ତର୍ଯାମୀ । ପୂର୍ଣ୍ଣ କର ମୋର ମନ ଅଭିଳାଷ ସ୍ୱାମୀ ॥
ସଙ୍କୋଚ ତେଜିଣ ମୋତେ ମାଗ ନରବର ' ନାହିଁ ତୁମ୍ଭ ପାଇଁ କିଛି ଅଦେୟ ମୋହର ॥୩॥
ଦାନୀ ଶିରୋମଣି କୃପାନିଧି ସ୍ୱାମୀ ନିଜ ସତ୍ୟ ଭାବ ଭାଷେ ।
ତୁମ୍ଭର ସମାନ ଚାହେଁ ମୁଁ ସନ୍ତାନ ଗୋପନ କି ପ୍ରଭୁ ପାଶେ ॥୧୪୯॥
ଦେଖି ଅତି ପ୍ରୀତି ଶୁଣି ଅମୂଲ୍ୟ ବଚନ । ଏବମସ୍ତୁ ଉଚ୍ଚାରିଲେ କରୁଣା-ସଦନ ॥
ଖୋଜିବି କାହିଁ ଯାଇଣ ନିଜ ଅନୁରୂପ । ତୁମ୍ଭ ତନୟ ସ୍ୱୟଂ ମୁଁ ହେବି ଆସି ଭୂପ ॥୧॥
ଶତରୂପାଙ୍କୁ ବିଲୋକି ଉଭା ଯୋଡି କର । ଭାଷିଲେ, ଯାହା ଆକାଂକ୍ଷା ମାଗ ଦେବୀ ବର ॥
ଯେ ବର ମାଗିଲେ ନାଥ ଚତୁର ନୃପତି । ତାହା କୃପାଳୁ ଲାଗିଲା ମୋତେ ପ୍ରିୟ ଅତି ॥୨॥

---

ଏଣୁ ତାହା କହି ହେଉନାହିଁ । ହେ ଗୋସାଇଁ ' ତାହା ପୂରଣ କରିବା ଆପଣଙ୍କ ପକ୍ଷରେ ଅତି ସହଜ । କିନ୍ତୁ ମୋ କୃପଣତା (ଦୀନତା) ହେତୁ ତାହା ମୋତେ ଅତି କଠିନ ଜଣାପଡୁଛି ॥ ୨ ॥ କୌଣସି ଦରିଦ୍ର ବ୍ୟକ୍ତି କଳ୍ପବୃକ୍ଷକୁ ପାଇ ସୁଦ୍ଧା ବହୁ ଧନ ମାଗିବାକୁ ସଙ୍କୋଚ କରେ । କାରଣ ସେ ତାହାର ପ୍ରଭାବକୁ ଜାଣେ ନାହିଁ । ସେହିପରି ମୋ ହୃଦୟରେ ସଂଶୟ ହେଉଛି ॥ ୩ ॥ ହେ ସ୍ୱାମି ' ଆପଣ ଅନ୍ତର୍ଯାମୀ । ତେଣୁ ଆପଣ ତାହା ନିଶ୍ଚୟ ଜାଣିଅଛନ୍ତି । ମୋର ସେହି ମନୋରଥ ପୂରଣ କରନ୍ତୁ ।" ଭଗବାନ୍ କହିଲେ, "ହେ ରାଜନ୍ ! ସଙ୍କୋଚ ତ୍ୟାଗ କରି ମୋତେ ମାଗ । ତୁମ୍ଭଙ୍କୁ ଦେଇ ପାରିବି ନାହିଁ, ଏପରି ମୋ ପାଖରେ କୌଣସି ବସ୍ତୁ ନାହିଁ ।" ॥ ୪ ॥ ଦୋହା — ରାଜା କହିଲେ, "ହେ ଦାନ-ଶିରୋମଣି ' ହେ କୃପାନିଧାନ ' ହେ ନାଥ ' ମୁଁ ମୋ ମନର ପ୍ରକୃତ ଭାବ ପ୍ରକାଶ କରୁଛି—ଆପଣଙ୍କ ପରି ଗୋଟିଏ ପୁତ୍ର ମୋର ଦରକାର, ପ୍ରଭୁଙ୍କଠାରୁ ଅବା କ'ଣ ଗୁପ୍ତ ରଖିବି !" ॥ ୧୪୯ ॥ ଚୌପାଇ :— ରାଜାଙ୍କ ପ୍ରୀତି ଦେଖି ଓ ତାଙ୍କ ଅମୂଲ୍ୟ ବଚନ ଶୁଣି କରୁଣାନିଧାନ ଭଗବାନ୍ କହିଲେ, "ତଥାସ୍ତୁ । ମୁଁ ଆପଣାର ଅନୁରୂପ ଆଉ କେଉଁଠାରେ ଯାଇ ଖୋଜିବି ? ଅତଏବ ନିଜେ ହିଁ ଆସି ତୁମ ପୁତ୍ର ହୋଇ ଜନ୍ମଲାଭ କରିବି ।" ॥ ୧ ॥ ଶତରୂପାଙ୍କୁ ହାତ ଯୋଡିଥିବାର ଦେଖି ଭଗବାନ୍ କହିଲେ, "ହେ ଦେବି ! ତୁମର ଯାହା ଇଚ୍ଛା,

ପ୍ରଭୁ ପରଂତୁ ସୁଠି ହୋତି ଢିଠାଈ । ଜଦପି ଭଗତ ହିତ ତୁହ୍ମହିଁ ସୋହାଈ ॥
ତୁହ୍ମ ବ୍ରହ୍ମାଦି ଜନକ ଜଗ ସ୍ୱାମୀ । ବ୍ରହ୍ମ ସକଲ ଉର ଅଂତରଜାମୀ ॥୩॥
ଅସ ସମୁଝତ ମନ ସଂସୟ ହୋଈ । କହା ଜୋ ପ୍ରଭୁ ପ୍ରୱାନ ପୁନି ସୋଈ ॥
ଜେ ନିଜ ଭଗତ ନାଥ ତବ ଅହହୀଂ । ଜୋ ସୁଖ ପାୱହିଁ ଜୋ ଗତି ଲହହୀଂ ॥୪॥

ସୋଇ ସୁଖ ସୋଇ ଗତି ସୋଇ ଭଗତି ସୋଇ ନିଜ ଚରନ ସନେହୁ ।
ସୋଇ ବିବେକ ସୋଇ ରହନି ପ୍ରଭୁ ହମହି କୃପା କରି ଦେହୁ ॥୧୫୦॥

ସୁନି ମୃଦୁ ଗୂଢ଼ ରୁଚିର ବର ରଚନା । କୃପାସିଂଧୁ ବୋଲେ ମୃଦୁ ବଚନା ॥
ଜୋ କଛୁ ରୁଚି ତୁହ୍ମରେ ମନ ମାହୀଁ । ମୈଁ ସୋ ଦୀନ୍ହ ସବ ସଂସୟ ନାହୀଁ ॥୧॥
ମାତୁ ବିବେକ ଅଲୌକିକ ତୋରେଂ । କବହୁଂ ନ ମିଟିହି ଅନୁଗ୍ରହ ମୋରେଁ ॥
ବଂଦି ଚରନ ମନୁ କହେଉ ବହୋରୀ । ଅଉର ଏକ ବିନତୀ ପ୍ରଭୁ ମୋରୀ ॥୨॥

---

ପରନ୍ତୁ ପ୍ରଭୁ, ଧୃଷ୍ଟତା ସୁନ୍ଦର ହୁଏଇ । ଯଦ୍ୟପି ଭକ୍ତ-କଲ୍ୟାଣ, ତୁମ୍ଭଙ୍କୁ ଶୋଭଇ ॥
ତୁମ୍ଭେ ବ୍ରହ୍ମାଦି ଜନକ ଜଗତର ସ୍ୱାମୀ । ବ୍ରହ୍ମ, ସମସ୍ତ ପ୍ରାଣୀଙ୍କ ଉର ଅନ୍ତର୍ଯାମୀ ॥୩॥
ଏହା ବିଚାରନ୍ତେ ମନେ ହୁଏଇ ସଂଶୟ । ପ୍ରଭୁ ଯାହା ଭାଷ ତାହା ପ୍ରମାଣ ନିଶ୍ଚୟ ॥
ଯେହୁ ନିଜ ଭକ୍ତ ନାଥ ତୁମ୍ଭର ଅଟନ୍ତି । ଯେ ସୁଖ ପ୍ରାପ୍ତ କରନ୍ତି, ଯେ ଗତି ଲଭନ୍ତି ॥୪॥

ସେ ସୁଖ ସେ ଗତି ସେ ଚରଣ ପ୍ରୀତି ସେହି ନିଜ ଭକ୍ତି ପ୍ରିୟ ।
ସେ ବିବେକ ସେହି ସ୍ୱଭାବ ଗୋସାଇଁ ମୋତେ କୃପା କରି ଦିଅ ॥୧୫୦॥

ଶୁଣି ମୃଦୁ ଗୂଢ଼ ଅତି ରୁଚିର ରଚନ । ଭାଷିଲେ କରୁଣା-ସିନ୍ଧୁ ମଧୁର ବଚନ ॥
ଯେଉଁ ରୁଚି ତୁମ୍ଭ ମନ ମଧ୍ୟେ ଉପୁଜନ୍ତି । ତାହା ମୁଁ ଦେଲି, ସଂଶୟ ନାହିଁ ଏଥି କିଛି ॥୧॥
ମାତ, ହୃଦୟ ବିବେକ ଅଲୌକିକ ତୋର । କେବେ ନଷ୍ଟ ନ ହୋଇବ ଅନୁଗ୍ରହେ ମୋର ॥
ବନ୍ଦି ଶ୍ରୀଚରଣ ପୁଣି ଭାଷିଲେ ନୃପତି । ଶୁଣ ପ୍ରଭୁ ଅନ୍ୟ ଏକ ମୋହର ବିନତି ॥୨॥

---

ସେ ବର ମଧ ମାଗ ।" ଶତରୂପା କହିଲେ, ହେ ନାଥ ! ଚତୁର ରାଜା ଯେଉଁ ବର ମାଗିଲେ, ହେ କୃପାଳୁ ! ତାହା ମୋତେ ଅତି ପ୍ରିୟ ଲାଗିଲା ॥ ୨ ॥ କିନ୍ତୁ ହେ ପ୍ରଭୋ ! ଆମର ବହୁତ ଧୃଷ୍ଟତା ହେଉଅଛି, ତଥାପି ହେ ଭକ୍ତଜନ-ହିତକାରି ! ସେ ଧୃଷ୍ଟତା ମଧ ଆପଣଙ୍କୁ ବଡ ଭଲ ଲାଗେ । ଆପଣ ବ୍ରହ୍ମା ଆଦିଙ୍କର ମଧ ଜନକ, ଜଗତର ସ୍ୱାମୀ ଓ ସମସ୍ତଙ୍କ ହୃଦୟର ଅନ୍ତର୍ଯାମୀ ବ୍ରହ୍ମ ॥ ୩ ॥ ଏହିପରି ବୁଝିବାରେ ମନରେ ସନ୍ଦେହ ହେଉଛି । ତଥାପି ପ୍ରଭୁ ଯାହା କହିଲେ, ତାହାହିଁ ପ୍ରମାଣ (ସତ୍ୟ) । ହେ ପ୍ରଭୋ ! ମୁଁ ଏହି ବର ମାଗୁଛି । ଯେଉଁମାନେ ଆପଣଙ୍କ ନିଜ ଜନ, ସେମାନେ ଅଲୌକିକ ଓ ଅଖଣ୍ଡ ସୁଖ ଲାଭପୂର୍ବକ ପରମ ଗତି ଲାଭ କରନ୍ତି ॥ ୪ ॥ ଦୋହା :—ହେ ପ୍ରଭୋ ! ସେହି ସୁଖ, ସେହି ଗତି, ସେହି ଭକ୍ତି, ଆପଣଙ୍କ ଚରଣରେ ସେହି ପ୍ରେମ, ସେହି ଜ୍ଞାନ ଓ ସେହି ଆଚରଣ କୃପା କରି ଆମକୁ ଦିଅନ୍ତୁ ॥ ୧୫୦ ॥ ଚୌପାଇ :—ରାଣୀଙ୍କର କୋମଳ, ଗୂଢ ଓ ମନୋହର ଶ୍ରେଷ୍ଠ ବାକ୍ୟରଚନା ଶୁଣି କୃପାସମୁଦ୍ର ଭଗବାନ୍

ସୁତ ବିଷଇକ ତବ ପଦ ରତି ହୋଊ । ମୋହି ବଡ ମୂଢ଼ କହୈ କିନ କୋଊ ॥
ମନି ବିନୁ ଫନି ଜିମି ଜଲ ବିନୁ ମୀନା । ମମ ଜୀବନ ତିମି ତୁମ୍ହହିଁ ଅଧୀନା ॥୩॥
ଅସ ବରୁ ମାଗି ଚରନ ଗହି ରହେଊ । ଏବମସ୍ତୁ କରୁନାନିଧି କହେଊ ॥
ଅବ ତୁମ୍ହ ମମ ଅନୁସାସନ ମାନୀ । ବସହୁ ଜାଇ ସୁରପତି ରଜଧାନୀ ॥୪॥
ତହଁ କରି ଭୋଗ ବିସାଲ ତାତ ଗଏଁ କଛୁ କାଲ ପୁନି ।
ହୋଇହହୁ ଅୱଧ ଭୁଆଲ ତବ ମୈଂ ହୋବ ତୁମ୍ହାର ସୁତ ॥୧୫୧॥
ଇଚ୍ଛାମୟ ନରବେଷ ସଁୱାରେଁ । ହୋଇହଉଁ ପ୍ରଗଟ ନିକେତ ତୁମ୍ହାରେଂ ॥
ଅଂସନ୍ହ ସହିତ ଦେହ ଧରି ତାତା । କରିହଉଁ ଚରିତ ଭଗତ ସୁଖଦାତା ॥୧॥

---

ସୁତ ସ୍ନେହ ହେଉ ତୁମ୍ଭ ପଦେ ଅବିକଳେ । ବରଂ ମୋତେ ମୂଢ ବୋଲି କହନ୍ତୁ ସକଳେ ॥
ମଣି ବିନା ଫଣୀ ଯେସନ୍ତେ ଜଳ ବିନା ମୀନ । ମୋ ଜୀବନ ରହୁ ତେସନ୍ତେ ତୁମ୍ଭର ଅଧୀନ ॥୩॥
ଏହି ବର ମାଗି ପଦ ଧରିଣ ରହିଲେ । ଏବମସ୍ତୁ ତହୁଁ କୃପାନିବାସ କହିଲେ ॥
ଏବେ ତୁମ୍ଭେ ହୁହେଁ ମୋର ଅନୁମତି ମାନି ! ବାସ କର ଯାଇ ସୁରପତି ରାଜଧାନୀ ॥୪॥
ତହିଁ ପୁଣି ଭୋଗ ଭୋଗିଣ ବିଶାଳ କାଳ ପାଇ ଅନନ୍ତର ।
ଯେବେ ଅଯୋଧ୍ୟାର ହୋଇବ ଭୂପାଳ ହେବି ମୁଁ ପୁତ୍ର ତୁମ୍ଭର ॥୧୫୧॥
ଇଚ୍ଛାମୟ ନରବେଷ କରି ବିରଚନ । ପ୍ରକଟ ହୋଇବି ଆସି ତୁମ୍ଭ ନିକେତନ ॥
ଅଂଶଙ୍କ ସହିତେ ତାତ, ଧରି କଳେବର । କରିବି ରୁଚିର ଲୀଳା ଭକ୍ତ-ସୁଖ-କର ॥୧॥

---

କୋମଳ ବଚନ କହିଲେ, "ତୁମ ମନରେ ଯାହା କିଛି କାମନା ରହିଛି, ତାହା ସବୁ ମୁଁ ତୁମ୍ଭଙ୍କୁ ଦେଇ ଦେଇଛି । ଏଥିରେ କୌଣସି ସନ୍ଦେହ ନାହିଁ ॥ ୧ ॥ ହେ ମାତା ! ମୋର କୃପାବଳରେ ତୁମ ଅଲୌକିକ ଜ୍ଞାନ ନଷ୍ଟ ହେବ ନାହିଁ ।" ସେତେବେଳେ ମନୁ ଭଗବାନ୍‌ଙ୍କ ଚରଣ ଯୁଗଳ ବନ୍ଦନା କରି ପୁଣି କହିଲେ, "ହେ ପ୍ରଭୋ ! ମୋର ଆଉ ଏକ ବିନତି ଅଛି—॥ ୨ ॥ ମୋତେ କେହି ବଡ ମୂର୍ଖ କହିଲେ କହୁ ପଛକେ, ପୁତ୍ର ପ୍ରତି ପିତାର ହୃଦୟରେ ଯେଉଁ ପ୍ରୀତି ଆଏ, ସେହି ପ୍ରୀତି ଆପଣଙ୍କ ଚରଣରେ ମୋର ରହୁ । ମଣି ବିନା ଫଣୀ ଏବଂ ଜଳ ବିନା ମତ୍ସ୍ୟ ଯେପରି ରହିପାରେ ନାହିଁ, ସେହିପରି ମୋ ଜୀବନ ଆପଣଙ୍କ ବିନା ରହି ନ ପାରୁ । ଅର୍ଥାତ୍ ମୋ ଜୀବନ ସର୍ବଦା ଆପଣଙ୍କ ଅଧୀନରେ ରହୁ ।" ॥ ୩ ॥ ଏହିପରି ବର ମାଗି ରାଜା ଭଗବାନ୍‌ଙ୍କ ଚରଣ ଧରି ରହିଗଲେ । କରୁଣାନିଧାନ ଭଗବାନ୍ କହିଲେ, "ତଥାସ୍ତୁ ! ଏବେ ତୁମେ ମୋ ଆଦେଶ ମାନି ଦେବରାଜ ଇନ୍ଦ୍ରଙ୍କ ରାଜଧାନୀ (ଅମରାବତୀ)ରେ ଯାଇ ବାସ କର ।"॥୪॥ ସୋରଠା —ହେ ତାତ ! ସେଠାରେ ସ୍ୱର୍ଗର ବହୁତ ପ୍ରକାର ଭୋଗ ଉପଭୋଗ କରି, କିଛି କାଳ ଅତିବାହିତ ହେବା ପରେ, ତୁମେ ଅଯୋଧ୍ୟାର ରାଜା ହେବ । ସେତେବେଳେ ମୁଁ ତୁମର ପୁତ୍ର ହୋଇ ଜନ୍ମଲାଭ କରିବି ॥ ୧୫୧ ॥ ଚୌପାଈ —ଇଚ୍ଛାମୟ ମନୁଷ୍ୟ ରୂପ ଧାରଣ କରି ମୁଁ ତୁମ ଘରେ ଆବିର୍ଭୂତ ହେବି । ହେ ତାତ ! ମୋର

ଜେ ସୁନି ସାଦର ନର ବଡ଼ଭାଗୀ । ଭବ ତରିହହିଁ ମମତା ମଦ ତ୍ୟାଗୀ ॥
ଆଦିସକ୍ତି ଜେହିଁ ଜଗ ଉପଜାୟା । ସୋଉ ଅବତରିହି ମୋରି ୟହ ମାୟା ॥୨॥
ପୁରଉବ ମୈଂ ଅଭିଲାଷ ତୁମ୍ହାରା । ସତ୍ୟ ସତ୍ୟ ପନ ସତ୍ୟ ହମାରା ॥
ପୁନି ପୁନି ଅସ କହି କୃପାନିଧାନା । ଅଂତରଧାନ ଭଏ ଭଗବାନା ॥୩॥
ଦଂପତି ଉର ଧରି ଭଗତ କୃପାଲା । ତେହିଁ ଆଶ୍ରମ ନିବସେ କଛୁ କାଲା ॥
ସମୟ ପାଇ ତନୁ ତଜି ଅନୟାସା । ଜାଇ କୀନ୍ହ ଅମରାବତି ବାସା ॥୪॥

ୟହ ଇତିହାସ ପୁନୀତ ଅତି ଉମହି କହୀ ବୃଷକେତୁ ॥
ଭରଦ୍ୱାଜ ସୁନୁ ଅପର ପୁନି ରାମ ଜନମ କର ହେତୁ ॥୧୫୨॥

## ମାସପାରାୟଣ, ପଞ୍ଚମ ବିଶ୍ରାମ

ସୁନୁ ମୁନି କଥା ପୁନୀତ ପୁରାନୀ । ଜୋ ଗିରିଜା ପ୍ରତି ସଂଭୁ ବଖାନୀ ॥
ବିସ୍ୱବିଦିତ ଏକ କୈକୟ ଦେସୂ । ସତ୍ୟକେତୁ ତହଁ ବସଇ ନରେସୂ ॥୧॥

---

ସାଦରେ ଶୁଣି ମନୁଷ୍ୟ ପରମ ସୌଭାଗୀ । ଭବୁ ତରିବେ ମମତା ମଦ ପରିତ୍ୟାଗି ॥
ଆଦି-ଶକ୍ତି ଏ ଜଗତ ସୃଜିଅଛି ଯେହୁ । ସେ ଅବତାର ଘେନିବେ ମାୟା ମୋର ଏହୁ ॥୨॥
ସୁଫଳ କରିବି ଅଭିଲାଷ ମୁଁ ତୁମ୍ଭର । ସତ୍ୟ ସତ୍ୟ ସତ୍ୟ ଏହି ପ୍ରତିଜ୍ଞା ମୋହର ॥
ବାରମ୍ବାର ଏହା କହି କରୁଣାନିଧାନ । ଅନ୍ତର୍ଦ୍ଧାନ ହେଲେ ତହୁଁ ପ୍ରଭୁ ଭଗବାନ ॥୩॥
ଦମ୍ପତି ହରିଙ୍କ ଭକ୍ତି ଘେନି ହୃଦୟରେ । କିଛି କାଳ ବାସ କରି ସେହି ଆଶ୍ରମରେ ॥
ସମୟ ପାଇ ଶରୀର ତେଜି ଅନାୟାସ । ଅମରାବତୀରେ ଯାଇ କରିଲେ ନିବାସ ॥୪॥

ଏହି ଇତିହାସ ପବିତ୍ର ବିଶେଷ ଉମାଙ୍କୁ କହିଲେ ହର ।
ଭରଦ୍ୱାଜ ଶୁଣ ହେତୁ ଏକ ଅନ୍ୟ ଶ୍ରୀରାମଙ୍କ ଜନମର ॥୧୫୨॥

ଶୁଣ ମୁନି ଏହି କଥା ପ୍ରାଚୀନ ପାବନ । ଗିରିଜାଙ୍କ ଆଗେ ଶିବ କରିଲେ ବର୍ଣ୍ଣନ ॥
ବିଶ୍ୱ ବିଦିତ କେକୟ ନାମେ ଏକ ଦେଶ । ସତ୍ୟକେତୁ ଥିଲେ ସେହି ସ୍ଥାନର ନରେଶ ॥୧॥

---

ଅଂଶମାନଙ୍କ ସହିତ ଦେହ ଧାରଣ କରି ଭକ୍ତଗଣଙ୍କ ସୁଖଦାୟକ ଚରିତାବଳୀ (ଲୀଳାରାଜି) ମୁଁ ପ୍ରକାଶ କରିବି ॥ ୧ ॥ ସେହି ଚରିତାବଳୀକୁ ବଡ଼ ଭାଗ୍ୟବାନ୍ ମନୁଷ୍ୟମାନେ ଆଦର ସହିତ ଶୁଣି ମମତା ଓ ମଦ ତ୍ୟାଗପୂର୍ବକ ଭବସାଗରରୁ ଉଦ୍ଧାର ପାଇଯିବେ । ଏହି ଯେଉଁ ଆଦିଶକ୍ତି ରୂପେ ମୋର ସ୍ୱରୂପଭୂତା ମାୟା ଜଗତକୁ ଉତ୍ପନ୍ନ କରିଅଛନ୍ତି, ସେ ମଧ୍ୟ ଅବତାର ଗ୍ରହଣ କରିବେ ॥ ୨ ॥ ଏହି ରୂପେ ମୁଁ ତୁମ ଅଭିଲାଷ ପୂରଣ କରିବି । ମୋର ଏହି ପଣ ସତ୍ୟ, ସତ୍ୟ, ସତ୍ୟ ।" କୃପାନିଧାନ ଭଗବାନ୍ ବାରମ୍ବାର ଏହିପରି କହି ଅନ୍ତର୍ହିତ ହୋଇଗଲେ ॥ ୩ ॥ ସେହି ଦମ୍ପତି ଭକ୍ତ-କୃପାଳୁ ଭଗବାନ୍‌ଙ୍କୁ ହୃଦୟରେ ଧାରଣ କରି କିଛି କାଳ ଆଶ୍ରମରେ ରହିଲେ । ତତ୍ପରେ ସମୟ ପାଇ ସେମାନେ ସହଜରେ (ବିନା କଷ୍ଟରେ) ଶରୀର ତ୍ୟାଗ କରି ଅମରାବତୀ (ଇନ୍ଦ୍ରପୁରୀ)ରେ

ଧରମ ଧୁରଂଧର ନୀତି ନିଧାନା । ତେଜ ପ୍ରତାପ ସୀଲ ବଲବାନା ॥
ତେହ୍ନି କେଁ ଭଏ ଜୁଗଲ ସୁତ ବୀରା । ସବ ଗୁନ ଧାମ ମହା ରନଧୀରା ॥୨॥
ରାଜ ଧନୀ ଜୋ ଜେଠ ସୁତ ଆହୀ । ନାମ ପ୍ରତାପଭାନୁ ଅସ ତାହୀ ॥
ଅପର ସୁତହି ଅରିମର୍ଦନ ନାମା । ଭୁଜବଲ ଅତୁଲ ଅଚଲ ସଂଗ୍ରାମା ॥୩॥
ଭାଇହି ଭାଇହି ପରମ ସମୀତୀ । ସକଲ ଦୋଷ ଛଲ ବରଜିତ ପ୍ରୀତୀ ॥
ଜେଠେ ସୁତହି ରାଜ ନୃପ ଦୀହ୍ନା । ହରି ହିତ ଆପୁ ଗଵନ ବନ କୀହ୍ନା ॥୪॥

ଜବ ପ୍ରତାପରବି ଭୟଉ ନୃପ ଫିରୀ ଦୋହାଈ ଦେସ ।
ପ୍ରଜା ପାଲ ଅତି ବେଦବିଧି କତହୁଁ ନହୀଁ ଅଘ ଲେସ ॥୧୫୩॥

---

ଧର୍ମ-ଧୁରନ୍ଧର, ଶାନ୍ତ, ନୀତିର ନିଧାନ । ତେଜସ୍ୱୀ, ପ୍ରତାପୀ, ପୁଣି ଅତି ବଳବାନ ॥
ତାହାଙ୍କ ହୋଇଲେ ବୀର କୁମର ଯୁଗଳ । ମହାରଣ-ଧୀର ଗୁଣ-ମନ୍ଦିର ସକଳ ॥୨॥
ଜ୍ୟେଷ୍ଠ ସୁତ ଅଧିକାରୀ ଅଟେ ଯେ ରାଜ୍ୟର । ପ୍ରତାପଭାନୁ ଏମନ୍ତ ନାମ ତାହାଙ୍କର ॥୩॥
ଅରି-ମର୍ଦନ କନିଷ୍ଠ ତନୟର ନାମ । ଅନୁପମ ଭୁଜବଳୀ, ଅଟଳ ସଂଗ୍ରାମ ॥
ଭାଇ ଭାଇଙ୍କ ମଧ୍ୟରେ ପରମ ମିତ୍ରତା । ଥିଲା ସ୍ନେହ, ତେଜି ଛଳ ଛନ୍ଦ କପଟତା ॥୪॥
ରାଜ୍ୟ ଦେଲେ ନରପତି ଜ୍ୟେଷ୍ଠ ତନୟଙ୍କୁ । ହରିଙ୍କ ନିମନ୍ତେ ସ୍ୱୟଂ ଗମିଲେ ବନକୁ ॥୫॥

ଆଦିତ୍ୟ ପ୍ରତାପ ଯେବେ ହେଲେ ନୃପ ଜୟ ଘୋଷେ ପୂର୍ଣ୍ଣ ଦେଶ ।
ବେଦ ବିଧାନରେ ପ୍ରଜାଙ୍କୁ ପାଳିଲେ ନ ରହିଲା ପାପ ଲେଶ ॥୧୫୩॥

---

ଯାଇ ବାସ କଲେ ॥ ୪ ॥ ଦୋହା :—ଯାଜ୍ଞବଲ୍କ୍ୟ କହନ୍ତି, "ହେ ଭରଦ୍ୱାଜ ! ଏହି ଅତି ପବିତ୍ର ଇତିହାସ ଶିବ ପାର୍ବତୀଙ୍କୁ କହିଥିଲେ । ବର୍ତ୍ତମାନ ଶ୍ରୀରାମଙ୍କ ଅବତାର ଗ୍ରହଣର ଦ୍ୱିତୀୟ କାରଣ ଶୁଣ ।" ॥ ୧୫୨ ॥ ଚୌପାଈ —ହେ ମୁନି ! ଶିବ ପାର୍ବତୀଙ୍କୁ କହିଥିବା ସେହି ପବିତ୍ର ଓ ପ୍ରାଚୀନ କଥା ଶୁଣ । ସଂସାରରେ ପ୍ରସିଦ୍ଧ କୈକେୟ ନାମକ ଏକ ଦେଶ ଅଛି । ସେଠାରେ ସତ୍ୟକେତୁ ନାମକ ରାଜା ରାଜତ୍ୱ କରୁଥିଲେ ॥ ୧ ॥ ସେ ଧର୍ମ-ଧୁରନ୍ଧର, ନୀତି-ନିଧାନ, ତେଜସ୍ୱୀ, ତପସ୍ୱୀ, ସୁଶୀଳ ଓ ବଳବାନ୍ ଥିଲେ । ତାଙ୍କର ଦୁଇଟି ପୁତ୍ର ଜାତ ହେଲେ । ସେ ଦୁହେଁ ସକଳ ଗୁଣର ଭଣ୍ଡାର ଓ ବଡ଼ ରଣଧୀର ଥିଲେ ॥ ୨ ॥ ରାଜ୍ୟର ଉତ୍ତରାଧିକାରୀ ଜ୍ୟେଷ୍ଠ ପୁତ୍ରର ନାମ ପ୍ରତାପଭାନୁ, ଦ୍ୱିତୀୟ ପୁତ୍ରର ନାମ ଅରିମର୍ଦ୍ଦନ । ତାଙ୍କ ବାହୁରେ ଅପରିମିତ ଓ ଅତୁଳନୀୟ ବଳ ଥିଲା । ସେ ଯୁଦ୍ଧରେ ପର୍ବତ ସମାନ ଅଟଳ ରହୁଥିଲେ ॥ ୩ ॥ ଭାଇ-ଭାଇ ମଧ୍ୟରେ ବଡ଼ ମେଳ ଓ ସବୁ ପ୍ରକାର ଦୋଷ-ଛଳ-ବର୍ଜିତ (ପ୍ରକୃତ) ପ୍ରୀତି ଥିଲା । ରାଜା ଜ୍ୟେଷ୍ଠ ପୁତ୍ରକୁ ରାଜ୍ୟ ଦେଇଦେଲେ ଏବଂ ନିଜେ ଭଗବାନ୍‌ଙ୍କ ଭଜନ ନିମନ୍ତେ ବନକୁ ଗମନ କଲେ ॥ ୪ ॥ ଦୋହା :—ପ୍ରତାପଭାନୁ ରାଜ୍ୟର ରାଜା ହେଲେ । ଦେଶ ସାରା ତାଙ୍କ ଖ୍ୟାତିର ଡିଣ୍ଡିମ-ନାଦ ଖେଳିଗଲା । ବେଦନିର୍ଦ୍ଦିଷ୍ଟ ବିଧି ଅନୁସାରେ ସେ ଉତ୍ତମ ରୀତିରେ ପ୍ରଜା ପାଳନ କରିବାକୁ ଲାଗିଲେ । ତାଙ୍କ ରାଜ୍ୟରେ ପାପର

ନୃପ ହିତକାରକ ସଚିବ ସୟାନା । ନାମ ଧରମରୁଚି ସୁକ୍ର ସମାନା ॥
ସଚିବ ସୟାନ ବଂଧୁ ବଲବୀରା । ଆପୁ ପ୍ରତାପପୁଂଜ ରନଧୀରା ॥୧॥
ସେନ ସଂଗ ଚତୁରଂଗ ଅପାରା । ଅମିତ ସୁଭଟ ସବ ସମର ଜୁଝାରା ॥
ସେନ ବିଲୋକି ରାଉ ହରଷାନା । ଅରୁ ବାଜେ ଗହଗହେ ନିସାନା ॥୨॥
ବିଜୟ ହେତୁ କଟକଈ ବନାଈ । ସୁଦିନ ସାଧି ନୃପ ଚଲେଉ ବଜାଈ ॥
ଜହଁ ତହଁ ପରୀଂ ଅନେକ ଲରାଈଂ । ଜୀତେ ସକଲ ଭୂପ ବରିଆଈଂ ॥୩॥
ସପ୍ତ ଦୀପ ଭୁଜବଲ ବସ କୀହ୍ନେ । ଲୈ ଲୈ ଦଂଡ ଛାଡ଼ି ନୃପ ଦୀହ୍ନେ ॥
ସକଲ ଅବନି ମଣ୍ଡଲ ତେହି କାଲା । ଏକ ପ୍ରତାପଭାନୁ ମହିପାଲା ॥୪॥

ସ୍ୱବସ ବିସ୍ୱ କରି ବାହୁବଲ ନିଜ ପୁର କୀହ୍ନ ପ୍ରବେସୁ ।
ଅରଥ ଧରମ କାମାଦି ସୁଖ ସେବଇ ସମୟଁ ନରେସୁ ॥୧୫୩॥

---

ନୃପତି ହିତ-କାରକ ମନ୍ତ୍ରୀ ଜ୍ଞାନବାନ । ନାମ ଧର୍ମରୁଚି ସେହି ଶୁକ୍ରଙ୍କ ସମାନ ॥
ସଚିବ ପ୍ରବୀଣ ପୁଣି ଭ୍ରାତା ବଳବୀର । ସ୍ୱୟଂ ପରମ ପ୍ରତାପୀ ମହାରଣଧୀର ॥୧॥
ସଙ୍ଗରେ ଚତୁରଙ୍ଗିଣୀ ସେନା ଅଗଣିତ । ସର୍ବେ ସମର-ବିଜୟୀ ଯୋଦ୍ଧା ଅପ୍ରମିତ ॥
ସୈନ୍ୟ ବିଲୋକି ହରଷ ହେଲେ ନରରାଣ । ପୁଣି ଘନ ଘନ ଘୋଷେ ବାଜିଲା ନିଶାଣ ॥୨॥
ବିଜୟ ହେତୁ ସମସ୍ତ ଆଟକ୍କୁ ସଜାଇ । ସୁଦିନ ବିଚାରି ଭୂପ ଚଳିଲେ ବଜାଇ ॥
ନାନା ସ୍ଥାନେ ଘନ ଘୋର ସଂଗ୍ରାମ କରିଲେ । ବଳ ପୂର୍ବକ ସମସ୍ତ ନୃପଙ୍କୁ ଜିଣିଲେ ॥୩॥
ଭୁଜବଳେ ବଶୀଭୂତ କରି ସପ୍ତଦ୍ୱୀପେ । ଛାଡିଦେଲେ ଦଣ୍ଡ ନେଇ ନେଇଣ ମହୀପେ ॥
ସେ କାଳେ ସମସ୍ତ ମହୀମଣ୍ଡଳରେ ଶୁଣ । ଥିଲେ ଏକମାତ୍ର ଭୂପ ପ୍ରତାପ ଅରୁଣ ॥୪॥

ଭୁଜ ବଳେ ବିଶ୍ୱ କରି ନିଜ ବଶ ସ୍ୱ ପୁରେ କଲେ ପ୍ରବେଶ ।
ସ୍ୱ ସମୟ ଲଭି ଧର୍ମାର୍ଥ କାମାଦି ସୁଖ ସେବନ୍ତି ନରେଶ ॥୧୫୪॥

---

ଲବଲେଶ ସୁଦ୍ଧା ରହିଲା ନାହିଁ ॥ ୧୫୩ ॥ ଚୌପାଇ '—ରାଜାଙ୍କର ଶୁକ୍ରାଚାର୍ଯ୍ୟଙ୍କ ତୁଲ୍ୟ ବୁଦ୍ଧିମାନ୍ ଜଣେ ହିତକାରୀ ମନ୍ତ୍ରୀ ଥିଲେ । ତାଙ୍କ ନାମ ଧର୍ମରୁଚି ! ଏହିପରି ବୁଦ୍ଧିମାନ୍ ମନ୍ତ୍ରୀ ଏବଂ ବଳବାନ୍ ଓ ବୀର ଭାଇ ସଙ୍ଗକୁ ସ୍ୱୟଂ ରାଜା ମଧ୍ୟ ଅତି ପ୍ରତାପୀ ଓ ରଣଧୀର ଥିଲେ ॥ ୧ ॥ ସଙ୍ଗରେ ଅପରିମିତ ଚତୁରଙ୍ଗିଣୀ ସେନା ଥିଲେ । ତହିଁରେ ଅସଂଖ୍ୟ ଯୋଦ୍ଧା ଥିଲେ । ସେମାନେ ସମସ୍ତଙ୍କୁ ସମସ୍ତେ ରଣପ୍ରିୟ । ଆପଣାର ସେନାଙ୍କୁ ଦେଖି ରାଜା ଅତି ଆନନ୍ଦିତ ହେଲେ ଏବଂ ଧମାଧମ୍ ନାଗରା ବାଜିବାକୁ ଲାଗିଲା ॥ ୨ ॥ ଦିଗ୍‌ବିଜୟ ନିମନ୍ତେ ସେନା ସଜାଇ ରାଜା ଶୁଭଦିନ ସାଧିଲେ ଏବଂ ରଣଭେରୀ ବଜାଇ ଚାଲିଲେ । ବିଭିନ୍ନ ସ୍ଥଳରେ ବହୁତ ଲଢାଇ ହେଲା । ସେ ସବୁ ରାଜାଙ୍କୁ ବଳପୂର୍ବକ ଜିଣି ପକାଇଲେ ॥ ୩ ॥ ଆପଣାର ବାହୁବଳରେ ସେ ସପ୍ତଦ୍ୱୀପକୁ ବଶ କରି ନେଲେ ଏବଂ ରାଜାମାନଙ୍କଠାରୁ ଦଣ୍ଡ (କର) ନେଇ ସେମାନଙ୍କୁ ଛାଡି ଦେଲେ । ସଂପୂର୍ଣ୍ଣ ପୃଥିବୀମଣ୍ଡଳର ସେତେବେଳେ ଏକମାତ୍ର ପ୍ରତାପଭାନୁ ଚକ୍ରବର୍ତ୍ତୀ

ଭୂପ ପ୍ରତାପଭାନୁ ବଲ ପାଈ । କାମଧେନୁ ଭୈ ଭୂମି ସୁହାଈ ॥
ସବ ଦୁଖ ବରଜିତ ପ୍ରଜା ସୁଖାରୀ । ଧରମସୀଲ ସୁନ୍ଦର ନର ନାରୀ ॥୧॥
ସଚିବ ଧରମରୁଚି ହରି ପଦ ପ୍ରୀତି । ନୃପ ହିତ ହେତୁ ସିଖଓ ନିତ ନୀତି ॥
ଗୁରୁ ସୁର ସନ୍ତ ପିତର ମହିଦେବା । କରଇ ସଦା ନୃପ ସବ କୈ ସେବା ॥୨॥
ଭୂପ ଧରମ ଜେ ବେଦ ବଖାନେ । ସକଲ କରଇ ସାଦର ସୁଖ ମାନେ ॥
ଦିନ ପ୍ରତି ଦେଇ ବିବିଧ ବିଧି ଦାନା । ସୁନଇ ସାସ୍ତ୍ର ବର ବେଦ ପୁରାନା ॥୩॥
ନାନା ବାପୀଁ କୂପ ତଡ଼ାଗା । ସୁମନ ବାଟିକା ସୁନ୍ଦର ବାଗା ॥
ବିପ୍ରଭବନ ସୁରଭବନ ସୁହାଏ । ସବ ତୀରଥହ୍ନ ବିଚିତ୍ର ବନାଏ ॥୪॥
ଜହଁ ଲଗି କହେ ପୁରାନ ଶ୍ରୁତି ଏକ ଏକ ସବ ଜାଗ ।
ବାର ସହସ୍ର ସହସ୍ର ନୃପ କିଏ ସହିତ ଅନୁରାଗ ॥୧୫୫॥

---

ଭୂପ ପ୍ରତାପଭାନୁଙ୍କ ବଳ ପାଇକରି । ହୋଇଲା କାମ ସୁରଭି ବସୁଧା ସୁନ୍ଦରୀ ॥
ସମସ୍ତ ଦୁଃଖ ରହିତ ପ୍ରଜା ସୁଖୀ ଭାରି । ହୋଇଲେ ସୁନ୍ଦର ଧର୍ମଶୀଳ ନରନାରୀ ॥୧॥
ସଚିବ ଧର୍ମ-ରୁଚିଙ୍କ ହରି ପଦେ ପ୍ରୀତି । ନୃପ ହିତ ଲାଗି ଶିକ୍ଷା ଦିଅନ୍ତି ସୁନୀତି ॥
ଗୁରୁ ବିବୁଧ ବ୍ରାହ୍ମଣ ସାଧୁ ପିତୃଜନ । ସମସ୍ତଙ୍କ ସେବା ସଦା କରନ୍ତି ରାଜନ ॥୨॥
ନୃପଧର୍ମ ଯଥାବିଧି ବର୍ଣ୍ଣିତ ବେଦରେ । ସୁଖ ପୂର୍ବକ ସମସ୍ତ ପାଳନ୍ତି ସାଦରେ ॥
ପ୍ରତିଦିନ ନାନାବିଧି ଦାନ ପ୍ରଦାନନ୍ତି । ଉତ୍ତମ ଶାସ୍ତ୍ର ନିଗମ ପୁରାଣ ଶୁଣନ୍ତି ॥୩॥
କୂପ ବାପୀ ପୁଷ୍କରିଣୀ ନାନା ପ୍ରକାରର । ସୁମନ ଉଦ୍ୟାନ ବନ ଉପବନବର ॥
ବିପ୍ର ଭବନ ରୁଚିର ବିବୁଧ ଭବନ । ସମସ୍ତ ତୀର୍ଥଙ୍କୁ କଲେ ବିଚିତ୍ର ରଚନ ॥୪॥
ଯେ ସବୁ ଯଜ୍ଞଙ୍କୁ ବାରେ କରିବାକୁ ଶ୍ରୁତିପୁରାଣ କହନ୍ତି ।
ହଜାର ହଜାର ବାର ନୃପବର କଲେ ସାନୁରାଗେ ଅତି ॥୧୫୫॥

---

ରାଜା ॥ ୪ ॥ ଦୋହା —ସଂସାରକୁ ଆପଣା ବାହୁବଳରେ ବଶୀଭୂତ କରି ରାଜା ତାଙ୍କ ନଗରରେ ପ୍ରବେଶ କଲେ । ସମୟାନୁସାରେ ରାଜା ଅର୍ଥ, ଧର୍ମ ଓ କାମ ଆଦି ସୁଖ ଉପଭୋଗ କରୁଥିଲେ ॥ ୧୫୪ ॥ ଚୌପାଈ :—ରାଜା ପ୍ରତାପଭାନୁଙ୍କର ବଳ ପାଇ ଭୂମି ସୁନ୍ଦର କାମଧେନୁରେ ପରିଣତ ହୋଇଗଲା । ତାଙ୍କ ରାଜ୍ୟରେ ପ୍ରଜାମାନେ ସକଳ ଦୁଃଖରୁ ରହିତ ହୋଇ ସୁଖ ଲାଭ କରୁଥିଲେ ଏବଂ ସମସ୍ତ ସ୍ତ୍ରୀପୁରୁଷ ସୁନ୍ଦର ଓ ଧର୍ମାତ୍ମା ଥିଲେ ॥ ୧ ॥ ଧର୍ମରୁଚି ମନ୍ତ୍ରୀଙ୍କର ଶ୍ରୀହରିଙ୍କ ଚରଣରେ ପ୍ରେମ ଥାଏ । ରାଜାଙ୍କର କଲ୍ୟାଣ ନିମନ୍ତେ ସେ ସର୍ବଦା ତାହାଙ୍କୁ ନୀତିବାକ୍ୟ ଶିଖାଉଥା'ନ୍ତି । ରାଜା ଗୁରୁ, ଦେବତା, ସନ୍ଥ, ପିତୃପୁରୁଷ ଓ ବ୍ରାହ୍ମଣ—ଏହି ସମସ୍ତଙ୍କୁ ସର୍ବଦା ସେବା କରୁଥା'ନ୍ତି ॥୨॥ ବେଦାନୁମୋଦିତ ରାଜଧର୍ମକୁ ରାଜା ସୁଖ ମାନି ଆଦରପୂର୍ବକ ପାଳନ କରୁଥିଲେ । ପ୍ରତିଦିନ ଅନେକ ପ୍ରକାରର ଦାନ ଦେଉଥା'ନ୍ତି ଏବଂ ଉତ୍ତମ ଶାସ୍ତ୍ର, ବେଦ ଓ ପୁରାଣ ଶୁଣୁଥା'ନ୍ତି ॥ ୩ ॥ ସେ ବହୁତ ବାପୀ, କୂପ, ପୁଷ୍କରିଣୀ, ପୁଷ୍ପବାଟିକା ଓ ସୁନ୍ଦର ଉଦ୍ୟାନ

ହୃଦୟଁ ନ କଛୁ ଫଲ ଅନୁସଂଧାନା । ଭୂପ ବିବେକୀ ପରମ ସୁଜାନା ॥
କରଇ ଜେ ଧରମ କରମ ମନ ବାନୀ । ବାସୁଦେବ ଅର୍ପିତ ନୃପ ଜ୍ଞାନୀ ॥୧॥
ଚଢ଼ି ବର ବାଜି ବାର ଏକ ରାଜା । ମୃଗୟା କର ସବ ସାଜି ସମାଜା ॥
ବିଂଧ୍ୟାଚଲ ଗଭୀର ବନ ଗୟଉ । ମୃଗ ପୁନୀତ ବହୁ ମାରତ ଭୟଉ ॥୨॥
ଫିରତ ବିପିନ ନୃପ ଦୀଖ ବରାହୂ । ଜନୁ ବନ ଦୁରେଉ ସସିହି ଗ୍ରସି ରାହୂ ॥
ବଡ଼ ବିଧୁ ନହିଁ ସମାତ ମୁଖ ମାହୀଁ । ମନହୁଁ କ୍ରୋଧ ବସ ଉଗିଲତ ନାହୀଁ ॥୩॥
କୋଲ କରାଲ ଦସନ ଛବି ଗାଈ । ତନୁ ବିସାଲ ପୀୱର ଅଧିକାଈ ॥
ଘୁରୁଘୁରାତ ହୟ ଆରୌ ପାଏଁ । ଚକିତ ବିଲୋକତ କାନ ଉଠାଏଁ ॥୪॥

---

ନ କଲେ ହୃଦେ କୌଣସି ଫଳାନୁସନ୍ଧାନ । ବିବେକୀ ଅବନୀପାଳ ଅତି ଜ୍ଞାନବାନ ॥
କର୍ମମନବାକ୍ୟେ ଯେଉଁ ଧର୍ମ ଆଚରନ୍ତି । ବାସୁଦେବେ ତାହା ଜ୍ଞାନୀ ନୃପ ସମର୍ପନ୍ତି ॥୧॥
ଚଢ଼ି ବର ବାଜି ପୃଷ୍ଠେ ଏକଦା ରାଜନ । ମୃଗୟା ନିମନ୍ତେ ସବୁ ସାଜି ଆୟୋଜନ ॥
ବିନ୍ଧ୍ୟ ପର୍ବତର ଘନ ଅରଣ୍ୟେ ଗମିଲେ । ଅନେକ ପବିତ୍ର ମୃଗ ପାରିଧି କରିଲେ ॥୨॥
ଦେଖିଲେ ବରାହ ନୃପ ଭ୍ରମନ୍ତେ କାନନେ । ଶଶୀଙ୍କୁ ଗ୍ରାସିଣ ରାହୁ ଲୁଚନ୍ତି ବା ବନେ ॥
ବଡ଼ ବିଧୁ ନ ସମ୍ଭାଏ ତା'ମୁଖ ମଧ୍ୟରେ । ମନେ ହୁଏ କ୍ରୋଧବଶ ଉଗାଳ ନ କରେ ॥୩॥
ଏମନ୍ତେ ଘୋର ବରାହ ଦନ୍ତଛବି ବ୍ୟକ୍ତ । ଘ୍ରସ୍ତ ବିଶାଳ ଶରୀର ପୃଥୁଳ ଅତ୍ୟନ୍ତ ॥
ଘୋଡ଼ା ଟାପ ଶବ୍ଦ ଶୁଣି ଘୁଡ଼ୁଘୁଡ଼ୁ କରି । ଚକିତେ କର୍ଣ୍ଣ ଟେକିଣ ବିଲୋକଇ ତନ୍ତ ॥୪॥

---

ଏବଂ ସବୁ ତୀର୍ଥରେ ବ୍ରାହ୍ମଣମାନଙ୍କ ନିମନ୍ତେ ଗୃହ ଓ ଦେବତାମାନଙ୍କ ଲାଗି ବିଚିତ୍ର ମନ୍ଦିର ନିର୍ମାଣ କରାଇଲେ ॥ ୪ ॥ ଦୋହା :—ବେଦ ଓ ପୁରାଣମାନଙ୍କରେ ଯେତେ ପ୍ରକାରର ଯଜ୍ଞ ବିଷୟରେ କୁହାଯାଇଅଛି, ରାଜା ଗୋଟି ଗୋଟି କରି ସେହିସବୁ ଯଜ୍ଞ ପ୍ରେମ ସହିତ ହଜାର ହଜାର ଥର କଲେ ॥ ୧୫୫ ॥ ଚୌପାଈ :—ରାଜାଙ୍କ ହୃଦୟରେ କୌଣସି ଫଳର କାମନା ନ ଥିଲା । ରାଜା ବଡ଼ ବୁଦ୍ଧିମାନ୍ ଓ ଜ୍ଞାନୀ ଥିଲେ । ସେ ଜ୍ଞାନୀ ରାଜା କର୍ମ, ମନ ଓ ବାଣୀରେ ଯାହା କିଛି ଧର୍ମ କରୁଥିଲେ, ସବୁ ଭଗବାନ୍ ବାସୁଦେବଙ୍କୁ ଅର୍ପଣ କରୁଥିଲେ ॥ ୧ ॥ ଏକଦା ରାଜା ଗୋଟିଏ ଉତ୍ତମ ଅଶ୍ୱ ଉପରେ ବସି ଶିକାରର ସମସ୍ତ ଉପକରଣ ସଜାଇ ବିନ୍ଧ୍ୟାଚଳର ଘନ ବନକୁ ଗଲେ । ସେଠାରେ ବହୁତ ପବିତ୍ର ମୃଗ ବଧ କଲେ ॥ ୨ ॥ ବନରେ ଭ୍ରମଣ କରୁଥିବା ସମୟରେ ରାଜା ଗୋଟିଏ ବରାହକୁ ଦେଖିଲେ । ଦାନ୍ତ ଯୋଗୁଁ ସେ ଏପରି ଦେଖାଯାଉଥିଲା ଯେ, ସତେ ଯେପରି ରାହୁ ଚନ୍ଦ୍ରମାକୁ ଗ୍ରାସ କରି (ପାଟିରେ ଧରି) ବନରେ ଆସି ଲୁଚିଛି । ଚନ୍ଦ୍ର ବଡ଼ ହେବାରୁ ତା ପାଟି ଭିତରେ ସମ୍ଭାଇ ପାରୁନାହିଁ ଏବଂ କ୍ରୋଧବଶତଃ ସେ ତାକୁ ଛାଡ଼ି ବି ପାରୁନାହିଁ ॥୩॥ ଏହା ତ ବରାହର ଭୟାନକ ଦନ୍ତଶୋଭା ବିଷୟରେ କୁହାଗଲା । ଏଣେ ତାହାର ଦେହ ମଧ୍ୟ ଅତି ବୃହତ୍ ଓ ମୋଟା । ଘୋଡ଼ାର ଶବ୍ଦ ଶୁଣି ସେ ଘୁଡ଼ୁଘୁଡ଼ୁ ଶବ୍ଦ କରି କାନ ଉଠାଇ ଚକିତ ହୋଇ ଚାହୁଁଥାଏ ॥ ୪ ॥

ନୀଲ ମହୀଧର ସିଖର ସମ ଦେଖି ବିସାଲ ବରାହୁ ।
ଚପରି ଚଲେଉ ହୟ ସୁଟୁକି ନୃପ ହାଁକି ନ ହୋଇ ନିବାହୁ ॥୧୫୬॥
ଆୱତ ଦେଖି ଅଧିକ ରବ ବାଜୀ । ଚଲେଉ ବରାହ ମରୁତ ଗତି ଭାଜୀ ॥
ତୁରତ କୀନ୍ହ ନୃପ ସର ସଂଧାନା । ମହି ମିଲି ଗୟଉ ବିଲୋକତ ବାନା ॥୧॥
ତକି ତକି ତୀର ମହୀସ ଚଲାୱା । କରି ଛଲ ସୁଅର ସରୀର ବଚାୱା ॥
ପ୍ରଗଟତ ଦୁରତ ଜାଇ ମୃଗ ଭାଗା । ରିସ ବସ ଭୂପ ଚଲେଉ ସଁଗ ଲାଗା ॥୨॥
ଗୟଉ ଦୂରି ଘନ ଗହନ ବରାହୂ । ଜହଁ ନାହିନ ଗଜ ବାଜି ନିବାହୂ ॥
ଅତି ଅକେଲ ବନ ବିପୁଲ କଲେସୂ । ତଦପି ନ ମୃଗ ମଗ ତଜଇ ନରେସୂ ॥୩॥
କୋଲ ବିଲୋକି ଭୂପ ବଡ଼ ଧୀରା । ଭାଗି ପୈଠ ଗିରିଗୁହାଁ ଗଭୀରା ॥
ଅଗମ ଦେଖି ନୃପ ଅତି ପଛିତାଈ । ଫିରେଉ ମହାବନ ପରେଉ ଭୁଲାଈ ॥୪॥

---

ନୀଳ ପରବତ ଶିଖର ଯେମନ୍ତ ଦେଖି ବରାହ ବିଶାଳ ।
ଇଙ୍ଗିତେ ଅଶ୍ୱକୁ ଶୀଘ୍ର ସେ ବେଗକୁ ବଢ଼ାଇଲେ ଭୂପାଳ ॥୧୫୬॥
ଆସିବା ଦେଖି ହୟକୁ ଅଧିକ ରବରେ । ପଳାଇ ଗଲା ବରାହ ମରୁତ ବେଗରେ ॥
ଶର ସନ୍ଧାନ କରିଲେ ଶୀଘ୍ର ନରରାଣ । ମହୀରେ ସେ ମିଳିଗଲା ବିଲୋକଣ ବାଣ ॥୧॥
ଲକ୍ଷ୍ୟ କରି କରି ନୃପ ପ୍ରହାରନ୍ତି ତୀର । ଛଳ କରିଣ ଶୂକର ବଞ୍ଚାଏ ଶରୀର ॥
ଲୁଚି ପ୍ରକଟିଣ ସେହି ପଳାଏ ବହନ । କ୍ରୋଧବଶ ପଛେ ପଛେ ଗୋଡ଼ାନ୍ତି ରାଜନ ॥୨॥
ପ୍ରବେଶିଲା ଦୂର ବନ ଗହନେ ବରାହ । ଯହିଁ ନାହିଁ ଗଜ ବାଜି ଜନ୍ତୁଙ୍କର ରାହ ॥
ଅତି ଏକାକୀ ବିପିନେ ସହି ବହୁ କ୍ଳେଶ । ତଥାପି ତା ପଛ ତ୍ୟାଗ ନ କଲେ ନରେଶ ॥୩॥
ନୃପ ବଡ଼ ଧୀର ଯହୁଁ ବରାହ ଦେଖିଲା । ପଳାଇ ଗଭୀର ଗିରି ଗହ୍ୱରେ ପଶିଲା ॥
ଅଗମ୍ୟ ଦେଖି ମହୀପ ଅତି ସନ୍ତାପରେ । ଫେରନ୍ତେ ବଣା ହୋଇଲେ ଗହନ ବନରେ ॥୪॥

---

ଦୋହା —ନୀଳ ପର୍ବତର ଶିଖର ପରି ବିଶାଳକାୟ ସେହି ବରାହକୁ ଦେଖି ରାଜା ଅଶ୍ୱକୁ ଚାବୁକ ଲଗାଇ ଦ୍ରୁତ ଗତିରେ ଚାଳିତ କଲେ । ବରାହକୁ ସେ ସତେ ଯେପରି ସତର୍କ କରି କହିଦେଲେ—"ତୋର ଆଉ ରକ୍ଷା ନାହିଁ ।" ॥ ୧୫୬ ॥ ଚୌପାଈ — ଅତ୍ୟଧିକ ଶବ୍ଦ କରି ଘୋଡ଼ାକୁ ନିଜ ଆଡ଼କୁ ଆସୁଥିବାର ଦେଖି ବରାହ ପବନ ବେଗରେ ଦୌଡ଼ି ପଳାଇଗଲା । ରାଜା ଶୀଘ୍ର ଧନୁରେ ଶର ଯୋଖିଲେ, ଶରକୁ ଦେଖିବା ମାତ୍ରେ ବରାହ ଭୂମି ସଙ୍ଗେ ମିଶି କେଉଁଠି ଲୁଚିଗଲା ॥ ୧ ॥ ରାଜା ନିରେଖି ନିରେଖି ଶର ବିନ୍ଧୁଥା'ନ୍ତି । କିନ୍ତୁ ବରାହ ଛଳକୌଶଳ କରି ଶରୀର ବଞ୍ଚାଇ ଚାଲିଥାଏ । ସେହି ପଶୁ କେତେବେଳେ ବାହାରୁଥାଏ ତ, ପୁଣି କେତେବେଳେ ଲୁଚି ଲୁଚି ପଳାଇ ଯାଉଥାଏ । ରାଜା ମଧ୍ୟ କ୍ରୋଧବଶ ତାହା ପଛେ ପଛେ ଲାଗି ଦୌଡ଼ିଥା'ନ୍ତି ॥ ୨ ॥ ବହୁତ ଦୂର ଯାଇ ବରାହ ଏପରି ଗହନ ବନରେ ପଶିଗଲା ଯେଉଁଠି ହାତୀଘୋଡ଼ାଙ୍କର ପ୍ରବେଶ ଅତି କଷ୍ଟକର । ରାଜା ବିଲ୍‌କୁଲ୍ ଏକା'କୀ,

ଖେଦ ଖିନ୍ନ ଛୁଦ୍ଧିତ ତୃଷିତ ରାଜା ବାଜି ସମେତ ।
ଖୋଜତ ବ୍ୟାକୁଲ ସରିତ ସର ଜଲ ବିନୁ ଭୟଉ ଅଚେତ ॥୧୫୭॥
ଫିରତ ବିପିନ ଆଶ୍ରମ ଏକ ଦେଖା । ତହଁ ବସ ନୃପତି କପଟ ମୁନିବେଷା ॥
ଜାସୁ ଦେସ ନୃପ ଲୀହ୍ନ ଛଡ଼ାଈ । ସମର ସେନ ତଜି ଗୟଉ ପରାଈ ॥୧॥
ସମୟ ପ୍ରତାପଭାନୁ କର ଜାନୀ । ଆପନ ଅତି ଅସମୟ ଅନୁମାନୀ ॥
ଗୟଉ ନ ଗୃହ ମନ ବହୁତ ଗଲାନୀ । ମିଲା ନ ରାଜହି ନୃପ ଅଭିମାନୀ ॥୨॥
ରିସ ଉର ମାରି ରଂକ ଜିମି ରାଜା । ବିପିନ ବସଇ ତାପସ କେଁ ସାଜା ॥
ତାସୁ ସମୀପ ଗବନ ନୃପ କୀହ୍ନା । ୟହ ପ୍ରତାପରବି ତେହିଁ ତବ ଚୀହ୍ନା ॥୩॥

---

କ୍ଲାନ୍ତ ସନ୍ତାପିତ ତୃଷିତ କ୍ଷୁଧିତ ଭୂପତି ବାଜି ସମେତ ।
ଖୋଜନ୍ତେ ଆତୁର ହୋଇ ନଦୀସର ଜଳ ବିହୁନେ ଅଚେତ ॥୧୫୭॥
ଭ୍ରମନ୍ତେ ଆଶ୍ରମ ଏକ ଦେଖିଲେ ବନରେ । ତହିଁ ନୃପ ରହେ ମୁନି-କପଟ-ବେଶରେ ।
ଯାର ଦେଶ ନେଇଥିଲେ ନୃପତି ଛଡ଼ାଇ । ସମରେ ସୈନ୍ୟଙ୍କୁ ତେଜି ଗଲା ସେ ପଳାଇ ॥୧॥
ଶୁଭ ସମୟ ଆଦିତ୍ୟ ପ୍ରତାପର ଜାଣି । ନିଜ ଅସମୟ ପୁଣି ମନେ ଅନୁମାନି ॥
ନ ଗଲା ଗୃହକୁ ହୃଦେ ଲଭି ବହୁ ଗ୍ଲାନି । ନ ମିଳିଲା ନୃପ ସଙ୍ଗେ ଭୂପ ଅଭିମାନୀ ॥୨॥
ରୋଷ ହୃଦେ ମାରି ରଙ୍କ ପରି ସେ ନରେଶ । ବନେ ବାସ କଲା ସାଜି ତପସ୍ୱୀର ବେଶ ॥
ତାହାର ପାଖେ ଗମନ କଲେ ନୃପ ଯେବେ । ଏ ପ୍ରତାପଭାନୁ ବୋଲି ଜାଣିଲା ସେ ତେବେ ॥୩॥

---

ବନରେ ନାନା କ୍ଲେଶ ପୂରି ରହିଛୁ । ତଥାପି ରାଜା ସେହି ପଶୁର ଅନୁଧାବନ ଛାଡ଼ିଲେ ନାହିଁ ॥ ୩ ॥ ରାଜାଙ୍କୁ ଏପରି ଧୈର୍ଯ୍ୟର ସହିତ ଅନୁଧାବନ କରିବାର ଦେଖି ବରାହ ଦୌଡ଼ିଯାଇ ପାହାଡ଼ର ଗୋଟିଏ ଗୁମ୍ଫାରେ ପଶିଗଲା । ସେଥିରେ ପଶିବ ନଷ୍ଟାନର ଦେଖି ରାଜା ବହୁତ ଅନୁତାପ କରି ଲେଉଟିଲେ । କିନ୍ତୁ ସେହି ବନରେ ସେ ରାସ୍ତା ଭୁଲିଗଲେ ॥ ୪ ॥ ଦୋହା '—ବହୁତ ପରିଶ୍ରମ କରି ରାଜା କ୍ଲାନ୍ତ ହୋଇପଡ଼ିଥିଲେ । ସେ ଅଶ୍ୱ ସମେତ କ୍ଷୁଧାତୃଷାରେ ବ୍ୟାକୁଳ ହୋଇ ନଦୀପୁଷ୍କରିଣୀ ଖୋଜି ବୁଲିଲେ । ଜଳ ବିନା ଉଭୟେ ବ୍ୟସ୍ତବ୍ୟସ୍ତ ହୋଇ ପଡ଼ିଲେ ॥ ୧୫୭ ॥ ଚୌପାଈ —ବନରେ ବୁଲୁ ବୁଲୁ ସେ ଗୋଟିଏ ଆଶ୍ରମ ଦେଖିଲେ । ସେଠାରେ ଛଦ୍ମ-ମୁନିବେଶଧାରୀ ଜଣେ ରାଜା ରହୁଥିଲା । ରାଜା ପ୍ରତାପଭାନୁ ତାହାର ଦେଶ ଛଡ଼ାଇ ନେଇଥିଲେ ଏବଂ ସେନାକୁ ଛାଡ଼ି ସେ ଯୁଦ୍ଧକ୍ଷେତ୍ରରୁ ପଳାୟନ କରିଥିଲା ॥ ୧ ॥ ପ୍ରତାପଭାନୁଙ୍କର ଭଲ ବେଳ ଏବଂ ଆପଣାର ଖରାପ ବେଳ ପଡ଼ିଛି ଜାଣି ସେ ରାଜା ମନରେ ବଡ଼ ଗ୍ଲାନି ଅନୁଭବ କରୁଥିଲା । ଏହିହେତୁ ସେ ଘରକୁ ଫେରି ନ ଥିଲା କିମ୍ବା ଅଭିମାନୀ ହୋଇଥିବାରୁ ପ୍ରତାପଭାନୁଙ୍କ ସଙ୍ଗେ ସନ୍ଧି ମଧ୍ୟ କରି ନ ଥିଲା ॥୨॥ ଦରିଦ୍ର ପରି ମନ ମଧ୍ୟରେ କ୍ରୋଧ ମାରି ସେ ରାଜା ତପସ୍ୱୀ ବେଶରେ ବନରେ ରହୁଥିଲା । ରାଜା ପ୍ରତାପଭାନୁ ତା ନିକଟକୁ ଗଲେ । ସେ ସଙ୍ଗେ ସଙ୍ଗେ ଚିହ୍ନି ପକାଇଲା ଯେ, ଏ ହେଉଛନ୍ତି

ରାଉ ତୃଷିତ ନହିଁ ସୋ ପହିଚାନା । ଦେଖି ସୁବେଷ ମହାମୁନି ଜାନା ॥
ଉତରି ତୁରଗ ତେଁ କୀହ୍ନ ପ୍ରନାମା । ପରମ ଚତୁର ନ କହେଉ ନିଜ ନାମା ॥୪॥

ଭୂପତି ତୃଷିତ ବିଲୋକି ତେହିଁ ସରବରୁ ଦୀହ୍ନ ଦେଖାଇ ।
ମଜ୍ଜନ ପାନ ସମେତ ହୟ କୀହ୍ନ ନୃପତି ହରଷାଇ ॥୧୫୮॥

ଗୈ ଶ୍ରମ ସକଲ ସୁଖୀ ନୃପ ଭୟଊ । ନିଜ ଆଶ୍ରମ ତାପସ ଲୈ ଗୟଊ ॥
ଆସନ ଦୀହ୍ନ ଅସ୍ତ ରବି ଜାନୀ । ପୁନି ତାପସ ବୋଲେଉ ମୃଦୁ ବାନୀ ॥୧॥
କୋ ତୁହ୍ମ କସ ବନ ଫିରହୁ ଅକେଲେଁ । ସୁନ୍ଦର ଜୁବା ଜୀବ ପରହେଲେଁ ॥
ଚକ୍ରବର୍ତି କେ ଲଚ୍ଛନ ତୋରେଁ । ଦେଖତ ଦୟା ଲାଗି ଅତି ମୋରେଁ ॥୨॥
ନାମ ପ୍ରତାପଭାନୁ ଅବନୀସା । ତାସୁ ସଚିବ ମୈଁ ସୁନହୁ ମୁନୀସା ॥
ଫିରତ ଅହେରେଁ ପରେଉଁ ଭୁଲାଈ । ବଡ଼େ ଭାଗ ଦେଖେଉଁ ପଦ ଆଈ ॥୩॥

---

ତୃଷିତ ରାଜା ତାହାଙ୍କୁ ଚିହ୍ନି ନ ପାରିଲେ । ସୁବେଶ ବିଲୋକି ମହାତାପସ ଜାଣିଲେ ॥
ଅବତରି ତୁରଙ୍ଗରୁ କରିଲେ ପ୍ରଣାମ । ପରମ ଚତୁର ନିଜ ନ କହିଲେ ନାମ ॥୪॥

ନୃପଙ୍କୁ ତୃଷାର୍ତ୍ତ ଦେଖିଣ ସେ ଧୂର୍ତ୍ତ ଦେଖାଇ ଦିଅନ୍ତେ ସର ।
ତୁରଙ୍ଗ ସହିତେ କଲେ ଆନନ୍ଦିତେ ସ୍ନାନ ପାନ ନରେଶ୍ୱର ॥୧୫୮॥

ସୁଖୀ ହେଲେ ନୃପ ସବୁ ଶ୍ରମ ଦୂର ହେଲା । ତହୁଁ ତାପସ ଆପଣା ଆଶ୍ରମକୁ ନେଲା ॥
ଆସନ ପ୍ରଦାନ କରି ରବିଅସ୍ତ ଜାଣି । ବୋଇଲା ତାପସ ପୁଣି ସୁମଧୁର ବାଣୀ ॥୧॥
କିଏ ତୁମ୍ଭେ ବନେ କିପାଁ ଏକାକୀ ବୁଲୁଛ । ସୁନ୍ଦର ଯୁବା ଜୀବନେ ଅନାସ୍ଥା କରୁଛ ॥
ତୁମ୍ଭଠାରେ ଚକ୍ରବର୍ତ୍ତୀ ଲକ୍ଷଣ ଦିଶୁଛି । ଦେଖନ୍ତେ ଦୟା ମୋ ହୃଦେ ଉତ୍ପନ୍ନ ହେଉଛି ॥୨॥
ପ୍ରତାପଭାନୁ ନାମରେ ଏକ ନରବର । ତାହାଙ୍କ ସଚିବ ମୁହିଁ ଶୁଣ ମୁନୀଶ୍ୱର ॥
ପାରିଧିରେ ବୁଲି ବୁଲି ପଥ ମୁଁ ଭୁଲିଲି । ବଡ ସୌଭାଗ୍ୟରୁ ଆସି ଚରଣ ଦେଖିଲି ॥୩॥

---

ପ୍ରତାପଭାନୁ ॥ ୩ ॥ ରାଜା ତୃଷାର୍ତ୍ତ ହୋଇଥିବାରୁ ବ୍ୟାକୁଳତାରେ ତାହାଙ୍କୁ ଚିହ୍ନି ପାରିଲେ ନାହିଁ । ତାହାର ଉତ୍ତମ ବେଶ ଦେଖି ପ୍ରତାପଭାନୁ ତାଙ୍କୁ ମହାମୁନି ବୋଲି ମନେ କଲେ ଏବଂ ଅଶ୍ୱପୃଷ୍ଠରୁ ଓହ୍ଲାଇ ତାଙ୍କୁ ପ୍ରଣାମ କଲେ । କିନ୍ତୁ ଅତି ଚତୁର ହୋଇଥିବାରୁ ସେ ତାହାଙ୍କୁ ଆପଣାର ନାମ କହିଲେ ନାହିଁ ॥ ୪ ॥ ଦୋହା :—ରାଜାଙ୍କୁ ତୃଷାର୍ତ୍ତ ଦେଖି ସେ ତପସ୍ୱୀ ରାଜାଙ୍କୁ ଗୋଟିଏ ସରୋବର ଦେଖାଇ ଦେଲା । ଆନନ୍ଦିତ ହୋଇ ରାଜା ଅଶ୍ୱ ସହିତ ତହିଁରେ ସ୍ନାନ ଓ ଜଳ-ପାନ କଲେ ॥ ୧୫୮ ॥ ଚୌପାଇ —ରାଜାଙ୍କର ସମସ୍ତ କ୍ଳାନ୍ତି ଦୂର ହୋଇଗଲା । ରାଜା ସୁଖୀ ହେଲେ । ତତ୍ପରେ ତପସ୍ୱୀ ତାଙ୍କୁ ଆପଣାର ଆଶ୍ରମକୁ ନେଇଗଲା ଏବଂ ସୂର୍ଯ୍ୟାସ୍ତ ସମୟ ଜାଣି ରାଜାଙ୍କୁ ବସିବା ନିମନ୍ତେ ଆସନ ଦେଲା । ତପସ୍ୱୀ ରାଜାଙ୍କୁ କୋମଳ ବଚନ କହିଲା, "ତୁମେ କିଏ ? ସୁନ୍ଦର ଯୁବକ ହୋଇ ଜୀବନକୁ ପରବାୟ ନ କରି ବନରେ ଏକାକୀ କାହିଁକି ବୁଲୁଅଛ ? ଚକ୍ରବର୍ତ୍ତୀ ରାଜାଙ୍କ ସମାନ ତୁମଠାରେ

ହମ କହଁ ଦୁର୍ଲଭ ଦରସ ତୁହ୍ମାରା । ଜାନତ ହୌଁ କଛୁ ଭଲ ହୋନହାରା ॥
କହ ମୁନି ତାତ ଭୟଉ ଅଁଧିଆରା । ଜୋଜନ ସତ୍ତରି ନଗରୁ ତୁହ୍ମାରା ॥୪॥
ନିସା ଘୋର ଗମ୍ଭୀର ବନ ପଂଥ ନ ସୁନହୁ ସୁଜାନ ।
ବସହୁ ଆଜୁ ଅସ ଜାନି ତୁହ୍ମ ଜାଏହୁ ହୋତ ବିହାନ ॥୧୫୯ (କ)॥

ତୁଲସୀ ଜସି ଭବିତବ୍ୟତା ତୈସୀ ମିଲଇ ସହାଇ ।
ଆପୁନୁ ଆଵଇ ତାହି ପହିଁ ତାହି ତହାଁ ଲୈ ଜାଇ ॥୧୫୯(ଖ)॥
ଭଲେହିଁ ନାଥ ଆୟସୁ ଧରି ସୀସା । ବାଁଧି ତୁରଗ ତରୁ ବୈଠ ମହୀସା ॥
ନୃପ ବହୁ ଭାଁତି ପ୍ରସଂସେଉ ତାହୀ । ଚରନ ବଂଦି ନିଜ ଭାଗ୍ୟ ସରାହୀ ॥୧॥

---

ମୋ ପାଇଁ ତୁମ୍ଭ ଦର୍ଶନ ଦୁର୍ଲଭ ଅଟଇ । ଭଲ ହେବା ପରି କିଛି ବୁଝି ମୁଁ ପାରଇ ॥
ବୋଲଇ ତାପସ ବତ୍ସ, ନିଶି ଆଗମନ । ଏଠାରୁ ତୁମ୍ଭ ନଗର ସତୁରି ଯୋଜନ ॥୪॥
ନିଶା ଭୟଙ୍କର ବିପିନ ଗମ୍ଭୀର ପଥ ନ ଦିଶେ ପ୍ରବୀଣ ।
ଏହା ଜାଣି ଆଜି ରହ ଏ ସ୍ଥାନରେ ପ୍ରଭାତେ ଯିବ ଉଠିଣ ॥ ୧୫୯ (କ) ॥

ତୁଲସୀ ଯେପରି ଭବିତବ୍ୟ, ତଥା ସହାୟତା ମିଳିଯାଏ ।
ଆସେ ଆପେ ତାହା ତାର ପାଶେ ଅବା ତାକୁ ତହିଁ ପହୁଞ୍ଚାଏ ॥୧୫୯(ଖ)॥
ଅତି ଭଲ ନାଥ କହି ମାନିଣ ଆଦେଶ । ତରୁରେ ତୁରଙ୍ଗ ବାନ୍ଧି ବସିଲେ ନରେଶ ॥
ନାନା ପ୍ରକାରେ କରିଣ ବଡ଼ାଇ ତାହାର । ପଦ ବନ୍ଦି ପ୍ରଶଂସନ୍ତି ଭାଗ୍ୟ ଆପଣାର ॥୧॥

---

ଲକ୍ଷଣ ଦେଖି ମୋ ମନରେ ବଡ଼ ଦୟା ଜାତ ହେଉଅଛି ॥ ୧-୨ ॥ ରାଜା କହିଲେ, "ହେ ମୁନୀଶ୍ୱର ! ଶୁଣନ୍ତୁ । ପ୍ରତାପଭାନୁ ନାମକ ଜଣେ ରାଜା ଅଛନ୍ତି । ମୁଁ ତାଙ୍କର ମନ୍ତ୍ରୀ, ଶିକାର ପଛରେ ବୁଲି ବୁଲି ବାଟ ଭୁଲି ଯାଇଛି । ବଡ଼ ଭାଗ୍ୟବଳରୁ ମୁଁ ଏଠାକୁ ଆସି ଆପଣଙ୍କ ଦର୍ଶନ ପାଇଅଛି ॥ ୩ ॥ ଆମ୍ଭ ପାଇଁ ଆପଣଙ୍କ ଦର୍ଶନ ଦୁର୍ଲଭ ଥିଲା । ଆଜି ଆପଣଙ୍କ ଦର୍ଶନ-ଲାଭରୁ ଜଣାପଡ଼ୁଛି ଯେ, କିଛି ଗୋଟାଏ ଭଲ ହେବ ।" ମୁନି କହିଲା, "ହେ ତାତ ! ଅନ୍ଧାର ହୋଇଗଲାଣି, ତୁମ ନଗର ଏଠାରୁ ସତୁରି ଯୋଜନ ଦୂର ॥ ୪ ॥ ଦୋହା —ହେ ସୁଜ୍ଞ ! ଶୁଣ, ଘୋର ଅନ୍ଧକାରମୟୀ ରାତ୍ରି । ଘନ ଜଙ୍ଗଲ, ରାସ୍ତା ନାହିଁ । ଏପରି ବିଚାର କରି ତୁମେ ଆଜି ଏହିଠାରେ ରହିଯାଅ । ସକାଳ ହେଲା ମାତ୍ରେ ଚାଲିଯିବ ॥ ୧୫୯ (କ) ॥ ତୁଲସୀ ଦାସ କହନ୍ତି, "ଯେପରି ଭବିତବ୍ୟତା (ଭାଗ୍ୟ), ଠିକ୍ ସେହିପରି ସାହାଯ୍ୟ ମିଳିଯାଏ । ତାହା ନିଜେ ମନୁଷ୍ୟ ପାଖକୁ ଆସିଯାଏ, ଅଥବା ମନୁଷ୍ୟକୁ ସେଠାକୁ ନେଇଯାଏ ।" ॥ ୧୫୯ (ଖ) ॥ ଚୌପାଇ —"ହେ ନାଥ ! ବହୁତ ଆଚ୍ଛା",—ଏହା କହି ଏବଂ ତାହାର ଆଜ୍ଞା ଶିରୋଧାର୍ଯ୍ୟ କରି ଅଶ୍ୱକୁ ବୃକ୍ଷରେ ବାନ୍ଧି ରାଜା ବସିଗଲେ । ସେ ତାକୁ ବହୁତ ପ୍ରକାରେ ପ୍ରଶଂସା କଲେ ଏବଂ ତାହାର ଚରଣ ବନ୍ଦନା କରି ଆପଣାର ଭାଗ୍ୟକୁ ପ୍ରଶଂସା କଲେ ॥୧॥

ପୁନି ବୋଲେଉ ମୃଦୁ ଗିରା ସୁହାଈ । ଜାନି ପିତା ପ୍ରଭୁ କରଉଁ ଢିଠାଈ ॥
ମୋହି ମୁନୀସ ସୁତ ସେବକ ଜାନୀ । ନାଥ ନାମ ନିଜ କହହୁ ବଖାନୀ ॥୨॥
ତେହି ନ ଜାନ ନୃପ ନୃପହି ସୋ ଜାନା । ଭୂପ ସୁହୃଦ ସୋ କପଟ ସୟାନା ॥
ବୈରୀ ପୁନି ଛତ୍ରୀ ପୁନି ରାଜା । ଛଲ ବଲ କୀହ୍ନ ଚହଇ ନିଜ କାଜା ॥୩॥
ସମୁଝି ରାଜସୁଖ ଦୁଖିତ ଅରାତୀ । ଅୱାଁ ଅନଲ ଇବ ସୁଲଗଇ ଛାତୀ ॥
ସରଲ ବଚନ ନୃପ କେ ସୁନି କାନା । ବୟର ସଁଭାରି ହୃଦୟଁ ହରଷାନା ॥୪॥

କପଟ ବୋରି ବାନୀ ମୃଦୁଲ ବୋଲେଉ ଜୁଗୁତି ସମେତ ।
ନାମ ହମାର ଭିଖାରି ଅବ ନିର୍ଧନ ରହିତ ନିକେତ ॥୧୬୦॥

କହ ନୃପ ଜେ ବିଜ୍ଞାନ ନିଧାନା । ତୁମ୍ହ ସାରିଖେ ଗଲିତ ଅଭିମାନା ॥
ସଦା ରହହିଁ ଅପନପୌ ଦୁରାଏଁ । ସବ ବିଧି କୁସଲ କୁବେଷ ବନାଏଁ ॥୧॥

---

ଭାଷିଲେ ମୃଦୁ ବଚନ ପୁଣି ବକ୍ରଧାରୀ । ଧୃଷ୍ଟତା କରୁଛୁ ପ୍ରଭୁ ଜନକ ବିଚାରି ॥
ମୋତେ ମୁନୀଶ୍ୱର ସୁତ ଅନୁଗାମୀ ଜାଣି । ନାଥ ଆପଣଙ୍କ ନାମ କହନ୍ତୁ ବଖାଣି ॥୨॥
ନୃପ ତାଙ୍କୁ ନ ଜାଣନ୍ତି ନୃପେ ସେ ଜାଣଇ । ଭୂପ ସୁହୃଦୟ, ସେହି କପଟୀ ଅଟଇ ॥
ବଇରି କ୍ଷତ୍ରିୟ ପୁଣି ତହିଁରେ ଭୂପତି । ଛଳ ବଳେ ନିଜ କାର୍ଯ୍ୟ ସାଧିବା ଇଚ୍ଛନ୍ତି ॥୩॥
ରାଜ ସୁଖ ସ୍ମରି ହୁଏ ଦୁଃଖିତ ଅରାତି । ଉହା ଅନଳ ସଦୃଶ କୁହୁଳଇ ଛାତି ॥
ଶ୍ରବଣ କରି ନୃପର ସରଳ ବଚନ । ବୈର ସମ୍ଭାଳି ହୃଦୟେ ହୋଇଲା ପ୍ରସନ୍ନ ॥୪॥

କପଟ ସଂଯୁକ୍ତ ବଚନ ମୃଦୁଳ ବୋଲଇ ଯୁକ୍ତି ସହିତ ।
ଏବେ ମୋର ନାମ ଅଟଇ ଭିଖାରୀ ନିର୍ଧନ ଗୃହ ରହିତ ॥୧୬୦॥

ଭାଷିଲେ ନୃପତି ଯେହୁ ବିଜ୍ଞାନ ନିଧାନ । ତୁମ୍ଭ ସଦୃଶ ଅଟନ୍ତି ଶୂନ୍ୟ ଅଭିମାନ ॥
ରହନ୍ତି ଆପଣେ ଆପେ ଗୋପନ ହୋଇଣ । ସବୁ ପ୍ରକାରେ କୁଶଳ କୁବେଶ ରଚିଣ ॥୧॥

---

ପୁଣି ସୁନ୍ଦର କୋମଳ ବଚନ କହିଲେ, "ହେ ପ୍ରଭୋ ! ଆପଣଙ୍କୁ ପିତୃତୁଲ୍ୟ ମନେ କରି ମୁଁ ଧୃଷ୍ଟତା କରୁଛି । ହେ ମୁନୀଶ୍ୱର ! ମୋତେ ଆପଣାର ପୁତ୍ର ଓ ସେବକ ମନେ କରି ଆପଣଙ୍କ ନାମଧାମ ଇତ୍ୟାଦି ବିସ୍ତୃତ ଭାବରେ କହନ୍ତୁ ॥ ୨ ॥ ରାଜା ତାହାଙ୍କୁ ଚହ୍ନିପାରି ନ ଥିଲେ ସିନା । କିନ୍ତୁ ସେ ତ ରାଜାଙ୍କୁ ଚହ୍ନି ପାରିଥିଲା । ରାଜା ତ ଶୁଦ୍ଧହୃଦୟ ଥିଲେ ଏବଂ ମୁନି କପଟୀ ଓ ଚତୁର ଥିଲା । ଏକେ ତ ସେ ଶତ୍ରୁ, ପୁଣି ଜାତିରେ କ୍ଷତ୍ରିୟ । ବିଶେଷରେ ରାଜା । ଛଳବଳରେ ସେ ଆପଣାର କାମ ହାସଲ କରିବାକୁ ଚାହୁଁଥିଲା ॥ ୩ ॥ ସେହି ଶତ୍ରୁ ଆପଣାର ରାଜ୍ୟସୁଖ ସ୍ମରଣ କରି ଦୁଃଖିତ ଥିଲା । ତାହାର ଛାତି କୁମ୍ଭାରର ଉହାର ଅଗ୍ନି ପରି ଭିତରେ ଭିତରେ ଜଳୁଥାଏ । ରାଜାଙ୍କର ସରଳ ବଚନ କାନରେ ଶୁଣି ଏବଂ ପୂର୍ବ ଶତ୍ରୁତା ସ୍ମରଣ କରି କପଟୀ ତପସ୍ୱୀ ମନେ ମନେ ବଡ଼ ଆନନ୍ଦିତ ହେଲା ॥ ୪ ॥ ଦୋହା —ସେ କପଟରେ ବୁଡ଼ି ବଡ଼ ଯୁକ୍ତିର ସହିତ କହିଲା, "ବର୍ତ୍ତମାନ ମୋର ନାମ ଭିଖାରୀ । କାରଣ ମୁଁ ଦରିଦ୍ର

ତେହି ତେଁ କହହିଁ ସନ୍ତ ଶ୍ରୁତି ଟେରେଁ । ପରମ ଅକିଂଚନ ପ୍ରିୟ ହରି କେରେଁ ॥
ତୁମ୍ହ ସମ ଅଧନ ଭିଖାରି ଅଗେହା । ହୋତ ବିରଂଚି ସିବହି ସଂଦେହା ॥୨॥
ଜୋସି ସୋସି ତବ ଚରନ ନମାମୀ । ମୋ ପର କୃପା କରିଅ ଅବ ସ୍ୱାମୀ ॥
ସହଜ ପ୍ରୀତି ଭୂପତି କୈ ଦେଖୀ । ଆପୁ ବିଷୟ ବିସ୍ୱାସ ବିସେଷୀ ॥୩॥
ସବ ପ୍ରକାର ରାଜହି ଅପନାଈ । ବୋଲେଉ ଅଧିକ ସନେହ ଜନାଈ ॥
ସୁନୁ ସତିଭାଉ କହଉଁ ମହିପାଲା । ଇହାଁ ବସତ ବୀତେ ବହୁ କାଲା ॥୪॥

ଅବ ଲଗି ମୋହି ନ ମିଲେଉ କୋଉ ମୈଁ ନ ଜନାୱଉଁ କାହୁ ।
ଲୋକମାନ୍ୟତା ଅନଲ ସମ କର ତପ କାନନ ଦାହୁ ॥୧୬୧(କ)॥

---

ତେଣୁ ଶ୍ରୁତି ସନ୍ଥ ଉଚ୍ଚ ସ୍ୱରେ ଉଚ୍ଚାରନ୍ତି । ହରିଙ୍କ ପରମ ପ୍ରିୟ ଅକିଞ୍ଚନ ଅତି ॥
ତୁମ୍ଭ ସମ ଗୃହ-ଧନ-ହୀନ ଭିଖାରୀଙ୍କୁ । ଦେଖି ସନ୍ଦେହ ହୁଅଇ ଶିବ ବିରଞ୍ଚିଙ୍କୁ ॥୨॥
ଯାହା ମନ ତାହା ହୁଅ, ତୁମ୍ଭ ଚରଣରେ । ପ୍ରଣମୁଛି କୃପା କର ନାଥ ମୋ ଉପରେ ॥
ସ୍ୱାଭାବିକ ଅନୁରାଗ ଦେଖି ନୃପଙ୍କର । ନିଜ ପ୍ରତି ମନ ମଧ୍ୟେ ବିଶ୍ୱାସ ପ୍ରଖର ॥୩॥
ସବୁ ପ୍ରକାରେ ରାଜାଙ୍କୁ କରି ବଶୀଭୂତ । ବୋଇଲା ହୃଦୟେ ସ୍ନେହ ଜଣାଇ ବହୁତ ॥
କହୁଛି ସ୍ୱଭାବେ ସତ୍ୟ ମଣ ମହୀପାଳ । ଏଠାରେ ରହନ୍ତେ ଗତ ହେଲା ବହୁ କାଳ ॥୪॥

ଆଜଯାଏ କେହି ମୋତେ ଜାଣି ନାହିଁ କାହାକୁ ମୁଁ ନ ଜଣାଏ ।
ଲୋକସନମାନ ଅନଳ ସମାନ ତପ-କାନନ ଜଳାଏ ॥୧୬୧(କ)॥

---

ଏବଂ ଘରଦ୍ୱାରହୀନ ॥ ୧୬୦ ॥ ଚୌପାଈ —ରାଜା କହିଲେ, "ଯେଉଁମାନେ ଆପଣଙ୍କ ପରି ବିଜ୍ଞାନନିଧାନ ଏବଂ ଅଭିମାନଶୂନ୍ୟ, ସେମାନେ ଆପଣା ଆପଣାର ସ୍ୱରୂପ ସର୍ବଦା ଗୋପନୀୟ ରଖନ୍ତି । କାରଣ କୁବେଶ ରଚନା କରି ରହିବାରେ ହିଁ ସବୁ ପ୍ରକାର ମଙ୍ଗଳ । ( ପ୍ରକାଶ୍ୟ ସାଧୁବେଶରେ ଅଭିମାନ ଏବଂ ଅଭିମାନରୁ ପତନର ସମ୍ଭାବନା ଅଧିକ ଥାଏ । ) ॥ ୧ ॥ ଏହି ହେତୁ ସନ୍ଥ ଓ ବେଦମାନେ ଉଚ୍ଚସ୍ୱରରେ କହନ୍ତି—"ପରମ ଅକିଞ୍ଚନ (ସର୍ବଥା ଅହଙ୍କାର, ମମତା ଓ ମାନରହିତ) ହିଁ ଭଗବାନଙ୍କର ପ୍ରିୟ । ଆପଣଙ୍କ ସମାନ ନିର୍ଦ୍ଧନ, ଭିଖାରି ଓ ଗୃହହୀନ ବ୍ୟକ୍ତିମାନଙ୍କୁ ଦେଖି ବ୍ରହ୍ମା ଓ ଶିବଙ୍କ ମନରେ ମଧ୍ୟ ଏ ବିଷୟରେ ସନ୍ଦେହ ଜାତ ହୁଏ ଯେ, ବାସ୍ତବରେ ଏ କୌଣସି ସନ୍ଥ ମହାପୁରୁଷ ଅଥବା କୌଣସି ଭିକ୍ଷୁକ ॥ ୨ ॥ ଆପଣ ଯେ କେହି ବି ହୁଅନ୍ତୁ, ମୁଁ ଆପଣଙ୍କ ଚରଣରେ ନମସ୍କାର କରୁଅଛି । ହେ ସ୍ୱାମି ! ଏବେ ମୋ ଉପରେ କୃପା କରନ୍ତୁ ।" ତପସ୍ୱୀ ତା ନିଜ ଉପରେ ରାଜାଙ୍କର ସ୍ୱାଭାବିକ ପ୍ରୀତି ଏବଂ ନିଜ ବିଷୟରେ ରାଜାଙ୍କର ଅଧିକ ବିଶ୍ୱାସ ଥିବାର ଦେଖିଲା । ସେ ସବୁ ପ୍ରକାରେ ରାଜାଙ୍କୁ ଆପଣାର ବଶୀଭୂତ କରି ଅଧିକ ସ୍ନେହ ଦେଖାଇ କହିଲା, "ହେ ରାଜନ୍ ! ଶୁଣନ୍ତୁ, ମୁଁ ତୁମଙ୍କୁ ସତ୍ୟ କହୁଛି । ମୋର ଏଠାରେ ରହିବାର ବହୁତ ସମୟ ଅତିବାହିତ ହୋଇଯାଇଛି ॥ ୩-୪ ॥ ଦୋହା —ଆଜଯାଏ କେହି ମୋତେ

ତୁଲସୀ ଦେଖି ସୁବେଷୁ ଭୂଲହିଁ ମୂଢ଼ ନ ଚତୁର ନର ।
ସୁନ୍ଦର କେକହି ପେଖୁ ବଚନ ସୁଧା ସମ ଅସନ ଅହି ॥୧୬୧(ଖ)॥
ତାତେଁ ଗୁପୁତ ରହଉଁ ଜଗ ମାହୀଁ । ହରି ତଜି କମପି ପ୍ରୟୋଜନ ନାହୀଁ ॥
ପ୍ରଭୁ ଜାନତ ସବ ବିନହିଁ ଜନାଏଁ । କହହୁ କୱନି ସିଧି ଲୋକ ରିଝାଏଁ ॥୧॥
ତୁମ୍ହ ସୁଚି ସୁମତି ପରମ ପ୍ରିୟ ମୋରେଁ । ପ୍ରୀତି ପ୍ରତୀତି ମୋହି ପର ତୋରେଁ ॥
ଅବ ଜୌଁ ତାତ ଦୁରାୱଉଁ ତୋହୀ । ଦାରୁନ ଦୋଷ ଘଟଇ ଅତି ମୋହୀ ॥୨॥
ଜିମି ଜିମି ତାପସୁ କଥଇ ଉଦାସା । ତିମି ତିମି ନୃପହି ଉପଜ ବିସ୍ୱାସା ॥
ଦେଖା ସ୍ୱବସ କର୍ମ ମନ ବାନୀ । ତବ ବୋଲା ତାପସ ବଗଧ୍ୟାନୀ ॥୩॥
ନାମ ହମାର ଏକତନୁ ଭାଈ । ସୁନି ନୃପ ବୋଲେଉ ପୁନି ସିରୁ ନାଈ ॥
କହହୁ ନାମ କର ଅରଥ ବଖାନୀ । ମୋହି ସେବକ ଅତି ଆପନ ଜାନୀ ॥୪॥

---

ତୁଲସୀ ସୁବେଶ ଦେଖି ମୂଢ ଭୁଲେ ଚତୁରେ ତ ନ ଭୁଲନ୍ତି ।
ଦେଖ ଶିଖି-ସ୍ୱନ ଅମୃତ ସରସ ଅହି ଭକ୍ଷଣ କରନ୍ତି ॥୧୬୧ (ଖ)॥
ତେଣୁ ଜଗତ ମଧ୍ୟରେ ଗୁପ୍ତ ମୁଁ ରହଇ । ହରି ତେଜି ପ୍ରୟୋଜନ କାହିଁ ନ ରଖଇ ॥
ନ ଜଣାଇଲେ ହେଁ ପ୍ରଭୁ ଜାଣନ୍ତି ସକଳ । ଲୋକଙ୍କେ ପ୍ରସନ୍ନ କରିବା କହ କେଉଁ ଫଳ ॥ ॥
ତୁମ୍ଭେ ଶୁଚି ବୁଦ୍ଧିମନ୍ତ ଅତି ପ୍ରିୟ ମୋର । ଶ୍ରଦ୍ଧା ବିଶ୍ୱାସ ଅତ୍ୟନ୍ତ ମୋ ଉପରେ ତୋର ॥
ଏବେ ଯଦି କିଛି କିଛି ଲୁଗାଇବି ତୋତେ । ଲାଗିବ ଅତି ଦାରୁଣ ଅପରାଧ ମୋତେ ॥୨॥
ଯହୁଁ ଯହୁଁ ସେ ତାପସ କହଇ ଉଦାସ । ତହୁଁ ତହୁଁ ନୃପତିଙ୍କ ଉପୁଜେ ବିଶ୍ୱାସ ॥
ଦେଖି ନିଜ ବଶ ମନ କର୍ମ ବଚନରେ । ବୋଲେ ମୁନି ବକଧ୍ୟାନୀ ଏଥୁ ଅନନ୍ତରେ ॥୩॥
ଅଟଇ ସୁତ ମୋହର ଏକତନୁ ନାମ । ଶୁଣି ବୋଇଲେ ନୃପତି କରିଣ ପ୍ରଣାମ ॥
ବିସ୍ତାର ପୂର୍ବକ ଅର୍ଥ କହନ୍ତୁ ନାମର । ନାଥ, ମୋତେ ବିମ୍ଭରିଣ ନିଜ ଅନୁଚର ॥୪॥

---

ସାକ୍ଷାତ କରି ନ ଥିଲେ କିମ୍ବା ମୁଁ କାହାର ଆଗରେ ଆପଣାଙ୍କୁ ପ୍ରକାଶ କରିନାହିଁ । କାରଣ, ଲୋକରେ ପ୍ରତିଷ୍ଠା ଅଗ୍ନି ସଦୃଶ । ଏହା ତପସ୍ୟା ରୂପୀ ବନକୁ ଭସ୍ମ କରିଦିଏ ॥ ୧୬୧ (କ) ॥ ସୋରଠା :—ତୁଳସୀଦାସ କହନ୍ତି—କାହାର ଚକ ଚକ ବେଶ ଦେଖି ମୂଢ ଲୋକ ଭୁଲିଯାଏ, ମାତ୍ର ଚତୁର ଭୁଲେ ନାହିଁ । ସୁନ୍ଦର ମୟୂରକୁ ଦେଖ । ତାହାର ବଚନ ତ ଅମୃତତୁଲ୍ୟ । ମାତ୍ର ଆହାର ହେଉଛି ସାପ ॥ ୧୬୧ (ଖ) ॥ ଚୌପାଈ :—କପଟ-ବେଶଧାରୀ ତପସ୍ୱୀ କହିଲା, "ଏଥିଯୋଗୁ ମୁଁ ଜଗତରୁ ଲୁଚି ରହେ । ଶ୍ରୀହରିଙ୍କୁ ଛାଡି କାହାଠାରେ କିଛି ହେଲେ ପ୍ରୟୋଜନ ରଖେ ନାହିଁ । ନ ଜଣାଇଲେ ମଧ୍ୟ ପ୍ରଭୁ ସବୁ ଜାଣନ୍ତି । ପୁଣି କୁହ, ସଂସାରକୁ ପ୍ରସନ୍ନ ବା ସନ୍ତୁଷ୍ଟ କଲେ କେଉଁ ସିଦ୍ଧି ମିଳିବ ? ॥୧॥ ତୁମେ ପବିତ୍ର ଓ ସୁବୁଦ୍ଧି । ଏହି ହେତୁ ମୋର ଅତିପ୍ରିୟ ଏବଂ ତୁମର ମୋ ପ୍ରତି ପ୍ରୀତି ଓ ବିଶ୍ୱାସ ଅଛି । ହେ ତାତ ! ବର୍ତ୍ତମାନ ମୁଁ ଯଦି ତୁମଠାରୁ କିଛି ଗୁପ୍ତ ରଖିବି, ତେବେ ମୋତେ ଅତି ଭୟଙ୍କର ଦୋଷ ଲାଗିବ ॥୨॥

ଆଦିସୃଷ୍ଟି ଉପଜୀ ଜବହିଁ ତବ ଉତପତି ଭୈ ମୋରି ।
ନାମ ଏକତନୁ ହେତୁ ତେହି ଦେହ ନ ଧରୀ ବହୋରି ॥୧୬୨॥
ଜନି ଆଚରଜୁ କରହୁ ମନ ମାହୀଁ । ସୁତ ତପ ତେଂ ଦୁର୍ଲଭ କଛୁ ନାହୀଁ ॥
ତପବଲ ତେଂ ଜଗ ସୃଜଇ ବିଧାତା । ତପବଲ ବିଷ୍ଣୁ ଭଏ ପରିତ୍ରାତା ॥୧॥
ତପବଲ ସଂଭୁ କରହିଁ ସଂଘାରା । ତପ ତେଂ ଅଗମ ନ କଛୁ ସଂସାରା ॥
ଭୟଉ ନୃପହି ସୁନି ଅତି ଅନୁରାଗା । କଥା ପୁରାତନ କହୈ ସୋ ଲାଗା ॥୨॥
କରମ ଧରମ ଇତିହାସ ଅନେକା । କରଇ ନିରୂପନ ବିରତି ବିବେକା ॥
ଉଦଭବ ପାଲନ ପ୍ରଲୟ କହାନୀ । କହେସି ଅମିତ ଆଚରଜ ବଖାନୀ ॥୩॥

---

ଆଦି ସୃଷ୍ଟି ଯେବେ ହୋଇଲା ଉତ୍ପତ୍ତି ମୋହର ତେବେ ହୋଇଛି ।
ସେହି କାରଣରୁ ନାମ ଏକତନୁ ଅନ୍ୟ ଦେହ ନ ଧରିଛି ॥୧୬୨॥
ଏହା ଶୁଣି ମନ ମଧ୍ୟେ ଆଶ୍ଚର୍ଯ୍ୟ ନ କର । ତପ ଦ୍ୱାରା ନାହିଁ କିଛି ଦୁର୍ଲଭ କୁମର ॥
ତପ ବଳରେ ଜଗତେ ସୃଜଇ ବିଧାତା । ତପ ବଳେ ହୋଇଛନ୍ତି ବିଷ୍ଣୁ ପରିତ୍ରାତା ॥୧॥
ତପ ବଳେ ସଦାଶିବ ସୃଷ୍ଟିକୁ ସଂହାରେ । ତପ ଦ୍ୱାରା ନୁହେଁ କିଛି ଅଗମ୍ୟ ସଂସାରେ ॥
ଶୁଣି ଅତି ଅନୁରାଗ ନୃପଙ୍କ ହୋଇଲା । ପୁରାତନ କଥା ସେହୁ କଥନେ ଲାଗିଲା ॥୨॥
କର୍ମ ଧର୍ମ ଇତିହାସ ପୁରାଣ ଅନେକ । କରଇ ସେ ନିରୂପଣ ବୈରାଗ୍ୟ ବିବେକ ॥
ଉଦ୍ଭବ ପାଳନ ତଥା ପ୍ରଳୟ କାହାଣୀ । କହିଲେ ଅନେକ ଅତି ଆଶ୍ଚର୍ଯ୍ୟ ବଖାଣି ॥୩॥

---

ତପସ୍ୱୀ ଉଦାସୀନଭାବରେ କଥା କହି ଚାଲିଥାଏ, ତ ଏଣେ ରାଜାଙ୍କର ମନରେ ବିଶ୍ୱାସ ଜାତ ହୋଇ ବଢ଼ି ଚାଲିଥାଏ । ଯେତେବେଳେ ସେହି ବକଧ୍ୟାନୀ (କପଟୀ) ମୁନି ରାଜାଙ୍କୁ କର୍ମ, ମନ ଓ ବଚନରେ ତାଙ୍କର ବଶୀଭୂତ ହେବାର ଜାଣିଲା, ସେତେବେଳେ ସେ କହିଲା, "ଭାଇ ! ମୋର ନାମ ଏକତନୁ ।" ଏହା ଶୁଣି ରାଜା ପୁଣି ମୁଣ୍ଡ ନୁଆଁଇ କହିଲେ, "ମୋତେ ଆପଣଙ୍କ ଅତି ସ୍ନେହୀ ସେବକ ବୋଲି ମନେ କରି ନିଜ ନାମର ଅର୍ଥ ବୁଝାଇ କୁହନ୍ତୁ ।" ॥୩-୪॥ ଦୋହା.—କପଟବେଶଧାରୀ ମୁନି କହିଲେ, "ଯେତେବେଳେ ସର୍ବପ୍ରଥମେ ସୃଷ୍ଟି ଉତ୍ପନ୍ନ ହେଲା, ସେତିକିବେଳେ ମୋର ଉତ୍ପତ୍ତି ହୋଇଥିଲା; ସେହି କାଳରୁ ମୁଁ ଆଉ ଦ୍ୱିତୀୟ ଶରୀର ଧାରଣ କରିନାହିଁ । ଏହି ହେତୁ ମୋର ନାମ ଏକତନୁ ॥ ୧୬୨ ॥
ଚୌପାଇ —ପୁଅ ! ମନରେ ଆଶ୍ଚର୍ଯ୍ୟ କର ନାହିଁ । ତପସ୍ୟା ଦ୍ୱାରା କିଛି ହେଲେ ଦୁର୍ଲଭ ହୁଏ ନାହିଁ । ତପସ୍ୟା ବଳରେ ବ୍ରହ୍ମା ଜଗତ ସୃଷ୍ଟି କରନ୍ତି । ତପସ୍ୟା-ବଳରେ ବିଷ୍ଣୁ ସଂସାରର ପରିତ୍ରାଣକାରୀ ହୋଇଅଛନ୍ତି ॥୧॥ ତପସ୍ୟା-ବଳରେ ହିଁ ରୁଦ୍ର ସଂହାର କରନ୍ତି । ତପସ୍ୟାଦ୍ୱାରା ସଂସାରରେ କୌଣସି ବସ୍ତୁ ଅଲଭ୍ୟ ହୁଏ ନାହିଁ । ଏହା ଶୁଣି ରାଜାଙ୍କର ବଡ ଅନୁରାଗ ଜାତ ହେଲା । ତତ୍ପରେ ସେହି ତପସ୍ୱୀ ପୁରୁଣା କଥା କହିବାକୁ ଲାଗିଲା ॥ ୨ ॥ କର୍ମ, ଧର୍ମ ଓ ଅନେକ ପ୍ରକାରର ଇତିହାସ କହି ସେ ବୈରାଗ୍ୟ ଓ ଜ୍ଞାନର ନିରୂପଣ କରିବାକୁ ଲାଗିଲା । ସୃଷ୍ଟିର ଉତ୍ପତ୍ତି, ପାଳନ ଓ ସଂହାରର ଅପରିମିତ

ସୁନି ମହୀପ ତାପସ ବସ ଭଏଊ । ଆପନ ନାମ କହନ ତବ ଲଏଊ ॥
କହ ତାପସ ନୃପ ଜାନଉଁ ତୋହୀ । କୀହ୍ନେହୁ କପଟ ଲାଗ ଭଲ ମୋହୀ ॥୩॥
ସୁନୁ ମହୀସ ଅସି ନୀତି ଜହଁ ତହଁ ନାମ ନ କହହିଁ ନୃପ ।
ମୋହି ତୋହି ପର ଅତି ପ୍ରୀତି ସୋଇ ଚତୁରତା ବିଚାରି ତବ ॥୧୬୩॥
ନାମ ତୁହ୍ମାର ପ୍ରତାପ ଦିନେସା । ସତ୍ୟକେତୁ ତବ ପିତା ନରେସା ॥
ଗୁର ପ୍ରସାଦ ସବ ଜାନିଅ ରାଜା । କହିଅ ନ ଆପନ ଜାନି ଅକାଜା ॥୧॥
ଦେଖି ତାତ ତବ ସହଜ ସୁଧାଈ । ପ୍ରୀତି ପ୍ରତୀତି ନୀତି ନିପୁନାଈ ॥
ଉପଜି ପରୀ ମମତା ମନ ମୋରେଁ । କହଉଁ କଥା ନିଜ ପୂଛେ ତୋରେଁ ॥୨॥
ଅବ ପ୍ରସନ୍ନ ମୈଁ ସଂସୟ ନାହୀଁ । ମାଗୁ ଜୋ ଭୂପ ଭାଵ ମନ ମାହୀଁ ॥
ସୁନି ସୁବଚନ ଭୂପତି ହରଷାନା । ଗହି ପଦ ବିନୟ କୀହ୍ନି ବିଧି ନାନା ॥୩॥

---

ଶୁଣି ମହୀପ ତାପସ ଅଧୀନ ହୋଇଲେ । ନିଜ ନାମ କହିବାକୁ ତହୁଁ ଆରମ୍ଭିଲେ ॥
ବୋଲଇ ତାପସ ନୃପ ଜାଣିଛୁ ମୁଁ ତୋତେ । କଲୁ ଯେ କପଟ ତାହା ଭଲଲାଗେ ମୋତେ ॥୪॥
ନ କହନ୍ତି ନୃପ ସ୍ୱନାମ ସର୍ବହିଁ ଶୁଣ ନୃପ ଏହି ନୀତି ।
ବିଲୋକିଣ ତୋର ସେ ଚତୁର ମତ ବଢେ ତୋ ପ୍ରତି ମୋ ପ୍ରୀତି ॥୧୬୩॥
ନାମ ଅଟଇ ତୋହର ପ୍ରତାପ ଦିନେଶ । ସତ୍ୟକେତୁ ଅଟନ୍ତି ତୋ ଜନକ ନରେଶ ॥
ଗୁରୁଙ୍କ ପ୍ରସାଦେ ନୃପ ମୋତେ ସବୁ ଜଣା । ନ କହେ କାହାକୁ ହାନି ବୁଝିଣ ଆପଣା ॥୧॥
ଦେଖି ସୁତ ସ୍ୱାଭାବିକ ତୋର ସରଳତା । ପ୍ରୀତି ପ୍ରତୀତି ଆଦର ନୀତି ନିପୁଣତା ॥
ମମତା ଉତ୍ପନ୍ନ ହେଲା ମୋ ମନ ମଧ୍ୟରେ । ପଚାରନ୍ତେ କହେ ନିଜ କଥା ତୋ ଆଗରେ ॥୨॥
ଏବେ ନିଃସନ୍ଦେହ ଅଟେ ପ୍ରସନ୍ନ ମୁଁ ଅତି । ମନେ ଯାହା ଅଭିଳାଷ, ମାଗ ନରପତି ॥
ଶୁଣି ସୁବଚନ ନୃପ ହୋଇଣ ଆନନ୍ଦ । ନାନା ପ୍ରକାର ବିନୟ କଲେ ଧରି ପଦ ॥୩॥

---

ବିସ୍ତୃତ ସୂତ୍ରିଂ କାହାଣୀ ସେ ବିସ୍ତାର ସହିତ କହିଲା ॥ ୩ ॥ ରାଜା ସବୁ ଶୁଣି ସେହି ତପସ୍ୱୀର ବଶରେ ଆସିଗଲେ ଏବଂ ସେତିକି ବେଳେ ସେ ଆପଣାର ନାମ କହିବାକୁ ଆରମ୍ଭ କଲେ । ତପସ୍ୱୀ କହିଲା, "ରାଜନ୍ ! ମୁଁ ତୁମକୁ ଜାଣେ, ତୁମେ କପଟ କଲ । ତାହା ମୋତେ ଭଲ ଲାଗିଲା ॥ ୪ ॥ ସୋରଠା —ହେ ରାଜନ୍ ! ଶୁଣ, ରାଜାମାନଙ୍କର ଏପରି ନୀତି ଅଛି ଯେ, ସେମାନେ ଯେଉଁଠି ଇଚ୍ଛା ସେଠି ଆପଣା ନାମ କହନ୍ତି ନାହିଁ । ତୁମର ଉକ୍ତ ଚତୁରତା ଜାଣି ତୁମ ପ୍ରତି ମୋର ଅତିଶୟ ପ୍ରେମ ଜାତ ହୋଇଅଛି ॥ ୧୬୩ ॥ ଚୌପାଈ —ତୁମ ନାମ ପ୍ରତାପଭାନୁ । ମହାରାଜ ସତ୍ୟକେତୁ ତୁମ ପିତା ଥିଲେ । ହେ ରାଜନ୍ ! ଗୁରୁଙ୍କ କୃପାରୁ ମୁଁ ସବୁ ଜାଣିଛି । କିନ୍ତୁ ଆପଣାର କ୍ଷତି ହେବ ଜାଣି କିଛି କହୁ ନାହିଁ ॥ ୧ ॥ ହେ ତାତ ! ତୁମର ସ୍ୱାଭାବିକ ସରଳତା, ପ୍ରେମ, ବିଶ୍ୱାସ ଓ ନୀତିରେ ନିପୁଣତା ଦେଖି ମୋ ମନରେ ତୁମ ପ୍ରତି ବଡ ମମତା ଜାତ ହୋଇଛି । ଏଣୁ ତୁମ ପ୍ରଶ୍ନ ଉପରେ ମୁଁ ତୁମକୁ ଆପଣାର କାହାଣୀ କହୁଅଛି ॥୨॥

କୃପାସିଂଧୁ ମୁନି ଦରସନ ତୋରେଁ । ଚାରି ପଦାରଥ କରତଲ ମୋରେଁ ॥
ପ୍ରଭୁହି ତଥାପି ପ୍ରସନ୍ନ ବିଲୋକୀ । ମାଗି ଅଗମ ବର ହୋଉଁ ଅସୋକୀ ॥୪॥

ଜରା ମରନ ଦୁଖ ରହିତ ତନୁ ସମର ଜିତୈ ଜନି କୋଉ ।
ଏକଛତ୍ର ରିପୁହୀନ ମହି ରାଜ କଲପ ସତ ହୋଉ ॥୧୬୪॥

କହ ତାପସ ନୃପ ଐସେଇ ହୋଊ । କାରନ ଏକ କଠିନ ସୁନୁ ସୋଊ ॥
କାଲଉ ତୁଅ ପଦ ନାଇହି ସୀସା । ଏକ ବିପ୍ରକୁଲ ଛାଡ଼ି ମହୀସା ॥୧॥
ତପବଲ ବିପ୍ର ସଦା ବରିଆରା । ତିନ୍ହ କେଁ କୋପ ନ କୋଉ ରଖୱାରା ॥
ଜୌଁ ବିପ୍ରନ୍ହ ବସ କରହୁ ନରେସା । ତୌ ତୁଅ ବସ ବିଧି ବିଷ୍ଣୁ ମହେସା ॥୨॥
ଚଲ ନ ବ୍ରହ୍ମକୁଲ ସନ ବରିଆଈ । ସତ୍ୟ କହଉଁ ଦୋଉ ଭୁଜା ଉଠାଈ ॥
ବିପ୍ର ଶ୍ରାପ ବିନୁ ସୁନୁ ମହିପାଲା । ତୋର ନାସ ନହିଁ କୱନେହୁଁ କାଲା ॥୩॥

---

କରୁଣା ସାଗର ମୁନି ଦର୍ଶନେ ତୁମ୍ଭର । ଚତୁର୍ବର୍ଗ କରଗତ ହୋଇଲା ମୋହର ॥
ତଥାପି ପ୍ରଭୁଙ୍କୁ ମୋର ପ୍ରସନ୍ନ ଦେଖିଣ । ମାଗି ସୁଦୁର୍ଗମ ବର ହେବି ଶୋକକ୍ଷୀଣ ॥୪॥

ଜରା ମୃତ୍ୟୁ କଷ୍ଟ ଦେହୁ ହେଉ ନଷ୍ଟ ରଣେ କେହି ନ ଜିଣନ୍ତୁ ।
ବିଶ୍ୱେ ଏକଛତ୍ର ରାଜ୍ୟ କଳ୍ପ ଶତ, ଶତ୍ରୁ କେହି ନ ରହନ୍ତୁ ॥୧୬୪॥

ବୋଲଇ ତାପସ ଏହା ହେଉ ନରନାହା । କଠିନ କାରଣ ଏକ ଶୁଣ ଏବେ ତାହା ॥
ଶିର ନୁଆଁଇବ ତୁମ୍ଭ ପଦେ ସୁଦ୍ଧା କାଳ । କେବଳ ବ୍ରାହ୍ମଣ କୁଳ ତେଜି ମହୀପାଳ ॥୧॥
ତପ ବଳେ ବିପ୍ର ସଦା ବଳିଷ୍ଠ ଅଟନ୍ତି । ତାହାଙ୍କ କୋପରୁ କେହି ରଖି ନ ପାରନ୍ତି ॥
ଯେବେ ବିପ୍ରଙ୍କୁ ସ୍ୱବଶ କରିବୁ ନରେଶ । ତୋ ବଶ ହୋଇବେ ବିଷ୍ଣୁ ବିରଞ୍ଚି ମହେଶ ॥୨॥
ବ୍ରହ୍ମକୁଳ ସମ୍ମୁଖରେ ବଳ ନ ଖଟଇ । ଉଠାଇଣ ବେନି ଭୁଜ ସତ୍ୟ ମୁଁ କହଇ ॥
ବିପ୍ର ଅଭିଶାପ ବିନା ଶୁଣ ନରବର । କୌଣସି କାଳେ ବିନାଶ ନ ହେବ ତୋହର ॥୩॥

---

ଏବେ ମୁଁ ପ୍ରସନ୍ନ । ଏଥିରେ ସନ୍ଦେହ କରନାହିଁ । ହେ ରାଜନ୍ ! ମନକୁ ଯାହା ରୁଚେ, ତାହାହିଁ ମାଗ । ସୁନ୍ଦର ପ୍ରିୟ ବଚନ ଶୁଣି ରାଜା ଆନନ୍ଦିତ ହେଲେ ଏବଂ ମୁନିଙ୍କର ପାଦ ଧରି ସେ ବହୁତ ପ୍ରକାରେ ବିନତି କଲେ ॥ ୩ ॥ ହେ ଦୟାସାଗର ମୁନି ! ଆପଣଙ୍କ ଦର୍ଶନ ଯୋଗେ ଚାରି ପଦାର୍ଥ (ଅର୍ଥ, ଧର୍ମ, କାମ ଓ ମୋକ୍ଷ) ମୋର ହସ୍ତଗତ ହୋଇଯାଇଛି । ତଥାପି ସ୍ୱାମୀଙ୍କୁ ପ୍ରସନ୍ନ ଦେଖି ମୁଁ ଏହି ଦୁର୍ଲଭ ବର ମାଗି ଶୋକ-ରହିତ ହେବାକୁ ମନା କରୁଛି ॥ ୪ ॥ ଦୋହା —ମୋର ଶରୀର ବାର୍ଦ୍ଧକ୍ୟ, ମୃତ୍ୟୁ ଓ ଦୁଃଖରୁ ରହିତ ହେଉ । ମୋତେ ଯୁଦ୍ଧରେ କେହି ଜିଣି ନ ପାରନ୍ତୁ । ପୃଥିବୀ ଉପରେ ଶହେ କଳ୍ପଯାଏ ମୋର ନିଷ୍କଣ୍ଟକ ରାଜତ୍ୱ ରହୁ ॥ ୧୬୪ ॥ ଚୌପାଈ .— ତପସ୍ୱୀ କହିଲା, "ହେ ରାଜନ୍ ! ଏହିପରି ହେଉ । କିନ୍ତୁ ଗୋଟିଏ କଥା ବଡ଼ କଠିନ । ତାହା ମଧ୍ୟ ଶୁଣିଥାଅ । ହେ ପୃଥିବୀପତି ! କେବଳ ବ୍ରାହ୍ମଣକୁଳକୁ ଛାଡ଼ି ଏପରି କି କାଳ ସୁଦ୍ଧା ତୁମ ଚରଣରେ ମୁଣ୍ଡ ନୁଆଁଇବ ॥ ୧ ॥ ତପସ୍ୟା-ବଳରେ ବ୍ରାହ୍ମଣମାନେ

ହରଷେଉ ରାଉ ବଚନ ସୁନି ତାସୂ । ନାଥ ନ ହୋଇ ମୋର ଅବ ନାସୂ ॥
ତବ ପ୍ରସାଦ ପ୍ରଭୁ କୃପାନିଧାନା । ମୋ କହୁଁ ସର୍ବ କାଲ କଲ୍ୟାନା ॥୩॥
ଏବମସ୍ତୁ କହି କପଟମୁନି ବୋଲା କୁଟିଲ ବହୋରି ।
ମିଲବ ହମାର ଭୁଲାବ ନିଜ କହହୁ ତ ହମହି ନ ଖୋରି ॥୧୬୫॥
ତାତେଁ ମୈଁ ତୋହି ବରଜଉଁ ରାଜା । କହେଁ କଥା ତବ ପରମ ଅକାଜା ॥
ଛଠେଁ ଶ୍ରବନ ୟହ ପରତ କହାନୀ । ନାସ ତୁମ୍ହାର ସତ୍ୟ ମମ ବାନୀ ॥୧॥
ୟହ ପ୍ରଗଟେଁ ଅଥବା ଦ୍ୱିଜଶ୍ରାପା । ନାସ ତୋର ସୁନୁ ଭାନୁପ୍ରତାପା ॥
ଆନ ଉପାୟଁ ନିଧନ ତବ ନାହୀଁ । ଜୌଁ ହରି ହର କୋପହିଁ ମନ ମାହୀଁ ॥୨॥

---

ହରଷ ହୋଇଲେ ନୃପ ଶୁଣି ତା ବଚନ । ନାଥ ! ନ ମୋଇବ ଏବେ ହୋଇବ ନିଧନ ॥
ତୁମ୍ଭ ପ୍ରସାଦରେ ପ୍ରଭୁ କରୁଣା ନିଳୟ । ମୋ ନିମନ୍ତେ ସର୍ବକାଳ ଶୁଭମଙ୍ଗଳମୟ ॥୩॥
ଏବମସ୍ତୁ ଋଷି କପଟୀ ତପସ୍ୱୀ ବୋଲେ କୁଟିଲ ଆବର ।
ନିଜ ବଣା, ଆମ୍ଭ ମିଳନ କହିଲେ ନ ହେବ ଦୋଷ ମୋହର ॥୧୬୫॥
ତେଣୁ ତୋତେ ବାରଣ ମୁଁ କରେ ନରପତି । କଥା ପ୍ରକାଶିଲେ ତୋର ହାନି ହେବ ଅତି ॥
ଛ'କାନେ ପଡ଼ିଲେ ଏହି ମିଳନ କାହାଣୀ । ବିନାଶହୋଇବ ତୋର ସତ୍ୟ ଏ ମୋ ବାଣୀ॥୧॥
ଏହା ପ୍ରକାଶିଲେ କିମ୍ବା ହେଲେ ଦ୍ୱିଜ ଶାପ । ବିନାଶ ତୋହର ଶୁଣ ଆବତ୍ୟ ପ୍ରତାପ ॥
ଅନ୍ୟ ଉପାୟରେ ତୋର ନୋହିବ ନିଧନ । ହେଲେ ମଧ୍ୟ ହରିହର କ୍ରୋଧାନ୍ୱିତ ମନ ॥୨॥

---

ସର୍ବଦା ବଳବାନ୍ । ସେମାନଙ୍କ କ୍ରୋଧରୁ ରକ୍ଷା କରିବା ଲୋକ କେହି ନାହିଁ । ହେ ନରପତି ! ଯଦି ତୁମେ ବ୍ରାହ୍ମଣମାନଙ୍କୁ ବଶୀଭୂତ କରିପାରିବ, ତେବେ ବ୍ରହ୍ମା, ବିଷ୍ଣୁ ଓ ଶିବ ସୁଦ୍ଧା ତୁମର ଅଧୀନ ହୋଇଯିବେ ॥ ୨ ॥ ବ୍ରାହ୍ମଣକୁଳ ସଙ୍ଗେ ଜୋର-ଜବରଦସ୍ତି ଚଳି ପାରିବ ନାହିଁ । ମୁଁ ଦୁଇବାହୁ ଟେକି ସତ୍ୟ କହୁଅଛି । ହେ ରାଜନ୍ ! ଶୁଣ, ବ୍ରାହ୍ମଣଙ୍କ ଅଭିଶାପ ବିନା କସ୍ମିନ୍ କାଳେ ତୁମର ବିନାଶ ହେବନାହିଁ ॥ ୩ ॥ ତାହାର ବଚନ ଶୁଣି ରାଜା ଅତି ପ୍ରସନ୍ନ ହେଲେ ଏବଂ କହିଲେ, "ହେ ସ୍ୱାମି ! ମୋର ବିନାଶ ଏବେ ହେବନାହିଁ । ହେ କୃପାନିଧାନ ପ୍ରଭୋ ! ଆପଣଙ୍କ କୃପା ଯୋଗେ ମୋର ସର୍ବଦା କଲ୍ୟାଣ ହେବ ।" ॥୩॥ ଦୋହା .—'ଏବମସ୍ତୁ' (ଏହିପରି ହେଉ)—କିନ୍ତୁ ତୁମେ ନିଜର ପଥଭ୍ରଷ୍ଟ ଓ ମୋ ସହିତ ସାକ୍ଷାତ ହେବା କଥା କାହାରିକୁ କହିବ ନାହିଁ । କହିଦେବ ତ, ମୋର ତହିଁରେ ଦୋଷ ନାହିଁ ॥ ୧୬୫ ॥ ଚୌପାଈ .—ହେ ରାଜନ୍ ! ଏହି ପ୍ରସଙ୍ଗ କହିଦେଲେ ତୁମର ବଡ କ୍ଷତି ହେବ । ସେଇଥିପାଇଁ ମୁଁ ତୁମଙ୍କୁ ମନା କରୁଛି । ଷଷ୍ଠ କାନରେ ଏହି କଥା ପଡ଼ିବା ମାତ୍ରେ ତୁମର ବିନାଶ ହୋଇଯିବ । ମୋର ଏହି ବଚନ ସତ୍ୟ ବୋଲି ମାନିବ ॥ ୧ ॥ ହେ ପ୍ରତାପଭାନୁ ! ଏହି କଥା ପ୍ରକାଶ କରିବା ଅଥବା ବ୍ରାହ୍ମଣଙ୍କ ଅଭିଶାପ ହେତୁ ତୁମର ନାଶ ହେବ । ଆଉ କୌଣସି ଉପାୟରେ, ଏପରି କି ବ୍ରହ୍ମା ଓ ଶଙ୍କର ସୁଦ୍ଧା ଯଦି ମନରେ କ୍ରୋଧ କରନ୍ତି, ତୁମର

ସତ୍ୟ ନାଥ ପଦ ଗହି ନୃପ ଭାଷା । ଦ୍ୱିଜ ଗୁର କୋପ କହହୁ କୋ ରାଖା ॥
ରାଖଇ ଗୁର ଜୌଁ କୋପ ବିଧାତା । ଗୁର ବିରୋଧ ନହିଁ କୋଉ ଜଗ ତ୍ରାତା ॥୩॥
ଜୌଁ ନ ଚଲବ ହମ କହେଁ ତୁମ୍ହାରେଁ । ହୋଉ ନାସ ନହିଁ ସୋଚ ହମାରେଁ ॥
ଏକହିଁ ଡର ଡରପତ ମନ ମୋରା । ପ୍ରଭୁ ମହିଦେବ ଶ୍ରାପ ଅତି ଘୋରା ॥୪॥

ହୋହିଁ ବିପ୍ର ବସ କଵନ ବିଧି କହହୁ କୃପା କରି ସୋଉ ।
ତୁମ୍ହ ତଜି ଦୀନଦୟାଲ ନିଜ ହିତୂ ନ ଦେଖଉଁ କୋଉ ॥୧୬୭॥

ସୁନୁ ନୃପ ବିବିଧ ଜତନ ଜଗ ମାହୀଁ । କଷ୍ଟସାଧ୍ୟ ପୁନି ହୋହିଁ କି ନାହୀଁ ॥
ଅହଇ ଏକ ଅତି ସୁଗମ ଉପାଈ । ତହାଁ ପରଂତୁ ଏକ କଠିନାଈ ॥୧॥
ମମ ଆଧୀନ ଜୁଗୁତି ନୃପ ସୋଈ । ମୋର ଜାବ ତବ ନଗର ନ ହୋଈ ॥
ଆଜୁ ଲଗେଁ ଅରୁ ଜବ ତେଁ ଭୟଉଁ । କାହୂ କେ ଗୃହ ଗ୍ରାମ ନ ଗୟଉଁ ॥୨॥

---

ସତ୍ୟ ନାଥ ପଦ ଧରି ଭାଷିଲେ ନୃପତି । ଦ୍ୱିଜ ଗୁରୁ କୋପୁ କେହି ରଖି ନ ପାରନ୍ତି ॥
ରଖନ୍ତି ଗୁରୁ ବିଧାତା ଯେବେ କୋପ କରେ । ଗୁରୁ ବିରୋଧୀର ତ୍ରାତା ନାହିଁ ଜଗତରେ ॥୩॥
ତୁମ୍ଭ ଆଜ୍ଞା ମାନି ମୁହିଁ ନ ଚଳିବି ଯେବେ । ହେଲେ ନାଶ ତହିଁକି ମୋ ଚିନ୍ତା ନାହିଁ ତେବେ ॥
ଏହି ଏକ ତ୍ରାସେ ମନ ତ୍ରସିତ ହୁଅଇ । ପ୍ରଭୁ ମହୀଦେବ ଶାପ ଭୀଷଣ ଅଟଇ ॥୪॥

ସଦୟା ବର୍ଣ୍ଣି କହନ୍ତୁ ବ୍ରାହ୍ମଣ ବଶ ହୋଇବେ କେମନେ ।
ତୁମ୍ଭ ବିନା ଦୀନ-ଦୟାଳୁ ନ ଦେଖେ ନିଜ ହିତକାରୀ ଅନ୍ୟେ ॥୧୬୭॥

ଶୁଣ ନୃପ ଏ ଜଗତେ ଯତନ ବିବିଧ । କଷ୍ଟସାଧ୍ୟ, ହୁଅଇ ବା ନ ହୁଅଇ ସିଦ୍ଧ ॥
ଅତ୍ୟନ୍ତ ସହଜ ଏକ ଉପାୟ ଅଛଇ । କିନ୍ତୁ ତହିଁ ମଧ୍ୟେ ଏକ ବାଧା ଉପୁଜଇ ॥୧॥
ମୋ ଅଧୀନ ଅଟେ ସେହି କୌଶଳ ବିଶେଷ । ମୁଁ ଯାଇ ନ ପାରେ ତୋର ଦେଶକୁ ନରେଶ ॥
ଆଜି ପର୍ଯ୍ୟନ୍ତ ଯେ ଦିନୁ ଜନମ ଲଭିଛି । କାହାରି ଭବନେ କିମ୍ବା ଗ୍ରାମେ ନ ଯାଇଛି ॥୨॥

---

ମୃତ୍ୟୁ ହେବ ନାହିଁ ।" ॥୨॥ ରାଜା ମୁନିଙ୍କର ଚରଣ ଧରି କହିଲେ, "ହେ ସ୍ୱାମି ! ସତ୍ୟ । ବ୍ରାହ୍ମଣ ଓ ଗୁରୁଙ୍କ କ୍ରୋଧରୁ କୁହନ୍ତୁ, କିଏ ରକ୍ଷା କରି ପାରିବ ? ଯଦି ବ୍ରହ୍ମା ସୁଦ୍ଧା କ୍ରୋଧ କରନ୍ତି, ତେବେ ଗୁରୁ ରକ୍ଷା କରି ପାରନ୍ତି । କିନ୍ତୁ ଗୁରୁଙ୍କ ସହିତ ବିରୁଦ୍ଧାଚରଣ କଲେ ଜଗତରେ ରକ୍ଷାକର୍ତ୍ତା କେହି ନାହାନ୍ତି ॥ ୩ ॥ ଯଦି ମୁଁ ଆପଣଙ୍କ କଥାନୁସାରେ ନ ଚଳିବି, ତେବେ ମୋର ବିନାଶ ହୋଇଯିବ । ଏଥି ନିମନ୍ତେ ମୋର ଚିନ୍ତା ନାହିଁ । ହେ ପ୍ରଭୋ ! ବ୍ରାହ୍ମଣଙ୍କ ଅଭିଶାପ ବଡ଼ ଭୟାନକ । ମୋ ମନ ଏହି ଗୋଟିଏ ମାତ୍ର ଭୟରେ ଆତଙ୍କିତ ॥ ୪ ॥ ଦୋହା'—ସେହି ବ୍ରାହ୍ମଣମାନେ କେଉଁ ଉପାୟରେ ବଶୀଭୂତ ହୁଅନ୍ତି, କୃପା କରି ମୋତେ କୁହନ୍ତୁ । ହେ ଦୀନଦୟାଳୁ ! ଆପଣଙ୍କ ଛଡ଼ା ମୋର ନିଜର ହିତାକାଙ୍କ୍ଷୀ ମୁଁ ଅନ୍ୟ କାହାରିକୁ ଦେଖୁନାହିଁ ।" ॥ ୧୬୭ ॥ ଚୌପାଈ'—ତପସ୍ୱୀ କହିଲେ, "ହେ ରାଜନ ! ଶୁଣ, ସଂସାରରେ ଉପାୟ ତ ବହୁତ । କିନ୍ତୁ ସେ ସବୁ କଷ୍ଟସାଧ୍ୟ । ତେଣୁ ସେ ସବୁ ସଫଳ ହେବ ବା ନ ହେବ, ସେ ବିଷୟରେ କୌଣସି

ଜୌଁ ନ ଜାଉଁ ତବ ହୋଇ ଅକାଜୂ । ବନା ଆଇ ଅସମଂଜସ ଆଜୂ ॥
ସୁନି ମହୀସ ବୋଲେଉ ମୃଦୁ ବାନୀ । ନାଥ ନିଗମ ଅସି ନୀତି ବଖାନୀ ॥୩॥
ବଡ଼େ ସନେହ ଲଘୁନ୍ହ ପର କରହୀଁ । ଗିରି ନିଜ ସିରନି ସଦା ତୃନ ଧରହୀଁ ॥
ଜଲଧି ଅଗାଧ ମୌଲି ବହ ଫେନୂ । ସଂତତ ଧରନି ଧରତ ସିର ରେନୂ ॥୪॥

ଅସ କହି ଗହେ ନରେସ ପଦ ସ୍ୱାମୀ ହୋହୁ କୃପାଲ ।
ମୋହି ଲଗି ଦୁଖ ସହିଅ ପ୍ରଭୁ ସଜ୍ଜନ ଦୀନଦୟାଲ ॥୧୬୭॥

ଜାନି ନୃପହି ଆପନ ଆଧୀନା । ବୋଲା ତାପସ କପଟ ପ୍ରବୀନା ॥
ସତ୍ୟ କହଉଁ ଭୂପତି ସୁନୁ ତୋହୀ । ଜଗ ନାହିନ ଦୁର୍ଲଭ କଛୁ ମୋହୀ ॥୧॥
ଅବସି କାଜ ମୈଁ କରିହଉଁ ତୋରା । ମନ ତନ ବଚନ ଭଗତ ତୈଁ ମୋରା ॥
ଜୋଗ ଜୁଗୁତି ତପ ମଂତ୍ର ପ୍ରଭାଊ । ଫଲଇ ତବହିଁ ଜବ କରିଅ ଦୁରାଊ ॥୨॥

---

ଯେବେ ନ ଯାଉଛି ହାନି ହେଉଛି ତୋ କାର୍ଯ୍ୟ । ଅସଙ୍ଗତ ସ୍ଥିତି ଆସି ପଡ଼ିଲାଣି ଆଜ ॥
ଏହା ଶୁଣି ମୃଦୁବାଣୀ ଭାଷିଲେ ରାଜନ । ନାଥ ! ଶ୍ରୁତି ନୀତି ବର୍ଣ୍ଣି କହନ୍ତି ଏମନ ॥୩॥
ବଡ଼ ସାନଙ୍କ ଉପରେ ସ୍ନେହ ଆଚରନ୍ତି । ଗିରି ନିଜ ଶିରେ ତୃଣ ସତତ ଧରନ୍ତି ॥
ଅପାର ଜଳଧି ଫେଣ ମସ୍ତକେ ବହଇ । ଧରା ସଦା ଶିରେ ରେଣୁ ଧାରଣ କରଇ ॥୪॥

ଏହା କହି ପଦ ଧରିଲେ ନରେନ୍ଦ୍ର ନାଥ କରୁଣା କରନ୍ତୁ ।
ମୁନି-ରାଜ ଦୀନ-ଦୟାଳୁ ସଜ୍ଜନ, ମୋ ଲାଗି କଷ୍ଟ ସହନ୍ତୁ ॥୧୬୭॥

ବିଚାରି ନରନାଥଙ୍କୁ ଆପଣା ଅଧୀନ । ବୋଲଇ ତାପସ ମୁନି କପଟ ପ୍ରବୀଣ ॥
ଶୁଣ କ୍ଷିତିପତି ସତ୍ୟ କହୁଅଛି ତୋତେ । ଜଗତ ମଧ୍ୟେ ଦୁର୍ଲଭ ନାହିଁ କିଛି ମୋତେ ॥୧॥
ଅବଶ୍ୟ ଏ କାର୍ଯ୍ୟ ମୁହିଁ କରିବି ତୋହର । ମନ ଦେହ ବଚନରେ ଭକ୍ତ ତୁ ମୋହର ॥
ଯୋଗ ଯୁକ୍ତି ତପ ମନ୍ତ୍ର ପରାକ୍ରମ ଯୁତ । ଗୁପ୍ତ ରଖାଗଲେ ଯାଇ ହୁଏ ଫଳୀଭୂତ ॥୨॥

---

ନିଶ୍ଚିତତା ନାହିଁ । ହଁ, ଗୋଟିଏ ଅତି ସହଜ ଉପାୟ ଅଛି । କିନ୍ତୁ ତହିଁରେ ମଧ୍ୟ ଗୋଟିଏ କଠିନତା ଅଛି ॥ ୧ ॥ ହେ ରାଜନ୍ ! ସେ ଯୁକ୍ତି ତ ମୋ ହାତରେ । ମାତ୍ର ତୁମ ନଗରକୁ ମୋର ଗମନ ହୋଇ ପାରିବ ନାହିଁ । ଜନ୍ମ କାଳରୁ ଆଜଯାଏ ମୁଁ କାହାର ଘର ବା ଗାଆଁକୁ ଯାଇନାହିଁ ॥୨॥ କିନ୍ତୁ ଏବେ ଯଦି ମୁଁ ନ ଯାଉଛି, ତେବେ ତୁମ କାମ ବିଗିଡ଼ି ଯାଉଛି । ଆଜି ଏ ବଡ଼ ଅଡୁଆ ଆସି ପଡ଼ିଅଛି । ଏହା ଶୁଣି ରାଜା କୋମଳ ବାଣୀରେ କହିଲେ, "ହେ ନାଥ ! ବେଦମାନଙ୍କରେ ଏହି ନୀତିବାକ୍ୟ ଅଛି ଯେ, ବଡ଼ ଲୋକେ ସାନମାନଙ୍କୁ ସ୍ନେହ କରନ୍ତି । ପର୍ବତ ତାହାର ଶିର ଉପରେ ସର୍ବଦା ତୃଣକୁ ଧାରଣ କରିଥାଏ । ଅଗାଧ ସମୁଦ୍ର ତାହାର ମସ୍ତକ ଉପରେ ଫେଣକୁ ଧାରଣ କରିଥାଏ ଏବଂ ପୃଥିବୀ ତାର ଶିର ଉପରେ ସର୍ବଦା ଧୂଳିକୁ ଧାରଣ କରିଥାଏ ।" ॥ ୩-୪ ॥ ଦୋହା —ଏହପରି କହି ରାଜା ମୁନିଙ୍କର ଚରଣ ଧରି ପକାଇଲେ ଏବଂ କହିଲେ, "ହେ ସ୍ୱାମି ! କୃପା କରନ୍ତୁ । ଆପଣ ସନ୍ଥ । ଦୀନଦୟାଳୁ । ଅତଏବ

ଜୌଁ ନରେସ ମୈଁ କରୌଁ ରସୋଈ । ତୁମ୍ହ ପରୁସହୁ ମୋହି ଜାନ ନ କୋଈ ॥
ଅନ୍ନ ସୋ ଜୋଇ ଜୋଇ ଭୋଜନ କରଈ । ସୋଇ ସୋଇ ତବ ଆୟସୁ ଅନୁସରଈ ॥୩॥
ପୁନି ତିନ୍ହକେଁ ଗୃହ ଜେଵଁଇ ଜୋଊ । ତବ ବସ ହୋଇ ଭୂପ ସୁନୁ ସୋଊ ॥
ଜାଇ ଉପାୟ ରଚହୁ ନୃପ ଏହୂ । ସଂବତ ଭରି ସଂକଲପ କରେହୂ ॥୪॥

ନିତ ନୂତନ ଦ୍ୱିଜ ସହସ ସତ ବରେହୁ ସହିତ ପରିବାର ।
ମୈଁ ତୁମ୍ହରେ ସଂକଲପ ଲଗି ଦିନହିଁ କରବି ଜେଵଁନାର ॥୧୬୮॥

ଏହି ବିଧି ଭୂପ କଷ୍ଟ ଅତି ଥୋରେଁ । ହୋଇହହିଁ ସକଲ ବିପ୍ର ବସ ତୋରେଁ ॥
କରିହହିଁ ବିପ୍ର ହୋମ ମଖ ସେବା । ତେହିଁ ପ୍ରସଂଗ ସହଜେହିଁ ବସ ଦେବା ॥୧॥

---

ଯେବେ ନରପତି ପାକ ନିର୍ମାଣିବି ମୁହିଁ । ମୋତେ କେହି ନ ଜାଣିବେ ପରେଷିବୁ ତୁହି ॥
ସେ ଅନ୍ନକୁ ଯେଉଁମାନେ ଭକ୍ଷଣ କରିବେ । ସେମାନେ ତୋର ଆଦେଶ ଅନୁସରୁଥିବେ ॥୩॥
ପୁଣି ତାଙ୍କ ଗୃହେ ଯାଇ ଭୁଞ୍ଜିବେ ଯେଜନ । ସେ ସବୁ ତୋର ଅଧୀନ ହୋଇବେ ରାଜନ ॥
ଏବେ ବାହୁଡ଼ିଣ କର ଏ ଉପାୟ ନୃପ । ସମ୍ପୂର୍ଣ୍ଣ ବର୍ଷ ପର୍ଯ୍ୟନ୍ତେ ଆନର ସଙ୍କଳ୍ପ ॥୪॥

କୁଟୁମ୍ବ ସହିତ ନିତ୍ୟ ନବ ଶତ ସହସ୍ର ଦ୍ୱିଜଙ୍କୁ ବର ।
ପ୍ରତ୍ୟହ ମୁଁ ଯାଇ କରିବି ରୋଷେଇ ସଙ୍କଳ୍ପ ଲାଗି ତୋହର ॥୧୬୮॥

ଏହି ଭାବେ ନୃପ ଅତି ଅଳ୍ପ ଆୟାସରେ । ହୋଇବେ ତୋର ଅଧୀନ ଭୂସୁରନିକରେ ॥
ବିପ୍ରେ ହୋମ ଯଜ୍ଞ ସେବା କରିବେ ଆଦର । ତେଣୁ ସହଜରେ ବଶ ହୋଇବେ ଅମର ॥୧॥

---

ହେ ପ୍ରଭୋ ! ମୋ ପାଇଁ ଅବଶ୍ୟ ଏତିକି କଷ୍ଟ ସହନ୍ତୁ ॥ ୧୬୭ ॥ ଚୌପାଈ :— ରାଜାଙ୍କୁ ଆପଣାର ଅଧୀନ ଜାଣି କପଟ-ନିପୁଣ ତପସ୍ୱୀ କହିଲା, "ହେ ରାଜନ୍ ! ଶୁଣ, ମୁଁ ତୁମ୍ଭଙ୍କୁ ସତ୍ୟ କହୁଅଛି । ଜଗତରେ ମୋର ଦୁର୍ଲଭ ହୋଇ କିଛି ହେଲେ ନାହିଁ ॥ ୧ ॥ ମୁଁ ତୁମ କାମ ଅବଶ୍ୟ କରିବି । କାରଣ ତୁମେ ମନ, ବଚନ ଓ ଶରୀରରେ ମୋର ଭକ୍ତ ହୋଇଅଛ । କିନ୍ତୁ ଯୋଗ, ଯୁକ୍ତି, ତପ ଓ ମନ୍ତ୍ର ଗୁପ୍ତ ଭାବରେ ଯେତେବେଳେ ସାଧନ କରାଯାଏ, ସେତିକିବେଳେ ଯାଇ ସେଗୁଡ଼ିକ ସଫଳ ହୁଏ ॥୨॥ ହେ ନରପତି ! ମୁଁ ଯେଉଁ ରୋଷେଇ କରିବି, ତୁମେ ତାହାକୁ ପରିବେଷଣ କରିବ । ମୋତେ ସେପରି ଅନ୍ୟ କେହି ଜାଣିପାରିବେ ନାହିଁ । ସେହି ଅନ୍ନକୁ ଯେଉଁ ଯେଉଁମାନେ ଖାଇବେ, ସେହି ସେହିମାନେ ତୁମର ଆଜ୍ଞାକାରୀ ହୋଇଯିବେ ॥ ୩ ॥ କେବଳ ଏତିକି ନୁହେଁ, ସେହି ଭୋଜନକାରୀଙ୍କ ଘରେ ମଧ୍ୟ ଯେଉଁ ବ୍ୟକ୍ତି ଭୋଜନ କରିବ, ହେ ରାଜନ୍ ! ସେ ମଧ୍ୟ ତୁମର ଅଧୀନ ହୋଇଯିବ । ହେ ରାଜନ୍ ! ଯାଇ ଏହି ଉପାୟ କର ଏବଂ ବର୍ଷେ ପର୍ଯ୍ୟନ୍ତ ଭୋଜନ କରାଇବାର ସଂକଳ୍ପ କର ॥ ୪ ॥ ଦୋହା :—ପ୍ରତିଦିନ ନୂଆ ଏକ ଲକ୍ଷ ବ୍ରାହ୍ମଣଙ୍କୁ ସକୁଟୁମ୍ବ ନିମନ୍ତ୍ରଣ କର । ତୁମ ସଂକଳ୍ପର ବର୍ଷେ କାଳ ପର୍ଯ୍ୟନ୍ତ ପ୍ରତିଦିନ ମୁଁ ଭୋଜନ ପ୍ରସ୍ତୁତ କରି ଦେଉଥିବି ॥ ୧୬୮ ॥ ଚୌପାଈ :—ହେ ରାଜନ୍ ! ଏହି ରୂପେ ଅଳ୍ପ ପରିଶ୍ରମରେ ସମସ୍ତ ବ୍ରାହ୍ମଣ ତୁମର ବଶ ହୋଇଯିବେ । ବ୍ରାହ୍ମଣମାନେ ହବନ, ଯଜ୍ଞ,

ଔର ଏକ ତୋହି କହଉଁ ଲଖାଊ । ମୈଁ ଏହି ବେଷ ନ ଆଉବ କାଊ ॥
ତୁହ୍ମରେ ଉପରୋହିତ କହୁଁ ରାୟା । ହରି ଆନବ ମୈଁ କରି ନିଜ ମାୟା ॥୨॥
ତପବଲ ତେହି କରି ଆପୁ ସମାନା । ରଖିହଉଁ ଇହାଁ ବରଷ ପରୱାନା ॥
ମୈଁ ଧରି ତାସୁ ବେଷୁ ସୁନୁ ରାଜା । ସବ ବିଧି ତୋର ସଁୱାରବ କାଜା ॥୩॥
ଗୈ ନିସି ବହୁତ ସୟନ ଅବ କୀଜେ । ମୋହି ତୋହି ଭୂପ ଭେଁଟ ଦିନ ତୀଜେ ॥
ମୈଁ ତପବଲ ତୋହି ତୁରଗ ସମେତା । ପହୁଁଚୈହଉଁ ସୋୱତହି ନିକେତା ॥୪॥

ମୈଁ ଆଉବ ସୋଇ ବେଷୁ ଧରି ପହିଚାନେହୁ ତବ ମୋହି ।
ଜବ ଏକାଂତ ବୋଲାଇ ସବ କଥା ସୁନାୱୌଁ ତୋହି ॥୧୬୯॥

ସୟନ କୀହ୍ନ ନୃପ ଆୟସୁ ମାନୀ । ଆସନ ଜାଇ ବୈଠେ ଛଲଜ୍ଞାନୀ ॥
ଶ୍ରମିତ ଭୂପ ନିଦ୍ରା ଅତି ଆଈ । ସୋ କିମି ସୋୱ ସୋଚ ଅଧିକାଈ ॥୧॥

---

ପୁଣି ତୋ ଆଗେ ସଙ୍କେତ କହେ ଏକ ଏବେ । ମୁଁ ଏହି ବେଶ ଧରିଣ ନ ଆସିବି କେବେ ॥
ତୁମ୍ଭର ପୁରୋହିତଙ୍କୁ ନିଜ ମାୟା କରି । ଶୁଣ ମହୀପାଳ ଏଥି ଆଣିବି ମୁଁ ହରି ॥୨॥
ତପ ବଳେ ତାଙ୍କୁ କରି ଆପଣା ସମାନ । ରଖିବି ଏହି ସ୍ଥାନରେ ବର୍ଷ ପରିମାଣ ॥
ଧରି ମୁଁ ତାହାର ବେଶ ଶୁଣ ନରରାଜ । ସମସ୍ତ ପ୍ରକାରେ ତୋର ସମ୍ଭାଳିବି କାର୍ଯ୍ୟ ॥୩॥
ହେଲାଣି ନିଶି ବହୁତ ଶୟନ ଯା କରି । ତୃତୀୟ ଦିବସେ ଭେଟ ତୋହର ମୋହର ॥
ତପସ୍ୟା ବଳେ ମୁଁ ତୋତେ ତୁରଙ୍ଗ ସଙ୍ଗରେ । ନିଦ୍ରିତାବସ୍ଥାରେ ଛାଡ଼ି ଦେବି ତୋ ନଗରେ ॥୪॥

ଆସିବି ପୂର୍ବୋକ୍ତ ବେଶ ମୁଁ ଧରିଣ ଚିହ୍ନିବୁ ସେ କାଳେ ମୋତେ ।
ଯେବେ ଏକାନ୍ତରେ ଡକାଇ ସମସ୍ତ କଥା ଶୁଣାଇବି ତୋତେ ॥୧୬୯॥

ଶୟନ କଲେ ନୃପତି ଆଜ୍ଞା ତାର ମାନି । ଆସନେ ବସିଲା ଯାଇ ସେହି ଛଳ ଜ୍ଞାନୀ ॥
ଶ୍ରମିତ ନୃପ ହୋଇଲେ ଅତି ନିଦ୍ରାକ୍ରାନ୍ତ । ସେ କେମନ୍ତେ ଶୋଇବ ଭାରି ଚିନ୍ତା ମନେ ବ୍ୟସ୍ତ ॥୧॥

---

ସେବା ଓ ପୂଜା ଆଦି କରିବେ । ଫଳତଃ ଦେବତାମାନେ ସ୍ୱତଃ ସହଜରେ ତୁମର ବଶ ହୋଇଯିବେ ॥୧॥ ମୁଁ ଆଉ ଗୋଟିଏ କଥା ତୁମକୁ କହି ଦେଉଛି ଯେ, ମୁଁ ଏହି ବେଶରେ କଦାପି ଆସିବି ନାହିଁ । ହେ ରାଜନ୍ ! ମୁଁ ମୋର ମାୟାରେ ତୁମ ପୁରୋହିତଙ୍କୁ ହରଣ କରି ଆଣିବି ॥୨॥ ତପସ୍ୟାବଳରେ ମୁଁ ତାଙ୍କୁ ମୋ ସମାନ କରି ବର୍ଷେ ପର୍ଯ୍ୟନ୍ତ ଏଠାରେ ରଖିବି । ହେ ରାଜନ୍ ! ଶୁଣ, ମୁଁ ତାଙ୍କ ରୂପ ଧାରଣ କରି ସବୁ ପ୍ରକାରେ ତୁମ କାମ ଠିକ କରିବି ॥୩॥ ହେ ରାଜନ୍ ! ରାତି ବହୁତ ବଢିଗଲାଣି, ଏବେ ଯାଇ ଶୟନ କର । ଆଜିଠାରୁ ତୃତୀୟ ଦିବସରେ ମୋ ସହିତ ତୁମର ଭେଟ ହେବ । ତପସ୍ୟା ବଳରେ ମୁଁ ଘୋଡା ସମେତ ତୁମକୁ ଶୋଇଥିବା ଅବସ୍ଥାରେ ଘରେ ପହଞ୍ଚାଇ ଦେବି ॥ ୪ ॥ ଦୋହା :— ମୁଁ ସେହି ପୁରୋହିତଙ୍କ ବେଶ ଧରି ଆସିବି । ଯେତେବେଳେ ଏକାନ୍ତରେ ତୁମକୁ ଡକାଇ ସମସ୍ତ କଥା ଶୁଣାଇବି, ସେତେବେଳେ ତୁମେ ମୋତେ ଚିହ୍ନିନେବ ।" ॥୧୬୯॥ ଚୌପାଇ.—ରାଜା ଆଦେଶ ମାନି ଶୟନ କଲେ ଏବଂ ସେହି ଛଦ୍ମ-ଜ୍ଞାନୀ ଯାଇ ଆସନ

କାଲକେତୁ ନିସିଚର ତହଁ ଆଵା । ଜେହିଁ ସୂକର ହୋଇ ନୃପହି ଭୁଲାଵା ॥
ପରମ ମିତ୍ର ତାପସ ନୃପ କେରା । ଜାନଇ ସୋ ଅତି କପଟ ଘନେରା ॥୨॥
ତେହି କେ ସତ ସୁତ ଅରୁ ଦସ ଭାଈ । ଖଲ ଅତି ଅଜୟ ଦେବ ଦୁଖଦାଈ ॥
ପ୍ରଥମହିଁ ଭୂପ ସମର ସବ ମାରେ । ବିପ୍ର ସଂତ ସୁର ଦେଖି ଦୁଖାରେ ॥୩॥
ତେହିଁ ଖଲ ପାଛିଲ ବୟରୁ ସଁଭାରା । ତାପସ ନୃପ ମିଲି ମନ୍ତ୍ର ବିଚାରା ॥
ଜେହିଁ ରିପୁ ଛୟ ସୋଇ ରଚେହ୍ନି ଉପାଊ । ଭାବୀ ବସ ନ ଜାନ କଛୁ ରାଊ ॥୪॥

ରିପୁ ତେଜସୀ ଅକେଲ ଅପି ଲଘୁ କରି ଗନିଅ ନ ତାହୁ ।
ଅଜହୁଁ ଦେତ ଦୁଖ ରବି ସସିହି ସିର ଅବସେଷିତ ରାହୁ ॥୧୭୦॥

ତାପସ ନୃପ ନିଜ ସଖହି ନିହାରୀ । ହରଷି ମିଲେଉ ଉଠି ଭୟଉ ସୁଖାରୀ ॥
ମିତ୍ରହି କହି ସବ କଥା ସୁନାଈ । ଜାତୁଧାନ ବୋଲା ସୁଖ ପାଈ ॥୧॥

---

କାଳକେତୁ ନିଶାଚର ତହିଁ ଆଗମିଲା । ଶୂକର ହୋଇ ଭୂପଙ୍କୁ ଭୁଲାଇ ଯେ ଥିଲା ॥
ପରମ ମିତ୍ର ତାପସ ନୃପର ଅଟଇ । ନାନା ପ୍ରକାର ସେ ଅତି କପଟ ଜାଣଇ ॥୨॥
ତାହାର ଶତ କୁମର ପୁଣି ଦଶ ଭ୍ରାତା । ଅତ୍ୟନ୍ତ ଅଜୟ ଖଳ ଦେବ ଦୁଃଖ ଦାତା ॥
ପ୍ରଥମରୁ ମାରିଥିଲେ ନୃପ ସମସ୍ତଙ୍କୁ । ଦେଖି ଅତି ଦୁଃଖୀ ସାଧୁ ବିପ୍ର ବିବୁଧଙ୍କୁ ॥୩॥
ସେ ଖଳ ଏବେ ଅତୀତ ବୈର ସୁମରିଲା । ତାପସ ନୃପ ସହିତ ମନ୍ତ୍ରଣା କରିଲା ॥
ରିପୁ ଯେଉଁଥେ କ୍ଷୟ ହେବ ପାଞ୍ଚିଲା ଉପାୟ । ଭାବୀ ବଶ ନ ଜାଣିଲେ କିଛି ନର-ରାୟ ॥୪॥

ରିପୁ ତେଜବନ୍ତ ହେଲେହେଁ ଏକାକୀ ତୁଚ୍ଛ ତାହାଙ୍କୁ ନ ଗଣ ।
ଶିର ମାତ୍ର ରାହୁ ହୋଏ ଅଦ୍ୟାବଧି ରବି ଶଶୀଙ୍କୁ ଦଷଣ ॥୧୭୦॥

ତାପସ ନୃପତି ନିଜ ସଖାଙ୍କୁ ଦେଖିଣ । ହରଷେ ମିଳିଲା ଉଠି ପ୍ରସନ୍ନ ହୋଇଣ ॥
ସମସ୍ତ ବୃତ୍ତାନ୍ତ ମିତ୍ର ଆଗେ ଶୁଣାଇଲା । ତହୁଁ ଆନନ୍ଦିତ ହୋଇ ଦନୁଜ କହିଲା ॥୧॥

---

ଉପରେ ବସିଲା । ରାଜା କ୍ଲାନ୍ତ ହୋଇ ପଡିଥିଲେ । ତାଙ୍କୁ ଗାଢ ନିଦ୍ରା ଆସିଗଲା । କିନ୍ତୁ ସେ କପଟୀ କିପରି ଶୋଇ ପାରନ୍ତା ? ତାହାକୁ ତ ଅଧିକ ଚିନ୍ତା ଘାରୁଥାଏ ॥ ୧ ॥ ସେତିକିବେଳେ ସେଠାକୁ କାଳକେତୁ ରାକ୍ଷସ ଆସିଲା । ସେହି ରାକ୍ଷସ ଇତିପୂର୍ବେ ବରାହ ରୂପ ଧାରଣ କରି ରାଜାଙ୍କୁ ଭ୍ରମାଇଥିଲା । ସେ ତପସ୍ୱୀ ରାଜାର ମିତ୍ର ଥିଲା ଏବଂ ବହୁ ଛନ୍ଦ-କପଟ ଜାଣିଥିଲା ॥ ୨ ॥ ତାହାର ଶହେ ପୁଅ ଓ ଦଶ ଭାଇ ଥିଲେ । ସେମାନେ ବଡ ଦୁଷ୍ଟ । ସେମାନେ ସମସ୍ତେ ଅଜେୟ ଥିଲେ ଏବଂ ଦେବତାମାନଙ୍କୁ ଦୁଃଖ ଦେଉଥିଲେ । ବ୍ରାହ୍ମଣ, ସାଧୁ ଓ ଦେବତାମାନଙ୍କ ଦୁଃଖକଷ୍ଟ ଦେଖି ରାଜା ପ୍ରଥମେ ସେ ସମସ୍ତଙ୍କୁ ଯୁଦ୍ଧରେ ମାରି ପକାଇଲେ ॥ ୩ ॥ ସେହି ଦୁଷ୍ଟ ଅତୀତ ଶତ୍ରୁତା ସ୍ମରଣ କରି ତପସ୍ୱୀ ରାଜା ସଙ୍ଗେ ମିଳି ଷଡଯନ୍ତ୍ର ରଚନା କଲା । ଯେଉଁ ଉପାୟରେ ଶତ୍ରୁର ବିନାଶ ହେବ, ଦୁହେଁ ତାହାର ଉପାୟ ପାଞ୍ଚିଲେ । ଦୁର୍ଭାଗ୍ୟର ସମ୍ମୁଖୀନ ରାଜା ପ୍ରତାପଭାନୁ ଏ ସବୁ କିଛି ଜାଣିପାରିଲେ ନାହିଁ ॥ ୪ ॥ ଦୋହା ।—ତେଜସ୍ୱୀ ଶତ୍ରୁ

ଅବ ସାଧେଉଁ ରିପୁ ସୁନହୁ ନରେସା । ଜୌଁ ତୁମ୍ହ କୀନ୍ହ ମୋର ଉପଦେସା ॥
ପରିହରି ସୋଚ ରହହୁ ତୁମ୍ହ ସୋଈ । ବିନୁ ଔଷଧ ବିଆଧି ବିଧି ଖୋଈ ॥୨॥
କୁଲ ସମେତ ରିପୁ ମୂଲ ବହାଈ । ଚୌଥେଁ ଦିବସ ମିଲବ ମୈଁ ଆଈ ॥
ତାପସ ନୃପହି ବହୁତ ପରିତୋଷୀ । ଚଲା ମହାକପଟୀ ଅତିରୋଷୀ ॥୩॥
ଭାନୁପ୍ରତାପହି ବାଜି ସମେତା । ପହୁଁଚାଏସି ଛନ ମାଝ ନିକେତା ॥
ନୃପହି ନାରି ପହିଁ ସୟନ କରାଈ । ହୟଗୃହଁ ବାଁଧେସି ବାଜି ବନାଈ ॥୪॥

ରାଜା କେ ଉପରୋହିତହି ହରି ଲୈ ଗୟଉ ବହୋରି ।
ଲୈ ରାଖେସି ଗିରି ଖୋହ ମହୁଁ ମାୟାଁ କରି ମତି ଭୋରି ॥୧୭୧॥

---

ଏବେ ଶତ୍ରୁକୁ ମୁଁ ସାଧି କରିଲି ନରେଶ । କାର୍ଯ୍ୟାନ୍ୱିତ କଲ ଯେଣୁ ମୋର ଉପଦେଶ ।
ଶୋଇ ରହ ତୁମ୍ଭେ ମନୁ ଚିନ୍ତା ପରିହରି । ଔଷଧ ବିନା ବିଧାତା ବ୍ୟାଧି ନେଲେ ହରି ॥୨॥
କୁଳ ସହିତ ଶତ୍ରୁର ମୂଳ ବହାଇଣ । ଚତୁର୍ଥ ଦିବସେ ମୁହିଁ ଭେଟିବି ଆସିଣ ॥
ତାପସ ନରପତିକୁ ବହୁତ ପ୍ରବୋଧି । ଚଳିଲା ମହା କପଟୀ ଅତିଶୟ କ୍ରୋଧୀ ॥୩॥
ଦିନକର ପ୍ରତାପକୁ ହୟ ସହିତରେ । ଗୃହେ ପହଞ୍ଚାଇ ଦେଲା କ୍ଷଣକ ମଧ୍ୟରେ ॥
ନୃପଙ୍କୁ ରାଣୀଙ୍କ ପାଶେ ଶୟନ କରାଇ । ହୟଶାଳାରେ ଘୋଡାକୁ ବାନ୍ଧିଲା ସେ ଯାଇ॥୪॥

ରାଜାଙ୍କର ପୁରୋହିତକୁ ଆବର ହରିନେଇଣ ଚଳିଲା ।
ମାୟାରେ ତାହାର ମତି କରି ଭୋଳ ଗିରି କନ୍ଦରେ ରଖିଲା ॥୧୭୧॥

---

ଏକାକୀ ହୋଇଥାନ୍ତି ପଛକେ, ତାହାଙ୍କୁ କ୍ଷୁଦ୍ର ବିଚାରିବା ଉଚିତ ନୁହେଁ । ଶିର ମାତ୍ର ଅବଶିଷ୍ଟ ଥିବା ରାହୁ ଆଜିଯାଏ ସୂର୍ଯ୍ୟଚନ୍ଦ୍ରଙ୍କୁ ଦୁଃଖ ଦେଉଛନ୍ତି ॥ ୧୭୦ ॥ ଚୌପାଈ — ତପସ୍ୱୀ ରାଜା ଆପଣା ମିତ୍ରକୁ ଦେଖି ଆନନ୍ଦିତ ମନରେ ତାହା ସଙ୍ଗେ ଯାଇ ସାକ୍ଷାତ କଲା ଏବଂ ଅଧିକ ସୁଖ ଲାଭ କଲା । ସେ ମିତ୍ରକୁ ସବୁ କଥା କହି ଶୁଣାଇଲା । ସେତେବେଳେ ରାକ୍ଷସ ଆନନ୍ଦିତ ହୋଇ କହିଲା, "ହେ ରାଜନ୍ ! ଶୁଣ, ତୁମେ ଯେତେବେଳେ ମୋ କଥାନୁସାରେ ଏତେ କାମ କରି ପକାଇଛ, ତାହା ହେଲେ ଏଇ ଧରିନିଅ ଯେ ମୁଁ ଏବେ ଶତ୍ରୁକୁ ମୋ ଅକ୍ତିଆରରେ କରିନେଲି । ତୁମେ ଏବେ ଚିନ୍ତା ତ୍ୟାଗ କରି ଶୋଇ ରୁହ । ବିଧାତା ବିନା ଔଷଧରେ ରୋଗ ଦୂର କରିଦେଲେ ॥ ୨ ॥ ସବଂଶ ଶତ୍ରୁକୁ ସମୂଳେ ଉତ୍ପାଟନ କରି ମୁଁ ଭସାଇ ଦେବି ଏବଂ ଆଜିଠାରୁ ଚତୁର୍ଥ ଦିନରେ ଆସି ତୁମ ସହିତ ସାକ୍ଷାତ କରିବି ।" ଏହିପରି ତପସ୍ୱୀ ରାଜାକୁ ଖୁବ ସାନ୍ତ୍ୱନା ଦେଇ ସେହି ମହାମାୟାବୀ ଓ ଅତିକ୍ରୋଧୀ ରାକ୍ଷସ ଚଳିଲା ॥୩॥ ସେ ପ୍ରତାପଭାନୁ ରାଜାଙ୍କୁ ଘୋଡା ଉପରେ ନେଇ କ୍ଷଣକାଳ ମଧ୍ୟରେ ଘରେ ପହଞ୍ଚାଇ ଦେଲା । ରାଜାଙ୍କୁ ରାଣୀଙ୍କ ପାଖରେ ଶୁଆଇ ଘୋଡାକୁ ଭଲରୂପେ ଘୋଡାଶାଳରେ ବାନ୍ଧିଦେଲା ॥୪॥ ଦୋହା :— ତତ୍ପରେ ସେ ରାଜାଙ୍କ ପୁରୋହିତଙ୍କୁ ଉଠାଇ ନେଇଗଲା ଏବଂ ମାୟା ଯୋଗେ ତାଙ୍କ ବୁଦ୍ଧି-ଭ୍ରମ ଘଟାଇ ତାହାଙ୍କୁ ପାହାଡର ଗୁମ୍ଫାରେ ନେଇ ରଖି ଆସିଲା ॥ ୧୭୧ ।

ଆପୁ ବିରଚି ଉପରୋହିତ ରୂପା । ପରେଉ ଜାଇ ତେହି ସେଜ ଅନୂପା ॥
ଜାଗେଉ ନୃପ ଅନଭଏଁ ବିହାନା । ଦେଖି ଭବନ ଅତି ଅଚରଜୁ ମାନା ॥୧॥
ମୁନି ମହିମା ମନ ମହୁଁ ଅନୁମାନୀ । ଉଠେଉ ଗଵଁହିଁ ଜେହିଁ ଜାନ ନ ରାନୀ ॥
କାନନ ଗୟଉ ବାଜି ଚଢ଼ି ତେହୀଁ । ପୁର ନର ନାରି ନ ଜାନେଉ କେହୀଁ ॥୨॥
ଗଏଁ ଜାମ ଜୁଗ ଭୂପତି ଆଵା । ଘର ଘର ଉତ୍ସବ ବାଜ ବଧାଵା ॥
ଉପରୋହିତହି ଦେଖ ଜବ ରାଜା । ଚକିତ ବିଲୋକ ସୁମିରି ସୋଇ କାଜା ॥୩॥
ଜୁଗ ସମ ନୃପହି ଗଏ ଦିନ ତୀନୀ । କପଟୀ ମୁନି ପଦ ରହ ମତି ଲୀନୀ ॥
ସମୟ ଜାନି ଉପରୋହିତ ଆଵା । ନୃପହି ମତେ ସବ କହି ସମୁଝାଵା ॥୪॥

ନୃପ ହରଷେଉ ପହିଚାନି ଗୁରୁ ଭ୍ରମ ବସ ରହା ନ ଚେତ ।
ବରେ ତୁରତ ସତ ସହସ ବର ବିପ୍ର କୁଟୁମ୍ବ ସମେତ ॥୧୭୨॥

---

ସ୍ୱୟଂ ପୁରୋହିତ ରୂପ ଧାରଣ କରିଣ । ଶୋଇଲା ସେହି ଅନୁପ ଶଯ୍ୟାରେ ଯାଇଣ ॥
ପ୍ରଭାତ ନୋହୁଣୁ ନର-ନାୟକ ଉଠିଲେ । ଭବନ ବିଲୋକି ଅତି ଆଶ୍ଚର୍ଯ୍ୟ ମଣିଲେ ॥୧॥
ମୁନିଙ୍କ ମହିମା ମନ ମଧ୍ୟେ ଅନୁମାନି । ଉଠିଲେ ଧୀରେ ଯେମନ୍ତେ ନ ଜାଣିବେ ରାଣୀ ॥
କାନନେ ଗମିଲେ ଚଢି ସେହି ତୁରଙ୍ଗରେ । ଜାଣି ନ ପାରିଲେ କେହି ପୁର ନାରୀନରେ ॥୨॥
ଗଲାନ୍ତେ ଦୁଇ ପ୍ରହର ଆସିଲେ ଭୂପତି । ଉତ୍ସବ ବାଦ୍ୟ ବାଜିଲା ଗୃହେ ଗୃହେ ପ୍ରତି ॥
ପୁରୋହିତଙ୍କୁ ଦେଖିଲେ ଯେବେ ନରରାଜ । ଚକିତେ ଅବଲୋକନ୍ତି ସ୍ମରିଣ ସେ କାର୍ଯ୍ୟ ॥୩॥
ଯୁଗ ସଦୃଶ କାଟିଲେ ନୃପ ତିନି ଦିନ । କପଟୀ ମୁନି ଚରଣେ ମତି ରହେ ଲୀନ ॥
ବେଳ ଜାଣି ପୁରୋହିତ ପ୍ରବେଶ ହୋଇଲା । ନୃପଙ୍କୁ ପୂର୍ବ ପ୍ରସ୍ତାବ କହି ବୁଝାଇଲା ॥୪॥

ଗୁରୁଙ୍କୁ ଚିହ୍ନିଣ ହୋଇଲେ ପ୍ରସନ୍ନ ଭ୍ରମେ ଅଚେତନ ଥିଲେ ॥
ସକୁଟୁମ୍ବ ଶତ ସହସ୍ର ବିପ୍ରଙ୍କୁ ନୃପ ବରଣ କରିଲେ ॥୧୭୨॥

---

ଚୌପାଈ —ସେ ନିଜେ ପୁରୋହିତ ରୂପ ସାଜି ତାଙ୍କ ସୁନ୍ଦର ଶେଯରେ ଯାଇ ପଡି ରହିଲା । ସକାଳ ହେବା ପୂର୍ବରୁ ରାଜା ଶେଯରୁ ଉଠିଲେ ଏବଂ ଆପଣାର ଘର ଦେଖି ବଡ ଆଶ୍ଚର୍ଯ୍ୟାନ୍ୱିତ ହେଲେ ॥ ୧ ॥ ମନେ ମନେ ମୁନିଙ୍କ ମାହାତ୍ମ୍ୟ ବିଷୟ ଅନୁମାନ କରି ସେ ଧୀରେ ଧୀରେ ଉଠିଲେ, ଯେପରି କି ରାଣୀ ଜାଣି ନ ପାରନ୍ତି । ତତ୍ପରେ ସେହି ଘୋଡା ଉପରେ ଚଢି ସେ ବନକୁ ଚାଲିଗଲେ । ନଗରର କୌଣସି ସ୍ତ୍ରୀ-ପୁରୁଷ ସୁଦ୍ଧା ଏହା ଜାଣି ପାରିଲେ ନାହିଁ ॥ ୨ ॥ ଦୁଇ ପ୍ରହର ବିତିଯିବା ପରେ ରାଜା ଆସିଲେ । ଘରେ ଘରେ ଉତ୍ସବ ହେବାକୁ ଲାଗିଲା ଏବଂ ମଙ୍ଗଳାଚରଣ ବାଜାମାନ ବାଜିବାକୁ ଲାଗିଲା । ଯେତେବେଳେ ରାଜା ପୁରୋହିତଙ୍କୁ ଦେଖିଲେ, ସେତେବେଳେ ସେ ପୂର୍ବୋକ୍ତ କାର୍ଯ୍ୟ ବିଷୟ ସ୍ମରଣ କରି ତାହାଙ୍କୁ ଆଶ୍ଚର୍ଯ୍ୟରେ ଦେଖିବାକୁ ଲାଗିଲେ ॥୩॥ ରାଜାଙ୍କର ତିନି ଗୋଟି ଦିନ ଯୁଗ ସମାନ ଅତିବାହିତ ହେଲା, ତାଙ୍କ ମନ କପଟୀ ମୁନିର ପାଦରେ ଲାଗିଥାଏ । ନିର୍ଦ୍ଦିଷ୍ଟ ସମୟ ଜାଣି ପୁରୋହିତ (ଛଦ୍ମବେଶୀ ରାକ୍ଷସ)

ଉପରୋହିତ ଜେଓଁନାର ବନାଈ । ଛରସ ଚାରି ବିଧି ଜସି ଶ୍ରୁତି ଗାଈ ॥
ମାୟାମୟ ତେହିଁ କୀହ୍ନି ରସୋଈ । ବିଂଜନ ବହୁ ଗନି ସକଇ ନ କୋଈ ॥୧॥
ବିବିଧ ମୃଗହ୍ନ କର ଆମିଷ ରାଁଧା । ତେହି ମହୁଁ ବିପ୍ର ମାଁସୁ ଖଲ ସାଁଧା ॥
ଭୋଜନ କହୁଁ ସବ ବିପ୍ର ବୋଲାଏ । ପଦ ପଖାରି ସାଦର ବୈଠାଏ ॥୨॥
ପରୁସନ ଜବହିଁ ଲାଗ ମହିପାଲା । ଭୈ ଅକାସବାନୀ ତେହି କାଲା ॥
ବିପ୍ରବୃନ୍ଦ ଉଠି ଉଠି ଗୃହ ଜାହୂ । ହୈ ବଡ଼ି ହାନି ଅନ୍ନ ଜନି ଖାହୂ ॥୩॥
ଭୟଉ ରସୋଈଁ ଭୂସୁର ମାଁସୂ । ସବ ଦ୍ୱିଜ ଉଠେ ମାନି ବିସ୍ୱାସୂ ॥
ଭୂପ ବିକଲ ମତି ମୋହଁ ଭୁଲାନୀ । ଭାବୀ ବସ ନ ଆୱ ମୁଖ ବାନୀ ॥୪॥

---

ଭୋଜନ ରନ୍ଧନ କଲା ତହୁଁ ପୁରୋହିତ । ଛ' ରସ ଚାରି ପ୍ରକାର ଶ୍ରୁତି ଅଭିହିତ ॥
ଅତି ମାୟାମୟ ପାକ ନିର୍ମାଣିଲା ସେହି । ବ୍ୟଞ୍ଜନ ବହୁତ ଗଣି ନ ପାରିବେ କେହି ॥୧॥
ଅନେକ ପ୍ରକାର ମୃଗ ଆମିଷ ରାନ୍ଧିଲା । ତହିଁ ମଧ୍ୟେ ଖଳ ବିପ୍ର-ମାଂସ ମିଳାଇଲା ॥
ଭୋଜନ ସକାଶେ ସବୁ ବିପ୍ରଙ୍କୁ ଡାକିଲେ । ପଦ ପ୍ରକ୍ଷାଳି ସାଦରେ ନେଇ ବସାଇଲେ ॥୨॥
ପରଷିବାକୁ ଲାଗିଲେ ନୃପ ଯେବେ ଆଣି । ହୋଇଲା ସେହି ସମୟେ ଅନ୍ତରୀକ୍ଷ ବାଣୀ ॥
ବିପ୍ରବୃନ୍ଦ ଉଠ ଉଠ ନିଜ ଗୃହେ ଯାଅ । ଅଟେ ବଡ଼ ହାନିକର, ଏ ଅନ୍ନ ନ ଖାଅ ॥୩॥
ହୋଇଛି ରନ୍ଧନ ଏଥି ବ୍ରାହ୍ମଣର ମାଂସ । ଉଠିଲେ ସମସ୍ତ ଦ୍ୱିଜ ମାନିଣ ବିଶ୍ୱାସ ॥
ବିକଳ ହୋଇଲେ ମୋହ ବିହ୍ୱଳ ରାଜନ । ଭାବୀବଶ ନ ସ୍ଫୁରିଲା ବଦନୁ ବଚନ ॥୪॥

---

ଆସିଲା ଏବଂ ରାଜାଙ୍କ ସହିତ ପୂର୍ବରୁ ହୋଇଥିବା ଗୁପ୍ତ ମନ୍ତ୍ରଣାନୁସାରେ ସମସ୍ତ ବିଷୟ ତାଙ୍କୁ ବୁଝାଇ କହିଦେଲା ॥ ୪ ॥ ଦୋହା —ସଂକେତାନୁସାରେ ଗୁରୁଙ୍କୁ ସେହି ରୂପରେ ଚିହ୍ନି ରାଜା ପ୍ରସନ୍ନ ହେଲେ । ଭ୍ରମବଶ ତାଙ୍କର ଚେତା ନ ଥିଲା ଯେ, ଏ ତାପସ ମୁନି କି କାଳକେତୁ ରାକ୍ଷସ । ସେ ଶୀଘ୍ର ଏକଲକ୍ଷ ଉତ୍ତମ ବ୍ରାହ୍ମଣଙ୍କୁ ସକୁଟୁମ୍ବ ନିମନ୍ତ୍ରଣ ଦେଇଦେଲେ ॥ ୧୭୨ ॥ ଚୌପାଇ —ପୁରୋହିତ ବେଦୋକ୍ତ ଷଡ଼ରସ ଓ ଚାରିପ୍ରକାର ଭୋଜନ ପ୍ରସ୍ତୁତ କଲା । ସେ ମାୟାମୟ ପାକ ଏବଂ ଅଗଣିତ ବ୍ୟଞ୍ଜନ ପ୍ରସ୍ତୁତ କଲା ॥ ୧ ॥ ସେ ଅନେକ ପ୍ରକାର ପଶୁମାଂସ ରାନ୍ଧିଲା । ତହିଁରେ ସେ ଦୁଷ୍ଟ ବ୍ରାହ୍ମଣ ମାଂସ ମିଶାଇ ଦେଲା । ତତ୍ପରେ ସମସ୍ତ ବ୍ରାହ୍ମଣଙ୍କୁ ଭୋଜନ ନିମନ୍ତେ ଡାକିଲା ଏବଂ ସେମାନଙ୍କ ଚରଣ ଧୋଇ ସେମାନଙ୍କୁ ସାଦର ବସାଇଲା ॥ ୨ ॥ ରାଜା ଯେତେବେଳେ ପରିବେଷଣ ଆରମ୍ଭ କଲେ, ସେତେବେଳେ କାଳକେତୁ ଦ୍ୱାରା ଆକାଶବାଣୀ ହେଲା—"ହେ ବ୍ରାହ୍ମଣମାନେ ! ଉଠି ଆପଣା ଆପଣା ଘରକୁ ଯାଅ । ଏହି ଅନ୍ନ ଖାଅନାହିଁ । ଏହା ଖାଇଲେ ବଡ଼ ଅନିଷ୍ଟ ହେବ ॥ ୩ ॥ ରୋଷେଇରେ ବ୍ରାହ୍ମଣମାନଙ୍କର ମାଂସ ରନ୍ଧା ହୋଇଛି ।" ଆକାଶବାଣୀକୁ ବିଶ୍ୱାସ କରି ସମସ୍ତ ବ୍ରାହ୍ମଣ ଉଠି ଛିଡ଼ା ହେଲେ । ରାଜା ବ୍ୟାକୁଳ ହୋଇପଡ଼ିଲେ । ମୋହରେ ତାଙ୍କ ବୁଦ୍ଧି ଭ୍ରଷ୍ଟ ହୋଇପଡ଼ିଲା । ଭବିତବ୍ୟତାବଶ ତାଙ୍କ ମୁହଁରୁ କଥା ପଦେ ବି ବାହାରିଲା

ବୋଲେ ବିପ୍ର ସକୋପ ତବ ନହିଁ କଛୁ କୀନ୍ହ ବିଚାର ।
ଜାଇ ନିସାଚର ହୋହୁ ନୃପ ମୂଢ଼ ସହିତ ପରିବାର ॥୧୭୩॥
ଛତ୍ରବନ୍ଧୁ ତୈଂ ବିପ୍ର ବୋଲାଈ । ଘାଲୈ ଲିଏ ସହିତ ସମୁଦାଈ ॥
ଈସ୍ବର ରାଖା ଧରମ ହମାରା । ଜୈହସି ତୈଂ ସମେତ ପରିବାରା ॥୧॥
ସମ୍ବତ ମଧ୍ୟ ନାସ ତବ ହୋଊ । ଜଲଦାତା ନ ରହିହି କୁଲ କୋଊ ॥
ନୃପ ସୁନି ଶ୍ରାପ ବିକଲ ଅତି ତ୍ରାସା । ଭୈ ବହୋରି ବର ଗିରା ଅକାସା ॥୨॥
ବିପ୍ରହୁ ଶ୍ରାପ ବିଚାରି ନ ଦୀହ୍ନା । ନହିଁ ଅପରାଧ ଭୂପ କଛୁ କୀହ୍ନା ॥
ଚକିତ ବିପ୍ର ସବ ସୁନି ନଭ ବାନୀ । ଭୂପ ଗୟଉ ଜହଁ ଭୋଜନ ଖାନୀ ॥୩॥
ତହଁ ନ ଅସନ ନହିଁ ବିପ୍ର ସୁଆରା । ଫିରେଉ ରାଉ ମନ ସୋଚ ଅପାରା ॥
ସବ ପ୍ରସଙ୍ଗ ମହିସୁରହ୍ନ ସୁନାଈ । ତ୍ରସିତ ପରେଉ ଅବନୀ ଅକୁଲାଈ ॥୪॥

---

ଏଥୁ ଅନ୍ତେ ବିପ୍ରେ ବୋଇଲେ ସକୋପେ ନ କଲୁ କିଛି ବିଚାର ।
ହୁଅ ନିଶାଚର ମୂଢ ନରବର ସଙ୍ଗେ ଘେନି ପରିବାର ॥୧୭୩॥
କ୍ଷତ୍ରିୟ ଅଧମ ତୁହି ବରିଲୁ ବିପ୍ରଙ୍କୁ । ଭ୍ରଷ୍ଟ କରିବା ନିମନ୍ତେ ମୂଳେ ସମସ୍ତଙ୍କୁ ॥
ଈଶ୍ୱର ରକ୍ଷା କରିଲେ ଧରମ ଆମ୍ଭର । ପରିବାର ସହ ନଷ୍ଟ ହେବୁ ତୁ ପାମର ॥୧॥
ସଂବତ୍ସର ମଧ୍ୟେ ନାଶ ତୋହର ହୋଇବ । ଜଳ ଦେବା ପାଇଁ କୁଳେ କେହି ନ ରହିବ ॥
ନୃପତି ବିକଳ ହେଲେ ଶାପ ଶୁଣି ତ୍ରାସେ । ହୋଇଲା ପୁଣି ସୁନ୍ଦର ଶବଦ ଆକାଶେ ॥୨॥
ବିପ୍ରଗଣ ଅଭିଶାପ ନ ଦେଲ ବିଚାରି । କରିନାହିଁ କିଛି ଅପରାଧ ଦଣ୍ଡଧାରୀ ॥
ନଭବାଣୀ ଶୁଣି ବିପ୍ରେ ଚକିତ ହୋଇଲେ । ପାକ-ଶାଳାକୁ ନୃପତି ତହୁଁ ଆଗମିଲେ ॥୩॥
ନ ଦେଖି ତହିଁ ବ୍ୟଞ୍ଜନ ଅଶନ ସୁଆର । ଫେରିଲେ ମହୀପ ଲଭି ସନ୍ତାପ ଅପାର ॥
ଶୁଣାଇ ମହୀସୁରଙ୍କୁ ବୃତ୍ତାନ୍ତ ସକଳ । ଭୟେ ଭୂମିରେ ପଡିଲେ ହୋଇଣ ବିକଳ ॥୪॥

---

ନାହିଁ ॥ ୪ ॥ ଦୋହା '—ସେତେବେଳେ ବ୍ରାହ୍ମଣମାନେ କ୍ରୋଧରେ କହିଲେ, "ଆରେ ମୂର୍ଖ ରାଜା ! ତୁ ଯାଇ ସପରିବାର ରାକ୍ଷସ ହୋଇ ଜନ୍ମ ଲାଭ କର ।" ସେମାନେ ଟିକିଏ ହେଲେ ବିଚାର କଲେ ନାହିଁ ॥ ୧୭୩ ॥ ଚୌପାଈ '—"ରେ ନୀଚ କ୍ଷତ୍ରିୟ ! ତୁ ବ୍ରାହ୍ମଣମାନଙ୍କୁ ଡକାଇ ସେମାନଙ୍କୁ ସମୂଳେ ନଷ୍ଟଭ୍ରଷ୍ଟ କରିବାକୁ ଇଚ୍ଛା କରିଥିଲୁ ! ଈଶ୍ୱର ଆମ ଧର୍ମ ରକ୍ଷା କଲେ । ଏବେ ତୁ ସପରିବାର ନଷ୍ଟ ହେବୁ ॥ ୧ ॥ ବର୍ଷକ ଭିତରେ ତୋର ନାଶ ସୁନିଶ୍ଚିତ । ତୋ କୁଳରେ ପାଣି ଟିକିଏ ଦେବାକୁ ବି କେହି ରହିବେ ନାହିଁ ।" ଅଭିଶାପ ଶୁଣି ରାଜା ଭୟ ହେତୁ ବ୍ୟାକୁଳ ହୋଇପଡିଲେ । ପୁଣି ଶ୍ରେଷ୍ଠ ଆକାଶବାଣୀ ହେଲା, "ହେ ବ୍ରାହ୍ମଣମାନେ ! ତୁମ୍ଭେମାନେ ବୁଝିବିଚାରି ଅଭିଶାପ ଦେଇନାହଁ । ରାଜା କିଛି ହେଲେ ଅପରାଧ କରି ନାହାନ୍ତି ।" ଆକାଶବାଣୀ ଶୁଣି ସମସ୍ତ ବ୍ରାହ୍ମଣ ଚକିତ ହୋଇ ପଡିଲେ । ତତ୍ପରେ ରାଜା ଯେଉଁଠାରେ ଭୋଜନ-ସାମଗ୍ରୀ ପ୍ରସ୍ତୁତ ହୋଇଥିଲା, ସେହି ସ୍ଥାନକୁ ଗଲେ ॥ ୩ ॥ ଦେଖିଲେ, ସେଠାରେ

ଭୂପତି ଭାବୀ ମିଟଇ ନହିଁ ଜଦପି ନ ଦୂଷନ ତୋର ।
କିଏଁ ଅନ୍ୟଥା ହୋଇ ନହିଁ ବିପ୍ର ଶ୍ରାପ ଅତି ଘୋର ॥୧୭୩॥
ଅସ କହି ସବ ମହିଦେବ ସିଧାଏ । ସମାଚାର ପୁରଲୋଗନ୍ହ ପାଏ ॥
ସୋଚହିଁ ଦୂଷନ ଦୈବହି ଦେହୀଁ । ବିରଚତ ହଂସ କାଗ କିଯ଼ ଜେହୀଁ ॥୧॥
ଉପରୋହିତହି ଭବନ ପହୁଁଚାଈ । ଅସୁର ତାପସହି ଖବରି ଜନାଈ ॥
ତେହି ଖଲ ଜହଁ ତହଁ ପତ୍ର ପଠାଏ । ସଜି ସଜି ସେନ ଭୂପ ସବ ଧାଏ ॥୨॥
ଘେରେନ୍ହି ନଗର ନିସାନ ବଜାଈ । ବିବିଧ ଭାଁତି ନିତ ହୋଇ ଲରାଈ ॥
ଜୁଝେ ସକଲ ସୁଭଟ କରି କରନୀ । ବଂଧୁ ସମେତ ପରେଉ ନୃପ ଧରନୀ ॥୩॥

---

ନୃପତି ଅଦୃଷ୍ଟ ନ ହୁଅଇ ନଷ୍ଟ, ନ ଥିଲେହେଁ ଦୋଷ ତୋର ॥
କଲେହେଁ ଅନ୍ୟଥା ନ ହୁଅଇ ବୃଥା ବିପ୍ରଶାପ ଅତି ଘୋର ॥୧୭୪॥
ଏହା କହି ବିପ୍ରବୃନ୍ଦ ପ୍ରସ୍ଥାନ କରିଲେ । ଏହି ସମାଚାର ପୁରବାସୀ ପାଇଲେ ॥
ଚିନ୍ତା କରି ଦଇବକୁ ଦିଅନ୍ତି ଲାଞ୍ଛନ । ହଂସ ରଚୁ ରଚୁ କାକ ଯେ କଲା ରଚନ ॥୧॥
ପୁରୋହିତଙ୍କୁ ତାହାର ଗୃହେ ପହଞ୍ଚାଇ । ଦୈତ୍ୟ ତାପସକୁ ଦେଲା ଖବର ଜଣାଇ ॥
ସେ ଖଳ ନାନାଦି ସ୍ଥାନେ ପଠାଇଲା ପତ୍ର । ସୈନ୍ୟ ସାଜି ସାଜି ନୃପେ ଆସିଲେ ସର୍ବତ୍ର ॥୨॥
ଘେରାଉ କଲେ ନଗର ନିଶାଣ ବଜାଇ । ବିବିଧ ପ୍ରକାରେ ନିତ୍ୟ ହୋଇଲା ଲଢାଇ ॥
ଯୁଝିଲେ ବୀରସମୂହ କରି କର୍ମମତି । ବନ୍ଧୁ ସହିତ ମହୀରେ ପଡିଲେ ନୃପତି ॥୩॥

---

ଭୋଜନ-ସାମଗ୍ରୀ ନ ଥିଲା କି ରୋଷେଇଆ ବ୍ରାହ୍ମଣ ବି ନ ଥିଲା । ରାଜା ମନରେ ଅପାର ଚିନ୍ତା କରି ଫେରିଲେ । ସେ ବ୍ରାହ୍ମଣମାନଙ୍କୁ ସକଳ ବୃତ୍ତାନ୍ତ ଶୁଣାଇଲେ ଏବଂ ଅତି ଭୟଭୀତ ଓ ବ୍ୟାକୁଳ ହୋଇ ପୃଥିବୀ ଉପରେ ପଡିଗଲେ ॥ ୪ ॥ ଦୋହା:- "ହେ ରାଜନ୍ ' ତୁମର ଏଥିରେ କୌଣସି ଦୋଷ ନ ଥିଲେହେଁ ଭବିତବ୍ୟତା ମେଣ୍ଟିବାର ନୁହେଁ । ବ୍ରାହ୍ମଣଙ୍କ ଅଭିଶାପ ବଡ ଭୟାନକ । ଏହା କୌଣସି ଉପାୟରେ ଟାଳିବାକୁ ଚେଷ୍ଟା କଲେ ବି ଟଳେ ନାହିଁ ।" ॥ ୧୭୪ ॥ ଚୌପାଇ —ଏହା କହି ସମସ୍ତ ବ୍ରାହ୍ମଣ ଚାଲିଗଲେ । ନଗରବାସୀମାନେ ଏହି ସମ୍ବାଦ ପାଇ ଚିନ୍ତିତ ହେଲେ ଏବଂ ବିଧାତାକୁ ଦୋଷ ଦେବାକୁ ଲାଗିଲେ । ସେ ଏପରି ପୁଣ୍ୟାତ୍ମା ରାଜାକୁ ଦେବତା କରି ଗଢିବା ପରିବର୍ତ୍ତେ ରାକ୍ଷସ କରି ଗଢିଲେ । ହଂସ ଗଢୁ ଗଢୁ ସେ କୁଆ କରି ବସିଲା ॥ ୧ ॥ ପୁରୋହିତଙ୍କୁ ତାଙ୍କ ଘରେ ପହଞ୍ଚାଇ ଅସୁର କାଳକେତୁ କପଟୀ ତପସ୍ୱୀକୁ ଖବର ଦେଲା । ସେହି ଦୁଷ୍ଟ ବିଭିନ୍ନ ସ୍ଥାନକୁ ପତ୍ର ପଠାଇଲା । ଫଳରେ ସମସ୍ତ ଶତ୍ରୁ-ରାଜା ସେନା ସଜାଇ ଦୌଡିବାକୁ ଲାଗିଲେ ॥ ୨ ॥ ସେମାନେ ରଣଭେରୀ ବଜାଇ ନଗରକୁ ଘେରିଗଲେ । ନିତ୍ୟପ୍ରତି ଅନେକ ପ୍ରକାର ଲଢାଇ ହେବାକୁ ଲାଗିଲା । ପ୍ରତାପଭାନୁଙ୍କ ସମସ୍ତ ଯୋଦ୍ଧା ଶୂରବୀରଙ୍କ ପରି କୃତିତ୍ୱ ଦେଖାଇ ଯୁଦ୍ଧରେ ଯୁଝି ମଲେ । ରାଜା ମଧ୍ୟ ଭାଇ ସହିତ ଯୁଦ୍ଧରେ ନିହତ ହେଲେ ॥ ୩ ॥

ସତ୍ୟକେତୁ କୁଲ କୋଉ ନହିଁ ବାଁଚା । ବିପ୍ରଶ୍ରାପ କିମି ହୋଇ ଅସାଁଚା ॥
ରିପୁ ଜିତି ସବ ନୃପ ନଗର ବସାଈ । ନିଜ ପୁର ଗଏଉ ଜୟ ଜସୁ ପାଈ ॥୪॥
ଭରଦ୍ୱାଜ ସୁନୁ ଜାହି ଜବ ହୋଇ ବିଧାତା ବାମ ।
ଧୂରି ମେରୁ ସମ ଜନକ ଜମ ତାହି ବ୍ୟାଲ ସମ ଦାମ ॥୧୭୫॥
କାଲ ପାଇ ମୁନି ସୁନୁ ସୋଇ ରାଜା । ଭୟଉ ନିସାଚର ସହିତ ସମାଜା ॥
ଦସ ସିର ତାହି ବୀସ ଭୁଜଦଂଡା । ରାବନ ନାମ ବୀର ବରିବଂଡା ॥୧॥
ଭୂପ ଅନୁଜ ଅରିମର୍ଦନ ନାମା । ଭୟଉ ସୋ କୁଂଭକରନ ବଲଧାମା ॥
ସଚିବ ଜୋ ରହା ଧରମରୁଚି ଜାସୂ । ଭୟଉ ବିମାତ୍ର ବଂଧୁ ଲଘୁ ତାସୂ ॥୨॥
ନାମ ବିଭୀଷନ ଜେହି ଜଗ ଜାନା । ବିଷ୍ଣୁଭଗତ ବିଜ୍ଞାନ ନିଧାନା ॥
ରହେ ଜେ ସୁତ ସେବକ ନୃପ କେରେ । ଭଏ ନିସାଚର ଘୋର ଘନେରେ ॥୩॥

---

ସତ୍ୟକେତୁ କୁଳେ ପ୍ରାଣ ନ ବଞ୍ଚିଲା କା'ର । ବିପ୍ରଙ୍କ ଶାପ ଅସତ୍ୟ ହେବ କି ପ୍ରକାର ॥
ରିପୁ ଜିଣି ନୃପଗଣ ନଗର ସ୍ଥାପିଣ । ନିଜ ପୁରେ ଗଲେ ଜୟ ସୁଯଶ ଲଭିଣ ॥୪॥
ଭରଦ୍ୱାଜ ଶୁଣ ଯେତେବେଳେ ବାମ ହୁଅଇ ବିଧି ଯାହାକୁ ।
ଧୂଳି ମେରୁ ସମ, ପିତା ଯେସନ୍ତେ ଯମ, ମାଳା ଅହି ପ୍ରାୟେ ତାକୁ ॥୧୭୫॥
କାଳ ପାଇ ଶୁଣ ମୁନି ସେହି ନରବର । ସମାଜ ସହିତ ଯାଇ ହେଲେ ନିଶାଚର ॥
ଦଶ ମସ୍ତକ ତାହାର ବିଂଶ ଭୁଜ ଦଣ୍ଡ । ରାବଣ ନାମ ଉଦ୍ଭଟ ପରମ ପ୍ରଚଣ୍ଡ ॥୧॥
ନୃପଙ୍କ ଅନୁଜ ଅରିମର୍ଦ୍ଦନ ଯା ନାମ । ହୋଇଲେ ସେ କୁମ୍ଭକର୍ଣ୍ଣ ତେଜ ବଳ ଧାମ ॥
ଧର୍ମରୁଚି ନାମଧାରୀ ସଚିବ ଯେ ଥିଲେ । ତାର ବିମାତୃ ଅନୁଜ ରୂପେ ଜନମିଲେ ॥୨॥
ନାମ ବିଭୀଷଣ ଯେହୁ ଜଗତେ ବିଦିତ । ବିଜ୍ଞାନଧାମ ବିଷ୍ଣୁଙ୍କ ଭକ୍ତରେ କଥିତ ॥
ଥିଲେ ଯେ ସୁତ ସେବକ ନରପତିଙ୍କର । ସେମାନେ ହୋଇଲେ ଘୋର ବହୁ ନିଶାଚର ॥୩॥

---

ସତ୍ୟକେତୁଙ୍କ କୁଳରେ କେହି ହେଲେ ବଞ୍ଚିଲେ ନାହିଁ । ବ୍ରାହ୍ମଣଙ୍କ ଅଭିଶାପ ମିଥ୍ୟା ହୁଅନ୍ତା କିପରି ? ଶତ୍ରୁଙ୍କୁ ଜିଣି, ନଗରକୁ ପୁଣି ଥରେ ବସାଇ, ସମସ୍ତ ରାଜା ବିଜୟ ଓ ଯଶ ଲାଭପୂର୍ବକ ନିଜ ନିଜ ନଗରକୁ ଚାଲିଗଲେ ॥ ୪ ॥ ଦୋହା '—ଯାଜ୍ଞବଲ୍କ୍ୟ କହନ୍ତି, "ହେ ଭରଦ୍ୱାଜ ! ଶୁଣ, ବିଧାତା ଯେତେବେଳେ ଯାହାର ପ୍ରତିକୂଳ ହୁଅନ୍ତି, ତାହା ପକ୍ଷରେ ଧୂଳି ସୁମେରୁ ପର୍ବତ ପରି ଭାରୀ, ପିତା ଯମ ତୁଲ୍ୟ କାଳ ଓ ମାଳା ସର୍ପ ସଦୃଶ ଦଂଶନକାରୀ ହୋଇଯାଏ ॥ ୧୭୫ ॥ ଚୌପାଈ '—ହେ ମୁନି ! ଶୁଣ, ସମସ୍ତ ସମେ ସେହି ରାଜା ସପରିବାର ରାବଣ ନାମକ ରାକ୍ଷସ ହୋଇ ଜନ୍ମ ଗ୍ରହଣ କଲେ । ତାହାର ଦଶ ଗୋଟି ଶିର ଓ କୋଡ଼ିଏଟି ବାହୁ ଥିଲା । ସେ ଅତି ପ୍ରଚଣ୍ଡ ଶୂରବୀର ଥିଲା ॥ ୧ ॥ ରାଜାଙ୍କର ସାନ ଭାଇ ଅରିମର୍ଦ୍ଦନ ବଳଧାମ କୁମ୍ଭକର୍ଣ୍ଣ ହେଲେ । ମନ୍ତ୍ରୀ ଧର୍ମରୁଚି ରାବଣର ବୈମାତୃକ ସାନ ଭାଇ ହୋଇ ଜନ୍ମଲାଭ କଲେ ॥ ୨ ॥ ତାଙ୍କର ନାମ ବିଭୀଷଣ ହେଲା । ସମସ୍ତ ସଂସାର ଏହା ଜାଣେ । ସେ ବିଷ୍ଣୁଭକ୍ତ ଓ

କାମରୂପ ଖଲ ଜିନସ ଅନେକା । କୁଟିଲ ଭୟଂକର ବିଗତ ବିବେକା ॥
କୃପା ରହିତ ହିଂସକ ସବ ପାପୀ । ବରନି ନ ଜାହିଁ ବିସ୍ୱ ପରିତାପୀ ॥୪॥
ଉପଜେ ଜଦପି ପୁଲସ୍ତ୍ୟକୁଲ ପାବନ ଅମଲ ଅନୂପ ।
ତଦପି ମହୀସୁର ଶ୍ରାପ ବସ ଭଏ ସକଲ ଅଘରୂପ ॥୧୭୬॥
କୀହ୍ନ ବିବିଧ ତପ ତୀନହୁଁ ଭାଈ । ପରମ ଉଗ୍ର ନହିଁ ବରନି ସୋ ଜାଈ ॥
ଗୟଉ ନିକଟ ତପ ଦେଖି ବିଧାତା । ମାଗହୁ ବର ପ୍ରସନ୍ନ ମୈଁ ତାତା ॥୧॥
କରି ବିନତୀ ପଦ ଗହି ଦସସୀସା । ବୋଲେଉ ବଚନ ସୁନହୁ ଜଗଦୀସା ॥
ହମ କାହୂ କେ ମରହିଁ ନ ମାରେଁ । ବାନର ମନୁଜ ଜାତି ଦୁଇ ବାରେଁ ॥୨॥
ଏବମସ୍ତୁ ତୁମ୍ହ ବଡ଼ ତପ କୀହ୍ନା । ମୈଁ ବ୍ରହ୍ମା ମିଲି ତେହି ବର ଦୀହ୍ନା ॥
ପୁନି ପ୍ରଭୁ କୁଂଭକରନ ପହିଁ ଗୟଉ । ତେହି ବିଲୋକି ମନ ବିସମୟ ଭୟଉ ॥୩॥

---

ନାନାବିଧ ରକମ ଖଳ କାମ ରୂପଧାରୀ । କୁଟିଳ ବିବେକହୀନ ଭୟଙ୍କର ଭାରି ॥
ଦୟା-ରହିତ ହିଂସ୍ରକ ସର୍ବେ ପୁଣି ପାପୀ । ବର୍ଣ୍ଣନ କରି ନ ହୁଏ ବିଶ୍ୱ ପରିତାପୀ ॥୪॥
ଯଦ୍ୟପି ନିର୍ମଳ ପବିତ୍ର ଅନୁପ ପୁଲସ୍ତ୍ୟ କୁଳେ ଜନ୍ମିଲେ ।
ତଥାପି ବିପ୍ରଙ୍କ ଶାପରୁ ସମସ୍ତେ ପାତକ ରୂପ ହୋଇଲେ ॥୧୭୬॥
କଲେ ତିନି ଭାଇ ନାନା ତପ ଆରାଧନ । ଅତି ଉଗ୍ର ତାହା କରି ନ ହୁଏ ବର୍ଣ୍ଣନ ॥
ତପ ଦେଖି ବିଧି ଗଲେ ତାହାଙ୍କ ନିକଟେ । ବତ୍ସ ମାଗି ଘେନ ବର ପ୍ରସନ୍ନ ମୁଁ ଅଟେ ॥୧॥
ଚରଣ ଧରି ବିନୟ ପୂର୍ବକ ରାବଣ । ବୋଇଲା ବଚନ ଶୁଣ ଜଗତ କାରଣ ॥
ନ ହେଉ ମରଣ ମୋର କାହାରି ହସ୍ତରେ । ଉପେକ୍ଷି ଉଭୟ ଜାତି ମନୁଷ୍ୟ ବାନରେ ॥୨॥
'ଏବମସ୍ତୁ' ତୁ କଠୋର ତପ ଆଚରିଲୁ । ଆମ୍ଭେ ବ୍ରହ୍ମା ମିଳି ତୋତେ ବର ପ୍ରଦାନିଲୁ ॥
ପୁଣି ବିଧି କୁମ୍ଭକର୍ଣ୍ଣ ନିକଟେ ଗମିଲେ । ତାହାଙ୍କୁ ବିଲୋକି ମନେ ବିସ୍ମୟ ହୋଇଲେ ॥୩॥

---

ଜ୍ଞାନବିଜ୍ଞାନର ଭଣ୍ଡାର ଥିଲେ । ରାଜାଙ୍କର ଅନ୍ୟାନ୍ୟ ଯେତେ ପୁତ୍ର ଓ ସେବକ ଥିଲେ, ସେମାନେ ସମସ୍ତେ ବଡ ଭୟଙ୍କର ରାକ୍ଷସ ହୋଇ ଜନ୍ମଲାଭ କଲେ ॥ ୩ ॥ ସେମାନେ ସମସ୍ତେ ମନ ଇଚ୍ଛା ଅନେକ ପ୍ରକାର ରୂପ ଧାରଣ କରି ପାରୁଥିଲେ ଏବଂ ଅତି ଦୁଷ୍ଟ, କୁଟିଳ, ଭୟଙ୍କର, ଅବିବେକୀ, ନିଷ୍ଠୁର, ହିଂସ୍ରକ ଓ ପାପୀ ଥିଲେ । ସମଗ୍ର ସଂସାରକୁ ଦୁଃଖକଷ୍ଟ ଦେଉଥିଲେ । ସେମାନଙ୍କ ଦୁର୍ଗୁଣ ଭାଷାରେ ବର୍ଣ୍ଣନା କରାଯାଇ ନ ପାରେ ॥ ୪ ॥ ଦୋହା'—ପୁଲସ୍ତ୍ୟ ଋଷିଙ୍କ ପବିତ୍ର, ନିର୍ମଳ ଓ ଅନୁପମ କୁଳରେ ଜାତ ହୋଇଥିଲେ ମଧ୍ୟ ବ୍ରାହ୍ମଣମାନଙ୍କ ଅଭିଶାପ ହେତୁ ସେମାନେ ସମସ୍ତେ ପାପରୂପ ହେଲେ ॥ ୧୭୬ ॥ ଚୌପାଇ'—ତିନି ଭାଇ ଅନେକ ପ୍ରକାର ଅତି କଠୋର ତପସ୍ୟା କଲେ । ସେ ସବୁର ବର୍ଣ୍ଣନା କରାଯାଇ ନ ପାରେ । ସେମାନଙ୍କର କଠୋର ତପସ୍ୟା ଦେଖି ଶେଷରେ ବ୍ରହ୍ମା ତାଙ୍କ ନିକଟକୁ ଆସିଲେ ଏବଂ କହିଲେ, "ହେ ତାତ ! ମୁଁ ପ୍ରସନ୍ନ । ବର ମାଗ ॥ ୧ ॥ ରାବଣ ବିନମ୍ରତାର ସହିତ ବ୍ରହ୍ମାଙ୍କ

ଜୌଁ ଏହିଁ ଖଲ ନିତ କରବ ଅହାରୂ । ହୋଇହି ସବ ଉଜାରି ସଂସାରୂ ॥
ସାରଦ ପ୍ରେରି ତାସୁ ମତି ଫେରୀ । ମାଗେସି ନୀଦ ମାସ ଷଟ କେରୀ ॥୪॥
ଗଏ ବିଭୀଷନ ପାସ ପୁନି କହେଉ ପୁତ୍ର ବର ମାଗୁ ।
ତେହିଁ ମାଗେଉ ଭଗବଂତ ପଦ କମଲ ଅମଲ ଅନୁରାଗୁ ॥୧୭୭॥
ତିହ୍ନହି ଦେଇ ବର ବ୍ରହ୍ମ ସିଧାଏ । ହରଷିତ ତେ ଅପନେ ଗୃହ ଆଏ ॥
ମୟତନୁଜା ମଂଦୋଦରି ନାମା । ପରମ ସୁନ୍ଦରୀ ନାରି ଲଲାମା ॥୧॥
ସୋଇ ମୟଁ ଦୀହ୍ନି ରାବନହିଁ ଆନୀ । ହୋଇହି ଜାତୁଧାନ-ପତି ଜାନୀ ॥
ହରଷିତ ଭୟଉ ନାରି ଭଲି ପାଈ । ପୁନି ଦୋଉ ବଂଧୁ ବିଆହେସି ଜାଈ ॥୨॥

---

ଯେବେ ଏହି ଖଳ ନିତ୍ୟ କରିବ ଆହାର । ଉଜୁଡ଼ି ଯିବ ଚଞ୍ଚଳ ଏ ସାରା ସଂସାର ॥
ବାଣୀଙ୍କୁ ପ୍ରେରି ତା'ମତି ଭୁଲାଇ ଦିଅନ୍ତେ । ମାଗିଲା ସେ ନିଦ୍ରା ତହୁଁ ଛ'ମାସ ପର୍ଯ୍ୟନ୍ତେ ॥୪॥
ପୁଣି ବିଭୀଷଣ ନିକଟେ ଯାଇଣ ବୋଲେ ପୁତ୍ର ! ବର ମାଗ ।
ସେ ମାଗିଲେ ହରି-ଚରଣ-କମଳେ ସୁବିମଳ ଅନୁରାଗ ॥୧୭୭॥
ତାଙ୍କୁ ବର ଦେଇ ବ୍ରହ୍ମା ପ୍ରସ୍ଥାନ କରିଲେ । ହରଷେ ସେମାନେ ନିଜ ଗୃହକୁ ଫେରିଲେ ॥
ମୟ ସୁତା ନାମ ଯାର ଥିଲା ମନ୍ଦୋଦରୀ । କୁମାରୀ ରତନ ଯେହୁ ପରମ ସୁନ୍ଦରୀ ॥୧॥
ତାହାକୁ ମୟ ରାବଣେ ସମର୍ପିଲା ଆଣି । ହୋଇବ ଜାତୁଧାନଙ୍କ ଅଧିପତି ଜାଣି ॥
ହରଷ ହୋଇଲା ପାଇ ସୁନ୍ଦରୀ ନାରୀକୁ । ପୁଣି ବିଭା କରାଇଲା ଉଭୟ ଭାଇଙ୍କୁ ॥୨॥

---

ଚରଣ ଧରି କହିଲେ, "ହେ ଜଗଦୀଶ୍ୱର ! ଶୁଣନ୍ତୁ, ବାନର ଓ ମନୁଷ୍ୟ, ଏହି ଦୁଇ ଜାତିଙ୍କୁ ଛାଡ଼ି ମୁଁ ଅନ୍ୟ କାହାର ହାତରେ ନ ମରେ । ଏହି ବର ମୋତେ ଦିଅନ୍ତୁ ।" ॥୨॥ (ଶିବ କହନ୍ତି) ମୁଁ ଓ ବ୍ରହ୍ମା ମିଶି ତାଙ୍କୁ ବର ଦେଲୁ—"ତଥାସ୍ତୁ ।" ତୁମେ ବଡ଼ ତପସ୍ୟା କରିଅଛ । ପୁଣି ବ୍ରହ୍ମା କୁମ୍ଭକର୍ଣ୍ଣ ପାଖକୁ ଗଲେ, ତାଙ୍କୁ ଦେଖି ତାଙ୍କ ମନରେ ବିସ୍ମୟ ଜାତ ହେଲା ॥ ୩ ॥ "ଯଦି ଏହି ଖଳ ପ୍ରତିଦିନ ଆହାର କରିବ, ତେବେ ସମସ୍ତ ସଂସାର ଉଜୁଡ଼ି ଯିବ ।"—ଏହିପରି ବିଚାରି ବ୍ରହ୍ମା ସରସ୍ୱତୀଙ୍କୁ ପ୍ରେରଣ କରି ତାହାର ବୁଦ୍ଧି ଭ୍ରମ କରିଦେଲେ । ଫଳରେ ସେ ଛଅ ମାସର ନିଦ୍ରା ବର ରୂପେ ମାଗିଲା ॥ ୪ ॥ ଦୋହା :—ତତ୍ପରେ ବ୍ରହ୍ମା ବିଭୀଷଣଙ୍କ ପାଖକୁ ଗଲେ ଏବଂ କହିଲେ, "ହେ ପୁତ୍ର ! ବର ମାଗ ।" ବିଭୀଷଣ ଭଗବାନଙ୍କ ଚରଣ-କମଳରେ ନିର୍ମଳ (ନିଷ୍କାମ ଓ ଅନନ୍ୟ) ପ୍ରେମ ମାଗିଲେ ॥ ୧୭୭ ॥ ଚୌପାଈ :—ସେମାନଙ୍କୁ ବର ଦେଇ ବ୍ରହ୍ମା ଚାଲିଗଲେ । ତିନି ଭାଇଯାକ ଆନନ୍ଦ ମନରେ ଆପଣା ଆପଣା ଘରକୁ ଫେରି ଆସିଲେ । ମୟ ରାକ୍ଷସର ମନ୍ଦୋଦରୀ-ନାମ୍ନୀ କନ୍ୟା ପରମ ସୁନ୍ଦରୀ ଓ ସ୍ତ୍ରୀମାନଙ୍କ ମଧ୍ୟରେ ଶିରୋମଣି ଥିଲା ॥ ୧ । ମୟ ଉକ୍ତ କନ୍ୟା ଆଣି ରାବଣକୁ ପ୍ରଦାନ କଲା । ସେ ଜାଣି ପାରିଥିଲା ଯେ, ଏ ରାକ୍ଷସମାନଙ୍କର ରାଜା ହେବ । ଉତ୍ତମ ସ୍ତ୍ରୀ ପାଇ ରାବଣ ପ୍ରସନ୍ନ ହେଲା ଏବଂ ତତ୍ପରେ ଯାଇ ଦୁଇ ଭାଇଙ୍କର ବିବାହ କରିଦେଲା ॥୨॥

ଗିରି ତ୍ରିକୂଟ ଏକ ସିଂଧୁ ମଝାରୀ । ବିଧି ନିର୍ମିତ ଦୁର୍ଗମ ଅତି ଭାରୀ ॥
ସୋଇ ମୟ ଦାନବଁ ବହୁରି ସଁୱାରୀ । କନକ ରଚିତ ମନିଭବନ ଅପାରୀ ॥୩॥
ଭୋଗାୱତି ଜସି ଅହିକୁଲ ବାସା । ଅମରାବତି ଜସି ସକ୍ରନିବାସା ॥
ତିହ୍ନ ତେଁ ଅଧିକ ରମ୍ୟ ଅତି ବଂକା । ଜଗ ବିଖ୍ୟାତ ନାମ ତେହି ଲଂକା ॥୪॥

ଖାଈଁ ସିଂଧୁ ଗଭୀର ଅତି ଚାରିହୁଁ ଦିସି ଫିରି ଆୱ ।
କନକ କୋଟ ମନି ଖଚିତ ଦୃଢ଼ ବରନି ନ ଜାଇ ବନାୱ ॥୧୭୮ (କ)॥
ହରି ପ୍ରେରିତ ଜେହିଁ କଲପ ଜୋଇ ଜାତୁଧାନପତି ହୋଇ ।
ସୂର ପ୍ରତାପୀ ଅତୁଲବଲ ଦଲ ସମେତ ବସ ସୋଇ ॥୧୭୮(ଖ)॥

ରହେ ତହାଁ ନିସିଚର ଭଟ ଭାରେ । ତେ ସବ ସୁରହ୍ନ ସମର ସଂଘାରେ ॥
ଅବ ତହଁ ରହହିଁ ସକ୍ର କେ ପ୍ରେରେ । ରଚ୍ଛକ କୋଟି ଜଚ୍ଛପତି କେରେ ॥୧॥

---

ସିନ୍ଧୁ ମଧ୍ୟେ ଥିଲା ଏକ ତ୍ରିକୂଟ ଭୂଧର । ବିଧି ବିରଚିତ ଅତି ଦୁର୍ଗମ ଦୁସ୍ତର ॥
ତାକୁ ପୁଣି ସଜାଇଲା ସେ ମୟ ଦଇତ । ଅପାର ମଣି-ଭବନ କନକେ ଖଚିତ ॥୩॥
ଭୋଗବତୀ ଯଥା ଅହି କୁଳଙ୍କ ନିବାସ । ଅମରାବତୀ ଯେସନେ ପୁରନ୍ଦର ବାସ ॥
ତା'ଠାରୁ ଅଧିକ ରମ୍ୟ ସୁଦୃଢ଼ ଅପାର । ଭୁବନ ବିଖ୍ୟାତ ନାମ ଲଙ୍କା ଅଟେ ତା'ର ॥୪॥

ଖାଇ ରୂପେ ଅତି ଗଭୀର ସାଗର ଚତୁର୍ଦ୍ଦିଗେ ଆବେଷ୍ଟିତ ।
ବର୍ଣ୍ଣି ନ ହୁଅଇ କନକ ପ୍ରାଚୀର ସୁଦୃଢ଼ ମଣି ଜଡ଼ିତ ॥୧୭୮(କ)॥
ହରିଙ୍କ ଇଚ୍ଛାରେ ଯେ ଯେଉଁ କଳ୍ପରେ କୌଣପ-ପତି ହୁଅଇ ।
ପ୍ରତାପୀ ଅତୁଳ ବଳୀ ଶୂର ଦଳ ସହିତ ତହିଁ ରହଇ ॥୧୭୮(ଖ)

ପୂର୍ବେ ତହିଁ ଥିଲେ ବହୁ ବୀର ନିଶାଚର । ବଧିଲେ ସେ ସମସ୍ତଙ୍କୁ ସମରେ ଅମର ॥
ଏବେ ନିବାସ କରନ୍ତି ସୁରେଶ ଆଜ୍ଞାରେ । ଯକ୍ଷ ନାୟକର କୋଟି ରକ୍ଷକ ସେଠାରେ ॥୧॥

---

ସମୁଦ୍ର ମଧ୍ୟରେ ତ୍ରିକୂଟ ନାମକ ପର୍ବତ ଉପରେ ବ୍ରହ୍ମାଙ୍କ ଦ୍ୱାରା ନିର୍ମିତ ଗୋଟିଏ ବଡ଼ ଦୁର୍ଗ ଥିଲା । ମହାମାୟାବୀ ଓ ନିପୁଣ କାରିଗର ମୟ ଦାନବ ତାହାକୁ ପୁଣି ଥରେ ସଜେଇ ଦେଲା । ତହିଁରେ ମଣିଜଡ଼ିତ ସୁବର୍ଣ୍ଣର ଅସଂଖ୍ୟ ମହଲ ଥିଲା ॥ ୩ ॥ ପାତାଳ ଲୋକରେ ଥିବା ନାଗକୁଳ-ନିବାସ-ସ୍ଥଳୀ ଭୋଗାବତୀ ପୁରୀ ଏବଂ ଇନ୍ଦ୍ରପୁର (ସ୍ୱର୍ଗଲୋକ)ରେ ଥିବା ଅମରାବତୀ ପୁରୀଠାରୁ ସେହି ଦୁର୍ଗ ଅଧିକ ସୁନ୍ଦର ଓ ବିଚିତ୍ର ଥିଲା । ଜଗତରେ ତାହା ଲଙ୍କା ନାମରେ ପ୍ରସିଦ୍ଧ ॥ ୪ ॥ ଦୋହା :—ତାହାର ଚତୁର୍ଦ୍ଦିଗରେ ସମୁଦ୍ରର ଗଭୀର ଖାଇ ଘେରି ରହିଥାଏ । ସେହି ଦୁର୍ଗର ଚତୁଃପାର୍ଶ୍ୱରେ ମଣିଜଡ଼ିତ ସୁବର୍ଣ୍ଣର ମଜଭୁତ ପ୍ରାଚୀର ଥାଏ । ତାହାର କାରିଗରୀ ଅବର୍ଣ୍ଣନୀୟ ॥ ୧୭୮ (କ) ॥ ଭଗବାନ୍‌ଙ୍କ ପ୍ରେରଣାରେ ଯେଉଁ କଳ୍ପରେ ଯେ ରାକ୍ଷସଗଣଙ୍କ ରାଜା ହୁଏ, ସେହି ରାଜା ଶୂର, ପ୍ରତାପୀ ଓ ଅତୁଳିତ ବଳବାନ୍ ହୁଏ ଏବଂ ଆପଣା ସେନା ସହ ସେ ସେହି ପୁରୀରେ ବାସ କରେ ॥ ୧୭୮ (ଖ) ॥ ଚୌପାଇ :—

ଦସମୁଖ କତହୁଁ ଖବରି ଅସି ପାଈ । ସେନ ସାଜି ଗଢ଼ ଘେରେସି ଜାଈ ॥
ଦେଖି ବିକଟ ଭଟ ବଡ଼ି କଟକାଈ । ଜଚ୍ଛ ଜୀବ ଲୈ ଗଏ ପରାଈ ॥୨॥
ଫିରି ସବ ନଗର ଦସାନନ ଦେଖା । ଗୟଉ ସୋଚ ସୁଖ ଭୟଉ ବିସେଷା ॥
ସୁନ୍ଦର ସହଜ ଅଗମ ଅନୁମାନୀ । କୀନ୍ହି ତହାଁ ରାବନ ରଜଧାନୀ ॥୩॥
ଜେହି ଜସ ଜୋଗ ବାଁଟି ଗୃହ ଦୀନ୍ହେ । ସୁଖୀ ସକଲ ରଜନୀଚର କୀନ୍ହେ ॥
ଏକ ବାର କୁବେର ପର ଧାୱା । ପୁଷ୍ପକ ଜାନ ଜୀତି ଲୈ ଆୱା ॥୪॥

କୌତୁକହୀଁ କୈଲାସ ପୁନି ଲୀନ୍ହେସି ଜାଇ ଉଠାଇ ।
ମନହୁଁ ତୌଲି ନିଜ ବାହୁବଲ ଚଲା ବହୁତ ସୁଖ ପାଇ ॥୧୭୯॥

ସୁଖ ସଂପତି ସୁତ ସେନ ସହାଈ । ଜୟ ପ୍ରତାପ ବଲ ବୁଦ୍ଧି ବଡ଼ାଈ ॥
ନିତ ନୂତନ ସବ ବାଢ଼ତ ଜାଈ । ଜିମି ପ୍ରତି ଲାଭ ଲୋଭ ଅଧିକାଈ ॥୧॥

---

ଦଶମୁଖ କାହୁଁ ଏହି ସମାଚାର ପାଇ । ନିଜ ସେନା ସାଜି ଗଡ ଆକ୍ରମିଲା ଯାଇ ॥
ବିଲୋକି ବିଶାଳ ଯୂଥ ସୈନିକ ଭୀଷଣ । ପ୍ରାଣ ଘେନି ପଳାୟନ କଲେ ଯକ୍ଷଗଣ ॥୨॥
ବୁଲି ବୁଲି ଦଶାନନ ନିରଖନ୍ତେ ପୁର । ଚିନ୍ତା ଦୂର ହେଲା ସୁଖ ଲଭିଲା ପ୍ରଚୁର ॥
ସହଜେ ରମ୍ୟ ଅଗମ୍ୟ ମନେ ଅନୁମାନି । ଦଶମୁଖ ସେହି ସ୍ଥାନେ କଲା ରାଜଧାନୀ ॥୩॥
ଯେପରି ଯେ ଯୋଗ୍ୟ ବାଣ୍ଟି ଦେଇଣ ଭବନ । ସମସ୍ତ ଯାତୁଧାନଙ୍କୁ କଲା ସେ ପ୍ରସନ୍ନ ॥
ଏକଦା କୁବେରପୁରେ ଚଢାଉ କରିଲା । ଜିଣି ପୁଷ୍ପକ ବିମାନ ଘେନି ସେ ଆସିଲା ॥୪॥

କୌତୁକେ ଆବର କୈଳାଶ ଗିରିକୁ ଉଠାଇ ନେଲା ସେ ଯାଇ ।
ମନେ ହୁଏ ତୌଲି ନିଜ ବାହୁବଳ ଗଲା ଅତି ସୁଖ ପାଇ ॥୧୭୯॥

ସୈନ୍ୟ ସହାୟକ ସୁଖ ସମ୍ପତ୍ତି ତନୟ । ପ୍ରତାପ ପୌରୁଷ ତେଜ ବଳ ବୁଦ୍ଧି ଜୟ ॥
ନିତ୍ୟ ନବ ନବ ବୃଦ୍ଧି ହୁଅନ୍ତି ସମସ୍ତ । ପ୍ରତି ଲାଭେ ଲୋଭ ହୁଏ ଅଧିକ ଯେମନ୍ତ ॥୧॥

---

ପୂର୍ବେ ସେଠାରେ ବଡ ବଡ ବୀର ଓ ଯୋଦ୍ଧା ରାକ୍ଷସଗଣ ବାସ କରୁଥିଲେ । ଦେବତା-ମାନେ ସେ ସମସ୍ତଙ୍କୁ ଯୁଦ୍ଧରେ ମାରି ପକାଇଲେ । ଏବେ ଇନ୍ଦ୍ରଙ୍କ ପ୍ରେରଣାରେ ସେଠାରେ ଯକ୍ଷପତି କୁବେରଙ୍କର ଏକକୋଟି ରକ୍ଷକ (ଯକ୍ଷ) ରହୁଥା'ନ୍ତି ॥ ୧ ॥ ରାବଣ କେଉଁଠାରୁ ଏ ଖବର ପାଇଲା ଏବଂ ସେନା ସଜାଇ ଯାଇ ଦୁର୍ଗକୁ ଅବରୋଧ କଲା । ସେହି ବଡ ଭୟଙ୍କର ଯୋଦ୍ଧା ଏବଂ ତାହାର ବିରାଟ ସେନାକୁ ଦେଖି ଯକ୍ଷମାନେ ପ୍ରାଣ ଧରି ପଳାଇଗଲେ ॥ ୨ ॥ ସେତେବେଳେ ରାବଣ ବୁଲି ବୁଲି ସମଗ୍ର ନଗରକୁ ଦେଖିଲା । ତାହାର ସ୍ଥାନ ସମ୍ବନ୍ଧୀୟ ଚିନ୍ତା ଦୂର ହୋଇଗଲା ଏବଂ ସେ ସୁଖ ଅନୁଭବ କଲା । ସେହି ପୁରୀକୁ ସ୍ୱାଭାବିକ ସୁନ୍ଦର ଏବଂ ବହିଃଶତ୍ରୁମାନଙ୍କ ପକ୍ଷରେ ଅଗମ୍ୟ ଅନୁମାନ କରି ରାବଣ ସେହିଠାରେ ତାହାର ରାଜଧାନୀ ସ୍ଥାପନା କଲା ॥ ୩ ॥ ଯୋଗ୍ୟତାନୁସାରେ ଘର ବାଣ୍ଟି ରାବଣ ସବୁ ରାକ୍ଷସଙ୍କୁ ସୁଖୀ କଲା । ଏକଦା ସେ କୁବେରଙ୍କ ଉପରେ ଆକ୍ରମଣ ଚଲାଇଲା ଏବଂ ତାଙ୍କଠାରୁ ପୁଷ୍ପକ ବିମାନ ଜିଣି ଆଣିଲା ॥ ୪ ॥

ଅତିବଲ କୁଂଭକରନ ଅସ ଭ୍ରାତା । ଜେହି କହୁଁ ନହିଁ ପ୍ରତିଭଟ ଜଗ ଜାତା ॥
କରଇ ପାନ ସୋଵଇ ଷଟ ମାସା । ଜାଗତ ହୋଇ ତିହୁଁ ପୁର ତ୍ରାସା ॥୨॥
ଜୌଁ ଦିନ ପ୍ରତି ଅହାର କର ସୋଈ । ବିସ୍ୱ ବେଗି ସବ ଚୌପଟ ହୋଈ ॥
ସମର ଧୀର ନହିଁ ଜାଇ ବଖାନା । ତେହି ସମ ଅମିତ ବୀର ବଲବାନା ॥୩॥
ବାରିଦନାଦ ଜେଠ ସୁତ ତାସୂ । ଭଟ ମହୁଁ ପ୍ରଥମ ଲୀକ ଜଗ ଜାସୂ ॥
ଜେହି ନ ହୋଇ ରନ ସନମୁଖ କୋଈ । ସୁରପୁର ନିତହିଁ ପରାଵନ ହୋଈ ॥୪॥

କୁମୁଖ ଅକଂପନ କୁଲିସରଦ ଧୂମକେତୁ ଅତିକାୟ ।
ଏକ ଏକ ଜଗ ଜୀତି ସକ ଐସେ ସୁଭଟ ନିକାୟ ॥୧୮୦॥

---

କୁମ୍ଭକର୍ଣ୍ଣ ପରି ଭ୍ରାତା ଅତି ବଳବାନ । ବିଶ୍ୱେ ପ୍ରତିଯୋଦ୍ଧା ଜନ୍ମି ନାହିଁ ଯା' ସମାନ ॥
ମଦିରା ପିଇଣ ଶୋଇ ରହଇ ଛ'ମାସେ । ଜାଗ୍ରତ ହୁଅନ୍ତେ କମ୍ପେ ତ୍ରିପୁର ତ୍ରାସେ ॥୨॥
ଯେବେ ପ୍ରତିଦିନ ସେହି ଆହାର କରନ୍ତା । ଶୀଘ୍ର ଚଉପଟ ସାରା ସଂସାର ହୁଅନ୍ତା ॥
ସମରେ ଧୀରତା କହି ନ ହୁଏ ବଖାଣ । ତା ସମ ପୁରେ ଅମିତ ବୀର ବଳବାନ ॥୩॥
ମେଘନାଦ ଅଟେ ଜ୍ୟେଷ୍ଠ ତନୟ ତାହାର । ବୀର ମଧ୍ୟେ ଅଗ୍ରରେଖା ଜଗତେ ଯାହାର ॥
ଯା'ର ସମ୍ମୁଖୀନ କେହି ରଣେ ନ ହୁଅନ୍ତି । ସୁରେ ସ୍ୱର୍ଗ ତେଜି ନିତ୍ୟ ପଳାଇ ଲୁଚନ୍ତି ॥୪॥

ଅକମ୍ପନ ଅତି-କାୟ ଧୂମକେତୁ କୁମୁଖ କୁଳିଶ ଦନ୍ତ ।
ଏକ ଏକ ଜିଣି-ପାରନ୍ତି ଅବନୀ, ଯୋଦ୍ଧା ଅନେକ ଏମନ୍ତ ॥୧୮୦॥

---

ଦୋହା :—ପୁଣି ସେ ଯାଇ ଅବଲୀଳାକ୍ରମେ କୈଳାସ ପର୍ବତକୁ ଉଠାଇ ନେଲା । ସତେ ଯେପରି ଉକ୍ତ କାର୍ଯ୍ୟରେ ସେ ତାହାର ବାହୁ ବଳ ତଉଲି ପକାଇଲା ଏବଂ ବହୁତ ସୁଖ ପାଇ ସେଠାରୁ ଚାଲି ଆସିଲା ॥ ୧୭୯ ॥ ଚୌପାଈ :—ତାହାର ସୁଖ ସମ୍ପତ୍ତି, ପୁତ୍ର, ସେନା, ସହାୟକ, ଜୟ, ପ୍ରତାପ, ବଳ, ବୁଦ୍ଧି ଓ ବଡିମା—ଏ ସବୁ ନିତ୍ୟ ନୂତନ ଭାବରେ ପ୍ରତ୍ୟେକ ଲାଭ ଉପରେ ଲୋଭ ବଢିଲା ପରି ବଢିବାକୁ ଲାଗିଲେ ॥ ୧ ॥ ଅତି ବଳବାନ୍ କୁମ୍ଭକର୍ଣ୍ଣ ସମାନ ଭାଇ ତାହାର ଥିଲା । ତାହାର ପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧା ଜଗତରେ ଜାତ ହୋଇ ନାହାନ୍ତି । ସେ ମଦ ପିଇ ଛଅ ମାସ ଶୋଇ ରହୁଥାଏ । ତାହାର ଜାଗରଣ ମାତ୍ରେ ତିନି ଲୋକରେ ଚହଲ ପଡ଼ିଯାଉଥାଏ ॥ ୨ ॥ ଯଦି ସେ ପ୍ରତିଦିନ ଭୋଜନ କରନ୍ତା, ତେବେ ସମ୍ପୂର୍ଣ୍ଣ ବିଶ୍ୱ ଅତିଶୀଘ୍ର ଖାଲି ହୋଇଯା'ନ୍ତା । ସେ ଏପରି ରଣଧୀର ଥିଲା ଯେ, ତାହା ବର୍ଣ୍ଣନା କରାଯାଇ ପାରିବ ନାହିଁ । ଲଙ୍କାରେ ତାହା ସମାନ ଅସଂଖ୍ୟ ବଳବାନ୍ ବୀର ଥିଲେ ॥ ୩ ॥ ରାବଣର ଜ୍ୟେଷ୍ଠ ପୁତ୍ରର ନାମ ମେଘନାଦ । ଜଗତର ଯୋଦ୍ଧାଗଣଙ୍କ ମଧ୍ୟରେ ତାହାର ନାମ ସର୍ବପ୍ରଥମ । ରଣରେ କେହି ହେଲେ ତାହାର ସମ୍ମୁଖୀନ ହୋଇ ପାରୁ ନ ଥିଲେ । ତାହାର ଭୟରେ ସ୍ୱର୍ଗପୁରରୁ ପ୍ରତିଦିନ ଦେବତାବୃନ୍ଦ ଦୌଡ଼ି ପଳାଉଥା'ନ୍ତି ॥ ୪ ॥ ଦୋହା :—ଏମାନଙ୍କ ଛଡା କୁମୁଖ, ଅକମ୍ପନ, ବଜ୍ରଦନ୍ତ, ଧୂମକେତୁ ଓ ଅତିକାୟ ଆଦି ଅନେକ

କାମରୂପ ଜାନହିଁ ସବ ମାୟା । ସପନେହୁଁ ଜିନ୍ହ କେଁ ଧରମ ନ ଦାୟା ॥
ଦସମୁଖ ବୈଠ ସଭାଁ ଏକ ବାରା । ଦେଖି ଅମିତ ଆପନ ପରିବାରା ॥୧॥
ସୁତ ସମୂହ ଜନ ପରିଜନ ନାତୀ । ଗନୈ କୋ ପାର ନିସାଚର ଜାତୀ ॥
ସେନ ବିଲୋକି ସହଜ ଅଭିମାନୀ । ବୋଲା ବଚନ କ୍ରୋଧ ମଦ ସାନୀ ॥୨॥
ସୁନହୁ ସକଲ ରଜନୀଚର ଜୂଥା । ହମରେ ବୈରୀ ବିବୁଧ ବରୂଥା ॥
ତେ ସନମୁଖ ନହିଁ କରହିଁ ଲରାଈ । ଦେଖି ସବଲ ରିପୁ ଜାହିଁ ପରାଈ ॥୩॥
ତେହ୍ନ କର ମରନ ଏକ ବିଧି ହୋଈ । କହଉଁ ବୁଝାଇ ସୁନହୁ ଅବ ସୋଈ ॥
ଦ୍ୱିଜ ଭୋଜନ ମଖ ହୋମ ସରାଧା । ସବ କୈ ଜାଇ କରହୁ ତୁହ୍ମ ବାଧା ॥୪॥
ଛୁଧା ଛୀନ ବଲହୀନ ସୁର ସହଜେହିଁ ମିଲିହହିଁ ଆଇ ।
ତବ ମାରିହଉଁ କି ଛାଡ଼ିହଉଁ ଭଲୀ ଭାଁତି ଅପନାଇ ॥୧୮୧॥

---

କାମରୂପୀ ସର୍ବେ ମାୟା ଜାଣନ୍ତି ଅନେକ । ସ୍ୱପ୍ନେ ମଧ୍ୟ ନାହିଁ ଦୟା ଧର୍ମର ବିବେକ ॥
ଦଶମୁଖ ସଭା ମଧ୍ୟେ ବସି ଏକ ବାର । ଅବଲୋକିଲା ଅସଂଖ୍ୟ ନିଜ ପରିବାର ॥୧॥
ସୁତ ସମୂହ ସ୍ୱଜନ ପରିଜନ ନାତି । କେ କରିପାରେ ଗଣନ ନିଶାଚର ଜାତି ॥
ସହଜେ ସେ ଅଭିମାନୀ ସୈନ୍ୟଙ୍କୁ ଚାହିଁଲା । ପୁଣି କ୍ରୋଧ ମଦ ଯୁକ୍ତ ବଚନ ବୋଇଲା ॥୨॥
ଶୁଣ ମନ ଦେଇ ସର୍ବେ ବୀର ନିଶାଚର ।'ଆମ୍ଭ ବଇରୀ ଅଟନ୍ତି ବିବୁଧ ନିକର ॥
କରନ୍ତି ନାହିଁ ସେମାନେ ସମ୍ମୁଖ ଲଢାଇ । ଦେଖି ବଳଶାଳୀ ରିପୁ ଯାଆନ୍ତି ପଳାଇ ॥୩॥
ଏକ ଉପାୟରେ ହେବ ତାହାଙ୍କ ମରଣ । କହୁଛି ବୁଝାଇ ଏବେ କର ତା' ଶ୍ରବଣ ॥
ବ୍ରାହ୍ମଣ ଭୋଜନ ହୋମ ଶ୍ରାଦ୍ଧ ଯେ ଆବର । ଏଥି ମଧ୍ୟେ ଯାଇ ତୁମ୍ଭେ ବିଘ୍ନ ଜାତ କର ॥୪॥
ସୁରେ କ୍ଷୁଧା କ୍ଷୀଣ ନିର୍ବଳ ହୋଇଣ ମିଳିବେ ଆସି ସ୍ୱଭାବେ ।
ତେବେ ମୁଁ ମାରିବି ଅଥବା ଛାଡ଼ିବି ବଶ କରି ଭଲ ଭାବେ ॥୧୮୧॥

---

ଏପରି ଯୋଦ୍ଧା ଥିଲେ, ଯେଉଁମାନଙ୍କ ମଧ୍ୟରୁ ଜଣେ ଜଣେ ମଧ୍ୟ ସମଗ୍ର ଜଗତକୁ ଜିଣି ପାରନ୍ତି ॥ ୧୮୦ ॥ ଚୌପାଈ :—ସମସ୍ତ ରାକ୍ଷସ ମନଇଚ୍ଛା ରୂପ ଧାରଣ କରି ପାରୁଥିଲେ ଏବଂ ଆସୁରୀ ମାୟା ଜାଣିଥିଲେ । ଦୟା, ଧର୍ମ ଆଦି କ'ଣ, ସ୍ୱପ୍ନରେ ସୁଦ୍ଧା ଜାଣି ନ ଥିଲେ । ଏକଦା ସଭାରେ ବସି ରାବଣ ତାହାର ଅଗଣିତ ପରିବାରକୁ ଲକ୍ଷ୍ୟ କଲା ॥ ୧ ॥ ପୁତ୍ର-ପୌତ୍ର, କୁଟୁମ୍ବୀ ଓ ସେବକ ପଲପଲ । ଆଉ ସମସ୍ତ ରାକ୍ଷସ-ଜାତିଙ୍କ ଗଣନା କିଏ କରି ପାରିବ ? ଆପଣା ସେନାକୁ ଦେଖି ସ୍ୱଭାବତଃ ଅଭିମାନୀ ରାବଣ କ୍ରୋଧ ଓ ଗର୍ବଭରା ବାଣୀରେ କହିଲା—॥ ୨ ॥ "ହେ ସମସ୍ତ ରାକ୍ଷସଦଳ ! ଶୁଣ, ଦେବତାମାନେ ଆମର ଶତ୍ରୁ, ସେମାନେ ଆଗକୁ ଆସି ଯୁଦ୍ଧ କରନ୍ତି ନାହିଁ, ବଳବାନ୍ ଶତ୍ରୁକୁ ଦେଖି ପଳାଇ ଯାଆନ୍ତି ॥ ୩ ॥ ଗୋଟିଏ ମାତ୍ର ଉପାୟରେ ସେମାନଙ୍କ ମରଣ ହୋଇପାରେ । ମୁଁ ବୁଝାଇ କହୁଛି । ବର୍ତ୍ତମାନ ତାହା ଶୁଣ । ବ୍ରାହ୍ମଣ-ଭୋଜନ, ଯଜ୍ଞ, ହବନ ଓ ଶ୍ରାଦ୍ଧ ଦ୍ୱାରା ସେମାନଙ୍କର ବଳବୃଦ୍ଧି ହୁଏ । ସେମାନଙ୍କ ଏହିସବୁ

ମେଘନାଦ କହୁଁ ପୁନ ହଁକରାୱା । ଘାହ୍ନୀ ସିଖ ବଲୁ ବୟରୁ ବଢ଼ାୱା ॥
ଜେ ସୁର ସମର ଧୀର ବଲବାନା । ଜିହ୍ନ କେଁ ଲରିବେ କର ଅଭିମାନା ॥୧॥
ତିହ୍ନହିଁ ଜୀତି ରନ ଆନେସୁ ବାଁଧୀ । ଉଠି ସୁତ ପିତୁ ଅନୁସାସନ କାଁଧୀ ॥
ଏହି ବିଧି ସବହୀ ଅଜ୍ଞା ଘାହ୍ନୀ । ଆପୁନୁ ଚଲେଉ ଗଦା କର ଲୀହ୍ନୀ ॥୨॥
ଚଲତ ଦସାନନ ଡୋଲତି ଅବନୀ । ଗର୍ଜତ ଗର୍ଭ ସ୍ରବହିଁ ସୁର ରୱନୀ ॥
ରାବନ ଆୱତ ସୁନେଉ ସକୋହା । ଦେବହ୍ନ ତକେ ମେରୁ ଗିରି ଖୋହା ॥୩॥
ଦିଗପାଲହ୍ନ କେ ଲୋକ ସୁହାଏ । ସୂନେ ସକଲ ଦସାନନ ପାଏ ॥
ପୁନ ପୁନ ସିଂଘନାଦ କରି ଭାରୀ । ଦେଇ ଦେବତହ୍ନ ଗାରି ପଗୃରୀ ॥୪॥
ରନ ମଦ ମତ୍ତ ଫିରଇ ଜଗ ଧାୱା । ପ୍ରତିଭଟ ଖୋଜତ କତହୁଁ ନ ପାୱା ॥
ରବି ସସି ପବନ ବରୁନ ଧନଧାରୀ । ଅଗିନି କାଲ ଜମ ସବ ଅଧିକାରୀ ॥୫॥

---

ବାରିଦନାଦ ପୁତ୍ରଙ୍କୁ ପୁଣି ହକାରିଲା । ଉପଦେଶ ଦେଇ ବଳ-ବୈର ବଢାଇଲା ॥
ଯେଉଁ ସୁରେ ସଂଗ୍ରାମରେ ଧୀର ବଳବାନ । ଯାହାଙ୍କର ଯୁଝିବାକୁ ଅଛୁ ଅଭିମାନ ॥୧॥
ସେମାନଙ୍କୁ ବାନ୍ଧିଆଣ ରଣେ କରି ଜୟ । ପିତୃ ଆଜ୍ଞା ଶିରେ ଘେନ ଉଠିଲା ତନୟ ॥
ଏମନ୍ତେ ଅନୁଶାସନ ସମସ୍ତଙ୍କୁ ଦେଇ । ସ୍ୱୟଂ ରଣଯାତ୍ରା କଲା ଗଦା କରେ ନେଇ ॥୨॥
ଚଳନ୍ତେ ଦଶବଦନ କମ୍ପଇ ଧରଣୀ । ଗର୍ଜନ୍ତେ ଗର୍ଭ ସ୍ରବନ୍ତି ଅମର ରମଣୀ ॥
ଶ୍ରବଣ କରି ସକ୍ରୋଧେ ଆସୁଛି ରାବଣ । ମେରୁଗିରି ଗୁହା ଆଶ୍ରା କଲେ ଦେବଗଣ ॥୩॥
ଦିଗପାଳ ସ୍ୱରୂ ପୁରେ ଗମନ କରିଲା । ଶୂନ୍ୟ ସମ୍ପଦାସ୍ତୁ ଦଶକନ୍ଧର ଦେଖିଲା ॥
ବାରମ୍ବାର ଘୋର ସିଂହ ଗର୍ଜନ କରଇ । ଡାକ ଡାକ ଦେବତାଙ୍କୁ ଗାଳି ସେ ଦିଅଇ ॥୪॥
ରଣ-ମଦ-ମତ୍ତ ହୋଇ ଜଗତେ ଭ୍ରମିଲା । ପ୍ରତିଯୋଦ୍ଧା ଖୋଜି ଖୋଜି କାହିଁ ନ ପାଇଲା ॥
ବରୁଣ ମରୁତ ରବି ଶଶୀ ଧନଧାରୀ । ଅଗ୍ନି କାଳଯମ ଆଦି ଯେତେ ଅଧିକାରୀ ॥୫॥

---

କର୍ମରେ ଯାଇ ତୁମେମାନେ ବାଧା ସୃଷ୍ଟି କର ॥ ୪ ॥ ଦୋହା —କ୍ଷୁଧା ଯୋଗୁ କ୍ଷୀଣ ଓ ବଳହୀନ ହୋଇ ଦେବତାମାନେ ସହଜରେ ଆସି ଆମ ସହିତ ମିଳନ (ସନ୍ଧି) କରିବେ । ସେତେବେଳେ ମୁଁ ସେମାନଙ୍କୁ ମାରି ପକାଇବି । ଅଥବା ଭଲ ରୂପେ ମୋର ଅଧୀନ କରି (ସେମାନଙ୍କୁ ପରାଧୀନ କରି) ଛାଡି ଦେବି ।" ॥ ୧୮୧ ॥ ଚୌପାଈ —ତତ୍ପରେ ସେ ମେଘନାଦକୁ ଡକାଇଲା ଏବଂ ତାହାର ବଳ ଓ (ଦେବତାମାନଙ୍କ ପ୍ରତି) ଶତ୍ରୁତା ବଢାଇବାକୁ ଉତ୍ତେଜନା ମୂଳକ ଶିକ୍ଷା ଦେଲା । ପୁଣି କହିଲା, "ହେ ପୁତ୍ର ! ଯେଉଁ ଦେବତାମାନେ ରଣରେ ଧୀର ଓ ବଳବାନ୍ ଏବଂ ଲଢ଼ିବା ବିଷୟରେ ଯେଉଁମାନଙ୍କ ମନରେ ଗର୍ବ ଅଛି, ସେମାନଙ୍କୁ ଯୁଦ୍ଧରେ ଜିଣି ବାନ୍ଧି ଆଣିବୁ ।" ପୁତ୍ର ଉଠି ପିତାଙ୍କ ଆଦେଶ ଶିରୋଧାର୍ଯ୍ୟ କଲା । ଏହିପରି ସେ ସମସ୍ତଙ୍କୁ ଆଦେଶ ଦେଲା ଏବଂ ନିଜେ ହାତରେ ଗଦା ଧରି ଚାଲିଗଲା ॥ ୧-୨ ॥ ରାବଣରେ ଚାଲିବାରେ ପୃଥିବୀ ଦୋହଲିବାକୁ ଲାଗିଲା ଏବଂ ତାହାର ଗର୍ଜନରେ ଦେବରମଣୀ

କିଂନର ସିଦ୍ଧ ମନୁଜ ସୁର ନାଗା । ହଠି ସବ ହୀ କେ ପଂଥନ୍ହିଁ ଲାଗା ॥
ବ୍ରହ୍ମସୃଷ୍ଟି ଜହଁ ଲଗି ତନୁଧାରୀ । ଦସମୁଖ ବସବର୍ତ୍ତୀ ନର ନାରୀ ॥୬॥
ଆୟସୁ କରହିଁ ସକଲ ଭୟଭୀତା । ନୱହିଁ ଆଇ ନିତ ଚରନ ବିନୀତା ॥୭॥

ଭୁଜବଲ ବିସ୍ୱ ବସ୍ୟ କରି ରାଖେସି କୋଉ ନ ସୁତଂତ୍ର ।
ମଂଡଲୀକ ମନି ରାବନ ରାଜ କରଇ ନିଜ ମନ୍ତ୍ର ॥୧୮୨(କ)॥
ଦେବ ଜଚ୍ଛ ଗଂଧର୍ବ ନର କିଂନର ନାଗ କୁମାରି ।
ଜୀତି ବରୀଁ ନିଜ ବାହୁବଲ ବହୁ ସୁନ୍ଦର ବର ନାରି ॥୧୮୨(ଖ)॥

---

ସିଦ୍ଧ ଗନ୍ଧର୍ବ କିନ୍ନର ସୁର ନର ନାଗ । ହଠ ପୂର୍ବକ ରୁନ୍ଧିଲା ସମସ୍ତଙ୍କ ମାର୍ଗ ॥
ବ୍ରହ୍ମସୃଷ୍ଟି ମଧ୍ୟେ ଥିଲେ ଯେତେ ଦେହଧାରୀ । ଦଶମୁଖ ବଶବର୍ତ୍ତୀ ହେଲେ ନରନାରୀ ॥୬॥
ସର୍ବେ ଭୟଭୀତେ ଆଜ୍ଞା ପାଳନ କରନ୍ତ । ସବିନୟେ ଆସି ନିତ୍ୟ ଚରଣେ ନମନ୍ତ ॥୭॥

ଭୁଜବଳେ ବିଶ୍ୱ କଲା ନିଜ ବଶ ନ ରଖି ସ୍ୱତନ୍ତ୍ର କା'ରେ ।
ରାଜନ୍ୟମଣ୍ଡଳୀ ମଧ୍ୟେ ଦଶମୌଳି ରାଜ୍ୟ କରେ ସ୍ୱଇଚ୍ଛାରେ ॥୧୮୨(କ)॥
ଦେବ ଯକ୍ଷ ନର ଗନ୍ଧର୍ବ କିନ୍ନର ନାଗ ନରେଶ କୁମାରୀ ।
ନିଜ ବାହୁବଳେ ଜିଣି ବରିଲା ବହୁ ସୁନ୍ଦରୀ ସୁନାରୀ ॥୧ ୨(ଖ)॥

---

ମାନଙ୍କର ଗର୍ଭପାତ ହେବାକୁ ଲାଗିଲା । ରାବଣକୁ ସକ୍ରୋଧ ଆସୁଥିବାର ଶୁଣି ଦେବତାମାନେ ସୁମେରୁ ପର୍ବତର ଗୁମ୍ଫାରେ ଯାଇ ଆଶ୍ରୟ ନେଲେ ॥ ୩ ॥ ଦିଗପାଳମାନଙ୍କ ସୁନ୍ଦର ପୁର ଶୂନ୍ୟ ଥିବାର ରାବଣ ଦେଖିଲା । ସେ ବାରମ୍ବାର ସିଂହ ଗର୍ଜନ କରି ଦେବତା-ମାନଙ୍କୁ ଆହ୍ୱାନପୂର୍ବକ ଗାଳି ଦେଉଥାଏ ॥ ୪ ॥ ରଣ-ମଦରେ ଉନ୍ମତ୍ତ ହୋଇ ସେ ଆପଣାର ପ୍ରତିଦ୍ୱନ୍ଦ୍ୱୀ ଯୋଦ୍ଧା ଖୋଜି ଖୋଜି ସାରା ସଂସାରରେ ବୁଲିଲା । ମାତ୍ର ଏପରି ଯୋଦ୍ଧା ତାହାକୁ କେଉଁଠି ହେଲେ ମିଳିଲା ନାହିଁ । ସୂର୍ଯ୍ୟ, ଚନ୍ଦ୍ର, ବାୟୁ, ବରୁଣ, କୁବେର, ଅଗ୍ନି, କାଳ ଓ ଯମ ଆଦି ସମସ୍ତ ଅଧିକାରୀ, କିନ୍ନର, ସିଦ୍ଧ, ମନୁଷ୍ୟ, ଦେବତା ଓ ନାଗ—ସମସ୍ତଙ୍କ ପଛରେ ସେ ଜିଦ୍ ଧରି ଲାଗିଲା । କାହାରିକୁ ହେଲେ ଶାନ୍ତିରେ ବସାଇ ଦେଲାନାହିଁ । ବ୍ରହ୍ମାଙ୍କ ସୃଷ୍ଟିରେ ଯେତେ ପର୍ଯ୍ୟନ୍ତ ଶରୀରଧାରୀ ସ୍ତ୍ରୀପୁରୁଷ ଥିଲେ, ସମସ୍ତେ ରାବଣର ଅଧୀନ ହୋଇଗଲେ ॥ ୫-୬ ॥ ଡର ହେତୁ ସମସ୍ତେ ତାହାର ଆଜ୍ଞା ପାଳନ କରୁଥିଲେ ଏବଂ ପ୍ରତିଦିନ ଆସି ବିନମ୍ରତା ସହକାରେ ତାହାର ପଦତଳେ ମୁଣ୍ଡ ନୁଆଁଉଥିଲେ ॥ ୭ ॥ ଦୋହା :—ନିଜ ବାହୁବଳରେ ସେ ସମଗ୍ର ବିଶ୍ୱକୁ ବଶୀଭୂତ କରି ପକାଇଲା । କାହାରିକୁ ହେଲେ ସ୍ୱାଧୀନ ରଖେଇ ଦେଲା ନାହିଁ । ଏହିପରି କରିକି ସାମନ୍ତ ରାଜାମାନଙ୍କର ଶିରୋମଣି (ସାର୍ବଭୌମ ସମ୍ରାଟ୍) ରାବଣ ଆପଣାର ଇଚ୍ଛାନୁସାରେ ରାଜତ୍ୱ କରିବାକୁ ଲାଗିଲା ॥ ୧୮୨ (କ) ॥ ଦେବତା, ଯକ୍ଷ, ଗନ୍ଧର୍ବ, ମନୁଷ୍ୟ, କିନ୍ନର ଓ ନାଗକନ୍ୟା ତଥା ବହୁତ ଅନ୍ୟ ସୁନ୍ଦରୀ ଓ ଶ୍ରେଷ୍ଠା ନାରୀମାନଙ୍କୁ ସେ ତାହାର ବାହୁବଳରେ ଜିଣି ବିବାହ କଲା ॥ ୧୮୨ (ଖ) ॥

ଇନ୍ଦ୍ରଜୀତ ସନ ଜୋ କଛୁ କହେଉ । ସୋ ସବ ଜନୁ ପହିଲେହିଁ କରି ରହେଉ ॥
ପ୍ରଥମହିଁ ଜିନ୍ହ କହୁଁ ଆୟସୁ ଦୀନ୍ହା । ତିନ୍ହ କର ଚରିତ ସୁନହୁ ଜୋ କୀନ୍ହା ॥୧॥
ଦେଖତ ଭୀମରୂପ ସବ ପାପୀ । ନିସିଚର ନିକର ଦେବ ପରିତାପୀ ॥
କରହିଁ ଉପଦ୍ରବ ଅସୁର ନିକାୟା । ନାନା ରୂପ ଧରହିଁ କରି ମାୟା ॥୨॥
ଜେହି ବିଧି ହୋଇ ଧର୍ମ ନିର୍ମୂଲା । ସୋ ସବ କରହିଁ ବେଦ ପ୍ରତିକୂଲା ॥
ଜେହିଁ ଜେହିଁ ଦେସ ଧେନୁ ଦ୍ୱିଜ ପାୱହିଁ । ନଗର ଗାଉଁ ପୁର ଆଗି ଲଗାୱହିଁ ॥୩॥
ସୁଭ ଆଚରନ କତହୁଁ ନହିଁ ହୋଈ । ଦେବ ବିପ୍ର ଗୁରୁ ମାନ ନ କୋଈ ॥
ନହିଁ ହରି ଭଗତି ଜଜ୍ଞ ତପ ଜ୍ଞାନା । ସପନେହୁଁ ସୁନିଅ ନ ବେଦ ପୁରାନା ॥୪॥

ଜପ ଜୋଗ ବିରାଗା ତପ ମଖ ଭାଗା ଶ୍ରବନ ସୁନଇ ଦସସୀସା ।
ଆପୁନ ଉଠି ଧାୱଇ ରହୈ ନ ପାୱଇ ଧରି ସବ ଘାଲଇ ଖୀସା ॥
ଅସ ଭ୍ରଷ୍ଟ ଅଚାରା ଭା ସଂସାରା ଧର୍ମ ସୁନିଅ ନହିଁ କାନା ।
ତେହି ବହୁବିଧି ତ୍ରାସଇ ଦେସ ନିକାସଇ ଜୋ କହ ବେଦ ପୁରାନା ॥

---

ଇନ୍ଦ୍ରଜିତ ସମ୍ମୁଖରେ କହଇ ସେ ଯାହା । ସେ ଯେହ୍ନେ ପ୍ରଥମୁ କରି ରଖିଥାଏ ତାହା ॥
ପ୍ରଥମେ ଯାହାଙ୍କୁ ଦେଇଥିଲା ସେ ଆଦେଶ । ଶୁଣ ସେମାନଙ୍କ କୃତ ଚରିତ ବିଶେଷ ॥୧॥
ଦେଖିବାକୁ ଭୀମ ରୂପ ସର୍ବେ ମହାପାପୀ । ରଜନୀଚର-ନିକର ଦେବ-ପରିତାପୀ ॥
କରନ୍ତି ଉପଦ୍ରବ ସେ ଯାତୁଧାନ ଗଣ । ମାୟାରେ ବିବିଧ ରୂପ କରିଣ ଧାରଣ ॥୨॥
ଯେପରି ଭାବରେ ଧର୍ମ ହୋଇବ ନିର୍ମୂଳ । ସେ ଉପାୟ ଆଚରନ୍ତି ବେଦ ପ୍ରତିକୂଳ ॥
ଯେଉଁ ଯେଉଁ ଦେଶେ ବିପ୍ର ସୁରଭି ପାଆନ୍ତି । ସେ ପୁର ନଗର ଗ୍ରାମେ ଅନଳ ଲଗାନ୍ତି ॥୩॥
ଶୁଭ ଆଚରଣ କାହିଁ ସୁଦ୍ଧା ନ ହୁଅଇ । ଦେବ ଭୂସୁର ଗୁରୁଙ୍କୁ କେହି ନ ମାନଇ ॥
ନାହିଁ ଶ୍ରୀହରିଙ୍କ ଭକ୍ତି ଯଜ୍ଞ ତପ ଜ୍ଞାନ । ସ୍ୱପ୍ନେହେଁ ଶୁଣା ନ ଯାଏ ନିଗମ ପୁରାଣ ॥୪॥

ଯୋଗ ଯଜ୍ଞ ଜପ ତପ ଶୁଣନ୍ତେ ସେ ଲଙ୍କାନୃପ ଅସମ୍ଭାଳେ ସ୍ୱୟଂ ଧାଇଁ ବିଧ୍ୱଂସ କରେ ।
ଏମନ୍ତ ଭ୍ରଷ୍ଟ ଆଚାର ହୋଇଲା ସାରା ସଂସାର ଧର୍ମ ଶୁଣା ନ ଯାଏ କେବେ କର୍ଣ୍ଣରେ ।
ଯେ ପୁରାଣ ବେଦ କହଇ,
ତାକୁ ବହୁ ତ୍ରାସି ଦେଶୁ ତଡି ଦିଅଇ ॥

---

ଚୌପଇ —ମେଘନାଦଙ୍କୁ ସେ ଯାହା କରିବାକୁ କହୁଥାଏ, ତାହା ମେଘନାଦ ସତେ ଯେମିତି ଆଗରୁ କରି ରଖି ଦେଇଥାଏ । ଅର୍ଥାତ୍ ରାବଣର ଆଦେଶ ଦେବାରେ ବରଂ ଟିକିଏ ବିଳମ୍ବ ହୋଇପାରେ, ମାତ୍ର ଆଦେଶ ପାଳନ କରିବାରେ ମେଘନାଦ ଟିକିଏ ସୁଦ୍ଧା ବିଳମ୍ବ କରେ ନାହିଁ । ପ୍ରଥମରୁ ଯେଉଁମାନଙ୍କୁ ରାବଣ ଆଦେଶ ଦେଇଥିଲା, ସେମାନେ ଯାହା ଯାହା କଲେ, ତାହା ଶୁଣ ॥୧॥ ରାକ୍ଷସଗଣ ଦେଖିବାକୁ ଅତି ଭୟାନକ, ସମସ୍ତେ ପାପୀ । ସେମାନେ ଦେବତାମାନଙ୍କୁ ଦୁଃଖକଷ୍ଟ ଦେଉଥିଲେ । ସେମାନେ ନାନା ଉପଦ୍ରବ କରୁଥିଲେ ଏବଂ ମାୟାବଳରେ ଅନେକ ପ୍ରକାର ରୂପ ଧାରଣ କରୁଥିଲେ ॥୨॥ ଧର୍ମ ଯେପରି

ବରନି ନ ଜାଇ ଅନୀତି ଘୋର ନିସାଚର ଜୋ କରହିଁ ।
ହିଂସା ପର ଅତି ପ୍ରୀତି ତିନ୍ହ କେ ପାପହି କଵନି ମିତି ॥୧୮୩॥

## ମାସପାରାୟଣ, ଷଷ୍ଠ ବିଶ୍ରାମ

ବାଢ଼େ ଖଲ ବହୁ ଚୋର ଜୁଆରା । ଜେ ଲଂପଟ ପରଧନ ପରଦାରା ॥
ମାନହିଁ ମାତୁ ପିତା ନହିଁ ଦେବା । ସାଧୁନ୍ହ ସନ କରୱାୱହିଁ ସେବା ॥୧॥
ଜିନ୍ହ କେ ୟହ ଆଚରନ ଭବାନୀ । ତେ ଜାନେହୁ ନିସିଚର ସବ ପ୍ରାନୀ ॥
ଅତିସୟ ଦେଖି ଧର୍ମ କୈ ଗ୍ଲାନୀ । ପରମ ସଭୀତ ଧରା ଅକୁଲାନୀ ॥୨॥

---

ବର୍ଣ୍ଣି ନ ହୁଅଇ ଅନୀତି ଅତ୍ୟନ୍ତ ରାକ୍ଷସେ ଯାହା କରନ୍ତି ।
ତାହାଙ୍କ ପାପରେ ନାହିଁ ଇତିଅନ୍ତ ଅତି ପ୍ରୀତି ହିଂସା ପ୍ରତି ॥୧୮୩॥
ବଢିଲେ ବହୁ ଜୁଆରୀ ଚୋର ଖଲ ଖଣ୍ଡ । ଯେ ପର ରମଣୀ ପର ଧନରେ ଲମ୍ପଟ ॥
ମାନନ୍ତି ନାହିଁ ଦେବତା ଜନନୀ ପିତୃର । ସାଧୁଙ୍କ ହସ୍ତରେ ସେବା କରାନ୍ତି ଆଦର ॥୧॥
ଏମନ୍ତ ଅଟେ ଯାହାଙ୍କ ସ୍ୱଭାବ ଶର୍ବାଣୀ । ନିଶାଚର ସମ ଜାଣ ସେହି ସବୁ ପ୍ରାଣୀ ॥
ଧର୍ମର ଅବଲୋକଣ ହାନି ଅତିଶୟ । ଆକୁଳ ହୋଇଲା ଧରା ଲଭି ମହାଭୟ ॥୨॥

---

ନିର୍ମୂଳ ହୋଇଯାଏ, ସେମାନେ ସେହିସବୁ ବେଦ-ବିରୁଦ୍ଧ କାର୍ଯ୍ୟ କରୁଥିଲେ । ଯେଉଁ ଯେଉଁ ସ୍ଥାନରେ ସେମାନେ ଗୋରୁ ଓ ବ୍ରାହ୍ମଣମାନଙ୍କୁ ଦେଖୁଥିଲେ, ସେହି ସେହି ନଗର, ଗ୍ରାମ ଓ ପୁରରେ ନିଆଁ ଲଗାଇ ଦେଉଥିଲେ ॥ ୩ ॥ ସେମାନଙ୍କ ଭୟରେ କେଉଁଠି ହେଲେ ସୁଦ୍ଧା ଶୁଭକର୍ମ (ବ୍ରାହ୍ମଣ-ଭୋଜନ, ଯଜ୍ଞ, ଶ୍ରାଦ୍ଧ ପ୍ରଭୃତି) ହୋଇପାରୁ ନ ଥିଲା । ଦେବତା, ବ୍ରାହ୍ମଣ ଓ ଗୁରୁଙ୍କୁ କେହି ମାନୁ ନ ଥିଲେ । ହରିଭକ୍ତି ନ ଥିଲା କି ଯଜ୍ଞ, ତପ ଓ ଜ୍ଞାନ ନ ଥିଲା । ବେଦପୁରାଣ ପ୍ରଭୃତି ତ ସ୍ୱପ୍ନରେ ସୁଦ୍ଧା ଶୁଣିବାକୁ ମିଳୁ ନ ଥାଏ ॥ ୪ ॥ ଛନ୍ଦ :—ଜପ, ଯୋଗ, ବୈରାଗ୍ୟ, ତପ ଓ ଯଜ୍ଞରେ ଦେବତା-ମାନଙ୍କ ଅଂଶ ପାଇବା କଥା କେଉଁଠି ରାବଣ କାନରେ ପଡ଼ିଲା ତ ସେହି ମୁହୂର୍ତ୍ତରେ ସେ ନିଜେ ଉଠି ଦୌଡ଼ି ଚାଲିଲା । କିଛି ହେଲେ-ଯଜ୍ଞରେ ରଖେଇ ଦେଉ ନ ଥାଏ । ସବୁ ଧରି ସେ ନଷ୍ଟଭ୍ରଷ୍ଟ କରି ଦେଉଥାଏ । ସଂସାରରେ ଏପରି ଭ୍ରଷ୍ଟ ଆଚରଣ ବ୍ୟାପିଗଲା ଯେ, ଧର୍ମ କଥା ତ କାନରେ ଶୁଣିବାକୁ ମିଳିଲା ନାହିଁ । କେହି ଯଦି ବେଦ ପୁରାଣ କଥା କହୁଥାଏ, ସେ ତାହାକୁ ବହୁତ ପ୍ରକାରରେ ତ୍ରାସ ଦେଉଥାଏ ଏବଂ ଦେଶରୁ ତଡ଼ି ଦେଉଥାଏ । ସୋରଠା :—ରାକ୍ଷସମାନେ ଯେଉଁ ଘୋର ଅତ୍ୟାଚାର କରୁଥିଲେ, ତାହାର ବର୍ଣ୍ଣନା କରାଯାଇ ନ ପାରେ । ହିଂସା ପ୍ରତି ଯାହାର ପ୍ରୀତି, ତାହାର ପାପର ସୀମା କାହିଁ ? ॥୧୮୩॥ ଚୌପାଈ :—ପର-ଧନ-ପର-ସ୍ତ୍ରୀ-ଲମ୍ପଟ, ଦୁଷ୍ଟ, ଚୋର ଓ ଜୁଆଡ଼ିଙ୍କ ସଂଖ୍ୟା ବହୁତ ବଢିଗଲା । ଲୋକମାନେ ମାତା ପିତା ଓ ଦେବତାମାନଙ୍କୁ ମାନୁ ନ ଥିଲେ । ସାଧୁମାନଙ୍କୁ ସେବା କରିବା ଦୂରେ ଥାଉ, ବରଂ

ଗିରି ସରି ସିଂଧୁ ଭାର ନହିଁ ମୋହୀ । ଜସ ମୋହି ଗରୁଅ ଏକ ପରଦ୍ରୋହୀ ॥
ସକଲ ଧର୍ମ ଦେଖଇ ବିପରୀତା । କହି ନ ସକଇ ରାବନ ଭୟଭୀତା ॥୩॥
ଧେନୁ ରୂପ ଧରି ହୃଦୟଁ ବିଚାରୀ । ଗଈ ତହାଁ ଜହଁ ସୁର ମୁନି ଝାରୀ ॥
ନିଜ ସଂତାପ ସୁନାଏସି ରୋଈ । କାହୂ ତେଂ କଛୁ କାଜ ନ ହୋଈ ॥୪॥

ସୁର ମୁନି ଗଂଧର୍ବା ମିଲି କରି ସର୍ବା ଗେ ବିରଂଚି କେ ଲୋକା ।
ସଁଗ ଗୋତନୁଧାରୀ ଭୂମି ବିଚାରୀ ପରମ ବିକଲ ଭୟ ସୋକା ।
ବ୍ରହ୍ମାଁ ସବ ଜାନା ମନ ଅନୁମାନା ମୋର କଛୂ ନ ବସାଈ ।
ଜା କରି ତେଁ ଦାସୀ ସୋ ଅବିନାସୀ ହମରେଉ ତୋର ସହାଈ ॥

---

ଗିରି ନଦୀ ସିନ୍ଧୁ ତେତେ ଭାର ନ ଲାଗନ୍ତି । ଯେତେ ଏକ ପରଦ୍ରୋହୀ ଗୁରୁ ମୋତେ ଅନ୍ତି ॥
ସମସ୍ତ ଧର୍ମଙ୍କୁ ବିପରୀତ ସେ ଦେଖଇ । ଦଶାନନ ଭୟେ କିଛି କହି ନ ପାରଇ ॥୩॥
ତହୁଁ ଧେନୁ ରୂପ ଧରି ବିଚାରି ସ୍ୱହୃଦେ । ଗଲା ତହିଁ ଯହିଁ ଥିଲେ ସୁର ମୁନି ବୃନ୍ଦେ ॥
ବେଦନ କରି ଆପଣା ଦୁଃଖ ଜଣାଇଲା । କାହା ଦ୍ୱାରା କିଛି ମାତ୍ର କାର୍ଯ୍ୟ ନ ହୋଇଲା ॥୪॥

ବିବୁଧ ମୁନି ଗନ୍ଧର୍ବେ ଭୟ ଶୋକାତୁରେ ସର୍ବେ ସଙ୍ଗେ ଧେନୁ ରୂପ ଧରାକୁ ଧରି ॥
ବ୍ରହ୍ମଲୋକକୁ ଗମିଲେ ବ୍ରହ୍ମା ବିଚାରି କହିଲେ ନାହିଁ ଏଥି କିଛି ମାତ୍ର ଚାରା ମୋହର ॥
ଯାହାଙ୍କର ଅଟୁ ତୁ ଦାସୀ,
ତୁମ୍ଭ ଆମ୍ଭ ସହାୟକ ସେ ଅବିନାଶୀ ॥

---

ସେମାନଙ୍କ ଦ୍ୱାରା ଲୋକେ ସେବା କରାଉଥିଲେ ॥ ୧ ॥ (ଶିବ କହନ୍ତି) ହେ ଭବାନି ! ଯେଉଁମାନଙ୍କର ଆଚରଣ ଏହିପରି, ସେହି ସବୁ ପ୍ରାଣୀଙ୍କୁ ରାକ୍ଷସ ବୋଲି ବୁଝ । ଏହିପରି ଭାବରେ ଧର୍ମପ୍ରତି ଲୋକଙ୍କର ଅତିଶୟ ଗ୍ଲାନି (ଅରୁଚି, ଅନାସ୍ଥା) ଦେଖି ପୃଥିବୀ ଅତ୍ୟନ୍ତ ଭୟଭୀତ ଏବଂ ବ୍ୟାକୁଳ ହୋଇପଡ଼ିଲା ॥ ୨ ॥ ସେ ଭାବିବାକୁ ଲାଗିଲା, "ଗୋଟିଏ ପରଦ୍ରୋହୀ (ପରର ଅନିଷ୍ଟକାରୀ)ର ଭାର ମୋତେ ଯେତେ ଗୁରୁ (ଓଜନିଆ) ଜଣାପଡ଼ୁଛି, ପର୍ବତ, ନଦୀ ଓ ସମୁଦ୍ର ସବୁର ବୋଝ ମୋ ପକ୍ଷରେ ସେତେ ଭାରି ଜଣା ପଡୁନାହିଁ ।" ପୃଥିବୀ ସମସ୍ତ ଧର୍ମର ବିପର୍ଯ୍ୟୟ ଦେଖୁଥାଏ । କିନ୍ତୁ ରାବଣ ଦ୍ୱାରା ଭୟଭୀତ ହୋଇ କିଛି କହିପାରୁ ନ ଥାଏ ॥ ୩ ॥ ହୃଦୟରେ ବିଚାରି, ଶେଷରେ ଧରିତ୍ରୀ ଗାଈ ରୂପ ଧରି ସମସ୍ତ ଦେବତା ଓ ମୁନି ଲୁଚିଥିବା ସ୍ଥାନକୁ ଗଲା । ସେ କାନ୍ଦି କାନ୍ଦି ସେମାନଙ୍କୁ ଆପଣାର ଦୁଃଖ ଜଣାଇଲା । କିନ୍ତୁ କାହାରି ଦ୍ୱାରା କିଛି କାମ ହେଲାନାହିଁ ॥ ୪ ॥ ଛନ୍ଦ :— ତତ୍ପରେ ଦେବତା, ମୁନି, ଗନ୍ଧର୍ବ ପ୍ରଭୃତି ସମସ୍ତେ ମିଶି ବ୍ରହ୍ମାଙ୍କ ଲୋକ (ସତ୍ୟଲୋକ)କୁ ଗଲେ । ଭୟ ଓ ଶୋକରେ ବ୍ୟାକୁଳା ବିଚାରୀ ଗାଭୀ-ରୂପଧାରିଣୀ ପୃଥିବୀ ମଧ୍ୟ ସେମାନଙ୍କ ସହିତ ଗଲା । ବ୍ରହ୍ମା ସବୁ ଜାଣିଗଲେ । ସେ ମନେ ମନେ ଅନୁମାନ କଲେ ଯେ, ଏଥିରେ ତାଙ୍କର କିଛିଏ ହେଲେ ବଶ ଚଳିବ ନାହିଁ । ଶେଷରେ ସେ ପୃଥିବୀକୁ କହିଲେ, "ତୁ ଯାହାଙ୍କର ଦାସୀ, ସେହି ଅବିନାଶୀ ଆମର ଓ ତୁମର ଉଭୟଙ୍କ ସହାୟକ ।"

ଧରନି ଧରହି ମନ ଧୀର କହ ବିରଂଚି ହରି ପଦ ସୁମିରୁ ।
ଜାନତ ଜନକୀ ପୀର ପ୍ରଭୁ ଭଂଜିହି ଦାରୁନ ବିପତି ॥୧୮୪॥
ବୈଠେ ସୁର ସବ କରହିଁ ବିଚାରା । କହଁ ପାଇଅ ପ୍ରଭୁ କରିଅ ପୁକାରା ॥
ପୁର ବୈକୁଣ୍ଠ ଜାନ କହ କୋଈ । କୋଉ କହ ପୟନିଧି ବସ ପ୍ରଭୁ ସୋଈ ॥୧॥
ଜାକେ ହୃଦୟଁ ଭଗତି ଜସି ପ୍ରୀତି । ପ୍ରଭୁ ତହଁ ପ୍ରଗଟ ସଦା ତେହିଁ ରୀତି ॥
ତେହିଁ ସମାଜ ଗିରିଜା ମୈଁ ରହେଉଁ । ଅବସର ପାଇ ବଚନ ଏକ କହେଉଁ ॥୨॥
ହରି ବ୍ୟାପକ ସର୍ବତ୍ର ସମାନା । ପ୍ରେମ ତେଁ ପ୍ରଗଟ ହୋହିଁ ମୈ ଜାନା ॥
ଦେସ କାଲ ଦିସି ବିଦିସିହୁ ମାହୀଁ । କହହୁ ସୋ କହାଁ ଜହାଁ ପ୍ରଭୁ ନାହୀଁ ॥୩॥
ଅଗ ଜଗମୟ ସବ ରହିତ ବିରାଗୀ । ପ୍ରେମ ତେଁ ପ୍ରଭୁ ପ୍ରଗଟଇ ଜିମି ଆଗୀ ॥
ମୋର ବଚନ ସବ କେ ମନ ମାନା । ସାଧୁ ସାଧୁ କରି ବ୍ରହ୍ମ ବଖାନା ॥୪॥

---

ହରିପଦ ଧ୍ୟାୟି ବିରଞ୍ଚି ବୋଲନ୍ତି ଧରା ମନେ ଧୈର୍ଯ୍ୟ ଧର ।
ପ୍ରଭୁ ବିଭଞ୍ଜିବେ ଦାରୁଣ ବିପତ୍ତି ଜାଣନ୍ତି ଦୁଃଖ ଜନର ॥୧୮୪॥
ସକଳ ବିବୁଧ ବସି ପଡିଲେ ବିଚାରେ । କାହିଁ ପାଇବା ପ୍ରଭୁଙ୍କୁ କରିବା ଗୁହାରେ ॥
ବୈକୁଣ୍ଠପୁରକୁ କିଏ ଯିବା ପାଇଁ କହେ । କିଏ କହେ କ୍ଷୀରସିନ୍ଧୁ ମଧ୍ୟରେ ସେ ରହେ ॥୧॥
ଯା'ର ହୃଦେ ଥାଏ ଭକ୍ତି ପ୍ରୀତି ଯେଉଁପରି । ପ୍ରଭୁ ତା' ଆଗେ ପ୍ରକଟ ହୁଅନ୍ତି ସେପରି ॥
ଶୁଣ ପାର୍ବତୀ ସେହି ସମାଜେ ମୁଁ ଥିଲି । ସୁଅବସର ଲଭି ଏମନ୍ତ କହିଲି ॥୨॥
ହରି ବ୍ୟାପକ ସର୍ବତ୍ର ସମାନ ଅଟନ୍ତି । ପ୍ରେମ କଲେ ଜାଣଇ ମୁଁ ପ୍ରକଟ ହୁଅନ୍ତି ॥
ଦେଶକାଳ ବସ୍ତୁ ଦିଗ ବିଦିଗ ମଧ୍ୟରେ । କହ ଈଶ୍ୱର ନାହାନ୍ତି କେଉଁ ସ୍ଥାନରେ ॥୩॥
ଚରାଚରମୟ ସର୍ବ ଅତୀତ ବିରକ୍ତ । ପ୍ରେମେ ପ୍ରକଟନ୍ତି ପ୍ରଭୁ ପାବକ ଯେମନ୍ତ ॥
ମୋର ବଚନେ ମାନିଲା ସମସ୍ତଙ୍କ ମନ । ସାଧୁ ସାଧୁ କହି ପ୍ରଶଂସିଲେ ପଦ୍ମାସନ ॥୪॥

---

ସୋରଠା —ବ୍ରହ୍ମା କହିଲେ, "ହେ ଧରଣି ! ମନରେ ଧୈର୍ଯ୍ୟ ଧାରଣ କରି ଶ୍ରୀହରିଙ୍କ ଚରଣ ସ୍ମରଣ କର । ପ୍ରଭୁ ତାଙ୍କ ଦାସମାନଙ୍କ ପୀଡା ଜାଣନ୍ତି । ସେ ତୁମ ଦାରୁଣ ବିପତ୍ତି ନାଶ କରିବେ ।" ॥ ୧୮୪ ॥ ଚୌପାଈ :—ସମସ୍ତ ଦେବତା ବସି ବିଚାର କଲେ—ପ୍ରଭୁଙ୍କୁ କେଉଁଠି ପାଇବା ଯେ, ତାଙ୍କ ଆଗରେ ଗୁହାରି କରିବା ? କେହି ବୈକୁଣ୍ଠପୁରୀ ଯିବା କଥା କହୁଥାଏ ତ କେହି ସେହି ପ୍ରଭୁ କ୍ଷୀରସମୁଦ୍ରରେ ବାସ କରନ୍ତି ବୋଲି କହୁଥାଏ ॥ ୧ ॥ ଯାହାର ହୃଦୟରେ ଭକ୍ତି ଓ ପ୍ରୀତି ଯେମିତି, ପ୍ରଭୁ ତାହା ପକ୍ଷରେ ସଦା ସେହି ରୀତିରେ ଆବିର୍ଭୂତ ହୁଅନ୍ତି । ହେ ପାର୍ବତି ! ସେହି ସମାଜରେ ମୁଁ ମଧ୍ୟ ଥିଲି । ଅବସର ପାଇ ମୁଁ ଗୋଟିଏ କଥା କହିଲି— ॥ ୨ ॥ ମୁଁ ତ ଏହା ଜାଣେ ଯେ, ଭଗବାନ୍ ସବୁ ଜାଗାରେ ସମାନ ରୂପରେ ବ୍ୟାପକ । ପ୍ରେମବଶ ହୋଇ ସେ ଆବିର୍ଭୂତ ହୁଅନ୍ତି । ଦେଶ, କାଳ, ଦିଗ, ବିଦିଗରେ ଏପରି ସ୍ଥାନ କେଉଁଠି, ଯେଉଁଠି ପ୍ରଭୁ ନାହାନ୍ତି ? କୁହ ତ ! ॥୩॥ ସେ ଚରାଚରରେ ସର୍ବତ୍ର

ସୁନି ବିରଂଚି ମନ ହରଷ ତନ ପୁଲକି ନୟନ ବହ ନୀର ।
ଅସ୍ତୁତି କରତ ଜୋରି କର ସାବଧାନ ମତିଧୀର ॥୧୮୫॥

ଜୟ ଜୟ ସୁରନାୟକ ଜନ ସୁଖଦାୟକ ପ୍ରନତପାଲ ଭଗବଂତା ।
ଗୋ ଦ୍ୱିଜ ହିତକାରୀ ଜୟ ଅସୁରାରୀ ସିଂଧୁ ସୁତା ପ୍ରିୟ କଂତା ।
ପାଲନ ସୁର ଧରନୀ ଅଦ୍ଭୁତ କରନୀ ମରମ ନ ଜାନଇ କୋଈ ।
ଜୋ ସହଜ କୃପାଲା ଦୀନଦୟାଲା କରଉ ଅନୁଗ୍ରହ ସୋଈ ॥୧॥
ଜୟ ଜୟ ଅବିନାସୀ ସବ ଘଟ ବାସୀ ବ୍ୟାପକ ପରମାନଂଦା ।
ଅବିଗତ ଗୋତୀତଂ ଚରିତ ପୁନୀତଂ ମାୟା-ରହିତ ମୁକୁଂଦା ।
ଜେହି ଲାଗି ବିରାଗୀ ଅତି ଅନୁରାଗୀ ବିଗତ ମୋହ ମୁନିବୃଂଦା ।
ନିସି ବାସର ଧ୍ୟାୱହିଁ ଗୁନ ଗନ ଗାୱହିଁ ଜୟତି ସଚ୍ଚିଦାନଂଦା ॥୨॥

---

ଶୁଣି ବହୁ ହର୍ଷେ ହେଲେ ପୁଲକିତ ନୟନୁ ବହିଲା ନୀର ।
ସାବଧାନେ ଶୁଣ ଯୋଡ଼ି କଞ୍ଜପାଣି ସ୍ତୁତି କଲେ ମତି ସ୍ଥିର ॥୧୮୫॥

ଜୟ ଜୟ ସୁରନାଥ ସିନ୍ଧୁସୁତା-ପ୍ରିୟକାନ୍ତ ଜୟ ଭଗବାନ ସୁଖଦାୟକ ଜନେ ।
ଦ୍ୱିଜ ଧେନୁ ହିତକାରୀ ଶରଣପାଳ ଦୈତ୍ୟାରି ଅଦ୍ଭୁତ କରମ କର ମହୀ ପାଳନେ ॥
ମର୍ମ ଯା'ର ନ ଜାଣେ କେହି,
ସେ ଦୀନଦୟାଳୁ ଦୟା କରନ୍ତୁ ସେହି ॥୧॥

ଜୟ ଜୟ ଅବିନାଶୀ ସକଳ ଘଟ ନିବାସୀ ମାୟାରହିତ ମୁକୁନ୍ଦ ଗୋତୀତ ଅତି ।
ଯା' ଲାଗି ମୁନି ବୈରାଗୀ ମୋହ-ତ୍ୟାଗୀ ଅନୁରାଗୀ ଧ୍ୟାୟି ନିଶିଦିନ ଗୁଣ ଗାନ କରନ୍ତି ॥
ବ୍ୟାପକ ଯେ ପରମାନନ୍ଦ,
ପବିତ୍ର-ଚରିତ୍ର ଜୟ ସଚ୍ଚିଦାନନ୍ଦ ॥୨॥

---

ପରିବ୍ୟାପ୍ତ । ତଥାପି ସବୁଥିରୁ ରହିତ, ନିର୍ଲିପ୍ତ, ଅନାସକ୍ତ ଓ ବୈରାଗୀ । ଅଗ୍ନି ପରି ପ୍ରେମ ଯୋଗେ ସେ ଆବିର୍ଭୂତ ହୁଅନ୍ତି । ଅଗ୍ନି ଅବ୍ୟକ୍ତ ରୂପରେ ସର୍ବତ୍ର ପରିବ୍ୟାପ୍ତ । କିନ୍ତୁ ଯେଉଁଠାରେ ତାହା ନିମନ୍ତେ ଅରଣି (ଚକମକି ପଥର) ଆଦି ସାମଗ୍ରୀର ଆୟୋଜନ କରାଯାଏ, ସେହିଠାରେ ସେ ଆବିର୍ଭୂତ ହୁଅନ୍ତି । ଏହିପରି ସର୍ବତ୍ର ପରିବ୍ୟାପ୍ତ ଭଗବାନ୍‌ଙ୍କର ମଧ୍ୟ ପ୍ରେମ ଯୋଗେ ଆବିର୍ଭାବ ହୁଏ । ମୋ କଥା ସମସ୍ତଙ୍କ ମନକୁ ପାଇଲା । ବ୍ରହ୍ମାଜୀ 'ସାଧୁ' 'ସାଧୁ' କହି ମୋର ପ୍ରଶଂସା କଲେ ॥୪॥ ଦୋହା —ମୋ କଥା ଶୁଣି ବ୍ରହ୍ମାଙ୍କ ମନରେ ବଡ଼ ଆନନ୍ଦ ଜାତ ହେଲା । ତାଙ୍କ ଶରୀର ପୁଲକିତ ହୋଇଗଲା ଓ ନୟନରୁ ପ୍ରେମାଶ୍ରୁ ବହିବାକୁ ଲାଗିଲା । ତତ୍ପରେ ଧୀରବୁଦ୍ଧି ବ୍ରହ୍ମା ସାବଧାନ ହୋଇ ହାତ ଯୋଡ଼ି ସ୍ତୁତି କରିବାକୁ ଲାଗିଲେ ॥ ୧୮୫ ॥ ଛନ୍ଦ —"ହେ ସୁରନାୟକ, ସେବକ-ସୁଖଦାୟକ, ଶରଣାଗତ-ରକ୍ଷକ ଭଗବାନ୍ ! ଆପଙ୍କର ଜୟ ହେଉ । ହେ

ଜେହି ସୃଷ୍ଟି ଉପାଈ ତ୍ରିବିଧ ବନାଈ ସଂଗ ସହାୟ ନ ଦୂଜା ।
ସୋ କରଉ ଅଘାରୀ ଚିଂତ ହମାରୀ ଜାନିଅ ଭଗତି ନ ପୂଜା ।।
ଜୋ ଭବ ଭୟ ଭଂଜନ ମୁନି ମନ ରଂଜନ ଗଂଜନ ବିପତି ବରୂଥା ।
ମନ ବଚ କ୍ରମ ବାନୀ ଛାଡ଼ି ସୟାନୀ ସରନ ସକଲ ସୁରଜୂଥା ।।୩।।

ସାରଦ ଶ୍ରୁତି ସେଷା ଋଷୟ ଅସେଷା ଜା କହୁଁ କୋଉ ନହିଁ ଜାନା ।
ଜେହି ଦୀନ ପିଆରେ ବେଦ ପୁକାରେ ଦ୍ରବଉ ସୋ ଶ୍ରୀଭଗବାନା ।।
ଭବ ବାରିଧି ମନ୍ଦର ସବ ବିଧି ସୁନ୍ଦର ଗୁନ ମନ୍ଦିର ସୁଖପୁଂଜା ।
ମୁନି ସିଦ୍ଧ ସକଲ ସୁର ପରମ ଭୟାତୁର ନମତ ନାଥ ପଦକଂଜା ।।୪।।

---

ସୃଷ୍ଟି ଯେହୁ ଭିଆଇଲେ ତ୍ରିବିଧ କରି ରଚିଲେ ସଙ୍ଗେ ଅନ୍ୟ ସଙ୍ଗୀ ନାହିଁ ସେ ପାପହର ।
ଯେ ଭବ ଭୟ-ଭଞ୍ଜନ ମୁନି ମାନସରଞ୍ଜନ କରନ୍ତୁ ଦୁଃଖ ଗଞ୍ଜନ ଚିନ୍ତା ଆମ୍ଭର ।
ଜାଣୁ ନାହିଁ ପୂଜା ଭକତି,
ନିଷ୍ଛଳ ଶରଣ ମନ କର୍ମ ଭାରତୀ ।।୩।।

ଶ୍ରୁତି ଶେଷ ସରସ୍ୱତୀ ଯା'ରେ କେହି ନ ଜାଣନ୍ତି ଦୀନପ୍ରିୟ ବୋଲି ବେଦ କରଇ ଗାନ ।
ଭବ-ବାରିଧି-ମନ୍ଦର ଗୁଣ-ମନ୍ଦିର ସୁନ୍ଦର ଦ୍ରବନ୍ତୁ ସେ ସୁଖପୁଞ୍ଜ ଶ୍ରୀ ଭଗବାନ ।
ମୁନି ସିଦ୍ଧ ସକଳ ସୁରେ,
ନମନ୍ତି ପଦ-ପଙ୍କଜେ ଭୟ ଆତୁରେ ।।୪।।

---

ଗୋବ୍ରାହ୍ମଣ-ହିତକାରକ, ଅସୁରଗଣ-ବିନାଶକ, ସିନ୍ଧୁସୁତା ଲକ୍ଷ୍ମୀ-ପ୍ରିୟକାନ୍ତ ! ଆପଣଙ୍କର ଜୟ ହେଉ । ହେ ଦେବତା-ଧରଣୀ-ପାଳକ । ଆପଣଙ୍କର ଲୀଳା ଅଦ୍ଭୁତ । ତାହାର ରହସ୍ୟ କେହି ଜାଣେ ନାହିଁ । ଏହିପରି ସ୍ୱଭାବତଃ କୃପାଳୁ ଓ ଦୀନଦୟାଳୁ ଯେଉଁ ଭଗବାନ୍, ସେହି ଆମ୍ଭମାନଙ୍କ ଉପରେ ଦୟା କରନ୍ତୁ ।। ୧ ।। ହେ ଅବିନାଶି, ସର୍ବହୃଦୟବାସି ଅନ୍ତର୍ଯ୍ୟାମି ! ହେ ସର୍ବବ୍ୟାପକ ପରମ ଆନନ୍ଦସ୍ୱରୂପ ! ହେ ଅଜ୍ଞେୟ, ଇନ୍ଦ୍ରିୟାତୀତ, ପୁନୀତଚରିତ, ମାୟାରହିତ ମୁକୁନ୍ଦ ! ଆପଣଙ୍କର ଜୟ ହେଉ ! ଜୟ ହେଉ !! ଇହଲୋକ ଓ ପରଲୋକର ସମସ୍ତ ଭୋଗରୁ ବିରକ୍ତ ତଥା ସଦା'ମୋହବିମୁକ୍ତ ମୁନିବୃନ୍ଦ ମଧ୍ୟ ଅତ୍ୟନ୍ତ ଅନୁରାଗୀ (ପ୍ରେମୀ) ହୋଇ ଯାହାଙ୍କୁ ଦିନରାତି ଧ୍ୟାନ କରନ୍ତି ଓ ଯାହାଙ୍କ ଗୁଣସମୂହ ଗାନ କରନ୍ତି, ସେହି ସଚ୍ଚିଦାନନ୍ଦଙ୍କର ଜୟ ହେଉ ।।୨।। ଯେ ଅନ୍ୟ କୌଣସି ସାଥୀ ବା ସହାୟକର ବିନା ସାହାଯ୍ୟରେ ଏକାକୀ ହିଁ (ଅଥବା ସ୍ୱୟଂ ଆପଣାକୁ ତ୍ରିଗୁଣରୂପ—ବ୍ରହ୍ମା, ବିଷ୍ଣୁ ଓ ଶିବ ରୂପ କରି, ଅଥବା ଅନ୍ୟ କୌଣସି ଉପାଦାନ-କାରଣ ବିନା ଅର୍ଥାତ୍ ସ୍ୱୟଂ ହିଁ ସୃଷ୍ଟିର ଅଭିନ୍ନନିମିତ୍ତୋପାଦାନ କାରଣ ହୋଇ) ତିନି ପ୍ରକାରର ସୃଷ୍ଟି (ଦେବ, ନର, ତିର୍ଯ୍ୟକ) ଉତ୍ପନ୍ନ କରିଅଛନ୍ତି, ସେହି ପାପନାଶନ ଭଗବାନ୍ ଆମ ଖବର ନିଅନ୍ତୁ । ଆମ୍ଭେମାନେ ଭକ୍ତି କି ପୂଜା କିଛି ଜାଣୁନାହିଁ । ଯେ ଭବଭୟଭଞ୍ଜନ, ମୁନିମନରଞ୍ଜନ ଓ

ଜାନି ସଭୟ ସୁର ଭୂମି ସୁନି ବଚନ ସମେତ ସନେହ ।
ଗଗନଗିରା ଗଂଭୀର ଭଇ ହରନି ସୋକ ସଂଦେହ ॥୧୮୭॥
ଜନି ଡରପହୁ ମୁନି ସିଦ୍ଧ ସୁରେସା । ତୁମ୍ହହିଁ ଲାଗି ଧରିହଉଁ ନର ବେସା ॥
ଅଂସନ୍ହ ସହିତ ମନୁଜ ଅବତାରା । ଲେହଉଁ ଦିନକର ବଂସ ଉଦାରା ॥୧॥
କସ୍ୟପ ଅଦିତି ମହା ତପ କୀହ୍ନା । ତିହ୍ନ କହୁଁ ମୈଂ ପୂରବ ବର ଦୀହ୍ନା ॥
ତେ ଦସରଥ କୌଶଲ୍ୟା ରୂପା । କୋସଲପୁରୀଂ ପ୍ରଗଟ ନର ଭୂପା ॥୨॥
ତିହ୍ନ କେଁ ଗୃହ ଅବତରିହଉଁ ଜାଈ । ରଘୁକୁଲତିଲକ ସୋ ଚାରିଉ ଭାଈ ॥
ନାରଦ ବଚନ ସତ୍ୟ ସବ କରିହଉଁ । ପରମସକ୍ତି ସମେତ ଅବତରିହଉଁ ॥୩॥

---

ଦେବତା ଧରଣୀ ଭୟଭୀତ ଜାଣି ଶୁଣି ବଚନ ସସ୍ନେହ ।
ହୋଇଲା ଗମ୍ଭୀର ଅନ୍ତରୀକ୍ଷ ଗିର ହରଣ ଶୋକ ସନ୍ଦେହ ॥୧୮୭॥
ଡର ନାହିଁ ମୁନି ସିଦ୍ଧି ଅମର ସୁରେଶ । ଧାରଣ କରିବି ତୁମ୍ଭ ଲାଗି ନରବେଶ ॥
ଅଂଶଙ୍କ ସଙ୍ଗତେ ଘେନି ମନୁଷ୍ୟ ଦେହରେ । ଅବତରିବି ଉଦାର ଆଦିତ୍ୟ କୁଳରେ ॥୧॥
କଶ୍ୟପ ଅଦିତି କଲେ ମହାତପ ଜାଣ । ତାହାଙ୍କୁ ପୂର୍ବେ ମୁଁ ବର କରିଛି ପ୍ରଦାନ ॥
ସେ ଉଭୟେ ଦଶରଥ କୌଶଲ୍ୟା ରୂପରେ । ନୃପ ହୋଇ ଜନ୍ମିଛନ୍ତି କୋଶଳ ପୁରରେ ॥୨॥
ତାହାଙ୍କ ଗୃହରେ ଅବତରିବି ମୁଁ ଯାଇ । ରଘୁକୁଳର ତିଳକ ହୋଇ ଚାରି ଭାଇ ॥
ନାରଦ ବଚନ ସତ୍ୟ ସର୍ବଥା କରିବି । ଆଦିଶକ୍ତି ସହ ଅବତାର ମୁଁ ଘେନିବି ॥୩॥

---

ବିପତ୍ତିଭଞ୍ଜନ, ତାଙ୍କରି ଶରଣରେ ଆମ୍ଭେ ସକଳ ଦେବତା ମନ, ବଚନ ଓ କର୍ମରେ ଚତୁରାଇର ଆଶ୍ରୟ ତ୍ୟାଗ କରି ଆସିଅଛୁ ॥ ୩ ॥ ସରସ୍ୱତୀ, ବେଦ, ଶେଷଜୀ ଓ ଅଶେଷ ମୁନିଋଷି କେହି ହେଲେ ଯାହାଙ୍କୁ ଜାଣନ୍ତି ନାହିଁ, ଯାହାଙ୍କର ଦୀନ ପ୍ରିୟ ବୋଲି ବେଦଗଣ ଉଚ୍ଚ ସ୍ୱରରେ ଘୋଷଣା କରନ୍ତି, ସେହି ଭଗବାନ୍ ଆମ୍ଭମାନଙ୍କ ଉପରେ ଦୟା କରନ୍ତୁ । ହେ ସଂସାର-ସାଗର-ମନ୍ଥନକାରି ମନ୍ଦରାଚଳରୂପ ! ସକଳ ପ୍ରକାରେ ସୁନ୍ଦର, ଗୁଣଧାମ ଓ ସୁଖରାଶି ନାଥ ! ଆପଣଙ୍କ ଚରଣ-କମଳରେ ମୁନି, ସିଦ୍ଧ ଓ ସମସ୍ତ ଦେବତା ଭୟବଶତଃ ବ୍ୟାକୁଳ ହୋଇ ନମସ୍କାର କରୁଅଛନ୍ତି ॥ ୪ ॥ ଦୋହା :—ଦେବତାଗଣ ଓ ପୃଥିବୀକୁ ଭୟଭୀତ ଜାଣି ଏବଂ ସେମାନଙ୍କ ସସ୍ନେହ ବଚନ ଶୁଣି ଶୋକ-ସନ୍ଦେହ-ହରଣକାରିଣୀ ଅନ୍ତରୀକ୍ଷବାଣୀ ଶୁଣାଗଲା— ॥ ୧୮୭ ॥ ଚୌପାଈ —"ହେ ସିଦ୍ଧମୁନି-ଦେବଗଣ ! ହେ ସୁରେଶ ! ଡର ନାହିଁ, ତୁମମାନଙ୍କ ପାଇଁ ମୁଁ ମନୁଷ୍ୟ ରୂପ ଧାରଣ କରିବି ଏବଂ ଉଦାର (ପବିତ୍ର) ସୂର୍ଯ୍ୟବଂଶରେ ଯାଇ ଅଂଶ (କଳା) ସହିତ ମନୁଷ୍ୟ ଅବତାର ଗ୍ରହଣ କରିବି ॥ ୧ ॥ କଶ୍ୟପ ଓ ଅଦିତି ବଡ ତପସ୍ୟା କରିଥିଲେ । ମୁଁ ପୂର୍ବରୁ ସେ ଦୁହିଙ୍କୁ ବର ଦେଇ ସାରିଛି । ସେହି ଦୁହେଁ ଦଶରଥ ଓ କୌଶଲ୍ୟା ରୂପରେ ମନୁଷ୍ୟମାନଙ୍କ ରାଜା ହୋଇ ଶ୍ରୀ ଅଯୋଧ୍ୟାପୁରୀରେ ଆବିର୍ଭୂତ ହୋଇଅଛନ୍ତି ॥ ୨ ॥ ତାଙ୍କରି ଘରେ ଯାଇ ମୁଁ ରଘୁକୁଳରେ ଶ୍ରେଷ୍ଠ ଚାରି ଭାଇଙ୍କ ରୂପରେ ଅବତାର ଗ୍ରହଣ

ହରିହଉଁ ସକଲ ଭୂମି ଗରୁଆଈ । ନିର୍ଭୟ ହୋହୁ ଦେବ ସମୁଦାଈ ॥
ଗଗନ ବ୍ରହ୍ମବାଣୀ ସୁନି କାନା । ତୁରତ ଫିରେ ସୁର ହୃଦୟ ଜୁଡ଼ାନା ॥୩॥
ତବ ବ୍ରହ୍ମାଁ ଧରନିହି ସମୁଝାୱା । ଅଭୟ ଭଈ ଭରୋସ ଜିୟଁ ଆୱା ॥୪॥
ନିଜ ଲୋକହି ବିରଂଚି ଗେ ଦେବନ୍ହ ଇହଇ ସିଖାଇ ।
ବାନର ତନୁ ଧରି ଧରି ମହି ହରି ପଦ ସେବହୁ ଜାଇ ॥୧୮୭॥
ଗଏ ଦେବ ସବ ନିଜ ନିଜ ଧାମା । ଭୂମି ସହିତ ମନ କହୁଁ ବିଶ୍ରାମା ॥
ଜୋ କଛୁ ଆୟସୁ ବ୍ରହ୍ମାଁ ଦୀନ୍ହା । ହରଷେ ଦେବ ବିଲଂବ ନ କୀନ୍ହା ॥୧॥
ବନଚର ଦେହ ଧରୀ ଛିତି ମାହୀଁ । ଅତୁଲିତ ବଲ ପ୍ରତାପ ତିନ୍ହ ପାହୀଁ ॥
ଗିରି ତରୁ ନଖ ଆୟୁଧ ସବ ବୀରା । ହରି ମାରଗ ଚିତୱହିଁ ମତିଧୀରା ॥୨॥

ଭୂମିର ଭାର ସମସ୍ତ କରିବି ହରଣ । ନିର୍ଭୟ ହୁଅ ଅମର ସିଦ୍ଧ ମୁନିଗଣ ॥
ଗଗନୁ ଶ୍ରବଣ କରି ବ୍ରହ୍ମବାଣୀ ବର । ବାହୁଡ଼ିଲେ ସୁର ତୃପ୍ତ ହୃଦୟେ ସତ୍ୱର ॥୩॥
ତହୁଁ ବ୍ରହ୍ମା ଧରଣୀକୁ ବୁଝାନ୍ତେ ସାଦରେ । ଅଭୟ ହୋଇ ଭରସା ଘେନିଲେ ମନରେ ॥୪॥
ଆପଣା ପୁରକୁ ଗଲେ ପିତାମହ ଦେବଙ୍କୁ ଏହା ଶିଖାଇ ।
କପି ତନୁ ଧରି ଧରଣୀ ମଧ୍ୟରେ ହରିପଦ ସେବ ଯାଇ ॥୧୮୭॥
ତହୁଁ ନିଜ ନିଜ ଧାମେ ଗଲେ ଦେବବୃନ୍ଦ । ଧରଣୀ ସହିତ ମନେ ଲଭିଣ ଆନନ୍ଦ ॥
ପଙ୍କଜ-ଆସନ ଯେଉଁ ଆଜ୍ଞା ପ୍ରଦାନିଲେ । ବିଳମ୍ବ ନ କରି ଦେବେ ହରଷେ କରିଲେ ॥୧॥
ଭୂମଣ୍ଡଳେ ବନଚର ଦେହ ଧରି ଯାଇ । ଜନ୍ମିଲେ ଅତୁଳନୀୟ ତେଜ ବଳ ପାଇ ॥
ବିଟପ ଶଇଳ ନଖାୟୁଧ ସର୍ବେ ବୀର । ଶ୍ରୀହରିଙ୍କ ମାର୍ଗ ନିରେଖନ୍ତି ମତି ଧୀର ॥୨॥

କରିବି । ନାରଦଙ୍କ ସବୁ କଥା ମୁଁ ସତ୍ୟ ପ୍ରମାଣ କରିବି ଏବଂ ନିଜର ପରାଶକ୍ତି ସହିତ ଅବତାର ଗ୍ରହଣ କରିବି ॥ ୩ ॥ ପୃଥିବୀର ସମସ୍ତ ଭାର ମୁଁ ହରଣ କରିନେବି । ହେ ଦେବବୃନ୍ଦ ! ତୁମେମାନେ ନିର୍ଭୀକ ହୋଇପଡ଼ ।" ଆକାଶରୁ ବ୍ରହ୍ମବାଣୀ କାନରେ ଶୁଣି ଦେବତାମାନେ ଶୀଘ୍ର ଫେରିଗଲେ । ସେମାନଙ୍କ ହୃଦୟ ଶୀତଳ ହୋଇଗଲା ॥୪॥ ସେତିକିବେଳେ ବ୍ରହ୍ମା ପୃଥିବୀକୁ ବୁଝାଇଲେ । ସେ ମଧ୍ୟ ନିର୍ଭୀକ ହେଲା ଏବଂ ତାହାର ମନରେ ଭରସା ଆସିଗଲା ॥ ୫ ॥ ଦୋହା '—ବାନରଶରୀର ଧାରଣ ପୂର୍ବକ ତୁମେମାନେ ଯାଇ ଭଗବାନଙ୍କର ଚରଣସେବା କର—" ଦେବତାମାନଙ୍କୁ ଏହି ଶିକ୍ଷା ଦାନ କରି ବ୍ରହ୍ମା ଆପଣା ଲୋକକୁ ଚାଲିଗଲେ ॥ ୧୮୭ ॥ ଚୌପାଈ :— ସବୁ ଦେବତା ଆପଣା ଆପଣା ଲୋକକୁ ଗଲେ । ପୃଥିବୀ ସଙ୍ଗେ ଅନ୍ୟ ସମସ୍ତଙ୍କର ମନକୁ ଶାନ୍ତି ମିଳିଲା । ବ୍ରହ୍ମା ଯାହା କିଛି ଆଜ୍ଞା ଦେଲେ, ତଦ୍ଦ୍ୱାରା ଦେବତାମାନେ ଅତି ପ୍ରସନ୍ନ ହେଲେ ଏବଂ ସେମାନେ ତଦ୍ରୂପ କରିବାରେ ବିଳମ୍ବ କଲେନାହିଁ ॥ ୧ ॥ ପୃଥିବୀ ଉପରେ ସେମାନେ ବାନର ଦେହ ଧାରଣ କରି ଜନ୍ମଲାଭ କଲେ । ସେମାନଙ୍କ-ଠାରେ ଅପାର ବଳ ଓ ପ୍ରତାପ ଥିଲା । ସମସ୍ତେ ଶୂରବୀର ଥିଲେ । ପର୍ବତ, ବୃକ୍ଷ ଓ

ଗିରି କାନନ ଜହଁ ତହଁ ଭରି ପୂରି । ରହେ ନିଜ ନିଜ ଅନୀକ ରୁଚି ରୂରି ॥
ୟହ ସବ ରୁଚିର ଚରିତ ମୈଂ ଭାଷା । ଅବ ସୋ ସୁନହୁ ଜୋ ବୀଚହିଁ ରାଖା ॥୩॥
ଅବଧପୁରୀଂ ରଘୁକୁଲମନି ରାଉ । ବେଦ ବିଦିତ ତେହି ଦସରଥ ନାଉଁ ॥
ଧରମ ଧୁରଂଧର ଗୁନନିଧି ଜ୍ଞାନୀ । ହୃଦୟଁ ଭଗତି ମତି ସାରଁଗପାନୀ ॥୪॥

କୌସଲ୍ୟାଦି ନାରି ପ୍ରିୟ ସବ ଆଚରନ ପୁନୀତ ।
ପତି ଅନୁକୂଲ ପ୍ରେମ ଦୃଢ଼ ହରି ପଦ କମଲ ବିନୀତ ॥୧୮୮॥

ଏକ ବାର ଭୂପତି ମନ ମାହୀଂ । ଭୈ ଗଲାନି ମୋରେଂ ସୁତ ନାହୀଂ ॥
ଗୁରୁ ଗୃହ ଗୟଉ ତୁରତ ମହିପାଲା । ଚରନ ଲାଗି କରି ବିନୟ ବିସାଲା ॥୧॥
ନିଜ ଦୁଖ ସୁଖ ସବ ଗୁରହି ସୁନାୟଉ । କହି ବସିଷ୍ଠ ବହୁ ବିଧି ସମୁଝାୟଉ ॥
ଧରହୁ ଧୀର ହୋଇହହିଁ ସୁତ ଚାରୀ । ତ୍ରିଭୁବନ ବିଦିତ ଭଗତ ଭୟ ହାରୀ ॥୨॥

---

ନାନା ସ୍ଥାନେ ପୂର୍ଣ୍ଣ ହୋଇ ଗିରି କାନନରେ । ନିଜ ନିଜ ସେନା ସହ ରହିଲେ ସୁଖରେ ॥
ଏ ସମସ୍ତ ମନୋହର କଥା ମୁଁ ଭାଷିଲି । ଏବେ ତାହା ଶୁଣ ଯାହା ମଧ୍ୟେ ଛାଡ଼ିଥିଲି ॥୩॥
ଅଯୋଧ୍ୟା ପୁରରେ ରଘୁକୁଳ ନୃପବର । ଶ୍ରୁତି ଖ୍ୟାତ ଦଶରଥ ନାମ ତାହାଙ୍କର ॥
ଧର୍ମ ଧୁରନ୍ଧର ଜ୍ଞାନୀ ଗୁଣନିଧି ଅତି । ହୃଦେ ଭକ୍ତି ଶାର୍ଙ୍ଗପାଣି ନିବେଶିତ ମତି ॥୪॥

କୌଶଲ୍ୟାଦି ନୃପପ୍ରିୟା ସବେ ନିଜ ନିଜ ଆଚାରେ ପୁନୀତା ।
ପତି ଅନୁକୂଳା ଦୃଢ଼ ପ୍ରେମମୂଳା ହରି ଚରଣେ ବିନୀତା ॥୧୮୮॥

ଏକଦା ଭୂପତି ମୋର ପୁତ୍ର ନାହିଁ ଜାଣି । ନିଜ ମନ ମଧ୍ୟେ ଭାରି ଲଭି କଲେ ଗ୍ଲାନି ॥
ଗୁରୁଙ୍କ ଗୃହେ ସତ୍ୱର ଯାଇଣ ନରେଶ । ଚରଣେ ପ୍ରଣମି କଲେ ବିନୟ ବିଶେଷ ॥୧॥
ନିଜ ଦୁଃଖ ସୁଖ ଗୁରୁ ଆଗେ ଶୁଣାଇଲେ । ବହୁ ପ୍ରକାରେ ବଶିଷ୍ଠ ବୁଝାଇ କହିଲେ ॥
ଧୈର୍ଯ୍ୟ ହୃଦେ ଧର ନୃପ ହେବ ସୁତ ଚାରି । ତ୍ରିଭୁବନ ବିଦିତ ଯେ ଭକ୍ତ-ଭୟହାରୀ ॥୨॥

---

ନଖ ସେମାନଙ୍କର ଅସ୍ତ୍ର ଥିଲା । ସେହି ଧୀରମତି ବାନରରୂପଧାରୀ ଦେବତାମାନେ ଭଗବାନ୍‌ଙ୍କ ଆଗମନ-ମାର୍ଗ ପ୍ରତୀକ୍ଷାରେ ରହିଲେ ॥ ୨ ॥ ସେହି ବାନରଗଣ ପର୍ବତ ଓ ଜଙ୍ଗଲମାନଙ୍କରେ ଯେଉଁଠି ଇଚ୍ଛା ସେଇଠି ସେମାନଙ୍କର ସୁନ୍ଦର ସେନା ଗଢ଼ି ପରିବ୍ୟାପ୍ତ ହୋଇଗଲେ । ଏହି ସବୁ ସୁନ୍ଦର ପ୍ରସଙ୍ଗ ମୁଁ କହିଲି । ମଝିରେ ଯେଉଁ ପ୍ରସଙ୍ଗ ମୁଁ ଛାଡ଼ି ଦେଇଥିଲି, ବର୍ତ୍ତମାନ ତାହା କହୁଛି, ଶୁଣ ॥ ୩ ॥ ଅଯୋଧ୍ୟାପୁରୀରେ ରଘୁକୁଳଶିରୋମଣି ଦଶରଥ ନାମକ ରାଜାଙ୍କର ଆବିର୍ଭାବ ହେଲା । ତାହାଙ୍କର ନାମ ବେଦମାନଙ୍କରେ ବିଖ୍ୟାତ । ସେ ଧର୍ମ-ଧୁରନ୍ଧର, ଗୁଣନିଧି ଓ ଜ୍ଞାନୀ ଥିଲେ । ସାରଙ୍ଗଧର ଭଗବାନ୍‌ଙ୍କ ପ୍ରତି ତାଙ୍କ ହୃଦୟରେ ଅପାର ଭକ୍ତି ଥିଲା । ମନ ସର୍ବଦା ତାଙ୍କଠାରେ ଲାଗି ରହିଥାଏ ॥ ୪ ॥ ଦୋହା :—କୌଶଲ୍ୟା ପ୍ରଭୃତି ତାଙ୍କର ପ୍ରିୟତମା ରାଣୀମାନେ ସମସ୍ତେ ସ୍ୱ ସ୍ୱ ଆଚରଣରେ ଅତି ପବିତ୍ରା ଥିଲେ । ସେମାନେ ଅତି ବିନୀତା । ପତିଙ୍କ ମନ ରଖି ସେମାନେ ଚଳୁଥିଲେ । ଶ୍ରୀହରିଙ୍କ ଚରଣ-କମଳରେ

ସୃଂଗୀ ରିଷିହି ବସିଷ୍ଠ ବୋଲାୱା । ପୁତ୍ରକାମ ସୁଭ ଜଗ୍ୟ କରାୱା ॥
ଭଗତି ସହିତ ମୁନି ଆହୁତି ଦୀନ୍ହେଁ । ପ୍ରଗଟେ ଅଗିନି ଚରୂ କର ଲୀନ୍ହେଁ ॥୩॥
ଜୋ ବସିଷ୍ଠ କଛୁ ହୃଦୟଁ ବିଚାରା । ସକଲ କାଜୁ ଭା ସିଦ୍ଧ ତୁମ୍ହାରା ॥
ୟହ ହବି ବାଁଟି ଦେହୁ ନୃପ ଜାଈ । ଜଥା ଜୋଗ ଜେହି ଭାଗ ବନାଈ ॥୪॥

ତବ ଅଦୃସ୍ୟ ଭଏ ପାବକ ସକଲ ସଭହି ସମୁଝାଇ ।
ପରମାନନ୍ଦ ମଗନ ନୃପ ହରଷ ନ ହୃଦୟଁ ସମାଇ ॥୧୮୯॥

ତବହିଁ ରାୟଁ ପ୍ରିୟ ନାରି ବୋଲାଈଁ । କୌଶଲ୍ୟାଦି ତହାଁ ଚଲି ଆଈଁ ॥
ଅର୍ଧ ଭାଗ କୌସଲ୍ୟହି ଦୀନ୍ହା । ଉଭୟ ଭାଗ ଆଧେ କର କୀନ୍ହା ॥୧॥

---

ଶୃଙ୍ଗୀ ଋଷିଙ୍କୁ ବଶିଷ୍ଠ ତହୁଁ ଅଣାଇଲେ । ପୁତ୍ରକାମ ସୁମଙ୍ଗଳ ଯଜ୍ଞ କରାଇଲେ ॥
ଭକ୍ତି ସହ ମୁନିବର ଆହୁତି ଦିଅନ୍ତେ । ପ୍ରକଟ ହେଲେ ଅନଳ ଚରୁ ଘେନି ହସ୍ତେ ॥୩॥
ଯାହା କିଛି ବିଚାରିଲେ ହୃଦୟେ ବଶିଷ୍ଠ । ସିଦ୍ଧ ହୋଇଲା ତୁମ୍ଭର ସମସ୍ତ ଅଭୀଷ୍ଟ ॥
ଏହି ହବି ନୃପବର ବିଭକ୍ତ କରାଇ । ଯଥାଯୋଗ୍ୟ ମହିଷୀଙ୍କୁ ବାଣ୍ଟି ଦିଅ ଯାଇ ॥୪॥

ତହୁଁ ଅନ୍ତର୍ଦ୍ଧାନ ହେଲେ ହୁତାଶନ ବୁଝାଇଣ ସଭାଜନେ ।
ପରମାନନ୍ଦରେ ନିମଗ୍ନ ନରେନ୍ଦ୍ର ହର୍ଷ ନ ସମ୍ଭାଏ ମନେ ॥୧୮୯॥

ତତ୍‌କ୍ଷଣେ ପ୍ରିୟନାରୀଙ୍କୁ ଡକାନ୍ତେ ନରେଶ । କୌଶଲ୍ୟାଦି ରାଣୀ ତହିଁ ହୋଇଲେ ପ୍ରବେଶ ॥
ଅର୍ଦ୍ଧ ଭାଗ କୌଶଲ୍ୟାଙ୍କୁ ପ୍ରଦାନ କରିଲେ । ଅବଶିଷ୍ଟ ଅର୍ଦ୍ଧେକରୁ ଅର୍ଦ୍ଧେକ ଘେନିଲେ ॥୧॥

---

ସେମାନଙ୍କର ଦୃଢ଼ ପ୍ରେମ ଥିଲା ॥ ୧୮୮ ॥ ଚୌପାଈ :—ଏକଦା "ମୋର ପୁତ୍ର ନାହିଁ" ବୋଲି ରାଜାଙ୍କ ମନରେ ବଡ଼ ଗ୍ଲାନି ହେଲା । ରାଜା ଅତିଶୀଘ୍ର ଗୁରୁଙ୍କ ଗୃହକୁ ଗଲେ ଏବଂ ତାଙ୍କ ଚରଣରେ ପ୍ରଣାମ କରି ବହୁତ ଅନୁନୟବିନୟ କଲେ ॥ ୧ ॥ ରାଜା ତାଙ୍କର ସବୁ ସୁଖଦୁଃଖ ଗୁରୁଙ୍କୁ ଶୁଣାଇଲେ । ଗୁରୁ ବଶିଷ୍ଠ ତାହାଙ୍କୁ ବହୁତ ପ୍ରକାରେ ବୁଝାଇଲେ ଏବଂ କହିଲେ, "ଧୈର୍ଯ୍ୟ ଧର । ତୁମର ଚାରିଗୋଟି ପୁତ୍ର ଜାତ ହେବେ । ସେମାନେ ତିନଲୋକରେ ପ୍ରସିଦ୍ଧ ହେବେ ଏବଂ ଭକ୍ତଗଣଙ୍କ ଭୟକୁ ହରଣ କରିବେ ।" ॥ ୨ ॥ ବଶିଷ୍ଠ ଶୃଙ୍ଗୀ ଋଷି (ଋଷ୍ୟଶୃଙ୍ଗ)ଙ୍କୁ ଡକାଇଲେ ଏବଂ ତାଙ୍କ ଦ୍ୱାରା ଶୁଭ ପୁତ୍ରେଷ୍ଟି ଯଜ୍ଞ କରାଇଲେ, ଭକ୍ତି ଭାବରେ ମୁନି ଆହୁତି ଦେବାରୁ ଅଗ୍ନିଦେବ ହାତରେ ଚରୁ ଧରି ଆବିର୍ଭୂତ ହେଲେ ॥ ୩ ॥ ସେ ଦଶରଥଙ୍କୁ କହିଲେ, "ବଶିଷ୍ଠ ହୃଦୟରେ ଯାହା କିଛି ବିଚାର କରିଥିଲେ, ତୁମ୍ଭର ସେ ସବୁ କାମ ସିଦ୍ଧ ହୋଇଗଲା । ହେ ରାଜନ୍! ଏବେ ତୁମେ ଯାଇ ଏହି ହବିଷ୍ୟାନ୍ନକୁ ଯାହାକୁ ଯେମିତି ଯୋଗ୍ୟ, ସେମିତି ଭାଗ କରି ବାଣ୍ଟିଦିଅ ॥ ୪ ॥ ଦୋହା :—ତଦନନ୍ତର ଅଗ୍ନିଦେବ ସମସ୍ତ ସଭାକୁ ବୁଝାଇ ଅନ୍ତର୍ହିତ ହୋଇଗଲେ । ରାଜା ପରମାନନ୍ଦରେ ମଗ୍ନ ହୋଇଗଲେ । ତାଙ୍କ ହୃଦୟରେ ହର୍ଷର ସୀମା ରହିଲା ନାହିଁ ॥ ୧୮୯ ॥ ଚୌପାଈ :—ସେତେବେଳେ ରାଜା ତାଙ୍କ ପ୍ରିୟପତ୍ନୀମାନଙ୍କୁ ଡାକିଲେ । କୌଶଲ୍ୟା ପ୍ରଭୃତି ସମସ୍ତ ରାଣୀ ସେଠାକୁ

କୈକେଈ କହଁ ନୃପ ସୋ ଦୟଉ । ରହ୍ୟୋ ସୋ ଉଭୟ ଭାଗ ପୁନି ଭୟଉ ॥
କୌସଲ୍ୟା କୈକେଈ ହାଥ ଧରି । ଦୀହ୍ନ ସୁମିତ୍ରହି ମନ ପ୍ରସନ୍ନ କରି ॥୨॥
ଏହି ବିଧି ଗର୍ଭ ସହିତ ସବ ନାରୀ । ଭଈଁ ହୃଦୟଁ ହରଷିତ ସୁଖ ଭାରୀ ॥
ଜା ଦିନ ତେଁ ହରି ଗର୍ଭହିଁ ଆଏ । ସକଲ ଲୋକ ସୁଖ ସଂପତି ଛାଏ ॥୩॥
ମଂଦିର ମହଁ ସବ ରାଜହି ରାନୀ । ସୋଭା ସୀଲ ତେଜ କୀ ଖାନୀ ॥
ସୁଖ ଜୁତ କଛୁକ କାଲ ଚଲି ଗୟଉ । ଜେହି ପ୍ରଭୁ ପ୍ରଗଟ ସୋ ଅବସର ଭୟଉ ॥୪॥

ଜୋଗ ଲଗନ ଗ୍ରହ ବାର ତିଥି ସକଲ ଭଏ ଅନୁକୂଲ ।
ଚର ଅରୁ ଅଚର ହର୍ଷଜୁତ ରାମଜନମ ସୁଖମୂଲ ॥୧୯୦॥

ନୌମୀ ତିଥି ମଧୁ ମାସ ପୁନୀତା । ସୁକଲ ପଚ୍ଛ ଅଭିଜିତ ହରିପ୍ରୀତା ॥
ମଧ୍ୟଦିବସ ଅତି ସୀତ ନ ଘାମା । ପାବନ କାଲ ଲୋକ ବିଶ୍ରାମା ॥୧॥

---

ଦେଲେ ନରପତି ମଣି କୈକେୟୀଙ୍କୁ ତାହା । ପୁଣି ବେନି ଭାଗ ହେଲା ବାକି ଥିଲା ଯାହା ॥
କୌଶଲ୍ୟା କୈକେୟୀଙ୍କର ହସ୍ତେ ଧରାଇଣ । ଦେଲେ ସୁମିତ୍ରାଙ୍କୁ ମନ ପ୍ରସନ୍ନ କରିଣ ॥୨॥
ଏପରି ହୋଇଲେ ରାଣୀମାନେ ଗର୍ଭବତୀ । ହୃଦୟେ ହରଷ ସୁଖ ଲାଭ କଲେ ଅତି ॥
ଯେ ଦିନୁ ହରି ପ୍ରବେଶ କରିଲେ ଗର୍ଭରେ । ସକଳ ଲୋକ ପୂରିଲେ ସୁଖ ସମ୍ପଦରେ ॥୩॥
ମହଲ ମଧ୍ୟେ ରାଜନ୍ତି ମହିଷୀ ନିକର । ତେଜ ସୌନ୍ଦର୍ଯ୍ୟ ଶୀଳାଦି ସଦ୍‌ଗୁଣ ଆକର ॥
ସୁଖ ସହି କିଛି ଦିନ ହୁଅନ୍ତେ ଅତୀତ । ପ୍ରଭୁଙ୍କ ପ୍ରକଟ କାଳ ହେଲା ଉପସ୍ଥିତ ॥୪॥

ଯୋଗ ଲଗ୍ନ ଗ୍ରହ ବାର ତିଥି ଆଦି ସର୍ବେ ହେଲେ ଅନୁକୂଳ ।
ସ୍ଥାବର ଜଙ୍ଗମ ହରଷେ ନିମଗ୍ନ ରାମଜନ୍ମ ସୁଖ ମୂଳ ॥୧୯୦॥

ନବମୀ ତିଥି ପବିତ୍ର ମଧୁମାସ ବର । ଶୁକ୍ଳପକ୍ଷ ଅଭିଜିତ ହରି ପ୍ରୀତି-କର ॥
ମଧ୍ୟାହ୍ନ ଶୀତ ବା ଗ୍ରୀଷ୍ମ ନୁହଇ ବିଶେଷ । ଲୋକ ବିଶ୍ରାମ ପାବନ ସମୟ ପ୍ରବେଶ ॥୧॥

---

ଚାଲି ଆସିଲେ । ରାଜା ହବିଷ୍ୟାନ୍ନର ଅଧା ଭାଗ ଏକା କୌଶଲ୍ୟାଙ୍କୁ ଦେଲେ ଏବଂ ବାକି ଅଧା ଭାଗକୁ ଦୁଇ ଭାଗ କଲେ ॥ ୧ ॥ ତହିଁରୁ ଗୋଟିଏ ଭାଗ ରାଜା କୈକେୟୀଙ୍କୁ ଦେଲେ । ଅବଶିଷ୍ଟ ଭାଗଟି ପୁଣି ଦୁଇଭାଗ ହେଲା । ସେହି ଦୁଇଭାଗକୁ ରାଜା କୌଶଲ୍ୟା ଓ କୈକେୟୀଙ୍କ ହାତରେ ଧରାଇ ସେମାନଙ୍କ ମନକୁ ପ୍ରସନ୍ନ କରି ସୁମିତ୍ରାଙ୍କୁ ଦେଲେ ॥୨॥ କାଳକ୍ରମେ ସମସ୍ତ ସ୍ତ୍ରୀ ଗର୍ଭବତୀ ହେଲେ । ସେମାନେ ହୃଦୟରେ ଅତି ଆନନ୍ଦିତ ହେଲେ । ସେମାନଙ୍କୁ ବଡ ସୁଖ ମିଳିଲା । ଯେଉଁ ଦିନଠାରୁ ଶ୍ରୀହରି ଲୀଳାକ୍ରମେ ଗର୍ଭରେ କହିଲେ, ସେହି ଦିନଠାରୁ ସମସ୍ତ ଲୋକରେ ସୁଖ ଓ ସମ୍ପତ୍ତି ଭରିଗଲା ॥ ୩ ॥ ଶୋଭା, ଶୀଳ ଓ ତେଜର ଖଣି ହୋଇ ସମସ୍ତ ରାଣୀ ରାଜମହଲରେ ସୁଶୋଭିତ ହେଲେ । ଏହିପରି ଭାବରେ କିଛି ସମୟ ସୁଖରେ ଅତିବାହିତ ହୋଇଗଲା ଏବଂ କ୍ରମେ ପ୍ରଭୁଙ୍କ ଆବିର୍ଭାବ ସମୟ ଆସି ଉପସ୍ଥିତ ହେଲା ॥ ୪ ॥ ଦୋହା :—ଯୋଗ, ଲଗ୍ନ, ଗ୍ରହ, ବାର ଓ ତିଥି ସବୁ ଅନୁକୂଳ ହୋଇଗଲା । ଜଡ଼ ଓ ଚେତନ, ସମସ୍ତେ ଆନନ୍ଦରେ

ସୀତଲ ମନ୍ଦ ସୁରଭି ବହ ବାଉ । ହରଷିତ ସୁର ସନ୍ତନ ମନ ଚାଉ ॥
ବନ କୁସୁମିତ ଗିରିଗନ ମନିଆରା । ସ୍ରବହିଁ ସକଲ ସରିତାଽମୃତଧାରା ॥୨॥
ସୋ ଅବସର ବିରଂଚି ଜବ ଜାନା । ଚଲେ ସକଲ ସୁର ସାଜି ବିମାନା ॥
ଗଗନ ବିମଲ ସଂକୁଲ ସୁର ଜୁଥା । ଗାୱହିଁ ଗୁନ ଗନ୍ଧର୍ବ ବରୂଥା ॥୩॥
ବରଷହିଁ ସୁମନ ସୁଅଂଜୁଲି ସାଜୀ । ଗହଗହି ଗଗନ ଦୁଂଦୁଭି ବାଜୀ ॥
ଅସ୍ତୁତି କରହିଁ ନାଗ ମୁନି ଦେବା । ବହୁବିଧି ଲାୱହିଁ ନିଜ ନିଜ ସେବା ॥୪॥
ସୁର ସମୂହ ବିନତୀ କରି ପହୁଁଚେ ନିଜ ନିଜ ଧାମ ॥
ଜଗନିବାସ ପ୍ରଭୁ ପ୍ରଗଟେ ଅଖିଲ ଲୋକ ବିଶ୍ରାମ ॥୧୯୧॥

---

ଶୀତଳ ମନ୍ଦ ସୁଗନ୍ଧ ବହଇ ପବନ । ସୁରେ ହରଷିତ ସନ୍ଥ ଉତ୍ସାହିତ ମନ ॥
ଗିରି ଗଣ ମଣିଯୁକ୍ତ ବନ କୁସୁମିତ । ସ୍ରବନ୍ତି ଅମୃତଧାରା ସକଳ ସରିତ ॥୨॥
ସେହି ଅବସର ଯେବେ ବିରଞ୍ଚି ଜାଣିଲେ । ସୁରଙ୍କ ସହ ସାଜିଣ ବିମାନ ଆସିଲେ ॥
ବିମଳ ଗଗନେ ପୂର୍ଣ୍ଣ ବିବୁଧ ନିକର । ଗୁଣ ଗାୟନ କରନ୍ତି ଗନ୍ଧର୍ବେ ଆଦର ॥୩॥
ବରଷନ୍ତି ସୁମନ ସୁଅଞ୍ଜଳି ସଜାଇ । ଗହ ଗହ ଗଗନରେ ଦୁନ୍ଦୁଭି ବଜାଇ ॥
ସ୍ତୁତି ଉଚ୍ଚାରନ୍ତି ସୁର ନାଗ ମୁନିଗଣ । ନାନାମତେ କରି ନିଜ ସେବା ସମର୍ପଣ ॥୪॥
ଅମର ସମୂହ କରିଣ ବିନୟ ଗଲେ ନିଜ ନିଜ ଧାମ ।
ବିଶ୍ୱବାସ ପ୍ରଭୁ ପ୍ରକଟ ହୋଇଲେ ଅଖିଳ ଲୋକ ବିଶ୍ରାମ ॥୧୯୧॥

---

ମଗ୍ନ ହୋଇଗଲେ । କାରଣ ଶ୍ରୀରାମଙ୍କ ଜନ୍ମ ସମସ୍ତ ସୁଖର ମୂଳ କାରଣ ॥ ୧୯୦ ॥ ଚୌପାଇ —ପବିତ୍ର ଚୈତ୍ର ମାସର ନବମୀ ତିଥି । ଶୁକ୍ଳପକ୍ଷ ଓ ଭଗବାନଙ୍କ ପ୍ରିୟ ଅଭିଜିତ୍ ନକ୍ଷତ୍ରର ସୁନ୍ଦର ମୁହୂର୍ତ୍ତ ଥିଲା । ଦ୍ୱିପ୍ରହର ସମୟ, ବେଶି ଶୀତ କିମ୍ବା ଉତ୍ତାପ ନ ଥିଲା । ସେହି ପବିତ୍ର ସମୟ ସମସ୍ତ ଲୋକର ଶାନ୍ତିଦାୟକ ଥିଲା ॥ ୧ ॥ ଶୀତଳ, ମନ୍ଦ ଓ ସୁଗନ୍ଧିତ ପବନ ବହୁଥିଲା । ଦେବତାମାନେ ଆନନ୍ଦିତ ଏବଂ ସନ୍ଥମାନଙ୍କ ମନରେ ଉତ୍ସାହ ପରିପୂର୍ଣ୍ଣ । ବନସବୁ ବିକଶିତ ପୁଷ୍ପରାଜିରେ ସୁଶୋଭିତ । ପର୍ବତ-ସମୂହ ମଣିରାଶିରେ ଦୀପ୍ତିମାନ୍ ଏବଂ ସମସ୍ତ ନଦୀ ଆପଣା ଆପଣା ବକ୍ଷରେ ସତେ ଯେପରି ଅମୃତର ଧାରା ପ୍ରବାହିତ କରୁଥା'ନ୍ତି ॥ ୨ ॥ ଯେତେବେଳେ ବ୍ରହ୍ମା ଭଗବାନଙ୍କ ଆବିର୍ଭାବ ସମୟ ଅବସର ଜାଣିଲେ, ସେତେବେଳେ ତାଙ୍କ ସମେତ ସମସ୍ତ ଦେବତା ବିମାନ ସଜାଇ ଚାଲିଲେ । ନିର୍ମଳ ଆକାଶ ଦେବତାମାନଙ୍କ ଦଳ-ସମୂହରେ ପୂରିଗଲା । ଗନ୍ଧର୍ବ-ଦଳ ଭଗବାନଙ୍କ ଗୁଣ ଗାନ କରିବାକୁ ଲାଗିଲେ ॥ ୩ ॥ ଦେବତାମାନେ ସ୍ୱ ସ୍ୱ ସୁନ୍ଦର ଅଞ୍ଜଳିରେ ପୁଷ୍ପ ସଜାଇ ବୃଷ୍ଟି କରିବାକୁ ଲାଗିଲେ । ଆକାଶରେ ଧୁମ୍-ଧାମ୍ ଦୁନ୍ଦୁଭି ବାଜି ଉଠିଲା । ନାଗ, ମୁନି ଓ ଦେବତା ସ୍ତୁତି କରିବାକୁ ଲାଗିଲେ ଏବଂ ବହୁତ ପ୍ରକାରେ ଆପଣା ଆପଣା ସେବା-ଉପହାର ଭେଟି କରିବାକୁ ଲାଗିଲେ ॥ ୪ ॥ ଦୋହା :—ଦେବତା-ସମୂହ ପ୍ରାର୍ଥନା କରିସାରି ଆପଣା ଆପଣା

ଭଏ ପ୍ରଗଟ କୃପାଲା ଦୀନଦୟାଲା କୌସଲ୍ୟା ହିତକାରୀ ।
ହରଷିତ ମହତାରୀ ମୁନି ମନ ହାରୀ ଅଦ୍ଭୁତ ରୂପ ବିଚାରୀ ॥
ଲୋଚନ ଅଭିରାମା ତନୁ ଘନଶ୍ୟାମା ନିଜ ଆୟୁଧ ଭୁଜ ଚାରୀ ।
ଭୂଷନ ବନମାଲା ନୟନ ବିସାଲା ସୋଭାସିଂଧୁ ଖରାରୀ ॥୧॥

କହ ଦୁଇ କର ଜୋରୀ ଅସ୍ତୁତି ତୋରୀ କେହି ବିଧି କରୌଁ ଅନଂତା ।
ମାୟା ଗୁନ ଜ୍ଞାନାତୀତ ଅମାନା ବେଦ ପୁରାନ ଭନଂତା ॥
କରୁନା ସୁଖ ସାଗର ସବ ଗୁନ ଆଗର ଜେହି ଗାୱହିଁ ଶ୍ରୁତି ସଂତା ।
ସୋ ମମ ହିତ ଲାଗୀ ଜନ ଅନୁରାଗୀ ଭୟଉ ପ୍ରଗଟ ଶ୍ରୀକଂତା ॥୨॥

ବ୍ରହ୍ମାଣ୍ଡ ନିକାୟା ନିର୍ମିତ ମାୟା ରୋମ ରୋମ ପ୍ରତି ବେଦ କହୈ ।
ମମ ଉର ସୋ ବାସୀ ୟହ ଉପହାସୀ ସୁନତ ଧୀର ମତି ଥିର ନ ରହୈ ॥
ଉପଜା ଜବ ଜ୍ଞାନା ପ୍ରଭୁ ମୁସୁକାନା ଚରିତ ବହୁତ ବିଧି କୀହ୍ନ ଚହୈ ।
କହି କଥା ସୁହାଈ ମାତୁ ବୁଝାଈ ଜେହି ପ୍ରକାର ସୁତ ପ୍ରେମ ଲହୈ ॥୩॥

---

ଜାତ ଦୀନ-ଦୟାଧାମ ନୟନାଭିରାମ ରାମ ଘନ-ଶ୍ୟାମ କଉଶଲ୍ୟା ମଙ୍ଗଳକାରୀ ॥
ଦେଖି ଜନନୀ ହରଷ ହରଣ ମୁନି ମାନସ ବିଶାଳ ଲୋଚନ ରୂପ ଅଦ୍ଭୁତ ଧାରୀ ॥
ବନମାଳ ଭୂଷଣଧର,
ନିଜାୟୁଧ ଚାରି ଭୁଜେ ଶୋଭା-ସାଗର ॥୧॥

ଯୋଡ଼ିଣ ଯୁଗଳକର ବୋଲନ୍ତି ସ୍ତୁତି ତୁମ୍ଭର କରିବି କିପରି ସୁଖ-ଦୟା-ସାଗର ।
ମାୟାଗୁଣ ଜ୍ଞାନାତୀତ ଅନନ୍ତ ମାନ-ରହିତ ପୁରାଣ ଶ୍ରୁତି ପ୍ରସିଦ୍ଧ ଯେ ଗୁଣାକର ।
ସେହି ହରି ମୋ ହିତ ଲାଗି,
ପ୍ରକଟ ହେଲେ ଶ୍ରୀପତି ଭକ୍ତାନୁରାଗୀ ॥୨॥

ବ୍ରହ୍ମାଣ୍ଡ ଅପରିମିତ ମାୟାବଳରେ ନିର୍ମିତ ଯା'ର ପ୍ରତି ରୋମେ ବେଦ କରେ ବର୍ଣ୍ଣନ ।
ତାଙ୍କ ବାସ ମୋ ଉଦରେ ଉପହାସ, ଶୁଣି ଧୀରେ ହୁଅନ୍ତି ଅଧୀର, ମାତା ଲଭନ୍ତେ ଜ୍ଞାନ ॥
ହସି ପ୍ରଭୁ ଲୀଳା ଇଚ୍ଛନ୍ତି,
ବୁଝାନ୍ତି ମାତାଙ୍କୁ କଥା, ବାତ୍ସଲ୍ୟ ମତି ॥୩॥

---

ଲୋକରେ ଫେରି ପହଞ୍ଚିଲେ । ଅଖିଳ ଲୋକର ଶାନ୍ତିଦାୟକ, ଜଗଦାଧାର ପ୍ରଭୁ ଆବିର୍ଭୂତ ହେଲେ ॥ ୧୯୧ ॥ ଛନ୍ଦ —ଦୀନଦୟାଳୁ, କୌଶଲ୍ୟାଙ୍କର ହିତକାରକ ପ୍ରଭୁ ଆବିର୍ଭୂତ ହେଲେ । ତାଙ୍କ ମୁନିଜନ-ମନୋହାରୀ ଅଦ୍ଭୁତ ରୂପ-କଥା ବିଚାର କରି ମାତା ଆନନ୍ଦରେ ମଗ୍ନ ହୋଇଗଲେ । ତାଙ୍କ ଶରୀର ନୟନାଭିରାମ ଓ ମେଘଶ୍ୟାମ । ଚାରିଭୁଜାରେ ସେ ତାଙ୍କର ବିଶେଷ ଆୟୁଧ ଧାରଣ କରିଥିଲେ । ଦିବ୍ୟ ଆଭୂଷଣ ଓ ବନମାଳା ପିନ୍ଧିଥିଲେ । ବିଶାଳ ନେତ୍ର ତାଙ୍କର । ସେ ଶୋଭାସିନ୍ଧୁ ଏବଂ ଖରରାକ୍ଷସର

ମାତା ପୁନି ବୋଲୀ ସୋ ମତି ଡୋଲୀ 'ତଜହୁ ତାତ ୟହ ରୂପା ।
କୀଜୈ ସିସୁଲୀଲା ଅତି ପ୍ରିୟସୀଲା ୟହ ସୁଖ ପରମ ଅନୂପା ॥
ସୁନି ବଚନ ସୁଜାନା ରୋଦନ ଠାନା ହୋଇ ବାଲକ ସୁରଭୂପା ।
ୟହ ଚରିତ ଜେ ଗାୱହିଁ ହରିପଦ ପାୱହିଁ ତେ ନ ପରହିଁ ଭବ କୂପା ॥୪॥

ବିପ୍ର ଧେନୁ ସୁର ସଂତ ହିତ ଲୀନ୍ହ ମନୁଜ ଅବତାର ।
ନିଜ ଇଚ୍ଛା ନିର୍ମିତ ତନୁ ମାୟା ଗୁନ ଗୋ ପାର ॥୧୯୨॥

---

ଜନନୀ ପୁଣି ବୋଲନ୍ତି ଅପସରନ୍ତେ ସେ ମତି ଶିଶୁଲୀଳା କର ବାପ, ତେଜି ଏ ରୂପ ।
ଏ ଅତୁଳ ପ୍ରିୟ ସୁଖ, ଶୁଣି ହୋଇଲେ ବାଳକ, ଆରମ୍ଭିଲେ କାନ୍ଦ ସୁଜ୍ଞ ବିବୁଧ-ଭୂପ ।
ଏ ଚରିତ ଯେହୁ ଗାଇବେ,
ହରିପଦ ପାଇ ଭବ-କୂପେ ନ ପଶିବେ ॥୪॥

ବିପ୍ର ଧେନୁ ସୁର ସନ୍ଥଙ୍କ କାରଣେ ହେଲେ ନର ଅବତାର ।
ନିଜ ଇଚ୍ଛାମତେ ତନୁ ବିରଚିଲେ ଯେ ମାୟା ଗୁଣ ଗୋପାର ॥୧୯୨॥

---

ଶବ୍ଦ ॥ ୧ ॥ ଦୁଇ ହାତ ଯୋଡ଼ି ମାତା କହିବାକୁ ଲାଗିଲେ, "ହେ ଅନନ୍ତ ! ମୁଁ କେଉଁ ପ୍ରକାରେ ତୁମ ସ୍ତୁତି କରିବି ? ବେଦ ଓ ପୁରାଣମାନେ ତୁମ୍ଭଙ୍କୁ ମାୟା, ଗୁଣ ଓ ଜ୍ଞାନର ଉର୍ଦ୍ଧ୍ୱରେ ଓ ପରିମାଣ-ରହିତ ବୋଲି କହନ୍ତି । ଶ୍ରୁତି ଓ ସନ୍ଥଜନ କରୁଣା ଓ ସୁଖର ସାଗର ତଥା ସକଳ ଗୁଣର ଧାମ କହି ଯାହାଙ୍କ ଗୁଣ ଗାନ କରନ୍ତି, ସେହି ଭକ୍ତଜନପ୍ରେମୀ ଶ୍ରୀକାନ୍ତ ଭଗବାନ୍ ମୋର କଲ୍ୟାଣ ନିମନ୍ତେ ଆବିର୍ଭୂତ ହୋଇଅଛନ୍ତି ॥ ୨ ॥ ବେଦମାନେ କହନ୍ତି—ତୁମର ପ୍ରତ୍ୟେକ ରୋମରେ ତବ ମାୟା-ବିରଚିତ ଅନେକ ବ୍ରହ୍ମାଣ୍ଡ-ସମୂହ ପୂର୍ଣ୍ଣ ହୋଇ ରହିଅଛନ୍ତି । ତୁମେ ସେହି ପ୍ରଭୁ ମୋର ଗର୍ଭରେ ରହିଥିଲ, ଏହି ଉପହାସ-ଯୋଗ୍ୟ କଥା ଶୁଣି ଧୀର (ବିବେକୀ) ପୁରୁଷମାନଙ୍କ ମତି ମଧ୍ୟ ସ୍ଥିର ରହୁନାହିଁ । ( ଅର୍ଥାତ୍ ବିଚଳିତ ହୋଇଯାଉଛି । )" ଯେତେବେଳେ ମାତାଙ୍କର ଜ୍ଞାନ ଜାତ ହେଲା, ଭଗବାନ୍ ମୃଦୁ ହସିଲେ । ସେ ବହୁବିଧ ଲୀଳା କରିବା ପାଇଁ ଇଚ୍ଛୁକ । ଅତଏବ ପୂର୍ବ ଜନ୍ମର ସୁନ୍ଦର କଥା କହି ସେ ମାତାଙ୍କୁ ବୁଝାଇଲେ, ଯେପରିକି ତାଙ୍କୁ ପୁତ୍ରପ୍ରେମ (ବାତ୍ସଲ୍ୟ ପ୍ରେମ) ମିଳିଯିବ ॥ ୩ ॥ ମାତାଙ୍କର ସେହି ବୁଦ୍ଧି ବଦଳିଗଲା । ସେତେବେଳେ ସେ ପୁଣି କହିଲେ, "ହେ ବାପ ! ଏ ରୂପ ପରିତ୍ୟାଗ କରି ଅତି ପ୍ରିୟ ବାଲଲୀଳା କର । ମୋ ନିମନ୍ତେ ଏହା ପରମ ଅନୁପମ ସୁଖ ହେବ ।" ମାତାଙ୍କର ଏହି ବଚନ ଶୁଣି ଦେବାଧିରାଜ ସୁଜ୍ଞ ଭଗବାନ୍ ବାଳକ-ରୂପ ହୋଇ ରୋଦନ ଆରମ୍ଭ କରିଦେଲେ । ତୁଳସୀଦାସ କହନ୍ତି, ଯେଉଁମାନେ ଏହି ଚରିତ ଗାନ କରନ୍ତି, ସେମାନେ ଶ୍ରୀହରିଙ୍କ ପଦ ଲାଭ କରନ୍ତି, ଆଉ ସଂସାରରୂପୀ କୂପରେ ପଡନ୍ତି ନାହିଁ ॥ ୪ ॥ ଦୋହା :— ବ୍ରାହ୍ମଣ, ଗୋ, ଦେବତା ଓ ସାଧୁମାନଙ୍କ ନିମନ୍ତେ ଭଗବାନ୍ ମନୁଷ୍ୟ ଅବତାର ଗ୍ରହଣ କଲେ । ସେ ଅଜ୍ଞାନମୟୀ ମାୟା ଓ ତାହାର ଗୁଣ (ସତ୍ତ୍ୱ, ରଜ, ତମ) ଏବଂ ଇନ୍ଦ୍ରିୟମାନଙ୍କର

ସୁନି ସିସୁ ରୁଦନ ପରମ ପ୍ରିୟ ବାନୀ । ସଂଭ୍ରମ ଚଲି ଆଈଁ ସବ ରାନୀ ॥
ହରଷିତ ଜହଁ ତହଁ ଧାଈଁ ଦାସୀ । ଆନଁଦ ମଗନ ସକଲ ପୁରବାସୀ ॥୧॥
ଦଶରଥ ପୁତ୍ରଜନ୍ମ ସୁନି କାନା । ମାନହୁଁ ବ୍ରହ୍ମାନନ୍ଦ ସମାନା ॥
ପରମ ପ୍ରେମ ମନ ପୁଲକ ସରୀରା । ଚାହତ ଉଠନ କରତ ମତି ଧୀରା ॥୨॥
ଜାକର ନାମ ସୁନତ ସୁଭ ହୋଈ । ମୋରେଁ ଗୃହ ଆୱା ପ୍ରଭୁ ସୋଈ ॥
ପରମାନନ୍ଦ ପୂରି ମନ ରାଜା । କହା ବୋଲାଇ ବଜାୱହୁ ବାଜା ॥୩॥
ଗୁରୁ ବସିଷ୍ଠ କହଁ ଗୟଉ ହଁକାରା । ଆଏ ଦ୍ୱିଜନ ସହିତ ନୃପଦ୍ୱାରା ॥
ଅନୁପମ ବାଲକ ଦେଖେନ୍ହି ଜାଈ । ରୂପ ରାସି ଗୁନ କହି ନ ସିରାଈ ॥୪॥

ନଂଦୀମୁଖ ସରାଧ କରି ଜାତକରମ ସବ କୀନ୍ହ ।
ହାଟକ ଧେନୁ ବସନ ମନି ନୃପ ବିପ୍ରନ୍ହ କହଁ ଦୀନ୍ହ ॥୧୯୩॥

---

ଶୁଣନ୍ତେ ଶିଶୁ ରୋଦନ ଅତି ପ୍ରିୟବାଣୀ । ଚଞ୍ଚଳେ ଆସିଲେ ତହିଁ ଅନ୍ୟ ସବୁ ରାଣୀ ॥
ହରଷେ ଉଠି ଧାଇଁଲେ ଯେଣେ ତେଣେ ଦାସୀ । ଆନନ୍ଦେ ନିମଗ୍ନ ହେଲେ ନଗରନିବାସୀ ॥୧॥
ଦଶରଥ ପୁତ୍ର ଜନ୍ମ ଶ୍ରବଣେ ଶୁଣିଣ । ମନେହୁଏ ବ୍ରହ୍ମାନନ୍ଦେ ହୋଇଲେ ବିଲୀନ ॥
ପରମ ପ୍ରେମେ ହୋଇଲା ପୁଲକ ଶରୀର । ଉଠିବା ପାଇଁ ଚାହାନ୍ତି ମତି କରି ସ୍ଥିର ॥୨॥
ଯା' ନାମ ଶୁଣନ୍ତେ ଶୁଭ ହୁଅଇ ଅଶେଷ । ମୋର ଗୃହେ ଆଗମିଲେ ସେ ଦେବ ଦେବେଶ ॥
ପରମାନନ୍ଦେ ହୋଇଣ ପରିପୂର୍ଣ୍ଣ ରାଜା । କହିଲେ ଡାକି ବଜାଅ ମାଙ୍ଗଳିକ ବାଜା ॥୩॥
ଡଗର ଗୁରୁ ବଶିଷ୍ଠେ ରାଜା ପଠାଇଲେ । ଦ୍ୱିଜଙ୍କୁ ଘେନି ସେ ନୃପ ଭବନେ ଆସିଲେ ॥
ଅନୁପମ ବାଳକଙ୍କୁ ଦେଖନ୍ତି ସେ ଯାଇ । ରୂପରାଶି ଗୁଣ ଶେଷ ନ ହୋଇବ ଗାଇ ॥୪॥

ନାନ୍ଦୀମୁଖ ଶ୍ରାଦ୍ଧ କରି ତହୁଁ ସର୍ବ ଜାତକ କର୍ମ କରିଲେ ।
ବିପ୍ରଙ୍କୁ ବସନ ଧେନୁ ମଣି ସ୍ୱର୍ଣ୍ଣ ନୃପବର ପ୍ରଦାନିଲେ ॥୧୯୩॥

---

ଊର୍ଦ୍ଧ୍ୱରେ । ତାଙ୍କର ଦିବ୍ୟ ଶରୀର ତାଙ୍କରି ନିଜ ଇଚ୍ଛାରେ ହିଁ ନିର୍ମିତ । ଏହା କୌଣସି କର୍ମବନ୍ଧନର ଅଧୀନ ନୁହେଁ କିମ୍ବା ତ୍ରିଗୁଣାତ୍ମକ ଭୌତିକ ପଦାର୍ଥରେ ନିର୍ମିତ ନୁହେଁ ॥୧୯୨॥

ଚୌପାଈ :—ଶିଶୁ ବାଳକର କ୍ରନ୍ଦନର ଅତି ପ୍ରିୟ ଧ୍ୱନି ଶୁଣି ସମସ୍ତ ରାଣୀ ବ୍ୟଗ୍ର ହୋଇ ଦଉଡି ଆସିଲେ । ଦାସୀମାନେ ଆନନ୍ଦିତ ହୋଇ ଏଣେ ତେଣେ ଧାଇଁଲେ । ସମସ୍ତ ପୁରବାସୀ ଆନନ୍ଦରେ ମଗ୍ନ ହୋଇଗଲେ ॥ ୧ ॥ ରାଜା ଦଶରଥ ପୁତ୍ର-ଜନ୍ମ-ସମ୍ବାଦ କାନରେ ଶୁଣି ସତେ ଯେମିତି ବ୍ରହ୍ମାନନ୍ଦରେ ମଜ୍ଜିଗଲେ । ମନରେ ପରମ ପ୍ରେମ ପରିପୂର୍ଣ୍ଣ ; ଶରୀର ପୁଲକିତ, ଆନନ୍ଦରେ ଅଧୀର ମତିକୁ ଧୈର୍ଯ୍ୟ ଦେଇ ଏବଂ ପ୍ରେମରେ ଶିଥିଳ ଶରୀରକୁ ସମ୍ଭାଳି ସେ ଉଠିବାକୁ ଇଚ୍ଛୁକ ॥ ୨ ॥ "ଯାହାର ନାମ ଶୁଣିବା ମାତ୍ରେ ଚତୁର୍ଦ୍ଦିଗରେ କଲ୍ୟାଣ ବା ମଙ୍ଗଳ ବ୍ୟାପିଯାଏ, ସେହି ପ୍ରଭୁ ମୋ ଘରକୁ ଆସିଅଛନ୍ତି ।"—ଏହା ଭାବି ରାଜାଙ୍କ ମନ ପରମାନନ୍ଦରେ ପୂରିଗଲା । ସେ ବାଜାବାଲାଙ୍କୁ ଡକାଇ କହିଲେ, "ବାଜା ବଜାଅ ।" ॥ ୩ ॥ ଗୁରୁ ବଶିଷ୍ଠଙ୍କ ପାଖକୁ ଡଗର ଗଲା ।

ଧ୍ୱଜ ପତାକ ତୋରନ ପୁର ଛାଓ୍ୱା । କହି ନ ଜାଇ ଜେହି ଭାଁତି ବନାଓ୍ୱା ॥
ସୁମନବୃଷ୍ଟି ଅକାସ ତେଁ ହୋଈ । ବ୍ରହ୍ମାନନ୍ଦ ମଗନ ସବ ଲୋଈ ॥୧॥
ବୃନ୍ଦ ବୃନ୍ଦ ମିଲି ଚଲୀଁ ଲୋଗାଈଁ । ସହଜ ସିଁଗାର କିଏଁ ଉଠି ଧାଈଁ ॥
କନକ କଲସ ମଂଗଲ ଭରି ଥାରା । ଗାଓ୍ୱତ ପୈଠହିଁ ଭୂପ ଦୁଆରା ॥୨॥
କରି ଆରତି ନେଓ୍ୱଛାଓ୍ୱରି କରହୀଁ । ବାର ବାର ସିସୁ ଚରନହ୍ନି ପରହୀଁ ॥
ମାଗଧ ସୂତ ବନ୍ଦିଗନ ଗାୟକ । ପାବନ ଗୁନ ଗାଓ୍ୱହିଁ ରଘୁନାୟକ ॥୩॥
ସର୍ବସ ଦାନ ଦୀହ୍ନ ସବ କାହୂ । ଜେହିଁ ପାଓ୍ୱା ରାଖା ନହିଁ ତାହୂ ॥
ମୃଗମଦ ଚନ୍ଦନ କୁଙ୍କୁମ କୀଚା । ମଚୀ ସକଲ ବୀଥିହ୍ନ ବିଚ ବୀଚା ॥୪॥

ଗୃହ ଗୃହ ବାଜ ବଧାଓ୍ୱ ସୁଭ ପ୍ରଗଟେ ସୁଷମା କନ୍ଦ ।
ହରଷବଂତ ସବ ଜହଁ ତହଁ ନଗର ନାରି ନର ବୃନ୍ଦ ॥୧୯୪॥

---

ଧ୍ୱଜା ପତାକା ତୋରଣେ ପୁର ଆଚ୍ଛାଦିଲା । ବର୍ଣ୍ଣି ନ ହୁଏ ଯେମନ୍ତେ ରଚିତ ହୋଇଲା ॥
ହୁଅଇ ଅନ୍ତରିକ୍ଷରୁ ବରଷା ସୁମନ । ବ୍ରହ୍ମାନନ୍ଦରେ ନିମଗ୍ନ ପୁରବାସୀ ଜନ ॥୧॥
ଯୂଥ ଯୂଥ ହୋଇ ମିଳି ଯୁବତୀ ଚଳିଲେ । ସହଜ ସୁବେଶ ସାଜି ଉଠିଣ ଧାଇଁଲେ ॥
ହେମ କଳସ ଥାଳୀରେ ମଙ୍ଗଳ ସଜାଇ । ଭୂପ ଗୃହେ ପ୍ରବେଶନ୍ତି ଗୀତ ଗାଇ ଗାଇ ॥୨॥
କରି ବନ୍ଧାପନା ବସ୍ତୁ ଉତ୍ସର୍ଗ କରନ୍ତି । ବାରମ୍ବାର ବାଳକର ଚରଣେ ପଡନ୍ତି ॥
ଭାଟ ସୂତ ବନ୍ଦୀ ପୁଣ ଗାୟକ ଆବର । ପବିତ୍ର ଯଶ ଗାଆନ୍ତି ରଘୁପତିଙ୍କର ॥୩॥
ସର୍ବସ୍ୱ ଦାନ ପ୍ରଦାନ ସରବେ କରନ୍ତି । ଯେ ପାଆନ୍ତି ସେ ବି ପାଶେ ତାହା ନ ରଖନ୍ତି ॥
କୁରଙ୍ଗ-ମଦ ଚନ୍ଦନ କୁଙ୍କୁମେ ଲଳିତ । ବୀଥି ସମୁଦାୟ ହେଲେ କର୍ଦ୍ଦମେ ପୂରିତ ॥୪॥

ଗୃହେ ଗୃହେ ବାଜେ ସୁମଙ୍ଗଳ ବାଜା ପ୍ରକଟନ୍ତେ ସୁଖକନ୍ଦ ।
ସମସ୍ତେ ହରଷ ହୁଅନ୍ତି ବିଶେଷ ପୁର ନରନାରୀ ବୃନ୍ଦ ॥୧୯୪॥

---

ସେ ବ୍ରାହ୍ମଣମାନଙ୍କ ସଙ୍ଗରେ ଧରି ରାଜଦ୍ୱାରକୁ ଆସିଲେ । ସେ ଯାଇ ଯେ ରୂପର ରାଶି ଏବଂ ବଚନରେ ଯାହାଙ୍କ ଗୁଣ ଅସରନ୍ତି, ସେହି ଅନୁପମ ବାଳକଙ୍କୁ ଦେଖିଲେ ॥ ୪ ॥
ଦୋହା :—ରାଜା ନାନ୍ଦୀମୁଖ ଶ୍ରାଦ୍ଧ ସମ୍ପାଦନପୂର୍ବକ ସମସ୍ତ ଜାତକର୍ମ ସଂସ୍କାର କଲେ ଏବଂ ବ୍ରାହ୍ମଣମାନଙ୍କୁ ସୁନା, ଗୋ, ବସ୍ତ୍ର ଓ ମଣି ପ୍ରଭୃତି ଦାନ ଦେଲେ ॥୧୯୩॥
ଚୌପାଈ :—ଧ୍ୱଜା, ପତାକା ଓ ତୋରଣରେ ନଗର ଆଚ୍ଛାଦିତ ହୋଇଗଲା । ନଗରର ସାଜସଜ୍ଜା ଯେଉଁପରି ଖୁବରେ କରାଗଲା, ତାହାର ବର୍ଣ୍ଣନା କରାଯାଇ ପାରିବ ନାହିଁ । ଆକାଶରୁ ପୁଷ୍ପବୃଷ୍ଟି ହେଉଥାଏ । ସମସ୍ତ ଲୋକ ବ୍ରହ୍ମାନନ୍ଦରେ ମଗ୍ନ ॥ ୧ ॥ ସ୍ତ୍ରୀମାନେ ଦଳଦଳ ହୋଇ ମିଶି ଚାଲିଛନ୍ତି । ସ୍ୱାଭାବିକ ବେଶଭୂଷା ସାଜି ସେମାନେ ଧାଇଁଛନ୍ତି । ସୁନା କଳଶ ଓ ଥାଳୀମାନଙ୍କରେ ମଙ୍ଗଳଦ୍ରବ୍ୟ ଭରି ଗୀତ ଗାଇ ରାଜଦ୍ୱାରରେ ସେମାନେ ପ୍ରବେଶ କରୁଅଛନ୍ତି । ଆରତି କରି ସେମାନେ ନିଛୁଡ଼ି ଯାଉଥା'ନ୍ତି ଏବଂ ବାରମ୍ବାର ଶିଶୁ ବାଳକଙ୍କ ଚରଣତଳେ ଲୋଟୁଥା'ନ୍ତି । ମାଗଧ, ସୂତ (ସାରଥି), ବନ୍ଦୀଜନ (ଭାଟ)

କୈକୟସୁତା ସୁମିତ୍ରା ଦୋଊ । ସୁନ୍ଦର ସୁତ ଜନମତ ଭୈଁ ଓଊ ॥
ଓ୍ୱହ ସୁଖ ସଂପତି ସମୟ ସମାଜା । କହି ନ ସକଇ ସାରଦ ଅହିରାଜା ॥୧॥
ଅଓ୍ୱଧପୁରୀ ସୋହଇ ଏହି ଭାଁତୀ । ପ୍ରଭୁହି ମିଲନ ଆଈ ଜନୁ ରାତୀ ॥
ଦେଖି ଭାନୁ ଜନୁ ମନ ସକୁଚାନୀ । ତଦପି ବନୀ ସଂଧ୍ୟା ଅନୁମାନୀ ॥୨॥
ଅଗର ଧୂପ ବହୁ ଜନୁ ଅଁଧିଆରୀ । ଉଡଇ ଅବୀର ମନହୁଁ ଅରୁନାରୀ ॥
ମଂଦିର ମନି ସମୂହ ଜନୁ ତାରା । ନୃପ ଗୃହ କଲସ ସୋ ଇନ୍ଦୁ ଉଦାରା ॥୩॥
ଭବନ ବେଦ ଧୁନି ଅତି ମୃଦୁ ବାନୀ । ଜନୁ ଖଗ ମୁଖର ସମୟଁ ଜନୁ ସାନୀ ॥
କୌତୁକ ଦେଖି ପତଂଗ ଭୁଲାନା । ଏକ ମାସ ତେଇଁ ଜାତ ନ ଜାନା ॥୪॥

---

କେକୟ ସୁତା ସୁମିତ୍ରା ଉଭୟେ ଆବର । ପ୍ରସବ କଲେ ସେ କାଳେ ତନୟ ସୁନ୍ଦର ॥
ସେହି ସମୟର ସୁଖ ସମ୍ପତ୍ତି ସମାଜ । କହି ନ ପାରନ୍ତି ସରସ୍ୱତୀ ଅହିରାଜ ॥୧॥
ଅଯୋଧ୍ୟାପୁରୀ ଶୋଭିତ ହୁଅଇ ଏସନେ । ରାତ୍ରି ଅବା ଆସିଥିଲା ପ୍ରଭୁଙ୍କ ମିଳନେ ॥
ରବିଙ୍କୁ ଦେଖନ୍ତେ ମନେ ସଙ୍କୋଚ ଲଭିଲା । ତଥାପି ସନ୍ଧ୍ୟା ହୋଇଣ ସ୍ଥଗିତ ରହିଲା ॥୨॥
ଅଗୁରୁ ଧୂପ ସମୂହ ଯେସନେ ତମିର । ଅରୁଣ ବର୍ଣ୍ଣ ପରାଗସ୍ୟ ଉଡେ ଯେ ଅବୀର ॥
ମନ୍ଦିର ମଣି ସମୂହ ତାରକା ସଦୃଶ । ଉଦାର ଇନ୍ଦୁ ନୃପଙ୍କ ନିଳୟ କଳଶ ॥୩॥
ମୃଦୁ ସ୍ୱରେ ବେଦ ଧ୍ୱନି ହୁଏ ଘରେ ଘରେ । ତାହା ଯେସନ୍ତେ ଖଗ ରବ ସୁଖ ସମୟରେ ॥
କୌତୁକ ଅବଲୋକିଣ ଆଦିତ୍ୟ ଭୁଲିଲେ । ମାସେ କଟିଯିବାର ସେ ଜାଣି ନ ପାରିଲେ ॥୪॥

---

ଓ ଗାୟକମାନେ ରଘୁକୁଳ-ସ୍ୱାମୀଙ୍କ ପବିତ୍ର ଗୁଣ ଗାନ କରୁଅଛନ୍ତି ॥ ୩ ॥ ରାଜା ଆପଣାର ସର୍ବସ୍ୱ ଦାନ କରିଦେଲେ, ଯେ ପାଇଲା, ସେ ମଧ୍ୟ ରଖିଲା ନାହିଁ । ଅନ୍ୟକୁ ଦେଇଦେଲା । ନଗରର ସମସ୍ତ ରାଜପଥ ଓ ଗଳିକନ୍ଦି ଆଦି କସ୍ତୁରୀ, ଚନ୍ଦନ ଓ କେଶରର ପିଚକାରୀ ଜଳରେ କର୍ଦ୍ଦମାକ୍ତ ହୋଇଗଲା ॥୪॥ ଦୋହା ।—ଘରେ ଘରେ ମଙ୍ଗଳସୂଚକ ଅଭିନନ୍ଦନ ବାଜା ବାଜିବାକୁ ଲାଗିଲା । ସୁଷମାମୂଳ ଭଗବାନ୍ ଆବିର୍ଭୂତ । ଯେଉଁଠି ଦେଖ, ସେଠାରେ ନଗରର ସ୍ତ୍ରୀପୁରୁଷମାନେ ଦଳ ଦଳ ହୋଇ ଆନନ୍ଦମଗ୍ନ ॥ ୧୯୪ ॥ ଚୌପାଈ ।—କୈକେୟୀ ଏବଂ ସୁମିତ୍ରା ମଧ୍ୟ ସୁନ୍ଦର ପୁତ୍ରମାନଙ୍କୁ ପ୍ରସବ କଲେ । ସେହି ସୁଖ, ସେହି ସମ୍ପତ୍ତି, ସେହି ସମୟ ଓ ସେହି ସମାଜର ବର୍ଣ୍ଣନା ସରସ୍ୱତୀ କିମ୍ବା ସର୍ପରାଜ ଶେଷ ମଧ୍ୟ କରି ପାରିବେ ନାହିଁ ॥ ୧ ॥ ଅଯୋଧ୍ୟାପୁରୀର ଶୋଭା ଦେଖି ମନେ ହେଉଛି, ସତେ ଯେମିତି ପ୍ରଭୁଙ୍କ ସହ ମିଳନ ନିମନ୍ତେ ରାତ୍ରି ଅସମୟରେ ଆସିଥିଲା । କିନ୍ତୁ ସୂର୍ଯ୍ୟଙ୍କୁ ଦେଖି ମନରେ ସଙ୍କୋଚ କରି ବାଟରେ ରହିଗଲା । ପୁଣି କ'ଣ ମନରେ ବିଚାର କରି ସନ୍ଧ୍ୟା ପାଲଟି ରହି ଯାଇଛି ଅବା ! ॥ ୨ ॥ ଅଗୁରୁ ଧୂପର ବହୁତ ଧୂଆଁ ସନ୍ଧ୍ୟାର ଅନ୍ଧକାର ଏବଂ ଯେଉଁ ଅବୀର ଉଡୁଛି, ତାହା ପ୍ରଦୋଷର ଅରୁଣିମା । ମହଲର ମଣିସମୂହ ତାରାଗଣ ତୁଲ୍ୟ ପ୍ରତୀତ ହୋଇଥା'ନ୍ତି ଏବଂ ରାଜମହଲ କଳଶ ସତେ ଯେମିତି ଉନ୍ନତ ଚନ୍ଦ୍ର ॥ ୩ ॥ ରାଜଭବନରେ ଅତି କୋମଳବାଣୀରେ ବେଦଧ୍ୱନି

ମାସ ଦିବସ କର ଦିବସ ଭା ମରମ ନ ଜାନଇ କୋଇ ।
ରଥ ସମେତ ରବି ଥାକେଉ ନିସା କବନ ବିଧି ହୋଇ ॥୧୯୫॥
ୟହ ରହସ୍ୟ କାହୂଁ ନହିଁ ଜାନା । ଦିନମନି ଚଲେ କରତ ଗୁନ ଗାନା ॥
ଦେଖି ମହୋତ୍ସବ ସୁର ମୁନି ନାଗା । ଚଲେ ଭବନ ବରନତ ନିଜ ଭାଗା ॥୧॥
ଔରଉ ଏକ କହଉଁ ନିଜ ଚୋରୀ । ସୁନୁ ଗିରିଜା ଅତି ଦୃଢ଼ ମତି ତୋରୀ ॥
କାକଭୁସୁଂଡି ସଂଗ ହମ ଦୋଉ । ମନୁଜ ରୂପ ଜାନଇ ନହିଁ କୋଉ ॥୨॥
ପରମାନନ୍ଦ ପ୍ରେମ ସୁଖ ଫୂଲେ । ବୀଥିନ୍ହ ଫିରହିଁ ମଗନ ମନ ଭୂଲେ ॥
ୟହ ସୁଭ ଚରିତ ଜାନ ପୈ ସୋଈ । କୃପା ରାମ କୈ ଜାପର ହୋଈ ॥୩॥
ତେହି ଅବସର ଜୋ ଜେହି ବିଧି ଆୱା । ଦୀନ୍ହ ଭୂପ ଜୋ ଜେହି ମନ ଭାୱା ॥
ଗଜ ରଥ ତୁରଗ ହେମ ଗୋ ହୀରା । ଦୀନ୍ହେ ନୃପ ନାନାବିଧି ଚୀରା ॥୪॥

---

ମାସେ ଦିବସରେ କେବଳ ବାସର କେହି ନ ଜାଣେ ମରମ ॥
ରଥ ସହ ରବି ସ୍ଥଗିତ ହୋଇଲେ ନିଶା ହେବ କି ରକମ ॥୧୯୫॥
ଏ ରହସ୍ୟ କେହୁ ବୁଦ୍ଧି ଜାଣି ନ ପାରିଲେ । ଦିନମଣି ଗୁଣ ଗାଇ ପ୍ରୟାଣ କରିଲେ ॥
ମହୋତ୍ସବ ଅବଲୋକି ନାଗ ମୁନି ସୁରେ । ସ୍ୱଭାଗ୍ୟ ପ୍ରଶଂସି ଗଲେ ନିଜ ନିଜ ପୁରେ ॥୧॥
କହୁଛି ଆବର ଏକ ନିଜ ଚୋରି ମୋର । ଶୁଣ ଗିରି ସୁତା ଅତି ଦୃଢ ମତି ତୋର ॥
ମୁଁ ଆଉ କାକ ଭୁଷୁଣ୍ଡି ସଙ୍ଗେ ମିଳି ସେହି । ମନୁଷ୍ୟ ରୂପ ହୋଇଲୁ ନ ଜାଣନ୍ତି କେହି ॥୨॥
ପରମ ଆନନ୍ଦେ ଅତି ପ୍ରେମ ସୁଖେ ଫୁଲି । ବୀଥିରେ ଭ୍ରମଣ କଲୁ ମଗ୍ନ ମନେ ଭୁଲି ॥
ଏହି ସମସ୍ତ ଚରିତ ସେ ଜାଣି ପାରଇ । ଯାହା ଉପରେ ରାମଙ୍କ କରୁଣା ହୁଅଇ ॥୩॥
ସେହି ସମୟରେ ଯେହୁ ଯେ ଭାବେ ଆସନ୍ତି । ଯାହାକୁ ଯାହା ପସନ୍ଦ ଭୂପତି ଦିଅନ୍ତି ॥
ଗଜ ରଥ ଧେନୁ ହୀରା ହେମ ତୁରଙ୍ଗମ । ଦେଲେ ନାନାବିଧ ଚୀର ନୃପତି ଉତ୍ତମ ॥୪॥

---

କରାଯାଉଅଛି । ସତେ ଯେମିତି ତାହା ପକ୍ଷୀମାନଙ୍କର ସମୟାନୁକୂଳ କଳରବ । ଏହି କୌତୁକ ଦେଖି ସୂର୍ଯ୍ୟ ମଧ୍ୟ ତାଙ୍କର ଗତି ଭୁଲିଗଲେ । ମାସେକାଳ ସେ ଗତି କରୁଛନ୍ତି ବୋଲି ଜାଣିପାରିଲେ ନାହିଁ । (ଅର୍ଥାତ୍ ସେହିଠାରେ ତାଙ୍କର ଗୋଟିଏ ମାସ ଅତିବାହିତ ହୋଇଗଲା) ॥୪॥ ଦୋହା—ମାସକ ଯାଏ ତାଙ୍କ ପ୍ରକାଶ ଯୋଗେ ଦିବସରେ କେବଳ ଦିନ ହେଲା । ଏହି ରହସ୍ୟକୁ କେହି ଜାଣିଲେ ନାହିଁ । ସୂର୍ଯ୍ୟ ତାଙ୍କର ରଥ ସହିତ ସେହିଠାରେ ଅଟକିଗଲ । ଆଉ ରାତି ହୁଅନ୍ତା କିପରି ? ॥ ୧୯୫ ॥ ଚୌପାଇ —ଏହି ରହସ୍ୟ କେହି ଜାଣିଲେ ନାହିଁ । ସୂର୍ଯ୍ୟଦେବ ଭଗବାନ୍ ଶ୍ରୀରାମଙ୍କ ଗୁଣଗାନ କରି କରି ଚାଲିଲେ । ଏହି ମହୋତ୍ସବ ଦେଖି ଦେବତା, ମୁନି ଓ ନାଗ ଆପଣା ଆପଣା ଭାଗ୍ୟକୁ ପ୍ରଶଂସା କରି ସେମାନଙ୍କ ନିଜ ନିଜ ଘରକୁ ଚାଲିଲେ ॥୧॥ ହେ ପାର୍ବତି ! ଶ୍ରୀରାମଙ୍କ ଚରଣରେ ତୁମ ମତି ଅତି ଦୃଢ । ଏଣୁ ମୁଁ ତୁମକୁ ମୋର ଗୋଟିଏ ଚୋରି କଥା କହୁଛି । ଶୁଣ, କାକ ଭୁଷୁଣ୍ଡି ଓ ମୁଁ ଉଭୟେ ସାଥୀ ହୋଇ ସେହିଠାରେ ଥିଲୁ ।

ମନ ସଂତୋଷେ ସବନ୍ହି କେ ଜହଁ ତହଁ ଦେହିଁ ଅସୀସ ।
ସକଲ ତନୟ ଚିର ଜୀବହୁଁ ତୁଲସିଦାସ କେ ଈସ ॥୧୯୬॥
କଛୁକ ଦିବସ ବୀତେ ଏହି ଭାଁତୀ । ଜାତ ନ ଜାନିଅ ଦିନ ଅରୁ ରାତୀ ॥
ନାମକରନ କର ଅବସରୁ ଜାନୀ । ଭୂପ ବୋଲି ପଠଏ ମୁନି ଗ୍ୟାନୀ ॥୧॥
କରି ପୂଜା ଭୂପତି ଅସ ଭାଷା । ଧରିଅ ନାମ ଜୋ ମୁନି ଗୁନି ରାଖା ॥
ଇନ୍ହ କେ ନାମ ଅନେକ ଅନୂପା । ମୈଁ ନୃପ କହବ ସ୍ୱମତି ଅନୁରୂପା ॥୨॥
ଜୋ ଆନଂଦ ସିନ୍ଧୁ ସୁଖ ରାସୀ । ସୀକର ତେଁ ତ୍ରୈଲୋକ ସୁପାସୀ ॥
ସୋ ସୁଖ ଧାମ ରାମ ଅସ ନାମା । ଅଖିଲ ଲୋକ ଦାୟକ ବିଶ୍ରାମା ॥୩॥

---

ସମସ୍ତଙ୍କ ମନ ସନ୍ତୋଷ କରିଲେ ଦିଅନ୍ତି ସର୍ବେ ଆଶିଷ ।
ଚିରଂଜୀବୀ ହୋନ୍ତୁ ସକଳ ତନୟ ତୁଳସୀ ଦାସଙ୍କ ଈଶ ॥୧୯୬॥
ବ୍ୟତୀତ ହୋଇଗଲା କିଛି ଦିନ ଏ ପ୍ରକାରେ । ନ ଜାଣନ୍ତି କେହି ରାତି ଦିବସ ଯିବାରେ ॥
ନାମକରଣର ଜାଣି ଶୁଭ ଦିନ କାଳ । ମୁନି ଜ୍ଞାନୀଙ୍କୁ ଡକାଇ ଆଣିଲେ ଭୂପାଳ ॥୧॥
ପୂଜା କରିଣ ଏମନ୍ତ ଭାଷିଲେ ମହୀଶ । ଦିଅ ନାମ ଯାହା ଭାବି ରଖିଛ ମୁନୀଶ ॥
ବହୁ ଅନୁପମ ନାମ ଏହାଙ୍କ ଅଛଇ । ନିଜ ମତି ଅନୁସାରେ ନୃପ ମୁଁ କହଇ ॥୨॥
ଯେ ଆନନ୍ଦ ଅକୂପାର ସୁଖ ନିକେତନ । ଶୀକରେ ମାତ୍ର ଯେ ତ୍ରୈଲୋକ୍ୟ କରନ୍ତି ପାଳନ ॥
ନାମ ରାମ ଅଟେ ନୃପ ସେ ସୁଖ ଧାମଙ୍କ । ଅଖିଳ ବ୍ରହ୍ମାଣ୍ଡର ଯେ ବିଶ୍ରାମଦାୟକ ॥୩॥

---

କିନ୍ତୁ ମନୁଷ୍ୟ ରୂପରେ ଥିବା ହେତୁ କେହି ଆମ୍ଭ ତୁମ୍ଭଙ୍କୁ ଚିହ୍ନି ପାରିଲେ ନାହିଁ ॥ ୨ ॥ ପରମାନନ୍ଦ ଓ ପ୍ରେମ-ସୁଖରେ ଉତ୍ଫୁଲ୍ଲ ଓ ନିମଗ୍ନ ହୋଇ ଆମେ ତୁମେ ଆତ୍ମବିସ୍ମୃତ ହୋଇ ରାଜବାଟୀରେ ବୁଲୁଥିଲୁ । କିନ୍ତୁ ଯାହା ପ୍ରତି ଶ୍ରୀରାମଙ୍କ କୃପା ହୁଏ, ସେହି ଏ ଶୁଭ ତତ୍ତ୍ୱ ଜାଣିପାରେ ॥ ୩ ॥ ଏହି ସୁଅବସରରେ ଯିଏ ଯେଉଁପରି ଆସୁଥାଏ ଏବଂ ଯାହା ମନକୁ ଯେପରି ରୁଚି, ରାଜା ତାହାକୁ ତାହାହିଁ ଦେଲେ । ହାତୀ, ରଥ, ଘୋଡ଼ା, ସୁନା, ଗାଈ, ହୀରା ଓ ବିବିଧ ପ୍ରକାର ବସ୍ତ୍ର ରାଜା ସେମାନଙ୍କୁ ଦେଲେ ॥ ୪ ॥ ଦୋହା :—ରାଜା ସମସ୍ତଙ୍କ ମନକୁ ସନ୍ତୁଷ୍ଟ କଲେ । ସମସ୍ତ ଲୋକ ଦାନ ପାଇ ବିଭିନ୍ନ ସ୍ଥାନରେ ତୁଳସୀ ଦାସଙ୍କ ସ୍ୱାମୀ "ସମସ୍ତ ପୁତ୍ର (ଚାରି ରାଜକୁମାର) ଦୀର୍ଘାୟୁ ହୁଅନ୍ତୁ" ବୋଲି ଆଶୀର୍ବାଦ ଦେଉଥିଲେ ॥ ୧୯୬ ॥ ଚୌପାଇ :—ଏହିରୂପେ କେତେକ ଦିନ ଅତିବାହିତ ହୋଇଗଲା । ଦିନ ଓ ରାତି କିପରି ଯାଉଛି ଏବଂ କିପରି ଆସୁଛି, ଜଣାପଡ଼ୁ ନ ଥାଏ । ତଦନନ୍ତର ନାମକରଣ-ସଂସ୍କାରର ସମୟ ଜାଣି ରାଜା ଜ୍ଞାନୀ ମୁନି ଶ୍ରୀ ବଶିଷ୍ଠଙ୍କୁ ଡକାଇ ପଠାଇଲେ ॥ ୧ ॥ ମୁନିଙ୍କୁ ପୂଜା କରି ରାଜା କହିଲେ, "ହେ ମୁନି ! ଆପଣ ମନରେ ଯାହା ସବୁ ବିଚାରିଅଛନ୍ତି, ସେହି ସବୁ ନାମ ରଖନ୍ତୁ ।" ମୁନି କହିଲେ, "ହେ ରାଜନ୍ ! ଏହାଙ୍କର ଅନେକ ଅନୁପମ ନାମ ଅଛି । ତଥାପି ମୁଁ ମୋ ବୁଦ୍ଧି ଅନୁସାରେ କହିବି ॥ ୨ ॥ ଏ ଯେଉଁ ଆନନ୍ଦସିନ୍ଧୁ ଓ ସୁଖରାଶି, ଯାହାଙ୍କର

ବିସ୍ୱ ଭରନ ପୋଷନ କର ଜୋଈ । ତାକର ନାମ ଭରତ ଅସ ହୋଈ ॥
ଜାକେ ସୁମିରନ ତେଁ ରିପୁ ନାସା । ନାମ ସତ୍ରୁହନ ବେଦ ପ୍ରକାସା ॥୪॥

ଲଚ୍ଛନ ଧାମ ରାମ ପ୍ରିୟ ସକଲ ଜଗତ ଆଧାର ।
ଗୁରୁ ବସିଷ୍ଠ ତେହି ରାଖା ଲଛିମନ ନାମ ଉଦାର ॥୧୯୭॥

ଧରେ ନାମ ଗୁର ହୃଦୟଁ ବିଚାରୀ । ବେଦ ତତ୍ତ୍ୱ ନୃପ ତବ ସୁତ ଚାରୀ ॥
ମୁନି ଧନ ଜନ ସରବସ ସିବ ପ୍ରାନା । ବାଲ କେଲି ରସ ତେହିଁ ସୁଖ ମାନା ॥୧॥
ବାରେହି ତେ ନିଜ ହିତ ପତି ଜାନୀ । ଲଛିମନ ରାମଚରନ ରତି ମାନୀ ॥
ଭରତ ସତ୍ରୁହନ ଦୂନଉ ଭାଈ । ପ୍ରଭୁ ସେବକ ଜସି ପ୍ରୀତି ବଡ଼ାଈ ॥୨॥
ଶ୍ୟାମ ଗୌର ସୁନ୍ଦର ଦୋଉ ଜୋରୀ । ନିରଖହିଁ ଛବି ଜନନୀ ତୃନ ତୋରୀ ॥
ଚାରିଉ ସୀଲ ରୂପ ଗୁନ ଧାମା । ତଦପି ଅଧିକ ସୁଖସାଗର ରାମା ॥୩॥

---

କରନ୍ତି ଯେହୁ ବିଶ୍ୱର ଭରଣ ପୋଷଣ । ତାହାଙ୍କ ନାମ ଭରତ ହୋଇବ ଏସନ ॥
ଯାହାଙ୍କ ସ୍ମରଣେ ଶତ୍ରୁ ହୁଅନ୍ତି ବିନାଶ । ଶତ୍ରୁଘ୍ନ ନାମ ତାହାଙ୍କ ବେଦରେ ପ୍ରକାଶ ॥୪॥

ଲକ୍ଷଣ ଆଳୟ ଶ୍ରୀରାମଙ୍କ ପ୍ରିୟ ସକଳ ଜଗତାଧାର ।
ରଖିଲେ ବଶିଷ୍ଠ ଗୁରୁ ତାହାଙ୍କର ଲକ୍ଷ୍ମଣ ନାମ ଉଦାର ॥୧୯୭॥

ଧରିଲେ ନାମ ବଶିଷ୍ଠ ହୃଦୟେ ବିଚାରି । ବେଦ-ତତ୍ତ୍ୱ-ନରପାଳ, ତବ ସୁତ ଚାରି ॥
ଭକ୍ତଙ୍କ ସର୍ବସ୍ୱ ମୁନି-ଧନ ଶିବ-ପ୍ରାଣ । ବାଳକେଳି ରସେ ସୁଖ ଲଭନ୍ତି ସେ ଜାଣ ॥୧॥
ବାଲ୍ୟକାଳୁ ଜାଣି ନିଜ ହିତକାରୀ ପତି । ଲକ୍ଷ୍ମଣ ରାମଚରଣେ ପ୍ରୀତି ଆଚରନ୍ତି ॥
ଭରତ ଶତ୍ରୁଘ୍ନ ଦେନି ଭାଇ ପରସ୍ପର । ପ୍ରୀତି ବଢାନ୍ତି ଯେସନେ ସ୍ୱାମୀ ଅନୁଚର ॥୨॥
ଶ୍ୟାମଳ ଗଉର ସୁନ୍ଦର ଯୋଡି ସୌମ୍ୟ ଅତି । କୁଟା ତୁଣ୍ଡାଇ ଜନନୀ ଛବି ନିରେଖନ୍ତି ॥
ଚାରି ଭାଇ ରୂପ ତେଜ ଗୁଣ ଶୀଳ ଧାମ । ତଥାପି ଅଧିକ ସୁଖସାଗର ଶ୍ରୀରାମ ॥୩॥

---

ଏକ ମାତ୍ର ଜଳକଣା ଦ୍ୱାରା ତ୍ରିଲୋକ ସୁଖୀ ହୁଅନ୍ତି, ଆପଣଙ୍କ ସେହି ଜ୍ୟେଷ୍ଠପୁତ୍ରଙ୍କ ନାମ 'ରାମ' ହେବ । ସେ ସୁଖଭବନ ଓ ସମ୍ପୂର୍ଣ୍ଣ ସଂସାରକୁ ଶାନ୍ତି ଦେବେ ॥ ୩ ॥ ଯେ ସଂସାରର ଭରଣପୋଷଣ କରନ୍ତି, ଆପଣଙ୍କ ସେହି ଦ୍ୱିତୀୟ ପୁତ୍ରଙ୍କ ନାମ 'ଭରତ' ହେବ । ଯାହାଙ୍କ ସ୍ମରଣ ମାତ୍ରେ ଶତ୍ରୁର ନାଶ ଘଟେ, ତାଙ୍କର ବେଦପ୍ରସିଦ୍ଧ ନାମ 'ଶତ୍ରୁଘ୍ନ' ॥ ୪ ॥ ଦୋହା :—ଯେ ଶୁଭ ଲକ୍ଷଣସମୂହର ଧାମ, ଶ୍ରୀରାମଙ୍କ ପ୍ରିୟ ଓ ସମଗ୍ର ଜଗତର ଆଧାର, ଗୁରୁ ବଶିଷ୍ଠ ତାହାଙ୍କର ଉଦାର 'ଲକ୍ଷ୍ମଣ' ନାମ ରଖିଲେ ।" ॥୧୯୭॥ ଚୌପାଇ :—ଗୁରୁଜୀ ହୃଦୟରେ ବିଚାର କରି ପୁତ୍ରମାନଙ୍କର ଏହି ଚାରି ନାମ ରଖିଲେ ଏବଂ କହିଲେ, "ହେ ରାଜନ୍ ! ତୁମର ଏ ଚାରି ପୁଅ ବେଦର ତତ୍ତ୍ୱସ୍ୱରୂପ, ଅର୍ଥାତ୍ ସାକ୍ଷାତ୍ ପରାତ୍ପର ଭଗବାନ୍ । ଏମାନେ ମୁନିଜନଙ୍କ ଧନ, ଭକ୍ତଗଣଙ୍କ ସର୍ବସ୍ୱ ଓ ଶିବଙ୍କ ପ୍ରାଣ-ସ୍ୱରୂପ । ଏମାନେ ଏବେ ତୁମମାନଙ୍କ ପ୍ରେମବଶତଃ ବାଳଲୀଳା-ରସରେ ସୁଖ ଲାଭ କରୁଅଛନ୍ତି ।" ॥ ୧ ॥ ବାଲ୍ୟକାଳରୁ ରାମଙ୍କୁ ନିଜ ପରମହିତୈଷୀ ପ୍ରଭୁ ଜାଣି ଲକ୍ଷ୍ମଣ

ହୃଦୟଁ ଅନୁଗ୍ରହ ଇନ୍ଦୁ ପ୍ରକାସା । ସୂଚତ କିରନ ମନୋହର ହାସା ॥
କବହୁଁ ଉଛଂଗ କବହୁଁ ବର ପଲନା । ମାତୁ ଦୁଲାରଇ କହି ପ୍ରିୟ ଲଲନା ॥୪॥
ବ୍ୟାପକ ବ୍ରହ୍ମ ନିରଂଜନ ନିର୍ଗୁନ ବିଗତ ବିନୋଦ ।
ସୋ ଅଜ ପ୍ରେମ ଭଗତି ବସ କୌଶଲ୍ୟା କେଁ ଗୋଦ ॥୧୯୮॥
କାମ କୋଟି ଛବି ସ୍ୟାମ ସରୀରା । ନୀଲ କଂଜ ବାରିଦ ଗଂଭୀରା ॥
ଅରୁନ ଚରନ ପଂକଜ ନଖ ଜୋତୀ । କମଲ ଦଲନ୍ହି ବୈଠେ ଜନୁ ମୋତୀ ॥୧॥
ରେଖ କୁଲିସ ଧ୍ୱଜ ଅଂକୁସ ସୋହେ । ନୂପୁର ଧୁନି ସୁନି ମୁନି ମନ ମୋହେ ॥
କଟି କିଂକିନୀ ଉଦର ତ୍ରୟ ରେଖା । ନାଭି ଗଭୀର ଜାନ ଜେହିଁ ଦେଖା ॥୨॥

---

ହୃଦ ମଧ୍ୟେ ଅନୁଗ୍ରହ-ଇନ୍ଦୁ ପ୍ରକାଶିତ । ରୁଚିର ହାସ୍ୟ କରଇ କିରଣେ ସୂଚିତ ॥
କେବେ ଉତ୍ସଙ୍ଗରେ କେବେ ହିନ୍ଦୋଳାକୁ ଆଣି । ଜନନୀ ଗେଲ କରନ୍ତି ଭାଷି ମୃଦୁବାଣୀ ॥୪॥
ବ୍ୟାପକ ନିର୍ଗୁଣ ଅଜ ନିରଞ୍ଜନ ବିଗତ-ବିନୋଦରସ ।
ସେ ବ୍ରହ୍ମ ଖେଳନ୍ତି କୌଶଲ୍ୟାଙ୍କ କୋଳେ ହୋଇ ପ୍ରେମ ଭକ୍ତି ବଶ ॥୧୯୮॥
କୋଟି କାମ ପ୍ରାୟେ ଛବି ଶ୍ୟାମଳ ଶରୀର । ଯେସନେ ନୀଳ ନୀରଜ ନୀରଦ ଗମ୍ଭୀର ॥
ଅରୁଣ ଚରଣ ସରୋରୁହ ନଖ ଜ୍ୟୋତି । ପଦ୍ମ ପାଖୁଡ଼ାରେ ଅବା ବସିଅଛି ମୋତି ॥୧॥
ଧ୍ୱଜ ବଜ୍ରାଙ୍କୁଶ ରେଖା ପଦତଳେ ଶୋହେ । ନୂପୁର ଧ୍ୱନି ଶୁଣନ୍ତେ ମୁନିମନ ମୋହେ ॥
କଟିରେ କିଙ୍କିଣୀ ରାଜେ ତ୍ରିବଳୀ ଉଦରେ । ନାଭି ଗଭୀର ସେ ଜାଣେ ଦେଖିଛି ଯେ ଥରେ ॥୨॥

---

ତାଙ୍କ ଚରଣରେ ପ୍ରୀତି ଯୋଡ଼ିଦେଲେ । ଭରତ ଓ ଶତ୍ରୁଘ୍ନ ଦୁଇ ଭାଇଙ୍କ ମଧ୍ୟରେ ସ୍ୱାମୀ ଓ ସେବକର ପ୍ରଶଂସନୀୟ ପ୍ରେମ ସ୍ଥାପିତ ହୋଇଗଲା ॥ ୨ ॥ ଶ୍ୟାମ ଓ ଗୌରଶରୀରବିଶିଷ୍ଟ ଦୁଇଟି ସୁନ୍ଦର ଯୋଡ଼ିଙ୍କ ଶୋଭା ଦେଖି ମାତାମାନେ ବିମୋହିତ ହେଉଥା'ନ୍ତି ଏବଂ ଦୃଷ୍ଟି ନ ପଡ଼ିବା ଲାଗି ନିଉଛୁ ଯାଉଥା'ନ୍ତି । ସେହିପରି ଦେଖିବ'କୁ ଗଲେ ତ, ଚାରିଟିଯାକ ଭାଇ ଶୀଳ, ରୂପ ଓ ଗୁଣର ଧାମ । ତଥାପି ସମସ୍ତଙ୍କ ମଧ୍ୟରେ ସୁଖ-ସାଗର ଶ୍ରୀରାମ ଶ୍ରେଷ୍ଠ ଥିଲେ ॥ ୩ ॥ ତାହାଙ୍କ ହୃଦୟର ଅନୁଗ୍ରହ-ଚନ୍ଦ୍ରମା ପ୍ରକାଶିତ । ମନୋହର ହାସ୍ୟ ସେହି ଚନ୍ଦ୍ରମାର କିରଣରାଜି । କେତେବେଳେ କୋଳରେ ଆଉ କେତେବେଳେ ଉତ୍ତମ ଦୋଳାରେ ଶୁଆଇ ମାତା "ମୋ ବାପରେ, ମୋ ଧନରେ" ଆଦି ପ୍ରିୟବାଣୀ କହି ଗେଲ କରୁଥା'ନ୍ତି ॥୪॥ ଦୋହା:-ଯେଉଁ ପ୍ରଭୁ ସର୍ବବ୍ୟାପକ, ନିରଞ୍ଜନ, ନିର୍ଗୁଣ, ବିନୋଦ-ରହିତ ଏବଂ ଅଜନ୍ମା ବ୍ରହ୍ମ, ସେହି ଆଜି ପ୍ରେମ ଓ ଭକ୍ତିର ବଶବର୍ତ୍ତୀ ହୋଇ କୌଶଲ୍ୟାଙ୍କ କୋଳରେ ଖେଳୁଅଛନ୍ତି ॥୧୯୮॥ ଚୌପାଈ —ତାଙ୍କର ନୀଳକମଳ ଓ ଗମ୍ଭୀର-ମେଘ-ଶ୍ୟାମଳ ଶରୀରରେ କୋଟି କୋଟି କାମଦେବର ଶୋଭା ବିରାଜିତ । ଅରୁଣ ଚରଣ-କମଳ ସଙ୍ଗେ ନଖର ଶୁଭ୍ର ଜ୍ୟୋତି ଅତି ସୁନ୍ଦର ଦେଖାଯାଉଥାଏ । ମନେହୁଏ, ସତେ ଯେମିତି ରକ୍ତ-କମଳ-ଦଳରେ ମୋତି ଜଡ଼ିତ ହୋଇ ରହିଛି କି ! ॥ ୧ ॥ ଚରଣତଳେ ବଜ୍ର, ଧ୍ୱଜା ଓ ଅଙ୍କୁଶ ଚିହ୍ନ ସୁଶୋଭିତ । ନୂପୁର ଧ୍ୱନି ଶୁଣି

ଭୁଜ ବିସାଲ ଭୂଷନ ଜୁତ ଭୂରୀ । ହିୟଁ ହରି ନଖ ଅତି ସୋଭା ରୂରୀ ॥
ଉର ମନିହାର ପଦିକ କୀ ସୋଭା । ବିପ୍ର ଚରନ ଦେଖତ ମନ ଲୋଭା ॥୩॥
କଂବୁ କଂଠ ଅତି ଚିବୁକ ସୁହାଈ । ଆନନ ଅମିତ ମଦନ ଛବି ଛାଈ ॥
ଦୁଇ ଦୁଇ ଦସନ ଅଧର ଅରୁନାରେ । ନାସା ତିଲକ କୋ ବରନୈ ପାରେ ॥୪॥
ସୁନ୍ଦର ଶ୍ରବନ ସୁଚାରୁ କପୋଲା । ଅତି ପ୍ରିୟ ମଧୁର ତୋତରେ ବୋଲା ॥
ଚିକ୍କନ କଚ କୁଂଚିତ ଗଭୁଆରେ । ବହୁ ପ୍ରକାର ରଚି ମାତୁ ସଁୱାରେ ॥୫॥
ପୀତ ଝଁଗୁଲିଆ ତନୁ ପହିରାଈ । ଜାନୁ ପାନି ବିଚରନି ମୋହି ଭାଈ ॥
ରୂପ ସକହିଁ ନହିଁ କହି ଶ୍ରୁତି ସେଷା । ସୋ ଜାନଇ ସପନେହୁଁ ଜେହିଁ ଦେଖା ॥୬॥

ସୁଖ ସଂଦୋହ ମୋହପର ଜ୍ଞାନ ଗିରା ଗୋତୀତ ।
ଦଂପତି ପରମ ପ୍ରେମ ବସ କର ସିସୁଚରିତ ପୁନୀତ ॥୧୯୯॥

---

ଭୁଜ ବିଶାଳ ବିବିଧ ଭୂଷଣେ ଭୂଷିତ । ହୃଦେ ହରି ନଖ ଶୋଭା ପରମ ଲଳିତ ॥
ବକ୍ଷରେ ସୁମଣିହାର ପଦକ ଶୋଭଇ । ବିପ୍ରଚରଣ ବିଲୋକି ମନ ପ୍ରଲୋଭଇ ॥୩॥
କମ୍ବୁ କଣ୍ଠ ରମ୍ୟ ଅତି ଚିବୁକ ଶୋହଇ । ବଦନେ ଅସୀମ କାମଶୋଭା ବିରାଜଇ ॥
ଅରୁଣ ଅଧର ଦୁଇ ଦୁଇଟି ଦଶନ । ନାସିକା ତିଳକ କରିପାରେ କେ ବର୍ଣ୍ଣନ ॥୪॥
ସୁରୁ ଶ୍ରବଣ କପୋଳ ଅତି ରମଣୀୟ । ମଧୁର ଦଦେଟି ବାଣୀ ଲାଗେ ଅତି ପ୍ରିୟ ॥
ଚିକ୍କଣ କୁଞ୍ଚିତ କୃଷ୍ଣ କେଶ ଗର୍ଭଜାତ । ବହୁତ ଯତନ କରି ସାଜନ୍ତି ମାତ ॥୫॥
ପୀତଝୀନ ପରିଧାନ ଶୋହେ ତାଙ୍କ ଦେହେ । ଜାନୁ ହସ୍ତେ ବିଚରଣ ମନ ମୋର ମୋହେ ॥
ରୂପ ଶ୍ରୁତିଶେଷ ଦ୍ୱାରା ନ ହେବ ବର୍ଣ୍ଣନ । ସେ ଜାଣେ ସ୍ୱପ୍ନେ ଯେ ବାରେ କରିଛି ଦର୍ଶନ ॥୬॥

ସୁଖ ନିକେତନ ମୋହାଦି ବିହୀନ ଜ୍ଞାନ ବଚନ ଗୋତୀତ ।
କରନ୍ତି ଦମ୍ପତି ପ୍ରେମ ବଶ ଅତି ପବିତ୍ର ଶିଶୁ ଚରିତ ॥୧୯୯॥

---

ମୁନିଗଣଙ୍କ ମନ ମଧ୍ୟ ମୋହିତ ହୋଇଯାଉଥାଏ । କଟିରେ କିଙ୍କିଣୀ ଓ ପେଟରେ ତିନି ଗୋଟି ରେଖା (ତ୍ରିବଳୀ) ଶୋଭା ପାଉଥାଏ । ଯେ ଦେଖିଅଛନ୍ତି, ସେଇ ହିଁ ନାଭିର ଗମ୍ଭୀରତା କେତେ ଜାଣିଥିବେ ॥ ୨ ॥ ତାଙ୍କ ବିଶାଳ ବାହୁ ବହୁତ ଅଳଙ୍କାରରେ ସୁଶୋଭିତ । ହୃଦୟ ଉପରେ କେଶରୀନଖର ଅତି ବିଚିତ୍ର ଛଟା । ବକ୍ଷରେ ରତ୍ନମଣି-ହାରର ଶୋଭା ଏବଂ ବ୍ରାହ୍ମଣ (ଭୃଗୁ ମୁନି)ଙ୍କର ଚରଣ-ଚିହ୍ନକୁ ଦେଖିବା ମାତ୍ରେ ମନ ଲୋଭେଇଯାଏ ॥ ୩ ॥ ଶଙ୍ଖ ସଦୃଶ କଣ୍ଠ ଏବଂ ଚିବୁକ ଅତି ସୁନ୍ଦର । ମୁଖରେ ଅସଂଖ୍ୟ କାମଦେବଙ୍କର ଛଟା ବିରାଜିତ । ଦୁଇଟି ସୁନ୍ଦର ଶ୍ରେଷ୍ଠ ଦାନ୍ତ, ଲାଲ ରଙ୍ଗର ଅଧର, ନାସିକା ଓ ତିଳକର ସୌନ୍ଦର୍ଯ୍ୟ କିଏ ବର୍ଣ୍ଣନା କରିପାରିବ ? ॥ ୪ ॥ ସୁନ୍ଦର କାନ ଓ ଅତି ସୁନ୍ଦର ଗାଲ । ତାଙ୍କର ମଧୁର, ଦଦେଟି ଶବ୍ଦ ଶୁଣି ସମସ୍ତେ ଭୋଳ ହୋଇଯାଉଥା'ନ୍ତି । ଜନ୍ମ ସମୟରୁ ଥିବା ଚିକ୍କଣ ଓ କୁଞ୍ଚିତ କେଶଗୁଚ୍ଛାକୁ ବହୁତ ପ୍ରକାରେ କୁଣ୍ଡାଇ ସୁସଜ୍ଜିତ କରି ଦେଇଥା'ନ୍ତି ॥ ୫ ॥ ତାଙ୍କ [illegible]

ଏହି ବିଧି ରାମ ଜଗତ ପିତୁ ମାତା । କୋସଲପୁର ବାସିନ୍ହ ସୁଖଦାତା ॥
ଜିନ୍ହ ରଘୁନାଥ ଚରନ ରତି ମାନୀ । ତିନ୍ହ କୀ ଯହ ଗତି ପ୍ରଗଟ ଭବାନୀ ॥୧॥
ରଘୁପତି ବିମୁଖ ଜତନ କର କୋରୀ । କଵନ ସକଇ ଭବ ବଂଧନ ଛୋରୀ ॥
ଜୀବ ଚରାଚର ବସ କୈ ରାଖେ । ସୋ ମାୟା ପ୍ରଭୁ ସୋଁ ଭୟ ଭାଖେ ॥୨॥
ଭୃକୁଟି ବିଲାସ ନଚାଵଇ ତାହୀ । ଅସ ପ୍ରଭୁ ଛାଡ଼ି ଭଜିଅ କହୁ କାହୀ ॥
ମନ କ୍ରମ ବଚନ ଛାଡ଼ି ଚତୁରାଈ । ଭଜତ କୃପା କରିହହିଁ ରଘୁରାଈ ॥୩॥
ଏହି ବିଧି ସିସୁ ବିନୋଦ ପ୍ରଭୁ କୀନ୍ହା । ସକଲ ନଗରବାସିନ୍ହ ସୁଖ ଦୀନ୍ହା ॥
ଲୈ ଉଛଂଗ କବହୁଁକ ହଲରାଵୈ । କବହୁଁ ପାଲନେଁ ଘାଲି ଝୁଲାଵୈ ॥୪॥

---

ଏମନ୍ତେ ରାମ ଅଖିଳ ବିଶ୍ୱ ପିତା ମାତା । କୋଶଳପୁରବାସୀଙ୍କ ହେଲେ ସୁଖଦାତା ॥
ଯେ ରଘୁନାଥ ଚରଣେ ପ୍ରୀତି କରିଛନ୍ତି । ତାହାଙ୍କ ପ୍ରତ୍ୟକ୍ଷେ ଏହି ଗତି ପାର୍ବତୀ ॥୧॥
କଲେ ହେଁ କୋଟି ଯତନ ରାମ ପରାଙ୍ମୁଖ । କେ ନାଶି ପାରିବ ଭବବନ୍ଧନର ଦୁଃଖ ॥
ଚରାଚର ଜୀବେ ବଶ କରି ଯେ ରଖଇ । ସେ ମାୟା ପ୍ରଭୁଙ୍କ ଆଗେ ସଭୟେ ରହଇ ॥୨॥
ଭ୍ରୂକୁଟି ବିଲାସ ମାତ୍ରେ ନଚାନ୍ତି ତାହାକୁ । ଏମନ୍ତ ପ୍ରଭୁଙ୍କୁ ତେଜି ଭଜିବା କାହାକୁ ॥
ମନ କର୍ମ ବଚନରୁ ତେଜି ଚତୁରତା । ଭଜନ୍ତେ କୃପା କରିବେ ରଘୁକୁଳ-ଭର୍ତ୍ତା ॥୩॥
ଶୈଶବ ବିନୋଦ ପ୍ରଭୁ କରିଣ ଏସନେ । ସୁଖୀ କରନ୍ତି ସମସ୍ତ ପୁରବାସୀ ଜନେ ॥
ଘେନି ଉତ୍ସଙ୍ଗରେ କେବେ ଜନନୀ ଖେଳାନ୍ତି । କେବେ ଅବା ହିନ୍ଦୋଳାରେ ଶୁଆଇ ଝୁଲନ୍ତି ॥୪॥

---

ଜାମା ପିନ୍ଧା ହୋଇଛି । ଜାନୁ ଓ ହାତରେ ଭରା ଦେଇ ତାଙ୍କ ଗୁରୁଣ୍ଡି ଗୁରୁଣ୍ଡି ଚାଲିବା ଦୃଶ୍ୟ ମୋତେ ବଡ଼ ଭଲ ଲାଗେ । ବେଦ ଓ ଶେଷ ମଧ୍ୟ ତାଙ୍କ ରୂପ ବର୍ଣ୍ଣନା କରି ପାରିବେ ନାହିଁ । ଯେ ସ୍ୱପ୍ନରେ ସେ ରୂପ ଦର୍ଶନ କରିଛି, କେବଳ ସେହି ବ୍ୟକ୍ତି ଏ ରହସ୍ୟ ବୁଝି ପାରିବ ॥ ୬ ॥ ଦୋହା —ଯେ ସକଳ ସୁଖର ସମୁଦ୍ର, ମୋହଠାରୁ ଊର୍ଦ୍ଧ୍ୱରେ ଏବଂ ଜ୍ଞାନ, ବାଣୀ ଓ ଇନ୍ଦ୍ରିୟର ଅତୀତ, ସେହି ଭଗବାନ୍ ଦମ୍ପତି ଦଶରଥ-କୌଶଲ୍ୟାଙ୍କ ଅତିଶୟ ପ୍ରେମର ଅଧୀନ ହୋଇ ପବିତ୍ର ବାଳଲୀଳା କରୁଥା'ନ୍ତି ॥ ୧୯୯ ॥ ଚୌପାଇ —ଏହି ରୂପେ ସମଗ୍ର ଜଗତର ମାତାପିତା ଶ୍ରୀରାମ ଅଯୋଧ୍ୟାପୁର ନିବାସୀ-ମାନଙ୍କୁ ସୁଖ ଦେଉଥା'ନ୍ତି । ହେ ଭବାନି ! ଯେଉଁମାନେ ଶ୍ରୀରାମଚନ୍ଦ୍ରଙ୍କ ଚରଣ ପ୍ରତି ପ୍ରେମ ରଖିଆନ୍ତି, ସେମାନେ ଏ ପ୍ରକାର ପ୍ରତ୍ୟକ୍ଷ ଗତି ଲାଭ କରିଥା'ନ୍ତି । (ଭଗବାନ୍ ସେମାନଙ୍କ ପ୍ରେମବଶବର୍ତ୍ତୀ ହୋଇ ବାଳଲୀଳା କରି ସେମାନଙ୍କୁ ଏହି ପ୍ରକାର ଆନନ୍ଦ ପ୍ରଦାନ କରିଥା'ନ୍ତି ।) ॥ ୧ ॥ ଶ୍ରୀ ରଘୁନାଥଙ୍କ ପ୍ରତି ବିମୁଖ ମନୁଷ୍ୟ କୋଟି କୋଟି ଉପାୟ କରୁ ପଛକେ, କିନ୍ତୁ ତାହାର ସଂସାରବନ୍ଧନ କିଏ ଫେଡ଼ି ପାଇବ ? ଯେଉଁ ମାୟା ଚରାଚର ସମସ୍ତ ଜୀବଙ୍କୁ ଆପଣାର ବଶ କରି ରଖିଅଛି, ସେ ମଧ୍ୟ ପ୍ରଭୁଙ୍କୁ ଭୟ କରେ ॥୨॥ ଭଗବାନ୍ ସେହି ମାୟାକୁ ତାଙ୍କ ଭ୍ରୂକୁଟୀ ବିଳାସ ଦ୍ୱାରା ନଚାନ୍ତି । ଏପରି ପ୍ରଭୁଙ୍କୁ ଛାଡ଼ି କୁହ ତ, ଆଉ କାହାର ଭଜନ କରିବା ? ମନ, ବଚନ ଓ କର୍ମରୁ ଚତୁରତା ତ୍ୟାଗ କରି

ପ୍ରେମ ମଗନ କୌଶଲ୍ୟା ନିସି ଦିନ ଜାତ ନ ଜାନ ।
ସୁତ ସନେହ ବସ ମାତା ବାଲଚରିତ କର ଗାନ ॥୨୦୦॥
ଏକବାର ଜନନୀଁ ଅନ୍ହୱାଏ । କରି ସିଁଗାର ପଲନାଁ ପୌଢ଼ାଏ ॥
ନିଜ କୁଲ ଇଷ୍ଟଦେବ ଭଗବାନା । ପୂଜା ହେତୁ କୀହ୍ନ ଅସ୍ନାନା ॥୧॥
କରି ପୂଜା ନୈବେଦ୍ୟ ଚଢ଼ାୱା । ଆପୁ ଗଈ ଜହଁ ପାକ ବନାୱା ॥
ବହୁରି ମାତୁ ତହୱାଁ ଚଲି ଆଈ । ଭୋଜନ କରତ ଦେଖ ସୁତ ଜାଈ ॥୨॥
ଗୈ ଜନନୀ ସିସୁ ପହିଁ ଭୟଭୀତା । ଦେଖା ବାଲ ତହାଁ ପୁନି ସୂତା ॥
ବହୁରି ଆଇ ଦେଖା ସୁତ ସୋଈ । ହୃଦୟଁ କଂପ ମନ ଧୀର ନ ହୋଈ ॥୩॥
ଇହାଁ ଉହାଁ ଦୁଇ ବାଲକ ଦେଖା । ମତିଭ୍ରମ ମୋର କି ଆନ ବିସେଷା ॥
ଦେଖି ରାମ ଜନନୀ ଅକୁଲାନୀ । ପ୍ରଭୁ ହଁସି ଦୀହ୍ନ ମଧୁର ମୁସୁକାନୀ ॥୪॥

---

ପ୍ରେମରେ ନିମଗ୍ନ କୌଶଲ୍ୟା ହୋଇଣ ନ ଜାଣନ୍ତି ଦିନ ରାତି ।
ପୁତ୍ର ସ୍ନେହାଧୀନା ଜନନୀ ସର୍ବଦା ଶିଶୁ-ଚରିତ ଗାଆନ୍ତି ॥୨୦୦॥
ଏକଦା ଜନନୀ ସ୍ନାନ ସୁତଙ୍କୁ କରାଇ । ଦୋଳାରେ ଶୁଆଇ ଦେଲେ ଭୂଷଣ ସଜାଇ ॥
ତହୁଁ ନିଜ କୁଳ ଇଷ୍ଟ ଦେବ ଭଗବାନ । ପୂଜା କରିବା ନିମନ୍ତେ କରିଲେ ସେ ସ୍ନାନ ॥୧॥
ପୂଜା କରିଣ ନୈବେଦ୍ୟ ସମର୍ପଣ କଲେ । ପଛେ ପୁଣି ସ୍ୱୟଂ ପାକ ଭବନକୁ ଚଲେ ॥
କିଛି କ୍ଷଣ ପରେ ମାତା ଆସି ସେ ସ୍ଥାନକୁ । ଭୋଜନ କରୁଥିବାର ଦେଖିଲେ ସୁତଙ୍କୁ ॥୨॥
ଗଲେ ତହୁଁ ଶିଶୁ ପାଶେ ହୋଇ ଭୟଭୀତ । ଦେଖିଲେ ସେଠାରେ ପୁଣି ବାଳକେ ଶାୟିତ ॥
ପୁଣି ଆସି ପୂଜାସ୍ଥଳେ ଦେଖନ୍ତେ ତନୟ । ହୃଦୟ କମ୍ପିଲା ମନ ନ ହୋଇଲା ଥୟ ॥୩॥
ଏଠାରେ ସେଠାରେ ଦେଖି ବାଳକ ଯୁଗଳ । ଭାବନ୍ତି ମୋ ମତି ଭ୍ରମ କିମ୍ବା ଅନ୍ୟ ଛଳ ॥
ଦେଖି ରାମ ଜନନୀଙ୍କୁ ବିକଳେ ଆତୁର । ପ୍ରଭୁ ହସି ଦେଲେ ମୃଦୁ ମଞ୍ଜୁଳ ମଧୁର ॥୪॥

---

ରାମଙ୍କ ପଦ-କଞ୍ଜ ଭଜିବା ମାତ୍ରେ ଶ୍ରୀ ରଘୁନାଥ କୃପା କରିବେ ॥ ୩ ॥ ଏହି ରୂପେ ପ୍ରଭୁ ଶ୍ରୀରାମ ବାଳକ୍ରୀଡ଼ା କଲେ ଏବଂ ସମସ୍ତ ନଗରବାସୀଙ୍କୁ ଆନନ୍ଦ ଦେଲେ । କୌଶଲ୍ୟା କେବେ ତାଙ୍କୁ କୋଳରେ ଏବଂ କେତେବେଳେ ଝୁଲାରେ ଶୁଆଇ ଝୁଲାଉଥା'ନ୍ତି ॥ ୪ ॥ ଦୋହା —ପ୍ରେମମଗ୍ନ କୌଶଲ୍ୟା ରାତିଦିନ କିପରି କଟୁଥାଏ, ଜାଣିପାରୁ ନ ଥା'ନ୍ତି । ସୁତ-ସ୍ନେହାଧୀନା ମାତା ତାଙ୍କ ବାଲଚରିତ ଅନବରତ ଗାନ କରୁଥା'ନ୍ତି ॥ ୨୦୦ ॥ ଚୌପାଈ —ଏକଦା ମାତା ଶ୍ରୀରାମଚନ୍ଦ୍ରଙ୍କୁ ସ୍ନାନ କରାଇଲେ ଏବଂ ତାଙ୍କର ବେଶବିଧାନ କରି ଝୁଲାରେ ତାଙ୍କୁ ଶୁଆଇ ଦେଲେ । ତତ୍ପରେ ନିଜ କୁଳର ଇଷ୍ଟଦେବ ଭଗବାନଙ୍କ ପୂଜାବିଧି କରିବା ନିମନ୍ତେ ସ୍ନାନ କଲେ ॥ ୧ ॥ ପୂଜା କରି ନୈବେଦ୍ୟ ଚଢାଇଲେ ଏବଂ ନିଜେ ପାକଶାଳାକୁ ଗଲେ । ମାତା ପୂଜା-ସ୍ଥାନକୁ ଫେରିଆସି ଦେଖନ୍ତି ତ ତାଙ୍କ ପୁତ୍ର ଇଷ୍ଟଦେବ ଭଗବାନଙ୍କ ଉଦ୍ଦେଶ୍ୟରେ ଅର୍ପିତ ନୈବେଦ୍ୟ ଭୋଜନ କରୁଅଛନ୍ତି ॥ ୨ ॥ ଜନନୀ ଭୟଭୀତ ହୋଇ (ଝୁଲାରେ ଶୋଇଥିଲା,

ଦେଖରାଵା ମାତହି ନିଜ ଅଦ୍ଭୁତ ରୂପ ଅଖଂଡ ।
ରୋମ ରୋମ ପ୍ରତି ଲାଗେ କୋଟି କୋଟି ବ୍ରହ୍ମଂଡ ॥୨୦୧॥
ଅଗନିତ ରବି ସସି ସିବ ଚତୁରାନନ । ବହୁ ଗିରି ସରିତ ସିଂଧୁ ମହି କାନନ ॥
କାଲ କର୍ମ ଗୁନ ଜ୍ଞାନ ସୁଭାଊ । ସୋଉ ଦେଖା ଜୋ ସୁନା ନ କାଊ ॥୧॥
ଦେଖୀ ମାୟା ସବ ବିଧି ଗାଢୀ । ଅତି ସଭୀତ ଜୋରେଁ କର ଠାଢ଼ୀ ॥
ଦେଖା ଜୀବ ନଚାୱଇ ଜାହୀ । ଦେଖୀ ଭଗତି ଜୋ ଛୋରଇ ତାହୀ ॥୨॥
ତନ ପୁଲକିତ ମୁଖ ବଚନ ନ ଆୱା । ନୟନ ମୂଦି ଚରନନି ସିରୁ ନାୱା ॥
ବିସମୟବନ୍ତ ଦେଖି ମହତାରୀ । ଭଏ ବହୁରି ସିସୁରୂପ ଖରାରୀ ॥୩॥

ଦେଖାଇଲେ ମାତା କୌଶଲ୍ୟାଙ୍କୁ ନିଜ ଅଦ୍ଭୁତ ରୂପ ଅଖଣ୍ଡ ।
ରୋମେ ରୋମେ ପ୍ରତି ଲାଗି ରହିଛନ୍ତି ଅନେକାନେକ ବ୍ରହ୍ମାଣ୍ଡ ॥୨୦୧॥
ଅଗଣିତ ରବି ଶଶୀ ବିରଞ୍ଚି ମହେଶ । ବହୁ ନଦୀ ଗିରି ସିନ୍ଧୁ ଅବନୀ ବିଶେଷ ॥
କାଳ କରମ ସ୍ୱଭାବ ଗୁଣ ଦୋଷ ପୁଣି । ତାହା ଦେଖିଲେ କେବେହେଁ ନ ଥିଲେ ଯା'ଶୁଣି ॥୧॥
ଦେଖିଲେ ସବୁପ୍ରକାରେ ମାୟା ବଳବତୀ । କର ଯୋଡ଼ି ଆଗେ ଉଭା ଭୟଭୀତେ ଅତି ॥
ଦେଖିଲେ ସେ ଜୀବେ ମାୟା ନଚାଏ ଯାହାଙ୍କୁ । ବିଲୋକିଲେ ଭକ୍ତି ଯେ ମୁକ୍ତ କରେ ତାଙ୍କୁ ॥୨॥
ନ ସ୍ଫୁରିଲା ବାଣୀ ହେଲା ପୁଲକ ଶରୀର । ଲୋଚନ ବୁଜି ଚରଣେ ନୁଆଁଇଲେ ଶିର ॥
ବିସ୍ମୟାନ୍ୱିତ ମାତାଙ୍କୁ ବିଲୋକନ କରି । ହୋଇଲେ ବାଳକ ରୂପ ପୁଣି ଖର-ଅରି ॥୩॥

ଏଠି କିଏ ଆଣି ବସାଇ ଦେଲା—ଏହି ବିଷୟ ହେତୁ ଡରି) ପୁଣି ନିକଟକୁ ଗଲେ ଏବଂ ସେଠାରେ ବାଳକଙ୍କୁ ଶୋଇଥିବାର ଦେଖିଲେ । ପୁଣି ପୂଜା-ସ୍ଥାନକୁ ଫେରି ଦେଖିଲେ, ପୁଣି ସେହିଠାରେ ଭୋଜନରେ ବ୍ୟସ୍ତ । ତାଙ୍କ ହୃଦୟ କମ୍ପିବାକୁ ଲାଗିଲା । ମନ ଆଦୌ ସ୍ଥିର ହେଉ ନ ଥାଏ ॥ ୩ ॥ ସେ ମନେ ମନେ ଭାବିଲେ—ଏଠାରେ ସେଠାରେ ମୁଁ ଦୁଇଟି ବାଳକ ଦେଖିଲି । ଏହା ମୋର ବୁଦ୍ଧିଭ୍ରମ ଅଥବା ଅନ୍ୟ କିଛି ବିଶେଷ କାରଣ ଏଥିରେ ଅଛି ? ପ୍ରଭୁ ଶ୍ରୀରାମଚନ୍ଦ୍ର ମାତାଙ୍କର ଏପରି ବ୍ୟାକୁଳତା ଦେଖି ମଧୁର ସ୍ମିତ ହାସ୍ୟ ପ୍ରକାଶ କଲେ ॥ ୪ ॥ ଦୋହା :—ତଦନନ୍ତର ସେ ମାତାଙ୍କୁ ଆପଣାର ଅଖଣ୍ଡ ଓ ଅଦ୍ଭୁତ ରୂପ ଦେଖାଇଲେ । ସେହି ରୂପର ପ୍ରତ୍ୟେକ ରୋମରେ କୋଟି କୋଟି ବ୍ରହ୍ମାଣ୍ଡ ଅବସ୍ଥିତ ଥିବାର କୌଶଲ୍ୟା ଦେଖିଲେ ॥ ୨୦୧ ॥ ଚୌପାଈ :—ଅଗଣିତ ସୂର୍ଯ୍ୟ, ଚନ୍ଦ୍ର, ବ୍ରହ୍ମା, ଅସଂଖ୍ୟ ପର୍ବତ, ନଦୀ, ସମୁଦ୍ର, ପୃଥିବୀ, ବନ, କାଳ, କର୍ମ, ଗୁଣ, ଜ୍ଞାନ ଓ ଅପାର ସ୍ୱଭାବ ଦେଖିଲେ । କାନରେ ଯାହା ଶୁଣା ନ ଥିଲା, ସେ ସବୁ ପଦାର୍ଥ ମଧ କୌଶଲ୍ୟା ରାମଙ୍କ ମୁଖରେ ଦେଖିଲେ ॥ ୧ ॥ ସକଳ ପ୍ରକାରେ ବଳବତୀ ମାୟାକୁ ଭଗବାନଙ୍କ ସମ୍ମୁଖରେ ଭୟରେ କର ଯୋଡ଼ି ଉଭା ହୋଇଥିବାର ସେ ଦେଖିଲେ । ମାୟା ଜୀବକୁ ନଚାଉଥିବାର ଦେଖିଲେ । ପୁନଶ୍ଚ ଭକ୍ତିକୁ ଦେଖିଲେ, ଯାହା ଜୀବକୁ ମାୟା-ମୁକ୍ତ କରେ ॥ ୨ ॥ ମାତାଙ୍କର ଶରୀର ପୁଲକିତ

ଅସ୍ତୁତି କରି ନ ଜାଇ ଭୟ ମାନା । ଜଗତପିତା ମୈଁ ସୁତ କରି ଜାନା ॥
ହରି ଜନନୀ ବହୁ ବିଧି ସମୁଝାଈ । ଯହ ଜନି କତହୁଁ କହସି ସୁନୁ ମାଈ ॥୪॥

ବାର ବାର କୌଶଲ୍ୟା ବିନୟ କରଇ କର ଜୋରି ।
ଅବ ଜନି କବହୁଁ ବ୍ୟାପୈ ପ୍ରଭୁ ମୋହି ମାୟା ତୋରି ॥୨୦୨॥

ବାଲଚରିତ ହରି ବହୁବିଧି କୀହ୍ନା । ଅତି ଅନଂଦ ଦାସହ୍ନ କହଁ ଦୀହ୍ନା ॥
କଛୁକ କାଲ ବୀତେଁ ସବ ଭାଈ । ବଡ଼େ ଭଏ ପରିଜନ ସୁଖଦାଈ ॥୧॥
ଚୂଡ଼ାକରନ କୀହ୍ନ ଗୁରୁ ଜାଈ । ବିପ୍ରହ୍ନ ପୁନି ଦଛିନା ବହୁ ପାଈ ॥
ପରମ ମନୋହର ଚରିତ ଅପାରା । କରତ ଫିରତ ଚାରିଉ ସୁକୁମାରା ॥୨॥
ମନ'କ୍ରମ ବଚନ ଅଗୋଚର ଜୋଈ । ଦଶରଥ ଅଜିର ବିଚର ପ୍ରଭୁ ସୋଈ ॥
ଭୋଜନ କରତ ବୋଲ ଜବ ରାଜା । ନହିଁ ଆୱତ ତଜି ବାଲ ସମାଜା ॥୩॥

---

ସ୍ତୁତି କରି ନ ହୁଅଇ ମନେ ମଣି ଭୟ । ଜଗତପିତାଙ୍କୁ ମୁହିଁ ଜାଣିଲି ତନୟ ॥
ହରି ଜନନୀଙ୍କୁ ବୁଝାଇଲେ ନାନା ମତେ । ଏହା କାହାକୁ କହିବୁ ନାହିଁ ମା' ଯେମନ୍ତେ ॥୪॥

ଯୋଡ଼ି ବାରମ୍ବାର କଉଶଲ୍ୟା କର କହିଲେ ବିନୟ କରି ।
ଏବେ ପ୍ରଭୁ ମୋତେ କେବେହେଁ ନ ବ୍ୟାପୁ ପ୍ରଚଣ୍ଡ ମାୟା ତୁମ୍ଭର ॥୨୦୨॥

ବିବିଧ ବାଲ ଚରିତ କରି ଭଗବାନ । ଅତି ଆନନ୍ଦ ଦାସଙ୍କୁ କରିଲେ ପ୍ରଦାନ ॥
କିଛିକାଳ ଗଲ୍‌ଯାନ୍ତେ ବା'ଳକ ସରବେ । ବଡ ହୋଇ ସୁଖୀ କଲେ ଆତ୍ମୀୟ ବାନ୍ଧବେ ॥୧॥
ଗୁରୁ ଯାଇ ଚୂଡ଼ାକର୍ଣ୍ଣ ବିଧି ସମାପିଲେ । ବିପ୍ରବୃନ୍ଦ ପୁଣି ବହୁ ଦକ୍ଷିଣା ପାଇଲେ ।
ପରମ ରମ୍ୟ ପବିତ୍ର ଚରିତ୍ର ଅପାର । କରଣ ଭ୍ରମନ୍ତି ଚାରି ଭ୍ରାତା ସୁକୁମାର ॥୨॥
ମନ କର୍ମ ବଚନେ ଯେ ଅଗୋଚର ଅତି । ଦଶରଥ ପ୍ରାଙ୍ଗଣେ ସେ ପ୍ରଭୁ ବିଚରନ୍ତି ॥
ଭୋଜନ କାଳେ ଡାକନ୍ତେ ସ୍ନେହେ ନରରାଜ । ନ ଆସନ୍ତି ପରିହରି ଶିଶୁଙ୍କ ସମାଜ ॥୩॥

---

ହୋଇଗଲା । ମୁହଁରୁ କଥା ବାହାରୁ ନ ଥାଏ । ଆଖି ବୁଜି ସେ ଶ୍ରୀରାମଙ୍କ ଚରଣରେ ଶିର ନୁଆଁଇଲେ । ମାତାଙ୍କୁ ବିସ୍ମୟାଭିଭୂତ ହେବାର ଦେଖି ଖର ରାକ୍ଷସର ଶତ୍ରୁ ରାମଚନ୍ଦ୍ର ପୁନର୍ବାର ବାଲରୂପ ଧାରଣ କଲେ ॥୩॥ ଭୟରେ କୌଶଲ୍ୟା ସ୍ତୁତି କରି ପାରୁ ନ ଥା'ନ୍ତି । "ଜଗତର ପିତା ପରମାତ୍ମାଙ୍କୁ ମୁଁ ପୁତ୍ର ମନେ କରିଛି" ବୋଲି ଭାବି ସେ ଶଙ୍କିଗଲେ । ଶ୍ରୀହରି ମାତାଙ୍କୁ ବହୁତ ପ୍ରକାରେ ବୁଝାଇଲେ ଏବଂ କହିଲେ, "ହେ ମାତା ! ଶୁଣ, ଏ କଥା କେଉଁଠି ହେଲେ କହିବ ନାହିଁ ।" ॥ ୪ ॥ ସୋରଠା :— କୌଶଲ୍ୟା ବାରମ୍ବାର ହାତ ଯୋଡ଼ି ଅନୁନୟ-ବିନୟ କଲେ, "ହେ ପ୍ରଭୋ ! ଆପଣଙ୍କ ମାୟା ମୋତେ ଯେପରି ଆଉ କେବେ ସ୍ପର୍ଶ ନ କରୁ ।" ॥ ୨୦୨ ॥ ଚୌପାଈ :— ଭଗବାନ୍ ବହୁତ ପ୍ରକାରେ ବାଲଲୀଳା କଲେ ଏବଂ ତାଙ୍କ ସେବକମାନଙ୍କୁ ଅତ୍ୟନ୍ତ ଆନନ୍ଦ ଦେଲେ । କିଛି ସମୟ ଅତିବାହିତ ହୋଇଗଲା । ଚାରି ଭାଇ ବଢିବାକୁ ଲାଗିଲେ ଏବଂ ଆତ୍ମୀୟ-ସ୍ୱଜନମାନଙ୍କୁ ସୁଖ ଦାନ କଲେ ॥ ୧ ॥ ତତ୍ପରେ ଗୁରୁ

କୌଶଲ୍ୟା ଜବ ବୋଲନ ଜାଈ । ଠୁମୁକୁ ଠୁମୁକୁ ପ୍ରଭୁ ଚଲହିଁ ପରାଈ ॥
ନିଗମ ନେତି ସିବ ଅଂତ ନ ପାୱା । ତାହି ଧରୈ ଜନନୀ ହଠି ଧାୱା ॥୪॥
ଧୂସର ଧୂରି ଭରେଁ ତନୁ ଆଏ । ଭୂପତି ବିହସି ଗୋଦ ବୈଠାଏ ॥୫॥
ଭୋଜନ କରତ ଚପଲ ଚିତ ଇତ ଉତ ଅବସରୁ ପାଇ ।
ଭାଜି ଚଲେ କିଲକତ ମୁଖ ଦଧି ଓଦନ ଲପଟାଇ ॥୨୦୩॥
ବାଲଚରିତ ଅତି ସରଲ ସୁହାଏ । ସାରଦ ସେଷ ସଂଭୁ ଶ୍ରୁତି ଗାଏ ॥
ଜିହ୍ନ କର ମନ ଇହ୍ନ ସନ ନହିଁ ରାତା । ତେ ଜନ ବଂଚିତ କିଏ ବିଧାତା ॥୧॥
ଭଏ କୁମାର ଜବହିଁ ସବ ଭ୍ରାତା । ଦୀହ୍ନ ଜନେଊ ଗୁରୁ ପିତୁ ମାତା ॥
ଗୁରଗୃହଁ ଗଏ ପଢ଼ନ ରଘୁରାଈ । ଅଲପ କାଲ ବିଦ୍ୟା ସବ ଆଈ ॥୨॥

---

କୌଶଲ୍ୟା ଯାଆନ୍ତି ଯେବେ ଡାକିବା କାରଣେ । ଠୁକୁରୁ ଠୁକୁରୁ ପ୍ରଭୁ ପଳାନ୍ତି ପ୍ରାଙ୍ଗଣେ ॥
ବେଦ କହନ୍ତି ନେତି, ଶିବ ଅନ୍ତ ନ ଲଭନ୍ତି । ତାଙ୍କୁ ହଠ କରି ଧାଇଁ ଜନନୀ ଧରନ୍ତି ॥୪॥
ଧୂଳି-ଧୂସରିତ ଦେହେ ଆସନ୍ତେ ସ୍ନେହରେ । ହସି ନରପତି ନେଇ ବସାନ୍ତି କୋଳରେ ॥୫॥
ଭୋଜନ କରନ୍ତେ ଚପଳ-ଚିତ୍ତ ସେ ଏଣେ ତେଣେ ବେଳ ପାଇ ।
ଦଧି ଲଟପଟ ମୁଖେ ଉଠି ଝଟ ପଳାନ୍ତି କିଳିକିଳାଇ ॥୨୦୩॥
ବାଲ୍ୟ ଚରିତ ଯେ ଅତି ସରଳ ସୁନ୍ଦର । ଗାଆନ୍ତି ନିଗମ ଶେଷ ଶାରଦା ଶଙ୍କର ॥
ଯାହାଙ୍କ ମନ ନ ଲାଗେ ଏହି ଚରିତରେ । ତାହାଙ୍କୁ ବିହି ବଞ୍ଚିତ କଲେ ଜଗତରେ ॥୧॥
ହୋଇଲେ କୁମାର ଯେତେବେଳେ ସବୁ ଭ୍ରାତା । ଦେଲେ ଯଜ୍ଞ ଉପବୀତ ଗୁରୁ ପିତାମାତା ॥
ଗୁରୁ ଗୃହେ ପଢିବାକୁ ଗଲେ ରଘୁରାୟ । ଅଳ୍ପ ସମୟେ ଶିଖିଲେ ବିଦ୍ୟା ସମୁଦାୟ ॥୨॥

---

ଯାଇ ଚୂଡ଼ା କର୍ମ ସଂସ୍କାର-ବିଧାନ କଲେ । ବିପ୍ରମାନେ ବହୁ ଦକ୍ଷିଣା ପାଇଲେ । ଚାରି ସୁନ୍ଦର ରାଜକୁମାର ଅତି ମନୋହର ଅପାର ଲୀଳା କରି ବୁଲୁଥା'ନ୍ତି ॥୨॥ ଯେଉଁ ପ୍ରଭୁ ମନ, ବଚନ ଓ କର୍ମର ଅଗୋଚର, ସେହି ପ୍ରଭୁ ଦଶରଥଙ୍କ ଅଗଣାରେ ଆଜି ବିହାର କରୁଅଛନ୍ତି । ଭୋଜନ-ବେଳେ ଯେତେବେଳେ ରାଜା ଡାକନ୍ତି, ସେତେବେଳେ ସେ ବାଲସଖା-ସମାଜକୁ ଛାଡ଼ି ଆସୁ ନ ଥା'ନ୍ତି ॥ ୩ ॥ କୌଶଲ୍ୟା ଡାକିବାକୁ ଗଲାବେଳେ ପ୍ରଭୁ ଠୁକୁରୁ ଠୁକୁରୁ ପଳାଇ ଯାଉଥା'ନ୍ତି । ବେଦ ଯାହାଙ୍କୁ 'ନେତି' (ଏତିକି ନୁହେଁ, ଯାହାର ଅନ୍ତ ନାହିଁ, ଅର୍ଥାତ୍ ଅନନ୍ତ) ବୋଲି ନିରୂପଣ କରନ୍ତି ଏବଂ ଶିବ ଯାହାଙ୍କର ଅନ୍ତ ପାଇ ନାହାନ୍ତି, ମାତା ସେହି ପ୍ରଭୁଙ୍କୁ ଜବରଦସ୍ତି ଧରିବା ପାଇଁ ଦୌଡ଼ୁଅଛନ୍ତି ॥ ୪ ॥ ପ୍ରଭୁ ଧୂଳିଧୂସରିତ ହୋଇ ଦୌଡ଼ି ଆସିଲେ ଏବଂ ରାଜା ଦଶରଥ ତାଙ୍କୁ କୋଳରେ ବସାଇ ନେଲେ ॥ ୫ ॥ ଦୋହା ।—ପ୍ରଭୁ ଭୋଜନ କରୁଥା'ନ୍ତି । କିନ୍ତୁ ଚିତ୍ତ ଚଞ୍ଚଳ ହେଉଥାଏ । ଅବସର ପାଇ କିଳିକିଳି ହସି ସେ ଏଣେ ତେଣେ ପଳାଇ ଯାଉଥା'ନ୍ତି । ମୁହଁରେ ଦହିଭାତ ଲାଗି ରହିଥାଏ ॥ ୨୦୩ ॥ ଚୌପାଈ ।—ଶ୍ରୀରାମଚନ୍ଦ୍ରଙ୍କର ଅତି ସରଳ ଓ ସୁନ୍ଦର ବାଲଲୀଳାଗୁଡ଼ିକୁ ସରସ୍ୱତୀ, ଶେଷ, ଶିବ ଓ ବେଦଗଣ ଗାନ କରିଅଛନ୍ତି ।

ଜା କୀ ସହଜ ସ୍ୱାସ ଶ୍ରୁତି ଚାରୀ । ସୋ ହରି ପଢ଼ ଯହ କୌତୁକ ଭାରୀ ॥
ବିଦ୍ୟା ବିନୟ ନିପୁନ ଗୁନ ସୀଲା । ଖେଲହିଁ ଖେଲ ସକଲ ନୃପଲୀଲା ॥୩॥
କରତଲ ବାନ ଧନୁଷ ଅତି ସୋହା । ଦେଖତ ରୂପ ଚରାଚର ମୋହା ॥
ଜିହ୍ନ ବୀଥିହ୍ନ ବିହରହିଁ ସବ ଭାଈ । ଥକିତ ହୋହିଁ ସବ ଲୋଗ ଲୁଗାଈ ॥୪॥

କୋସଲପୁର ବାସୀ ନର ନାରି ବୃଦ୍ଧ ଅରୁ ବାଲ ।
ପ୍ରାନହୁ ତେ ପ୍ରିୟ ଲାଗତ ସବ କହୁଁ ରାମ କୃପାଲ ॥୨୦୪॥

ବଂଧୁ ସଖା ସଁଗ ଲେହିଁ ବୋଲାଈ । ବନ ମୃଗୟା ନିତ ଖେଲହିଁ ଜାଈ ॥
ପାବନ ମୃଗ ମାରହିଁ ଜିୟଁ ଜାନୀ । ଦିନ ପ୍ରତି ନୃପହି ଦେଖାୱହିଁ ଆନୀ ॥୧॥

---

ଯାହାଙ୍କ ସ୍ୱଭାବ-ସିଦ୍ଧ ଶ୍ୱାସ ଶ୍ରୁତି ଚାରି । ସେ ହରି ପଢନ୍ତି ଏହା କଉତୁକ ଭାରି ॥
ବିଦ୍ୟା ଗୁଣଶୀଳ ତଥା ବିନୟେ କୁଶଳ । ନୃପ-କ୍ରୀଡା-ଖେଳ ଆଦି ଖେଳନ୍ତି ସକଳ ॥୩॥
କରେ ଚାପ ଶର ଅତି ହୁଅଇ ଶୋଭିତ । ରୂପ ବିଲୋକନ୍ତେ ଚର ଅଚର ମୋହିତ ॥
ଯେଉଁ ଯେଉଁ ପଥେ ଭ୍ରାତା ସର୍ବେ ବିହରନ୍ତି । ସ୍ତମ୍ଭିତ ସମସ୍ତ ନାରୀ ପୁରୁଷ ହୁଅନ୍ତି ॥୪॥

ଅଯୋଧ୍ୟା-ନିବାସୀ ନରନାରୀ ଯାଣି ଯୁବା ବାଳ ବୃଦ୍ଧ ଅତି ।
ପ୍ରାଣରୁ ଅଧିକ ପ୍ରିୟ ସମସ୍ତଙ୍କୁ କୃପାଳୁ ରାମ ଲାଗନ୍ତି ॥୨୦୪॥

ଭ୍ରାତା ସଖା ସମସ୍ତଙ୍କୁ ସଙ୍ଗରେ ନେଇଣ । ବିପିନେ ମୃଗୟା ନିତ୍ୟ ଖେଳନ୍ତି ଯାଇଣ ॥
ପବିତ୍ର ମୃଗ ମାରନ୍ତି ମନ ମଧ୍ୟେ ଜାଣି । ପ୍ରତି ଦିନ ନୃପତିଙ୍କୁ ଦେଖାନ୍ତି ସେ ଆଣି ॥୧॥

---

ଏହି ଲୀଳାସମୂହରେ ଯେଉଁମାନଙ୍କ ମନ ଅନୁରକ୍ତ ହୋଇନାହିଁ, ବିଧାତା ସେହି ଲୋକମାନଙ୍କୁ ପ୍ରତାରିତ କରିଅଛନ୍ତି ବୋଲି ବୁଝିବାକୁ ହେବ ॥ ୧ ॥ ସମସ୍ତ ଭାଇ କୌମାର ଅବସ୍ଥାକୁ ପ୍ରାପ୍ତ ହେବା ମାତ୍ରେ ଗୁରୁ, ମାତା ଓ ପିତା ସେମାନଙ୍କର ଯଜ୍ଞୋପବୀତ-ସଂସ୍କାର କଲେ । ଶ୍ରୀ ରଘୁନାଥଙ୍କ ଅନ୍ୟାନ୍ୟ ଭାଇଙ୍କ ସଙ୍ଗେ ବିଦ୍ୟାଭ୍ୟାସ କରିବା ନିମନ୍ତେ ଗୁରୁଗୃହକୁ ଗଲେ । ଅଳ୍ପକାଳ ମଧ୍ୟରେ ସେମାନଙ୍କୁ ସକଳ ବିଦ୍ୟା ଆସିଗଲା ॥ ୨ ॥ ଚାରିବେଦ ଯାହାଙ୍କର ସ୍ୱାଭାବିକ ଶ୍ୱାସ-ସ୍ୱରୂପ, ସେହି ଭଗବାନ୍ ପାଠ ପଢୁଅଛନ୍ତି, ଏହା ବଡ ଆଶ୍ଚର୍ଯ୍ୟଜନକ । ଚାରି ଭାଇ ବିଦ୍ୟା, ବିନୟ, ଗୁଣ ଓ ଶୀଳରେ ବଡ ନିପୁଣ ଏବଂ ସକଳ ନୃପଲୀଳା କରୁଥା'ନ୍ତି ॥ ୩ ॥ ସେମାନଙ୍କ ହାତରେ ଶର ଓ ଧନୁ ବିଶେଷ ଶୋଭା ପାଉଥାଏ । ରୂପ ଦେଖିବା ମାତ୍ରେ ଚରାଚର ସମସ୍ତେ ମୋହିତ ହୋଇଯିବେ । ଭାଇମାନେ ଯେଉଁ ମାର୍ଗରେ ବିହାର କରୁଥା'ନ୍ତି, ସେହି ମାର୍ଗରେ ନରନାରୀମାନେ ସେମାନଙ୍କ ଦର୍ଶନରେ ମନ୍ତ୍ରମୁଗ୍ଧ ହେଲା ପରି ଚକିତ ହୋଇ ରହି ଯାଉଥା'ନ୍ତି ॥ ୪ ॥ ଦୋହା —କୋଶଳପୁର-ନିବାସୀ ନରନାରୀ, ବୃଦ୍ଧ ଓ ବାଳକ, ସମସ୍ତଙ୍କୁ କୃପାଳୁ ରାମଚନ୍ଦ୍ର ପ୍ରାଣଠାରୁ ଅଧିକ ପ୍ରିୟ ଲାଗୁଥା'ନ୍ତି ॥ ୨୦୪ ॥ ଚୌପାଇ —ଶ୍ରୀରାମଚନ୍ଦ୍ର ଭାଇ ଓ ଇଷ୍ଟ ମିତ୍ରମାନଙ୍କୁ ସଙ୍ଗରେ ଡାକି ନେଇ ଯାଉଥା'ନ୍ତି ଏବଂ ବନରେ ପ୍ରତିଦିନ ମୃଗୟା କରୁଥାଆନ୍ତି । ମୃଗବଧ ପବିତ୍ର ବୋଲି

ଜେ ମୃଗ ରାମ ବାନ କେ ମାରେ । ତେ ତନୁ ତଜି ସୁରଲୋକ ସିଧାରେ ॥
ଅନୁଜ ସଖା ସଁଗ ଭୋଜନ କରହୀଁ । ମାତୁ ପିତା ଅଜ୍ଞା ଅନୁସରହୀଁ ॥୨॥
ଜେହି ବିଧି ସୁଖୀ ହୋହିଁ ପୁର ଲୋଗା । କରହିଁ କୃପାନିଧି ସୋଇ ସଂଜୋଗା ॥
ବେଦ ପୁରାନ ସୁନହିଁ ମନ ଲାଈ । ଆପୁ କହହିଁ ଅନୁଜହ୍ନ ସମୁଝାଈ ॥୩॥
ପ୍ରାତକାଲ ଉଠି କୈ ରଘୁନାଥା । ମାତୁ ପିତା ଗୁରୁ ନାୱହିଁ ମାଥା ॥
ଆୟସୁ ମାଗି କରହିଁ ପୁର କାଜା । ଦେଖି ଚରିତ ହରଷଇ ମନ ରାଜା ॥୪॥

ବ୍ୟାପକ ଅକଲ ଅନୀହ ଅଜ ନିର୍ଗୁନ ନାମ ନ ରୂପ ।
ଭଗତ ହେତୁ ନାନା ବିଧି କରତ ଚରିତ୍ର ଅନୂପ ॥୨୦୫॥

ୟହ ସବ ଚରିତ କହା ମୈଁ ଗାଈ । ଆଗିଲି କଥା ସୁନହୁ ମନ ଲାଈ ॥
ବିସ୍ୱାମିତ୍ର ମହାମୁନି ଗ୍ୟାନୀ । ବସହିଁ ବିପିନ ସୁଭ ଆଶ୍ରମ ଜାନୀ ॥୧॥

---

ଯେଉଁ ମୃଗ ରାମବାଣ ବାଜନ୍ତେ ମରନ୍ତି । ତନୁ ତେଜି ସୁର-ପୁରେ ସେମାନେ ଗମନ୍ତି ॥
ଅନୁଜ ସଖାଙ୍କୁ ଘେନି କରନ୍ତି ଭୋଜନ । ମାତା ପିତାଙ୍କ ଆଦେଶ ପାଳନ୍ତି ବହନ ॥୨॥
ଯେଉଁ ଭାବେ ସୁଖୀ ହେବେ ପୁରବାସୀ ଜନେ । କରନ୍ତି କରୁଣାନିଧି ଯତନ ତେସନେ ॥
ଶୁଣନ୍ତି ବେଦ ପୁରାଣ ସ୍ଥିର ଚିତ୍ତରେ । ବୁଝାଇ କହନ୍ତି ସ୍ୱୟଂ ଭ୍ରାତାଙ୍କ ଆଗରେ ॥୩॥
ପ୍ରଭାତ ସମୟେ ଉଠି ଶ୍ରୀ ରଘୁନାୟକ । ମାତା ପିତା ଗୁରୁ ପଦେ ନୁଆନ୍ତି ମସ୍ତକ ॥
ଆଦେଶ ମାଗିଣ ପୁର-କାର୍ଯ୍ୟରେ ଲାଗନ୍ତି । ଦେଖି ଚରିତ୍ର ହରଷ ହୁଅନ୍ତି ନୃପତି ॥୪॥

ବ୍ୟାପକ ନିର୍ଗୁଣ ନିଷ୍କଳ ନିଷ୍କାମ ଅଜ ଅନାମ ଅରୂପ ।
ଭକ୍ତଙ୍କ ନିମନ୍ତେ ଲୀଳା ଅନୁପମ କରନ୍ତି ସେ ନାନା ରୂପ ॥୨୦୫॥

ଏ ସମସ୍ତ ଚରିତ୍ର ମୁଁ କହିଲି ବର୍ଣ୍ଣିଣ । ଏବେ ଅନ୍ୟ କଥା ଶୁଣ ମନ ନିବେଶିଣ ॥
ବିଶ୍ୱାମିତ୍ର ମହାମୁନି ଅତି ଜ୍ଞାନୀ ଲେଖି । ରହନ୍ତି ବିପିନେ ଶୁଭ ଆଶ୍ରମ ନିରେଖି ॥୧॥

---

ମନେ କରି ମୃଗ ମାରୁଥା'ନ୍ତି ଏବଂ ପ୍ରତିଦିନ ଆଣି ରାଜା ଦଶରଥଙ୍କୁ ଦେଖାଉଥା'ନ୍ତି ॥ ୧ ॥ ଯେଉଁ ମୃଗମାନେ ଶ୍ରୀରାମଚନ୍ଦ୍ରଙ୍କ ବାଣରେ ନିହତ ହୁଅନ୍ତି, ସେମାନେ ଶରୀର ତ୍ୟାଗପୂର୍ବକ ଦେବଲୋକକୁ ଚାଲିଯାଉଥା'ନ୍ତି । ଶ୍ରୀରାମଚନ୍ଦ୍ର ତାଙ୍କ ସାନ ଭାଇ ଓ ସଖାମାନଙ୍କ ସଙ୍ଗେ ଭୋଜନ କରନ୍ତି ଏବଂ ମାତାପିତାଙ୍କ ଆଦେଶ ସଦା ପାଳନ କରନ୍ତି ॥ ୨ ॥ ପୁରବାସୀମାନେ ଯେପରି ସୁଖୀ ହେବେ, କୃପାନିଧାନ ଶ୍ରୀରାମଚନ୍ଦ୍ର ସେହି କାର୍ଯ୍ୟରେ ଲୀନ ହେଉଥା'ନ୍ତି । ମନଧ୍ୟାନ ଦେଇ ସେ ବେଦପୁରାଣ ଶୁଣୁଥା'ନ୍ତି ଏବଂ ଛୋଟ ଭାଇମାନଙ୍କୁ ତାହା ବୁଝାଇ କହୁଥାଆନ୍ତି ॥ ୩ ॥ ଶ୍ରୀ ରଘୁନାଥ ପ୍ରାତଃକାଳରୁ ଉଠି ମାତା, ପିତା ଓ ଗୁରୁଜନଙ୍କୁ ମୁଣ୍ଡ ନୁଆଁଇ ପ୍ରଣାମ କରନ୍ତି ଏବଂ ସେମାନଙ୍କ ଆଦେଶ ନେଇ ନଗରର କାର୍ଯ୍ୟ କରୁଥା'ନ୍ତି । ତାଙ୍କ ଲୀଳା ଦେଖି ରାଜା ମନେ ମନେ ବଡ଼ ଆନନ୍ଦିତ ହେଉଥା'ନ୍ତି ॥ ୪ ॥ ଦୋହା :—ଯେ ବ୍ୟାପକ, ଅକଳ (ଅଖଣ୍ଡ, ଅରୂପ), ଇଚ୍ଛା-ରହିତ, ଅଜନ୍ମା ଏବଂ ନିର୍ଗୁଣ ତଥା ଯାହାଙ୍କର ନାମ ନାହିଁ କି ରୂପ ନାହିଁ,

ଜହଁ ଜପ ଜଜ୍ଞ ଜୋଗ ମୁନି କରହୀଂ । ଅତି ମାରୀଚ ସୁବାହୁହି ଡରହୀଁ ॥
ଦେଖତ ଜଜ୍ଞ ନିସାଚର ଧାୱହିଁ । କରହିଁ ଉପଦ୍ରବ ମୁନି ଦୁଖ ପାୱହିଁ ॥୨॥
ଗାଧିତନୟ ମନ ଚିଂତା ବ୍ୟାପୀ । ହରି ବିନୁ ମରହିଁ ନ ନିସିଚର ପାପୀ ॥
ତବ ମୁନିବର ମନ କୀନ୍ହ ବିଚାରା । ପ୍ରଭୁ ଅବତରେଉ ହରନ ମହି ଭାରା ॥୩॥
ଏହୂଁ ମିସ ଦେଖୌଁ ପଦ ଜାଈ । କରି ବିନତୀ ଆନୌଁ ଦୋଉ ଭାଈ ॥
ଜ୍ଞାନ ବିରାଗ ସକଲ ଗୁନ ଅୟନା । ସୋ ପ୍ରଭୁ ମୈଂ ଦେଖବ ଭରି ନୟନା ॥୪॥
ବହୁବିଧି କରତ ମନୋରଥ ଜାତ ଲାଗି ନହିଁ ବାର ।
କରି ମଜ୍ଜନ ସରଊ ଜଲ ଗଏ ଭୂପ ଦରବାର ॥୨୦୬॥

---

ତହିଁ ମୁନି ଜପ ଯଜ୍ଞେ ହୋଇଣ ନିରତ । ସୁବାହୁ ମାରୀଚ ଡରେ ଡରନ୍ତି ଅତ୍ୟନ୍ତ ॥
ଦେଖନ୍ତେ ଯଜ୍ଞ ଆରମ୍ଭ ରାକ୍ଷସେ ଧାଆନ୍ତି । କରନ୍ତି ବିଘ୍ନ ଅନେକ ମୁନି ଦୁଃଖ ପାନ୍ତି ॥୨॥
ଚିନ୍ତା ବ୍ୟାପିଲା ଗାଧିଙ୍କ ତନୟ ମନରେ । ହରି ବିନା ନ ମରିବେ ପାପୀ ନିଶାଚରେ ॥
ତହୁଁ ମୁନିବର ମନେ କରିଲେ ବିଚାର । ପ୍ରଭୁ ଅବତରିଛନ୍ତି ହରଣେ ଭୂଭାର ॥୩॥
ଏହି ବାହାନାରେ ଯାଇ ପଦ ବିଲୋକିବି । ବିନତି କରିଣ ବେନି ଭାଇଙ୍କୁ ଆଣିବି ॥
ଜ୍ଞାନ ବୈରାଗ୍ୟ ସକଳ ଗୁଣ ନିକେତନ । ସେ ପ୍ରଭୁଙ୍କୁ ଦେଖିବି ମୁଁ ପୂରାଇ ନୟନ ॥୪॥
କରନ୍ତେ ଏମନ୍ତ ନାନା ମନୋରଥ ଡେରି ନ ହେଲା ଯିବାରେ ।
ସ୍ନାନ କରି ତହୁଁ ସରଯୂ ସଲିଳେ ଗଲେ ନୃପ ଦରବାରେ ॥୨୦୬॥

---

ସେହି ଭଗବାନ୍ ଭକ୍ତଗଣଙ୍କ ନିମନ୍ତେ ନାନା ପ୍ରକାର ଅନୁପମ (ଅଲୌକିକ) ଲୀଳା କରନ୍ତି ॥ ୨୦୫ ॥ ଚୌପାଇ :—ଏସବୁ ପ୍ରସଙ୍ଗ ମୁଁ ଗାଇ କହିଲି, ବର୍ତ୍ତମାନ ପରବର୍ତ୍ତୀ କଥା ମନ ଲଗାଇ ଶୁଣ । ଜ୍ଞାନୀ ମହାମୁନି ବିଶ୍ୱାମିତ୍ର ବନରେ ଶୁଭ ଆଶ୍ରମ ସ୍ଥାପନ କରି ବାସ କରୁଥିଲେ ॥ ୧ ॥ ଯେଉଁଠି ଯାଇ ସେ ମୁନି ଜପ, ଯଜ୍ଞ ଓ ଯୋଗ ଆରମ୍ଭ କରନ୍ତି, ସେ ମାରୀଚ ଓ ସୁବାହୁର ଭୟ ଯୋଗେ ଭୀତ ହୁଅନ୍ତି । ଯଜ୍ଞାରମ୍ଭ ଦେଖିବା ମାତ୍ରେ ରାକ୍ଷସମାନେ ଦୌଡ଼ି 'ଆସୁଥା'ନ୍ତି ଏବଂ ଉପଦ୍ରବ କରୁଥା'ନ୍ତି । ଫଳରେ ମୁନିମାନେ ବଡ଼ ଦୁଃଖ ଭୋଗ କରୁଥା'ନ୍ତି ॥ ୨ ॥ ଗାଧିପୁତ୍ର ବିଶ୍ୱାମିତ୍ରଙ୍କ ମନରେ ମହା ଚିନ୍ତା ଜାତ ହେଲା । ସେ ସ୍ଥିର କଲେ, ଏହି ପାପୀ ରାକ୍ଷସମାନେ ଭଗବାନ୍‌ଙ୍କ ହାତ ବିନା ଅନ୍ୟ କାହିଁରେ ମରିବେ ନାହିଁ । ଶ୍ରେଷ୍ଠ ମୁନି ମନେ ମନେ ବିଚାର କଲେ ଯେ, ପ୍ରଭୁ ପୃଥିବୀର ଭାର ହରଣ ନିମନ୍ତେ ଅବତାର ଗ୍ରହଣ କରିଅଛନ୍ତି । ଏହି ରାକ୍ଷସ-ମାନଙ୍କ ବଧ ବାହାନାରେ ମୁଁ ଯାଇ ତାହାଙ୍କର ଚରଣଯୁଗଳ ଦର୍ଶନ କରିବି ଏବଂ ବିନତି କରି ଦୁଇ ଭାଇଙ୍କୁ ଏଠାକୁ ନେଇ ଆସିବି । ଆହା ! ଯେ ଜ୍ଞାନ, ବୈରାଗ୍ୟ ଓ ସକଳ ଗୁଣର ଧାମ, ସେହି ପ୍ରଭୁଙ୍କୁ ମୁଁ ନେତ୍ର ପୂରାଇ ଦେଖିବି ! ॥ ୪ ॥ ଦୋହା :— ଏହାପରେ ବହୁତ ପ୍ରକାରେ ମନୋରଥ କରି ତରତର ହୋଇ ମୁନି ଅଯୋଧ୍ୟାପୁରକୁ ବାହାରିଲେ । ସରଯୂ ନଦୀର ଜଳରେ ସ୍ନାନ କରି ସେ ରାଜାଙ୍କ ଦରବାରରେ ଯାଇ

ମୁନି ଆଗମନ ସୁନା ଜବ ରାଜା । ମିଲନ ଗୟଉ ଲୈ ବିପ୍ର ସମାଜା ॥
କରି ଦଣ୍ଡବତ ମୁନିହି ସନମାନୀ । ନିଜ ଆସନ ବୈଠାରେହ୍ନି ଆନୀ ॥୧॥
ଚରନ ପଖାରି କୀହ୍ନି ଅତି ପୂଜା । ମୋ ସମ ଆଜୁ ଧନ୍ୟ ନହିଁ ଦୂଜା ॥
ବିବିଧ ଭାଁତି ଭୋଜନ କରୱାୱା । ମୁନିବର ହୃଦୟଁ ହରଷ ଅତି ପାୱା ॥୨॥
ପୁନି ଚରନନି ମେଲେ ସୁତ ଚାରୀ । ରାମ ଦେଖି ମୁନି ଦେହ ବିସାରୀ ॥
ଭଏ ମଗନ ଦେଖତ ମୁଖ ସୋଭା । ଜନୁ ଚକୋର ପୂରନ ସସି ଲୋଭା ॥୩॥
ତବ ମନ ହରଷି ବଚନ କହ ରାଊ । ମୁନି ଅସ କୃପା ନ କୀହ୍ନିହୁ କାଊ ॥
କେହି କାରନ ଆଗମନ ତୁହ୍ମାରା । କହହୁ ସୋ କରତ ନ ଲାୱଉଁ ବାରା ॥୪॥
ଅସୁର ସମୂହ ସତାୱହିଁ ମୋହୀ । ମୈଁ ଜାଚନ ଆୟଉଁ ନୃପ ତୋହୀ ॥
ଅନୁଜ ସମେତ ଦେହୁ ରଘୁନାଥା । ନିସିଚର ବଧ ମୈଁ ହୋବ ସନାଥା ॥୫॥

---

ମୁନି ଆଗମନ ଯେବେ ନୃପତି ଶୁଣିଲେ । ବିପ୍ରଙ୍କୁ ସଙ୍ଗରେ ଘେନି ସ୍ୱାଗତେ ଚଳିଲେ ॥
କରି ପ୍ରଣିପାତ ମୁନୀଶ୍ୱରଙ୍କୁ ସମ୍ମାନି । ନିଜ ଆସନ ଉପରେ ବସାଇଲେ ଆଣି ॥୧॥
ଚରଣ ପ୍ରକ୍ଷାଳି ପୂଜା କରିଲେ ଆଦର । ଆଜି ଧନ୍ୟ ନାହିଁ କେହି ମୋ ସମ ଇତର ॥
ନାନା ପ୍ରକାର ଭୋଜନ ନୃପ କରାଇଲେ । ହୃଦେ ମୁନିବର ଅତି ସନ୍ତୋଷ ଲଭିଲେ ॥୨॥
ଚରଣେ ଚାରିପୁତ୍ରଙ୍କୁ ଭେଟାଇଲେ ପୁଣି । ରାମଙ୍କୁ ବିଲୋକି ଦେହ ପାଶୋରିଲେ ମୁନି ॥
ମଗ୍ନ ହୋଇଲେ ନିରେଖି ସୌନ୍ଦର୍ଯ୍ୟ ବଦନ । ପୂର୍ଣ୍ଣ ଶଶୀ ଦେଖି ଲୋଭୀ ଚକୋର ଯେସନ ॥୩॥
ଭାଷିଲେ ବଚନ ନୃପ ତହୁଁ ମୋଦ ମନେ । ମୁନି କେବେ କରି ନାହଁ କରୁଣା ଏସନେ ॥
କେଉଁ ହେତୁ ଆଗମନ ହୋଇଲା ତୁମ୍ଭର । କହନ୍ତୁ ତାହା କରିବି ବିଲମ୍ବ ନ କରି ॥୪॥
ଅସୁର-ସମୂହ ମୋତେ ସନ୍ତାପ ଦିଅନ୍ତି । ମାରିବାଙ୍କୁ ଆସିଛୁ ମୁଁ ନୃପ ତୁମ୍ଭ କତି ॥
ଅନୁଜ ସହ ପ୍ରଦାନ କର ରଘୁନାଥ । ନିଶାଚର ବଧେ ମୁହିଁ ହୋଇବି ସନାଥ ॥୫॥

---

ପହଞ୍ଚିଲେ ॥ ୨୦୬ ॥ ଚୌପାଈ :—ମୁନିଙ୍କର ଆଗମନ-ବାର୍ତ୍ତା ଶୁଣି ରାଜା ବ୍ରାହ୍ମଣ-ସମାଜଙ୍କୁ ସଙ୍ଗରେ ଧରି ତାହାଙ୍କ ସ୍ୱାଗତ ନିମନ୍ତେ ଗଲେ ଏବଂ ଦଣ୍ଡବତ କରି ମୁନିଙ୍କୁ ଯଥୋଚିତ ସମ୍ମାନ ଦେଖାଇଲେ । ତତ୍ପରେ ରାଜା ମୁନିଙ୍କୁ ଆଣି ଆପଣାର ଆସନରେ ବସାଇଲେ ॥ ୧ ॥ ମୁନିଙ୍କ ଚରଣ ଧୋଇ ରାଜା ବହୁ ପୂଜା କଲେ ଏବଂ କହିଲେ, "ମୋ ସମାନ ଆଜି ଧନ୍ୟ ଆଉ କେହି ନାହିଁ ।" ସେ ଅନେକ ପ୍ରକାର ଭୋଜନ-ସାମଗ୍ରୀ ପ୍ରସ୍ତୁତ କରି ମୁନିଙ୍କୁ ଖୁଆଇଲେ । ମୁନିବର ମନରେ ଅପାର ହର୍ଷ ଲାଭ କଲେ ॥୨॥ ଅନନ୍ତର ରାଜା ଚାରିଗୋଟି ପୁତ୍ରଙ୍କୁ ଆଣି ମୁନିଙ୍କ ପାଦତଳେ ଲୋଟାଇଲେ । ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ମୁନି ଆପଣା ଦେହର ଅସ୍ତିତ୍ୱ ଭୁଲିଗଲେ । ସେ ଶ୍ରୀରାମଚନ୍ଦ୍ରଙ୍କ ମୁଖଶୋଭା ଦର୍ଶନରେ ଏତେଦୂର ମଗ୍ନ ହୋଇଗଲେ ଯେ ଜଣାଗଲା, ସତେ ଯେମିତି ଚକୋର ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି ପ୍ରଲୁବ୍ଧ ହୋଇଯାଇଅଛି କି ! ॥ ୩ ॥ ଅନନ୍ତର ରାଜା ମନେ ମନେ ଆନନ୍ଦିତ ହୋଇ ବଚନ ବୋଇଲେ—"ହେ ମୁନି ! ଏପରି କୃପା ତ

ଦେହୁ ଭୂପ ମନ ହରଷିତ ତଜହୁ ମୋହ ଅଜ୍ଞାନ ।
ଧର୍ମ ସୁଜସ ପ୍ରଭୁ ତୁମ୍ହ କୌଁ ଇନ୍ହ କହଁ ଅତି କଲ୍ୟାନ ॥୨୦୭॥
ସୁନି ରାଜା ଅତି ଅପ୍ରିୟ ବାନୀ । ହୃଦୟ କଂପ ମୁଖ ଦୁତି କୁମୁଲାନୀ ॥
ଚୌଥେଁ ପନ ପାୟଉଁ ସୁତ ଚାରୀ । ବିପ୍ର ବଚନ ନହିଁ କହେହୁ ବିଚାରୀ ॥୧॥
ମାଗହୁ ଭୂମି ଧେନୁ ଧନ କୋସା । ସର୍ବସ ଦେଉଁ ଆଜୁ ସହରୋସା ॥
ଦେହ ପ୍ରାନ ତେଁ ପ୍ରିୟ କଛୁ ନାହୀଁ । ସୋଉ ମୁନି ଦେଉଁ ନିମିଷ ଏକ ମାହୀଁ ॥୨॥
ସବ ସୁତ ପ୍ରିୟ ମୋହି ପ୍ରାନ କୀ ନାଈଁ । ରାମ ଦେତ ନହିଁ ବନଇ ଗୋସାଈଁ ॥
କହଁ ନିସିଚର ଅତି ଘୋର କଠୋରା । କହଁ ସୁନ୍ଦର ସୁତ ପରମ କିସୋରା ॥୩॥

---

ଦିଅ ନରପତେ ମନ ହରଷିତେ ତେଜିଣ ମୋହ ଅଜ୍ଞାନ ।
ଧରମ ସୁଯଶ ତୁମ୍ଭର ହୋଇବ ଏହାଙ୍କ ଅତି କଲ୍ୟାଣ ॥୨୦୭॥
ଶୁଣନ୍ତେ ନୃପ ଅପ୍ରିୟ ବାଣୀ ଅତିଶୟ । ମୁଖ ଦ୍ୟୁତି କୁହୁଳିଲା କମ୍ପିଲା ହୃଦୟ ॥
ଚତୁର୍ଥ ପଣରେ ପାଇଅଛି ସୁତ ଚାରି । କହିଲ ନାହିଁ ଗୋସାଇଁ ବଚନ ବିଚାରି ॥୧॥
ମାଗ ଧେନୁ ଧନ କୋଷ ଧରଣୀ ସର୍ବସ୍ୱ । ଦେବି ମୁଁ ଆଜି ତୁମ୍ଭଙ୍କୁ ହୋଇଣ ହରଷ ॥
ଦେହ ପ୍ରାଣଠାରୁ କିଛି ପ୍ରିୟ ନାହିଁ ଆନ । ନିମିଷ ମଧ୍ୟରେ ତାହା କରିବି ପ୍ରଦାନ ॥୨॥
ସକଲ ତନୟ ମୋତେ ପ୍ରିୟ ପ୍ରାଣ ପ୍ରାୟ । ରାମଙ୍କୁ ଦେଇ ପାରିବି ନାହିଁ ମୁନିରାୟ ॥
କାହିଁ ନିଶାଚର ଅତି ଭୀଷଣ କଠୋର । କାହିଁ ପରମ ସୁନ୍ଦର କୁମର କିଶୋର ॥୩॥

---

ଆପଣ କେବେ ମୋ ପ୍ରତି କୃପା କରି ନ ଥିଲେ ! ଆଜି କି କାରଣରୁ ଆପଣଙ୍କର ଏଠାକୁ ଶୁଭାଗମନ ? କୁହନ୍ତୁ । ମୁଁ ତାହା ପୂରଣ କରିବାରେ ବିଳମ୍ବ କରିବି ନାହିଁ ।" ॥ ୪ ॥ ମୁନି କହିଲେ, "ହେ ରାଜା ! ରାକ୍ଷସଗଣ ମୋତେ ବହୁତ ଯାତନା ଦେଉଅଛନ୍ତି । ଏଣୁ ମୁଁ ଆପଣଙ୍କୁ କିଛି ମାଗିବାକୁ ଆସିଅଛି, ସାନଭାଇ ସହିତ ମୋତେ ଶ୍ରୀରାମଚନ୍ଦ୍ରଙ୍କୁ ଦିଅନ୍ତୁ । ରାକ୍ଷସମାନଙ୍କ ନିଧନ ପରେ ମୁଁ ସନାଥ (ସୁରକ୍ଷିତ) ହୋଇଯିବି ॥ ୫ ॥ ଦୋହା :—ହେ ରାଜନ୍ ! ପ୍ରସନ୍ନ ମନରେ ମୋତେ ଏ ଦୁହିଁଙ୍କୁ ଦିଅନ୍ତୁ । ମୋହ ଓ ଅଜ୍ଞାନ ତ୍ୟାଗ କରନ୍ତୁ । ହେ ସ୍ୱାମି ! ଏହା ଯୋଗେ ତୁମର ଧର୍ମ ଓ ସୁଯଶ ଲାଭ ହେବ ଏବଂ ଏମାନଙ୍କର ପରମ କଲ୍ୟାଣ ହେବ ।" ୨୦୭ ॥ ଚୌପାଈ :—ଏହି ଅତି ଅପ୍ରିୟ ବାଣୀ ଶୁଣି ରାଜାଙ୍କ ହୃଦୟ କଂପିବାକୁ ଲାଗିଲା ଏବଂ ମୁଖର କାନ୍ତି ନିଷ୍ପ୍ରଭ ହୋଇଗଲା । ସେ କହିଲେ, "ହେ ବ୍ରାହ୍ମଣ ! ମୁଁ ମୋ ଚତୁର୍ଥାବସ୍ଥାରେ ଚାରିଗୋଟି ପୁତ୍ର ପାଇଅଛି । ଆପଣ ତ ବୁଝିବିଚାରି କଥା କହିନାହାନ୍ତି ॥ ୧ ॥ ହେ ମୁନି ! ଆପଣ ପୃଥିବୀ, ଗୋରୁ, ଧନ ଓ ରାଜକୋଷ ମାଗି ନିଅନ୍ତୁ । ଆଜି ଅତି ଆନନ୍ଦରେ ମୁଁ ଆପଣଙ୍କୁ ମୋର ସର୍ବସ୍ୱ ଦେଇଦେବି । ଦେହ ଓ ପ୍ରାଣଠାରୁ ମୋର ଅଧିକ ପ୍ରିୟ ଆଉ କିଛି ହେଲେ ନାହିଁ । ତାହା ମଧ୍ୟ ମୁଁ ଆପଣଙ୍କୁ ଏକ ମୁହୂର୍ତ୍ତକ ମଧ୍ୟରେ ଦେଇ-ଦେବି ॥ ୨ ॥ ସବୁ ପୁଅ ମୋର ପ୍ରାଣ ପରି ପ୍ରିୟ । ସେମାନଙ୍କ ମଧ୍ୟରୁ, ହେ ପ୍ରଭୋ !

ସୁନି ନୃପ ଗିରା ପ୍ରେମରସ ସାନୀ । ହୃଦୟଁ ହରଷ ମାନା ମୁନି ଜ୍ଞାନୀ ॥
କବ ବସିଷ୍ଠ ବହୁ ବିଧି ସମୁଝାୱା । ନୃପ ସଂଦେହ ନାସ କହଁ ପାୱା ॥୪॥
ଅତି ଆଦର ଦୋଉ ତନୟ ବୋଲାଏ । ହୃଦୟଁ ଲାଇ ବହୁ ଭାଁତି ସିଖାଏ ॥
ମେରେ ପ୍ରାନ ନାଥ ସୁତ ଦୋଉ । ତୁହ୍ମ ମୁନି ପିତା ଆନ ନହିଁ କୋଉ ॥୫॥

ସୌଁପେ ଭୂପ ରିଷିହି ସୁତ ବହୁବିଧି ଦେଇ ଅସୀସ ।
ଜନନୀ ଭବନ ଗଏ ପ୍ରଭୁ ଚଲେ ନାଇ ପଦ ସୀସ ॥୨୦୮(କ)॥
ପୁରୁଷସିଂହ ଦୋଉ ବୀର ହରଷି ଚଲେ ମୁନି ଭୟ ହରନ ।
କୃପାସିଂଧୁ ମତି ଧୀର ଅଖିଲ ବିସ୍ୱ କାରନ କରନ ॥୨୦୮(ଖ)॥

ଅରୁନ ନୟନ ଉର ବାହୁ ବିସାଲା । ନୀଲ ଜଲଜ ତନୁ ସ୍ୟାମ ତମାଲା ॥
କଟି ପଟ ପୀତ କସେଁ ବର ଭାଥା । ରୁଚିର ଚାପ ସାୟକ ଦୁହୁଁ ହାଥା ॥୧॥

---

ଶୁଣି ନୃପ ବାଣୀ ପ୍ରେମ ରସ ଆପ୍ଳାବିତ । ଜ୍ଞାନୀ ମୁନିବର ହୃଦେ ହେଲେ ହରଷିତ ॥
ତହୁଁ ବଶିଷ୍ଠ ବୁଝାନ୍ତେ ବହୁତ ପ୍ରକାରେ । ନୃପଙ୍କ ସନ୍ଦେହ ନାଶ ହୋଇଲା ସେଠାରେ ॥୪॥
ଅତ୍ୟନ୍ତ ଆଦରେ ବେନି ପୁତ୍ରେ ଡକାଇଲେ । ହୃଦୟେ ଲଗାଇ ନାନା ମତେ ଶିଖାଇଲେ ॥
ମୋ ପ୍ରାଣ, ନାଥ, ଅଟନ୍ତି ବେନି ସୁତ ଏହି । ତୁମ୍ଭେ ମୁନିବର ପିତା ଅନ୍ୟ ନୁହି କେହି ॥୫॥

ଅନେକ ଆଶିଷ ଦେଇ ଅବନୀଶ ମୁନିଙ୍କୁ ସୁତେ ଅର୍ପିଲେ ।
ଜନନୀ ଭବନେ ଯାଇ ପ୍ରଭୁ ପ୍ରେମେ ପ୍ରଣମି ଯାତ୍ରା କରିଲେ ॥୨୦୮(କ)॥
ମୁନି ଭୟ ନାଶେ କରନ୍ତି ଗମନ ନରସିଂହ ବେନି ବୀର ।
ଅଖିଲ ବିଶ୍ୱର ଯେ କର୍ତ୍ତା କାରଣ କୃପାସିନ୍ଧୁ ମତି ସ୍ଥିର ॥୨୦୮(ଖ)॥

ଅରୁଣ ନୟନ ବାହୁ ହୃଦୟ ବିଶାଲ । ନୀଲ ସରୋରୁହ ତନୁ ଶ୍ୟାମଲ ତମାଲ ॥
ପୀତାମ୍ବର ପରିଧାନ କଟିରେ ତୂଣୀର । ଶୋଭେ ବେନି କରେ ଚାପ ଶାୟକ ରୁଚିର ॥୧॥

---

ରାମଙ୍କୁ ତ ଦେଲେ କୌଣସି ପ୍ରକାରେ ମୋର ଚଳିବ ନାହିଁ । ଅତି ଭୟଙ୍କର ଓ କ୍ରୂର ରାକ୍ଷସ କେଉଁଠି ? କେଉଁଠି ପରମ କିଶୋର (ଅତି ସୁକୁମାର) ମୋର ସୁନ୍ଦର ପୁତ୍ର ?" ॥ ୩ ॥ ରାଜାଙ୍କ ପ୍ରେମରସ-ସିକ୍ତ ବାଣୀ ଶୁଣି ମୁନି ବିଶ୍ୱାମିତ୍ର ମନରେ ଅପାର ହର୍ଷ ଲାଭ କଲେ । ବଶିଷ୍ଠ ରାଜାଙ୍କୁ ବହୁତ ପ୍ରକାରେ ବୁଝାଇଲେ । ଫଳରେ ରାଜାଙ୍କର ସନ୍ଦେହ ନାଶ ହେଲା ॥ ୪ ॥ ଅତି ଆଦରରେ ରାଜା ଦୁଇ ପୁତ୍ରଙ୍କୁ ଡକାଇଲେ ଏବଂ ସେମାନଙ୍କୁ ଆଲିଙ୍ଗନ କରି ଶିକ୍ଷା ଦେଲେ । ପୁଣି କହିଲେ, "ହେ ନାଥ ! ଏ ଦୁଇଟି ପୁତ୍ର ମୋର ପ୍ରାଣ । ହେ ମୁନି ! ବର୍ତ୍ତମାନ ଆପଣ ହିଁ ଏକମାତ୍ର ଏମାନଙ୍କ ପିତା । ଆଉ କେହି ନୁହନ୍ତି ।" ॥ ୫ ॥ ଦୋହା '—ରାଜା ବହୁତ ପ୍ରକାରେ ଆଶୀର୍ବାଦ ଦେଲେ ଏବଂ ପୁତ୍ରମାନଙ୍କୁ ଋଷିଙ୍କୁ ସମର୍ପି ଦେଲେ । ଅନନ୍ତର ପ୍ରଭୁ ମାତାଙ୍କ ମହଲକୁ ଗଲେ ଏବଂ ତାଙ୍କ ପାଦତଳେ ମୁଣ୍ଡ ନୁଆଁଇ ଚାଲିଲେ ॥ ୨୦୮ (କ) ॥ ସୋରଠା :— ପୁରୁଷମାନଙ୍କ ମଧ୍ୟରେ ସିଂହରୂପ ଦୁଇ ଭାଇ (ରାମ ଓ ଲକ୍ଷ୍ମଣ) ମୁନିଙ୍କର ଭୟ ଦୂର

ସ୍ୟାମ ଗୌର ସୁନ୍ଦର ଦୋଉ ଭାଈ । ବିସ୍ୱାମିତ୍ର ମହାନିଧି ପାଈ ॥
ପ୍ରଭୁ ବ୍ରହ୍ମନ୍ୟଦେବ ମୈଁ ଜାନା । ମୋହି ନିତି ପିତା ତଜେଉ ଭଗବାନା ॥୨॥
ଚଲେ ଜାତ ମୁନି ଦୀହ୍ନି ଦେଖାଈ । ସୁନି ତାଡ଼କା କ୍ରୋଧ କରି ଧାଈ ॥
ଏକହିଁ ବାନ ପ୍ରାନ ହରି ଲୀହ୍ନା । ଦୀନ ଜାନି ତେହି ନିଜ ପଦ ଦୀହ୍ନା ॥୩॥
ତବ ରିଷି ନିଜ ନାଥହି ଜିୟଁ ଚୀହ୍ନୀ । ବିଦ୍ୟାନିଧି କହୁଁ ବିଦ୍ୟା ଦୀହ୍ନୀ ॥
ଜା ତେଁ ଲାଗ ନ ଛୁଧା ପିପାସା । ଅତୁଲିତ ବଲ ତନୁ ତେଜ ପ୍ରକାସା ॥୪॥

ଆୟୁଧ ସର୍ବ ସମର୍ପି କୈ ପ୍ରଭୁ ନିଜ ଆଶ୍ରମ ଆନି ।
କନ୍ଦ ମୂଲ ଫଲ ଭୋଜନ ଦୀହ୍ନ ଭଗତି ହିତ ଜାନି ॥୨୦୯॥

---

ଶ୍ୟାମଲ ଗଉର ମନୋହର ଦୁଇ ଭାଇ । ବିଶ୍ୱାମିତ୍ର ଆଜ ମହାନିଧି ଛନ୍ତି ପାଇ ॥
ପ୍ରଭୁ ବ୍ରାହ୍ମଣ୍ୟ ଦେବ ମୁଁ ଜାଣେ ଭଲ କରି । ମୋ ହେତୁ ପିତାଙ୍କୁ ତେଜି ଆସିଲେ ଶ୍ରୀହରି ॥୨॥
ଯାଉ ଯାଉ ପଥେ ମୁନି ଦିଅନ୍ତି ଦେଖାଇ । ଶୁଣି ତାଡକା ଆସିଲା କ୍ରୋଧାତୁରେ ଧାଇଁ ॥
ଏକ ମାତ୍ର ବାଣେ ପ୍ରାଣ ହରିଲେ ତାହାର । ଦୀନ ଜାଣି ଦେଲେ ତାକୁ ପଦ ଆପଣାର ॥୩॥
ତହୁଁ ମୁନି ସ୍ୱନାଥଙ୍କୁ ହୃଦୟେ ଚିହ୍ନିଲେ । ବିଦ୍ୟାନିଧିଙ୍କୁ ଆବର ବିଦ୍ୟା ପ୍ରଦାନିଲେ ॥
ଯହିଁରେ କ୍ଷୁଧା ପିପାସା କିଛି ନ ଲାଗିବ । ଦେହେ ଅତୁଳିତ ବଳ ତେଜ ପ୍ରକାଶିବ ॥୪॥

ପ୍ରଭୁଙ୍କୁ ଆୟୁଧ ଦେଇ ସର୍ବବିଧ ଆପଣା ଆଶ୍ରମେ ଆଣି ।
କନ୍ଦମୂଳ ଫଳ ଭୁଞ୍ଜିବାକୁ ଦେଲେ ଭକ୍ତ-ହିତକାରୀ ଜାଣି ॥୨୦୯॥

---

କରିବା ନିମନ୍ତେ ପ୍ରସନ୍ନଚିତ୍ତ ହୋଇ ଚାଲିଗଲେ । ସେ କୃପାସମୁଦ୍ର, ଧୀରବୁଦ୍ଧି ଏବଂ ସମ୍ପୂର୍ଣ୍ଣ ବିଶ୍ୱର କାରଣର ମଧ୍ୟ କାରଣ ॥ ୨୦୮ ॥ (ଖ) ॥ ଚୌପାଈ :—ଭଗବାନ୍‌ଙ୍କର ଅରୁଣ ନୟନ, ବିଶାଳ ବକ୍ଷ ଓ ବାହୁ, ନୀଳ କମଳ ଓ ତମାଳ ବୃକ୍ଷ ସମ ଶ୍ୟାମଳ ଶରୀର; କଟିରେ ପୀତାମ୍ବରର ପରିଧାନ ଏବଂ ଶ୍ରେଷ୍ଠ ତୂଣୀର କଷି ହୋଇ ରହିଛି । ଦୁଇ ହସ୍ତରେ ସୁନ୍ଦର ଧନୁ ଓ ଶର ଶୋଭା ପାଉଅଛି ॥ ୧ ॥ ଶ୍ୟାମ ଓ ଗୌର ବର୍ଣ୍ଣର ଭାଇ ଦୁହେଁ ପରମ ସୁନ୍ଦର । ବିଶ୍ୱାମିତ୍ରଙ୍କୁ ସତେ ଯେମିତି ମହାନିଧି (କୋଟିନିଧି) ମିଳିଗଲା । ସେ ମନେ ମନେ ଭାବିଲେ, "ପ୍ରଭୁ ବ୍ରହ୍ମଣ୍ୟଦେବ (ବ୍ରାହ୍ମଣଙ୍କ ଦେବତା) ବୋଲି ମୁଁ ଜାଣି ପାରିଲି । ମୋ ନିମନ୍ତେ ଭଗବାନ ତାଙ୍କ ପିତାଙ୍କୁ ମଧ୍ୟ ପରିତ୍ୟାଗ କଲେ ॥ ୨ ॥ ମାର୍ଗରେ ଯାଉ ଯାଉ ମୁନି ତାଡକାକୁ ଦେଖାଇଲେ । ଶବ୍ଦ ଶୁଣିବା ମାତ୍ରେ ସେ କ୍ରୋଧରେ ଦୌଡ଼ି ଆସିଲା । ଶ୍ରୀରାମ ଗୋଟିଏ ମାତ୍ର ବାଣରେ ତାହାର ପ୍ରାଣ ହରଣ କଲେ ଏବଂ ଦୀନ ବୁଝି ତାହାକୁ ନିଜ ପଦ (ଆପଣାର ଦିବ୍ୟ ସ୍ୱରୂପ) ପ୍ରଦାନ କଲେ ॥ ୩ ॥ ଋଷି ବିଶ୍ୱାମିତ୍ର ମନରେ ପ୍ରଭୁଙ୍କୁ ବିଦ୍ୟାନିଧି ବୋଲି ଜାଣି ମଧ୍ୟ ଏପରି ବିଦ୍ୟା ଶିକ୍ଷା ଦେଲେ ଯାହାର ଫଳରେ ତାଙ୍କୁ କ୍ଷୁଧାତୃଷ୍ଣା ଲାଗିବ ନାହିଁ ଏବଂ ଶରୀରରେ ଅତୁଳନୀୟ ବଳ ଓ ତେଜର ପ୍ରକାଶ ହେବ ॥ ୪ ॥ ଦୋହା :—ନିଜର ସକଳ ଅସ୍ତ୍ରଶସ୍ତ୍ର ସମର୍ପଣ କରି ମୁନି ଶ୍ରୀରାମଙ୍କୁ ତାଙ୍କ ଆଶ୍ରମକୁ ନେଇ ଆସିଲେ ଏବଂ

ପ୍ରାତ କହା ମୁନି ସନ ରଘୁରାଈ । ନିର୍ଭୟ ଜଜ୍ଞ କରହୁ ତୁମ୍ହ ଜାଈ ॥
ହୋମ କରନ ଲାଗେ ମୁନି ଝାରୀ । ଆପୁ ରହେ ମଖ କୀଁ ରଖୱାରୀ ॥୧॥
ସୁନି ମାରୀଚ ନିସାଚର କ୍ରୋହୀ । ଲୈ ସହାୟ ଧାୱା ମୁନିଦ୍ରୋହୀ ॥
ବିନୁ ଫର ବାନ ରାମ ତେହି ମାରା । ସତ ଜୋଜନ ଗା ସାଗର ପାରା ॥୨॥
ପାବକ ସର ସୁବାହୁ ପୁନି ମାରା । ଅନୁଜ ନିସାଚର କଟକୁ ସଁଘାରା ॥
ମାରି ଅସୁର ଦ୍ୱିଜ ନିର୍ଭୟକାରୀ । ଅସ୍ତୁତି କରହିଁ ଦେବ ମୁନି ଝାରୀ ॥୩॥
ତହଁ ପୁନି କଛୁକ ଦିବସ ରଘୁରାୟା । ରହେ କୀନ୍ହି ବିପ୍ରନ୍ହ ପର ଦାୟା ॥
ଭଗତି ହେତୁ ବହୁ କଥା ପୁରାନା । କହେ ବିପ୍ର ଜଦ୍ୟପି ପ୍ରଭୁ ଜାନା ॥୪॥
ତବ ମୁନି ସାଦର କହା ବୁଝାଈ । ଚରିତ ଏକ ପ୍ରଭୁ ଦେଖିଅ ଜାଈ ॥
ଧନୁଷଜଜ୍ଞ ସୁନି ରଘୁକୁଲ ନାଥା । ହରଷି ଚଲେ ମୁନିବର କେ ସାଥା ॥୫॥

---

ପ୍ରଭାତେ କହିଲେ ମୁନି ଆଗେ ରଘୁବୀର । ନିର୍ଭୟ ହୋଇଣ ତୁମ୍ଭେ ଯଜ୍ଞ ଯାଇ କର ॥
ଏଥୁ ଅନ୍ତେ ମୁନିବୃନ୍ଦ ଯଜ୍ଞ ଆରମ୍ଭିଲେ । ରକ୍ଷକ ରୂପରେ ସ୍ୱୟଂ ନିଯୁକ୍ତ ରହିଲେ ॥୧॥
ଶୁଣି ମାରୀଚ ରାକ୍ଷସ ଅତି କ୍ରୋଧ କରି । ଧାଇଁଲା ସେ ମୁନିଦ୍ରୋହୀ ସଙ୍ଗେ ସୈନ୍ୟ ଧରି ॥
ମାରନ୍ତେ ରାମ ତାହାଙ୍କୁ ବିନା ଫଳ ବାଣ । ପଡ଼ିଲା ଶତ ଯୋଜନ ସିନ୍ଧୁ ପାରେ ଜାଣ ॥୨॥
ପୁଣି ସୁବାହୁଙ୍କୁ ଅଗ୍ନି ଶାୟକେ ଜାଳିଲେ । ଅନୁଜ ରଜନୀଚର ସେନା ସଂହାରିଲେ ॥
ଅସୁରଙ୍କୁ ମାରି କଲେ ଦ୍ୱିଜଙ୍କୁ ନିର୍ଭୟ । ସ୍ତୁତି କରନ୍ତି ବିବୁଧ ଋଷି ମୁନି ଚୟ ॥୩॥
ତହୁଁ କିଛି ଦିନ ରଘୁନାଥ ସେ ସ୍ଥାନରେ । ରହିଲେ କରୁଣା କରି ବିପ୍ରଙ୍କ ଉପରେ ॥
ଭକ୍ତି ହେତୁ ବହୁ ପୁରା ପୁରାଣ କାହାଣୀ । କହନ୍ତି ବିପ୍ରେ ଥିଲେହେଁ ପ୍ରଭୁ ସବୁ ଜାଣି ॥୪॥
ଏକଦା ମୁନି ସାଦରେ କହିଲେ ବୁଝାଇ । ଚରିତ ଦେଖିବା ଏକ ଚାଲ ପ୍ରଭୁ ଯାଇ ॥
ଧନୁ ଯଜ୍ଞ କଥା ଶୁଣି ଶ୍ରୀ ରଘୁନନ୍ଦନ । ଚାଲିଲେ ମୁନିଙ୍କ ସଙ୍ଗେ ହୋଇଣ ପ୍ରସନ୍ନ ॥୫॥

---

ତାହାଙ୍କୁ ନିଜ ପରମହିତୈଷୀ ଜାଣି ଭୋଜନ ନିମନ୍ତେ କନ୍ଦମୂଳ ଓ ଫଳ ଇତ୍ୟାଦି ଭକ୍ତିପୂର୍ବକ ଅର୍ପଣ କଲେ ।। ୨୦୯ ।। ଚୌପାଈ —ପ୍ରାତଃ କାଳରେ ଶ୍ରୀରାମ ମୁନିଙ୍କୁ କହିଲେ, "ଏବେ ଆପଣ ଯାଇ ନିର୍ଭୟରେ ଯଜ୍ଞ କରନ୍ତୁ ।" ଏହା ଶୁଣି ସମସ୍ତ ମୁନି ଯଜ୍ଞ କରିବାକୁ ଲାଗିଲେ ଏବଂ ନିଜେ ପ୍ରଭୁ ଶ୍ରୀରାମ ଯଜ୍ଞର ରକ୍ଷଣାବେକ୍ଷଣ ଦାୟିତ୍ୱରେ ପ୍ରହରୀ-ସ୍ୱରୂପ ରହିଲେ ॥ ୧ ॥ ଏ ସମାଚାର ପାଇ ମୁନିମାନଙ୍କର ଶତ୍ରୁ ମାରୀଚ ତାହାର ସାଙ୍ଗ-ସାଥୀମାନଙ୍କୁ ନେଇ ଦୌଡ଼ି ଆସିଲା । ଶ୍ରୀରାମ ତାକୁ ଅଫଳକ ବାଣ ମାରିଲେ । ଫଳରେ ସେ ଶହେ ଯୋଜନ ବିସ୍ତାରର ସମୁଦ୍ର ଆର ପାରିରେ ଯାଇ ପଡ଼ିଲା ॥ ୨ ॥ ତତ୍ପରେ ସୁବାହୁକୁ ସେ ଅଗ୍ନିବାଣ ମାରିଲେ । ଏଣେ ସାନଭାଇ ଲକ୍ଷ୍ମଣ ରାକ୍ଷସ-ସେନାକୁ ସଂହାର କରି ପକାଇଲେ । ଏହି ରୂପେ ଶ୍ରୀରାମ ରାକ୍ଷସମାନଙ୍କୁ ମାରି ବ୍ରାହ୍ମଣମାନଙ୍କୁ ନିର୍ଭୟ କରିଦେଲେ । ଅନନ୍ତର ଦେବତା ଓ ମୁନିମାନେ ପ୍ରଭୁଙ୍କ ସ୍ତୁତି କରିବାକୁ ଲାଗିଲେ ॥ ୩ ॥ ଶ୍ରୀ ରଘୁନାଥ ସେଠାରେ ଅଳ୍ପ କିଛି ଦିନ ରହି ବ୍ରାହ୍ମଣମାନଙ୍କ ପ୍ରତି

ଆଶ୍ରମ ଏକ ଦୀଖ ମଗ ମାହୀଁ । ଖଗ ମୃଗ ଜୀବ ଜଂଭୁ ତହଁ ନାହୀଂ ॥
ପୂଛା ମୁନହି ସିଲ ପ୍ରଭୁ ଦେଖୀ । ସକଲ କଥା ମୁନି କହା ବିସେଷୀ ॥୬॥
ଗୌତମ ନାରି ଶ୍ରାପ ବସ ଉପଲ ଦେହ ଧରି ଧୀର ।
ଚରନ କମଲ ରଜ ଚାହତି କୃପା କରହୁ ରଘୁବୀର ॥୨୧୦॥

ପରସତ ପଦ ପାବନ ସୋକନସାୱନ ପ୍ରଗଟ ଭଈ ତପପୁଂଜ ସହୀ ।
ଦେଖତ ରଘୁନାୟକ ଜନ ସୁଖଦାୟକ ସନମୁଖ ହୋଇ କର ଜୋରି ରହୀ ॥
ଅତି ପ୍ରେମ ଅଧୀରା ପୁଲକ ସରୀରା ମୁଖ ନହିଁ ଆୱଇ ବଚନ କହୀ ।
ଅତିସୟ ବଡ଼ଭାଗୀ ଚରନନ୍ହି ଲାଗୀ ଜୁଗଲ ନୟନ ଜଲଧାର ବହୀ ॥୧॥

---

ଆଶ୍ରମ ଏକ ସେ ମାର୍ଗ ମଧ୍ୟରେ ଦେଖିଲେ । ପଶୁ ପକ୍ଷୀ ଜୀବଜନ୍ତୁ ସେଠାରେ ନ ଥିଲେ ॥
ମୁନିଙ୍କୁ ପ୍ରଶ୍ନ କରନ୍ତେ ଶିଳା ନିରେଖିଣ । ସମସ୍ତ କଥା କହିଲେ ଋଷି ବିସ୍ତାରିଣ ॥୬॥
ଗଉତମ ନାରୀ ଶାପବଶ ଧରି ଜଡ଼ ପାଷାଣ ଶରୀର ।
ଇଚ୍ଛଇ ଚରଣ-ପଙ୍କଜର ରଜ କୃପା କର ରଘୁବୀର ॥୨୧୦॥
କରନ୍ତେ ସ୍ପର୍ଶ ପାବନ ଚରଣ ଶୋକ ନାଶନ ପ୍ରକଟିଲା ସତ୍ତ୍ୱେ ଅତି ବଡ଼ ଭାଗିନୀ ।
ବିଲୋକି ଜନ ସୁଖଦ ସମ୍ମୁଖେ ରାମଙ୍କ ପଦ କର ଯୋଡ଼ି ଉଭା ହେଲା ସେ ତପସ୍ୱିନୀ ॥
ପ୍ରେମାବେଶେ ପୁଲକ ତନୁ
ନ ସ୍ଫୁରଇ ବାଣୀ ନୀର ଝରେ ନୟନୁ ॥୧॥

---

ଦୟା କଲେ । ପ୍ରଭୁ ସବୁ ପୁରାଣ କଥାରେ ଅଭିଜ୍ଞ ଥିଲେ ମଧ୍ୟ ବ୍ରାହ୍ମଣମାନେ ଭକ୍ତ ହେତୁ ତାହାଙ୍କୁ ବହୁତ ପୁରାଣ କାହାଣୀ କହିଲେ ॥ ୦ ॥ ତଦନନ୍ତର ମୁନି ଆଦରରେ କହିଲେ, "ହେ ପ୍ରଭୋ ! ଚାଲନ୍ତୁ, ଗୋଟିଏ ଅପୂର୍ବ ଚରିତ ଦେଖିବେ ।" ରଘୁକୁଳନାଥ ଶ୍ରୀରାମଚନ୍ଦ୍ର ଧନୁଷଯଜ୍ଞ ପ୍ରସଙ୍ଗ ଶୁଣି ମୁନିବର ବିଶ୍ୱାମିତ୍ରଙ୍କ ସଙ୍ଗେ ପ୍ରସନ୍ନ ହୋଇ ଚାଲିଲେ ॥ ୫ ॥ ମାର୍ଗରେ ଗୋଟିଏ ଆଶ୍ରମ ଦୃଷ୍ଟିଗୋଚର ହେଲା । ସେଠାରେ ପଶୁପକ୍ଷୀ ବା ଜୀବଜନ୍ତୁ କେହି ନ ଥିଲେ । ଗୋଟିଏ ଶିଳା-ମୂର୍ତ୍ତି ଦେଖି ତାହାର ରହସ୍ୟ ପ୍ରଭୁ ପଚାରିଲେ । ମୁନି ବିସ୍ତାରପୂର୍ବକ ସମସ୍ତ କଥା କହିଲେ ॥ ୬ ॥ ଦୋହା:- "ଗୌତମ ମୁନିଙ୍କ ପତ୍ନୀ ଅହଲ୍ୟା ଅଭିଶାପବଶତଃ ପଥର ଦେହ ଧରି ବଡ଼ ଧୈର୍ଯ୍ୟର ସହିତ ଆପଣଙ୍କ ଚରଣ-କମଳ-ଧୂଳି ଭିକ୍ଷା କରୁଅଛନ୍ତି । ହେ ରଘୁବୀର ! ତାହାଙ୍କ ପ୍ରତି କୃପା କରନ୍ତୁ ।" ॥ ୨୧୦ ॥ ଛନ୍ଦ :—ଶ୍ରୀରାମଚନ୍ଦ୍ରଙ୍କ ପବିତ୍ର ଓ ଶୋକହାରୀ ଚରଣ-କମଳର ସ୍ପର୍ଶ-ଲାଭ ମାତ୍ରେ ସତକୁ ସତ ସେହି ତପୋମୂର୍ତ୍ତି ଅହଲ୍ୟା ସମ୍ମୁଖରେ ଆବିର୍ଭୂତ ହେଲେ । ଭକ୍ତଗଣଙ୍କ ସୁଖଦାୟକ ଶ୍ରୀ ରଘୁନାଥଜୀଙ୍କୁ ଦେଖି ସେ ହାତ ଯୋଡ଼ି ସମ୍ମୁଖରେ ଉଭା ହୋଇଗଲେ । ଅତ୍ୟଧିକ ପ୍ରେମ ହେତୁ ସେ ଅଧୀର ହୋଇ ପଡ଼ିଲେ । ତାଙ୍କ ଶରୀର ପୁଲକିତ ହୋଇ ଉଠିଲା । ମୁଖରୁ ବଚନ ସ୍ଫୁରିଲା ନାହିଁ । ଅତିଶୟ ସୌଭାଗ୍ୟବତୀ ଅହଲ୍ୟା ପ୍ରଭୁଙ୍କ ଚରଣତଳେ ଲୋଟିଗଲେ ଏବଂ ତାଙ୍କର

ଧୀରଜୁ ମନ କୀହ୍ନା ପ୍ରଭୁ କହୁଁ ଚୀହ୍ନା ରଘୁପତି କୃପାଁ ଭଗତି ପାଈ ।
ଅତି ନିର୍ମଲ ବାନୀ ଅସ୍ତୁତି ଠାନୀ ଜ୍ଞାନଗମ୍ୟ ଜୟ ରଘୁରାଈ ॥
ମୈଁ ନାରି ଅପାବନ ପ୍ରଭୁ ଜଗପାବନ ରାବନ ରିପୁ ଜନ ସୁଖଦାଈ ।
ରାଜୀବ ବିଲୋଚନ ଭବ ଭୟ ମୋଚନ ପାହି ପାହି ସରନହିଁ ଆଈ ॥୨॥

ମୁନି ଶ୍ରାପ ଜୋ ଦୀହ୍ନା ଅତି ଭଲ କୀହ୍ନା ପରମ ଅନୁଗ୍ରହ ମୈଁ ମାନା ।
ଦେଖେଉଁ ଭରି ଲୋଚନ ହରି ଭବ ମୋଚନ ଇହଇ ଲାଭ ସଂକର ଜାନା ॥
ବିନତୀ ପ୍ରଭୁ ମୋରୀ ମୈଁ ମତି ଭୋରୀ ନାଥ ନ ମାଗଉଁ ବର ଆନା ।
ପଦ କମଲ ପରାଗା ରସ ଅନୁରାଗା ମମ ମନ ମଧୁପ କରୈ ପାନା ॥୩॥

ଜେହିଁ ପଦ ସୁରସରିତା ପରମ ପୁନୀତା ପ୍ରଗଟ ଭଈ ସିବ ସୀସ ଧରୀ ।
ସୋଇ ପଦ ପଙ୍କଜ ଜେହି ପୂଜତ ଅଜ ମମ ସିର ଧରେଉ କୃପାଲ ହରୀ ॥
ଏହି ଭାଁତି ସିଧାରୀ ଗୌତମ ନାରୀ ବାର ବାର ହରି ଚରନ ପରୀ ।
ଜୋ ଅତି ମନ ଭାୱା ସୋ ବରୁ ପାୱା ଗୈ ପତିଲୋକ ଅନନ୍ଦ ଭରୀ ॥୪॥

ହୃଦୟେ ଧୈର୍ଯ୍ୟ ଧରିଣ ପ୍ରଭୁଙ୍କୁ ଚହ୍ନି ପାରିଣ ସ୍ତୁତି କଲେ ଲଭି ରାମ କୃପା ଭକତି ।
ମୁହିଁ ନାରୀ ଅପାବନ ପ୍ରଭୁ ଜଗତ ପାବନ ରାବଣାରି ଜ୍ଞାନ ଗମ୍ୟ ଜୟ ଶ୍ରୀପତି ॥
ତ୍ରାହି ତ୍ରାହି ଶରଣାପନ୍ନ,
ରାଜୀବ-ଲୋଚନ ଭବ-ଭୟ-ମୋଚନ ॥୨॥

ମୁନି ଶାପ ପ୍ରଦାନିଲେ ଅତି ଉତ୍ତମ କରିଲେ ଦେଖିଲି ନୟନେ ଭବ-ମୋଚନ ହରି ।
ଶିବ ଏ ଲାଭ ଜାଣନ୍ତି ନାଥ, ମୁହିଁ ଭୋଳ ମତି ଅନ୍ୟ ବର ନ ମାଗେ ବିନତି ମୋହରି ॥
ଚରଣ-ପଙ୍କଜ-ପରାଗ,
ପିଉ ମୋ ମନ-ମଧୁପ ରସାନୁରାଗ ॥୩॥

ଯେ ପଦୁ ଗଙ୍ଗା ଉଦ୍ଭବ ମସ୍ତକେ ବହନ୍ତି ଭବ ଅଜ-ପୂଜ୍ୟ ସେ ପଦ ମୋ ଶିର ଉପରେ ।
ରଖିଲେ କୃପାଳୁ ହରି ବାରମ୍ବାର ସ୍ତୁତି କରି ଗଉତମ ନାରୀ ପଡ଼ି ପ୍ରଭୁ ପୟରେ ॥
ଯାହା ଅତି ଭଲ ଲାଗିଲା,
ବର ପାଇ ସୁଖେ ପତି-ଲୋକେ ଗମିଲା ॥୪॥

ଦୁଇ ନୟନରୁ ପ୍ରେମ ଓ ଆନନ୍ଦର ଅଶ୍ରୁ ଜଳଧାରା ରୂପେ ବହିବାକୁ ଲାଗିଲା ॥ ୧ ॥ ତତ୍ପରେ ମନରେ ଧୈର୍ଯ୍ୟ ଧାରଣ-ପୂର୍ବକ ସେ ପ୍ରଭୁଙ୍କୁ ଚହ୍ନିଲେ ଏବଂ ରଘୁନାଥଙ୍କ କୃପା ହେତୁ ଭକ୍ତି ଲାଭ କଲେ । ଅନନ୍ତର ଅତ୍ୟନ୍ତ ନିର୍ମଳ ବାଣୀରେ ସେ ଏହି ରୂପେ ସ୍ତୁତି ଆରମ୍ଭ କରିଦେଲେ ।—"ହେ ଜ୍ଞାନଗମ୍ୟ ଶ୍ରୀ ରଘୁନାଥଜୀ ! ଆପଣଙ୍କର ଜୟ ହେଉ । ମୁଁ ସହଜରେ ଅପବିତ୍ରା ନାରୀ । ହେ ପ୍ରଭୋ ! ଆପଣ ଜଗତ-ପାବନ, ରାବଣର ଶତ୍ରୁ ଏବଂ ଭକ୍ତଜନଙ୍କ ସୁଖଦାୟକ । ହେ କମଲନୟନ ! ହେ ଭବଭୟ-

ଅସ ପ୍ରଭୁ ଦୀନବନ୍ଧୁ ହରି କାରନ ରହିତ ଦୟାଲ ।
ତୁଲସିଦାସ ସଠ ତେହି ଭଜୁ ଛାଡ଼ି କପଟ ଜଂଜାଲ ॥୨୧୧॥

## ମାସପାରାୟଣ, ସପ୍ତମ ବିଶ୍ରାମ

ଚଲେ ରାମ ଲଛିମନ ମୁନି ସଂଗା । ଗଏ ଜହାଁ ଜଗ ପାବନି ଗଂଗା ॥
ଗାଧିସୂନୁ ସବ କଥା ସୁନାଈ । ଜେହି ପ୍ରକାର ସୁରସରି ମହି ଆଈ ॥୧॥
ତବ ପ୍ରଭୁ ରିଷିନ୍ହ ସମେତ ନହାଏ । ବିବିଧ ଦାନ ମହିଦେବନ୍ହି ପାଏ ॥
ହରଷି ଚଲେ ମୁନି ବୃନ୍ଦ ସହାୟା । ବେଗି ବିଦେହ ନଗର ନିଅରାୟା ॥୨॥

---

କାରଣ ରହିତ କୃପାଳୁ ଏମନ୍ତ ପ୍ରଭୁ ଦୀନବନ୍ଧୁ ହରି ।
ଭଜ ତାଙ୍କୁ ଶଠ ତୁଳସୀ କପଟ ଜଞ୍ଜାଳ ତୁ ପରିହରି ॥୨୧୧॥
ଚଳିଲେ ରାମ ଲକ୍ଷ୍ମଣ ମୁନିଙ୍କ ସଙ୍ଗରେ । ପହଞ୍ଚିଲେ ଗଙ୍ଗା ମହାପାବନୀ ତଟରେ ॥
ଗାଧି ତନୟ ସମସ୍ତ କଥା ଶୁଣାଇଲେ । ଯେମନ୍ତେ ସୁର-ସରିତ ମହୀକି ଆସିଲେ ॥୧॥
ଋଷିଙ୍କ ସହିତ ତହୁଁ ପ୍ରଭୁ କଲେ ସ୍ନାନ । ପାଇଲେ ବିପ୍ର-ନିକର ନାନା-ବିଧ ଦାନ ॥
ହର୍ଷେ ମୁନିବୃନ୍ଦ ସହ ହୋଇ ଅଗ୍ରସର । ବିଦେହ ପୁର ନିକଟେ ଆସିଲେ ସତ୍ୱର ॥୨॥

---

ମୋଚନ ! ମୁଁ ଆପଣଙ୍କ ଶରଣାଗତ । ମୋତେ ରକ୍ଷା କରନ୍ତୁ ! ରକ୍ଷା କରନ୍ତୁ ! ॥ ୨ ॥ ମୁନି ମୋତେ ଯାହା ଅଭିଶାପ ଦେଇଥିଲେ, ଖୁବ୍ ଭଲ କରିଥିଲେ । ତାହା ମୋ ପ୍ରତି ତାଙ୍କର ପରମ ଅନୁଗ୍ରହ ବୋଲି ମୁଁ ମନେ କରୁଛି । ତାହାରି ଫଳରେ ମୁଁ ସଂସାରର ଉଦ୍ଧାରକର୍ତ୍ତା ଶ୍ରୀହରିଙ୍କୁ ନେତ୍ର ପୂରେଇ ଦେଖିଲି । ଆପଣଙ୍କର ଏହି ଦର୍ଶନକୁ ଶଙ୍କର ସବୁଠାରୁ ଶ୍ରେଷ୍ଠ ଲାଭ ବୋଲି ମନେ କରନ୍ତି । ହେ ପ୍ରଭୋ ! ମୁଁ ବୁଦ୍ଧିରେ ବଡ ସରଳା । ମୋର ଗୋଟିଏ ମାତ୍ର ବିନତି । ହେ ନାଥ ! ମୁଁ ଅନ୍ୟ କୌଣସି ବର ମାଗୁନାହିଁ । କେବଳ ଏତିକି ଚାହୁଁଛି ଯେ, ମୋର ମନ-ଭ୍ରମର ସଦାସର୍ବଦା ଆପଣଙ୍କ ଚରଣ-କମଳ-ରଜର ପ୍ରେମ-ରସ ପାନ କରୁଥାଉ ॥ ୩ ॥ ଯେଉଁ ଚରଣରୁ ପରମ-ପବିତ୍ର ଦେବନଦୀ ଗଙ୍ଗା ଝରି ଆସନ୍ତି, ଯାହାଙ୍କୁ ଶିବ ମସ୍ତକ ଉପରେ ଧାରଣ କରିଅଛନ୍ତି ଏବଂ ଯେଉଁ ଚରଣ-କମଳକୁ ବ୍ରହ୍ମା ପୂଜା କରନ୍ତି, କୃପାଳୁ ହରି ସେହି ଚରଣ-କମଳଦ୍ୱୟକୁ ମୋ ଶିର ଉପରେ ରଖିଲେ ।" ଏହି ରୂପେ ସ୍ତୁତି କରି କରି ବାରମ୍ବାର ସେ ଭଗବାନଙ୍କ ଶ୍ରୀଚରଣ ତଳେ ପଡିଲେ । ଅତିଶୟ ମନୋରୁଚିକର ବର ପାଇ ଗୌତମପତ୍ନୀ ଅହଲ୍ୟା ଆନନ୍ଦରେ ପରିପୂର୍ଣ୍ଣ ହୋଇ ପତିଗୃହକୁ ଗମନ କଲେ ॥ ୪ ॥ ଦୋହା :—ପ୍ରଭୁ ଶ୍ରୀରାମଚନ୍ଦ୍ର ଏହି ରୂପେ ଦୀନବନ୍ଧୁ ଏବଂ ପ୍ରୟୋଜନ ବା କାରଣ ବିନା ସେ ଭକ୍ତମାନଙ୍କ ପ୍ରତି ଦୟାଳୁ ହୋଇଥା'ନ୍ତି । ତୁଳସୀଦାସ କହନ୍ତି, "ରେ ଶଠ ମନ ! ତୁ କପଟ-ଜଞ୍ଜାଳ ତ୍ୟାଗ କରି ତାହାଙ୍କୁ ହିଁ ଭଜନ କର ।" ॥ ୨୧୧ ॥ ଚୌପାଇ :—ଶ୍ରୀରାମ ଓ ଲକ୍ଷ୍ମଣ ମୁନିଙ୍କ ସଙ୍ଗେ ଚଳିଲେ । ଅନନ୍ତର ସେମାନେ ଜଗତପାବନୀ ଗଙ୍ଗାନଦୀ କୂଳକୁ ଆସିଲେ । ମହାରାଜ ଗାଧିସୁତ ବିଶ୍ୱାମିତ୍ର ଦେବନଦୀ ଗଙ୍ଗା କିପରି ପୃଥିବୀ ଉପରକୁ

ପୁର ରମ୍ୟତା ରାମ ଜବ ଦେଖୀ । ହରଷେ ଅନୁଜ ସମେତ ବିସେଷୀ ॥
ବାପୀଁ କୂପ ସରିତ ସର ନାନା । ସଲିଲ ସୁଧାସମ ମନି ସୋପାନା ॥୩॥
ଗୁଂଜତ ମଂଜୁ ମତ୍ତ ରସ ଭୃଂଗା । କୂଜତ କଲ ବହୁବରନ ବିହଂଗା ॥
ବରନ ବରନ ବିକସେ ବନଜାତା । ତ୍ରିବିଧ ସମୀର ସଦା ସୁଖଦାତା ॥୪॥

ସୁମନ ବାଟିକା ବାଗ ବନ ବିପୁଲ ବିହଂଗ ନିବାସ ।
ଫୂଲତ ଫଲତ ସୁପଲ୍ଲବତ ସୋହତ ପୁର ଚହୁଁ ପାସ ॥୨୧୨॥

ବନଇ ନ ବରନତ ନଗର ନିକାଈ । ଜହାଁ ଜାଇ ମନ ତହିଁଇଁ ଲୋଭାଈ ॥
ଚାରୁ ବଜାରୁ ବିଚିତ୍ର ଅଁବାରୀ । ମନିମୟ ବିଧି ଜନୁ ସ୍ୱକର ସଁୱାରୀ ॥୧॥

---

ନଗର ରମ୍ୟତା ରାମ ଯେବେ ବିଲୋକଲେ । ଅନୁଜ ସହିତ ଅତି ପ୍ରସନ୍ନ ହୋଇଲେ ॥
ନାନା କୂପ ବାପୀ ନଦୀ ସର ମନୋରମ । ରୁଚିର ମଣି ସୋପାନ ଜଳ ସୁଧାସମ ॥୩॥
ଗୁଞ୍ଜନ କରନ୍ତି ବହୁ ରସ-ମତ୍ତ ଭୃଙ୍ଗ । କୂଜନ୍ତି ମଧୁରେ ନାନା ରଙ୍ଗର ବିହଙ୍ଗ ॥
ପ୍ରସ୍ଫୁଟିତ ହୁଏ ସରସିଜ ନାନାବିଧ । ବହେ ସଦା ସୁଖ-ଦାୟୀ ସମୀର ତ୍ରିବିଧ ॥୪॥

ସୁମନ ଉଦ୍ୟାନ ଉପବନ ବନ ବହୁ ବିହଙ୍ଗ ନିବାସ ।
ଫୁଲନ୍ତି ଫଳନ୍ତି ନିତ୍ୟ ପଲ୍ଲବନ୍ତି ଶୋଭେ ପୁର ଚଉପାଶ ॥୨୧୨॥

ନଗର ଶୋଭା ବର୍ଣ୍ଣନ କରି ନ ହୁଅଇ । ଯେଣେ ଯାଅ ତେଣେ ମନ ଲୋଭେ ଆକର୍ଷଇ ॥
ଚାରୁ ବଜାର ବିଚିତ୍ର ପ୍ରକାରେ ସଜ୍ଜିତ । ମଣି ଅଳିନ୍ଦ କି ବିଧି କରେ ସୁସଜ୍ଜିତ ॥୧॥

---

ଆସିଥିଲେ, ସେହି ସବୁ ପ୍ରସଙ୍ଗ ଶ୍ରୀରାମଲକ୍ଷ୍ମଣଙ୍କୁ କହି ଶୁଣାଇଲେ ॥ ୧ ॥ ମୁନିମାନଙ୍କ ସହ ପ୍ରଭୁ ଗଙ୍ଗା-ଜଳରେ ସ୍ନାନ କଲେ । ବ୍ରାହ୍ମଣମାନେ ବିବିଧ ପ୍ରକାର ଦାନ ପାଇଲେ । ପୁଣି ମୁନିବୃନ୍ଦଙ୍କ ସଙ୍ଗେ ସେ ପ୍ରସନ୍ନଚିତ୍ତ ହୋଇ ଚାଲିଲେ ଏବଂ ଶୀଘ୍ର ଜନକପୁରୀ ନିକଟରେ ପହଞ୍ଚିଗଲେ ॥ ୨ ॥ ଶ୍ରୀରାମଚନ୍ଦ୍ର ଜନକପୁରୀର ଶୋଭା ଯେତେବେଳେ ଦେଖିଲେ, ସେ ସାନଭାଇ ଲକ୍ଷ୍ମଣଙ୍କ ସହ ଅତିଶୟ ଆନନ୍ଦିତ ହେଲେ । ସେଠାରେ ଅନେକ ବାପୀ, କୂପ, ନଦୀ ଓ ସରୋବର ଥାଏ । ସେ ସବୁଥିରେ ଅମୃତ ସମାନ ଜଳ ପୂରି ରହିଥାଏ ଏବଂ ମଣିର ପାହାଚ ସବୁ ଥାଏ ॥ ୩ ॥ ମକରନ୍ଦରସ-ପାନରେ ଉନ୍ମତ୍ତ ହୋଇ ଭ୍ରମରମାନେ ସୁନ୍ଦର ଗୁଞ୍ଜନ କରୁଥା'ନ୍ତି । ବିବିଧରଙ୍ଗର ପକ୍ଷୀ କଳରବ କରୁଥା'ନ୍ତି । ନାନାରଙ୍ଗର ପଦ୍ମ ପ୍ରସ୍ଫୁଟିତ । ସଦାସର୍ବଦା ସୁଖଦାୟକ ତ୍ରିବିଧ (ଶୀତଳ, ମନ୍ଦ ଓ ସୁଗନ୍ଧ) ପବନ ବହୁଥାଏ ॥ ୪ ॥ ଦୋହା :—ପୁଷ୍ପବାଟିକା, ଉପବନ ଓ ବନରେ ବହୁତ ପକ୍ଷୀ ବାସ ଓ କଳରବ କରୁଥା'ନ୍ତି । ଏହି ସବୁ ସ୍ଥାନ ସୁନ୍ଦର ଫୁଲ, ଫଳ ଓ ପତ୍ରରେ ଭରି ହୋଇ ନଗରର ଚତୁର୍ଦ୍ଦିଗରେ ସୁଶୋଭିତ ହେଉଥାଏ ॥ ୨୧୨ ॥ ଚୌପାଈ :—ନଗରର ସୌନ୍ଦର୍ଯ୍ୟର ବର୍ଣ୍ଣନା କରିବା ଅସମ୍ଭବ । ମନ ଯେଉଁଆଡ଼େ ଯାଏ, ସେହି ଆଡ଼େ ଲୋଭେଇ ଯାଉଥାଏ । ସୁନ୍ଦର ବଜାର, ମଣି-ନିର୍ମିତ ବିଚିତ୍ର ଅଳିନ୍ଦ । ମନେ ହୁଏ, ସତେ ଯେମିତି ବ୍ରହ୍ମା ସେଗୁଡ଼ିକୁ

ଧନିକ ବନିକ ବର ଧନଦ ସମାନା । ବୈଠେ ସକଲ ବସ୍ତୁ ଲୈ ନାନା ॥
ଚୌହଟ ସୁନ୍ଦର ଗଲୀଁ ସୁହାଈ । ସଂତତ ରହହିଁ ସୁଗଂଧ ସିଁଚାଈ ॥୨॥
ମଂଗଲମୟ ମଂଦିର ସବ କେରେଁ । ଚିତ୍ରିତ ଜନୁ ରତିନାଥ ଚିତେରେଁ ॥
ପୁର ନର ନାରି ସୁଭଗ ସୁଚି ସଂତା । ଧରମସୀଲ ଜ୍ଞାନୀ ଗୁନବଂତା ॥୩॥
ଅତି ଅନୂପ ଜହଁ ଜନକନିବାସୂ । ବିଥକହିଁ ବିବୁଧ ବିଲୋକି ବିଲାସୂ ॥
ହୋତ ଚକିତ ଚିତ କୋଟ ବିଲୋକୀ । ସକଲ ଭୁବନ ସୋଭା ଜନୁ ରୋକୀ ॥୪॥

ଧବଲ ଧାମ ମନି ପୁରଟ ପଟ ସୁଘଟିତ ନାନା ଭାଁତି ।
ସିୟ ନିବାସ ସୁନ୍ଦର ସଦନ ସୋଭା କିମି କହି ଜାତି ॥୨୧୩॥

ସୁଭଗ ଦ୍ୱାର ସବ କୁଲିସ କପାଟା । ଭୂପ ଭୀର ନଟ ମାଗଧ ଭାଟା ॥
ବନୀ ବିସାଲ ବାଜି ଗଜ ସାଲା । ହୟ ଗୟ ରଥ ସଂକୁଲ ସବ କାଲା ॥୧॥

---

ଧନଦ ସମାନ ଧନୀ ବଣିକ ଅନେକ । ବସିଛନ୍ତି ବସ୍ତୁ ଘେନି ଏକୁ ବଳି ଏକ ॥
ସୁନ୍ଦର ଗଳୀ ଚଉକ ଶୋଭିତ ହୁଅନ୍ତି । ସୁଗନ୍ଧେ ସିଞ୍ଚିତ ହୋଇ ସତତ ରହନ୍ତି ॥୨॥
ମଙ୍ଗଳ-ମୟ ଭବନ ଅଟେ ସମସ୍ତଙ୍କ । ଚିତ୍ରିତ କରିଛି ଯେହ୍ନେ ରତିର ନାୟକ ॥
ପୁର ନର ନାରୀ ଶୁଚି ସଜ୍ଜନ ସୁନ୍ଦର । ଧର୍ମ-ଶୀଳ ଜ୍ଞାନୀ ସର୍ବେ ଗୁଣଙ୍କ ଆକର ॥୩॥
ଅତି ଅନୁପମ ନୃପ ଜନକ ନିବାସ । ଥକିତ ରହନ୍ତି ସୁରେ ବିଲୋକି ବିଳାସ ॥
ହୁଅଇ ଚକିତ ଚିତ୍ତ ପ୍ରାଚୀର ଦେଖନ୍ତେ । ତ୍ରିଭୁବନ ଶୋଭା ଛେକି ରଖିଛି ଯେମନ୍ତେ ॥୪॥

ଧବଳ ଭବନ ନାନାବିଧ ସ୍ୱର୍ଣ୍ଣ ମଣି ବସ୍ତ୍ରେ ସୁଘଟଇ ।
ଜାନକୀ ନିବାସ ସୁନ୍ଦର ସଦନ ଶୋଭା ବର୍ଣ୍ଣି ନ ହୁଅଇ ॥୨୧୩॥

ରୁଚିର ଦ୍ୱାର ସଂଯୁକ୍ତ କୁଳିଶ କପାଟ । ଭୂପ ଦ୍ୱାରେ ଭିଡ଼ ନଟ ପ୍ରଶଂସକ ଭାଟ ॥
ରଚିତ ମଞ୍ଜୁ ବିଶାଳ ଗଜ ବାଜି ଶାଳ । ହସ୍ତୀ ହୟ ରଥେ ପରିପୂର୍ଣ୍ଣ ସର୍ବକାଳ ॥୧॥

---

ଆପଣା ହସ୍ତରେ ହିଁ ନିର୍ମାଣ କରିଅଛନ୍ତି ॥ ୧ ॥ କୁବେର ସମାନ ଶ୍ରେଷ୍ଠ ଧନୀ ବେପାରୀମାନେ ସକଳ ବସ୍ତୁ ଧରି ଦୋକାନମାନଙ୍କରେ ବସିଅଛନ୍ତି । ସୁନ୍ଦର ଚୌକ ଓ ସୁଶୋଭିତ ବୀଥିକା—ସବୁଆଡ଼େ ସଦାସର୍ବଦା ସୁଗନ୍ଧ ଅତର ସିଞ୍ଚା ହେଉଥାଏ ॥ ୨ ॥ ସମସ୍ତଙ୍କ ଗୃହ ମଙ୍ଗଳମୟ ଏବଂ ସେ ସବୁଥିରେ ଚିତ୍ର ଅଙ୍କିତ । ସତେ ଯେମନ୍ତ ସେଗୁଡ଼ିକୁ କାମଦେବ ରୂପୀ ଚିତ୍ରକାର ଅଙ୍କନ କରିଅଛନ୍ତି । ନଗରର ସକଳ ନରନାରୀ ସୁନ୍ଦର, ପବିତ୍ର, ସାଧୁସ୍ୱଭାବବିଶିଷ୍ଟ, ଧର୍ମାତ୍ମା, ଜ୍ଞାନୀ ଓ ଗୁଣବାନ୍ ॥ ୩ ॥ ଯେଉଁଠାରେ ଜନକଙ୍କ ଅତି ଅନୁପମ ନିବାସସ୍ଥଳୀ, ସେଠିକାର ବିଳାସ ଦେଖି ଏପରି କି ଦେବତାମାନେ ମଧ୍ୟ ସ୍ତମ୍ଭୀଭୂତ ହୋଇଯାଆନ୍ତି । ମନୁଷ୍ୟଙ୍କ କଥା ଅବା କ'ଣ କହିବା ? ରାଜମହଲର ପ୍ରାଚୀରକୁ ଦେଖି ଚିତ୍ତ ଚକିତ ହୋଇଯାଏ । ମନେ ହୁଏ, ସତେ ଯେମିତି ସମସ୍ତ ସଂସାରର ଶୋଭାକୁ ଏହା ଅବରୁଦ୍ଧ କରି ରଖିଅଛି ॥ ୪ ॥ ଦୋହା :—ଉଜ୍ଜ୍ୱଳ ମହଲମାନଙ୍କରେ ଅନେକ ପ୍ରକାର ସୁନ୍ଦର ଗଢ଼ରେ ନିର୍ମିତ, ମଣି-ବିଜଡ଼ିତ ସୁନା ଜରିର

ପୁର ସଚିବ ସେନପ ବହୁତେରେ । ନୃପଗୃହ ସରିସ ସଦନ ସବ କେରେ ॥
ପୁର ବାହେର ସର ସରିତ ସମୀପା । ଉତରେ ଜହଁ ଜହଁ ବିପୁଲ ମହୀପା ॥୨॥
ଦେଖି ଅନୂପ ଏକ ଅଁବ୍ରାଈ । ସବ ସୁପାସ ସବ ଭାଁତି ସୁହାଈ ॥
କୌସିକ କହେଉ ମୋର ମନୁ ମାନା । ଇହାଁ ରହିଅ ରଘୁବୀର ସୁଜାନା ॥୩॥
ଭଲେହିଁ ନାଥ କହି କୃପାନିକେତା । ଉତରେ ତହଁ ମୁନିବୃନ୍ଦ ସମେତା ॥
ବିଶ୍ୱାମିତ୍ର ମହାମୁନି ଆଏ । ସମାଚାର ମିଥିଲାପତି ପାଏ ॥୪॥
ସଂଗ ସଚିବ ସୁଚି ଭୂରି ଭଟ ଭୂସୁର ବର ଗୁର ଜ୍ଞାତି ।
ଚଲେ ମିଲନ ମୁନିନାୟକହି ମୁଦିତ ରାଉ ଏହି ଭାଁତି ॥୨୧୪॥

---

ପାତ୍ର ମନ୍ତ୍ରୀ ସେନାପତି ଶୂର ଅଗଣନ । ସମସ୍ତଙ୍କ ଗୃହ ନୃପ-ସଦନ ଯେସନ ॥
ନଗର ବାହାରେ ସର ସରିତ ସମୀପେ । ରହିଛନ୍ତି ଇତସ୍ତତଃ ବିପୁଳ ମହୀପେ ॥୨॥
ଦେଖି ଅନୁପମ ଏକ ଆମ୍ର ଉପବନ । ସମସ୍ତ ବ୍ୟବସ୍ଥା ଯୁକ୍ତ ପରମ ଶୋଭନ ॥
କୌଶିକ କହିଲେ ମନ ମାନୁଛି ମୋହର । ରହିବା ଏହି ସ୍ଥାନରେ ସୌମ୍ୟ ରଘୁବର ॥୩॥
"ଯଥା ଆଜ୍ଞା" କହି କୃପାସାଗର ଶ୍ରୀରାମ । ମୁନିବୃନ୍ଦ ସହ କଲେ ସେ ସ୍ଥାନେ ବିଶ୍ରାମ ॥
ବିଶ୍ୱାମିତ୍ର ମହାମୁନି ଆଜି ଆସିଛନ୍ତି । ଏହି ସମାଚାର ପାଇ ମିଥିଳା ନୃପତି ॥୪॥
ସଚିବ ଭୂସୁର ଶୁଚି ଗୁରୁ ଶୂର ଜ୍ଞାତିଜନଙ୍କ ସହିତେ ।
ଗଲେ ଭେଟିବାକୁ ମୁନି-ନାୟକଙ୍କୁ ନୃପ ଏ ଭାବେ ମୁଦିତେ ॥୨୧୪॥

---

ପରଦା ଲାଗିଅଛି । ସୀତାଙ୍କ ନିବାସସ୍ଥଳୀ ସୁନ୍ଦର ମହଲର ଶୋଭା କିପରି ବର୍ଣ୍ଣନା କରାଯାଇ ପାରିବ ? ॥ ୨୧୩ ॥ ଚୌପାଇ :—ରାଜମହଲର ସମସ୍ତ ଦ୍ୱାର ଅତି ସୁନ୍ଦର । ସେ ସବୁଥିରେ ବଜ୍ରସମାନ ମଜଭୁତ ବା ସାରର କବାଟ ଲାଗିଅଛି । ସେ ସବୁ ସ୍ଥାନରେ ସଦା ସାମନ୍ତ ରାଜା, ନଟ, ମାଗଧ ଓ ଭାଟଙ୍କ ଗହଳି ଲାଗିଥାଏ । ଘୋଡା, ହାତୀ ପ୍ରଭୃତିଙ୍କ ଲାଗି ବହୁତ ବଡ ବଡ ଘୋଡାଶାଳ ଓ ହାତୀଶାଳ ତିଆରି ହୋଇଥାଏ । ଏଗୁଡିକ ସବୁବେଳେ ଘୋଡା, ହାତୀ ଓ ରଥମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଥାଏ ॥ ୧ ॥ ବହୁତ ଶୂରବୀର, ମନ୍ତ୍ରୀ ଓ ସେନାପତି ଥାଆନ୍ତି । ରାଜମହଲ ସମାନ ସେମାନଙ୍କର ମଧ୍ୟ ନିବାସସ୍ଥାନ । ନଗରର ବାହାରେ ସରୋବର ଓ ନଦୀ ନିକଟରେ ଏଠିସେଠି ବହୁତ ରାଜା ଉତୁରି ଡେରା ପକାଇ ଥାଆନ୍ତି ॥ ୨ ॥ ଗୋଟିଏ ସୁନ୍ଦର ଆମ୍ବତୋଟାରେ ସମସ୍ତ ପ୍ରକାର ସୁବିଧା ଓ ସୌନ୍ଦର୍ଯ୍ୟ ଦେଖି ବିଶ୍ୱାମିତ୍ର କହିଲେ, "ହେ ସୁଜ୍ଞ ରଘୁବୀର ! ମୋର ଇଚ୍ଛା, ଆମେ ଏଇଠି ରହିବା ।" ॥ ୩ ॥ "ବହୁତ ଆଚ୍ଛା, ସ୍ୱାମିନ୍ !" କହି କୃପାଧାମ ଶ୍ରୀରାମଚନ୍ଦ୍ର ସେହିଠାରେ ମୁନିଗଣଙ୍କ ସହ ରହିଗଲେ । ମିଥିଳାପତି ଜନକ ମହାମୁନି ବିଶ୍ୱାମିତ୍ରଙ୍କ ଆଗମନ ସମାଚାର ପାଇଲେ ॥ ୪ ॥ ଦୋହା :—ମହାମୁନିଙ୍କ ଆଗମନବାର୍ତ୍ତା ପାଇ ଜନକ ପବିତ୍ରହୃଦୟ, ସାଧୁ ଓ ସ୍ୱାମିଭକ୍ତ ମନ୍ତ୍ରୀ, ବହୁତ ଯୋଦ୍ଧା, ଶ୍ରେଷ୍ଠ ବ୍ରାହ୍ମଣ, ଗୁରୁ ଶତାନନ୍ଦଙ୍କ ଏବଂ ଆପଣାର ଜ୍ଞାତିସ୍ୱଜନଙ୍କୁ ସଙ୍ଗରେ ଧରିଲେ ଏବଂ

କୀନ୍ହ ପ୍ରନାମୁ ଚରନ ଧରି ମାଥା । ଦୀନ୍ହି ଅସୀସ ମୁଦିତ ମୁନିନାଥା ॥
ବିପ୍ରବୃନ୍ଦ ସବ ସାଦର ବଂଦେ । ଜାନି ଭାଗ୍ୟ ବଡ଼ ରାଉ ଅନଂଦେ ॥୧॥
କୁସଲ ପ୍ରସ୍ନ କହି ବାରହିଁ ବାରା । ବିସ୍ୱାମିତ୍ର ନୃପହି ବୈଠାରା ॥
ତେହି ଅବସର ଆଏ ଦୋଉ ଭାଈ । ଗଏ ରହେ ଦେଖନ ଫୁଲୱାଈ ॥୨॥
ସ୍ୟାମ ଗୌର ମୃଦୁ ବୟସ କିସୋରା । ଲୋଚନ ସୁଖଦ ବିସ୍ୱ ଚିତ ଚୋରା ॥
ଉଠେ ସକଲ ଜବ ରଘୁପତି ଆଏ । ବିସ୍ୱାମିତ୍ର ନିକଟ ବୈଠାଏ ॥୩॥
ଭଏ ସବ ସୁଖୀ ଦେଖି ଦୋଉ ଭ୍ରାତା । ବାରି ବିଲୋଚନ ପୁଲକିତ ଗାତା ॥
ମୂରତି ମଧୁର ମନୋହର ଦେଖୀ । ଭୟଉ ବିଦେହୁ ବିଦେହୁ ବିସେଷୀ ॥୪॥
ପ୍ରେମ ମଗନ ମନୁ ଜାନି ନୃପୁ କରି ବିବେକୁ ଧରି ଧୀର ।
ବୋଲେଉ ମୁନି ପଦ ନାଇ ସିରୁ ଗଦଗଦ ଗିରା ଗଭୀର ॥୨୧୫॥

---

ଚରଣେ ମସ୍ତକ ରଖି କଲେ ପ୍ରଣିପାତ । ଆନନ୍ଦ ମନେ ଆଶିଷ ଦେଲେ ମୁନିନାଥ ॥
ସାଦରେ ଇତର ମୁନିବୃନ୍ଦଙ୍କୁ ବନ୍ଦିଲେ । ଜାଣି ବଡ ଭାଗ୍ୟ ନୃପ ଆନନ୍ଦ ହୋଇଲେ ॥୧॥
କୁଶଳ ସମ୍ବାଦ ପଚାରଣ ପୁଣି ପୁଣି । ବସାଇଲେ ନୃପତିଙ୍କୁ ବିଶ୍ୱାମିତ୍ର ମୁନି ॥
ସେ ସମୟେ ଦୁଇ ଭାଇ ହେଲେ ଉପସ୍ଥିତ । ଯାଇଥିଲେ ଫୁଲବାଡି ଦେଖିବା ନିମିତ୍ତ ॥୨॥
ଶ୍ୟାମଳ ଗଉର ମୃଦୁ ବୟସ କିଶୋର । ଲୋଚନ ସୁଖଦାୟକ ବିଶ୍ୱଚିତ୍ତ ଚୋର ॥
ଉଠିଲେ ସମସ୍ତେ ଯେବେ ଶ୍ରୀରାମ ଆସିଲେ । ବିଶ୍ୱାମିତ୍ର ନେଇ ନିଜ ପାଶେ ବସାଇଲେ ॥୩॥
ନିରେଖି ବେନି ଭ୍ରାତାଙ୍କୁ ସର୍ବେ ପ୍ରଫୁଲ୍ଲିତ । ନୟନେ ନୀର, ଶରୀର ହେଲା ପୁଲକିତ ॥
ମଧୁର ସୁମନୋହର ମୂର୍ତ୍ତିଙ୍କୁ ଦେଖନ୍ତେ । ବିଦେହ ବିଦେହ ହେଲେ ସେକାଳେ ଅତ୍ୟନ୍ତେ ॥୪॥
ପ୍ରେମରେ ନିମଗ୍ନ ଜାଣି ନିଜ ମନ ଜ୍ଞାନେ କରି ମତି ସ୍ଥିର ।
ମୁନି ପଦେ ନମି ଭାଷିଲେ ନୃପତି ଗଦ୍‌ଗଦ ବାଣୀ ଗମ୍ଭୀର ॥୨୧୫॥

---

ପ୍ରସନ୍ନ ଚିତ୍ତରେ ମୁନିନାୟକ ବିଶ୍ୱାମିତ୍ରଙ୍କ ସଙ୍ଗେ ସାକ୍ଷାତ କରିବାକୁ ଚାଲିଲେ ॥ ୨୧୪ ॥
ଚୌପାଈ :—ରାଜା ମୁନିଙ୍କ, ଚରଣତଳେ ମସ୍ତକ ରଖି ପ୍ରଣାମ କଲେ । ମୁନିନାଥ ବିଶ୍ୱାମିତ୍ର ପ୍ରସନ୍ନ ହୋଇ ଆଶୀର୍ବାଦ ଦେଲେ । ତତ୍ପରେ ରାଜା ସମସ୍ତ ବ୍ରାହ୍ମଣମଣ୍ଡଳୀଙ୍କୁ ସାଦର ପ୍ରଣାମ କଲେ ଏବଂ ଆପଣାର ବଡ ଭାଗ୍ୟ ବୋଲି ମନେ କରି ଆନନ୍ଦିତ ହେଲେ ॥୧॥ ବାରମ୍ବାର କୁଶଳ ପ୍ରଶ୍ନ ପଚାରି ବିଶ୍ୱାମିତ୍ର ରାଜାଙ୍କୁ ବସାଇଲେ । ଦୁଇ ଭାଇ ଫୁଲ-ବଗିଚା ଦେଖିବାକୁ ଯାଇଥିଲେ । ସେତିକିବେଳେ ସେ ଦୁହେଁ ଆସି ପହଞ୍ଚିଲେ ॥ ୨ ॥ ସୁକୁମାର, କିଶୋର-ବୟସ୍କ, ଶ୍ୟାମ ଓ ଗୌରବର୍ଣ୍ଣର କୁମାର ଦୁହେଁ ନୟନର ସୁଖଦାୟକ ଏବଂ ବିଶ୍ୱମନପ୍ରାଣର ଚୋର । ରାମ ଆସିବାରୁ ସମସ୍ତେ ଉଠି ଛିଡା ହେଲେ । ବିଶ୍ୱାମିତ୍ର ତାହାଙ୍କୁ ନିଜ ପାଖରେ ବସାଇଲେ ॥ ୩ ॥ ଦୁଇ ଭାଇଙ୍କୁ ଦେଖି, ସମସ୍ତେ ସୁଖୀ ହେଲେ । ସମସ୍ତଙ୍କ ନେତ୍ରରେ ଆନନ୍ଦ ଓ ପ୍ରେମର ଅଶ୍ରୁଜଳ ପରିପୂର୍ଣ୍ଣ ଓ ଶରୀର ପୁଲକିତ । ରାମଚନ୍ଦ୍ର ଙ୍କ ମଧୁର ମନୋହର ମୂର୍ତ୍ତି ଦେଖି ବିଦେହରାଜ (ଜନକ) ବିଶେଷ

କହହୁ ନାଥ ସୁନ୍ଦର ଦୋଉ ବାଲକ । ମୁନିକୁଲ ତିଲକ କି ନୃପକୁଲ ପାଲକ ॥
ବ୍ରହ୍ମ ଜୋ ନିଗମ ନେତି କହି ଗାୱା । ଉଭୟ ବେଷ ଧରି କି ସୋଇ ଆୱା ॥୧॥
ସହଜ ବିରାଗରୂପ ମନୁ ମୋରା । ଥକିତ ହୋତ ଜିମି ଚନ୍ଦ ଚକୋରା ॥
ତା ତେ ପ୍ରଭୁ ପୂଛଉଁ ସତିଭାଉ । କହହୁ ନାଥ ଜନି କରହୁ ଦୁରାଉ ॥୨॥
ଇନ୍ହହି ବିଲୋକତ ଅତି ଅନୁରାଗା । ବରବସ ବ୍ରହ୍ମସୁଖହି ମନ ତ୍ୟାଗା ॥
କହ ମୁନି ବିହସି କହେହୁ ନୃପ ନୀକା । ବଚନ ତୁମ୍ହାର ନ ହୋଇ ଅଲୀକା ॥୩॥
ଏ ପ୍ରିୟ ସବହି ଜହାଁ ଲଗି ପ୍ରାନୀ । ମନ ମୁସୁକାହିଁ ରାମୁ ସୁନି ବାନୀ ॥
ରଘୁକୁଲ ମନି ଦସରଥ କେ ଜାଏ । ମମ ହିତ ଲାଗି ନରେସ ପଠାଏ ॥୪॥

---

କହନ୍ତୁ ନାଥ ! ସୁନ୍ଦର ଯୁଗଲ ଏ ବାଲ । ମୁନିକୁଳ ତିଳକ କି ନୃପ-କୁଳପାଳ ॥
ଶ୍ରୁତି ଯେ ବ୍ରହ୍ମଙ୍କୁ ଭଣେ ନେତି ନେତି କହି । ଆସିଛନ୍ତି କି ଦେନି ରମ୍ୟ ରୂପ ସେହି ବହି ॥୧॥
ସହଜେ ବୈରାଗ୍ୟ ରୂପ ଅଟେ ମନ ମୋର । ମୋହିତ ହୁଅଇ ଯେହ୍ନେ ଚନ୍ଦ୍ର ରେ ଚକୋର ॥
ତେଣୁ ମୁଁ ପଚାରୁଅଛି ସରଳ ଭାବରେ । ଗୁପ୍ତ ନ କରିଣ ନାଥ, କହ ମୋ ଆଗରେ ॥୨॥
ଏହାଙ୍କୁ ଅବଲୋକନ୍ତେ ଅତି ଅନୁରାଗେ । ଅଗତ୍ୟା ବ୍ରହ୍ମ ସୁଖକୁ ମନ ପରିତ୍ୟାଗେ ॥
"କହିଲ ଉତ୍ତମ" ହସି ଭାଷିଲେ ମୁନୀଶ । ମିଥ୍ୟା ନୁହଇ ତୁମ୍ଭର ବଚନ ମହୀଶ ॥୩॥
ଏ ପ୍ରିୟ ସମସ୍ତଙ୍କର ଯେତେ ଛନ୍ତି ପ୍ରାଣୀ । ମନ ମଧ୍ୟରେ ହସିଲେ ରାମ ଶୁଣି ବାଣୀ ॥
ରଘୁକୁଳ-ମଣି ଦଶରଥଙ୍କ କୁମର । ମୋ ହିତ ନିମନ୍ତେ ପଠାଇଲେ ନୃପବର ॥୪॥

---

ରୂପେ ବିଦେହ (ଦେହର ଅସ୍ତିତ୍ୱ ବିଷୟରେ ବିସ୍ମୃତ) ହୋଇଗଲେ ॥ ୪ ॥ ଦୋହା — ମନକୁ ପ୍ରେମରେ ମଗ୍ନ ହେବାର ଜାଣି ରାଜା ଜନକ ବିବେକ ବଳରେ ଧୈର୍ଯ୍ୟ ଧାରଣ କଲେ ଏବଂ ମୁନିଙ୍କ ଚରଣ ତଳେ ମୁଣ୍ଡ ନୁଆଁଇ ଗଦ୍‌ଗଦ (ପ୍ରେମପୂର୍ଣ୍ଣ) ଗମ୍ଭୀର ବାଣୀରେ କହିଲେ—॥ ୨୧୫ ॥ ଚୌପାଈ —"ହେ ନାଥ ! କୁହନ୍ତୁ, ଏ ଦୁଇଟି ସୁନ୍ଦର ବାଳକ ମୁନିକୁଳର ଭୂଷଣ ଅଥବା କୌଣସି ରାଜବଂଶର ପାଳନକର୍ତ୍ତା ? ଅଥବା ବେଦଗଣ 'ନେତି' 'ନେତି' କହି ଯାହାଙ୍କର ମହିମା ଗାନ କରନ୍ତି, ସେହି ବ୍ରହ୍ମ ଯୁଗଳ ରୂପ ଧାରଣ କରି ଏଠାକୁ ଆସିଅଛନ୍ତି ? ॥ ୧ ॥ ମୋର ମନ ତ ସ୍ୱଭାବତଃ ବୈରାଗ୍ୟର ମୂର୍ତ୍ତି । ଏମାନଙ୍କୁ ଦେଖି ମୋର ସେହି ମନ ମଧ୍ୟ ଏପରି ମୁଗ୍ଧ ହେଉଛି, ସତେ ଯେମିତି ଚନ୍ଦ୍ରଙ୍କୁ ଦେଖି ଚକୋର ମୁଗ୍ଧ ହୁଏ । ହେ ପ୍ରଭୋ ! ଅତଏବ ମୁଁ ଆପଣଙ୍କୁ ସତ୍ୟ (ନିଶ୍ଛଳ) ଭାବରେ ପଚାରୁଛି । ହେ ନାଥ ! କୁହନ୍ତୁ, ଗୁପ୍ତ ରଖନ୍ତୁ ନାହିଁ ॥ ୨ ॥ ଏ ଦୁହିଙ୍କୁ ଦେଖିବା ମାତ୍ରେ ମୋ ମନ ଅତି ପ୍ରେମବଶତଃ ଜବରଦସ୍ତ ବ୍ରହ୍ମସୁଖ ତ୍ୟାଗ କରି ଦେଇଛି ।" ମୁନି ହସି କହିଲେ, "ହେ ରାଜନ୍ ! ଆପଣ ଯଥାର୍ଥ କହିଅଛନ୍ତି । ଆପଣଙ୍କ ବଚନ ଅଲୀକ ହୋଇ ନ ପାରେ ॥ ୩ ॥ ସଂସାରରେ ଯେତେ ଜୀବ ଅଛନ୍ତି, ଏ ସମସ୍ତଙ୍କର ପ୍ରିୟ ।" ମୁନିଙ୍କର ରହସ୍ୟମୟୀ ବାଣୀ ଶୁଣି ଶ୍ରୀରାମ ମନେ ମନେ ହସୁଥା'ନ୍ତି । ଅନନ୍ତର ମୁନି କହିଲେ, "ଏ ରଘୁକୁଳମଣି ମହାରାଜ

ରାମୁ ଲଖନୁ ଦୋଉ ବଂଧୁବର ରୂପ ସୀଲ ବଲ ଧାମ ।
ମଖ ରାଖେଉ ସବୁ ସାଖି ଜଗୁ ଜିତେ ଅସୁର ସଂଗ୍ରାମ ॥୨୧୬॥

ମୁନି ତବ ଚରନ ଦେଖି କହ ରାଊ । କହି ନ ସକଉଁ ନିଜ ପୁନ୍ୟ ପ୍ରଭାଊ ॥
ସୁନ୍ଦର ସ୍ୟାମ ଗୌର ଦୋଉ ଭ୍ରାତା । ଆନଁଦହୂ କେ ଆନଁଦ ଦାତା ॥୧॥
ଇନ୍ହ କୈ ପ୍ରୀତି ପରସପର ପାୱନି । କହି ନ ଜାଇ ମନ ଭାୱ ସୁହାୱନି ॥
ସୁନହୁ ନାଥ କହ ମୁଦିତ ବିଦେହୂ । ବ୍ରହ୍ମ ଜୀବ ଇବ ସହଜ ସନେହୂ ॥୨॥
ପୁନି ପୁନି ପ୍ରଭୁହି ଚିତୱ ନରନାହୂ । ପୁଲକ ଗାତ ଉର ଅଧିକ ଉଛାହୂ ॥
ମୁନିହି ପ୍ରସଂସି ନାଇ ପଦ ସୀସୂ । ଚଲେଉ ଲୱାଇ ନଗର ଅବନୀସୂ ॥୩॥
ସୁନ୍ଦର ସଦନୁ ସୁଖଦ ସବ କାଲା । ତହାଁ ବାସୁ ଲୈ ଦୀନ୍ହ ଭୁଆଲା ॥
କରି ପୂଜା ସବ ବିଧି ସେବକାଈ । ଗୟଉ ରାଉ ଗୃହ ବିଦା କରାଈ ॥୪॥

---

ରାମ ଲକ୍ଷ୍ମଣ ଦେନି ଭାଇ, ଗୁଣ-ଶୀଳ ରୂପ ବଳାଗାର ।
ଅସୁରଙ୍କୁ ମାରି ଯଜ୍ଞ ରକ୍ଷା କଲେ ସାକ୍ଷୀ ସମସ୍ତ ସଂସାର ॥୨୧୬॥

ଦେଖି ମୁନି ତୁମ୍ଭ ପଦ, ବୋଲନ୍ତି ଭୂପାଳ । କହି ନ ପାରେ ସ୍ୱପୁଣ୍ୟ ପ୍ରଭାବ ବିଶାଳ ॥
ସୁନ୍ଦର ଶ୍ୟାମ ଗଉର ଏହି ଦେନି ଭ୍ରାତା । ଆନନ୍ଦର ମଧ୍ୟ ଅଟ ଆନନ୍ଦ-ପ୍ରଦାତା ॥୧॥
ପବିତ୍ର ଅଟେ ଏହାଙ୍କ ପ୍ରୀତି ପରସ୍ପର । କହି ନ ହୁଅଇ ଶୋଭା ମନ-ମୁଗ୍ଧକର ॥
ଶୁଣନ୍ତୁ ନାଥ, ସାନନ୍ଦେ କହନ୍ତି ବିଦେହ । ବ୍ରହ୍ମଜୀବ ଅନୁରୂପ ସ୍ୱାଭାବିକ ସ୍ନେହ ॥୨॥
ବାରମ୍ବାର ନିରେଖିଣ ପ୍ରଭୁଙ୍କୁ ନୃପତି । ପୁଲକେ ତନୁ, ଉତ୍କଣ୍ଠା ହୃଦେ ହୁଏ ଅତି ॥
ମୁନିଙ୍କୁ ପ୍ରଶଂସା କରି ପ୍ରଣାମ ପଦ୍ମରେ । ସଙ୍ଗେ ନେଇ ଅବନୀଶ ଆସିଲେ ନଗରେ ॥୩॥
ସଦା ଯେ ସୁଖଦାୟକ ସୁନ୍ଦର ସଦନ । ତହିଁ ରଖାଇଲେ ଆଣି ସାଦରେ ରାଜନ ॥
ସବୁ ମତେ ସେବା ପୂଜା କରି ନରରାୟ । ଗଲେ ନିଜ ଭବନକୁ ହୋଇଣ ବିଦାୟ ॥୪॥

---

ଦଶରଥଙ୍କ ପୁତ୍ର । ମୋ ହିତ ନିମନ୍ତେ ରାଜା ଏହାଙ୍କୁ ମୋ ସହିତ ପଠାଇ ଅଛନ୍ତି ॥ ୪ ॥ ଦୋହା '—ରାମ ଓ ଲକ୍ଷ୍ମଣ ଏ ଦୁଇ ଶ୍ରେଷ୍ଠ ଭ୍ରାତା ରୂପ, ଶୀଳ ଓ ବଳର ଧାମ । ଏମାନେ ଯୁଦ୍ଧରେ ଅସୁରମାନଙ୍କୁ ଜୟ କରି ମୋର ଯଜ୍ଞ ରକ୍ଷା କରିଛନ୍ତି ।'' ସମଗ୍ର ଜଗତ ଏ କଥାର ସାକ୍ଷୀ ॥୨୧୬॥ ଚୌପାଈ'—ରାଜା କହିଲେ, "ହେ ମୁନି ! ଆପଣଙ୍କ ଚରଣ ଦର୍ଶନ କରିବା ଦ୍ୱାରା ମୋର ପୁଣ୍ୟ ପ୍ରଭାବ ଯେ କେତେ ବେଶି, ତାହା କହିପାରୁ ନାହିଁ । ସୁନ୍ଦର, ଶ୍ୟାମଳ ଓ ଗୌରବର୍ଣ୍ଣର ଏ ଭାଇ ଦୁହେଁ ଆନନ୍ଦର ମଧ୍ୟ ଆନନ୍ଦଦାତା ॥୧॥ ଏ ଦୁହିଁଙ୍କ ପରସ୍ପର ପ୍ରୀତି ବଡ ପବିତ୍ର ଏବଂ ଅତୁଳନୀୟ । ତାହା ମନକୁ ମୁଗ୍ଧ କରେ । କିନ୍ତୁ ବାଣୀରେ ବର୍ଣ୍ଣନା କରାଯାଇ ପାରିବ ନାହିଁ ।'' ବିଦେହରାଜ ଜନକ ପୁଣି ଆନନ୍ଦିତ ମନରେ କହିଲେ, "ହେ ନାଥ ! ଶୁଣନ୍ତୁ, ବ୍ରହ୍ମ ଓ ଜୀବଙ୍କ ସଦୃଶ ଏ ଦୁହିଙ୍କ ମଧ୍ୟରେ ସ୍ୱାଭାବିକ ସହଜ ପ୍ରେମ ପ୍ରତିଷ୍ଠିତ ॥ ୨ ॥ ରାଜା ବାରମ୍ବାର ପ୍ରଭୁଙ୍କୁ ଦେଖୁଥା'ନ୍ତି । ପ୍ରେମରେ ଶରୀର ପୁଲକିତ ହେଉଥାଏ ଏବଂ ହୃଦୟରେ ବଡ ଉତ୍ସାହ । ତତ୍ପରେ

ରିଷୟ୍ହ ସଂଗ ରଘୁବଂସ ମନି କରି ଭୋଜନୁ ବିଶ୍ରାମୁ ।
ବୈଠେ ପ୍ରଭୁ ଭ୍ରାତା ସହିତ ଦିବସୁ ରହା ଭରି ଜାମୁ ॥୨୧୭॥
ଲଖନ ହୃଦୟଁ ଲାଲସା ବିସେଷୀ । ଜାଇ ଜନକପୁର ଆଇଅ ଦେଖୀ ॥
ପ୍ରଭୁ ଭୟ ବହୁରି ମୁନହି ସକୁଚାହୀଁ । ପ୍ରଗଟ ନ କହହିଁ ମନହିଁ ମୁସୁକାହୀଁ ॥୧॥
ରାମ ଅନୁଜ ମନ କୀ ଗତି ଜାନୀ । ଭଗତ ବଛଲତା ହିୟଁ ହୁଲସାନୀ ॥
ପରମ ବିନୀତ ସକୁଚି ମୁସୁକାଈ । ବୋଲେ ଗୁର ଅନୁସାସନ ପାଈ ॥୨॥
ନାଥ ଲଖନୁ ପୁରୁ ଦେଖନ ଚହହୀଁ । ପ୍ରଭୁ ସକୋଚ ଡର ପ୍ରଗଟ ନ କହହୀଁ ॥
ଜୌଁ ରାଉର ଆୟସୁ ମୈଁ ପାଵୌଁ । ନଗର ଦେଖାଇ ତୁରତ ଲୈଆଵୌଁ ॥୩॥

---

ଋଷିଙ୍କ ସଙ୍ଗରେ ରଘୁବଂଶ-ମଣି କରି ଭୋଜନ ବିଶ୍ରାମ ।
ଭ୍ରାତାଙ୍କୁ ନେଇଣ ହେଲେ ଉପବିଷ୍ଟ ଦିନ ଥିଲା ଏକ ଯାମ ॥୨୧୭॥
ଲକ୍ଷ୍ମଣଙ୍କ ହୃଦେ ହୁଏ ଲାଲସା ପ୍ରଖର । ଦେଖିବା ନିମନ୍ତେ ଯାଇ ଜନକ ନଗର ॥
ପ୍ରଭୁଙ୍କ ଭୟ ମୁନିଙ୍କ ସଙ୍କୋଚରୁ ଅତି । ପ୍ରକାଶେ ନ କହି ମନ ମଧ୍ୟରେ ହସନ୍ତି ॥୧॥
ରାମ ଅନୁଜ ମନର ଜାଣିପାରି ଭାବ । ହୃଦେ ଉଚ୍ଛୁଳିଲା ଭକ୍ତ-ବତ୍ସଳ ସ୍ୱଭାବ ॥
ମୃଦୁ ମନ୍ଦ ମନ୍ଦ ହସି ସଙ୍କୋଚେ ବିଶେଷ । ଭାଷିଲେ ବିନୟେ ପାଇ ଗୁରୁଙ୍କ ଆଦେଶ ॥୨॥
ନାଥ, ପୁର ଦେଖିବାକୁ ଲକ୍ଷ୍ମଣ ଇଚ୍ଛଇ । ପ୍ରଭୁଙ୍କ ଭୟ ସଙ୍କୋଚେ ଆଗେ ନ କହଇ ॥
ଯେବେ ଆପଣଙ୍କ ଅନୁଶାସନ ଲଭନ୍ତି । ନଗର ଦେଖାଇ ଶୀଘ୍ର ଫେରାଇ ଆଣନ୍ତି ॥୩॥

---

ମୁନିଙ୍କୁ ପ୍ରଶଂସା କରି ଓ ତାଙ୍କ ଚରଣତଳେ ପ୍ରଣାମ କରି ରାଜା ତାହାଙ୍କୁ ନଗର ମଧ୍ୟକୁ ନେଇ ଗଲେ ॥ ୩ ॥ ସର୍ବଦା (ସବୁ ଋତୁରେ) ସୁଖଦାୟକ, ଏପରି ଗୋଟିଏ ସୁନ୍ଦର ମହଲକୁ ରାଜା ମୁନିଙ୍କୁ ନେଇ ଯାଇ ସେହିଠାରେ ତାଙ୍କୁ ରଖାଇଲେ । ତଦନନ୍ତର ସକଳ ବିଧିରେ ମୁନିଙ୍କୁ ପୂଜା ଓ ସେବା କରି ରାଜା ବିଦାୟ ମାଗି ଘରକୁ ଗଲେ ॥୪॥ ଦୋହା —ରଘୁକୁଳଶିରୋମଣି ପ୍ରଭୁ ଶ୍ରୀରାମଚନ୍ଦ୍ର ଋଷିମାନଙ୍କ ସହ ଭୋଜନ ଓ ବିଶ୍ରାମ କରି ଭାଇ ଲକ୍ଷ୍ମଣଙ୍କ ସହ ବସିଲେ । ସେତେବେଳକୁ ଆଉ ପହରେ ମାତ୍ର ଦିନ ଥାଏ ॥ ୨୧୭ ॥ ଚୌପାଈ —ଲକ୍ଷ୍ମଣଙ୍କ ମନରେ ଜନକପୁର ଯାଇ ଦେଖି ଆସିବାକୁ ବିଶେଷ ଲାଲସା ଜାତ ହେଉଥାଏ । କିନ୍ତୁ ସେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ମନେ ମନେ ଭୟ କରୁଥାନ୍ତି ଏବଂ ପୁଣି ମୁନିଙ୍କ ଯୋଗେ ମଧ୍ୟ ସଙ୍କୁଚିତ ହେଉଥା'ନ୍ତି । ଏଥିପାଇଁ ପ୍ରକାଶ୍ୟରେ କିଛି କହୁ ନ ଥା'ନ୍ତି । ମନେ ମନେ ମୃଦୁ ହାସ୍ୟ ପ୍ରକାଶ କରୁଥା'ନ୍ତି ॥ ୧ ॥ ଅନ୍ତର୍ଯ୍ୟାମୀ ଶ୍ରୀରାମଚନ୍ଦ୍ର ସାନ ଭାଇଙ୍କ ମନର ଅବସ୍ଥା ଜାଣିପକାଇଲେ । ତାଙ୍କ ହୃଦୟରେ ଭକ୍ତବତ୍ସଳତାର ସୋତ ମାଡି ଆସିଲା । ସେ ଗୁରୁଙ୍କର ଆଜ୍ଞା ପାଇ ପରମ ବିନୟ ଓ ସଙ୍କୋଚର ସହିତ ମୃଦୁ ହାସ୍ୟ ପ୍ରକାଶ କରି କହିଲେ,— ॥ ୨ ॥ "ହେ ନାଥ ! ଲକ୍ଷ୍ମଣ ନଗର ଦେଖିବାକୁ ଇଚ୍ଛା କରନ୍ତି । କିନ୍ତୁ ପ୍ରଭୁଙ୍କ (ଆପଣଙ୍କ) ପ୍ରତି ଭୟ ଓ ସଙ୍କୋଚ ହେତୁ ତାହା ପ୍ରକାଶ କରୁ ନାହାନ୍ତି । ଯଦି ମୁଁ ଆପଣଙ୍କ ଆଜ୍ଞା ପାଆନ୍ତି, ତେବେ

ସୁନି ମୁନୀସୁ କହ ବଚନ ସପ୍ରୀତୀ । କସ ନ ରାମ ତୁମ୍ହ ରାଖହୁ ନୀତୀ ॥
ଧରମ ସେତୁ ପାଲକ ତୁମ୍ହ ତାତା । ପ୍ରେମ ବିବସ ସେବକ ସୁଖଦାତା ॥୪॥
ଜାଇ ଦେଖି ଆୱହୁ ନଗରୁ ସୁଖ ନିଧାନ ଦୋଉ ଭାଇ ।
କରହୁ ସୁଫଲ ସବ କେ ନୟନ ସୁନ୍ଦର ବଦନ ଦେଖାଇ ॥୨୧୮॥
ମୁନି ପଦ କମଲ ବଂଦି ଦୋଉ ଭ୍ରାତା । ଚଲେ ଲୋକ ଲୋଚନ ସୁଖ ଦାତା ॥
ବାଲକ ବୃନ୍ଦ ଦେଖି ଅତି ସୋଭା । ଲଗେ ସଂଗ ଲୋଚନ ମନୁ ଲୋଭା ॥୧॥
ପୀତ ବସନ ପରିକର କଟି ଭାଥା । ଚାରୁ ଚାପ ସର ସୋହତ ହାଥା ॥
ତନ ଅନୁହରତ ସୁଚନ୍ଦନ ଖୋରୀ । ସ୍ୟାମଲ ଗୌର ମନୋହର ଜୋରୀ ॥୨॥
କେହରି କଂଧର ବାହୁ ବିସାଲା । ଉର ଅତି ରୁଚିର ନାଗମନି ମାଲା ॥
ସୁଭଗ ସୋନ ସରସୀରୁହ ଲୋଚନ । ବଦନ ମୟଂକ ତାପତ୍ରୟ ମୋଚନ ॥୩॥

---

ଶୁଣି ବୋଇଲେ ମୁନୀଶ ବଚନ ସପ୍ରୀତି । କିପାଁ ରଘୁନାଥ, ତୁମ୍ଭେ ନ ରଖନ୍ତ ନୀତି ॥
ବତ୍ସ, ତୁମ୍ଭେ ଅଟ ଧର୍ମ ମର୍ଯ୍ୟାଦା-ପାଳକ । ପ୍ରେମ-ବିବଶ ସେବକ-ସୁଖପ୍ରଦାୟକ ॥୪॥
ଯାଇଣ ନଗର ଦେଖି ଆସ ଶୀଘ୍ର ସୁଖ-ନିଧାନ ଦି ଭାଇ ।
ନୟନ ସାର୍ଥକ କର ସମସ୍ତଙ୍କ ସୁନ୍ଦର ମୁଖ ଦେଖାଇ ॥୨୧୮॥
ମୁନିଙ୍କ ପଦ-କମଳ ବନ୍ଦି ବେନି ଭ୍ରାତା । ଗମିଲେ ନଗରେ ଲୋକ-ନେତ୍ର-ସୁଖଦାତା ॥
ବାଳକବୃନ୍ଦ ତାହାଙ୍କ ଶୋଭା ଦେଖି ଅତି । ଲୁବ୍ଧ ମୁଗ୍ଧ ମନ ହୋଇ ସଙ୍ଗରେ ଚାଲନ୍ତି ॥୧॥
ପୀତାମ୍ବର ପରିଧାନ କଟିରେ ତୂଣୀର । କରେ ଶୋଭା ପାଏ ଚାପ ଶାୟକ ରୁଚିର ॥
ତନୁ ଚର୍ଚ୍ଚିଛଇ ଚାରୁ ଚନ୍ଦନ ସୁବାସେ । ଶ୍ୟାମଳ ଗଉର ଯୋଡ଼ି ସୁନ୍ଦର ପ୍ରକାଶେ ॥୨॥
କେଶରୀ ସ୍କନ୍ଧ ଆଜାନୁ ବାହୁ ସୁବିଶାଳ । ବକ୍ଷରେ ଶୋଭେ ଲଳିତ ଗଜ-ମୁକ୍ତାମାଳ ॥
ବିମଳ ନବ ଅରୁଣ ସରୋଜ ଲୋଚନ । ବଦନ ବିଧୁ ତ୍ରିବିଧ ସନ୍ତାପ ମୋଚନ ॥୩॥

---

ଏହାଙ୍କୁ ନେଇ ନଗର ଦେଖାନ୍ତୁ ଏବଂ ଶୀଘ୍ର ଫେରାଇ ଆଣନ୍ତୁ ॥ ୩ ॥ ଏହା ଶୁଣି ମୁନୀଶ୍ୱର ବିଶ୍ୱାମିତ୍ର ପ୍ରେମରେ ବଚନ ବୋଇଲେ, "ହେ ରାମ ! ତୁମେ ନୀତି ରକ୍ଷା ନ କରନ୍ତ କିପରି ? ହେ ବତ୍ସ ! ତୁମେ ଧର୍ମ-ସେତୁ (ଧର୍ମର ମର୍ଯ୍ୟାଦା)ର ପାଳନକର୍ତ୍ତା ଏବଂ ପ୍ରେମର ବଶୀଭୂତ ହୋଇ ସେବକମାନଙ୍କର ଯଥାର୍ଥ ସୁଖଦାତା ହୋଇଥାଅ ॥୪॥
ଦୋହା '—ସୁଖନିଧାନ ଦୁଇ ଭାଇ ଯାଇ ନଗର ଦେଖି ଆସ । ଆପଣା ଆପଣାର ସୁନ୍ଦର ମୁଖ ଦେଖାଇ ସମସ୍ତ ନଗରବାସୀଙ୍କ ନେତ୍ର ସଫଳ କର ॥ ୨୧୮ ॥
ଚୌପାଈ .— ସମସ୍ତ ଲୋକଲୋଚନର ସୁଖଦାତା ଦୁଇ ଭାଇ ମୁନିଙ୍କର ଚରଣ-କମଳ ବନ୍ଦନା କରି ଚାଲିଲେ । ବାଳକବୃନ୍ଦ ଏମାନଙ୍କ ଅତ୍ୟଧିକ ରୂପଶୋଭା ଦେଖି ମୁଗ୍ଧ ହୋଇ ଏମାନଙ୍କ ସଙ୍ଗେ ସଙ୍ଗେ ଚାଲିଥା'ନ୍ତି । ସେମାନଙ୍କ ନେତ୍ର ଓ ମନ ଏମାନଙ୍କ ସୌନ୍ଦର୍ଯ୍ୟମାଧୁରୀରେ ଲୋଭେଇ ଯାଇଥାଏ ॥୧॥ ଦୁଇ ଭାଇଙ୍କର ପୀତ ବସ୍ତ୍ର । କଟିବସ୍ତ୍ରରେ ତୂଣୀର ବନ୍ଧା ହୋଇଛି । ହସ୍ତରେ ସୁନ୍ଦର ଧନୁଶର ସୁଶୋଭିତ । ଶ୍ୟାମଳ ଓ ଗୌର

କାନନ୍ହି କନକ ଫୂଲ ଛବି ଦେହୀଁ । ଚିତବ୍ତ ଚିତହି ଚୋରି ଜନୁ ଲେହୀଁ ॥
ଚିତବନି ଚାରୁ ଭୃକୁଟି ବର ବାଁକୀ । ତିଲକ ରେଖ ସୋଭା ଜନୁ ଚାଁକୀ ॥୩॥

ରୁଚିର ଚୌତନୀ ସୁଭଗ ସିର ମେଚକ କୁଂଚିତ କେସ ।
ନଖ ସିଖ ସୁନ୍ଦର ବଂଧୁ ଦୋଉ ସୋଭା ସକଲ ସୁଦେସ ॥୨୧୯॥

ଦେଖନ ନଗରୁ ଭୂପସୁତ ଆଏ । ସମାଚାର ପୁରବାସିହ୍ନ ପାଏ ॥
ଧାଏ ଧାମ କାମ ସବ ତ୍ୟାଗୀ । ମନହୁଁ ରଂକ ନିଧି ଲୂଟନ ଲାଗୀ ॥୧॥
ନିରଖି ସହଜ ସୁନ୍ଦର ଦୋଉ ଭାଈ । ହୋହିଁ ସୁଖୀ ଲୋଚନ ଫଲ ପାଈ ॥
ଜୁବତୀଁ ଭବନ ଝରୋଖହ୍ନି ଲାଗୀଁ । ନିରଖହିଁ ରାମ ରୂପ ଅନୁରାଗୀଁ ॥୨॥

---

ଶ୍ରବଣେ ସୁବର୍ଣ୍ଣ ଫୁଲ ଅତି ଶୋଭା ଦିଏ । ଚାହାଣେ ଚିତ୍ତକୁ ଅବା ଚୋରି କରିନିଏ ॥
ଲଳିତ ଚାହାଣି ବକ୍ର ଭ୍ରୂକୁଟୀ ଅଟଇ । ତିଲକ ରେଖା ଯେସନେ ଶୋଭାକୁ ଛେକଇ ॥୪॥

ଶିରେ ସୁଲଳିତ ଶୋଭଇ ମୁକୁଟ କୁଞ୍ଚିତ କେଶ ଶ୍ୟାମଳ ।
ନଖ ଶିଖ ବେନି ଭ୍ରାତା ମନୋହର ସୁଅଙ୍ଗେ ଶୋଭା ସକଳ ॥୨୧୯॥

ନୃପ-ସୁତ ଆସିଛନ୍ତି ନଗର ଦର୍ଶନେ । ଏହି ସମାଚାର ପାଇ ପୁରବାସୀ ଜନେ ॥
ଧାଇଁଲେ ସମସ୍ତେ ଗୃହ କାର୍ଯ୍ୟ ପରିହରି । ନିଧି ଲୁଟିବାକୁ ରଙ୍କ ଧାଆନ୍ତି ଯେପରି ॥୧॥
ସହଜ ସୁନ୍ଦର ବେନି ଭାଇଙ୍କୁ ଦେଖିଣ । ହୁଅନ୍ତି ସୁଖୀ ନୟନ ଫଳ ଆଦରିଣ ॥
ଯୁବତୀବୃନ୍ଦ ଭବନ ଝରକା ମଧ୍ୟରେ । ନିରେଖନ୍ତି ରାମ ରୂପ ଅନୁରାଗ-ଭରେ ॥୨॥

---

ବର୍ଣ୍ଣର ଶରୀର ଦ୍ୱୟରେ ଅନୁକୂଳ (ଯେଉଁ ଶରୀର ଉପରେ ଯେଉଁ ରଙ୍ଗର ଚନ୍ଦନ ଶୋଭନୀୟ, ସେହି ରଙ୍ଗର) ଚନ୍ଦନ ଚିତା ଲଗାହୋଇଛି । ଶ୍ୟାମଳ ଓ ଗୌର ରଙ୍ଗର ଏହି ଯୁଗଳ ମୂର୍ତ୍ତି ଅତି ମନୋହର ॥୨॥ ସିଂହର ସ୍କନ୍ଧ ସଦୃଶ ବିଶାଳ ସ୍କନ୍ଧ ଏବଂ ଜାନୁ ପର୍ଯ୍ୟନ୍ତ ବିଲମ୍ବିତ ବିଶାଳ ବାହୁ । ଅତି ରୁଚିର ବକ୍ଷ ଉପରେ ଗଜମୁକ୍ତାମାଳା ପରିଶୋଭିତ । ସୁନ୍ଦର ରକ୍ତପଦ୍ମ ସଦୃଶ ନେତ୍ର । ଚିନ୍ତାପହର ମୁଖ ଚନ୍ଦ୍ର ସମାନ ପରିଶୋଭିତ ॥ ୩ ॥ କାନରେ ସୁନାର କାନଫୁଲ ଅତ୍ୟନ୍ତ ଶୋଭା ଦେଉଥାଏ ଏବଂ ଦେଖିବା ମାତ୍ରେ ଦର୍ଶକର ଚିତ୍ତକୁ ହରଣ କରି ନେଉଥାଏ । ସେମାନଙ୍କ ଚାହାଣି ବଡ଼ ମନୋହର ଏବଂ ଭ୍ରୂଲତା ଟେରଛା ଓ ସୁନ୍ଦର । ମଥାରେ ତିଲକର ରେଖାମାନ ଏପରି ସୁନ୍ଦର ଦିଶୁଥାଏ, ସତେ ଯେମିତି ସେଗୁଡ଼ିକ ଶୋଭାର ଘେର ॥ ୪ ॥ ଦୋହା —ସୁନ୍ଦର ମସ୍ତକ ଉପରେ ମନୋହର ଚାରିକୋଣିଆ ମୁକୁଟ (ଟୋପି) ସୁଶୋଭିତ । କୃଷ୍ଣ ଓ କୁଞ୍ଚିତ କେଶ । ଦୁଇ ଭାଇ ଆପାଦମସ୍ତକ ସୁନ୍ଦର ଏବଂ ଶରୀରର ବିବିଧ ଅଙ୍ଗପ୍ରତ୍ୟଙ୍ଗ ଯାହାକୁ ଯେମିତି ଚାହିଁ, ସେହି ସେହି ଶୋଭାରେ ବିଭୂଷିତ ॥ ୨୧୯ ॥ ଚୌପାଈ :—ଯେତେବେଳେ ନଗରବାସୀମାନେ ଦୁଇ ରାଜପୁତ୍ର ନଗର ଦେଖି ଆସିଅଛନ୍ତି ବୋଲି ଶୁଣିଲେ, ସେତେବେଳେ ସେମାନେ ଘର-ଦ୍ୱାର ଓ ସବୁ କାମ-କାର୍ଯ୍ୟ ଛାଡ଼ି ଦୌଡ଼ିବାକୁ ଲାଗିଲେ । ସତେ ଯେମିତି ରଙ୍କମାନେ ଧନଭଣ୍ଡାର ଦେଖି ତାହା ଲୁଟିବାକୁ ଦୌଡ଼ୁଛନ୍ତି କି ! ॥ ୧ ॥ ସ୍ୱଭାବସୁନ୍ଦର ଦୁଇ

କହହିଁ ପରସପର ବଚନ ସପ୍ରୀତୀ । ସଖି ଇନ୍ହ କୋଟି କାମ ଛବି ଜୀତୀ ॥
ସୁର ନର ଅସୁର ନାଗ ମୁନି ମାହୀଁ । ସୋଭା ଅସି କହୁଁ ସୁନିଅତି ନାହୀଁ ॥୩॥
ବିଷ୍ଣୁ ଚାରି ଭୁଜ ବିଧି ମୁଖ ଚାରୀ । ବିକଟ ବେଷ ମୁଖ ପଂଚ ପୁରାରୀ ॥
ଅପର ଦେଉ ଅସ କୋଉ ନ ଆହୀ । ଯହ ଛବି ସଖୀ ପଟତରିଅ ଜାହୀ ॥୪॥

ବୟ କିସୋର ସୁଷମା ସଦନ ସ୍ୟାମ ଗୌର ସୁଖ ଧାମ ।
ଅଂଗ ଅଂଗ ପର ୱାରିଅହିଁ କୋଟି କୋଟି ସତ କାମ ॥୨୨୦॥

କହହୁ ସଖୀ ଅସ କୋ ତନୁଧାରୀ । ଜୋ ନ ମୋହ ଯହ ରୂପ ନିହାରୀ ॥
କୋଉ ସପ୍ରେମ ବୋଲୀ ମୃଦୁ ବାନୀ । ଜୋ ମୈଁ ସୁନା ସୋ ସୁନହୁ ସୟାନୀ ॥୧॥
ଏ ଦୋଉ ଦସରଥ କେ ଢୋଟା । ବାଲ ମରାଲନ୍ହି କେ କଲ ଜୋଟା ॥
ମୁନି କୌସିକ ମଖ କେ ରଖୱାରେ । ଜିନ୍ହ ରନ ଅଜିର ନିସାଚର ମାରେ ॥୨॥

---

ପରସ୍ପର କଥାବାର୍ତ୍ତା ସପ୍ରେମେ ହୁଅନ୍ତି । ସଖୀ ଏନ୍ହୁ କୋଟି କାମ ଛବି ଜିଣିଛନ୍ତି ॥
ସୁରାସୁର ନର ନାଗ ମୁନି ମଧ୍ୟେ କାହିଁ । ଏମନ୍ତ ଶୋଭା କେବେହେଁ ଶୁଣାଯାଏ ନାହିଁ ॥୩॥
ବିଷ୍ଣୁଙ୍କର ଚାରି ଭୁଜ ବିଧି ମୁଖ ଚାରି । ବିକଟାଳ ବେଶ ପଞ୍ଚ-ବଦନ କାମାରି ॥
ଆଉ କେ ଏପରି ଅଛୁ ଦେବତା ଇତର । ଏ ଛବି ସଙ୍ଗେ ଯାହାଙ୍କୁ ଦେବା ପଟାନ୍ତର ॥୪॥

ବୟସ କିଶୋର ସୁଷମା-ସାଗର ଶ୍ୟାମ ଗୌର ସୁଖଧାମ ।
ଅଙ୍ଗ ଅଙ୍ଗ ପ୍ରତି ଉତ୍ସର୍ଗ ହୁଅନ୍ତି କୋଟି କୋଟି ଶତ କାମ ॥୨୨୦॥

କହ ସଖୀ ଦେହଧାରୀ କେ ଅଛୁ ଏସନ । ଏ ରୂପ ଦେଖି ମୋହିତ ନ ହୁଏ ଯା'ମନ ॥
କିଏ ଅତି ପ୍ରେମେ ବୋଲେ ବଚନ ମାଧୁରୀ । ଯାହା ମୁଁ ଶୁଣିଛି ତାହା ଶୁଣ ସୁଚତୁରୀ ॥୧॥
ଏ ଦୁହେଁ ଅଟନ୍ତି ଦଶରଥଙ୍କ କୁମର । ଯେସନେ ବାଲ ମରାଳ ଯୋଡି ମନୋହର ॥
କଉଶିକ ମୁନିଙ୍କର ଯଜ୍ଞ-ରକ୍ଷାକାରୀ । ବଧିଲେ ରଣ-ପ୍ରାଙ୍ଗଣେ ନିଶାଚର ଭାରି ॥୨॥

---

ଭାଇଙ୍କୁ ଦେଖି ସେମାନେ ନୟନର ଫଳ ପାଇଲା ପରି ସୁଖ ଅନୁଭବ କରୁଥା'ନ୍ତି । ଯୁବତୀ ସ୍ତ୍ରୀମାନେ ଘର ଝରକାରୁ ଲାଗି ପ୍ରେମଭାବରେ ଶ୍ରୀରାମଚନ୍ଦ୍ରଙ୍କ ରୂପ ଦେଖୁ-ଥାଆନ୍ତି ॥ ୨ ॥ ସେମାନେ ପରସ୍ପର କଥାବାର୍ତ୍ତା ହେଉଥାଆନ୍ତି, "ଆଲୋ ସଖି ! ଏ ଦୁହେଁ କୋଟି କୋଟି କାମଦେବଙ୍କ ଛବିକୁ ଜିଣି ପକାଇଛନ୍ତି । ଦେବତା, ମନୁଷ୍ୟ, ଅସୁର, ନାଗ ଓ ମୁନିମାନଙ୍କ ମଧ୍ୟରେ ଏପରି ଶୋଭା ବା ସୌନ୍ଦର୍ଯ୍ୟବାନ୍ ପୁରୁଷ ଥିବା କଥା କେବେ ହେଲେ ଶୁଣା ଯାଇନାହିଁ ॥ ୩ ॥ ଭଗବାନ୍ ବିଷ୍ଣୁଙ୍କର ଚାରିଭୁଜ, ବ୍ରହ୍ମାଙ୍କର ଚାରି ମୁଖ, ଶିବଙ୍କର ବିକଟାଳ ବେଶ ଓ ପାଞ୍ଚମୁଖ । ଆଲୋ ସଖି ! ତେବେ ଆଉ କୌଣସି ଦେବତା ତ ଏପରି ନାହାନ୍ତି, ଯାହାଙ୍କ ସହ ଏହି ଛବିର ଉପମା ଦିଆଯାଇ ପାରିବ ॥ ୪ ॥ ଦୋହା —ଏହାଙ୍କର କିଶୋରାବସ୍ଥା, ଏ ସୁନ୍ଦରତାର ସଦନ, ଶ୍ୟାମଳ ଓ ଗୌରବର୍ଣ୍ଣବିଶିଷ୍ଟ ଏବଂ ସୁଖର ଧାମ । ଏମାନଙ୍କ ପ୍ରତ୍ୟେକ ଅଙ୍ଗ ପ୍ରତି ଶତ କୋଟି କୋଟି କନ୍ଦର୍ପଙ୍କୁ ମଧ୍ୟ ଉତ୍ସର୍ଗ କରିବାକୁ ମନ ହେଉଛି ॥ ୨୨୦ ॥ ଚୌପାଈ —ହେ ସଖି !

ସ୍ୟାମ ଗାତ କଲ କଂଜ ବିଲୋଚନ । ଜୋ ମାରୀଚ ସୁଭୁଜ ମଦୁ ମୋଚନ ॥
କୌସଲ୍ୟା ସୁତ ସୋ ସୁଖ ଖାନୀ । ନାମୁ ରାମୁ ଧନୁ ସାୟକ ପାନୀ ॥୩॥
ଗୌର କିସୋର ବେଷୁ ବର କାଛେଁ । କର ସର ଚାପ ରାମ କେ ପାଛେଁ ॥
ଲଛିମନୁ ନାମୁ ରାମ ଲଘୁ ଭ୍ରାତା । ସୁନୁ ସଖି ତାସୁ ସୁମିତ୍ରା ମାତା ॥୪॥

ବିପ୍ରକାଜୁ କରି ବନ୍ଧୁ ଦୋଉ ମଗ ମୁନିବଧୂ ଉଧାରି ।
ଆଏ ଦେଖନ ଚାପମଖ ସୁନି ହରଷୀଂ ସବ ନାରି ॥୨୨୧॥

ଦେଖି ରାମ ଛବି କୋଉ ଏକ କହଈ । ଜୋଗୁ ଜାନକିହି ୟହ ବରୁ ଅହଈ ॥
ଜୌଂ ସଖି ଇହ୍ନହି ଦେଖ ନରନାହୂ । ପନ ପରିହରି ହଠି କରଇ ବିବାହୂ ॥୧॥

---

ଶ୍ୟାମ କଳେବର କଳ କମଳ-ଲୋଚନ । ଯେ ମାରୀଚ ସୁବାହୁଙ୍କ ଗର୍ବ-ବିମୋଚନ ॥
କୌଶଲ୍ୟାଙ୍କ ସୁତ ସେହି ସୁଖ-ରତ୍ନାକର । ରାମ ନାମ, ଶୋଭେ ପାଏ କରେ ଚାପଶର ॥୩॥
ଗୌର କିଶୋର ଯେ ରାମଚନ୍ଦ୍ରଙ୍କ ପଛରେ । ପରମ ଲଳିତ ବେଶ ଧନୁବାଣ କରେ ॥
ଲକ୍ଷ୍ମଣ ନାମ ରାମଙ୍କ ସେ କନିଷ୍ଠ ଭ୍ରାତା । ଶୁଣ ସଜନୀ, ସୁମିତ୍ରା ତାହାଙ୍କର ମାତା ॥୪॥

ବିପ୍ର କାର୍ଯ୍ୟ କରି ପୁଣି ବେନି ଭାଇ ପଥେ ମୁନି-ବଧୂ ତାରି ।
ଆସିଛନ୍ତି ଧନୁଯଜ୍ଞ ଦେଖିବାକୁ ଶୁଣି ହର୍ଷ ହେଲେ ନାରୀ ॥୨୨୧॥

ଦେଖି ରାମ ଛବି କେଉଁ ରମଣୀ କହଇ । ବଇଦେହୀ ଅନୁରୂପ ବର ଏ ଅଟଇ ॥
ସଖୀ ଏହାଙ୍କୁ ଦେଖିବେ ନରନାଥ ଯେବେ । ପ୍ରତିଜ୍ଞା ତେଜି ବିବାହ କରାଇବେ ତେବେ ॥୧॥

---

କହ ତ ଏପରି ଶରୀରଧାରୀ ପୁରୁଷ କିଏ ଅଛି ଯେ ଏହି ରୂପକୁ ଦେଖି ମୁଗ୍ଧ ହୋଇ ନ ଯିବ ! ଅନ୍ୟ ଜଣେ ସଖି ପ୍ରେମଭରା କୋମଳବାଣୀ କହିଲା, "ହେ ଚତୁରି ! ଶୁଣ, ମୁଁ ଯାହା ଶୁଣିଛି ॥ ୧ ॥ ଏ ଦୁଇ ରାଜପୁତ୍ର ମହାରାଜ ଦଶରଥଙ୍କ ପୁତ୍ର । ବାଳ ମରାଳ ସଦୃଶ ଏ ଯୁଗଳ ଦେଖିବାକୁ ସୁନ୍ଦର । ଏ ଦୁହେଁ ବିଶ୍ୱାମିତ୍ରଙ୍କ ଯଜ୍ଞର ରକ୍ଷାକର୍ତ୍ତା ଏବଂ ଯୁଦ୍ଧ-କ୍ଷେତ୍ରରେ ରାକ୍ଷସମାନଙ୍କୁ ବଧ କରିଅଛନ୍ତି ॥ ୨ ॥ ଯାହାଙ୍କର ଶ୍ୟାମଳ ଶରୀର ଓ ସୁନ୍ଦର କମଳ ସମ ନୟନ, ଯେ ମାରୀଚ ଓ ସୁବାହୁର ଗର୍ବନାଶକାରୀ ଓ ସୁଖର ଆକର (ଖଣି) ଏବଂ ଯେ ହାତରେ ଧନୁଶର ଧରି ଅଛନ୍ତି, ସେ କୌଶଲ୍ୟାଙ୍କ ପୁତ୍ର ଅଟନ୍ତି, ଏହାଙ୍କ ନାମ ରାମ ॥ ୩ ॥ ଯାହାଙ୍କର ବର୍ଣ୍ଣ ଗୌର ଏବଂ ଅବସ୍ଥା କୈଶୋର ଏବଂ ଯେ ଶ୍ରୀରାମଙ୍କର ଅନୁସରଣ କରୁଅଛନ୍ତି, ସେ ତାହାଙ୍କର ସାନ ଭାଇ । ତାଙ୍କ ନାମ ଲକ୍ଷ୍ମଣ । ହେ ସଖି ! ଶୁଣ, ସୁମିତ୍ରା ତାହାଙ୍କର ମାତା ॥ ୪ ॥ ଦୋହା :—ଦୁଇ ଭାଇ ବ୍ରାହ୍ମଣ ବିଶ୍ୱାମିତ୍ରଙ୍କ କାର୍ଯ୍ୟ କରି ଏବଂ ବାଟରେ ମୁନି ଗୌତମଙ୍କ ପତ୍ନୀ ଅହଲ୍ୟାଙ୍କୁ ଉଦ୍ଧାର କରି ଏଠାକୁ ଧନୁଯଜ୍ଞ ଦେଖିବାକୁ ଆସିଅଛନ୍ତି । ଏହା ଶୁଣି ସମସ୍ତ ନାରୀ ପ୍ରସନ୍ନ ହେଲେ ॥ ୨୨୧ ॥ ଚୌପାଈ :—ଶ୍ରୀରାମଚନ୍ଦ୍ରଙ୍କ ଛବି ଦେଖି କେହି ଜଣେ ସ୍ତ୍ରୀ ଅନ୍ୟ ଜଣକୁ କହୁଛି, "ସଖି ! ଏ ବର ଜାନକୀଙ୍କ ଯୋଗ୍ୟ । ହେ ସଖି ! ରାଜା ଏହାଙ୍କୁ ଦେଖିବା ମାତ୍ରେ ପଣ ଛାଡ଼ି ଜିଦ୍‌ରେ ଏହାଙ୍କ ସଙ୍ଗେ ସୀତାଙ୍କ ବିବାହ କରି-

କୋଉ କହ ଏ ଭୂପତି ପହିଚାନେ । ମୁନି ସମେତ ସାଦର ସନମାନେ ॥
ସଖି ପରଂତୁ ପନୁ ରାଉ ନ ତଜଈ । ବିଧି ବସ ହଠି ଅବିବେକହି ଭଜଈ ॥୨॥
କୋଉ କହ ଜୌଁ ଭଲ ଅହଇ ବିଧାତା । ସବ କହୁଁ ସୁନିଅ ଉଚିତ ଫଲଦାତା ॥
ତୌ ଜାନକିହି ମିଲିହି ବରୁ ଏହୂ । ନାହିନ ଆଲି ଇହାଁ ସଂଦେହୂ ॥୩॥
ଜୌଁ ବିଧି ବସ ଅସ ବନୈ ସଁଜୋଗୂ । ତୌ କୃତକୃତ୍ୟ ହୋଇ ସବ ଲୋଗୂ ॥
ସଖି ହମରେଁ ଆରତି ଅତି ତାତେଁ । କବହୁଁକ ଏ ଆୱହିଁ ଏହି ନାତେଁ ॥୪॥

ନାହିଁ ତ ହମ କହୁଁ ସୁନହୁ ସଖି ଇନ୍ହ କର ଦରସନୁ ଦୂରି ।
ଯହ ସଂଘଟୁ ତବ ହୋଇ ଜବ ପୁନ୍ୟ ପୁରାକୃତ ଭୂରି ॥୨୨୨॥

ବୋଲୀ ଅପର କହେହୁ ସଖି ନୀକା । ଏହିଁ ବିଆହ ଅତି ହିତ ସବହୀ କା ॥
କୋଉ କହ ସଂକର ଚାପ କଠୋରା । ଏ ସ୍ୟାମଲ ମୃଦୁଗାତ କିସୋରା ॥୧॥

---

କେହି କହଇ, ଏହାଙ୍କୁ ଚିହ୍ନି ନରବର । ମୁନିଙ୍କ ସହିତେ କଲେ ସମ୍ମାନ ଆଦର ॥
କିନ୍ତୁ ସଖୀ ମହୀପାଳ ପଣ ନ ତେଜିବେ । ଦୈବ ବଶ ହଠ କରି ଅଜ୍ଞାନେ ରହିବେ ॥୨॥
କେହି କହେ, ଯେବେ ଭଲ ବିଧାତା ଅଛଇ । ସମସ୍ତଙ୍କୁ ଉପଯୁକ୍ତ ଫଳ ପ୍ରଦାନଇ ॥
ତେବେ ସୀତାଙ୍କୁ ମିଳିବ ଏ ବର ନିଶ୍ଚୟ । ନାହିଁ ଆଳୀ, ଏଥି ମଧ୍ୟେ କୌଣସି ସଂଶୟ ॥୩॥
ଘଟିବ ଏହି ସଂଯୋଗ ଦୈବ ବଶ ଯେବେ । ପୁରବାସୀ ଲୋକେ ହେବେ କୃତକୃତ୍ୟ ତେବେ ॥
ତେଣୁ ଉତ୍କଣ୍ଠା ହୁଅଇ ଆମ୍ଭ ମନେ ସଖୀ । କେବେ ଏ ଆସିବେ ଏଥି ଏ ସମ୍ବନ୍ଧ ରଖି ॥୪॥

ନାହିଁ ତ ଆମ୍ଭଙ୍କୁ ଶୁଣ ସହଚରୀ ଏହାଙ୍କ ଦର୍ଶନ ଦୂର ।
ଘଟେ ଏ ସଂଯୋଗ ଯେବେ ଥାଏ ପୂର୍ବ-ସଞ୍ଚିତ ପୁଣ୍ୟ ପ୍ରଚୁର ॥୨୨୨॥

କିଏ କହେ, ସଖୀ ଭଲ କହିଲ ବିଚାରି । ଏ ବିବାହେ ସମସ୍ତଙ୍କ ହିତ ହେବ ଭାରି ॥
ଅନ୍ୟ କେହି କହେ, ଶିବ କୋଦଣ୍ଡ କଠୋର । ଏ ଶ୍ୟାମଳ ସୁକୁମାର ବୟସ କିଶୋର ॥୧॥

---

ହେବେ ॥ ୧ ॥ କେହି ଜଣେ କହିଲା, "ରାଜା ଏହାଙ୍କୁ ଚିହ୍ନି ପାରିଛନ୍ତି ଏବଂ ମୁନିଙ୍କ ସଙ୍ଗେ ଏହାଙ୍କୁ ଆଦରପୂର୍ବକ ସମ୍ମାନିତ କରିଅଛନ୍ତି । କିନ୍ତୁ ହେ ସଖି ! ରାଜା ପଣ ଛାଡିପାରୁ ନାହାନ୍ତି । ସେ ନିୟତିର ବଶରେ ଜିଦ୍ ଧରି ଅବିବେକକୁ ଆଶ୍ରୟ କରି ବସିଅଛନ୍ତି ।" ॥ ୨ ॥ କେହି ଜଣେ ସ୍ତ୍ରୀ କହୁଥାଏ, "ଯଦି ବିଧାତା ଭଲ (ଅନୁକୂଳ) ହୋଇଥା'ନ୍ତି ଏବଂ ଯେମିତି ଶୁଣାଯାଏ, ସେ ଅନୁସାରେ ସେ ଯଦି ସମସ୍ତଙ୍କୁ ଉପଯୁକ୍ତ ଫଳ ଦିଅନ୍ତି, ତେବେ ଜାନକୀଙ୍କୁ ଏହି ବର ମିଳିବ । ହେ ସଖି ! ଏଥିରେ ସନ୍ଦେହ ନାହିଁ ॥ ୩ ॥ ଯଦି ଦୈବଯୋଗରୁ ଏପରି ସୁଯୋଗ ଘଟିଯାଏ, ତେବେ ଆମେ କୃତାର୍ଥ ହେବା । ହେ ସଖି ! ମୋର ତ ଏଥି ନିମନ୍ତେ ଏତେଦୂର ଉତ୍କଣ୍ଠା ଜାତ ହେଉଛି ଯେ, ମୋତେ ଲାଗୁଛି, ସତେ ଯେମିତି ଏହି ପ୍ରସଙ୍ଗରେ ଏ କେବେ ଏଠାକୁ ଆସିବେ ॥ ୪ ॥ ଦୋହା :—ନୋହିଲେ, ହେ ସଖି ! ଶୁଣ, ଆମକୁ ଏହାଙ୍କର ଦର୍ଶନ ଦୁର୍ଲ୍ଲଭ । ଆମ ପୂର୍ବଜନ୍ମର ବହୁତ ପୁଣ୍ୟ ଥିଲେ ଏହି ସଂଯୋଗ ଘଟିବ ।" ॥ ୨୨୨ ॥ ଚୌପାଇ :—

ସବୁ ଅସମଂଜସ ଅହଇ ସୟାନୀ । ଯୁହ ସୁନି ଅପର କହଇ ମୃଦୁ ବାନୀ ॥
ସଖି ଇନ୍ହ କହଁ କୋଉ କୋଉ ଅସ କହହୀଁ । ବଡ଼ ପ୍ରଭାଉ ଦେଖତ ଲଘୁ ଅହହୀଁ ॥୨॥
ପରସି ଜାସୁ ପଦ ପଂକଜ ଧୂରୀ । ତରୀ ଅହଲ୍ୟା କୃତ ଅଘ ଭୂରୀ ॥
ସୋ କି ରହିହି ବିନୁ ସିବଧନୁ ତୋରେଁ । ଯୁହ ପ୍ରତୀତି ପରିହରିଅ ନ ଭୋରେଁ ॥୩॥
ଜେହିଁ ବିରଂଚି ରଚି ସୀୟ ସଁୱାରୀ । ତେହିଁ ସ୍ୟାମଲ ବରୁ ରଚେଉ ବିଚାରୀ ॥
ତାସୁ ବଚନ ସୁନି ସବ ହରଷାନୀଁ । ଐସେଇ ହୋଉ କହହିଁ ମୃଦୁ ବାନୀ ॥୪॥

ହିୟଁ ହରଷହିଁ ବରଷହିଁ ସୁମନ ସୁମୁଖି ସୁଲୋଚନି ବୃନ୍ଦ ।
ଜାହିଁ ଜହାଁ ଜହଁ ବଂଧୁ ଦୋଉ ତହଁ ତହଁ ପରମାନନ୍ଦ ॥୨୨୩॥

ପୁର ପୂରୁବ ଦିସି ଗେ ଦୋଉ ଭାଈ । ଜହଁ ଧନୁମଖ ହିତ ଭୂମି ବନାଈ ॥
ଅତି ବିସ୍ତାର ଚାରୁ ଗଚ ଢାରୀ । ବିମଲ ବେଦିକା ରୁଚିର ସଁୱାରୀ ॥୧॥

---

ସଖୀ ! ସବୁ ଅସଙ୍ଗତ ପ୍ରସଙ୍ଗ ଅଟଇ । ଏହା ଶୁଣି ମୃଦୁବାଣୀ ଅନ୍ୟ କେ କହଇ ॥
ସଖୀ ଯାଙ୍କୁ କେହି କେହି ଏପରି କହନ୍ତି । ଦେଖିବାକୁ ଛୋଟ, ବଡ ପ୍ରତାପୀ ଅଟନ୍ତି ॥୨॥
ଯାହାଙ୍କ ପଦ-ସରୋଜ-ରଜ ସ୍ପର୍ଶ କରି । ଅହଲ୍ୟା ପରମ ପାତକିନୀ ଗଲା ତରି ॥
ସେ କି ରହିବେ ଶଙ୍କର ଧନୁ ନ ଭାଙ୍ଗିଣ । ଏମନ୍ତ ପ୍ରତୀତ ତ୍ୟାଗ ନ କର ଭୁଲିଣ ॥୩॥
ଯେଉଁ ବିରଞ୍ଚି ସୀତାଙ୍କୁ ଯତନେ ରଚିଛି । ତା ପାଇଁ ଶ୍ୟାମଳ ବର ଭାବି ସେ ଗଢିଛି ॥
ତା' ଉକ୍ତି ଶୁଣି ସମସ୍ତେ ହୋଇଣ ପ୍ରସନ୍ନ । 'ଏହାହିଁ ହେଉ' କହନ୍ତି ମଧୁରେ ବଚନ ॥୪॥

ହରଷ ହୁଅନ୍ତି ପୁଷ୍ପ ବରଷନ୍ତି ସୁମୁଖୀ ସୁନେତ୍ରୀ-ବୃନ୍ଦ ।
ଯେଣେ ବେନି ବନ୍ଧୁ ଯାଉଥାନ୍ତି ତେଣେ ହୁଅଇ ପରମାନନ୍ଦ ॥୨୨୩॥

ପୁରର ପୂର୍ବ ଦିଗକୁ ଗଲେ ଦୁଇ ଭାଇ । ଧନୁଯଜ୍ଞ ରଙ୍ଗ ଭୂମି ବିଲୋକିବା ପାଇଁ ॥
ବିସ୍ତୃତ ପ୍ରସ୍ତରମୟ ଭୂମି ସମତଳ । ନିର୍ମାଣ ହୋଇଛି ତହିଁ ବେଦୀ ସୁବିମଳ ॥୧॥

---

ଅନ୍ୟ ଜଣେ ସ୍ତ୍ରୀ କହିଲା, "ହେ ସଖି ! ତୁମେ ବହୁତ ଅଚ୍ଛା କଥା କହିଲ । ଏହି ବିବାହ ଯୋଗେ ସମସ୍ତଙ୍କର ପରମ ହିତ ସାଧିତ ହେବ ।" ଆଉ କେହି ଜଣେ କହିଲା, "ଶଙ୍କରଙ୍କ ଧନୁ ବଡ କଠୋର ଏବଂ ଏହି ଶ୍ୟାମଳ ରାଜକୁମାର କୋମଳଶରୀର ବାଳକ ॥ ୧ ॥ ହେ ଚତୁର ! ସବୁ ଅପ୍ରାସଙ୍ଗିକ । ଏହା ଶୁଣି ଆଉ ଜଣେ ସଖୀ କୋମଳ ବାଣୀରେ କହିବାକୁ ଲାଗିଲା, "ହେ ସଖି ! ଏହାଙ୍କ ସମ୍ବନ୍ଧରେ କେହି କେହି କହନ୍ତି— "ଏମାନେ ଦେଖିବାକୁ ସିନା ସାନ । ମାତ୍ର ଏମାନଙ୍କ ପ୍ରତାପ ବହୁତ ବେଶି ॥ ୨ ॥ ଯାହାଙ୍କର ପାଦ-ପଦ୍ମ-ଧୂଳିର ସ୍ପର୍ଶ ପାଇ ସାଂଘାତିକ ପାପ କରିଥିବା ଅହଲ୍ୟା ତରିଗଲେ, ସେ ଶିବଧନୁକୁ ନ ଭାଙ୍ଗି ରହିପାରିବେ କି ? ଭୁଲ୍‌ରେ ଏହି ବିଶ୍ୱାସକୁ ଛାଡିବା ଉଚିତ ନୁହେଁ ॥ ୩ ॥ ଯେଉଁ ବ୍ରହ୍ମା ସୀତାଙ୍କୁ ସଜାଡି ବଡ ଚତୁରତା ସହକାରେ ଗଢିଛନ୍ତି, ସେହି ମଧ୍ୟ ବିଚାର କରି ତାଙ୍କ ପାଇଁ ଶ୍ୟାମଳ ବର ଗଢି ରଖିଛନ୍ତି ।" ତାହାର ଏ ବଚନ ଶୁଣି ସମସ୍ତେ ଆନନ୍ଦିତ ହେଲେ ଏବଂ କୋମଳ ବାଣୀରେ କହିବାକୁ

ଚହୁଁ ଦିସି କଂଚନ ମଂଚ ବିସାଲା । ରଚେ ଜହାଁ ବୈଠହିଁ ମହିପାଲା ॥
ତେହି ପାଛେଁ ସମୀପ ଚହୁଁ ପାସା । ଅପର ମଂଚ ମଂଡଲୀ ବିଲାସା ॥୨॥
କଛୁକ ଊଁଚି ସବ ଭାଁତି ସୁହାଈ । ବୈଠହିଁ ନଗର ଲୋଗ ଜହଁ ଜାଈ ॥
ତିହ୍ନ କେଁ ନିକଟ ବିସାଲ ସୁହାଏ । ଧବଲ ଧାମ ବହୁବରନ ବନାଏ ॥୩॥
ଜହଁ ବୈଠେଁ ଦେଖହିଁ ସବ ନାରୀ । ଜଥାଜୋଗୁ ନିଜ କୁଲ ଅନୁହାରୀ ॥
ପୁର ବାଲକ କହି କହି ମୃଦୁ ବଚନା । ସାଦର ପ୍ରଭୁହି ଦେଖାୱହିଁ ରଚନା ॥୪॥

ସବ ସିସୁ ଏହି ମିସ ପ୍ରେମବସ ପରସି ମନୋହର ଗାତ ।
ତନ ପୁଲକହିଁ ଅତି ହରଷୁ ହିୟଁ ଦେଖି ଦେଖି ଦୋଉ ଭ୍ରାତ ॥୨୨୪॥

---

ଚତୁର୍ଦିଗେ ସ୍ୱର୍ଣ୍ଣମଞ୍ଚ ବିଶାଳ ରଚିତ । ସମସ୍ତ ମହୀପାଳଙ୍କ ବସିବା ନିମିତ୍ତ ॥
ତାହାର ପଛେ ସମୀପେ ପୁଣି ଚଉପାଶେ । ଇତର ମଞ୍ଚ ମଣ୍ଡଳୀ ବିଳାସ ବିକାଶେ ॥୨॥
ଅଳପ ଉଚ୍ଚ ସକଳ ପ୍ରକାରେ ସୁନ୍ଦର । ବସିବେ ଆସି ସମସ୍ତ ପୁରବାସୀ ନର ॥
ସେ ମଞ୍ଚ ନିକଟେ ଅତି ବିଶାଳ ଶୋଭିତ । ଧବଳ ଧାମ ବିଚିତ୍ର ପ୍ରକାରେ ରଚିତ ॥୩॥
ବସି ବିଲୋକିବେ ପୁରନାରୀ ଯେଉଁଠାରେ । ଯଥା ଉପଯୁକ୍ତ ନିଜ କୁଳ ଅନୁସାରେ ॥
ବାଳକେ କହି କହିଣ ମଧୁର ବଚନ । ସାଦରେ ଦେଖାଉଥାନ୍ତି ପ୍ରଭୁଙ୍କୁ ରଚନ ॥୪॥

ଏହି ବାହାନାରେ ମୃଦୁ ଅଙ୍ଗ ଛୁଇଁ ଶିଶୁ ସର୍ବେ ପ୍ରେମବଶ ।
ଦେଖି ଦେଖି ବେନି ଭାଇଙ୍କୁ ହୁଅନ୍ତି ହୃଦେ ପୁଲକ ହରଷ ॥୨୨୪॥

---

ଲାଗିଲେ, "ଏହା ହିଁ ହେଉ ।" ॥୪॥ ଦୋହା :—ସୁମୁଖୀ ଓ ସୁନୟନୀ ନାରୀମାନେ ଦଳ ଦଳ ହୋଇ ଫୁଲ ବର୍ଷା କରୁଥା'ନ୍ତି । ଯେଉଁ ଯେଉଁ ସ୍ଥାନକୁ ଦୁଇ ଭାଇ ଯାଉଥା'ନ୍ତି, ସେହି ସେହି ସ୍ଥାନରେ ପରମ ଆନନ୍ଦର ସୁଅ ଛୁଟି ଯାଉଥାଏ ॥୨୨୩॥
ଚୌପାଇ :—ଦୁଇ ଭାଇ ନଗରର ପୂର୍ବ ଦିଗକୁ ଗଲେ । ସେହିଠାରେ ଧନୁଯଜ୍ଞ ପାଇଁ ରଙ୍ଗଭୂମି ତିଆରି ହୋଇଥିଲା । ବହୁତ ଲମ୍ବ ଓସାରର ତଳେଇ ପକ୍କା ଅଗଣା ଥିଲା । ତାହା ଉପରେ ସୁନ୍ଦର ଓ ନିର୍ମଳ ବେଦୀ ସଜ୍ଜୀଭୂତ ହୋଇଥିଲା ॥୧॥ ଚାରିଦିଗରେ ରାଜାମାନଙ୍କ ବସିବା ପାଇ. ସୁନାର ବଡ ବଡ ମଞ୍ଚମାନ ତିଆରି ହୋଇଥିଲା । ସେଗୁଡିକର ପଛେ ପଛେ ଚାରି ଦିଗରେ ଅନ୍ୟାନ୍ୟ ମଞ୍ଚମାନ ମଣ୍ଡଳାକାରରେ ସୁଶୋଭିତ ହେଉଥାଏ ॥୨॥ ଉକ୍ତ ମଞ୍ଚମଣ୍ଡଳୀ ଟିକିଏ ଅଧିକ ଉଚ୍ଚ ଏବଂ ସବୁ ପ୍ରକାରେ ସୁନ୍ଦର । ସେଥି ଉପରେ ନଗରର ଲୋକଙ୍କ ବସିବା ପାଇଁ ବ୍ୟବସ୍ଥା ହୋଇଥାଏ । ସେ ସବୁର ନିକଟରେ ବିଶାଳ ଓ ସୁନ୍ଦର ଧଳା ଗୃହମାନ ନିର୍ମିତ ଓ ବିବିଧ ରଙ୍ଗରେ ରଞ୍ଜିତ ହୋଇ ଶୋଭା ପାଉଥାଏ ॥୩॥ ମହିଳାମାନେ ସେଗୁଡିକ ମଧ୍ୟରେ ଆପଣା ଆପଣା କୁଳ-ମର୍ଯ୍ୟାଦାନୁସାରେ ଯଥାଯୋଗ୍ୟ ଗୃହ ଦେଖି ତହିଁରେ ବସି ଉତ୍ସବ ଦେଖିବେ । ନଗରର ବାଳକମାନେ କୋମଳ ବଚନ କହି କହି ଆଦରରେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଯଜ୍ଞଶାଳାର ରଚନାଗୁଡ଼ିକ ଦେଖାଉଥା'ନ୍ତି ॥୪॥ ଦୋହା :—ସମସ୍ତ ବାଳକ ଏହି ବାହାନାରେ ପ୍ରେମ-

ସିସୁ ସବ ରାମ ପ୍ରେମବସ ଜାନେ । ପ୍ରୀତି ସମେତ ନିକେତ ବଖାନେ ॥
ନିଜ ନିଜ ରୁଚି ସବ ଲେହିଁ ବୋଲାଈ । ସହିତ ସନେହ ଜାହିଁ ଦୋଉ ଭାଈ ॥୧॥
ରାମୁ ଦେଖାୱହିଁ ଅନୁଜହି ରଚନା । କହି ମୃଦୁ ମଧୁର ମନୋହର ବଚନା ॥
ଲବ ନିମେଷ ମହୁଁ ଭୁବନ ନିକାୟା । ରଚଇ ଜାସୁ ଅନୁସାସନ ମାୟା ॥୨॥
ଭଗତି ହେତୁ ସୋଇ ଦୀନଦୟାଲା । ଚିତୱତ ଚକିତ ଧନୁଷ ମଖସାଲା ॥
କୌତୁକ ଦେଖି ଚଲେ ଗୁରୁ ପାହୀଁ । ଜାନି ବିଲଂବୁ ତ୍ରାସ ମନ ମାହୀଁ ॥୩॥
ଜାସୁ ତ୍ରାସ ଡର କହୁଁ ଡର ହୋଈ । ଭଜନ ପ୍ରଭାଉ ଦେଖାୱତ ସୋଈ ॥
କହି ବାତେଁ ମୃଦୁ ମଧୁର ସୁହାଈଁ । କିଏ ବିଦା ବାଲକ ବରିଆଈଁ ॥୪॥

---

ଶିଶୁ ସର୍ବେ ରାମଚନ୍ଦ୍ର ପ୍ରେମ-ବଶ ଜାଣି । ପ୍ରୀତି ସମେତ ଭବନ କହନ୍ତି ବଖାଣି ॥
ରୁଚି ଅନୁସାରେ ଡାକି ସମସ୍ତେ ନିଅନ୍ତି । ସାନୁରାଗେ ବେନି ଭାଇ ଗମନ କରନ୍ତି ॥୧॥
ରାମ ଦେଖାଉ ଥାଆନ୍ତି ଭାଇଙ୍କି ରଚନ । କହି ମୃଦୁ ମନୋହର ମଧୁର ବଚନ ॥
ଲବ ନିମେଷ ମଧ୍ୟରେ ଭୁବନ ଅମିତ । ଯା ଅନୁଶାସନେ ମାୟା ରଚଇ ତୁରିତ ॥୨॥
ଭକ୍ତିବଶ ହୋଇ ସେହି ଦୀନ ଦୟାପାଳ । ଚକିତେ ଅବଲୋକନ୍ତି ଧନୁ ଯଜ୍ଞଶାଳ ॥
କୌତୁକ ଦେଖି ଗମନ କଲେ ଗୁରୁ ପାଶେ । ବିଳମ୍ବ ହେବାର ଜାଣି ଅତି ମନ ତ୍ରାସେ ॥୩॥
ଯାହାଙ୍କ ତ୍ରାସରେ ଭୟ ଭୟ ମଧ୍ୟ କରେ । ଭଜନ ପ୍ରଭାବ ସେହି ଦେଖାନ୍ତି ଲୋକରେ ॥
ଭାଷିଣ ମୃଦୁ ମଧୁର ବଚନ ସୁନ୍ଦର । ବିଦାୟ କଲେ ଅଗତ୍ୟା ବାଳକ ନିକର ॥୪॥

---

ନିଶତଃ ଶ୍ରୀରାମଙ୍କ ମନୋହର ଅଙ୍ଗକୁ ସ୍ପର୍ଶ କରି ଶରୀରରେ ପୁଲକ ଅନୁଭବ କରୁଥା'ନ୍ତି ଏବଂ ଭାଇ ଦୁହିଙ୍କୁ ଦେଖି ସେମାନଙ୍କ ହୃଦୟରେ ଅତ୍ୟନ୍ତ ଆନନ୍ଦ ଅନୁଭବ କରୁଥା'ନ୍ତି ॥ ୨୨୪ ॥ ଚୌପାଈ :—ସମସ୍ତ ବାଳକ ପ୍ରେମର ବଶୀଭୂତ ହୋଇ ପଡ଼ିଅଛନ୍ତି । ଏହା ଜାଣି ଶ୍ରୀରାମ ପ୍ରେମ ସହକାରେ ଯଜ୍ଞସ୍ଥଳୀର ପ୍ରଶଂସା କଲେ । ଏହାଦ୍ୱାରା ବାଳକମାନଙ୍କ ଉତ୍ସାହ, ଆନନ୍ଦ ଓ ପ୍ରେମ ଆହୁରି ମଧ୍ୟ ବଢ଼ିଗଲା । ତେଣୁ ସେମାନେ ସମସ୍ତେ ଆପଣା ଆପଣା ରୁଚି ଅନୁସାରେ ସେମାନଙ୍କୁ ଡାକି ନେଉଥା'ନ୍ତି ଏବଂ ପ୍ରତ୍ୟେକର ଡାକରାରେ ଭାଇ ଦୁହେଁ ପ୍ରେମ ସହକାରେ ତାହାର ପାଖକୁ ଚାଲି ଯାଉଥା'ନ୍ତି ॥ ୧ ॥ କୋମଳ, ମଧୁର ଓ ମନୋହର ବଚନ କହି ଶ୍ରୀରାମଚନ୍ଦ୍ର ତାଙ୍କ ସାନ ଭାଇ ଲକ୍ଷ୍ମଣଙ୍କୁ ଯଜ୍ଞଭୂମିର 'ରଚନା-କୌଶଳ ଦେଖାଉଥା'ନ୍ତି । ଯେଉଁ ପ୍ରଭୁଙ୍କ ଆଜ୍ଞା ପାଇ ମାୟା ଲବନିମେଷକ ମଧ୍ୟରେ ଅଶେଷ ବ୍ରହ୍ମାଣ୍ଡ-ସମୂହ ରଚନା କରିପାରେ, ସେହି ପ୍ରଭୁ ରାମଚନ୍ଦ୍ର ଭକ୍ତର ବଶବର୍ତ୍ତୀ ହୋଇ ଯଜ୍ଞଶାଳାକୁ ଚକିତ ହୋଇ ଦେଖୁଥା'ନ୍ତି । ଏହି ରୂପେ ସକଳ କୌତୁକ ଦେଖି ସେ ଗୁରୁଙ୍କ ପାଖକୁ ଚାଲିଲେ । ବିଳମ୍ବ ହୋଇଗଲାଣି ଜାଣି ତାଙ୍କ ମନରେ ଗୁରୁଙ୍କ ପ୍ରତି ଡର ଆଏ ॥ ୨-୩ ॥ ଯାହାଙ୍କର ଭୟରେ ଡରକୁ ମଧ୍ୟ ଡର ଲାଗେ, ସେହି ପ୍ରଭୁ ବିଶ୍ୱାମିତ୍ରଙ୍କୁ ଡରି ଭଜନର ପ୍ରଭାବ ଦେଖାଉଅଛନ୍ତି । ସେ କୋମଳ, ମଧୁର ଓ ସୁନ୍ଦର କଥା କହି ଉକ୍ତ ବାଳକଗଣଙ୍କୁ ବାଧ୍ୟ କରି ବିଦା

ସଭୟ ସପ୍ରେମ ବିନୀତ ଅତି ସକୁଚ ସହିତ ଦୋଉ ଭାଇ ।
ଗୁର ପଦ ପଂକଜ ନାଇ ସିର ବୈଠେ ଆୟସୁ ପାଇ ॥୨୨୫॥
ନିସି ପ୍ରବେସ ମୁନି ଆୟସୁ ଦୀହ୍ନା । ସବହୀଁ ସଂଧ୍ୟାବଂଦନୁ କୀହ୍ନା ॥
କହତ କଥା ଇତିହାସ ପୁରାନୀ । ରୁଚିର ରଜନି ଜୁଗ ଜାମ ସିରାନୀ ॥୧॥
ମୁନିବର ସୟନ କୀହ୍ନି ତବ ଜାଈ । ଲଗେ ଚରନ ଚାପନ ଦୋଉ ଭାଈ ॥
ଜିହ୍ନ କେ ଚରନ ସରୋରୁହ ଲାଗୀ । କରତ ବିବିଧ ଜପ ଜୋଗ ବିରାଗୀ ॥୨॥
ତେଇ ଦୋଉ ବଂଧୁ ପ୍ରେମ ଜନୁ ଜୀତେ । ଗୁର ପଦ କମଲ ପଲୋଟତ ପ୍ରୀତେ ॥
ବାର ବାର ମୁନି ଅଗ୍ୟା ଦୀହ୍ନୀ । ରଘୁବର ଜାଇ ସୟନ ତବ କୀହ୍ନୀ ॥୩॥
ଚାପତ ଚରନ ଲଖନୁ ଉର ଲାଏଁ । ସଭୟ ସପ୍ରେମ ପରମ ସଚୁ ପାଏଁ ॥
ପୁନି ପୁନି ପ୍ରଭୁ କହ ସୋୱହୁ ତାତା । ପୌଢ଼େ ଧରି ଉର ପଦ ଜଲଜାତା ॥୪॥

---

ଅତି ପ୍ରେମ ଭୟ ସଙ୍କୋଚ ବିନୟ ସହିତେ ଉଭୟ ଭାଇ ।
ଗୁରୁ ପଦ-କଞ୍ଜେ ପ୍ରଣାମ କରିଣ ବସିଲେ ଆଦେଶ ପାଇ ॥୨୨୫॥
ନିଶି ପ୍ରବେଶନ୍ତେ ମୁନି ଆଦେଶ ବିହିଲେ । ସନ୍ଧ୍ୟା ବନ୍ଦନାଦି କର୍ମ ସମସ୍ତେ କରିଲେ ॥
କହୁଁ କହୁଁ ଇତିହାସ କଥା ପୁରାତନ । ବେନି ଘଡି ସୁରଜନି ହୋଇଲା ଯାପନ ॥୧॥
ମୁନି-ନାୟକ ଶୟନ କଲେ ତହୁଁ ଯାଇ । ଚରଣ ସେବାରେ ରତ ହେଲେ ଦୁଇ ଭାଇ ॥
ଯାହାଙ୍କର ଶ୍ରୀଚରଣ-ସରୋରୁହ ଲାଗି । ନାନାବିଧ ଜପ ଯୋଗ କରନ୍ତି ବୈରାଗୀ ॥୨॥
ସେ ଦୁଇ ଭାଇଙ୍କୁ ପ୍ରେମ, ମନେହୁଏ, ଜିତ । ଗୁରୁ ପାଦ-ପଦ୍ମ ସେବା କରିଏ ସପ୍ରୀତ ॥
ବାରମ୍ବାର ମୁନି ଯହୁଁ ଆଜ୍ଞା ପ୍ରଦାନିଲେ । ରଘୁବର ଯାଇ ତେବେ ଶୟନ କରିଲେ ॥୩॥
ସେବନ୍ତି ଚରଣ ବକ୍ଷେ ଲକ୍ଷ୍ମଣ ଲଗାଇ । ସଭୟ ସପ୍ରେମେ ଧୀରେ ଅତି ସୁଖ ପାଇ ॥
ବାରମ୍ବାର ପ୍ରଭୁ ଆଦେଶନ୍ତେ ଶୁଅ ଭ୍ରାତ । ପହୁଡିଲେ ହୃଦେ ଧରି ପଦ-ଜଳଜାତ ॥୪॥

---

କରିଦେଲେ ॥ ୪ ॥ ଦୋହା —ତଦନନ୍ତର ଭୟ, ପ୍ରେମ, ବିନୟ ଓ ଅତି ସଙ୍କୋଚର ସହିତ ଭାଇ ଦୁହେଁ ଗୁରୁଙ୍କ ପାଦ-ପଦ୍ମରେ ମଥା ନୁଆଁଇ ଆଜ୍ଞା ପାଇ ବସିଲେ ॥ ୨୨୫ ॥ ଚୌପାଈ .—ରାତି ଉପସ୍ଥିତ ହେବା ମାତ୍ରେ ମୁନିଙ୍କ ଆଦେଶରେ ସମସ୍ତେ ସନ୍ଧ୍ୟା-ବନ୍ଦନାଦି କର୍ମ ଶେଷ କଲେ । ଅନନ୍ତର ପ୍ରାଚୀନ କଥା ଓ ଇତିହାସ କହୁ କହୁ ମନୋହର ରାତିର ଦୁଇ ପ୍ରହର ବିତିଗଲା ॥ ୧ ॥ ତତ୍ପରେ ମୁନିବର ଯାଇ ଶୟନ କଲେ । ଭାଇ ଦୁହେଁ ତାଙ୍କ ପାଦ ଘଷିବାକୁ ଲାଗିଲେ । ଯାହାଙ୍କ ଚରଣ-କମଳର ଦର୍ଶନ ଓ ସ୍ପର୍ଶ ନିମନ୍ତେ ବୈରାଗୀ ପୁରୁଷ ମଧ୍ୟ ବିବିଧ ପ୍ରକାର ଜପ ଓ ଯୋଗ କରନ୍ତି, ସେହି ଭାଇ ଦୁହେଁ ସତେ ଯେପରି ପ୍ରୀତିରେ ଜିଣା ହୋଇ ପ୍ରେମପୂର୍ବକ ଗୁରୁଙ୍କର ପାଦପଦ୍ମ ସେବା କରୁଅଛନ୍ତି । ମୁନି ବାରମ୍ବାର ଆଜ୍ଞା ଦେବାରୁ ଶ୍ରୀ ରଘୁନାଥ ଯାଇ ଶୟନ କଲେ ॥ ୨-୩ ॥ ଶ୍ରୀରାମଙ୍କ ଚରଣ-କମଳ ଦୁଇଟିକୁ ଲକ୍ଷ୍ମଣ ହୃଦୟରେ ଲଗାଇଲେ ଏବଂ ଭୟ ଓ ପ୍ରେମ ସହକାରେ [illegible] ଉକ୍ତ ପାଦ-ପଦ୍ମ

ଉଠେ ଲଖନୁ ନିସି ବିଗତ ସୁନି ଅରୁନ ସିଖା ଧୁନି କାନ ।
ଗୁରୁ ତେଁ ପହିଲେହିଁ ଜଗତପତି ଜାଗେ ରାମୁ ସୁଜାନ ॥୨୨୬॥
ସକଲ ସୌଚ କରି ଜାଇ ନହାଏ । ନିତ୍ୟ ନିବାହି ମୁନିହି ସିର ନାଏ ॥
ସମୟ ଜାନି ଗୁରୁ ଆୟସୁ ପାଈ । ଲେନ ପ୍ରସୂନ ଚଲେ ଦୋଉ ଭାଈ ॥୧॥
ଭୂପ ବାଗୁ ବର ଦେଖେଉ ଜାଈ । ଜହଁ ବସନ୍ତ ରିତୁ ରହୀ ଲୋଭାଈ ॥
ଲାଗେ ବିଟପ ମନୋହର ନାନା । ବରନ ବରନ ବର ବେଲି ବିତାନା ॥୨॥
ନବ ପଲ୍ଲବ ଫଲ ସୁମନ ସୁହାଏ । ନିଜ ସମ୍ପତି ସୁର ରୂଖ ଲଜାଏ ॥
ଚାତକ କୋକିଲ କୀର ଚକୋରା । କୂଜତ ବିହଗ ନଟତ କଲ ମୋରା ॥୩॥
ମଧ୍ୟ ବାଗ ସରୁ ସୋହ ସୁହାୱା । ମନି ସୋପାନ ବିଚିତ୍ର ବନାୱା ॥
ବିମଲ ସଲିଲୁ ସରସିଜ ବହୁରଂଗା । ଜଲଖଗ କୂଜତ ଗୁଂଜତ ଭୃଂଗା ॥୪॥

---

ନିଶି ଅନ୍ତେ ଶୁଣି କୁକ୍କୁଟର ଧ୍ୱନି ଲକ୍ଷ୍ମଣ ଶଯ୍ୟା ତେଜିଲେ ।
ଗୁରୁଙ୍କ ଆଗରୁ ଜଗତ ଈଶ୍ୱର ପ୍ରବୀଣ ରାମ ଉଠିଲେ ॥୨୨୬॥
ଶୌଚ କର୍ମ ଅନ୍ତେ ସ୍ନାନ କରିଲେ ଯାଇଣ । ଗୁରୁଙ୍କୁ ନମିଲେ ନିତ୍ୟ କରମ ସାରିଣ ॥
ସମୟ ଜାଣି ଗୁରୁଙ୍କ ଅନୁମତି ପାଇ । ପୁଷ୍ପ ଆନୟନେ ତହୁଁ ଗଲେ ବେନି ଭାଇ ॥୧॥
ଦେଖିଲେ ଯାଇ ନୃପଙ୍କ ଉଦ୍ୟାନ ସରସ । ଯହିଁ ଋତୁରାଜ ସଦା ରହେ ଲୋଭବଶ ॥
ଲାଗିଛି ବିଟପ ନାନା ପ୍ରକାର ସୁନ୍ଦର । ଲଳିତ ଲତା ବିତାନ ବିବିଧ ରଙ୍ଗର ॥୨॥
ନବୀନ ପଲ୍ଲବିତ ଫଳ ପ୍ରସୂନେ ଶୋଭିତ । ସ୍ୱସମ୍ପଦେ ସୁରତରୁ କରନ୍ତି ଲଜ୍ଜିତ ॥
ଚାତକ କୋକିଳ ଶୁକ ଚକୋର ଆଦିର । କୂଜନ୍ତି ଖଗ ନାଚନ୍ତି ମୟୂର ସୁନ୍ଦର ॥୩॥
ଉଦ୍ୟାନ ମଧ୍ୟେ ସରସୀ ଶୋଭେ ମନୋରମ । ମଣି-ସୋପାନ ରଚିତ ପବିତ୍ର ପରମ ॥
ନିର୍ମଳ ସଲିଳ ସରସିଜ ବହୁ ରଙ୍ଗ । କୂଜନ୍ତି ଜଳ-ବିହଙ୍ଗ ଗୁଞ୍ଜରନ୍ତି ଭୃଙ୍ଗ ॥୪॥

---

ସେବା କରିବାରେ ଲାଗିଥା'ନ୍ତି । ପ୍ରଭୁ ଶ୍ରୀରାମଚନ୍ଦ୍ର ବାରମ୍ବାର କହୁଥା'ନ୍ତି, "ବାବୁ, ଯାଅ, ଶୋଇବ ।" ବହୁତ ସମୟ ପରେ ଲକ୍ଷ୍ମଣ ଶ୍ରୀରାମଙ୍କ ଚରଣ-କମଳ ଦ୍ୱୟ ହୃଦୟରେ ଧାରଣ କରି ଶୋଇଗଲେ ॥ ୪ ॥ ଦୋହା '—ରାତି ପାହିଲା, କୁକ୍କୁଟର ରାବ କାନରେ ଶୁଣି ଲକ୍ଷ୍ମଣ ଜାଗି ଉଠିଲେ । ଜଗତର ସ୍ୱାମୀ ସୁଜ୍ଞ ରାମଚନ୍ଦ୍ର ମଧ୍ୟ ଗୁରୁଙ୍କ ପୂର୍ବରୁ ଶଯ୍ୟା ତ୍ୟାଗ କଲେ ॥ ୨୨୬ ॥ ଚୌପାଈ '—ଶୌଚାଦି କ୍ରିୟା ଶେଷ କରି ସମସ୍ତେ ଯାଇ ସ୍ନାନ କଲେ । ତଦନନ୍ତର ସନ୍ଧ୍ୟା, ଅଗ୍ନିହୋତ୍ରାଦି ନିତ୍ୟକର୍ମ ସମାପ୍ତ କରି ସେମାନେ ମୁନିଙ୍କୁ ମସ୍ତକ ଅବନତ କରି ପ୍ରଣାମ କଲେ । ପୂଜା ସମୟ ଜାଣି ଗୁରୁଙ୍କ ଆଜ୍ଞା ପାଇ ଦୁଇ ଭାଇ ଫୁଲ ତୋଳିବାକୁ ଗଲେ ॥ ୧ ॥ ସେମାନେ ଯାଇ ରାଜାଙ୍କର ସୁନ୍ଦର ଉଦ୍ୟାନ ଦେଖିଲେ । ଉଦ୍ୟାନର ଶୋଭାରେ ସତେ ଯେମିତି ବସନ୍ତ ଋତୁ ପ୍ରଲୁବ୍ଧ ହୋଇ ସେହିଠାରେ ରହିଯାଇଅଛି । ନାନାପ୍ରକାର ମନୋହର ବୃକ୍ଷ ସେହିଠାରେ ଲାଗିଥାଏ । ବିବିଧ ରଙ୍ଗର ଶ୍ରେଷ୍ଠ ଲତା-ବିତାନ ଶୋଭା ପାଉଥାଏ ॥ ୨ ॥

ବାଗୁ ତଡାଗୁ ବିଲୋକି ପ୍ରଭୁ ହରଷେ ବଂଧୁ ସମେତ ।
ପରମ ରମ୍ୟ ଆରାମୁ ୟହୁ ଜୋ ରାମହି ସୁଖ ଦେତ ॥୨୨୭॥

ଚହୁଁ ଦିସି ଚିତଇ ପୂଁଛି ମାଲୀଗନ । ଲଗେ ଲେନ ଦଲ ଫୂଲ ମୁଦିତ ମନ ॥
ତେହି ଅବସର ସୀତା ତହଁ ଆଈ । ଗିରିଜା ପୂଜନ ଜନନି ପଠାଈ ॥୧॥
ସଂଗ ସଖୀଁ ସବ ସୁଭଗ ସୟାନୀଁ । ଗାୱହିଁ ଗୀତ ମନୋହର ବାନୀଁ ॥
ସର ସମୀପ ଗିରିଜା ଗୃହ ସୋହା । ବରନି ନ ଜାଇ ଦେଖି ମନୁ ମୋହା ॥୨॥
ମଜ୍ଜନୁ କରି ସର ସଖିନ୍ହ ସମେତା । ଗଈ ମୁଦିତ ମନ ଗୌରି ନିକେତା ॥
ପୂଜା କୀନ୍ହି ଅଧିକ ଅନୁରାଗା । ନିଜ ଅନୁରୂପ ସୁଭଗ ବରୁ ମାଗା ॥୩॥

---

ତଡାଗ ଉଦ୍ୟାନ ପ୍ରଭୁ ବିଲୋକିଣ ହରଷ ହେଲେ ସଭ୍ରାତା ।
ପରମ ଆରାମ ରମ୍ୟ ଏହି ସ୍ଥାନ ଯେ ରାମଙ୍କ ସୁଖଦାତା ॥୨୨୭॥

ଚଉଦିଗେ ଚାହିଁ ମାଳୀ-ଗଣଙ୍କୁ ପଚାରି । ତୋଳନ୍ତି ସୁମନ ମନ ପ୍ରମୋଦିତେ ଭାରି ॥
ସେହି ସମୟରେ ସୀତା ତହିଁ ଆଗମିଲେ । ଗିରିଜାଙ୍କୁ ପୂଜିବାକୁ ମାତା ପଠାଇଲେ ॥୧॥
ସଙ୍ଗରେ ସଖୀ ଅନେକ ଚତୁରୀ ସୁନ୍ଦରୀ । ଭ୍ରମନ୍ତି ମଧୁର ସ୍ୱରେ ଗାନ କରି କରି ॥
ସର ସମୀପେ ଗିରିଜା ମନ୍ଦିର ଶୋଭଇ । ନିରେଖନ୍ତେ ମୋହେ ମନ ବର୍ଣ୍ଣି ନ ହୁଅଇ ॥୨॥
ସଖୀ ସଙ୍ଗେ ଅବଗାହି ସେହି ସର ନୀରେ । ଗଲେ ପ୍ରମୋଦିତ ମନେ ଗଉରୀ ମନ୍ଦିରେ ॥
ଅତି ଅନୁରାଗେ ପୂଜା ବନ୍ଦନା କରିଲେ । ନିଜ ଅନୁରୂପ ବର ସୁନ୍ଦର ମାଗିଲେ ॥୩॥

---

ନବ ପତ୍ର-ପୁଷ୍ପ-ଫଳଯୁକ୍ତ ସୁନ୍ଦର ବୃକ୍ଷମାନେ ସେମାନଙ୍କ ସମୃଦ୍ଧିରେ କଳ୍ପବୃକ୍ଷକୁ ମଧ୍ୟ ଲଜ୍ଜିତ କରୁଥା'ନ୍ତି । ଚାତକ, କୋଇଲି, ଶୁଆ, ଚକୋର ଆଦି ପକ୍ଷୀ ମଧୁର ସ୍ୱରରେ କଳରବ କରୁଥା'ନ୍ତି ଏବଂ ମୟୂରଗଣ ସୁନ୍ଦର ନୃତ୍ୟ କରୁଥା'ନ୍ତି ॥ ୩ ॥ ଉପବନର ମଧ୍ୟଭାଗରେ ସୁନ୍ଦର ସରୋବର ସୁଶୋଭିତ । ତହିଁ ମଧ୍ୟରେ ମଣିର ସୋପାନ ବିଚିତ୍ର ଢଙ୍ଗରେ ନିର୍ମିତ । ତାହାର ଜଳ ନିର୍ମଳ, ତହିଁରେ ଅନେକ ରଙ୍ଗର ପଦ୍ମ ପ୍ରସ୍ଫୁଟିତ । ଜଳଚର ପକ୍ଷୀ କଳରବ ଏବଂ ଭ୍ରମରମାନେ ଗୁଞ୍ଜନ କରୁଥା'ନ୍ତି ॥ ୪ ॥ ଦୋହା :— ଉଦ୍ୟାନ ଓ ସରୋବରକୁ ଦେଖି ପ୍ରଭୁ ଶ୍ରୀରାମଚନ୍ଦ୍ର ଓ ଭାଇ ଲକ୍ଷ୍ମଣ ଅତିଶୟ ଆନନ୍ଦିତ ହେଲେ । ବାସ୍ତବରେ ଏହି ଉଦ୍ୟାନ ପରମ ରମଣୀୟ, ଏହା ଜଗତର ସୁଖଦାୟକ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ମଧ୍ୟ ସୁଖଦାନ କରୁଥାଏ ॥ ୨୨୭ ॥ ଚୌପାଈ :—ଚାରିଆଡେ ଦୃଷ୍ଟି ପକାଇ ଏବଂ ମାଳୀମାନଙ୍କୁ ପଚାରି ପ୍ରସନ୍ନ ମନରେ ଭାଇ ଦୁହେଁ ପତ୍ର-ପୁଷ୍ପ ତୋଳିବାକୁ ଲାଗିଲେ । ସେତିକିବେଳେ ସୀତା ମଧ୍ୟ ସେଠାକୁ ଆସିଲେ । ଗିରିଜା ପାର୍ବତୀଙ୍କ ପୂଜା ନିମନ୍ତେ ମାତା ତାହାଙ୍କୁ ପଠାଇଥିଲେ ॥ ୧ ॥ ତାଙ୍କ ସହ ସମସ୍ତ ସୁନ୍ଦରୀ ଓ ଚତୁରୀ ସଖୀ ଆଆନ୍ତି । ସେମାନେ ମନୋହର ବାଣୀରେ ଗୀତ ଗାଉଥା'ନ୍ତି । ସରୋବର ସମୀପରେ ଗିରିଜାଙ୍କ ମନ୍ଦିର ସୁଶୋଭିତ । ଉକ୍ତ ମନ୍ଦିରର ବର୍ଣ୍ଣନା କରାଯାଇ ପାରିବ ନାହିଁ । ଦେଖିଲେ ମନ ମୁଗ୍ଧ ହୋଇଯାଏ ॥ ୨ ॥ ସଖୀସମାଜ ସହିତ ସରୋବରରେ

ଏକ ସଖୀ ସିୟ ସଂଗୁ ବିହାଈ । ଗଈ ରହୀ ଦେଖନ ଫୁଲୱାଈ ॥
ତେହିଁ ଦୋଉ ବଂଧୁ ବିଲୋକେ ଜାଈ । ପ୍ରେମ ବିବସ ସୀତା ପହିଁ ଆଈ ॥୪॥
ତାସୁ ଦସା ଦେଖୀ ସଖିହ୍ନ ପୁଲକ ଗାତ ଜଲୁ ନୈନ ।
କହୁ କାରନୁ ନିଜ ହରଷ କର ପୂଛହିଁ ସବ ମୃଦୁ ବୈନ ॥୨୨୮॥
ଦେଖନ ବାଗୁ କୁଅଁର ଦୁଇ ଆଏ । ବୟ କିସୋର ସବ ଭାଁତି ସୁହାଏ ॥
ସ୍ୟାମ ଗୌର କିମି କହଉଁ ବଖାନୀ । ଗିରା ଅନୟନ ନୟନ ବିନୁ ବାନୀ ॥୧॥
ସୁନି ହରଷୀଁ ସବ ସଖୀଁ ସୟାନୀ । ସିୟ ହିୟଁ ଅତି ଉତକଂଠା ଜାନୀ ॥
ଏକ କହଇ ନୃପସୁତ ତେଇ ଆଲୀ । ସୁନେ ଜେ ମୁନି ସଁଗ ଆଏ କାଲୀ ॥୨॥
ଜିହ୍ନ ନିଜ ରୂପ ମୋହନୀ ଡାରୀ । କୀହ୍ନେ ସ୍ୱବସ ନଗର ନର ନାରୀ ॥
ବରନତ ଛବି ଜହଁ ତହଁ ସବ ଲୋଗୂ । ଅବସି ଦେଖିଅହିଁ ଦେଖନ ଜୋଗୂ ॥୩॥

---

ଏକ ସଖୀ ସୀତା ସଙ୍ଗ ପରିହରି ପଥେ । ଯାଇଥିଲା ଫୁଲ-ବାଡ଼ି ଦେଖିବା ନିମନ୍ତେ ॥
ସେ ଦୁଇ ଭାଇଙ୍କୁ ଯାଇ ତହିଁ ବିଲୋକିଲା । ପ୍ରେମବିବଶ ସୀତାଙ୍କ ନିକଟେ ଆସିଲା ॥୪॥
ପୁଲକ ଶରୀର ନେତ୍ରେ ତା'ର ନୀର ଦଶା ଦେଖି ସଖୀଗଣ ।
ମଧୁର ବଚନେ ପଚାରନ୍ତି, କହ ନିଜ ହରଷ କାରଣ ॥୨୨୮॥
ଉଦ୍ୟାନ ଦର୍ଶନେ ବେନି ଆଗତ କୁମର । କିଶୋର ବୟସ ସବୁ ପ୍ରକାରେ ସୁନ୍ଦର ॥
ଶ୍ୟାମ ଗଉର କେମନ୍ତେ କହିବି ବଖାଣି । ବାଣୀର ନୟନ ନାହିଁ, ନୟନର ବାଣୀ ॥୧॥
ଶୁଣନ୍ତେ ଚତୁରୀ ସଖୀ ହୋଇଲେ ପ୍ରସନ୍ନ । ସୀତାଙ୍କ ହୃଦୟେ ଜାଣି ଉତ୍କଣ୍ଠା ଉତ୍ପନ୍ନ ॥
କେହି କହଇ, ସେମାନେ ରାଜପୁତ୍ର ଆଲୀ । ଶୁଣିଛୁ, ମୁନିଙ୍କ ସଙ୍ଗେ ଆସିଛନ୍ତି କାଲି ॥୨॥
ଯେ ନିଜ ରୂପ ଲାବଣ୍ୟ ମୋହିନୀ ପ୍ରସାରି । ସ୍ୱବଶ କଲେ ସମସ୍ତ ପୁର-ନରନାରୀ ॥
ଯେଣେ ତେଣେ ଲୋକେ ଛବି କରନ୍ତି ବର୍ଣ୍ଣନ । ଦର୍ଶନ ଯୋଗ୍ୟ ଅବଶ୍ୟ, କରିବା ଦର୍ଶନ ॥୩॥

---

ସ୍ନାନ ସାରି ପ୍ରସନ୍ନ ମନରେ ସୀତା ଗିରିଜାଙ୍କ ମନ୍ଦିର ମଧ୍ୟକୁ ଗଲେ । ସେ ତାଙ୍କୁ ଅତି ପ୍ରେମରେ ପୂଜା କଲେ ଏବଂ ନିଜ ଯୋଗ୍ୟ ସୁନ୍ଦର ବର ମାଗିଲେ ॥ ୩ ॥ ଜଣେ ସଖୀ ସୀତାଙ୍କ ସଙ୍ଗ ଛାଡ଼ି ଫୁଲବଗିଚା ଦେଖିବାକୁ ଚାଲି ଯାଇଥିଲା । ସେ ଯାଇ ଭାଇ ଦୁହିଁଙ୍କୁ ଦେଖିଲା ଏବଂ ପ୍ରେମବିହ୍ୱଳା ହୋଇ ସୀତାଙ୍କ ନିକଟକୁ ଫେରି ଆସିଲା ॥ ୪ ॥ ଦୋହା :- ସଖୀମାନେ ଉକ୍ତ ସଖୀର ଏ ଦଶା ଦେଖିଲେ । ତାହାର ଶରୀର ପୁଲକିତ ଏବଂ ନେତ୍ରରେ ଜଳ ପରିପୂର୍ଣ୍ଣ ।- ସମସ୍ତେ କୋମଳ ବାଣୀରେ ତାକୁ ତାହାର ଆନନ୍ଦର କାରଣ ପଚାରିଲେ ॥ ୨୨୮ ॥ ଚୌପାଈ :—ସେ ସଖୀ କହିଲା, "ଦୁଇଟି ରାଜକୁମାର ଉଦ୍ୟାନ ଦେଖିବାକୁ ଆସିଅଛନ୍ତି । ତାଙ୍କର କୈଶୋର ଅବସ୍ଥା ଏବଂ ସେ ଦୁହେଁ ସକଳ ପ୍ରକାରେ ସୁନ୍ଦର । ଦୁହେଁ ଶ୍ୟାମଳ ଓ ଗୌରବର୍ଣ୍ଣବିଶିଷ୍ଟ । ସେମାନଙ୍କର ସୌନ୍ଦର୍ଯ୍ୟ ମୁଁ କିପରି ବଖାଣି କହିବି ? ବାଣୀର ନେତ୍ର ନାହିଁ କିମ୍ବା ନେତ୍ରର ବାଣୀ ନାହିଁ ॥ ୧ ॥ ଏହା ଶୁଣି ଏବଂ ସୀତାଙ୍କ ହୃଦୟରେ ବଡ଼ ଉତ୍କଣ୍ଠା ଜାତ ହେବାର ଜାଣି ସମସ୍ତ

ତାସୁ ବଚନ ଅତି ସିୟହି ସୋହାନେ । ଦରସ ଲାଗି ଲୋଚନ ଅକୁଲାନେ ॥
ଚଲୀ ଅଗ୍ର କରି ପ୍ରିୟ ସଖି ସୋଈ । ପ୍ରୀତି ପୁରାତନ ଲଖଇ ନ କୋଈ ॥୪॥
ସୁମିରି ସୀୟ ନାରଦ ବଚନ ଉପଜୀ ପ୍ରୀତି ପୁନୀତ ।
ଚକିତ ବିଲୋକତି ସକଲ ଦିସି ଜନୁ ସିସୁ ମୃଗୀ ସଭୀତ ॥୨୨୯॥
କଂକନ କିଂକିନି ନୂପୁର ଧୁନି ସୁନି । କହତ ଲଖନ ସନ ରାମୁ ହୃଦୟଁ ଗୁନି ॥
ମାନହୁଁ ମଦନ ଦୁଂଦୁଭୀ ଦୀନ୍ହୀ । ମନସା ବିସ୍ୱ ବିଜୟ କହଁ କୀନ୍ହୀ ॥୧॥
ଅସ କହି ଫିରି ଚିତଏ ତେହି ଓରା । ସିୟ ମୁଖ ସସି ଭଏ ନୟନ ଚକୋରା ॥
ଭଏ ବିଲୋଚନ ଚାରୁ ଅଚଂଚଲ । ମନହୁଁ ସକୁଚି ନିମି ତଜେ ଦିଗଂଚଲ ॥୨॥

---

ତାହାର ବଚନ ଭଲ ସୀତାଙ୍କୁ ଲାଗିଲା । ଦେଖିବା ନିମନ୍ତେ ନେତ୍ର ଆକୁଳ ହୋଇଲା ॥
ଆସିଲେ ଅଗ୍ରେ କରିଣ ସେ ପ୍ରିୟ ସଖୀଙ୍କୁ । ଲକ୍ଷ୍ୟ ନ କରନ୍ତି କେହି ପ୍ରାଚୀନ ପ୍ରୀତିକୁ ॥୪॥
ସ୍ମରି ନାରଦଙ୍କ ବଚନ ସୀତାଙ୍କ ବଢିଲା ପ୍ରୀତି ପବିତ୍ର ।
ଚକିତେ ଚାହାନ୍ତି ଚଉଦିଗେ ଯେସନ୍ତେ ମୃଗୀ ଶାବକ ସଭୀତ ॥୨୨୯॥
କଙ୍କଣ କିଙ୍କିଣୀ ନୂପୁରର ଧ୍ୱନି ଶୁଣି । କହନ୍ତି ଲକ୍ଷ୍ମଣ ଆଗେ ରାମ ହୃଦେ ଗୁଣି ॥
ମନେ ହେଉଛି ମଦନ ଦୁନ୍ଦୁଭି ନାଦଇ । ମନସା ବିଶ୍ୱ ବିଜୟ ଆକାଂକ୍ଷା କରଇ ॥୧॥
ଏହା କହି ସେ ଦିଗକୁ ଫେରନ୍ତେ ବଦନ । ସୀତା ଶଶିମୁଖେ ହେଲା ଚକୋର ନୟନ ॥
ହୋଇଲେ ରୁଚିର ବିଲୋଚନ ଅଚଞ୍ଚଳ । ସଙ୍କୋଚ ତେଜିଲେ ଅବା ନିମି ନେତ୍ରାଞ୍ଚଳ ॥୨॥

---

ତତ୍ପରେ ସଖୀ ଅତି ପ୍ରସନ୍ନ ହେଲେ । ଅନନ୍ତର ଜଣେ ସଖୀ କହିଲା, "ହେ ସଖି ! ବିଶ୍ୱାମିତ୍ର ମୁନିଙ୍କ ସଙ୍ଗେ କାଲି ଯେଉଁ ରାଜକୁମାର ଦୁହେଁ ଆସିଅଛନ୍ତି ବୋଲି ମୁଁ ଶୁଣିଛି, ଏ ହେଉଛନ୍ତି ସେହି ଦୁହେଁ ॥ ୨ ॥ ସେହି ଦୁହେଁ ସେମାନଙ୍କ ମୋହିନୀ ଶକ୍ତିରେ ନଗରର ସମସ୍ତ ସ୍ତ୍ରୀ-ପୁରୁଷଙ୍କୁ ଆପଣାର ବଶୀଭୂତ କରି ପକାଇଛନ୍ତି । ଯେଉଁଠି ଦେଖିବ, ସେଇଠି ସମସ୍ତେ ସେମାନଙ୍କ ଛବି ବର୍ଣ୍ଣନା କରୁଅଛନ୍ତି । ଅବଶ୍ୟ ଯାଇ ସେମାନଙ୍କୁ ଦେଖିବା ଉଚିତ । ସେମାନେ ଦର୍ଶନର ଯୋଗ୍ୟ ।" ॥ ୩ ॥ ତାହାର କଥା ସୀତାଙ୍କୁ ଅତି ପ୍ରିୟ ଲାଗିଲା ଏବଂ ଦର୍ଶନ ନିମନ୍ତେ ତାଙ୍କର ନେତ୍ର ବ୍ୟାକୁଳ ହୋଇ ଉଠିଲା । ସେହି ପ୍ରିୟସଖୀଙ୍କୁ ଆଗରେ ରଖି ସୀତା ଚାଲିଲେ । ପୁରାତନ ପ୍ରୀତିକୁ କେହି ଲକ୍ଷ୍ୟ କରିପାରୁ ନ ଥା'ନ୍ତି ॥ ୪ ॥ ଦୋହା —ନାରଦଙ୍କ ବଚନ ସ୍ମରଣ କରି ସୀତାଙ୍କ ମନରେ ପବିତ୍ର ପ୍ରୀତିର ଉଦୟ ହେଲା । ସେ ଚକିତ ହୋଇ ଭୀତ ଶିଶୁ ହରିଣୀ ପରି ଏଣେତେଣେ ଚାହୁଁଥା'ନ୍ତି ॥ ୨୨୯ ॥ ଚୌପାଇ :—କଙ୍କଣ, କଟିସୂତ୍ର ଓ ନୂପୁରର ଧ୍ୱନି ଶୁଣି ଶ୍ରୀରାମଚନ୍ଦ୍ର ହୃଦୟରେ ବିଚାର କରି ଲକ୍ଷ୍ମଣଙ୍କୁ କହୁଅଛନ୍ତି, "ହେ ଲକ୍ଷ୍ମଣ ! ଏ ଧ୍ୱନି ମୋତେ ଏପରି ବୋଧ ହେଉଛି, ସତେ ଯେପରି କନ୍ଦର୍ପ ବିଶ୍ୱବିଜୟ କରିବା ସଙ୍କଳ୍ପ ନେଇ ଦୁନ୍ଦୁଭି ବଜାଉଛି ପରି !" ॥ ୧ ॥ ଏହିପରି କହି ଶ୍ରୀରାମ ଫେରି ସେ ଦିଗକୁ ଦୃଷ୍ଟିପାତ କଲେ । ସୀତାଙ୍କ ମୁଖ-ଚନ୍ଦ୍ର ନିରେଖିବା ପାଇଁ ତାଙ୍କର ନେତ୍ର

ଦେଖି ସୀୟ ସୋଭା ସୁଖୁ ପାୱା । ହୃଦୟଁ ସରାହତ ବଚନୁ ନ ଆୱା ॥
ଜନୁ ବିରଂଚି ସବ ନିଜ ନିପୁନାଈ । ବିରଚି ବିସ୍ୱ କହଁ ପ୍ରଗଟି ଦେଖାଈ ॥୩॥
ସୁନ୍ଦରତା କହୁଁ ସୁନ୍ଦର କରଈ । ଛବିଗୃହଁ ଦୀପସିଖା ଜନୁ ବରଈ ॥
ସବ ଉପମା କବି ରହେ ଜୁଠାରୀ । କେହିଁ ପଟତରୌଁ ବିଦେହକୁମାରୀ ॥୪॥

ସିୟ ସୋଭା ହିୟଁ ବରନି ପ୍ରଭୁ ଆପନି ଦସା ବିଚାରି ।
ବୋଲେ ସୁଚି ମନ ଅନୁଜ ସନ ବଚନ ସମୟ ଅନୁହାରି ॥୨୩୦॥

ତାତ ଜନକତନୟା ୟହ ସୋଈ । ଧନୁଷଜଗ୍ୟ ଜେହି କାରନ ହୋଈ ॥
ପୂଜନ ଗୌରି ସଖୀଁ ଲୈ ଆଈଁ । କରତ ପ୍ରକାସୁ ଫିରଇ ଫୁଲୱାଈଁ ॥୧॥

---

ଦେଖି ସୀତାଙ୍କର ଶୋଭା ସୁଖୀ ହେଲେ ଅତି । ନ ସ୍ଫୁରଇ ବାଣୀ ହୃଦେ ପ୍ରଶଂସା କରନ୍ତି ॥
ଯେସନ୍ତେ ସବୁ ନିଜ କଳା କୁଶଳତା ରଚି । ବିଶ୍ୱ ସମ୍ମୁଖେ ପ୍ରକଟ କରିଛନ୍ତି ବିରିଞ୍ଚି ॥୩॥
ସୌନ୍ଦର୍ଯ୍ୟକୁ ମଧ୍ୟ ଅତି ସୁନ୍ଦର କରଇ । ଛବି-ଗୃହେ ଦୀପ-ଶିଖା ଯେସନେ ଜଳଇ ॥
ଉଚ୍ଛିଷ୍ଟ ଅଟେ କବିଙ୍କ ଉପମା ନିକର । ଜନକ-ସୁତାଙ୍କୁ ଦେବା କେଉଁ ପଟାନ୍ତର ॥୪॥

ସୀତା ଶୋଭା ପ୍ରଭୁ ହୃଦୟେ ପ୍ରଶଂସି ନିଜ ଦଶା ବିଚାରିଣ
ପବିତ୍ର ମନରେ ଅନୁଜଙ୍କ ଆଗେ ଭାଷିଲେ ବେଳ ଦେଖିଣ ॥୨୩୦॥

ଭ୍ରାତ ଏ ଅଟନ୍ତି ସେହି ଜନକ-କୁମାରୀ । ଯାହାଙ୍କ କାରଣେ ହୁଏ ଧନୁଯଜ୍ଞ ଭାରି ॥
ଗଉରୀ ପୂଜିବା ହେତୁ ସଖୀ ଆଣିଛନ୍ତି । ପ୍ରକାଶ ପ୍ରସାରି ପୁଷ୍ପ ଉଦ୍ୟାନେ ଭ୍ରମନ୍ତି ॥୧॥

---

ଚକୋର ହୋଇଗଲା ପ୍ରାୟେ ତାଙ୍କୁ ବୋଧ ହେଲା । ସୁନ୍ଦର ନେତ୍ର ସ୍ଥିର ରହିଗଲା । ସତେ ଯେମିତି ଜନକଙ୍କ ପୂର୍ବପୁରୁଷ ନିମି (ସମସ୍ତଙ୍କ ପଲକରେ ଯାହାଙ୍କ ନିବାସ ବୋଲି କଥିତ ଅଛି, ଝିଅ ଜୋଇଁଙ୍କ ମିଳନପ୍ରସଙ୍ଗ ଦେଖିବା ଅନୁଚିତ, ଏହି ଭାବରେ ସେ) ସଙ୍କୁଚିତ ହୋଇ ପଲକ ପରିତ୍ୟାଗ କଲେ । (ପଲକରେ ରହିବା ତ୍ୟାଗ କଲେ, ଫଳରେ ପଲକ-ପାତ ବନ୍ଦ ହୋଇଗଲା ।) ॥ ୨ ॥ ସୀତାଙ୍କର ଶୋଭା ଦେଖି ଶ୍ରୀରାମ ବଡ ସୁଖ ଅନୁଭବ କଲେ । ହୃଦୟ ମଧ୍ୟରେ ସେ ତାହାଙ୍କର ପ୍ରଶଂସା କରୁଥାଆନ୍ତି । ମାତ୍ର ମୁଖରୁ ବଚନ ବାହାରୁ ନ ଥାଏ । ସେହି ଶୋଭା ଏତେ ଅନୁପମ ଯେ ବୋଧ ହେଉଥାଏ, ସତେ ଯେମିତି ବ୍ରହ୍ମା ତାଙ୍କର ସମସ୍ତ ନୈପୁଣ୍ୟକୁ ମୂର୍ତ୍ତିମାନ୍ କରି ସଂସାରକୁ ପ୍ରକାଶ୍ୟରେ ଦେଖାଇ ଦେଇଅଛନ୍ତି ॥ ୩ ॥ ସୀତାଙ୍କର ଶୋଭା ସୁନ୍ଦରତାକୁ ମଧ୍ୟ ସୁନ୍ଦର କରିପାରେ । ଉକ୍ତ ଶୋଭା ଛବି-ଗୃହରେ ଜାଜ୍ଜ୍ୱଲ୍ୟମାନ ଦୀପର ଜ୍ୟୋତି ପରି । ଏତେବେଳ ଯାଏ ସୌନ୍ଦର୍ଯ୍ୟ-ଭବନରେ ଅନ୍ଧକାର ଥିଲା । (ଉକ୍ତ ଭବନ ସତେ ଯେମିତି ସୀତାଙ୍କ ଶୋଭା-ଦୀପଶିଖାକୁ ପାଇ ଝଟକି ଉଠିଛି । ସୁତରାଂ ପୂର୍ବାପେକ୍ଷା ଅଧିକ ସୁନ୍ଦର ହୋଇପଡିଛି ।) ସମସ୍ତ ଉପମାକୁ ତ କବିମାନେ ଅଇଁଠା କରି ପକାଇଅଛନ୍ତି । ବିଦେହ ରାଜକନ୍ୟା ସୀତାଙ୍କର ମୁଁ କାହା ସହିତ ଉପମା ଦେବି ? ॥ ୪ ॥ ଦୋହା :- ଏହି ରୂପେ ସୀତାଙ୍କ ଶୋଭା ବର୍ଣ୍ଣନା କରି ଏବଂ ଆପଣାର ଦଶା ବିଚାରି ପ୍ରଭୁ ଶ୍ରୀରାମଚନ୍ଦ୍ର

ଜାସୁ ବିଲୋକି ଅଲୌକିକ ସୋଭା । ସହଜ ପୁନୀତ ମୋର ମନୁ ଛୋଭା ॥
ସୋ ସବୁ କାରନ ଜାନ ବିଧାତା । ଫରକହିଁ ସୁଭଦ ଅଂଗ ସୁନୁ ଭ୍ରାତା ॥୨॥
ରଘୁବଂସିନ୍ହ କର ସହଜ ସୁଭାଉ । ମନୁ କୁପଂଥ ପଗୁ ଧରଇ ନ କାଉ ॥
ମୋହି ଅତିସୟ ପ୍ରତୀତି ମନ କେରୀ । ଜେହିଁ ସପନେହୁଁ ପରନାରି ନ ହେରୀ ॥୩॥
ଜିନ୍ହ କୈ ଲହହିଁ ନ ରିପୁ ରନ ପୀଠୀ । ନହିଁ ପାୱହିଁ ପରତିୟ ମନୁ ଡୀଠୀ ॥
ମଂଗନ ଲହହିଁ ନ ଜିନ୍ହ କୈ ନାହୀଁ । ତେ ନରବର ଥୋରେ ଜଗ ମାହୀଁ ॥୪॥

କରତ ବତକହି ଅନୁଜ ସନ ମନ ସିୟ ରୂପ ଲୋଭାନ ।
ମୁଖ ସରୋଜ ମକରନ୍ଦ ଛବି କରଇ ମଧୁପ ଇବ ପାନ ॥୨୩୧॥

---

ଯାହାଙ୍କର ଅଲୌକିକ ଶୋଭା ବିଲୋକଣ । ସହଜ-ପବିତ୍ର ହୁଏ ମୋ ମନ ଉଦ୍‌ବିଗ୍ନ ॥
ଏହାର କାରଣ ସବୁ ଜାଣନ୍ତି ବିଧାତା । ସ୍ପନ୍ଦନ ହୁଏ ମଙ୍ଗଳ ଅଙ୍ଗ ଶୁଣ ଭ୍ରାତା ॥୨॥
ରଘୁବଂଶୀଙ୍କ ସହଜ ସ୍ୱଭାବ ଏସନେ । କୁପଥେ କେବେହେଁ ପାଦ ନ ପକାନ୍ତି ମନେ ॥
ସେହି ରାଘବ ମୋ ମନେ ପ୍ରତୀତ ଏସନ । ସ୍ୱପ୍ନେ ବି ଯେ ପରନାରୀ ନ କରେ ଦର୍ଶନ ॥୩॥
ରଣେ ଯାର ପୃଷ୍ଠ ଶତ୍ରୁ ଦେଖି ନ ପାରନ୍ତି । ପରନାରୀ ଯାର ମନ ଦୃଷ୍ଟି ନ ଲଭନ୍ତି ॥
ଭିକ୍ଷୁକ ଯାହାଙ୍କଠାରୁ ନ ପାଆନ୍ତି ନାହିଁ । ସେ ନରବର କ୍ୱଚିତ ଦେଖାଯାନ୍ତି କାହିଁ ॥୪॥

କରନ୍ତି ଭାଇଙ୍କ ସଙ୍ଗେ ବାର୍ତ୍ତାଳାପ ସୀତା ରୂପେ ଲୋଭି ମନ ।
ମୁଖାରବିନ୍ଦରୁ ଛବି-ମକରନ୍ଦ ପିଏ ମଧୁପ ଯେସନ ॥୨୩୧॥

---

ପବିତ୍ର ମନରେ ତାଙ୍କ ସାନ ଭାଇ ଲକ୍ଷ୍ମଣଙ୍କୁ ସମୟାନୁକୂଳ ବଚନ ବୋଇଲେ ॥ ୨୩୦ ॥
ଚୌପାଈ '—"ବାପ ' ଏ ସେହି ଜନକ-କନ୍ୟା, ଯାହାଙ୍କ ନିମନ୍ତେ ଧନୁଯଜ୍ଞ ଅନୁଷ୍ଠିତ ହେଉଅଛି । ଗୌରୀ-ପୂଜା ନିମନ୍ତେ ସଖୀମାନେ ତାହାଙ୍କୁ ଏଠାକୁ ନେଇ ଆସିଅଛନ୍ତି । ଏ ପୁଷ୍ପୋଦ୍ୟାନରେ ଆଲୋକ ପ୍ରକାଶ-ପୂର୍ବକ ସେ ଭ୍ରମଣ କରୁଅଛନ୍ତି ॥ ୧ ॥ ତାହାଙ୍କର ଅଲୌକିକ ସୌନ୍ଦର୍ଯ୍ୟ ଦେଖି ମୋର ସହଜ-ପବିତ୍ର ମନ ମଧ୍ୟ କ୍ଷୁବ୍ଧ ହୋଇଯାଇଅଛି । ସେ ସବୁର କାରଣ ବିଧାତାଙ୍କୁ ଜଣା । କିନ୍ତୁ ହେ ଭାଇ ! ଶୁଣ, ମୋର ମଙ୍ଗଳଦାୟକ ଡାହାଣ ଅଙ୍ଗ ଫୁରୁଅଛି ॥ ୨ ॥ ରଘୁବଂଶୀମାନେ ମନରେ ସୁଦ୍ଧା କଦାପି କୁମାର୍ଗରେ ପାଦ ପକାନ୍ତି ନାହିଁ । ଏହା ସେମାନଙ୍କର ଜନ୍ମଗତ ସ୍ୱଭାବ । ମୋର ତ ଆପଣା ମନ ଉପରେ ଦୃଢ ବିଶ୍ୱାସ ରହିଛି ଯେ, (ଜାଗରଣ ସମୟର କଥା କ'ଣ କହିବା,) ସ୍ୱପ୍ନରେ ସୁଦ୍ଧା ଯେଉଁ ରଘୁବଂଶରେ କେହି ପରସ୍ତ୍ରୀ ଉପରେ ଦୃଷ୍ଟିପାତ କରିନାହିଁ, ମୁଁ ସେହି ରଘୁବଂଶରେ ଜାତ ॥ ୩ ॥ ରଣରେ ଶତ୍ରୁ ଯାହାଙ୍କର ପିଠି ଦେଖନ୍ତି ନାହିଁ (ଅର୍ଥାତ୍ ଯେ ଯୁଦ୍ଧକ୍ଷେତ୍ରରୁ ପଛଘୁଞ୍ଚା ଦିଅନ୍ତି ନାହିଁ), ପର ସ୍ତ୍ରୀ ଯାହାଙ୍କର ମନ ଓ ଦୃଷ୍ଟିକୁ ଆକର୍ଷଣ କରି ନ ପାରନ୍ତି ଏବଂ ଭିକାରି ଯାହାଙ୍କ ପାଖରୁ "ନାହିଁ" ଶୁଣନ୍ତି ନାହିଁ (ଖାଲି ହାତରେ ଫେରନ୍ତି ନାହିଁ), ଏହିପରି ପୁରୁଷ-ଶ୍ରେଷ୍ଠ ସଂସାରରେ ଅତି ଅଳ୍ପ ।" ॥ ୪ ॥
ଦୋହା —ଏହିପରି ଶ୍ରୀରାମ ସାନ ଭାଇ ଲକ୍ଷ୍ମଣଙ୍କ ସଙ୍ଗେ କଥାବାର୍ତ୍ତା କରୁଥା'ନ୍ତି, ମାତ୍ର ତାଙ୍କ ମନ ସୀତାଙ୍କ ରୂପରେ ଲୋଭେଇ ଯାଇଥାଏ ଏବଂ ଭ୍ରମର ପରି ତାହା

ଚିତବ୍ରିତ ଚକିତ ଚହୁଁ ଦିସି ସୀତା । କହଁ ଗଏ ନୃପକିସୋର ମନୁ ଚିନ୍ତା ॥
ଜହଁ ବିଲୋକ ମୃଗ ସାବକ ନୈନୀ । ଜନୁ ତହଁ ବରିସ କମଲ ସିତ ଶ୍ରେନୀ ॥୧॥
ଲତା ଓଟ ତବ ସଖିନ୍ହ ଲଖାଏ । ସ୍ୟାମଲ ଗୌର କିସୋର ସୁହାଏ ॥
ଦେଖି ରୂପ ଲୋଚନ ଲଲଚାନେ । ହରଷେ ଜନୁ ନିଜ ନିଧି ପହିଚାନେ ॥୨॥
ଥକେ ନୟନ ରଘୁପତି ଛବି ଦେଖେଁ । ପଲକନ୍ହିହୁଁ ପରିହରୀଁ ନିମେଷେଁ ॥
ଅଧିକ ସନେହଁ ଦେହ ଭୈ ଭୋରୀ । ସରଦ ସସିହି ଜନୁ ଚିତବ ଚକୋରୀ ॥୩॥
ଲୋଚନ ମଗ ରାମହି ଉର ଆନୀ । ଦୀନ୍ହେ ପଲକ କପାଟ ସୟାନୀ ॥
ଜବ ସିୟ ସଖିନ୍ହ ପ୍ରେମବସ ଜାନୀ । କହି ନ ସକହିଁ କଛୁ ମନ ସକୁଚାନୀ ॥୪॥
ଲତାଭବନ ତେଁ ପ୍ରଗଟ ଭେ ତେହି ଅବସର ଦୋଉ ଭାଇ ।
ନିକସେ ଜନୁ ଜୁଗ ବିମଲ ବିଧୁ ଜଲଦ ପଟଲ ବିଲଗାଇ ॥୨୩୨॥

---

ଚକିତେ ଦେଖନ୍ତି ସୀତା ଚଉଦିଗେ ଚାହିଁ । ଗଲେ ଚିତ୍ତ-ଆକର୍ଷକ ନୃପ-ସୁତ କାହିଁ ॥
ମୃଗ-ଶାବକ-ନୟନୀ ନିରେଖନ୍ତି ଯେଉଁଣେ । ଯେସନେ ଶ୍ୱେତପଦ୍ମ-ଶ୍ରେଣୀ ବରଷଇ ତେଉଁଣେ ॥୧॥
ଲତା ଉହାଡ଼େ ଦେଖାନ୍ତି ତହୁଁ ସଖୀଗଣ । ଶ୍ୟାମଳ ଗୌର କିଶୋର ପରମ ଶୋଭନ ॥
ନିରେଖି ରୂପ ଲାଳସା ବଢ଼ିଲା ନୟନେ । ହରଷିତ, ନିଜ ନିଧି ଚିହ୍ନିଲେ ଯେସନେ ॥୨॥
ଦେଖି ରାମ ଛବି ନେତ୍ର ସ୍ତମ୍ଭିତ ହୋଇଲା । ପଲକ ମଧ୍ୟ ଆପଣା ପତନ ତେଜିଲା ॥
ବିହ୍ୱଳ ହୋଇଲା ତନୁ ସ୍ନେହରେ ଅତ୍ୟନ୍ତ । ଶରଦ-ଶଶୀକୁ ଚାହେଁ ଚକୋରୀ ଯେମନ୍ତ ॥୩॥
ନୟନ ପଥେ ରାମଙ୍କୁ ଆଣି ହୃଦ-ପୁରୀ । ପଲକ-କବାଟ କଲେ ଦେଲେ ସେ ଚତୁରୀ ॥
ସଖୀ ଜାନକୀଙ୍କୁ ଜାଣି ପ୍ରେମବଶ ଅତି । ସଙ୍କୋଚ ମନରେ କିଛି କହି ନ ପାରନ୍ତି ॥୪॥
ସେ ସମୟେ ଲତା-ଭବନ ଭିତରୁ ବେନି ଭାଇ ପ୍ରକଟିଲେ ।
ଅବା ମେଘମାଳ ଆଡେଇ ଯୁଗଳ ସୌମ୍ୟ-ଶଶୀ ବାହାରିଲେ ॥୨୩୨॥

---

ତାଙ୍କ ମୁଖ-କମଳର ଶୋଭା-ମକରନ୍ଦ-ରସ ପାନ କରୁଥ ଏ ॥ ୨୩୧ ॥ ଚୌପାଇ - ସୀତା ଚକିତ ହୋଇ ଚାର ଆଡକୁ ଚାହୁଁଥା'ନ୍ତି । ରାଜକୁମାରମାନେ କେଉଁଆଡେ ଚାଲିଗଲେ ବୋଲି ମନ ଚିନ୍ତିତ ଥାଏ । ବାଲମୃଗ-ନୟନୀ ସୀତା ଯେଉଁଠି ଦୃଷ୍ଟିପାତ କରୁଥା'ନ୍ତି, ସେହିଠାରେ ସତେ ଯେମିତି ଶ୍ୱେତକମଳର ପଙ୍‌କ୍ତି ବରଷି ଯାଉଥାଏ ॥୧॥ ତଦନନ୍ତର ସଖୀମାନେ ଲତା ଅନ୍ତରାଳରେ ରହି ସୀତାଙ୍କୁ ସୁନ୍ଦର ଶ୍ୟାମ ଓ ଗୌର କୁମାର ଦୁହିଙ୍କୁ ଦେଖାଇଲେ । ସେମାନଙ୍କ ରୂପ ଦେଖି ସୀତାଙ୍କ ନେତ୍ର ପ୍ରଲୁବ୍ଧ ହୋଇ ଉଠିଲା । ସେ ଆପଣାର ରତ୍ନନିଧି ସତେ ଯେମିତି ଚହ୍ନିପକାଇଲେ, ସେହିପରି ଆନନ୍ଦିତ ହେଲେ ॥ ୨ ॥ ଶ୍ରୀ ରଘୁନାଥଙ୍କ ଛବି ଦେଖି ତାଙ୍କ ନେତ୍ର ନିଶ୍ଚଳ ହୋଇଗଲା । ପଲକ ନିମେଷ ପରିତ୍ୟାଗ କଲା । ଅଧିକ ସ୍ନେହ ଯୋଗୁ ଶରୀର ବିହ୍ୱଳ ହୋଇପଡ଼ିଲା । ସତେ ଅବା ଶରତ ଋତୁର ଚନ୍ଦ୍ରଙ୍କୁ ଚକୋରୀ ନିର୍ନିମେଷ ନୟନରେ ଦେଖୁଅଛି କି ! ॥ ୩ ॥ ନେତ୍ର-ପଥରେ ଶ୍ରୀରାମଚନ୍ଦ୍ରଙ୍କୁ ଆପଣା ହୃଦୟ ମଧ୍ୟକୁ ଆଣି ଚତୁରୀ-ଶିରୋମଣି ଜାନକୀ

ସୋଭାସୀୱଁ ସୁଭଗ ଦୋଉ ବୀରା । ନୀଲ ପୀତ ଜଲଜାଭ ସରୀରା ॥
ମୋରପଂଖ ସିର ସୋହତ ନୀକେ । ଗୁଚ୍ଛ ବୀଚ ବିଚ କୁସୁମ କଲୀ କେ ॥୧॥
ଭାଲ ତିଲକ ଶ୍ରମବିନ୍ଦୁ ସୁହାଏ । ଶ୍ରବନ ସୁଭଗ ଭୂଷନ ଛବି ଛାଏ ॥
ବିକଟ ଭୃକୁଟି କଚ ଘୂଘରୱାରେ । ନବ ସରୋଜ ଲୋଚନ ରତନାରେ ॥୨॥
ଚାରୁ ଚିବୁକ ନାସିକା କପୋଲା । ହାସ ବିଲାସ ଲେତ ମନୁ ମୋଲା ॥
ମୁଖ ଛବି କହି ନ ଜାଇ ମୋହି ପାହୀଁ । ଜୋ ବିଲୋକି ବହୁ କାମ ଲଜାହୀଁ ॥୩॥
ଉର ମନି ମାଲ କଂବୁ କଲ ଗ୍ରୀୱା । କାମ କଲଭ କର ଭୁଜ ବଲସୀଁୱା ॥
ସୁମନ ସମେତ ବାମ କର ଦୋନା । ସାୱଁର କୁଅଁର ସଖୀ ସୁଠି ଲୋନା ॥୪॥

---

ଶୋଭା ପରସୀମା ବେନି ବୀର ମନୋହର । ନୀଲ ପୀତ ସରସିଜ ସମ କଲେବର ॥
ମନୋହର ଶିଖିପୁଚ୍ଛ ଶୋଭା ପାଏ ଶିରେ । କୁସୁମ-କଳିକା ଗୁଚ୍ଛ ମଝିରେ ମଝିରେ ॥୧॥
ଲଲାଟେ ତିଲକ, ଶ୍ରମ ବିନ୍ଦୁ ସୁଶୋଭିତ । ଚାରୁ ଶ୍ରବଣ ସୁନ୍ଦର ଭୂଷଣେ ଭୂଷିତ ॥
ବିକଟ ଭୃକୁଟୀ କେଶ କୁଞ୍ଚିତ ବିମଳ । ନୟନ ଯେସନେ ନବ ଅରୁଣ କମଳ ॥୨॥
ଚାରୁ ଚିବୁକ ନାସିକା କପୋଲ ଶୋଭଇ । ହାସ୍ୟ ବିଲାସ ଯେସନେ କିଣି ବା ନଅଇ ॥
ବଦନ ଛବି ମୋ ଦ୍ୱାରା ନ ହୁଏ ବର୍ଣ୍ଣନ । ଯା' ଆଗେ ଲଜ୍ଜିତ ହୋନ୍ତି ଅମିତ ମଦନ ॥୩॥
ହୃଦେ ମଣିହାର କମ୍ବୁ ଗ୍ରୀବା ମନୋହର । ଭୁଜ ବଳସୀମା, କାମ-କରି-ଶିଶୁ କର ॥
ଶୋଭେ ବାମ କରେ ଦୋନା ସୁମନ ସହିତ । ଶ୍ୟାମଳ କୁମର ସଖୀ, ପରମ ଲଳିତ ॥୪॥

---

ପଲକ-କବାଟ ବନ୍ଦ କରିଦେଲେ । (ଅର୍ଥାତ୍ ନେତ୍ର ବୁଜି ସୀତା ତାହାଙ୍କର ଧ୍ୟାନ କରିବାକୁ ଲାଗିଲେ ।) ଯେତେବେଳେ ସଖୀମାନେ ସୀତା ପ୍ରେମବଶୀଭୂତା ହୋଇ-ପଡ଼ିଛନ୍ତି ବୋଲି ଜାଣିଲେ, ସେମାନେ ମନେ ମନେ ସଙ୍କୁଚିତ ହୋଇଗଲେ । କିଛି କହି ପାରୁ ନ ଥା'ନ୍ତି ॥ ୪ ॥ ଦୋହା :—ସେହି ସମୟରେ ଦୁଇ ଭାଇ ଲତାମଣ୍ଡପରୁ ବାହାରିଲେ । ସତେ ଅବା ଦୁଇଟି ନିର୍ମଳ ଚନ୍ଦ୍ର ମେଘର ପରଦା ଚିରି ବାହାରି ପଡ଼ିଲେ କି ! ॥ ୨୩୨ ॥ ଚୌପାଈ :—ଦୁଇ ଭାଇ ଶୋଭାର ସୀମା । ସେ ଦୁହିଙ୍କ ଶରୀରର ଆଭା ନୀଳ ଓ ପୀତ କମଳର ଆଭା ପରି । ମସ୍ତକ ଉପରେ ମୟୂରର ପକ୍ଷ ସୁଶୋଭିତ । ମଧ୍ୟେ ମଧ୍ୟେ ଫୁଲକଢ଼ିର ଗୁଚ୍ଛ ଲାଗିଅଛି ॥ ୧ ॥ ଲଲାଟରେ ତିଳକ ଓ ଝାଳବିନ୍ଦୁ ଶୋଭା ପାଉଥାଏ । ସୁନ୍ଦର କର୍ଣ୍ଣରେ ମନୋହର ଭୂଷଣର ଛବି ଛାଇ ରହିଥାଏ । ବଙ୍କ ଭ୍ରୂଲତା, କୁଞ୍ଚିତ କେଶ ଏବଂ ନବ ରକ୍ତପଦ୍ମ ପରି ଲାଲବର୍ଣ୍ଣର ନେତ୍ର ॥ ୨ ॥ ଓଠ, ନାକ ଓ ଗାଲ ଅତି ସୁନ୍ଦର, ହସର ଶୋଭା ମନ କିଣି ନେଉଥାଏ । ମୁଖର ସୌନ୍ଦର୍ଯ୍ୟ ତ ମୋ ଦ୍ୱାରା ବର୍ଣ୍ଣିତ ହୋଇ ପାରୁନାହିଁ । ତାହାକୁ ଦେଖି ବହୁତ କାମଦେବ ମଧ୍ୟ ଲଜ୍ଜିତ ହୁଅନ୍ତି ॥ ୩ ॥ ବକ୍ଷସ୍ଥଳରେ ମଣିମାଳା ବିରାଜିତ । ଶଙ୍ଖସମାନ ସୁନ୍ଦର ଗ୍ରୀବା । କନ୍ଦର୍ପ ରୂପକ ହସ୍ତି-ଶାବକର ଶୁଣ୍ଢ ସମାନ ଭୁଜ । ତାହା ବଳର ସୀମା । "ଯାହାଙ୍କ ବାଆଁ ହାତରେ ଫୁଲ ଚଉପଦା, ଲୋ ସଖି ! ସେହି ଶ୍ୟାମଳ

କେହରି କଟି ପଠ ଧର ସୁଷମା ସୀଲ ନିଧାନ
ଦେଖି ଭାନୁକୁଲଭୂଷନହି ବିସରା ସଖିହ୍ନ ଅପାନ ॥୨୩୩॥

ଧରି ଧୀରଜୁ ଏକ ଆଲି ସୟାନୀ । ସୀତା ସନ ବୋଲୀ ଗହି ପାନୀ ॥
ବହୁରି ଗୌରି କର ଧ୍ୟାନ କରେହୂ । ଭୂପକିସୋର ଦେଖି କିନ ଲେହୂ ॥୧॥
ସକୁଚି ସୀୟଁ ତବ ନୟନ ଉଘାରେ । ସନମୁଖ ଦୋଉ ରଘୁସିଂଘ ନିହାରେ ॥
ନଖ ସିଖ ଦେଖି ରାମ କୈ ସୋଭା । ସୁମିରି ପିତା ପନୁ ମନୁ ଅତି ଛୋଭା ॥୨॥
ପରବସ ସଖିହ୍ନ ଲଖୀ ଜବ ସୀତା । ଭୟଉ ଗହରୁ ସବ କହହିଁ ସଭୀତା ॥
ପୁନି ଆଉବ ଏହି ବେରିଆଁ କାଲୀ । ଅସ କହି ମନ ବିହସୀ ଏକ ଆଲୀ ॥୩॥
ଗୂଢ଼ ଗିରା ସୁନି ସିୟ ସକୁଚାନୀ । ଭୟଉ ବିଲଂବୁ ମାତୁ ଭୟ ମାନୀ ॥
ଧରି ବଡ଼ି ଧୀର ରାମୁ ଉର ଆନେ । ଫିରୀ ଅପନପଉ ପିତୁବସ ଜାନେ ॥୪॥

---

କେଶରୀ କଟିରେ ଶୋଭେ ପୀତାମ୍ବର ସୁଷମାଶୀଳ-ନିଧାନ ।
ଦେଖି ଭାନୁ କୁଳ-ଭୂଷଣଙ୍କୁ ସଖୀ ଭୁଲିଲେ ଅସ୍ତିତ୍ୱ ଜ୍ଞାନ ॥୨୩୩॥

ଧୈର୍ଯ୍ୟ ସମ୍ଭାଳି ଚତୁରୀ ଏକ ସହଚରୀ । ଜନକ-ସୁତାଙ୍କ ଆଗେ ବୋଲେ କର ଧରି ॥
ପଛେ ଗଉରୀଙ୍କ ଧ୍ୟାନ କରୁଥିବ ପ୍ରିୟେ । ନୃପ କିଶୋରଙ୍କୁ ଏବେକ୍ଷଣି ଦେଖି ନିଅ ॥୧॥
ସଙ୍କୋଚ ଜାନକୀ ତହୁଁ ନୟନ ଫେଡିଲେ । ସମ୍ମୁଖରେ ବେନି ରଘୁସିଂହଙ୍କୁ ଦେଖିଲେ ॥
ଆପାଦ-ମସ୍ତକ ଶୋଭା ବିଲୋକି ରାମଙ୍କ । ମନେ କ୍ଷୋଭ ହେଲା ପଣ ସ୍ମରି ଜନକଙ୍କ ॥୨॥
ସୀତାଙ୍କୁ ସଖୀ-ନିକର ପରବଶ ଜାଣି । କହନ୍ତି ସଭୟେ ସବେଁ ବିଳମ୍ବ ହେଲାଣି ॥
ପୁଣି ଆସିବା କାଲିକି ଏହି ସମୟରେ । ଏହା କହି ଆଲୀ ଏକ ହସିଲା ମନରେ ॥୩॥
ଗୂଢ ବାଣୀ ଶୁଣି ସୀତା ସଙ୍କୋଚ କରିଣ । ବିଳମ୍ବ ହୁଅନ୍ତେ ମନେ ମାତାଙ୍କୁ ଡରିଣ ॥
ଧରି ବଡ ଧୈର୍ଯ୍ୟ ହୃଦେ ଶ୍ରୀରାମଙ୍କୁ ଆଣି । ଲେଉଟିଲେ ଆପଣାକୁ ପିତା-ବଶ ଜାଣି ॥୪॥

---

କୁମାର ତ ବଡ ସୁନ୍ଦର ସତେ ନୁହେଁ !" ॥ ୪ ॥ ଦୋହା '—ସିଂହ-କଟି, ପୀତାମ୍ବରଧର, ଶୋଭା ଓ ଶୀଳର ଭଣ୍ଡାର, ସୂର୍ଯ୍ୟକୁଳର ଭୂଷଣ ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ସଖୀମାନେ ନିଜ ନିଜକୁ ଭୁଲିଗଲେ ॥ ୨୩୩ ॥ ଚୌପାଇ '—ଜଣେ ଚତୁରୀ ସଖୀ ଧୈର୍ଯ୍ୟ ସହିତ ସୀତାଙ୍କ ହାତ ଧରି ତାଙ୍କୁ କହିଲେ, "ଗିରିଜାଙ୍କ ଧ୍ୟାନ ପରେ କରିନେବ । ଏତେବେଳେ ରାଜକୁମାରଙ୍କୁ ଦେଖିନେଉନ କାହିଁକି ?" ॥୧॥ ସେତେବେଳେ ସୀତା ସଙ୍କୁଚିତ ହୋଇ ନେତ୍ର ଖୋଲିଲେ ଏବଂ ରଘୁବଂଶର ଦୁଇ ସିଂହଙ୍କୁ ଆପଣା ସମ୍ମୁଖରେ ଛିଡା ହୋଇଥିବାର ଦେଖିଲେ । ଆପାଦମସ୍ତକ ରାମଙ୍କର ଶୋଭା ଦେଖି ସେ ଚକିତ ହୋଇ ପଡିଲେ ଏବଂ ପୁଣି ପିତାଙ୍କର ପଣ କଥା ମନେ ପକାଇ କ୍ଷୁବ୍ଧ ହେଲେ ॥ ୨ ॥ ଯେତେବେଳେ ସଖୀମାନେ ଅନୁଭବ କଲେ ଯେ, ସୀତା ପରବଶ ହୋଇଗଲେଣି, ସେମାନେ ସମସ୍ତେ ଭୟଭୀତ ହୋଇପଡିଲେ ଏବଂ କହିବାକୁ ଲାଗିଲେ, "ବହୁତ ବିଳମ୍ବ ହୋଇଗଲାଣି । ଏବେ ଫେରିଯିବା ଉଚିତ ।" "କାଲି ଏହି ସମୟକୁ ପୁଣି ଆସିବା !"

ଦେଖନ ମିସ ମୃଗ ବିହଗ ତରୁ ଫିରଇ ବହୋରି ବହୋରି ॥
ନିରଖି ନିରଖି ରଘୁବୀର ଛବି ବାଢ଼ଇ ପ୍ରୀତି ନ ଥୋରି ॥୨୩୪॥
ଜାନି କଠିନ ସିବଚାପ ବିସୂରତି । ଚଲୀ ରାଖି ଉର ସ୍ୟାମଲ ମୂରତି ॥
ପ୍ରଭୁ ଜବ ଜାତ ଜାନକୀ ଜାନୀ । ସୁଖ ସନେହ ସୋଭା ଗୁନ ଖାନୀ ॥୧॥
ପରମ ପ୍ରେମମୟ ମୃଦୁ ମସି କୀନ୍ହୀ । ଚାରୁ ଚିତ୍ତ ଭୀତୀଂ ଲିଖି ଲୀନ୍ହୀ ॥
ଗଈ ଭବାନୀ ଭବନ ବହୋରୀ । ବଂଦି ଚରନ ବୋଲୀ କର ଜୋରୀ ॥୨॥
ଜୟ ଜୟ ଗିରିବରରାଜ କିସୋରୀ । ଜୟ ମହେସ ମୁଖ ଚନ୍ଦ ଚକୋରୀ ॥
ଜୟ ଗଜବଦନ ଷଡାନନ ମାତା । ଜଗତ ଜନନି ଦାମିନି ଦୁତି ଗାତା ॥୩॥

---

ଖଗ ମୃଗ ତରୁ ଦେଖିବା ଛଳରେ ଲେଉଟନ୍ତି ବାରମ୍ବାର ।
ନିରେଖି ନିରେଖି ରଘୁବୀର ଛବି ବଢଇ ପ୍ରୀତି ଆଦର ॥୨୩୪॥
ଶିବଙ୍କ ଚାପ କଠିନ ଜାଣି ଚିନ୍ତାତୁରେ । ବାହୁଡିଲେ ସେ ଶ୍ୟାମଳ ମୂର୍ତ୍ତି ଆଣି ଉରେ ॥
ପ୍ରଭୁ ଯେବେ ବିଲୋକିଲେ ଯାଉଛନ୍ତି ସୀତା । ସୁଖ ସ୍ନେହ ଗୁଣ ଶୀଳ ଶୋଭାର ସରିତା ॥୧॥
ପରମ ପୂର୍ଣ୍ଣ ପ୍ରେମକୁ ମୃଦୁ ମସୀ କଲେ । ଚାରୁ ଚିତ୍ତ-ପଟେ ସୀତା ଚିତ୍ର ଲେଖିଗଲେ ॥
ଆସିଲେ ସୀତା ଭବାନୀ ମନ୍ଦିରେ ଆବର । ଚରଣ ବନ୍ଦି ଭାଷିଲେ ଯୋଡି ବେନି କର ॥
ଜୟ ଜୟ ଜୟ ଗିରି-ନାୟକ କିଶୋରୀ । ଜୟ ମହେଶ୍ୱର ମୁଖ-ଚନ୍ଦ୍ରମା-ଚକୋରୀ ॥
ଜୟ ଗଜାନନ ଷଡବଦନ ଜନନୀ । ଜଗଦମ୍ବା ଦୀପ୍ତିମୟୀ ସୌଦାମିନୀ ବର୍ଣ୍ଣି ॥୩॥

---

ଏପରି କହି ଜଣେ ସଖୀ ମନେ ମନେ ହସିଲା ॥ ୩ ॥ ସଖୀର ଏହି ରହସ୍ୟଭରା ବାଣୀ ଶୁଣି ସୀତା ସଙ୍କୁଚିତ ହେଲେ । ବିଳମ୍ବ ହୋଇଗଲାଣି ଜାଣି ତାଙ୍କ ମନରେ ମାତାଙ୍କ ପ୍ରତି ଭୟ ଜାତ ହେଲା । ବହୁତ ଧୈର୍ଯ୍ୟର ସହିତ ସେ ଶ୍ରୀରାମଙ୍କ ମୂର୍ତ୍ତି ହୃଦୟରେ ଧାରଣ କଲେ ଏବଂ ମନେ ମନେ ତାହାଙ୍କୁ ଧ୍ୟାନ କରି ନିଜକୁ ପିତାଙ୍କ ଅଧୀନା ବୋଲି ମନେ କରି ଫେରି ଚାଲିଲେ ॥ ୪ ॥ ଦୋହା —ମୃଗ, ପକ୍ଷୀ ଓ ବୃକ୍ଷସମୂହକୁ ଦେଖିବା ବାହାନାରେ ସୀତା ବାରମ୍ବାର ଫେରି ପଡୁଥା'ନ୍ତି ଏବଂ ଶ୍ରୀରାମଙ୍କ ଛବିକୁ ସେ ଯେତେ ଯେତେ ଅନାଉଥା'ନ୍ତି, ତାଙ୍କ ପ୍ରେମ ସେତେ ସେତେ ବଢି ଚାଲିଥାଏ ॥ ୨୩୪ ॥ ଚୌପାଇ —ଶିବଧନୁର କଠୋରତା ଜାଣି ସେ ମନେ ମନେ ଶୋକ କରୁଥା'ନ୍ତି । ଏପରି ଅବସ୍ଥାରେ ଶ୍ରୀରାମଙ୍କ ଶ୍ୟାମଳ ମୂର୍ତ୍ତିକୁ ହୃଦୟ ମଧ୍ୟରେ ଧାରଣ କରି ସେ ଫେରି ଚାଲିଥା'ନ୍ତି । (ଶିବଧନୁର କଠୋରତା ସ୍ମରଣ କରିବା ମାତ୍ରେ ସୁକୁମାର ରାମଚନ୍ଦ୍ର ଏହାକୁ କିପରି ଭାଙ୍ଗିବେ ବୋଲି ତାଙ୍କ ମନରେ ଚିନ୍ତା ଜାତ ହେଉଥାଏ । ପିତାଙ୍କ ପଣ କଥା ମନେ ପକାଇବାରୁ ହୃଦୟରେ କ୍ଷୋଭ ଜାତ ହେଉଥାଏ । ଏଣୁ ସେ ମନେ ମନେ ବିଳାପ କରୁଥା'ନ୍ତି । ପ୍ରେମବଶତଃ ଶ୍ରୀରାମଙ୍କ ଐଶ୍ୱର୍ଯ୍ୟ ବିଷୟ ଭୁଲିଯିବାରୁ ତାଙ୍କର ଏପରି ଅବସ୍ଥା ଆସି ପହଞ୍ଚିଥିଲା । ମାତ୍ର ପୁଣି ଭଗବାନଙ୍କ ପରାକ୍ରମ ବିଷୟ ମନେ ପଡିବା ମାତ୍ରେ ସେ ଆନନ୍ଦିତ ହେଲେ ଏବଂ

ନହିଁ ତବ ଆଦି ମଧ୍ୟ ଅବସାନା । ଅମିତ ପ୍ରଭାଉ ବେଦୁ ନହିଁ ଜାନା ॥
ଭବ ଭବ ବିଭବ ପରାଭବ କାରିନି । ବିସ୍ୱ ବିମୋହନି ସ୍ୱବସ ବିହାରିନି ॥୩॥
ପତିଦେବତା ସୁତୀୟ ମହୁଁ ମାତୁ ପ୍ରଥମ ତବ ରେଖ ।
ମହିମା ଅମିତ ନ ସକହିଁ କହି ସହସ ସାରଦା ସେଷ ॥୨୩୫॥
ସେଵତ ତୋହି ସୁଲଭ ଫଲ ଚାରୀ । ବରଦାୟନୀ ପୁରାରି ପିଆରୀ ॥
ଦେବି ପୂଜି ପଦ କମଲ ତୁମ୍ହାରେ । ସୁର ନର ମୁନି ସବ ହୋହିଁ ସୁଖାରେ ॥୧॥
ମୋର ମନୋରଥୁ ଜାନହୁ ନୀକେଁ । ବସହୁ ସଦା ଉର ପୁର ସବ ହୀ କେଁ ॥
କୀନ୍ହେଉଁ ପ୍ରଗଟ ନ କାରନ ତେହୀଁ । ଅସ କହି ଚରନ ଗହେ ବୈଦେହୀଁ ॥୨॥

---

ନାହିଁ ତୋର ଆଦି ମଧ୍ୟ ଅବସାନ ପୁଣି । ଅମିତ ପ୍ରଭାବ ବେଦ ନ ପାରଇ ଗୁଣି ।
ଭବ-ଉତ୍ପତ୍ତି-ପାଳନ-ସଂହାରକାରିଣୀ । ବିଶ୍ୱବିମୋହିନୀ ନିଜ ଇଚ୍ଛା-ବିହାରିଣୀ ॥୩॥
ମାତ ! ପତିବ୍ରତା ସୁନାରୀଙ୍କ ମଧ୍ୟେ ପ୍ରଥମେ ଲେଖା ତୁ ସଦା ॥
ମହିମା ଅମିତ ବର୍ଣ୍ଣି ନ ପାରନ୍ତି ସହସ୍ର ଶେଷ ଶାରଦା ॥୨୩୫॥
ସେବନ୍ତେ ତୋତେ ସୁଲଭ ହୁଏ ଫଳ ଚାରି । ବରଦାୟିନୀ ଶିବଙ୍କ ପ୍ରିୟତମା ନାରୀ ॥
ଦେବୀ, ପୂଜିଣ ଚରଣ-କମଳ ତୁମ୍ଭର । ସୁଖୀ ହୁଅନ୍ତି ସମସ୍ତ ସୁର ମୁନି ନର ॥୧॥
ଜାଣ ଭଲ ରୂପେ ମୋର ମନ ଅଭିଳାଷ । ସଦା ସମସ୍ତଙ୍କ ହୃଦ-ପୁରେ କର ବାସ ॥
ସେହି କାରଣରୁ ମୁହିଁ ପ୍ରକାଶ ନ କରେ । ଏହା କହି ବଇଦେହୀ ପଡ଼ିଲେ ପୟରେ ॥୨॥

---

ପ୍ରଭୁଙ୍କର ଶ୍ୟାମଳ ମୂର୍ତ୍ତିକୁ ହୃଦୟରେ ଧାରଣ କରି ଫେରିଲେ ।) ପ୍ରଭୁ ଶ୍ରୀରାମ ଯେତେବେଳେ ସୁଖ, ସ୍ନେହ, ଶୋଭା ଓ ଗୁଣର ଖଣି ଶ୍ରୀଜାନକୀ ଚାଲିଯାଉଛନ୍ତି ବୋଲି ଜାଣିଲେ, ସେ ପରମ ପ୍ରେମର ମସୀ ତିଆରି କରି ଆପଣାର ସୁନ୍ଦର ହୃଦୟ-ପଟରେ ତାହାଙ୍କର ସ୍ୱରୂପକୁ ଅଙ୍କିତ କରି ପକାଇଲେ । ସୀତା ପୁଣି ଭବାନୀଙ୍କ ମନ୍ଦିରକୁ ଆସିଲେ ଏବଂ ତାଙ୍କର ଚରଣ ବନ୍ଦନା କରି ହାତଯୋଡ଼ି କହିଲେ— ॥ ୧-୨ ॥ "ହେ ଗିରିବରରାଜ ହିମାଳୟ-କନ୍ୟା ପାର୍ବତି ! ଆପଣଙ୍କର ଜୟ ହେଉ । ଜୟ ହେଉ, ହେ ମହାଦେବ-ମୁଖ-ଚନ୍ଦ୍ରମା-ଚକୋରି ! ଆପଣଙ୍କର ଜୟ ହେଉ । ହେ ଗଜବଦନ ଗଣେଶ ଓ ଷଡାନନ କାର୍ତ୍ତିକେୟଙ୍କ ମାତା ! ହେ ଜଗଜ୍ଜନନି ! ହେ ବିଦ୍ୟୁତ୍‌କାନ୍ତି-ଦେହା ! ଆପଣଙ୍କର ଜୟ ହେଉ ॥ ୩ ॥ ଆପଣଙ୍କର ଆଦି ନାହିଁ, ମଧ୍ୟ ନାହିଁ କିମ୍ବା ଅନ୍ତ ନାହିଁ । ଆପଣଙ୍କର ଅସୀମ ପ୍ରଭାବ କଥା ବେଦ ମଧ୍ୟ ଜାଣନ୍ତି ନାହିଁ । ଆପଣ ସଂସାରର ଉତ୍ପତ୍ତି-ପାଳନ-ନାଶକାରିଣୀ, ଆପଣ ବିଶ୍ୱବିମୋହିନୀ ଏବଂ ସ୍ୱତନ୍ତ୍ର ଭାବରେ ବିହାର କରନ୍ତି ॥ ୪ ॥ ଦୋହା :—ହେ ମାତ ! ଯେଉଁ ସୁନାରୀମାନେ ପତିଙ୍କୁ ଇଷ୍ଟଦେବ ରୂପେ ମାନନ୍ତି ସେମାନଙ୍କ ମଧ୍ୟରେ ଆପଣ ଅଗ୍ରଗଣ୍ୟା । ଆପଣଙ୍କ ଅପାର ମହିମାକୁ ସହସ୍ର ସହସ୍ର ସରସ୍ୱତୀ ଓ ଶେଷ ମଧ୍ୟ କହି ପାରନ୍ତି ନାହିଁ ॥ ୨୩୫ ॥
ଚୌପାଈ :—ହେ ବରଦାୟିନି ! ହେ ତ୍ରିପୁରାରି-ପ୍ରିୟପତ୍ନି ! ଆପଣଙ୍କ ସେବା କରିବା

ବିନୟ ପ୍ରେମବସ ଭଈ ଭବାନୀ । ଖସୀ ମାଲ ମୂରତି ମୁସୁକାନୀ ॥
ସାଦର ସିୟଁ ପ୍ରସାଦୁ ସିର ଧରେଊ । ବୋଲୀ ଗୌରି ହରଷୁ ହିୟଁ ଭରେଊ ॥୩॥
ସୁନୁ ସିୟ ସତ୍ୟ ଅସୀସ ହମାରୀ । ପୂଜିହି ମନକାମନା ତୁମ୍ହାରୀ ॥
ନାରଦ ବଚନ ସଦା ସୁଚି ସାଚା । ସୋ ବରୁ ମିଲିହି ଜାହିଁ ମନୁ ରାଚା ॥୪॥

ମନୁ ଜାହିଁ ରାଚେଉ ମିଲିହି ସୋ ବରୁ ସହଜ ସୁନ୍ଦର ସାଁୱରୋ ।
କରୁନା-ନିଧାନୁ ସୁଜାନ ସୀଲୁ ସନେହୁ ଜାନତ ରାୱରୋ ।
ଏହି ଭାଁତି ଗୌରି ଅସୀସ ସୁନି ସିୟ ସହିତ ହିୟଁ ହରଷୀଂ ଅଲୀ ॥
ତୁଲସୀ ଭବାନିହି ପୂଜି ପୁନି ପୁନି ମୁଦିତ ମନ ମଂଦିର ଚଲୀ ॥

---

ବିନୟ ପ୍ରେମ ବିବଶ ଭବାନୀ ହୋଇଲେ । ଖସିଲା ମାଲା, ପ୍ରତିମା ମୃଦୁକ ହସିଲେ ॥
ସାଦରେ ଜାନକୀ ଶିରେ ଘେନିଲେ ପ୍ରସାଦ । ତହୁଁ ଭାଷିଲେ ଗଉରୀ ହୋଇଣ ଆହ୍ଲାଦ ॥୩॥
ଶୁଣ ବଇଦେହୀ ସତ୍ୟ ଆଶିଷ ମୋହର । ସୁଫଳ ହୋଇବ ମନ କାମନା ତୁମ୍ଭର ॥
ନାରଦ ବଚନ ସତ୍ୟ ପବିତ୍ର ଅଟଇ । ସେ ବର ମିଳିବ, ମନ ଯାହାକୁ ବାଞ୍ଛଇ ॥୪॥

ମନ ଯାହା ବାଞ୍ଛିଛି ମିଳିବ ବର ସେହି ସ୍ୱଭାବେ ଶ୍ୟାମଳ ସୁନ୍ଦର ।
ଜାଣନ୍ତି ସେ ଚତୁର କରୁଣା-ଅକୂପାର ସ୍ନେହ ସୁଶୀଳତା ତୁମ୍ଭର ।
ଗଉରୀ ଆଶିଷ ଏମନ୍ତେ, ସାନନ୍ଦେ ଜାନକୀ ଶୁଣନ୍ତେ,
ବାରମ୍ବାର ଶିବଙ୍କୁ ପୂଜି ଗଲେ ଗୃହକୁ ତୁଳସୀ ଆଳୀଙ୍କ ସଙ୍ଗତେ ॥

---

ଦ୍ୱାରା ଚାରି ଫଳ ସୁଲଭ ହୋଇଯାଏ । ହେ ଦେବି ! ଆପଣଙ୍କ ଚରଣ-କମଳର ପୂଜା କରି ଦେବତା, ମନୁଷ୍ୟ ଓ ମୁନି ସମସ୍ତେ ସୁଖୀ ହୁଅନ୍ତି ॥ ୧ ॥ ମୋର ମନୋରଥ ଆପଣ ଭଲ ରୂପେ ଜାଣନ୍ତି । କାରଣ ଆପଣ ସମସ୍ତଙ୍କ ହୃଦୟ-ନଗରୀରେ ବାସ କରନ୍ତି । ଏହି ହେତୁ ମୁଁ ତାହା ପ୍ରକାଶ କଲି ନାହିଁ ।" ଏହା କହି ଜାନକୀ ତାଙ୍କର ଚରଣ ଧରି ପକାଇଲେ ॥ ୨ ॥ ଗିରିଜା ସୀତାଙ୍କ ବିନୟ ଓ ପ୍ରେମରେ ବଶୀଭୂତା ହୋଇ ପଡିଲେ । ତାଙ୍କ ଗଳାମାଳା ଖସି ପଡିଲା ଏବଂ ମୂର୍ତ୍ତି ମୃଦୁକ ହସି ଉଠିଲେ । ସୀତା ଆଦରରେ ସେହି ପ୍ରସାଦ (ମାଳା)କୁ ମସ୍ତକରେ ଧାରଣ କଲେ । ଗୌରୀଙ୍କର ହୃଦୟ ହର୍ଷରେ ପରିପୂର୍ଣ୍ଣ ହୋଇଗଲା ଏବଂ ସେ କହିଲେ,— ॥ ୩ ॥ "ହେ ସୀତା ! ଆମର ଏ ସତ୍ୟ ଆଶୀର୍ବାଦ ଶୁଣ । ତୁମ ମନସ୍କାମନା ପୂର୍ଣ୍ଣ ହେବ । ନାରଦଙ୍କ ବଚନ ସଦା ପବିତ୍ର (ସଂଶୟ, ଭ୍ରମାଦି ଦୋଷରୁ ମୁକ୍ତ) ଏବଂ ସତ୍ୟ । ତୁମ ମନ ଯାହାଙ୍କ ପ୍ରତି ଅନୁରକ୍ତ ହୋଇଛି, ସେହି ବର ତୁମକୁ ମିଳିବେ ॥ ୪ ॥ ଛନ୍ଦ—ଯାହାଙ୍କଠାରେ ତୁମ ମନ ଅନୁରକ୍ତ ହୋଇଯାଇଛି, ସେହି ସ୍ୱଭାବ-ସୁନ୍ଦର ଶ୍ୟାମଳବର୍ଣ୍ଣର ବର ତୁମକୁ ମିଳିବେ । ସେ କରୁଣାନିଧାନ ଓ ସର୍ବଜ୍ଞ ତୁମ ଶୀଳ ଓ ସ୍ନେହକୁ ଜାଣନ୍ତି ।" ଏହିରୂପେ ଶ୍ରୀଗୌରୀଙ୍କ ଆଶୀର୍ବାଦ ଶୁଣି ଜାନକୀ ସମେତ ସମସ୍ତ ସଖୀ ହୃଦୟରେ ଆନନ୍ଦ ଲାଭ କଲେ । ତୁଳସୀ ଦାସ କହନ୍ତି, "ଦେବୀ ଭବାନୀଙ୍କୁ ବାରମ୍ବାର ପୂଜା କରି ସୀତା ପ୍ରସନ୍ନ ମନରେ

ଜାନି ଗୌରି ଅନୁକୂଲ ସିୟ ହିୟ ହରଷୁ ନ ଜାଇ କହି ।
ମଂଜୁଲ ମଂଗଲ ମୂଲ ବାମ ଅଙ୍ଗ ଫରକନ ଲଗେ ॥୨୩୬॥

ହୃଦୟଁ ସରାହତ ସୀୟ ଲୋନାଈ । ଗୁର ସମୀପ ଗୱନେ ଦୋଉ ଭାଈ ॥
ରାମ କହା ସବୁ କୌସିକ ପାହୀଁ । ସରଲ ସୁଭାଉ ଛୁଅତ ଛଲ ନାହୀଁ ॥୧॥
ସୁମନ ପାଇ ମୁନି ପୂଜା କୀନ୍ହୀ । ପୁନି ଅସୀସ ଦୁହୁ ଭାଇନ୍ହ ଦୀନ୍ହୀ ॥
ସୁଫଲ ମନୋରଥ ହୋହୁଁ ତୁମ୍ହାରେ । ରାମୁ ଲଖନୁ ସୁନି ଭଏ ସୁଖାରେ ॥୨॥
କରି ଭୋଜନୁ ମୁନିବର ବିଗ୍ୟାନୀ । ଲଗେ କହନ କଛୁ କଥା ପୁରାନୀ ॥
ବିଗତ ଦିବସୁ ଗୁରୁ ଆୟସୁ ପାଈ । ସଂଧ୍ୟା କରନ ଚଲେ ଦୋଉ ଭାଈ ॥୩॥
ପ୍ରାଚୀ ଦିସି ସସି ଉୟଉ ସୁହାୱା । ସିୟ ମୁଖ ସରିସ ଦେଖି ସୁଖୁ ପାୱା ॥
ବହୁରି ବିଚାରୁ କୀନ୍ହ ମନ ମାହୀଁ । ସୀୟ ବଦନ ସମ ହିମକର ନାହୀଁ ॥୪॥

---

ପ୍ରସନ୍ନତା କହି ନ ହୁଏ ସୀତାଙ୍କ ଜାଣି ଗୌରୀ ଅନୁକୂଳ ।
ବାମ ଅଙ୍ଗ ହେଲା ସ୍ପନ୍ଦନ ତାହାଙ୍କ ଆନନ୍ଦ ମଙ୍ଗଳ ମୂଳ ॥୨୩୬॥

ହୃଦେ ପ୍ରଶଂସି ସୀତାଙ୍କ ସୌନ୍ଦର୍ଯ୍ୟ ବଡାଇ । ଗୁରୁ ସମୀପେ ଗମନ କଲେ ବେନି ଭାଇ ॥
ରାମ କୌଶିକଙ୍କୁ କଥା କହିଲେ ସକଳ । ସରଳ ସ୍ୱଭାବ, ସ୍ପର୍ଶ କରିନାହିଁ ଛଳ ॥୧॥
ସୁମନ ପାଇ ମୁନୀଶ ପୂଜା ଆରମ୍ଭିଲେ । ପୁଣି ଆଶୀର୍ବାଦ ଦେନି ଭାଇଙ୍କୁ କହିଲେ ॥
ସୁଫଳ ହେଉ ତୁମ୍ଭର ମନ ଅଭିଳାଷ । ଶୁଣନ୍ତେ ରାମ ଲକ୍ଷ୍ମଣ ହୋଇଲେ ଉଲ୍ଲାସ ॥୨॥
ଭୋଜନ କରଣ ମୁନିନାୟକ ବିଜ୍ଞାନୀ । ଶୁଣାଇଲେ ବସି କିଛି ପ୍ରାଚୀନ କାହାଣୀ ॥
ଦିବସ ଅନ୍ତେ ମୁନିଙ୍କ ଅନୁମତି ପାଇ । ସନ୍ଧ୍ୟା କରିବା ନିମନ୍ତେ ଗଲେ ବେନି ଭାଇ ॥୩॥
ପ୍ରାଚୀ ଦିଗେ ପ୍ରକାଶିତ ଇନ୍ଦୁ ମନୋରମ । ଦେଖି ପ୍ରଭୁ ସୁଖୀ ହେଲେ ସୀତା ମୁଖସମ ॥
ମନ ମଧ୍ୟରେ ବିଚାର କରନ୍ତି ଆବର । ସୀତାଙ୍କ ବଦନ ତୁଲ୍ୟ ନୁହେଁ ହିମକର ॥୪॥

---

ସଖୀମାନଙ୍କ ସହିତ ରାଜମହଲକୁ ଫେରି ଆସିଲେ ॥ ସୋରଠା —ଗୌରୀ ଅନୁକୂଳ, ଏହା ଅନୁଭବ କରି ସୀତା ହୃଦୟରେ ଅପାର ଆନନ୍ଦ ଲାଭ କଲେ । ସେ ଆନନ୍ଦ ଭାଷାରେ ବର୍ଣ୍ଣନା କରାଯାଇ ପାରିବ ନାହିଁ । ମଞ୍ଜୁଳ ମଙ୍ଗଳର ମୂଳକାରଣ ତାଙ୍କର ବାମ ଅଙ୍ଗରେ ଘନ ଘନ ସ୍ଫୁରଣ ହେବାକୁ ଲାଗିଲା ॥୨୩୬॥ ଚୌପାଇ —ହୃଦୟ ମଧ୍ୟରେ ସୀତାଙ୍କ ସୌନ୍ଦର୍ଯ୍ୟର ପ୍ରଶଂସା କରି ଦୁଇ ଭାଇ ଗୁରୁଙ୍କ ନିକଟକୁ ଗଲେ । ଶ୍ରୀରାମଙ୍କ ସ୍ୱଭାବ ଅତି ସରଳ, ଛଳକପଟ ସେ ସ୍ୱଭାବକୁ ସ୍ପର୍ଶ କରିନାହିଁ । ତେଣୁ ସେ ବିଶ୍ୱାମିତ୍ରଙ୍କୁ ସବୁ କଥା ଖୋଲିଖୋଲି ଭାବରେ କହିଦେଲେ ॥୧॥ ଫୁଲ ପାଇ ମୁନି ପୂଜା କଲେ । ତଦନନ୍ତର ସେ "ତୁମ ମନୋରଥ ସଫଳ ହେଉ" ବୋଲି ଦୁଇ ଭାଇଙ୍କୁ ଆଶୀର୍ବାଦ ଦେଲେ । ଏହା ଶୁଣି ଶ୍ରୀରାମ-ଲକ୍ଷ୍ମଣ ସୁଖୀ ହେଲେ ॥ ୨ ॥ ବିଜ୍ଞାନୀ ମୁନିବର ଭୋଜନ କରି କେତେକ ପୁରାତନ କଥା କହିବାରେ ଲାଗିଲେ । ଇତି ମଧ୍ୟରେ ଦିନର ଅବସାନ ଘଟିଲା ଏବଂ ଗୁରୁଙ୍କ ଆଜ୍ଞା ପାଇ ଦୁଇ ଭାଇ ସନ୍ଧ୍ୟା କରିବାକୁ ଚାଲିଲେ ॥ ୩ ॥ ତେଣେ ପୂର୍ବ ଦିଗରେ

ଜନମୁ ସିଂଧୁ ପୁନି ବଂଧୁ ବିଷୁ ଦିନ ମଲୀନ ସକଲଂକ ।
ସିୟ ମୁଖ ସମତା ପାଓ କିମି ଚଂଦୁ ବାପୁରୋ ରଂକ ॥୨୩୭॥
ଘଟଇ ବଢ଼ଇ ବିରହିନି ଦୁଖଦାଈ । ଗ୍ରସଇ ରାହୁ ନିଜ ସଂଧିହିଁ ପାଈ ॥
କୋକ ସୋକପ୍ରଦ ପଂକଜ ଦ୍ରୋହୀ । ଅବଗୁନ ବହୁତ ଚନ୍ଦ୍ରମା ତୋହୀ ॥୧॥
ବୈଦେହୀ ମୁଖ ପଟତର ଦୀନ୍ହେ । ହୋଇ ଦୋଷୁ ବଡ଼ ଅନୁଚିତ କୀନ୍ହେ ॥
ସିୟ ମୁଖ ଛବି ବିଧୁ ବ୍ୟାଜ ବଖାନୀ । ଗୁର ପହିଁ ଚଲେ ନିସା ବଡ଼ି ଜାନୀ ॥୨॥
କରି ମୁନି ଚରନ ସରୋଜ ପ୍ରନାମା । ଆୟସୁ ପାଇ କୀନ୍ହ ବିଶ୍ରାମା ॥
ବିଗତ ନିସା ରଘୁନାୟକ ଜାଗେ । ବନ୍ଧୁ ବିଲୋକି କହନ ଅସ ଲାଗେ ॥୩॥

---

ସିନ୍ଧୁରୁ ଜନମ ବିଷ ବନ୍ଧୁ ପୁଣ ଦିନେ ମ୍ଳାନ ସକଳଙ୍କ ।
ସୀତା ମୁଖପରି ହୋଇବ କପରି ଚନ୍ଦ୍ରମା ବାପୁଡ଼ା ରଙ୍କ ॥୨୩୭॥
ଛୁଟଇ ବଢଇ ବିରହିଣୀ ଦୁଃଖ-ଦାୟୀ । ଗ୍ରାସଇ ରାହୁ ଆପଣା ଅଭିସନ୍ଧି ପାଇ ॥
ଚକ୍ରବାକ ଶୋକପ୍ରଦ ପଦ୍ମ-ଦ୍ରୋହୀ ଅଟ । ବହୁ ଅବଗୁଣେ ପୂର୍ଣ୍ଣ ଅଟେ ନିଶାପତି ।୧॥
ବଇଦେହୀ ମୁଖ ସଙ୍ଗେ ପଟାନ୍ତର ଦେଲି । ଅନୁଚିତ କରି ବଡ ଅପରାଧୀ ହେଲି ॥
ବିଧୁ ଛଳରେ ସୀତାଙ୍କ ମୁଖ ଛବି ଭଣି । ଗୁରୁ ପାଶେ ଗଲେ ବହୁ ନିଶା ହେଲା ମଣି ॥୨॥
କରି ମୁନିଙ୍କ ଚରଣ-ସରୋଜେ ପ୍ରଣାମ । ଆଦେଶ ପାଇ ଆବର କରିଲେ ବିଶ୍ରାମ ॥
ରାତି ଅନ୍ତେ ରଘୁମଣି ଜାଗ୍ରତ ହୋଇଲେ । ଭାଇଙ୍କୁ ଚାହିଁ ଏମନ୍ତ ବଚନ କହିଲେ ॥୩॥

---

ଚନ୍ଦ୍ର ଉଦିତ ହେଲେ । ଶ୍ରୀରାମଚନ୍ଦ୍ର ତାହାଙ୍କୁ ସୀତାଙ୍କ ମୁଖସମାନ ଦେଖି ଆନନ୍ଦ ଲାଭ କଲେ । ପୁଣି ମନରେ ବିଚାର କଲେ, ଏ ଚନ୍ଦ୍ରମା ସୀତାଙ୍କ ମୁଖ ସମାନ ନୁହେଁ ॥ ୪ ॥
ଦୋହା —ଲବଣାକ୍ତ ସମୁଦ୍ରରେ ତ ଏହାର ଜନ୍ମ, ପୁଣି ସେହି ସମୁଦ୍ରରୁ ଉତ୍ପନ୍ନ ହୋଇଥିବାରୁ ବିଷ ଏହାର ଭାଇ, ଦିନରେ ଏ ମଳିନ (ଶୋଭାହୀନ, ନିସ୍ତେଜ) ଏବଂ କଳଙ୍କଯୁକ୍ତ । ବିଚରା ଚନ୍ଦ୍ର ସୀତାଙ୍କ ମୁଖର ସମାନତା କାହିଁ ଲାଭ କରିପାରିବ ? ॥ ୨୩୭ ॥ ଦୋହା —ପୁନଶ୍ଚ ଏହାର କ୍ଷୟବୃଦ୍ଧି ହେଉଛି ଏବଂ ବିରହିଣୀ ସ୍ତ୍ରୀମାନଙ୍କ ପ୍ରତି ଏ ଦୁଃଖଦାୟକ, ରାହୁ ବେଳ ଦେଖି ଏହାକୁ ପାଇ ଗ୍ରାସ କରିପକାଏ । ଚକ୍ରବାକଙ୍କୁ ତାହାର ପ୍ରିୟାଠାରୁ ବିରହ ଘଟାଇ ଶୋକ ଦିଏ । ଏ କମଳର ଶତ୍ରୁ, କାରଣ ତାହାକୁ ମଉଳାଇ ଦିଏ । ହେ ଚନ୍ଦ୍ରମା ! ତୋଠାରେ ଅବଗୁଣ ବହୁତ । (ସେଥି ମଧ୍ୟରୁ ଗୋଟିଏ ହେଲେ ଅବଗୁଣ ସୀତାଠାରେ ନାହିଁ) ॥ ୧ ॥ ଅତଏବ ଜାନକୀଙ୍କ ମୁଖର ଉପମା ତୋ ସହିତ ଦେବା ବଡ ଅନୁଚିତ କାର୍ଯ୍ୟ । ଏଥିରେ ମୋତେ ବଡ ଦୋଷ ଲାଗିବ । ଏହି ରୂପେ ଚନ୍ଦ୍ରମା ବ୍ୟପଦେଶ (ଛଳ)ରେ ସୀତାଙ୍କ ମୁଖଛବି ବର୍ଣ୍ଣନା କରୁ କରୁ ରାତି ବହୁତ ହୋଇଗଲା । ଏହା ଜାଣି ପ୍ରେମ ନେ ଗୁରୁଙ୍କ ନିକଟକୁ ଚାଲିଲେ ॥୨॥ ମୁନିଙ୍କ ଚରଣ-କମଳରେ ପ୍ରଣାମପୂର୍ବକ ତାଙ୍କ ଆଜ୍ଞା ପାଇ ସେ ଦୁହେଁ ବିଶ୍ରାମ କଲେ । ରାତି ପାହିବାରୁ ଶ୍ରୀ ରଘୁନାଥ ଶଯ୍ୟା ତ୍ୟାଗ କଲେ ଏବଂ ଭାଇଙ୍କୁ ଦେଖି

ଉୟଉ ଅରୁନ ଅବଲୋକହୁ ତାତା । ପଙ୍କଜ କୋକ ଲୋକ ସୁଖଦାତା ॥
ବୋଲେ ଲଖନୁ ଜୋରି ଜୁଗ ପାନୀ । ପ୍ରଭୁ ପ୍ରଭାଉ ସୂଚକ ମୃଦୁ ବାନୀ ॥୪॥
ଅରୁନୋଦୟଁ ସକୁଚେ କୁମୁଦ ଉଡଗନ ଜୋତି ମଲୀନ ।
ଜିମି ତୁମ୍ହାର ଆଗମନ ସୁନି ଭଏ ନୃପତି ବଲହୀନ ॥୨୩୮॥
ନୃପ ସବ ନଖତ କରହିଁ ଉଜିଆରୀ । ଟାରି ନ ସକହିଁ ଚାପ ତମ ଭାରୀ ॥
କମଲ କୋକ ମଧୁକର ଖଗ ନାନା । ହରଷେ ସକଲ ନିସା ଅବସାନା ॥୧॥
ଐସେହିଁ ପ୍ରଭୁ ସବ ଭଗତ ତୁମ୍ହାରେ । ହୋଇହହିଁ ଟୂଟେଁ ଧନୁଷ ସୁଖାରେ ॥
ଉୟଉ ଭାନୁ ବିନୁ ଶ୍ରମ ତମ ନାସା । ଦୁରେ ନଖତ ଜଗ ତେଜୁ ପ୍ରକାସା ॥୨॥
ରବି ନିଜ ଉଦୟ ବ୍ୟାଜ ରଘୁରାୟା । ପ୍ରଭୁ ପ୍ରତାପୁ ସବ ନୃପନ୍ହ ଦିଖାୟା ॥
ତବ ଭୁଜ ବଲ ମହିମା ଉଦଘାଟୀ । ପ୍ରଗଟୀ ଧନୁ ବିଘଟନ ପରିପାଟୀ ॥୩॥

---

ଉଦିତ ହେଲେ ଆଦିତ୍ୟ ଅବଲୋକ ତାତା । ସରୋରୁହ ଚକ୍ରବାକ ଲୋକ ସୁଖଦାତା ॥
ଭାଷିଲେ ସୁମିତ୍ରା ସୁତ ଯୋଡି ଯୁଗ୍ମ ପାଣି । ପ୍ରଭୁ ପ୍ରଭାବ-ସୂଚକ ମୃଦୁ ମଞ୍ଜୁ ବାଣୀ ॥୪॥
ଉଦୟେ ଆଦିତ୍ୟ କୁମୁଦ ମୁଦ୍ରିତ ତାରାଙ୍କ ଜ୍ୟୋତି ମଳିନ ।
ତୁମ୍ଭ ଆଗମନ ଶୁଣନ୍ତେ ଯେସନ ନୃପେ ହେଲେ ବଳହୀନ ॥୨୩୮॥
ନୃପ ନକ୍ଷତ୍ର ସମୂହ ଆଲୋକ କରନ୍ତି । ଚାପ ଅନ୍ଧକାର ଭାରି ଟାଳି ନ ପାରନ୍ତି ॥
ବହୁ ଖଗ ଚକ୍ରବାକ ମଧୁପ କମଳ । ନିଶା ଅବସାନେ ସୁଖୀ ହୁଅନ୍ତି ସକଳ ॥୧॥
ଏହିପରି ପ୍ରଭୁ ଯେତେ ତୁମ୍ଭ ଭକ୍ତ-ବୃନ୍ଦ । ଚାପ ଖଣ୍ଡନ ହୁଅନ୍ତେ ହୋଇବେ ଆନନ୍ଦ ॥
ସୂର୍ଯ୍ୟ ଉଦୟେ ସହଜେ ତମ ହେଲା ନାଶ । ଲୁଚିଲେ ନକ୍ଷତ୍ର, ତେଜେ ଜଗତ ପ୍ରକାଶ ॥୨॥
ରବି ରଘୁରାଜ, ନିଜ ଉଦୟ ଛଳରେ । ପ୍ରଭୁ ପ୍ରତାପ ଦେଖାଏ ନୃପଙ୍କ ଆଗରେ ॥
ଉଦ୍‌ଘାଟନେ ତୁମ୍ଭ ଭୁଜ ପରାକ୍ରମ ବଳ । ବିଧାନ ହୋଇଛି ଧନୁ ଭଞ୍ଜନ କୌଶଳ ॥୩॥

---

କହିବାକୁ ଲାଗିଲେ— ॥ ୩ ॥ "ବାପ ରେ ! ଦେଖ, କମଳ, ଚକ୍ରବାକ ଓ ସମସ୍ତ ସଂସାରର ସୁଖଦାୟକ ବାଲରବି ଉଦିତ ହେଲେଣି ।" ଲକ୍ଷ୍ମଣ ଦୁଇ ହାତ ଯୋଡି ପ୍ରଭୁଙ୍କ ପ୍ରଭାବ ସୂଚାଇ କୋମଳ ବାଣୀରେ କହିଲେ— ॥ ୪ ॥ ଦୋହା —ଅରୁଣୋଦୟ ହେବାରୁ କୁମୁଦମାନ ସଙ୍କୁଚିତ ହୋଇଗଲେ ଏବଂ ଆପଣଙ୍କ ଆଗମନରେ ସମସ୍ତ ରାଜା ବଳହୀନ ହେଲାପରି ତାରାଗଣଙ୍କ ପ୍ରକାଶ ମଧ୍ୟ ନଷ୍ଟପ୍ରାୟ ହୋଇପଡିଲା ॥ ୨୩୮ ॥ ଚୌପାଇ —ରାଜାମାନେ ନକ୍ଷତ୍ରଗଣ ପରି ମନ୍ଦ ପ୍ରକାଶ କରନ୍ତି ସତ, କିନ୍ତୁ ସେମାନେ ଧନୁରୂପୀ ମହାନ୍ ଅନ୍ଧକାରକୁ ଟାଳିପାରିବେ ନାହିଁ । ରାତ୍ରି ଶେଷରେ ଯେପରି କମଳ, ଚକ୍ରବାକ, ଭ୍ରମର ଓ ନାନାପ୍ରକାର ପକ୍ଷୀ ଆନନ୍ଦିତ ହୁଅନ୍ତି, ସେହିପରି ହେ ପ୍ରଭୋ ! ଆପଣଙ୍କର ସମସ୍ତ ଭକ୍ତ ଧନୁଭଙ୍ଗ ଯୋଗେ ସୁଖୀ ହେବେ । ସହଜ ସ୍ୱାଭାବିକ ଭାବରେ ସୂର୍ଯ୍ୟୋଦୟ ହେଲା ଏବଂ ବିନା ପରିଶ୍ରମରେ ଅନ୍ଧକାର ନଷ୍ଟ ହୋଇଗଲା । ତାରାମାନେ ଲୁଚିଗଲେ । ସଂସାରରେ ତେଜର ପ୍ରକାଶ ବ୍ୟାପିଗଲା ॥ ୧-୨ ॥ ହେ ରଘୁନାଥଜୀ !

ବନ୍ଧୁ ବଚନ ସୁନି ପ୍ରଭୁ ମୁସୁକାନେ । ହୋଇ ସୁଚି ସହଜ ପୁନୀତ ନହାନେ ॥
ନିତ୍ୟକ୍ରିୟା କରି ଗୁରୁ ପହିଁ ଆଏ । ଚରନ ସରୋଜ ସୁଭଗ ସିର ନାଏ ॥୩॥
ସତାନନ୍ଦୁ ତବ ଜନକ ବୋଲାଏ । କୌସିକ ମୁନି ପହିଁ ତୁରତ ପଠାଏ ॥
ଜନକ ବିନୟ ତିନ୍ହ ଆଇ ସୁନାଈ । ହରଷେ ବୋଲି ଲିଏ ଦୋଉ ଭାଈ ॥୪॥
ସତାନନ୍ଦ ପଦ ବନ୍ଦି ପ୍ରଭୁ ବୈଠେ ଗୁରୁ ପହିଁ ଜାଇ ।
ଚଲହୁ ତାତ ମୁନି କହେଉ ତବ ପଠୱା ଜନକ ବୋଲାଇ ॥୨୩୯॥

## ମାସପାରାୟଣ, ଅଷ୍ଟମ ବିଶ୍ରାମ
## ନବାହ୍ନପାରାୟଣ, ଦ୍ୱିତୀୟ ବିଶ୍ରାମ

ସୀୟ ସ୍ୱୟଂବରୁ ଦେଖିଅ ଜାଈ । ଈସୁ କାହି ଧୌଁ ଦେଇ ବଡାଈ ॥
ଲଖନ କହା ଜସ ଭାଜନୁ ସୋଈ । ନାଥ କୃପା ତବ ଜା ପର ହୋଈ ॥୧॥

---

ପ୍ରଭୁ ମୁରୁକିଲେ ଶୁଣି ଅନୁଜ ବଚନ । ଶୁଚି ହୋଇ ସ୍ନାନ କଲେ ସହଜେ ପାବନ ॥
ନିତ୍ୟ କ୍ରିୟା କରି ପୁଣି ଆସି ଗୁରୁ ଆଗେ । ପଦ-ସରୋଜେ ପ୍ରଣାମ କଲେ ସାନୁରାଗେ ॥୩॥
ଶତାନନ୍ଦଙ୍କୁ ଜନକ ତହୁଁ ଡକାଇଲେ । କୌଶିକ ମୁନିଙ୍କ ପାଶେ ଶୀଘ୍ର ପଠାଇଲେ ॥
ଶୁଣାନ୍ତେ ସେ ଆସି ନୃପ ବିନୟ ମୁନିଙ୍କୁ । ହରଷେ ମୁନି ଡାକିଲେ ଉଭୟ ଭାଇଙ୍କୁ ॥୪॥
ଶତାନନ୍ଦ ପଦ ବନ୍ଦି ରାମଚନ୍ଦ୍ର ବସନ୍ତେ ଗୁରୁଙ୍କ କତି ।
ଭାଷିଲେ ମୁନୀଶ ଚାଲିଯିବା ବତ୍ସ; ଜନକ ଡକାଇଛନ୍ତି ॥୨୩୯॥
ସୀତା ସ୍ୱୟମ୍ବର ତହିଁ ବିଲୋକିବା ଯାଇ । ଈଶ୍ୱର କାହାକୁ ଦେଉଅଛନ୍ତି ବଡାଇ ॥
ଲକ୍ଷ୍ମଣ କହିଲେ, ଯଶଭାଜନ ସେ ହେବ । ଯା'ଉପରେ ଦେବ ! ତୁମ୍ଭେ କୃପା-ଦୃଷ୍ଟି ଦେବ ॥୧॥

---

ସୂର୍ଯ୍ୟ ତାଙ୍କର ଉଦୟ ଛଳରେ ସମସ୍ତ ରାଜାଙ୍କୁ ପ୍ରଭୁ (ଆପଣ)ଙ୍କ ପ୍ରତାପ ଦେଖାଇ ଅଛନ୍ତି । ଆପଣଙ୍କ ବାହୁବଳ-ମହିମାର ଉଦ୍‌ଘାଟନ ନିମନ୍ତେ ଧନୁଭଙ୍ଗର ଏ ପଦ୍ଧତି ଅନୁଷ୍ଠିତ ହୋଇଅଛି । ୩ ॥ ଭାଇଙ୍କର ବଚନ ଶୁଣି ପ୍ରଭୁ ହସିଲେ । ଅନନ୍ତର ସ୍ୱଭାବ-ପବିତ୍ର ଶ୍ରୀରାମ ଶୌଚାଦି କର୍ମ ସମାପନ କରି ସ୍ନାନ କଲେ ଏବଂ ନିତ୍ୟକର୍ମ ସାରି ସେ ଗୁରୁଙ୍କ ନିକଟକୁ ଆସିଲେ । ଆସି ଗୁରୁଙ୍କ ସୁନ୍ଦର ଚରଣ-କମଳରେ ସେ ମୁଣ୍ଡ ନୁଆଇଲେ ॥ ୪ ॥ ତତ୍ପରେ ଜନକ ଶତାନନ୍ଦଙ୍କୁ ଡକାଇଲେ ଏବଂ ତାହାଙ୍କୁ ତୁରନ୍ତ ବିଶ୍ୱାମିତ୍ର ମୁନିଙ୍କ ନିକଟକୁ ପଠାଇଲେ । ସେ ଆସି ବିଶ୍ୱାମିତ୍ରଙ୍କୁ ଜନକଙ୍କ ବିନତି ଶୁଣାଇଲେ । ବିଶ୍ୱାମିତ୍ର ଆନନ୍ଦିତ ହୋଇ ଦୁଇ ଭାଇଙ୍କୁ ଡକାଇଲେ ॥ ୫ ॥ ଦୋହା '– ଶତାନନ୍ଦଙ୍କ ଚରଣ ବନ୍ଦନାପୂର୍ବକ ପ୍ରଭୁ ଶ୍ରୀରାମଚନ୍ଦ୍ର ଗୁରୁଙ୍କ ପାଖରେ ଯାଇ ବସିଲେ । ତତ୍ପରେ ମୁନି କହିଲେ, ବାପାମାନେ ଚାଲ, ଜନକ ରାଜା ଡକାଇ ପଠାଇଛନ୍ତି ॥ ୨୩୯ ॥ ଚୌପାଇ '—ଚାଲ, ଆଜି ସୀତା-ସ୍ୱୟମ୍ବର ଦେଖିଯିବା । ଦେଖିବା, ଈଶ୍ୱର କାହାକୁ ଯଶ ଦେଉଅଛନ୍ତି । ଲକ୍ଷ୍ମଣ କହିଲେ, "ହେ ନାଥ ! ଯାହା ଉପରେ ଆପଣଙ୍କ କୃପା

ହରଷେ ମୁନି ସବ ସୁନି ବର ବାନୀ । ଦୀନ୍ହି ଅସୀସ ସବହିଁ ସୁଖୁ ମାନୀ ॥
ପୁନି ମୁନିବୃନ୍ଦ ସମେତ କୃପାଲା । ଦେଖନ ଚଲେ ଧନୁଷ ମଖସାଲା ॥୨॥
ରଂଗଭୂମି ଆଏ ଦୋଉ ଭାଈ । ଅସି ସୁଧି ସବ ପୁରବାସିନ୍ହ ପାଈ ॥
ଚଲେ ସକଲ ଗୃହକାଜ ବିସାରୀ । ବାଲ ଜୁବାନ ଜରଠ ନର ନାରୀ ॥୩॥
ଦେଖୀ ଜନକ ଭୀର ଭୈ ଭାରୀ । ସୁଚି ସେବକ ସବ ଲିଏ ହଁକାରୀ ॥
ତୁରତ ସକଲ ଲୋଗନ୍ହ ପହିଁ ଜାହୂ । ଆସନ ଉଚିତ ଦେହୂ ସବ କାହୂ ॥୪॥

କହି ମୃଦୁ ବଚନ ବିନୀତ ତିନ୍ହ ବୈଠାରେ ନର ନାରି ।
ଉତ୍ତମ ମଧ୍ୟମ ନୀଚ ଲଘୁ ନିଜ ନିଜ ଥଲ ଅନୁହାରି ॥୨୪୦॥

ରାଜକୁଅଁର ତେହି ଅବସର ଆଏ । ମନହୁଁ ମନୋହରତା ତନ ଛାଏ ॥
ଗୁନସାଗର ନାଗର ବର ବୀରା । ସୁନ୍ଦର ସ୍ୟାମଲ ଗୌର ସରୀରା ॥୧॥

---

ଶୁଣି ପ୍ରିୟବାଣୀ ଆନନ୍ଦିତ ମୁନିବୃନ୍ଦେ । ଆଶୀର୍ବାଦ ଦେଲେ ଅତି ସୁଖ ଲଭି ହୃଦେ ॥
ତହୁଁ ମୁନିମଣ୍ଡଳୀଙ୍କୁ ଘେନି କୃପାକର । ଧନୁଯଜ୍ଞ ଦେଖିବାକୁ ଚଳିଲେ ସାଦର ॥୨॥
ରଙ୍ଗ ଅବନୀକୁ ଆସିଛନ୍ତି ଦୁଇ ଭାଇ । ଏହି ସମାଚାର ସର୍ବେ ପୁରବାସୀ ପାଇ ॥
ଚଳିଲେ ପାଶୋରି ନିଜ ନିଜ ଗୃହ ଧନ୍ଦା । ବାଳକ ଜରା ଯୁବକ ପୁରୁଷ ପ୍ରମଦା ॥୩॥
ଦେଖି ଜନକ ଜନଙ୍କ ଭିଡ ଅତିଶୟ । ହକାରି ଆଣି ନିପୁଣ ସେବକନିଚୟ ॥
କହିଲେ, ଚଞ୍ଚଳ ଯାଇ ଲୋକଙ୍କ ପାଶକୁ । ଯଥା ଉଚିତ ଆସନ ଦିଅ ସମସ୍ତଙ୍କୁ ॥୪॥

ମୃଦୁବାଣୀ କହି ସେମାନେ ବିନୟୀ ବସାଇଲେ ନରନାରୀ ।
ଉତ୍ତମ ମଧ୍ୟମ ନୀଚ କ୍ଷୁଦ୍ର ଜନ ଯେ ଯଥାଯୋଗ୍ୟ ବିଚାରି ॥୨୪୦॥

ସେକାଳେ ରାଜକୁମର ଦୁହେଁ ଉପସ୍ଥିତ । ଯେସନେ ମନୋହରତା ସୁଅଙ୍ଗେ ଶୋଭିତ ॥
ଗୁଣ-ସାଗର ନାଗର ଦୁହେଁ ଶ୍ରେଷ୍ଠ ବୀର । ଅତି ସୁନ୍ଦର ଶ୍ୟାମଳ ଗଉର ଶରୀର ॥୧॥

---

ହେବ, ଯଶ ଓ ଗୌରବର ପାତ୍ର ସେହି ହେବ । (ଅର୍ଥାତ୍ ଧନୁଭଙ୍ଗ କରି ପାରିବାର ଶ୍ରେୟ ସେହି ଲାଭ କରିବ) ॥ ୧ ॥ ଏହି ଶ୍ରେଷ୍ଠ ବାଣୀ ଶୁଣି ସମସ୍ତ ମୁନି ପ୍ରସନ୍ନ ହେଲେ । ସମସ୍ତେ ଏ ସୁଖମୟୀ ବାଣୀ ଶୁଣି ଦୁଇ ଭାଇଙ୍କୁ ଆଶୀର୍ବାଦ ଦେଲେ । ଅନନ୍ତର ମୁନିବୃନ୍ଦଙ୍କ ସହିତ କୃପାଳୁ ଶ୍ରୀରାମଚନ୍ଦ୍ର ଧନୁଯଜ୍ଞଶାଳା ଦେଖିବାକୁ ଗଲେ ॥ ୨ ॥ ଦୁଇ ଭାଇ ରଙ୍ଗଭୂମିଠାକୁ ଆସିଅଛନ୍ତି । ଏହି ଖବର ନଗରବାସୀମାନେ ପାଇବା ମାତ୍ରେ ବାଳକ, ଯୁବକ, ବୃଦ୍ଧ, ନର, ନାରୀ ସମସ୍ତେ ଗୃହ ଏବଂ ଗୃହକର୍ମ ଭୁଲି ଦୌଡି ଚାଲିଲେ ॥ ୩ ॥ ବହୁତ ଜନସମାଗମ ଦେଖି ଜନକରାଜା ସମସ୍ତ ବିଶ୍ୱସ୍ତ ଓ ପବିତ୍ର ସେବକଙ୍କୁ ଡକାଇ ନେଲେ ଏବଂ କହିଲେ, "ତୁମ୍ଭେମାନେ ତୁରନ୍ତ ସମସ୍ତ ନିମନ୍ତ୍ରିତ ଭଦ୍ରବ୍ୟକ୍ତିଙ୍କ ନିକଟକୁ ଯାଅ ଏବଂ ସମସ୍ତଙ୍କୁ ଯଥାଯୋଗ୍ୟ ଆସନ ଦିଅ ॥ ୪ ॥ ଦୋହା !—ସେହି ସେବକଗଣ କୋମଳ ଓ ବିନମ୍ର ବଚନ କହି ଉତ୍ତମ, ମଧ୍ୟମ, ନିମ୍ନ ଓ ଲଘୁ, ସମସ୍ତ ଶ୍ରେଣୀର ନରନାରୀଙ୍କୁ ସେମାନଙ୍କ ଯଥାଯୋଗ୍ୟ ଆସନରେ ବସାଇଲେ ॥ ୨୪୦ ॥ ଚୌପାଇ :-

ରାଜ ସମାଜ ବିରାଜତ ରୂରେ । ଉଡଗନ ମହୁଁ ଜନୁ ଜୁଗ ବିଧୁ ପୂରେ ॥
ଜିନ୍ହ କେଁ ରହୀ ଭାବନା ଜୈସୀ । ପ୍ରଭୁ ମୂରତି ତିନ୍ହ ଦେଖୀ ତୈସୀ ॥୨॥
ଦେଖହିଁ ରୂପ ମହା ରନଧୀରା । ମନହୁଁ ବୀରରସୁ ଧରେଁ ସରୀରା ॥
ଡରେ କୁଟିଲ ନୃପ ପ୍ରଭୁହି ନିହାରୀ । ମନହୁଁ ଭୟାନକ ମୂରତି ଭାରୀ ॥୩॥
ରହେ ଅସୁର ଛଲ ଛୋନିପ ବେଷା । ତିନ୍ହ ପ୍ରଭୁ ପ୍ରଗଟ କାଲସମ ଦେଖା ॥
ପୁରବାସିନ୍ହ ଦେଖେ ଦୋଉ ଭାଈ । ନରଭୂଷନ ଲୋଚନ ସୁଖଦାଈ ॥୪॥

ନାରି ବିଲୋକହିଁ ହରଷି ହିୟଁ ନିଜ ନିଜ ରୁଚି ଅନୁରୂପ ।
ଜନୁ ସୋହତ ସିଂଗାର ଧରି ମୂରତି ପରମ ଅନୂପ ॥୨୪୧॥

ବିଦୁଷନ୍ହ ପ୍ରଭୁ ବିରାଟମୟ ଦୀସା । ବହୁ ମୁଖ କର ପଗ ଲୋଚନ ସୀସା ॥
ଜନକ ଜାତି ଅବଲୋକହିଁ କୈସେଁ । ସଜନ ସଗେ ପ୍ରିୟ ଲାଗହିଁ ଜୈସେଁ ॥୧॥

---

ରାଜ ସମାଜେ ରୁଚିର ରାଜନ୍ତି କେମନ । ତାରାଗଣ ମଧ୍ୟେ ଯୁଗ୍ମ ପୂର୍ଣ୍ଣେନ୍ଦୁ ଯେସନ ॥
ଯାହାଙ୍କ ମନରେ ଥିଲା ଭାବନା ଯେପରି । ପ୍ରଭୁଙ୍କ ମୂର୍ତ୍ତି ସେମାନେ ଦେଖିଲେ ସେପରି ॥୨॥
ମହୀପେ ଦେଖନ୍ତି ଯେହ୍ନେ ମହାରଣଧୀର । ପ୍ରତେ ତାଙ୍କୁ ବୀର ରସ ଧରି କି ଶରୀର ॥
କୁଟିଳ ନୃପେ ପ୍ରଭୁଙ୍କୁ ବିଲୋକି ଡରନ୍ତି । ତାଙ୍କୁ ଦୃଶ୍ୟ ହୁଏ ରୂପ ଭୟଙ୍କର ଅତି ॥୩॥
ଛଳ କରି ନୃପବେଶେ ଅସୁର ଯେ ଥିଲେ । ପ୍ରତ୍ୟକ୍ଷେ ସେ କାଳସମ ପ୍ରଭୁଙ୍କୁ ଦେଖିଲେ ॥
ଦେଖନ୍ତି ବେନି ଭାଇଙ୍କୁ ପୁରବାସୀ ଜନେ । ଲୋଚନ-ସୁଖଦ ନର-ଭୂଷଣ ଯେସନେ ॥୪॥

ନାରୀ ନିଜ ନିଜ ରୁଚି ଅନୁସାରେ ହରଷ ହୃଦେ ଦେଖନ୍ତି ।
ଶୃଙ୍ଗାର ଯେପରି ଶୋଭା ପାଏ ଧରି ମୂର୍ତ୍ତି ଅନୁପମ ଅତି ॥୨୪୧॥

ବିଦୁଷେ ବିରାଟ ରୂପ କଲେ ଦରଶନ । ବହୁ କର ପଦ ଶିର ନୟନ ବଦନ ॥
ଜନକଙ୍କ ଜାତି ବନ୍ଧୁ ଦେଖନ୍ତି କେମନ୍ତ । ଆତ୍ମୀୟ ସ୍ୱଜନ ପ୍ରିୟ ଲାଗଇ ଯେମନ୍ତ ॥୧॥

---

ସେହି ସମୟରେ ରାଜକୁମାର ଦୁହେଁ (ରାମ ଓ ଲକ୍ଷ୍ମଣ) ସେଠାକୁ, ଆସିଲେ । ସତେ ଯେମିତି ମନୋହରତା ଦୁହିଁଙ୍କ ଶରୀରକୁ ଆଚ୍ଛାଦିତ କରି, ରହିଛି । ଦୁହିଙ୍କର ସୁନ୍ଦର, ଶ୍ୟାମଳ ଓ ଗୌର ଶରୀର । ଉଭୟେ ଗୁଣର ସାଗର, ଚତୁର ଏବଂ ଶ୍ରେଷ୍ଠ ବୀର ॥ ୧ ॥ ସେମାନେ ରାଜାମାନଙ୍କ ମଧ୍ୟରେ ଏପରି ଶୋଭା ପାଉଅଛନ୍ତି, ସତେ ଯେମିତି ତାରାଗଣଙ୍କ ମଧ୍ୟରେ ଦୁଇଟି ପୂର୍ଣ୍ଣଚନ୍ଦ୍ର ସୁଶୋଭିତ । ଯାହାର ଯେମିତି ଭାବନା ଥିଲା, ସେ ସେହିପରି ଭାବରେ ପ୍ରଭୁଙ୍କ ମୂର୍ତ୍ତି ଦେଖିଲା ॥ ୨ ॥ ମହାନ୍ ରଣଧୀର ନୃପଗଣ ଶ୍ରୀରାମଙ୍କ ରୂପରେ ବୀରରସ ମୂର୍ତ୍ତିମନ୍ତ ହୋଇଥିଲା ପରି ଦର୍ଶନ କରୁଥା'ନ୍ତି । କୁଟିଳ ରାଜା-ମାନେ ପ୍ରଭୁଙ୍କୁ ଦେଖି ଡରିଗଲେ । ସତେ ଯେମିତି ପ୍ରଭୁ ସେମାନଙ୍କ ପକ୍ଷରେ ଗୋଟିଏ ଭୟାନକ ମୂର୍ତ୍ତି ॥ ୩ ॥ ଛଦ୍ମ-ନୃପବେଶରେ ଅନେକ ରାକ୍ଷସ ସେଠାରେ ବସିଥିଲେ । ସେମାନେ ପ୍ରଭୁଙ୍କୁ ପ୍ରତ୍ୟକ୍ଷ କାଳରୂପେ ଦେଖିଲେ । ନଗରବାସୀମାନେ ଦୁଇ ଭାଇଙ୍କୁ ନରଭୂଷଣ ଏବଂ ଲୋଚନ-ସୁଖଦାୟକ ବାଳକ ରୂପେ ଦର୍ଶନ କଲେ ॥ ୪ ॥

ସହିତ ବିଦେହ ବିଲୋକହିଁ ରାନୀ । ସିସୁ ସମ ପ୍ରୀତି ନ ଜାତି ବଖାନୀ ॥
ଜୋଗିହ୍ନ ପରମ ତତ୍ତ୍ୱ-ମୟ ଭାସା । ସାନ୍ତ ସୁଦ୍ଧ ସମ ସହଜ ପ୍ରକାସା ॥୨॥
ହରିଭଗତହ୍ନ ଦେଖେ ଦୋଉ ଭ୍ରାତା । ଇଷ୍ଟଦେବ ଇବ ସବ ସୁଖ ଦାତା ॥
ରାମହି ଚିତଓ୍ୱ ଭାୟଁ ଜେହି ସୀୟା । ସୋ ସନେହୁ ସୁଖୁ ନହିଁ କଥନୀୟା ॥୩॥
ଉର ଅନୁଭବତି ନ କହି ସକ ସୋଊ । କଓ୍ୱନ ପ୍ରକାରେ କହୈ କବି କୋଊ ॥
ଏହି ବିଧି ରହା ଜାହି ଜସ ଭାଊ । ତେହିଁ ତସ ଦେଖେଉ କୋସଲରାଊ ॥୪॥

ରାଜତ ରାଜ ସମାଜ ମହୁଁ କୋସଲରାଜ କିସୋର ।
ସୁନ୍ଦର ସ୍ୟାମଲ ଗୌର ତନ ବିସ୍ୱ ବିଲୋଚନ ଚୋର ॥୨୪୨॥

---

ମିଥିଳେଶ୍ୱର ସହିତେ ନିରେଖନ୍ତି ରାଣୀ । ଶିଶୁ ସମ, ପ୍ରୀତି କହି ନ ହୁଏ ବଖାଣି ॥
ଯୋଗୀଙ୍କୁ ପରମ ତତ୍ତ୍ୱମୟ ହେଲା ଭାସ । ଶୁଦ୍ଧ ଶାନ୍ତ ସମ ନିତ୍ୟ ସହଜ ପ୍ରକାଶ ॥୨॥
ହରିଭକ୍ତ ଜନେ ବିଲୋକନ୍ତି ଦେନି ଭ୍ରାତା । ଇଷ୍ଟଦେବ ପ୍ରାୟେ ସଦା ସର୍ବ ସୁଖଦାତା ॥
ରାମଙ୍କୁ ଚାହାନ୍ତି ଯେଉଁ ଭାବେ ବଇଦେହୀ । ଅକଥନୀୟ ଅଟଇ ସୁଖ ସ୍ନେହ ସେହି ॥୩॥
କହି ନ ପାରନ୍ତି, ଅନୁଭବନ୍ତି ସେ ମନେ । ପୁଣି କେଉଁ କବି କହି ପାରିବ କେମନେ ॥
ଏହି ପ୍ରକାରେ ଯାହାର ଯେଉଁ ଭାବ ଥିଲା । ସେ ସେହି ଭାବେ କୋଶଳପତିଙ୍କୁ ଦେଖିଲା ॥୪॥

ବିରାଜନ୍ତି ରାଜ-ସମାଜ ମଧ୍ୟରେ କୋଶଳ ରାଜ-କିଶୋର ।
ସୁନ୍ଦର ଶ୍ୟାମଳ ଗଉର ଶରୀର ବିଶ୍ୱ-ବିଲୋଚନ ଚୋର ॥୨୪୨॥

---

ଦୋହା :—ସ୍ତ୍ରୀମାନେ ହୃଦୟରେ ଆନନ୍ଦିତ ହୋଇ ଆପଣା ରୁଚି ଅନୁଯାୟୀ ସେମାନଙ୍କୁ ଦେଖୁଥା'ନ୍ତି । ସତେ ଯେପରି କେବଳ ଶୃଙ୍ଗାରରସ ଅନୁପମ ମୂର୍ତ୍ତି ଧାରଣ କରି ସୁଶୋଭିତ ହେଉଅଛି, ଏହା ସେମାନେ ପ୍ରତ୍ୟକ୍ଷ ଅନୁଭବ କଲେ ॥ ୨୪୧ ॥
ଚୌପାଇ :—ବିଦ୍ୱାନ୍‌ମାନଙ୍କୁ ପ୍ରଭୁ ବିରାଟ ରୂପରେ ଦେଖାଦେଲେ । ବିରାଟ ରୂପଙ୍କର ବହୁତ ମୁଖ, ହସ୍ତ, ପାଦ, ଚକ୍ଷୁ ଓ ମସ୍ତକ । ଜନକଙ୍କ ଆତ୍ମୀୟ ସ୍ୱଜନମାନେ ପ୍ରଭୁଙ୍କୁ ପ୍ରିୟବନ୍ଧୁ ସମାନ ଦେଖୁଥା'ନ୍ତି ॥୧॥ ଜନକଙ୍କ ସମେତ ରାଣୀମାନେ ସେ ଦୁହିଙ୍କୁ ଆପଣା ଆପଣା ସନ୍ତାନ ସମ ଦେଖୁଥା'ନ୍ତି । ସେମାନଙ୍କ ପ୍ରୀତି ଅବର୍ଣ୍ଣନୀୟ । ଯୋଗୀମାନଙ୍କୁ ତ ସେ ଶାନ୍ତ, ଶୁଦ୍ଧ, ସମ, ସ୍ୱତଃ ପ୍ରକାଶ, ପରମ ତତ୍ତ୍ୱମୟ ରୂପରେ ଉଦ୍‌ଭାସିତ ହେଉ-ଥା'ନ୍ତି ॥ ୨ ॥ ହରି-ଭକ୍ତଗଣ ଦୁଇ ଭାଇଙ୍କୁ ସକଳ ସୁଖର ଦାତା ଇଷ୍ଟଦେବ ତୁଲ୍ୟ ଦେଖିଲେ । ସୀତା ଯେଉଁ ଭାବରେ ଶ୍ରୀରାମଚନ୍ଦ୍ରଙ୍କୁ ଦେଖିବାରେ ଲାଗିଥା'ନ୍ତି, ସେହି ସ୍ନେହ ଓ ସୁଖ ତ ଭାଷାରେ କହିବା ଅସମ୍ଭବ ॥୩॥ ସେହି ସ୍ନେହ ଓ ସୁଖ ସେ ହୃଦୟରେ ଅନୁଭବ କରୁଥିଲେ ମଧ୍ୟ ନିଜେ ତାହା ପ୍ରକାଶ କରିବାକୁ ଅସମର୍ଥ । ତେବେ କେଉଁ କବି ତାହା ବର୍ଣ୍ଣନା କରି ପାରିବ ? ଏହି ରୂପେ ଯାହାର ମନରେ ଯେଉଁ ଭାବ ଥିଲା, ସେ ଠିକ୍ ସେହି ଭାବରେ କୋଶଳାଧୀଶ ରାମଙ୍କୁ ଦେଖିଲେ ॥ ୪ ॥ ଦୋହା :— କୋଶଳାଧୀଶଙ୍କ ସୁନ୍ଦର, ଶ୍ୟାମଳ ଓ ଗୌର ଶରୀର ଏବଂ ସମଗ୍ର ବିଶ୍ୱର ନୟନ-ଚୋର

ସହଜ ମନୋହର ମୂରତି ଦୋଉ । କୋଟି କାମ ଉପମା ଲଘୁ ସୋଉ ॥
ସରଦ ଚନ୍ଦ ନିନ୍ଦକ ମୁଖ ନୀକେ । ନୀରଜ ନୟନ ଭାୱତେ ଜୀ କେ ॥୧॥
ଚିତୱନି ଚାରୁ ମାର ମନୁ ହରନୀ । ଭାୱତି ହୃଦୟ ଜାତି ନହିଁ ବରନୀ ॥
କଲ କପୋଲ ଶ୍ରୁତି କୁଣ୍ଡଲ ଲୋଲା । ଚିବୁକ ଅଧର ସୁନ୍ଦର ମୃଦୁ ବୋଲା ॥୨॥
କୁମୁଦବଂଧୁ କର ନିନ୍ଦକ ହାଁସା । ଭୃକୁଟୀ ବିକଟ ମନୋହର ନାସା ॥
ଭାଲ ବିସାଲ ତିଲକ ଝଲକାହୀଁ । କଚ ବିଲୋକି ଅଲି ଅୱଲି ଲଜାହୀଁ ॥୩॥
ପୀତ ଚୌତନୀଁ ସିରନ୍ହି ସୁହାଈଁ । କୁସୁମ କଲୀଁ ବିଚ ବୀଚ ବନାଈଁ ॥
ରେଖେଁ ରୁଚିର କଂବୁ କଲ ଗ୍ରୀୱାଁ । ଜନୁ ତ୍ରିଭୁବନ ସୁଷମା କୀ ସୀୱାଁ ॥୪॥

କୁଂଜର ମନି କଂଠା କଲିତ ଉରନ୍ହି ତୁଲସିକା ମାଲ ।
ବୃଷଭ କଂଧ କେହରି ଠୱନି ବଲ ନିଧି ବାହୁ ବିସାଲ ॥୨୪୩॥

---

ସହଜେ ସୁମନୋହର ଉଭୟ କୁମର । ତୁଚ୍ଛ ଲାଗେ ସୁଙ୍କା କୋଟି ଉପମା କାମର ॥
ଶରତ ଶଶି-ନିନ୍ଦୁକ ସୁନ୍ଦର ବଦନ । ମନକୁ ମୁଗ୍‌ଧ କରଇ ନୀରଜ-ନୟନ ॥୧॥
ଲଳିତ ଚାହାଣି ମାର ମନକୁ ହରଇ । ହୃଦୟ ଜାଣଇ ବର୍ଣ୍ଣି କହି ନ ହୁଅଇ ॥
କଳ କପୋଳ କୁଣ୍ଡଳ-ଭୂଷିତ ଶ୍ରବଣ । ଚିବୁକ ଅଧର ରମ୍ୟ ମଧୁର ଭାଷଣ ॥୨॥
ହାସ୍ୟ ନିନ୍ଦଇ କୁମୁଦ-ବାନ୍ଧବର କର । ବିକଟ ଭ୍ରୂକୁଟୀ ନାସା ଅଟେ ମନୋହର ॥
ବିଶାଳ ଭାଲେ ତିଳକ ଝଲକଇ ଅତି । କେଶ ଦେଖି ଅଳିକୁଳ ଲଜ୍ଜିତ ହୁଅନ୍ତି ॥୩॥
ଶିରେ ଶୋଭେ ପୀତ ଟୋପି ରତନ ଜଟିତ । ମଧ୍ୟେ ମଧ୍ୟେ ଫୁଲ କଢି ସଜାଇ ରଚିତ ॥
ରୁଚିର କମ୍ବୁ ଗ୍ରୀବାରେ ରେଖା ସୁଶୋଭନ । ତିନଲୋକ ଲାବଣ୍ୟର ସୀମା ବା ଯେସନ ॥୪॥

ବକ୍ଷରେ ବିରାଜେ ଗଜମୁକ୍ତା କଣ୍ଠି ଆବର ତୁଳସୀମାଳ ।
ବୃଷ-ସ୍କନ୍ଧ ପୁଣି ମୃଗରାଜ ଠାଣି ବଳିଷ୍ଠ ବାହୁ ବିଶାଳ ॥୨୪୩॥

---

କୁମାର ଦୁହେଁ ରାଜସମାଜରେ ଏହି ରୂପେ ସୁଶୋଭିତ ହେଉଥା'ନ୍ତି ॥ ୨୪୨ ॥
ଚୌପାଇ '—ସେହି ମୂର୍ତ୍ତିଯୁଗଳ ସହଜେ ମନୋହର, କୋଟି କୋଟି କାମଦେବଙ୍କ ଉପମା ମଧ୍ୟ ତାଙ୍କ ଆଗରେ ତୁଚ୍ଛ । ସେମାନଙ୍କ ସୁନ୍ଦର ମୁଖ ଶରତ ଚନ୍ଦ୍ରମାକୁ ମଧ୍ୟ ନିନ୍ଦା କରୁଥାଏ ଏବଂ କମଳ ସମାନ ନେତ୍ର ମନ ଲୋଭାଇ ନେଉଥାଏ ॥ ୧ ॥ ସୁନ୍ଦର ଚାହାଣି ସମସ୍ତ ସଂସାରର ମନୋହରଣକାରୀ କାମଦେବଙ୍କ ମନକୁ ମଧ୍ୟ ହରଣ କରେ । ତାହା ହୃଦୟକୁ ଅତି ପ୍ରୀତିକର ବୋଧ ହୋଇଥାଏ । ମାତ୍ର ତାହାର ବର୍ଣ୍ଣନା ଅସମ୍ଭବ । ସୁନ୍ଦର ଗାଲ, କାନରେ ଚଞ୍ଚଳ କୁଣ୍ଡଳ ଝୁଲୁଥାଏ । ଚିବୁକ ଓ ଓଠ ସୁନ୍ଦର ଏବଂ ବାଣୀ କୋମଳ ॥ ୨ ॥ ହସ ଚନ୍ଦ୍ରମାର କିରଣକୁ ନିନ୍ଦା କରୁଥାଏ । ବଙ୍କ ଭ୍ରୂଲତା ଏବଂ ମନୋହର ନାସିକା । ବିଶାଳ ଭାଲ, ଭାଲ ଉପରେ ତିଲକ ଝଟକୁଥାଏ । କୃଷ୍ଣ ଓ କୁଞ୍ଚିତ କେଶକୁ ଦେଖି ଭ୍ରମରପଂକ୍ତି ମଧ୍ୟ ଲଜ୍ଜିତ ହୁଅନ୍ତି ॥ ୩ ॥ ହଳଦିଆ ଓ ଚଉକୋଣିଆ ରତ୍ନ-ଜଡ଼ିତ ପଗଡ଼ି ମସ୍ତକ ଉପରେ ସୁଶୋଭିତ ହେଉଥାଏ । ତାହାର

କଟି ତୂଣୀର ପୀତ ପଟ ବାଁଧେଁ । କର ସର ଧନୁଷ ବାମ ବର କାଁଧେଁ ॥
ପୀତ ଜଜ୍ଞ ଉପବୀତ ସୁହାଏ । ନଖ ସିଖ ମଂଜୁ ମହାଛବି ଛାଏ ॥୧॥
ଦେଖି ଲୋଗ ସବ ଭଏ ସୁଖାରେ । ଏକଟକ ଲୋଚନ ଚଲତ ନ ତାରେ ॥
ହରଷେ ଜନକୁ ଦେଖି ଦୋଉ ଭାଈ । ମୁନିପଦ କମଲ ଗହେ ତବ ଜାଈ ॥୨॥
କରି ବିନତୀ ନିଜ କଥା ସୁନାଈ । ରଂଗ ଅବନି ସବ ମୁନିହି ଦେଖାଈ ॥
ଜହଁ ଜହଁ ଜାହିଁ କୁଅଁର ବର ଦୋଉ । ତହଁ ତହଁ ଚକିତ ଚିତୱ ସବୁ କୋଉ ॥୩॥
ନିଜ ନିଜ ରୁଖ ରାମହି ସବୁ ଦେଖା । କୋଉ ନ ଜାନ କଛୁ ମରମୁ ବିସେଷା ॥
ଭଲି ରଚନା ମୁନି ନୃପ ସନ କହେଉ । ରାଜାଁ ମୁଦିତ ମହାସୁଖ ଲହେଉ ॥୪॥

---

କଟିରେ ତୂଣୀର ପରିଧାନ ପୀତାମ୍ବର । କରେ ଶର ବାମ ସ୍କନ୍ଧେ ଧନୁ ମନୋହର ॥
ପୀତ ଯଜ୍ଞ ଉପବୀତ ପରମ ଶୋଭନ । ଆପାଦ ମସ୍ତକ ମଞ୍ଜୁ ଛବିର ସଦନ ॥୧॥
ଦେଖି ସବୁ ଲୋକେ ସୁଖୀ ହୃଦୟେ ହୋଇଲେ । ପଲକ ନ ମାରି ଏକ ଦୃଷ୍ଟିରେ ରହିଲେ ॥
ହରଷ ମନେ ଜନକ ଦେଖି ଦୁଇ ଭାଇ । ଧରିଲେ ମୁନିଙ୍କ ପଦ-ସରୋରୁହ ଯାଇ ॥୨॥
କରି ବିନତି ଆପଣା ପଣ ଶୁଣାଇଲେ । ମୁନିଙ୍କୁ ସମସ୍ତ ରଙ୍ଗଭୂମି ଦେଖାଇଲେ ॥
ଯେଉଁଣେ ଯେଉଁଣେ ବେନି ବର କୁମର ଯାଆନ୍ତି । ତେଉଁଣେ ତେଉଁଣେ ଲୋକେ ଚାହିଁ ଚକିତେ ରହାନ୍ତି ॥୩॥
ନିଜ ସମ୍ମୁଖୀନ ସର୍ବେ ରାମଙ୍କୁ ଦେଖନ୍ତି । ଏହାର ମରମ କିଛି କେହି ନ ଜାଣନ୍ତି ॥
ଭଲ ରଚନା ହୋଇଛି ଭାଷିଲେ ମୁନୀଶ । ଶୁଣି ଅତି ଆପ୍ୟାୟିତ ହେଲେ ଅବନୀଶ ॥୪॥

---

ମଧ୍ୟେ ମଧ୍ୟେ କୁସୁମକଳୀର ଗୁଚ୍ଛ ଖଞ୍ଜା ହୋଇଥାଏ । ଶଙ୍ଖସମ ରୁଚିର ଗଳାରେ ମନୋହର ତିନି ରେଖା ତ୍ରିଭୁବନର ସୌନ୍ଦର୍ଯ୍ୟର ସୀମା ରୂପେ ପରିଲକ୍ଷିତ ॥ ୪ ॥ **ଦୋହା** —ବକ୍ଷ ଉପରେ ଗଜମୋତିରେ ନିର୍ମିତ ସୁନ୍ଦର କଣ୍ଠମାଳ ଓ ତୁଳସୀମାଳା ସୁଶୋଭିତ । ବୃଷଭର ସ୍କନ୍ଧ ସମାନ ଉଚ୍ଚ ଓ ପୁଷ୍ଟ ସ୍କନ୍ଧଦେଶ । ସିଂହଠାଣି ପରି ଠିଆ ହେବାର ଠାଣି । ବାହୁ ବିଶାଳ ଏବଂ ବଳର ଭଣ୍ଡାର ॥ ୨୪୩ ॥ **ଚୌପାଈ** —କଟିରେ ତୂଣୀର ଓ ପୀତାମ୍ବରର ପରିଧାନ । କରରେ ଶର ଓ ବାମ ସ୍କନ୍ଧରେ ଧନୁ ତଥା ପୀତ ଯଜ୍ଞୋପବୀତ ସୁଶୋଭିତ । ନଖରୁ ଶିଖା ଯାଏ ସମସ୍ତ ଅଙ୍ଗ ସୁନ୍ଦର ଏବଂ ମଞ୍ଜୁଳ ମହାଛବିରେ ଆଚ୍ଛାଦିତ ॥ ୧ ॥ ସେମାନଙ୍କୁ ଦେଖି ସମସ୍ତ ଲୋକ ଅତିଶୟ ସୁଖୀ ହେଲେ । ନେତ୍ର ପଲକଶୂନ୍ୟ ଓ ନେତ୍ରର ତାରା ମଧ୍ୟ ଅଚଳ । ଜନକ ଦୁଇ ଭାଇଙ୍କୁ ଦେଖି ଆନନ୍ଦିତ ହେଲେ । ତତ୍ପରେ ସେ ଯାଇ ଆନନ୍ଦରେ ବିଶ୍ୱାମିତ୍ରଙ୍କ ଚରଣ-କମଳ ବନ୍ଦନା କଲେ ॥ ୨ ॥ ବିନୟ ସହକାରେ ଜନକ ତାଙ୍କୁ ନିଜର ପଣ କଥା ଶୁଣାଇଲେ ଏବଂ ମୁନିଙ୍କୁ ସମସ୍ତ ରଙ୍ଗଭୂମି (ଯଜ୍ଞଶାଳା) ଦେଖାଇଲେ । ମୁନିଙ୍କ ସଙ୍ଗେ କୁମାର ଦୁହେଁ ଯେଉଁ ଯେଉଁଠାକୁ ଯାଉଥା'ନ୍ତି, ସେହି ସେହିଠାରେ ଦର୍ଶକଗଣ ଆଶ୍ଚର୍ଯ୍ୟଚକିତ ହୋଇ ସେମାନଙ୍କୁ ଚାହୁଁଥା'ନ୍ତି ॥୩॥ ସମସ୍ତେ ରାମଙ୍କୁ ଆପଣା ଆପଣା ଆଡକୁ ମୁହଁ କରିଥିବାର ଦେଖିଲେ, କିନ୍ତୁ ଏହାର କୌଣସି ବିଶେଷ ରହସ୍ୟ କେହି ଜାଣିପାରିଲେ ନାହିଁ ।

ସବ ମଂଚନ୍ହ ତେଂ ମଂଚୁ ଏକ ସୁନ୍ଦର ବିସଦ ବିସାଲ ।
ମୁନି ସମେତ ଦୋଉ ବଂଧୁ ତହଂ ବୈଠାରେ ମହିପାଲ ॥୨୪୪॥

ପ୍ରଭୁହି ଦେଖି ସବ ନୃପ ହିୟଁ ହାରେ । ଜନୁ ରାକେସ ଉଦୟ ଭଏଁ ତାରେ ॥
ଅସି ପ୍ରତୀତି ସବ କେ ମନ ମାହୀଁ । ରାମ ଚାପ ତୋରବ ସକ ନାହୀଁ ॥୧॥
ବିନୁ ଭଂଜେହୁଁ ଭବ ଧନୁଷୁ ବିସାଲା । ମେଲିହି ସୀୟ ରାମ ଉର ମାଲା ॥
ଅସ ବିଚାରି ଗବନହୁ ଘର ଭାଈ । ଜସୁ ପ୍ରତାପୁ ବଲୁ ତେଜୁ ଗବାଁଈ ॥୨॥
ବିହସେ ଅପର ଭୂପ ସୁନି ବାନୀ । ଜେ ଅବିବେକ ଅଂଧ ଅଭିମାନୀ ॥
ତୋରେହୁଁ ଧନୁଷୁ ବ୍ୟାହୁ ଅବଗାହା । ବିନୁ ତୋରେଁ କୋ କୁଅଁରି ବିଆହା ॥୩॥

---

ସମସ୍ତ ମଞ୍ଚର ମଧ୍ୟେ ଥିଲା ଏକ ମଞ୍ଜୁ ମଞ୍ଚ ସୁବିଶାଲ ।
ତହିଁ ମୁନି ସହ ଉଭୟ ଭାଇଙ୍କୁ ବସାଇଲେ ମହୀପାଲ ॥୨୪୪॥

ହତୋତ୍ସାହ ହେଲେ ନୃପେ ପ୍ରଭୁଙ୍କୁ ଦେଖନ୍ତେ । ପୂର୍ଣ୍ଣିମା ଇନ୍ଦୁ ଉଦୟେ ତାରକା ଯେମନ୍ତେ ॥
ସମସ୍ତଙ୍କ ମନେ ହୁଏ ପ୍ରତୀତ ଏସନ । ନିଃସନ୍ଦେହ, ରାମ ଚାପ କରିବେ ଭଞ୍ଜନ ॥୧॥
ନ ଭାଙ୍ଗିଲେ ସୁଦ୍ଧା ଶିବ-କୋଦଣ୍ଡ ବିଶାଲ । ଲମ୍ବାଇବେ ସୀତା ରାମ କଣ୍ଠେ ଜୟମାଲ ॥
ଏହା ଭାବି ନିଜ ନିଜ ଗୃହେ ଯାଅ ଭାଇ । ତେଜ ବଲ ପରାକ୍ରମ ସୁଯଶ ବୁଡ଼ାଇ ॥୨॥
ଏହା ଶୁଣି ଅନ୍ୟ କେତେ ନୃପତି ହସିଲେ । ଯେହୁ ଅବିବେକ ଅନ୍ଧ ଅଭିମାନୀ ଥିଲେ ॥
ବୋଲନ୍ତି, ଭାଙ୍ଗିଲେ ସୁଦ୍ଧା ବିଭା କଷ୍ଟକର । ନ ଭାଙ୍ଗି କନ୍ୟାକୁ ବିଭା ହେବ କେ ଆବର ॥୩॥

---

ମୁନି ରାଜାଙ୍କୁ କହିଲେ, "ରଙ୍ଗଭୂମିର ରଚନା ପରିପାଟୀ ଅତି ସୁନ୍ଦର ହୋଇଛି ।" ବିଶ୍ୱାମିତ୍ରଙ୍କ ପରି ନିଃସ୍ପୃହ, ବୈରାଗୀ ଓ ଜ୍ଞାନୀ ମୁନିଙ୍କଠାରୁ) ରଚନା ପରିପାଟୀର ପ୍ରଶଂସା ଶୁଣି ରାଜା ପ୍ରସନ୍ନ ହେଲେ ଏବଂ ମହାସୁଖ ଲାଭ କଲେ ॥ ୪ ॥ ଦୋହା —ଗୋଟିଏ ମଞ୍ଚ ସର୍ବାପେକ୍ଷା ଅଧିକ ସୁନ୍ଦର, ଉଜ୍ଜ୍ୱଳ ଓ ବିଶାଲ ଥିଲା । ସ୍ୱୟଂ ରାଜା ମୁନିଙ୍କ ସହିତ ଦୁଇ ଭାଇଙ୍କୁ ତାହା ଉପରେ ବସାଇଲେ ॥ ୨୪୪ ॥ ଚୌପାଈ —ପ୍ରଭୁଙ୍କୁ ଦେଖି ସମସ୍ତ ରାଜା ମନେ ମନେ ଯେପରି ପରାଜିତ ହୋଇଗଲେ । ପୂର୍ଣ୍ଣଚନ୍ଦ୍ରଙ୍କ ଉଦୟରେ ତାରାମାନେ ନିଷ୍ପ୍ରଭ ହେଲାପରି ପ୍ରଭୁଙ୍କ ଆବିର୍ଭାବରେ ଅନ୍ୟ ସମସ୍ତ ଉପସ୍ଥିତ ରାଜା ନିରାଶ ଓ ନିରୁତ୍ସାହ ଦେଖାଗଲେ । ତାଙ୍କ ତେଜ ଦେଖି ସମସ୍ତଙ୍କ ମନରେ ଏପରି ଦୃଢ଼ ବିଶ୍ୱାସ ହୋଇଗଲା ଯେ, ରାମଚନ୍ଦ୍ର ନିଶ୍ଚୟ ଧନୁ ଭଙ୍ଗ କରିବେ । ଏଥିରେ ସନ୍ଦେହ ନାହିଁ ॥ ୧ ॥ ଏଣେ ତାହାଙ୍କ ରୂପ ଦେଖି ସମସ୍ତେ ଭାବିଲେ ଯେ, ବିଶାଲ ଶିବଧନୁକୁ ଭାଙ୍ଗି ନ ପାରିଲେ ମଧ୍ୟ ସୀତା ଶ୍ରୀରାମଙ୍କ ଗଳାରେ ନିଶ୍ଚୟ ବରଣମାଳା ପକାଇବେ । ଅର୍ଥାତ୍ ଉଭୟ ଦିଗରୁ ଆମ୍ଭମାନଙ୍କର ପରାଜୟ ଏବଂ ଶ୍ରୀରାମଙ୍କ ବିଜୟ ସୁନିଶ୍ଚିତ । ଏହିପରି ଭାବି ସେମାନେ ପରସ୍ପର କୁହାକୁହି ହେଲେ, "ହେ ଭାଇ ! ଏହି କଥାକୁ ମନରେ ବିଚାର କରି ଆମ୍ଭମାନଙ୍କ ଯଶ, ପ୍ରତାପ ଓ ବଲ ହରାଇ ଚାଲ ଆପଣ ଆପଣା ଘରକୁ ଫେରିଯିବା" ॥ ୨ ॥ ଅନ୍ୟାନ୍ୟ ଯେଉଁ ରାଜାମାନେ ଅବିଚାରରେ ଅନ୍ଧ ଓ

ଏକ ବାର କାଲଉ କନ ହୋଉ । ଜିତୁ ହ୍ୱତ ସମର ଜନକ ହମ ସୋଉ ॥
ଯହ ସୁନି ଅବର ମହୀପ ମୁସୁକାନେ । ଧରମସୀଲ ହରିଭଗତ ସୟାନେ ॥୩॥
ସୀୟ ବିଆହବି ରାମ ଗରବ ଦୂରି କରି ନୃପହ୍ନ କେ ।
ଜୀତି କୋ ସକ ସଂଗ୍ରାମ ଦସରଥ କେ ରନ ବାଁକୁରେ ॥୨୪୫॥
ବ୍ୟର୍ଥ ମରହୁ ଜନି ଗାଲ ବଜାଈ । ମନ ମୋଦକହ୍ନି କି ଭୂଖ ବୁତାଈ ॥
ସିଖ ହମାରି ସୁନି ପରମ ପୁନୀତା । ଜଗଦଂବା ଜାନହୁ ଜିୟଁ ସୀତା ॥୧॥
ଜଗତ ପିତା ରଘୁପତିହି ବିଚାରୀ । ଭରି ଲୋଚନ ଛବି ଲେହୁ ନିହାରୀ ॥
ସୁନ୍ଦର ସୁଖଦ ସକଲ ଗୁନ ରାସୀ । ଏ ଦୋଉ ବଂଧୁ ସଂଭୁ ଉର ବାସୀ ॥୨॥

---

ଏକ ବାର କାଲ ସୁଦ୍ଧା ନ ହେଉ କି ପାଇଁ । ରଣେ ମୁଁ ଜିଣିବି ତାଙ୍କୁ ବଇଦେହୀ ପାଇଁ ॥
ଏହା ଶୁଣି ଅନ୍ୟ ନୃପେ ମୃଦୁକି ହସିଲେ । ଯେ ହରି-ଭକ୍ତ ଚତୁର ଧର୍ମଶୀଳ ଥିଲେ ॥୩॥
ସୀତାଙ୍କୁ ବିବାହ ହେବେ ରଘୁବର ହରି ନୃପଙ୍କ ଗର୍ବକୁ ।
ଜିଣି କେ ପାରିବ ଦଶରଥଙ୍କର ରଣଧୀର କୁମରଙ୍କୁ ॥୨୪୫॥
ବୃଥାରେ ଆଉ ପ୍ରଲାପ କରି ମର ନାହିଁ । ମନ ଲଡୁରେ କେବେ କି କ୍ଷୁଧା ଯାଏ କାହିଁ ॥
ଶୁଣ ମୋହର ପରମ ପବିତ୍ର ଶିଖାଣ । ଜଗତ-ଜନନୀ ହୃଦେ ଜାନକୀଙ୍କୁ ଜାଣ ॥୧॥
ଜଗତ-ପିତା ବିଚାରି ଶ୍ରୀ ରଘୁପତିଙ୍କୁ । ନେତ୍ର ପୂରି କରି ଦେଖ ରୁଚିର ଛବିକୁ ॥
ସୁନ୍ଦର ସୁଖଦାୟକ ସର୍ବ ଗୁଣ ରାଶି । ଏ ଦୁଇ ଭାଇ ଶିବଙ୍କ ଉର-ପୁର ବାସୀ ॥୨॥

---

ଅଭିମାନୀ ଥିଲେ, ସେମାନେ ଏ କଥା ଶୁଣି ବହୁତ ହସିଲେ । ସେମାନେ କହୁଥାନ୍ତି "ଧନୁ ଭାଙ୍ଗିଲେ ସୁଦ୍ଧା ସୀତାଙ୍କ ସଙ୍ଗେ ତାଙ୍କର ବିବାହ ସହଜସାଧ୍ୟ ବ୍ୟାପାର ନୁହେଁ । (ଅର୍ଥାତ୍ ସହଜରେ ଆମେ ସୀତାଙ୍କୁ ହାତରୁ ଛାଡ଼ି ଦେବୁନାହିଁ ।) ପୁଣି ଧନୁ ନ ଭାଙ୍ଗି ରାଜକୁମାରୀଙ୍କୁ କିଏ ବା ବିବାହ କରିପାରିବ ? ॥୩॥ କାଳ ହୋଇଥାଉ ପଛକେ, ସୀତାଙ୍କ ନିମନ୍ତେ ଆମ୍ଭେମାନେ ଥରେ ହେଲେ ବି ତାହାଙ୍କୁ ଯୁଦ୍ଧରେ ଜୟ କରିନେବୁ । ଏହି ଗର୍ବଭରା ବଚନ ଶୁଣି ଅନ୍ୟାନ୍ୟ ଧର୍ମପରାୟଣ, ହରିଭକ୍ତ ଓ ବିଜ୍ଞ ନୃପତିଗଣ ହସିଲେ ॥ ୪ ॥ ସୋରଠା :—ସେମାନେ କହିଲେ, "ରାଜାମାନଙ୍କର ଗର୍ବ ଦୂର କରି ଶ୍ରୀରାମଚନ୍ଦ୍ରଜୀ ସୀତାଙ୍କୁ ବିବାହ କରିବେ । ବାକି ଯୁଦ୍ଧ କଥା ରହିଲା ତ ! ମହାରାଜ ଦଶରଥଙ୍କ ରଣ-ଧୀର ପୁତ୍ରମାନଙ୍କୁ ଯୁଦ୍ଧରେ ଭଲା କିଏ ଜିଣି ପାରିବ ? ॥୨୪୫॥ ଚୌପାଈ :—ବୃଥା ଦମ୍ଭ କରି ମର ନାହିଁ । ମନେ ମନେ ମିଠେଇ ଖାଇଲେ କେଉଁଠି କ୍ଷୁଧା ମେଣ୍ଟିଥିଲାଣି ଭଲା ! ଆମର ପବିତ୍ର ଶିକ୍ଷା ଶୁଣି ସୀତାଙ୍କୁ ଆପଣା ଆପଣା ହୃଦୟରେ ସାକ୍ଷାତ୍ ଜଗଜ୍ଜନନୀ ବୋଲି ମନେ କର । (ତାଙ୍କୁ ପତ୍ନୀ ରୂପେ ପାଇବାର ଆଶା ଏବଂ ଲାଲସା ପରିତ୍ୟାଗ କର ।) ॥୧॥ ଆଉ ମଧ୍ୟ ଶ୍ରୀ ରଘୁନାଥଙ୍କୁ ଜଗତର ପିତା (ପରମେଶ୍ୱର) ମନେ କରି ନେତ୍ର ପୂରାଇ ତାଙ୍କର ଛବି ଦେଖିନିଅ । ଏପରି ଅବସର ବାରମ୍ବାର ମିଳିବ ନାହିଁ । ସୁନ୍ଦର, ସୁଖଦାୟକ ଓ ସମସ୍ତ ଗୁଣର ରାଶି ଏ ଭାଇ ଦୁହେଁ ଶିବଙ୍କ ହୃଦୟର

ସୁଧା ସମୁଦ୍ର ସମୀପ ବିହାଈ । ମୃଗଜଳୁ ନିରଖି ମରହୁ କତ ଧାଈ ॥
କରହୁ ଜାଇ ଜା କହୁଁ ଜୋଇ ଭାୱଁ । ହମ ତୌ ଆଜୁ ଜନମ ଫଲୁ ପାୱଁ ॥୩॥
ଅସ କହି ଭଲେ ଭୂପ ଅନୁରାଗେ । ରୂପ ଅନୂପ ବିଲୋକନ ଲାଗେ ॥
ଦେଖହିଁ ସୁର ନଭ ଚଢ଼େ ବିମାନା । ବରଷହିଁ ସୁମନ କରହିଁ କଲ ଗାନା ॥୪॥

ଜାନି ସୁଅବସରୁ ସୀୟ ତବ ପଠଈ ଜନକ ବୋଲାଇ ।
ଚତୁର ସଖୀଁ ସୁନ୍ଦର ସକଲ ସାଦର ଚଲୀଁ ଲୱାଇ ॥୨୪୬॥

ସିୟ ସୋଭା ନହିଁ ଜାଇ ବଖାନୀ । ଜଗଦଂବିକା ରୂପ ଗୁନ ଖାନୀ ॥
ଉପମା ସକଲ ମୋହି ଲଘୁ ଲାଗୀଁ । ପ୍ରାକୃତ ନାରି ଅଂଗ ଅନୁରାଗୀଁ ॥୧॥

---

ନିକଟରେ ପରିହରି ଅମୃତ ସାଗର । ମରୀଚିକା ଜଳ ଦେଖି କାହିଁ ଧାଇଁ ମର ॥
ଯାହାଙ୍କୁ ଯାହା ରୁଚଇ, କର ତାହା ଯାଇ । ଆମ୍ଭେ ତ ଆଜ ଜନମ-ଫଳ ଅଛୁ ପାଇ ॥୩॥
ଏହା କହି ଅନୁରାଗେ ନୃପ ଯେ ଉତ୍ତମ । ନିରେଖିବାକୁ ଲାଗିଲେ ରୂପ ଅନୁପମ ॥
ଦେଖନ୍ତି ବିମାନେ ଚଢି ଅନ୍ତରୀକ୍ଷେ ସୁର । ବରଷି ସୁମନ ଗାନ କରନ୍ତି ମଧୁର ॥୪॥

ଜାଣି ସୁସମୟ ସୀତାଙ୍କୁ ବିଦେହ ଆଣିବାକୁ ଆଦେଶିଲେ ।
ସାଦରେ ସୁନ୍ଦରୀ ସଖୀ ସୁଚତୁରୀ ସଙ୍ଗେ ଘେନିଣ ଆସିଲେ ॥୨୪୬॥

ସୀତାଙ୍କ ଶୋଭା ବର୍ଣ୍ଣିକ କରି ନ ହୁଅଇ । ଜଗତ – ଜନନୀ ରୂପ-ଗୁଣ-ଶୀଳମୟୀ ॥
ଉପମା ସକଳ ମୋତେ ତୁଚ୍ଛ ଲାଗେ ଭବେ । ପ୍ରାକୃତ ନାରୀଙ୍କ ଅଙ୍ଗ ଅନୁରାଗୀ ସର୍ବେ ॥୧॥

---

ନିବାସୀ ॥ ୨ ॥ ସମୀପବର୍ତ୍ତୀ ଭଗବଦ୍ଦର୍ଶନ ରୂପୀ ଅମୃତ-ସମୁଦ୍ରକୁ ଛାଡ଼ି 'ଜାନକୀଙ୍କୁ ପତ୍ନୀ ରୂପେ ପାଇବାର ଯେଉଁ ତୃଷ୍ଣା ପୋଷଣ କରିଅଛ, ତାହା ମୃଗତୃଷ୍ଣା ଜଳ । ତାହା ଦେଖି ଦୌଡ଼ି ମରୁଛ କାହିଁକି ? ଆଚ୍ଛା, ଭାଇ, ଯାହାର ଯାହା ରୁଚି, ସେ ତାହା କରୁ । ଆମେ ତ ଆଜି ଶ୍ରୀରାମଚନ୍ଦ୍ରଙ୍କୁ ଦର୍ଶନ କରି ମନୁଷ୍ୟ-ଜନ୍ମ ସଫଳ କଲୁ ।'' ॥ ୩ ॥ ଉତ୍ତମ ରାଜାମାନେ ଏହିପରି କହି ଅନୁରାଗ-ପୂର୍ଣ୍ଣ ନୟନରେ ଶ୍ରୀରାମଙ୍କ ଅନୁପମ ରୂପ ଦେଖିବାକୁ ଲାଗିଲେ । ମନୁଷ୍ୟଙ୍କ କଥା କ'ଣ, ଦେବତାମାନେ ମଧ୍ୟ ବିମାନରେ ଚଢି ଆକାଶମାର୍ଗରୁ ସେହି ରୂପ ଦର୍ଶନ କରୁଥା'ନ୍ତି ଏବଂ ସୁନ୍ଦର ଗୀତ ଗାନ-ପୂର୍ବକ ପୁଷ୍ପବୃଷ୍ଟି କରୁଥା'ନ୍ତି ॥ ୪ ॥ ଦୋହା '—ଏହି ସୁଅବସର ଜାଣି ଜନକ ସୀତାଙ୍କୁ ଡକାଇ ପଠାଇଲେ । ସମସ୍ତ ଚତୁରା ଓ ସୁନ୍ଦରୀ ସଖୀ ଆଦର ସହକାରେ ତାଙ୍କୁ ନେଇ ଆସିବାକୁ ଗଲେ ॥ ୨୪୬ ॥ ରୂପ ଓ ଗୁଣର ଆକର ଜଗଜ୍ଜନନୀ ସୀତାଙ୍କ ଶୋଭାର ବର୍ଣ୍ଣନା କରାଯାଇ ପାରିବ ନାହିଁ । ତାଙ୍କ ନିମନ୍ତେ ମୋତେ (କାବ୍ୟର) ସମସ୍ତ ଉପମା ତୁଚ୍ଛ ଲାଗିଲା । ସେ ସବୁ ସଂସାରୀ ସ୍ତ୍ରୀମାନଙ୍କ ଅଙ୍ଗ ପ୍ରତି ପ୍ରଯୋଜ୍ୟ । (ଅର୍ଥାତ୍ ସେ ସବୁ ଉପମା ଜଗତର ସ୍ତ୍ରୀମାନଙ୍କ ଅଙ୍ଗ ସଙ୍ଗେ ଦିଆଯାଇଥାଏ । କାବ୍ୟର ଉପମାମାନ ତ୍ରିଗୁଣାତ୍ମକ ଓ ମାୟିକ ଜଗତରୁ ନିଆଯାଇଥାଏ । ସେଗୁଡିକୁ ଭଗବାନଙ୍କ ସ୍ୱରୂପାଶକ୍ତି ଶ୍ରୀ ଜାନକୀଙ୍କ ଅପ୍ରାକୃତ ଓ ଚିନ୍ମୟ ଅଙ୍ଗମାନଙ୍କ ପ୍ରତି ପ୍ରୟୋଗ କରିବା ଅର୍ଥ ତାହାଙ୍କର

ସିୟ ବରନିଅ ତେଇ ଉପମା ଦେଈ । କୁକବି କହାଇ-ଅଜସୁ କୋ ଲେଈ ॥
ଜୌଁ ପଟତରିଅ ତୀୟ ସମ ସୀୟା । ଜଗ ଅସି ଜୁବତି କହାଁ କମନୀୟା ॥୨॥
ଗିରା ମୁଖର ତନ ଅରଧ ଭବାନୀ । ରତି ଅତି ଦୁଖିତ ଅତନୁ ପତି ଜାନୀ ॥
ବିଷ ବାରୁନୀ ବନ୍ଧୁ ପ୍ରିୟ ଜେହୀ । କହିଅ ରମା ସମ କିମି ବୈଦେହୀ ॥୩॥
ଜୌଁ ଛବି ସୁଧା ପୟୋନିଧି ହୋଈ । ପରମ ରୂପ-ମୟ କଚ୍ଛପୁ ସୋଈ ॥
ସୋଭା ରଜୁ ମନ୍ଦରୁ ସିଂଗାରୂ । ମଥୈ ପାନି ପଙ୍କଜ ନିଜ ମାରୂ ॥୪॥

---

ସେହି ଉପମା ଦେଇଣ ସୀତାଙ୍କୁ ବର୍ଣ୍ଣିବ । କୁକବି କୁହାଇ କିଏ ଅଯଶ ଘେନିବ ॥
ଯେବେ ସୀତାଙ୍କୁ ତୁଳିବା ନାରୀଙ୍କ ସଙ୍ଗତେ । ସଂସାରେ କାହିଁ ସୁନ୍ଦରୀ ଯୁବତୀ ଏମନ୍ତେ ॥୨॥
ବାଣୀ ବାଚାଳିନୀ ଅର୍ଦ୍ଧାଙ୍ଗିନୀ ପାର୍ବତୀ । ଅନଙ୍ଗପତି ବିଚାରି ରତି ଦୁଃଖୀ ଅତି ॥
ବିଷ ବାରୁଣୀ ଅଟନ୍ତି ପ୍ରିୟ ବନ୍ଧୁ ଯା'ର । କହ ସୀତା ସମ ରମା ହେବ କି ପ୍ରକାର ॥୩॥
ଯେବେ ଛବିରୂପୀ ସୁଧା-ପୟୋଧି ହୁଅନ୍ତା । ଶ୍ରେଷ୍ଠ ରୂପ-ମୟ କୂର୍ମ ହୋଇଣ ଧରନ୍ତା ॥
ଶୃଙ୍ଗାର-ମନ୍ଦର ଶୋଭା-ରଜ୍ଜୁ ସାହାଯ୍ୟରେ । ମନ୍ଥନ୍ତା ମନ୍ମଥ ନିଜ କର-ସରୋଜରେ ॥୪॥

---

ଅପମାନ କରିବା ଏବଂ ଆପଣାକୁ ଉପହାସାସ୍ପଦ କରିବା ।) ॥ ୧ ॥ ସୀତାଙ୍କ ରୂପ-ବର୍ଣ୍ଣନାରେ ସେହି ଉପମାଗୁଡ଼ିକୁ ପ୍ରୟୋଗ କରି କିଏ ଅବା କୁକବି ବୋଲାଇ ଅପଯଶର ଭାଗୀ ହେବାକୁ ପସନ୍ଦ କରିବ ? ବାସ୍ତବରେ ସୀତାଙ୍କ ରୂପ ସଙ୍ଗେ ତୁଳନୀୟା ଅର୍ଥାତ୍ ଉପମାନର ଯୋଗ୍ୟା ହେବ, ସଂସାରରେ ଏପରି ରମଣୀୟା ରମଣୀ କାହାନ୍ତି ? ॥ ୨ ॥ (ପୃଥିବୀର ସ୍ତ୍ରୀମାନଙ୍କ କଥା କ'ଣ କହିବା ? ଦେବାଙ୍ଗନାମାନଙ୍କୁ ଯଦି ସାଂସାରିକ ସ୍ତ୍ରୀଙ୍କଠାରୁ ଅଧିକ ଦିବ୍ୟ ଓ ସୁନ୍ଦରୀ ବୋଲି ବିଚାର କରୁଥାଇ, ସେମାନେ ମଧ୍ୟ ସୀତାଙ୍କ ଆଗରେ ସୌନ୍ଦର୍ଯ୍ୟରେ ଊଣା ପଡ଼ିଯିବେ ।) ଦେବାଙ୍ଗନାମାନଙ୍କ ମଧ୍ୟରେ ସରସ୍ୱତୀ ସ୍ୱଭାବତଃ ମୁଖରା ହୋଇଥିବାରୁ ସୀତାଙ୍କ ଅପେକ୍ଷା ନିକୃଷ୍ଟା । ପାର୍ବତୀ ଅର୍ଦ୍ଧାଙ୍ଗିନୀ । ଅର୍ଥାତ୍ ଅର୍ଦ୍ଧନାରୀ ନଟେଶ୍ୱର ରୂପେ ତାଙ୍କର ଅଧା ଅଙ୍ଗ ସ୍ତ୍ରୀର ଓ ଅବଶିଷ୍ଟ ଅଧା ଅଙ୍ଗ ପୁରୁଷର—ଶିବଙ୍କର ।) ତେଣୁ ସେ ହୀନା । କାମଦେବଙ୍କ ପତ୍ନୀ ରତି ଆପଣା ପତିଙ୍କୁ ଅନଙ୍ଗ (ଅଙ୍ଗହୀନ) ବୋଲି ଜାଣି ବିଶେଷ ଦୁଃଖିତା ଥାଆନ୍ତି । ସୁତରାଂ ରତି ମଧ୍ୟ ସୀତାଙ୍କର ଉପମାନ ହେବାକୁ ଅଯୋଗ୍ୟା । ଲକ୍ଷ୍ମୀ ସମୁଦ୍ରରୁ ଜାତ । ବିଷ ଓ ମଦ ତାଙ୍କର ପ୍ରିୟ ଭାଇ । ତେଣୁ ସେହି ଲକ୍ଷ୍ମୀଙ୍କ ସହ ସୀତା ସମାନ ବୋ'ଲି କିପରି କୁହାଯିବ ? ॥ ୩ ॥ (ଯେଉଁ ଲକ୍ଷ୍ମୀଙ୍କ କଥା ଉପରେ କୁହାଯାଇଅଛି, ସେ ଜାତ ହୋଇଥିଲେ ଲବଣାକ୍ତ ସମୁଦ୍ରରୁ । ସମୁଦ୍ର ମନ୍ଥନ କରିବା ନିମନ୍ତେ ଭଗବାନ୍ ଅତିକର୍କଶପୃଷ୍ଠ କଚ୍ଛପ ରୂପ ଧାରଣ କରିଥିଲେ । ମହାବିଷଧର ବାସୁକି ନାଗଙ୍କୁ ରଜ୍ଜୁ କରାଯାଇଥିଲା । ମନ୍ଦର ପର୍ବତ ଖୁଆବାଡ଼ିର କାମ କରିଥିଲା । ସମସ୍ତ ଦେବତା ଓ ଦୈତ୍ୟ ମିଶି ସମୁଦ୍ର ମନ୍ଥନ କରିଥିଲେ । ଯେଉଁ ଲକ୍ଷ୍ମୀ ଅତିଶୟ ଶୋଭାର ଖଣି ଓ ଅନୁପମ ସୁନ୍ଦରୀ ରୂପେ ଜଗତ୍-ପ୍ରସିଦ୍ଧା, ସେ ଏ ସମସ୍ତ ଅସୁନ୍ଦର ଓ ସ୍ୱଭାବତଃ କଠିନ ଉପକରଣରୁ ଜାତ ହୋଇଥିଲେ ।

ଏହି ବିଧି ଉପଜୈ ଲଚ୍ଛି ଜବ ସୁନ୍ଦରତା ସୁଖ ମୂଲ ।
ତଦପି ସକୋଚ ସମେତ କବି କହହିଁ ସୀୟ ସମତୂଲ ॥୨୪୭॥

ଚଲୀଁ ସଂଗ ଲୈ ସଖୀଁ ସୟାନୀ । ଗାଵତ ଗୀତ ମନୋହର ବାନୀ ॥
ସୋହ ନଵଲ ତନୁ ସୁନ୍ଦର ସାରୀ । ଜଗତ ଜନନି ଅତୁଲିତ ଛବି ଭାରୀ ॥୧॥
ଭୂଷନ ସକଲ ସୁଦେସ ସୁହାଏ । ଅଂଗ ଅଂଗ ରଚି ସଖିନ୍ହ ବନାଏ ॥
ରଂଗଭୂମି ଜବ ସିୟ ପଗୁ ଧାରୀ । ଦେଖି ରୂପ ମୋହେ ନର ନାରୀ ॥୨॥
ହରଷି ସୁରନ୍ହ ଦୁଂଦୁଭୀଁ ବଜାଈଁ । ବରଷି ପ୍ରସୂନ ଅପଛରା ଗାଈଁ ॥
ପାନି ସରୋଜ ସୋହ ଜୟମାଲା । ଅଵଚଟ ଚିତଏ ସକଲ ଭୁଆଲା ॥୩॥

---

ଏହି ଭାବେ ସୁଖ-ସୌନ୍ଦର୍ଯ୍ୟର ମୂଳ ଲକ୍ଷ୍ମୀ ଯେବେ ଉତ୍ପୁଜନ୍ତେ ।
ତଥାପି ସଙ୍କୋଚ ଅନୁଭବି କବି ସୀତାଙ୍କ ସମ କହନ୍ତେ ॥ ୭॥

ଚାଲିଲେ ଚତୁରା ସଖୀ ସୀତା ସହିତରେ । ମଙ୍ଗଳ ଗୀତ ଗାଇଣ ମଧୁର ସ୍ୱରରେ ॥
ନବୀନ ଅଙ୍ଗେ ସୁନ୍ଦର ଶାଢୀ ସୁଶୋଭଇ । ଅନୁପମ ଛବି ଜଗଦମ୍ବାଙ୍କ ଅଟଇ ॥୧॥
ସୁଦେଶେ ଶୋଭିତ ହୁଏ ସମସ୍ତ ଭୂଷଣ । ଅଙ୍ଗେ ଅଙ୍ଗେ ସାଜିଛନ୍ତି ରଚି ସଖୀଗଣ ॥
ରଙ୍ଗ ଅବନୀକୁ ଯେବେ ସୀତା ଆଗମିଲେ । ରୂପ ଦେଖି ନରନାରୀ ମୋହିତ ହୋଇଲେ ॥୨॥
ହରଷେ ବିବୁଧବୃନ୍ଦ ଦୁନ୍ଦୁଭି ବଜାନ୍ତି । ପ୍ରସୂନ ବୃଷ୍ଟି କରିଣ ଅପ୍‌ସରା ଗାଆନ୍ତି ॥
ଶୋଭା ପାଏ ଜୟମାଳ ପାଣି-ପଙ୍କଜରେ । ନିସ୍ପନ୍ଦଭେ ନିରେଖନ୍ତି ମହୀପ ନିକରେ ॥୩॥

---

ଏ ପ୍ରକାର ଉପକରଣମାନଙ୍କରୁ ଆବିର୍ଭୂତା ଲକ୍ଷ୍ମୀ ଶ୍ରୀ ଜାନକୀଙ୍କ ସାଦୃଶ୍ୟ କିପରି ପାଇପାରନ୍ତେ ? ଅନ୍ୟ ପକ୍ଷରେ) ଯଦି ଛବିରୂପୀ ଅମୃତର ଗୋଟିଏ ସମୁଦ୍ର ହୁଏ, ପରମ ରୂପମୟ କଚ୍ଛପ ତହିଁରେ ନିୟୋଜିତ ହୁଏ ଏବଂ ଶୋଭାରୂପୀ ରଜ୍ଜୁ ତଥା ଶୃଙ୍ଗାରରସ ରୂପୀ ମନ୍ଦର ପର୍ବତ ସାହାଯ୍ୟରେ କାମଦେବ ତାହାଙ୍କର କର-କମଳ ଦ୍ୱାରା ଉକ୍ତ ଶୋଭା-ସମୁଦ୍ରକୁ ମନ୍ଥନ କରନ୍ତି,—॥ ୪ ॥ ଦୋହା '—ଏହି ରୂପେ ଯେତେ-ବେଳେ ସୁନ୍ଦରତା ଓ ସୁଖର ମୂଳ ଲକ୍ଷ୍ମୀ ଜାତ ହେବେ, ସେତେବେଳେ ସୁଦ୍ଧା କବିମାନେ ଅତି ସଙ୍କୋଚ ସହକାରେ କହିବେ ଯେ ସେ ସୀତାଙ୍କ ସହ ସମାନ ॥ ୨୪୭ ॥ ଚୌପାଇ '—ଚତୁରା ସଖୀମାନେ ସୀତାଙ୍କୁ ସଙ୍ଗରେ ଧରି ମନୋହର ବାଣୀରେ ଗୀତ ଗାଇ ଚାଲିଥା'ନ୍ତି । ସୀତାଙ୍କ ନବ ଶରୀରରେ ସୁନ୍ଦର ଶାଢୀ ସୁଶୋଭିତ । ଜଗଜ୍ଜନନୀଙ୍କ ମହାନ୍ ଛବି ଅତୁଳନୀୟ ॥ ୧ ॥ ତାଙ୍କର ବିଭିନ୍ନ ଅଙ୍ଗ-ପ୍ରତ୍ୟଙ୍ଗରେ ସକଳ ପ୍ରକାର ଭୂଷଣ ସୁଶୋଭିତ ହେଉଥାଏ । ସଖୀମାନେ ସେ ସବୁକୁ ଯଥାଯୋଗ୍ୟ ସ୍ଥାନରେ ସୁନ୍ଦରରୂପେ ମଣ୍ଡାଇଥା'ନ୍ତି । ସୀତା ରଙ୍ଗଭୂମିରେ ପଦାର୍ପଣ କରନ୍ତେ, ତାହାଙ୍କର ଦିବ୍ୟ ରୂପ ଦେଖି ସମସ୍ତ ନର-ନାରୀ ମୁଗ୍ଧ ହୋଇଗଲେ ॥ ୨ ॥ ଦେବତାଗଣ ଆନନ୍ଦିତ ହୋଇ ଦୁନ୍ଦୁଭି ବଜାଇଲେ ଏବଂ ଅପସରାମାନେ ପୁଷ୍ପ ବୃଷ୍ଟି କରି ଗୀତ ଗାଇବାକୁ ଲାଗିଲେ । ସୀତାଙ୍କ କର-କମଳରେ ଜୟମାଳା ସୁଶୋଭିତ । ସମସ୍ତ ରାଜା ଚକିତ ହୋଇ ନିର୍ନିମେଷ

ସୀୟ ଚକିତ ଚିତ ରାମହି ଚାହା । ଭଏ ମୋହବସ ସବ ନରନାହା ॥
ମୁନି ସମୀପ ଦେଖେ ଦୋଉ ଭାଈ । ଲଗେ ଲଲକି ଲୋଚନ ନିଧି ପାଈ ॥୪॥

ଗୁରୁଜନ ଲାଜ ସମାଜୁ ବଡ଼ ଦେଖି ସୀୟ ସକୁଚାନି ।
ଲାଗି ବିଲୋକନ ସଖିହ୍ନ ତନ ରଘୁବୀରହି ଉର ଆନି ॥୨୪୮॥

ରାମ ରୂପୁ ଅରୁ ସିୟ ଛବି ଦେଖେଂ । ନର ନାରିହ୍ନ ପରିହରୀଂ ନିମେଷେଂ ॥
ସୋଚହିଁ ସକଲ କହତ ସକୁଚାହୀଂ । ବିଧି ସନ ବିନୟ କରହିଁ ମନ ମାହୀଂ ॥୧॥
ହରୁ ବିଧି ବେଗି ଜନକ ଜଡ଼ତାଈ । ମତି ହମାରି ଅସି ଦେହି ସୁହାଈ ॥
ବିନୁ ବିଚାର ପନୁ ତଜି ନରନାହୂ । ସୀୟ ରାମ କର କରୈ ବିବାହୂ ॥୨॥
ଜଗ ଭଲ କହିହି ଭାବ ସବ କାହୂ । ହଠ କୀନ୍ହେଁ ଅଂତହୁଁ ଉର ଦାହୂ ॥
ଏହିଁ ଲାଲସାଁ ମଗନ ସବ ଲୋଗୂ । ବରୁ ସାଁଵରୋ ଜାନକୀ ଜୋଗୂ ॥୩॥

---

ଚକିତ ଚିତ୍ତେ ଜାନକୀ ରାମଙ୍କୁ ଚାହାନ୍ତେ । ମୋହବଶ ହୋଇଲେ ନୃପତି ସମସ୍ତେ ॥
ମୁନିଙ୍କ ସମୀପେ ବେନି ଭାଇଙ୍କୁ ଦେଖିଣ । ଲାଖିଲା ନୟନ ନିଜ ନିଧିଙ୍କୁ ପାଇଣ ॥୪॥

ଗୁରୁଜନ ଲାଜ ବିଶାଳ ସମାଜ ଦେଖି ସୀତା ସଙ୍କୋଚିଲେ ।
ଶ୍ରୀ ରଘୁବୀରଙ୍କୁ ହୃଦ ମଧ୍ୟେ ଆଣି ସଖୀବୃନ୍ଦଙ୍କୁ ଚାହିଁଲେ ॥୨୪୮॥

ରାମ ରୂପ ସୀତା ଛବି ନିରେଖି ଆଦର । ତେଜିଲେ ନିମେଷ ନାରୀ ପୁରୁଷ ନିକର ॥
ନ କହି ସଙ୍କୋଚ ବଶ ସମସ୍ତେ ଚିନ୍ତନ୍ତି । ବିଧିଙ୍କୁ ମନ ମଧ୍ୟରେ ବିନୟ କରନ୍ତି ॥୧॥
ହର ବିଧି ଜନକଙ୍କ ଜଡ଼ତା ଚଞ୍ଚଳ । ଆମ୍ଭ ପ୍ରାୟେ ବୁଦ୍ଧି ତାଙ୍କୁ ଦିଅ ସୁବିମଳ ॥
କିଛି ନ ବିଚାରି ପଣ ତେଜିଣ ରାଜନ । ସୀତା ରାମଙ୍କ ବିବାହ କରନ୍ତୁ ସମ୍ପନ୍ନ ॥୨॥
ଜଗତେ ଭଲ କହିବେ ଭଲ ସମସ୍ତଙ୍କୁ । ହଠ କଲେ ଦାହ ହେବ ହୃଦୟ ଅନ୍ତକୁ ॥
ଏହି ଲାଳସାରେ ମଗ୍ନ ପୁର ନାରୀନର । ଜାନକୀ ଯୋଗ୍ୟ ଅଟଇ ଏ ଶ୍ୟାମଳ ବର ॥୩॥

---

ନୟନରେ ତାଙ୍କ ଆଡକୁ ଚାହିଁବାକୁ ଲାଗିଲେ ॥ ୩ ॥ ସୀତା ଚକିତ ଚିତ୍ତରେ ଶ୍ରୀରାମଙ୍କୁ ଦେଖିବାକୁ ଲାଗିଲେ । ସମସ୍ତ ରାଜା ସେତେବେଳେ ମୋହବଶ ହୋଇପଡିଲେ । ସୀତା ମୁନିଙ୍କ ନିକଟରେ ବସିଥିବା ଦୁଇ ଭାଇଙ୍କୁ ଦେଖିଲେ । ସତେ ଯେମିତି ତାଙ୍କ ନେତ୍ର-ଯୁଗଳ ଆପଣାର ନିଧି ପାଇ ତହିଁରେ ଲାଖିଗଲା ପରି ! ॥ ୪ ॥ ଦୋହା :—ଗୁରୁଜନ-ମାନଙ୍କ ପ୍ରତି ଲଜ୍ଜା ଏବଂ ଏତେ ବଡ ସମାଜକୁ ଦେଖି ସୀତା ସଙ୍କୁଚିତ ହେଲେ । ସେ ଶ୍ରୀରାମଙ୍କ ଛବି ହୃଦୟ ମଧ୍ୟରେ ରଖି ସଖୀମାନଙ୍କ ଆଡକୁ ଚାହିଁବାକୁ ଲାଗିଲେ ॥୨୪୮॥ ଚୌପାଇ .—ଶ୍ରୀରାମଚନ୍ଦ୍ରଙ୍କ ରୂପ ଓ ସୀତାଙ୍କ ଛବିକୁ ସ୍ତ୍ରୀପୁରୁଷମାନେ ସମସ୍ତେ ଅପଲକ ନେତ୍ରରେ ଦେଖିବାକୁ ଲାଗିଲେ । ସମସ୍ତେ ମନେ ମନେ ବିଚାର କରୁଥା'ନ୍ତି, କିନ୍ତୁ କହିବାକୁ ସଂକୋଚ କରୁଥା'ନ୍ତି । ମନେ ମନେ ସେମାନେ ବିଧାତାଙ୍କୁ ବିନତି କରୁଥା'ନ୍ତି—॥ ୧ ॥ "ହେ ବିଧାତା ! ଶୀଘ୍ର ଜନକଙ୍କ ମୂର୍ଖତା ଦୂର କର ଏବଂ ଆମପରି ସୁନ୍ଦର ବୁଦ୍ଧି ତାଙ୍କୁ ଦିଅ, ଯେପରି କି ବିନା ବିଚାରରେ ରାଜା ତାଙ୍କର ପଣ ଛାଡି ରାମଙ୍କ

ତବ ବନ୍ଦୀଜନ ଜନକ ବୋଲାଏ । ବିରଦାବଲୀ କହତ ଚଲି ଆଏ ॥
କହ ନୃପ ଜାଇ କହହୁ ପନ ମୋରା । ଚଲେ ଭାଟ ହିୟଁ ହରଷୁ ନ ଥୋରା ॥୪॥
ବୋଲେ ବନ୍ଦୀ ବଚନ ବର ସୁନହୁ ସକଲ ମହିପାଲ ॥
ପନ ବିଦେହ କର କହହିଁ ହମ ଭୁଜା ଉଠାଇ ବିସାଲ ॥୨୪୯॥
ନୃପ ଭୁଜବଲୁ ବିଧୁ ସିବଧନୁ ରାହୂ । ଗରୁଅ କଠୋର ବିଦିତ ସବ କାହୂ ॥
ରାବନୁ ବାନୁ ମହାଭଟ ଭାରେ । ଦେଖି ସରାସନ ଗଵଁହିଁ ସିଧାରେ ॥୧॥
ସୋଇ ପୁରାରି କୋଦଣ୍ଡୁ କଠୋରା । ରାଜ ସମାଜ ଆଜୁ ଜୋଇ ତୋରା ॥
ତ୍ରିଭୁବନ ଜୟ ସମେତ ବୈଦେହୀ । ବିନହିଁ ବିଚାର ବରଇ ହଠି ତେହୀ ॥୨॥

---

ଏଥୁ ଅନ୍ତେ ମିଥିଳେଶ ବନ୍ଦୀଙ୍କୁ ରାଇଲେ । ଉଚ୍ଚାରି କୁଳ ବିରଦ ସର୍ବେ ଆଗମିଲେ ॥
କହି 'ମୋର ପଣ ଯାଅ, କହନ୍ତୁ ନରେଶ । ଚଳିଲେ ଭାଟ ହୋଇଣ ହରଷ ବିଶେଷ ॥୪॥
ଉଚ୍ଚାରିଲେ ବନ୍ଦୀ ବଚନ ସୁନ୍ଦର ଶୁଣ ସର୍ବେ ମହୀପାଳ ।
ବିଦେହଙ୍କ ପଣ କହୁଅଛୁ ଆମ୍ଭେ ଉଠାଇ ଭୁଜ ବିଶାଳ ।୨୪୯॥
ନୃପ ବାହୁବଳ ବିଧୁ ରାହୁ ଶିବ ଚାପ । ଭୁବିଦିତ କଠୋରତା ଗୁରୁତା ପ୍ରତାପ ॥
ମହାବଳୀ ବୀର ବାଣାସୁର ଦଶାନନ । ଫେରିଲେ ବାହାନା କରି ଦେଖି ଶରାସନ ॥୧॥
ଆଜି ସେ ତ୍ରିପୁରାରିଙ୍କ କଠୋର କୋଦଣ୍ଡ । ରାଜ ସମାଜେ କରିବ ଯେହୁ ବେନିଖଣ୍ଡ ॥
ତ୍ରିଭୁବନ ଜୟ ପୁଣି ସଙ୍ଗେ ବଇଦେହୀ । ବରିବ ବଳପୂର୍ବକ ନିର୍ବିଚାରେ ସେହି ॥୨॥

---

ସଙ୍ଗେ ସୀତାଙ୍କର ବିବାହ କରିଦେବେ ॥ ୨ ॥ ସାରା ସଂସାର ତାହାଙ୍କୁ ଭଲ ବୋଲି କହିବ । କାରଣ ଏ କଥା ସମସ୍ତେ ପସନ୍ଦ କରନ୍ତି । ପଣ ଉପରେ ଜିଦ୍ ଧରି ବସିଲେ ପରିଣାମରେ କେବଳ ହୃଦୟ-ଦହନ ହେବ ।” “ଏହି ଶ୍ୟାମଳ ପୁରୁଷ ହିଁ ଜାନକୀଙ୍କ ଯୋଗ୍ୟ ବର ହୁଅନ୍ତୁ ।”—ସମସ୍ତ ନରନାରୀ ଏହି ଲାଳସାରେ ମଗ୍ନ ॥ ୩ ॥ ତଦନନ୍ତର ରାଜା ଜନକ ଭାଟମାନଙ୍କୁ ଡକାଇଲେ । ସେମାନେ ରାଜବଂଶର ଯଶାବଳୀ ଗାଇ ଗାଇ ଆସି ରଙ୍ଗଭୂମିରେ ପହଞ୍ଚିଲେ । ରାଜା କହିଲେ, “ହେ ଭାଟମାନେ ! ଯାଇ ସମସ୍ତ ରାଜାଙ୍କୁ ମୋର ପଣ କଥା କୁହ ।” ଭାଟମାନେ ରାଜାଙ୍କ ଆଜ୍ଞା ପାଇ ଚାଲିଲେ । ସେମାନଙ୍କ ହୃଦୟରେ କମ ଆନନ୍ଦ ନ ଥାଏ ॥ ୪ ॥ ଦୋହା ।—ଭାଟମାନେ ଶ୍ରେଷ୍ଠ ବଚନରେ କହିଲେ, “ହେ ମହୀପାଳଗଣ ! ଶୁଣନ୍ତୁ । ଆମ୍ଭେ ଆମ୍ଭର ବିଶାଳ ବାହୁ ଉଠାଇ ଜନକରାଜାଙ୍କର ପଣ ଘୋଷଣା କରୁଛୁ— ॥ ୨୪୯ ॥ ଚୌପାଇ —ରାଜାମାନଙ୍କର ଭୁଜବଳ ଚନ୍ଦ୍ରମା ଓ ଶିବଧନୁ ରାହୁ ସମାନ । ତାହାର ଗୁରୁତା ଓ କଠୋରତା ସର୍ବଜନବିଦିତ । ରାବଣ ଓ ବାଣାସୁର ପରି ଅତି ବଡ ଯୋଦ୍ଧା ସୁଦ୍ଧା ଏହି ଧନୁ ଦେଖି ଚୁପ୍ ଭାବରେ ପଳାଇଗଲେ । (ତାହାକୁ ଉଠାଇବା ତ ଦୂରର କଥା, ଛୁଇଁବାକୁ ବି ସାହସ କାହାରି ହେଲା ନାହିଁ ।) ॥ ୧ ॥ ଶିବଙ୍କର ସେହି କଠୋର ଧନୁକୁ ଆଜି ଏହି ରାଜସଭାରେ ଯିଏ କେହି ଭାଙ୍ଗିବ, ତ୍ରିଭୁବନର ବିଜୟଗୌରବ ସେ ଲାଭ କରିବ ଏବଂ

ସୁନି ପନ ସକଲ ଭୂପ ଅଭିଲାଷେ । ଭଟମାନୀ ଅତିସୟ ମନ ମାଖେ ॥
ପରିକର ବାଁଧି ଉଠେ ଅକୁଲାଈ । ଚଲେ ଇଷ୍ଟଦେବନ୍ହ ସିର ନାଈ ॥୩॥
ତମକି ତାକି ତକି ସିବଧନୁ ଧରହୀଂ । ଉଠଇ ନ କୋଟି ଭାଁତି ବଲୁ କରହୀଂ ॥
ଜିନ୍ହ କେ କଛୁ ବିଚାରୁ ମନ ମାହୀଂ । ଚାପ ସମୀପ ମହୀପ ନ ଜାହୀଂ ॥୪॥

ତମକି ଧରହିଁ ଧନୁ ମୂଢ଼ ନୃପ ଉଠଇ ନ ଚଲହିଁ ଲଜାଇ ।
ମନହୁଁ ପାଇ ଭଟ ବାହୁବଲୁ ଅଧିକୁ ଅଧିକୁ ଗରୁଆଇ ॥୨୫୦॥

ଭୂପ ସହସ ଦସ ଏକହି ବାରା । ଲଗେ ଉଠାଵନ ଟରଇ ନ ଟାରା ॥
ଡଗଇ ନ ସଂଭୁ ସରାସନୁ କୈସେଁ । କାମୀ ବଚନ ସତୀ ମନୁ ଜୈସେଁ ॥୧॥
ସବ ନୃପ ଭଏ ଜୋଗୁ ଉପହାସୀ । ଜୈସେଁ ବିନୁ ବିରାଗ ସଂନ୍ୟାସୀ ॥
କୀରତି ବିଜୟ ବୀରତା ଭାରୀ । ଚଲେ ଚାପ କର ବରବସ ହାରୀ ॥୨॥

---

ଶୁଣି ପଣ ଅଭିଳାଷି ନୃପତି ନିଚୟ । ବୀର ମାନି ଆପଣାକୁ କ୍ରୋଧେ ଅତିଶୟ ॥
ବଦ୍ଧପରିକର ହୋଇ ଆକୁଳେ ଉଠିଲେ । ଇଷ୍ଟ ଦେବଙ୍କୁ ପ୍ରଣାମ କରିଣ ଚଳିଲେ ॥୩॥
ଚମକି ଚଞ୍ଚଳ ଦୃଷ୍ଟି ଧନୁକୁ ଧରନ୍ତି । ନ ଉଠନ୍ତେ ନାନାବିଧ ଯତନ କରନ୍ତି ॥
ଯାହାଙ୍କ ବିଚାର କିଛି ମନ ମଧ୍ୟେ ଥିଲା । ଚାପ ନିକଟକୁ ସେହି ନୃପ ନ ଗମିଲା ॥୪॥

ଉଠାନ୍ତି ମହୀପ ନ ଉଠନ୍ତେ ନୃପ ଲଜ୍ଜ୍ୟାରେ ଫେରନ୍ତି ହାରି ।
ବୀର ବାହୁବଳ ପାଇ ଅବା ଧନୁ ବେଶି ବେଶି ହୁଏ ଭାରି ॥୨୫୦॥

ଭୂପତି ଦଶ ସହସ୍ର ଏକାବେଳେ ଗଲେ । ଲାଗିଲେ ଉଠାଇବାକୁ ହଲନ୍ତେ ନ ହଲେ ॥
ବିଚଳିତ ନ ହୁଅଇ ଶମ୍ଭୁ ଚାପ ତେସନ୍ତେ । କାମୀ ପୁରୁଷ ବଚନେ ସତୀ ମନ ଯେସନ୍ତେ ॥୧॥
ଉପହାସଯୋଗ୍ୟ ହେଲେ ନୃପତି ସମସ୍ତେ । ବୈରାଗ୍ୟହୀନ ସନ୍ନ୍ୟାସୀ ହୁଅନ୍ତି ଯେମନ୍ତେ ॥
କୀର୍ତ୍ତି ବିଜୟ ଆଦର ବୀରପଣ ଭାରି । ଫେରିଲେ ବାଧ୍ୟରେ ସବୁ ନୃପ କରେ ହାରି ॥୨॥

---

ଜାନକୀ ଅକୁଣ୍ଠିତ ଚିତ୍ତରେ ତାହାଙ୍କୁ ବରଣ କରିବେ ।" ॥ ୨ ॥ ପଣ ଶୁଣି ସମସ୍ତ ରାଜା ପ୍ରଲୁବ୍ଧ ହୋଇ ଉଠିଲେ । ଯେଉଁମାନଙ୍କର ଆପଣା ଆପଣା ବୀରତା ବିଷୟରେ ଗର୍ବ ଥିଲା, ସେମାନେ ମନେ ମନେ ଗରଗର ହେଉଥା'ନ୍ତି । ଅଣ୍ଟା ବାନ୍ଧି ସେମାନେ ଅତି ଆକୁଳ ଭାବରେ ଉଠିଲେ ଏବଂ ଆପଣା ଆପଣାର ଇଷ୍ଟଦେବଙ୍କୁ ମୁଣ୍ଡ ନୁଆଁଇ ଧନୁ ନିକଟକୁ ଗଲେ ॥ ୩ ॥ ସେମାନେ କ୍ରୋଧାବେଶ ଓ ଅଭିମାନର ସହିତ ତେଜିଁ ଶିବଧନୁ ଆଡକୁ ଚାହୁଁଥା'ନ୍ତି ଏବଂ ପୁଣି ଦୃଷ୍ଟି ନିବଦ୍ଧ କରି ତାହାକୁ ଧରୁଥା'ନ୍ତି । କୋଟି କୋଟି ପ୍ରକାରେ ବଳ ଓ ଜୋର ଲଗାଉଥା'ନ୍ତି । କିନ୍ତୁ ତଥାପି ସେ ଟଳୁ ନ ଥାଏ । ଯେଉଁ ରାଜାମାନଙ୍କ ମନରେ ବିବେକର ମାତ୍ରା କିଛିଏ ଥାଏ, ସେମାନେ ଧନୁ ପାଖକୁ ଆଦୌ ଯାଉ ନ ଥା'ନ୍ତି ॥ ୪ ॥ ଦୋହା —ମୂର୍ଖ ନୃପଗଣ କ୍ରୋଧରେ ଚାଲନ୍ତି କଡମଡ କରି ଧନୁକୁ ଧରୁଥା'ନ୍ତି, କିନ୍ତୁ ଯେତେବେଳେ ତାହା ଉଠୁ ନ ଥାଏ, ସେମାନେ ଲଜ୍ଜିତ ହୋଇ ଚାଲି ଯାଉଥା'ନ୍ତି । ସତେ ଯେମିତି ବୀରମାନଙ୍କର ବାହୁବଳ ପାଇ ସେହି ଧନୁ

ଶ୍ରୀହତ ଭଏ ହାରି ହିୟଁ ରାଜା । ବୈଠେ ନିଜ ନିଜ ଜାଇ ସମାଜା ॥
ନୃପନ୍ହ ବିଲୋକି ଜନକୁ ଅକୁଲାନେ । ବୋଲେ ବଚନ ରୋଷ ଜନୁ ସାନେ ॥୩॥
ଦୀପ ଦୀପ କେ ଭୂପତି ନାନା । ଆଏ ସୁନି ହମ ଜୋ ପନୁ ଠାନା ॥
ଦେବ ଦନୁଜ ଧରି ମନୁଜ ସରୀରା । ବିପୁଲ ବୀର ଆଏ ରନଧୀରା ॥୪॥
କୁଅଁରି ମନୋହର ବିଜୟ ବଡ଼ି କୀରତି ଅତି କମନୀୟ ।
ପାୱନିହାର ବିରଂଚି ଜନୁ ରଚେଉ ନ ଧନୁ ଦମନୀୟ ॥୨୫୧॥
କହହୁ କାହି ୟହୁ ଲାଭୁ ନ ଭାୱା । କାହୁଁ ନ ସଂକର ଚାପ ଚଢ଼ାୱା ॥
ରହଉ ଚଢ଼ାଉବ ତୋରବ ଭାଈ । ତିଲୁ ଭରି ଭୂମି ନ ସକେ ଛଡ଼ାଈ ॥୧॥

---

ହୃଦେ ହାରି ମାନି ନୃପେ ହତଶ୍ରୀ ହୋଇଲେ । ନିଜ ନିଜ ସମାଜରେ ଯାଇଣ ବସିଲେ ॥
ନୃପଙ୍କୁ ଚାହିଁ ଜନକ ବ୍ୟାକୁଳ ଅନ୍ତରେ । ବୋଇଲେ ବଚନ ତିହୁଁ ଅତି କ୍ରୋଧଭରେ ॥୩॥
ଦ୍ୱୀପ ଦ୍ୱୀପରୁ ବିବିଧ ମହୀପତି-ଗଣ । ଉପସ୍ଥିତ ହୋଇଅଛନ୍ତି ଶୁଣି ମୋର ପଣ ॥
ଦେବତା ଦାନବ ଧରି ମାନବ ଶରୀର । ଆସିଛନ୍ତି ବିପୁଳ ବୀର ସର୍ବେ ରଣଧୀର ॥୪॥
କୁମାରୀ ସୁନ୍ଦରୀ ବିଜୟଶ୍ରୀ ଯଶ କୀର୍ତ୍ତି କମନୀୟ ଅତି ।
ଧନୁ ବିଭଞ୍ଜକ ପ୍ରାପକଙ୍କୁ ଯେମନ୍ତେ ରଚନାହିଁ ପ୍ରଜାପତି ॥୨୫୧॥
କହ ଏ ଲାଭ କାହାକୁ ନ ଲାଗଇ ଭଲ । କେହି ଶିବ ଚାପେ ଗୁଣ ଦେଇ ନ ପାରିଲ ॥
ଥାଉ ତେଣେ ଗୁଣ ଦେବା ଭାଙ୍ଗିବାର ଭାଇ । ନ ପାରିଲ ତିଳେ ମାତ୍ର ଭୂମିରୁ ଉଠାଇ ॥୧॥

---

ଅଧିକରୁ ଅଧିକ ଖରା ହୋଇ ଯାଉଥାଏ ॥ ୨୫୦ ॥ ଚୌପାଈ —ଅନନ୍ତର ଦଶ ହଜାର ରାଜା ଏକାବେଳକେ ମିଶି ଧନୁକୁ ଉଠାଇବାକୁ ଚେଷ୍ଟା କଲେ । ତଥାପି ତାହା ଟଳିଲା ନାହିଁ । ସେହି ଶିବଧନୁ କାମୀ ପୁରୁଷର ବଚନରେ ସତୀର ମନ ନ ଟଳିଲା ପରି ଜମା ଟଳୁ ନ ଥାଏ ॥ ୧ ॥ ବୈରାଗ୍ୟ ବିନା ସନ୍ନ୍ୟାସୀ ଉପହାସ୍ୟ ହେଲା ପରି ସମସ୍ତ ରାଜା ଉପହାସର ଯୋଗ୍ୟ ହୋଇପଡ଼ିଲେ । କୀର୍ତ୍ତି, ବିଜୟ ଓ ସୁପ୍ରସିଦ୍ଧ ବୀରତା, ଏ ସବୁକୁ ସେମାନେ ଧନୁ ଆଗରେ ବାଧ୍ୟ ହୋଇ ହରାଇ ବସିଗଲେ ॥ ୨ ॥ ରାଜାମାନେ ହୃଦୟର ସହିତ ହାରି ହତଶ୍ରୀ ହୋଇପଡ଼ିଲେ ଏବଂ ସେମାନଙ୍କ ଆପଣା ଆପଣା ସମାଜରେ ଯାଇ ବସିଲେ । ରାଜାମାନଙ୍କୁ ଅକୃତକାର୍ଯ୍ୟ ହେବାର ଦେଖି ଜନକ ବ୍ୟାକୁଳ ହୋଇ ପଡ଼ିଲେ ଏବଂ କ୍ରୋଧପୂର୍ଣ୍ଣ ବଚନ ବୋଇଲେ— ॥ ୩ ॥ "ମୁଁ ଯେଉଁ ପଣ କରିଥିଲି, ତାହା ଶୁଣି ଦ୍ୱୀପ-ଦ୍ୱୀପାନ୍ତରରୁ ଅନେକ ରାଜା ଆସିଲେ । ମନୁଷ୍ୟ-ଶରୀର-ଧାରୀ ଦେବତା ଓ ଦୈତ୍ୟମାନେ ମଧ୍ୟ ଆସିଲେ । ଆଗନ୍ତୁକମାନଙ୍କ ମଧ୍ୟରେ ମଧ୍ୟ ବହୁତ ରଣଧୀର ବୀର ଥିଲେ ॥ ୪ ॥ ଦୋହା :—କିନ୍ତୁ ମୋତେ ଲାଗୁଛି, ଧନୁ ଭାଙ୍ଗି ମନୋହାରିଣୀ କନ୍ୟା, ଗୌରବାନ୍ୱିତ ବିଜୟ ଓ ଅତ୍ୟନ୍ତ କମନୀୟ କୀର୍ତ୍ତିର ଅଧିକାରୀ ହୋଇ ପାରିବ, ଏପରି କୌଣସି ବୀର ରୂପେ ସତେ ଯେମିତି ବିଧାତା କାହାକୁ ଗଢ଼ି ନାହାନ୍ତି ॥ ୨୫୧ ॥ ଚୌପାଇ :—କାହାକୁ ଏମିତି ଲାଭ ନ ଲାଗେ, କୁହନ୍ତୁ ତ !

ଅବ ଜନି କୋଉ ମାଖୈ ଭଟମାନୀ । ବୀର ବିହୀନ ମହୀ ମୈଁ ଜାନୀ ॥
ତଜହୁ ଆସ ନିଜ ନିଜ ଗୃହ ଜାହୂ । ଲିଖା ନ ବିଧି ବୈଦେହି ବିବାହୂ ॥୨॥
ସୁକୃତୁ ଜାଇ ଜୌଁ ପନୁ ପରିହରଉଁ । କୁଅଁରି କୁଆରି ରହଉ କା କରଉଁ ॥
ଜୌଁ ଜନତେଉଁ ବିନୁ ଭଟ ଭୁବି ଭାଈ । ତୌ ପନୁ କରି ହୋତେଉଁ ନ ହଁସାଈ ॥୩॥
ଜନକ ବଚନ ସୁନି ସବ ନର ନାରୀ । ଦେଖି ଜାନକିହି ଭଏ ଦୁଖାରୀ ॥
ମାଖେ ଲଖନୁ କୁଟିଲ ଭଇଁ ଭୌଁହେଁ । ରଦପଟ ଫରକତ ନୟନ ରିସୌଁହେଁ ॥୪॥

କହି ନ ସକତ ରଘୁବୀର ଡର ଲଗେ ବଚନ ଜନୁ ବାନ ।
ନାଇ ରାମ ପଦ କମଲ ସିରୁ ବୋଲେ ଗିରା ପ୍ରମାନ ॥୨୫୨॥

ରଘୁବଂସିହ୍ନ ମହୁଁ ଜହଁ କୋଉ ହୋଈ । ତେହିଁ ସମାଜ ଅସ କହଇ ନ କୋଈ ॥
କହୀ ଜନକ ଜସି ଅନୁଚିତ ବାନୀ । ବିଦ୍ୟମାନ ରଘୁକୁଲମନି ଜାନୀ ॥୧॥

---

ଆଉ କେହି ବୀର ଗର୍ବ ନ କରିବ କହି । ଜାଣିଲି ମୁଁ ଏବେ ବୀରଶୂନ୍ୟ ଅଟେ ମହୀ ॥
ତେଜି ଆଶା ଯାଅ ସର୍ବେ ନିଜ ନିଜ ଘରେ । ବୈଦେହୀ ବିବାହ ବିଧି ଲେଖିନାହିଁ କରେ ॥୨॥
ଧର୍ମ ନଷ୍ଟ ହେବ ଯେବେ ପ୍ରତିଜ୍ଞା ତେଜିବି । କୁମାରୀ କୁମାରୀ ରହୁ କଅଣ କରିବି ॥
ବୀର ବିହୀନ ପୃଥିବୀ ଜାଣିଥାନ୍ତି ଯେବେ । ପଣ କରି ହାସ୍ୟାସ୍ପଦ ନ ହୁଅନ୍ତି ତେବେ ॥୩॥
ଜନକ ବଚନ ଶୁଣି ସର୍ବେ ନର ନାରୀ । ବିଲୋକି ବଇଦେହୀଙ୍କୁ ଦୁଃଖୀ ହେଲେ ଭାରି ॥
ରୋଷେ ଲକ୍ଷ୍ମଣଙ୍କ ବଙ୍କ ଭ୍ରୂକୁଟି ହୋଇଲା । ନୟନେ କ୍ରୋଧ ସ୍ଫୁଲିଙ୍ଗ ଦଶନ କମ୍ପିଲା ॥୪॥

କହି ନ ପାରନ୍ତି ରଘୁବୀର ଭୟେ ବାକ୍ୟ ଲାଗେ ଯେସନେ ବାଣ ।
ପ୍ରଣମି ରାମଙ୍କ ଚରଣ-କମଳେ ଭାଷିଲେ ବାଣୀ ପ୍ରମାଣ ॥୨୫୨॥

କଉଣେ ହୁଦା ରଘୁବଂଶୀ ଥାଏ ଯେ ସ୍ଥାନରେ । ଏମନ୍ତ ନ କହେ କେହି ସେହି ସମାଜରେ ॥
କହିଲେ ଜନକ ଯଥା ଅନୁଚିତ ବାଣୀ । ରଘୁକୁଳ-ମଣି ଏଥି ବିଦ୍ୟମାନ ଜାଣି ॥୧॥

---

କିନ୍ତୁ କେହି ଶଙ୍କରଙ୍କ ଧନୁରେ ଗୁଣ ଚଢାଇ ପାରିଲେ ନାହିଁ ! ଆରେ ଭାଇ ! ଗୁଣ ଚଢାଇବା ଓ ଭାଙ୍ଗିବା ତ ଦୂରର କଥା, ତିଳେ ମାତ୍ର ହେଲା ତାହାକୁ ଭୂଇଁରୁ କେହି ଛଡାଇ ପାରିଲେ ନାହିଁ ॥ ୧ ॥ ଏବେ ଆଉ କୌଣସି ବୀରତ୍ୱାଭିମାନୀ ମୋ କଥା ଶୁଣି ଅସନ୍ତୁଷ୍ଟ ନ ହୁଅନ୍ତୁ । ମୁଁ ଜାଣି ପାରିଲିଣି, ପୃଥିବୀ ବୀରଶୂନ୍ୟ ହୋଇଯାଇଛି । ବର୍ତ୍ତମାନ ଆଶା ଛାଡି ଯେଝଁ ଘରକୁ ଯାଅ । ବିଧାତା ତାଙ୍କ ବିଧାନରେ ସୀତାର ବିବାହ ଲେଖି ନାହାନ୍ତି ॥ ୨ ॥ ପଣ ପରିତ୍ୟାଗ କଲେ ପୁଣ୍ୟ ଚାଲିଯାଉଛି । କ'ଣ କରିବି ? କନ୍ୟା କୁମାରୀ ରହୁ ପଛକେ । ଯଦି ପୃଥିବୀ ବୀରଶୂନ୍ୟ ବୋଲି ମୁଁ ପ୍ରଥମରୁ ଜାଣିଥା'ନ୍ତି, ତେବେ ଏମିତି ପଣ କରି ମୁଁ ଉପହାସର ପାତ୍ର ହୋଇ ନ ଥା'ନ୍ତି ।" ॥ ୩ ॥ ଜନକଙ୍କ ଏହିପରି କଥା ଶୁଣି ସ୍ତ୍ରୀପୁରୁଷ ସମସ୍ତେ ଜାନକୀଙ୍କ ଆଡକୁ ଚାହିଁ ଦୁଃଖିତ ହେଲେ । ମାତ୍ର ଲକ୍ଷ୍ମଣ କ୍ରୋଧାବେଶରେ ତେଜିଁ ପଡିଲେ । ତାଙ୍କ ଭ୍ରୂଲତା ବଙ୍କ ହୋଇଗଲା, ଓଠ ଥରିବାକୁ ଲାଗିଲା ଏବଂ ନେତ୍ର କ୍ରୋଧରେ ରକ୍ତବର୍ଣ୍ଣ ଧାରଣ କଲା ॥ ୪ ॥ ଦୋହା –

ସୁନହୁ ଭାନୁକୁଲ ପଙ୍କଜ ଭାନୂ । କହଉଁ ସୁଭାଉ ନ କଛୁ ଅଭିମାନୂ ॥
ଜୌଁ ତୁହ୍ମାରି ଅନୁସାସନ ପାଓ୍ୱୌଁ । କଂଦୁକ ଇବ ବ୍ରହ୍ମାଣ୍ଡ ଉଠାଓ୍ୱୌଁ ॥୨॥
କାଚେ ଘଟ ଜିମି ଡାରୌଁ ଫୋରୀ । ସକଉଁ ମେରୁ ମୂଲକ ଜିମି ତୋରୀ ॥
ତବ ପ୍ରତାପ ମହିମା ଭଗବାନା । କୋ ବାପୁରେ ପିନାକ ପୁରାନା ॥୩॥
ନାଥ ଜାନି ଅସ ଆୟସୁ ହୋଊ । କୌତୁକୁ କରୌଁ ବିଲୋକିଅ ସୋଊ ॥
କମଲ ନାଲ ଜିମି ଚାପ ଚଢାଓ୍ୱୌଁ । ଜୋଜନ ସତ ପ୍ରମାନ ଲୈ ଧାଓ୍ୱୌଁ ॥୪॥
ତୋରୌଁ ଛତ୍ରକ ଦଣ୍ଡ ଜିମି ତବ ପ୍ରତାପ ବଲ ନାଥ ।
ଜୌଁ ନ କରୌଁ ପ୍ରଭୁ ପଦ ସପଥ କର ନ ଧରୌଁ ଧନୁ ଭାଥ ॥୨୫୩॥

---

ଶୁଣ ଦିନକର-କୁଳ-କମଲ-ଦିନେଶ । ସ୍ୱଭାବେ କହେ ନ କରି ଅଭିମାନ ଲେଶ ॥
ଯେବେ ଆପଣଙ୍କ ଅନୁଶାସନ ଲଭନ୍ତି । ଗେଣ୍ଡୁ ସମାନ ବ୍ରହ୍ମାଣ୍ଡ ଉଠାଇ ନିଅନ୍ତି ॥୨॥
କଞ୍ଚା ଘଟ ପରି ଛେଚି ଫିଙ୍ଗନ୍ତି ବହନ । ମେରୁକୁ ଭାଙ୍ଗି ପକାନ୍ତି ମୂଳକ ଯେସନ ॥
ତୁମ୍ଭ ମହିମା ପ୍ରତାପେ ଶ୍ରୀ ରଘୁପୁଙ୍ଗବ । କି ଛାର ବାପୁଡା ଏହି ଜୀର୍ଣ୍ଣ ଅଜଗବ ॥୩॥
ନାଥ, ଏହା ବିଚାରିଣ ଆଦେଶ ଦିଅନ୍ତୁ । କୌତୁକ କରିବି କିଛି ତାହା ବିଲୋକନ୍ତୁ ॥
ପଦ୍ମନାଳ ପରି ଚାପେ ଗୁଣ ଚଢାଇବି । ଶତ ଯୋଜନ ପ୍ରମାଣ ନେଇ ଧାଇଁଯିବି ॥୪॥
ଭାଙ୍ଗିବି ଛତ୍ରକଦଣ୍ଡ ପ୍ରାୟେ ନାଥ ତୁମ୍ଭ ପ୍ରତାପ ବଳରେ ।
ନ କଲେ ପ୍ରଭୁଙ୍କ ଚରଣ ଶପଥ, ଧନୁ ନ ଧରିବି କରେ ॥୨୫୩॥

---

ଶ୍ରୀ ରଘୁବୀରଙ୍କ ଭୟରେ ସେ କିଛି କହିପାରୁ ନ ଥା'ନ୍ତି, କିନ୍ତୁ ଜନକଙ୍କ ବଚନ ତାଙ୍କ ହୃଦୟକୁ ବାଣ ପରି ବିଦ୍ଧ କଲା । ଶେଷରେ ସେ ଆଉ ରହିପାରିଲେ ନାହିଁ, ଶ୍ରୀରାମଚନ୍ଦ୍ରଙ୍କ ଚରଣ-କମଳରେ ମୁଣ୍ଡ ନୁଆଁଇ ସେ ଯଥାର୍ଥ ବଚନ ପ୍ରକାଶ କଲେ— ॥ ୨୫୨ ॥ ଚୌପାଇ —ରଘୁକୁଳମଣି ସ୍ୱୟଂ ଶ୍ରୀରାମଚନ୍ଦ୍ରଙ୍କୁ ଏଠି ଉପସ୍ଥିତ ଥିବାର ଜାଣି ସୁଦ୍ଧା ଜନକ ଯେଉଁ ଅନ୍ୟାୟସଙ୍ଗତ ବଚନ ଅଭିବ୍ୟକ୍ତ କରି-ଅଛନ୍ତି, ତାହା ତାଙ୍କ ପକ୍ଷରେ ଘୋର ଧୃଷ୍ଟତା । ସେପରି ବଚନ ରଘୁବଂଶୀମାନଙ୍କ ମଧ୍ୟରୁ ଜଣେ କେହି ଉପସ୍ଥିତ ଥିଲେ ସୁଦ୍ଧା ଉକ୍ତ ସମାଜରେ କେହି କହିବାକୁ ସାହସ କରନ୍ତି ନାହିଁ ॥ ୧ ॥ ହେ ସୂର୍ଯ୍ୟକୁଳ-କମଳ-ଦିବାକର ! ଶୁଣନ୍ତୁ । ମୁଁ ସହଜ ସ୍ୱଭାବର ବଶବର୍ତ୍ତୀ ହୋଇ କହୁଛି । ଏଥିରେ ତିଳେମାତ୍ର ମୋ ମନରେ ଅଭିମାନ ନାହିଁ । ଯଦି ଆପଣଙ୍କ ଆଜ୍ଞା ପାଆନ୍ତି, ତେବେ ମୁଁ ବ୍ରହ୍ମାଣ୍ଡକୁ ସୁଦ୍ଧା କନ୍ଦୁକ ପରି ଉଠାଇ ଦିଅନ୍ତି ॥ ୨ ॥ ଏବଂ ତାହାକୁ କଞ୍ଚା କଳସ ପରି ଫଟେଇ ଦିଅନ୍ତି । ସୁମେରୁ ପର୍ବତକୁ ମଧ୍ୟ ମୂଳା ପରି ଭାଙ୍ଗି ଦିଅନ୍ତି । ହେ ଭଗବାନ୍ ! ଆପଣଙ୍କ ପ୍ରତାପର ମହିମାରେ ଏହି ବିଚାରୀ ପୁରୁଣା ଧନୁ କିବା ଛାର ! ॥ ୩ ॥ ହେ ନାଥ ! ଏହି କଥା ଜାଣି ଆପଣ ଯଦି କିଛି ଆଜ୍ଞା ଦିଅନ୍ତି, ତେବେ କିଛି କୌତୁକ ଦେଖାନ୍ତି । ତାହା ମଧ୍ୟ ଆପଣ ଦେଖନ୍ତେ । ପଦ୍ମନାଳ ପରି ଧନୁରେ ଗୁଣ ଚଢାଇ ତାହାକୁ ଶହେ ଯୋଜନ ପର୍ଯ୍ୟନ୍ତ ଧରି ଦୌଡି ଚାଲିଯା'ନ୍ତି ॥ ୪ ॥

ଲଖନ ସକୋପ ବଚନ ଜେ ବୋଲେ । ଡଗମଗାନି ମହି ଦିଗ୍‌ଗଜ ଡୋଲେ ॥
ସକଲ ଲୋଗ ସବ ଭୂପ ଡେରାନେ । ସିୟ ହିୟଁ ହରଷୁ ଜନକୁ ସକୁଚାନେ ॥୧॥
ଗୁର ରଘୁପତି ସବ ମୁନି ମନ ମାହୀଁ । ମୁଦିତ ଭଏ ପୁନି ପୁନି ପୁଲକାହୀଁ ॥
ସୟନହିଁ ରଘୁପତି ଲଖନୁ ନେୱାରେ । ପ୍ରେମ ସମେତ ନିକଟ ବୈଠାରେ ॥୨॥
ବିସ୍ୱାମିତ୍ର ସମୟ ସୁଭ ଜାନୀ । ବୋଲେ ଅତି ସନେହମୟ ବାନୀ ॥
ଉଠହୁ ରାମ ଭଂଜହୁ ଭବ ଚାପା । ମେଟହୁ ତାତ ଜନକ ପରିତାପା ॥୩॥
ସୁନି ଗୁରୁ ବଚନ ଚରନ ସିରୁ ନାୱା । ହରଷୁ ବିଷାଦୁ ନ କଛୁ ଉର ଆୱା ॥
ଠାଢ଼େ ଭଏ ଉଠି ସହଜ ସୁଭାଏଁ । ଠୱନି ଜୁବା ମୃଗରାଜୁ ଲଜାଏଁ ॥୪॥

ଉଦିତ ଉଦୟଗିରି ମଂଚ ପର ରଘୁବର ବାଲପତଂଗ ॥
ବିକସେ ସନ୍ତ ସରୋଜ ସବ ହରଷେ ଲୋଚନ ଭୃଙ୍ଗ ॥୨୫୪॥

---

ଲକ୍ଷ୍ମଣ ଯେବେ ସକୋପେ ବଚନ କହିଲେ । ଥର ଥର ହେଲା ମହୀ, ଦିଗ୍‌ଗଜେ କମ୍ପିଲେ ॥
ହୋଇଲେ ସମସ୍ତ ଲୋକ ନୃପ ଭୟଭୀତ । ସୀତା ହୃଦୟେ ହରଷ, ଜନକ ଲଜ୍ଜିତ ॥୧॥
ମନ ମଧ୍ୟେ ମୁନିବୃନ୍ଦ ଗୁରୁ ରଘୁପତି । ଆନନ୍ଦ ହୋଇଣ ବାରମ୍ବାର ପୁଲକନ୍ତି ॥
ସଙ୍କେତରେ ଲକ୍ଷ୍ମଣଙ୍କୁ ରାମ ନିବାରିଲେ । ସ୍ନେହ ସହିତ ଆପଣା ପାଶେ ବସାଇଲେ ॥୨॥
ତହୁଁ ବିଶ୍ୱାମିତ୍ର ଶୁଭ ଅବସର ଜାଣି । ଭାଷିଲେ ଅତି ସ୍ନେହରେ ସୁମଧୁର ବାଣୀ ॥
ଉଠ ବତ୍ସ, ରଘୁବର, ଭାଙ୍ଗି ଭବଚାପ । ହରଣ 'କର ଜନକ ନୃପ ପରିତାପ ॥୩॥
ଶୁଣି ଗୁରୁଙ୍କ ବଚନ ଚରଣେ ନମିଲେ । ହରଷ ବିଷାଦ କିଛୁ ହୃଦେ ନ ମଣିଲେ ॥
ସହଜ ସ୍ୱଭାବେ ଉଠି ପ୍ରଭୁ ହେଲେ ଉଭା । ଠାଣି ଲଜ୍ଜିତ କରଇ ପଶୁରାଜ ପ୍ରଭା ॥୪॥

ଉଇଁଲେ ଉଦୟ-ଗିରି-ମଞ୍ଚ ପୃଷ୍ଠେ ବାଳରବି ରଘୁବର ।
ବିକଶିଲେ ସନ୍ତ-ସରୋଜ ସମସ୍ତ ହରଷ ନେତ୍ର-ଭ୍ରମର ॥୨୫୪॥

---

ଦୋହା '—ହେ ନାଥ ! ଆପଣଙ୍କ ପ୍ରତାପବଳରେ ଧନୁକୁ ଛତୁ ପରି ଭାଙ୍ଗି ଦିଅନ୍ତି । ଯଦି ତାହା କରି ନ ପାରନ୍ତି, ତେବେ ଶପଥ କରି କହୁଛି,—ମୁଁ ଆଉ ଧନୁ ଓ ତୂଣୀର କଦାପି ହାତରେ ଧରନ୍ତି ନାହିଁ ॥ ୨୫୩ ॥ ଚୌପାଈ '—ଲକ୍ଷ୍ମଣ କ୍ରୋଧଭରା ବଚନ କହିବା ମାତ୍ରେ ପୃଥିବୀ ଟହଲିବାକୁ ଲାଗିଲା ଏବଂ ଦିଗ୍‌ଗଜମାନେ କମ୍ପିବାକୁ ଲାଗିଲେ । ସମସ୍ତ ଲୋକ ଓ ରାଜା ଡରିଗଲେ । ସୀତାଙ୍କ ମନରେ ଆନନ୍ଦ ଜାତ ହେଲା ଏବଂ ଜନକ ସଙ୍କୁଚିତ ହେଲେ ॥ ୧ ॥ ଗୁରୁ ବିଶ୍ୱାମିତ୍ର, ଶ୍ରୀରାମଚନ୍ଦ୍ର ଓ ମୁନିବୃନ୍ଦ ମନେ ମନେ ପ୍ରସନ୍ନ ହେଲେ ଏବଂ ବାରମ୍ବାର ପୁଲକିତ ହେବାକୁ ଲାଗିଲେ । ଶ୍ରୀରାମଚନ୍ଦ୍ର ସଙ୍କେତ-ଦ୍ୱାରା ଲକ୍ଷ୍ମଣଙ୍କୁ ନିବାରଣ କଲେ ଏବଂ ପ୍ରେମରେ ଆପଣା ପାଖରେ ବସାଇଲେ ॥ ୨ ॥ ବିଶ୍ୱାମିତ୍ର ଶୁଭ ଅବସର ଜାଣି ଅତ୍ୟନ୍ତ ସ୍ନେହପୂର୍ଣ୍ଣ ବଚନ କହିଲେ, "ହେ ବତ୍ସ ରାମ ! ଉଠ, ଶିବଧନୁ ଭଙ୍ଗ କର ଏବଂ ଜନକଙ୍କ ସନ୍ତାପ ଦୂର କର ।" ॥ ୩ ॥ ଗୁରୁଙ୍କ ବଚନ ଶୁଣି ଶ୍ରୀରାମଚନ୍ଦ୍ର ତାଙ୍କ ଚରଣରେ ମୁଣ୍ଡ ନୁଆଁଇଲେ । ତାଙ୍କ ମନରେ ହର୍ଷ କି ବିଷାଦ

ନୃପନ୍ହ କେରି ଆସା ନିସି ନାସୀ । ବଚନ ନଖତ ଅବଲୀ ନ ପ୍ରକାସୀ ॥
ମାନୀ ମହିପ କୁମୁଦ ସକୁଚାନେ । କପଟୀ ଭୂପ ଉଲୂକ ଲୁକାନେ ॥୧॥
ଭଏ ବିସୋକ କୋକ ମୁନି ଦେବା । ବରିସହିଁ ସୁମନ ଜନାୱହିଁ ସେବା ॥
ଗୁରପଦ ବନ୍ଦି ସହିତ ଅନୁରାଗା । ରାମ ମୁନିନ୍ହ ସନ ଆୟସୁ ମାଗା ॥୨॥
ସହଜହିଁ ଚଲେ ସକଲ ଜଗ ସ୍ୱାମୀ । ମତ୍ତ ମଂଜୁ ବର କୁଂଜର ଗାମୀ ॥
ଚଲତ ରାମ ସବ ପୁର ନର ନାରୀ । ପୁଲକ ପୂରି ତନ ଭଏ ସୁଖାରୀ ॥୩॥
ବନ୍ଦି ପିତର ସୁର ସୁକୃତ ସଁଭାରେ । ଜୌଁ କଛୁ ପୁନ୍ୟ ପ୍ରଭାଉ ହମାରେ ॥
ତୌ ସିବଧନୁ ମୃନାଲ କୀ ନାଈଁ । ତୋରହୁଁ ରାମୁ ଗନେସ ଗୋସାଈଁ ॥୪॥

---

ନୃପତିଗଣଙ୍କ ଆଶା-ନିଶି ହେଲା ନାଶ । ବଚନ-ନକ୍ଷତ୍ର ହେଲେ ବିଲୁପ୍ତ ପ୍ରକାଶ ॥
ମାନୀ ମହୀପ-କୁମୁଦ ସଙ୍କୋଚ ଲଭିଲେ । କପଟୀ ଭୂପ-ଉଲୂକ-ନିକର ଲୁଚିଲେ ॥୧॥
ସୁର-ମୁନି-ଚକ୍ରବାକ ଶୋକ ପରିହରି । ନିଜ ସେବା ସମର୍ପନ୍ତି ପୁଷ୍ପ ବୃଷ୍ଟି କରି ॥
ଅନୁରାଗ ସହ ଗୁରୁ ଚରଣ ବନ୍ଦଣି । ରାମ ମୁନିଙ୍କ ନିକଟୁ ଆଦେଶ ମାଗିଣି ॥୨॥
ସ୍ୱଭାବେ ଗମନ କଲେ ଚରାଚର ସ୍ୱାମୀ । ମତ୍ତ ମନୋହର ବର-ଗଜରାଜଗାମୀ ॥
ଚଳନ୍ତେ ରାମ ସମସ୍ତ ପୁର ନରନାରୀ । ପୁଲକେ ପୂରିତ ତନୁ ସୁଖୀ ହେଲେ ଭାରି ॥୩॥
ବନ୍ଦି ପିତୃ ଦେବତାଙ୍କୁ ସ୍ମରନ୍ତି ସୁକୃତ । ଯେବେ କିଛି ଅଛି ଆମ ପୁଣ୍ୟ ପ୍ରଭାକୃତ ॥
ତେବେ ମୃଣାଳ ସଦୃଶ, ପ୍ରଭୁ ଗଜାନନ । ଭଞ୍ଜନ କରନ୍ତୁ ରାମ ଶିବ-ଶରାସନ ॥୪॥

---

କିଛି ଜାତ ହେଲା ନାହିଁ । ସେ ସହଜସ୍ୱଭାବରେ ବଶବର୍ତ୍ତୀ ହୋଇ ଉଠି ଠିଆ ହେଲେ । ଠିଆ ହେବା ଠାଣିରେ ସେ ଯୁବକ କେଶରୀଙ୍କୁ ଲଜ୍ଜିତ କଲେ ॥ ୪ ॥ ଦୋହା :—ମଞ୍ଚରୂପୀ ଉଦୟାଚଳ ଉପରେ ରଘୁନାଥ-ବାଳରବିଙ୍କ ଉଦୟ ହେବା ମାତ୍ରେ ସନ୍ତ-ସରୋଜବୃନ୍ଦ ବିକଶିତ ହୋଇ ଉଠିଲେ ଏବଂ ସମସ୍ତ ଦର୍ଶକଙ୍କ ନୟନ-ଭ୍ରମରଗଣ ଆନନ୍ଦିତ ହେବାକୁ ଲାଗିଲେ ॥ ୨୫୪ ॥ ଚୌପାଇ :—ରାଜାମାନଙ୍କର ଆଶା-ନିଶା ନଷ୍ଟ ହୋଇଗଲା । ସେମାନଙ୍କ ବଚନ-ନକ୍ଷତ୍ର-ନିକରଙ୍କ ପ୍ରକାଶ ବନ୍ଦ ହୋଇଗଲା । (ଅର୍ଥାତ୍ ସେମାନେ ମୌନ ହୋଇଗଲେ ।) ଅଭିମାନୀ ନୃପ-କୁମୁଦସମୂହ ସଙ୍କୁଚିତ ହୋଇଗଲେ ଏବଂ କପଟୀ ରାଜା-ଉଲୂକମାନେ ଲୁଚିଗଲେ ॥ ୧ ॥ ମୁନି ଓ ଦେବତାମାନେ ଚକ୍ରବାକମାନଙ୍କ ସଦୃଶ ଶୋକରହିତ ହୋଇଗଲେ । ସେମାନେ ସୁମନ ବୃଷ୍ଟି କରି ସେମାନଙ୍କ ସେବା ପ୍ରଦର୍ଶନ କରୁଥା'ନ୍ତି । ପ୍ରେମରେ ଗୁରୁଙ୍କର ଚରଣଯୁଗଳ ବନ୍ଦନା କରି ଶ୍ରୀରାମଚନ୍ଦ୍ର ମୁନିମାନଙ୍କର ଆଦେଶ ମାଗିଲେ ॥ ୨ ॥ ଅଖିଳ ଜଗତର ସ୍ୱାମୀ ଶ୍ରୀରାମଚନ୍ଦ୍ର, ମଞ୍ଜୁଳ ମତ୍ତ ଶ୍ରେଷ୍ଠ ହସ୍ତୀ ପରି ଗତି କରି ସହଜସ୍ୱଭାବ ଗତିରେ ଚାଲିଲେ । ଶ୍ରୀରାମଚନ୍ଦ୍ରଙ୍କ ଚାଲିବା ମାତ୍ରେ ନଗରର ନରନାରୀମାନେ ସୁଖୀ ହୋଇଗଲେ ଏବଂ ସେମାନଙ୍କ ଶରୀର ରୋମାଞ୍ଚିତ ହୋଇ ଉଠିଲା ॥ ୩ ॥ ସେମାନେ ପିତୃପୁରୁଷ ଓ ଦେବତାମାନଙ୍କୁ ବନ୍ଦନା କରି ଆପଣା ଆପଣା ପୁଣ୍ୟରାଶି ସ୍ମରଣ କଲେ । ସେମାନେ

ରାମହି ପ୍ରେମ ସମେତ ଲଖି ସଖିହ୍ନ ସମୀପ ବୋଲାଇ ।
ସୀତା ମାତୁ ସନେହ ବସ ବଚନ କହଇ ବିଲଖାଇ ॥୨୫୫॥
ସଖି ସବ କୌତୁକୁ ଦେଖନିହାରେ । ଜେଉ କହାଓ୍ୱତ ହିତୂ ହମାରେ ॥
କୋଉ ନ ବୁଝାଇ କହଇ ଗୁର ପାହୀଁ । ଏ ବାଲକ ଅସି ହଠ ଭଲି ନାହୀଁ ॥୧॥
ରାବନ ବାନ ଛୁଆ ନହିଁ ଚାପା । ହାରେ ସକଲ ଭୂପ କରି ଦାପା ॥
ସୋ ଧନୁ ରାଜକୁଅଁର କର ଦେହୀଁ । ବାଲ ମରାଲ କି ମନ୍ଦର ଲେହୀଁ ॥୨॥
ଭୂପ ସୟାନପ ସକଲ ସିରାନୀ । ସଖି ବିଧି ଗତି କଛୁ ଜାତି ନ ଜାନୀ ॥
ବୋଲୀ ଚତୁର ସଖୀ ମୃଦୁ ବାନୀ । ତେଜବଂତ ଲଘୁ ଗନିଅ ନ ରାନୀ ॥୩॥

---

ନିରେଖି ରାମଙ୍କୁ ସପ୍ରେମେ ସଖୀଙ୍କୁ ସମୀପେ ଡକାଇ ଆଣି ।
ଜାନକୀ ଜନନୀ ସ୍ନେହବଶ ହୋଇ ବୋଲନ୍ତି ଶକଳ ବାଣୀ ॥୨୫୫॥
କୌତୁକ ଦର୍ଶକ ସର୍ବେ ଶୁଣ ସହଚରି । ଯେ ହିତକାରୀ କୁହାନ୍ତି ଅଛନ୍ତି ଆମ୍ଭର ॥
କେହି ଯାଇ ମୁନୀଶଙ୍କୁ ବୁଝାଇ ନ କୁହେ । ଏ ବାଳକର ଏମନ୍ତ ହଟ ଭଲ ନୁହେ ॥୧॥
ଯେଉଁ ଚାପକୁ ରାବଣ ବାଣୀ ନ ଛୁଇଁଲେ । ଦର୍ପ କରିଣ ସମସ୍ତ ମହୀପେ ହାରିଲେ ॥
ସେ ଧନୁ ଦେଉଅଛନ୍ତି ନୃପ ଶିଶୁ କରେ । ବାଲ ମରାଳ କି ନେଇ ପାରଇ ମନ୍ଦରେ ॥୨॥
ନୃପଙ୍କ ଚତୁର ପଣ ବିନଷ୍ଟ ହୋଇଛି । ସଖୀ, ବିଧି ଗତି ଜଣା ଯାଉନାହିଁ କିଛି ॥
ଶୁଣି ବୋଲେ ସୁଚତୁରୀ ସଖୀ ମୃଦୁବାଣୀ । ତେଜସ୍ୱୀଙ୍କୁ କ୍ଷୁଦ୍ର ବୋଲି ନ ମଣନ୍ତୁ ରାଣୀ ॥୩॥

---

ବିଘ୍ନବିନାଶକ ଗଣେଶଙ୍କୁ ପ୍ରାର୍ଥନା କରିବାକୁ ଲାଗିଲେ, "ହେ ଗଣେଶ ଗୋସାଇଁ ! ଯଦି ଆମ୍ଭମାନଙ୍କ ପୁଣ୍ୟର କିଛି ପ୍ରଭାବ ଥାଏ, ତେବେ ଶ୍ରୀରାମ ଶିବଧନୁକୁ କମଳନାଡ ପରି ଭାଙ୍ଗି ଦିଅନ୍ତୁ ।" ॥ ୪ ॥ ଦୋହା :—ଶ୍ରୀରାମଚନ୍ଦ୍ରଙ୍କ (ବାତ୍ସଲ୍ୟ) ପ୍ରେମର ବଶବର୍ତ୍ତୀ ଦେଖି ସଖୀଗଣଙ୍କୁ ସମୀପକୁ ଡାକି ସୀତାଙ୍କ ମାତା ସ୍ନେହରେ ଲୋତକ ଗଡାଇ ବଚନ ବୋଇଲେ— ॥ ୨୫୫ ॥ ଚୌପାଇ :—"ହେ ସଖି ! ଏହି ଯେଉଁ-ମାନେ ଆମ୍ଭମାନଙ୍କର ଶୁଭଚିନ୍ତକ (ହିତୈଷୀ) ବୋଲାଉଛନ୍ତି, ସେମାନେ ଭଲ ଆମ ନାଟ ଦେଖୁଛନ୍ତି । କେହି ଜଣେ ହେଲେ ହେଲେ ଶ୍ରଦ୍ଧା ଏହାଙ୍କ ଗୁରୁ ବିଶ୍ୱାମିତ୍ରଙ୍କୁ ବୁଝାଇ କହୁନାହିଁ ଯେ, ଏ ରାମ ବାଳକ । ଏହାଙ୍କ ପକ୍ଷରେ ଏପରି ଜିଦ୍ ଭଲ ନୁହେଁ ।" (ଯେଉଁ ଧନୁକୁ ରାବଣ ଓ ବାଣ ସମାନ ଜଗଦ୍ ବିଜୟୀ ବୀରମାନେ ସ୍ପର୍ଶ ଶ୍ରଦ୍ଧା କରି ନ ପାରି ଦୂରରୁ ପ୍ରଣାମ କରି ଚାଲିଗଲେ, ତାହାକୁ ଭାଙ୍ଗିବା ପାଇଁ ବିଶ୍ୱାମିତ୍ରଙ୍କର ଶ୍ରୀରାମଙ୍କୁ ଆଜ୍ଞା ଦେବା ଏବଂ ରାମଙ୍କର ସେଥି ନିମନ୍ତେ ଅଗ୍ରସର ହେବା ରାଣୀଙ୍କୁ ଏକ ଜିଦ୍ ରୂପେ ବୋଧ ହେଲା । ତେଣୁ ସେ ଏହିପରି କହିଲେ ।) ॥୧॥ "ରାବଣ ଓ ବାଣାସୁର ଯେଉଁ ଧନୁକୁ ସ୍ପର୍ଶ ଶ୍ରଦ୍ଧା କରିପାରିଲେ ନାହିଁ ଏବଂ ଯାହା ଆଗରେ ସମସ୍ତ ରାଜା ଗର୍ବ କରି ହାରିଗଲେ, ସେହି ଧନୁ ଏହି ସୁକୁମାର ରାଜକୁମାରଙ୍କ ହାତରେ ଦେଉଛନ୍ତି । ହଂସ-ଶିଶୁ ଭଲା କେବେ ମନ୍ଦରାଚଳ ଉଠାଇ ପାରେ କି ? ॥ ୨ ॥ (ଅନ୍ୟ କେହି ଗୁରୁଙ୍କୁ

କହଁ କୁଂଭଜ କହଁ ସିନ୍ଧୁ ଅପାରା । ସୋଷେଉ ସୁଜସୁ ସକଲ ସଂସାରା ॥
ରବି ମଣ୍ଡଲ ଦେଖତ ଲଘୁ ଲାଗା । ଉଦୟଁ ତାସୁ ତିଭୁବନ ତମ ଭାଗା ॥୪॥
ମଂତ୍ର ପରମ ଲଘୁ ଜାସୁ ବସ ବିଧି ହରି ହର ସୁର ସର୍ବ ।
ମହାମତ୍ତ ଗଜରାଜ କହୁଁ ବସ କର ଅଂକୁସ ଖର୍ବ ॥୨୫୬॥
କାମ କୁସୁମ ଧନୁ ସାୟକ ଲୀନ୍ହେ । ସକଲ ଭୁବନ ଅପନେଂ ବସ କୀନ୍ହେ ॥
ଦେବି ତଜିଅ ସଂସଉ ଅସ ଜାନୀ । ଭଂଜବ ଧନୁଷୁ ରାମ ସୁନୁ ରାନୀ ॥୧॥
ସଖୀ ବଚନ ସୁନି ଭୈ ପରତୀତୀ । ମିଟା ବିଷାଦୁ ବଢ଼ୀ ଅତି ପ୍ରୀତୀ ॥
ତବ ରାମହି ବିଲୋକି ବୈଦେହୀ । ସଭୟ ହୃଦୟଁ ବିନବତି ଜେହି ତେହୀ ॥୨॥

---

କାହିଁ କୁମ୍ଭଜ, କାହିଁ ବା ସମୁଦ୍ର ଅପାର । ଶୋଷିଲେ, ସୁଯଶ ବ୍ୟାପ୍ତ ସମସ୍ତ ସଂସାର ॥
କ୍ଷୁଦ୍ର ଲାଗେ ଦେଖିବାକୁ ଆଦିତ୍ୟ ମଣ୍ଡଳ । ଉଦୟେ ହରଇ ବିଶ୍ୱ ତିମିର ପଟଳ ॥୪॥
ମନ୍ତ୍ର ସୂକ୍ଷ୍ମ ଅତି ଯା' ବଶ ବିରଞ୍ଚି ହରି ହର ସୁର ସର୍ବେ ।
ମହାମତ୍ତ ଗଜ-ରାଜ ବଶୀଭୂତ ହୁଅଇ ଅଙ୍କୁଶ ଖର୍ବେ ॥୨୫୬॥
କାମ ଧରିଣ କୁସୁମ ବାଣ ଶରାସନ । କରିଛି ନିଜ ଅଧୀନ ଅଖିଳ ଭୁବନ ॥
ଦେବି, ଏହା ମନେ ଜାଣି ଶଙ୍କା ପରିହର । ଭାଙ୍ଗିବେ ଧନୁ ଅବଶ୍ୟ ରାମ ରଘୁବର ॥୧॥
ସଖୀଙ୍କ ବଚନ ଶୁଣି ହୋଇଲା ପ୍ରତୀତି । ତୁଟିଲା ଦୁଃଖ, ବଢିଲା ଅତିଶୟ ପ୍ରୀତି ॥
ତହୁଁ ରାମଙ୍କୁ ବିଲୋକି ଜନକ କୁମାରୀ । ସଭୟେ ସବୁ ଦେବଙ୍କୁ କରନ୍ତି ଗୁହାରି ॥୨॥

---

ବୁଝାଇ କହୁ ବା ନ କହୁ, ବିବେକୀ ଓ ଜ୍ଞାନୀ ରାଜାଙ୍କର ତ ଗୁରୁଙ୍କୁ ବୁଝାଇବା ଉଚିତ ଥିଲା । କିନ୍ତୁ ଜଣାପଡୁଛି,) ରାଜାଙ୍କର ସମସ୍ତ ବୁଦ୍ଧି ଶେଷ ହୋଇଗଲାଣି । ହେ ସଖି ! ବିଧାତାଙ୍କ ଗତି କିଛି ବୁଝା ପଡୁନାହିଁ ।" ଏହା କହି ରାଣୀ ନୀରବ ହେଲେ । ସେତେବେଳେ ଜଣେ ଚତୁରା ସଖୀ କୋମଳ ବାଣୀରେ କହିଲା, "ହେ ସଖି ! ତେଜସ୍ୱୀଙ୍କୁ କ୍ଷୁଦ୍ର ମନେ କରିବା ଅନୁଚିତ ॥ ୩ ॥ କେଉଁଠି କୁମ୍ଭରୁ ଜାତ କ୍ଷୁଦ୍ର ଅଗସ୍ତ୍ୟ ମୁନି ? ଆଉ କେଉଁଠି ଅପାର ସମୁଦ୍ର ? କିନ୍ତୁ ସେ ତାହାକୁ ତ ଶୋଷି ପକାଇଲେ ! ଫଳତଃ ତାଙ୍କ ଯଶ ସାରା ସଂସାରରେ ପରିବ୍ୟାପ୍ତ । ସୂର୍ଯ୍ୟମଣ୍ଡଳ ଦେଖିବାକୁ କ୍ଷୁଦ୍ର, ମାତ୍ର ତାହାର ଉଦୟ ମାତ୍ରେ ତିନିଭୁବନର ଅନ୍ଧକାର ଦୂର ହୋଇଯାଏ ॥ ୪ ॥ ଦୋହା :—ମନ୍ତ୍ର ଅତି କ୍ଷୁଦ୍ର ହେଲେହେଁ ବ୍ରହ୍ମା, ବିଷ୍ଣୁ, ଶିବ ଓ ସବୁ ଦେବତା ତହିଁରେ ବଶୀଭୂତ ହୋଇପାରନ୍ତି । ମହାମତ୍ତ ଗଜରାଜଙ୍କୁ ଗୋଟିଏ ଛୋଟ ଅଙ୍କୁଶ ମଧ୍ୟ ବଶ କରିପାରେ ॥୨୫୬॥ ଚୌପାଈ :—କାମଦେବ ଫୁଲଧନୁଶର ଯୋଗେ ସମସ୍ତ ଭୁବନକୁ ଆପଣାର ବଶୀଭୂତ କରି ରଖିଛନ୍ତି । ହେ ଦେବି ! ଏହା ଜାଣି ସନ୍ଦେହ ତ୍ୟାଗ କରନ୍ତୁ । ହେ ରାଣି ! ଶୁଣନ୍ତୁ, ରାମଚନ୍ଦ୍ର ଧନୁକୁ ଅବଶ୍ୟ ଭାଙ୍ଗିବେ ॥ ୧ ॥ ସଖୀର କଥା ଶୁଣି ଶ୍ରୀରାମଙ୍କ ସାମର୍ଥ୍ୟ ବିଷୟରେ ରାଣୀଙ୍କ ମନରେ ଦୃଢ ବିଶ୍ୱାସ ଜାତ ହେଲା । ତାଙ୍କର ବିଷାଦ ମେଣ୍ଟିଗଲା ଏବଂ ରାମଙ୍କ ପ୍ରତି ତାଙ୍କର ପ୍ରେମ ବହୁ ମାତ୍ରାରେ ବଢିଗଲା । ସେହି ସମୟରେ

ମନହିଁ ମନ ମନାଓ୍ୱ ଅକୁଲାନୀ । ହୋହୁ ପ୍ରସନ୍ନ ମହେସ ଭବାନୀ ॥
କରହୁ ସଫଲ ଆପନି ସେଓ୍ୱକାଈ । କରି ହିତୁ ହରହୁ ଚାପ ଗରୁଆଈ ॥୩॥
ଗନନାୟକ ବର-ଦାୟକ ଦେବା । ଆଜୁ ଲଗେଁ କୀହ୍ନିଉଁ ତୁଅ ସେବା ॥
ବାର ବାର ବିନତୀ ସୁନି ମୋରୀ । କରହୁ ଚାପ ଗୁରୁତା ଅତି ଥୋରୀ ॥୪॥

ଦେଖି ଦେଖି ରଘୁବୀର ତନ ସୁର ମନାଓ୍ୱ ଧରି ଧୀର ।
ଭରେ ବିଲୋଚନ ପ୍ରେମ ଜଲ ପୁଲକାବଲୀ ସରୀର ॥୨୫୭॥

ନୀକେଁ ନିରଖି ନୟନ ଭରି ସୋଭା । ପିତୁ ପନୁ ସୁମିରି ବହୁରି ମନୁ ଛୋଭା ॥
ଅହହ ତାତ ଦାରୁନି ହଠ ଠାନୀ । ସମୁଝତ ନହିଁ କଛୁ ଲାଭୁ ନ ହାନୀ ॥୧॥
ସଚିବ ସଭୟ ସିଖ ଦେଇ ନ କୋଈ । ବୁଧ ସମାଜ ବଡ଼ ଅନୁଚିତ ହୋଈ ॥
କହଁ ଧନୁ କୁଲିସହୁ ଚାହି କଠୋରା । କହଂ ସ୍ୟାମଲ ମୃଦୁଗାତ କିସୋରା ॥୨॥

---

ବ୍ୟାକୁଳେ ମନ ମଧ୍ୟରେ ପ୍ରାର୍ଥନା କରନ୍ତି । ପ୍ରସନ୍ନ ହୁଅ ମହେଶ ଭବାନୀ ମୋ ପ୍ରତି ॥
ମୋ ସେବାକୁ ଆଜ ପ୍ରଭୁ ହେ, ସଫଳ କର । ମୋ ହିତେ ହରଚାପର ଗୁରୁତ୍ୱକୁ ହର ॥୩॥
ହେ ଦେବ ଗଣନାୟକ, ବର-ପ୍ରଦାୟକ । ଆଜି ପର୍ଯ୍ୟନ୍ତ କରିଛି ସେବା ଆପଣଙ୍କ ॥
ବାରମ୍ବାର ଶୁଣି ଏବେ ମୋହର ବିନତି । ଉଣ୍ୱାସ କର ଧନୁର ଭାରିପଣ ଅତି ॥୪॥

ଚାହିଁ ବାରମ୍ବାର ଶ୍ରୀ ରଘୁବୀରଙ୍କୁ ଧୈର୍ଯ୍ୟ ଧରି ହୃଦୟରେ ।
ପ୍ରେମାଶ୍ରୁ ନୟନେ ସୁରଙ୍କୁ ଜଣାନ୍ତି ପୁଲକିତ କଲେବରେ ॥୨୫୭॥

ନେତ୍ର ପୂର୍ଣ୍ଣ କରି ଶୋଭା ନିରେଖି ଲଳିତ । ପିତା ପଣ ସ୍ମରି ପୁଣି ହୁଅନ୍ତି ବ୍ୟଥିତ ॥
ଆହାହା, ତାତ ଦାରୁଣ ହଠକୁ ଠାଣିଲେ । ହାନି କିମ୍ବା ଲାଭ ଏଥି କିଛି ନ ବୁଝିଲେ ॥୧॥
ସଚିବ ସଭୟେ କିଛି ଶିକ୍ଷା ନ ଦିଅନ୍ତି । ବୁଧସମାଜେ ହୁଅଇ ଅନୁଚିତ ଅତି ॥
କାହିଁ ପିନାକ, କୁଳିଶ ଅପେକ୍ଷା କଠୋର । କାହିଁ ଏ ଶ୍ୟାମଳ ମୃଦୁ ବୟସ କିଶୋର ॥୨॥

---

ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ସୀତା ଭୟଭୀତ ହୃଦୟରେ ଦେବତାଙ୍କୁ ବିନତି କରୁଥା'ନ୍ତି ॥ ୨ ॥ ସେ ବ୍ୟାକୁଳ ହୋଇ ମନେ ମନେ ଶିବପାର୍ବତୀଙ୍କୁ ମନାଉଥା'ନ୍ତି—"ହେ ମହେଶଭବାନି ! ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ମୁଁ ଆପଣଙ୍କର ଯେଉଁ ସେବା କରିଅଛି, ତାହାକୁ ଆଜି ସଫଳ କରନ୍ତୁ ଏବଂ ମୋର ହିତ ନିମନ୍ତେ ଧନୁର ଗୁରୁତ୍ୱକୁ ହରଣ କରି ନିଅନ୍ତୁ ॥ ୩ ॥ ହେ ଗଣନାୟକ ବରଦାୟକ ଗଣେଶ ! ମୁଁ ମାତ୍ର ଆଜି ଦିନଟି ନିମନ୍ତେ ଆପଣଙ୍କ ସେବା କରିଥିଲି । ବାରମ୍ବାର ମୋ ବିନତି ଶୁଣି ଧନୁର ଗୁରୁତ୍ୱକୁ ବହୁତ କମେଇ ଦିଅନ୍ତୁ ॥୪॥ ଦୋହା :—ଶ୍ରୀରଘୁନାଥଙ୍କ ଆଡ଼କୁ ଚାହିଁ ସୀତା ଧୈର୍ଯ୍ୟ ଧରି ଦେବତାମାନଙ୍କୁ ମନାଉଥା'ନ୍ତି । ତାଙ୍କ ନେତ୍ରରେ ପ୍ରେମର ଅଶ୍ରୁ ଭରିଆଏ ଓ ଶରୀରରେ ରୋମାଞ୍ଚ ଜାତ ହେଉଥାଏ ॥ ୨୫୭ ॥ ଚୌପାଈ —ସେ ନୟନ ପୂରାଇ ଭଲ ରୂପେ ଶ୍ରୀରାମଙ୍କ ଶୋଭା ଦେଖିଲେ ଏବଂ ତତ୍ସଙ୍ଗେ ପିତାଙ୍କର ପଣ କଥା ସ୍ମରଣ କରି ମନେ ମନେ କ୍ଷୁବ୍ଧ ହେଲେ । ମନେ ମନେ ସେ କହୁଥା'ନ୍ତି, "ଓହୋ ! ପିତା କେତେ ବଡ଼ କଠିନ

ବିଧି କେହି ଭାଁତି ଧରୌଁ ଉର ଧୀରା । ସିରସ ସୁମନ କନ ବେଧିଅ ହୀରା ॥
ସକଲ ସଭା କୈ ମତି ଭୈ ଭୋରୀ । ଅବ ମୋହି ସଂଭୁ ଚାପ ଗତି ତୋରୀ ॥୩॥
ନିଜ ଜଡ଼ତା ଲୋଗହ୍ନ ପର ଡାରୀ । ହୋହି ହରୁଅ ରଘୁପତିହି ନିହାରୀ ॥
ଅତି ପରିତାପ ସୀୟ ମନ ମାହୀଁ । ଲବ ନିମେଷ ଜୁଗ ସୟ ସମ ଜାହୀଁ ॥୪॥

ପ୍ରଭୁହି ଚିତଇ ପୁନି ଚିତଈ ମହି ରାଜତ ଲୋଚନ ଲୋଲ ।
ଖେଲତ ମନସିଜ ମୀନ ଜୁଗ ଜନୁ ବିଧୁ ମଂଡଲ ଡୋଲ ॥୨୫୮॥

ଗିରା ଅଲିନି ମୁଖ ପଙ୍କଜ ରୋକୀ । ପ୍ରଗଟ ନ ଲାଜ ନିସା ଅବଲୋକୀ ॥
ଲୋଚନ ଜଲୁ ରହ ଲୋଚନ କୋନା । ଜୈସେଁ ପରମ କୃପନ କର ସୋନା ॥୧॥

---

ହୃଦୟେ ଧୈର୍ଯ୍ୟ କେମନ୍ତେ ଧରିବି ଦଇବ । ଶିରୀଷ ପୁଷ୍ପ କିପରି ହୀରାକୁ ଛେଦିବ ॥
ସଭାଜନଙ୍କର ଭୋଳ ହୋଇଲାଣି ମତି । ଏବେ ଶମ୍ଭୁଚାପ ତୁହି ଅଟୁ ମୋର ଗତି ॥୩॥
ନିଜ ଜଡ଼ତା ଲୋକଙ୍କ ଉପରେ ଏତିଣ । ହୁଅଇ ହରୁଅ ଶ୍ରୀ ରଘୁପତିଙ୍କି ଚାହିଁଣ ॥
ସୀତାଙ୍କ ହୃଦୟେ ଅତି ସନ୍ତାପ ହୁଅଇ । ଯୁଗ ଶତ ସମ ଲବ ନିମେଷ କଟଇ ॥୪॥

ଚାହିଁଣ ପ୍ରଭୁଙ୍କୁ ଚାହାନ୍ତି ମହୀକୁ ରାଜେ ଲୋଚନ ଚଞ୍ଚଳ ।
ଖେଳନ୍ତି ବା ବିଧୁ-ମଣ୍ଡଳ କୁଣ୍ଡରେ ମଦନ ମୀନ ଯୁଗଳ ॥୨୫୮॥

ବାଣୀ-ଅଳିନୀ ବଦନ-ପଙ୍କଜେ ଲୁଚିଲା । ଲଜ୍ଜା-ନିଶା ଅବଲୋକି ପ୍ରକଟ ନୋହିଲା ॥
ଲୋଚନ କୋଣେ ରହିଲା ଲୋଚନ ଲୋତକ । ଯେସନ୍ତେ ପରମ କୃପଣ ଲୋକର କନକ ॥୧॥

---

ପଣ କରି ପକାଇଲେ ! ସେ ଲାଭହାନି କିଛି ହେଲେ ବୁଝୁ ନାହାନ୍ତି ॥ ୧ ॥ ମନ୍ତ୍ରୀ ଡରୁଅଛନ୍ତି, ତେଣୁ ତାଙ୍କୁ କେହି ଶିକ୍ଷା ଦେଇପାରୁ ନାହାନ୍ତି । ପଣ୍ଡିତମାନଙ୍କ ସଭାରେ ଏହା ବଡ଼ ଅନୁଚିତ ହେଉଛି । ବଜ୍ରଠାରୁ ବଳି କଠୋରତର ଧନୁ କେଉଁଠି ଏବଂ ଏ କୋମଳଶରୀର ଶ୍ୟାମସୁନ୍ଦର କିଶୋର କେଉଁଠି ? ॥ ୨ ॥ ହେ ବିଧାତା ! ମୁଁ ହୃଦୟରେ କିପରି ଧୈର୍ଯ୍ୟ ଧାରଣ କରିବି ? ଶିରୀଷ ଫୁଲ କେଶର ଦ୍ୱାରା ହୀରା କେଉଁଠି ବିଦ୍ଧ କରାଯାଇ ପାରେ ? ସମସ୍ତ ସଭାର ବୁଦ୍ଧି ବାଉଳା ହୋଇଯାଇଛି । ଅତଏବ ହେ ଶିବଧନୁ ! ଏବେ ତ ମୋର ତୁମେ ହିଁ ଏକମାତ୍ର ଭରସା ॥ ୩ ॥ ତୁମେ ତୁମ ଜଡ଼ତା ଇତର ଲୋକମାନଙ୍କ ଉପରେ ପକାଇ କୋମଳଶରୀର ରଘୁନାଥଙ୍କୁ ଦେଖି ସେତିକି ହାଲୁକା ହୋଇଯାଅ ।" ଏହି ରୂପେ ସୀତାଙ୍କ ମନରେ ବଡ଼ ସନ୍ତାପ ହେଉଥାଏ । ମୁହୂର୍ତ୍ତକର ଏକ ଲବ ସୁଦ୍ଧା ଶହେ ଯୁଗ ପରି କଟୁଥାଏ ॥ ୪ ॥ ଦୋହା :—ସେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ଚାହୁଁଥା'ନ୍ତି, ପୁଣି ପୃଥିବୀ ଆଡ଼କୁ ଚାହିଁଲା ବେଳେ ତାଙ୍କ ଚଞ୍ଚଳ ନେତ୍ର ଏପରି ସୁଶୋଭିତ ହେଉଥାଏ, ସତେ ଯେମିତି ଚନ୍ଦ୍ରମଣ୍ଡଳ ରୂପୀ କୁଣ୍ଡରେ କାମଦେବଙ୍କର ଦୁଇଟି ମୀନ ଖେଳୁଅଛନ୍ତି କି ! ॥ ୨୫୮ ॥ ଚୌପାଈ :—ସୀତାଙ୍କର ବାଣୀ-ଭ୍ରମରୀକୁ ତାଙ୍କ ମୁଖ-କମଳ ଆବଦ୍ଧ କରି ରଖିଥାଏ । ଲଜ୍ଜା-ରାତ୍ରିକୁ ଦେଖି ତାହା ପ୍ରକାଶିତ ହୋଇପାରୁ ନ ଥାଏ । ବଡ଼ କୃପଣରେ ସୁନା ଘରର କୌଣସି କୋଣରେ

ସକୁଚୀ ବ୍ୟାକୁଲତା ବଡ଼ି ଜାନୀ । ଧରି ଧୀରଜୁ ପ୍ରତୀତି ଉର ଆନୀ ॥
ତନ ମନ ବଚନ ମୋର ପନୁ ସାଚା । ରଘୁପତି ପଦ ସରୋଜ ଚିତୁ ରାଚା ॥୨॥
ତୌ ଭଗବାନୁ ସକଲ ଉର ବାସୀ । କରିହହିଁ ମୋହି ରଘୁବର କୈ ଦାସୀ ॥
ଜେହି କେଁ ଜେହି ପର ସତ୍ୟ ସନେହୂ । ସୋ ତେହି ମିଲଇ ନ କଛୁ ସନ୍ଦେହୂ ॥୩॥
ପ୍ରଭୁ ତନ ଚିତଇ ପ୍ରେମ ତନ ଠାନା । କୃପାନିଧାନ ରାମ ସବୁ ଜାନା ॥
ସିୟହି ବିଲୋକି ତକେଉ ଧନୁ କୈସେଁ । ଚିତବ ଗରୁରୁ ଲଘୁ ବ୍ୟାଲହି ଜୈସେ ॥୪॥

ଲଖନ ଲଖେଉ ରଘୁବଂସମନି ତାକେଉ ହର କୋଦଂଡୁ ।
ପୁଲକି ଗାତ ବୋଲେ ବଚନ ଚରନ ଚାପି ବ୍ରହ୍ମଂଡୁ ॥୨୫୯॥

ଦିସିକୁଂଜରହୁ କମଠ ଅହି କୋଲା । ଧରହୁ ଧରନି ଧରି ଧୀର ନ ଡୋଲା ॥
ରାମୁ ଚହହିଁ ସଂକରଧନୁ ତୋରା । ହୋହୁ ସଜଗ ସୁନି ଆୟସୁ ମୋରା ॥୧॥

---

ବଡ଼ ବ୍ୟାକୁଳତା ଜାଣି ସଙ୍କୋଚ ଲଭିଲେ । ହୃଦୟେ ଧୈର୍ଯ୍ୟ ଧରିଣ ପ୍ରତୀତ ହେନଲେ ॥
ଯେବେ କାୟମନ ବାକ୍ୟେ ସତ୍ୟ ମୋର ପଣ । ଅଭିଳଷଇ ରାମଙ୍କ ରାଜୀବ-ଚରଣ ॥୨॥
ତେବେ ଭଗବାନ ସର୍ବ-ହୃଦ-ସଦ୍ମ-ବାସୀ । କରିବେ ମୋତେ ଶ୍ରୀ ରଘୁପତିଙ୍କର ଦାସୀ ॥
ଯାହାର ଯାହା ଉପରେ ଥାଏ ସତ୍ୟ ସ୍ନେହ । ତାହାକୁ ତାହା ମିଳଇ, ଏହା ନିଃସନ୍ଦେହ ॥୩॥
ପ୍ରଭୁଙ୍କୁ ନିରେଖି ପ୍ରେମ ପ୍ରତିଜ୍ଞା ଠାଣିଲେ । କୃପାସିନ୍ଧୁ ରାମ ହୃଦ ଭାବନା ଜାଣିଲେ ॥
ସୀତାଙ୍କୁ ଚାହିଁ ଧନୁକୁ ଚାହିଁଲେ ଯେମନ୍ତ । ଚାହେଁ ବୈନତେୟ କ୍ଷୁଦ୍ର ସର୍ପକୁ ଯେମନ୍ତ ॥୪॥

ଲକ୍ଷ୍ମଣ ଲକ୍ଷ୍ୟ କଲେ, ରଘୁନାଥ ହରଚାପେ ନିରେଖନ୍ତି ।
ପୁଲକ ଶରୀରେ ଭାଷିଲେ ବଚନ ପାଦେ ଚାପି ବସୁମତୀ ॥୨୫୯॥

ଦିଶି-କୁଞ୍ଜର କଚ୍ଛପ ଅହୀଶ ଶୂକର । ଅବିଚଳେ ଧୈର୍ଯ୍ୟ ଧରି ଧରଣୀକୁ ଧର ॥
ରାମ ଭଞ୍ଜନେ ଚାହାନ୍ତି ଶମ୍ଭୁ ଶରାସନ । ସାବଧାନ ହୁଅ ଶୁଣି ମୋ ଅନୁଶାସନ ॥୧॥

---

ପୋତା ହୋଇ ରହିଲା ପରି ତାଙ୍କ ନେତ୍ରଜଳ ନେତ୍ରର କୋଣରେ ହିଁ ରହିଥାଏ ॥ ୧ ॥ ନିଜ ଉଦ୍‌ବିଗ୍ନତା ବଢ଼ି ଯାଉଥିବାର ଶୁଣି ସୀତା ସଙ୍କୁଚିତ ହେଲେ ଏବଂ ଧୈର୍ଯ୍ୟ ଧାରଣ କରି ହୃଦୟରେ ବିଶ୍ୱାସ ଆଣିଲେ । ସେ ଦୃଢନିଶ୍ଚୟ କଲେ, "ଯଦି କାୟ-ମନୋ-ବାକ୍ୟରେ ମୋର ପ୍ରତିଜ୍ଞା ସତ୍ୟ ହୋଇଥିବ ଏବଂ ଶ୍ରୀ ରଘୁନାଥଙ୍କ ଚରଣ-କମଳ ପ୍ରତି ମୋର ମନ ବାସ୍ତବରେ ଅନୁରକ୍ତ ଥିବ, ତେବେ ସର୍ବହୃଦୟବାସୀ ଭଗବାନ୍ ମୋତେ ରଘୁବର ଶ୍ରୀରାମଚନ୍ଦ୍ରଙ୍କ ଦାସୀ ଅବଶ୍ୟ କରିବେ । ଯାହା ପ୍ରତି ଯାହାର ସ୍ନେହ ସତ୍ୟ, ସେ ତାହାକୁ ନିଶ୍ଚୟ ମିଳେ । ଏଥିରେ ତିଳେ ମାତ୍ର ସନ୍ଦେହ ନାହିଁ ॥ ୨-୩ ॥ ପ୍ରଭୁଙ୍କ ଆଡକୁ ଚାହିଁ ସୀତା ଆପଣା ଶରୀର ମାଧ୍ୟମରେ ପ୍ରେମର କଳନା କରି ପକାଇଲେ । (ଅର୍ଥାତ୍ ଏ ଶରୀର ପ୍ରଭୁଙ୍କର ହୋଇ ରହିବ ଅଥବା ଆଦୌ ରହିବ ହିଁ ନାହିଁ—ଏହା ନିଶ୍ଚୟ କରି ପକାଇଲେ ।) କୃପାନିଧାନ ଶ୍ରୀରାମଚନ୍ଦ୍ର ସବୁ ଜାଣିପାରିଲେ । ସେ ସୀତାଙ୍କୁ ଦେଖି ତତ୍ପରେ ଗରୁଡ ଛୋଟ ସାପ ଆଡକୁ ତାଚ୍ଛଲ୍ୟରେ ଚାହିଁଲା ପରି ଧନୁ ଆଡକୁ ନିରୀକ୍ଷଣ

ଋପ ସମୀପ ରାମୁ ଜବ ଆଏ । ନର ନାରିନ୍ହ ସୁର ସୁକୃତ ମନାଏ ॥
ସବ କର ସଂସଉ ଅରୁ ଅଜ୍ଞାନୂ । ମଂଦ ମହୀପନ୍ହ କର ଅଭିମାନୂ ॥୨॥
ଭୃଗୁପତି କେରି ଗରବ ଗରୁଆଈ । ସୁର ମୁନିବରନ୍ହ କେରି କଦରାଈ ॥
ସିୟ କର ସୋଚୁ ଜନକ ପଛିତାୱା । ରାନିନ୍ହ କର ଦାରୁନ ଦୁଖ ଦାୱା ॥୩॥
ସଂଭୁଚାପ ବଡ ବୋହିତୁ ପାଈ । ଚଢେ ଜାଇ ସବ ସଂଗୁ ବନାଈ ॥
ରାମ ବାହୁବଲ ସିଂଧୁ ଅପାରୂ । ଚହତ ପାରୁ ନହିଁ କୋଉ କଡହାରୂ ॥୪॥
ରାମ ବିଲୋକେ ଲୋଗ ସବ ଚିତ୍ର ଲିଖେ ସେ ଦେଖି ॥
ଚିତଈ ସୀୟ କୃପାୟତନ ଜାନୀ ବିକଲ ବିସେଷି ॥୨୬୦॥

---

ଚାପ ସମୀପେ ଆସିଲେ ଯେବେ ରଘୁପତି । ନର ନାରୀଗଣ ସୁରେ ସୁକୃତ ସୁମରନ୍ତି ॥
ସମସ୍ତଙ୍କର ସଂଶୟ ଆବର ଅଜ୍ଞାନ । ମନ୍ଦ ମହୀପାଳଙ୍କର ଘୋର ଅଭିମାନ ॥୨॥
ଭୃଗୁପତିଙ୍କ ଗରବ ଗରିମା ପ୍ରବଳ । ସୁର ମୁନିବରଙ୍କର ଭୀରୁତା ସକଳ ॥
ସୀତାଙ୍କ ଚିନ୍ତା ଜନକ ନୃପ ପଶ୍ଚାତ୍ତାପ । ରାଣୀମାନଙ୍କ ଦାରୁଣ ଦାବାଗ୍ନି ସନ୍ତାପ ॥୩॥
ଶମ୍ଭୁ-ଚାପରୂପୀ ବଡ ବୋଇତ ପାଇଣ । ମେଳ ହୋଇ ଆରୋହିଲେ ସମସ୍ତେ ଯାଇଣ ॥
ରାମ ବାହୁବଳ-ପାରାବାର ଯେ ଅପାର । ଚାହାନ୍ତି ପାର ହେବାକୁ, ନାହିଁ କର୍ଣ୍ଣଧାର ॥୪॥
ରାମ ବିଲୋକିଲେ ଲୋକମାନେ ଚିତ୍ର-ଲେଖା ସଦୃଶ ଦିଶନ୍ତି ।
ପୁଣି ଜାନକୀଙ୍କୁ ଚାହିଁ କୃପାନିଧି ଜାଣିଲେ ବ୍ୟାକୁଳ ଅତି ॥୨୬୦॥

---

କରିବାକୁ ଲାଗିଲେ ॥ ୪ ॥ ଦୋହା :—ଏଣେ ଲକ୍ଷ୍ମଣ ରଘୁକୁଳମଣି ଶ୍ରୀରାମଙ୍କୁ ଶିବଧନୁ ଆଡକୁ ନିରୀକ୍ଷଣ କରିବାର ଦେଖି ପୁଲକିତ-ଶରୀର ହୋଇ ବ୍ରହ୍ମାଣ୍ଡକୁ ଚରଣ ଦ୍ୱାରା ଚାପି ନିମ୍ନଲିଖିତ ବଚନ କହିଲେ— ॥ ୨୫୯ ॥ "ହେ ଦିଗ୍‌ଗଜମାନେ ! ହେ କଚ୍ଛପ ! ହେ ଶେଷ ! ହେ ବରାହ ! ଧୈର୍ଯ୍ୟ ଧରି ପୃଥିବୀକୁ ସମ୍ଭାଳି ରଖ, ଯେପରି ଏହା ହଲି ନ ପାରିବ । ଶ୍ରୀରାମଚନ୍ଦ୍ର ଶିବଧନୁକୁ ଭାଙ୍ଗିବାକୁ ଆସୁଛନ୍ତି ; ମୋର ଆଦେଶ ଶୁଣି ସମସ୍ତେ ସାବଧାନ ହୋଇଯାଅ ।" ॥ ୧ ॥ ଶ୍ରୀରାମଚନ୍ଦ୍ର ଯେତେବେଳେ ଧନୁ ସମୀପକୁ ଆସିଲେ, ସମସ୍ତ ନରନାରୀ ଦେବତାବୃନ୍ଦଙ୍କୁ ଆପଣା ଆପଣାର ସୁକୃତ ମନାସିଲେ । ସମସ୍ତଙ୍କ ସନ୍ଦେହ ଓ ନୀଚ ରାଜାମାନଙ୍କର ଅଭିମାନ, ପରଶୁରାମଙ୍କ ଗର୍ବର ଗୁରୁତ୍ୱ, ଦେବତା ଓ ମୁନିବରବୃନ୍ଦଙ୍କ କାତରତା, ସୀତାଙ୍କ ଶୋଚନା, ଜନକଙ୍କ ପଶ୍ଚାତ୍ତାପ ଓ ରାଣୀବୃନ୍ଦଙ୍କ ଦାରୁଣ-ଦୁଃଖ-ଦାବାନଳ—ଏମାନେ ସମସ୍ତେ ଶିବଧନୁ ରୂପକ ବଡ ଜାହାଜ ପାଇ ତହିଁ ଉପରେ ଏକା ସଙ୍ଗେ ଯାଇ ଚଢିଲେ । ଏମାନେ ଶ୍ରୀରାମଙ୍କ ବାହୁବଳ ରୂପୀ ଅପାର ସମୁଦ୍ରକୁ ପାର କରିବାକୁ ଆଗ୍ରହୀ । କିନ୍ତୁ କୈବର୍ତ୍ତ କେହି ନାହିଁ ॥ ୨, ୩, ୪ ॥ ଦୋହା :—ଶ୍ରୀରାମ ସମସ୍ତ ଲୋକଙ୍କ ଆଡକୁ ଚାହିଁଲେ । ସମସ୍ତେ ଚିତ୍ରାଙ୍କିତ ପ୍ରତିମା ପରି ତାଙ୍କୁ ଦେଖାଯାଉଥା'ନ୍ତି । ତତ୍ପରେ କୃପାଧାମ ଶ୍ରୀରାମ ସୀତାଙ୍କ ଆଡକୁ ନିରୀକ୍ଷଣ କରି ତାଙ୍କର ସବିଶେଷ ବ୍ୟାକୁଳତା ଉପଲବ୍ଧି କଲେ ॥ ୨୬୦ ॥

ଦେଖୀ ବିପୁଲ ବିକଲ ବୈଦେହୀ । ନିମିଷ ବିହାତ କଲପ ସମ ତେହୀ ॥
ତୃଷିତ ବାରି ବିନୁ ଜୋ ତନୁ ତ୍ୟାଗା । ମୁଏଁ କରଇ କା ସୁଧା ତଡ଼ାଗା ॥୧॥
କା ବରଷା ସବ କୃଷୀ ସୁଖାନେଁ । ସମୟ ଚୁକେଁ ପୁନି କା ପଛିତାନେଁ ॥
ଅସ ଜିୟଁ ଜାନି ଜାନକୀ ଦେଖୀ । ପ୍ରଭୁ ପୁଲକେ ଲଖି ପ୍ରୀତି ବିସେଷୀ ॥୨॥
ଗୁରହି ପ୍ରନାମୁ ମନହିଁ ମନ କୀହ୍ନା । ଅତି ଲାଘବଁ ଉଠାଇ ଧନୁ ଲୀହ୍ନା ॥
ଦମକେଉ ଦାମିନି ଜିମି ଜବ ଲୟଉ । ପୁନି ନଭ ଧନୁ ମଣ୍ଡଲସମ ଭୟଉ ॥୩॥
ଲେତ ଚଢ଼ାୱତ ଖୈଁଚତ ଗାଢେଁ । କାହୁଁ ନ ଲଖା ଦେଖ ସବୁ ଠାଢେଁ ॥
ତେହିଁ ଛନ ରାମ ମଧ୍ୟ ଧନୁ ତୋରା । ଭରେ ଭୁବନ ଧୁନି ଘୋର କଠୋରା ॥୪॥

ଭରେ ଭୁବନ ଘୋର କଠୋର ରବ ରବି ବାଜି ତଜି ମାରଗୁ ଚଲେ ।
ଚିକ୍କରହିଁ ଦିଗ୍ଗଜ ଡୋଲ ମହି ଅହି କୋଲ କୂରୁମ କଲମଲେ ॥
ସୁର ଅସୁର ମୁନି କର କାନ ଦୀହ୍ନେଁ ସକଲ ବିକଲ ବିଚାରହୀଁ ।
କୋଦଂଡ ଖଂଡେଉ ରାମ ତୁଲସୀ ଜୟତି ବଚନ ଉଚାରହୀଁ ॥

---

ଦେଖିଲେ ବଇଦେହୀଙ୍କୁ ବିକଳ ବିଶେଷ । କଳ୍ପ ସମାନ ସେ କାଟୁ ଅଛନ୍ତି ନିମେଷ ॥
ପାଣି ବିନା ତୃଷାତୁର ପ୍ରାଣ କଲେ ତ୍ୟାଗ । ମୃତ୍ୟୁ ପରେ କି କରିବ ଅମୃତ ତଡ଼ାଗ ॥୧॥
କି ହେବ ବରଷା କୃଷି ଶୁଖିଗଲା ଯେବେ । ସମୟ ହୁଡ଼ି କି ହେବ ପଶ୍ଚାତ୍ତାପେ ତେବେ ॥
ଏମନ୍ତ ହୃଦେ ବିଚାରି ସୀତାଙ୍କୁ ନିରେଖି । ପ୍ରଭୁ ପୁଲକିତ ହେଲେ ପ୍ରୀତି ଅତି ଦେଖି ॥୨॥
ଗୁରୁଙ୍କୁ ପ୍ରଣାମ କରି ହୃଦୟ ମଧ୍ୟରେ । ଉଠାଇ ନେଲେ ଧନୁକୁ ଅତି ଲାଘବରେ ॥
ଚମକି ଚପଳା ଅବା ମିଳିଗଲା ଘନେ । ପୁଣି ଧନୁ ହେଲା ନଭୋମଣ୍ଡଳ ସେସନେ ॥୩॥
ଉଠାନ୍ତେ ଗୁଣ ଚଢାନ୍ତେ ସ୍ୱଦୃଢେ ଟାଣନ୍ତେ । କେହି ନ ଜାଣିଲେ, ଉଭା ଦେଖନ୍ତି ସମସ୍ତେ ॥
ସେହି କ୍ଷଣି ରାମ ଧନୁ କଲେ ଦୁଇଖଣ୍ଡ । ପୂରିଲା ଭୁବନେ ଧ୍ୱନି କଠୋର ପ୍ରଚଣ୍ଡ ॥୪॥

ପୂରିଲା ବିଶ୍ୱେ, ଘୋଷ ଭୀମ ଘୋର ଦିନେଶ ଅଶ୍ୱ ତେଜିଲେ ତେଜ ରାହ ।
ଚିତ୍କାରନ୍ତି ଦିଗ୍ଗଜ, ଭୂ କମ୍ପେ, ଅହିରାଜ ବ୍ୟାକୁଳ କୂର୍ମ ଯେ ବରାହ ।
ସୁର ଅସୁର ମୁନିମାନେ, ଚମକନ୍ତି କର ଦେଇ କାନେ ।
କୋଦଣ୍ଡ ଶିବଙ୍କର ଖଣ୍ଡିଲେ ରଘୁବର, ତୁଳସୀ ରତ ଜୟଗାନେ ॥

---

ଚୌପାଇ —ସେ ଜାନକୀଙ୍କୁ ଅତି ବିକଳ ହେଉଥିବାର ଦେଖିଲେ । ତାଙ୍କର ଏକ ଏକ ମୁହୂର୍ତ୍ତ କଳ୍ପ ସମାନ କଟୁଥାଏ । ଯଦି ତୃଷାର୍ତ୍ତ ବ୍ୟକ୍ତି ଜଳ ବିନା ଶରୀର ତ୍ୟାଗ କରେ, ତେବେ ତାହାର ମୃତ୍ୟୁ ପରେ ଅମୃତ-ସରୋବର ଥାଇ ହୁଏ୍ ବା କ'ଣ କରିବ ? ॥୧॥ ସମସ୍ତ କ୍ଷେତ ଶୁଖିଗଲା ପରେ ବର୍ଷା ହେଲେ ବା କି କାମର ? ଅବସର ଗଡ଼ିଗଲା ପରେ ଅନୁତାପ କରି ଲାଭ କ'ଣ ? ମନେ ମନେ ଏହିପରି ବିଚାରି ଶ୍ରୀରାମ ଜାନକୀଙ୍କ ଆଡ଼କୁ ଚାହିଁଲେ ଏବଂ ତାଙ୍କର ସବିଶେଷ ପ୍ରେମ ଦେଖି ପୁଲକିତ ହୋଇ ପଡ଼ିଲେ ॥ ୨ ॥

ସଂକର ଚାପୁ ଜହାଜୁ ସାଗରୁ ରଘୁବର ବାହୁବଲୁ ।
ବୂଡ଼ ସୋ ସକଲ ସମାଜୁ ଚଢ଼ା ଜୋ ପ୍ରଥମହି ମୋହ ବସ ॥୨୬୧॥
ପ୍ରଭୁ ଦୋଉ ଚାପଖଣ୍ଡ ମହି ଡାରେ । ଦେଖି ଲୋଗ ସବ ଭଏ ସୁଖାରେ ॥
କୌସିକରୂପ ପୟୋନିଧି ପାବନ । ପ୍ରେମ ବାରି ଅବଗାହୁ ସୁହାବନ ॥୧॥
ରାମରୂପ ରାକେସୁ ନିହାରୀ । ବଢ଼ତ ବୀଚି ପୁଲକାବଲି ଭାରୀ ॥
ବାଜେ ନଭ ଗହଗହେ ନିସାନା । ଦେବବଧୂ ନାଚହିଁ କରି ଗାନା ॥୨॥

---

ପ୍ରଭୁ ବାହୁବଳ ସାଗର ସଦୃଶ ଶିବଙ୍କ ଚାପ ଜାହାଜ ।
ପ୍ରଥମୁ ଯେ ଚଢ଼ି ଥିଲେ ମୋହବଶ ବୁଡ଼ିଲେ ସାରା ସମାଜ ॥୨୬୧॥
ପ୍ରଭୁ ବେନି ଚାପ ଖଣ୍ଡ ଭୂମେ ନିକ୍ଷେପିଲେ । ବିଲୋକିଣ ଲୋକ ସର୍ବେ ଆନନ୍ଦ ଲଭିଲେ ॥
କୌଶିକଙ୍କ ରୂପ ଯେଉଁ ପୟୋଧି ପାବନ । ପ୍ରେମ-ସଲିଳ ରାଶିରେ ପୂର୍ଣ୍ଣ ସୁଶୋଭନ ॥୧॥
ରାମ ରୂପ ରାକେଶଙ୍କୁ ବିଲୋକନ କରି । ବଢ଼ିଲା ପୁଲକାବଳୀ ପ୍ରବଳ ଲହରୀ ॥
ଗହ ଗହ ଗଗନରେ ବାଜିଲା ନିଶାଣ । ନାଚିଲେ ବିବୁଧ-ବଧୂ କରି କଳ ଗାନ ॥୨॥

---

ମନେ ମନେ ସେ ଗୁରୁଙ୍କୁ ପ୍ରଣାମ କଲେ ଏବଂ ଅବଲୀଳାକ୍ରମେ ଧନୁ ଉଠାଇ ଦେଲେ । ହାତରେ ଉଠାଇଲା ବେଳେ ତାହା ବିଜୁଳି ପରି ଚମକିଲା ଏବଂ ପୁଣି ଆକାଶରେ ମଣ୍ଡଳାକାର ପରି ଦିଶିଗଲା ॥ ୩ ॥ କେତେବେଳେ ସେ ଧନୁ ଉଠାଇଲେ, କେତେବେଳେ ଗୁଣ ଚଢାଇଲେ ଏବଂ କେତେବେଳେ ଜୋରରେ ଟାଣିଲେ, ତାହା କେହୁ ଦେଖିପାରିଲେ ନାହିଁ । ସମସ୍ତେ ଶ୍ରୀରାମଙ୍କୁ ଧନୁକୁ ଟାଣି ଛିଡ଼ା ହୋଇଥିବାର ଦେଖିଲେ । ସେହିକ୍ଷଣି ଶ୍ରୀରାମ ଧନୁକୁ ମଝିରୁ ଭାଙ୍ଗି ଦେଲେ । ଘୋର, କଠୋର ଧ୍ୱନିରେ ସମସ୍ତ ସଂସାର ପରିପୂର୍ଣ୍ଣ ହୋଇଗଲା ॥ ୪ ॥ ଛନ୍ଦ :—ଘୋର, କଠୋର ଧ୍ୱନିରେ ସମସ୍ତ ସଂସାର ପରିପୂର୍ଣ୍ଣ ହୋଇଗଲା । ସୂର୍ଯ୍ୟଙ୍କର ଅଶ୍ୱମାନେ ମାର୍ଗ ଛାଡ଼ି ଚାଲିବାକୁ ଲାଗିଲେ । ଦିଗ୍‌ଗଜମାନେ ଗର୍ଜନ କରିବାକୁ ଲାଗିଲେ । ପୃଥିବୀ ଦୋହଲିବାକୁ ଲାଗିଲା । ଶେଷ, ବରାହ ଓ କଚ୍ଛପ ଆଦି କମ୍ପିବାକୁ ଲାଗିଲେ । ଦେବତା, ରାକ୍ଷସ ଓ ମୁନିମାନେ କାନରେ ହାତ ଦେଇ ବିକଳ ହୋଇ ଚିନ୍ତା କରିବାକୁ ଲାଗିଲେ । ତୁଳସୀ ଦାସ କହନ୍ତି— ଯେତେବେଳେ ଶ୍ରୀରାମ ଧନୁର୍ଭଙ୍ଗ କଲେ ବୋଲି ସମସ୍ତେ ନିଶ୍ଚିତ ଭାବରେ ଜାଣିଲେ, ସେତେବେଳେ ସମସ୍ତେ ଶ୍ରୀରାମଙ୍କ 'ଜୟ' ଧ୍ୱନି କରିବାକୁ ଲାଗିଲେ । ସୋରଠା :— ଶିବଧନୁ ଜାହାଜ ଏବଂ ଶ୍ରୀରାମଙ୍କ ବାହୁବଳ ସମୁଦ୍ର । ପ୍ରଥମେ ଯେଉଁ ସମାଜ ମୋହବଶ ଏହି ଜାହାଜ ଉପରେ ବସିଥିଲା, ଧନୁ ଭାଙ୍ଗି ଯିବାରୁ ଉକ୍ତ ସମାଜ ବୁଡ଼ିଗଲା ॥ ୨୬୧ ॥ ଚୌପାଇ —ପ୍ରଭୁ ଧନୁର ଦୁଇଟି ଯାକ ଖଣ୍ଡ ପୃଥିବୀ ଉପରେ ପକାଇ ଦେଲେ । ଏହା ଦେଖି ସମସ୍ତ ଲୋକ ସୁଖୀ ହେଲେ । ବିଶ୍ୱାମିତ୍ରଙ୍କ ପରି ପବିତ୍ର ସମୁଦ୍ରରେ ପ୍ରେମରୂପୀ ସୁନ୍ଦର ଅଗାଧ ଜଳ ପରିପୂର୍ଣ୍ଣ । ତହିଁରେ ରାମଚନ୍ଦ୍ର-ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି ପୁଲକାବଳୀ ରୂପରେ ଉଚ୍ଛଳ ଲହରୀ ବଢ଼ିବାକୁ ଲାଗିଲା । ଆକାଶରେ ଘନ ଘନ ନାଦରେ ଦୁନ୍ଦୁଭି

ବ୍ରହ୍ମାଦିକ ସୁର ସିଦ୍ଧ ମୁନୀସା । ପ୍ରଭୁହି ପ୍ରସଂସହିଁ ଦେହିଁ ଅସୀସା ॥
ବରିସହିଁ ସୁମନ ରଙ୍ଗ ବହୁ ମାଲା । ଗାୱହିଁ କିଂନର ଗୀତ ରସାଲା ॥୩॥
ରହୀ ଭୁବନ ଭରି ଜୟ ଜୟ ବାନୀ । ଧନୁଷଭଂଗ ଧୁନି ଜାତ ନ ଜାନୀ ॥
ମୁଦିତ କହହିଁ ଜହଁ ତହଁ ନର ନାରୀ । ଭଂଜେଉ ରାମ ସଂଭୁଧନୁ ଭାରୀ ॥୪॥

ବନ୍ଦୀ ମାଗଧ ସୂତଗନ ବିରୁଦ ବଦହିଁ ମତିଧୀର ।
କରହିଁ ନିଛାୱରି ଲୋଗ ସବ ହୟ ଗୟ ଧନ ମନି ଚୀର ॥୨୬୨॥

ଝାଁଝି ମୃଦଂଗ ସଂଖ ସହନାଈ । ଭେରି ଢୋଲ ଦୁଂଦୁଭୀ ସୁହାଈ ॥
ବାଜହିଁ ବହୁ ବାଜନେ ସୁହାଏ । ଜହଁ ତହଁ ଜୁବତିନ୍ହ ମଂଗଲ ଗାଏ ॥୧॥
ସଖିନ୍ହ ସହିତ ହରଷୀ ଅତି ରାନୀ । ସୂଖତ ଧାନ ପରା ଜନୁ ପାନୀ ॥
ଜନକ ଲହେଉ ସୁଖୁ ସୋଚୁ ବିହାଈ । ପୈରତ ଥକେଂ ଥାହ ଜନୁ ପାଈ ॥୨॥

---

ବ୍ରହ୍ମାଦି ଦେବତା ସିଦ୍ଧ ଆବର ମୁନୀଶ । ପ୍ରଭୁଙ୍କୁ ପ୍ରଶଂସା କରି ଦିଅନ୍ତି ଆଶିଷ ॥
ବହୁ ରଙ୍ଗେ ବରଷାନ୍ତି ସୁମନର ମାଳ । କିନ୍ନରେ ଗାନ କରନ୍ତି ଗୀତ ସୁରସାଳ ॥୩॥
ଭୁବନେ ପୂରି ରହିଲା ଜୟ ଜୟ ବାଣୀ । ଧନୁ ଭାଙ୍ଗିବାର ଧ୍ୱନି ନ ହୁଅଇ ଜାଣି ॥
ଆନନ୍ଦେ କହନ୍ତି ଯହିଁ ତହିଁ ନରନାରୀ । ଭାଙ୍ଗିଲେ ରାମ ଶଙ୍କର ଶରାସନ ଭାରୀ ॥୪॥

ସ୍ଥିର ମତି ବନ୍ଦୀ ସୁତଭାଟ ଆଦି ଗା'ଆନ୍ତି କୁଳ କୀରତି ।
ଲୋକେ ଗଜ ବାଜି ଧନ ମଣି ଚୀର ହର୍ଷେ ଉତ୍ସର୍ଗ କରନ୍ତି ॥୨୬୨॥

ଝାଞ୍ଜି ମୃଦଙ୍ଗ ନିଷାଣ ଦୁନ୍ଦୁଭି ଆବର । ଢୋଲ ଭେରୀ ପେହେଂକାଳୀ ଶଙ୍ଖ ମନୋହର ॥
ବାଜଇ ବିବିଧ ବାଦ୍ୟ ସୁରାଗରେ ଅତି । ଯେଣେ ତେଣେ ସୁମଙ୍ଗଳ ଗାଆନ୍ତି ଯୁବତୀ ॥୧॥
ସଖୀଗଣଙ୍କ ସହିତେ ହରଷିତ ରାଣୀ । ଶୁଖିବା ବେଳେ ଧା'ନରେ ପଡ଼ିଲା କି ପାଣି ॥
ଜନକ ଲଭିଲେ ସୁଖ ଚିନ୍ତା ପରିହରି । ସନ୍ତରଣ-କ୍ଳାନ୍ତ ସ୍ଥଳ ପାଇଲା ଯେପରି ॥୨॥

---

ବାଜିବାକୁ ଲାଗିଲା ଏବଂ ଦେବାଙ୍ଗନାମାନେ ସଙ୍ଗୀତ-ଗାନପୂର୍ବକ ନାଚିବାକୁ ଲାଗିଲେ ॥ ୧, ୨ ॥ ବ୍ରହ୍ମା ଆଦି ଦେବତାବୃନ୍ଦ, ସିଦ୍ଧ ଓ ମୁନୀଶ୍ୱରଗଣ ପ୍ରଭୁଙ୍କୁ ପ୍ରଶଂସା କରୁଥା'ନ୍ତି ଏବଂ ଆଶୀର୍ବାଦ ଦେଉଥା'ନ୍ତି । ବିବିଧ ରଙ୍ଗର ଫୁଲ ଓ ମାଳା ବୃଷ୍ଟି କରୁଥା'ନ୍ତି । କିନ୍ନରମାନେ ସରସ ସଙ୍ଗୀତ ଗାଉଥା'ନ୍ତି ॥ ୩ ॥ ସମଗ୍ର ସଂସାରରେ 'ଜୟ' 'ଜୟ' ଧ୍ୱନି ବ୍ୟାପିଗଲା । ଉକ୍ତ ଧ୍ୱନି ମଧ୍ୟରେ ଧନୁର୍ଭଙ୍ଗର ଶବ୍ଦ ଶୁଣା ପଡ଼ିଲା ନାହିଁ । ଯେଉଁଠି ଦେଖ ସେଇଠ ସ୍ତ୍ରୀ ପୁରୁଷମାନେ ପ୍ରସନ୍ନ ମନରେ କଥାବାର୍ତ୍ତା ହେଉଥା'ନ୍ତି—"ଶ୍ରୀରାମଚନ୍ଦ୍ର ଶିବଧନୁକୁ ଭାଙ୍ଗି ପକାଇଲେ ।" ॥ ୪ ॥ ଦୋହା :— ଧୀରମତି ଭାଟ, ମାଗଧ ଓ ସୂତଗଣ ରାମଙ୍କର କୀର୍ତ୍ତି ବଖାଣ କରୁଅଛନ୍ତି । ସମସ୍ତ ଲୋକ ଅଶ୍ୱ, ହସ୍ତୀ, ଧନ, ମଣି ଓ ବସ୍ତ୍ର ଦାନ-ଉତ୍ସର୍ଗ କରିବାରେ ଲାଗିଛନ୍ତି ॥ ୨୬୨ ॥ ଚୌପାଈ :—ଝାଞ୍ଜ, ମୃଦଙ୍ଗ, ଶଙ୍ଖ, ଶହନାଇ, ଭେରୀ, ଢୋଲ ଓ ସୁନ୍ଦର ନାଗରା ଆଦି ବହୁତ ପ୍ରକାର ମନୋହର ବାଜା ବାଜୁଅଛି । ଯେଉଁଠି ଦେଖ ସେଇଠି ଯୁବତୀ-

ଶ୍ରୀହତ ଭଏ ଭୂପ ଧନୁ ଟୂଟେ । ଜୈସେଁ ଦିବସ ଦୀପ ଛବି ଛୂଟେ ॥
ସୀୟ ସୁଖହି ବରନିଅ କେହି ଭାଁତୀ । ଜନୁ ଚାତକୀ ପାଇ ଜଲୁ ସ୍ୱାତୀ ॥୩॥
ରାମହି ଲଖନୁ ବିଲୋକତ କୈସେଂ । ସସିହି ଚକୋର କିସୋରକୁ ଜୈସେଁ ॥
ସତାନନ୍ଦ ତବ ଆୟସୁ ଦୀହ୍ନା । ସୀତାଁ ଗମନୁ ରାମ ପହିଁ କୀହ୍ନା ॥୪॥

ସଂଗ ସଖୀଁ ସୁନ୍ଦର ଚତୁର ଗାୱହିଁ ମଂଗଲଚାର ।
ଗୱନୀ ବାଲ ମରାଲ ଗତି ସୁଷମା ଅଙ୍ଗ ଅପାର ॥୨୬୩॥

ସଖିହ୍ନ ମଧ ସିୟ ସୋହତି କୈସେଁ । ଛବିଗନ ମଧ ମହାଛବି ଜୈସେଁ ॥
କର ସରୋଜ ଜୟମାଲ ସୁହାଈ । ବିସ୍ୱ ବିଜୟ ସୋଭା ଜେହିଁ ଛାଈ ॥୧॥
ତନ ସକୋଚୁ ମନ ପରମ ଉଛାହୂ । ଗୂଢ଼ ପ୍ରେମୁ ଲଖି ପରଇ ନ କାହୂ ॥
ଜାଇ ସମୀପ ରାମ ଛବି ଦେଖୀ । ରହି ଜନୁ କୁଅଁରି ଚିତ୍ର ଅୱରେଖୀ ॥୨॥

---

ଶ୍ରୀହତ ହେଲେ ମହୀପେ ଧନୁ ବିଭଗ୍ନେ । ଦୀପ ଶୋଭା ନଷ୍ଟ ହୁଏ ଦିବସେ ଯେସନେ ॥
ସୀତାଙ୍କ ସୁଖ କି ଭାବେ କରିବି ବର୍ଣ୍ଣନ । ଚାତକିନୀ ସ୍ୱାତୀଜଳ ପାଇଲା ଯେସନ ॥୩॥
ରାମଙ୍କୁ ଲକ୍ଷ୍ମଣ ଅବଲୋକନ୍ତି ତେମନ୍ତେ । ଶଶୀକୁ ଚାହେଁ ଚକୋର କିଶୋର ଯେମନ୍ତେ ॥
ତହୁଁ ଶତାନନ୍ଦ ଆଜ୍ଞା ପ୍ରଦାନ କରିଲେ । ସୀତା ରଘୁନନ୍ଦନଙ୍କ ନିକଟେ ଗମିଲେ ॥୪॥

ସଙ୍ଗେ ସହଚରୀ ଚତୁରୀ ସୁନ୍ଦରୀ ଗାଇଣ ମଙ୍ଗଳାଚାର ॥
ଗମନ କରନ୍ତି ବାଳହଂସଗତି ଶୋଭା ସୁଅଙ୍ଗେ ଅପାର ॥୨୬୩॥

ସଖୀଙ୍କ ମଧ୍ୟରେ ସୀତା ଶୋଭନ୍ତି ସେପରି । ଛବିଗଣ ମଧ୍ୟେ ମହାଛବି ଯେଉଁପରି ॥
ଶୋଭେ ଜୟମାଳ ଧରି ସରୋଜ-ପାଣିରେ । ବିଶ୍ୱ ବିଜୟ ଶୋଭା କି ନିହିତ ତହିଁରେ ॥୧॥
ତନୁ ସଙ୍କୋଚଇ ମନ ଉତ୍ସାହିତ ଅତି । ଗୂଢ଼ ପ୍ରେମ କେହି ଲକ୍ଷ୍ୟ କରି ନ ପାରନ୍ତି ॥
ସମୀପେ ଯାଇ ରାମଙ୍କ ଛବି ଦେଖି ଝୁରି । ଚିତ୍ରଲେଖା ପରି ସ୍ଥିତ ହୋଇଲେ କୁମାରୀ ॥୨॥

---

ମାନେ ମଙ୍ଗଳଗୀତ ଗାନ କରୁଅଛନ୍ତି ॥ ୧ ॥ ସଖୀମାନଙ୍କ ସମେତ ରାଣୀ ଅତ୍ୟନ୍ତ ଆନନ୍ଦିତ । ସତେ ଅବା ମରୁଡ଼ି କାଳରେ ଶୁଷ୍କ ଧାନ ଉପରେ ଜଳବୃଷ୍ଟି ହେଲା ପରି ! ଚିନ୍ତା ତ୍ୟାଗ କରି ଜନକ ସୁଖଲାଭ କଲେ । ସତେ ଅବା ସନ୍ତରଣ-କ୍ଲାନ୍ତ ପୁରୁଷ ଠାବ ପାଇଲା କି ! ॥ ୨ ॥ ଧନୁ ଭାଙ୍ଗିଯିବା ପରେ ରାଜାମାନେ ଦିନରେ ଦୀପ ଶ୍ରୀହୀନ ହେଲା ପରି ନିସ୍ତେଜ ହୋଇ ପଡ଼ିଲେ । ସୀତାଙ୍କ ଆନନ୍ଦ କିପରି ବା ବର୍ଣ୍ଣନା କରାଯାଇ ପାରିବ ? ଚାତକୀ ସ୍ୱାତୀ ନକ୍ଷତ୍ରରୁ ଜଳ ପାଇଲା ପରି ସେ ଆନନ୍ଦ ଅନୁଭବ କଲେ ॥ ୩ ॥ ଶ୍ରୀରାମଙ୍କୁ ଲକ୍ଷ୍ମଣ କିପରି ଭାବରେ ଦେଖୁଅଛନ୍ତି ?—ସତେ ଅବା ଚନ୍ଦ୍ରମାକୁ ଚକୋର ଦେଖୁଅଛି କି ! ତଦନନ୍ତର ଶତାନନ୍ଦ ଆଦେଶ ଦେଲେ ଏବଂ ସୀତା ଶ୍ରୀରାମଙ୍କ ନିକଟକୁ ଗମନ କଲେ ॥ ୪ ॥ ଦୋହା —ତାଙ୍କ ସଙ୍ଗେ ସୁନ୍ଦରୀ ଚତୁରୀ ସଖୀମାନେ ଗୀତ ଗାଉଥା'ନ୍ତି । ବାଲହଂସୀ ଗତିରେ ସୀତା ଚାଲୁଥା'ନ୍ତି । ତାଙ୍କ ଅଙ୍ଗ ଅପାର ଶୋଭାର ଆଧାର ॥ ୨୬୩ ॥ ଚୌପାଈ :—ସଖୀମାନଙ୍କ ମଧ୍ୟରେ ସୀତାଦେବୀ ବହୁତ ଛବି

ଚତୁର ସଖୀଁ ଲଖି କହା ବୁଝାଈ । ପହିରାୱହୁ ଜୟମାଲ ସୁହାଈ ॥
ସୁନତ ଜୁଗଲ କର ମାଲ ଉଠାଈ । ପ୍ରେମ ବିବସ ପହିରାଇ ନ ଜାଈ ॥୩॥
ସୋହତ ଜନୁ ଜୁଗ ଜଲଜ ସନାଲା । ସସିହି ସଭୀତ ଦେତ ଜୟମାଲା ॥
ଗାୱହିଁ ଛବି ଅବଲୋକି ସହେଲୀ । ସିୟଁ ଜୟମାଲ ରାମ ଉର ମେଲୀ ॥୪॥
ରଘୁବର ଉର ଜୟମାଲ ଦେଖି ଦେବ ବରିସହିଁ ସୁମନ ।
ସକୁଚେ ସକଲ ଭୁଆଲ ଜନୁ ବିଲୋକି ରବି କୁମୁଦଗନ ॥୨୬୪॥
ପୁର ଅରୁ ବ୍ୟୋମ ବାଜନେ ବାଜେ । ଖଲ ଭଏ ମଲିନ ସାଧୁ ସବ ରାଜେ ॥
ସୁର କିଂନର ନର ନାଗ ମୁନୀସା । ଜୟ ଜୟ ଜୟ କହି ଦେହିଁ ଅସୀସା ॥୧॥

---

ଚତୁରା ସଖୀ ନିରେଖି କହନ୍ତି ବୁଝାଇ । ସୀତା ଜୟମାଳ ଦିଅ ଗଳାରେ ଲମ୍ବାଇ ॥
ଶୁଣନ୍ତେ ଯୁଗଳ କରେ ମାଳା ଉଠାଇଲେ । ପ୍ରେମ ବିବଶ, ପିନ୍ଧାଇ ଗଳେ ନ ପାରିଲେ ॥୩॥
ଶୋଭଇ ଯେସନେ ବେନି କଞ୍ଜ ସମୃଣାଳ । ଶଶୀଙ୍କୁ ସଭୟେ ଦେଉଛନ୍ତି ଜୟମାଳ ॥
ଛବି ଅବଲୋକି ସଖୀ ଗାଆନ୍ତି ମଧୁରେ । ସୀତା ଜୟମାଳ ଲମ୍ବାଇଲେ ରାମ ଉରେ ॥୪॥
ରଘୁବର ହୃଦେ ଜୟମାଳ ଦେଖି ସୁରେ ସିଞ୍ଚନ୍ତି ସୁମନ ।
ସଙ୍କୋଚିଲେ ନୃପେ ରବିଙ୍କୁ ନିରେଖି ଯେସନେ କୁମୁଦ ଗଣ ॥୨୬୪॥
ପୁରେ ଅମ୍ବରେ ବାଜିଲା ବାଦ୍ୟ ଅଗଣିତ । ଖଳ ମଳିନ ହୋଇଲେ ସାଧୁ ଆନନ୍ଦିତ ॥
ଅମର କିନ୍ନର ନର ନାଗ ମୁନି ଗଣ । ଜୟ ଜୟ କହି ସର୍ବେ ଦିଅନ୍ତି ଆଶିଷ ॥୧॥

---

ମଧ୍ୟରେ ମହାଛବି ପରି ଶୋଭା ପାଉଥା'ନ୍ତି । କର-କମଳରେ ସୁନ୍ଦର ଜୟମାଳା ସୁଶୋଭିତ । ତହିଁ ମଧ୍ୟରେ ବିଶ୍ୱବିଜୟର ଶୋଭା ସତେ ଯେମିତି ଠୂଳ ହୋଇଛି ॥ ୧ ॥ ସୀତାଙ୍କ ଶରୀରରେ ସଙ୍କୋଚ ପରିସ୍ଫୁଟ, ମାତ୍ର ମନରେ ପରମ ଉତ୍ସାହ । ତାଙ୍କର ଏହି ଗୁପ୍ତ ପ୍ରେମ କାହାରିକୁ ହେଲେ ଜଣାପଡୁ ନ ଥାଏ । ସମୀପକୁ ଯାଇ ଶ୍ରୀରାମଙ୍କ ଶୋଭା ଦେଖି ରାଜକୁମାରୀ ଚିତ୍ରାଙ୍କିତ ପ୍ରତିମା ପରି ରହିଗଲେ ॥ ୨ ॥ ଚତୁରା ସଖୀ ଜଣେ ତାଙ୍କର ଏ ଦଶା ଦେଖି ବୁଝାଇ କହିଲା, "ସୁଶୋଭନା ଜୟମାଳା ପିନ୍ଧାଅ ।" ଏହା ଶୁଣି ସୀତା ଦୁଇ ହାତରେ ମାଳା ଉଠାଇଲେ । କିନ୍ତୁ ପ୍ରେମବିବଶା ହୋଇ ସେ ପିନ୍ଧାଇ ପାରୁ ନ ଥା'ନ୍ତି ॥ ୩ ॥ ସେହି ସମୟରେ ତାଙ୍କର ଦୁଇ ହାତ ଏପରି ସୁଶୋଭିତ ହେଉଥାଏ, ସତେ ଯେମିତି ନାଡ଼ ସମେତ ଦୁଇଟି କମଳ ଚନ୍ଦ୍ରମାକୁ ସଭୟ ଜୟମାଳା ଦେଉଅଛନ୍ତି ! ଏହି ଛବିକୁ ଦେଖି ସଖୀମାନେ ଗାନ କରିବାକୁ ଲାଗିଲେ । ସେତିକିବେଳେ ସୀତା ରାମଚନ୍ଦ୍ରଙ୍କ ଗଳାରେ ଜୟମାଳା ପିନ୍ଧାଇ ଦେଲେ ॥ ୪ ॥ ସୋରଠା — ଶ୍ରୀରଘୁନାଥଙ୍କ ହୃଦୟ ଉପରେ ଜୟମାଳା ଦେଖି ଦେବତାମାନେ ଫୁଲ ବରଷିବାକୁ ଲାଗିଲେ । ସମସ୍ତ ରାଜା ସୂର୍ଯ୍ୟଙ୍କୁ ଦେଖି କୁମୁଦସମୂହ ସଂକୁଚିତ ହେଲାପରି ସଂକୁଚିତ ହୋଇଗଲେ ॥ ୨୬୪ ॥ ଚୌପାଈ —ନଗର ଓ ଆକାଶରେ ବାଜା ବାଜିବାକୁ ଲାଗିଲା । ଦୁଷ୍ଟମାନେ ବିଷଣ୍ଣ ହୋଇ ପଡିଲେ ଏବଂ ସଜ୍ଜନମାନେ ସମସ୍ତେ ପ୍ରସନ୍ନ ହେଲେ ।

ନାଚହିଁ ଗାୱହିଁ ବିବୁଧ ବଧୂଟୀଁ । ବାର ବାର କୁସୁମାଂଜଲି ଛୂଟୀଁ ॥
ଜହଁ ତହଁ ବିପ୍ର ବେଦ ଧୁନି କରହୀଁ । ବନ୍ଦୀ ବିରିଦାବଲି ଉଚ୍ଚରହୀଁ ॥୨॥
ମହି ପାତାଲ ନାକ ଜସୁ ବ୍ୟାପା । ରାମ ବରୀ ସିୟ ଭଂଜେଉ ଚାପା ॥
କରହିଁ ଆରତୀ ପୁର ନର ନାରୀ । ଦେହିଁ ନିଛାୱରି ବିତ୍ତ ବିସାରୀ ॥୩॥
ସୋହତ ସୀୟ ରାମ କୈ ଜୋରୀ । ଛବି ସିଂଗାରୁ ମନହୁଁ ଏକ ଠୋରୀ ॥
ସଖୀଁ କହହିଁ ପ୍ରଭୁ ପଦ ଗହୁ ସୀତା । କରତି ନ ଚରନ ପରସ ଅତି ଭୀତା ॥୪॥

ଗୌତମ ତିୟ ଗତି ସୁରତି କରି ନହିଁ ପରସତି ପଗ ପାନି ।
ମନ ବିହସେ ରଘୁବଂସମନି ପ୍ରୀତି ଅଲୌକିକ ଜାନି ॥୨୬୫॥

ତବ ସିୟ ଦେଖି ଭୂପ ଅଭିଲାଷେ । କୂର କପୂତ ମୂଢ଼ ମନ ମାଖେ ॥
ଉଠି ଉଠି ପହିରି ସନାହ ଅଭାଗେ । ଜହଁ ତହଁ ଗାଲ ବଜାୱନ ଲାଗେ ॥୧॥

---

ବିବୁଧ-ବଧୂ-ନିକର ନାଚନ୍ତି ଗାଆନ୍ତି । ବାରମ୍ବାର ପୁଷ୍ପାଞ୍ଜଳି ସାଜି ବରଷାନ୍ତି ॥
ସ୍ଥାନେ ସ୍ଥାନେ ବେଦଧ୍ୱନି କରନ୍ତି ବ୍ରାହ୍ମଣେ । କୁଳ ଯଶ ଉଚାରନ୍ତି ସୂତ ବନ୍ଦୀ ଜଣେ ॥୨॥
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ବ୍ୟାପିଲା କୀରତି । ସୀତାଙ୍କୁ ବରିଲେ ଚାପ ଭାଙ୍ଗି ରଘୁପତି ॥
ପୁର ପ୍ରମଦା ପୁରୁଷ ଆଳତି କରିଣ । ଉତ୍ସର୍ଗ କରନ୍ତି ନିଜ ବିତ୍ତ ପାସୋରିଣ ॥୩॥
ଶୋଭଇ ରାମ ସୀତାଙ୍କ ଯୋଡ଼ି ସୁଲଳିତ । ଛବି ଶୃଙ୍ଗାର ଯେସନେ ଏକତ୍ର ଶୋଭିତ ॥
ସଖୀ କହନ୍ତି, ଜାନକୀ, ପ୍ରଭୁ ପଦ ଧର । କରନ୍ତି ନାହିଁ ସେ ସ୍ପର୍ଶ ସଭୟେ ପୟର ॥୪॥

ଗୌତମ ନାରୀଙ୍କ ଗତିକୁ ସ୍ମରଣ କରେ ନ ଛୁଅଁନ୍ତି ପଦ ।
ଅଲୌକିକ ପ୍ରୀତି ଜାଣି ରଘୁପତି ହସନ୍ତି ମଧୁର ମନ୍ଦ ॥୨୬୫॥

ତହୁଁ ସୀତାଙ୍କୁ ନିରେଖି ପାଇବା ଇଚ୍ଛାରେ । କ୍ରୂର କୁପୁତ୍ର ବିମୂଢ଼ ନୃପ ଅହଙ୍କାରେ ॥
ଉଠି ଉଠି ହତଭାଗ୍ୟେ କବଚ ପିନ୍ଧିଣ । ପ୍ରଲପିବାକୁ ଲାଗିଲେ ଆସ୍ଫାଳ ଦେଖାଇଣ ॥୧॥

---

ଦେବତା, କିନ୍ନର, ମନୁଷ୍ୟ, ନାଗ ଓ ମୁନୀଶ୍ୱରବୃନ୍ଦ ଜୟଜୟକାର କରି ଆଶୀର୍ବାଦ ଦେଉଥା'ନ୍ତି ॥ ୧ ॥ ଦେବାଙ୍ଗନାଗଣ ନୃତ୍ୟଗାନ-ରତା । ସେମାନଙ୍କ ହସ୍ତରୁ ପୁଷ୍ପାଞ୍ଜଳି-ମାନ ନିର୍ଗତ ହେଉଥାଏ । ଯେଉଁଠି ଦେଖ ସେଇଠି ବ୍ରାହ୍ମଣମାନେ ବେଦଧ୍ୱନି କରୁଅଛନ୍ତି, ଭାଟମାନେ କୁଳକୀର୍ତ୍ତି ବଖାଣ କରୁଥା'ନ୍ତି ॥ ୨ ॥ ପୃଥିବୀ, ପାତାଳ ଓ ସ୍ୱର୍ଗ-ତିନିଲୋକରେ ଶ୍ରୀରାମଙ୍କ ଧନୁର୍ଭଙ୍ଗ ଓ ସୀତାଙ୍କୁ ବରଣ କରିବାର ଯଶ ବ୍ୟାପିଗଲା । ନଗରର ନରନାରୀଗଣ ଆରତି କରୁଅଛନ୍ତି ଏବଂ ଆପଣା ଆପଣାର ଆର୍ଥ (ଜମା) କଥା ଭୁଲିଯାଇ ଶକ୍ତିରୁ ବଳି ଦାନଧର୍ମ କରୁଅଛନ୍ତି ॥ ୩ ॥ ସୌନ୍ଦର୍ଯ୍ୟ ଓ ଶୃଙ୍ଗାର ରସ ଏକତ୍ର ହେଲାପରି ରାମ-ସୀତାଙ୍କର ଯୁଗଳ ମୂର୍ତ୍ତି ଶୋଭା ପାଉଥା'ନ୍ତି । ସଖୀମାନେ କହୁଥା'ନ୍ତି—"ସୀତେ ! ସ୍ୱାମୀଙ୍କ ଚରଣ ସ୍ପର୍ଶ କର ।" କିନ୍ତୁ ସୀତା ଅତ୍ୟନ୍ତ ଭୟଭୀତା ହୋଇ ତାଙ୍କ ଚରଣ ସ୍ପର୍ଶ କରୁ ନ ଥା'ନ୍ତି ॥ ୪ ॥ ଦୋହା '—ଗୌତମପତ୍ନୀ ଅହଲ୍ୟାଙ୍କ ଗତିମୁକ୍ତି ବିଷୟ ସ୍ମରଣ କରି ସୀତା ସ୍ୱହସ୍ତରେ ପାଷାଣଦ୍ରବ୍ୟ-ଜଡ଼ିତ ଅଳଙ୍କାର ଥିବାରୁ ରାମଙ୍କର

ଲେହୁ ଛଡ଼ାଇ ସୀୟ କହ କୋଊ । ଧରି ବାଁଧହୁ ନୃପ ବାଲକ ଦୋଊ ॥
ତୋରେଁ ଧନୁଷୁ ଚାଁଡ ନାହିଁ ସରଈ । ଜୀବତ ହମହି କୁଅଁରି କୋ ବରଈ ॥୨॥
ଜୌଁ ବିଦେହୁ କଛୁ କରୈ ସହାଈ । ଜୀତହୁ ସମର ସହିତ ଦୋଉ ଭାଈ ॥
ସାଧୁ ଭୂପ ବୋଲେ ସୁନି ବାନୀ । ରାଜସମାଜହି ଲାଜ ଲଜାନୀ ॥୩॥
ବଲୁ ପ୍ରତାପୁ ବୀରତା ବଡ଼ାଈ । ନାକ ପିନାକହି ସଂଗ ସିଧାଈ ॥
ସୋଇ ସୁରତା କି ଅବ କହୁଁ ପାଈ । ଅସି ବୁଧି ତୌ ବିଧି ମୁହଁ ମସି ଲାଈ ॥୪॥

ଦେଖହୁ ରାମହି ନୟନ ଭରି ତଜି ଇରିଷା ମଦୁ କୋହୁ ।
ଲଖନ ରୋଷୁ ପାବକୁ ପ୍ରବଲ ଜାନି ସଲଭ ଜନି ହୋହୁ ॥୨୬୬॥

---

କେହି କହଇ, ଛଡ଼ାଇ ନିଅ ଜାନକୀଙ୍କୁ । ଧରି ବାନ୍ଧ ନରପତି ବାଳକ ବେନିଙ୍କୁ ॥
ଭାଙ୍ଗିଲେ ଧନୁ କେବଳ କାମ ନ ସରିବ । ମୁଁ ଥାଉଁ ଜୀବିତ କିଏ କନ୍ୟାକୁ ବରିବ ॥୨॥
ଯଦି ବିଦେହ କୌଣସି ସହାୟତା କରେ । ଦୁଇ ଭାଇ ସହ ତାକୁ ଜିଣ ସଂଗ୍ରାମରେ ॥
ଏହା ଶୁଣି ଅନ୍ୟ ସାଧୁ ନୃପତି ବୋଲଇ । ରାଜ-ସମାଜରେ ଲଜ୍ୟା ଲଜ୍ଜିତ ହୁଅଇ ॥୩॥
ବଳ ପ୍ରତାପ ବୀରତ୍ୱ ବଡ଼ିମା ଆଦର । ନାକ ପିନାକ ସଙ୍ଗତେ ଯାଇଛି ତୁମ୍ଭର ॥
ସେହି ଶୂରତା କି ଏବେ ପାଇଅଛ କେଉଁ । ବିଧି କଲା ମୁଖ କଳା ଏହି ବୁଦ୍ଧି ଯେଉଁ ॥୪॥

ନିରେଖ ରାମଙ୍କୁ ନେତ୍ର ପୂର୍ଣ୍ଣ କରି ଈର୍ଷ୍ୟାମଦ ମୋହ ତେଜି ।
ଲକ୍ଷ୍ମଣଙ୍କ କୋପ ପ୍ରବଳ ପାବକ ନ ହୁଅ, ପତଙ୍ଗ ହେଜି ॥୨୬୬॥

---

୲ ପାଦସ୍ପର୍ଶରେ କାଳେ ତାହା ସ୍ତ୍ରୀ ପାଲଟି ତାହାଙ୍କର ମନୋହାରିଣୀ ହେବ, ଏହି ଭୟରେ ତାଙ୍କ ପାଦ ସ୍ପର୍ଶ କଲେ ନାହିଁ । ସୀତାଙ୍କର ଅଲୌକିକ ପ୍ରୀତି ଜାଣି ରଘୁକୁଳମଣି ଶ୍ରୀରାମ ମନେ ମନେ ହସିଲେ ॥ ୨୬୫ ॥ ଚୌପାଈ :—ସେହି ସମୟରେ ସୀତାଙ୍କୁ ଦେଖି କେତେ ଜଣ ରାଜା ଲୋଭଗ୍ରସ୍ତ ହେଲେ । ଦୁଷ୍ଟ, କୁପୁତ୍ର ଓ ମୂଢ ରାଜାମାନେ ମନେ ମନେ କ୍ଷୁବ୍ଧ ହେଲେ । ସେହି ଅଭାଗାମାନେ ସେନ୍ଧା (ସାଞ୍ଜୁ) ପିନ୍ଧି ଯେଉଁଠି ଇଚ୍ଛା ସେଇଠି ଆପଣା ଆପଣାର ବଡ଼ାଇ ବଖାଣିବାକୁ ଲାଗିଲେ ॥ ୧ ॥ କେହି କେହି କହୁଥା'ନ୍ତି—"ସୀତାଙ୍କୁ ଛଡ଼ାଇ ଆଣ ଏବଂ ରାଜକୁମାର ଦୁହିଁଙ୍କୁ ଧରି ବାନ୍ଧିଅଣ କେବଳ ଧନୁ ଭାଙ୍ଗିଦେଲେ ତ ମନର ଅରମାନ ମେଣ୍ଟିଯିବ ନାହିଁ । ଆମ୍ଭେ ଜୀଇ ଥାଉଁ ଥାଉଁ ରାଜକୁମାରୀଙ୍କୁ କିଏ ବିବାହ କରିପାରିବ ? ॥ ୨ ॥ ଯଦି ଜନକ କିଛି ସାହାଯ୍ୟ କରନ୍ତି, ତେବେ ଯୁଦ୍ଧରେ ଦୁଇ ଭାଇଙ୍କ ସହ ତାକୁ ମଧ୍ୟ ଜିଣି ଆଣ ।" ଏ ବଚନ ଶୁଣି ସାଧୁ ରାଜାମାନେ କହିଲେ, "ଏହି ନିର୍ଲଜ୍ଜ ରାଜସମାଜକୁ ଦେଖି ଲଜ୍ଜା ମଧ୍ୟ ଲାଜ କଲାଣି ॥ ୩ ॥ ଆରେ ! ତୁମମାନଙ୍କର ବଳ, ପ୍ରତାପ, ବୀରତା, ବଡ଼ାଇ ଓ ପ୍ରତିଷ୍ଠା ସବୁ ତ ଧନୁ ସହିତରେ ହିଁ ଚାଲିଯାଇଛି । ସେଇ ବୀରତା ଆଗରୁ ଥିଲା ନା ଏବେ କେଉଁଠୁ ମିଳିଛି ? ଏତିକି ଦୁଷ୍ଟ ବୁଦ୍ଧି ! ସେଇଥିପାଇଁ ତ ତୁମ ମୁହଁରେ ବିଧାତା କାଳି ଲଗାଇ ଦେଲା ॥ ୪ ॥ ଦୋହା :—ଈର୍ଷ୍ୟା, ଗର୍ବ ଓ କ୍ରୋଧ ତ୍ୟାଗ କରି

ବୈନତେୟ ବଲି ଜିମି ଚହ କାଗୂ । ଜିମି ସସୁ ଚହୈ ନାଗ ଅରି ଭାଗୂ ॥
ଜିମି ଚହ କୁସଲ ଅକାରନ କୋହୀ । ସବ ସଂପଦା ଚହୈ ସିବଦ୍ରୋହୀ ॥୧॥
ଲୋଭୀ ଲୋଲୁପ କଲ କୀରତି ଚହଈ । ଅକଲଂକତା କି କାମୀ ଲହଈ ॥
ହରି ପଦ ବିମୁଖ ପରମ ଗତି ଚାହା । ତସ ତୁମ୍ହାର ଲାଲଚୁ ନରନାହା ॥୨॥
କୋଲାହଲୁ ସୁନି ସୀୟ ସକାନୀ । ସଖୀଁ ଲୱାଇ ଗଈଂ ଜହଁ ରାନୀ ॥
ରାମୁ ସୁଭାୟଁ ଚଲେ ଗୁରୁ ପାହୀଁ । ସିୟ ସନେହୁ ବରନତ ମନ ମାହୀଁ ॥୩॥
ରାନିନ୍ହ ସହିତ ସୋଚ ବସ ସୀୟା । ଅବ ଧୌଁ ବିଧିହି କାହ କରନୀୟା ॥
ଭୂପ ବଚନ ସୁନି ଇତ ଉତ ତକହୀଁ । ଲଖନୁ ରାମ ଡର ବୋଲି ନ ସକହୀଁ ॥୪॥

ଅରୁନ ନୟନ ଭୃକୁଟୀ କୁଟିଲ ଚିତୱତ ନୃପନ୍ହ ସକୋପ ।
ମନହୁଁ ମତ୍ତ ଗଜ ଗନ ନିରଖି ସିଂଘ କିସୋରହି ଚୋପ ॥୨୬୭॥

---

ବୈନତେୟ ଭାଗ୍ୟ ଯେସନ୍ତେ ବାୟସ ବାଞ୍ଛଇ । ଯଥା ଗଜରିପୁ ଭାଗ ଶଶକ ଇଚ୍ଛଇ ॥
ଯେସନ୍ତେ କୁଶଳ ଚାହିଁଇ ଅକାରଣ କ୍ରୋଧୀ । ସୁସମ୍ପଦ ଅଭିଳାଷେ ଶଙ୍କର ବିରୋଧୀ ॥୧॥
ଲୋଭୀ ଲୋଲୁପ ଲୋଡ଼ଇ କୀର୍ତ୍ତି ଯେସନ । ଅକଳଙ୍କତ୍ୱ କାମନ କରେ କାମୀ ଜନ ॥
ହରିପଦ ପରାଙ୍ମୁଖ ଚାହେଁ ଶୁଭ ଗତି । ତେମନ୍ତେ ତୁମ୍ଭ ଲାଳସା ଶୁଣ ନରପତି ॥୨॥
କୋଲାହଲ ଶୁଣି ସୀତା ହୁଅନ୍ତେ ଚକିତ । ସଖୀ ରାଣୀ ପାଶେ ନେଇ ଚଳିଲେ ତୁରିତ ॥
ସ୍ୱଭାବେ ଗୁରୁଙ୍କ ପାଶେ ଗଲେ ରଘୁବର । ମନ ମଧ୍ୟରେ ବର୍ଣ୍ଣିଣ ସ୍ନେହ ସୀତାଙ୍କର ॥୩॥
ରାଣୀଙ୍କ ସହିତ ସୀତା ଚିନ୍ତନ୍ତି ଦଇବ । ଜଣା ନାହିଁ ଏବେ କେଉଁ ଅନର୍ଥ କରିବ ॥
ଭୂପ ବାଣୀ ଶୁଣି ଏଣେ ତେଣେ ବିଲୋକନ୍ତି । ଲକ୍ଷ୍ମଣ ରାମଙ୍କ ଭୟେ ବୋଲି ନ ପାରନ୍ତି ॥୪॥

ଅରୁଣ ନୟନ ଭ୍ରୂକୁଟି କୁଟିଳ ଚାହାନ୍ତି କୋପେ ନୃପଙ୍କୁ ।
ସିଂହଶିଶୁ ହୁଏ ଦର୍ପିତ ବା ଦେଖି ମତ୍ତ କରୀ ନିକରଙ୍କୁ ॥୨୬୭॥

---

ନେଇ ପୂରେଇ ଶ୍ରୀରାମଙ୍କୁ ଦେଖିନଥ । ଲକ୍ଷ୍ମଣଙ୍କ କ୍ରୋଧକୁ ପ୍ରବଳ ଅଗ୍ନି ଜାଣି ତହିଁରେ ପତଙ୍ଗ ହୁଅନାହିଁ ॥୨୬୭॥ ଚୌପାଇ —ଯେପରି କୁଆ ଗରୁଡ଼ର ଭାଗ୍ୟ ଓ ଠେକୁଆ ସିଂହର ଭାଗ୍ୟ ଲଭିବାକୁ ଇଚ୍ଛା କରେ, ଅକାରଣ କ୍ରୋଧୀ ମନୁଷ୍ୟ ଯେପରି ଆପଣାର କୁଶଳ ଚାହେଁ, ଶିବଙ୍କ ବିରୋଧୀ ଯେପରି ସମସ୍ତ ପ୍ରକାର ସମ୍ପତ୍ତି କାମନା କରେ, ଲୋଭୀ-କୃପଣ ଯେପରି ମନୋହର କୀର୍ତ୍ତି ଏବଂ କାମୁକ ଯେପରି ନିଷ୍କଳଙ୍କତା ଅଭିଳାଷ କରେ, ତେବେ ସେ ତାହା ପାଇ ପାରେ କି ? ଶ୍ରୀହରିଙ୍କ ଚରଣ ପ୍ରତି ବିମୁଖ ମନୁଷ୍ୟ ପକ୍ଷରେ ପରମ ଗତି (ମୋକ୍ଷ)ର ଅଭିଳାଷ ପୋଷଣ କରିବା ଯେପରି ବୃଥା, ସୀତାଙ୍କ ନିମନ୍ତେ ତୁମମାନଙ୍କର ଲୋଭ ପୋଷଣ କରିବା ମଧ୍ୟ ସେହିପରି ବୃଥା ॥ ୧, ୨ ॥ କୋଲାହଲ ଶୁଣି ସୀତା ଶଙ୍କିଗଲେ । ତଦନନ୍ତର ସଖୀମାନେ ତାଙ୍କୁ ମାତା ରାଣୀଙ୍କ ନିକଟକୁ ନେଇଗଲେ । ଶ୍ରୀରାମଚନ୍ଦ୍ର ମନେ ମନେ ସୀତାଙ୍କ ପ୍ରେମ ବିଷୟ ଗୁଣି ଗୁଣି ଆପଣାର ସ୍ୱାଭାବିକ ଗତିରେ ଗୁରୁଜୀଙ୍କ ନିକଟକୁ ଚାଲିଲେ ॥ ୩ ॥ ଦୁଷ୍ଟ ରାଜାମାନଙ୍କ ବଚନ ଶୁଣି

ଖରଭରୁ ଦେଖି ବିକଲ ପୁରନାରୀଁ । ସବ ମିଲି ଦେହିଁ ମହୀପନ୍ହ ଗାରୀଁ ॥
ତେହିଁ ଅବସର ସୁନି ସିବ ଧନୁ ଭଙ୍ଗା । ଆୟଉ ଭୃଗୁକୁଲ କମଲ ପତଙ୍ଗା ॥୧॥
ଦେଖି ମହୀପ ସକଲ ସକୁଚାନେ । ବାଜ ଝପଟ ଜନୁ ଲୱା ଲୁକାନେ ॥
ଗୌରି ସରୀର ଭୂତି ଭଲ ଭ୍ରାଜା । ଭାଲ ବିସାଲ ତ୍ରିପୁଣ୍ଡ୍ର ବିରାଜା ॥୨॥
ସୀସ ଜଟା ସସିବଦନୁ ସୁହାୱା । ରିସ ବସ କଛୁକ ଅରୁନ ହୋଇ ଆୱା ॥
ଭୃକୁଟୀ କୁଟିଲ ନୟନ ରିସ ରାତେ । ସହଜହୁଁ ଚିତୱତ ମନହୁଁ ରିସାତେ ॥୩॥
ବୃଷଭ କଂଧ ଉର ବାହୁ ବିସାଲା । ଚାରୁ ଜନେଉ ମାଲ ମୃଗଛାଲା ॥
କଟି ମୁନି ବସନ ତୂନ ଦୁଇ ବାଁଧେଁ । ଧନୁ ସର କର କୁଠାରୁ କଲ କାଁଧେଂ ॥୪॥

---

କୋଲାହଳ ଶୁଣି ନାରୀ ପ୍ରକୃଷ୍ଟ ବିକଳେ । ମିଳି ମହୀପଙ୍କୁ ଗାଳି ଦିଅନ୍ତି ସକଳେ ॥
ସେ ସମୟେ ଶୁଣି ଶିବ କୋଦଣ୍ଡ ଭଞ୍ଜନ । ଆଗମିଲେ ଭୃଗୁକୁଳ-କମଳ-ତପନ ॥୧॥
ଦେଖି ନୃପେ ସଙ୍କୋଚିଲେ ହୋଇ ଭୟତ୍ରସ୍ତ । ବାଜ ଝମ୍ପେ ଚୁଣ୍ଟୁରି ଲୁଚଇ ଯେମନ୍ତ ॥
ଗଉର ଶରୀରେ ଭସ୍ମ ମନୋହର ସାଜେ । ବିଶାଳ ଭାଲ ଉପରେ ତ୍ରିପୁଣ୍ଡ୍ର ବିରାଜେ ॥୨॥
ମସ୍ତକେ ଜଟା ଶଶାଙ୍କ ବଦନ ଶୋଭଇ । କ୍ରୋଧବଶ କିଛି କିଛି ଆରକ୍ତ ଦିଶଇ ॥
ଭୃକୁଟୀ କୁଟିଳ ରୋଷେ ନୟନ ପୂରିତ । ସହଜେ ଚାହାନ୍ତେ ମନେ ହୁଏ କୋପାନ୍ୱିତ ॥୩॥
ବୃଷଭ ସ୍କନ୍ଧ, ହୃଦୟ ବାହୁ ସୁବିଶାଳ । ଚାରୁ ମୃଗ ଛାଲ ଯଜ୍ଞ ଉପବୀତ ମାଳ ॥
କଟିରେ ବେନି ତୂଣୀର ବନ୍ଧି ମୁନିଚୀର । କନ୍ଧେ କୁଠାର ଶୋଭଇ କରେ ଧନୁଶର ॥୪॥

---

ଏବେ ବିଧାତା କାଲେ ଆଉ କ'ଣ ଅନର୍ଥ ଘଟାଇବ ବୋଲି ରାଣୀମାନଙ୍କ ସହିତ ସୀତା ଚିନ୍ତାକୁଳା । ରାଜାମାନଙ୍କର ବଚନ ଶୁଣି ଲକ୍ଷ୍ମଣ ଏଣେ ତେଣେ ନିରୀକ୍ଷଣ କରୁଥା'ନ୍ତି, କିନ୍ତୁ ଶ୍ରୀରାମଚନ୍ଦ୍ରଙ୍କ ଡରରେ କିଛି କହିପାରୁ ନ ଥା'ନ୍ତି ॥ ୪ ॥ ଦୋହା '—ତାଙ୍କର ନେତ୍ର ଅରୁଣ ବର୍ଣ୍ଣ ଓ ଭ୍ରୂଲତା ବକ୍ର ହୋଇଗଲା ଏବଂ ସେ କ୍ରୋଧରେ ରାଜାମାନଙ୍କ ଆଡକୁ ଚାହିଁବାକୁ ଲାଗିଲେ, ସତେ ଯେମିତି ଉନ୍ମତ୍ତ ହସ୍ତିଯୂଥ ଦେଖି ସିଂହଶିଶୁ ମନରେ ଅଦମ୍ୟ ଉତ୍ସାହ ଆସିଗଲା ପରି ! ॥ ୨୬୭ ॥ ଚୌପାଈ '—କୋଳାହଳ ଶୁଣି ଜନକ-ପୁରୀର ସ୍ତ୍ରୀମାନେ ବ୍ୟାକୁଳ ହୋଇ ପଡିଲେ ଏବଂ ସମସ୍ତେ ମିଶି ଖଳ ରାଜାମାନଙ୍କୁ ଗାଳି ଦେବାକୁ ଲାଗିଲେ । ସେହି ଅବସରରେ ଶିବଧନୁ ଭାଙ୍ଗିବାର ଶୁଣି ଭୃଗୁକୁଳ-କମଳ-ଦିବାକର ପରଶୁରାମ ଆସି ପହଞ୍ଚିଲେ ॥ ୧ ॥ ଏହାଙ୍କୁ ଦେଖି ସମସ୍ତ ରାଜା ସଙ୍କୁଚିତ ହୋଇ ପଡିଲେ, ସତେ ଯେମିତି ବାଜପକ୍ଷୀ ଝାମ୍ପି ପଡିବାରେ ଚୁଣ୍ଟୁରି ପକ୍ଷୀମାନେ ଲୁଚିଗଲେ । ତାହାଙ୍କର ଗୌର-ଦେହ ଉପରେ ଭସ୍ମ ସୁଶୋଭିତ ଏବଂ ବିଶାଳ ଲଲାଟପଟରେ ତ୍ରିପୁଣ୍ଡ୍ର ସୁଶୋଭିତ ॥ ୨ ॥ ମସ୍ତକ ଉପରେ ଜଟା, ସୁନ୍ଦର ମୁଖ-ଚନ୍ଦ୍ର, କ୍ରୋଧ ହେତୁ ଈଷତ୍ ଅରୁଣ ବର୍ଣ୍ଣ ଧାରଣ କରିଅଛି । ସେ ତାହାଙ୍କ ସହଜ ସ୍ୱାଭାବିକ ରୀତିରେ ଦୃଷ୍ଟିପାତ କରୁଅଛନ୍ତି । ତଥାପି ତହିଁରୁ କ୍ରୋଧର ସୂଚନା ପ୍ରକଟିତ ହେଉଅଛି ॥ ୩ ॥ ବୃଷଭ ସମାନ ଉନ୍ନତ ଓ ପୁଷ୍ଟ ସ୍କନ୍ଧଦେଶ, ବକ୍ଷ ଓ ବାହୁ ବିଶାଳ ।

ସାଂତ ବେଷୁ କରନୀ କଠିନ ବରନି ନ ଜାଇ ସରୂପ ।
ଧରି ମୁନି ତନୁ ଜନୁ ବୀର ରସୁ ଆୟଉ ଜହଁ ସବ ଭୂପ ॥୨୬୮॥
ଦେଖତ ଭୃଗୁପତି ବେଷୁ କରାଲା । ଉଠେ ସକଲ ଭୟ ବିକଲ ଭୁଆଲା ॥
ପିତୁ ସମେତ କହି କହି ନିଜ ନାମା । ଲଗେ କରନ ସବ ଦଂଡ ପ୍ରନାମା ॥୧॥
ଜେହି ସୁଭାୟଁ ଚିତବହିଁ ହିତୁ ଜାନୀ । ସୋ ଜାନଇ ଜନୁ ଆଇ ଖୁଟାନୀ ॥
ଜନକ ବହୋରି ଆଇ ସିରୁ ନାୱା । ସୀୟ ବୋଲାଇ ପ୍ରନାମୁ କରାୱା ॥୨॥
ଆସିଷ ଦୀନ୍ହି ସଖୀଁ ହରଷାନୀଁ । ନିଜ ସମାଜ ଲୈ ଗଈଂ ସୟାନୀଁ ॥
ବିସ୍ୱାମିତ୍ରୁ ମିଲେ ପୁନି ଆଈ । ପଦ ସରୋଜ ମେଲେ ଦୋଉ ଭାଈ ॥୩॥

---

ଶାନ୍ତ ଶୁଦ୍ଧ ବେଶ କର୍ତ୍ତବ୍ୟ କର୍କଶ ସ୍ୱରୂପ ବର୍ଣ୍ଣନାତୀତ ।
ଧରି ମୁନିବପୁ ନୃପଙ୍କ ଆଗେ ବା ବୀର ରସ ଉପସ୍ଥିତ ॥୨୬୮॥
ଦେଖି ଭୃଗୁପତିଙ୍କର ବେଶ ବିକରାଳ । ଉଠିଣ ଭୟେ ବିକଳେ ସମସ୍ତ ଭୂପାଳ ॥
ପିତା ସହିତେ କହିଣ ନିଜ ନିଜ ନାମ । କରିଲେ ସଭୟେ ସର୍ବେ ସାଷ୍ଟାଙ୍ଗ ପ୍ରଣାମ ॥୧॥
ସ୍ୱଭାବେ ଶୁଭାନ୍ତ ହିତ ଇଚ୍ଛି ଭୃଗୁବର । ତଥାପି ଡରନ୍ତି ନୃପ, ଆୟୁ ଶେଷ ମୋର ॥
ଜନକ ଆସି ଆଦର ଶିର ନୁଆଁଇଲେ । ସୀତାଙ୍କୁ ଡକାଇ ପ୍ରଣିପାତ କରାଇଲେ ॥୨॥
ଆଶିଷ ଦିଅନ୍ତେ ହର୍ଷେ ସଖୀ ସୁଚତୁରୀ । ଚଳିଲେ ଗହଣେ ନେଇ ଜନକକୁମାରୀ ॥
ବିଶ୍ୱାମିତ୍ର ମୁନି ପୁଣି ଆସିଣ ଭେଟିଲେ । ଚରଣ-ସରୋଜେ ବେନି ଭାଇ ଲୋଟାଇଲେ ॥୩॥

---

ସୁନ୍ଦର ଯଜ୍ଞୋପବୀତ ଧାରଣ କରିଅଛନ୍ତି । ଗଳାରେ ମନୋହର ମାଳା ପିନ୍ଧିଅଛନ୍ତି ଏବଂ ମୃଗଚର୍ମ ଧରିଅଛନ୍ତି । କଟିରେ ମୁନି-ପରିଧେୟ ବସ୍ତ୍ର (ବଲ୍‌କଲ) ପିନ୍ଧିଅଛନ୍ତି ଏବଂ ଦୁଇଟି ତୂଣୀର ବାନ୍ଧିଅଛନ୍ତି । ହାତରେ ଧନୁଶର ଏବଂ ସୁନ୍ଦର କାନ୍ଧ ଉପରେ କୁରାଢ଼ି ଧରିଅଛନ୍ତି ॥ ୪ ॥ ଦୋହା —ଶାନ୍ତ ବେଶ, ମାତ୍ର କର୍ତ୍ତବ୍ୟ ବଡ଼ କଠୋର । ସ୍ୱରୂପର ବର୍ଣ୍ଣନା କରାଯାଇ ପାରିବ ନାହିଁ । ସତେ ଯେମିତି ବୀରରସ ମୁନିଶରୀର ଧାରଣପୂର୍ବକ ସକଳ ନୃପ ବିରାଜିଥିବା ସ୍ଥଳୀରେ ଆସି ପହଞ୍ଚିଛି ॥ ୨୬୮ ॥ ଚୌପାଈ —ପରଶୁରାମଙ୍କ ଭୟାନକ ବେଶ ଦେଖି ସକଳ ରାଜା ଭୟରେ ବ୍ୟାକୁଳ ହୋଇ ଉଠି ଛିଡ଼ା ହେଲେ ଏବଂ ପିତୃ ପରିଚୟ ସହିତ ଆପଣା ଆପଣାର ନାମ କହି କହି ଦଣ୍ଡବତ-ପ୍ରଣାମ କରିବାକୁ ଲାଗିଲେ ॥ ୧ ॥ ପରଶୁରାମ ହିତ ଇଚ୍ଛାକରି ସୁଦ୍ଧା ସହଜ ସ୍ୱାଭାବିକ ଭାବରେ କୌଣସି ରାଜାଙ୍କୁ ଚାହିଁଲେ ସେ ଭାବୁଥା'ନ୍ତି, ସତେ ଯେମିତି ତାଙ୍କ ଆୟୁଷ ପୂରିଗଲା । ତତ୍ପରେ ଜନକ ଆସି ମସ୍ତକ ଅବନତ କଲେ ଏବଂ ସୀତାଙ୍କୁ ମଧ୍ୟ ଡାକି ପ୍ରଣାମ କରାଇଲେ ॥ ୨ ॥ ପରଶୁରାମ ସୀତାଙ୍କୁ ଆଶୀର୍ବାଦ ଦେଲେ । ସଖୀଗଣ ଆନନ୍ଦିତ ହେଲେ । (ସେଠାରେ ଆଉ ବେଶି ସମୟ ରହିବା ଅହିତକର ମନେ କରି) ଚତୁରୀ ସଖୀମାନେ ତାହାଙ୍କୁ ସେମାନଙ୍କ ସମାଜ ଗହଣରେ ନେଇଗଲେ । ତଦନନ୍ତର ବିଶ୍ୱାମିତ୍ର ଆସି ସାକ୍ଷାତ କଲେ ଏବଂ ସେ ଦୁଇ ଭାଇଙ୍କୁ ତାହାଙ୍କ ଚରଣ-କମଳରେ ପ୍ରଣିପାତ

ରାମୁ ଲଖନୁ ଦସରଥ କେ ଢୋଟା । ଦୀହ୍ନ ଅସୀସ ଦେଖି ଭଲ ଜୋଟା ॥
ରାମହି ଚିତଇ ରହେ ଥକି ଲୋଚନ । ରୂପ ଅପାର ମାର ମଦ ମୋଚନ ॥୩॥

ବହୁରି ବିଲୋକି ବିଦେହ ସନ କହହୁ କାହ ଅତି ଭୀର ।
ପୂଁଛତ ଜାନି ଅଜାନ ଜିମି ବ୍ୟାପେଉ କୋପୁ ସରୀର ॥୨୬୯॥

ସମାଚାର କହି ଜନକ ସୁନାଏ । ଜେହି କାରନ ମହୀପ ସବ ଆଏ ॥
ସୁନତ ବଚନ ଫିରି ଅନତ ନିହାରେ । ଦେଖେ ଚାପ ଖଣ୍ଡ ମହି ଡାରେ ॥୧॥
ଅତି ରିସ ବୋଲେ ବଚନ କଠୋରା । କହୁ ଜଡ଼ ଜନକ ଧନୁଷ କୈ ତୋରା ॥
ବେଗି ଦେଖାଉ ମୂଢ଼ ନ ତ ଆଜୂ । ଉଲଟଉଁ ମହି ଜହ ଲହି ତବ ରାଜୂ ॥୨॥
ଅତି ଡରୁ ଉତରୁ ଦେତ ନୃପୁ ନାହୀଁ । କୁଟିଲ ଭୂପ ହରଷେ ମନ ମାହୀଁ ॥
ସୁର ମୁନି ନାଗ ନଗର ନର ନାରୀ । ସୋଚହିଁ ସକଲ ତ୍ରାସ ଉର ଭାରୀ ॥୩॥

---

ରାମ ଲକ୍ଷ୍ମଣ ଦଶରଥଙ୍କ କୁମର । ଦେଲେ ସୁଆଶିଷ ଜାଣି ଯୋଡ଼ି ମନୋହର ॥
ରାମଙ୍କୁ ଦେଖି ସ୍ତମ୍ଭିତ ହୋଇଲା ନୟନ । ରୂପ ଅପାର ମଦନ-ମଦ-ବିମର୍ଦ୍ଦନ ॥୪॥

ପୁଣି ବିଦେହଙ୍କୁ ଉଦ୍ଦେଶ୍ୟ କରିଣ ଭିଡ଼ ହେତୁ ପଚାରନ୍ତି ।
ଜାଣି ମଧ ସବୁ ନ ଜାଣିଲା ପ୍ରାୟେ, କୋପ ବ୍ୟାପେ ଦେହେ ଅତି ॥୨୬୯॥

ସମାଚାର ଶୁଣାଇଲେ ମିଥିଳା ଈଶ୍ୱର । ଯେଉଁ କାରଣେ ଆଗତ ମହୀପନିକର ॥
ଶୁଣି ବଚନ ଅନ୍ୟନି ଦୃଷ୍ଟି ଫେରାଇଲେ । ମହୀରେ ପତିତ ଭଗ୍ନ ଚାପ ବିଲୋକିଲେ ॥୧॥
ତହୁଁ ସକ୍ରୋଧେ କହିଲେ ବଚନ ପ୍ରଚଣ୍ଡ । କହ ଜଡ଼ ଜନକ କେ ଭାଙ୍ଗିଲା କୋଦଣ୍ଡ ॥
ବେଗି ଦେଖାଅ ତାହାକୁ ନଚେତ୍ ମୂଢ଼, ଆଜ । ଓଲଟାଇ ଦେବି ଭୂମି ସମଗ୍ର ତୋ ରାଜ୍ୟ ॥୨॥
ଅତ୍ୟନ୍ତ ଭୟେ ଉତ୍ତର ନୃପ ନ ଦିଅନ୍ତି । ହରଷ ମନ ହୋଇଲେ କୁଟିଳ ଭୂପତି ॥
ସୁର ମୁନିବର ନାଗ ପୁର ନର-ନାରୀ । ଚିନ୍ତା କରନ୍ତି ସମସ୍ତେ, ତ୍ରାସ ଉରେ ଭାରୀ ॥୩॥

---

କରାଇଲେ ॥ ୩ ॥ ବିଶ୍ୱାମିତ୍ର କହିଲେ, "ଏ ରାମ ଓ ଲକ୍ଷ୍ମଣ ରାଜା ଦଶରଥଙ୍କର ପୁତ୍ର ।" ସେମାନଙ୍କର ସୁନ୍ଦର ଯୁଗଳ ରୂପ ଦେଖି ପରଶୁରାମ ଆଶୀର୍ବାଦ ଦେଲେ । କାମଦେବ-ରୂପମଦ-ମର୍ଦ୍ଦନକାରୀ ଶ୍ରୀରାମଚନ୍ଦ୍ରଙ୍କ ଅପାର ରୂପକୁ ଦେଖି ତାହାଙ୍କର ନେତ୍ର ସ୍ତମ୍ଭିତ ହୋଇଗଲା ॥ ୪ ॥ ଦୋହା —ତତ୍ପରେ ସବୁ ଦେଖି ଜାଣି ମଧ୍ୟ କିଛି ନ ଜାଣିଲା ପରି ସେ ଜନକ ରାଜର୍ଷିଙ୍କୁ ପଚାରିଲେ, "କୁହ ତ, ଏତେ ବଡ଼ ଭିଡ଼ କାହିଁକି ?" ତାଙ୍କ ଶରୀରରେ କ୍ରୋଧ ବ୍ୟାପିଗଲା ॥ ୨୬୯ ॥ ଚୌପାଈ —ଯେଉଁ କାରଣରୁ ସମସ୍ତ ରାଜା ଆସିଥିଲେ, ରାଜା ଜନକ ସେ ସବୁ ସମାଚାର କହି ଶୁଣାଇଲେ । ଜନକଙ୍କ ବଚନ ଶୁଣି ପରଶୁରାମ ଫେରି ଆନ୍ୟ ଆଡ଼େ ଚାହିଁ ଦେଖନ୍ତି ତ ଧନୁଟିଏ ଦୁଇ ଖଣ୍ଡ ହୋଇ ପୃଥିବୀ ଉପରେ ପଡ଼ିଛି ॥ ୧ ॥ ଅତ୍ୟନ୍ତ କ୍ରୋଧଭରା କଠୋର ବଚନରେ ସେ କହିଲେ, "ରେ ମୂର୍ଖ ଜନକ ! କହ, ଏ ଧନୁ ଭାଙ୍ଗିଲା କିଏ ? ଶୀଘ୍ର ତାହାକୁ ଦେଖା, ନାହିଁ ତ, ଆରେ ମୂଢ଼ ! ଯେଉଁ ପର୍ଯ୍ୟନ୍ତ ତୋର ରାଜ୍ୟ ବିସ୍ତୃତ, ସେ ପର୍ଯ୍ୟନ୍ତ ପୃଥିବୀକୁ ମୁଁ ଲେଉଟାଇ

ମନ ପଛିତାଇ ସୀୟ ମହତାରୀ । ବିଧି ଅବ ସଁୱରୀ ବାତ ବିଗାରୀ ॥
ଭୃଗୁପତି କର ସୁଭାଉ ସୁନି ସୀତା । ଅରଧ ନିମେଷ କଲପ ସମ ବୀତା ॥୩॥
ସଭୟ ବିଲୋକେ ଲୋଗ ସବ ଜାନି ଜାନକୀ ଭୀରୁ ।
ହୃଦୟଁ ନ ହରଷୁ ବିଷାଦୁ କଛୁ ବୋଲେ ଶ୍ରୀରଘୁବୀରୁ ॥୨୭୦॥

## ମାସପାରାୟଣ, ନବମ ବିଶ୍ରାମ

ନାଥ ସଂଭୁ ଧନୁ ଭଂଜନିହାରା । ହୋଇହି କେଉ ଏକ ଦାସ ତୁମ୍ହାରା ॥
ଆୟସୁ କାହ କହିଅ କିନ ମୋହୀ । ସୁନି ରିସାଇ ବୋଲେ ମୁନି କୋହୀ ॥୧॥
ସେବକୁ ସୋ ଜୋ କରୈ ସେବକାଈ । ଅରି କରନୀ କରି କରିଅ ଲରାଈ ॥
ସୁନହୁ ରାମ ଜେହିଁ ସିବ ଧନୁ ତୋରା । ସହସବାହୁ ସମ ସୋ ରିପୁ ମୋରା ॥୨॥

---

କରନ୍ତି ଅନୁସନ୍ତାପ ମନେ ସୀତା ମାତା । ପୂର୍ଣ୍ଣ ହେବା କାମ ଏବେ ବିଗାଡ଼େ ବିଧାତା ॥
ଭୃଗୁପତିଙ୍କ ସ୍ୱଭାବ ଶୁଣି ବଇଦେହୀ । ଅର୍ଦ୍ଧ ନିମେଷ କାଟନ୍ତି କଳ୍ପ ସମ ସେହି ॥୩॥
ବିଲୋକି ସମସ୍ତ ଲୋକଙ୍କୁ ସଭୀତ ଜାଣି ଜାନକୀ ଅଧୀର ।
ହୃଦେ କିଛି ହର୍ଷ ବିଷାଦ ନ ମଣି ଭାଷିଲେ ଶ୍ରୀ ରଘୁବୀର ॥୨୭୦॥
ନାଥ, ଶମ୍ଭୁ-ଶରାସନ-ଭଞ୍ଜନକାରକ । ହୋଇଥିବ ସେ କୌଣସି ଦାସ ଆପଣଙ୍କ ॥
କହନ୍ତୁ, ମୋତେ କି ଆଜ୍ଞା ହେଉଛି ତା' ପ୍ରତି । ଶୁଣି ସରୋଷେ ବୋଇଲେ କ୍ରୋଧୀ ମୁନି ଅତି ॥୧॥
ସେବକ ସେହି ସେବାରେ ଲଗାଏ ଯେ ଚିତ୍ତ । ଶତ୍ରୁ କର୍ମ ଆଚରିଲେ ଯୁଝିବା ଉଚିତ ॥
ଶୁଣ ରାମ, ଯେ ଭାଙ୍ଗିଛି ଶିବଙ୍କ କୋଦଣ୍ଡ । ସହସ୍ରବାହୁ ସମ ସେ ମୋ ଶତ୍ରୁ ପ୍ରଚଣ୍ଡ ॥୨॥

---

ହେବ ।" ॥ ୨ ॥ ରାଜାଙ୍କୁ ଅତି ଭୟ ଲାଗିଲା । ସେହି ହେତୁ ସେ ଉତ୍ତର ଦେଇପାରୁ ନ ଥା'ନ୍ତି । ଏହା ଦେଖି କୁଟିଳ ରାଜାମାନେ ମନେ ମନେ ପ୍ରସନ୍ନ ହେଉଥା'ନ୍ତି । ଦେବତା, ମୁନି, ନାଗ ଓ ନଗରର ସ୍ତ୍ରୀପୁରୁଷମାନେ ସମସ୍ତେ ଚିନ୍ତା କରିବାକୁ ଲାଗିଲେ । ସମସ୍ତଙ୍କ ହୃଦୟରେ ବଡ଼ ଭୟ ॥ ୩ ॥ ସୀତାଙ୍କ ମାତା ମନରେ ଅନୁତାପ କରୁଥା'ନ୍ତି —"ହାୟ ! ବିଧାତା ଏବେ ଭରା ନାଟବେଳେ ମୃଦଙ୍ଗ ଫଟେଇ ଦେଲା ।" ପରଶୁରାମଙ୍କ ସ୍ୱଭାବ ଶୁଣି ସୀତାଙ୍କର ଅଧା ମୁହୂର୍ତ୍ତ ସୁଦ୍ଧା କଳ୍ପ ସମାନ କଟୁଥାଏ ॥ ୪ ॥ ଦୋହା — ତଦନନ୍ତର ଶ୍ରୀରାମ ସମସ୍ତ ଲୋକଙ୍କୁ ଭୟଭୀତ ହେବାର ଦେଖି ଏବଂ ସୀତାଙ୍କୁ ଅଧୀର ହେବାର ଜାଣି ବଚନ ବୋଇଲେ—ତାହାଙ୍କ ହୃଦୟରେ ହର୍ଷ ବା ବିଷାଦ କିଛି ନ ଥିଲା— ॥ ୨୭୦ ॥ ଚୌପାଇ —"ହେ ନାଥ ! ଶିବଧନୁ-ଭଙ୍ଗକାରୀ ଆପଣଙ୍କର ଜଣେ କେହି ଦାସ ହୋଇଥିବ । କ'ଣ ଆଜ୍ଞା ଆପଣଙ୍କର ? ମୋତେ କହୁ ନାହାନ୍ତି କାହିଁକି ?" ଏହା ଶୁଣି କ୍ରୋଧୀ ମୁନି ଆହୁରି କ୍ରୁଦ୍ଧ ହୋଇ କହିଲେ,— ॥ ୧ ॥ "ସେବକର କର୍ମ ଯିଏ କରେ, ସେହି ସିନା ସେବକ । ଶତ୍ରୁର କର୍ମ କଲେ ତ ତାହା ପ୍ରତିପକ୍ଷକୁ ଯୁଦ୍ଧ ପାଇଁ ଆହ୍ୱାନ । ହେ ରାମ ! ଶୁଣ, ଯେ ଶିବଧନୁ ଭଗ୍ନ କରିଛି,

ସୋ ବିଲଗାଉ ବିହାଇ ସମାଜା । ନ ତ ମାରେ ଜୈହହିଁ ସବ ରାଜା ॥
ସୁନି ମୁନି ବଚନ ଲଖନ ମୁସୁକାନେ । ବୋଲେ ପରସୁଧରହି ଅପମାନେ ॥୩॥
ବହୁ ଧନୁହୀଁ ତୋରୀଁ ଲରିକାଇଁ । କବହୁଁ ନ ଅସି ରିସ କୀନ୍ହି ଗୋସାଇଁ ॥
ଏହି ଧନୁ ପର ମମତା କେହି ହେତୂ । ସୁନି ରିସାଇ କହ ଭୃଗୁକୁଲକେତୂ ॥୪॥

ରେ ନୃପ ବାଲକ କାଲ ବସ ବୋଲତ ତୋହି ନ ସଁଭାର ।
ଧନୁହୀ ସମ ତ୍ରିପୁରାରି ଧନୁ ବିଦିତ ସକଲ ସଂସାର ॥୨୭୧॥

ଲଖନ କହା ହଁସି ହମରେଁ ଜାନା । ସୁନହୁ ଦେବ ସବ ଧନୁଷ ସମାନା ॥
କା ଛତି ଲାଭୁ ଜୂନ ଧନୁ ତୋରେଁ । ଦେଖା ରାମ ନୟନ କେ ଭୋରେଁ ॥୧॥
ଛୁଅତ ଟୂଟ ରଘୁପତିହୁ ନ ଦୋସୂ । ମୁନି ବିନୁ କାଜ କରିଅ କତ ରୋସୂ ॥
ବୋଲେ ଚିତଇ ପରସୁ କୀ ଓରା । ରେ ସଠ ସୁନେହି ସୁଭାଉ ନ ମୋରା ॥୨॥

---

ସେ ପୃଥକ ହୋଇଯାଉ ତେଜି ଏ ସମାଜ । ନୋହିଲେ ମୃତ୍ୟୁ ଭଜିବେ ସର୍ବେ ନରରାଜ ॥
ମୁନିଙ୍କ ବଚନ ଶୁଣି ଲକ୍ଷ୍ମଣ ହସିଲେ । ପରଶୁରାମଙ୍କୁ ଅପମାନିଣ ଭାଷିଲେ ॥୩॥
ବାଲ୍ୟକାଳେ କେତେ କାଣ୍ଡ କଲୁ ମୁଁ ଖଣ୍ଡନ । କେବେ କୋପ କରି ନାହିଁ ଗୋସାଇଁ ଏସନ ॥
ଏହି କୋଦଣ୍ଡରେ ଏତେ ମମତା କି ହେତୁ । ଶୁଣି ସକ୍ରୋଧେ କହିଲେ ଭୃଗୁକୁଳକେତୁ ॥୪॥

ରେ ନୃପ ବାଳକ, କାଳ ବଶ ବୁଦ୍ଧି ନାହିଁ ବୋଲିବା ବିଚାର ।
କାଣ୍ଡ ସମାନ କି ତ୍ରିପୁରାରି କୋଦଣ୍ଡ ? ବିଦିତ ସାରା ସଂସାର ॥୨୭୧॥

ଲକ୍ଷ୍ମଣ କହିଲେ, ହସି ମୋର ଜାଣିବାରେ । ଶୁଣ ଦେବ, ସବୁ ଧନୁ ସମାନ ପ୍ରକାରେ ॥
କି ହାନି ଲାଭ ଭାଙ୍ଗନ୍ତେ ଜୀର୍ଣ୍ଣ ଶରାସନ । ଦେଖୁଥିଲେ ନୂଆ ଭାବି ଶ୍ରୀ ରଘୁନନ୍ଦନ ॥୧॥
ଛୁଇଁନ୍ତେ ଭାଙ୍ଗିଲା, ଦୋଷ ନାହିଁ ରାମଙ୍କର । ମୁନି ଅକାରଣେ କିପାଁ ଏତେ ରୋଷ କର ॥
ବୋଇଲେ ଚାହିଁଣ ମୁନି ପରଶୁ ଦାଢକୁ । ରେ ଶଠ ! ଶୁଣି କି ନାହୁଁ ମୋର ସ୍ୱଭାବକୁ ॥୨॥

---

ସହସ୍ରବାହୁ ସଦୃଶ ସେ ମୋର ଶତ୍ରୁ ॥ ୨ ॥ ସେ ଏହି ସମାଜକୁ ଛାଡ଼ି ଅଲଗା ହୋଇଯାଉ । ନୋହିଲେ ସମସ୍ତ ରାଜାଙ୍କୁ ବଧ କରାଯିବ ।" ମୁନିଙ୍କ ବଚନ ଶୁଣି ଲକ୍ଷ୍ମଣ ମୁରୁକି ହସିଲେ ଏବଂ ପରଶୁରାମଙ୍କୁ ଅପମାନଜନକ କଥା କହିଲେ— ॥ ୩ ॥ "ହେ ଗୋସାଇଁ ! ବାଲ୍ୟକାଳରେ ଆମେ ବହୁତ କାଣ୍ଡ ଭାଙ୍ଗିଅଛୁ । କିନ୍ତୁ ଆପଣ ଏମିତି କ୍ରୋଧ କେବେ ହେଲେ ହିଁ କରିନାହାନ୍ତି । ଏହି ଧନୁ ପ୍ରତି ଏତେ ମମତା ଆପଣଙ୍କର କେଉଁ କାରଣରୁ ?" ଏହା ଶୁଣି ଭୃଗୁବଂଶ-ଧ୍ୱଜ ପରଶୁରାମ କୁପିତ ହୋଇ କହିବାକୁ ଲାଗିଲେ—॥୪॥ ଦୋହା —"ଆରେ ନୃପବାଳକ ! କାଳର ବଶ ହେବାରୁ ତୋର ଟିକିଏ ହେଲେ ଚେତା ରହୁନାହିଁ, ବୋଧହୁଏ । ସମଗ୍ର ସଂସାରରେ ବିଖ୍ୟାତ ଏହି ଶିବଧନୁ କ'ଣ କାଣ୍ଡ ସଙ୍ଗେ ସମାନ ?" ॥୨୭୧॥ ଚୌପାଇ —ଲକ୍ଷ୍ମଣ ହସି କହିଲେ, "ହେ ଦେବ ! ଶୁଣନ୍ତୁ; ଆମ ଜାଣିବାରେ ସବୁ ଧନୁ ଗୋଟିଏ ପ୍ରକାରର । ପୁରୁଣା ଧନୁ ଭାଙ୍ଗିବାରେ ହାନିଲାଭ କ'ଣ ? ଶ୍ରୀରାମଚନ୍ଦ୍ର ଏହାକୁ ନୂଆ ମନେ କରି ଦେଖୁଥିଲେ ॥୧॥

ବାଲକୁ ବୋଲି ବଧଉଁ ନହିଁ ତୋହୀ । କେବଲ ମୁନି ଜଡ଼ ଜାନହି ମୋହୀ ॥
ବାଲ ବ୍ରହ୍ମଚାରୀ ଅତି କୋହୀ । ବିସ୍ୱ ବିଦିତ ଛତ୍ରିୟକୁଲ ଦ୍ରୋହୀ ॥୩॥
ଭୁଜବଲ ଭୂମି ଭୂପ ବିନୁ କୀନ୍ହୀ । ବିପୁଲ ବାର ମହିଦେବନ୍ହ ଦୀନ୍ହୀ ॥
ସହସବାହୁ ଭୁଜ ଛେଦନିହାରା । ପରସୁ ବିଲୋକୁ ମହୀପକୁମାରା ॥୪॥
ମାତୁ ପିତହି ଜନି ସୋଚ ବସ କରସି ମହୀସକିସୋର ।
ଗର୍ଭନ୍ହ କେ ଅର୍ଭକ ଦଲନ ପରସୁ ମୋର ଅତି ଘୋର ॥୨୭୨॥
ବିହସି ଲଖନୁ ବୋଲେ ମୃଦୁ ବାନୀ । ଅହୋ ମୁନୀସୁ ମହା ଭଟମାନୀ ॥
ପୁନି ପୁନି ମୋହି ଦେଖାଵ କୁଠାରୂ । ଚହତ ଉଡ଼ାଵନ ଫୂଁକି ପହାରୂ ॥୧॥
ଇହାଁ କୁମ୍ହଡ଼ବତିଆ କୋଉ ନାହୀଁ । ଜେ ତରଜନୀ ଦେଖି ମରି ଜାହୀଁ ॥
ଦେଖି କୁଠାରୁ ସରାସନ ବାନା । ମୈଁ କଛୁ କହା ସହିତ ଅଭିମାନା ॥୨॥

---

ବାଳକ ବିଚାରି ବଧ ନ କରଇ ତୋତେ । କେବଳ ତୁ ମୁନି ଜଡ଼ ଜାଣିଅଛୁ ମୋତେ ॥
ବାଲ ବ୍ରହ୍ମଚାରୀ ଅଟେ ଅତିଶୟ କ୍ରୋଧୀ । ବିଶ୍ୱ ବିଦିତ କ୍ଷତ୍ରିୟ କୁଳର ବିରୋଧୀ ॥୩॥
ଭୁଜବଳେ ଭୂମି ଭୂପ-ରହିତ କରିଲି । ଭୂସୁର-ବୃନ୍ଦଙ୍କୁ ବହୁବାର ପ୍ରଦାନିଲି ॥
ସହସ୍ରବାହୁର ସର୍ବ ଭୁଜ ଉଚ୍ଛେଦକ । ପରଶୁକୁ ଅବଲୋକ, ମହୀପ ବାଳକ ॥୪॥
ମାତା ପିଅରଙ୍କୁ ଶୋକ-ଚିନ୍ତାଗ୍ରସ୍ତ ନ କର ନୃପକିଶୋର ।
ଗର୍ଭର ବାଳକ-ଦଳନ ମୋହର ପରଶୁ ଅତ୍ୟନ୍ତ ଘୋର ॥୨୭୨॥
ହସି ଭାଷିଲେ ଲକ୍ଷ୍ମଣ ତହୁଁ ମୃଦୁବାଣୀ । ଓହୋ ମୁନୀଶ୍ୱର ମହାବୀର ଅଭିମାନୀ ॥
ବାରକୁ ବାର କୁଠାର ମୋତେ ଦେଖାଉଛ । ଫୁଙ୍କି ପାହାଡ଼ ଉଡ଼ାଇ ଦେବାକୁ ଚାହୁଁଛ ॥୧॥
ଏ ସ୍ଥାନରେ କେହି କଷି କଖାରୁ ନାହାନ୍ତି । ତର୍ଜନୀ ଦେଖିବା ମାତେ ଯେ ମରି ଯାଆନ୍ତି ॥
ଅବଲୋକଣ କୁଠାର ଶରାସନ ବାଣ । ମୁଁ କିଛି କହିଲି ମନେ ଘେନ ଅଭିମାନ ॥୨॥

---

ପୁଣି ତ ଛୁଇଁ ଦେଉ ଦେଉ ଏହା ଭାଙ୍ଗି ଗଲା । ଏଥିରେ ରଘୁନାଥଙ୍କର କୌଣସି ଦୋଷ ନାହିଁ । ହେ ମୁନି ! ଆପଣ ବିନା କାରଣରେ କ୍ରୋଧ କାହିଁକି କରୁଅଛନ୍ତି ?" ପରଶୁରାମ ଆପଣା ଫାରସା ଆଡ଼କୁ ଚାହିଁ କହିଲେ, "ଆରେ ଦୁଷ୍ଟ ! ତୁ ମୋ ସ୍ୱଭାବ ଶୁଣି ନାହୁଁ ? ॥ ୨ ॥ ତୋତେ ବାଳକ ଜାଣି ମୁଁ ମାରୁନାହିଁ । ଆରେ ମୂର୍ଖ ! ତୁ କ'ଣ ମୋତେ କପଟ ମୁନି ବୋଲି ଜାଣୁ ? ମୁଁ ବାଲବ୍ରହ୍ମଚାରୀ ଓ ଅତ୍ୟନ୍ତ କ୍ରୋଧୀ । ମୁଁ କ୍ଷତ୍ରିୟକୁଳର ବିଶ୍ୱବିଦିତ ଶତ୍ରୁ ॥ ୩ ॥ ଆପଣା ବାହୁବଳରେ ମୁଁ ପୃଥିବୀକୁ ନୃପ-ଶୂନ୍ୟ କରିଦେଇଛି ଏବଂ ବହୁତ ଥର ତାହା ବ୍ରାହ୍ମଣମାନଙ୍କୁ ଦେଇଛି । ହେ ରାଜକୁମାର ! ସହସ୍ରବାହୁର ଛେଦନକାରୀ ମୋର ଏହି କୁରାଢ଼ିକୁ ଟିକିଏ ଦେଖ ! ॥ ୪ ॥ ଦୋହା – ହେ ରାଜକିଶୋର ! ତୁ ତୋ ମାତାପିତାଙ୍କୁ ଚିନ୍ତାଗ୍ରସ୍ତ କରନାହିଁ । ମୋର କୁରାଢ଼ି ଅତି ଭୟାନକ, ତାହା ଗର୍ଭସ୍ଥ ଶିଶୁମାନଙ୍କର ମଧ୍ୟ ନାଶକାରୀ ।" ॥ ୨୭୨ ॥
ଚୌପାଇ .—ଲକ୍ଷ୍ମଣ ହସି କୋମଳ ବାଣୀରେ କହିଲେ, "ଓହୋ ! ମୁନୀଶ୍ୱର ନିଜକୁ

ଭୃଗୁସୁତ ସମୁଝି ଜନେଉ ବିଲୋକୀ । ଜୋ କଛୁ କହହୁ ସହଉଁ ରିସ ରୋକୀ ॥
ସୁର ମହିସୁର ହରିଜନ ଅରୁ ଗାଈ । ହମରେଁ କୁଲ ଇହ୍ନ ପର ନ ସୁରାଈ ॥୩॥
ବଧେଁ ପାପୁ ଅପକୀରତି ହାରେଁ । ମାରତହୂଁ ପା ପରିଅ ତୁହ୍ମାରେଁ ॥
କୋଟି କୁଲିସ ସମ ବଚନୁ ତୁହ୍ମାରା । ବ୍ୟର୍ଥ ଧରହୁ ଧନୁ ବାନ କୁଠାରା ॥୪॥
ଜୋ ବିଲୋକି ଅନୁଚିତ କହେଉଁ ଛମହୁ ମହାମୁନି ଧୀର ।
ସୁନି ସରୋଷ ଭୃଗୁବଂସମନି ବୋଲେ ଗିରା ଗଭୀର ॥୨୭୩॥
କୌସିକ ସୁନହୁ ମଂଦ ୟହୁ ବାଲକୁ । କୁଟିଲ କାଲବସ ନିଜ କୁଲ ଘାଲକୁ ॥
ଭାନୁ ବଂସ ରାକେସ କଲଂକୂ । ନିପଟ ନିରଂକୁସ ଅବୁଧ ଅସଂକୂ ॥୧॥

---

ଦେଖି ଯଜ୍ଞ ଉପବୀତ ଭୃଗୁକୁଳ ହେଜ । ଯାହା କିଛି କହୁଅଛ ସହେ ରୋଷ ତେଜ ॥
ଦେବ ଦ୍ୱିଜ ହରିଜନ ଧେନୁଙ୍କ ଉପରେ । ଶୂରତା ଦେଖାନ୍ତି ନାହିଁ ଆମ୍ଭର କୂଳରେ ॥୩॥
ବଧିଲେ ପାପ ହାରିଲେ ଅଯଶ ଅମିତ । ମାରିଲେହେଁ ତୁମ ପାଦେ ପଡ଼ିବା ଉଚିତ ॥
କୋଟି କୁଳିଶ ସମାନ ବଚନ ତୁମ୍ଭର । ବୃଥାରେ କୁଠାର ବାଣ ଶରାସନ ଧର ॥୪॥
ଦେଖି ଅନୁଚିତ କହିଲି ମୁଁ ଯାହା କ୍ଷମ ମହାମୁନି ଧୀର ।
ଅତି କ୍ରୋଧେ ଶୁଣି ଭୃଗୁ ବଂଶମଣି ବୋଇଲେ ଗିରା ଗମ୍ଭୀର ॥୨୭୩॥
କଉଶିକ, ଶୁଣ ମନ୍ଦ ଅଟେ ଏ ବାଳକ । କୁଟିଳ କାଳ ବିବଶ ସ୍ୱକୁଳ-ଘାତକ ॥
ଦିନକର-କୁଳ-ପୂର୍ଣ୍ଣ - ଶଶୀକୁ କଳଙ୍କ । ନିପଟ ଅଙ୍କୁଶ ହୀନ ନିର୍ବୋଧ ନିଃଶଙ୍କ ॥୧॥

---

ବଡ଼ ଯୋଦ୍ଧା ମନେ କରୁଅଛନ୍ତି । ବାରମ୍ବାର ମୋତେ କୁରାଢି ଦେଖାଉଛନ୍ତି । ଫୁଙ୍କି ପାହାଡ଼କୁ ଉଡ଼ାଇ ଦେବାକୁ ସେ ଚାହାନ୍ତି ॥ ୧ ॥ ଏଠାରେ କେହି କଷି କୁଷ୍ମାଣ୍ଡି ହୋଇନି ଯେ ତୁମ ତର୍ଜନୀ ଅଙ୍ଗୁଳିକୁ ଦେଖୁ ଦେଖୁ ତରି ମରିଯିବ । ପରଶୁ ଓ ଧନୁର୍ବାଣ ଦେଖି ମୁଁ କିଛି ଅଭିମାନରେ କହିଥିଲି ॥ ୨ ॥ ଭୃଗୁବଂଶୀ ବୋଲି ଜାଣି ଓ ଯଜ୍ଞୋପବୀତ ଦେଖି ମୁଁ କ୍ରୋଧ-ଦମନ ପୂର୍ବକ ଆପଣ ଯାହାକିଛି କହୁଯାଉଛନ୍ତି, ସହି ନେଉଛି । ଦେବତା, ବ୍ରାହ୍ମଣ, ଭଗବାନଙ୍କ ଭକ୍ତ ଓ ଗୋରୁ—ଏମାନଙ୍କ ଉପରେ ଆମ ବଂଶରେ କେହି ବୀରତା ଦେଖାନ୍ତି ନାହିଁ ॥ ୩ ॥ କାରଣ ଏମାନଙ୍କୁ ମାରିଲେ ପାପ ଲାଗେ ଏବଂ ଏମାନଙ୍କଠାରୁ ପରାଜୟ ଲାଭ କଲେ ଅପକୀର୍ତ୍ତି ହୁଏ । ଆପଣ ମାରିଲେ ମଧ୍ୟ ଆପଣଙ୍କ ପାଦତଳେ ପଡ଼ିବା ଉଚିତ । ଆପଣଙ୍କର ପଦେ ପଦେ କଥା କୋଟି କୋଟି ବଜ୍ର ତୁଲ୍ୟ କଠୋର । ଧନୁର୍ବାଣ ଓ କୁରାଢି ତ ଆପଣ ବୃଥାରେ ଧାରଣ କରିଅଛନ୍ତି ॥୪॥ ଦୋହା :- ଏହି ଧନୁର୍ବାଣ ଓ କୁଠାରକୁ ଦେଖି ଯଦି ମୁଁ କିଛି ଅନୁଚିତ କଥା କହିଥାଏ, ତେବେ ହେ ଧୀର ମହାମୁନି ! ତାହା କ୍ଷମା କରନ୍ତୁ ।" ଏହା ଶୁଣି ଭୃଗୁବଂଶମଣି ପରଶୁରାମ କ୍ରୋଧଭରା ଗମ୍ଭୀର ବାଣୀରେ କହିଲେ— ॥ ୨୭୩ ॥ ଚୌପାଈ —"ହେ ବିଶ୍ୱାମିତ୍ର ! ଶୁଣ, ଏହି ବାଳକ ଅତି କୁବୁଦ୍ଧି ଓ କୁଟିଳ । କୁଟିଳ କାଳର ବଶୀଭୂତ ହୋଇ ଏ ଆପଣା ବଂଶର ଘାତକ ହେବାକୁ ଯାଉଅଛି । ଏ ସୂର୍ଯ୍ୟବଂଶ ରୂପୀ ପୂର୍ଣ୍ଣଚନ୍ଦ୍ରର କଳଙ୍କ । ଏ ନିପଟ

କାଲ କବଲୁ ହୋଇହି ଛନ ମାହୀଂ । କହଉଁ ପୁକାରି ଖୋରି ମୋହି ନାହୀଂ ॥
ତୁମ୍ହ ହଟକହୁ ଜୌଂ ଚହହୁ ଉବାରା । କହି ପ୍ରତାପୁ ବଲୁ ରୋଷୁ ହମାରା ॥୨॥
ଲଖନ କହେଉ ମୁନି ସୁଜସୁ ତୁମ୍ହାରା । ତୁମ୍ହହି ଅଛତ କୋ ବରନୈ ପାରା ॥
ଅପନେ ମୁଁହ ତୁମ୍ହ ଆପନି କରନୀ । ବାର ଅନେକ ଭାଁତି ବହୁ ବରନୀ ॥୩॥
ନହିଁ ସଂତୋଷୁ ତ ପୁନି କଛୁ କହହୂ । ଜନି ରିସ ରୋକି ଦୁସହ ଦୁଖ ସହହୂ ॥
ବୀରବ୍ରତୀ ତୁମ୍ହ ଧୀର ଅଛୋଭା । ଗାରୀ ଦେତ ନ ପାୱହୁ ସୋଭା ॥୪॥

ସୂର ସମର କରନୀ କରହିଁ କହି ନ ଜନାୱହିଁ ଆପୁ ।
ବିଦ୍ୟମାନ ରନ ପାଇ ରିପୁ କାୟର କଥହିଁ ପ୍ରତାପୁ ॥୨୭୪॥

ତୁମ୍ହ ତୌ କାଲୁ ହାଁକ ଜନୁ ଲାୱା । ବାର ବାର ମୋହି ଲାଗି ବୋଲାୱା ॥
ସୁନତ ଲଖନ କେ ବଚନ କଠୋରା । ପରସୁ ସୁଧାରି ଧରେଉ କର ଘୋରା ॥୧॥

---

କ୍ଷଣକ ମଧ୍ୟରେ କାଳ କବଳ ଏ ହେବ । କହୁଛି ଡାକି ମୋତେ ଦୂଷଣ ନ ଦେବ ॥
ରଖିବାକୁ ଚାହଁ ଯେବେ, ତୁମ୍ଭେ ମନା କର । ବୁଝାଇଣ ରୋଷବଳ ପ୍ରତାପ ମୋହର ॥୨॥
ଲକ୍ଷ୍ମଣ କହିଲେ, ମୁନି ତୁମ୍ଭେ ଥାଉ ଥାଉ । ତୁମ୍ଭ ସୁଯଶ ବଖାଣି ପାରିବ କେ ଆଉ ॥
ଆପଣା କୃତିତ୍ୱ ତୁମ୍ଭେ ଆପଣା ମୁଖରେ । ବର୍ଣ୍ଣିଲ ଅନେକ ବାର ବିବିଧ ଭାବରେ ॥
ନ ହୁଏ ସନ୍ତୋଷ ଯେବେ ଆଉ କିଛି କହ । କ୍ରୋଧ ସମ୍ଭାଳି ଦୁଃସହ ସନ୍ତାପ ନ ସହ ॥
ବୀର ବ୍ରତୀ ଧୀର ତୁମ୍ଭେ ବିକାର ରହିତ । ଗାଳିଦେବା ତୁମ୍ଭ ମୁଖେ ନ ହୁଏ ଶୋଭିତ ॥୪॥

ଶୂର ସଂଗ୍ରାମରେ କୃତିତ୍ୱ ଦେଖାଏ କହି ନ ଜଣାଏ ଆପେ ।
ରଣେ ବିଦ୍ୟମାନ ଶତ୍ରୁଙ୍କୁ ଦେଖିଣ ଭୀରୁ ହିଁ ବ୍ୟର୍ଥ ପ୍ରଳାପେ ॥୨୭୪॥

ତୁମ୍ଭେ ତ ଯେସନ୍ତେ ଆଡେଇ ଆଣିଛ କାଳକୁ । ବାରମ୍ବାର ମୋ ନିମନ୍ତେ ଡାକ ଏ ସ୍ଥାନକୁ ॥
ଶୁଣନ୍ତେ ଲକ୍ଷ୍ମଣଙ୍କର ବଚନ କଠୋର । ଧରିଲେ କରେ ପରଶୁ ସାବଧାନେ ଘୋର ॥୧॥

---

ଉଦ୍ଦଣ୍ଡ, ମୂର୍ଖ ଓ ନିର୍ଭୀକ ॥ ୧ ॥ ଏହିକ୍ଷଣି କ୍ଷଣକ ମଧ୍ୟରେ ଏ କାଳର କରାଳ ଗ୍ରାସରେ ପଡ଼ିବ । ମୁଁ ଚିତ୍କାର କରି କହି ଦେଉଛି—ମୋର ପୁଣି ଦୋଷ ନାହିଁ । ଯଦି ତୁମେ ଏହାକୁ ବଞ୍ଚାଇବାକୁ ଇଚ୍ଛା କର, ତେବେ ଆମ ପ୍ରତାପ, ବଳ ଓ କ୍ରୋଧ ବିଷୟ କହି ଏହାକୁ ବାରଣ କରିଦିଅ ।" ॥ ୨ ॥ ଲକ୍ଷ୍ମଣ କହିଲେ, "ହେ ମୁନି ! ଆପଣଙ୍କ ସୁଯଶ ଆପଣଙ୍କ ଉପସ୍ଥିତିରେ ଅନ୍ୟ କିଏ ବର୍ଣ୍ଣନା କରିପାରେ ? ଆପଣ ଆପଣଙ୍କ ମୁହଁରେ ଆପଣା କୃତିତ୍ୱ ଅନେକ ଥର ବହୁତ ପ୍ରକାରେ ବର୍ଣ୍ଣନା କରିଛନ୍ତି ॥ ୩ ॥ ଏତିକିରେ ଯଦି ସନ୍ତୋଷ ହୋଇନାହିଁ, ତେବେ ଆଉ କିଛି କହି ପକାନ୍ତୁ । କ୍ରୋଧକୁ ଦବାଇ ଅସହ୍ୟ ଦୁଃଖ ସହନ୍ତୁ ନାହିଁ । ଆପଣ ବୀରବ୍ରତୀ, ଧୈର୍ଯ୍ୟବାନ ଓ କ୍ଷୋଭରହିତ । ଗାଳି ଦେବା ଆପଣଙ୍କୁ ସୁହାଉନାହିଁ ॥ ୪ ॥ ଦୋହା —ଶୂରବୀରମାନେ ତ ଯୁଦ୍ଧରେ କର୍ମବୀରତା ଦେଖାଇ ଆପଣା ଆପଣାର ପରିଚୟ ଦିଅନ୍ତି, ବାକ୍ୟରେ କହି ଆପଣାକୁ ପରିଚିତ କରାନ୍ତି ନାହିଁ । ଶତ୍ରୁକୁ ଯୁଦ୍ଧରେ ଉପସ୍ଥିତ ଦେଖି ଭୀରୁକାପୁରୁଷମାନେ ହିଁ ସେମାନଙ୍କ ପ୍ରତାପର

ଅବ ଜନି ଦେଇ ଦୋସୁ ମୋହି ଲୋଗୂ । କଟୁବାଦୀ ବାଲକୁ ବଧଜୋଗୂ ॥
ବାଲ ବିଲୋକି ବହୁତ ମୈଁ ବାଁଚା । ଅବ ୟହୁ ମରନିହାର ଭା ସାଁଚା ॥୨॥
କୌସିକ କହା ଛମିଅ ଅପରାଧୂ । ବାଲ ଦୋଷ ଗୁନ ଗନହିଁ ନ ସାଧୂ ॥
ଖର କୁଠାର ମୈଁ ଅକରୁନ କୋହୀ । ଆଗେଁ ଅପରାଧୀ ଗୁରୁଦ୍ରୋହୀ ॥୩॥
ଉତର ଦେତ ଛୋଡ଼ଉଁ ବିନୁ ମାରେଁ । କେବଲ କୌସିକ ସୀଲ ତୁମ୍ହାରେଁ ॥
ନ ତ ଏହି କାଟି କୁଠାର କଠୋରେଁ । ଗୁରହି ଉରିନ ହୋତେଉଁ ଶ୍ରମ ଥୋରେଁ ॥୪॥

ଗାଧିସୂନୁ କହ ହୃଦୟଁ ହଁସି ମୁନିହି ହରିଅରଇ ସୂଝ ।
ଅୟମୟ ଖାଁଡ ନ ଊଖମୟ ଅଜହୁଁ ନ ବୂଝ ଅବୂଝ ॥୨୭୫॥

---

ଏବେ ଆଉ ଦୋଷ ମୋତେ ଦେବ ନାହିଁ କେହି । ବଧ ଯୋଗ୍ୟ କଟୁଭାଷୀ ଶିଶୁ ଅଟେ ଏହି ॥
ବାଳକ ବିଲୋକି କଲି ଉପେକ୍ଷା ବହୁତ । ଏବେ ସତ୍ୟ ହେଲାଣି ଏ ମୃତ୍ୟୁକୁ ପ୍ରସ୍ତୁତ ॥୧॥
କ୍ଷମ ଅପରାଧ, ଗାଧି ତନୟ କହନ୍ତି । ବାଳକର ଦୋଷ ଗୁଣ ସାଧୁ ନ ଗଣନ୍ତି ॥
କରେ କୁଠାର ମୁଁ କ୍ରୋଧୀ କରୁଣା-ରହିତ । ଆଗେ ଅପରାଧୀ ଗୁରୁଦ୍ରୋହୀ ଉପସ୍ଥିତ ॥୨॥
ଉତ୍ତର ଦେଲେହେଁ ଛାଡ଼ି ଦେଉଛି ନ ମାରି । କେବଳ କୌଶିକ ତୁମ୍ଭ ଶୀଳ ବଶ୍ୟ ଭାରି ॥
ନାହିଁ ତ କାଟି କଠୋର ଏହି କୁଠାରରେ । ହୁଅନ୍ତି ଗୁରୁ ଋଣରୁ ମୁକ୍ତ ସହଜରେ ॥୩॥

ହସି ବିଶ୍ୱାମିତ୍ର ଭାବନ୍ତି, ମୁନିଙ୍କୁ ସବୁ ସବୁଜ ଦିଶଇ ।
ଲୌହମୟ ଖଣ୍ଡା ନୁହେ ଇକ୍ଷୁଦଣ୍ଡ, ଏବେହେଁ ଅବୁଝା ସେହି ॥ ୭୫॥

---

ବାହାନା ଦେଖାଇଥା'ନ୍ତି ॥ ୨୭୪ ॥ ଚୌପାଇ —ଆପଣ ତ ସତେ ଯେମିତି କାଳକୁ ହାଙ୍କି ବାରମ୍ବାର ମୋ ନିମନ୍ତେ ଡାକୁଅଛନ୍ତି ।'' ଲକ୍ଷ୍ମଣଙ୍କର କଠୋର ବଚନ ଶୁଣି ପରଶୁରାମ ତାଙ୍କ ଭୟାନକ କୁରାଢ଼ିକୁ ସଜାଡ଼ି ହାତରେ ଧରିନେଲେ ॥ ୧ ॥ ଏବଂ କହିଲେ, "ଏବେ ଲୋକେ ମୋତେ ଆଉ ଦୋଷ ନ ଦିଅନ୍ତୁ । ଏହି କଟୁଭାଷୀ ବାଳକ ବଧର ଯୋଗ୍ୟ । ଏହାକୁ ବାଳକ ଦେଖି ମୁଁ ବହୁତ ସମୟ ପର୍ଯ୍ୟନ୍ତ ଏହାକୁ ବଞ୍ଚାଇଥିଲି । କିନ୍ତୁ ଏ ବର୍ତ୍ତମାନ ସତକୁ ସତ ମରିବାକୁ ଆସିଗଲାଣି ।'' ॥୨॥ ବିଶ୍ୱାମିତ୍ର କହିଲେ, "ଅପରାଧ କ୍ଷମା କରନ୍ତୁ । ବାଳକଙ୍କ ଦୋଷଗୁଣକୁ ସାଧୁଲୋକେ ଗଣନ୍ତି ନାହିଁ ।'' ପରଶୁରାମ କହିଲେ, "ମୋ କରରେ ତୀକ୍ଷ୍ଣଧାର କୁରାଢ଼ି । ମୁଁ ନିର୍ଦ୍ଦୟ ଓ କ୍ରୋଧୀ ଏବଂ ଏ ଗୁରୁଦ୍ରୋହୀ ଓ ଅପରାଧୀ ମୋ ଆଗରେ ଉତ୍ତର ଦେଉଛି । ହେ ବିଶ୍ୱାମିତ୍ର ! ଏତେ ସତ୍ତ୍ୱେ ମୁଁ ତାକୁ ନ ମାରି ଛାଡ଼ି ଦେଉଛି । ହେ ବିଶ୍ୱାମିତ୍ର ! ତାହା କେବଳ ତୁମର ଶୀଳ ଯୋଗେ । ନୋହିଲେ କଠୋର କୁଠାରରେ ଏହାକୁ କାଟି ଅତ୍ୟଳ୍ପ ପରିଶ୍ରମରେ ମୁଁ ଗୁରୁଙ୍କ ଋଣରୁ ମୁକ୍ତ ହୋଇଯାଆନ୍ତି ।'' ॥ ୩-୪ ॥ ଦୋହା '—ବିଶ୍ୱାମିତ୍ର ମନେ ମନେ ହସି ଭାବୁଥା'ନ୍ତି,—"ମୁନିଙ୍କୁ ଖାଲି ଚଉଆଡେ ବିଜୟାଶାର ଜ୍ୟୋତି ଦିଶିଯାଉଛି । (ଅର୍ଥାତ୍ ସର୍ବତ୍ର ବିଜୟୀ ହେବାରୁ ଏ ଶ୍ରୀରାମଲକ୍ଷ୍ମଣଙ୍କୁ ସୁଦ୍ଧା ସାଧାରଣ କ୍ଷତ୍ରିୟ ବୋଲି ଭାବୁଛନ୍ତି ।) କିନ୍ତୁ ଏ ଲୌହଖଣ୍ଡ, ଅର୍ଥାତ୍ ଖଣ୍ଡା, ଆଖୁରୁ ତିଆରି ଖଣ୍ଡ ନୁହେଁ । ମୁନି ଏବେ ମଧ୍ୟ ଅବୁଝା ହୋଇ ରହିଛନ୍ତି । ଏମାନଙ୍କ ପ୍ରଭାବକୁ ବୁଝିପାରୁ

କହେଉ ଲଖନ ମୁନି ଶୀଲୁ ତୁହ୍ମାରା । କୋ ନହିଁ ଜାନ ବିଦିତ ସଂସାରା ॥
ମାତା ପିତହି ଉଋନ ଭଏ ନୀକେଁ । ଗୁରୁ ଋନୁ ରହା ସୋଚୁ ବଡ଼ ଜୀକେଁ ॥୧॥
ସୋ ଜନୁ ହମରେହି ମାଥେଁ କାଢ଼ା । ଦିନ ଚଲି ଗଏ ବ୍ୟାଜ ବଡ଼ ବାଢ଼ା ॥
ଅବ ଆନିଅ ବ୍ୟବହରିଆ ବୋଲି । ତୁରତ ଦେଉଁ ମୈଁ ଥୈଲୀ ଖୋଲୀ ॥୨॥
ସୁନି କଟୁ ବଚନ କୁଠାର ସୁଧାରା । ହାୟ ହାୟ ସବ ସଭା ପୁକାରା ॥
ଭୃଗୁବର ପରସୁ ଦେଖାଉହୁ ମୋହୀ । ବିପ୍ର ବିଚାରି ବଚଉଁ ନୃପଦ୍ରୋହୀ ॥୩॥
ମିଲେ ନ କବହୁଁ ସୁଭଟ ରନ ଗାଢ଼େ । ଦ୍ୱିଜ ଦେବତା ଘରହି କେ ବାଢ଼େ ॥
ଅନୁଚିତ କହି ସବ ଲୋଗ ପୁକାରେ । ରଘୁପତି ସୟନହିଁ ଲଖନୁ ନିବାରେ ॥୪॥

ଲଖନ ଉତର ଆହୁତି ସରିସ ଭୃଗୁବର କୋପୁ କୃସାନୁ ।
ବଢ଼ତ ଦେଖି ଜଲ ସମ ବଚନ ବୋଲେ ରଘୁକୁଲଭାନୁ ॥୨୭୭॥

---

ଲକ୍ଷ୍ମଣ କହିଲେ, ତୁମ୍ଭ ଶୀଳ ମୁନି ମଣି । କିଏ ନ ଜାଣେ ? ବିଦିତ ସମଗ୍ର ଧରଣୀ ॥
ମାତା ପିତାଙ୍କ ଋଣରୁ ହୋଇଅଛ ଉନ୍ମୁକ୍ତ । ଗୁରୁଙ୍କ ଋଣ ଥିବା ହେତୁ ହୃଦ ଚିନ୍ତା ଯୁକ୍ତ ॥୧॥
ତାହା ଯେହ୍ନେ ମୋ ଯାମିନୀ ମସ୍ତକେ ରହିଛି । କାଳାନ୍ତରେ ସୁଧ ମଧ ବହୁତ ବଢ଼ିଛି ॥
ଏବେ ହିସାବୀକୁ ଡାକି ଆଣନ୍ତୁ ଆପଣେ । ଥଳୀ ଖୋଲି ଦେଇ ଶୁଝି ଦେବି ମୁଁ ତତ୍କ୍ଷଣେ ॥୨॥
ଶୁଣି କଠୋର ବଚନ ଉଠାନ୍ତେ କୁଠାର । ସଭା ମଧ୍ୟେ ପଡ଼ିଗଲା ଶବ୍ଦ ହାହାକାର ॥
ଭୃଗୁବର, ପରଶୁ ତୁ ଦେଖାଉଛୁ ମୋତେ । ବିପ୍ର ବିଚାରି ତେଜଇ ନୃପଦ୍ରୋହୀ ତୋତେ ॥୩॥
ମିଳି ନାହାନ୍ତି କେବେହେଁ ରଣେଶ୍ୱର ଧୀର । ଦ୍ୱିଜ ଦେବତା ଅଟନ୍ତି ଗୃହ ମଧ୍ୟେ ବୀର ॥
ଅନୁଚିତ କହୁ ସବୁ ଲୋକେ ଚିତ୍କାରିଲେ । ଇଙ୍ଗିତେ ଭ୍ରାତାକୁ ରଘୁପତି ନିବାରିଲେ ॥୪॥

ଲକ୍ଷଣ ଉତ୍ତର ଆହୁତି ପ୍ରକାର ଭାର୍ଗବ କୋପ ଅନଳ ।
ଦେଖି ବଢ଼ନ୍ତି ରଘୁକୁଳାଦିତ୍ୟ ଭାଷିଲେ ବଚନ-ଜଳ ॥୨୭୭॥

---

ନାହାନ୍ତି ।" ॥ ୨୭୬ ॥ ଚୌପାଇ —ଲକ୍ଷ୍ମଣ କହିଲେ, "ହେ ମୁନି ! ଆପଣଙ୍କ ଚରିତ୍ର କିଏ ନ ଜାଣେ ? ସମଗ୍ର ସଂସାରରେ ତାହା ପ୍ରସିଦ୍ଧ । ଆପଣ ମାତାପିତାଙ୍କଠାରୁ ଭଲ ଭାବରେ ଋଣମୁକ୍ତ ହୋଇଯାଇଛନ୍ତି । ଏବେ ଗୁରୁଙ୍କ ଋଣ ରହିଥିବାରୁ ଆପଣଙ୍କ ହୃଦୟରେ ବଡ଼ ଚିନ୍ତା ରହିଛି ॥ ୧ ॥ ସତେ ଯେମିତି ତାହାର ଦାୟିତ୍ୱ ଆମର ମୁଣ୍ଡ ଉପରେ ରହିଥିଲା । ବହୁତ ଦିନ ଅତିବାହିତ ହୋଇଯାଇଛି । ଏହା ଦ୍ୱାରା ସୁଧ ମଧ ବହୁତ ବଢ଼ିଯାଇଥିବ । ବର୍ତ୍ତମାନ କୌଣସି ଜଣେ ହିସାବୀକୁ ଡାକି ଆଣନ୍ତୁ । ମୁଁ ଅତିଶୀଘ୍ର ଥଳୀ ଖୋଲି ଶୁଝିଦେବି ।" ॥ ୨ ॥ ଲକ୍ଷ୍ମଣଙ୍କ କଠୋର ବଚନ ଶୁଣି ପରଶୁରାମ ପରଶୁ ଉଠାଇଲେ । ସମସ୍ତ ସଭାସଦ ହାହାକାର ଶବ୍ଦ ଉଚ୍ଚାରଣ କରିବାକୁ ଲାଗିଲେ । ଲକ୍ଷ୍ମଣ କହିଲେ, "ହେ ଭୃଗୁଶ୍ରେଷ୍ଠ ! ଆପଣ ମୋତେ କୁରାଢ଼ି ଦେଖାଉଛନ୍ତି ! ଆପଣ ନୃପଦ୍ରୋହୀ ହୋଇଥିବାରୁ ଆମର ଶତ୍ରୁ । ତଥାପି ବ୍ରାହ୍ମଣ ବିଚାରି ମୁଁ ଆପଣଙ୍କୁ ଜୀବିତ ଛାଡ଼ି ଦେଉଛି ॥ ୩ ॥ ଆପଣଙ୍କୁ କେବେ ରଣଧୀର ବଳବାନ୍ ବୀର (ସମଯୋଦ୍ଧା)

ନାଥ କରହୁ ବାଲକ ପର ଛୋହୂ । ସୂଧ ଦୂଧମୁଖ କରିଅ ନ କୋହୂ ॥
ଜୌଁ ପୈ ପ୍ରଭୁ ପ୍ରଭାଉ କଛୁ ଜାନା । ତୌ କ ବରାବରି କରତ ଅୟାନା ॥୧॥
ଜୌଁ ଲରିକା କଛୁ ଅଚଗରି କରହୀଁ । ଗୁର ପିତୁ ମାତୁ ମୋଦ ମନ ଭରହୀଁ ॥
କରିଅ କୃପା ସିସୁ ସେବକ ଜାନୀ । ତୁହ୍ମ ସମ ସୀଲ ଧୀର ମୁନି ଗ୍ୟାନୀ ॥୨॥
ରାମ ବଚନ ସୁନି କଛୁକ ଜୁଡ଼ାନେ । କହି କଛୁ ଲଖନୁ ବହୁରି ମୁସୁକାନେ ॥
ହଁସତ ଦେଖି ନଖ ସିଖ ରିସ ବ୍ୟାପୀ । ରାମ ତୋର ଭ୍ରାତା ବଡ଼ ପାପୀ ॥୩॥
ଗୌର ସରୀର ସ୍ୟାମ ମନ ମାହୀଁ । କାଲକୂଟମୁଖ ପୟମୁଖ ନାହୀଁ ॥
ସହଜ ଟେଢ଼ ଅନୁହରଇ ନ ତୋହୀ । ନୀଚୁ ମୀଚୁ ସମ ଦେଖ ନ ମୋହୀ ॥୪॥

---

ନାଥ, ବାଳକ ଉପରେ କରୁଣା କରନ୍ତୁ । ଖାଲି ଦୁଧ-ପିଆ ମୁଖ, କ୍ରୋଧ ସମ୍ବରନ୍ତୁ ॥
ପ୍ରଭୁଙ୍କ ପ୍ରଭାବ କିଛି ଜାଣିଥାନ୍ତା ଯେବେ । କରନ୍ତା ପ୍ରତିଦ୍ୱନ୍ଦ୍ୱିତା ନିର୍ବୋଧ କି ତେବେ ॥୧॥
ଯଦି କିଛି ଅନୁଚିତ ବାଳକ କରଇ । ଗୁରୁ ପିତା ମାତା ମନ ପ୍ରମୋଦେ ପୂରଇ ॥
କରନ୍ତୁ କୃପା ଶିଶୁକୁ ସେବକ ବିଚାରି । ତୁମ୍ଭେ ଶାନ୍ତ ମୁନି ଜ୍ଞାନ ଧୈର୍ଯ୍ୟଶୀଳ ଭାରି ॥୨॥
ରାମବାଣୀ ଶୁଣି କିଛି ସୁଶୀତଳ ହେଲେ । ପୁନଶ୍ଚ ଲକ୍ଷ୍ମଣ କିଛି କହି ହସି ଦେଲେ ॥
ହସିବା ଦେଖି ସର୍ବାଙ୍ଗେ କ୍ରୋଧ ଗଲା ବ୍ୟାପି । ରାମ ତୋହର ଅନୁଜ ଅଟେ ବଡ଼ ପାପୀ ॥୩॥
ଗଉର ଶରୀର ମନ ଭିତର କାଳିଆ । କାଳକୂଟ ମୁଖ ଯାର, ନୁହେଁ ଦୁଧ ପିଆ ॥
ସହଜେ କୁଟିଳ, ଅନୁସରେ ନାହିଁ ତୋତେ । ନୀଚ ଶମନ ସମାନ ନ ଦେଖଇ ମୋତେ ॥୪॥

---

ମିଳନାହାନ୍ତି । ହେ ବ୍ରାହ୍ମଣ ଦେବତା ! ଆପଣ ନିଜର ଘରେ ହିଁ ବଡ଼ ।'' ଏହା ଶୁଣି ସମସ୍ତେ 'ଅନୁଚିତ' 'ଅନୁଚିତ' କହି ଚିତ୍କାର କଲେ । ଶ୍ରୀରଘୁନାଥ ଆଖି ଠାରି ଲକ୍ଷ୍ମଣଙ୍କୁ ନିବାରଣ କଲେ ॥ ୪ ॥ ଦୋହା '—କ୍ଷତ୍ରିୟବର ପରଶୁରାମଙ୍କ କ୍ରୋଧାଗ୍ନି ଲକ୍ଷ୍ମଣଙ୍କ ଉତ୍ତର-ଆହୁତି ଯୋଗେ ବଢ଼ିବାର ଦେଖି ରଘୁକୁଳ-ରବି ଶ୍ରୀରାମଚନ୍ଦ୍ର ଜଳସମାନ ବଚନ ବୋଇଲେ— ॥ ୨୭୬ ॥ ଚୌପାଈ '—"ହେ ନାଥ ! ବାଳକ ଉପରେ କରୁଣା କରନ୍ତୁ । ଏହି ସରଳ ଓ ଦୁଗ୍ଧମୁଖ ଶିଶୁ ଉପରେ କ୍ରୋଧ କରନ୍ତୁ ନାହିଁ । ଯଦି ଏହି ଶିଶୁ ଆପଣଙ୍କ ପ୍ରତାପ କିଛି ଜାଣିଥା'ନ୍ତା, ତେବେ ସେ ନିର୍ବୋଧ ଆପଣଙ୍କ ସହିତ ପ୍ରତିଦ୍ୱନ୍ଦ୍ୱିତା କରିବାକୁ ସାହସ କରିଥା'ନ୍ତା କି ? ॥ ୧ ॥ ଯଦି ଶିଶୁ ପୁଣି କିଛି ଚପଳତା ଦେଖାଏ, ତେବେ ଗୁରୁ, ପିତା ଓ ମାତାଙ୍କର ମନ ଆନନ୍ଦରେ ପୂରିଯାଏ । ଅତଏବ ଏହାକୁ କ୍ଷୁଦ୍ର ଶିଶୁ ଓ ସେବକ ଜାଣି କୃପା କରନ୍ତୁ । ଆପଣ ତ ସମଦର୍ଶୀ, ସୁଶୀଳ, ଧୀର ଓ ଜ୍ଞାନୀ ମୁନି । ଏହାପ୍ରତି ଦୟା କରନ୍ତୁ ।'' ॥ ୨ ॥ ଶ୍ରୀରାମଙ୍କ ବାଣୀ ଶୁଣି ଋଷି ଟିକିଏ ଥଣ୍ଡା ପଡ଼ିଲେ । ଇତି ମଧ୍ୟରେ ଲକ୍ଷ୍ମଣ ଆଉ କ'ଣ କହି ପୁଣି ମୁରୁକି ହସିଦେଲେ । ତାହାଙ୍କୁ ହସିବାର ଦେଖି ପରଶୁରାମଙ୍କ ଆପାଦମସ୍ତକ ସର୍ବାଙ୍ଗରେ କ୍ରୋଧ ବ୍ୟାପିଗଲା । ସେ କହିଲେ, "ହେ ରାମ ! ତୋର ଏ ଅନୁଜ ବଡ଼ ପାପୀ ॥ ୩ ॥ ଏହାର ଶରୀର ଗୋରା । ମାତ୍ର ମନ କାଳିଆ । ଏ ବିଷମୁଖ, ଦୁଗ୍ଧମୁଖ ନୁହେଁ । ଏ ସ୍ୱଭାବରେ

ଲଖନ କହେଉ ହଁସି ସୁନହୁ ମୁନି କ୍ରୋଧୁ ପାପ କର ମୂଲ ।
ଜେହି ବସ ଜନ ଅନୁଚିତ କରହିଁ ଚରହିଁ ବିସ୍ୱ ପ୍ରତିକୂଲ ॥୨୭୭॥
ମୈଁ ତୁମ୍ହାର ଅନୁଚର ମୁନିରାୟା । ପରିହରି କୋପୁ କରିଅ ଅବ ଦାୟା ॥
ଟୁଟ ଚାପ ନହିଁ ଜୁରିହି ରିସାନେଁ । ବୈଠିଅ ହୋଇହିଁ ପାୟ ପିରାନେଁ ॥୧॥
ଜୌଁ ଅତି ପ୍ରିୟ ତୌ କରିଅ ଉପାଈ । ଜୋରିଅ କୋଉ ବଡ ଗୁନୀ ବୋଲାଈ ॥
ବୋଲତ ଲଖନହିଁ ଜନକୁ ଡେରାହୀଁ । ମଷ୍ଟ କରହୁ ଅନୁଚିତ ଭଲ ନାହୀଁ ॥୨॥
ଥର ଥର କାଁପହିଁ ପୁର ନର ନାରୀ । ଛୋଟ କୁମାର ଖୋଟ ବଡ ଭାରୀ ॥
ଭୃଗୁପତି ସୁନି ସୁନି ନିରଭୟ ବାନୀ । ରିସ ତନ ଜରଇ ହୋଇ ବଲ ହାନୀ ॥୩॥
ବୋଲେ ରାମହି ଦେଇ ନିହୋରା । ବଚଉଁ ବିଚାରି ବଂଧୁ ଲଘୁ ତୋରା ॥
ମନୁ ମଲୀନ ତନୁ ସୁନ୍ଦର କୈସେ । ବିଷରସ ଭରା କନକ ଘଟୁ ଜୈସେଁ ॥୪॥

---

ହସିଣ ଲକ୍ଷ୍ମଣ ଭାଷିଲେ ବଚନ ମୁନି କ୍ରୋଧ ପାପମୂଳ ।
ଯା'ବଶ ମନୁଷ୍ୟ କରେ ଅନୁଚିତ ଟଳେ ବିଶ୍ୱ ପ୍ରତିକୂଳ ॥୨୭୭॥
ମୁହିଁ ଆପଣଙ୍କ ଅନୁଚର ମୁନିବର । ପରିହରି କୋପ ଏବେ ଅନୁଗ୍ରହ କର ॥
ଭଙ୍ଗା ଧନୁ କ୍ରୋଧ କଲେ ଯୋଡ଼ି ତ ନ ହିବ । ବସି ଯାଆନ୍ତୁ ପାଦକୁ ପୀଡ଼ା ହେଉଥିବ ॥୧॥
ଯେବେ ଅତି ପ୍ରିୟ ତେବେ ଉପାୟ କରିବା । କୌଣସି ବଡ଼ ଗୁଣୀକୁ ଡାକ ଯୋଡ଼ାଇବା ॥
ଲକ୍ଷ୍ମଣ ବୋଲନ୍ତେ ହେଲେ ଜନକ ସଶଙ୍କିତ । ତୁନି ହୁଅ, ଭଲ ନୁହେ କଥା ଅନୁଚିତ ॥ ॥
ଥର ଥର କମ୍ପୁଥାନ୍ତି ପୁର ନର ନାରୀ । ଛୋଟ କୁମାର ହେଲେ ହେଁ ଦୁଷ୍ଟ ବଡ଼ ଭାରୀ ॥
ଭୃଗୁପତି ଶୁଣି ଶୁଣି ନିର୍ଭୟ ଏ ବାଣୀ । କ୍ରୋଧରେ ଜଳଇ ତନୁ ବଳ ହୁଏ ହାନି ॥୩॥
କହିଲେ ରାମଚନ୍ଦ୍ରଙ୍କୁ ରାଣ ପକାଇଣ । ଛାଡ଼େ ଏହାକୁ ତୋ ସାନଭାଇ ବିଚାରିଣ ॥
ମନ ମଳିନ ଶରୀର ସୁନ୍ଦର କେମନ୍ତ । ବିଷ ରସେ ପୂର୍ଣ୍ଣ ସ୍ୱର୍ଣ୍ଣ କଳଶ ଯେମନ୍ତ ॥୪॥

---

କୁଟିଳ, ତୋହର ସରି ନୁହେଁ । (ତୋ ପରି ତରଙ୍ଗବାନ୍ ନୁହେଁ ।) ଏ ନୀଚ ମୋତେ କାଳ ସମାନ ଦେଖୁ ନାହିଁ ।" ॥ ୪ ॥ ଦୋହା '—ଲକ୍ଷ୍ମଣ ହସି କହିଲେ, "ହେ ମୁନି ' ଶୁଣନ୍ତୁ, କ୍ରୋଧ ପାପର ମୂଳ । ତାହାର ବଶୀଭୂତ ହୋଇ ମନୁଷ୍ୟ ଅନୁଚିତ କର୍ମ କରିପକାଏ ଏବଂ ସମଗ୍ର ସଂସାରର ପ୍ରତିକୂଳାଚରଣ କରି ଚାଲେ ॥ ୨୭୭ ॥ ଚୌପାଈ.- ହେ ମୁନିରାଜ ' ମୁଁ ଆପଣଙ୍କ ଦାସ । ବର୍ତ୍ତମାନ କ୍ରୋଧ ତ୍ୟାଗ କରି ମୋତେ ଦୟା କରନ୍ତୁ । ଭଙ୍ଗାଧନୁ କ୍ରୋଧ ଯୋଗେ ଯୋଡ଼ି ହୋଇ ପାରେନାହିଁ । ବସି ପଡ଼ନ୍ତୁ । ପାଦକୁ ବ୍ୟଥା ଦେବଣି ॥ ୧ ॥ ଯଦି ଧନୁ ଆପଣଙ୍କର ଅତି ପ୍ରିୟ ହୋଇଥାଏ, ତେବେ କିଛି ଉପାୟ କରିବା । କୌଣସି ବଡ଼ ଗୁଣୀ (କାରିଗର)କୁ ଡକାଇ ଯୋଡ଼େଇ ଦେବା ।" ଲକ୍ଷ୍ମଣଙ୍କ ବଚନରେ ଜନକ ଭୟଭୀତ ହୋଇ କହୁଥା'ନ୍ତି, "ବେଶ, ଚୁପ୍ ରୁହନ୍ତୁ । ଅନୁଚିତ ଭାବରେ ବେଶି ଗୁଡ଼ାଏ କହିବାବୋଲିବା ଭଲ ନୁହେଁ ।" ॥ ୨ ॥ ଜନକପୁରର ସ୍ତ୍ରୀପୁରୁଷମାନେ ଥର ଥର ହୋଇ କମ୍ପୁଥା'ନ୍ତି । ମନେ ମନେ କହୁଥା'ନ୍ତି—"କୁମାର

ସୁନି ଲଛିମନ ବିହସେ ବହୁରି ନୟନ ତରେରେ ରାମ ।
ଗୁର ସମୀପ ଗୱନେ ସକୁଚି ପରିହରି ବାନୀ ବାମ ॥୨୭୮॥
ଅତି ବିନୀତ ମୃଦୁ ସୀତଲ ବାନୀ । ବୋଲେ ରାମୁ ଜୋରି ଜୁଗ ପାନୀ ॥
ସୁନହୁ ନାଥ ତୁମ୍ହ ସହଜ ସୁଜାନା । ବାଲକ ବଚନୁ କରିଅ ନହିଁ କାନା ॥୧॥
ବରରୈ ବାଲକୁ ଏକୁ ସୁଭାଉ । ଇନ୍ହହି ନ ସନ୍ତ ବିଦୂଷହିଁ କାଉ ॥
ତେହିଁ ନାହୀଁ କଛୁ କାଜ ବିଗାରା । ଅପରାଧୀ ମୈଁ ନାଥ ତୁମ୍ହାରା ॥୨॥
କୃପା କୋପୁ ବଧୁ ବଁଧବ ଗୋସାଈଁ । ମୋ ପର କରିଅ ଦାସ କୀ ନାଈଁ ॥
କହିଅ ବେଗି ଜେହି ବିଧି ରିସ ଜାଈ । ମୁନିନାୟକ ସୋଇ କରୌଁ ଉପାଈ ॥୩॥

---

ଶୁଣନ୍ତେ ଲକ୍ଷ୍ମଣ ହସି ଦେଲେ ପୁଣ ନେତ୍ର ତରାଟନ୍ତେ ରାମ ।
ଗୁରୁଙ୍କ ସମୀପେ ଗଲେ ସଙ୍କୋଚେ ପରିହରି ବାଣୀ ବାମ ॥୨୭୮॥
ପରମ ବିନୀତ ମୃଦୁ ସୁଶୀତଳ ବାଣୀ । ଭାଷିଲେ ରଘୁନାୟକ ଯୋଡ଼ି ଯୁଗ୍ମ ପାଣି ॥
ଶୁଣ ନାଥ, ସ୍ୱାଭାବିକ ଜ୍ଞାନୀ ଯେ ଆପଣ । ବାଳକ ବଚନେ କେବେ ନ ଦିଅ ଶ୍ରବଣ ॥୧॥
ବିରୁଡ଼ି ବାଳକ ସମ ସ୍ୱଭାବ ଅଟନ୍ତି । ଏହାଙ୍କୁ କେବେହେଁ ସନ୍ଥ ଦୋଷ ନ ଦିଅନ୍ତି ॥
ସେ କୌଣସି କାର୍ଯ୍ୟ ନାଥ, କରିନାହିଁ ନାଶ । ଆପଣଙ୍କ ଅପରାଧୀ ଅଟେ ଏହି ଦାସ ॥୨॥
କୃପା କୋପ କିମ୍ବା ବଧ ବନ୍ଧନ ଗୋସାଇଁ । ସେବକ ଯୋଗ୍ୟ କରନ୍ତୁ ବିଧାନ ମୋ ପାଇଁ ॥
କ୍ରୋଧ ଶୀଘ୍ର ଉପଶମ ହୋଇବ ଯେମନ୍ତେ । କହନ୍ତୁ ମୁନି, ଉପାୟ କରିବି ତେମନ୍ତେ ॥୩॥

---

ମ୍ଳେଚ୍ଛ ହେଲେ କ'ଣ ହେଲା ? ବଡ଼ ଦୁଷ୍ଟ ସ୍ୱଭାବର ।" ଲକ୍ଷ୍ମଣଙ୍କ ନିର୍ଭୀକ ବଚନ ଶୁଣି ପରଶୁରାମଙ୍କ ଶରୀର କ୍ରୋଧରେ ଜଳି ଯାଉଥାଏ ଏବଂ ତାଙ୍କ ବଳହାନି ଘଟୁଥାଏ ॥ ୩ ॥ ଅନନ୍ତର ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ଦୃଷ୍ଟି ପ୍ରକାଶପୂର୍ବକ ପରଶୁରାମ କହିଲେ, "ତୋ ସାନ ଭାଇ ବୋଲି ବିଚାର କରି ମୁଁ ଏହାକୁ ଛାଡ଼ି ଦେଉଛି । ଏହାର ମନ ମଇଳା ଏବଂ ଶରୀର ସୁନ୍ଦର, ସତେ ଅବା ବିଷରସରେ ପରିପୂର୍ଣ୍ଣ ସୁବର୍ଣ୍ଣ କଳସ ।" ॥୪॥ ଦୋହା :—ଏହା ଶୁଣି ଲକ୍ଷ୍ମଣ ପୁଣି ହସିଲେ । ତହୁଁରେ ଶ୍ରୀରାମ ଆଖି ତରାଟି ତାଙ୍କ ଆଡ଼େ ଚାହିଁଲେ । ଫଳରେ ଲକ୍ଷ୍ମଣ ସଙ୍କୋଚ କରି ବିପରୀତ ବାଣୀ ପରିତ୍ୟାଗପୂର୍ବକ ଗୁରୁଙ୍କ ସମୀପକୁ ଚାଲିଗଲେ ॥ ୨୭୮ ॥ ଚୌପାଈ —ଶ୍ରୀରାମଚନ୍ଦ୍ର ଦୁଇ ହାତ ଯୋଡ଼ି ଅତ୍ୟନ୍ତ ବିନମ୍ରର ସହିତ କୋମଳ ଓ ଶୀତଳ ବାଣୀ କହିଲେ, "ହେ ନାଥ ! ଆପଣ ତ ସହଜେ ସୁଜ୍ଞାନୀ ପଣ୍ଡିତ । ଆପଣ ବାଳକର ବଚନ ପ୍ରତି କର୍ଣ୍ଣପାତ କରନ୍ତୁ ନାହିଁ ॥ ୧ ॥ ବିରୁଡ଼ି ଓ ବାଳକର ସ୍ୱଭାବ ଏକାପରି । ସନ୍ଥ ଜନମାନେ ଏମାନଙ୍କୁ କଦାପି ଦୋଷ ଦିଅନ୍ତି ନାହିଁ । ପୁଣି ସେ (ଲକ୍ଷ୍ମଣ) ତ ଆପଣଙ୍କର କୌଣସି ଅପରାଧ କରିନାହିଁ । ହେ ନାଥ ! ମୁଁ ତ ଆପଣଙ୍କ ପ୍ରତି ଅପରାଧୀ ॥ ୨ ॥ ଅତଏବ ହେ ସ୍ୱାମି ! କୃପା, କ୍ରୋଧ, ବଧ ଓ ବନ୍ଧନ—ଯାହା କିଛି ଆପଣଙ୍କର କରିବା କଥା, ମୋତେ ଦାସ ମଣି ତାହା ମୋ ପ୍ରତି ବିଧାନ କରନ୍ତୁ । ହେ ମୁନିରାଜ ! ଯେଉଁ ପ୍ରକାରେ ଆପଣଙ୍କ କ୍ରୋଧ ଶୀଘ୍ର

କହ ମୁନି ରାମ ଜାଇ ରିସ କୈସେଁ । ଅଜହୁଁ ଅନୁଜ ତବ ଚିତଵ ଅନୈସେଁ ॥
ଏହି କେଁ କଂଠ କୁଠାରୁ ନ ଦୀହ୍ନା । ତୌ ମୈଂ କାହ କୋପୁ କରି କୀହ୍ନା ॥୩॥

ଗର୍ଭ ସ୍ରବହିଁ ଅବନିପ ରଵନି ସୁନି କୁଠାର ଗତି ଘୋର ।
ପରସୁ ଅଛତ ଦେଖଉଁ ଜିଅତ ବୈରୀ ଭୂପକିସୋର ॥୨୭୯॥

ବହଇ ନ ହାଥୁ ଦହଇ ରିସ ଛାତୀ । ଭା କୁଠାରୁ କୁଂଠିତ ନୃପଘାତୀ ॥
ଭୟଉ ବାମ ବିଧି ଫିରେଉ ସୁଭାଊ । ମୋରେ ହୃଦୟଁ କୃପା କସି କାଊ ॥୧॥
ଆଜୁ ଦୟା ଦୁଖୁ ଦୁସହ ସହାଵା । ସୁନି ସୌମିତ୍ରି ବିହସି ସିରୁ ନାଵା ॥
ବାଉ କୃପା ମୂରତି ଅନୁକୂଲା । ବୋଲତ ବଚନ ଝରତ ଜନୁ ଫୂଲା ॥୨॥
ଜୌଁ ପୈ କୃପାଁ ଜରିହିଁ ମୁନି ଗାତା । କ୍ରୋଧ ଭଏଁ ତନୁ ରାଖ ବିଧାତା ॥
ଦେଖୁ ଜନକ ହଠି ବାଲକୁ ଏହୂ । କୀହ୍ନ ଚହତ ଜଡ଼ ଜମପୁର ଗେହୂ ॥୩॥

---

ମୁନି କହିଲେ, କିପରି କ୍ରୋଧ ହେବ ଶାନ୍ତ । ଅନାଦାରେ ଚାହେଁ ରାମ ଅଦ୍ୟାପି ତୋ ଭ୍ରାତ ॥
ଏହାର କଣ୍ଠରେ ଯଦି ନ ଦେଲି କୁଠାର । ତେବେ ମୁଁ କଅଣ କଲି କ୍ରୋଧ କରି ଛାର ॥୩॥

ନୃପ ରମଣୀଙ୍କ ଗର୍ଭ ସ୍ରବେ ଶୁଣି କୁଠାରର ଗତି ଘୋର ।
ପରଶୁ ଥାଆନ୍ତେ ଜୀବିତ ଦେଖୁଛି ବଇରି ଭୂପ କିଶୋର ॥୨୭୯॥

ନ ଚଳଇ ହସ୍ତ, ଅତି କ୍ରୋଧେ ଜଳେ ଛାତି । କୁଣ୍ଠିତ ହୁଏ କୁଠାର ମହୀପତି-ଘାତୀ ॥
ବିଧି ହେଲା ବାମ ବଦଳିଲା ମୋ ସ୍ୱଭାବ । ନାହିଁ ତ ମୋ ହୃଦେ କାହିଁ କେବେ କୃପାଭାବ ॥୧॥
ଆଜି ଦୟା ସହାଉଛି ଦୁଃସହ କଷଣ । ଶୁଣି ନତଶିର ହେଲେ ହସିଣ ଲକ୍ଷ୍ମଣ ॥
ମୂର୍ତ୍ତି ଅନୁକୂଳ କୃପା-ସମୀର ବହଇ । ବୋଲନ୍ତେ ବଚନ ଯେସନ୍ତେ ପ୍ରସୂନ ଝଡ଼ଇ ॥୨॥
କୃପା କଲେ ତନୁ ଜଳେ ମୁନିଙ୍କର ଯେବେ । କ୍ରୋଧ କଲେ ବିଧି ରଖୁ କଳେବର ତେବେ ॥
ଦେଖ ମିଥିଳେଶ, ହଠ ଏହି ବାଳକର । କରିବାକୁ ଚାହେଁ ଜଡ ଯମପୁରେ ଘର ॥୩॥

---

ଦୂର ହେବ, ମୋତେ କୁହନ୍ତୁ । ମୁଁ ତାହା କରିବି ।" ॥ ୩ ॥ ମୁନି କହିଲେ, "ହେ ରାମ ! କ୍ରୋଧ ଯିବ କିପରି ? ଏବେ ସୁଦ୍ଧା ତୋ ସାନ ଭାଇ ମୋତେ ଆଖି ତରାଟି ଚାହୁଁଛି । ଏହାର ଗଳାରେ ମୁଁ କୁଠାର ବସାଇ ନ ଦେଲି ତ, କ୍ରୋଧ କରି କଲି କ'ଣ ? ॥ ୪ ॥ ଦୋହା —ମୋର ଏହି କୁଠାରର ଘୋର କରଣୀ ଶୁଣି ନୃପ-ରମଣୀଗଣଙ୍କ ଗର୍ଭସ୍ରାବ ଘଟେ, ସେହି ପରଶୁ ରହି ଥାଉ ଥାଉ ମୁଁ ଏହି ଶତ୍ରୁ ରାଜପୁତ୍ରକୁ ଜୀବିତାବସ୍ଥାରେ ଦେଖୁଛି । ॥ ୨୭୯ ॥ ଚୌପାଈ —ହାତ ଚଳୁନାହିଁ, କ୍ରୋଧରେ ହୃଦୟ ଜଳି ଯାଉଛି । ହାୟ ! ରାଜାମାନଙ୍କର ଘାତକ ଏହି କୁଠାର ସୁଦ୍ଧା କୁଣ୍ଠିତ ହୋଇଯାଇଛି । ବିଧାତା ବିପରୀତ ହୋଇଯାଇଛି । ସେଥିଯୋଗେ ମୋ ସ୍ୱଭାବ ବଦଳି-ଯାଇଛି । ତାହା ନ ହୋଇଥିଲେ ମୋ ହୃଦୟରେ ଭଲା କୃପା କିମିତି କେଉଁ କାଳେ ଥିଲା ? ॥ ୧ ॥ ଆଜି ଦୟା ମୋତେ ଏ ଦୁଃସହ ଦୁଃଖ ସହାଉଛି ।" ଏହା ଶୁଣି ଲକ୍ଷ୍ମଣ ମୁରୁକି ହସି ମୁଣ୍ଡ ନୁଆଁଇଲେ ଏବଂ କହିଲେ, "ଆପଣଙ୍କ କୃପା-ସମୀରଣ ମଧ୍ୟ

ବେଗି କରହୁ କିନ ଆଁଖିନ୍ହ ଓଟା । ଦେଖତ ଛୋଟ ଖୋଟ ନୃପ ଢୋଟା ॥
ବିହସେ ଲଖନୁ କହା ମନ ମାହୀଁ । ମୂଦେଁ ଆଁଖି କତହୁଁ କୋଉ ନାହୀଁ ॥୪॥

ପରସୁରାମୁ ତବ ରାମ ପ୍ରତି ବୋଲେ ଉର ଅତି କ୍ରୋଧୁ ।
ସଂଭୁ ସରାସନୁ ତୋରି ସଠ କରସି ହମାର ପ୍ରବୋଧୁ ॥୨୮୦॥

ବଂଧୁ କହଇ କଟୁ ସଂମତ ତୋରେ । ତୂ ଛଲ ବିନୟ କରସି କର ଜୋରେଁ ॥
କରୁ ପରିତୋଷୁ ମୋର ସଂଗ୍ରାମା । ନାହିଁ ତ ଛାଡୁ କହାଉବ ରାମା ॥୧॥
ଛଲୁ ତଜି କରହି ସମରୁ ସିବଦ୍ରୋହୀ । ବଂଧୁ ସହିତ ନ ତ ମାରଉଁ ତୋହୀ ॥
ଭୃଗୁପତି ବକହିଁ କୁଠାର ଉଠାଏଁ । ମନ ମୁସୁକାହିଁ ରାମୁ ସିର ନାଏଁ ॥୨॥
ଗୁନହ ଲଖନ କର ହମ ପର ରୋଷୂ । କତହୁଁ ସୁଧାଇହୁ ତେ ବଡ ଦୋଷୂ ॥
ଟେଢ଼ ଜାନି ସବ ବଂଦଇ କାହୂ । ବକ୍ର ଚନ୍ଦ୍ରମହି ଗ୍ରସଇ ନ ରାହୂ ॥୩॥

---

ଶୀଘ୍ର ନେତ୍ର ସମ୍ମୁଖରୁ କରାଅ ପୃଥକ । ଦେଖିବାକୁ ଛୋଟ, ଦୁଷ୍ଟ ମହୀପ ବାଳକ ॥
ହସି ଭାବିଲେ ଲକ୍ଷ୍ମଣ ମୁନିଙ୍କ ଆଗରେ । ଆଖି ବୁଜ, କେହି ନାହିଁ କୌଣସି ସ୍ଥାନରେ ॥୪॥

ତହୁଁ ରାମ ପ୍ରତି କ୍ରୋଧ କରି ଅତି କହିଲେ ପରଶୁଧର ।
ଶମ୍ଭୁ ଶରାସନ ଭାଙ୍ଗି ନରାଧମ କରୁ ପ୍ରବୋଧ ମୋହର ॥୨୮୦॥

ଭାଇ କହେ କଟୁବାକ୍ୟ ପାଇ ତୋ ସମ୍ମତି । ତୁ ଛଳେ କର ଯୋଡ଼ିଣ କରୁଛୁ ବିନତି ॥
ସଂଗ୍ରାମ ଭୂମିରେ ମୋର ପରିତୋଷ କର । ନାହିଁ ତ ଆପଣା ରାମ ନାମ ପରିହର ॥୧॥
ଛଳ ଛାଡ଼ି ଶିବଦ୍ରୋହୀ, ଯୁଦ୍ଧ ଦିଅ ମୋତେ । ଅନୁଜ ସହ ଅନ୍ୟଥା ବିନାଶିବି ତୋତେ ॥
କୁଠାର ଉଠାଇ ଭୃଗୁନାୟକ ବକନ୍ତି । ମନେ ମନେ ରାମ ଶିର ନୁଆଁଇ ହସନ୍ତି ॥୨॥
ଅପରାଧ ଲକ୍ଷ୍ମଣର, ମୋ ଉପରେ ରୋଷ । କାହିଁ ମଧ୍ୟ ସିଧା ସରଳରେ ବଡ ଦୋଷ ॥
ବକ୍ର ଜାଣି କା'ରେ ନା'ରେ ଜଗତ ବନ୍ଦଇ । ବକ୍ର ଚନ୍ଦ୍ରମାକୁ ରାହୁ ଗ୍ରାସ ନ କରଇ ॥୩॥

---

ଆପଣଙ୍କ ମୂର୍ତ୍ତିର ଅନୁକୂଳ । କଥା କହୁଛନ୍ତି ତ, ସତେ ଯେମିତି ଫୁଲ ଝଡ଼ି ପଡ଼ୁଛି ! ॥୨॥ ହେ ମୁନି ! ଯଦି କୃପା କରିବା ଦ୍ୱାରା ଆପଣଙ୍କ ଶରୀର ଜଳି ଯାଉଛି, ତେବେ କ୍ରୋଧ କଲେ ବିଧାତା ହିଁ ଆପଣଙ୍କ ଶରୀରକୁ ରକ୍ଷା କରିବେ ।" ପରଶୁରାମ କହିଲେ, "ହେ ଜନକ ! ଦେଖ, ଏ ମୂର୍ଖ ବାଳକ ଜିଦ୍ କରି କିମିତି ଯମପୁରୀରେ ଘର କରିବାକୁ ଇଚ୍ଛା କରୁଛି ॥ ୩ ॥ ଏହାକୁ ଶୀଘ୍ର ମୋ ଦୃଷ୍ଟିର ଅନ୍ତରାଳରେ ରଖୁ ନାହଁ କାହିଁକି ? ଏ ରାଜପୁତ୍ର ଦେଖିବାକୁ ଅତି ସାନ ସିନା, କିନ୍ତୁ ବଡ ଦୁଷ୍ଟ ।" ଲକ୍ଷ୍ମଣ ହସି ମନେ ମନେ କହିଲେ, "ଆଖି ବୁଜି ଧରି ନିଅନ୍ତୁ ଯେ, କେଉଁଠି କେହି ନାହାନ୍ତି ।" ॥ ୪ ॥
ଦୋହା —ତତ୍ପରେ ପରଶୁରାମ ହୃଦୟରେ ଅତ୍ୟନ୍ତ କ୍ରୋଧ କରି ଶ୍ରୀରାମଙ୍କୁ କହିଲେ, "ରେ ଶଠ ! ତୁ ଶିବଧନୁ ଭାଙ୍ଗି ଓଲଟି ଆମକୁ ଜ୍ଞାନ ଶିଖାଉଛୁ ! ॥ ୨୮୦ ॥
ଚୌପାଇ —ତୋର ଏ ଭାଇ ତୋହରି ସମ୍ମତିରେ କଟୁକଥା କହୁଛି ଏବଂ ତୁ ଛଳରେ ହାତ ଯୋଡ଼ି ବିନୟ କରୁଛୁ ! ରଣାଙ୍ଗନରେ ମୋର ସନ୍ତୋଷ-ବିଧାନ କର, ନୋହିଲେ

ରାମ କହେଉ ରିସ ତଜିଅ ମୁନୀସା । କର କୁଠାରୁ ଆଗେଁ ଯହ ସୀସା ॥
ଜେହିଁ ରିସ ଜାଇ କରିଅ ସୋଇ ସ୍ୱାମୀ । ମୋହି ଜାନିଅ ଆପନ ଅନୁଗାମୀ ॥୩॥

ପ୍ରଭୁହି ସେବକହି ସମରୁ କସ ତଜହୁ ବିପ୍ରବର ରୋସୁ ।
ବେଷୁ ବିଲୋକେଁ କହେସି କଛୁ ବାଲକହୂ ନହିଁ ଦୋସୁ ॥୨୮୧॥

ଦେଖି କୁଠାର ବାନ ଧନୁ ଧାରୀ । ଭୈ ଲରିକହି ରିସ ବୀରୁ ବିଚାରୀ ॥
ନାମୁ ଜାନ ପୈ ତୁମ୍ହହି ନ ଚୀହ୍ନା । ବଂସ ସୁଭାୟଁ ଉତରୁ ତେହିଁ ଦୀହ୍ନା ॥୧॥
ଜୌଂ ତୁମ୍ହ ଔତେହୁ ମୁନି କୀ ନାଈଂ । ପଦ ରଜ ସିର ସିସୁ ଧରତ ଗୋସାଈଂ ॥
ଛମହୁ ଚୂକ ଅନଜାନତ କେରୀ । ଚହିଅ ବିପ୍ର ଉର କୃପା ଘନେରୀ ॥୨॥

---

ରାମ କହିଲେ, ମୁନୀଶ, ରୋଷ ପରିହର । କର କୁଠାର ଅଗ୍ରତେ ଏ ଶିର ମୋହର ॥
କରନ୍ତୁ ତାହା ଯେ ଭାବେ କ୍ରୋଧ ଯିବ ସ୍ୱାମୀ । ମୋତେ ମନ ମଧ୍ୟେ ଜାଣି ନିଜ ଅନୁଗାମୀ ॥୩॥

ସ୍ୱାମୀ ସେବକର କେମନ୍ତେ ସମର ତେଜ ବିପ୍ରବର ରୋଷ ।
ବେଶ ଦେଖି କିଛି କହି ପକାଇଛି ବାଳକର ନାହିଁ ଦୋଷ ॥୨୮୧॥

ଦେଖି ତୁମ୍ଭଙ୍କୁ କୁଠାର-ଧନୁଶର-ଧାରୀ । ବାଳକକୁ କ୍ରୋଧ ହେଲା ବୀର ଯେ ବିଚାରି ॥
ନାମ ଜାଣିଥିଲା କିନ୍ତୁ ଚିହ୍ନି ସେ ନ ଥିଲା । ବଂଶ ସ୍ୱଭାବରୁ ପୁଣି ଉତ୍ତର ଦହିଲା ॥୧॥
ଯେବେ ମୁନିଙ୍କ ସଦୃଶ ତୁମ୍ଭେ ଆସିଥା'ନ୍ତ । ପଦରଜ ଶିରେ ଶିଶୁ ଧରିଥା'ନ୍ତା, ନାଥ ॥
ଅଜ୍ଞାନ ଅପରାଧକୁ କରନ୍ତୁ ମାର୍ଜନ । ବିପ୍ର ହୃଦ ଦୟାଶୀଳ ହେବା ପ୍ରୟୋଜନ ॥୨॥

---

ରାମ ନାମ ପରିହାର କର ॥ ୧ ॥ ଆରେ ଶିବଦ୍ରୋହି ! ଛଳକପଟ ଛାଡି ମୋ ସହିତ ଯୁଦ୍ଧ କର । ଅନ୍ୟଥା ଅନୁଜ ସହିତ ତୋତେ ବିନାଶ କରିବି ।" ଏହିପରି ଭାବରେ ପରଶୁରାମ କୁଠାର ଉଠାଇ ବକି ଯାଉଥା'ନ୍ତି ଏବଂ ଶ୍ରୀରାମ ମୁଣ୍ଡ ନୁଆଁଇ ମନେ ମନେ ହସୁଥା'ନ୍ତି ॥ ୨ ॥ ସେ ଭାବୁଥା'ନ୍ତି, "ଦୋଷ ଲକ୍ଷ୍ମଣର ଏବଂ ମୁନି ମୋହରି ଉପରେ ରୋଷ କରୁଛନ୍ତି । କେଉଁଠି କେଉଁଠି ସରଳତା ମଧ୍ୟ ବଡ ଦୋଷର କାରଣ ହୁଏ । ବକ୍ର ଜାଣି ସ୍ଥଳ ବିଶେଷରେ ଲୋକେ କାହାରିକୁ କାହାରିକୁ ବନ୍ଦନା ମଧ୍ୟ କରନ୍ତି । ବକ୍ର ଚନ୍ଦ୍ରମାକୁ ରାହୁ ମଧ୍ୟ ଗ୍ରାସ କରେନାହିଁ ।" ॥୩॥ ଶ୍ରୀରାମଚନ୍ଦ୍ର ପ୍ରକାଶ୍ୟରେ କହିଲେ, "ହେ ମୁନୀଶ୍ୱର ! ଆପଣ କ୍ରୋଧ ସମ୍ବରଣ କରନ୍ତୁ । ଆପଣଙ୍କ ହାତରେ କୁଠାର ଓ ଆଗରେ ମୋର ଏହି ଶିର । ଯେଉଁ ପ୍ରକାରେ ଆପଣଙ୍କ କ୍ରୋଧ ଦୂର ହେବ, ତାହା ହିଁ କରନ୍ତୁ । ମୋତେ ଆପଣଙ୍କ ଅନୁଚର (ଦାସ) ବୋଲି ଜାଣନ୍ତୁ ॥ ୪ ॥ ଦୋହା :— ସ୍ୱାମୀ ଓ ସେବକ ମଧ୍ୟରେ ଯୁଦ୍ଧ ବା କିପରି ହେବ ? ହେ ବ୍ରାହ୍ମଣଶ୍ରେଷ୍ଠ ! କ୍ରୋଧ ପରିତ୍ୟାଗ କରନ୍ତୁ । ଆପଣଙ୍କ ବୀରବେଶ ଦେଖି ଏହି ବାଳକ କିଛି କହିଦେଇଥିଲା । ବାସ୍ତବରେ ଏହାର ମଧ୍ୟ କୌଣସି ଦୋଷ ନାହିଁ ॥ ୨୮୧ ॥ ଚୌପାଇ —ଆପଣଙ୍କୁ କୁଠାର, ବାଣ ଓ ଧନୁ ଧାରଣ କରିଥିବାର ଦେଖି ଏବଂ ବୀର ବୋଲି ଜାଣି ବାଳକର କ୍ରୋଧ ଜାତ ହୋଇଥିଲା । ସେ ଆପଣଙ୍କ ନାମ ତ ଜାଣିଥିଲା । କିନ୍ତୁ ଚିହ୍ନି ନ ଥିଲା ।

ହମହି ତୁମ୍ହହି ସରିବରି କସି ନାଥା । କହହୁ ନ କହାଁ ଚରନ କହଁ ମାଥା ॥
ରାମ ମାତ୍ର ଲଘୁ ନାମ ହମାରା । ପରସୁ ସହିତ ବଡ଼ ନାମ ତୋହାରା ॥୩॥
ଦେବ ଏକୁ ଗୁନୁ ଧନୁଷ ହମାରେଁ । ନବ ଗୁନ ପରମ ପୁନୀତ ତୁମ୍ହାରେ ॥
ସବ ପ୍ରକାର ହମ ତୁମ୍ହ ସନ ହାରେ । ଛମହୁ ବିପ୍ର ଅପରାଧ ହମାରେ ॥୪॥

ବାର ବାର ମୁନି ବିପ୍ରବର କହା ରାମ ସନ ରାମ ।
ବୋଲେ ଭୃଗୁପତି ସରୁଷ ହସି ତହୁଁ ବଂଧୁ ସମ ବାମ ॥୨୮୨॥

ନିପଟହିଁ ଦ୍ୱିଜ କରି ଜାନହି ମୋହୀ । ମୈଁ ଜସ ବିପ୍ର ସୁନାଉଁ ତୋହୀ ॥
ଚାପ ସ୍ରୁବା ସର ଆହୁତି ଜାନୂ । କୋପୁ ମୋର ଅତି ଘୋର କୃସାନୂ ॥୧॥
ସମିଧି ସେନ ଚତୁରଙ୍ଗ ସୁହାଈ । ମହା ମହୀପ ଭଏ ପସୁ ଆଈ ॥
ମୈଁ ଏହିଁ ପରସୁ କାଟି ବଲି ଦୀନ୍ହେ । ସମର ଜଜ୍ଞ ଜପ କୋଟିନ୍ହ କୀନ୍ହେ ॥୨॥

---

ନାଥ ! ମୁଁ ନୁହଇ ସମକକ୍ଷ ଆପଣଙ୍କ । କହନ୍ତୁ କାହିଁ ଚରଣ, କାହିଁ ବା ମସ୍ତକ ॥
ରାମ ମାତ୍ର ଲଘୁ ନାମ ଅଟଇ ମୋହର । ପରଶୁ ସହିତ ତୁମ୍ଭ ନାମ ବୃହତ୍ତର ॥୩॥
ଦେବ, ଏକ ଗୁଣ ଯୁକ୍ତ ମୋର ଶରାସନ । ଆପଣଙ୍କ ନବ ଗୁଣ ପରମ ପାବନ ॥
ସବୁ ପ୍ରକାରେ ମୁଁ ଯାଏ ତୁମ୍ଭ ଆଗେ ହାରି । କ୍ଷମ ବିପ୍ରବର, ମୋର ଅପରାଧ ଭାରି ॥୪॥

ମୁନି ବିପ୍ରବର କହି ବାରମ୍ବାର ସମ୍ବୋଧନ୍ତେ ରାମେ ରାମ ।
ରୋଷେ ଭୃଗୁପତି ବୋଇଲେ, ତୁ ମଧ୍ୟ ନିଜେ ଭ୍ରାତା ସମ ବାମ ॥୨୮୨॥

ନିପଟ ବିପ୍ର ବୋଲିଣ ଜାଣିଛୁ କି ମୋତେ । ମୁଁ ଯେପରି ବିପ୍ର ଶୁଣ, ଶୁଣାଉଛି ତୋତେ ॥
ଚାପ ସ୍ରୁବ ସମ ଜାଣ ଆହୁତି ଶାୟକ । କୋପ ମୋହର ପରମ କରାଳ ପାବକ ॥୧॥
ସମିଧ ଚତୁରଙ୍ଗିଣୀ ସେନା ମନୋହର । ହେଲେ ଆସି ବଳି ପଶୁ ମହା ମହୀଶ୍ୱର ॥
ମୁଁ ଏହି କୁଠାରେ କାଟି ବଳି ପ୍ରଦାନିଲି । ଜପଯୁକ୍ତ ରଣ-ଯଜ୍ଞ କୋଟି କୋଟି କଲି ॥ ॥

---

ଆପଣା ବଂଶର ସ୍ୱଭାବ ଅନୁସାରେ ସେ ଉତ୍ତର ଦେଇଛି ॥ ୧ ॥ ହେ ସ୍ୱାମି ! ଯଦି ମୁନିଙ୍କ ପରି ଆପଣ ଆସିଥା'ନ୍ତେ, ତେବେ ଆପଣଙ୍କ ଚରଣଧୂଳି ସେ ଶିର ଉପରେ ନେଇ ଚଢ଼ାଇଥା'ନ୍ତା । ଅଜ୍ଞାନର ଦୋଷକୁ କ୍ଷମା କରନ୍ତୁ । ବ୍ରାହ୍ମଣଙ୍କ ହୃଦୟରେ ଅଧିକ ମାତ୍ରାରେ ଦୟା ରହିବା ଆବଶ୍ୟକ ॥ ୨ ॥ ହେ ନାଥ ! ଆମେ ଆପଣଙ୍କ ସମକକ୍ଷ କିପରି ? କୁହନ୍ତୁ ନା ପାଦ କେଉଁଠି, ଶିର ବା କେଉଁଠି ? କେଉଁଠି ମୋର 'ରାମ' ମାତ୍ର ଛୋଟ ନାମଟିଏ ଏବଂ କେଉଁଠି 'ପରଶୁ' ସହିତ ଆପଣଙ୍କ ବଡ଼ ନାମ ? ॥ ୩ ॥ ହେ ଦେବ ! ଆମ ଧନୁ ଗୋଟିଏ ମାତ୍ର ଗୁଣରେ ଯୁକ୍ତ । କିନ୍ତୁ ଆପଣଙ୍କର (ଶମ, ଦମ, ତପ, ଶୌଚ, କ୍ଷମା, ସରଳତା, ଜ୍ଞାନ, ବିଜ୍ଞାନ ଓ ଆସ୍ତିକତା) ନଅ ଗୁଣ । ଆମେ ତ ସବୁ ପ୍ରକାରେ ଆପଣଙ୍କ ନିକଟରେ ହାରିଅଛୁ । ହେ ବିପ୍ର ! ଆମ ଅପରାଧ କ୍ଷମା କରନ୍ତୁ ।" ॥୪॥
ଦୋହା :—ଶ୍ରୀରାମଚନ୍ଦ୍ରଙ୍କର ପରଶୁରାମଙ୍କ ପ୍ରତି ବାରମ୍ବାର 'ମୁନି' ଓ 'ବିପ୍ରବର' ସମ୍ବୋଧନରେ ଭୃଗୁପତି କ୍ରୁଦ୍ଧ ହୋଇ କହିଲେ, "ତୁ ମଧ୍ୟ ତୋ ଭାଇପରି

ମୋର ପ୍ରଭାଉ ବିଦିତ ନାହିଁ ତୋରେଁ । ବୋଲସି ନିଦରି ବିପ୍ର କେ ଭୋରେଁ ॥
ଭଂଜେଉ ଚାପୁ ଦାପୁ ବଡ ବାଢା । ଅହମିତି ମନହୁଁ ଜୀତି ଜଗୁ ଠାଢା ॥୩॥
ରାମ କହା ମୁନି କହହୁ ବିଚାରୀ । ରିସ ଅତି ବଡ଼ି ଲଘୁ ଚୂକ ହମାରୀ ॥
ଛୁଅତହିଁ ଟୂଟ ପିନାକ ପୁରାନା । ମୈଁ କେହି ହେତୁ କରୌଁ ଅଭିମାନା ॥୪॥
ଜୌଁ ହମ ନିଦରହିଁ ବିପ୍ର ବଦି ସତ୍ୟ ସୁନହୁ ଭୃଗୁନାଥ ।
ତୌ ଅସ କୋ ଜଗ ସୁଭଟୁ ଜେହି ଭୟ ବସ ନାୱହିଁ ମାଥ ॥୨୮୩॥
ଦେବ ଦନୁଜ ଭୂପତି ଭଟ ନାନା । ସମବଲ ଅଧିକ ହୋଉ ବଲବାନା ॥
ଜୌଁ ରନ ହମହି ପଚାରୈ କୋଊ । ଲରହିଁ ସୁଖେନ କାଲୁ କିନ ହୋଊ ॥୧॥

---

ତୋତେ ଜଣା ନାହିଁ କିଛି ପ୍ରଭାବ ମୋହର । କହୁ ତେଣୁ ବିପ୍ର ମୁନି ଅନାଦର କରି ॥
ଭାଙ୍ଗିବାରୁ ଚାପ ଦର୍ପ ବହୁତ ବଢିଛି । ଅହଙ୍କାର ବିଶ୍ୱ ଜିଣି ଛିଡା ବା ହୋଇଛି ॥୩॥
ରାମ କହିଲେ, ବିଚାରି କହ ମୁନିବର । କ୍ରୋଧ ଅତି ବଡ, କ୍ଷୁଦ୍ର ତ୍ରୁଟି ଯେ ମୋହର ॥
ଛୁଇଁବା ମାତ୍ରେ ପୁରୁଣା ଧନୁ ଭାଙ୍ଗି ଗଲା । ମୁଁ କେଉଁ ହେତୁ କରିବି ଅଭିମାନ ଭଲା ॥୪॥
ଯେବେ ବିପ୍ର କହି ଅନାଦରେ ମୁହିଁ ସତ୍ୟ ଶୁଣ ଭୃଗୁପତି ।
ତେବେ ବିଶ୍ୱ ମଧ୍ୟେ କେଉଁ ବୀର ଆଗେ ନତ ହେବ ଭୟେ ଅତି ॥୨୮୩॥
ଦେବ ଦାନବ ନରେନ୍ଦ୍ର ବୀର କେ ବରିଷ୍ଠ । ସମ ବଳ ହେଉ ଅବା ଅଧିକ ବଳିଷ୍ଠ ॥
ଯେବେ ସଂଗ୍ରାମେ ଆହ୍ୱାନ ମୋତେ କେହି କରେ । କାଳ ସ୍ୱୟଂ ହେଲେ ମଧ୍ୟ ଯୁଝିବି ସୁଖରେ ॥୧॥

---

କୁଟିଳ ॥ ୨୮୨ ॥ ଚୌପାଈ —ତୁ ମୋତେ କପଟ ବିପ୍ର ବୋଲି ମନେ କରିଛୁ ସିନା ! ମୁଁ ଯେଉଁପରି ବିପ୍ର, ତୋତେ ଶୁଣାଉଛି । ଧନୁକୁ ସ୍ରୁବା, ବାଣକୁ ଆହୁତି ଓ ମୋର କ୍ରୋଧକୁ ଅତ୍ୟନ୍ତ ଭୟଙ୍କର ଅଗ୍ନି ବୋଲି ଜାଣ ॥ ୧ ॥ ସମିଧ ଚତୁରଙ୍ଗିଣୀ ମନୋହର ସେନା । ମହାମହୀପତିଗଣ ତହିଁ ମଧ୍ୟରେ ଆସି ବଳିପଶୁ ହୋଇଅଛନ୍ତି । ସେହିମାନଙ୍କୁ ଏହି କୁଠାରରେ କାଟି ମୁଁ ବଳି ଦେଇଅଛି, ଏହିପରି କୋଟି କୋଟି ଜପଯୁକ୍ତ ରଣଯଜ୍ଞ ମୁଁ କରିଅଛି ॥ ୨ ॥ ମୋର ପ୍ରଭାବ ତୋତେ କିଛି ଜଣାନାହିଁ । ଏଣୁ ତୁ ବିପ୍ରମୁନି ବୋଲି ମୋତେ ଅନାଦର କରି କଥା କହୁଛୁ । ଧନୁ ଭାଙ୍ଗିଦେଲୁ କିନା ! ଏଥିରେ ତୋର ଗର୍ବ ବହୁତ ବଢିଯାଇଛି । ଅହଙ୍କାର ସହିତ ଯେମିତି ସମଗ୍ର ସଂସାରକୁ ଜିଣି ଏଠାରେ ଛିଡା ହୋଇଛୁ ।" ॥ ୩ ॥ ଶ୍ରୀରାମଚନ୍ଦ୍ର କହିଲେ, "ହେ ମୁନି ! ବିଚାର କରି କୁହନ୍ତୁ, ଆପଣଙ୍କର କ୍ରୋଧ ବହୁତ ବଡ ଓ ମୋର ତ୍ରୁଟି ଅତି କ୍ଷୁଦ୍ର । ପୁରୁଣା ଧନୁ, ଛୁଇଁବା ମାତ୍ରେ ଭାଙ୍ଗିଗଲା । କି ହେତୁ ମୁଁ ଅଭିମାନ ବା ଗର୍ବ କରନ୍ତି ? ॥ ୪ ॥ ଦୋହା — ହେ ଭୃଗୁପତି ! ତୁମ୍ଭଙ୍କୁ ବିପ୍ର କହି ଯଦି ମୁଁ ଅନାଦର ବା ହେୟଜ୍ଞାନ କରିଥାଏ, ତେବେ ଏହି ସତ୍ୟ ଶୁଣନ୍ତୁ—ସଂସାରରେ ତେବେ ଏପରି ଯୋଦ୍ଧା ଆଉ କିଏ ଅଛି, ଯାହାର ଆଗେ ଭୟ-ବଶତଃ ଆମେ ମସ୍ତକ ଅବନତ କରିବୁ ? ॥୨୮୩॥ ଚୌପାଈ—ଦେବତା, ଦୈତ୍ୟ, ରାଜା ବା ବହୁତ ଯୋଦ୍ଧା ବଳରେ ଆମର ସମକକ୍ଷ ହୁଅନ୍ତୁ କିମ୍ବା ଆମଠାରୁ

ଛତ୍ରିୟ ତନୁ ଧରି ସମର ସକାନା । କୁଲ କଲଂକୁ ତେହିଁ ପାଓଁର ଆନା ॥
କହଉଁ ସୁଭାଉ ନ କୁଲହି ପ୍ରସଂସୀ । କାଲହୁ ଡରହିଁ ନ ରନ ରଘୁବଂସୀ ॥୨॥
ବିପ୍ରବଂସ କୈ ଅସି ପ୍ରଭୁତାଈ । ଅଭୟ ହୋଇ ଜୋ ତୁହ୍ମହି ଡେରାଈ ॥
ସୁନି ମୃଦୁ ଗୂଢ ବଚନ ରଘୁପତି କେ । ଉଘରେ ପଟଲ ପରସୁଧର ମତି କେ ॥୩॥
ରାମ ରମାପତି କର ଧନୁ ଲେହୂ । ଖୈଁଚହୁ ମିଟୈ ମୋର ସଂଦେହୂ ॥
ଦେତ ଚାପୁ ଆପୁହିଁ ଚଲି ଗୟଊ । ପରସୁରାମ ମନ ବିସମୟ ଭୟଊ ॥୪॥
ଜାନା ରାମ ପ୍ରଭାଉ ତବ ପୁଲକ ପ୍ରଫୁଲ୍ଲିତ ଗାତ ।
ଜୋରି ପାନି ବୋଲେ ବଚନ ହୃଦୟଁ ନ ପ୍ରେମୁ ଅମାତ ॥୨୮୪॥
ଜୟ ରଘୁବଂସ ବନଜ ବନ ଭାନୂ । ଗହନ ଦନୁଜ କୁଲ ଦହନ କୃସାନୂ ॥
ଜୟ ସୁର ବିପ୍ର ଧେନୁ ହିତକାରୀ । ଜୟ ମଦ ମୋହ କୋହ ଭ୍ରମ ହାରୀ ॥୧॥

---

କ୍ଷତ୍ରିୟ ତନୁ ଧରି ଯେ ସମରେ ସଶଙ୍କ । ସେ ନୀଚ ପାମର ଜାଣ କୁଳର କଳଙ୍କ ॥
କହୁଛି ସ୍ୱଭାବେ କୁଳ ପ୍ରଶଂସା ନ ମଣେ । କାଳକୁ ତ ନ ଡରନ୍ତି ରଘୁବଂଶୀ ରଣେ ॥୨॥
ବିପ୍ର ବଂଶର ଏମନ୍ତ ପ୍ରଭୁତ୍ୱ ଅଛଇ । ଅଭୟ ହୁଅଇ ଯେହୁ ତୁମ୍ଭଙ୍କୁ ଡରଇ ॥
ଶୁଣି ମୃଦୁ ଗୂଢ ବାଣୀ ଶ୍ରୀ ରଘୁବରଙ୍କ । ଫିଟିଲା ପ୍ରଜ୍ଞାନ-ଚକ୍ଷୁ ପରଶୁଧରଙ୍କ ॥୩॥
ରାମ, ଏହି ବିଷ୍ଣୁ ଧନୁ କରେ ତୁମେ ନିଅ ଆକର୍ଷି ସନ୍ଦେହ ମୋର ଦୂର କରି ଦିଅ ॥
ଦେଉ ଦେଉ ଚାପ ତାହା ଆପେ ଚଳିଗଲା । ପରଶୁରାମଙ୍କ ମନେ ବିସ୍ମୟ ହୋଇଲା ॥୪॥
ତହୁଁ ଶ୍ରୀ ରାମଙ୍କ ବୁଝିଣ ପ୍ରତାପ ପୁଲକ ପ୍ରଫୁଲ୍ଲ ଦେହେ ।
ଯୋଡି ଯୁଗ୍ମପାଣି ଉଚ୍ଚାରିଲେ ବାଣୀ ଉର ଅସମ୍ଭାଳ ସ୍ନେହେ ॥ ୮୦ ॥
ଜୟ ଜୟ ରଘୁବଂଶ-ଅବ୍‌ଜବନ-ଭାନୁ । ଦନୁଜ-କୁଳ-ଅରଣ୍ୟ ଦହନେ କୃଶାନୁ ॥
ଜୟ ସୁର ମହୀସୁର-ଧେନୁ-ହିତକାରୀ । ଜୟ ମଦ ମୋହ କ୍ରୋଧ ଭ୍ରମ ଭୟହାରୀ ॥୧॥

---

ଅଧିକ ବଳବାନ୍ ହୁଅନ୍ତୁ, ଯଦି ରଣରେ କେହି ହେଲେ ମୋତେ ଆହ୍ୱାନ କରେ, ଏପରିକି କାଳ ହେଉ ପଛକେ, ତେବେ ଆମେ ତାହା ସହିତ ସୁଖରେ ଲଢିବୁ ॥ ୧ ॥ କ୍ଷତ୍ରିୟ ଶରୀର ଧରି ଯେ ଯୁଦ୍ଧରେ ଡରିଯାଏ, ସେହି ନୀଚ ତାହାର କୁଳରେ କଳଙ୍କ ଲଗାଏ । ମୁଁ କୁଳର ପ୍ରଶଂସା ନ କରି ସ୍ୱଭାବତଃ କହୁଛି, "ରଘୁବଂଶୀମାନେ ରଣରେ କାଳକୁ ମଧ୍ୟ ଡରନ୍ତି ନାହିଁ ॥ ୨ ॥ ବ୍ରାହ୍ମଣ ବଂଶର ଏପରି ମହିମା ବା ପ୍ରଭୁତ୍ୱ ଯେ, ଯେ ଆପଣଙ୍କୁ ଡରେ, ସେ ଅନ୍ୟ ସବୁଠାରେ ଅଭୟ ରହେ !" ଶ୍ରୀ ରଘୁନାଥଙ୍କ କୋମଳ ଓ ରହସ୍ୟମୟୀ ଉକ୍ତି ଶୁଣି ପରଶୁରାମଙ୍କ ଜ୍ଞାନର ଆବରଣ ଖୋଲିଗଲା ॥ ୩ ॥ ପରଶୁରାମ କହିଲେ, "ହେ ରାମ ! ବିଷ୍ଣୁଙ୍କର ଏହି ଧନୁକୁ ହାତରେ ଧରନ୍ତୁ ଏବଂ ଏହାକୁ ଆକର୍ଷଣ କରି ମୋର ସନ୍ଦେହ ଦୂର କରନ୍ତୁ ।" ପରଶୁରାମ ଧନୁ ବଢାଇ ଦେଉ ଦେଉ ତାହା ଆପେ ଆପେ ଚାଲିଗଲା । ସେତେବେଳେ ପରଶୁରାମଙ୍କ ମନରେ ବଡ ବିସ୍ମୟ ଜାତ ହେଲା ॥ ୪ ॥ ଦୋହା .—ତହୁଁ ସେ ଶ୍ରୀରାମଙ୍କ ପ୍ରଭାବ ଜାଣିଲେ ଏବଂ ତାହାର

ବିନୟ ସୀଲ କରୁନା ଗୁନ ସାଗର । ଜୟତି ବଚନ ରଚନା ଅତି ନାଗର ॥
ସେବକ ସୁଖଦ ସୁଭଗ ସବ ଅଂଗା । ଜୟ ସରୀର ଛବି କୋଟି ଅନଂଗା ॥୨॥
କରୌଁ କାହ ମୁଖ ଏକ ପ୍ରସଂସା । ଜୟ ମହେସ ମନ ମାନସ ହଂସା ॥
ଅନୁଚିତ ବହୁତ କହେଉଁ ଅଜ୍ଞାତା । ଛମହୁ ଛମାମଂଦିର ଦୋଉ ଭ୍ରାତା ॥୩॥
କହି ଜୟ ଜୟ ଜୟ ରଘୁକୁଲକେତୂ । ଭୃଗୁପତି ଗଏ ବନହି ତପ ହେତୂ ॥
ଅପଭୟଁ କୁଟିଲ ମହୀପ ଡେରାନେ । ଜହଁ ତହଁ କାୟର ଗବଁହିଁ ପରାନେ ॥୪॥

ଦେବହ୍ନ ଦୀହ୍ନୀଁ ଦୁଂଦଭୀଁ ପ୍ରଭୁ ପର ବରଷହିଁ ଫୂଲ ।
ହରଷେ ପୁର ନର ନାରି ସବ ମିଟୀ ମୋହମୟ ସୂଲ ॥୨୮୫॥

---

ବିନୟ-ଶୀଳ-କରୁଣା-ସଦ୍‌ଗୁଣ-ସାଗର । ଜୟ ବଚନ-ରଚନେ ପରମ ନାଗର ॥
ସେବକ-ସୁଖ-ଦାୟକ ଶୁଭ-ମୟ ଅଙ୍ଗ । ଜୟ କଳେବର ଛବି ଅମିତ ଅନଙ୍ଗ ॥୨॥
ଏକ ମୁଖେ ପ୍ରଶଂସିବି କେବଣ ସୁଯଶ । ଜୟ ମହେଶ୍ୱର ମନ-ମାନସର ହଂସ ॥
ଅନୁଚିତ ବହୁତ ମୁଁ କହିଛି ଅଜ୍ଞାତେ । କ୍ଷମା କର, କ୍ଷମା-ନିକେତନ ବେନି ଭ୍ରାତେ ॥୩॥
କହି ଜୟ ଜୟ ଜୟ ରଘୁକୁଳ କେତୁ । ଭୃଗୁପତି ବିପିନକୁ ଗଲେ ତପ ହେତୁ ॥
ଆପଣା ଭୟେ କୁଟିଳ ମହୀପେ ଡରିଲେ । ଯେଣେ ତେଣେ ଧାଇଁ ପ୍ରାଣ ଘେନି ପଳାଇଲେ ॥୪॥

ଦୁନ୍ଦୁଭି ବଜାନ୍ତି ପୁଷ୍ପ ବରଷନ୍ତି ସୁର ପ୍ରଭୁଙ୍କ ଉପରେ ।
ମୋହମୟ ଦୁଃଖ ତୁଟନ୍ତେ ହରଷ ହେଲେ ପୁର ନାରୀନରେ ॥ ୮୫॥

---

ଫଳରେ ତାଙ୍କର ଶରୀର ପୁଲକିତ ଓ ପ୍ରଫୁଲ୍ଲିତ ହୋଇ ପଡିଲା । ସେ ହାତ ଯୋଡି ବଚନ ବୋଇଲେ,—ତାଙ୍କ ହୃଦୟ ଅପାର ସ୍ନେହରେ ପରିପୂର୍ଣ୍ଣ ॥ ୨୮୦ ॥ ଚୌପାଈ :- "ହେ ରଘୁକୁଳ-କମଳବନ-ଦିବାକର ! ହେ ଦାନବକୁଳ-ବନ-ଦାହକ ଅଗ୍ନି ! ଆପଣଙ୍କର ଜୟ ହେଉ । ହେ ସୁର-ବିପ୍ର-ଧେନୁ-ହିତକାରୀ ! ଆପଣଙ୍କର ଜୟ ହେଉ । ହେ ମଦ-ମୋହ-କ୍ରୋଧ-ଭ୍ରମହାରୀ ! ଆପଣଙ୍କର ଜୟ ହେଉ ॥ ୧ ॥ ହେ ବିନୟ-ଶୀଳ-କରୁଣା-ଗୁଣ-ସାଗର ଏବଂ ବଚନ-ରଚନା-ସୁଚତୁର ! ଆପଣଙ୍କର ଜୟ ହେଉ । ହେ ସେବକ-ସୁଖଦାୟକ, ସକଳ ଅଙ୍ଗସୁନ୍ଦର ଏବଂ ଶରୀରରେ କୋଟି କୋଟି କନ୍ଦର୍ପ-ଛବିଧାରୀ ! ଆପଣଙ୍କର ଜୟ ହେଉ ॥ ୨ ॥ ମୁଁ ଗୋଟିଏ ମୁଖରେ ଆପଣଙ୍କର କି ପ୍ରଶଂସା କରିବି ? ହେ ମହାଦେବ-ମନ-ମାନସରୋବର-ହଂସ ! ଆପଣଙ୍କର ଜୟ ହେଉ । ଅଜ୍ଞାତରେ ମୁଁ ଆପଣଙ୍କୁ ବହୁତ ଅନୁଚିତ ବଚନ କହିଛି । ହେ କ୍ଷମାମନ୍ଦିର ଭ୍ରାତୃଦ୍ୱୟ ! ମୋତେ କ୍ଷମା କରନ୍ତୁ ॥ ୩ ॥ ହେ ରଘୁକୁଳ-କେତନ ଶ୍ରୀରାମଚନ୍ଦ୍ର ! ଆପଣଙ୍କର ଜୟ ହେଉ ! ଜୟ ହେଉ ! ଜୟ ହେଉ !"—ଏହିପରି କହି ପରଶୁରାମ ତପସ୍ୟା ନିମନ୍ତେ ବନକୁ ଚାଲିଗଲେ । କୁଟିଳ ନରପତିମାନେ ଆଶଙ୍କା କଳ୍ପନା କରି ଡରିଗଲେ । ସେମାନେ ଭାବିଲେ "ପରଶୁରାମ ତ ଶ୍ରୀରାମଙ୍କ ଦ୍ୱାରା ପରାସ୍ତ ହେଲେ, ଆମେମାନେ ତ ପୁଣି ଶ୍ରୀରାମଙ୍କ ପ୍ରତି ଅପମାନ ପ୍ରଦର୍ଶନ କରିଥିଲୁ । କାଳେ ସେ ଉକ୍ତ

ଅତି ଗହଗହେ ବାଜନେ ବାଜେ । ସବହିଁ ମନୋହର ମଂଗଲ ସାଜେ ॥
ଜୂଥ ଜୂଥ ମିଲି ସୁମୁଖି ସୁନୟନୀଂ । କରହିଁ ଗାନ କଲ କୋକିଲବୟନୀଂ ॥୧॥
ସୁଖୁ ବିଦେହ କର ବରନି ନ ଜାଈ । ଜନ୍ମଦରିଦ୍ର ମନହୁଁ ନିଧି ପାଈ ॥
ବିଗତ ତ୍ରାସ ଭଇ ସୀୟ ସୁଖାରୀ । ଜନୁ ବିଧୁ ଉଦୟଁ ଚକୋରକୁମାରୀ ॥୨॥
ଜନକ କୀହ୍ନ କୌସିକହିଁ ପ୍ରନାମା । ପ୍ରଭୁ ପ୍ରସାଦ ଧନୁ ଭଂଜେଉ ରାମା ॥
ମୋହି କୃତକୃତ୍ୟ କୀହ୍ନ ଦୁହୁଁ ଭାଈଂ । ଅବ ଜୋ ଉଚିତ ସୋ କହିଅ ଗୋସାଈଂ ॥୩॥
କହ ମୁନି ସୁନୁ ନରନାଥ ପ୍ରବୀନା । ରହା ବିବାହୁ ଚାପ ଆଧୀନା ॥
ଟୂଟତହିଁ ଧନୁ ଭୟଉ ବିବାହୂ । ସୁର ନର ନାଗ ବିଦିତ ସବ କାହୂ ॥୪॥

ତଦପି ଜାଇ ତୁହ୍ମ କରହୁ ଅବ ଜଥା ବଂସବ୍ୟବହାରୁ ।
ବୂଝି ବିପ୍ର କୁଲବୃଦ୍ଧ ଗୁର ବେଦ ବିଦିତ ଆଚାରୁ ॥୨୮୬॥

---

ଘନ ଘୋର ଘୋଷେ ବାଦ୍ୟ ବାଜିଲା ଗହଳ । ସାଜିଲେ ସମସ୍ତ ନାନା ରୁଚିର ମଙ୍ଗଳ ॥
ଯୂଥ ଯୂଥ ମିଳି ଶଶିମୁଖୀ ସୁଲୋଚନା । କରନ୍ତି ମଧୁର ଗାନ କୋକିଳ-ବଚନା ॥୧॥
ସୁଖ ବିଦେହଙ୍କ କରି ନ ହୁଏ ବର୍ଣ୍ଣନ । ଜନମ-ଦରିଦ୍ର ନିଧି ପାଇଛି ଯେସନ ॥
ତ୍ରାସ ନିବାରିତ ସୀତା ସୁଖୀ ହେଲେ ଭାରି । ଚନ୍ଦ୍ରମା ଉଦୟେ ଯଥା ଚକୋର କୁମାରୀ ॥୨॥
ଜନକ କଲେ କୌଶିକ ମୁନିଙ୍କୁ ପ୍ରଣାମ । ପ୍ରଭୁଙ୍କ ପ୍ରସାଦେ ଧନୁ ବିଭଞ୍ଜିଲେ ରାମ ॥
ମୋତେ କୃତକୃତ୍ୟ କରି ଦେଲେ ଦୁଇଭାଇ । ଏବେ ତାହା କର ଯାହା ଉଚିତ ଗୋସାଇଁ ॥୩॥
ଭାଷିଲେ ମୁନୀଶ, ଶୁଣ ମହୀଶ ପ୍ରବୀଣ । ବିବାହ ଥିଲା ମହେଶ ପିନାକ ଅଧୀନ ॥
ଭାଙ୍ଗନ୍ତେ ଧନୁ ହୋଇଲା ବିବାହ ବିହିତ । ସୁର ନର ସମସ୍ତଙ୍କୁ ଏ କଥା ବିଦିତ ॥୪॥

ତଥାପି ସମ୍ପନ୍ନ କର ଏବେ ତୁମ୍ଭେ ଯଥା ବଂଶ ବ୍ୟବହାର ।
ବୁଝି କୁଳ ବୃଦ୍ଧ ବିପ୍ର ଗୁରୁଜନେ ବେଦ-ବିହିତ ଆଚାର ॥୨୮୬॥

---

ଅପମାନର ପ୍ରତିଶୋଧ ନେବେ ।” ଏହି ଭୟରେ ସେହି କାପୁରୁଷମାନେ ଏଣେ ତେଣେ ପଳାଇଗଲେ ॥ ୪ ॥ ଦୋହା :—ଦେବତାମାନେ ଦୁନ୍ଦୁଭି ବଜାଇଲେ । ସେମାନେ ପ୍ରଭୁଙ୍କ ଉପରେ ଫୁଲ ବରଷିବାକୁ ଲାଗିଲେ । ଜନକପୁରର ସ୍ତ୍ରୀପୁରୁଷ ସମସ୍ତେ ଆନନ୍ଦିତ ହୋଇଗଲେ । ସେମାନଙ୍କର ମୋହମୟ (ଅଜ୍ଞାନରୁ ଉତ୍ପନ୍ନ) ଶ୍ରମ ମେଣ୍ଟିଗଲା ॥ ୨୮୫ ॥ ଚୌପାଈ :—ଅତି ଘନ ଘନ ବାଜା ବାଜିବାକୁ ଲାଗିଲା । ସମସ୍ତେ ମନୋହର ମଙ୍ଗଳ-ସାଜ ସଜାଇଲେ । ସୁମୁଖୀ, ସୁନୟନୀ ଓ କୋକିଳବଚନା ସ୍ତ୍ରୀମାନେ ଦଳ ଦଳ ହୋଇ ସୁନ୍ଦର ମଧୁର ସଙ୍ଗୀତ ଗାନ କରିବାକୁ ଲାଗିଲେ ॥ ୧ ॥ ଜନକଙ୍କ ସୁଖ ବର୍ଣ୍ଣନା କରି ହେବନାହିଁ । ସତେ ଯେମିତି ଆଜନ୍ମଦରିଦ୍ର ଧନର ଭଣ୍ଡାରଟିଏ ପାଇଗଲା ପରି ! ସୀତାଙ୍କର ଭୟ ଅପସରି ଯାଇଥାଏ । ଚନ୍ଦ୍ରମାର ଉଦୟରେ ଚକୋର-କନ୍ୟା ସୁଖ ଲାଭ କଲା ପରି ସେ ସୁଖଲାଭ କଲେ ॥ ୨ ॥ ଜନକ ବିଶ୍ୱାମିତ୍ରଙ୍କୁ ପ୍ରଣାମ କଲେ ଏବଂ କହିଲେ, “ପ୍ରଭୁଙ୍କର କୃପାରେ ଶ୍ରୀରାମ ଧନୁ ଭଙ୍ଗ କରିଅଛନ୍ତି । ଦୁଇ ଭାଇ ମୋତେ

ଦୂତ ଅଉଧପୁର ପଠଉହୁ ଜାଇ । ଆନହୁଁ ନୃପ ଦସରଥହି ବୋଲାଇ ॥
ମୁଦିତ ରାଉ କହି ଭଲେହିଁ କୃପାଲା । ପଠଏ ଦୂତ ବୋଲି ତେହି କାଲା ॥୧॥
ବହୁରି ମହାଜନ ସକଲ ବୋଲାଏ । ଆଇ ସବହି ସାଦର ସିର ନାଏ ॥
ହାଟ ବାଟ ମନ୍ଦିର ସୁରବାସା । ନଗରୁ ସଁଉାରହୁ ଚାରିହୁଁ ପାସା ॥୨॥
ହରଷି ଚଲେ ନିଜ ନିଜ ଗୃହ ଆଏ । ପୁନି ପରିଚାରକ ବୋଲି ପଠାଏ ॥
ରଚହୁ ବିଚିତ୍ର ବିତାନ ବନାଈ । ସିର ଧରି ବଚନ ଚଲେ ସଚୁ ପାଈ ॥୩॥
ପଠଏ ବୋଲି ଗୁନୀ ତିନ୍ହ ନାନା । ଜେ ବିତାନ ବିଧି କୁସଲ ସୁଜାନା ॥
ବିଧିହି ବନ୍ଦି ତିନ୍ହ କୀନ୍ହ ଅରଂଭା । ବିରଚେ କନକ କଦଲି କେ ଖଂଭା ॥୪॥

---

ପଠାଅ ଦୂତ ଯାଇଣ ଅଯୋଧ୍ୟାପୁରୀକୁ । ଡାକି ଆଣନ୍ତୁ ସେ ଦଶରଥ ନୃପତିଙ୍କୁ ॥
"ଯେ ଆଜ୍ଞା" କହି ମୁଦିତେ ତହୁଁ ନୃପମଣି । ପଠାଇଲେ ଅଯୋଧ୍ୟାକୁ ଦୂତ ସେହିକ୍ଷଣି ॥୧॥
ପୁଣି ପୁର ମହାଜନବୃନ୍ଦଙ୍କୁ ଚାହିଲେ । ଆସି ସମସ୍ତେ ସାଦରେ ଜୁହାର କଲେ ॥
ହାଟ ବାଟ ନିକେତନ ଦେବଙ୍କ ନିବାସ । ସଜାଅ ସବୁ ପ୍ରକାରେ ପୁର ଚଉପାଶ ॥୨॥
ହରଷେ ଆସିଲେ ନିଜ ନିଜ ସଦନକୁ । ପୁଣି ଡକାଇ କହିଲେ ସେବକଗଣଙ୍କୁ ॥
ସାଜ ଚିତ୍ର ବିତାନ କର ବିରଚନ । ଚଳିଲେ ସାନନ୍ଦେ ଶିରେ ଘେନିଣ ବଚନ ॥୩॥
ସେମାନେ ବହୁ ବିଜ୍ଞାଣି ଡାକି ପଠାଇଲେ । ବିତାନ ଶିଳ୍ପୀ କାର୍ଯ୍ୟରେ ନିପୁଣ ଯେ ଥିଲେ ॥
ବିଧିଙ୍କ ବନ୍ଦଣ କାର୍ଯ୍ୟ କଲେ ଆରମ୍ଭ । ରଚିଲେ କନକମୟ କଦଳୀର ସ୍ତମ୍ଭ ॥୪॥

---

କୃତାର୍ଥ କରିଦେଲେ । ହେ ସ୍ୱାମି ! ଏବେ ଯାହା ଉଚିତ, ତାହା କୁହନ୍ତୁ ।" ॥ ୩ ॥ ମୁନି କହିଲେ, "ହେ ପ୍ରବୀଣ ନରପତି ! ଶୁଣ । ଏମିତି ତ ବିବାହ ଶିବ-ଧନୁର ଅଧୀନ ଥିଲା । ଧନୁ ଭାଙ୍ଗିବା ମାତ୍ରେ ହିଁ ବିବାହ ହୋଇଗଲା । ଦେବତା, ମନୁଷ୍ୟ ଓ ନାଗ ସମସ୍ତଙ୍କୁ ଏହା ଜଣା ॥ ୪ ॥ ଦୋହା ।—ତଥାପି ତୁମେ ଏବେ ଯାଇ ତୁମ କୁଳର ଯଥାଯୋଗ୍ୟ ବ୍ୟବହାର ପ୍ରତିପାଳନ କର । ବ୍ରାହ୍ମଣ, କୁଳବୃଦ୍ଧ ଓ ଗୁରୁମାନଙ୍କୁ ପଚାରି ବେଦବର୍ଣ୍ଣିତ ଆଚାର ବିଧାନ କର ॥ ୨୮୬ ॥ ଚୌପାଈ —ଯାଇ ଅଯୋଧ୍ୟାକୁ ଦୂତ ପଠାଅ । ସେ ରାଜା ଦଶରଥଙ୍କୁ ଡାକି ଆଣନ୍ତୁ ।" ରାଜା ପ୍ରସନ୍ନ ହୋଇ କହିଲେ, "ହେ କୃପାଳୁ ! ବହୁତ ଆଚ୍ଛା ।" ଏବଂ ଏହା କହି ସେ ସେହି ମୁହୂର୍ତ୍ତରେ ଦୂତଗଣଙ୍କୁ ଡକାଇ ପଠାଇଲେ ॥ ୧ ॥ ତତ୍ପରେ ପୁଣି ସମସ୍ତ ମହାଜନଙ୍କୁ ଡକାଇଲେ ଏବଂ ସମସ୍ତେ ଆସି ରାଜାଙ୍କୁ ସାଦର ପ୍ରଣାମ କଲେ । ରାଜା କହିଲେ, "ହାଟ, ବାଟ, ମନ୍ଦିର, ଦେବାଳୟ ଏବଂ ସମଗ୍ର ନଗରକୁ ଚତୁର୍ଦ୍ଦିଗରୁ ସଜାଅ ।" ॥ ୨ ॥ ମହାଜନମାନେ ପ୍ରସନ୍ନ ହୋଇ ଚାଲିଗଲେ ଏବଂ ସେମାନଙ୍କ ନିଜ ନିଜ ଘରକୁ ଆସିଲେ । ତତ୍ପରେ ରାଜା ପରିଚାରକଗଣଙ୍କୁ ଡକାଇ ପଠାଇଲେ ଏବଂ ସେମାନଙ୍କୁ ଆଜ୍ଞା ଦେଲେ, "ବିଚିତ୍ର ମଣ୍ଡପ ସଜାଇ ତିଆରି କର ।" ଏହା ଶୁଣି ସେମାନେ ସମସ୍ତେ ରାଜାଙ୍କ ବଚନ ଶିରୋଧାର୍ଯ୍ୟପୂର୍ବକ ଆନନ୍ଦରେ ଚାଲିଗଲେ ॥ ୩ ॥ ସେମାନେ ଶିଳ୍ପୀମାନଙ୍କୁ

ହରିତ ମନିନ୍ହ କେ ପତ୍ର ଫଲ ପଦୁମରାଗ କେ ଫୂଲ ।
ରଚନା ଦେଖି ବିଚିତ୍ର ଅତି ମନୁ ବିରଂଚି କର ଭୂଲ ॥୨୮୭॥
ବେନୁ ହରିତ ମନିମୟ ସବ କୀନ୍ହେ । ସରଲ ସପରବ ପରହିଁ ନହିଁ ଚୀନ୍ହେ ॥
କନକ କଲିତ ଅହିବେଲି ବନାଈ । ଲଖି ନହିଁ ପରଇ ସପରନ ସୁହାଈ ॥୧॥
ତେହି କେ ରଚି ପଚି ବଂଧ ବନାଏ । ବିଚ ବିଚ ମୁକୁତା ଦାମ ସୁହାଏ ॥
ମାନିକ ମରକତ କୁଲିସ ପିରୋଜା । ଚୀରି କୋରି ପଚି ରଚେ ସରୋଜା ॥୨॥
କିଏ ଭୃଂଗ ବହୁରଂଗ ବିହଂଗା । ଗୁଂଜହିଁ କୂଜହିଁ ପବନ ପ୍ରସଂଗା ॥
ସୁର ପ୍ରତିମା ଖଂଭନ ଗଢ଼ି କାଢ଼ୀଂ । ମଂଗଲ ଦ୍ରବ୍ୟ ଲିଏଁ ସବ ଠାଢ଼ୀଂ ॥୩॥
ଚୌକେଂ ଭାଂତି ଅନେକ ପୁରାଈଂ । ସିଂଧୁର ମନିମୟ ସହଜ ସୁହାଈଂ ॥୪॥

---

ହରିତ ମଣିର ରମ୍ୟ ଫଳ ପତ୍ର ପଦ୍ମରାଗର ସୁମନ ।
ରଚନା ଦେଖିଣ ବିଚିତ୍ର ପରମ ଭୁଲଇ ବିରଞ୍ଚି ମନ ॥ ୮୭॥
ହରିତ ମଣିରେ ବେଣୁ ରଚିଲେ ବିମଳ । ଜଣା ନ ପଡଇ ଗଣ୍ଠି-ସଂଯୁକ୍ତ ସରଳ ॥
ସ୍ୱର୍ଣ୍ଣମୟ ନାଗବଲ୍ଲୀ ବିଚିତ୍ର ଶୋଭଇ । ରଚିତ ପର୍ଣ୍ଣ ସହିତ ବାରି ନ ହୁଅଇ ॥୧॥
ତହିଁରେ ଯତନ କରି ବନ୍ଧ ନିର୍ମାଣିଲେ । ମଧ୍ୟେ ମଧ୍ୟେ ମୁକ୍ତାମାଳ ରୁଚିର ସାଜିଲେ ॥
ହୀରା ନୀଳା ମରକତ ମାଣିକ ଆଦିର । ଚିରି ରଚିଲେ ଯତନେ ସରୋଜ ସୁନ୍ଦର ॥୨॥
କରିଲେ ବିହଙ୍ଗ ଭୃଙ୍ଗ ବିବିଧ ରଙ୍ଗରେ । ପବନ ଯୋଗେ କୂଜନ୍ତି ଗୁଞ୍ଜରନ୍ତି ସ୍ୱରେ ॥
ସ୍ତମ୍ଭମାନଙ୍କରେ ସୁର ପ୍ରତିମା ଗଢିଲେ । ମଙ୍ଗଳ ଦ୍ରବ୍ୟ ଘେନିଣ ସର୍ବେ ଉଭା ଥିଲେ ॥୩॥
ସୁମଙ୍ଗଳ ଚତୁଷ୍କୋଣ ଅନେକ ପ୍ରକାରେ । ରଚିଲେ ଯତନ କରି କୁଞ୍ଜର ମୁକ୍ତାରେ ॥୪॥

---

ଡକାଇ ପଠାଇଲେ । ସେହି ଶିଳ୍ପୀମାନେ ମଣ୍ଡପ ନିର୍ମାଣ କରିବାରେ ବଡ଼ କୁଶଳ ଓ ଚତୁର ଥିଲେ । ସେମାନେ ବ୍ରହ୍ମାଙ୍କୁ ବନ୍ଦନା କରି କାର୍ଯ୍ୟ ଆରମ୍ଭ କଲେ । ସର୍ବପ୍ରଥମେ ସେମାନେ ସୁବର୍ଣ୍ଣ ରମ୍ଭାବୃକ୍ଷର ସ୍ତମ୍ଭ ନିର୍ମାଣ କଲେ ॥ ୪ ॥ ଦୋହା —ସେମାନେ ସବୁଜ ମଣିରେ ପତ୍ର ଓ ଫଳ ଗଢିଲେ ଏବଂ ପଦ୍ମରାଗମଣିର ଫୁଲ ତିଆରି କଲେ । ମଣ୍ଡପର ଅତ୍ୟନ୍ତ ବିଚିତ୍ର ରଚନା ଦେଖି ବ୍ରହ୍ମାଙ୍କ ମନ ମଧ୍ୟ ଭୁଲିଗଲା ॥୨୮୭॥ ଚୌପାଈ :- ଶିଳ୍ପୀମାନେ ସବୁଜ ରଙ୍ଗର ମଣିସବୁ ଖଞ୍ଜି ସିଧା ଓ ଗଣ୍ଠି ଗଣ୍ଠିଆ ବାଉଁଶର ଆକାରରେ ଏପରି ଖମ୍ବମାନ ନିର୍ମାଣ କଲେ, ଯାହାକୁ ଦେଖି ଏସବୁ ମଣିଖମ୍ବ କି ବାଉଁଶ ଖମ୍ବ, ଜାଣି ହେଲା ନାହିଁ । ସେମାନେ ପତ୍ର-ଖିରିକାନ୍ତ ସୁବର୍ଣ୍ଣ ପାନଲତା ମଧ୍ୟ ମନୋହର ଭାବରେ ଗଢିଲେ । ତାହା ପତ୍ର ସହିତ ଏପରି ମନୋହର ଓ ସ୍ୱାଭାବିକ ଦେଖାଯାଉଥିଲା ଯେ, ପ୍ରକୃତ ପାନଲତାଠାରୁ ତାହା ବାରି ହେଉ ନ ଥାଏ ॥ ୧ ॥ ସେହି ଲତାମାନଙ୍କ ମଧ୍ୟରେ ମଣିଖଚିତ ବନ୍ଦନଡୋରି ତିଆରି କରାଗଲା । ତାହାର ମଝିରେ ମଝିରେ ମୁକ୍ତାର ମନୋହର ଝାଲରି । ମାଣିକ୍ୟ, ହୀରା, ନୀଳା, ମରକତମଣି ପ୍ରଭୃତିକୁ ଚିରି ତହିଁରେ ଯତ୍ନସହକାରେ ନାଲି, ସବୁଜ, ଧଳା ଓ ଫିରୋଜା ରଙ୍ଗର ପଦ୍ମ ଗଢାଗଲା ॥୨॥

ସୌରଭ ପଲ୍ଲବ ସୁଭଗ ସୁଠି କିଏ ନୀଲମଣି କୋରି ।
ହେମ ବୌର ମରକତ ଘଓ୍ୱରି ଲସତ ପାଟମୟ ଡୋରି ॥୨୮॥

ରଚେ ରୁଚିର ବର ବନ୍ଦନଓ୍ୱାରେ । ମନହୁ ମନୋଭବଁ ଫନ୍ଦ ସଁଓ୍ୱାରେ ॥
ମଂଗଲ କଲସ ଅନେକ ବନାଏ । ଧ୍ୱଜ ପତାକ ପଟ ଚମର ସୁହାଏ ॥୧॥
ଦୀପ ମନୋହର ମନିମୟ ନାନା । ଜାଇ ନ ବରନି ବିଚିତ୍ର ବିତାନା ॥
ଜେହିଁ ମଂଡପ ଦୁଲହିନି ବୈଦେହୀ । ସୋ ବରନୈ ଅସି ମତି କବି କେହୀ ॥୨॥
ଦୂଲହୁ ରାମୁ ରୂପ ଗୁନ ସାଗର । ସୋ ବିତାନୁ ତିହୁଁ ଲୋକ ଉଜାଗର ॥
ଜନକ ଭବନ କୈ ସୋଭା ଜୈସୀ । ଗୃହ ଗୃହ ପ୍ରତି ପୁର ଦେଖିଅ ତୈସୀ ॥୩॥

---

ସୌରଭ ରସାଲ ପଲ୍ଲବ ମଞ୍ଜୁଳ ନୀଳମଣି ଗୁନ୍ଥି କଲେ ॥
କନକ ବଉଳ ମରକତ ପେଣ୍ଡା ପାଟମୟ ସୂତ୍ରେ ଦଲେ ॥୨୮॥

ବିରଚିଲେ ଆମ୍ରତୋରଣ ବିଚିତ୍ର ସୁନ୍ଦର । ମନେ ହୁଏ ପାଞ୍ଚିଅଛି ଫାନ୍ଦ ପଞ୍ଚଶର ॥
ମଙ୍ଗଳ ଘଟ ଅନେକ କରିଲେ ସ୍ଥାପନ । ଧ୍ୱଜା ପତାକା ଚାମର ରୁଚିର ବସନ ॥୧॥
ମଣିମୟ ମନୋହର ଦୀପ ସୁଶୋଭିତ । ବିଚିତ୍ର ବିତାନ ଅଟେ ବର୍ଣ୍ଣିବା ଅତୀତ ॥
ବଧୂ ବଇଦେହୀଙ୍କର ମଣ୍ଡପ ଯେବଣ । କେଉଁ କବି ମତି ତାହା କରିବ ବର୍ଣ୍ଣନ ॥୨॥
ରୂପ-ଗୁଣ-ସିନ୍ଧୁ ବର ଶ୍ରୀ ରଘୁନାୟକ । ତାହାଙ୍କ ବିତାନ ତିନି ଲୋକ ପ୍ରକାଶକ ॥
ଜନକଙ୍କ ଭବନର ଶୋଭା ଯେଉଁପରି । ପୁରବାସୀ ପ୍ରତ୍ୟେକଙ୍କ ଗୃହ ସେହିପରି ॥୩॥

---

ଶିଳ୍ପୀମାନେ ଭ୍ରମର ଓ ବହୁତ ବର୍ଣ୍ଣର ପକ୍ଷୀଙ୍କ ମୂର୍ତ୍ତି ଗଢ଼ିଲେ । ସେମାନେ ପବନ ସାହାଯ୍ୟରେ ଗୁଞ୍ଜନ ଓ କୂଜନ କରୁଥା'ନ୍ତି । ସ୍ତମ୍ଭମାନଙ୍କ ଉପରେ ଦେବତାମାନଙ୍କର ମୂର୍ତ୍ତି ନିର୍ମାଣ କରି ଛିଡ଼ା କରିଦେଲେ । ସେମାନେ ସମସ୍ତେ ମଙ୍ଗଳଦ୍ରବ୍ୟ ନେଇ ଉଭା ହୋଇଥା'ନ୍ତି ॥ ୩ ॥ ଗଜମୁକ୍ତାମାନଙ୍କରେ ସହଜ ସୁନ୍ଦର ବିବିଧ ଚତୁଷ୍କୋଣ ନିର୍ମିତ କରାହେଲା ॥ ୪ ॥ ଦୋହା —ପୁଣି ସେମାନେ ନୀଳମଣି ସୁସଜ୍ଜିତ କରି ଅତି ସୁନ୍ଦର ଓ ସୁଗନ୍ଧିତ ଆମ୍ରପତ୍ର ନିର୍ମାଣ କଲେ । ତହିଁ ମଧ୍ୟରେ କନକବଉଳ ଏବଂ ପାଟମୟ ସୂତ୍ରରେ ମରକତ ପେଣ୍ଡା ସୁଶୋଭିତ ହୋଇ ଦୋହଲୁଥାଏ ॥୨୮॥ ଚୌପାଈ—ଏପରି ସୁନ୍ଦର ଓ ଉତ୍ତମ ଆମ୍ରତୋରଣ ସଜାଇଲେ, ମନେ ହେଲା, ସତେ ଯେମିତି କାମଦେବ ଫାନ୍ଦ ପକାଇଅଛି କି ! ଶିଳ୍ପିବୃନ୍ଦ ବିବିଧ ମଙ୍ଗଳ କଳସ ସ୍ଥାପନପୂର୍ବକ ସୁନ୍ଦର ଧ୍ୱଜା, ପତାକା, ପରଦା ଓ ଚାମର ଆଦି ନିର୍ମାଣ କଲେ ॥ ୧ ॥ ମଣିମୟ ମନୋହର ଦୀପମାନ ସୁଶୋଭିତ ହେଉଥାଏ । ସେହି ବିଚିତ୍ର ବିତାନର ବର୍ଣ୍ଣନା କରାଯାଇ ପାରିବ ନାହିଁ । ବଧୂବେଶରେ ବୈଦେହୀ ଯେଉଁ ମଣ୍ଡପରେ ବସିବେ, ତାହାର ଶୋଭା ବର୍ଣ୍ଣନା କରିବାକୁ କେଉଁ କବିଙ୍କର ବୁଦ୍ଧି ଅଛି ? ॥ ୨ ॥ ରୂପଗୁଣ-ରତ୍ନାକର ଶ୍ରୀରାମ ଯେଉଁ ମଣ୍ଡପରେ ବର ହୋଇ ବସିବେ, ସେହି ମଣ୍ଡପ ତିନିଲୋକର ପ୍ରକାଶକ । ଜନକଙ୍କ ରାଜମହଲର ଯେଉଁପରି ଶୋଭା, ନଗରବାସୀ ପ୍ରତ୍ୟେକ ଗୃହସ୍ଥର ଗୃହର ଶୋଭା ସେହିପରି

ଜେହିଁ ତେରହୁତି ତେହି ସମୟ ନିହାରୀ । ତେହି ଲଘୁ ଲଗହିଁ ଭୁବନ ଦସ ଚାରୀ ॥
ଜୋ ସଂପଦା ନୀଚ ଗୃହ ସୋହା । ସୋ ବିଲୋକି ସୁରନାୟକ ମୋହା ॥୩॥
ବସଇ ନଗର ଜେହିଁ ଲଚ୍ଛି କରି କପଟ ନାରି ବର ବେଷୁ ।
ତେହି ପୁର କୈ ସୋଭା କହତ ସକୁଚହିଁ ସାରଦ ସେଷୁ ॥୨୮୯॥
ପହୁଁଚେ ଦୂତ ରାମ ପୁର ପାୱନ । ହରଷେ ନଗର ବିଲୋକି ସୁହାୱନ ॥
ଭୂପ ଦ୍ୱାରେ ତିହ୍ନ ଖବରି ଜନାଈ । ଦସରଥ ନୃପ ସୁନି ଲିଏ ବୋଲାଈ ॥୧॥
କରି ପ୍ରନାମୁ ତିହ୍ନ ପାତୀ ଦୀହ୍ନୀ । ମୁଦିତ ମହୀପ ଆପୁ ଉଠି ଲୀହ୍ନୀ ॥
ବାରି ବିଲୋଚନ ବାଁଚତ ପାତୀ । ପୁଲକ ଗାତ ଆଈ ଭରି ଛାତୀ ॥୨॥
ରାମୁ ଲଖନୁ ଉର କର ବର ଚୀଠୀ । ରହି ଗଏ କହତ ନ ଖାଟୀ ମୀଠୀ ॥
ପୁନି ଧରି ଧୀର ପତ୍ରିକା ବାଁଚୀ । ହରଷୀ ସଭା ବାତ ସୁନି ସାଂଚୀ ॥୩॥

---

ସେ ସମୟରେ ମିଥିଳାକୁ ଯେଉଁ ଦେଖୁଥିଲା । ଚଉଦ ଭୁବନ ତାକୁ ତୁଚ୍ଛ ଲାଗୁଥିଲା ॥
ଯେ ସମ୍ପଦ ନୀଚ ଗୃହେ ହୁଏ ସୁଶୋଭିତ । ତାହା ଦେଖି ସୁରପତି ହୁଅଇ ମୋହିତ ॥୪॥
ଯେଉଁ ପୁରେ ଲକ୍ଷ୍ମୀ କପଟେ ରହନ୍ତି ରଚି ନାରୀ ବର ବେଷ ।
ସେ ପୁରର ଶୋଭା ବର୍ଣ୍ଣନ କରନ୍ତେ ସଙ୍କୋଚନ୍ତି ବାଣୀ ଶେଷ ॥୨୮୯॥
ଦୂତେ ରାମଙ୍କ ପବିତ୍ର ପୁରେ ପ୍ରବେଶିରେ । ନଗର ଶୋଭା ବିଲୋକି ହରଷ ହୋଇଲେ ॥
ନୃପଙ୍କ ଦ୍ୱାରେ ସନ୍ଦେଶ ଜଣାନ୍ତେ ସେ ଯାଇ । ଶୁଣି ଦଶରଥ ଶୀଘ୍ର ଆଣିଲେ ଡକାଇ ॥୧॥
ପ୍ରଣାମ କରି ସେମାନେ ପତ୍ର ତାହୁଁ ଦେଲେ । ପ୍ରମୋଦିତେ ମହୀପତି ନିଜେ ଉଠି ନେଲେ ॥
ପଢନ୍ତେ ପତ୍ର ନୟନୁ ଝରିଲା ଲୋତକ । ହୋଇଲା ଗଦ୍‌ଗଦ ବକ୍ଷ ଶରୀର ପୁଲକ ॥୨॥
ରାମ ଲକ୍ଷ୍ମଣ ହୃଦୟେ, କରେ ବର ପତ୍ର । ରହିଗଲେ, ଖଟା ମିଠା କହି ନ ପାରନ୍ତି ॥
ଧୈର୍ଯ୍ୟ ଧରିଣ ଆବର ପତ୍ରିକା ପଢିଲେ । ସତ୍ୟ ବାର୍ତ୍ତା ଶୁଣି ସଭ୍ୟେ ପ୍ରସନ୍ନ ହୋଇଲେ ॥୩॥

---

ଦିଶୁଥାଏ ॥୩॥ ସେ ସମୟରେ ଯେ ତିରହୁତ (ମିଥିଳା)କୁ ଦେଖୁଥାଏ, ତାହାକୁ ଚଉଦଭୁବନ ତୁଚ୍ଛ ଲାଗୁଥାଏ । ଜନକପୁରସ୍ଥ ସର୍ବନିମ୍ନ ବ୍ୟକ୍ତିର ଗୃହରେ ସେହି ସମୟରେ ଯେଉଁ ସମ୍ପଦ ସୁଶୋଭିତ ହେଉଥିଲା, ତାହା ଦେଖି ଇନ୍ଦ୍ର ମଧ୍ୟ ମୁଗ୍ଧ ହୋଇ ପଡୁଥିଲେ ॥ ୪ ॥ ଦୋହା —ଯେଉଁ ନଗରରେ ସାକ୍ଷାତ୍ ଲକ୍ଷ୍ମୀ କପଟରେ ସ୍ତ୍ରୀର ଶ୍ରେଷ୍ଠ ବେଶ ଧରିଣ କରି ବାସ କରନ୍ତି, ସେହି ନଗରର ଶୋଭା ବର୍ଣ୍ଣନ କରିବାକୁ ସରସ୍ୱତୀ ଓ ଶେଷ ସଂକୋଚ ବୋଧ କରନ୍ତି ॥ ୮୯ ॥ ଚୌପାଈ :—ଜନକଙ୍କ ଦୂତ ଶ୍ରୀରାମଚନ୍ଦ୍ରଙ୍କ ପବିତ୍ର ପୁରୀ ଅଯୋଧ୍ୟାରେ ଯାଇ ପହଞ୍ଚିଲେ । ସୁନ୍ଦର ନଗର ଦେଖି ସେ ଅତିଶୟ ଆନନ୍ଦିତ ହେଲେ । ରାଜଦ୍ୱାରକୁ ଯାଇ ସେ ଖବର ପଠାଇଲେ । ରାଜା ଦଶରଥ ଖବର ଶୁଣି ତାହାଙ୍କୁ ଡକାଇ ନେଲେ ॥ ୧ ॥ ଦୂତମାନେ ପ୍ରଣାମ କରି ରାଜାଙ୍କୁ ଚିଠି ଦେଲେ । ପ୍ରସନ୍ନ ମନରେ ମହୀପତି ସ୍ୱୟଂ ଉଠି ତାହା ଗ୍ରହଣ କଲେ । ଚିଠି ପଢନ୍ତେ ତାଙ୍କ ନେତ୍ରରୁ ପ୍ରେମାଶ୍ରୁ ଝରିବାକୁ ଲାଗିଲା । ଶରୀର ପୁଲକିତ ହେବାକୁ ଲାଗିଲା ଏବଂ ହୃଦୟ ଗଦ୍‌ଗଦ

ଖେଲତ ରହେ ତହାଁ ସୁଧି ପାଈ । ଆଏ ଭରତୁ ସହିତ ହିତ ଭାଈ ॥
ପୂଛତ ଅତି ସନେହଁ ସକୁଚାଈ । ତାତ କହାଁ ତେଁ ପାତୀ ଆଈ ॥୪॥
କୁସଲ ପ୍ରାନପ୍ରିୟ ବନ୍ଧୁ ଦୋଉ ଅହହିଁ କହହୁ କେହିଁ ଦେସ ।
ସୁନି ସନେହ ସାନେ ବଚନ ବାଚୀ ବହୁରି ନରେସ ॥୨୯୦॥
ସୁନି ପାତୀ ପୁଲକେ ଦୋଉ ଭ୍ରାତା । ଅଧିକ ସନେହୁ ସମାତ ନ ଗାତା ॥
ପ୍ରୀତି ପୁନୀତ ଭରତ କୈ ଦେଖୀ । ସକଲ ସଭାଁ ସୁଖୁ ଲହେଉ ବିସେଷୀ ॥୧॥
ତବ ନୃପ ଦୂତ ନିକଟ ବୈଠାରେ । ମଧୁର ମନୋହର ବଚନ ଉଚାରେ ॥
ଭୈଆ କହହୁ କୁସଲ ଦୋଉ ବାରେ । ତୁମ୍ହ ନୀକେଁ ନିଜ ନୟନ ନିହାରେ ॥୨॥
ସ୍ୟାମଲ ଗୌର ଧରେଁ ଧନୁ ଭାଥା । ବୟ କିସୋର କୌସିକ ମୁନି ସାଥା ॥
ପହିଚାନହୁ ତୁମ୍ହ କହହୁ ସୁଭାଊ । ପ୍ରେମ ବିବସ ପୁନି ପୁନି କହ ରାଊ ॥୩॥

---

ଖେଳୁଥିଲେ ତହିଁ ଏହି ସମାଚାର ପାଇ । ଆସିଲେ ଭରତ ସଙ୍ଗେ ଘେନି ସାନ ଭାଇ ॥
ପଚାରନ୍ତି ସସଙ୍କୋଚେ ଅତି ସ୍ନେହ ସହି । ତାତ, କେଉଁଠାରୁ ପତ୍ର ଆସିଅଛି କହି ॥୪॥
ସକୁଶଳେ ପ୍ରାଣ-ପ୍ରିୟ ବେନି ଭ୍ରାତା କେଉଁ ଦେଶରେ ଅଛନ୍ତି ।
ଶୁଣି ସ୍ନେହାପ୍ଲୁତ ବଚନ-ଅମୃତ ପଢ଼ିଲେ ପୁଣି ନୃପତି ॥୨୯୦॥
ଶୁଣନ୍ତେ ପତ୍ରିକା ବେନି ଭାଇ ପୁଲକିତ । ଅଧିକ ସ୍ନେହରେ ହେଲା ହୃଦୟ ପୂରିତ ॥
ଦେଖି ଭରତଙ୍କ ପ୍ରୀତି ପବିତ୍ର ବିଶ୍ୱାସ । ସର୍ବେ ସଭାସଦ ହେଲେ ପରମ ଉଲ୍ଲାସ ॥୧॥
ତହୁଁ ଦୂତଙ୍କୁ ନିକଟେ ବସାଇ ରାଜନ । ଭାଷିଲେ ମୃଦୁ ମଞ୍ଜୁଳ ମଧୁର ବଚନ ॥
କୁଶଳ ଶୁଣାଅ ବେନି ବାଳକଙ୍କ, ଭାଇ । ତୁମ୍ଭେ ନିଜେ ଭଲ ରୂପେ ଦେଖିଛ କି ଥାଇ ॥୨॥
ଶ୍ୟାମଳ ଗଉର ଧନୁର୍ବାଣ ଧରିଛନ୍ତି । କିଶୋର-ବୟସ, ବିଶ୍ୱାମିତ୍ର ସଙ୍ଗେ 'ଛନ୍ତି ॥
ଚିହ୍ନି ଅଛ ଯେବେ କହ ସ୍ୱଭାବ ମୋ ଆଗେ । ବାରମ୍ବାର ପଚାରନ୍ତି ନୃପ ଅନୁରାଗେ ॥୩॥

---

ହୋଇ ଆସିଲା ॥ ୨ ॥ ହୃଦୟରେ ରାମ ଓ ଲକ୍ଷ୍ମଣ ଏବଂ କରରେ ସୁନ୍ଦର ପତ୍ର । ରାଜା ତାହା ହାତରେ ଧରି ରହିଗଲେ । ମାତ୍ର ଖଟାମିଠା, କିଛି କହିପାରୁ ନ ଥା'ନ୍ତି । ପୁଣି ଧୈର୍ଯ୍ୟ ଧରି ସେ ପତ୍ରିକା ପାଠ କଲେ । ସମସ୍ତ ସଭା ସତ୍ୟ କଥା ଶୁଣି ଆନନ୍ଦିତ ହୋଇ ଉଠିଲା ॥ ୩ ॥ ଭରତ ତାଙ୍କ ମିତ୍ରଗଣ ଓ ଭାଇ ଶତ୍ରୁଘ୍ନଙ୍କ ସଙ୍ଗେ ଯେଉଁଠାରେ ଖେଳୁଥିଲେ, ସେହିଠାରେ ସମାଚାର ପାଇ ସେ ପିତାଙ୍କ ନିକଟରେ ଆସି ପହଞ୍ଚିଲେ । ଅତିଶୟ ପ୍ରେମ ସହିତ ସେ ପଚାରୁଥା'ନ୍ତି "ପିତାଜୀ ! ଚିଠି କେଉଁଠାରୁ ଆସିଛି ? ॥ ୪ ॥ ଦୋହା :—ଆମ ପ୍ରାଣଠାରୁ ପ୍ରିୟତର ଦୁଇ ଭାଇ ଆମର, କୁହନ୍ତୁ ତ, ସକୁଶଳ ଅଛନ୍ତି କି ନାହିଁ ? ସେମାନେ କେଉଁ ଦେଶରେ ଅଛନ୍ତି ? ସ୍ନେହାପ୍ଲୁତ ଏ ବଚନ ଶୁଣି ରାଜା ପୁଣି ଥରେ ଚିଠି ପଢ଼ିଲେ ॥ ୨୯୦ ॥ ଚୌପାଇ :—ଚିଠି ଶୁଣି ଦୁଇ ଭାଇ ପୁଲକିତ ହୋଇଗଲେ । ସ୍ନେହ ଏତେ ଅଧିକ ହୋଇଗଲା ଯେ ତାହା ଶରୀରରେ ସମ୍ଭାଳୁ ନ ଥାଏ । ଭରତଙ୍କ ପବିତ୍ର ପ୍ରେମ ଓ ବିଶ୍ୱାସ ଦେଖି ସମସ୍ତ ସଭା ବିଶେଷ ସୁଖ ଲାଭ

ଜା ବନ ତେଁ ମୁନି ଗଏ ଲିଓ୍ୱାଈ । ତବ ତେଁ ଆଜୁ ସାଁଚ ସୁଧି ପାଈ ॥
କହହୁ ବିଦେହ କଓ୍ୱନ ବିଧି ଜାନେ । ସୁନି ପ୍ରିୟ ବଚନ ଦୂତ ମୁସୁକାନେ ॥୪॥
ସୁନହୁ ମହୀପତି ମୁକୁଟ ମନି ତୁମ୍ହ ସମ ଧନ୍ୟ ନ କୋଉ ।
ରାମୁ ଲଖନୁ ଜିନ୍ହ କେ ତନୟ ବିସ୍ୱ ବିଭୂଷନ ଦୋଉ ॥୨୯୧॥
ପୂଛନ ଜୋଗୁ ନ ତନୟ ତୁମ୍ହାରେ । ପୁରୁଷସିଂଘ ତିହୁ ପୁର ଉଜିଆରେ ॥
ଜିନ୍ହ କେ ଜସ ପ୍ରତାପ କେଁ ଆଗେ । ସସି ମଲିନ ରବି ସୀତଲ ଲାଗେ ॥୧॥
ତିନ୍ହ କହଁ କହିଅ ନାଥ କିମି ଚୀହ୍ନେ । ଦେଖିଅ ରବି କି ଦୀପ କର ଲୀହ୍ନେ ॥
ସୀୟ ସ୍ୱୟଂବର ଭୂପ ଅନେକା । ସମିଟେ ସୁଭଟ ଏକ ତେଁ ଏକା ॥୨॥

---

ଯେଉଁବନରୁ ସଙ୍ଗେ ନେଇଗଲେ ମୁନିବର । ସତ୍ୟ ସମ୍ବାଦ ଆଜି ମୁଁ ପାଇଲି ତାଙ୍କର ॥
କହ, ବିଦେହ ନୃପତି କପରି ଜାଣିଲେ । ଶୁଣି ପ୍ରିୟବାଣୀ ଦୂତେ ମଧୁରେ ହସିଲେ ॥୪॥
ଶୁଣ ମହୀପତି-ମୁକୁଟଙ୍କ ମଣି ଧନ୍ୟ କେ ତୁମ୍ଭ ସମାନ ।
ବିଶ୍ୱ-ବିଭୂଷଣ ଶ୍ରୀରାମ ଲକ୍ଷ୍ମଣ ଯାହାଙ୍କ ବେନି ସନ୍ତାନ ॥୨୯୧॥
ପୁଚ୍ଛିବାର ଯୋଗ୍ୟ ସୁତ ନୁହନ୍ତି ତୁମ୍ଭର । ସେ ଭୁବନ-ପ୍ରକାଶକ ପୁରୁଷ-କେଶରୀ ॥
ଯାହାଙ୍କ ବିମଳ ଯଶ ପ୍ରତାପର ଆଗେ । ଶଶୀ ମଳିନ ତପନ ସୁଶୀତଳ ଲାଗେ ॥୧॥
ତାହାଙ୍କୁ କହୁଛ ନାଥ ଚହ୍ନିଲ କପରି । ରବି କି ଦେଖନ୍ତି କେହି ଦୀପ କରେ ଧରି ॥
ସୀତାଙ୍କ ସ୍ୱୟମ୍ବରରେ ନୃପତି ଅନେକ । ଏକାଠି ହୋଇଲେ ଶୂର ଏକୁ ବଳି ଏକ ॥୨॥

---

କଲି ॥ ୧ ॥ ତଦନନ୍ତର ରାଜା ଦୂତମାନଙ୍କୁ ପାଖରେ ବସାଇ ମନୋହର ଓ ମଧୁର ବଚନ ବୋଇଲେ, "ଭାଇ, କୁହତ, ଦୁଇ ଭାଇ କୁଶଳରେ ଅଛନ୍ତି ନା ? ତୁମେ ଆପଣା ନେତ୍ରରେ ସେ ଦୁହିଙ୍କୁ ଭଲ ରୂପେ ଦେଖିଛ ତ ? ॥ ୨ ॥ ଶ୍ୟାମଳ ଓ ଗୌର ଶରୀର ସେ ଦୁହେଁ ଧନୁ ଓ ତୂଣୀର ଧାରଣ କରିଥା'ନ୍ତି । କିଶୋର ଅବସ୍ଥା ତାଙ୍କର ଏବଂ ବିଶ୍ୱାମିତ୍ର ମୁନିଙ୍କ ସହିତ ସେମାନେ ଥାଆନ୍ତି । ତୁମେ ସେମାନଙ୍କୁ ଚହ୍ନିଛ ତ, ସେମାନଙ୍କ ସ୍ୱଭାବ କୁହ ଭଲି ।" ରାଜା ଅତ୍ୟଧିକ ପ୍ରେମର ବଶୀଭୂତ ହୋଇ ବାରମ୍ବାର ଏହିପରି ଭାବରେ ପଚାରୁଥା'ନ୍ତି ॥ ୩ ॥ "ଭାଇ ! ଯେଉଁ ବନଠାରୁ ମୁନିବର ସେ ଦୁହିଙ୍କୁ ସଙ୍ଗରେ ନେଇଗଲେ, ସେହି ବନଠାରୁ ଆଜି ମାତ୍ର ଆମେ ସେମାନଙ୍କ ସତ୍ୟ ସମାଚାର ପାଇଲୁ ; କୁହ ତ, ମହାରାଜ ଜନକ ସେମାନଙ୍କୁ କପରି ଚହ୍ନିଲେ ?" ପ୍ରିୟ (ପ୍ରେମପୂର୍ଣ୍ଣ) ବଚନ ଶୁଣି ଦୂତମାନେ ମୃଦୁ ହାସ୍ୟ ପ୍ରକାଶ କଲେ ॥ ୪ ॥ ଦୋହା :—ଦୂତମାନେ କହିଲେ, "ହେ ମହୀପତି-ମୁକୁଟମଣି ! ଶୁଣନ୍ତୁ, ଆପଣଙ୍କ ପରି ଧନ୍ୟ ଆଉ କେହି ନାହାନ୍ତି । ବିଶ୍ୱବିଭୂଷଣ ଶ୍ରୀରାମଲକ୍ଷ୍ମଣଙ୍କ ସମାନ ଦୁଇ ପୁତ୍ର ଯାହାଙ୍କର, ତାଙ୍କଠାରୁ ବଳି ଭାଗ୍ୟବାନ୍ ଆଉ କିଏ ? ॥ ୨୯୧ ॥ ଚୌପାଈ :—ଆପଣଙ୍କର ପୁତ୍ରମାନେ ପଚାରିବା ଯୋଗ୍ୟ ନୁହନ୍ତି । ସେମାନେ ପୁରୁଷସିଂହ ଓ ପ୍ରକାଶସ୍ୱରୂପ । ତାଙ୍କର ଯଶ ସମ୍ମୁଖରେ ଶଶୀ ମଳିନ ଓ ପ୍ରତାପ ଆଗରେ ସୂର୍ଯ୍ୟ ମଧ୍ୟ ଶୀତଳ ଲାଗନ୍ତି ॥ ୧ ॥ ହେ ନାଥ !

ସଂଭୁ ସରାସନୁ କାହୁଁ ନ ଟାରା । ହାରେ ସକଲ ବୀର ବରିଆରା ॥
ତୀନି ଲୋକ ମହଁ ଜେ ଭଟମାନୀ । ସଭ କୈ ସକତି ସଂଭୁ ଧନୁ ଭାନୀ ॥୩॥
ସକଇ ଉଠାଇ ସରାସୁର ମେରୂ । ସୋଉ ହିୟଁ ହାରି ଗୟଉ କରି ଫେରୂ ॥
ଜେହିଁ କୌତୁକ ସିବସୈଲୁ ଉଠାୱା । ସୋଉ ତେହିଁ ସଭାଁ ପରାଭଉ ପାୱା ॥୪॥

ତହାଁ ରାମ ରଘୁବଂସମନି ସୁନିଅ ମହା ମହିପାଲ ।
ଭଂଜେଉ ଚାପ ପ୍ରୟାସ ବିନୁ ଜିମି ଗଜ ପଂକଜ ନାଲ ॥୨୯୨॥

ସୁନି ସରୋଷ ଭୃଗୁନାୟକୁ ଆଏ । ବହୁତ ଭାଁତି ତିନ୍ହ ଆଁଖି ଦେଖାଏ ॥
ଦେଖି ରାମ ବଲୁ ନିଜ ଧନୁ ଦୀନ୍ହା । କରି ବହୁ ବିନୟ ଗବନୁ ବନ କୀନ୍ହା ॥୧॥
ରାଜନ ରାମୁ ଅତୁଲବଲ ଜୈସେଁ । ତେଜନିଧାନ ଲଖନୁ ପୁନି ତୈସେଁ ॥
କଂପହିଁ ଭୂପ ବିଲୋକତ ଜାକେଁ । ଜିମି ଗଜ ହରି କିସୋର କେ ତାକେଁ ॥୨॥

---

ଶମ୍ଭୁ ଶରାସନ କେହି ଟେକି ନ ପାରିଲେ । ବଳ ଦର୍ପ କରି ବୀର ସରବେ ହାରିଲେ ॥
ତିନିଲୋକେ ନିଜକୁ ଯେ ଯୋଦ୍ଧା ମଣୁଥିଲେ । ସମସ୍ତଙ୍କ ଶକ୍ତି ଶିବକୋଦଣ୍ଡ ଭାଙ୍ଗିଲା ॥୩॥
ଯେ ବାଣାସୁର ମେରୁକୁ ପାରଇ ଉଠାଇ । ସେ ପରିକମି ଫେରିଲେ ହୃଦେ ହାରି ଖାଇ ॥
କୌତୁକେ ଶିବ ଶଇଳ ଯେହୁ ଉଠାଇଲା । ସେ ମଧ୍ୟ ସେହି ସଭାରେ ଲାଞ୍ଛନ ପାଇଲା ॥୪॥

ତହିଁ ରାମଚନ୍ଦ୍ର ରଘୁବଂଶ-ମଣି ଶୁଣ ମହା ମହୀପତି ।
ଅନାୟାସେ ଚାପ ଭାଙ୍ଗିଲେ ଯେମନ୍ତ ପଦ୍ମନାଳ ଭାଙ୍ଗେ ହସ୍ତୀ ॥୨୯ ॥

ଶୁଣନ୍ତେ ସରୋଷେ ଭୃଗୁ ନାୟକ ଆସିଲେ । ନାନା ପ୍ରକାରେ ସେ କନ୍ଧ ଆଖି ତରାଟିଲେ ॥
ଦେଖି ରାମ ବଳ ଦେଇ ନିଜ ଶରାସନ । ବିନୟ ବହୁତ କରି ଗମିଲେ କାନନ ॥୧॥
ନୃପ ! ରାମ ଅନୁପମ ବଳୀ ଯେଉଁପରି । ତେଜ-ନିଧାନ ଲକ୍ଷ୍ମଣ ପୁଣି ସେହିପରି ॥
କମ୍ପିତ ହୁଅନ୍ତି ନୃପେ ଯାର ବିଲୋକନେ । ସିଂହ କିଶୋର ଚାହାନ୍ତେ କୁଞ୍ଜର ଯେସନେ ॥୨॥

---

ସେମାନଙ୍କୁ କିପରି ଚିହ୍ନିଲ ବୋଲି ପୁଣି ଆପଣ କିପରି ପଚାରୁଅଛନ୍ତି ? ଭଲା କେହି ହାତରେ ଦୀପ ଧରି ସୂର୍ଯ୍ୟଙ୍କୁ ଦେଖନ୍ତି କି ? ସୀତାଙ୍କ ସ୍ୱୟମ୍ବରରେ ଅନେକ ଅନେକ ରାଜା ଏବଂ ଏକୁ ବଳି ଆରେକ ଯୋଦ୍ଧା ଏକାଠି ହୋଇଥିଲେ ॥ ୨ ॥ କିନ୍ତୁ ଶିବଙ୍କ ଧନୁକୁ କେହି ଟାଳି ପାରିଲେ ନାହିଁ । ସମସ୍ତ ବଳବାନ୍ ବୀର ହାରିଗଲେ । ତିନି ଭୁବନରେ ଯେଉଁମାନେ ଆପଣା ଆପଣା ବୀରତା ବିଷୟରେ ଗର୍ବ କରୁଥିଲେ, ଶିବଧନୁ ସେ ସମସ୍ତଙ୍କ ଶକ୍ତି ଭାଙ୍ଗିଦେଲା ॥ ୩ ॥ ଯେଉଁ ବାଣାସୁର ସୁମେରୁକୁ ସୁଦ୍ଧା ଉଠାଇ ଦେଇପାରେ, ସେ ମଧ୍ୟ ହୃଦୟରେ ହାରି ପରିକ୍ରମା କରି ଫେରିଗଲା । ଯେଉଁ ରାବଣ ଅବଲୀଳାକ୍ରମେ କୈଳାସ ପର୍ବତକୁ ଉଠାଇ ଦେଇଥିଲା, ସେହି ରାବଣ ମଧ୍ୟ ଉକ୍ତ ସଭାରେ ପରାଜୟ ଲାଭ କଲା ॥ ୪ ॥ ଦୋହା '—ହେ ମହାରାଜ ! ଶୁଣନ୍ତୁ, ସେହି କ୍ଷେତ୍ରରେ ରଘୁବଂଶମଣି ଶ୍ରୀରାମଚନ୍ଦ୍ର ବିନା ପ୍ରୟାସରେ (ଅନାୟାସରେ) ହସ୍ତୀ ପଦ୍ମନାଡ଼ ଭାଙ୍ଗିଲା ପରି ତାହା ଭାଙ୍ଗିଦେଲେ ॥ ୨୯୨ ॥ ଚୌପାଈ '—ଧନୁ ଭାଙ୍ଗିବା କଥା

ଦେବ ଦେଖି ତବ ବାଲକ ଦୋଊ । ଅବ ନ ଆଁଖି ତର ଆୱତ କୋଊ ॥
ଦୂତ ବଚନ ରଚନା ପ୍ରିୟ ଲାଗୀ । ପ୍ରେମ ପ୍ରତାପ ବୀର ରସ ପାଗୀ ॥୩॥
ସଭା ସମେତ ରାଉ ଅନୁରାଗେ । ଦୂତନ୍ହ ଦେନ ନିଛାୱରି ଲାଗେ ॥
କହି ଅନୀତି ତେ ମୂଦହିଁ କାନା । ଧରମୁ ବିଚାରି ସବହିଁ ସୁଖୁ ମାନା ॥୪॥
ତବ ଉଠି ଭୂପ ବସିଷ୍ଠ କହୁଁ ଦୀନ୍ହି ପତ୍ରିକା ଜାଇ ।
କଥା ସୁନାଈ ଗୁରହି ସବ ସାଦର ଦୂତ ବୋଲାଇ ॥୨୯୩॥
ସୁନି ବୋଲେ ଗୁର ଅତି ସୁଖୁ ପାଈ । ପୁନ୍ୟ ପୁରୁଷ କହୁଁ ମହି ସୁଖ ଛାଈ ॥
ଜିମି ସରିତା ସାଗର ମହୁଁ ଜାହୀଁ । ଜଦ୍ୟପି ତାହି କାମନା ନାହୀଁ ॥୧॥

---

ଦେବ ! ବିଲୋକଣି ତୁମ୍ଭ ବେନି ବାଳକଙ୍କୁ । ଏବେ କେହି ନ ଆସନ୍ତି ନେତ୍ର ପସନ୍ଦକୁ ॥
ପ୍ରିୟ ଲାଗିଲା ଦୂତର ରଚନା ଲଳିତ । ପ୍ରେମ ପରାକ୍ରମ ବୀର ରସରେ ସେଚିତ ॥୩॥
ସମାଜ ସହ ନୃପତି ଅନୁରାଗ ଭରେ । ଦୂତଙ୍କୁ ଉତ୍ସର୍ଗ ଆଣି ଦିଅନ୍ତି ସାଦରେ ॥
କହି "ଅନୀତି" ସେମାନେ ଶ୍ରବଣ ବୁଜିଲେ । ଧରମ ବିଚାରି ସୁଖ ସମସ୍ତେ ଲଭିଲେ ॥୪॥
ଉଠି ନରନାଥ ବଶିଷ୍ଠଙ୍କୁ ତହୁଁ ଦେଲେ ସେ ପତ୍ରିକା ଯାଇ ।
ଶୁଣାଇଲେ ସବୁ ବୃତ୍ତାନ୍ତ ଗୁରୁଙ୍କୁ ସାଦରେ ଦୂତେ ଡକାଇ ॥୨୯୩॥
ଶୁଣି ଭାଷିଲେ ମୁନୀଶ ହୋଇ ପ୍ରମୋଦିତ । ପୁଣ୍ୟାତ୍ମା ନିମନ୍ତେ ମହୀ ସୁଖେ ଆଚ୍ଛାଦିତ ॥
ଯେସନେ ସରିତ ସିନ୍ଧୁରେ ପ୍ରବିଷ୍ଟ ହୁଅନ୍ତି । ଯଦ୍ୟପି ତାର କାମନା ନ ଥାଏ ତା' ପ୍ରତି ॥୧॥

---

ଶୁଣି ପରଶୁରାମ କ୍ରୋଧରେ ଗରଗର ହୋଇ ଆସିଲେ ଏବଂ ସେ ବହୁତ ପ୍ରକାରେ ଆଖି ଦେଖାଇଲେ । ଶେଷରେ ସେ ମଧ୍ୟ ଶ୍ରୀରାମଚନ୍ଦ୍ରଙ୍କ ବଳ ଦେଖି ତାଙ୍କୁ ନିଜ ଧନୁ ଦେଇ-ଦେଲେ ଏବଂ ବହୁତ ପ୍ରକାରେ ବିନତି କରି ବନକୁ ଗମନ କଲେ ॥ ୧ ॥ ହେ ରାଜନ୍ ! ରାମଚନ୍ଦ୍ର ଯେପରି ଅନୁପମବଳୀ, ସେହିପରି ଲକ୍ଷ୍ମଣ ମଧ୍ୟ ତେଜନିଧାନ । ତାହାଙ୍କର ଦେଖିବା ମାତ୍ରେ ହାତୀ ସିଂହଶିଶୁକୁ ଦେଖି କମ୍ପିଲା ପରି ରାଜାମାନେ ଭୟରେ କମ୍ପି ଉଠୁଥା'ନ୍ତି ॥ ୨ ॥ ହେ ଦେବ ! ଆପଣଙ୍କ ଦୁଇ ବାଳକଙ୍କୁ ଦେଖିବା ପରେ ଆମ ଆଖି ଆଗକୁ ଆଉ କେହି ଆସୁନାହାନ୍ତି ।" ପ୍ରେମ, ପ୍ରତାପ ଓ ବୀର ରସରେ ଆପ୍ଳୁତ ଦୂତମାନଙ୍କର ବଚନ-ରଚନା ସମସ୍ତଙ୍କୁ ଅତି ପ୍ରୀତିକର ବୋଧ ହେଲା ॥ ୩ ॥ ସଭାସଦଙ୍କ ସମେତ ରାଜା ପ୍ରେମମଗ୍ନ ହୋଇଗଲେ ଏବଂ ଦୂତଗଣଙ୍କୁ ଦାନ-ଉତ୍ସର୍ଗ ଦେଲେ । "ଏହା ଅନୀତି" କହି ଦୂତମାନେ ଆପଣା ଆପଣା ହାତରେ କାନ ବୁଜିବାକୁ ଲାଗିଲେ । ସେମାନଙ୍କ ଧର୍ମଯୁକ୍ତ ଆଚରଣ ଦେଖି ସମସ୍ତେ ସୁଖ ମଣିଲେ ॥ ୪ ॥ ଦୋହା — ତତ୍ପରେ ରାଜା ଉଠି ବଶିଷ୍ଠଙ୍କ ନିକଟକୁ ଗଲେ ଏବଂ ତାହାଙ୍କୁ ଚିଠି ଦେଲେ । ସେ ଆଦର ସହକାରେ ଦୂତମାନଙ୍କୁ ଡକାଇ ସମସ୍ତ କଥା ଗୁରୁଙ୍କୁ ଶୁଣାଇ ଦେଲେ ॥ ୨୯୩ ॥ ଚୌପାଇ :—ସମସ୍ତ ସମାଚାର ଶୁଣି ଏବଂ ଅତ୍ୟନ୍ତ ସୁଖ ଲାଭ କରି ଗୁରୁ କହିଲେ, "ପୁଣ୍ୟାତ୍ମା ପୁରୁଷଙ୍କ ନିମନ୍ତେ ପୃଥିବୀ ସୁଖରେ ପରିପୂର୍ଣ୍ଣ । ସମୁଦ୍ର ନିଜ ମନରେ ନଦୀଗଣଙ୍କ

ଜିମି ସୁଖ ସଂପତି ବିନହିଁ ବୋଲାଏଁ । ଧରମସୀଲ ପହିଁ ଜାହିଁ ସୁଭାଏଁ ॥
ତୁହ୍ମ ଗୁର ବିପ୍ର ଧେନୁ ସୁର ସେବୀ । ତସି ପୁନୀତ କୌସଲ୍ୟା ଦେବୀ ॥୨॥
ସୁକୃତୀ ତୁହ୍ମ ସମାନ ଜଗ ମାହୀଁ । ଭୟଉ ନ ହୈ କୋଉ ହୋନେଉ ନାହୀଁ ॥
ତୁହ୍ମ ତେ ଅଧିକ ପୁନ୍ୟ ବଡ଼ କାକେଁ । ରାଜନ ରାମ ସରିସ ସୁତ ଜାକେଁ ॥୩॥
ବୀର ବିନୀତ ଧରମ ବ୍ରତ ଧାରୀ । ଗୁନ ସାଗର ବର ବାଲକ ଚାରୀ ॥
ତୁହ୍ମ କହୁଁ ସର୍ବ କାଲ କଲ୍ୟାନା । ସଜହୁ ବରାତ ବଜାଇ ନିସାନା ॥୪॥

ଚଲହୁ ବେଗି ସୁନି ଗୁର ବଚନ ଭଲେହିଁ ନାଥ ସିରୁ ନାଇ ।
ଭୂପତି ଗୱନେ ଭବନ ତବ ଦୂତହ୍ନ ବାସୁ ଦେୱାଇ ॥୨୯୪॥

ରାଜା ସବୁ ରନିବାସ ବୋଲାଈ । ଜନକ ପତ୍ରିକା ବାଚି ସୁନାଈ ॥
ସୁନି ସଂଦେସୁ ସକଲ ହରଷାନୀଂ । ଅପର କଥା ସବ ଭୂପ ବଖାନୀଂ ॥୧॥

---

ଯେମନ୍ତେ ସୁଖ ସମ୍ପତ୍ତି ବିନା ଅଭିଳାଷେ । ସ୍ୱାଭାବିକ ପ୍ରବେଶନ୍ତି ଧର୍ମ-ଶୀଳ ପାଶେ ॥
ତୁମ୍ଭେ ଗୁରୁ-ମହୀସୁର-ସୁର-ଧେନୁ-ସେବୀ । ଯେମନ୍ତ ପବିତ୍ର ପୁଣି କଉଶଲ୍ୟା ଦେବୀ ॥୨॥
ସୁକୃତୀ ତୁମ୍ଭ ସମାନ ଏ ଜଗତେ କାହିଁ । ହୋଇ ନାହିଁ, ଏବେ ନାହିଁ, ହେବ ମଧ୍ୟ ନାହିଁ ॥
ତୁମ୍ଭଠାରୁ ପୁଣ୍ୟବଳ ଅଧିକ କାହାର । ରାଜନ, ରାମଙ୍କ ପରି ତନୟ ଯାହାର ॥୩॥
ବୀର ବିନୀତ ଆବର ଧର୍ମ-ବ୍ରତ-ଧାରୀ । ଗୁଣ-ସାଗର ବାଳକ ମନୋହର ଚାରି ॥
ତୁମ୍ଭ ହେତୁ ସର୍ବ କାଳ ଅଟଇ କଲ୍ୟାଣ । ସଜାଅ ବରଯାତ୍ରୀଙ୍କୁ ବଜାଇ ନିଶାଣ ॥୪॥

ଚାଲ ବେଗି, ଶୁଣି ଗୁରୁଙ୍କର ବାଣୀ ଚରଣେ ଶିର ନୁଆଁଇ ।
ଦୂତଙ୍କୁ ଦେଇଣ ନିବାସ ଭବନ ଗୃହେ ଗଲେ ନରସାଇଁ ॥୨୯୪॥

ମହିଷୀଗଣଙ୍କୁ ନୃପ ଡକାଇ ଆଣିଲେ । ଜନକ-ପ୍ରେରିତ ପତ୍ର ପଢ଼ି ଶୁଣାଇଲେ ॥
ଶୁଣି ସନ୍ଦେଶ ସମସ୍ତେ ହୋଇଲେ ପ୍ରସନ୍ନ । ଅନ୍ୟ ସବୁ କଥା ନୃପ କରିଲେ ବର୍ଣ୍ଣନ ॥୧॥

---

ମିଳନର କାମନା ପୋଷଣ ନ କଲେ ହେଁ ସେମାନେ ଯାଇ ତହିଁରେ ସ୍ୱତଃ ପସ୍ଥିତ ହୁଅନ୍ତି ॥୧॥ ସେହିପରି ସୁଖ ସମ୍ପତ୍ତି ଆପେ ଆପେ ଧର୍ମାତ୍ମା ପୁରୁଷ ନିକଟରେ ତାହାର କାମନା ବିନା ସ୍ୱାଭାବିକ ଭାବରେ ଯାଇ ପହଞ୍ଚେ । ତୁମେ ଯେପରି ଗୁରୁ, ବ୍ରାହ୍ମଣ, ଗୋ ଓ ଦେବତା-ମାନଙ୍କର ସେବକ, ସେହିପରି ପବିତ୍ର ମଧ୍ୟ କୌଶଲ୍ୟା ଦେବୀ ।' ୨ ॥ ତୁମ ସମାନ ପୁଣ୍ୟାତ୍ମା ଜଗତରେ ଅତୀତରେ କେହି ଜାତ ହୋଇ ନାହାନ୍ତି, ବର୍ତ୍ତମାନ ନାହାନ୍ତି ବା ଭବିଷ୍ୟତରେ ହେବେ ନାହିଁ ମଧ୍ୟ । ହେ ରାଜନ୍ ! ଯାହାଙ୍କର ରାମ ସମାନ ସୁତ, ସେହି ତୁମର ଅପେକ୍ଷା ଅଧିକ ପୁଣ୍ୟ ଆଉ କାହାର ହେବ ? ॥ ୩ ॥ ବୀର, ବିନମ୍ର, ଧର୍ମବ୍ରତଧାରୀ ଏବଂ ଗୁଣର ସାଗର ତୁମର ବାଳକ ଚାରିଗୋଟି । ତୁମ ନିମନ୍ତେ ସବୁ କାଳେ କଲ୍ୟାଣମୟ । ସୁତରାଂ ନିଶାଣ ବଜାଇ ବରଯାତ୍ରୀଙ୍କୁ ସଜାଅ ॥ ୪ ॥ ଦୋହା — ଏବଂ ଶୀଘ୍ର ଚାଲ ।'' ଗୁରୁଙ୍କର ଏପରି ବଚନ ଶୁଣି "ହେ ନାଥ ! ବହୁତ ଆଚ୍ଛା ।'' କହି ରାଜା ଗୁରୁପଦରେ ଶିର ନୁଆଁଇଲେ , ଏବଂ ଦୂତଙ୍କୁ ବାସଭବନ ଦିଆଇ ମହଲ

ପ୍ରେମ ପ୍ରଫୁଲ୍ଲିତ ରାଜହିଁ ରାନୀ । ମନହୁଁ ସିଖିନି ସୁନି ବାରିଦ ବାନୀ ॥
ମୁଦିତ ଅସୀସ ଦେହିଁ ଗୁରୁ ନାରୀଁ । ଅତି ଆନନ୍ଦ ମଗନ ମହତାରୀଁ ॥୨॥
ଲେହିଁ ପରସ୍ପର ଅତି ପ୍ରିୟ ପାତୀ । ହୃଦୟଁ ଲଗାଇ ଜୁଡ଼ାୱହିଁ ଛାତୀ ॥
ରାମ ଲଖନ କୈ କୀରତି କରନୀ । ବାରହିଁ ବାର ଭୂପବର ବରନୀ ॥୩॥
ମୁନି ପ୍ରସାଦୁ କହି ଦ୍ୱାର ସିଧାଏ । ରାନିହ୍ନ ତବ ମହିଦେବ ବୋଲାଏ ॥
ଦିଏ ଦାନ ଆନନ୍ଦ ସମେତା । ଚଲେ ବିପ୍ରବର ଆସିଷ ଦେତା ॥୪॥

ଜାଚକ ଲିଏ ହଁକାରି ଦୀହ୍ନି ନିଛାୱରି କୋଟି ବିଧି ।
ଚିରୁ ଜୀବହୁଁ ସୁତ ଚାରି ଚକ୍ରବର୍ତି ଦସରତ୍ଥ କେ ॥୨୯୫॥

କହତ ଚଲେ ପହିରେଁ ପଟ ନାନା । ହରଷି ହନେ ଗହଗହେ ନିସାନା ॥
ସମାଚାର ସବ ଲୋଗହ୍ନ ପାଏ । ଲାଗେ ଘର ଘର ହୋନ ବଧାଏ ॥୧॥

---

ପ୍ରେମେ ପ୍ରଫୁଲ୍ଲିତ ହୋଇ ଶୁଣନ୍ତି ରାଣୀ । ଯେସନେ ମୟୂରଗଣ ଶୁଣି ଘନ ବାଣୀ ॥
ପ୍ରମୋଦରେ ଗୁରୁପତ୍ନୀ ଆଶିଷ ଦିଅନ୍ତି । ଅତି ଆନନ୍ଦେ ନିମଗ୍ନ ଜନନୀ ହୁଅନ୍ତି ॥୨॥
ନେଇ ପରସ୍ପରେ ପ୍ରିୟ ପତ୍ର ଅତିଶୟ । ବକ୍ଷେ ଲଗାଇ ଶୀତଳ କରନ୍ତି ହୃଦୟ ॥
ରାମ ଲକ୍ଷ୍ମଣଙ୍କ କୀର୍ତ୍ତି କୃତିତ୍ୱ ବିସ୍ତାର । ବାରମ୍ବାର ବର୍ଣ୍ଣାଣନ୍ତି ପ୍ରେମେ ଦଶରଥଙ୍କ ॥୩॥
"ମୁନି କୃପା", କହି ଦରବାରକୁ ଗମିଲେ । ଏଥିଅନ୍ତେ ରାଣୀମାନେ ବିପ୍ରଙ୍କୁ ଡାକିଲେ ॥
ଦେଲେ ନାନାବିଧ ଦାନ ହୋଇଣ ଆନନ୍ଦ । ଆଶିଷ ଦେଇ ଯାଆନ୍ତି ବିପ୍ରବର ବୃନ୍ଦ ॥୪॥

ଯାଚକ-ଗଣଙ୍କୁ ସାଦରେ ହକାରି ଦିଅନ୍ତି ଉତ୍ସର୍ଗ ଧନ ।
"ଚକ୍ରବର୍ତ୍ତୀ ଦଶରଥ-ସୁତ ଚାରି ଲଭନ୍ତୁ ଚିର ଜୀବନ" ॥୨୯୫॥

କହି କହି ନାନାମତେ ବସ୍ତ୍ର ପିନ୍ଧି ଯା'ନ୍ତି । ହରଷିତେ ଘନ ଘୋଷେ ନିଶାଣ ବଜାନ୍ତି ॥
ଏହି ସମାଚାର ପୁର ନିବାସୀ ପାଇଲେ । ଘରେ ଘରେ ମାଙ୍ଗଳିକ ବାଜା ବଜାଇଲେ ॥୧॥

---

ମଧ୍ୟକୁ ଚାଲିଲେ ॥ ୨୯୪ । ଚୌପାଇ :—ରାଜା ସମସ୍ତ ରାଣୀଙ୍କୁ ଡକାଇ ଆଣିଲେ ଏବଂ ସେମାନଙ୍କୁ ଜନକଙ୍କ ପତ୍ର ପଢ଼ି ଶୁଣାଇଲେ । ସମାଚାର ଶୁଣି ସମସ୍ତ ରାଣୀ ଆନନ୍ଦିତ ହେଲେ ; ପୁନଶ୍ଚ ରାଜା ଦୂତମୁଖରୁ ଶୁଣିଥିବା ଅନ୍ୟ ସମସ୍ତ କଥା ବର୍ଣ୍ଣନା କଲେ ॥ ୧ ॥ ପ୍ରେମରେ ପ୍ରଫୁଲ୍ଲିତ ରାଣୀମାନେ ମୟୂରୀ ଘନଗର୍ଜନ ଶୁଣି ପ୍ରସନ୍ନ ହେଲା ପରି ବିରାଜିତା । ବୟସ୍କା ବୃଦ୍ଧା (ବା ଗୁରୁପତ୍ନୀ) ମାନେ ପ୍ରସନ୍ନ ହୋଇ ଆଶୀର୍ବାଦ ଦେଉଥା'ନ୍ତି । ମାତାମାନେ ଅତ୍ୟନ୍ତ ଆନନ୍ଦରେ ନିମଜ୍ଜିତା ॥ ୨ ॥ ସେହି ଅତିପ୍ରିୟ ପତ୍ରକୁ ନେଇ ସମସ୍ତେ ପରସ୍ପର ହୃଦୟରେ ଲଗାଇ ତାହାକୁ ଶୀତଳ କରୁ'ଥାନ୍ତି । ଭୂପଶ୍ରେଷ୍ଠ ଦଶରଥ ଶ୍ରୀରାମଲକ୍ଷ୍ମଣଙ୍କ କୀର୍ତ୍ତି ଓ କୃତିତ୍ୱର ବାରମ୍ବାର ବର୍ଣ୍ଣନ କଲେ ॥ ୩ ॥ "ଏସବୁ ମୁନିଙ୍କର କୃପା"—ଏହା କହି ସେ ବାହାରକୁ ଚାଲି ଆସିଲେ । ତତ୍ପରେ ରାଣୀମାନେ ବ୍ରାହ୍ମଣମାନଙ୍କୁ ଡକାଇଲେ ଏବଂ ଆନନ୍ଦ ସହକାରେ ସେମାନଙ୍କୁ ଦାନ ଦେଲେ । ଶ୍ରେଷ୍ଠ ବ୍ରାହ୍ମଣଗଣ ଆଶୀର୍ବାଦ ଦେଇ ଚାଲିଗଲେ ॥ ୪ ॥ ସୋରଠା -

ଭୁବନ ଚାରି ଦସ ଭରା ଉଛାହୂ । ଜନକସୁତା ରଘୁବୀର ବିଆହୂ ॥
ସୁନି ସୁଭ କଥା ଲୋଗ ଅନୁରାଗେ । ମଗ ଗୃହ ଗଲୀଁ ସଁୱାରନ ଲାଗେ ॥୨॥
ଜଦ୍ୟପି ଅୱଧ ସଦୈବ ସୁହାୱନି । ରାମ ପୁରୀ ମଂଗଲମୟ ପାୱନି ॥
ତଦପି ପ୍ରୀତି କୈ ରୀତି ସୁହାଈ । ମଂଗଲ ରଚନା ରଚୀ ବନାଈ ॥୩॥
ଧ୍ୱଜ ପତାକ ପଟ ଚାମର ଚାରୁ । ଛାୱା ପରମ ବିଚିତ୍ର ବଜାରୂ ॥
କନକ କଲସ ତୋରନ ମନି ଜାଲା । ହରଦ ଦୂବ ଦଧି ଅଚ୍ଛତ ମାଲା ॥୪॥

ମଂଗଲମୟ ନିଜ ନିଜ ଭବନ ଲୋଗନ୍ହ ରଚେ ବନାଇ ।
ବୀଥୀ ସୀଁଚୀଁ ଚତୁରସମ ଚୌକେଁ ଚାରୁ ପୁରାଇ ॥୨୯୬॥

ଜହଁ ତହଁ ଜୂଥ ଜୂଥ ମିଲି ଭାମିନି । ସଜି ନବ ସପ୍ତ ସକଲ ଦୁତି ଦାମିନି ॥
ବିଧୁବଦନୀଁ ମୃଗ ସାବକ ଲୋଚନି । ନିଜ ସରୂପ ରତି ମାନୁ ବିମୋଚନି ॥୧॥

---

ଚତୁର୍ଦ୍ଦଶ ଭୁବନରେ ବ୍ୟାପିଲା ଉତ୍ସାହ । ଜନକ-ନନ୍ଦିନୀ ରଘୁବୀରଙ୍କ ବିବାହ ॥
ଶୁଣି ଶୁଭ କଥା ଲୋକେ ଲଭ ଅନୁରାଗ । ସଜାଇବାକୁ ଲାଗିଲେ ଗଳି ଗୃହ ମାର୍ଗ ॥୨॥
ଯଦ୍ୟପି ଅଯୋଧ୍ୟା ସର୍ବ ସମୟେ ଶୋଭିନୀ । ସୁମଙ୍ଗଳମୟୀ ରାମ ନଗରୀ ପାବନୀ ॥
ତଥାପି ପ୍ରୀତିର ରୀତି ରଖିବା ନିମନ୍ତେ । ମଙ୍ଗଳ ରଚନା ସାଜ ରଚିଲେ ସମସ୍ତେ ॥୩॥
ଧ୍ୱଜା ପତାକା ରୁଚିର ଚୀର ଚାମରରେ । ଆବୃତ ହେଲା ବଜାର ଅତି ବିଚିତ୍ରରେ ॥
କମଳ କଳସ ମଣି ତୋରଣ ସୁନ୍ଦର ଦଧି ଦୂର୍ବାକ୍ଷତ ମାଳ ହରିଦ୍ରା ଆଦର ॥୪॥

ସୁମଙ୍ଗଳମୟ ନିଜ ନିଜ ଗୃହ ରଚିଲେ ଲୋକେ ସଜାଇ ।
ଗଳିମାନଙ୍କରେ ସୁଗନ୍ଧ ସିଞ୍ଚିଲେ ଚାରୁ କୋଷ୍ଠକ ପୁରାଇ ॥୨୯୬॥

ଇତସ୍ତତଃ ଯୂଥ ଯୂଥ ମିଳି ଶୁଭାଙ୍ଗିନୀ । ସର୍ଜିତ ଷୋଡ଼ଶ ସର୍ବେ ଦ୍ୟୁତି ସୌଦାମିନୀ ॥
ବିଧୁ-ବଦନୀ କୁରଙ୍ଗ-ଶାବକ-ଲୋଚନୀ । ନିଜ ସ୍ୱରୂପରେ ରତି-ମାନ-ବିମୋଚନୀ ॥୧॥

---

ପୁଣି ଭିକ୍ଷୁକମାନଙ୍କୁ ଡକାଇ କୋଟି କୋଟି ଦାନଉତ୍ସର୍ଗ ସେମାନଙ୍କୁ ପ୍ରଦାନ କଲେ । "ଚକ୍ରବର୍ତ୍ତୀ ମହାରାଜ ଦଶରଥଙ୍କ ଚାରିପୁତ୍ର ଚିରଂଜୀବୀ ହୁଅନ୍ତୁ ।"—॥୨୯୫॥ ଚୌପାଈ :—ଏହିପରି କହି ସେମାନେ ଅନେକ ପ୍ରକାର ସୁନ୍ଦର ସୁନ୍ଦର ବସ୍ତ୍ର ପିନ୍ଧି ଚାଲିଗଲେ । ଆନନ୍ଦିତ ହୋଇ ନାଗରାବାଳାମାନେ ଘନ ଘନ ନାଦରେ ନିଶାଣ ବଜାଇବାକୁ ଲାଗିଲେ ॥ ୧ ॥ ଜାନକୀ ଓ ଶ୍ରୀରାମଙ୍କ ବିବାହ ହେବ ବୋଲି ଚଉଦ ଭୁବନରେ ଉତ୍ସାହ ପୂରିଗଲା । ଏହି ଶୁଭ ସମାଚାର ପାଇ ଲୋକମାନେ ପ୍ରେମମଗ୍ନ ହୋଇପଡ଼ିଲେ ଏବଂ ରାସ୍ତା, ଘର ଓ ଗଳି (ବୀଥି)ମାନ ସଜାଇବାକୁ ଲାଗିଲେ ॥୨॥ ଯଦ୍ୟପି ଅଯୋଧ୍ୟାନଗରୀ ଶ୍ରୀରାମଙ୍କ ପବିତ୍ର ପୁରୀ ହୋଇଥିବା ହେତୁ ସଦା ଶୋଭାମୟୀ, ତଥାପି ପ୍ରୀତି ସହ ପ୍ରୀତିର ସଂଯୋଗ ସକାଶେ ସମସ୍ତେ ତାହାକୁ ମଙ୍ଗଳ ରଚନା (ସାଜସଜ୍ଜା)ରେ ସଜ୍ଜୀଭୂତ କଲେ ॥ ୩ ॥ ଧ୍ୱଜା, ପତାକା, ପରଦା ଓ ସୁନ୍ଦର ଚାମର ସମୂହରେ ସମଗ୍ର ବଜାର ଅତି ବିଚିତ୍ର ଭାବରେ ଆଚ୍ଛାଦିତ । ସୁବର୍ଣ୍ଣ କଳସ, ତୋରଣ, ମଣିଝାଲର,

ଗାଓହିଁ ମଂଗଲ ମଂଜୁଲ ବାନୀଁ । ସୁନି କଲ ରବ କଲକଂଠି ଲଜାନୀଁ ॥
ଭୂପ ଭବନ କିମି ଜାଇ ବଖାନା । ବିସ୍ୱ ବିମୋହନ ରଚେଉ ବିତାନା ॥୨॥
ମଂଗଲ ଦ୍ରବ୍ୟ ମନୋହର ନାନା । ରାଜତ ବାଜତ ବିପୁଲ ନିସାନା ॥
କତହୁଁ ବିରିଦ ବଂଦୀ ଉଚରହୀଁ । କତହୁଁ ବେଦ ଧୁନି ଭୂସୁର କରହୀଁ ॥୩॥
ଗାଓହିଁ ସୁନ୍ଦରି ମଂଗଲ ଗୀତା । ଲୈ ଲୈ ନାମୁ ରାମୁ ଅରୁ ସୀତା ॥
ବହୁତ ଉଛାହୁ ଭବନୁ ଅତି ଥୋରା । ମାନହୁଁ ଉମଗି ଚଲା ଚହୁ ଓରା ॥୪॥
ସୋଭା ଦସରଥ ଭବନ କଇ କୋ କବି ବରନୈ ପାର ।
ଜହାଁ ସକଲ ସୁର ସୀସ ମନି ରାମ ଲୀନ୍ହ ଅବତାର ॥୨୯୭॥

---

ଗାନ କରନ୍ତି ମଙ୍ଗଳ ମଧୁର ସ୍ୱରରେ । ଶୁଣି କଳଧ୍ୱନି କଳ-କଣ୍ଠୀ ଲଜ୍ଜା କରେ ॥
ଭୂପ ଭବନ କେମନ୍ତେ ହୋଇବ ବର୍ଣ୍ଣନ । ବିଶ୍ୱମୋହନ ବିତାନ ହୋଇଛି ରଚନ ॥୨॥
ମଙ୍ଗଳ ଦ୍ରବ୍ୟ ବିବିଧ ରୁଚିରେ ରାଜଇ । ପୁଣି ନାନା ଭାବେ ବାଦ୍ୟ ନିଷାଣ ବାଜଇ ॥
କାହିଁ କୁଳଯଶ ବନ୍ଦୀ ଜନେ ଉଚ୍ଚାରନ୍ତି । କାହିଁ ଅବା ବେଦ-ଧ୍ୱନି ଭୂସୁରେ କରନ୍ତି ॥୩॥
ଗାଆନ୍ତି ମଙ୍ଗଳ ଗୀତ ରମଣୀ ସୁନ୍ଦରୀ । ରାମ ସୀତାଙ୍କର ନାମ ନେଇ ନେଇ କରି ॥
ବହୁତ ଉତ୍ସାହ ସ୍ୱଳ୍ପ ଭବନ ଅଟଇ । ମନେ ହୁଏ ଚଉଦିଗେ ଉଛୁଳି ଚଳଇ ॥୪॥
ଦଶରଥଙ୍କର ଭବନର ଶୋଭା କେଉଁ କବି ପାରେ ବର୍ଣ୍ଣି ।
ଯହିଁ ଅବତାର ହେଲେ ରାମଚନ୍ଦ୍ର ସୁରଙ୍କ ମଉଡମଣି ॥୨୯୭॥

---

ହଳଦୀ, ଦୂବ, ଦହି, ଅକ୍ଷତ ଓ ମାଳାଗଣ ଦ୍ୱାରା— ॥ ୪ ॥ ଦୋହା ’—ଲୋକମାନେ ଆପଣା ଆପଣାର ଘରକୁ ସଜାଇ ମଙ୍ଗଳମୟ କରିଦେଲେ । ଗଳିମାନଙ୍କରେ ଚତୁଃସମ (ଚନ୍ଦନ, କେଶର, କସ୍ତୁରୀ ଓ କର୍ପୂର ନିର୍ମିତ ଏକ ସୁଗନ୍ଧିତ ଦ୍ରବ୍ୟ) ସିଞ୍ଚିଲେ ଏବଂ ଦ୍ୱାର ନିକଟରେ ସୁନ୍ଦର ଚତୁଷ୍କୋଣମାନ ନିର୍ମାଣ କଲେ ॥ ୨୯୬ ॥ ଚୌପାଇ ’— ବିଦ୍ୟୁତ୍-ବର୍ଣ୍ଣା, ବିଧୁବଦନା, କୁରଙ୍ଗ-ଶାବକ-ନୟନା ଏବଂ ନିଜ ନିଜ ସ୍ୱରୂପରେ ରତିର ଦର୍ପ ଦଳନ କରୁଥିବା ସୌଭାଗ୍ୟବତୀ ସ୍ତ୍ରୀମାନେ ଷୋହଳ ଶୃଙ୍ଗାର ସାଜି ଦଳଦଳ ହୋଇ ଇତସ୍ତତଃ ମନୋହର ବାଣୀରେ ମଙ୍ଗଳଗୀତ ଗାନ କରୁଥା’ନ୍ତି । ସେମାନଙ୍କ ସୁମଧୁର ସ୍ୱରକୁ ଶୁଣି କୋଇଲିମାନେ ମଧ୍ୟ ଲଜ୍ଜା ଅନୁଭବ କରୁଥା’ନ୍ତି । ବିଶ୍ୱବିମୋହନକାରୀ ବିତାନ ଯେଉଁଠି ନିର୍ମିତ ହୋଇଅଛି, ସେହି ରାଜମହଲର ବା ବର୍ଣ୍ଣନା କିପରି କରିବା ? ॥ ୧-୨ ॥ ବିବିଧ ମନୋହର ମାଙ୍ଗଳିକ ପଦାର୍ଥ ଶୋଭିତ ହୋଇଥାଏ ଏବଂ ବହୁତ ବାଦ୍ୟନିଷାଣ ବାଜୁଥାଏ । କେଉଁଠି ଭାଟମାନେ କୁଳକୀର୍ତ୍ତି ଗାନ କରୁଅଛନ୍ତି ତ କାହିଁ ବ୍ରାହ୍ମଣଗଣ ବେଦଧ୍ୱନି କରୁଅଛନ୍ତି ॥୩॥ ସୁନ୍ଦରୀ ସ୍ତ୍ରୀମାନେ ଶ୍ରୀରାମ ଓ ସୀତାଙ୍କ ନାମ ଉଚ୍ଚାରଣପୂର୍ବକ ମଙ୍ଗଳଗୀତ ଗାନ କରୁଅଛନ୍ତି । ଉତ୍ସାହ ବହୁତ, କିନ୍ତୁ ମହଲ ଅତି କ୍ଷୁଦ୍ର । ତେଣୁ ସତେ ଯେମିତି ଉତ୍ସାହ-ସ୍ରୋତ ଉକ୍ତ ମହଲରେ ସମ୍ଭାଳି ନ ପାରି ଉଚ୍ଛୁଳିପଡ଼ି ଚତୁର୍ଦ୍ଦିଗରେ ବହିଯାଉଛି ॥ ୪ ॥ ଦୋହା ।—ସମସ୍ତ ଦେବତାଗଣଙ୍କ

ଭୂପ ଭରତ ପୁନି ଲିଏ ବୋଲାଇ । ହୟ ଗୟ ସ୍ୟଂଦନ ସାଜହୁ ଜାଇ ॥
ଚଲହୁ ବେଗି ରଘୁବୀର ବରାତା । ସୁନତ ପୁଲକ ପୂରେ ଦୋଉ ଭ୍ରାତା ॥୧॥
ଭରତ ସକଲ ସାହନୀ ବୋଲାଏ । ଆୟସୁ ଦୀହ୍ନ ମୁଦିତ ଉଠି ଧାଏ ॥
ରଚି ରୁଚି ଜୀନ ତୁରଗ ତିହ୍ନ ସାଜେ । ବରନ ବରନ ବର ବାଜି ବିରାଜେ ॥୨॥
ସୁଭଗ ସକଲ ସୁଠି ଚଂଚଲ କରନୀ । ଅୟ ଇବ ଜରତ ଧରତ ପଗ ଧରନୀ ॥
ନାନା ଜାତି ନ ଜାହିଁ ବଖାନେ । ନିଦରି ପବନୁ ଜନୁ ଚହତ ଉଡାନେ ॥୩॥
ତିହ୍ନ ସବ ଛୟଲ ଭଏ ଅସବାରା । ଭରତ ସରିସ ବୟ ରାଜକୁମାରା ॥
ସବ ସୁନ୍ଦର ସବ ଭୂଷନଧାରୀ । କର ସର ଚାପ ତୂନ କଟି ଭାରୀ ॥୪॥
ଛରେ ଛବୀଲେ ଛୟଲ ସବ ସୂର ସୁଜାନ ନବୀନ ।
ଜୁଗ ପଦଚର ଅସବାର ପ୍ରତି ଜେ ଅସିକଲା ପ୍ରବୀନ ॥୨୯୮॥

---

ଭୂପ ଭରତଙ୍କୁ ପୁଣି ନେଇଣ ଡକାଇ । ଆଦେଶିଲେ, ହୟ ଗଜ ରଥ ସାଜ ଯାଇ ॥
ଚାଲ ଶୀଘ୍ର, ରଘୁବୀର ବରଜାତ୍ରି ଯେନ । ଶୁଣି ପୁଲକେ ପ୍ରଫୁଲ୍ଲ ହେଲେ ଭ୍ରାତା ବେନି ॥୧॥
ଭରତ ସକଲ ଅଶ୍ୱପାଳଙ୍କୁ ଡାକିଲେ । ଆଦେଶ ଦିଅନ୍ତେ ଉଠି ହରଷେ ଧାଇଁଲେ ॥
ଯଥାଯୋଗ୍ୟ ଜିନ କଷି ତୁରଙ୍ଗ ସାଜନ୍ତି । ବିଭିନ୍ନ ବର୍ଣ୍ଣର ବର ବାଜି ବିରାଜନ୍ତି ॥୨॥
ଚଞ୍ଚଳ ଗତି ସମସ୍ତେ ମନୋହର ଅତି । ତପ୍ତ ଲୌହ ପରି ପଦ ଧରାରେ ଧରନ୍ତି ॥
ନାନା ଜାତି ହୟ ଯେତ ନ ହୁଏ ବର୍ଣ୍ଣନ । ଉଡିବାକୁ ଚାହାନ୍ତି ବା ନିନ୍ଦି ପ୍ରଭଞ୍ଜନ ॥୩॥
ଆରୂଢ ହେଲେ ଛଇଲେ ତାହାଙ୍କ ଉପରେ । ଭରତ ସମ-ବୟସ୍କ ନୃପତି କୁମରେ ॥
ସର୍ବେ ସୁନ୍ଦର ସକଳ ଆଭୂଷଣଧାରୀ । କଟିରେ ତୂଣୀର କରେ ଚାପଶର ଭାରୀ ॥୪॥
ସମ ଛବି-ଯୁକ୍ତ ଛଇଲ ସମସ୍ତ ଶୂର ଚତୁର ନବୀନ ।
ପ୍ରତି ଅଶ୍ୱାରୋହୀ ସଙ୍ଗେ ଦି ପଦାତି ଯେ ଅସି କଳାପ୍ରବୀଣ ॥ ୯୮॥

---

ଶିରୋମଣି ରାମଚନ୍ଦ୍ର ଯେଉଁଠାରେ ଅବତାର ଗ୍ରହଣ କରିଅଛନ୍ତି, ଦଶରଥଙ୍କର ସେହି ରାଜମଣ୍ଡଳର ଶୋଭା କେଉଁ କବି ବର୍ଣ୍ଣନା କରି ପାରିବ ? ॥ ୨୯୭ ॥ ଚୌପାଈ — ତତ୍ପରେ ରାଜା ଭରତଙ୍କୁ ଡକାଇ ନେଲେ ଏବଂ କହିଲେ, "ଯାଇ ଘୋଡା, ହାତୀ ଓ ରଥ ସଜାଅ । ଶୀଘ୍ର ରାମଚନ୍ଦ୍ରଙ୍କ ବରଯାତ୍ରୀରେ ଚାଲ । ଏହା ଶୁଣିବା ମାତ୍ରେ ଭରତ ଓ ଶତ୍ରୁଘ୍ନ ଦୁଇ ଭାଇ ଆନନ୍ଦ-ପୁଲକରେ ପରିପୂର୍ଣ୍ଣ ହୋଇଗଲେ ॥ ୧ ॥ ଭରତ ସମସ୍ତ ଅଶ୍ୱପାଳଙ୍କୁ ଡାକିଲେ ଏବଂ ସେମାନଙ୍କୁ ଅଶ୍ୱଗଣ ସଜାଇବାକୁ ଆଦେଶ ଦେଲେ । ସେମାନେ ଉଠି ଆନନ୍ଦିତ ମନରେ ଦୌଡିଲେ । ତଦନନ୍ତର ସେମାନେ ଯଥାରୁଚି ଜିନ୍ କଷି ଅଶ୍ୱମାନଙ୍କୁ ସଜାଇଲେ । ବିବିଧ ରଙ୍ଗର ଶ୍ରେଷ୍ଠ ଅଶ୍ୱ ବିରାଜିତ ହେଲେ ॥୨॥ ସମସ୍ତ ଅଶ୍ୱ ଅତି ସୁନ୍ଦର ଓ ଚଞ୍ଚଳଗତି । ଜ୍ୱଳନ୍ତ ଲୌହ ଉପରେ ପାଦ ରଖିଲା ପରି ସେମାନେ ପୃଥିବୀ ଉପରେ ପାଦ ପକାଉଥା'ନ୍ତି । ଅନେକ ଜାତିର ଅଶ୍ୱ, ସେମାନଙ୍କ ବର୍ଣ୍ଣନା କରି ହେବନାହିଁ । ସତେ ଯେମିତି ପବନକୁ ନିନ୍ଦା କରି ଉଡିବା ସେମାନଙ୍କ

ବାଁଧେଁ ବିରଦ ବୀର ରନ ଗାଢ଼େ । ନିକସି ଭଏ ପୁର ବାହେର ଠାଢେ ॥
ଫେରହିଁ ଚତୁର ତୁରଗ ଗତି ନାନା । ହରଷହିଁ ସୁନି ସୁନି ପନଓ୍ୱ ନିସାନା ॥୧॥
ରଥ ସାରଥିନ୍ହ ବିଚିତ୍ର ବନାଏ । ଧ୍ୱଜ ପତାକ ମନି ଭୂଷନ ଲାଏ ॥
ଚଓ୍ୱଁର ଚାରୁ କିଂକିନ ଧୁନି କରହୀଁ । ଭାନୁ ଜାନ ସୋଭା ଅପହରହୀଂ ॥୨॥
ସାଓ୍ୱଁକରନ ଅଗନିତ ହୟ ହୋତେ । ତେ ତିନ୍ହ ରଥନ୍ହ ସାରଥିନ୍ହ ଜୋତେ ॥
ସୁନ୍ଦର ସକଲ ଅଲଂକୃତ ସୋହେ । ଜିନ୍ହହି ବିଲୋକତ ମୁନି ମନ ମୋହେ ॥୩॥
ଜେ ଜଲ ଚଲହିଁ ଥଲହି କୀ ନାଈଂ । ଟାପ ନ ବୂଡ ବେଗ ଅଧିକାଈଂ ॥
ଅସ୍ତ୍ର ସସ୍ତ୍ର ସବୁ ସାଜୁ ବନାଈ । ରଥୀ ସାରଥିନ୍ହ ଲିଏ ବୋଲାଈ ॥୪॥

---

ବାନ୍ଧି ବୀର ବାନା ରଣ-ଧୀର ଯେ ବିପୁଳ । ବାହାର ପୁର ବାହାରେ ହେଲେ ଆସି ଠୁଳ ॥
ଚତୁରେ ନାନା ଗତିରେ ଘୋଡାଙ୍କୁ ବୁଲନ୍ତି । ବାଦ୍ୟ ଧ୍ୱନି ଶୁଣି ଶୁଣି ହରଷ ହୁଅନ୍ତି ॥୧॥
ସାରଥି ନିକର ରଥ ବିଚିତ୍ରେ ସାଜିଲେ । ଧ୍ୱଜା ପତାକା କନକ ଭୂଷଣେ ରଚିଲେ ॥
ଚାରୁ ଚାମର କିଙ୍କିଣୀ କଳରବ କରେ । ଦିନ-ନାୟକ ସ୍ୟନ୍ଦନ ଶୋଭା ଅପହରେ ॥୨॥
ଶ୍ୟାମ-କର୍ଣ୍ଣ ଅଗଣିତ ଥିଲେ ଦିବ୍ୟ ହୟ । ତାହାଙ୍କୁ ରଥେ ଯୋଚିଲେ ସାରଥି ନିଚୟ ॥
ସୁନ୍ଦର ସର୍ବାଲଙ୍କାର ଭୂଷିତ ଶୋଭନ । ଯାହାଙ୍କୁ ଅବଲୋକନ୍ତେ ମୋହେ ମୁନି ମନ ॥୩॥
ଯେ ସ୍ଥଳ ସମ ଗମନ କରନ୍ତି ଜଳରେ । ଟାପୁ ନ ବୁଡ଼ଇ ଅତି ଅଧିକ ବେଗରେ ॥
ଅସ୍ତ୍ରଶସ୍ତ୍ର ଆଦି ସାଜ ସମସ୍ତ ସଜାଇ । ରଥୀଙ୍କୁ ସାରଥିମାନେ ଆଣିଲେ ଡକାଇ ॥୪॥

---

ଲକ୍ଷ୍ୟ ବୋଲି ଜଣାପଡୁଥାଏ ॥ ୩ ॥ ସେହି ସବୁ ଅଶ୍ୱଙ୍କ ଉପରେ ଭରତଙ୍କ ସମ-ବୟସ୍କ ଛଇଳ ରାଜକୁମାରମାନେ ଆରୂଢ ହେଲେ । ସେମାନେ ସମସ୍ତେ ସୁନ୍ଦର ଓ ସକଳ ପ୍ରକାର ଆଭୂଷଣରେ ଭୂଷିତ ହୋଇଥା'ନ୍ତି । ସେମାନଙ୍କ ହାତରେ ବାଣ ଓ ଧନୁ ଥାଏ ଏବଂ କଟିରେ ଖାପ (ଓଜନିଆ) ତୂଣୀର ବନ୍ଧା ହୋଇ ରହିଥାଏ ॥ ୪ ॥ ଦୋହା — ସମସ୍ତେ ବଛା ବଛା, ଛବିଲ ଛଇଲ, ଶୂର, ଚତୁର ଓ ନବୀନ । ପ୍ରତି ଅଶ୍ୱାରୋହୀ ସହିତ ଦୁଇ ଜଣ ଲେଖାଏଁ ପଦାତିକ ସିପାହୀ ଥାଆନ୍ତି । ସେ ଦୁହେଁ ତରବାରି ଚଳାଇବା କଳାରେ ଅତି ନିପୁଣ ॥ ୨୯୮ ॥ ଚୌପାଈ —ଶୂରବୀରବାନା ବାନ୍ଧି ରଣଧୀର ବୀରଗଣ ସମସ୍ତେ ବାହାର ନଗରର ବାହାରେ ଆସି ଠୁଳ ହେଲେ । ସେହି ଚତୁରମାନେ ଆପଣା ଆପଣା ଅଶ୍ୱକୁ ବିବିଧ ଗତିରେ ଚଳାଉଥା'ନ୍ତି ' ଭେରୀ ଓ ନାଗରାର ଧ୍ୱନି ଶୁଣି ଶୁଣି ସେମାନେ ଆନନ୍ଦିତ ହେଉଥା'ନ୍ତି ॥ ୧ ॥ ସାରଥିମାନେ ଧ୍ୱଜା, ପତାକା, ମଣି ଓ ଆଭୂଷଣ ଯୋଗେ ରଥଗୁଡିକୁ ବିଚିତ୍ର ଓ 'ବିଳକ୍ଷଣଯୁକ୍ତ କରିଦେଲେ । ସେ ସବୁଥିରେ ସୁନ୍ଦର ଚାମର ଲାଗିଥାଏ ଏବଂ କିଙ୍କିଣୀମାନ ସୁନ୍ଦର ଶବ୍ଦ କରୁଥାଏ । ସେହି ରଥଗୁଡିକ ଏତେ ସୁନ୍ଦର ଯେ, ଜଣାପଡୁଥାଏ, ସତେ ଯେମିତି ସୂର୍ଯ୍ୟଙ୍କ ରଥ-ଶୋଭାକୁ ସେମାନେ ଛଡାଇ ଆଣିଅଛନ୍ତି ॥ ୨ ॥ ଅଗଣିତ ଶ୍ୟାମଲକର୍ଣ୍ଣ ଅଶ୍ୱ ଥିଲେ । ସାରଥିଗଣ ସେମାନଙ୍କୁ ରଥମାନଙ୍କରେ ଯୋଚି ଦେଇଥା'ନ୍ତି । ସେହି ରଥମାନ ଦେଖିବାକୁ ବଡ ସୁନ୍ଦର ଓ

ଚଢି ଚଢି ରଥ ବାହେର ନଗର ଲାଗୀ ଜୁରନ ବରାତ ।
ହୋତ ସଗୁନ ସୁନ୍ଦର ସବହି ଜୋ ଜେହି କାରଜ ଜାତ ॥୨୯୯॥
କଲିତ କରିବରନ୍ହି ପରୀଁ ଅଁବାରୀଂ । କହି ନ ଜାହିଁ ଜେହି ଭାଁତି ସଁୱାରୀଂ ॥
ଚଲେ ମତ୍ତ ଗଜ ଘଂଟ ବିରାଜୀ । ମନହୁଁ ସୁଭଗ ସାୱନ ଘନ ରାଜୀ ॥୧॥
ବାହନ ଅପର ଅନେକ ବିଧାନା । ସିବିକା ସୁଭଗ ସୁଖାସନ ଜାନା ॥
ତିନ୍ହ ଚଢ଼ି ଚଲେ ବିପ୍ରବର ବୃନ୍ଦା । ଜନୁ ତନୁ ଧରେଁ ସକଲ ଶ୍ରୁତି ଛନ୍ଦା ॥୨॥
ମାଗଧ ସୂତ ବଂଦି ଗୁନଗାୟକ । ଚଲେ ଜାନ ଚଢି ଜୋ ଜେହି ଲାୟକ ॥
ବେସର ଊଁଟ ବୃଷଭ ବହୁ ଜାତୀ । ଚଲେ ବସ୍ତୁ ଭରି ଅଗନିତ ଭାଁତୀ ॥୩॥

---

ଚଢି ଚଢି ରଥେ ବରଜାତ୍ରି ବୃନ୍ଦ ପୁର ବାହାରେ ଜୁଟନ୍ତି ।
ହୁଏ ସମସ୍ତଙ୍କ ସୁନ୍ଦର ଶକୁନ ଯେ ଯେଉଁ କାର୍ଯ୍ୟେ ଗମନ୍ତି ॥୨୯୯॥
ରମ୍ୟ କରିବର ପୃଷ୍ଠେ ହାଉଦା ପଡନ୍ତେ । କହି ନ ହୁଅଇ ଶୋଭା ଶୋଭଇ ଯେମନ୍ତେ ॥
ଚଳିଲେ ମତ୍ତମାତଙ୍ଗ ଗଳେ ଘଣ୍ଟା ସାଜି । ଅବା ସୁନ୍ଦର ଶ୍ରାବଣ ବଳାହକ-ରାଜି ॥୧॥
ଅନେକ ପ୍ରକାର ପୁଣି ଇତର ବାହନ । ପାଲିଙ୍କି ସୁରମଣୀୟ ସୁଖାସନ ଯାନ ॥
ତହିଁରେ ଚଢି ଚାଲିଲେ ବିପ୍ରବର ବୃନ୍ଦ । ମନେହୁଏ ତନୁଧାରୀ ସର୍ବେ ଶ୍ରୁତି ଛନ୍ଦ ॥୨॥
ବନ୍ଦୀ ଭାଟ ସୂତ ଗୁଣ-ଗାୟକ ନିକରେ । ଚଳିଲେ ଚଢିଣ ଯଥା ଉଚିତ ଯାନରେ ॥
ଖଚର ଉଷ୍ଟ୍ର ବୃଷଭ ପଶୁ ଅଗଣିତ । ଗମିଲେ ପୃଷ୍ଠେ ଲଦିଣ ପଦାର୍ଥ ଅମିତ ॥୩॥

---

ଅଳଂକୃତ ହୋଇ ସୁଶୋଭିତ ହେଉଥାଏ । ସେଗୁଡିକୁ ଦେଖି ମୁନିଗଣଙ୍କ ମନ ସୁଦ୍ଧା ବିମୁଗ୍ଧ ହୋଇଯାଉଥାଏ ॥ ୩ ॥ ସେମାନେ ଜଳରେ ମଧ୍ୟ ସ୍ଥଳ ପରି ଗମନ କରି ପାରୁଥା'ନ୍ତି । ବେଗର ଆଧିକ୍ୟ ହେତୁ ସେମାନଙ୍କର ଟାପୁ ପାଣିରେ ବୁଡୁ ନ ଥାଏ । ଅସ୍ତ୍ରଶସ୍ତ୍ର ଓ ସମସ୍ତ ସାଜ ସଜାଇ ସାରଥିମାନେ ରଥୀମାନଙ୍କୁ ଡକାଇ ଆଣିରେ ॥ ୪ ॥ ଦୋହା —ରଥମାନଙ୍କ ଉପରେ ଚଢି ଚଢି ବରଯାତ୍ରି ବୃନ୍ଦ ନଗର ବାହାରେ ଆସି ଜୁଟିଲେ । ଯେ ଯେଉଁ କାମରେ ଯାଉଥାଏ, ପ୍ରତ୍ୟେକଙ୍କୁ ସମସ୍ତ ସୁନ୍ଦର ଶକୁନ ଦିଶୁଥାଏ ॥ ୨୯୯ ॥ ଚୌପାଇ —ରମ୍ୟ ଶ୍ରେଷ୍ଠ ହସ୍ତୀ ଉପରେ ସୁନ୍ଦର ହାଉଦା ପଡିଥାଏ । ସେଗୁଡିକ ଯେଉଁପରି ସଜା ହୋଇଥାଏ, ତାହା ବର୍ଣ୍ଣନାତୀତ । ଉନ୍ମତ୍ତ ହସ୍ତିବୃନ୍ଦ ଘଣ୍ଟରେ ସୁଶୋଭିତ ହୋଇ (ଘଣ୍ଟି ବଜାଇ) ଚାଲୁଥିଲା ବେଳେ ଶ୍ରାବଣ ମାସର ସୁନ୍ଦର ବାଦଲସମୂହ ଆକାଶରେ ଚଳନ୍ତା ପରି ଦିଶୁଥା'ନ୍ତି ॥ ୧ ॥ ରଥାଦି ଅନେକ ପ୍ରକାର ବାହନ, ସୁନ୍ଦର ପାଲିଙ୍କି ଓ ସୁଖାସନ ଯାନ, ଏହିପରି ବହୁବିଧ ସବାରି ଚାଲିଥାଏ । ସେ ସବୁ ଉପରେ ଶ୍ରେଷ୍ଠ ବ୍ରାହ୍ମଣବୃନ୍ଦ ଚଢି ଚାଲିଥା'ନ୍ତି, ସତେ ଯେମିତି ସମସ୍ତ ବେଦର ଛନ୍ଦ ଶରୀର ଧାରଣ କରିଅଛନ୍ତି ॥ ୨ ॥ ମାଗଧ, ସୂତ, ଭାଟ ଓ ଗୁଣଗାୟକମାନେ ଆପଣା ଆପଣାର ଯୋଗ୍ୟ ଯାନରେ ଚଢି ଚଳିଲେ । ବହୁତ ଜାତିର ଖଚର, ଓଟ ଓ ବଳଦ ଆଦି ପଶୁ ଅସଂଖ୍ୟ ପ୍ରକାର ବସ୍ତୁ ପିଠି ଉପରେ ବୋହି ଚାଲିଲେ ॥ ୩ ॥

କୋଟିନ୍ହ କାଁୱରି ଚଲେ କହାରା । ବିବିଧ ବସ୍ତୁ କୋ ବରନୈ ପାରା ॥
ଚଲେ ସକଲ ସେବକ ସମୁଦାଈ । ନିଜ ନିଜ ସାଜୁ ସମାଜୁ ବନାଈ ॥୪॥
ସବ କେଁ ଉର ନିର୍ଭର ହରଷୁ ପୂରିତ ପୁଲକ ସରୀର ।
କବହିଁ ଦେଖିବେ ନୟନ ଭରି ରାମୁ ଲଖନୁ ଦୋଉ ବୀର ॥୩୦୦॥
ଗରଜହିଁ ଗଜ ଘଂଟା ଧୁନି ଘୋରା । ରଥ ରବ ବାଜି ହିଂସ ଚହୁଁ ଓରା ॥
ନିଦରି ଘନହି ଘୁମ୍ମରହିଁ ନିସାନା । ନିଜ ପରାଇ କଛୁ ସୁନିଅ ନ କାନା ॥୧॥
ମହା ଭୀର ଭୂପତି କେ ଦ୍ୱାରେଁ । ରଜ ହୋଇ ଜାଇ ପଷାନ ପୱାରେଁ ॥
ଚଢ଼ୀ ଅଟାରିନ୍ହ ଦେଖହିଁ ନାରୀଁ । ଲିଏଁ ଆରତୀ ମଂଗଲ ଥାରୀଁ ॥୨॥
ଗାୱହିଁ ଗୀତ ମନୋହର ନାନା । ଅତି ଆନଂଦୁ ନ ଜାଇ ବଖାନା ॥
ତବ ସୁମଂତ୍ର ଦୁଇ ସ୍ୟଂଦନ ସାଜୀ । ଜୋତେ ରବି ହୟ ନିଂଦକ ବାଜୀ ॥୩॥

---

ଚଳିଲେ ବାହୁଙ୍ଗୀ ଧରି ଭାରୁଆ ଅପାର । ବିବିଧ ବସ୍ତୁ କେ କରି ପାରିବ ସୁମାର ॥
ବୃନ୍ଦ ବୃନ୍ଦ ଠୁଳ ହୋଇ ସେବକ ସମାଜ । ଚଳିଲେ ସାଜି ରୁଚିର ନିଜ ନିଜ ସାଜ ॥୪॥
ସମସ୍ତଙ୍କ ହୃଦ ମୋଦେ ପରିପୂର୍ଣ୍ଣ ପୁଲକାବଳୀ ଶରୀରେ ।
କେବେ ବିଲୋକିବା ନେତ୍ର ପୂର୍ଣ୍ଣ କରି ଶ୍ରୀରାମ ଲକ୍ଷ୍ମଣ ବୀରେ ॥୩୦୦॥
ଗଜ ଗରଜନ ଘୋର ଘଣ୍ଟା ଘୋଷ ଅତି । ରଥ ରବ ହୟ ହିଁ ହିଁ ଶୁଭେ ଚଉକତି ॥
ନାଦନ୍ତି ନିଷାଣ ନିନ୍ଦି ନୀରଦ ନାଦକୁ । ନିଜ ପର କିଛି ଶୁଣି ନ ଯାଏ କାନକୁ ॥୧॥
ନୃପତିଙ୍କ ଦ୍ୱାରେ ଭିଡ଼ ହେଲା ଯେ ଦୁସ୍ତର । ଧୂଳି ହୋଇ ଯାଉଥିଲେ ଜଟିତ ପ୍ରସ୍ତର ॥
ନିରେଖନ୍ତି ନାରୀ ଚଢ଼ି ଅଟ୍ଟାଳି ଉପରେ । ମଙ୍ଗଳ ଆଳତି ଥାଳୀ ଘେନିଣ ହସ୍ତରେ ॥୨॥
ନାନା ମନୋହର ଗୀତ କରନ୍ତି ଗାୟନ । ପରମ ଆନନ୍ଦ କିବା ନ ହୁଏ ବର୍ଣ୍ଣନ ॥
ତହୁଁ ସୁମନ୍ତ୍ର ସାଜିଣ ସ୍ୟନ୍ଦନ ଉଭୟ । ରବି-ବାଜି-ବିନିନ୍ଦକ ଯୋଚି ତହିଁ ହୟ ॥୩॥

---

ବାହୁଙ୍ଗୀ ଧରି କୋଟି କୋଟି ଭାରବାହକ ଚଳିଲେ । ସେମାନେ ଯେତେ ପ୍ରକାର ବସ୍ତୁ ବୋହି ନେଇ ଯାଉଥା'ନ୍ତି, ସେ ସବୁର ବର୍ଣ୍ଣନା କିଏ କରିପାରିବ ? ସମସ୍ତ ସେବକ-ସମାଜ ଆପଣା ଆପଣାର ରୁଚିର ସାଜସମାଜ ସଜାଇ ଚଳିଲେ ॥ ୪ ॥ ଦୋହା — ସମସ୍ତଙ୍କ ହୃଦୟରେ ଅପାର ହର୍ଷ ଓ ଶରୀର ପୁଲକରେ ପରିପୂର୍ଣ୍ଣ । ସମସ୍ତଙ୍କର ଗୋଟିଏ ମାତ୍ର ଲାଳସା—ରାମ ଲକ୍ଷ୍ମଣ ଭାଇ ଦୁହିଙ୍କୁ ନେତ୍ର ପୁରାଇ କେବେ ଦେଖିବେ ॥୩୦୦॥ ଚୌପାଈ '—ଗଜମାନେ ଗର୍ଜନ କରୁଥାନ୍ତି, ସେମାନଙ୍କ ଘଣ୍ଟାସମୂହରୁ ଘୋର ଧ୍ୱନି ବାହାରୁଥାଏ । ଚତୁର୍ଦ୍ଦିଗରେ ରଥମାନଙ୍କର ଘର୍ଘର ଧ୍ୱନି ଓ ଅଶ୍ୱମାନଙ୍କର ହ୍ରେଷାରବ ଶୁଣାଯାଉଥାଏ । ବାଦଲମାନଙ୍କୁ ନିନ୍ଦା କରି ନିଷାଣସମୂହ ଘୋର ଶବ୍ଦ କରୁଥାଏ । ଆପଣାପରର କୌଣସି କଥା କାହାରି କାନକୁ ଶୁଣାଯାଉ ନ ଥାଏ ॥ ୧ ॥ ରାଜା ଦଶରଥଙ୍କ ଦ୍ୱାରରେ ଏତେ ଭାରି ଭିଡ଼ ହେଲା ଯେ, ସେଠାରେ ପଥର ଫିଙ୍ଗିଦେଲେ, ତାହା ମଧ୍ୟ ପେଷି ହୋଇ ଧୂଳି ହୋଇଯିବ । ନାରୀମାନେ ମଙ୍ଗଳଥାଳୀମାନଙ୍କରେ

ଦୋଉ ରଥ ରୁଚିର ଭୂପ ପହିଁ ଆନେ । ନହିଁ ସାରଦ ପହିଁ ଜାହିଁ ବଖାନେ ॥
ରାଜ ସମାଜୁ ଏକ ରଥ ସାଜା । ଦୂସର ତେଜ ପୁଂଜ ଅତି ଭ୍ରାଜା ॥୪॥
ତେହିଁ ରଥ ରୁଚିର ବସିଷ୍ଠ କହୁଁ ହରଷି ଚଢ଼ାଇ ନରେସୁ ।
ଆପୁ ଚଢ଼େଉ ସ୍ୟନ୍ଦନ ସୁମିରି ହର ଗୁରୁ ଗୌରି ଗନେସୁ ॥୩୦୧॥
ସହିତ ବଶିଷ୍ଠ ସୋହ ନୃପ କୈସେଁ । ସୁରଗୁରୁ ସଂଗ ପୁରନ୍ଦର ଜୈସେଁ ॥
କରି କୁଲ ରୀତି ବେଦ ବିଧି ରାଉ । ଦେଖି ସବହି ସବ ଭାଁତି ବନାଉ ॥୧॥
ସୁମିରି ରାମୁ ଗୁରୁ ଆୟସୁ ପାଈ । ଚଲେ ମହୀପତି ସଂଖ ବଜାଈ ॥
ହରଷେ ବିବୁଧ ବିଲୋକି ବରାତା । ବରଷହିଁ ସୁମନ ସୁମଂଗଲ ଦାତା ॥୨॥
ଭୟଉ କୋଲାହଲ ହୟ ଗୟ ଗାଜେ । ବ୍ୟୋମ ବରାତ ବାଜନେ ବାଜେ ॥
ସୁର ନର ନାରି ସୁମଂଗଲ ଗାଈଁ । ସରସ ରାଗ ବାଜହିଁ ସହନାଈଁ ॥୩॥

ଆଣିଲେ ବେନି ରୁଚିର ରଥ ନୃପ କତି । ବର୍ଣ୍ଣି ନ ପାରିବେ ଅତି ଶୋଭା ସରସ୍ୱତୀ ॥
ରାଜ ବିଭୂଷଣେ ଏକ ରଥ ବିଭୂଷିତ । ଅନ୍ୟ ଏକ ତେଜପୁଞ୍ଜେ ହୁଅଇ ଶୋଭିତ ॥୪॥
ସେ ରୁଚିର ରଥେ ଗୁରୁଙ୍କୁ ହରଷେ ଚଢାଇ ସ୍ୱୟଂ ନରେଶ ।
ଚଢିଲେ ସ୍ୟନ୍ଦନେ ସ୍ମରଣି ହର ଗୁରୁ ଗଉରୀ ଗଣେଶ ॥୩୦୧॥
ବଶିଷ୍ଠଙ୍କ ସହ ନୃପ ଶୋଭନ୍ତି ଯେମନ୍ତେ । ସୁରଗୁରୁ ସଙ୍ଗେ ଶୋଭେ ବାସବ ଯେମନ୍ତେ ॥
କରି କୁଳରୀତି ପୁଣି ବେଦ-ବିଧି ପୂତ । ଦେଖି ସମସ୍ତଙ୍କୁ ସବୁ ପ୍ରକାରେ ପ୍ରସ୍ତୁତ ॥୧॥
ସ୍ମରିଣ ରାମ, ଗୁରୁଙ୍କ ପାଇ ଅନୁମତ । ଯାତ୍ରା ଆରମ୍ଭିଲେ ଶଙ୍ଖ ବଜାଇ ଭୂପତ ॥
ହରଷେ ବରଜାତଙ୍କୁ ଦେଖି ବୃନ୍ଦାରକ । ବରଷନ୍ତି ପୁଷ୍ପ ମୋଦ-ମଙ୍ଗଳ-ଦାୟକ ॥୨॥
ହେଲା କୋଲାହଲ ହୟ ଗଜ ଗରଜନେ । ବ୍ୟୋମେ ବରଜାତ ମଧ୍ୟେ ବାଦ୍ୟବାଜେ ଘନେ ॥
ସୁର ନର ନାରୀ ଗାନ କରନ୍ତି ମଙ୍ଗଳ । ସରସ ରାଗେ ବାଜଇ ସେହେନାଇ କଳ ॥୩॥

ଆରତି ନେଇ ଅଟ୍ଟାଳିକା ଉପରେ ଚଢି ଏସବୁ ଦୃଶ୍ୟ ନିରୀକ୍ଷଣ କରୁଥା'ନ୍ତି ॥ ୨ ॥ ସେମାନେ ନାନା ପ୍ରକାରର ମନୋହର ସଙ୍ଗୀତ ଗାନ କରୁଥା'ନ୍ତି । ସେମାନଙ୍କର ପରମ ଆନନ୍ଦ ଭାଷାରେ ବର୍ଣ୍ଣନା କରି ହେବନାହିଁ । ସେତିକିବେଳେ ସୁମନ୍ତ ଦୁଇଟି ରଥ ସଜାଇ ପ୍ରତ୍ୟେକରେ ସୂର୍ଯ୍ୟଙ୍କ ଅଶ୍ୱଗଣଙ୍କୁ ନିନ୍ଦା କରୁଥିବା ଅଶ୍ୱଙ୍କୁ ଯୋଚିଲେ ॥ ୩ ॥ ତତ୍ପରେ ସେ ଉଭୟ ସୁନ୍ଦର ରଥ ରାଜା ଦଶରଥଙ୍କ ନିକଟକୁ ନେଇଆସିଲେ । ସରସ୍ୱତୀ ମଧ୍ୟ ସେହି ରଥ ଦୁଇଟିର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିପାରିବେ ନାହିଁ । ଗୋଟିଏ ରଥରେ ରାଜକୀୟ ଭୂଷଣାଦି ସାମଗ୍ରୀ ସଜାଗଲା । ଅନ୍ୟ ରଥଟି ତେଜପୁଞ୍ଜ ଓ ଅତ୍ୟନ୍ତ ଶୋଭାୟ-ମାନ ଥିଲା ॥୪॥ ଦୋହା —ସେହି ଦ୍ୱିତୀୟ ସୁନ୍ଦର ରଥରେ ରାଜା ବଶିଷ୍ଠଙ୍କୁ ସହର୍ଷ ଚଢାଇଲେ । ତତ୍ପରେ ସେ ଶିବ, ଗୁରୁ, ଗୌରୀ ଓ ଗଣେଶଙ୍କୁ ସ୍ମରଣ କରି ନିଜେ ଆଉ ଗୋଟିଏ ରଥ ଉପରେ ଚଢିଲେ ॥ ୩୦୧ ॥ ଚୌପାଇ :—ବଶିଷ୍ଠଙ୍କ ସହିତ ଯିବା ସମୟରେ ରାଜା ଦଶରଥ ଦେବଗୁରୁ ବୃହସ୍ପତିଙ୍କ ସହିତ ଇନ୍ଦ୍ର ବିରାଜମାନ ଥିଲା ପରି

ଘଂଟ ଘଂଟି ଧୁନି ବରନି ନ ଜାହୀଂ । ସରବ କରହିଁ ପାଇକ ଫହରାହୀଂ ॥
କରହିଁ ବିଦୂଷକ କଉତୁକ ନାନା । ହାସ କୁସଲ କଲ ଗାନ ସୁଜାନା ॥୪॥

ତୁରଗ ନଚାଵହିଁ କୁଅଁର ବର ଅକନି ମୃଦଂଗ ନିସାନ ।
ନାଗର ନଟ ଚିତଵହିଁ ଚକିତ ଡଗହିଁ ନ ତାଲ ବଁଧାନ ॥୩୦୨॥

ବନଇ ନ ବରନତ ବନୀ ବରାତା । ହୋହିଁ ସଗୁନ ସୁନ୍ଦର ସୁଭଦାତା ॥
ଚାରା ଚାଷୁ ବାମ ଦିସି ଲେଈ । ମନହୁଁ ସକଲ ମଂଗଲ କହି ଦେଈ ॥୧॥
ଦାହିନ କାଗ ସୁଖେତ ସୁହାଵା । ନକୁଲ ଦରସୁ ସବ କାହୁଁ ପାଵା ॥
ସାନୁକୂଲ ବହ ତ୍ରିବିଧ ବୟାରୀ । ସଘଟ ସବାଲ ଆଵ ବର ନାରୀ ॥୨॥

---

ବର୍ଣ୍ଣି ନ ହୁଅଇ ଘଣ୍ଟ ଘଣ୍ଟା ଧ୍ୱନି ଭାରୀ । ଦଣ୍ଡ କରନ୍ତି ପାଇକେ ଚରି ଫେର ମାରି ॥
ବିଦୂଷକେ କଉତୁକ କରନ୍ତି ପ୍ରଚୁର । ହାସ୍ୟ କୁଶଳ ମଧୁର ଗାୟନେ ଚତୁର ॥୪॥

ନଚାନ୍ତି ତୁରଙ୍ଗ କୁମାର ସକଳେ ଶୁଣି ମୃଦଙ୍ଗ ନିଷାଣ ।
ନାଗର ନର୍ତ୍ତକେ ଚାହାନ୍ତି ଚକିତେ ନ ଟଳେ ତାଳ ବନ୍ଧାଣ ॥୩୦୨॥

ବର୍ଣ୍ଣି ନ ହୁଏ ରଚନ ବରଜାତଙ୍କର । ହୁଅଇ ଶୁଭଦାୟକ ଶକୁନ ସୁନ୍ଦର ॥
ଚାରା ନୀଳକଣ୍ଠ ବାମ ଦିଗକୁ ନିଅଇ । ସମସ୍ତ ମଙ୍ଗଳ କହୁ କି ଅବା ଦିଅଇ ॥୧॥
ଡାହାଣେ ସୁକ୍ଷେତେ କାକ ହୁଏ ସୁଶୋଭିତ । ନକୁଳ ଦର୍ଶନ ସର୍ବେ ଲଭିଲେ ତୁରିତ ॥
ବହିଲା ତ୍ରିବିଧ ଅନୁକୂଳ ଗନ୍ଧବହ । ଆସନ୍ତି ସୁନ୍ଦରୀ ନାରୀ ଘଟ ଶିଶୁ ସହ ॥ ॥

---

ଶୋଭା ପାଉଥିଲେ । ବେଦବିଧି ଏବଂ କୁଳ-ରୀତି ଅନୁସାରେ ଦଶରଥ ସମସ୍ତ କାର୍ଯ୍ୟ ସମ୍ପାଦନ କରିଲେ ଏବଂ ସମସ୍ତଙ୍କୁ ସକଳ ପ୍ରକାରେ ପ୍ରସ୍ତୁତ ଦେଖି ଶ୍ରୀରାମଚନ୍ଦ୍ରଙ୍କୁ ସ୍ମରଣ କଲେ । ତତ୍ପରେ ଗୁରୁଙ୍କ ଆଜ୍ଞା ପାଇ ପୃଥିବୀ-ପତି ଦଶରଥ ଶଙ୍ଖ ବଜାଇ ଚାଲିଲେ । ବରଯାତ୍ରୀମାନଙ୍କୁ ଦେଖି ଦେବତାମାନେ ହର୍ଷିତ ହେଲେ ଏବଂ ସୁନ୍ଦର ମଙ୍ଗଳଦାୟକ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ ॥ ୧-୨ ॥ ଅଶ୍ୱ ଓ ଗଜମାନଙ୍କ ଗର୍ଜନ ଯୋଗେ ଚତୁର୍ଦ୍ଦିଗରେ ବଡ଼ କୋଳାହଳ ବ୍ୟାପିଗଲା । ଆକାଶରେ ଓ ବରଯାତ୍ରି ବୃନ୍ଦଙ୍କ ମଧ୍ୟରେ, ଉଭୟତ୍ର ବାଦ୍ୟ ବାଜିବାକୁ ଲାଗିଲା । ଦେବାଙ୍ଗନା ଓ ନାରୀମାନେ ସୁନ୍ଦର ମଙ୍ଗଳଗାନ କରିବାକୁ ଲାଗିଲେ ଏବଂ ସ୍ୱର ସରାଗରେ ସେହେଁକାଳୀମାନ ବାଜି ଉଠିଲା ॥୩॥ ଘଣ୍ଟା ଓ ଘଣ୍ଟିମାନଙ୍କର ଧ୍ୱନି ବର୍ଣ୍ଣନା କରାଯାଇପାରିବ ନାହିଁ । ପାଇକ ଓ ପହିଲମାନ-ମାନେ କସରତ ଓ ଦଣ୍ଡ-ଫେର ପ୍ରଭୃତି କରୁଥା'ନ୍ତି । ହାସ୍ୟରସ-ପରିବେଷଣରେ ନିପୁଣ ଓ ସୁନ୍ଦର ଗାନରେ ଚତୁର ବିଦୂଷକବୃନ୍ଦ ନାନା ପ୍ରକାରର କୌତୁକ କରୁଥାନ୍ତି ॥ ୪ ॥ ଦୋହା :—ସୁନ୍ଦର କୁମରମାନେ ମୃଦଙ୍ଗ ଓ ନିଷାଣର ଶବ୍ଦ ଶୁଣି ଅଶ୍ୱମାନଙ୍କୁ ସେହି ଅନୁସାରେ ନଚାଉଥା'ନ୍ତି । ସେମାନେ ତାଳଲୟର ବନ୍ଧନରୁ ଟିକିଏ ସୁଦ୍ଧା ଟଳୁ ନ ଥା'ନ୍ତି । ଚତୁର ନଟମାନେ ଚକିତ ହୋଇ ଏହି ଦୃଶ୍ୟ ଦେଖୁଥା'ନ୍ତି ॥ ୩୦୨ ॥ ଚୌପାଇ :— ବରଯାତ୍ରି ବୃନ୍ଦଙ୍କ ବର୍ଣ୍ଣନ ଭାଷାତୀତ । ସୁନ୍ଦର ଓ ଶୁଭଦାୟକ ଶକୁନ ପରିଦୃଷ୍ଟ ହେଉଥାଏ ।

ଲୋଭ୍ୱା ଫିରି ଫିରି ଦରସୁ ଦେଖାଓ୍ୱା । ସୁରଭୀ ସନମୁଖ ସିସୁହି ପିଆଓ୍ୱା ॥
ମୃଗମାଲା ଫିରି ଦାହିନ ଆଈ । ମଂଗଲ ଗନ ଜନୁ ଦୀହ୍ନି ଦେଖାଈ ॥୩॥
ଛେମକରୀ କହ ଛେମ ବିସେଷୀ । ସ୍ୟାମା ବାମ ସୁତରୁ ପର ଦେଖୀ ॥
ସନମୁଖ ଆୟଉ ଦଧି ଅରୁ ମୀନା । କର ପୁସ୍ତକ ଦୁଇ ବିପ୍ର ପ୍ରବୀନା ॥୪॥

ମଂଗଲମୟ କଲ୍ୟାନମୟ ଅଭିମତ ଫଲ ଦାତାର ।
ଜନୁ ସବ ସାଚେ ହୋନ ହିତ ଭଏ ସଗୁନ ଏକ ବାର ॥୩୦୩॥

ମଂଗଲ ସଗୁନ ସୁଗମ ସବ ତାକେଁ । ସଗୁନ ବ୍ରହ୍ମ ସୁନ୍ଦର ସୁତ ଜାକେଁ ॥
ରାମ ସରିସ ବରୁ ଦୁଲହିନି ସୀତା । ସମଧୀ ଦସରଥୁ ଜନକୁ ପୁନୀତା ॥୧॥

---

ଲୋକ ବାରମ୍ବାର ଦରଶନ ଦେଉଥାଏ । ସମ୍ମୁଖେ ସୁରଭି ଦୁଗ୍ଧ ବତ୍ସାଙ୍କୁ ପିଆଏ ॥
ମୃଗନିକର ଡାହାଣ ଦିଗକୁ ଆସନ୍ତି । ମଙ୍ଗଳ ସମୂହ ଯେସନ୍ତେ ଦେଖାଇ ଦିଅନ୍ତି ॥୩॥
ଶଙ୍ଖଚିଲ ବିଶେଷତଃ କୁଶଳ କହଇ । ଶ୍ୟାମା ବାମ ଦିଗେ ତରୁ ଉପରେ ଦିଶଇ ॥
ସମ୍ମୁଖେ ଆଗତ ହେଲା ଦଧି ଆଉ ମୀନ । ପୋଥି ଧରି ବେନି ବିପ୍ର ଆସନ୍ତି ପ୍ରବୀଣ ॥୪॥

ବାଞ୍ଛିତ ସକଳ କଲ୍ୟାଣ ମଙ୍ଗଳ ଫଳଦ ଶକୁନ ରାଶି ।
ସତ୍ୟ ହେବା ପାଇଁ ଏକାବେଳେ ତହିଁ ଠୁଳ ହେଲେ ଅବା ଆସି ॥୩୦୩॥

ସୁଲଭ ତାଙ୍କୁ ମଙ୍ଗଳ ଶକୁନ ନିକର । ସଗୁଣ ବ୍ରହ୍ମ ଯାହାଙ୍କ ସୁନ୍ଦର କୁମର ॥
ରାମଙ୍କ ସଦୃଶ ବର ବଧୂ ବଇଦେହୀ । ସମ୍ବନ୍ଧୀ ଅଯୋଧ୍ୟାନାଥ ମିଥିଳେଶସ୍ନେହୀ ॥୧॥

---

ନୀଳକଣ୍ଠ ପକ୍ଷୀ ବାମ ଦିଗକୁ ଦାନା ନେଉଥାଏ, ସତେ ଯେମିତି ସମ୍ପୂର୍ଣ୍ଣ ମଙ୍ଗଳର ସୂଚନା ଦେଉଥାଏ ॥ ୧ ॥ ଡାହାଣ ପାଖରେ ସୁନ୍ଦର ଶସ୍ୟଶ୍ୟାମଳ କ୍ଷେତରେ କାକ ଶୋଭା ପାଉଥାଏ । ନକୁଳର ଦର୍ଶନ ମଧ୍ୟ ସମସ୍ତେ ପାଇଲେ । ଶୀତଳ, ମନ୍ଦ ଓ ସୁଗନ୍ଧିତ ପବନ ଅନୁକୂଳ ଦିଗରେ ବହୁଥାଏ । ସୌଭାଗ୍ୟବତୀ ନାରୀମାନେ ପୂର୍ଣ୍ଣକଳସ ଓ କୋଳରେ ବାଳକ ଧରି ଆସୁଥା'ନ୍ତି ॥୨॥ ଲୋକଶିଆଳ ବାରମ୍ବାର ଦେଖା ଦେଉଥାଏ । ସମ୍ମୁଖରେ ଗାଈମାନେ ଛିଡ଼ା ହୋଇ ବାଛୁରୀମାନଙ୍କୁ ଦୁଧ ପିଆଉଥାଆନ୍ତି । ମୃଗମାନେ ଦଳ ଦଳ ହୋଇ ଡାହାଣ ଦିଗକୁ ବୁଲିପଡି ଦେଖା ଦେଲେ । ସତେ ଯେମିତି ସମସ୍ତ ପ୍ରକାରର ମଙ୍ଗଳରାଶି ସମ୍ମୁଖରେ ପରିଦୃଷ୍ଟ ॥ ୩ ॥ ଶଙ୍ଖଚିଲ ବିଶେଷ ରୂପେ କଲ୍ୟାଣର ବାର୍ତ୍ତା ପ୍ରଚାର କରୁଥାଏ . ବାମ ଦିଗରେ ଶ୍ୟାମାପକ୍ଷୀ ସୁନ୍ଦର ତରୁ ଉପରେ ଦେଖା ଦେଉଥାଏ । ଦଧି, ମୀନ ସମ୍ମୁଖରେ ଆଗତ । ଦୁଇ ଜଣ ବିଦ୍ୱାନ୍ ବ୍ରାହ୍ମଣ ହସ୍ତରେ ପୁସ୍ତକ ଧରି ସମ୍ମୁଖରେ ଉପସ୍ଥିତ ॥ ୪ ॥ ଦୋହା '—ସମସ୍ତ ମଙ୍ଗଳମୟ, କଲ୍ୟାଣ-ମୟ ଓ ମନୋବାଞ୍ଛିତ ଫଳଦାୟକ ଶକୁନ ସତେ ଯେମିତି ସତ୍ୟ ଓ ବାସ୍ତବ ହେବା ପାଇଁ ଏକ ସଙ୍ଗେ ଠୁଳ ହୋଇଗଲା ॥ ୩୦୩ ॥ ସ୍ୱୟଂ ସଗୁଣ ବ୍ରହ୍ମ ଯାହାଙ୍କର ସୁନ୍ଦର ସୁତ, ତାହାଙ୍କ ସକାଶେ ସମସ୍ତ ମଙ୍ଗଳ ଶକୁନ ସୁଲଭ । ବିଶେଷତଃ ସେହିଠାରେ ଶ୍ରୀରାମଚନ୍ଦ୍ରଙ୍କ ସଦୃଶ ବର ଓ ସୀତାଙ୍କ ସଦୃଶ ବଧୂ ଏବଂ ଦଶରଥ ଓ ଜନକଙ୍କ ସଦୃଶ

ସୁନି ଅସ ବ୍ୟାହୁ ସଗୁନ ସବ ନାଚେ । ଅବ କୀନ୍ହେ ବିରଂଚି ହମ ସାଁଚେ ॥
ଏହି ବିଧି କୀନ୍ହ ବରାତ ପୟାନା । ହୟ ଗୟ ଗାଜହିଁ ହନେ ନିସାନା ॥୨॥
ଆୱତ ଜାନି ଭାନୁକୁଲ କେତୂ । ସରିତନ୍ହି ଜନକ ବଁଧାଏ ସେତୂ ॥
ବୀଚ ବୀଚ ବର ବାସ ବନାଏ । ସୁରପୁର ସରିସ ସଂପଦା ଛାଏ ॥୩॥
ଅସନ ସୟନ ବର ବସନ ସୁହାଏ । ପାୱହିଁ ସବ ନିଜ ନିଜ ମନ ଭାଏ ॥
ନିତ ନୂତନ ସୁଖ ଲଖି ଅନୁକୂଲେ । ସକଲ ବରାତିନ୍ହ ମନ୍ଦିର ଭୂଲେ ॥୪॥

ଆୱତ ଜାନି ବରାତ ବର ସୁନି ଗହଗହେ ନିସାନ ।
ସଜି ଗଜ ରଥ ପଦଚର ତୁରଗ ଲେନ ଚଲେ ଅଗୱାନ ॥୩୦୪॥

## ମାସପାରାୟଣ, ଦଶମ ବିଶ୍ରାମ

କନକ କଲସ ଭରି କୋପର ଥାରା । ଭାଜନ ଲଲିତ ଅନେକ ପ୍ରକାରା ॥
ଭରେ ସୁଧାସମ ସବ ପକୱାନେ । ନାନା ଭାଁତି ନ ଜାହିଁ ବଖାନେ ॥୧॥

---

ଶୁଣି ଏମନ୍ତ ବିବାହ ଶକୁନେ ନାଚିଲେ । ଏତେକାଳେ ବିଧି ସତ୍ୟ ଆମ୍ଭଙ୍କୁ କରିଲେ ॥
ଏହି ଭାବେ ବରଯାତ୍ର କରିଲେ ପ୍ରୟାଣ । ହୟ ଗଜ ଗରଜନ୍ତି ବାଜଇ ନିଶାଣ ॥୨॥
ଆସୁଛନ୍ତି ଜାଣି ଦିବାକର-କୁଳକେତୁ । ନଦୀମାନଙ୍କରେ ନୃପ ବନ୍ଧାଇଲେ ସେତୁ ॥
ସ୍ଥାନେ ସ୍ଥାନେ ବରବାସ ରଚିଲେ ଶୋଭିତ । ପୁରନ୍ଦର-ପୁର ପରି ସମ୍ପଦେ ପୂରିତ ॥୩॥
ଅଶନ ବସନ ଶଯ୍ୟା ସୁବିଧା ବିପୁଳ । ଲଭନ୍ତି ସମସ୍ତେ ନିଜ ମନ ଅନୁକୂଳ ॥
ନିତ୍ୟ ନବ ନବ ସୁଖ କରି ବିଲୋକନ । ବରଯାତ୍ରି ପାଶୋରିଲେ ଆପଣା ଭବନ ॥

ଶୁଣି ବାଦ୍ୟରବ ବାରାତ ଆସଇ କନ୍ୟାଙ୍କ ପକ୍ଷ ଜାଣିଲେ ।
ରଥ ଗଜ ବାଜି ପଦଚର ସାଜି ସ୍ୱାଗତ ହେତୁ ଚଳିଲେ ॥୩୦୪॥

କନକ କଳଶ ଥାଳୀ ହସ୍ତେ ମନୋହର । ଅନେକ ପ୍ରକାର ପୁଣି ଭୋଜନ ସୁନ୍ଦର ॥
ସୁଧା ସଦୃଶ ପାକାନ୍ନ ପୂର୍ଣ୍ଣ କରି ତହିଁ । ବିବିଧ ରକମ ବର୍ଣ୍ଣି ନ ହୁଅଇ କହି ॥୧॥

---

ପ୍ରୀତି ସମ୍ବନ୍ଧୀଙ୍କ ସମାବେଶ ॥୧॥ ଏପରି ବିବାହୋତ୍ସବ ନିଷ୍ପନ୍ନ ଶୁଣି ସମସ୍ତ ଶକୁନ ସତେ ଯେମିତି ନାଚି ଉଠିଲେ ଏବଂ କହିବାକୁ ଲାଗିଲେ, "ଏତେକାଳେ ବ୍ରହ୍ମା ଆମଙ୍କୁ ସତ୍ୟ କରିଦେଲେ । ଏହାପରେ ବରଯାତ୍ରୀମାନେ ପ୍ରସ୍ଥାନ କଲେ । ଅଶ୍ୱ ଓ ହସ୍ତୀମାନେ ଗର୍ଜନ କରୁଥା'ନ୍ତି ଏବଂ ନିଶାଣ ବାଜୁଥାଏ ॥ ୨ ॥ ସୂର୍ଯ୍ୟବଂଶର ପତାକାସ୍ୱରୂପ ଦଶରଥଙ୍କୁ ଆସୁଥିବାର ଦେଖି ଜନକ ନଦୀମାନଙ୍କ ଉପରେ ସେତୁ-ବନ୍ଧନ କରାଇଲେ । ମଧ୍ୟେ ମଧ୍ୟେ ବରନିବାସ ନିର୍ମାଣ କରାଇଲେ । ସେ ସବୁ ଦେବଲୋକ ସମାନ ବିପୁଳ ସମ୍ପଦରେ ପରିପୂର୍ଣ୍ଣ କରି ରଖାଗଲା ॥୩॥ ସେହି ଭବନମାନଙ୍କରେ ବରଯାତ୍ରିଗଣ ଆପଣା ଆପଣା ରୁଚି ଅନୁସାରେ ସୁନ୍ଦର ଓ ଉତ୍ତମ ଭୋଜନ, ବସ୍ତ୍ର ଏବଂ ଶଯ୍ୟା ଲାଭ କଲେ । ମନ ଅନୁକୂଳ ନିତ୍ୟ ନବ ନବ ସୁଖ ଅନୁଭବ କରି ବରଯାତ୍ରୀମାନେ ନିଜ ନିଜ ଘରକୁ

ଫଲ ଅନେକ ବର ବସ୍ତୁ ସୁହାଇଁ । ହରଷି ଭେଁଟ ହିତ ଭୂପ ପଠାଇଁ ॥
ଭୂଷନ ବସନ ମହାମନି ନାନା । ଖଗ ମୃଗ ହୟ ଗୟ ବହୁବିଧି ଜାନା ॥୨॥
ମଂଗଲ ସଗୁନ ସୁଗଂଧ ସୁହାଏ । ବହୁତ ଭାଁତି ମହିପାଲ ପଠାଏ ॥
ଦଧି ଚିଉରା ଉପହାର ଅପାରା । ଭରି ଭରି କାଁୱରି ଚଲେ କହାରା ॥୩॥
ଅଗୱାନନ୍ହ ଜବ ଦୀଖି ବରାତା । ଉର ଆନନ୍ଦୁ ପୁଲକ ଭର ଗାତା ॥
ଦେଖି ବନାୱ ସହିତ ଅଗୱାନା । ମୁଦିତ ବରାତିନ୍ହ ହନେ ନିସାନା ॥୪॥
ହରଷି ପରସପର ମିଲନ ହିତ କଛୁକ ଚଲେ ବଗମେଲ ।
ଜନୁ ଆନନ୍ଦ ସମୁଦ୍ର ଦୁଇ ମିଲତ ବିହାଇ ସୁବେଲ ॥୩୦୫॥

---

ଫଲ ପ୍ରଭୃତି ଉତ୍ତମ ପଦାର୍ଥ ବିଶେଷ । ଭେଟି ହେତୁ ପଠାଇଲେ ସାଦରେ ନରେଶ ॥
ଭୂଷଣ ବସନ ନାନା ମଣି ମୂଲ୍ୟବାନ । ଖଗ ମୃଗ ହୟ ଗଜ ବହୁବିଧ ଯାନ ॥୨॥
ମଙ୍ଗଲ ଶକୁନ ଶୁଭ ସୁଗନ୍ଧ ପଦାର୍ଥ । ପଠାଇଲେ ନାନାମତେ ପ୍ରେମେ ନରନାଥ ॥
ଦଧି ଚୂଡ଼ା ଆଦି ଅଗଣିତ ଉପହାର । ଚଳିଲେ ଭାରୁଆ ପୂର୍ଣ୍ଣ କରି କରି ଭାର ॥୩॥
ଅଭ୍ୟର୍ଥକ ଯେବେ ବରଯାତ୍ରୀଙ୍କୁ ଦେଖିଲେ । ପୁଲକିତ ହେଲା ଅଙ୍ଗ ପ୍ରମୋଦେ ପୂରିଲେ ॥
ଦେଖି ସ୍ୱାଗତକାରୀଙ୍କୁ ସମାଜ ସହିତେ । ବଜାଇଲେ ବରଯାତ୍ରୀ ନିଷାଣ ମୁଦିତେ ॥୪॥
ହର୍ଷେ ପରସ୍ପର ମିଳିବାକୁ କେତେ ସମ୍ମୁଖେ ଧାଇଁ ଚଳିଲେ ।
ଯେସନ୍ତେ ବେଲାଭୂମି ଅତିକ୍ରମି ବେନି ଆନନ୍ଦ-ସିନ୍ଧୁ ମିଳିଲେ ॥୩୦୫॥

---

ମଧ୍ୟ ଭୁଲିଗଲେ ॥ ୪ ॥ ଦୋହା '—ନିଶାଣମାନଙ୍କର ଘନ ଘନ ଉଚ୍ଚନାଦ ଶୁଣି ଶ୍ରେଷ୍ଠ ବରଯାତ୍ରିବୃନ୍ଦ ଆସୁଥିବାର ଜଣାଗଲା । ତେଣୁ ସେମାନଙ୍କ ସ୍ୱାଗତ ନିମନ୍ତେ କନ୍ୟାପକ୍ଷରୁ ହସ୍ତୀ, ରଥ, ପଦାତିକ ଓ ଅଶ୍ୱମାନେ ସୁସଜ୍ଜିତ ହୋଇ ଚଳିଲେ ॥ ୩୦୪ ॥ ଚୌପାଈ '—ଦୁଧ, ସରବତ, ଭାଙ୍ଗ, ଜଳ ଆଦିରେ ପରିପୂର୍ଣ୍ଣ ସୁବର୍ଣ୍ଣ କଳସ, ଅବର୍ଣ୍ଣନୀୟ ଅମୃତସମ ବିବିଧ ପାକାନ୍ନରେ ପରିପୂର୍ଣ୍ଣ ବଡ଼ ଓ ସାନ ଥାଳୀ ଆଦି ବହୁବିଧ ସୁନ୍ଦର ପାତ୍ର, ଉତ୍ତମ ଫଳ ତଥା ଅନେକ ସୁନ୍ଦର ବସ୍ତୁ ରାଜା ଆନନ୍ଦିତ ମନରେ ଭେଟିସ୍ୱରୂପ ପଠାଇଲେ । ଭୂଷଣ, ବସ୍ତ୍ର, ନାନାବିଧ ମୂଲ୍ୟବାନ୍ ମଣି, ପକ୍ଷୀ, ପଶୁ, ଅଶ୍ୱ, ହସ୍ତୀ ଓ ବହୁତ ପ୍ରକାର ଯାନବାହନ ଏବଂ ବହୁତ ପ୍ରକାର ମଙ୍ଗଳ ଶକୁନ-ସୂଚକ ସୁଗନ୍ଧିତ, ସୁନ୍ଦର ଓ ମଙ୍ଗଳଦ୍ରବ୍ୟ ମଧ୍ୟ ରାଜା ଅତ୍ୟନ୍ତ ପ୍ରେମର ସହିତ ପଠାଇଲେ । ଭାରୁଆମାନେ ବହୁ ଭାରରେ ଦହିଚୂଡ଼ା ଆଦି ଅଗଣିତ ଉପହାର ପୂର୍ଣ୍ଣ କରି ଚାଲିଲେ ॥ ୧, ୨, ୩, ॥ ଅଭ୍ୟର୍ଥନାକାରୀମାନେ ଯେତେବେଳେ ବରଯାତ୍ରୀଙ୍କୁ ଦେଖିଲେ, ସେମାନଙ୍କ ହୃଦୟ ଆନନ୍ଦରେ ଏବଂ ଶରୀର ପୁଲକରେ ପରିପୂର୍ଣ୍ଣ ହୋଇଗଲା । ସାଜସଜ୍ଜାରେ ବିଭୂଷିତ ସ୍ୱାଗତକାରୀମାନଙ୍କୁ ଦେଖି ବରଯାତ୍ରୀମାନେ ଆନନ୍ଦରେ ନିଶାଣ ବଜାଇଲେ ॥ ୪ ॥ ଦୋହା —ବରଯାତ୍ରୀ ତଥା ସ୍ୱାଗତକାରୀମାନଙ୍କ ମଧ୍ୟରୁ କେତେକ ବ୍ୟକ୍ତି ପରସ୍ପର ସହିତ ମିଳନ ନିମନ୍ତେ ଆନନ୍ଦରେ ଅତିଶୀଘ୍ର ଦୌଡ଼ି ଚାଲିଲେ ଏବଂ ଏପରି ଭାବରେ ମିଳନ

ବରଷି ସୁମନ ସୁରସୁନ୍ଦରି ଗାଓ୍ୱହିଁ । ମୁଦିତ ଦେବ ଦୁଂଦୁଭୀଂ ବଜାଓ୍ୱହିଁ ॥
ବସ୍ତୁ ସକଲ ରାଖୀ ନୃପ ଆଗେଂ । ବିନୟ କୀହ୍ନି ତିହ୍ନ ଅତି ଅନୁରାଗେଂ ॥୧॥
ପ୍ରେମ ସମେତ ରାୟଁ ସବୁ ଲୀହ୍ନା । ଭୈ ବକସୀସ ଜାଚକହ୍ନି ଦୀହ୍ନା ॥
କରି ପୂଜା ମାନ୍ୟତା ବଡ଼ାଈ । ଜନବାସେ କହୁଁ ଚଲେ ଲଓ୍ୱାଈ ॥୨॥
ବସନ ବିଚିତ୍ର ପାଁଓ୍ୱଡ଼େ ପରହୀଁ । ଦେଖି ଧନଦୁ ଧନ ମଦୁ ପରିହରହୀଁ ॥
ଅତି ସୁନ୍ଦର ଦୀହ୍ନେଉ ଜନବାସା । ଜହଁ ସବ କହୁଁ ସବ ଭାଁତି ସୁପାସା ॥୩॥
ଜାନୀ ସିୟଁ ବରାତ ପୁର ଆଈ । କଛୁ ନିଜ ମହିମା ପ୍ରଗଟି ଜନାଈ ॥
ହୃଦୟଁ ସୁମିରି ସବ ସିଦ୍ଧି ବୋଲାଈଂ । ଭୂପ ପହୁନଈ କରନ ପଠାଈଂ ॥୪॥
ସିଧି ସବ ସିୟ ଆୟସୁ ଅକନି ଗଈଂ ଜହାଁ ଜନବାସ ।
ଲିଏଁ ସଂପଦା ସକଲ ସୁଖ ସୁରପୁର ଭୋଗ ବିଲାସ ॥୩୦୬॥

---

ବରଷି ସୁମନ ସୁର-ସୁନ୍ଦରୀ ଗାଆନ୍ତି । ପ୍ରମୋଦିତେ ଦେବଗଣ ଦୁନ୍ଦୁଭି ବଜାନ୍ତି ॥
ସମସ୍ତ ବସ୍ତୁ ରଖିଣ ନୃପତିଙ୍କ ଆଗେ । ବିନୟ କଲେ ସେମାନେ ଅତି ଅନୁରାଗେ ॥୧॥
ପ୍ରେମ ସହ ନୃପ ସବୁ କଲେ ଅଙ୍ଗୀକାର । ଯାଚକଙ୍କୁ ଡାକି ପୁଣି ଦେଲେ ପୁରସ୍କାର ॥
ଆଦର ସତ୍କାର ପୂଜା ବଡାଇ କରିଲେ । ବରବାସେ ଅଭ୍ୟର୍ଥକ ସର୍ବେ ଘେନିଚଲେ ॥୨॥
ବିଚିତ୍ର ବସନ ପଡେ ଚରଣ ତଳରେ । ବିଲୋକି ଧନଦ ଧନ ମଦ ପରିହରେ ॥
ଅତି ରମ୍ୟ ବରବାସ ଦେଲେ ରହିବାକୁ । ଯହିଁ କିଛି ଅସୁବିଧା ନ ହେବ କାହାକୁ ॥୩॥
ଜାଣି ସୀତା ଉପସ୍ଥିତ ପୁରେ ବରପକ୍ଷ । ଜଣାଇଲେ କିଛି ନିଜ ମହିମା ପ୍ରତ୍ୟକ୍ଷ ॥
ହୃଦୟେ ସ୍ମରି ସମସ୍ତ ସିଦ୍ଧିଙ୍କୁ ଡାକିଲେ । ନୃପଙ୍କ ଆତିଥ୍ୟ ହେତୁ ତାଙ୍କୁ ପଠାଇଲେ ॥୪॥
ସିଦ୍ଧି ସବୁ ହର୍ଷେ ଗଲେ ବରବାସେ ଶୁଣି ସୀତା ଅନୁମତି ।
ସଙ୍ଗତେ ଘେନିଣ ସୁର-ପୁର ସୁଖ ଭୋଗ ବିଳାସ ସମ୍ପତ୍ତି ॥୩୦୬॥

---

କଲେ, ବୋଧ ହେଲା, ସତେ ଯେମିତି ଆନନ୍ଦର ଦୁଇଟି ସମୁଦ୍ର ଉତ୍ତମ ବେଳାଭୂମି ଲଙ୍ଘନ କରି ମିଳନ କରୁଅଛନ୍ତି ॥ ୩୦୫ ॥ ଚୌପାଈ '—ସୁରସୁନ୍ଦରୀମାନେ ଫୁଲ ବର୍ଷା କରି ଗୀତ ଗାଉଥାଆନ୍ତି ଏବଂ ଦେବତାଗଣ ଆନନ୍ଦିତ ହୋଇ ଦୁନ୍ଦୁଭି ବଜାଉଥା'ନ୍ତି । ସ୍ୱାଗତ ନିମନ୍ତେ ଆସିଥିବା ସେହି ବ୍ୟକ୍ତିମାନେ ଦଶରଥଙ୍କ ଆଗରେ ସମସ୍ତ ଦ୍ରବ୍ୟ ରଖିଦେଲେ ଏବଂ ଅତିଶୟ ପ୍ରେମରେ ବିନତି କଲେ ॥ ୧ ॥ ରାଜା ଦଶରଥ ପ୍ରେମ ସହକାରେ ସମସ୍ତ ବସ୍ତୁ ଗ୍ରହଣ କଲେ । ପୁଣି ଯାଚକମାନଙ୍କୁ ଡକାଇ ତାହା ସବୁ ପୁରସ୍କାରସ୍ୱରୂପ ଦେଲେ । ତଦନନ୍ତର ପୂଜା, ଆଦରସତ୍କାର ଓ ବଡାଇ ଆଦି କରି ସ୍ୱାଗତକାରୀ ବ୍ୟକ୍ତିମାନେ ସେମାନଙ୍କୁ ବରବାସ ଆଡକୁ ନେଇ ଚାଲିଲେ ॥ ୨ ॥ ଚିତ୍ରବିଚିତ୍ର ସୁନ୍ଦର ବସ୍ତ୍ରର ପାହାଡା ପଡୁଥାଏ । ସେ ସବୁକୁ ଦେଖି କୁବେର ମଧ୍ୟ ତାଙ୍କ ଧନଗର୍ବ ପରିହାର କରି ଦିଅନ୍ତି । ବରଯାତ୍ରୀମାନଙ୍କ ରହଣି ନିମନ୍ତେ ଅତି ସୁନ୍ଦର ବରବାସ ଦିଆଗଲା । ସେଠାରେ ସମସ୍ତ ପ୍ରକାରର ସୁବିଧା ଥିଲା ॥ ୩ ॥ ସୀତା ବରଯାତ୍ରିବୃନ୍ଦଙ୍କ

ନିଜ ନିଜ ବାସ ବିଲୋକି ବରାତୀ । ସୁରସୁଖ ସକଲ ସୁଲଭ ସବ ଭାଁତୀ ॥
ବିଭବ ଭେଦ କଛୁ କୋଉ ନ ଜାନା । ସକଲ ଜନକ କର କରହିଁ ବଖାନା ॥୧॥
ସିୟ ମହିମା ରଘୁନାୟକ ଜାନୀ । ହରଷେ ହୃଦୟଁ ହେତୁ ପହିଚାନୀ ॥
ପିତୁ ଆଗମନୁ ସୁନତ ଦୋଉ ଭାଈ । ହୃଦୟଁ ନ ଅତି ଆନନ୍ଦୁ ଅମାଈ ॥୨॥
ସକୁଚନ୍ହ କହି ନ ସକତ ଗୁରୁ ପାହୀଁ । ପିତୁ ଦରସନ ଲାଲଚୁ ମନ ମାହୀଁ ॥
ବିସ୍ୱାମିତ୍ର ବିନୟ ବଡ଼ି ଦେଖୀ । ଉପଜା ଉର ସଂତୋଷୁ ବିସେଷୀ ॥୩॥
ହରଷି ବଂଧୁ ଦୋଉ ହୃଦୟଁ ଲଗାଏ । ପୁଲକ ଅଂଗ ଅଂବକ ଜଲ ଛାଏ ॥
ଚଲେ ଜହାଁ ଦସରଥୁ ଜନବାସେ । ମନହୁଁ ସରୋବର ତକେଉ ପିଆସେ ॥୪॥

---

ଦେଖି ବରଜାତ ନିଜ ନିଜ ବାସ-ସ୍ଥଳ । ସବୁ ମତେ ସୁର ସୁଖ ସୁଲଭ ସକଳ ॥
ବୈଭବର ଭେଦ କେହି କିଛି ନ ଜାଣନ୍ତି । ସମସ୍ତେ ଜନକଙ୍କର ପ୍ରଶଂସା କରନ୍ତି ॥୧॥
ସୀତାଙ୍କ ମହିମା ଜାଣି ଶ୍ରୀ ରଘୁନନ୍ଦନ । ହେତୁ ବୁଝି ନିଜ ହୃଦେ ହୋଇଲେ ପ୍ରସନ୍ନ ॥
ପିତାଙ୍କ ଆଗମନରେ ସମାଚାର ପାଇ । ଅତି ଆନନ୍ଦେ ଉତ୍ଫୁଲ୍ଲ ହେଲେ ଦୁଇ ଭାଇ ॥୨॥
ସଙ୍କୋଚେ ଗୁରୁଙ୍କ ଆଗେ କହି ନ ପାରନ୍ତି । ପିତା ଦର୍ଶନ ଲାଳସା ହୁଏ ବଳବତୀ ॥
ଦେଖି ବିଶ୍ୱାମିତ୍ର ତାଙ୍କ ପରମ ବିନୟ । ହୃଦୟେ ସନ୍ତୋଷ ଲଭ ହେଲା ଅତିଶୟ ॥୩॥
ହରଷେ ବେନିଭାଇଙ୍କୁ ହୃଦେ ଆଲିଙ୍ଗିଲେ । ପ୍ରେମାଶ୍ରୁ ନୟନ ଅଙ୍ଗ ପୁଲକେ ପୂରିଲେ ॥
ଗମନ କରିଲେ ଦଶରଥଙ୍କ ଜନବାସେ । ଅବା ସରୋବର ଯାଏ ତୃଷାତୁର ପାଶେ ॥୪॥

---

ଜନକପୁରରେ ଆସି ପହଞ୍ଚିବାର ଜାଣି ନିଜର କିଛି ମହିମା ପ୍ରକାଶ କରି ଦେଖାଇଲେ । ସେ ହୃଦୟରେ ସମସ୍ତ ସିଦ୍ଧିଙ୍କୁ ସ୍ମରଣ କରି ଡକାଇଲେ ଏବଂ ରାଜା ଦଶରଥଙ୍କ ଆତିଥ୍ୟ ସତ୍କାର କରିବା ଲାଗି ସେମାନଙ୍କୁ ପଠାଇଲେ ॥ ୪ ॥ ଦୋହା '—ସୀତାଙ୍କର ଆଦେଶ ଶୁଣି ସମସ୍ତ ସିଦ୍ଧି ବରବାସସ୍ଥଳୀକୁ ସମସ୍ତ ସମ୍ପତ୍ତି, ସୁଖ ଓ ସୁରପୁର ଯୋଗ୍ୟ ଭୋଗବିଳାସ-ସାମଗ୍ରୀ ଧରି ଚାଲିଲେ ॥ ୩୦୬ ॥ ଚୌପାଇ —ଯେତେବେଳେ ବରଯାତ୍ରୀମାନେ ଆପଣା ଆପଣାର ବାସସ୍ଥଳୀ ଦେଖିଲେ, ସେମାନେ ମନେ କଲେ ଯେ, ସେହିସବୁ ସ୍ଥଳରେ ସମସ୍ତ ଦେବସୁଖ ସୁଲଭ । ଏ ଐଶ୍ୱର୍ଯ୍ୟର ଟିକିଏ ହେଲେ ରହସ୍ୟ କେହି ଜାଣିପାରିଲେ ନାହିଁ । ସମସ୍ତେ ଜନକଙ୍କର ପ୍ରଶଂସା କରୁଥା'ନ୍ତି ॥ ୧ ॥ ଶ୍ରୀ ରଘୁନାଥଜୀ ସୀତାଙ୍କର ମହିମା ଜାଣି ଏବଂ ତାଙ୍କର ପ୍ରେମ ଚିହ୍ନି ହୃଦୟରେ ଅତ୍ୟନ୍ତ ହର୍ଷିତ ହେଲେ । ପିତା ଦଶରଥଙ୍କ ଆଗମନର ସମ୍ବାଦ ପାଇ ଦୁଇ ଭାଇଙ୍କ ହୃଦୟରେ ମହାନନ୍ଦର ସ୍ରୋତ ଛୁଟିଗଲା ॥ ୨ ॥ ସଂକୋଚବଶତଃ ସେ ଗୁରୁ ବିଶ୍ୱାମିତ୍ରଙ୍କୁ କିଛି କହିପାରୁ ନ ଥା'ନ୍ତି । କିନ୍ତୁ ମନରେ ପିତାଙ୍କ ଦର୍ଶନ ଲାଳସା ବଳବତୀ ହେଉଥାଏ । ବିଶ୍ୱାମିତ୍ର ତାଙ୍କ ବିନମ୍ରତା ଦେଖିଲେ ଏବଂ ତାଙ୍କ ହୃଦୟରେ ଅପାର ସନ୍ତୋଷ ଜାତ ହେଲା ॥ ୩ ॥ ସେ ଅତିଶୟ ପ୍ରସନ୍ନତା ସହକାରେ ଦୁଇଭାଇଙ୍କୁ ହୃଦୟରେ ଆଲିଙ୍ଗନ କଲେ । ତାଙ୍କର ଶରୀର ପୁଲକିତ ହୋଇଗଲା ଏବଂ ନୟନରେ ପ୍ରେମାଶ୍ରୁ-ଜନିତ

ଭୂପ ବିଲୋକେ ଜବହିଁ ମୁନି ଆୱତ ସୁତନ୍ହ ସମେତ ।
ଉଠେ ହରଷି ସୁଖସିଂଧୁ ମହୁଁ ଚଲେ ଥାହ ସୀ ଲେତ ॥୩୦୭॥

ମୁନିହି ଦଣ୍ଡବତ କୀନ୍ହ ମହୀସା । ବାର ବାର ପଦ ରଜ ଧରି ସୀସା ॥
କୌସିକ ରାଉ ଲିଏ ଉର ଲାଈ । କହି ଅସୀସ ପୂଛୀ କୁସଲାଈ ॥୧॥
ପୁନି ଦଣ୍ଡବତ କରତ ଦୋଉ ଭାଈ । ଦେଖି ନୃପତି ଉର ସୁଖୁ ନ ସମାଈ ॥
ସୁତ ହିୟଁ ଲାଇ ଦୁସହ ଦୁଖ ମେଟେ । ମୃତକ ସରୀର ପ୍ରାନ ଜନୁ ଭେଟେ ॥୨॥
ପୁନି ବସିଷ୍ଠ ପଦ ସିର ତିନ୍ହ ନାଏ । ପ୍ରେମ ମୁଦିତ ମୁନିବର ଉର ଲାଏ ॥
ବିପ୍ରବୃନ୍ଦ ବଂଦେ ଦୁହୁଁ ଭାଈଁ । ମନଭାୱତୀ ଅସୀସେଁ ପାଈଂ ॥୩॥
ଭରତ ସହାନୁଜ କୀନ୍ହ ପ୍ରନାମା । ଲିଏ ଉଠାଇ ଲାଇ ଉର ରାମା ॥
ହରଷେ ଲଖନ ଦେଖି ଦୋଉ ଭ୍ରାତା । ମିଲେ ପ୍ରେମ ପରିପୂରିତ ଗାତା ॥୪॥

---

ଦେଖି ନରନାଥ ସୁତଙ୍କ ସହିତ ଆସୁଛନ୍ତି ମୁନିରାୟ ।
ଉଠି ହର୍ଷେ, ସୁଖ ସିନ୍ଧୁରେ ଚଳିଲେ ପାଣି କଣ୍ଟିଲି ପରାୟ ॥୩୦୭॥

ମୁନିଙ୍କୁ ଦଣ୍ଡ ପ୍ରଣାମ କଲେ ମହୀପତି । ବାରମ୍ବାର ପଦରଜ ମସ୍ତକେ ଘେନନ୍ତି ॥
କଉଶିକ ନୃପତିଙ୍କୁ ହୃଦେ ଆଲିଙ୍ଗି ଣ । ପଚାରନ୍ତି କୁଶଳାଦି ଆଶିଷ ଦେଇଣ ॥୧॥
କରନ୍ତେ ଦଣ୍ଡ ପ୍ରଣାମ ତନୟ ଉଭୟେ । ଦେଖି ସୁଖ ନ ସମ୍ଭାଏ ନୃପଙ୍କ ହୃଦୟେ ॥
ସୁତଙ୍କୁ ଆଲିଙ୍ଗି ଦୁଃଖ ଦୁଃସହ ନାଶିଲେ । ମୃତକ ଶରୀରେ ଯଥା ପ୍ରାଣ ପ୍ରବେଶିଲେ ॥୨॥
ବଶିଷ୍ଠଙ୍କ ପଦେ ଦୁହେଁ ପ୍ରଣମିଲେ ପୁଣି । ପ୍ରେମ-ପ୍ରମୋଦିତେ ହୃଦେ ଲଗାଇଲେ ମୁନି ॥
ବିପ୍ର ବୃନ୍ଦଙ୍କୁ ବନ୍ଦନ କରି ବେନି ଭାଇ । ପ୍ରସନ୍ନ ମନ ହୋଇଲେ ଆଶୀର୍ବାଦ ପାଇ ॥୩॥
ଭରତ ଅନୁଜ ସହ କରନ୍ତେ ପ୍ରଣାମ । ଉଠାଇ ନେଇ ହୃଦୟେ ଲଗାଇଲେ ରାମ ॥
ଲକ୍ଷ୍ମଣ ବେନି ଭ୍ରାତାଙ୍କୁ ବିଲୋକି ଆନନ୍ଦେ । ମିଳିଲେ ପରମ ପ୍ରେମ-ପରିପୂର୍ଣ୍ଣ ହୃଦେ ॥୪॥

---

ଜଳ ପୁରିଗଲା । ଦଶରଥ ବରବାସର ଯେଉଁଠାରେ ରହୁଥିଲେ, ସେ ସେଠାକୁ ଚଳିଲେ । ସତେ ଯେମିତି ସରୋବର ତୃଷାତୁର ନିକଟକୁ ଚାଲିଯାଉଛି କି ' ॥ ୪ ॥ ଦୋହା — ଯେତେବେଳେ ରାଜା ଦଶରଥ ପୁତ୍ର ଦୁହିଙ୍କ ସହିତ ମୁନିଙ୍କୁ ଆସୁଥିବାର ଦେଖିଲେ, ସେ ଅତିଶୟ ଆନନ୍ଦିତ ହେଲେ ଏବଂ ସୁଖ-ସମୁଦ୍ରରେ ପାଣି କଣ୍ଟିଲି ପରି ଚାଲିଲେ ॥ ୩୦୭ ॥ ଚୌପାଈ —ମହୀପତି ଦଶରଥ ମୁନିଙ୍କର ଚରଣରଜ ବାରମ୍ବାର ଶିର ଉପରେ ଲଗାଇ ତାଙ୍କୁ ଦଣ୍ଡବତପ୍ରଣାମ କଲେ । ବିଶ୍ବାମିତ୍ର ରାଜାଙ୍କୁ ଉଠାଇ ହୃଦୟରେ ଆଲିଙ୍ଗନ କଲେ ଏବଂ ଆଶୀର୍ବାଦ ଦେଇ କୁଶଳ-ସମାଚାର ପୁଚ୍ଛିଲେ ॥ ୧ ॥ ତତ୍ପରେ ଦୁଇ ଭାଇଙ୍କୁ ଦଣ୍ଡବତପ୍ରଣାମ କରିବାର ଦେଖି ରାଜାଙ୍କ ହୃଦୟରେ ସୁଖ ସମ୍ଭାଇଲା ନାହିଁ । ପୁତ୍ର ଦୁହିଁଙ୍କୁ ଆଲିଙ୍ଗନ କରି ସେ ଆପଣାର ବିରହ-ଜନିତ ଦୁଃସହ ଦୁଃଖକୁ ଦୂର କଲେ । ସତେ ଯେମିତି ମୃତ ଶରୀରକୁ ପ୍ରାଣ ମିଳିଗଲା ପରି ' ॥ ୨ ॥ ତତ୍ପରେ ଭାଇ ଦୁହେଁ ବଶିଷ୍ଠଙ୍କ ଚରଣରେ ମୁଣ୍ଡ ନୁଆଁଇଲେ । ମୁନିବର ପ୍ରେମାନନ୍ଦରେ

ପୁରଜନ ପରିଜନ ଜାତିଜନ ଜାଚକ ମଂତ୍ରୀ ମୀତ ।
ମିଲେ ଜଥାବିଧି ସବହି ପ୍ରଭୁ ପରମ କୃପାଲ ବିନୀତ ॥୩୦୮॥
ରାମହି ଦେଖି ବରାତ ଜୁଡ଼ାନୀ । ପ୍ରୀତି କି ରୀତି ନ ଜାତି ବଖାନୀ ॥
ନୃପ ସମୀପ ସୋହହିଁ ସୁତ ଚାରୀ । ଜନୁ ଧନ ଧରମାଦିକ ତନୁଧାରୀ ॥୧॥
ସୁତନ୍ହ ସମେତ ଦସରଥହି ଦେଖୀ । ମୁଦିତ ନଗର ନର ନାରି ବିସେଷୀ ॥
ସୁମନ ବରିସି ସୁର ହନହିଁ ନିସାନା । ନାକନଟୀଁ ନାଚହିଁ କରି ଗାନା ॥୨॥
ସତାନନ୍ଦ ଅରୁ ବିପ୍ର ସଚିବ ଗନ । ମାଗଧ ସୂତ ବିଦୁଷ ବଂଦୀଜନ ॥
ସହିତ ବରାତ ରାଉ ସନମାନା । ଆୟସୁ ମାଗି ଫିରେ ଅଗଵାନା ॥୩॥

---

ପୁର ଜାତି ଜନ ଆତ୍ମୀୟ ସ୍ୱଜନ ଯାଚକ ଅମାତ୍ୟ ମିତ୍ର ।
ସମସ୍ତଙ୍କୁ ବିଧି-ପୂର୍ବକ ଭେଟିଲେ ପ୍ରଭୁ କୃପାଳୁ ବିନୀତ ॥୩୦୮॥
ରାମଙ୍କୁ ନିରେଖି ହେଲେ ବରଜାତି ତୃପ୍ତ । ପ୍ରୀତି ରୀତି ବର୍ଣ୍ଣି କିହୁ ହୋଇବ କେମନ୍ତ ॥
ନୃପ ସମୀପେ ଶୋଭିତ ହୋନ୍ତି ସୁତ ଚାରି । ଯେହ୍ନେ ଅର୍ଥ ଧର୍ମ କାମ ମୋକ୍ଷ ତନୁଧାରୀ ॥୧॥
ବିଲୋକି ଦଶରଥଙ୍କୁ ପୁତ୍ରଙ୍କ ସଙ୍ଗରେ । ମୁଦିତ ହୁଅନ୍ତି ଅତି ପୁର ନାରୀନରେ ॥
ସୁମନ ବରଷି ସୁରେ ବଜାନ୍ତି ନିଶାଣ । ନାକ ନର୍ତ୍ତକୀ ନାଚନ୍ତି କରି କଳ ଗାନ ॥୨॥
ଶତାନନ୍ଦ ବିପ୍ର ପାତ୍ର ଅମାତ୍ୟ ସମେତେ । ବିଦୂଷ ଗାୟକ ବନ୍ଦୀ ପୌରାଣିକ ଯେତେ ॥
ବରଜାତି ସହ ନୃପେ ସମ୍ମାନ କରିଣ । ବାହୁଡ଼ିଲେ ଅଭ୍ୟର୍ଥକ ଆଦେଶ ମାଗିଣ ॥୩॥

---

ତାଙ୍କୁ ହୃଦୟରେ ଆଲିଙ୍ଗନ କଲେ । ଦୁଇ ଭାଇ ସମସ୍ତ ବ୍ରାହ୍ମଣଙ୍କୁ ବନ୍ଦନା କଲେ ଏବଂ ମନୋମୁଗ୍ଧକାରୀ ଆଶୀର୍ବାଦ ପାଇଲେ ॥ ୩ ॥ ଭରତ ଅନୁଜ ଶତ୍ରୁଘ୍ନଙ୍କ ସହିତ ଶ୍ରୀରାମଚନ୍ଦ୍ରଙ୍କୁ ପ୍ରଣାମ କଲେ । ଶ୍ରୀରାମ ତାଙ୍କୁ ଉଠାଇ ହୃଦୟରେ ଲଗାଇଲେ । ଲକ୍ଷ୍ମଣ ଦୁଇ ଭାଇଙ୍କୁ ଦେଖି ହର୍ଷିତ ହେଲେ ଏବଂ ପ୍ରେମ-ପରିପୂର୍ଣ୍ଣ ଶରୀରରେ ତାଙ୍କ ସହିତ ମିଳନ କଲେ ॥ ୪ ॥ ଦୋହା —ତଦନନ୍ତର ପରମ କୃପାଳୁ ଏବଂ ବିନୟୀ ଶ୍ରୀରାମଚନ୍ଦ୍ର ଅଯୋଧ୍ୟା ପୁରବାସୀ, ଆତ୍ମୀୟ ସ୍ୱଜନ, ସ୍ୱଜାତିର ଲୋକ, ଯାଚକ, ମନ୍ତ୍ରୀ ଓ ମିତ୍ରବୃନ୍ଦ—ସମସ୍ତଙ୍କ ସହିତ ଯଥାବିଧି ମିଳନ କଲେ ॥ ୩୦୮ ॥ ଚୌପାଈ :— ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ବରଯାତ୍ରିବୃନ୍ଦ ଆଶ୍ୱସ୍ତ ଓ ଶୀତଳ ହେଲେ । (ରାମଙ୍କ ବିରହରେ ସମସ୍ତଙ୍କ ହୃଦୟରେ ଯେଉଁ ଅଗ୍ନି ପ୍ରଜ୍ୱଳିତ ହେଉଥିଲା, ତାହା ଶାନ୍ତ ହୋଇଗଲା ।) ପ୍ରୀତିର ରୀତିକୁ କେହି ବର୍ଣ୍ଣନ କରି ପାରନ୍ତି ନାହିଁ । ରାଜାଙ୍କ ନିକଟରେ ତାଙ୍କର ଚାରିପୁଅ ଏପରି ଭାବରେ ପରିଶୋଭିତ ହେଉଅଛନ୍ତି ଯେତେ ଯେମିତି ଧର୍ମ, ଅର୍ଥ, କାମ, ମୋକ୍ଷ ଶରୀର ପରିଗ୍ରହ କରିଅଛନ୍ତି କି ! ॥ ୧ ॥ ନଗରର ନରନାରୀ ପୁତ୍ରଗଣଙ୍କ ସହିତ ଦଶରଥଙ୍କୁ ଦେଖି ଅତ୍ୟନ୍ତ ପ୍ରସନ୍ନ ହେଉଥା'ନ୍ତି । ଆକାଶରୁ ଦେବତାମାନେ ପୁଷ୍ପବୃଷ୍ଟି କରି ନିଶାଣ ବଜାଉଥା'ନ୍ତି ଏବଂ ସ୍ୱର୍ଗନର୍ତ୍ତକୀ ଅପସରାବୃନ୍ଦ ଗୀତ ଗାଇ ଗାଇ ନାଚୁଥା'ନ୍ତି ॥ ୨ ॥ ସ୍ୱାଗତ ନିମନ୍ତେ ଆସିଥିବା ବ୍ରାହ୍ମଣ ଶତାନନ୍ଦ, ମନ୍ତ୍ରିବୃନ୍ଦ, ମାଗଧ, ସାରଥି, ବିଦ୍ୱାନ ଏବଂ

ପ୍ରଥମ ବରାତ ଲଗନ ତେଁ ଆଈ । ତାତେଁ ପୁର ପ୍ରମୋଦୁ ଅଧିକାଈ ॥
ବ୍ରହ୍ମାନନ୍ଦୁ ଲୋଗୁ ସବ ଲହହୀଁ । ବଢ଼ହୁଁ ଦିବସ ନିସି ବିଧି ସନ କହହୀଁ ॥୩॥

ରାମୁ ସୀୟ ସୋଭା ଅବଧି ସୁକୃତ ଅବଧି ଦୋଉ ରାଜ ।
ଜହଁ ତହଁ ପୁରଜନ କହହିଁ ଅସ ମିଲି ନର ନାରି ସମାଜ ॥୩୦୯॥

ଜନକ ସୁକୃତ ମୂରତି ବୈଦେହୀ । ଦସରଥ ସୁକୃତ ରାମୁ ଧରେଁ ଦେହୀ ॥
ଇନ୍ହ ସମ କାହୁଁ ନ ସିବ ଅବରାଧେ । କାହୁଁ ନ ଇନ୍ହ ସମାନ ଫଲ ଲାଧେ ॥୧॥
ଇନ୍ହ ସମ କୋଉ ନ ଭୟଉ ଜଗ ମାହୀଁ । ହୈ ନହିଁ କତହୂଁ ହୋନେଉ ନାହୀଁ ॥
ହମ ସବ ସକଲ ସୁକୃତ କୈ ରାସୀ । ଭଏ ଜଗ ଜନମି ଜନକପୁରବାସୀ ॥୨॥
ଜିନ୍ହ ଜାନକୀ ରାମ ଛବି ଦେଖୀ । କୋ ସୁକୃତୀ ହମ ସରିସ ବିସେଷୀ ॥
ପୁନି ଦେଖବ ରଘୁବୀର ବିଆହୂ । ଲେବ ଭଲୀ ବିଧି ଲୋଚନ ଲାହୂ ॥୩॥

---

ଲଗ୍ନ ପୂର୍ବରୁ ଆସନ୍ତେ ବରଜାତି ଦଳ । ବଢ଼ିଲା ପୁରେ ଅଧିକ ପ୍ରମୋଦ ଚହଳ ॥
ବ୍ରହ୍ମାନନ୍ଦ ସୁଖ ଲୋକ ସମସ୍ତେ ଲଭନ୍ତି । ବଢୁ ଦିନରାତି ବିଧି ଆଗେ ଗୁହାରନ୍ତି ॥୪॥

ରାମ ସୀତା ଶୋଭା-ଅବଧି କି ଅବା ବେନି ନୃପ ପୁଣ୍ୟ ସୀମା ।
ମିଳି ପରସ୍ପର ପୁର ନାରୀ ନର କହନ୍ତି ଏହି ମହିମା ॥୩୦୯॥

ଜନକ ସୁକୃତ ମୂର୍ତ୍ତି ଅଟେ ବଇଦେହୀ । ଦଶରଥଙ୍କ ସୁକୃତ ଧରେ ରାମ ଦେହୀ ॥
ଯାଙ୍କ ସମ କେହି ଶିବ ସେବି ନାହିଁ ଆନ । କେହି ଫଳ ଲଭି ନାହିଁ ଏହାଙ୍କ ସମାନ ॥୧॥
ଏହାଙ୍କ ତୁଲ୍ୟ ଜଗତେ କେହି ହୋଇନାହିଁ । ଏବେ ନାହିଁ, ଭବିଷ୍ୟେ ନ ହୋଇବେ କାହିଁ ॥
ଆମ୍ଭେ ସମସ୍ତେ ସକଳ ସୁକୃତର ରାଶି । ଜଗତେ ଜନ୍ମି ହୋଇଲେ ମିଥିଳାନିବାସୀ ॥୨॥
ଜାନକୀ ରାମଙ୍କ ଛବି କଲେ ଦରଶନ । କିଏ ବଡ଼ ପୁଣ୍ୟବାନ ଅଛି ଆମ୍ଭ ସମ ॥
ପୁଣି ଶ୍ରୀ ରଘୁବୀରଙ୍କ ବିବାହ ଦେଖିବା । ନୟନ ଲାଭ ଉତ୍ତମ ପ୍ରକାରେ ଲଭିବା ॥୩॥

---

ଭାଟମାନେ ବାରାତ ସମେତ ରାଜା ଦଶରଥଙ୍କ ଆଗତ-ସତ୍କାର କଲେ । ତତ୍ପରେ ଆଜ୍ଞା ନେଇ ସେମାନେ ବାହୁଡ଼ିଲେ ॥ ୩ ॥ ଲଗ୍ନଦିବସ ପୂର୍ବରୁ ବରଯାତ୍ରିଦଳ ଆସି ଯାଇଥା'ନ୍ତି । ଏଥିଯୋଗେ ଜନକପୁରରେ ଅଧିକ ଆନନ୍ଦର ଚହଳ ପଡ଼ିଯାଇଥାଏ । ସମସ୍ତ ଲୋକ ବ୍ରହ୍ମାନନ୍ଦ ସୁଖ ଲାଭ କରୁଥା'ନ୍ତି ଏବଂ ବିଧାତାଙ୍କୁ ଦିନରାତି ବଢାଇବା ନିମନ୍ତେ ଗୁହାରି କରୁଥା'ନ୍ତି ॥ ୪ ॥ ଦୋହା :—ଶ୍ରୀରାମଚନ୍ଦ୍ର ଓ ସୀତା ସୌନ୍ଦର୍ଯ୍ୟର ସୀମା ଏବଂ ଉଭୟ ନୃପ ପୁଣ୍ୟର ସୀମା ; ନଗରବାସୀ ନରନାରୀବୃନ୍ଦ ଦଳ ଦଳ ଭାବରେ ପରସ୍ପର ମିଳିତ ହୋଇ ଏହି କଥା କହୁଥା'ନ୍ତି ॥ ୩୦୯ ॥ ଚୌପାଇ :— ଜାନକୀ ଜନକଙ୍କର ସୁକୃତର ପ୍ରତିମୂର୍ତ୍ତି ଏବଂ ଶ୍ରୀରାମ ଦଶରଥଙ୍କ ସୁକୃତ ଦେହ ଧାରଣ କରିପରି ପ୍ରତୀତ ହେଉଅଛନ୍ତି । ଏହି ଉଭୟ ରାଜାଙ୍କ ପରି ଆଉ କେହି ଶିବଙ୍କୁ ଏତେ ଆରାଧନା କରିନାହାନ୍ତି କିମ୍ବା ଏହାଙ୍କ ପରି ଆଉ କେହି ଏମିତ ଫଳ ପାଇ-ନାହାନ୍ତି ॥୧॥ ଏମାନଙ୍କ ପରି ଜଗତରେ କେହି ଏତେ ଭାଗ୍ୟବାନ୍ ଅତୀତରେ ହୋଇନାହାନ୍ତି ।

କହହିଁ ପରସପର କୋକିଲବୟନୀଁ । ଏହି ବିଆହଁ ବଡ ଲାଭୁ ସୁନୟନୀଁ ॥
ବଡେଁ ଭାଗ ବିଧି ବାତ ବନାଈ । ନୟନ ଅତିଥି ହୋଇହହିଁ ଦୋଉ ଭାଈ ॥୩॥
ବାରହିଁ ବାର ସନେହ ବସ ଜନକ ବୋଲାଉବ ସୀୟ ।
ଲେନ ଆଇହହିଁ ବଂଧୁ ଦୋଉ କୋଟି କାମ କମନୀୟ ॥୩୧୦॥
ବିବିଧ ଭାଁତି ହୋଇହି ପହୁନାଈ । ପ୍ରିୟ ନ କାହି ଅସ ସାସୁର ମାଈ ॥
ତବ ତବ ରାମ ଲଖନହି ନିହାରୀ । ହୋଇହହିଁ ସବ ପୁର ଲୋଗ ସୁଖାରୀ ॥୧॥
ସଖି ଜସ ରାମ ଲଖନ କର ଜୋଟା । ତୈସେଇ ଭୂପ ସଂଗ ଦୁଇ ଢୋଟା ॥
ସ୍ୟାମ ଗୌର ସବ ଅଂଗ ସୁହାଏ । ତେ ସବ କହହିଁ ଦେଖି ଜେ ଆଏ ॥୨॥

---

କହୁଥାନ୍ତି ପରସ୍ପର କୋକିଳବଚନୀ । ଏହି ବିବାହରେ ଖାସ ଲାଭ ସୁଲୋଚନୀ ॥
ବଡ ଭାଗ୍ୟେ ବିଧି ଅଛି ସଂଯୋଗ ଘଟାଇ । ନୟନ-ଅତିଥି ଆସି ହେବେ ଦୁଇ ଭାଇ ॥୪॥
ବାରମ୍ବାର ସ୍ନେହ ସହିତ ବିଦେହ ଜାନକୀଙ୍କୁ ଡକାଇବେ ।
କୋଟି କାମ ସମ କମନୀୟ ବେନି ଭାଇ ନେବାକୁ ଆସିବେ ॥୩୧୦॥
ପୁଣି ନାନା ମତେ ହେବ ସତ୍କାର ସ୍ୱାଗତ । ଅପ୍ରିୟ ଶ୍ୱଶୁରାଳୟ କାହାକୁ ଏମନ୍ତ ॥
ତେବେ ତେବେ ନିରେଖିବା ଶ୍ରୀରାମ ଲକ୍ଷ୍ମଣେ । ସୁଖୀ ହୋଇବେ ସମସ୍ତ ପୁରବାସୀ ଜନେ ॥୧॥
ସଖି, ରାମ ଲକ୍ଷ୍ମଣଙ୍କ ଯୋଡି ଯେଉଁପରି । ନୃପ ସଙ୍ଗେ ପୁଣି ବେନି ବାଳକ ସେପରି ॥
ଶ୍ୟାମ ଗଉର ସର୍ବାଙ୍ଗ ଶୋଭାମୟ ଅତି । ଯେ ଦେଖି ଆସିଅଛନ୍ତି ସେ ସର୍ବେ କହନ୍ତି ॥୨॥

---

ବର୍ତ୍ତମାନ କେଉଁଠି ନାହାନ୍ତି କିମ୍ବା ଭବିଷ୍ୟତରେ ମଧ୍ୟ ହେବେ ନାହିଁ । ଆମେ ସମସ୍ତେ ଜଗତରେ ଜନ୍ମ ଲାଭ କରି ମିଥିଳାପୁରର ଅଧିବାସୀ ହୋଇଅଛେ । ଅତଏବ ଆମେ ସମସ୍ତେ ମଧ୍ୟ ସୁକୃତ-ରାଶି ॥ ୨ ॥ ଏବଂ ଆମ୍ଭେମାନେ ଜାନକୀ ଓ ଶ୍ରୀରାମଚନ୍ଦ୍ରଙ୍କର ଛବି ଦର୍ଶନ କଲେ । ତାହା ହେଲେ ଆମ୍ଭମାନଙ୍କଠାରୁ ଅଧିକ ପୁଣ୍ୟାତ୍ମା ଆଉ କିଏ ହେବ ? ଏବେ ଆମ୍ଭେ-ମାନେ ରଘୁନାଥଙ୍କର ବିବାହ ଦେଖିବା ଏବଂ ନେତ୍ରର ଲାଭ ଲଭିବା ॥ ୩ ॥ କୋକିଳ-ବଚନା ନାରୀମାନେ ପରସ୍ପର କୁହାକୁହି ହେଉଥାନ୍ତି, "ହେ ସୁଲୋଚନା-ବୃନ୍ଦ ' ଏ ବିବାହରେ ବହୁତ ଲାଭ । ବଡ ଭାଗ୍ୟବଳ ହେତୁ ବିଧାତା ସବୁ ସୁଯୋଗ ଘଟାଇଅଛି । ଏ ଦୁଇ ଭାଇ ଆମ୍ଭମାନଙ୍କର ନୟନର ଅତିଥି ହେବେ ॥ ୪ ॥
ଦୋହା —ଜନକ ସ୍ନେହବଶତଃ ବାରମ୍ବାର ସୀତାଙ୍କୁ ଡାକିବେ ଏବଂ କୋଟି କୋଟି କନ୍ଦର୍ପଙ୍କ ସମାନ ସୁନ୍ଦର ଦୁଇଭାଇ ବିଦାୟ ବେଳେ ସୀତାଙ୍କୁ ନେବାକୁ ଆସିବେ ॥୩୧୦॥
ଚୌପାଈ —ତତ୍ପରେ ନାନାପ୍ରକାରେ ତାଙ୍କର ଆଦରସତ୍କାର କରାଯିବ । ସଖି ! ଏପରି ଶ୍ୱଶୁରାଳୟ କାହାକୁ ଅପ୍ରିୟ ଲାଗିବ ? ସେତେବେଳେ ଆମ୍ଭେ ସମସ୍ତ ନଗର-ନିବାସୀ ଶ୍ରୀରାମଲକ୍ଷ୍ମଣଙ୍କୁ ବାରମ୍ବାର ନିରେଖି ସୁଖଲାଭ କରିବା ॥ ୧ ॥ ହେ ସଖି ! ରାମଲକ୍ଷ୍ମଣ ଯୁଗଳମୂର୍ତ୍ତି ଯେମିତି ସୁନ୍ଦର, ସେହିପରି ସୁନ୍ଦର ଆଉ ଦୁଇ ରାଜକୁମାର ରାଜାଙ୍କ ସହିତରେ ମଧ୍ୟ ଅଛନ୍ତି । ସେ ଦୁହେଁ ମଧ୍ୟ ଶ୍ୟାମଳ ଓ ଗୌର ବର୍ଣ୍ଣର, ଦୁହିଙ୍କ

କହହିଁ ଏକ ମୈଁ ଆଜୁ ନିହାରେ । ଜନୁ ବିରଂଚି ନିଜ ହାଥ ସଁୱାରେ ॥
ଭରତୁ ରାମହୀ କୀ ଅନୁହାରୀ । ସହସା ଲଖି ନ ସକହିଁ ନର ନାରୀ ॥୩॥
ଲଖନୁ ସତ୍ରୁସୂଦନୁ ଏକରୂପା । ନଖ ସିଖ ତେ ସବ ଅଂଗ ଅନୂପା ॥
ମନ ଭାୱହିଁ ମୁଖ ବରନି ନ ଜାହୀଁ । ଉପମା କହୁଁ ତ୍ରିଭୁବନ କୋଉ ନାହୀଁ ॥୪॥

ଉପମା ନ କୋଉ କହ ଦାସ ତୁଲସୀ କତହୁଁ କବି କୋବିଦ କହେଁ ॥
ବଲ ବିନୟ ବିଦ୍ୟା ସୀଲ ସୋଭା ସିଂଧୁ ଇନ୍ହ ସେ ଏଇ ଅହେଁ ॥
ପୁର ନାରି ସକଲ ପସାରି ଅଂଚଲ ବିଧିହି ବଚନ ସୁନାୱହୀଁ ।
ବ୍ୟାହିଅହୁଁ ଚାରିଉ ଭାଇ ଏହିଁ ପୁର ହମ ସୁମଂଗଲ ଗାୱହୀଁ ॥

କହହିଁ ପରସପର ନାରି ବାରି ବିଲୋଚନ ପୁଲକ ତନ ।
ସଖି ସବୁ କରବ ପୁରାରି ପୁନ୍ୟ ପୟୋନିଧି ଭୂପ ଦୋଉ ॥୩୧୧॥

---

କେହି ଏକ କହେ ଆଜ ଦେଖିଛୁଁ ଆମ୍ଭେ । ଯେସନେ ବିରଞ୍ଚି ନିଜ ହସ୍ତେ ଗଢ଼ିଛି ॥
ଭରତ ଅଟନ୍ତି ଅନୁରୂପ ରାମଙ୍କର । ସହସା ବାରି ପାରନ୍ତି ନାହିଁ ନାରୀନର ॥୩॥
ଲକ୍ଷ୍ମଣ ଶତ୍ରୁଘ୍ନ ରୂପେ ଦୁହେଁ ସମ । ଆପାଦ ମସ୍ତକ ସବୁ ଅଙ୍ଗ ଅନୁପମ ॥
ମନ ଅନୁଭବେ, କହି ନ ହୁଏ ବଚନେ । ଉପମା ଦେବାକୁ କେହି ନାହିଁ ତ୍ରିଭୁବନେ ॥୪॥

ଉପମା ନାହିଁ କେହି କହେ ତୁଲସୀ, କହି ପାରିବ କେଉଁ କବି ମତି ।
ବଳ ବିଦ୍ୟା ବିନୟ-ଶୀଳ ଶୋଭା-ନିଳୟ ଏହାଙ୍କ ସମ ଏ ଅଟନ୍ତି ।
ବିଧିଙ୍କୁ ଅବଳା ସକଳ, ଜଣାନ୍ତି ପ୍ରସାରି ଅଞ୍ଚଳ,
ବିବାହି ଚାରି ଭାଇ ରହନ୍ତୁ ଏହି ପୁରେ ଗାଇବୁ ଆମ୍ଭେ ସୁମଙ୍ଗଳ ॥

ପୁଲକିତ ହୋଇ କହନ୍ତି ରମଣୀ ସାଶ୍ରୁ ନୟନେ ପରସ୍ପର ।
ସଖି, ପୁଣ୍ୟ-ସିନ୍ଧୁ ଦେନି ନୃପମଣି କାର୍ଯ୍ୟ ସାଧିବେ ଶଙ୍କର ॥୩୧୧॥

---

ଅଙ୍ଗପ୍ରତ୍ୟଙ୍ଗ ମଧ୍ୟ ଅତି ସୁନ୍ଦର । ଯେଉଁ ଲୋକମାନେ ସେ ଦୁହିଁଙ୍କୁ ଦେଖି ଅଛନ୍ତି, ସେମାନେ ସମସ୍ତେ ଏଇଆ କହୁଛନ୍ତି ।" ॥ ୨ ॥ ଆଉ କେହି ଜଣେ କହନ୍ତି, "ମୁଁ ଆଜି ହିଁ ତାଙ୍କୁ ଦେଖିଛି । ସେମାନେ ଏତେ ସୁନ୍ଦର ଯେ, ସତେ ଯେମିତି ବ୍ରହ୍ମା ସ୍ୱୟଂ ଆପଣା ହସ୍ତରେ ସେମାନଙ୍କୁ ଗଢ଼ିଅଛନ୍ତି । ଭରତ ତ ଶ୍ରୀରାମଚନ୍ଦ୍ରଙ୍କ ଅନୁରୂପ ଆକୃତିର । ନରନାରୀମାନେ ଦୁହିଁଙ୍କୁ ସହସା ବାଣିପାରୁ ନାହାନ୍ତି । ॥ ୩ ॥ ଲକ୍ଷ୍ମଣ ଓ ଶତ୍ରୁଘ୍ନ ଦୁହିଁଙ୍କର ରୂପ ଏକ ସମାନ । ଉଭୟଙ୍କର ଆପାଦ-ମସ୍ତକ ସମସ୍ତ ଅଙ୍ଗ ଅନୁପମ । ମନକୁ ସେ ଛବି ଦିଶେ ଅତି ରୁଚିକର । ଜିଭ ମୁଖରେ ସେମାନଙ୍କର ବର୍ଣ୍ଣନା କରାଯାଇ ପାରିବ ନାହିଁ । ସେମାନଙ୍କ ଉପମା-ଯୋଗ୍ୟ ତିନି ଭୁବନରେ ଆଉ କେହି ନାହିଁ ॥ ୪ ॥
ଛନ୍ଦ :—ତୁଳସୀ ଦାସ କହନ୍ତି—ଏହାଙ୍କର ଉପମା ଅନ୍ୟ କେଉଁଠି ନାହିଁ ବୋଲି କବି ଓ କୋବିଦମାନେ କହନ୍ତି, ବଳ, ବିନୟ, ବିଦ୍ୟା, ଶୀଳ ଓ ଶୋଭାର ସମୁଦ୍ର

ଏହି ବିଧି ସକଲ ମନୋରଥ କରହୀଁ । ଆନଁଦ ଉମଗି ଉମଗି ଉର ଭରହୀଁ ॥
ଜେ ନୃପ ସୀୟ ସ୍ୱୟଂବର ଆଏ । ଦେଖି ବଂଧୁ ସବ ତିନ୍ହ ସୁଖ ପାଏ ॥୧॥
କହତ ରାମ ଜସୁ ବିସଦ ବିସାଲା । ନିଜ ନିଜ ଭବନ ଗଏ ମହିପାଲା ॥
ଗଏ ବୀତି କଛୁ ଦିନ ଏହି ଭାଁତୀ । ପ୍ରମୁଦିତ ପୁରଜନ ସକଲ ବରାତୀ ॥୨॥
ମଂଗଲ ମୂଲ ଲଗନ ଦିନୁ ଆୱା । ହିମ ରିତୁ ଅଗହନୁ ମାସୁ ସୁହାୱା ॥
ଗ୍ରହ ତିଥି ନଖତୁ ଜୋଗୁ ବର ବାରୂ । ଲଗନ ସୋଧି ବିଧି କୀନ୍ହ ବିଚାରୂ ॥୩॥
ପଠୈ ଦୀନ୍ହି ନାରଦ ସନ ସୋଈ । ଗନୀ ଜନକ କେ ଗନକନ୍ହ ଜୋଈ ॥
ସୁନୀ ସକଲ ଲୋଗନ୍ହ ୟହ ବାତା । କହହିଁ ଜୋତିଷୀ ଆହିଁ ବିଧାତା ॥୩॥

---

ଏହି ପ୍ରକାରେ ମନୋରଥ ସମସ୍ତେ କରନ୍ତି । ଅତି ଆନନ୍ଦେ ଉତ୍‌ଫୁଲ୍ଲ ହୃଦୟ ହୁଅନ୍ତି ॥
ସୀତା ସ୍ୱୟମ୍ବରେ ଯେଉଁ ନୃପ ଆସିଥିଲେ । ନିରେଖି ଚାରି ଭାଇଙ୍କୁ ସୁଖ ସେ ଲଭିଲେ ॥୧॥
ବର୍ଣ୍ଣିଣ ରାମଙ୍କ ଯଶ ବିମଳ ବିଶାଳ । ନିଜ ନିଜ ଭବନକୁ ଗଲେ ମହୀପାଳ ॥
ଏମନ୍ତେ କିଛି ଦିବସ ହୋଇଲା ଯାପନ । ପ୍ରମୋଦିତ ପୁରବାସୀ ବରଜାତି ଜନ ॥୨॥
ମଙ୍ଗଳ ଲଗନ ଦିନ ହେଲା ଉପସ୍ଥିତ । ହିମ ଋତୁ ମାର୍ଗଶୀର ମାସ ସୁଶୋଭିତ ॥
ଉତ୍ତମ ଗ୍ରହ ନକ୍ଷତ୍ର ଯୋଗ ତିଥିବାର । ଲଗ୍ନ ପତ୍ରୀ ଲେଖି ବିଧି କରିଣ ବିଚାର ॥୩॥
ପଠାଇ ଦେଲେ ନାରଦ କରେ ଦେଇ ତାହା । ଜନକ ଗଣକ ଗଣି ରଖିଥିଲେ ଯାହା ॥
ଶ୍ରବଣ କରି ସକଳ ଲୋକେ ଏହି ବାର୍ତ୍ତା । କହନ୍ତି ଜ୍ୟୋତିଷ ଅଟେ ଇତର ବିଧାତା ॥୪॥

---

ଉଭୟ ଭାଇଙ୍କ ସଦୃଶ ଏହି ଦୁଇ ଭାଇହିଁ ଅଟନ୍ତି ।" ଜନକପୁରର ସମସ୍ତ ନାରୀ ପଣନ୍ତ ପସାରି ବିଧାତାଙ୍କୁ ସବିନୟ ବାଣୀ ଜଣାଉଆନ୍ତି—"ଚାରି ଭାଇଙ୍କର ବିବାହ ଏହି ନଗରରେ ସମ୍ପନ୍ନ ହେଉ ଏବଂ ଆମେ ସମସ୍ତେ ସୁନ୍ଦର ମଙ୍ଗଳ ସଙ୍ଗୀତ ଗାନ କରୁ ।" ସୋରଠା —ସଜଳ ନେତ୍ର ଓ ପୁଲକିତ ଶରୀରରେ ସ୍ତ୍ରୀମାନେ ପରସ୍ପର କୁହାକୁହି ହେଉଆନ୍ତି, "ହେ ସଖି ! ରାଜା ଦୁହେଁ ସୁକୃତର ସମୁଦ୍ର । ତ୍ରିପୁରାରି ଶିବ ସମସ୍ତଙ୍କର ମନୋରଥ ପୂର୍ଣ୍ଣ କରିବେ ।" ॥ ୩୧୧ ॥ ଚୌପାଇ —ଏହିପରି ଭାବରେ ସମସ୍ତେ ମନସ୍କାମନା କରୁଆ'ନ୍ତି ଏବଂ ଉତ୍ସାହପୂର୍ବକ ଆପଣା ଆପଣା ହୃଦୟକୁ ଆନନ୍ଦରେ ପରିପୂର୍ଣ୍ଣ କରୁଆ'ନ୍ତି । ସୀତାଙ୍କ ସ୍ୱୟମ୍ବର ଉପଲକ୍ଷେ ଯେଉଁ ରାଜାମାନେ ଆସିଥିଲେ, ସେମାନେ ମଧ୍ୟ ଚାରି ଭାଇଙ୍କୁ ଦେଖି ଆନନ୍ଦ ଲାଭ କଲେ ॥ ୧ ॥ ଶ୍ରୀରାମଚନ୍ଦ୍ରଙ୍କ ନିର୍ମଳ ଓ ମହାନ ଯଶ କହି କହି ରାଜାମାନେ ଆପଣା ଆପଣା ଘରକୁ ଗଲେ । ଏହିପରି ଭାବରେ କେତେକ ଦିନ ଅତିବାହିତ ହୋଇଗଲା । ଜନକପୁର-ନିବାସୀ ଏବଂ ବରଯାତ୍ରି-ବୃନ୍ଦ ସମସ୍ତେ ଆନନ୍ଦିତ ହେଉଆ'ନ୍ତି ॥ ୨ ॥ ସମସ୍ତ ମଙ୍ଗଳର ମୂଳ ଲଗ୍ନ ଦିବସ ଆସି ଉପସ୍ଥିତ ହେଲା । ହେମନ୍ତ ଋତୁ ଏବଂ ସୁନ୍ଦର ମାର୍ଗଶୀର ମାସ ହୋଇଥାଏ । ଗ୍ରହ, ତିଥି, ନକ୍ଷତ୍ର, ଯୋଗ ଓ ବାର ଶ୍ରେଷ୍ଠ । ଲଗ୍ନ-ମୁହୂର୍ତ୍ତ ଗଣନା କରି ବ୍ରହ୍ମା ତାହା ଉପରେ ବିଚାର କଲେ । ॥ ୩ ॥ ଏବଂ ନାରଦଙ୍କ ହାତରେ ସେହି ଲଗ୍ନପତ୍ରିକା ଜନକପୁରକୁ

ଧେନୁଧୂରି ବେଲା ବିମଲ ସକଲ ସୁମଂଗଲ ମୂଲ ।
ବିପ୍ରନ୍ହ କହେଉ ବିଦେହ ସନ ଜାନି ସଗୁନ ଅନୁକୂଲ ॥୩୧୨॥
ଉପରୋହିତହି କହେଉ ନରନାହା । ଅବ ବିଲଂବ କର କାରନୁ କାହା ॥
ସତାନଂଦ ତବ ସଚିବ ବୋଲାଏ । ମଂଗଲ କଲସ ସାଜି ସବ ଲ୍ୟାଏ ॥୧॥
ସଂଖ ନିସାନ ପନଓ୍ୱ ବହୁ ବାଜେ । ମଂଗଲ କଲସ ସଗୁନ ସୁଭ ସାଜେ ॥
ସୁଭଗ ସୁଆସିନି ଗାଓ୍ୱହିଁ ଗୀତା । କରହିଁ ବେଦ ଧନି ବିପ୍ର ସୁନୀତା ॥୨॥
ଲେନ ଚଲେ ସାଦର ଏହି ଭାଁତୀ । ଗଏ ଜହାଁ ଜନବାସ ବରାତୀ ॥
କୋସଲପତି କର ଦେଖି ସମାଜୂ । ଅତି ଲଘୁ ଲାଗ ତିନ୍ହହି ସୁରରାଜୂ ॥୩॥
ଭୟଉ ସମଉ ଅବ ଧାରିଅ ପାଊ । ୟହ ସୁନି ପରା ନିସାନହିଁ ଘାଊ ॥
ଗୁରହି ପୂଛି କରି କୁଲ ବିଧି ରାଜା । ଚଲେ ସଂଗ ମୁନି ସାଧୁ ସମାଜା ॥୪॥

---

ଧେନୁ ଧୂଳି ବେଳ ପରମ ବିମଳ ସମସ୍ତ ମଙ୍ଗଳ ମୂଳ ।
ବିପ୍ରେ ବିଦେହଙ୍କୁ କହନ୍ତି ବିଚାରି ସୁଲକ୍ଷଣ ଅନୁକୂଳ ॥୩୧୨॥
ବୋଇଲେ ପୁରୋହିତଙ୍କୁ ଅବନୀ ଈଶ୍ୱର । ଏବେ ବିଳମ୍ବ କେବଣ କାରଣରୁ କର ॥
ଶତାନନ୍ଦ ସଚିବଙ୍କୁ ତହୁଁ ଡକାଇଲେ । ମଙ୍ଗଳ ଦ୍ରବ୍ୟ ସକଳ ସଜାଇ ଆଣିଲେ ॥୧॥
ନାନାବିଧ ଢୋଲ ଶଙ୍ଖ ନିଶାଣ ବାଜିଲା । ମଙ୍ଗଳ କଳସ ସବୁ ଶକୁନ ସାଜିଲା ॥
ସୁନ୍ଦରୀ ଅଙ୍ଗନା ଗୀତ ଗାୟନ କରନ୍ତି । ଭୂସୁରେ ପବିତ୍ର ବେଦଧ୍ୱନି ଉଚ୍ଚାରନ୍ତି ॥୨॥
ଏହି ଭାବେ ଆଣିବାକୁ ସାଦରେ ଚଳିଲେ । ଗଲେ ବରବାସେ ଯହିଁ ବରଜାତି ଥିଲେ ॥
କୋଶଳ ନୃପତିଙ୍କର ବିଲୋକି ସମାଜ । ଅତ୍ୟନ୍ତ ତୁଚ୍ଛ ଲାଗିଲା ତାଙ୍କୁ ଦେବରାଜ ॥୩॥
ହେଲାଣି ସମୟ, ଏବେ ସଞ୍ଚାଳନ୍ତୁ ପାଦ । ଏହା ଶୁଣି ହେଲା ଘନ ନିଶାଣ ନିନାଦ ॥
ଗୁରୁଙ୍କୁ ପଚାରି ନୃପ କୁଳରୀତି କରି । ଚଳିଲେ ସମାଜ ସାଧୁ ମୁନି ସଙ୍ଗେ ଧରି ॥୪॥

---

ପଠାଇଦେଲେ । ଜନକଙ୍କ ଜ୍ୟୋତିଷୀମାନେ ମଧ୍ୟ ସେହି ଗଣନା କରି ରଖିଥିଲେ । ଯେତେବେଳେ ସମସ୍ତ ଲୋକ ଏ କଥା ଶୁଣିଲେ, ସେମାନେ କହିବାକୁ ଲାଗିଲେ, "ଏଠିକାର ଜ୍ୟୋତିଷୀ ମଧ୍ୟ ବ୍ରହ୍ମା ।" ॥ ୪ ॥ ଦୋହା :—ନିର୍ମଳ ଓ ସମସ୍ତ ସୁମଙ୍ଗଳର ମୂଳ ଗୋଧୂଳିର ପବିତ୍ର ବେଳା ଆସି ପହଞ୍ଚିଲା ଏବଂ ଅନୁକୂଳ ଶକୁନ ଦେଖାଗଲା । ଏହା ଜାଣି ବ୍ରାହ୍ମଣମାନେ ଜନକଙ୍କୁ ଜଣାଇଲେ ॥ ୩୧୨ ॥ ଚୌପାଇ :—ତତ୍ପରେ ରାଜା ଜନକ ପୁରୋହିତ ଶତାନନ୍ଦଙ୍କୁ କହିଲେ, "ଏବେ ବିଳମ୍ବ ଆଉ କାହିଁକି ?" ତେଣୁ ଶତାନନ୍ଦ ମନ୍ତ୍ରୀମାନଙ୍କୁ ଡକାଇଲେ । ସେମାନେ ସମସ୍ତେ ସକଳ ମଙ୍ଗଳ ଦ୍ରବ୍ୟ ନେଇ ଆସିଲେ ॥ ୧ ॥ ନାନାବିଧ ଶଙ୍ଖ, ନିଶାଣ, ଢୋଲ ଏବଂ ଅନ୍ୟାନ୍ୟ ନାନା ପ୍ରକାର ବାଦ୍ୟ ବାଜିବାକୁ ଲାଗିଲା ଏବଂ ମଙ୍ଗଳ କଳସ ତଥା ଶୁଭ-ଶକୁନ-ସୂଚକ ଦ୍ରବ୍ୟ (ଦଧି, ଦୂବ ଆଦି) ସଜାଗଲା । ସୁନ୍ଦରୀ ଓ ସୁଆସିନୀ ନାରୀମାନେ ଗୀତ ଗାଉଥା'ନ୍ତି ଏବଂ ପବିତ୍ର ବିପ୍ରଗଣ ବେଦଧ୍ୱନି ଉଚ୍ଚାରଣ କରୁଥାନ୍ତି ॥ ୨ ॥ ସମସ୍ତ ଲୋକ ଏହିରୂପେ

ଭାଗ୍ୟ ବିଭବ ଅବଧେସ କର ଦେଖି ଦେବ ବ୍ରହ୍ମାଦି ।
ଲଗେ ସରାହନ ସହସ ମୁଖ ଜାନି ଜନମ ନିଜ ବାଦି ॥୩୧୩॥
ସୁରନ୍ତ୍ର ସୁମଂଗଲ ଅବସରୁ ଜାନା । ବରଷହିଁ ସୁମନ ବଜାଇ ନିସାନା ॥
ସିବ ବ୍ରହ୍ମାଦିକ ବିବୁଧ ବରୁଥା । ଚଢେ ବିମାନହ୍ନି ନାନା ଜୁଥା ॥୧॥
ପ୍ରେମ ପୁଲକ ତନ ହୃଦୟଁ ଉଛାହୂ । ଚଲେ ବିଲୋକନ ରାମ ବିଆହୂ ॥
ଦେଖି ଜନକପୁର ସୁର ଅନୁରାଗେ । ନିଜ ନିଜ ଲୋକ ସବହିଁ ଲଘୁ ଲାଗେ ॥୨॥
ଚିତବହିଁ ଚକିତ ବିଚିତ୍ର ବିତାନା । ରଚନା ସକଲ ଅଲୌକିକ ନାନା ॥
ନଗର ନାରି ନର ରୂପ ନିଧାନା । ସୁଘର ସୁଧରମ ସୁସୀଲ ସୁଜାନା ॥୩॥

---

ସୌଭାଗ୍ୟ ବୈଭବ ଅଯୋଧ୍ୟାନାଥଙ୍କ ବ୍ରହ୍ମାଦି ଦେବେ ଦେଖିଣ ।
କରନ୍ତି ପ୍ରଶଂସା ସହସ୍ରାନନଙ୍କୁ ବୃଥା ସ୍ୱଜନ୍ମ ଭାବିଣ ॥୩୧୩॥
ସୁମଙ୍ଗଳ ଅବସର ଜାଣି ସୁରଗଣ ନିଷାଣ ବଜାଇ ବୃଷ୍ଟି କରନ୍ତି ସୁମନ ॥
ମହେଶ ବିରଞ୍ଚି ଆଦି ବିବୁଧ ନିକରେ । ଯୂଥ ଯୂଥ ହୋଇ ଚଢି ନାନା ବାହନରେ ॥୧॥
ପ୍ରେମେ ପୁଲକିତ ତନୁ ହୃଦୟେ ଉତ୍ସାହ । ଆସିଲେ ଦେଖିବା ପାଇଁ ରାମଙ୍କ ବିବାହ ॥
ନିରେଖି ଜନକପୁର ମନ ଅନୁରାଗେ । ସମସ୍ତଙ୍କୁ ନିଜ ନିଜ ଲୋକ ସାନ ଲାଗେ ॥୨॥
ଚକିତ ଚାହେଁ ବିଚିତ୍ର ବିତାନ ଦେଖନ୍ତି । ରଚନା ନାନା ପ୍ରକାର ଅଲୌକିକ ଅତି ॥
ନଗର ନାରୀ ପୁରୁଷ ସୌନ୍ଦର୍ଯ୍ୟ ନିଧାନ । କୁଲୀନ ପ୍ରବୀଣ ଧର୍ମବନ୍ତ ଶୀଳବାନ ॥୩॥

---

ଆଦରରେ ବରଯାତ୍ରୀ ବୃନ୍ଦଙ୍କୁ ପାଛୋଟି ଆଣିବାକୁ ଗଲେ ଏବଂ ଯେଉଁଠି ବରଯାତ୍ରୀମାନେ ଥିଲେ ସେହି ବରବାସକୁ ଗଲେ । ଅଯୋଧ୍ୟାପତି ଦଶରଥଙ୍କ ସମାଜ (ବୈଭବ) ଦେଖି ସେମାନଙ୍କୁ ଦେବରାଜ ଇନ୍ଦ୍ର ମଧ୍ୟ ଅତି ତୁଚ୍ଛ ବୋଧ ହେଲେ ॥ ୩ ॥ ସେମାନେ ଯାଇ ବିନତି କଲେ—"ସମୟ ହୋଇଗଲା, ଏବେ ବିରାଜମାନ ହୁଅନ୍ତୁ ।" ଏହା ଶୁଣିବା ମାତ୍ରେ ଘନ ଘନ ନିଷାଣ ନିନାଦିତ ହେଲା । ଗୁରୁ ବଶିଷ୍ଠଙ୍କୁ ପଚାରି ରାଜା ଦଶରଥ କୁଳର ସମସ୍ତ ରୀତି ଯଥାବିଧି ପାଳନ କଲେ ଏବଂ ମୁନି ଓ ସାଧୁ-ସମାଜ ସହିତ ଅଗ୍ରସର ହେଲେ ॥ ୪ ॥ ଦୋହା :—ବ୍ରହ୍ମାଦି ଦେବତାଗଣ ଅଯୋଧ୍ୟାପତି ଦଶରଥଙ୍କ ସୌଭାଗ୍ୟ ଓ ବୈଭବ ଦେଖିଲେ । ତାହା ବର୍ଣ୍ଣନା କରିବାକୁ ସହସ୍ରାନନ ହିଁ ସମର୍ଥ ବୋଲି ଜାଣି ସେମାନେ ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ ଏବଂ ଆପଣା ଆପଣାର ଜନ୍ମ ବ୍ୟର୍ଥ ବୋଲି ମନେ କଲେ ॥ ୩୧୩ ॥ ଚୌପାଈ :—ଦେବଗଣ ସୁମଙ୍ଗଳ ଅବସର ଜାଣି ନିଷାଣ ବଜାଇ ବଜାଇ ସୁମନ ବୃଷ୍ଟି କରିବାରେ ଲାଗିଥା'ନ୍ତି । ଶିବ, ବ୍ରହ୍ମାଦି ଦେବତାବୃନ୍ଦ ଯୂଥ ଯୂଥ ହୋଇ ଯାଇ ବିମାନରେ ଚଢିଲେ ॥ ୧ ॥ ସେମାନେ ପ୍ରେମରେ ପୁଲକିତଶରୀର ହୋଇ ଏବଂ ହୃଦୟରେ ଉତ୍ସାହ ଭରି ଶ୍ରୀରାମଚନ୍ଦ୍ରଙ୍କ ବିବାହ ଦେଖିବାକୁ ଚାଲିଲେ । ଦେବତାମାନେ ଜନକପୁରକୁ ଦେଖି ଏତେ ଅନୁରକ୍ତ ହୋଇ ପଡିଥିଲେ ଯେ, ସେମାନଙ୍କୁ ଆପଣା ଆପଣାର ଲୋକ (ପୁର) ଅତି ତୁଚ୍ଛ ବୋଧ ହେଲା ॥ ୨ ॥

ତିହ୍ନହି ଦେଖି ସବ ସୁର ସୁରନାରୀଁ । ଭଏ ନଖତ ଜନୁ ବିଧୁ ଉଜିଆରୀଁ ॥
ବିଧିହି ଭୟଉ ଆଚରଜୁ ବିସେଷୀ । ନିଜ କରନୀ କଛୁ କତହୁଁ ନ ଦେଖୀ ॥୪॥
ସିବଁ ସମୁଝାଏ ଦେବ ସବ ଜନି ଆଚରଜ ଭୁଲାହୁ
ହୃଦୟଁ ବିଚାରହୁ ଧୀର ଧରି ସିୟ ରଘୁବୀର ବିଆହୁ ॥୩୧୪॥
ଜିହ୍ନ କର ନାମୁ ଲେତ ଜଗ ମାହୀଁ । ସକଲ ଅମଂଗଲ ମୂଲ ନସାହୀଁ ॥
କରତଲ ହୋହିଁ ପଦାରଥ ଚାରୀ । ତେଇ ସିୟ ରାମୁ କହେଉ କାମାରୀ ॥୧॥
ଏହି ବିଧି ସଂଭୁ ସୁରହ୍ନ ସମୁଝାୱା । ପୁନି ଆଗେଁ ବର ବସହ ଚଲାୱା ॥
ଦେବହ୍ନ ଦେଖେ ଦସରଥୁ ଜାତା । ମହାମୋଦ ମନ ପୁଲକିତ ଗାତା ॥୨॥

---

ତାଙ୍କୁ ଦେଖି ସୁର, ସୁର-ରମଣୀ ସମସ୍ତେ । ହୋଇଲେ ବିଧୁ ଆଲୋକେ ତାରକା ଯେମନ୍ତେ ॥
ଅଧିକ ଆଶ୍ଚର୍ଯାନ୍ୱିତ ବିଧାତା ହୋଇଲେ । ଆପଣା କୃତିତ୍ୱ କାହିଁ କିଛି ନ ଦେଖିଲେ ॥୪॥
ବୁଝାଇଲେ ସୁରଗଣଙ୍କୁ ଶଙ୍କର ନ ଭୁଲ ଆଶ୍ଚର୍ଯ କରି ।
ସୀତା ରଘୁବୀର ବିବାହ ବିଚାର ହୃଦୟରେ ଧୈର୍ଯ ଧରି ॥୩୧୪॥
ଯାହାଙ୍କ ନାମ ଜଗତେ କଲେ ଉଚ୍ଚାରଣ । ବିନଷ୍ଟ ହୁଅନ୍ତି ସର୍ବ ଅଶୁଭ କାରଣ ॥
କରଗତ ହୋନ୍ତି ଧର୍ମ ଅର୍ଥ ଫଳ ଚାରି । ସେହି ସୀତା ରାମ ବୋଲି କହିଲେ କାମାରି ॥୧॥
ଏହି ଭାବେ ବୁଝାଇଣ ସୁରଙ୍କୁ ଶଙ୍କର । ପୁଣି ଆଗେ ଚଳାଇଲେ ବୃଷଭ ସୁନ୍ଦର ॥
ଦେଖିଲେ ଦଶରଥଙ୍କୁ ଯାଆନ୍ତି ପଥରେ । ପୁଲକିତ ଅଙ୍ଗ ଅତି ପ୍ରଫୁଲ୍ଲ ଅନ୍ତରେ ॥୨॥

---

ସେମାନେ ବିଚିତ୍ର ମଣ୍ଡପ ଓ ନାନା ପ୍ରକାର ଅଲୌକିକ ରଚନା ଚକିତ ହୋଇ ଦେଖୁଥାନ୍ତି । ନଗରର ନରନାରୀ ସମସ୍ତେ ରୂପ ଓ ସୌନ୍ଦର୍ଯର ନିଧାନ, ପ୍ରବୀଣ, ଶ୍ରେଷ୍ଠ ଧର୍ମାତ୍ମା, ଚରିତ୍ରବାନ୍ ଏବଂ ବିଜ୍ଞ ॥ ୩ ॥ ସେମାନଙ୍କୁ ଦେଖି ସମସ୍ତ ଦେବତା ଓ ଦେବାଙ୍ଗନା ଏପରି ନିଷ୍ପ୍ରଭ ହୋଇଗଲେ, ସତେ ଯେମିତି ଚନ୍ଦ୍ରଙ୍କର ଉଜ୍ଜ୍ୱଳ ପ୍ରକାଶରେ ତାରାମାନେ ନିଷ୍ପ୍ରଭ ହୋଇ ପଡ଼ିଛନ୍ତି । ବ୍ରହ୍ମାଙ୍କୁ ବିଶେଷ ଆଶ୍ଚର୍ଯ ଲାଗିଲା । କାରଣ ସେ ସେମାନଙ୍କ ମଧ୍ୟରେ ତାଙ୍କ ନିଜର କୌଣସି ଗୋଟିଏ ହେଲେ କୃତିତ୍ୱ ଦେଖିଲେ ନାହିଁ । ॥ ୪ ॥ ଦୋହା :—ତତ୍ପରେ ଶିବ ସମସ୍ତ ଦେବତାଙ୍କୁ ବୁଝାଇଲେ, "ତୁମ୍ଭେମାନେ ଆଶ୍ଚର୍ଯରେ ଆତ୍ମ-ବିସ୍ମୃତ ହୁଅନାହିଁ । ହୃଦୟରେ ଧୈର୍ଯ ଧରି ବିଚାର କର ଯେ ଏହା (ଭଗବାନ୍‌ଙ୍କ ମହାମହିମାମୟୀ ଶକ୍ତି-ସ୍ୱରୂପିଣୀ) ସୀତା ଓ (ଅଖିଳ ବ୍ରହ୍ମାଣ୍ଡେଶ୍ୱର ସାକ୍ଷାତ୍ ଭଗବାନ୍) ଶ୍ରୀରାମଚନ୍ଦ୍ରଙ୍କ ବିବାହ ।" ॥ ୩୧୪ ॥ ଚୌପାଈ :—କାମାରି ଶିବ ପୁଣି କହିଲେ ଯେ, ଯାହାଙ୍କ ନାମ ଉଚ୍ଚାରଣ କଲା ମାତ୍ରେ ଜଗତରେ ସମସ୍ତ ଅମଙ୍ଗଳର ମୂଳ କଟିଯାଏ ଏବଂ ଧର୍ମ, ଅର୍ଥ, କାମ, ମୋକ୍ଷ ଏହି ଚାରୋଟି ପଦାର୍ଥ କରଗତ ହୁଏ, ଇଏ ଜଗତର ମାତାପିତା ସେହି ଶ୍ରୀ ସୀତାରାମ ॥ ୧ ॥ ଏହିପରି ଭାବରେ ଶଙ୍କର ସୁରଙ୍କୁ ବୁଝାଇଲେ ଏବଂ ତାଙ୍କର ଶ୍ରେଷ୍ଠ ବୃଷଭ ନନ୍ଦୀଶ୍ୱରଙ୍କୁ ଆଗକୁ ଚଳାଇଲେ ଦେବତାମାନେ ଦେଖିଲେ ଯେ, ଦଶରଥ ମନରେ ଅତି ପ୍ରସନ୍ନ ଓ ଶରୀରରେ ପୁଲକିତ

ସାଧୁ ସମାଜ ସଂଗ ମହିଦେବା । ଜନୁ ତନୁ ଧରେଁ କରହିଁ ସୁଖ ସେବା ॥
ସୋହତ ସାଥ ସୁଭଗ ସୁତ ଚାରୀ । ଜନୁ ଅପବରଗ ସକଲ ତନୁଧାରୀ ॥୩॥
ମରକତ କନକ ବରନ ବର ଜୋରୀ । ଦେଖି ସୁରହ୍ନ ଭୈ ପ୍ରୀତି ନ ଥୋରୀ ॥
ପୁନି ରାମହି ବିଲୋକି ହିୟଁ ହରଷେ । ନୃପହି ସରାହି ସୁମନ ତିହ୍ନ ବରଷେ ॥୪॥

ରାମ ରୂପୁ ନଖ ସିଖ ସୁଭଗ ବାରହିଁ ବାର ନିହାରି ।
ପୁଲକ ଗାତ ଲୋଚନ ସଜଲ ଉମା ସମେତ ପୁରାରି ॥୩୧୫॥

କେକି କଂଠ ଦୁତି ସ୍ୟାମଲ ଅଂଗା । ତଡ଼ିତ ବିନିଂଦକ ବସନ ସୁରଂଗା ॥
ବ୍ୟାହ ବିଭୂଷନ ବିବିଧ ବନାଏ । ମଂଗଲ ସବ ସବ ଭାଁତି ସୁହାଏ ॥୧॥
ସରଦ ବିମଲ ବିଧୁ ବଦନୁ ସୁହାୱନ । ନୟନ ନୱଲ ରାଜୀବ ଲଜାୱନ ॥
ସକଲ ଅଲୌକିକ ସୁଂଦରତାଈ । କହି ନ ଜାଇ ମନହୀଁ ମନ ଭାଈ ॥୨॥

---

ସଙ୍ଗେ ମହୀଦେବ ସାଧୁ ସମାଜ ଅଛନ୍ତି । ସୁଖ ଯେହ୍ନେ ତନୁ ଧରି ନୃପଙ୍କୁ ସେବନ୍ତି ॥
ଶୋଭନ୍ତି ସମୀପେ ମନୋହର ସୁତ ଚାରି । ଯେମନ୍ତେ ସମସ୍ତ ଅପବର୍ଗ ଦେହଧାରୀ ॥୩॥
କନକ ମର୍କତ ବେନି ଯୋଡ଼ି ଶୋଭାମୟ । ଦେଖି ବଢ଼ିଲା ସୁରଙ୍କ ପ୍ରୀତି ଅତିଶୟ ॥
ପୁଣି ରାମଙ୍କୁ ନିରେଖି ହୋଇଣ ପ୍ରସନ୍ନ । ନୃପଙ୍କୁ ପ୍ରଶଂସି ବୃଷ୍ଟି କରିଲେ ସୁମନ ॥୪॥

ରାମ ରମ୍ୟ ରୂପ ଆପାଦ ମସ୍ତକ ଅବଲୋକି ଅନୁକ୍ଷଣ ।
ହେଲେ ପୁଲକିତ ନେତ୍ର ନୀର-ଯୁକ୍ତ ଉମା ସହ ତ୍ରିଲୋଚନ ॥୩୧୫॥

କେକୀ କଣ୍ଠ ସମ ଦୀପ୍ତ ଶ୍ୟାମଳ ସୁଅଙ୍ଗ । ନିନ୍ଦଇ ସୌଦାମିନୀକୁ ବସନ ସୁରଙ୍ଗ ॥
ବିବିଧ ବିବାହ ବିଭୂଷଣେ ବିଭୂଷିତ । ମଙ୍ଗଳମୟ ସକଳ ପ୍ରକାରେ ଶୋଭିତ ॥୧॥
ସୁନ୍ଦର ଶରଦ ବିଧୁ ବିମଳ ବଦନ । ନବ କଞ୍ଜକୁ ଲଜ୍ଜିତ କରଇ ନୟନ ॥
ଅଲୌକିକ ସୁନ୍ଦରତା ଶରୀରେ ରାଜଇ । ମନ ଅନୁଭବେ ତାହା, କହି ନ ହୁଅଇ ॥୨॥

---

ହୋଇ ଚାଲିଯାଉଛନ୍ତି ॥ ୨ ॥ ତାଙ୍କ ସହିତ ପରମ ଆନନ୍ଦିତ ସାଧୁ ଓ ବ୍ରାହ୍ମଣମଣ୍ଡଳୀ ଏପରି ଶୋଭା ଦେଉଅଛନ୍ତି, ସତେ ଯେମିତି ସମସ୍ତ ସୁଖ ଶରୀରଧାରଣପୂର୍ବକ ତାଙ୍କ ସେବା କରୁଅଛି । ଚାରିଗୋଟି ସୁନ୍ଦର ପୁଅ ରୂପେ ସମସ୍ତ ମୋକ୍ଷ (ସାଲୋକ୍ୟ, ସାମୀପ୍ୟ, ସାରୂପ୍ୟ ଓ ସାଯୁଜ୍ୟ) ଶରୀର ଧାରଣ କରିଅଛନ୍ତି କି ! ॥ ୩ ॥ ମର୍କତମଣି ଓ ସୁବର୍ଣ୍ଣ ରଙ୍ଗର ଶ୍ରେଷ୍ଠ ଯୁଗଳ ଦ୍ୱୟଙ୍କୁ ଦେଖି ଦେବତାମାନଙ୍କର କମ୍ ପ୍ରୀତି ହେଲାନାହିଁ । ପୁଣି ରାମଚନ୍ଦ୍ରଙ୍କୁ ଦେଖି ସେମାନେ ହୃଦୟରେ ଅତିଶୟ ଆନନ୍ଦିତ ହେଲେ ଏବଂ ରାଜାଙ୍କୁ ପ୍ରଶଂସା କରି ସୁମନ ବୃଷ୍ଟି କଲେ ॥ ୪ ॥ ଦୋହା :—ଶ୍ରୀରାମଚନ୍ଦ୍ରଙ୍କର ଆପାଦ-ମସ୍ତକ ସୁନ୍ଦର ରୂପକୁ ବାରମ୍ବାର ନିରୀକ୍ଷଣ କରି ପାର୍ବତୀଙ୍କ ସହିତ ଶିବଙ୍କର ଶରୀର ପୁଲକିତ ହୋଇଗଲା ଏବଂ ତାଙ୍କର ନେତ୍ର ପ୍ରେମାଶ୍ରୁ ଯୋଗେ ସଜଳ ହୋଇ ଆସିଲା ॥ ୩୧୫ ॥ ଚୌପାଇ :—ରାମଙ୍କର କେକିକଣ୍ଠ ସମାନ ଦୀପ୍ତ ଶ୍ୟାମଳ ଶରୀର ଏବଂ ତାଙ୍କର ସୁରଙ୍ଗ ପୀତବର୍ଣ୍ଣବିଶିଷ୍ଟ ପ୍ରକାଶମୟ ବସ୍ତ୍ର ବିଜୁଳିକୁ ନିନ୍ଦା କରୁଥାଏ ।

ବଂଧ ମନୋହର ସୋହହିଁ ସଂଗା । ଜାତ ନଚାୱତ ଚପଲ ତୁରଂଗା ॥
ରାଜକୁଅଁର ବର ବାଜି ଦେଖାୱହିଁ । ବଂସ ପ୍ରସଂସକ ବିରଦ ସୁନାୱହିଁ ॥୩॥
ଜେହି ତୁରଂଗ ପର ରାମୁ ବିରାଜେ । ଗତି ବିଲୋକି ଖଗନାୟକୁ ଲାଜେ ॥
କହି ନ ଜାଇ ସବ ଭାଁତି ସୁହାୱା । ବାଜି ବେଷୁ ଜନୁ କାମ ବନାୱା ॥୪॥

ଜନୁ ବାଜିବେଷୁ ବନାଇ ମନସିଜୁ ରାମ ହିତ ଅତି ସୋହଈ ।
ଆପନେଁ ବୟ ବଲ ରୂପ ଗୁନ ଗତି ସକଲ ଭୁବନ ବିମୋହଈ ॥
ଜଗମଗତ ଜୀନୁ ଜରାୱ ଜୋତି ସୁମୋତି ମନି ମାନିକ ଲଗେ ॥
କିଂକିନି ଲଲାମ ଲଗାମୁ ଲଲିତ ବିଲୋକି ସୁର ନର ମୁନି ଠଗେ ॥

---

ମନୋହର ଭ୍ରାତା ଶୋଭା ପାଆନ୍ତି ସଙ୍ଗତେ । ଚପଲ ଅଶ୍ୱ ନଚାଇ ଯାଆନ୍ତି ସମସ୍ତେ ॥
ରାଜକୁମର ସୁନ୍ଦର ଘୋଟକ ନଚାନ୍ତି । କୁଳ-ପ୍ରଶଂସକ କୁଳ-କୀରତି ଶୁଣାନ୍ତି ॥୩॥
ଯେଉଁ ତୁରଙ୍ଗ ଉପରେ ରାମ ବିରାଜିତ । ଗତି ଦେଖି ଖଗରାଜ ହୁଅଇ ଲଜ୍ଜିତ ॥
ସର୍ବ ଶୋଭାମୟ କରି ନ ହୁଏ ବର୍ଣ୍ଣନ । ବାଜି ବେଷ ସାଜି ଅଛି ଯେସନେ ମଦନ ॥୪॥

ଯେମନ୍ତେ ବାଜି ବେଶ ସାଜିଣ ରତି ଈଶ ରାମଙ୍କ କାରଣେ ଶୋଭଇ ।
ନିଜ ଗତି ସୌନ୍ଦର୍ଯ୍ୟେ ବଳ ବୟସ ତେଜେ ସକଳ ଭୁବନ ମୋହଇ ।
ମଣି ମାଣିକେ ବିମଣ୍ଡିତ, ଜୀନ ଲଦନ ହୁଏ ଦୀପ୍ତ,
ଦେଖି ଭୁଲନ୍ତି ସୁର ନର ମୁନି, ସୁନ୍ଦର କିଙ୍କିଣୀ ଲଗାମେ ଲଳିତ ॥

---

ସମସ୍ତ ମଂଗଳମୟ ଏବଂ ବିବିଧ ସୁନ୍ଦର ବିବାହ-ଭୂଷଣ ଶରୀର ଉପରେ ସୁସଜ୍ଜିତ ॥ ୧ ॥ ତାଙ୍କର ସୁନ୍ଦର ମୁଖ ଶରତ ପୂର୍ଣ୍ଣିମାର ନିର୍ମଳ ଚନ୍ଦ୍ରମାର ସମାନ ଏବଂ ମନୋହର ନେତ୍ର ନବୀନ କମଳକୁ ଲଜ୍ଜିତ କରୁଥାଏ । ସମସ୍ତ ସୁନ୍ଦରତା ଅଲୌକିକ, ଅର୍ଥାତ୍ ଦିବ୍ୟ ସଚ୍ଚିଦାନନ୍ଦ-ମୟୀ, ମାୟା-ସଗଠିତ ନୁହେଁ । ତାହା ଭାଷାରେ କୁହାଯାଇ ପାରିବନାହିଁ । ମନ କେବଳ ଅନୁଭବ କରିପାରେ ॥୨॥ ସଂଗରେ ମନୋହର ଭ୍ରାତା-ଗଣ ସୁଶୋଭିତ । ସେମାନେ ସମସ୍ତେ ଚଞ୍ଚଳ ଅଶ୍ୱଙ୍କୁ ନଚାଇ ନଚାଇ ଚାଲି ଯାଉଥା'ନ୍ତି । ରାଜକୁମାରମାନେ ଶ୍ରେଷ୍ଠ ଅଶ୍ୱମାନଙ୍କର ଗତି ଓ ଭଂଗୀ ଦେଖାଉଥା'ନ୍ତି ଏବଂ ବଂଶର ପ୍ରଶଂସାକାରୀ ମାଗଧ, ଭାଟ ଆଦି କୁଳକୀର୍ତ୍ତି ଶୁଣାଉଥା'ନ୍ତି ॥ ୩ ॥ ଯେଉଁ ଅଶ୍ୱ ଉପରେ ରାମ ବିରାଜିତ, ତାହାର ଗତି ଦେଖି ଗରୁଡ ମଧ୍ୟ ଲଜ୍ଜିତ ହୁଅନ୍ତି । ତାହାର ବର୍ଣ୍ଣନା କରାଯାଇ ପାରିବ ନାହିଁ । ସେ ସକଳ ପ୍ରକାରେ ସୁନ୍ଦର । ସତେ ଯେମିତି ମଦନ ଅଶ୍ୱବେଶ ଧାରଣ କରିଅଛନ୍ତି ! ॥ ୪ ॥ ଛନ୍ଦ '—ସତେ ଯେମିତି ଶ୍ରୀରାମଚନ୍ଦ୍ରଙ୍କ ନିମନ୍ତେ କନ୍ଦର୍ପ ଅଶ୍ୱବେଶ-ଧାରଣପୂର୍ବକ ସୁଶୋଭିତ ହେଉଅଛନ୍ତି ! ନିଜ ବୟସ, ବଳ, ରୂପ, ଗୁଣ ଏବଂ ଗତିରେ ସେ ସମସ୍ତ ଭୁବନକୁ ମୁଗ୍ଧ କରୁଥାଏ । ସୁନ୍ଦର ମୁକ୍ତା, ମଣି ଓ ମାଣିକ୍ୟାଦିରେ ବିଜଡ଼ିତ ଓ ବିମଣ୍ଡିତ ଜିନ୍ ଜ୍ୟୋତିରେ ଝଟକୁଥାଏ । ତାହାର ସୁନ୍ଦର ଘୁଂଗୁରୁଲଗା ଲଳିତ ଲଗାମକୁ ଦେଖି ଦେବତା, ମନୁଷ୍ୟ ଓ ମୁନି ସମସ୍ତେ

ପ୍ରଭୁ ମନସହିଁ ଲୟଲୀନ ମନୁ ଚଲତ ବାଜି ଛବି ପାୱ ।
ଭୂଷିତ ଉଡ଼ଗନ ତଡ଼ିତ ଘନୁ ଜନୁ ବର ବରହି ନଚାୱ ॥୩୧୬॥
ଜେହିଁ ବର ବାଜି ରାମୁ ଅସୱାରା । ତେହି ସାରଦଉ ନ ବରନୈ ପାରା ॥
ସଂକରୁ ରାମରୂପ ଅନୁରାଗେ । ନୟନ ପଂଚଦସ ଅତି ପ୍ରିୟ ଲାଗେ ॥୧॥
ହରି ହିତ ସହିତ ରାମୁ ଜବ ଜୋହେ । ରମା ସମେତ ରମାପତି ମୋହେ ॥
ନିରଖି ରାମ ଛବି ବିଧି ହରଷାନେ । ଆଠଇ ନୟନ ଜାନି ପଛିତାନେ ॥୨॥
ସୁର ସେନପ ଉର ବହୁତ ଉଛାହୂ । ବିଧି ତେ ଡେୱଢ଼ ଲୋଚନ ଲାହୂ ॥
ରାମହି ଚିତୱ ସୁରେସ ସୁଜାନା । ଗୌତମ ଶ୍ରାପୁ ପରମ ହିତ ମାନା ॥୩॥
ଦେବ ସକଲ ସୁରପତିହି ସିହାହୀଁ । ଆଜୁ ପୁରଂଦର ସମ କୋଉ ନାହୀଁ ॥
ମୁଦିତ ଦେବଗନ ରାମହି ଦେଖୀ । ନୃପସମାଜ ଦୁହୁଁ ହରଷୁ ବିସେଷୀ ॥୪॥

---

ପ୍ରଭୁଙ୍କ ମନରେ ମନ କରି ଲୀନ ଚଳନ୍ତେ ବାଜି ଶୋଭଇ ।
ତଡ଼ିତ୍ତାରଗଣ-ବିଭୂଷିତ ଘନ ଦେଖି ବା ବର୍ହି ନାଚଇ ॥୩୧୬॥
ଯେଉଁ ବର ବାଜି ପୃଷ୍ଠେ ବିଜେ ରଘୁମଣି । ଶାରଦା ମଧ୍ୟ ତା' ଶୋଭା ନ ପାରିବେ ବର୍ଣ୍ଣି ॥
ଅନୁରକ୍ତ ରାମ ରୂପେ ହୋଇଲେ ମହେଶ । ପଞ୍ଚଦଶ ନେତ୍ର ପ୍ରିୟ ଲାଗିଲା ବିଶେଷ ॥୧॥
ହରି ଅନୁରାଗେ ଯେବେ ରାମଙ୍କୁ ଚାହିଁଲେ । ରମା ସହିତ ରମେଶ ମୋହିତ ହୋଇଲେ ॥
ନିରେଖି ରାମଙ୍କ ଛବି ବିଧି ହରଷିତ । ଆଠୋଟି ଆଖି ବିଚାରି ହୁଅନ୍ତି ଦୁଃଖିତ ॥୨॥
ଷଡ଼ାନନଙ୍କ ହୃଦୟେ ଉତ୍ସାହ ପର୍ଯ୍ୟାପ୍ତ । ବିଧିଠାରୁ ଦେଢ଼ଗୁଣ ନେତ୍ର ଲାଭ ପ୍ରାପ୍ତ ॥
ରାମଙ୍କୁ ଚାହିଁ ଚତୁର ନାକ ଲୋକ ପତି । ଗୌତମ ଶାପ ମଣିଲେ ହିତକର ଅତି ॥୩॥
ସୁରେଶଙ୍କୁ ପ୍ରଶଂସନ୍ତି ବିବୁଧ ନିକର । ଆଜି ସହସ୍ରାକ୍ଷ ସମ ନାହିଁ କେ ଇତର ॥
ପ୍ରସନ୍ନ ହେଲେ ରାମଙ୍କୁ ଦେଖି ସୁରବୃନ୍ଦ । ଉଭୟ ନୃପ ସମାଜ ବହୁତ ଆନନ୍ଦ ॥୪॥

---

ପ୍ରତାରିତ ହୋଇଯାଆନ୍ତି । ଦୋହା :—ପ୍ରଭୁଙ୍କ ଇଚ୍ଛାରେ ନିଜ ମନକୁ ଲୀନ କରି ଚଳନ୍ତେ, ସେ ଅଶ୍ୱ ବଡ଼ ଶୋଭା ପାଉଥାଏ । ସତେ ଯେମିତି ତାରାବଳୀ ତଥା ବିଜୁଳିରେ ଅଳଂକୃତ ମେଘ ସୁନ୍ଦର ମୟୂରକୁ ନଚାଉଅଛି କି ! ॥ ୩୧୬ ॥ ଚୌପାଈ :—ଯେଉଁ ଶ୍ରେଷ୍ଠ ଅଶ୍ୱ ଉପରେ ରାମଚନ୍ଦ୍ର ଆରୋହଣ କରିଅଛନ୍ତି, ତାହାର ବର୍ଣ୍ଣନା ସରସ୍ୱତୀ ସୁଦ୍ଧା କରିପାରିବେ ନାହିଁ । ଶଙ୍କର ଶ୍ରୀରାମଙ୍କ ରୂପରେ ଏତେ ଦୂର ଅନୁରକ୍ତ ହୋଇ ପଡ଼ିଥା'ନ୍ତି ଯେ ତାଙ୍କୁ ତାଙ୍କର ପନ୍ଦରଟି ନେତ୍ର ଏତେବେଳେ ଅତି ପ୍ରିୟ ଓ ପସନ୍ଦ ଲାଗୁଥାଏ । ଏତେ ସଂଖ୍ୟକ ନେତ୍ରରେ ସେ ତାଙ୍କର ରୂପକୁ ତନ୍ନତନ୍ନ କରି ଦେଖିବାର ସୁବିଧା ଲାଭ କରୁଥା'ନ୍ତି ॥ ୧ ॥ ଭଗବାନ୍ ହରି ଯେତେବେଳେ ପ୍ରେମ ସହିତ ରାମଙ୍କୁ ଦେଖିଲେ, ସେତେବେଳେ ସେହି ରମାପତି ରମାଙ୍କ ସମେତ ବିମୋହିତ ହୋଇ ଉଠିଲେ । ଶ୍ରୀରାମଙ୍କ ଶୋଭା ଦେଖି ବ୍ରହ୍ମା ଅତି ପ୍ରସନ୍ନ ହେଲେ ଏବଂ ତାଙ୍କର ମୋଟେ ଆଠୋଟି ନେତ୍ର ଜାଣି ଅନୁତାପ କରିବାକୁ ଲାଗିଲେ ॥ ୨ ॥ ଦେବ-ସେନାପତି

ଅତି ହରଷୁ ରାଜସମାଜ ଦୁହୁଁ ଦିସି ଦୁଂଦୁଭୀଁ ବାଜହିଁ ଘନୀ ।
ବରଷହିଁ ସୁମନ ସୁର ହରଷି କହି ଜୟ ଜୟତି ଜୟ ରଘୁକୁଲମନୀ ॥
ଏହି ଭାଁତି ଜାନି ବରାତ ଆୱତ ବାଜନେ ବହୁ ବାଜହୀଁ ।
ରାନି ସୁଆସିନି ବୋଲି ପରିଛନି ହେତୁ ମଂଗଲ ସାଜହୀଁ ॥

ସଜି ଆରତୀ ଅନେକ ବିଧି ମଂଗଲ ସକଲ ସଁୱାରି ।
ଚଲୀଁ ମୁଦିତ ପରିଛନି କରନ ଗଜଗାମିନି ବର ନାରି ॥୩୧୭॥

ବିଧୁବଦନୀଁ ସବ ସବ ମୃଗଲୋଚନି । ସବ ନିଜ ତନ ଛବି ରତି ମଦୁ ମୋଚନି ॥
ପହିରେଁ ବରନ ବରନ ବର ଚୀରା । ସକଲ ବିଭୂଷନ ସଜେଁ ସରୀରା ॥୧॥

---

ଦେନି ରାଜ ସମାଜେ ଅତି ଆନନ୍ଦେ ବାଜେ ଦୁନ୍ଦୁଭି କରି ଘୋର ସ୍ୱନ ।
ସୁରେ ହରଷେ ଜୟ ଜୟଶ୍ରୀ ରଘୁରାୟ କହୁଣ ସିଞ୍ଚନ୍ତି ସୁମନ ।
ଶୁଣନ୍ତେ ବାଦ୍ୟନାଦ ରାଣୀ, ଆସନ୍ତି ବରଯାତ୍ରୀ ଜାଣି,
ସଖୀଗଣ ସଙ୍ଗତେ ବନ୍ଦାପନା ନିମନ୍ତେ ସଜାନ୍ତି ସୁମଙ୍ଗଳ ଆଣି ॥

ସଜାଇ ଆଳତି ଅନେକ ପ୍ରକାରେ ମଙ୍ଗଳ ବସ୍ତୁ ତିଆରି ।
ଚଳିଲେ ଆନନ୍ଦେ ବନ୍ଦାପନା ହେତୁ ଗଜଗାମିନୀ ସୁନାରୀ ॥୩୧୭॥

ବିଧୁ-ବଦନୀ ସକଳେ କୁରଙ୍ଗ-ଲୋଚନୀ । ନିଜ ଛବି ଯୋ ରତିର ଗରିମା-ମୋଚନୀ ॥
ପିନ୍ଧିଛନ୍ତି ଭିନ୍ନ ଭିନ୍ନ ବହୁ ମୂଲ୍ୟ ଚୀର । ନାନାବିଧ ବିଭୂଷଣେ ଭୂଷିତ ଶରୀର ॥୧॥

---

କାର୍ତ୍ତିକେୟଙ୍କ ହୃଦୟରେ ଅପାର ଉତ୍ସାହ, କାରଣ ସେ ବ୍ରହ୍ମାଙ୍କଠାରୁ ତେଉଣ ଅର୍ଥାତ୍ ବାର ନୟନରେ ରାମ-ଦର୍ଶନର ସୁନ୍ଦର ଲାଭ ଉଠାଉଥା'ନ୍ତି । ସୁଜ୍ଞ ଦେବରାଜ ଇନ୍ଦ୍ର ତାଙ୍କ ସହସ୍ର ନୟନରେ ରାମଚନ୍ଦ୍ରଙ୍କ ସୁନ୍ଦର ରୂପ ଦେଖିପାରୁଥା'ନ୍ତି ଏବଂ ଗୌତମଙ୍କ ଅଭିଶାପକୁ ପରମହିତକର ବୋଲି ମନେ କରୁଥା'ନ୍ତି ॥୩॥ ସମସ୍ତ ଦେବତା ଦେବରାଜ ଇନ୍ଦ୍ରଙ୍କୁ ଆଜି ଈର୍ଷ୍ୟା କରୁଛନ୍ତି । ସେମାନେ କହୁଥା'ନ୍ତି ଯେ, ଆଜି ଇନ୍ଦ୍ରଙ୍କ ସମାନ ଭାଗ୍ୟବାନ୍ କେହି ନାହାନ୍ତି । ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ଦେବତାମାନେ ପ୍ରସନ୍ନ ହେଉଥା'ନ୍ତି ଏବଂ ଉଭୟ ରାଜାଙ୍କ ସମାଜରେ ବିଶେଷ ଆନନ୍ଦର ଲହରୀ ଖେଳି ଯାଉଥାଏ ॥୪॥ ଛନ୍ଦ :—ଉଭୟ ରାଜ-ସମାଜରେ ଅତ୍ୟନ୍ତ ହର୍ଷର ତରଂଗ ଖେଳୁଥାଏ ଏବଂ ବଡ଼ ଜୋରରେ ଦୁନ୍ଦୁଭି ବାଜୁଥାଏ । ଦେବତାମାନେ ପ୍ରସନ୍ନ ହୋଇ "ରଘୁକୁଳମଣି ଶ୍ରୀରାମଙ୍କ ଜୟ ହେଉ, ଜୟ ହେଉ, ଜୟ ହେଉ" କହି ସୁମନ ବୃଷ୍ଟି କରୁଥା'ନ୍ତି । ଏହି ପ୍ରକାରେ ବରଯାତ୍ରି ବୃନ୍ଦଙ୍କ ଆସୁଥିବାର ଜାଣି ବହୁତ ପ୍ରକାର ବାଦ୍ୟ ବାଜିବାକୁ ଲାଗିଲା ଏବଂ ରାଣୀ ସୁହାଗିନୀମାନଙ୍କୁ ଡାକି ବରଙ୍କ ବନ୍ଦାପନ ନିମନ୍ତେ ମଂଗଳ ଦ୍ରବ୍ୟ ସଜାଇବାକୁ ଲାଗିଲେ ॥ ଦୋହା :—ଅନେକ ପ୍ରକାରର ଆରତି ସଜାଇ ଏବଂ ସମସ୍ତ ମଂଗଳ ଦ୍ରବ୍ୟକୁ ଯଥାଯୋଗ୍ୟ ସୁସଜ୍ଜିତ କରି ଗଜଗାମିନୀ ଶ୍ରେଷ୍ଠ ନାରୀମାନେ ଲବଣ୍ୟମୟୀ ନିମନ୍ତେ ଆନନ୍ଦପୂର୍ବକ ଚାଲିବାକୁ ଲାଗିଲେ ॥୩୧୭॥

ସକଲ ସୁମଂଗଲ ଅଂଗ ବନାଏଁ । କରହିଁ ଗାନ କଲକଂଠି ଲଜାଏଁ ॥
କଂକନ କିଂକିନି ନୂପୁର ବାଜହିଁ । ଚାଲି ବିଲୋକି କାମ ଗଜ ଲାଜହିଁ ॥୨॥
ବାଜହିଁ ବାଜନେ ବିବିଧ ପ୍ରକାରା । ନଭ ଅରୁ ନଗର ସୁମଂଗଲ ଚାରା ॥
ସଚୀ ସାରଦା ରମା ଭବାନୀ । ଜେ ସୁରତିୟ ସୁଚି ସହଜ ସୟାନୀ ॥୩॥
କପଟ ନାରି ବର ବେଷ ବନାଈ । ମିଲୀଁ ସକଲ ରନିବାସହିଁ ଜାଈ ॥
କରହିଁ ଗାନ କଲ ମଂଗଲ ବାନୀଁ । ହରଷ ବିବସ ସବ କାହୁଁ ନ ଜାନୀଁ ॥୪॥

କୋ ଜାନ କେହି ଆନଂଦ ବସ ସବ ବ୍ରହ୍ମୁ ବର ପରିଛନ ଚଲୀ ।
କଲ ଗାନ ମଧୁର ନିସାନ ବରଷହିଁ ସୁମନ ସୁର ସୋଭା ଭଲୀ ॥
ଆନଂଦକଂଦୁ ବିଲୋକି ଦୂଲହୁ ସକଲ ହିୟଁ ହରଷିତ ଭଈ ।
ଅଂଭୋଜ ଅଂବକ ଅଂବୁ ଉମଗି ସୁଅଂଗ ପୁଲକାବଲି ଛଈ ॥

---

ମଙ୍ଗଳମୟ ସମସ୍ତ ଅଙ୍ଗ ସଜାଇଣ । କରନ୍ତି ଗାନ କୋକିଳ-ସ୍ୱରକୁ ନିନ୍ଦିଣ ॥
କଙ୍କଣ କିଙ୍କିଣୀ ପୁଣି ନୂପୁର ବାଜଇ । ଗତି ଦେଖି କାମ ଗଜ ଲଜ୍ଜିତ ହୁଅଇ ॥୨॥
ବାଜଇ ବାଜା ବିପୁଳ ବିବିଧ ପ୍ରକାର । ନଗରେ ନଭରେ ହୁଏ ସୁମଙ୍ଗଳାଚାର ॥
ଶଚୀ ସରସ୍ୱତୀ ଲକ୍ଷ୍ମୀ ଆବର ଶଙ୍କରୀ । ଯେ ସୁର ନାରୀ ସହଜେ ଚତୁରୀ ସୁନ୍ଦରୀ ॥୩॥
କପଟେ ରମ୍ୟ ରମଣୀ ବେଶ ବିରଚିଣ । ମିଳିଲେ ସକଳେ ରାଣୀ ମହଲେ ଆସିଣ ॥
ମଧୁର ସ୍ୱରେ ମଙ୍ଗଳ ଗାୟନ କରନ୍ତି । ହରଷେ କେହି କାହାକୁ ଜାଣି ନ ପାରନ୍ତି ॥୪॥

କିଏ ଜାଣେ କାହାକୁ ସର୍ବେ ବ୍ରହ୍ମବରଙ୍କୁ ବନ୍ଦାଇବାକୁ ଆଗମିଲେ ।
ହୁଅଇ କଳଗାନ ବାଜେ ବାଦ୍ୟ ନିଷାଣ ସୁମନ ସୁରେ ବରଷିଲେ ।
ଦେଖି ଆନନ୍ଦକନ୍ଦବର, ହୋଇଲେ ହରଷ ଅନ୍ତର,
ଲୋଚନ-ସରୋରୁହେ ପ୍ରେମାଶ୍ରୁ-ଧାର ବହେ ପୁଲକେ ପୂର୍ଣ୍ଣ କଳେବର ॥

---

ଚୌପାଈ —ସମସ୍ତ ନାରୀ ଚନ୍ଦ୍ରବଦନା ଓ ମୃଗନୟନା ଏବଂ ସମସ୍ତେ ଆପଣା ଆପଣା ଶରୀର-ଶୋଭାରେ ରତିଙ୍କ ଗର୍ବ ମୋଚନ କରୁଥା'ନ୍ତି । ସେମାନେ ବିବିଧ ରଙ୍ଗର ସୁନ୍ଦର ଶାଢ଼ୀ ପିନ୍ଧିଥା'ନ୍ତି ଏବଂ ସେମାନଙ୍କ ଶରୀର ଉପରେ ସମସ୍ତ ଅଳଂକାର ସୁସଜ୍ଜିତ ହୋଇଥାଏ ॥ ୧ ॥ ସମସ୍ତ ଅଙ୍ଗକୁ ସୁମଙ୍ଗଳ ଦ୍ରବ୍ୟମାନଙ୍କରେ ସଜ୍ଜିତ କରି ସେମାନେ ମଧୁର ସ୍ୱରରେ ସଙ୍ଗୀତ ଗାନ କରୁଥା'ନ୍ତି । ସେମାନଙ୍କର ସ୍ୱର କୋଇଲିର ସ୍ୱରକୁ ମଧ୍ୟ ନିନ୍ଦା କରୁଥାଏ । କଙ୍କଣ, କିଙ୍କିଣୀ, ଆଦି ନୂପୁରମାନ ବାଜୁଥାଏ । ସ୍ତ୍ରୀମାନଙ୍କର ଗତି ଦେଖି କାମଦେବଙ୍କ ହସ୍ତୀ ମଧ୍ୟ ଲଜ୍ଜିତ ହେଉଥାଏ ॥ ୨ ॥ ଅନେକ ପ୍ରକାରର ବାଜା ବାଜୁଥାଏ ଆକାଶ ଏବଂ ନଗର, ଉଭୟସ୍ଥଳ ସୁନ୍ଦର ମଂଗଳାଚାର ହେଉଥାଏ । ଶଚୀ (ଇନ୍ଦ୍ରାଣୀ), ସରସ୍ୱତୀ, ଲକ୍ଷ୍ମୀ, ପାର୍ବତୀ ଆଦି ସ୍ୱଭାବତଃ ପବିତ୍ରା ଓ ଚତୁରୀ ଦେବାଂଗନାମାନେ ଥିଲେ ॥ ୩ ॥ ସେମାନେ ସମସ୍ତେ କପଟରେ ଶ୍ରେଷ୍ଠା ନାରୀଙ୍କ ବେଶ ଧାରଣ-

ଜୋ ସୁଖୁ ભ ସିୟ ମାତୁ ମନ ଦେଖି ରାମ ବର ବେଷୁ ।
ସୋ ନ ସକହିଁ କହି କଲପ ସତ ସହସ ସାରଦା ସେଷୁ ॥୩୧୮॥
ନୟନ ନୀରୁ ହଟି ମଂଗଲ ଜାନୀ । ପରିଛନି କରହିଁ ମୁଦିତ ମନ ରାନୀ ॥
ବେଦ ବିହିତ ଅରୁ କୁଲ ଆଚାରୂ । କୀହ୍ନ ଭଲୀ ବିଧି ସବ ବ୍ୟବହାରୂ ॥୧॥
ପଂଚ ସବଦ ଧୁନି ମଂଗଲ ଗାନା । ପଟ ପାଁଵଡ଼େ ପରହିଁ ବିଧି ନାନା ॥
କରି ଆରତୀ ଅରଘୁ ତିହ୍ନ ଦୀହ୍ନା । ରାମ ଗମନୁ ମଂଡପ ତବ କୀହ୍ନା ॥୨॥
ଦସରଥୁ ସହିତ ସମାଜ ବିରାଜେ । ବିଭବ ବିଲୋକି ଲୋକପତି ଲାଜେ ॥
ସମୟଁ ସମୟଁ ସୁର ବରଷହିଁ ଫୂଲା । ସାଂତି ପଢ଼ହିଁ ମହିସୁର ଅନୁକୂଲା ॥୩॥

---

ଯେଉଁ ସୁଖ ହେଲା ସୀତା ମାତା ମନେ ଦେଖି ରାମଙ୍କ ସୁବେଶ ।
ଶତ କଲ୍ପେ ତାହା କହି ନ ପାରିବେ ସହସ୍ର ଶାରଦା ଶେଷ ॥୩୧୮॥
ନୟନେ ନୀର ସମ୍ଭାଳି ଶୁଭବେଳ ଜାଣି । ମୁଦିତ ମନେ କରନ୍ତି ବନ୍ଦାପନା ରାଣୀ ॥
ବେଦ ବିହିତ ଆବର ଯଥା କୁଳାଚାର । କଲେ ବିଧି ଅନୁସାରେ ସବୁ ବ୍ୟବହାର ॥୧॥
ପଞ୍ଚଶବ୍ଦ ଧ୍ୱନି ହୁଏ ସୁମଙ୍ଗଳ ଗାନ । ପଟ୍ଟେ ପଦତଳେ ବସ୍ତ୍ର ବିବିଧ ବିଧାନ ॥
ଆଳତୀ କରିଣ ରାଣୀ ଅର୍ଘ୍ୟ ପ୍ରଦାନଲେ । ତହୁଁ ଶ୍ରୀରାମ ମଣ୍ଡପେ ଗମନ କରିଲେ ॥୨॥
ବିରାଜନ୍ତି ଦଶରଥ ସମାଜ ସହିତ । ବୈଭବ ଦେଖି ଲୋକେଶ ହୁଅନ୍ତି ଲଜ୍ଜିତ ॥
ସମୟେ ସମୟେ ସୁର ପୁଷ୍ପ ବରଷନ୍ତି । ଅନୁକୂଳ ଶାନ୍ତି ପାଠ ବାହ୍ମଣେ କରନ୍ତି ॥୩॥

---

ପୂର୍ବକ ରାଣୀମହଲରେ ଯାଇଁ ମିଳିଲେ ଏବଂ ମନୋହର ବାଣୀରେ ମଂଗଳ ସଂଗୀତ ଗାନ କରିବାକୁ ଲାଗିଲେ । ସମସ୍ତେ ଆନନ୍ଦରେ ବିଶେଷ ରୂପେ ଉନ୍ମତ୍ତ ହୋଇ ପଡ଼ିଥିଲେ । ସୁତରାଂ କେହି କାହାକୁ ଚିହ୍ନି ପାରିଲେ ନାହିଁ ॥ ୪ ॥ ଛନ୍ଦ .—କିଏ କାହାକୁ ଚିହ୍ନୁଚି ! ଆନନ୍ଦର ବଶୀଭୂତା ହୋଇ ସମସ୍ତେ ବ୍ରହ୍ମବରଙ୍କ ଲବଣ-ରାମସ୍ତି-ବିଧାନ କରିବାକୁ ଚାଲିଲେ । ମନୋହର ସଂଗୀତ-ଗାନ ହେଉଥାଏ । ମଧୁର ସ୍ୱରରେ ନିଶାଣ ବାଜୁଥାଏ । ଦେବତାମାନେ ଫୁଲ ବର୍ଷା କରୁଥା'ନ୍ତି । ବଡ ମନୋହର ଶୋଭା ! ଆନନ୍ଦକନ୍ଦ ବରଙ୍କୁ ଦେଖି ସମସ୍ତ ନାରୀ ହୃଦୟରେ ଅପାର ଆନନ୍ଦ ଲାଭ କଲେ । ସେମାନଙ୍କର କମଳ-ନୟନରେ ପ୍ରେମାଶ୍ରୁର ଜଳଧାରା ବହି ଆସିଲା ଏବଂ ସୁନ୍ଦର ଅଂଗ-ପ୍ରତ୍ୟଂଗରେ ପୁଲକାବଳୀ ଖେଳିଗଲା ॥ ଦୋହା .—ରାମଙ୍କ ବରବେଶ ଦେଖି ସୀତାଙ୍କ ମାତା ସୁନୟନାଙ୍କ ମନରେ ଯେଉଁ ସୁଖ ହେଲା, ସହସ୍ର ସହସ୍ର ସରସ୍ୱତୀ ଓ ଶେଷ ତାହାକୁ ଶହେ କଳ୍ପରେ ସୁଦ୍ଧା କହିପାରିବେ ନାହିଁ । ଚୌପାଇ .—ମଂଗଳ ଅବସର ଜାଣି ନୟନଜଳ ସମ୍ଭାଳି ରାଣୀ ପ୍ରସନ୍ନ ମନରେ ଲବଣ-ରାମସ୍ତି-ବିଧି କରୁଥା'ନ୍ତି । ସେ ବେଦବିହିତ ତଥା କୁଳାଚାର ଅନୁସାରେ ସମସ୍ତ ବ୍ୟବହାର ସୁନ୍ଦର ରୂପେ ସମ୍ପାଦନ କଲେ ॥ ୧ ॥ ପଞ୍ଚଶବ୍ଦ (ତନ୍ତ୍ରୀ, ତାଳ, ଝାଞ୍ଜ, ନିଶାଣ ଓ ତୁରୀ, ଏହି ପାଞ୍ଚ ପ୍ରକାର ବାଜାର ଶବ୍ଦ), ପଞ୍ଚଧ୍ୱନି (ବେଦଧ୍ୱନି, ବନ୍ଦୀଧ୍ୱନି, ଜୟଧ୍ୱନି, ଶଙ୍ଖଧ୍ୱନି ଓ

ନଭ ଅରୁ ନଗର କୋଲାହଲ ହୋଈ । ଆପନି ପର କଛୁ ସୁନଇ ନ କୋଈ ॥
ଏହି ବିଧି ରାମୁ ମଣ୍ଡପହିଁ ଆଏ । ଅରଘୁ ଦେଇ ଆସନ ବୈଠାଏ ॥୪॥

ବୈଠାରି ଆସନ ଆରତୀ କରି ନିରଖି ବରୁ ସୁଖୁ ପାୱହୀଁ ।
ମନି ବସନ ଭୂଷନ ଭୂରି ୱାରହିଁ ନାରି ମଂଗଲ ଗାୱହୀଁ ।
ବ୍ରହ୍ମାଦି ସୁରବର ବିପ୍ର ବେଷ ବନାଇ କୌତୁକ ଦେଖହୀଁ ।
ଅବଲୋକି ରଘୁକୁଲ କମଲ ରବି ଛବି ସୁଫଲ ଜୀବନ ଲେଖହୀଁ ॥

ନାଊ ବାରୀ ଭାଟ ନଟ ରାମ ନିଛାୱରି ପାଇ ।
ମୁଦିତ ଅସୀସହିଁ ନାଇ ସିର ହରଷୁ ନ ହୃଦୟଁ ସମାଇ ॥୩୧୯॥

---

ହୁଏ ଅତି କୋଳାହଳ ଅମ୍ବରେ ନଗରେ । ନିଜ ପର କିଛି ଶୁଣା ନ ଯାଏ କର୍ଣ୍ଣରେ ॥
ଏହି ଭାବେ ରଘୁବର ମଣ୍ଡପେ ଆସିଲେ । ଅର୍ଘ୍ୟ ଦେଇ ସୁଆସନେ ଆଣି ବସାଇଲେ ॥୪॥

ଆସନେ ବସାଇଣ ବନ୍ଦାପନା କରିଣ ବର ନିରେଖି ସୁଖ ପା'ନ୍ତି ।
ବସ୍ତ୍ର ଭୂଷଣ ମଣି ଉତ୍ସର୍ଗ କରି ପୁଣି ରମଣୀ ମଙ୍ଗଳ ଗାଆନ୍ତି ।
ବ୍ରହ୍ମାଦି ସୁରେ ଦ୍ୱିଜ ଯତି-ବେଶେ କୌତୁକ ବିଲୋକନ୍ତି,
ନିରେଖି ଛବି ରଘୁ-କୁଳ-କମଳ-ରବି ସଫଳ ଜୀବନ ମଣନ୍ତି ॥

ନାପିତ ଭଣ୍ଡାରୀ ଭାଟ ନୃତ୍ୟକାରୀ ରାମଙ୍କ ଉତ୍ସର୍ଗ ପାଇ ।
ପ୍ରଣମି ଆଶିଷ ଦିଅନ୍ତି ସହର୍ଷ ହୃଦେ ସୁଖ ନ ସମ୍ଭାଇ ॥୩୧୯॥

---

ହୁଳହୁଳି ଧ୍ୱନି) ଏବଂ ମଂଗଳଗାନ ହେଉଥାଏ । ବିବିଧ ବସ୍ତ୍ରର ପାହାଡ଼ା ପଡ଼ୁଥାଏ । ରାଣୀ ଆରତି କରି ଅର୍ଘ୍ୟଦାନ କଲେ । ତତ୍ପରେ ଶ୍ରୀରାମ ମଣ୍ଡପକୁ ଗମନ କଲେ ॥ ୨ ॥ ଦଶରଥ ତାଙ୍କ ସମାଜ ସହିତ ବିରାଜମାନ ହେଲେ । ତାଙ୍କର ବୈଭବ ଦେଖି ଲୋକପତି ମଧ୍ୟ ଲଜ୍ଜିତ ହେଲେ । ସମସ୍ତ ସମୟରେ ଦେବତାମାନେ ପୁଷ୍ପ ବର୍ଷା କରୁଥା'ନ୍ତି ଏବଂ ଭୂଦେବ ବ୍ରାହ୍ମଣମାନେ ସମୟାନୁକୂଳ ଶାନ୍ତିପାଠ କରୁଥା'ନ୍ତି ॥ ୩ ॥ ଆକାଶ ଏବଂ ନଗରରେ କୋଳାହଳ ହେଉଥାଏ । ଆପଣାପର କାହାରି କିଛି କଥା କେହି ଶୁଣୁ ନ ଥା'ନ୍ତି । ଏହି ରୂପେ ଶ୍ରୀରାମଚନ୍ଦ୍ର ମଣ୍ଡପକୁ ଆସିଲେ । ଅର୍ଘ୍ୟ ଦେଇ ତାଙ୍କୁ ଆସନ ଉପରେ ବସାଗଲା ॥ ୪ ॥ ଛନ୍ଦ —ଆସନ ଉପରେ ବସାଇ ତାଙ୍କୁ ବନ୍ଦାପନା କରାଗଲା । ବରଙ୍କୁ ଦେଖି ନାରୀମାନେ ସୁଖ ଲାଭ କରୁଥା'ନ୍ତି । ସେମାନେ ଗଦା ଗଦା ମଣି, ବସ୍ତ୍ର ଏବଂ ଭୂଷଣ ଉତ୍ସର୍ଗ କରି ମଂଗଳ-ସଂଗୀତ ଗାନ କରୁଥା'ନ୍ତି । ବ୍ରହ୍ମାଦି ଶ୍ରେଷ୍ଠ ଦେବତାମାନେ ବ୍ରାହ୍ମଣର ବେଶ ରଚନା କରି କୌତୁକ ଦେଖୁଥା'ନ୍ତି । ସେମାନେ ରଘୁକୁଳ-କମଳ-ରବି ରାମଚନ୍ଦ୍ରଙ୍କ ଛବି ଦେଖି ନିଜ ନିଜର ଜୀବନ ସଫଳ ବୋଲି ଅନୁଭବ କରୁଥା'ନ୍ତି ॥ ଦୋହା —ନାପିତ, ଭଣ୍ଡାରୀ (ବାରିକ), ଭାଟ ଓ ନଟମାନେ ଶ୍ରୀରାମଚନ୍ଦ୍ରଙ୍କର ଉତ୍ସର୍ଗ ପାଇ ଆନନ୍ଦିତ ହେଉଥା'ନ୍ତି ଏବଂ ମୁଣ୍ଡ ନୁଆଁଇ ଆଶିଷ ଦେଉଥା'ନ୍ତି । ସେମାନଙ୍କ

ମିଲେ ଜନକୁ ଦସରଥୁ ଅତି ପ୍ରୀତୀଁ । କରି ବୈଦିକ ଲୌକିକ ସବ ରୀତୀଁ ॥
ମିଲତ ମହା ଦୋଉ ରାଜ ବିରାଜେ । ଉପମା ଖୋଜି ଖୋଜି କବି ଲାଜେ ॥୧॥
ଲହୀ ନ କତହୁଁ ହାରି ହିୟଁ ମାନୀ । ଇନ୍ହ ସମ ଏଇ ଉପମା ଉର ଆନୀ ॥
ସାମଧ ଦେଖି ଦେବ ଅନୁରାଗେ । ସୁମନ ବରଷି ଜସୁ ଗାୱନ ଲାଗେ ॥୨॥
ଜଗୁ ବିରଂଚି ଉପଜାୱା ଜବ ତେଁ । ଦେଖେ ସୁନେ ବ୍ୟାହ ବହୁ ତବ ତେଁ ॥
ସକଲ ଭାଁତି ସମ ସାଜୁ ସମାଜୁ । ସମ ସମଧୀ ଦେଖେ ହମ ଆଜୁ ॥୩॥
ଦେବ ଗିରା ସୁନି ସୁନ୍ଦର ସାଁଚୀ । ପ୍ରୀତି ଅଲୌକିକ ଦୁହୁଁ ଦିସି ମାଚୀ ॥
ଦେତ ପାଁୱଡ଼େ ଅରଘୁ ସୁହାଏ । ସାଦର ଜନକୁ ମଣ୍ଡପହିଁ ଲ୍ୟାଏ ॥୪॥

ମଣ୍ଡପୁ ବିଲୋକି ବିଚିତ୍ର ରଚନାଁ ରୁଚିରତାଁ ମୁନି ମନ ହରେ ।
ନିଜ ପାନି ଜନକ ସୁଜାନ ସବ କହୁଁ ଆନି ସିଂଘାସନ ଧରେ ।
କୁଲ ଇଷ୍ଟ ସରିସ ବସିଷ୍ଠ ପୂଜେ ବିନୟ କରି ଆସିଷ ଲହୀ ।
କୌସିକହି ପୂଜତ ପରମ ପ୍ରୀତି କି ରୀତି ତୌ ନ ପରୈ କହୀ ॥

---

ମିଳିଲେ ଜନକ ଦଶରଥ ଅତି ପ୍ରୀତି । କରି ଲୌକିକ ବୈଦିକ ଯଥା କୁଳରୀତି ॥
ମିଳନ୍ତେ ବେନି ମହୀନ୍ଦ୍ର ଲଭନ୍ତି ସୁଷମା । କବି ଲଜ୍ଜା ଲଭେ ଖୋଜି ଖୋଜିଣ ଉପମା ॥୧॥
କାହିଁ ନ ଲଭନ୍ତେ ହାରି ହୃଦୟେ ମାନିଲେ । ଏହାଙ୍କ ସମ ଉପମା ଏହୁ ନିର୍ଦ୍ଧାରିଲେ ॥
ସମ୍ବନ୍ଧୀ ବିଲୋକି ସୁରେ ଅନୁରାଗେ ଅତି । ସୁମନ ବରଷି ଯଶ ଗାୟନ କରନ୍ତି ॥୨॥
ବିଶ୍ୱକୁ ବିରଞ୍ଚି ସୃଷ୍ଟି କଲେ ଯେଉଁ ଦିନୁ । ଦେଖିଛୁ ଶୁଣିଛୁ ବହୁ ବିବାହ ସେଦିନୁ ॥
ସର୍ବ ପ୍ରକାରେ ସମାନ ସୁସାଜ ସମାଜ । ସମ ସମ୍ବନ୍ଧୀ ଦେଖିଲୁ ଆମ୍ଭେ ଆସି ଆଜ ॥୩॥
ଶୁଣି ସୁରଙ୍କ ବଚନ ସତ୍ୟ ରମଣୀକ । ଉଭୟ କୁଳେ ବ୍ୟାପିଲା ପ୍ରୀତି ଅଲୌକିକ ॥
ଦେଇ ପାଦତଳ ବସ୍ତ୍ର ଅର୍ଘ୍ୟ ମନୋହର । ମଣ୍ଡପକୁ ମିଥିଳେଶ ଆଣିଲେ ସାଦର ॥୪॥

ମଣ୍ଡପର ବୈଚିତ୍ର୍ୟ ରଚନା ରୁଚି ଚିତ୍ର ବିଲୋକି ମୋହେ ମୁନି ମନ ।
ସମସ୍ତଙ୍କ ନିମନ୍ତେ ଜନକ ନିଜ ହସ୍ତେ ରଖିଲେ ଦିବ୍ୟ ସିଂହାସନ ।
ବଶିଷ୍ଠେ କୁଳ ଇଷ୍ଟ ପରି, ପୂଜି ଆଶିଷ ଅନୁସରି,
କୌଶିକଙ୍କୁ ଯେବଣି ପ୍ରେମେ କଲେ ବନ୍ଦନ ନ ହୁଏ ତାହା ବ୍ୟକ୍ତ କରି ॥

---

ହୃଦୟରେ ଆନନ୍ଦ ସମ୍ଭାଳି ନ ଥାଏ ॥ ୩୧୯ ॥ ଚୌପାଈ ।—ବୈଦିକ ଏବଂ ଲୌକିକ, ସମସ୍ତ ରୀତି ସମ୍ପାଦନ କରି ଜନକ ଓ ଦଶରଥ ଅତି ପ୍ରେମରେ ପରସ୍ପର ସହିତ ମିଳନ କଲେ । ଉଭୟ ମହାରାଜ ମିଳିବା ସମୟରେ ଏପରି ଶୋଭା ଧାରଣ କଲେ ଯେ, କବି ସେମାନଙ୍କ ନିମନ୍ତେ ଉପମା ଖୋଜି ଖୋଜି ଲଜ୍ଜିତ ହୋଇ ପଡ଼ିଲେ ॥ ୧ ॥ ଯେତେ-ବେଳେ କୌଣସି ଗୋଟିଏ ଉପମା ସୁଦ୍ଧା ମିଳିଲା ନାହିଁ, ସେତେବେଳେ ସେ ମନେ ମନେ ହାର ମାନିଲେ ଏବଂ ଏହି ଉପମା ସ୍ଥିର କଲେ ଯେ, ଏହାଙ୍କ ସମାନ ଉପମା ଏହି-

ବାମଦେବ ଆଦିକ ରିଷୟ ପୂଜେ ମୁଦିତ ମହୀସ ।
ଦିଏ ଦିବ୍ୟ ଆସନ ସବହି ସବ ସନ ଲହୀ ଅସୀସ ॥୩୨୦॥
ବହୁରି କୀହ୍ନି କୋସଲପତି ପୂଜା । ଜାନି ଈସ ସମ ଭାଉ ନ ଦୂଜା ॥
କୀହ୍ନି ଜୋରି କର ବିନୟ ବଡ଼ାଈ । କହି ନିଜ ଭାଗ୍ୟ ବିଭବ ବହୁତାଈ ॥୧॥
ପୂଜେ ଭୂପତି ସକଲ ବରାତୀ । ସମଧୀ ସମ ସାଦର ସବ ଭାଁତୀ ॥
ଆସନ ଉଚିତ ଦିଏ ସବ କାହୂ । କହୌଁ କାହ ମୁଖ ଏକ ଉଛାହୂ ॥୨॥

---

ବାମଦେବ ଆଦି ଋଷି-ମଣ୍ଡଳୀଙ୍କୁ ପୂଜି ଆନନ୍ଦେ ମହୀଶ ।
ବସାଇଲେ ଆଣି ସୁନ୍ଦର ଆସନେ ଦିଅନ୍ତି ସର୍ବେ ଆଶିଷ ॥୩୨୦॥
କୋଶଳ-ପତିଙ୍କ ପୂଜା କରିଲେ ଆଦର । ଜାଣି ଈଶ ସମ, ଭାବ ନ ରଖି ଇତର ॥
କର ଯୋଡ଼ିଣ କରନ୍ତି ବିନୟ ବଡ଼ାଇ । ନିଜ ସୌଭାଗ୍ୟ ବୈଭବ ବହୁତ ଜଣାଇ ॥୧॥
ପୂଜିଲେ ସମସ୍ତ ବରଯାତ୍ରୀଙ୍କୁ ରାଜନ । ସାଦରେ ସବୁ ପ୍ରକାରେ ସମ୍ବନ୍ଧୀ ଯେସନ ॥
ସମସ୍ତଙ୍କୁ ସୁଆସନ ଦେଲେ ଯଥୋଚିତ । କି କହିବି ଏକ ମୁଖେ ? ଉତ୍ସାହ ବହୁତ ॥୨॥

---

ମାନେ ହିଁ ଅଟନ୍ତି । ସମ୍ବନ୍ଧୀ ଦୁହିଁଙ୍କ ମିଳନ ବା ପରସ୍ପର ସମ୍ବନ୍ଧ ଦେଖି ଦେବତାମାନେ ଅନୁରକ୍ତ ହୋଇ ପଡ଼ିଲେ ଏବଂ ପୁଷ୍ପ ବୃଷ୍ଟି କରି ସେମାନଙ୍କ ଯଶ ଗାନ କରିବାକୁ ଲାଗିଲେ ॥ ୨ ॥ (ସେମାନେ କହିବାକୁ ଲାଗିଲେ,)—ଯେଉଁଦିନୁ ବ୍ରହ୍ମା ଜଗତକୁ ସୃଷ୍ଟି କଲେ, ସେହିଦିନୁ ଆମ୍ଭେମାନେ ବହୁତ ବିବାହ ଦେଖିଛୁ ଓ ଶୁଣିଛୁ । କିନ୍ତୁ ସର୍ବତୋ-ରୂପେଣ ସମାନ ସାଜସମାଜ ଥାଇ ଏବଂ ସମାନ ସମ୍ବନ୍ଧୀ ଥାଇ ବିବାହ ଆମେ ଆଜି ଆସି ପ୍ରଥମ ଥର ଦେଖିଲୁ ॥ ୩ ॥ ଦେବତାମାନଙ୍କର ସୁନ୍ଦର ସତ୍ୟବାଣୀ ଶୁଣି ଉଭୟ ପକ୍ଷରେ ଅଲୌକିକ ପ୍ରେମ ଖେଳିଗଲା । ପାଦତଳେ ସୁନ୍ଦର ପାହାଡ଼ା ଓ ଅର୍ଘ୍ୟ ଦେଇ ଜନକ ଦଶରଥଙ୍କୁ ଆଦର ସହିତ ମଣ୍ଡପକୁ ନେଇ ଆସିଲେ ॥ ୪ ॥ ଛନ୍ଦ ।—ମଣ୍ଡପକୁ ଦେଖି ତାହାର ବିଚିତ୍ର ରଚନା ଓ ସୌନ୍ଦର୍ଯ୍ୟରେ ମୁନିଗଣଙ୍କ ମନ ମଧ୍ୟ ମୋହିତ ହୋଇଗଲା । ରାଜା ଜନକ ଆପଣା ହାତରେ ସମସ୍ତଙ୍କ ନିମନ୍ତେ ଦିବ୍ୟ ସିଂହାସନ ରଖିଲେ । ସେ ଆପଣା କୁଳର ଇଷ୍ଟଦେବ ସଦୃଶ ବଶିଷ୍ଠଙ୍କୁ ପୂଜା କଲେ ଏବଂ ବିନୟ କରି ଆଶୀର୍ବାଦ ଲାଭ କଲେ । ବିଶ୍ୱାମିତ୍ରଙ୍କୁ ପୂଜା କରିବା ସମୟରେ ସେ ଯେଉଁ ପରମ ପ୍ରୀତି ସମ୍ପାଦନ କଲେ, ତାହା ଭାଷାରେ ଅଭିବ୍ୟକ୍ତ କରିହେବ ନାହିଁ । ଦୋହା ।—ରାଜା ବାମଦେବ ଆଦି ଋଷିମାନଙ୍କୁ ପ୍ରସନ୍ନ ମନରେ ପୂଜା କଲେ । ସମସ୍ତଙ୍କୁ ଦିବ୍ୟ ଆସନ ଦେଇ ସେମାନଙ୍କଠାରୁ ଆଶୀର୍ବାଦ ଲାଭ କଲେ ॥ ୩୨୦ ॥ ଚୌପାଇ ।—ପୁଣି ସେ କୋଶଳାଧୀଶ ରାଜା ଦଶରଥଙ୍କୁ ମହାଦେବଙ୍କ ସଦୃଶ ମଣି ତାଙ୍କର ପୂଜା-ବିଧାନ କଲେ । କୌଣସି ଇତର ଭାବ ତାଙ୍କ ମନରେ ନ ଥିଲା । ତଦନନ୍ତର ସେ ତାଙ୍କ ସମ୍ପର୍କ ଯୋଗେ ନିଜର ଭାଗ୍ୟ ଓ ବୈଭବର ସବିସ୍ତାର ପ୍ରଶଂସା କଲେ ଏବଂ ହାତ ଯୋଡ଼ି ବିନୟ ଓ ବଡ଼ାଇ କଲେ ॥ ୧ ॥ ରାଜା ଜନକ ସମ୍ବନ୍ଧୀ ଦଶରଥଙ୍କ ଭଳି ସମସ୍ତ

ସକଲ ବରାତ ଜନକ ସନମାନୀ । ଦାନ ମାନ ବିନତୀ ବର ବାନୀ ॥
ବିଧି ହରି ହରୁ ଦିସିପତି ଦିନରାଊ । ଜେ ଜାନହିଁ ରଘୁବୀର ପ୍ରଭାଊ ॥୩॥
କପଟ ବିପ୍ର ବର ବେଷ ବନାଏଁ । କୌତୁକ ଦେଖହିଁ ଅତି ସଚୁ ପାଏଁ ॥
ପୂଜେ ଜନକ ଦେବ ସମ ଜାନେଁ । ଦିଏ ସୁଆସନ ବିନୁ ପହିଚାନେଁ ॥୪॥

ପହିଚାନ କୋ କେହି ଜାନ ସବହି ଅପାନ ସୁଧି ଭୋରୀ ଭଈ ।
ଆନଂଦ କଂଦୁ ବିଲୋକି ଦୂଲହୁ ଉଭୟ ଦିସି ଆନଁଦମଈ ॥
ସୁର ଲଖେ ରାମ ସୁଜାନ ପୂଜେ ମାନସିକ ଆସନ ଦଏ ।
ଅବଲୋକି ସୀଲୁ ସୁଭାଉ ପ୍ରଭୁ କୋ ବିବୁଧ ମନ ପ୍ରମୁଦିତ ଭଏ ॥

ରାମଚନ୍ଦ୍ର ମୁଖ ଚନ୍ଦ୍ର ଛବି ଲୋଚନ ଚାରୁ ଚକୋର ।
କରତ ପାନ ସାଦର ସକଲ ପ୍ରେମୁ ପ୍ରମୋଦୁ ନ ଥୋର ॥୩୨୧॥

---

ବରଯାତ୍ରୀଙ୍କ ସମ୍ମାନ କଲେ ମହୀପତି । ଦାନ, ମାନ, ସୁବଚନେ କରିଣ ବିନତି ॥
ବିଧି ହରିହର ଦିଗପାଳ ଦିନକର । ସେହୁ ଜାଣନ୍ତି ପ୍ରଭାବ ରଘୁବୀରଙ୍କର ॥୩॥
କପଟରେ ବିପ୍ରବର ବେଶ ବିରଚିଣ । କୌତୁକ ଦେଖନ୍ତି ଅତି ପ୍ରସନ୍ନ ହୋଇଣ ॥
ପୂଜିଲେ ଜନକ ଜାଣି ଦେବତା ସମାନ । ନ ଚହ୍ନି ମଧ୍ୟ ଆସନ କରିଲେ ପ୍ରଦାନ ॥୪॥

କିଏ କାହାକୁ ଚହ୍ନେ ପ୍ରେମ ମଗନ ଜନେ ସ୍ୱଦଶା ପାଶୋରି ଅଛନ୍ତି ।
ଦେଖି ଆନନ୍ଦରାଶି ବରଙ୍କୁ ବେନି ଦିଶି ଆନନ୍ଦମୟ ହୋଇଛନ୍ତି ॥
ତାହାଙ୍କୁ ରାମ ଜାଣି ନେଲେ, ପୂଜି ଆସନ ମନେ ଦେଲେ ॥
ବିଲୋକିଣ ସୁଶୀଳ ସ୍ୱଭାବ ପ୍ରଭୁଙ୍କର ବିବୁଧେ ପ୍ରମୋଦିତ ହେଲେ ॥

ରାମଚନ୍ଦ୍ର ମୁଖ-ଚନ୍ଦ୍ରମା ଛବିକୁ ଚକୋର ଚାରୁ ଲୋଚନ ।
ଆଦର ସହିତେ ପିଅନ୍ତି ସମସ୍ତେ ଅଧିକ ପ୍ରେମେ ପ୍ରସନ୍ନ ॥୩୨୧॥

---

ବରଯାତ୍ରୀଙ୍କୁ ସକଳ ପ୍ରକାର ଆଦରରେ ପୂଜା କଲେ ଏବଂ ସମସ୍ତଙ୍କୁ ଯଥାଯୋଗ୍ୟ ଆସନ ପ୍ରଦାନ କଲେ । ମୁଁ ଗୋଟିଏ ମୁଖରେ ସେ ଉତ୍ସାହକୁ କିପରି ବା ବର୍ଣ୍ଣନା କରିବି ? ॥ ୨ ॥ ରାଜା ଜନକ ଦାନ, ମାନସମ୍ମାନ, ବିନମ୍ର ଏବଂ ଉତ୍ତମ ବାଣୀରେ ସମସ୍ତ ବରଯାତ୍ରୀଙ୍କର ଯଥାଯୋଗ୍ୟ ସମ୍ମାନ କଲେ । ବ୍ରହ୍ମା, ବିଷ୍ଣୁ, ଶିବ, ଦିଗପାଳ, ସୂର୍ଯ୍ୟ ଆଦି ଯେଉଁମାନେ ଶ୍ରୀରାମଚନ୍ଦ୍ରଙ୍କ ପ୍ରଭାବ ଜାଣନ୍ତି, ସେମାନେ ଶ୍ରେଷ୍ଠ ବ୍ରାହ୍ମଣ-ବେଶରେ ଅତ୍ୟନ୍ତ ସୁଖ ଲାଭପୂର୍ବକ ସମସ୍ତ ଲୀଳା ଦେଖୁଥା'ନ୍ତି । ଜନକ ସେମାନଙ୍କୁ ଦେବତା ସମାନ ଜାଣି ପୂଜା କଲେ ଏବଂ ନ ଚହ୍ନି ମଧ୍ୟ ଆସନ ପ୍ରଦାନ କଲେ ॥ ୩-୪ ॥
ଛନ୍ଦ —କିଏ କାହାକୁ ଚିହ୍ନୁଛି ? ସମସ୍ତେ ଆତ୍ମ-ବିସ୍ମୃତ ହୋଇ ପଡିଛନ୍ତି । ଆନନ୍ଦକନ୍ଦ ବରଙ୍କୁ ଦେଖି ଉଭୟ ପକ୍ଷରେ ଆନନ୍ଦମୟୀ ସ୍ଥିତି ବିରାଜୁଥାଏ । ସର୍ବଜ୍ଞ ଶ୍ରୀରାମଚନ୍ଦ୍ର ଦେବତାମାନଙ୍କୁ ଚିହ୍ନି ପକାଇଲେ ଏବଂ ସେମାନଙ୍କର ମାନସିକ ପୂଜା-

ସମଉ ବିଲୋକି ବସିଷ୍ଠ ବୋଲାଏ । ସାଦର ସତାନଂଦୁ ସୁନି ଆଏ ॥
ବେଗି କୁଅଁରି ଅବ ଆନହୁ ଜାଈ । ଚଲେ ମୁଦିତ ମୁନି ଆୟସୁ ପାଈ ॥୧॥
ରାନୀ ସୁନି ଉପରୋହିତ ବାନୀ । ପ୍ରମୁଦିତ ସଖିନ୍ହ ସମେତ ସୟାନୀ ॥
ବିପ୍ର ବଧୂଁ କୁଲ ବୃଦ୍ଧ ବୋଲାଈଁ । କରି କୁଲ ରୀତି ସୁମଂଗଲ ଗାଈଁ ॥୨॥
ନାରି ବେଷ ଜେ ସୁର ବର ବାମା । ସକଲ ସୁଭାୟଁ ସୁଂଦରୀ ସ୍ୟାମା ॥
ତିନ୍ହହି ଦେଖି ସୁଖୁ ପାୱହିଁ ନାରୀଁ । ବିନୁ ପହିଚାନି ପ୍ରାନହୁ ତେ ପ୍ୟାରୀଁ ॥୩॥
ବାର ବାର ସନମାନହିଁ ରାନୀ । ଉମା ରମା ସାରଦ ସମ ଜାନୀ ॥
ସୀୟ ସଁୱାରି ସମାଜୁ ବନାଈ । ମୁଦିତ ମଣ୍ଡପହିଁ ଚଲୀଁ ଲୱାଈ ॥୪॥

---

ସମୟ ଦେଖି ବଶିଷ୍ଠ ହକାରନ୍ତେ ପୁଣି । ସାଦରେ ଆସିଲେ ମୁନି ଶତାନନ୍ଦ ଶୁଣି ॥
କନ୍ୟାଙ୍କୁ ଚଞ୍ଚଳ ଏବେ ଆଣନ୍ତୁ ଯାଇଣ । ଚଳିଲେ ହରଷେ ମୁନି ଆଦେଶ ପାଇଣ ॥୧॥
ଶୁଣି ରାଣୀକୁଳ ପୁରୋହିତଙ୍କ ବଚନ । ସଖୀଙ୍କ ସହିତ ଅତି ହୋଇଲେ ପ୍ରସନ୍ନ ॥
ବିପ୍ର-ବଧୂ, କୁଳ-ବୃଦ୍ଧା ନାରୀଙ୍କୁ ଡାକିଲେ । କରି କୁଳରୀତି ପୁଣି ମଙ୍ଗଳ ଗାଇଲେ ॥ ॥
ନାରୀ ବେଶେ ଆସିଥିଲେ ଯେଉଁ ସୁରବାମା । ସର୍ବେ ସୁନ୍ଦରୀ ଆବର ସ୍ୱାଭାବିକ ଶ୍ୟାମା ॥
ତାହାଙ୍କୁ ଅବଲୋକିଣ ସୁଖୀ ହୋନ୍ତି ନାରୀ । ନ ଚିହ୍ନି ମଧ ମଣନ୍ତି ପ୍ରାଣୁ ପ୍ରିୟ ଭାରି ॥୩॥
ବାରମ୍ବାର ସେମାନଙ୍କୁ ସମ୍ମାନନ୍ତି ରାଣୀ । ଉମା ରମା ସରସ୍ୱତୀ ଅନୁରୂପ ଜାଣି ॥
ସୀତାଙ୍କୁ ଭୂଷଣେ ସାଜି ସମସ୍ତେ ମିଳିଣ । ପ୍ରମୋଦରେ ମଣ୍ଡପକୁ ଚଳିଲେ ଘେନିଣ ॥୪॥

---

ବିଧାନ କରି ସେମାନଙ୍କୁ ମାନସିକ ଆସନ ପ୍ରଦାନ କଲେ । ପ୍ରଭୁଙ୍କ ଚରିତ ଓ ସ୍ୱଭାବ ଦେଖି ଦେବଗଣ ମନେ ମନେ ଅତି ଆନନ୍ଦିତ ହେଲେ ॥ ଦୋହା —ଶ୍ରୀରାମଙ୍କ ମୁଖଚନ୍ଦ୍ରର ଛବିକୁ ସମସ୍ତଙ୍କ ଚାରୁ ଲୋଚନ-ଚକୋର ପାନ କରୁଥାଏ । ପ୍ରେମ ଓ ପ୍ରମୋଦ କମ୍ ନ ଥାଏ ॥ ୩୨୧ ॥ ଚୌପାଇ —ସମୟ ଦେଖି ବଶିଷ୍ଠ ଶତାନନ୍ଦଙ୍କୁ ଡକାଇଲେ । ଡାକରା ଶୁଣି ଶତାନନ୍ଦ ଆଦରର ସହିତ ଆଗମନ କଲେ । ବଶିଷ୍ଠ କହିଲେ, "ଏବେ ଯାଇ ରାଜକୁମାରୀଙ୍କୁ ଶୀଘ୍ର ନେଇ ଆସନ୍ତୁ ।" ଆଦେଶ ପାଇ ଶତାନନ୍ଦ ପ୍ରସନ୍ନ ହୋଇ ଚଳିଲେ ॥ ୧ ॥ ବୁଦ୍ଧିମତୀ ରାଣୀ ପୁରୋହିତଙ୍କ ବାଣୀ ଶୁଣି ସଖୀମାନଙ୍କ ସହିତ ଅତ୍ୟନ୍ତ ପ୍ରସନ୍ନ ହୋଇଲେ । ବିପ୍ରବଧୂ ଏବଂ କୁଳବୃଦ୍ଧା ନାରୀଙ୍କୁ ଡକାଇ ଆଣିଲେ । ସେମାନେ କୁଳ-ରୀତି କରି ସୁନ୍ଦର ମଙ୍ଗଳ ସଙ୍ଗୀତ ଗାନ କଲେ ॥ ୨ ॥ ଯେଉଁ ଶ୍ରେଷ୍ଠା ଦେବାଙ୍ଗନାମାନେ ନାରୀ ବେଶରେ ଆସିଥା'ନ୍ତି, ସେମାନେ ସ୍ୱଭାବତଃ ସୁନ୍ଦରୀ ଓ ଶ୍ୟାମା । ସେମାନଙ୍କୁ ଦେଖି ରାଣୀଙ୍କ ଉଆସର ସମସ୍ତ ନାରୀ ସୁଖ ପାଉଥା'ନ୍ତି ଏବଂ ବିନା ପରିଚୟରେ ମଧ ସମସ୍ତଙ୍କୁ ଆପଣା ଆପଣା ପ୍ରାଣଠାରୁ ଅଧିକ ପ୍ରିୟ ବୋଲି ମନେ କରୁଥା'ନ୍ତି ॥ ୩ ॥ ପାର୍ବତୀ, ଲକ୍ଷ୍ମୀ ଓ ସରସ୍ୱତୀଙ୍କ ସମାନ ମନେ କରି ରାଣୀ ବାରମ୍ବାର ସେମାନଙ୍କୁ ସମ୍ମାନିତ କରୁଥା'ନ୍ତି । ରାଣୀ ଉଆସର ସ୍ତ୍ରୀ ଓ ସଖୀମାନେ ସୀତାଙ୍କର ଶୃଙ୍ଗାର କରି ସଖୀସମାଜ ଗଢ଼ଣରେ ପ୍ରସନ୍ନ ମନରେ ତାଙ୍କୁ ମଣ୍ଡପ ଉପରକୁ ଘେନି ଚାଲିଗଲେ ॥ ୪ ॥ ଛନ୍ଦ,—

ଚଲି ଲ୍ୟାଇ ସୀତହି ସଖୀଁ ସାଦର ସଜି ସୁମଂଗଲ ଭାମିନୀଁ ।
ନବ ସପ୍ତ ସାଜେଁ ସୁଂଦରୀଁ ସବ ମତ୍ତ କୁଂଜର ଗାମିନୀଁ ।
କଲ ଗାନ ସୁନି ମୁନି ଧ୍ୟାନ ତ୍ୟାଗହିଁ କାମ କୋକିଲ ଲଜହୀଁ ।
ମଂଜୀର ନୂପୁର କଲିତ କଂକନ ତାଲ ଗତି ବର ବାଜହୀଁ ॥

ସୋହତି ବନିତା ବୃନ୍ଦ ମହୁଁ ସହଜ ସୁହାୱନି ସୀୟ ।
ଛବି ଲଲନା ଗନ ମଧ୍ୟ ଜନୁ ସୁଷମା ତିୟ କମନୀୟ ॥୩୨୨॥

ସିୟ ସୁଂଦରତା ବରନି ନ ଜାଈ । ଲଘୁ ମତି ବହୁତ ମନୋହରତାଈ ॥
ଆୱତ ଦୀଖି ବରାତିନ୍ହ ସୀତା । ରୂପ ରାସି ସବ ଭାଁତି ପୁନୀତା ॥୧॥
ସବହି ମନହିଁ ମନ କିଏ ପ୍ରନାମା । ଦେଖି ରାମ ଭଏ ପୂରନକାମା ॥
ହରଷେ ଦସରଥ ସୁତନ୍ହ ସମେତା । କହି ନ ଜାଇ ଉର ଆନଁଦୁ ଜେତା ॥୨॥

---

ଚାଲିଲେ ସଙ୍ଗେ ଘେନି ସ୍ନେହେ ସଖୀ କାମିନୀ ମଙ୍ଗଳେ ସଜାଇ ସୀତାଙ୍କୁ ।
ସର୍ବେ ମନୋହାରିଣୀ ମତ୍ତଗଜ-ଗାମିନୀ ଷୋଡ଼ଶେ ସାଜି ଆପଣାକୁ ॥
ଗାୟନ ମୁନି ଧ୍ୟାନ ହରେ, କାମ କୋକିଳ ଲଜ୍ଜା କରେ ।
କମନୀୟ କଙ୍କଣ ନୂପୁର ମନୋରମ ବାଜନ୍ତି ତାଳ ବିଧାନରେ ॥

ଶୋଭନ୍ତି ବନିତା-ବୃନ୍ଦ ମଧ୍ୟେ ସୀତା ସହଜେ ସୁରମଣୀୟା ।
ଛବି-ବାଳାଗଣ ମଧ୍ୟରେ ଯେସନ ଶୋଭା-ବାମା କମନୀୟା ॥୩୨୨॥

ସୀତାଙ୍କ ରୂପ ସୌନ୍ଦର୍ଯ୍ୟ କହି ନ ହୁଅଇ । ମତି ମୋର କ୍ଷୁଦ୍ର ଶୋଭା ଅପାର ଅଟଇ ॥
ଦେଖି ବରଯାତ୍ରୀ ଜାନକୀଙ୍କ ଆଗମନ । ସକଳ ପ୍ରକାରେ ଶୁଚି ସୁଷମା-ସଦନ ॥୧॥
ମନ ମଧ୍ୟରେ ସମସ୍ତେ କଲେ ପ୍ରଣିପାତ । ପୂର୍ଣ୍ଣ-କାମ ହେଲେ ଦେଖି ରାମ ରଘୁନାଥ ॥
ହରଷିତ ଦଶରଥ ପୁତ୍ରଙ୍କ ସଙ୍ଗରେ । ଅକଥନୀୟ ଆନନ୍ଦ ହେଲା ହୃଦୟରେ ॥୨॥

---

ରାଣୀ-ମହଲର ସ୍ତ୍ରୀ ଓ ସଖୀମାନେ ଆଦରରେ ସୀତାଙ୍କୁ ମଙ୍ଗଳ ସାଜରେ ସଜାଇ ନେଇ ଚାଲିଲେ । ସମସ୍ତ ସୁନ୍ଦରୀ ଷୋହଳ ଶୃଙ୍ଗାର ବିଧାନ କରି ଉନ୍ମତ୍ତ ହସ୍ତୀ-ଗତିରେ ଚାଲିଥା'ନ୍ତି । ସେମାନଙ୍କର ମନୋହର ସଙ୍ଗୀତ ଗାନ ଶୁଣି ମୁନିମାନେ ମଧ୍ୟ ଧ୍ୟାନ ଛାଡ଼ି ଦେଉଥା'ନ୍ତି ଏବଂ କନ୍ଦର୍ପ ଓ କୋକିଳ ମଧ୍ୟ ଲଜ୍ଜିତ ହେଉଥା'ନ୍ତି । କମନୀୟ ନୂପୁର, ବଳା ଏବଂ ସୁନ୍ଦର କଙ୍କଣ ତାଳଗତିରେ ବଡ଼ ସୁନ୍ଦର ଭାବରେ ବାଜୁଥାଏ ॥ ଦୋହା :— ସହଜ-ସୁନ୍ଦରୀ ସୀତା ନାରୀସମୂହ ମଧ୍ୟରେ ଶୋଭା ପାଉଥା'ନ୍ତି । ଏପରି ଶୋଭା ପାଉଥାନ୍ତି, ସତେ ଯେମିତି ଛବି-ଲଳନାଗଣଙ୍କ ମଧ୍ୟରେ ସାକ୍ଷାତ ପରମ ମନୋହାରିଣୀ ଶୋଭା ନାରୀ ରୂପରେ ଶୋଭା ପାଉଛନ୍ତି କି' ॥ ୩୨୨ ॥ ଚୌପାଈ :—ସୀତାଙ୍କ ରୂପ-ସୌନ୍ଦର୍ଯ୍ୟର ବର୍ଣ୍ଣନା କରାଯାଇପାରିବ ନାହିଁ । କାରଣ ମୋର ବୁଦ୍ଧି ଅତି କ୍ଷୁଦ୍ର ଏବଂ ତାଙ୍କର ମନୋହରତା ଅତି ଅପାର । ବରଯାତ୍ରୀମାନେ ରୂପର ରାଶି ଏବଂ ସମସ୍ତ

ସୁର ପ୍ରନାମୁ କରି ବରସହିଁ ଫୂଲା । ମୁନି ଅସୀସ ଧୁନି ମଂଗଲ ମୂଲା ॥
ଗାନ ନିସାନ କୋଲାହଲୁ ଭାରୀ । ପ୍ରେମ ପ୍ରମୋଦ ମଗନ ନର ନାରୀ ॥୩॥
ଏହି ବିଧି ସୀୟ ମଣ୍ଡପହିଁ ଆଈ । ପ୍ରମୁଦିତ ସାନ୍ତି ପଢ଼ହିଁ ମୁନିରାଈ ॥
ତେହି ଅବସର କର ବିଧି ବ୍ୟବହାରୂ । ଦୁହୁଁ କୁଲଗୁର ସବ କୀହ୍ନ ଅଚାରୂ ॥୪॥

ଆଚାରୁ କରି ଗୁର ଗୌରି ଗନପତି ମୁଦିତ ବିପ୍ର ପୁଜାୱହୀଁ ॥
ସୁର ପ୍ରଗଟି ପୂଜା ଲେହିଁ ଦେହିଁ ଅସୀସ ଅତି ସୁଖୁ ପାୱହୀଁ ॥
ମଧୁପର୍କ ମଂଗଲ ଦ୍ରବ୍ୟ ଜୋ ଜେହି ସମୟ ମୁନି ମନ ମହୁଁ ଚହୈଁ ।
ଭରେ କନକ କୋପର କଲସ ସୋ ତବ ଲିଏହିଁ ପରିଚାରକ ରହୈଁ ॥୧॥

କୁଲ ରୀତି ପ୍ରୀତି ସମେତ ରବି କହି ଦେତ ସବୁ ସାଦର କିୟୋ ।
ଏହି ଭାଁତି ଦେବ ପୁଜାଇ ସୀତହି ସୁଭଗ ସିଂଘାସନୁ ଦିୟୋ ॥
ସିୟ ରାମ ଅବଲୋକନି ପରସପର ପ୍ରେମୁ କାହୁ ନ ଲଖି ପରୈ ।
ମନ ବୁଦ୍ଧି ବର ବାନୀ ଅଗୋଚର ପ୍ରଗଟ କବି କୈସେଁ କରୈ ॥୨॥

---

ସୁରେ ନମସ୍କାର କରି ପୁଷ୍ପ ବରଷନ୍ତି । ମୁନି ମଙ୍ଗଳ ଆଶିଷ ଧ୍ୱନି ଉଚ୍ଚାରନ୍ତି ॥
ଗୀତ ବାଦ୍ୟ ନାଦେ ହୁଏ କୋଳାହଳ ଭାରି । ପ୍ରେମ ପ୍ରମୋଦେ ପୂରିତ ପୁର ନର ନାରୀ ॥୩॥
ଏହି ଭାବେ ମଣ୍ଡପକୁ ସୀତା ଆଗମିଲେ । ପ୍ରମୋଦିତେ ଶାନ୍ତି ମୁନିପୁଙ୍ଗବ ପଢ଼ିଲେ ॥
ସେହି ସମୟରେ କରି ବିଧି ବ୍ୟବହାର । ଦେନି କୁଳ-ଗୁରୁ କଲେ ସମସ୍ତ ଆଚାର ॥୪॥

ଗୁରୁ ଆଚାର କରି ପୂଜା କରାନ୍ତି ଗୌରୀ ଗଣେଶ ବିପ୍ରଙ୍କୁ ପ୍ରସନ୍ନେ ।
ସୁରେ ପୂଜା ଘେନନ୍ତି ପ୍ରକଟି ଆଶିଷନ୍ତି ଲଭିଣ ଅତି ସୁଖ ମନେ ।
ମଧୁପର୍କାଦି ଯାହା ଯେବେ, ମନେ ଇଚ୍ଛନ୍ତି ମୁନି ଦେବେ,
ହେମ କୁମ୍ଭ ଥାଳରେ ଘେନି ସକଳ କରେ କିଙ୍କରେ ଉଭା ଥା'ନ୍ତି ତେବେ ॥୧॥

ସପ୍ରେମେ କୁଳ-ରୀତି ରବି କହି ଦିଅନ୍ତି, କରନ୍ତି ହୋଇଣ ପ୍ରସନ୍ନ ।
ଏ ଭାବେ ଦେବତାଙ୍କୁ ପୂଜାଇଣ ସୀତାଙ୍କୁ ଦେଲେ ସୁନ୍ଦର ସିଂହାସନ ॥
ରାମ ସୀତାଙ୍କ ପରସ୍ପର, ପ୍ରେମ ବ୍ରହ୍ମାଣି ଅଗୋଚର,
ଯେ ମନ ବୁଦ୍ଧି ବାଣୀ-ଅତୀତ, କେହ୍ନେ ଜାଣି କହିବ କେଉଁ କବିବର ॥୨॥

---

ପ୍ରକାରେ ପ୍ରମାତା ସୀତାଙ୍କୁ ଆସୁଥିବାର ଦେଖିଲେ ॥ ୧ ॥ ସମସ୍ତେ ମନେ ମନେ ତାଙ୍କୁ ପ୍ରଣାମ କଲେ । ଶ୍ରୀରାମଙ୍କୁ ଦେଖି ତ ସମସ୍ତେ ପୂର୍ଣ୍ଣ-କାମ ( କୃତକୃତ୍ୟ ) ହୋଇଗଲେ । ରାଜା ଦଶରଥ ପୁତ୍ରଗଣଙ୍କ ସହିତ ଆନନ୍ଦିତ ହେଲେ । ତାଙ୍କ ହୃଦୟରେ ଅକଥନୀୟ ଆନନ୍ଦ ଜାତ ହେଲା ॥ ୨ ॥ ଦେବତାମାନେ ପ୍ରଣାମ କରି ପୁଷ୍ପବୃଷ୍ଟି କରୁଅଛନ୍ତି । ସୁମଙ୍ଗଳର ମୂଳ ସ୍ରୋତ ମୁନିମାନଙ୍କ ଆଶୀର୍ବାଦ ଧ୍ୱନି ଉଚ୍ଚାରିତ ହେଉଅଛି । ସଙ୍ଗୀତ-ଗାନ ଓ ନିଷାଣର ଶବ୍ଦ ଯୋଗେ ବଡ଼ କୋଳାହଳ ହେଉଥାଏ । ସମସ୍ତ ନରନାରୀ ପ୍ରେମ ଓ

ହୋମ ସମୟଁ ତନୁ ଧରି ଅନଲୁ ଅତି ସୁଖ ଆହୁତି ଲେହିଁ ।
ବିପ୍ର ବେଷ ଧରି ବେଦ ସବ କହି ବିବାହ ବିଧି ଦେହିଁ ॥୩୨୩॥
ଜନକ ପାଟମହିଷୀ ଜଗ ଜାନୀ । ସୀୟ ମାତୁ କିମି ଜାଇ ବଖାନୀ ॥
ସୁଜସୁ ସୁକୃତ ସୁଖ ସୁନ୍ଦରତାଈ । ସବ ସମେଟି ବିଧି ରଚୀ ବନାଈ ॥୧॥
ସମଉ ଜାନି ମୁନିବରନ୍ହ ବୋଲାଈଂ । ସୁନତ ସୁଆସିନି ସାଦର ଲ୍ୟାଈଂ ॥
ଜନକ ବାମ ଦିସି ସୋହ ସୁନୟନା । ହିମଗିରି ସଂଗ ବନୀ ଜନୁ ମୟନା ॥୨॥

---

ହୋମ ସମୟରେ ଅଗ୍ନି ଶରୀରରେ ସୁଖେ ଆହୁତି ନିଅନ୍ତି ।
ବିପ୍ରବେଶ ଧରି ବିବାହ-ବିଧାନ ବେଦ ବତାଇ ଦିଅନ୍ତି ॥୩୨୩॥
ଜନକ ପାଟ ମହିଷୀ ବିଦିତ ଜଗତେ । ଜାନକୀ ଜନନୀ ବର୍ଣ୍ଣି ହୋଇବେ କେମନ୍ତେ ॥
ସୁକୃତ ସୁକୀର୍ତ୍ତି ସର୍ବ ସୁଖ ସୁନ୍ଦରତା । ଏକାଠି କରି ସର୍ଜିଛନ୍ତି ଯେହ୍ନେ ସୃଷ୍ଟିକର୍ତ୍ତା ॥୧॥
ଅବସର ଜାଣି ତାଙ୍କୁ ମୁନି ଡକାଇଲେ । ଶୁଣି ସଖୀ ସୁବଦନୀ ସାଦରେ ଆଣିଲେ ॥
ଶୋଭନ୍ତି ଜନକ ବାମ ଭାଗେ ସୁନୟନା । ହିମଗିରି ପାଶେ ଯଥା ଶୋଭିତ ମୟନା ॥୨॥

---

ଆନନ୍ଦରେ ନିମଗ୍ନ ॥ ୩ ॥ ଏହି ରୂପେ ସୀତା ମଣ୍ଡପକୁ ଆସିଲେ । ମୁନିରାଜ ଅତି ଆନନ୍ଦିତ ହୋଇ ଶାନ୍ତିପାଠ କରୁଥା'ନ୍ତି । ଉଭୟ କୁଳଗୁରୁ ସେହି ଶୁଭ ଅବସରର ଅନୁକୂଳ ସମସ୍ତ ରୀତି, ବ୍ୟବହାର ଓ କୁଳାଚାର ସମ୍ପାଦନ କଲେ ॥ ୪ ॥ ଛନ୍ଦ '— କୁଳାଚାର ସମ୍ପାଦନ-ପୂର୍ବକ ଗୁରୁ ପ୍ରସନ୍ନ ହୋଇ ଗୌରୀ, ଗଣେଶ ଓ ବ୍ରାହ୍ମଣଙ୍କୁ ପୂଜା କରାଉଅଛନ୍ତି । ଦେବତା ଆବିର୍ଭୂତ ହୋଇ ପୂଜା ଗ୍ରହଣ କରୁଥା'ନ୍ତି ଏବଂ ଆଶୀର୍ବାଦ ଦାନ କରି ଅତ୍ୟନ୍ତ ସୁଖଲାଭ କରୁଥା'ନ୍ତି । ମଧୁପର୍କ ଆଦି ଯେ କୌଣସି ମାଙ୍ଗଳିକ ଦ୍ରବ୍ୟକୁ ମୁନି ମନରେ ଇଚ୍ଛା କରିବା ମାତ୍ରେ ସେବକମାନେ ସେହି ସମୟରେ ସୁନା ଥାଳୀରେ ଏବଂ କଳସରେ ଉକ୍ତ ଦ୍ରବ୍ୟ ସବୁ ଧରି ପ୍ରସ୍ତୁତ ହୁଅନ୍ତି ॥ ୧ ॥ ସ୍ୱୟଂ ସୂର୍ଯ୍ୟ ଦେବତା ପ୍ରେମ ସହିତ ଆପଣା କୁଳର ସମସ୍ତ ରୀତି-ନୀତି ବତାଇ ଦେଉଥା'ନ୍ତି ଏବଂ ସେ ସମସ୍ତ ଆଦର ସହକାରେ ସମ୍ପାଦିତ କରାଯାଉଥାଏ । ଏହି ପ୍ରକାରେ ଦେବତା-ମାନଙ୍କର ପୂଜା କରାଇ ମୁନିମାନେ ସୀତାଙ୍କୁ ସୁନ୍ଦର ସିଂହାସନ ଦେଲେ । ସୀତା ଓ ଶ୍ରୀରାମଙ୍କର ପରସ୍ପର ପ୍ରତି ପ୍ରେମ-ଚାହାଣିକୁ କେହି ପରିଲକ୍ଷିତ କରିପାରୁ ନ ଥା'ନ୍ତି । ଯେଉଁ ଶ୍ରେଷ୍ଠ ବାଣୀ ମନ, ବୁଦ୍ଧି ଓ ବାଣୀର ଊର୍ଦ୍ଧ୍ୱରେ, ତାହାକୁ କବି କିପରି ବା ପ୍ରକାଶ କରିବ ! ॥ ୨ ॥ ଦୋହା '—ହୋମ ସମୟରେ ଅଗ୍ନିଦେବ ଶରୀର ଧାରଣ କରି ବଡ଼ ସୁଖରେ ଆହୁତି ଗ୍ରହଣ କରୁଥା'ନ୍ତି ଏବଂ ସମସ୍ତ ବେଦ ବ୍ରାହ୍ମଣ-ବେଶ ଧରି ବିବାହ ବିଧି କହି ଦେଉଥା'ନ୍ତି ॥ ୩୨୩ ॥ ଚୌପାଇ '—ଜନକଙ୍କର ଜଗଦ୍‌ବିଖ୍ୟାତ ପାଟରାଣୀ, ସୀତା-ମାତାଙ୍କର ବର୍ଣ୍ଣନା କିପରି ବା କରାଯାଇ ପାରିବ ? ସୁଯଶ, ସୁକୃତ (ପୁଣ୍ୟ), ସୁଖ ଓ ସୌନ୍ଦର୍ଯ୍ୟ, ଏ ସମସ୍ତକୁ ଏକାଠି କରି ବିଧାତା ସତେ ଯେମିତି ତାଙ୍କୁ ସଜାଡ଼ି ଗଢ଼ିଥାଏ ॥୧॥ ଅବସର ଜାଣି ଶ୍ରେଷ୍ଠ ମୁନିମାନେ ତାଙ୍କୁ ଡକାଇଲେ । ଏହା ଶୁଣିବା

କନକ କଲସ ମନି କୋପର ରୂରେ । ସୁଚି ସୁଗଂଧ ମଂଗଲ ଜଲ ପୂରେ ॥
ନିଜ କର ମୁଦିତ ରାଯଁ ଅରୁ ରାନୀ । ଧରେ ରାମ କେ ଆଗେଁ ଆନୀ ॥୩॥
ପଢହିଁ ବେଦ ମୁନି ମଂଗଲ ବାନୀ । ଗଗନ ସୁମନ ଝରି ଅବସରୁ ଜାନୀ ॥
ବରୁ ବିଲୋକି ଦଂପତି ଅନୁରାଗେ । ପାଯ ପୁନୀତ ପଖାରନ ଲାଗେ ॥୪॥

ଲାଗେ ପଖାରନ ପାଯ ପଂକଜ ପ୍ରେମ ତନ ପୁଲକାବଲୀ ।
ନଭ ନଗର ଗାନ ନିସାନ ଜୟ ଧୁନି ଉମଗି ଜନୁ ଚହୁଁ ଦିସି ଚଲୀ ॥
ଜେ ପଦ ସରୋଜ ମନୋଜ ଅରି ଉର ସର ସଦୈବ ବିରାଜହୀଁ ।
ଜେ ସକୃତ ସୁମିରତ ବିମଲତା ମନ ସକଲ କଲି ମଲ ଭାଜହୀଁ ॥୧॥
ଜେ ପରସି ମୁନିବନିତା ଲହୀ ଗତି ରହୀ ଜୋ ପାତକମଈ ।
ମକରଂଦୁ ଜିନ୍ହ କୋ ସଂଭୁ ସିର ସୁଚିତା ଅବଧି ସୁର ବରନଈ ॥
କରି ମଧୁପ ମନ ମୁନି ଜୋଗିଜନ ଜେ ସେଇ ଅଭିମତ ଗତି ଲହୈଁ ।
ତେ ପଦ ପଖାରତ ଭାଗ୍ୟଭାଜନୁ ଜନକୁ ଜୟ ଜୟ ସବ କହୈଁ ॥୨॥

---

କନକ କଲସ ମଣି ଭାଜନ ଲଳିତ । ଶୁଚି ସୁଗନ୍ଧ ମଙ୍ଗଳ ସଲିଳେ ପୂରିତ ॥
ନିଜ କରେ ପ୍ରମୋଦିତେ ନରପତି ରାଣୀ । ରଖିଲେ ରଘୁନାଥଙ୍କ ସମ୍ମୁଖରେ ଆଣି ॥୩॥
ପଢନ୍ତି ମୁନିମାନ ବେଦ ମଙ୍ଗଳ ବଚନ । ଅବସର ଜାଣି ଝଡେ ଗଗନୁ ସୁମନ ॥
ବର ବିଲୋକି ଦମ୍ପତି ଅନୁରାଗେ ଅତି । ମୃଦୁ ପବିତ୍ର ରାଜୀବ ପଦ ପ୍ରକ୍ଷାଳନ୍ତି ॥୪॥

ଲାଗିଲେ ପ୍ରକ୍ଷାଳନେ ପଦ-ପଙ୍କଜ ପ୍ରେମେ, ପୁଲକେ ଶରୀର ପ୍ରକାଶେ ।
ନଭ ନଗରୁ ଗାନ ଜୟ ଧ୍ୱନି ନିଶାଣ ଉଛୁଳି ଚଳେ ଚଉପାଶେ ।
ରାଜେ ଯେ ପଦ-ଇନ୍ଦୀବର, କାମାରି ହୃଦ-ସରୋବର,
ଯେ ସୁକୃତ ସ୍ମରଣେ ଶୁଦ୍ଧ ଅନ୍ତଃକରଣେ ପଳାନ୍ତି କଳୁଷ ନିକର ॥୧॥
ଯେ ପଦ ସ୍ପର୍ଶେ ଯତି-ପତ୍ନୀ ଲଭିଲା ଗତି, ଥିଲା ଯେ ଅତି ପାତକିନୀ ।
ଶିରେ ବହନ୍ତି ଶିବ ଯେ ପଦ-ମକରନ୍ଦ ଅମର ସତତ ପାବନୀ ।
ମଧୁପ କରି ନିଜ ମତି, ସେବି ଲଭନ୍ତି ମୁନି ଗତି,
ପ୍ରକ୍ଷାଳନ୍ତି ସେ ପଦ ଜନକ ଭାଗ୍ୟାସ୍ପଦ, ସମସ୍ତେ ଜୟ ଉଚ୍ଚାରନ୍ତି ॥୨॥

---

ମାନେ ସୌଭାଗ୍ୟବତୀ ନାରୀମାନେ ତାହାଙ୍କୁ ଆଦରରେ ନେଇ ଆସିଲେ । ଜନକଙ୍କ ପାଟରାଣୀ ସୁନୟନା ଜନକଙ୍କର ବାମ ଭାଗରେ ଏପରି ଶୋଭା ପାଉଥା'ନ୍ତି, ହେତେ ଯେମିତି ହିମାଚଳଙ୍କ ସହିତ ମେନା ଶୋଭିତ ହେଉଅଛନ୍ତି କି ! ॥ ୨ ॥ ରାଜା ଓ ରାଣୀ ଆନନ୍ଦିତ ମନରେ ପବିତ୍ର, ସୁଗନ୍ଧିତ ଓ ମଙ୍ଗଳ ଜଳରେ ପରିପୂର୍ଣ୍ଣ ସୁନାର କଳସ ଓ ମଣି-ନିର୍ମିତ ସୁନ୍ଦର ଥାଳୀ ହାତରେ ଧରି ଆଣି ଶ୍ରୀରାମଙ୍କ ସମ୍ମୁଖରେ ରଖିଲେ ॥ ୩ ॥ ମୁନି ମଙ୍ଗଳବାଣୀରେ ବେଦ ପାଠ କରୁଥା'ନ୍ତି । ସୁଅବସର ଜାଣି ଆକାଶରୁ ଫୁଲ ଝଡି ବରଷା ହେଉଥାଏ ।

ବର କୁଅଁରି କରତଲ ଜୋରି ସାଖୋଚ୍ଚରୁ ଦୋଉ କୁଲଗୁର କରୈଁ ।
ଭୟୋ ପାନିଗହନୁ ବିଲୋକି ବିଧି ସୁର ମନୁଜ ମୁନି ଆନଁଦ ଭରୈଁ ।।
ସୁଖ ମୂଲ ଦୂଲହୁ ଦେଖି ଦଂପତି ପୁଲକ ତନ ହୁଲସ୍ୟୋ ହିୟୋ ।
କରି ଲୋକ ବେଦ ବିଧାନୁ କନ୍ୟାଦାନୁ ନୃପ ଭୂଷନ କିୟୋ ।।୩।।

ହିମବଂତ ଜିମି ଗିରିଜା ମହେସହି ହରିହି ଶ୍ରୀ ସାଗର ଦଈ ।
ତିମି ଜନକ ରାମହି ସିୟ ସମରପୀ ବିସ୍ୱ କଲ କୀରତି ନଈ ।।
କ୍ୟୋଁ କରୈ ବିନୟ ବିଦେହୁ କିୟୋ ବିଦେହୁ ମୂରତି ସାଁୱରୀଁ ।
କରି ହୋମୁ ବିଧିବତ ଗାଁଠି ଜୋରୀ ହୋନ ଲାଗୀଁ ଭାଁୱରୀଁ ।।୪।।

---

ବର କନ୍ୟାଙ୍କ କର ବାନ୍ଧି ବେନି କୁଳର ଗୁରୁ ଗାଇଲେ ଶାଖାବଂଶ ।
ହେଲା ପାଣିଗ୍ରହଣ, ବିଲୋକି ମୁନିଜନ ବ୍ରହ୍ମାଦି ହୋଇଲେ ହରଷ ।
ଦମ୍ପତି ପ୍ରଫୁଲ୍ଲ ଅନ୍ତର, ନିରେଖି ସୁଖଧାମ ବର,
ଲୋକ ବେଦ ବିଧାନ ବିହିଣ କନ୍ୟାଦାନ କରିଲେ ମିଥିଲା ଈଶ୍ୱର ।।୩।।

ଗିରିଶ ଗଉରୀଙ୍କୁ ଯେସନେ ଦେଲେ ହରଙ୍କୁ ସାଗର ଶ୍ରୀ ନାରାୟଣଙ୍କୁ ।
ତେସନେ ବିଶ୍ୱେ ସୁଯଶ ବିସ୍ତାରି ମିଥିଳେଶ ଅର୍ପିଲେ ଜାନକୀ ରାମଙ୍କୁ ।
ହୋମାନ୍ତେ ବସନ ଗଣ୍ଠିଲେ, ବର କନ୍ୟା ପରିକ୍ରମିଲେ,
କରିବେ କି ବିନୟ, ବିଦେହଙ୍କୁ ବିଦେହ ସେ ଶ୍ୟାମ ସୁନ୍ଦର କରିଲେ ।।୪।।

---

ବରଙ୍କୁ ଦେଖି ରାଜାରାଣୀ ପ୍ରେମ-ମଗ୍ନ ହୋଇ ପଡ଼ିଲେ ଏବଂ ତାଙ୍କର ପବିତ୍ର ଚରଣ-କମଳକୁ ପଖାଳିବାକୁ ଲାଗିଲେ ।। ୪ ।। ଛନ୍ଦ :—ଶ୍ରୀରାମଙ୍କ ପଦ-ପଙ୍କଜ ପ୍ରକ୍ଷାଳନ କଲାବେଳେ ପ୍ରେମ ହେତୁ ତାଙ୍କ ଶରୀର ପୁଲକାବଳୀରେ ପୂରିଗଲା । ଆକାଶ ଓ ନଗରରେ ହେଉଥିବା ସଙ୍ଗୀତ-ଗାନ, ନିଶାଣ ଏବଂ 'ଜୟ' 'ଜୟ'ର ଧ୍ୱନିରେ ସତେ ଯେମିତି ଚତୁର୍ଦ୍ଦିଗ ଉଚ୍ଛୁଳି ପଡ଼ୁଥାଏ । ଯେଉଁ ଚରଣ-କମଳ କାମଦେବଙ୍କ ଶତ୍ରୁ ଶିବଙ୍କ ହୃଦୟ-ସରୋବରରେ ସଦା ବିରାଜିତ, ଯାହାକୁ ଥରେ ମାତ୍ର ସ୍ମରଣ କଲେ ମନରେ ନିର୍ମଳତା ଓ ଶୁଦ୍ଧତା ଆସିଯାଏ ଏବଂ କଳିଯୁଗର ସମସ୍ତ ପାପ ଦୂରକୁ ଅପସରି ଯାଏ, ଯାହାର ସ୍ପର୍ଶ ପାଇ ଗୌତମ ମୁନିଙ୍କ ପାତକିନୀ ପତ୍ନୀ ଅହଲ୍ୟା ପରମଗତି ଲାଭ କରିଥିଲେ, ଯେଉଁ ଚରଣ-କମଳର ମକରନ୍ଦ-ରସ ଗଙ୍ଗା ରୂପରେ ଶିବଙ୍କ ମସ୍ତକ ଉପରେ ବିରାଜମାନ, ଯାହାକୁ ଦେବତାମାନେ ପବିତ୍ରତାର ସୀମା ବୋଲି ବର୍ଣ୍ଣନା କରନ୍ତି ଏବଂ ମୁନି ଓ ଯୋଗିଜନ ନିଜ ନିଜ ମନକୁ ଭ୍ରମର କରି ଯେଉଁ ଚରଣ-କମଳ ସେବନପୂର୍ବକ ମନୋବାଞ୍ଛିତ ଗତି ଲାଭ କରନ୍ତି, ସେହି ଚରଣକୁ ଭାଗ୍ୟପାତ୍ର (ଭାଗ୍ୟବାନ୍) ଜନକ ଧୋଉଅଛନ୍ତି, ଏହା ଦେଖି ସମସ୍ତେ 'ଜୟ' 'ଜୟ' ଧ୍ୱନି କରୁଥା'ନ୍ତି ।। ୧-୨ ।। ଉଭୟ କୁଳଗୁରୁ ବର ଓ କନ୍ୟାଙ୍କ କରକୁ ମିଳାଇ ଶାଖାବଂଶ ଉଚ୍ଚାରଣ କରିବାକୁ ଲାଗିଲେ । ପାଣିଗ୍ରହଣ ହେବାର ଦେଖି ବ୍ରହ୍ମାଦି ଦେବତା, ମନୁଷ୍ୟ ଓ ମୁନିମାନେ ଆନନ୍ଦରେ

ଜୟ ଧୁନି ବନ୍ଦୀ ବେଦ ଧୁନି ମଂଗଲ ଗାନ ନିସାନ ।
ସୁନି ହରଷହିଁ ବରଷହିଁ ବିବୁଧ ସୁରତରୁ ସୁମନ ସୁଜାନ ॥୩୨୪॥
କୁଅଁରୁ କୁଅଁରି କଲ ଭାଁୱରି ଦେହୀଁ । ନୟନ ଲାଭୁ ସବ ସାଦର ଲେହୀଁ ॥
ଜାଇ ନ ବରନି ମନୋହର ଜୋରୀ । ଜୋ ଉପମା କଛୁ କହୌଁ ସୋ ଥୋରୀ ॥୧॥
ରାମ ସୀୟ ସୁନ୍ଦର ପ୍ରତିଛାହୀଁ । ଜଗମଗାତି ମନି ଖଂଭନ ମାହୀଁ ॥
ମନହୁଁ ମଦନ ରତି ଧରି ବହୁରୂପା । ଦେଖତ ରାମ ବିଆହୁ ଅନୂପା ॥୨॥
ଦରସ ଲାଲସା ସକୁଚ ନ ଥୋରୀ । ପ୍ରଗଟତ ଦୁରତ ବହୋରି ବହୋରୀ ॥
ଭଏ ମଗନ ସବ ଦେଖନିହାରେ । ଜନକ ସମାନ ଅପାନ ବିସାରେ ॥୩॥

---

ହେଲା ଜୟ ଧ୍ୱନି ବନ୍ଦୀ ବେଦ ଧ୍ୱନି ମଙ୍ଗଳ ବାଦ୍ୟ ଗାୟନ ।
ଶୁଣି ସୁରେ ଅତି ସୁଖେ ବରଷନ୍ତି କଳ୍ପ ବିଟପ ସୁମନ ॥୩୨୪॥
ବରକନ୍ୟା ପରିକ୍ରମା ସଧୀରେ କରନ୍ତି । ନୟନ ଲାଭ ସମସ୍ତେ ସାଦରେ ନିଅନ୍ତି ॥
ଯୁଗଳ ସ୍ୱରୂପ ସୌମ୍ୟ ବର୍ଣ୍ଣି ନ ହୁଅଇ । ଯେ ଉପମା ଆଣେ ତାହା ନିକୃଷ୍ଟ ଲାଗଇ ॥୧॥
ରାମ ସୀତାଙ୍କ ସୁନ୍ଦର ପ୍ରତିବିମ୍ବ ଦ୍ୱିରେ । ଚକମକ ହୁଏ ମଣି ସ୍ତମ୍ଭର ଭିତରେ ॥
ମନେ ହୁଏ ବହୁ ରୂପ ଧରି କାମ ରତି । ଶ୍ରୀରାମଙ୍କ ଅନୁପମ ବିବାହ ଦେଖନ୍ତି ॥ ॥
ଦର୍ଶନ ଇଚ୍ଛା ବହୁତ ସଙ୍କୋଚ ଅପାର । ପ୍ରକଟ ହୋଇ ଲୁଚନ୍ତି ତେଣୁ ବାରମ୍ବାର ॥
ଦର୍ଶକବୃନ୍ଦ ପ୍ରେମରେ ନିମଗ୍ନ ହୋଇଲେ । ଜନକ ସଦୃଶ ନିଜେ ନିଜକୁ ଭୁଲିଲେ ॥୩॥

---

ପୂର୍ଣ୍ଣ ହୋଇଗଲେ । ସୁଖର ମୂଳାଧାର ବରଙ୍କୁ ଦେଖି ରାଜାରାଣୀଙ୍କ ଶରୀର ପୁଲକିତ ହୋଇଗଲା ଏବଂ ହୃଦୟ ଆନନ୍ଦରେ ନାଚି ଉଠିଲା । ନୃପ-ବିଭୂଷଣ ମହାରାଜ ଜନକ ଲୋକ ଓ ବେଦରୀତି ପାଳନ-ପୂର୍ବକ କନ୍ୟାଦାନ କଲେ ॥ ୩ ॥ ଯେପରି ହିମବାନ୍ ଶିବଙ୍କୁ ପାର୍ବତୀ ଏବଂ ସାଗର ଭଗବାନ୍ ବିଷ୍ଣୁଙ୍କୁ ଲକ୍ଷ୍ମୀଦାନ କରିଥିଲେ, ସେହିପରି ଜନକ ଶ୍ରୀରାମଙ୍କୁ ସୀତା ସମର୍ପଣ କଲେ । ଫଳରେ ବିଶ୍ୱରେ ସୁନ୍ଦର ନବୀନ କୀର୍ତ୍ତି ପରିବ୍ୟାପ୍ତ ହୋଇଗଲା । ବିଦେହରାଜ ଜନକ କିପରି ବା ବିନୟ କରନ୍ତେ ! ସେହି ଶ୍ୟାମଳ ମୂର୍ତ୍ତି ତ ତାଙ୍କୁ ବାସ୍ତବିକ ବିଦେହ (ଦେହର ଅସ୍ତିତ୍ୱ ଜ୍ଞାନରୁ ମୁକ୍ତ) କରି ଦେଲା । ଯଥାବିଧି ହୋମ କରି ଗଇଁଠାଳ ବନ୍ଧନ କରାଗଲା ଏବଂ ବରକନ୍ୟା ପରିକ୍ରମା କରିବାକୁ ଲାଗିଲେ ॥ ୪ ॥ ଦୋହା :—ଜୟଧ୍ୱନି, ବନ୍ଦୀଧ୍ୱନି, ବେଦଧ୍ୱନି, ମଙ୍ଗଳଗାନ ଓ ନିଶାଣର ଧ୍ୱନି ଶୁଣି ଚତୁର ଦେବଗଣ ଆନନ୍ଦିତ ହେଉଥା'ନ୍ତି ଏବଂ କଳ୍ପବୃକ୍ଷର ସୁମନ ସବୁ ବୃଷ୍ଟି କରୁଥା'ନ୍ତି । ॥ ୩୨୪ ॥ ଚୌପାଇ :—ବରକନ୍ୟା ମନୋହର ପରିକ୍ରମା କରୁଥା'ନ୍ତି । ସମସ୍ତ ଲୋକେ ଆଦରରେ ତାଙ୍କୁ ଦେଖି ନୟନର ପରମ ଲାଭ ଉଠାଉଥା'ନ୍ତି । ମନୋହର ଯୁଗଳ ମୂର୍ତ୍ତିର ବର୍ଣ୍ଣନା ଅସମ୍ଭବ । ଯାହା କିଛି ଉପମା ବା କହନ୍ତି, ତାହା ଅତ୍ୟଳ୍ପ ହେବ ॥ ୧ ॥ ଶ୍ରୀରାମ ଓ ସୀତାଙ୍କର ସୁନ୍ଦର ପ୍ରତିବିମ୍ବ ମଣିମୟ ସ୍ତମ୍ଭମାନଙ୍କରେ ଝଟକୁଥାଏ । ସତେ ଯେମିତି କାମଦେବ ଓ ରତି ବହୁତ ରୂପ ଧାରଣପୂର୍ବକ ଶ୍ରୀରାମଙ୍କ

ପ୍ରମୁଦିତ ମୁନିନ୍ହ ଭାଁଵରୀ ଫେରୀଂ । ନେଗ ସହିତ ସବ ରୀତି ନିବେରୀଂ ॥
ରାମ ସୀୟ ସିର ସେଁଦୁର ଦେହୀଂ । ସୋଭା କହି ନ ଜାତି ବିଧି କେହୀଂ ॥୩॥
ଅରୁନ ପରାଗ ଜଲଜୁ ଭରି ନୀକେଁ । ସସିହି ଭୂଷ ଅହି ଲୋଭ ଅମୀ କେଁ ॥
ବହୁରି ବସିଷ୍ଠ ଦୀହ୍ନି ଅନୁସାସନ । ବରୁ ଦୁଲହିନି ବୈଠେ ଏକ ଆସନ ॥୪॥

ବୈଠେ ବରାସନ ରାମୁ ଜାନକି ମୁଦିତ ମନ ଦସରଥୁ ଭଏ ।
ତନୁ ପୁଲକ ପୁନି ପୁନି ଦେଖି ଅପନେଁ ସୁକୃତ ସୁରତରୁ ଫଲ ନଏ ॥
ଭରି ଭୁଵନ ରହା ଉଛାହୁ ରାମ ବିବାହୁ ଭା ସବହୀଂ କହା ।
କେହି ଭାଁତି ବରନି ସିରାତ ରସନା ଏକ ଯହୁ ମଂଗଲୁ ମହା ॥୧॥

ତବ ଜନକ ପାଇ ବସିଷ୍ଠ ଆୟସୁ ବ୍ୟାହ ସାଜ ସଁଵାରି କୈ ।
ମାଂଡଵୀ ଶ୍ରୁତକୀରତି ଉରମିଲା କୁଅଁରି ଲଈଂ ହଁକାରି କୈ ॥
କୁସକେତୁ କନ୍ୟା ପ୍ରଥମ ଜୋ ଗୁନ ସୀଲ ସୁଖ ସୋଭାମଈ ।
ସବ ରୀତି ପ୍ରୀତି ସମେତ କରି ସୋ ବ୍ୟାହି ନୃପ ଭରତହି ଦଈ ॥୨॥

---

ସାନନ୍ଦେ କରାଇ ପରିକ୍ରମା ମୁନିଜନ । ପ୍ରାପ୍ୟ ପାଇ ସବୁ ରୀତି କଲେ ସମ୍ପାଦନ ॥
ରାମ ସୀତାଙ୍କ ଲଲାଟେ ସିନ୍ଦୂର ଦିଅନ୍ତେ । କହି ନ ହୁଅଇ ସେହି ଶୋଭା କେଉଁ ମତେ ॥୩॥
ଅରୁଣ ରଜ ନୀରଜ ଘେନି ସ୍ୱଭାବରେ । ଶଶୀକୁ ଭୂଷଇ ଅହି କି ସୁଧା ଲୋଭରେ ॥
ପୁଣି ଆଦେଶ ପ୍ରଦାନ କରନ୍ତେ ବଶିଷ୍ଠ । ବର ବଧୂ ଏକାସନେ ହେଲେ ଉପବିଷ୍ଟ ॥୪॥

ରମ୍ୟ ଆସନେ ରାମ ସୀତାଙ୍କୁ ବିଲୋକଣ ଦଶସ୍ୟନ୍ଦନ ପ୍ରମୋଦିତ ।
ଦେଖି ଆପଣା ପୁଣ୍ୟ-କଳ୍ପ ଫଳ ନୂତନ ପୁଲକେ ହୋଇଲେ ପୂରିତ ।
ବିବାହ ହୋଇଲା ସମ୍ପନ୍ନ, ଉତ୍ସାହେ ପୂରିଲା ଭୁବନ,
ବର୍ଣ୍ଣିଣ ଏକ ଜିହ୍ୱା ଏହି ମଙ୍ଗଳ ମହା ଶେଷ ବା କରିବ କେସନ ॥୧॥

ତହୁଁ ପାଇ ଜନକ ଆଦେଶ ବଶିଷ୍ଠଙ୍କ ବିବାହ ଯୋଗାଡ କରାଇ ।
ଆଣିଲେ ଅତି ପ୍ରୀତି ମାଣ୍ଡବୀ ଶ୍ରୁତକୀର୍ତ୍ତି ଊର୍ମିଳା କନ୍ୟାଙ୍କୁ ଡକାଇ ।
ଅଗ୍ରଜା କୁଶକେତୁଙ୍କର, ସୁନ୍ଦରୀ ଶୀଳ-ଗୁଣାକର,
ପ୍ରେମ ନିୟମ ସହି କରାଇଲେ ବିବାହ ଭରତ ସଙ୍ଗେ ନୃପବର ॥ ॥

---

ଅନୁପମ ବିବାହ ଦେଖୁଛନ୍ତି କି ? କାମଦେବ ଓ ରତିଙ୍କର ଦର୍ଶନ ଲାଳସା ଓ ସଂକୋଚ କେହି କାହାକୁ କମ ନୁହଁ । ସୁତରାଂ ସେ ଦୁହେଁ ବାରମ୍ବାର ପ୍ରକଟ ହୋଇ ଲୁଚି ଯାଉଥା'ନ୍ତି । ସମସ୍ତ ଦର୍ଶକ ଆନନ୍ଦ-ମଗ୍ନ ହୋଇଗଲେ ଏବଂ ଜନକଙ୍କ ପରି ସମସ୍ତେ ଆତ୍ମବିସ୍ମୃତ ହୋଇଗଲେ ॥ ୩ ॥ ମୁନିଜନମାନେ ଆନନ୍ଦପୂର୍ବକ ପରିକ୍ରମା କରାଇଲେ ଏବଂ ଆପଣା ଆପଣାର ପ୍ରାପ୍ୟ ପାଇ ସମସ୍ତ ରୀତି ଓ ଆଚାରକୁ ସମ୍ପାଦନ କଲେ । ଶ୍ରୀ ରାମଚନ୍ଦ୍ର ସୀତାଙ୍କ ମସ୍ତକରେ ସିନ୍ଦୂର ଦେଉଅଛନ୍ତି । ସେହି ସମୟର ଶୋଭା କୌଣସି ମତେ କହି

ଜାନକୀ ଲଘୁ ଭଗିନୀ ସକଲ ସୁନ୍ଦରି ସିରୋମନି ଜାନି କୈ ।
ସୋ ତନୟ ଦୀନ୍ହୀ ବ୍ୟାହି ଲଖନହି ସକଲ ବିଧି ସନମାନ କୈ ॥
ଜେହି ନାମୁ ଶ୍ରୁତକୀରତି ସୁଲୋଚନି ସୁମୁଖି ସବ ଗୁନ ଆଗରୀ ।
ସୋ ଦଈ ରିପୁସୂଦନହି ଭୂପତି ରୂପ ସୀଲ ଉଜାଗରୀ ॥୩॥
ଅନୁରୁପ ବର ଦୁଲହିନି ପରସ୍ପର ଲଖି ସକୁଚି ହିୟଁ ହରଷହୀଁ ।
ସବ ମୁଦିତ ସୁନ୍ଦରତା ସରାହହିଁ ସୁମନ ସୁର ଗନ ବରଷହୀଁ ॥
ସୁନ୍ଦରୀଁ ସୁନ୍ଦର ବରନ୍ହ ସହ ସବ ଏକ ମଣ୍ଡପ ରାଜହୀଁ ।
ଜନୁ ଜୀବ ଉର ଚାରିଉ ଅବସ୍ଥା ବିଭୁନ୍ହ ସହିତ ବିରାଜହୀଁ ॥୪॥

---

ଅନୁଜା ସୀତାଙ୍କର ଉର୍ମିଳା ନାମ ଯା'ର ସୁନ୍ଦରୀ-ଶିରୋମଣି ଜାଣି ।
ତାଙ୍କୁ ଲକ୍ଷ୍ମଣ ସହ କରାଇଲେ ବିବାହ ସକଳ ପ୍ରକାରେ ସମ୍ମାନ ।
ଶ୍ରୁତକୀର୍ତ୍ତି ସୁଲୋଚନୀ, ଯେ ଗୁଣାଳୟା ସୁବଦନୀ,
ଶୀଳ ସ୍ୱରୂପା, ତାଙ୍କୁ ସୁଖେ ଶତ୍ରୁଘ୍ନଙ୍କୁ ଅପିଲେ ନରପତିମଣି ॥୩॥
ଶୋଭିତ ବଧୂବର ନିରେଖି ପରସ୍ପର ସଙ୍କୋଚ ହରଷ ହୁଅନ୍ତି ।
ସୁନ୍ଦରତା ସମସ୍ତେ ପ୍ରଶଂସନ୍ତି ମୁଦିତେ ସୁମନ ସୁରେ ବରଷନ୍ତି ।
ବରାଙ୍ଗୀ ବରଙ୍କ ସହିତ, ଏକ ମଣ୍ଡପେ ବିରାଜିତ,
ଜୀବ ହୃଦେ ଯେପରି ସ୍ୱାମୀଙ୍କ ସହ ଚାରି ଅବସ୍ଥା ହୁଅନ୍ତି ଶୋଭିତ ॥୪॥

---

ହେବନାହିଁ ॥ ୪ ॥ ସତେ ଯେମିତି ନୀଳ ପଦ୍ମରେ ରକ୍ତ ବର୍ଣ୍ଣର ପରାଗରେଣୁ ଭଲ ଭାବରେ ପୂର୍ଣ୍ଣ କରି ତାହା ଯୋଗେ ସର୍ପ ଅମୃତ ଲୋଭରେ ଚନ୍ଦ୍ରମାକୁ ଭୂଷିତ କରୁଛି କି ! ତତ୍ପରେ ବଶିଷ୍ଠଙ୍କର ଆଜ୍ଞାନୁସାରେ ବର ଓ ବଧୂ ଦୁହେଁ ଗୋଟିଏ ଆସନରେ ବସିଲେ ॥୫॥ ଛନ୍ଦ —ଶ୍ରୀରାମ ଓ ଜାନକୀ ଶ୍ରେଷ୍ଠ ଆସନରେ ବସିଲେ । ସେ ଦୁହିଁଙ୍କୁ ଦେଖି ଦଶରଥ ମନରେ ଅତି ଆନନ୍ଦିତ ହେଲେ । ନିଜର ପୁଣ୍ୟ-କଳ୍ପବୃକ୍ଷରେ ନୂତନ ଫଳ ଫଳିବାର ଦେଖି ତାଙ୍କ ଶରୀର ବାରମ୍ବାର ପୁଲକିତ ହେଉଥାଏ । ଚଉଦ ଭୁବନରେ ଉତ୍ସାହ ପୂର୍ଣ୍ଣ ହୋଇଗଲା । ସମସ୍ତେ କହିଲେ ଯେ, ଶ୍ରୀରାମଚନ୍ଦ୍ରଙ୍କ ବିବାହ ହୋଇଗଲା । ଜିହ୍ୱା ଗୋଟିଏ, ମାତ୍ର ସେ ମଙ୍ଗଳ ମହାନ, ତେବେ ସେ ବର୍ଣ୍ଣନା ଆରମ୍ଭ କରି କିମିତି ବା ଶେଷ କରାଯାଇ ପାରିବ ! ॥ ୧ ॥ ତଦନନ୍ତର ବଶିଷ୍ଠଙ୍କ ଆଜ୍ଞା ପାଇ ଜନକ ବିବାହ-ଦ୍ରବ୍ୟ ସଜାଇ ମାଣ୍ଡବୀ, ଶ୍ରୁତକୀର୍ତ୍ତି ଓ ଉର୍ମିଳା—ଏହି ତିନି ରାଜକୁମାରୀଙ୍କୁ ଡକାଇଆଣିଲେ । କୁଶଧ୍ୱଜଙ୍କ ବଡ କନ୍ୟା ଗୁଣ, ଶୀଳ ସୁଖ ଓ ଶୋଭାର ପ୍ରତିମୂର୍ତ୍ତି ମାଣ୍ଡବୀଙ୍କୁ ରାଜା ଜନକ ପ୍ରେମପୂର୍ବକ ସମସ୍ତ ରୀତିନୀତି ସହକାରେ ଭରତଙ୍କୁ ବିବାହ-ସୂତ୍ରରେ ଦାନ କଲେ ॥୨॥ ଜାନକୀଙ୍କ କନିଷ୍ଠା ଭଗିନୀ ଉର୍ମିଳା ସମସ୍ତ ସୁନ୍ଦରୀଙ୍କ ମଧ୍ୟରେ ଶିରୋମଣି । ସେହି କନ୍ୟାଙ୍କର ଯଥାବିଧି ସମ୍ମାନ କରି ତାହାଙ୍କୁ ରାଜା ଲକ୍ଷ୍ମଣଙ୍କ ସହିତ ବିବାହ କରାଇଲେ । ସୁଲୋଚନା, ସୁମୁଖୀ, ସର୍ବଗୁଣର ଆକର ଏବଂ ରୂପ ତଥା ଶୀଳରେ ଦୀପ୍ତିମୟୀ ଶ୍ରୁତକୀର୍ତ୍ତି

ମୁଦିତ ଅଉଧପତି ସକଲ ସୁତ ବଧୁନ୍ହ ସମେତ ନିହାରି ।
ଜନୁ ପାଏ ମହିପାଲ ମନି କ୍ରିୟନ୍ହ ସହିତ ଫଲ ଚାରି ॥୩୨୫॥
ଜସି ରଘୁବୀର ବ୍ୟାହ ବିଧି ବରନୀ । ସକଲ କୁଅଁର ବ୍ୟାହେ ତେହିଁ କରନୀ ॥
କହି ନ ଜାଇ କଛୁ ଦାଇଜ ଭୂରି । ରହା କନକ ମନି ମଂଡପୁ ପୂରି ॥୧॥
କଂବଲ ବସନ ବିଚିତ୍ର ପଟୋରେ । ଭାଁତି ଭାଁତି ବହୁ ମୋଲ ନ ଥୋରେ ॥
ଗଜ ରଥ ତୁରଗ ଦାସ ଅରୁ ଦାସୀ । ଧେନୁ ଅଲଂକୃତ କାମଦୁହା ସୀ ॥୨॥
ବସ୍ତୁ ଅନେକ କରିଅ କିମି ଲେଖା । କହି ନ ଜାଇ ଜାନହିଁ ଜିନ୍ହ ଦେଖା ॥
ଲୋକପାଲ ଅବଲୋକି ସିହାନେ । ଲୀନ୍ହ ଅଉଧପତି ସବୁ ସୁଖୁ ମାନେ ॥୩॥

---

ହେଲେ ପ୍ରମୋଦିତ ଦେଖି ଦଶରଥ ସବଧୂ ସୁତ ସକଳ ।
ପାଇଛନ୍ତି ଯେସନ୍ତେ ମହୀପାଳମଣି କ୍ରିୟା ସହ ଚାରିଫଳ ॥୩୨୫॥
ବର୍ଣ୍ଣିଲି ରଘୁବୀରଙ୍କ ବିବାହ ଯେମନ୍ତେ । ଅନ୍ୟ କୁମର ବିବାହ ହୋଇଲେ ତେମନ୍ତେ ॥
ବିବିଧ ଯୌତୁକ ବର୍ଣ୍ଣିବେ ପାରିବ କିଏ । ମଣ୍ଡପ ମଣି କାଞ୍ଚନେ ଶୋଭେ ପୂର୍ଣ୍ଣ ରହି ॥୧॥
କମ୍ବଳ ବସନ ପାଟ ଦୁକୂଳ ଅପାର । ଅତି ମହାର୍ଘ୍ୟ ବିଚିତ୍ର ଅନେକ ପ୍ରକାର ॥
ଗଜ ବାଜି ରଥ ଦାସ ଦାସୀ ଯେ ବହୁତ । କାମଧେନୁ ସମ ନାନା ଧେନୁ ଅଲଙ୍କୃତ ॥୨॥
ବସ୍ତୁ ଅଗଣିତ ଲେଖା ହୋଇ ନ ପାରଇ । ଯେ ଦେଖିଛି ସେ ଜାଣଇ, କହି ନ ହୁଅଇ ॥
ଲୋକପାଳେ ଅବଲୋକି ଲାଳସା କରନ୍ତି । ପ୍ରମୋଦିତେ ନେଲେ ସବୁ ଅବଧ ନୃପତି ॥୩॥

---

ନାମ୍ନୀ କନ୍ୟାଙ୍କୁ ରାଜା ଶତ୍ରୁଘ୍ନଙ୍କ ସହିତ ବିବାହ ଦେଲେ ॥ ୩ ॥ ବର ଓ କନ୍ୟାମାନେ ଆପଣା ଆପଣାର ଅନୁରୂପ ପ୍ରିୟା ଓ ପ୍ରିୟଙ୍କୁ ଦେଖି ହୃଦୟରେ ସଙ୍କୋଚ ଆନନ୍ଦ ଲାଭ କରୁଥା'ନ୍ତି । ସମସ୍ତ ଲୋକ ପ୍ରସନ୍ନ ମନରେ ସେମାନଙ୍କର ସୌନ୍ଦର୍ଯ୍ୟ ପ୍ରଶଂସା କରୁଥାନ୍ତି ଏବଂ ଦେବଗଣ ପୁଷ୍ପ ବୃଷ୍ଟି କରୁଥା'ନ୍ତି । ସମସ୍ତ ସୁନ୍ଦରୀ ବଧୂ ସୁନ୍ଦର ବରମାନଙ୍କ ସହିତ ଗୋଟିଏ ମଣ୍ଡପରେ ଏପରି ଶୋଭା ପାଉଅଛନ୍ତି, ସତେ ଯେପରି ଜୀବର ହୃଦୟରେ ଚାରି ଗୋଟି ଅବସ୍ଥା (ଜାଗ୍ରତ, ସ୍ୱପ୍ନ, ସୁଷୁପ୍ତି ଏବଂ ତୁରୀୟ) ଆପଣା ଆପଣାର ଚାରି ସ୍ୱାମୀ (ବିଶ୍ୱ, ତୈଜସ, ପ୍ରାଜ୍ଞ ଓ ବ୍ରହ୍ମ) ସହିତ ବିରାଜମାନ ହୋଇଅଛନ୍ତି କି ! ॥ ୦ ॥ ଦୋହା :—ଅଯୋଧ୍ୟାନରେଶ ଦଶରଥ ସମସ୍ତ ପୁତ୍ରଙ୍କୁ ବଧୂମାନଙ୍କ ସହିତ ଦେଖି ଏପରି ଆନନ୍ଦିତ ହେଉଅଛନ୍ତି, ସତେ ଯେପରି ନୃପଶିରୋମଣି କ୍ରିୟା (ଯଜ୍ଞକ୍ରିୟା, ଶ୍ରଦ୍ଧାକ୍ରିୟା ଯୋଗକ୍ରିୟା ଓ ଜ୍ଞାନକ୍ରିୟା) ସହିତ ଚାରିଫଳ (ଅର୍ଥ, ଧର୍ମ, କାମ ଓ ମୋକ୍ଷ) ଲାଭ କରିଅଛନ୍ତି କି ! ॥ ୩୨୫ ॥ ଚୌପାଈ :—ଶ୍ରୀରାମଙ୍କ ବିବାହର ଯେଉଁ ବିଧି ବର୍ଣ୍ଣିତ ହେଲା, ସେହି ରୀତି ଅନୁସାରେ ସମସ୍ତ ରାଜକୁମାରଙ୍କର ବିବାହ ସମ୍ପନ୍ନ ହେଲା । ବିବିଧ ଯୌତୁକର ଆଧିକ୍ୟ ଭାଷାରେ କହି ହେଉନାହିଁ, ସାରା ମଣ୍ଡପ ମଣି ଓ କାଞ୍ଚନରେ ପରିପୂର୍ଣ୍ଣ ହୋଇଗଲା ॥ ୧ ॥ ବହୁତ ବହୁମୂଲ୍ୟ କମ୍ବଳ, ବସ୍ତ୍ର ଏବଂ ବିବିଧ ବିଚିତ୍ର ପଟ୍ଟବସ୍ତ୍ର ତଥା ହସ୍ତୀ, ଅଶ୍ୱ, ରଥ, ଦାସଦାସୀ ଏବଂ ଭୂଷଣାଲଂକୃତ କାମଧେନୁ ସଦୃଶ ଅନେକ

ଯାଚ୍ଛ ଜାଚକନ୍ହି ଜୋ ଜେହ୍ବି ଭାଓ୍ବା । ଉବରା ସୋ ଜନବାସେହିଁ ଆଓ୍ବା ॥
ତବ କର ଜୋରି ଜନକୁ ମୃଦୁ ବାନୀ । ବୋଲେ ସବ ବରାତ ସନମାନୀ ॥୪॥

ସନମାନି ସକଲ ବରାତ ଆଦର ଦାନ ବିନୟ ବଡ଼ାଇ କୈ ।
ପ୍ରମୁଦିତ ମହାମୁନି ବୃନ୍ଦ ବନ୍ଦେ ପୂଜି ପ୍ରେମ ଲଡ଼ାଇ କୈ ॥
ସିରୁ ନାଇ ଦେବ ମନାଇ ସବ ସନ କହତ କର ସଂପୁଟ କିଏଁ ।
ସୁର ସାଧୁ ଚାହତ ଭାଉ ସିଂଧୁ କି ତୋଷ ଜଲ ଅଂଜଲି ଦିଏଁ ॥୧॥

କର ଜୋରି ଜନକୁ ବହୋରି ବଂଧୁ ସମେତ କୋସଲରାୟ ସୋଁ ।
ବୋଲେ ମନୋହର ବୟନ ସାନି ସନେହ ସୀଲ ସୁଭାୟ ସୋଁ ॥
ସଂବଂଧ ରାଜନ ରାଓ୍ବରେଁ ହମ ବଡ଼େ ଅବ ସବ ବିଧି ଭଏ ।
ଏହି ରାଜ ସାଜ ସମେତ ସେବକ ଜାନିବେ ବିନୁ ଗଥ ଲଏ ॥୨॥

---

ଯେ ଯାହା ମାଗିଲେ ତାହା ଦେଇ ଯାଚକଙ୍କୁ । ଅବଶିଷ୍ଟ ଅଣାଇଲେ ବର-ନିବାସକୁ ॥
ତହୁଁ ମିଥିଳେଶ କର ଯୋଡ଼ି ମୃଦୁ ବାଣୀ । କହିଲେ ସକଳ ବର-ଜାତଙ୍କୁ ସମ୍ମାନି ॥୪॥

ସମ୍ମାନିଣ ସକଳ ବରଜାତଙ୍କୁ ଶୀଳ ବିନୟ ବଡ଼ାଇ ଆଦରେ ।
ପୂଜି ମହା ଆନନ୍ଦେ ମୁନି-ନାୟକବୃନ୍ଦେ ବନ୍ଦିଲେ ସପ୍ରେମ ଅନ୍ତରେ ।
ନମି ସୁରଙ୍କୁ ଯୋଡ଼ି ପାଣି, ଭାଷିଲେ ପୁଣି ମଞ୍ଜୁ ବାଣୀ,
ଚାହାନ୍ତି ସୁର ସାଧୁ ଭାବ, ତୋଷ କି ସିନ୍ଧୁ ଡଅନ୍ତେ ଅଞ୍ଜୁଳିରେ ପାଣି ॥୧॥

ଯୋଡ଼ି ଜନକ କର ଭ୍ରାତା ସହ ଆବର କୋଶଳ ନୃପତିଙ୍କ ଆଗେ ।
ଉଚ୍ଚାରିଲେ ମୃଦୁଳ ବଚନ ସୁମଞ୍ଜୁଳ ଶୀଳ ସ୍ୱଭାବ ଅନୁରାଗେ ।
ତୁମ୍ଭର ବନ୍ଧୁତ୍ୱେ ରାଜନ, ହୋଇଲୁ ଆମ୍ଭେ ଏବେ ଧନ୍ୟ,
ବିନା ମୂଲ୍ୟେ ରାଜ୍ୟକୁ ଏ ସାଜ ସମାଜକୁ ଆପଣା ଦାସ ବୋଲି ମଣ ॥୨॥

---

ଗାଈ ଆଦି ଅଗଣିତ ବସ୍ତୁ ଯୌତୁକସ୍ୱରୂପ ଦାନ କରାଗଲା ॥ ୨ ॥ ଅଗଣିତ ବସ୍ତୁର ବର୍ଣ୍ଣନା କରାଯାଇ ପାରିବ ନାହିଁ । ଯେଉଁମାନେ ଦେଖିଛନ୍ତି, ସେହିମାନେ ହିଁ ଜାଣନ୍ତି । ସେ ସବୁକୁ ଦେଖି ଲୋକପାଳମାନେ ମଧ୍ୟ ତାହା ପାଇବାକୁ ଲାଳସା କରୁଥା'ନ୍ତି । ଅଯୋଧ୍ୟା-ରାଜା ଦଶରଥ ସେ ସବୁ ସୁଖସମ୍ଭାରକୁ ପ୍ରସନ୍ନ ଚିତ୍ତରେ ଗ୍ରହଣ କଲେ ॥ ୩ ॥ ସେ ସମସ୍ତ ଯୌତୁକ ଦ୍ରବ୍ୟ ଯାଚକମାନଙ୍କୁ ଯଥାରୁଚି ପ୍ରଦାନ କଲେ । ଯାହା ଅବଶିଷ୍ଟ ରହିଲା, ବରନିବାସକୁ ଚାଲି ଆସିଲା । ତତ୍ପରେ ଜନକ ହାତ ଯୋଡ଼ି ସମସ୍ତ ବରଯାତ୍ରୀଙ୍କୁ ସମ୍ମାନପୂର୍ବକ କୋମଳ ବାଣୀରେ କହିଲେ— ॥ ୪ ॥ ଛନ୍ଦ —ଆଦର, ଦାନ, ବିନୟ ଏବଂ ବଡ଼ାଇ ଦ୍ୱାରା ସମସ୍ତ ବରଯାତ୍ରୀଙ୍କୁ ସମ୍ମାନିତ କରି, ରାଜା ଜନକ ମହା ଆନନ୍ଦ ଓ ପ୍ରେମରେ ମୁନିମାନଙ୍କୁ ପୂଜା ଏବଂ ବନ୍ଦନା କଲେ । ମୁଣ୍ଡ ନୁଆଁଇ, ଦେବତାମାନଙ୍କୁ ମନାଇ, ରାଜା ହାତ ଯୋଡ଼ି ସମସ୍ତଙ୍କୁ ମନୋହର ବାଣୀରେ କହିଲେ, "ଦେବତା ଓ

ଏ ଦାରିକା ପରିଚାରିକା କରି ପାଳିବୀ କରୁନା ନଈ ।
ଅପରାଧୁ ଛମିବୋ ବୋଲି ପଠଏ ବହୁତ ହୌଁ ଢୀଠ୍ୟୋ କଈ ॥
ପୁନି ଭାନୁକୁଲଭୂଷନ ସକଲ ସନମାନ ନିଧି ସମଧୀ କିଏ ।
କହି ଜାତି ନହିଁ ବିନତୀ ପରସ୍ପର ପ୍ରେମ ପରିପୂରନ ହିଏ ॥୩॥
ବୃଂଦାରକାଗନ ସୁମନ ବରିସହିଁ ରାଉ ଜନବାସେହି ଚଲେ ।
ଦୁଂଦୁଭୀ ଜୟ ଧୁନି ବେଦ ଧୁନି ନଭ ନଗର କୌତୂହଲ ଭଲେ ॥
ତବ ସଖୀ ମଂଗଲ ଗାନ କରତ ମୁନୀସ ଆୟସୁ ପାଇ କୈ ।
ଦୂଲହ ଦୁଲହିନିହ୍ନ ସହିତ ସୁଂଦରି ଚଲୀଁ କୋହବର ଲ୍ୟାଇ କୈ ॥୪॥

ଏ କନ୍ୟାଙ୍କୁ ଆମ୍ଭରି ପରିଚାରିକା କରି କରୁଣାସହିତ ପାଳିବେ ।
ମୁଁ ଯେ ଡକାଇ ଆଣି କଲି ବହୁ ଧୃଷ୍ଟାମି ସେ ଦୋଷ ମାର୍ଜନା କରିବେ ।
ଅରୁଣ କୁଳର ଅରୁଣ, ସମ୍ମାନ ସମ୍ବଧିଙ୍କୁ ପୁଣ,
କହି ନୁହଇ ପ୍ରୀତି ପରସ୍ପର ବିନତି, ହୋଇଲେ ପ୍ରେମେ ପରିପୂର୍ଣ୍ଣ ॥୩॥
ସୁରେ ହୋଇ ପ୍ରସନ୍ନ ବରଷନ୍ତି ପ୍ରସୂନ ରାଜା ଚଳିଲେ ବରବାସେ ।
ଦୁନ୍ଦୁଭି ଜୟଧ୍ୱନି ଉଚ୍ଚାରେ ବେଦ ଧ୍ୱନି ହୁଅଇ ନଗରୀ ଆକାଶେ,
ମୁନିଙ୍କ ଆଦେଶ ପାଇଣ, ସଖୀ ସୁନ୍ଦରୀ ଏକଠି ହୋଇଣ ॥
କନ୍ୟା ସହ ବରଙ୍କୁ ନେଇ କେଳି ଗୃହକୁ ଚଳିଲେ ମଙ୍ଗଳ ଗାଇଣ ॥୪॥

ସାଧୁମାନେ ଭାବ ଗ୍ରହାନ୍ତି । (ସେମାନେ ପ୍ରେମରେ ହିଁ ପ୍ରସନ୍ନ ହୁଅନ୍ତି । ସେହି ପୂର୍ଣ୍ଣକାମ ମହାନୁଭାବମାନଙ୍କୁ କେହି ଯାହା କିଛି ଦେଇ କିପରି ସନ୍ତୁଷ୍ଟ କରିପାରିବ ?) ଏକ ଅଞ୍ଜୁଳି ଜଳ ଦେବାରେ ସମୁଦ୍ର ସନ୍ତୁଷ୍ଟ ହୋଇ ପାରିବ ବା କାହିଁ ?" ॥ ୧ ॥ ପୁଣି ଜନକ ଭାଇଙ୍କ ସହିତ ହାତ ଯୋଡ଼ି କୋଶଳାଧୀଶ ଦଶରଥଙ୍କୁ ସ୍ନେହ, ଶୀଳ ଓ ସୁନ୍ଦର ପ୍ରେମରେ ରସାଣିତ ମନୋହର ବଚନ କହିଲେ—"ହେ ରାଜନ୍ ! ଆପଣଙ୍କ ସହିତ ସମ୍ବନ୍ଧ ସ୍ଥାପିତ ହେବାରୁ ଆମ୍ଭେମାନେ ସମସ୍ତେ ସବୁ ପ୍ରକାରେ ମହତ ହୋଇଗଲୁ । ଏହି ରାଜପାଟ ସହିତ ସମସ୍ତ ସାଜ-ସମାଜକୁ ଆପଣ ବିନା ମୂଲ୍ୟରେ ଗ୍ରହଣ କରି ନିଜର ସେବକ ବୋଲି ମନେ କରନ୍ତୁ ॥ ୨ ॥ ଆମ୍ଭର ଏହି କନ୍ୟାମାନଙ୍କୁ ପରିଚାରିକା ରୂପେ ମନେକରି କରୁଣାପୂର୍ବକ ଏମାନଙ୍କୁ ପାଳନ କରନ୍ତୁ । ଆମେ ବିବାହ ନିମନ୍ତେ ଆପଣମାନଙ୍କୁ ଏଠାକୁ ଡକାଇ ଆଣି ବହୁ ଧୃଷ୍ଟତା କରିଅଛୁ । ଅପରାଧ କ୍ଷମା କରନ୍ତୁ । ତତ୍ପରେ ସୂର୍ଯ୍ୟବଂଶ-ବିଭୂଷଣ ଦଶରଥ ସମ୍ବନ୍ଧୀ ଜନକଙ୍କୁ ସମ୍ପୂର୍ଣ୍ଣ ସମ୍ମାନର ନିଧି କରିଦେଲେ । ଉଭୟଙ୍କ ପରସ୍ପର ବିନୟ କହି ହେଉନାହିଁ । ଦୁହିଁଙ୍କ ହୃଦୟ ପ୍ରେମରେ ପରିପୂର୍ଣ୍ଣ ॥ ୩ ॥ ଦେବତାଗଣ ସୁମନ ବୃଷ୍ଟି କରୁଥା'ନ୍ତି, ରାଜା ବରଜନବାସକୁ ଗଲେ । ନିଶାଣର ଧ୍ୱନି, ଜୟଧ୍ୱନି ଏବଂ ବେଦର ଧ୍ୱନି ଉଦ୍‌ଘୋଷିତ ହେଉଥାଏ । ଆକାଶ ଓ ନଗର, ଉଭୟରେ ଖୁବ କୌତୂହଳ ଓ ଆନନ୍ଦର ଲହରୀ ଖେଳି ଯାଉଥାଏ । ସେତେବେଳେ ମୁନୀଶ୍ୱରଙ୍କ ଆଜ୍ଞା ପାଇ ସୁନ୍ଦରୀ

ପୁନି ପୁନି ରାମହି ଚିତଉ ସିୟ ସକୁଚତି ମନୁ ସକୁଚୈ ନ ।
ହରତ ମନୋହର ମୀନ ଛବି ପ୍ରେମ ପିଆସେ ନୈନ ॥୩୨୬॥

## ମାସପାରାୟଣ, ଏକାଦଶ ବିଶ୍ରାମ

ସ୍ୟାମ ସରୀରୁ ସୁଭାୟଁ ସୁହାୱନ । ସୋଭା କୋଟି ମନୋଜ ଲଜାୱନ ॥
ଜାବକ-ଜୁତ ପଦ କମଲ ସୁହାଏ । ମୁନି ମନ ମଧୁପ ରହତ ଜିନ୍ହ ଛାଏ ॥୧॥
ପୀତ ପୁନୀତ ମନୋହର ଧୋତୀ । ହରତି ବାଲରବି ଦାମିନି ଜୋତୀ ॥
କଲ କିଂକିନି କଟିସୂତ୍ର ମନୋହର । ବାହୁ ବିସାଲ ବିଭୂଷନ ସୁନ୍ଦର ॥୨॥
ପୀତ ଜନେଉ ମହାଛବି ଦେଈ । କରମୁଦ୍ରିକା ଚୋରି ଚିତୁ ଲେଈ ॥
ସୋହତ ବ୍ୟାହ ସାଜ ସବ ସାଜେ । ଉର ଆୟତ ଉରଭୂଷନ ରାଜେ ॥୩॥

---

ଉପର ମନରେ ସଙ୍କୋଚନ୍ତି ସୀତା ଦେଖି ଦେଖିଣ ରାମଙ୍କୁ ।
ଅପହରେ ପ୍ରେମ-ପିପାସୁ ନୟନ ମଞ୍ଜୁ ମୀନ ସୌନ୍ଦର୍ଯ୍ୟକୁ ॥୩୨୬॥
ଶ୍ୟାମଲ ତନୁ ସ୍ୱଭାବେ ସୁନ୍ଦର ଅଟଇ । ଶୋଭା ଅମିତ ମଦନେ ଲଜ୍ଜିତ କରଇ ॥
ଅଲତା ଲେପିତ ପଦ-କଞ୍ଜ ମନୋହର । ଯହିଁ ବସି ରହେ ମୁନି ମନ-ମଧୁକର ॥୧॥
ପୀତ ପରମ ପବିତ୍ର ରମଣୀୟ ଧୋତି । ହରଇ ବାଲ ଆଦିତ୍ୟ ସୌଦାମିନୀ ଜ୍ୟୋତି ॥
ଲଲିତ କଙ୍କିଣୀ କଟି ସୂତ୍ର ମନୋରମ । ବିଶାଳ ଭୁଜେ ଶୋଭିତ ଭୂଷଣ ଉତ୍ତମ ॥୨॥
ପୀତ ଯଜ୍ଞ ଉପବୀତ ମହାଶୋଭା ଦିଏ । କର-ମୁଦ୍ରିକା ଚିତ୍ତକୁ ଚୋରି କରି ନିଏ ॥
ଶୋଭନ୍ତି ବିବାହ ସାଜ ସର୍ବବିଧ ସାଜି । ଆୟତ ହୃଦେ ରାଜଇ ବିଭୂଷଣ-ରାଜି ॥୩॥

---

ସଖୀମାନେ ମଙ୍ଗଳ ସଙ୍ଗୀତ ଗାନ କରି କନ୍ୟାମାନଙ୍କ ସହିତ ବରଙ୍କୁ କୋହବରକୁ ନେଇ ଗଲେ ॥ ୪ ॥ ଦୋହା —ସୀତା ବାରମ୍ବାର ରାମଚନ୍ଦ୍ରଙ୍କୁ ଦେଖୁଥା'ନ୍ତି ଏବଂ ସଙ୍କୁଚିତ ହେଉଥା'ନ୍ତି । କିନ୍ତୁ ତାଙ୍କର ମନ ଜମା ସଙ୍କୁଚିତ ହେଉ ନ ଥାଏ । ତାଙ୍କର ପ୍ରେମ-ପିପାସୁ ନୟନ ମନୋହର ମୀନଗଣଙ୍କ ଛବିକୁ ହରଣ କରୁଥାଏ ॥ ୩୨୬ ॥ ଶ୍ରୀରାମଙ୍କ ଶ୍ୟାମଲ ଶରୀର ସ୍ୱଭାବତଃ ସୁନ୍ଦର । ତାହାର ଶୋଭା କୋଟି କୋଟି କନ୍ଦର୍ପଙ୍କୁ ଲଜ୍ଜା ଦେଉଥାଏ । ଅଲତାଯୁକ୍ତ ତାଙ୍କର ମନୋହର ଚରଣ-କମଳ ଅତି ସୁନ୍ଦର ଲାଗୁଥାଏ । ସେହି ଚରଣ-କମଳ ଉପରେ ମୁନିମାନଙ୍କର ମନ-ଭ୍ରମର ସଦା ଅଭିନିବିଷ୍ଟ ରହୁଥାଏ ॥ ୧ ॥ ପବିତ୍ର ଓ ମନୋହର ପୀତ ବର୍ଣ୍ଣର ଧୋତି ପ୍ରାତଃ କାଳର ବାଲ-ସୂର୍ଯ୍ୟ ଓ ବିଜୁଳିର ଜ୍ୟୋତିକୁ ହରଣ କରି ନେଉଥାଏ । କଟିରେ ସୁନ୍ଦର କିଙ୍କିଣୀ ଓ କଟିସୂତ୍ର ବିରାଜିତ । ବିଶାଳ ଭୁଜଦ୍ୱୟରେ ସୁନ୍ଦର ଭୂଷଣ ସୁଶୋଭିତ ॥ ୨ ॥ ପୀତ ଯଜ୍ଞ-ଉପବୀତ ମହାନ୍ ଛବି ସୃଷ୍ଟି କରୁଥାଏ । ହାତର ମୁଦି ଚିତ୍ତକୁ ହରଣ କରିନିଏ । ବିବାହର ସମସ୍ତ ସାଜରେ ସଜ୍ଜିତ ହୋଇ ସେ ଶୋଭା ପାଉଥା'ନ୍ତି । ପ୍ରଶସ୍ତ ବକ୍ଷ ଉପରେ ବକ୍ଷରେ

ପିଅର ଉପରନା କାଖାସୋତି । ଦୁହୁଁ ଆଁଚରହ୍ନି ଲଗେ ମନି ମୋତି ॥
ନୟନ କମଲ କଲ କୁଣ୍ଡଲ କାନା । ବଦନୁ ସକଲ ସୌଂଦର୍ଜ ନିଧାନା ॥୪॥
ସୁଂଦର ଭୃକୁଟି ମନୋହର ନାସା । ଭାଲ ତିଲକୁ ରୁଚିରତା ନିବାସା ॥
ସୋହତ ମୌରୁ ମନୋହର ମାଥେ । ମଂଗଲମୟ ମୁକୁତା ମନି ଗାଥେ ॥୫,

ଗାଥେ ମହାମନି ମୌର ମଂଜୁଲ ଅଂଗ ସବ ଚିତ ଚୋରହୀଁ ।
ପୁରନାରି ସୁରସୁଂଦରୀଁ ବରହି ବିଲୋକି ସବ ତିନ ତୋରହୀଁ ॥
ମନି ବସନ ଭୂଷନ ବାରି ଆରତି କରହୀଁ ମଂଗଲ ଗାୱହୀଁ ।
ସୁର ସୁମନ ବରିସହୀଁ ସୂତ ମାଗଧ ବଂଦି ସୁଜସୁ ସୁନାୱହୀଁ ॥୧॥
କୋହବରହିଁ ଆନେ କୁଅଁର କୁଅଁରି ସୁଆସିନିହ୍ନ ସୁଖ ପାଇ କୈ ।
ଅତି ପ୍ରୀତି ଲୌକିକ ରୀତି ଲାଗୀଁ କରନ ମଂଗଲ ଗାଇ କୈ ॥
ଲହକୌରି ଗୌରି ସିଖାୱ ରାମହି ସୀୟ ସନ ସାରଦ କହୈଁ ।
ରନିବାସୁ ହାସ ବିଲାସ ରସ ବସ ଜନ୍ମ କୋ ଫଲୁ ସବ ଲହୈଁ ॥୨॥

---

ପୀତ ଉତ୍ତରୀ ପଇତା ପରିପ୍ରେ ପଡ଼ିଛୁ । ଉଭୟ କାନରେ ମୋତି ମାଣିକ ଜଡ଼ିଛୁ ॥
କମଲ ନୟନ, କର୍ଣ୍ଣେ ରୁଚିର କୁଣ୍ଡଲ । ସୌମ୍ୟ ବଦନ ସୌନ୍ଦର୍ଯ୍ୟ-ନିଧାନ ସକଳ ॥୪॥
ସୁନ୍ଦର ବଙ୍କ ଭୃକୁଟି ନାସିକା ଶୋଭନ । ଲଲାଟ ତିଲକ ଅଟେ ଲାବଣ୍ୟ ସଦନ ॥
ମୁକୁଟ ମଉଡ଼ ମସ୍ତକେ ହୁଅଇ ଶୋଭିତ । ସୁମଙ୍ଗଳମୟ ମଣି ମୁକୁତା ଖଚିତ ॥୫॥

ମହା ମଣି ଖଚିତ ମୁକୁଟ ସୁଶୋଭିତ ଅଙ୍ଗ ଚିତ୍ତକୁ ଚୋର କରେ ।
ବରଙ୍କୁ ନିରେଖିଣ ତୃଣ ତୋଡ଼ନ୍ତି ସର୍ବେ ତୃଣ ସୁର-ସୁନ୍ଦରୀ ନାରୀ ବରେ ।
ମଣି ବସନ ଉତ୍ସର୍ଗନ୍ତି, ବନ୍ଦାଇ ଗାୟନ କରନ୍ତି,
ବନ୍ଦୀ ଗାୟକ ସୂତ ଶୁଣାନ୍ତି ଯଶ ପୁତ ସୁମନ ସୁରେ ବରଷନ୍ତି ॥୧॥
କୁମର କୁମାରୀଙ୍କୁ ଆଣି କୋହବରଙ୍କୁ ବରାଙ୍ଗୀ ମୁଦିତ ହୋଇଣ ।
ଲୌକିକ ରୀତି ଅତି ପ୍ରେମେ ସର୍ବେ କରନ୍ତି ସୁବଣି ମଙ୍ଗଳ ଗାଇଣ ।
ରାମଙ୍କୁ ଶିଖାନ୍ତି ପାର୍ବତୀ, ବଇଦେହୀଙ୍କୁ ସରସ୍ୱତୀ,
ହାସ ବିଧାନ, ହାସ୍ୟ-ରସ-ବଶ ଉଆସ ସୁଫଳ ଜନମ ମଣନ୍ତି ॥୨॥

---

ପିନ୍ଧିବା ଉପଯୋଗୀ, ସୁନ୍ଦର ଅଳଙ୍କାର ସୁଶୋଭିତ ହେଉଥାଏ । ୩ ॥ ପୀତ ବର୍ଣ୍ଣର ଚଦର ଉପବୀତ ପରି ସୁଶୋଭିତ ହେଉଥାଏ । ତାହାର ଦୁଇ ପଣତରେ ମଣି ଓ ମୁକ୍ତା ଖଚିତ । କମଳ ସମ ନ ସୁନ୍ଦର ନେତ୍ର, କର୍ଣ୍ଣରେ ସୁନ୍ଦର କୁଣ୍ଡଳ ଏବଂ ମୁଖ ତ ସମସ୍ତ ସୌନ୍ଦର୍ଯ୍ୟର ଭଣ୍ଡାର ॥୪॥ ସୁନ୍ଦର, ବଙ୍କ ଭୃକୁଟି ଏବଂ ମନୋହର ନାସିକା । ଲଲାଟ ଉପରେ ଶୋଭିତ ତିଳକ ସତେ ଯେପରି ଲାବଣ୍ୟର ସଦନ । ତହିଁରେ ମଙ୍ଗଳମୟ ମୋତି ଓ ମଣି ଗୁନ୍ଥା ହୋଇଛି । ଏପରି ମନୋହର ମୁକୁଟ ସୁନ୍ଦର ମଥା ଉପରେ ପରିଶୋଭିତ ॥୫॥

ନିଜ ପାନି ମନି ମହୁଁ ଦେଖିଅତି ମୂରତି ସୁରୂପନିଧାନ କୀ ।
ଚାଲତି ନ ଭୁଜବଲ୍ଲୀ ବିଲୋକନି ବିରହ ଭୟ ବସ ଜାନକୀ ॥
କୌତୁକ ବିନୋଦ ପ୍ରମୋଦୁ ପ୍ରେମୁ ନ ଜାଇ କହି ଜାନହିଁ ଅଲୀଁ ।
ବର କୁଅଁରି ସୁଂଦର ସକଲ ସଖୀଁ ଲିୱାଇ ଜନବାସେହି ଚଲୀଁ ॥୩॥

ତେହି ସମୟ ସୁନିଅ ଅସୀସ ଜହଁ ତହଁ ନଗର ନଭ ଆନଁଦୁ ମହା ॥
ଚିରୁ ଜିଅହୁଁ ଜୋରୀଁ ଚାରୁ ଚାର୍ୟୋ ମୁଦିତ ମନ ସବହୀଁ କହା ।
ଜୋଗୀନ୍ଦ୍ର ସିଦ୍ଧ ମୁନୀସ ଦେବ ବିଲୋକି ପ୍ରଭୁ ଦୁଂଦୁଭି ହନୀ ॥
ଚଲେ ହରଷି ବରଷି ପ୍ରସୂନ ନିଜ ନିଜ ଲୋକ ଜୟ ଜୟ ଜୟ ଭନୀ ॥୪॥

---

ସୌନ୍ଦର୍ଯ୍ୟ-ନିଧିଙ୍କର ପ୍ରତିବିମ୍ବ ସ୍ୱକର-ମଣିରେ ସୀତା ନିରେଖିଣ ।
ଭୁଜ-ଲତାରୁ ନେତ୍ର ନ ଉଠାନ୍ତି ଅନ୍ୟତ୍ର ବିରହ ଶାପିତ ହୋଇଣ ।
କହି ନ ହୁଏ ପ୍ରେମ ମୋଦ, ଜାଣନ୍ତି ଆଲୀ ସେ ବିନୋଦ,
ଘେନି ବଧୂ ବରଙ୍କୁ ସଖୀ ବରବାସକୁ ଚାଲିଲେ ଲଭିଣ ପ୍ରମୋଦ ॥୩॥

ସେ ସମୟେ ଆଶିଷ ଶୁଣାଯାଏ ଅଶେଷ ନଭ ନଗରୁ ମୋଦ-ବଶ ।
ଲଭନ୍ତୁ ଆୟୁ ଚିର ବର ବଧୂ ଯୋଡ଼ି ଚତୁର କହନ୍ତି ସର୍ବେ ହୋଇ ହର୍ଷ ।
ବାଦ୍ୟ ବଜାଇ ସିଦ୍ଧ ସୁରେ, ମୁନୀନ୍ଦ୍ର ଆନନ୍ଦିତ ଉରେ,
ପ୍ରଭୁଙ୍କ ଜୟ ଘୋଷି ପୁଷ୍ପମାଳ ବରଷି ଗମିଲେ ନିଜ ନିଜ ପୁରେ ॥୪॥

---

ଛନ୍ଦ —ସୁନ୍ଦର ମୁକୁଟରେ ବହୁମୂଲ୍ୟ ମଣି ଗୁନ୍ଥା ହୋଇଥାଏ । ସମସ୍ତ ଅଙ୍ଗ ଚିତ୍ତକୁ ଚୋରାଇ ନେଉଥାଏ । ସମସ୍ତ ନଗରବାସିନୀ ନାରୀ ଓ ଦେବାଙ୍ଗନାମାନେ ବରଙ୍କୁ ଦେଖି ତୃଣ ଛିଣ୍ଡାଉଥା'ନ୍ତି । ଅର୍ଥାତ୍ ସେମାନଙ୍କ ଦୁଃଖକଷ୍ଟ ନିଜ ଉପରେ ନେଉଥା'ନ୍ତି । ମଣି, ବସ୍ତ୍ର, ବିବିଧ ଅଲଙ୍କାର ଆଦି ଉତ୍ସର୍ଗ କରି ଆରତି ବିଧାନ ଓ ମଙ୍ଗଳ ସଙ୍ଗୀତ ଗାନ କରୁଥା'ନ୍ତି । ଦେବତାମାନେ ଫୁଲ ବର୍ଷା କରୁଥା'ନ୍ତି ଏବଂ ସୂତ, ମାଗଧ ତଥା ଭାଟମାନେ ସୁନ୍ଦର ଯଶ ଶୁଣାଉଥା'ନ୍ତି ॥ ୧ ॥ ସୌଭାଗ୍ୟବତୀ ସ୍ତ୍ରୀମାନେ ସୁଖ ପାଇ କୁମାର ଓ କୁମାରୀମାନଙ୍କୁ କୋହବରକୁ ଆଣିଲେ ଏବଂ ଅତ୍ୟନ୍ତ ପ୍ରେମରେ ମଙ୍ଗଳ ଗୀତ ଗାଇ ଗାଇ ଲୌକିକ ରୀତି ସାଧନ କଲେ । ପାର୍ବତୀ ଶ୍ରୀରାମଙ୍କୁ ଏବଂ ସରସ୍ୱତୀ ସୀତାଙ୍କୁ ବରକନ୍ୟାଙ୍କ ପାରସ୍ପରିକ ଗ୍ରାସଦାନ-ବିଧାନ ଶିଖାଉଥା'ନ୍ତି । ରାଣୀପୁର ହାସ୍ୟ-ବିଳାସର ଆନନ୍ଦରେ ମଗ୍ନ । ଶ୍ରୀରାମ ଓ ସୀତାଙ୍କୁ ଦେଖି ଦେଖି ସମସ୍ତେ ନିଜ ନିଜ ଜନ୍ମର ଫଳ ଲାଭ କରୁଥା'ନ୍ତି ॥ ୨ ॥ ସୀତା ସୌନ୍ଦର୍ଯ୍ୟନିଧାନ ରାମଚନ୍ଦ୍ରଙ୍କର ମୂର୍ତ୍ତିର ପ୍ରତିବିମ୍ବ ଆପଣା ହସ୍ତର ମଣିରେ ନିରୀକ୍ଷଣ କରୁଥା'ନ୍ତି । ଏହି ପ୍ରତିବିମ୍ବର ଦର୍ଶନରୁ ବଞ୍ଚିତ ହେବା ଭୟରେ ସେ ଭୁଜ-ଲତାରୁ ଅନ୍ୟତ୍ର ଆପଣା ନୟନ ଉଠାଉ ନ ଥା'ନ୍ତି । ସେହି ସମୟର ହାସ-କୌତୁକ, ବିନୋଦ, ପ୍ରମୋଦ ଓ ପ୍ରେମ ଆଦି ଭାଷାରେ ବର୍ଣ୍ଣନା କରାଯାଇ ନ ପାରେ । ସଖୀମାନେ ହିଁ ସେ ଆନନ୍ଦ ଉପଲବ୍ଧି କରି ପାରିଲେ ।

ସହିତ ବଧୂଟିହ୍ନ କୁଅଁର ସବ ତବ ଆଏ ପିତୁ ପାସ ।
ସୋଭା ମଂଗଲ ମୋଦ ଭରି ଉମଗେଉ ଜନୁ ଜନବାସ ॥୩୨୭॥
ପୁନି ଜେଓଁନାର ଭଈ ବହୁ ଭାଁତୀ । ପଠଏ ଜନକ ବୋଲାଇ ବରାତୀ ॥
ପରତ ପାଁଓଡେ ବସନ ଅନୂପା । ସୁତହ୍ନ ସମେତ ଗଓନ କିୟୋ ଭୂପା ॥୧॥
ସାଦର ସବ କେ ପାୟ ପଖାରେ । ଜଥାଜୋଗୁ ପୀଢ଼ହ୍ନ ବୈଠାରେ ॥
ଧୋଏ ଜନକ ଅବଧପତି ଚରନା । ସୀଲୁ ସନେହୁ ଜାଇ ନହିଁ ବରନା ॥୨॥
ବହୁରି ରାମପଦ-ପଙ୍କୋଜ ଧୋଏ । ଜେ ହରହୃଦୟ-କମଲ ମହୁଁ ଗୋଏ ॥
ତୀନିଉ ଭାଇ ରାମ ସମ ଜାନୀ । ଧୋଏ ଚରନ ଜନକ ନିଜ ପାନୀ ॥୩॥

---

ବଧୂଙ୍କ ସହିତ ତହୁଁ ଚାରି ସୁତ ଆସିଲେ ପିତାଙ୍କ ପାଶେ ।
ସୁମଙ୍ଗଳ ଶୋଭା ମୋଦ ପୂରି ଅବା ଉଚ୍ଛୁଳିଲା ବରବାସେ ॥୩୨୭॥
ପୁଣି ନାନାବିଧ ଭୋଜ କରାଇଲା ପାକ । ଡକାଇ ଆଣିଲେ ବରଯାତ୍ରୀଙ୍କୁ ଜନକ ॥
ପଡଇ ପାହାଡା ବସ୍ତ୍ର ଅନୁପମ ଅତି । ସୁତଙ୍କ ସହ ଆସିଲେ ଅଯୋଧ୍ୟା ନୃପତି ॥୧॥
ସାଦରେ ସମସ୍ତଙ୍କର ପ୍ରକ୍ଷାଳି ପୟର । ବସାଇଲେ ଯଥାଯୋଗ୍ୟ ଆସନେ ସୁନ୍ଦର ॥
ଧୋଇଲେ ଅବଧ ପତି ଚରଣ ବିଦେହ । ବର୍ଣ୍ଣି ନ ହୁଅଇ ଶୀଳ ସ୍ୱାଭାବିକ ସ୍ନେହ ॥୨॥
ପୁଣି ଧୋଇଲେ ରାମଙ୍କ ଚରଣ-କମଳ । ଯେ ହର-ହୃଦ-ସରୋଜେ ଗୁପ୍ତ ଅବିରଳ ॥
ତିନି ଭାଇଙ୍କୁ ଶ୍ରୀ ରଘୁପତି ସମ ଜାଣି । ଧୋଇଲେ ପଦ ମିଥିଳେଶ୍ୱର ନିଜ ପାଣି ॥୩॥

---

ତଦନନ୍ତର ବରକନ୍ୟାମାନଙ୍କୁ ସମସ୍ତ ସୁନ୍ଦର ସଖୀ ବରବାସକୁ ନେଇ ଚାଲିଲେ ॥ ୩ ॥ ସେହି ସମୟରେ ନଗର ଓ ଆକାଶରେ, ଯେଉଁଠି ଶୁଣନ୍ତୁ, ସେଇଠି ଆଶୀର୍ବାଦ ଧ୍ୱନି ଶୁଣା ଯାଉଥାଏ ଏବଂ ମହାନ୍ ଆନନ୍ଦ ବ୍ୟାପିଥାଏ । ସମସ୍ତେ ପ୍ରସନ୍ନ ମନରେ କହିଲେ, "ଏହି ଚାରିଗୋଟି ମନୋହର ଯୁଗଳ ଚିରଂଜୀବୀ ହୁଅନ୍ତୁ ।" ଯୋଗିରାଜ, ସିଦ୍ଧ, ମୁନୀଶ୍ୱର ଓ ଦେବତାମାନେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ଦୁନ୍ଦୁଭି ବଜାଇଲେ ଏବଂ ଆନନ୍ଦିତ ହୋଇ ପୁଷ୍ପ ବୃଷ୍ଟି କରି ତଥା "ଜୟ ହେଉ", "ଜୟ ହେଉ"— କହି ସେମାନେ ଆପଣା ଆପଣା ଲୋକକୁ ଚାଲିଲେ ॥ ୪ ॥ ଦୋହା :—ତତ୍ପରେ ଚାରି କୁମାର ବଧୂମାନଙ୍କ ସହିତ ପିତାଙ୍କ ନିକଟକୁ ଆସିଲେ । ଜଣାପଡିଲା, ସତେ ଯେମିତି ଶୋଭା-ମଙ୍ଗଳ ଓ ପ୍ରମୋଦରେ ବରଜନବାସ ପୂରି ଉଚ୍ଛୁଳି ପଡିଲା ॥ ୩୨୭ ॥ ଚୌପାଇ :— ପୁଣି ନାନାପ୍ରକାର ଭୋଜନସାମଗ୍ରୀ ପ୍ରସ୍ତୁତ କରାହେଲା । ଜନକ ବରଯାତ୍ରୀମାନଙ୍କୁ ଡକାଇ ପଠାଇଲେ । ରାଜା ଦଶରଥ ପୁତ୍ରମାନଙ୍କ ସହିତ ଆଗମନ କଲେ । ତାଙ୍କର ଆଗମନ ବେଳେ ଅନୁପମ ବସ୍ତ୍ର ପାହାଡା ରୂପେ ପଡି ଯାଉଥାଏ ॥୧॥ ମିଥିଳାପତି ସାଦର ସମସ୍ତଙ୍କ ଚରଣ ଧୋଇଲେ ଏବଂ ସମସ୍ତଙ୍କୁ ଯଥାଯୋଗ୍ୟ ଆସନ ଉପରେ ବସାଇଲେ । ତତ୍ପରେ ଜନକ ଅଯୋଧ୍ୟାପତି ଦଶରଥଙ୍କ ଚରଣ ପଖାଳିଲେ । ତାଙ୍କର ଶୀଳ ଓ ସ୍ନେହ ବିଷୟ ବର୍ଣ୍ଣନା କରାଯାଇ ନ ପାରେ ॥ ୨ ॥ ତତ୍ପରେ ମିଥିଳାଧିପତି ଶିବଙ୍କ ହୃଦୟ-

ଆସନ ଉଚିତ ସବହି ନୃପ ଦୀନ୍ହେ । ବୋଲି ସୂପକାରୀ ସବ ଲୀନ୍ହେ ॥
ସାଦର ଲଗେ ପରନ ପନୱାରେ । କନକ କୀଲ ମନି ପାନ ସଁୱାରେ ॥୪॥

ସୂପୋଦନ ସୁରଭୀ ସରପି ସୁନ୍ଦର ସ୍ୱାଦୁ ପୁନୀତ ।
ଛନ ମହୁଁ ସବ କେଁ ପରୁସି ଗେ ଚତୁର ସୁଆର ବିନୀତ ॥୩୨୮॥

ପଞ୍ଚ କବଲ କରି ଜେୱନ ଲାଗେ । ଗାରି ଗାନ ସୁନି ଅତି ଅନୁରାଗେ ॥
ଭାଁତି ଅନେକ ପରେ ପକୱାନେ । ସୁଧା ସରିସ ନହିଁ ଜାହିଁ ବଖାନେ ॥୧॥
ପରୁସନ ଲଗେ ସୁଆର ସୁଜାନା । ବିଂଜନ ବିବିଧ ନାମ କୋ ଜାନା ॥
ଚାରି ଭାଁତି ଭୋଜନ ବିଧି ଗାଈ । ଏକ ଏକ ବିଧି ବରନି ନ ଜାଈ ॥୨॥
ଛ ରସ ରୁଚିର ବିଂଜନ ବହୁ ଜାତୀ । ଏକ ଏକ ରସ ଅଗନିତ ଭାଁତୀ ॥
ଜେୱଁତ ଦେହିଁ ମଧୁର ଧୁନି ଗାରୀ । ଲୈ ଲୈ ନାମ ପୁରୁଷ ଅରୁ ନାରୀ ॥୩॥

---

ଉଚିତ ଆସନ ନୃପ ସମସ୍ତଙ୍କୁ ଦେଲେ । ପୁଣି ଡକାଇ ସମସ୍ତ ସୁଆରଙ୍କୁ ନେଲେ ॥
ପତ୍ର ଲଗାଇଲେ ସର୍ବେ ଆଦର ସହିତ । ଯେ ମଣି ପର୍ଣ୍ଣ, କନକ ପିଣ୍ଟିରେ ରଚିତ ॥୪॥

ସୁନ୍ଦର ପାବନ ସ୍ୱାଦ ଡାଲି ଅନ୍ନ ସୁରଭି-ଘୃତ ମିଶ୍ରିତ ।
ପରଷିଲେ କ୍ଷଣ ମଧ୍ୟେ ସମସ୍ତଙ୍କୁ ସୁଆର ପଟୁ ବିନୀତ ॥୩୨୮॥

ପଞ୍ଚଗ୍ରାସ କରି ପୁଣି କଲେ ଭୋଜନ । ଗାଳି ଗାନ,ଶୁଣି ଅତି ହୁଅନ୍ତି ପ୍ରସନ୍ନ ॥
ବିବିଧ ପାକାନ୍ନ ପରିବେଷଣ ହୁଅଇ । ଅମୃତ ସଦୃଶ, ବର୍ଣ୍ଣି କହି ନ ହୁଅଇ ॥୧॥
ପରଷିବାକୁ ଲାଗିଲେ ଚତୁର ସୁଆର । ବ୍ୟଞ୍ଜନ ନାମ କେ ଜାଣେ ? ଅନେକ ପ୍ରକାର ॥
ଚତୁର୍ବିଧ ଭୋଜ୍ୟ ବସ୍ତୁ ନିଗମ କଥିତ । ଏକ ଏକ ବିଧ ଅଟେ ବର୍ଣ୍ଣନ ଅତୀତ ॥୨॥
ଷଡରସ ନାନା ଜାତି ରୁଚିର ବ୍ୟଞ୍ଜନ । ଏକ ଏକ ରସ ବହୁ ପ୍ରକାରେ ରଚନ ॥
ଭୁଞ୍ଜନ୍ତେ ଗାଳି ଦିଅନ୍ତି ମଧୁର ଧ୍ୱନିରେ । ନାରୀ ପୁରୁଷଙ୍କ ନାମ ନେଇ ନେଇ ଧୀରେ ॥୩॥

---

କମଳରେ ସଦା ଗୁପ୍ତ ଭାବରେ ବାସ କରୁଥିବା ଶ୍ରୀରାମଙ୍କ ଚରଣ-କମଳ ଧୋଇଲେ । ତିନି ଭାଇଙ୍କୁ ଶ୍ରୀରାମଙ୍କ ସମାନ ବୋଲି ଜାଣି ଜନକ ନିଜ ହାତରେ ସେମାନଙ୍କ ଚରଣ ମଧ୍ୟ ଧୋଇଲେ ॥ ୩ ॥ ରାଜା ସମସ୍ତଙ୍କୁ ଉଚିତ ଆସନ ଦେଲେ ଏବଂ ସମସ୍ତ ପରିବେଷକଙ୍କୁ ଡକାଇ ପଠାଇଲେ । ସମସ୍ତେ ଆଦରରେ ଖଲିପତ୍ର ଲଗାଇଲେ । ଏହି ଖଲିଗୁଡ଼ିକ ମଣିମୟ ପତ୍ର ଏବଂ ସୁବର୍ଣ୍ଣର ପିଣ୍ଟିରେ ତିଆରି ହୋଇଥିଲା ॥୪॥ ଦୋହା —କ୍ଷଣକ ମଧ୍ୟରେ ପ୍ରବୀଣ ଓ ବିନୀତ ସୁଆରମାନେ ସମସ୍ତଙ୍କୁ ସୁନ୍ଦର ପବିତ୍ର, ସ୍ୱାଦିଷ୍ଟ ଡାଲି ଭାତ ଓ ଗାଈ ଘିଅ ପରଷି ଦେଲେ ॥ ୩୨୮ ॥ ଚୌପାଇ —ସମସ୍ତ ଲୋକ ପଞ୍ଚଗ୍ରାସ କରି ଭୋଜନ କରିବାକୁ ଲାଗିଲେ । ଗାଳି-ଗୀତ ଶୁଣି ସେମାନେ ପ୍ରେମରେ ନିମଗ୍ନ ହୋଇ ପଡ଼ିଲେ । ଅମୃତ ସମାନ ସ୍ୱାଦିଷ୍ଟ ଅନେକ ଭୋଜନ-ସାମଗ୍ରୀ ପରଷା ଗଲା ! ସେ ସବୁର ବର୍ଣ୍ଣନା ଅସମ୍ଭବ ॥ ୧ ॥ ପ୍ରବୀଣ ପାଚକମାନେ ନାନା ପ୍ରକାରର ବ୍ୟଞ୍ଜନ ପରଷିବାକୁ ଲାଗିଲେ । ସେ ସବୁର ନାମ କିଏ ଜାଣେ ? ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେୟ—ଏହି ଚାରି ପ୍ରକାରର

ସମୟ ସୁହାୱନି ଗାରି ବିରାଜା । ହଁସତ ରାଉ ସୁନି ସହିତ ସମାଜା ॥
ଏହି ବିଧି ସବହୀଁ ଭୋଜନୁ କୀହ୍ନା । ଆଦର ସହିତ ଆଚମନୁ ଦୀହ୍ନା ॥୪॥
ଦେଇ ପାନ ପୂଜେ ଜନକ ଦସରଥୁ ସହିତ ସମାଜ ।
ଜନବାସେହି ଗୱନେ ମୁଦିତ ସକଲ ଭୂପ ସିରତାଜ ॥୩୨୯॥
ନିତ ନୂତନ ମଂଗଲ ପୁର ମାହୀଁ । ନିମିଷ ସରିସ ଦିନ ଜାମିନି ଜାହୀଁ ॥
ବଡ଼େ ଭୋର ଭୂପତିମନି ଜାଗେ । ଜାଚକ ଗୁନ ଗନ ଗାୱନ ଲାଗେ ॥୧॥
ଦେଖି କୁଅଁର ବର ବଧୁହ୍ନ ସମେତା । କିମି କହି ଜାତ ମୋଦୁ ମନ ଜେତା ॥
ପ୍ରାତକ୍ରିୟା କରି ଗେ ଗୁର ପାହୀଁ । ମହା ପ୍ରମୋଦୁ ପ୍ରେମୁ ମନ ମାହୀଁ ॥୨॥

---

ସମୟାନୁକୂଳ ଗାଳି ଶୋଭା ପାଏ ଅତି । ଶୁଣି ସମାଜ ସହିତ ହସନ୍ତି ନୃପତି ॥
ଏହିପରି ଭାବେ ସର୍ବେ କରିଣ ଭୋଜନ । ଆଦର ସହିତ ପୁଣି କଲେ ଆଚମନ ॥୪॥
ପାନ ଦେଇ ଦଶରଥଙ୍କୁ ଜନକ ସମାଜ ସହ ପୂଜିଲେ ।
ତହୁଁ ବରବାସେ ପରମ ହରଷେ ମହୀପ-ମଣି ଗମିଲେ ॥୩୨୯॥
ନିତ୍ୟ ନୂତନ ମଙ୍ଗଳ ନଗରେ ହୁଅଇ । ନିମେଷ ସମ ରଜନୀ ଦିବସ କଟଇ ॥
ବଡ଼ ଭୋରେ ମହୀପତି ଜାଗ୍ରତ ହୋଇଲେ । ଯାଚକେ କୀର୍ତ୍ତି ସମୂହ ଗାଇବାକୁ ଲାଗିଲେ ॥୧॥
ଦେଖି କୁମରବରଙ୍କୁ ବଧୂଙ୍କ ସମେତେ । କହି ନ ହୁଅଇ ମନେ ମୋଦ ହେଲା ଯେତେ ॥
ପ୍ରାତଃକ୍ରିୟା କରି ଗୁରୁ ସମୀପେ ବହନ । ମହା ପ୍ରେମ ପ୍ରମୋଦରେ କରିଲେ ଗମନ ॥୨॥

---

ଭୋଜନ-ସାମଗ୍ରୀ ଶାସ୍ତ୍ରରେ କଥିତ ହୋଇଅଛି । ସେଗୁଡ଼ିକ ମଧ୍ୟରୁ ପ୍ରତ୍ୟେକ ପ୍ରକାରର ଏତେ ପଦାର୍ଥ ପ୍ରସ୍ତୁତ ହୋଇଥିଲା ଯେ, ସେ ଗୁଡ଼ିକର ବର୍ଣ୍ଣନା କରି ହେବନାହିଁ ॥ ୨ ॥ ଷଡ଼ରସର ବହୁତ ପ୍ରକାର ସୁନ୍ଦର ବ୍ୟଞ୍ଜନ ପ୍ରସ୍ତୁତ ହୋଇଥାଏ । ଗୋଟିଏ ଗୋଟିଏ ରସର ଅନେକ ଅନେକ ପ୍ରକାର ପ୍ରସ୍ତୁତ । ଭୋଜନ କରୁଥିବା ସମୟରେ ସ୍ତ୍ରୀମାନେ ପୁରୁଷ-ସ୍ତ୍ରୀମାନଙ୍କର ନାମ ନେଇ ମଧୁର ଧ୍ୱନିରେ ଗାଳି ଦେଉଥା'ନ୍ତି ॥ ୩ ॥ ସମୟାନୁକୂଳ ଗାଳି ଅତି ଶୋଭା ପାଉଥାଏ । ତାହା ଶୁଣି ସମାଜ ସମେତ ରାଜା ହସୁଥା'ନ୍ତି । ଏହି ରୀତିରେ ସମସ୍ତେ ଭୋଜନ କଲେ ଏବଂ ତତ୍ପରେ ସମସ୍ତଙ୍କୁ ଆଦରରେ ଆଚମନ ନିମନ୍ତେ ଜଳଦାନ କରାଗଲା ॥ ୪ ॥ ଦୋହା :—ପୁଣି ଜନକ ପାନ ଦେଇ ସସମାଜ ଦଶରଥଙ୍କୁ ପୂଜା କଲେ । ସମସ୍ତ ରାଜାଙ୍କର ମୁକୁଟମଣି ଦଶରଥ ପ୍ରସନ୍ନ ମନରେ ବରବାସକୁ ଗମନ କଲେ ॥ ୩୨୯ ॥ ଚୌପାଇ —ଜନକପୁରରେ ନିତ୍ୟ ନବ ମଙ୍ଗଳୋତ୍ସବ ଅନୁଷ୍ଠିତ ହେଉଥାଏ । ଦିନ ଏବଂ ରାତି ମୁହୂର୍ତ୍ତ ସମାନ ବିତି ଯାଉଥାଏ । ବଡ଼ ଭୋରରୁ ନୃପ-ମୁକୁଟମଣି ଦଶରଥ ଶଯ୍ୟା ତ୍ୟାଗ କଲେ । ଯାଚକମାନେ ତାଙ୍କର ଗୁଣ ଓ କୀର୍ତ୍ତି—ଗାଥା ଗାଇବାକୁ ଲାଗିଲେ ॥ ୧ ॥ ଶ୍ରେଷ୍ଠ କୁମାରଙ୍କୁ ସୁନ୍ଦର ବଧୂଙ୍କ ସହିତ ଦେଖି ତାଙ୍କ ମନରେ ଯେତେ ଆନନ୍ଦ, ତାହା କିପରି କୁହାଯାଇ ପାରିବ ? ସେମାନେ ପ୍ରାତଃକ୍ରିୟା କରି ଗୁରୁ ବଶିଷ୍ଠଙ୍କ ପାଖକୁ ଗଲେ । ତାହାଙ୍କ ମନରେ ମହା ଆନନ୍ଦ ଓ ପ୍ରେମ ଭରି

କରି ପ୍ରନାମୁ ପୂଜା କରି ଜୋରୀ । ବୋଲେ ଗିରା ଅମିଅଁ ଜନୁ ବୋରୀ ॥
ତୁମ୍ହରୀ କୃପା ସୁନହୁ ମୁନିରାଜା । ଭୟଉଁ ଆଜୁ ମୈଁ ପୂରନକାଜା ॥୩॥
ଅବ ସବ ବିପ୍ର ବୋଲାଇ ଗୋସାଈଁ । ଦେହୁ ଧେନୁ ସବ ଭାଁତି ବନାଈଁ ॥
ସୁନି ଗୁର କରି ମହିପାଲ ବଡାଈ । ପୁନି ପଠଏ ମୁନିବୃନ୍ଦ ବୋଲାଈ ॥୪॥

ବାମଦେଉ ଅରୁ ଦେବରିଷି ବାଲମୀକି ଜାବାଲି ।
ଆଏ ମୁନିବର ନିକର ତବ କୌସିକାଦି ତପସାଲି ॥୩୩୦॥

ଦଣ୍ଡ ପ୍ରନାମ ସବହି ନୃପ କୀନ୍ହେ । ପୂଜି ସପ୍ରେମ ବରାସନ ଦୀନ୍ହେ ॥
ଚାରି ଲଚ୍ଛ ବର ଧେନୁ ମଗାଈଁ । କାମସୁରଭି ସମ ସୀଲ ସୁହାଈଁ ॥୧॥
ସବ ବିଧି ସକଲ ଅଲଂକୃତ କୀନ୍ହୀଁ । ମୁଦିତ ମହିପ ମହିଦେବନ୍ହ ଦୀନ୍ହୀଁ ॥
କରତ ବିନୟ ବହୁବିଧି ନରନାହୂ । ଲହେଉଁ ଆଜୁ ଜଗ ଜୀବନ ଲାହୂ ॥୨॥

---

କରି ପୂଜା ପ୍ରଣିପାତ ଯୋଡି ଯୁଗ୍ମପାଣି । ଭାଷିଲେ ସୁଧାରସରେ ଅଭିପ୍ଲୁତ ବାଣୀ ॥
ତୁମ୍ଭ ଅନୁଗ୍ରହେ ଶୁଣ ମୁନି ମହାରାଜ । ହୋଇଲି ମୋ ମନୋରଥ ପରିପୂର୍ଣ୍ଣ ଆଜ ॥୩॥
ଏବେ ଗୋସାଇଁ ସମସ୍ତ ବିପ୍ରଙ୍କୁ ଡକାଇ । ଦିଅନ୍ତୁ ଧେନୁ ସକଳ ପ୍ରକାରେ ସଜାଇ ॥
ଶୁଣି ବଶିଷ୍ଠ ପ୍ରଶଂସା କରିଣ ନୃପଙ୍କୁ । ଡକାଇ ଆଣିଲେ ତହୁଁ ମୁନି ନିକରଙ୍କୁ ॥୪॥

ଋଷି ବାମଦେବ ଦେବର୍ଷି ନାରଦ ବାଲ୍ମୀକି ପୁଣି ଜାବାଲି ।
କୌଶିକାଦି ବହୁ ମୁନି ଉପସ୍ଥିତ ହେଲେ ତହିଁ ତପଶାଳୀ ॥୩୩୦॥

ନୃପ ସମସ୍ତଙ୍କୁ ଦଣ୍ଡ ପ୍ରଣାମ କରିଲେ । ପୂଜି ସୁନ୍ଦର ଆସନ ପ୍ରେମେ ପ୍ରଦାନିଲେ ॥
ଚାରିଲକ୍ଷ ମଗାଇଣ ସୁରଭି ଉତ୍ତମ । ଶୀଳ ଶୋଭା ପରିପୂର୍ଣ୍ଣ କାମଧେନୁ ସମ ॥୧॥
ସର୍ବ ଭାବେ ଅଳଙ୍କୃତ କରି ସମସ୍ତଙ୍କୁ । ସାନନ୍ଦେ ଅବନୀପତି ଦେଲେ ବ୍ରାହ୍ମଣଙ୍କୁ ॥
କରନ୍ତି ବିନୟ ନରନାଥ ନାନାମତେ । ଲଭିଲି ଆଜି ଜୀବନ-ଲାଭ ଏ ଜଗତେ ॥୨॥

---

ରହିଥାଏ ॥ ୨ ॥ ରାଜା ପ୍ରଣାମ ଓ ପୂଜନ କରି ପୁଣି ହାତ ଯୋଡି ସତେ ଯେମିତି ଅମୃତମୟୀ ବାଣୀ ବୋଇଲେ—"ହେ ମୁନିରାଜ ! ଶୁଣନ୍ତୁ, ଆପଣଙ୍କ କୃପାରୁ ଆଜି ମୁଁ ପୂର୍ଣ୍ଣକାମ ( ସଫଳମନୋରଥ ) ହେଲି ॥ ୩ ॥ ହେ ସ୍ୱାମିନ୍ ! ଏବେ ଆପଣ ସମସ୍ତ ବ୍ରାହ୍ମଣଙ୍କୁ ଡକାଇ ସେମାନଙ୍କୁ ସର୍ବବିଧ ଭୂଷଣ ଓ ବସନରେ ସୁସଜ୍ଜିତ ଧେନୁ ଦାନ କରନ୍ତୁ । ଏହା ଶୁଣି ଗୁରୁ ରାଜାଙ୍କର ବଡାଇ କଲେ ଏବଂ ତତ୍ପରେ ମୁନିଗଣଙ୍କୁ ଡକାଇ ପଠାଇଲେ ॥ ୪ ॥ ଦୋହା —ତତ୍ପରେ ବାମଦେବ, ଦେବର୍ଷି ନାରଦ, ବାଲ୍ମୀକି, ଜାବାଲି ଓ ବିଶ୍ୱାମିତ୍ର ଆଦି ତପସ୍ୱୀ ମୁନିବରମାନେ ଦଳ ଦଳ ହୋଇ ଆସିଲେ ॥୩୩୦॥ ଚୌପାଇ —ରାଜା ସମସ୍ତଙ୍କୁ ଦଣ୍ଡବତ ପ୍ରଣାମ କଲେ ଏବଂ ପ୍ରେମରେ ପୂଜା କରି ସେମାନଙ୍କୁ ଉତ୍ତମ ଆସନ ଦେଲେ । କାମଧେନୁ ପରି ଉତ୍ତମ ଶୀଳ, ସ୍ୱଭାବର ଚାରି ଲକ୍ଷ ଶ୍ରେଷ୍ଠ ଗାଭୀ ମଗାଇଲେ ॥ ୧ ॥ ସେ ସମସ୍ତଙ୍କୁ ସମସ୍ତ ପ୍ରକାର ଭୂଷଣ ଓ ବସ୍ତ୍ରରେ ସଜାଇ ରାଜା ପ୍ରସନ୍ନ ମନରେ ଭୂଦେବ ବ୍ରାହ୍ମଣଙ୍କୁ ଦାନ କଲେ । ରାଜା ବହୁତ ପ୍ରକାରେ ବିନୟ

ପାଇ ଅସୀସ ମହୀସୁ ଅନଂଦା । ଲିଏ ବୋଲି ପୁନି ଜାଚକବୃଂଦା ॥
କନକ ବସନ ମନି ହୟ ଗୟ ସ୍ୟନ୍ଦନ । ଦିଏ ବୂଝି ରୁଚି ରବିକୁଲନନ୍ଦନ ॥୩॥
ଚଲେ ପଢ଼ତ ଗାୱତ ଗୁନ ଗାଥା । ଜୟ ଜୟ ଜୟ ଦିନକର କୁଲନାଥା ॥
ଏହି ବିଧି ରାମ ବିଆହ ଉଛାହୂ । ସକଇ ନ ବରନି ସହସମୁଖ ଜାହୂ ॥୪॥

ବାର ବାର କୌସିକ ଚରନ ସୀସୁ ନାଇ କହ ରାଉ ।
ୟହ ସବୁ ସୁଖୁ ମୁନିରାଜ ତବ କୃପା କଟାଚ୍ଛ ପସାଉ ॥୩୩୧॥

ଜନକ ସନେହୁ ସୀଲୁ କରତୂତୀ । ନୃପୁ ସବ ଭାଁତି ସରାହ ବିଭୂତୀ ॥
ଦିନ ଉଠି ବିଦା ଅୱଧପତି ମାଗା । ରାଖହିଁ ଜନକୁ ସହିତ ଅନୁରାଗା ॥୧॥
ନିତ ନୂତନ ଆଦରୁ ଅଧିକାଈ । ଦିନ ପ୍ରତି ସହସ ଭାଁତି ପହୁନାଈ ॥
ନିତ ନବ ନଗର ଅନଂଦ ଉଛାହୂ । ଦସରଥ ଗୱନୁ ସୋହାଇ ନ କାହୂ ॥୨॥

---

ମୁନିଙ୍କ ଆଶିଷ ପାଇ ହରଷେ ଆବର । ଡକାଇ ଆଣି ସାଦରେ ଯାଚକ-ନିକର ॥
ଗଜ ବାଜି ରଥ ମଣି କନକ ବସନ । ଦେଲେ ରୁଚି ବୁଝି ରବି-କୁଳର ନନ୍ଦନ ॥୩॥
ଚଳିଲେ ସକଳେ ଗୁଣ କୀର୍ତ୍ତି ଗାଇ ଗାଇ । କହି ଜୟ ଜୟ ଜୟ ଭାନୁ-କୁଳ-ସାଇଁ ॥
ଏ ଭାବେ ରାମ ବିବାହ ଉତ୍ସବ ସମ୍ପନ୍ନ । ନ ପାରେ ଯାହାକୁ ବର୍ଣ୍ଣି ସହସ୍ର ଆନନ ॥୪॥

ବାରମ୍ବାର ନୃପ କୌଶିକ ଚରଣେ ବୋଲନ୍ତି ଶିର ନୁଆଇଁ ।
ତୁମ୍ଭ କୃପା ଦୃଷ୍ଟି ପ୍ରଭାବେ ଏ ସବୁ ସୁଖ ଲଭ ମୁନି-ସାଇଁ ॥୩୩୧॥

ଜନକଙ୍କ ଶୀଳ ସ୍ନେହ ଐଶ୍ୱର୍ଯ୍ୟ ବିଶେଷ । କାର୍ଯ୍ୟ କ୍ଷମତା ପ୍ରଶଂସା କରନ୍ତି ନରେଶ ॥
ନିତ୍ୟ ଉଠି ଦଶରଥ ବିଦାୟ ମାଗନ୍ତି । ରଖନ୍ତି ମିଥିଳା-ନୃପ ଅନୁରାଗେ ଅତି ॥୧॥
ନିତ୍ୟ ନୂତନ ଆଦର ଅଧିକ ବଢଇ । ପ୍ରତି ଦିନ ନାନା ବିଧ ଆତିଥ୍ୟ ହୁଅଇ ॥
ନିତ୍ୟ ନବ ପୁରେ ହୁଏ ଉତ୍ସାହ ଆନନ୍ଦ । ରାଜାଙ୍କ ଯିବା କାହାକୁ ନ ଲାଗେ ପସନ୍ଦ ॥୨॥

---

ସହକାରେ କହୁଥାନ୍ତି—"ଜଗତରେ ଆଜି ହିଁ ମୁଁ ଜୀବନର ଯଥାର୍ଥ ଫଳ ଲାଭ କଲି ।" ॥ ୨ ॥ ବ୍ରାହ୍ମଣମାନଙ୍କଠାରୁ ଆଶୀର୍ବାଦ ପାଇ ରାଜା ଆନନ୍ଦିତ ହେଲେ । ତତ୍ପରେ ରବିକୁଳ-ନନ୍ଦନ ଦଶରଥ ଯାଚକ-ବୃନ୍ଦଙ୍କୁ ଡକାଇନେଲେ ଏବଂ ସମସ୍ତଙ୍କୁ ସେମାନଙ୍କ ରୁଚି ପଚାରି ତଦନୁସାରେ ସ୍ୱର୍ଣ୍ଣ, ବସ୍ତ୍ର, ମଣି, ଅଶ୍ୱ, ହସ୍ତୀ ଓ ରଥ ଦାନ କଲେ ॥ ୩ ॥ ସେମାନେ ସମସ୍ତେ ଗୁଣଗାଥା ଗାଇ ଏବଂ "ରବିକୁଳପତିଙ୍କର ଜୟ ହେଉ" କହି କହି ଚାଲିଲେ । ଏହିପରି ଭାବରେ ଶ୍ରୀରାମଚନ୍ଦ୍ରଙ୍କ ବିବାହ ଉତ୍ସବ ସମ୍ପନ୍ନ ହେଲା । ଏହି ଉତ୍ସବର ବର୍ଣ୍ଣନା ସହସ୍ରମୁଖ ଶେଷ ଦେବ ମଧ୍ୟ କରି ପାରନ୍ତି ନାହିଁ ॥ ୪ ॥ ଦୋହା —ବିଶ୍ୱାମିତ୍ରଙ୍କ ଚରଣରେ ବାରମ୍ବାର ମୁଣ୍ଡ ନୁଆଁଇ ରାଜା କହୁଥାନ୍ତି—"ହେ ମୁନିରାଜ ! ଏ ସବୁ ସୁଖ ଆପଣଙ୍କ କୃପା-କଟାକ୍ଷର ପ୍ରସାଦ ।" ॥ ୩୩୧ ॥ ଚୌପାଈ —ରାଜା ଦଶରଥ ଜନକଙ୍କର ସ୍ନେହ, ଶୀଳ, କୃତିତ୍ୱ ଓ ଐଶ୍ୱର୍ଯ୍ୟର ସମସ୍ତ ପ୍ରକାରେ ପ୍ରଶଂସା କରୁଥା'ନ୍ତି । ପ୍ରତିଦିନ ସକାଳେ ଉଠି ଅଯୋଧ୍ୟା-ନରେଶ ବିଦାୟ

ବହୁତ ଦିବସ ବୀତେ ଏହି ଭାଁତୀ । ଜନୁ ସନେହ ରଜୁ ବଁଧେ ବରାତୀ ॥
କୌସିକ ସତାନଂଦ ତବ ଜାଈ । କହା ବିଦେହ ନୃପହି ସମୁଝାଈ ॥୩॥
ଅବ ଦସରଥ କହଁ ଆୟସୁ ଦେହୂ । ଜଦ୍ୟପି ଛାଡ଼ି ନ ସକହୁ ସନେହୂ ॥
ଭଲେହିଁ ନାଥ କହି ସଚିବ ବୋଲାଏ । କହି ଜୟ ଜୀବ ସୀସ ତିନ୍ହ ନାଏ ॥୪॥

ଅୱଧନାଥୁ ଚାହତ ଚଲନ ଭୀତର କରହୁ ଜନାଉ ।
ଭଏ ପ୍ରେମବସ ସଚିବ ସୁନି ବିପ୍ର ସଭାସଦ ରାଉ ॥୩୩୨॥

ପୁରବାସୀ ସୁନି ଚଲିହି ବରାତା । ବୂଝତ ବିକଲ ପରସ୍ପର ବାତା ॥
ସତ୍ୟ ଗୱନୁ ସୁନି ସବ ବିଲଖାନେ । ମନହୁଁ ସାଁଝ ସରସିଜ ସକୁଚାନେ ॥୧॥
ଜହଁ ଜହଁ ଆୱତ ବସେ ବରାତୀ । ତହଁ ତହଁ ସିଦ୍ଧ ଚଲା ବହୁ ଭାଁତୀ ॥
ବିବିଧ ଭାଁତି ମେୱା ପକୱାନା । ଭୋଜନ ସାଜୁ ନ ଜାଇ ବଖାନା ॥୨॥

---

ବହୁତ ଦିନ ଅତୀତ ହୋଇଗଲା ଏପରି । ବନ୍ଧା ହୋଇଛନ୍ତି ସ୍ନେହ-ରଜ୍ଜୁରେ ଯେପରି ॥
ବିଶ୍ୱାମିତ୍ର ଶତାନନ୍ଦ ଏଥୁ ଅନ୍ତେ ଯାଇ । କହିଲେ ବିଦେହ ମହୀପାଳଙ୍କୁ ବୁଝାଇ ॥୩॥
ଏବେ ଦଶରଥ ନୃପେ ଦିଅନ୍ତୁ ଆଦେଶ । ଛାଡ଼ି ନ ପାରୁଛ ସ୍ନେହେ ଯଦ୍ୟପି ନରେଶ ॥
'ଯେ ଆଜ୍ଞା', କହି ମନ୍ତ୍ରୀଙ୍କୁ ତହୁଁ ଡକାଇଲେ । ସାଦରେ ଆସି ସେମାନେ ଶିର ନୁଆଁଇଲେ॥୪॥

ଅଯୋଧ୍ୟା ନୃପତି ଯିବାକୁ ଚାହାନ୍ତି ଭିତରେ ଯାଇ ଜଣାଅ ।
ଶୁଣନ୍ତେ ସଚିବ ବିପ୍ର ସଭାସଦ ପ୍ରେମବଶ ହେଲେ ରାୟ ॥୩୩୨॥

ବରଯାତ୍ରୀଙ୍କ ମେଲାଣି ଶୁଣି ପୁରଜନ । ପଚାରନ୍ତି ପରସ୍ପରେ ବିକଳେ ବଚନ ॥
ସତ୍ୟ ଯିବା ଶୁଣି ସର୍ବେ ବ୍ୟାକୁଳ ହୋଇଲେ । ମନେହୁଏ ସନ୍ଧ୍ୟାକାଳେ ପଦ୍ମ ସଙ୍କୋଚିଲେ॥୧॥
ଆଗମନ୍ତେ ବରଯାତ୍ରୀ ଥିଲେ ଯହିଁ ଯହିଁ । ଅନେକ ପଦାର୍ଥ ପଠାଗଲା ତହିଁ ତହିଁ ॥
ବିବିଧ ପ୍ରକାର ଫଳ ପକ୍ୱାନ୍ନ ଭୋଜନ । ସାମଗ୍ରୀ ବହୁତ କରି ନ ହୁଏ ବର୍ଣ୍ଣନ ॥୨॥

---

ମାଗନ୍ତି, କିନ୍ତୁ ଜନକ ତାଙ୍କୁ ପ୍ରେମରେ ଅଟକାଇ ରଖୁଥା'ନ୍ତି ॥ ୧ ॥ ନିତ୍ୟ ନୂତନ ଭାବରେ ଆଦର ବଢ଼ି ଚାଲିଥାଏ । ପ୍ରତିଦିନ ସହସ୍ର ପ୍ରକାରେ ଆତିଥ୍ୟ ହେଉଥାଏ । ନଗରରେ ନିତ୍ୟ ନୂଆ ଆନନ୍ଦ ଓ ଉତ୍ସାହ ପୂରି ରହିଥାଏ । ଦଶରଥଙ୍କ ବିଦାୟ କାହାକୁ ଭଲ ଲାଗୁ ନ ଥାଏ । ॥ ୨ ॥ ଏହିପରି ବହୁତ ଦିନ ଅତିବାହିତ ହୋଇଗଲା । ସତେ ଯେମିତି ବରଯାତ୍ରୀମାନେ ସ୍ନେହର ରଜ୍ଜୁରେ ଆବଦ୍ଧ ହୋଇ ପଡ଼ିଥା'ନ୍ତି । ସେତେବେଳେ ବିଶ୍ୱାମିତ୍ର ଓ ଶତାନନ୍ଦ ଯାଇ ରାଜା ଜନକଙ୍କୁ ବୁଝାଇ କହିଲେ, "ଯଦ୍ୟପି ଆପଣ ସ୍ନେହବଶତଃ ଦଶରଥ ଆଦିଙ୍କୁ ଏପର୍ଯ୍ୟନ୍ତ ଛାଡ଼ିପାରି ନାହାନ୍ତି, (ତଥାପି) ଏବେ ସେମାନଙ୍କୁ ଯିବାକୁ ଆଦେଶ ଦିଅନ୍ତୁ ।" "ହେ ନାଥ ! ବହୁତ ଆଚ୍ଛା" ବୋଲି କହି ଜନକ ମନ୍ତ୍ରୀମାନଙ୍କୁ ଡକାଇଲେ । ସେମାନେ ଆସିଲେ ଏବଂ "ଜୟଜୀବ" କହି ମସ୍ତକ ନୁଆଁଇଲେ ॥୩-୪॥ ଦୋହା:-ଜନକ କହିଲେ, "ଅଯୋଧ୍ୟାନାଥ ଯିବାକୁ ଇଚ୍ଛା କରନ୍ତି, ରାଣୀ ଉଆସକୁ ଖବର କରିଦିଅ ।" ଏହା ଶୁଣି ମନ୍ତ୍ରୀ, ବ୍ରାହ୍ମଣ ସଭାସଦ୍ ଏବଂ ରାଜା ଜନକ ମଧ୍ୟ ପ୍ରେମରେ ବଶୀଭୂତ ହୋଇ

ଭରି ଭରି ବସହଁ ଅପାର କହାରା । ପଠଇଁ ଜନକ ଅନେକା ସୁଆରା ॥
ତୁରଗ ଲାଖ ରଥ ସହସ ପଚୀସା । ସକଲ ସଁୱାରେ ନଖ ଅରୁ ସୀସା ॥୩॥
ମତ୍ତ ସହସ ଦସ ସିନ୍ଧୁର ସାଜେ । ଜିହ୍ନହି ଦେଖି ଦିସିକୁଂଜର ଲାଜେ ॥
କନକ ବସନ ମନି ଭରି ଭରି ଜାନା । ମହିଷୀଁ ଧେନୁ ବସ୍ତୁ ବିଧି ନାନା ॥୪॥

ଦାଇଜ ଅମିତ ନ ସକିଅ କହି ଦୀହ୍ନ ବିଦେହଁ ବହୋରି ।
ଜୋ ଅବଲୋକତ ଲୋକପତି ଲୋକ ସଂପଦା ଥୋରି ॥୩୩୩॥

ସବୁ ସମାଜୁ ଏହି ଭାଁତି ବନାଈ । ଜନକ ଅୱଧପୁର ଦୀହ୍ନ ପଠାଈ ॥
ଚଲିହି ବରାତ ସୁନତ ସବ ରାନୀଁ । ବିକଲ ମୀନଗନ ଜନୁ ଲଘୁ ପାନୀଁ ॥୧॥

---

ଲଦି ଲଦି ବହୁ ବୃଷ ଖରୁଆ ଅପାର । ପଠାଇଲେ ମିଥିଳେଶ ଅନେକ ସୁଆର ॥
ରଥ ପଚିଶି ସହସ୍ର ଏକ ଲକ୍ଷ ବାଜି । ଆପାଦ-ମସ୍ତକ ନାନା ବିଭୂଷଣେ ସାଜି ॥୩॥
ମତ୍ତ ଦନ୍ତବଳ ଦଶ ସହସ୍ର ସଜ୍ଜିତ । ଯାହାଙ୍କୁ ବିଲୋକି ଦିଗି କୁଞ୍ଜର ଲଜ୍ଜିତ ॥
ସ୍ୱର୍ଣ୍ଣ ମଣି ଚୀର ପୂର୍ଣ୍ଣ କରି କରି ଯାନ । ଧେନୁ ମହିଷାଦି ବସ୍ତୁ ବିବିଧ ବିଧାନ ॥୪॥

ଯୌତୁକ ଅସଂଖ୍ୟ କହି ନ ହୁଅଇ ଦେଲେ ଜନକ ଆବର ।
ଯାହା ଆଗେ ସର୍ବ ଲୋକର ସମ୍ପଦ ତୁଚ୍ଛ, ଲୋକପାଳଙ୍କର ॥୩୩୩॥

ଏହି ପ୍ରକାରେ ସମସ୍ତ ପଦାର୍ଥ ସଜାଇ । ଦେଲେ ଜନକ ଅଯୋଧ୍ୟାପୁରକୁ ପଠାଇ ॥
ବରଯାତ୍ରଙ୍କ ଗମନ ଶୁଣି ସର୍ବ ରାଣୀ । ବ୍ୟାକୁଳ ହୋଇଲେ, ଯେସନେ ମୀନ ସ୍ୱଳ୍ପପାଣି॥୧॥

---

ପଡ଼ିଲେ ॥ ୩୩୨ ॥ ଚୌପାଈ :—ଜନକପୁରବାସୀମାନେ ଶୁଣିଲେ ଯେ, ବରାତ ଫେରିଯିବ । ସେତେବେଳେ ସେମାନେ ବ୍ୟାକୁଳ ହୋଇ ପରସ୍ପରକୁ କଥା ପଚାରିବାକୁ ଲାଗିଲେ । ଫେରିଯିବା ସତ୍ୟ, ଏହା ଶୁଣି ସମସ୍ତେ ବିଷଣ୍ଣ ହୋଇପଡ଼ିଲେ; ସତେ ଯେମିତି ସନ୍ଧ୍ୟା ସମୟରେ କମଳମାନେ ସଙ୍କୁଚିତ ହୋଇ ପଡ଼ିଲେ କି ! ॥ ୧ ॥ ଆସିଲା ବେଳେ ଯେଉଁ ଯେଉଁ ସ୍ଥାନରେ ବରଯାତ୍ରୀମାନେ ଅଟକି ଥିଲେ, ସେହି ସେହି ସ୍ଥାନକୁ ବହୁତ ପ୍ରକାର ସିଧା (ରୋଷେଇ ସାମଗ୍ରୀ) ପଠାଗଲା । ଅନେକ ପ୍ରକାର ଫଳ, ପକ୍ୱାନ୍ନ (ରନ୍ଧା ଖାଦ୍ୟ) ମଧ୍ୟ ପଠାଗଲା, ଯାହାର ବର୍ଣ୍ଣନା ଅସମ୍ଭବ ॥ ୨ ॥ ଅଗଣିତ ବଳଦ ଓ ଖରରେ ଏସବୁ ଜିନିଷ ଲଦି ପଠାଗଲା । ତା ସହିତ ଜନକ ଅନେକ ସୁଆର ମଧ୍ୟ ପଠାଇଲେ । ଏକ ଲକ୍ଷ ଅଶ୍ୱ ଏବଂ ପଚିଶ ହଜାର ରଥ ଆପାଦମସ୍ତକ ନାନା ବିଭୂଷଣରେ ଭୂଷିତ ହୋଇ ପଠାଗଲେ । ॥ ୩ ॥ ଦଶ ହଜାର ସୁସଜ୍ଜିତ ଉନ୍ମତ୍ତ ହସ୍ତୀ, ଗାଡ଼ି ଗାଡ଼ି ସୁବର୍ଣ୍ଣ, ବସ୍ତ୍ର ଓ ରତ୍ନ ଏବଂ ମଇଁଷି, ଗାଈ ଓ ଅନ୍ୟାନ୍ୟ ବହୁତ ଜିନିଷ ପଠାଗଲା । ହସ୍ତୀମାନଙ୍କୁ ଦେଖି ଦିଗ୍‌ଗଜମାନେ ମଧ୍ୟ ଲଜ୍ଜା ଅନୁଭବ କରୁଥା'ନ୍ତି ॥ ୪ ॥ ଦୋହା :—ଜନକ ପୁଣି ଅପରିମିତ ଯୌତୁକ ଦେଲେ, ଯାହାର ବର୍ଣ୍ଣନା ଅସମ୍ଭବ । ସେହି ସବୁ ଯୌତୁକକୁ ଦେଖି ଲୋକପାଳମାନଙ୍କର ସମସ୍ତ ଲୋକ-ସମ୍ପଦ ମଧ୍ୟ ତୁଚ୍ଛ ଲାଗୁଥାଏ ॥ ୩୩୩ ॥ ଚୌପାଈ :—ଏହିପରି ଭାବରେ ସମସ୍ତ ଦ୍ରବ୍ୟ ସଜାଇ ରାଜା ଜନକ ଅଯୋଧ୍ୟାପୁରକୁ ପଠାଇ ଦେଲେ । ରାଣୀମାନେ

ପୁନି ପୁନି ସୀୟ ଗୋଦ କରି ଲେହୀଁ । ଦେଇ ଅସୀସ ସିଖାୱନୁ ଦେହୀଁ ॥
ହୋଏହୁ ସଂତତ ପିଅହି ପିଆରୀ । ଚିରୁ ଅହିବାତ ଅସୀସ ହମାରୀ ॥୨॥
ସାସୁ ସସୁର ଗୁର ସେବା କରେହୂ । ପତି ରୁଖ ଲଖି ଆୟସୁ ଅନୁସରେହୂ ॥
ଅତି ସନେହ ବସ ସଖୀଁ ସୟାନୀ । ନାରିଧରମ ସିଖୱହିଁ ମୃଦୁ ବାନୀ ॥୩॥
ସାଦର ସକଲ କୁଅଁରି ସମୁଝାଈଁ । ରାନିହ୍ନ ବାର ବାର ଉର ଲାଈଁ ॥
ବହୁରି ବହୁରି ଭେଟହିଁ ମହତାରୀଁ । କହହିଁ ବିରଂଚି ରଚୀଁ କତ ନାରୀଁ ॥୪॥

ତେହି ଅବସର ଭାଇହ୍ନ ସହିତ ରାମୁ ଭାନୁକୁଲକେତୁ ।
ଚଲେ ଜନକ ମଂଦିର ମୁଦିତ ବିଦା କରାୱନ ହେତୁ ॥୩୩୪॥

ଚାରିଉ ଭାଇ ସୁଭାୟଁ ସୁହାଏ । ନଗର ନାରି ନର ଦେଖନ ଧାଏ ॥
କୋଉ କହ ଚଲନ ଚହତ ହହିଁ ଆଜୂ । କୀହ୍ନ ବିଦେହ ବିଦା କର ସାଜୂ ॥୧॥

---

ବାରମ୍ବାର ଜାନକୀଙ୍କୁ କୋଳ କରି ନେଇ । ଉଚିତ ଶିକ୍ଷା ଦିଅନ୍ତି ଆଶୀର୍ବାଦ ଦେଇ ॥
ହୋଇବୁ ସତତ ପ୍ରିୟଭାଜନ କାନ୍ତର । ଚିର ସୁଲକ୍ଷଣୀ ରହ ଆଶିଷ ଆମ୍ଭର ॥୨॥
ଶାଶୁ ଶ୍ୱଶୁର ଗୁରୁଙ୍କ ସେବା କରୁଥିବୁ । ପତି ଅଭିଳାଷ ଦେଖି ଆଦେଶ ପାଳିବୁ ॥
ଅତି ସ୍ନେହବଶ କହି ବଚନ ମାଧୁରୀ । ନାରୀ ଧରମ ଶିଖାନ୍ତି ସଖୀ ସୁଚତୁରୀ ॥୩॥
ଆଦର ସହ ସକଳ କନ୍ୟାଙ୍କୁ ବୁଝାନ୍ତି । ବାରମ୍ବାର ରାଣୀଗଣ ହୃଦୟେ ଲଗାନ୍ତି ॥
ପୁଣି ପୁଣି ଆଲିଙ୍ଗିଣ ସ୍ନେହମୟୀ ମାତା । କହନ୍ତି ନାରୀଙ୍କୁ କାହିଁ ରଚିଛି ବିଧାତା ॥୪॥

ସେହି ସମୟରେ ଅନୁଜଙ୍କ ସହ ରାମ ଭାନୁ-କୁଳ-କେତୁ ।
ଚଳିଲେ ହରଷେ ଜନକ ନିବାସେ ବିଦାୟ ହୋଇବା ହେତୁ ॥୩୩୪॥

ସ୍ୱଭାବେ ଭାଇ ଚାରିଟି ପରମ ସୁନ୍ଦର । ଦେଖିବା ପାଇଁ ଧାଇଁଲେ ପୁର ନାରୀନର ॥
କେହି କହଇ, ଚାହାନ୍ତି ଯିବା ପାଇଁ ଆଜ । ସଜାଇଲେଣି ବିଦେହ ବିଦାୟର ସାଜ ॥୧॥

---

"ବରଯାତ୍ରୀମାନେ ଗମନ କରିବେ" ଏହା ଶୁଣି ଏମିତି ବ୍ୟାକୁଳ ହେଲେ, ସତେ ଯେମିତି ଅଳ୍ପ ଜଳରେ ମୀନମାନେ ଛଟପଟ ହେଉ ଅଛନ୍ତି କି ! ॥ ୧ ॥ ସେମାନେ ବାରମ୍ବାର ସୀତାଙ୍କୁ କୋଳ କରୁଥା'ନ୍ତି ଏବଂ ଶିକ୍ଷା ଦେଉଥାନ୍ତି—"ତୁମେ ସର୍ବଦା ତୁମ ପତିଙ୍କର ପ୍ରିୟା ହୁଅ, ଅହିସୁଲକ୍ଷଣୀ ହୁଅ, ଏହି ଆମର ଅଶିଷ ॥ ୨ ॥ ଶାଶୁ, ଶ୍ୱଶୁର ଓ ଗୁରୁଙ୍କୁ ସେବା କରିବ । ପତିଙ୍କ ଅଭିଳାଷ ଦେଖି ତାଙ୍କ ଆଦେଶ ପାଳନ କରୁଥିବ ।" ଚତୁରା ସଖୀମାନେ ଅତ୍ୟନ୍ତ ସ୍ନେହବଶ କୋମଳ ବାଣୀରେ ସ୍ତ୍ରୀ-ଧର୍ମ ଶିଖାଉଥା'ନ୍ତି ॥ ୩ ॥ ଆଦରର ସହିତ ସମସ୍ତ କନ୍ୟାଙ୍କୁ ରାଣୀମାନେ ସ୍ତ୍ରୀ-ଧର୍ମ ଶିଖାଇ ବାରମ୍ବାର ଆଲିଙ୍ଗନ କଲେ । ମାତାମାନେ ବାରମ୍ବାର ଭେଟି କହୁଥା'ନ୍ତି—"ବିଧାତା ସ୍ତ୍ରୀ ଜାତିକୁ କାହିଁକି ଗଢିଲା ?" ॥ ୪ ॥ ଦୋହା —ସେହି ସମୟରେ ଭାନୁକୁଳ-କେତୁ ଶ୍ରୀରାମଚନ୍ଦ୍ର ଭାଇମାନଙ୍କ ସହିତ ପ୍ରସନ୍ନ ମନରେ ବିଦାୟ ନିମନ୍ତେ ଜନକଙ୍କ ମହଲକୁ ଚଳିଲେ ॥୩୩୪॥ ଚୌପାଇ ।—ସ୍ୱଭାବ-ସୁନ୍ଦର ଚାରି ଭାଇଙ୍କୁ ଦେଖିବା ନିମନ୍ତେ ନଗରର ସ୍ତ୍ରୀ-ପୁରୁଷ

ଲେହୁ ନୟନ ଭରି ରୂପ ନିହାରୀ । ପ୍ରିୟ ପାହୁନେ ଭୂପ ସୁତ ଚାରୀ ॥
କୋ ଜାନୈ କେହିଁ ସୁକୃତ ସୟାନୀ । ନୟନ ଅତିଥି କୀନ୍ହେ ବିଧି ଆନୀ ॥୨॥
ମରନସୀଲୁ ଜିମି ପାଓ୍ୱ ପିଊଷା । ସୁରତରୁ ଲହୈ ଜନମ କର ଭୂଖା ॥
ପାଓ୍ୱ ନାରକୀ ହରିପଦୁ ଜୈସେଁ । ଇନ୍ହ କର ଦରସନୁ ହମ କହଁ ତୈସେଁ ॥୩॥
ନିରଖି ରାମ ସୋଭା ଉର ଧରହୂ । ନିଜ ମନ ଫନି ମୂରତି ମନି କରହୂ ॥
ଏହି ବିଧି ସବହି ନୟନ ଫଲୁ ଦେତା । ଗଏ କୁଅଁର ସବ ରାଜ ନିକେତା ॥୪॥

ରୂପ ସିଂଧୁ ସବ ବଂଧୁ ଲଖି ହରଷି ଉଠା ରନିବାସୁ ।
କରହିଁ ନିଛାଓ୍ୱରି ଆରତୀ ମହା ମୁଦିତ ମନ ସାସୁ ॥୩୩୬॥

ଦେଖି ରାମ ଛବି ଅତି ଅନୁରାଗୀଁ । ପ୍ରେମବିବସ ପୁନି ପୁନି ପଦ ଲାଗୀଁ ॥
ରହୀ ନ ଲାଜ ପ୍ରୀତି ଉର ଛାଈ । ସହଜ ସନେହୁ ବରନି କିମି ଜାଈ ॥୧॥

---

ରୂପ ଦେଖି ନିଅ ପୂର୍ଣ୍ଣ କରିଣ ଲୋଚନ । ପ୍ରିୟ ଅତିଥି ଅଟନ୍ତି ନରେଶ-ନନ୍ଦନ ॥
କିଏ ଜାଣି କେଉଁ ପୂର୍ବ ସୁକୃତରୁ ଆଣି । ନୟନ-ଅତିଥି ଯାଙ୍କୁ କଲେ ବେଦ-ପାଣି ॥୨॥
ମରଣଶୀଳଙ୍କୁ ପ୍ରାପ୍ତ ପୀୟୂଷ ଯେମନ୍ତେ । ସୁର-ତରୁ ଲାଭ ଯଥା ଜନ୍ମ କ୍ଷୁଧାବନ୍ତେ ॥
ଲଭଇ ନାରକୀ ହରି ଚରଣ ଯେପରି । ଏହାଙ୍କର ଦରଶନ ଆମ୍ଭଙ୍କୁ ସେପରି ॥୩॥
ନିରେଖି ରାମଙ୍କ ଶୋଭା ହୃଦୟରେ ଧରି । ଆପଣା ମନକୁ ଫଣୀ, ମୂର୍ତ୍ତି ମଣି କରି ॥
ଏ ଭାବେ ନୟନ ଫଳ ଦେଇ ସମସ୍ତଙ୍କୁ । ଗଲେ କୁମାର ସରବେ ରାଜଭବନକୁ ॥୪॥

ରୂପ-ସିନ୍ଧୁ ସବୁ ଭ୍ରାତାଙ୍କୁ ନିରେଖି ହରଷିତ ଅନ୍ତଃପୁର ।
କରନ୍ତି ଉତ୍ସର୍ଗ ଆଳତି, ପରମ ପ୍ରମୋଦିତ ଶାଶୁ ଉର ॥୩୩୬॥

ଦେଖି ରଘୁବୀର ଛବି ଅନୁରାଗେ ଅତି । ପ୍ରେମବଶ ବାରମ୍ବାର ଚରଣେ ପଡନ୍ତି ॥
ନ ରହିଲା ଲାଜ ହୃଦେ, ପ୍ରୀତି ବ୍ୟାପିଗଲା । ସହଜ ସ୍ନେହ କେମନ୍ତେ ବର୍ଣ୍ଣି ହେବ ଭଲା ॥୧॥

---

ସମସ୍ତେ ଦଉଡ଼ିଲେ । କେହି କହୁଥାଏ—"ଆଜି ଏମାନେ ଯିବାକୁ ରହିଛନ୍ତି, ବିଦେହ-ରାଜା ଜନକ ସମସ୍ତ ସାମଗ୍ରୀ ସଜାଇ ଅଛନ୍ତି ।" ॥୧॥ ରାଜାଙ୍କର ଗୃହପ୍ରିୟ, ଏହି ପ୍ରାଣ-ପ୍ରିୟ ଅତିଥିମାନଙ୍କର ମନୋହର ରୂପକୁ ନେତ୍ର ପୂରାଇ ଦେଖିନିଅ । ହେ ତରୁଣି ! କେଉଁ ପୁଣ୍ୟବଳରେ ବିଧାତା ଏମାନଙ୍କୁ ଏଠାକୁ ଆଣି ଆମ୍ଭମାନଙ୍କ ନେତ୍ରାତିଥି କରିଛି, ତାହା କିଏ ଜାଣେ ! ॥୨॥ ମୃତପ୍ରାୟ ବ୍ୟକ୍ତି ଅମୃତ ପାଇଲେ, ଆଜନ୍ମ-କ୍ଷୁଧାତୁର କଳ୍ପବୃକ୍ଷ ପାଇଲେ, ନରକ-ଯୋଗ୍ୟ ଜୀବ ଭଗବାନ୍‌ଙ୍କ ପରମ ପଦ ପାଇଲେ ନିଜକୁ ଯେପରି ଭାଗ୍ୟବାନ୍ ମନେ କରେ, ଏମାନଙ୍କ ଦର୍ଶନ ପାଇ ଆମ୍ଭେମାନେ ସେହିପରି ଭାଗ୍ୟବାନ୍ ହୋଇଅଛୁ ॥୩॥ ଶ୍ରୀରାମଚନ୍ଦ୍ରଙ୍କ ଶୋଭାକୁ ନିରୀକ୍ଷଣ କରି ହୃଦୟରେ ଧରିନିଅ, ନିଜ ମନକୁ ସର୍ପ ଓ ଏହାଙ୍କର ମୂର୍ତ୍ତିକୁ ମଣି କରିନିଅ ।" ଏହିପରି ଭାବରେ ସମସ୍ତଙ୍କୁ ନେତ୍ରଫଳ ପ୍ରଦାନ କରି ସମସ୍ତ ରାଜକୁମାର ରାଜମହଲକୁ ଗଲେ ॥ ୪ ॥ ଦୋହା :—ରୂପର ସମୁଦ୍ର ସମସ୍ତ ଭାଇଙ୍କୁ ଦେଖି ସମଗ୍ର ରାଣୀ-ନିବାସ ଆନନ୍ଦିତ ହୋଇ ଉଠିଲା । ଶାଶୁମାନେ ମହା ଆମୋଦରେ

ଭାଇନ୍ହ ସହିତ ଉବଟି ଅନ୍ହୱାଏ । ଛ ରସ ଅସନ ଅତି ହେତୁ ଜେୱାଁଏ ॥
ବୋଲେ ରାମୁ ସୁଅବସରୁ ଜାନୀ । ସୀଲ ସନେହ ସକୁଚମୟ ବାନୀ ॥୨॥
ରାଉ ଅୱଧପୁର ଚହତ ସିଧାଏ । ବିଦା ହୋନ ହମ ଇହାଁ ପଠାଏ ॥
ମାତୁ ମୁଦିତ ମନ ଆୟସୁ ଦେହୂ । ବାଲକ ଜାନି କରବ ନିତ ନେହୂ ॥୩॥
ସୁନତ ବଚନ ବିଲଖେଉ ରନିବାସୂ । ବୋଲି ନ ସକହିଁ ପ୍ରେମବସ ସାସୂ ॥
ହୃଦୟଁ ଲଗାଇ କୁଅଁରି ସବ ଲୀନ୍ହୀ । ପତିନ୍ହ ସୌଁପି ବିନତୀ ଅତି କୀନ୍ହୀ ॥୪॥

କରି ବିନୟ ସିୟ ରାମହି ସମରପୀ ଜୋରି କର ପୁନି ପୁନି କହୈ ।
ବଲି ଜାଉଁ ତାତ ସୁଜାନ ତୁମ୍ହ କହୁଁ ବିଦିତ ଗତି ସବ କୀ ଅହୈ ॥
ପରିବାର ପୁରଜନ ମୋହି ରାଜହି ପ୍ରାନପ୍ରିୟ ସିୟ ଜାନିବୀ ।
ତୁଲସୀସ ସୀଲୁ ସନେହୁ ଲଖି ନିଜ କିଂକରୀ କରି ମାନିବୀ ॥

---

ଭାଇଙ୍କ ସହ ଲେପନ ସ୍ନାନ କରାଇଲେ । ଛ'ରସ ଅଶନ ଅତି ପ୍ରେମେ ଭୁଞ୍ଜାଇଲେ ॥
ଭାଷିଲେ ରଘୁନନ୍ଦନ ସୁସମୟ ଜାଣି । ଶୀଳ ସ୍ନେହ ସବିନୟ ସସଙ୍କୋଚ ବାଣୀ ॥୨॥
ନୃପ ବାହାନ୍ତି ଅଯୋଧ୍ୟା ପୁରକୁ ଫିରିବାକୁ । ପଠାଇଛନ୍ତି ଆମ୍ଭଙ୍କୁ ବିଦାୟ ନେବାକୁ ॥
ଆଦେଶ ଦିଅ ଜନନୀ, ହୋଇ ପ୍ରମୋଦିତ । ବାଳକ ବିଚାରି ସ୍ନେହ କରୁଥିବ ନିତ୍ୟ ॥୩॥
ଶୁଣି ଅନ୍ତଃପୁର ବାଳୀ ବ୍ୟାକୁଳ ହୋଇଲେ । ପ୍ରେମବଶ ରାଣୀ କିଛି କହି ନ ପାରିଲେ ॥
ସକଳ ସୁତାଙ୍କୁ ତହୁଁ ହୃଦେ ଲଗାଇଣ । ପତିଙ୍କି ଅର୍ପିଲେ ବହୁ ବିନୟ କରିଣ ॥୪॥

ହୋଇ ମାତା ବିନୀତା ଅର୍ପି ରାମଙ୍କୁ ସୀତା କର ଯୋଡ଼ିଣ ଉଚ୍ଚାରନ୍ତି ।
ନିଛୁଯାଏ ମୁଁ ରାମ, ସୁଚତୁର ପରମ, ଜାଣିଛ ସମସ୍ତଙ୍କ ଗତି ।
ପୁର, ନଗର, ମାତା, ପିତା; ସକଳେ ପ୍ରାଣପ୍ରିୟ ସୀତା;
ଆହେ ତୁଳସୀ ପତି, ଦେଖି ତା' ଶୀଳ ପ୍ରୀତି ମଣିବୁ ସ୍ୱଦାସୀ ବିନୀତା ॥

---

ନିଛୁ ଯାଉଥା'ନ୍ତି ଏବଂ ଆରତି କରୁଥା'ନ୍ତି ॥ ୩୩୫ ॥ ଚୌପାଈ —ଶ୍ରୀରାମଚନ୍ଦ୍ରଙ୍କ ଛବି ଦେଖି ସେମାନେ ପ୍ରେମରେ ନିମଜ୍ଜିତ ହୋଇଗଲେ ଏବଂ ପ୍ରେମରେ ବିବଶ ହୋଇ ବାରମ୍ବାର ଚରଣ ତଳେ ପଡ଼ିବାକୁ ଲାଗିଲେ । ହୃଦୟରେ ପ୍ରୀତି ବ୍ୟାପି ଯାଇଥାଏ । ଏଣୁ ଲଜ୍ଜା ଆଉ ନ ଥାଏ । ସେମାନଙ୍କ ସ୍ୱାଭାବିକ ସ୍ନେହର ବର୍ଣ୍ଣନ କିପରି ବା କରାଯାଇ ପାରିବ ? ॥ ୧ ॥ ସେମାନେ ଭାଇମାନଙ୍କ ସହିତ ଶ୍ରୀରାମଙ୍କ ଅଙ୍ଗ ଲେପନ କରି ସମସ୍ତଙ୍କୁ ସ୍ନାନ କରାଇଲେ ଏବଂ ବଡ଼ ପ୍ରେମରେ ଷଡ଼ ରସ ଭୋଜନ କରାଇଲେ । ସୁଅବସର ଜାଣି ଶ୍ରୀରାମଚନ୍ଦ୍ର ଶୀଳ, ସ୍ନେହ ଓ ସଂକୋଚଭରା ବାଣୀ କହିଲେ— ॥ ୨ ॥ "ମହାରାଜ ଅଯୋଧ୍ୟାପୁର ଫିରିବାକୁ ଇଚ୍ଛ କ । ସେ ବିଦାୟ ହେବା ନିମନ୍ତେ ଆମ୍ଭମାନଙ୍କୁ ଏଠିକି ପଠାଇଛନ୍ତି । ହେ ମାତାଗଣ ! ପ୍ରସନ୍ନ ମନରେ ଆଜ୍ଞା ଦିଅନ୍ତୁ ଏବଂ ଆମ୍ଭମାନଙ୍କୁ ଆପଣ-ମାନଙ୍କ ବାଳକ ମନେ କରି ଆମ୍ଭମାନଙ୍କ ପ୍ରତି ସଦାସର୍ବଦା ସ୍ନେହ ରଖିଥା'ନ୍ତୁ" ॥୩॥ ଏହି

ତୁମ୍ହ ପରିପୂରନ କାମ ଜାନ ସିରୋମନି ଭାବପ୍ରିୟ ।
ଜନ ଗୁନ ଗାହକ ରାମ ଦୋଷ ଦଲନ କରୁନାୟତନ ॥୩୩୬॥
ଅସ କହି ରହୀ ଚରନ ଗହି ରାନୀ । ପ୍ରେମ ପଂକ ଜନୁ ଗିରା ସମାନୀ ॥
ସୁନି ସନେହସାନୀ ବର ବାନୀ । ବହୁବିଧି ରାମ ସାସୁ ସନମାନୀ ॥୧॥
ରାମ ବିଦା ମାଗତ କର ଜୋରୀ । କୀନ୍ହ ପ୍ରନାମୁ ବହୋରି ବହୋରୀ ॥
ପାଇ ଅସୀସ ବହୁରି ସିରୁ ନାଈ । ଭାଇନ୍ହ ସହିତ ଚଲେ ରଘୁରାଈ ॥୨॥
ମଂଜୁ ମଧୁର ମୂରତି ଉର ଆନୀ । ଭଈଁ ସନେହ ସିଥିଲ ସବ ରାନୀ ॥
ପୁନି ଧୀରଜୁ ଧରି କୁଅଁରି ହଁକାରୀଁ । ବାର ବାର ଭେଟହିଁ ମହତାରୀଁ ॥୩॥

---

ଜ୍ଞାନୀ ଶିରୋମଣି ପରିପୂର୍ଣ୍ଣ କାମ ତୁମ୍ଭେ କରୁଣା ନିଳୟ ।
ଜନ ଗୁଣଗ୍ରାହୀ ଦୋଷହାରୀ ରାମ ଭାବପ୍ରିୟ ଅତିଶୟ ॥୩୩୬॥
ଏମନ୍ତ କହି ରହିଲେ ପଦ ଧରି ରାଣୀ । ପ୍ରେମ-ପଙ୍କ ମଧ୍ୟେ ଅବା ଲାଖିଗଲା ବାଣୀ ॥
ଶୁଣି ସ୍ନେହରେ ସେଚିତ ବାଣୀ ଅଭିରାମ । ବହୁ ପ୍ରକାରେ ଶାଶୂଙ୍କୁ ସମ୍ମାନିଲେ ରାମ ॥୧॥
ରାମ ଯୁଗ୍ମକର ଯୋଡି ବିଦାୟ ମାଗନ୍ତି । ବାରମ୍ବାର ସବିନୟେ ପ୍ରଣାମ କରନ୍ତି ॥
ଲଭି ଆଶୀର୍ବାଦ ପୁଣି ନୁଆଁଇଲେ ଶିର । ମେଲାଣି ହେଲେ ବନ୍ଧୁଙ୍କ ସଙ୍ଗେ ରଘୁବୀର ॥ ॥
ମଞ୍ଜୁଳ ମଧୁର ମୂର୍ତ୍ତି ହୃଦ ମଧ୍ୟେ ଆଣି । ସ୍ନେହ ବିବଶ ଶିଥିଳ ହେଲେ ସବୁ ରାଣୀ ॥
ଧୈର୍ଯ୍ୟ ଧାରଣ ଆବର ପୁତ୍ରୀଙ୍କୁ ଡକାଇ । ବାରମ୍ବାର ମାତା ବକ୍ଷେ ନଅନ୍ତି ଲଗାଇ ॥୩॥

---

ବଚନକୁ ଶୁଣିବା ମାତ୍ରେ ରାଣୀ-ଉଆସରେ ବିଷାଦ ବ୍ୟାପିଗଲା । ପ୍ରେମବଶତଃ ଶାଶୂମାନେ କିଛି କହିପାରୁ ନ ଥା'ନ୍ତି । ସେମାନେ ସମସ୍ତ କୁମାରୀଙ୍କୁ ଆଲିଙ୍ଗନ କଲେ ଏବଂ ସେମାନଙ୍କୁ ନିଜ ନିଜ ପତିଙ୍କୁ ସମର୍ପଣ କରି ବହୁତ ବିନୟ କଲେ ।୪। ଛନ୍ଦ'-ବିନୟ କରି ସୀତାମାତା ସୀତାଙ୍କୁ ରାମଙ୍କୁ ସମର୍ପଣ କଲେ ଏବଂ ହାତଯୋଡି ବାରମ୍ବାର କହିଲେ—"ହେ ତାତ ! ହେ ସୁଜ୍ଞ ! ମୁଁ ନୁଚ୍ଛ ଯାଉଛି; ତୁମ୍ଭଙ୍କୁ ସମସ୍ତଙ୍କ ଗତି ଜଣା । ପରିବାରକୁ, ପୁରବାସିଗଣଙ୍କୁ, ମୋତେ ଓ ରାଜାଙ୍କୁ, ସମସ୍ତଙ୍କୁ ସୀତା ପ୍ରାଣସମ ପ୍ରିୟ, ଏହା ହିଁ ବୁଝି ରଖନ୍ତୁ, ହେ ତୁଳସୀ-ସ୍ୱାମି ପ୍ରଭୁ ରାମ ! ଏହାର ଶୀଳ ଓ ସ୍ନେହକୁ ଦେଖି ଏହାଙ୍କୁ ଆପଣା ଦାସୀ ରୂପେ ସ୍ୱୀକାର କରନ୍ତୁ ॥ ସୋରଠା '—ତୁମେ ପୂର୍ଣ୍ଣକାମ, ସୁଜ୍ଞ-ଶିରୋମଣି ଏବଂ ଭାବପ୍ରିୟ । ହେ ରାମ ! ତୁମେ ଭକ୍ତମାନଙ୍କ ଗୁଣ-ଗ୍ରାହକ, ଦୋଷ-ନାଶକ ଏବଂ ଦୟାର ଧାମ ।" ॥୩୩୬॥ ଚୌପାଈ '—ଏହିପରି କହି ରାଣୀ ପଦ ଧରି ରହିଗଲେ । ସତେ ଯେମିତି ତାଙ୍କର ବଚନ ପ୍ରେମ-ପଙ୍କରେ ଅବା ଲାଖିଗଲା ! ସ୍ନେହ-ସିକ୍ତ ଶ୍ରେଷ୍ଠବାଣୀ ଶୁଣି ଶ୍ରୀରାମଚନ୍ଦ୍ର ଶାଶୂଙ୍କୁ ବହୁତ ପ୍ରକାରେ ସମ୍ମାନ କଲେ ॥ ୧ ॥ ତଦନନ୍ତର ଶ୍ରୀରାମ ହାତ ଯୋଡି ବିଦାୟ ମାଗି ବାରମ୍ବାର ପ୍ରଣାମ କଲେ । ଆଶୀର୍ବାଦ ପାଇ ପୁଣି ମୁଣ୍ଡ ନୁଆଁଇ ଭାଇମାନଙ୍କ ସହିତ ଶ୍ରୀ ରଘୁନାଥଜୀ ଚାଲିଲେ ॥ ୨ ॥ ଶ୍ରୀରାମଙ୍କ ମଞ୍ଜୁଳ ମଧୁର ମୂର୍ତ୍ତି ହୃଦୟରେ ଆଣି ସମସ୍ତ ରାଣୀ ସ୍ନେହବିବଶ ହୋଇପଡିଲେ । ପୁଣି ଧୈର୍ଯ୍ୟ-ଧାରଣପୂର୍ବକ କୁମାରୀମାନଙ୍କୁ ଡାକି

ପହୁଁଚୁଅନ୍ତି ଫିରି ମିଲହିଁ ବହୋରୀ । ବଢ଼ୀ ପରସ୍ପର ପ୍ରୀତି ନ ଥୋରୀ ॥
ପୁନି ପୁନି ମିଲତ ସଖିନ୍ହ ବିଲଗାଈ । ବାଲ ବଚ୍ଛ ଜିମି ଧେନୁ ଲବାଈ ॥୪॥

ପ୍ରେମ ବିବସ ନର ନାରି ସବ ସଖିନ୍ହ ସହିତ ରନିବାସୁ ।
ମାନହୁଁ କୀନ୍ହ ବିଦେହପୁର କରୁନାଁ ବିରହଁ ନିବାସୁ ॥୩୩୭॥

ସୁକ ସାରିକା ଜାନକୀ ଜ୍ୟାଏ । କନକ ପିଂଜରନ୍ହି ରାଖି ପଢ଼ାଏ ॥
ବ୍ୟାକୁଲ କହହିଁ କହାଁ ବୈଦେହୀ । ସୁନି ଧୀରଜୁ ପରିହରଇ ନ କେହୀ ॥୧॥
ଭଏ ବିକଲ ଖଗ ମୃଗ ଏହି ଭାଁତୀ । ମନୁଜ ଦସା କୈସେଂ କହି ଜାତୀ ॥
ବଂଧୁ ସମେତ ଜନକୁ ତବ ଆଏ । ପ୍ରେମ ଉମଗି ଲୋଚନ ଜଲ ଛାଏ ॥୨॥
ସୀୟ ବିଲୋକି ଧୀରତା ଭାଗୀ । ରହେ କହାବତ ପରମ ବିରାଗୀ ॥
ଲୀନ୍ହି ରାୟଁ ଉର ଲାଇ ଜାନକୀ । ମିଟୀ ମହା ମରଜାଦ ଗ୍ୟାନକୀ ॥୩॥

---

ମେଲାଣି କରି ଲେଉଟି ମିଳନ୍ତି ଆବର । ବଢଇ ଅକଥନୀୟ ପ୍ରୀତି ପରସ୍ପର ॥
ସଖୀ ପୃଥକ ପୃଥକ ଭେଟନ୍ତି ସୀତାଙ୍କୁ । ପ୍ରସୂତିକା ଗାଈ ଯେସନେ ବାଳକ ବତ୍ସାଙ୍କୁ ॥୪॥

ପ୍ରେମବଶ ହେଲେ ନରନାରୀ ସର୍ବେ ସଖୀ ସହ ରାଣୀ ବାସ ।
ଯେସନେ ବିଦେହ ନଗରେ ବିରହ କରୁଣା କରିଛୁ ବାସ ॥୩୩୭॥

ଯେ ଶୁକ ସାରୀଙ୍କୁ ସୀତା ପାଳଣ ପ୍ରୀତିରେ । ପଢାଇଥିଲେ ରଖିଣ ସୁନା ପଞ୍ଜୁରୀରେ ॥
ବ୍ୟାକୁଳ ହୋଇ କହନ୍ତି, "ବଇଦେହୀ କାହିଁ" ? ଶୁଣନ୍ତେ କାହାର ଧୈର୍ଯ୍ୟ ଗଲନାଏନାହିଁ॥୧॥
ବିକଳ ହୋଇଲେ ଖଗ ମୃଗ ଏହି ମତେ । ମନୁଷ୍ୟଙ୍କ ଦଶା କହି ହୋଇବ କେମନ୍ତେ ॥
ଆସିଲେ ଜନକ ତହୁଁ ଭାଇଙ୍କ ସହିତ । ପ୍ରେମେ ଉଛୁଳି ନୟନୁ ନୀର ପ୍ରବାହିତ ॥୨॥
ସୀତାଙ୍କୁ ଦେଖି ଧୀରତା କଲା ପଲାୟନ । ଯଦ୍ୟପି କୁହାଉଥିଲେ ବୈରାଗ୍ୟ ସମ୍ପନ୍ନ ॥
ଲଗାଇ ନେଲେ ସୀତାଙ୍କୁ ହୃଦେ ନରବର । ବିନଷ୍ଟ ହୋଇଲା ମହା ମର୍ଯ୍ୟାଦା ଜ୍ଞାନର ॥୩॥

---

ମାତାମାନେ ବାରମ୍ବାର ସେମାନଙ୍କୁ ବକ୍ଷରେ ଲଗାଉଥା'ନ୍ତି । ॥ ୩ ॥ କନ୍ୟାମାନଙ୍କୁ ମେଲାଣି ଦେବା ପରେ ମଧ୍ୟ ପୁଣି ଲେଉଟି ସେମାନଙ୍କ ସଙ୍ଗେ ମିଳନ କରୁଥା'ନ୍ତି । ପରସ୍ପର ମଧ୍ୟରେ ଅକଥନୀୟ ପ୍ରୀତି ବଢି ଚାଲିଥାଏ । ସଖୀମାନେ ବାରମ୍ବାର ମିଳନ କରୁଥିବା ମାତାମାନଙ୍କୁ ଅଲଗା କରିଦେଲେ । ପ୍ରସୂତିକା ଗାଈଠାରୁ କେହି ତାହାର ବାଳକ ବତ୍ସାଙ୍କୁ ଅଲଗା କରିଦେଲେ ସେ ଯେପରି ଶୋକାତୁର ହୁଏ, ମାତାମାନେ ସେହିପରି ହେଲେ ॥ ୪ ॥ ଦୋହା :—ସଖୀ ସହ ରାଣୀ ଉଆସ ଓ ନରନାରୀ ସମସ୍ତେ ପ୍ରେମବିବଶ ହେଲେ । ଏପରି ମନେ ହେଲା, ସତେ ଯେପରି ଜନକପୁରରେ କରୁଣା ଓ ବିରହ ବାସ କରିଛି ॥ ୩୩୭ ॥ ଚୌପାଇ :—ଯେଉଁ ଶୁଆ ଓ ଶାରୀଙ୍କୁ ସୀତା ପାଳିପୋଷି ବଡ଼ କରିଥିଲେ ଏବଂ ସୁନାର ପଞ୍ଜୁରୀରେ ରଖି ପଢାଇଥିଲେ, ସେମାନେ ବ୍ୟାକୁଳ ହୋଇ କହୁଥା'ନ୍ତି—"ବୈଦେହୀ କାହାନ୍ତି ?" ସେମାନଙ୍କର ଏପରି ବଚନ ଶୁଣି କାହାର ବା ଧୈର୍ଯ୍ୟ ଭାଙ୍ଗି ନ ପଡ଼ିବ ? ॥୧॥ ପଶୁପକ୍ଷୀମାନେ ଯେତେବେଳେ

ସମୁଝାଓ୍ୱତ ସବ ସଚିତ ସୟାନେ । କୀହ୍ନ ବିଚାରୁ ନ ଅବସର ଜାନେ ॥
ବାରହିଁ ବାର ସୁତା ଉର ଲାଈଁ । ସଜି ସୁନ୍ଦର ପାଲକୀଁ ମଗାଈଁ ॥୩॥
ପ୍ରେମବିବସ ପରିବାରୁ ସବୁ ଜାନି ସୁଲଗନ ନରେସ ।
କୁଅଁରି ଚଢ଼ାଈଁ ପାଲକିହ୍ନ ସୁମିରେ ସିଦ୍ଧି ଗନେସ ॥୩୩୮॥
ବହୁ ବିଧି ଭୂପ ସୁତା ସମୁଝାଈଁ । ନାରିଧରମୁ କୁଲରୀତି ସିଖାଈଁ ॥
ଦାସୀଁ ଦାସ ଦିଏ ବହୁତେରେ । ସୁଚି ସେବକ ଜେ ପ୍ରିୟ ସିୟ କେରେ ॥୧॥
ସୀୟ ଚଲତ ବ୍ୟାକୁଲ ପୁରବାସୀ । ହୋହିଁ ସଗୁନ ସୁଭ ମଂଗଲ ରାସୀ ॥
ଭୂସୁର ସଚିବ ସମେତ ସମାଜା । ସଂଗ ଚଲେ ପହୁଁଚାଓ୍ୱନ ରାଜା ॥୨॥

---

ଜାଣିଲେ, ବୁଝାନ୍ତେ ସର୍ବ ସଚିବ ସୁମତି । ଦୁଃଖବେଳା ନୁହେଁ, ଧୈର୍ଯ୍ୟ ଧରିଲେ ନୃପତି ॥
ବାରମ୍ବାର ଦୁହିତାଙ୍କୁ ହୃଦୟେ ଲଗାଇ । ସଜ୍ଜିତ ଅତି ସୁନ୍ଦର ପାଲିଙ୍କି ମଗାଇ ॥୪॥
ପ୍ରେମ ପରାଧୀନ ସର୍ବେ ପରିଜନ ଜାଣି ସୁଲଗ୍ନ ନରେଶ ।
ଚଢାଇ ପୁତ୍ରୀଙ୍କୁ ପାଲିଙ୍କି ଉପରେ ସ୍ମରିଲେ ସିଦ୍ଧି ଗଣେଶ ॥୩୩୮॥
ବହୁ ପ୍ରକାରେ ସୀତାଙ୍କୁ ନୃପତି ବୁଝାନ୍ତି । ନାରୀ ଧର୍ମ ପୁଣି କୁଳ ମର୍ଯ୍ୟାଦା ଶିଖାନ୍ତି ॥
ଦେଲେ ବହୁ ଦାସ ଦାସୀ ସଙ୍ଗରେ ଆଦର । ଶୁଚି ସେବକ ଯେ ପ୍ରିୟ ଥିଲେ ସୀତାଙ୍କର ॥୧॥
ଚଳନ୍ତେ ସୀତା ବିକଳ ହେଲେ ପୁରବାସୀ । ହୁଅଇ ଶକୁନ ଶୁଭ ସୁମଙ୍ଗଳ-ରାଶି ॥
ଭୂପ, ବିପ୍ର, ପାତ୍ର, ମନ୍ତ୍ରୀ, ସମାଜ ସହିତ । ଚଳିଲେ ସଙ୍ଗେ ମେଲାଣି କରିବା ନିମିତ୍ତ ॥୨॥

---

ଏପରି ବିକଳ ହୋଇ ପଡିଲେ, ମନୁଷ୍ୟଙ୍କ ଅବସ୍ଥା କିପରି ବା କୁହାଯାଇ ପାରିବ ? ତତ୍ପରେ ଜନକ ଭାଇଙ୍କ ସଙ୍ଗେ ସେଠାକୁ ଆସିଲେ । ପ୍ରେମରେ ତାଙ୍କର ନୟନରୁ ନୀର ଉଚ୍ଛୁଳି ପ୍ରବାହିତ ହୋଇ ଆସିଲା ॥୨॥ ସେ ପରମ ବୈରାଗୀ ବୋଲି କଥିତ ହେଉଥିଲେ । କିନ୍ତୁ ସୀତାଙ୍କୁ ଦେଖି ତାଙ୍କର ଧୈର୍ଯ୍ୟ ମଧ୍ୟ ଦୂର ହୋଇଗଲା । ରାଜା ଜାନକୀଙ୍କୁ ହୃଦୟରେ ଲଗାଇଲେ । ପ୍ରେମ ପ୍ରଭାବ ଯୋଗେ ତାଙ୍କର ମହାଜ୍ଞାନ-ମର୍ଯ୍ୟାଦାର ବନ୍ଧ ଭାଙ୍ଗି ଗଲା ॥୩॥ ସମସ୍ତ ବୁଦ୍ଧିମାନ ମନ୍ତ୍ରୀ ତାଙ୍କୁ ବୁଝାଉଥା'ନ୍ତି । ଏହା ବିଷାଦର ଅବସର ନୁହେଁ ବୋଲି ଧୀରେ ଧୀରେ ଜାଣି ରାଜା ବିଚାରବିବେକ-ବଳରେ ଧୈର୍ଯ୍ୟ ଧରିଲେ । ବାରମ୍ବାର ଦୁହିତାମାନଙ୍କୁ ଆଲିଙ୍ଗନ କରିବା ପରେ ସେ ସୁନ୍ଦର ଓ ସୁସଜ୍ଜିତ ପାଲିଙ୍କିମାନ ମଗାଇଲେ ॥ ୪ ॥ ଦୋହା :—ସାରା ପରିବାର ପ୍ରେମର ଅଧୀନ । ସୁନ୍ଦର ମୁହୂର୍ତ୍ତ ଜାଣି ସିଦ୍ଧି ସହିତ ଗଣେଶଙ୍କୁ ସ୍ମରଣ କରି ରାଜା କନ୍ୟାମାନଙ୍କୁ ପାଲିଙ୍କି ଉପରେ ଚଢାଇଲେ ॥ ୩୩୮ ॥ ଚୌପାଈ :—ରାଜା କନ୍ୟାମାନଙ୍କୁ ବହୁତ ପ୍ରକାରେ ବୁଝାଇଲେ ଏବଂ ସେମାନଙ୍କୁ ନାରୀ-ଧର୍ମ ଓ କୁଳରୀତି ବିଷୟ ଶିଖାଇଲେ । ସୀତାଙ୍କର ପ୍ରିୟ ଓ ବିଶ୍ୱସ୍ତ ସେବକ ରୂପେ କାମ କରୁଥିବା ବହୁତ ଦାସଦାସୀଙ୍କୁ ତାଙ୍କ ସଙ୍ଗରେ ଦେଲେ ॥ ୧ ॥ ସୀତା ଚଳନ୍ତେ ଜନକପୁରବାସୀ ବ୍ୟାକୁଳ ହୋଇ ପଡିଲେ । ସୁମଙ୍ଗଳ-ରାଶିର ଶୁଭ ଶକୁନ ଦେଖାଯାଉଥାଏ । ବ୍ରାହ୍ମଣ ଓ ମନ୍ତ୍ରିସମାଜ ସହିତ ରାଜା ଜନକ ତାହାଙ୍କ ମେଲାଣି

ସମସ୍ତ ବିଲୋକି ବାଜନେ ବାଜେ । ରଥ ଗଜ ବାଜି ବରାତିନ୍ହ ସାଜେ ॥
ଦସରଥ ବିପ୍ର ବୋଲି ସବ ଲୀନ୍ହେ । ଦାନ ମାନ ପରିପୂରନ କୀନ୍ହେ ॥୩॥
ଚରନ ସରୋଜ ଧୂରି ଧରି ସୀସା । ମୁଦିତ ମହୀପତି ପାଇ ଅସୀସା ॥
ସୁମିରି ଗଜାନନୁ କୀନ୍ହ ପୟାନା । ମଂଗଲ ମୂଲ ସଗୁନ ଭଏ ନାନା ॥୪॥
ସୁର ପ୍ରସୂନ ବରଷହିଁ ହରଷି କରହିଁ ଅପଛରା ଗାନ ।
ଚଲେ ଅଵଧପତି ଅଵଧପୁର ମୁଦିତ ବଜାଇ ନିସାନ ॥୩୩୯॥
ନୃପ କରି ବିନୟ ମହାଜନ ଫେରେ । ସାଦର ସକଲ ମାଗନେ ଟେରେ ॥
ଭୂଷନ ବସନ ବାଜି ଗଜ ଦୀନ୍ହେ । ପ୍ରେମ ପୋଷି ଠାଢ଼େ ସବ କୀନ୍ହେ ॥୧॥
ବାର ବାର ବିରିଦାବଲି ଭାଷୀ । ଫିରେ ସକଲ ରାମହି ଉର ରାଖୀ ॥
ବହୁରି ବହୁରି କୋସଲପତି କହହୀଁ । ଜନକୁ ପ୍ରେମବସ ଫିରୈ ନ ଚହହୀଁ ॥୨॥

---

ସମସ୍ତ ଦେଖି ନିନାଦ ହେଲା ବାଦ୍ୟ ରାଜି । ସଜାଇଲେ ବରଜାତି ଗଜ ରଥ ବାଜି ॥
ଦଶରଥ ବିପ୍ର-ବୃନ୍ଦ ଡକାଇ ଆଣାଇ । ଦାନ ମାନ ବିନୟରେ ସନ୍ତୋଷ କରାଇ ॥୩॥
ଚରଣ-ସରୋଜ-ରଜ ମସ୍ତକେ ଧରିଣ । ପ୍ରମୋଦିତ ମହୀପତି ଆଶିଷ ଲଭିଣ ॥
ସ୍ମରି ଗଜାନନ କଲେ ଯାତ୍ରା ଅନୁକୂଳ । ହୋଇଲା ନାନା ଶକୁନ ସୁମଙ୍ଗଳ ମୂଳ ॥୪॥
ସୁମନ ଆନନ୍ଦେ ବରଷାନ୍ତି ଦେବେ କରନ୍ତି ଅପ୍‌ସରା ଗାନ ।
ଚଳିଲେ ଅଯୋଧ୍ୟା-ନାୟକ ଅଯୋଧ୍ୟା-ମୁଖେ ବଜାଇ ନିଷାଣ ॥୩୩୯॥
ବିନୟ କରି ପାର୍ଶ୍ୱଙ୍କୁ ନୃପ ଫେରାଇଣ । ସାଦରେ ସକଳ ଭିକ୍ଷୁକଙ୍କୁ ଡକାଇଣ ॥
ଭୂଷଣ ବସନ ଗଜ ବାଜି ପ୍ରଦାନିଲେ । ପ୍ରେମେ ପୋଷି ସମସ୍ତଙ୍କୁ ଠିଆ କରାଇଲେ ॥୧॥
ବାରମ୍ବାର କୀର୍ତ୍ତିରାଶି ଗାନ କରି କରି । ଫେରିଲେ ସର୍ବେ ହୃଦୟେ ଶ୍ରୀରାମଙ୍କୁ ସ୍ମରି ॥
ବାରମ୍ବାର କହିଲେହେଁ କୋଶଳ ନୃପତି । ପ୍ରେମବଶ ଫେରିବାକୁ ଭୂପ ନ ଇଚ୍ଛନ୍ତି ॥୨॥

---

ଦେବା ନିମନ୍ତେ ସଙ୍ଗରେ ଗଲେ ॥ ୨ ॥ ସମସ୍ତ ଦେଖି ବାଜାମାନ ବାଜିବାକୁ ଲାଗିଲା । ବରଯାତ୍ରୀମାନେ ରଥ, ହସ୍ତୀ ଓ ଅଶ୍ୱ ସଜାଇଲେ । ଦଶରଥ ସମସ୍ତ ବ୍ରାହ୍ମଣଙ୍କୁ ଡକାଇଲେ ଏବଂ ସେମାନଙ୍କୁ ଦାନ-ସମ୍ମାନରେ ପରିତୃପ୍ତ କରିଦେଲେ ॥ ୩ ॥ ସେମାନଙ୍କର ଚରଣ-କମଳର ଧୂଳି ଶିର ଉପରେ ଧରି ଏବଂ ଆଶିଷ ପାଇ ରାଜା ଆନନ୍ଦିତ ହେଲେ ଏବଂ ଗଣେଶଙ୍କୁ ସ୍ମରଣ କରି ସେ ପ୍ରସ୍ଥାନ କଲେ । ସମସ୍ତ ମଙ୍ଗଳର ମୂଳାଧାର ଅନେକ ଶକୁନ ଦେଖା ଦେଉଥାଏ ॥ ୪ ॥ ଦୋହା :—ଦେବତାମାନେ ଆନନ୍ଦିତ ହୋଇ ଫୁଲ ବରଷା କରୁଥା'ନ୍ତି ଏବଂ ଅପ୍‌ସରାମାନେ ଗାନ କରୁଥା'ନ୍ତି । ଅଯୋଧ୍ୟାପତି ଦଶରଥ ନିଷାଣ ବଜାଇ ଆନନ୍ଦ ସହକାରେ ଅଯୋଧ୍ୟାପୁରୀକୁ ଚଳିଲେ ॥ ୩୩୯ ॥ ଚୌପାଈ :—ରାଜା ଦଶରଥ ବିନୟ ସହକାରେ ମହାଜନମାନଙ୍କୁ ଲେଉଟାଇଲେ ଏବଂ ଯାଚକ ଓ ଭିକ୍ଷୁକମାନଙ୍କୁ ଡକାଇଲେ । ସେମାନଙ୍କୁ ଭୂଷଣ ବସ୍ତ୍ର, ଅଶ୍ୱ ଓ ହସ୍ତୀ ଦେଲେ ଏବଂ ପ୍ରେମରେ ସମସ୍ତଙ୍କୁ ପରିତୃପ୍ତ କରି ଛିଡ଼ା କରାଇଲେ ॥ ୧ ॥ ସେମାନେ ସମସ୍ତେ ବାରମ୍ବାର

ପୁନି କହି ଭୂପତି ବଚନ ସୁହାଏ । ଫିରିଅ ମହୀସ ଦୂରି ବଡ଼ି ଆଏ ॥
ରାଉ ବହୋରି ଉତରି ଭଏ ଠାଢ଼େ । ପ୍ରେମ ପ୍ରବାହ ବିଲୋଚନ ବାଢ଼େ ॥୩॥
ତବ ବିଦେହ ବୋଲେ କର ଜୋରୀ । ବଚନ ସନେହ ସୁଧାଁ ଜନୁ ବୋରୀ ॥
କରୌଁ କବନ ବିଧି ବିନୟ ବନାଈ । ମହାରାଜ ମୋହି ଦୀହ୍ନି ବଡ଼ାଈ ॥୪॥

କୋସଲପତି ସମଧୀ ସଜନ ସନମାନେ ସବ ଭାଁତି ।
ମିଲନି ପରସପର ବିନୟ ଅତି ପ୍ରୀତି ନ ହୃଦୟଁ ସମାତି ॥୩୪୦॥

ମୁନି ମଣ୍ଡଲିହି ଜନକ ସିରୁ ନାୱା । ଆସିରବାଦୁ ସବହି ସନ ପାୱା ॥
ସାଦର ପୁନି ଭେଁଟେ ଜାମାତା । ରୂପ ସୀଲ ଗୁନ ନିଧି ସବ ଭ୍ରାତା ॥୧॥
ଜୋରି ପଂକରୁହ ପାନି ସୁହାଏ । ବୋଲେ ବଚନ ପ୍ରେମ ଜନୁ ଜାଏ ॥
ରାମ କରୌଁ କେହି ଭାଁତି ପ୍ରସଂସା । ମୁନି ମହେସ ମନ ମାନସ ହଂସା ॥୨॥

---

ପୁନଶ୍ଚ ଭାଷିଲେ ନୃପ ବଚନ ମଧୁର । ଫେରନ୍ତୁ ମହୀଶ, ଆସିଲେଣି ବଡ଼ ଦୂର ॥
ରଥୁ ଅବତରି ଉଭା ହେଲେ ଦଣ୍ଡଧାରୀ । ନୟନୁ ପ୍ରବାହ ହେଲା ପଡ଼ି ପ୍ରେମ ବାରି ॥୩॥
ଭାଷିଲେ ବିଦେହ ତହୁଁ ଯୋଡ଼ି ବେନି ପାଣି । ସ୍ନେହାମୃତେ ଅଭିଷିକ୍ତ କରି ଅବା ବାଣୀ ॥
ଅକପଟ ବିନୟ ମୁଁ କରିବି କେମନ୍ତେ । ମହାରାଜ ଦେଲ ମୋତେ ବଡ଼ାଇ ଜଗତେ ॥୪॥

ସମସ୍ତ ପ୍ରକାରେ ସମ୍ମାନି ସ୍ୱଜନ ସମ୍ବନ୍ଧିଙ୍କୁ ଅବଧେଶ ।
ପରସ୍ପରେ ଅତି ବିନୟେ ମିଳନ୍ତି, ଉଛୁଳେ ପ୍ରୀତି ଅଶେଷ ॥୩୪୦॥

ମୁନିବୃନ୍ଦଙ୍କୁ ଜନକ ଶିର ନୁଆଁଇଲେ । ସମସ୍ତଙ୍କଠାରୁ ଶୁଭ ଆଶିଷ ପାଇଲେ ॥
ଭେଟିଲେ ଆଦର ସହ ପୁଣି ଜାମାତାଙ୍କୁ । ରୂପ-ଶୀଳ-ଗୁଣ-ସିନ୍ଧୁ ସକଳ ଭ୍ରାତାଙ୍କୁ ॥୧॥
ଯୋଡ଼ି ପରମ ସୁନ୍ଦର ସରୋରୁହ-ପାଣି । ଭାଷିଲେ ମିଳାଇ ଯେହ୍ନେ ପ୍ରେମରସେ ବାଣୀ ॥
ରାମ କେମନ୍ତେ ପ୍ରଶଂସା କରିବି ସୁଯଶ । ମୁନି ମହେଶ୍ୱର-ମନ-ମାନସର ହଂସ ॥୨॥

---

କୁଳକାନ୍ତି ଗାନକରି ଏବଂ ହୃଦୟରେ ଶ୍ରୀରାମଚନ୍ଦ୍ରଙ୍କୁ ଧାରଣ କରି ଫେରିଲେ । କୋଶଳାଧୀଶ ଦଶରଥ ସେମାନଙ୍କୁ ଲେଉଟିବା ନିମନ୍ତେ କହୁଥା'ନ୍ତି । କିନ୍ତୁ ପ୍ରେମରେ ବଶୀଭୂତ ଜନକ ଫେରିବାକୁ ଇଚ୍ଛା କରୁ ନ ଥା'ନ୍ତି ॥୨॥ ଦଶରଥ ପୁଣି ମଧୁର ବଚନ କହିଲେ— "ହେ ରାଜନ୍ ! ଆପଣ ବହୁତ ଦୂର ଆସିଗଲେଣି, ଏବେ ଫେରନ୍ତୁ ।" ପୁଣି ରାଜା ଦଶରଥ ରଥରୁ ଓହ୍ଲାଇ ଠିଆ ହେଲେ । ତାଙ୍କ ନେତ୍ରରୁ ପ୍ରେମାଶ୍ରୁର ଧାର ବହି ଚାଲିଲା ॥ ୩ ॥ ସେତେବେଳେ ଜନକ ହାତ ଯୋଡ଼ି ସତେ ଯେମିତି ସ୍ନେହାମୃତ-ସିକ୍ତ ବଚନ ବୋଇଲେ, "ମୁଁ କେଉଁ ରୂପେ ଅକପଟ ବିନୟ କରିବି ? ହେ ମହାରାଜ ! ଆପଣ ମୋତେ ବଡ଼ ଗୌରବ ଦେଇଅଛନ୍ତି ।" ॥ ୪ ॥ ଦୋହା :—ଅଯୋଧ୍ୟାନାଥ ଦଶରଥ ତାଙ୍କ ସ୍ୱଜନ-ସମ୍ବନ୍ଧୀଙ୍କର ସମସ୍ତ ପ୍ରକାରେ ସମ୍ମାନ କଲେ । ସେମାନଙ୍କ ପରସ୍ପର ମିଳନରେ ଅତ୍ୟନ୍ତ ବିନୟ ଥିଲା ଏବଂ ଏତେ ପ୍ରୀତି ଥିଲା, ଯାହା କି ହୃଦୟରେ ନ ସମ୍ଭାଇ ଉଛୁଳି ପଡ଼ୁଥିଲା । ॥ ୩୪୦ ॥ ଚୌପାଇ :—ଜନକ ମୁନିମଣ୍ଡଳୀଙ୍କୁ ମୁଣ୍ଡ ନୁଆଁଇଲେ ଏବଂ

କରହିଁ ଜୋଗ ଜୋଗୀ ଜେହି ଲଗୀ । କୋହୁ ମୋହୁ ମମତା ମଦୁ ତ୍ୟାଗୀ ॥
ବ୍ୟାପକୁ ବ୍ରହ୍ମୁ ଅଲଖୁ ଅବିନାସୀ । ଚିଦାନଂଦୁ ନିରଗୁନ ଗୁନ ରାସୀ ॥୩॥
ମନ ସମେତ ଜେହି ଜାନ ନ ବାନୀ । ତରକି ନ ସକହିଁ ସକଲ ଅନୁମାନୀ ॥
ମହିମା ନିଗମୁ ନେତି କହି କହଈ । ଜୋ ତିହୁଁ କାଲ ଏକରସ ରହଈ ॥୪॥

ନୟନ ବିଷୟ ମୋ କହୁଁ ଭୟଉ ସୋ ସମସ୍ତ ସୁଖ ମୂଲ ।
ସବଇ ଲାଭୁ ଜଗ ଜୀବ କହଁ ଭଏଁ ଈସୁ ଅନୁକୂଲ ॥୩୪୧॥

ସବହି ଭାଁତି ମୋହି ଦୀହ୍ନି ବଡାଈ । ନିଜ ଜନ ଜାନି ଲୀହ୍ନ ଅପନାଈ ॥
ହୋହିଁ ସହସ ଦସ ସାରଦ ସେଷା । କରହିଁ କଲପ କୋଟିକ ଭରି ଲେଖା ॥୧॥

---

ଆଚରନ୍ତି ଯୋଗୀଶ୍ୱର ଯୋଗ ଯାହା ଲାଗି । କ୍ରୋଧ ମୋହ ମଦ ମାନ ମମତାଦି ତ୍ୟାଗି ॥
ବ୍ୟାପକ ବ୍ରହ୍ମ ଅଲକ୍ଷ୍ୟ ଅଜ ଅବିନାଶୀ । ସଚ୍ଚିଦାନନ୍ଦ ନିର୍ଗୁଣ, ପୁଣି ଗୁଣ-ରାଶି ॥୩॥
ମନ ସମେତ ବଚନ ଯାହାଙ୍କୁ ନ ଜାଣେ । କଳ୍ପନା କରି ନ ହୁଏ ସର୍ବ ଅନୁମାନେ ॥
ଯା' ମହିମା 'ନେତି' କହି ନିଗମ ଭଣଇ । ଯେ ତିନି କାଳେ ସମାନ ରୂପେ ବିରାଜଇ ॥୪॥

ନୟନ ଗୋଚର ହୋଇଲେ ମୋହର ସେ ସମସ୍ତ ସୁଖ ମୂଳ ।
ବିଶ୍ୱେ ସବୁ ଲାଭ ଜୀବଙ୍କୁ ସୁଲଭ ହେଲେ ଈଶ ଅନୁକୂଳ ॥୩୪୧॥

ସକଳ ପ୍ରକାରେ ମୋତେ ବଡ଼ାଇ ଦେଇଣ । ଆପଣାଇ ନେଲ ନିଜ ଦାସ ବିଚାରିଣ ॥
ଯେବେ ସହସ୍ର ଶାରଦା ଫଣୀଶ ହୋଇବେ । କୋଟିକଳ୍ପ ପର୍ଯ୍ୟନ୍ତେ ସେ ବସି ଲେଖୁଥିବେ ॥୧॥

---

ସମସ୍ତଙ୍କଠାରୁ ଆଶୀର୍ବାଦ ଲାଭ କଲେ । ତାପରେ ସେ ଆଦର ସହିତ ରୂପ, ଶୀଳ ଓ ଗୁଣର ନିଧାନ ଆପଣାର ଜାମାତା ଓ ତାଙ୍କ ତିନି ଭାଇଙ୍କ ସହ ମିଳନ କଲେ ॥୧॥ ଏବଂ ସୁନ୍ଦର କମଳ ସମାନ ହସ୍ତ ଯୋଡ଼ି ପ୍ରେମ-ରସସିକ୍ତ ବାଣୀ ବୋଇଲେ—"ହେ ରାମ ! ମୁଁ କିପରି ଭାବରେ ଆପଣଙ୍କ ପ୍ରଶଂସା କରିବି ? ଆପଣ ମୁନିଗଣ ଓ ମହାଦେବଙ୍କ ମନରୂପୀ ମାନ-ସରୋବରର ହଂସ ଅଟନ୍ତି ॥ ୨ ॥ ଯୋଗୀମାନେ ଯାହାଙ୍କ ନିମନ୍ତେ କ୍ରୋଧ, ମୋହ, ମମତା ଓ ମଦକୁ ତ୍ୟାଗ କରି ଯୋଗ ସାଧନ କରନ୍ତି, ଯେ ସର୍ବବ୍ୟାପକ ବ୍ରହ୍ମ, ଅବ୍ୟକ୍ତ, ଅବିନାଶୀ, ଚିଦାନନ୍ଦ, ନିର୍ଗୁଣ ଓ ଗୁଣରାଶି, ଯାହାଙ୍କୁ ମନସମେତ ବାଣୀ ଜାଣେନାହିଁ ଏବଂ ସମସ୍ତେ ଯାହାଙ୍କ ବିଷୟରେ ଅନୁମାନ ମାତ୍ର କରନ୍ତି, ଯାହାଙ୍କ ବିଷୟରେ କେହି ତର୍କ କରି ପାରନ୍ତି ନାହିଁ, ଯାହାଙ୍କ ମହିମାକୁ ବେଦ "ନେତି" "ନେତି" କହି ବର୍ଣ୍ଣନା କରେ ଏବଂ ଯେଉଁ ସଚ୍ଚିଦାନନ୍ଦ ତିନି କାଳରେ ଏକରସ (ସର୍ବଦା ଓ ସର୍ବଥା ନିର୍ବିକାର) ରହନ୍ତି ॥ ୩-୪ ॥ ଦୋହା —ସେହି ସମସ୍ତ ସୁଖର ମୂଳାଧାର ଆପଣ ମୋର ନେତ୍ର-ଗୋଚର ହେଲେ । ଈଶ୍ୱର ଅନୁକୂଳ ହେଲେ ଜଗତରେ ଜୀବକୁ ସମସ୍ତ ଲାଭ ହିଁ ସୁଲଭ ହୋଇଥାଏ ॥ ୩୪୧ ॥ ଚୌପାଈ —ଆପଣ ମୋତେ ସକଳ ପ୍ରକାର ଗୌରବ ଦାନ କରିଅଛନ୍ତି ଏବଂ ନିଜର ଲୋକ ମଣି ଆପଣାଇ ନେଇଛନ୍ତି । ଯଦି ଦଶ ସହସ୍ର ସରସ୍ୱତୀ ଏବଂ ଶେଷ କୋଟି କୋଟି କଳ୍ପ ପର୍ଯ୍ୟନ୍ତ ବସି ଲେଖନ୍ତି, ତଥାପି ହେ ରଘୁନାଥଜୀ !

ମୋର ଭାଗ୍ୟ ରାଉର ଗୁନ ଗାଥା । କହି ନ ସିରାହିଁ ସୁନହୁ ରଘୁନାଥା ॥
ମୈଁ କଛୁ କହଉଁ ଏକ ବଲ ମୋରେଁ । ତୁମ୍ହ ରୀଝହୁ ସନେହ ସୁଠି ଥୋରେଁ ॥୨॥
ବାର ବାର ମାଗଉଁ କର ଜୋରେଁ । ମନୁ ପରିହରୈ ଚରନ ଜନି ଭୋରେଁ ॥
ସୁନି ବର ବଚନ ପ୍ରେମ ଜନୁ ପୋଷେ । ପୂରନକାମ ରାମୁ ପରିତୋଷେ ॥୩॥
କରି ବର ବିନୟ ସସୁର ସନମାନେ । ପିତୁ କୌସିକ ବସିଷ୍ଠ ସମ ଜାନେ ॥
ବିନତୀ ବହୁରି ଭରତ ସନ କୀହ୍ନୀ । ମିଲି ସପ୍ରେମୁ ପୁନି ଆସିଷ ଦୀହ୍ନୀ ॥୪॥
ମିଲେ ଲଖନ ରିପୁସୂଦନହି ଦୀହ୍ନି ଅସୀସ ମହୀସ ।
ଭଏ ପରସପର ପ୍ରେମବସ ଫିରି ଫିରି ନାୱହିଁ ସୀସ ॥୩୪୨॥
ବାର ବାର କରି ବିନୟ ବଡ଼ାଈ । ରଘୁପତି ଚଲେ ସଂଗ ସବ ଭାଈ ॥
ଜନକ ଗହେ କୌସିକ ପଦ ଜାଈ । ଚରନ ରେନୁ ସିର ନୟନହ୍ନ ଲାଈ ॥୧॥

---

ମୋର ଭାଗ୍ୟ ଆପଣଙ୍କ ଯଶ-ଗ୍ରନ୍ଥି ଗଣି । ଶେଷ କରି ନ ପାରିବେ, ଶୁଣ ରଘୁମଣି ॥
ମୁଁ ଯାହା କାହୁଁ କହଇ ମୋ ଏକ ବଳରେ । ତୁମ୍ଭେ ତୋଷ ହୁଅ ସ୍ୱଳ୍ପ ନିଶ୍ଛଳ ସ୍ନେହରେ ॥୨॥
ବାରମ୍ବାର ମାଗୁଅଛି ଯୋଡ଼ି ଯୁଗ୍ମକର । ଭୁଲି ମଧ୍ୟ ମନ ତ୍ୟାଗ ନ କରୁ ପଯ୍ୟର ॥
ଶୁଣି ମଧୁର ବଚନ ପ୍ରେମ ରସେ ପୁଷ୍ଟ । ପୂର୍ଣ୍ଣକାମ ରାମଚନ୍ଦ୍ର ହୋଇଲେ ସନ୍ତୁଷ୍ଟ ॥୩॥
ସବିନୟେ ଶ୍ୱଶୁରଙ୍କୁ କରିଲେ ସମ୍ମାନ । ଜାଣି ପିତା କଉଶିକ ବଶିଷ୍ଠ ସମାନ ॥
ତହୁଁ ଭରତଙ୍କୁ ନୃପ କରିଣ ବିନତି । ମିଳି ପୁଣି ଆଶୀର୍ବାଦ ଦେଲେ ପ୍ରେମେ ଅତି ॥୪॥
ଆଲିଙ୍ଗି ଆଶିଷ ଦେଲେ ଅବନୀଶ ଲକ୍ଷ୍ମଣ ଶତ୍ରୁଘନଙ୍କୁ ।
ପ୍ରେମ ବଶ ବାରମ୍ବାର ନମସ୍କାର କରନ୍ତି ଏକ ଅନ୍ୟଙ୍କୁ ॥୩୪୨॥
ବାରମ୍ବାର କରି ବହୁ ବିନୟ ବଡ଼ାଇ । ଚଳିଲେ ରଘୁନନ୍ଦନ ଘେନି ସବୁ ଭାଇ ॥
କଉଶିକ ପଦ ଯାଇ ଜନକ ଧରିଲେ । ଚରଣ ରେଣୁ ମସ୍ତକେ ନେତ୍ରେ ଲଗାଇଲେ ॥୧॥

---

ଶୁଣନ୍ତୁ, ମୋ ସୌଭାଗ୍ୟ ଓ ଆପଣଙ୍କ ଗୁଣ କଥା ସମାପ୍ତ ହୋଇ ପାରିବ ନାହିଁ । ମୁଁ ଯାହା କିଛି କହୁଛି, ତାହା ମୋର ଏହି ଗୋଟିଏ ବଳ ଉପରେ ଯେ, ଆପଣ ଅତ୍ୟଳ୍ପ ନିଷ୍କପଟ ପ୍ରେମରେ ପ୍ରସନ୍ନ ହୋଇଯାଆନ୍ତି ॥ ୧-୨ ॥ ମୁଁ ବାରମ୍ବାର ହାତ ଯୋଡ଼ି ଏହା ମାଗୁଛି—"ମୋର ମନ ଭୁଲରେ ସୁଦ୍ଧା ଆପଣଙ୍କ ଚରଣ-କମଳକୁ ନ ଛାଡ଼ୁ ।" ଜନକଙ୍କର ପ୍ରେମପୁଷ୍ଟ ଶ୍ରେଷ୍ଠ ବଚନ ଶୁଣି ପୂର୍ଣ୍ଣକାମ ରାମଚନ୍ଦ୍ର ସନ୍ତୁଷ୍ଟ ହେଲେ ॥ ୩ ॥ ସେ ସବିନୟେ ଶ୍ୱଶୁରଙ୍କୁ ସମ୍ମାନ କଲେ ଏବଂ ପିତା ଦଶରଥ, ଗୁରୁ ବିଶ୍ୱାମିତ୍ର ଏବଂ କୁଳଗୁରୁ ବଶିଷ୍ଠ ସମସ୍ତଙ୍କୁ ସମାନ ମଣି ସମ୍ମାନ କଲେ । ତତ୍ପରେ ଜନକ ଭରତଙ୍କୁ ବିନତି କଲେ ଏବଂ ପ୍ରେମରେ ତାଙ୍କ ସହିତ ମିଳି ତାଙ୍କୁ ପୁଣି ଆଶୀର୍ବାଦ ଦେଲେ ॥ ୪ ॥ ଦୋହା —ତଦନନ୍ତର ରାଜା ଲକ୍ଷ୍ମଣ ଓ ଶତ୍ରୁଘ୍ନଙ୍କ ସହିତ ସାକ୍ଷାତ କରି ସେ ଦୁହିଙ୍କୁ ଆଶୀର୍ବାଦ ଦେଲେ । ସେମାନେ ପରସ୍ପର ପ୍ରେମର ବଶବର୍ତ୍ତୀ ହୋଇ ବାରମ୍ବାର ନମସ୍କାର କରୁଥା'ନ୍ତି ॥ ୩୪୨ ॥ ଚୌପାଈ :—ଜନକଙ୍କର ବାରମ୍ବାର ବିନତି ଓ ବଡ଼ାଇ କରି

ସୁନୁ ମୁନୀସ ବର ଦରସନ ତୋରେଁ । ଅଗମ୍ୟ ନ କଛୁ ପ୍ରଶ୍ରାତ ମନ ମୋରେଁ ॥
ଜୋ ସୁଖୁ ସୁଜସୁ ଲୋକପତି ଚହହୀଁ । କରତ ମନୋରଥ ସକୁଚତ ଅହହୀଁ ॥୨॥
ସୋ ସୁଖୁ ସୁଜସୁ ସୁଲଭ ମୋହି ସ୍ୱାମୀ । ସବ ସିଧି ତବ ଦରସନ ଅନୁଗାମୀ ॥
କୀନ୍ହି ବିନୟ ପୁନି ପୁନି ସିରୁ ନାଈ । ଫିରେ ମହୀସୁ ଆସିଷା ପାଈ ॥୩॥
ଚଲୀ ବରାତ ନିସାନ ବଜାଈ । ମୁଦିତ ଛୋଟ ବଡ଼ ସବ ସମୁଦାଈ ॥
ରାମହି ନିରଖି ଗ୍ରାମ ନର ନାରୀ । ପାଇ ନୟନ ଫଲୁ ହୋହିଁ ସୁଖାରୀ ॥୪॥

ବୀଚ ବୀଚ ବର ବାସ କରି ମଗ ଲୋଗନ୍ହ ସୁଖ ଦେତ ।
ଅଉଧ ସମୀପ ପୁନୀତ ଦିନ ପହୁଁଚୀ ଆଇ ଜନେତ ॥୩୪୩॥

ହନେ ନିସାନ ପନବ ବର ବାଜେ । ଭେରି ସଂଖ ଧୁନି ହୟ ଗୟ ଗାଜେ ॥
ଝାଁଝି ବିରବ ଡିଣ୍ଡିମୀଁ ସୁହାଈ । ସରସ ରାଗ ବାଜହିଁ ସହନାଈ ॥୧॥

---

ଶୁଣ ମୁନିବର ତୁମ୍ଭ ଦିବ୍ୟ ଦରଶନେ । ଦୁର୍ଲଭ ନୁହଇ କଛୁ, ପ୍ରଶାନ୍ତ ମୋ ମନେ ॥
ଯେ ସୁଖ ସୁଯଶ ଲୋକନାୟକେ ଇଚ୍ଛନ୍ତି । ମନୋରଥ କରି କରି ଲଜ୍ଜିତ ହୁଅନ୍ତି ॥୨॥
ସେ ସୁଖ ସୁଯଶ ମୁହିଁ ଲଭ କଲି ସ୍ୱାମୀ । ସବୁ ମତେ ତୁମ୍ଭ ଦରଶନ ଅନୁଗାମୀ ॥
କରି ବିନୟ ପୁନଶ୍ଚ ଶିର ନୁଆଁଇଣ । ଫେରିଲେ ଅବନୀପତି ଆଶିଷ ପାଇଣ ॥୩॥
ଚଳିଲେ ନିଷାଣ ନାଦ ବରଜାତ ବୃନ୍ଦ । ଶ୍ରେଷ୍ଠ ବଡ ସର୍ବେ ହୋଇ ପ୍ରମୋଦିତ ହୃଦ ॥
ରାମଚନ୍ଦ୍ରଙ୍କୁ ନିରେଖି ଗ୍ରାମ ନରନାରୀ । ପାଇ ବିଲୋଚନ ଫଳ ସୁଖୀ ହୋନ୍ତି ଭାରି ॥୪॥

ଠାବେ ଠାବେ ବାସ-ବିଶ୍ରାମ କରିଣ ସୁଖୀ କରି ପଥବାସୀ ।
ଅଯୋଧ୍ୟା ନିକଟେ ପ୍ରବେଶିଲେ ଶୁଭ ଦିନେ ବରଜାତ ଆସି ॥୩୪୩॥

ବାଜେ ଢୋଲ ନିଷାଣାଦି ବାଜା ସୁଶୋଭନ । ଭେରୀ ଶଙ୍ଖ ଧ୍ୱନି ଗଜ ବାଜି ଗରଜନ ॥
ଝାଞ୍ଜ, ମୃଦଙ୍ଗ, ଆଦିର ଝୃଙ୍ଗ ଆଦି ସାଜେ । ସରସ ମଧୁର ରାଗେ ପେହେଁକାଳି ବାଜେ ॥୧॥

---

ଶ୍ରୀରଘୁନାଥ ସମସ୍ତ ଭାଇଙ୍କ ସହିତ ଚଳିଲେ । ଜନକ ଯାଇ ବିଶ୍ୱାମିତ୍ରଙ୍କର ପାଦ ଧରି ପକାଇଲେ ଏବଂ ତାଙ୍କର ଚରଣରଜକୁ ମସ୍ତକ ଓ ନେତ୍ରରେ ଲଗାଇଲେ ॥ ୧ ॥ ସେ କହିଲେ, "ହେ ମୁନୀଶ୍ୱର ! ଶୁଣନ୍ତୁ; ଆପଣଙ୍କ ଦିବ୍ୟ ଦର୍ଶନ ହେତୁ କୌଣସି ଦ୍ରବ୍ୟ ଦୁର୍ଲଭ ନୁହେଁ । ମୋ ମନରେ ଏପରି ବିଶ୍ୱାସ ରହିଅଛି । ଲୋକପାଳମାନେ ଯେଉଁ ସୁଖ ଓ ସୁଯଶ ଚାହାନ୍ତି, କିନ୍ତୁ ମନୋରଥ କରି କରି ସଙ୍କୁଚିତ ହୁଅନ୍ତି, ହେ ସ୍ୱାମି ! ସେହି ସୁଖ ଓ ସୁଯଶ ମୋତେ ସୁଲଭ ହୋଇଗଲା; ସମସ୍ତ ସିଦ୍ଧି ଆପଣଙ୍କର ଦର୍ଶନର ଅନୁଗାମିନୀ ।" ଏହିପରି ଭାବରେ ରାଜା ଜନକ ବାରମ୍ବାର ବିନତି କଲେ ଏବଂ ମୁଣ୍ଡ ନୁଆଁଇ ତାଙ୍କଠାରୁ ଆଶୀର୍ବାଦ ପାଇ ଫେରିଲେ ॥ ୨-୩ ॥ ଦୁନ୍ଦୁଭି ବଜାଇ ବରଯାତ୍ରୀ-ଦଳ ଚାଲିଲେ । ସାନ ବଡ ସମସ୍ତେ ପ୍ରସନ୍ନ । ମାର୍ଗରେ ରାମଚନ୍ଦ୍ରଙ୍କୁ ଗ୍ରାମର ନରନାରୀ ଦେଖି ନେତ୍ରଫଳ ଲଭ କରି ସୁଖୀ ହେଉଥା'ନ୍ତି ॥ ୪ ॥ ଦୋହା :—ମଝିରେ ମଝିରେ ସୁନ୍ଦର ବାସ-ବିଶ୍ରାମ କରି ଏବଂ ମାର୍ଗର ଲୋକମାନଙ୍କୁ ସୁଖ ଦେଇ ବରଯାତ୍ରୀ ଦଳ

ପୁର ଜନ ଆଗ୍‌ବନ ଅକନି ବରାତା । ମୁଦିତ ସକଲ ପୁଲକାବଲି ଗାତା ॥
ନିଜ ନିଜ ସୁନ୍ଦର ସଦନ ସଁଵାରେ । ହାଟ ବାଟ ଚୌହଟ ପୁର ଦ୍ୱାରେ ॥୨॥
ଗଲୀଁ ସକଲ ଅରଗଜାଁ ସିଁଚାଈଁ । ଜହଁ ତହଁ ଚୌକେଁ ଚାରୁ ପୁରାଈଁ ॥
ବନା ବଜାରୁ ନ ଜାଇ ବଖାନା । ତୋରନ କେତୁ ପତାକ ବିତାନା ॥୩॥
ସଫଲ ପୂଗଫଲ କଦଲି ରସାଲା । ରୋପେ ବକୁଲ କଦଂବ ତମାଲା ॥
ଲଗେ ସୁଭଗ ତରୁ ପରସତ ଧରନୀ । ମନିମୟ ଆଲବାଲ କଲ କରନୀ ॥୪॥
ବିବିଧ ଭାଁତି ମଂଗଲ କଲସ ଗୃହ ଗୃହ ରଚେ ସଁଵାରି ।
ସୁର ବ୍ରହ୍ମାଦି ସିହାହିଁ ସବ ରଘୁବର ପୁରୀ ନିହାରି ॥୩୪୪॥

---

ବରଯାତ୍ର ଆଗମନ ଶୁଣି ପୁର ଜନେ । ପୁଲକାବଳି ଶରୀର, ସୁପ୍ରସନ୍ନ ମନେ ॥
ସଜାଇଲେ ନିଜ ନିଜ ସୁନ୍ଦର ଆଗାର । ହାଟ ବାଟ ଚତୁଷ୍ପଥ ନଗର ଦୁଆର ॥୨॥
ସକଳ ବୀଥି ସୁଗନ୍ଧ ସଲିଳେ ସିଞ୍ଚିଲେ । ସର୍ବତ୍ର ଚାରୁ କୋଷ୍ଠକ ଚିତା ବିରଚିଲେ ॥
ବଜାର ରଚନ କେବେ ନ ହୁଏ ବର୍ଣ୍ଣନ । ଧ୍ୱଜା, ପତାକା, ବିତାନ, ତୋରଣେ ଶୋଭନ ॥୩॥
ଫଳ ସମେତ ସୁପାରି କଦଳୀ ରସାଳ । ରୋପଣ କଲେ ବକୁଳ କଦମ୍ବ ତମାଳ ॥
ସୁନ୍ଦର ପାଦପ ସ୍ପର୍ଶ ଧରାକୁ କରନ୍ତି । ମଣିମୟ ଆଲବାଲ କାରୁକାର୍ଯ୍ୟ ଅତି ॥୪॥
ସ୍ଥାପିଲେ ବିବିଧ ମଙ୍ଗଳ କଳଶ ସାଜି ଗୃହ ଗୃହ ପ୍ରତି ।
ବ୍ରହ୍ମାଦି ଅମର ଦେଖି ରାମ ପୁର ବାସ ଲାଳସା କରନ୍ତି ॥୩୪୪॥

---

ପର୍ବାନ୍ତ ଦିବସରେ ଅଯୋଧ୍ୟାପୁରୀ ସମୀପରେ ଆସି ପହଞ୍ଚିଲେ । ॥ ୩୪୩ ॥ ଚୌପାଈ :- ଦୁନ୍ଦୁଭି ନିନାଦିତ ହେବାକୁ ଲାଗିଲା । ସୁନ୍ଦର ଢୋଲମାନ ବାଜି ଉଠିଲା । ଭେରୀ ଓ ଉଚ୍ଚ ଶଙ୍ଖଧ୍ୱନି ହେଉଥାଏ । ହାତୀ, ଘୋଡା ଗରଜୁ ଥାଆନ୍ତି । ଉଚ୍ଚ-ଧ୍ୱନିକାରୀ ଝାଞ୍ଜି, ସୁନ୍ଦର ମୃଦଙ୍ଗ, ଡିଙ୍ଗୁ ତଥା ସରସ ରାଗରେ ସେହେଇକାଲୀ ବାଜୁଥାଏ ॥ ୧ ॥ ବରଯାତ୍ରୀଙ୍କ ଆଗମନ ଶୁଣି ନଗରବାସୀମାନେ ଆନନ୍ଦିତ ହେଲେ । ସମସ୍ତଙ୍କ ଶରୀରରେ ପୁଲକାବଳୀ ଖେଳିଗଲା । ସମସ୍ତେ ଆପଣା ଆପଣାର ସୁନ୍ଦର ଗୃହ, ବଜାର, ଗଳି, ଚଉକ ଓ ନଗର, ଦ୍ୱାର ଆଦି ସଜାଇଲେ ॥ ୨ ॥ ସମସ୍ତ ବୀଥିରେ ସୁଗନ୍ଧିତ ଜଳ ସିଞ୍ଚାଗଲା । ବିଭିନ୍ନ ସ୍ଥାନରେ ମନୋହର କୋଷ୍ଠକର ଚିତା ରଚନା କରାଗଲା । ତୋରଣ, ଧ୍ୱଜା, ପତାକା ଓ ମଣ୍ଡପମାନଙ୍କ ଦ୍ୱାରା ବଜାର ଯେପରି ଭାବରେ ସୁସଜ୍ଜିତ ହେଲା, ତାହାର ବର୍ଣ୍ଣନା କରାଯାଇପାରିବ ନାହିଁ । ॥ ୩ ॥ ଫଳ ସହିତ ସୁପାରି, କଦଳୀ, ଆମ୍ବ, ବକୁଳ, କଦମ୍ବ ଓ ତମାଳ ବୃକ୍ଷ ଲଗାଗଲା । ସୁନ୍ଦର ପାଦପମାନେ ଫଳ ଭାରରେ ପୃଥିବୀକୁ ସ୍ପର୍ଶ କରୁଥା'ନ୍ତି । ସେମାନଙ୍କର ମଣିମୟ ଆଲବାଲ ଅତି ସୁନ୍ଦର କାରିଗରୀରେ ତିଆରି କରାଯାଇଥାଏ ॥ ୪ ॥ ଦୋହା —ଘରେ ଘରେ ବିବିଧ ମଙ୍ଗଳ କଳସ ସୁସଜ୍ଜିତ ଭାବରେ ସ୍ଥାପିତ ହୋଇଥାଏ । ଶ୍ରୀ ରଘୁନାଥଙ୍କ ପୁରୀ ଅଯୋଧ୍ୟାକୁ ଦେଖି ବ୍ରହ୍ମାଦି ସମସ୍ତ ଦେବତା ଏହି ନଗରୀରେ ବାସ କରିବା ନିମନ୍ତେ ଲାଳସା

ଭୂପ ଭବନୁ ତେହି ଅବସର ସୋହା । ରଚନା ଦେଖି ମଦନ ମନୁ ମୋହା ॥
ମଂଗଲ ସଗୁନ ମନୋହରତାଈ । ରିଧି ସିଧି ସୁଖ ସଂପଦା ସୁହାଈ ॥୧॥
ଜନୁ ଉଛାହ ସବ ସହଜ ସୁହାଏ । ତନୁ ଧରି ଧରି ଦସରଥ ଗୃହଁ ଛାଏ ॥
ଦେଖନ ହେତୁ ରାମ ବୈଦେହୀ । କହହୁ ଲାଲସା ହୋହି ନ କେହୀ ॥୨॥
ଜୂଥ ଜୂଥ ମିଲି ଚଲୀଁ ସୁଆସିନି । ନିଜ ଛବି ନିଦରହିଁ ମଦନ ବିଲାସିନି ॥
ସକଲ ସୁମଂଗଲ ସଜେଁ ଆରତୀ । ଗାବହିଁ ଜନୁ ବହୁ ବେଷ ଭାରତୀ ॥୩॥
ଭୂପତି ଭବନ କୋଲାହଲୁ ହୋଈ । ଜାଇ ନ ବରନି ସମଉ ସୁଖୁ ସୋଈ ॥
କୌସଲ୍ୟାଦି ରାମ ମହତାରୀଁ । ପ୍ରେମ ବିବସ ତନ ଦସା ବିସାରୀଁ ॥୪॥

ଦିଏ ଦାନ ବିପ୍ରନ୍ହ ବିପୁଲ ପୂଜି ଗନେସ ପୁରାରି ।
ପ୍ରମୁଦିତ ପରମ ଦରିଦ୍ର ଜନୁ ପାଇ ପଦାରଥ ଚାରି ॥୩୪୫॥

---

ଭୂପ ଭବନ ସେକାଳେ ବିଚିତ୍ର ଶୋଭଇ । ରଚନା ଦେଖି ମଦନ ମୋହିତ ହୁଅଇ ॥
ମଙ୍ଗଳ ଶକୁନ ମନୋହରତା ବିଶେଷ । ଋଦ୍ଧି ସିଦ୍ଧି ସୁଖଦାୟୀ ସମ୍ପଦ ଅଶେଷ ॥୧॥
ଅବା ଉତ୍ସାହ ସମସ୍ତ ସ୍ୱଭାବେ ଶୋଭିତ । ତନୁ ଧରି ଦଶରଥ ଗୃହେ ଉପସ୍ଥିତ ॥
ଦେଖିବା ନିମନ୍ତେ ସୀତା ଶ୍ରୀରଘୁନନ୍ଦନ । କହ, କାହାର ଲାଲସା ନ ହୁଏ ଉତ୍ପନ୍ନ ॥୨॥
ଯୂଥ ଯୂଥ ମିଳି ଆଗମିଲେ ସୁଆସିନୀ । ନିଜ ସୌନ୍ଦର୍ଯ୍ୟେ ନିନ୍ଦନ୍ତି ମାର ବିଳାସିନୀ ॥
ସାଜି ସକଳ ମଙ୍ଗଳ ସୁନ୍ଦର ଆଳତି । ଯେହ୍ନେ ବହୁ ବେଶେ ଗାନ କରଇ ଭାରତୀ ॥୩॥
ଅତି କୋଳାହଳ ଭୂପ ଭବନେ ହୁଅଇ । ସେ ସମୟ ସୁଖ କେହି ବର୍ଣ୍ଣି ନ ପାରଇ ॥
କୌଶଲ୍ୟା ଆଦି ରାମଙ୍କ ଜନନୀ ହରଷେ । ପାଶୋରିଲେ ନିଜ ତନୁ ଦଶା ପ୍ରେମବଶେ ॥୪॥

ଦେଲେ ବହୁ ଦାନ ବିପ୍ରଙ୍କୁ ଡାକିଣ ପୂଜି ଗଣେଶ ପୁରାରି ।
ଅତି ପ୍ରମୋଦିତ ଦରିଦ୍ର ଯେମନ୍ତ ପାଇଣ ପଦାର୍ଥ ଚାରି ॥୩୪୫॥

---

କରୁଥା'ନ୍ତି । ॥ ୩୪୪ ॥ ଚୌପାଈ '—ସେହି ସମୟରେ ରାଜମହଲ ସୁଶୋଭିତ ହେଉଥାଏ । ତାହାର ରଚନା ଦେଖି କାମଦେବଙ୍କ ମନ ମଧ୍ୟ ମୁଗ୍ଧ ହୋଇ ଯାଉଥାଏ । ମଙ୍ଗଳ ଶକୁନ, ମନୋହରତା, ଋଦ୍ଧି, ସିଦ୍ଧି, ସୁଖ ଓ ସୁନ୍ଦର ସମ୍ପତ୍ତି ଏବଂ ସମସ୍ତ ପ୍ରକାର ଉତ୍ସାହ ସତେ ଯେମିତି ସହଜ ସୁନ୍ଦର ଶରୀର ଧାରଣ କରି ଦଶରଥଙ୍କ ଘରେ ଉପସ୍ଥିତ ହୋଇ ଯାଇଛନ୍ତି । ଶ୍ରୀରାମଚନ୍ଦ୍ର ଓ ସୀତାଙ୍କ ଦର୍ଶନ ନିମନ୍ତେ କାହାର ଲାଳସା ନ ହେବ—କୁହନ୍ତୁ ତ ଭଲା ॥ ୧-୨ ॥ ସୌଭାଗ୍ୟବତୀ ସ୍ତ୍ରୀମାନେ ଦଳ ଦଳ ହୋଇ ମିଶି ଚାଲିଲେ । ଆପଣା ଆପଣା ସୌନ୍ଦର୍ଯ୍ୟ-ଛବିରେ ସେମାନେ କାମ-ପତ୍ନୀ ରତିଙ୍କୁ ମଧ୍ୟ ନିନ୍ଦା କରୁଥା'ନ୍ତି । ସମସ୍ତେ ସୁନ୍ଦର ମଙ୍ଗଳ ଦ୍ରବ୍ୟ ଏବଂ ଆରତି ସଜାଇ ଗାଉଥା'ନ୍ତି । ସତେ ଯେମିତି ସରସ୍ୱତୀ ବହୁତ ବେଶ ଧାରଣ କରି ଗୀତ ଗାଉଅଛନ୍ତି, ସେହିପରି ଜଣାପଡୁଥାଏ ॥ ୩ ॥ ରାଜମହଲରେ ଆନନ୍ଦ ହେତୁ କୋଳାହଳ ବ୍ୟାପି ଯାଇଥାଏ । ସେହି ସମୟର ସୁଖର ବର୍ଣ୍ଣନ କରିବା ଅସମ୍ଭବ । କୌଶଲ୍ୟାଦି ଶ୍ରୀରାମଚନ୍ଦ୍ରଙ୍କର

ମୋଦ ପ୍ରମୋଦ ବିବସ ସବ ମାତା । ଚଲହିଁ ନ ଚରନ ସିଥିଲ ଭଏ ଗାତା ॥
ରାମ ଦରସ ହିତ ଅତି ଅନୁରାଗୀଁ । ପରିଛନି ସାଜୁ ସଜନ ସବ ଲାଗୀଁ ॥୧॥
ବିବିଧ ବିଧାନ ବାଜନେ ବାଜେ । ମଂଗଲ ମୁଦିତ ସୁମିତ୍ରାଁ ସାଜେ ॥
ହରଦ ଦୂବ ଦଧି ପଲ୍ଲବ ଫୂଲା । ପାନ ପୂଗଫଲ ମଂଗଲ ମୂଲା ॥୨॥
ଅଛତ ଅଂକୁର ଲୋଚନ ଲାଜା । ମଂଜୁର ମଂଜରି ତୁଲସି ବିରାଜା ॥
ଛୁହେ ପୁରଟ ଘଟ ସହଜ ସୁହାଏ । ମଦନ ସକୁନ ଜନୁ ନୀଡ଼ ବନାଏ ॥୩॥
ସଗୁନ ସୁଗନ୍ଧ ନ ଜାହିଁ ବଖାନୀ । ସଂଗଲ ସକଲ ସଜହିଁ ସବ ରାନୀ ॥
ରଚୀଁ ଆରତୀଁ ବହୁତ ବିଧାନା । ମୁଦିତ କରହିଁ କଲ ମଂଗଲ ଗାନା ॥୪॥

କନକ ଥାର ଭରି ମଂଗଲନ୍ହି କମଲ କରନ୍ହି ଲିଏଁ ମାତ ।
ଚଲୀଁ ମୁଦିତ ପରିଛନି କରନ ପୁଲକ ପଲ୍ଲବିତ ଗାତ ॥୩୪୬॥

---

ପ୍ରେମ ପ୍ରମୋଦ ବିବଶ ଜନନୀ ନିକର । ନ ଚଳେ ପଦ, ଶିଥିଳ ହେଲା କଳେବର ॥
ରାମ ଦରଶନ ହେତୁ ଅନୁରାଗେ ଅତି । ବନ୍ଦାପନା ସାଜ ସର୍ବେ ସଜାଇ ଲାଗନ୍ତି ॥୧॥
ବିବିଧ ପ୍ରକାରେ ବାଜା ବାଜିଲା ଚହଳେ । ମହା ଆନନ୍ଦେ ସୁମିତ୍ରା ସାଜିଲେ ମଙ୍ଗଳ ॥
ହଳଦୀ, ପଲ୍ଲବ, ପୁଷ୍ପ, ଗୁଆ, ତାମ୍ବୁଲ । ଦଧି, ଦୂର୍ବାଦଳ ଆଦି ସୁମଙ୍ଗଳ ମୂଳ ॥୨॥
ଅକ୍ଷତ, ଅଙ୍କୁର, ଲିଆ ପୁଣି ଗୋରୋଚନ । ପାବନ ତୁଳସୀ ରୁଚିରୁ ମଞ୍ଜରୀ ଶୋଭନ ॥
ଚର୍ଚ୍ଚିତ କନକଘଟ ସୁନ୍ଦର ଅତ୍ୟନ୍ତ । ମଦନ ଶକୁନ ନୀଡ଼ ରଚନ୍ତି ଯେମନ୍ତ ॥୩॥
ଶକୁନ ସୁଗନ୍ଧ ଦ୍ରବ୍ୟ ନ ହୁଏ ବଖାଣି । ସାଜନ୍ତି ସର୍ବ ପ୍ରକାର ସୁମଙ୍ଗଳ ରାଣୀ ॥
ସଜାଇ ରୁଚିରୁ ଆଳତୀ ବିବିଧ ବିଧାନ । ଆନନ୍ଦେ କରନ୍ତି ନାରୀ କଳ ସ୍ୱରେ ଗାନ ॥୪॥

କନକ ଥାଳୀରେ ସାଜି ସୁମଙ୍ଗଳ ଘେନି ମାତା କଞ୍ଜକରେ ।
ଗମିଲେ ମୁଦିତେ ବନ୍ଦାପନ ହେତୁ ପୁଲକିତ କଳେବରେ ॥୩୪୬॥

---

ସମସ୍ତ ମାତା ପ୍ରେମ-ବିବଶା ହୋଇ ଆତ୍ମ-ବିସ୍ମୃତ ହୋଇଗଲେ ॥ ୪ ॥ ଦୋହା .-- ଗଣେଶ ଓ ତ୍ରିପୁରାରି ଶିବଙ୍କର ପୂଜା କରି ସେମାନେ ବ୍ରାହ୍ମଣମାନଙ୍କୁ ବହୁତ ଦାନ ଦେଲେ । ସେମାନେ ଏପରି ପରମ ପ୍ରସନ୍ନ ହେଲେ ଯେ, ଜଣାଗଲା, ସତେ ଯେମିତି ଦରିଦ୍ର ଚାରି ପଦାର୍ଥ ପାଇଅଛି ॥ ୩୪୫ ॥ ଚୌପାଈ —ସୁଖ ଏବଂ ମହାନନ୍ଦରେ ବିବଶ ହେବା ହେତୁ ସମସ୍ତ ମାତାଙ୍କ ଶରୀର ଶିଥିଳ ହୋଇଯାଇଅଛି । ସେମାନଙ୍କର ଚରଣ ଚଳୁ ନ ଥାଏ । ଶ୍ରୀରାମଙ୍କ ଦର୍ଶନ ନିମନ୍ତେ ସେମାନେ ଅତ୍ୟନ୍ତ ଅନୁରାଗ ସହକାରେ ବନ୍ଦାପନାର ସମସ୍ତ ସାଜ ସଜାଇବାରେ ଲାଗିଲେ ॥ ୧ ॥ ଅନେକ ପ୍ରକାର ବାଜା ବାଜୁଥାଏ । ସୁମିତ୍ରା ଆନନ୍ଦ ସହକାରେ ମଙ୍ଗଳ ସାମଗ୍ରୀ ସଜାଇଲେ । ହଳଦୀ, ଦୂବ, ଦଧି, ପତ୍ର, ଫୁଲ, ପାନ ଓ ଗୁଆ ଆଦି ସୁମଙ୍ଗଳର ମୂଳ ଦ୍ରବ୍ୟ, ଅକ୍ଷତ, ଅଙ୍କୁର, ଗୋରୋଚନା, ଲିଆ ଏବଂ ମନୋହର ପବିତ୍ର ତୁଳସୀ-ମଞ୍ଜରୀ ପ୍ରଭୃତି ପଦାର୍ଥ ସୁଶୋଭିତ ହେଉଥାଏ । ନାନା ରଙ୍ଗରେ ଚର୍ଚ୍ଚିତ ସହଜ-ସୁନ୍ଦର ସୁବର୍ଣ୍ଣ କଳସ ଏପରି ପ୍ରତୀତ

ଧୂପ ଧୂମ ନଭୁ ମେଚକ ଭୟଉ । ସାଓ଼ନ ଘନ ଘମଂଡୁ ଜନୁ ଠୟଉ ॥
ସୁରତରୁ ସୁମନ ମାଲ ସୁର ବରଷହିଁ । ମନହୁଁ ବଲାକ ଅବଲି ମନୁ କରଷହିଁ ॥୧॥
ମଂଜୁଲ ମନିମୟ ବଂଦନଓ଼ାରେ । ମନହୁଁ ପାକରିପୁ ଚାପ ସଁଓ଼ାରେ ॥
ପ୍ରଗଟହିଁ ଦୁରହିଁ ଅଟହ୍ନ ପର ଭାମିନି । ଚାରୁ ଚପଲ ଜନୁ ଦମକହିଁ ଦାମିନି ॥୨॥
ଦୁଂଦୁଭି ଧୁନି ଘନ ଗରଜନି ଘୋରା । ଜାଚକ ଚାତକ ଦାଦୁର ମୋରା ॥
ସୁର ସୁଗନ୍ଧ ସୁଚି ବରଷହିଁ ବାରୀ । ସୁଖୀ ସକଲ ସସି ପୁର ନର ନାରୀ ॥୩॥
ସମଉ ଜାନି ଗୁର ଆୟସୁ ଦୀହ୍ନା । ପୁର ପ୍ରବେସୁ ରଘୁକୁଲମନି କୀହ୍ନା ॥
ସୁମିରି ସଂଭୁ ଗିରିଜା ଗନରାଜା । ମୁଦିତ ମହୀପତି ସହିତ ସମାଜା ॥୪॥

---

ଧୂପ-ଧୂମେ ଅନ୍ତରୀକ୍ଷ ଶ୍ୟାମଳ ହୋଇଲା । କି ଅବା ଶ୍ରାବଣ ଘନ ଗରଜି ଘୋଟିଲା ॥
ସୁରତରୁ ପୁଷ୍ପମାଳ ସୁରେ ବରଷନ୍ତି । ମନେ ହୁଏ ବକ-ପନ୍ତି ମନ ଆକର୍ଷନ୍ତି ॥୧॥
ମଣିମୟ ଆମ୍ର-ତୋରଣ ସହଜେ ସୁନ୍ଦର । ମନେ ହୁଏ ସଜାଇଛି ଚାପ ପୁରନ୍ଦର ॥
ଚଢନ୍ତି ଓହ୍ଲାନ୍ତି ସୌଧ ଉପରେ କାମିନୀ । ଚମକେ ଚପଲ ଯେହ୍ନେ ଚାରୁ ସୌଦାମିନୀ ॥୨॥
ବାଦ୍ୟ ଧ୍ୱନି ଅଟେ ଘୋର ଘନ ଗରଜନ । ଯାଚକ ଚାତକ ଭେକ ମୟୂର ସମାନ ॥
ସୁରେ ଶୁଚି ସୁବାସିତ ବରଷନ୍ତି ବାରି । ସୁଖୀ ଶସ୍ୟ ରୂପୀ ସର୍ବେ ପୁର ନର ନାରୀ ॥୩॥
ଅବସର ଜାଣି ଗୁରୁ ଆଜ୍ଞା ପ୍ରଦାନିଲେ । ପୁରେ ରଘୁକୁଳମଣି ପ୍ରବେଶ କରିଲେ ॥
ସ୍ମରଣ କରି ଗିରିଜା, ଶମ୍ଭୁ, ଗଣରାଜ । ଆନନ୍ଦ ହେଲେ ଭୂପତି ସହିତ ସମାଜ ॥୪॥

---

ହେଉଥାଏ, ସତେ ଯେମିତି କନ୍ଦର୍ପର ପକ୍ଷୀମାନେ ନୀଡ ନିର୍ମାଣ କରିଅଛନ୍ତି କି ! ॥୨-୩॥ ମଙ୍ଗଳ ଶକୁନ-ସୂଚକ ସୁଗନ୍ଧିତ ବସ୍ତୁମାନଙ୍କର ବର୍ଣ୍ଣନା କରାଯାଇପାରିବ ନାହିଁ । ସମସ୍ତ ରାଣୀ ସମ୍ପୂର୍ଣ୍ଣ ମଙ୍ଗଳ ସାଜ ସଜାଉଥା'ନ୍ତି । ବହୁତ ପ୍ରକାର ଆରତି ସଜାଇ ସେମାନେ ଆନନ୍ଦିତ ହୋଇ ମନୋହର ମଙ୍ଗଳ ସଙ୍ଗୀତ ଗାନ କରୁଥା'ନ୍ତି ॥ ୪ ॥ ଦୋହା :—ସୁବର୍ଣ୍ଣ ଥାଳୀରେ ମାଙ୍ଗଳିକ ଦ୍ରବ୍ୟ ଭରି ମାତାମାନେ ଆପଣା ଆପଣାର କର-କମଳରେ ସେହି ସବୁ ଥାଳୀ ଧରି ଆନନ୍ଦ ମନରେ ବନ୍ଦାପନା କରିବା ନିମନ୍ତେ ଚାଲିଲେ । ସେମାନଙ୍କ ଶରୀର ରୋମାଞ୍ଚ ହୋଇ ପୁଲକରେ ପୂରି ଯାଉଥାଏ ॥ ୩୪୬ ॥ ଚୌପାଈ :—ଧୂପ-ଧୂଆଁରେ ଆକାଶ ଅନ୍ତରୀକ୍ଷ କୃଷ୍ଣବର୍ଣ୍ଣ ଧାରଣ କରିବାରୁ ବୋଧହେଉଥାଏ, ସତେ ଯେମିତି ଶ୍ରାବଣର ବାଦଲ ଗର୍ଜନ କରି ଘୋଟି ଆସୁଛି କି ! ଦେବତାମାନେ କଳ୍ପବୃକ୍ଷ ଫୁଲର ମାଳା ବୃଷ୍ଟି କରୁଥା'ନ୍ତି । ବୋଧ ହେଉଥାଏ, ବକପଂକ୍ତି ମନକୁ ଆକୃଷ୍ଟ କରି ନେଉଅଛନ୍ତି କି ! ॥ ୧ ॥ ମଞ୍ଜୁଳ, ମନୋହର ମଣିରେ ନିର୍ମିତ ଆମ୍ର ତୋରଣ ଇନ୍ଦ୍ର ଧନୁ ସଜାଇଲା ପରି ବୋଧ ହେଉଥାଏ । ଅଟ୍ଟାଳିକା ଉପରେ ସୁନ୍ଦର, ଚପଳ ନାରୀମାନେ ଦେଖା ଦେଉଥା'ନ୍ତି ତ, ପର ମୁହୂର୍ତ୍ତରେ ଲୁଚି ଯାଉଥା'ନ୍ତି । ସତେ ଯେମିତି ମେଘରେ ମନୋହର ଚଞ୍ଚଳ ବିଜୁଳି ଚମକି ଯାଉଛି କି ! ॥ ୨ ॥ ନିଶାଣର ଧ୍ୱନି ବାଦଲମାନଙ୍କର ଘୋର ଗର୍ଜନ ପରି ପ୍ରତୀତ ହେଉଥାଏ । ଯାଚକମାନେ ଚାତକ, ଭେକ ଏବଂ ମୟୂର ।

ହୋଇଁ ସଗୁନ ବରଷହିଁ ସୁମନ ସୁର ଦୁଂଦୁଭୀଁ ବଜାଇ ।
ବିବୁଧ ବଧୂ ନାଚହିଁ ମୁଦିତ ମଂଜୁଲ ମଂଗଲ ଗାଇ ॥୩୪୭॥
ମାଗଧ ସୂତ ବଂଦି ନଟ ନାଗର । ଗାୱହିଁ ଜସୁ ତିହୁ ଲୋକ ଉଜାଗର ॥
ଜୟ ଧୁନି ବିମଲ ବେଦ ବର ବାନୀ । ଦସ ଦିସି ସୁନିଅ ସୁମଂଗଲ ସାନୀ ॥୧॥
ବିପୁଲ ବାଜନେ ବାଜନ ଲାଗେ । ନଭ ସୁର ନଗର ଲୋଗ ଅନୁରାଗେ ॥
ବନେ ବରାତୀ ବରନି ନ ଜାହୀଁ । ମହା ମୁଦିତ ମନ ସୁଖ ନ ସମାହୀଁ ॥୨॥
ପୁରବାସିହ୍ନ ତବ ରାୟ ଜୋହାରେ । ଦେଖତ ରାମହି ଭଏ ସୁଖାରେ ॥
କରହିଁ ନିଛାୱରି ମନିଗନ ଚୀରା । ବାରି ବିଲୋଚନ ପୁଲକ ସରୀରା ॥୩॥

---

ହୁଅଇ ଶକୁନ, ସିଞ୍ଚନ୍ତି ସୁମନ ସୁରେ ଦୁନ୍ଦୁଭି ବଜାଇ ।
ବିବୁଧ ଯୁବତୀ ଆନନ୍ଦେ ନାଚନ୍ତି ମଞ୍ଜୁଳ ମଙ୍ଗଳ ଗାଇ ॥୩୪୭॥
ବନ୍ଦୀ, ଭାଟ, ପୌରାଣିକ, ନିପୁଣ ନର୍ତ୍ତକ । ଗାଆନ୍ତି କୀରତି ତିନିଲୋକ ପ୍ରକାଶକ ॥
ଜୟ ଧ୍ୱନି ବେଦ ଧ୍ୱନି ବିମଳ ସୁନ୍ଦର । ଦଶ ଦିଗେ ଶୁଣାଯାଏ ମଙ୍ଗଳ ନିକର ॥୧॥
ଅନେକ ପ୍ରକାର ବାଦ୍ୟ ହୋଇଲା ନିଃସ୍ୱନ । ଅମ୍ବରେ ଅମରେ ନରେ ନଗରେ ପ୍ରସନ୍ନ ॥
ସୁବେଶ ବରଯାତ୍ରିଙ୍କ ବର୍ଣ୍ଣି ନ ହୁଅଇ । ମହାନନ୍ଦେ ହୃଦୟରୁ ସୁଖ ଉଚ୍ଛୁଳଇ ॥୨॥
ପୁରଜନେ ନୃପ ଦଶରଥଙ୍କୁ ଜୁହାର । ନିରେଖି ଦାଶରଥିଙ୍କୁ ସୁଖୀ ହେଲେ ଭାରି ॥
ଉତ୍ସର୍ଗ କରନ୍ତି ନାନା ମଣି ଗଣ ଚୀର । ନୟନେ ଆନନ୍ଦ ନୀର ପୁଲକ ଶରୀର ॥୩॥

---

ଦେବତାମାନେ ପବିତ୍ର, ସୁବାସିତ ଜଳ ବର୍ଷା କରୁଅଛନ୍ତି । ଫଳତଃ ନଗରର ସମସ୍ତ ନରନାରୀ ଶସ୍ୟ ସମାନ ସୁଖ ଲାଭ କରୁଅଛନ୍ତି ॥ ୩ ॥ ପ୍ରବେଶ ସମୟ ଜାଣି ଗୁରୁ ବଶିଷ୍ଠ ଆଜ୍ଞା ଦେଲେ । ସେତେବେଳେ ରଘୁକୁଳମଣି ମହାରାଜ ଦଶରଥ ଶିବ, ପାର୍ବତୀ ଓ ଗଣେଶଙ୍କୁ ସ୍ମରଣ କରି ଆନନ୍ଦ ମନରେ ସମାଜ ସହିତ ନଗରରେ ପ୍ରବେଶ କଲେ ॥ ୪ ॥ ଦୋହା :—ଶୁଭ ଶକୁନ ଦିଶିଯାଉଥାଏ । ଦେବତାମାନେ ଦୁନ୍ଦୁଭି ବଜାଇ ବଜାଇ ପୁଷ୍ପ ବୃଷ୍ଟି କରୁଥା'ନ୍ତି । ଦେବାଙ୍ଗନାମାନେ ଆନନ୍ଦିତ ହୋଇ ମଞ୍ଜୁଳ ମଙ୍ଗଳ ସଙ୍ଗୀତ ଗାଇ ଗାଇ ନାଚ କରୁଥା'ନ୍ତି । ॥ ୩୪୭ ॥ ଚୌପାଇ :—ମାଗଧ, ସୂତ, ଭାଟ, ଓ ଚତୁର ନଟଗଣ ତିନିଭୁବନର ଉଜାଗର ଅର୍ଥାତ୍ ପରମ ପ୍ରକାଶ-ସ୍ୱରୂପ ଶ୍ରୀରାମଚନ୍ଦ୍ରଙ୍କ ଯଶ ଗାନ କରୁଥା'ନ୍ତି । ଜୟଧ୍ୱନି ଓ ବେଦର ବିମଳ ବରବାଣୀ ସୁମଙ୍ଗଳରେ ରସାଣିତ ହୋଇ ଦଶଦିଗକୁ ପ୍ରତିଧ୍ୱନିତ କରୁଥାଏ । ॥ ୧ ॥ ବହୁତ ବାଜା ବାଜିବାକୁ ଲାଗିଲା । ଆକାଶରେ ଦେବତା ଏବଂ ନଗରରେ ମନୁଷ୍ୟ, ସମସ୍ତେ ପ୍ରେମମଗ୍ନ । ବରଯାତ୍ରୀଙ୍କ ସୁବେଶ ବର୍ଣ୍ଣନା କରିହେଉ ନାହିଁ । ସେମାନେ ପରମ ଆନନ୍ଦିତ । ସେମାନଙ୍କ ହୃଦୟରୁ ସୁଖ ଉଚ୍ଛୁଳି ପଡୁଥାଏ ॥ ୨ ॥ ତତ୍ପରେ ଅଯୋଧ୍ୟାବାସୀମାନେ ରାଜାଙ୍କୁ ଜୁହାର କଲେ । ଶ୍ରୀରାମଙ୍କୁ ଦେଖି ସେମାନେ ସମସ୍ତେ ଆନନ୍ଦିତ ହେଲେ । ସମସ୍ତେ ମଣି ଓ ବସ୍ତ୍ର ଉତ୍ସର୍ଗ କରୁଥା'ନ୍ତି । ନେତ୍ରରେ

ଆରତି କରହିଁ ମୁଦିତ ପୁର ନାରୀ । ହରଷହିଁ ନିରଖି କୁଅଁର ବର ଚାରୀ ॥
ସିବିକା ସୁଭଗ ଓହାର ଉଘାରୀ । ଦେଖି ଦୁଲହିନିନ୍ହ ହୋହିଁ ସୁଖାରୀ ॥୪॥

ଏହି ବିଧି ସବହୀ ଦେତ ସୁଖୁ ଆଏ ରାଜଦୁଆର ।
ମୁଦିତ ମାତୁ ପରିଛନି କରହିଁ ବଧୁନ୍ହ ସମେତ କୁମାର ॥୩୪୮॥

କରହିଁ ଆରତୀ ବାରହିଁ ବାରା । ପ୍ରେମୁ ପ୍ରମୋଦୁ କହୈ କୋ ପାରା ॥
ଭୂଷନ ମନି ପଟ ନାନା ଜାତୀ । କରହିଁ ନିଛାୱରି ଅଗନିତ ଭାଁତୀ ॥୧॥
ବଧୂନ୍ହ ସମେତ ଦେଖି ସୁତ ଚାରୀ । ପରମାନନ୍ଦ ମଗନ ମହତାରୀ ॥
ପୁନି ପୁନି ସୀୟ ରାମ ଛବି ଦେଖୀ । ମୁଦିତ ସଫଲ ଜଗ ଜୀବନ ଲେଖୀ ॥୨॥
ସଖୀଂ ସୀୟ ମୁଖ ପୁନି ପୁନି ଚାହୀ । ଗାନ କରହିଁ ନିଜ ସୁକୃତ ସରାହୀ ॥
ବରଷହିଁ ସୁମନ ଛନହିଁ ଛନ ଦେବା । ନାଚହିଁ ଗାୱହିଁ ଲାୱହିଁ ସେବା ॥୩॥

---

ଆଳତି କରନ୍ତି ପ୍ରମୋଦରେ ପୁର ନାରୀ । ହରଷେ ନିରେଖି ମନୋହର ସୁତ ଚାରି ॥
ଉଠାଇ ଧୀରେ ଶିବିକା ଚାରୁ ଆଚ୍ଛାଦନ । ବିଲୋକି ବଧୂମାନଙ୍କୁ ହୁଅନ୍ତି ପ୍ରସନ୍ନ ॥୪॥

ଏହି ଭାବେ ଦେଇ ସମସ୍ତଙ୍କୁ ସୁଖ ଆସିଲେ ରାଜ ଦ୍ୱାରକୁ ।
ପ୍ରମୋଦରେ ମ.ତା କରନ୍ତି ଆଳତି ବଧୂ ସହ କୁମାରଙ୍କୁ ॥୩୪୮॥

କରନ୍ତି ଜନନୀ ବାରମ୍ବାର ବନ୍ଦାପନ । ପ୍ରେମ ପ୍ରମୋଦ କେ କରି ପାରଇ ବର୍ଣ୍ଣନ ॥
ଅନେକ ପ୍ରକାର ମଣି ଭୂଷଣ ଦୁକୂଳ । ଉତ୍ସର୍ଗ କରନ୍ତି ରାଣୀ ପଦାର୍ଥ ବିପୁଳ ॥୧॥
ବଧୂଙ୍କ ସହିତ ଅବଲୋକି ସୁତ ଚାରି । ପରମାନନ୍ଦେ ମଗନ ହେଲେ ଗର୍ଭଧାରୀ ॥
ବାରମ୍ବାର ରାମ ସୀତା ଛବି ବିଲୋକନ୍ତି । ଜଗତେ ସୁଫଳ ନିଜ ଜନମ ମଣନ୍ତି ॥୨॥
ସଖୀ ପୁଣି ପୁଣି ଚାହିଁ ସୀତାଙ୍କ ବଦନ । ନିଜ ସୁକୃତ ପ୍ରଶଂସି କରନ୍ତି ଗାୟନ ॥
କ୍ଷଣକୁ କ୍ଷଣ ସୁମନ ସୁରେ ବରଷାଇ । ସମର୍ପନ୍ତି ନିଜ ନିଜ ସେବା ନାଚି ଗାଇ ॥୩॥

---

ପ୍ରେମାଶ୍ରୁ-ଜଳ ପରିପୂର୍ଣ୍ଣ ଓ ଶରୀର ପୁଲକିତ ॥ ୩ ॥ ନଗରର ସ୍ତ୍ରୀମାନେ ଆନନ୍ଦିତ ହୋଇ ଆରତି କରୁଥା'ନ୍ତି ଏବଂ ଚାରି ପୁତ୍ର-ବରଙ୍କୁ ଦେଖି ଆନନ୍ଦିତ ହେଉଥା'ନ୍ତି । ପାଲିଙ୍କିର ସୁନ୍ଦର ପରଦାକୁ ଧୀରେ ଧୀରେ ଉଠାଇ ସେମାନେ ବଧୂଗଣଙ୍କୁ ଦେଖି ଆନନ୍ଦିତ ହେଉଥାଆନ୍ତି ॥ ୪ ॥ ଦୋହା —ଏହିପରି ସମସ୍ତଙ୍କୁ ସୁଖ ଦେଇ ସେମାନେ ରାଜଦ୍ୱାରରେ ଆସି ଉପସ୍ଥିତ ହେଲେ । ମାତାମାନେ ଆନନ୍ଦିତ ହୋଇ ବଧୂଗଣ ସମେତ ପୁତ୍ରମାନଙ୍କୁ ବନ୍ଦନା ଓ ଆରତି କରିବାକୁ ଲାଗିଲେ ॥ ୩୪୮ ॥ ଚୌପାଇ —ସେମାନେ ବାରମ୍ବାର ଆରତି କରୁଥା'ନ୍ତି । ସେହି ପ୍ରେମ ଓ ଆନନ୍ଦକୁ କିଏ ଭାଷାରେ କହି ପାରିବ ? ସେମାନେ ଅନେକ ପ୍ରକାର ଭୂଷଣ, ରତ୍ନ ଓ ବସ୍ତ୍ର ତଥା ଅସଂଖ୍ୟ ପ୍ରକାର ଅନ୍ୟ ବସ୍ତୁ ଦାନରୂପେ ଉତ୍ସର୍ଗ କରୁଥା'ନ୍ତି ॥ ୧ ॥ ମାତାମାନେ ବଧୂଗଣଙ୍କ ସହିତ ଚାରି ପୁତ୍ରଙ୍କୁ ଦେଖି ପରମାନନ୍ଦରେ ମଗ୍ନ ହୋଇ ପଡିଲେ । ସୀତା ଓ ଶ୍ରୀରାମଙ୍କ ଛବିକୁ ବାରମ୍ବାର ଦେଖି ଜଗତରେ ନିଜ ନିଜ ଜୀବନକୁ ସଫଳ ମନେ କରି ସେମାନେ ଆନନ୍ଦିତ

ଦେଖି ମନୋହର ଚାରିଉ ଜୋରୀଁ । ସାରଦ ଉପମା ସକଲ ଢଁଢୋରୀଁ ॥
ଦେତ ନ ବନହିଁ ନିପଟ ଲଘୁ ଲାଗୀଁ । ଏକଟକ ରହୀଁ ରୂପ ଅନୁରାଗୀଁ ॥୩॥
ନିଗମ ନୀତି କୁଲ ରୀତି କରି ଅରଘ ପାଁୱଡ଼େ ଦେତ ।
ବଧୁନ୍ହ ସହିତ ସୁତ ପରିଛି ସବ ଚଲୀଁ ଲୱାଇ ନିକେତ ॥୩୪୯॥
ଚାରି ସିଁଘାସନ ସହଜ ସୁହାଏ । ଜନୁ ମନୋଜ ନିଜ ହାଥ ବନାଏ ॥
ତିହ୍ନ ପର କୁଅଁରି କୁଅଁର ବୈଠାରେ । ସାଦର ପାୟ ପୁନୀତ ପଖାରେ ॥୧॥
ଧୂପ ଦୀପ ନୈବେଦ ବେଦ ବିଧି । ପୂଜେ ବର ଦୁଲହିନି ମଂଗଲ ନିଧି ॥
ବାରହିଁ ବାର ଆରତୀ କରହୀଁ । ବ୍ୟଜନ ଚାରୁ ଚାମର ସିର ଢରହୀଁ ॥୨॥

---

ନିରେଖିଣ ମନୋହର ଚାରି ଯୋଡ଼ି ଅତି । ଉପମା ସକଳ ଖୋଜି ଖୋଜି ସରସ୍ୱତୀ ॥
ନିପଟ ତୁଚ୍ଛ ଜାଣନ୍ତେ ଦେଇ ନ ପାରିଲେ । ରୂପେ ଅନୁରାଗୀ, ଏକ ପଲକେ ରହିଲେ ॥୩॥
କରି ଶ୍ରୁତି ନୀତି ପୁଣି କୁଳରୀତି ଅର୍ଘ୍ୟ ପାଦାସନ ଦେଇ ।
ବଧୂ ସହ ମାତାମାନେ ବନ୍ଧୁ ସୁତେ ଚଳିଲେ ଭବନେ ନେଇ ॥୩୪୯॥
ସହଜେ ପରମ ରମ୍ୟ ଚାରି ସିଂହାସନ । ମନେ ହୁଏ ନିଜ କରେ ରଚିଛି ମଦନ ॥
ତହିଁ ଉପରେ ବସାଇ କୁମାରୀ କୁମର । ସାଦରେ ପ୍ରକ୍ଷାଳି ମୃଦୁ ପବିତ୍ର ପୟର ॥୧॥
ଧୂପ ଦୀପ ନୈବେଦ୍ୟାଦି ଯଥା ବେଦବିଧି । ପୂଜିଲେ ବରବଧୂଙ୍କୁ ସୁମଙ୍ଗଳ ନିଧି ॥
ବାରମ୍ବାର ପ୍ରେମବଶ ଆଳତି କରନ୍ତି । ଶିରେ ବ୍ୟଜନ ରୁଚିର ଚାମର ଢାଳନ୍ତି ॥୨॥

---

ହେଉଥା'ନ୍ତି ॥୨॥ ସଖୀଗଣ ସୀତାଙ୍କ ମୁଖକୁ ବାରମ୍ବାର ଦେଖି ଆପଣା ଆପଣା ସୁକୃତର ପ୍ରଶଂସା କରି ଗୀତ ଗାଉଥା'ନ୍ତି । ଦେବତାମାନେ ପ୍ରତି କ୍ଷଣରେ ଫୁଲ ବର୍ଷା କରି ନୃତ୍ୟ ଓ ଗୀତରେ ରତ ହେଉଥା'ନ୍ତି ଏବଂ ଏହିପରି ଆପଣା ଆପଣାର ସେବା ସମର୍ପଣ କରୁଥା'ନ୍ତି ॥ ୩ ॥ ଚାରି ମନୋହର ଯୁଗଳଙ୍କୁ ଦେଖି ସରସ୍ୱତୀ ସମସ୍ତ ଉପମାକୁ ତନ୍ନ ତନ୍ନ କରି ଖୋଜି ପକାଇଲେ । କିନ୍ତୁ କୌଣସି ଉପମା, କୌଣସି ଯୋଡ଼ି ପ୍ରତି ପ୍ରଯୋଜ୍ୟ ହେଲାନାହିଁ । ସମସ୍ତ ଉପମା ବିଲକୁଲ ତୁଚ୍ଛ ବୋଧ ହେଲା । ସୁତରାଂ ସେ ହାରି ମାନି ଶ୍ରୀରାମଙ୍କ ରୂପରେ ଅନୁରକ୍ତ ହୋଇ ନିର୍ନିମେଷ ନୟନରେ ତାଙ୍କ ରୂପକୁ ନିରେଖିବାକୁ ଲାଗିଲେ ॥ ୪ ॥ ଦୋହା :—ମାତ ମାନେ ବେଦବିଧି ଓ କୁଳ-ରୀତି ସମ୍ପାଦନ-ପୂର୍ବକ ଅର୍ଘ୍ୟ ଓ ପାଦାସନ ଦେଲେ ଏବଂ ବଧୂଗଣଙ୍କ ସମେତ ପୁତ୍ରମାନଙ୍କୁ ବନ୍ଦନା କରି ରାଜ-ମହଲ ମଧ୍ୟକୁ ନେଇ ଚାଲିଲେ ॥ ୩୪୯ ॥ ଚୌପାଇ :—ସହଜ-ସୁନ୍ଦର ଚାରିଗୋଟି ସିଂହାସନ ସୁଶୋଭିତ ହେଉଥାଏ । ମନେ ହୁଏ, କନ୍ଦର୍ପହିଁ ଆପଣା ହାତରେ ତାହାକୁ ତିଆରି କରିଅଛନ୍ତି । ସେହି ସବୁ ସିଂହାସନ ଉପରେ ରାଜକୁମାର ଓ ରାଜକୁମାରୀଗଣଙ୍କୁ ମାତାମାନେ ବସାଇଲେ ଏବଂ ଆଦର ସହିତ ସେମାନଙ୍କର ପବିତ୍ର ଚରଣ ଧୋଇଲେ ॥୧॥ ପୁଣି ବେଦ-ବିଧି ଅନୁସାରେ ମଙ୍ଗଳନିଧାନ ବର ଓ କନ୍ୟାମାନଙ୍କୁ ଧୂପ, ଦୀପ ଏବଂ ନୈବେଦ୍ୟ ଆଦି ଦ୍ୱାରା ପୂଜା କଲେ । ମାତାମାନେ ବାରମ୍ବାର ଆରତି କରୁଥା'ନ୍ତି ଏବଂ

ବସ୍ତୁ ଅନେକ ନୟୁଓ୍ୱର ହୋହ୍ନୀଁ । ଭର୍ଷୀଁ ପ୍ରମୋଦ ମାତୁ ସବ ସୋହ୍ନୀଁ ॥
ପାଓ୍ୱା ପରମ ତତ୍ତ୍ୱ ଜନୁ ଜୋଗୀଁ । ଅମୃତୁ ଲହେଉ ଜନୁ ସଂତତ ରୋଗୀଁ ॥୩॥
ଜନମରଂକୁ ଜନୁ ପାରସ ପାଓ୍ୱା । ଅଂଧହ୍ନି ଲୋଚନ ଲାଭୁ ସୁହାଓ୍ୱା ॥
ମୂକ ବଦନ ଜନୁ ସାରଦ ଛାଈ । ମାନହୁଁ ସମର ସୂର ଜୟ ପାଈ ॥୪॥

ଏହି ସୁଖ ତେଁ ସତ କୋଟି ଗୁନ ପାଓ୍ୱହିଁ ମାତୁ ଅନଂଦୁ ।
ଭାଇହ୍ନ ସହିତ ବିଆହି ଘର ଆଏ ରଘୁକୁଲଚଂଦୁ ॥୩୫୦(କ)॥
ଲୋକ ରୀତି ଜନନୀଁ କରହିଁ ବର ଦୁଲହିନି ସକୁଚାହିଁ ।
ମୋଦୁ ବିନୋଦୁ ବିଲୋକି ବଡ଼ ରାମୁ ମନହିଁ ମୁସୁକାହିଁ ॥୩୫୦ (ଖ)॥

ଦେବ ପିତର ପୂଜେ ବିଧି ନୀକୀ । ପୂଜୀଁ ସକଲ ବାସନା ଜୀ କୀ ॥
ସବହି ବଂଦି ମାଗହିଁ ବରଦାନା । ଭାଇହ୍ନ ସହିତ ରାମ କଲ୍ୟାନା ॥୧॥

---

ଉତ୍ସର୍ଗ ହୁଏ ବିବିଧ ବସ୍ତୁ ଅଗଣିତ । ପ୍ରମୋଦେ ପୁଣି ସମସ୍ତ ଜନନୀ ଶୋଭିତ ॥
ପରମ ତତ୍ତ୍ୱ ଯେସନେ ପ୍ରାପ୍ତ ହେଲେ ଯୋଗୀ । ଅମୃତ ଲଭିଲେ ଯେହ୍ନେ ଚିରକାଳ ରୋଗୀ ॥୩॥
ଜନ୍ମରଙ୍କ ସ୍ପର୍ଶ-ମଣି ଯେପରି ପାଇଲେ । ଅନ୍ଧକୁ ନୟନ ଲାଭ ଯେମନ୍ତ ହୋଇଲେ ॥
ମୂକ ବଦନେ ଶାରଦା କରନ୍ତେ ବିଜୟ । ସମରେ ଶୂର ଯେସନ ଲଭ କଲେ ଜୟ ॥୪॥

ଏହି ସୁଖଠାରୁ ଶତ କୋଟି ଗୁଣେ ଲଭନ୍ତି ମାତା ଆନନ୍ଦ ।
ହୋଇଣ ବିବାହ ଆଗମନ୍ତେ ଗୃହ ସାନୁଜ ଶ୍ରୀ ରାମଚନ୍ଦ୍ର ॥୩୫୦ (କ)॥
ଲୌକିକାଚାର ରୀତି ଜନନୀ କରନ୍ତି ବର ବଧୂ ସଙ୍କୋଚନ୍ତି ।
ବିନୋଦ ପ୍ରମୋଦ ବିଲୋକି ବହୁତ ରାମ ମଧୁରେ ହସନ୍ତି ॥୩୫୦ (ଖ)॥

ପିତୃ ଦେବତାଙ୍କୁ ପୂଜା କଲେ ବିଧିବତ । ପୂର୍ଣ୍ଣ ହେଲା ଜାଣି ମନକାମନା ସମସ୍ତ ॥
ବନ୍ଦି ସମସ୍ତଙ୍କୁ ମାଗୁଥାନ୍ତି ବରଦାନ । ଭାଇଙ୍କ ସହିତ ରଘୁନାଥଙ୍କ କଲ୍ୟାଣ ॥୧॥

---

ବରବଧୂଙ୍କ ମସ୍ତକ ଉପରେ ସୁନ୍ଦର ବ୍ୟଜନ ଓ ଚାମର ଆଲଟ ପଡ଼ୁଥାଏ ॥ ୨ ॥ ବିବିଧ ବସ୍ତୁ ଉତ୍ସର୍ଗ କରାହେଉଥାଏ । ସମସ୍ତ ମାତା ଆନନ୍ଦରେ ନିମଜ୍ଜିତ ହୋଇ ଏପରି ସୁଶୋଭିତ ହେଉଥା'ନ୍ତି, ମନେ ହୁଏ ଯୋଗୀ ଯେପରି ପରମ ତତ୍ତ୍ୱ ଲାଭ କରିଅଛନ୍ତି । ଚିରରୋଗୀ ସତେ ଯେମିତି ଅମୃତ ପାଇଅଛି ॥ ୩ ॥ ଆଜନ୍ମଦରିଦ୍ର ସତେ ଯେମିତି ପରଶମଣି ଲାଭ କରିଅଛି । ଅନ୍ଧକୁ ସୁନ୍ଦର ନୟନ ମିଳିଗଲା ପରି ' ମୂକ ମୁଖରେ ସତେ ଯେମିତି ସରସ୍ୱତୀ ଆସି ବିରାଜମାନ ହେଲେ'! ଶୂରବୀର ଯୁଦ୍ଧରେ ବିଜୟ ଲାଭ କଲା କି ' ॥ ୪ ॥ ଦୋହା .— ଏହି ସୁଖରୁ ମଧ୍ୟ ଶହେ କୋଟି ଗୁଣରୁ ଅଧିକ ସୁଖ ମାତା-ମାନେ ଲାଭ କରୁଥା'ଆନ୍ତି । କାରଣ, ରଘୁକୁଳ-ଚନ୍ଦ୍ରମା ଶ୍ରୀରାମ ବିବାହ କରି ଭାଇମାନଙ୍କ ସହିତ ଘରକୁ ଫେରି ଆସିଅଛନ୍ତି ॥ ୩୫୦ (କ) ॥ ମାତାମାନେ ଲୌକିକ ରୀତି ପାଳନ କରୁଥା'ନ୍ତି ଏବଂ ବରକନ୍ୟାମାନେ ସଂକୋଚ କରୁଥା'ନ୍ତି । ଏହି ମହା ଆନନ୍ଦ ଓ ବିନୋଦକୁ ଦେଖି ଶ୍ରୀରାମଚନ୍ଦ୍ର ମନେ ମନେ ମୁରୁକି ହସୁଥା'ନ୍ତି ॥ ୩୫୦ (ଖ) ॥ ଚୌପାଈ :—

ଅଂତରହିତ ସୁର ଆସିଷ ଦେହୀଁ । ମୁଦିତ ମାତୁ ଅଂଚଲ ଭରି ଲେହୀଁ ॥
ଭୂପତି ବୋଲି ବରାତି ଲୀନ୍ହେ । ଜାନ ବସନ ମନି ଭୂଷନ ଦୀନ୍ହେ ॥୨॥
ଆୟସୁ ପାଇ ରାଖି ଉର ରାମହି । ମୁଦିତ ଗଏ ସବ ନିଜ ନିଜ ଧାମହି ॥
ପୁର ନର ନାରି ସକଲ ପହିରାଏ । ଘର ଘର ବାଜନ ଲଗେ ବଧାଏ ॥୩॥
ଜାଚକ ଜନ ଜାଚହିଁ ଜୋଇ ଜୋଈ । ପ୍ରମୁଦିତ ରାଉ ଦେହିଁ ସୋଇ ସୋଈ ॥
ସେବକ ସକଲ ବଜନିଆ ନାନା । ପୂରନ କିଏ ଦାନ ସନମାନା ॥୪॥

ଦେହିଁ ଅସୀସ ଜୋହାରି ସବ ଗାୱହିଁ ଗୁନ ଗନ ଗାଥ ।
ତବ ଗୁର ଭୂସୁର ସହିତ ଗୃହଁ ଗୱନୁ କୀହ୍ନ ନରନାଥ ॥୩୫୧॥

ଜୋ ବସିଷ୍ଟ ଅନୁସାସନ ଦୀହ୍ନୀ । ଲୋକ ବେଦ ବିଧି ସାଦର କୀହ୍ନୀ ॥
ଭୂସୁର ଭୀର ଦେଖି ସବ ରାନୀ । ସାଦର ଉଠୀଁ ଭାଗ୍ୟ ବଡ଼ ଜାନୀ ॥୧॥

---

ଅନ୍ତର୍ହିତ ହୋଇ ସୁରେ ଆଶିଷ ଦିଅନ୍ତି । ସାନନ୍ଦେ ମାତ ଅଞ୍ଚଳ ପ୍ରସାଦ ନିଅନ୍ତି ॥
ଭୂପତି ବରଯାତ୍ରଙ୍କୁ ତହୁଁ ଡାକି ନେଲେ । ମଣି ଭୂଷଣ ବସନ ଯାନ ବହୁ ଦେଲେ ॥୨॥
ଆଦେଶ ପାଇ ହୃଦୟେ ସ୍ଥାପିଣ ରାମଙ୍କୁ । ହରଷେ ଗଲେ ଆପଣା ଆପଣା ଧାମକୁ ॥
ପିନ୍ଧାଇଲେ ପୁର ନର ନାରୀଙ୍କୁ ବସନ । ଗୃହେ ଗୃହେ ମାଙ୍ଗଳିକ ହୁଏ ବାଦ୍ୟସ୍ୱନ ॥୩॥
ଯାଚକ-ସମୂହ ମାଗୁଥାନ୍ତି ଯାହା ଯାହା । ପ୍ରମୋଦିତେ ଦେଉଥାନ୍ତି ନୃପ ତାହା ତାହା ॥
ସମସ୍ତ ସେବକ ବାଦ୍ୟକାରଙ୍କୁ ଡକାଇ । ଦାନ ସମ୍ମାନରେ ପୂର୍ଣ୍ଣ କଲେ ନରସାଇଁ ॥୪॥

ଆଶିଷ ଦିଅନ୍ତି ସର୍ବେ ଜୁହାରନ୍ତି ଗାଇଣ ଗୁଣ ନିକର ।
ଗୁରୁ ବିପ୍ର ସହ ସୁଖେ ତହୁଁ ଗୃହେ ଗମିଲେ ଅବଧେଶ୍ୱର ॥୩୫୧॥

ଯେଉଁ ଯେଉଁ ଆଜ୍ଞା ମୁନି ବଶିଷ୍ଠ ଦିଅନ୍ତି । ଲୋକ ବେଦ ବିଧିମତେ ସାଦରେ କରନ୍ତି ॥
ବ୍ରାହ୍ମଣଙ୍କ ଭିଡ ଅବଲୋକି ସର୍ବେ ରାଣୀ । ସାଦରେ ଉଠିଲେ ନିଜ ଅତି ଭାଗ୍ୟ ଜାଣି ॥୧॥

---

ସମସ୍ତ ମନସ୍କାମନା ପୂର୍ଣ୍ଣ ହେଲା ଜାଣି ସେମାନେ ଦେବଲୋକ ଓ ପିତୃଲୋକଙ୍କୁ ଭଲ ଭାବରେ ପୂଜା କଲେ । ସମସ୍ତଙ୍କୁ ବନ୍ଦନା କରି "ଭାଇମାନଙ୍କ ସମେତ ଶ୍ରୀରାମଙ୍କ କଲ୍ୟାଣ ହେଉ", ବୋଲି ମାତାମାନେ ବରଦାନ ମାଗୁଥା'ନ୍ତି ॥ ୧ ॥ ଦେବତାମାନେ ଅନ୍ତର୍ହିତ ହୋଇ ଅନ୍ତରୀକ୍ଷରୁ ଆଶୀର୍ବାଦ ଦେଉଥା'ନ୍ତି ଏବଂ ମାତାମାନେ ଆନନ୍ଦିତ ହୋଇ ପଣନ୍ତ ପସାରି ତାହା ଗ୍ରହଣ କରୁଥା'ନ୍ତି । ତଦନନ୍ତର ରାଜା ବରଯାତ୍ରୀମାନଙ୍କୁ ଡକାଇ ନେଲେ ଏବଂ ସେମାନଙ୍କୁ ସବାରୀ, ବସ୍ତ୍ର, ମଣି ଓ ଭୂଷଣାଦି ଦାନ କଲେ ॥ ୨ ॥ ଆଜ୍ଞା ପାଇବା ପରେ ସେମାନେ ଶ୍ରୀରାମଙ୍କୁ ହୃଦୟରେ ଧାରଣ କରି ଆନନ୍ଦିତ ମନରେ ଆପଣା ଆପଣା ଘରକୁ ଗଲେ । ନଗରର ସମସ୍ତ ନରନାରୀଙ୍କୁ ରାଜା ବସ୍ତ୍ର ଓ ଭୂଷଣ ପିନ୍ଧାଇଲେ । ଘରେ ଘରେ ମଙ୍ଗଳ-ଅଭିନନ୍ଦନ-ସୂଚକ ବାଦ୍ୟ ବାଜିବାକୁ ଲାଗିଲା ॥ ୩ ॥ ଯାଚକମାନେ ଯାହା ଯାହା ମାଗୁଥା'ନ୍ତି, ଅତିଶୟ ପ୍ରସନ୍ନ ମନରେ ରାଜା ସେମାନଙ୍କୁ ସେହି ସେହି ଜିନିଷ ଦେଉଥା'ନ୍ତି । ସମସ୍ତ ସେବକ ଓ ବାଦ୍ୟକାରୀଙ୍କୁ ନାନାବିଧ ଦାନ ଓ ସମ୍ମାନରେ

ପାୟଁ ପଖାରି ସକଲ ଅନ୍ହୱାଏ । ପୂଜି ଭଲୀ ବିଧି ଭୂପ ଜେୱାଁଏ ॥
ଆଦର ଦାନ ପ୍ରେମ ପରିପୋଷେ । ଦେତ ଅସୀସ ଚଲେ ମନ ତୋଷେ ॥୨॥
ବହୁ ବିଧି କୀହ୍ନି ଗାଧିସୁତ ପୂଜା । ନାଥ ମୋହି ସମ ଧନ୍ୟ ନ ଦୂଜା ॥
କୀହ୍ନି ପ୍ରସଂସା ଭୂପତି ଭୂରୀ । ରାନିହ୍ନ ସହିତ ଲୀହ୍ନି ପଗ ଧୂରୀ ॥୩॥
ଭୀତର ଭବନ ଦୀହ୍ନ ବର ବାସୂ । ମନ ଜୋଗୱତ ରହ ନୃପୁ ରନିବାସୂ ॥
ପୂଜେ ଗୁର ପଦ କମଲ ବହୋରୀ । କୀହ୍ନି ବିନୟ ଉର ପ୍ରୀତି ନ ଥୋରୀ ॥୪॥

ବଧୁହ୍ନ ସମେତ କୁମାର ସବ ରାନିହ୍ନ ସହିତ ମହୀସୁ ।
ପୁନି ପୁନି ବଂଦତ ଗୁର ଚରନ ଦେତ ଅସୀସ ମୁନୀସୁ ॥୩୫୨॥

---

ଚରଣ ପ୍ରକ୍ଷାଳି ଭୂପ ସ୍ନାନ କରାଇଲେ । ବିଧିମତେ ସମସ୍ତଙ୍କୁ ପୂଜି ଭୁଞ୍ଜାଇଲେ ॥
ଆଦର ଦାନ ସ୍ନେହରେ କଲେ ପରିତୋଷ । ଆଶିଷ ଦେଇ ଚଳିଲେ ଲଭିଣ ସନ୍ତୋଷ ॥୨॥
ପୂଜିଲେ ଗାଧି ସୁତଙ୍କୁ ଅନେକ ପ୍ରକାରେ । ନାଥ, ଧନ୍ୟ ନାହିଁ କେହି ମୋ ସମ ସଂସାରେ ॥
ବହୁତ ପ୍ରଶଂସା ପତି-ନାରୀକେ କରନ୍ତି । ଚରଣ-ରଜ ରାଣୀଙ୍କ ସହିତ ଘେନନ୍ତି ॥୩॥
ଦେଲେ ଦିବ୍ୟ ବାସସ୍ଥାନ ଭିତର ଭବନେ । ମନ ଜଗିଥିବେ ନୃପ ମହିଷୀ ଯେସନେ ॥
ପୂଜି ପୁଣି ଗୁରୁ ପଦ-ପଙ୍କଜେ ଉଭୟ । ଅଧିକ ପ୍ରୀତି ହୃଦୟେ କରନ୍ତି ବିନୟ ॥୪॥

ବଧୂଙ୍କ ସହିତେ କୁମର ସମସ୍ତେ ରାଣୀଙ୍କ ସହି ମହୀଶ ।
ବାରମ୍ବାର ଗୁରୁ ଚରଣେ ବନ୍ଦନ୍ତି ଦିଅନ୍ତି, ମୁନି ଆଶିଷ ॥୩୫୨॥

---

ରାଜା ସନ୍ତୁଷ୍ଟ କଲେ ॥ ୪ ॥ ଦୋହା :—ସମସ୍ତେ ଜୁହାର କରି ଆଶିଷ ଦେଉଥା'ନ୍ତି ଏବଂ ଗୁଣ-ସମୂହର ଗାଥା ଗାଉଥା'ନ୍ତି । ତତ୍ପରେ ଗୁରୁ ଓ ବ୍ରାହ୍ମଣଙ୍କ ସହିତ ରାଜା ଦଶରଥ ମହଲ ମଧ୍ୟକୁ ଗମନ କଲେ ॥ ୩୫୧ ॥ ଚୌପାଇ :—ରାଜା ଆଦର-ସହକାରେ ଲୌକିକ ଓ ବୈଦିକ ବିଧି ଅନୁସାରେ ବଶିଷ୍ଠଙ୍କ ଆଦେଶ କାର୍ଯ୍ୟକାରୀ କଲେ । ସମସ୍ତ ରାଣୀ ବ୍ରାହ୍ମଣମାନଙ୍କ ଭିଡ ଦେଖି ତାହାଙ୍କୁ ଆପଣା ଆପଣାର ବଡ ଭାଗ୍ୟ ମନେ କଲେ ଏବଂ ଆଦର ସହିତ ଉଠିଲେ ॥ ୧ ॥ ସେମାନେ ଚରଣ ଧୋଇ ସମସ୍ତଙ୍କୁ ସ୍ନାନ କରାଇଲେ ଏବଂ ରାଜା ଭଲ ଭାବରେ ପୂଜା କରି ସେମାନଙ୍କୁ ଭୋଜନ କରାଇଲେ । ଆଦର, ଦାନ ଓ ପ୍ରେମରେ ପରିପୁଷ୍ଟ ହୋଇ ସେମାନେ ସନ୍ତୁଷ୍ଟ ମନରେ ଆଶୀର୍ବାଦ ଦେଇ ଚାଲିଲେ ॥ ୨ ॥ ରାଜା ଗାଧିପୁତ୍ର ବିଶ୍ୱାମିତ୍ରଙ୍କୁ ବହୁତ ପ୍ରକାରେ ପୂଜା କଲେ ଏବଂ କହିଲେ—"ହେ ନାଥ ! ମୋ ସମାନ ଧନ୍ୟ ଆଉ କେହି ନାହିଁ ।" ରାଜା ତାଙ୍କୁ ବହୁତ ପ୍ରଶଂସା କଲେ ଏବଂ ରାଣୀମାନଙ୍କ ସମେତ ତାଙ୍କ ଚରଣ-ଧୂଳି ଗ୍ରହଣ କଲେ ॥୩॥ ମହଲ ମଧ୍ୟରେ ଯେଉଁଠି କି ରାଜା ଓ ସମସ୍ତ ରାଣୀ ଉଆସ ମନ ଜଗି ତାଙ୍କ ଆରାମ ପ୍ରତି ନଜର ଦେଇ ପାରିବେ, ସେହି ସ୍ଥାନରେ ରହିବା ନିମନ୍ତେ ତାଙ୍କୁ ଉତ୍ତମ ସ୍ଥାନ ଦେଲେ । ତଦନନ୍ତର ରାଜା ଗୁରୁ ବଶିଷ୍ଠଙ୍କ ଚରଣ-କମଳରେ ପୂଜା ଓ ବିନତି କଲେ । ତାଙ୍କ ହୃଦୟରେ କମ ପ୍ରୀତି ନ ଥିଲା ॥ ୪ ॥ ଦୋହା :—ବଧୂଗଣଙ୍କ ସମେତ ରାଜକୁମାର-

ବିନସ୍ତି କାହ୍ନି ଉର ଅତି ଅନୁରାଗେଁ । ସୁତ ସଂପଦା ରାଖି ସବ ଆଗେ ॥
ନେଗୁ ମାଗି ମୁନିନାୟକ ଲୀହ୍ନା । ଆସିରବାଦୁ ବହୁତ ବିଧି ଦୀହ୍ନା ॥୧॥
ଉର ଧରି ରାମହି ସୀୟ ସମେତା । ହରଷି କୀହ୍ନ ଗୁର ଗଵନୁ ନିକେତା ॥
ବିପ୍ରବଧୂ ସବ ଭୂପ ବୋଲାଈଂ । ଚୈଲ ଚାରୁ ଭୂଷନ ପହିରାଈଂ ॥୨॥
ବହୁରି ବୋଲାଇ ସୁଆସିନି ଲୀହ୍ନୀଂ । ରୁଚି ବିଚାରି ପହିରାଵନି ଦୀହ୍ନୀଂ ॥
ନେଗୀ ନେଗ ଜୋଗ ସବ ଲେହୀଂ । ରୁଚି ଅନୁରୂପ ଭୂପମନି ଦେହୀଂ ॥୩॥
ପ୍ରିୟ ପାହୁନେ ପୂଜ୍ୟ ଜେ ଜାନେ । ଭୂପତି ଭଲୀ ଭାଁତି ସନମାନେ ॥
ଦେବ ଦେଖି ରଘୁବୀର ବିବାହୂ । ବରଷି ପ୍ରସୂନ ପ୍ରସଂସି ଉଛାହୂ ॥୪॥

ଚଲେ ନିସାନ ବଜାଇ ସୁର ନିଜ ନିଜ ପୁର ସୁଖ ପାଇ ।
କହତ ପରସପର ରାମ ଜସୁ ପ୍ରେମ ନ ହୃଦୟଁ ସମାଇ ॥୩୫୩॥

---

ବିନୟ କଲେ ବହୁତ ହୃଦ ଅନୁରାଗେ । ସୁତ ସମ୍ପଦ ସକଳ ରଖି ମୁନି ଆଗେ ॥
ତହୁଁ ମୁନିବର ନିଜ ପ୍ରାପ୍ୟ ମାଗିନେଲେ । ଅନେକ ପ୍ରକାରେ ପୁଣି ଆଶୀର୍ବାଦ ଦେଲେ ॥୧॥
ହୃଦୟେ ଧରି ଜାନକୀ ରଘୁନନ୍ଦନଙ୍କୁ । ଆନନ୍ଦେ ଗମିଲେ ଗୁରୁ ନିଜ ଭବନକୁ ॥
ବିପ୍ର-ବଧୂ-ନିକରଙ୍କୁ ହକାରି ରାଜନ । ପିନ୍ଧାଇଲେ ମନୋହର ଭୂଷଣ ବସନ ॥୨॥
ପୁଣି ରାଜା ଅଙ୍ଗନାଙ୍କୁ ଡକାଇ ଅଣାଇ । ଦେଲେ ନାନା ପଣଛଡ ରୁଚି ଅନୁଯାୟୀ ॥
ଯଥା-ଯୋଗ୍ୟ ପ୍ରାପ୍ୟ ନେଲେ ପ୍ରାପକ ନିକର । ରୁଚି ଅନୁରୂପ ସବୁ ଦେଲେ ନରବର ॥୩॥
ପ୍ରିୟ ଅତିଥି ସୁପୂଜ୍ୟ ଜାଣିଲେ ଯାହାଙ୍କୁ । ଭଲ ରୂପେ ସମ୍ମାନିଲେ ନୃପତି ତାହାଙ୍କୁ ॥
ବିବୁଧେ ବିଲୋକି ରଘୁବୀରଙ୍କ ବିବାହ । କୁସୁମ ବୃଷ୍ଟି କରନ୍ତି ପ୍ରଶଂସି ଉତ୍ସାହ ॥୪॥

ସୁରେ ସୁଖ ପାଇ ନିଶାଣ ବଜାଇ ଗଲେ ନିଜ ନିଜ ପୁରେ ।
କହି ରଘୁବୀର ଯଶ ପରସ୍ପର ହର୍ଷ ଅସମ୍ଭାଳ ଉରେ ॥୩୫୩॥

---

ମାନେ ଏବଂ ସମସ୍ତ ରାଣୀଙ୍କ ସହିତ ରାଜା ବାରମ୍ବାର ଗୁରୁଙ୍କର ଚରଣ ବନ୍ଦନା କରୁଥା'ନ୍ତି ଏବଂ ମୁନୀଶ୍ୱର ଆଶୀର୍ବାଦ ଦେଉଥା'ନ୍ତି ॥ ୩୫୨ ॥ ଚୌପାଈ :—ରାଜା ଅତ୍ୟନ୍ତ ପ୍ରେମପୂର୍ଣ୍ଣ ହୃଦୟରେ ପୁତ୍ରଗଣଙ୍କୁ ଓ ସକଳ ସମ୍ପତ୍ତିକୁ ଆଗରେ ରଖି (ତାହା ସବୁ) ଗ୍ରହଣ ନିମନ୍ତେ ମୁନିଙ୍କୁ ବିନୟ କଲେ । କିନ୍ତୁ ମୁନିରାଜ (ପୁରୋହିତ ରୂପେ) କେବଳ ତାଙ୍କ ପ୍ରାପ୍ୟ ମାଗିନେଲେ ଏବଂ ବହୁତ ପ୍ରକାରେ ଆଶୀର୍ବାଦ ଦେଲେ ॥ ୧ ॥ ତତ୍ପରେ ସୀତାଙ୍କ ସହ ଶ୍ରୀରାମଙ୍କୁ ହୃଦୟରେ ଧାରଣ କରି ଗୁରୁ ବଶିଷ୍ଠ ଆନନ୍ଦିତ ହୋଇ ସ୍ୱସ୍ଥାନକୁ ଗମନ କଲେ । ରାଜା ସମସ୍ତ ବ୍ରାହ୍ମଣୀଙ୍କୁ ଡକାଇଲେ ଏବଂ ସେମାନଙ୍କୁ ସୁନ୍ଦର ବସ୍ତ୍ର ଓ ଭୂଷଣ ପିନ୍ଧାଇଲେ ॥୨॥ ତତ୍ପରେ ସମସ୍ତ ସୌଭାଗ୍ୟବତୀ ନାରୀଙ୍କୁ ଡକାଇଲେ ଏବଂ ସେମାନଙ୍କ ରୁଚି ଅନୁସାରେ ସେମାନଙ୍କୁ ବସ୍ତ୍ର ଓ ଭୂଷଣ ଦେଲେ । ପ୍ରାପକମାନେ ଆପଣା ଯୋଗ୍ୟ ପ୍ରାପ୍ୟ ନେଉଥା'ନ୍ତି ଏବଂ ଭୂପ-ଶିରୋମଣି ଦଶରଥ ସେମାନଙ୍କ ଇଚ୍ଛାନୁସାରେ ଦେଉଥାନ୍ତି ॥ ୩ ॥ ଯେଉଁ ଅତିଥିମାନଙ୍କୁ ରାଜା ପ୍ରିୟ ଓ ପୂଜନୀୟ ବୋଲି ମନେ କଲେ,

ସବ ବିଧି ସବହି ସମଦି ନରନାହୂ । ରହା ହୃଦୟଁ ଭରି ପୂରି ଉଛାହୂ ॥
ଜହଁ ରନିବାସୁ ତହାଁ ପଗୁ ଧାରେ । ସହିତ ବହୂଟିନ୍ହ କୁଅଁର ନିହାରେ ॥୧॥
ଲିଏ ଗୋଦ କରି ମୋଦ ସମେତା । କୋ କହି ସକଇ ଭୟଉ ସୁଖୁ ଜେତା ॥
ବଧୂ ସପ୍ରେମ ଗୋଦ ବୈଠାରୀଂ । ବାର ବାର ହିୟଁ ହରଷି ଦୁଲାରୀଂ ॥୨॥
ଦେଖି ସମାଜୁ ମୁଦିତ ରନିବାସୂ । ସବ କେଁ ଉର ଅନଂଦୁ କିୟୋ ବାସୂ ॥
କହେଉ ଭୂପ ଜିମି ଭୟଉ ବିବାହୂ । ସୁନି ସୁନି ହରଷୁ ହୋତ ସବ କାହୂ ॥୩॥
ଜନକ ରାଜ ଗୁନ ସୀଲୁ ବଡ଼ାଈ । ପ୍ରୀତି ରୀତି ସଂପଦା ସୁହାଈ ॥
ବହୁବିଧି ଭୂପ ଭାଟ ଜିମି ବରନୀ । ରାନୀଂ ସବ ପ୍ରମୁଦିତ ସୁନି କରନୀ ॥୪॥
ସୁତନ୍ହ ସମେତ ନହାଇ ନୃପ ବୋଲି ବିପ୍ର ଗୁର ଗ୍ୟାତି ।
ଭୋଜନୁ କୀନ୍ହ ଅନେକ ବିଧି ଘରୀ ପଂଚ ଗଇ ରାତି ॥୩୫୩॥

---

ସବୁ ଭାବେ ସମସ୍ତଙ୍କୁ ସମ୍ମାନିଲେ ନୃପ । ହୃଦୟେ ପୂରି ରହିଲା ଉତ୍ସାହ ଅନୁପ ॥
ଏଥୁ ଅନ୍ତେ ଅନ୍ତଃପୁରେ ପ୍ରବେଶ କରିଣ । ବଧୂଙ୍କ ସହିତ ସବୁ ସୁତଙ୍କୁ ଦେଖିଣ ॥୧॥
କୋଳ କରି ନେଲେ ଅତି ପ୍ରମୋଦ ସମେତେ । କେ କହି ପାରିବ ମନେ ସୁଖ ହେଲା ଯେତେ ॥
ବଧୂଙ୍କୁ ସପ୍ରେମେ କୋଳେ ବସାଇ ନୃପତି । ବାରମ୍ବାର ହର୍ଷ ହୃଦେ ସେନେହ କରନ୍ତି ॥୨॥
ଦେଖି ସମାଜ ରାଣୀଙ୍କ ଉଆସ ଉଲ୍ଲାସ । ସମସ୍ତଙ୍କ ହୃଦେ କଲା ଆନନ୍ଦ ନିବାସ ॥
କହନ୍ତି ନୃପ ବିବାହ ହୋଇଲା ଯେମନ୍ତେ । ଶୁଣି ଶୁଣି ଆହ୍ଲାଦିତ ହୁଅନ୍ତି ସମସ୍ତେ ॥୩॥
ଜନକ ରାଜାଙ୍କ ଗୁଣ, ବଡାଇ ଆଦର । ପ୍ରୀତି, ବ୍ୟବହାର, ଶୀଳ, ସମ୍ପଦ ସୁନ୍ଦର ॥
ଭୂପ ଭାଟ ପରି ବହୁ ପ୍ରକାରେ ବର୍ଣ୍ଣନ୍ତି । ଶୁଣି ଶୁଣି ରାଣୀ ସର୍ବେ ପ୍ରମୋଦ ଲଭନ୍ତି ॥୪॥
ସୁତଙ୍କ ସହିତ ସ୍ନାନ କରି ନୃପ ଡାକି ଆଣି ଗୁରୁ ଜ୍ଞାତି ।
ଅନେକ ପ୍ରକାର କରିଲେ ଭୋଜନ ପାଞ୍ଚଘଡି ଗଲା ରାତି ॥୩୫୩॥

---

ସେମାନଙ୍କୁ ସେ ଭଲ ଭାବରେ ସମ୍ମାନ କଲେ । ଦେବଗଣ ଶ୍ରୀରାମଙ୍କ ବିବାହ ଦେଖି ଉତ୍ସବର ପ୍ରଶଂସା କରି ପୁଷ୍ପ-ବୃଷ୍ଟି କରୁଥା'ନ୍ତି ॥ ୪ ॥ ଦୋହା :—ନିଶାଣ ବଜାଇ ପରମ ସୁଖ ଲାଭ କରି ଦେବତାମାନେ ଆପଣା ଆପଣା ଲୋକକୁ ଚଳିଲେ । ସେମାନେ ପରସ୍ପର ଶ୍ରୀରାମଙ୍କ ଯଶ କହି ବୁଲୁଥା'ନ୍ତି । ହୃଦୟରେ ପ୍ରେମ ସମ୍ଭାଳି ନ ଥାଏ ॥ ୩୫୨ ॥
ଚୌପାଈ :—ପ୍ରେମପୂର୍ବକ ସମସ୍ତଙ୍କର ଭଲ ଭାବରେ ଆଦରସତ୍କାର କଲାବେଳେ ରାଜା ଦଶରଥଙ୍କ ହୃଦୟରେ ଉତ୍ସାହ ଓ ଆନନ୍ଦ ଭରିଗଲା । ଯେଉଁଠି ରାଣୀଉଆସ ଥିଲା, ସେ ସେଠାରେ ଉପସ୍ଥିତ ହେଲେ ଏବଂ ବଧୂଗଣଙ୍କ ସମେତ କୁମାରମାନଙ୍କୁ ଦେଖିଲେ ॥ ୧ ॥ ଆନନ୍ଦ ସହକାରେ ରାଜା ପୁତ୍ରମାନଙ୍କୁ କୋଳରେ ବସାଇଲେ । ସେ ସମୟରେ ରାଜାଙ୍କର ଯେତେ ସୁଖ ଲାଭ ହେଲା, ତାହାକୁ କିଏ କହି ପାରିବ ? ତତ୍ପରେ ସେ ପୁତ୍ର-ବଧୂମାନଙ୍କୁ ପ୍ରେମରେ କୋଳ କରି ଆନନ୍ଦିତ ମନରେ ସେମାନଙ୍କୁ ଗେଲ କଲେ ॥ ୨ ॥ ଏହି ସମାଜ ଦେଖି ରାଣୀଉଆସ ପ୍ରସନ୍ନ ହେଲା । ସମସ୍ତଙ୍କ ହୃଦୟରେ ଆନନ୍ଦ ବାସ କଲା । ତଦନନ୍ତର

ମଂଗଲଗାନ କରହିଁ ବର ଭାମିନି । ଭୈ ସୁଖମୂଲ ମନୋହର ଜାମିନି ॥
ଅଁଚଇ ପାନ ସବ କାହୂଁ ପାଏ । ସ୍ରଗ ସୁଗଂଧ ଭୂଷିତ ଛବି ଛାଏ ॥୧॥
ରାମହି ଦେଖି ରଜାୟସୁ ପାଈ । ନିଜ ନିଜ ଭବନ ଚଲେ ସିର ନାଈ ॥
ପ୍ରେମ ପ୍ରମୋଦୁ ବିନୋଦୁ ବଡ଼ାଈ । ସମଉ ସମାଜୁ ମନୋହରତାଈ ॥୨॥
କହି ନ ସକହିଁ ସତ ସାରଦ ସେସୂ । ବେଦ ବିରଂଚି ମହେସ ଗନେସୂ ॥
ସୋ ମୈଁ କହୌଁ କଵନ ବିଧି ବରନୀ । ଭୂମିନାଗୁ ସିର ଧରଇ କି ଧରନୀ ॥୩॥
ନୃପ ସବ ଭାଁତି ସବହି ସନମାନୀ । କହି ମୃଦୁ ବଚନ ବୋଲାଈଁ ରାନୀ ॥
ବଧୂ ଲରିକନୀଁ ପର ଘର ଆଈଁ । ରାଖେହୁ ନୟନ ପଲକ କୀ ନାଈଁ ॥୪॥

---

ମଙ୍ଗଳ ଗାନ କରନ୍ତି ସୁନ୍ଦରୀ କାମିନୀ । ହେଲା ଅତି ସୁଖ-ମୂଳ ରୁଚିର ଯାମିନୀ ॥
ଆଚମନ କରି ସର୍ବେ ତାମ୍ବୁଳ ଘେନିଲେ । ସୁଗନ୍ଧ ମାଲ୍ୟାଦି ଦ୍ୱାରା ଭୂଷିତ ହୋଇଲେ ॥୧॥
ରାମଙ୍କୁ ନିରେଖି ରାଜା ଆଦେଶ ପାଇଣ । ନିଜ ନିଜ ଗୃହେ ଗଲେ ଶିର ନୁଆଁଇଣ ॥
ପ୍ରେମ, ପ୍ରମୋଦ, ବିନୋଦ, ବଡାଇ ଆଦର । ସମୟ, ସମାଜ, ମନୋହରତା ନିକର ॥୨॥
କହି ନ ପାରିବେ ଶତ ସରସ୍ୱତୀ ଶେଷ । ବେଦ ବିରଞ୍ଚି ମହେଶ ସହିତ ଗଣେଶ ॥
ତାହା ମୁଁ କରିବି ଅବା କେଉଁଭାବେ ବର୍ଣ୍ଣି । କେଞ୍ଚୁଆ କେବେ କି ଶିରେ ଧରଇ ଧରଣୀ ॥୩॥
ନୃପ ସମସ୍ତଙ୍କୁ ସବୁ ପ୍ରକାରେ ସମ୍ମାନି । ଭାଷିଲେ ସ୍ନେହେ ରାଣୀଙ୍କୁ ଡାକି ମୃଦୁବାଣୀ ॥
ଝିଅ ବଧୂ ଆସିଛନ୍ତି ପୁଣି ପରଘରେ । ରଖିବ ନେତ୍ର-ପଲକ ପ୍ରାୟେ ଯତନରେ ॥୪॥

---

ଯେପରି ବିବାହ ହୋଇଥିଲା, ରାଜା ସେ ସବୁ କହିଲେ । ତାହା ଶୁଣି ସମସ୍ତେ ହର୍ଷ ଲାଭ କରୁଥା'ନ୍ତି ॥ ୩ ॥ ରାଜା ଦଶରଥ ଭେଟ ପରି ଜନକଙ୍କ ଗୁଣ, ଚରିତ୍ର, ମହତ୍ତ୍ୱ, ପ୍ରୀତି-ରୀତି ଏବଂ ସୁନ୍ଦର ସମ୍ପଦର ବର୍ଣ୍ଣନା ବହୁ ପ୍ରକାରେ କଲେ । ଜନକଙ୍କର କୃତିତ୍ୱ ଶୁଣି ସମସ୍ତ ରାଣୀ ଅତିଶୟ ପ୍ରସନ୍ନ ହେଲେ ॥ ୪ ॥ ଦୋହା —ମୁନିମାନଙ୍କ ସହିତ ସ୍ନାନ କରି ରାଜା, ବ୍ରାହ୍ମଣ, ଗୋରୁ ଓ ଆତ୍ମୀୟ ସ୍ୱଜନମାନଙ୍କୁ ଡକାଇ ବିବିଧ ଭୋଜନ ଦାନ କଲେ । ଏ ସବୁ କରୁ କରୁ ପାଞ୍ଚଘଣ୍ଟା ରାତି ବିତିଗଲା ॥ ୩୫୪ ॥ ଚୌପାଇ —ସୁନ୍ଦର ନାରୀମାନେ ମଙ୍ଗଳଗାନ କରୁଥା'ନ୍ତି । ସେହି ରାତି ସୁଖର ଆଧାର ଓ ମନୋହାରିଣୀ ହୋଇ ପଡ଼ିଥାଏ । ସମସ୍ତେ ଆଚମନ କରି ପାନ ଖାଇଲେ ଏବଂ ଫୁଲମାଳା, ସୁଗନ୍ଧଦ୍ରବ୍ୟ ଆଦିରେ ବିଭୂଷିତ ହୋଇ ଶୋଭାରେ ଆଚ୍ଛାଦିତ ହେଲେ ॥ ୧ ॥ ଶ୍ରୀରାମଙ୍କୁ ଦର୍ଶନ କରି ଓ ତାଙ୍କର ଆଜ୍ଞା ନେଇ ସମସ୍ତେ ପ୍ରଣାମପୂର୍ବକ ଆପଣା ଆପଣା ଘରକୁ ଚାଲିଲେ । ସେ ସ୍ଥାନର ପ୍ରେମ, ଆନନ୍ଦ, ବିନୋଦ, ମହତ୍ତ୍ୱ, ସମୟ, ସମାଜ ଓ ମନୋହରତାକୁ ଶହ ଶହ ସରସ୍ୱତୀ ଶେଷ, ବେଦ, ବ୍ରହ୍ମା, ମହାଦେବ ଓ ଗଣେଶ ମଧ୍ୟ କହିପାରିବେ ନାହିଁ । ମୁଁ କିପରି ଭାବରେ ବର୍ଣ୍ଣି କହିବି ? ଭଲା କେଞ୍ଚୁଆ କେଉଁଠି ପୃଥିବୀକୁ ମୁଣ୍ଡ ଉପରେ ବୋହି ନେଇ ପାରିବ ' ॥ ୨-୩ ॥ ରାଜା ସମସ୍ତଙ୍କୁ ସକଳ ପ୍ରକାରେ ସମ୍ମାନ କରି ଓ କୋମଳ ବଚନ କହି ବିଦାୟ ଦେଲେ । ତତ୍ପରେ ରାଣୀମାନଙ୍କୁ ଡକାଇ କହିଲେ, "ବଧୂମାନେ ବର୍ତ୍ତମାନ

ଲରିକା ଶ୍ରମିତ ଉନୀଦ ବସ ସୟନ କରାଓହୁ ଜାଇ ।
ଅସ କହି ଗେ ବିଶ୍ରାମଗୃହଁ ରାମ ଚରନ ଚିତୁ ଲାଇ ॥୩୫୫॥

ଭୂପ ବଚନ ସୁନି ସହଜ ସୁହାଏ । ଜରିତ କନକ ମନି ପଲଁଗ ଡସାଏ ॥
ସୁଭଗ ସୁରଭି ପୟ ଫେନ ସମାନା । କୋମଲ କଲିତ ସୁପେତୀଁ ନାନା ॥୧॥
ଉପବରହନ ବର ବରନି ନ ଜାହୀଁ । ସ୍ରଗ ସୁଗଂଧ ମନିମନ୍ଦିର ମାହୀଁ ॥
ରତନଦୀପ ସୁଠି ଚାରୁ ଚଁଦୋଓଵା । କହତ ନ ବନଇ ଜାନ ଜେହିଁ ଜୋଓଵା ॥୨॥
ସେଜ ରୁଚିର ରଚି ରାମୁ ଉଠାଏ । ପ୍ରେମ ସମେତ ପଲଁଗ ପୌଢ଼ାଏ ॥
ଅଜ୍ଞା ପୁନି ପୁନି ଭାଇନ୍ହ ଦୀନ୍ହୀ । ନିଜ ନିଜ ସେଜ ସୟନ ତିନ୍ହ କୀନ୍ହୀ ॥୩॥
ଦେଖି ସ୍ୟାମ ମୃଦୁ ମଂଜୁଲ ଗାତା । କହହିଁ ସପ୍ରେମ ବଚନ ସବ ମାତା ॥
ମାରଗ ଜାତ ଭୟାଵନି ଭାରୀ । କେହି ବିଧି ତାତ ତାଡକା ମାରୀ ॥୪॥

---

ଶ୍ରମେ ନିଦ୍ରାସକ୍ତ ହେଲେଣି ବାଳୁତ ଶୟନ କରାଅ ଯାଇ ।
ଏହା କହି ଗଲେ ଶୟନାଗାରକୁ ଚିତ୍ତେ ରାମପଦ ଧ୍ୟାୟି ॥୩୫୫॥

ସହଜ ସୁନ୍ଦର ଶୁଣି ବଚନ ନୃପଙ୍କ । କନକ-ମଣି-ଜଟିତ ପାଡିଣ ପଲଙ୍କ ॥
ସ୍ୱଚ୍ଛ ଧବଳ ସୁରଭି ପୟ ଫେଣ ସମ । ବିଛାଇଲେ ମୃଦୁ ଚାରୁ ଶଯ୍ୟା ଅନୁପମ ॥୧॥
ବର୍ଣ୍ଣି ନ ହୁଅଇ ଉପବର୍ହଣ ଶୋଭନ । ମାଲ୍ୟ ସୁଗନ୍ଧ ମଣିରେ ସଜାଇ ସଦନ ॥
ରମ୍ୟ ରତ୍ନ ଦୀପ ଚାରୁ ଚନ୍ଦ୍ରୁଆ ଶୋଭଇ । ଯେ ଦେଖିଛି ସେ ଜାଣଇ, କହି ନ ହୁଅଇ ॥୨॥
ରଚିଣ ରୁଚିର ଶଯ୍ୟା ଶ୍ରୀ ରଘୁନାଥଙ୍କେ । ଉଠାଇ ପହୁଡାଇଲେ ସପ୍ରେମେ ପଲଙ୍କେ ॥
ବାରମ୍ବାର ଅନୁଜଙ୍କୁ ଆଦେଶ ଦିଅନ୍ତେ । ନିଜ ନିଜ ଶଯ୍ୟାରେ ସେ ଶୋଇଲେ ସମସ୍ତେ ॥୩॥
ନିରେଖି ଶ୍ୟାମଳ ମୃଦୁ ମଞ୍ଜୁ କଳେବର । ବୋଲନ୍ତି ପ୍ରେମ ସହିତ ଜନନୀ ନିକର ॥
ମାର୍ଗରେ ଯାଆନ୍ତେ ବତ୍ସ, ଭାରି ଭୟଙ୍କରୀ । ମାରିଲ ତାଡକା ନିଶାଚରୀକୁ କିପରି ॥୪॥

---

ପିଲା, ପର ଘରକୁ ଆସିଅଛନ୍ତି । ପଲକ ନେତ୍ରକୁ ରଖିଲା ପରି ଏମାନଙ୍କୁ ତୁମ୍ଭେମାନେ ଯତ୍ନସହକାରେ ରକ୍ଷା କରିବ ॥ ୪ ॥ ଦୋହା —ପୁତ୍ରମାନେ କ୍ଳାନ୍ତ ହୋଇ ନିଦ୍ରାସକ୍ତ ହୋଇ ପଡିଛନ୍ତି । ଏମାନଙ୍କୁ ନେଇ ଶୟନ କରାଅ ।” ଏହାପରେ କହି ରାଜା ଶ୍ରୀରାମଙ୍କ ଚରଣରେ ମନଧ୍ୟାନ ରଖି ବିଶ୍ରାମଭବନକୁ ଚାଲିଗଲେ ॥ ୩୫୫ ॥ ଚୌପାଇ :— ରାଜାଙ୍କର ସ୍ୱଭାବ-ସୁନ୍ଦର ବଚନ ଶୁଣି ରାଣୀମାନେ ମଣି-ଖଚିତ ସୁବର୍ଣ୍ଣ ପଲଙ୍କ ବିଛାଇଲେ । ଗାଈଦୁଧଫେଣ ପରି ଧଳା ଏବଂ କୋମଳ ଓ ମନୋହର ଅନେକ ଶଯ୍ୟା ବିଛାଇଲେ ॥ ୧ ॥ ସୁନ୍ଦର ତକିଆମାନଙ୍କର ବର୍ଣ୍ଣନା କରାଯାଇ ନ ପାରେ । ମଣି-ମନ୍ଦିରରେ ସୁଗନ୍ଧିତ ପୁଷ୍ପମାଳା ସୁସଜ୍ଜିତ । ରମ୍ୟ ରତ୍ନଦୀପ ଓ ସୁନ୍ଦର ଚନ୍ଦ୍ରାତପର ଶୋଭା ଅବର୍ଣ୍ଣନୀୟ । ଯେ ଦେଖିଛି, ସେହି ମାତ୍ର ଜାଣି ପାରିବ ॥୨॥ ଏହି ପ୍ରକାରେ ସୁନ୍ଦର ଶଯ୍ୟା ସଜାଇ ମାତାମାନେ ଶ୍ରୀରାମଚନ୍ଦ୍ରଙ୍କୁ ଉଠାଇ ପ୍ରେମ ସହକାରେ ତାହାଙ୍କୁ ପଲଙ୍କ ଉପରେ ପହୁଡାଇଲେ । ଶ୍ରୀରାମ ବାରମ୍ବାର ଭାଇମାନଙ୍କୁ (ଶୋଇବା ନିମନ୍ତେ) ଆଜ୍ଞା ଦେଲେ ।

ଘୋର ନିସାଚର ବିକଟ ଭଟ ସମର ଗନହିଁ ନହିଁ କାହୁ ।
ମାରେ ସହିତ ସହାୟ କିମି ଖଲ ମାରୀଚ ସୁବାହୁ ॥୩୫୬॥
ମୁନି ପ୍ରସାଦ ବଲି ତାତ ତୁମ୍ହାରୀ । ଈସ ଅନେକ କରବରେଁ ଟାରୀ ॥
ମଖ ରଖୱାରୀ କରି ଦୁହୁଁ ଭାଈ । ଗୁରୁ ପ୍ରସାଦ ସବ ବିଦ୍ୟା ପାଈ ॥୧॥
ମୁନିତିୟ ତରୀ ଲଗତ ପଗ ଧୂରୀ । କୀରତି ରହୀ ଭୁବନ ଭରି ପୂରୀ ॥
କମଠ ପୀଠି ପବି କୂଟ କଠୋରା । ନୃପ ସମାଜ ମହୁଁ ସିବଧନୁ ତୋରା ॥୨॥
ବିସ୍ୱ ବିଜୟ ଜସୁ ଜାନକି ପାଈ । ଆଏ ଭବନ ବ୍ୟାହି ସବ ଭାଈ ॥
ସକଲ ଅମାନୁଷ କରମ ତୁମ୍ହାରେ । କେବଲ କୌସିକ କୃପାଁ ସୁଧାରେ ॥୩॥
ଆଜୁ ସୁଫଲ ଜଗ ଜନମୁ ହମାରା । ଦେଖି ତାତ ବିଧୁବଦନ ତୁମ୍ହାରା ॥
ଜେ ଦିନ ଗଏ ତୁମ୍ହହି ବିନୁ ଦେଖେଁ । ତେ ବିରଂଚି ଜନି ପାରହିଁ ଲେଖେଁ ॥୪॥

---

କାହାକୁ ଭ୍ରୂକ୍ଷେପ ନ କରନ୍ତି ରଣେ ଘୋର ରାକ୍ଷସ ସକଳେ ।
ମାରିଲ କେମନ୍ତେ ସେନାଙ୍କ ସଙ୍ଗତେ ସୁବାହୁ ମାରୀଚ ଖଳେ ॥୩୫୬॥
ମୁନିଙ୍କ ପ୍ରସାଦେ, ନିଚ୍ଛୟାଏ ମୁଁ କୁମର । ଟାଳିଲେ ଈଶ୍ୱର ବହୁ ସଙ୍କଟ ତୁମର ॥
ଯଜ୍ଞରକ୍ଷା ବେନିଭାଇ ମିଳିଣ କରିଲ । ଗୁରୁ ପ୍ରସାଦରୁ ବିଦ୍ୟା ସମସ୍ତ ପାଇଲ ॥୧॥
ପଦଧୂଳି ସ୍ପର୍ଶେ ମୁନି ଘରଣୀ ତରିଲା । ତ୍ରିଭୁବନେ ବ୍ୟାପ୍ତ ହୋଇ ସୁଯଶ ରହିଲା ॥
କଚ୍ଛପ ପୃଷ୍ଠ କୁଳିଶ-ଗିରିରୁ କଠିନ । ଶିବ-ଶରାସନ ନୃପ-ସମାଜେ ଭଞ୍ଜିଣ ॥୨॥
ବିଶ୍ୱ ବିଜୟ କୀରତି, ବଇଦେହୀ ପାଇ । ଆସିଲ ଗୃହେ ବିବାହ ହୋଇ ସବୁଭାଇ ॥
ଏ ସମସ୍ତ ଅମାନୁଷୀ କରମ ତୁମ୍ଭର । ସାଧିଲା କେବଳ କୃପା କଉଶିକଙ୍କର ॥୩॥
ଆଜି ଜଗତରେ ଆମ୍ଭ ଜନମ ସୁଫଳ । ଦେଖି ବତ୍ସ, ତୁମ୍ଭ ବିଧୁ-ବଦନ ବିମଳ ॥
ଯେଉଁଦିନ କଟିଅଛୁ ତୋତେ ବିନା ଦେଖି । ସେଦିନ ବିଧି ନ ଯୋଡ଼ୁ ମୋ ଆୟୁଷେ ଲେଖି ॥୪॥

---

ତେଣୁ ସେମାନେ ମଧ୍ୟ ନିଜ ନିଜ ଶଯ୍ୟାରେ ଯାଇ ଶୋଇଲେ ॥ ୩ ॥ ସକଳ ମାତା ଶ୍ରୀରାମଙ୍କ ଶ୍ୟାମଳ, ସୁନ୍ଦର, କୋମଳ ଶରୀରକୁ ଦେଖି ପ୍ରେମ ସହକାରେ ବଚନ ବୋଲୁଥା'ନ୍ତି—"ହେ ବତ୍ସ ! ମାର୍ଗରେ ଯାଉଥିବା ବେଳେ ତୁମେ ବଡ ଭୟଙ୍କରୀ ତାଡ଼କା ରାକ୍ଷସୀକୁ କିପରି ମାରିଲ ?" ॥ ୪ ॥ ଦୋହା '—ବିକଟ ଯୋଦ୍ଧା ଓ ଅତି ଭୟାନକ ରାକ୍ଷସ ମାରୀଚ ଓ ସୁବାହୁ । ଯୁଦ୍ଧରେ ସେମାନେ କାହାରିକୁ ଗଣନା କରନ୍ତି ନାହିଁ । ସୈନ୍ୟ ଓ ସହାୟକଗଣଙ୍କ ସମେତ ସେ ଦୁଷ୍ଟ ରାକ୍ଷସଦ୍ୱୟଙ୍କୁ କିପରି ମାରିଲ ? ॥୩୫୬॥ ଚୌପାଈ '—ହେ ବତ୍ସ ! ମୁଁ ନିଚ୍ଛା ଯାଉଛି । ମୁନିଙ୍କ ପ୍ରସାଦରୁ ଈଶ୍ୱର ତୁମର ବହୁତ ବିପଦ ଟାଳି ଦେଇଛନ୍ତି । ଭାଇ ଦୁହେଁ ଯଜ୍ଞ ରକ୍ଷା କରି ଗୁରୁଙ୍କ ପ୍ରସାଦରୁ ସମସ୍ତ ବିଦ୍ୟା ଲାଭ କଲ ॥ ୧ ॥ ଚରଣଧୂଳି ଲାଗିଲାମାତ୍ରେ ମୁନିପତ୍ନୀ ଅହଲ୍ୟା ତରିଗଲେ । ସମଗ୍ର ଭୁବନରେ ଏହି କୀର୍ତ୍ତି ପୂର୍ଣ୍ଣ ଭାବରେ ପରିବ୍ୟାପ୍ତ ହୋଇଯାଇଛି । କଚ୍ଛପ-ପୃଷ୍ଠ, ବଜ୍ର ଏବଂ ପର୍ବତରୁ ମଧ୍ୟ କଠୋରତର ଶିବଧନୁକୁ ସମସ୍ତ ରାଜାଙ୍କ ସମ୍ମୁଖରେ ତୁମେ ଭାଙ୍ଗି

ରାମ ପ୍ରତୋଷୀଁ ମାତୁ ସବ କହି ବିନୀତ ବର ବୈନ ।
ସୁମିରି ସଂଭୁ ଗୁରୁ ବିପ୍ର ପଦ କିଏ ନୀଦବସ ନୈନ ॥୩୫୭॥

ନୀଦଉଁ ବଦନ ସୋହ ସୁଠି ଲୋନା । ମନହୁଁ ସାଁଝ ସରସୀରୁହ ସୋନା ॥
ଘର ଘର କରହିଁ ଜାଗରନ ନାରୀଁ । ଦେହିଁ ପରସପର ମଂଗଲ ଗାରୀଁ ॥୧॥
ପୁରୀ ବିରାଜତି ରାଜତି ରଜନୀ । ରାନୀଁ କହହିଁ ବିଲୋକହୁ ସଜନୀ ॥
ସୁନ୍ଦରି ବଧୂନ୍ହ ସାସୁ ଲୈ ସୋଈଁ । ଫନିକନ୍ହ ଜନୁ ସିରମନି ଉର ଗୋଈଁ ॥୨॥
ପ୍ରାତ ପୁନୀତ କାଲ ପ୍ରଭୁ ଜାଗେ । ଅରୁନଚୂଡ ବର ବୋଲନ ଲାଗେ ॥
ବଂଦି ମାଗଧନ୍ହି ଗୁନଗନ ଗାଏ । ପୁରଜନ ଦ୍ୱାର ଜୋହାରନ ଆଏ ॥୩॥

---

ରାମ ଭକ୍ତି ମୃଦୁ ବିନୀତ ବଚନ ମାତାଙ୍କୁ ପରିତୋଷିଲେ ।
ସ୍ମରି ସଦାଶିବ ଗୁରୁ ବିପ୍ରପଦ ନିଦ୍ରା ଆସକ୍ତ ହୋଇଲେ ॥୩୫୭॥

ଶୋଭଇ ନିଦ୍ରିତ ରଘୁବର ବଦନ କୋମଳ । କି ଅବା ମୁଦ୍ରିତ ସନ୍ଧ୍ୟାକାଳୀନ କମଳ ॥
ପ୍ରତ୍ୟେକ ଗୃହେ କରନ୍ତି ଜାଗରଣ ବାଳୀ । ଦେଇଣ ପରସ୍ପରଙ୍କୁ ସୁମଙ୍ଗଳ ଗାଳି ॥୧॥
ପୁରୀ ବିରାଜଇ, ଅତି ରାଜଇ ରଜନୀ । ରାଣୀ କହନ୍ତି, ସୌନ୍ଦର୍ଯ୍ୟ ବିଲୋକ, ସଜନୀ ॥
ଶାଶୁଏ ଶୋଇଲେ ଘେନି ବଧୂ ସୁନ୍ଦରୀଙ୍କୁ । ଫଣୀ ଯେସନେ ଲୁଚାଇ ହୃଦୟେ ମଣିକୁ ॥୨॥
ପବିତ୍ର ପ୍ରଭାତେ ପ୍ରଭୁ ଜାଗ୍ରତ ହୋଇଲେ । ସୁନ୍ଦର ଧ୍ୱନିରେ ଯେବେ କୁକ୍କୁଟ ରାବିଲେ ॥
ବନ୍ଦୀ ଗାୟକ ଗାୟନ କଲେ ଗୁଣ ରାଶି । ଜୁହାରିବାକୁ ଆସିଲେ ଦ୍ୱାରେ ପୁରବାସୀ ॥୩॥

---

ହେଲ ' ॥ ୨ ॥ ବିଶ୍ୱବିଜୟ-ଯଶ ଓ ଜାନକୀଙ୍କୁ ଲାଭ କଲ ଏବଂ ସମସ୍ତ ଭାଇ ବିବାହ କରି ଘରକୁ ଫେରି ଆସିଲ । ତୁମର ଏ ସମସ୍ତ କର୍ମ ଅମାନୁଷୀ । କେବଳ ବିଶ୍ୱାମିତ୍ରଙ୍କ କୃପାରୁ ତୁମେ ଏ ସବୁ ସାଧନ କରିପାରିଛ ॥୩॥ ହେ ବତ୍ସ ! ତୁମର ଚନ୍ଦ୍ରବଦନ ଦର୍ଶନ କରି ଜଗତରେ ଆମର ଜନ୍ମଗ୍ରହଣ ସଫଳ ହେଲା ବୋଲି ଆମ୍ଭେମାନେ ମନେ କରୁଛୁ । ତୁମର ଦର୍ଶନ ବିନା ଯେଉଁସବୁ ଦିନ ଏଠି କଟିଯାଇଛି, ସେ ସବୁକୁ ବିଧାତା ଗଣନାରେ ନ ଆଣନ୍ତୁ । ଅର୍ଥାତ୍ ଆୟୁଷ ସହିତ ସେ ସବୁ ସାମିଲ ନ କରନ୍ତୁ ॥ ୪ ॥ ଦୋହା :— ଶ୍ରୀରାମଚନ୍ଦ୍ର ସବିନୟ ଉତ୍ତମ ବଚନ କହି ମାତାମାନଙ୍କୁ ସନ୍ତୁଷ୍ଟ କଲେ । ପୁଣି ଶିବ, ଗୁରୁ ଓ ବ୍ରାହ୍ମଣମାନଙ୍କ ଚରଣ ସ୍ମରଣ କରି ନିଦ୍ରାରେ ଆସକ୍ତ ହେଲେ ॥ ୩୫୭ ॥ ଚୌପାଈ —ନିଦ୍ରାରେ ମଧ୍ୟ ତାଙ୍କର ସୁନ୍ଦର ମୁଖ ଏପରି ଶୋଭିତ ହେଉଥିଲା, ସତେ ଯେପରି ସନ୍ଧ୍ୟାକାଳରେ ମୁଦ୍ରିତ କମଳ ସୁଶୋଭିତ ହେଉଛି କି ! ନାରୀମାନେ ଗୃହେ ଗୃହେ ଜାଗରଣ କରୁଥା'ନ୍ତି ଏବଂ ପରସ୍ପର ମଧ୍ୟରେ ମଙ୍ଗଳମୟୀ ଗାଳି ଆଦାନ-ପ୍ରଦାନ କରୁଥା'ନ୍ତି ॥୧॥ ରାଣୀମାନେ କହୁଥାନ୍ତି, "ହେ ସଜନି ! ଦେଖ, ଆଜି ରାତ୍ରିର କିପରି ଶୋଭା, ଯାହା ଯୋଗେ ଅଯୋଧ୍ୟାପୁରୀ ବିଶେଷ ଶୋଭା ପାଉଅଛି ।" ଶାଶୁମାନେ ସୁନ୍ଦରୀ ବଧୂମାନଙ୍କୁ ଧରି ଶୋଇଲେ । ସତେ ଯେପରି ଫଣୀମାନେ ଶିରୋମଣି ଗୁଡ଼ିକୁ ହୃଦୟରେ ଲୁଚାଇ ରଖିଲେ କି ! ॥ ୨ ॥ ପ୍ରାତଃ କାଳରେ ପବିତ୍ର ବ୍ରାହ୍ମ ମୁହୂର୍ତ୍ତରେ ପ୍ରଭୁ ଜାଗ୍ରତ

ବଂଦି ବିପ୍ର ସୁର ଗୁର ପିତୁ ମାତା । ପାଇ ଅସୀସ ମୁଦିତ ସବ ଭ୍ରାତା ॥
ଜନନିନ୍ହ ସାଦର ବଦନ ନିହାରେ । ଭୂପତି ସଂଗ ଦ୍ୱାର ପଗୁ ଧାରେ ॥୪॥
କୀନ୍ହି ସୌଚ ସବ ସହଜ ସୁଚି ସରିତ ପୁନୀତ ନହାଇ ।
ପ୍ରାତକ୍ରିୟା କରି ତାତ ପହିଁ ଆଏ ଚାରିଉ ଭାଇ ॥୩୫୮॥

## ନବାହ୍ନପାରାୟଣ, ତୃତୀୟ ବିଶ୍ରାମ

ଭୂପ ବିଲୋକି ଲିଏ ଉର ଲାଈ । ବୈଠେ ହରଷି ରଜାୟସୁ ପାଈ ॥
ଦେଖି ରାମୁ ସବ ସଭା ଜୁଡ଼ାନୀ । ଲୋଚନ ଲାଭ ଅବଧି ଅନୁମାନୀ ॥୧॥
ପୁନି ବସିଷ୍ଟୁ ମୁନି କୌସିକୁ ଆଏ । ସୁଭଗ ଆସନନ୍ହି ମୁନି ବୈଠାଏ ॥
ସୁତନ୍ହ ସମେତ ପୂଜି ପଦ ଲାଗେ । ନିରଖି ରାମୁ ଦୋଉ ଗୁର ଅନୁରାଗେ ॥୨॥

---

ବନ୍ଦି ବିପ୍ର ସୁର ଗୁରୁ ପୂଜ୍ୟ ପିତା ମାତା । ଆଶିଷ ପାଇ ଆନନ୍ଦ ହେଲେ ସବୁ ଭ୍ରାତା ॥
ସାଦରେ ଜନନୀ ସର୍ବେ ମୁଖ ନିରେଖନ୍ତି । ଦ୍ୱାରେ ବିଜେ କଲେ ସଙ୍ଗେ ଘେନିଣ ଭୂପତି ॥୪॥
ସହଜେ ପବିତ୍ର ହୋଇ ଶୁଦ୍ଧପୂତ ସରଯୂରେ କରି ସ୍ନାନ ।
ପ୍ରାତଃ କ୍ରିୟା ସାରି ବିଜେ କଲେ ଚାରି ଭାଇ ପିତା ସନ୍ନିଧାନ ॥୩୫୮॥
ଭୂପତି ବିଲୋକି ନେଲେ ହୃଦୟେ ଲଗାଇ । ବସିଲେ ସୁଖେ ନୃପଙ୍କ ଅନୁମତି ପାଇ ॥
ନିରେଖି ରାମଙ୍କୁ ତୃପ୍ତ ହେଲେ ସଭ୍ୟବୃନ୍ଦେ । ନୟନ ଲାଭ ଅବଧି ଅନୁମାନି ହୃଦେ ॥୧॥
ଆସିଲେ ବଶିଷ୍ଠ ମୁନି କୌଶିକ ଆଦର । ବସାଇଲେ ନୃପ ଦେଇ ଆସନ ସୁନ୍ଦର ॥
ସୁତଙ୍କ ସହ ପୂଜିଲେ ପଦରେ ପଡ଼ିଣ । ସୁଖୀ ହେଲେ ବେନି ଗୁରୁ ରାମଙ୍କୁ ଦେଖିଣ ॥୨॥

---

ହେଲେ । କୁକ୍କୁଟମାନେ ସୁନ୍ଦର ଧ୍ୱନିରେ ରାବିବାକୁ ଲାଗିଲେ । ଭାଟ ଓ ମାଗଧମାନେ ଗୁଣଗାନ କଲେ ଏବଂ ନଗରବାସୀମାନେ ଜୁହାର କରିବାକୁ ଦ୍ୱାର ନିକଟକୁ ଆସିଲେ ॥୩॥ ସମସ୍ତ ଭାଇ ବ୍ରାହ୍ମଣ ଓ ଦେବତାବୃନ୍ଦ ତଥା ଗୁରୁ, ପିତା ଓ ମାତାମାନଙ୍କୁ ବନ୍ଦନା କଲେ ଏବଂ ଆଶୀର୍ବାଦ ପାଇ ପ୍ରସନ୍ନ ହେଲେ । ମାତାମାନେ ସେମାନଙ୍କ ମୁଖକୁ ଆଦରର ସହିତ ଅବଲୋକନ କଲେ । ତତ୍ପରେ ସେମାନେ ସମସ୍ତେ ରାଜାଙ୍କ ସହିତ ଦ୍ୱାରରେ ବିଜେ କଲେ ॥ ୪ ॥ ଦୋହା ।—ସ୍ୱଭାବତଃ ଶୁଚିବନ୍ତ ଚାରିଭାଇ ଶୌଚାଦି କର୍ମ ସମ୍ପାଦନ କରି ପବିତ୍ର ସରଯୂନଦୀରେ ସ୍ନାନ କଲେ ଏବଂ ପ୍ରାତଃ କ୍ରିୟା (ସନ୍ଧ୍ୟା-ବନ୍ଦନାଦି) ଶେଷ କରି ସେମାନେ ପିତାଙ୍କ ନିକଟକୁ ଆସିଲେ ॥୩୫୮॥ ଚୌପାଇ:—ରାଜା ସେମାନଙ୍କୁ ଦେଖିବା ମାତ୍ରେ ହୃଦୟରେ ଆଲିଙ୍ଗନ କରି ନେଲେ । ତଦନନ୍ତର ସେମାନେ ଆଜ୍ଞା ପାଇ ଆନନ୍ଦ ମନରେ ବସିଗଲେ । ଶ୍ରୀରାମଚନ୍ଦ୍ରଙ୍କୁ ଦର୍ଶନ କରି ନୟନଲାଭର ଏହି ସୀମା ବୋଲି ହୃଦୟରେ ଅନୁମାନ କରି ସମଗ୍ର ସଭା ଶୀତଳ ହେଲା ॥ ୧ ॥ ତତ୍ପରେ ମୁନି ବଶିଷ୍ଠ ଓ ବିଶ୍ୱାମିତ୍ର ଆସିଲେ । ରାଜା ସେମାନଙ୍କୁ ସୁନ୍ଦର ଆସନ ଉପରେ ବସାଇଲେ ଏବଂ ପୁତ୍ରଗଣଙ୍କ ସମେତ ସେମାନଙ୍କୁ ପୂଜା କରି ଚରଣରେ ପଡ଼ିଲେ । ଗୁରୁ ଦୁହେଁ

କହହିଁ ବସିଷ୍ଟୁ ଧରମ ଇତିହାସା । ସୁନହିଁ ମହୀସୁ ସହିତ ରନିବାସା ॥
ମୁନି ମନ ଅଗମ ଗାଧିସୁତ କରନୀ । ମୁଦିତ ବସିଷ୍ଟ ବିପୁଲ ବିଧି ବରନୀ ॥୩॥
ବୋଲେ ବାମଦେଉ ସବ ସାଁଚୀ । କୀରତି କଲିତ ଲୋକ ତିହୁଁ ମାଚୀ ॥
ସୁନି ଆନଂଦୁ ଭୟଉ ସବ କାହୂ । ରାମ ଲଖନ ଉର ଅଧିକ ଉଛାହୂ ॥୪॥

ମଂଗଲ ମୋଦ ଉଛାହ ନିତ ଜାହିଁ ଦିବସ ଏହି ଭାଁତି ।
ଉମଗୀ ଅଓ୍ୱଧ ଅନଂଦ ଭରି ଅଧିକ ଅଧିକ ଅଧିକାତି ॥୩୫୯॥

ସୁଦିନ ସୋଧି କଲ କଂକନ ଛୋରେ । ମଂଗଲ ମୋଦ ବିନୋଦ ନ ଥୋରେ ॥
ନିତ ନବ ସୁଖୁ ସୁର ଦେଖି ସିହାହୀଁ । ଅଓ୍ୱଧ ଜନ୍ମ ଜାଚହିଁ ବିଧି ପାହୀଁ ॥୧॥
ବିସ୍ୱାମିତ୍ରୁ ଚଲନ ନିତ ଚହହୀଁ । ରାମ ସପ୍ରେମ ବିନୟ ବସ ରହହୀଁ ॥
ଦିନ ଦିନ ସୟଗୁନ ଭୂପତି ଭାଉ । ଦେଖି ସରାହ ମହାମୁନିରାଉ ॥୨॥

---

କହନ୍ତି ଗୁରୁ ବଶିଷ୍ଠ ଧର୍ମ ଇତିହାସ । ଶୁଣନ୍ତି ରାଣୀଙ୍କ ସହ ନୃପ ସଉଲ୍ଲାସ ॥
ମୁନିଙ୍କ ମନ ଅଗମ୍ୟ କୌଶିକଙ୍କ କାର୍ଯ୍ୟ । ନାନା ପ୍ରକାରେ ବର୍ଣ୍ଣନ୍ତି ପ୍ରେମେ ମୁନିରାଜ ॥୩॥
ବୋଲେ ବାମଦେବ ସତ୍ୟ ଅଟଇ ସକଳ । ପ୍ରଖ୍ୟାତ ଭୁବନ ତିନେ କୀର୍ତ୍ତି ସମୁଜ୍ଜ୍ୱଳ ॥
ଶ୍ରବଣ କରି ସମସ୍ତେ ହେଲେ ପ୍ରମୋଦିତ । ରାମ ଲକ୍ଷ୍ମଣ ଅଧିକ ହୃଦେ ଉତ୍ସାହିତ ॥୪॥

ନିତ୍ୟ ଶୁଭ ହର୍ଷ ଉତ୍ସାହେ ଦିବସ ଅତିବାହିତ ହୁଅଇ ।
ଅଧିକୁ ଅଧିକ-ତର ଆନନ୍ଦରେ ପୁର ପୁରି ଉଚ୍ଛୁଳଇ ॥୩୫୯॥

ଫିଟାଇଲେ କର-ସୂତ୍ର ସୁଦିନ ବିଚାରି । ମଙ୍ଗଳ ମୋଦ ବିନୋଦ ବୃଦ୍ଧି ହୁଏ ଭାରି ॥
ନିତ୍ୟ ନବ ସୁଖ ଦେଖି ସୁରେ ଲାଳସନ୍ତି । ଅଯୋଧାରେ ଜନ୍ମିବାକୁ ବିଧିକୁ ଯାଚନ୍ତି ॥୧॥
ବିଶ୍ୱାମିତ୍ର ନିତ୍ୟ ଯିବା ନିମନ୍ତେ ଇଚ୍ଛନ୍ତି । ରାମଙ୍କ ବିନୟ ପ୍ରେମେ ଯାଇ ନ ପାରନ୍ତି ॥
ଦିନୁଦିନ ଶତଗୁଣ ଭାବ ନୃପଙ୍କର । ଦେଖି ବଡାଇ କରନ୍ତି ମହାମୁନୀଶ୍ୱର ॥୨॥

---

ଶ୍ରୀରାମଙ୍କୁ ଦେଖି ପ୍ରେମ-ମୁଗ୍ଧ ହୋଇ ପଡିଲେ ॥ ୨ ॥ ବଶିଷ୍ଠ ଧର୍ମ-ଇତିହାସ କହୁ ଚାଲିଥା'ନ୍ତି । ରାଣୀମାନଙ୍କ ସମେତ ରାଜା ତାହା ଶୁଣୁଥା'ନ୍ତି । ବିଶ୍ୱାମିତ୍ରଙ୍କ କୃତିତ୍ୱ ମୁନିମାନଙ୍କ ମନର ମଧ୍ୟ ଅଗମ୍ୟ । ବଶିଷ୍ଠ ଆନନ୍ଦିତ ହୋଇ ବିଶ୍ୱାମିତ୍ରଙ୍କର କାର୍ଯ୍ୟକୁ ବର୍ଣ୍ଣନା କଲେ ॥ ୩ ॥ ବାମଦେବ କହିଲେ—"ଏ ସବୁ କଥା ସତ୍ୟ । ବିଶ୍ୱାମିତ୍ରଙ୍କର କଳିତ କୀର୍ତ୍ତି ତିନିଲୋକରେ ପରିବ୍ୟାପ୍ତ ।" ଶ୍ରୀରାମଚନ୍ଦ୍ରଙ୍କ ହୃଦୟରେ ଅଧିକ ଉତ୍ସାହ ଭରିଗଲା ॥ ୪ ॥ ଦୋହା '—ନିତ୍ୟ ମଙ୍ଗଳ ଓ ଆନନ୍ଦମୟ ନୂତନ ଉତ୍ସବ ଅନୁଷ୍ଠିତ ହେଉଥାଏ । ଏହିପରି ଭାବରେ ଆନନ୍ଦରେ ଦିନ ଅତିବାହିତ ହୋଇଯାଉଥାଏ । ଅଯୋଧ୍ୟାପୁରୀ ଆନନ୍ଦରେ ପୂରି ଉଚ୍ଛୁଳି ପଡୁଥାଏ । ଆନନ୍ଦ ଅଧିକରୁ ଅଧିକତର ବଢି ଚାଲିଥାଏ ॥୩୫୯॥ ଚୌପାଇ —ସୁରେଧା ଶୁଭ ଦିନ ସ୍ଥିର କରି କରସୂତ୍ର ଓ କଙ୍କଣ ଫିଟାଇଲେ । ମଙ୍ଗଳ, ଆନନ୍ଦ ଓ ବିନୋଦ କିଛି କମ ହେଉନାହିଁ । ଏହିପରି ଭାବରେ ନିତ୍ୟ ନୂତନ ସୁଖ ଦେଖି ଦେବତାମାନେ ମଧ୍ୟ ଈର୍ଷ୍ୟା କରୁଥା'ନ୍ତି ଏବଂ ଅଯୋଧ୍ୟାରେ ଜନ୍ମଲାଭ କରିବା ନିମନ୍ତେ

ମାଗତ ବିଦା ରାଉ ଅନୁରାଗେ । ସୁତନ୍ହ ସମେତ ଠାଢ଼ ଭେ ଆଗେ ॥
ନାଥ ସକଲ ସଂପଦା ତୁହ୍ମାରୀ । ମୈଁ ସେବକୁ ସମେତ ସୁତ ନାରୀ ॥୩॥
କରବ ସଦା ଲରିକନ୍ହ ପର ଛୋହୂ । ଦରସନୁ ଦେତ ରହବ ମୁନି ମୋହୂ ॥
ଅସ କହି ରାଉ ସହିତ ସୁତ ରାନୀ । ପରେଉ ଚରନ ମୁଖ ଆୱ ନ ବାନୀ ॥୪॥
ଦୀହ୍ନି ଅସୀସ ବିପ୍ର ବହୁ ଭାଁତୀ । ଚଲେ ନ ପ୍ରୀତି ରୀତି କହି ଜାତୀ ॥
ରାମୁ ସପ୍ରେମ ସଂଗ ସବ ଭାଈ । ଆୟସୁ ପାଇ ଫିରେ ପହୁଁଚାଈ ॥୫॥

ରାମ ରୂପୁ ଭୂପତି ଭଗତି ବ୍ୟାହୁ ଉଛାହୁ ଅନଂଦୁ ।
ଜାତ ସରାହତ ମନହିଁ ମନ ମୁଦିତ ଗାଧିକୁଲଚଂଦୁ ॥୩୬୦॥

ବାମଦେବ ରଘୁକୁଲ ଗୁର ଜ୍ଞାନୀ । ବହୁରି ଗାଧିସୁତ କଥା ବଖାନୀ ॥
ସୁନି ମୁନି ସୁଜସୁ ମନହିଁ ମନ ରାଉ । ବରନତ ଆପନ ପୁନ୍ୟ ପ୍ରଭାଉ ॥୧॥

---

ମାଗନ୍ତେ ବିଦାୟ ମହୀପାଳ ଅନୁରାଗେ । ସୁତଙ୍କ ସଙ୍ଗରେ ଠିଆ ହେଲେ ଆଗେ ॥
ଏ ସକଳ ମୁନିନାଥ ! ସମ୍ପଦ ତୁମର । ପୁତ୍ର ନାରୀ ସହ ମୁହିଁ ଅଟେ ଅନୁଚର ॥୩॥
ଶିଶୁଙ୍କ ଉପରେ ନିତ୍ୟ ସ୍ନେହ କରୁଥିବ । ମୋତେ ମୁନିବର ଦରଶନ ଦେଉଥିବ ॥
ଏହା କହି ସୁତ ରାଣୀ ସହିତ ରାଜନ । ପଡ଼ିଲେ ଚରଣେ, ମୁଖେ ନ ସ୍ଫୁରେ ବଚନ ॥୪॥
ନାନା ପ୍ରକାର ଆଶିଷ ଦେଇ ଦ୍ୱିଜମଣି । ଗମିଲେ, ପ୍ରୀତି ନିୟମ ନ ହୁଅଇ ବର୍ଣ୍ଣି ॥
ରାମ ସପ୍ରେମେ ସଙ୍ଗରେ ଭାଇଙ୍କୁ ନେଇଣ । ଫେରିଲେ ମେଲାଣି କରି ଆଦେଶ ପାଇଣ ॥୫॥

ରାମ ରୂପ ଅତି ଭୂପତିଙ୍କ ଭକ୍ତି ବିବାହୋତ୍ସବ ଆନନ୍ଦ ।
ନିଜ ମନ ମଧ୍ୟେ ପ୍ରଶଂସି ଯାଆନ୍ତି ସୁଖେ ଗାଧିକୁଳଚନ୍ଦ୍ର ॥୩୬୦॥

ବାମଦେବ ଋଷି, ରଘୁକୁଳ-ଗୁରୁ ଜ୍ଞାନୀ । ପୁଣି ଗାଧି-ସୁତ କଥା କହନ୍ତି ବଖାଣି ॥
ଶୁଣି ମୁନି ଯଶ ମନେ ମନେ ନରପତି । ନିଜ ପୁଣ୍ୟ ପରାକ୍ରମ ବର୍ଣ୍ଣନ କରନ୍ତି ॥୧॥

---

ବିଧାତାଙ୍କୁ ଭିକ୍ଷା କରୁଆନ୍ତି ॥ ୧ ॥ ବିଶ୍ୱାମିତ୍ର ପ୍ରତିଦିନ ତାଙ୍କ ଆଶ୍ରମକୁ ଯିବାକୁ ଚାହୁଁଆନ୍ତି, କିନ୍ତୁ ରାମଚନ୍ଦ୍ରଙ୍କ ସ୍ନେହ ଓ ବିନୟବଶତଃ ଅଟକି ଯାଉଆନ୍ତି । ଦିନକୁ ଦିନ ରାଜାଙ୍କର ଶହେ ଗୁଣ ଭାବ ଦେଖି ମହାମୁନିରାଜ ବିଶ୍ୱାମିତ୍ର ତାଙ୍କୁ ପ୍ରଶଂସା କରୁଆନ୍ତି ॥ ୨ ॥ ପରିଶେଷରେ ଦିନେ ବିଶ୍ୱାମିତ୍ର ବିଦାୟ ମାଗିଲେ । ରାଜା ପ୍ରେମମଗ୍ନ ହୋଇ ପୁତ୍ରଗଣଙ୍କ ସହିତ ଆଗରେ ଠିଆ ହେଲେ ଏବଂ କହିଲେ, "ହେ ନାଥ ! ଏ ସାରା ସମ୍ପତ୍ତି ଆପଣଙ୍କର । ମୁଁ ତ ସ୍ତ୍ରୀପୁତ୍ର ସମେତ ଆପଣଙ୍କର ସେବକ । ॥ ୩ ॥ ହେ ମୁନି ! ପୁତ୍ରମାନଙ୍କ ଉପରେ ସର୍ବଦା ସ୍ନେହ କରୁଥିବେ ଏବଂ ମୋତେ ମଧ୍ୟ ଦର୍ଶନ ଦେଉଥିବେ ।" ଏହିପରି କହି ପୁତ୍ର ଓ ରାଣୀମାନଙ୍କ ସହିତ ରାଜା ଦଶରଥ ବିଶ୍ୱାମିତ୍ରଙ୍କ ଚରଣରେ ପଡ଼ିଲେ । ପ୍ରେମାଧିକ୍ୟ ହେତୁ ତାଙ୍କ ମୁହଁରୁ କଥା ବାହାରୁ ନ ଥାଏ ॥ ୪ ॥ ବ୍ରାହ୍ମଣ ବିଶ୍ୱାମିତ୍ର ବହୁବିଧ ଆଶୀର୍ବାଦ ଦେଲେ ଏବଂ ନିଜ ଆଶ୍ରମକୁ ଫେରି ଗଲେ । ପ୍ରୀତିର ରୀତି କହି ହୁଏନାହିଁ । ସମସ୍ତ ଭାଇଙ୍କୁ ସଙ୍ଗରେ ନେଇ ଶ୍ରୀରାମ ପ୍ରେମରେ ତାଙ୍କୁ

ବହୁରି ଲୋଗ ରଜାୟସୁ ଭୟଊ । ସୁତନ୍ହ ସମେତ ନୃପତି ଗୃହଁ ଗୟଊ ॥
ଜହଁ ତହଁ ରାମ ବ୍ୟାହୁ ସବୁ ଗାୱା । ସୁଜସୁ ପୁନୀତ ଲୋକ ତିହୁଁ ଛାୱା ॥୨॥
ଆଏ ବ୍ୟାହି ରାମୁ ଘର ଜବ ତେଁ । ବସଇ ଅନଂଦ ଅୱଧ ସବ ତବ ତେଁ ॥
ପ୍ରଭୁ ବିବାହଁ ଜସ ଭୟଉ ଉଛାହୂ । ସକହିଁ ନ ବରନି ଗିରା ଅହିନାହୂ ॥୩॥
କବିକୁଲ ଜୀବନୁ ପାବନ ଜାନୀ । ରାମ ସୀୟ ଜସୁ ମଂଗଲ ଖାନୀ ॥
ତେହି ତେ ମୈଁ କଛୁ କହା ବଖାନୀ । କରନ ପୁନୀତ ହେତୁ ନିଜ ବାନୀ ॥୪॥

ନିଜ ଗିରା ପାବନି କରନ କାରନ ରାମ ଜସୁ ତୁଲସୀଁ କହ୍ୟୋ ।
ରଘୁବୀର ଚରିତ ଅପାର ବାରିଧି ପାରୁ କବି କୌନେଁ ଲହ୍ୟୋ ॥
ଉପବୀତ ବ୍ୟାହ ଉଛାହ ମଂଗଲ ସୁନି ଜେ ସାଦର ଗାୱହୀଁ ।
ବୈଦେହି ରାମ ପ୍ରସାଦ ତେ ଜନ ସର୍ବଦା ସୁଖୁ ପାୱହୀଁ ॥

---

ରାଜାଙ୍କ ଆଜ୍ଞା ହୁଅନ୍ତେ ଲୋକେ ବାହୁଡ଼ିଲେ । ସୁତଙ୍କ ସହିତ ନୃପ ଭବନେ ଆସିଲେ ॥
ଯହିଁ ତହିଁ ସର୍ବେ ରାମ ବିବାହ ଗାଆନ୍ତି । ବ୍ୟାପିଲା ଭୁବନ ତ୍ରୟେ ପବିତ୍ର ସୁଖ୍ୟାତି ॥୨॥
ବିଭା ହୋଇ ରାମ ଗୃହେ ଆସିଲେ ଯେ ଦିନୁ । ସୁଖ ସର୍ବେ ଅଯୋଧ୍ୟାରେ ରହିଲେ ସେ ଦିନୁ ॥
ପ୍ରଭୁଙ୍କ ବିବାହେ ହେଲା ଉତ୍ସାହ ଯେମନ୍ତ । ଶେଷ ସରସ୍ୱତୀ କହି ନ ପାରିବେ ବ୍ୟକ୍ତ ॥୩॥
କବି-କୁଳ-ଜୀବନର ବିଚାରି ପାବନ । ସୀତା ରାମଙ୍କ ସୁଯଶ ମଙ୍ଗଳ ସଦନ ॥
ସେହି କାରଣରୁ ମୁଁ କିଛି କହଇ ବଖାଣି । ପବିତ୍ର କରିବା ହେତୁ ଆପଣାର ବାଣୀ ॥୪॥

ନିଜ ବାଣୀ ପାବନ କରିବା ପାଇଁ ରାମ ସୁଯଶ ତୁଳସୀ ଭଣଇ ।
ରଘୁବୀର ଅପାର ଚରିତ-ପାରାବାର-ପାର କେଉଁ କବି ଲଭଇ ।
ବ୍ରତ ବିବାହ ସୁବର୍ଣ୍ଣନ, ଶୁଣି ଯେ ସାଦର ଗାୟନ
କରିବ, ସୀତାରାମ ପ୍ରସାଦେ ଅବିରାମ ଲଭିବ ସୁଖ ସେହି ଜନ ॥

---

ମେଲାଣି ଦେଲେ ଏବଂ ଆଜ୍ଞା ପାଇ ଲେଉଟିଲେ ॥ ୫ ॥ ଦୋହା —ଗାଧି-କୁଳଚନ୍ଦ୍ର ବିଶ୍ୱାମିତ୍ର ବଡ଼ ଆନନ୍ଦରେ ଶ୍ରୀରାମଙ୍କ ରୂପ, ରାଜା ଦଶରଥଙ୍କ ଭକ୍ତି, ଚାରି ଭାଇଙ୍କ ବିବାହ ଏବଂ ସମସ୍ତ ଉତ୍ସାହ-ଆନନ୍ଦକୁ ମନେ ମନେ ପ୍ରଶଂସା କରି ଯାଉଥା'ନ୍ତି ॥ ୩୬୦ ॥ ଚୌପାଇ —ବାମଦେବ ଓ ରଘୁକୁଳଗୁରୁ ଜ୍ଞାନୀ ବଶିଷ୍ଠ ପୁଣି ବିଶ୍ୱାମିତ୍ରଙ୍କ କଥା ବର୍ଣ୍ଣନା କରି କହିଲେ । ମୁନିଙ୍କ ସୁଯଶ ଶୁଣି ରାଜା ମନେ ମନେ ଆପଣା ପୁଣ୍ୟର ପ୍ରଭାବ ବଖାଣିବାକୁ ଲାଗିଲେ ॥ ୧ ॥ ରାଜାଙ୍କ ଆଜ୍ଞା ହୁଅନ୍ତେ, ଲୋକମାନେ ଆପଣା ଅପଣା ଘରକୁ ବାହୁଡ଼ିଲେ । ରାଜା ଦଶରଥ ମଧ୍ୟ ପୁତ୍ରମାନଙ୍କ ସହିତ ମହଲ ମଧ୍ୟକୁ ଗଲେ । ବିଭିନ୍ନ ସ୍ଥାନରେ ସମସ୍ତେ ରାମଙ୍କ ବିବାହଗାଥା ଗାଉଥା'ନ୍ତି । ଶ୍ରୀରାମଙ୍କ ପବିତ୍ର ସୁଯଶ ତ୍ରିଭୁବନରେ ପରିବ୍ୟାପ୍ତ ହୋଇଗଲା ॥ ୨ ॥ ଯେଉଁ ଦିନଠାରୁ ଶ୍ରୀରାମ ବିବାହ କରି ଆସିଲେ, ସେହି ଦିନଠାରୁ ସବୁ ପ୍ରକାର ଆନନ୍ଦ ଅଯୋଧ୍ୟାରେ ଆସି ବାସ କରିବାକୁ ଲାଗିଲା । ପ୍ରଭୁଙ୍କ ବିବାହରେ ଯେଉଁ ଆନନ୍ଦ-ଉତ୍ସାହ ହେଲା, ତାହାକୁ ସରସ୍ୱତୀ ଓ

ସିୟ ରଘୁବୀର ବିବାହୁ ଜେ ସପ୍ରେମ ଗାୱହିଁ ସୁନହିଁ ।
ତିନ୍ହ କହୁଁ ସଦା ଉଛାହୁ ମଂଗଲାୟତନ ରାମ ଜସୁ ॥୩୬୧॥

## ମାସପାରାୟଣ, ଦ୍ୱାଦଶ ବିଶ୍ରାମ

ଇତି ଶ୍ରୀମଦ୍ରାମଚରିତମାନସେ ସକଲ କଲିକଲୁଷବିଧ୍ୱଂସନେ
ପ୍ରଥମଃ ସୋପାନଃ ସମାପ୍ତଃ ॥

---

ସୀତା ରଘୁବୀର ବିବାହ ଯେ ଜନ ପ୍ରେମେ ଗାଇବେ ଶୁଣିବେ ।
ରାମଙ୍କ ସୁଯଶ ମଙ୍ଗଳ-ସଦନ, ସଦା ସେ ସୁଖ ଲଭିବେ ॥୩୬୧॥

* * * * *

ଶ୍ରୀ ଗୁରୁ ପଦ୍ମର ବନ୍ଦି ବାରମ୍ବାର ସ୍ମରି ବଇଦେହୀ ରାମ ।
ତୁଳସୀ ପ୍ରସାଦେ ଭାଷା ଅନୁବାଦେ ଭଣେ ଦାସ ବଳରାମ ॥
ନାହିଁ ବିଦ୍ୟାବଳ ବୁଦ୍ଧି କଉଶଳ, ନାହିଁ ମୋର ଆନ ଗତି ।
ହୋଇବେ ସହାୟ ସୀତା ରଘୁରାୟ ନିଖିଳ ଭୁବନପତି ॥
ଶ୍ରୀରାମ ଚରିତ ମାନସ ପବିତ୍ର ତୁଳସୀ ଦାସ-ରଚିତ ।
ସୁଜନେ ଗାଇବେ ସାଦରେ ଶୁଣିବେ ପ୍ରୀତି ଉତ୍ସାହ ସହିତ ॥
ବିଜ୍ଞ ବୁଦ୍ଧିମାନ ମନେ ଦେବେ ସ୍ଥାନ ନ ଦେବେ ଏ ଦାସେ ଦୋଷ ।
କଥା ପଢି ଶୁଣି ହରି ଯଶ ଗୁଣି ଲଭିବେ ସୁପରିତୋଷ ॥
କରୁଣା-ଜଳଦ ଶରଣ୍ୟ ସୁଖଦ ସୀତା-ରାମ ପଦେ ଆଶ ।
ଶରଣ-ଆପନ୍ନ ଦୀନ ଅକିଞ୍ଚନ ଭଣେ ବଳରାମ ଦାସ ॥

ଇତି ଶ୍ରୀରାମଚରିତମାନସେ ସକଳକଳିକଲୁଷବିଧ୍ୱଂସନେ ପ୍ରଥମ ସୋପାନ ସମାପ୍ତ ।

---

ସର୍ପରାଜ ବାସୁକି ମଧ୍ୟ କହିପାରିବେ ନାହିଁ ॥ ୩ ॥ ଶ୍ରୀରାମଙ୍କ ଯଶକୁ କବିକୁଳଙ୍କ ଜୀବନର ପାବନକାରକ ଓ ମଙ୍ଗଳର ଖଣି ବୋଲି ଜାଣି ଆପଣାର ବାଣୀକୁ ପବିତ୍ର କରିବା ନିମନ୍ତେ ମୁଁ କିଛି ବର୍ଣ୍ଣନା କରି କହିଛି ॥ ୪ ॥ ଛନ୍ଦ —ଆପଣାର ବାଣୀକୁ ପବିତ୍ର କରିବା ନିମନ୍ତେ ତୁଳସୀ ରାମଙ୍କ ଯଶ କହିଛି । ଶ୍ରୀ ରଘୁନାଥଙ୍କ ଚରିତ ଅପାର ସମୁଦ୍ର । କେଉଁ କବି ତାହାର ପାର ପାଇଛି ? ଯେଉଁମାନେ ତାଙ୍କ ଯଜ୍ଞୋପବୀତ ଓ ବିବାହର ମଙ୍ଗଳମୟ ଉତ୍ସବର ବର୍ଣ୍ଣନା ଆଦର ସହିତ ଶୁଣି ଗାଇବେ, ସେହିମାନେ ଜାନକୀ ଓ ରାମଙ୍କ କୃପାରୁ ସଦା ସୁଖ ପାଇବେ ॥ ସୋରଠା —ଶ୍ରୀରାମଚନ୍ଦ୍ରଙ୍କ ଯଶ ମଙ୍ଗଳର ଧାମ । ସୁତରାଂ ଯେଉଁ ଲୋକମାନେ ସୀତାରାମଙ୍କ ବିବାହ-ପ୍ରସଙ୍ଗ ପ୍ରେମ-ପୂର୍ବକ ଗାଇବେ ଓ ଶୁଣିବେ, ସେହିମାନେ ସଦା ଉତ୍ସାହ ହିଁ ଉତ୍ସାହ ଲାଭ କରିବେ ॥ ୩୬୧ ॥

କଳି ଯୁଗର ସମ୍ପୂର୍ଣ୍ଣ ପାପ-ବିଧ୍ୱଂସନକାରୀ ଶ୍ରୀରାମଚରିତ ମାନସର
ପ୍ରଥମ ସୋପାନ ( ବାଳକାଣ୍ଡ ) ସମାପ୍ତ ।

---

ଓଁ

ଶ୍ରୀ ଗଣେଶାୟ ନମଃ

ଶ୍ରୀ ଜାନକୀବଲ୍ଲଭୋ ବିଜୟତେ

ଗୋସ୍ୱାମୀ ତୁଳସୀଦାସକୃତ

# ଶ୍ରୀରାମଚରିତ ମାନସ

## ଦ୍ୱିତୀୟ ସୋପାନ

## ଅଯୋଧ୍ୟାକାଣ୍ଡ

ଯସ୍ୟାଙ୍କେ ଚ ବିଭାତି ଭୂଧରସୁତା ଦେବାପଗା ମସ୍ତକେ ।
ଭାଲେ ବାଲବିଧୁର୍ଗଲେ ଚ ଗରଲଂ ଯସ୍ୟୋରସି ବ୍ୟାଳରାଟ୍ ।
ସୋଽୟଂ ଭୂତିବିଭୂଷଣଃ ସୁରବରଃ ସର୍ବାଧିପଃ ସର୍ବଦା ।
ଶର୍ବଃ ସର୍ବଗତଃ ଶିବଃ ଶଶିନିଭଃ ଶ୍ରୀଶଂକରଃ ପାତୁ ମାମ୍ ॥୧॥

ପ୍ରସନ୍ନତାଂ ଯା ନ ଗତାଭିଷେକତସ୍ତଥା ନ ମମ୍ଲେ ବନବାସଦୁଃଖତଃ ।
ମୁଖାମ୍ବୁଜଶ୍ରୀ ରଘୁନନ୍ଦନସ୍ୟ ମେ ସଦାସ୍ତୁ ସା ମଂଜୁଳ ମଂଗଳପ୍ରଦା ॥୨॥

---

ରାଜନ୍ତି ଯା'ଅଙ୍କେ ମହୀଧର-ସୁତା, ସୁରନଦୀ ଶିର ଉପରେ ।
ଭାଲେ ବାଲଇନ୍ଦୁ, ଗଳାରେ ଗରଳ ଫଣୀନ୍ଦ୍ର, ଯାହାଙ୍କ ବକ୍ଷରେ ।
ସେ ଶିବ । ଶର୍ବ ସର୍ବଗତ ସର୍ବେଶ ।
ବିଭୂତି-ଭୂଷଣ ଶଶାଙ୍କ-ବଦନ ରଖନ୍ତୁ ଶଙ୍କର ସୁରେଶ ॥୧॥

ମୋଦ ଯେ ନ ଲଭେ ଅଭିଷେକ ବାରତାରେ । ମଳିନ ନୁହଇ ବନବାସ ବିପଦରେ ।
ମୁଖ-ପଦ୍ମ ଯେ ରାମଙ୍କ । ସଦା ହେଉ ମୋତେ ମଞ୍ଜୁ ମଙ୍ଗଳ-ଦାୟକ ॥୨॥

---

ଯାହାଙ୍କ କୋଳରେ ହିମାଚଳସୁତା ପାର୍ବତୀ, ମସ୍ତକ ଉପରେ ଗଙ୍ଗା, ଲଲାଟରେ ଦ୍ୱିତୀୟାଚନ୍ଦ୍ର, କଣ୍ଠରେ ହଳାହଳ ବିଷ ଏବଂ ବକ୍ଷସ୍ଥଳରେ ସର୍ପରାଜ ଶେଷଦେବ ସୁଶୋଭିତ, ସେହି ଭସ୍ମ-ବିଭୂଷିତ ଦେବ-ଶ୍ରେଷ୍ଠ, ସର୍ବେଶ୍ୱର, ସଂହାରକର୍ତ୍ତା ( କିମ୍ବା ଭକ୍ତଙ୍କର ପାପ-ନାଶକ ), ସର୍ବବ୍ୟାପକ, କଲ୍ୟାଣ-ରୂପ ଚନ୍ଦ୍ରମା ସମାନ ଶୁଭ୍ରବର୍ଣ୍ଣ ଶ୍ରୀ ଶଙ୍କର ସଦା ମୋତେ ରକ୍ଷା କରନ୍ତୁ ॥ ୧ ॥ ରଘୁକୁଳ-ନନ୍ଦନ ଶ୍ରୀରାମଚନ୍ଦ୍ରଙ୍କ

ନୀଳାମ୍ବୁଜଶ୍ୟାମଳକୋମଳାଙ୍ଗଂ ସୀତାସମାରୋପିତବାମଭାଗମ୍ ।
ପାଣୌ ମହାସାୟକଚାରୁଚାପଂ ନମାମି ରାମଂ ରଘୁବଂଶନାଥମ୍ ॥୩॥

ଶ୍ରୀଗୁରୁ ଚରନ ସରୋଜ ରଜ ନିଜ ମନୁ ମୁକୁରୁ ସୁଧାରି ।
ବରନଉଁ ରଘୁବର ବିମଲ ଜସୁ ଜୋ ଦାୟକୁ ଫଲ ଚାରି ॥
ଜବ ତେଁ ରାମୁ ବ୍ୟାହି ଘର ଆଏ । ନିତ ନବ ମଂଗଲ ମୋଦ ବଧାଏ ॥
ଭୁବନ ଚାରି ଦସ ଭୂଧର ଭାରୀ । ସୁକୃତ ମେଘ ବରଷହିଁ ସୁଖ ବାରୀ ॥୧॥
ରିଧି ସିଧି ସଂପତି ନଦୀଁ ସୁହାଈ । ଉମଗି ଅୱଧ ଅଂବୁଧି କହୁଁ ଆଈ ॥
ମନିଗନ ପୁର ନର ନାରି ସୁଜାତୀ । ସୁଚି ଅମୋଲ ସୁନ୍ଦର ସବ ଭାଁତୀ ॥୨॥
କହି ନ ଜାଇ କଛୁ ନଗର ବିଭୂତୀ । ଜନୁ ଏତନିଅ ବିରଂଚି କରତୂତୀ ॥
ସବ ବିଧି ସବ ପୁର ଲୋଗ ସୁଖାରୀ । ରାମଚନ୍ଦ ମୁଖ ଚଂଦୁ ନିହାରୀ ॥୩॥

---

ନୀଳାମ୍ବୁଜ ସମ ଶ୍ୟାମ ମୃଦୁକଳେବର । ବାମ ଭାଗେ ସ୍ଥିତ ସୀତା ଶୋଭିତ ସୁନ୍ଦର ॥
ଚାରୁ ଚାପ ଶର କରେ । ପ୍ରଣମେ ମୁଁ ରାମ, ରଘୁକୁଳର ଈଶ୍ୱରେ ॥୩॥
ଶ୍ରୀଗୁରୁ ପଦାବ୍ଜ-ରଜେ କରି ନିଜ ମନ-ମୁକୁର ନିର୍ମଳ ।
ବର୍ଣ୍ଣେ ରଘୁବର-ସୁଯଶ ଉଜ୍ଜ୍ୱଳ ଯେ ଦାୟକ ଚାରିଫଳ ॥
ଯେ ଦିନୁ ଆସିଲେ ଗୃହେ ବିଭା ହୋଇ ରାମ । ବଢେ ନିତ୍ୟ ନବାନନ୍ଦ ମଙ୍ଗଳ ଆରାମ ॥
ଚତୁର୍ଦ୍ଦଶ ଲୋକ ଯେଉଁ ମହୀଧର ଭାରୀ । ପୁଣ୍ୟ-ମେଘ ତହିଁ ବରଷନ୍ତି ସୁଖ-ବାରି ॥୧॥
ଋଦ୍ଧି ସିଦ୍ଧି-ସୁସମ୍ପତ୍ତି-ନଦୀ ଲଭି ବୃଦ୍ଧି । ଉଛୁଳି ମିଳିଲେ ଆସି ଅଯୋଧ୍ୟା-ଅମ୍ବୁଧି ॥
ବିପୁଳ ମଣି ସୁଜାତ ପୁର ନାରୀନର । ସକଳ ପ୍ରକାରେ ଶୁଚି ଅମୂଲ୍ୟ ସୁନ୍ଦର ॥୨॥
ନଗର ବିଭୂତି କିଛି କହି ନ ହୁଅଇ । ଏତିକି ବା' ବିଧାତାର କୃତିତ୍ୱ ଅଟଇ ॥
ସର୍ବ ଭାବେ ସୁଖୀ ହେଲେ ପୁରବାସୀ ଜନ । ନିରେଖି ରାମଚନ୍ଦ୍ରଙ୍କ ଚନ୍ଦ୍ରମା ବଦନ ॥୩॥

---

ମୁଖାରବିନ୍ଦର ଯେଉଁ ଶୋଭା ରାଜ୍ୟାଭିଷେକ ହେତୁ ( ରାଜ୍ୟାଭିଷେକ ବାର୍ତ୍ତା ଶୁଣି ) ପ୍ରସନ୍ନତା ଲାଭ କରି ନ ଥିଲା କିମ୍ବା ବନବାସ-ଦୁଃଖରେ ମଳିନ ହୋଇ ନ ଥିଲା, ସେହି ମୁଖ-କମଳର ଛବି ମୋ ନିମନ୍ତେ ସଦା ମଞ୍ଜୁଳ-ମଙ୍ଗଳ-ପ୍ରଦାୟକ ହେଉ ॥ ୨ ॥ ଯାହାଙ୍କ ଅଙ୍ଗ ନୀଳ କମଳ ସମାନ ଶ୍ୟାମଳ ଓ କୋମଳ, ସୀତା ଯାହାଙ୍କର ବାମ ଭାଗରେ ବିରାଜମାନ ଏବଂ ଯାହାଙ୍କ ହସ୍ତରେ ଅମୋଘ ବାଣ ଏବଂ ସୁନ୍ଦର ଧନୁ ବିଦ୍ୟମାନ, ସେହି ରଘୁବଂଶ-ସ୍ୱାମୀ ଶ୍ରୀରାମଚନ୍ଦ୍ରଙ୍କୁ ମୁଁ ନମସ୍କାର କରୁଛି ॥ ୩ ॥ ଦୋହା :— ଶ୍ରୀଗୁରୁଙ୍କ ଚରଣକମଳ-ରଜରେ ଆପଣା ମନରୂପୀ ଦର୍ପଣକୁ ପରିଷ୍କୃତ କରି ଧର୍ମ, ଅର୍ଥ, କାମ, ମୋକ୍ଷ, ଏହି ଚତୁଷ୍ଫଳ-ପ୍ରଦାୟକ ରଘୁନାଥଙ୍କ ବିମଳ ଯଶ ମୁଁ ବର୍ଣ୍ଣନା କରୁଛି ॥ ଚୌପାଈ :—ବିବାହ ପରେ ଯେଉଁ ଦିନ ରାମଚନ୍ଦ୍ର ଘରକୁ ଆସିଲେ, ସେହିଦିନଠାରୁ ଅଯୋଧ୍ୟାରେ ନିତ୍ୟ ନୂତନ ମଙ୍ଗଳାନୁଷ୍ଠାନ କରାଯାଉଥାଏ ଏବଂ ଆନନ୍ଦ-ଅଭିନନ୍ଦନ-ସୂଚକ ବାଦ୍ୟ ବାଜୁଥାଏ । ଚତୁର୍ଦ୍ଦଶଭୁବନ ରୂପୀ ଅତ୍ୟନ୍ତ ବଡ

ମୁଦିତ ମାତୁ ସବ ସଖୀଁ ସହେଲୀ । ଫଲିତ ବିଲୋକି ମନୋରଥ ବେଲୀ ॥
ରାମ ରୂପୁ ଗୁନ ସୀଲୁ ସୁଭାଊ । ପ୍ରମୁଦିତ ହୋଇ ଦେଖି ସୁନି ରାଊ ॥୪॥
ସବ କେଁ ଉର ଅଭିଲାଷୁ ଅସ କହହିଁ ମନାଇ ମହେସୁ ।
ଆପୁ ଅଛତ ଜୁବରାଜ ପଦ ରାମହି ଦେଉ ନରେସୁ ॥୧॥

ଏକ ସମୟ ସବ ସହିତ ସମାଜା । ରାଜସଭାଁ ରଘୁରାଜୁ ବିରାଜା ॥
ସକଲ ସୁକୃତ ମୂରତି ନରନାହୂ । ରାମ ସୁଜସୁ ସୁନି ଅତିହି ଉଛାହୂ ॥୧॥
ନୃପ ସବ ରହହିଁ କୃପା ଅଭିଲାଷେଁ । ଲୋକପ କରହିଁ ପ୍ରୀତି ରୁଖ ରାଖେଁ ॥
ତିଭୁବନ ତୀନି କାଲ ଜଗ ମାହୀଁ । ଭୂରିଭାଗ ଦସରଥ ସମ ନାହୀଁ ॥୨॥

---

ମାତା, ସଖୀ, ସହଚରୀ ସର୍ବେ ହରଷିତ । ମନୋରଥ-ଲତା ଅବଲୋକଣ ଫଳିତ ॥
ରାମ ରୂପ, ଗୁଣ, ଶୀଳ, ସ୍ୱଭାବ ବିଶେଷ । ଦେଖି ଶୁଣି ପ୍ରମୋଦିତ ହୁଅନ୍ତି ନରେଶ ॥୪॥
ଏହି ଅଭିଲାଷ କରିଣ ସମସ୍ତେ ଗୁହାରନ୍ତି ମହେଶଙ୍କୁ ।
ଜୀତେ ଥାଉଁ ଥାଉଁ ଯୁବରାଜ ପଦ ଦିଅନ୍ତୁ ନୃପ ରାମଙ୍କୁ ॥୧॥
ଏକଦା ସଙ୍ଗେ ଘେନିଣ ସମସ୍ତ ସମାଜ । ରାଜସଭା ମଧ୍ୟେ ବିରାଜିତ ରଘୁରାଜ ॥
ସକଳ ସୁକୃତ ମୂର୍ତ୍ତି ଅବନୀ-ପାଳକ । ଅତି ଉତ୍ସାହିତ ଶୁଣି ସୁଯଶ ରାମଙ୍କ ॥୧॥
କୃପା ଅଭିଲାଷ କରି ମହୀପେ ରହନ୍ତି । ଲୋକପାଳେ ଇଚ୍ଛା ଜାଣି ପ୍ରୀତି ଆଚରନ୍ତି ॥
ତ୍ରିଭୁବନ ତିନିକାଳେ ବଡ ଭାଗ୍ୟବାନ । ନାହିଁ କେହି ବିଶ୍ୱେ, ଦଶରଥଙ୍କ ସମାନ ॥୨॥

---

ପର୍ବତ ଉପରେ ପୁଣ୍ୟ ରୂପୀ ମେଘ ସୁଖ-ଜଳ ବୃଷ୍ଟି କରୁଥାଏ ॥ ୧ ॥ ଋଦ୍ଧି, ସିଦ୍ଧି ଓ ସମ୍ପତ୍ତି ରୂପୀ ସୁନ୍ଦର ନଦୀମାନେ ଉଚ୍ଛୁଳି ଅଯୋଧ୍ୟା-ସମୁଦ୍ରରେ ଆସି ମିଳିଲେ । ନଗରର ନରନାରୀ ସୁଜାତି ମଣିସମୂହ; ସେମାନେ ସବୁ ପ୍ରକାରରେ ପବିତ୍ର, ଅମୂଲ୍ୟ ଓ ସୁନ୍ଦର । ॥୨॥ ନଗରର ଐଶ୍ୱର୍ଯ୍ୟ ଭାଷାତୀତ । ଜଣା ପଡୁଥାଏ, ସତେ ଯେମିତି ବ୍ରହ୍ମାଙ୍କର କାରିଗରୀ ଏତିକି ମାତ୍ର । (ଅର୍ଥାତ୍ ବ୍ରହ୍ମାଙ୍କ କାରିଗରୀର ଏହା ଚରମ ସୀମା ପରି ଜଣାପଡୁଥାଏ ।) ସମସ୍ତ ନଗର-ବାସୀ ଶ୍ରୀରାମଚନ୍ଦ୍ରଙ୍କ ମୁଖ-ଚନ୍ଦ୍ରକୁ ଦେଖି ସର୍ବବିଧ ସୁଖ ଲାଭ କରୁଅଛନ୍ତି ॥ ୩ ॥ ମାତା ଓ ସଖୀ-ସହଚରୀ ସମସ୍ତେ ଆପଣାର ମନୋରଥ-ଲତାକୁ ଫଳିବାର ଦେଖି ଆନନ୍ଦିତ । ଶ୍ରୀରାମଚନ୍ଦ୍ରଙ୍କ ରୂପ, ଗୁଣ, ଶୀଳ ଓ ସ୍ୱଭାବକୁ ଦେଖି ଓ ଶୁଣି ରାଜା ଦଶରଥ ଅତି ଆନନ୍ଦ ଲାଭ କରୁଛନ୍ତି ॥ ୪ ॥ ଦୋହା '—ସମସ୍ତଙ୍କ ହୃଦୟରେ ବର୍ତ୍ତମାନ ଗୋଟିଏ ଅଭିଲାଷ ଏବଂ ସମସ୍ତେ ସେଥି ନିମନ୍ତେ ମହାଦେବଙ୍କୁ ପ୍ରାର୍ଥନା କରୁଥା'ନ୍ତି—"ରାଜା ତାଙ୍କ ଜୀବନକାଳ ମଧ୍ୟରେ ଶ୍ରୀରାମଚନ୍ଦ୍ରଙ୍କୁ ଯୁବରାଜ ପଦ ଦିଅନ୍ତୁ ।" ॥ ୧ ॥ ଚୌପାଈ '—ଏକଦା ରଘୁକୁଳ-ନାଥ ଦଶରଥ ତାଙ୍କର ସମସ୍ତ ସମାଜ ସହିତ ରାଜସଭାରେ ବିରାଜମାନ । ମହାରାଜ ସମସ୍ତ ପୁଣ୍ୟର ପ୍ରତିମୂର୍ତ୍ତି, ଶ୍ରୀରାମଚନ୍ଦ୍ରଙ୍କ ସୁଯଶ ଶୁଣି ସେ ଅତ୍ୟନ୍ତ ଉତ୍ସାହ ଲାଭ କରୁଥା'ନ୍ତି ॥ ୧ ॥ ସମସ୍ତ ରାଜା ତାହାଙ୍କର କୃପା କାମନା କରୁଥା'ନ୍ତି ଏବଂ ଲୋକପାଳ-ଗଣ ତାଙ୍କର ଇଚ୍ଛାନୁକୂଳ ପ୍ରୀତି

ମଂଗଲ ମୂଲ ରାମୁ ସୁତ ଜାସୂ । ଜୋ କଛୁ କହିଅ ଥୋର ସବ ତାସୂ ॥
ରାୟଁ ସୁଭାୟଁ ମୁକୁରୁ କର ଲୀହ୍ନା । ବଦନୁ ବିଲୋକି ମୁକୁଟୁ ସମ କୀହ୍ନା ॥୩॥
ସ୍ରବନ ସମୀପ ଭଏ ସିତ କେସା । ମନହୁଁ ଜରଠପନୁ ଅସ ଉପଦେସା ॥
ନୃପ ଜୁବରାଜୁ ରାମୁ କହୁଁ ଦେହୂ । ଜୀବନ ଜନମ ଲାହୁ କିନ ଲେହୂ ॥୪॥

ୟହ ବିଚାରୁ ଉର ଆନି ନୃପ ସୁଦିନୁ ସୁଅବସରୁ ପାଇ ।
ପ୍ରେମ ପୁଲକି ତନ ମୁଦିତ ମନ ଗୁରହି ସୁନାୟଉ ଜାଇ ॥୨॥

କହଇ ଭୁଆଲୁ ସୁନିଅ ମୁନିନାୟକ । ଭଏ ରାମ ସବ ବିଧି ସବ ଲାୟକ ॥
ସେବକ ସଚିବ ସକଲ ପୁରବାସୀ । ଜେ ହମାରେ ଅରି ମିତ୍ର ଉଦାସୀ ॥୧॥
ସବହି ରାମୁ ପ୍ରିୟ ଜେହି ବିଧି ମୋହୀ । ପ୍ରଭୁ ଅସୀସ ଜନୁ ତନୁ ଧରି ସୋହୀ ॥
ବିପ୍ର ସହିତ ପରିବାର ଗୋସାଈଁ । କରହିଁ ଛୋହୁ ସବ ରୌରିହି ନାଈଁ ॥୨॥

---

ମଙ୍ଗଳ ମୂଳ ଶ୍ରୀରାମ ଯାହାଙ୍କ କୁମର । ଯାହା କହୁ କୁହାଯାଏ ତାଙ୍କୁ ସ୍ୱଳ୍ପତର ॥
ସ୍ୱାଭାବିକେ କରେ ଧେନି ମୁକୁର ରାଜନ । ମୁକୁଟ ସଳଖୁଥିଲେ ବିଲୋକି ବଦନ ॥୩॥
ଶ୍ରବଣ ସମୀପେ ଶ୍ୱେତ ହୋଇଥିଲା କେଶ । ମନେହୁଏ ଜରା ଦଏ ଏହି ଉପଦେଶ ॥
ନୃପ, ଯୁବରାଜ ପଦ ଶ୍ରୀରାମଙ୍କୁ ଦିଅ । ଜୀବନ ଜନମ ଲାଭ ଏହିକ୍ଷଣି ନିଅ ॥୪॥

ହୃଦେ ଏ ବିଚାର ନୃପ କରି ସ୍ଥିର ସୁଦିନ ସୁବେଳ ପାଇ ।
ପ୍ରେମ-ପୁଲକିତ ଦେହେ ମନ ମୋଦେ ଗୁରୁଙ୍କୁ କହିଲେ ଯାଇ ॥୨॥

ବୋଲନ୍ତି ଭୂପାଳ, ଶୁଣ ହେ ମୁନିପୁଙ୍ଗବ । ହେଲେଣି ସୁଯୋଗ୍ୟ ସବୁ ପ୍ରକାରେ ରାଘବ ॥
ସେବକ ସଚିବ ସର୍ବେ ନଗର ନିବାସୀ । ଯେ ଆମ୍ଭର ଅରି ମିତ୍ର ଆବର ଉଦାସୀ ॥୧॥
ସମସ୍ତଙ୍କୁ ରାମ ପ୍ରିୟ ମୋତେ ଯେଉଁପରି । ପ୍ରଭୁଙ୍କ ଆଶିଷ ଯେସନ୍ତେ ଶୋଭେ ତନୁ ଧରି ॥
ସପରିବାର ସମସ୍ତ ବିପ୍ର ମୁନିରାୟ । କରନ୍ତି ସ୍ନେହ ତାହାଙ୍କୁ ଆପଣଙ୍କ ପ୍ରାୟ ॥୨॥

---

ସମ୍ପାଦନ କରୁଆ'ନ୍ତି । ସ୍ୱର୍ଗ, ମର୍ତ୍ତ୍ୟ ଓ ପାତାଳ ତିନି ଭୁବନ ଏବଂ ଭୂତ, ବର୍ତ୍ତମାନ, ଭବିଷ୍ୟତ—ତିନି କାଳରେ ଦଶରଥଙ୍କ ପରି ବଡ ଭାଗ୍ୟବାନ୍ ଆଉ କେହି ନାହାନ୍ତି ॥୨॥ ମଙ୍ଗଳ-ମୂଳ ଶ୍ରୀରାମଚନ୍ଦ୍ର ଯାହାଙ୍କ ପୁତ୍ର, ତାଙ୍କ ବିଷୟରେ ଯାହା କୁହାଯାଉ ପଛକେ ତାହା ଅତି ଅଳ୍ପ । ରାଜା ସ୍ୱାଭାବିକ ଭାବରେ ଆପଣା ହାତରେ ଦର୍ପଣ ଧରିଲେ ଏବଂ ତହିଁରେ ନିଜଂ ମୁହଁ ଦେଖି ମୁକୁଟକୁ ସିଧା କଲେ ॥ ୩ ॥ ଦେଖିଲେ, ତାଙ୍କ କାନ ପାଖର ବାଲ ଧଳା ହୋଇ ଆସିଲାଣି । ସତେ ଯେପରି ବାର୍ଦ୍ଧକ୍ୟ ଉପଦେଶ ଦେଉଛି—"ହେ ରାଜନ୍ ! ଶ୍ରୀରାମଚନ୍ଦ୍ରଙ୍କୁ ଯୁବରାଜ ପଦ ଦେଇ ଆପଣା ଜୀବନ ଓ ଜନ୍ମର ଲାଭ କାହିଁକି ଉଠାଉ ନାହାନ୍ତି ? ॥୪॥ ଦୋହା :—ହୃଦୟରେ ଏହି ବିଚାର ଆଣି (ଶ୍ରୀରାମଙ୍କୁ ଯୁବରାଜ ପଦ ଦେବା ନିଶ୍ଚୟ କରି) ରାଜା ଦଶରଥ ଶୁଭଦିନ ଓ ଶୁଭ ବେଳା ଦେଖି ପ୍ରେମ-ପୁଲକିତ ଶରୀର ଓ ଆନନ୍ଦମଗ୍ନ ମନରେ ଉକ୍ତ ବିଷୟ ଗୁରୁ ବଶିଷ୍ଠଙ୍କୁ ଯାଇ ଶୁଣାଇଲେ । ॥ ୨ ॥ ଚୌପାଇ :—ରାଜା କହିଲେ, "ହେ ମୁନିରାଜ !

ଜେ ଗୁରୁ ଚରନ ରେନୁ ସିର ଧରହୀଁ । ତେ ଜନୁ ସକଲ ବିଭବ ବସ କରହୀଁ ॥
ମୋହି ସମ ଯହୁ ଅନୁଭୟଉ ନ ଦୂଜେଁ । ସବୁ ପାୟଉଁ ରଜ ପାବନି ପୂଜେଁ ॥୩॥
ଅବ ଅଭିଲାଷୁ ଏକୁ ମନ ମୋରେଁ । ପୂଜିହି ନାଥ ଅନୁଗ୍ରହ ତୋରେଁ ॥
ମୁନି ପ୍ରସନ୍ନ ଲଖି ସହଜ ସନେହୂ । କହେଉ ନରେସ ରଜାୟସୁ ଦେହୂ ॥୪॥

ରାଜନ ରାଉର ନାମୁ ଜସୁ ସବ ଅଭିମତ ଦାତାର ।
ଫଲ ଅନୁଗାମୀ ମହିପ ମନି ମନ ଅଭିଲାଷୁ ତୁମ୍ହାର ॥୩॥

ସବ ବିଧି ଗୁରୁ ପ୍ରସନ୍ନ ଜିୟଁ ଜାନୀ । ବୋଲେଉ ରାଉ ରହଁସି ମୃଦୁ ବାନୀ ॥
ନାଥ ରାମୁ କରିଅହିଁ ଜୁବରାଜୂ । କହିଅ କୃପା କରି କରିଅ ସମାଜୂ ॥୧॥

---

ଯେ ଗୁରୁ ଚରଣ ରେଣୁ ମସ୍ତକେ ଘେନଇ । ସକଲ ବୈଭବେ ବଶ ସେ ଜନ କରଇ ॥
ମୋ ସମାନ ଏହା ଅନୁଭବ ନାହିଁ ଅନ୍ୟ । ସମସ୍ତ ପାଇଲି ପୂଜି ରଜ ସୁପାବନ ॥୩॥
ଏବେ ଏକ ଅଭିଲାଷ ହୁଏ ମୋ ମନରେ । ପୂର୍ଣ୍ଣ ହେବ ନାଥ, ତୁମ୍ଭ କରୁଣା ବଳରେ ॥
ବିଲୋକି ସହଜ ସ୍ନେହ ହରଷେ ମୁନୀଶ । ଭାଷିଲେ, ରାଜାଜ୍ଞା କିସ ହେଉ, ଅବନୀଶ ॥୪॥

ତବ ନାମଯଶ ସକଳ ଅଭୀଷ୍ଟ କରି ପାରଇ ପ୍ରଦାନ ।
ଫଳ ଅନୁଗାମୀ କାମନା ତୁମର ସତ୍ୟ ଏହା ନରଗଣ ॥୩॥

ସବୁ ପ୍ରକାରେ ଗୁରୁଙ୍କୁ ସୁପ୍ରସନ୍ନ ଜାଣି । ହରଷେ ଭାଷିଲେ ମହୀପାଳ ମୃଦୁ ବାଣୀ ॥
ନାଥ, ରାମଙ୍କୁ କରିବା ହେଉ ଯୁବରାଜ । କହନ୍ତୁ ବ୍ୟବସ୍ଥା ବନ୍ଧ ସଜାଇବ ସାଜ ॥୧॥

---

କୃପା କରି ମୋର ଏହି ନିବେଦନ ଶୁଣନ୍ତୁ—ଶ୍ରୀରାମଚନ୍ଦ୍ର ଏବେ ସବୁ ପ୍ରକାରେ ସୁଯୋଗ୍ୟ । ରାମଚନ୍ଦ୍ର ମୋର ଯେତିକି ପ୍ରିୟ, ସେବକ, ମନ୍ତ୍ରୀ, ସମସ୍ତ ନଗରନିବାସୀ ଏବଂ ଯେଉଁମାନେ ଆମ ଶତ୍ରୁ, ମିତ୍ର ବା ଉଦାସୀନ, ସେ ସମସ୍ତଙ୍କର ସେତିକି ପ୍ରିୟ । ତାହାର ରୂପରେ ପ୍ରଭୁ (ଆପଣ)ଙ୍କ ଆଶୀର୍ବାଦ ସତେ ଯେମିତି ଶରୀରଧାରଣପୂର୍ବକ ଶୋଭା ପାଉଛି । ହେ ପ୍ରଭୋ ! ପରିବାର ସହିତ ସମସ୍ତ ବ୍ରାହ୍ମଣ ଆପଣଙ୍କ ପରି ତାହାକୁ ସ୍ନେହ କରନ୍ତି । ଯେଉଁମାନେ ଗୁରୁଙ୍କ ଚରଣ-ରଜ ମସ୍ତକ ଉପରେ ଧାରଣ କରନ୍ତି, ସେମାନେ ସତେ ଯେମିତି ସମସ୍ତ ଐଶ୍ୱର୍ଯ୍ୟକୁ ନିଜର ବଶୀଭୂତ କରିପାରନ୍ତି । ମୋ ପରି ଆଉ କେହି ଏ କଥା ଅନୁଭବ କରି ନାହାନ୍ତି । ଆପଣଙ୍କର ପବିତ୍ର ଚରଣରଜ ପୂଜା କରି ମୁଁ ସବୁ କିଛି ପାଇ ପାରିଛି ॥୧,୨,୩॥ ବର୍ତ୍ତମାନ ମୋ ମନରେ ଗୋଟିଏ ମାତ୍ର କାମନା । ହେ ନାଥ ! ତା'ମଧ୍ୟ କେବଳ ଆପଣଙ୍କ ଅନୁଗ୍ରହରେ ପୂର୍ଣ୍ଣ ହେବ ।" ରାଜାଙ୍କର ସହଜ ପ୍ରେମ ଦେଖି ମୁନି ପ୍ରସନ୍ନ ହୋଇ କହିଲେ, "ହେ ନରେଶ ! ଆଜ୍ଞା ଦିଅନ୍ତୁ । ( କି ଅଭିଳାଷ, କୁହନ୍ତୁ । ) ॥ ୪ ॥ ଦୋହା :—ହେ ରାଜନ୍ ! ଆପଣଙ୍କର ନାମ ଓ ଯଶ ହିଁ ସମସ୍ତ ମନୋବାଞ୍ଛିତ ବସ୍ତୁ ପ୍ରଦାନ କରିପାରେ । ହେ ନୃପ-ମୁକୁଟମଣି ! ଆପଣଙ୍କର ମନସ୍କାମନା ଫଳକୁ ଅନୁଗମନ କରେ ଅର୍ଥାତ୍ ଆପଣଙ୍କର କାମନା ପୂର୍ବରୁ ହିଁ ଫଳ ଉତ୍ପନ୍ନ ହୋଇଯାଏ ॥ ୩ ॥ ଚୌପାଇ :—ରାଜା ଆପଣା ହୃଦୟରେ ଗୁରୁ ସବୁ ପ୍ରକାରେ

ମୋହି ଅଛତ ୟହ ହୋଇ ଉଛାହୂ । ଲହହିଁ ଲୋଗ ସବ ଲୋଚନ ଲାହୂ ॥
ପ୍ରଭୁ ପ୍ରସାଦ ସିବ ସବଇ ନିବାହୀଁ । ୟହ ଲାଲସା ଏକ ମନ ମାହୀଁ ॥୨॥
ପୁନି ନ ସୋଚ ତନୁ ରହଉ କି ଜାଊ । ଜେହିଁ ନ ହୋଇ ପାଛେଁ ପଛିତାଊ ॥
ସୁନି ମୁନି ଦସରଥ ବଚନ ସୁହାଏ । ମଂଗଲ ମୋଦ ମୂଲ ମନ ଭାଏ ॥୩॥
ସୁନୁ ନୃପ ଜାସୁ ବିମୁଖ ପଛିତାହୀଁ । ଜାସୁ ଭଜନ ବିନୁ ଜରନି ନ ଜାହୀଁ ॥
ଭୟଉ ତୁମ୍ହାର ତନୟ ସୋଇ ସ୍ୱାମୀ । ରାମୁ ପୁନୀତ ପ୍ରେମ ଅନୁଗାମୀ ॥୪॥
ବେଗି ବିଲଂବୁ ନ କରିଅ ନୃପ ସାଜିଅ ସବୁଇ ସମାଜୁ ।
ସୁଦିନୁ ସୁମଂଗଲୁ ତବହିଁ ଜବ ରାମୁ ହୋହିଁ ଜୁବରାଜୁ ॥୪॥

ମୁଁ ଥାଉଁ ଏହି ଉତ୍ସବ ହୋଇଯିବ ଯେବେ । ଲଭିବେ ଲୋଚନ ଲାଭ ଲୋକ ସବୁ ତେବେ ॥
ପ୍ରଭୁଙ୍କ ପ୍ରସାଦେ ଶିବ ସାଧିଲେ ସକଳ । ଏହି ଏକ ମନ ମଧ୍ୟେ ଲାଳସା ପ୍ରବଳ ॥୨॥
ପୁଣି ଚିନ୍ତା ନାହିଁ, ତନୁ ଯାଉ କିମ୍ବା ରହୁ । ଯେମନ୍ତେ ପଶ୍ଚାତ୍ତାପ ପରେ ହୃଦୟ ନ ଦହୁ ॥
ଆନନ୍ଦ ମଙ୍ଗଳ-ମୂଳ ଦଶରଥ ବାଣୀ । ଶୁଣି ସୁମଧୁର, ତୋଷ ହେଲେ ମୁନି ଜ୍ଞାନୀ ॥୩॥
ଯା'ବିମୁଖେ ନୃପ, ଜୀବ ଅନୁସନ୍ତାପଇ । ଯା' ଭଜନ ବିନା ହୃଦ ଜ୍ୱାଳା ନ ଲିଭଇ ॥
ତୁମ୍ଭର ତନୟ ହୋଇଛନ୍ତି ସେହି ସ୍ୱାମୀ । ରାମ କେବଳ ପବିତ୍ର ପ୍ରେମ ଅନୁଗାମୀ ॥୪॥
ବିଳମ୍ବ ନ କର ଶୀଘ୍ର ନରବର, ସଜାଅ ସମସ୍ତ ସାଜ ।
ଶୁଭ ଦିନ ତେବେ ହେବ ଜାଣ ଯେବେ ରାମ ହେବେ ଯୁବରାଜ ॥୪॥

ପ୍ରସନ୍ନ ବୋଲି ଅନୁଭବ କରି ହର୍ଷିତ ହେଲେ ଏବଂ କୋମଳ ବାଣୀରେ କହିଲେ—"ହେ ନାଥ ! ଶ୍ରୀରାମଚନ୍ଦ୍ରଙ୍କୁ ଯୁବରାଜ କରନ୍ତୁ । କୃପା କରି ଆଜ୍ଞା କରନ୍ତୁ, ତାହା ହେଲେ ଆୟୋଜନ କରାଯିବ ॥ ୧ ॥ ମୁଁ ଜୀଇ ଥାଉ ଥାଉ ଏହି ଆନନ୍ଦ-ଉତ୍ସବ ହୋଇଯାଉ । ସମସ୍ତ ଲୋକ ଆପଣା ଆପଣା ନେତ୍ରର ଲାଭ ପାଆନ୍ତୁ । ପ୍ରଭୁ (ଆପଣ)ଙ୍କ ପ୍ରସାଦରୁ ଶିବ ସବୁ କିଛି ନିର୍ବାହ କରିଅଛନ୍ତି । କେବଳ ଏହି ଏକ ମାତ୍ର ଲାଳସା ମନରେ ରହିଯାଇଅଛି ॥୨॥ ଏହି ଲାଳସା ପୂର୍ଣ୍ଣ ହୋଇଗଲେ ଆଉ ଚିନ୍ତା ନାହିଁ । ଶରୀର ରହୁ ବା ଚାଲିଯାଉ, ମୋତେ ଆଉ ପଛରେ ଅନୁତାପ କରିବାକୁ ପଡ଼ିବନାହିଁ ।" ଦଶରଥଙ୍କ ମଙ୍ଗଳ ଓ ଆନନ୍ଦର ମୂଳ ବଚନ ଶୁଣି ମୁନି ମନରେ ଅତିଶୟ ଆନନ୍ଦିତ ହେଲେ ॥ ୩ ॥ ବଶିଷ୍ଠ କହିଲେ, ହେ ରାଜନ୍ ! ଶୁଣନ୍ତୁ, ଯାହାଙ୍କ ପ୍ରତି ବିମୁଖ ହୋଇ ଲୋକମାନେ ଅନୁତାପ କରନ୍ତି ଏବଂ ଯାହାଙ୍କ ଭଜନ ବିନା ହୃଦୟର ଜ୍ୱଳନ ଶାନ୍ତ ହୁଏନାହିଁ, ସେହି ସ୍ୱାମୀ (ସର୍ବଲୋକ-ମହେଶ୍ୱର) ଶ୍ରୀରାମ ଆପଣଙ୍କ ପୁତ୍ର ରୂପେ ଜନ୍ମଲାଭ କରିଛନ୍ତି । ସେ ପବିତ୍ର ପ୍ରେମର ଅନୁଗାମୀ ॥ ୪ ॥ ଦୋହା :—ହେ ରାଜନ୍ ! ଆପଣ ବିଳମ୍ବ କରନ୍ତୁ ନାହିଁ । ଶୀଘ୍ର ସମସ୍ତ ସାମଗ୍ରୀ ଆୟୋଜନ କରନ୍ତୁ । ଶ୍ରୀରାମଚନ୍ଦ୍ର ଯେବେ ଯୁବରାଜ ହେବେ, ସେହି ସମୟରେ ହିଁ ଆପେ ଆପେ ଶୁଭ ଓ ମଙ୍ଗଳମୟ ସୁଦିନ ହୋଇଯିବ । ଅର୍ଥାତ୍ ତାଙ୍କର ଅଭିଷେକ ନିମନ୍ତେ ସମସ୍ତ ଦିନ ଶୁଭ ଓ ମଙ୍ଗଳମୟ ॥୪॥

ମୁଦିତ ମହୀପତି ମଂଦିର ଆଏ । ସେବକ ସଚିବ ସୁମଂତ୍ରୁ ବୋଲାଏ ॥
କହି ଜୟଜୀବ ସୀସ ତିନ୍ହ ନାଏ । ଭୂପ ସୁମଂଗଲ ବଚନ ସୁନାଏ ॥୧॥
ଜୌଂ ପାଁଚହି ମତ ଲାଗୈ ନୀକା । କରହୁ ହରଷି ହିୟଁ ରାମହି ଟୀକା ॥୨॥
ମଂତ୍ରୀ ମୁଦିତ ସୁନତ ପ୍ରିୟ ବାନୀ । ଅଭିମତ ବିରୱଁ ପରେଉ ଜନୁ ପାନୀ ॥
ବିନତୀ ସଚିବ କରହିଁ କର ଜୋରୀ । ଜିଅହୁ ଜଗତପତି ବରିସ କରୋରୀ ॥୩॥
ଜଗ ମଂଗଲ ଭଲ କାଜୁ ବିଚାରା । ବେଗିଅ ନାଥ ନ ଲାଇଅ ବାରା ॥
ନୃପହି ମୋଦୁ ସୁନି ସଚିବ ସୁଭାଷା । ବଢ଼ତ ବୌଂଡ଼ ଜନୁ ଲହୀ ସୁସାଖା ॥୪॥
କହେଉ ଭୂପ ମୁନିରାଜ କର ଜୋଇ ଜୋଇ ଆୟସୁ ହୋଇ ॥
ରାମ ରାଜ ଅଭିଷେକ ହିତ ବେଗି କରହୁ ସୋଇ ସୋଇ ॥୫॥

---

ପ୍ରମୋଦିତେ ମହୀପତି ଗୃହେ ଆଗମିଲେ । ସେବକ ସଚିବ ସୁମନ୍ତ୍ରଙ୍କୁ ଡକାଇଲେ ॥
"ଯେ ଆଜ୍ଞା", କହି ସେମାନେ କଲେ ପ୍ରଣିପାତ । ମଙ୍ଗଳ ବଚନ ଶୁଣାଇଲେ ନରନାଥ ॥୧॥
ଯେବେ ପସନ୍ଦ ଆସଇ ପଞ୍ଚଙ୍କ ମନକୁ । କରାଅ ହରଷ ହୃଦେ ତିଳକ ରାମଙ୍କୁ ॥୨॥
ମନ୍ତ୍ରୀ ପ୍ରମୋଦିତ ହେଲେ ଶୁଣି ପ୍ରିୟବାଣୀ । ମନୋରଥ-ଅଙ୍କୁରେ ବା ପଡ଼ିଲା କି ପାଣି ॥
କର ଯୋଡ଼ିଣ ସଚିବ କରନ୍ତି ବିନତି । କୋଟି ବରଷ ଜୀବିତ ରହ ମହୀପତି ॥୩॥
ଜଗତ ମଙ୍ଗଳ କାର୍ଯ୍ୟ ପାଞ୍ଚିଲ ସୁନ୍ଦର । ନ କର ବିଳମ୍ବ ନାଥ, କରନ୍ତୁ ସତ୍ୱର ॥
ମନ୍ତ୍ରୀଙ୍କ ସୁବାଣୀ ଶୁଣି ହରଷ ରାଜନ । ବଢନ୍ତେ ଲତା ସୁଶାଖା ଲଭିଲା ଯେସନ ॥୪॥
ବୋଲନ୍ତି ଶ୍ରୀରାମ-ଅଭିଷେକ ପାଇଁ ଯଥାବିଧି ଆୟୋଜନ ।
ମୁନି-ଆଜ୍ଞାମତେ କର ପାତ୍ରମନ୍ତ୍ରି ! ନ କର ତିଳେ ଲଂଘନ ॥୫॥

---

ଚୌପାଇ :—ରାଜା ଆନନ୍ଦିତ ହୋଇ ମହଲ ମଧ୍ୟକୁ ଆସିଲେ ଏବଂ ସେବକଗଣ ଓ ମନ୍ତ୍ରୀ ସୁମନ୍ତ୍ରଙ୍କୁ ଡକାଇଲେ । ସେମାନେ ସମସ୍ତେ ଆସି "ଯେ ଆଜ୍ଞା" କହି ପ୍ରଣାମ କଲେ । ତତ୍ପରେ ରାଜା ସୁମଙ୍ଗଳମୟ ବଚନ ଶୁଣାଇଲେ—ରାଜା କହିଲେ, ଯଦି ପାଞ୍ଚଜଣଙ୍କୁ (ଆପଣମାନଙ୍କୁ) ଏହି ମତ ଭଲ ଲାଗେ, ତାହା ହେଲେ ଆନନ୍ଦିତ ମନରେ ଆପଣମାନେ ଶ୍ରୀରାମଚନ୍ଦ୍ରଙ୍କ ରାଜ୍ୟାଭିଷେକ କରନ୍ତୁ ॥ ୧-୨ ॥ ଏହି ପ୍ରିୟ ବାଣୀ ଶୁଣିବା ମାତ୍ରେ ମନ୍ତ୍ରୀ ଏପରି ଆନନ୍ଦିତ ହେଲେ, ସତେ ଯେପରି ତାଙ୍କର ମନୋରଥ-ଅଙ୍କୁର ଉପରେ ପାଣି ପଡ଼ିଗଲା । ମନ୍ତ୍ରୀ ହାତ ଯୋଡ଼ି ବିନତି କରୁଥାନ୍ତି, "ହେ ଜଗତ-ପତି ! ଆପଣ କୋଟି କୋଟି ବର୍ଷ ଜୀବିତ ରହନ୍ତୁ ॥ ୩ ॥ ଆପଣ ସମଗ୍ର ଜଗତର ହିତକାରକ, ଉତ୍ତମ କାର୍ଯ୍ୟ ମନସ୍ଥ କରିଅଛନ୍ତି । ହେ ନାଥ ! ଶୀଘ୍ର କରନ୍ତୁ, ବିଳମ୍ବ କରନ୍ତୁ ନାହିଁ ।" ମନ୍ତ୍ରୀମାନଙ୍କର ସୁନ୍ଦର ବାଣୀ ଶୁଣି ରାଜାଙ୍କୁ ଏପରି ଆନନ୍ଦ ଲାଗିଲା, ସତେ ଯେପରି ବର୍ଦ୍ଧିତା ଲତା ଡାଳର ଆଶ୍ରୟ ପାଇଅଛି ॥ ୪ ॥ ଦୋହା :—ରାଜା କହିଲେ—"ଶ୍ରୀରାମଚନ୍ଦ୍ରଙ୍କ ରାଜ୍ୟାଭିଷେକ ନିମନ୍ତେ ମୁନିରାଜ ବଶିଷ୍ଠ ଯାହା ଯାହା ଆଜ୍ଞା ଦେଉଅଛନ୍ତି, ଆପଣମାନେ ସେହି ସବୁ କାର୍ଯ୍ୟ ଶୀଘ୍ର କରନ୍ତୁ ।" ॥ ୫ ॥

ହରଷି ମୁନୀସ କହେଉ ମୃଦୁ ବାନୀ । ଆନହୁ ସକଲ ସୁତୀରଥ ପାନୀ ॥
ଔଷଧ ମୂଲ ଫୂଲ ଫଲ ପାନା । କହେ ନାମ ଗନି ମଂଗଲ ନାନା ॥୧॥
ଚାମର ଚରମ ବସନ ବହୁ ଭାଁତୀ । ରୋମ ପାଟ ପଟ ଅଗନିତ ଜାତୀ ॥
ମନିଗନ ମଂଗଲ ବସ୍ତୁ ଅନେକା । ଜୋ ଜଗ ଜୋଗୁ ଭୂପ ଅଭିଷେକା ॥୨॥
ବେଦ ବିଦିତ କହି ସକଲ ବିଧାନା । କହେଉ ରଚହୁ ପୁର ବିବିଧ ବିତାନା ॥
ସଫଲ ରସାଲ ପୂଗଫଲ କେରା । ରୋପହୁ ବୀଥିନ୍ହ ପୁର ଚହୁଁ ଫେରା ॥୩॥
ରଚହୁ ମଂଜୁ ମନି ଚୌକେଁ ଚାରୂ । କହହୁ ବନାଉନ ବେଗି ବଜାରୂ ॥
ପୂଜହୁ ଗନପତି ଗୁର କୁଲଦେବା । ସବ ବିଧି କରହୁ ଭୂମିସୁର ସେବା ॥୪॥

ଧ୍ୱଜ ପତାକ ତୋରନ କଲସ ସଜହୁ ତୁରଗ ରଥ ନାଗ ॥
ସିର ଧରି ମୁନିବର ବଚନ ସବୁ ନିଜ ନିଜ କାଜହିଁ ଲାଗ ॥୬॥

---

ହରଷେ ବୋଲିଲେ ମୁନିବର ମୃଦୁବାଣୀ । ସମସ୍ତ କର ସକଲ ସୁତୀର୍ଥର ପାଣି ।
ଔଷଧ ବିବିଧ ଫୁଲ ଫଳ ମୂଳ ପାନ । ଗଣି କହିଲେ ଅନେକ ଶୁଭ ଦ୍ରବ୍ୟ ନାମ ॥୧॥
ଚାମର ଚର୍ମ ଅସଂଖ୍ୟ ବସନ ଆବର । ପଶମ ରେଶମ ବସ୍ତ୍ର ନାନା ରକମର ॥
ମଣିଗଣ ମାଙ୍ଗଳିକ ପଦାର୍ଥ ଅନେକେ । ଯେ ସବୁ ଜଗତେ ଲୋଡ଼ା ନୃପ ଅଭିଷେକେ ॥୨॥
ବେଦ ବିଧିମତେ କହି ସମସ୍ତ ବିଧାନ । ବୋଇଲେ ରଚ ପୁରେ ବିବିଧ ବିତାନ ॥
ଫଳ ସଂଯୁକ୍ତ ରସାଳ ଗୁଆ କଦଳୀ । ନଗର ଚତୁର୍ଦ୍ଦିଗରେ ରୋପ ଗଳି ଗଳି ॥୩॥
ରଚ ମଞ୍ଜୁ ମଣିଦ୍ୱାର ଚୌକ ସୁନ୍ଦର । କହିଲେ ସାଜିବା ପାଇଁ ବଜାର ସତ୍ୱର ॥
ପୂଜ ଗଣପତି, ଗୁରୁ, କୁଳ-ଇଷ୍ଟ-ଦେବ । ମହୀସୁରଙ୍କୁ ଆଦର ବିଧି ମତେ ସେବ ॥୪॥

ପତାକା କେତନ କଳସ ତୋରଣ ସାଜ ବାଜିରଥ କରୀ ।
ନିଜ ନିଜ କାର୍ଯ୍ୟେ ଲାଗିଲେ ସରବେ ମୁନି ଆଜ୍ଞା ଶିରେ ଧରି ॥୬॥

---

ଚୌପାଈ —ମୁନିରାଜ ଆନନ୍ଦିତ ହୋଇ କୋମଳ ବାଣୀରେ କହିଲେ, "ସମସ୍ତ ସୁତୀର୍ଥରୁ ଜଳ ନେଇ ଆସ ।" ପୁନଶ୍ଚ ସେ ଔଷଧିମୂଳ, ଫୁଲ, ଫଳ ଏବଂ ପତ୍ରାଦି ଅନେକ ମାଙ୍ଗଳିକ ଦ୍ରବ୍ୟର ନାମ ଗଣି କହିଲେ ॥ ୧ ॥ ଚାମର, ମୃଗଚର୍ମ, ବହୁବିଧ ବସ୍ତ୍ର, ଅସଂଖ୍ୟ ଜାତିର ପଶମ ଓ ରେଶମ ବସ୍ତ୍ର, ବହୁବିଧ ମଣି ତଥା ଜଗତରେ ରାଜ୍ୟାଭିଷେକଯୋଗ୍ୟ ବହୁବିଧ ମଙ୍ଗଳ ଦ୍ରବ୍ୟ ମଗାଇବା ନିମନ୍ତେ ସମସ୍ତଙ୍କୁ ଆଦେଶ ଦେଲେ ॥ ୨ ॥ ମୁନି ବେଦବର୍ଣ୍ଣିତ ସମସ୍ତ ବିଧାନ ବୁଝାଇ କହିଲେ, "ନଗରରେ ବହୁତ ମଣ୍ଡପ (ବିତାନ) ସଜାଅ । ଫଳ ସମେତ ଆମ୍ବ, ଗୁଆ ଓ କଦଳୀ ବୃକ୍ଷ ନଗରର ଗଳୀ ରାସ୍ତାମାନଙ୍କରେ ଚାରିଆଡ଼େ ରୋପଣ କରିଦିଅ ॥ ୩ ॥ ସୁନ୍ଦର ମଣିରେ ମନୋହର ଚତୁଷ୍କୋଣ ନିର୍ମାଣ କର ଏବଂ ବଜାରକୁ ତୁରନ୍ତ ସଜାଇବା ନିମନ୍ତେ ବରାଦ କର । ଶ୍ରୀ ଗଣେଶ, ଗୁରୁ ଓ କୁଳଦେବତାଙ୍କୁ ପୂଜା କର ଏବଂ ଭୂଦେବ ବ୍ରାହ୍ମଣମାନଙ୍କୁ ସବୁ ପ୍ରକାରେ ସେବା କର ॥ ୪ ॥ ଦୋହା —ଧ୍ୱଜା, ପତାକା, ତୋରଣ, କଳସ,

ଜୋ ମୁନୀସ ଜେହି ଆୟସୁ ଦୀହ୍ନା । ସୋ ତେହିଁ କାଜୁ ପ୍ରଥମ ଜନୁ କୀହ୍ନା ॥
ବିପ୍ର ସାଧୁ ସୁର ପୂଜତ ରାଜା । କରତ ରାମ ହିତ ମଂଗଲ କାଜା ॥୧॥
ସୁନତ ରାମ ଅଭିଷେକ ସୁହାଓ୍ୱା । ବାଜ ଗହାଗହ ଅଓ୍ୱଧ ବଧାଓ୍ୱା ॥
ରାମ ସୀୟ ତନ ସଗୁନ ଜନାଏ । ଫରକହିଁ ମଂଗଲ ଅଂଗ ସୁହାଏ ॥୨॥
ପୁଲକି ସପ୍ରେମ ପରସପର କହହୀଁ । ଭରତ ଆଗମନୁ ସୂଚକ ଅହହୀଁ ॥
ଭଏ ବହୁତ ଦିନ ଅତି ଅବସେରୀ । ସଗୁନ ପ୍ରତୀତି ଭେଁଟ ପ୍ରିୟ କେରୀ ॥୩॥
ଭରତ ସରିସ ପ୍ରିୟ କୋ ଜଗ ମାହୀଁ । ଇହଇ ସଗୁନ ଫଲୁ ଦୂସର ନାହୀଁ ॥
ରାମହି ବଂଧୁ ସୋଚ ଦିନ ରାତୀ । ଅଣ୍ଡନ୍ହି କମଠ ହୃଦଉ ଜେହି ଭାଁତୀ ॥୪॥

---

ଯାହାଙ୍କୁ ମୁନୀଶ ଯେଉଁ ଆଜ୍ଞା ପ୍ରଦାନଲେ । ସେ ଯେହ୍ନେ ପ୍ରଥମୁ ତାହା କରି ରଖିଥିଲେ ।
ବିପ୍ର ସାଧୁ ବିବୁଧଙ୍କୁ ମହୀପ ପୂଜନ୍ତି । ମଙ୍ଗଳ କାର୍ଯ୍ୟ ରାମଙ୍କ ନିମନ୍ତେ କରନ୍ତି ॥୧॥
ଶୁଣନ୍ତେ ରାମଙ୍କ ଅଭିଷେକ ସୁଶୋଭନ । ବାଜିଲା ଅଯୋଧ୍ୟାପୁରେ ବାଦ୍ୟ ଘନଘନ ॥
ରାମ ସୀତାଙ୍କ ଶରୀରେ ଶକୁନ ସୂଚଇ । ସୁନ୍ଦର ମଙ୍ଗଳ ଅଙ୍ଗ ସ୍ପନ୍ଦନ ହୁଅଇ ॥୨॥
କହନ୍ତି ପ୍ରେମେ ସଭିଏଁ ହୋଇଣ ପୁଲକ । ଭରତ ଆଗମନର ଅଟଇ ସୂଚକ ॥
ବହୁଦିନ ଗଲା ହୃଦ ହୁଅଇ ନିରାଶ । ପ୍ରିୟ ଭେଟ ହେଲା ପରି ଶକୁନ ବିଶ୍ୱାସ ॥୩॥
ଭରତ ସମ ଜଗତେ ପ୍ରିୟ କେ ଅଟଇ । ଏହାହିଁ ଶକୁନ ଫଳ, ଅନ୍ୟଥା ନୁହଇ ।
ରାମଙ୍କୁ ଭାଇଙ୍କ ଚିନ୍ତା ଦିବା ବିଭାବରୀ । ଡିମ୍ବ ଉପରେ କଚ୍ଛପ ହୃଦୟ ଯେପରି ॥୪॥

---

ଅଶ୍ୱ, ରଥ ଓ ହସ୍ତୀ ସମସ୍ତଙ୍କୁ ସଜାଅ । ମୁନିଶ୍ରେଷ୍ଠ ବଶିଷ୍ଠଙ୍କ ବଚନକୁ ଶିରୋଧାର୍ଯ୍ୟ କରି ସମସ୍ତେ ଆପଣା ଆପଣା କାମରେ ଲାଗିଗଲେ ॥ ୭ ॥ ଚୌପାଈ '—ମୁନୀଶ୍ୱର ଯାହାକୁ ଯେଉଁ କାମ ନିମନ୍ତେ ଆଜ୍ଞା ଦେଲେ, ସେ ସେହି କାମ ଏତେ ଶୀଘ୍ର କଲା ଯେ, ବୋଧହେଲା, ସତେ ଯେମିତି ସେ ତାହା ଆଗରୁ କରି ରଖିଥିଲା । ରାଜା, ବ୍ରାହ୍ମଙ୍କ, ସାଧୁ ଓ ଦେବତାମାନଙ୍କୁ ପୂଜା କରୁଥାଆନ୍ତି ଏବଂ ଶ୍ରୀରାମଚନ୍ଦ୍ରଙ୍କ ନିମନ୍ତେ ସମସ୍ତ ମଙ୍ଗଳ କାର୍ଯ୍ୟ କରୁଥାଆନ୍ତି । ॥ ୧ ॥ ଶ୍ରୀରାମଚନ୍ଦ୍ରଙ୍କ ରାଜ୍ୟାଭିଷେକର ସୁନ୍ଦର ସମ୍ବାଦ ଶୁଣିବା ମାତ୍ରେ ସମଗ୍ର ଅଯୋଧ୍ୟାରେ ଅତି ଆଡମ୍ବରରେ ଅଭିନନ୍ଦନ–ବାଦ୍ୟ ବାଜିବାକୁ ଲାଗିଲା । ଶ୍ରୀରାମଚନ୍ଦ୍ର ଓ ସୀତାଙ୍କ ଶରୀରରେ ମଧ୍ୟ ଶୁଭ ଶକୁନ ସୂଚିତ ହେଲା । ତାଙ୍କର ସୁମଙ୍ଗଳ ଅଙ୍ଗ ସ୍ଫୁରିବାକୁ ଲାଗିଲା ॥ ୨ ॥ ପୁଲକିତ ହୋଇ ସେ ଦୁହେଁ ପରସ୍ପର କଥାବାର୍ତ୍ତା ହେଉଥାନ୍ତି—"ଏ ସବୁ ଶକୁନ ମାମୁଁ ଘରକୁ ଯାଇଥିବା ଭରତଙ୍କ ଆସିବାର ସୂଚନା । ବହୁତ ଦିନ ହୋଇଗଲାଣି, ବହୁତ ଥର ତାଙ୍କ ସହିତ ମିଳନ କରିବାର ଇଚ୍ଛା ହେଲାଣି । ବର୍ତ୍ତମାନର ଶକୁନରୁ ପ୍ରିୟ ଭରତଙ୍କ ସହିତ ମିଳନ କରିବାର ବିଶ୍ୱାସ ମନରେ ଜାତ ହେଉଛି ॥ ୩ ॥ ଭରତ ସମାନ ଜଗତରେ ଆମର ଆଉ କିଏ ପ୍ରିୟ ? ଶକୁନର ଏତିକ ମାତ୍ର ଫଳ, ଆଉ କିଛି ନାହିଁ । କଚ୍ଛପର ମନ ଅଣ୍ଡାଠାରେ ରହିଲା ପରି ଶ୍ରୀରାମଙ୍କ ମନରେ ଭାଇ ଭରତଙ୍କ ବିଷୟରେ ଦିନରାତି ଚିନ୍ତା ରହୁଥାଏ ॥ ୪ ॥

ଏହି ଅବସର ମଂଗଲୁ ପରମ ସୁନି ରହଁସେଉ ରନିବାସୁ ।
ସୋଭତ ଲଖି ବିଧୁ ବଢ଼ତ ଜନୁ ବାରିଧି ବୀଚି ବିଲାସୁ ॥୭॥

ପ୍ରଥମ ଜାଇ ଜିନ୍ହ ବଚନ ସୁନାଏ । ଭୂଷନ ବସନ ଭୂରି ତିନ୍ହ ପାଏ ॥
ପ୍ରେମ ପୁଲକି ତନ ମନ ଅନୁରାଗୀଁ । ମଂଗଲ କଲସ ସଜନ ସବ ଲାଗୀଁ ॥୧॥
ଚୌକେଁ ଚାରୁ ସୁମିତ୍ରାଁ ପୂରୀ । ମନିମୟ ବିବିଧ ଭାଁତି ଅତି ରୁରୀ ॥
ଆନଁଦ ମଗନ ରାମ ମହତାରୀ । ଦିଏ ଦାନ ବହୁ ବିପ୍ର ହଁକାରୀ ॥୨॥
ପୂଜୀଁ ଗ୍ରାମଦେବି ସୁର ନାଗା । କହେଉ ବହୋରି ଦେନ ବଲିଭାଗା ॥
ଜେହି ବିଧି ହୋଇ ରାମ କଲ୍ୟାନୂ । ଦେହୁ ଦୟା କରି ସୋ ବରଦାନୂ ॥୩॥
ଗାୱହିଁ ମଂଗଲ କୋକିଲବୟନୀ । ବିଧୁବଦନୀଁ ମୃଗସାବକନୟନୀଁ ॥୪॥

---

ଏ ସମୟେ ଶୁଣି ଅତି ଶୁଭବାଣୀ ହରଷ ରାଣୀ ଉଆସ ।
ଶୋଭିତ ଶଶୀକୁ ଦେଖି ଯଥା ବଢେ ସିନ୍ଧୁ ତରଙ୍ଗ ବିଳାସ ॥୭॥

ପ୍ରଥମେ ଯାଇ ସନ୍ଦେଶ ଯେହୁ ଶୁଣାଇଲା । ଭୂଷଣ ବସନ ଅପର୍ଯ୍ୟାପ୍ତ ସେ ପାଇଲା ॥
ପ୍ରେମେ ପୁଲକିତ ତନୁ ମନ ଅନୁରକ୍ତେ । ମଙ୍ଗଳ କଳସ ଥାପି ଲାଗିଲେ ସମସ୍ତେ ॥୧॥
ରୁଚିର କୋଷ୍ଠକ କଲେ ସୁମିତ୍ରା ରଚନ । ନାନାବିଧ ମଣିମୟେ ଅତି ସୁଶୋଭନ ॥
ନିମଗ୍ନ ହୋଇଣ ରାମ ଜନନୀ ଆନନ୍ଦେ । ଡକାଇ ପ୍ରଭୂତ ଦାନ ଦେଲେ ବିପ୍ରବୃନ୍ଦେ ॥୨॥
ପୂଜି ବିଧି ସହ ଗ୍ରାମ ଦେବାଦେବୀ ନାଗ । ଯାଚନ୍ତି ଆବର ଦେବା ପାଇଁ ବଳିଭାଗ ॥
ଯେଉଁ ଭାବେ ହେବ ରଘୁନାଥଙ୍କ କଲ୍ୟାଣ । ଦିଅ ଅନୁଗ୍ରହ କରି ସେହି ବରଦାନ ॥୩॥
ମଙ୍ଗଳ ଗାନ କରନ୍ତି କୋକିଳ-ବଚନୀ । ବିଧୁ-ବଦନୀ କୁରଙ୍ଗ-ଶାବକ-ଲୋଚନୀ ॥୪॥

---

ଦୋହା —ଏହି ସମୟରେ ପରମ ମଙ୍ଗଳ ସମାଚାର ଶୁଣି ସମସ୍ତ ରାଣୀ-ଉଆସ ଆନନ୍ଦିତ ହୋଇ ଉଠିଲା । ତାହା ଦେଖି ମନେ ହେଲା, ସତେ ଯେମିତି ଚନ୍ଦ୍ରଙ୍କ ବୃଦ୍ଧି ଦେଖି ସମୁଦ୍ରରେ ତରଙ୍ଗମାଳାର ବିଳାସ ଶୋଭା ପାଉଛି କି ! ॥ ୭ ॥ ଚୌପାଈ :— ସର୍ବପ୍ରଥମେ ରାଣୀଙ୍କ ଉଆସକୁ ଯାଇ ଯେଉଁମାନେ ଏହି ସମ୍ବାଦ ଶୁଣାଇଲେ, ସେମାନେ ବହୁତ ଅଳଙ୍କାର ଓ ବସ୍ତ୍ର ପାଇଲେ । ରାଣୀମାନଙ୍କ ଶରୀର ପ୍ରେମରେ ପୁଲକିତ ହୋଇ ଉଠିଲା ଏବଂ ମନ ପ୍ରେମ-ମଗ୍ନ ହୋଇଗଲା । ସେମାନେ ସମସ୍ତେ ମଙ୍ଗଳ-କଳସ ସଜାଇବାକୁ ଲାଗିଲେ ॥ ୧ ॥ ସୁମିତ୍ରା ବିବିଧ ମଣିରେ ନାନା ପ୍ରକାର ଅତି ସୁନ୍ଦର ମନୋହର କୋଷ୍ଠକ ନିର୍ମାଣ କଲେ । ଆନନ୍ଦରେ ମଗ୍ନ ଶ୍ରୀରାମଙ୍କ ମାତା କୌଶଲ୍ୟା ବ୍ରାହ୍ମଣମାନଙ୍କୁ ଡକାଇ ବହୁତ ଦାନ ଦେଲେ ॥ ୨ ॥ ସେ ଗ୍ରାମଦେବୀ, ଦେବତା ଓ ନାଗମାନଙ୍କୁ ପୂଜା କଲେ, କାର୍ଯ୍ୟସିଦ୍ଧି ପରେ ପୁଣି ବଳି ଭେଟି ଦେବାକୁ ମାନସିକ କଲେ ଏବଂ ଯେଉଁପରି ଭାବରେ ରାମଙ୍କର କଲ୍ୟାଣ ହେବ, ଦୟା କରି ସେହି ବର ଦେବା ନିମନ୍ତେ ସେମାନଙ୍କୁ ପ୍ରାର୍ଥନା କଲେ ॥୩॥ କୋକିଳ-ବଚନା, ଚନ୍ଦ୍ର ବଦନା ଓ ମୃଗ-ଶାବକ-ନୟନା

ରାମ ରାଜ ଅଭିଷେକୁ ସୁନି ହିୟଁ ହରଷେ ନର ନାରି ।
ଲଗେ ସୁମଂଗଲ ସଜନ ସବ ବିଧି ଅନୁକୂଲ ବିଚାରି ॥୮॥

ତବ ନରନାହଁ ବସିଷ୍ଠୁ ବୋଲାଏ । ରାମ ଧାମ ସିଖ ଦେନ ପଠାଏ ॥
ଗୁର ଆଗମନୁ ସୁନତ ରଘୁନାଥା । ଦ୍ୱାର ଆଇ ପଦ ନାୟଉ ମାଥା ॥୧॥
ସାଦର ଅରଘ ଦେଇ ଘର ଆନେ । ସୋରହ ଭାଁତି ପୂଜି ସନମାନେ ॥
ଗହେ ଚରନ ସିୟ ସହିତ ବହୋରୀ । ବୋଲେ ରାମୁ କମଲ କର ଜୋରୀ ॥୨॥
ସେବକ ସଦନ ସ୍ୱାମି ଆଗମନୂ । ମଂଗଲ ମୂଲ ଅମଂଗଲ ଦମନୂ ॥
ତଦପି ଉଚିତ ଜନୁ ବୋଲି ସପ୍ରୀତୀ । ପଠଇଅ କାଜ ନାଥ ଅସି ନୀତୀ ॥୩॥
ପ୍ରଭୁତା ତଜି ପ୍ରଭୁ କୀହ୍ନ ସନେହୂ । ଭୟଉ ପୁନୀତ ଆଜୁ ୟହୁ ଗେହୂ ॥
ଆୟସୁ ହୋଇ ସୋ କରୌଁ ଗୋସାଈଁ । ସେବକୁ ଲହଇ ସ୍ୱାମି ସେବକାଈଁ ॥୪॥

---

ଶୁଣି ଶ୍ରୀରାମଙ୍କ ରାଜ୍ୟ ଅଭିଷେକ ହରଷିତେ ନରନାରୀ ।
ସଜାଇ ଲାଗିଲେ ସମସ୍ତ ମଙ୍ଗଳ କୃତ୍ୟାନୁକୂଳ ବିଚାରି ॥୮॥

ଏଥୁ ଅନ୍ତେ ବଶିଷ୍ଠଙ୍କୁ ନୃପତି ଡକାଇ । ରାମ ଧାମେ ପଠାଇଲେ ଶିକ୍ଷା ଦେବା ପାଇଁ ॥
ଗୁରୁଙ୍କର ଆଗମନ ଶୁଣି ରଘୁନାଥ । ଦ୍ୱାରକୁ ଆସି ଚରଣେ କଲେ ପ୍ରଣିପାତ ॥୧॥
ସାଦରେ ଅର୍ଘ୍ୟ ପ୍ରଦାନି ଭବନେ ଆଣିଲେ । ଷୋଡ଼ଶ ଉପଚାରରେ ପୂଜି ସମ୍ମାନିଲେ ॥
ଧରି ଚରଣ ସୀତାଙ୍କ ସହିତ ଆଦର । ଭାଷିଲେ ଶ୍ରୀରାମ ଯୋଡ଼ି ସରୋରୁହ କର ॥୨॥
ସେବକ ଗୃହେ ସ୍ୱାମୀଙ୍କ ଶୁଭ ଆଗମନ । ମଙ୍ଗଳ ମୂଳ ସମସ୍ତ ଅଶୁଭ ନାଶନ ॥
ତଥାପି କାର୍ଯ୍ୟ ପଡ଼ିଲେ ଦାସକୁ ସପ୍ରୀତି । ଡକାଇ ନଅନ୍ତେ ନାଥ ଉଚିତ ଏ ନୀତି ॥୩॥
ପ୍ରଭୁ ସ୍ନେହ କଲେ ପ୍ରଭୁ-ପଣ ପରିହରି । ପବିତ୍ର ହେଲା ଆଜି ଏ ଭବନ ମୋହରି ॥
ଆଦେଶ ହେଉ ଗୋସାଇଁ ତାହା ପାଳିବଇଁ । ସ୍ୱାମୀଙ୍କ ସେବା ସତତ ସେବକ ଲଭଇ ॥୪॥

---

ସ୍ତ୍ରୀମାନେ ମଙ୍ଗଳଗାନ କରିବାକୁ ଲାଗିଲେ ॥ ୪ ॥ ଦୋହା —ଶ୍ରୀରାମଙ୍କ ରାଜ୍ୟାଭିଷେକ ସମ୍ବାଦ ଶୁଣି ସମସ୍ତ ସ୍ତ୍ରୀପୁରୁଷ ହୃଦୟରେ ହର୍ଷ ଲାଭ କଲେ ଏବଂ ବିଧାତାଙ୍କୁ ଆପଣା ଆପଣାର ଅନୁକୂଳ ବୋଲି ବୁଝି ସୁନ୍ଦର ମଙ୍ଗଳ ସାଜ ସବୁ ସଜାଇବାକୁ ଲାଗିଲେ ॥ ୮ ॥ ଚୌପାଈ —ତଦନନ୍ତର ରାଜା ବଶିଷ୍ଠଙ୍କୁ ଡକାଇଲେ ଏବଂ ସମୟୋଚିତ ଶିକ୍ଷା ଦେବା ନିମନ୍ତେ ତାହାଙ୍କୁ ଶ୍ରୀରାମଚନ୍ଦ୍ରଙ୍କ ମହଲକୁ ପ୍ରେରଣ କଲେ । ଗୁରୁଙ୍କର ଆଗମନ-ସମ୍ବାଦ ପାଇବା ମାତ୍ରେ ଶ୍ରୀ ରଘୁନାଥ ଦ୍ୱାର ନିକଟକୁ ଆସି ତାଙ୍କ ଚରଣରେ ମସ୍ତକ ଅବନତ କଲେ ॥ ୧ ॥ ଶ୍ରୀରାମ ଆଦରପୂର୍ବକ ଅର୍ଘ୍ୟ ଦେଇ ତାହାଙ୍କୁ ଘରକୁ ଆଣିଲେ ଏବଂ ଷୋଡ଼ଶୋପଚାର ପୂଜା କରି ତାଙ୍କୁ ସମ୍ମାନ କଲେ । ତତ୍ପରେ ସୀତାଙ୍କ ସହିତ ସେ ତାଙ୍କ ଚରଣ ସ୍ପର୍ଶ କଲେ ଏବଂ କର-କମଳଦ୍ୱୟ ଯୋଡ଼ି କହିଲେ—॥ ୨ ॥ "ହେ ନାଥ ! ସେବକ ଘରେ ସ୍ୱାମୀଙ୍କ ପଦାର୍ପଣ ଅବଶ୍ୟ ସମସ୍ତ

ସୁନି ସନେହ ସାନେ ବଚନ ମୁନି ରଘୁବରହି ପ୍ରସଂସ ।
ରାମ କସ ନ ତୁମ୍ହ କହହୁ ଅସ ହଂସ ବଂସ ଅବତଂସ ॥୯॥

ବରନି ରାମ ଗୁନ ସୀଲୁ ସୁଭାଉ । ବୋଲେ ପ୍ରେମ ପୁଲକି ମୁନିରାଉ ॥
ଭୂପ ସଜେଉ ଅଭିଷେକ ସମାଜୂ । ଚାହତ ଦେନ ତୁମ୍ହହି ଜୁବରାଜୂ ॥୧॥
ରାମ କରହୁ ସବ ସଂଜମ ଆଜୂ । ଜୌଁ ବିଧି କୁସଲ ନିବାହୈ କାଜୂ ॥
ଗୁରୁ ସିଖ ଦେଇ ରାୟ ପହିଁ ଗୟଉ । ରାମ ହୃଦୟଁ ଅସ ବିସମଉ ଭୟଉ ॥୨॥
ଜନମେ ଏକ ସଂଗ ସବ ଭାଈ । ଭୋଜନ ସୟନ କେଲି ଲରିକାଈ ॥
କରନବେଧ ଉପବୀତ ବିଆହା । ସଂଗ ସଂଗ ସବ ଭଏ ଉଛାହା ॥୩॥

---

ଶୁଣି ସ୍ନେହ-ସିକ୍ତ ବଚନ ରାମଙ୍କ ପ୍ରଶଂସିଲେ ତପୋଧନ ।
କି ପାଇଁ ଏସନ ନ କହିବ ରାମ, ହଂସ-ବଂଶ-ବିଭୂଷଣ ॥୯॥

ପ୍ରଶଂସି ଶୀଳ ସ୍ୱଭାବ ଗୁଣ ରାମଙ୍କର । ଭାଷିଲେ ପ୍ରେମେ ପୁଲକ ହୋଇ ମୁନିବର ॥
ସାଜିଛନ୍ତି ନୃପମଣି ଅଭିଷେକ ସାଜ । ଚାହାନ୍ତି ତୁମ୍ଭଙ୍କୁ କରିବାକୁ ଯୁବରାଜ ॥୧॥
ରାମ ସକଳ ସଂଯମ କର ତୁମ୍ଭେ ଆଜ । ଯେ ଭାବେ କୁଶଳେ ହେବ ସମାପନ କାର୍ଯ୍ୟ ॥
ଗୁରୁ ଶିକ୍ଷା ଦେଇ ନୃପ ନିକଟେ ଗମିଲେ । ରାମ ହୃଦୟେ ଏପରି ଆଶ୍ଚର୍ଯ୍ୟ ମଣିଲେ ॥୨॥
ଏକ ସଙ୍ଗେ ସବୁ ଭାଇ ଲଭିଲୁ ଜନମ । ବାଲ୍ୟକ୍ରୀଡା କଉତୁକ ଭୋଜନ ଶୟନ ॥
କର୍ଣ୍ଣବେଧ ଉପବୀତ ସଂସ୍କାର ବିବାହ । ସଙ୍ଗେ ସଙ୍ଗେ ହେଲା ସବୁ ଉତ୍ସବ ଉତ୍ସାହ ॥୩॥

---

ମଙ୍ଗଳର ମୂଳ ଏବଂ ଅମଙ୍ଗଳର ନାଶକାରୀ । ତଥାପି ନୀତି ହେଉଛି, ଆପଣ ପ୍ରେମ ସହକାରେ ଏ ଦାସଙ୍କୁ କାର୍ଯ୍ୟ ନିମନ୍ତେ ଡକାଇ ପଠାଇଆନ୍ତେ ॥ ୩ ॥ କିନ୍ତୁ ପ୍ରଭୁ ପ୍ରଭୁତ୍ୱ ତ୍ୟାଗକରି ଯେଉଁ ସ୍ନେହ କରିଅଛନ୍ତି, ତାହା ଯୋଗେ ଆଜି ଏ ଗୃହ ପବିତ୍ର ହୋଇଗଲା । ହେ ଗୋସାଇଁ ! ବର୍ତ୍ତମାନ ଯାହା ଆଜ୍ଞା ହେବ, ମୁଁ ତାହା ହିଁ କରିବ ! ସ୍ୱାମୀଙ୍କ ସେବାରେ ହିଁ ସେବକର ଲାଭ ॥ ୪ ॥ ଦୋହା :--ଶ୍ରୀରାମଙ୍କ ପ୍ରେମ-ସିକ୍ତ ବଚନ ଶୁଣି ମୁନି ବଶିଷ୍ଠ ଶ୍ରୀ ରଘୁନାଥଙ୍କୁ ପ୍ରଶଂସା କରି କହିଲେ, "ହେ ରାମ ! ଆପଣ ଏପରି ନ କହନ୍ତେ ବା କିପରି ! ଆପଣ ସୂର୍ଯ୍ୟବଂଶର ବିଭୂଷଣ । ସୁତରାଂ ଏପରି କହିବା ଆପଣଙ୍କ ପକ୍ଷେ ସ୍ୱାଭାବିକ ।" ॥ ୯ ॥ ଚୌପାଇ —ଶ୍ରୀରାମଙ୍କ ଗୁଣ, ଶୀଳ ଓ ସ୍ୱଭାବର ବର୍ଣ୍ଣନା କରି ମୁନିରାଜ ପ୍ରେମରେ ପୁଲକିତ ହୋଇ କହିଲେ, "ହେ ରାମ ! ରାଜା ଦଶରଥ ରାଜ୍ୟାଭିଷେକର ଆୟୋଜନ କରୁଛନ୍ତି । ସେ ତୁମ୍ଭଙ୍କୁ ଯୁବରାଜ ପଦ ଦେବାକୁ ଇଚ୍ଛା କରନ୍ତି ॥ ୧ ॥ ସୁତରାଂ ହେ ରାମ ! ଆଜି ତୁମେ ସଂଯମ କର । ଫଳରେ ବିଧାତା କୁଶଳ ସହକାରେ ଏହି କାର୍ଯ୍ୟକୁ ସଫଳ ରୂପେ ନିର୍ବାହ କରିଦେବେ ।" ଗୁରୁ ଶିକ୍ଷା ଦେଇ ରାଜା ଦଶରଥଙ୍କ ପାଖକୁ ଚାଲିଗଲେ । ଏ ସମ୍ବାଦ ଶୁଣି ଶ୍ରୀରାମଙ୍କ ହୃଦୟରେ ଦୁଃଖ ଓ ବିସ୍ମୟ ଜାତ ହେଲା ॥ ୨ ॥ "ଆମେ ଭାଇ ସମସ୍ତେ ଏକ ସଙ୍ଗରେ ଜନ୍ମ ଲାଭ କଲୁ; ଭୋଜନ, ଶୟନ, ବାଲ୍ୟକ୍ରୀଡା, ଖେଳକୁଦ, କର୍ଣ୍ଣଛେଦନ, ଯଜ୍ଞୋପବୀତ—

ବିମଲ ବଂସ ଯହୁ ଅନୁଚିତ ଏକୂ । ବଂଧୁ ବିହାଇ ବଡେହି ଅଭିଷେକୂ ॥
ପ୍ରଭୁ ସପ୍ରେମ ପଛିତାନି ସୁହାଈ । ହରଉ ଭଗତମନ କୈ କୁଟିଲାଈ ॥୪॥
ତେହି ଅବସର ଆଏ ଲଖନ ମଗନ ପ୍ରେମ ଆନଂଦ ।
ସନମାନେ ପ୍ରିୟ ବଚନ କହି ରଘୁକୁଲ କୈରବ ଚଂଦ ॥୧୦॥
ବାଜହିଁ ବାଜନେ ବିବିଧ ବିଧାନା । ପୁର ପ୍ରମୋଦୁ ନହିଁ ଜାଇ ବଖାନା ॥
ଭରତ ଆଗମନୁ ସକଲ ମନାୱହିଁ । ଆୱହୁଁ ବେଗି ନୟନ ଫଲୁ ପାୱହିଁ ॥୧॥
ହାଟ ବାଟ ଘର ଗଲୀଁ ଅଥାଈଂ । କହହିଁ ପରସପର ଲୋଗ ଲୋଗାଈଂ ॥
କାଲି ଲଗନ ଭଲି କେତିକ ବାରା । ପୂଜିହି ବିଧି ଅଭିଲାଷୁ ହମାରା ॥୨॥
କନକ ସିଂଘାସନ ସୀୟ ସମେତା । ବୈଠହିଁ ରାମୁ ହୋଇ ଚିତ ଚେତା ॥
ସକଲ କହହିଁ କବ ହୋଇହି କାଲୀ । ବିଘନ ମନାୱହିଁ ଦେବ କୁଚାଲୀ ॥୩॥

---

ବିମଲ ବଂଶରେ ଏହି ଅନୁଚିତ ଏକ । କନିଷ୍ଠେ ତେଜି କରନ୍ତି ଜ୍ୟେଷ୍ଠେ ଅଭିଷେକ ॥
ପ୍ରଭୁଙ୍କ ସପ୍ରେମ ପଶ୍ଚାତ୍ତାପ ମନୋହର । ହରୁ କୁଟିଳତା ଭକ୍ତ ଜନଙ୍କ ମନର ॥୪॥
ସେହି ସମୟରେ ଆସିଲେ ଲକ୍ଷ୍ମଣ ପ୍ରେମ-ଆନନ୍ଦେ ମଗନ ।
ସମ୍ମାନିଲେ ରଘୁ-କୁଳ-କୁମୁଦେନ୍ଦୁ ଭାଷିଲେ ପ୍ରିୟବଚନ ॥୧୦॥
ଅନେକ ପ୍ରକାରେ ବାଦ୍ୟ ବିପୁଳ ବାଜଇ । ପୁର ପ୍ରମୋଦ ବର୍ଣ୍ଣନ କରି ନ ହୁଅଇ ॥
ବାଞ୍ଛା କରନ୍ତି ସମସ୍ତେ ଭରତାଗମନ । ନୟନ ଫଳ ଲଭନ୍ତୁ ଆସିଣ ବହନ ॥୧॥
ହାଟ ବାଟ ଗୃହ ଗଳୀ ମଣ୍ଡପେ ଆବର । କହନ୍ତି ନାରୀ ପୁରୁଷ ମିଳି ପରସ୍ପର ॥
କାଲି କେତେବେଳେ ଶୁଭ ମୁହୂର୍ତ୍ତ ହେଇବ । ଆମ୍ଭ ମନୋରଥ ପୂର୍ଣ୍ଣ କରିବ ଦଇବ ॥୨॥
କନକ ସିଂହାସନରେ ଜାନକୀ ସହିତ । ବସିବେ ରାମ, ପୂରିବ ମନର ବାଞ୍ଛିତ ॥
କାଲି କେତେବେଳେ ହେବ ସମସ୍ତେ କହନ୍ତି । କୁଚକ୍ରୀ ଦେବତାଗଣ ବିଘ୍ନ ଆଚରନ୍ତି ॥୩॥

---

ଧାରଣ ଏବଂ ବିବାହାଦି ଉତ୍ସବ ସବୁ ଏକା ସଙ୍ଗରେ ସମ୍ପନ୍ନ ହୋଇଛି ॥ ୩ ॥ କିନ୍ତୁ ଏହି ବିମଲ ବଂଶରେ ସେହି ଗୋଟିଏ ଅନ୍ୟାୟସଙ୍ଗତ କଥା ହେଉଛି ଯେ, ସବୁ ଭାଇଙ୍କୁ ତ୍ୟାଗ କରି ଏକ ମାତ୍ର ବଡ ଭାଇର ଅଭିଷେକ ବିଧାନ କରାଯାଉଛି ।" ତୁଳସୀ ଦାସ କହନ୍ତି, "ପ୍ରଭୁ ଶ୍ରୀରାମଙ୍କ ଏହି ସୁନ୍ଦର ପ୍ରେମପୂର୍ଣ୍ଣ ପରିତାପ ଭକ୍ତ ଜନଙ୍କ ମନର କୁଟିଳତା ଦୂର କରୁ ॥୪॥ ଦୋହା'—ସେତିକି ବେଳେ ପ୍ରେମାନନ୍ଦମଗ୍ନ ଲକ୍ଷ୍ମଣ ସେଠାକୁ ଆସିଲେ । ରଘୁକୁଳ-କୁମୁଦ-ବିକାଶକାରୀ ଚନ୍ଦ୍ର ଶ୍ରୀରାମଚନ୍ଦ୍ର ପ୍ରିୟ ବଚନ କହି ତାଙ୍କୁ ସମ୍ମାନିତ କଲେ ॥ ୧୦ ॥ ଚୌପାଈ'—ବହୁତ ପ୍ରକାର ବାଜା ବାଜୁଥାଏ । ନଗରର ଆନନ୍ଦାତିଶଯ୍ୟ ଅବର୍ଣ୍ଣନୀୟ । ସମସ୍ତେ ଭରତଙ୍କ ଆଗମନ କାମନା କରୁଥା'ନ୍ତି ଏବଂ କହୁଥାନ୍ତି, "ସେ କିପରି ଶୀଘ୍ର ଆସି ନେତ୍ରଫଳ ଲାଭ କରନ୍ତେ ହେଲେ ।" ॥୧॥ ବଜାର, ମାର୍ଗ, ଗୃହ, ଗଳି ଏବଂ ଚଉକମାନଙ୍କରେ ପୁରୁଷ ଓ ସ୍ତ୍ରୀ ପରସ୍ପର କଥାବାର୍ତ୍ତା ହେଉଥାନ୍ତି—"କାଲି ସେହି ଶୁଭଲଗ୍ନ କେତେବେଳେ ଆସିବ, ଯେତେବେଳେ କି ବିଧାତା

ତିହ୍ନହି ସୋହାଇ ନ ଅଵଧ ବଧାଵା । ଚୋରହି ଚଂଦିନି ରାତି ନ ଭାଵା ॥
ସାରଦ ବୋଲି ବିନୟ ସୁର କରହୀଂ । ବାରହିଁ ବାର ପାୟ ଲୈ ପରହୀଂ ॥୩॥

ବିପତି ହମାରି ବିଲୋକି ବଡ଼ି ମାତୁ କରିଅ ସୋଇ ଆଜୁ ।
ରାମୁ ଜାହିଁ ବନ ରାଜୁ ତଜି ହୋଇ ସକଲ ସୁରକାଜୁ ॥୧୧॥

ସୁନି ସୁର ବିନୟ ଠାଢ଼ି ପଛିତାତୀ । ଭଇଉଁ ସରୋଜ ବିପିନ ହିମରାତୀ ॥
ଦେଖି ଦେବ ପୁନି କହହିଁ ନିହୋରୀ । ମାତୁ ତୋହି ନହିଁ ଥୋରିଉ ଖୋରୀ ॥୧॥
ବିସମୟ ହରଷ ରହିତ ରଘୁରାଊ । ତୁମ୍ହ ଜାନହୁ ସବ ରାମ ପ୍ରଭାଊ ॥
ଜୀବ କରମ ବସ ସୁଖ ଦୁଖ ଭାଗୀ । ଜାଇଅ ଅଵଧ ଦେବ ହିତ ଲାଗୀ ॥୨॥

---

ଅଯୋଧ୍ୟା ବାଦ୍ୟ ଆନନ୍ଦ ତାଙ୍କୁ ନ ଶୋଭଇ । ଚୋରଙ୍କୁ ଚନ୍ଦ୍ରିମା ରାତି ଭଲ ନ ଲାଗଇ ॥
ଡକାଇ ସରସ୍ୱତୀଙ୍କୁ କରନ୍ତି ବିନୟ । ବାରମ୍ବାର ପଦେ ପଡ଼ି ଦେବତାନିଚୟ ॥୩॥
ବିପତ୍ତି ଆମ୍ଭର ଦେଖି ଅତି ଭାରି କର ମାତ, ତାହା ଆଜ ।
ରାଜ୍ୟ ତେଜି ରାମ ଯାଆନ୍ତୁ କାନନେ ହୋଇବ ସୁରଙ୍କ କାର୍ଯ୍ୟ ॥୧୧॥
ଶୋଚନ୍ତି ବାଣୀ ଶୁଣିଣ ଦେବଙ୍କ ଦଇନ । ହେଲି ମୁଁ ପଦ୍ମ-ବନକୁ ହେମନ୍ତ ଯାମିନୀ ॥
ଦେଖି ବିବୁଧେ ବିନତି କହନ୍ତି ଆଦର । ନାହିଁ କିଛି ମାତ ଦୋଷ ଜନନୀ ତୋହର ॥୧॥
ହର୍ଷ-ବିଷାଦ-ରହିତ ଶ୍ରୀ ରଘୁ ପୁଙ୍ଗବ । ତୁମେ ଜାଣ ରଘୁବୀର ପ୍ରଭାବ ସରବ ॥
ଜୀବ କର୍ମ ବଶ ହୋନ୍ତି ସୁଖ ଦୁଃଖ ଭୋଗୀ । ଯାଅ ସତ୍ୱର ଅଯୋଧ୍ୟା ଦେବ ହିତ ଲାଗି ॥୨॥

---

ଆମ୍ଭମାନଙ୍କର ଅଭିଳାଷ ପୂରଣ କରିବେ ॥୨॥ ଯେତେବେଳେ ସୀତାଙ୍କ ସହିତ ଶ୍ରୀରାମ ସ୍ୱର୍ଣ୍ଣ ସିଂହାସନ ଉପରେ ବିରାଜମାନ ହେବେ, ସେତେବେଳେ ଆମ୍ଭମାନଙ୍କର ମନସ୍କାମନା ପୂର୍ଣ୍ଣ ହେବ । ଏଣେ କାଲି କେତେବେଳେ ଆସିବ, କହି ଲୋକେ ଉତ୍କଣ୍ଠା ପ୍ରକାଶ କରୁଥା'ନ୍ତି । ତେଣେ କୁଚକ୍ରୀ ଦେବତାମାନେ ବିଘ୍ନ କାମନା କରୁଥା'ନ୍ତି ॥ ୩ ॥ ସେହି ଦେବତାମାନଙ୍କୁ ଅଯୋଧ୍ୟାର ଅଭିନନ୍ଦନବାଦ୍ୟ ଭଲ ଲାଗୁ ନ ଥାଏ । ଚୋରଙ୍କୁ ଚନ୍ଦ୍ରିମା ରାତି ସୁହାଏ ନାହିଁ । ସରସ୍ୱତୀଙ୍କୁ ଦେବତାମାନେ ବିନତି କରୁଥାନ୍ତି ଏବଂ ବାରମ୍ବାର ତାଙ୍କର ପାଦ ଧରି ତହିଁ ଉପରେ ପଡ଼ୁଥା'ନ୍ତି ॥ ୪ ॥ ଦୋହା '—ସେମାନେ କହୁଥାନ୍ତି,—"ହେ ମାତା ! ଆମର ବଡ଼ ବିପତ୍ତିକୁ ଦେଖି ଆଜି ତାହାହିଁ କରନ୍ତୁ, ଯାହା ଯୋଗେ ଶ୍ରୀରାମଚନ୍ଦ୍ର ରାଜ୍ୟ ଛାଡ଼ି ବନକୁ ଚାଲିଯିବେ ଏବଂ ଦେବତାଗଣଙ୍କ ସକଳ କାର୍ଯ୍ୟ ସିଦ୍ଧ ହେବ" ॥ ୧୧ ॥ ଚୌପାଇ :—ଦେବତାମାନଙ୍କ ବିନତି ଶୁଣି ସରସ୍ୱତୀ ଠିଆ ଠିଆ ଅନୁତାପ କରୁଥା'ନ୍ତି—"ହାୟ ! ମୁଁ କମଳ-ବନ-ନିମନ୍ତେ ହେମନ୍ତ ଋତୁର ରାତି ହେଲି ।" ତାଙ୍କୁ ଏହିରୂପେ ଅନୁତପ୍ତ ହେବାର ଦେଖି, ଦେବତାମାନେ ପୁଣି ବିନୟ ସହକାରେ କହିବାକୁ ଲାଗିଲେ, "ହେ ମାତା ! ଏଥିରେ ତୁମକୁ ଟିକିଏ ହେଲେ ବି ଦୋଷ ଲାଗିବ ନାହିଁ ॥ ୧ ॥ ଶ୍ରୀ ରଘୁନାଥ ବିଷାଦ ଓ ହର୍ଷ ରହିତ, ତୁମେ ତ ଶ୍ରୀରାମଙ୍କ ସବୁ ପ୍ରଭାବ ଜାଣ । ଜୀବ ଆପଣାର କର୍ମବଶତା ଯୋଗୁ ସୁଖଦୁଃଖର ଭାଗୀ ହୁଏ ।

ବାର ବାର ଗହି ଚରନ ସଁକୋଚୀ । ଚଲୀ ବିଚାରି ବିବୁଧ ମତି ପୋଚୀ ॥
ଊଁଚ ନିବାସୁ ନୀଚି କରତୂତୀ । ଦେଖି ନ ସକହିଁ ପରାଇ ବିଭୂତୀ ॥୩॥
ଆଗିଲ କାଜୁ ବିଚାରି ବହୋରୀ । କରିହହିଁ ଚାହ କୁସଲ କବି ମୋରୀ ॥
ହରଷି ହୃଦୟଁ ଦସରଥପୁର ଆଈ । ଜନୁ ଗ୍ରହଦସା ଦୁସହ ଦୁଖଦାଈ ॥୪॥

ନାମୁ ମଂଥରା ମଂଦମତି ଚେରୀ କୈକଇ କେରି ।
ଅଜସ ପେଟାରୀ ତାହି କରି ଗଈ ଗିରା ମତି ଫେରି ॥୧୨॥

ଦୀଖ ମଂଥରା ନଗରୁ ବନାଵା । ମଂଜୁଲ ମଂଗଲ ବାଜ ବଧାଵା ॥
ପୂଛେସି ଲୋଗନ୍ହ କାହ ଉଛାହୂ । ରାମତିଲକୁ ସୁନି ଭା ଉର ଦାହୂ ॥୧॥

---

ବାରମ୍ବାର ପଦ ଧରି ସଙ୍କୋଚରେ ବାନ୍ଧିଲେ । ଦେବେ ମନ୍ଦମତି ବୋଲି ବିଚାରି ଚଳିଲେ ॥
ଉଚ୍ଚ ନିବାସ ହେଲେହେଁ ନୀଚ କୁପ୍ରବୃତ୍ତି । ଦେଖି ନ ପାରନ୍ତି କେବେ ପରର ବିଭୂତି ॥୩॥
ଭବିଷ୍ୟତ ହିତକର୍ମ ବିଚାରି ଆବର । କରିବେ କୁଶଳ କବି କାମନା ମୋହର ॥
ହରଷେ ଆସିଲେ ଦଶରଥଙ୍କ ନିବାସେ । ଯେବା ଦୁଃସହ ଦୁଃଖଦ ଗ୍ରହ ଦଶା ଆସେ ॥୪॥

ମନ୍ଥରା ନାମରେ କୈକେୟୀଙ୍କ ଏକ ଦାସୀ ଥିଲା ମନ୍ଦମତି ।
ଅୟଶ ପେଟେରି କରିଗଲେ ଗିରା ଭ୍ରମାଇ ତା' ବୁଦ୍ଧି ଅତି ॥୧୨॥

ବିଲୋକି ମନ୍ଥରା ଭବ୍ୟ ନଗର ରଚନ । ମଞ୍ଜୁଳ ମଙ୍ଗଳ ବାଦ୍ୟ ବାଜେ ଘନ ଘନ ॥
ପଚାରେ ଲୋକଙ୍କୁ ଆଜି ଏ କେଉଁ ଉତ୍ସାହ । ରାମଙ୍କ ତିଳକ ଶୁଣି ହେଲା ହୃଦ ଦାହ ॥୧॥

---

ଅତଏବ ଦେବତାମାନଙ୍କ ହିତ ନିମନ୍ତେ ତୁମେ ଅଯୋଧ୍ୟାକୁ ଯାଅ" ॥ ୨ ॥ ବାରମ୍ବାର ଚରଣ ଧରି ଦେବତାମାନେ ସରସ୍ୱତୀଙ୍କୁ ସଂକୋଚରେ ପକାଇ ଦେଲେ । ତତ୍ପରେ ଦେବତାମାନଙ୍କର ବୁଦ୍ଧି ମନ୍ଦ ବୋଲି ବିଚାରି ସେ ଚାଲିଲେ । ସେ ମନରେ ଭାବିଲେ, "ଏମାନଙ୍କର ନିବାସ ତ ଉଚ୍ଚ, କିନ୍ତୁ କର୍ମ ଅତି ନୀଚ । ଏମାନେ ଅନ୍ୟର ଐଶ୍ୱର୍ଯ୍ୟ ଦେଖି ସହି ପାରନ୍ତି ନାହିଁ ॥ ୩ ॥ କିନ୍ତୁ ଶ୍ରୀରାମଙ୍କ ବନ-ଗମନ ହେତୁ ରାକ୍ଷସଗଣଙ୍କ ବଧ ହେବ, ସାରା ଜଗତ ସୁଖୀ ହେବ ଏବଂ କୁଶଳ କବି (ଶ୍ରୀରାମଙ୍କ ବନବାସ-ଚରିତ ବର୍ଣ୍ଣନା କରିବା ନିମନ୍ତେ) ମୋତେ କାମନା କରିବେ, ଆଦି ଭବିଷ୍ୟତର ସୁଫଳ ବିଚାରି କରି ସରସ୍ୱତୀ ହୃଦୟରେ ଆନନ୍ଦିତ ହୋଇ ଦଶରଥଙ୍କ ପୁରୀ ଅଯୋଧ୍ୟାକୁ ଆସିଲେ, ସତେ ଯେପରି ଦୁଃସହ ଦୁଃଖ-ଦାୟକ କୌଣସି ଗ୍ରହଦଶା ଅଯୋଧ୍ୟାରେ ଆସି ପହଞ୍ଚିଲା ॥ ୪ ॥
ଦୋହା —ମନ୍ଥରା ନାମକ କୈକେୟୀଙ୍କର ଗୋଟିଏ ମନ୍ଦବୁଦ୍ଧି ଦାସୀ ଥିଲା । ତାକୁ ଅପଯଶର ପେଡି କରି ସରସ୍ୱତୀ ତାହାର ବୁଦ୍ଧିକୁ ଭ୍ରମ କରି ଚାଲିଗଲେ ॥ ୧୨ ॥
ଚୌପାଈ .—ମନ୍ଥରା ଦେଖିଲା, ନଗର ସଜା ହୋଇଅଛି । ସୁନ୍ଦର, ମଙ୍ଗଳମୟ ଅଭିନନ୍ଦନ-ବାଦ୍ୟ ବାଜୁଛି । ସେ ଲୋକମାନଙ୍କୁ ପଚାରିଲା, "ଏ କି ଉତ୍ସବ ?" ଶ୍ରୀରାମଙ୍କ ଅଭିଷେକ କଥା ଶୁଣି ତାହାର ହୃଦୟ ଜଳି ଉଠିଲା ॥ ୧ ॥ ସେହି ଦୁର୍ବୁଦ୍ଧି ନିମ୍ନ-ଜାତୀୟା ଦାସୀ କେମିତି ଉପାୟରେ ଏ କାମ ରାତାରାତି ବ୍ୟର୍ଥ ହୋଇଯିବ, ମନରେ

କରଇ ବିଚାରୁ କୁବୁଦ୍ଧି କୁଜାତୀ । ହୋଇ ଅକାଜୁ କବନି ବିଧି ରାତୀ ॥
ଦେଖି ଲାଗି ମଧୁ କୁଟିଲ କିରାତୀ । ଜିମି ଗବଁ ତକଇ ଲେଉଁ କେହି ଭାଁତୀ ॥୨॥
ଭରତ ମାତୁ ପହିଁ ଗଇ ବିଲଖାନୀ । କା ଅନମନି ହଁସି କହ ହଁସି ରାନୀ ॥
ଊତରୁ ଦେଇ ନ ଲେଇ ଉସାସୂ । ନାରି ଚରିତ କରି ଢାରଇ ଆଁସୂ ॥୩॥
ହଁସି କହ ରାନି ଗାଲୁ ବଡ଼ ତୋରେଁ । ଦୀହ୍ନ ଲଖନ ସିଖ ଅସ ମନ ମୋରେଁ ॥
ତବହୁଁ ନ ବୋଲ ଚେରି ବଡ଼ି ପାପିନି । ଛାଡ଼ଇ ସ୍ୱାସ କାରି ଜନୁ ସାଁପିନି ॥୪॥

ସଭୟ ରାନି କହ କହସି କିନ କୁସଲ ରାମୁ ମହିପାଲୁ ।
ଲଖନୁ ଭରତୁ ରିପୁଦମନୁ ସୁନି ଭା କୁବରୀ ଉର ସାଲୁ ॥୧୩॥

କତ ସିଖ ଦେଇ ହମହିଁ କୋଉ ମାଈ । ଗାଲୁ କରବ କେହି କର ବଲୁ ପାଈ ॥
ରାମହି ଛାଡ଼ି କୁସଲ କେହି ଆଜୂ । ଜେହିଁ ଜନେସୁ ଦେଇ ଜୁବରାଜୂ ॥୧॥

---

କରଇ ମନେ ବିଚାର କୁବୁଦ୍ଧି କୁଜାତି । କେମନ୍ତେ କାର୍ଯ୍ୟ ବିନଷ୍ଟ ହେବ ରାତାରାତି ॥
ମଧୁ ଫେଣ ଦେଖି ବୃକ୍ଷେ କୁଟିଳା ଶବରୀ । ଯେମନ୍ତେ ଧାଉଁ ଖୋଜଇ ପାଇବ କପଟ ॥୨॥
ବିକଳେ ଗଲା ଭରତ ଜନନୀଙ୍କ କତି । କପାଇଁ ବିରସ ? ହସି ରାଣୀ ପଚାରନ୍ତି ॥
ଉତ୍ତର ନ ଦେଇ ଦୀର୍ଘ ଶ୍ୱାସ ସେ ନିଅଇ । ନାରୀର ଚରିତ କରି ଅଶ୍ରୁ ବିସର୍ଜଇ ॥୩॥
ହସି ଭାଷିଲେ ମନ୍ଥରୀ ତୋ ଗାଲୁ କାରଣ । ମନେ ହୁଏ ଶିକ୍ଷା କିଛି ଦେଇଛି ଲକ୍ଷ୍ମଣ ॥
ତଥାପି ନ ବୋଲି ବଡ଼ ପୋଇଲି ପାପିନୀ । ଛାଡ଼ଇ ନିଃଶ୍ୱାସ ଯେହ୍ନେ କାଳୀ ଭୁଜଙ୍ଗିନୀ ॥୪॥

ସଭୟେ ପୁଚ୍ଛନ୍ତି ମନ୍ଥରାକୁ ରାଣୀ ଶ୍ରୀରାମ ନୃପ କୁଶଳ ।
ଲକ୍ଷ୍ମଣ ଭରତ ଶତ୍ରୁଘ୍ନଙ୍କ, ଶୁଣି ଦହିଲା କୁଜୀ ଅନ୍ତର ॥୧୩॥

କିଏ କେଉଁ ଶିକ୍ଷା ଦେବ ମୋତେ ମା' କପାଇଁ । ଗାଲୁ ବା କରିବ ଏବେ କାହା ବଳ ପାଇ ॥
ରାମଙ୍କୁ ଛାଡ଼ି କୁଶଳ ଅନ୍ୟ କା'ର ଆଜ । ଯାହାକୁ ନୃପ ଦିଅନ୍ତି ପଦ ଯୁବରାଜ ॥୧॥

---

ତାହା ବିଚାର କରିବାକୁ ଲାଗିଲା । କୌଣସି କୁଟିଳା ଶବରୀ ମଧୁଫେଣା ଲାଗିଥିବାର ଦେଖି, ଏହାକୁ କପଟ ଉପାୟରେ ଭାଙ୍ଗି ଦେବି, ଏହି ଚିନ୍ତାରେ ବ୍ୟସ୍ତ ଥାଏ । ସେହିପରି ମନ୍ଥରା ସମସ୍ତ ଆୟୋଜନ ପଣ୍ଡ କରିଦେବାକୁ ବସିଲା ॥ ୨ ॥ ସେ ଶୋକାତୁର ହୋଇ ଭରତଙ୍କ ଜନନୀ କୈକେୟୀଙ୍କ ପାଖକୁ ଗଲା । ରାଣୀ କୈକେୟୀ ହସି ପଚାରିଲେ, "ତୁ ବିରସ କାହିଁକି ?" ମନ୍ଥରା କିଛି ଉତ୍ତର ଦେଉ ନ ଥାଏ । କେବଳ ଦୀର୍ଘଶ୍ୱାସ ନେଉଥାଏ ଏବଂ ସ୍ତ୍ରୀ-ଚରିତ ଅଭିନୟ କରି ଅଶ୍ରୁ ବୁହାଉଥାଏ ॥ ୩ ॥ ରାଣୀ ହସି ହସି କହିଲେ, "ତୋର ତ ବଡ଼ ଗାଲୁ । ମୁଁ ଅନୁମାନ କରୁଛି, ସତେ ଯେପରି ଲକ୍ଷ୍ମଣ ତୋତେ ଶିକ୍ଷା (ଦଣ୍ଡ) ଦେଇଛନ୍ତି । ତଥାପି ସେହି ମହାପାପିନୀ ଦାସୀ କିଛି ହେଲେ କହୁ ନ ଥାଏ । ସତେ ଯେପରି କାଳୀନାଗୁଣୀ ଫୁତ୍କାର ଛାଡ଼ୁଅଛି ॥ ୪ ॥ ଦୋହା :—ତତ୍ପରେ ରାଣୀ ଡରି କହିଲେ, "ଆରେ କହୁନାହୁଁ କାହିଁକି ? ଶ୍ରୀରାମ, ରାଜା, ଲକ୍ଷ୍ମଣ, ଭରତ ଓ ଶତ୍ରୁଘ୍ନ କୁଶଳରେ ଅଛନ୍ତି ତ ?" ଏହା ଶୁଣି କୁଜା ମନ୍ଥରାର ହୃଦୟରେ ଅତିଶୟ

ଭୟଉ କୌସିଲହି ବିଧି ଅତି ଦାହିନ । ଦେଖତ ଗରବ ରହତ ଉର ନାହିନ ॥
ଦେଖହୁ କସ ନ ଜାଇ ସବ ସୋଭା । ଜୋ ଅବଲୋକ ମୋର ମନୁ ଛୋଭା ॥୨॥
ପୂତୁ ବିଦେସ ନ ସୋଚୁ ତୁମ୍ହାରେଁ । ଜାନତି ହହୁ ବସ ନାହୁ ହମାରେଁ ॥
ନୀଦ ବହୁତ ପ୍ରିୟ ସେଜ ତୁରାଈ । ଲଖହୁ ନ ଭୂପ କପଟ ଚତୁରାଈ ॥୩॥
ସୁନି ପ୍ରିୟ ବଚନ ମଲିନ ମନୁ ଜାନୀ । ଝୁକୀ ରାନି ଅବ ରହୁ ଅରଗାନୀ ॥
ପୁନି ଅସ କବହୁଁ କହସି ଘରଫୋରୀ । ତବ ଧରି ଜୀଭ କଢ଼ାୱଉଁ ତୋରୀ ॥୪॥

କାନେ ଖୋରେ କୂବରେ କୁଟିଲ କୁଚାଲି ଜାନି ।
ତିୟ ବିସେଷି ପୁନି ଚେରି କହି ଭରତମାତୁ ମୁସୁକାନି ॥୧୪॥

ପ୍ରିୟବାଦିନି ସିଖ ଦୀହ୍ନିଉଁ ତୋହୀ । ସପନେହୁଁ ତୋ ପର କୋପୁ ନ ମୋହୀ ॥
ସୁଦିନୁ ସୁମଂଗଲ ଦାୟକୁ ସୋଈ । ତୋର କହା ଫୁର ଜେହି ଦିନ ହୋଈ ॥୧॥

---

ହୋଇଛି ବିଧି କୌଶଲ୍ୟାଦେବୀଙ୍କ ଡାହାଣ । ଦେଖନ୍ତେ ହୃଦୟ ମଧ୍ୟେ ନ ରହଇ ଟାଣ ॥
ଦେଖୁ ନାହଁ ଯାଇ କିପାଁ ପୁର ଶୋଭାବୃନ୍ଦ । ଯାହା ବିଲୋକି କ୍ଷୋଭିତ ହୁଏ ମୋର ହୃଦ ॥୨॥
ପୁତ୍ର ବିଦେଶରେ, ମନେ ନାହିଁ ତୋ ଶୋଚନା । ରାଜା ଆମ ବଶୀଭୂତ, ଭଲେ ଅଛୁ ଜଣା ॥
ତୋଶକ ତୂଳିକା ଶେଯେ ନିଦ୍ରା ପ୍ରିୟ ଭୂରି । ଲକ୍ଷ୍ୟ ନ କରୁ ନୃପଙ୍କ କପଟ ଚାତୁରୀ ॥୩॥
ଶୁଣି ପ୍ରିୟବାଣୀ ମନ କଳୁଷିତ ଜାଣି । ଚୁପ ରହ, କହି ତାହୁଁ ତାଳିକଲେ ରାଣୀ ॥
ପୁଣି ଏପରି କହିବୁ ଘର-ପୋଡ଼ୀ କେବେ । ଉପାଡ଼ିନେବି ତୋହର ଜିଭ ଧରି ତେବେ ॥୪॥

କୁଜା କେମ୍ପା କଣା ସବେ ଅଲକ୍ଷଣା କୁଟିଳ କୁଚାଳୀ ଜାଣି ।
ନାରୀ ବିଶେଷରେ ପୋଇଲି ତହିଁରେ କହି ହସିଦେଲେ ରାଣୀ ॥୧୪॥

ପ୍ରିୟବାଦିନୀ ତୋତେ ମୁଁ ଦିଏ ଉପଦେଶ । ସ୍ୱପ୍ନେହେଁ ତୋ ପ୍ରତି ମୋର ନାହିଁ କୋପ ଲେଶ ॥
ସେହି ଶୁଭଦିନ ଶୁଭଦାୟକ ଶୋଭନ । ଯେଉଁଦିନ ସତ୍ୟ ହେବ ତୋହର ବଚନ ॥୧॥

---

ପୀଡ଼ା ହେଲା ॥ ୧୩ ॥ ଚୌପାଈ —ସେ କହିଲା, "ମୋତେ କେହି ଶିକ୍ଷା ଦେବ କାହିଁକି ଏବଂ ମୁଁ କାହା ବଳ ପାଇ ବଢ଼ି ବଢ଼ି କଥା କହିବି ? ରାଜା ରାମଚନ୍ଦ୍ରଙ୍କୁ ଯୁବରାଜ ପଦ ଦେଉଅଛନ୍ତି । ସୁତରାଂ ତାହାଙ୍କୁ ଛାଡ଼ି ଆଜି ଆଉ କାହାର କୁଶଳ ? ॥୧॥ ଆଜି ବିଧାତା କୌଶଲ୍ୟାଙ୍କର ଅତି ଅନୁକୂଳ ହୋଇଛନ୍ତି । ଏହା ଦେଖି ତାଙ୍କ ହୃଦୟରୁ ଗର୍ବ ଉଛୁଳି ପଡ଼ୁଛି । ତୁମେ ନିଜେ ଯାଇ ସବୁ ଶୋଭା କାହିଁକି ଦେଖୁନାହଁ ? ତାହା ଦେଖି ମୋ ମନରେ ଅତିଶୟ କ୍ଷୋଭ ଜାତ ହେଉଅଛି ॥ ୨ ॥ ତୁମର ପୁଅ ବିଦେଶରେ, ତୁମର କିଛି ଚିନ୍ତା ନାହିଁ । ଜାଣିଛ, ସ୍ୱାମୀ ଆମର ବଶୀଭୂତ ? ତୂଳା-ଶେଯର ଗଦି ପଡ଼ିଥିବା ପଲଙ୍କ ଉପରେ ପଡ଼ି ପଡ଼ି ନିଦ୍ରା ଯିବାକୁ ତୁମେ ଖୁବ ପସନ୍ଦ କର । ରାଜାଙ୍କ କପଟ-ପୂର୍ଣ୍ଣ ଚାତୁରୀ ତୁମେ ଲକ୍ଷ୍ୟ କରିପାର ନାହିଁ ॥୩॥ ମନ୍ଥରାର ପ୍ରିୟ ବଚନ ଶୁଣି ରାଣୀ କେକୟୀ ତାହାର ମନ ମଳିନ ବୋଲି ଜାଣିଲେ ଏବଂ ତାହାକୁ ତାଳିକି କହିଲେ, "ବେଶ୍, ଏବେ ଚୁପ ରହ; ଆଲୋ ଘର-ଭଙ୍ଗେଇ ! ଆଉ ପୁଣି କେବେ

ଜେଠ ସ୍ୱାମି ସେବକ ଲଘୁ ଭାଈ । ଯହ ଦିନକର କୁଲ ରୀତି ସୁହାଈ ॥
ରାମତିଲକୁ ଜୌଁ ସାଁଚେହୁଁ କାଲୀ । ଦେଉଁ ମାଗୁ ମନ ଭାୱତ ଆଲୀ ॥୨॥
କୌସଲ୍ୟା ସମ ସବ ମହତାରୀ । ରାମହି ସହଜ ସୁଭାୟଁ ପିଆରୀ ॥
ମୋ ପର କରହିଁ ସନେହୁ ବିସେଷୀ । ମୈଁ କରି ପ୍ରୀତି ପରୀଛା ଦେଖୀ ॥୩॥
ଜୌଁ ବିଧି ଜନମୁ ଦେଇ କରି ଛୋହୂ । ହୋହୁଁ ରାମ ସିୟ ପୂତ ପୁତୋହୂ ॥
ପ୍ରାନ ତେଁ ଅଧିକ ରାମୁ ପ୍ରିୟ ମୋରେଁ । ତିନ୍ହ କେଁ ତିଲକ ଛୋଭୁ କସ ତୋରେଁ ॥୪॥

ଭରତସପଥ ତୋହି ସତ୍ୟ କହୁ ପରିହରି କପଟ ଦୁରାଉ ॥
ହରଷ ସମୟ ବିସମଉ କରସି କାରନ ମୋହି ସୁନାଉ ॥୧୫॥

---

ଅଗ୍ରଜ ସ୍ୱାମୀ, ଅନୁଜ ଅଟେ ଅନୁଚର । ଏହି ଦିନକର କୁଳ ରୀତି ମନୋହର ॥
ରାମ ଅଭିଷେକ ହେବ ସତ୍ୟ କାଲି ଯେବେ । ମନଇଚ୍ଛା ବର ମାଗ, ଦେବି ଆଳି ତେବେ ॥୨॥
ଇତର ଜନନୀ ସବେ କୌଶଲ୍ୟାଙ୍କ ସମ । ସହଜ ସ୍ୱଭାବେ ପ୍ରିୟ ରାମଙ୍କ ପରମ ॥
ମୋ ଉପରେ କରଇ ସେ ଅନୁରାଗ ଭାରି । ପ୍ରୀତି ପରୀକ୍ଷା କରି ମୁଁ ଦେଖିଛି ବିଚାରି ॥୩॥
ଯେବେ ସ୍ନେହଯା ବହିଣ ଜନ୍ମ ଦିଏ ବିଧି । ରାମ ସୀତା ପୁତ୍ର-ବଧୂରୂପେ ଥାନ୍ତି ଲଭି ॥
ପ୍ରାଣରୁ ଅଧିକ ପ୍ରିୟ ରାମଚନ୍ଦ୍ର ମୋର । ତା'ର ଅଭିଷେକେ କିପାଁ କ୍ଷୋଭ ହୁଏ ତୋର ॥୪॥

କପଟ ଗୁପତ ତେଜି କହ ସତ ଭରତର ରାଣ ତୋତେ ।
ହରଷ ସମୟେ କରୁ ଯେ ବିଷାଦ, କାରଣ ଶୁଣାଅ ମୋତେ ॥୧୫॥

---

ଏମିତି କହିବୁ ତ ତୋ ଜିଭ ଟାଣି ବାହାର କରିଦେବି ॥ ୪ ॥ ଦୋହା —କଣା, ଲେଙ୍ଗଡା ଓ କୁଜାମାନେ କୁଟିଳ ଓ କୁଚକ୍ରୀ ବୋଲି ଜାଣିବା ଦରକାର । ସେମାନଙ୍କ ମଧ୍ୟରେ ପୁଣି ସ୍ତ୍ରୀ ଏବଂ ବିଶେଷରେ ଦାସୀ ! ଏତିକି କହି ଭରତଙ୍କ ମାତା କୈକେୟୀ ମୃଦୁ ହସିଲେ ॥ ୧୪ ॥ ଚୌପାଈ :—ଏବଂ ପୁଣି କହିଲେ, "ହେ ପ୍ରିୟବାଦିନି ମନ୍ଥରା ! ମୁଁ ତୋତେ ଶିକ୍ଷା ଦେବାପାଇଁ ଏତିକି କଥା କହୁଛି, ନୋହିଲେ ସ୍ୱପ୍ନରେ ସୁଦ୍ଧା ତୋ ପ୍ରତି ମୋର କ୍ରୋଧ ନାହିଁ । ଯେଉଁଦିନ ତୋ କଥା ସତ୍ୟ ହେବ ଅର୍ଥାତ୍ ଶ୍ରୀରାମଚନ୍ଦ୍ରଙ୍କ ରାଜ୍ୟାଭିଷେକ ହେବ, ସେହି ଦିନ ବାସ୍ତବରେ ସୁମଙ୍ଗଳ-ଦାୟକ ଶୁଭଦିନ ॥ ୧ ॥ ବଡଭାଇ ସ୍ୱାମୀ ଓ ସାନଭାଇ ସେବକ, ଏହା ସୂର୍ଯ୍ୟବଂଶର ସୁନ୍ଦର ରୀତି । ଯଦି ସତରେ କାଲି ଶ୍ରୀରାମଙ୍କ ଅଭିଷେକ, ତେବେ ହେ ସଖି ! ତୋ ମନକୁ ପସନ୍ଦ ଯେ କୌଣସି ବସ୍ତୁ ମାଗ, ମୁଁ ଦେବି ॥ ୨ ॥ ସରଳ ସ୍ୱଭାବର ବଶବର୍ତ୍ତୀ ଶ୍ରୀରାମଙ୍କୁ ସମସ୍ତ ମାତା କୌଶଲ୍ୟାଙ୍କ ପରି ପ୍ରିୟ । ମୋତେ ତ ସେ ବିଶେଷ ପ୍ରେମ କରନ୍ତି । ମୁଁ ତାଙ୍କ ପ୍ରୀତି ପରୀକ୍ଷା କରି ଦେଖିଛି ॥ ୩ ॥ ବିଧାତା କୃପା କରି ଅମ୍ଭକୁ ଜନ୍ମ ଦେଇଛନ୍ତି ଏବଂ ଶ୍ରୀରାମଙ୍କ ସମାନ ପୁତ୍ର ଓ ସୀତାଙ୍କ ସମାନ ବଧୂ ଆମେ ଲାଭ କରିଅଛୁ । ଶ୍ରୀରାମ ମୋତେ ପ୍ରାଣଠାରୁ ବଳି ପ୍ରିୟ । ତାଙ୍କ ଅଭିଷେକ କଥା ଶୁଣି ତୋର କ୍ଷୋଭ କିପରି ହେଲା ? ॥ ୪ ॥ ଦୋହା :—ତୋତେ ଭରତ ରାଣ, ଛଳକପଟ ଛାଡି

କହିଁ ବାର ଆସ ସବ ପୂଜୀ । ଅବ କଛୁ କହବ ଜୀଭ କରି ଦୂଜୀ ॥
ଫୋରୈ ଜୋଗୁ କପାରୁ ଅଭାଗା । ଭଲେଉ କହତ ଦୁଖ ରଉରେହିଁ ଲାଗା ॥୧॥
ନହହିଁ ଝୂଠି ଫୁରି ବାତ ବନାଈ । ତେ ପ୍ରିୟ ତୁହ୍ମହିଁ କରୁଇ ମୈଁ ମାଈ ॥
ହମହୁଁ କହବି ଅବ ଠକୁରସୋହାତୀ । ନାହିଁ ତ ମୌନ ରହବ ଦିନୁ ରାତୀ ॥୨॥
କରି କୁରୂପ ବିଧି ପରବସ କୀହ୍ନା । ବବା ସୋ ଲୁନିଅ ଲହିଅ ଜୋ ଦୀହ୍ନା ॥
କୋଉ ନୃପ ହୋଉ ହମହି କା ହାନୀ । ଚେରି ଛାଡ଼ି ଅବ ହୋବ କି ରାନୀ ॥୩॥
ଜାରୈ ଜୋଗୁ ସୁଭାଉ ହମାରା । ଅନଭଲ ଦେଖି ନ ଜାଇ ତୁହ୍ମାରା ॥
ତାତେଁ କଛୁକ ବାତ ଅନୁସାରୀ । ଛମିଅ ଦେବି ବଡ଼ି ଚୂକ ହମାରୀ ॥୪॥

ଗୂଢ଼ କପଟ ପ୍ରିୟ ବଚନ ସୁନି ତୀୟ ଅଧରବୁଧି ରାନି ।
ସୁରମାୟା ବସ ବୈରିନହି ସୁହୃଦ ଜାନି ପତିଆନି ॥୧୬॥

---

ଏକ ବାରକରେ ଆଶା ସମସ୍ତ ପୂରିଛି । ଏବେ ଅନ୍ୟ ଜିହ୍ୱା କରି କହିବି ଯେ କିଛି ॥
ଛେଚିବାର ଯୋଗ୍ୟ ଏହି ମନ୍ଦ କପାଳକୁ । ଭଲ ବି କହନ୍ତେ ଦୁଃଖ ଲଗଇ ତୁମ୍ଭଙ୍କୁ ॥୧॥
ସତ ମିଛ କଥାଗୁଡ଼େ ଯୋଡ଼ି ଯେ କହଇ । ସେ ତୁମ୍ଭର ବଡ଼ ପ୍ରିୟ ପିତା ମୁଁ ଲାଗଇ ॥
ଏବେ ମୁଁ ହଁରୁହଁା କଥା ମୁଁ ମଧ କହିବି । ନାହିଁ ତ ନିଶି ଦିବସ ମଉନ ରହିବି ॥୨॥
କୁରୂପ କରି ବିଧାତା କଲା ପରାଧୀନ । ବୁଣିଛୁ ଯା' କାଟେ, ଦେବା ପାଉଛୁ ଏ ଦିନ ॥
କିଏ ରାଜା ହେଉ ମୋର ତହିଁରେ କି ହାନି । ପୋଇଲି ଛାଡ଼ି କି ଆଉ ହେବି ଏବେ ରାଣୀ ॥୩॥
ଜାଳିବା ଯୋଗ୍ୟ ଅଟଇ ସ୍ୱଭାବ ମୋହର । ଦେଖି ନ ପାରୁଛୁ କେବେ ଅଭଲ ତୁମ୍ଭର ॥
ଆରମ୍ଭି ଥିଲି ପ୍ରସଙ୍ଗ ସେ କାରଣୁ କିଛି । କ୍ଷମ ଦେବି, ମୋର ବଡ଼ ଅପରାଧ ହୋଇଛି ॥୪॥

ଗୂଢ ସକପଟ ପ୍ରିୟବାଣୀ ଶୁଣି ସ୍ତ୍ରୀ ଅଧୀରବୁଦ୍ଧି ରାଣୀ ।
ଦେବ ମାୟାବଶ କଲେ ବିଶ୍ୱାସ ବୈରିଣୀକୁ ହିତ ଜାଣି ॥୧୬॥

---

ସନ କଥା କହୁ । ହରଷ ସମୟରେ ବିଷାଦ କାହିଁକି କରୁଛୁ ? ମୋତେ ଏହାର କାରଣ ଶୁଣା ॥ ୧୫ ॥ ଚୌପାଇ —ମନ୍ଥରା କହିଲା, "ଅରେ କହିଲି ତ, ମନର ସବୁ ଆଶା ପୂରଣ ହୋଇଗଲା । ଏବେ ପୁଣି କଭ ଦ୍ୱିତୀୟ ଥର ଲଗାଇ ପୁଣି କିଛି କହିବି ' ମୋର ଅଭାଗ୍ୟ କପାଳ ଫାଟିବା ଯୋଗ୍ୟ । ଭଲ କଥା କହିଲେ, ଆପଣଙ୍କୁ ଦୁଃଖ ହେଉଛି ॥ ୧ ॥ ଯେଉଁମାନେ ସତମିଛ କଥା ଫାନ୍ଦ କହନ୍ତି, ହେ ମାତା ! ସେହିମାନେ ହିଁ ତୁମର ପ୍ରିୟ ଏବଂ ମୁଁ ତୁମକୁ କର୍କଶ ଲାଗୁଛି । ଏବେ ମୁଁ ଖୋସାମଦିଆ କଥା କହିବି । ନାହିଁ ତ ଦିନରାତି ମୌନ ରହିବି ॥ ୨ ॥ ବିଧାତା ମୋତେ କୁରୂପ କରି ପରବଶ କରିଦେଇଛି ! ଅନ୍ୟର କି ଦୋଷ ' ଯେମିତି ବୁଣିଛି, ସେମିତି କାଟୁଛି, ଯାହା ଦେଇଛି, ସେଇଆ ପାଉଛି । ଯେ କେହି ରାଜା ହେଉ, ଆମର ଯାଏ କେଉଁତେ, ଆସେ କେତେ ? ଦାସୀ ପଦ ଛାଡ଼ି ଏବେ ମୁଁ କଣ ରାଣୀ ହୋଇଯାଉଛି ? ॥ ୩ ॥ ଆମ ସ୍ୱଭାବ ପୋଡ଼ିଦିବା ଯୋଗ୍ୟ । କାରଣ, ତୁମର ଅହିତ ମୁଁ ଦେଖିପାରି ନାହିଁ

ସାଦର ପୁନି ପୁନି ପୂଁଛତି ଓହୀ । ସବରୀଗାନ ମୃଗୀ ଜନୁ ମୋହୀ ॥
ତସି ମତି ଫିରୀ ଅହଇ ଜସି ଭାବୀ । ରହସୀ ଚେରି ଘାତ ଜନୁ ଫାବୀ ॥୧॥
ତୁମ୍ହ ପୂଁଛହୁ ମୈଁ କହତ ଡେରାଉଁ । ଧରେହୁ ମୋର ଘରଫୋରୀ ନାଉଁ ॥
ସଜି ପ୍ରତୀତି ବହୁବିଧି ଗଢ଼ି ଛୋଲୀ । ଅୱଧ ସାଢ଼ସାତୀ ତବ ବୋଲୀ ॥୨॥
ପ୍ରିୟ ସିୟ ରାମୁ କହା ତୁମ୍ହ ରାନୀ । ରାମହି ତୁମ୍ହ ପ୍ରିୟ ସୋ ଫୁରି ବାନୀ ॥
ରହା ପ୍ରଥମ ଅବ ତେ ଦିନ ବୀତେ । ସମଉ ଫିରେଁ ରିପୁ ହୋହିଁ ପିରୀତେ ॥୩॥
ଭାନୁ କମଲ କୁଲ ପୋଷନିହାରା । ବିନୁ ଜଲ ଜାରି କରଇ ସୋଇ ଛାରା ।
ଜରି ତୁମ୍ହାରି ଚହ ସବତି ଉଖାରୀ । ରୁଁଧହୁ କରି ଉପାଉ ବର ବାରୀ ॥୪॥

---

ସାଦରେ ତାହାଙ୍କୁ ପଚାରନ୍ତି ପୁଣି ପୁଣି । ଶବରୁଣୀ ଗାନେ ଯେସନ୍ତେ ମୋହିତ ମୃଗୁଣୀ ॥
ଯେମନ୍ତେ ଭାବୀ ତେମନ୍ତେ ମତି ବଦଳିଲା । ହରଷ ହୁଏ ପୋଇଲି ଦାଉଁକ ଫାବିଲା ॥୧॥
ତୁମ୍ଭେ ପଚାରୁଛ ମୁହିଁ କହିବାକୁ ଡରେ । ଘର-ଫୋଡ଼ୀ ନାମ ମୋର ଦେଲ ପ୍ରଥମରେ ॥
ପ୍ରତୀତି ଜନ୍ମାଇ ଗଢ଼ି ଛେଲି ନାନାମତେ । ଅଯୋଧ୍ୟାର ଶନିଦଶା ବୋଲେ ଏଥୁ ଅନ୍ତେ ॥୨॥
ପ୍ରିୟ ମୋତେ ସୀତାରାମ କହ ତୁମ୍ଭେ ରାଣୀ । ରାମଙ୍କ ବ ତୁମ୍ଭେ ପ୍ରିୟ ଏହା ସତ୍ୟବାଣୀ ॥
ଥିଲା ପ୍ରଥମେ, ସେ ଦିନ ହେଲାଣି ଅତୀତ । କାଳ ବଦଳନ୍ତେ ଶତ୍ରୁ ହୋଇଯାଏ ମିତ ॥୩॥
ଭାନୁ କମଳ-କୁଳର ପୋଷକ ଅଟଇ । ଜଳ ବିନା ଜାଳି ତାକୁ ଭସ୍ମ ସେ କରଇ ॥
ତୁମ୍ଭ ମୂଳ ଉତ୍ପାଟନେ ଚାହେଁ ସଉତୁଣୀ । ଉପାୟ-ଉତ୍ତମ-ବାଡେ ରୁନ୍ଧ ତୁମ୍ଭେ ପୁଣି ॥୪॥

---

ଏଣୁ କିଛି କଥାବାର୍ତ୍ତା ଚଳାଇଥିଲି ମାତ୍ର । କିନ୍ତୁ ହେ ଦେବି ! ମୋର ବଡ ଭୁଲ ହୋଇଛି, କ୍ଷମା କର ।" ॥ ୪ ॥ ଦୋହା :—ରାଣୀ ସହଜେ ତ ଅସ୍ଥିର-ବୁଦ୍ଧି ନାରୀ । ପୁଣି ଦେବତାଙ୍କ ମାୟାର ବଶୀଭୂତ ହୋଇ ପଡିଥିଲେ । ତେଣୁ ଦାସୀର ରହସ୍ୟ-ମୟ, କପଟ-ପୂର୍ଣ୍ଣ ପ୍ରିୟ ବଚନ ଶୁଣି ସେ ଶତ୍ରୁ ବୋଲି ଯାହାକୁ ମନେ କରୁଥିଲେ, ତାହାକୁ ଏବେ ଆପଣାର ହିତକାରିଣୀ ସୁହୃଦ ବୋଲି ମନେ କଲେ ଏବଂ ତାହାକୁ ବିଶ୍ୱାସ କରିନେଲେ ॥ ୧୬ ॥ ଚୌପାଈ :—ବାରମ୍ବାର ରାଣୀ ତାହାକୁ ଆଦରରେ ପଚାରୁଥା'ନ୍ତି, ଯେତେ ଯେପରି ଶବରର ସଙ୍ଗୀତ-ଗାନରେ ହରିଣୀ ବିମୋହିତା ହୋଇ ପଡ଼ିଅଛି । ଭବିତବ୍ୟବଶ ପରି ତାଙ୍କ ବୁଦ୍ଧି ମଧ୍ୟ ଭ୍ରମ ହୋଇଗଲା । ଦାସୀ ଆପଣାର ମନ୍ତ୍ର କାଟୁ କରୁଛି ବୋଲି ଜାଣି ଆନନ୍ଦିତ ହେଲା ॥ ୧ ॥ ସେ କହିଲା, "ତୁମେ ପଚାରୁଛ, କିନ୍ତୁ ମୁଁ କହିବାକୁ ଡରୁଛି । କାରଣ ତୁମେ ପ୍ରଥମରୁ ମୋ ନାମ ଘର-ଭଙ୍ଗେଇ ବୋଲି ରଖିଦେଇଛ । ବହୁତ ପ୍ରକାରେ ବନେଇ ଚୁନେଇ, ଖୁବ୍ ବିଶ୍ୱାସ ଜମାଇ ଅଯୋଧ୍ୟାର ସାଢେ ସାତବର୍ଷର ଶନିଦଶାର ମୂର୍ତ୍ତି-ସ୍ୱରୂପିଣୀ ମନ୍ଥରା କହିଲା—"ହେ ରାଣି ! ତୁମେ ଯାହା କହିଲ ଯେ, ସୀତାରାମ ତୁମର ପ୍ରିୟ ଏବଂ ତୁମେ ରାମଙ୍କର ପ୍ରିୟ; ତାହା ସତ କଥା । କିନ୍ତୁ ଏହା ପୂର୍ବର କଥା, 'ଏବେ ସେଦିନ ବିତି ଯାଇଛି । ସମୟ ବଦଳି ଗଲେ ମିତ୍ର ମଧ୍ୟ ଶତ୍ରୁ ହୋଇଯାଏ ॥ ୨-୩ ॥ ସୂର୍ଯ୍ୟ କମଳ-କୁଳର ପାଳକ

ତୁହ୍ମହି ନ ସୋଚୁ ସୋହାଗ ବଲ ନିଜ ବସ ଜାନହୁ ରାଉ ।
ମନ ମଲୀନ ମୁହଁ ମୀଠ ନୃପୁ ରାଉର ସରଲ ସୁଭାଉ ॥୧୭॥
ଚତୁର ଗଁଭୀର ରାମ ମହତାରୀ । ବୀଚୁ ପାଇ ନିଜ ବାତ ସଁୱାରୀ ॥
ପଠଏ ଭରତୁ ଭୂପ ନନିଅଉରେଁ । ରାମମାତୁ ମତ ଜାନବ ରଉରେଁ ॥୧॥
ସେବହିଁ ସକଲ ସବତି ମୋହି ନୀକେଁ । ଗରବିତ ଭରତମାତୁ ବଲ ପୀ କେଁ ॥
ସାଲୁ ତୁହ୍ମାର କୌସିଲହି ମାଈ । କପଟ ଚତୁର ନହିଁ ହୋଇ ଜନାଈ ॥୨॥
ରାଜହି ତୁହ୍ମ ପର ପ୍ରେମୁ ବିସେଷୀ । ସବତି ସୁଭାଉ ସକଇ ନହିଁ ଦେଖୀ ॥
ରଚି ପ୍ରପଂଚୁ ଭୂପହି ଅପନାଈ । ରାମ ତିଲକ ହିତ ଲଗନ ଧରାଈ ॥୩॥

---

ସ୍ୱସୌଭାଗ ବଳେ ଚିନ୍ତା ନାହିଁ ତବ ଜାଣ ନିଜ ବଶ ଧବ ।
ମିଠା-ମୁହଁ ରାୟ, ମଳିନ-ହୃଦୟ, ସରଳ ସ୍ୱଭାବ ତବ ॥୧୭॥
ଚତୁରା ଗମ୍ଭୀର ରାମ ଜନନୀ ଅଟଇ । ବେଳ ପାଇ ନିଜ କାର୍ଯ୍ୟ ସାଧି ସେ ନିଅଇ ॥
ପଠାଇଲେ ମାମୁଁ ଘର ଭରତଙ୍କୁ ରାଣ । ରାମ ମାତାର ସମ୍ମତି ତହିଁ ତୁମ୍ଭେ ଜାଣ ॥୧॥
ସେବନ୍ତି ସ୍ୱଭାବେ ମୋତେ ସାବତ ସକଳେ । ଭରତ-ମାତା ଗର୍ବିତ ଅଟେ କାନ୍ତ ବଳେ ॥
ତୁମ୍ଭେ ଶୂଳ ସମ ଲାଗୁଅଛ କୌଶଲ୍ୟାଙ୍କୁ । କପଟ-ଚତୁରା, ନ ଚିହ୍ନାଏ ସେ କାହାକୁ ॥୨॥
ନରପତିଙ୍କ ଅଧିକ ପ୍ରୀତି ତୁମ୍ଭଠାରେ । ସଉତୁଣୀ ସ୍ୱଭାବରୁ ଦେଖି ସେ ନ ପାରେ ॥
ରଚି ପ୍ରପଞ୍ଚ ନୃପଙ୍କୁ ସ୍ୱବଶ କରିଛି । ରାମ ତିଳକ ନିମନ୍ତେ ଲଗ୍ନ ସଧାଇଛି ॥୩॥

---

ଏବଂ ଜଳ ବିନା (ଜଳ ଶୁଖାଇ) ସେହି ସୂର୍ଯ୍ୟ ପୁଣି କମଳକୁ ଜାଳି ଭସ୍ମ କରି ଦିଅନ୍ତି । ସଉତୁଣୀ କୌଶଲ୍ୟା ତୁମର ମୂଳୋତ୍ପାଟନ କରିବାକୁ ଇଚ୍ଛୁକ । ଏଣୁ ଉପାୟରୂପ ଶ୍ରେଷ୍ଠ ବାଡ ବା ଘେରା ଲଗାଇ ତୁମ ମୂଳକୁ ଦୃଢ଼ ଭାବରେ ସୁରକ୍ଷିତ କର ॥ ୪ ॥ ଦୋହା :- ଆପଣାର ସୋହାଗ ବା ମିଥ୍ୟା ବଳ ବିଷୟରେ ତୁମର ଟିକିଏ ହେଲେ ଚିନ୍ତା ନାହିଁ । ରାଜାଙ୍କୁ ଆପଣାର ବଶୀଭୂତ ବୋଲି ଜାଣି ମନରେ ତୁମ୍ଭର ବୃଥା ଦମ୍ଭ ଅଛି । କିନ୍ତୁ ରାଜା ମନରେ ଅତି ମଳିନ ଓ ମୁହଁରେ ମଧୁର । ତୁମ ସ୍ୱଭାବ ଅତି ସରଳ ॥ ୧୭ ॥ ଚୌପାଇ :—ରାମଙ୍କ ମାତା ଅତି ଚତୁରା ଓ ଗମ୍ଭୀରା । (ତାଙ୍କ ମାୟା କେହି ଜାଣି ପାରନ୍ତି ନାହିଁ ।) ସୁଯୋଗ ପାଇ ସେ ଆପଣା ସ୍ୱାର୍ଥ ସାଧନ କରିନେଲେ । ରାଜା ଭରତଙ୍କୁ ମାମୁଁ ଘରକୁ ପଠାଇ ଦେଲେ । ତହିଁରେ ତୁମେ ରାମ ମାତାଙ୍କର ହିଁ ମନ୍ତ୍ରଣା ଥିଲା ବୋଲି ବେଶ୍ ଜାଣ ॥ ୧ ॥ କୌଶଲ୍ୟା ଭାବନ୍ତି, ଆଉ ସବୁ ସଉତୁଣୀମାନେ ତାଙ୍କର ତ ସେବା କରୁଛନ୍ତି । ଜଣେ ମାତ୍ର ଭରତଙ୍କ ମାତା ପତିବଳରେ ଗର୍ବିତା । ସୁତରାଂ ହେ ମାତା ! କୌଶଲ୍ୟାଙ୍କୁ ତୁମେ ବଡ ଚକ୍ଷୁଶୂଳ ହେଉଛ । କିନ୍ତୁ ସେ କପଟ କରିବାରେ ଚତୁରା । ତେଣୁ ତାଙ୍କ ହୃଦୟର ଭାବ ଜଣାପଡେ ନାହିଁ ॥ ୨ ॥ ତୁମ ଉପରେ ରାଜାଙ୍କର ବିଶେଷ ପ୍ରେମ । ସପତ୍ନୀ ସ୍ୱଭାବବଶତଃ କୌଶଲ୍ୟା ତାହା ଦେଖି ସହିପାରୁନାହାନ୍ତି । ଏଣୁ ସେ ଜାଲ ଫାନ୍ଦ ରାଜାଙ୍କୁ ଆପଣାର ବଶୀଭୂତ କରି

ରଘୁକୁଲ ଉଚିତ ରାମ କହୁଁ ଟୀକା । ସବହି ସୋହାଇ ମୋହି ସୁଠି ନୀକା ॥
ଆଗିଲ ବାତ ସମୁଝି ଡରୁ ମୋହୀ । ଦେଉ ଦୈଉ ଫିରି ସୋ ଫଲୁ ଓହୀ ॥୩॥
ରଚି ପଚି କୋଟିକ କୁଟିଲପନ କୀନ୍ହେସି କପଟ ପ୍ରବୋଧୁ ।
କହେସି କଥା ସତ ସଉତି କୈ ଜେହି ବିଧି ବାଢ଼ ବିରୋଧୁ ॥୧୮॥
ଭାବୀ ବସ ପ୍ରତୀତି ଉର ଆଈ । ପୂଁଛ ରାନି ପୁନି ସପଥ ଦେଵାଈ ॥
କା ପୂଁଛହୁ ତୁମ୍ହ ଅବହୁଁ ନ ଜାନା । ନିଜ ହିତ ଅନହିତ ପସୁ ପହିଚାନା ॥୧॥
ଭୟଉ ପାଖୁ ଦିନ ସଜତ ସମାଜୂ । ତୁମ୍ହ ପାଈ ସୁଧି ମୋହି ସନ ଆଜୂ ॥
ଖାଇଅ ପହିରିଅ ରାଜ ତୁମ୍ହାରେଁ । ସତ୍ୟ କହେଁ ନହିଁ ଦୋଷୁ ହମାରେଁ ॥୨॥
ଜୌଁ ଅସତ୍ୟ କଛୁ କହବ ବନାଈ । ତୌ ବିଧି ଦେଇହି ହମହି ସଜାଈ ॥
ରାମହି ତିଲକ କାଲି ଜୌଁ ଭୟଊ । ତୁମ୍ହ କହୁଁ ବିପତି ବୀଜୁ ବିଧି ବୟଊ ॥୩॥

---

ରାମଙ୍କ ଯୁବରାଜତ୍ୱ ଏ କୁଳ ଧରମ । ସମସ୍ତଙ୍କୁ ଶୋଭେ, ମୋତେ ଲାଗେ ବି ଉତ୍ତମ ॥
କିନ୍ତୁ ଭବିଷ୍ୟକୁ ଚିନ୍ତି ମୋତେ ଲାଗେ ଡର । ଓଲଟି ଦେଉ ସେ ଫଳ ତାହାକୁ ଈଶ୍ୱର ॥୩॥
ରଚଣ କୌଶଳେ କୋଟି କୁଟିଳତା କରି କପଟ ପ୍ରବୋଧ ।
କହେ ସାବତଙ୍କ କାହାଣୀ ଅନେକ ଯେଉଁଥେ ବଢ଼ିବ ବିରୋଧ ॥୧ ॥
ଭାବୀ-ବଶ ହୃଦ ମଧ୍ୟେ ବିଶ୍ୱାସ ପଶିଲେ । ରାଣ ପକାଇଣ ବାରମ୍ବାର ପଚାରିଲେ ॥
କି ପଚାର ଏବେ ମଧ୍ୟ ନ ବୁଝିଲ ରାଣୀ । ଆପଣା ହିତ ଅହିତ ପଶୁ ପାରେ ଜାଣି ॥୧॥
ହେଲାଣି ପକ୍ଷେ ଦିବସ ସଜାନ୍ତେ ସମାଜ । ତୁମେ ପାଇଲ ମୋଠାରୁ ସମାଚାର ଆଜ ॥
ଖାଉଥାଇ ପିନ୍ଧୁଥାଇ ରାଜ୍ୟରୁ ତୁମର । ସତ୍ୟ କହନ୍ତେ ନ ହେବ ଦୂଷଣ ମୋହର ॥୨॥
ଅସତ୍ୟ କହିବି କିଛି ମନୁ ଗଢ଼ି ଯେବେ । ତାହାର ଦଣ୍ଡ ଦଇବ ଦେବ ମୋତେ ତେବେ ॥
ରାମଙ୍କ ରାଜତିଳକ କାଲି ଯେବେ ହେଲା । ତୋ ପାଇଁ ବିପତ୍ତି-ବୀଜ ବିଧି ରୋପିଦେଲା ॥୩॥

---

ପକାଇଲେ ଏବଂ ଭରତଙ୍କ ଅନୁପସ୍ଥିତିରେ ରାମଙ୍କର ରାଜ୍ୟାଭିଷେକ ନିମନ୍ତେ ଲଗ୍ନ ସ୍ଥିର କରାଇନେଲେ ! ॥ ୩ ॥ ରାମଙ୍କର ଅଭିଷେକ ହେଉ, ଏହା ରଘୁକୁଳ ପକ୍ଷରେ ସମୁଚିତ ଏବଂ ଏ କଥା ମଧ୍ୟ ସମସ୍ତଙ୍କର ସ୍ୱାଗତଯୋଗ୍ୟ ଏବଂ ମୋତେ ତ ଏ କଥା ଅତି ଭଲ ଲାଗୁଛି । କିନ୍ତୁ ଭବିଷ୍ୟତ କଥା ବିଚାର କରି ମୋତେ ଡର ଲାଗୁଛି । ଦଇବ ଓଲଟିପଡ଼ି ଏହାର ଫଳ ସେହି କୌଶଲ୍ୟାଙ୍କୁ ଦେଉ ।" ॥ ୪ ॥ ଦୋହା :—ଏହିପରି ମନ୍ଥରା କୋଟି କୋଟି କୁଟିଳ ଓ କପଟ-ଭରା କଥା ବନେଇ ଚୁନେଇ କହି, କୈକେୟୀଙ୍କୁ ଓଲଟାପିଧା ବୁଝେଇ ଦେଲା ଏବଂ ଯେପରି ଭାବରେ କୈକେୟୀଙ୍କ ହୃଦୟରେ ବିରୋଧଭାବନା ବଢ଼ିବ, ସେହି ପ୍ରକାରେ ଶହ ଶହ ସପତ୍ନୀଙ୍କ କାହାଣୀ ବନେଇ-ଚୁନେଇ କହିଲା ॥ ୧୮ ॥ ଚୌପାଈ :—ଭବିତବ୍ୟତାର ଅଧୀନା କୈକେୟୀଙ୍କ ମନରେ ବିଶ୍ୱାସ ଜାତ ହୋଇଗଲା । ରାଣୀ ପୁଣି ରାଣ ପକାଇ ପଚାରିବାକୁ ଲାଗିଲେ । ମନ୍ଥରା କହିଲା, "ପଚାରୁଛ କଣ ? ଆରେ, ତୁମେ ଏବେ ସୁଦ୍ଧା ବୁଝିନାହଁ, ଆପଣାର

ରେଖ ଖଁଚାଇ କହଉଁ ବଲୁ ଭାଷୀ । ଭାମିନ ଭଇହୁ ଦୂଧ କଇ ମାଖୀ ॥
ଜୌଁ ସୁତ ସହିତ କରହୁ ସେବକାଈ । ତୌ ଘର ରହହୁ ନ ଆନ ଉପାଈ ॥୪॥

କଦ୍ରୂଁ ବିନତହି ଦୀହ୍ନ ଦୁଖୁ ତୁମ୍ହହି କୌସିଲାଁ ଦେବ ।
ଭରତୁ ବନ୍ଦିଗୃହ ସେଇହହିଁ ଲଖନୁ ରାମ କେ ନେବ ॥୧୯॥

କୈକୟସୁତା ସୁନତ କଟୁ ବାନୀ । କହି ନ ସକଇ କଛୁ ସହମି ସୁଖାନୀ ॥
ତନ ପସେଉ କଦଲୀ ଜିମି କାଁପୀ । କୁବରୀଁ ଦସନ ଜୀଭ ତବ ଚାଁପୀ ॥୧॥
କହି କହି କୋଟିକ କପଟ କହାନୀ । ଧୀରଜୁ ଧରହୁ ପ୍ରବୋଧିସି ରାନୀ ॥
ଫିରା କରମୁ ପ୍ରିୟ ଲାଗି କୁଚାଲୀ । ବକିହି ସରାହଇ ମାନି ମରାଲୀ ॥୨॥

---

ରେଖା ଟାଣି ଦୃଢ଼ସ୍ୱରେ କହୁଅଛୁ ମୁହିଁ । ନାଗରି ! ଦୁଧର ମାଛି ହେବୁ ନିଶ୍ଚେ ତୁହି ॥
ଯେବେ ତୁ ସେବା କରିବୁ ସହିତ ନନ୍ଦନ । ତେବେ ଭବନେ ରହିବୁ ଗତି ନାହିଁ ଆନ ॥୪॥

କଦ୍ରୂ ବିନତାକୁ ଦୁଃଖ ଦେଲା ପରି ତୋତେ କଉଶଲ୍ୟା ଦେବ ।
ଭରତ ବନ୍ଦୀଘର ସେବିବ, ରାମର ଲକ୍ଷ୍ମଣ ନାୟବ ହେବ ॥୧୯॥

ଶୁଣନ୍ତେ କଟୁ ବଚନ କେକୟ ତନୟୀ । ଭୟେ ଶୁଖିଗଲେ କିଛି ନ ପାରିଲେ କହି ॥
ଅଙ୍ଗ ଘର୍ମପୂର୍ଣ୍ଣ କମ୍ପେ କଦଳୀ ଯେମନ୍ତେ । ଦଶା ଦେଖି କୁଜା ଜିହ୍ୱା କାମୁଡ଼ଇ ଦନ୍ତେ ॥୧॥
କହି କହି ନାନାମତେ କପଟ କାହାଣୀ । ଧୈର୍ଯ୍ୟ ହୃଦେ ଧର, ବୋଲି ପ୍ରବୋଧଇ ରାଣୀ ॥
କର୍ମ ବାମ ହୋଇନ୍ତେ ପ୍ରିୟ କୁଚକ୍ରେ ମଣିଣ । ବଗୁଲୀକୁ ପ୍ରଶଂସିଲେ ମରାଳୀ ଭାବିଣ ॥୨॥

---

ଭଲ ମନ୍ଦକୁ (ଅଥବା ମିଛ ସତ୍‌କୁ) ପସ୍ତ ହୁଡ଼ା ଟାଣି ପକାଏ ॥ ୧ ॥ ପୁରା ପଖଟାଏ ସାମଗ୍ରୀ-ଆୟୋଜନରେ ବିତିଗଲାଣି ଏବଂ ତୁମେ ଆଜ ମୋଠାରୁ ଖବର ପାଉଛ ! ମୁଁ ତୁମର ରାଜ୍ୟରେ ଅନ୍ନବସ୍ତ୍ର ପାଇ ଜୀବନ-ଧାରଣ କରୁଛି । ଏଥି ନିମନ୍ତେ ସତ କହିବାରେ ମୋର କୌଣସି ଦୋଷ ନାହିଁ ॥ ୨ ॥ ଯଦି ମୁଁ ବନେଇଚୁନେଇ ମିଛ କହୁଥାଏ, ତାହା ହେଲେ ବିଧାତା ମୋତେ ଦଣ୍ଡ ଦେବେ । ଯଦି କାଲି ରାମଙ୍କ ରାଜ୍ୟାଭିଷେକ ହୋଇଯାଏ, ତେବେ ବୁଝିରଖ, ତୁମ ନିମନ୍ତେ ବିଧାତା ବିପତ୍ତିର ବୀଜ ବୋଇ ଦେଲେ ॥ ୩ ॥ ହେ ଭାମିନି ! ମୁଁ ଏ କଥା ଭୂଇଁରେ ଗା'ର କାଟି ଜବରଦସ୍ତି କହୁଛି, "ତୁମେ ତ ଏବେ ଦୁଧର ମାଛି ହୋଇଗଲ ' (ଦୁଧରେ ପଡ଼ିଥିବା ମାଛିକୁ ଲୋକମାନେ ବାହାର କରି ଫିଙ୍ଗି ଦିଅନ୍ତି । ସେହିପରି ତୁମକୁ ମଧ୍ୟ ଲୋକମାନେ ଘରୁ ବାହାର କରିଦେବେ ।" ତେଣିକି ତୁମେ ପୁଅ ସହିତ କୌଶଲ୍ୟାଙ୍କ ନୌକରି ବଜାଇବ ତ, ଘରେ ରହିପାରିବ, ଅନ୍ୟଥା ଘରେ ରହିବା'ର ଆଉ ଉପାୟ ନାହିଁ ॥ ୪ ॥ ଦୋହା '—କଦ୍ରୂ ବିନତାଙ୍କୁ ଦୁଃଖ ଦେଇଥିଲେ । ତୁମକୁ କୌଶଲ୍ୟା ଦୁଃଖ ଦେବେ । ଭରତ କା'ରାଗୃହର ବା'ସ୍ତୁ ସେବନ କରିବେ ଏବଂ ଲକ୍ଷ୍ମଣ ରାମଙ୍କ ନାୟବ (ସହକାରୀ) ହେବେ ।" ॥ ୧୯ ॥ ଚୌପାଈ —ମନ୍ଥରାର କଠୋର ବାଣୀ ଶୁଣିବା ମାତ୍ରେ କେକେୟୀ ଡରି ଶୁଖିଗଲେ । କିଛି କହିପାରୁ ନ ଥା'ନ୍ତି । ଶରୀରରୁ ଝାଳ ବହି ଆସିଲା ଏବଂ

ସୁନୁ ମଂଥରା ବାତ ଫୁରି ତୋରୀ । ଦହିନି ଆଁଖି ନିତ ଫରକଇ ମୋରୀ ॥
ଦିନ ପ୍ରତି ଦେଖଉଁ ରାତି କୁସପନେ । କହଉଁ ନ ତୋହି ମୋହବସ ଅପନେ ॥୩॥
କାହ କରୌଁ ସଖି ସଧ ସୁଭାଊ । ଦାହିନ ବାମ ନ ଜାନଉଁ କାଊ ॥୪॥

ଅପନେଁ ଚଲତ ନ ଆଜୁ ଲଗି ଅନଭଲ କାହୁକ କୀହ୍ନ ।
କେହିଁ ଅଘ ଏକହି ବାର ମୋହି ଦୈଅଁ ଦୁସହ ଦୁଖୁ ଦୀହ୍ନ ॥୨୦॥

ନୈହର ଜନମୁ ଭରବ ବରୁ ଜାଇ । ଜିଅତ ନ କରବି ସଵତି ସେବକାଈ ॥
ଅରି ବସ ଦୈଉ ଜିଆବତ ଜାହୀ । ମରନୁ ନୀକ ତେହି ଜୀବନ ଚାହୀ ॥୧॥
ଦୀନ ବଚନ କହ ବହୁବିଧି ରାନୀ । ସୁନି କୁବରୀଁ ତିୟମାୟା ଠାନୀ ॥
ଅସ କସ କହହୁ ମାନି ମନ ଊନା । ସୁଖୁ ସୋହାଗୁ ତୁମ୍ହ କହୁଁ ଦିନ ଦୂନା ॥୨॥

---

ଶୁଣ ମନ୍ଥରା, ବଚନ ସତ୍ୟ ଅଟେ ତୋର । ଡାହାଣ ନେତ୍ର ସ୍ପନ୍ଦନ ହୁଏ ନିତ୍ୟ ମୋର ॥
ପ୍ରତିଦିନ କୁସ୍ୱପନ ରାତ୍ରିରେ ଦେଖୁଛି । ନିଜ ଅଜ୍ଞାନରୁ ତୋତେ କିଛି ନ କହୁଛି ॥୩॥
କି କହିବି ସଖି, ସିଧା ସ୍ୱଭାବ ଅଟଇ । ଡାହାଣ ବାମ କାହାକୁ କିଛି ନ ଜାଣଇ ॥୪॥

ଆପଣା ଜାଣନ୍ତେ ଆଜ ପର୍ଯ୍ୟନ୍ତେ କରି ନାହିଁ ମନ୍ଦ କା'ର ।
କି ପାପରୁ ବିଧି ଦିଏ ଏକାବେଳେ ଏ ଦୁଃସହ ଦୁଃଖ ଭାର ॥୨୦॥

ବାପ ଘରେ ଯାଇ ବରଂ ଜୀବନ କାଟିବି । ଜୀବିତ ଥାଉ ସାବତ ସେବା ନ କରିବି ॥
ଜୀଆଏ ବିଧି ଯାହାକୁ କରି ଅରିବଶ । ଜୀବିତ ଅପେକ୍ଷା ତାର ମରଣ ସରସ ॥୧॥
ଦୀନ ବଚନ କହନ୍ତି ନାନା ମତେ ରାଣୀ । ଶୁଣି କୁବୁଜା କହଇ ନାରୀ ମାୟା ଠାଣି ॥
ଏପରି କାହିଁକି କୁହ ମାନି ମନେ ଊଣା । ତୁମ୍ଭ ଭାଗ୍ୟ–ସୁଖ ନିତ୍ୟ ବଢିବ ଦ୍ୱିଗୁଣା ॥୨॥

---

ସେ କଦଳୀ ବୃକ୍ଷ ପରି କମ୍ପିବାକୁ ଲାଗିଲେ । ସେତିକିବେଳେ କୁବ୍ଜୀ ମନ୍ଥରା ତାହାର ଜିଭକୁ ଦାନ୍ତ ତଳେ ଚାପିଦେଲା । (ଭବିଷ୍ୟତର ଅତି ଭୟଙ୍କର ଚିତ୍ର ବିଷୟ ଶୁଣି କୈକେୟୀଙ୍କ ହୃଦୟଗତି କାଳେ ବନ୍ଦ ହୋଇଯିବ ଏବଂ ଫଳରେ ସମସ୍ତ କାମ ବିଗିଡି ଯିବ, ତାହାର ମନରେ ଏହି ଭୟ ଜାତ ହେଲା ॥ ୧ ॥ ପୁଣି କୋଟି କୋଟି କପଟ-କାହାଣୀ କହି, ସେ ରାଣୀଙ୍କୁ ବହୁତ ବୁଝାଇଲା—"ଧୈର୍ଯ୍ୟ ଧର !" କୈକେୟୀଙ୍କ ଭାଗ୍ୟ ଲେଉଟିଗଲା, ତାଙ୍କୁ ଷଡଯନ୍ତ୍ର ଅତି ପ୍ରିୟ ବୋଧ ହେଲା । ସେ ବଗୁଲାକୁ ହଂସୀ ମନେ କରି ତାହାର ପ୍ରଶଂସା କରିବାକୁ ଲାଗିଲେ ॥ ୨ ॥ କୈକେୟୀ କହିଲେ— "ମନ୍ଥରା ! ଶୁଣ୍, ତୋ କଥା ସତ୍ୟ । ମୋ ଡାହାଣ ଆଖି ପ୍ରତିଦିନ ଡେଉଁଛି । ମୁଁ ପ୍ରତିଦିନ ରାତିରେ ଖରାପ ସ୍ୱପ୍ନ ଦେଖୁଛି, କିନ୍ତୁ ଆପଣା ଅଜ୍ଞାନବଶତଃ ତୋତେ କହୁନାହିଁ ॥ ୩ ॥ ସଖି ! କଣ କରିବି ? ମୋର ତ ସରଳ ସ୍ୱଭାବ । ଡାହାଣ, ବାଆଁ, କିଛି ହେଲେ ମୁଁ ଜାଣେନାହିଁ ॥ ୪ ॥ ଦୋହା —ଆଜି ପର୍ଯ୍ୟନ୍ତ ଆପଣା ଚାଲିଚଳନରେ କେବେ କାହାର ଖରାପ କରିନାହିଁ । ତଥାପି କେଉଁ ପାପରୁ ଦଇବ ମୋତେ ଏକା-ବେଳକେ ଦୁଃସହ ଦୁଃଖ ଦେଲା, ଜାଣିପାରୁନାହିଁ ॥ ୨୦ ॥ ଚୌପାଇ :—ମୁଁ ବରେ,

ଜେହିଁ ରାଉର ଅତି ଅନଭଲ ତାକା । ସୋଇ ପାଇହି ଯହୁ ଫଲୁ ପରିପାକା ॥
ଜବ ତେଁ କୁମତ ସୁନା ମୈଁ ସ୍ୱାମିନି । ଭୂଖ ନ ବାସର ନୀଁଦ ନ ଜାମିନି ॥୩॥
ପୂଁଛେଉଁ ଗୁନିନ୍ହ ରେଖ ତିନ୍ହ ଖାଁଚୀ । ଭରତ ଭୁଆଲ ହୋହିଁ ଯହ ସାଁଚୀ ॥
ଭାମିନି କରହୁ ତ କହୌଁ ଉପାଉ । ହୈ ତୁମ୍ହରୀଁ ସେବା ବସ ରାଉ ॥୪॥

ପରଉଁ କୂପ ତୁଅ ବଚନ ପର ସକଉଁ ପୂତ ପତି ତ୍ୟାଗି ।
କହସି ମୋର ଦୁଖୁ ଦେଖି ବଡ଼ କସ ନ କରବ ହିତ ଲାଗି ॥୨୧॥

କୁବରୀଁ କରି କବୁଲୀ କୈକେଈ । କପଟ ଛୁରୀ ଉର ପାହନ ଟେଈ ॥
ଲଖଇ ନ ରାନି ନିକଟ ଦୁଖୁ କୈସେଁ । ଚରଇ ହରିତ ତିନ ବଲିପସୁ ଜୈସେଁ ॥୧॥

---

ଯେ ପାଞ୍ଚିଲା ଆପଣଙ୍କ ଅତି ଅମଙ୍ଗଳ । ପାଇବ ସେ ପରିଣାମେ ତାର ପ୍ରତିଫଳ ॥
ଯେ ଦିନୁ ଏ କୁମନ୍ତ୍ରଣା ଶୁଣିଲି ସ୍ୱାମିନି । ଦିବା କ୍ଷୁଧା ନାହିଁ, ନିଦ୍ରା ନ ଲାଗେ ଯାମିନୀ ॥୩॥
ପଚାରନ୍ତେ ଜ୍ୟୋତିଷୀଙ୍କୁ ଗଣିତ ସାଧିଲେ । ଭରତ ନିଶ୍ଚୟ ରାଜା ହେବ ସେ ବୋଇଲେ ॥
ସ୍ୱାମିନି, କରିବ ଯେବେ କହିବି ଉପାୟ । ଅଟନ୍ତି ତୁମ୍ଭର ସେବା ବଶୀଭୂତ ରାୟ ॥୪॥

ପଡ଼ିବି କୂପରେ ତୋ ବାଣୀ ଉପରେ ପୁତ୍ର ପତି ପାରେ ତ୍ୟାଗି ।
କହୁ ମୋର ଭାରି ଦୁଃଖ ଦେଖି, କିପାଁ ନ କରିବି ହିତ ଲାଗି ॥୨୧॥

କୁବୁଜା କବୁଲ କରି କେକୟ ପୁତ୍ରୀକୁ । ହୃଦ-ପାଷାଣେ ଘଷଇ କପଟ-ଛୁରୀକୁ ॥
ସମ୍ଭାବିତ ଦୁଃଖ ରାଣୀ ନ ଦେଖନ୍ତି ତେସନ୍ତେ । ଚରଇ ହରିତ ତୃଣ ବଳି-ପଶୁ ଯେସନ୍ତେ ॥୧॥

---

ବାପ ଘରେ ଯାଇ ସେଠାରେ ଜୀବନ କଟାଇବି, କିନ୍ତୁ ଜୀଇ ଥାଉ ଥାଉ ସଉତୁଣୀର ନୌକରୀ କରିବି ନାହିଁ । ଦଇବ ଯାହାକୁ ଶତ୍ରୁର ଅଧୀନ କରି ଜୀବିତ ରଖେ, ତା' ପକ୍ଷରେ ଜୀବନଧାରଣ କରିବା ଅପେକ୍ଷା ମୃତ୍ୟୁ ହିଁ ଶ୍ରେୟସ୍କର ।" ॥ ୧ ॥ ରାଣୀ ବହୁତ ଦୈନ୍ୟ ସହକାରେ ବଚନ କହିଲେ । ସେ ସବୁ ଶୁଣି, କୁବ୍ଜା ନାରୀମାୟା ବିସ୍ତାର କଲା । ସେ କହିଲା, "ତୁମେ ମନରେ ଗ୍ଲାନି ଆଣି ଏପରି କହୁଛ ? ତୁମର ସୁଖସୌଭାଗ୍ୟ ଦିନକୁ ଦିନ ଦ୍ୱିଗୁଣିତ ହୋଇ ପଡ଼ିବ ॥ ୨ ॥ ଯେ ତୁମର ଖରାପ ଚାହିଁଛି, ପରିଣାମରେ ସେ ଏହି କୁଫଳ ପାଇବ । ହେ ସ୍ୱାମିନି ! ମୁଁ ଯେତେବେଳୁ ଏହି କୁମନ୍ତ୍ରଣା ଶୁଣିଲିଣି, ସେତେବେଳୁ ମୋତେ ଦିନବେଳେ ଭୋକ ଲାଗୁନାହିଁ କି ରାତିରେ ନିଦ ଆସୁନାହିଁ ॥୩॥ ମୁଁ ଜ୍ୟୋତିଷୀମାନଙ୍କୁ ପଚାରିଲି ତ, ସେମାନେ ରେଖା ଟାଣି କହିଲେ ଯେ, ଭରତ ରାଜା ହେବେ, ଏହା ସତ୍ୟ କଥା । ହେ ଭାମିନି ! ତୁମେ କରିବ ତ, ମୁଁ ଉପାୟ ବତାଇ ଦେବି । ରାଜା ତୁମ ସେବାରେ ବଶୀଭୂତ ।" ॥ ୪ ॥ ଦୋହା :—
କୈକେୟୀ କହିଲେ, "ତୁ କହିଲେ ମୁଁ କୂଅରେ ପଡ଼ିଯାଇପାରିବି, ପୁତ୍ର ଓ ପତିଙ୍କୁ ମଧ୍ୟ ଛାଡ଼ିପାରିବି. ତୁ ଯେତେବେଳେ ମୋର ଅତି ବଡ଼ ଦୁଃଖ ଦେଖି କହୁଛୁ, ମୋ ନିଜର ହିତ ସାଧନ ନିମନ୍ତେ ଭଲ ତାହା ନ କରିବି କିପରି ? ॥ ୨୧ ॥
ଚୌପାଇ :—କୁବ୍ଜା କୈକେୟୀଙ୍କୁ ସବୁ ପ୍ରକାରେ ମଙ୍ଗାଇ (ଅର୍ଥାତ୍ ବଳି-ପଶୁ କରାଇ)

ସୁନତ ବାତ ମୃଦୁ ଅନ୍ତ କଠୋରୀ । ଦେତି ମନହୁଁ ମଧୁ ମାହୁର ଘୋରୀ ॥
କହଇ ଚେରି ସୁଧି ଅହଇ କି ନାହୀଁ । ସ୍ୱାମିନି କହିହୁ କଥା ମୋହି ପାହୀଁ ॥୨॥
ଦୁଇ ବରଦାନ ଭୂପ ସନ ଥାତୀ । ମାଗହୁ ଆଜୁ ଜୁଡ଼ାଵହୁ ଛାତୀ ॥
ସୁତହି ରାଜୁ ରାମହି ବନବାସୂ । ଦେହୁ ଲେହୁ ସବ ସଵତି ହୁଲାସୂ ॥୩॥
ଭୂପତି ରାମ ସପଥ ଜବ କରଈ । ତବ ମାଗେହୁ ଜେହିଁ ବଚନୁ ନ ଟରଈ ॥
ହୋଇ ଅକାଜୁ ଆଜୁ ନିସି ବୀତେଁ । ବଚନୁ ମୋର ପ୍ରିୟ ମାନେହୁ ଜୀତେଁ ॥୪॥

ବଡ଼ କୁଘାତୁ କରି ପାତକିନି କହେସି କୋପଗୃହଁ ଜାହୁ ।
କାଜୁ ସଁଵାରେହୁ ସଜଗ ସବୁ ସହସା ଜନି ପତିଆହୁ ॥୨୨॥

କୁବରିହି ରାନି ପ୍ରାନପ୍ରିୟ ଜାନୀ । ବାର ବାର ବଡ଼ି ବୁଦ୍ଧି ବଖାନୀ ॥
ତୋହି ସମ ହିତୁ ନ ମୋର ସଂସାରା । ବହେ ଜାତ କଇ ଭଇସି ଅଧାରା ॥୧॥

---

ଶୁଣିବାକୁ ବାଣୀ ମୃଦୁ ଦୁଃଖଦାୟୀ ଅନ୍ତେ । ମହୁରେ ମହୁରି ଯୋଗ ହୁଅଇ ଯେମନ୍ତେ ॥
ସ୍ମରଣ ଅଛି କି ନାହିଁ ବୋଲେ ପୋଇଲଣୀ । ଯେଉଁ କଥା କହିଥିଲ ମୋ ଆଗେ, ସ୍ୱାମିନି ॥୨॥
ନୃପଙ୍କଠାରୁ ପାଉଣା ଅଛି ଦୁଇ ବର । ଆଜି ତାହା ମାଗି ହୃଦ ସୁଶୀତଳ କର ॥
ସୁତକୁ ରାଜ୍ୟ ଆବର ରାମେ ବନବାସ । ଦେଇ ହରିନିଅ ସବୁ ସାବତ ଉଲ୍ଲାସ ॥୩॥
ଯେବେ ରାମଙ୍କର ରାଣ ଘେନିବେ ରାଜନ ; ତେବେ ମାଗିବ, ଯେମନ୍ତେ ନ ଯିବ ବଚନ ॥
ଆଜି ରାତି ପାହିଗଲେ ହେବ କାର୍ଯ୍ୟ ହାନି । ବଚନ ମୋହର କର ପ୍ରାଣ ପ୍ରିୟ ମାନି ॥୪॥

ପାତକିନୀ ଭାରି କୁଆଘାତ କରି ବୋଲେ ଯାଅ କୋପଘର ।
ସାବଧାନେ ସବୁ କାର୍ଯ୍ୟ ସମ୍ଭାଳିବ ନ ଯିବ ପ୍ରତେ ସତ୍ୱର ॥୨୨॥

କୁବୁଜାକୁ ରାଣୀ ଜାଣି ପ୍ରାଣପ୍ରିୟ ଅତି । ବାରମ୍ବାର ତା ବୁଦ୍ଧିକୁ ପ୍ରଶଂସା କରନ୍ତି ॥
ତୋ ସମ ହିତୈଷୀ ମୋର ନାହିଁ ଜଗତରେ । ଆଧାର ହୋଇଲୁ ଭାସିଯିବା ସମୟରେ ॥୧॥

---

କପଟ-ଛୁରିକୁ ଆପଣାର କଠୋର ହୃଦୟ-ପଥରରେ ଘଷି ତାହାର ଧାରକୁ ତୀକ୍ଷ୍ଣ କଲା । ବଳି-ପଶୁ ଆସନ୍ନ ମୃତ୍ୟୁ ଜାଣି ନ ପାରି ସବୁଜ ଘାସ ଚରିବାରେ ଲାଗିଥାଏ । ସେହିପରି ରାଣୀ କୈକେୟୀ ଆପଣାର ଆସନ୍ନ ଦୁଃଖକୁ ଦେଖିପାରୁ ନ ଥା'ନ୍ତି ଏବଂ ମନ୍ଥରାର କଥାରେ ମୁଗ୍ଧ ହୋଇ ଯାଉଥା'ନ୍ତି ॥ ୧ ॥ ମନ୍ଥରାର କଥା ସବୁ ଶୁଣିବାକୁ ତ କୋମଳ, କିନ୍ତୁ ପରିଣାମରେ ଅତି କଠୋର । ସତେ ଯେପରି ସେ ମଧୁରେ ବିଷ ଗୋଳି ପିଆଉଅଛି । ଦାସୀ କହୁଥାଏ, "ହେ ସ୍ୱାମିନି ! ତୁମେ ମୋତେ ଗୋଟିଏ କଥା କହିଥିଲ, ସ୍ମରଣ ଅଛି କି ନାହିଁ ? ॥ ୨ ॥ ତୁମର ଦୁଇଟି ବର ରାଜାଙ୍କ ପାଖରେ ଥାତି ହୋଇ ରହିଛି । ଆଜି ସେଗୁଡ଼ିକ ରାଜାଙ୍କଠାରୁ ମାଗି ତୁମ ହୃଦୟ ଶୀତଳ କର । ପୁଅକୁ ରାଜ୍ୟ ଓ ରାମଙ୍କୁ ବନବାସ ଦିଅ ଏବଂ ସପତ୍ନୀର ସମସ୍ତ ଆନନ୍ଦ ତୁମେ ନେଇନିଅ ॥ ୩ ॥ ଯେତେବେଳେ ରାଜା ରାମଙ୍କ ରାଣ ଖାଇବେ, ସେତିକିବେଳେ ବର ମାଗ । ତା ଫଳରେ ରାଜାଙ୍କ ବଚନ ଆଉ ଟଳି ପାରିବ ନାହିଁ । ଆଜି ରାତି ପାହିଗଲେ କାମ ବିଗିଡ଼ି ଯିବ ।

ଜୌଁ ବିଧି ପୁରବ ମନୋରଥୁ କାଲି । କରୌଁ ତୋହି ଚଖ ପୂତରି ଆଲୀ ॥
ବହୁବିଧି ଚେରିହି ଆଦରୁ ଦେଈ । କୋପଭବନ ଗବନୀ କୈକେଈ ॥୨॥
ବିପତି ବୀଜୁ ବରଷା ରିତୁ ଚେରୀ । ଭୁଇଁ ଭଇ କୁମତି କୈକଈ କେରୀ ॥
ପାଇ କପଟ ଜଲୁ ଅଂକୁର ଜାମା । ବର ଦୋଉ ଦଲ ଦୁଖ ଫଲ ପରିନାମା ॥୩॥
କୋପ ସମାଜୁ ସାଜି ସବୁ ସୋଈ । ରାଜୁ କରତ ନିଜ କୁମତି ବିଗୋଈ ॥
ରାଉର ନଗର କୋଲାହଲୁ ହୋଈ । ଯହ କୁଚାଲି କଛୁ ଜାନ ନ କୋଈ ॥୪॥

ପ୍ରମୁଦିତ ପୁର ନର ନାରି ସବ ସଜହିଁ ସୁମଂଗଲଚାର ।
ଏକ ପ୍ରବିସହିଁ ଏକ ନିର୍ଗମହିଁ ଭୀର ଭୂପ ଦରବାର ॥୨୩॥

---

କାଲି ବିଧି ପୂର୍ଣ୍ଣ କରେ ମନୋରଥ ଯେବେ । କରିବି ନୟନ ପୁତଳୀ ତୋତେ ଆଲି, ତେବେ ॥
ନାନା ପ୍ରକାରେ ଆଦର ପୋଇଲୀଙ୍କୁ ଦେଇ । କୋପ ଗୃହକୁ ଗମନ କଲା କଇକେଈ ॥୨॥
ବିପତ୍ତି-ବୀଜ ବରଷା ଋତୁ ଅନୁଚରୀ । କୈକେୟୀର ମନ୍ଦ ବୁଦ୍ଧି ହେଲା ଭୂମି ପରି ॥
ଅଙ୍କୁର ଜନ୍ମିଲା ପାଇ କପଟ-କୁଜଳ । ଦେନି ବର ଦଳ, ଦୁଃଖ ପରିଣାମ ଫଳ ॥୩॥
କୋପ ସାଜ ସଜାଇଣ ଯାଇ ସେ ଶୋଇଲା । ରାଜ୍ୟ ଭୋଗ କୁମତିରୁ ବିନଷ୍ଟ ହୋଇଲା ॥
ପୁରେ ଅନ୍ତଃପୁରେ କୋଲାହଳ ଯେ ହୁଅଇ । ଏହି କୁଚକ୍ର ବିଷୟ କେହି ନ ଜାଣଇ ॥୪॥

ସଜାନ୍ତି ସାନନ୍ଦେ ସୁମଙ୍ଗଳ ସର୍ବେ ପୁରବାସୀ ନରନାରୀ ।
ଏକ ପ୍ରବେଶଇ ଏକ ବାହାରଇ ଭୂପ ଦ୍ୱାରେ ଭିଡ ଭାରୀ ॥୨୩॥

---

ମୋ କଥାକୁ ଆପଣା ହୃଦୟଠାରୁ ବା ପ୍ରାଣଠାରୁ ଅଧିକ ପ୍ରିୟ ମନେ କର ।" ॥ ୪ ॥ ଦୋହା ।—ପାପିନୀ ମନ୍ଥରା ଆଘାତ ଲଗାଇ କହିଲା, "କୋପ-ଭବନକୁ ଯାଅ । ସବୁ କାମ ଅତି ସାବଧାନତାର ସହ କରିଅ । ରାଜାଙ୍କ ଉପରେ ସହସା ବିଶ୍ୱାସ କରି ନଅନାହିଁ ।" ॥ ୨୨ ॥ ଚୌପାଇ :—ରାଣୀ କୁଜାଙ୍କୁ ଆପଣା ପ୍ରାଣ-ପ୍ରିୟ ମନେ କରି ତାହାର ବଡ ବୁଦ୍ଧିକୁ ପ୍ରଶଂସା କଲେ ଏବଂ କହିଲେ, "ସଂସାରରେ ତୋ ପରି ମୋର ହିତକାରୀ ଆଉ କେହି ନାହିଁ । ମୋ ପରି ଭାସିଯାଉଥିବା ଲୋକର ତୁ ଅବଲମ୍ବନ ॥ ୧ ॥ ଯଦି ବିଧାତା କାଲି ମୋ ମନୋରଥ ପୂର୍ଣ୍ଣ କରିଦିଅନ୍ତି, ତେବେ ହେ ସଖି ! ମୁଁ ତୋତେ ମୋ ନୟନର ପିତୁଳା କରିନେବି ।" ଏହି ରୂପେ ଦାସୀକୁ ବହୁତ ପ୍ରକାରେ ଆଦର ଓ ସମ୍ମାନ ଦେଇ କୈକେୟୀ କୋପ-ଭବନକୁ ଚାଲିଗଲେ ॥ ୨ ॥ ବିପତ୍ତି ବୀଜ, ଦାସୀ ବର୍ଷାଋତୁ ଏବଂ କୈକେୟୀଙ୍କ କୁବୁଦ୍ଧି କ୍ଷେତ୍ର ହୋଇଗଲା । କପଟ-ଜଳ ପାଇ ତହିଁରେ ଅଙ୍କୁର ଫୁଟି ବାହାରିଲା । ଦୁଇଟି ବର ସେହି ଅଙ୍କୁରର ଦୁଇଟି ପତ୍ର ଏବଂ ପରିଶେଷରେ ତହିଁରେ ଦୁଃଖ-ଫଳ ଫଳିବ ॥ ୩ ॥ କୈକେୟୀ କୋପର ସମସ୍ତ ସାଜ ସଜାଇ କୋପଭବନରେ ଯାଇ ଶୋଇଲେ । ରାଜସୁଖ ଭୋଗ କରୁଥିବା ସତ୍ତ୍ୱେ ଆପଣା ଦୁର୍ବୁଦ୍ଧି ଯୋଗେ ନିଜର ସର୍ବନାଶ କରିବାକୁ ସେ ଆଜି ବ୍ୟସ୍ତ । ରାଜମହଲ ଏବଂ ନଗରରେ ଆନନ୍ଦର କୋଲାହଳ ଚାଲିଛି । ଏହି ଷଡଯନ୍ତ୍ର ବିଷୟ କେହି ଜାଣନ୍ତି

ବାଲ ସଖା ସୁନି ହିୟଁ ହରଷାହୀଁ । ମିଲି ଦସ ପାଁଚ ରାମ ପହିଁ ଜାହୀଁ ॥
ପ୍ରଭୁ ଆଦରହିଁ ପ୍ରେମୁ ପହିଚାନୀ । ପୂଁଛହିଁ କୁସଲ ଖେମ ମୃଦୁ ବାନୀ ॥୧॥
ଫିରହିଁ ଭବନ ପ୍ରିୟ ଆୟସୁ ପାଈ । କରତ ପରସପର ରାମ ବଡ଼ାଈ ॥
କୋ ରଘୁବୀର ସରିସ ସଂସାରା । ସୀଲୁ ସନେହୁ ନିବାହନିହାରା ॥୨॥
ଜେହିଁ ଜେହିଁ ଜୋନି କରମ ବସ ଭ୍ରମହୀଁ । ତହଁ ତହଁ ଈସୁ ଦେଉ ୟହ ହମହୀଁ ॥
ସେବକ ହମ ସ୍ୱାମୀ ସିୟନାହୂ । ହୋଉ ନାତ ୟହ ଓର ନିବାହୂ ॥୩॥
ଅସ ଅଭିଲାଷୁ ନଗର ସବ କାହୂ । କୈକୟସୁତା ହୃଦୟଁ ଅତି ଦାହୂ ॥
କୋ ନ କୁସଂଗତି ପାଇ ନସାଈ । ରହଇ ନ ନୀଚ ମତେଁ ଚତୁରାଈ ॥୪॥

---

ବାଲ ସଖା ଶୁଣି ହୃଦେ ହୋଇଣ ହରଷ । ଆସନ୍ତି ପ୍ରଭୁଙ୍କ ପାଶେ ମିଳି ପାଞ୍ଚ ଦଶ ॥
ପ୍ରଭୁ ପ୍ରେମ ଚିହ୍ନି ତାଙ୍କୁ ଆଦର କରନ୍ତି । ମୃଦୁ ବଚନେ କୁଶଳ ପ୍ରଶ୍ନ ପଚାରନ୍ତି ॥୧॥
ବାହୁଡ଼ନ୍ତି ଗୃହେ ପ୍ରିୟ ଅନୁମତି ପାଇ । ପରସ୍ପରେ କହି ରଘୁନାଥଙ୍କ ବଡ଼ାଇ ॥
କେ ଅଛି ସଂସାର ମଧ୍ୟେ ରଘୁବୀର ସମ । ଶୀଳ ସ୍ନେହ ପାଳନରେ ନିପୁଣ ପରମ ॥୨॥
କର୍ମବଶ ଯେଉଁ ଯେଉଁ ଯୋନି ଜନ୍ମ ହେଉ । ଈଶ୍ୱର ଆମ୍ଭଙ୍କୁ ତହିଁ ତହିଁ ଏହା ଦେଉ ॥
ଆମ୍ଭେ ସେବକ ଆମ୍ଭର ସ୍ୱାମୀ ସୀତାକାନ୍ତ । ଏହି ସମ୍ବନ୍ଧରେ ହେଉ ଜୀବନର ଅନ୍ତ ॥୩॥
ଏପରି ଆକାଂକ୍ଷା ପୁର-ନିବାସୀ କରନ୍ତି । କେକୟ ସୁତା ହୃଦୟେ ଦାହ ହୁଏ ଅତି ॥
କିଏ କୁସଙ୍ଗ ପାଇଣ ନଷ୍ଟ ନ ହୁଅଇ । ନୀଚ ବୁଦ୍ଧିରେ ଚଳିଲେ ଜ୍ଞାନ ନ ରହଇ ॥୪॥

---

ନାହିଁ ॥ ୪ ॥ ଦୋହା :—ଅତି ଆନନ୍ଦିତ ହୋଇ ନଗରର ନରନାରୀ ସମସ୍ତେ ଶୁଭ-ମଙ୍ଗଳାଚାରର ଆୟୋଜନ କରୁଛନ୍ତି । କିଏ ଭିତରକୁ ଯାଉଛି ତ କିଏ ବାହାରକୁ ଆସୁଛି । ରାଜଦ୍ୱାରରେ ଭାରି ଭିଡ଼ ହେଉଛି ॥ ୨୩ ॥ ଚୌପାଈ :—ଶ୍ରୀରାମଙ୍କ ବାଲ ସଖାଗଣ ତାଙ୍କ ଅଭିଷେକବାର୍ତ୍ତା ଶୁଣି, ହୃଦୟରେ ଅପାର ଆନନ୍ଦ ଲାଭ କରୁଅଛନ୍ତି । ସେମାନେ ପାଞ୍ଚ ଦଶ ମିଳି ଶ୍ରୀରାମଙ୍କ ପାଖକୁ ଯାଉଅଛନ୍ତି । ପ୍ରେମ ଚିହ୍ନି ପ୍ରଭୁ ଶ୍ରୀରାମ ସେମାନଙ୍କୁ ଆଦର କରୁଅଛନ୍ତି ଏବଂ କୋମଳ ବାଣୀରେ ସମସ୍ତଙ୍କୁ କୁଶଳମଙ୍ଗଳ ସମ୍ବାଦ ପଚାରୁଅଛନ୍ତି ॥ ୧ ॥ ସଖାମାନେ ତାଙ୍କ ପ୍ରିୟ ସଖାଙ୍କ ଆଜ୍ଞା ପାଇ ପରସ୍ପର ମଧ୍ୟରେ ଶ୍ରୀରାମଙ୍କ ବଡ଼ାଇ ବା ଯଶ ବର୍ଣ୍ଣନା କରି ଗୃହକୁ ଫେରୁଥା'ନ୍ତି ଏବଂ କହୁଥା'ନ୍ତି—ସଂସାରରେ ଶ୍ରୀରଘୁନାଥଙ୍କ ପରି ଚରିତ୍ର ଓ ପ୍ରେମର ନିର୍ବାହ କିଏ ଆଉ କରିପାରିବ ? ॥ ୨ ॥ ଭଗବାନ୍ ଆମ୍ଭମାନଙ୍କୁ ଏତିକି ଦିଅନ୍ତୁ ଯେ, ଆମ୍ଭେମାନେ ଆପଣା ଆପଣା କର୍ମବଶ ଭ୍ରମି ଭ୍ରମି, ଯେଉଁ ଯେଉଁ ଯୋନିରେ ଜନ୍ମଲାଭ କରିବୁ, ସେହି ସେହି ଯୋନିରେ ସେବକ ହେଉଁ ଏବଂ ସୀତାପତି ଶ୍ରୀରାମଚନ୍ଦ୍ର ଆମ୍ଭମାନଙ୍କର ସ୍ୱାମୀ ହୁଅନ୍ତୁ,—ଶେଷ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଏହି ସମ୍ବନ୍ଧ ଦୃଢ଼ ହେଉ ।" ॥ ୩ ॥ ନଗରରେ ସମସ୍ତଙ୍କର ଏହି ଅଭିଳାଷ । କିନ୍ତୁ କୈକେୟୀଙ୍କ ହୃଦୟରେ ଅଗ୍ନି ଜଳୁଥାଏ । କୁସଙ୍ଗ ପାଇ କିଏ ନଷ୍ଟ ନ ହୁଏ ? ନୀଚର ମତ ଅନୁସାରେ ଚଳିବା ବ୍ୟକ୍ତିର ଚାତୁରୀ ରହେନାହିଁ ॥ ୪ ॥

ସାଁଝ ସମୟ ସାନଂଦ ନୃପୁ ଗୟଉ କୈକଈ ଗେହଁ ।
ଗଵନୁ ନିଠୁରତା ନିକଟ କିୟ ଜନୁ ଧରି ଦେହ ସନେହଁ ॥୨୪॥
କୋପଭବନ ସୁନି ସକୁଚେଉ ରାଉ । ଭୟ ବସ ଅଗହୁଡ଼ ପରଇ ନ ପାଉ ॥
ସୁରପତି ବସଇ ବାଁହବଲ ଜାକେଁ । ନରପତି ସକଲ ରହହିଁ ରୁଖ ତାକେଁ ॥୧॥
ସୋ ସୁନି ତିୟ ରିସ ଗୟଉ ସୁଖାଈ । ଦେଖହୁ କାମ ପ୍ରତାପ ବଡ଼ାଈ ॥
ସୂଲ କୁଲିସ ଅସି ଅଁଗବନିହାରେ । ତେ ରତିନାଥ ସୁମନ ସର ମାରେ ॥୨॥
ସଭୟ ନରେସୁ ପ୍ରିୟା ପହିଁ ଗୟଊ । ଦେଖି ଦସା ଦୁଖୁ ଦାରୁନ ଭୟଊ ॥
ଭୂମି ସୟନ ପଟୁ ମୋଟ ପୁରାନା । ଦିଏ ଡାରି ତନ ଭୂଷନ ନାନା ॥୩॥
କୁମତିହି କସି କୁବେଷତା ଫାବୀ । ଅନଅହିବାତୁ ସୂଚ ଜନୁ ଭାବୀ ॥
ଜାଇ ନିକଟ ନୃପୁ କହ ମୃଦୁ ବାନୀ । ପ୍ରାନପ୍ରିୟା କେହି ହେତୁ ରିସାନୀ ॥୪॥

---

ସନ୍ଧ୍ୟା ସମୟରେ ନୃପ ସାନନ୍ଦରେ ଗଲେ କୈକେୟୀ ଆବାସେ ।
ଯେସନ୍ତେ ସ୍ନେହ ଦେହ ଧରିଣ ଗମନ କରେ ନିଷ୍ଠୁରତା ପାଶେ ॥୨୪॥
କୋପ ଗୃହ ଶୁଣି ସଙ୍କୋଚଲେ ନୃପବର । ଭୟ ବଶ ନ ପଡ଼ିଲ ଆଗକୁ ପୟର ॥
ସୁରପତି ସୁଖେ ରହେ ଯାର ବାହୁବଳେ । ଇଚ୍ଛାକୁ ଚାହିଁ ରହନ୍ତି ନୃପତି ସକଳେ ॥୧॥
ସେ ଅବଳା କୋପ ଶୁଣି ଶୁଖିଗଲେ ଭାଇ । ଦେଖ ଏ ଜଗତେ କାମ ପ୍ରତାପ ବଡ଼ାଇ ॥
ଶୂଳ କୁଳିଶ ଖଡଗ ଅଙ୍ଗେ ଯେ ସହନ୍ତି । ଫୁଲ-ଶରେ ମାରେ ସେହି ଶିବେ ରତିପତି ॥୨॥
ସଭୟେ ନରେଶ ପ୍ରିୟା ନିକଟେ ଗମିଲେ । ଦଶା ଅବଲୋକି ଅତି ଦୁଃଖିତ ହୋଇଲେ ॥
ଭୂମିରେ ଶୟନ ମୋଟା ପୁରୁଣା ବସନ । ଫିଙ୍ଗି ଦେଇଛନ୍ତି ଅଙ୍ଗୁ ବିବିଧ ଭୂଷଣ ॥୩॥
କୁମତିକୁ ସେ କୁବେଶ ଫାବଇ କେମନ୍ତ । ବୈଧବ୍ୟ ସୂଚନା ଭାବୀ ଦିଶଇ ଯେମନ୍ତ ॥
ନିକଟେ ଯାଇ ବୋଲନ୍ତି ନୃପ ମୃଦୁ ବାଣୀ । କି ହେତୁ କରିଛ କୋପ ପ୍ରାଣପ୍ରିୟା ରାଣି ॥୪॥

---

ଦୋହା :—ସନ୍ଧ୍ୟା ସମୟରେ ରାଜା ଦଶରଥ ଆନନ୍ଦରେ ରାଣୀ କୈକେୟୀଙ୍କ ମହଲକୁ ଗଲେ । ସତେ ଯେପରି ସାକ୍ଷାତ ସ୍ନେହ ଶରୀର ଧାରଣ କରି ନିଷ୍ଠୁରତା ନିକଟକୁ ଆସିଅଛି ପରି' ॥ ୨୪ ॥ ଚୌପାଈ —କୋପ-ଭବନର ନାମ ଶୁଣି ଶୁଣି ରାଜା ଶଂକି ଗଲେ । ଭୟ ହେତୁ ତାଙ୍କ ପାଦ ଆଗକୁ ପଡ଼ୁ ନ ଥାଏ । ସ୍ୱୟଂ ଦେବରାଜ ଇନ୍ଦ୍ର ଯାଂହାଙ୍କ ବାହୁବଳରେ ନିର୍ଭୀକ ହୋଇ ବାସ କରନ୍ତି ଏବଂ ସମସ୍ତ ରାଜ୍ୟ ଯାହାଙ୍କର ଇଚ୍ଛାକୁ ଚାହିଁ ରହିଥା'ନ୍ତି ସେହିରାଜା ଦଶରଥ ସ୍ତ୍ରୀଙ୍କର କ୍ରୋଧ ଶୁଣି ଶୁଖି-ଗଲେ । କାମଦେବଙ୍କ ପ୍ରତାପ ଓ ମହିମା ଦେଖନ୍ତୁ ତ । ଯେଉଁ ମହାଦେବ ତ୍ରିଶୂଳ, ବଜ୍ର ଓ ତରବାରି ଆଦିର ଆଘାତ ଆପଣା ଅଙ୍ଗରେ ନିଭାଇ ଅଛନ୍ତି, ସେ ରତି-ପତି କନ୍ଦର୍ପଙ୍କ ପୁଷ୍ପ-ବାଣରେ ବିଦ୍ଧ ହେଲେ ' ॥ ୧-୨ ॥ ରାଜା ଡରି ଡରି ପ୍ରାଣ-ପ୍ରିୟା କୈକେୟୀଙ୍କ ନିକଟକୁ ଗଲେ । ରାଣୀଙ୍କ ଦଶା ଦେଖି ତାଙ୍କୁ ବଡ ଦୁଃଖ ଲାଗିଲା । କୈକେୟୀ ଭୂଇଁ ଉପରେ ପଡ଼ିଅଛନ୍ତି, ପୁରୁଣା ମୋଟା ଲୁଗା ପିନ୍ଧିଅଛନ୍ତି' । ଶରୀରର

କେହି ହେତୁ ରାନି ରିସାନି ପରସତ ପାନି ପତିହି ନେୱାରଈ ।
ମାନହୁଁ ସରୋଷ ଭୁଅଂଗ ଭାମିନି ବିଷମ ଭାଁତି ନିହାରଈ ॥
ଦୋଉ ବାସନା ରସନା ଦସନ ବର ମରମ ଠାହରୁ ଦେଖଈ ।
ତୁଲସୀ ନୃପତି ଭବତବ୍ୟତା ବସ କାମ କୌତୁକ ଲେଖଈ ॥
ବାର ବାର କହ ରାଉ ସୁମୁଖି ସୁଲୋଚନି ପିକବଚନି ।
କାରନ ମୋହି ସୁନାଉ ଗଜଗାମିନି ନିଜ କୋପ କର ॥୨୫॥
ଅନହିତ ତୋର ପ୍ରିୟା କେଇଁ କୀହ୍ନା । କେହି ଦୁଇ ସିର କେହି ଜମୁ ଚହ ଲୀହ୍ନା ॥
କହୁ କେହି ରଂକହି କରୌଁ ନରେସୂ । କହୁ କେହି ନୃପହି ନିକାସୌଁ ଦେସୂ ॥୧॥

---

କୋପଇଁ ରୋଷ ରାଣୀ, କରଛ, କହ ପାଣି ଛୁଅଁନ୍ତେ, ପତିଙ୍କୁ ନିବାରେ ।
ଅବା ରୋଷ ସହିତ ଭୁଜଙ୍ଗିନୀ ଯେମନ୍ତ ଅନାଏଁ ବିଷମ ପ୍ରକାରେ ।
ବାସନା ଜିହ୍ୱା ଦନ୍ତବର, ଦେଖଇ ସ୍ଥାନ ସେ ମର୍ମର,
ତୁଳସୀ ଭବି-ବଶ ମଣନ୍ତି ଅବନୀଶ ଏ ସବୁ କୌତୁକ କାମର ॥
ବାରମ୍ବାର ନୃପ କହନ୍ତି ସୁନେତ୍ରି, ସୁମୁଖି, ପିକଭାଷିଣି ।
ମୋ ଆଗେ ଆପଣା କୋପର କାରଣ ଶୁଣାଅ ଗଜଗାମିନି ॥୨୫॥
ପ୍ରିୟା, ତୋର ଅପକାର କେହୁ ଆଚରିଲା । କା'ର ଦୁଇ ଶିର ? ଯମ କାହାକୁ ସ୍ପୃହିଲା ॥
କହ କେବଣ ରଙ୍କକୁ ନରେଶ କରିବି । କହ କେଉଁ ନୃପତିକୁ ଦେଶରୁ ତଡ଼ିବି ॥୧॥

---

ବିବିଧ ଭୂଷଣ ଉତାରି ଫିଙ୍ଗି ଦେଇଅଛନ୍ତି ॥ ୩ ॥ କୁମତି କୈକେୟୀଙ୍କ ତାଙ୍କର ଏହି କୁବେଶ ଏପରି ଶୋଭୁଛି, ସତେ ଯେପରି ଏହା ତାଙ୍କ ଭାବୀ ବୈଧବ୍ୟର ସୂଚନା ଦେଉଅଛି । ରାଜା ତାଙ୍କ ପାଖକୁ ଯାଇ କୋମଳ ବାଣୀରେ କହିଲେ, "ହେ ପ୍ରାଣ-ପ୍ରିୟେ ! କାହିଁକି ରୁଷିଛ ?" ॥ ୪ ॥ ଛନ୍ଦ :—"ହେ ରାଣି ! କାହିଁକି ରୁଷିଛ ?" ଏହା କହି ରାଜା ତାଙ୍କୁ ହାତରେ ସ୍ପର୍ଶ କରନ୍ତି ତ ସେ ତାଙ୍କ ହାତକୁ ଗୁଡି ବାରଣ କରୁଆ'ନ୍ତି । ସତେ ଯେପରି କ୍ରୋଧ-ପୂର୍ଣ୍ଣା ନାଗୁଣୀ କ୍ରୂର ଦୃଷ୍ଟିରେ ଦେଖୁଅଛି ପରା ! ବର ଦୁଇଟିର ବାସନା ସେହି ନାଗୁଣୀର ଦୁଇଟି ରସନା ଏବଂ ବର ଦୁଇଟି ଯୋଡ଼ିଏ ଦାନ୍ତ, କାଟିବା ନିମନ୍ତେ ତାହା ମର୍ମ-ସ୍ଥାନ ଦେଖୁଅଛି କି ! ତୁଳସୀ ଦାସ କହନ୍ତି, ରାଜା ଦଶରଥ ଭବିତବ୍ୟତାର ବଶୀଭୂତ ହୋଇ ଏହାକୁ କନ୍ଦର୍ପର ଲୀଳା ବୋଲି ମନେ କରୁଆ'ନ୍ତି ॥ ସୋରଠା :—ରାଜା ବାରମ୍ବାର କହୁଆନ୍ତି—"ହେ ସୁମୁଖି ! ହେ ସୁଲୋଚନେ ! ହେ କୋକିଳ-ବଚନେ ! ହେ ଗଜ-ଗମନେ ! ମୋତେ ଆପଣା କ୍ରୋଧର କାରଣ ଶୁଣାଅ ତ ॥ ୨୫ ॥ ଚୌପାଇ :—ହେ ପ୍ରିୟେ ! ତୁମର କିଏ ଅନିଷ୍ଟ କଲା ? କାହାର ଦୁଇଟା ଶିର ? ଯମରାଜ କାହାକୁ ନେବାକୁ ବସିଲେଣି ? କହ, କେଉଁ କାଙ୍ଗାଳକୁ ରାଜା କରିଦେବି ? କିମ୍ବା କେଉଁ ରାଜାକୁ ଦେଶରୁ ବାହାର

ସକଉଁ ତୋର ଅରି ଅମରଉ ମାରୀ । କାହ କୀଟ ବପୁରେ ନର ନାରୀ ॥
ଜାନସି ମୋର ସୁଭାଉ ବରୋରୂ । ମନୁ ତବ ଆନନ ଚନ୍ଦ ଚକୋରୂ ॥୨॥
ପ୍ରିୟା ପ୍ରାନ ସୁତ ସରବସୁ ମୋରେଁ । ପରିଜନ ପ୍ରଜା ସକଲ ବସ ତୋରେଁ ॥
ଜୌଁ କଛୁ କହୌଁ କପଟୁ କରି ତୋହୀ । ଭାମିନି ରାମ ସପଥ ସତ ମୋହୀ ॥୩॥
ବିହସି ମାଗୁ ମନଭାଉତି ବାତା । ଭୂଷନ ସଜହି ମନୋହର ଗାତା ॥
ଘରୀ କୁଘରୀ ସମୁଝି ଜିୟଁ ଦେଖୂ । ବେଗି ପ୍ରିୟା ପରିହରହି କୁବେଷୂ ॥୪॥

ଯହ ସୁନି ମନ ଗୁନି ସପଥ ବଡ଼ି ବିହସି ଉଠୀ ମତିମଂଦ ।
ଭୂଷନ ସଜତି ବିଲୋକି ମୃଗୁ ମନହୁଁ କିରାତିନି ଫଂଦ ॥୨୬॥

ପୁନି କହ ରାଉ ସୁହୃଦ ଜିଅଁ ଜାନୀ । ପ୍ରେମ ପୁଲକି ମୃଦୁ ମଂଜଲ ବାନୀ ॥
ଭାମିନି ଭୟଉ ତୋର ମନଭାୱା । ଘର ଘର ନଗର ଅନଂଦ ବଧାୱା ॥୧॥

---

ତୋ ଶତ୍ରୁ ଅମରେ ମଧ୍ୟ ପାରିବି ମୁଁ ମାରି । କି ଛାର ବାପୁଡ଼ା କୀଟ ସମ ନରନାରୀ ॥
ଜାଣୁ ରୁଚିର-ଜଘନେ ସ୍ୱଭାବ ତୁ ମୋର । ତୋ ବଦନ-ଚନ୍ଦ୍ରମାକୁ ମୋ ମନ ଚକୋର ॥୨॥
ପ୍ରିୟେ, ପ୍ରାଣ ପୁତ୍ର ମୋର ସମ୍ପଦ ସର୍ବସ୍ୱ । ପ୍ରଜା ପରିଜନ ସର୍ବେ ଅଟନ୍ତି ତୋ ବଶ ॥
ଯେବେ ବା କପଟେ କିଛି କହୁଥାଏ ତୋତେ । ରାମ ରାଣ, ରାମା-ମଣି ' ଶତବାର ମୋତେ ॥୩॥
ଯାହା ମନେ ବାଞ୍ଛା କର ହସି ମାଗ ଆଜ । ସୁମନୋହର ଅଙ୍ଗରେ ବିଭୂଷଣ ସାଜ ॥
ବେଳ କୁବେଳ ହୃଦୟେ ବିଚାରି ତ ଦେଖ । ଚଞ୍ଚଳ ପ୍ରିୟେ, ଆପଣା କୁବେଶ ଉପେଖ ॥୪॥

ଏହା ଶୁଣି ଭାରି ରାଣ ମନେ ଗୁଣି ହସି ଉଠି କୁମତିମା ।
ସାଜଇ ଭୂଷଣ ମୃଗ ବା ଦେଖିଣ ଫାନ୍ଦ ସାଜେ କିରାତମା ॥୨୬॥

ପୁଣି ବୋଇଲେ ସୁହୃଦ ବିଚାରି ରାଜନ । ପ୍ରେମେ ପୁଲକିଣ ମୃଦୁ ମଞ୍ଜୁଳ ବଚନ ॥
କାମିନି ! ପୂର୍ଣ୍ଣ ହୋଇଲା ତୋ ମନ କାମନା । ପୁରେ ଘରେ ଘରେ ବାଜେ ମଙ୍ଗଳ ବାଜଣା ॥୧॥

---

କରିଦେବି ? ॥ ୧ ॥ ତୁମର ଶତ୍ରୁ ଯଦି କୌଣସି ଅମର ବା ଦେବତା ହୋଇଥାଏ, ତେବେ ବି ମୁଁ ତାକୁ ମାରିପାରେ । ପୋକ ମାଛି ସମାନ ବିଚରା ନରନାରୀ କିବା ଛାର ' ହେ ସୁନ୍ଦରି ! ମୋ ମନ ସର୍ବଦା ତୁମ ମୁଖଚନ୍ଦ୍ର ପ୍ରତି ଚକୋର । ତୁମେ ତ ମୋର ସ୍ୱଭାବ ଭଲ ରୂପେ ଜାଣ ॥ ୨ ॥ ହେ ପ୍ରିୟେ ! ମୋ ପ୍ରଜା, ଆତ୍ମୀୟ ସ୍ୱଜନ, ସର୍ବସ୍ୱ-ସମ୍ପତ୍ତି, ମୋର ପୁତ୍ର, ଏପରି କି ମୋ ପ୍ରାଣ ମଧ୍ୟ ସବୁ ତୁମରି ଅଧୀନ । ଯଦି ମୁଁ ତୁମ ପ୍ରତି କପଟ କରି କହୁଥିବି, ତେବେ ହେ ଭାମିନି ! ମୋତେ ଶହେବାର ରାମର ରାଣ ॥୩॥ ତୁମେ ହସି ହସି ଆପଣା ଅଭିଳଷିତ ବସ୍ତୁ ମାଗିନିଅ ଏବଂ ତୁମ ମନୋହର ଅଙ୍ଗପ୍ରତ୍ୟଙ୍ଗରେ ଅଳଙ୍କାର ସଜାଇ ପିନ୍ଧ । ସମୟ ଅସମୟ ତ ମନରେ ଟିକିଏ ବିଚାର କରି ଦେଖ । ହେ ପ୍ରିୟେ ! ଶୀଘ୍ର ଏହି ଖରାପ ବେଶକୁ ତ୍ୟାଗ କର ॥୪॥ ଦୋହା ।—ଏହା ଶୁଣି ଓ ମନରେ ରାମଙ୍କ ବଡ଼ ରାଣ କଥା ବିଚାର କରି ମନ୍ଦମତି କୈକେୟୀ ହସି ଉଠିଲେ ଓ ଅଳଙ୍କାର ପିନ୍ଧିବାକୁ ଲାଗିଲେ, ସତେ ଯେପରି କୌଣସି ଶିକାରୀ ମୃଗକୁ ଦେଖି ଫାନ୍ଦ

ରାମହି ଦେଉଁ କାଲି ଜୁବରାଜୂ । ସଜହୁ ସୁଲୋଚନି ମଂଗଲ ସାଜୂ ॥
ଦଲକି ଉଠେଉ ସୁନି ହୃଦୟୁ କଠୋରୂ । ଜନୁ ଛୁଇ ଗୟଉ ପାକ ବରତୋରୂ ॥୨॥
ଐସିଉ ପୀର ବିହସି ତେହିଁ ଗୋଈ । ଚୋର ନାରି ଜିମି ପ୍ରଗଟି ନ ରୋଈ ॥
ଲଖହିଁ ନ ଭୂପ କପଟ ଚତୁରାଈ । କୋଟି କୁଟିଲ ମନି ଗୁରୂ ପଢ଼ାଈ ॥୩॥
ଜଦ୍ୟପି ନୀତି ନିପୁନ ନରନାହୂ । ନାରିଚରିତ ଜଲନିଧି ଅବଗାହୂ ॥
କପଟ ସନେହୁ ବଢ଼ାଇ ବହୋରୀ । ବୋଲୀ ବିହସି ନୟନ ମୁହୁ ମୋରୀ ॥୪॥

ମାଗୁ ମାଗୁ ପୈ କହହୁ ପିୟ କବହୁଁ ନ ଦେହୁ ନ ଲେହୁ ।
ଦେନ କହେହୁ ବରଦାନ ଦୁଇ ତେଉ ପାୱତ ସଂଦେହୁ ॥୨୭॥

ଜାନେଉଁ ମରମୁ ରାଉ ହଁସି କହଈ । ତୁମ୍ହହି କୋହାବ ପରମ ପ୍ରିୟ ଅହଈ ॥
ଥାତି ରାଖି ନ ମାଗିହୁ କାଊ । ବିସରି ଗୟଉ ମୋହି ଭୋର ସୁଭାଊ ॥୧॥

---

ରାମଙ୍କୁ ଦେବି ମୁଁ କାଲି ପଦ ଯୁବରାଜ । ସଜାଅ ସୁରୁ-ଲୋଚନି, ସୁମଙ୍ଗଳ ସାଜ ॥
ଶୁଣି କଠୋର ହୃଦୟ ଦଲକି ଉଠିଲା । ପକ୍ୱ ବାଲମୂଳିଆରେ ସ୍ପର୍ଶ କି ହୋଇଲା ॥୨॥
ଏମନ୍ତ ପୀଡ଼ା ସେ ହସି ନେଲା ଗୁପ୍ତ କରି । ଚୋର ନାରୀ ପ୍ରକାଶ୍ୟରେ ନ କାନ୍ଦେ ଯେପରି ॥
ନୃପ ତା ଛନ୍ଦ ଚାତୁରୀ ନ ଜାଣିଲେ କିଛୁ । କୋଟି କୁଟିଳଙ୍କ ମଣି ଗୁରୁ ପଢାଇଛୁ ॥୩॥
ଯଦ୍ୟପି ନୀତି-ନିପୁଣ ଥିଲେ ନରବର । ନାରୀ ଚରିତ ଅପାର ଗଭୀର ସାଗର ॥
ପୁଣି ସେ ଭାବେ କପଟ ସ୍ନେହ ବଢାଇଣ । ବୋଲେ ମନ୍ଦ ହସି ମୁଖ ନୟନ ମୋଡ଼ିଣ ॥୪॥

ମାଗ ମାଗ ବୋଲି କହ ପ୍ରିୟ, ଖାଲି କେବେ ଦିଅ ନିଅ ନାହିଁ ।
କହିଥିଲ ଦୁଇ ବର ଦେବା ପାଇଁ ପାଇବା ସନ୍ଦେହ ତାହି ॥୨୭॥

ଜାଣିଲି, ମରମ ହସି ବୋଲନ୍ତି ନରେଶ । ତୁମ୍ଭଙ୍କୁ ରୁଷିବା ପ୍ରିୟ ଲାଗଇ ବିଶେଷ ॥
ପାଉଣା ରଖି ମୋ ପାଖେ ମାଗି ନାହଁ କେବେ । ଭୋଳ ସ୍ୱଭାବରୁ ଭୁଲି ଯାଇଛୁ ମୁଁ ଏବେ ॥୧॥

---

ତିଆରି କରୁଅଛ କି ' ॥ ୨୭ ॥ ଚୌପାଈ :—ଆପଣା ମନ ମଧ୍ୟରେ କୈକେୟୀଙ୍କୁ ସୁହୃଦ୍ ବୋଲି ଜାଣି, ରାଜା ଦଶରଥ ପ୍ରେମରେ ପୁଲକିତ ହୋଇ କୋମଳ ଓ ସୁନ୍ଦର ବାଣୀରେ ପୁଣି କହିଲେ—"ହେ ଭାମିନି ! ତୁମର ମନସ୍କାମନା ତ ପୂର୍ଣ୍ଣ ହୋଇଗଲା । ନଗରରେ ଘରେ ଘରେ ଆନନ୍ଦ-ଅଭିନନ୍ଦନ ଓ ମଙ୍ଗଳାଚରଣର ବାଦ୍ୟ ବାଜି ଉଠୁଛି ॥୧॥ ମୁଁ କାଲି ହିଁ ରାମଙ୍କୁ ଯୁବରାଜ ପଦ ଦେଉଛି । ଏଣୁ ହେ ସୁନୟନେ ! ତୁମେ ମଙ୍ଗଳ ସାଜ ସଜାଅ ।" ଏହା ଶୁଣିବା ମାତ୍ରେ କୈକେୟୀଙ୍କ କଠୋର ହୃଦୟ ବିଦୀର୍ଣ୍ଣ ହୋଇଗଲା । ସତେ ଯେପରି କେହି ପାଚିଲା ବଥକୁ ଛୁଇଦେଲା ! ॥୨॥ ଏହି କଠୋର ପୀଡ଼ାକୁ ମଧ୍ୟ ସେ ହସି ଘୋଡ଼ାଇ ନେଇଲେ, ଯେପରି କି ଚୋରର ସ୍ତ୍ରୀ ପ୍ରକାଶ୍ୟରେ କାନ୍ଦେନାହିଁ । ରାଜା ତାଙ୍କ କପଟ-ଚାତୁରୀ ବୁଝିପାରୁ ନ ଥା'ନ୍ତି । କାରଣ କୋଟି କପଟ-ଶିରୋମଣି ଗୁରୁ ମନ୍ଥରା ତାଙ୍କୁ ପଢ଼ାଇଥିବାରୁ ତାହା ଅତି ଭେଦ-ରହସ୍ୟ-ମୟୀ ॥୩॥ ରାଜା ନୀତିରେ ନିପୁଣ ହେଲେ ମଧ୍ୟ ନାରୀ-ଚରିତ୍ର ଅତଳ ସମୁଦ୍ର । ପୁଣି ସେ ବାହାରେ

ଝୂଠେହୁଁ ହମହି ଦୋଷୁ ଜନି ଦେହୂ । ଦୁଇ କୈ ଚାରି ମାଗି ମକୁ ଲେହୂ ॥
ରଘୁକୁଲ ରୀତି ସଦା ଚଲି ଆଈ । ପ୍ରାନ ଜାହୁଁ ବରୁ ବଚନୁ ନ ଜାଈ ॥୨॥
ନହିଁ ଅସତ୍ୟ ସମ ପାତକ ପୁଂଜା । ଗିରି ସମ ହୋହିଁ କି କୋଟିକ ଗୁଂଜା ॥
ସତ୍ୟମୂଲ ସବ ସୁକୃତ ସୁହାଏ । ବେଦ ପୁରାନ ବିଦିତ ମନୁ ଗାଏ ॥୩॥
ତେହି ପର ରାମ ସପଥ କରି ଆଈ । ସୁକୃତ ସନେହ ଅବଧି ରଘୁରାଈ ॥
ବାତ ଦୃଢ଼ାଇ କୁମତି ହଁସି ବୋଲୀ । କୁମତି କୁବିହଗ କୁଲହ ଜନୁ ଖୋଲୀ ॥୪॥
ଭୂପ ମନୋରଥ ସୁଭଗ ବନୁ ସୁଖ ସୁବିହଂଗ ସମାଜୁ ।
ଭିଲ୍ଲିନି ଜିମି ଛାଡ଼ନ ଚହତି ବଚନୁ ଭୟଂକରୁ ବାଜୁ ॥୨୮॥

---

ଅକାରଣେ ଦୋଷ ମୋତେ ନାଗର, ନ ଦିଅ । ଦୁଇ କପାଁ ଚାରି ବର ମାଗି ଘେନ ନିଅ ॥
ରଘୁକୁଳ ରୀତି ଚିର କାଳରୁ ଏସନ । ପ୍ରାଣ ଚାଲିଯାଏ ବରଂ, ନ ଯାଏ ବଚନ ॥୨॥
ଅସତ୍ୟ ସମାନ ଅନ୍ୟ ପାପ-ପୁଞ୍ଜ ନାହିଁ । କୋଟି କାଇଞ୍ଚ ହେବ କି ଗିରି ସମ କାହିଁ ॥
ସତ୍ୟ-ମୂଳଯୁକ୍ତ ସବୁ ସୁକୃତ ଶୋଭନ୍ତି । ବେଦ ପୁରାଣ ବିଦିତ, ମନୁ କହୁଛନ୍ତି ॥୩॥
ତହିଁରେ ରାମ ନିୟମ ଧରିଲି ଆବର । ସୁକୃତ ସ୍ନେହ ଅବଧି ଅଟେ ରଘୁବର ॥
କଥା ଦୃଢ଼ କରି ହସି କୁମତି ବୋଇଲି । କୁବୁଦ୍ଧି-କୁପକ୍ଷି-ଆଖି-ପଟି ବା ଖୋଲିଲି ॥୪॥
ଭୂପ ମନୋରଥ ସୁନ୍ଦର ବନସ୍ତ ସୁଖ-ସୁପକ୍ଷି-ସମାଜେ ।
କିରାତିନୀ ଅବା ଛାଡ଼ିବାକୁ ଚାହେଁ ବଚନ-ଭୀଷଣ-ବାଜେ ॥୨୮॥

---

କପଟ-ପ୍ରେମ ବଢ଼ାଇ ନୟନ ଓ ମୁହଁ ମୋଡ଼ି ହସି କହିଲେ— ॥ ୪ ॥ ଦୋହା :— "ହେ ପ୍ରିୟତମ ! ଆପଣ 'ମାଗ' 'ମାଗ' ବୋଲି ତ ଖାଲି କହୁଛନ୍ତି, କିନ୍ତୁ କେବେ କିଛି ଦିଆନିଆ କରୁନାହାନ୍ତି । ତେଣୁ ଆପଣ ଯେଉଁ ବର ଦେବାକୁ କହୁଥିଲେ, ତାହା ମିଳିବା ବିଷୟରେ ମୋର ସନ୍ଦେହ" ॥୨୭॥ ଚୌପାଇ.—ରାଜା ହସି ହସି କହିଲେ, "ଏବେ ମୁଁ ତୁମ ମରମ କଥା ବୁଝିପାରିଲି । ମାନ କରିବା ତୁମଙ୍କୁ ଅତି ଭଲ ଲାଗେ । ତୁମେ ସେହି ବର ମୋ ପାଖରେ ଥାତି କରି ରଖିଅଛ, କେବେ ହେଲେ ମାଗି ନାହଁ ତ, ଏବଂ ମୋର ଭୁଲିବା ସ୍ୱଭାବ ହୋଇଥିବାରୁ ସେ ପ୍ରସଙ୍ଗ ମୋର ଆଦୌ ସ୍ମରଣ ରହିଲାନାହିଁ ॥୧॥ ମୋତେ ମିଛରେ ଦୋଷ ଦିଅନାହିଁ । ଦୁଇଟା ପରିବର୍ତ୍ତେ ଚାରିଟା ମାଗିନିଅ । ରଘୁକୁଳରେ ଆବହମାନ କାଳରୁ ଏହି ରୀତି ଚାଲି ଆସିଛି । ପ୍ରାଣ ଭଲା ଚାଲିଯାଉ, କିନ୍ତୁ ବଚନ ଯାଏନାହିଁ । ॥ ୨ ॥ ଅସତ୍ୟ ସମାନ ପାପ-ପୁଞ୍ଜ ଆଉ ନାହିଁ । କୋଟି କୋଟି ଗୁଞ୍ଜା ଫଳ ମିଶି ସୁଦ୍ଧା କେଉଁଠି ପାହାଡ଼ ସମାନ ହୋଇ ପାରିବ ? 'ସତ୍ୟହିଁ' ସମସ୍ତ ସୁକୃତର ମୂଳାଧାର । ଏହି କଥା ବେଦ-ପୁରାଣରେ ପ୍ରସିଦ୍ଧ ଏବଂ ମନୁ ମଧ୍ୟ ଏହାହିଁ କହି ଅଛନ୍ତି ॥ ୩ ॥ ତହୁଁପରି ପୁଣି ମୋ ମୁହଁରୁ ଶ୍ରୀରାମର ଶପଥ ବାହାରି ପଡ଼ିଛି । ଶ୍ରୀରଘୁନାଥ ମୋ ସୁକୃତ ଓ ସ୍ନେହର ସୀମା ।" ଏହିପରି କୁମତି କୈକେୟୀ କଥାକୁ ଦୃଢ଼ କରାଇ ହସି କଥା କହିଲେ, ସତେ ଯେପରି ଶିକାର କରିବା ପାଇଁ କୁବୁଦ୍ଧିର-

## ମାସପାରାୟଣ, ତ୍ରୟୋଦଶ ବିଶ୍ରାମ

ସୁନହୁ ପ୍ରାନପ୍ରିୟ ଭାୱତ ଜୀ କା । ଦେହୁ ଏକ ବର ଭରତହି ଟୀକା ॥
ମାଗଉଁ ଦୁସର ବର କର ଜୋରୀ । ପୁରୱହୁ ନାଥ ମନୋରଥ ମୋରୀ ॥୧॥
ତାପସ ବେଷ ବିସେଷି ଉଦାସୀ । ଚୌଦହ ବରିସ ରାମୁ ବନବାସୀ ॥
ସୁନି ମୃଦୁ ବଚନ ଭୂପ ହିୟଁ ସୋକୂ । ସସିକର ଛୁଅତ ବିକଲ ଜିମି କୋକୂ ॥୨॥
ଗୟଉ ସହମି ନହିଁ କଛୁ କହି ଆୱା । ଜନୁ ସଚାନ ବନ ଝପଟେଉ ଲାୱା ॥
ବିବରନ ଭୟଉ ନିପଟ ନରପାଲୂ । ଦାମିନି ହନେଉ ମନହୁଁ ତରୁ ତାଲୂ ॥୩॥
ମାଥେଁ ହାଥ ମୂଦି ଦୋଉ ଲୋଚନ । ତନୁ ଧରି ସୋଚୁ ଲାଗ ଜନୁ ସୋଚନ ॥
ମୋର ମନୋରଥୁ ସୁରତରୁ ଫୂଲା । ଫରତ କରିନି ଜିମି ହତେଉ ସମୂଲା ॥୪॥
ଅୱଧ ଉଜାରି କୀହ୍ନି କୈକେଈଁ । ଦୀହ୍ନିସି ଅଚଲ ବିପତି କୈ ନେଈଁ ॥୫॥

---

ଶୁଣ ପ୍ରାଣପ୍ରିୟ, ମଞ୍ଜୁ ବାସନା ମନର । ପ୍ରଥମ ବରେ ଭରତେ ଅଭିଷେକ କର ॥
ପୁଣି ଅନ୍ୟ ବର ମାଗୁଅଛି ଯୋଡ଼ି ହସ୍ତ । ପୂର୍ଣ୍ଣ କରନ୍ତୁ ଜୀବେଶ, ମୋର ମନୋରଥ ॥୧॥
ତାପସ ବେଶ ବିଶେଷେ ହୋଇଣ ଉଦାସୀ । ଚଉଦ ବରଷ ହେଉ ରାମ ବନବାସୀ ॥
ଶୁଣି ମୃଦୁବାଣୀ ନୃପ ହୃଦ ଶୋକାକୁଳ । ଶଶିକର ସ୍ପର୍ଶେ କୋକ ଯେସନ ବ୍ୟାକୁଳ ॥୨॥
ଭୟେ ଶୁଖିଗଲେ ମୁଖୁଁ ବାଣୀ ନ ଫୁଟିଲା । ବନେ ଅବା ଗୁଣ୍ଡ୍ରୁଚିକୁ ସଞ୍ଚାଣ ଝାମ୍ପିଲା ॥
ନିପଟ ବିବର୍ଣ୍ଣ ହୋଇ ପଡ଼ିଲେ ରାଜନ । ବିଜୁଳି ମାରିଲା ତାଳ ତରୁକୁ ଯେସନ ॥୩॥
ବୁଜିଲେ ଯୁଗଳ ନେତ୍ର ଶିରେ ଦେଇ ହସ୍ତ । ତନୁ ଧରି ଚିନ୍ତା ସ୍ୱୟଂ ଚିନ୍ତଇ ଯେମନ୍ତ ॥
ଫୁଟି ସୁରତରୁ ସମ ମୋ ମନାଭିଳାଷ । ଫଳନ୍ତେ କରିଣୀ କଲା ସମୂଳେ ବିନାଶ ॥୪॥
ଅଯୋଧ୍ୟାନଗରେ କଇକେୟୀ ଉଜାଡ଼ିଲା । ବିପତ୍ତି-ସୁଦୃଢ଼-ଭିତ୍ତି ସେହି ପକାଇଲା ॥୫॥

---

ରୂପୀ ଦୁଷ୍ଟ ବାଜପକ୍ଷୀକୁ ଅନ୍ଧପଟୀ ଖୋଲି ଛାଡ଼ି ଦିଆଗଲା ॥ ୪ ॥ ଦୋହା :—
ରାଜାଙ୍କ ମନୋରଥ ମନୋହର ବନ, ସୁଖ ସୁନ୍ଦର ପକ୍ଷୀମାନଙ୍କ ସମାଜ । ତାହା
ଉପରେ କୈକେୟୀ ଶବରୀ ପରି ଆପଣା ବଚନରୂପୀ ଭୟଙ୍କର ବାଜ ଛାଡ଼ିବାକୁ ଇଚ୍ଛା
କରୁଅଛନ୍ତି ॥ ୨୮ ॥ ଚୌପାଈ :—ସେ କହିଲେ, "ହେ ପ୍ରାଣପ୍ରିୟ ! ଶୁଣନ୍ତୁ,
ମୋର ମନରୁଚି ଅନୁସାରେ ଗୋଟିଏ ବର ଦିଅନ୍ତୁ । ତାହା ହେଉଛି ଭରତର
ରାଜ୍ୟାଭିଷେକ ଏବଂ ହେ ନାଥ ! ଦ୍ୱିତୀୟ ବର ମୁଁ ହାତଯୋଡ଼ି ମାଗୁଛି; ମୋର
ମନୋରଥ ପୂର୍ଣ୍ଣ କରନ୍ତୁ—॥ ୧ ॥ ରାମ ତପସ୍ୱୀ ବେଶରେ ବିଶେଷ ଉଦାସୀନ ଭାବରେ
ଚଉଦ ବର୍ଷ ପର୍ଯ୍ୟନ୍ତ ବନରେ ନିବାସ କରୁ ।" କୈକେୟୀଙ୍କର କୋମଳ ବଚନ ଶୁଣି
ରାଜାଙ୍କ ହୃଦୟରେ ଏପରି ଶୋକ ହେଲା, ସତେ ଯେପରି ଚନ୍ଦ୍ରକିରଣ ସ୍ପର୍ଶରେ
ଚକ୍ରବାକ ବିକଳ ହୋଇ ଉଠେ ॥ ୨ ॥ ରାଜା ଶଙ୍କିଗଲେ । ତାଙ୍କୁ କିଛି କହି
ଆସୁ ନ ଥାଏ, ସତେ ଯେପରି ବନରେ ବାଜପକ୍ଷୀ ଗୁଣ୍ଡ୍ରୁଚି ଉପରେ ଝାମ୍ପି ପଡ଼ିଛି !
ରାଜା ଏକାବେଳକେ ବିବର୍ଣ୍ଣ ହୋଇ ପଡ଼ିଲେ । ସତେ ଅବା ତାଳ ଗଛକୁ ବିଜୁଳି

କବନେଁ ଅବସର କା ଭୟଉ ଗୟଉଁ ନାରି ବିସ୍ୱାସ ।
ଜୋଗ ସିଦ୍ଧି ଫଲ ସମୟ ଜିମି ଜତିହି ଅବିଦ୍ୟା ନାସ ॥୨୯॥
ଏହି ବିଧି ରାଉ ମନହିଁ ମନ ଝାଁଖା । ଦେଖି କୁଭାଁତି କୁମତି ମନ ମାଖା ॥
ଭରତୁ କି ରାଉର ପୂତ ନ ହୋହୀଂ । ଆନେହୁ ମୋଲ ବେସାହି କି ମୋହୀଂ ॥୧॥
ଜୋ ସୁନି ସରୁ ଅସ ଲାଗ ତୁମ୍ହାରେଁ । କାହେ ନ ବୋଲହୁ ବଚନୁ ସଁଭାରେଁ ॥
ଦେହୁ ଉତରୁ ଅନୁ କରହୁ କି ନାହୀଁ । ସତ୍ୟସଂଧ ତୁମ୍ହ ରଘୁକୁଲ ମାହୀଁ ॥୨॥
ଦେନ କହେହୁ ଅବ ଜନି ବରୁ ଦେହୂ । ତଜହୁ ସତ୍ୟ ଜଗ ଅପଜସୁ ଲେହୂ ॥
ସତ୍ୟ ସରାହି କହେହୁ ବରୁ ଦେନା । ଜାନେହୁ ଲେଇହି ମାଗି ଚବେନା ॥୩॥

---

କେଉଁ ସମୟରେ କି ହୋଇଗଲା ଆସି ପଡ଼ିଲି ନାରୀ ବିଶ୍ୱାସେ ।
ଯୋଗ ସିଦ୍ଧି ଫଳ-ଲାଭ ବେଳେ ଯେସନେ ଯତିକୁ ଅବିଦ୍ୟା ନାଶେ ॥୨୯॥
ଏହି ସବେ ନୃପ ହୋଇ ମନେ ସନ୍ତାପିତ । ଦେଖି ଦୁର୍ଦ୍ଦଶା କୁମତି ହୁଅଇ କ୍ରୋଧିତ ॥
ଭରତ କି ଆପଣଙ୍କ ନୁହଇ ନନ୍ଦନ । କିଣି କି ଆଣିଛ ମୋତେ ସମୂଲ୍ୟେ ରାଜନ ॥୧॥
ଶୁଣି ତୁମ୍ଭଙ୍କୁ ଲାଗୁଛି ଶର ସମ ଯେବେ । ସମ୍ଭାଳି ବଚନ କିପାଁ ନ ବୋଲିଲ ତେବେ ॥
ଉତ୍ତର ଦିଅ ଅଥବା ଅସ୍ୱୀକାର କର । ସତ୍ୟସନ୍ଧ ତୁମ୍ଭେ ରଘୁକୁଳର ଈଶ୍ୱର ॥୨॥
ଦେବା ପାଇଁ କହି ବର ଏବେ ତା ନ ଦିଅ । ସତ୍ୟ ଉପେକ୍ଷି ଅଯଶ ଜଗତରେ ନିଅ ॥
ସତ୍ୟ ପ୍ରଶଂସିଣ ବର ଦେବାକୁ କହିଲ । ଚଣା ଗଣ୍ଡେ ମାଗିନେବ ବୋଲି ଜାଣିଥିଲ ॥୩॥

---

ମାରି ଜାଳି ପକାଇଛୁ ' ॥ ୩ ॥ ମଥାରେ ହାତ ରଖି ଦୁଇ ନୟନ ବନ୍ଦ କରି ରାଜା ଚିନ୍ତାମଗ୍ନ ହୋଇ ପଡ଼ିଲେ । ମନେହୁଏ, ଯେପରି ଚିନ୍ତା ଶରୀର ଧାରଣ କରି ଚିନ୍ତାମଗ୍ନ ହୋଇଅଛି ' ସେ ଚିନ୍ତା କରୁଥାନ୍ତି—ହାୟ ! ମୋର ମନୋରଥ-କଳ୍ପବୃକ୍ଷ ପୁଷ୍ପିତ ହୋଇ ସାରିଥିଲା । କିନ୍ତୁ ଫଳିବା ସମୟରେ କୈକେୟୀ ହସ୍ତିନୀ ପରି ତାହାକୁ ସମୂଳେ ଉପାଡ଼ି ନଷ୍ଟ କରିଦେଲା ॥ ୪ ॥ କୈକେୟୀ ଅଯୋଧ୍ୟାକୁ ଉଜାଡ଼ି ଦେଲା ଏବଂ ବିପତ୍ତିର ଅଚଳ ଭିତ୍ତି ପକାଇ ଦେଲା ' ॥ ୫ ॥ ଦୋହା .—କେଉଁ ଅବସରରେ କ'ଣ ହୋଇଗଲା ' ଯୋଗର ସିଦ୍ଧି-ଫଳ-ଲାଭ ସମୟରେ ଅବିଦ୍ୟା ଯେପରି ଯୋଗୀକୁ ନଷ୍ଟ କରିଦିଏ, ସ୍ତ୍ରୀକୁ ବିଶ୍ୱାସ କରି ମୁଁ ସେହିପରି ନାଶ ଗଲି ॥ ୨୯ ॥ ଚୌପାଈ '—ଏହିରୂପେ ରାଜା ମନେ ମନେ ବ୍ୟସ୍ତ ହେଉଥା'ନ୍ତି । ରାଜାଙ୍କର ଏପରି ଦୁର୍ଦ୍ଦଶା ଦେଖି କୁମତି କୈକେୟୀ ମନରେ କଦର୍ଯ୍ୟ ଭାବରେ କ୍ରୁଦ୍ଧ ହେଲେ ଏବଂ କହିଲେ, "ଭରତ ଆପଣଙ୍କ ପୁଅ ନୁହେଁ କି ? ମୋତେ କଣ ଆପଣ ମୂଲ ଦେଇ କିଣି ଆଣିଛନ୍ତି କି ? ॥ ୧ ॥ ମୋ ବଚନ ଶୁଣିବା ମାତ୍ରେ ଯଦି ଆପଣଙ୍କୁ ଶରବିଦ୍ଧ ହେଲା ପରି ଲାଗିଲା, ତେବେ ଆପଣ ବୁଝିବିଚାରି କଥା କହନ୍ତି ନାହିଁ କାହିଁକି ? ଉତ୍ତର ଦିଅନ୍ତୁ—ହଁ କରନ୍ତୁ କିମ୍ବା ନାହିଁ କରନ୍ତୁ । ଆପଣ ରଘୁ ବଂଶରେ ସତ୍ୟସନ୍ଧ ନରେଶ ରୂପେ ପ୍ରସିଦ୍ଧ ॥ ୨ ॥ ଆପଣ ହିଁ ବର ଦେବାକୁ କହିଥିଲେ । ଏବେ ନ ଦିଅନ୍ତୁ ଭଲା । ସତ୍ୟକୁ ତ୍ୟାଗ କରନ୍ତୁ ଏବଂ

ସିବି ଦଧୀଚି ବଲି ଜୋ କଛୁ ଭାଷା । ତନୁ ଧନୁ ତଜେଉ ବଚନ ପନୁ ରାଖା ॥
ଅତି କଟୁ ବଚନ କହତି କୈକେଈ । ମାନହୁଁ ଲୋନ ଜରେ ପର ଦେଈ ॥୪॥
ଧରମ ଧୁରଂଧର ଧୀର ଧରି ନୟନ ଉଘାରେ ରାୟଁ ।
ସିରୁ ଧୁନି ଲୀନ୍ହି ଉସାସ ଅସି ମାରେସି ମୋହି କୁଠାୟଁ ॥୩୦॥
ଆଗେଁ ଦୀଖି ଜରତି ରିସ ଭାରୀ । ମନହୁଁ ରୋଷ ତରବାରି ଉଘାରୀ ॥
ମୂଠି କୁବୁଦ୍ଧି ଧାର ନିଠୁରାଈ । ଧରୀ କୁବରୀଁ ସାନ ବନାଈ ॥୧॥
ଲଖୀ ମହୀପ କରାଲ କଠୋରା । ସତ୍ୟ କି ଜୀବନୁ ଲେଇହି ମୋରା ॥
ବୋଲେ ରାଉ କଠିନ କରି ଛାତୀ । ବାନୀ ସବିନୟ ତାସୁ ସୋହାତୀ ॥୨॥
ପ୍ରିୟା ବଚନ କସ କହସି କୁଭାଁତୀ । ଭୀର ପ୍ରତୀତି ପ୍ରୀତି କରି ହାଁତୀ ॥
ମୋରେଁ ଭରତୁ ରାମୁ ଦୁଇ ଆଁଖୀ । ସତ୍ୟ କହଉଁ କରି ସଂକରୁ ସାଖୀ ॥୩॥

---

ଯାହା କିଛି ଶିବି ବଳି ଦଧୀଚି ଭାଷିଲେ । ତନୁ ଧନ ତେଜି ପଣେ ବଚନ ରଖିଲେ ॥
ଅତ୍ୟନ୍ତ କଟୁ ବଚନ କୈକେୟୀ କହଇ । ପୋଡାଘାଆରେ ଯେପରି ଲବଣ ଲେପଇ ॥୪॥
ଧର୍ମ ଧୁରନ୍ଧର ନୃପ ଧରି ଧୀର ନେତ୍ର ଫେଡ଼ି ଶିର ତାଡ଼ି ।
ମୋତେ କୁସ୍ଥାନରେ ମାରିଲା ଖଡ୍‌ଗରେ ଚିନ୍ତନ୍ତି ନିଃଶ୍ୱାସ ଛାଡ଼ି ॥୩୦॥
ସମ୍ମୁଖେ ଦେଖିଲେ ଅତି ରୋଷେ ପ୍ରଜ୍ୱଳିତ । ଉନ୍ମୁକ୍ତ କୋଷ କୃପାଣ ମନେ ହୁଏ ସ୍ଥିତ ॥
ମୁଷ୍ଟି କୁବୁଦ୍ଧି ଅଟଇ ନିଷ୍ଠୁରତା ଦାଢ । ଯତ୍ନେ ସାଣ ଧରି କୁବ୍ଜା କରିଛି ପ୍ରଗାଢ ॥୧॥
କରାଳ କଠୋର ଖଡ୍‌ଗ ଦେଖି ନରରାଣ । ଭାବନ୍ତି ସତ୍ୟ କି ମୋର ନେବ ଏ ପରାଣ ॥
ବୋଇଲେ ନରେଶ କରି କଠିନ ହୃଦୟ । ତାକୁ ସୁଖ ଦେଲା ଭଳି ବାଣୀ ସବିନୟ ॥୨॥
ପ୍ରିୟେ, ବଚନ କେମନ୍ତେ କହ ଅସୁନ୍ଦର । ନ ରଖିଣ ଭୟ ପ୍ରୀତି ପ୍ରତୀତି ଆଦର ॥
ଅଟନ୍ତି ମୋର ଭରତ ରାମ ଦୁଇ ଆଖି । ସତ୍ୟ କହୁଛି ମୁଁ କରି ଶଙ୍କରଙ୍କୁ ସାକ୍ଷୀ ॥୩॥

---

ଜଗତରେ ଅପଯଶ ନଅନ୍ତୁ । ଆପଣ ସତ୍ୟର ବଡ ପ୍ରଶଂସା କରି ବର ଦେବାକୁ କହିଥିଲେ । ଆପଣ ଭାବିଥିଲେ, ଇଏ ବୁଟଭଜା ଗଣ୍ଡେ ମାଗିବ ! ॥ ୩ ॥ ରାଜା ଶିବି, ଦଧୀଚି ଏବଂ ବଳି ଯାହା କିଛି କହିଥିଲେ, ଶରୀର ଓ ଧନ ତ୍ୟାଗ କରି ମଧ ସେମାନେ ଆପଣା ବଚନ ଓ ପ୍ରତିଜ୍ଞାକୁ ରକ୍ଷା କରିଅଛନ୍ତି ।" କୈକେୟୀ ଅତି କଠୋର ବଚନ କହି ଚାଲିଥାନ୍ତି, ସତେ ଯେପରି ପୋଡା ଘାଆରେ ଲୁଣ ଦେଉଥାନ୍ତି ॥ ୪ ॥ ଦୋହା :— ଧର୍ମ-ଧୁରନ୍ଧର ରାଜା ଦଶରଥ ଧୈର୍ଯ୍ୟ ଧାରଣ କରି ନେତ୍ର ଖୋଲିଲେ ଏବଂ ମୁଣ୍ଡ ହଲାଇ ଓ ଦୀର୍ଘ ଶ୍ୱାସ ନେଇ କହିଲେ, ଇଏ ମୋତେ ଅତି ଅଜାଗାରେ ଆଘାତ କଲା ॥ ୩୦ ॥ ଚୌପାଇ :—ପ୍ରଚଣ୍ଡ କ୍ରୋଧରେ ପ୍ରଜ୍ୱଳିତ କୈକେୟୀ ସମ୍ମୁଖରେ କ୍ରୋଧ-ତରବାରି ନଗ୍ନ ହୋଇ ଛିଡା ହେଲା ପରି ଦେଖାଯାଉଥାନ୍ତି । ଦୁର୍ବୁଦ୍ଧି ଏହି ତରବାରୀର ମୁଠି, ନିଷ୍ଠୁରତା ଧାର ଏବଂ ତାହା କୁଜା ମନ୍ଥରା ରୂପୀ ଶାଣ-ପଥରରେ ଘଷି ହୋଇ ଧାରୁଆ ହୋଇଅଛି ॥ ୧ ॥ ରାଜା ଦେଖିଲେ, ଏହି ତରବାରୀ ବଡ

ଅବସି ଦୂତୁ ମୈଁ ପଠଇବ ପ୍ରାତା । ଐହହିଁ ବେଗି ସୁନତ ଦୋଉ ଭ୍ରାତା ॥
ସୁଦିନ ସୋଧି ସବୁ ସାଜୁ ସଜାଈ । ଦେଉଁ ଭରତ କହୁଁ ରାଜୁ ବଜାଈ ॥୪॥
ଲୋଭୁ ନ ରାମହି ରାଜୁ କର ବହୁତ ଭରତ ପର ପ୍ରୀତି ।
ମୈଁ ବଡ଼ ଛୋଟ ବିଚାରି ଜିୟଁ କରତ ରହେଉଁ ନୃପନୀତି ॥୩୧॥
ରାମ ସପଥ ସତ କହଉଁ ସୁଭାଊ । ରାମମାତୁ କଛୁ କହେଉ ନ କାଊ ॥
ମୈଁ ସବୁ କୀହ୍ନ ତୋହି ବିନୁ ପୂଛେଁ । ତେହି ତେଁ ପରେଉ ମନୋରଥୁ ଛୂଛେଁ ॥୧॥
ରିସ ପରିହରୁ ଅବ ମଂଗଲ ସାଜୂ । କଛୁ ଦିନ ଗଏଁ ଭରତ ଜୁବରାଜୂ ॥
ଏକହିଁ ବାତ ମୋହି ଦୁଖୁ ଲାଗା । ବର ଦୂସର ଅସମଂଜସ ମାଗା ॥୨॥

---

ଅବଶ୍ୟ ପେଷିବି ଦୂତ ହୋଇଲେ ପ୍ରଭାତ । ଆସିବେ ଶୀଘ୍ର ସନ୍ଦେଶ ଶୁଣି ବେନି ଭ୍ରାତ ॥
ସୁଦିନ ସାଧି ସମସ୍ତ ସମାଜ ସଜାଇ । ଦେବି ଭରତକୁ ରାଜ୍ୟ ଘୋଷଣା କରାଇ ॥୪॥
ଲୋଭ ନାହିଁ ରାଜ୍ୟ ଉପରେ ରାମର ଭରତେ ଅତି ତା' ପ୍ରୀତି ।
ମୁହିଁ ବଡ ସାନ ବିଚାରି କରିଣ ରଖୁଥିଲି ନୃପ ନୀତି ॥୩୧॥
ରାମ ରାଣ ଶତବାର, ସ୍ୱଭାବେ କହୁଛି । ରାମମାତା କେବେ ମୋତେ କହିନାହିଁ କିଛି ॥
ତୋତେ ନ ପଚାରି ଯେଣୁ ଏ ସବୁ କରିଲି । ସେ କାରଣୁ ତୁଚ୍ଛା ମନୋରଥ ମୁଁ ହୋଇଲି ॥୧॥
ରୋଷ ପରିହରି ଏବେ ସୁମଙ୍ଗଳ ସାଜ । କିଛି ଦିନ ଗଲେ ଭରତ ହେବ ଯୁବରାଜ ॥
କିନ୍ତୁ ଏକ କଥାରେ ମୁଁ ବିଶେଷ ଦୁଃଖିତ । ଇତର ବର ମାଗିଲୁ ଅତି ଅସଙ୍ଗତ ॥୨॥

---

ଭୟାନକ ଓ କଠୋର । ସେ ଭାବିଲେ—ସତେ କଣ ଇଏ ମୋର ଜୀବନ ନେବ ?
ରାଜା ତାଙ୍କ ଗ୍ରୀବ କଠୋର କରି ଅତି ନମ୍ରତାର ସହିତ କୈକେୟୀଙ୍କୁ ପ୍ରୀତିକର
ବାଣୀ କହିଲେ ॥ ୨ ॥ "ହେ ପ୍ରିୟେ ! ହେ ଭୀରୁ ! ବିଶ୍ୱାସ ଏବଂ ପ୍ରେମକୁ ନଷ୍ଟ କରି
ଏପରି କଦର୍ଯ୍ୟ କଥା ତୁମେ କାହିଁକି କହୁଅଛ? ମୋର ତ ଭରତ ଓ ରାମ ଦୁଇଟି ଚକ୍ଷୁ
ପରି । ଏହା ମୁଁ ଶଙ୍କରଙ୍କୁ ସାକ୍ଷୀ ରଖି ସତ୍ୟ କରି କହୁଅଛି । ମୁଁ ଅବଶ୍ୟ କାଲି
ସକାଳେ ଦୂତ ପଠାଇବି । ଭରତ ଓ ଶତ୍ରୁଘ୍ନ ଦୁଇ ଭାଇ ଶୁଣିବା ମାତ୍ରେ ତୁରନ୍ତ
ଏଠାକୁ ଆସିଯିବେ । ଶୁଭଦିନ ଓ ଶୁଭ ମୁହୂର୍ତ୍ତ ନିରୂପଣ କରି ସମସ୍ତ ଆୟୋଜନ କରି
ଦୁନ୍ଦୁଭି ଓ ବାଦ୍ୟନାଦ ମଧ୍ୟରେ ମୁଁ ଭରତଙ୍କୁ ରାଜ୍ୟ ଅର୍ପଣ କରିଦେବି ॥ ୪ ॥
ଦୋହା :—ରାମର ରାଜ୍ୟ ପ୍ରତି ଲୋଭ ନାହିଁ ଏବଂ ଭରତ ପ୍ରତି ତାହାର ଅଗାଧ ପ୍ରେମ ।
ମୁହିଁ କେବଳ ବଡ ସାନ ବିଚାର କରି ରାଜନୀତି ପାଳନ କରିବାକୁ ଯାଉଥିଲି ॥ ୩୧ ॥
ଚୌପାଈ :—ଶହେ ଥର ରାମର ରାଣ ଖାଇ ମୁଁ ସ୍ୱଭାବତଃ କହୁଛି, "ରାମର ମାତା
କୌଶଲ୍ୟା ମୋତେ ଏ ବିଷୟରେ କେବେ କିଛି କହିନାହାନ୍ତି । ଅବଶ୍ୟ ମୁଁ ତୁମକୁ
ନ ପଚାରି ଏସବୁ କରିଥିଲି । ଏହି ହେତୁ ମୋ ମନୋରଥ ବିଫଳ ଓ ଅସାର ହୋଇ-
ଗଲା ॥ ୧ ॥ ଏବେ କ୍ରୋଧ ତ୍ୟାଗ କର ଏବଂ ମଙ୍ଗଳ ସାଜ ସଜାଅ । ଅଳ୍ପ କେତେ
ଦିନ ପରେ ଭରତ ଯୁବରାଜ ହୋଇଯିବ । ମୋତେ ଗୋଟିଏ କଥା ଯୋଗୁଁ ଅତି ଦୁଃଖ

ଅଜହୁଁ ହୃଦୟ ଜରତ ତେହି ଆଁଚୀ । ରିସ ପରିହାସ କି ସାଁଚେହୁଁ ସାଁଚୀ ॥
କହୁ ତଜି ରୋଷୁ ରାମ ଅପରାଧୂ । ସବୁ କୋଉ କହଇ ରାମୁ ସୁଠି ସାଧୂ ॥୩॥
ତୁହୂଁ ସରାହସି କରସି ସନେହୂ । ଅବ ସୁନି ମୋହି ଭୟଉ ସନ୍ଦେହୂ ॥
ଜାସୁ ସୁଭାଉ ଅରିହି ଅନୁକୂଲା । ସୋ କିମି କରିହି ମାତୁ ପ୍ରତିକୂଲା ॥୪॥

ପ୍ରିୟା ହାସ ରିସ ପରିହରହି ମାଗୁ ବିଚାରି ବିବେକୁ ।
ଜେହିଁ ଦେଖୌଁ ଅବ ନୟନ ଭରି ଭରତ ରାଜ ଅଭିଷେକୁ ॥୩୨॥

ଜିଐ ମୀନ ବରୁ ବାରି ବିହୀନା । ମନି ବିନୁ ଫନିକୁ ଜିଐ ଦୁଖ ଦୀନା ॥
କହଉଁ ସୁଭାଉ ନ ଛଲୁ ମନ ମାହୀଁ । ଜୀବନୁ ମୋର ରାମ ବିନୁ ନାହୀଁ ॥୧॥
ସମୁଝି ଦେଖୁ ଜିୟଁ ପ୍ରିୟା ପ୍ରବୀନା । ଜୀବନୁ ରାମ ଦରସ ଆଧୀନା ॥
ସୁନି ମୃଦୁ ବଚନ କୁମତି ଅତି ଜରଈ । ମନହୁଁ ଅନଲ ଆହୁତି ଘୃତ ପରଈ ॥୨॥

---

ଏବେ ମଧ୍ୟ ଜଳୁଅଛି ହୃଦ ସେ ତାପରେ । ରୋଷ ପରିହାସ କିମ୍ବା ସତ୍ୟ ପ୍ରକୃତରେ ॥
କହ କୋପ ପରିହରି ଦୂଷଣ ରାମର । ସର୍ବେ କହନ୍ତି ସୁଶୀଳ ସାଧୁ ରଘୁବର ॥୩॥
ତୁ ପୁଣି ପ୍ରଶଂସା କରି କରୁଥାଉ ସ୍ନେହ । ଏବେ ଏହା ଶୁଣି ମୋର ଉପୁଜେ ସନ୍ଦେହ ॥
ଯା'ର ସ୍ୱଭାବେ ରହନ୍ତି ଅରି ଅନୁକୂଳ । ସେ କେମନ୍ତେ ଆଚରିବ ମାତା ପ୍ରତିକୂଳ ॥୪॥

ପ୍ରିୟେ, ହାସ୍ୟ ରୋଷ ପରିହରି ଏବେ ମାଗ ବିଚାରି ବିବେକ ।
ଯେମନ୍ତେ ଦେଖିବି ନେତ୍ର ପୂର୍ଣ୍ଣ କରି ଭରତ ରାଜ୍ୟାଭିଷେକ ॥୩୨॥

ବଞ୍ଚିପାରେ ମୀନ ବରଂ ସଲିଳ ବିହୀନେ । ଦୀନ ଦୁଃଖେ ଜୀଇପାରେ ଫଣୀ ମଣି ବିନେ ॥
କହୁଛି ସ୍ୱଭାବେ ଛଳ ନ ରଖି ମନରେ । ରାମ ବିନା ନ ରହିବ ଏ ପ୍ରାଣ ପିଣ୍ଡରେ ॥୧॥
ହୃଦୟେ ବିଚାରି ଦେଖ ରମଣୀ ପ୍ରବୀଣ । ଏ ଜୀବନ ମୋର ରାମ-ଦର୍ଶନ ଅଧୀନ ॥
ଶୁଣି ମୃଦୁବାଣୀ ଅତି କୁମତି ଜଳଇ । ଯେସନେ ଅନଳେ ଘୃତ ଆହୁତି ପଡ଼ଇ ॥୨॥

---

ଲାଗୁଛି । ତାହା ହେଉଛି, ତୁମେ ଏ ଦ୍ୱିତୀୟ ବରଟି ଯାହା ମାଗିଲ । ତୁମେ ଏ ଦ୍ୱିତୀୟ ବରଟି ବଡ଼ ଅଖାଡୁଆ କରି ମାଗିଲ ॥ ୨ ॥ ତାହାର ଆଞ୍ଚ ଯୋଗେ ଏବେ ସୁଦ୍ଧା ମୋ ହୃଦୟ ଜଳୁଛି । ଏହା ପରିହାସରେ କି କ୍ରୋଧରେ ମାଗିଲ ? ଅଥବା ବାସ୍ତବିକ ସତ୍ୟରେ ? କ୍ରୋଧକୁ ତ୍ୟାଗ କରି ରାମର କି ଅପରାଧ କୁହ ତ ! ସମସ୍ତେ ତ କହନ୍ତି, ରାମ ବଡ଼ ସାଧୁ ॥ ୩ ॥ ତୁମେ ନିଜେ ମଧ୍ୟ ରାମକୁ ପ୍ରଶଂସା ଏବଂ ସ୍ନେହ କରୁଥିଲ । ବର୍ତ୍ତମାନ ତୁମ ମୁହଁରୁ ଏପରି ଶୁଣି ମୋତେ ସନ୍ଦେହ ଲାଗୁଛି ଯେ, ତୁମ ପ୍ରଶଂସା ଓ ସ୍ନେହ କାଳେ ମିଥ୍ୟା ହୋଇଥିବ । ଯାହାର ସ୍ୱଭାବ ଶତ୍ରୁ ପ୍ରତି ମଧ୍ୟ ଅନୁକୂଳ, ସେ ମାତାଙ୍କର ପ୍ରତିକୂଳ ଆଚରଣ କିପରି କରିବ ? ॥ ୪ ॥ ଦୋହା ' ହେ ପ୍ରିୟେ ! ହାସ୍ୟ ଓ କ୍ରୋଧ ତ୍ୟାଗ କର ଏବଂ ବିବେକ-ବିଚାରରେ ବର ମାଗ । ଯାହା ଫଳରେ ମୁଁ ନେତ୍ର ପୂରାଇ ଭରତଙ୍କ ରାଜ୍ୟାଭିଷେକ ଦେଖି ପାରିବି ॥ ୩୨ ॥ ଚୌପାଇ — ମାଛ ପାଣି ବିନା ବଞ୍ଚି ରହୁ ଏବଂ ସାପ ମଧ୍ୟ ମଣି ବିନା ଦୀନଦୁଃଖୀ ହୋଇ ଜୀଇ ରହୁ,

କହଇ କରହୁ କିନ କୋଟି ଉପାୟା । ଇହାଁ ନ ଲାଗିହି ରାଉରି ମାୟା ॥
ଦେହୁ କି ଲେହୁ ଅଜସୁ କରି ନାହୀଁ । ମୋହି ନ ବହୁତ ପ୍ରପଂଚ ସୋହାହୀଁ ॥୩॥
ରାମୁ ସାଧୁ ତୁମ୍ହ ସାଧୁ ସୟାନେ । ରାମମାତୁ ଭଲି ସବ ପହିଚାନେ ॥
ଜସ କୌସିଲାଁ ମୋର ଭଲ ତାକା । ତସ ଫଲୁ ଉନ୍ହହି ଦେଉଁ କରି ସାକା ॥୪॥

ହୋତ ପ୍ରାତୁ ମୁନିବେଷ ଧରି ଜୌଁ ନ ରାମୁ ବନ ଜାହିଁ ।
ମୋର ମରନୁ ରାଉର ଅଜସ ନୃପ ସମୁଝିଅ ମନ ମାହିଁ ॥୩୩॥

ଅସ କହି କୁଟିଲ ଭଈ ଉଠି ଠାଢ଼ୀ । ମାନହୁଁ ରୋଷ ତରଂଗିନି ବାଢ଼ୀ ॥
ପାପ ପହାର ପ୍ରଗଟ ଭଇ ସୋଈ । ଭରୀ କ୍ରୋଧ ଜଲ ଜାଇ ନ ଜୋଈ ॥୧॥

---

ବୋଲଇ, କାହିଁକି କୋଟି ନ କର କୌଶଳ । ଏଠାରେ ପଶିବ ନାହିଁ ତୁମ୍ଭ ମାୟା ଛଳ ॥
ଦିଅ କିମ୍ବା ନାହିଁ କରି ଅଯଶ ଆଦର । ମୋତେ ଭଲ ନ ଲାଗଇ ପ୍ରପଞ୍ଚ ନିକର ॥୩॥
ରାମ ସାଧୁ ତୁମ୍ଭେ ସାଧୁ ଚତୁର ପରମ । ରାମ ମାତା ଭଲ, ସବୁ ଜାଣେ ମୁଁ ଉତ୍ତମ ॥
କଉଶଲ୍ୟା ମୋର ଭଲ ଚାହିଁଲା ଯେପରି । ପ୍ରତ୍ୟକ୍ଷ ତାହାଙ୍କୁ ଫଳ ଦେବି ମୁଁ ସେପରି ॥୪॥

ପ୍ରାତ ହେଉ ଯେବେ ବନକୁ ନ ଯିବେ ଧରି ରାମ ମୁନିବେଷ ।
ମରଣ ମୋହର ଅଯଶ ତୁମ୍ଭର ମନେ ବିଚାର ନରେଶ ॥୩୩॥

ଏହା କହି ଉଠି ଠିଆ କୁଟିଳା ହୋଇଲା । ମନେହୁଏ ଯେସନେ ରୋଷ-ତଟିନୀ ବଢିଲା ॥
ପାପ-ପାହାଡରୁ ସେହି ହୋଇଣ ଉତ୍ପନ୍ନ । ପୂରିଲା କ୍ରୋଧ-ସଲିଳେ, ନ ପାଏ ନୟନ ॥୧॥

---

କିନ୍ତୁ ମୁଁ ସହଜ ସ୍ୱାଭାବିକ ଭାବରେ କହୁଛି, ମନରେ ଟିକିଏ ହେଲେ ଛଳକପଟ ରଖିନାହିଁ,—ରାମ ବିନା ମୋ ଜୀବନ ନାହିଁ ॥ ୧ ॥ ହେ ଚତୁରୀ ପ୍ରିୟତମେ ! ମନରେ ବୁଝି ଦେଖ, ମୋ ଜୀବନ ଶ୍ରୀରାମଙ୍କ ଦର୍ଶନ ଅଧୀନ ।” ରାଜାଙ୍କ କୋମଳ ବଚନ ଶୁଣି, କୁମତି କୈକେୟୀ ଅଗ୍ନିରେ ଘୃତାହୁତି ପଡିଲା ପରି ଅତ୍ୟନ୍ତ ଭାବରେ ଜଳି ଉଠୁଥା’ନ୍ତି ॥ ୨ ॥ କୈକେୟୀ କହୁଥାନ୍ତି—“ଆପଣ କୋଟି କୋଟି ଉପାୟ କରନ୍ତୁ ପଛକେ, ଏଠାରେ ଆପଣଙ୍କର ମାୟା ବା ଭୁଲବାଜି ଚାଲିବ ନାହିଁ । ମୁଁ ଯାହା ମାଗିଛି ତାହା ଦିଅନ୍ତୁ, ନାହିଁ ତ, ‘ନାହିଁ’ କହି ଅପଯଶ ନିଅନ୍ତୁ । ମୋତେ ଏ ସବୁ ଛଳ-ପ୍ରପଞ୍ଚ ଭଲ ଲାଗେନାହିଁ ॥ ୩ ॥ ରାମ ସାଧୁ, ଆପଣ ସିଆଣିଆ ସାଧୁ ଏବଂ ରାମ ମାତା ମଧ୍ୟ ଭଲ । ମୁଁ ସମସ୍ତଙ୍କୁ ଚିହ୍ନି ସାରିଛି । କୌଶଲ୍ୟା ମୋ ଭଲ ଯେମିତି ଚାହିଁଛନ୍ତି, ମୁଁ ମଧ୍ୟ ତାଙ୍କୁ ସେହିପରି ଫଳ ଦେବି, ଯାହାକୁ ସେ ଚିରକାଳ ମନେ ରଖିଥିବେ ॥ ୪ ॥ ଦୋହା’—ସକାଳ ହେବା ମାତ୍ରେ ମୁନି ବେଶ ଧାରଣ କରି ଯଦି ରାମ ବନକୁ ନ ଯାଆନ୍ତି, ତେବେ ହେ ରାଜନ୍ ! ମନରେ ନିଶ୍ଚୟ ବୁଝି ରଖନ୍ତୁ ମୋର ମୃତ୍ୟୁ ସୁନିଶ୍ଚିତ ଏବଂ ଆପଣଙ୍କ ଅପଯଶ ମଧ୍ୟ ! ॥ ୩୩ ॥ ଚୌପାଈ .—ଏହିପରି କହି କୁଟିଳା କୈକେୟୀ ଉଠି ଛିଡା ହେଲେ । ମନେ ହୁଏ, ଯେମିତି କ୍ରୋଧ-ନଦୀ ବଢି ଆସିଛି । ସେହି ନଦୀ ପାପ-ପାହାଡରୁ ବାହାରିଛି ଏବଂ କ୍ରୋଧ-ଜଳରେ ପରିପୂର୍ଣ୍ଣ । ତାହା ଏତେ ଭୟାନକ

ଦୋଉ ବର କୂଲ କଠିନ ହଠ ଧାରା । ଭଁୱର କୂବରୀ ବଚନ ପ୍ରଚାରା ॥
ଢାହତ ଭୂପରୂପ ତରୁ ମୂଲା । ଚଲୀ ବିପତି ବାରିଧି ଅନୁକୂଲା ॥୨॥
ଲଖୀ ନରେସ ବାତ ଫୁରି ସାଁଚୀ । ତିୟ ମିସ ମୀଚୁ ସୀସ ପର ନାଚୀ ॥
ଗହି ପଦ ବିନୟ କୀହ୍ନି ବୈଠାରୀ । ଜନି ଦିନକର କୁଲ ହୋସି କୁଠାରୀ ॥୩॥
ମାଗୁ ମାଥ ଅବହୀଁ ଦେଉଁ ତୋହୀ । ରାମ ବିରହଁ ଜନି ମାରସି ମୋହୀ ॥
ରାଖୁ ରାମ କହୁଁ ଜେହି ତେହି ଭାଁତୀ । ନାହିଁ ତ ଜରିହି ଜନମ ଭରି ଛାତୀ ॥୪॥

ଦେଖୀ ବ୍ୟାଧି ଅସାଧ ନୃପୁ ପରେଉ ଧରନି ଧୁନି ମାଥ ।
କହତ ପରମ ଆରତ ବଚନ ରାମ ରାମ ରଘୁନାଥ ॥୩୬॥

ବ୍ୟାକୁଲ ରାଉ ସିଥିଲ ସବ ଗାତା । କରିନି କଲପତରୁ ମନହୁଁ ନିପାତା ॥
କଂଠୁ ସୂଖ ମୁଖ ଆଵ ନ ବାନୀ । ଜନୁ ପାଠୀନୁ ଦୀନ ବିନୁ ପାନୀ ॥୧॥

---

ବେନି ବର କୂଳ ମହା ହଠ ତୀବ୍ର ଧାର । ଆବର୍ତ୍ତ ଅଟେ କୁବ୍‌ଜାର କପଟ ବିସ୍ତର ॥
ଭୂପ ରୂପ ମହା ତରୁ ମୂଳ ଉପାଡିଣ । ଚଳିଲା ବିପତ୍ତି-ବାରିନିଧି ସମ୍ମୁଖୀନ ॥୨॥
ଜାଣିଲେ ସତ୍ୟ ସମସ୍ତ ତଥ୍ୟକୁ ଭୂପାଳ । ନାରୀ ବାହାନାରେ ନାଚେ ସମ୍ମୁଖରେ କାଳ ॥
ପଦ ଧରି ବାରମ୍ବାର ବିନୟ କରନ୍ତି । ନ ହୁଅ କୁଠାର ଦିନକରକୁଳ ପ୍ରତି ॥୩॥
ମାଗ ଏ ମସ୍ତକ ଏହିକ୍ଷଣି ଦେବି ତୋତେ । ରାମ ବିରହ କରାଇ ମାର ନାହିଁ ମୋତେ ॥
ଯେ କୌଣସି ପ୍ରକାରରେ ରଖ ଶ୍ରୀରାମଙ୍କୁ । ନାହିଁ ତ ଜଳିବ ଛାତି ଯାବଜ୍ଜୀବନକୁ ॥୪॥

ଅସାଧ ଏ ବ୍ୟାଧି ଦେଖି ନୃପ ଶିର ପିଟି ପଡିଲେ ଧରଣୀ ।
କହୁଣ ପରମ ଆରତ ବଚନ 'ରାମ' 'ରାମ' ରଘୁମଣି ॥୩୬॥

ଶିଥିଳ ଅଙ୍ଗ ବ୍ୟାକୁଳ ହୋଇଲେ ରାଜନ । କରିଣୀ ବା କଳ୍ପତରୁ କଲା ଉତ୍ପାଟନ ॥
କଣ୍ଠ ଶୁଖିଗଲା ମୁଖୁ ନ ଆସିଲା ବାଣୀ । ଯେମନ୍ତେ ଖାକୁଡ ବ୍ୟାକୁଳ ହୁଏ ବିନା ପାଣି ॥୧॥

---

ଯେ, ତାହା ଆଡକୁ ଗ୍ରାହ୍ୟ ଦେଉ ନାହିଁ ॥ ୧ ॥ ବର ଦୁଇଟି ସେହି ନଦୀର ଦୁଇଟି କୂଳ । କୈକେୟୀଙ୍କ କଠୋର ଜିଦ ସେହି ନଦୀର ତୀବ୍ରଧାର ଏବଂ କୁଜ ମନ୍ଥରାର ବଚନ-ପ୍ରେରଣା ଜଳଭଉଁରୀ । ସେହି କ୍ରୋଧ-ନଦୀ ରାଜା ଦଶରଥ ରୂପୀ ବୃକ୍ଷକୁ ସମୂଳେ ଉତ୍ପାଟନ କରି ବିପତ୍ତି ରୂପୀ ସମୁଦ୍ର ଆଡକୁ ସିଧା ଭସାଇ ନେଉଛି ॥ ୨ ॥ ରାଜା ବୁଝିନେଲେ ଯେ, କଥା ବାସ୍ତବିକ ସତ୍ୟ ଏବଂ ସ୍ତ୍ରୀର ବ୍ୟପଦେଶରେ ମୃତ୍ୟୁ ତାଙ୍କର ମୁଣ୍ଡ ଉପରେ ନାଚୁଛି । ତଦନନ୍ତର ରାଜା କୈକେୟୀଙ୍କ ଚରଣ ଧରି ତାଙ୍କୁ ବସାଇଲେ ଏବଂ ତାଙ୍କୁ ବିନତି କଲେ—"ତୁ ସୂର୍ଯ୍ୟକୁଳ ରୂପୀ ବୃକ୍ଷ ନିମନ୍ତେ କୁରାଢି ହୁଅନାହିଁ ॥ ୩ ॥ ତୁ ମୋ ମୁଣ୍ଡ ମାଗିନେ ମୁଁ ତୋ'ତେ ଏହିକ୍ଷଣି ଦେଇଦେବି । କିନ୍ତୁ ରାମ ବିରହରେ ମୋତେ ମାରନାହିଁ । ଯେ କୌଣସି ପ୍ରକାରେ ତୁ ରାମଙ୍କୁ ରଖିନେ । ନୋହିଲେ ଜନ୍ମ-ଜନ୍ମାନ୍ତରକୁ ତୋ ହୃଦୟ ଜଳୁଥିବ" ॥ ୪ ॥ ଦୋହା ।—ରାଜା ଦେଖିଲେ ଯେ, ରୋଗ ଅସାଧ । ସେତେବେଳେ ସେ ଅତ୍ୟନ୍ତ ଶୋକାର୍ତ୍ତ ବାଣୀରେ "ହା ରାମ ! ହା ରାମ '

ସୁନି କହ କଟୁ କଠୋର କୈକେଈ । ମନହୁଁ ଘାୟ ମହୁଁ ମାହୁର ଦେଈ ॥
ଜୌଁ ଅଂତହୁଁ ଅସ କରତବୁ ରହେଊ । ମାଗୁ ମାଗୁ ତୁହ୍ମ କେହିଁ ବଲ କହେଊ ॥୨॥
ଦୁଇ କି ହୋଇ ଏକ ସମୟ ଭୁଆଲା । ହଁସବ ଠଠାଇ ଫୁଲାଉବ ଗାଲା ॥
ଦାନି କହାଉବ ଅରୁ କୃପନାଈ । ହୋଇ କି ଖେମ କୁସଲ ରୌତାଈ ॥୩॥
ଛାଡ଼ହୁ ବଚନୁ କି ଧୀରଜୁ ଧରହୂ । ଜନି ଅବଲା ଜିମି କରୁନା କରହୂ ॥
ତନୁ ତିୟ ତନୟ ଧାମୁ ଧନୁ ଧରନୀ । ସତ୍ୟସଂଧ କହୁଁ ତୃନ ସମ ବରନୀ ॥୪॥

ମରମ ବଚନ ସୁନି ରାଉ କହ କହୁ କଛୁ ଦୋଷୁ ନ ତୋର ।
ଲାଗେଉ ତୋହି ପିସାଚ ଜିମି କାଲୁ କହାୱତ ମୋର ॥୩୫॥

---

ଶୁଣିଣ କଟୁ କଠୋର କୈକେୟୀ କହଇ । ମନେ ହୁଏ କ୍ଷତ ମଧ୍ୟେ ମହୁରା ଦିଅଇ ॥
ଅନ୍ତକୁ ଥିଲା ଏମନ୍ତ କରିବାର ଯେବେ । ମାଗ ମାଗ କହୁଥିଲ କାହା ବଳେ ତେବେ ॥୨॥
ଉଭୟ କି ନୃପ ଏକ ସମୟେ ହୋଇବ । ହସିବ ଠୋ'ଠୋ ପୁଣି ମୁହଁ ଫୁଲାଇବ ॥
ଦାନୀ କୁହାଇବ, କୃପଣତା କି କରିବ । କୁଶଳ ମଙ୍ଗଳ' ରାଜ ବଂଶେ କି ରହିବ ॥୩॥
ଧୈର୍ଯ୍ୟ ଧରନ୍ତୁ ଅଥବା ବଚନ ଛାଡ଼ନ୍ତୁ । ଅବଳା ତୁଲ୍ୟ କରୁଣା ଶୋକ ନ କରନ୍ତୁ ॥
ତନୁ ଧନ ଧାମ ଜାୟା ସୁତ ବସୁମତୀ । ସତ୍ୟସନ୍ଧ ଆଗେ ତୃଣ ସଦୃଶ ଅଟନ୍ତି ॥୪॥

ଶୁଣି ମର୍ମ ଉକ୍ତି ନୃପତି ବୋଲନ୍ତି ନାହିଁ କିଛି ଦୋଷ ତୋର ।
ଲାଗିଅଛି ତୋତେ ପିଶାଚ ଯେମନ୍ତେ କାଳ କୁହାଉଛି ମୋର ॥୩୫॥

---

ହା ରଘୁନାଥ !" କହି ଶିର ପିଟି ପଡ଼ିଗଲେ ॥୩୪॥ ଚୌପାଈ :—ରାଜା ବ୍ୟାକୁଳ ହୋଇ ପଡ଼ିଲେ । ତାଙ୍କର ସାରା ଶରୀର ଶିଥିଳ ହୋଇଗଲା । ସତେ ଅବା ହସ୍ତିନୀ କଳ୍ପ ବୃକ୍ଷକୁ ଉପାଡ଼ି ଫିଙ୍ଗି ଦେଲା ! କଣ୍ଠ ଶୁଖିଗଲା, ମୁହଁରୁ କଥା ବାହାରୁ ନ ଥାଏ । ସତେ ଯେମିତି ଜଳ ବିନା ଖାକୁର ମାଛ ଛଟପଟ ହେଉଅଛି ! ॥୧॥ କୈକେୟୀ ପୁଣି କର୍କଶ ଏବଂ କଠୋର ବଚନ କହିଲେ, ତାଙ୍କ ବଚନ ଯୋଗେ ସେ ରାଜାଙ୍କ ଘାଆରେ ସତେ ଅବା ବିଷ ଭରୁଥା'ନ୍ତି । ସେ କହିଲେ—"ଯଦି ଶେଷରେ ଏପରି କରିବାର ଥିଲା, ତେବେ 'ମାଗ' 'ମାଗ' ବୋଲି କେଉଁ ବଳରେ ଆପଣ କହିଥିଲେ ? ॥୨॥ ଠୋ ଠୋ ହସିବା ଏବଂ ମୁହଁ ଫୁଲେଇବା—ଏ ଦୁଇ କଥା ଏକ ସଙ୍ଗେ ହୋଇପାରେ କି ? ଏଣେ ଦାନୀ ବୋଲି କୁହାଇବ, ତେଣେ କାର୍ପଣ୍ୟ କରିବ । ଏପରି କଲେ ରାଜବଂଶରେ କୁଶଳମଙ୍ଗଳ ରହିପାରିବ କି ? ଯୁଦ୍ଧରେ ବୀରତା ଦେଖାଇବ ଏବଂ କେଉଁଠି କିଛି ଆଘାତ ନ ଲାଗିବ, ଏ ଦୁଇ କଥା ଏକା ସଙ୍ଗେ କାହୁଁ ସମ୍ଭବ ହେବ ? ॥୩॥ ବଚନ ତ୍ୟାଗ କରନ୍ତୁ କିମ୍ବା ଧୈର୍ଯ୍ୟ ଧାରଣ କରନ୍ତୁ । ଏପରି ନିରାଶ୍ରୟା, ନିଃସହାୟା ନାରୀ ପରି କନ୍ଦାକଟା କରନ୍ତୁ ନାହିଁ । ସତ୍ୟବ୍ରତୀ ନିମନ୍ତେ ଶରୀର, ସ୍ତ୍ରୀ, ପୁତ୍ର, ଗୃହ, ଧନ ଓ ପୃଥିବୀ—ଏ ସବୁ ତୃଣ ପରି ତୁଚ୍ଛ ବୋଲି କଥିତ ଅଛି ।" ॥୪॥ ଦୋହା :—କୈକେୟୀଙ୍କ ମର୍ମ-ଭେଦୀ ବଚନ ଶୁଣି ରାଜା କହିଲେ, "ତୁ ଯାହା ଇଚ୍ଛା

ଚହତ ନ ଭରତ ଭୂପତହି ଭୋରେଁ । ବିଧି ବସ କୁମତି ବସୀ ଜିୟ ତୋରେଁ ॥
ସୋ ସବୁ ମୋର ପାପ ପରିନାମୂ । ଭୟଉ କୁଠାହର ଜେହିଁ ବିଧି ବାମୂ ॥୧॥
ସୁବସ ବସିହି ଫିରି ଅଵଧ ସୁହାଈ । ସବ ଗୁନ ଧାମ ରାମ ପ୍ରଭୁତାଈ ॥
କରିହହିଁ ଭାଇ ସକଲ ସେବକାଈ । ହୋଇହି ତିହୁଁ ପୁର ରାମ ବଡ଼ାଈ ॥୨॥
ତୋର କଲଂକୁ ମୋର ପଛିତାଊ । ମୁଏହୁଁ ନ ମିଟିହି ନ ଜାଇହି କାଊ ॥
ଅବ ତୋହି ନୀକ ଲାଗ କରୁ ସୋଈ । ଲୋଚନ ଓଟ ବୈଠୁ ମୁହୁ ଗୋଈ ॥୩॥
ଜବ ଲଗି ଜିଔଁ କହଉଁ କର ଜୋରୀ । ତବ ଲଗି ଜନି କଛୁ କହସି ବହୋରୀ ॥
ଫିରି ପଛିତୈହସି ଅଂତ ଅଭାଗୀ । ମାରସି ଗାଇ ନହାରୁ ଲାଗୀ ॥୪॥
ପରେଉ ରାଉ କହି କୋଟି ବିଧି କାହେ କରସି ନିଦାନୁ ।
କପଟ ସୟାନି ନ କହତି କଛୁ ଜାଗତି ମନହୁଁ ମସାନୁ ॥୩୬॥

---

ଭୁଲି ଭରତର ଇଚ୍ଛା ନାହିଁ ରାଜପଦେ । ଦୈବବଶ ଉପୁଜିଛି କୁମତି ତୋ ହୃଦେ ॥
ସେ ସବୁ ଅଟଇ ମୋର ପାପ ପରିଣାମ । କୁସ୍ଥାନରେ ଯେ କାରଣୁ ବିଧି ହେଲା ବାମ ॥୧॥
ପୁନଶ୍ଚ ଅଯୋଧ୍ୟା ସୁଖ ସମୃଦ୍ଧି ଲଭିବ । ସର୍ବ ଗୁଣଧାମ ରାମ ପ୍ରଭୁତ୍ୱ ରଚିବ ॥
କରିବେ ନିଷ୍ଠାରେ ସେବା ମିଳି ସବୁ ଭାଇ । ବ୍ୟାପିବ ତିନି ଭୁବନେ ରାମଙ୍କ ବଡ଼ାଇ ॥୨॥
କିନ୍ତୁ ତୋ କଳଙ୍କ ଅନୁତାପ ମୋହର । ମଲେ ନ ଲିଭିବ କେବେ ନ ଯିବ ଅବର ॥
ଏବେ ତାହା କର ଯାହା ରୁଚେ ତୋ ମନକୁ । ନୟନ ଉହାଡ଼େ ବସ ଲୁଚାଇ ମୁହଁକୁ ॥୩॥
ଯେ ପର୍ଯ୍ୟନ୍ତ ବଞ୍ଚିଥିବି ସେ ପର୍ଯ୍ୟନ୍ତ ମୋତେ । କିଛି ନ କହିବୁ କହେ କର ଯୋଡ଼ି ତୋତେ ॥
ଅନ୍ତେ ପୁଣି ପଶ୍ଚାତ୍ତାପ କରିବୁ ତୁ ଯାଇ । ହାର ଲାଗି ଅଭାଗିନି, ବଧ କରୁ ଗାଈ ॥୪॥
କିପାଁ ନାଶୁ କୁଳ କହିଣ ବହୁଳ ମହୀରେ ପଡ଼ିଲେ ରାଣ ।
କପଟ-ଚତୁରୀ ନ କହଇ କିଛି ସାଧେ ବା ମନୁ ମଶାଣ ॥୩୬॥

---

କହି ଯା, ତୋର କିଛିଏ ହେଲେ ଶଙ୍କା ତୋଷ ନାହିଁ । ମୋର କାଳ ପିଶାଚ ହୋଇ ତୋତେ ଲାଗିଲା ପରି ମନେ ହେଉଛି । ସେହି ତୋତେ ଏ ସବୁ କୁହାଉଛି ॥ [illegible] ॥

ଚୌପାଈ :—ଭରତ ଭୁଲରେ ସୁଦ୍ଧା ରାଜ-ପଦ ଚାହେଁ ନାହିଁ । ଭବିତବ୍ୟତା ବଶତଃ ତୋହର ହୃଦୟରେ ଦୁର୍ବୁଦ୍ଧି ଆସି ବାସ କରିଛି । ଏସବୁ ମୋ ପାପର ପରିଣାମ; ଯାହା ଫଳରେ ଅସମୟରେ ବିଧାତା ବିପରୀତ ହୋଇଅଛି । ॥ ୧ ॥ ତୋ ଯୋଗେ ନଷ୍ଟ-ଭ୍ରଷ୍ଟ ଏହି ସୁନ୍ଦର ଅଯୋଧ୍ୟା ପୁଣି ଭଲ ଭାବରେ ବସିବ ଏବଂ ସମସ୍ତ ଗୁଣର ଧାମ ଶ୍ରୀରାମ ପ୍ରଭୁତ୍ୱ ଲାଭ କରିବ । ସମସ୍ତ ଭାଇ ମିଳି ତାହାର ସେବା କରିବେ ଏବଂ ତିନି ଭୁବନରେ ତାହାର ମହିମା ବ୍ୟାପିଯିବ ॥ ୨ ॥ କେବଳ ତୋହରକଳଙ୍କ ଓ ମୋ ପଶ୍ଚାତ୍ତାପ ଲିଭିବ ନାହିଁ । କୌଣସି ପ୍ରକାରେ ଏହା ଦୂର ହେବନାହିଁ ! ଏବେ ତୋର ଯାହା ଇଚ୍ଛା, ତାହା କର । ମୁହଁ ଲୁଚାଇ ମୋ ଆଖି ଉହାଡ଼ରେ ଯାଇ ବସ ॥ ୩ ॥ ମୁଁ ହାତ ଯୋଡ଼ି କହୁଛି, ମୁଁ ଜୀବନରେ ଥିବା ପର୍ଯ୍ୟନ୍ତ ମୋତେ ଆଉ କିଛି କହନାହିଁ କି ମୋ ସଙ୍ଗେ

ରାମ ରାମ ରଟ ବିକଲ ଭୁଆଲୂ । ଜନୁ ବିନୁ ପଂଖ ବିହଂଗ ବେହାଲୂ ॥
ହୃଦୟଁ ମନାୱ ଭୋରୁ ଜନି ହୋଈ । ରାମହି ଜାଇ କହୈ ଜନି କୋଈ ॥୧॥
ଉଦଉ କରହୁ ଜନି ରବି ରଘୁକୁଲଗୁର । ଅୱଧ ବିଲୋକି ସୂଲ ହୋଇହି ଉର ॥
ଭୂପ ପ୍ରୀତି କୈକଇ କଠିନାଈ । ଉଭୟ ଅବଧି ବିଧି ରଚୀ ବନାଈ ॥୨॥
ବିଲପତ ନୃପହି ଭୟଉ ଭିନୁସାରା । ବୀନା ବେନୁ ସଂଖ ଧୁନି ଦ୍ୱାରା ॥
ପଢ଼ହିଁ ଭାଟ ଗୁନ ଗାୱହିଁ ଗାୟକ । ସୁନତ ନୃପହି ଜନୁ ଲାଗହିଁ ସାୟକ ॥୩॥
ମଂଗଲ ସକଲ ସୋହାହିଁ ନ କୈସେଁ । ସହଗାମିନିହି ବିଭୂଷନ ଜୈସେଁ ॥
ତେହିଁ ନିସି ନୀଦ ପରୀ ନହିଁ କାହୂ । ରାମ ଦରସ ଲାଲସା ଉଛାହୂ ॥୪॥

---

'ରାମ' 'ରାମ' ରଟି ଭୂପ ହୋଇଲେ ଆକୁଳ । ଯେସନ୍ତେ ପକ୍ଷ ବିନା ହୁଏ ବିହଙ୍ଗ ବ୍ୟାକୁଳ ॥
ହୃଦୟେ ଜଣାଉଥାନ୍ତି ନ ହେଉ ପ୍ରଭାତ । ରାମଙ୍କୁ ନ କହୁ କେହି ଏ ସବୁ ବୃତ୍ତାନ୍ତ ॥୧॥
ରଘୁକୁଳ-ଗୁରୁ ରବି ନ ହୁଅ ଉଦୟ । ଅଯୋଧ୍ୟା ବିଲୋକି ଦାହ ହୋଇବ ହୃଦୟ ॥
ନୃପଙ୍କର ସ୍ନେହ କୈକେୟୀର କଠୋରତା । ଉଭୟଙ୍କୁ ସୀମା କରି ରଚିଛୁ ବିଧାତା ॥୨॥
ବିଳାପ କରନ୍ତେ ନୃପ ରଜନୀ ପାହିଲା । ଦ୍ୱାରେ ବୀଣା ବେଣୁ ଶଙ୍ଖ ନିର୍ଘୋଷ ହୋଇଲା ॥
ପଢନ୍ତି ଭାଟ ସୁଯଶ ଗାଆନ୍ତି ଗାୟକ । ଶୁଣି ମହୀପଙ୍କୁ ଯେସନ୍ତେ ଲାଗଇ ଶାୟକ ॥୩॥
ମଙ୍ଗଳ ସକଳ ଶୋଭା ନ ପାଏ ତେମନ୍ତ । ସହଗାମିନୀ ନାରୀଙ୍କୁ ଭୂଷଣ ଯେମନ୍ତ ॥
କାହାରିକୁ ନିଦ ଲାଗି ନାହିଁ ସେ ନିଶିରେ । ରାମ ଦର୍ଶନ ଲାଳସା ଉତ୍ସାହ ଖୁସିରେ ॥୪॥

---

କଥାବାର୍ତ୍ତା କରନାହିଁ । ଆରେ ଅଭାଗିନି ! ତୁ ଯାହା ସିଂହାସନ ନିମନ୍ତେ ଗୋହତ୍ୟା (ପୁତ୍ରର ରାଜ୍ୟପ୍ରାପ୍ତି ନିମନ୍ତେ ପତିହତ୍ୟା) କରୁଅଛୁ, ସେଥି ସକାଶେ ପରିଣାମରେ ଭୟଙ୍କର ଅନୁତାପ କରିବୁ ।'' ॥ ୪ ॥ ଦୋହା '—ରାଜା କୋଟି କୋଟି ପ୍ରକାରେ କୈକେୟୀଙ୍କୁ ବୁଝାଇଲେ ଏବଂ "ତୁ କାହିଁକି ସର୍ବନାଶ କରୁଛୁ ?''—ବୋଲି କହି ଭୂମି ଉପରେ ପଡ଼ିଗଲେ । କିନ୍ତୁ କପଟବିଦ୍ୟାରେ ନିପୁଣା କୈକେୟୀ କିଛି କହୁ ନ ଥା'ନ୍ତି । ସେ ମଉନ ହୋଇ ଶ୍ମଶାନରେ ବସି, ସତେ ଯେପରି ପ୍ରେତମନ୍ତ୍ର ସାଧନ କଲା ପରି ଜଣା ପଡ଼ୁଥା'ନ୍ତି ॥ ୩୬ ॥ ଚୌପାଈ '—ରାଜା 'ରାମ' 'ରାମ' ବୋଲି ରଟୁଥାନ୍ତି ଏବଂ ଡେଣାପର ବିନା ପକ୍ଷୀ ଛଟପଟ ହେଲା ପରି ବ୍ୟାକୁଳ ହେଉଥା'ନ୍ତି । ସେ ଆପଣା ହୃଦୟରେ ମନାଉଥା'ନ୍ତି—ସକାଳ କିପରି ହେଲେ ନ ହୁଅନ୍ତା ଏବଂ ଶ୍ରୀରାମଙ୍କୁ ଯାଇ କେହି ହେଲେ ଏ କଥା ନ କୁହନ୍ତା ॥ ୧ ॥ ହେ ରଘୁକୁଳ-ଗୁରୁ ସୂର୍ଯ୍ୟ ଭଗବନ୍ ! ତୁମେ ଉଦିତ ହୁଅନାହିଁ । ଅଯୋଧ୍ୟାକୁ ବ୍ୟାକୁଳ ହେବାର ଦେଖିଲେ, ତୁମ ହୃଦୟରେ ବଡ଼ କଷ୍ଟ ହେବ ।'' ବିଧାତା ରାଜାଙ୍କ ପ୍ରେମ ଓ କୈକେୟୀଙ୍କ ନିଷ୍ଠୁରତା ଉଭୟଙ୍କୁ ଚରମ ସୀମା ରୂପେ ଗଢ଼ି ଅଛନ୍ତି । ଅର୍ଥାତ୍ ରାଜା ପ୍ରେମର ଶେଷ ସୀମା ଓ କୈକେୟୀ ନିଷ୍ଠୁରତାର ଶେଷ ସୀମା ॥ ୨ ॥ ରାଜା ବିଳାପ କରୁ କରୁ ସକାଳ ହୋଇଗଲା । ରାଜଦ୍ୱାରରେ ବୀଣା, ବଂଶୀ ଓ ଶଙ୍ଖଧ୍ୱନି ହେବାକୁ ଲାଗିଲା । ଭାଟମାନେ ରାଜକୁଳର ଯଶ ଓ କୀର୍ତ୍ତି-

ଦ୍ୱାର ଭିର ସେବକ ସଚିବ କହହିଁ ଉଦିତ ରବି ଦେଖି ।
ଜାଗେଉ ଅଜହୁଁ ନ ଅୱଧପତି କାରନୁ କୱନୁ ବିସେଷି ॥୩୭॥
ପଛିଲେଁ ପହର ଭୂପୁ ନିତ ଜାଗା । ଆଜୁ ହମହିଁ ବଡ଼ ଅଚରଜୁ ଲଗା ॥
ଜାହୁ ସୁମନ୍ତ୍ର ଜଗାୱହୁ ଜାଈ । କୀଜିଅ କାଜୁ ରଜାୟସୁ ପାଈ ॥୧॥
ଗଏ ସୁମଂତ୍ରୁ ତବ ରାଉର ମାହୀଁ । ଦେଖି ଭୟାୱନ ଜାତ ଡେରାହୀଁ ॥
ଧାଇ ଖାଇ ଜନୁ ଜାଇ ନ ହେରା । ମାନହୁଁ ବିପତି ବିଷାଦ ବସେରା ॥୨॥
ପୂଛେଁ କୋଉ ନ ଊତରୁ ଦେଈ । ଗଏ ଜେହିଁ ଭବନ ଭୂପ କୈକେଈ ॥
କହି ଜୟଜୀବ ବୈଠ ସିରୁ ନାଈ । ଦେଖି ଭୂପ ଗତି ଗୟଉ ସୁଖାଈ ॥୩॥

---

ଦ୍ୱାରେ ଭିଡ ମନ୍ତ୍ରୀ ସେବକ ବୋଲନ୍ତି ଦେଖି ଉଦିତ ଦିନେଶ ।
ଏ ପର୍ଯ୍ୟନ୍ତ କେଉଁ ବିଶେଷ କାରଣ୍ଡ ଉଠି ନାହାଁନ୍ତି ନରେଶ ॥୩୭॥
ପାହାନ୍ତା ପହରେ ନିତ୍ୟ ଉଠନ୍ତି ନୃପତି । ଆଜି ଆମ୍ଭଙ୍କୁ ଲାଗୁଛି ଅଦଭୁତ ଅତି ॥
ଯାଅ ସୁମନ୍ତ୍ର ଉଠାଇ ଦିଅ ଶୀଘ୍ର ଯାଇ । କରିବା କାର୍ଯ୍ୟ ଶ୍ରୀମନ୍ତଙ୍କ ଅନୁମତି ପାଇ ॥୧॥
ଅନ୍ତଃପୁର ମଧ୍ୟେ ତହୁଁ ପ୍ରବେଶିଲେ ମନ୍ତ୍ରୀ । ଦେଖିଣ ଭୟଙ୍କରତା ଯିବାକୁ ଡରନ୍ତି ॥
ଖାଇ ଗୋ ଡାଉଛି ଯେସନ୍ତେ ଦୃଷ୍ଟି ନ ହୁଅଇ । ବିପତ୍ତି-ବିଷାଦ ଅବା ନିବାସ କରଇ ॥୨॥
ପଚାରନ୍ତେ କେହି କିଛି ନ ଦିଏ ଉତ୍ତର । ଗଲେ, ଯେଉଁ ଗୃହେ ଥିଲେ ରାଣୀ ନରବର ॥
'ଜୟ ଆଜ୍ଞା', ଉଚ୍ଚାରି ଶିର ନୁଆଁଇ ବସିଲେ । ଦେଖି ନୃପତିଙ୍କ ଗତି ମଉଳି ପଡ଼ିଲେ ॥୩॥

---

ଗାନରେ ରତ ହେଲେ ଏବଂ ଗାୟକମାନେ ଗୁଣଗାନ କରିବାକୁ ଲାଗିଲେ । ଏ ସବୁ ଶୁଣି ରାଜାଙ୍କୁ ବାଣବିଦ୍ଧ ହେଲାପରି ବୋଧ ହେଉଥାଏ ॥୩॥ ପତି ସହିତ ସହଗାମିନୀ ସତୀ ନାରୀକୁ ଅଳଙ୍କାର ଯେପରି ଅରୁଚିକର ବୋଧ ହୁଏ, ସେହିପରି ରାଜାଙ୍କୁ ଏ ସମସ୍ତ ମଙ୍ଗଳ-ଆୟୋଜନ ଅରୁଚିକର ବୋଧ ହେଉଥାଏ । ଶ୍ରୀରାମଙ୍କ ଦର୍ଶନ ଲାଳସା ଓ ଉତ୍ସାହ ହେତୁ ସେହି ରାତିରେ କାହାରିକୁ ହେଲେ ନିଦ ହୋଇ ନ ଥାଏ ॥ ୪ ॥ ଦୋ.ହା — ରାଜଦ୍ୱାରରେ ମନ୍ତ୍ରୀ ଓ ସେବକଙ୍କର ଭିଡ ଲାଗିଛି । ସେମାନେ ସମସ୍ତେ ସୂର୍ଯ୍ୟୋଦୟ ଦେଖି, ପରସ୍ପର ମଧ୍ୟରେ କଥାବାର୍ତ୍ତା ଆରମ୍ଭ କରିଦେଲେ—"ଆରେ ଅଯୋଧ୍ୟା-ପତି ଦଶରଥ ଏପର୍ଯ୍ୟନ୍ତ କ'ଣ ଶଯ୍ୟାତ୍ୟାଗ କରି ନାହାନ୍ତି ! କ'ଣ ଗୋଟାଏ ବିଶେଷ ଘଟଣା କିଛି ଘଟିଛି କି ? ॥ ୩୭ ॥ ଚୌପାଈ :—ରାଜା ରାତିର ଶେଷ ପ୍ରହରରେ ଜାଗ୍ରତ ହୁଅନ୍ତି, କିନ୍ତୁ ଆଜି ତାଙ୍କର ଉଠିବାରେ ବିଳମ୍ବ ଦେଖି ଆମକୁ ତ ଆଶ୍ଚର୍ଯ୍ୟ ଲାଗୁଛି । ହେ ସୁମନ୍ତ୍ର ! ଯାଇ ରାଜାଙ୍କୁ ଉଠାଅ । ତାଙ୍କ ଆଦେଶ ପାଇ ଆମେ ସମସ୍ତ କାମ କରିବୁ ।" ॥ ୧ ॥ ସୁମନ୍ତ୍ର ରାଜମହଲକୁ ଗଲେ, କିନ୍ତୁ ମହଲକୁ ଭୟାନକ ଦେଖି, ତାଙ୍କ ପାଦ ଚାଲୁ ନ ଥାଏ ଏବଂ ଡରି ଡରି ସେ ବୁଲୁଥା'ନ୍ତି । ଯେତେ ଯେପରି ହାତୀ ମହଲ ଖାଇ ଗୋଡାଉଛି । ରାଜମହଲ ଆଡକୁ ସେ ଦୃଷ୍ଟି ପାରୁ ନ ଥା'ନ୍ତି । ମନେ ହୁଏ, ଯେପରି ବିପତ୍ତି ଏବଂ ବିଷାଦ ସେଠାରେ ଘର କରି ରହିଛି ! ॥ ୨ ॥ ପଚାରନ୍ତେ

ସୋଚବିକଲ ବିବରନ ମହି ପରେଊ । ମାନହୁଁ କମଲ ମୂଲୁ ପରିହରେଊ ॥
ସଚିଉ ସଭୀତ ସକଇ ନହିଁ ପୂଁଛୀ । ବୋଲୀ ଅସୁଭ ଭରୀ ସୁଭ ଛୂଛୀ ॥୪॥

ପରୀ ନ ରାଜହି ନୀଦ ନିସି ହେତୁ ଜାନ ଜଗଦୀସୁ ।
ରାମୁ ରାମୁ ରଟି ଭୋରୁ କିୟ କହଇ ନ ମରମୁ ମହୀସୁ ॥୩୮॥

ଆନହୁ ରାମହି ବେଗି ବୋଲାଈ । ସମାଚାର ତବ ପୂଁଛେଉ ଆଈ ॥
ଚଲେଉ ସୁମଂତ୍ରୁ ରାୟ ରୁଖ ଜାନୀ । ଲଖୀ କୁଚାଲି କୀହ୍ନି କଛୁ ରାନୀ ॥୧॥
ସୋଚ ବିକଲ ମଗ ପରଇ ନ ପାଊ । ରାମହି ବୋଲି କହିହି କା ରାଊ ॥
ଉର ଧରି ଧୀରଜୁ ଗୟଉ ଦୁଆରେ । ପୂଁଛହିଁ ସକଲ ଦେଖି ମନୁ ମାରେଁ ॥୨॥
ସମାଧାନୁ କରି ସୋ ସବହୀ କା । ଗୟଉ ଜହାଁ ଦିନକର କୁଲ ଟୀକା ॥
ରାମ ସୁମଂତ୍ରହି ଆୱତ ଦେଖା । ଆଦରୁ କୀହ୍ନ ପିତା ସମ ଲେଖା ॥୩॥

---

ବିବର୍ଣ୍ଣ, ମହୀପତନ, ଚିନ୍ତାରେ ବ୍ୟାକୁଳ । ପଡ଼ିଛନ୍ତି ସରୋଜ ଯେସନେ ପରିହରି ମୂଳ ॥
ଭୟେ ସଚିବଙ୍କ ଦ୍ୱାରା ପଚାରି ନୋହିଲା । ତହୁଁ ଅଶୁଭୀ ଅଶୁଭ ବଚନ ବୋଇଲା ॥୪॥

ନିଶିରେ ନୃପଙ୍କୁ ନିଦ ଆସିନାହିଁ ହେତୁ ଜାଣେ ଜଗଦୀଶ ।
'ରାମ' 'ରାମ' ରଟି କଟାଇଲେ ରାତି ମର୍ମ ନ କହି ମହୀଶ ॥୩୮॥

ଡାକିଆଣ ଯାଇ ଏବେ ରାମଙ୍କୁ ସତ୍ୱର । ପଚାରିବ ଫେରି ଆସି ସନ୍ଦେଶ ଆବର ॥
ଚଳିଲେ ସୁମନ୍ତ୍ର ନୃପ ମନଇଚ୍ଛା ଜାଣି । ବିଚାରି କପଟ କିଛି କରିଛନ୍ତି ରାଣୀ ॥୧॥
ଚିନ୍ତା ବିକଳେ ମାର୍ଗରେ ନ ପଡ଼େ ଚରଣ । ରାମଙ୍କୁ ଡକାଇ ନୃପ କହିବେ କଅଣ ॥
ହୃଦେ ଧୈର୍ଯ୍ୟ ଧରି ଦ୍ୱାରଦେଶେ ପହଞ୍ଚିଲେ । ବିରସ ମନ ନିରେଖି ଲୋକେ ପଚାରିଲେ ॥୨॥
କରିଣ ସୁମନ୍ତ୍ର ସମାଧାନ ସମସ୍ତଙ୍କ । ଗଲେ ଯହିଁ ଥିଲେ ରବି-କୁଳର ତିଳକ ॥
ରାମ ସୁମନ୍ତ୍ର ମନ୍ତ୍ରୀଙ୍କ ଆସିବାର ଦେଖି । ଆଦର-ସତ୍କାର କଲେ ପିତା ସମ ଲେଖି ॥୩॥

---

କେହି କିଛି ଜବାବ ଦେଇ ନ ଥା'ନ୍ତି । ସେ ରାଜା ଓ କୈକେୟୀ ଥିବା ମହଲ ମଧ୍ୟକୁ ଗଲେ ଏବଂ "ଜୟ ଜୀବ" କହି ମୁଣ୍ଡ ନୁଆଇଁ ବସିଲେ । ରାଜାଙ୍କ ଦଶା ଦେଖି ସେ ଶୁଖି କଳାକାଠ ପଡ଼ିଗଲେ ॥ ୩ ॥ ଦେଖିଲେ, ରାଜା ଚିନ୍ତାରେ ବ୍ୟାକୁଳ । ଶରୀର ବିବର୍ଣ୍ଣ । ଭୂଇଁ ଉପରେ ଏପରି ପଡ଼ିଛନ୍ତି, ସତେ ଯେପରି ପଦ୍ମଫୁଲ ମୂଳରୁ ଉପୁଡ଼ି ମଉଳି ପଡ଼ିଛି କି ! ମନ୍ତ୍ରୀ ଭୟ ହେତୁ କିଛି ପଚାରି ପାରୁ ନ ଥା'ନ୍ତି । ତଦନନ୍ତର କୈକେୟୀ ଅଶୁଭଭରା ଓ ମଙ୍ଗଳ-ରହିତ ବଚନ ବୋଇଲେ —॥ ୪ ॥ ଦୋହା :— "ରାଜାଙ୍କୁ ରାତିସାରା ନିଦ ହୋଇନାହିଁ । ଏହାର କାରଣ ଜଗଦୀଶ୍ୱର ହିଁ ଜାଣନ୍ତି । ସେ 'ରାମ' 'ରାମ' ରଟି ସକାଳ କରିଦେଲେ, କିନ୍ତୁ ଏହାର ରହସ୍ୟ କିଛି ହେଲେ ପ୍ରକାଶ କରୁ ନାହାନ୍ତି ॥ ୩୮ ॥ ଚୌପାଈ :—ତୁମେ ଶୀଘ୍ର ଯାଇ ରାମଙ୍କୁ ଡାକିଆଣ । ତା ପରେ ଆସି ସମାଚାର ପଚାରି ବୁଝ ।" ରାଜାଙ୍କ ଅଭିପ୍ରାୟ ଜାଣି ସୁମନ୍ତ୍ର ଚାଲିଗଲେ । ସେ ବୁଝିପାରିଲେ ଯେ, ରାଣୀ କିଛି ଷଡ଼ଯନ୍ତ୍ର କରିଛନ୍ତି ॥ ୧ ॥ ସୁମନ୍ତ୍ର ଚିନ୍ତାରେ ବ୍ୟାକୁଳ,

ନିରଖି ବଦନୁ କହି ଭୂପ ରଜାଈ । ରଘୁକୁଲଦୀପହି ଚଲେଉ ଲେୱାଈ ॥
ରାମୁ କୁଭାଁତି ସଚିବ ସଁଗ ଜାହୀଁ । ଦେଖି ଲୋଗ ଜହଁ ତହଁ ବିଲଖାହୀଁ ॥୪॥
ଜାଇ ଦୀଖ ରଘୁବଂସମନି ନରପତି ନିପଟ କୁସାଜୁ ।
ସହମି ପରେଉ ଲଖି ସିଂଘିନିହି ମନହୁଁ ବୃଦ୍ଧ ଗଜରାଜୁ ॥୩୯॥
ସୂଖହିଁ ଅଧର ଜରଇ ସବୁ ଅଂଗୂ । ମନହୁଁ ଦୀନ ମନିହୀନ ଭୁଅଂଗୂ ॥
ସରୁଷ ସମୀପ ଦୀଖି କୈକେଈ । ମାନହୁଁ ମୀଚୁ ଘରୀଂ ଗନି ଲେଈ ॥୧॥
କରୁନାମୟ ମୃଦୁ ରାମ ସୁଭାଊ । ପ୍ରଥମ ଦୀଖ ଦୁଖୁ ସୁନା ନ କାଊ ॥
ତଦପି ଧୀର ଧରି ସମଉ ବିଚାରୀ । ପୂଁଛୀ ମଧୁର ବଚନ ମହତାରୀ ॥୨॥

---

ନିରେଖି ମୁଖ ରାଜାଙ୍କ ଆଜ୍ଞା ଶୁଣାଇଣ । ରଘୁକୁଳ-ପ୍ରଦୀପଙ୍କୁ ଚଳିଲେ ନେଇଣ ॥
ରାମ ସଚିବଙ୍କ ସଙ୍ଗେ ଆବେଶେ ଗମନ୍ତି । ଦେଖି ନରନାରୀବୃନ୍ଦ ବ୍ୟାକୁଳ ହୁଅନ୍ତି ॥୪॥
ବିଲୋକିଲେ ଯାଇ ରଘୁକୁଳସାଇଁ ନୃପଙ୍କ ଅତି କୁସାଜ ।
ଡରି ବା ପଡନ୍ତି ସିଂହୁଣୀକୁ ଦେଖି ଭୟେ ବୃଦ୍ଧ ଗଜରାଜ ॥୩୯॥
ଶୁଖଇ ଅଧର ସାରା ଶରୀର ଜଳଇ । ଅବା! ମଣିହୀନ ଦୀନ ଭୁଜଙ୍ଗ ଅଛଇ ॥
ଦେଖିଲେ ରୋଷେ କୈକେୟୀ ଉଭା ସମ୍ମୁଖରେ । କାଳ ନେବାପାଇଁ ଘଡି ଗଣନା କି କରେ ॥୧॥
କରୁଣାମୟ ଶ୍ରୀରାମ କୋମଳ ପରମ । କେବେ ନ ଶୁଣିବା ଦୁଃଖ ଦେଖିଲେ ପ୍ରଥମ ॥
ତଥାପି ଧୈର୍ଯ୍ୟ ଧରିଣ ସମୟାନୁକୂଳ । ପଚାରିଲେ ଜନନୀଙ୍କୁ ବଚନ ମୃଦୁଳ ॥୨॥

---

ରାସ୍ତାରେ ପାଦ ଚଳୁ ନ ଥାଏ । ଭାବୁଥାନ୍ତି, "ରାମଙ୍କୁ ଡକାଇ ରାଜା କଣ କହିବେ ?" କୌଣସି ପ୍ରକାରେ ହୃଦୟରେ ଧୈର୍ଯ୍ୟ ଧରି ସେ ଦ୍ୱାର ପର୍ଯ୍ୟନ୍ତ ଗଲେ । ସମସ୍ତେ ତାଙ୍କୁ ମନ ମାରିଥିବାର ଦେଖି ନାନା ପ୍ରଶ୍ନ ପଚାରିବାକୁ ଲାଗିଲେ ॥ ୨ ॥ ସମସ୍ତଙ୍କ ପ୍ରଶ୍ନର ସମାଧାନ କିଛି କିଛି କରି (କୌଣସି ନା କୌଣସି ପ୍ରକାରେ ସମସ୍ତଙ୍କୁ ବୁଝାଇ-ସୁଝାଇ) ସୁମନ୍ତ ସୂର୍ଯ୍ୟକୁଳ-ତିଳକ ଶ୍ରୀରାମ ଥିବା ସ୍ଥାନକୁ ଗଲେ । ସୁମନ୍ତଙ୍କୁ ଆସିବାର ଦେଖି ଶ୍ରୀରାମ ତାହାଙ୍କୁ ପିତୃତୁଲ୍ୟ ମନେ କରି ତାଙ୍କର ଆଦର-ସତ୍କାର କଲେ ॥୩॥ ସୁମନ୍ତ ଶ୍ରୀରାମଙ୍କ ମୁଖଦର୍ଶନ କରି ତାଙ୍କୁ ରାଜାଙ୍କ ଆଜ୍ଞା ଶୁଣାଇଲେ । ତତ୍ପରେ ସେ ରଘୁକୁଳ-ପ୍ରଦୀପ ଶ୍ରୀରାମଙ୍କୁ ସାଙ୍ଗରେ ନେଇ ଚାଲିଲେ । ଶ୍ରୀରାମ ମନ୍ତ୍ରୀଙ୍କ ସଙ୍ଗରେ ରାଜପୋଷାକ ବିନା ନିରାଡ଼ମ୍ବର ଭାବରେ ଚାଲିଥା'ନ୍ତି । ଏହା ଦେଖି ଲୋକମାନେ ବିଭିନ୍ନ ସ୍ଥାନରେ ବିଷାଦ ପ୍ରକାଶ କରୁଥା'ନ୍ତି ॥୪॥
ଦୋହା :—ରଘୁବଂଶ-ମଣି ଶ୍ରୀରାମ ଯାଇଁ ଦେଖିଲେ, ରାଜା ଅତ୍ୟନ୍ତ ଦୁର୍ଦ୍ଦଶାଗ୍ରସ୍ତ । ସିଂହୀକୁ ଦେଖି ବୃଦ୍ଧ ଗଜରାଜ ଶଙ୍କି ପଡ଼ିଲା ପରି ସେ ଜଣା ପଡ଼ୁଥା'ନ୍ତି ॥ ୩୯ ॥
ଚୌପାଇ :—ରାଜାଙ୍କର ଓଠ ଶୁଖି ଯାଉଥାଏ ଏବଂ ସାରା ଶରୀର ଜଳୁଥାଏ । ମଣି ବିନା ସାପ ଦୀନଦୁଃଖୀ ହେଲାପରି ସେ ବ୍ୟଥିତ ହେଉଥା'ନ୍ତି । ସେ ପାଖରେ କ୍ରୁଦ୍ଧା କୈକେୟୀଙ୍କୁ ବସିଥିବାର ଦେଖିଲେ । ରାଣୀ ସାକ୍ଷାତ ମୃତ୍ୟୁ ପରି ବସି ରାଜାଙ୍କ ଜୀବନର ଅନ୍ତିମ ଘଡି ଗଣିଲା ପରି ପ୍ରତୀତ ହେଉଥା'ନ୍ତି ॥ ୧ ॥ ଶ୍ରୀରାମଙ୍କ ସ୍ୱଭାବ କୋମଳ ଓ

ମୋହି କହୁ ମାତୁ ତାତ ଦୁଖ କାରନ । କରିଅ ଜତନ ଜେହିଁ ହୋଇ ନିବାରନ ॥
ସୁନହୁ ରାମ ସବୁ କାରନୁ ଏହୂ । ରାଜହି ତୁମ୍ହ ପର ବହୁତ ସନେହୂ ॥୩॥
ଦେନ କହେନ୍ହି ମୋହି ଦୁଇ ବରଦାନା । ମାଗେଉଁ ଜୋ କଛୁ ମୋହି ସୋହାନା ॥
ସୋ ସୁନି ଭୟଉ ଭୂପ ଉର ସୋଚୂ । ଛାଡ଼ି ନ ସକହିଁ ତୁମ୍ହାର ସଁକୋଚୂ ॥୪॥

ସୁତ ସନେହୁ ଇତ ବଚନୁ ଉତ ସଂକଟ ପରେଉ ନରେସୁ ।
ସକହୁ ତ ଆୟସୁ ଧରହୁ ସିର ମେଟହୁ କଠିନ କଲେସୁ ॥୪୦॥

ନିଧରକ ବୈଠି କହଇ କଟୁ ବାନୀ । ସୁନତ କଠିନତା ଅତି ଅକୁଲାନୀ ॥
ଜୀଭ କମାନ ବଚନ ସର ନାନା । ମନହୁଁ ମହିପ ମୃଦୁ ଲଚ୍ଛ ସମାନା ॥୧॥
ଜନୁ କଠୋରପନୁ ଧରେଁ ସରୀରୂ । ସିଖଇ ଧନୁଷବିଦ୍ୟା ବର ବୀରୂ ॥
ସବୁ ପ୍ରସଂଗୁ ରଘୁପତିହି ସୁନାଈ । ବୈଠି ମନହୁଁ ତନୁ ଧରି ନିଠୁରାଈ ॥୨॥

---

କହ ମା', ମୋତେ ତାତଙ୍କ ଦୁଃଖର କାରଣ । କରିବି ଯତନ ଯେଉଁଥିରେ ହେବ ନିବାରଣ ॥
ଶୁଣ ରଘୁନାଥ, ସବୁ କାରଣ ଏମନ୍ତ । ନୃପ ତୁମ୍ଭ ପ୍ରତି ସ୍ନେହ କରନ୍ତି ଅତ୍ୟନ୍ତ ॥୩॥
ଦେବା ପାଇଁ କହିଥିଲେ ମୋତେ ଦୁଇବର । ମାଗିଲି ମୁଁ ଯାହା ମୋତେ ଲାଗିଲା ସୁନ୍ଦର ॥
ତାହା ଶୁଣି ନୃପ ହୃଦେ ଚିନ୍ତା ହୁଏ ଅତି । ତୁମ୍ଭର ସ୍ନେହ ସଙ୍କୋଚ ତ୍ୟାଗି ନ ପାରନ୍ତି ॥୪॥

ପୁତ୍ର ସ୍ନେହ ଏଣେ ବାକ୍ୟବନ୍ଧ ତେଣେ ସଙ୍କଟଗ୍ରସ୍ତ ନରେଶ ।
ପାର ଯେବେ କର ଆଜ୍ଞା ଶିରେ ଧରି ହର ଏ କଠିନ କ୍ଲେଶ ॥୪୦॥

ନିର୍ଭୟେ ବସି କଠୋର ବଚନ କହଇ । ଶୁଣି କଠୋରତା ସୁଦ୍ଧା ବ୍ୟାକୁଳ ହୁଅଇ ॥
ରସନା ଧନୁ ବଚନ ନାନାବିଧ ଶର । ମନେ ହୁଏ ଯେମନ୍ତେ ମୃଦୁ ଲକ୍ଷ୍ୟ ନୃପବର ॥୧॥
କଠୋରପଣ ସତେ କି ଶରୀର ଧରିଣ । ଧନୁର୍ବିଦ୍ୟା ଶିଖେ ବୀର ବେଶ ବିରଚିଣ ॥
ଶୁଣାଇ ରଘୁପତିଙ୍କି ସମସ୍ତ ପ୍ରସଙ୍ଗ । ବସିଲେ କି ଅବା ଧରି ନିଷ୍ଠୁରତା ଅଙ୍ଗ ॥୨॥

---

କରୁଣାମୟ । ସେ ତାଙ୍କ ଜୀବନରେ ପ୍ରଥମ ଥର ପାଇଁ ଏହି ଦୁଃଖ ଦେଖିଲେ । ଏହା ପୂର୍ବରୁ ସେ କେବେ ଦୁଃଖ କଥା ଶୁଣି ବି ନ ଥିଲେ । ତଥାପି ସମୟ ବିଚାର କରି ହୃଦୟରେ ଧୈର୍ଯ୍ୟ ଧରି ସେ ମଧୁର ବଚନରେ ମାତା କୈକେୟୀଙ୍କୁ ପଚାରିଲେ—॥ ୨ ॥ ହେ ମାତା ! ମୋତେ ପିତାଙ୍କ ଦୁଃଖର କାରଣ କୁହ । ଫଳରେ ଯେଉଁ ଉପାୟରେ ତାହା ନିବାରଣ କରିହେବ, ମୁଁ ସେହି ଯତ୍ନ କରିବି ।" କୈକେୟୀ କହିଲେ, "ହେ ରାମ ! ଶୁଣ, ରାଜାଙ୍କ ଦୁଃଖର ସମସ୍ତ କାରଣ ମୁଁ କହୁଛି ।—'ସେ ତୁମଙ୍କୁ ବହୁତ ସ୍ନେହ କରନ୍ତି ॥ ୩ ॥ ସେ ମୋତେ ଦୁଇଟି ବର ଦେବାକୁ କହିଥିଲେ । ମୋତେ ଯାହା ଭଲ ଲାଗିଲା, ମୁଁ ତାହାହିଁ ମାଗିଲି । ତାହା ଶୁଣି ରାଜାଙ୍କ ହୃଦୟରେ ଚିନ୍ତା ଆସି ପହଞ୍ଚିଛି । କାରଣ ସେ ତୁମର ମୁହଁଚୁହାଁଇଜା (ସ୍ନେହ-ମମତା) ଛାଡିପାରୁ ନାହାନ୍ତି ॥୪॥ ଦୋହା ।—ଏଣେ ପୁତ୍ର-ସ୍ନେହ, ତେଣେ ବଚନ-ପାଳନ । ରାଜା ଏପରି ଧର୍ମ-ସଙ୍କଟରେ ପଡିଯାଇଛନ୍ତି । ଯଦି ତୁମେ କରିପାରିବ, ତେବେ ରାଜାଙ୍କ ଆଦେଶ ଶିରୋଧାର୍ଯ୍ୟ କରି । ଓ

ମନ ମୁସୁକାଇ ଭାନୁକୁଲ ଭାନୁ । ରାମୁ ସହଜ ଆନନ୍ଦ ନିଧାନୂ ॥
ବୋଲେ ବଚନ ବିଗତ ସବ ଦୂଷନ । ମୃଦୁ ମଞ୍ଜୁଲ ଜନୁ ବାଗ ବିଭୂଷନ ॥୩॥
ସୁନୁ ଜନନୀ ସୋଇ ସୁତୁ ବଡ଼ଭାଗୀ । ଜୋ ପିତୁ ମାତୁ ବଚନ ଅନୁରାଗୀ ॥
ତନୟ ମାତୁ ପିତୁ ତୋଷନିହାରା । ଦୁର୍ଲଭ ଜନନି ସକଲ ସଂସାରା ॥୪॥

ମୁନିଗନ ମିଲନୁ ବିସେଷି ବନ ସବହି ଭାଁତି ହିତ ମୋର ।
ତେହି ମହଁ ପିତୁ ଆୟସୁ ବହୁରି ସଂମତ ଜନନୀ ତୋର ॥୪୧॥

ଭରତୁ ପ୍ରାନପ୍ରିୟ ପାୱହିଁ ରାଜୂ । ବିଧି ସବ ବିଧି ମୋହି ସନମୁଖ ଆଜୂ ॥
ଜୌଁ ନ ଜାଉଁ ବନ ଐସେହୁଁ କାଜା । ପ୍ରଥମ ଗନିଅ ମୋହି ମୂଢ଼ ସମାଜା ॥୧॥

---

ମନ୍ଦ ମନ୍ଦ ହସି ରବି-କୁଳର ତପନ । ସହଜେ ଶ୍ରୀରାମଚନ୍ଦ୍ର ଆନନ୍ଦ-ନିଧାନ ॥
ଭାଷିଲେ ବଚନ ସର୍ବ ରହିତ ଦୂଷଣ । ମୃଦୁ ମଞ୍ଜୁଳ ଯେସନେ ବାଣୀ ବିଭୂଷଣ ॥୩॥
ଶୁଣ ଜନନି, ସେ ସୁତ ବଡ ଧନ୍ୟଭାଗ । ଯେ ପିତାମାତା ବଚନେ କରେ ଅନୁରାଗ ॥
ତନୟ ମାତା ପିତାଙ୍କୁ ପ୍ରସନ୍ନ ଯେ କରେ । ଦୁର୍ଲଭ ସେ ପୁଅ ମାତା, ଜଗତ ମଧ୍ୟରେ ॥୪॥

ମୁନିଙ୍କ ସଙ୍ଗତେ ମିଳିବି ବନସ୍ଥେ ସବୁ ଭାବେ ହିତ ମୋର ।
ତହିଁ ପିତାଙ୍କର ଆଦେଶ ଆବର ସମ୍ମତ ଜନନୀ ତୋର ॥୪୧॥

ପ୍ରାଣର ପ୍ରିୟ ଭରତ ହେବ ଯୁବରାଜ । ସବୁମତେ ବିଧି ମୋର ସମ୍ମୁଖୀନ ଆଜ ॥
ବନକୁ ନ ଯିବି ଯେବେ ଏପରି କାର୍ଯ୍ୟରେ । ପ୍ରଥମେ ଗଣା ମୁଁ ହେବି ମୂଢ ସମାଜରେ ॥୧॥

---

ଏହାଙ୍କର କଠିନ କ୍ଲେଶ ଦୂର କର ।" ॥୪୦॥ ଚୌପାଈ :—କୈକେୟୀ ନିଧଡକ ହୋଇ ବସି ଏପରି କଠୋର ବାଣୀ କହୁଥାନ୍ତି, ଯାହାକୁ ଶୁଣି ନିଜେ କଠୋରତା ମଧ୍ୟ ବ୍ୟାକୁଳ ହୋଇ ଉଠିଲା । ଜିଭ ଧନୁ, ବଚନ ବହୁବିଧ ଶର ଏବଂ ରାଜା ସତେ ଯେପରି କୋମଳ ଲକ୍ଷ୍ୟସ୍ଥଳ ॥ ୧ ॥ ସତେ ଯେପରି ସ୍ୱୟଂ କଠୋରତା ଶ୍ରେଷ୍ଠ ବୀରର ରୂପ ଧାରଣ-ପୂର୍ବକ ଧନୁର୍ବିଦ୍ୟା ଶିକ୍ଷା କରୁଅଛି କି ! ଶ୍ରୀରାମଙ୍କୁ ସମସ୍ତ ଘଟଣା ଶୁଣାଇ, ସେ ଏପରି ବସିଆ'ନ୍ତି ସତେ ଯେପରି ନିଷ୍ଠୁରତା ଶରୀର ଧାରଣ କରି ବସିଛି ! ॥ ୨ ॥ ଭାନୁକୁଳର ଭାନୁ, ସ୍ୱଭାବତଃ ଆନନ୍ଦ-ନିଧାନ ଶ୍ରୀରାମ ମନେ ମନେ ମୁରୁକି ହସି ସମସ୍ତ ଦୋଷବିବର୍ଜିତ ଏପରି କୋମଳ ଓ ସୁନ୍ଦର ବଚନ କହିଲେ ଯାହା ସତେ ଅବା ବାଣୀଙ୍କ ବିଭୂଷଣ ! ॥ ୩ ॥ —"ହେ ମାତା ! ପିତାମାତାଙ୍କ ବଚନ ପ୍ରତି ଯେଉଁ ପୁଅ ଅନୁରକ୍ତ, ସେହି ପୁଅ ବଡ ଭାଗ୍ୟବାନ୍ । ହେ ଜନନି ! ମାତାପିତାଙ୍କ ସନ୍ତୋଷ-ବିଧାନକାରୀ ପୁଅ ସମଗ୍ର ସଂସାରରେ ଦୁର୍ଲଭ ॥ ୪ ॥ ଦୋହା :—ବନରେ ବିଶେଷ ରୂପେ ମୁନିମାନଙ୍କ ସହିତ ମିଳନ ହେବ, ଯାହା ଫଳରେ ମୋର ସମସ୍ତ ପ୍ରକାର କଲ୍ୟାଣ ହେବ । ତହିଁ ସଙ୍ଗେ, ପିତାଙ୍କ ଆଜ୍ଞା ଏବଂ ହେ ଜନନି ! ପୁଣି ତୁମର ସମ୍ମତି ॥ ୪୧ ॥ ଚୌପାଈ :—ଆହୁରି ମଧ୍ୟ ପ୍ରାଣପ୍ରିୟ ଭରତ ରାଜ୍ୟ ପାଇବେ । ଏ ସବୁ କଥା ଦେଖି ଜଣାପଡୁଛି, ଆଜି ବିଧାତା ସବୁ ପ୍ରକାରେ ମୋର ଅନୁକୂଳ ।

ସେବହିଁ ଅରଣ୍ଡୁ କଲପତରୁ ତ୍ୟାଗୀ । ପରିହରି ଅମୃତ ଲେହିଁ ବିଷୁ ମାଗୀ ॥
ତେଉ ନ ପାଇ ଅସ ସମଉ ଚୁକାହୀଂ । ଦେଖୁ ବିଚାରି ମାତୁ ମନ ମାହୀଂ ॥୨॥
ଅଂବ ଏକୁ ଦୁଖୁ ମୋହି ବିସେଷୀ । ନିପଟ ବିକଲ ନରନାୟକୁ ଦେଖୀ ॥
ଥୋରିହିଁ ବାତ ପିତହି ଦୁଖ ଭାରୀ । ହୋତି ପ୍ରତୀତି ନ ମୋହି ମହତାରୀ ॥୩॥
ରାଉ ଧୀର ଗୁନ ଉଦଧି ଅଗାଧୂ । ମୋହି ତେଁ କଛୁ ବଡ଼ ଅପରାଧୂ ॥
ଜାତେଁ ମୋହି ନ କହତ କଛୁ ରାଉ । ମୋରି ସପଥ ତୋହି କହୁ ସତିଭାଉ ॥୪॥

ସହଜ ସରଲ ରଘୁବର ବଚନ କୁମତି କୁଟିଲ କରି ଜାନ ।
ଚଲଇ ଜୋଁକ ଜଲ ବକ୍ର ଗତି ଜଦ୍ୟପି ସଲିଲୁ ସମାନ ॥୪୨॥

ରହସୀ ରାନି ରାମ ରୁଖ ପାଈ । ବୋଲୀ କପଟ ସନେହୁ ଜନାଈ ॥
ସପଥ ତୁମ୍ହାର ଭରତ କୈ ଆନା । ହେତୁ ନ ଦୂସର ମୈଁ କଛୁ ଜାନା ॥୧॥

---

ଏରଣ୍ଡ ସେବା କରଇ କଳ୍ପତରୁ ତ୍ୟାଗି । ପରିହରି ଅମୃତ ଯେ ନିଏ ବିଷ ମାଗି ॥
ସେ ମୂଢ଼ା ନ ଭୁଲେ ଏହି ସମୟ ପାଇଣ । ଦେଖ ମାତା, ମନ ମଧ୍ୟେ ବିଚାର କରିଣ ॥୨॥
ଅମ୍ବ, ଏକ ଦୁଃଖ ମୋତେ ଲାଗଇ ବିପୁଳ । ନିରେଖି ନରନାଥଙ୍କୁ ନିପଟ ବ୍ୟାକୁଳ ॥
ତୁଚ୍ଛ କଥା ଲାଗି ଏତେ ଦୁଃଖ ଜନକଙ୍କୁ । ବିଶ୍ୱାସ ଜନନି, ଆସୁ ନାହିଁ ମୋ ମନକୁ ॥୩॥
ଅପାର ଗୁଣ-ଉଦଧି ଧୀର ଦଣ୍ଡଧାରୀ । ହୋଇଛି ମୋ ଦ୍ୱାରା କିଛି ଅପରାଧ ଭାରୀ ॥
ଯେ କାରଣୁ ନୃପ କିଛି ନ କହନ୍ତି ମୋତେ । ସତ୍ୟ ସତ୍ୟ କହ ସବୁ ମୋ ରାଣ ମା' ତୋତେ ॥୪॥

ରାମଙ୍କ ସହଜ ସରଳ ବାଣୀକୁ କୁଟିଳ ମଣେ କୁମତି ।
ଯେମନ୍ତେ ସଲିଳ ସମାନ ହେଲେହେଁ ଜୋକ ଚଳେ ବକ୍ର ଗତି ॥୪୨॥

ଜାଣି ଶ୍ରୀରାମଙ୍କ ମନ ହରଷିତେ ରାଣୀ । କପଟ-ସ୍ନେହ ଜଣାଇ ବୋଲେ ଏହୁଁ ବାଣୀ ॥
ତୁମ୍ଭ ରାଣ ବତ୍ସ, ପୁଣି ଭରତର ରାଣ । ଏହାର ଅନ୍ୟ କାରଣ ନ ଜାଣେ ମୁଁ ଜାଣ ॥୧॥

---

ଏପରି କାମ ନିମନ୍ତେ ଯଦି ମୁଁ ବନକୁ ନ ଯାଏ, ତେବେ ମୂର୍ଖଙ୍କ ସମାଜରେ ସର୍ବପ୍ରଥମେ ମୋ ନାଆଁ ପରିଗଣିତ ହେବା ଉଚିତ ॥ ୧ ॥ ଯେ କଳ୍ପବୃକ୍ଷକୁ ଛାଡ଼ି ଏରଣ୍ଡବୃକ୍ଷକୁ ସେବା କରେ ଏବଂ ଅମୃତ ତ୍ୟାଗ କରି ବିଷ ମାଗେ, ହେ ମାତା ! ବିଚାରି ଦେଖ, ସେହି ମହାମୂର୍ଖ ମୂଢ଼ା ଏପରି ସୁଯୋଗ ପାଇ କଦାପି ହରାଇବ ନାହିଁ ॥ ୨ ॥ ହେ ମାତା ! ମୋର ବିଶେଷ ଗୋଟିଏ ଦୁଃଖ ହେଉଛି, ତାହା ମହାରାଜାଙ୍କୁ ବ୍ୟାକୁଳ ହେବାର ଦେଖି । ଏହି ସାମାନ୍ୟ କଥା ନିମନ୍ତେ ପିତାଙ୍କର ଯେ ଏତେ ଦୁଃଖ ହେଉଛି, ହେ ମାତା ! ମୋତେ ଏ କଥାରେ ଜମା ବିଶ୍ୱାସ ହେଉନାହିଁ ॥ ୩ ॥ କାରଣ, ମହାରାଜ ତ ବଡ଼ ଧୀର ଏବଂ ଗୁଣର ଅଗାଧ ସାଗର । ଅବଶ୍ୟ ମୋ ଦ୍ୱାରା କୌଣସି ବଡ଼ ଅପରାଧ ହୋଇଛି, ଯାହା ହେତୁ ମହାରାଜ ମୋତେ କିଛି କହୁ ନାହାନ୍ତି । ହେ ମାତା ! ତୁମକୁ ମୋ ରାଣ, ତୁମେ ସତ ସତ କୁହ ।" ॥ ୪ ॥ ଦୋହା :— ରଘୁବର ଶ୍ରୀରାମଙ୍କ ସ୍ୱଭାବସଙ୍ଗତ ସରଳ ବଚନକୁ କୁମତି କୈକେୟୀ ବଙ୍କା କରି

ତୁମ୍ହ ଅପରାଧ ଜୋଗୁ ନହିଁ ତାତା । ଜନନୀ ଜନକ ବଂଧୁ ସୁଖଦାତା ॥
ରାମ ସତ୍ୟ ସବୁ ଜୋ କଛୁ କହହୂ । ତୁମ୍ହ ପିତୁ ମାତୁ ବଚନ ରତ ଅହହୂ ॥୨॥
ପିତହି ବୁଝାଇ କହହୁ ବଲି ସୋଈ । ଚୌଥେଁପନ ଜେହିଁ ଅଜସୁ ନ ହୋଈ ॥
ତୁମ୍ହ ସମ ସୁଅନ ସୁକୃତ ଜେହିଁ ଦୀନ୍ହେ । ଉଚିତ ନ ତାସୁ ନିରାଦରୁ କୀନ୍ହେ ॥୩॥
ଲାଗହିଁ କୁମୁଖ ବଚନ ସୁଭ କୈସେ । ମଗହଁ ଗୟାଦିକ ତୀରଥ ଜୈସେ ॥
ରାମହି ମାତୁ ବଚନ ସବ ଭାଏ । ଜିମି ସୁରସରି ଗତ ସଲିଲ ସୁହାଏ ॥୪॥
ଗଇ ମୁରୁଛା ରାମହି ସୁମିରି ନୃପ ଫିରି କରବଟ ଲୀନ୍ହ ।
ସଚିବ ରାମ ଆଗମନ କହି ବିନୟ ସମୟ ସମ କୀନ୍ହ ॥୪୩॥

---

ତୁମ୍ଭେ ଅପରାଧଯୋଗ୍ୟ ନୁହ କେବେ ବତ୍ସ । ଜନନୀ-ଜନକ-ବନ୍ଧୁ-ସୁଖପ୍ରଦ ସ୍ୱଚ୍ଛ ॥
ରାମ, ଯାହା କିଛି କହ ତାହା ସବୁ ସତ । ତୁମେ ମାତା ପିତାଙ୍କର ବଚନାନୁଗତ ॥୨॥
ନୁହ ମୁଁ ଯାଏ ପିତାଙ୍କୁ ବୁଝାଅ ତେମନ୍ତେ । ବୃଦ୍ଧ କାଳରେ ନ ହେଉ ଅଯଶ ଯେମନ୍ତେ ॥
ଯେ ସୁକୃତ ଦେଲା ତୁମ୍ଭ ସଦ୍ଗୁଣ କୁମର । ଉଚିତ ନୁହଇ ସୁତ, ତାର ଅନାଦର ॥୩॥
କୁମୁଖେ ବଚନ ଶୁଭ ଲାଗଇ ସେପରି । ମଗଧ ଦେଶେ ଗୟାଦି ତୀର୍ଥ ଯେଉଁପରି ॥
ରାମଙ୍କୁ ଭଲ ଲାଗଇ ମାତାଙ୍କର ଗିର । ଯେସନ୍ତେ ଜାହ୍ନବୀରେ ମିଳି ଶୁଭ ସର୍ବ ନୀର ॥୪॥
ମୂର୍ଚ୍ଛା ଦୂର ହୋନ୍ତେ ରାମଙ୍କୁ ସ୍ମରଣ କରି ଫେରିଲେ ନରେଶ ।
ବେଳ ଦେଖି ମନ୍ତ୍ରୀ କରିଲେ ବିନତି କହି ରାମଙ୍କ ପ୍ରବେଶ ॥୪୩॥

---

ବୁଝିଥା'ନ୍ତି । ଜଳ ସମାନ ହେଲେ ମଧ୍ୟ ଜୋକ ତହିଁରେ ବଙ୍କେଇ ବଙ୍କେଇ ଚାଲେ ॥ ୪୨ ॥ ଚୌପାଈ :—ରାଣୀ କୈକେୟୀ ଶ୍ରୀରାମଙ୍କ ସମ୍ମତିର ଆଭାସ ପାଇ ଆନନ୍ଦିତ ହୋଇ ପଡ଼ିଲେ ଏବଂ କପଟ-ପୂର୍ଣ୍ଣ ସ୍ନେହ ଦେଖାଇ କହିଲେ, "ମୁଁ ତୁମ ନାମରେ ଶପଥ ଓ ଭରତର ରାଣ ଖାଉଛି; ରାଜାଙ୍କ ଦୁଃଖର ଅନ୍ୟ କୌଣସି କାରଣ ମୋତେ ଜଣାନାହିଁ ॥ ୧ ॥ ହେ ତାତ ! ତୁମେ ଅପରାଧ କରିବା ଯୋଗ୍ୟ ନୁହଁ, ତୁମେ ତ ମାତା-ପିତା ଓ ଭାଇମାନଙ୍କର ସୁଖଦାତା । ହେ ରାମ ! ତୁମେ ଯାହା କିଛି କହୁଅଛ, ସବୁ ସତ୍ୟ । ତୁମେ ମାତା-ପିତାଙ୍କର ବଚନ-ପାଳନରେ ତତ୍ପର ॥ ୨ ॥ ମୁଁ ତୁମ ପ୍ରତି ନଉଛି ଯାଉଛି । ତୁମେ ପିତାଙ୍କୁ ବୁଝାଇ ସେହି କଥା କୁହ । ଯାହା ଫଳରେ ଚତୁର୍ଥାବସ୍ଥାରେ ତାଙ୍କର ଅଖ୍ୟାତି ନ ରଟେ । ଯେଉଁ ପୁଣ୍ୟ ତାହାଙ୍କୁ ତୁମପରି ପୁତ୍ର ଦାନ କରିଛି, ତାହାକୁ ଅନାଦର କରିବା ଉଚିତ ନୁହେଁ ॥୩॥ କୈକେୟୀଙ୍କ କୁମୁଖରେ ଏ ସବୁ ଶୁଭ ବଚନ ମଗଧ ଦେଶରେ ଗୟା ଆଦି ତୀର୍ଥ ପ୍ରତୀତ ହେଲା ପରି ବୋଧ ହେଉଥାଏ । ଶ୍ରୀରାମଙ୍କୁ ମାତା କୈକେୟୀଙ୍କ ସମସ୍ତ ବଚନ ଗଙ୍ଗାରେ ଭଲମନ୍ଦ ଯତ ସବୁ ପ୍ରକାର ଜଳ ମିଶି ଶୁଭ ଓ ସୁନ୍ଦର ହେଲା ପରି ଶୁଭ ଓ ସୁନ୍ଦର ବୋଧ ହେଉଥାଏ ॥୪॥
ଦୋହା :—ଇତି ମଧ୍ୟରେ ରାଜାଙ୍କର ମୂର୍ଚ୍ଛା ଦୂର ହୋଇଗଲା । ସେ ରାମଙ୍କୁ ସ୍ମରଣ କରି ('ରାମ' 'ରାମ' କହି) କଡ ଲେଉଟାଇଲେ । ମନ୍ତ୍ରୀ ଶ୍ରୀରାମଙ୍କ ଆଗମନ ବିଷୟ କହି

ଅବନିପ ଅକନି ରାମୁ ପଗୁ ଧାରେ । ଧରି ଧୀରଜୁ ତବ ନୟନ ଉଘାରେ ॥
ସଚିବଁ ସଁଭାରି ରାଉ ବୈଠାରେ । ଚରନ ପରତ ନୃପ ରାମୁ ନିହାରେ ॥୧॥
ଲିଏ ସନେହ ବିକଲ ଉର ଲାଈ । ଗୈ ମନି ମନହୁଁ ଫନିକ ଫିରି ପାଈ ॥
ରାମହି ଚିତଇ ରହେଉ ନରନାହୂ । ଚଲା ବିଲୋଚନ ବାରି ପ୍ରବାହୂ ॥୨॥
ସୋକ ବିବସ କଛୁ କହୈ ନ ପାରା । ହୃଦୟଁ ଲଗାୱତ ବାରହିଁ ବାରା ॥
ବିଧିହି ମନାୱ ରାଉ ମନ ମାହୀଁ । ଜେହିଁ ରଘୁନାଥ ନ କାନନ ଜାହୀଁ ॥୩॥
ସୁମିରି ମହେସହି କହଇ ନିହୋରୀ । ବିନତୀ ସୁନହୁ ସଦାସିବ ମୋରୀ ॥
ଆସୁତୋଷ ତୁମ୍ହ ଅୱଢର ଦାନୀ । ଆରତି ହରହୁ ଦୀନ ଜନୁ ଜାନୀ ॥୪॥

ତୁମ୍ହ ପ୍ରେରକ ସବ କେ ହୃଦୟଁ ସୋ ମତି ରାମହି ଦେହୁ ।
ବଚନୁ ମୋର ତଜି ରହହିଁ ଘର ପରିହରି ସୀଲୁ ସନେହୁ ॥୪୪॥

---

ଶୁଣନ୍ତେ ଅବନୀଶ୍ୱର ରାମ ଆଗମନ । ହୃଦେ ଧୈର୍ଯ୍ୟ ଧରି ତହୁଁ ଫେଡ଼ିଲେ ଲୋଚନ ॥
ସାବଧାନେ ବସାଇଲେ ସଚିବ ନୃପଙ୍କୁ । ପାଦେ ପଡ଼ିବାର ଭୂପ ଦେଖିଲେ ରାମଙ୍କୁ ॥୧॥
ସ୍ନେହ ବିକଳରେ ନେଲେ ହୃଦୟେ ଲଗାଇ । ଫଣୀ ପ୍ରମୋଦିତ ଯେସନ୍ତେ ହୃତ ମଣି ପାଇ ॥
ରାମଙ୍କୁ ନିରେଖି ନୃପ ହେଲେ ଅପଲକ । ପ୍ରବାହିତ ହେଲା ବେନି ନୟନୁ ଲୋତକ ॥୨॥
ଶୋକ ବିବଶରୁ କିଛି କହି ନ ପାରିଲେ । ବାରମ୍ବାର ପ୍ରେମାକୁଳେ ବକ୍ଷେ ଆଲିଙ୍ଗିଲେ ॥
ବିଧିଙ୍କୁ ମନ ମଧ୍ୟରେ ଜଣାନ୍ତି ରାଜନ । ଯେମନ୍ତେ ରଘୁନାଥଙ୍କ ନ ଯାନ୍ତୁ କାନନ ॥୩॥
ବିନମ୍ରି କହନ୍ତି ମହେଶ୍ୱରଙ୍କୁ ସୁମରି । ଶୁଣ ସଦାଶିବ, ଏହି ପ୍ରାର୍ଥନା ମୋହରି ॥
ଆଶୁତୋଷ, ତୁମ୍ଭେ ପ୍ରଭୁ ଅହେତୁକ-ଦାନୀ । ଆରତି ହରଣ କର ଦୀନ ଜନ ଜାଣି ॥୪॥

ତୁମ୍ଭେ ସମସ୍ତଙ୍କ ହୃଦୟ-ପ୍ରେରକ ସେ ମତି ଦିଅ ରାମଙ୍କୁ ।
ତ୍ୟାଗି ଶୀଳ ସ୍ନେହ ରହି ଯାନ୍ତୁ ଗୃହେ ତେଜି ମୋର ବଚନଙ୍କୁ ॥୪୪॥

---

ରାଜାଙ୍କୁ ସମୟାନୁକୂଳ ବିନତି କଲେ ॥ ୪୩ ॥ ଚୌପାଈ :—ଯେତେବେଳେ ରାଜା ଶୁଣିଲେ ଯେ, ରାମଚନ୍ଦ୍ର ବିଜେ କରିଛନ୍ତି, ସେ ଧୈର୍ଯ୍ୟ ଧାରଣ କରି ନେତ୍ର ଖୋଲିଲେ । ମନ୍ତ୍ରୀ ସମ୍ଭାଳି ରାଜାଙ୍କୁ ବସାଇଲେ । ରାଜା ଶ୍ରୀରାମଙ୍କୁ ତାଙ୍କ ଚରଣରେ ପଡ଼ିବାର ଦେଖିଲେ ॥ ୧ ॥ ସ୍ନେହ-ବିକଳ ରାଜା ରାମଙ୍କୁ ଆଲିଙ୍ଗନ କଲେ । ସାପ ହଜିଥିବା ମଣି ଫେରି ପାଇଲା ଅବା ! ରାଜା ଦଶରଥ ଶ୍ରୀରାମଙ୍କୁ ଦେଖିବା ମାତ୍ରେ (ଅପଲକ ନେତ୍ରରେ) ରହିଗଲେ । ତାଙ୍କ ନେତ୍ରରୁ ଅଶ୍ରୁ ଧାରା ବହିଚାଲିଲା ॥ ୨॥ ଅତିଶୟ ଶୋକାଭିଭୂତ ହୋଇଥିବାରୁ ରାଜା କିଛି କହିପାରୁ ନ ଥା'ନ୍ତି । ସେ ବାରମ୍ବାର ଶ୍ରୀରାମଙ୍କୁ ବକ୍ଷରେ ଲଗାଉଥା'ନ୍ତି ଏବଂ ବିଧାତାଙ୍କୁ ବିନମ୍ର କରୁଥାନ୍ତି, ରାମ ଯେପରି ବନକୁ ନ ଯାନ୍ତୁ ॥ ୩ ॥ ପୁଣି ମହାଦେବଙ୍କୁ ସ୍ମରଣ କରି ଅତି ନେହୁରା ହୋଇ କହୁଥାନ୍ତି—"ହେ ସଦାଶିବ ! ତୁମେ ମୋର ବିନତି ଶୁଣ । ତୁମେ ଆଶୁତୋଷ ଏବଂ ବିନା କାରଣରେ ସମସ୍ତଙ୍କୁ ଯଦୃଚ୍ଛା ଦାନ କରିପକାଅ । ଅତଏବ ମୋତେ ତୁମର ଦୀନ ସେବକ ବୋଲି ମନେ କରି

ଅଜସୁ ହୋଉ ଜଗ ସୁଜସୁ ନସାଉ । ନରକ ପରୌଁ ବରୁ ସୁରପୁରୁ ଜାଉ ॥
ସବ ଦୁଖ ଦୁସହ ସହାଓ୍ୱହୁ ମୋହି । ଲୋଚନ ଓଟ ରାମୁ ଜନି ହୋଁହି ॥୧॥
ଅସ ମନ ଗୁନଇ ରାଉ ନହିଁ ବୋଲା । ପୀପର ପାତ ସରିସ ମନୁ ଡୋଲା ॥
ରଘୁପତି ପିତହି ପ୍ରେମବସ ଜାନୀ । ପୁନି କଛୁ କହିହି ମାତୁ ଅନୁମାନୀ ॥୨॥
ଦେସ କାଲ ଅବସର ଅନୁସାରୀ । ବୋଲେ ବଚନ ବିନୀତ ବିଚାରୀ ॥
ତାତ କହଉଁ କଛୁ କରଉଁ ଢିଠାଈ । ଅନୁଚିତୁ ଛମବ ଜାନି ଲରିକାଈ ॥୩॥
ଅତି ଲଘୁ ବାତ ଲାଗି ଦୁଖୁ ପାଓ୍ୱା । କାହୁଁ ନ ମୋହି କହି ପ୍ରଥମ ଜନାଓ୍ୱା ॥
ଦେଖି ଗୋସାଇଁହି ପୂଛିଉଁ ମାତା । ସୁନି ପ୍ରସଂଗୁ ଭଏ ସୀତଲ ଗାତା ॥୪॥

---

ଅଯଶ ହେଉ ଜଗତେ ଯଶ ଯାଉ ନାଶ । ନରକେ ପଡେ଼ ଅଥବା ସ୍ୱର୍ଗେ ମିଳୁ ବାସ ॥
ସହାଅ ମୋତେ ଦୁଃସହ କଷଣ ସମସ୍ତ । ନୟନ ଅଦୃଶ୍ୟ ରାମ ନ ହେଉ ଯେମନ୍ତ ॥୧॥
ଏହିପରି ମନେ ଗୁଣି ନ ବୋଲନ୍ତି ରାୟ । କମ୍ପଇ ହୃଦ ଅଶ୍ୱତ୍ଥ ପଲ୍ଲବ ପରାୟ ॥
ପିତାଙ୍କୁ ରଘୁନାୟକ ପ୍ରେମବଶ ଜାଣି । ପୁଣି କିଛି କହିଦେବେ ମାତା, ଅନୁମାନି ॥୨॥
ଦେଶ କାଳ ଅବସର କରି ବିଲୋକନ । ଭାଷିଲେ ବିଚାରି ମୃଦୁ ବିନୀତ ବଚନ ॥
ତାତ, କିଛି କହୁଅଛି ଧୃଷ୍ଟତା କରିଣ । ଅନୁଚିତ ତାହା, କ୍ଷମ ବାଳକ ଭାବିଣ ॥୩॥
ଦୁଃଖ ସହିଲ ଅତ୍ୟନ୍ତ ତୁଚ୍ଛ କାରଣରୁ । ଜଣାଇ ନ ଦେଲା କେହି ମୋତେ ପ୍ରଥମରୁ ॥
ଦେଖି ଗୋସାଇଁଙ୍କ ଦଶା ମାତାଙ୍କୁ ପୁଚ୍ଛିଲି । ଶୁଣନ୍ତେ ବୃତ୍ତାନ୍ତ ଏବେ ଶୀତଳ ହୋଇଲି ॥୪॥

---

ମୋ ଦୁଃଖ ଦୂର କର ॥ ୪ ॥ ଦୋହା :—ତୁମେ ପ୍ରେରକ ରୂପେ ସମସ୍ତଙ୍କ ହୃଦୟରେ ନିବାସ କର । ତୁମେ ଶ୍ରୀରାମଙ୍କୁ ଏପରି ବୁଦ୍ଧି ଦିଅ, ଯେପରି ସେ ମୋ ବଚନ ଓ ମୋ ପ୍ରତି ଶୀଳସ୍ନେହ ଆଦି ପରିହାର କରି, ଘରେ ରହିବ ॥ ୪୪ ॥ ଚୌପାଇ :—ଜଗତରେ ନିନ୍ଦା ରହୁ ଓ ସୁଯଶ ନାଶ ଯାଉ । ମୁଁ ନର୍କରେ ପଡେ଼ ଅଥବା ମୋ ଭାଗ୍ୟରେ ମୋ ପୂର୍ବ ସୁକୃତର ଫଳସ୍ୱରୂପ ଯେଉଁ ସ୍ୱର୍ଗପ୍ରାପ୍ତି ହୋଇଥା'ନ୍ତା, ତାହା ଦୂର ହୋଇଯାଉ ଏବଂ ସମସ୍ତ ପ୍ରକାର ଦୁଃସହ ଦୁଃଖ ତୁମେ ମୋତେ ସହିବାକୁ ଦିଅ । କିନ୍ତୁ ଶ୍ରୀରାମ ମୋ ନେତ୍ରପଥରୁ ଯେପରି ଅନ୍ତରାଳରେ ନ ରହନ୍ତୁ ।" ॥ ୧ ॥ ରାଜା ମନେ ମନେ ଏହିପରି ବିଚାର କରୁଥା'ନ୍ତି, କିଛି କହୁ ନ ଥା'ନ୍ତି । ତାଙ୍କର ମନ ଅଶ୍ୱତ୍ଥ ପତ୍ର ପରି ଦୋହଲୁଥାଏ । ଶ୍ରୀ ରଘୁନାଥ ପିତାଙ୍କୁ ପ୍ରେମବିବଶ ହୋଇଥିବାର ଜାଣିଲେ ଏବଂ ମାତା କାଳେ ଆଉ କିଛି କହି ତାଙ୍କ ଦୁଃଖ ବଢାଇବେ, ତାହା ଅନୁମାନ କରି ଦେଶ, କାଳ ଓ ସମୟାନୁକୂଳ ବିନୀତ ବଚନ ବିଚାରି କହିଲେ, "ହେ ତାତ ! ମୁଁ ଯାହା କହୁଛି, ତାହା ଧୃଷ୍ଟତା ମାତ୍ର । ଏହି ଅନୁଚିତ ବଚନକୁ ମୋର ପିଲାଳିଆ ତ୍ରୁଟି ଭାବି କ୍ଷମା କରନ୍ତୁ ॥ ୨-୩ ॥ ଏହି ଅତି ସାମାନ୍ୟ କଥା ଲାଗି ଆପଣ ଏତେ ଦୁଃଖ ପାଇଲେ । ମୋତେ ଆଗରୁ କେହି କେହି ଜଣାଇଲେ ନାହିଁ । ପ୍ରଭୁଙ୍କର ଏହି ଦଶା ଦେଖି, ମୁଁ ମାତାଙ୍କୁ ପଚାରିଲି । ତାଙ୍କଠାରୁ ସମସ୍ତ ପ୍ରସଙ୍ଗ ଶୁଣି ମୋର ସମସ୍ତ

ମଂଗଲ ସମଯ଼ ସନେହ ବସ ସୋଚୁ ପରିହରିଅ ତାତ ।
ଆୟସୁ ଦେଇଅ ହରଷି ହିଯ଼ଁ କହି ପୁଲକେ ପ୍ରଭୁ ଗାତ ॥୪୫॥
ଧନ୍ୟ ଜନମୁ ଜଗତୀତଲ ତାସୂ । ପିତହି ପ୍ରମୋଦୁ ଚରିତ ସୁନି ଜାସୂ ॥
ଚାରି ପଦାରଥ କରତଲ ତାକେଁ । ପ୍ରିଯ଼ ପିତୁ ମାତୁ ପ୍ରାନ ସମ ଜାକେଁ ॥୧॥
ଆୟସୁ ପାଲି ଜନମ ଫଲୁ ପାଈ । ଐହଉଁ ବେଗିହିଁ ହୋଉ ରଜାଈ ॥
ବିଦା ମାତୁ ସନ ଆୱଉଁ ମାଗୀ । ଚଲିହଉଁ ବନହି ବହୁରି ପଗ ଲାଗୀ ॥୨॥
ଅସ କହି ରାମୁ ଗୱନୁ ତବ କୀହ୍ନା । ଭୂପ ସୋକ ବସ ଉତରୁ ନ ଦୀହ୍ନା ॥
ନଗର ବ୍ୟାପି ଗଇ ବାତ ସୁତୀଛୀ । ଛୁଅତ ଚଢ଼ୀ ଜନୁ ସବ ତନ ବୀଛୀ ॥୩॥
ସୁନି ଭଏ ବିକଲ ସକଲ ନର ନାରୀ । ବେଲି ବିଟପ ଜିମି ଦେଖି ଦୱାରୀ ॥
ଜୋ ଜହଁ ସୁନଇ ଧୁନଇ ସିରୁ ସୋଈ । ବଡ଼ ବିଷାଦୁ ନହିଁ ଧୀରଜୁ ହୋଈ ॥୪॥

---

ମଙ୍ଗଳ ସମୟେ ସ୍ନେହବଶ ହୋଇ ତାତ ନ ହୁଅ ଚିନ୍ତିତ ।
ହୃଦୟେ ହରଷି ଆଜ୍ଞା ଦିଅ, କହି ପ୍ରଭୁ ହେଲେ ପୁଲକିତ ॥୪୫॥
ଧନ୍ୟ ଜନମ ଏ ଧରା ତଳରେ ତାହାର । ପିତା ପ୍ରମୋଦିତ ଶୁଣି ଚରିତ ଯାହାର ॥
ଚାରି ପଦାର୍ଥ ହୁଅଇ ତାର କରଗତ । ଯାହାଙ୍କୁ ପ୍ରାଣ ସମାନ ପ୍ରିୟ ତାତ ମାତ ॥୧॥
ବଚନ ପାଳି ଲଭିଣ ଜନମର ଫଳ । ଆଦେଶ ହେଉ, ବାହୁଡ଼ି ଆସିବି ଚଞ୍ଚଳ ॥
ଯାଉଛି ମାତାଙ୍କଠାରୁ ବିଦାୟ ହୋଇବି । ଆସି ପୁଣି ପାଦେ ପଡ଼ି ବନକୁ ଗମିବି ॥୨॥
ଏହା କହି ରାମ ତହୁଁ ଗମନ କରିଲେ । ନୃପତି ଶୋକେ ଉତ୍ତର ଦେଇ ନ ପାରିଲେ ॥
ନଗରେ ତତ୍କ୍ଷଣ ବେଗରେ ବ୍ୟାପିଲା ଏ କଥା । ଛୁଇଁ ଚଢେ ବିଛା ବିଷ ସର୍ବାଙ୍ଗରେ ଯଥା ॥୩॥
ଶୁଣି ସର୍ବେ ନରନାରୀ ହୋଇଲେ ବିକଳ । ଲତିକା ବିଟପ ଯେସନ୍ତେ ଦେଖି ଦାବାନଳ ॥
ଯେ ଯହିଁ ଶୁଣିଲା ତହିଁ ଶିର ସେ ପିଟିଲା । ବଢ଼ିଲା ବିଷାଦ, ଧୈର୍ଯ୍ୟ ଧରି ନ ହୋଇଲା ॥୪॥

---

ଅଙ୍ଗ-ପ୍ରତ୍ୟଙ୍ଗ ପ୍ରସନ୍ନତା ହେତୁ ଶୀତଳ ହୋଇଗଲା ॥ ୪ ॥ ଦୋହା :—ହେ ପିତା ! ଏହି ଶୁଭ ସମୟରେ ସ୍ନେହବଶ ହୋଇ ଚିନ୍ତା କରିବା ପରିହାର କରନ୍ତୁ ଏବଂ ହୃଦୟରେ ପ୍ରସନ୍ନ ହୋଇ ମୋତେ ଆଜ୍ଞା ଦିଅନ୍ତୁ । ଏହା କହୁ କହୁ ଶ୍ରୀରାମଙ୍କ ସର୍ବାଙ୍ଗ ପୁଲକିତ ହୋଇଗଲା ॥ ୪୫ ॥ ଚୌପାଈ :—ରାମଚନ୍ଦ୍ର ପୁଣି କହିଲେ, "ଏହି ଭୂତଳରେ ଯେଉଁ ପୁତ୍ରର ଚରିତ ଶୁଣି ପିତା ପରମ ଆନନ୍ଦ ଲାଭ କରନ୍ତି, ତାହାର ଜନ୍ମ ଧନ୍ୟ । ମାତା ପିତା ଯାହାଙ୍କର ପ୍ରାଣ ସମ ପ୍ରିୟ, ଧର୍ମ, ଅର୍ଥ, କାମ ଓ ମୋକ୍ଷ, ଏହି ଚାରି ପଦାର୍ଥ ତାହାର କରତଳ-ଗତ ହୁଏ ॥ ୧ ॥ ଆପଣଙ୍କର ଆଜ୍ଞା ପାଳନ-ପୂର୍ବକ ଜନ୍ମର ସୁଫଳ ଲାଭ କରି ମୁଁ ଶୀଘ୍ର ଫେରି ଆସିବି । ଅତଏବ କୃପା କରି ଆଜ୍ଞା ଦିଅନ୍ତୁ । ମାଆଙ୍କ ନିକଟରୁ ବିଦାୟ ମାଗି ଆସୁଛି । ତତ୍ପରେ ଆପଣଙ୍କ ପାଦତଳେ ପଡ଼ି ବନକୁ ଗମନ କରିବି ।" ॥ ୨ ॥ ଏହିପରି କହି ଶ୍ରୀରାମଚନ୍ଦ୍ର, ସେଠାରୁ ଚାଲିଗଲେ । ଶୋକ-ବଶତଃ ରାଜା କୌଣସି ଉତ୍ତର ଦେଲେ ନାହିଁ । ତାଙ୍କ ମାରିବା ମାତ୍ରେ ବିଛାର ବିଷ

ମୁଖ ସୁଖାହିଁ ଲୋଚନ ସ୍ରବହିଁ ସୋକୁ ନ ହୃଦୟଁ ସମାଇ ।
ମନହୁଁ କରୁନ ରସ କଟକଈ ଉତରୀ ଅଵଧ ବଜାଇ ॥୪୬॥
ମିଲେହିଁ ମାଁଝ ବିଧି ବାତ ବେଗାରୀ । ଜହଁ ତହଁ ଦେହିଁ କୈକଇହି ଗାରୀ ॥
ଏହି ପାପିନିହି ବୂଝି କା ପରେଉ । ଛାଇ ଭବନ ପର ପାଵକୁ ଧରେଉ ॥୧॥
ନିଜ କର ନୟନ କାଢ଼ି ଚହ ଦୀଖା । ଡାରି ସୁଧା ବିଷୁ ଚାହତ ଚୀଖା ॥
କୁଟିଲ କଠୋର କୁବୁଦ୍ଧି ଅଭାଗୀ । ଭଇ ରଘୁବଂଶ ବେନୁ ବନ ଆଗୀ ॥୨॥
ପାଲଵ ବୈଠି ପେଡ଼ୁ ଏହିଁ କାଟା । ସୁଖ ମହୁଁ ସୋକ ଠାଟୁ ଧରି ଠାଟା ॥
ସଦା ରାମୁ ଏହି ପ୍ରାନ ସମାନା । କାରନ କଵନ କୁଟିଲପନୁ ଠାନା ॥୩॥

---

ମୁଖ ଶୁଖିଗଲା ନୟନ ସ୍ରବିଲା ଶୋକ ହୃଦୁ ଉଛୁଳିଲା ।
କରୁଣ ରସର ସେନା ଡଙ୍କା ପିଟି ଅବଧେ କି ପ୍ରବେଶିଲା ॥୪୬॥
ଭଲ କଥା ସାଧି ବିଧି ନଷ୍ଟ କଲା କହି । ଦିଅନ୍ତି କଇକେୟୀଙ୍କୁ ଗାଳି ଯହିଁ ତହିଁ ॥
ଏ ପାପିନୀକୁ କି ବୁଝା ପଡ଼ିଲା ଏ କାଳେ । ନିଆଁ ଲଗାଇଲା ଆଣି ଛାୟା-ଗୃହ-ଶାଳେ ॥୧॥
ସ୍ୱକରେ ନୟନ କାଢି ଦେଖିବା ଚାହିଁଲା । ସୁଧା ଢାଳିଦେଇ ବିଷ ଚାଖିବା ପାଞ୍ଚିଲା ॥
କୁଟିଳ କଠୋର ମନ୍ଦ ବୁଦ୍ଧି ଅଭାଗିନୀ । ହେଲା ରଘୁବଂଶ-ବେଣୁ-ବନକୁ ଅଗିନି ॥୨॥
ଡାଳରେ ବସିଣ ଏହୁ କାଟିଲା ବୃକ୍ଷକୁ । ସୁଖ ମଧ୍ୟେ ସଜାଇଲା ଶୋକ-ସମାଜକୁ ॥
ସଦା ରାମ ଥିଲେ ପ୍ରାଣ ସମାନ ଏହାର । କୁଟିଳପଣ ଠାଣିଲା କରି କି ବିଚାର ॥୩॥

---

ସମସ୍ତ ଶରୀରରେ ଚଢ଼ିଗଲା ପରି, ଏହି ଅତିତୀକ୍ଷ୍ଣ ସମାଚାର ଅତି ଶୀଘ୍ର ସମଗ୍ର ନଗରରେ ବ୍ୟାପିଗଲା ॥ ୩ ॥ ବନରେ ଦାବାନଳ ଦେଖି, ଲତା ଓ ବୃକ୍ଷ ମଉଳି ଗଲା ପରି, ଏହି କଥା ଶୁଣି ସମସ୍ତ ନରନାରୀ ବ୍ୟାକୁଳ ହୋଇପଡ଼ିଲେ । ଯେ ଯେଉଁଠି ଶୁଣୁଥାଏ, ସେହିଠାରେ ମୁଣ୍ଡ ପିଟିବାକୁ ଲାଗେ । ବଡ଼ ବିଷାଦ, କେହି ଧୈର୍ଯ୍ୟ ବାନ୍ଧିପାରୁ ନ ଥା'ନ୍ତି ॥ ୪ ॥ ଦୋହା :—ସମସ୍ତଙ୍କ ମୁଖ ଶୁଷ୍କ, ନୟନରୁ ଅଶ୍ରୁ ବହୁଥାଏ । ହୃଦୟରେ ଶୋକ ସମ୍ଭାଳୁ ନ ଥାଏ । ସତେ ଅବା କରୁଣ ରସ ସେନା ସହିତ ଦୁନ୍ଦୁଭି-ରଣବାଦ୍ୟ ବଜାଇ ଅଯୋଧ୍ୟାରେ ଓହ୍ଲାଇ ପଡ଼ିଲା କି ! ॥ ୪୬ ॥ ଚୌପାଇ :—ସମସ୍ତ ସୁଖ-ସୁଯୋଗର ମେଳ ହୋଇଥିଲା । ମଝିରେ ବିଧାତା କଥାଟିକୁ ବିଗାଡ଼ି ଦେଲେ । ଯେଉଁଠି ଦେଖ, ସେଠାରେ ଲୋକମାନେ କୈକେୟୀଙ୍କୁ ଗାଳି ଦେଉଥା'ନ୍ତି—"ଏ ପାପିନୀ ମୁଣ୍ଡରେ କଣ ଏପରି ଜୁଟିଲା ଯେ, ସେ ଛପର ହୋଇଥିବା ଘରେ ନିଆଁ ଲଗାଇ ଦେଲା ॥ ୧ ॥ ଆପଣା ହାତରେ ଏ ପାପିନୀ ଆପଣା ଆଖିକୁ କାଢ଼ିଦେଇ (ବିନା ଆଖିରେ) ଦେଖିବାକୁ ଚାହୁଁଛି ଏବଂ ଅମୃତ ଫିଙ୍ଗି ବିଷ ଚାଖିବାକୁ ଏହାର ଇଚ୍ଛା । ଏହି କୁଟିଳ, କଠୋର, କୁବୁଦ୍ଧି ଓ ଅଭାଗିନୀ କୈକେୟୀ ରଘୁବଂଶ-ରୂପୀ ବାଉଁଶ ବନ ନିମନ୍ତେ ଅଗ୍ନି ହେଲା ॥ ୨ ॥ ପତ୍ର ଉପରେ ବସି ଏ ବୃକ୍ଷକୁ କାଟି ପକାଇଲା । ସୁଖ ମଧ୍ୟରେ ଶୋକର ସମାଜ ସ୍ଥାପନ କରିଦେଲା । ଶ୍ରୀରାମଚନ୍ଦ୍ର ଏହା ପ୍ରତି ସର୍ବଦା ପ୍ରାଣ ପରି ପ୍ରିୟ

ସତ୍ୟ କହହିଁ କବି ନାରି ସୁଭାଉ । ସବ ବିଧି ଅଗହୁ ଅଗାଧ ଦୁରାଉ ॥
ନିଜ ପ୍ରତିବିଂବୁ ବରୁକୁ ଗହି ଜାଈ । ଜାନି ନ ଜାଇ ନାରି ଗତି ଭାଈ ॥୪॥

କାହ ନ ପାୱକୁ ଜାରି ସକ କା ନ ସମୁଦ୍ର ସମାଇ ।
କା ନ କରୈ ଅବଲା ପ୍ରବଲ କେହି ଜଗ କାଲୁ ନ ଖାଇ ॥୪୭॥

କା ସୁନାଇ ବିଧି କାହ ସୁନାୱା । କା ଦେଖାଇ ଚହ କାହ ଦେଖାୱା ॥
ଏକ କହହିଁ ଭଲ ଭୂପ ନ କୀନ୍ହା । ବରୁ ବିଚାରି ନହିଁ କୁମତିହି ଦୀନ୍ହା ॥୧॥
ଜୋ ହଠି ଭୟଉ ସକଲ ଦୁଃଖ ଭାଜନୁ । ଅବଲା ବିବସ ଗ୍ୟାନୁ ଗୁନୁ ଗା ଜନୁ ॥
ଏକ ଧରମ ପରମିତି ପହିଚାନେ । ନୃପହି ଦୋସୁ ନହିଁ ଦେହିଁ ସୟାନେ ॥୨॥
ସିବି ଦଧୀଚି ହରିଚନ୍ଦ କହାନୀ । ଏକ ଏକ ସନ କହହିଁ ବଖାନୀ ॥
ଏକ ଭରତ କର ସଂମତ କହହୀଁ । ଏକ ଉଦାସ ଭାୟଁ ସୁନି ରହହୀଁ ॥୩॥

---

ନାରୀଙ୍କ ସ୍ୱଭାବ କବି ସତ୍ୟ ବଖାଣନ୍ତି । ଗହନ ଗମ୍ଭୀର ଗୁପ୍ତ ସବୁ ଭାବେ ଅତି ॥
ନିଜ ପ୍ରତିବିମ୍ବ ବରଂ ଧରାଯାଇ ପାରେ । ଜଣା ନ ଯାଏ ରମଣୀ ଗତି ଏ ଧରାରେ ॥୪॥

କାହାକୁ ପାବକ ଜାଳି ନ ପାରଇ ସମୁଦ୍ରେ କି ନ ସମ୍ଭାଏ ।
କିବା ନ କରଇ ଅବଲା ପ୍ରବଲ କାହାକୁ କାଳ ନ ଖାଏ ॥୪୭॥

କି ଶୁଣାଇ ବିଧି ଏବେ କିସ ଶୁଣାଉଛି । କି ଦେଖାଇ ଦେଖାଇବା ପାଇଁ କି ଚାହୁଁଛି ॥
କେହି କହେ, ଭଲ କଲେ ନାହିଁ ନରବର । ବିଚାରି କରି ନ ଦେଲେ କୁମତିକି ବର ॥୧॥
ଜେଣୁ ବାଧହୋଇ ହେଲେ ଦୁଃଖର ଭାଜନ । ନାରୀବଶ ଜ୍ଞାନ ଗୁଣ ହଜିଲା ଯେସନ ॥
ଅନ୍ୟ ଏକ, ଧର୍ମର ଯେ ମର୍ଯ୍ୟାଦା ଜାଣଇ । ସେ ଚତୁର ନୃପତିଙ୍କୁ ଦୋଷ ନ ଦିଅଇ ॥୨॥
ଶିବି ହରିଶ୍ଚନ୍ଦ୍ର ତଥା ଦଧୀଚି କାହାଣୀ । ଏକ ଅନ୍ୟ ସମ୍ମୁଖରେ କହନ୍ତି ବଖାଣି ॥
ଭରତ ସମ୍ମତ କେହି କହେ ଏ କାର୍ଯ୍ୟରେ । ଏହା ଶୁଣି ରହେ ଅନ୍ୟ ଉଦାସ ଭାବରେ ॥୩॥

---

ଥିଲେ । ତଥାପି କେଉଁ କାରଣରୁ ଏ ଏପରି କୁଟିଳତା କରିବାକୁ ସ୍ଥିର କଲା, କେଜାଣି ॥ ୩ ॥ ସ୍ତ୍ରୀର ସ୍ୱଭାବ ସବୁ ପ୍ରକାରେ ଅଗମ୍ୟ, ଅଗାଧ ଓ ରହସ୍ୟଭେଦରେ ପରିପୂର୍ଣ୍ଣ । ଆପଣାର ପ୍ରତିବିମ୍ବ ଭଲେ ଧରାପଡ଼ିବ, କିନ୍ତୁ ଭାଇ, ସ୍ତ୍ରୀମାନଙ୍କର ଗତି ଜଣାପଡ଼େନାହିଁ ॥ ୪ ॥ ଦୋହା :—ଅଗ୍ନି କାହାକୁ ଜାଳି ନ ପାରେ ? ସମୁଦ୍ରରେ କ'ଣ ସମ୍ଭାଇ ନ ପାରେ ? ଅବଳା ବୋଲାଉଥିବା ପ୍ରବଳା ସ୍ତ୍ରୀଜାତି କଣ କରି ନ ପାରେ ? ଏବଂ ଜଗତରେ କାଳ କାହାକୁ ନ ଖାଏ ? ॥ ୪୭ ॥ ଚୌପାଈ — ବିଧାତା କ'ଣ ଶୁଣାଇ ଏବେ ପୁଣି କ'ଣ ଶୁଣାଇଦେଲେ ଏବଂ କ'ଣ ଦେଖାଇ ଏବେ ସେ କ'ଣ ଦେଖାଇବାକୁ ଚାହାନ୍ତି ! ଜଣେ କହୁଥା'ନ୍ତି—"ରାଜା ଭଲ କଲେ ନାହିଁ । କୁମତି କୈକେୟୀକୁ ବିଚାର କରି ବର ଦେଲେନାହିଁ ॥ ୧ ॥ ଫଳରେ ସେ ଜିଦ୍ କରି (କୈକେୟୀର ବଚନକୁ ପୂର୍ଣ୍ଣ କରିବାରେ ଅଟଳ ରହି) 'ନିଜେ ସମସ୍ତ ଦୁଃଖର ପାତ୍ର ହୋଇଗଲେ । ସ୍ତ୍ରୀର ବିଶେଷ ଅଧୀନ ହେବା ହେତୁ ତାଙ୍କର ଜ୍ଞାନ ଓ' ଗୁଣ

କାନ ମୂନ୍ଦି କର ରଦ ଗହି ଜୀହା । ଏକ କହହିଁ ଯହ ବାତ ଅଲୀହା ॥
ସୁକୃତ ଜାହିଁ ଅସ କହତ ତୁହ୍ମାରେ । ରାମୁ ଭରତ କହୁଁ ପ୍ରାନପିଆରେ ॥୪॥
ଚଂଦୁ ଚୱୈ ବରୁ ଅନଲ କନ ସୁଧା ହୋଇ ବିଷତୂଲ ।
ସପନେହୁଁ କବହୁଁ ନ କରହିଁ କିଛୁ ଭରତୁ ରାମ ପ୍ରତିକୂଲ ॥୪୮॥
ଏକ ବିଧାତହି ଦୂଷନୁ ଦେହୀଁ । ସୁଧା ଦେଖାଇ ଦୀହ୍ନ ବିଷୁ ଜେହୀଁ ॥
ଖରଭରୁ ନଗର ସୋଚୁ ସବ କାହୂ । ଦୁସହ ଦାହୁ ଉର ମିଟା ଉଛାହୂ ॥୧॥
ବିପ୍ରବଧୂ କୁଲମାନ୍ୟ ଜଠେରୀ । ଜେ ପ୍ରିୟ ପରମ କୈକଈ କେରୀ ॥
ଲଗୀଁ ଦେନ ସିଖ ସୀଲୁ ସରାହୀ । ବଚନ ବାନସମ ଲାଗହିଁ ତାହୀ ॥୨॥
ଭରତୁ ନ ମୋହି ପ୍ରିୟ ରାମ ସମାନା । ସଦା କହହୁ ଯହୁ ସବୁ ଜଗୁ ଜାନା ॥
କରହୁ ରାମ ପର ସହଜ ସନେହୂ । କେହିଁ ଅପରାଧ ଆଜୁ ବନୁ ଦେହୂ ॥୩॥

---

କରେ ବେକ କର୍ଣ୍ଣ ବୁଜି ଜିହ୍ବା କାମୁଡଇ । ଏ କଥା ସମ୍ପୂର୍ଣ୍ଣ ମିଛ, ଅନ୍ୟ କେ କହଇ ॥
ପୁଣ୍ୟ ନାଶ ହେବ ଏହା କହନ୍ତେ ତୁମ୍ଭର । ପ୍ରାଣ ବଳି ଭରତଙ୍କୁ ପ୍ରିୟ ରଘୁବର ॥୪॥
ବରଂ ଅଗ୍ନି କଣା ସ୍ରବିବେ ଚନ୍ଦ୍ରମା ସୁଧା ହେବ ବିଷ ସମ ।
ସ୍ୱପ୍ନେହେଁ ଭରତ ନ କରିବେ କିଛି ରାମ ପ୍ରତିକୂଳ କର୍ମ ॥୪୮॥
ବିଧି ଉପରେ ଦୂଷଣ ଢାଳେ ଅନ୍ୟ କେହି । ସୁଧା ଦେଖାଇଣ ତହିଁ ବିଷ ଦେଲା ଯେହି ॥
ଦୁଃଖିତ ସର୍ବେ ନଗରେ ଚହଳ ପଡିଲା । ଦୁଃସହ ଦାହେ ହୃଦୟୁଁ ଉତ୍ସାହ ତୁଟିଲା ॥୧॥
ବିପ୍ର ବଧୂ କୁଳମାନ୍ୟା ବୟୋବୃଦ୍ଧା ଶ୍ରେଣି । ଯେ ପରମପ୍ରିୟ ଥିଲେ କୈକେୟୀଙ୍କୁ ପୁଣି ॥
ସ୍ୱଭାବ ପ୍ରଶଂସି ଶିକ୍ଷା ଲାଗିଲେ ଦେବାକୁ । ବଚନ ବାଣ ସମାନ ଲାଗଇ ତାହାଙ୍କୁ ॥୨॥
"ମୋତେ ରାମ ସମ ପ୍ରିୟ ନୁହଇ ଭରତ" । ସଦା କହୁଥିଲୁ, ଏହା ଜାଣେ ଜଗତ ॥
ସହଜେ ରାମ ଉପରେ ସ୍ନେହ କରୁଥାଉ । କେଉଁ ଅପରାଧେ ଆଜ ବନକୁ ପଠାଉ ॥୩॥

---

ଗଲ୍ଲଗଲା ଅବା ' ଅନ୍ୟ ଜଣେ ଧର୍ମ-ମର୍ଯ୍ୟାଦାକୁ ଜାଣିଥିବାରୁ ରାଜାଙ୍କୁ ଦୋଷ ଦେଉ ନ ଥା'ନ୍ତି ॥ ୨ ॥ ସେ ଶିବ, ଦଧୀଚି ଏବଂ ହରିଶ୍ଚନ୍ଦ୍ରଙ୍କ କଥା ପରସ୍ପର ଆଗରେ ବଖାଣି କହୁଥା'ନ୍ତି । ଆଉ କେହି ଜଣେ ଏଥିରେ ଭରତଙ୍କ ସମ୍ମତି ଅଛି ବୋଲି କହୁଥା'ନ୍ତି । ଆଉ କେହି ଜଣେ ଶୁଣି ଉଦାସୀନ ଭାବରେ ନୀରବ ରହୁଯାଉଥା'ନ୍ତି ॥୩॥ କେହି ହାତରେ କାନ ବୁଜି ଏବଂ ଜିଭକୁ ଦାନ୍ତ ତଳେ ଦାବି କହୁଥା'ନ୍ତି, "ଏ କଥା ମିଥ୍ୟା, ଏପରି କଥା କହିଲେ ତୁମ ପୁଣ୍ୟ ସବୁ ନଷ୍ଟ ହୋଇଯିବ । ଶ୍ରୀରାମ ଭରତଙ୍କୁ ପ୍ରାଣସମ ପ୍ରିୟ ॥ ୪ ॥ ଦୋହା '—ଚନ୍ଦ୍ରମା ଶୀତଳ କିରଣ ପରିବର୍ତ୍ତେ ଅଗ୍ନି-ସ୍ଫୁଲିଙ୍ଗ ବୃଷ୍ଟି କରୁ ଏବଂ ଅମୃତ ବିଷ ତୁଲ୍ୟ ହୋଇ ପଛକେ, କିନ୍ତୁ ଭରତ ସ୍ୱପ୍ନରେ ସୁଦ୍ଧା ଶ୍ରୀରାମଙ୍କ ବିରୁଦ୍ଧରେ କିଛି କରିବେ ନାହିଁ ॥ ୪୮ ॥ ଚୌପାଇ '—ଆଉ କେହି ବିଧାତାଙ୍କୁ ଦୋଷ ଦେଉଥା'ନ୍ତି—ସେ ଅମୃତ ଦେଖାଇ ବିଷ ଦେଇଦେଲେ ।" ସମସ୍ତ ନଗରରେ କୋଳାହଳ ବ୍ୟାପିଗଲା । ସମସ୍ତଙ୍କୁ ଚିନ୍ତା ହୋଇଗଲା । ହୃଦୟରେ ଦୁଃସହ

କବହୁଁ ନ କୀହ୍ନୁ ସଉତି ଆରେସୂ । ପ୍ରୀତି ପ୍ରତୀତି ଜାନ ସବୁ ଦେସୂ ॥
କୌସଲ୍ୟାଁ ଅବ କାହ ବିଗାରା । ତୁମ୍ହ ଜେହି ଲାଗି ବଜ୍ର ପୁର ପାରା ॥୪॥
ସୀୟ କି ପିୟ ସଁଗୁ ପରିହରିହି ଲଖନୁ କି ରହିହହିଁ ଧାମ ।
ରାଜୁ କି ଭୂଁଜବ ଭରତ ପୁର ନୃପୁ କି ଜିଇହି ବିନୁ ରାମ ॥୪୯॥
ଅସ ବିଚାରି ଉର ଛାଡ଼ହୁ କୋହୂ । ସୋକ କଲଂକ କୋଠି ଜନି ହୋହୂ ॥
ଭରତହି ଅବସି ଦେହୁ ଜୁବରାଜୂ । କାନନ କାହ ରାମ କର କାଜୂ ॥୧॥
ନାହିନ ରାମୁ ରାଜ କେ ଭୂଖେ । ଧରମ ଧୁରୀନ ବିଷୟ ରସ ରୂଖେ ॥
ଗୁର ଗୃହ ବସହୁଁ ରାମୁ ତଜି ଗେହୂ । ନୃପ ସନ ଅସ ବରୁ ଦୂସର ଲେହୂ ॥୨॥

---

କରି ନାହୁଁ ସଉତୁଣୀ ଆକ୍ଷେପ କଦାପି । ପ୍ରୀତି ପ୍ରତୀତି ତୋହର ଜଣା ଦେଶ ବ୍ୟାପି ॥
କଉଶଲ୍ୟା ଏବେ ତୋର ହାନି କଲା କିସ । ତୁ ଯେଉଁ କାରଣୁ ପୁରେ ପ୍ରହାରୁ କୁଳିଶ ॥୪॥
ସୀତା ପ୍ରଭୁ ସଙ୍ଗ ତେଜି କି ପାରିବ ଲକ୍ଷ୍ମଣ ରହିବ ଧାମ ।
ଭୋଗିବ କି ଭରତ ରାଜ୍ୟପୁର, ନୃପ ବଞ୍ଚିବେ କି ବିନା ରାମ ॥୪୯॥
ଏହା ହୃଦେ ବିଚାରିଣ କୋପ ପରିହର । ଶୋକ କଳଙ୍କର କୋଠି ନିଜକୁ ନ କର ॥
ପୁଣି ଭରତକୁ ଦିଅ ଅବଶ୍ୟ ଏ ରାଜ୍ୟ । ବନ ଗମନରେ ରଘୁନାଥଙ୍କ କି କାର୍ଯ୍ୟ ॥୧॥
ରାଜ୍ୟ-କ୍ଷୁଧାତୁର ରଘୁନାଥକ ନୁହନ୍ତି । ଧର୍ମ-ଧୁରୀଣ ବିଷୟ-ବିରକ୍ତ ଅଟନ୍ତି ॥
ଗୁରୁ ଗୃହରେ ରହିବେ ତେଜି ରାମ ଘର । ନୃପଙ୍କଠାରୁ ଏମନ୍ତ ନିଅ ଅନ୍ୟ ବର ॥୨॥

---

ଦାହ ହେଉଥାଏ, ଆନନ୍ଦ-ଉତ୍ସାହ ସବୁ କୁଆଡେ ଉଭେଇ ଗଲା । ବିପ୍ର-ବଧୂ, କୁଳର ମାନ୍ୟାଗଣ୍ୟା ବୟସ୍କା ବୃଦ୍ଧା ଆଦି ଯେଉଁମାନେ କୈକେୟୀଙ୍କର ପ୍ରିୟ ଥିଲେ, ସେମାନେ ତାହାଙ୍କର ସ୍ୱଭାବକୁ ପ୍ରଶଂସା କରି, ତାହାଙ୍କୁ ଶିକ୍ଷା ଦେଉଥାନ୍ତି; କିନ୍ତୁ ସେମାନଙ୍କ ବଚନ ବାଣ ପରି କୈକେୟୀଙ୍କ ମର୍ମ ଭେଦନ କରୁଥାଏ ॥ ୨ ॥ ସେମାନେ କହୁଥାନ୍ତି, "ଶ୍ରୀରାମଙ୍କ ସମାନ ଭରତ ମଧ୍ୟ ତୁମକୁ ପ୍ରିୟ ନୁହନ୍ତି ବୋଲି ତୁମେ ତ ସଦାସର୍ବଦା କହୁଥିଲ, ଏ କଥା ସମସ୍ତ ଜଗତ ଜାଣେ । ଶ୍ରୀରାମଚନ୍ଦ୍ରଙ୍କୁ ତ ତୁମେ ସ୍ୱାଭାବିକ ଭାବରେ ସ୍ନେହ କରି ଆସିଛ, ଆଜି କେଉଁ ଅପରାଧ ହେତୁ ତାଙ୍କୁ ବନବାସ ଦଣ୍ଡ ଦେଉଛ ? ॥୩॥ ତୁମେ କଦାପି ସପତ୍ନୀ ଈର୍ଷ୍ୟା କରିନାହଁ । ସମଗ୍ର ଦେଶ ତୁମ ପ୍ରେମ ଓ ବିଶ୍ୱାସକୁ ଜାଣେ । ଏବେ କୌଶଲ୍ୟା ତୁମର କ'ଣ କ୍ଷତି କଲେ, ଯାହା ଫଳରେ ତୁମେ ସାରା ନଗରରେ ବଜ୍ର ପକାଇ ଦେଲ ? ॥ ୪ ॥ ଦୋହା :—ସୀତା କ'ଣ ସ୍ୱାମୀ ରାମଚନ୍ଦ୍ର ଙ୍କ ସଙ୍ଗ ତ୍ୟାଗ କରିପାରିବେ ? ଲକ୍ଷ୍ମଣ କଣ ଶ୍ରୀରାମଙ୍କ ବିନା ଘରେ ରହିପାରିବେ ? ଭରତ କଣ ଶ୍ରୀରାମଙ୍କ ବିନା ଅଯୋଧ୍ୟା-ପୁରୀର ରାଜ୍ୟ ଭୋଗ କରି ପାରିବେ ? ଏବଂ ରାଜା କଣ ଶ୍ରୀରାମଙ୍କ ବିନା ଜୀବିତ ରହିପାରିବେ ? ॥ ୪୯ ॥ ଚୌପାଇ :— ହୃଦୟରେ ଏପରି ବିଚାର କରି କ୍ରୋଧ ପରିହାର କର । ଶୋକ ଓ କଳଙ୍କର କୋଠି ହୁଅନାହିଁ । ଆବଶ୍ୟ ଭରତଙ୍କୁ ଯୁବରାଜ ପଦ ଦିଅ, କିନ୍ତୁ ଶ୍ରୀରାମଙ୍କର ବନଗମନରେ କ'ଣ

ଜୌଁ ନହିଁ ଲଗିହହୁ କହେଁ ହମାରେ । ନହିଁ ଲାଗିହି କଛୁ ହାଥ ତୁହ୍ମାରେ ॥
ଜୌଁ ପରିହାସ କୀହ୍ନି କଛୁ ହୋଈ । ତୌ କହି ପ୍ରଗଟ ଜନାୱହୁ ସୋଈ ॥୩॥
ରାମ ସରିସ ସୁତ କାନନ ଜୋଗୂ । କାହ କହିହି ସୁନି ତୁହ୍ମ କହୁଁ ଲୋଗୂ ॥
ଉଠହୁ ବେଗି ସୋଇ କରହୁ ଉପାଈ । ଜେହି ବିଧି ସୋକୁ କଲଂକୁ ନସାଈ ॥୪॥

ଜେହି ଭାଁତି ସୋକୁ କଲଂକୁ ଜାଇ ଉପାୟ କରି କୁଲ ପାଲହୀ ।
ହଠି ଫେରୁ ରାମହି ଜାତ ବନ ଜନି ବାତ ଦୂସରି ଚାଲହୀ ॥
ଜିମି ଭାନୁ ବିନୁ ଦିନୁ ପ୍ରାନ ବିନୁ ତନୁ ଚଂଦ ବିନୁ ଜିମି ଜାମିନୀ ।
ତିମି ଅୱଧ ତୁଲସୀଦାସ ପ୍ରଭୁ ବିନୁ ସମୁଝି ଧୌଁ ଜିୟଁ ଭାମିନୀ ॥

ଆମ୍ଭ ବଚନ ମାନିଣ ନ ଚଳିବୁ ଯେବେ । କିଛୁ ପ୍ରାପ୍ତ ନ ହୋଇବ ତୋ ହାତରେ ତେବେ ॥
ଯଦି କରିଥାଉ କିଛି ହାସ୍ୟ ପରିହାସ । ସମସ୍ତଙ୍କ ଆଗେ କହି କର ତା' ପ୍ରକାଶ ॥୩॥
ରାମ ସମ ସୁତ ବାସ-ଯୋଗ୍ୟ କି ବନସ୍ତେ ! ଏହା ଶୁଣି ତୋତେ କିସ କହିବେ ସମସ୍ତେ ॥
ଉଠ ତ୍ୱରିତ ଚଞ୍ଚଳ କର ସେ ଯତନ । ଶୋକ-କଳଙ୍କ ବିନାଶ ହୋଇବ ଯେସନ ॥୪॥

ଶୋକ କଳଙ୍କ ଯଥା ଦୂର ହୋଇବ ତଥା ଉପାୟେ ପାଳ ଏ କୁଳକୁ ।
ନ କର ବାର୍ତ୍ତା ଆନ ବଳେ ଫେରାଇ ଆଣ ଯାଆନ୍ତେ ଶ୍ରୀରାମ ବନକୁ ।
ରବି ଶଶାଙ୍କ ପ୍ରାଣ ହୀନେ, ଦିବସ ନିଶି ଦେହ ଯେସନ୍ତେ,
ତୁଳସୀ ରାମ ବିନେ ମାନିନି, ଭାଳ ମନେ ଅଯୋଧ୍ୟାପୁର ହେବ ତେସନ୍ତେ ॥

କାମ ? ॥ ୧ ॥ ଶ୍ରୀରାମ ରାଜ୍ୟ ପ୍ରତି କ୍ଷୁଧାର୍ତ୍ତ ନୁହନ୍ତି । ସେ ଧର୍ମ-ଧୁରନ୍ଧର ଓ ବିଷୟ-ରସ ପ୍ରତି ବିମୁଖ । ଏଣୁ ଶ୍ରୀରାମ ବନକୁ ନ ଗଲେ ମଧ୍ୟ ଭରତଙ୍କର ରାଜତ୍ୱରେ ସେ ବିଘ୍ନ ଘଟାଇବେ, ଏପରି ଆଶଙ୍କା କରନାହିଁ । ଏଥିରେ ଯଦି ତୁମର ମନ ନ ମାନେ, ତେବେ ରାଜାଙ୍କଠାରୁ ଅନ୍ୟ ଗୋଟିଏ ବର ମାଗିନିଅ ଯେ, ଶ୍ରୀରାମ ଘର ଛାଡ଼ି ଗୁରୁଙ୍କ ଆଶ୍ରମରେ ରହନ୍ତୁ ॥ ୨ ॥ ଯଦି ତୁମେ ଆମ କଥା ଅନୁସାରେ ନ ଚଳିବ, ତେବେ ତୁମର କୌଣସି ଗୋଟିଏ ହେଲେ ସ୍ୱାର୍ଥ ସିଦ୍ଧ ହେବନାହିଁ । ଯଦି ତୁମେ ପରିହାସରେ ଏପରି କରିଅଛ, ତେବେ ପ୍ରକାଶ୍ୟରେ ତାହା ଜଣାଇ କହିଦିଅ ॥ ୩ ॥ ରାମଙ୍କ ସଦୃଶ ପୁତ୍ର କ'ଣ ବନର ଯୋଗ୍ୟ ? ଏହା ଶୁଣି ଲୋକମାନେ ତୁମକୁ କ'ଣ କହିବେ ? ଶୀଘ୍ର ଉଠ ଏବଂ ଯେଉଁ ଉପାୟରେ ଏହି ଶୋକ ଓ କଳଙ୍କର ନାଶ ହେବ, ସେହି ଉପାୟ କର ॥ ୪ ॥ ଛନ୍ଦ '—ଯେପରି ଭାବରେ ସମଗ୍ର ନଗରର ଶୋକ ଓ ତୁମର କଳଙ୍କ ଦୂର ହୁଏ, ସେହି ଉପାୟ କରି କୁଳରକ୍ଷା କର । ବନ ଯାଉଥିବା ଶ୍ରୀରାମଙ୍କୁ ଜବର-ଦସ୍ତି ଲେଉଟାଇ ଆଣ । ଆଉ କୌଣସି କଥା ବଢାଅ ନାହିଁ । ତୁଳସୀ ଦାସ କହନ୍ତି—ଯେପରି ସୂର୍ଯ୍ୟଙ୍କ ବିନା ଦିନ, ପ୍ରାଣ ବିନା ଶରୀର ଓ ଚନ୍ଦ୍ର ବିନା ରାତି ଶୋଭା ପାଏନାହିଁ, ସେହିପରି ଶ୍ରୀରାମଙ୍କ ବିନା ଅଯୋଧ୍ୟା ଅସୁନ୍ଦର ଓ ହତଶ୍ରୀ ହୋଇଯିବ । ହେ ଭାମିନି ! ତୁମେ ଆପଣା ହୃଦୟରେ ଏ କଥା ବୁଝ ଟିକିଏ ତ ଭଲ ॥"

ସଖିହ୍ନ ସିଖାଓ୍ୱନୁ ଦୀହ୍ନ ସୁନତ ମଧୁର ପରିନାମ ହିତ ।
ତେଇଁ କଛୁ କାନ ନ କୀହ୍ନ କୁଟିଲ ପ୍ରବୋଧୀ କୁବରୀ ॥୫୦॥

ଉତରୁ ନ ଦେଇ ଦୁସହ ରିସ ରୂଖୀ । ମୃଗିହ୍ନ ଚିତଓ୍ୱ ଜନୁ ବାଘିନି ଭୂଖୀ ॥
ବ୍ୟାଧି ଅସାଧି ଜାନି ତିହ୍ନ ତ୍ୟାଗୀ । ଚଲୀଁ କହତ ମତିମଂଦ ଅଭାଗୀ ॥୧॥
ରାଜୁ କରତ ୟହ ଦୈଅଁ ବିଗୋଈ । କୀହ୍ନେସି ଅସ ଜସ କରଇ ନ କୋଈ ॥
ଏହି ବିଧି ବିଲପହିଁ ପୁର ନର ନାରୀଁ । ଦେହିଁ କୁଚାଲିହି କୋଟିକ ଗାରୀଁ ॥୨॥
ଜରହିଁ ବିଷମ ଜର ଲେହିଁ ଉସାସା । କଓ୍ୱନି ରାମ ବିନୁ ଜୀବନ ଆସା ॥
ବିପୁଲ ବିୟୋଗ ପ୍ରଜା ଅକୁଲାନୀ । ଜନୁ ଜଲଚରଗନ ସୂଖତ ପାନୀ ॥୩॥
ଅତି ବିଷାଦ ବସ ଲୋଗ ଲୋଗାଈଂ । ଗଏ ମାତୁ ପହିଁ ରାମୁ ଗୋସାଈଂ ॥
ମୁଖୁ ପ୍ରସନ୍ନ ଚିତ ଚୌଗୁନ ଚାଉ । ମିଟା ସୋଚୁ ଜନି ରାଖୈ ରାଉ ॥୪॥

---

ସଖୀ ସର୍ବେ ଶିକ୍ଷା ଦିଅନ୍ତି ରୁଚିର ଅନ୍ତକୁ ଯେ ହିତକାରୀ ।
ସେ କିଛି ନ ଶୁଣେ କୁଟିଳ କୁବ୍ଜାର ମନ୍ତ୍ରେ ବୋଧ ଲଭି ନାରୀ ॥୫୦॥

ଉତ୍ତର ନ ଦିଏ ଅତି ରୋଷେ ହୋଇ ତପ୍ତ । ମୃଗୁଣୀକୁ ଚାହେଁ ଭୋକୀ ବାଘୁଣୀ ଯେମନ୍ତ ॥
ବ୍ୟାଧି ଅସାଧ୍ୟ ସେମାନେ ଜାଣି ପରିହରି । ଗଲେ ଅଭାଗିନୀ ମତି ମନ୍ଦ କହି କରି ॥୧॥
ରାଜ୍ୟ ଭୋଗନ୍ତେ ଏହାକୁ ଦଇବ ନାଶିଲା । ଯାହା କେହି ନ କରିବେ ତାହା ଏ କରିଲା ॥
ଏହି ଭାବେ ପୁର ନରନାରୀ ବିଳପନ୍ତି । କୁମତିକୁ ଗାଳି ନାନା ପ୍ରକାରେ ଦିଅନ୍ତି ॥୨॥
ବିଷମ ଜ୍ୱରରେ ଜଳି ନିଅନ୍ତି ନିଃଶ୍ୱାସ । ରଘୁନାଥ ବିନା ଧିକ ଜୀବନର ଆଶ ॥
ବିପୁଳବିୟୋଗେ ପ୍ରଜା ହୋଇଲେ ବ୍ୟାକୁଳ । ସଲିଳ ଶୁଖନ୍ତେ ଯେହ୍ନେ ଜଳଚରକୁଳ ॥୩॥
ଅତ୍ୟନ୍ତ ବିଷାଦ-ଗ୍ରସ୍ତ ପୁରୁଷ ରମଣୀ । ଗଲେ ମା'ତାଙ୍କ ସମୀପେ ରଘୁକୁଳ-ମଣି ॥
ମୁଖ ପ୍ରସନ୍ନ ଉତ୍ସାହ ଚିତ୍ତେ ଚଉଗୁଣ । ଏ ଚିନ୍ତା ନ ଥାଏ ନୃପ ରଖି ନେବେ ପୁଣ ॥୪॥

---

ସୋରଠା.—ଏହିରୂପେ ସଖିମାନେ ଶ୍ରବଣ-ମଧୁର ଓ ପରିଣାମ-ହିତକର ଶିକ୍ଷା ଦେଲେ । କିନ୍ତୁ କୁଟିଳା କୁବ୍ଜାର ଶିକ୍ଷାରେ ପରିଚାଳିତା କୈକେୟୀ ଏ ବିଷୟ ପ୍ରତି ଟିକିଏ ହେଲେ ଧ୍ୟାନ କର୍ଣ୍ଣପାତ କଲେନାହିଁ ॥ ୫୦ ॥ ଚୌପାଈ '—କୈକେୟୀ କୌଣସି ଉତ୍ତର ଦେଉ ନ ଥା'ନ୍ତି । ଦୁଃସହ କ୍ରୋଧ ହେତୁ ସେ ବେଶି ବେଶି କଠୋର ହେଉଥା'ନ୍ତି । ଭୋକିଲା ବାଘୁଣୀ ହରିଣୀ ଆଡକୁ ଚାହିଁଲା ପରି ସେ ସଖୀମାନଙ୍କ ଆଡକୁ ଚାହୁଁଥା'ନ୍ତି । ତତ୍ପରେ ସଖୀମାନେ ରୋଗକୁ ଅସାଧ୍ୟ ବୁଝି ତାଙ୍କୁ ଛାଡିଦେଲେ । ସମସ୍ତେ ତାଙ୍କୁ ମନ୍ଦମତି ଓ ଅଭାଗିନୀ କହି କହି ଚାଲିଗଲେ ॥ ୧ ॥ ରାଜସୁଖ ଭୋଗ କରୁଥିବା ଅବସ୍ଥାରେ ବି ଏହି କୈକେୟୀଙ୍କୁ ଦଇବ ବାମ ହୋଇ ନଷ୍ଟ କରିଦେଲା । ଏ ଯେପରି କଲେ, ସେପରି କେହି ବି କରିବ ନାହିଁ । ନଗରର ସମସ୍ତ ନରନାରୀ ଏହିରୂପେ ବିଳାପ କରୁଥା'ନ୍ତି ଏବଂ ସେହି କୁଚକ୍ରୀ କୈକେୟୀଙ୍କୁ କୋଟି କୋଟି ପ୍ରକାରେ ଗାଳି ଦେଉଥା'ନ୍ତି ॥ ୨ ॥ ଲୋକମାନେ ଦୁଃଖର ବିଷମ ଜ୍ୱର-ତାପରେ ଦୀର୍ଘ ଶ୍ୱାସ ନେଇ

ନବ ଗୟଂଦୁ ରଘୁବୀର ମନୁ ରାଜୁ ଅଲାନ ସମାନ ।
ଛୁଟ ଜାନି ବନ ଗବନୁ ସୁନି ଉର ଅନଂଦୁ ଅଧିକାନ ॥୫୧॥
ରଘୁକୁଲ ତିଲକ ଜୋରି ଦୋଉ ହାଥା । ମୁଦିତ ମାତୁ ପଦ ନାୟଉ ମାଥା ॥
ଦୀହ୍ନି ଅସୀସ ଲାଇ ଉର ଲୀହ୍ନେ । ଭୂଷନ ବସନ ନିଛାଵରି କୀହ୍ନେ ॥୧॥
ବାର ବାର ମୁଖ ଚୁଂବତି ମାତା । ନୟନ ନେହ ଜଲୁ ପୁଲକିତ ଗାତା ॥
ଗୋଦ ରାଖି ପୁନି ହୃଦୟଁ ଲଗାଏ । ସ୍ରବତ ପ୍ରେମରସ ପୟଦ ସୁହାଏ ॥୨॥
ପ୍ରେମୁ ପ୍ରମୋଦୁ ନ କଛୁ କହି ଜାଈ । ରଂକ ଧନଦ ପଦବୀ ଜନୁ ପାଈ ॥
ସାଦର ସୁନ୍ଦର ବଦନୁ ନିହାରୀ । ବୋଲୀ ମଧୁର ବଚନ ମହତାରୀ ॥୩॥

---

ନବୀନ ବାରଣ ରଘୁବୀର ମନ ରାଜ୍ୟ ଶିକୁଳୀ ଯେସନ ।
ବନ ଯିବା ଶୁଣି ଫିଟିଗଲା ଜାଣି ହୃଦେ ପରମ ପ୍ରସନ୍ନ ॥୫୧॥
ତରଣି-କୁଳ-ତିଲକ ଯୋଡ଼ି ଦୁଇ ହାତ । ମୁଦିତେ ମାତାଙ୍କ ପଦେ କଲେ ପ୍ରଣିପାତ ॥
ଆଶିଷ ଦେଇ ସସ୍ନେହେ ହୃଦେ ଆଲିଙ୍ଗିଲେ । ଭୂଷଣ ବସନ ବହୁ ଉତ୍ସର୍ଗ କରିଲେ ॥୧॥
ବାରମ୍ବାର ସ୍ନେହେ ମାତା ଚୁମ୍ବନ୍ତି ବଦନ । ପୁଲକ ତନୁ ପ୍ରେମାଶ୍ରୁ ପୂରିତ ଲୋଚନ ॥
କୋଳେନେଇ ଲଗାଇଲେ ବକ୍ଷରେ ଆଦର । ପୟୋଧରୁ ପ୍ରେମରସ ସ୍ରବିଲା ସୁନ୍ଦର ॥୨॥
ପ୍ରେମ ପ୍ରମୋଦ ବଖାଣି ନ ହୁଅଇ କିଛି । ରଙ୍କ ଧନଦ ପଦବୀ ସତେ କି ପାଇଛି ॥
ସାଦରେ ସୁନ୍ଦର ମୁଖ କରି ବିଲୋକନ । ଭାଷିଲେ ଜନନୀ ମୃଦୁ ମଧୁର ବଚନ ॥୩॥

---

କହୁଥା'ନ୍ତି—"ଶ୍ରୀରାମଙ୍କ ବିନା ଜୀବନର ଆଉ କି ଆଶା ଅଛି ?" ମହାବିୟୋଗ ଆଶଙ୍କାରେ ପ୍ରଜା ଏପରି ବ୍ୟାକୁଳ ହୋଇ ପଡ଼ିଛନ୍ତି, ଜଣା ପଡ଼ୁଛି, ସତେ ଅବା ପାଣି ଶୁଖିବା ସମୟରେ ଜଳଚର ଜୀବଗଣ ଛଟପଟ ହେଉଅଛନ୍ତି ! ॥ ୩ ॥ ତା'ପରେ ସମସ୍ତ ପୁରୁଷ ଓ ସ୍ତ୍ରୀ ଅତିଶୟ ବିଷାଦର ବଶବର୍ତ୍ତୀ । ଗୋସ୍ୱାମୀ ଶ୍ରୀରାମଚନ୍ଦ୍ର ମାତା କୌଶଲ୍ୟାଙ୍କ ପାଖକୁ ଗଲେ । ତାଙ୍କର ମୁଖ ପ୍ରସନ୍ନ ଓ ଚିତ୍ତରେ ଚତୁର୍ଗୁଣ ଉତ୍ସାହ । ରାଜା କାଳେ ତାଙ୍କୁ ରଖିନେବେ, ଏ ଚିନ୍ତା ତାଙ୍କ ମନରେ ଆଉ ନ ଥାଏ । (ବର୍ତ୍ତମାନକୁ ମାତା କୈକେୟୀଙ୍କ ଆଜ୍ଞା ଏବଂ ପିତାଙ୍କ ମଉନ ସମ୍ମତି ପାଇ ସେ ଚିନ୍ତା ଅପସରି ଯାଇଥାଏ ।) ॥ ୪ ॥ ଦୋହା :—ଶ୍ରୀରାମଙ୍କ ମନ ନବଧୃତ ହସ୍ତୀ ସମାନ ଏବଂ ରାଜ୍ୟ-ବନ୍ଧନ ସେହି ହସ୍ତୀର ଲୌହ ଶୃଙ୍ଖଳ ପରି । ବନ ଯିବାକୁ ହେବ—ଏହା ଶୁଣି ଆପଣାକୁ ବନ୍ଧନ-ମୁକ୍ତ ବୋଲି ଜାଣି ତାଙ୍କ ହୃଦୟରେ ଆନନ୍ଦ ବୃଦ୍ଧି ପାଇଥାଏ ॥ ୫୧ ॥ ଚୌପାଈ :—ରଘୁକୁଳ-ତିଳକ ଶ୍ରୀରାମଚନ୍ଦ୍ର ଦୁଇ ହାତ ଯୋଡ଼ି ଆନନ୍ଦ ସହକାରେ ମାତାଙ୍କ ଚରଣରେ ମୁଣ୍ଡ ନୁଆଁଇଲେ । ମାତା ଆଶୀର୍ବାଦ ଦେଲେ, ତାଙ୍କୁ ଆପଣା ବକ୍ଷରେ ଲଗାଇଲେ ଏବଂ ତାଙ୍କ ଉପରେ ଅଳଙ୍କାର ଓ ବସ୍ତ୍ର ଉତ୍ସର୍ଗ କଲେ ॥ ୧ ॥ ମାତା ବାରମ୍ବାର ଶ୍ରୀରାମଙ୍କ ମୁଖ ଚୁମ୍ବନ କରୁଥା'ନ୍ତି । ନେତ୍ରରେ ପ୍ରେମାଶ୍ରୁ ଭରି ଆସୁଥାଏ ଏବଂ ସମସ୍ତ ଅଙ୍ଗ-ପ୍ରତ୍ୟଙ୍ଗ ପୁଲକିତ । ଶ୍ରୀରାମଙ୍କୁ ନିଜ

କହହୁ ତାତ ଜନନୀ ବଲିହାରୀ । କବହିଁ ଲଗନ ମୁଦ ମଂଗଲକାରୀ ॥
ସୁକୃତ ସୀଲ ସୁଖ ସୀଁଵ ସୁହାଈ । ଜନମ ଲାଭ କଇ ଅବଧି ଅଘାଈ ॥୩॥
ଜେହି ଚାହତ ନର ନାରି ସବ ଅତି ଆରତ ଏହି ଭାଁତି ।
ଜିମି ଚାତକ ଚାତକି ତୃଷିତ ବୃଷ୍ଟି ସରଦ ରିତୁ ସ୍ୱାତି ॥୫୨॥
ତାତ ଜାଉଁ ବଲି ବେଗି ନହାହୂ । ଜୋ ମନ ଭାଵ ମଧୁର କଛୁ ଖାହୂ ॥
ପିତୁ ସମୀପ ତବ ଜାଏହୁ ଭୈଆ । ଭଇ ବଡ଼ି ବାର ଜାଇ ବଲି ମୈଆ ॥୧॥
ମାତୁ ବଚନ ସୁନି ଅତି ଅନୁକୂଲା । ଜନୁ ସନେହ ସୁରତରୁ କେ ଫୂଲା ॥
ସୁଖ ମକରଂଦ ଭରେ ଶ୍ରିୟମୂଲା । ନିରଖି ରାମ ମନୁ ଭଵଁରୁ ନ ଭୂଲା ॥୨॥

କହ ବତ୍ସ ରଘୁବୀର ! ଲୁଚି ଯାଏ ମାତା । କେବେ ସେ ଲଗ୍ନ ଆନନ୍ଦ ମଙ୍ଗଳ ପ୍ରଦାତା ॥
ସୁକୃତ ଶୀଳ ସୁଖର ସୀମା ମନୋରମ । ସମ୍ପୂର୍ଣ୍ଣ ଜନ୍ମ ଲାଭର ଅବଧି ଉତ୍ତମ ॥୪॥
ଯାହାକୁ ଏ ଭାବେ ନରନାରୀ ସର୍ବେ ଅତି ଆରତେ ଚାହାନ୍ତି ।
ତୃଷିତ ଚାତକ ଚାତକୀ ଯେମନ୍ତ ବରଷା ଶରଦ ସ୍ୱାତୀ ॥୫୨॥
ଲୁଚିଯାଏ ବତ୍ସ, ବେଗେ ସ୍ନାନ କରି ଯାଅ । ମନ ରୁଚି ଅନୁସାରେ ମିଠା କିଛି ଖାଅ ॥
ପିତାଙ୍କ ସମୀପେ ପଛେ ଯିବ ପୁଣି ସୁତ । ଲୁଚିଯାଏ ମାତା ବେଳ ହେଲାଣି ବହୁତ ॥୧॥
ଶୁଣି ଅତି ଅନୁକୂଳ ଜନନୀ ବଚନ । ଯେସନେ ସ୍ନେହ-ବିବୁଧ-ବିଟପ ସୁମନ ॥
ସୁଖ-ମକରନ୍ଦେ ପୂର୍ଣ୍ଣ ଶ୍ରୀମୂଳ ଆବର । ଦେଖି ନ ଭୁଲିଲେ ରାମ ମନ-ମଧୁକର ॥୨॥

କୋଳରେ ବସାଇ ସେ ପୁଣି ହୃଦୟରେ ଲଗାଇ ନେଲେ । ସୁନ୍ଦର ସ୍ତନରୁ ପ୍ରେମରସ ସ୍ରବିବାକୁ ଲାଗିଲା ॥ ୨ ॥ ତାଙ୍କର ପ୍ରେମ ଓ ମହାଆନନ୍ଦ ଭାଷାତୀତ । କାଙ୍ଗାଳ କୁବେର-ପଦ ଅବା ପାଇଛୁ କି ! ବଡ ଆଦର ସହିତ ଶ୍ରୀରାମଙ୍କ ସୁନ୍ଦର ମୁଖ ଦେଖି ମାତା ମଧୁର ବଚନ କହିଲେ — ॥ ୩ ॥ "ହେ ତାତ ! ମାତା ନଉଛୁ ଯାଉଛୁ । ସେ ଆନନ୍ଦ-ମଙ୍ଗଳକାରୀ ଲଗ୍ନ କେତେବେଳେ ପହଞ୍ଚିବ—ଯାହାକୁ ମୁଁ ମୋ ପୁଣ୍ୟ, ଶୀଳ ଏବଂ ସୁଖର ସୁନ୍ଦର ସୀମା ରୂପେ ମନେ କରିବି ଏବଂ ଯାହା ମୋର ମନୁଷ୍ୟ-ଜନ୍ମର ଶ୍ରେଷ୍ଠ ଲାଭ ହେବ ? ॥ ୪ ॥ ଦୋହା :—ଏବଂ ଯେଉଁ ପ୍ରକାରେ ତୃଷାର୍ତ୍ତ ଚାତକ ଓ ଚାତକୀ ଶରତ ଋତୁର ସ୍ୱାତୀ ନକ୍ଷତ୍ରର ବୃଷ୍ଟିକୁ ଚାହିଁଥା'ନ୍ତି, ସେହିପରି ସମସ୍ତ ନରନାରୀ ଅତି ଉଦ୍‌ବିଗ୍ନ ହୋଇ ଯେଉଁ ଶୁଭଲଗ୍ନକୁ ଅପେକ୍ଷା କରି ରହିଛନ୍ତି, ସେହି ଶୁଭଲଗ୍ନ କେତେବେଳେ ? ॥ ୫୨ ॥ ଚୌପାଇ :—ବାପା ' ମୁଁ ନଉଛୁ ଯାଉଛୁ । ତୁ ଶୀଘ୍ର ସ୍ନାନ କରି ପକା ଏବଂ ଯାହା ମନକୁ ରୁଚିକର, କିଛି ମିଠାଇ ଖାଇଦେ । ବାପ ! ତା ପରେ ପିତାଙ୍କ ପାଖକୁ ଯାଆ । ବହୁତ ବିଳମ୍ବ ହୋଇଗଲାଣି । ମାତା ନଉଛୁ ଯାଉଛୁ ।" ॥ ୧ ॥ ଶ୍ରୀରାମ ମାତାଙ୍କର ଅତି ଅନୁକୂଳ ବଚନ ଶୁଣିଲେ । ଏହି ବଚନ ସ୍ନେହ-କଳ୍ପ-ବୃକ୍ଷର ସୁମନ ସଦୃଶ । ତାହା ସୁଖ-ମକରନ୍ଦରେ ଭରା ଏବଂ ଶ୍ରୀ (ରାଜଲକ୍ଷ୍ମୀ)ର ମୂଳାଧାର । ଏପରି ବଚନ-ସୁମନ-ରସରେ ଶ୍ରୀରାମଙ୍କ ମନ-ଭ୍ରମର ଲୁବ୍ଧ

ଧରମ ଧୁରୀନ ଧରମ ଗତି ଜାନୀ । କହେଉ ମାତୁ ସନ ଅତି ମୃଦୁ ବାନୀ ॥
ପିତାଁ ଦୀନ୍ହ ମୋହି କାନନ ରାଜୂ । ଜହଁ ସବ ଭାଁତି ମୋର ବଡ଼ କାଜୂ ॥୩॥
ଆୟସୁ ଦେହି ମୁଦିତ ମନ ମାତା । ଜେହିଁ ମୁଦ ମଂଗଲ କାନନ ଜାତା ॥
ଜନି ସନେହ ବସ ଡରପସି ଭୋରେଁ । ଆନଁଦୁ ଅଂବ ଅନୁଗ୍ରହ ତୋରେଁ ॥୪॥

ବରଷ ଚାରିଦସ ବିପିନ ବସି କରି ପିତୁ ବଚନ ପ୍ରମାନ ।
ଆଇ ପାୟ ପୁନି ଦେଖିହଉଁ ମନୁ ଜନି କରସି ମଲାନ ॥୫୩॥

ବଚନ ବିନୀତ ମଧୁର ରଘୁବର କେ । ସର ସମ ଲଗେ ମାତୁ ଉର କରକେ ॥
ସହମି ସୂଖି ସୁନି ସୀତଲି ବାନୀ । ଜିମି ଜବାସ ପରେଁ ପାବସ ପାନୀ ॥୧॥
କହି ନ ଜାଇ କଛୁ ହୃଦୟ ବିଷାଦୂ । ମନହୁଁ ମୃଗୀ ସୁନି କେହରି ନାଦୂ ॥
ନୟନ ସଜଲ ତନ ଥର ଥର କାଁପୀ । ମାଜହି ଖାଇ ମୀନ ଜନୁ ମାପୀ ॥୨॥

---

ଧର୍ମ ଧୁରନ୍ଧର ପ୍ରଭୁ ଧର୍ମ ଗତି ଜାଣି । ଭାଷିଲେ ମାତାଙ୍କ ଆଗେ ଅତି ମୃଦୁ ବାଣୀ ॥
ପିତା ଦେଇଛନ୍ତି ମୋତେ କାନନର ରାଜ୍ୟ । ଯହିଁ ସମସ୍ତ ପ୍ରକାରେ ମୋର ବଡ଼ କାର୍ଯ୍ୟ ॥୩॥
ଆଦେଶ ଦିଅ ଜନନୀ, ପ୍ରମୋଦିତ ମନେ । ମଙ୍ଗଳ ହେଉ ଯେସନେ କାନନ ଗମନେ ॥
ସ୍ନେହବଶ ହୋଇ ଭୁଲି ଭୟ ନ କରିବ । ତୁମ୍ଭ ଅନୁଗ୍ରହେ ଅମ୍ବ, ଆନନ୍ଦ ହୋଇବ ॥୪॥

ବର୍ଷ ଚାରି ଦଶ ବନେ କରି ବାସ ପାଳି ପିତାଙ୍କ ବଚନ ।
ଆସି ଦରଶନ କରିବି ଚରଣ ମ୍ଳାନ ନ କରିବ ମନ ॥୫୩॥

ବଚନ ରଘୁବରଙ୍କ ମଧୁର ବିନୟ । ବାଣ ସମ ଲାଗି ବିନ୍ଧେ ଜନନୀ ହୃଦୟ ॥
ଭୟେ ଶୁଖିଗଲେ ଶୁଣି ସୁଶୀତଳ ବାଣୀ । ଯେସନେ ଜବାସ ଲଭି ବର୍ଷାଋତୁ ପାଣି ॥୧॥
କହି ନ ହୁଅଇ କଛୁ ହୃଦୟ ବିଷାଦ । ମୃଗୁଣୀ ଶୁଣିଲା କିବା କେଶରୀ ନିନାଦ ॥
ଥର ଥର କମ୍ପେ ତନୁ ନୟନ ସଜଳ । ନୂଆପାଣି ଫେଣ ଖାଇ ମୀନ ବା ବିକଳ ॥୨॥

---

ଭୁଲିଲି ନାହିଁ ॥ ୨ ॥ ଧର୍ମ-ଧୁରନ୍ଧର ଶ୍ରୀରାମଚନ୍ଦ୍ର ଧର୍ମଗତି ଜାଣି ମାତାଙ୍କୁ ଅତି କୋମଳ ବାଣୀରେ କହିଲେ—"ହେ ମାତା ! ପିତା ମୋତେ ବନ-ରାଜ୍ୟ ଦେଇଅଛନ୍ତି, ସେହିଠାରେ ମୋର ସବୁ ପ୍ରକାର ବଡ଼ କାର୍ଯ୍ୟ ସମ୍ପନ୍ନ ହୋଇପାରିବ ॥ ୩ ॥ ହେ ମାତା ! ତୁମେ ପ୍ରସନ୍ନ ମନରେ ମୋତେ ଆଦେଶ ଦିଅ, ଯାହା ଫଳରେ ମୋର ବନଯାତ୍ରା ଆନନ୍ଦ-ମଙ୍ଗଳମୟ ହେବ । ମୋର ସ୍ନେହର ଅଧୀନ ହୋଇ ଭୁଲରେ ବି ଡରନାହିଁ । ହେ ମାତା ! ତୁମର ଅନୁଗ୍ରହ ଯୋଗେ ଆନନ୍ଦ ହିଁ ହେବ ॥ ୪ ॥ ଦୋହା :—ଚଉଦ ବର୍ଷ ବନରେ ରହି ପିତାଙ୍କ ବଚନକୁ ସତ୍ୟ ପ୍ରମାଣିତ କରି ମୁଁ ପୁଣି ଫେରି ଆସିବି ଏବଂ ତୁମ ଚରଣ ଦର୍ଶନ କରିବି । ତୁମେ ମନକୁ ମଳିନ କରନାହିଁ ।" ॥ ୫୩ ॥ ଚୌପାଇ :—ରଘୁବର ଶ୍ରୀରାମଙ୍କ ବିନମ୍ର ଓ ମଧୁରବଚନ ମାତାଙ୍କ ହୃଦୟରେ ବାଣ ପରି ଲାଗିଲା ଏବଂ ତାଙ୍କୁ ଅତି କଷ୍ଟ ଦେଲା । ସେହି ଶୀତଳ ବାଣୀ ଶୁଣି କୌଶଲ୍ୟା ବର୍ଷାଋତୁରେ ପାଣି ପଡ଼ିଲେ ଅରଖ ଗଛ ଯେପରି ଶୁଖିଯାଏ, ସେହିପରି ଭୟଭୀତ ହୋଇ ଶୁଖିଗଲେ ॥ ୧ ॥

ଧରି ଧୀରଜୁ ସୁତ ବଦନୁ ନିହାରୀ । ଗଦ୍‌ଗଦ ବଚନ କହତି ମହତାରୀ ॥
ତାତ ପିତହି ତୁମ୍ହ ପ୍ରାନ ପିଆରେ । ଦେଖି ମୁଦିତ ନିତ ଚରିତ ତୁମ୍ହାରେ ॥୩॥
ରାଜୁ ଦେନ କହୁଁ ସୁଭ ଦିନ ସାଧା । କହେଉ ଜାନ ବନ କେହିଁ ଅପରାଧା ॥
ତାତ ସୁନାଓ୍ୱହୁ ମୋହି ନିଦାନୂ । କୋ ଦିନକର କୁଲ ଭୟଉ କୃସାନୂ ॥୪॥

ନିରଖି ରାମ ରୁଖ ସଚିବସୁତ କାରନୁ କହେଉ ବୁଝାଇ ।
ସୁନି ପ୍ରସଂଗୁ ରହି ମୂକ ଜିମି ଦସା ବରନି ନହିଁ ଜାଇ ॥୫୫॥

ରାଖି ନ ସକଇ ନ କହି ସକ ଜାହୂ । ଦୁହୂଁ ଭାଁତି ଉର ଦାରୁନ ଦାହୂ ॥
ଲିଖତ ସୁଧାକର ଗା ଲିଖି ରାହୂ । ବିଧି ଗତି ବାମ ସଦା ସବ କାହୂ ॥୧॥
ଧରମ ସନେହ ଉଭୟଁ ମତି ଘେରୀ । ଭଇ ଗତି ସାଁପ ଛୁଛୁଂଦରି କେରୀ ॥
ରାଖଉଁ ସୁତହି କରଉଁ ଅନୁରୋଧୂ । ଧରମୁ ଜାଇ ଅରୁ ବଂଧୁ ବିରୋଧୂ ॥୨॥

---

ଧୈର୍ଯ୍ୟ ଧରି ନିରେଖିଣ ତନୟ ବଦନ । ଭାଷିଲେ ଜନନୀ ମୁହିଁ ଗଦ୍‌ଗଦ ବଚନ ॥
ପୁତ୍ର, ତୁମେ ପ୍ରାଣପ୍ରିୟ ଅଟ ପିତାଙ୍କର । ପ୍ରମୋଦିତ ଦେଖି ନିତ୍ୟ ଚରିତ ତୁମ୍ଭର ॥୩॥
ରାଜ୍ୟ ଦେବା ପାଇଁ ଶୁଭ ଦିନ ସାଧିଥିଲେ । କେଉଁ ଅପରାଧୁ ବନ ଯିବାକୁ କହିଲେ ॥
ଶୁଣାଅ କୁମର ମୋତେ କାରଣ ସକଳ । କିଏ ଦିନକର-କୁଳେ ହୋଇଲା ଅନଳ ॥୪॥

ଜାଣି ରାମ ମନ ସଚିବ ନନ୍ଦନ କହିଲେ ବୁଝାଇ କଥା ।
ମୂକ ପରି ରାଣୀ ରହିଗଲେ ଶୁଣି ବର୍ଣ୍ଣି ନ ହୁଏ ଅବସ୍ଥା ॥୫୫॥

ରଖି ନ ପାରନ୍ତି, 'ଯାଅ' କହି ନ ପାରନ୍ତି । ଉଭୟ ପ୍ରକାରେ ହୃଦ ଦାହ ହୁଏ ଅତି ॥
ଲେଖୁ ଲେଖୁ ସୁଧାକର ରାହୁ ଲେଖି ଦେଲା । ବିଧି ଗତି ସମସ୍ତଙ୍କୁ ସଦା ବାମ ହେଲା ॥୧॥
ଧର୍ମ ସ୍ନେହ ଏ ଉଭୟେ ଘେରି ଗଲେ ମତି । ସର୍ପ ଛୁଚୁନ୍ଦରୀ ପ୍ରାୟେ ହେଲା ମନ ଗତି ॥
ରଖିବି ସୁତକୁ ଯେବେ କରି ଅନୁରୋଧ । ଧର୍ମ ଯିବ, ହେବ ପୁଣି ଭ୍ରାତାରେ ବିରୋଧ ॥୨॥

---

ତାଙ୍କ ହୃଦୟର ବିଷାଦ ଭାଷାତୀତ । ସିଂହର ଗର୍ଜନ ଶୁଣି, ହରିଣୀ ଯେପରି ବ୍ୟାକୁଳ ହୁଏ, ସେ ସେହିପରି ବ୍ୟାକୁଳ ହେଉଥା'ନ୍ତି । ନେତ୍ରରେ ଜଳ ଭରି ଆସିଲା, ଶରୀର ଥର ଥର ହୋଇ କମ୍ପିବାକୁ ଲାଗିଲା । ସତେ ଅବା ମାଛ ପ୍ରଥମ ବର୍ଷାର ଫେଣ ଖାଇ ବେହୋସ ହୋଇପଡ଼ିଲା କି' ॥ ୨ ॥ ଧୈର୍ଯ୍ୟ-ଧାରଣ-ପୂର୍ବକ ପୁତ୍ରର ମୁଖ ଦେଖି ଗଦ୍‌ଗଦ ବଚନରେ ମାତା କହିବାକୁ ଲାଗିଲେ, "ରେ ବାପ ! ତୁ ତ ପିତାଙ୍କର ପ୍ରାଣ ପରି ପ୍ରିୟ । ତୋର ଚରିତ୍ର ଦେଖି ସେ ନିତ୍ୟ ପ୍ରସନ୍ନ ହେଉଥିଲେ ॥ ୩ ॥ ତୋତେ ରାଜ୍ୟ ଦେବା ପାଇଁ ସେଇହିଁ ଶୁଭଦିନ ସ୍ଥିର କରିଥିଲେ । ପୁଣି ଏବେ କେଉଁ ଅପରାଧରୁ ବନ ଯିବାକୁ କହିଲେ ? ବାପରେ, ଏହାର କାରଣ ମୋତେ ଶୁଣା । ସୂର୍ଯ୍ୟବଂଶ ରୂପୀ ବନକୁ ଜଳାଇବା ନିମନ୍ତେ କିଏ ଅଗ୍ନି ହେଲା ? ॥ ୪ ॥ ଦୋହା :—ସେତିକିବେଳେ ଶ୍ରୀରାମଙ୍କ ମୁଖମୁଦ୍ରା ଦେଖି ମନ୍ତ୍ରୀପୁତ୍ର ସମସ୍ତ କାରଣ ବୁଝାଇ କହିଲା । ଉକ୍ତ ପ୍ରସଙ୍ଗ ଶୁଣି ସେ ମୂକପରି ରହିଗଲେ । ତାଙ୍କ ଦଶା ଅବର୍ଣ୍ଣନୀୟ ॥ ୫୫ ॥ ଚୌପାଇ :—ସେ

କହହୁଁ ଜାନ ବନ ତୌ ବଡ଼ି ହାନୀ । ସଂକଟ ସୋଚ ବିବସ ଭଇ ରାନୀ ॥
ବହୁରି ସମୁଝି ତିୟ ଧରମୁ ସୟାନୀ । ରାମୁ ଭରତୁ ଦୋଉ ସୁତ ସମ ଜାନୀ ॥୩॥
ସରଲ ସୁଭାଉ ରାମ ମହତାରୀ । ବୋଲୀ ବଚନ ଧୀର ଧରି ଭାରୀ ॥
ତାତ ଜାଉଁ ବଲି କୀହ୍ନେହୁ ନୀକା । ପିତୁ ଆୟସୁ ସବ ଧରମକ ଟୀକା ॥୪॥

ରାଜୁ ଦେନ କହି ଦୀହ୍ନ ବନୁ ମୋହି ନ ସୋ ଦୁଖ ଲେସୁ ।
ତୁହ୍ମ ବିନୁ ଭରତହି ଭୂପତିହି ପ୍ରଜହି ପ୍ରଚଂଡ କଲେସୁ ॥୫୫॥

ଜୌଁ କେବଲ ପିତୁ ଆୟସୁ ତାତା । ତୌ ଜନି ଜାହୁ ଜାନି ବଡ଼ି ମାତା ॥
ଜୌଁ ପିତୁ ମାତୁ କହେଉ ବନ ଜାନା । ତୌ କାନନ ସତ ଅବଧ ସମାନା ॥୧॥

---

କହିବି ଯିବାକୁ ବନ ତେବେ ବଡ ହାନି । ଏମନ୍ତେ ସଙ୍କଟ–ଚିନ୍ତାଗ୍ରସ୍ତ ହେଲେ ରାଣୀ ॥
ତହୁଁ ସୁଚତୁରା ହେଜି ରମଣୀ ଧରମ । ରାମ ଭରତ ଦୁହିଁଙ୍କୁ ଜାଣି ସୁତ ସମ ॥୩॥
ସରଳ ସ୍ୱଭାବ ରାମ ଜନନୀ ବିଚାରି । ଭାଷିଲେ ବଚନ ହୃଦେ ଧୈର୍ଯ୍ୟ ଧରି ଭାରି ॥
ବତ୍ସ, ନୁଛୁଯାଏ ତୁହି ଭଲ କଲୁ ଅତି । ସମସ୍ତ ଧର୍ମର ସାର ପିତା ଅନୁମତି ॥୦॥

ରାଜ୍ୟ ଦେବେ କହି ବନ ଦେଲେ, ତହିଁ ନାହିଁ ମୋର ଦୁଃଖ ଲେଶ ।
ତୋ ବିନା ଭରତଙ୍କୁ ରାଜାଙ୍କୁ ପ୍ରଜାଙ୍କୁ ହୋଇବ ପ୍ରଚଣ୍ଡ କ୍ଲେଶ ॥୫୫॥

ଯେବେ କେବଳ ପିତାଙ୍କ ଆଦେଶ ନନ୍ଦନ । ମାତା ବଡ ଜାଣି ତେବେ ନ ଯାଅ କାନନ ॥
କହନ୍ତି ଯିବାକୁ ପିତାମାତା ବନ ଯେବେ । କାନନ ଶତ ଅଯୋଧ୍ୟା ସମ ବୁଝ ତେବେ ॥୧॥

---

ରଖେଇ ପାରୁ ନ ଥା'ନ୍ତି କିମ୍ବା 'ବନକୁ ଚାଲିଯାଅ' ବୋଲି କହିପାରୁ ନ ଥା'ନ୍ତି । ଉଭୟ ପ୍ରକାରେ ହୃଦୟରେ ବଡ ସନ୍ତାପ ହେଉଥାଏ । ମନରେ ଭାବୁଥା'ନ୍ତି—ଦେଖ', ବିଧାତାଙ୍କ ଗତି ସମସ୍ତଙ୍କ ନିମନ୍ତେ ସର୍ବଦା ବାମ । ସେ ଚନ୍ଦ୍ରମା ଆଙ୍କିବାକୁ ଆରମ୍ଭ କରିଥିଲେ, ମାତ୍ର ଆଙ୍କି ହୋଇଗଲା ରାହୁ ! ॥ ୧ ॥ ଧର୍ମ ଓ ସ୍ନେହ ଉଭୟ କୌଶଲ୍ୟାଙ୍କ ବୁଦ୍ଧିକୁ ଘେରିଗଲେ । ସାପ, ଛୁଚୁନ୍ଦ୍ରା ପରି ତାଙ୍କର ଦଶା ହୋଇଗଲା । ସେ ଭାବିବାକୁ ଲାଗିଲେ—"ଯଦି ମୁଁ ଅନୁରୋଧ କରି ପୁତ୍ରକୁ ରଖି ନେଉଛି, ତେବେ ଧର୍ମ ଯାଉଛି ଓ ଭାଇମାନଙ୍କ ମଧ୍ୟରେ ବିରୋଧ ହେଉଛି ॥ ୨ ॥ ଏବଂ ଯଦି ବନ ଯିବାକୁ କହୁଛି, ତେବେ ବଡ କଷ୍ଟ ହାନି ହେଉଛି ।" ଏହି ରୂପେ ରାଣୀ ଧର୍ମ–ସଙ୍କଟରେ ପଡି ବିଶେଷ ଚିନ୍ତାକୁଳ ହୋଇ ପଡିଲେ । ତତ୍ପରେ ବୁଦ୍ଧିମତୀ କୌଶଲ୍ୟା ସ୍ତ୍ରୀ–ଧର୍ମ ବିଚାର କଲେ । ରାମ ତଥା ଭରତ ଦୁହିଁଙ୍କୁ ପୁତ୍ର ସମାନ ମନେ କରି ସରଳ–ସ୍ୱଭାବା ଶ୍ରୀରାମଙ୍କ ମାତା ଅତି ଧୈର୍ଯ୍ୟର ସହିତ ବଚନ କହିଲେ—"ହେ ବାପ ! ମୁଁ ନିଉଛୁ ଯାଉଛି । ତୁ ଭଲ କଲୁ । ପିତାଙ୍କ ଆଦେଶ–ପାଳନ ସମସ୍ତ ଧର୍ମର ଶିରୋମଣି ॥ ୩–୪ ॥ ଦୋହା :—ରାଜା ରାଜ୍ୟ ଦେବାକୁ କହି ବନ ଦେଇଦେଲେ । ସେଥିପାଇଁ ମୋର ଲେଶମାତ୍ର ଦୁଃଖ ନାହିଁ । ଦୁଃଖ କେବଳ ଏତିକି ଯେ, ତୋ ବିନା ଭରତଙ୍କୁ, ରାଜାଙ୍କୁ ଓ ପ୍ରଜାମାନଙ୍କୁ ଅତି ପ୍ରଚଣ୍ଡ କ୍ଲେଶ ହେବ ।। ୫୫ ॥ ଚୌପାଇ :—ରେ ବାପ ! ଯଦି କେବଳ ପିତାଙ୍କର

ପିତୁ ବନଦେବ ମାତୁ ବନଦେବୀ । ଖଗ ମୃଗ ଚରନ ସରୋରୁହ ସେବୀ ॥
ଅଂତହୁଁ ଉଚିତ ନୃପହି ବନବାସୂ । ବୟ ବିଲୋକି ହିୟଁ ହୋଇ ହରାଁସୂ ॥୨॥
ବଡ଼ଭାଗୀ ବନୁ ଅଵଧ ଅଭାଗୀ । ଜୋ ରଘୁବଂସତିଲକ ତୁମ୍ହ ତ୍ୟାଗୀ ॥
ଜୌଁ ସୁତ କହୌଁ ସଂଗ ମୋହି ଲେହୂ । ତୁମ୍ହରେ ହୃଦୟଁ ହୋଇ ସଂଦେହୂ ॥୩॥
ପୂତ ପରମ ପ୍ରିୟ ତୁମ୍ହ ସବହୀ କେ । ପ୍ରାନ ପ୍ରାନ କେ ଜୀବନ ଜୀ କେ ॥
ତେ ତୁମ୍ହ କହହୁ ମାତୁ ବନ ଜାଊଁ । ମୈଁ ସୁନି ବଚନ ବୈଠି ପଛିତାଊଁ ॥୪॥

ୟହ ବିଚାରି ନହିଁ କରଉଁ ହଠ ଝୂଠ ସନେହୁ ବଢ଼ାଇ ।
ମାନି ମାତୁ କର ନାତ ବଲି ସୁରତି ବିସରି ଜନି ଜାଇ ॥୫୬॥

ଦେବ ପିତର ସବ ତୁମ୍ହହି ଗୋସାଈଁ । ରାଖହୁଁ ପଲକ ନୟନ କୀ ନାଈଁ ॥
ଅଵଧି ଅଂବୁ ପ୍ରିୟ ପରିଜନ ମୀନା । ତୁମ୍ହ କରୁନାକର ଧରମ ଧୁରୀନା ॥୧॥

---

ପିତା ବନଦେବ ତୁମ ମାତା ବନଦେବୀ । ଖଗ ମୃଗ ହେବେ ପଦ-ସରୋରୁହ-ସେବୀ ॥
ଉଚିତ ନୃପଙ୍କୁ ଅନ୍ତକାଳେ ବନବାସ । ବୟସ ବିଲୋକି ହୁଏ ହୃଦୟ ହତାଶ ॥୨॥
ବଡ ଭାଗ୍ୟବାନ ବନ, ଅଯୋଧ୍ୟା ଅଭାଗ୍ୟ । ଯେଣୁ ରଘୁବଂଶ-ମଣି ତୁମେ ପରିତ୍ୟାଗ ॥
ସଙ୍ଗେ ମୋତେ ନିଅ ସୁତ କହିବି ମୁଁ ଯେବେ । ସନ୍ଦେହ ହୋଇବ ତୁମ୍ଭ ମନ ମଧ୍ୟେ ତେବେ ॥୩॥
ତୁମ୍ଭେ ସମସ୍ତଙ୍କ ପ୍ରିୟ ପରମ କୁମର । ପ୍ରାଣର ପ୍ରାଣ ଜୀବର ଜୀବନ ଆବର ॥
ସେ ତୁମେ କହୁଛ, ମାତା, ବନକୁ ଯାଉଛୁ । ବଚନ ଶୁଣି ମୁଁ ବସି ସନ୍ତାପ କରୁଛୁ ॥୪॥

ବିଚାରି ଏମନ୍ତ ନ କରଇ ହଠ ମିଥ୍ୟା ସ୍ନେହ ବଢାଇଣ ।
ନୁହଯାଏ ପୁତ୍ର, ନ ଯିବୁ ପାଶୋରି ମାତା ସମ୍ବନ୍ଧ ମାନିଣ ॥୫୬॥

ଦେବତା ପିତୃ ସମସ୍ତେ ଜନସ୍ତୁ ତୁମ୍ଭଙ୍କୁ । ରଖନ୍ତୁ ଯଥା ପଲକ ରଖେ ନୟନକୁ ॥
ଅବଧି ସଲିଳ ପ୍ରିୟ ପରିବାର ମୀନ । କରୁଣା-ସାଗର ତୁମେ ଧରମ-ଧୁରୀଣ ॥୧॥

---

ଆଜ୍ଞା ହୋଇଥାଏ, ତେବେ ମାତାଙ୍କୁ ପିତାଙ୍କଠାରୁ ବଡ ବୋଲି ମନେ କରି ବନକୁ ଯାଅନାହିଁ । କିନ୍ତୁ ଯଦି ପିତାମାତା ଉଭୟ ବନ ଯିବାକୁ କହିଅଛନ୍ତି, ତେବେ ବନ ତୋ ନିମନ୍ତେ ଶହ ଶହ ଅଯୋଧ୍ୟା ପରି ॥ ୧ ॥ ବନ-ଦେବତାମାନେ ତୋର ପିତା ହେବେ ଏବଂ ବନଦେବୀମାନେ ମାତା ହେବେ । ସେଠିକାର ପଶୁ-ପକ୍ଷୀମାନେ ତୋର ଚରଣ-କମଳରେ ସେବକ ହେବେ । ରାଜା ନିମନ୍ତେ ପରିଶେଷରେ ବନବାସ କରିବା ହିଁ ଉଚିତ । କେବଳ ତୋର ସୁକୁମାର ଅବସ୍ଥା ଦେଖି ହୃଦୟରେ ଦୁଃଖ ହେଉଛି । ହେ ରଘୁବଂଶ-ତିଳକ ! ବନ ବଡ ଭାଗ୍ୟବାନ୍ ଏବଂ ତୋତେ ତ୍ୟାଗ କରି ଅଯୋଧ୍ୟାନଗରୀ ବଡ ଅଭାଗିନୀ । ହେ ପୁତ୍ର ! ମୋତେ ମଧ୍ୟ ସାଙ୍ଗରେ ନେଇ ଚାଲ ବୋଲି ଯଦି ମୁଁ କହେ, ତେବେ ତୋ ହୃଦୟରେ ସନ୍ଦେହ ହେବ ଯେ, ମାତା ଏହି ବାହାନାରେ ତୋତେ ଅଟକାଇବାକୁ ଚାହୁଁଛନ୍ତି ॥ ୩ ॥ ହେ ପୁତ୍ର ! ତୁ ସମସ୍ତଙ୍କର ପରମ ପ୍ରିୟ, ପ୍ରାଣର ପ୍ରାଣ ଏବଂ ହୃଦୟର ଜୀବନ । ତୁ ସେହି ପ୍ରାଣାଧାର ବନକୁ ଯିବୁ ବୋଲି କହୁଛୁ

ଅସ ବିଚାରି ସୋଇ କରହୁ ଉପାଈ । ସବହି ଜିଅତ ଜେହିଁ ଭେଁଟହୁ ଆଈ ॥
ଜାହୁ ସୁଖେନ ବନହିଁ ବଲି ଜାଊଁ । କରି ଅନାଥ ଜନ ପରିଜନ ଗାଊଁ ॥୨॥
ସବ କର ଆଜୁ ସୁକୃତ ଫଲ ବୀତା । ଭୟଉ କରାଲ କାଲୁ ବିପରୀତା ॥
ବହୁବିଧି ବିଲପି ଚରନ ଲପଟାନୀ । ପରମ ଅଭାଗିନି ଆପୁହି ଜାନୀ ॥୩॥
ଦାରୁନ ଦୁସହ ଦାହୁ ଉର ବ୍ୟାପା । ବରନି ନ ଜାହିଁ ବିଲାପ କଲାପା ॥
ରାମ ଉଠାଇ ମାତୁ ଉର ଲାଈ । କହି ମୃଦୁ ବଚନ ବହୁରି ସମୁଝାଈ ॥୪॥

ସମାଚାର ତେହି ସମୟ ସୁନି ସୀୟ ଉଠୀ ଅକୁଲାଇ ।
ଜାଇ ସାସୁ ପଦ କମଲ ଜୁଗ ବଂଦି ବୈଠି ସିରୁ ନାଇ ॥୫୭॥

---

ଏହା ବିଚାରିଣ ସେହି ଉପାୟ କରିବ । ଜୀଇ ଥାଉଁ ସବେ ଯେପରି ବାହୁଡି ଭେଟିବ ॥
ଯାଅ ସୁଖେ ବନ, ନୁହଁଯାଏ ବଳି ରାମ । ଅନାଥ କରିଣ ପ୍ରଜା ପରିଜନ ଗ୍ରାମ ॥୨॥
ଆଜି ଶେଷ ହେଲା ସମସ୍ତଙ୍କ ପୁଣ୍ୟଫଳ । ବିପରୀତ ହେଲା କାଳ କରାଳ ପ୍ରବଳ ॥
ନାନାମତେ ବିଳପନ୍ତି ପାଦେ ଲୋଟି ରାଣୀ । ପରମ ହତଭାଗିନୀ ଆପଣାକୁ ଜାଣି ॥୩॥
ବ୍ୟାପିଲା ହୃଦେ ଦୁଃସହ ଦାହ ନିଦାରୁଣ । ବର୍ଣ୍ଣିନ ହୋଇ ନ ପାରେ କ୍ରନ୍ଦନ କରୁଣ ॥
ରାମ ଉଠାଇ ମାତାଙ୍କୁ ହୃଦେ ଲଗାଇଲେ । କହି ମଧୁର ବଚନ ପୁଣି ବୁଝାଇଲେ ॥୪॥

ସେହି ସମୟରେ ସମାଚାର ଶୁଣି ସୀତା ଆକୁଳେ ଉଠିଲେ ।
ଯାଇଣ ଶାଶୁଙ୍କ ପାଦ-ପଦ୍ମ ବନ୍ଦି ଶିର ନୁଆଇଁ ବସିଲେ ॥୫୭॥

---

ଏବଂ ମୁଁ ତୋ ବଚନକୁ ଶୁଣି ବସି ପଶ୍ଚାତ୍ତାପ କରୁଛୁ ! ॥ ୪ ॥ ଦୋହା :—ଏହା ଚିନ୍ତା କରି ମିଥ୍ୟା ସ୍ନେହ ବଢାଇ ମୁଁ ଜିଦ କରୁନାହିଁ । ପୁଅ, ମୁଁ ନଉଛୁ ଯାଉଛୁ, ମାତାଙ୍କ ସମ୍ବନ୍ଧ ମାନି ତୁ ମୋର ସ୍ମୃତି ଭୁଲିଯାଆନାହିଁ ॥ ୫୬ ॥ ଚୌପାଇ :— ହେ ଗୋସାଇଁ ' ସମସ୍ତ ଦେବତା ଓ ପିତୃପୁରୁଷ ପଲକ ତୋଳାକୁ ରକ୍ଷା କଲାପରି ତୋତେ ରକ୍ଷା କରନ୍ତୁ । ତୋର ବନବାସର ଚଉଦ ବର୍ଷର ଅବଧି ଜଳ, ପ୍ରିୟଜନ ଏବଂ ଆତ୍ମୀୟ କୁଟୁମ୍ବୀ ଓ ସ୍ୱଜନମାନେ ମୀନ । ତୁ କରୁଣାକର ଓ ଧର୍ମଧୁରନ୍ଧର ॥ ୧ ॥ ଏପରି ବିଚାର କରି ଏହି ଉପାୟ କରିବୁ, ଯେପରି କି ସମସ୍ତଙ୍କ ଜୀଇ ଥାଉ ଥାଉ ତୁ ଆସି ସେମାନଙ୍କ ସହିତ ମିଳନ କରିବୁ । ମୁଁ ନଉଛି ଯାଉଛି । ତୁ ସେବକ, ଆତ୍ମୀୟ-ସ୍ୱଜନ ଓ ପୁରବାସୀମାନଙ୍କୁ ଅନାଥ କରି ସୁଖରେ ବନକୁ ଯାଅ ॥ ୨ ॥ ଆଜି ସମସ୍ତଙ୍କ ପୁଣ୍ୟର ଫଳ ସରିଗଲା । ଭୟଙ୍କର କାଳ ଆମ୍ଭମାନଙ୍କର ବିପରୀତ ହୋଇଗଲା । ଏହି ରୂପେ ବହୁତ ବିଳାପ କରି ଏବଂ ନିଜକୁ ପରମଅଭାଗିନୀ ବୋଲି ଜାଣି ମାତା ଶ୍ରୀରାମଙ୍କ ଚରଣରେ ଲୋଟିଗଲେ ॥ ୩ ॥ ହୃଦୟରେ ଦାରୁଣ ଦୁଃସହ ସନ୍ତାପ ବ୍ୟାପିଗଲା । ଏହି ସମୟର ବହୁବିଧ ବିଳାପ ବର୍ଣ୍ଣନାତୀତ । ଶ୍ରୀରାମ ମାତାଙ୍କୁ ଉଠାଇ ବକ୍ଷରେ ଲଗାଇ ନେଲେ ଏବଂ ପୁଣି କୋମଳ ବଚନ କହି ତାଙ୍କୁ ବୁଝାଇଲେ । ॥ ୪ ॥ ଦୋହା :—ସେହି ସମୟରେ ସମାଚାର ଶୁଣି ସୀତା ବ୍ୟାକୁଳ ହୋଇ ଉଠିଲେ ଏବଂ

ଦୀନ୍ହି ଅସୀସ ସାସୁ ମୃଦୁ ବାନୀ । ଅତି ସୁକୁମାରି ଦେଖି ଅକୁଲାନୀ ॥
ବୈଠି ନମିତମୁଖ ସୋଚତି ସୀତା । ରୂପ ରାସି ପତି ପ୍ରେମ ପୁନୀତା ॥୧॥
ଚଲନ ଚହତ ବନ ଜୀବନ ନାଥୂ । କେହି ସୁକୃତୀ ସନ ହୋଇହି ସାଥୂ ॥
କୀ ତନୁ ପ୍ରାନ କି କେବଲ ପ୍ରାନା । ବିଧି କରତବୁ କଛୁ ଜାଇ ନ ଜାନା ॥୨॥
ଚାରୁ ଚରନ ନଖ ଲେଖତି ଧରନୀ । ନୂପୁର ମୁଖର ମଧୁର କବି ବରନୀ ॥
ମନହୁଁ ପ୍ରେମ ବସ ବିନତୀ କରହୀଁ । ହମହି ସୀୟ ପଦ ଜନି ପରିହରହୀଁ ॥୩॥
ମଂଜୁ ବିଲୋଚନ ମୋଚତି ବାରୀ । ବୋଲୀ ଦେଖି ରାମ ମହତାରୀ ॥
ତାତ ସୁନହୁ ସିୟ ଅତି ସୁକୁମାରୀ । ସାସ ସସୁର ପରିଜନହି ପିଆରୀ ॥୪॥
ପିତା ଜନକ ଭୂପାଲ ମନି ସସୁର ଭାନୁକୁଲ ଭାନୁ ।
ପତି ରବିକୁଲ କୈରବ ବିପିନ ବିଧୁ ଗୁନ ରୂପ ନିଧାନୁ ॥୫୮॥

---

ଦେଲେ ସୁଆଶିଷ ଶାଶୁ ଭାଷି ମୃଦୁବାଣୀ । ଆକୁଳ ହୋଇଲେ ଅତି ସୁକୁମାରୀ ଜାଣି ॥
ବସିଣ ଅଧୋବଦନେ କରୁଥା'ନ୍ତି ଚିନ୍ତା । ରୂପରାଶି ପତିପ୍ରେମା ସୁପବିତା ସୀତା ॥୧॥
ବନେ ଯିବାକୁ ଚାହାନ୍ତି ଜୀବନ ଈଶ୍ୱର । କେଉଁ ସୁକୃତୀ ହୋଇବ ସଙ୍ଗୀ ତାହାଙ୍କର ॥
କି ତନୁ ପ୍ରାଣ ଅଥବା ପରାଣ କେବଳ । ଜଣା ନ ଯାଏ ବିଧାତା କର୍ତ୍ତବ୍ୟ କୌଶଳ ॥୨॥
ରୁଚିର ଚରଣ ନଖେ ମହୀରେ ଲେଖନ୍ତି । ନୂପୁର କଳ ଧ୍ୱନିକୁ କବି ବଖାଣନ୍ତି ॥
ମନେ ହୁଏ ପ୍ରେମବଶ ବିନୟ କରନ୍ତି । ଆମ୍ଭଙ୍କୁ ଯେମନ୍ତେ ସୀତା ପଦ ନ ତେଜନ୍ତି ॥୩॥
ମଞ୍ଜୁ ନୟନୁ ବୁହାନ୍ତି ନୀର ସୁନୟନୀ । ନିରେଖି ଭାଷିଲେ ରାମଚନ୍ଦ୍ରଙ୍କ ଜନନୀ ॥
ଶୁଣ ସୁତ, ଅତି ସୁକୁମାରୀ ବଇଦେହୀ । ଶାଶୁ ଶ୍ୱଶୁର ସୁହୃଦ ବାନ୍ଧବଙ୍କ ସ୍ନେହୀ ॥୪॥
ଜନକ ଜନକ ମହୀପ ନାୟକ ଶ୍ୱଶୁର ଅର୍କ-କୁଳାର୍କ ।
ପତି ରୂପ ଗୁଣ-ସାଗର ଅରୁଣ-କୁଳ-କୁମୁଦ ଶଶାଙ୍କ ॥୫୮॥

---

ଶାଶୁଙ୍କ ନିକଟକୁ ଯାଇ ତାଙ୍କର ଦୁଇ ଚରଣକମଳ ବନ୍ଦନାପୂର୍ବକ ମୁଣ୍ଡ ନୁଆଁଇ ବସିଲେ ॥ ୫୭ ॥ ଚୌପାଇ :—ଶାଶୁ କୋମଳ ବାଣୀରେ ଆଶୀର୍ବାଦ ଦେଲେ । ସେ ସୀତାଙ୍କୁ ଅତି ସୁକୁମାରୀ ଦେଖି ବ୍ୟାକୁଳ ହୋଇ ଉଠିଲେ । ରୂପରାଶି ଓ ପ୍ରତିପ୍ରେମ-ପୁନୀତା ସୀତା ମୁଖ ଅବନତ କରି ବସି ଚିନ୍ତା କରୁଥା'ନ୍ତି ॥ ୧ ॥ ଜୀବନନାଥ ବନକୁ ଯିବାକୁ ଇଚ୍ଛା କରନ୍ତି । ଦେଖେ ଦେଖି, କେଉଁ ପୁଣ୍ୟବନ୍ତ ତାଙ୍କର ସଙ୍ଗୀ ହେବ—ଶରୀର ଓ ପ୍ରାଣ ଉଭୟ ତାଙ୍କ ସହିତ ଯିବେ କିମ୍ବା କେବଳ ପ୍ରାଣ ? ବିଧାତାଙ୍କର କୃତିତ୍ୱ କିଛି ଜାଣି ହୁଏନାହିଁ । ସୀତା ତାଙ୍କ ସୁନ୍ଦର ଚରଣ-ନଖରେ ଧରଣୀ ଉପରେ କଣ ଲେଖୁଥା'ନ୍ତି । ଏପରି କଲାବେଳେ ନୂପୁର ଦୁଇଟିରୁ ଅତି ମଧୁର ଧ୍ୱନି ବାହାରୁଥାଏ । କବି ତାହା ଶୁଣି, ବର୍ଣ୍ଣନା କରନ୍ତି—ସତେ ଯେପରି ସୀତାଙ୍କ । ଚରଣ କେବେହେଲେ ଆମକୁ ତ୍ୟାଗ ନ କରୁ ବୋଲି ପ୍ରେମବଶ ହୋଇ ନୂପୁର ଦୁହେଁ ସୀତାଙ୍କୁ ବିନତି କରୁଅଛନ୍ତି ॥ ୩ ॥ ସୀତାଙ୍କ ସୁନ୍ଦର ନୟନରୁ ଅଶ୍ରୁଜଳ । ବୋହୁ

ମୈଁ ପୁନି ପୁତ୍ରବଧୂ ପ୍ରିୟ ପାଈ । ରୂପ ରାସି ଗୁନ ସୀଲ ସୁହାଈ ॥
ନୟନ ପୁତରି କରି ପ୍ରୀତି ବଢ଼ାଈ । ରାଖେଉଁ ପ୍ରାନ ଜାନକିହିଁ ଲାଈ ॥୧॥
କଲପବେଲି ଜିମି ବହୁବିଧି ଲାଲୀ । ସୀଁଚି ସନେହ ସଲିଲ ପ୍ରତିପାଲୀ ॥
ଫୂଲତ ଫଲତ ଭୟଉ ବିଧି ବାମା । ଜାନି ନ ଜାଇ କାହ ପରିନାମା ॥୨॥
ପଲଁଗ ପୀଠ ତଜି ଗୋଦ ହିଁଡୋରା । ସିୟଁ ନ ଦୀହ୍ନ ପଗୁ ଅବନି କଠୋରା ॥
ଜିଅନମୂରି ଜିମି ଜୋଗୱତ ରହଉଁ । ଦୀପ ବାତି ନହିଁ ଟାରନ କହଉଁ ॥୩॥
ସୋଇ ସିୟ ଚଲନ ଚହତି ବନ ସାଥା । ଆୟସୁ କାହ ହୋଇ ରଘୁନାଥା ॥
ଚଂଦ କିରନ ରସ ରସିକ ଚକୋରୀ । ରବି ରୁଖ ନୟନ ସକଇ କିମି ଜୋରୀ ॥୪॥

---

ମୁଁ ପୁଣି ପାଇଛି ପୁତ୍ର-ବଧୂ ପ୍ରିୟ ଅତି । ରୂପ-ରାଶି ରମଣୀୟ ଗୁଣ-ଶୀଳବତୀ ॥
ନୟନ-ପିତୁଳା କରି ପ୍ରୀତି ବଢାଇଣ । ରଖିଥିଲି ଜାନକୀଙ୍କୁ ପ୍ରାଣ ଲଗାଇଣ ॥୧॥
କଳ୍ପଲତା ପରି ବହୁ ଯତନରେ ଲାଳି । ସିଞ୍ଚିଣ ସ୍ନେହ-ସଲିଳ ଥିଲି ପ୍ରତିପାଳି ॥
ଫୁଟିବା ଫଳିବା କାଳେ ବିଧି ହେଲା ବାମ । ଜଣା ନ ଯାଏ କି ହେବ ଏହା ପରିଣାମ ॥୨॥
ପଲଙ୍କ ଖଟୁଲି ଦୋଳି କୋଳ ତେଜି କାହିଁ । କଠୋର ଭୂମିରେ ସୀତା ପାଦ ଦେଇନାହିଁ ॥
ଜୀବନ ମୂଳି ପ୍ରାୟେ ମୁଁ ଜଗି ରହୁଥିଲି । ଦୀପ ଲିଭାଇବା ପାଇଁ କେବେ ନ କହୁଲି ॥୩॥
ସେ ସୀତା ସଙ୍ଗେ ବିପିନ ଯିବାକୁ ଚାହୁଁଛି । କି ଆଦେଶ ରଘୁନାଥ ତା ଲାଗି ହେଉଛି ॥
କୌମୁଦୀ ରସ-ରସିକା ଚକୋରୀ କେସନ । ରବି ସମ୍ମୁଖରେ ଯୋଡି ପାରିବ ଲୋଚନ ॥୪॥

---

ଯାଉଥାଏ । ତାଙ୍କର ଏ ଦଶା ଦେଖି ଶ୍ରୀରାମଙ୍କ ମାତା କୌଶଲ୍ୟା କହିଲେ—"ବାପ, ଶୁଣ ! ସୀତା ଅତି ସୁକୁମାରୀ ଏବଂ ସେ ଶାଶୁ, ଶ୍ୱଶୁର ଓ ଆତ୍ମୀୟସ୍ୱଜନଙ୍କ ଅତି ପ୍ରିୟ ॥୪॥ ଦୋହା :—ଏହାର ପିତା ଜନକ ନୃପ-ଶିରୋମଣି, ଶ୍ୱଶୁର ସୂର୍ଯ୍ୟକୁଳର ସୂର୍ଯ୍ୟ ଏବଂ ପତି ରବିକୁଳ-କୁମୁଦବନର ବିକାଶକାରୀ ଚନ୍ଦ୍ରମା ତଥା ଗୁଣ ଓ ରୂପର ଭଣ୍ଡାର ॥୫୮॥ ଚୌପାଈ :—ମୁଁ ପୁଣି ରୂପରାଶି ଓ ସୁନ୍ଦର-ଗୁଣ-ଚରିତ୍ରବତୀ ପ୍ରିୟା ପୁତ୍ରବଧୂ ଲାଭ କରିଅଛି । ମୁଁ ଏହି ଜାନକୀଙ୍କୁ ନୟନର ପିତୁଳୀ କରି ଏହାପ୍ରତି ପ୍ରେମ ବଢାଇ ଅଛି ଏବଂ ନିଜର ପ୍ରାଣ ଏହାଠାରେ ଲଗାଇ ରଖିଅଛି ॥୧॥ କଳ୍ପଲତା ସଦୃଶ ସୀତାଙ୍କୁ ମୁଁ ଅତି ଆଦର-ଗେଲବସରରେ ସ୍ନେହ-ଜଳ ସେଚନ କରି ଲାଳନ-ପାଳନ କରିଛି । ବର୍ତ୍ତମାନ ଏହି ଲତା ଫୁଟିବା ଓ ଫଳିବା ସମୟରେ ବିଧାତା ବାମ ହୋଇଗଲେ । ଏହାର ପରିଣାମ କଣ ହେବ, କିଛି ଜଣାଯାଉନାହିଁ ॥୨॥ ସୀତା ପଲଙ୍କର କୋଳ ଓ ହିନ୍ଦୋଳାକୁ ଛାଡି କର୍କଶ ଭୂମି ଉପରେ କେବେ ହେଲେ ପାଦ ପକାଇ ନାହିଁ । ମୁଁ ସଦାସର୍ବଦା ସଞ୍ଜୀବନୀ ମୂଳୀ ପରି ସାବଧାନତା ସହକାରେ ଏହାର ରକ୍ଷଣାବେକ୍ଷଣ କରି ଆସିଛି । ଦୀପବତୀ ତେଜିବାକୁ ବା ଟାଳିବାକୁ କେବେ ହେଲେ କହେନାହିଁ ॥୩॥ ସେହି ସୀତା ବର୍ତ୍ତମାନ ତୋ ସହିତ ବନକୁ ଯିବାକୁ ଆଗ୍ରହ ପ୍ରକାଶ କରୁଛି । ହେ ରଘୁନାଥ ! ତାକୁ କି ଆଦେଶ ଦେଉଛୁ ? ଚନ୍ଦ୍ରକିରଣ-ରସାମୃତ

କରି କେହରି ନିସିଚର ଚରହିଁ ଦୁଷ୍ଟ ଜଂତୁ ବନ ଭୂରି ।
ବିଷ ବାଟିକାଁ କି ସୋହ ସୁତ ସୁଭଗ ସଜୀବନି ମୂରି ॥୫୯॥

ବନ ହିତ କୋଲ କିରାତ କିସୋରୀ । ରଚୀଁ ବିରଂଚି ବିଷୟ ସୁଖ ଭୋରୀ ॥
ପାହନ କୃମି ଜିମି କଠିନ ସୁଭାଊ । ତିନ୍ହହି କଲେସୁ ନ କାନନ କାଊ ॥୧॥
କୈ ତାପସ ତିୟ କାନନ ଜୋଗୂ । ଜିନ୍ହ ତପ ହେତୁ ତଜା ସବ ଭୋଗୂ ॥
ସିୟ ବନ ବସିହି ତାତ କେହି ଭାଁତୀ । ଚିତ୍ରଲିଖିତ କପି ଦେଖି ଡେରାତୀ ॥୨॥
ସୁରସର ସୁଭଗ ବନଜ ବନ ଚାରୀ । ଡାବର ଜୋଗୁ କି ହଂସକୁମାରୀ ॥
ଅସ ବିଚାରି ଜସ ଆୟସୁ ହୋଈ । ମୈଁ ସିଖ ଦେଉଁ ଜାନକିହି ସୋଈ ॥୩॥
ଜୌଁ ସିୟ ଭବନ ରହୈ କହ ଅଂବା । ମୋହି କହଁ ହୋଇ ବହୁତ ଅବଲଂବା ॥
ସୁନି ରଘୁବୀର ମାତୁ ପ୍ରିୟ ବାନୀ । ସୀଲ ସନେହ ସୁଧାଁ ଜନୁ ସାନୀ ॥୪॥

---

ଭ୍ରମନ୍ତି ଦାନବ ବହୁ ଦୁଷ୍ଟଜୀବ କରୀ ହରି ଅରଣ୍ୟରେ ।
ସଞ୍ଜୀବନୀ ମୂଳ ଶୋଭେ କି କୁମର, ବିଷ ଉଦ୍ୟାନ ମଧ୍ୟରେ ॥୫୯॥

କିରାତ କୋହ୍ଲ କନ୍ୟାଙ୍କୁ ବିଧି ବନ ପାଇଁ । ସୃଷ୍ଟି କରିଛି ବିଷୟ ସୁଖରୁ ଭୁଲାଇ ॥
ପାଷାଣ କୀଟ ସଦୃଶ ସ୍ୱଭାବ କଠିନ । ତାହାଙ୍କୁ କେବେହେଁ କଷ୍ଟ ନ ଲାଗେ ବିପିନ ॥୧॥
କିମ୍ବା ମୁନିଋଷି ନାରୀ କାନନର ଯୋଗ୍ୟ । ତପ ହେତୁ ତେଜିଛନ୍ତି ସେ ସକଳ ଭୋଗ୍ୟ ॥
ପୁତ୍ର, ସୀତା ବନବାସ କରିବ କେସନେ । ଡରଇ ଚିତ୍ର-ଲିଖିତ କପି ଦରଶନେ ॥୨॥
ସ୍ୱଚ୍ଛ ସୁର-ସରୋବର ପଦ୍ମ-ବନଚାରୀ । ଗାଡ଼ିଆ ଯୋଗ୍ୟ ଅଟେ କି ମରାଳ-କୁମାରୀ ॥
ଏହା ବିଚାରି ଆଦେଶ ହୋଇବ ଯେମନ୍ତେ । ଜାନକୀଙ୍କୁ ଉପଦେଶ ଦେବି ମୁଁ ତେମନ୍ତେ ॥୩॥
ଭାଷେ ଅମ୍ବା, ସୀତା ଯେବେ ଭବନେ ରହିବ । ମୋ ପାଇଁ ବହୁତ ଅବଲମ୍ବନ ହୋଇବ ॥
ଶୁଣି ରଘୁବୀର ପ୍ରିୟ ମାତାଙ୍କ ବଚନ । କି ଅବା ସ୍ନେହ-ସୌହାର୍ଦ୍ଦ-ସୁଧା-ବିଲେପନ ॥୪॥

---

ପାନରେ ଲୋଲୁପ ଚକୋରୀ ସୂର୍ଯ୍ୟଙ୍କ ଆଡ଼କୁ ଆଖି କିପରି ମିଳାଇ ପାରେ ? ॥ ୪ ॥ ଦୋହା .—ହାତୀ, ସିଂହ, ରାକ୍ଷସ ଆଦି ଅନେକ ଦୁଷ୍ଟ ଜୀବଜନ୍ତୁ ବନରେ ବିଚରଣ କରନ୍ତି । ହେ ପୁତ୍ର ! ବିଷ-ବାଟିକାରେ ସୁନ୍ଦର ସଞ୍ଜୀବନୀ ମୂଳୀ ଏବେ ଶୋଭା ପାଇ ପାରେ କି ? ॥ ୫୯ ॥ ଚୌପାଇ .—ବିଧାତା ବିଷୟ-ସୁଖାନଭିଜ୍ଞ କୋହ୍ଲ ଓ କିରାତ ବାଳିକାମାନଙ୍କୁ ବନବାସ ନିମନ୍ତେ ଯୋଗ୍ୟ କରି ଗଢ଼ିଛନ୍ତି । ପଥର-କୀଟର ସ୍ୱଭାବ ପରି ସେମାନଙ୍କର କଠୋର ସ୍ୱଭାବ । ବନରେ ସେମାନଙ୍କର କଦାପି କ୍ଳେଶ ହୁଏନାହିଁ ॥ ୧ ॥ ଅଥବା ତପସ୍ୱୀଙ୍କ ସ୍ତ୍ରୀମାନେ ବନରେ ବାସ କରିବା ଯୋଗ୍ୟ । କାରଣ, ତପସ୍ୟା ନିମନ୍ତେ ସେମାନେ ସମସ୍ତ ଭୋଗ ତ୍ୟାଗ କରିଅଛନ୍ତି । ହେ ପୁତ୍ର ! ଚିତ୍ରବାନରକୁ ଦେଖି ଯେଉଁ ସୀତା ଡରିଯାଏ, ସେ ବନରେ କିପରି ରହି ପାରିବ ? ॥ ୨ ॥ ସୁର-ସରୋବରର କମଳବନରେ ବିଚରଣ କରୁଥିବା ହଂସୀ ଗାଡ଼ିଆରେ ରହିବା ଯୋଗ କି ? ଏହିରୂପେ ବିଚାର କରି ତୁ ଯେପରି ଆଜ୍ଞା ଦେବୁ, ମୁଁ ଜାନକୀଙ୍କୁ ସେହିପରି ଶିକ୍ଷା

କହି ପ୍ରିୟ ବଚନ ବିବେକମୟ କୀହ୍ନି ମାତୁ ପରିତୋଷ ।
ଲଗେ ପ୍ରବୋଧନ ଜାନକିହି ପ୍ରଗଟି ବିପିନ ଗୁନ ଦୋଷ ॥୬୦॥

## ମାସପାରାୟଣ, ଚତୁର୍ଦ୍ଦଶ ବିଶ୍ରାମ

ମାତୁ ସମୀପ କହତ ସକୁଚାହୀଁ । ବୋଲେ ସମଉ ସମୁଝି ମନ ମାହୀଁ ॥
ରାଜକୁମାରି ସିଖାଓନ ସୁନହୂ । ଆନ ଭାଁତି ଜିୟଁ ଜନି କଛୁ ଗୁନହୂ ॥୧॥
ଆପନ ମୋର ନୀକ ଜୌଁ ଚହହୂ । ବଚନୁ ହମାର ମାନି ଗୃହ ରହହୂ ॥
ଆୟସୁ ମୋର ସାସୁ ସେବକାଈ । ସବ ବିଧି ଭାମିନି ଭବନ ଭଲାଈ ॥୨॥
ଏହି ତେ ଅଧିକ ଧରମୁ ନହିଁ ଦୂଜା । ସାଦର ସାସୁ ସସୁର ପଦ ପୂଜା ॥
ଜବ ଜବ ମାତୁ କରିହି ସୁଧି ମୋରି । ହୋଇହି ପ୍ରେମ ବିକଲ ମତି ଭୋରି ॥୩॥

---

ଋଷି ସୁବିବେକ-ମୟ ପ୍ରିୟ କଥା କରି ଜନନୀଙ୍କୁ ତୋଷ ।
ଲାଗିଲେ ବୁଝାଇ ଜାନକୀଙ୍କୁ କହି ବିପିନର ଗୁଣ ଦୋଷ ॥୬୦॥
ସଙ୍କୋଚ ଲାଗେ କହନ୍ତେ ମାତାଙ୍କ ଆଗରେ । ବୋଇଲେ ତହୁଁ ସମୟ ବିଚାରି ମନରେ ॥
ରାଜକୁମାରି, ସାଦରେ ଉପଦେଶ ଶୁଣ । କୌଣସି ଅନ୍ୟ ଭାବନା ହୃଦୟେ ନ ଗୁଣ ॥୧॥
ତୁମ୍ଭେ ଆପଣା ର ମୋର ହିତ ଚାହଁ ଯେବେ । ବଚନ ମାନି ଆମର ଗୃହେ ରହ ତେବେ ॥
ଆଦେଶ ମୋହର ସେବା କର ଶାଶୁଙ୍କର । ସମସ୍ତ ପ୍ରକାରେ ପ୍ରିୟେ, ଗୃହ ଶ୍ରେୟସ୍କର ॥୨॥
ଶାଶୁ ଶ୍ୱଶୁରଙ୍କ ପଦ ବନ୍ଦନ ସାଦରେ । ଏହାଠାରୁ ବଳି ଧର୍ମ ନାହିଁ ଜଗତରେ ॥
ଯେବେ ଯେବେ ମାତା ମୋତେ ମନେକରି ଅତି । ପ୍ରେମ ବିକଳେ ହୋଇବେ ବିହ୍ୱଳିତମତି ॥୩॥

---

ହେବ ॥୩॥ ମାତା କହୁଥାନ୍ତି—"ଯଦି ସୀତା ଘରେ ରହନ୍ତା, ମୋତେ ବହୁତ ସାହାଯ୍ୟ ହୁଅନ୍ତା ।" ଶ୍ରୀରାମଚନ୍ଦ୍ର ମାତାଙ୍କର ପ୍ରିୟ ବଚନ ଶୁଣି ତାହାଙ୍କୁ ଶୀଳ ଓ ସ୍ନେହରୂପୀ ଅମୃତରେ ସିକ୍ତ କଥା କହିଲେ ॥ ୪ ॥ ଦୋହା :—ବିବେକମୟ ପ୍ରିୟ ବଚନ କହି ସେ ମାତାଙ୍କୁ ସନ୍ତୁଷ୍ଟ କଲେ । ତତ୍ପରେ ବନର ଗୁଣଦୋଷ ପ୍ରକାଶ କରି ସେ ଜାନକୀଙ୍କୁ ବୁଝାଇବାରେ ଲାଗିଲେ ॥ ୬୦ ॥ ଚୌପାଈ :—ପ୍ରଭୁ ମାତାଙ୍କ ସମ୍ମୁଖରେ ସୀତାଙ୍କୁ କିଛି କହିବାକୁ ସଂକୋଚ କରୁଥା'ନ୍ତି । କିନ୍ତୁ ସମୟ ତ ଏହିପରି, ଏହା ମନରେ ବିଚାରି କରି ସେ କହିଲେ—"ହେ ରାଜକୁମାରି ! ମୋର ଉପଦେଶ ଶୁଣ । ମନରେ ଅନ୍ୟ କୌଣସି ପ୍ରକାରେ ବୁଝ ନାହିଁ ॥ ୧ ॥ ଯଦି ଆପଣାର ଓ ମୋର ମଙ୍ଗଳ ଚାହୁଁଥାଅ, ତେବେ ମୋ ବଚନ ମାନି ଘରେ ରହ । ହେ ଭାମିନି ! ମୋ ଆଦେଶର ପାଳନ ହେବ ଏବଂ ଶାଶୁଙ୍କ ପ୍ରତି ତୁମର ବଡ ସେବା ହେବ । ଘରେ ରହିଲେ ଏଠିକାର ସମସ୍ତ ପ୍ରକାର ମଙ୍ଗଳ ॥ ୨ ॥ ଆଦରରେ ଶାଶୁଶ୍ୱଶୁରଙ୍କୁ ପୂଜା କରିବାଠାରୁ ବଳି ଅନ୍ୟ କୌଣସି ଧର୍ମ ନାହିଁ । ଯେତେବେଳେ ମାତା ମୋତେ ମନେ ପକାଉଥିବେ ଏବଂ ପ୍ରେମବ୍ୟାକୁଳତା ହେତୁ ତାଙ୍କର ବୁଦ୍ଧି-ଭ୍ରମ ଘଟିବ, ହେ ସୁନ୍ଦରି ! ତୁମେ ସେତିକିବେଳେ ପୁରାଣ-

ତବ ତବ ତୁହ୍ମ କହ୍ବି କଥା ପୁରାନୀ । ସୁନ୍ଦରି ସମୁଝାଏହୁ ମୃଦୁ ବାନୀ ॥
କହଉଁ ସୁଭାୟଁ ସପଥ ସତ ମୋହୀ । ସୁମୁଖି ମାତୁ ହିତ ରାଖଉଁ ତୋହୀ ॥୪॥
ଗୁରୁ ଶ୍ରୁତି ସଂମତ ଧରମ ଫଲୁ ପାଇଅ ବିନହିଁ କଲେସ ।
ହଠ ବସ ସବ ସଂକଟ ସହେ ଗାଲବ ନହୁଷ ନରେସ ॥୬୧॥
ମୈଁ ପୁନି କରି ପ୍ରୱାନ ପିତୁ ବାନୀ । ବେଗି ଫିରବ ସୁନୁ ସୁମୁଖି ସୟାନୀ ॥
ଦିବସ ଜାତ ନହିଁ ଲାଗିହି ବାରା । ସୁନ୍ଦରି ସିଖୱନୁ ସୁନହୁ ହମାରା ॥୧॥
ଜୌଁ ହଠ କରହୁ ପ୍ରେମ ବସ ବାମା । ତୌ ତୁହ୍ମ ଦୁଖୁ ପାଉବ ପରିନାମା ॥
କାନନୁ କଠିନ ଭୟଂକରୁ ଭାରୀ । ଘୋର ଘାମୁ ହିମ ବାରି ବୟାରୀ ॥୨॥
କୁସ କଂଟକ ମଗ କାଁକର ନାନା । ଚଲବ ପୟାଦେହିଁ ବିନୁ ପଦତ୍ରାନା ॥
ଚରନ କମଲ ମୃଦୁ ମଂଜୁ ତୁହ୍ମାରେ । ମାରଗ ଅଗମ ଭୂମିଧର ଭାରେ ॥୩॥

---

ତେବେ ତେବେ କହିବ ତୁମ୍ଭେ ପ୍ରାଚୀନ କାହାଣୀ । ବୁଝାଉଥିବ ସୁନ୍ଦରି, ଭାଷି ମୃଦୁବାଣୀ ॥
କହୁଛି ସ୍ୱଭାବେ ସତ୍ୟ ଶତ ରାଣ ମୋତେ । ସୁମୁଖି, ମାତାଙ୍କ ହିତେ ରଖୁଅଛି ତୋତେ ॥୪॥
ଗୁରୁ ଶ୍ରୁତି ମତ ମର୍ମ ଫଳ ପ୍ରାପ୍ତ ହୁଅ ଅନାୟାସେ ଜାଣ ।
ହଠ କରି ସବୁ ସଙ୍କଟ ସହିଲେ ଗାଲବ ନହୁଷ ରାଣ ॥୬୧॥
ମୁଁ ପୁଣି ପାଳନ କରି ପିତାଙ୍କ ବଚନ । ଶୁଣ ସୁମୁଖୀ ଚତୁରି, ଫେରିବି ବହନ ॥
ଦିବସ ଯାଇନ୍ତେ ନ ଲାଗେ ବିଳମ୍ବ ବିଶେଷ । ସୁନ୍ଦରି ଶ୍ରବଣ କର ମୋର ଉପଦେଶ ॥୧॥
ଯେବେ ପ୍ରେମବଶ ବାମା ହଠ ଆଚରିବ । ତେବେ ତୁମ୍ଭେ ପରିଣାମେ ସନ୍ତାପ ଲଭିବ ॥
କାନନ କଠିନ ଘନ ଭୟଙ୍କର ଭାରି । ଘୋର ଆତପ ପବନ ହିମ ଝଞ୍ଜା ବାରି ॥୨॥
କୁଶ କଣ୍ଟକ ବିବିଧ ପ୍ରସ୍ତର ପଥରେ । ପଦତ୍ରାଣ ବିନା ଖାଲି ଚାଲିବ ପଦରେ ॥
ଚରଣ କମଳ ମୃଦୁ ମଞ୍ଜୁଳ ତୁମ୍ଭର । ମାର୍ଗ ଅଗମ୍ୟ ପଡ଼ିବ ନାନା ମହୀଧର ॥୩॥

---

କାହାଣୀ କହି ତାଙ୍କୁ ବୁଝାଉଥିବ । ହେ ସୁମୁଖି ! ମୋର ଶହ ଶହ ରାଣ, ମୁଁ ସ୍ୱଭାବ-ବଶତଃ ଏହା କହୁଛି ଯେ, କେବଳ ମାତାଙ୍କ ନିମନ୍ତେ ହିଁ ମୁଁ ତୁମକୁ ଘରେ ରଖୁଛି ॥ ୩-୪ ॥ ଦୋହା :—ମୋ ଆଦେଶ ମାନି ଘରେ ରହିଲେ ଗୁରୁ ଏବଂ ବେଦ-ସମ୍ମତ ଧର୍ମ-ଆଚରଣର ଫଳ ତୁମକୁ ଅନାୟାସରେ ମିଳିଯିବ । କିନ୍ତୁ ଏକଜିଦିଆ ସ୍ୱଭାବର ବଶବର୍ତ୍ତୀ ହୋଇ ଗାଲବ ମୁନି ଓ ରାଜା ନହୁଷ ଆଦି ସମସ୍ତେ ଅନେକ ସଙ୍କଟ ସହିଅଛନ୍ତି ॥ ୬୧ ॥ ଚୌପାଇ :—ହେ ସୁମୁଖି ! ହେ ଚତୁରି ! ଶୁଣ, ମୁଁ ପିତାଙ୍କ ବଚନ ସତ୍ୟ କରି ଶୀଘ୍ର ଫେରିବି । ଦିନ ଯିବାକୁ ବିଳମ୍ବ ଲାଗେନାହିଁ । ହେ ସୁନ୍ଦରି ! ମୋର ଏହି ଉପଦେଶ ଶୁଣ ॥୧॥ ହେ ବାମା ! ଯଦି ପ୍ରେମର ବଶୀଭୂତ ହୋଇ ଜିଦି ଧରିବ, ତେବେ ପରିଣାମରେ ଦୁଃଖ ପାଇବ । ବନ ବଡ଼ କ୍ଳେଶଦାୟକ ଓ ଭୟାନକ । ସେଠିକାର ଖରା, ଶୀତ, ବର୍ଷା ଓ ପବନ ସବୁ ବଡ଼ ଭୟାନକ ॥ ୨ ॥ ମାର୍ଗରେ କୁଶ, କଣ୍ଟା ଓ ବହୁତ ପ୍ରକାର ପଥର ଅଛି । ବିନା ଯୋତାରେ ଖାଲି ପାଦରେ ହିଁ

କଂଦର ଖୋହ ନଦୀଁ ନଦ ନାରେ । ଅଗମ ଅଗାଧ ନ ଜାହିଁ ନିହାରେ ॥
ଭାଲୁ ବାଘ ବୃକ କେହରି ନାଗା । କରହିଁ ନାଦ ସୁନି ଧୀରଜୁ ଭାଗା ॥୪॥
ଭୂମି ସୟନ ବଲକଲ ବସନ ଅସନୁ କଂଦ ଫଲ ମୂଲ ।
ତେ କି ସଦା ସବ ଦିନ ମିଲହିଁ ସବୁଇ ସମୟ ଅନୁକୂଲ ॥୬୨॥
ନର ଅହାର ରଜନୀଚର ଚରହୀଂ । କପଟ ବେଷ ବିଧି କୋଟିକ କରହୀଂ ॥
ଲାଗଇ ଅତି ପହାର କର ପାନୀ । ବିପିନ ବିପତି ନହିଁ ଜାଇ ବଖାନୀ ॥୧॥
ବ୍ୟାଲ କରାଲ ବିହଗ ବନ ଘୋରା । ନିସିଚର ନିକର ନାରି ନର ଚୋରା ॥
ଡରପହିଁ ଧୀର ଗହନ ସୁଧି ଆଏଁ । ମୃଗଲୋଚନି ତୁହ୍ମ ଭୀରୁ ସୁଭାଏଁ ॥୨॥
ହଂସଗବନି ତୁହ୍ମ ନହିଁ ବନ ଜୋଗୂ । ସୁନି ଅପଜସୁ ମୋହି ଦେଇହି ଲୋଗୂ ॥
ମାନସ ସଲିଲ ସୁଧାଁ ପ୍ରତିପାଲୀ । ଜିଅଇ କି ଲବନ ପୟୋଧି ମରାଲୀ ॥୩॥

---

କନ୍ଦର ଗିରି ସଙ୍କଟ ନଦୀନଦ ଖାଇ । ଦୁର୍ଗମ ଗହନ ଦୃଷ୍ଟି ନ ହୁଏ ପକାଇ ॥
କରି ହରି ବ୍ୟାଘ୍ର ଭାଲୁ ବୃକ ନାନାମତେ । କରନ୍ତି ନିନାଦ ଧୈର୍ଯ୍ୟ ପଳାଏ ଶୁଣନ୍ତେ ॥୪॥
ଭୂମିରେ ଶୟନ ବଲ୍କଲ ବସନ ଖାଦ୍ୟ କନ୍ଦ ଫଳମୂଳ ।
ତାହା ମିଳେ ସଦା ସବୁଦିନେ କିବା କାଳ ବେଳ ଅନୁକୂଳ ॥୬୨॥
ରାକ୍ଷସ ନିକର ନର ଆହାର କରନ୍ତି । କପଟ ବେଶ ଅନେକ ପ୍ରକାର ଧରନ୍ତି ॥
ଲାଗଇ ବିଶେଷ ରୂପେ ପାହାଡର ପାଣି । ବିପିନ ବିପତ୍ତି ପ୍ରିୟେ ନ ହୁଏ ବଖାଣି ॥୧॥
ବ୍ୟାଳ ବିକରାଳ ନାନା ବନ୍ୟ ପକ୍ଷୀ ଘୋର । ଅଟନ୍ତି ରଜନୀଚର ନାରୀନର-ଚୋର ॥
ଅଟବୀ ମନେ ପଡନ୍ତେ ଧୀର ମଧ୍ୟ ଡରେ । କୁରଙ୍ଗନୟନ, ତୁମେ ଭୀରୁ ସହଜରେ ॥୨॥
ହଂସଗମନ, କାନନ ଯୋଗ୍ୟ ତୁମ୍ଭେ ନୁହ । ଶୁଣି ଲୋକେ ଦେବେ ମୋତେ ଅପଯଶ ସମୂହ ॥
ମାନସ ସର ସଲିଳ ସୁଧାରେ ପାଳିତ । ଖାର ସିନ୍ଧୁରେ ମରାଳୀ ରହେ କି ଜୀବିତ ॥୩॥

---

ତା ଉପରେ ଚାଲିବାକୁ ହେବ । ତୁମ ଚରଣ-କମଳ କୋମଳ ଓ ସୁନ୍ଦର ଏବଂ ମାର୍ଗ ମଧ୍ୟରେ ଅତି ଦୁର୍ଗମ ପର୍ବତ ମଧ୍ୟ ପଡିବ ॥ ୩ ॥ ପର୍ବତମାନଙ୍କର ଗୁମ୍ଫା, କନ୍ଦରା, ନଦୀ, ନଦ, ନାଳ ପ୍ରଭୃତି ଏତେ ଅଗମ୍ୟ ଓ ଗମ୍ଭୀର ଯେ, ସେମାନଙ୍କ ଆଡକୁ ଦୃଷ୍ଟି ଦିଆ ହୁଏନାହିଁ । ବନରେ ଭାଲୁ, ବାଘ, ଗଧିଆ, ସିଂହ ଓ ହାତୀ ଆଦି ଭୟାନକ ପ୍ରାଣୀ ଗର୍ଜନ କରନ୍ତି । ସେମାନଙ୍କ ଗର୍ଜନ ଶୁଣି, ମନୁଷ୍ୟର ଧୈର୍ଯ୍ୟ ଲୋପ ପାଇଯାଏ ॥ ୪ ॥ ଦୋହା :—ଭୂମି ଉପରେ ଶୟନ, ବଲ୍କଲ ବସ୍ତ୍ର ପରିଧାନ ଏବଂ କନ୍ଦମୂଳ ଫଳ ଆଦି ଭୋଜନ କରିବାକୁ ହେବ ଏବଂ ସେତକ ବି କ'ଣ ସବୁଦିନେ ମିଳିବ ? ସବୁକିଛି ଆପଣା ଆପଣା ଋତୁ ଅନୁକୂଳରେ ମିଳି ପାରିବ ॥ ୬୨ ॥ ଚୌପାଈ :—ସେଠାରେ ମନୁଷ୍ୟ-ଭକ୍ଷକ ନିଶାଚରମାନେ ବୁଲୁଥା'ନ୍ତି । ସେମାନେ କୋଟି କୋଟି ପ୍ରକାରେ କପଟ ରୂପ ଧାରଣ କରିପାରନ୍ତି । ପାହାଡର ଜଳ ସବୁବେଳେ ପାନ କରିବାକୁ ହୁଏ । ବନର ବିପତ୍ତି ବର୍ଣ୍ଣନାତୀତ ॥ ୧ ॥ ବନରେ ଭୟଙ୍କର ସର୍ପ, ଭୟାନକ ପକ୍ଷୀ ଏବଂ

ନବ ରସାଲ ବନ ବିହରନସୀଲା । ସୋହ କି କୋକିଲ ବିପିନ କରୀଲା ॥
ରହହୁ ଭବନ ଅସ ହୃଦୟଁ ବିଚାରୀ । ଚନ୍ଦବଦନି ଦୁଖୁ କାନନ ଭାରୀ ॥୪॥
ସହଜ ସୁହୃଦ ଗୁର ସ୍ୱାମି ସିଖ ଜୋ ନ କରଇ ସିର ମାନି ।
ସୋ ପଛିତାଇ ଅଘାଇ ଉର ଅବସି ହୋଇ ହିତ ହାନି ॥୬୩॥
ସୁନି ମୃଦୁ ବଚନ ମନୋହର ପିୟ କେ । ଲୋଚନ ଲଲିତ ଭରେ ଜଲ ସିୟ କେ ॥
ସୀତଲ ସିଖ ଦାହକ ଭଇ କୈସେଁ । ଚକଇହି ସରଦ ଚଂଦ ନିସି ଜୈସେଁ ॥୧॥
ଉତରୁ ନ ଆଵ ବିକଲ ବୈଦେହୀ । ତଜନ ଚହତ ସୁଚି ସ୍ୱାମି ସନେହୀ ॥
ବରବସ ରୋକି ବିଲୋଚନ ବାରୀ । ଧରି ଧୀରଜୁ ଉର ଅବନିକୁମାରୀ ॥୨॥

---

ନବ ରସାଲ ବିପିନେ ବିହରଣଶୀଳା । ତାଙ୍ଗ ସିଜୁ ବନସ୍ତରେ ଶୋଭେ କି କୋକିଳା ॥
ଭବନେ ରହ ଏମନ୍ତ ହୃଦୟେ ବିଚାରି । ବିଧୁବଦନି, କାନନ ଦୁଃଖ ଅତି ଭାରି ॥୪॥
ସ୍ୱଭାବେ ସୁହୃଦ ଗୁରୁ ସ୍ୱାମୀ ଶିକ୍ଷା ଯେ ନ କରେ ଆଜ୍ଞା ମାନ ।
ହୃଦେ ଅନୁତାପ ଲଭେ ସେ ପର୍ଯ୍ୟାପ୍ତ ନିଶ୍ଚେ ହୁଏ ହିତ ହାନି ॥୬୩॥
ଶୁଣି ବଲ୍ଲଭଙ୍କ ମୃଦୁ ବଚନ ରୁଚିର । ସୀତାଙ୍କ ଲଳିତ ନେତ୍ରେ ପୂର୍ଣ୍ଣ ହେଲା ନୀର ॥
ଶୀତଳ ଶିକ୍ଷା ଦାହକ ହୋଇଲା କେମନ୍ତେ । ଚକୋରୀକୁ ଶରଚ୍ଚନ୍ଦ୍ର ରଜନୀ ଯେମନ୍ତେ ॥୧॥
ଉତ୍ତର ନ ଆସେ ହେଲେ ବିକଳ ବୈଦେହୀ । ତେଜିବା ପାଇଁ ଚାହାନ୍ତି ସ୍ୱାମୀ ଶୁଚି ସ୍ନେହୀ ॥
ଅଗତ୍ୟା ଅବରୋଧିଣ ବିଲୋଚନ ବାରି । ଧରି ଧୈର୍ଯ୍ୟ ହୃଦୟରେ ଧରଣୀ-କୁମାରୀ ॥୨॥

---

ସ୍ତ୍ରୀ-ପୁରୁଷ-ବୈରୀ ରାକ୍ଷସମାନେ ଦଳ ଦଳ ହୋଇ ରହନ୍ତି । ଧୀର ପୁରୁଷମାନେ ମଧ୍ୟ ବନର ଭୀଷଣତା ମନେ ପଡ଼ିବା ମାତ୍ରେ ଡରିଯା'ନ୍ତି । ପୁଣି ହେ ମୃଗନୟନି ! ତୁମେ ତ ସ୍ୱଭାବତଃ ଭୀରୁ ! ॥୨॥ ହେ ହଂସଗମନି ! ତୁମେ ବନଯୋଗ୍ୟ ନୁହଁ, ତୁମର ବନ-ଗମନ କଥା ଶୁଣି ଲୋକମାନେ ମୋତେ ନିନ୍ଦା କରିବେ । ମାନସରୋବରର ଅମୃତ ଜଳରେ ପାଳିତ ହଂସୀ ଲବଣାକ୍ତ ସମୁଦ୍ରରେ ବଞ୍ଚିପାରେ କି ? ॥୩॥ ନବୀନ ଆମ୍ର-ବନରେ ବିହାର କରୁଥିବା କୋକିଲ କରୀଲ (ସିଜୁ ?) ବନରେ ଶୋଭା ପାଏ କି ? ହେ ଚନ୍ଦ୍ରମୁଖି ! ହୃଦୟରେ ଏପରି ବିଚାର କରି ତୁମେ ଘରେ ରୁହ, ବନରେ ବଡ଼ କଷ୍ଟ ॥୪॥ ଦୋହା :—ସ୍ୱାଭାବିକ ରୂପେ ହିତାକାଙ୍କ୍ଷୀ ମିତ୍ର, ଗୁରୁ ଓ ସ୍ୱାମୀଙ୍କ ଉପଦେଶକୁ ଯେ ଶିରୋଧାର୍ଯ୍ୟ କରି ନ ମାନେ, ସେ ହୃଦୟରେ ବହୁତ ଅନୁତାପ କରେ ଏବଂ ତାର ହିତହାନି ଅବଶ୍ୟ ହୋଇଥାଏ ।" ॥୬୩॥ ଚୌପାଇ :—ପ୍ରିୟତମଙ୍କ କୋମଳ ଓ ମନୋହର ବଚନ ଶୁଣି ସୀତାଙ୍କର ଲଳିତ ଲୋଚନ ଅଶ୍ରୁଜଳରେ ପୂର୍ଣ୍ଣ ହୋଇଗଲା । ଶରତ ଋତୁର ଚନ୍ଦ୍ରନୀ ରାତି ଚକବାକୀ ପକ୍ଷରେ ଯେପରି ଦୁଃଖଦାୟକ ହୁଏ, ଶ୍ରୀରାମଙ୍କର ଏହି ଶୀତଳ ଉପଦେଶ ସେହିପରି ଜାନକୀଙ୍କ ହୃଦୟ-ଦାହକ ହେଲା ॥୧॥ ଜାନକୀ କିଛି ଉତ୍ତର ଦେଇପାରୁ ନ ଥା'ନ୍ତି । ପବିତ୍ର ଓ ପ୍ରେମିକ ସ୍ୱାମୀ ତାଙ୍କୁ ଛାଡ଼ି ଚାଲିଯିବାକୁ ଇଚ୍ଛା କରୁଛନ୍ତି । ଏହା ଚିନ୍ତା କରି ସେ ବ୍ୟାକୁଳ ହୋଇ ପଡ଼ୁଥା'ନ୍ତି । ନୟନର ଜଳକୁ

ଲାଗି ସାସୁ ପଗ କହ କର ଜୋରୀ । ଛମବି ଦେବି ବଡ଼ି ଅବିନୟ ମୋରୀ ॥
ଦୀହ୍ନି ପ୍ରାନପତି ମୋହି ସିଖ ସୋଈ । ଜେହି ବିଧି ମୋର ପରମ ହିତ ହୋଈ ॥୩॥
ମୈଁ ପୁନି ସମୁଝି ଦୀଖି ମନ ମାହୀଁ । ପିୟ ବିୟୋଗ ସମ ଦୁଖୁ ଜଗ ନାହୀଁ ॥୪॥
ପ୍ରାନନାଥ କରୁନାୟତନ ସୁନ୍ଦର ସୁଖଦ ସୁଜାନ ।
ତୁମ୍ହ ବିନୁ ରଘୁକୁଲ କୁମୁଦ ବିଧୁ ସୁରପୁର ନରକ ସମାନ ॥୬୪॥
ମାତୁ ପିତା ଭଗିନୀ ପ୍ରିୟ ଭାଈ । ପ୍ରିୟ ପରିବାରୁ ସୁହୃଦ ସମୁଦାଈ ॥
ସାସୁ ସସୁର ଗୁର ସଜନ ସହାଈ । ସୁତ ସୁନ୍ଦର ସୁସୀଲ ସୁଖଦାଈ ॥୧॥
ଜହଁ ଲଗି ନାଥ ନେହ ଅରୁ ନାତେ । ପିୟ ବିନୁ ତିୟହି ତରନିହୁ ତେ ତାତେ ॥
ତନୁ ଧନୁ ଧାମୁ ଧରନି ପୁର ରାଜୂ । ପତି ବିହୀନ ସବୁ ସୋକ ସମାଜୂ ॥୨॥

---

ଭାଷିଲେ ଶାଶୁଙ୍କ ପଦେ ନମି ଯୋଡ଼ି କର । ଦେବି, ବଡ଼ ଅବିନୟ କ୍ଷମିବ ମୋହର ॥
ଦେଲେ ପ୍ରାଣନାଥ ମୋତେ ସେହି ଉପଦେଶ । ଯେଉଁ ଭାବେ ହେବ ମୋର କଲ୍ୟାଣ ଅଶେଷ ॥୩॥
ମୁଁ ପୁଣି ହୃଦୟ ମଧ୍ୟେ ଭାବି ଦେଖେ କାହିଁ । ପ୍ରିୟ ବିୟୋଗ ସମାନ ଦୁଃଖ ବିଶ୍ୱେ ନାହିଁ ॥
ଏହା କହି ରଘୁପତି ପଦ ବନ୍ଦି ସୀତା । ଭାଷିଲେ ସପ୍ରେମେ ବାଣୀ ମଧୁର ବିନୀତା ॥୪॥
ଜୀବନ ବାନ୍ଧବ, ସୁନ୍ଦର ସୁଖଦ, ପ୍ରବୀଣ କୃପା-ନିଧାନ ।
ତୁମ୍ଭ ବିନା ରଘୁ-କୁଳ-କୁମୁଦେନ୍ଦୁ ସ୍ୱର୍ଗ ବି ନର୍କ ସମାନ ॥୬୪॥
ଜନନୀ ଜନକ ପ୍ରିୟ ଭଗିନୀ ସୋଦର । ପ୍ରିୟ ପରିବାର ତଥା ସୁହୃଦ ନିକର ॥
ଶାଶୁ ଶ୍ୱଶୁର ସ୍ୱଜନ ଗୁରୁ ସହାୟକ । ସୁନ୍ଦର ସୁଶୀଳ ସୁତ ସୁଖ-ପ୍ରଦାୟକ ॥୧॥
ସ୍ନେହ ସମ୍ବନ୍ଧୀ ଜଗତେ ନାଥ ଯେ ପର୍ଯ୍ୟନ୍ତ । ସ୍ୱାମୀ ବିହୀନ ନାରୀକୁ ତପନରୁ ତପ୍ତ ॥
ତନୁ ଧନ ଧାମ ପୁର ରାଜ୍ୟ ବସୁନ୍ଧରା । ପତି ବିନା ସବୁ ଶୋକ-ପାରାବାର ପର ॥୨॥

---

ଜବରଦସ୍ତି ରୋକି ପୃଥିବୀ-କନ୍ୟା ସୀତା ହୃଦୟରେ ଧୈର୍ଯ୍ୟଧାରଣ କଲେ ॥ ୨ ॥ ଏବଂ ଶାଶୁଙ୍କ ପାଦରେ ମୁଣ୍ଡ ଲଗାଇ ହାତ ଯୋଡ଼ି କହିବାକୁ ଲାଗିଲେ, "ହେ ଦେବି ! ମୋର ଏହି ବଡ଼ ଧୃଷ୍ଟତା କ୍ଷମା କରନ୍ତୁ । ମୋର ପରମ ମଙ୍ଗଳ ଯେଉଁଥିରେ ହେବ, ପ୍ରାଣ-ପତି ସେହି ଶିକ୍ଷା ମୋତେ ଦେଇଅଛନ୍ତି ॥ ୩ ॥ କିନ୍ତୁ ମନରେ ଭଲ ରୂପେ ବୁଝିବିଚାରି ମୁଁ ଦେଖିପାରୁଛି ଯେ, ପତିବିରହ ସମାନ ଦୁଃଖ ଜଗତରେ ଆଉ କିଛି ନାହିଁ ॥ ୪ ॥ ଦୋହା :—ହେ ପ୍ରାଣନାଥ ! ହେ କୃପାଧାମ ! ହେ ସୁନ୍ଦର ! ହେ ସୁଖଦ ! ହେ ସୁଜ୍ଞ ! ହେ ରଘୁକୁଳ-କୁମୁଦ-ବିଧୁ ! ଆପଣଙ୍କ ବିନା ସ୍ୱର୍ଗ ମଧ୍ୟ ମୋ ନିମନ୍ତେ ନର୍କ ତୁଲ୍ୟ ॥ ୬୪ ॥ ଚୌପାଇ :—ମାତା, ପିତା, ଭଗିନୀ, ପ୍ରିୟ ଭାଇ, ପ୍ରିୟ ପରିବାର, ମିତ୍ର ସମୁଦାୟ, ଶାଶୁ, ଶ୍ୱଶୁର, ଗୁରୁ, ଆତ୍ମୀୟ-ସ୍ୱଜନ, ସହାୟକ ଏବଂ ସୁନ୍ଦର ସୁଶୀଳ ଓ ସୁଖଦାୟକ ପୁତ୍ର ଆଦି ଯେତେ ସ୍ନେହ-ସମ୍ବନ୍ଧୀ ଅଛନ୍ତି, ହେ ନାଥ ! ପତି ବିନା ସ୍ତ୍ରୀ ପ୍ରତି ସମସ୍ତେ ସୂର୍ଯ୍ୟଙ୍କଠାରୁ ବଳି ସନ୍ତାପଦାୟକ । ପତିବିହୀନା ସ୍ତ୍ରୀ

ଭୋଗ ରୋଗ ସମ ଭୂଷନ ଭାରୂ । ଜମ ଜାତନା ସରିସ ସଂସାରୂ ॥
ପ୍ରାନନାଥ ତୁମ୍ହ ବିନୁ ଜଗ ମାହୀଁ । ମୋ କହୁଁ ସୁଖଦ କତହୁଁ କଛୁ ନାହୀଁ ॥୩॥
ଜିଅ ବିନୁ ଦେହ ନଦୀ ବିନୁ ବାରୀ । ତୈସିଅ ନାଥ ପୁରୁଷ ବିନୁ ନାରୀ ॥
ନାଥ ସକଲ ସୁଖ ସାଥ ତୁମ୍ହାରେଁ । ସରଦ ବିମଲ ବିଧୁ ବଦନୁ ନିହାରେଁ ॥୪॥

ଖଗ ମୃଗ ପରିଜନ ନଗରୁ ବନୁ ବଲକଲ ବିମଲ ଦୁକୂଲ ।
ନାଥ ସାଥ ସୁରସଦନ ସମ ପରନସାଲ ସୁଖ ମୂଲ ॥୬୫॥

ବନଦେବୀଁ ବନଦେବ ଉଦାରା । କରିହହିଁ ସାସୁ ସସୁର ସମ ସାରା ॥
କୁସ କିସଲୟ ସାଥରୀ ସୁହାଈ । ପ୍ରଭୁ ସଁଗ ମଂଜୁ ମନୋଜ ତୁରାଈ ॥୧॥
କଂଦ ମୂଲ ଫଲ ଅମିଅ ଅହାରୂ । ଅଵଧ ସୌଧ ସତ ସରିସ ପହାରୂ ॥
ଛିନୁ ଛିନୁ ପ୍ରଭୁ ପଦ କମଲ ବିଲୋକୀ । ରହିହଉଁ ମୁଦିତ ଦିବସ ଜିମି କୋକୀ ॥୨॥

---

ଭୋଗ ରୋଗ ସମ ଅଟେ, ବିଭୂଷଣ ଭାର । ଯମ ଯାତନା ସଦୃଶ ଲାଗଇ ସଂସାର ॥
ତୁମ ବିନା ଏ ଜଗତେ ଶୁଣ ପ୍ରାଣସାଇଁ । କେହି କାହିଁ ନାହିଁ ସୁଖଦାୟକ ମୋ ପାଇଁ ॥୩॥
ପ୍ରାଣ ବିନେ ତନୁ ଯଥା ନଦୀ ବାରି ବିନେ । ତେମନ୍ତେ ରମଣୀ ନାଥ, ପୁରୁଷ ବିହୀନେ ॥
ତୁମ୍ଭ ସଙ୍ଗେ ପ୍ରାଣନାଥ, ମୋର ସବୁ ସୁଖ । ନିରେଖି ଶରଦ ଶଶୀ ସୁବିମଳ ମୁଖ ॥୪॥

ଖଗ ମୃଗ ବନ୍ଧୁ କାନନ ନଗର ବଲ୍‌କଲ ଶୁଭ୍ର ଦୁକୂଲ ।
ନାଥ ସଙ୍ଗେ ସୁର-ସଦନ ସମାନ ପର୍ଣ୍ଣଶାଲ ସୁଖ-ମୂଲ ॥୬୫॥

ଉଦାର ବନ-ଦେବତା ବନଦେବୀ ବନେ । କରିବେ ପାଳନ ଶାଶୁ ଶ୍ୱଶୁର ଯେସନେ ॥
କୁଶ କିଶଲୟ ତୃଣ ଶଯ୍ୟା ମନୋରମ । ପ୍ରଭୁ ସଙ୍ଗେ ମଞ୍ଜୁ ମାର ତୂଳାଶେଯ ସମ ॥୧॥
ଅମୃତ ଆହାର ପ୍ରାପ୍ୟ ଫଳ କନ୍ଦମୂଳ । ପାହାଡ ଶତ ଅଯୋଧ୍ୟା ସୌଧ ଅନୁକୂଳ ॥
କ୍ଷଣ କ୍ଷଣ ପ୍ରଭୁ ପାଦ-ପଦ୍ମ ଦେଖିକରି । ରହିବି ସୁଖେ ଦିବସେ ଚକୋଇ ଯେପରି ॥୨॥

---

ନିମନ୍ତେ ଶରୀର, ଧନ, ଘର, ପୃଥିବୀ, ନଗର ଓ ରାଜ୍ୟ ଆଦି ସବୁ ଶୋକର ସମାଜ । ॥ ୧-୨ ॥ ଭୋଗ ରୋଗ ସମାନ, ଭୂଷଣ ଭାର-ସ୍ୱରୂପ ଏବଂ ସଂସାର ଯମ-ଯାତନା ବା ନରକ ପୀଡା ସହିତ ସମାନ । ହେ ପ୍ରାଣନାଥ ! ଆପଣଙ୍କ ବିନା ଜଗତରେ ମୋ ନିମନ୍ତେ କେଉଁଠାରେ କୌଣସି ସୁଖ-ଦାୟକ ବସ୍ତୁ ନାହିଁ ॥ ୩ ॥ ଜୀବନ ବିନା ଦେହ ଓ ଜଲ ବିନା ନଦୀ ଯେପରି, ହେ ନାଥ ! ସେହିପରି ପୁରୁଷ ବିନା ସ୍ତ୍ରୀ । ହେ ନାଥ ! ଆପଣଙ୍କ ସଙ୍ଗେ ରହି, ଆପଣଙ୍କ ଶରତ ପୂର୍ଣ୍ଣିମାର ନିର୍ମଲ ଚନ୍ଦ୍ର ସମାନ ମୁଖ ଦେଖିଲେ ମୋତେ ସମସ୍ତ ସୁଖ ମିଳିଯିବ ॥ ୪ ॥ ଦୋହା :—ହେ ନାଥ ! ଆପଣଙ୍କ ସହିତ ମୁଁ ରହିଲେ, ପକ୍ଷୀ ଓ ପଶୁ ମୋର ଆତ୍ମୀୟ ସ୍ୱଜନ ହେବେ । ବନ ହିଁ ନଗର ହେବ ଏବଂ ବୃକ୍ଷର ବଲ୍‌କଲ ନିର୍ମଲ ବସ୍ତ୍ର ଏବଂ ପର୍ଣ୍ଣକୁଟୀର ହିଁ ସ୍ୱର୍ଗ ସମାନ ସୁଖର ଆଧାର ହେବ ॥ ୬୫ ॥ ଚୌପାଇ :—ଉଦାରହୃଦୟା ବନଦେବୀ ଓ ବନଦେବତା ଶାଶୁ ଶ୍ୱଶୁରଙ୍କ ପରି ମୋର ଯତ୍ନ ଓ ରକ୍ଷା କରିବେ । କୁଶ ଏବଂ କୋମଲ ପତ୍ରର ସୁନ୍ଦର

ବନ ଦୁଖ ନାଥ କହେ ବହୁତେରେ । ଭୟ ବିଷାଦ ପରିତାପ ଘନେରେ ॥
ପ୍ରଭୁ ବିୟୋଗ ଲବଲେସ ସମାନା । ସବ ମିଲି ହୋହିଁ ନ କୃପାନିଧାନା ॥୩॥
ଅସ ଜିଅଁ ଜାନି ସୁଜାନ ସିରୋମନି । ଲେଇଅ ସଂଗ ମୋହି ଛାଡ଼ିଅ ଜନି ॥
ବିନତି ବହୁତ କରୌଁ କା ସ୍ୱାମୀ । କରୁନାମୟ ଉର ଅଂତରଜାମୀ ॥୪॥

ରାଖିଅ ଅୱଧ ଜୋ ଅବଧି ଲଗି ରହତ ନ ଜନିଅହିଁ ପ୍ରାନ ।
ଦୀନବନ୍ଧୁ ସୁନ୍ଦର ସୁଖଦ ସୀଲ ସନେହ ନିଧାନ ॥୬୬॥

ମୋହି ମଗ ଚଲତ ନ ହୋଇହି ହାରୀ । ଛିନୁ ଛିନୁ ଚରନ ସରୋଜ ନିହାରୀ ॥
ସବହି ଭାଁତି ପିୟ ସେବା କରିହୌଁ । ମାରଗ ଜନିତ ସକଲ ଶ୍ରମ ହରିହୌଁ ॥୧॥

---

ବନ ଦୁଃଖ ନାଥ, କଲ ବର୍ଣ୍ଣନ ବହୁତ । ଭୟ ବିପଦ ଆବର ସନ୍ତାପ ସ୍ତ୍ରବତ ॥
ପ୍ରଭୁଙ୍କ ବିୟୋଗ ଲବଲେଶ ଅନୁରୂପ । ସବେ ମିଳି ନ ହୋଇବେ, କରୁଣା-ସ୍ୱରୂପ ॥୩॥
ଚତୁର ନାୟକ, ଏହା ମନେ ବିଚାରଣ । ମୋତେ ବନେ ନେଇ ଚାଲ ସଙ୍ଗ ନ ତେଜିଣ ॥
ବିନତି ବହୁତ କିସ କରିବି ମୁଁ ସ୍ୱାମୀ । କରୁଣାମୟ ଆପଣ ହୃଦ ଅନ୍ତର୍ଯାମୀ ॥୪॥

ରଖିଲେ ଅବଧେ ଏ ଦୀର୍ଘ ଅବଧି ନ ରହିବ ମୋ ପରାଣ ।
ଦୀନ-ବନ୍ଧୁ ପ୍ରଭୁ, ସୁନ୍ଦର ସୁଖଦ, ସ୍ନେହ-ସୁଶୀଳ-ନିଧାନ ॥୬୬॥

ମାର୍ଗରେ ଚାଲନ୍ତେ ମୋତେ ବ୍ୟଥା ନ ଲାଗିବ । କ୍ଷଣୁ କ୍ଷଣ ନିରେଖିଣ ଚରଣ-ରାଜୀବ ॥
ସମସ୍ତ ପ୍ରକାରେ ସେବା ସ୍ୱାମୀଙ୍କ କରିବି । ପଥଜନିତ ସକଳ ଶ୍ରମ ମୁଁ ହରିବି ॥୧॥

---

ବିଛଣା ହିଁ ପ୍ରଭୁଙ୍କ ସହିତ ଥିବା ହେତୁ ମୋ ନିମନ୍ତେ କନ୍ଦର୍ପଙ୍କ ମନୋହର ତୂଳୀ ପରି ହେବ ॥୧॥ କନ୍ଦମୂଳ ଓ ଫଳ ଆଦି ଅମୃତ ତୁଲ୍ୟ ଆହାର ମିଳିବ ଏବଂ ବନର ପାହାଡ ଅଯୋଧ୍ୟାର ଶହ ଶହ ରାଜ ମହଲ ସମାନ ପରିଦୃଷ୍ଟ ହେବ । କ୍ଷଣେ କ୍ଷଣେ ପ୍ରଭୁଙ୍କ ଚରଣ-କମଳ ଦେଖି ଦିନରେ ଚକ୍ରବାକୀ ଆନନ୍ଦିତ ହେଲାପରି, ମୁଁ ଆନନ୍ଦ ଲାଭ କରୁଥିବି ॥ ୨ ॥ ହେ ନାଥ ! ଆପଣ ବନରେ ବହୁତ ପ୍ରକାର ଦୁଃଖ ଏବଂ ବହୁତ ଭୟ ବିଷାଦ ଓ ସନ୍ତାପ ଥିବାର କହିଲେ । କିନ୍ତୁ ହେ କୃପାନିଧାନ ! ସେ ସମସ୍ତେ ମିଶି ପ୍ରଭୁଙ୍କ ବିୟୋଗ-ଜନିତ ଦୁଃଖର ଲବଲେଶ ମାତ୍ରା ସହିତ ସମାନ ହୋଇ ପାରିବେ ନାହିଁ ॥ ୩ ॥ ହେ ସୁଜ୍ଞ-ଶିରୋମଣି ! ହୃଦୟରେ ଏପରି ଜାଣି ମୋତେ ଆପଣ ସାଙ୍ଗରେ ନେଇ ଚାଲନ୍ତୁ । ଏଠାରେ ଛାଡି ଯାଆନ୍ତୁ ନାହିଁ । ହେ ସ୍ୱାମି ! ମୁଁ ଅଧିକ କ'ଣ ବା ବିନତି କରିବି ? ଆପଣ କରୁଣା-ମୟ ଏବଂ ସମସ୍ତଙ୍କ ହୃଦୟର ଅନ୍ତର୍ଯାମୀ ॥ ୪ ॥ ଦୋହା :- ହେ ଦୀନବନ୍ଧୁ ! ହେ ସୁନ୍ଦର ! ହେ ସୁଖ ଦାୟକ ! ହେ ଶୀଳ ଓ ପ୍ରେମର ଭଣ୍ଡାର ! ଯଦି ଚଉଦ ବର୍ଷ ଅବଧି ଯାଏ ମୋତେ ଅଯୋଧ୍ୟାରେ ରଖନ୍ତି, ତେବେ ଜାଣି ରଖନ୍ତୁ, ମୋ ପ୍ରାଣ ରହିବ ନାହିଁ ॥ ୬୬ ॥ ଚୌପାଈ :—ପ୍ରତିକ୍ଷଣ ଆପଣଙ୍କ ଚରଣ-କମଳକୁ ଦେଖୁଥିଲେ, ମୋର ମାର୍ଗରେ ଚାଲିବା ଜନିତ କ୍ଳାନ୍ତି ହେବନାହିଁ । ହେ ପ୍ରିୟତମ ! ମୁଁ ସବୁ ପ୍ରକାରେ ଆପଣଙ୍କ ସେବା କରିବି ଏବଂ ପଥରେ ଚାଲିବା ଜନିତ ସମସ୍ତ

ପାୟ ପଖାରି ବୈଠି ତରୁ ଛାହୀଁ । କରିହଉଁ ବାଉ ମୁଦିତ ମନ ମାହୀଁ ॥
ଶ୍ରମ କନ ସହିତ ସ୍ୟାମ ତନୁ ଦେଖେଁ । କହଁ ଦୁଖ ସମଉ ପ୍ରାନପତି ପେଖେଁ ॥୨॥
ସମ ମହି ତୃନ ତରୁପଲ୍ଲବ ଡାସୀ । ପାୟ ପଲୋଟିହି ସବ ନିସି ଦାସୀ ॥
ବାର ବାର ମୃଦୁ ମୂରତି ଜୋହୀ । ଲାଗିହି ତାତ ବୟାରି ନ ମୋହୀ ॥୩॥
କୋ ପ୍ରଭୁ ସଁଗ ମୋହି ଚିତଵନିହାରା । ସିଂଘବଧୁହି ଜିମି ସସକ ସିଆରା ॥
ମୈଂ ସୁକୁମାରି ନାଥ ବନ ଜୋଗୂ । ତୁମ୍ହହି ଉଚିତ ତପ ମୋ କହୁଁ ଭୋଗୂ ॥୪॥

ଐସେଉ ବଚନ କଠୋର ସୁନି ଜୌଁ ନ ହୃଦଉ ବିଲଗାନ ॥
ତୌ ପ୍ରଭୁ ବିଷମ ବିୟୋଗ ଦୁଖ ସହିହହିଁ ପାଵଁର ପ୍ରାନ ॥୬୭॥

ଅସ କହି ସୀୟ ବିକଲ ଭଇ ଭାରୀ । ବଚନ ବିୟୋଗୁ ନ ସକୀ ସଁଭାରୀ ॥
ଦେଖି ଦସା ରଘୁପତି ଜିଅଁ ଜାନା । ହଠି ରାଖେଁ ନହିଁ ରାଖିହି ପ୍ରାନା ॥୧॥

---

ବସିଲେ ତରୁ ଛାୟାରେ ପ୍ରକ୍ଷାଳି ଚରଣ । କରିବି ମୁଦିତ ମନେ ସୁଖେ ସମୀରଣ ॥
ଶ୍ରମ ବିନ୍ଦୁ ସହ ଶ୍ୟାମ ଦେଖୁଥିବି ତନୁ । କାହିଁ ଦୁଃଖ ବେଳ ପ୍ରାଣ-ପତି ଦରଶନୁ ॥୨॥
ସମସ୍ଥାନେ ପାତି ତୃଣ ପଲ୍ଲବ ସୁନ୍ଦର । ସାରା ନିଶି ବସି ଦାସୀ ସେବିବ ପୟର ॥
ବାରମ୍ବାର ମୃଦୁ ମୂର୍ତ୍ତି କରି ବିଲୋକନ । ନ ଲାଗିବ ମୋତେ କେବେ ତପ୍ତ ପ୍ରଭଞ୍ଜନ ॥୩॥
କେ ମୋତେ ଚାହିଁ ପାରିବ ପ୍ରଭୁଙ୍କ ସଙ୍ଗତେ । ସିଂହ ବଧୂକୁ ଶଶକ ଶୃଗାଳ ଯେମନ୍ତେ ॥
ମୁଁ ସୁକୁମାରୀ ଆପଣ ବିପିନ ଉଚିତ । ମୋ ପାଇଁ ଭୋଗ ତୁମ୍ଭଙ୍କୁ ତପସ୍ୟା ବିହିତ ॥୪॥

ଶୁଣନ୍ତେ ଏସନ କଠୋର ବଚନ ହୃଦ ନ ଫାଟୁଛି ଯେବେ ।
ପ୍ରଭୁଙ୍କ ବିଷମ ବିୟୋଗ କଷଣ ସହିବ ଏ ପ୍ରାଣ ତେବେ ॥୬୭॥

ଏହା କହି ସୀତା ଅତି ବିକଳ ହୋଇଲେ । ବଚନ ବିୟୋଗ ଦୁଃଖ ସହି ନ ପାରିଲେ ॥
ଦଶା ଦେଖି ରଘୁପତି ଜାଣିଲେ ହୃଦୟେ । ହଠ କଲେ ନ ରହିବ ଜୀବନ ନିଶ୍ଚୟେ ॥୧॥

---

କ୍ଳାନ୍ତି ଦୂର କରି ପାରିବି ॥ ୧ ॥ ଆପଣଙ୍କର ପାଦ ଧୋଇ ଗଛ ଛାଇରେ ବସି ପ୍ରସନ୍ନ ମନରେ ଆପଣଙ୍କୁ ବିଞ୍ଚୁଥିବି । ଶ୍ରମ-ଜନିତ-ସ୍ୱେଦ-ବିନ୍ଦୁ-ଯୁକ୍ତ ଆପଣଙ୍କ ଶ୍ୟାମଳ ଶରୀରକୁ ଦେଖୁଥିବି ଏବଂ ପ୍ରାଣ-ପତିଙ୍କର ଦର୍ଶନ ଏହିପରି କରୁଥିଲେ ଦୁଃଖ ନିମନ୍ତେ ମୋ ପକ୍ଷରେ ଅବକାଶ କାହୁଁ ରହିବ ? ॥ ୨ ॥ ସମତଳ ଭୂମି ଉପରେ ଘାସ ଓ ବୃକ୍ଷର ପତ୍ର ବିଛାଇ ହେ ସ୍ୱାମି ! ଏହି ଦାସୀ ସାରା ରାତି ଆପଣଙ୍କ ପାଦ ଘଷିଦେବ । ବାରମ୍ବାର ଆପଣଙ୍କ କୋମଳ ମୂର୍ତ୍ତି ଦେଖିଲେ, ମୋତେ ଗରମ ପବନ ମଧ୍ୟ ସ୍ପର୍ଶ କରିବ ନାହିଁ ॥୩॥ ପ୍ରଭୁଙ୍କ ସଙ୍ଗରେ ରହିଥିଲା ବେଳେ ମୋ ଆଡକୁ ଆଖି ଉଠାଇ କିଏ ଚାହିଁ ପାରିବ ? ସିଂହୀ ଆଡକୁ ଶଶକ ଓ ଶୃଗାଳ ଚାହିଁ ପାରନ୍ତି ନାହିଁ । ମୁଁ ସୁକୁମାରୀ ଏବଂ ନାଥ ବନଯୋଗ୍ୟ ! ଆପଣଙ୍କ ପକ୍ଷେ ତପସ୍ୟା ଉଚିତ ଏବଂ ମୋ ନିମନ୍ତେ ବିଷୟ-ଭୋଗ ! ॥ ୪ ॥ ଦୋହା :—ହେ ପ୍ରଭୋ ! ଏପରି କଠୋର ବଚନ ଆପଣଙ୍କଠାରୁ ଶୁଣିବା ସତ୍ତ୍ୱେ ମୋ ହୃଦୟ ଯାହା ଫାଟି ଯାଇନାହିଁ, ତହିଁରୁ ବୋଧ ହୁଏ ଯେ,

କହେଉ କୃପାଲ ଭାନୁକୁଲନାଥା । ପରିହରି ସୋଚୁ ଚଲହୁ ବନ ସାଥା ॥
ନହିଁ ବିଷାଦ କର ଅବସରୁ ଆଜୂ । ବେଗି କରହୁ ବନ ଗୱନ ସମାଜୂ ॥୨॥
କହି ପ୍ରିୟ ବଚନ ପ୍ରିୟା ସମୁଝାଈ । ଲଗେ ମାତୁ ପଦ ଆସିଷ ପାଈ ॥
ବେଗି ପ୍ରଜା ଦୁଖ ମେଟବ ଆଈ । ଜନନୀ ନିଠୁର ବିସରି ଜନି ଜାଈ ॥୩॥
ଫିରିହି ଦସା ବିଧି ବହୁରି କି ମୋରୀ । ଦେଖିହଉଁ ନୟନ ମନୋହର ଜୋରୀ ॥
ସୁଦିନ ସୁଘରୀ ତାତ କବ ହୋଇହି । ଜନନୀ ଜିଅତ ବଦନ ବିଧୁ ଜୋଇହି ॥୪॥
ବହୁରି ବଚ୍ଛ କହି ଲାଲୁ କହି ରଘୁପତି ରଘୁବର ତାତ ।
କବହିଁ ବୋଲାଇ ଲଗାଇ ହିୟଁ ହରଷି ନିରଖିହଉଁ ଗାତ ॥୬୮॥

---

ଭାଷିଲେ କରୁଣା-ସିନ୍ଧୁ ଶ୍ରୀ ରଘୁନନ୍ଦନ । ଚିନ୍ତା ପରିହରି ପ୍ରିୟେ, ଚାଲ ସଙ୍ଗେ ବନ ॥
ନାହିଁ ଦୁଃଖ କରିବାର ଅବକାଶ ଆଜ । ଶୀଘ୍ର ଯାଇ ସାଜ ବନ-ଗମନ-ସମାଜ ॥୨॥
କହି ପ୍ରିୟ କଥା ପ୍ରିୟାଙ୍କୁ ସେ ବୁଝାଇଲେ । ପ୍ରଣମି ମାତାଙ୍କ ପଦେ ଆଶିଷ ପାଇଲେ ॥
ବାହୁଡି ଶୀଘ୍ର ପ୍ରଜାଙ୍କ ଦୁଃଖ ବିନାଶିବ । ନିଷ୍ଠୁର ମାତାକୁ ପୁତ୍ର ପାସୋରି ନ ଯିବ ॥୩॥
ଫେରିବ ଦଶା ବିହି ପୁଣି କି ମୋହର । ଦେଖିବି ନେତ୍ର ପୂରାଇ ଯୋଡି ମନୋହର ॥
ସୁଦିନ ସୁଘଡି କେବେ ତନୟ, ହୋଇବ । ଜନନୀ ଜୀବନ୍ତେ ବିଧୁ-ବଦନ ଚାହିଁବ ॥୪॥
କହି ବାରମ୍ବାର ବତ୍ସ ରଘୁବର, ରଘୁମଣି, ବାବୁ ରାମ ।
କେବେ ଡାକି ମୋଦେ ଲଗାଇଣ ହୃଦେ ନିରେଖିବି ତନୁ ଶ୍ୟାମ ।" ॥୬୮॥

---

ଏ ପାମର ପ୍ରାଣ ଆପଣଙ୍କ ବିରହ-ଜନିତ ଭୀଷଣ ଦୁଃଖ ସହି ପାରିବ ।" ॥ ୬୭ ॥
ଚୌପାଇ :—ଏହାପରେ କହି ସୀତା ଅତିଶୟ ବିକଳ ହେଲେ । ସେ ବଚନରେ ପ୍ରକାଶିତ ବିୟୋଗକୁ ସୁଦ୍ଧା ସମ୍ଭାଳି ପାରିଲେ ନାହିଁ । ଶାରୀରିକ ବିରହ ତ ଦୂରର କଥା । ତାଙ୍କର ଏହି ଦଶା ଦେଖି ଶ୍ରୀ ରଘୁନାଥ ହୃଦୟରେ ଜାଣିପକାଇଲେ ଯେ, ଜିଦ୍-ଜବରଦସ୍ତି କରି ତାଙ୍କୁ ଏଠାରେ ରଖାଇଲେ ସେ ପ୍ରାଣ ରଖିବେ ନାହିଁ ॥ ୧ ॥ ତଦନନ୍ତର କୃପାଳୁ ସୂର୍ଯ୍ୟକୁଳ-ନାଥ ଶ୍ରୀରାମଚନ୍ଦ୍ର କହିଲେ "ଆଚ୍ଛା, ଏବେ ଚିନ୍ତା ଛାଡ଼ି ମୋ ସାଙ୍ଗରେ ବନକୁ ଚାଲ । ଆଜି ବିଷାଦ କରିବାର ଅବସର ନୁହେଁ । ଶୀଘ୍ର ବନ-ଗମନ ନିମନ୍ତେ ଆୟୋଜନ କର ।" ॥ ୨ ॥ ଶ୍ରୀରାମଚନ୍ଦ୍ର ପ୍ରିୟ ବଚନ କହି ପ୍ରିୟତମା ସୀତାଙ୍କୁ ବୁଝାଇଲେ । ତତ୍ପରେ ମାତାଙ୍କ ପାଦତଳେ ପଡ଼ି ଆଶୀର୍ବାଦ ଲାଭ କଲେ । ମାତା କହିଲେ, "ପୁତ୍ର, ଶୀଘ୍ର ଫେରି ପ୍ରଜାଙ୍କ ଦୁଃଖ ମେଣ୍ଟାଅ ଏବଂ ଏହି ନିଷ୍ଠୁର ଜନନୀକୁ ଭୁଲି ନ ଯାଅ' ॥ ୩ ॥ ହେ ବିଧାତା ! ମୋର ସୁଦଶା ସତେ କେବେ ଫେରିବ ? ନିଜ ନୟନରେ ମୁଁ ଏ ମନୋହର ଯୁଗଳ ମୂର୍ତ୍ତିଙ୍କୁ ପୁଣି ଦେଖି ପାରିବି କି ? ହେ ପୁତ୍ର ! ସେହି ସୁନ୍ଦର ଦିନ ଏବଂ ଶୁଭ ଘଡ଼ି କେବେ ଆସିବ, ଯେତେବେଳେ କି ତୁମ ଜନନୀ ଜୀବିତାବସ୍ଥାରେ ତୁମର ଚନ୍ଦ୍ରମୁଖ ପୁଣି ଦର୍ଶନ କରିବ ? ॥ ୪ ॥ ଦୋହା :— ହେ ତାତ ! 'ବତ୍ସ', 'ଧନ', 'ରଘୁପତି', 'ରଘୁବର' ଆଦି କହି ମୁଁ ପୁଣି କେବେ

ଲଖି ସନେହ କାତର ମହତାରୀ । ବଚନୁ ନ ଆଉ୍ ବିକଲ ଭଇ ଭାରୀ ॥
ରାମ ପ୍ରବୋଧୁ କୀହ୍ନ ବିଧି ନାନା । ସମଉ ସନେହୁ ନ ଜାଇ ବଖାନା ॥୧॥
ତବ ଜାନକୀ ସାସୁ ପଗ ଲଗୀ । ସୁନିଅ ମାଯ ମୈଁ ପରମ ଅଭାଗୀ ॥
ସେବା ସମୟ ଦୈଅଁ ବନୁ ଦୀହ୍ନା । ମୋର ମନୋରଥୁ ସଫଲ ନ କୀହ୍ନା ॥୨॥
ତଜବ ଛୋଭୁ ଜନି ଛାଡ଼ିଅ ଛୋହୂ । କରମୁ କଠିନ କଛୁ ଦୋସୁ ନ ମୋହୂ ॥
ସୁନି ସିୟ ବଚନ ସାସୁ ଅକୁଲାନୀ । ଦସା କବନି ବିଧି କହୌଁ ବଖାନୀ ॥୩॥
ବାରହିଁ ବାର ଲାଇ ଉର ଲୀହ୍ନୀ । ଧରି ଧୀରଜୁ ସିଖ ଆସିଷ ଦୀହ୍ନୀ ॥
ଅଚଲ ହୋଉ ଅହିବାତୁ ତୁହ୍ମାରା । ଜବ ଲଗି ଗଂଗ ଜମୁନ ଜଲ ଧାରା ॥୪॥
ସୀତହି ସାସୁ ଅସୀସ ସିଖ ଦୀହ୍ନି ଅନେକ ପ୍ରକାର ।
ଚଲୀ ନାଇ ପଦ ପଦୁମ ସିରୁ ଅତି ହିତ ବାରହିଁ ବାର ॥୬୪॥

---

ସ୍ନେହ–କାତର ଜନନୀ, ନ ଫୁଟେ ବଚନ । ବିକଳ ହୁଅନ୍ତି ଅତି କରି ବିଲୋକନ ॥
ରାମ ପ୍ରବୋଧ କରିଲେ ଅନେକ ପ୍ରକାରେ । ସମସ୍ତ ସ୍ନେହ ବର୍ଣ୍ଣନ କିଏ କରିପାରେ ॥୧॥
ତହୁଁ ଶାଶୁ ପାଦେ ନମି ଜନକ ନନ୍ଦିନୀ । କହିଲେ, ଶୁଣ ମା' ମୁହିଁ ଅତି ଅଭାଗିନୀ ॥
ସେବା ସମୟରେ ଦୁଃଖ ଦଇବ ବିହିଲା । ମୋର ମନୋରଥ ଫଳଯୁକ୍ତ ନ କରିଲା ॥୨॥
ତେଜିବ ଉଦ୍‌ବେଗ ମନୁ ସ୍ନେହ ନ ଛାଡ଼ିବ । ନାହିଁ କିଛି ଦୋଷ ମୋର, କଠୋର ଦଇବ ॥
ବ୍ୟାକୁଳ ହୋଇଲେ ଶାଶୁ ଶୁଣି ସୀତା ବାଣୀ । ଦଶା କେଉଁ ପ୍ରକାରେ ମୁଁ କହିବି ବଖାଣି ॥୩॥
ବାରମ୍ବାର ହୃଦୟରେ ଲଗାଇ ନିଅନ୍ତି । ଧୈର୍ଯ୍ୟ ଧରି ପୁଣି ଶିକ୍ଷା ଆଶିଷ ଦିଅନ୍ତି ॥
ଅଚଳ ହେଉ ତୋ ଅହି ସୁଲକ୍ଷଣ ଭାର । ଯେ ପର୍ଯ୍ୟନ୍ତ ଥିବ ଧାରା ଗଙ୍ଗା ଯମୁନାର ॥୪॥
ସୀତାଙ୍କୁ ଆଶିଷ ଦେଲେ ଉପଦେଶ ଶାଶୁ ଅନେକ ପ୍ରକାର ।
ଚଳିଲେ ଚରଣ–କମଳେ ଜାନକୀ ନମି ସ୍ନେହେ ବାରମ୍ବାର ॥୬୪॥

---

ତୁମକୁ ତାକି ବକ୍ଷରେ ଲଗାଇବି ଏବଂ ଆନନ୍ଦିତ ହୋଇ ତୁମର ଅଙ୍ଗପ୍ରତ୍ୟଙ୍ଗ ଦେଖିବି ?'' ॥ ୬୮ ॥ ଚୌପାଈ :—ମାତା ସ୍ନେହ ହେତୁ ଅଧୀର ହୋଇ ପଡ଼ିଅଛନ୍ତି ଏବଂ ଏତେ ଅଧିକ ବିକଳ ହୋଇପଡ଼ିଛନ୍ତି ଯେ, ତାଙ୍କ ମୁହଁରୁ ବଚନ ବାହାରୁ ନାହିଁ । ଏହା ଦେଖି ଶ୍ରୀରାମ ତାହାଙ୍କୁ ଅନେକ ପ୍ରକାରେ ବୁଝାଇଲେ । ସେହି ସମୟ ଓ ସ୍ନେହ ବର୍ଣ୍ଣନା କରାଯାଇ ପାରିବ ନାହିଁ ॥ ୧ ॥ ତହୁଁରେ ଜାନକୀ ଶାଶୁଙ୍କ ପାଦତଳେ ପଡ଼ିଲେ ଏବଂ କହିଲେ, ହେ ମାତା ! ଶୁଣନ୍ତୁ ମୁଁ ଅତି ଅଭାଗିନୀ । ଆପଣଙ୍କ ସେବା କରିବା ସମୟରେ ଦଇବ ମୋତେ ବନବାସ ଦେଇଦେଲା ! ମୋର ମନୋରଥ ସଫଳ କଲାନାହିଁ ॥ ୨ ॥ ଆପଣ କ୍ଷୋଭ ତ୍ୟାଗ କରନ୍ତୁ । କିନ୍ତୁ କୃପା ତ୍ୟାଗ କରନ୍ତୁ ନାହିଁ । କର୍ମର ଗତି କଠିନ, ମୋର କିଛି ଦୋଷ ନାହିଁ ।'' ସୀତାଙ୍କ ବଚନ ଶୁଣି ଶାଶୁ ବ୍ୟାକୁଳ ହୋଇ ପଡ଼ିଲେ । ତାଙ୍କ ଦଶା ମୁଁ କିପରି ବର୍ଣ୍ଣନା କରି କହିବି ? ସେ ସୀତାଙ୍କୁ ବାରମ୍ବାର ବକ୍ଷରେ ଲଗାଇଲେ ଏବଂ ଧୈର୍ଯ୍ୟ ଧରି ଉପଦେଶ ଦେଲେ । ସେ ଆଶୀର୍ବାଦ

ସମାଚାର ଜବ ଲଛିମନ ପାଏ । ବ୍ୟାକୁଲ ବିଲଖ ବଦନ ଉଠି ଧାଏ ॥
କଂପ ପୁଲକ ତନ ନୟନ ସନୀରା । ଗହେ ଚରନ ଅତି ପ୍ରେମ ଅଧୀରା ॥୧॥
କହି ନ ସକତ କଛୁ ଚିତଵତ ଠାଢ଼େ । ମୀନୁ ଦୀନ ଜନୁ ଜଲ ତେଁ କାଢ଼େ ॥
ସୋଚୁ ହୃଦୟଁ ବିଧି କା ହୋନିହାରା । ସବୁ ସୁଖୁ ସୁକୃତୁ ସିରାନ ହମାରା ॥୨॥
ମୋ କହୁଁ କାହ କହବ ରଘୁନାଥା । ରଖିହହିଁ ଭବନ କି ଲେହହିଁ ସାଥା ॥
ରାମ ବିଲୋକି ବଂଧୁ କର ଜୋରେଁ । ଦେହ ଗେହ ସବ ସନ ତୃନୁ ତୋରେଁ ॥୩॥
ବୋଲେ ବଚନୁ ରାମ ନୟ ନାଗର । ସୀଲ ସନେହ ସରଲ ସୁଖ ସାଗର ॥
ତାତ ପ୍ରେମ ବସ ଜନି କଦରାହୂ । ସମୁଝି ହୃଦୟଁ ପରିନାମ ଉଛାହୂ ॥୪॥

---

ସମାଚାର ଯେତେବେଳେ ଲକ୍ଷ୍ମଣ ପାଇଲେ । ବ୍ୟାକୁଳେ ଉଠି ବିରସ ବଦନେ ଧାଇଁଲେ ॥
କମ୍ପ ପୁଲକିତ ତନୁ, ନୟନ ସନୀର । ଧରିଲେ ଚରଣ ହୋଇ ପ୍ରେମରେ ଅଧୀର ॥୧॥
କହି ନ ପାରନ୍ତି କିଛି, ନିରେଖି ରହିଲେ । ଦୀନ ମୀନ ଯେ ପ୍ରକାରେ ଜଳରୁ କାଢିଲେ ॥
ଚିନ୍ତନ୍ତି ହୃଦୟ ମଧ୍ୟେ ବିଧି କି କରାଇବ । ସରିଲା ସବୁ ମୋ ସୁଖ ସୁକୃତ, ଦଇବ ॥୨॥
କି କହିବେ ରଘୁକୁଳମଣି ମୋ ନିମନ୍ତେ । ରଖିବେ ଭବନେ କିମ୍ବା ନେବେ ସ୍ୱସଙ୍ଗତେ ॥
ରାମ ଦେଖିଲେ ସଜୋଡ଼-କର ଅନୁଜଙ୍କୁ । ତୃଣ ପରି ତେଜି ଦେହ ଗୃହ ସମସ୍ତଙ୍କୁ ॥୩॥
ଭାଷିଲେ ବଚନ ନୀତି-ନିପୁଣ ଶ୍ରୀରାମ । ଶୀଳ ସରଳ ପବିତ୍ର ସୁଖ-ସ୍ନେହ-ଧାମ ॥
ଭ୍ରାତ ! ପ୍ରେମାଧୀନ ହୋଇ ନ ହୁଅ ଅଧୈର୍ଯ୍ୟ । ଭବିଷ୍ୟ ଉତ୍ସାହମୟ ନିଜ ହୃଦେ ହେଜ ॥୪॥

---

ଦେଲେ—"ଯେତେଦିନ ଯାଏ ଗଙ୍ଗା ଆଉ ଯମୁନାରେ ଜଳଧାରା ପ୍ରବାହିତ ହେଉଥିବ, ସେତେଦିନ ଯାଏ ତୋହର ହ ତକାର ବଜ୍ର ହୋଇଥାଉ ।" ॥ ୪ ॥ ଦୋହା :— ଶାଶୁ ସୀତାଙ୍କୁ ଅନେକ ପ୍ରକାର ଆଶୀର୍ବାଦ-ଉପଦେଶ ଦେଲେ ଏବଂ ସୀତା ଅତି ପ୍ରେମରେ ବାରମ୍ବାର ଶାଶୁଙ୍କ ଚରଣକମଳରେ ମୁଣ୍ଡ ନୁଆଁଇ ଚାଲିଲେ ॥ ୬୯ ॥ ଚୌପାଈ :— ଯେତେବେଳେ ଲକ୍ଷ୍ମଣ ଏ ସମାଚାର ପାଇଲେ, ସେତେବେଳେ ସେ ବ୍ୟାକୁଳ ଓ ଶୋକାତୁର ବଦନରେ ଉଠି ଦୌଡ଼ିଲେ । ଶରୀର କମ୍ପୁଥାଏ ଏବଂ ରୋମାଞ୍ଚିତ ହେଉଥାଏ; ନେତ୍ର ଅଶ୍ରୁ-ପରିପୂର୍ଣ୍ଣ । ପ୍ରେମରେ ଅତି ଅଧୀର ହୋଇ ସେ ଶ୍ରୀରାମଙ୍କ ଚରଣ ଧରି ପକାଇଲେ ॥ ୧ ॥ ସେ କିଛି କହିପାରୁ ନ ଥା'ନ୍ତି । ଠିଆ ଠିଆ ହୋଇ ଦେଖୁଥା'ନ୍ତି । ଜଳରୁ ବାହାର କରିବା ପରେ ଦୀନ ମୀନର ଯେ ଦଶା, ତାଙ୍କର ସେହିପରି ଦଶା ହୋଇଥାଏ । ହୃଦୟରେ ଏହି ଚିନ୍ତା ଚାଲୁଥାଏ—ହେ ବିଧାତା ! କଣ ହେବାକୁ ଯାଉଛି ? ଆମର ସବୁ ସୁଖ ଓ ପୁଣ୍ୟ କଣ ଶେଷ ହୋଇଗଲା ! ॥ ୨ ॥ ମୋତେ ଶ୍ରୀରଘୁନାଥ କଣ କହିବେ ? ଘରେ ରଖିବେ ନା ସଙ୍ଗରେ ନେଇ ଚାଲିବେ ? ଶ୍ରୀରାମଚନ୍ଦ୍ର ଭାଇ ଲକ୍ଷ୍ମଣଙ୍କୁ ହାତ ଯୋଡ଼ି ଏବଂ ଶରୀର ତଥା ଗୃହ, ସବୁଠାରୁ ସମ୍ବନ୍ଧ ତୁଟାଇ ଛିଡ଼ା ହୋଇଥିବାର ଦେଖିଲେ ॥ ୩ ॥ ତାପରେ ନୀତି-ନିପୁଣ, ଶୀଳ, ସ୍ନେହ, ସରଳତା ଓ ସୁଖର ସାଗର ଶ୍ରୀରାମ ବଚନ କହିଲେ, "ହେ ବାପ ! ପରିଣାମରେ ମିଳିବା ଆନନ୍ଦକୁ

ମାତୁ ପିତା ଗୁର ସ୍ୱାମି ସିଖ ସିର ଧରି କରହିଁ ସୁଭାୟଁ ॥
ଲହେଉ ଲାଭୁ ତିହ୍ନ ଜନମ କର ନତରୁ ଜନମୁ ଜଗ ଜାୟଁ ॥୭୦॥
ଅସ ଜୟଁ ଜାନି ସୁନହୁ ସିଖ ଭାଈ । କରହୁ ମାତୁ ପିତୁ ପଦ ସେବକାଈ ॥
ଭବନ ଭରତୁ ରିପୁସୂଦନୁ ନାହୀଁ । ରାଉ ବୃଦ୍ଧ ମମ ଦୁଖୁ ମନ ମାହୀଁ ॥୧॥
ମୈଁ ବନ ଜାଉଁ ତୁହ୍ମହି ଲେଇ ସାଥା । ହୋଇ ସବହି ବିଧି ଅଉଧ ଅନାଥା ॥
ଗୁର ପିତୁ ମାତୁ ପ୍ରଜା ପରିବାରୂ । ସବ କହୁଁ ପରଇ ଦୁସହ ଦୁଖ ଭାରୂ ॥୨॥
ରହହୁ କରହୁ ସବ କର ପରିତୋଷୂ । ନତରୁ ତାତ ହୋଇହି ବଡ଼ ଦୋଷୂ ॥
ଜାସୁ ରାଜ ପ୍ରିୟ ପ୍ରଜା ଦୁଖାରୀ । ସେ ନୃପୁ ଅବସି ନରକ ଅଧିକାରୀ ॥୩॥
ରହହୁ ତାତ ଅସି ନୀତି ବିଚାରୀ । ସୁନତ ଲଖନୁ ଭଏ ବ୍ୟାକୁଲ ଭାରୀ ॥
ସିଅରେଁ ବଚନ ସୂଖି ଗଏ କୈସେଁ । ପରସତ ତୁହିନ ତାମରସୁ ଜୈସେଁ ॥୪॥

---

ମାତା ପିତା ସ୍ୱାମୀ ଗୁରୁ ଶିକ୍ଷା ମାନ ସ୍ୱଭାବେ ଯେ ଅନୁସରେ ।
ସେ ଜୀବନ-ଲାଭ ଲଭଇ, ଅନ୍ୟଥା ବୃଥା ଜନ୍ମ ଜଗତରେ ॥୭୦॥
ଏହା ମନେ ଜାଣି ଶୁଣ ଉପଦେଶ, ଭାଇ । କର ଜନକ ଜନନୀ ପଦ-ସେବା ଥାଇ ॥
ଭରତ ଶତ୍ରୁ-ସୂଦନ ନାହାନ୍ତି ଭବନେ । ନରପତି ବୃଦ୍ଧ ପୁଣି ମୋର ଦୁଃଖ ମନେ ॥୧॥
ଯେବେ ବନେ ଯିବି ନେଇ ତୁମ୍ଭଙ୍କୁ ସଙ୍ଗତେ । ଅଯୋଧ୍ୟା ଅନାଥ ନିଶ୍ଚେ ହେବ ସବୁମତେ ॥
ଗୁରୁ ପିତା ମାତା ପୁଣି ପ୍ରଜା ପରିବାର । ହୋଇବ ଦୁଃସହ ଦୁଃଖ ସମସ୍ତଙ୍କୁ ଭାର ॥୨॥
ଭବନେ ରହିଣ କର ସମସ୍ତଙ୍କ ତୋଷ । ନୋହିଲେ ଭ୍ରାତା, ଲାଗିବ ବଡ ଭାରି ଦୋଷ ॥
ଯା ରାଜ୍ୟରେ ପ୍ରିୟ ପ୍ରଜା ଦୁଃଖିତ ହୁଅନ୍ତି । ଅବଶ୍ୟ ନରକଗାମୀ ହୁଏ ସେ ନୃପତି ॥୩॥
ରହେ ଭାଇ ରହ ନୀତି ବିଚାରି ଏମନ୍ତ । ଶୁଣନ୍ତେ ଲକ୍ଷ୍ମଣ ହେଲେ ବ୍ୟାକୁଳ ଅତ୍ୟନ୍ତ ॥
ଶୀତଳ ବଚନେ ଭୟେ ଶୁଖିଗଲେ ତେସନ୍ତେ । ତୁଷାର ସ୍ପର୍ଶେ ମଳିନ ତାମରସ ଯେସନ୍ତେ ॥୪॥

---

ହୃଦୟରେ ବୁଝି ତୁମେ ପ୍ରେମବଶତଃ ଅଧୀର ହୁଅନାହିଁ ॥ ୪ ॥ ଦୋହା :—ଯେଉଁ ଲୋକେ ମାତା, ପିତା, ଗୁରୁ ଓ ସ୍ୱାମୀଙ୍କ ଉପଦେଶକୁ ସ୍ୱାଭାବିକ ଭାବରେ ଶିରୋଧାର୍ଯ୍ୟ କରି ତାହା ପାଳନ କରନ୍ତି, ସେହିମାନେ ନର-ଜନ୍ମଗ୍ରହଣର ଲାଭ ପାଇଥାଆନ୍ତି । ଅନ୍ୟଥା ଜଗତରେ ଜନ୍ମ ବ୍ୟର୍ଥ ॥ ୭୦ ॥ ଚୌପାଈ :—ହେ ଭାଇ ! ହୃଦୟରେ ଏପରି ଜାଣି ମୋ ଉପଦେଶ ଶୁଣ ଏବଂ ମାତା–ପିତାଙ୍କ ଚରଣ ସେବା କର । ଭରତ ଓ ଶତ୍ରୁଘ୍ନ ଘରେ ନାହାନ୍ତି । ମହାରାଜ ବୃଦ୍ଧ ଏବଂ ତାଙ୍କ ମନରେ ମୋ ସକାଶେ ଘୋର ଦୁଃଖ ॥ ୧ ॥ ଏପରି ଅବସ୍ଥାରେ ମୁଁ ତୁମକୁ ସଙ୍ଗରେ ନେଇ ଯଦି ବନ ଯାଏ, ତେବେ ଅଯୋଧ୍ୟା ସବୁ ପ୍ରକାରେ ଅନାଥ ହୋଇଯିବ । ଗୁରୁ, ପିତା, ମାତା, ପ୍ରଜା ଓ ପରିବାର ସମସ୍ତଙ୍କ ଉପରେ ଦୁଃଖର ଦୁଃସହ ଭାର ଆସି ପଡ଼ିବ ॥ ୨ ॥ ଅତଏବ ତୁମେ ଏଠାରେ ରହ ଏବଂ ସମସ୍ତଙ୍କର ସନ୍ତୋଷ-ବିଧାନ କରୁଥାଅ । ଅନ୍ୟଥା ହେ ବତ୍ସ ! ବଡ଼ ଦୋଷ ହେବ । ଯାହାର ରାଜତ୍ୱରେ ପ୍ରିୟ ପ୍ରଜା ଦୁଃଖୀ, ସେ ରାଜା ଅବଶ୍ୟ ନର୍କର

ଉତରୁ ନ ଆୱତ ପ୍ରେମ ବସ ଗହେ ଚରନ ଅକୁଲାଇ ।
ନାଥ ଦାସୁ ମୈଁ ସ୍ୱାମି ତୁହ୍ମ ତଜହୁ ତ କହ ବସାଇ ॥୭୧॥
ଦୀହ୍ନି ମୋହ୍ନି ସିଖ ନୀକି ଗୋସାଇଁ । ଲାଗି ଅଗମ ଅପନୀ କଦରାଇଁ ॥
ନରବର ଧୀର ଧରମ ଧୁର ଧାରୀ । ନିଗମ ନୀତି କହୁଁ ତେ ଅଧିକାରୀ ॥୧॥
ମୈଁ ସିସୁ ପ୍ରଭୁ ସନେହଁ ପ୍ରତିପାଲା । ମଂଦରୁ ମେରୁ କି ଲେହିଁ ମରାଲା ॥
ଗୁର ପିତୁ ମାତୁ ନ ଜାନଉଁ କାହୂ । କହଉଁ ସୁଭାଉ ନାଥ ପତିଆହୂ ॥୨॥
ଜହଁ ଲଗି ଜଗତ ସନେହ ସଗାଈ । ପ୍ରୀତି ପ୍ରତୀତି ନିଗମ ନିଜୁ ଗାଈ ॥
ମୋରେଁ ସବଇ ଏକ ତୁହ୍ମ ସ୍ୱାମୀ । ଦୀନବଂଧୁ ଉର ଅଂତରଜାମୀ ॥୩॥
ଧରମ ନୀତି ଉପଦେସିଅ ତାହୀ । କୀରତି ଭୂତି ସୁଗତି ପ୍ରିୟ ଜାହୀ ॥
ମନ କ୍ରମ ବଚନ ଚରନ ରତ ହୋଈ । କୃପାସିଂଧୁ ପରିହରିଅ କି ସୋଈ ॥୪॥

---

ଉତ୍ତର ନ ଆସେ ଅତି ପ୍ରେମ ବଶେ ବ୍ୟାକୁଳେ ପଦ ଧରିଲେ ।
ମୁହିଁ ଅନୁଗାମୀ ନାଥ, ତୁମ୍ଭେ ସ୍ୱାମୀ କି ମୋର ଗତି ତେଜିଲେ ॥୭୧॥
ଦେଲ ମୋତେ ଗୋସାଇଁ ଯେ ଉପଦେଶ ରମ୍ୟ । ନିଜ ଭୀରୁ ସ୍ୱଭାବରୁ ଲାଗଇ ଅଗମ୍ୟ ॥
ଯେଉଁ ନରବର ଧର୍ମ-ଧୁରନ୍ଧର ଧୀର । ସର୍ବଥା ସେ ଅଧିକାରୀ ନିଗମ ନୀତିର ॥୧॥
ମୁଁ ଶିଶୁ ପ୍ରଭୁଙ୍କ ସ୍ନେହେ ପାଳିତ ଅଟଇ । ମନ୍ଦର ମେରୁ ମରାଳ ବହି କି ପାରଇ ॥
ଗୁରୁ ପିତା ମାତା ବୋଲି ନ ଜାଣେ କାହାକୁ । ସ୍ୱଭାବେ କହେ ପ୍ରତୀତ କର ମୋ କଥାକୁ ॥୨॥
ଜଗତେ ଯେତେ ସୁପ୍ରୀତି ପ୍ରତୀତି ଭଜନ । ସ୍ନେହୀ ସମ୍ବନ୍ଧୀ ନିଗମ କରଇ ବର୍ଣ୍ଣନ ॥
ମୋର ସବୁ କିଛି ତୁମ୍ଭେ ଅଟ ଏକ ସ୍ୱାମୀ । ଦୀନ ବାନ୍ଧବ ସର୍ବଙ୍କ ହୃଦ ଅନ୍ତର୍ଯ୍ୟାମୀ ॥୩॥
ଧର୍ମ ନୀତି ଉପଦେଶ ଦିଅନ୍ତୁ ତାହାକୁ । ଗତି କୀର୍ତ୍ତି ଭୂତି ପ୍ରିୟ ଲାଗଇ ଯାହାକୁ ॥
ମନ କର୍ମ ବଚନେ ଯେ ଆଶ୍ରିତ ପଦର । କୃପାସିନ୍ଧୁ ତାହାକୁ କି କରିବେ ଅନ୍ତର ॥୪॥

---

ଅଧିକାରୀ ॥ ୩ ॥ ହେ ବାପ ! ଏପରି ନୀତି ବିଚାରି ତୁମେ ତୁମେ ଘରେ ରୁହ ।” ଏହା ଶୁଣିବା ମାତ୍ରେ ଲକ୍ଷ୍ମଣ ଖରି ବ୍ୟାକୁଳ ହୋଇ ପଡିଲେ । ଶିଶିର-ବିନ୍ଦୁ ସ୍ପର୍ଶରେ ପଦ୍ମଫୁଲ ଶୁଖିଗଲା ପରି ରାମଚନ୍ଦ୍ରଙ୍କ ଶୀତଳ ବଚନରେ ଲକ୍ଷ୍ମଣ ମଧ୍ୟ ଶୁଖିଗଲେ ॥ ୪ ॥ ଦୋହା :—ପ୍ରେମବଶ ଲକ୍ଷ୍ମଣ କିଛି ଉତ୍ତର ଦେଇ ପାରୁ ନ ଥା'ନ୍ତି । ସେ ବ୍ୟାକୁଳ ହୋଇ ଶ୍ରୀରାମଙ୍କ ଚରଣ ଧରି ପକାଇଲେ ଏବଂ କହିଲେ—“ହେ ନାଥ ! ମୁଁ ଦାସ ଏବଂ ଆପଣ ସ୍ୱାମୀ । ଅତଏବ ଆପଣ ମୋତେ ଯଦି ଛାଡି ଯା'ଆନ୍ତି, ତାହା ହେଲେ ମୋର କି ଚାରା ? ॥ ୭୧ ॥ ଚୌପାଈ :—ହେ ସ୍ୱାମି ! ଆପଣ ମୋତେ ଭଲ ଉପଦେଶ ତ ଦେଲେ, କିନ୍ତୁ ନିଜର କାପୁରୁଷତା ଯୋଗୁ ତାହା ସବୁ ମୋ ପକ୍ଷରେ ଅଗମ୍ୟ ହେଲା । ଯେଉଁମାନେ ଧର୍ମ-ଧୁରନ୍ଧର ଏବଂ ଧୀର, ସେହିମାନେ ପୁରୁଷ-ଶ୍ରେଷ୍ଠ ଏବଂ ସେହିମାନେ ହିଁ ନିଗମ ଓ ନୀତି ଶାସ୍ତ୍ରର ଅଧିକାରୀ ॥ ୧ ॥ ମୁଁ ତ ପ୍ରଭୁଙ୍କ ସ୍ନେହରେ ପାଳିତ । କ୍ଷୁଦ୍ର ଶିଶୁହଂସ କେଉଁଠି ମନ୍ଦରାଚଳ ବା ସୁମେରୁ ପର୍ବତକୁ ଉଠାଇ ପାରିବ ? ହେ ନାଥ !

କରୁନାସିଂଧୁ ସୁବଂଧୁ କେ ସୁନି ମୃଦୁ ବଚନ ବିନୀତ ।
ସମୁଝାଏ ଉର ଲାଇ ପ୍ରଭୁ ଜାନି ସନେହଁ ସଭୀତ ॥୭୨॥

ମାଗହୁ ବିଦା ମାତୁ ସନ ଜାଈ । ଆୱହୁ ବେଗି ଚଲହୁ ବନ ଭାଈ ॥
ମୁଦିତ ଭଏ ସୁନି ରଘୁବର ବାନୀ । ଭୟଉ ଲାଭ ବଡ଼ ଗଇ ବଡ଼ି ହାନୀ ॥୧॥
ହରଷିତ ହୃଦୟଁ ମାତୁ ପହିଁ ଆଏ । ମନହୁଁ ଅଂଧ ଫିରି ଲୋଚନ ପାଏ ॥
ଜାଇ ଜନନି ପଗ ନାୟଉ ମାଥା । ମନୁ ରଘୁନଂଦନ ଜାନକି ସାଥା ॥୨॥
ପୂଁଛେ ମାତୁ ମଲିନ ମନ ଦେଖୀ । ଲଖନ କହୀ ସବ କଥା ବିସେଷୀ ॥
ଗଈ ସହମି ସୁନି ବଚନ କଠୋରା । ମୃଗୀ ଦେଖି ଦବ ଜନୁ ଚହୁଁ ଓରା ॥୩॥

---

କରୁଣା-ସାଗର ଶୁଣି ସୁଭ୍ରାତାର ବଚନ ମୃଦୁ ବିନୀତ ।
କହିଲେ ବୁଝାଇ ହୃଦୟେ ଲଗାଇ ଜାଣି ସ୍ନେହେ ଭୟଭୀତ ॥୭୨॥

ବିଦାୟ ମାଗି ମାତାଙ୍କ ନିକଟକୁ ଯାଇ । ଆସ ଚଞ୍ଚଳ ବନକୁ ଚାଲ ସଙ୍ଗେ ଭାଇ ॥
ପ୍ରମୋଦ ଲଭିଲେ ଶୁଣି ରଘୁବର ବାଣୀ । ହେଲା ବହୁ ଲାଭ ତୁଟିଗଲା ବଡ ହାନି ॥୧॥
ଆସିଲେ ମାତାଙ୍କ ପାଶେ ସୁପ୍ରସନ୍ନ ମନେ । ଅନ୍ଧ ବା ପାଇଛି ପୁଣି ଲୋଚନ ଯେସନେ ॥
ଯାଇ ନମସ୍କାର କଲେ ଜନନୀ ପଦରେ । ମନ ତେଣେ ରଘୁନାଥ ଜାନକୀ ସଙ୍ଗରେ ॥ ॥
ମଳିନ ମନ ନିରେଖି ପଚାରନ୍ତେ ମାତା । ଲକ୍ଷ୍ମଣ କହିଲେ ସବୁ ବୁଝାଇଣ ବାର୍ତ୍ତା ॥
ଭୟେ ସ୍ତବ୍ଧ ହେଲେ ଶୁଣି କଠୋର ବଚନ । ଚଉଦିଗେ ଦେଖି ମୃଗୀ ଦାବାଗ୍ନି ଯେସନ ॥୩॥

---

ସ୍ୱାଭାବତଃ ମୁଁ କହୁଛି, ଆପଣ ବିଶ୍ୱାସ କରନ୍ତୁ, ମୁଁ ଆପଣଙ୍କୁ ଛାଡି ଗୁରୁ, ପିତା, ମାତା କାହାକୁ ହେଲେ ସୁଦ୍ଧା ଜାଣେ ନାହିଁ ॥ ୨ ॥ ହେ ସ୍ୱାମି ! ହେ ଦୀନବନ୍ଧୁ ! ହେ ହୃଦୟର-ଅନ୍ତର୍ଯ୍ୟାମି ! ଜଗତରେ ବେଦ-ବିଦିତ ଯେତେ ସ୍ନେହ-ସମ୍ବନ୍ଧ, ପ୍ରେମ ଓ ବିଶ୍ୱାସ ରହିଅଛି, ମୋ ନିମନ୍ତେ ସେ ସବୁ କେବଳ ଆପଣ ହିଁ ଅଟନ୍ତି ॥ ୩ ॥ ଯାହାର କୀର୍ତ୍ତି, ବିଭୂତି ଓ ସଦ୍‌ଗତି ପ୍ରିୟ ଓ ଅଭିଳଷିତ, ତାହାର ପକ୍ଷେ ଧର୍ମ ଓ ନୀତି ଉପଦେଶର ପାଳନ ଆବଶ୍ୟକ । କିନ୍ତୁ ହେ କୃପାସିନ୍ଧୁ ! ଯେ ମନ କର୍ମ ଓ ବଚନରେ ପ୍ରଭୁଙ୍କ ଚରଣରେ ପ୍ରେମ ରଖେ, ସେ କଣ ପରିତ୍ୟାଜ୍ୟ ? ॥ ୪ ॥ ଦୋହା :—କରୁଣାସିନ୍ଧୁ ଶ୍ରୀରାମ ଉତ୍ତମ ଭ୍ରାତାଙ୍କର କୋମଳ ଓ ବିନୀତ ବଚନ ଶୁଣିଲେ ଏବଂ ତାଙ୍କୁ ସ୍ନେହ ହେତୁ ଭୀତ ଓ ତ୍ରସ୍ତ ବୁଝି ବକ୍ଷରେ ଲଗାଇ ବୁଝାଇଲେ ॥ ୭୨ ॥ ଚୌପାଈ :—ସେ କହିଲେ, "ହେ ଭାଇ ! ଯାଇ ମାଆଙ୍କଠାରୁ ବିଦାୟ ମାଗିଆଣ ଏବଂ ଶୀଘ୍ର ବନକୁ ଚାଲ ।" ରଘୁବର ଶ୍ରୀରାମଙ୍କ ବାଣୀ ଶୁଣି ଲକ୍ଷ୍ମଣ ଆନନ୍ଦିତ ହୋଇ ପଡିଲେ । ବଡ଼ ଗୋଟାଏ କ୍ଷତି ସତେ ଯେପରି ଦୂର ହୋଇଗଲା ଏବଂ ତତ୍ପରିବର୍ତ୍ତେ ଗୋଟାଏ ବଡ଼ ଲାଭ ଅବା ମିଳିଗଲା ! ॥ ୧ ॥ ସେ ଆନନ୍ଦିତ ହୃଦୟରେ ମାତା ସୁମିତ୍ରାଙ୍କ ପାଖକୁ ଆସିଲେ । ଅନ୍ଧ ନେତ୍ର ଫେରି ପାଇଲା ପ୍ରାୟ ମାତା ସୁମିତ୍ରା ଅନୁଭବ କଲେ । ଲକ୍ଷ୍ମଣ ଯାଇ ମାତାଙ୍କ ଚରଣରେ ମସ୍ତକ ନୁଆଁଇଲେ । କିନ୍ତୁ ତାଙ୍କର ମନ ରଘୁନନ୍ଦନ ଶ୍ରୀରାମ ଓ

ଲଖନ ଲଖେଉ ଭା ଅନରଥ ଆଜୂ । ଏହିଁ ସନେହ ବସ କରବ ଅକାଜୂ ॥
ମାଗତ ବିଦା ସଭୟ ସକୁଚାହୀଁ । ଜାଇ ସଂଗ ବିଧି କହିହି କି ନାହୀଁ ॥୪॥

ସମୁଝି ସୁମିତ୍ରାଁ ରାମ ସିୟ ରୂପୁ ସୁସୀଲୁ ସୁଭାଉ ।
ନୃପ ସନେହୁ ଲଖି ଧୁନେଉ ସିରୁ ପାପିନି ଦୀହ୍ନ କୁଦାଉ ॥୭୩॥

ଧୀରଜୁ ଧରେଉ କୁଅବସର ଜାନୀ । ସହଜ ସୁହୃଦ ବୋଲୀ ମୃଦୁ ବାନୀ ॥
ତାତ ତୁହ୍ମାରି ମାତୁ ବୈଦେହୀ । ପିତା ରାମୁ ସବ ଭାଁତି ସନେହୀ ॥୧॥
ଅବଧ ତହାଁ ଜହଁ ରାମ ନିବାସୂ । ତହଁଇଁ ଦିବସୁ ଜହଁ ଭାନୁ ପ୍ରକାସୂ ॥
ଜୌଁ ପୈ ସୀୟ ରାମୁ ବନ ଜାହୀଁ । ଅବଧ ତୁହ୍ମାର କାଜୁ କଛୁ ନାହୀଁ ॥୨॥
ଗୁର ପିତୁ ମାତୁ ବଂଧୁ ସୁର ସାଈଁ । ସେଇଅହିଁ ସକଲ ପ୍ରାନ କୀ ନାଈଁ ॥
ରାମୁ ପ୍ରାନପ୍ରିୟ ଜୀବନ ଜୀ କେ । ସ୍ୱାରଥ ରହିତ ସଖା ସବହୀ କେ ॥୩॥

---

ଲକ୍ଷ୍ମଣ ଲକ୍ଷ୍ୟ କରିଲେ ହୋଇଲା ଅନର୍ଥ । ଏ ସ୍ନେହ ବଶ କରିବ କାର୍ଯ୍ୟ ନଷ୍ଟେ ବ୍ୟର୍ଥ ॥
ଭୟେ ସଙ୍କୋଚ କରନ୍ତି ବିଦାୟ ହେବାକୁ । କହିବେ କି ନାହିଁ ବିଧି, ସଙ୍ଗତେ ଯିବାକୁ ॥୪॥

ସୀତା ରାମ ଗୁଣ ରୂପ ଶୀଳ ପୁଣ ବୁଝିଣ ସୁମିତ୍ରା ମାତ ।
ନୃପ ସ୍ନେହ ଚିନ୍ତି ମୁଣ୍ଡ କୋଡ଼ି ହୋନ୍ତି ପାପିନୀ ଦେଲା କୁଘାତ ॥୭୩॥

ହୃଦେ ଧୈର୍ଯ୍ୟ ଧରି ତହୁଁ କୁସମୟ ଜାଣି । ଭାଷିଲେ ସହଜେ ମୃଦୁ ହିତକାରୀ ବାଣୀ ॥
ବତ୍ସ, ତୋହର ଜନନୀ ଅଟେ ବଇଦେହୀ । ଜନକ ରାମ ଯେ ସବୁ ପ୍ରକାରେ ତୋ ସ୍ନେହୀ ॥୧॥
ସେଇଠି ଅଯୋଧ୍ୟା ଯହିଁ ରାମଙ୍କ ନିବାସ । ତହିଁ ଦିନ ଜାଣ ଯହିଁ ଦିନେଶ ପ୍ରକାଶ ॥
ଯେବେ ବନେ ଯାଉଛନ୍ତି ସୀତା ରଘୁରାଜ । ଅଯୋଧ୍ୟାରେ ରହି ତୋର ନାହିଁ କିଛି କାର୍ଯ୍ୟ ॥୨॥
ଗୁରୁ ପିତା ମାତା ସ୍ୱାମୀ ଦେବତା ବାନ୍ଧବେ । ପ୍ରାଣ ତୁଲ୍ୟ ସେବା-ଯୋଗ୍ୟ ଅଟନ୍ତି ସରବେ ॥
ରାମ ପ୍ରାଣ-ପ୍ରିୟ ସ୍ୱତ ଜୀବନ ଜୀବର । ସ୍ୱାର୍ଥ-ବିବର୍ଜିତ ସଖା ପ୍ରାଣୀମାନଙ୍କର ॥୩॥

---

ଜାନକୀଙ୍କ ସଙ୍ଗେ ରହିଥାଏ ॥୨॥ ମାତା ତାଙ୍କ ମଳିନ ମୁଖ ଦେଖି ତାଙ୍କୁ ତାହାର କାରଣ ପଚାରିଲେ । ଲକ୍ଷ୍ମଣ ସବୁ କଥା ସବିସ୍ତାର କହି ଶୁଣାଇଲେ । ବନରେ ଚତୁର୍ଦ୍ଦିଗରେ ଅଗ୍ନି ଲାଗି ଥିବାର ଦେଖି ହରିଣୀ ଯେପରି ଶଂକିଯାଏ, ସେହିପରି କଠୋର ବଚନ ଶୁଣି ସୁମିତ୍ରା ଶଂକିଗଲେ ॥ ୩ ॥ ଲକ୍ଷ୍ମଣ ଦେଖିଲେ, ଏବେ ଘୋର ଅନର୍ଥ ଆସି ଉପସ୍ଥିତ ହେଲାଣି । ସ୍ନେହର ଅତ୍ୟଧିକ ବଶତା ଯୋଗୁ ମାତା କାମ ବିଗାଡ଼ି ଦେବେ । ଏଣୁ ବିଦାୟ ମାଗିବା ସମୟରେ ସେ ଭୟରେ ସଙ୍କୁଚିତ ହେଉଥା'ନ୍ତି ଏବଂ ମନେ ମନେ ଭାବୁଥାନ୍ତି—"ହେ ବିଧାତା ! ମାତା ପ୍ରଭୁଙ୍କ ସଙ୍ଗରେ ଯିବାକୁ କହିବେ କି ନାହିଁ ॥ ୪ ॥ ଦୋହା ।—ସୁମିତ୍ରା ଶ୍ରୀରାମ ଓ ସୀତାଙ୍କ ରୂପ ଓ ସୁଶୀଳ ସ୍ୱଭାବ ହୃଦୟଙ୍ଗମ କଲେ ଏବଂ ତାଙ୍କ ଉପରେ ରାଜାଙ୍କ ପ୍ରେମ ଦେଖି ଆପଣାର ମୁଣ୍ଡ ପିଟିଲେ ଏବଂ କହିଲେ, "ପାପିନୀ କୈକେୟୀ ଅତି କଦର୍ଯ୍ୟ ଭାବରେ ଆଘାତ କଲା ।" ॥ ୭୩ ॥ ଚୌପାଈ ।—କିନ୍ତୁ କୁସମୟ ଜାଣି ଧୈର୍ଯ୍ୟ ଧାରଣ କଲେ ଏବଂ ସହଜ ସୁହୃଦ ରୂପେ ମୃଦୁଳ ବାଣୀ

ପୂଜନୀୟ ପ୍ରିୟ ପରମ ଜହାଁ ତେ । ସବ ମାନିଅହିଁ ରାମ କେ ନାତେ ॥
ଅସ ଜିୟଁ ଜାନି ସଂଗ ବନ ଜାହୂ । ଲେହୁ ତାତ ଜଗ ଜୀବନ ଲାହୂ ॥୪॥
ଭୂରି ଭାଗ ଭାଜନୁ ଭୟହୁ ମୋହି ସମେତ ବଲି ଜାଉଁ ।
ଜୌଂ ତୁହ୍ମରେଁ ମନ ଛାଡ଼ି ଛଲୁ କୀହ୍ନ ରାମ ପଦ ଠାଉଁ ॥୭୪॥
ପୁତ୍ରବତୀ ଜୁବତୀ ଜଗ ସୋଈ । ରଘୁପତି ଭଗତୁ ଜାସୁ ସୁତୁ ହୋଈ ॥
ନତରୁ ବାଁଝ ଭଲି ବାଦି ବିଆନୀ । ରାମ ବିମୁଖ ସୁତ ତେଂ ହିତ ଜାନୀ ॥୧॥
ତୁହ୍ମରେହିଁ ଭାଗ ରାମୁ ବନ ଜାହୀଂ । ଦୂସର ହେତୁ ତାତ କଛୁ ନାହୀଂ ॥
ସକଲ ସୁକୃତ କର ବଡ଼ ଫଲୁ ଏହୂ । ରାମ ସୀୟ ପଦ ସହଜ ସନେହୂ ॥୨॥

---

ଜଗତେ ଯେତେ ପରମ ପ୍ରିୟ ପୂଜନୀୟ । ରାମଙ୍କ ସମ୍ବନ୍ଧ ଘେନି ସର୍ବେ ମାନନୀୟ ॥
ଏହା ମନେ ବିଚାରିଣ ଯାଅ ସଙ୍ଗେ ବନ । ଲଭ ଜୀବନର ଲାଭ ଜଗତେ, ନନ୍ଦନ ॥୪॥
ବଡ଼ ଭାଗ୍ୟ ପାତ୍ର ହେଲ ମୋ ସମେତ ନିଛୁଡ଼ିଯାଏ ମୁଁ, କୁମର ।
ଯେଣୁ ତୋର ମନ ଛଳ ଛାଡ଼ି ସ୍ଥାନ କଲା ଶ୍ରୀରାମ ପୟର ॥୭୪॥
ପୁତ୍ରବତୀ ଯୁବତୀ ସେ ଜଗତେ ଅଟଇ । ରଘୁବର-ଭକ୍ତ ଯାର ତନୟ ହୁଅଇ ॥
ବରଂ ବନ୍ଧ୍ୟା ଶ୍ରେୟ, ବୃଥା ସନ୍ତାନ ଭିଆଣ । ରାମ-ବିମୁଖ ପୁତ୍ରଠୁଁ ଯେ ଜାଣେ ସ୍ୱକଲ୍ୟାଣ ॥୧॥
ତୋ ଭାଗ୍ୟରୁ ରାମଚନ୍ଦ୍ର ଯାଉଛନ୍ତି ବନ । ନାହିଁ ଏଥି ଅନ୍ୟ କିଛି କାରଣ ନନ୍ଦନ ॥
ସର୍ବ ସୁକୃତର ଅଟେ ଏହି ବଡ଼ ଫଳ । ରାମ ସୀତାଙ୍କ ପୟରେ ସ୍ନେହ ସୁବିମଳ ॥୨॥

---

ବୋଇଲେ—"ହେ ବତ୍ସ ! ଜାନକୀ ତୁମ ମାତା ଏବଂ ସକଳ ପ୍ରକାରେ ସ୍ନେହୀ ଶ୍ରୀରାମ ତୁମ ପିତା ! ॥ ୧ ॥ ଯେଉଁଠି ଶ୍ରୀରାମଙ୍କ ନିବାସ, ସେହିଠାରେ ଅଯୋଧ୍ୟା । ଯେଉଁଠାରେ ସୂର୍ଯ୍ୟଙ୍କର ପ୍ରକାଶ, ସେହିଠାରେ ଦିନ । ଯଦି ନିଶ୍ଚୟ ସୀତାରାମ ବନକୁ ଯାଉଛନ୍ତି, ତାହା ହେଲେ ଏ ଅଯୋଧ୍ୟାରେ ତୁମର ଟିକିଏ ହେଲେ କାମ ନାହିଁ ॥୨॥ ଗୁରୁ, ପିତା, ମାତା, ଭାଇ, ଦେବତା ଓ ସ୍ୱାମୀ—ଏ ସମସ୍ତଙ୍କର ସେବା ଅବଶ୍ୟ ପ୍ରାଣ ସମାନ କରିବା ଉଚିତ । ମାତ୍ର ଶ୍ରୀରାମ ତ ସମସ୍ତ ପ୍ରାଣର ପ୍ରିୟ, ହୃଦୟ ବା ଅନ୍ତରର ଜୀବନ ଏବଂ ସମସ୍ତଙ୍କ ନିଃସ୍ୱାର୍ଥପର ସଖା ॥ ୩ ॥ ଜଗତରେ ଯେତେ ସବୁ ପୂଜ୍ୟ ଓ ପରମପ୍ରିୟ ଲୋକ ଅଛନ୍ତି, ସେମାନେ ସମସ୍ତେ ରାମଙ୍କ ସମ୍ବନ୍ଧରୁ ପରମ ପୂଜ୍ୟ ଓ ପ୍ରିୟ ରୂପେ ମାନ୍ୟ । ହେ ବାପ ! ହୃଦୟରେ ଏହିପରି ଜାଣି ତାଙ୍କ ସହିତ ବନକୁ ଯାଅ ଏବଂ ଜଗତରେ ଜୀବନ-ଧାରଣର ଲାଭ ଉଠାଅ ! ॥ ୪ ॥ ଦୋହା :—ମୁଁ ନିଉଛୁଡ଼ିଯାଉଛି । ହେ ପୁତ୍ର ! ମୋ ସମେତ ତୁମେ ବଡ଼ ସୌଭାଗ୍ୟର ପାତ୍ର ହେଲ । କାରଣ, ମନରୁ ଛଳ-କପଟ ତ୍ୟାଗ କରି, ତୁମେ ଶ୍ରୀରାମଙ୍କ ଚରଣରେ ସ୍ଥାନ ପାଇଅଛ ॥ ୭୪ ॥ ଚୌପାଈ :—ସଂସାରରେ ଯେଉଁ ଯୁବତୀର ପୁତ୍ର ଶ୍ରୀରାମଙ୍କ ଭକ୍ତ, ସେହି ଯୁବତୀ ଯଥାର୍ଥରେ ପୁତ୍ରବତୀ-ପଦବାଚ୍ୟ । ଅନ୍ୟଥା ଯେଉଁ ସ୍ତ୍ରୀ ରାମ-ବିମୁଖ ପୁତ୍ରଠାରୁ କେବଳ ଆପଣା ସ୍ୱାର୍ଥ-ହିତ ଜାଣେ, ତାହା ଅପେକ୍ଷା ବାଞ୍ଝ ହେବା ବରଂ ଭଲ । (ପଶୁ ପରି) ତାହାର

ରାଗୁ ରୋଷୁ ଇରିଷା ମଦୁ ମୋହୂ । ଜନି ସପନେହୁଁ ଇନ୍ହ କେଁ ବସ ହୋହୂ ॥
ସକଲ ପ୍ରକାର ବିକାର ବିହାଈ । ମନ କ୍ରମ ବଚନ କରେହୁ ସେବକାଈ ॥୩॥
ତୁମ୍ହ କହୁଁ ବନ ସବ ଭାଁତି ସୁପାସୂ । ସଁଗ ପିତୁ ମାତୁ ରାମୁ ସିୟ ଜାସୂ ॥
ଜେହିଁ ନ ରାମୁ ବନ ଲହହିଁ କଲେସୂ । ସୁତ ସୋଇ କରେହୁ ଇହଇ ଉପଦେସୂ ॥୪॥

ଉପଦେସୁ ୟହୁ ଜେହିଁ ତାତ ତୁମ୍ହରେ ରାମୁ ସିୟ ସୁଖୁ ପାଓହୀଁ ।
ପିତୁ ମାତୁ ପ୍ରିୟ ପରିବାରୁ ପୁର ସୁଖ ସୁରତି ବନ ବିସରାଓହୀଁ ॥
ତୁଲସୀ ପ୍ରଭୁହି ସିଖ ଦେଇ ଆୟସୁ ଦୀନ୍ହ ପୁନି ଆସିଷ ଦଈ ।
ରତି ହୋଉ ଅବିରଲ ଅମଲ ସିୟ ରଘୁବୀର ପଦ ନିତ ନିତ ନଈ ॥

ମାତୁ ଚରନ ସିରୁ ନାଇ ଚଲେ ତୁରତ ସଂକିତ ହୃଦୟଁ ।
ବାଗୁର ବିଷମ ତୋରାଇ ମନହୁଁ ଭାଗ ମୃଗୁ ଭାଗ ବସ ॥୭୫॥

---

ରାଗ ରୋଷ ମଦ ମୋହ ଈର୍ଷ୍ୟାଦି ଆବର । ସ୍ୱପ୍ନେହେଁ ଏହାଙ୍କ ବଶ ନ ହେବୁ କୁମର ॥
ସମସ୍ତ ବିକାର ନିଜ ଅନ୍ତରୁ ତେଜିବୁ । ମନ କର୍ମ ବଚନରେ ସେବା କରୁଥିବୁ ॥୩॥
ବନ ତୋ ସୁଖ-ଦାୟକ ହେବ ସବୁମତେ । ଯେଣୁ ପିତା ମାତା ରାମ ଜାନକୀ ସଙ୍ଗତେ ॥
ଯେମନ୍ତେ ରାମ ବିପିନେ ନ ଲଭିବେ କ୍ଲେଶ । ତେମନ୍ତ କରିବୁ ସୁତ ଏହି ଉପଦେଶ ॥୪॥

ଉପଦେଶ ଏମନ୍ତ ତୁମ୍ଭଙ୍କୁ, ଯେହ୍ନେ ସୁତ ସୁଖ ଲଭିବେ ରାମ ସୀତା ।
ବନେ ଭୁଲିବେ ପୁର ପ୍ରିୟ ମାତା ପିତୃର ପରିବାରର ସୁଖ ଚିନ୍ତା ।
ତୁଲସୀ ଶିଖାଇ କ୍ରମରେ, ଆଶିଷି ଆଦେଶିରେ ତ୍ୱରେ,
ହେଉ ପ୍ରୀତି ଅଚଳ ନିତ୍ୟ ନବ ବିମଳ ଶ୍ରୀରାମ ସୀତାଙ୍କ ପଦ୍ମରେ ॥

ସଶଙ୍କିତ ହୃଦେ ଗମିଲେ ବହନ ମାତାଙ୍କୁ ଶିର ନୁଆଇଁ ।
ଭାଗ୍ୟ ବଶେ ମୃଗ ପଳାଏ ଯେସନ ବିଷମ ଜାଲ ଛିଣ୍ଡାଇ ॥୭୫॥

---

ପୁତ୍ର ଜନମ କରିବା ବ୍ୟର୍ଥ ॥ ୧ ॥ ତୋହର ଭାଗ୍ୟ ଯୋଗୁ ଶ୍ରୀରାମ ବନକୁ ଯାଉଅଛନ୍ତି । ହେ ବତ୍ସ ! ଅନ୍ୟ କୌଣସି କାରଣ ନାହିଁ । ଶ୍ରୀ ସୀତା-ରାମଙ୍କ ଚରଣ-କମଳରେ ସହଜ ସ୍ୱାଭାବିକ ପ୍ରେମ ସକଳ ସୁକୃତର ସର୍ବଶ୍ରେଷ୍ଠ ଫଳ ॥ ୨ ॥ ରାଗ, ରୋଷ, ଈର୍ଷ୍ୟା, ମଦ ଓ ମୋହ—ସ୍ୱପ୍ନରେ ସୁଦ୍ଧା ଏମାନଙ୍କର ବଶ ହେବୁନାହିଁ । ସବୁପ୍ରକାର ବିକାର ତ୍ୟାଗ କରି ମନ, ବଚନ ଓ କର୍ମରେ ଶ୍ରୀସୀତାରାମଙ୍କ ସେବା କରିବୁ ॥ ୩ ॥ ତୋ ସହିତ ଶ୍ରୀରାମସୀତାରୂପ ପିତା-ମାତା ରହିଛନ୍ତି । ତେଣୁ ତୁ ବନରେ ସମସ୍ତ ପ୍ରକାର ଆରାମ ପାଇବୁ । ହେ ପୁତ୍ର ! ମୋର ଏତକ ମାତ୍ର ଉପଦେଶ, ବନରେ ଶ୍ରୀରାମ ଯେପରି କଷ୍ଟ ନ ପାଆନ୍ତି, ତାହା ହିଁ କରିବୁ ॥୪॥ ଛନ୍ଦ :—ହେ ତାତ ! ମୋର ତୋତେ ଏହି ଉପଦେଶ । ବନରେ ତୋହରି ଯୋଗେ ଶ୍ରୀରାମ ଓ ସୀତା ଯେପରି ସୁଖ ଲାଭ କରିବେ ଏବଂ ପିତା, ମାତା, ପ୍ରିୟ ପରିବାର ତଥା ନଗରର ସମସ୍ତ ସୁଖ ଭୁଲିଯିବେ, ତୁ

ଗଏ ଲଖନୁ ଜହଁ ଜାନକିନାଥୂ । ଭେ ମନ ମୁଦିତ ପାଇ ପ୍ରିୟ ସାଥୂ ॥
ବଂଦି ରାମ ସିୟ ଚରନ ସୁହାଏ । ଚଲେ ସଂଗ ନୃପମଂଦିର ଆଏ ॥୧॥
କହହିଁ ପରସପର ପୁର ନର ନାରୀ । ଭଲି ବନାଇ ବିଧି ବାତ ବିଗାରୀ ॥
ତନ କୃସ ମନ ଦୁଖୁ ବଦନ ମଲୀନେ । ବିକଲ ମନହୁଁ ମାଖୀ ମଧୁ ଛୀନେ ॥୨॥
କର ମୀଜହିଁ ସିରୁ ଧୁନି ପଛିତାହୀଁ । ଜନୁ ବିନୁ ପଂଖ ବିହଗ ଅକୁଲାହୀଁ ॥
ଭଇ ବଡ଼ି ଭୀର ଭୂପ ଦରବାରା । ବରନି ନ ଜାଇ ବିଷାଦୁ ଅପାରା ॥୩॥
ସଚିବଁ ଉଠାଇ ରାଉ ବୈଠାରେ । କହି ପ୍ରିୟ ବଚନ ରାମୁ ପଗୁ ଧାରେ ॥
ସିୟ ସମେତ ଦୋଉ ତନୟ ନିହାରୀ । ବ୍ୟାକୁଲ ଭୟଉ ଭୂମିପତି ଭାରୀ ॥୪॥

---

ଗଲେ ସୌମିତ୍ରି ଯହିଁ ଥିଲେ ସୀତା-ସାଇଁ । ହୋଇଲେ ମୁଦିତ ମନ-ପ୍ରିୟ ସଙ୍ଗୀ ପାଇ ॥
ବନ୍ଦି ରାମ ବଇଦେହୀ ଚରଣ ବିନୟେ । ଚଳି ସଙ୍ଗେ ଆଗମିଲେ ନୃପଙ୍କ ନିଲୟେ ॥୧॥
କହନ୍ତି ନଗର ନର ନାରୀ ପରସ୍ପର । ବିଧି ନଷ୍ଟ କଲା ରଚି ସଂଯୋଗ ସୁନ୍ଦର ॥
କୃଶତନୁ ମନ ଦୁଃଖେ ମଳିନ ବଦନ । ମଧୁ ହରଣେ ମଧୁପ ବିକଳ ଯେସନ ॥୨॥
କର ମଳି ଶିର ପିଟି ସନ୍ତାପ କରନ୍ତି । ପକ୍ଷ ବିନେ ପକ୍ଷୀ ଯଥା ଆକୁଳ ହୁଅନ୍ତି ॥
ହୋଇଲା ଅତି ଗହଳ ମହୀପଙ୍କ ଦ୍ୱାରେ । ଅପାର ବିଷାଦ କେଉଁ କବି ବର୍ଣ୍ଣି ପାରେ ॥୩॥
ସଚିବ ଉଠାଇ ନୃପତିଙ୍କି ବସାଇଲେ । କହିଣ ପ୍ରିୟ ବଚନ ରାମ ଆଗମିଲେ ॥
ସୀତାଙ୍କ ସହ ନିରେଖି ତନୟ ଯୁଗଳ । ହୋଇଲେ ଅବନୀଶ୍ୱର ଅତ୍ୟନ୍ତ ବିକଳ ॥୪॥

---

ତ ହୋ ହିଁ କରିବୁ ।" ତୁଳସୀଦାସ କହନ୍ତି, ସୁମିତ୍ରା ଏହି ପ୍ରକାରେ ଆମର ପ୍ରଭୁ (ଲକ୍ଷ୍ମଣ)ଙ୍କୁ ଉପଦେଶ ଦେଇ ବନ-ଗମନ ନିମନ୍ତେ ଆଜ୍ଞା ଦେଲେ ଏବଂ ପୁଣି ଆଶୀର୍ବାଦ ଦେଲେ, "ଶ୍ରୀ ସୀତା ଓ ଶ୍ରୀ ରଘୁବୀରଙ୍କ ଚରଣରେ ତୋହର ନିର୍ମଳ (ନିଷ୍କାମ ଓ ଅନନ୍ୟ) ଏବଂ ପ୍ରଗାଢ ପ୍ରେମ ନିତ୍ୟ ନୂତନ ହେଉ ।" ॥ ୪ ॥ ସୋରଠା :—ମାତାଙ୍କ ଚରଣରେ ମୁଣ୍ଡ ନୁଆଁଇ ବନ ଯିବା ପଥରେ ଆଉ କୌଣସି ପ୍ରତିବନ୍ଧକ କାଳେ ଆସି ପହଞ୍ଚିଯିବ, ଏହି ଆଶଙ୍କାରେ ଶଂକିତହୃଦୟ ଲକ୍ଷ୍ମଣ ତୁରନ୍ତ ଚାଲିଗଲେ । ସେତେବେଳେ ଅବା ସୌଭାଗ୍ୟବଶତଃ କୌଣସି ହରିଣ ବିଷମ ଜାଲ ଛିଣ୍ଡାଇ ଦଉଡ଼ି ପଳାଇଯାଉଛି କି ! ॥ ୭୫ ॥ ଚୌପାଇ:—ଜାନକୀ-ନାଥ ଯେଉଁଠାରେ ଥିଲେ, ଲକ୍ଷ୍ମଣ ସେହିଠାକୁ ଗଲେ । ପ୍ରିୟବରଙ୍କ ସଙ୍ଗ ପାଇ ସେ ମନରେ ଅତିଶୟ ପ୍ରସନ୍ନ ହେଲେ । ଶ୍ରୀରାମ ଓ ସୀତାଙ୍କ ଚରଣ ବନ୍ଦନା-ପୂର୍ବକ ସେ ଉଭୟଙ୍କ ସହିତ ଚାଲିଲେ ଏବଂ ରାଜଭବନ ମଧ୍ୟକୁ ଆସିଲେ ॥ ୧ ॥ ନଗରର ନରନାରୀ ପରସ୍ପର ମଧ୍ୟରେ କଥାବାର୍ତ୍ତା କରୁଥା'ନ୍ତି ॥ ୧ ॥ "ବିଧାତା ଭଲ ସମାଜ ଗଢ଼ି ଆଣି, ଭର ନାଚ ବେଳକୁ ମୃଦଙ୍ଗ ଫଟାଇଦେଲା ! ସେମାନଙ୍କ ଶରୀର ଦୁର୍ବଳ, ମନ ବିଷଣ୍ଣ ଓ ମୁଖ ମଳିନ । ମଧୁ ଛଡ଼ାଇ ନେଲେ ମଧୁ-ମକ୍ଷୀମାନେ ଯେପରି ବ୍ୟାକୁଳ ହୁଅନ୍ତି, ସେମାନେ ସେହିପରି ବ୍ୟାକୁଳ ହେଉଥା'ନ୍ତି ॥ ୨ ॥ ସମସ୍ତେ ହାତ ମଳି ମୁଣ୍ଡ ପିଟି ପଶ୍ଚାତ୍ତାପ କରୁଥା'ନ୍ତି । ଡେଣା ବିନା ପକ୍ଷୀ ଯେପରି ବ୍ୟାକୁଳ ହୁଏ, ସେମାନେ

ସୀୟ ସହିତ ସୁତ ସୁଭଗ ଦୋଉ ଦେଖି ଦେଖି ଅକୁଲାଇ ।
ବାରହିଂ ବାର ସନେହ ବସ ରାଉ ଲେଇ ଉର ଲାଇ ॥୭୬॥
ସକଇ ନ ବୋଲି ବିକଲ ନରନାହୂ । ସୋକ ଜନିତ ଉର ଦାରୁନ ଦାହୂ ॥
ନାଇ ସୀସୁ ପଦ ଅତି ଅନୁରାଗା । ଉଠି ରଘୁବୀର ବିଦା ତବ ମାଗା ॥୧॥
ପିତୁ ଅସୀସ ଆୟସୁ ମୋହି ଦୀଜୈ । ହରଷ ସମୟ ବିସମଉ କତ କୀଜୈ ॥
ତାତ କିଏଁ ପ୍ରିୟ ପ୍ରେମ ପ୍ରମାଦୂ । ଜସୁ ଜଗ ଜାଇ ହୋଇ ଅପବାଦୂ ॥୨॥
ସୁନି ସନେହ ବସ ଉଠି ନରନାହାଁ । ବୈଠାରେ ରଘୁପତି ଗହି ବାହାଁ ॥
ସୁନହୁ ତାତ ତୁମ୍ହ କହୁଁ ମୁନି କହହୀଁ । ରାମୁ ଚରାଚର ନାୟକୁ ଅହହୀଁ ॥୩॥
ସୁଭ ଅରୁ ଅସୁଭ କରମ ଅନୁହାରୀ । ଈସୁ ଦେଇ ଫଲୁ ହୃଦୟଁ ବିଚାରୀ ॥
କରଇ ଜୋ କରମ ପାଵ ଫଲ ସୋଈ । ନିଗମ ନୀତି ଅସି କହ ସବୁ କୋଈ ॥୪॥

---

ସୀତା ସହ ବେନି କୁମରଙ୍କୁ ଦେଖି ଦେଖି ଆକୁଳ ହୁଅନ୍ତି ।
ସ୍ନେହ–ବଶେ ନର–ବର ବାରମ୍ବାର ହୃଦେ ଲଗାଇ ନିଅନ୍ତି ॥୭୬॥
ବୋଲି ନ ପାରନ୍ତି କିଛି ବିକଳେ ରାଜନ । ଶୋକ ଜନିତ ହୃଦୟେ ଦାରୁଣ ଦହନ ॥
ଅତି ଅନୁରାଗେ ତହୁଁ ଉଠି ରଘୁରାୟ । ଚରଣେ ଶିର ନୁଆଇଁ ମାଗିଲେ ବିଦାୟ ॥୧॥
ଦିଅ ପିତା, ମୋତେ ଶୁଭ ଆଶିଷ ଆଦେଶ । ହର୍ଷ ସମୟେ ନ କର ବିଷାଦ ବିଶେଷ ॥
ତାତ ' ପ୍ରିୟଜନେ ପ୍ରେମ କରନ୍ତେ ପ୍ରମାଦ । ଯଶ ଯିବ ଜଗତରେ ହେବ ଅପବାଦ ॥୨॥
ଶୁଣି ଅତି ସ୍ନେହବଶ ଉଠି ନରବର । ବସାଇଲେ ଧରି ରଘୁନନ୍ଦନଙ୍କ କର ॥
ଶୁଣ ସୁତ, ମୁନିଜନ ତୁମ୍ଭଙ୍କୁ କହନ୍ତି । ରାମ ଚରାଚର ବିଶ୍ୱ–ନାୟକ ଅଟନ୍ତି ॥୩॥
ଶୁଭ ଅଶୁଭ ଜୀବ କର୍ମ ଅନୁସାର । ଈଶ ଦିଏ ଫଳ ହୃଦେ କରିଣ ବିଚାର ॥
ଯେ କର୍ମ କରଇ ତା'ର ଫଳ ସେ ଲଭଇ । ନିଗମ ନୀତି ଏମନ୍ତ ସଂସାର କହଇ ॥୪॥

---

ସେହିପରି ବ୍ୟାକୁଳ ହେଉଥା'ନ୍ତି । ରାଜଦ୍ୱାରରେ ବଡ ଭିଡ ହେଉଥାଏ । ସୁମନ୍ତ୍ରଙ୍କ ମନର ଅପାର ବିଷାଦ ଭାଷାତୀତ ॥ ୩ ॥ "ଶ୍ରୀରାମଚନ୍ଦ୍ର ପଦାର୍ପଣ କରିଅଛନ୍ତି"— ଏ ପ୍ରିୟ ବଚନ କହି ମନ୍ତ୍ରୀ ରାଜାଙ୍କୁ ଉଠାଇ ବସାଇଲେ । ସୀତାଙ୍କ ସହିତ ଦୁଇ ପୁତ୍ରଙ୍କୁ ବନ–ଗମନ ନିମନ୍ତେ ପ୍ରସ୍ତୁତ ଦେଖି, ରାଜା ବ୍ୟାକୁଳ ହେଲେ ॥ ୪ ॥
ଦୋହା :—ସୀତାଙ୍କ ସହିତ ଦୁଇ ସୁନ୍ଦର ପୁତ୍ରଙ୍କୁ ବାରମ୍ବାର ଦେଖି ରାଜା ବ୍ୟାକୁଳ ହେଉଥା'ନ୍ତି ଏବଂ ସ୍ନେହବଶତଃ ବାରମ୍ବାର ତାଙ୍କୁ ଆଲିଙ୍ଗନ କରୁଥା'ନ୍ତି ॥ ୭୬ ॥
ଚୌପାଈ :—ରାଜା ବ୍ୟାକୁଳ, କଥା କହିପାରୁ ନ ଥା'ନ୍ତି । ହୃଦୟରେ ଶୋକ–ଜନିତ ନିଦାରୁଣ ସନ୍ତାପ । ତତ୍ପରେ ରଘୁବୀର ଶ୍ରୀରାମ ଅତ୍ୟନ୍ତ ପ୍ରେମରେ ପିତାଙ୍କ ଚରଣରେ ମସ୍ତକ ଅବନତ କଲେ ଏବଂ ଉଠି ବିଦାୟ ମାଗିଲେ ॥ ୧ ॥ "ହେ ପିତା ! ମୋତେ ଆଶୀର୍ବାଦ ଏବଂ ଆଜ୍ଞା ଦିଅନ୍ତୁ । ଆନନ୍ଦ ସମୟରେ ଆପଣ ଶୋକ କାହିଁକି କରୁଅଛନ୍ତି ? ହେ ତାତ ! ପ୍ରିୟଜନ ପ୍ରତି ପ୍ରେମବଶ ହୋଇ ପ୍ରମାଦ ବା କର୍ତ୍ତବ୍ୟ–କର୍ମରେ ତ୍ରୁଟି କଲେ ଜଗତରେ

ଔରୁ କରୈ ଅପରାଧୁ କୋଉ ଔର ପାଓ୍ୱ ଫଲ ଭୋଗୁ ।
ଅତି ବିଚିତ୍ର ଭଗବଂତ ଗତି କୋ ଜଗ ଜାନୈ ଜୋଗୁ ॥୭୭॥
ରାୟଁ ରାମ ରାଖନ ହିତ ଲାଗୀ । ବହୁତ ଉପାୟ କିଏ ଛଲୁ ତ୍ୟାଗୀ ॥
ଲଖୀ ରାମ ରୁଖ ରହତ ନ ଜାନେ । ଧରମ ଧୁରଂଧର ଧୀର ସୟାନେ ॥୧॥
ତବ ନୃପ ସୀୟ ଲାଇ ଉର ଲୀହ୍ନୀ । ଅତି ହିତ ବହୁତ ଭାଁତି ସିଖ ଦୀହ୍ନୀ ॥
କହି ବନ କେ ଦୁଖ ଦୁସହ ସୁନାଏ । ସାସୁ ସସୁର ପିତୁ ସୁଖ ସମୁଝାଏ ॥୨॥
ସିୟ ମନୁ ରାମ ଚରନ ଅନୁରାଗା । ଘରୁ ନ ସୁଗମୁ ବନୁ ବିଷମୁ ନ ଲାଗା ॥
ଔରଉ ସବହିଁ ସୀୟ ସମୁଝାଈ । କହି କହି ବିପିନ ବିପତି ଅଧିକାଈ ॥୩॥

---

ଅପରାଧ କେହି ଇତର କରଇ ଅନ୍ୟ ତା ଫଲ ଭୋଗଇ ।
ଅଦ୍ଭୁତ ଅଟ ଦଇବର ଗତି କିଏ ଜଗତେ ଜାଣଇ ॥୭୭॥
ରାଜା ଶ୍ରୀ ରଘୁନାଥଙ୍କୁ ରଖିବାର ଲାଗି । ବହୁତ ଉପାୟ କଲେ ଛଳ ପରିତ୍ୟାଗି ॥
ନିରେଖି ମୁଖ ଜାଣିଲେ ନ ରହିବେ ରାମ । ଧର୍ମ-ଧୁରନ୍ଧର ଧୀର ପ୍ରବୀଣ ନିଧାନ ॥୧॥
ତହୁଁ ସୀତାଙ୍କୁ ହୃଦୟେ ଲଗାଇ ନରେଶ । ଅତି ସ୍ନେହେ ନାନାବିଧ ଦେଲେ ଉପଦେଶ ॥
କହିଣ ଦୁଃସହ ବନ ଦୁଃଖ ଶୁଣାଇଲେ । ଶାଶୁ ଶ୍ୱଶୁର ପିତାଙ୍କ ସୁଖ ବୁଝାଇଲେ ॥୨॥
ସୀତାଙ୍କ ମନ ଶ୍ରୀରାମ ପଦେ ଅନୁରକ୍ତ । ନ ଲାଗେ ସୁଗମ ଗୃହ, ଦୁର୍ଗମ ବନସ୍ତ ॥
ବୁଝାନ୍ତି ବଇଦେହୀଙ୍କୁ ପୁର ନର ନାରୀ । କହି କହି ବିପିନ ବିପତ୍ତି ଅତି ଭାରୀ ॥୩॥

---

ଯଶ ଦୂର ହୋଇଯାଏ ଏବଂ ନିନ୍ଦା ବ୍ୟାପେ ॥ ୨ ॥ ଏହା ଶୁଣି ସ୍ନେହବଶ ରାଜା ଉଠି ଶ୍ରୀ ରଘୁନାଥଙ୍କ ବାହୁ ଧରି ତାଙ୍କୁ ବସାଇଦେଲେ ଏବଂ କହିଲେ, "ହେ ବତ୍ସ ! ଶୁଣ ମୁନି ଜନମାନେ ତୁମ ବିଷୟରେ କହନ୍ତି—'ଶ୍ରୀରାମ ଚରାଚର ସ୍ୱାମୀ ।' ॥୩॥ ଜୀବର ଶୁଭ ଓ ଅଶୁଭ କର୍ମାନୁସାରେ ଈଶ୍ୱର ହୃଦୟରେ ବିଚାରପୂର୍ବକ ତାହାଙ୍କୁ ଫଳ ଦାନ କରନ୍ତି । ଯେ କର୍ମ କରେ, ସେଇ ହିଁ ଫଳ ପାଏ । ଏହା ବେଦର ନୀତି ଏବଂ ଏହା ହିଁ ସମସ୍ତେ କହନ୍ତି ॥ ୪ ॥ ଦୋହା :—କିନ୍ତୁ ଏହି ଅବସରରେ ବିପରୀତ ଘଟଣମାନ ଘଟୁଛି । ଜଣେ ଅପରାଧ କରୁଛି, ତ ଅନ୍ୟ ଜଣେ କେହି ତାହାର ଫଳ ଭୋଗୁଛି । ଭଗବାନଙ୍କ ଲୀଳା ବଡ ବିଚିତ୍ର, ତାହା ଜାଣିବା ଯୋଗ୍ୟ ବ୍ୟକ୍ତି ଜଗତରେ କିଏ ?" ॥ ୭୭ ॥
ଚୌପାଈ :—ରାଜା ଏହି ରୂପେ ଶ୍ରୀରାମଙ୍କୁ ରଖିବା ନିମନ୍ତେ ଛନ୍ଦ-କପଟ-ତ୍ୟାଗପୂର୍ବକ ବହୁତ ଉପାୟ କଲେ । କିନ୍ତୁ ଯେତେବେଳେ ସେ ଧର୍ମ-ଧୁରନ୍ଧର, ଧୀର ଓ ବୁଦ୍ଧିମାନ୍ ଶ୍ରୀରାମଙ୍କ ମୁଖମୁଦ୍ରା ଦେଖିଲେ, ସେତେବେଳେ ତାଙ୍କ ରହିବାର ଆଶା ଆଉ ପାଇଲେ ନାହିଁ ॥ ୧ ॥ ତତ୍ପରେ ରାଜା ସୀତାଙ୍କୁ ବକ୍ଷରେ ଲଗାଇ ନେଲେ ଏବଂ ବଡ ପ୍ରେମରେ ବହୁବିଧ ଉପଦେଶ ଦେଲେ । ବନର ଦୁଃସହ ଦୁଃଖ କହି ଶୁଣାଇଲେ ଏବଂ ଶାଶୁ-ଶ୍ୱଶୁର ତଥା ପିତାଙ୍କ ନିକଟରେ ରହିବାର ସୁଖ ସମସ୍ତ ବୁଝାଇଲେ ॥ ୨ ॥ କିନ୍ତୁ ସୀତାଙ୍କ ମନ ଶ୍ରୀରାମଙ୍କ ଚରଣରେ ଅନୁରକ୍ତ ଥିଲା । ସେଥିଯୋଗୁ ତାଙ୍କୁ ଘର ଭଲ ଲାଗୁ

ସଚିବ ନାରି ଗୁର ନାରି ସୟାନୀ । ସହିତ ସନେହ କହହିଁ ମୃଦୁ ବାନୀ ॥
ତୁମ୍ହ କହୁଁ ତୌ ନ ଦୀନ୍ହ ବନବାସୂ । କରହୁ ଜୋ କହହିଁ ସସୁର ଗୁର ସାସୂ ॥୪॥
ସିଖ ସୀତଲି ହିତ ମଧୁର ମୃଦୁ ସୁନି ସୀତହି ନ ସୋହାନି ।
ସରଦ ଚଂଦ ଚଂଦିନି ଲଗତ ଜନୁ ଚକଈ ଅକୁଲାନି ॥୭୮॥
ସୀୟ ସକୁଚ ବସ ଉତରୁ ନ ଦେଈ । ସୋ ସୁନି ତମକି ଉଠୀ କୈକେଈ ॥
ମୁନି ପଟ ଭୂଷନ ଭାଜନ ଆନୀ । ଆଗେଁ ଧରି ବୋଲୀ ମୃଦୁ ବାନୀ ॥୧॥
ନୃପହି ପ୍ରାନପ୍ରିୟ ତୁମ୍ହ ରଘୁବୀରା । ସୀଲ ସନେହ ନ ଛାଡ଼ିହି ଭୀରା ॥
ସୁକୃତୁ ସୁଜସୁ ପରଲୋକୁ ନସାଊ । ତୁମ୍ହହି ଜାନ ବନ କହିହି ନ କାଊ ॥୨॥
ଅସ ବିଚାରି ସୋଇ କରହୁ ଜୋ ଭାୱା । ରାମ ଜନନି ସିଖ ସୁନି ସୁଖୁ ପାୱା ॥
ଭୂପହି ବଚନ ବାନସମ ଲାଗେ । କରହିଁ ନ ପ୍ରାନ ପୟାନ ଅଭାଗେ ॥୩॥

---

ସଚିବ ନାରୀ ଆଦର ଗୁରୁ ପତ୍ନୀ ଆସି । ସ୍ନେହ ସହିତ ବୁଝାନ୍ତି ମୃଦୁବାଣୀ ଭାଷି ॥
ତୁମ୍ଭଙ୍କୁ ତ ବନବାସ କେହି ଦେଇ ନାହିଁ । ଶାଶୁ ଶ୍ୱଶୁରଙ୍କ ଶିକ୍ଷା ମାନ କର ତାହି ॥୪॥
ନ ଲାଗଇ ଭଲ ସୀତାଙ୍କୁ ମଧୁର ହିତ ଶିକ୍ଷା ସୁଶୀତଳ ।
ଶରଦ କୌମୁଦୀ ଲାଗନ୍ତେ ଯେପରି ଚକୋଈ ହୁଏ ବିକଳ ॥୭୮॥
ସଙ୍କୋଚ ବଶ ଉତ୍ତର ନ ଦିଅନ୍ତି ସୀତା । ତାହା ଶୁଣି ଉଠି ଶୀଘ୍ର କେକୟ ଦୁହିତା ॥
ମୁନି ବସ୍ତ୍ର ଆଭୂଷଣ ଭାଜନାଦି ଆଣି । ରାମଙ୍କ ସମ୍ମୁଖେ ରଖି ବୋଲେ ମୃଦୁବାଣୀ ॥୧॥
ନୃପତିଙ୍କ ପ୍ରାଣପ୍ରିୟ ତୁମ୍ଭେ ରଘୁପତି । ଶୀଳ ସ୍ନେହ ଭୀରୁପଣ ତେଜି ନ ପାରନ୍ତି ॥
ସୁକୃତ ସୁଯଶ ପରଲୋକ ବିନାଶିବେ । ତୁମ୍ଭଙ୍କୁ ବନ ଯିବାକୁ ନୃପ ନ କହିବେ ॥୨॥
ଏହା ଭାବି ଯାହା ଭଲ ଲାଗେ ତାହା କର । ଶୁଣି ମାତା ଶିକ୍ଷା ସୁଖୀ ହେଲେ ରଘୁବର ॥
ବଚନ ମହୀପତିଙ୍କୁ ଲାଗେ ଯେହ୍ନେ ବାଣ । ନ କରେ ପ୍ରୟାଣ ମୂଢ଼ ଅଭାଗା ପରାଣ ॥୩॥

---

ନ ଥାଏ କିମ୍ବା ବନ ଉଦ୍ୟାନର ଲକ୍ଷ୍ମୀ ନ ଥାଏ । ତତ୍ପରେ ଅନ୍ୟ ଲୋକମାନେ ମଧ୍ୟ ବନରେ ବିପତ୍ତିର ଆଧିକ୍ୟ ବିଷୟରେ କହି କହି ସୀତାଙ୍କୁ ବୁଝାଇଲେ ॥୩॥ ମନ୍ତ୍ରୀ ସୁମନ୍ତ୍ରଙ୍କ ପତ୍ନୀ ଓ ଗୁରୁ ବଶିଷ୍ଠଙ୍କ ସ୍ତ୍ରୀ ଅରୁନ୍ଧତୀ ଏବଂ ଅନ୍ୟାନ୍ୟ ଚତୁର ନାରୀମାନେ ପ୍ରେମରେ କୋମଳ ବଚନ କହୁଥା'ନ୍ତି, "ହେ ସୀତେ ! ରାଜା ତୁମକୁ ତ ବନବାସ ଦେଇନାହାନ୍ତି । ସୁତରାଂ ଶ୍ୱଶୁର, ଗୁରୁ ଓ ଶାଶୁ ଯାହା କହୁଛନ୍ତି, ତୁମେ ତାହା ହିଁ କର ।" ॥୪॥ ଦୋହା '—ଏହି ଶୀତଳ, ହିତକାରୀ, ମଧୁର ଓ କୋମଳ ଉପଦେଶ ସୀତାଙ୍କୁ ରୁଚିକର ହେଲା ନାହିଁ । ଶରତ ଋତୁରେ ଚନ୍ଦ୍ରମାର ଚନ୍ଦ୍ରିମା ସ୍ପର୍ଶରେ ଚକ୍ରବାକୀ ବ୍ୟାକୁଳ ହୋଇଉଠେ । ସେହିପରି ସୀତା ଏହି କୋମଳ ବଚନ ଶ୍ରବଣରେ ବ୍ୟାକୁଳ ହୋଇ ଉଠିଲେ ॥୭୮॥ ଚୌପାଈ '—ସଙ୍କୋଚବଶ ସୀତା ଉତ୍ତର ଦେଉ ନ ଥା'ନ୍ତି । ଏହିସବୁ କଥା ଶୁଣି କୈକେୟୀ କ୍ରୋଧରେ ଶୀଘ୍ର ଉଠି ପଡ଼ିଲେ । ସେ ମୁନି-ଜନ-ଯୋଗ୍ୟ ବସ୍ତ୍ର, ଆଭୂଷଣ (ମାଳା, କଟିସୂତ୍ର ଆଦି) ଏବଂ କମଣ୍ଡଳୁ ଆଦି ପାତ୍ର

ଲୋଗ ବିକଲ ମୁରୁଛିତ ନରନାହୂ । କାହ କରିଅ କଛୁ ସୂଝ ନ କାହୂ ॥
ରାମୁ ତୁରତ ମୁନି ବେଷୁ ବନାଈ । ଚଲେ ଜନକ ଜନନିହି ସିରୁ ନାଈ ॥୪॥

ସଜି ବନ ସାଜୁ ସମାଜୁ ସବୁ ବନିତା ବଂଧୁ ସମେତ ।
ବଂଦି ବିପ୍ର ଗୁର ଚରନ ପ୍ରଭୁ ଚଲେ କରି ସବହି ଅଚେତ ॥୭୯॥

ନିକସି ବସିଷ୍ଠ ଦ୍ୱାର ଭଏ ଠାଢ଼େ । ଦେଖେ ଲୋଗ ବିରହ ଦବ ଦାଢ଼େ ॥
କହି ପ୍ରିୟ ବଚନ ସକଲ ସମୁଝାଏ । ବିପ୍ର ବୃନ୍ଦ ରଘୁବୀର ବୋଲାଏ ॥୧॥
ଗୁର ସନ କହି ବରଷାସନ ଦୀନ୍ହେ । ଆଦର ଦାନ ବିନୟ ବସ କୀନ୍ହେ ॥
ଜାଚକ ଦାନ ମାନ ସଂତୋଷେ । ମୀତ ପୁନୀତ ପ୍ରେମ ପରିତୋଷେ ॥୨॥

---

ବ୍ୟାକୁଳ ଲୋକେ ମୂର୍ଚ୍ଛିତ ହେଲେ ନରରାୟ । ନ ଦିଶେ କାହାକୁ କିଛି ଏଥିର ଉପାୟ ॥
ରାମ ସେହିକ୍ଷଣି ମୁନି-ବେଶ ବିରଚିଲେ । ପ୍ରଣମି ମାତା-ପିତାଙ୍କୁ ଯାତ୍ରା ଆରମ୍ଭିଲେ ॥୪॥

ସଜାଇ ସମସ୍ତ ବନ ସାଜ ପ୍ରଭୁ ବନିତା ବନ୍ଧୁ ସମେତ ।
ଗୁରୁ-ବିପ୍ରପଦ ବନ୍ଦଣ ଗମିଲେ କରି ଅଯୋଧ୍ୟା ଅଚେତ ॥୭୯॥

ବାହାରି ବଶିଷ୍ଠ ଦ୍ୱାରେ ଉଭା ସେ ହୋଇଲେ । ବିରହାନଳରେ ଦଗ୍ଧ ଲୋକଙ୍କୁ ଚାହିଁଲେ ॥
ସମସ୍ତଙ୍କୁ ପ୍ରିୟ ବାଣୀ ଭାଷିଣ ବୁଝାଇ । ବିପ୍ର-ନିକରଙ୍କୁ ରଘୁନନ୍ଦନ ଡକାଇ ॥୧॥
ଗୁରୁଙ୍କୁ କହି ବର୍ଷକ ଖାଦ୍ୟ ପ୍ରଦାନିଲେ । ଆଦର ଦାନ ବିନୟେ ସ୍ୱବଶ କରିଲେ ॥
ଯାଚକ-ଗଣଙ୍କୁ ଦାନ ସମ୍ମାନରେ ତୋଷି । ମିତ୍ର-ବୃନ୍ଦଙ୍କୁ ପବିତ୍ର ପ୍ରେମେ ପରିପୋଷି ॥୨॥

---

ଆଣି ଶ୍ରୀରାମଙ୍କ ଆଗରେ ରଖିଦେଲେ ଏବଂ କୋମଳ ବଚନ କହିଲେ— ॥ ୧ ॥ "ହେ ରଘୁବୀର ! ତୁମେ ରାଜାଙ୍କର ପ୍ରାଣସମ ପ୍ରିୟ । ଭୀରୁ ରାଜା ଶୀଳ ଓ ସ୍ନେହ ଛାଡ଼ିବେ ନାହିଁ । ସୁକୃତ, ସୁଯଶ ଓ ପରଲୋକ ନଷ୍ଟ ହୋଇଯାଉ ପଛକେ, କିନ୍ତୁ ବନକୁ ଯିବା ନିମନ୍ତେ ସେ ତୁମକୁ କେବେ ହେଲେ କହିବେ ନାହିଁ ॥ ୨ ॥ ଏହିପରି ବିଚାର କରି ତୁମକୁ ଯାହା ଭଲ ଲାଗୁଛି, ତାହାହିଁ କର ।" 'ମାତାଙ୍କ ଉପଦେଶ ଶୁଣି ଶ୍ରୀରାମ ସୁଖ ଲାଭ କଲେ । କିନ୍ତୁ ରାଜାଙ୍କୁ ଏସବୁ ବଚନ ଶର ସମାନ ବିଦ୍ଧ କଲା । ସେ ଭାବୁଥା'ନ୍ତି— ଆହା, ଏବେ ସୁଦ୍ଧା ଏ ଅଭାଗା ପ୍ରାଣ ବାହାରି ଯାଉନାହିଁ ।" ॥୩॥ ରାଜା ମୂର୍ଚ୍ଛା ଗଲେ । ଲୋକମାନେ ବ୍ୟାକୁଳ । କଣ କରିବାକୁ ହେବ, କାହାରିକୁ ବୁଦ୍ଧି ବାଟ ଦେଖାଯାଉ ନ ଥାଏ । ଶ୍ରୀରାମଚନ୍ଦ୍ର ଶୀଘ୍ର ମୁନିବେଶ ତିଆରି କରି ମାତାପିତାଙ୍କୁ ମୁଣ୍ଡ ନୁଆଁଇ ଚାଲିଲେ ॥ ୪ ॥ ଦୋହା :—ବନର ସମସ୍ତ ସାଜସାମଗ୍ରୀ ସଜାଇ ଶ୍ରୀରାମଚନ୍ଦ୍ର ତାଙ୍କ ସ୍ତ୍ରୀ ସୀତା ଓ ଭାଇ ଲକ୍ଷ୍ମଣଙ୍କ ସଙ୍ଗରେ ବ୍ରାହ୍ମଣ ଓ ଗୁରୁଙ୍କ ଚରଣ ବନ୍ଦନା-ପୂର୍ବକ ସମସ୍ତଙ୍କୁ ସଂଜ୍ଞା-ହୀନ କରି ଚାଲିଲେ ॥ ୭୯ ॥ ଚୌପାଇ :—ଶ୍ରୀରାମ ରାଜମହଲରୁ ବାହାରି ବଶିଷ୍ଠଙ୍କ ଦ୍ୱାର ସମ୍ମୁଖରେ ଯାଇ ଛିଡ଼ା ହେଲେ ଏବଂ ଦେଖିଲେ ଯେ, ସମସ୍ତ ଲୋକ ବିରହାଗ୍ନିରେ ଜଳୁଛନ୍ତି । ସେ ପ୍ରିୟ ବଚନ କହି ସମସ୍ତଙ୍କୁ ବୁଝାଇଲେ । ତତ୍ପରେ ଶ୍ରୀରାମ ବ୍ରାହ୍ମଣମଣ୍ଡଳୀକୁ ଡକାଇଲେ ॥ ୧ ॥ ଗୁରୁଙ୍କୁ କହି ସେ ସମସ୍ତଙ୍କୁ

ଦାସୀଁ ଦାସ ବୋଲାଇ ବହୋରୀ । ଗୁରହି ସୌଂପି ବୋଲେ କର ଜୋରୀ ॥
ସବ କୈ ସାର ସଁଭାର ଗୋସାଈଁ । କରବି ଜନକ ଜନନୀ କୀ ନାଈ ॥୩॥
ବାରହିଁ ବାର ଜୋରି ଜୁଗ ପାନୀ । କହତ ରାମୁ ସବ ସନ ମୃଦୁ ବାନୀ ॥
ସୋଇ ସବ ଭାଁତି ମୋର ହିତକାରୀ । ଜେହି ତେଁ ରହୈ ଭୁଆଲ ସୁଖାରୀ ॥୪॥

ମାତୁ ସକଲ ମୋରେ ବିରହଁ ଜେହିଁ ନ ହୋହିଁ ଦୁଖ ଦୀନ ।
ସୋଇ ଉପାଉ ତୁହ୍ମ କରେହୁ ସବ ପୁର ଜନ ପରମ ପ୍ରବୀନ ॥୮୦॥

ଏହି ବିଧି ରାମ ସବହି ସମୁଝାୱା । ଗୁର ପଦ ପଦୁମ ହରଷି ସିରୁ ନାୱା ॥
ଗନପତି ଗୌରି ଗିରୀସୁ ମନାଈ । ଚଲେ ଅସୀସ ପାଇ ରଘୁରାଈ ॥୧॥
ରାମୁ ଚଲତ ଅତି ଭୟଉ ବିଷାଦୂ । ସୁନି ନ ଜାଇ ପୁର ଆରତ ନାଦୂ ॥
କୁସଗୁନ ଲଂକ ଅୱଧ ଅତି ସୋକୂ । ହରଷ ବିଷାଦ ବିବସ ସୁରଲୋକୂ ॥୨॥

---

ଦାସୀ-ଦାସ, ଅନୁଗତେ ଡକାଇ ଆଦର । ରଖିଲେ ଗୁରୁଙ୍କୁ ଅର୍ପି ଯୋଡ଼ି କଞ୍ଜକର ॥
ନାଥ, ଏ ସମସ୍ତଙ୍କର ପୋଷଣ ପାଳନ । କରିବେ ନିଜେ ଜନକ ଜନନୀ ଯେସନ ॥୩॥
ବାରମ୍ବାର ସବିନୟେ ଯୋଡ଼ି ବେନିପାଣି । କହନ୍ତି ଶ୍ରୀରାମ ସମସ୍ତଙ୍କୁ ମୃଦୁବାଣୀ ॥
ସେ ସବୁ ପ୍ରକାରେ ମୋର ହେବ ହିତକାରୀ । ଯାହା ଦ୍ୱାରା ରହୁଥିବେ ସୁଖେ ଦଣ୍ଡଧାରୀ ॥୪॥

ଜନନୀ ନିକର ଯେଉଁ ମୋ ବିରହେ ନ ହୋଇବେ ଦୁଃଖୀ ଦୀନ ।
ସଦା ସେ ଯତନ କରୁଥିବ ସର୍ବେ ପୁର-ନିବାସି, ପ୍ରବୀଣ ॥୮୦॥

ଏହି ଭାବେ ସମସ୍ତଙ୍କୁ ରାମ ବୁଝାଇଲେ । ଗୁରୁ ପାଦ-ପଦ୍ମେ ହର୍ଷେ ଶିର ନୁଆଁଇଲେ ॥
ସ୍ମରଣ ଗଣନାୟକ ଗଉରୀ ଗିରିଶ । ଚଳିଲେ ରଘୁନନ୍ଦନ ପାଇ ସୁଆଶିଷ ॥୧॥
ରାମ ଚଳନ୍ତେ ଅତ୍ୟନ୍ତ ହୋଇଲା ବିଷାଦ । ଶୁଣା ଯାଇ ନ ପାରଇ ପୁର ଆର୍ତ୍ତନାଦ ॥
କୁଶକୁନ ଲଙ୍କାପୁରେ ଅଯୋଧାରେ ଶୋକ । ହରଷ-ବିଷାଦବଶ ହେଲେ ସୁରଲୋକ ॥୨॥

---

ସାରା ବର୍ଷ ନିମନ୍ତେ ଭୋଜନ ଦେଲେ ଏବଂ ଆଦର, ଦାନ ତଥା ବିନୟରେ ସେମାନଙ୍କୁ ବଶୀଭୂତ କରିନେଲେ । ତତ୍ପରେ ଯାଚକମାନଙ୍କୁ ଦାନ ଓ ମାନ ଦେଇ ସନ୍ତୁଷ୍ଟ କଲେ ଏବଂ ମିତ୍ରଗଣଙ୍କୁ ପବିତ୍ର ପ୍ରେମରେ ପ୍ରସନ୍ନ କଲେ ॥ ୨ ॥ ତଦନନ୍ତର ଦାସ-ଦାସୀମାନଙ୍କୁ ଡକାଇ ସେମାନଙ୍କୁ ଗୁରୁଙ୍କ ଉପରେ ସମର୍ପି ଦେଲେ ଏବଂ ହାତ ଯୋଡ଼ି କହିଲେ, "ହେ ଗୋସାଇଁ ! ଏ ସମସ୍ତଙ୍କୁ ମାତା, ପିତାଙ୍କ ସଦୃଶ ଆପଣ ରକ୍ଷଣାବେକ୍ଷଣ କରୁଥା'ନ୍ତୁ ॥୩॥ ଶ୍ରୀରାମଚନ୍ଦ୍ର, ବାରମ୍ବାର ଦୁଇ ହାତ ଯୋଡ଼ି ସମସ୍ତଙ୍କୁ କୋମଳ ବାଣୀରେ କହିଲେ, "ଯାହାଙ୍କର ଚେଷ୍ଟାରେ ମହାରାଜ ସୁଖୀ ରହିବେ, ସେହି ମୋର ସବୁ ପ୍ରକାରେ ହିତକାରୀ ବନ୍ଧୁ ହେବ ॥ ୪ ॥ ଦୋହା —ହେ ପରମ ପ୍ରବୀଣ ପୁରବାସୀ ସଜ୍ଜନ-ଗଣ ! ଯେପରି ମୋ ବିରହ-ଦୁଃଖରେ ମାତାମାନେ ଦୁଃଖିତ ନ ହେବେ, ଆପଣମାନେ ସମସ୍ତେ ସେହି ଉପାୟ କରିବେ ॥ ୮୦ ॥ ଚୌପାଇ :—ଏହି ରୂପେ ଶ୍ରୀରାମ ସମସ୍ତଙ୍କୁ ବୁଝାଇଲେ ଏବଂ ଆନନ୍ଦିତ ହୋଇ ଗୁରୁଙ୍କ ଚରଣ-କମଳରେ ମସ୍ତକ

ଗଇ ମୁରୁଛା ତବ ଭୂପତି ଜାଗେ । ବୋଲି ସୁମଂନ୍ତ୍ର କହନ ଅସ ଲାଗେ ॥
ରାମୁ ଚଲେ ବନ ପ୍ରାନ ନ ଜାହୀଁ । କେହି ସୁଖ ଲାଗି ରହତ ତନ ମାହୀଁ ॥୩॥
ଏହି ତେଁ କଵନ ବ୍ୟଥା ବଲବାନା । ଜୋ ଦୁଖୁ ପାଇ ତଜହିଁ ତନୁ ପ୍ରାନା ॥
ପୁନି ଧରି ଧୀର କହଇ ନରନାହୂ । ଲୈ ରଥୁ ସଂଗ ସଖା ତୁମ୍ହ ଜାହୂ ॥୪॥
ସୁଠି ସୁକୁମାର କୁମାର ଦୋଉ ଜନକସୁତା ସୁକୁମାରି ।
ରଥ ଚଢ଼ାଇ ଦେଖରାଇ ବନୁ ଫିରେହୁ ଗଏଁ ଦିନ ଚାରି ॥୮୧॥
ଜୌଁ ନହିଁ ଫିରହିଁ ଧୀର ଦୋଉ ଭାଈ । ସତ୍ୟସଂଧ ଦୃଢ଼ବ୍ରତ ରଘୁରାଈ ॥
ତୌ ତୁମ୍ହ ବିନୟ କରେହୁ କର ଜୋରୀ । ଫେରିଅ ପ୍ରଭୁ ମିଥିଲେସ କିସୋରୀ ॥୧॥

---

ଶାନ୍ତେ ମୂର୍ଚ୍ଛା ଭୂପତି ଜାଗ୍ରତ ହୋଇଲେ । ଡାକି ସୁମନ୍ତ ମନ୍ତ୍ରୀଙ୍କୁ ଏମନ୍ତ କହିଲେ ॥
ରାମ ଚାଲିଗଲେ ବନ, ଜୀବନ ନ ଗଲା । କେଉଁ ସୁଖ ଲାଗି ରହେ ଏ ଦେହରେ ଭଲା ॥୩॥
ଏହାଠାରୁ ବଳି କେଉଁ ବ୍ୟଥା ବଳବାନ । ଯେଉଁ ଦୁଃଖ ପାଇ ତନୁ ତେଜିବ ଏ ପ୍ରାଣ ॥
ବୋଇଲେ ଆବର ଧୈର୍ଯ୍ୟ ଧରି ନରରାୟ । ରଥ ନେଇ ସଖା, ତୁମ୍ଭେ ସଙ୍ଗେ ଶୀଘ୍ର ଯାଅ ॥୪॥
ଅତି ସୁକୁମାର ଯୁଗଳ କୁମାର ଜନକଜା ସୁକୁମାରୀ ।
ସ୍ୟନ୍ଦନେ ଚଢ଼ାଇ ବିପିନ ଦେଖାଇ ଫେର ଗଲେ ଦିନ ଚାରି ॥୮୧॥
ଯେବେ ବାହୁଡ଼ିବେ ନାହିଁ ଧୀର ବେନି ଭାଇ । ସତ୍ୟସନ୍ଧ ଦୃଢ଼-ବ୍ରତ ରଘୁକୁଳ-ସାଇଁ ॥
ତେବେ ତୁମ୍ଭେ କର ଯୋଡ଼ି କରିବ ଗୁହାରି । ଲେଉଟାଇ ଦିଅ ପ୍ରଭୁ, ଜନକ-କୁମାରୀ ॥୧॥

---

ନୁଆଁଇଲେ । ତତ୍ପରେ ଗଣେଶ, ପାର୍ବତୀ ଓ କୈଳାସପତି ମହାଦେବଙ୍କୁ ମନାସି ଓ ସେମାନଙ୍କ ଆଶୀର୍ବାଦ ପାଇ ଶ୍ରୀରଘୁନାଥ ଚାଲିଲେ ॥୧॥ ଶ୍ରୀରାମ ଚାଲିବାମାତ୍ରେ ଚତୁର୍ଦ୍ଦିଗରେ ଅତ୍ୟନ୍ତ ବିଷାଦ ଖେଳିଗଲା । ନଗରର ଆର୍ତ୍ତି (ହାହାକାର) ନାଦ ଶୁଣାଯାଉ ନ ଥାଏ । ଲଙ୍କାରେ ଅଶୁଭ ଲକ୍ଷଣ ଦେଖାଗଲା । ଅଯୋଧ୍ୟାରେ ଅତ୍ୟନ୍ତ ଶୋକ ବ୍ୟାପିଗଲା ଏବଂ ଦେବଲୋକରେ ସମସ୍ତେ ହର୍ଷ ଓ ବିଷାଦ, ଉଭୟର ବଶୀଭୂତ ହେଲେ । (ଏଣିକି ରାକ୍ଷସ-ମାନଙ୍କର ନିଧନ ହେବ, ଏହି ଆଶାରେ ଦେବତାଗଣ ଆନନ୍ଦିତ ହେଲେ ଏବଂ ଅଯୋଧ୍ୟା-ବାସୀଙ୍କ ଶୋକ ହେତୁ ବିଷାଦ ସେମାନଙ୍କ ମଧ୍ୟରେ ବ୍ୟାପିଗଲା) ॥୨॥ ମୂର୍ଚ୍ଛା ଦୂର ହେଲା, ରାଜା ଉଠିଲେ ଏବଂ ସୁମନ୍ତ୍ରଙ୍କୁ ଡକାଇ କହିବାକୁ ଲାଗିଲେ, "ଶ୍ରୀରାମ ବନକୁ ଚାଲିଗଲେ, କିନ୍ତୁ ମୋର ପ୍ରାଣ ଯାଉନାହିଁ । ଆଉ କେଉଁ ସୁଖ ନିମନ୍ତେ ଏ ପ୍ରାଣ ଶରୀରରେ ରହିଛି, କେ ଜାଣି ॥୩॥ ଏହାଠାରୁ ଅଧିକ ବଳବତୀ ଆଉ କେଉଁ ବ୍ୟଥା ହୋଇପାରେ, ଯାହାକୁ ପାଇ ଏ ପ୍ରାଣ ଶରୀରକୁ ତ୍ୟାଗ କରିବ ' ପୁଣି ଧୈର୍ଯ୍ୟ ଧରି ରାଜା କହିଲେ, "ହେ ସଖା ' ତୁମେ ରଥ ନେଇ ଶ୍ରୀରାମ ସହିତ ଯାଅ ॥୪॥ ଦୋହା :—ଅତ୍ୟନ୍ତ ସୁକୁମାର କୁମାର-ଦ୍ୱୟ ଓ ସୁକୁମାରୀ ଜାନକୀଙ୍କୁ ରଥରେ ଚଢ଼ାଇ ବନ ଦେଖାଇ ଚାରିଦିନ ପରେ ଫେରି ଆସିବ ॥୮୧॥ ଚୌପାଇ :—ଯଦି ଧୈର୍ଯ୍ୟବାନ୍ ଭାଇ ଦୁହେଁ ନ ଫେରନ୍ତି—କାରଣ ଶ୍ରୀରଘୁନାଥ ସତ୍ୟସନ୍ଧ ଓ ଦୃଢ଼-

ଜବ ସିୟ କାନନ ଦେଖି ଡେରାଈ । କହେହୁ ମୋରି ସିଖ ଅବସରୁ ପାଈ ॥
ସାସୁ ସସୁର ଅସ କହେଉ ସଁଦେସୂ । ପୁତ୍ରି ଫିରିଅ ବନ ବହୁତ କଲେସୂ ॥୨॥
ପିତୁଗୃହ କବହୁଁ କବହୁଁ ସସୁରାରୀ । ରହେହୁ ଜହାଁ ରୁଚି ହୋଇ ତୁମ୍ହାରୀ ॥
ଏହି ବିଧି କରେହୁ ଉପାୟ କଦଂବା । ଫିରଇ ତ ହୋଇ ପ୍ରାନ ଅବଲଂବା ॥୩॥
ନାହିଁ ତ ମୋର ମରନୁ ପରିନାମା । କଛୁ ନ ବସାଇ ଭଏଁ ବିଧି ବାମା ॥
ଅସ କହି ମୁରୁଛି ପରା ମହି ରାଊ । ରାମୁ ଲଖନୁ ସିୟ ଆନି ଦେଖାଊ ॥୪॥

ପାଇ ରଜାୟସୁ ନାଇ ସିରୁ ରଥୁ ଅତି ବେଗ ବନାଇ ।
ଗୟଉ ଜହାଁ ବାହେର ନଗର ସୀୟ ସହିତ ଦୋଉ ଭାଇ ॥୮୨॥

ତବ ସୁମଂତ୍ର ନୃପ ବଚନ ସୁନାଏ । କରି ବିନତୀ ରଥ ରାମୁ ଚଢ଼ାଏ ॥
ଚଢ଼ି ରଥ ସୀୟ ସହିତ ଦୋଉ ଭାଈ । ଚଲେ ହୃଦୟଁ ଅୱଧହି ସିରୁ ନାଈ ॥୧॥

---

ଯେବେ ସୀତା ବନ ଦେଖି ହେବେ ଭୟଭୀତ । କହିବ ମୋ ଶିକ୍ଷା ଦେଖି ସମୟ ଉଚିତ ॥
ଶାଶୁ ଶ୍ୱଶୁର ପଠାଇଛନ୍ତି ଏ ସନ୍ଦେଶ । ଗୃହକୁ ବାହୁଡ଼ ପୁତ୍ରି, ବନେ ଅତି କ୍ଳେଶ ॥୨॥
କେବେ ବାପଘରେ ପୁଣି ଶାଶୁଘରେ କେବେ । ରହିବ ଯେଠାରେ ତୁମ୍ଭ ରୁଚି ହେବ ଯେବେ ॥
ଏହି ପ୍ରକାରେ ଅନେକ ଉପାୟ କରିବ । ଫେରିବେ ଯେବେ ପ୍ରାଣକୁ ଆଶ୍ରୟ ମିଳିବ ॥୩॥
ନାହିଁ ତ ନିଶ୍ଚୟ ମୋର ମୃତ୍ୟୁ ପରିଣାମ । ଅନ୍ୟ କିଛି ଗତି ନାହିଁ ବିଧି ହେଲା ବାମ ॥
ଏହା କହି ମୂର୍ଚ୍ଛି ନୃପ ପଡ଼ିଲେ ଧରଣୀ । ଦେଖାଅ ଆଣି ଲକ୍ଷ୍ମଣ, ସୀତା, ରଘୁମଣି ॥୪॥

ରାଜା ଆଜ୍ଞା ପାଇ ମସ୍ତକ ନୁଆଁଇ ରଥ ସତ୍ୱର ସଜାଇ ।
ନଗର ବାହାରେ ଗଲେ ଯହିଁ ଥିଲେ ସୀତା ସହ ଦୁଇ ଭାଇ ॥୮୨॥

ନୃପ ବଚନ ସୁମନ୍ତ କହି ଶୁଣାଇଲେ । ବିନତି କରି ରାମଙ୍କୁ ରଥେ ବସାଇଲେ ॥
ସୀତା ସହ ବେନି ଭାଇ ଚଢ଼ି ସ୍ୟନ୍ଦନରେ । ଯାତ୍ରା କଲେ ଅଯୋଧ୍ୟାକୁ ପ୍ରଣମି ଅନ୍ତରେ ॥୧॥

---

ବୃତ୍ତି—ତେବେ ତୁମେ ହାତ ଯୋଡ଼ି ବିନତି କରିବ, "ହେ ପ୍ରଭୋ ! ଜନକକୁମାରୀ ସୀତାଙ୍କୁ ହେଲେ ଫେରାଇ ଦିଅନ୍ତୁ ।" ॥ ୧ ॥ ଯଦି ସୀତା ବନକୁ ଦେଖି ଡରନ୍ତି, ତେବେ ଅବସର ପାଇ ମୋର ଏ ଉପଦେଶ ତାଙ୍କୁ କହିବ—'ହେ ପୁତ୍ରି ! ତୁମ ଶାଶୁ ଓ ଶ୍ୱଶୁର ଏହିପରି ସନ୍ଦେଶ ଦେଇଛନ୍ତି—ତୁମେ ଫେରିଚାଲ । ବନରେ ନାନା କ୍ଳେଶ ପୂରି ରହିଛି ॥ ୨ ॥ କେବେ ପିତୃ ଗୃହରେ, କେବେ ଶ୍ୱଶୁର ଗୃହରେ, ଯେଉଁଠି ତୁମର ଇଚ୍ଛା, ସେହିଠାରେ ରହିବ ।' ଏହିରୂପେ ତୁମେ ବହୁତ ଉପାୟ କରିବ । ଯଦି ସୀତା ଫେରି ଆସିଲେ, ତେବେ ମୋ ଜୀବନକୁ ଅବଲମ୍ବନ ମିଳିଲା ବୋଲି ଜାଣିବ ॥ ୩ ॥ ନୋହିଲେ ପରିଶେଷରେ ମୋର ମୃତ୍ୟୁ ହିଁ ସାର ହେବ । ବିଧାତା ବିପରୀତ ହେଲେ କେଉଁଥିରେ ହେଲେ ବଶ ଚାଲିବ ନାହିଁ । ଆହା ! ରାମ, ଲକ୍ଷ୍ମଣ, ସୀତାଙ୍କୁ ଆଣି ଦେଖାଅ ।" ଏହା କହି ରାଜା ମୂର୍ଚ୍ଛିତ ହୋଇ ପୃଥିବୀ ଉପରେ ପଡ଼ିଗଲେ ॥ ୪ ॥
ଦୋହା :—ସୁମନ୍ତ ରାଜାଙ୍କ ଆଦେଶ ପାଇ ମୁଣ୍ଡ ନୁଆଁଇଲେ ଏବଂ ଅତିଶୀଘ୍ର ରଥ

ଚଲତ ରାମୁ ଲଖି ଅଵଧ ଅନାଥା । ବିକଲ ଲୋଗ ସବ ଲାଗେ ସାଥା ॥
କୃପାସିଂଧୁ ବହୁ ବିଧି ସମୁଝାୱହିଁ । ଫିରହିଁ ପ୍ରେମ ବସ ପୁନି ଫିରି ଆୱହିଁ ॥୨॥
ଲାଗତି ଅଵଧ ଭୟାବନି ଭାରୀ । ମାନହୁଁ କାଲରାତି ଅଁଧିଆରୀ ॥
ଘୋର ଜଂତୁ ସମ ପୁର ନର ନାରୀ । ଡରପହିଁ ଏକହି ଏକ ନିହାରୀ ॥୩॥
ଘର ମସାନ ପରିଜନ ଜନୁ ଭୂତା । ସୁତ ହିତ ମୀତ ମନହୁଁ ଜମଦୂତା ॥
ବାଗନ୍ହ ବିଟପ ବେଲି କୁମ୍ହିଲାହୀଁ । ସରିତ ସରୋବର ଦେଖି ନ ଜାହୀଁ ॥୪॥

ହୟ ଗୟ କୋଟିନ୍ହ କେଲିମୃଗ ପୁରପସୁ ଚାତକ ମୋର ।
ପିକ ରଥାଂଗ ସୁକ ସାରିକା ସାରସ ହଂସ ଚକୋର ॥୮୩॥

---

ଚଲନ୍ତେ ରାମ, ପୁରକୁ ଅନାଥ ଦେଖିଣ । ପଛେ ପଛେ ଲୋକେ ଗଲେ ବ୍ୟାକୁଳ ହୋଇଣ ॥
ବୁଝାନ୍ତି ନାନାପ୍ରକାରେ କରୁଣା-ସାଗର । ଫେରି, ପ୍ରେମବଶ ପୁଣି ଆସନ୍ତି ସଙ୍ଗର ॥୨॥
ଲାଗଇ ଅଯୋଧ୍ୟାପୁରୀ ଭୀଷଣ ଅତ୍ୟନ୍ତ । ଅନ୍ଧକାର-ପୂର୍ଣ୍ଣ କାଳ-ରଜନୀ ଯେମନ୍ତ ॥
ଘୋର ଜନ୍ତୁ ଅନୁରୂପ ପୁର ନରନାରୀ । ଏକକୁ ଆରେକ ଦେଖି ଡରୁଆ'ନ୍ତି ଭାରି ॥୩॥
ଗୃହ ଶ୍ମଶାନ ସମାନ ପରିଜନ ଭୂତ । ସୁତ, ହିତକାରୀ ମିତ ଯେସନ୍ତେ ଯମ-ଦୂତ ॥
ଉପବନେ ତରୁଲତା ଝାଉଁଳି ପଡିଲେ । ନଦୀ ସରୋବର ଆଦି ଚାହିଁ ନ ହୋଇଲେ ॥୪॥

ଗଜ ବାଜି ଖଗ ପୁର କେଳି-ମୃଗ କୋଟି ମୟୂର ସାରସ ।
ପିକ ଚକ୍ରବାକ ଚକୋର ଚାତକ ଶୁକ ସାରିକା ଯେ ହଂସ ॥୮୩॥

---

ସଜାଇ ନଗର ବାହାରେ ସୀତାଙ୍କ ସହିତ ଭାଇ ଦୁହେଁ ଯେଉଁଠାରେ ଥିଲେ, ସେଠାକୁ ଗଲେ ॥ ୮୨ ॥ ଚୌପାଈ :—ସେଠାରେ ପହଞ୍ଚି ସୁମନ୍ତ୍ର ଶ୍ରୀରାମଙ୍କୁ ରାଜାଙ୍କ ବଚନ ଶୁଣାଇଲେ ଏବଂ ବିନୟ ସହକାରେ ସେମାନଙ୍କୁ ରଥରେ ଚଢାଇଲେ । ସୀତାଙ୍କ ସହିତ ଭାଇ ଦୁହେଁ ରଥରେ ଚଢି ହୃଦୟ ମଧ୍ୟରେ ଅଯୋଧ୍ୟାକୁ ପ୍ରଣାମ କରି ଚଳିଲେ ॥ ୧ ॥ ଶ୍ରୀରାମଙ୍କୁ ଯାଉଥିବାର ଏବଂ ଅଯୋଧ୍ୟାକୁ ଅନାଥ ହେଉଥିବାର ଦେଖି ସମସ୍ତ ଲୋକ ବ୍ୟାକୁଳ ହୋଇ ସେମାନଙ୍କ ସହିତ ଚଳିବାକୁ ଲାଗିଲେ । କୃପା-ସମୁଦ୍ର ଶ୍ରୀରାମ ସେମାନଙ୍କୁ ବହୁତ ପ୍ରକାରେ ବୁଝାଉଥା'ନ୍ତି । ତାଙ୍କ କଥାରେ ସେମାନେ ଅଯୋଧ୍ୟା ଆଡକୁ ମୁହଁ ଫେରାଉଥା'ନ୍ତି, କିନ୍ତୁ ପ୍ରେମରେ ବଶୀଭୂତ ହୋଇ ତାଙ୍କ ସହିତ ପୁଣି ଆସୁଥା'ନ୍ତି ॥ ୨ ॥ ଅଯୋଧ୍ୟାପୁରୀ ଅତି ଭୟଙ୍କର ଲାଗୁଥାଏ । ସତେ ଯେପରି ଅନ୍ଧକାରମୟୀ କାଳରାତ୍ରି ଘୋଟିଆସିଛି ପରି ରହିଛି । ନଗରର ନରନାରୀ ଭୟଙ୍କର ଜନ୍ତୁ ସଦୃଶ ପରସ୍ପରକୁ ଦେଖି ଭୟ କରୁଥା'ନ୍ତି ॥ ୩ ॥ ଗୃହ ଶ୍ମଶାନ, ଆତ୍ମୀୟ ସ୍ୱଜନ ଭୂତ-ପ୍ରେତ ଏବଂ ପୁତ୍ର, ହିତୈଷୀ ଓ ମିତ୍ର ସମସ୍ତେ ଯମରାଜଙ୍କ ଦୂତ ପରି ପ୍ରତୀତ ହେଉଥା'ନ୍ତି । ଉଦ୍ୟାନମାନଙ୍କରେ ବୃକ୍ଷ ଓ ଲତାମାନେ ଝାଉଁଳି ଯାଉଛନ୍ତି । ନଦୀ ଓ ସରୋବର ଏତେ ଭୟଙ୍କର ଲାଗୁଥାଏ ଯେ, ସେମାନଙ୍କ ଆଡକୁ ଚାହିଁ ହୁଅବା ହେଉ ନ ଥାଏ ॥ ୪ ॥ ଦୋହା :—କୋଟି କୋଟି ଅଶ୍ୱ, ହସ୍ତୀ, କ୍ରୀଡା-ପାଳିତ ହରିଣ,

ରାମ ବିୟୋଗ ବିକଲ ସବ ଠାଢ଼େ । ଜହଁ ତହଁ ମନହୁଁ ଚିତ୍ର ଲିଖି କାଢ଼େ ॥
ନଗରୁ ସଫଲ ବନୁ ଗହବର ଭାରୀ । ଖଗ ମୃଗ ବିପୁଲ ସକଲ ନର ନାରୀ ॥୧॥
ବିଧି କୈକଈ କିରାତିନି କୀହ୍ନୀ । ଜେହିଁ ଦବ ଦୁସହ ଦସହୁଁ ଦିସି ଦୀହ୍ନୀ ॥
ସହି ନ ସକେ ରଘୁବର ବିରହାଗୀ । ଚଲେ ଲୋଗ ସବ ବ୍ୟାକୁଲ ଭାଗୀ ॥୨॥
ସବହିଁ ବିଚାରୁ କୀହ୍ନ ମନ ମାହୀଁ । ରାମ ଲଖନ ସିୟ ବିନୁ ସୁଖୁ ନାହୀଁ ॥
ଜହାଁ ରାମୁ ତହଁ ସବୁଇ ସମାଜୂ । ବିନୁ ରଘୁବୀର ଅୱଧ ନହିଁ କାଜୂ ॥୩॥
ଚଲେ ସାଥ ଅସ ମଂତ୍ରୁ ଦୃଢ଼ାଈ । ସୁର ଦୁର୍ଲଭ ସୁଖ ସଦନ ବିହାଈ ॥
ରାମ ଚରନ ପଂକଜ ପ୍ରିୟ ଜିହ୍ନହୀ । ବିଷୟ ଭୋଗ ବସ କରହିଁ କି ତିହ୍ନହୀ ॥୪॥

---

ରାମ ବିୟୋଗ ବିକଳେ ଛିଡ଼ା ହୋଇକରି । ରହିଲେ ଯହିଁ କି ତହିଁ ଚିତ୍ରରେଖା ପରି ॥
ନଗର ଫଳ-ସଂଯୁକ୍ତ ଘନ ବନ ପ୍ରାୟ । ବହୁ ପଶୁପକ୍ଷୀ ନରନାରୀ ସମୁଦାୟ ॥୧॥
କୈକେୟୀଙ୍କୁ କିରାତିନୀ ବିଧାତା କରିଲା । ଯେ ଦଶ ଦିଗେ ଦୁଃସହ ଅଗ୍ନି ଲଗାଇଲା ॥
ରଘୁବର-ବିରହାଗ୍ନି ସହି ନ ପାରିଲେ । ବ୍ୟାକୁଳ ହୋଇଣ ସବୁ ଲୋକ ପଳାଇଲେ ॥୨॥
ମନ ମଧ୍ୟେ କଲେ ଏହି ବିଚାର ସରବେ । ରାମ ଲକ୍ଷ୍ମଣଙ୍କ ବିନା ସୁଖ ନାହିଁ ଲଭେ ॥
ଯହିଁ ରାମଚନ୍ଦ୍ର ତହିଁ ସକଳ ସମାଜ । ରଘୁବର ବିନା କିସ ଅଯୋଧ୍ୟାରେ କାର୍ଯ୍ୟ ॥୩॥
ଚଳିଲେ ସଙ୍ଗେ ଏମନ୍ତ ଧାରଣା କରିଣ । ଦେବତା-ଦୁର୍ଲଭ ସୁଖ-ସଦନ ତେଜିଣ ॥
ରାମ ପାଦ-ପଦ୍ମ ପ୍ରିୟ ଲାଗଇ ଯାହାଙ୍କୁ । ବିଷୟ ଭୋଗ କି ବଶ କରିପାରେ ତାଙ୍କୁ ॥୪॥

---

ନଗରର ଗାଈ, ବଳଦ, ଛେଳି ପ୍ରଭୃତି ପଶୁ, ବତକ, ମୟୂର, କୋକିଳ, ଚକ୍ରବାକ, ଶୁକ, ଶାରୀ, ସାରସ, ହଂସ ଓ ଚକୋର ଆଦି ପକ୍ଷୀମାନେ ସମସ୍ତେ ଶୋକାତୁର ॥୮୩॥
ଚୌପାଇ :—ଶ୍ରୀରାମଙ୍କ ବିରହରେ ସମସ୍ତେ ବ୍ୟାକୁଳ ହୋଇ ଯେ ଯେଉଁଠି ସେ ସେହିଠାରେ ଧୀରସ୍ଥିର ହୋଇ ଛିଡ଼ା ହୋଇ ରହିଥା'ନ୍ତି । ସତେ ଯେପରି ଚିତ୍ରାଙ୍କିତ ପ୍ରତିମା ! ନଗର ଫଳ-ପରିପୂର୍ଣ୍ଣ ଅତ୍ୟନ୍ତ ଗହନ ବନ ଥିଲା । ନଗର-ନିବାସୀ ସମସ୍ତ ନରନାରୀ ଅନେକ ପଶୁପକ୍ଷୀ ଥିଲେ । (ଅର୍ଥାତ୍ ଅଯୋଧ୍ୟାପୁରୀ ଧର୍ମ, ଅର୍ଥ, କାମ, ମୋକ୍ଷ, ଏହି ଚାରି ଫଳର ଦାତ୍ରୀ ନଗରୀ ଥିଲା ଏବଂ ସମସ୍ତ ନରନାରୀ ସୁଖରେ ସେ ସମସ୍ତ ଫଳକୁ ଉପଭୋଗ କରୁଥିଲେ ।) ॥ ୧ ॥ ବିଧାତା କୈକେୟୀଙ୍କୁ ଶବରୀ କଲେ । ଏହି ଶବରୀ ଦଶ ଦିଗରେ ଦୁଃସହ ଦାବାଗ୍ନି ଲଗାଇଦେଲା । ଶ୍ରୀରାମଙ୍କ ବିରହ-ଜନିତ ଏହି ଅଗ୍ନିକୁ ଲୋକମାନେ ସହିପାରିଲେ ନାହିଁ । ସମସ୍ତ ଲୋକ ବ୍ୟାକୁଳ ହୋଇ ଦୌଡ଼ି ଚାଲିଲେ ॥ ୨ ॥ ସମସ୍ତେ ମନରେ ବିଚାର କଲେ, ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ବିନା ସୁଖ ନାହିଁ । ଯେଉଁଠି ଶ୍ରୀରାମ ରହିବେ, ସେହିଠାରେ ସାରା ସମାଜ ରହିବ । ଶ୍ରୀରାମଙ୍କ ବିନା ଅଯୋଧ୍ୟାରେ ଆମ୍ଭମାନଙ୍କର କିଛି କାମ ନାହିଁ ॥ ୩ ॥ ଏହିପରି ବିଚାରକୁ ଦୃଢ଼ କରି ଦେବଦୁର୍ଲଭ ସୁଖରେ ପରିପୂର୍ଣ୍ଣ ଗୃହମାନ ପରିତ୍ୟାଗ କରି ସମସ୍ତେ ଶ୍ରୀରାମଙ୍କ ସଙ୍ଗେ ସଙ୍ଗେ ଚାଲିବାକୁ ଲାଗିଲେ । ଶ୍ରୀରାମଙ୍କ ଚରଣ-କମଳ ଯାହାଙ୍କର ପ୍ରିୟ,

ବାଲକ ବୃଦ୍ଧ ବିହାଇ ଗୃହଁ ଲଗେ ଲୋଗ ସବ ସାଥ ।
ତମସା ତୀର ନିବାସୁ କିୟ ପ୍ରଥମ ଦିବସ ରଘୁନାଥ ॥୮୪॥
ରଘୁପତି ପ୍ରଜା ପ୍ରେମ ବସ ଦେଖୀ । ସଦୟ ହୃଦୟଁ ଦୁଖୁ ଭୟଉ ବିସେଷୀ ॥
କରୁନାମୟ ରଘୁନାଥ ଗୋସାଁଈ । ବେଗି ପାଇଅହିଁ ପୀର ପରାଈ ॥୧॥
କହି ସପ୍ରେମ ମୃଦୁ ବଚନ ସୁହାଏ । ବହୁବିଧି ରାମ ଲୋଗ ସମୁଝାଏ ॥
କିଏ ଧରମ ଉପଦେସ ଘନେରେ । ଲୋଗ ପ୍ରେମ ବସ ଫିରହିଁ ନ ଫେରେ ॥୨॥
ସୀଲୁ ସନେହୁ ଛାଡ଼ି ନହିଁ ଜାଈ । ଅସମଂଜସ ବସ ଭେ ରଘୁରାଈ ॥
ଲୋଗ ସୋଗ ଶ୍ରମ ବସ ଗଏ ସୋଈ । କଛୁକ ଦେବମାୟାଁ ମତି ମୋଈ ॥୩॥
ଜବହିଁ ଜାମ ଜୁଗ ଜାମିନି ବୀତୀ । ରାମ ସଚିବ ସନ କହେଉ ସପ୍ରୀତୀ ॥
ଖୋଜ ମାରି ରଥୁ ହାଁକହୁ ତାତା । ଆନ ଉପାୟଁ ବନିହି ନହିଁ ବାତା ॥୪॥

---

ସ୍ଥବିର ବାଲକ ତେଜି ଗୃହ ଲୋକ ସଙ୍ଗେ ସମସ୍ତେ ଗମିଲେ ।
ପ୍ରଥମ ଦିବସ ଶ୍ରୀରାମ ନିବାସ ତମସା କୂଳେ କରିଲେ ॥୮୪॥
ପ୍ରଜାଙ୍କୁ ପ୍ରେମ-ବିବଶ ଦେଖି ରଘୁପତି । ସଦୟ ହୃଦୟେ ଦୁଃଖ ହୃଦ୍ରଜିଲା ଅତି ॥
କରୁଣାମୟ ସର୍ବେଶ ଶ୍ରୀ ରଘୁନନ୍ଦନ । ପର ପୀଡ଼ା ସ୍ୱୟଂ ପ୍ରାପ୍ତ ହୁଅନ୍ତି ବହନ ॥୧॥
ଭାଷିଣ ସପ୍ରେମେ ମୃଦୁ ବଚନ ଶୁଣାଇ । ଲୋକଙ୍କୁ ରାମ ବହୁତ କହିଲେ ବୁଝାଇ ॥
ଧର୍ମ ଉପଦେଶ ନାନା ପ୍ରକାରେ କରିଲେ, । ଲୋକେ ନ ଫେରନ୍ତି ପ୍ରେମବଶ, ଫେରାଇଲେ॥୨॥
ଛାଡ଼ି ନ ପାରନ୍ତି ସ୍ନେହ ଶୀଳତା ଆଦର । ଅସଙ୍ଗତ ସ୍ଥିତିବଶ ହେଲେ ରଘୁବର ॥
ଲୋକେ ଶୋଇଗଲେ ଶୋକ-ଶ୍ରମବଶ ଅତି । ପୁଣି ଦେବେ କଲେ କିଛି ମାୟା ଛନ୍ନ ମତି ॥୩॥
ଅତୀତ ହୋଇଲା ଯେବେ ନିଶି ବେନି ଯାମ । କହିଲେ ମନ୍ତ୍ରୀଙ୍କ ଆଗେ ସପ୍ରେମେ ଶ୍ରୀରାମ ॥
ଚିହ୍ନ ଲୁଚାଇଣ ତାତ, ରଥ ଚାଳ ଖରେ । କାମ ନ ଚଳିବ ଆଉ ଅନ୍ୟ ଉପାୟରେ ॥୪॥

---

ସେମାନଙ୍କୁ ବିଷୟ-ଭୋଗ କେବେ ବଶୀଭୂତ କରିପାରେ କି ? ॥ ୪ ॥ ଦୋହା :— ପିଲା ଓ ବୁଢ଼ାମାନଙ୍କୁ ଘରେ ଛାଡ଼ି ସମସ୍ତ ଲୋକ ରାମଙ୍କର ସାଥୀ ହେଲେ । ପ୍ରଥମ ଦିନ ଶ୍ରୀରାମ ତମସା ନଦୀ କୂଳରେ ନିବାସ କଲେ ॥ ୮୪ ॥ ଚୌପାଇ :—ପ୍ରଜାମାନଙ୍କୁ ପ୍ରେମରେ ବଶୀଭୂତ ଦେଖି ଶ୍ରୀ ରଘୁନାଥଙ୍କ ସଦୟ ହୃଦୟରେ ବଡ଼ ଦୁଃଖ ହେଲା । ପ୍ରଭୁ ଶ୍ରୀରଘୁନାଥ କରୁଣାମୟ । ଅନ୍ୟର ପୀଡ଼ାକୁ ସେ ଶୀଘ୍ର ଲାଭ କରି ପକାନ୍ତି । ଅର୍ଥାତ୍ ଅନ୍ୟର ଦୁଃଖ ଦେଖି ସହାନୁଭୂତି-ସୂଚକ ଦୁଃଖରେ ସେ ଅତିଶୀଘ୍ର ଦୁଃଖିତ ହୋଇପଡ଼ନ୍ତି ॥ ୧ ॥ ସପ୍ରେମ କୋମଳ ଓ ସୁନ୍ଦର ବଚନ କହି ଶ୍ରୀରାମ ବହୁ ପ୍ରକାରେ ଲୋକଙ୍କୁ ବୁଝାଇଲେ ଏବଂ ବହୁତ ଧର୍ମ ଉପଦେଶ ଦେଲେ, କିନ୍ତୁ ଯେତେ ଲେଉଟାଇଲେ ମଧ୍ୟ ପ୍ରେମବଶତଃ ଲୋକମାନେ ଫେରୁ ନ ଥା'ନ୍ତି ॥ ୨ ॥ ଶୀଳ ଓ ସ୍ନେହ ଛାଡ଼ି ହୁଏନାହିଁ । ଶ୍ରୀରଘୁନାଥ ବଡ଼ ଦ୍ୱିଧାରେ ସମ୍ମୁଖୀନ ହୋଇ ପଡ଼ିଲେ । କ୍ରମେ ଶୋକ ଓ ପରିଶ୍ରମ ହେତୁ ଲୋକମାନେ ଶୋଇପଡ଼ିଲେ ଏବଂ ଦେବତାମାନଙ୍କ ମାୟା ହେତୁ ମଧ୍ୟ

ରାମ ଲଖନ ସିୟ ଜାନ ଚଢ଼ି ସଂଭୁଚରନ ସିରୁ ନାଇ ।
ସଚିବଁ ଚଲାୟଉ ତୁରତ ରଥୁ ଇତ ଉତ ଖୋଜ ଦୁରାଇ ॥୮୫॥
ଜାଗେ ସକଲ ଲୋଗ ଭଏଁ ଭୋରୂ । ଗେ ରଘୁନାଥ ଭୟଉ ଅତି ସୋରୂ ॥
ରଥ କର ଖୋଜ କତହୁଁ ନହିଁ ପାୱହିଁ । ରାମ ରାମ କହି ଚହୁଁ ଦିସି ଧାୱହିଁ ॥୧॥
ମନହୁଁ ବାରିନିଧି ବୂଡ଼ ଜହାଜୂ । ଭୟଉ ବିକଲ ବଡ଼ ବନିକ ସମାଜୂ ॥
ଏକହି ଏକ ଦେହିଁ ଉପଦେସୂ । ତଜେ ରାମ ହମ ଜାନି କଲେସୂ ॥୨॥
ନିଂଦହିଁ ଆପୁ ସରାହହିଁ ମୀନା । ଧିଗ ଜୀବନୁ ରଘୁବୀର ବିହୀନା ॥
ଜୌଁ ପୈ ପ୍ରିୟ ବିୟୋଗୁ ବିଧି କୀହ୍ନା । ତୌ କସ ମରନୁ ନ ମାଗେଁ ଦୀହ୍ନା ॥୩॥

---

ରାମ ଭ୍ରାତା ସୀତା ସହିତ ଶମ୍ଭୁଙ୍କୁ ପ୍ରଣମି ଯାନେ ଚଢିଲେ ।
ଏଣେ ତେଣେ ଚିହ୍ନ ଲୁଚାଇ ସ୍ୟନ୍ଦନ ସଚିବ ଶୀଘ୍ର ଚାଳିଲେ ॥୮୫॥
ଜାଗ୍ରତ ହୋଇଲେ ଲୋକେ ହୁଅନ୍ତେ ପ୍ରଭାତ । କୋଳାହଳ ହେଲା, ଚାଲିଗଲେ ରଘୁନାଥ ॥
କାହିଁ ମଧ୍ୟ ସ୍ୟନ୍ଦନର ଚିହ୍ନ ନ ପାଆନ୍ତି । 'ରାମ' 'ରାମ' କହି ଚଉଦିଗକୁ ଧାଆଁନ୍ତି ॥୧॥
କି ଅବା ଜଳଧି ମଧ୍ୟେ ବୁଡ଼ିଲା ଜାହାଜ । ବିକଳ ହୁଅନ୍ତି ବଡ ବଣିକ-ସମାଜ ॥
ଏକକୁ ଅନେକ ଡାକ ଦିଏ ଉପଦେଶ । ତେଜିଲେ ରାମ ଆମ୍ଭଙ୍କୁ ହେବ ଜାଣି କ୍ଲେଶ ॥୨॥
ନିନ୍ଦା କରି ଆପଣାକୁ ପ୍ରଶଂସନ୍ତି ମୀନେ । ଧିକ ଏ ଜୀବନ ରଘୁନନ୍ଦନ ବିହୂନେ ॥
ପ୍ରିୟଜନର ବିୟୋଗ ବିହି କଲା ଯେବେ । ମାଗନ୍ତେ ମରଣ କିପାଁ ଦେଲା ନାହିଁ ତେବେ ॥୩॥

---

ସେମାନଙ୍କ ବୁଦ୍ଧି ମୋହଗ୍ରସ୍ତ ହୋଇଗଲା ॥ ୩ ॥ ରାତି ଦୁଇ ପ୍ରହର ଅତିବାହିତ ହୋଇଗଲା । ଶ୍ରୀରାମ ପ୍ରେମପୂର୍ବକ ମନ୍ତ୍ରୀ ସୁମନ୍ତ୍ରଙ୍କୁ କହିଲେ, "ହେ ତାତ ! ରଥର ଖୋଜ ମାରି (ଅର୍ଥାତ୍ ଚକ-ଚିହ୍ନ ଯୋଗେ ଦିଗର ସୂଚନା ଯେପରି ନ ମିଳେ, ସେହିପରି ଭାବରେ) ରଥ ହାଙ୍କି ଚଳାନ୍ତୁ । ଆଉ କୌଣସି ଉପାୟରେ କାମ ଚଳିବ ନାହିଁ ॥ ୪ ॥
ଦୋହା :—ଶଙ୍କରଙ୍କ ଚରଣରେ ମୁଣ୍ଡ ନୁଆଁଇ ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ରଥ ଉପରେ ଆରୋହଣ କଲେ । ମନ୍ତ୍ରୀ ଶୀଘ୍ର ରଥକୁ ଏଣେତେଣେ ଖୋଜ ଲୁଚାଇ ଚଳାଇଲେ ॥ ୮୫ ॥ ଚୌପାଈ :—ଭୋର ହେବା ମାତ୍ରେ ସମସ୍ତ ଲୋକ ଜାଗ୍ରତ ହେଲେ । ଶ୍ରୀରାମ ଚାଲିଗଲେ ବୋଲି ଚତୁର୍ଦ୍ଦିଗରେ ବଡ଼ କୋଳାହଳ ବ୍ୟାପିଗଲା । ଲୋକମାନେ କେଉଁଠି ହେଲେ ରଥର ଖୋଜ ପାଉ ନ ଥା'ନ୍ତି । ସମସ୍ତେ "ହା ରାମ" ! "ହା ରାମ" ' ଡାକି ଚତୁର୍ଦ୍ଦିଗରେ ଦୌଡ଼ାଦୌଡ଼ି କରୁଥା'ନ୍ତି ॥ ୧ ॥ ସେତେ ଯେପରି ସମୁଦ୍ରରେ ଜାହାଜ ବୁଡ଼ି ଯାଇଅଛି ! ଯାହା ଫଳରେ ବେପାରି-ସମୂହ ବ୍ୟାକୁଳ ହୋଇ ପଡ଼ିଛନ୍ତି । (ସେହିପରି ବୋଧ ହେଉଥାଏ ।) ପରସ୍ପରକୁ ସେମାନେ ଉପଦେଶ ଦେଉଥା'ନ୍ତି ଯେ, ଶ୍ରୀରାମଚନ୍ଦ୍ର ଆମ୍ଭମାନଙ୍କୁ କ୍ଲେଶ ହେବ ବୋଲି ଜାଣି ଛାଡ଼ି ଯାଇଛନ୍ତି ॥ ୨ ॥ ସେମାନେ ଆପଣା ଆପଣାକୁ ନିନ୍ଦା କରୁଥା'ନ୍ତି ଏବଂ ମୀନର ଜୀବନକୁ ପ୍ରଶଂସା କରୁଥା'ନ୍ତି । କହୁଥା'ନ୍ତି, "ଶ୍ରୀରାମଙ୍କ ବିନା ଆମର ଜୀବନ-ଧାରଣକୁ ଧିକ୍କାର !

ଏହି ବିଧି କରତ ପ୍ରଲାପ କଲାପା । ଆଏ ଅଓ୍ୱଧ ଭରେ ପରିତାପା ॥
ବିଷମ ବିୟୋଗୁ ନ ଜାଇ ବଖାନା । ଅବଧି ଆସ ସବ ରାଖହିଁ ପ୍ରାନା ॥୪॥
ରାମ ଦରସ ହିତ ନେମ ବ୍ରତ ଲଗେ କରନ ନର ନାରି ।
ମନହୁଁ କୋକ କୋକୀ କମଲ ଦୀନ ବିହୀନ ତମାରି ॥୮୬॥
ସୀତା ସଚିବ ସହିତ ଦୋଉ ଭାଈ । ସୃଂଗବେରପୁର ପହୁଁଚେ ଜାଈ ॥
ଉତରେ ରାମ ଦେବସରି ଦେଖୀ । କୀହ୍ନ ଦଂଡବତ ହରଷୁ ବିସେଷୀ ॥୧॥
ଲଖନ ସଚିବଁ ସିୟଁ କିଏ ପ୍ରନାମା । ସବହି ସହିତ ସୁଖୁ ପାୟଉ ରାମା ॥
ଗଂଗ ସକଲ ମୁଦ ମଂଗଲ ମୂଲା । ସବ ସୁଖ କରନି ହରନି ସବ ସୂଲା ॥୨॥
କହି କହି କୋଟିକ କଥା ପ୍ରସଂଗା । ରାମୁ ବିଲୋକହିଁ ଗଂଗ ତରଂଗା ॥
ସଚିବହି ଅନୁଜହି ପ୍ରିୟହି ସୁନାଈ । ବିବୁଧ ନଦୀ ମହିମା ଅଧିକାଈ ॥୩॥

---

ଏହି ଭାବେ କରି ବହୁ ବିଳାପ ପ୍ରଳାପ । ଆସିଲେ ଅଯୋଧ୍ୟା ଅତି ଲଭି ପରିତାପ ॥
ବିଷମ ବିୟୋଗ କରି ନ ହୁଏ ବର୍ଣ୍ଣନ । ଅବଧି ଆଶାରେ ସର୍ବେ ରଖିଲେ ଜୀବନ ॥୪॥
ରାମ ଦରଶନ ହେତୁ ପୁରଜନ ବ୍ରତ ନିୟମ କରନ୍ତି ।
ଯେସନେ ଚକୁଆ ଚକୋଇ କମଳ ରବି ବିନା ଦୀନ ଅତି ॥୮୬॥
ଜନକ-ସୁତା ସଚିବ ସହି ବେନି ଭାଇ । ଶୃଙ୍ଗବେର ପୁର ପାଶେ ପ୍ରବେଶିଲେ ଯାଇ ॥
ଓହ୍ଲାଇଲେ ସୁରନଦୀ ଦେଖି ରଘୁନାଥ । କଲେ ଅତି ପ୍ରମୋଦରେ ଦଣ୍ଡ ପ୍ରଣିପାତ ॥୧॥
ଲକ୍ଷ୍ମଣ ସଚିବ ସୀତା କଲେ ପ୍ରଣାମ । ସମସ୍ତଙ୍କ ସହି ସୁଖ ଲଭିଲେ ଶ୍ରୀରାମ ॥
ଗଙ୍ଗା ସକଳ ଆନନ୍ଦ ମଙ୍ଗଳର ମୂଳ । ସମସ୍ତ ସୁଖ-ଦାୟିନୀ ବିନାଶିନୀ ଶୂଳ ॥୨॥
କହି କହି ନାନାବିଧ ପୁରାଣ ପ୍ରସଙ୍ଗ । ବିଲୋକନ୍ତି ରଘୁପତି ଜାହ୍ନବୀ ତରଙ୍ଗ ॥
ସଚିବଙ୍କୁ ଅନୁଜଙ୍କୁ ପ୍ରିୟାଙ୍କୁ ଶୁଣାନ୍ତି । ଅତି ଅଧିକ ଅମର-ସରିତ-ସୁଖ୍ୟାତି ॥୩॥

---

ବିଧାତା ଯଦି ପ୍ରିୟ-ବିରହ ରଚନା କଲେ, ତେବେ ମାଗିଲା ମାତ୍ରେ ମୃତ୍ୟୁ କାହିଁକି ଦେଲେ ନାହିଁ ?" ॥ ୩ ॥ ଏହିପରି ବହୁତ ପ୍ରକାରେ ପ୍ରଳାପ କରି ସେମାନେ ପରିତାପରେ ମୂର୍ଚ୍ଛି ହୋଇ ଅଯୋଧ୍ୟାକୁ ଫେରି ଆସିଲେ । ସେମାନଙ୍କ ବିରହ-ଦଶା ବର୍ଣ୍ଣନା କରାଯାଇ ନ ପାରେ । ଚଉଦ ବର୍ଷର ଅବଧି-ଆଶାରେ ସେମାନେ ପ୍ରାଣକୁ ରଖିଅଛନ୍ତି ॥ ୪ ॥ ଦୋହା :—ସମସ୍ତ ନର-ନାରୀ ଶ୍ରୀରାମଙ୍କ ଦର୍ଶନ ନିମନ୍ତେ ନିୟମ ଓ ବ୍ରତ କରିବାକୁ ଲାଗିଲେ ଏବଂ ଚକ୍ରବାକ-ଚକ୍ରବାକୀ ଓ କମଳ ସୂର୍ଯ୍ୟ ବିନା ଯେପରି ଦୀନ-ଦୁଃଖୀ ହୁଅନ୍ତି, ସେମାନେ ସେହିପରି ଦୀନ-ଦୁଃଖୀ ହେଲେ ॥ ୮୬ ॥ ଚୌପାଇ :—ସୀତା ଓ ମନ୍ତ୍ରୀଙ୍କ ସହିତ ଦୁଇ ଭାଇ ଶୃଙ୍ଗବେରପୁରରେ ଯାଇ ପହଞ୍ଚିଲେ । ସେଠାରେ ଗଙ୍ଗାଙ୍କୁ ଦେଖି ଶ୍ରୀରାମ ରଥରୁ ଓହ୍ଲାଇ ପଡ଼ିଲେ ଏବଂ ଅତ୍ୟନ୍ତ ହର୍ଷର ସହିତ ତାହାଙ୍କୁ ଦଣ୍ଡବତ କଲେ ॥ ୧ ॥ ଲକ୍ଷ୍ମଣ, ସୁମନ୍ତ୍ର ଓ ସୀତା ମଧ୍ୟ ପ୍ରଣାମ କଲେ । ସମସ୍ତଙ୍କ ସହିତ ଶ୍ରୀରାମ ସୁଖ ଲାଭ କଲେ । ଗଙ୍ଗା ସମସ୍ତ ଆନନ୍ଦ-ମଙ୍ଗଳର ମୂଳ । ସେ ସମସ୍ତ ସୁଖର ଦାତ୍ରୀ

ମଜ୍ଜନୁ କୀହ୍ନ ପଂଥ ଶ୍ରମ ଗୟଊ । ସୁଚି ଜଲୁ ପିଅତ ମୁଦିତ ମନ ଭୟଊ ॥
ସୁମିରତ ଜାହି ମିଟଇ ଶ୍ରମ ଭାରୂ । ତେହି ଶ୍ରମ ୟହ ଲୌକିକ ବ୍ୟବହାରୂ ॥୪॥

ସୁଦ୍ଧ ସଚ୍ଚିଦାନଂଦମୟ କଂଦ ଭାନୁକୁଲ କେତୁ ।
ଚରିତ କରତ ନର ଅନୁହରତ ସଂସୃତି ସାଗର ସେତୁ ॥୮୭॥

ୟହ ସୁଧି ଗୁହଁ ନିଷାଦ ଜବ ପାଈ । ମୁଦିତ ଲିଏ ପ୍ରିୟ ବଂଧୁ ବୋଲାଈ ॥
ଲିଏ ଫଲ ମୂଲ ଭେଁଟ ଭରି ଭାରା । ମିଲନ ଚଲେଉ ହିୟଁ ହରଷୁ ଅପାରା ॥୧॥
କରି ଦଂଡବତ ଭେଁଟ ଧରି ଆଗେଁ । ପ୍ରଭୁହି ବିଲୋକତ ଅତି ଅନୁରାଗେଁ ॥
ସହଜ ସନେହ ବିବସ ରଘୁରାଈ । ପୂଁଛୀ କୁସଲ ନିକଟ ବୈଠାଈ ॥୨॥

---

ଅବଗାହି ପ୍ରେମେ ପଥ-ଶ୍ରମ ନିବାରିଲେ । ଶୁଚି ଜଳ ପାନ କରି ପ୍ରସନ୍ନ ହୋଇଲେ ॥
ଯାହାଙ୍କ ସ୍ମରଣେ ନାଶ ହୁଏ ଶ୍ରମ-ଭାର । ତାହାଙ୍କୁ ଶ୍ରମ କେବଳ ଲୌକିକ ବେଭାର ॥୪॥

ଶୁଦ୍ଧ ସଦାନନ୍ଦ ଚେତନାଦି କନ୍ଦ ରାମ ଭାନୁ-କୁଳ-କେତୁ ।
ପ୍ରାକୃତ ଯେମନ୍ତ କରନ୍ତି ଚରିତ ସଂସୃତି-ସାଗର-ସେତୁ ॥୮୭॥

ଏହି ସମାଚାର ଗୁହ ନିଷାଦ ପାଇଣ । ପ୍ରମୋଦିତ ମନେ ପ୍ରିୟ ବନ୍ଧୁଙ୍କୁ ଘେନିଣ ॥
ଭେଟି ହେତୁ ଫଳ ମୂଳ ପୂର୍ଣ୍ଣ କରି ଭାର । ମିଳନେ ଆସିଲା ହୋଇ ହରଷ ଅପାର ॥୧॥
କରି ଦଣ୍ଡ ପ୍ରଣିପାତ ଭେଟି ଧରି ଆଗେ । ପ୍ରଭୁଙ୍କୁ ଅବଲୋକଇ ଅତି ଅନୁରାଗେ ॥
ସହଜ ସ୍ନେହ-ବିବଶ ରଘୁକୁଳ-ସାଇଁ । କୁଶଳ ପ୍ରଶ୍ନ କରନ୍ତି ନିକଟେ ବସାଇ ॥୨॥

---

ଏବଂ ସମସ୍ତ ପୀଡାର ହରଣ-କାରିଣୀ ॥ ୨ ॥ ଅନେକ କଥା-ପ୍ରସଙ୍ଗ କହି ଶ୍ରୀରାମ ଗଙ୍ଗାଙ୍କ ତରଙ୍ଗକୁ ଦେଖୁଥା'ନ୍ତି । ସେ ମନ୍ତ୍ରୀ, ସାନ ଭାଇ ଲକ୍ଷ୍ମଣ ଏବଂ ପ୍ରିୟତମା ସୀତାଙ୍କୁ ଦେବ-ନଦୀ ଗଙ୍ଗାଙ୍କର ମହା-ମହିମା ବିଷୟ ଶୁଣାଇଲେ ॥ ୩ ॥ ଏହା ପରେ ସମସ୍ତେ ସ୍ନାନ କଲେ । ଫଳରେ ସମସ୍ତଙ୍କର ଶ୍ରମକ୍ଳାନ୍ତି ଦୂର ହୋଇଗଲା ଏବଂ ପବିତ୍ର ଜଳ ପାନ କରିବା ମାତ୍ରେ ମନ ପ୍ରସନ୍ନ ହୋଇଗଲା । ଯାହାଙ୍କର ସ୍ମରଣ ମାତ୍ରେ ବାରମ୍ବାର ଜନ୍ମ-ମୃତ୍ୟୁର ମହାଶ୍ରମ-ଭାର ମେଣ୍ଟିଯାଏ, ତାହାଙ୍କର ଶ୍ରମ ହେବା—ଏହା କେବଳ ଲୌକିକ ବ୍ୟବହାର ବା ନର-ଲୀଳା ମାତ୍ର ॥ ୪ ॥ ଦୋହା —ଶୁଦ୍ଧ (ପ୍ରକୃତି-ଜନିତ ତ୍ରିଗୁଣରୁ ରହିତ ଓ ମାୟାତୀତ ଏବଂ ଦିବ୍ୟ ମଙ୍ଗଳ-ବିଗ୍ରହ) ସଚ୍ଚିଦାନନ୍ଦ-କନ୍ଦ-ସ୍ୱରୂପ, ସୂର୍ଯ୍ୟକୁଳ-କେତନ ଭଗବାନ୍ ଶ୍ରୀରାମଚନ୍ଦ୍ର ମନୁଷ୍ୟଙ୍କ ସଦୃଶ ଏହିପରି ଲୀଳା କରନ୍ତି, ଯାହା ସଂସାର ସାଗରକୁ ପାର ହେବା ନିମନ୍ତେ ସେତୁ ସଦୃଶ ॥ ୮୭ ॥ ଚୌପାଇ —ନିଷାଦ-ରାଜ ଗୁହ ଏହି ଖବର ପାଇବା ମାତ୍ରେ ଅତ୍ୟନ୍ତ ଆନନ୍ଦିତ ହେଲେ । ସେ ଆପଣା ପ୍ରିୟଜନ ଓ ଭାଇବନ୍ଧୁଙ୍କୁ ଡକାଇ ଆଣିଲେ ଏବଂ ଭେଟି ଦେବା ନିମନ୍ତେ ଫଳ, କନ୍ଦମୂଳାଦିର ଭାର ଧରି ତାଙ୍କ ସହିତ ସାକ୍ଷାତ କରିବା ନିମନ୍ତେ ଚାଲିଲେ । ତାଙ୍କ ହୃଦୟରେ ଆନନ୍ଦର ସୀମା ନ ଥାଏ ॥ ୧ ॥ ଦଣ୍ଡବତ କରି ଭେଟି ଓ ଉପହାରକୁ ସମ୍ମୁଖରେ ରଖି ସେ ଅତି ପ୍ରେମରେ ପ୍ରଭୁଙ୍କୁ ଦେଖିବାକୁ ଲାଗିଲେ । ଶ୍ରୀ ରଘୁନାଥ

ନାଥ କୁସଲ ପଦ ପଂକଜ ଦେଖେଁ । ଭୟଉଁ ଭାଗଭାଜନ ଜନ ଲେଖେଁ ॥
ଦେବ ଧରନି ଧନୁ ଧାମୁ ତୁମ୍ହାରା । ମୈଁ ଜନୁ ନୀଚୁ ସହିତ ପରିବାରା ॥୩॥
କୃପା କରିଅ ପୁର ଧାରିଅ ପାଊ । ଥାପିଅ ଜନୁ ସବୁ ଲୋଗୁ ସିହାଊ ॥
କହେହୁ ସତ୍ୟ ସବୁ ସଖା ସୁଜାନା । ମୋହି ଦୀନ୍ହ ପିତୁ ଆୟସୁ ଆନା ॥୪॥
ବରଷ ଚାରିଦସ ବାସୁ ବନ ମୁନି ବ୍ରତ ବେଷୁ ଅହାରୁ ।
ଗ୍ରାମ ବାସୁ ନହିଁ ଉଚିତ ସୁନି ଗୁହହି ଭୟଉ ଦୁଖୁ ଭାରୁ ॥୮୮॥
ରାମ ଲଖନ ସିୟ ରୂପ ନିହାରୀ । କହହିଁ ସପ୍ରେମ ଗ୍ରାମ ନର ନାରୀ ॥
ତେ ପିତୁ ମାତୁ କହହୁ ସଖି କୈସେ । ଜିନ୍ହ ପଠଏ ବନ ବାଲକ ଐସେ ॥୧॥
ଏକ କହହିଁ ଭଲ ଭୂପତି କୀନ୍ହା । ଲୋୟନ ଲାହୁ ହମହି ବିଧି ଦୀନ୍ହା ॥
ତବ ନିଷାଦପତି ଉର ଅନୁମାନା । ତରୁ ସିଂସୁପା ମନୋହର ଜାନା ॥୨॥

---

ନାଥ, କୁଶଳ ନିରେଖି ପଙ୍କଜ ଚରଣ । ହୋଇଲି ଭାଗ୍ୟ-ଭାଜନ ଭକ୍ତରେ ଗଣନ ॥
ଦେବ, ଆପଣଙ୍କ ଧନ ଧାମ ବସୁମତୀ । କୁଟୁମ୍ବ ସହ ମୁଁ ତୁମ୍ଭ ନୀଚ ଜନ ଅତି ॥୩॥
ସୁଦୟା କରିଣ ପୁରରେ ପୟର ଧରନ୍ତୁ । ସ୍ଥାପନ୍ତୁ ନିଜଙ୍କୁ, ଲୋକେ ଲାଳସା କରନ୍ତୁ ॥
କହିଲ ସତ୍ୟ ସକଳ ସଖା ଗୁଣବାନ । ପିତା ମୋତେ ଦେଇଛନ୍ତି ଅନୁମତି ଆନ ॥୪॥
ବର୍ଷ ଚାରି ଦଶ ବିପିନେ ନିବାସ ମୁନି-ବେଶ ବ୍ରତାହାର ।
ଗ୍ରାମବାସ ନୁହେ ଉପଯୁକ୍ତ, ଶୁଣି ଗୁହେ ହେଲା ଦୁଃଖ-ଭାର ॥୮୮॥
ରାମ ଲକ୍ଷ୍ମଣ ସୀତାଙ୍କ ରୂପ ବିଲୋକନେ । କହନ୍ତି ସପ୍ରେମେ ଗ୍ରାମ ନରନାରୀ ଜନେ ॥
କହ ସଖି ! ସେ ଜନନୀ ଜନକ କେମନ୍ତ । ବନେ ପଠାଇଲେ ଯେହୁ ବାଳକ ଏମନ୍ତ ॥୧॥
କିଏ କହେ ବଡ ଭଲ କଲେ ମହୀପତି । ଲୋଚନ-ଲାଭ ଆମ୍ଭଙ୍କୁ ଦେଲେ ବିଧି ଅତି ॥
ତହୁଁ ନିଷାଦନାୟକ ମନେ ଅନୁମାନି । ଶିଂଶୁପା ତରୁ ପରମ ମନୋହର ଜାଣି ॥୨॥

---

ସହିତ ସ୍ନେହବଶତଃ ତାଙ୍କୁ ନିଜ ପାଖରେ ବସାଇ କୁଶଳ-ସମାଚାର ପଚାରିଲେ ॥ ୨ ॥ ନିଷାଦ-ରାଜ ଉତ୍ତର ଦେଲେ, "ହେ ନାଥ ! ଆପଣଙ୍କ ଚରଣ-କମଳ ଦର୍ଶନ ଯୋଗେ ହିଁ ସମସ୍ତ କୁଶଳ । ତାହା ଦର୍ଶନ କରି ଆଜି ମୁଁ ଭାଗ୍ୟବନ୍ତ ବ୍ୟକ୍ତିରୂପେ ପରିଗଣିତ ହେଲି । ହେ ଦେବ ! ଏହି ପୃଥିବୀ, ଧନ ଓ ଘର ସବୁ ଆପଣଙ୍କର । ମୁଁ ତ ସପରିବାର ଆପଣଙ୍କର ନୀଚ ସେବକ । ॥ ୩ ॥ ଏବେ କୃପା କରି ଆମ ପୁର ଶୃଙ୍ଗବେର-ପୁରରେ ପଦାର୍ପଣ କରନ୍ତୁ ଏବଂ ଏହି ଦାସର ଗୌରବ ବଢାନ୍ତୁ, ଯାହା ଫଳରେ ସମସ୍ତେ ମୋ ଭାଗ୍ୟର ପ୍ରଶଂସା କରିବେ ।" ରାମଚନ୍ଦ୍ର କହିଲେ, "ହେ ସୁଜ୍ଞ ସଖା ! ତୁମେ ଯାହା କିଛି କହିଲ, ସବୁ ସତ୍ୟ । କିନ୍ତୁ ପିତା ମୋତେ ଅନ୍ୟ ପ୍ରକାର ଆଜ୍ଞା ଦେଇ-ଅଛନ୍ତି ॥ ୪ ॥ ଦୋହା '—ତାଙ୍କ ଆଜ୍ଞାନୁସାରେ ମୋତେ ଚଉଦ ବର୍ଷ ପର୍ଯ୍ୟନ୍ତ ମୁନିବ୍ରତ ଓ ବେଶ ଧାରଣ-ପୂର୍ବକ ଏବଂ ମୁନି-ଯୋଗ୍ୟ ଆହାର କରି ବନରେ ରହିବାକୁ ପଡିବ । ଗ୍ରାମ ମଧ୍ୟରେ ନିବାସ କରିବା ଉଚିତ ନୁହେଁ । ଏହା ଶୁଣି ଗୁହ ବଡ ଦୁଃଖିତ

ଲୈ ରଘୁନାଥହି ଠାଉଁ ଦେଖାୱା । କହେଉ ରାମ ସବ ଭାଁତି ସୁହାୱା ॥
ପୁରଜନ କରି ଜୋହାରୁ ଘର ଆଏ । ରଘୁବର ସଂଧ୍ୟା କରନ ସିଧାଏ ॥୩॥
ଗୁହଁ ସଁୱାରି ସାଁଥରୀ ଡସାଈ । କୁସ କିସଲୟମୟ ମୃଦୁଲ ସୁହାଈ ॥
ସୁଚି ଫଲ ମୂଲ ମଧୁର ମୃଦୁ ଜାନୀ । ଦୋନା ଭରି ଭରି ରାଖେସି ପାନୀ ॥୪॥

ସିୟ ସୁମଂତ୍ର ଭ୍ରାତା ସହିତ କଂଦ ମୂଲ ଫଲ ଖାଇ ।
ସୟନ କୀନ୍ହ ରଘୁବଂସମନି ପାୟ ପଲୋଟତ ଭାଇ ॥୮୯॥

ଉଠେ ଲଖନୁ ପ୍ରଭୁ ସୋୱତ ଜାନୀ । କହି ସଚିବହି ସୋୱନ ମୃଦୁ ବାନୀ ॥
କଛୁକ ଦୂରି ସଜି ବାନ ସରାସନ । ଜାଗନ ଲଗେ ବୈଠି ବୀରାସନ ॥୧॥

---

ନେଇ ରଘୁନନ୍ଦନଙ୍କୁ ଦେଖାଇଲା ସ୍ଥାନ । ସବୁ ପ୍ରକାରେ ଉତ୍ତମ କହିଲେ ଶ୍ରୀରାମ ॥
ଜୁହାରି ପୁର-ନିବାସୀ ନିଜ ଗୃହେ ଗଲେ । ସନ୍ଧ୍ୟା କରିବା ନିମନ୍ତେ ରାମ ବିଜେ କଲେ ॥୩॥
ଗୁହ ସମତୁଲେ ଶଯ୍ୟା ବିଛାଇ ସୁନ୍ଦର । କୁଶ କିଶଳୟମୟ ମୃଦୁ ମନୋହର ॥
ମଧୁର ମୃଦୁଳ ଶୁଚି ଫଳ ମୂଳ ଜାଣି । ରଖିଲା ପତ୍ରି ପୁଟରେ ପୂର୍ଣ୍ଣ କରି ଆଣି ॥୪॥

ଜାନକୀ ସୁମନ୍ତ୍ର ଅନୁଜ ସମେତ କନ୍ଦମୂଳ ଫଳ ଖାଇ ।
କଲେ ଶୟନ ରଘୁବଂଶମଣି ଚରଣ ସେବନ୍ତି ଭାଇ ॥୮୯॥

ଉଠିଲେ ଲକ୍ଷ୍ମଣ ପ୍ରଭୁ ନିଦ୍ରାଗତ ଜାଣି । ସଚିବଙ୍କୁ 'ଶୁଅ' ବୋଲି କହି ମୃଦୁବାଣୀ ॥
ଅନତିଦୂରେ ସଜାଇ ବାଣ ଶରାସନେ । ଜାଗ୍ରତ ହୋଇ ରହିଲେ ବସି ବୀରାସନେ ॥୧॥

---

ହେଲେ ॥ ୮୮ ॥ ଚୌପାଇ :—ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ରୂପକୁ ଦେଖି ଗାଆଁର ନରନାରୀ ପ୍ରେମରେ ପରସ୍ପର ଚର୍ଚ୍ଚା କରୁଥା'ନ୍ତି । ଜଣେ ସ୍ତ୍ରୀ କହୁଥାଏ, "ହେ ସଖି ! କହ ତ, ଏପରି ସୁନ୍ଦର ସୁକୁମାର ବାଳକଙ୍କୁ ଯେଉଁ ପିତାମାତା ବନକୁ ପଠାଇ ଦେଇଛନ୍ତି, ସେ ପିତାମାତା କିପରି ?" ॥ ୧ ॥ କେହି କେହି କହୁଥା'ନ୍ତି, "ରାଜା ଭଲ କଲେ ଏବଂ ଏହି ବାହାନାରେ ବ୍ରହ୍ମା ଆମ୍ଭମାନଙ୍କୁ ନେତ୍ରର ଫଳ ଦାନ କଲେ । ସେତେବେଳେ ନିଷାଦ-ରାଜ ହୃଦୟରେ ଅନୁମାନ କରି ଅଶୋକ ବୃକ୍ଷକୁ ତାଙ୍କର ବାସସ୍ଥାନ ନିମନ୍ତେ ମନୋହର ବୋଲି ମନେ କଲେ ॥୨॥ ସେ ଶ୍ରୀରାମଙ୍କୁ ନେଇଯାଇ ସେହି ସ୍ଥାନ ଦେଖାଇଲେ । ଶ୍ରୀରାମଚନ୍ଦ୍ର ତାହା ଦେଖି କହିଲେ, "ଏହା ସବୁ ପ୍ରକାରେ ସୁନ୍ଦର ।" ପୁରବାସୀ ଲୋକମାନେ ଜୁହାର କରି ଯେ ଯାହାର ଘରକୁ ଫେରିଲେ ଏବଂ ଶ୍ରୀରାମଚନ୍ଦ୍ର ସନ୍ଧ୍ୟା କରିବା ନିମନ୍ତେ ବାହାରିଲେ ॥ ୩ ॥ ଗୁହ ଉତ୍ତ ମଧ୍ୟରେ କୁଶ ଓ କୋମଳ ପତ୍ରର ସୁକୋମଳ ଓ ସୁନ୍ଦର ମସିଣା ସଜାଇ ବିଛାଇ ଦେଲେ ଏବଂ ପବିତ୍ର, ମଧୁର ଓ କୋମଳ ଫଳମୂଳ ବାଛି ବାଛି ଦଉପତ୍ରମାନଙ୍କରେ ଭର୍ତ୍ତି କରିଦେଲେ ଏବଂ ଜଳ ମଧ୍ୟ ରଖିଲେ ॥ ୪ ॥ ଦୋହା :—ସୀତା, ସୁମନ୍ତ୍ର ଓ ଭାଇ ଲକ୍ଷ୍ମଣଙ୍କ ସହିତ କନ୍ଦମୂଳ ଓ ଫଳ ଖାଇ ରଘୁକୁଳମଣି ଶ୍ରୀରାମ ଶୟନ କଲେ । ଭାଇ ଲକ୍ଷ୍ମଣ ତାଙ୍କ ପାଦ ଘଷିବାକୁ ଲାଗିଲେ ॥ ୮୯ ॥ ଚୌପାଇ :—ତତ୍ପରେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ଶୋଇବାର ଜାଣି

ଗୁହଁ ବୋଲାଇ ପାହରୂ ପ୍ରତୀତୀ । ଠାଓଁ ଠାଓଁ ରାଖେ ଅତି ପ୍ରୀତୀ ॥
ଆପୁ ଲଖନ ପହିଁ ବୈଠେଉ ଜାଈ । କଟି ଭାଥୀ ସର ଚାପ ଚଢ଼ାଈ ॥୨॥
ସୋଓ୍ୱତ ପ୍ରଭୁହି ନିହାରି ନିଷାଦୂ । ଭୟଉ ପ୍ରେମ ବସ ହୃଦୟଁ ବିଷାଦୂ ॥
ତନୁ ପୁଲକିତ ଜଲୁ ଲୋଚନ ବହଈ । ବଚନ ସପ୍ରେମ ଲଖନ ସନ କହଈ ॥୩॥
ଭୂପତି ଭବନ ସୁଭାୟଁ ସୁହାଓ୍ୱା । ସୁରପତି ସଦନୁ ନ ପଟତର ପାଓ୍ୱା ॥
ମନିମୟ ରଚିତ ଚାରୁ ଚୌବାରେ । ଜନୁ ରତିପତି ନିଜ ହାଥ ସଁଓ୍ୱାରେ ॥୪॥

ସୁଚି ସୁବିଚିତ୍ର ସୁଭୋଗମୟ ସୁମନ ସୁଗଂଧ ସୁବାସ ।
ପଲଁଗ ମଂଜୁ ମନି ଦୀପ ଜହଁ ସବ ବିଧି ସକଲ ସୁପାସ ॥୯୦॥

ବିବିଧ ବସନ ଉପଧାନ ତୁରାଈଂ । ଛୀର ଫେନ ମୃଦୁ ବିସଦ ସୁହାଈଂ ॥
ତହଁ ସିୟ ରାମୁ ସୟନ ନିସି କରହୀଂ । ନିଜ ଛବି ରତି ମନୋଜ ମଦୁ ହରହୀଂ ॥୧॥

---

ଗୁହ ଡକାଇ ଅନେକ ପ୍ରହରୀ ପ୍ରତୀତ । ସ୍ଥାନେ ସ୍ଥାନେ ରଖାଇଲେ କରି ଅତି ପ୍ରୀତ ॥
ସ୍ୱୟଂ ଲକ୍ଷ୍ମଣଙ୍କ ପାଶେ ବସିଲେ ଯାଇଣ । କଟିରେ ତୂଣୀର ଚାପ ବାଣ ସଜାଇଣ ॥୨॥
ପ୍ରଭୁଙ୍କୁ ନିଦ୍ରିତ ତହୁଁ ବିଲୋକି ନିଷାଦ । ହୋଇଲେ ପ୍ରେମ-ବିବଶ ହୃଦୟେ ବିଷାଦ ॥
ତନୁ ପୁଲକିତ ଜଳ ନୟନୁ ବହଇ । ପ୍ରେମେ ଲକ୍ଷ୍ମଣଙ୍କ ଆଗେ ବଚନ କହଇ ॥୩॥
ସ୍ୱାଭାବିକ ମହୀପତି ଭବନ ସୁନ୍ଦର । ନ ପାଏ ସୁର-ନାୟକ-ସଦ୍ମ ପଟାନ୍ତର ॥
ମଣିମୟ ଚନ୍ଦ୍ରଶାଳା ରୁଚିରେ ଶୋଭିତ । ମନେହୁଏ ରତି-ପତି ସ୍ୱକରେ ରଚିତ ॥୪॥

ଶୁଚି ସୁବିଚିତ୍ର ସୁଭୋଗେ ପୂରିତ ସୁରଭି ସୁମନ ଗନ୍ଧ ।
ଯହିଁ ମଣି-ଦୀପ ସୁରମ୍ୟ ପଲଙ୍କ ଖଚିତ ସର୍ବ ପ୍ରବନ୍ଧ ॥୯୦॥

ତୂଳୀ ଉପାଧାନ ନାନା ଚୀର ମନୋରମ । ମୃଦୁଳ ବିମଳ ଶୋଭେ କ୍ଷୀର ଫେଣ ସମ ॥
ତହିଁ ସୀତା ରାମ ନିଶି ଶୟନ କରନ୍ତି । ନିଜ ରୂପେ ରତି କାମ ଗରବ ହରନ୍ତି ॥୧॥

---

ଲକ୍ଷ୍ମଣ ଉଠିଲେ ଏବଂ କୋମଳ ବାଣୀରେ ମନ୍ତ୍ରୀ ସୁମନ୍ତ୍ରଙ୍କୁ ଶୋଇବା ନିମନ୍ତେ କହି ସେଠାରୁ କିଛି ଦୂରରେ ଧନୁବାଣ ସଜାଇ ରଖିଲେ ଏବଂ ବୀରାସନରେ ବସି ପହରା ଦେବାକୁ ଲାଗିଲେ ॥ ୧ ॥ ଗୁହ ବିଶ୍ୱାସପାତ୍ର ପ୍ରହରୀମାନଙ୍କୁ ଡକାଇ ଅତ୍ୟନ୍ତ ପ୍ରେମରେ ସ୍ଥାନେ ସ୍ଥାନେ ନିଯୁକ୍ତ କରିଦେଲେ । ନିଜେ ସେ କଟିରେ ତୂଣୀର ବାନ୍ଧିଲେ ଏବଂ ଧନୁରେ ଶର ଚଢାଇ ଲକ୍ଷ୍ମଣଙ୍କ ନିକଟରେ ଯାଇ ବସିଲେ ॥ ୨ ॥ ପ୍ରଭୁଙ୍କୁ ଭୂମି ଉପରେ ଶୋଇବାର ଦେଖି ପ୍ରେମବଶତଃ ନିଷାଦ-ରାଜାଙ୍କ ହୃଦୟରେ ବିଷାଦ ଭରିଗଲା । ତାହାଙ୍କର ଶରୀର ପୁଲକିତ ହୋଇଆସିଲା ଏବଂ ନେତ୍ରରୁ ପ୍ରେମାଶ୍ରୁର ଜଳ ବୋହିବାକୁ ଲାଗିଲା । ସେ ପ୍ରେମ-ସହକାରେ ଲକ୍ଷ୍ମଣଙ୍କୁ ବଚନ କହିଲେ— ॥ ୩ ॥ "ମହାରାଜ ଦଶରଥଙ୍କ ମହଲ ସ୍ୱଭାବତଃ ସୁନ୍ଦର, ଇନ୍ଦ୍ରଭବନ ମଧ୍ୟ ତାହାର ସମତା ପାଇ ପାରିବ ନାହିଁ । ତହିଁରେ ସୁନ୍ଦର ମଣି-ଖଚିତ ଚନ୍ଦ୍ରଶାଳାଗୁଡ଼ିକ ଥାଏ । ରତି-ପତି କାମଦେବ ନିଜ ହାତରେ ତାହା ସଜାଇ ନିର୍ମାଣ କଲା ପରି ବୋଧ ହେଉଥାଏ ॥ ୪ ॥ ଦୋହାଃ

ତେ ସିୟ ରାମୁ ସାଥରୀଁ ସୋଏ । ଶ୍ରମିତ ବସନ ବିନୁ ଜାହିଁ ନ ଜୋଏ ॥
ମାତୁ ପିତା ପରିଜନ ପୁରବାସୀ । ସଖା ସୁସୀଲ ଦାସ ଅରୁ ଦାସୀ ॥୨॥
ଜୋଗଵହିଁ ଜିନ୍ହହି ପ୍ରାନ କୀ ନାଈଁ । ମହି ସୋଵତ ତେଇ ରାମ ଗୋସାଈଁ ॥
ପିତା ଜନକ ଜଗ ବିଦିତ ପ୍ରଭାଊ । ସସୁର ସୁରେସ ସଖା ରଘୁରାଊ ॥୩॥
ରାମଚଂଦୁ ପତି ସୋ ବୈଦେହୀ । ସୋଵତ ମହି ବିଧି ବାମ ନ କେହୀ ॥
ସିୟ ରଘୁବୀର କି କାନନ ଜୋଗୂ । କରମ ପ୍ରଧାନ ସତ୍ୟ କହ ଲୋଗୂ ॥୪॥

କୈକୟନଂଦିନି ମଂଦମତି କଠିନ କୁଟିଲପନୁ କୀନ୍ହ ।
ଜେହିଁ ରଘୁନଂଦନ ଜାନକିହି ସୁଖ ଅବସର ଦୁଖୁ ଦୀନ୍ହ ॥୯୧॥

---

ସେ ସୀତା ରାମ ଶୋଇଲେ କୁଶ ପଲ୍ଲବରେ । ଶ୍ରମିତ ବିବସ୍ତ୍ର, ଦେଖା ନ ଯାଏ ନେତ୍ରରେ ॥
ମାତା ପିତା ପରିଜନ ନଗର ନିବାସୀ । ସଖା ସୁହୃଦ ସୁଶୀଳ ବନ୍ଧୁ ଦାସ ଦାସୀ ॥୨॥
ପ୍ରାଣ ସମାନ ଯାହାଙ୍କୁ ଜଗି ରହୁଥିଲେ । ସେ ରାମ ଗୋସାଇଁ ଏବେ ମହୀରେ ଶୋଇଲେ ॥
ବିଶ୍ୱ-ବିଦିତ ପ୍ରଭାବ ଜନକ ଜନକ । ଶ୍ୱଶୁର ସୁରେଶ ସଖା ଅଯୋଧ୍ୟା-ନାୟକ ॥୩॥
ରାମଚନ୍ଦ୍ର ପତି, ସେହି ବୈଦେହୀ ଧରାରେ । ଶୁଅନ୍ତି ବିଧି ବା ବାମ ନୁହଇ କାହାରେ ॥
ସୀତା ରଘୁବୀର ବନ-ଯୋଗ୍ୟ କି ଅଟନ୍ତି । ସତ୍ୟ ଏଣୁ ଲୋକେ କର୍ମ ପ୍ରଧାନ କହନ୍ତି ॥୪॥

କେକୟ ନନ୍ଦିନୀ ମନ୍ଦ ବୁଦ୍ଧି ଠାଣି କଠିନ କୁଟିଳ ପଣ ।
ଶ୍ରୀ ରଘୁନନ୍ଦନ ଜାନକୀଙ୍କୁ ଦେଲା ସୁଖ ସମୟେ କଷଣ ॥୯୧॥

---

ସେହି ରାଜପ୍ରାସାଦ ପରିସର ସୁବିଚଣ ଓ ବହୁ ଉପଭୋଗ୍ୟ ପଦାର୍ଥରେ ପରିପୂର୍ଣ୍ଣ ଏବଂ ପୁଷ୍ପ-ସୁଗନ୍ଧରେ ସୁଗନ୍ଧିତ । ସେଠାରେ ସୁନ୍ଦର ପଲଙ୍କ ଓ ମଣିର ପ୍ରଦୀପ ସୁଶୋଭିତ । ସବୁବିଧ ବିଳାସ-ବ୍ୟସନ ସେଠାରେ ବର୍ତ୍ତମାନ ॥ ୯୦ ॥ ଚୌପାଈ :—ସେଠାରେ ଅନେକ ବସ୍ତ୍ର, ତକିଆ ଓ ଗଦି ରହୁଥାଏ । ଏହି ସବୁ ଦୁଧ-ଫେଣପରି କୋମଳ, ନିର୍ମଳ ଓ ସୁନ୍ଦର । ଏହିପରି ବିବିଧ ମନୋହର ଶଯ୍ୟା ସୁଶୋଭିତ । ସେହିଠାରେ (ରାଜମହଲର ଉପରିଭାଗରେ) ସୀତା-ରାମ ରାତିରେ ଶୟନ କରୁଥିଲେ ଏବଂ ତାଙ୍କ ଶୋଭାରେ ରତି ଓ କାମଦେବଙ୍କ ଗର୍ବକୁ ହରଣ କରୁଥିଲେ ॥୧॥ ସେହି ସୀତାରାମ ଆଜି କୁଶ-ଘାସ ତିଆରି ବସ୍ତ୍ରହୀନ ମଶିଣା ଉପରେ ଥକିଯାଇ ଶୋଇଅଛନ୍ତି । ଏପରି ଅବସ୍ଥାରେ ତାଙ୍କୁ ଚାହିଁ ହେଉନାହିଁ । ମାତା, ପିତା, ଆତ୍ମୀୟ ସ୍ୱଜନ, ପୁରବାସୀ ପ୍ରଜା, ମିତ୍ର, ଉତ୍ତମ ଶୀଳ-ସ୍ୱଭାବ-ବିଶିଷ୍ଟ ଦାସଦାସୀ ଆଦି ସମସ୍ତେ ଆପଣା ଆପଣା ପ୍ରାଣପରି ଯାହାଙ୍କର ଯତ୍ନ-ପୂର୍ବକ ରକ୍ଷଣାବେକ୍ଷଣ କରୁଥିଲେ, ସେହି ପ୍ରଭୁ ରାମଚନ୍ଦ୍ର ଆଜି ଭୂମି ଉପରେ ଶୋଇଅଛନ୍ତି । ଯାହାଙ୍କ ପିତା ଜନକ, ଯାହାଙ୍କର ପ୍ରଭାବ ଜଗତ-ପ୍ରସିଦ୍ଧ, ଯାହାଙ୍କର ଶ୍ୱଶୁର ଇନ୍ଦ୍ରସଖା ରଘୁରାଜ ଦଶରଥ ଓ ପତି ଶ୍ରୀରାମଚନ୍ଦ୍ର, ସେହି ଜାନକୀ ଆଜି ଭୂମି ଉପରେ ଶୟନ କରିଅଛନ୍ତି । ବିଧାତା କାହାର ପ୍ରତିକୂଳ ନ ହୁଏ ? ସୀତା ଓ ଶ୍ରୀରାମ କଣ ବନଯୋଗ୍ୟ ? ଲୋକମାନେ ଯଥାର୍ଥରେ କହନ୍ତି—ଭାଗ୍ୟ ବଳବାନ୍ ॥ ୨-୩-୪ ॥ ଦୋହା :—କୈକେୟୀ-

ଭଇ ଦିନକର କୁଲ ବିଟପ କୁଠାରୀ । କୁମତି କୀନ୍ହ ସବ ବିସ୍ୱ ଦୁଖାରୀ ॥
ଭୟଉ ବିଷାଦୁ ନିଷାଦହି ଭାରୀ । ରାମ ସୀୟ ମହି ସୟନ ନିହାରୀ ॥୧॥
ବୋଲେ ଲଖନ ମଧୁର ମୃଦୁ ବାନୀ । ଜ୍ଞାନ ବିରାଗ ଭଗତି ରସ ସାନୀ ॥
କାହୁ ନ କୋଉ ସୁଖ ଦୁଖ କର ଦାତା । ନିଜ କୃତ କରମ ଭୋଗ ସବୁ ଭ୍ରାତା ॥୨॥
ଜୋଗ ବିୟୋଗ ଭୋଗ ଭଲ ମଂଦା । ହିତ ଅନହିତ ମଧ୍ୟମ ଭ୍ରମ ଫଂଦା ॥
ଜନମୁ ମରନୁ ଜହଁ ଲଗି ଜଗ ଜାଲୂ । ସଂପତି ବିପତି କରମୁ ଅରୁ କାଲୂ ॥୩॥
ଧରନି ଧାମୁ ଧନୁ ପୁର ପରିବାରୂ । ସରଗୁ ନରକୁ ଜହଁ ଲଗି ବ୍ୟବହାରୂ ॥
ଦେଖିଅ ସୁନିଅ ଗୁନିଅ ମନ ମାହୀଁ । ମୋହ ମୂଲ ପରମାରଥୁ ନାହୀଁ ॥୪॥

ସପନେଁ ହୋଇ ଭିଖାରି ନୃପୁ ରଂକୁ ନାକପତି ହୋଇ ।
ଜାଗେଁ ଲାଭୁ ନ ହାନି କଛୁ ତିମି ପ୍ରପଂଚ ଜିୟଁ ଜୋଇ ॥୯୨॥

---

ହୋଇ ଦିନକର-କୁଳ ବୃକ୍ଷକୁ କୁଠାରୀ । କୁମତି ସକଳ ବିଶ୍ୱେ ଦୁଃଖ ଦେଲା ଭାରି ॥
ହୋଇଲା ଅତି ବିଷାଦ ନିଷାଦ-ପତିକୁ । ନିରେଖି ଭୂମି-ଶୟନ ରାମ ଜାନକୀଙ୍କୁ ॥୧॥
ଭାଷିଲେ ଲକ୍ଷ୍ମଣ ମୃଦୁ ମଧୁର ବଚନ । ବିବେକ ବୈରାଗ୍ୟ ଭକ୍ତି ରସ ବିଲେପନ ॥
କାହାର କେହି ନୁହନ୍ତି ଦୁଃଖ ସୁଖ ଦାତା । ନିଜ କୃତ କର୍ମ ଭୋଗ ଅଟେ ସବୁ, ଭ୍ରାତା ॥୨॥
ସଂଯୋଗ ବିୟୋଗ ହିତ ଅହିତ ମଧ୍ୟମ । ଭଲ ମନ୍ଦ ଭୋଗ ଯେତେ ଜାଣ ଭବ ଭ୍ରମ ॥
ଯେ ପର୍ଯ୍ୟନ୍ତ ଜନ୍ମ ମୃତ୍ୟୁ ଜଗତ ଜଞ୍ଜାଳ । ସମ୍ପତ୍ତି ବିପତ୍ତି ଗୁଣ ଦୋଷ କର୍ମ କାଳ ॥୩॥
ଧରଣୀ ଧନ ଭବନ ପୁର ପରିବାର । ସ୍ୱର୍ଗ ନର୍କ ଆଦି ଯେତେ ଲୋକ ବ୍ୟବହାର ॥
ଦେଖାଯାଏ ଶୁଣାଯାଏ ଗୁଣାଯାଏ ଯାହା । ମୋହ ମୂଳ, ବାସ୍ତବିକ ସତ୍ୟ ନୁହେ ତାହା ॥୪॥

ସ୍ୱପ୍ନେ ଦଣ୍ଡଧାରୀ ହୁଅଇ ଭିଖାରୀ ରଙ୍କ ହୁଏ ଇନ୍ଦ୍ର ଯଥା ।
ଉଠନ୍ତେ ନ ହୁଏ ହାନି ଲାଭ କିଛି, ଜାଣ ଏ ପ୍ରପଞ୍ଚ ତଥା ॥୯୨॥

---

ନିର୍ଦ୍ଦୟୀ ମନ୍ଦମତି କୈକେୟୀ ବଡ଼ କପଟ କଲେ । ସେହି ରଘୁନନ୍ଦନ ଶ୍ରୀରାମ ଓ ଜାନକୀଙ୍କୁ ସୁଖ ସମୟରେ ଦୁଃଖ ଦେଲେ ॥ ୯୧ ॥ ଚୌପାଈ ।—ସୂର୍ଯ୍ୟବଂଶରୂପୀ ବୃକ୍ଷ ନିମନ୍ତେ ସେ କୁରାଢ଼ି ହୋଇଗଲେ । ସେହି ଦୁଷ୍ଟମତି ସମସ୍ତ ବିଶ୍ୱକୁ ଦୁଃଖୀ କରିଦେଲେ । ଶ୍ରୀରାମ ଓ ସୀତାଙ୍କୁ ଭୂମି ଉପରେ ଶୋଇଥିବାର ଦେଖି ନିଷାଦଙ୍କ ମନରେ ବଡ଼ ଦୁଃଖ ଜାତ ହେଲା ॥ ୧ ॥ ତତ୍ପରେ ଲକ୍ଷ୍ମଣ ଜ୍ଞାନ, ବୈରାଗ୍ୟ ଓ ଭକ୍ତିସିକ୍ତ କୋମଳ ଓ ମଧୁର ବଚନ କହିଲେ, "ହେ ଭାଇ ! କେହି କାହାକୁ ସୁଖଦୁଃଖ ଦିଅନ୍ତି ନାହିଁ । ସମସ୍ତେ ନିଜ ନିଜ କୃତ କର୍ମଫଳ ଭୋଗନ୍ତି ମାତ୍ର ॥ ୨ ॥ ସଂଯୋଗ (ମିଳନ), ବିୟୋଗ (ବିରହ), ସୌଭାଗ୍ୟ ଓ ଦୁର୍ଭାଗ୍ୟ, ମିତ୍ର, ଶତ୍ରୁ ଓ ମଧ୍ୟମ ବ୍ୟକ୍ତି—ଏମାନେ ସମସ୍ତେ ଭ୍ରମ-ଜାଲ । ଜନ୍ମ-ମୃତ୍ୟୁ, ସମ୍ପତ୍ତି-ବିପତ୍ତି, କର୍ମ ଓ କାଳ ଆଦି ଜଗତର ଯେତେ ଜଞ୍ଜାଳ, ଧରଣୀ, ଗୃହ, ଧନ, ନଗର, ପରିବାର, ସ୍ୱର୍ଗ ଓ ନର୍କ ଆଦି ଯେତେ ବ୍ୟବହାର-ସ୍ଥଳ ଅଛି, ଯାହା ସବୁ ଦର୍ଶନ, ଶ୍ରବଣ ଓ ମନ ମଧ୍ୟରେ ବିଚାରର ଯୋଗ୍ୟ,

ନୃପ ଅସ କହେଉ ଗୋସାଇଁ ଜସ କହଇ କରୌଁ ବଲି ସୋଇ ।
କରି ବିନତୀ ପାୟନ୍ହ ପରେଉ ଦୀନ୍ହ ବାଲ ଜିମି ରୋଇ ॥୯୪॥
ତାତ କୃପା କରି କୀଜିଅ ସୋଈ । ଜାତେଁ ଅୱଧ ଅନାଥ ନ ହୋଈ ॥
ମଂତ୍ରିହି ରାମ ଉଠାଇ ପ୍ରବୋଧା । ତାତ ଧରମ ମତୁ ତୁମ୍ହ ସବୁ ସୋଧା ॥୧॥
ସିବି ଦଧୀଚ ହରିଚଂଦ ନରେସା । ସହେ ଧରମ ହିତ କୋଟି କଲେସା ॥
ରଂତିଦେବ ବଲି ଭୂପ ସୁଜାନା । ଧରମୁ ଧରେଉ ସହି ସଂକଟ ନାନା ॥୨॥
ଧରମୁ ନ ଦୂସର ସତ୍ୟ ସମାନା । ଆଗମ ନିଗମ ପୁରାନ ବଖାନା ॥
ମୈଁ ସୋଇ ଧରମୁ ସୁଲଭ କରି ପାୱା । ତଜେଁ ତିହୁଁ ପୁର ଅପଜସୁ ଛାୱା ॥୩॥

---

ନାଥ, ନୃପ ଏହା କହିଛନ୍ତି ଏବେ ଆଜ୍ଞା ହଅ ନୁହଁ ଯାଏ ।
ବିନତି ରୋଦନ କଲେ ପାଦେ ପଡ଼ି ଶାନ ବାଳକ ପରାଏ ।୯୪॥
କରୁଣା କରଣ ନାଥ, କରନ୍ତୁ ତେମନ୍ତ । ଅଯୋଧ୍ୟା ପୁରୀ ଅନାଥ ନ ହେଉ ଯେମନ୍ତ ॥
ମନ୍ତ୍ରୀଙ୍କୁ ଉଠାଇ ରାମ ପ୍ରବୋଧ କରନ୍ତି । ତାତ ! ତୁମ୍ଭେ ଜାଣ ସବୁ ଧରମର ଗତି ॥୧॥
ଶିବି, ଦଧୀଚି, ଆବର ହରିଶ୍ଚନ୍ଦ୍ର ରାଣ । ସହିଲେ ବହୁ ସଙ୍କଟ ଧର୍ମ ହେତୁ ଜାଣ ॥
ରନ୍ତିଦେବ ସୁଚତୁର ବଳି ଭୁବନେଶ । ଧରମ ରଖିଲେ ସହି ନାନାବିଧ କ୍ଳେଶ ॥୨॥
ସତ୍ୟ ସମ ନାହିଁ ଅନ୍ୟ କୌଣସି ଧରମ । ଭଣନ୍ତି ଶାସ୍ତ୍ର ପୁରାଣ ନିଗମ ଆଗମ ॥
ମୁଁ ସେହି ଧର୍ମ ଲଭିଛି ସୁଲଭ ଭାବରେ । ତେଜିଲେ ଅଯଶ ଘୋଟିଯିବ ତିନି ଲୋକରେ ॥୩॥

---

ଜଳରେ ପୂର୍ଣ୍ଣ ହୋଇଗଲା ॥ ୨ ॥ ତାହାଙ୍କ ହୃଦୟ ଶୋକରେ ଅତି ମାତ୍ରାରେ ଜଳିବାକୁ ଲାଗିଲା । ମୁଖ ମଳିନ ହୋଇଗଲା । ସେ ହାତ ଯୋଡ଼ି ଅତ୍ୟନ୍ତ ଦୈନ୍ୟ ସହକାରେ ବଚନ ବୋଇଲେ—"ହେ ନାଥ ! ମୋତେ କୋଶଳନାଥ ଦଶରଥ ଆଜ୍ଞା ଦେଇଥିଲେ, 'ହେ ସୁମନ୍ତ ! ତୁମେ ରଥ ନେଇ ଶ୍ରୀରାମଙ୍କ ସଙ୍ଗରେ ଯାଅ ॥ ୩ ॥ ବନ ଦେଖାଇ, ଗଙ୍ଗା-ସ୍ନାନ କରାଇ ଦୁଇ ଭାଇଙ୍କୁ ତୁରନ୍ତ ଫେରାଇ ଆଣିବ ।' ସମସ୍ତ ସଂଶୟ ଓ ସଙ୍କୋଚ ଦୂର କରି ଲକ୍ଷ୍ମଣ, ରାମ ଓ ସୀତାଙ୍କୁ ଫେରାଇ ଆଣିବ ।" ॥ ୪ ॥ ଦୋହା '—ମହାରାଜ ଏହିପରି କହିଥିଲେ । ଏବେ ପ୍ରଭୁ ଯେପରି କହିବେ ମୁଁ ତାହା ହିଁ କରିବି । ମୁଁ ଆପଣଙ୍କୁ ନିହୁଛି ଯାଉଛି ।" ଏହି ପ୍ରକାରେ ବିନତି କରି ସେ ଶ୍ରୀରାମଙ୍କ ଚରଣ ତଳେ ପଡ଼ିଗଲେ ଏବଂ ବାଳକ ପରି କାନ୍ଦି ପକାଇଲେ ॥ ୯୪ ॥ ଚୌପାଈ .—"ହେ ତାତ ! ଯେପରି ଅଯୋଧ୍ୟା ଅନାଥ ନ ହୁଏ । କୃପା କରି ତାହା ହିଁ କରନ୍ତୁ ।" ଶ୍ରୀରାମ ମନ୍ତ୍ରୀଙ୍କୁ ଉଠାଇଲେ ଏବଂ ତାଙ୍କୁ ଧୈର୍ଯ୍ୟ ଦେଇ ବୁଝାଇଲେ, "ହେ ତାତ ! ଆପଣ ତ ଧର୍ମର ସମସ୍ତ ସିଦ୍ଧାନ୍ତକୁ ଛାଣି ପକାଇଛନ୍ତି ॥ ୧ ॥ ଶିବି, ଦଧୀଚି ଓ ରାଜା ହରିଶ୍ଚନ୍ଦ୍ର ଧର୍ମ ନିମନ୍ତେ କୋଟି କୋଟି କଷ୍ଟ ସହିଥିଲେ । ବୁଦ୍ଧିମାନ ରାଜା ରନ୍ତିଦେବ ଓ ବଳି ବହୁତ ସଙ୍କଟ ସହି ମଧ୍ୟ ଧର୍ମକୁ ଧରି ରହିଥିଲେ ॥ ୨ ॥ ବେଦ, ଶାସ୍ତ୍ର ଓ ପୁରାଣରେ ଉକ୍ତ ଅଛି ଯେ, ସତ୍ୟ ସମାନ ଅନ୍ୟ ଧର୍ମ ନାହିଁ । ମୁଁ ସେହି ଧର୍ମକୁ ସହଜରେ ଲଭ

ସମ୍ଭାବିତ କହୁଁ ଅପଜସ ଲାହୂ । ମରନ କୋଟି ସମ ଦାରୁନ ଦାହୂ ॥
ତୁମ୍ହ ସନ ତାତ ବହୁତ କା କହଉଁ । ଦିଏଁ ଉତରୁ ଫିରି ପାତକୁ ଲହଉଁ ॥୪॥

ପିତୁପଦ ଗହି କହି କୋଟି ନତି ବିନୟ କରବ କର ଜୋରି ।
ଚିଂତା କବନିହୁ ବାତ କୈ ତାତ କରିଅ ଜନି ମୋରି ॥୯୫॥

ତୁମ୍ହ ପୁନି ପିତୁ ସମ ଅତି ହିତ ମୋରେଁ । ବିନତୀ କରଉଁ ତାତ କର ଜୋରେଁ ॥
ସବ ବିଧି ସୋଇ କରତବ୍ୟ ତୁମ୍ହାରେଁ । ଦୁଖୁ ନ ପାୱ ପିତୁ ସୋଚ ହମାରେଁ ॥୧॥
ସୁନି ରଘୁନାଥ ସଚିବ ସଂବାଦୂ । ଭୟଉ ସପରିଜନ ବିକଲ ନିଷାଦୂ ॥
ପୁନି କଛୁ ଲଖନ କହୀ କଟୁ ବାନୀ । ପ୍ରଭୁ ବରଜେ ବଡ଼ ଅନୁଚିତ ଜାନୀ ॥୨॥
ସକୁଚି ରାମ ନିଜ ସପଥ ଦେୱାଈ । ଲଖନ ସଁଦେସୁ କହିଅ ଜନି ଜାଈ ॥
କହ ସୁମଂତ୍ରୁ ପୁନି ଭୂପ ସଁଦେସୂ । ସହି ନ ସକିହି ସିୟ ବିପିନ କଲେସୂ ॥୩॥

---

ସମ୍ଭାବିତ ପୁରୁଷଙ୍କୁ ଅପଯଶ ଅଭାବ । କୋଟି ମୃତ୍ୟୁ ସମ ଦାହ-ଦାୟକ ହୋଇବ ॥
ତୁମ୍ଭ ଆଗେ ତାତ, କିସ ବହୁତ କହିବ । ଦିଏ ଯେ ପ୍ରତି ଉତ୍ତର ପାତକ ଲଭିବ ॥୪॥

ପିତାଙ୍କ ପୟର ଧରି ଯୋଡ଼ି କର କହି କୋଟି ପ୍ରଣିପାତ ।
କରିବ ବିନତି, ମୋ ନିମନ୍ତେ କିଛୁ ଚିନ୍ତା ନ କରିବ ତାତ ॥୯୫॥

ତୁମ୍ଭେ ପିତା ସମ ମୋର ଅତି ହିତକାରୀ । କରଯୋଡ଼ି ତାତ, ତେଣୁ କରୁଛି ଗୁହାରି ॥
ସମସ୍ତ ପ୍ରକାରେ ସେହି କର୍ତ୍ତବ୍ୟ ତୁମ୍ଭର । ଆମ ଶୋକେ ଦୁଃଖୀ ଯେମନ୍ତେ ନ ହେବେ ପିତୃର ॥୧॥
ଶୁଣି ଶୁଣି ରଘୁନାଥ ସଚିବ ସମ୍ବାଦ । ପରିଜନ ସହ ହୁଏ ବିକଳ ନିଷାଦ ॥
ପୁଣି କିଛୁ କଟୁବାଣୀ କହନ୍ତେ ଲକ୍ଷ୍ମଣ । ଅନୁଚିତ ଜାଣି ପ୍ରଭୁ କଲେ ନିବାରଣ ॥୨॥
ସଙ୍କୋଚି ଆପଣା ରାଣ ଦେଲେ ରଘୁନାଥ । ନ କହିବ ଲକ୍ଷ୍ମଣର ପିଲପଣ ତାତ ॥
କହିଲେ ସୁମନ୍ତ ତହୁଁ ନୃପଙ୍କ ସନ୍ଦେଶ । ସହି ନ ପାରିବେ ସୀତା ବିପିନର କ୍ଲେଶ ॥୩॥

---

କରିଅଛି । ଏହି ସତ୍ୟଧର୍ମ ତ୍ୟାଗ କଲେ ତିନି ଲୋକରେ ନିନ୍ଦା ବ୍ୟାପିଯିବ ॥ ୩ ॥ ପ୍ରତିଷ୍ଠିତ ବ୍ୟକ୍ତି ନିମନ୍ତେ ଅପଯଶ-ଲାଭ କୋଟି କୋଟି ମୃତ୍ୟୁ ସମାନ ଭୀଷଣ ସନ୍ତାପ-ଦାୟକ । ହେ ତାତ ! ମୁଁ ଆପଣଙ୍କୁ ଅଧିକ କଣ କହିବି ? ଲେଉଟି ଉତ୍ତର ଦେଲେ ମଧ୍ୟ ପାପର ଭାଗୀ ହେବି ॥ ୪ ॥ ଦୋହା —ଆପଣ ଯାଇ ପିତାଙ୍କ ଚରଣ ଧରି କୋଟି କୋଟି ନମସ୍କାର-ପୂର୍ବକ ହାତ ଯୋଡ଼ି ବିନତି କରନ୍ତୁ, 'ହେ ତାତ ! ଆପଣ ମୋ (ରାମର) ବିଷୟରେ କୌଣସି ଚିନ୍ତା କରନ୍ତୁ ନାହିଁ ।' ॥୯୫॥ ଚୌପାଈ:—ଆପଣ ମଧ୍ୟ ପିତାଙ୍କ ସମାନ ମୋର ବଡ଼ ହିତୈଷୀ । ହେ ତାତ ! ମୁଁ ହାତ ଯୋଡ଼ି ଆପଣଙ୍କୁ ବିନତି କରୁଛି ଯେ, ପିତା ଯେପରି ଆମ୍ଭମାନଙ୍କ ଚିନ୍ତାରେ ଦୁଃଖ ନ ପାଆନ୍ତି, ତାହା ଦେଖିବା ଆପଣଙ୍କର ସକଳ ପ୍ରକାରେ କର୍ତ୍ତବ୍ୟ ।" ॥ ୧ ॥ ଶ୍ରୀ ରଘୁନାଥ-ସୁମନ୍ତଙ୍କ ଏହି ସମ୍ବାଦ ଶୁଣି ନିଷାଦ-ରାଜ ଆତ୍ମୀୟ ସ୍ୱଜନଙ୍କ ସହିତ ବ୍ୟାକୁଳ ହୋଇ ପଡ଼ିଲେ । ପୁଣି ଲକ୍ଷ୍ମଣ କେତେକ କଟୁ ବାଣୀ କହିଲେ । ପ୍ରଭୁ ଶ୍ରୀରାମ ତାହା ଅନୁଚିତ ବୋଲି ଅନୁଭବ କରି

ଜେହି ବିଧି ଅଉଧ ଆଉ ଫିରି ସୀୟା । ସୋଇ ରଘୁବରହି ତୁମ୍ହହି କରନୀୟା ॥
ନତରୁ ନିପଟ ଅବଲଂବ ବିହୀନା । ମୈଁ ନ ଜିଅବ ଜିମି ଜଳ ବିନୁ ମୀନା ॥୩॥
ମଇକେଁ ସସୁରେଁ ସକଲ ସୁଖ ଜବହିଁ ଜହାଁ ମନୁ ମାନ ।
ତହଁ ତବ ରହିହି ସୁଖେନ ସିୟ ଜବ ଲଗି ବିପତି ବିହାନ ॥୯୭॥
ବିନତୀ ଭୂପ କୀହ୍ନ ଜେହି ଭାଁତୀ । ଆରତି ପ୍ରୀତି ନ ସୋ କହି ଜାତୀ ॥
ପିତୁ ସଂଦେସୁ ସୁନି କୃପା ନିଧାନା । ସିୟହି ଦୀହ୍ନ ସିଖ କୋଟି ବିଧାନା ॥୧॥
ସାସୁ ସସୁର ଗୁର ପ୍ରିୟ ପରିବାରୂ । ଫିରହୁ ତ ସବ କର ମିଟୈ ଖଭାରୂ ॥
ସୁନି ପତି ବଚନ କହତି ବୈଦେହୀ । ସୁନହୁ ପ୍ରାନପତି ପରମ ସନେହୀ ॥୨॥
ପ୍ରଭୁ କରୁନାମୟ ପରମ ବିବେକୀ । ତନୁ ତଜି ରହତି ଛାଁହ କିମି ଛେଁକୀ ॥
ପ୍ରଭା ଜାଇ କହଁ ଭାନୁ ବିହାଈ । କହଁ ଚଂଦ୍ରିକା ଚଂଦୁ ତଜି ଜାଈ ॥୩॥

---

ଅଯୋଧ୍ୟାକୁ ସୀତା ଫେରି ଆସିବେ ଯେପରି । ତାହା ରାମଙ୍କ କରିବା- ଆଉରି ତୁମ୍ଭର ॥
ନୋହିଲେ ନିପଟ ଅବଲମ୍ବନ ବିହୀନ । ବଞ୍ଚିବି ନାହିଁ ମୁଁ ଯେସନେ ଜଳ ବିନା ମୀନ ॥୩॥
ପିତା ଶ୍ୱଶୁରଙ୍କ ଗୃହେ ସବୁ ସୁଖ ମନ ହେବ ଯେବେ ଯହିଁ ।
ବିପତ୍ତି କଟିବା ପର୍ଯ୍ୟନ୍ତ ବୈଦେହୀ ସୁଖେ ରହୁ ତେବେ ତହିଁ ॥୯୭॥
ବିନତି ନୃପତି କରି ଅଛନ୍ତି ଯେସନ । ସେ ପ୍ରୀତି ଆରତି କରି ନ ହୁଏ କଥନ ॥
କୃପାନିଧି ଶୁଣି ପିତାଙ୍କ ସନ୍ଦେଶ । ନାନାବିଧେ ଜାନକୀଙ୍କୁ ଦେଲେ ଉପଦେଶ ॥୧॥
ଶାଶୁ ଶ୍ୱଶୁର ଗୁରୁ ପ୍ରିୟ ପରିବାର । ଫେରିଲେ ତୁଟିବ ସମସ୍ତଙ୍କ ଦୁଃଖ ଭାର ॥
ଶୁଣି ସ୍ୱାମୀଙ୍କ ବଚନ ବୋଲନ୍ତି ବୈଦେହୀ । ଶୁଣ ଜୀବନ-ବଲ୍ଲଭ, ପ୍ରିୟତମ ସ୍ନେହୀ ॥୨॥
କରୁଣା-ସାଗର, ପ୍ରଭୁ ପରମ ବିବେକୀ । ତନୁ ତେଜି ଛାୟା କାହିଁ ଆବଦ୍ଧ ରହେ କି ॥
ପ୍ରଭା କାହିଁ ଯାଇପାରେ ଭାନୁ ବିସର୍ଜି । ଚନ୍ଦ୍ରିକା ରହଇ କାହିଁ ଚନ୍ଦ୍ରଙ୍କୁ ତେଜି ॥୩॥

---

ତାହାଙ୍କୁ ବାରଣ କଲେ ॥୨॥ ଶ୍ରୀ ରାମଚନ୍ଦ୍ର ଫେରିବା-ସୂଚକ ସନ୍ଦେଶ-ଅଂଶ ତେଣୁ ସୁମନ୍ତ୍ରଙ୍କୁ କହିଲେ, "ଆପଣ ଯାଇ ଲକ୍ଷ୍ମଣଙ୍କ ଏ ସନ୍ଦେଶ କହିବେ ନାହିଁ ।" ସୁମନ୍ତ୍ର ପୁଣି ରାଜାଙ୍କ ସନ୍ଦେଶ ପ୍ରକାଶ କଲେ—"ସୀତା ବନର କ୍ଲେଶ ସହିପାରିବେ ନାହିଁ ॥୨॥ ଅତଏବ ଯେପରି ସେ (ସୀତା) ଅଯୋଧ୍ୟାକୁ ଫେରି ଆସିବେ, ତୁମର ଓ ଶ୍ରୀରାମଙ୍କର ସେହି ଉପାୟ କରିବା ଉଚିତ । ତାହା ନୋହିଲେ ଜଳ ବିନା ମୀନ ନ ଜୀଇଲା ପରି ମୁଁ ଏକାବେଳକେ ନିରାଶ୍ରୟ ହୋଇ ଜୀବନ-ଧାରଣ କରି ପାରିବି ନାହିଁ ॥୪॥ ଦୋହା:—ସୀତାଙ୍କର ପିତୃ-ଗୃହ ଓ ଶ୍ୱଶୁର-ଗୃହରେ ସମସ୍ତ ସୁଖ ଅଛି । ଯେତେବେଳଯାଏ ଏହି ବିପତ୍ତି ଦୂର ନ ହୋଇଛି, ସେ ପର୍ଯ୍ୟନ୍ତ ତାଙ୍କ ମନ-ଇଚ୍ଛା ଅନୁସାରେ ସେ ଯେଉଁଠି ରହିବେ, ସେଠାରେ ରହିବେ ।" ॥୯୭॥
ଚୌପାଇ:—"ରାଜା ଯେପରି ଭାବରେ ଦୀନତା ଓ ପ୍ରେମ-ସହକାରେ ବିନତି କରି ଅଛନ୍ତି, ତାହା ଭାଷାରେ ପ୍ରକାଶ କରାଯାଇ ପାରିବ ନାହିଁ ।" କୃପାନିଧାନ ଶ୍ରୀରାମ ପିତାଙ୍କ

ପତିହି ପ୍ରେମମୟ ବିନୟ ସୁନାଈ । କହତି ସଚିବ ସନ ଗିରା ସୁହାଈ ॥
ତୁମ୍ହ ପିତୁ ସସୁର ସରିସ ହିତକାରୀ । ଉତରୁ ଦେଉଁ ଫିରି ଅନୁଚିତ ଭାରୀ ॥୪॥
ଆରତି ବସ ସନମୁଖ ଭଇଉଁ ବିଲଗୁ ନ ମାନବ ତାତ ।
ଆରଜସୁତ ପଦ କମଲ ବିନୁ ବାଦି ଜହାଁ ଲଗି ନାତ ॥୯୭॥
ପିତୁ ବୈଭବ ବିଲସୁ ମୈଂ ଡୀଠା । ନୃପ ମନ ମୁକୁଟ ମିଲିତ ପଦ ପୀଠା ॥
ସୁଖନିଧାନ ଅସ ପିତୁ ଗୃହ ମୋରେଁ । ପିୟୁ ବିହୀନ ମନ ଭାୱ ନ ଭୋରେଁ ॥୧॥
ସସୁର ଚକ୍କବଇ କୋସଲରାଉ । ଭୁବନ ଚାରିଦସ ପ୍ରଗଟ ପ୍ରଭାଉ ॥
ଆଗେଁ ହୋଇ ଜେହି ସୁରପତି ଲେଈ । ଅରଧ ସିଁଘାସନ ଆସନୁ ଦେଈ ॥୨॥

---

ପ୍ରାଣେଶଙ୍କୁ ପ୍ରେମମୟ ଶୁଣାଇ ବିନତି । ସଚିବଙ୍କ ଆଗେ ମୃଦୁ ବଚନ ବୋଲନ୍ତି ॥
ପିତା ଶ୍ୱଶୁରଙ୍କ ସମ ତୁମ୍ଭେ ହିତକାରୀ । ଉତ୍ତର ଦେଉଛୁ ଏହା ଅନୁଚିତ ଭାରି ॥୪॥
ଆର୍ତ୍ତିବଶ ହୋଇ ସମ୍ମୁଖ ହୁଅଇ ତାତ, ନ ଭାବିବ ଆନ ।
ଆର୍ଯ୍ୟ-ସୁତ-ପଦ-କମଲ ବିହୁନେ ବୃଥା ସମ୍ବନ୍ଧ ଅନ୍ୟାନ୍ୟ ॥୯୭॥
ମୁଁ ପିତାଙ୍କର ବୈଭବ ବିଳାସ ଜାଣଇ । ପାଦାସନେ ନୃପ-ମଣି-ମୁକୁଟ ମିଳଇ ॥
ସୁଖ-ନିଧାନ ଏମନ୍ତ ମୋ ପିତା ଭବନ । ପ୍ରିୟ ବିନା ଭୁଲି ଭଲ ନ ମଣଇ ମନ ॥୧॥
ଶ୍ୱଶୁର ଚକ୍ରବର୍ତ୍ତୀ ଯେ ଅଯୋଧ୍ୟା-ନୃପତି । ଚତୁର୍ଦ୍ଦଶ ଭୁବନରେ ବିଖ୍ୟାତ କୀରତି ॥
ଆଗେ ହୋଇଣ ଯାହାଙ୍କୁ ସୁରେଶ ନିଅଇ । ଅର୍ଦ୍ଧ ସିଂହାସନେ ଆଣି ଆସନ ଦିଅଇ ॥୨॥

---

ସନ୍ଦେଶ ଶୁଣି, ସୀତାଙ୍କୁ ଅନେକ ପ୍ରକାରେ ଉପଦେଶ ଦେଲେ ॥ ୧ ॥ ସେ କହିଲେ, "ତୁମେ ଘରକୁ ଫେରିଗଲେ, ଶାଶୂ, ଶ୍ୱଶୁର, ଗୁରୁ, ପ୍ରିୟଜନ ଓ କୁଟୁମ୍ବ ଲୋକ, ସମସ୍ତଙ୍କ ଚିନ୍ତା ମେଣ୍ଟିଯିବ ।" ପତିଙ୍କ ବଚନ ଶୁଣି ଜାନକୀ କହନ୍ତି, "ହେ ପ୍ରାଣପତି ! ହେ ପରମସ୍ନେହି ! ଶୁଣନ୍ତୁ ॥ ୨ ॥ "ହେ ପ୍ରଭୋ ! ଆପଣ କରୁଣା-ମୟ ଓ ପରମ-ବିବେକୀ । କୃପା କରି ବିଚାର କରନ୍ତୁ, ଶରୀରକୁ ଛାଡି ଛାୟା ଅଲଗା କପରି ରହିପାରେ ? ସୂର୍ଯ୍ୟଙ୍କ ପ୍ରଭା ସୂର୍ଯ୍ୟଙ୍କୁ ଛାଡି ଅନ୍ୟ କେଉଁଆଡେ ଯାଇପାରେ କି ? ଚନ୍ଦ୍ରମାକୁ ତ୍ୟାଗ କରି ଚନ୍ଦ୍ରିମାର ଚାଲି କୁଆଡେ ?" ॥ ୩ ॥ ଏହି ପ୍ରକାରେ ପତିଙ୍କୁ ପ୍ରେମମୟୀ ବିନତି ଶୁଣାଇ ସୀତା ମନ୍ତ୍ରୀଙ୍କୁ ମନୋହର ବାଣୀ କହିଲେ, "ଆପଣ ମୋ ପିତା ଓ ଶ୍ୱଶୁରଙ୍କ ପରି ମୋର ହିତକାରକ । ଆପଣଙ୍କ କଥାର ପ୍ରତ୍ୟୁତ୍ତର ଦେବା ମୋ ପକ୍ଷରେ ଅତି ଅନୁଚିତ ॥୪॥
ଦୋହା—କିନ୍ତୁ ହେ ତାତ ! ମୁଁ ଆର୍ତ୍ତ ହୋଇ ଆପଣଙ୍କ ସମ୍ମୁଖରେ ଉତରି ଯାଉଛି । ଆପଣ ଏହାକୁ ଖରାପ ମନେ କରିବେ ନାହିଁ । ଆର୍ଯ୍ୟ-ପୁତ୍ରଙ୍କ ଚରଣ-କମଳ ବିନା ଜଗତରେ ଅନ୍ୟ ମୋର ଯେତେ ସମ୍ବନ୍ଧ, ସେ ସବୁ ମୋ ନିମନ୍ତେ ବ୍ୟର୍ଥ ॥ ୯୭ ॥
ଚୌପାଈ:—ମୁଁ ପିତାଙ୍କର ଐଶ୍ୱର୍ଯ୍ୟର ଛଟା ଦେଖିଛି । ତାଙ୍କର ପାଦାସନ-ପୀଠରେ ସମସ୍ତ ରାଜାଙ୍କ ମୁକୁଟ ମିଳିତ ହୁଏ । ଏହିପରି ସମସ୍ତ ସୁଖର ଭଣ୍ଡାର ମୋର ପିତୃଗୃହ ପତି ବିନା ଭୁଲିରେ ସୁଦ୍ଧା ମୋତେ ଭଲ ଲାଗେ ନାହିଁ ॥ ୧ ॥ ମୋର ଶ୍ୱଶୁର

ସସୁରୁ ଏତାଦୃସ ଅୱଧ ନିବାସୂ । ପ୍ରିୟ ପରିବାରୁ ମାତୁ ସମ ସାସୂ ॥
ବିନୁ ରଘୁପତି ପଦ ପଦୁମ ପରାଗା । ମୋହି କେଉ ସପନେହୁଁ ସୁଖଦ ନ ଲାଗା ॥୩॥
ଅଗମ ପଂଥ ବନଭୂମି ପହାରା । କରି କେହରି ସର ସରିତ ଅପାରା ॥
କୋଲ କିରାତ କୁରଂଗ ବିହଂଗା । ମୋହି ସବ ସୁଖଦ ପ୍ରାନପତି ସଂଗା ॥୪॥

ସାସୁ ସସୁର ସନ ମୋରି ହୁଁତି ବିନୟ କରବି ପରି ପାୟଁ ।
ମୋର ସୋଚୁ ଜନି କରିଅ କଛୁ ମୈଁ ବନ ସୁଖୀ ସୁଭାୟଁ ॥୯୮॥

ପ୍ରାନନାଥ ପ୍ରିୟ ଦେବର ସାଥା । ବୀର ଧୁରୀନ ଧରେଁ ଧନୁ ଭାଥା ॥
ନହିଁ ମଗ ଶ୍ରମୁ ଭ୍ରମୁ ଦୁଖ ମନ ମୋରେଁ । ମୋହି ଲଗି ସୋଚୁ କରିଅ ଜନି ଭୋରେଁ ॥୧॥
ସୁନି ସୁମଂତ୍ରୁ ସିୟ ସୀତଲି ବାନୀ । ଭୟଉ ବିକଲ ଜନୁ ଫନି ମନି ହାନୀ ॥
ନୟନ ସୂଝ ନହିଁ ସୁନଇ ନ କାନା । କହି ନ ସକଇ କଛୁ ଅତି ଅକୁଲାନା ॥୨॥

---

ଅଯୋଧ୍ୟା ପୁରରେ ନିବାସ, ଶ୍ୱଶୁର ଈଦୃଶ । ପ୍ରିୟ ପରିବାର, ଶାଶୁ ଜନନୀ ସଦୃଶ ॥
ରଘୁପତି ପାଦ-ପଦ୍ମ ରେଣୁ ବିନା କାହିଁ । ସ୍ୱପ୍ନେହେଁ ସୁଖଦ କେହି ମୋ ନିମନ୍ତେ ନାହିଁ ॥୩॥
ଅଗମ୍ୟ ମାର୍ଗ, ଅରଣ୍ୟ ଭୂମି, ମହୀଧର । କରୀ, କେଶରୀ, ସରିତ, ଅପରିମିତ ସର ॥
କୋଲ୍ହ କିରାତ ଅବର କୁରଙ୍ଗ ବିହଙ୍ଗେ । ମୋତେ ସମସ୍ତେ ସୁଖଦ ପ୍ରାଣପତି ସଙ୍ଗେ ॥୪॥

ଶାଶୁ ଶ୍ୱଶୁରଙ୍କୁ ମୋହର ବିନତି କରିବ ପଡ଼ି ଚରଣେ ।
ମୋ ନିମନ୍ତେ ଚିନ୍ତା ନ କରିବେ କିଛି, ସୁଖୀ ମୁଁ ସ୍ୱଭାବେ ବନେ ॥୯୮॥

ପ୍ରାଣନାଥ ପୁଣି ପ୍ରିୟ ଦେବର ସଙ୍ଗରେ । ବୀରଶ୍ରେଷ୍ଠ ଶୋଭେ ଧନୁ ତୂଣୀର ଯା' କରେ ॥
ପଥ ଶ୍ରମ ଦୁଃଖ ଭ୍ରମ ନାହିଁ ମୋର ଚିତ୍ତେ । ଭୁଲି ମଧ୍ୟ ନ କରିବେ ଚିନ୍ତା ମୋ ନିମନ୍ତେ ॥୧॥
ଶୁଣି ସୁମନ୍ତ୍ର ସୀତାଙ୍କ ବାଣୀ ସୁଶୀତଳ । ମଣିହରା ଫଣୀ ପରି ହୋଇଲେ ବିକଳ ॥
ନୟନକୁ ନ ଦିଶଇ, କର୍ଣ୍ଣେ ନ ଶୁଣନ୍ତି । ଅତ୍ୟନ୍ତ ଆକୁଳେ କିଛି କହି ନ ପାରନ୍ତି ॥୨॥

---

କୋଶଳରାଜ ଚକ୍ରବର୍ତ୍ତୀ ସମ୍ରାଟ୍ । ତାଙ୍କର ପ୍ରଭାବ ଚଉଦ ଭୁବନରେ ସର୍ବବ୍ୟାପ୍ତ । ଇନ୍ଦ୍ର ମଧ୍ୟ ସନ୍ମୁଖକୁ ଆସି ତାହାଙ୍କର ସ୍ୱାଗତ କରନ୍ତି ଏବଂ ଆପଣାର ସିଂହାସନର ଅର୍ଦ୍ଧ ଭାଗରେ ବସିବା ନିମନ୍ତେ ତାଙ୍କୁ ସ୍ଥାନ ଦିଅନ୍ତି ॥ ୨ ॥ ଏହିପରି ଐଶ୍ୱର୍ଯ୍ୟ-ପରାକ୍ରମଶାଳୀ ଶ୍ୱଶୁର, ତାଙ୍କର ରାଜଧାନୀ ଅଯୋଧ୍ୟାରେ ନିବାସ, ପ୍ରିୟ ଆତ୍ମୀୟ ସ୍ୱଜନ ଏବଂ ମାତାଙ୍କ ସମାନ ଶାଶୁମାନେ—ଏମାନଙ୍କ ମଧ୍ୟରୁ କେହି ହେଲେ ଶ୍ରୀ ରଘୁନାଥଙ୍କ ଚରଣ-କମଳ-ରଜ ବିନା ମୋତେ ସ୍ୱପ୍ନରେ ମଧ୍ୟ ସୁଖଦ ବୋଧ ହୁଅନ୍ତି ନାହିଁ ॥୩॥ ଅଗମ୍ୟ ପଥ, ବନଭୂମି, ପାହାଡ଼, ହସ୍ତୀ, ସିଂହ, ଅପାର ପୁଷ୍କରିଣୀ ଓ ନଦୀ, କୋଲ୍ହ, ଶବର, ହରିଣ ଓ ପକ୍ଷୀ, ଏମାନେ ସମସ୍ତେ ମୁଁ ଶ୍ରୀ ରଘୁନାଥଙ୍କ ସଙ୍ଗରେ ଥିଲେ, ମୋ ପ୍ରତି ସୁଖଦାୟକ ହେବେ ॥ ୪ ॥ ଦୋହା :—ଅତଏବ ଶାଶୁ ଓ ଶ୍ୱଶୁରଙ୍କ ପାଦ ଧରି ମୋ ପକ୍ଷରୁ ବିନତି କରନ୍ତୁ ଯେ, ସେମାନେ ମୋ ବିଷୟରେ କିଛିଏ ମଧ୍ୟ ଚିନ୍ତା ନ କରନ୍ତୁ, ମୁଁ ବନରେ ସ୍ୱଭାବତଃ ସୁଖୀ ॥ ୯୮ ॥ ଚୌପାଈ :—ବୀରଶ୍ରେଷ୍ଠ ଏବଂ

ରାମ ପ୍ରବୋଧୁ କୀନ୍ହ ବହୁ ଭାଁତୀ । ତଦପି ହୋତି ନହିଁ ସୀତଲ ଛାତୀ ॥
ଜତନ ଅନେକ ସାଥ ହିତ କୀନ୍ହେ । ଉଚିତ ଉତର ରଘୁନଂଦନ ଦୀନ୍ହେ ॥୩॥
ମେଟି ଜାଇ ନହିଁ ରାମ ରଜାଈ । କଠିନ କରମ ଗତି କଛୁ ନ ବସାଈ ॥
ରାମ ଲଖନ ସିୟ ପଦ ସିରୁ ନାଈ । ଫିରେଉ ବନିକ ଜିମି ମୂର ଗଁୱାଈ ॥୪॥

ରଥୁ ହାଁକେଉ ହୟ ରାମ ତନ ହେରି ହେରି ହିହିନାହିଁ ।
ଦେଖି ନିଷାଦ ବିଷାଦବସ ଧୁନହିଁ ସୀସ ପଛିତାହିଁ ।୯୯॥

ଜାସୁ ବିୟୋଗ ବିକଲ ପସୁ ଐସେଁ । ପ୍ରଜା ମାତୁ ପିତୁ ଜିଇହହିଁ କୈସେଁ ॥
ବରବସ ରାମ ସୁମଂତ୍ରୁ ପଠାଏ । ସୁରସରି ତୀର ଆପୁ ତବ ଆଏ ॥୧॥

---

ରାମ ଅନେକ ପ୍ରକାର କଲେହେଁ ପ୍ରବୋଧ । ତଥାପି ହୃଦେ ନ ହୁଏ ଶୀତଳତା ବୋଧ ॥
ସଙ୍ଗେ ନିବା ପାଇଁ କଲେ ବିବିଧ ଯତନ । ଉଚିତ ଉତ୍ତର ଦେଲେ ଶ୍ରୀରଘୁନନ୍ଦନ ॥୩॥
ରଘୁପତି ଆଜ୍ଞାଭଙ୍ଗ କରି ନ ହୁଅଇ । କଠିନ କରମ ଗତି ବଳ ନ ଚଳଇ ॥
ରାମ, ଲକ୍ଷ୍ମଣ, ସୀତାଙ୍କ ପଦ୍ମରେ ନମିଣ । ଫେରିଲେ ବଣିକ ଯଥା ମୂଳ ବୁଡାଇଣ ॥୪॥

ଚଳାନ୍ତେ ରଥକୁ ତୁରଙ୍ଗ ରାମଙ୍କୁ ଦେଖି ହିଁ ହିଁ ହିଁ କରନ୍ତି ।
ବିଲୋକି ନିଷାଦ ଦୁଃଖେ ଶିର ପିଟି ଅନୁତାପ କରେ ଅତି ॥୯୯॥

ଯାହାଙ୍କ ବିୟୋଗେ ପଶୁ ବିକଳ ଏମନ୍ତ । ପ୍ରଜା, ପିତା, ମାତା ପୁଣି ବଞ୍ଚିବେ କେମନ୍ତ ॥
ବାଧ୍ୟ କରି ପଠାଇଣ ରାମ ସୁମନ୍ତ୍ରଙ୍କୁ । ସ୍ୱୟଂ ଆଗମିଲେ ସୁର-ତଟିନୀ-ତୀରକୁ ॥୧॥

---

ଧନୁ-ତୂଣୀର-ଧାରୀ ମୋ ପ୍ରାଣନାଥ ଓ ପ୍ରିୟ ଦେବର ସଙ୍ଗରେ ଅଛନ୍ତି । ଏହି ହେତୁ ମେ ତେ ପଥର କ୍ଳାନ୍ତି ଅନୁଭୂତ ହେଉନାହିଁ ମୋର ମନରେ କୌଣସି ଭ୍ରମ କିମ୍ବା କୌଣସି ଦୁଃଖ ନାହିଁ । ଆପଣ ମୋ ନିମନ୍ତେ ଭୁଲ୍‌ରେ ସୁଦ୍ଧା ଚିନ୍ତା କରନ୍ତୁ ନାହିଁ ॥ ୧ ॥ ସୁମନ୍ତ୍ର ସୀତାଙ୍କ ଶୀତଳ ବାଣୀ ଶୁଣି, ମଣି ହଜିଗଲେ ସର୍ପ ଯେପରି ବ୍ୟାକୁଳ ହୁଏ, ସେହିପରି ବ୍ୟାକୁଳ ହେଲେ । ନୟନକୁ କିଛି ଦୃଷ୍ଟିଗୋଚର ହେଉ ନ ଥାଏ କିମ୍ବା କର୍ଣ୍ଣକୁ କିଛି ଶୁଣାଯାଉ ନ ଥାଏ । ସେ ବ୍ୟାକୁଳ ହୋଇ ପଡିଲେ, କିଛି କହିପାରୁ ନ ଥା'ନ୍ତି ॥ ୨ ॥ ଶ୍ରୀରାମଚନ୍ଦ୍ର ବହୁତ ପ୍ରକାରେ ତାଙ୍କୁ ଆଶ୍ୱାସନା ଦେଲେ । ତଥାପି ତାଙ୍କର ହୃଦୟ ଶୀତଳ ହେଲାନାହିଁ । ସାଙ୍ଗରେ ଫେରିଯିବା ନିମନ୍ତେ ମନ୍ତ୍ରୀ ଅନେକ ଯତ୍ନ କଲେ । କିନ୍ତୁ ରଘୁନନ୍ଦନ ଶ୍ରୀରାମ ତାଙ୍କର ସମସ୍ତ ଯୁକ୍ତିର ଯଥୋଚିତ ଉତ୍ତର ଦେଇ ଯାଉଥା'ନ୍ତି ॥ ୩ ॥ ଶ୍ରୀରାମଙ୍କ ଆଜ୍ଞା ଭଙ୍ଗ କରାଯାଇ ନ ପାରେ । କର୍ମର ଗତି କଠିନ, ତାହା ଉପରେ କାହାରି ବଶ ବା ସାମର୍ଥ୍ୟ ଚଳେନାହିଁ । ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ଚରଣରେ ମୁଣ୍ଡ ନୁଆଁଇ ସୁମନ୍ତ୍ର ଏପରି ଭାବରେ ଫେରିଲେ ଯେତେ ଯେପରି କୌଣସି ବେପାରୀ ଆପଣା ମୂଳଧନ ହରାଇ ଫେରିଯାଏ ॥ ୪ ॥ ଦୋହା !— ସୁମନ୍ତ୍ର ରଥ ହାଙ୍କି ଚଳିଲେ । ଶ୍ରୀରାମଙ୍କ ଆଡକୁ ଚାହିଁ ଚାହିଁ ଅଶ୍ୱମାନେ ହ୍ରେଷା ରବ କରୁଥା'ନ୍ତି । ଏହା ଦେଖି ନିଷାଦମାନେ ଘୋର ବିଷାଦର ବଶବର୍ତ୍ତୀ ହୋଇ ମୁଣ୍ଡ ପିଟି

ମାଗୀ ନାବ ନ କେୱଟୁ ଆନା । କହଇ ତୁହ୍ମାର ମରମୁ ମୈଁ ଜାନା ॥
ଚରନ କମଲ ରଜ କହୁଁ ସବୁ କହଈ । ମାନୁଷ କରନି ମୂରି କଛୁ ଅହଈ ॥୧॥
ଛୁଅତ ସିଲା ଭଇ ନାରି ସୁହାଈ । ପାହନ ତେଁ ନ କାଠ କଠିନାଈ ॥
ତରନିଉ ମୁନି ଘରିନୀ ହୋଇ ଜାଈ । ବାଟ ପରଇ ମୋରି ନାବ ଉଡ଼ାଈ ॥୨॥
ଏହିଁ ପ୍ରତିପାଲଉଁ ସବୁ ପରିବାରୂ । ନହିଁ ଜାନଉଁ କଛୁ ଅଉର କବାରୂ ॥
ଜୌଁ ପ୍ରଭୁ ପାର ଅବସି ଗା ଚହହୂ । ମୋହି ପଦ ପଦୁମ ପଖାରନ କହହୂ ॥୩॥

ପଦ କମଲ ଧୋଇ ଚଢ଼ାଇ ନାବ ନ ନାଥ ଉତରାଈ ଚହୌଁ ।
ମୋହି ରାମ ରାଉରି ଆନ ଦସରଥ ସପଥ ସବ ସାଚୀ କହୌଁ ॥
ବରୁ ତୀର ମାରହୁଁ ଲଖନୁ ପୈ ଜବ ଲଗି ନ ପାୟ ପଖାରିହୌଁ ।
ତବ ଲଗି ନ ତୁଲସୀଦାସ ନାଥ କୃପାଲ ପାରୁ ଉତାରିହୌଁ ॥

---

ମାଗନ୍ତେ ନାବ ଧୀବର ପାଶେ ନ ଆଣଇ । ଉତ୍ତର ଦିଏ ମୁଁ ତବ ମରମ ଜାଣଇ ॥
ବୋଲନ୍ତି ସକଳେ, ପ୍ରଭୁ-ପାଦ-ପଦ୍ମ-ଧୂଳି । ମନୁଷ୍ୟକାରିଣୀ କଉଣସି ଚେରମୂଳି ॥୧॥
ଛୁଇଁନ୍ତେ ଶିଳା ହୋଇଲା ରମଣୀ ନବୀନ । ପାଷାଣ ଅପେକ୍ଷା କାଠ ନୁହଇ କଠିନ ॥
ତରଣୀ ଯଦି ମୋ ମୁନି-ଘରଣୀ ହୋଇବ । ବାଟ ପଡ଼ିଯିବ, ମୋର ନାବ ଉଡ଼ିଯିବ ॥୨॥
ଏଥିରେ ପ୍ରତିପାଳଇ ସାରା ପରିବାର । ନ ଜାଣଇ ଅନ୍ୟ କିଛି ବୃତ୍ତି-ବ୍ୟବହାର ॥
ଯେବେ ପ୍ରଭୁ, ଇଚ୍ଛା କର ପାର ହୋଇବାକୁ । କହନ୍ତୁ ମୋତେ ପଙ୍କଜ-ପଦ ଧୋଇବାକୁ ॥୩॥

ପଦ-କଞ୍ଜ ଧୋଇବି, ନାବରେ ଚଢ଼ାଇବି, ନ ନେବି ଅନ୍ୟ ପାରି ଦାମ,
ତୁମ ଜନ୍ମ ଜାଣ, ଦଶରଥଙ୍କ ରାଣ, ସତ୍ୟ ମୁଁ କହୁଅଛି, ରାମ ।
ବରଂ ଲକ୍ଷ୍ମଣ ମାରୁ ଶର, କିନ୍ତୁ ନ ଧୋଇଲେ ପୟର,
କରିବି ନାହିଁ ପାର କରୁଣା-ଅକୂପାର ତୁଲସୀ-ଦାସଙ୍କ ଈଶ୍ୱର ॥

---

ପଶ୍ଚାତ୍ତାପ କରୁଥା'ନ୍ତି ॥ ୧୯ ॥ ଚୌପାଈ :—ଯାହାଙ୍କ ବିରହରେ ପଶୁମାନେ ସୁଦ୍ଧା ଏପରି ବ୍ୟାକୁଳ, ତାଙ୍କ ବିରହରେ ପ୍ରଜା, ମାତା ଓ ପିତା କିପରି ଜୀବିତ ରହିବେ ? ଶ୍ରୀରାମଚନ୍ଦ୍ର ଜବରଦସ୍ତି ସୁମନ୍ତ୍ରଙ୍କୁ ଲେଉଟାଇ ଦେଲେ । ତତ୍ପରେ ସେ ଗଙ୍ଗା-କୂଳକୁ ଆସିଲେ ॥ ୧ ॥ ଶ୍ରୀରାମ କେଉଟକୁ ନୌକା ମାଗିଲେ । କିନ୍ତୁ ସେ ନୌକା ଆଣିଲା ନାହିଁ । ସେ କହିବାକୁ ଲାଗିଲା—"ମୁଁ ତୁମ୍ଭର ମରମ ଭଲ ରୂପେ ଜାଣିପାରିଛି । ତୁମ୍ଭର ଚରଣ-କମଳ-ରଜ ବିଷୟରେ ସମସ୍ତ ଲୋକ କହନ୍ତି ଯେ, ତାହା ମନୁଷ୍ୟକାରକ କୌଣସି ଔଷଧ ॥ ୧ ॥ ତାହାର ସ୍ପର୍ଶ ମାତ୍ରେ ପଥର ସୁନ୍ଦରୀ ସ୍ତ୍ରୀ ହୋଇଗଲା । କାଠ-ତିଆରି ମୋର ଏ ନୌକା ପଥରରୁ ଅଧିକ କଠିନ ତ ନୁହେଁ । ମୋର ନୌକା ମଧ୍ୟ ମୁନିଙ୍କ ପତ୍ନୀ ସମାନ ସ୍ତ୍ରୀ ହୋଇଯିବ । ଏହିରୂପେ ମୋର ନୌକା ଉଡ଼ିଯିବ ଏବଂ ମୋହର ଜୀବିକାନିର୍ବାହର ମାର୍ଗ ରୁଦ୍ଧ ହୋଇଯିବ ॥ ୩ ॥ ଏହି ନୌକା ଯୋଗେ ମୁଁ ସାରା

ସୁନି କେୱଟ କେ ବୈନ ପ୍ରେମ ଲପେଟେ ଅଟପଟେ ।
ବିହସେ କରୁନାଐନ ଚିତଇ ଜାନକୀ ଲଖନ ତନ ॥୧୦୦॥
କୃପାସିଂଧୁ ବୋଲେ ମୁସୁକାଈ । ସୋଇ କରୁ ଜେହିଁ ତବ ନାବ ନ ଜାଈ ॥
ବେଗି ଆନୁ ଜଲ ପାୟ ପଖାରୂ । ହୋତ ବିଲଂବୁ ଉତାରହି ପାରୂ ॥୧॥
ଜାସୁ ନାମ ସୁମିରତ ଏକ ବାରା । ଉତରହିଁ ନର ଭବସିଂଧୁ ଅପାରା ॥
ସୋଇ କୃପାଲୁ କେୱଟ ହି ନିହୋରା । ଜେହିଁ ଜଗୁ କିୟ ତିହୁଁ ପଗହୁଁ ତେଁ ଥୋରା ॥୨॥
ପଦ ନଖ ନିରଖି ଦେବସରି ହରଷୀ । ସୁନି ପ୍ରଭୁ ବଚନ ମୋହଁ ମତି କରଷୀ ॥
କେୱଟ ରାମ ରଜାୟସୁ ପାୱା । ପାନି କଠୱତା ଭରି ଲେଇ ଆୱା ॥୩॥

---

ପ୍ରେମ ଲଟପଟ କେଉଟ ବଚନ ଶୁଣି ଅସଙ୍ଗତ ଅତି ।
ସୀତା ଲକ୍ଷ୍ମଣଙ୍କୁ କରି ବିଲୋକନ କରୁଣା-ସିନ୍ଧୁ ହସନ୍ତି ॥୧୦୦॥
ଭାଷିଲେ ମଧୁରେ ହସି କୃପା-ନିକେତନ । ଯେମନ୍ତେ ନ ଯାଏ ନାବ, କର ସେ ଯତନ ॥
ବେଗି ଜଳ ଆଣି ପଦ ପ୍ରକ୍ଷାଳନ କର । ହେଉଛି ବିଳମ୍ବ, ପାର କରାଅ ସତ୍ୱର ॥୧॥
ଯାହାଙ୍କ ନାମ ସ୍ମରଣ କରି ଏକ ବାର । ପାର ହୁଏ ନର ଭବ-ସାଗର ଅପାର ॥
ସେ କୃପାଳୁ ଧୀବରକୁ ନିହୋରା କରନ୍ତି । ତିନି ପାଦରୁ ଯେ ଊଣା କଲେ ବସୁମତୀ ॥୨॥
ପଦ ନଖ ଦେଖି ଗଙ୍ଗା ହେଲେ ହରଷିତ । ପ୍ରଭୁ ବାଣୀ ଶୁଣି ମୋହ ମତି ଆକର୍ଷିତ ॥
ଯେବେଁ ରାମଙ୍କର ଆଜ୍ଞା କୈବର୍ତ୍ତ ପାଇଲା । ବେନି କାଷ୍ଠ ପାତ୍ର ଜଳ ନେଇ ସେ ଆସିଲା ॥୩॥

---

ପରିବାର ପାଳନ-ପୋଷଣ କରୁଛି । ଅନ୍ୟ କୌଣସି ଧନ୍ଦା ମୋତେ ଜଣାନାହିଁ । ହେ ପ୍ରଭୋ ! ଯଦି ତୁମେ ଅବଶ୍ୟ ନଦୀ ପାର ହେବାକୁ ଚାହଁ, ତେବେ ମୋତେ ପ୍ରଥମେ ତୁମ ଚରଣ-କମଳ ଧୋଇବା ନିମନ୍ତେ ଆଦେଶ ଦିଅ ॥ ୪ ॥ ଛନ୍ଦ :—ହେ ନାଥ ! ମୁଁ ଚରଣ-କମଳ ଧୋଇ ଆପଣମାନଙ୍କୁ ନୌକାରେ ଚଢାଇବି । ଆପଣମାନଙ୍କଠାରୁ କୌଣସି ମହାସୁଲ ମୁଁ ଚାହୁଁନାହିଁ । ହେ ରାମ ! ମୋତେ ଆପଣଙ୍କ ଦୁହାଇ ଏବଂ ଦଶରଥଙ୍କ ରାଣ, ମୁଁ ସବୁ ସତ କଥା କହୁଛି । ଲକ୍ଷ୍ମଣ ଭଲେ ମୋତେ ଶର ମାରନ୍ତୁ ପଛକେ, କିନ୍ତୁ ଯେତେବେଳ ଯାଏ ଆପଣଙ୍କ ପାଦ ନ ଧୋଇଛି, ସେତେବେଳ ଯାଏ ହେ ତୁଳସୀଦାସଙ୍କ ନାଥ ! ହେ କୃପାଳୁ ! ମୁଁ ଆପଣଙ୍କୁ ମୋ ନୌକାରେ ନଦୀ ପାର କରିବି ନାହିଁ ॥” ସୋରଠା :—କୈବର୍ତ୍ତର ପ୍ରେମସିକ୍ତ, ଅସଙ୍ଗତ (ଏକାଜିଦିଆ) କଥା ଶୁଣି, କରୁଣାଧାମ ଶ୍ରୀରାମ ଜାନକୀ ଓ ଲକ୍ଷ୍ମଣଙ୍କ ଆଡକୁ ଚାହିଁ ହସିଲେ ॥୧୦୦॥ ଚୌପାଇ :—କୃପାସିନ୍ଧୁ ଶ୍ରୀରାମ ମୃଦୁଳ ହସି କେଉଟକୁ କହିଲେ—“ଭାଇ, ଯେପରି ତୁମ ନୌକା ନଷ୍ଟ ନ ହୁଏ, ତୁମେ ସେଇଆ କର । ଶୀଘ୍ର ଜଳ ଆଣ ଏବଂ ପାଦ ଧୋଇ ପକାଅ । ବିଳମ୍ବ ହେଉଛି, ନଦୀ ପାର କରିଦିଅ ।” ॥ ୧ ॥ ଯାହାଙ୍କର ନାମ ଥରେ ମାତ୍ର ସ୍ମରଣ କରିବା ମାତ୍ରେ ମନୁଷ୍ୟ ଅପାର ଭବସାଗରକୁ ପାର ହୋଇଯାଏ ଏବଂ ଯେଉଁ ପ୍ରଭୁ ବାମନାବତାରରେ ଜଗତକୁ ତିନି ପାଦଠାରୁ ମଧ୍ୟ ଛୋଟ କରି ଦେଇଥିଲେ, ସେହି କୃପାଳୁ

ଅତି ଆନଂଦ ଉମଗି ଅନୁରାଗା । ଚରନ ସରୋଜ ପଖାରନ ଲାଗା ॥
ବରଷି ସୁମନ ସୁର ସକଲ ସିହାହୀଂ । ଏହି ସମ ପୁନ୍ୟପୁଂଜ କୋଉ ନାହୀଂ ॥୪॥
ପଦ ପଖାରି ଜଲୁ ପାନ କରି ଆପୁ ସହିତ ପରିବାର ।
ପିତର ପାରୁ କରି ପ୍ରଭୁହି ପୁନି ମୁଦିତ ଗୟଉ ଲେଇ ପାର ॥୧୦୧॥
ଉତରି ଠାଢ଼ ଭଏ ସୁରସରି ରେତା । ସୀୟ ରାମୁ ଗୁହ ଲଖନ ସମେତା ॥
କେୱଟ ଉତରି ଦଣ୍ଡବତ କୀହ୍ନା । ପ୍ରଭୁହି ସକୁଚ ଏହି ନହିଁ କଛୁ ଦୀହ୍ନା ॥୧॥
ପିୟ ହିୟ କୀ ସିୟ ଜାନନିହାରୀ । ମନି ମୁଦରୀ ମନ ମୁଦିତ ଉତାରୀ ॥
କହେଉ କୃପାଲ ଲେହି ଉତରାଈ । କେୱଟ ଚରନ ଗହେ ଅକୁଲାଈ ॥୨॥

---

ଉତ୍ଫୁଲ୍ଲ ଅତି ଆନନ୍ଦେ ମନ ଅନୁରାଗେ । ଚରଣ ସରସୀ-ରୁହ ପ୍ରକ୍ଷାଳନେ ଲାଗେ ॥
ଈରଷା କରନ୍ତି ସୁରେ ବରଷି ସୁମନ । ଏହା ସମ ପୁଣ୍ୟରାଶି ନାହିଁ କେହି ଅନ୍ୟ ॥୪॥
ଚରଣ ପ୍ରକ୍ଷାଳି ଜଳ ପାନ କରି ନିଜ ସହ ପରିବାର ।
ପିତୃ କରି ପାର ପ୍ରଭୁଙ୍କୁ ଆଦର ସୁଖେ କରିଦେଲା ପାର ॥୧୦୧॥
ଓହ୍ଲାଇ ଛିଡ଼ା ହୋଇଲେ ଜାହ୍ନବୀ ରଜରେ । ସୀତା ରଘୁବୀର ଗୁହ ଲକ୍ଷ୍ମଣ ସଙ୍ଗରେ ॥
ଧୀବର ଓହ୍ଲାଇ ଦଣ୍ଡ ପ୍ରଣାମ କରିଲା । ପ୍ରଭୁ ସଙ୍କୋଚନ୍ତି ଏହୁ କିଛୁ ନ ପାଇଲା ॥୧॥
ପ୍ରିୟ ହୃଦୟର ଭାବ ଜାନକୀ ଜାଣିଣ । ପ୍ରମୋଦିତେ ଦେଲେ ମଣିମୁଦ୍ରିକା କାଢିଣ ॥
କହନ୍ତି କୃପାଳୁ ପ୍ରଭୁ, ନିଅ ପାରି-ମୂଲ । ଚରଣ ଧରେ ଧୀବର ହୋଇଣ ଆକୁଳ ॥୨॥

---

ଶ୍ରୀରାମଚନ୍ଦ୍ର ଗଙ୍ଗା ପାର ହେବା ନିମନ୍ତେ କେଉଟଙ୍କୁ ନେହୁରା ହେଉଛନ୍ତି ! ॥ ୨ ॥ ପ୍ରଭୁଙ୍କର ଏହି ସବୁ କଥା ଶୁଣି, ସୁରସରିତ ଗଙ୍ଗାଙ୍କର ବୁଦ୍ଧି ମୋହଗ୍ରସ୍ତ ହୋଇ-ଯାଇଥିଲା । (ସାକ୍ଷାତ ଭଗବାନ୍ ମୁଁ କା ନଦୀ ପାର ହେବା ନିମନ୍ତେ କେଉଟଙ୍କୁ ଏପରି କାହିଁକି ନେହୁରା ହେଉଅଛନ୍ତି, ଏ ବିଷୟରେ ତାଙ୍କ ମନରେ ନାନା ସଂଶୟ ଜାତ ହେଉଥାଏ ।) କିନ୍ତୁ ରାମ ନିକଟକୁ ଆସନ୍ତେ ଦେବସରିତ ଗଙ୍ଗା ଆପଣାର ଉତ୍ପତ୍ତି-ସ୍ଥାନ ପାଦନଖକୁ ଦେଖିବା ମାତ୍ରେ ତାହାଙ୍କୁ ଚିହ୍ନି ଆନନ୍ଦିତ ହୋଇ ପଡ଼ିଲେ । (ସେ ବୁଝିପାରିଲେ ଯେ, ଭଗବାନ୍ ନରଲୀଳା କରୁଅଛନ୍ତି । ତଦ୍ୱାରା ତାଙ୍କର ମୋହ ନଷ୍ଟ ହୋଇଗଲା । "ଏହି ଚରଣ ସ୍ପର୍ଶ ପାଇ ମୁଁ ଧନ୍ୟ ହେବି ।" ଏହା ବିଚାରି ସେ ଆନନ୍ଦିତ ହୋଇ ପଡ଼ିଲେ ।) କେଉଟ ଶ୍ରୀରାମଙ୍କ ଆଦେଶ ପାଇ, କାଠ-ପାତ୍ରରେ ଜଳ ଭର୍ତ୍ତି କରି ନେଇ ଆସିଲା ॥ ୩ ॥ ଅତ୍ୟନ୍ତ ଆନନ୍ଦ ଓ ପ୍ରେମରେ ଉତ୍ଫୁଲ୍ଲ ସେ ଭଗବାନଙ୍କ ଚରଣ-କମଳ ଧୋଇବାକୁ ଲାଗିଲା । ସମସ୍ତ ଦେବତା ପୁଷ୍ପ-ବୃଷ୍ଟି କରି କେଉଟର ଭାଗ୍ୟ ପ୍ରତି ଈର୍ଷ୍ୟା କରୁଥା'ନ୍ତି ଯେ, ଏହା ସମାନ ପୁଣ୍ୟ-ରାଶି ଆଉ କେହି ନାହାନ୍ତି ॥ ୪ ॥ ଦୋହା :—ଚରଣ ଧୋଇ ଏବଂ ସମସ୍ତ ପରିବାର ସମେତ ନିଜେ ସେହି ଚରଣୋଦକ ପାନ କରି କେଉଟ ପ୍ରଥମେ ସେହି ମହାପୁଣ୍ୟ ବଳରେ ନିଜର ପିତୃପୁରୁଷମାନଙ୍କୁ ଭବସାଗରରୁ ପାର କଲା । ତତ୍ପରେ ଆନନ୍ଦରେ ପ୍ରଭୁ ଶ୍ରୀରାମଙ୍କୁ

ନାଥ ଆଜୁ ମୈଁ କାହ ନ ପାୱା । ମିଟେ ଦୋଷ ଦୁଖ ଦାରିଦ ଦାୱା ॥
ବହୁତ କାଲ ମୈଁ କୀହ୍ନି ମଜୂରୀ । ଆଜୁ ଦୀହ୍ନି ବିଧି ବନି ଭଲି ଭୂରୀ ॥୩॥
ଅବ କଛୁ ନାଥ ନ ଚାହିଅ ମୋରେଁ । ଦୀନଦୟାଲ ଅନୁଗ୍ରହ ତୋରେଁ ॥
ଫିରତୀ ବାର ମୋହି ଜୋ ଦେବା । ସୋ ପ୍ରସାଦୁ ମୈଁ ସିର ଧରି ଲେବା ॥୪॥

ବହୁତୁ କୀହ୍ନ ପ୍ରଭୁ ଲଖନ ସିୟଁ ନହିଁ କଛୁ କେୱଟୁ ଲେଇ ।
ବିଦା କୀହ୍ନ କରୁନାୟତନ ଭଗତି ବିମଲ ବରୁ ଦେଇ ॥୧୦୨॥

ତବ ମଜ୍ଜନୁ କରି ରଘୁକୁଲ ନାଥା । ପୂଜି ପାରଥିବ ନାୟଉ ମାଥା ॥
ସିୟଁ ସୁରସରିହି କହେଉ କର ଜୋରୀ । ମାତୁ ମନୋରଥ ପୁରଉବି ମୋରୀ ॥୧॥

---

ନାଥ, ଆଜି କିସ ନ ଲଭିଲି ଏହି ଜନ । ଦୂର ହେଲା ଦୁଃଖ ଦୋଷ ଦାରିଦ୍ର୍ୟ ଦହନ ॥
ବହୁତ କାଲରୁ ମୁହିଁ କଲି ଯେ ମଜୁରି । ଆଜି ତାର ମୂଲ୍ୟ ବିଧି ଦେଲା ପୂରାପୂରି ॥୩॥
ଏବେ ନାଥ, ନାହିଁ କିଛି ଆକାଂକ୍ଷା ମୋହର । ତୁମ୍ଭ ଅନୁଗ୍ରହେ ପ୍ରଭୁ ଦୀନେ ଦୟା କର ॥
ବାହୁଡିବା ସମୟରେ ମୋତେ ଦେବ ଯାହା । ପ୍ରସାଦ ରୂପେ ଘେନିବି ଶିରେ ଧରି ତାହା ॥୪॥

କହନ୍ତି ବହୁତ ସୀତା ବେନି ଭ୍ରାତୃ, ନ ନିଏ କିଛି ଧୀବର ।
କରିଲେ ବିଦାୟ ଦେଇ ଦୟାମୟ ଭକ୍ତି ସୁବିମଳ ବର ॥୧୦୨॥

ଏଥୁ ଅନନ୍ତରେ ସ୍ନାନ ସମାପିଣ ରାମ । ପୂଜି ମାଟି ଶିବ-ଲିଙ୍ଗେ କରିଲେ ପ୍ରଣାମ ॥
ବୋଲନ୍ତି ଭାଗୀରଥୀଙ୍କୁ ସୀତା ଯୋଡି ହସ୍ତ । ଜନନି, ପୂର୍ଣ୍ଣ କରନ୍ତୁ ମୋର ମନୋରଥ ॥୧॥

---

ଗଙ୍ଗାନଦୀ ପାର କରିଦେଲା ॥ ୧୦୧ ॥ ଚୌପାଇ :—ନିଷାଦରାଜ ଗୁହ ଓ ଲକ୍ଷ୍ମଣଙ୍କ ସହିତ ସୀତାରାମ ନୌକାରୁ ଓହ୍ଲାଇ ଗଙ୍ଗାନଦୀ ବାଲିରେ ଛିଡା ହେଲେ । କେଉଟ ଓହ୍ଲାଇ ଦଣ୍ଡବତ କଲା । ତାକୁ କିଛି ଦେଲିନାହିଁ ବୋଲି ପ୍ରଭୁଙ୍କ ମନରେ ସଂକୋଚ ଜାତ ହେଲା ॥ ୧ ॥ ପତିଙ୍କ ହୃଦୟର ଭାବ ଜାଣି ସୀତା ଆନନ୍ଦିତ ମନରେ ଆପଣାର ରତ୍ନମୁଦି ଅଙ୍ଗୁଳିରୁ ବାହାର କଲେ । କୃପାଳୁ ଶ୍ରୀରାମଚନ୍ଦ୍ର କେଉଟକୁ କହିଲେ, "ନୌକା ମହାସୁଲ ନିଅ" । କେଉଟ ବ୍ୟାକୁଳ ହୋଇ ତାଙ୍କ ଚରଣ ଧରି ପକାଇଲା ॥୨॥ ସେ କହିଲା, "ହେ ନାଥ ! ଆଜି ମୁଁ କଣ ନ ପାଇଲି ! ମୋର ଦୋଷ, ଦୁଃଖ ଓ ଦାରିଦ୍ର୍ୟ ରୂପକ ଦାବାଗ୍ନି ଆଜି ଲିଭିଗଲା । ମୁଁ ବହୁତ କାଳ ମଜୁରି କରିଥିଲି, ବିଧାତା ଆଜି ବହୁତ ଉତ୍ତମ ଓ ପୂର୍ଣ୍ଣ ମାତ୍ରାରେ ମୋତେ ମଜୁରି ଦେଇଦେଲେ ॥୩॥ ହେ ନାଥ ! ହେ ଦୀନଦୟାଳୁ ! ଆପଣଙ୍କ ଅନୁଗ୍ରହ ଯୋଗେ ମୋର ଏବେ ଆଉ କିଛି ଦରକାର ନାହିଁ । ଫେରିବା ବେଳେ ଆପଣ ମୋତେ ଯାହା ଦେବେ, ସେହି ପ୍ରସାଦ ମୁଁ ଶିରରେ ଚଢାଇ ଗ୍ରହଣ କରିବ ॥ ୪ ॥ ଦୋହା :—ପ୍ରଭୁ ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ବହୁତ ଆଗ୍ରହ କଲେ, କିନ୍ତୁ କେଉଟ କିଛି ନେଲାନାହିଁ । ତହୁଁରେ କରୁଣାଧାମ ଭଗବାନ୍ ଶ୍ରୀରାମ ନିର୍ମଳ ଭକ୍ତି-ବରଦାନ ଦେଇ ତାହାକୁ ବିଦାୟ କଲେ ॥ ୧୦୨॥ ଚୌପାଇ :- ପୁଣି ରଘୁକୁଳ-ସ୍ୱାମୀ ଶ୍ରୀରାମ ସ୍ନାନ ପରେ ମୃତ୍ତିକା ନିର୍ମିତ ଶିବ-ଲିଙ୍ଗଙ୍କୁ ମସ୍ତକ

ପତି ଦେବର ସଁଗ କୁସଲ ବହୋରୀ । ଆଇ କରୌଁ ଜେହିଁ ପୂଜା ତୋରୀ ॥
ସୁନି ସିୟ ବିନୟ ପ୍ରେମ ରସ ସାନୀ । ଭଇ ତବ ବିମଲ ବାରି ବର ବାନୀ ॥୨॥
ସୁନୁ ରଘୁବୀର ପ୍ରିୟା ବୈଦେହୀ । ତବ ପ୍ରଭାଉ ଜଗ ବିଦିତ ନ କେହୀ ॥
ଲୋକପ ହୋହିଁ ବିଲୋକତ ତୋରେଁ । ତୋହି ସେବହିଁ ସବ ସିଧି କର ଜୋରେଁ ॥୩॥
ତୁମ୍ହ ଜୋ ହମହି ବଡ଼ି ବିନୟ ସୁନାଈ । କୃପା କୀହ୍ନି ମୋହି ଦୀହ୍ନି ବଡ଼ାଈ ॥
ତଦପି ଦେବି ମୈଁ ଦେବି ଅସୀସା । ସଫଲ ହୋନ ହିତ ନିଜ ବାଗୀସା ॥୪॥

ପ୍ରାନନାଥ ଦେବର ସହିତ କୁସଲ କୋସଲା ଆଇ ।
ପୂଜିହି ସବ ମନ କାମନା ସୁଜସୁ ରହିହି ଜଗ ଛାଇ ॥୧୦୩॥

ଗଂଗ ବଚନ ସୁନି ମଂଗଲ ମୂଲା । ମୁଦିତ ସୀୟ ସୁରସରି ଅନୁକୂଲା ॥
ତବ ପ୍ରଭୁ ଗୁହହି କହେଉ ଘର ଜାହୂ । ସୁନତ ସୂଖ ମୁଖୁ ଭା ଉର ଦାହୂ ॥୧॥

---

କୁଶଳେ ପୁନଶ୍ଚ ପତି ଦେବର ସଙ୍ଗତେ । ଫେରି ଆସି ତୁମ୍ଭ ପୂଜା କରିବି ଯେମନ୍ତେ ॥
ଶୁଣି ପ୍ରେମ-ରସ-ସିକ୍ତ ସୀତାଙ୍କ ବିନତି । ସଲିଳୁ ହୋଇଲା ବର ବିମଳ ଭାରତୀ ॥୨॥
ଶୁଣ ରଘୁବୀର ପ୍ରିୟା, ବିଦେହ-କୁମାରି ! ତୁମ୍ଭର ପ୍ରଭାବ ନୁହେ ଅଜ୍ଞାତ କାହାରି ॥
ତୁମ୍ଭ ବିଲୋକନେ ଲୋକେ ଲୋକେଶ ହୁଅନ୍ତି । ସିଦ୍ଧି ସର୍ବେ କର ଯୋଡି ତୁମ୍ଭଙ୍କୁ ସେବନ୍ତି ॥୩॥
ତୁମ୍ଭେ ଯେ ମୋ ଆଗେ ବଡ ବିନୟ କରିଲ । କରୁଣା କରି ବଡାଇ ମୋତେ ପ୍ରଦାନିଲ ॥
ତଥାପି ଦେବି ! ଆଶିଷ ଦେବି ମୁଁ ତୁମ୍ଭଙ୍କୁ । ସଫଳ କରିବା ପାଇଁ ନିଜ ବଚନକୁ ॥୪॥

ପ୍ରିୟ ପ୍ରାଣନାଥ ଦେବର ସହିତ କୁଶଳେ ପୁରେ ଫେରିବ ।
ମନ ଅଭିଳାଷ ପୂରିବ, ସୁଯଶ ଜଗତେ ବ୍ୟାପି ରହିବ ॥୧୦୩॥

ଶୁଣି ସୁର-ନଦୀ-ବାଣୀ ସୁମଙ୍ଗଳ ମୂଳ । ସୁଖୀ ହେଲେ ସୀତା ଜାଣି ଗଙ୍ଗା ଅନୁକୂଳ ॥
ଗୁହଙ୍କୁ କହିଲେ ପ୍ରଭୁ, ଯାଅ ଏବେ ଘର । ଶୁଣନ୍ତେ ଶୁଖିଲା ମୁଖ ଦହିଲା ଅନ୍ତର ॥୧॥

---

ନୁଆଁଇ ପ୍ରଣାମ କଲେ । ସୀତା ହାତ ଯୋଡି ଗଙ୍ଗାଙ୍କୁ କହିଲେ, "ହେ ମାତା ! ମୋର ମନୋରଥ ପୂର୍ଣ୍ଣ କରନ୍ତୁ ॥ ୧ ॥ ଯାହା ଫଳରେ ମୁଁ ପତି ଓ ଦେବରଙ୍କ ସହିତ କୁଶଳରେ ଫେରି ଆସି ତୁମର ପୂଜା କରି ପାରିବି ।" ସୀତାଙ୍କର ପ୍ରେମ ରସ-ସିକ୍ତ ବିନତି ଶୁଣି ସେତେବେଳେ ଗଙ୍ଗାଙ୍କର ନିର୍ମଳ ଜଳରୁ ଶ୍ରେଷ୍ଠ ବାଣୀ ଶୁଣାଗଲା— ॥ ୨ ॥ "ହେ ରଘୁବୀର-ପ୍ରିୟା ଜାନକି ! ଶୁଣ, ଜଗତରେ ତୁମ ପ୍ରଭାବ କାହାକୁ ଜଣା ନାହିଁ ? ତୁମର କୃପାଦୃଷ୍ଟି ପଡ଼ିବା ମାତ୍ରେ ମନୁଷ୍ୟ ଲୋକପାଳ ହୋଇଯାଏ । ସମସ୍ତ ସିଦ୍ଧି ହାତ ଯୋଡି ତୁମର ସେବା କରନ୍ତି ॥ ୩ ॥ ତୁମେ ମୋତେ ଯାହା ବିନତି ଶୁଣାଇଲ, ଏହା ତ ମୋ ପ୍ରତି କୃପା କଲ ଏବଂ ମୋତେ ବଡାଇ ଦେଲ । ତଥାପି "ହେ ଦେବି ! ଆପଣାର ବାଣୀ ଫଳବତୀ ହେବା ନିମନ୍ତେ ମୁଁ ତୁମଙ୍କୁ ଆଶୀର୍ବାଦ ଦେବି ॥ ୪ ॥ ଦୋହା :—ତୁମେ ଆପଣାର ପ୍ରାଣନାଥ ଓ ଦେବରଙ୍କ ସହିତ କୁଶଳରେ ଅଯୋଧ୍ୟା ଫେରିବ । ତୁମର ସମସ୍ତ ମନସ୍କାମନା ପୂର୍ଣ୍ଣ ହେବ ଏବଂ ତୁମର

ଦୀନ ବଚନ ଗୁହ କହ କର ଜୋରୀ । ବିନୟ ସୁନହୁ ରଘୁକୁଲମନି ମୋରୀ ॥
ନାଥ ସାଥ ରହି ପଂଥୁ ଦେଖାଈ । କରି ଦିନ ଚାରି ଚରନ ସେବକାଈ ॥୨॥
ଜେହିଁ ବନ ଜାଇ ରହବ ରଘୁରାଈ । ପରନକୁଟୀ ମୈଁ କରବି ସୁହାଈ ॥
ତବ ମୋହି କହଁ ଜସି ଦେବ ରଜାଈ । ସୋଇ କରିହଉଁ ରଘୁବୀର ଦୋହାଈ ॥୩॥
ସହଜ ସନେହ ରାମ ଲଖି ତାସୂ । ସଂଗ ଲୀନ୍ହ ଗୁହ ହୃଦୟଁ ହୁଲାସୂ ॥
ପୁନି ଗୁହଁ ଜ୍ଞାତି ବୋଲି ସବ ଲୀନ୍ହେ । କରି ପରିତୋଷୁ ବିଦା ତବ କୀନ୍ହେ ॥୪॥

ତବ ଗନପତି ସିବ ସୁମିରି ପ୍ରଭୁ ନାଇ ସୁରସରିହି ମାଥ ।
ସଖା ଅନୁଜ ସିୟ ସହିତ ବନ ଗବନୁ କୀନ୍ହ ରଘୁନାଥ ॥୧୦୪॥

---

ଦୀନ ବାଣୀ କହେ ଗୁହ ଯୋଡି କର ଦ୍ୱୟ । ଶୁଣ ରଘୁକୁଳ-ମଣି, ମୋହର ବିନୟ ॥
ନାଥଙ୍କ ସଙ୍ଗେ ରହିଣ ପଥ ଦେଖାଇବି । ଦିନ ଚାରି ପଦ-ସେବା-ଶୁଶ୍ରୂଷା କରିବି ॥୨॥
ରହିବ ଯେଉଁ ବନରେ ଯାଇ ରଘୁରାଣ । ଚାରୁ ପର୍ଣ୍ଣକୁଟୀ କରି ଦେବି ମୁଁ ନିର୍ମାଣ ॥
ତେବେ ମୋ ନିମନ୍ତେ ଆଜ୍ଞା ହୋଇବ ଯେପରି । ଆପଣଙ୍କ ରାଣ, ତାହା କରିବି ସେପରି ॥୩॥
ସ୍ୱାଭାବିକ ସ୍ନେହ ତାର ଦେଖି ରଘୁପତି । ସଙ୍ଗେ ତାକୁ ନେଲେ ହୃଦେ ମୋଦ ଲଭି ଅତି ॥
ପୁଣି ଗୁହ ଡକାଇଣ କୁଟୁମ୍ବ ଜନଙ୍କୁ । ମନ ପରିତୋଷି ବିଦା କଲା ସମସ୍ତଙ୍କୁ ॥୪॥

ତହୁଁ ସ୍ମରି ପ୍ରଭୁ ଗଣପତି ଶମ୍ଭୁ ଗଙ୍ଗାଙ୍କୁ କରି ପ୍ରଣାମ ।
ସଖା ଲକ୍ଷ୍ମଣ ସୀତା ସହ ବନ ଗମନ କଲେ ଶ୍ରୀରାମ ॥୧୦୪॥

---

ସୁନ୍ଦର ଯଶ ସାରା ଜଗତରେ ବ୍ୟାପି ଯିବ ।" ॥ ୧୦୩ ॥ ଚୌପାଈ —ମଙ୍ଗଳର ଆଧାର ଗଙ୍ଗାଙ୍କ ବଚନ ଶୁଣି ଏବଂ ଦେବନଦୀଙ୍କୁ ଅନୁକୂଳ ଦେଖି ସୀତା ଆନନ୍ଦିତ ହେଲେ । ତଦନନ୍ତର ପ୍ରଭୁ ଶ୍ରୀରାମ ନିଷାଦରାଜ ଗୁହଙ୍କୁ କହିଲେ, "ଭାଇ, ଏବେ ତୁମେ ଘରକୁ ଯାଅ ।" ଏହା ଶୁଣିବା ମାତ୍ରେ ତାହାର ମୁହଁ ଶୁଖିଗଲା ଏବଂ ହୃଦୟରେ ସନ୍ତାପ ଜାତ ହେଲା ॥ ୧ ॥ ଗୁହ ହାତ ଯୋଡି ଅତି ଦୀନ ଭାବରେ ବଚନ କହିଲା, "ହେ ରଘୁକୁଳ-ଶିରୋମଣି ! ମୋ ବିନତି ଶୁଣନ୍ତୁ । ମୁଁ ନାଥଙ୍କ ସଙ୍ଗେ ରହି ପଥ ଦେଖାଇବି ଏବଂ ଚାରି-ପାଞ୍ଚ ଦିନ ପ୍ରଭୁଙ୍କ ଚରଣ ସେବା କରିବି ॥ ୨ ॥ ହେ ରଘୁରାଜ ! ଯେଉଁ ବନରେ ଆପଣ ଯାଇ ରହିବେ, ସେହିଠାରେ ମୁଁ ସୁନ୍ଦର ପର୍ଣ୍ଣ-କୁଟୀର ନିର୍ମାଣ କରିଦେବି । ମୋତେ ରଘୁବୀରଙ୍କ ରାଣ ଅଛି, ସେତେବେଳେ ଆପଣ ମୋତେ ଯେଉଁ-ପରି ଆଜ୍ଞା ଦେବେ, ମୁଁ ସେହିପରି କରିବି ।" ॥ ୩ ॥ ତାହାର ସହଜ ସ୍ୱାଭାବିକ ପ୍ରେମ ଦେଖି ଶ୍ରୀରାମ ପ୍ରସନ୍ନ ମନରେ ତାକୁ ନିଜ ସାଙ୍ଗରେ ନେଲେ । ଏଥିରେ ଗୁହର ହୃଦୟରେ ଅତିଶୟ ଆନନ୍ଦ ଜାତ ହେଲା । ତତ୍ପରେ ଗୁହ ଆପଣା ଜାତିର ସମସ୍ତ ଲୋକଙ୍କୁ ଡକାଇଲା ଏବଂ ସେମାନଙ୍କର ସନ୍ତୋଷ ବିଧାନ କରାଇ ସମସ୍ତଙ୍କୁ ବିଦାୟ ଦେଲା ॥୪॥ ଦୋହା :—ତତ୍ପରେ ପ୍ରଭୁ ଶ୍ରୀ ରଘୁନାଥ ଗଣେଶ ଓ ଶିବଙ୍କୁ ସ୍ମରଣ କରି ଗଙ୍ଗାଙ୍କୁ ମସ୍ତକ ନୁଆଁଇଲେ ଏବଂ ସଖା ନିଷାଦରାଜ, ସାନ ଭାଇ ଲକ୍ଷ୍ମଣ ଓ ସୀତାଙ୍କ ସହିତ ବନକୁ

ତେହି ଦିନ ଭୟଉ ବିଟପ ତର ବାସୂ । ଲଖନ ସଖାଁ ସବ କୀହ୍ନ ସୁପାସୂ ॥
ପ୍ରାତ ପ୍ରାତକୃତ କରି ରଘୁରାଈ । ତୀରଥରାଜୁ ଦୀଖ ପ୍ରଭୁ ଜାଈ ॥୧॥
ସଚିବ ସତ୍ୟ ଶ୍ରଦ୍ଧା ପ୍ରିୟ ନାରୀ । ମାଧବ ସରିସ ମୀତୁ ହିତକାରୀ ॥
ଚାରି ପଦାରଥ ଭରା ଭଁଡାରୂ । ପୁନ୍ୟ ପ୍ରଦେସ ଦେସ ଅତି ଚାରୂ ॥୨॥
ଛେତ୍ରୁ ଅଗମ ଗଢ଼ୁ ଗାଢ଼ ସୁହାଵା । ସପନେହୁଁ ନହିଁ ପ୍ରତିପଚ୍ଛିହ୍ନ ପାଵା ॥
ସେନ ସକଲ ତୀରଥ ବର ବୀରା । କଲୁଷ ଅନୀକ ଦଲନ ରନଧୀରା ॥୩॥
ସଙ୍ଗମୁ ସିଂହାସନୁ ସୁଠି ସୋହା । ଛତ୍ରୁ ଅଖୟବଟୁ ମୁନି ମନୁ ମୋହା ॥
ଚଵଁର ଜମୁନ ଅରୁ ଗଂଗ ତରଂଗା । ଦେଖି ହୋହିଁ ଦୁଖ ଦାରିଦ ଭଂଗା ॥୪॥

ସେବହିଁ ସୁକୃତୀ ସାଧୁ ସୁଚି ପାଵହିଁ ସବ ମନକାମ ।
ବଂଦୀ ବେଦ ପୁରାନ ଗନ କହହିଁ ବିମଲ ଗୁନ ଗ୍ରାମ ॥୧୦୫॥

---

ବୃକ୍ଷ ତଳେ ରହି ସେହି ରାତ୍ରି କଟାଇଲେ । ଲକ୍ଷ୍ମଣ ସଖା ସମସ୍ତ ବ୍ୟବସ୍ଥା କରିଲେ ॥
ପ୍ରାତେ ପ୍ରାତଃ କୃତ୍ୟ କରି ଶ୍ରୀ ରଘୁନନ୍ଦନ । ତୀର୍ଥରାଜ ପାଇ ପ୍ରଭୁ କଲେ ଦରଶନ ॥୧॥
ସଚିବ ସତ୍ୟ ଆଦର ଶ୍ରଦ୍ଧା ପ୍ରିୟ ନାରୀ । ମାଧବ ସମାନ ମିତ୍ର ଅତି ହିତକାରୀ ॥
ଚାରି ପଦାର୍ଥରେ ପୂର୍ଣ୍ଣ ଭଣ୍ଡାର ରହଇ । ରମଣୀୟ ଦେଶ ପୁଣ୍ୟ ପ୍ରଦେଶ ଅଟଇ ॥୨॥
ଦୁର୍ଗମ କ୍ଷେତ୍ର ଯେ ଗଡ଼ ସୁନ୍ଦର ଅଭେଦ୍ୟ । ସ୍ୱପ୍ନରେ ସୁଦ୍ଧା ବିପକ୍ଷୀ ନ ଲଭନ୍ତି ଭେଦ ॥
ସୈନ୍ୟ ସମାନ ସମସ୍ତ ତୀର୍ଥବର ବୀର । କଳୁଷ-ସେନା-ବିଧ୍ୱଂସେ ମହାରଣଧୀର ॥୩॥
ସଙ୍ଗମ ଶୋଭେ ଯେସନେ ଦିବ୍ୟସିଂହାସନ । ଅକ୍ଷୟ ବଟ ଛତ୍ର ମୋହେ ମୁନିମନ ॥
ଚାମର ଗଙ୍ଗା ଯମୁନା ତରଙ୍ଗ ଅଟନ୍ତି । ଦେଖନ୍ତେ ଦୁଃଖ ଦାରିଦ୍ର୍ୟ ବିନାଶ ହୁଅନ୍ତି ॥୪॥

ସେବଣ ସୁକୃତ ସାଧୁ ଶୁଚିବନ୍ତ ଲଭନ୍ତି ସ୍ୱମନସ୍କାମ ।
ବନ୍ଦୀ ଭଳି ବେଦ ପୁରାଣ ସରବ ଗାଆନ୍ତି ସଦ୍‌ଗୁଣ-ଗ୍ରାମ ॥୧୦୫॥

---

ଚାଲିଲେ ॥ ୧୦୪ ॥ ଚୌପାଈ :—ସେହି ଦିନ ବୃକ୍ଷତଳେ ରହଣି ହେଲା । ଲକ୍ଷ୍ମଣ ଓ ସଖା ଗୁହ ବିଶ୍ରାମର ସମସ୍ତ ସୁବ୍ୟବସ୍ଥା କରିଦେଲେ । ପ୍ରଭୁ ଶ୍ରୀରାମ ସକାଳେ ପ୍ରାତଃକାଳର ସମସ୍ତ କ୍ରିୟା ସମ୍ପାଦନ ପରେ ଯାଇ ତୀର୍ଥରାଜ ପ୍ରୟାଗଙ୍କର ଦର୍ଶନ କଲେ ॥ ୧ ॥ ସେହି ରାଜାଙ୍କର ମନ୍ତ୍ରୀ ହେଉଛନ୍ତି ସତ୍ୟ, ଶ୍ରଦ୍ଧା ପ୍ରିୟା ପତ୍ନୀ ଏବଂ ଶ୍ରୀ ବେଣୀମାଧବଙ୍କ ସଦୃଶ ହିତକାରୀ ମିତ୍ର । ଧର୍ମ, ଅର୍ଥ, କାମ ଓ ମୋକ୍ଷ, ଏହି ଚାରି ପଦାର୍ଥରେ ଭଣ୍ଡାର ପରିପୂର୍ଣ୍ଣ ଏବଂ ସେହି ପୁଣ୍ୟମୟ ପ୍ରଦେଶ ସେହି ରାଜାଙ୍କର ସୁନ୍ଦର ଦେଶ ॥ ୨ ॥ ପ୍ରୟାଗ କ୍ଷେତ୍ର ଅଗମ୍ୟ, ସୁଦୃଢ଼ ଓ ସୁନ୍ଦର ଦୁର୍ଗ । ତାହାକୁ ସ୍ୱପ୍ନରେ ସୁଦ୍ଧା ପାପ-ଶତ୍ରୁମାନେ ପାଇ ପାରି ନାହାନ୍ତି । ସକଳ ତୀର୍ଥ ତାହାଙ୍କର ଶ୍ରେଷ୍ଠ ବୀର ସୈନିକ, ସେମାନେ ପାପ-ସେନାର ଦଳନକାରୀ ଏବଂ ବଡ଼ ରଣଧୀର ॥ ୩ ॥ ଗଙ୍ଗା, ଯମୁନା ଓ ସରସ୍ୱତୀଙ୍କ ସଙ୍ଗମ ତାହାଙ୍କର ଅତି ସୁଶୋଭିତ ସିଂହାସନ । ଅକ୍ଷୟ-ବଟ ଛତ୍ର, ତାହା ମୁନି-ମନକୁ ମୋହିତ କରିନିଏ । ଯମୁନା ଓ ଗଙ୍ଗାଙ୍କ ତରଙ୍ଗ ତାହାଙ୍କର

କୋ କହି ସକଇ ପ୍ରୟାଗ ପ୍ରଭାଉ । କଲୁଷ ପୁଂଜ କୁଂଜର ମୃଗରାଉ ॥
ଅସ ତୀରଥପତି ଦେଖି ସୁହାଓ୍ବା । ସୁଖ ସାଗର ରଘୁବର ସୁଖୁ ପାଓ୍ବା ॥୧॥
କହି ସିୟ ଲଖନହି ସଖହି ସୁନାଈ । ଶ୍ରୀମୁଖ ତୀରଥରାଜ ବଡ଼ାଈ ॥
କରି ପ୍ରନାମୁ ଦେଖତ ବନ ବାଗା । କହତ ମହାତମ ଅତି ଅନୁରାଗା ॥୨॥
ଏହି ବିଧି ଆଇ ବିଲୋକୀ ବେନୀ । ସୁମିରତ ସକଲ ସୁମଂଗଲ ଦେନୀ ॥
ମୁଦିତ ନହାଇ କୀହ୍ନି ସିବ ସେବା । ପୂଜି ଜଥାବିଧି ତୀରଥ ଦେବା ॥୩॥
ତବ ପ୍ରଭୁ ଭରଦ୍ୱାଜ ପହିଁ ଆଏ । କରତ ଦଣ୍ଡବତ ମୁନି ଉର ଲାଏ ॥
ମୁନି ମନ ମୋଦ ନ କଛୁ କହି ଜାଈ । ବ୍ରହ୍ମାନନ୍ଦ ରାସି ଜନୁ ପାଈ ॥୪॥

---

ପ୍ରୟାଗ ପ୍ରଭାବ ପାରେ କେ କଥନ କରି । ପାତକ-ପୁଞ୍ଜ-କୁଞ୍ଜର-ନିଧନେ କେଶରୀ ॥
ଏମନ୍ତ ତୀର୍ଥ-ନାୟକ ଦେଖି ମନୋହର । ସୁଖ ଲଭ କଲେ ସୁଖ-ସିନ୍ଧୁ ରଘୁବର ॥୧॥
କହିଣ ଶ୍ରୀମୁଖେ ତୀର୍ଥରାଜଇ ବଡ଼ାଇ । ସୀତା ଲକ୍ଷ୍ମଣ ଗୁହଙ୍କୁ କହନ୍ତି ଶୁଣାଇ ॥
ପ୍ରଣମି ଦେଖି ଦେଖିଣ ବନ ଉପବନ । ଅତି ଅନୁରାଗେ କରି ମହିମା ବର୍ଣ୍ଣନ ॥୨॥
ଏହି ପ୍ରକାରେ ତ୍ରିବେଣୀ ବିଲୋକିଲେ ଆସି । ସ୍ମରଣ କରନ୍ତେ ଦିଏ ଯେ ମଙ୍ଗଳ ରାଶି ॥
ପ୍ରମୋଦିତେ ସ୍ନାନ କରି ସେବିଣ ଶିବଙ୍କୁ । ପୂଜିଲେ ଯଥାବିଧାନେ ତୀର୍ଥସ୍ଥ ଦେବଙ୍କୁ ॥୩॥
ତହୁଁ ପ୍ରଭୁ ଭରଦ୍ୱାଜ ପାଶେ ଆଗମିଲେ । କରନ୍ତେ ପ୍ରଣାମ ମୁନି ହୃଦେ ଆଲିଙ୍ଗିଲେ ॥
କହି ନ ହୁଅଇ ମୁନି-ମନ-ମୋଦ ଅତି । ମନେ ହୁଏ ବ୍ରହ୍ମାନନ୍ଦ-ରାଶି ପାଇଛନ୍ତି ॥୪॥

---

ଶ୍ୟାମ ଓ ଶ୍ୱେତ ଚାମର । ସେମାନଙ୍କୁ ଦେଖି ଦୁଃଖ-ଦାରିଦ୍ର୍ୟ ନଷ୍ଟ ହୋଇଯାଏ ॥ ୪ ॥ ଦୋହା —ପୁଣ୍ୟାତ୍ମା, ପବିତ୍ର ସାଧୁମାନେ ତାହାଙ୍କୁ ସେବା କରନ୍ତି ଏବଂ ଆପଣା ଆପଣାର ସମସ୍ତ ମନସ୍କାମନା ପୂର୍ଣ୍ଣ କରନ୍ତି । ବେଦ ଓ ପୁରାଣ-ସମୂହ ଭାଟ ସଦୃଶ ତାହାଙ୍କର ନିର୍ମଳ ଗୁଣ-ଗ୍ରାମ ବର୍ଣ୍ଣନା କରନ୍ତି ॥ ୧୦୫ ॥ ଚୌପାଇ —ପାପସମୂହ ରୂପୀ ହସ୍ତୀର ବିନାଶ ନିମନ୍ତେ ପ୍ରୟାଗରାଜ ସିଂହ ସଦୃଶ । ଏହି ପ୍ରୟାଗରାଜଙ୍କ ମାହାତ୍ମ୍ୟ କିଏ କହିପାରିବ ? । ଏହି ରୂପେ ସୁଶୋଭିତ ତୀର୍ଥରାଜଙ୍କୁ ଦର୍ଶନ କରି ସୁଖ-ସାଗର ରଘୁବର ଶ୍ରୀରାମ ଆନନ୍ଦ ଲଭ କଲେ ॥୧॥ ସେ ତାଙ୍କ ଶ୍ରୀମୁଖରେ ସୀତା, ଲକ୍ଷ୍ମଣ ଓ ସଖା ଗୁହଙ୍କୁ ତୀର୍ଥରାଜାଙ୍କ ମହିମା କହି ଶୁଣାଇଲେ । ତତ୍ପରେ ପ୍ରଣାମ କରି ବନ ଓ ଉପବନର ଦୃଶ୍ୟ ଦେଖି ସେ ଅଗ୍ରସର ହେଉଥା'ନ୍ତି ଏବଂ ବଡ଼ ପ୍ରେମରେ ତୀର୍ଥ-ରାଜଙ୍କ ମାହାତ୍ମ୍ୟ କହି ଚାଲିଥା'ନ୍ତି ॥ ୨ ॥ ଏହି ରୂପେ ଶ୍ରୀରାମ ଆସି ତ୍ରିବେଣୀଙ୍କୁ ଦର୍ଶନ କଲେ । ଏହି ତ୍ରିବେଣୀ ସ୍ମରଣ ମାତ୍ରେ ସମସ୍ତ ସୁମଙ୍ଗଳ ଦାନ କରନ୍ତି । ତତ୍ପରେ ପ୍ରଭୁ ଆନନ୍ଦିତ ମନରେ ତ୍ରିବେଣୀରେ ସ୍ନାନ କରି ଶିବଙ୍କୁ ସେବା ଓ ଆରାଧନା କଲେ ଏବଂ ତୀର୍ଥସ୍ଥ ଦେବଗଣଙ୍କୁ ଯଥାବିଧି ପୂଜା କଲେ ॥ ୩ ॥ ତତ୍ପରେ ପ୍ରଭୁ ଶ୍ରୀରାମ ଭରଦ୍ୱାଜଙ୍କ ନିକଟକୁ ଆସିଲେ । ତାଙ୍କୁ ଦଣ୍ଡବତ କରିବା ମାତ୍ରେ ମୁନି ତାଙ୍କୁ ଆଲିଙ୍ଗନ କରି ପକାଇଲେ । ମୁନିଙ୍କ ମନର ଆନନ୍ଦ କିଛି କୁହାଯାଇ ନ ପାରେ । ସତେ ଯେପରି

ଦୀନ୍ହି ଅସୀସ ମୁନୀସ ଉର ଅତି ଅନଂଦୁ ଅସ ଜାନି ।
ଲୋଚନ ଗୋଚର ସୁକୃତ ଫଲ ମନହୁଁ କିଏ ବିଧି ଆନି ॥୧୦୭॥

କୁସଲ ପ୍ରସ୍ନ କରି ଆସନ ଦୀନ୍ହେ । ପୂଜି ପ୍ରେମ ପରିପୂରନ କୀନ୍ହେ ॥
କଂଦ ମୂଲ ଫଲ ଅଂକୁର ନୀକେ । ଦିଏ ଆନି ମୁନି ମନହୁଁ ଅମୀ କେ ॥୧॥
ସୀୟ ଲଖନ ଜନ ସହିତ ସୁହାଏ । ଅତି ରୁଚି ରାମ ମୂଲ ଫଲ ଖାଏ ॥
ଭଏ ବିଗତଶ୍ରମ ରାମୁ ସୁଖାରେ । ଭରଦ୍ୱାଜ ମୃଦୁ ବଚନ ଉଚାରେ ॥୨॥
ଆଜୁ ସୁଫଲ ତପୁ ତୀରଥ ତ୍ୟାଗୂ । ଆଜୁ ସୁଫଲ ଜପ ଜୋଗ ବିରାଗୂ ॥
ସଫଲ ସକଲ ସୁଭ ସାଧନ ସାଜୂ । ରାମ ତୁମ୍ହହି ଅବଲୋକତ ଆଜୂ ॥୩॥
ଲାଭ ଅବଧି ସୁଖ ଅବଧି ନ ଦୂଜୀ । ତୁମ୍ହରେଁ ଦରସ ଆସ ସବ ପୂଜୀ ॥
ଅବ କରି କୃପା ଦେହୁ ବର ଏହୂ । ନିଜ ପଦ ସରସିଜ ସହଜ ସନେହୂ ॥୪॥

ହୋଇ ଅତିଶୟ ହରଷ ହୃଦୟ ଆଶିଷିଲେ ମୁନିବର ।
ସୁକୃତ ଫଳକୁ ଆଣି ଅବା ବିଧି କଲା ନୟନ-ଗୋଚର ॥୧୦୭॥

କୁଶଳ ପ୍ରଶ୍ନ କରିଣ ଆସନ ଅର୍ପିଲେ । ପୂଜି ଅତି ପ୍ରେମେ ପରିପୂର୍ଣ୍ଣ ସେ କରିଲେ ॥
କନ୍ଦମୂଳ ଫଳ ପୁଣି ଅଙ୍କୁର ଉତ୍ତମ । ପ୍ରଦାନିଲେ ମୁନିବର ଆଣି ସୁଧା ସମ ॥୧॥
ସୀତା ଲକ୍ଷ୍ମଣ ନିଷାଦ ସହିତ ସୁନ୍ଦର । ଫଳ-ମୂଳ ରୁଚି ମତେ ଭୁଞ୍ଜି ରଘୁବର ॥
ବିଗତ-ଶ୍ରମ ଶ୍ରୀରାମ ସୁଖୀ ହୋନ୍ତେ ପୁଣି । ଭାଷିଲେ ମୃଦୁ ବଚନ ଭରଦ୍ୱାଜ ମୁନି ॥୨॥
ସୁଫଳ ହୋଇଲା ଆଜି ତୀର୍ଥବାସ, ତପ । ଆଜି ସୁଫଳ ବୈରାଗ୍ୟ, ତ୍ୟାଗ, ଯୋଗ, ଜପ ॥
ସୁଫଳ ସମସ୍ତ ଶୁଭ ସାଧନ ସମାଜ । ତୁମ୍ଭଙ୍କୁ ରଘୁନାୟକ ବିଲୋକନ୍ତେ ଆଜ ॥୩॥
ଲାଭ କିମ୍ବା ସୁଖ ସୀମା ନୁହେ କିଛି ଆନ । ତୁମ୍ଭ ଦରଶନେ ପୂର୍ଣ୍ଣ ହେଲା ମନସ୍କାମ ॥
କରୁଣା କରି ଦିଅନ୍ତୁ ଏବେ ଏହି ବର । ସ୍ୱାଭାବିକ ସ୍ନେହ ନିଜ ପଦ-ପଙ୍କଜର ॥୪॥

ତାଙ୍କ ବ୍ରହ୍ମାନନ୍ଦରାଶି ମିଳିଗଲା ପରି ! ॥ ୪ ॥ ଦୋହା :—ମୁନୀଶ୍ୱର ଭରଦ୍ୱାଜ ଆଶୀର୍ବାଦ ଦେଲେ । ଆଜି ବିଧାତା ସୀତା-ଲକ୍ଷ୍ମଣଙ୍କ ସମେତ ପ୍ରଭୁ ଶ୍ରୀରାମଙ୍କ ଦର୍ଶନ କରାଇ ସତେ ଯେପରି ଆମର ସମସ୍ତ ପୁଣ୍ୟଫଳ ଆଣି ଆଖି ଆଗରେ ଥୋଇ ଦେଲେ— ଏହିପରି ହୃଦୟରେ ଅନୁଭବ କରି ସେ ଅପାର ଆନନ୍ଦ ଲାଭ କଲେ ॥ ୧୦୭ ॥ ଚୌପାଈ :—କୁଶଳ ସମାଚାର ପଚାରି ମୁନିରାଜ ତାହାଙ୍କୁ ଆସନ ଦେଲେ ଏବଂ ପ୍ରେମରେ ପୂଜା କରି ତାଙ୍କୁ ସନ୍ତୁଷ୍ଟ କଲେ । ତତ୍ପରେ ଅମୃତ ସମାନ ଭଲ ଭଲ କନ୍ଦମୂଳ, ଫଳ ଏବଂ ଅଙ୍କୁର ଆଣି ତାଙ୍କୁ ଦେଲେ ॥ ୧ ॥ ସୀତା, ଲକ୍ଷ୍ମଣ ଓ ସେବକ ଗୁହ ସହିତ ଶ୍ରୀରାମ ସେହି ସୁନ୍ଦର ଫଳମୂଳକୁ ଅତି ରୁଚିରେ ଭୋଜନ କଲେ । ପଥକ୍ଲାନ୍ତି ଦୂର ହେବାରୁ ଶ୍ରୀରାମ ସୁଖ ଲାଭ କଲେ । ତତ୍ପରେ ଭରଦ୍ୱାଜ ତାଙ୍କୁ କୋମଳ ବଚନ କହିଲେ— ॥ ୨ ॥ "ହେ ରାମ ! ଆପଣଙ୍କର ଦର୍ଶନ କରିବା ଯୋଗେ ହିଁ ଆଜି ମୋର ତପସ୍ୟା, ତୀର୍ଥ ଉପାସନା ଏବଂ ତ୍ୟାଗ ସଫଳ ହୋଇଗଲା । ମୋ ଜପ, ଯୋଗ ଓ

କରମ ବଚନ ମନ ଛାଡ଼ି ଛଲୁ ଜବ ଲଗି ଜନୁ ନ ତୁମ୍ହାର ।
ତବ ଲଗି ସୁଖୁ ସପନେହୁଁ ନାହିଁ କିଏଁ କୋଟି ଉପଚାର ॥୧୦୭॥
ସୁନି ମୁନି ବଚନ ରାମୁ ସକୁଚାନେ । ଭାବ ଭଗତି ଆନଂଦ ଅଘାନେ ॥
ତବ ରଘୁବର ମୁନି ସୁଜସୁ ସୁହାଓ୍ୱା । କୋଟି ଭାଁତି କହି ସବହି ସୁନାଓ୍ୱା ॥୧॥
ସୋ ବଡ଼ ସୋ ସବ ଗୁନ ଗନ ଗେହୂ । ଜେହି ମୁନୀସ ତୁମ୍ହ ଆଦର ଦେହୂ ॥
ମୁନି ରଘୁବୀର ପରସପର ନଓ୍ୱହୀଁ । ବଚନ ଅଗୋଚର ସୁଖୁ ଅନୁଭଓ୍ୱହୀଁ ॥୨॥
ୟହ ସୁଧି ପାଇ ପ୍ରୟାଗ ନିବାସୀ । ବଟୁ ତାପସ ମୁନି ସିଦ୍ଧ ଉଦାସୀ ॥
ଭରଦ୍ୱାଜ ଆଶ୍ରମ ସବ ଆଏ । ଦେଖନ ଦସରଥ ସୁଅନ ସୁହାଏ ॥୩॥

---

ମନ କର୍ମ ବାକ୍ୟେ ନ ହେବା ପର୍ଯ୍ୟନ୍ତେ ଛଳ ଛାଡ଼ି ତବ ଜନ ।
ସ୍ୱପ୍ନେ ମଧ୍ୟ ସୁଖ ନ ଲଭଇ ଜୀବ କଲେହେଁ କୋଟି ଯତନ ॥୧୦୭॥
ଶୁଣି ମୁନିବର ବାଣୀ ରାମ ସଙ୍କୋଚଲେ । ଭାବ ଭକ୍ତି ଆନନ୍ଦରେ ସନ୍ତୃପ୍ତ ହୋଇଲେ ॥
ତହୁଁ ମୁନିଙ୍କ ସୁଯଶ ଶ୍ରୀରାମ ପ୍ରବୀଣ । ନାନାମତେ ସମସ୍ତଙ୍କୁ ଶୁଣାନ୍ତି କହିଣ ॥୧॥
ସେ ବଡ଼ ସେହି ସମସ୍ତ ଗୁଣ-ରତ୍ନାକର । ଯାହାଙ୍କୁ ମୁନୀଶ, ଦିଅ ଆପଣ ଆଦର ॥
ମୁନି ରାମ ପରସ୍ପର ହୁଅନ୍ତି ବିନୀତ । ଅନୁଭବନ୍ତି ଯେ ସୁଖ ବଚନ ଅତୀତ ॥୨॥
ଏହି ସମାଚାର ପାଇ ପ୍ରୟାଗ-ନିବାସୀ । ସିଦ୍ଧ ମୁନି ବ୍ରହ୍ମଚାରୀ ତାପସ ଉଦାସୀ ॥
ଭରଦ୍ୱାଜ ଆଶ୍ରମକୁ ଆସିଲେ ସମସ୍ତେ । ଦଶରଥ ପୁତ୍ରଙ୍କୁ ସୁତେ ଦେଖିବା ନିମନ୍ତେ ॥୩॥

---

ବୈରାଗ୍ୟ ଆଜି ସଫଳ ହୋଇଗଲା ଏବଂ ମୋର ଶୁଭ ସାଧନା ସମୁଦାୟ ମଧ୍ୟ ସଫଳ ହୋଇଗଲା ॥ ୩ ॥ ପ୍ରଭୁଙ୍କ ଦର୍ଶନ ବିନା ଲାଭ ଓ ସୁଖର ସୀମା ଆଉ କିଛି ନାହିଁ । ଆପଣଙ୍କ ଦର୍ଶନ ଯୋଗେ ମୋର ସମସ୍ତ ଆଶା ଓ ଅଭିଳାଷ ପରିପୂର୍ଣ୍ଣ ହୋଇଗଲା । ଆପଣଙ୍କ ଚରଣରେ ମୋର ସହଜ ସ୍ୱାଭାବିକ ପ୍ରେମ ରହୁ, କୃପା କରି ଏହି ବର ମୋତେ ଦିଅନ୍ତୁ ॥ ୪ ॥ ଦୋହା :—କର୍ମ, ବଚନ ଓ ମନରୁ ଛନ୍ଦ କପଟ ତ୍ୟାଗ କରି ଯେତେ-ବେଳ ଯାଏ ମନୁଷ୍ୟ ଆପଣଙ୍କର ଦାସ ନ ହୋଇଛି, ସେତେବେଳ ଯାଏ କୋଟି କୋଟି ଉପାୟ କଲେ ମଧ୍ୟ ସେ ସ୍ୱପ୍ନରେ ହେଲେ ସୁଦ୍ଧା ସୁଖ ପାଏନାହିଁ ।'' ॥ ୧୦୭ ॥ ଚୌପାଇ '—ମୁନିଙ୍କ ବଚନ ଶୁଣି, ତାଙ୍କର ଭାବ-ଭକ୍ତି ହେତୁ ଆନନ୍ଦରେ ପରିତୃପ୍ତ ହୋଇ ଭଗବାନ ଶ୍ରୀରାମଚନ୍ଦ୍ର, (ଲୀଳା ଦୃଷ୍ଟିରୁ) ସଙ୍କୁଚିତ ହୋଇ ପଡ଼ିଲେ । ତତ୍ପରେ ଆପଣାର ଐଶ୍ୱର୍ଯ୍ୟ ଗୁପ୍ତ ରଖି ସେ ଭରଦ୍ୱାଜ ମୁନିଙ୍କର ମନୋହର ସୁଯଶ ଅନେକ ପ୍ରକାରେ କହି ସମସ୍ତଙ୍କୁ ଶୁଣାଇଲେ ॥ ୧ ॥ ସେ କହିଲେ, "ହେ ମୁନୀଶ୍ୱର ! ଯାହାଙ୍କୁ ଆପଣ ଆଦର ଦିଅନ୍ତି, ସେ ବଡ଼ ଏବଂ ସେହି ହିଁ ସମସ୍ତ ଗୁଣରାଶିର ଗୃହ ।'' ଏହିରୂପେ ଶ୍ରୀରାମ ଓ ମୁନି ଭରଦ୍ୱାଜ ଉଭୟେ ପରସ୍ପର ପ୍ରତି ବିନମ୍ର ଭାବ ଦେଖାଉଥା'ନ୍ତି ଏବଂ ଅନିର୍ବଚନୀୟ ସୁଖ ଅନୁଭବ କରୁଥା'ନ୍ତି ॥ ୨ ॥ ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ଆଗମନ-ବାର୍ତ୍ତା ଶୁଣି ପ୍ରୟାଗ-ନିବାସୀ ବ୍ରହ୍ମଚାରୀ, ତପସ୍ୱୀ, ମୁନି, ସିଦ୍ଧ ଓ ଉଦାସୀ, ସମସ୍ତେ ଦଶରଥଙ୍କ ସୁନ୍ଦର

ରାମ ପ୍ରନାମ କୀନ୍ହ ସବ କାହୂ । ମୁଦିତ ଭଏ ଲହି ଲୋଚନ ଲାହୂ ॥
ଦେହିଁ ଅସୀସ ପରମ ସୁଖୁ ପାଈ । ଫିରେ ସରାହତ ସୁନ୍ଦରତାଈ ॥୪॥

ରାମ କୀନ୍ହ ବିଶ୍ରାମ ନିସି ପ୍ରାତ ପ୍ରୟାଗ ନହାଇ ।
ଚଲେ ସହିତ ସିୟ ଲଖନ ଜନ ମୁଦିତ ମୁନିହି ସିରୁ ନାଇ ॥୧୦୮॥

ରାମ ସପ୍ରେମ କହେଉ ମୁନି ପାହୀଁ । ନାଥ କହିଅ ହମ କେହି ମଗ ଜାହୀଁ ॥
ମୁନି ମନ ବିହସି ରାମ ସନ କହହୀଁ । ସୁଗମ ସକଲ ମଗ ତୁହ୍ମ କହୁଁ ଅହହୀଁ ॥୧॥
ସାଥ ଲାଗି ମୁନି ସିଷ୍ୟ ବୋଲାଏ । ସୁନି ମନ ମୁଦିତ ପଚାସକ ଆଏ ॥
ସବହ୍ନି ରାମ ପର ପ୍ରେମ ଅପାରା । ସକଲ କହହିଁ ମଗୁ ଦୀଖ ହମାରା ॥୨॥
ମୁନି ବଟୁ ଚାରି ସଂଗ ତବ ଦୀହ୍ନେ । ଜିହ୍ନ ବହୁ ଜନମ ସୁକୃତ ସବ କୀହ୍ନେ ॥
କରି ପ୍ରନାମୁ ରିଷି ଆୟସୁ ପାଈ । ପ୍ରମୁଦିତ ହୃଦୟଁ ଚଲେ ରଘୁରାଈ ॥୩॥

---

ରାମ ସବିନୟେ ସମସ୍ତଙ୍କୁ ପ୍ରଣମିଲେ । ଲଭି ଲୋଚନର ଲାଭ, ମୁଦିତ ହୋଇଲେ ॥
ଦେଇ ସୁଆଶିଷ ସୁଖ ଅଧିକ ଲଭିଣ । ଫେରିଲେ ତାଙ୍କ ସୌନ୍ଦର୍ଯ୍ୟେ ପ୍ରଶଂସା କରିଣ ॥୪॥

ରାମ ସେ ନିଶିରେ ରହି ପ୍ରୟାଗରେ ଅବଗାହିଣ ପ୍ରଭାତେ ।
ଗମିଲେ ସାନନ୍ଦେ ନମି ମୁନିବୃନ୍ଦେ ଘେନି ସଖା ସୀତା ଭ୍ରାତେ ॥୧୦୮॥

ରାମ ସପ୍ରେମେ ଭାଷିଲେ ଋଷିଙ୍କ ଆଗରେ । ନାଥ, କହନ୍ତୁ ମୁଁ ଯିବି କେବଣ ମାର୍ଗରେ ॥
ମୁନି ମନେ ମନେ ହସି କହିଲେ ରାମଙ୍କୁ । ସୁଗମ ସକଳ ମାର୍ଗ ଅଟଇ ତୁମ୍ଭଙ୍କୁ ॥୧॥
ସଙ୍ଗେ ଯିବା ପାଇଁ ମୁନି ଶିଷ୍ୟଙ୍କୁ ଡାକନ୍ତେ । ଶୁଣି ସାନନ୍ଦେ ଆସିଲେ ପଚାଶ ପର୍ଯ୍ୟନ୍ତେ ॥
ସମସ୍ତଙ୍କ ରାମ ପଦେ ଅନୁରାଗ ଅତି । ପଥ ଦେଖିଅଛୁ ମୁହିଁ, ସରବେ କହନ୍ତି ॥୨॥
ମୁନି ବଟୁ ଚାରି ତହୁଁ ସଙ୍ଗେ ପ୍ରଦାନିଲେ । ଯେ ବହୁ ଜନ୍ମରୁ ସବୁ ପୁଣ୍ୟ ସଞ୍ଚିଥିଲେ ॥
ଆଦେଶ ପାଇ ମୁନିଙ୍କୁ କରି ପ୍ରଣିପାତ । ମୁଦିତ ମନେ ଗମିଲେ ରଘୁକୁଳ-କାନ୍ତ ॥୩॥

---

ମୁନିମାନଙ୍କୁ ଦେଖିବା ନିମନ୍ତେ ଭରଦ୍ୱାଜଙ୍କ ଆଶ୍ରମକୁ ଆସିଲେ ॥ ୩ ॥ ଶ୍ରୀରାମଚନ୍ଦ୍ର ସମସ୍ତଙ୍କୁ ପ୍ରଣାମ କଲେ । ନୟନର ଲାଭ ପାଇ ସମସ୍ତେ ଆନନ୍ଦିତ ହୋଇଗଲେ ଏବଂ ପରମସୁଖ ପାଇ ଆଶୀର୍ବାଦ ଦେବାକୁ ଲାଗିଲେ । ଶ୍ରୀରାମଚନ୍ଦ୍ରଙ୍କ ସୌନ୍ଦର୍ଯ୍ୟର ପ୍ରଶଂସା କରି କରି ସେମାନେ ଫେରିଲେ ॥ ୪ ॥ ଦୋହା —ଶ୍ରୀରାମ ରାତିରେ ସେହିଠାରେ ବିଶ୍ରାମ କଲେ ଏବଂ ପ୍ରାତଃକାଳ ପ୍ରୟାଗରାଜରେ ସ୍ନାନ କରି ପ୍ରସନ୍ନତା ସହିତ ମୁନିଙ୍କୁ ଶିର ନୁଆଁଇ ସୀତା, ଲକ୍ଷ୍ମଣ ଓ ସେବକ ଗୁହଙ୍କ ସଙ୍ଗେ ଅଗ୍ରସର ହେଲେ ॥୧୦୮॥ ଚୌପାଈ —ବାହାରିବା ସମୟରେ ଅତ୍ୟନ୍ତ ପ୍ରେମର ସହିତ ଶ୍ରୀରାମ ମୁନିଙ୍କୁ ପଚାରିଲେ, "ହେ ନାଥ ! ଆମ୍ଭେମାନେ କେଉଁ ମାର୍ଗରେ ଚାଲିବୁ, କହି ଦିଅନ୍ତୁ ।" ମୁନି ମନେ ମନେ ହସି ଶ୍ରୀରାମଙ୍କୁ କହୁଆ'ନ୍ତି, "ଆପଣଙ୍କ ନିମନ୍ତେ ସମସ୍ତ ମାର୍ଗ ସୁଗମ ।" ॥ ୧ ॥ ତଥାପି ତାଙ୍କର ସାଥୀ ହେବା ନିମନ୍ତେ ମୁନି ଶିଷ୍ୟମାନଙ୍କୁ ଡାକିଲେ । ଶ୍ରୀରାମଙ୍କ ସହିତ ଯିବା କଥା ଶୁଣିବା ମାତ୍ରେ ଆନନ୍ଦିତ ମନରେ ପ୍ରାୟ ପଚାଶ ଜଣ

ଗ୍ରାମ ନିକଟ ଜବ ନିକସହିଁ ଜାଈ । ଦେଖହିଁ ଦରସୁ ନାରି ନର ଧାଈ ॥
ହୋହିଁ ସନାଥ ଜନମ ଫଲୁ ପାଈ । ଫିରହିଁ ଦୁଖିତ ମନୁ ସଂଗ ପଠାଈ ॥୪॥

ବିଦା କିଏ ବଟୁ ବିନୟ କରି ଫିରେ ପାଇ ମନ କାମ ।
ଉତରି ନହାଏ ଜମୁନ ଜଲ ଜୋ ସରୀର ସମ ସ୍ୟାମ ॥୧୦୯॥

ସୁନତ ତୀରବାସୀ ନର ନାରୀ । ଧାଏ ନିଜ ନିଜ କାଜ ବିସାରୀ ॥
ଲଖନ ରାମ ସିୟ ସୁନ୍ଦରତାଈ । ଦେଖି କରହିଁ ନିଜ ଭାଗ୍ୟ ବଡ଼ାଈ ॥୧॥
ଅତି ଲାଲସା ବସହିଁ ମନ ମାହୀଁ । ନାଉଁ ଗାଉଁ ବୂଝତ ସକୁଚାହୀଁ ॥
ଜେ ତିନ୍ହ ମହୁଁ ବୟବିରିଧ ସୟାନେ । ତିନ୍ହ କରି ଜୁଗୁତି ରାମୁ ପହିଚାନେ ॥୨॥

---

ଗ୍ରାମ ନିକଟରେ ଯାଇ ବାହାରନ୍ତି ଯେବେ । ନର ନାରୀ ଧାଇଁ ରୂପ ବିଲୋକନ୍ତି ତେବେ ॥
ଦେଖି ସନାଥ ହୁଅନ୍ତି ଜନ୍ମଫଳ ପାଇ । ଫେରନ୍ତି ଦୁଃଖିତେ ମନ ସଙ୍ଗରେ ପଠାଇ ॥୪॥

ବିଦାୟ କରନ୍ତେ ବଟୁଙ୍କୁ ବିନତେ ଗଲେ ପାଇ ମନସ୍କାମ ।
ପାର ହୋଇ ସ୍ନାନ କଲେ ଯମୁନାରେ ଯେ ଶରୀର ସମ ଶ୍ୟାମ ॥୧୦୯॥

ତୀରବାସୀ ନର ନାରୀ ଏହା ଶୁଣି କରି । ଧାଇଁଲେ ନିଜ ନିଜର କାର୍ଯ୍ୟ ପରିହରି ॥
ଲକ୍ଷ୍ମଣ ରାମ ସୀତାଙ୍କ ସୁନ୍ଦରତା ଅତି । ବିଲୋକି ନିଜ ସୌଭାଗ୍ୟ ବଡ଼ାଇ କରନ୍ତି ॥୧॥
ସମସ୍ତଙ୍କ ମନେ ଭାରି ଲାଳସା ହୁଅଇ । ନାମ ଗ୍ରାମ ପଚାରନ୍ତେ ସଙ୍କୋଚ ଲାଗଇ ॥
ସେମାନଙ୍କ ମଧ୍ୟେ ଯେହୁ ବୟୋବୃଦ୍ଧ ଥିଲେ । କୌଶଳ କରି ସେମାନେ ରାମଙ୍କୁ ଚିହ୍ନିଲେ ॥୨॥

---

ସରିକି ଶିଷ୍ୟ ଆସିଗଲେ । ଶ୍ରୀରାମଙ୍କ ପ୍ରତି ସମସ୍ତଙ୍କର ଅପାର ପ୍ରେମ । ସମସ୍ତେ କହୁଥା'ନ୍ତି, "ଆମେ ବାଟ ଦେଖିଅଛୁ ।" ॥ ୨ ॥ ତଦନନ୍ତର ମୁନି ବାଛି ବାଛି ଚାରି ଜଣ ବ୍ରହ୍ମଚାରୀଙ୍କୁ ସାଥୀ କରିଦେଲେ । ସେମାନେ ଜନ୍ମ ଜନ୍ମ ଧରି ବହୁତ ସୁକୃତ (ପୁଣ୍ୟ) କରିଥିଲେ । ଶ୍ରୀ ରଘୁନାଥ ପ୍ରଣାମ କରି ଓ ଋଷିଙ୍କ ଆଦେଶ ପାଇ ହୃଦୟରେ ଅତି ଆନନ୍ଦିତ ହୋଇ ଚାଲିଲେ ॥ ୩ ॥ ଯେତେବେଳେ କୌଣସି ଗ୍ରାମ ନିକଟବର୍ତ୍ତୀ ହୋଇ ସେମାନେ ବାହାରୁଥା'ନ୍ତି, ସ୍ତ୍ରୀ ପୁରୁଷଗଣ ଧାଇଁ ଯାଇ ସେମାନଙ୍କ ରୂପ ଦେଖିବାରେ ଲାଗୁଥା'ନ୍ତି । ଜନ୍ମର ଫଳ ଲାଭ କରି ସଦା ଅନାଥ ଓ ନିରାଶ୍ରୟମାନେ ସନାଥ ହୋଇଯାଉଥା'ନ୍ତି । କେବଳ ମନକୁ ସେମାନେ ନାଥଙ୍କ ସହିତ ପଠାଇ ପାରୁଥା'ନ୍ତି । କିନ୍ତୁ ଶରୀରରେ ସେମାନଙ୍କ ସାଥୀ ହୋଇ ନ ପାରିବାରୁ ଦୁଃଖିତ ହୋଇ ଫେରି ଆସୁଥା'ନ୍ତି ॥ ୪ ॥ ଦୋହା —ତତ୍ପରେ ଶ୍ରୀରାମ ବିନୟସହକାରେ ଚାରି ବ୍ରହ୍ମଚାରୀଙ୍କୁ ବିଦାୟ ଦେଲେ । ସେମାନେ ନିଜ ନିଜ ମନୋବାଞ୍ଛିତ ବସ୍ତୁ (ଅନନ୍ୟ ଭକ୍ତି) ପାଇ ଫେରିଲେ । ଯମୁନାନଦୀ ପାର ହୋଇ ସେମାନେ ଯମୁନାର ଶ୍ରୀରାମଙ୍କ ଶରୀର ସମାନ ଶ୍ୟାମଳ ଜଳରେ ସ୍ନାନ କଲେ ॥ ୧୦୯ ॥ ଚୌପାଇ :—ଯମୁନା-କୂଳ-ନିବାସୀ ନରନାରୀ ଏମାନଙ୍କ ଆଗମନ-ବାର୍ତ୍ତା ଶୁଣି ସମସ୍ତେ ନିଜ ନିଜ କାର୍ଯ୍ୟ ଭୁଲି ଦୌଡ଼ି ଆସିଲେ ଏବଂ ଶ୍ରୀରାମ, ସୀତା ଓ ଲକ୍ଷ୍ମଣଙ୍କ ସୌନ୍ଦର୍ଯ୍ୟ ଦେଖି ଆପଣା ଆପଣା ଭାଗ୍ୟର

ସକଲ କଥା ତିହ୍ନ ସବହି ସୁନାଈ । ବନହି ଚଲେ ପିତୁ ଆୟସୁ ପାଈ ॥
ସୁନି ସବିଷାଦ ସକଲ ପଛିତାହୀଁ । ରାନୀ ରାୟଁ କୀହ୍ନ ଭଲ ନାହୀଁ ॥୩॥
ତେହି ଅବସର ଏକ ତାପସୁ ଆୱା । ତେଜ ପୁଂଜ ଲଘୁ ବୟସ ସୁହାୱା ॥
କବି ଅଲଖିତ ଗତି ବେଷୁ ବିରାଗୀ । ମନ କ୍ରମ ବଚନ ରାମ ଅନୁରାଗୀ ॥୪॥

ସଜଲ ନୟନ ତନ ପୁଲକି ନିଜ ଇଷ୍ଟଦେଉ ପହିଚାନି ।
ପରେଉ ଦଣ୍ଡ ଜିମି ଧରନିତଲ ଦସା ନ ଜାଇ ବଖାନି ॥୧୧୦॥

ରାମ ସପ୍ରେମ ପୁଲକି ଉର ଲାୱା । ପରମ ରଂକ ଜନୁ ପାରସ ପାୱା ॥
ମନହୁଁ ପ୍ରେମୁ ପରମାରଥୁ ଦୋଊ । ମିଲତ ଧରେଁ ତନ କହ ସବୁ କୋଊ ॥୧॥

---

ଶୁଣାନ୍ତି ସେ ସବୁ କଥା ଅନ୍ୟ ସମସ୍ତଙ୍କୁ । ପିତା ବଚନ ପାଳଣ ଆସିଲେ ବନକୁ ॥
ଶୁଣି ସର୍ବେ ଅନୁତାପ ବିକଳେ କରନ୍ତି । ଭଲ କାମ କଲେ ନାହିଁ ରାଣୀ ନରପତି ॥୩॥
ସେହି ସମୟରେ ଏକ ଆସିଲେ ତାପସ । ତେଜପୁଞ୍ଜ ମନୋହର ଅଳପ ବୟସ ॥
କବି ଅଲକ୍ଷିତ ଗତି ବେଶ ବଇରାଗୀ । ମନ କର୍ମ ବଚନରେ ରାମ ଅନୁରାଗୀ ॥୪॥

ନୟନ ସନୀର ପୁଲକ ଶରୀର ନିଜ ଇଷ୍ଟଦେବ ଜାଣି ।
ଦଣ୍ଡ ପ୍ରାୟେ ଧରା ଉପରେ ପଡିଲେ ଦଶା ନ ହୁଏ ବଖାଣି ॥୧୧୦॥

ରାମ ପ୍ରେମ ପୁଲକିତେ ହୃଦେ ଲଗାଇଲେ । ପରମ ରଙ୍କ ଯେସନେ ପାରଶ ପାଇଲେ ॥
ପ୍ରେମ ପରମାର୍ଥ ଦୁହେଁ ମନେ ହୁଏ ଭବେ । ମିଳନ୍ତି ଶରୀର ଧରି, କହନ୍ତି ସରବେ ॥୧॥

---

ବତାଇ କରିବାକୁ ଲାଗିଲେ ॥ ୧ ॥ ସେମାନଙ୍କ ମନରେ ପରିଚୟ ଜାଣିବା ପାଇଁ ବହୁତ ଲାଳସା ଭରି ଉଠୁଥାଏ । କିନ୍ତୁ ନାମଗ୍ରାମ ଆଦି ପଚାରିବାକୁ ସେମାନେ ସଂକୋଚ ବୋଧ କରୁଥା'ନ୍ତି । ସେମାନଙ୍କ ମଧ୍ୟରେ ଯେଉଁମାନେ ବୟୋବୃଦ୍ଧ ଓ ଚତୁର ବ୍ୟକ୍ତି ଥିଲେ, ସେମାନେ ଯୁକ୍ତିରେ ଶ୍ରୀରାମଙ୍କୁ ଚିହ୍ନି ନେଲେ ॥ ୨ ॥ ପିତାଙ୍କ ଆଜ୍ଞାରେ ଏମାନେ ବନକୁ ଆସିଛନ୍ତି, ଆଦି ସବୁ କଥା ସେମାନେ ଲୋକମାନଙ୍କୁ କହି ଶୁଣାଇଲେ । ସମସ୍ତେ ଏହା ଶୁଣି "ରାଜା ଓ ରାଣୀ ଭଲ କାମ କଲେନାହିଁ" ବୋଲି ମତ ପ୍ରକାଶ କରି କ୍ଷୁବ୍‌ଧ ହେଲେ ॥୩॥ ଉକ୍ତ ଅବସରରେ ସେଠାକୁ ଜଣେ ତପସ୍ୱୀ (ହନୁମାନ୍ ବା ସ୍ୱୟଂ ଧ୍ୟାନସ୍ଥ ତୁଳସୀଦାସ !) ଆସିଲେ । ସେ ତେଜପୁଞ୍ଜ, ଅଳ୍ପବୟସ୍କ ଓ ସୁନ୍ଦର ଥିଲେ । ତାହାଙ୍କ ଗତି କବିଙ୍କୁ ସୁଦ୍ଧା ଅଗୋଚର । ସେ ବୈରାଗୀ-ବେଶଧାରୀ ଏବଂ ମନ, ବଚନ ଓ କର୍ମରେ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ଅନୁରକ୍ତ ଥିଲେ ॥୪॥ ଦୋହା —ଆପଣାର ଇଷ୍ଟଦେବଙ୍କୁ ଚିହ୍ନି ତାଙ୍କ ନେତ୍ର ଜଳପୂର୍ଣ୍ଣ ହୋଇ ଆସିଲା ଏବଂ ଶରୀର ପୁଲକିତ ହୋଇଗଲା । ସେ ଦଣ୍ଡପରି ପୃଥିବୀ ଉପରେ ପଡ଼ି-ଗଲେ । ତାଙ୍କ ପ୍ରେମବିହ୍ୱଳ ଦଶା ଅବର୍ଣ୍ଣନୀୟ ॥୧୧୦॥ ଚୌପାଈ:—ପ୍ରେମପୁଲକିତ ଶରୀରରେ ଶ୍ରୀରାମ ତାହାଙ୍କୁ ବକ୍ଷରେ କୁଣ୍ଢାଇ ପକାଇଲେ । ମହାଦରିଦ୍ର ପରଶମଣି ପାଇଲା ପରି ତପସ୍ୱୀ ଅତିଶୟ ଆନନ୍ଦ ଲାଭ କଲେ । ସମସ୍ତ ଦର୍ଶକ କହିବାକୁ ଲାଗିଲେ, "ପ୍ରେମ ଓ ପରମାର୍ଥ ଉଭୟେ ଶରୀରଧାରଣପୂର୍ବକ ପରସ୍ପର ସହିତ ମିଳନ କରୁଅଛନ୍ତି କି ! ॥ ୧ ॥

ବହୁରି ଲଖନ ପାୟନ୍ହ ସୋଇ ଲାଗା । ଲୀନ୍ହ ଉଠାଇ ଉମଗି ଅନୁରାଗା ॥
ପୁନି ସିୟ ଚରନ ଧୂରି ଧରି ସୀସା । ଜନନି ଜାନି ସିସୁ ଦୀନ୍ହ ଅସୀସା ॥୨॥
କୀନ୍ହ ନିଷାଦ ଦଣ୍ଡବତ ତେହୀ । ମିଲେଉ ମୁଦିତ ଲଖି ରାମ ସନେହୀ ॥
ପିଅତ ନୟନ ପୁଟ ରୂପୁ ପିୟୂଷା । ମୁଦିତ ସୁଅସନୁ ପାଇ ଜିମି ଭୂଖା ॥୩॥
ତେ ପିତୁ ମାତୁ କହହୁ ସଖି କୈସେ । ଜିନ୍ହ ପଠଏ ବନ ବାଲକ ଐସେ ॥
ରାମ ଲଖନ ସିୟ ରୂପୁ ନିହାରୀ । ହୋହିଁ ସନେହ ବିକଲ ନର ନାରୀ ॥୪॥

ତବ ରଘୁବୀର ଅନେକ ବିଧି ସଖହି ସିଖାଓନୁ ଦୀନ୍ହ ।
ରାମ ରଜାୟସୁ ସୀସ ଧରି ଭବନ ଗଓଉ ତେଇଁ କୀନ୍ହ ॥୧୧୧॥

ପୁନି ସିୟଁ ରାମ ଲଖନ କର ଜୋରୀ । ଜମୁନହି କୀନ୍ହ ପ୍ରନାମୁ ବହୋରୀ ॥
ଚଲେ ସସୀୟ ମୁଦିତ ଦୋଉ ଭାଈ । ରବିତନୁଜା କଇ କରତ ବଡାଈ ॥୧॥

---

ପୁଣି ପ୍ରଣମନ୍ତେ ରାମାନୁଜଙ୍କ ପଦ୍ମରେ । ଉଠାଇ ନେଲେ ଉତ୍ଫୁଲ୍ଲ ଅନୁରାଗ ଭରେ ॥
ସୀତା ପଦ ଧୂଳି ତହୁଁ ମସ୍ତକେ ଦେଇଲେ । ଶିଶୁ ବିଚାରି ଜନନୀ ଆଶିଷ ବହିଲେ ॥୨॥
କରନ୍ତେ ନିଷାଦ ତାଙ୍କୁ ଦଣ୍ଡ ପ୍ରଣିପାତ । ସାନନ୍ଦେ ମିଳିଲେ ଜାଣି ରାମ ପ୍ରିୟପାତ୍ର ॥
ପିଅନ୍ତି ନୟନ-ପୁଟେ ରୂପ-ସୁଧା ରସ । ସୁଅଶନ ପାଇ ଯେସନ୍ତେ କ୍ଷୁଧାର୍ତ୍ତ ହରଷ ॥୩॥
କହ ସଖି, ସେ ଜନନୀ ଜନକ କେମନ୍ତ । ଯେହୁ ପଠାଇଲେ ବନେ ବାଳକ ଏମନ୍ତ ॥
ରାମ ଲକ୍ଷ୍ମଣ ସୀତାଙ୍କ ରୂପ ବିଲୋକନେ । ହୁଅନ୍ତି ସ୍ନେହେ ବିକଳ ଗ୍ରାମବାସୀ ଜନେ ॥୪॥

ତହୁଁ ରଘୁବର ଅନେକ ପ୍ରକାର ଶିଖାଇନ୍ତେ ସଖା ଗୁହକୁ ।
ରାମଙ୍କ ଆଦେଶ ଶିରୋଧାର୍ଯ୍ୟ କରି ପ୍ରସ୍ଥାନ କଲେ ଗୃହକୁ ॥୧୧୧॥

ପୁଣି କର ଯୋଡି ସୀତା ସଉମିତ୍ରି ରାମ । ଯମୁନାକୁ ପୁନର୍ବାର କରିଲେ ପ୍ରଣାମ ॥
ଗମିଲେ ମୁଦିତେ ସୀତା ସହ ଦୁଇ ଭାଇ । ଦିନକର-ତନୟାଙ୍କ କରିଣ ବଡାଇ ॥୧॥

---

ତତ୍ପରେ ତପସ୍ୱୀ ଲକ୍ଷ୍ମଣଙ୍କ ଚରଣ ତଳେ ପଡିଲେ । ଲକ୍ଷ୍ମଣ ପ୍ରେମରେ ଉଲ୍ଲସିତ ହୋଇ ତାହାଙ୍କୁ ଉଠାଇ ପକାଇଲେ । ତତ୍ପରେ ତପସ୍ୱୀ ସୀତାଙ୍କ ଚରଣ-ଧୂଳିକୁ ଆପଣା ମସ୍ତକରେ ଧାରଣ କଲେ । ମାତା ସୀତା ମଧ୍ୟ ତାହାଙ୍କୁ ଆପଣାର ଶିଶୁପୁତ୍ର ମନେ କରି ଆଶୀର୍ବାଦ ଦେଲେ ॥ ୨ ॥ ତତ୍ପରେ ନିଷାଦରାଜ ତାହାଙ୍କୁ ଦଣ୍ଡବତ କଲେ । ଶ୍ରୀରାମ-ପ୍ରେମୀ ଜାଣି ସେ ନିଷାଦରାଜଙ୍କ ସହିତ ଆନନ୍ଦରେ ମିଳନ କଲେ । ସେହି ତପସ୍ୱୀ ଆପଣା ନୟନ-ପୁଟରେ ଶ୍ରୀରାମଙ୍କ ସୌନ୍ଦର୍ଯ୍ୟ-ସୁଧା ପାନ କରିବାକୁ ଲାଗିଲେ ଏବଂ କ୍ଷୁଧାର୍ତ୍ତ ବ୍ୟକ୍ତି ସୁନ୍ଦର ଭୋଜନ ପାଇ ଆନନ୍ଦିତ ହେଲା ପରି ଅତ୍ୟନ୍ତ ଆନନ୍ଦିତ ହେଲେ ॥୩॥ ଏଣେ ଗ୍ରାମର ନାରୀମାନେ କୁହାକୁହି ହେଉଥା'ନ୍ତି, "ହେ ସଖି ! କହତ, ଯେଉଁ ମାତାପିତା ଏପରି ସୁନ୍ଦର, ସୁକୁମାର ବାଳକଦ୍ୱୟଙ୍କୁ ଜଙ୍ଗଲକୁ ପଠାଇ ଦେଇଛନ୍ତି; ସେ ମାତା-ପିତା କିପରି ?" ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ରୂପକୁ ଦେଖି ସକଳ ସ୍ତ୍ରୀ-ପୁରୁଷ ସ୍ନେହବଶତଃ ବ୍ୟାକୁଳ ହୋଇ ପଡୁଥାଆନ୍ତି ॥ ୪ ॥ ଦୋହା —ତତ୍ପରେ

ପଥିକ ଅନେକ ମିଲହିଁ ମଗ ଜାତା । କହହିଁ ସପ୍ରେମ ଦେଖି ଦୋଉ ଭ୍ରାତା ॥
ରାଜ ଲଖନ ସବ ଅଂଗ ତୁହ୍ମାରେଁ । ଦେଖି ସୋଚୁ ଅତି ହୃଦୟଁ ହମାରେଁ ॥୨॥
ମାରଗ ଚଲହୁ ପୟାଦେହି ପାଏଁ । ଜୋତିଷୁ ଝୂଁଠ ହମାରେଁ ଭାଏଁ ॥
ଅଗମୁ ପଂଥୁ ଗିରି କାନନ ଭାରୀ । ତେହି ମହଁ ସାଥ ନାରି ସୁକୁମାରୀ ॥୩॥
କରି କେହରି ବନ ଜାଇ ନ ଜୋଈ । ହମ ସଁଗ ଚଲହିଁ ଜୋ ଆୟସୁ ହୋଈ ॥
ଜାବ ଜହାଁ ଲଗି ତହଁ ପହୁଁଚାଈ । ଫିରବ ବହୋରି ତୁହ୍ମହି ସିରୁ ନାଈ ॥୪॥

ଏହି ବିଧି ପୂଁଛହିଁ ପ୍ରେମବସ ପୁଲକ ଗାତ ଜଲୁ ନୈନ ।
କୃପାସିନ୍ଧୁ ଫେରହିଁ ତିହ୍ନହି କହି ବିନୀତ ମୃଦୁ ବୈନ ॥୧୧୨॥

---

ମାର୍ଗରେ ଯାଆନ୍ତେ ବହୁ ପଥିକ ମିଳନ୍ତି । ବିଲୋକି ବେନି ଭ୍ରାତାଙ୍କୁ ସପ୍ରେମେ କହନ୍ତି ॥
ରାଜ ସୁଲକ୍ଷଣ ଅଙ୍ଗେ ରାଜଇ ତୁମ୍ଭର । ନିରେଖି ହୃଦୟେ ଚିନ୍ତା ହୁଅଇ ଆମ୍ଭର ॥୨॥
ପଥ ଚାଲୁଅଛ ନିରାବରଣ ପଦରେ । ଜ୍ୟୋତିଷ ଅଟଇ ମିଥ୍ୟା ଆମ୍ଭ ସମ୍ମତରେ ॥
ଅଗମ୍ୟ ପଥ ଗହନ ଗିରିବନ ଭାରୀ । ତହିଁରେ ପୁଣି ସଙ୍ଗତେ ନାରୀ ସୁକୁମାରୀ ॥୩॥
ଚାହିଁ ନ ହୁଅଇ ସିଂହ ମାତଙ୍ଗ ବନସ୍ତେ । ଆଦେଶ ହୋଇଲେ ଆମ୍ଭେ ଗମିବୁ ସଙ୍ଗତେ ॥
ଯିବ ଯିବ ସେ ସ୍ଥାନରେ ତୁମ୍ଭଙ୍କୁ ଛାଡ଼ିଣ । ବାହୁଡ଼ି ଆସିବୁ ପୁଣି ଶିର ନୁଆଁଇଣ ॥୪॥

ପଚାରନ୍ତି ପ୍ରେମ-ବିବଶ ଏସନ ସାଶ୍ରୁ ନେତ୍ର ପୁଲକିତେ ।
ଭଣି କୃପାସିନ୍ଧୁ ଫେରାନ୍ତି ତାହାଙ୍କୁ ମୃଦୁ ବଚନ ବିନୀତେ ॥୧୧୨॥

---

ଶ୍ରୀରାମଚନ୍ଦ୍ର ସଖା ଗୁହଙ୍କୁ ଘରକୁ ଫେରିବା ନିମନ୍ତେ ଅନେକ ପ୍ରକାରେ ବୁଝାଇଲେ । ଶ୍ରୀରାମଚନ୍ଦ୍ରଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଗୁହ ଆପଣା ଘରକୁ ଫେରିଲେ ॥୧୧୧॥ ଚୌପାଈ :- ତତ୍ପରେ ସୀତା, ଶ୍ରୀରାମ ଓ ଲକ୍ଷ୍ମଣ ହାତ ଯୋଡ଼ି ଯମୁନାଙ୍କୁ ପୁଣି ଥରେ ପ୍ରଣାମ କଲେ ଏବଂ ସୂର୍ଯ୍ୟକନ୍ୟା ଯମୁନାଙ୍କୁ ପ୍ରଶଂସା କରି ସୀତା ସମେତ ଦୁଇ ଭାଇ ପ୍ରସନ୍ନ ମନରେ ଅଗ୍ରସର ହେଲେ ॥ ୧ ॥ ପଥରେ ଯାଉ ଯାଉ ତାଙ୍କ ସହ ଅନେକ ଯାତ୍ରୀ ଆସି ଭେଟୁଥାଆନ୍ତି । ଦୁଇ ଭାଇଙ୍କୁ ଦେଖି ସେମାନେ ପ୍ରେମରେ କହୁଥାଆନ୍ତି, "ତୁମ ଦୁହିଁଙ୍କ ସମସ୍ତ ଅଙ୍ଗରେ ରାଜଲକ୍ଷଣ ଦେଖି ଆମ୍ଭମାନଙ୍କ ହୃଦୟରେ ବଡ଼ ଚିନ୍ତା ଜାତ ହେଉଅଛି ॥ ୨ ॥ ଏପରି ରାଜଲକ୍ଷଣ ଥିବା ସତ୍ତ୍ୱେ ତୁମ୍ଭେମାନେ ପଥରେ ପାଦରେ ଚାଲି ଚାଲି ଯାଉଅଛ ! ଏଥିଯୋଗୁଁ ଆମ୍ଭେମାନେ ମନେ କରୁଛୁ ଯେ, ଜ୍ୟୋତିଷଶାସ୍ତ୍ର ମିଥ୍ୟା । ଘନ ଜଙ୍ଗଲ ଏବଂ ବଡ଼ ବଡ଼ ପାହାଡ଼ ଯୋଗେ ଦୁର୍ଗମ ବନ୍ଧୁର ପଥ । ତା ପରେ ତୁମ ସହିତ ପୁଣି ସୁକୁମାରୀ ସ୍ତ୍ରୀ ॥ ୩ ॥ ହସ୍ତୀ ଓ ସିଂହସଙ୍କୁଳ ଏହି ଭୟାନକ ବନକୁ ଚାହିଁ ହେଉନାହିଁ । ଯଦି ଆଜ୍ଞା ହେବ, ତେବେ ଆମ୍ଭେମାନେ ତୁମମାନଙ୍କ ସଙ୍ଗେ ଚାଲିବୁ । ତୁମ୍ଭେମାନେ ଯେଉଁ ପର୍ଯ୍ୟନ୍ତ ଯିବ, ସେ ପର୍ଯ୍ୟନ୍ତ ତୁମ୍ଭମାନଙ୍କୁ ପହଞ୍ଚାଇ ଦେବୁ ଏବଂ ପ୍ରଣାମ କରି ଆମ୍ଭେମାନେ ଫେରି ଆସିବୁ ।" ॥ ୪ ॥ ଦୋହା —ଏହିରୂପେ ସେହି ଯାତ୍ରୀମାନେ ପ୍ରେମ-ପୁଲକିତ ଶରୀର ଓ ସାଶ୍ରୁନୟନରେ ପଚାରି-ପଚାରି କରୁଥାଆନ୍ତି;

ଜେ ପୁର ଗାଁଓ ବସହିଁ ମଗ ମାହୀଁ । ତିନ୍ହହି ନାଗ ସୁର ନଗର ସିହାହୀଁ ॥
କେହି ସୁକୃତୀଁ କେହି ଘରୀଁ ବସାଏ । ଧନ୍ୟ ପୁନ୍ୟମୟ ପରମ ସୁହାଏ ॥୧॥
ଜହଁ ଜହଁ ରାମ ଚରନ ଚଲି ଜାହୀଁ । ତିନ୍ହ ସମାନ ଅମରାବତି ନାହୀଁ ॥
ପୁନ୍ୟ ପୁଞ୍ଜ ମଗ ନିକଟ ନିବାସୀ । ତିନ୍ହହି ସରାହହିଁ ସୁରପୁର ବାସୀ ॥୨॥
ଜେ ଭରି ନୟନ ବିଲୋକହିଁ ରାମହି । ସୀତା ଲଖନ ସହିତ ଘନସ୍ୟାମହି ॥
ଜେ ସର ସରିତ ରାମ ଅବଗାହହିଁ । ତିନ୍ହହି ଦେବ ସର ସରିତ ସରାହହିଁ ॥୩॥
ଜେହି ତରୁ ତର ପ୍ରଭୁ ବୈଠହିଁ ଜାଈ । କରହିଁ କଲପତରୁ ତାସୁ ବଡ଼ାଈ ॥
ପରସି ରାମ ପଦ ପଦୁମ ପରାଗା । ମାନତି ଭୂମି ଭୂରି ନିଜ ଭାଗା ॥୪॥
ଛାହଁ କରହିଁ ଘନ ବିବୁଧଗନ ବରଷହିଁ ସୁମନ ସିହାହିଁ ।
ଦେଖତ ଗିରି ବନ ବିହଗ ମୃଗ ରାମୁ ଚଲେ ମଗ ଜାହିଁ ॥୧୧୩॥

---

ପଡ଼ନ୍ତି ପଥ ମଧ୍ୟରେ ଯେଉଁ ପୁର ଗ୍ରାମ । ତାଙ୍କୁ ପ୍ରଶଂସା କରନ୍ତି ନାଗ-ସୁରଧାମ ॥
ସ୍ଥାପିଛି କେଉଁ ଘଡ଼ିରେ କେଉଁ ପୁଣ୍ୟଜନ । ଧନ୍ୟ ପୁଣ୍ୟମୟ ଦେଶ ପରମ ଶୋଭନ ॥୧॥
ଯହିଁ ଯହିଁ ଶ୍ରୀ ରାମଙ୍କ ପଦ ଚଳିଯାଏ । ଅମରାବତୀ ତାହାର ସମତା ନ ପାଏ ॥
ପୁଣ୍ୟ-ପୁଞ୍ଜ ସର୍ବେ ପଥ-ନିକଟ-ନିବାସୀ । ତାଙ୍କୁ ପ୍ରଶଂସା କରନ୍ତି ସୁର-ପୁରବାସୀ ॥୨॥
ନେତ୍ର ପୂର୍ଣ୍ଣ କରି ନିରେଖଇ ଯେ ରାମଙ୍କୁ । ସୀତା ସଲକ୍ଷ୍ମଣ ଘନ ସୁନ୍ଦର ଶ୍ୟାମଙ୍କୁ ॥
ଯେ ସର, ସରିତେ ରାମ ସ୍ନାହାନ କରନ୍ତି । ବିବୁଧ, ସର, ସରିତ ତାଙ୍କୁ ପ୍ରଶଂସନ୍ତି ॥୩॥
ବସନ୍ତି ଯେବଣ ତରୁ ତଳେ ପ୍ରଭୁ ଯାଇ । କଳ୍ପତରୁ ତାହାର କରଇ ବଡ଼ାଇ ॥
ସ୍ପର୍ଶି ହୋନ୍ତେ ରାମ ପଦ-ପଙ୍କଜ-ପରାଗ । ମଣଇ ଧରଣୀ ନିଜ ପରମ ସୌଭାଗ୍ୟ ॥୪॥
ଛାୟା କରେ ଘନ ପ୍ରଶଂସି ସୁମନ ସୁରଗଣ ବରଷାନ୍ତି ।
ଦେଖି ଗିରିବନ ମୃଗ ବିହଙ୍ଗମ ରାମ ପଥେ ଚଳିଯାନ୍ତି ॥୧୧୩॥

---

ଜନ୍ତି କୃପାସମୁଦ୍ର ଶ୍ରୀରାମ କୋମଳ, ବିନୟଭରା ବଚନ କହି ସେମାନଙ୍କୁ ଫେରାଇ ଦେଉଥାଆନ୍ତି ॥ ୧୧୨ ॥ ଚୌପାଈ .—ପଥପାର୍ଶ୍ୱରେ ଯେଉଁସବୁ ଗ୍ରାମ ଓ ନଗର ପଡ଼ିଥାଏ, ସେ ସବୁକୁ ଦେଖି ନାଗ ଓ ଦେବତାଗଣଙ୍କ ନଗର ପ୍ରଶଂସା ଓ ଈର୍ଷ୍ୟା କରୁଥାଆନ୍ତି ଏବଂ ଲାଳାୟିତ ହୋଇ କହୁଥାଆନ୍ତି, "କେଉଁ ପୁଣ୍ୟବାନ୍ ପୁରୁଷ କେଉଁ ଶୁଭ ଘଡ଼ିରେ ଏଗୁଡ଼ିକୁ ବସାଇଥିଲେ, ଯାହା ଫଳରେ ଆଜି ଏଗୁଡ଼ିକ ଏପରି ଧନ୍ୟ, ପୁଣ୍ୟମୟ ଓ ପରମସୁନ୍ଦର ହୋଇପଡ଼ିଅଛନ୍ତି !" ॥ ୧ ॥ ଶ୍ରୀରାମଙ୍କ ଚରଣ-କମଳ ଯେଉଁ ଯେଉଁ ପଥ ଦେଇ ଚାଲି ଯାଉଥାଏ, ସେମାନଙ୍କ ସଙ୍ଗେ ଇନ୍ଦ୍ରପୁରୀ ଅମରାବତୀ ମଧ୍ୟ ସମାନ ହେବ ନାହିଁ । ପଥପାର୍ଶ୍ୱରେ ବାସ କରୁଥିବା ବ୍ୟକ୍ତିମାନେ ମଧ୍ୟ ବଡ଼ ପୁଣ୍ୟାତ୍ମା । ସ୍ୱର୍ଗବାସୀ ଦେବତାମାନେ ସୁଦ୍ଧା ସେମାନଙ୍କୁ ପ୍ରଶଂସା କରୁଥା'ନ୍ତି ॥୨॥ ଯେଉଁମାନେ ନେତ୍ର ଭରି ସୀତା ଓ ଲକ୍ଷ୍ମଣଙ୍କ ସମେତ ଘନଶ୍ୟାମ ଶ୍ରୀରାମଙ୍କ ଦର୍ଶନ କରୁଥା'ନ୍ତି ଏବଂ ଯେଉଁ ସରୋବର ଓ ନଦୀମାନଙ୍କରେ ଶ୍ରୀରାମ ସ୍ନାନ କରୁଥା'ନ୍ତି, ସେହିମାନଙ୍କୁ ଯଥାକ୍ରମେ ଦେବତା,

ସୀତା ଲଖନ ସହିତ ରଘୁରାଈ । ଗାଁଓଁ ନିକଟ ଜବ ନିକସହିଁ ଜାଈ ॥
ସୁନି ସବ ବାଲ ବୃଦ୍ଧ ନର ନାରୀ । ଚଲହିଁ ତୁରତ ଗୃହ କାଜୁ ବିସାରୀ ॥୧॥
ରାମ ଲଖନ ସିୟ ରୂପ ନିହାରୀ । ପାଇ ନୟନଫଲୁ ହୋହିଁ ସୁଖାରୀ ॥
ସଜଲ ବିଲୋଚନ ପୁଲକ ସରୀରା । ସବ ଭଏ ମଗନ ଦେଖି ଦୋଉ ବୀରା ॥୨॥
ବରନି ନ ଜାଇ ଦସା ତିହ୍ନ କେରୀ । ଲହି ଜନୁ ରଂକହ୍ନ ସୁର ମନି ଢେରୀ ॥
ଏକହ୍ନ ଏକ ବୋଲି ସିଖ ଦେହୀଁ । ଲୋଚନ ଲାହୁ ଲେହୁ ଛନ ଏହୀଁ ॥୩॥
ରାମହି ଦେଖି ଏକ ଅନୁରାଗେ । ଚିତବତ ଚଲେ ଜାହିଁ ସଁଗ ଲାଗେ ॥
ଏକ ନୟନ ମଗ ଛବି ଉର ଆନୀ । ହୋହିଁ ସିଥିଲ ତନ ମନ ବର ବାନୀ ॥୪॥

---

ଯେବେ ରଘୁନାଥ ସୀତା ଲକ୍ଷ୍ମଣ ସଙ୍ଗରେ । ପ୍ରବେଶନ୍ତି ଯାଇ କେଉଁ ଗ୍ରାମ ନିକଟରେ ॥
ଶୁଣି ନରନାରୀ, ବୃଦ୍ଧ, ବାଳକ ନିକର । ଗୃହ-କାର୍ଯ୍ୟ ପରିହରି ଚଳନ୍ତି ସତ୍ୱର ॥୧॥
ରାମ, ଲକ୍ଷ୍ମଣ, ସୀତାଙ୍କ ରୂପ ନିରେଖିଣ । ସୁଖୀ ହୁଅନ୍ତି ନୟନ ସୁଲଭ ଲଭିଣ ॥
ସଜଳ ନୟନ ତନୁ ପୁଲକିତେ ଅତି । ଦେଖି ଦୁଇ ବୀରେ ସବେ ନିମଗ୍ନ ହୁଅନ୍ତି ॥୨॥
ବର୍ଣ୍ଣନ କରି ନ ହୁଏ ଦଶା ସେମାନଙ୍କ । ଚିନ୍ତା-ମଣି-ରାଶି ଅବା ପାଇଛନ୍ତି ରଙ୍କ ॥
ଏକ ଆରେକକୁ ଡାକି ଶିକ୍ଷା ଦେଉଥାଇ । ନୟନର ଲାଭ ନିଅ ଏହିକ୍ଷଣି ଭାଇ ॥୩॥
ରାମଙ୍କୁ ନିରେଖି କେହି ଅନୁରାଗ-ଚିତ୍ତେ । ଚାହିଁ ଚାହିଁ ଚାଲିଯାଏ ପ୍ରଭୁଙ୍କ ସହିତେ ॥
ନେତ୍ର ପଥେ ଛବି କେହି ଆଣି ହୃଦୟରେ । ହୁଅଇ ଶିଥିଳ ମନ କର୍ମ ବଚନରେ ॥୪॥

---

ଦେବସରୋବର ଓ ଦେବନଦୀମାନେ ପ୍ରଶଂସା କରୁଥାଆନ୍ତି ॥୩॥ ଯେଉଁ ବୃକ୍ଷତଳେ ପ୍ରଭୁ ବସୁଥାଆନ୍ତି, କଳ୍ପବୃକ୍ଷ ସୁଦ୍ଧା ତାହାର ବଡ଼ାଇ କରୁଥାଏ । ଶ୍ରୀରାମଚନ୍ଦ୍ରଙ୍କ ଚରଣ-କମଳ-ରଜ ସ୍ପର୍ଶ କରି ପୃଥିବୀ ଆପଣାକୁ ଅତି ଭାଗ୍ୟବତୀ ମନେ କରୁଥାଏ ॥ ୪ ॥ ଦୋହା :—ମାର୍ଗରେ ବାଦଲମାନେ ଛାୟା କରୁଥାଆନ୍ତି ଏବଂ ଦେବତାମାନେ ପୁଷ୍ପ ବୃଷ୍ଟି କରୁଥା'ନ୍ତି ଏବଂ ମୁଗ୍ଧ ହେଉଥାଆନ୍ତି । ପର୍ବତ, ବନ ଓ ପଶୁପକ୍ଷୀମାନଙ୍କୁ ଦେଖି ଦେଖି ଶ୍ରୀରାମ ମାର୍ଗରେ ଅଗ୍ରସର ହେଉଥାଆନ୍ତି ॥ ୧୧୩ ॥ ଚୌପାଈ :—ସୀତା ଓ ଲକ୍ଷ୍ମଣଙ୍କ ସହ ଶ୍ରୀ ରଘୁନାଥ ଯେତେବେଳେ କୌଣସି ଗ୍ରାମ ନିକଟବର୍ତ୍ତୀ ହେଉଥାଆନ୍ତି, ସେମାନଙ୍କ ଆଗମନବାର୍ତ୍ତା ଶୁଣିବା ମାତ୍ରେ ଆବାଳବୃଦ୍ଧବନିତା ସମସ୍ତେ ଆପଣା ଆପଣା କାର୍ଯ୍ୟ ଭୁଲି ସେମାନଙ୍କୁ ଦେଖିବା ଉଦ୍ଦେଶ୍ୟରେ ତୁରନ୍ତ ଚାଲି-ଯାଉଥା'ନ୍ତି ॥ ୧ ॥ ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ରୂପ ଦେଖି ସେମାନେ ନେତ୍ରଫଳ ଲାଭ କରି ସୁଖୀ ହେଉଥାଆନ୍ତି । ଭାଇ ଦୁହିଁଙ୍କୁ ଦେଖି ସମସ୍ତେ ପ୍ରେମାନନ୍ଦରେ ମଗ୍ନ ହୋଇଗଲେ, ସେମାନଙ୍କ ନେତ୍ର ଜଳରେ ପୂର୍ଣ୍ଣ ହୋଇଗଲା ଏବଂ ଶରୀର ପୁଲକିତ ହୋଇଗଲା ॥ ୨ ॥ ସେମାନଙ୍କ ଦଶା ବର୍ଣ୍ଣନା କରିବା ଅସମ୍ଭବ । ଦରିଦ୍ରମାନେ ଚିନ୍ତାମଣିପୁଞ୍ଜ ଲାଭ କଲେ ଅବା ! "ଏହି ମୁହୂର୍ତ୍ତରେ ନେତ୍ରଲାଭ ଉଠାଇ ନିଅ" ବୋଲି ପରସ୍ପରକୁ ଡାକି ସେମାନେ ଶିକ୍ଷା ଦେଉଥାଆନ୍ତି ॥ ୩ ॥ କେହି କେହି ଶ୍ରୀରାମଙ୍କୁ ଦେଖି

ଏକ ଦେଖି ବଟ ଛାଁହ ଭଲି ଡାସି ମୃଦୁଲ ତୃନ ପାତ ।
କହହିଁ ଗଵାଁଇଅ ଛିନୁକୁ ଶ୍ରମୁ ଗଵନବ ଅବହିଁ କ ପ୍ରାତ ॥୧୧୩॥
ଏକ କଲସ ଭରି ଆନହିଁ ପାନୀ । ଅଁଚଇଅ ନାଥ କହହିଁ ମୃଦୁ ବାନୀ ॥
ସୁନି ପ୍ରିୟ ବଚନ ପ୍ରୀତି ଅତି ଦେଖୀ । ରାମ କୃପାଲ ସୁସୀଲ ବିସେଷୀ ॥୧॥
ଜାନୀ ଶ୍ରମିତ ସୀୟ ମନ ମାହୀଁ । ଘରିକ ବିଲଂବୁ କୀନ୍ହ ବଟ ଛାହୀଁ ॥
ମୁଦିତ ନାରି ନର ଦେଖହିଁ ସୋଭା । ରୂପ ଅନୂପ ନୟନ ମନୁ ଲୋଭା ॥୨॥
ଏକଟକ ସବ ସୋହହିଁ ଚହୁଁ ଓରା । ରାମଚନ୍ଦ୍ର ମୁଖ ଚନ୍ଦ ଚକୋରା ॥
ତରୁନ ତମାଲ ବରନ ତନୁ ସୋହା । ଦେଖତ କୋଟି ମଦନ ମନୁ ମୋହା ॥୩॥
ଦାମିନି ବରନ ଲଖନ ସୁଠି ନୀକେ । ନଖ ସିଖ ସୁଭଗ ଭାଵତେ ଜୀ କେ ॥
ମୁନିପଟ କଟିନ୍ହ କସେଁ ତୂନୀରା । ସୋହହିଁ କର କମଲନି ଧନୁ ତୀରା ॥୪॥

---

କେହୁ ବଟ ଛାଇ ଦେଖି ପାରେ ଯାଇ ଆସନ ପଲ୍ଲବ ଡାଲେ ।
ବୋଲଇ ବଚନ, କାଟ କ୍ଷଣେ ଶ୍ରମ, ଯାଅ ଏବେ ବା ସକାଳେ ॥୧୧୪॥
ଅନ୍ୟ କେହୁ କଳସିରେ ଜଳ ଦେନ ଆଣି । ମୁହଁ ହାତ ଧୁଅ, ଦେବ, କହେ ମୃଦୁ ବାଣୀ ॥
ଶୁଣନ୍ତେ ପ୍ରିୟ ବଚନ ଦେଖି ଅତି ପ୍ରୀତି । କରୁଣାମୟ ସୁଶୀଳ ପ୍ରଭୁ ରଘୁପତି ॥୧॥
ଶ୍ରମିତ ଜାନକୀ ଜାଣି ନିଜ ହୃଦୟରେ । ବଟ ଛାୟା ତଳେ କଲେ ବିଶ୍ରାମ ପ୍ରହରେ ॥
ପ୍ରମୋଦିତେ ନର-ନାରୀ କରନ୍ତି ଦର୍ଶନ । ଅନୁପମ ରୂପେ ଲୋଭି ହୁଏ ନେତ୍ର ମନ ॥୨॥
ନିର୍ନିମେଷ ଚଉଦିଗେ ଶୋଭନ୍ତି ସମସ୍ତେ । ରାମଚନ୍ଦ୍ର-ମୁଖଚନ୍ଦ୍ରେ ଚକୋର ଯେମନ୍ତେ ॥
ତରୁଣ ତମାଲ ବର୍ଣ୍ଣ ତନୁ ସୁଶୋଭିତ । ଦେଖନ୍ତେ କୋଟି ମଦନ ମନ ବିମୋହିତ ॥୩॥
ସୌଦାମିନୀ ବର୍ଣ୍ଣ ଅତି ସୁନ୍ଦର ଲକ୍ଷ୍ମଣ । ଆପାଦ-ମସ୍ତକ ସ୍ୱଚ୍ଛ ହୃଦୟାକର୍ଷଣ ॥
ମୁନି-ଚୀର ପରିଧାନ, କଟିରେ ତୂଣୀର । ଶୋଭା ପାଏ ସରୋରୁହ-କରେ ଧନୁତୀର ॥୪॥

---

ଏହିପରି ଅନୁରାଗରେ ପୂର୍ଣ୍ଣ ହୋଇ ଯାଉଥାଆନ୍ତି ଯେ, ତାହାଙ୍କୁ ଦେଖିବାମାତ୍ରେ ତାଙ୍କ ସହିତ ଲାଗି ରହିଥା'ନ୍ତି । କେହୁ ନେତ୍ରପଥରୁ ତାଙ୍କ ଛବି ହୃଦୟ ମଧ୍ୟକୁ ଆଣି ଶରୀର, ମନ ଓ ବାଣୀରେ ଶିଥିଳ ହୋଇ ଯାଉଥାଆନ୍ତି ॥ ୪ ॥ ଦୋହା :—କେହୁ ବରଗଛ ତଳର ସୁନ୍ଦର ଛାୟା ଦେଖି' ସେଠାରେ ନରମ ଘାସ ଓ ପତ୍ର ବିଛାଇ କହୁଥାଏ, "କ୍ଷଣେ ମାତ୍ର ଏହିଠାରେ ବସି କ୍ଳାନ୍ତି ଦୂର କରନ୍ତୁ । ତା ପରେ ଆପଣ ଏବେ ଯାଆନ୍ତୁ ବା କାଲି ସକାଳେ, ଆମର କିଛି କହିବାର ନାହିଁ ।" ॥୧୧୪॥ ଚୌପାଇ :—କେହୁ କଳସ ଭରି ପାଣି ଆଣୁଥାଏ ଏବଂ କୋମଳ ବାଣୀରେ କହୁଥାଏ, "ହେ ନାଥ ! ଆଚମନ ତ କରି ନିଅନ୍ତୁ ।" ଦୟାଳୁ ଓ ପରମ ସୁଶୀଳ ଶ୍ରୀରାମ ତାହାର ପ୍ରିୟ ବଚନ ଶୁଣିଲେ ଓ ହୃଦୟର ପ୍ରେମ ଅନୁଭବ କଲେ । ମନ ମଧ୍ୟରେ ସେ ସୀତାଙ୍କୁ କ୍ଳାନ୍ତ ଜାଣି ଘଡ଼ିଏ କାଳ ବରଗଛ ଛାଇରେ ବିଶ୍ରାମ କଲେ । ସ୍ତ୍ରୀପୁରୁଷମାନେ ଆନନ୍ଦିତ ହୋଇ ଶୋଭା ଦେଖୁଥାଆନ୍ତି । ତାଙ୍କର ଅନୁପମ ରୂପ ସେମାନଙ୍କର ନେତ୍ର ଓ ମନକୁ ଲୁବ୍ଧ କରି

ଜଟା ମୁକୁଟ ସୀସନି ସୁଭଗ ଉର ଭୁଜ ନୟନ ବିସାଲ ।
ସରଦ ପରବ ବିଧୁ ବଦନ ବର ଲସତ ସ୍ୱେଦ କନ ଜାଲ ॥୧୧୫॥

ବରନି ନ ଜାଇ ମନୋହର ଜୋରୀ । ସୋଭା ବହୁତ ଥୋରି ମତି ମୋରୀ ॥
ରାମ ଲଖନ ସିୟ ସୁନ୍ଦରତାଈ । ସବ ଚିତବହିଁ ଚିତ ମନ ମତି ଲାଈ ॥୧॥
ଥକେ ନାରି ନର ପ୍ରେମ ପିଆସେ । ମନହୁଁ ମୃଗୀ ମୃଗ ଦେଖି ଦିଆ ସେ ॥
ସୀୟ ସମୀପ ଗ୍ରାମତିୟ ଜାହୀଁ । ପୂଁଛତ ଅତି ସନେହଁ ସକୁଚାହୀଁ ॥୨॥
ବାର ବାର ସବ ଲାଗହିଁ ପାଏଁ । କହହିଁ ବଚନ ମୃଦୁ ସରଲ ସୁଭାଏଁ ॥
ରାଜକୁମାରି ବିନୟ ହମ କରହୀଁ । ତିୟ ସୁଭାୟଁ କଛୁ ପୂଁଛତ ଡରହୀଁ ॥୩॥

---

ଶିରେ ରାଜେ ଜଟା ମୁକୁଟ, ନୟନ ଭୁଜ ହୃଦୟ ବିଶାଳ ।
ଶରଦ ପୂର୍ଣ୍ଣିମା ଶଶୀ ସୁବଦନେ ଶୋଭେ ଶ୍ରମ-ବିନ୍ଦୁ ଝାଳ ॥୧୧୫॥

ବର୍ଣ୍ଣନ କରି ନ ହୁଏ ଯୋଡ଼ି ମନୋହର । ଶୋଭା ଅପ୍ରମିତ ମତି ଅଳପ ମୋହର ॥
ରାମ ଲକ୍ଷ୍ମଣ ସୀତାଙ୍କ ସୁନ୍ଦରତା ଅତି । ନିରେଖନ୍ତି ସର୍ବେ ଦେଇ ମନ ଚିତ୍ତ ମତି ॥୧॥
ଚକିତ ପ୍ରେମ-ପିପାସୁ ନର ନାରୀ ଜନେ । ଦୀପ ଶିଖା ଦେଖି ମୃଗ ମୃଗୁଣୀ ଯେସନେ ॥
ଗ୍ରାମ-ଯୁବତୀ ସୀତାଙ୍କ ନିକଟକୁ ଯାଇ । ସଙ୍କୋଚ କରନ୍ତି ସ୍ନେହେ ପଚାରିବା ପାଇଁ ॥୨॥
ବାରମ୍ବାର ପଡ଼ି ସର୍ବେ ସୀତାଙ୍କ ପୟରେ । କହନ୍ତି ମୃଦୁ ବଚନ ସରଳ ଭାବରେ ॥
ରାଜ-ଜେମା, ଆମ୍ଭେ କିଛି ବିନୟ କରୁଛୁ । ପଚାରିବା ପାଇଁ ନାରୀ ସ୍ୱଭାବେ ଡରୁଛୁ ॥୩॥

---

ହେଉଥାଏ ॥ ୧-୨ ॥ ସମସ୍ତେ ନିର୍ନିମେଷ ନୟନରେ ଶ୍ରୀରାମଙ୍କ ମୁଖ-ଚନ୍ଦ୍ରକୁ ଚକୋର ପରି ତନ୍ମୟତା ସହକାରେ ଦେଖୁଥା'ନ୍ତି ଏବଂ ଏହିପରି ରାସ୍ତାପାଖରେ ସୁଶୋଭିତ ହେଉଥାଆନ୍ତି । ଶ୍ରୀରାମଙ୍କ ନବୀନ-ତମାଳ-ଶ୍ୟାମଳ ଶରୀର ଅତ୍ୟନ୍ତ ଶୋଭା ପାଉଥାଏ । ତାହାକୁ ଦେଖିବା ମାତ୍ରେ କୋଟି କୋଟି କାମଦେବଙ୍କ ମନ ମୋହିତ ହୋଇଯାଏ ॥ ୩ ॥ ବିଦ୍ୟୁତ୍‌ବର୍ଣ୍ଣ ଲକ୍ଷ୍ମଣ ଅତି ଉତ୍ତମ ଓ ସୁନ୍ଦର ଜଣାପଡ଼ୁଥାଆନ୍ତି । ସେ ନଖରୁ ଶିଖାପର୍ଯ୍ୟନ୍ତ (ଆପାଦମସ୍ତକ) ସୁନ୍ଦର ଏବଂ ମନକୁ ଅତିମାତ୍ରାରେ ରୁଚିକର ବୋଧ ହେଉଥାଆନ୍ତି । ଉଭୟେ ମୁନିଯୋଗ୍ୟ ବଲ୍‌କଳ ବସ୍ତ୍ର ପରିଧାନ କରିଥାଆନ୍ତି ଏବଂ କଟିରେ ତୂଣୀର ବାନ୍ଧି ଧରିଥାଆନ୍ତି । ସେମାନଙ୍କ କର-କମଳରେ ଧନୁଶର ସୁଶୋଭିତ ହେଉଥାଏ ॥୪॥ ଦୋହା :—ସେମାନଙ୍କ ଶିର ଉପରେ ସୁନ୍ଦର ଜଟାର ମୁକୁଟ ଶୋଭିତ, ବକ୍ଷସ୍ଥଳ, ବାହୁ ଓ ନେତ୍ର ବିଶାଳ ଏବଂ ଶରତ୍‌ପୂର୍ଣ୍ଣିମାର ଚନ୍ଦ୍ରଙ୍କ ସମାନ ସୁନ୍ଦର ମୁଖମଣ୍ଡଳ ଉପରେ ଝାଳବିନ୍ଦୁମାନ ଶୋଭିତ ହେଉଥାଏ ॥ ୧୧୫ ॥ ଚୌପାଈ :— ସେହି ମନୋହର ଯୁଗଳମୂର୍ତ୍ତି ବର୍ଣ୍ଣନା କରାଯାଇ ପାରିବ ନାହିଁ । କାରଣ ସେମାନଙ୍କ ଶୋଭା ବହୁତ ବେଶି ଏବଂ ମୋର ବୁଦ୍ଧି ଅତି ଅଳ୍ପ । ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ସୌନ୍ଦର୍ଯ୍ୟକୁ ସମସ୍ତ ଲୋକ ମନ, ଚିତ୍ତ ଓ ବୁଦ୍ଧି, ତିନିକୁ ଲଗାଇ ଦେଖୁଥା'ଆନ୍ତି ॥ ୧ ॥ ପ୍ରେମପିପାସୁ ଗ୍ରାମବାସୀ ନରନାରୀଗଣ ଏମାନଙ୍କ ସୌନ୍ଦର୍ଯ୍ୟଛଟା ଦେଖି ଦୀପକୁ ଦେଖି ହରିଣହରିଣୀମାନେ ନିସ୍ତବ୍ଧ ରହିଲା ପରି ଚକିତ ରହି ଯାଉଥାଆନ୍ତି । ଗ୍ରାମବଧୂମାନେ

ସ୍ୱାମିନି ଅବିନୟ ଛମବି ହମାରୀ । ବିଲଗୁ ନ ମାନବି ଜାନି ଗଵାଁରୀ ॥
ରାଜକୁଅଁର ଦୋଉ ସହଜ ସଲୋନେ । ଇନ୍ହ ତେଁ ଲହୀ ଦୁତି ମରକତ ସୋନେ ॥୩॥

ସ୍ୟାମଲ ଗୌର କିସୋର ବର ସୁନ୍ଦର ସୁଷମା ଐନ ।
ସରଦ ସର୍ବରୀନାଥ ମୁଖୁ ସରଦ ସରୋରୁହ ନୈନ ॥୧୧୬॥

## ମାସପାରାୟଣ, ଷୋଡଶ ବିଶ୍ରାମ
## ନବାହ୍ନପାରାୟଣ, ଚତୁର୍ଥ ବିଶ୍ରାମ

କୋଟି ମନୋଜ ଲଜାବନିହାରେ । ସୁମୁଖି କହହୁ କୋ ଆହିଁ ତୁମ୍ହାରେ ॥
ସୁନି ସନେହମୟ ମଂଜୁଲ ବାନୀ । ସକୁଚୀ ସିୟ ମନ ମହୁଁ ମୁସୁକାନୀ ॥୧॥
ତିନ୍ହହି ବିଲୋକି ବିଲୋକତି ଧରନୀ । ଦୁହୁଁ ସକୋଚ ସକୁଚତି ବରବରନୀ ॥
ସକୁଚି ସପ୍ରେମ ବାଲ ମୃଗନୟନୀ । ବୋଲୀ ମଧୁର ବଚନ ପିକବୟନୀ ॥୨॥

ଆମ୍ଭ ଅବିନୟ କ୍ଷମା, ସ୍ୱାମିନି, କରିବ । ମୋତ ନାରୀ ଜାଣି ମନେ ଭିନ୍ନ ନ ଭାବିବ ॥
ସହଜେ ସୁନ୍ଦର ଦୋନ ରାଜସୁତ ଅତି । ଯାଙ୍କଠାରୁ ହୀନ ହେମ ମର୍କତ ଲଭନ୍ତି ॥୪॥

ଶ୍ୟାମଳ ଗଉର କିଶୋର ସୁନ୍ଦର ପରମ ଶୋଭା ସଦନ ।
ଶରଦ କୁମୁଦ-ବାନ୍ଧବ-ବଦନ ଶରଦ କଞ୍ଜ-ଲୋଚନ ॥୧୧୬॥

କୋଟି କନ୍ଦର୍ପ ଛବି ଯେ ଲଜ୍ଜିତ କରନ୍ତି । ସୁନ୍ଦରୀ କହ, ତୁମ୍ଭର ଏ କିସ ହୁଅନ୍ତି ॥
ଶୁଣି ସ୍ନେହ-ମୟ ତାଙ୍କ ବଚନ ମଞ୍ଜୁଳ । ସଙ୍କୋଚେ ଜାନକୀ ମନେ ହସନ୍ତି ମୃଦୁଳ ॥୧॥
ତାହାଙ୍କୁ ବିଲୋକି ଅବଲୋକନ୍ତି ମେଦିନୀ । ଉଭୟ ସଙ୍କୋଚଗ୍ରସ୍ତ ହେଲେ ବରାଙ୍ଗିନୀ ॥
ସଙ୍କୋଚ ସପ୍ରେମେ ବାଳ କୁରଙ୍ଗ-ଲୋଚନୀ । ଭାଷିଲେ ମଧୁର ବାଣୀ କୋକିଳ-ବଚନୀ ॥୨॥

ସୀତାଙ୍କ ନିକଟକୁ ଯାଉଥାଆନ୍ତି । କିନ୍ତୁ ଅତ୍ୟଧିକ ସ୍ନେହ ହେତୁ କିଛି ପଚାରିବାକୁ ସଙ୍କୋଚ ବୋଧ କରୁଥାଆନ୍ତି ॥ ୨ ॥ ସମସ୍ତେ ବାରମ୍ବାର ତାଙ୍କ ପାଦ ଛୁଉଁଥା'ନ୍ତି ଏବଂ ସରଳ କୋମଳ ବଚନ କହୁଥା'ନ୍ତି, "ହେ ରାଜକୁମାରି ! ଆମ୍ଭେ କିଛି ନିବେଦନ କରିବାକୁ ଆଗ୍ରହୀ, ମାତ୍ର ସ୍ତ୍ରୀସ୍ୱଭାବ ହେତୁ କିଛି ପଚାରିବାକୁ ଡରୁଅଛୁ ॥ ୩ ॥ ହେ ସ୍ୱାମିନି ! ଆମ୍ଭର ଧୃଷ୍ଟତା କ୍ଷମା କରନ୍ତୁ ଏବଂ ଆମ୍ଭର ମୂର୍ଖତା ଜାଣି ଖରାପ ଭାବନ୍ତୁ ନାହିଁ । ଏ ରାଜକୁମାର ଦୁହେଁ ସ୍ୱଭାବତଃ ଲାବଣ୍ୟମୟ । ମରକତମଣି ଓ ସୁବର୍ଣ୍ଣ ଏ ଦୁହିଁଙ୍କଠାରୁ କାନ୍ତି ଲାଭ କରିଅଛନ୍ତି ॥ ୪ ॥ ଦୋହା :— ଶ୍ୟାମଳ ଓ ଗୌରବର୍ଣ୍ଣ, ସୁନ୍ଦର କିଶୋର ଅବସ୍ଥା, ଦୁହେଁ ପରମସୁନ୍ଦର ଓ ଶୋଭାଧାମ । ଶରତ୍‌ପୂର୍ଣ୍ଣିମାର ଚନ୍ଦ୍ର ସମାନ ଏମାନଙ୍କ ମୁଖ ଓ ଶରତ-ଋତୁର କମଳ ସଦୃଶ ଏମାନଙ୍କ ନେତ୍ର ॥ ୧୧୬ ॥ ଚୌପାଈ :—ହେ ସୁମୁଖି ! ଆପଣା ସୌନ୍ଦର୍ଯ୍ୟ ଯୋଗେ କୋଟି କୋଟି କନ୍ଦର୍ପଙ୍କୁ ଲଜ୍ଜିତ କରୁଥିବା ଏ ପୁରୁଷ ତୁମର କିଏ ?" ସେମାନଙ୍କର ଏପରି ପ୍ରେମମୟୀ ମଞ୍ଜୁଳ ବାଣୀ ଶୁଣି ସୀତା ସଙ୍କୁଚିତ ହୋଇ ପଡ଼ିଲେ ଏବଂ ମନେ ମନେ ହସିଲେ ॥ ୧ ॥ ବରବର୍ଣ୍ଣିନୀ ସୀତା ସେମାନଙ୍କୁ ଦେଖି ସଙ୍କୋଚବଶତଃ ଭୂମିକୁ

ସହଜ ସୁଭାୟ ସୁଭଗ ତନ ଗୋରେ । ନାମୁ ଲଖନୁ ଲଘୁ ଦେବର ମୋରେ ॥
ବହୁରି ବଦନୁ ବିଧୁ ଅଂଚଲ ଢାଁକୀ । ପିଅ ତନ ଚିତଇ ଭୌଁହ କରି ବାଁକୀ ॥୩॥
ଖଂଜନ ମଂଜୁ ତିରୀଛେ ନୟନନି । ନିଜ ପତି କହେଉ ତିନ୍ହହି ସିୟଁ ସୟନନି ॥
ଭଈଁ ମୁଦିତ ସବ ଗ୍ରାମବଧୂଟୀଁ । ରଂକନ୍ହ ରାୟ ରାସି ଜନୁ ଲୂଟୀଁ ॥୪॥

ଅତି ସପ୍ରେମ ସିୟ ପାୟଁ ପରି ବହୁବିଧି ଦେହିଁ ଅସୀସ ।
ସଦା ସୋହାଗିନି ହୋହୁ ତୁମ୍ହ ଜବ ଲଗି ମହି ଅହି ସୀସ ॥୧୧୭॥

ପାରବତୀ ସମ ପତିପ୍ରିୟ ହୋହୂ । ଦେବି ନ ହମ ପର ଛାଡ଼ବ ଛୋହୂ ॥
ପୁନି ପୁନି ବିନୟ କରିଅ କର ଜୋରୀ । ଜୌଁ ଏହି ମାରଗ ଫିରିଅ ବହୋରୀ ॥୧॥
ଦରସନୁ ଦେବ ଜାନି ନିଜ ଦାସୀ । ଲଖୀଂ ସୀୟଁ ସବ ପେମ ପିଆସୀ ॥
ମଧୁର ବଚନ କହି କହି ପରିତୋଷୀ । ଜନୁ କୁମୁଦିନୀଁ କୌମୁଦୀଁ ପୋଷୀଁ ॥୨॥

---

ସହଜ ସ୍ୱଭାବେ ଗୌର ଶରୀର ସୁନ୍ଦର । ନାମ ଲକ୍ଷ୍ମଣ କନିଷ୍ଠ ଦେବର ମୋହର ॥
ପୁନଶ୍ଚ ବଦନ-ବିଧୁ ଅଞ୍ଚଳେ ଢାଙ୍କିଣ । ପ୍ରିୟ ତନୁ ଚାହିଁ ବକ୍ର ଭ୍ରୂକୁଟୀ କରିଣ ॥୩॥
ମଞ୍ଜୁ ଖଞ୍ଜନ-ତିରଛା-ନୟନେ ବୈଦେହୀ । ସଙ୍କେତେ କହିଲେ ତାଙ୍କୁ, ନିଜ ପତି ସେହି ॥
ଶୁଣି ଗ୍ରାମ୍ୟ ବଧୂ ମନେ ମୁଦିତ ହୋଇଲେ । ରଙ୍କ ଧନରାଶି ଲୁଟି କି ଅବା ପାଇଲେ ॥୪॥

ପଡ଼ି ଅତି ପ୍ରେମେ ଜାନକୀ ଚରଣେ ଦିଅନ୍ତି ବହୁ ଆଶିଷ ।
ସଦା ସୌଭାଗିନୀ ତୁହ, ଯଦା ଶିରେ ମହୀ ରଖନ୍ତି ଅହୀଶ ॥୧୧୭॥

ପାରବତୀ ସମ ହୁଅ ପତି ଅନୁରାଗୀ । ଦେବି! ଆମ୍ଭ ପ୍ରତି ସ୍ନେହ ଦେବ ନାହିଁ ତ୍ୟାଗି ॥
ବିନୟ କରୁଛୁ ବାରମ୍ବାର ଯୋଡ଼ି କର । ଯେବେ ଏହି ପଥେ କେବେ ଫେରିବ ଆବର ॥୧॥
ଦରଶନ ଦେବ ନିଶ୍ଚେ ଜାଣି ନିଜ ଦାସୀ । ଦେଖି ସୀତା ସମସ୍ତଙ୍କୁ ପ୍ରେମର ପିପାସୀ ॥
ତୋଷିଲେ କହି କହିଣ ମଧୁର ବଚନ । କୌମୁଦୀ କୁମୁଦିନୀଙ୍କୁ ପୋଷଇ ଯେସନ ॥୨॥

---

ଚାହିଁଥାଆନ୍ତି । ସେ ଉଭୟ ଆଡ଼ୁ ଲଜ୍ଜାରେ ସଙ୍କୁଚିତ ହେଉଥାଆନ୍ତି । (ଏଣେ ନ କହିଲେ ଗ୍ରାମବଧୂଗଣଙ୍କ ମନରେ ଦୁଃଖ ହେବ, ଏଥିପାଇଁ ସଙ୍କୁଚିତ ଏବଂ ପୁଣି କହିଲେ ଲଜ୍ଜାର ସମ୍ଭାବନା ଥିବାରୁ ସଙ୍କୁଚିତ ।) ବାଳମୃଗନୟନା ଓ କୋକିଳବଚନା ସୀତା ସଙ୍କୁଚିତ ହୋଇ ପ୍ରେମ-ମଧୁର ବାଣୀ ବୋଇଲେ— ॥ ୨ ॥ "ଏ ଯେଉଁ ସହଜସ୍ୱଭାବ, ସୁନ୍ଦର ଓ ଗୌରଶରୀର ପୁରୁଷ, ତାହାଙ୍କ ନାମ ଲକ୍ଷ୍ମଣ; ସେ ମୋର ଦିଅର ।" ତତ୍ପରେ ସୀତା ଲଜ୍ଜାବଶତଃ ଆପଣା ଚନ୍ଦ୍ରମୁଖକୁ କାନିପଣନ୍ତରେ ଢାଙ୍କିଦେଲେ ଏବଂ ପ୍ରିୟତମ ଶ୍ରୀରାମଙ୍କ ଆଡ଼କୁ ଚାହିଁ ଭ୍ରୂଲତା ବଙ୍କ କଲେ । ସେ ଖଞ୍ଜନ ସମାନ ମଞ୍ଜୁଳ ନେତ୍ରକୁ ତେରଛା କରି ସଙ୍କେତ ଯୋଗେ ଜଣାଇଦେଲେ—'ଏ (ଶ୍ରୀରାମଚନ୍ଦ୍ର) ମୋର ପତି ।" ଏହି ଜାଣି ଗ୍ରାମର ସମସ୍ତ ଯୁବତୀ-ନାରୀଗଣ କାଙ୍ଗାଳମାନେ ଧନରାଶି ଲୁଟି କରି ଯେମିତି ଆନନ୍ଦିତ ହୁଅନ୍ତି, ସେହିପରି ଆନନ୍ଦିତ ହୋଇପଡ଼ିଲେ ॥ ୩-୪ ॥ ଦୋହା :—ସେମାନେ ଅତ୍ୟନ୍ତ ପ୍ରେମରେ ସୀତାଙ୍କ ଚରଣ ଧରି ବହୁ ପ୍ରକାରେ ତାହାଙ୍କୁ ଆଶୀର୍ବାଦ ଦେଉଥା'ନ୍ତି—"ଯେତେକାଳ

ତବହିଁ ଲଖନ ରଘୁବର ରୁଖ ଜାନୀ । ପୂଁଛେଉ ମଗୁ ଲୋଗନ୍ହି ମୃଦୁ ବାନୀ ॥
ସୁନତ ନାରି ନର ଭଏ ଦୁଖାରୀ । ପୁଲକିତ ଗାତ ବିଲୋଚନ ବାରୀ ॥୩॥
ମିଟା ମୋଦୁ ମନ ଭଏ ମଲୀନେ । ବିଧି ନିଧି ଦୀନ୍ହି ଲେତ ଜନୁ ଛୀନେ ॥
ସମୁଝି କରମ ଗତି ଧୀରଜୁ କୀନ୍ହା । ସୋଧି ସୁଗମ ମଗୁ ତିନ୍ହ କହି ଦୀନ୍ହା ॥୪॥

ଲଖନ ଜାନକୀ ସହିତ ତବ ଗଵନୁ କୀନ୍ହ ରଘୁନାଥ ।
ଫେରେ ସବ ପ୍ରିୟ ବଚନ କହି ଲିଏ ଲାଇ ମନ ସାଥ ॥୧୧୮॥

ଫିରତ ନାରି ନର ଅତି ପଛିତାହୀଁ । ଦୈଅହି ଦୋଷୁ ଦେହିଁ ମନ ମାହୀଁ ॥
ସହିତ ବିଷାଦ ପରସପର କହହୀଁ । ବିଧି କରତବ ଉଲଟେ ସବ ଅହହୀଁ ॥୧॥

---

ତହୁଁ ସୌମିତ୍ରି ରାମଙ୍କ ମନଇଚ୍ଛା ଜାଣି । ଲୋକଙ୍କୁ ମାର୍ଗ ପୁଚ୍ଛିଲେ କହି ମୃଦୁବାଣୀ ॥
ଶୁଣନ୍ତେ ଦୁଃଖିତ ହେଲେ ଗ୍ରାମ ନରନାରୀ । ପୁଲକେ ତନୁ ପୂରିଲା ବିଲୋଚନେ ବାରି ॥୩॥
ସରିଲା ପ୍ରମୋଦ, ହୋଇଲା ପରିତାପ ମନେ । ବିଧି ନିଧି ଦେଇ ନିଏ ଛଡ଼ାଇ ଯେସନେ ॥
ବୁଝି କର୍ମ ଗତି ଧୈର୍ଯ୍ୟ ହୃଦୟେ ଧରିଲେ । ସୁଗମ ମାର୍ଗ ବିଚାରି ତାଙ୍କୁ ବତାଇଲେ ॥୪॥

ଜାନକୀ ଲକ୍ଷ୍ମଣ ସହିତ ଶ୍ରୀରାମ ଗମନ କଲେ ବନକୁ ।
ସଙ୍ଗେ ମନ ନେଇ ପ୍ରିୟବାଣୀ କହି ଫେରାଇଲେ ସମସ୍ତଙ୍କୁ ॥୧୧୮॥

ଫେରନ୍ତେ ନାରୀ ପୁରୁଷ ସନ୍ତାପ କରନ୍ତି । ମନ ମଧ୍ୟେ ଦଇବକୁ ଦୂଷଣ ଦିଅନ୍ତି ॥
କହନ୍ତି ଏକୁ ଆରେକ ବିଷାଦ ସହିତ । ବିଧାତାର କର୍ମ ସବୁ ଅଟେ ବିପରୀତ ॥୧॥

---

ପର୍ଯ୍ୟନ୍ତ ଶେଷଙ୍କ ଶିର ଉପରେ ଏ ପୃଥିବୀ ରହିଥିବ, ସେତେ କାଳ ପର୍ଯ୍ୟନ୍ତ ତୁମେ ସୌଭାଗ୍ୟବତୀ ହୋଇ ରୁହ ॥ ୧୧୭ ॥ ଚୌପାଈ :—ଏବଂ ପାର୍ବତୀଙ୍କ ପରି ଆପଣା ପତିଙ୍କ ପ୍ରିୟା ହୁଅ । ହେ ଦେବି ! ଆମପ୍ରତି ଦୟା ତ୍ୟାଗ କରିବ ନାହିଁ । (ଦୟା ରଖିଥିବ ।) ଆମେ ବାରମ୍ବାର ହାତଯୋଡ଼ି ପ୍ରାର୍ଥନା କରୁଅଛୁ —ତୁମେ ପୁଣି ଏହି ପଥ ଦେଇ ଯେବେ ଫେରିବ, ଆମ୍ଭମାନଙ୍କୁ ଆପଣା ଦାସୀ ମନେ କରି ଦର୍ଶନ ଦେବ ।” ସୀତା ସେ ସମସ୍ତଙ୍କୁ ପ୍ରେମ-ପିପାସୁ ଥିବାର ଜାଣି ପାରିଲେ ଏବଂ ମଧୁର ବଚନ କହି କହି ଭଲରୂପେ ସେମାନଙ୍କ ସନ୍ତୋଷବିଧାନ କଲେ । ଚନ୍ଦ୍ରିକା କୁମୁଦିନୀଗଣଙ୍କୁ ପରିପୁଷ୍ଟ କରିଦେଲା ଅବା ! ॥୧-୨॥ ସେହି ସମୟରେ ଶ୍ରୀରାମଚନ୍ଦ୍ରଙ୍କ ଅଭିପ୍ରାୟ ଜାଣିପାରି ଲକ୍ଷ୍ମଣ କୋମଳବାଣୀରେ ଲୋକମାନଙ୍କୁ ପଥ ପଚାରିଲେ । ଏହା ଶୁଣିବା ମାତ୍ରେ ସ୍ତ୍ରୀପୁରୁଷମାନେ ଦୁଃଖିତ ହୋଇପଡ଼ିଲେ । ସେମାନଙ୍କ ଶରୀର ପୁଲକିତ ହୋଇଗଲା ଏବଂ ନେତ୍ର (ବିରହ-ଜନିତ ସମ୍ଭାବନା ହେତୁ) ପ୍ରେମାଶ୍ରୁ ଜଳରେ ପରିପୂର୍ଣ୍ଣ ହୋଇଗଲା ॥ ୩ ॥ ସେମାନଙ୍କ ଆନନ୍ଦ ସରିଗଲା । ମନ ବିଷାଦରେ ଏପରି ମଳିନ ହୋଇଗଲା, ସତେ ଯେପରି ବିଧାତା ଦେଇଥିବା ଧନ ଛଡ଼ାଇ ନେଉଅଛି । କର୍ମର ଗତି ବୁଝି ସେମାନେ ଧୈର୍ଯ୍ୟ ଧାରଣ କଲେ ଏବଂ ଭଲରୂପେ ସ୍ଥିର କରି ସେମାନଙ୍କୁ ସୁଗମ ମାର୍ଗ କହିଦେଲେ ॥୪॥ ଦୋହା :— ତଦନନ୍ତର ଲକ୍ଷ୍ମଣ ଓ ଜାନକୀଙ୍କ ସହ ଶ୍ରୀ ରଘୁନାଥ ଅଗ୍ରସର ହେଲେ । ସେ ସମସ୍ତ

ନିପଟ ନିରଂକୁସ ନିଠୁର ନିସଂକୂ । ଜେହିଁ ସସି କୀହ୍ନ ସରୁଜ ସକଲଂକୂ ॥
ରୁଖ କଲପତରୁ ସାଗରୁ ଖାରା । ତେହିଁ ପଠଏ ବନ ରାଜକୁମାରା ॥୨॥
ଜୌଂ ପୈ ଇନ୍ହହି ଦୀହ୍ନ ବନବାସୂ । କୀହ୍ନ ବାଦି ବିଧି ଭୋଗ ବିଲାସୂ ॥
ଏ ବିଚରହିଁ ମଗ ବିନୁ ପଦତ୍ରାନା । ରଚେ ବାଦି ବିଧି ବାହନ ନାନା ॥୩॥
ଏ ମହି ପରହିଁ ଡାସି କୁସ ପାତା । ସୁଭଗ ସେଜ କତ ସୃଜତ ବିଧାତା ॥
ତରୁବର ବାସ ଇନ୍ହହି ବିଧି ଦୀହ୍ନା । ଧବଲ ଧାମ ରଚି ରଚି ଶ୍ରମୁ କୀହ୍ନା ॥୪॥

ଜୌଂ ଏ ମୁନି ପଟ ଧର ଜଟିଲ ସୁନ୍ଦର ସୁଠି ସୁକୁମାର ।
ବିବିଧ ଭାଁତି ଭୂଷନ ବସନ ବାଦି କିଏ କରତାର ॥୧୧୯॥

---

ନିତାନ୍ତ ସେ ନିରଙ୍କୁଶ ନିଷ୍ଠୁର ନିଃଶଙ୍କ । ଯେହୁ ଚନ୍ଦ୍ରମାଙ୍କୁ କଲା ରୋଗୀ ସକଳଙ୍କ ॥
କଳପତରୁକୁ ବୃକ୍ଷ, ସାଗରକୁ ଖାର । ସେହୁ ବନେ ପଠାଇଲା ମହୀପ-କୁମାର ॥୨॥
ଯେବେ ଏହାଙ୍କୁ ବିଧାତା ଦେଲା ବନବାସ । ବୃଥାରେ ସୃଷ୍ଟି କରିଲା ବୈଭବ ବିଳାସ ॥
ଏ ବିଚରିବେ ମହୀରେ ବିନୁ ପଦତ୍ରାଣ । ବୃଥା କିହୁ ବିରଚିଲା ବିବିଧ ବାହାନ ॥୩॥
ମହୀରେ ଶୋଇବେ କୁଶ ପତ୍ର ଏ ବିଛାଇ । ସୁନ୍ଦର ଶଯ୍ୟା ବିଧି ତା' ରଚିଲା କା ପାଇଁ ॥
ତରୁ ତଳେ ବାସ ଦେଇ ଏହାଙ୍କୁ ବିରଞ୍ଚି । ବୃଥା ଶ୍ରମ କଲା ସ୍ୱଚ୍ଛ ଅଟ୍ଟାଳିକା ରଚି ॥୪॥

ଯେବେ ଏ ସୁନ୍ଦର ମୃଦୁ ସୁକୁମାର ପିନ୍ଧିଲେ ବଲ୍‌କଲ ଜଟା ।
ବିବିଧ ବସନ ନାନା ବିଭୂଷଣ ବୃଥା ବିରଚିଲା ସ୍ରଷ୍ଟା ॥୧୧୯॥

---

ଲୋକଙ୍କୁ ପ୍ରିୟ ବଚନ କହି ଫେରାଇ ଦେଲେ । କିନ୍ତୁ ସେମାନଙ୍କ ମନକୁ ଆପଣା ସହିତ ନେଇ ଚାଲିଲେ ॥ ୧୧୮ ॥ ଚୌପାଇ :—ଫେରୁଥିବା ସମୟରେ ଉକ୍ତ ନରନାରୀ-ମାନେ ବହୁତ ଅନୁତାପ କରୁଥା'ନ୍ତି ଏବଂ ମନେ ମନେ ଦୈବକୁ ଦୋଷ ଦେଉଥାଆନ୍ତି । ପରସ୍ପର ଅତ୍ୟନ୍ତ ବିଷାଦରେ କୁହାକୁହି ହେଉଥାଆନ୍ତି—"ବିଧାତାଙ୍କ ସମସ୍ତ କାର୍ଯ୍ୟ (ବିଧାନ) ବିପରୀତ ॥ ୧ ॥ ସେ ବିଧାତା ଏକାବେଳକେ ନିରଙ୍କୁଶ, ନିର୍ଦ୍ଦୟ ଓ ନିର୍ଭୀକ । ସେ ଚନ୍ଦ୍ରମାକୁ ରୋଗୀ (କ୍ଷୟବୃଦ୍ଧିକାରୀ) ଓ କଳଙ୍କୀ କରି ଗଢିଲେ । କଳ୍ପତରୁକୁ ବୃକ୍ଷ ଓ ସମୁଦ୍ରକୁ ଲବଣାକ୍ତ କରି ଗଢିଲେ । ସେହି ଏପରି ରାଜକୁମାର ଦୁହିଙ୍କୁ ବନକୁ ପଠାଇ ଅଛନ୍ତି ॥ ୨ ॥ ଯେତେବେଳେ ବିଧାତା ଏମାନଙ୍କୁ ବନବାସ ଦେଇଅଛନ୍ତି, ତାଙ୍କର ଭୋଗ-ବିଳାସ-ସୃଷ୍ଟି ସବୁ ବୃଥା । ଏମାନେ ବିନା ଯୋତାରେ ପଥରେ ପାଦରେ ଚାଲି ଚାଲି ଯାଉଅଛନ୍ତି । ବିଧାତା ବୃଥାରେ ଅନେକ ବାହନ ଗଢିଲେ ! ॥୩॥ ଏମାନେ କୁଶ ଓ ପତ୍ର ବିଛାଇ ଭୂମି ଉପରେ ପଡି ରହୁଛନ୍ତି । ତେବେ ବିଧାତା କାହିଁ-ପାଇଁ ସୁନ୍ଦର ଶଯ୍ୟା ତିଆରି କରନ୍ତି ? ସେ ଏମାନଙ୍କୁ ବଡ ବଡ ଗଛ ତଳେ ବାସ ଦେଲେ । ତେବେ ଉଜ୍ଜ୍ୱଳ ପ୍ରାସାଦ ନିର୍ମାଣ କରି ସେ ବୃଥା ପରିଶ୍ରମ କଲେ କିନା ! ॥୪॥ ଦୋହା :—ଏମାନେ ସୁନ୍ଦର ଓ ଅତି ସୁକୁମାର ହୋଇ ମୁନିଯୋଗ୍ୟ ବଲ୍‌କଲ ବସ୍ତ୍ର ପିନ୍ଧିଅଛନ୍ତି ଏବଂ ଜଟା ଧାରଣ କରିଅଛନ୍ତି । ତେବେ ସୃଷ୍ଟିକର୍ତ୍ତା ବିଧାତା ବିବିଧ ଭୂଷଣ

ଜୌଁ ଏ କଂଦ ମୂଲ ଫଲ ଖାହୀଂ । ବାଦି ସୁଧାଦି ଅସନ ଜଗ ମାହୀଂ ॥
ଏକ କହହିଁ ଏ ସହଜ ସୁହାଏ । ଆପୁ ପ୍ରଗଟ ଭଏ ବିଧି ନ ବନାଏ ॥୧॥
ଜହଁ ଲଗି ବେଦ କହୀ ବିଧି କରନୀ । ଶ୍ରବନ ନୟନ ମନ ଗୋଚର ବରନୀ ॥
ଦେଖହୁ ଖୋଜି ଭୁଅନ ଦସ ଚାରୀ । କହଁ ଅସ ପୁରୁଷ କହାଁ ଅସି ନାରୀ ॥୨॥
ଇନ୍ହହି ଦେଖି ବିଧି ମନୁ ଅନୁରାଗା । ପଟତର ଜୋଗ ବନାଵୈ ଲାଗା ॥
କୀନ୍ହ ବହୁତ ଶ୍ରମ ଐକ ନ ଆଏ । ତେହିଁ ଇରଷା ବନ ଆନି ଦୁରାଏ ॥୩॥
ଏକ କହହିଁ ହମ ବହୁତ ନ ଜାନହିଁ । ଆପୁହି ପରମ ଧନ୍ୟ କରି ମାନହିଁ ॥
ତେ ପୁନି ପୁନ୍ୟପୁଞ୍ଜ ହମ ଲେଖେ । ଜେ ଦେଖହିଁ ଦେଖିହହିଁ ଜିନ୍ହ ଦେଖେ ॥୪॥

ଏହି ବିଧି କହି କହି ବଚନ ପ୍ରିୟ ଲେହିଁ ନୟନ ଭରି ନୀର ।
କିମି ଚଲିହହିଁ ମାରଗ ଅଗମ ସୁଠି ସୁକୁମାର ସରୀର ॥୧୨୦॥

---

ଯେବେ ଏ ବଞ୍ଚିବେ କନ୍ଦମୂଳ ଫଳାହାରେ । ସୁଧାଦି ଅଶନ ତିନା ବ୍ୟର୍ଥ ବସୁଧାରେ ॥
ଅନ୍ୟ କେହି କହେ ଏହୁ ସହଜେ ସୁନ୍ଦର । ଆପଣେ ପ୍ରକଟ, ରଚି ନାହିଁ ବେଦବର ॥୧॥
ଯେ ପର୍ଯ୍ୟନ୍ତ ବିଧି ସୃଷ୍ଟି, ବେଦ ବଖାଣଇ । ଶ୍ରବଣ-ନୟନ-ମନ-ଗୋଚର ଅଟଇ ॥
ଚଉଦ ଭୁବନ ମଧ୍ୟେ ଦେଖ ଖୋଜିକରି । କାହିଁ ଏମନ୍ତ ପୁରୁଷ, ରମଣୀ ଏପରି ॥୨॥
ଏହାଙ୍କୁ ବିଲୋକି ମନ ଆନନ୍ଦେ ବିରଞ୍ଚି । ପଟାନ୍ତର ଉପଯୁକ୍ତ ଲାଗିଲା ବିରଚି ॥
କଲେହେଁ ବହୁତ ଶ୍ରମ ପାସଙ୍ଗ ନୋହିଲା । ତେଣୁ ଈର୍ଷ୍ୟାବଶ ଆଣି ବନେ ଲୁଚାଇଲା ॥୩॥
କେହି କହଇ, ଅଧିକ ମୁହିଁ ନ ଜାଣଇ । ପରମ ଧନ୍ୟ ବୋଲିଣ ନିଜକୁ ମଣଇ ॥
ମୋ ଜାଣିବାରେ ସେ ଅତି ପୁଣ୍ୟାତ୍ମା ଅଟନ୍ତି । ଯେ ଦେଖିବ, ଦେଖୁଛନ୍ତି, ଦେଖି ବା ଅଛନ୍ତି ॥୪॥

କହୁଣ ଏସନ ପ୍ରିୟ ସୁବଚନ ନୟନୁ ବୁହାନ୍ତି ନୀର ।
ଚାଲିବେ କେମନ୍ତେ ଦୁର୍ଗମ ଏ ପଥେ ମୃଦୁ ମଞ୍ଜୁଳ ଶରୀର ॥୧୨୦॥

---

ଓ ବସ୍ତୁ ବୃଥାଟାରେ ସର୍ଜନା କଲେ ॥୧୧୯॥ ଚୌପାଇ :—ଏମାନେ କନ୍ଦ, ମୂଳ ଓ ଫଳ ଖାଉଅଛନ୍ତି । ତେବେ ଜଗତରେ ଅମୃତ ଆଦି ଭୋଜନର ସୃଷ୍ଟି ବ୍ୟର୍ଥ ।" କେହି ଜଣେ କହୁଥାଏ, "ଏ ସହଜସୁନ୍ଦର ଓ ସ୍ୱତଃପ୍ରକାଶିତ, ବିଧି-ସୃଷ୍ଟ ନୁହନ୍ତି ॥ ୧ ॥ ଆମର ଶ୍ରବଣ-ନୟନ-ମନ-ଗୋଚର ବିଧାତାର ଯେତେ କୃତିତ୍ୱ ବେଦଗଣରେ ବର୍ଣ୍ଣିତ, ସେ ସବୁକୁ ଚଉଦ ଭୁବନରେ ଖୋଜ, ଦେଖ, ଏପରି ପୁରୁଷ ଓ ନାରୀ କେଉଁଠି ଅଛନ୍ତି ? ॥ ୨ ॥ ଏମାନଙ୍କୁ ଦେଖି ବିଧାତାଙ୍କ ମନ ଅନୁରକ୍ତ ହୋଇଗଲା । ତେଣୁ ସେ ଏମାନଙ୍କ ଉପମାଯୋଗ୍ୟ ଦ୍ୱିତୀୟ ସ୍ତ୍ରୀ-ପୁରୁଷ ନିର୍ମାଣ କରିବାକୁ ଲାଗିଲେ । ସେ ବହୁତ ପରିଶ୍ରମ କଲେ । କିନ୍ତୁ ତାଙ୍କ ଅଟକଳରେ କେହି ଗୋଟିଏ ହେଲେ ଠିକ୍ ହୋଇ ଗଢି ହେଲାନାହିଁ । ଏହି ଈର୍ଷ୍ୟା ହେତୁ ସେ ଏମାନଙ୍କୁ ଜଙ୍ଗଲକୁ ଆଣି ଲୁଚାଇ ଦେଇଛି ।" ॥ ୩ ॥ କେହି କେହି କହୁଥାଆନ୍ତି, "ଆମ୍ଭେମାନେ ବହୁତ ଜାଣିନାହୁଁ, ସତ । କିନ୍ତୁ ଆମ୍ଭେ ଯେଉଁମାନେ ଏମାନଙ୍କ ଦର୍ଶନ ଲାଭ କରୁଥାଉଁ, ନିଜ ନିଜକୁ ପରମ

ନାରି ସନେହ ବିକଲ ବସ ହୋହୀଂ । ଚକଈଂ ସାଁଝ ସମୟ ଜନୁ ସୋହୀଂ ॥
ମୃଦୁ ପଦ କମଲ କଠିନ ମଗୁ ଜାନୀ । ଗହବରି ହୃଦୟଁ କହହିଁ ବର ବାନୀ ॥୧॥
ପରସତ ମୃଦୁଲ ଚରନ ଅରୁନାରେ । ସକୁଚତି ମହି ଜିମି ହୃଦୟ ହମାରେ ॥
ଜୌଂ ଜଗଦୀସ ଇନ୍ହହି ବନୁ ଦୀହ୍ନା । କସ ନ ସୁମନମୟ ମାରଗୁ କୀହ୍ନା ॥୨॥
ଜୌଂ ମାଗା ପାଇଅ ବିଧି ପାହୀଂ । ଏ ରଖିଅହିଁ ସଖି ଆଁଖିହ୍ନ ମାହୀଂ ॥
ଜେ ନର ନାରି ନ ଅବସର ଆଏ । ତିହ୍ନ ସିୟ ରାମୁ ନ ଦେଖନ ପାଏ ॥୩॥
ସୁନି ସୁରୂପୁ ବୂଝହିଁ ଅକୁଲାଈ । ଅବ ଲଗି ଗଏ କହାଁ ଲଗି ଭାଈ ॥
ସମରଥ ଧାଇ ବିଲୋକହିଂ ଜାଈ । ପ୍ରମୁଦିତ ଫିରହିଂ ଜନମଫଲୁ ପାଈ ॥୪॥

---

ହୁଅନ୍ତି ନାରୀ ବିକଳ ଅତି ସ୍ନେହବଶ । ସନ୍ଧ୍ୟା ସମୟେ ଦୁଃଖିତ ଚକୋରୀ ସଦୃଶ ॥
କଠିନ ମାର୍ଗ ମୃଦୁଳ ପଦ-କଞ୍ଜ ଜାଣି । ଗଦ୍‌ଗଦ ହୃଦେ କହନ୍ତି ମନୋହର ବାଣୀ ॥୧॥
ସ୍ପର୍ଶ କରଣ ଅରୁଣ ମୃଦୁଳ ପଦ୍ମର । ସଙ୍କୋଚଇ ମହୀ ଯେସନ୍ତେ ହୃଦୟ ଆମ୍ଭର ॥
ଯେବେ ଜଗଦୀଶ ଦେଲା ଏହାଙ୍କୁ କାନନ । ସୁମନମୟ ମାରଗ ନ କଲା କେସନ ॥୨॥
ଯେବେ ବିଧିଠାରୁ ମନ ଇଚ୍ଛିତ ଲଭନ୍ତି । ନୟନ ମଧ୍ୟରେ ସଖି, ଏହାଙ୍କୁ ରଖନ୍ତି ॥
ସେ ସମୟେ ଯେଉଁ ନର ନାରୀ ନ ଆସିଲେ । ସେମାନେ ରାମ ସୀତାଙ୍କୁ ଦେଖି ନ ପାରିଲେ॥୩॥
ସ୍ୱରୂପ ଶୁଣି ଆକୁଳେ ପଚାରନ୍ତି, ଭାଇ । କେଉଁଠାରେ ହୋଇଥିବେ ଏ ପର୍ଯ୍ୟନ୍ତ ଯାଇ ॥
ସମର୍ଥ ପୁରୁଷ ଧାଇଁ ଦେଖନ୍ତି ଚଞ୍ଚଳ । ପ୍ରସନ୍ନ ମନେ ଫେରନ୍ତି ପାଇ ଜନ୍ମ ଫଳ ॥୪॥

---

ଧନ୍ୟ ଅବଶ୍ୟ ମନେ କରୁଅଛୁ । ଆମ୍ଭମାନଙ୍କ ବିଚାରରେ ଯେଉଁମାନେ ଏମାନଙ୍କୁ ଦେଖି-ଅଛନ୍ତି, ଦେଖୁଅଛନ୍ତି ଏବଂ ଯେଉଁମାନେ ଦେଖିବେ, ସେମାନେ ବଡ଼ ପୁଣ୍ୟବାନ୍ ॥ ୪ ॥ ଦୋହା :—ଏହିପରି ପ୍ରିୟ ବଚନ କହି ସମସ୍ତେ ନେତ୍ର ପ୍ରେମାଶ୍ରୁ ଜଳରେ ପରିପୂର୍ଣ୍ଣ କରୁଥା'ନ୍ତି ଏବଂ କହୁଥା'ନ୍ତି, "ଏହି ଅତି ସୁକୁମାରଶରୀର ପୁରୁଷ-ସ୍ତ୍ରୀ ଦୁର୍ଗମ ମାର୍ଗରେ କିପରି ଚାଲିବେ ?" ॥ ୧୨୦ ॥ ଚୌପାଈ :—ସ୍ତ୍ରୀମାନେ ସ୍ନେହବଶତଃ ବିକଳ ହୋଇ ପଡ଼ୁଥା'ନ୍ତି । ସତେ ଅବା ସନ୍ଧ୍ୟା ସମୟରେ ଚକ୍ରବାକୀ ଭାବୀ ବିରହ-ପୀଡ଼ାରେ ଆତୁର ! ଏମାନଙ୍କ ଚରଣ-କମଳ କୋମଳ ଏବଂ ମାର୍ଗ କଠୋର, ଏହା ଅନୁଭବ କରି ସେମାନେ ବ୍ୟଥିତହୃଦୟରେ ଉତ୍ତମ ବଚନ ବୋଲୁଥା'ନ୍ତି— ॥ ୧ ॥ "ଏମାନଙ୍କ କୋମଳ ଓ ଅରୁଣ ଚରଣ ତଳର ସ୍ପର୍ଶ ମାତ୍ରେ ପୃଥିବୀ ଆମ୍ଭମାନଙ୍କ ହୃଦୟ ପରି ସଙ୍କୁଚିତ ହୋଇଯାଉଛି । ଜଗଦୀଶ୍ୱର ଯଦି ଏମାନଙ୍କୁ ବନବାସ ଦେଲେ, ତେବେ ସମ୍ପୂର୍ଣ୍ଣ ମାର୍ଗକୁ ପୁଷ୍ପମୟ କାହିଁକି କଲେନାହିଁ ? ॥ ୨ ॥ ହେ ସଖି ! ଯଦି ବ୍ରହ୍ମାଙ୍କୁ ମାଗିଲେ ଆମର ଅଭିଳଷିତ ବସ୍ତୁ ମିଳନ୍ତା, ତେବେ ଆମ୍ଭେମାନେ ଏମାନଙ୍କୁ ଆପଣା ନେତ୍ର ମଧ୍ୟରେ ରଖିନିଅନ୍ତେ ।" ଏହି ଅବସରରେ ଯେଉଁ ସ୍ତ୍ରୀ-ପୁରୁଷ ଆସି ନ ଥିଲେ, ସେମାନେ ଶ୍ରୀସୀତାରାମଙ୍କୁ ଦେଖି ପାରିଲେ ନାହିଁ ॥ ୩ ॥ ସେମାନଙ୍କ ସୌନ୍ଦର୍ଯ୍ୟ ବିଷୟ ଶୁଣି ସେମାନେ ବ୍ୟାକୁଳ ହୋଇ ପଚାରୁଥା'ନ୍ତି, "ହେ ଭାଇ ! ଏତେବେଳକୁ କେତେ ବାଟ

ଅବଲା ବାଲକ ବୃଦ୍ଧ ଜନ କର ମୀଜହିଁ ପଛିତାହିଁ ।
ହୋହିଁ ପ୍ରେମବସ ଲୋଗ ଇମି ରାମୁ ଜହାଁ ଜହଁ ଜାହିଁ ॥୧୨୧॥

ଗାଉଁ ଗାଉଁ ଅସ ହୋଇ ଅନଂଦୂ । ଦେଖି ଭାନୁକୁଲ କୈରବ ଚଂଦୂ ॥
ଜେ କଛୁ ସମାଚାର ସୁନ ପାଉହିଁ । ତେ ନୃପ ରାନିହି ଦୋସୁ ଲଗାଉହିଁ ॥୧॥
କହହିଁ ଏକ ଅତି ଭଲ ନରନାହୂ । ଦୀନ୍ହ ହମହି ଜୋଇ ଲୋଚନ ଲାହୂ ॥
କହହିଁ ପରସପର ଲୋଗ ଲୋଗାଈ । ବାତେଁ ସରଲ ସନେହ ସୁହାଈ ॥୨॥
ତେ ପିତୁ ମାତୁ ଧନ୍ୟ ଜିନ୍ହ ଜାଏ । ଧନ୍ୟ ସୋ ନଗରୁ ଜହାଁ ତେଁ ଆଏ ॥
ଧନ୍ୟ ସୋ ଦେସୁ ସୈଲୁ ବନ ଗାଊଁ । ଜହଁ ଜହଁ ଜାହିଁ ଧନ୍ୟ ସୋଇ ଠାଊଁ ॥୩॥
ସୁଖୁ ପାୟଉ ବିରଂଚି ରଚି ତେହୀ । ଏ ଜେହି କେ ସବ ଭାଁତି ସନେହୀ ॥
ରାମ ଲଖନ ପଥି କଥା ସୁହାଈ । ରହୀ ସକଲ ମଗ କାନନ ଛାଈ ॥୪॥

---

ଦର୍ଶନେ ଅକ୍ଷମ ବାଳ ବୃଦ୍ଧ ନାରୀ ସନ୍ତାପନ୍ତି ମଳି କର ।
ଯହିଁ ଯହିଁ ରାମ ଯାଆନ୍ତି ଏସନ ପ୍ରେମବଶ ହୋନ୍ତି ନର ॥୧୨୧॥

ପ୍ରତି ଗ୍ରାମେ ଏହିପରି ହୁଅଇ ଆନନ୍ଦ । ଦେଖି ଦିନକର-କୁଳ-କଇରବ-ଚନ୍ଦ୍ର ॥
ବନବାସ ସମାଚାର ଯେ ଶୁଣି ପାରନ୍ତି । ସେ ରାଜା ରାଣୀ ଉପରେ ଦୋଷ ଆରୋପନ୍ତି ॥୧॥
କେ କହଇ, ଅତି ଭଲ କୋଶଳ ନରେଶ । ଦେଲେ ଯେ ନୟନଲାଭ ଆମ୍ଭଙ୍କୁ ବିଶେଷ ॥
କହନ୍ତି ନାରୀ ପୁରୁଷ ମିଳି ପରସ୍ପର । ସକଳ ସ୍ନେହ-ପୂରିତ ବାର୍ତ୍ତା ମନୋହର ॥୨॥
ଧନ୍ୟ ସେ ମାତା ପିତୃର ଜନ୍ମ ଯେ କରାଲେ । ଧନ୍ୟ ସେ ନଗର ଯେଉଁଠାରୁ ଆଗମିଲେ ॥
ଧନ୍ୟ ସେ ଦେଶ ଶଇଲ ପୁର ଗ୍ରାମ ବନ । ଧନ୍ୟ ସେହି ସ୍ଥାନ ଯହିଁ କରନ୍ତି ଗମନ ॥୩॥
ଲଭିଲେ ସୁଖ ବିରଞ୍ଚି ବିରଚି ତାହାଙ୍କୁ । ସମସ୍ତ ପ୍ରକାର ବଡ ସ୍ନେହୀ ଏ ଯାହାଙ୍କୁ ॥
ରାମ ଲକ୍ଷ୍ମଣ ପଥିକ କଥା ମନୋହର । ପୂରି ରହିଲା କାନନ ମାର୍ଗରେ ନିକର ॥୪॥

---

ଯିବେଣି ?” ଯେଉଁମାନେ ସମର୍ଥ, ସେମାନେ ଧାଇଁ ଧାଇଁ ଯାଇ ସେମାନଙ୍କୁ ଦର୍ଶନ କରୁଥାଆନ୍ତି ଏବଂ ଜନ୍ମର ପରମ ଫଳ ପାଇ ବିଶେଷ ଆନନ୍ଦିତ ହୋଇ ଫେରୁଥାଆନ୍ତି ॥ ୪ ॥ ଦୋହା '—ଯେଉଁ ଅବଳା ନାରୀ, ବାଳକ ଓ ବୃଦ୍ଧମାନେ ଦର୍ଶନ ପାଇପାରୁ ନ ଥା'ନ୍ତି, ସେମାନେ ଅନୁତାପ କରୁଥା'ନ୍ତି । ଏହିରୂପେ ଯେଉଁ ଯେଉଁ ଗ୍ରାମର ସମୀପବର୍ତ୍ତୀ ମାର୍ଗ ଦେଇ ଶ୍ରୀରାମଚନ୍ଦ୍ର ଯାଉଥା'ନ୍ତି, ସେହି ସେହି ସ୍ଥାନର ଲୋକମାନେ ପ୍ରେମରେ ବଶୀଭୂତ ହୋ'ଇ ପଡୁଥା'ନ୍ତି ॥୧୨୧॥ ଚୌପାଇ '—ସୂର୍ଯ୍ୟକୁଳ-କୁମୁଦ-ବନର ଆନନ୍ଦଦାୟକ ଚନ୍ଦ୍ରମାସ୍ୱରୂପ ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନ-ଲାଭରେ ପ୍ରତ୍ୟେକ ଗ୍ରାମରେ ଏହିପରି ଆନନ୍ଦର ଲହରୀ ଖେଳିଯାଉଥାଏ । ଯେଉଁ ଲୋକମାନେ ବନବାସ-ଦଣ୍ଡର ସମାଚାର ଶୁଣୁଥାଆନ୍ତି, ସେମାନେ ରାଜାରାଣୀ (ଦଶରଥ ଓ କୈକେୟୀ)ଙ୍କୁ ଦୋଷ ଦେଉଥାଆନ୍ତି ॥୧॥ କେହି କେହି କହୁଥା'ନ୍ତି, "ରାଜା ଅତି ଉତ୍ତମ, ସେ ଆମ୍ଭମାନଙ୍କୁ ଆମ ନୟନର ଲାଭ (ଫଳ) ଦେଲେ ।" ସ୍ତ୍ରୀ-ପୁରୁଷମାନେ ସମସ୍ତେ ପରସ୍ପର ମଧ୍ୟରେ ସରଳ,

ଏହି ବିଧି ରଘୁକୁଲ କମଲ ରବି ମଗ ଲୋଗନ୍ହ ସୁଖ ଦେତ ।
ଜାହିଁ ଚଲେ ଦେଖତ ବିପିନ ସିୟ ସୌମିତ୍ରି ସମେତ ॥୧୨୨॥

ଆଗେଁ ରାମୁ ଲଖନୁ ବନେ ପାଛେଁ । ତାପସ ବେଷ ବିରାଜତ କାଛେଁ ॥
ଉଭୟ ବୀଚ ସିୟ ସୋହତି କୈସେଁ । ବ୍ରହ୍ମ ଜୀବ ବିଚ ମାୟା ଜୈସେଁ ॥୧॥
ବହୁରି କହଉଁ ଛବି ଜସି ମନ ବସଈ । ଜନୁ ମଧୁ ମଦନ ମଧ୍ୟ ରତି ଲସଈ ॥
ଉପମା ବହୁରି କହଉଁ ଜିୟଁ ଜୋହୀ । ଜନୁ ବୁଧ ବିଧୁ ବିଚ ରୋହିନି ସୋହୀ ॥୨॥
ପ୍ରଭୁ ପଦ ରେଖ ବୀଚ ବିଚ ସୀତା । ଧରତି ଚରନ ମଗ ଚଲତି ସଭୀତା ॥
ସୀୟ ରାମ ପଦ ଅଂକ ବରାଏଁ । ଲଖନ ଚଲହିଁ ମଗୁ ଦାହିନ ଲାଏଁ ॥୩॥

---

ଏହି ଭାବେ ରବି-କୁଳ-କଞ୍ଜ-ରବି ସୁଖୀ କରି ପଥବାସୀ ।
ସୀତା ସଉମିତ୍ରି ସହ ଚାଲି ଯାନ୍ତି ଦେଖି ବନ ଶୋଭା-ରାଶି ॥୧୨୨॥

ଆଗେ ରଘୁନାଥ ପଛେ ଲକ୍ଷ୍ମଣ ଆଦର । ତାପସ ବେଶ ରଚଣ ସାଜନ୍ତି ସୁନ୍ଦର ॥
ଉଭୟଙ୍କ ମଧ୍ୟେ ସୀତା ଶୋଭନ୍ତି ଯେମନ୍ତେ । ବ୍ରହ୍ମ ଜୀବ ମଧ୍ୟେ ମାୟା ଶୋଭଇ ଯେମନ୍ତେ ॥୧॥
ପୁଣି କହେ ଛବି ଯେସନ୍ତେ ମନକୁ ଆସଇ । ମଦନ ମଧୁ ମଧ୍ୟେ ବା ରତି ବିଲସଇ ॥
ଉପମା ପୁନଶ୍ଚ ହୃଦେ ବିଚାରଣେ ଭାଷେ । ବିଧୁ ବୁଧ ମଧ୍ୟେ ଅବା ରୋହଣୀ ପ୍ରକାଶେ ॥୨॥
ପ୍ରଭୁଙ୍କ ଚରଣ ରେଖା ମଧ୍ୟେ ମଧ୍ୟେ ସୀତା । ପଦ୍ମର ପକାଇ ମାର୍ଗ ଚାଲନ୍ତି ସଭୀତା ॥
ସୀତା ରଘୁପତି ପଦ ଚିହ୍ନ ନିବାରଣ । ଲକ୍ଷ୍ମଣ ଚାଲନ୍ତି ପଥ ଡାହାଣ କରଣ ॥୩॥

---

ସ୍ନେହପୂର୍ଣ୍ଣ ଓ ସୁନ୍ଦର କଥାବାର୍ତ୍ତା କରୁଥାଆନ୍ତି ॥ ୨ ॥ କହୁଥାଆନ୍ତି, "ସେ ମାତାପିତା ଧନ୍ୟ, ଯେଉଁମାନେ ଏହାଙ୍କୁ ଜନ୍ମ ଦେଇଅଛନ୍ତି । ଯେଉଁଠାରୁ ଏମାନେ ଆସିଅଛନ୍ତି, ସେହି ନଗର ଧନ୍ୟ । ଯେଉଁ ଯେଉଁ ଦେଶ, ପର୍ବତ, ବନ ଓ ଗ୍ରାମ ଆଦି ସ୍ଥାନ ମଧ୍ୟ ଦେଇ ଏମାନେ ଯାଉଅଛନ୍ତି, ସେମାନେ ସମସ୍ତେ ଧନ୍ୟ ॥୩॥ ଯାହାପ୍ରତି ଏ ଶ୍ରୀରାମଚନ୍ଦ୍ର ସବୁପ୍ରକାରେ ସ୍ନେହୀ, ବ୍ରହ୍ମା ତାହାକୁ ଗଢି ସୁଖ ଲାଭ କରିଅଛନ୍ତି ।" ପଥିକବେଶୀ ଶ୍ରୀରାମଲକ୍ଷ୍ମଣଙ୍କ ସୁନ୍ଦର କଥା ସମସ୍ତ ମାର୍ଗ ଓ ଜଙ୍ଗଲରେ ବ୍ୟାପିଯାଇଥାଏ ॥ ୪ ॥ ଦୋହା :—ରଘୁକୁଳ-କମଳ-ରବି ଶ୍ରୀରାମଚନ୍ଦ୍ର ଏହି ରୂପେ ପଥଗାମୀ ଲୋକମାନଙ୍କୁ ସୁଖ ଦେଇ ସୀତା ଓ ଲକ୍ଷ୍ମଣଙ୍କ ସହିତ ବନ ଦେଖି ଅଗ୍ରସର ହେଉଥାଆନ୍ତି ॥ ୧୨୨ ॥ ଚୌପାଈ :— ଆଗରେ ଶ୍ରୀରାମ ଓ ପଛରେ ଲକ୍ଷ୍ମଣ ସୁଶୋଭିତ । ତପସ୍ୱୀ ବେଶରେ ଦୁହେଁ ବଡ଼ ଶୋଭା ପାଉଥାଆନ୍ତି । ଉଭୟଙ୍କ ମଧ୍ୟରେ ବ୍ରହ୍ମ ଓ ଜୀବ ମଧ୍ୟରେ ମାୟା ପରି ସୀତା ସୁଶୋଭିତା ! ॥ ୧ ॥ ପୁଣି ମୋ ମନରେ ଯେଉଁ ଛବି ଅଙ୍କିତ ହୋଇଯାଉଛି, ତାହା କହୁଛି—ବସନ୍ତ ଋତୁ ଓ କାମଦେବଙ୍କ ମଧ୍ୟରେ ରତି ଶୋଭା ପାଉଅଛନ୍ତି କି ! ପୁଣି ନିଜ ହୃଦୟ ମଧ୍ୟରେ ଖୋଜି ଉପମାଟିଏ କହୁଛି—ବୁଧ (ଚନ୍ଦ୍ରଙ୍କ ପୁତ୍ର) ଓ ଚନ୍ଦ୍ରମାଙ୍କ ମଧ୍ୟରେ ରୋହଣୀ ସୁଶୋଭିତା କି ! ॥ ୨ ॥ ସୀତା ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଚରଣାଙ୍କିତ ଚିହ୍ନ ଦ୍ୱୟ ମଧ୍ୟେ ମଧ୍ୟେ ପାଦ ପକାଇ ଚାଲୁଥା'ନ୍ତି । କାଳେ ପ୍ରଭୁଙ୍କ ଚରଣ ଚିହ୍ନ ଉପରେ

ରାମ ଲଖନ ସିୟ ପ୍ରୀତି ସୁହାଈ । ବଚନ ଅଗୋଚର କିମି କହି ଜାଈ ॥
ଖଗ ମୃଗ ମଗନ ଦେଖି ଛବି ହୋହୀଁ । ଲିଏ ଚୋରି ଚିତ ରାମ ବଟୋହୀଁ ॥୪॥

ଜିନ୍ହ ଜିନ୍ହ ଦେଖେ ପଥିକ ପ୍ରିୟ ସିୟ ସମେତ ଦୋଉ ଭାଇ ।
ଭବ ମଗୁ ଅଗମୁ ଅନଂଦୁ ତେଇ ବିନୁ ଶ୍ରମ ରହେ ସିରାଇ ॥୧୨୩॥

ଅଜହୁଁ ଜାସୁ ଉର ସପନେହୁଁ କାଊ । ବସହୁଁ ଲଖନୁ ସିୟ ରାମୁ ବଟାଊ ॥
ରାମ ଧାମ ପଥ ପାଇହି ସୋଈ । ଜୋ ପଥ ପାଵ କବହୁଁ ମୁନି କୋଈ ॥୧॥
ତବ ରଘୁବୀର ଶ୍ରମିତ ସିୟ ଜାନୀ । ଦେଖି ନିକଟ ବଟୁ ସୀତଲ ପାନୀ ॥
ତହଁ ବସି କଂଦ ମୂଲ ଫଲ ଖାଈ । ପ୍ରାତ ନହାଇ ଚଲେ ରଘୁରାଈ ॥୨॥

---

ରାମ ଲକ୍ଷ୍ମଣ ସୀତାଙ୍କ ପ୍ରୀତି ମନୋହର । ବର୍ଣ୍ଣିବ ହେବ କେମନ୍ତେ, ବାଣୀଅଗୋଚର ॥
ରୂପ ଦେଖି ଖଗ ମୃଗ ହୁଅନ୍ତି ମୋହିତ । ଶ୍ରୀରାମ ବାଟୋଇ ଚୋରି କରନେଲେ ଚିତ୍ତ ॥୪॥

ବେନି ଭାଇ ପ୍ରିୟ ପଥିକ ଦ୍ୱୟଙ୍କୁ ସୀତା ସହ ଯେ ଦେଖିଲେ ।
ମହାନନ୍ଦେ ଭବ ଅଗମ୍ୟ ମାର୍ଗ ସେ ଶ୍ରମ ବିନା ସମାପିଲେ ॥୧୨୩॥

ଏବେ ମଧ୍ୟ ଜଳେ ହୋନ୍ତି ଯେବେ କା'ହୃଦରେ । ବାଟୋଇ ରାମ ଲକ୍ଷ୍ମଣ ସୀତା ସ୍ୱପନରେ ॥
ରାମ–ଧାମ–ପଥ ପ୍ରାପ୍ତ କରେ ସେ ତୁରିତ । ଯେ ପଥ କୌଣସି ମୁନି ଲଭେ କଦାଚିତ ॥୧॥
ତହୁଁ ରଘୁବୀର ସୀତା ଶ୍ରମକ୍ଳାନ୍ତ ଜାଣି । ବିଲୋକି ନିକଟେ ବଟ ସୁଶୀତଳ ପାଣି ॥
ତହିଁ କନ୍ଦମୂଳ ଫଳ ବସିଣ ଭୁଞ୍ଜିଲେ । ପ୍ରାତଃ ସ୍ନାନ କରି ରାମ ପ୍ରସ୍ଥାଣ କରିଲେ ॥୨॥

---

ପାଦ ପଡ଼ିଯିବ, ସେଥି ନିମନ୍ତେ ଡରି ଡରି ସେ ପଥରେ ପାଦ ପକାଉଥା'ନ୍ତି । ଲକ୍ଷ୍ମଣ, ସୀତା ଓ ଶ୍ରୀରାମ ଉଭୟଙ୍କ ଚରଣ ଚିହ୍ନକୁ ଡାହାଣ କଡେ ବଞ୍ଚାଇ ପଥରେ ଅଗ୍ରସର ହେଉଥା'ନ୍ତି ॥ ୩ ॥ ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କ ସୁନ୍ଦର ପ୍ରୀତି ଅନିର୍ବଚନୀୟ । ଅତଏବ ତାହା କିପରି କୁହ ଯାଇ ପାରିବ ? ପକ୍ଷୀ ଓ ପଶୁମାନେ ମଧ୍ୟ ସେହି ଛବିକୁ ଦେଖି ପ୍ରେମାନନ୍ଦମଗ୍ନ ହୋଇ ପଡ଼ୁଥା'ନ୍ତି । ପଥିକରୂପୀ ଶ୍ରୀରାମ ସେମାନଙ୍କ ଚିତ୍ତ ମଧ୍ୟ ହରଣ କରି ନେଇଥାଆନ୍ତି ॥ ୪ ॥ ଦୋହା :—ସୀତାଙ୍କ ସହ ଦୁଇ ଭାଇଙ୍କୁ ପ୍ରିୟ ପଥିକ ବେଶରେ ଯେଉଁମାନେ ଦେଖିଲେ, ସେମାନେ ଅନାୟାସରେ, ଆନନ୍ଦରେ ସଂସାରର ଅଗମ୍ୟ ମାର୍ଗ ପାର ହେବା ନିମନ୍ତେ ଉପାୟ ଲାଭ କରିପାରିଲେ । ଅର୍ଥାତ୍ ଜନ୍ମମରଣ-ଚକ୍ରରୁ ଅନାୟାସରେ ସେମାନେ ମୁକ୍ତିଲାଭ କଲେ ॥ ୧୨୩ ॥ ଚୌପାଈ :—ଆଜି ମଧ୍ୟ ଯାହାର ହୃଦୟରେ ସ୍ୱପ୍ନରେ ସୁଦ୍ଧା କେବେ ଲକ୍ଷ୍ମଣ, ସୀତା ଓ ରାମ–ଏହି ତିନି ପଥିକ ଆସି ବସନ୍ତି, ତେବେ ସେହି ବ୍ୟକ୍ତି ମୁନିଜନ-ଦୁର୍ଲ୍ଲଭ ଶ୍ରୀରାମଙ୍କ ପରମଧାମର ମାର୍ଗ ପାଇପାରେ ॥୧॥ ତଦନନ୍ତର ଶ୍ରୀରାମ ସୀତା କ୍ଳାନ୍ତ ହୋଇ ପଡ଼ିଅଛନ୍ତି ବୋଲି ଅନୁଭବ କଲେ । ନିକଟରେ ଗୋଟିଏ ବରଗଛ ଓ ଥଣ୍ଡା ପାଣି ଥିବାର ଦେଖି ସେମାନେ ସେଦିନ ସେହିଠାରେ ରହିଲେ । କନ୍ଦ, ମୂଳ ଓ ଫଳ ଖାଇ ରାତି ସେହିଠାରେ କଟାଇଲେ ଏବଂ ପରଦିନ ପ୍ରାତଃ କାଳରେ ସ୍ନାନ ପରେ ଶ୍ରୀ ରଘୁନାଥ ଆଗେ ଆଗେ ଚାଲିଲେ ॥ ୨ ॥

ଦେଖତ ବନ ସର ସୈଲ ସୁହାଏ । ବାଲମୀକି ଆଶ୍ରମ ପ୍ରଭୁ ଆଏ ॥
ରାମ ଦୀଖ ମୁନି ବାସୁ ସୁହାଵନ । ସୁନ୍ଦର ଗିରି କାନନୁ ଜଲୁ ପାଵନ ॥୩॥
ସରନି ସରୋଜ ବିଟପ ବନ ଫୂଲେ । ଗୁଂଜତ ମଂଜୁ ମଧୁପ ରସ ଭୂଲେ ॥
ଖଗ ମୃଗ ବିପୁଲ କୋଲାହଲ କରହୀଁ । ବିରହିତ ବୈର ମୁଦିତ ମନ ଚରହୀଁ ॥୪॥

ସୁଚି ସୁନ୍ଦର ଆଶ୍ରମୁ ନିରଖି ହରଷେ ରାଜିବନେନ ।
ସୁନି ରଘୁବର ଆଗମନୁ ମୁନି ଆଗେଁ ଆୟଉ ଲେନ ॥୧୨୪॥

ମୁନି କହୁଁ ରାମ ଦଣ୍ଡବତ କୀନ୍ହା । ଆସିରବାଦୁ ବିପ୍ରବର ଦୀନ୍ହା ॥
ଦେଖି ରାମ ଛବି ନୟନ ଜୁଡ଼ାନେ । କରି ସନମାନୁ ଆଶ୍ରମହିଁ ଆନେ ॥୧॥
ମୁନିବର ଅତିଥି ପ୍ରାନପ୍ରିୟ ପାଏ । କଂଦ ମୂଲ ଫଲ ମଧୁର ମଗାଏ ॥
ସିୟ ସୌମିତ୍ରି ରାମ ଫଲ ଖାଏ । ତବ ମୁନି ଆଶ୍ରମ ଦିଏ ସୁହାଏ ॥୨॥

---

ବିଲୋକି ବନ ଶଇଳ ସର ଶୋଭା-ରାଶି । ବାଲ୍ମୀକି ଆଶ୍ରମେ ପ୍ରଭୁ ପ୍ରବେଶିଲେ ଆସି ॥
ରାମ ଦେଖିଲେ ମୁନିଙ୍କ ବାସ ସୁଶୋଭନ । ସୁନ୍ଦର ଗିରି କାନନ ସଲିଳ ପାବନ ॥୩॥
ସରେ ସରୋରୁହ ବନେ ବୃକ୍ଷ ପ୍ରସ୍ଫୁଟନ୍ତି । ମଧୁରସେ ଭୁଲି ମତ୍ତ ଅଳି ଗୁଞ୍ଜରନ୍ତି ॥
ବିପୁଳ ମୃଗ ବିହଙ୍ଗ କୋଲାହଳ କରି । ଆନନ୍ଦେ ଚରନ୍ତି ମନୁ ବୈର ପରିହରି ॥୪॥

ଦେଖି ମନୋରମ ପବିତ୍ର ଆଶ୍ରମ ହରଷ ପଦ୍ମ-ଲୋଚନ ।
ଅଭ୍ୟର୍ଥି ନେବାକୁ ଆସିଲେ ମୁନିଗଣ ଶୁଣି ରାମ ଆଗମନ ॥୧୨୪॥

ମୁନିଙ୍କୁ ରାମ ଭୂମିଷ୍ଠ ପ୍ରଣାମ କରିଲେ । ମୁଦିତେ ଆଶିଷ ଦ୍ୱିଜବର ପ୍ରଦାନିଲେ ॥
ଦେଖି ରାମ ଛବି ହେଲା ଶୀତଳ ନୟନ । ସମ୍ମାନ କରି ଆଶ୍ରମେ ଆଣିଲେ ବହନ ॥୧॥
ପ୍ରାଣର ପ୍ରିୟ ଅତିଥି ପାଇ ସତ୍ୱପତି । ମଗାଇଲେ କନ୍ଦମୂଳ ଫଳ ମିଷ୍ଟ ଅତି ॥
ଭୁଞ୍ଜିଲେ ଫଳ ସୌମିତ୍ରି ସୀତା ରଘୁବର । ଏଥୁ ଅନ୍ତେ ମୁନି ଦେଲେ ଆସନ ସୁନ୍ଦର ॥୨॥

---

ସୁନ୍ଦର ବନ, ସରୋବର ଓ ପର୍ବତ ଦେଖି ଦେଖି ପ୍ରଭୁ ଶ୍ରୀରାମଚନ୍ଦ୍ର ବାଲ୍ମୀକିଙ୍କ ଆଶ୍ରମକୁ ଆସିଲେ । ଶ୍ରୀରାମଚନ୍ଦ୍ର ଦେଖିଲେ, ମୁନିଙ୍କ ନିବାସସ୍ଥାନ ଅତି ସୁନ୍ଦର । ସେଠାରେ ସୁନ୍ଦର ପର୍ବତ, ବନ ଓ ପବିତ୍ର ଜଳ ଅଛି ॥ ୩ ॥ ସରୋବରମାନଙ୍କରେ କମଳ ଓ ବନ-ମାନଙ୍କରେ ବୃକ୍ଷ ସବୁ କୁସୁମିତ ଏବଂ ମକରନ୍ଦ-ରସରେ ଉନ୍ମତ୍ତ ଭ୍ରମରମାନେ ସୁନ୍ଦର ଗୁଞ୍ଜନ କରୁଅଛନ୍ତି । ବହୁତ ପକ୍ଷୀ ଓ ପଶୁ କୋଳାହଳ କରୁଅଛନ୍ତି ଏବଂ ଶତ୍ରୁତା-ରହିତ ହୋଇ ପ୍ରସନ୍ନ ମନରେ ବିଚରଣ କରୁଅଛନ୍ତି ॥ ୪ ॥ ଦୋହା :—ପବିତ୍ର ଓ ସୁନ୍ଦର ଆଶ୍ରମକୁ ଦେଖି କମଳନୟନ ଶ୍ରୀରାମଚନ୍ଦ୍ର ଆନନ୍ଦିତ ହେଲେ । ରଘୁବର ଶ୍ରୀରାମଙ୍କ ଆଗମନ-ବାର୍ତ୍ତା ଶୁଣି ମୁନି ବାଲ୍ମୀକି ତାହାଙ୍କୁ ପାଛୋଟି ନେବା ପାଇଁ ଆଗେଇ ଆସିଲେ ॥୧୨୪॥ ଚୌପାଈ :—ଶ୍ରୀରାମଚନ୍ଦ୍ର ମୁନିଙ୍କୁ ଦଣ୍ଡବତ କଲେ । ବିପ୍ରବର ମୁନି ତାହାଙ୍କୁ ଆଶୀର୍ବାଦ ଦେଲେ । ଶ୍ରୀରାମଚନ୍ଦ୍ରଙ୍କ ଛବି ଦେଖି ମୁନିଙ୍କ ନେତ୍ର ଶୀତଳ ହୋଇଗଲା । ମୁନି ସସମ୍ମାନ ତାହାଙ୍କୁ ଆଶ୍ରମକୁ ନେଇ ଆସିଲେ ॥ ୧ ॥ ମୁନିବର ବାଲ୍ମୀକି ପ୍ରାଣପ୍ରିୟ ଅତିଥିମାନଙ୍କୁ

ବାଲମୀକି ମନ ଆନଁଦୁ ଭାରୀ । ମଂଗଲ ମୂରତି ନୟନ ନିହାରୀ ॥
ତବ କର କମଲ ଜୋରି ରଘୁରାଈ । ବୋଲେ ବଚନ ଶ୍ରବନ ସୁଖଦାଈ ॥୩॥
ତୁମ୍ହ ତ୍ରିକାଲ ଦରସୀ ମୁନିନାଥା । ବିସ୍ୱ ବଦର ଜିମି ତୁମ୍ହରେଁ ହାଥା ॥
ଅସ କହି ପ୍ରଭୁ ସବ କଥା ବଖାନୀ । ଜେହିଁ ଜେହିଁ ଭାଁତି ଦୀହ୍ନ ବନୁ ରାନୀ ॥୪॥

ତାତ ବଚନ ପୁନି ମାତୁ ହିତ ଭାଇ ଭରତ ଅସ ରାଉ ।
ମୋ କହୁଁ ଦରସ ତୁମ୍ହାର ପ୍ରଭୁ ସବୁ ମମ ପୁନ୍ୟ ପ୍ରଭାଉ ॥୧୨୫॥

ଦେଖି ପାୟ ମୁନିରାୟ ତୁମ୍ହାରେ । ଭଏ ସୁକୃତ ସବ ସୁଫଲ ହମାରେ ॥
ଅବ ଜହଁ ରାଉର ଆୟସୁ ହୋଈ । ମୁନି ଉଦବେଗୁ ନ ପାୱୈ କୋଈ ॥୧॥
ମୁନି ତାପସ ଜିହ୍ନ ତେଁ ଦୁଖୁ ଲହହୀଁ । ତେ ନରେସ ବିନୁ ପାବକ ଦହହୀଁ ॥
ମଂଗଲମୂଲ ବିପ୍ର ପରିତୋଷୂ । ଦହଇ କୋଟି କୁଲ ଭୂସୁର ରୋଷୂ ॥୨॥

---

ପରମ ଆନନ୍ଦ ଋଷି ବାଲମୀକି ମନେ । ସୁମଙ୍ଗଳ ମୂର୍ତ୍ତି ଅବଲୋକଣ ନୟନେ ॥
ତହୁଁ ପାଣି-ପଦ୍ମ ଯୋଡ଼ି ଶ୍ରୀ ରଘୁନନ୍ଦନ । ଶ୍ରବଣ-ସୁଖ-ଦାୟକ ଭାଷିଲେ ବଚନ ॥୩॥
ତୁମ୍ଭେ ତ୍ରିକାଳ ଜ୍ଞାତା ଅଟ ମୁନିରାୟ । ବିଶ୍ୱ ତୁମ୍ଭ କରେ ନ୍ୟସ୍ତ ବରକୋଳି ପ୍ରାୟ ॥
ଏହା କହି ପ୍ରଭୁ ସବୁ କଥା ଶୁଣାଇଲେ । ଯେଉଁ ଯେଉଁ ଭାବେ ରାଣୀ ବନେ ପଠାଇଲେ॥୪॥

ପିତାଙ୍କ ବଚନ, ମାତା ହିତ ପୁଣ, ରାଜା ଭାଇ ଭରତ ପର ।
ମୋ ନିମନ୍ତେ ତୁମ୍ଭ ଦର୍ଶନ ଏ ସବୁ ପୁଣ୍ୟ ପ୍ରଭାବ ମୋହର ॥୧୨୫॥

ବିଲୋକି ମୁନିନାୟକ ତୁମ୍ଭ ଶ୍ରୀ ପୟର । ସୁଫଳ ହୋଇଲା ଆମ୍ଭ ସୁକୃତ ନିକର ॥
ଏବେ ଯହିଁ ଆପଣଙ୍କ ହେବ ଅନୁମତି । କୌଣସି ମତେ ଉଦ୍‌ବେଗ ନ ପାଇବେ ଯତି॥୧॥
ମୁନି ତାପସ ଲଭନ୍ତି ଯାହା ଦ୍ୱାରା କ୍ଲେଶ । ଅନଳ ବିନା ଦହନ ହୁଏ ସେ ନରେଶ ॥
ମଙ୍ଗଳ ମୂଳ ଅଟଇ ବିପ୍ର ପରିତୋଷ । ଦହଇ କୋଟି କୁଳକୁ ମହୀସୁର ରୋଷ ॥୨॥

---

ପାଇ ସେମାନଙ୍କ ନିମନ୍ତେ ମଧୁର କନ୍ଦ, ମୂଳ ଓ ଫଳ ମଗାଇଲେ । ସୀତା, ଲକ୍ଷ୍ମଣ ଓ ରାମଚନ୍ଦ୍ର ଫଳ ଭୋଜନ କଲେ । ତତ୍ପରେ ମୁନି ସେମାନଙ୍କୁ ବିଶ୍ରାମ ନିମନ୍ତେ ସୁନ୍ଦର ସ୍ଥାନ ଦେଲେ ॥୨॥ ମଙ୍ଗଳ ମୂର୍ତ୍ତିଙ୍କୁ ନେତ୍ରରେ ଦେଖି ବାଲ୍ମୀକିଙ୍କ ମନରେ ଅତିଶୟ ଆନନ୍ଦ ଜାତ ହେଉଥାଏ । ତତ୍ପରେ ଶ୍ରୀ ରଘୁନାଥ କର-କମଳ ଯୋଡ଼ି ଶ୍ରବଣ-ସୁଖଦାୟକ ମଧୁର ବଚନ କହିଲେ— ॥୩॥ "ହେ ମୁନିନାଥ ! ଆପଣ ତ୍ରିକାଳଦର୍ଶୀ । ସମ୍ପୂର୍ଣ୍ଣ ଏହି ବିଶ୍ୱ ଆପଣଙ୍କ ହାତ ଉପରେ ରଖା ହୋଇଥିବା ବରକୋଳି ପରି ।" ଏହା କହିବା ପରେ ଯେମିତି ଯେମିତି ରାଣୀ କୈକେୟୀ ବନବାସ ଦେଲେ, ପ୍ରଭୁ ସେହିସବୁ କଥା ବିସ୍ତାରପୂର୍ବକ କହି ଶୁଣାଇଲେ ॥୪॥ ଦୋହା :—ସେ କହିଲେ, "ହେ ପ୍ରଭୋ ! ପିତାଙ୍କ ଆଜ୍ଞାପାଳନ, ମାତାଙ୍କ ହିତସାଧନ ଏବଂ ଭରତ ପରି ସ୍ନେହୀ ଓ ଧର୍ମାତ୍ମା ଭାଇର ରାଜପଦ-ଲାଭ ଏବଂ ମୋର ଆପଣଙ୍କ ଦର୍ଶନ ଲାଭ—ଏ ସବୁ ମୋ ପୁଣ୍ୟର ପ୍ରଭାବ ॥୧୨୫॥ ଚୌପାଈ :—"ହେ ମୁନିରାଜ ! ଆପଣଙ୍କ ଚରଣ-ଦର୍ଶନ ଯୋଗେ ମୋର ସମସ୍ତ

ଅସ କହ୍ୟୁ ଁ ଜାନି କହିଅ ସୋଇ ଠାଉଁ । ସିୟ ସୌମିତ୍ରି ସହିତ ଜହଁ ଜାଉଁ ॥
ତହଁ ରଚି ରୁଚିର ପରନ ତୃନ ଶାଲା । ବାସୁ କରୌଁ କଛୁ କାଲ କୃପାଲା ॥୩॥
ସହଜ ସରଲ ସୁନି ରଘୁବର ବାନୀ । ସାଧୁ ସାଧୁ ବୋଲେ ମୁନି ଗ୍ୟାନୀ ॥
କସ ନ କହହୁ ଅସ ରଘୁକୁଲକେତୂ । ତୁମ୍ହ ପାଲକ ସନ୍ତତ ଶ୍ରୁତି ସେତୂ ॥୪॥

ଶ୍ରୁତିସେତୁ ପାଲକ ରାମ ତୁମ୍ହ ଜଗଦୀସ ମାୟା ଜାନକୀ ।
ଜୋ ସୃଜତି ଜଗୁ ପାଲତି ହରତି ରୁଖ ପାଇ କୃପାନିଧାନ କୀ ॥
ଜୋ ସହସସୀସୁ ଅହୀସୁ ମହିଧରୁ ଲଖନୁ ସଚରାଚର ଧନୀ ।
ସୁର କାଜ ଧରି ନରରାଜ ତନୁ ଚଲେ ଦଲନ ଖଲ ନିସିଚର ଅନୀ ॥

---

ଏମନ୍ତ ହୃଦେ ବିଚାରି ସେହି ସ୍ଥାନ କହ । ଯେଉଁଠାକୁ ଯିବି ସୀତା ସଉମିତ୍ରି ସହ ॥
ତହିଁ ରଚଣ ରୁଚିର ତୃଣ ପର୍ଣ୍ଣଶାଳ । ନିବାସ କରିବି କୃପାମୟ, କିଛି କାଳ ॥୩॥
ସହଜ ସରଳ ଶୁଣି ରଘୁବର ବାଣୀ । ସାଧୁ ସାଧୁ, କହି ପ୍ରଶଂସିଲେ ମୁନି ଜ୍ଞାନୀ ॥
କିପାଁ ଏହା ନ କହିବ ରଘୁକୁଳ-କେତୁ । ତୁମ୍ଭେ ସତତ ପାଳକ ଅଟ ଶ୍ରୁତି-ସେତୁ ॥୪॥

ଶ୍ରୁତି-ସେତୁ-ପାଳକ ତୁମ୍ଭେ ବିଶ୍ୱ-ନାୟକ, ମାୟା ଜାନକୀ, ରଘୁପତି ।
କରୁଣାନିଧିଙ୍କର ଇଚ୍ଛା ଜାଣି ସଂସାର ଯେ ସୃଜ ପାଳି ସଂହାରନ୍ତି ।
ସହସ୍ର-ଶିର ମହୀଧର, ଲକ୍ଷ୍ମଣ ଚରାଚରେଶ୍ୱର,
ସୁର-କାର୍ଯ୍ୟ-ସାଧନେ ଖଳ ଦୈତ୍ୟ-ଦଳନେ ଧରାରେ ନରତନୁ ଧରି ॥

---

ପୁଣ୍ୟ ସଫଳ ହୋଇଗଲା । ବର୍ତ୍ତମାନ ଯେଉଁ ସ୍ଥାନକୁ ଆପଣଙ୍କ ଆଦେଶ ହେବ, ଯେଉଁଠାରେ କି କୌଣସି ମୁନି ଆମ ଯୋଗେ ଉଦ୍‌ବେଗ ପାଇବେ ନାହିଁ, ଆମେ ସେହି ସ୍ଥାନକୁ ଯିବୁ । ଯାହାଙ୍କ ଯୋଗେ ମୁନି ଓ ତପସ୍ୱୀ ଦୁଃଖ ପାଆନ୍ତି, ସେ ରାଜା ବିନା ଅଗ୍ନିରେ କେବଳ ଆପଣା ଦୁଷ୍କର୍ମ ଯୋଗେ ହିଁ ଜଳି ମରନ୍ତି । ବ୍ରାହ୍ମଣମାନଙ୍କ ସନ୍ତୋଷ ସମସ୍ତ ମଙ୍ଗଳର ମୂଳ ଏବଂ ଭୂଦେବ ବ୍ରାହ୍ମଣଙ୍କ କ୍ରୋଧ କୋଟି କୋଟି କୁଳକୁ ଭସ୍ମୀଭୂତ କରିପକାଏ ॥ ୧-୨ ॥ ହୃଦୟରେ ଏହିପରି ବିଚାର କରି ସେହି ସ୍ଥାନ କହି ଦିଅନ୍ତୁ, ଯେଉଁଠାକୁ କି ମୁଁ ଲକ୍ଷ୍ମଣ ଓ ସୀତାଙ୍କ ସହ ଯିବି । ହେ ଦୟାଳୁ ! ସେହିଠାରେ ସୁନ୍ଦର ପତ୍ର ଓ ଘାସର କୁଟୀର ନିର୍ମାଣ କରି କିଛି ସମୟ ନିବାସ କରିବି ।" ॥ ୩ ॥ ଶ୍ରୀରାମଙ୍କ ସହଜ ସରଳବାର୍ତ୍ତା ଶୁଣି ଜ୍ଞାନୀ ମୁନି ବାଲ୍ମୀକି କହିଲେ, "ଧନ୍ୟ ! ଧନ୍ୟ ! ହେ ରଘୁକୁଳକେତୁ ! ଆପଣ ଏପରି କାହିଁକି ନ କହନ୍ତେ ? ଆପଣ ସର୍ବଦା ବେଦର ମର୍ଯ୍ୟାଦା ପାଳନ କରନ୍ତି ॥ ୪ ॥ ଛନ୍ଦ :—ହେ ରାମ ! ଆପଣ ବେଦର ମର୍ଯ୍ୟାଦାରକ୍ଷକ ଜଗଦୀଶ୍ୱର ଓ ଜାନକୀ ଆପଣଙ୍କ ସ୍ୱରୂପଭୂତା ମାୟା । ସେହି ମାୟା କୃପାନିଧାନ ପ୍ରଭୁଙ୍କ (ଆପଣଙ୍କ) ଇଙ୍ଗିତ ପାଇ ଜଗତର ସୃଜନ, ପାଳନ ଓ ସଂହାର କରନ୍ତି । ଯେ ସହସ୍ର-ଶିରଧାରୀ ସର୍ପସ୍ୱାମୀ ଏବଂ ପୃଥିବୀକୁ ଆପଣା ମସ୍ତକ ଉପରେ ଧାରଣ କରନ୍ତି, ସେହି ଚରାଚର-ସ୍ୱାମୀ ଶେଷଦେବ ଲକ୍ଷ୍ମଣ ରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି । ଦେବତାମାନଙ୍କ କାର୍ଯ୍ୟସାଧନ

ରାମ ସରୂପ ତୁମ୍ହାର ବଚନ ଅଗୋଚର ବୁଦ୍ଧିପର ।
ଅବିଗତ ଅକଥ ଅପାର ନେତି ନେତି ନିତ ନିଗମ କହ ॥୧୨୬॥

ଜଗୁ ପେଖନ ତୁମ୍ହ ଦେଖନିହାରେ । ବିଧି ହରି ସଂଭୁ ନଚାୱନିହାରେ ॥
ତେଉ ନ ଜାନହିଁ ମରମୁ ତୁମ୍ହାରା । ଔରୁ ତୁମ୍ହହି କୋ ଜାନନିହାରା ॥୧॥
ସୋଇ ଜାନଇ ଜେହି ଦେହୁ ଜନାଈ । ଜାନତ ତୁମ୍ହହି ତୁମ୍ହଇ ହୋଇ ଜାଈ ॥
ତୁମ୍ହରିହି କୃପାଁ ତୁମ୍ହହି ରଘୁନଂଦନ । ଜାନହିଁ ଭଗତ ଭଗତ ଉର ଚଂଦନ ॥୨॥
ଚିଦାନଂଦମୟ ଦେହ ତୁମ୍ହାରୀ । ବିଗତ ବିକାର ଜାନ ଅଧିକାରୀ ॥
ନର ତନୁ ଧରେହୁ ସଂତ ସୁର କାଜା । କହହୁ କରହୁ ଜସ ପ୍ରାକୃତ ରାଜା ॥୩॥
ରାମ ଦେଖି ସୁନି ଚରିତ ତୁମ୍ହାରେ । ଜଡ଼ ମୋହହିଁ ବୁଧ ହୋହିଁ ସୁଖାରେ ॥
ତୁମ୍ହ ଜୋ କହହୁ କରହୁ ସବୁ ସାଁଚା । ଜସ କାଛିଅ ତସ ଚାହିଅ ନାଚା ॥୪॥

---

ରାମ ତୁମ୍ଭ ରୂପ ବଚନ ଅତୀତ, ବୁଦ୍ଧିର ଊର୍ଦ୍ଧ୍ୱ ଅଟଇ ।
ବ୍ୟାପକ, ଅଲକ୍ଷ୍ୟ, ନେତି ନେତି, ନିତ୍ୟ ନିଗମ ଗାନ କରଇ ॥୧୨୬॥

ଜଗତ ଦୃଶ୍ୟ ଅଟଇ ଆପଣ ଦର୍ଶକ । ବିଧି ହରି ମହେଶଙ୍କ ନର୍ତ୍ତନ-କାରକ ॥
ସେ ମଧ୍ୟ ଜାଣନ୍ତି ନାହିଁ ମରମ ତୁମ୍ଭର । ଅନ୍ୟ କେ ଜାଣି ପାରିବ ତୁମ୍ଭଙ୍କୁ ଆଉର ॥୧॥
ଯାହାକୁ ଜଣାଇ ଦିଅ ସେ ଜାଣି ପାରଇ । ଜାଣନ୍ତେ ତୁମ୍ଭଙ୍କୁ ତୁମ୍ଭ ସ୍ୱରୂପ ହୁଅଇ ॥
ତୁମ କୃପାରୁ ତୁମଙ୍କୁ ଶ୍ରୀ ରଘୁନନ୍ଦନ । ଜାଣଇ ଭକ୍ତ, ଭକତ-ହୃଦୟ-ଚନ୍ଦନ ॥୨॥
ତୁମେ ଅଟ ଚିଦାନନ୍ଦ-ମୟ ଦେହଧାରୀ । ବିଗତ ବିକାର, ଏହା ଜାଣେ ଅଧିକାରୀ ॥
ସନ୍ଥ ବିବୁଧଙ୍କ କାର୍ଯ୍ୟେ ନର-ତନୁ ଧର । ପ୍ରାକୃତ ନୃପ ସମାନ କହ, ଆଉ କର ॥୩॥
ରାମ, ଚରିତ ତୁମ୍ଭର ଅବଲୋକି ଶୁଣି । ମୂର୍ଖ ମୋହ ଲଭେ, ବୁଧ ସୁଖୀ ହୁଏ ଗୁଣି ॥
ତୁମେ ଯାହା କୁହ କର ତାହା ସବୁ ସତ । ଯେମନ୍ତ ବେଶ ନାଚିବା ଉଚିତ ତେମନ୍ତ ॥୪॥

---

ନିମନ୍ତେ ଆପଣ ରାଜଶରୀର-ଧାରଣପୂର୍ବକ ଦୁଷ୍ଟ ରାକ୍ଷସସେନାଙ୍କୁ ନାଶ କରିବା ଉଦ୍ଦେଶ୍ୟରେ ବାହାରି ଅଛନ୍ତି ॥ ସୋରଠା'—ହେ ରାମ ! ଆପଣଙ୍କ ସ୍ୱରୂପ ବଚନର ଅଗୋଚର, ବୁଦ୍ଧିର ଊର୍ଦ୍ଧ୍ୱରେ, ଅବ୍ୟକ୍ତ, ଅକଥନୀୟ ଓ ଅପାର । ବେଦଗଣ ନିରନ୍ତର ତାହାକୁ 'ନେତି' 'ନେତି' କହି ବର୍ଣ୍ଣନା କରନ୍ତି ॥ ୧୨୬ ॥ ଚୌପାଈ :—ହେ ରାମ ! ଜଗତ ଦୃଶ୍ୟ ଓ ଆପଣ ତାହାର ଦର୍ଶକ । ଆପଣ ବ୍ରହ୍ମା, ବିଷ୍ଣୁ ଓ ଶଙ୍କରଙ୍କୁ ହୁଙ୍କା ନଚାନ୍ତି । ସେମାନେ ଯେତେବେଳେ ଆପଣଙ୍କ ମର୍ମ (ରହସ୍ୟ) ବୁଝିପାରନ୍ତି ନାହିଁ, ଆଉ ଆପଣଙ୍କୁ ଜାଣିପାରିବ, ଏପରି ବ୍ୟକ୍ତି କିଏ ? ॥ ୧ ॥ ଯାହାକୁ ଆପଣ ଜଣାଇ ଦିଅନ୍ତି, ସେହି କେବଳ ଆପଣଙ୍କୁ ଜାଣେ ଏବଂ ଜାଣିବା ମାତ୍ରେ ସେ ଆପଣଙ୍କ ସ୍ୱରୂପରେ ପରିଣତ ହୋଇଯାଏ । ହେ ରଘୁନନ୍ଦନ ! ହେ ଭକ୍ତଗଣ-ହୃଦୟ-ଶୀତଳ-ଚନ୍ଦନ ! ଆପଣଙ୍କ କୃପାଯୋଗେ ହିଁ ଭକ୍ତମାନେ ଆପଣଙ୍କୁ ଜାଣିପାରନ୍ତି ॥ ୨ ॥ ଆପଣଙ୍କ ଶରୀର ଚିଦାନନ୍ଦମୟ ଓ ସମସ୍ତ ବିକାର-ରହିତ । ଅଧିକାରୀ ପୁରୁଷମାନେ ହିଁ ଏହି ରହସ୍ୟକୁ ଜାଣି ପାରନ୍ତି । ଆପଣ

ପୂଁଛେହୁ ମୋହି କି ରହୌଁ କହଁ ମୈଁ ପୂଁଛତ ସକୁଚାଉଁ ।
ଜହଁ ନ ହୋହୁ ତହଁ ଦେହୁ କହି ତୁମ୍ହହି ଦେଖାୱୌଁ ଠାଉଁ ॥୧୨୭॥
ସୁନି ମୁନି ବଚନ ପ୍ରେମରସ ସାନେ । ସକୁଚି ରାମ ମନ ମହୁଁ ମୁସୁକାନେ ॥
ବାଲମୀକି ହଁସି କହହିଁ ବହୋରୀ । ବାନୀ ମଧୁର ଅମିଅ ରସ ବୋରୀ ॥୧॥
ସୁନହୁ ରାମ ଅବ କହଉଁ ନିକେତା । ଜହାଁ ବସହୁ ସିୟ ଲଖନ ସମେତା ।
ଜିହ୍ନ କେ ଶ୍ରବନ ସମୁଦ୍ର ସମାନା । କଥା ତୁମ୍ହାରି ସୁଭଗ ସରି ନାନା ॥୨॥
ଭରହିଁ ନିରଂତର ହୋହିଁ ନ ପୂରେ । ତିନ୍ହ କେ ହିୟ ତୁମ୍ହ କହୁଁ ଗୃହ ରୂରେ ॥
ଲୋଚନ ଚାତକ ଜିହ୍ନ କରି ରାଖେ । ରହହିଁ ଦରସ ଜଲଧର ଅଭିଲାଷେ ॥୩॥

---

ପଚାରିଲ ମୋତେ, ରହିବ ମୁଁ କାହିଁ, ପୁଚ୍ଛନ୍ତେ ମୁଁ ଲଜ୍ୟା ମଣେ ।
ତୁମ୍ଭେ ନାହଁ ଯହିଁ ଦିଅ ମୋତେ କହି, ସ୍ଥାନ ଦେଖାଇବି କ୍ଷଣେ ॥୧୨୭॥
ପ୍ରେମରସରେ ପ୍ଲାବିତ ମୁନିଙ୍କ ବଚନେ । ସଙ୍କୋଚ ଲଭି ହସିଲେ ରାମ ମନେ ମନେ ॥
ହସି ବାଲମୀକି ଋଷି ଭାଷିଲେ ଆଦର । ମଧୁର ପୀୟୂଷ-ରସ-ମିଶ୍ରିତ ସୁନ୍ଦର ॥୧॥
ଶୁଣ ରଘୁନାଥ, ଏବେ କହୁଛି ସଦନ । ନିବାସ କରିବ ଯହିଁ ସୀତା ସଲକ୍ଷ୍ମଣ ॥
ଯାହାଙ୍କ ଶ୍ରବଣ ଅଟେ ଜଳନିଧି ସମ । ବିବିଧ ସରିତ ତୁମ କଥା ମନୋରମ ॥୨॥
ପ୍ରବେଶ କରଇ ସଦା ପୂର୍ଣ୍ଣ ନ ହୁଅଇ । ତାଙ୍କ ହୃଦ ତୁମ୍ଭ ଶୁଭ ସଦନ ଅଟଇ ॥
ଲୋଚନକୁ ଚାତକ ଯେ କରି ରଖିଛନ୍ତି । ଦର୍ଶନ-ଜଳଧରକୁ ଇଚ୍ଛିଣ ରହନ୍ତି ॥୩॥

---

ଦେବତା ଓ ସନ୍ଥମାନଙ୍କ କାର୍ଯ୍ୟ ନିମନ୍ତେ ନରଶରୀର ଧାରଣ କରିଅଛନ୍ତି ଏବଂ ପ୍ରାକୃତ ରାଜା ପରି ଆପଣ କଥାବାର୍ତ୍ତା ଓ କାର୍ଯ୍ୟ କରୁଅଛନ୍ତି ॥ ୩ ॥ ହେ ରାମ ! ଆପଣଙ୍କ ଚରିତ୍ର ଦେଖି ଓ ଶୁଣି ମୂର୍ଖ ଲୋକ ମୋହଗ୍ରସ୍ତ ହୁଅନ୍ତି ଏବଂ ଜ୍ଞାନୀଜନ ସୁଖୀ ହୁଅନ୍ତି । ଆପଣ ଯାହା କିଛି କହନ୍ତି ବା କରନ୍ତି, ତାହା ସତ୍ୟ ବା ଯଥାର୍ଥ । କାରଣ ଯେପରି ବେଶ, ସେପରି ନାଚିବା ମଧ୍ୟ ଉଚିତ ॥ ୪ ॥ ଦୋହା ।—ଆପଣ କେଉଁଠାରେ ରହିବେ ବୋଲି ମୋତେ ପଚାରିଲେ । କିନ୍ତୁ ସଙ୍କୋଚ ସହକାରେ ଆପଣଙ୍କୁ ମୁଁ ପଚାରୁଛି—"ଆପଣ ଯେଉଁଠାରେ ନାହାନ୍ତି, ସେହି ସ୍ଥାନ ମୋତେ କହି ଦିଅନ୍ତୁ । ତତ୍ପରେ ମୁଁ ଆପଣଙ୍କ ରହିବା ନିମନ୍ତେ (ଉକ୍ତ) ସ୍ଥାନ ଆପଣଙ୍କୁ ଦେଖାଇ ଦେବି ।" ॥୧୨୭॥ ଚୌପାଇ—ମୁନିଙ୍କ ପ୍ରେମ-ରସସିକ୍ତ ବଚନ ଶୁଣି ଶ୍ରୀରାମ ସଙ୍କୁଚିତ ହୋଇ ମନେ ମନେ ହସିଲେ । ବାଲ୍ମୀକି ହସି ପୁଣି ଅମୃତରସ-ସିକ୍ତ ମଧୁର ବାଣୀ ବୋଇଲେ— ॥ ୧ ॥ "ହେ ରାମ ! ଶୁଣନ୍ତୁ, ବର୍ତ୍ତମାନ ଯେଉଁ ସ୍ଥାନରେ ସୀତା ଓ ଲକ୍ଷ୍ମଣଙ୍କ ସହ ଆପଣ ନିବାସ କରିବେ, ମୁଁ ସେହି ସ୍ଥାନ କହିଦେଉଛି । ଯାହାଙ୍କର ଶ୍ରବଣେନ୍ଦ୍ରିୟ ସମୁଦ୍ର ପରି ଆପଣଙ୍କ ଅନେକ କଥା-ନଦୀ ଦ୍ୱାରା ନିରନ୍ତର ଭରି ହେଉଥାଏ, କିନ୍ତୁ କେବେ ହେଲେ ପୂର୍ଣ୍ଣ ହୁଏନାହିଁ, ସେସନ୍ତ-ମାନଙ୍କ ହୃଦୟ ଆପଣଙ୍କ ସୁନ୍ଦର ଗୃହ ଏବଂ ଯେଉଁମାନେ ଆପଣା ଆପଣା ନେତ୍ରକୁ ଚାତକ କରି ଆପଣଙ୍କ ଦର୍ଶନରୂପୀ ମେଘ ନିମନ୍ତେ ସଦା ଲାଳାୟିତ ଏବଂ ଯେଉଁମାନେ

ନିଦରହିଁ ସରିତ ସିଂଧୁ ସର ଭାରୀ । ରୂପ ବିଂଦୁ ଜଲ ହୋହିଁ ସୁଖାରୀ ॥
ତିହ୍ନ କେଁ ହୃଦୟ ସଦନ ସୁଖଦାୟକ । ବସହୁ ବଂଧୁ ସିୟ ସହ ରଘୁନାୟକ ॥୪॥

ଜସୁ ତୁହ୍ମାର ମାନସ ବିମଲ ହଂସିନି ଜୀହା ଜାସୁ ।
ମୁକତାହଲ ଗୁନ ଗନ ଚୁନଇ ରାମ ବସହୁ ହିୟଁ ତାସୁ ॥୧୨୮॥

ପ୍ରଭୁ ପ୍ରସାଦ ସୁଚି ସୁଭଗ ସୁବାସା । ସାଦର ଜାସୁ ଲହଇ ନିତ ନାସା ॥
ତୁହ୍ମହି ନିବେଦିତ ଭୋଜନ କରହୀଁ । ପ୍ରଭୁ ପ୍ରସାଦ ପଟ ଭୂଷନ ଧରହୀଁ ॥୧॥
ସୀସ ନୱହିଁ ସୁର ଗୁରୁ ଦ୍ୱିଜ ଦେଖୀ । ପ୍ରୀତି ସହିତ କରି ବିନୟ ବିସେଷୀ ॥
କର ନିତ କରହିଁ ରାମ ପଦ ପୂଜା । ରାମ ଭରୋସ ହୃଦୟଁ ନହିଁ ଦୂଜା ॥୨॥
ଚରନ ରାମ ତୀରଥ ଚଲି ଜାହୀଁ । ରାମ ବସହୁ ତିହ୍ନ କେ ମନ ମାହୀଁ ॥
ମଂତ୍ରରାଜୁ ନିତ ଜପହିଁ ତୁହ୍ମାରା । ପୂଜହିଁ ତୁହ୍ମହି ସହିତ ପରିବାରା ॥୩॥

---

ଅନାଦର କରି ସିନ୍ଧୁ-ନଦୀ-ସର-ବାରି । ରୂପ-ଜଳ-ବିନ୍ଦୁ ଲଭି ସୁଖୀ ହୋନ୍ତି ଭାରି ॥
ତାହାଙ୍କ ହୃଦ-ଆଳୟ ଆନନ୍ଦ-ଦାୟକ । ବସ ସୀତା ଭ୍ରାତା ସହ ଶ୍ରୀ ରଘୁନାୟକ ॥୪॥

ତୁମ୍ଭ ଗୁରୁ ଯଶ-ବିମଳ-ମାନସେ ହଂସିନୀ ରସନା ଯା'ର ।
ମୁକ୍ତାବଳୀ ରୂପୀ ଗୁଣ ଗଣ ଟୁକେ, ବସ ରାମ ହୃଦେ ତା'ର ॥୧୨୮॥

ପ୍ରଭୁ ପ୍ରସାଦ ସହଜେ ପୂତ ସୁବାସିତ । ସାଦରେ ନାସିକା ଯା'ର ଲଭୁଥାଏ ନିତ୍ୟ ॥
ତୁମ୍ଭଙ୍କୁ ନୈବେଦ୍ୟ କରି ଭୋଜନ କରଇ । ପ୍ରଭୁଙ୍କ ପ୍ରସାଦ ବସ୍ତ୍ର ଭୂଷଣ ଘେନଇ ॥୧॥
ସୁର, ଗୁରୁ, ଦ୍ୱିଜ ଦେଖି କରିଣ ସତ୍କାର । ବିନୟ ପ୍ରୀତି ସହିତ କରଇ ଜୁହାର ॥
କର ନିତ୍ୟ ପୂଜା କରେ ରାମଙ୍କ ଚରଣ । ରାମ ଭରସା ହୃଦୟେ, ଆଶ୍ରା ନାହିଁ ଅନ୍ୟ ॥୨॥
ପଦ ଚାଲିଯାଏ ରାମ-ତୀର୍ଥକୁ ସାଦରେ । ବସ ରଘୁବୀର ତାର ହୃଦୟ ମଧ୍ୟରେ ॥
ମନ୍ତ୍ରରାଜ ପ୍ରତି ଦିନ ତୁମ୍ଭର ଜପଇ । ପରିଜନ-ବୃନ୍ଦ ସହ ତୁମ୍ଭଙ୍କୁ ଅର୍ଚ୍ଚଇ ॥୩॥

---

ବଡ ବଡ ନଦୀ, ସମୁଦ୍ର ଓ ହ୍ରଦମାନଙ୍କୁ ନିରାଦର କରନ୍ତି, କିନ୍ତୁ ଆପଣଙ୍କ ସୌନ୍ଦର୍ଯ୍ୟ-ମେଘର ଗୋଟିଏ ମାତ୍ର ବିନ୍ଦୁ ଜଳରେ ସୁଖୀ ହୋଇପଡନ୍ତି (ପୃଥିବୀ, ସ୍ୱର୍ଗ ଓ ବ୍ରହ୍ମଲୋକର ସୌନ୍ଦର୍ଯ୍ୟାବଳୀକୁ ତିରସ୍କାର-ପୂର୍ବକ ଆପଣଙ୍କ ସଚ୍ଚିଦାନନ୍ଦମୟ ସ୍ୱରୂପର କୌଣସି ଗୋଟିଏ ଅଙ୍ଗର ଯତ୍କିଞ୍ଚିତ୍ ଦୃଶ୍ୟରେ ବିମୁଗ୍ଧ ହୋଇ ପଡନ୍ତି), ହେ ରଘୁନାଥ ! ସେହି ଲୋକମାନଙ୍କର ସୁଖଦାୟକ ହୃଦୟ-ଭବନମାନଙ୍କରେ ଆପଣ ଭାଇ ଲକ୍ଷ୍ମଣ ଓ ସୀତାଙ୍କ ସହ ନିବାସ କରନ୍ତୁ ॥ ୨-୪ ॥ ଦୋହା '—ଆପଣଙ୍କ ଯଶରୂପୀ ନିର୍ମଳ ମାନସରୋବରରେ ଆପଣଙ୍କ ଗୁଣ-ମୁକ୍ତାବଳୀକୁ ଯାହାର ରସନା ହଂସୀ ହୋଇ ଖୁଣ୍ଟି ଖୁଣ୍ଟି ଖାଉଥାଏ, ହେ ରାମ ! ଆପଣ ତାହାର ହୃଦୟରେ ବାସ କରନ୍ତୁ ॥ ୧୨୮ ॥ ଚୌପାଇ '—ଯାହାର ନାସିକା ପ୍ରଭୁଙ୍କ ପବିତ୍ର ଓ ସୁଗନ୍ଧିତ ସୁନ୍ଦର ପ୍ରସାଦକୁ ନିତ୍ୟ ଆଦର ସହିତ ଘ୍ରାଣ କରେ, ଯେ ଆପଣଙ୍କୁ ଅର୍ପଣ କରି ଭୋଜନ କରେ ଏବଂ ପ୍ରସାଦ ରୂପେ ହିଁ ଯେ ବସ୍ତ୍ରଭୂଷଣ ଧାରଣ କରେ, ଯାହାଙ୍କ ମସ୍ତକ ଦେବତା, ଗୁରୁ ଓ ବ୍ରାହ୍ମଣଙ୍କୁ

ତରପନ ହୋମ କରହିଁ ବିଧି ନାନା । ବିପ୍ର ଜେୱାଁଇ ଦେହିଁ ବହୁ ଦାନା ॥
ତୁମ୍ହ ତେଁ ଅଧିକ ଗୁରହି ଜିୟଁ ଜାନୀ । ସକଲ ଭାୟଁ ସେବହିଁ ସନମାନୀ ॥୪॥

ସବୁ କରି ମାଗହିଁ ଏକ ଫଳୁ ରାମ ଚରନ ରତି ହୋଉ ।
ତିନ୍ହ କେଁ ମନମନ୍ଦିର ବସହୁ ସିୟ ରଘୁନନ୍ଦନ ଦୋଉ ॥୧୨୯॥

କାମ କୋହ ମଦ ମାନ ନ ମୋହା । ଲୋଭ ନ ଛୋଭ ନ ରାଗ ନ ଦ୍ରୋହା ॥
ଜିନ୍ହ କେଁ କପଟ ଦମ୍ଭ ନହିଁ ମାୟା । ତିନ୍ହ କେଁ ହୃଦୟ ବସହୁ ରଘୁରାୟା ॥୧॥
ସବ କେ ପ୍ରିୟ ସବ କେ ହିତକାରୀ । ଦୁଖ ସୁଖ ସରିସ ପ୍ରସଂସା ଗାରୀ ॥
କହହିଁ ସତ୍ୟ ପ୍ରିୟ ବଚନ ବିଚାରୀ । ଜାଗତ ସୋୱତ ସରନ ତୁମ୍ହାରୀ ॥୨॥

---

କରଇ ହୋମ ତର୍ପଣ ଅନେକ ବିଧାନ । ବିପ୍ରଙ୍କୁ ଡାକ ପ୍ରଦାନ କରେ ବହୁ ଦାନ ॥
ଗୁରୁଙ୍କୁ ଅଧିକ ହୃଦେ ତୁମ୍ଭଠାରୁ ଜାଣି । ସମସ୍ତ ପ୍ରକାରେ ସେବା କରଇ ସମ୍ମାନ ॥୪॥

ସକଳ କର୍ମର ମାଗେ ଏକ ଫଳ ରାମ ପଦରେ ପ୍ରୀତି ।
ବସ ତାର ମନ-ମନ୍ଦିର ମଧ୍ୟରେ ସୀତା ସହ ରଘୁପତି ॥୧୨୯॥

ନାହିଁ କାମ କ୍ରୋଧ ନାହିଁ ମଦ ମାନ ମୋହ । ଲୋଭ କ୍ଷୋଭ ଆଡମ୍ବର, ନାହିଁ ସ୍ନେହ ଦ୍ରୋହ ॥
କପଟ ଦମ୍ଭ ମାୟାଦି ନ ଥାଏ ଯାହାଙ୍କ । ବସ ରଘୁବର ହୃଦ-ଭବନେ ତାହାଙ୍କ ॥୧॥
ସମସ୍ତଙ୍କ ପ୍ରିୟ ସମସ୍ତଙ୍କ ହିତକର । ସମ ଦୁଃଖ ସୁଖ ନିନ୍ଦା ସ୍ତୁତିରେ ଆଦର ॥
ବିଚାରିଣ ସତ୍ୟ ସ୍ନେହ ବଚନ କହନ୍ତି । ଜାଗ୍ରତ ଶୟନେ ତୁମ୍ଭ ଶରଣେ ରହନ୍ତି ॥୨॥

---

ଦେଖି ବଡ ନମ୍ରତା ଓ ପ୍ରେମ ସହକାରେ ନଇଁପଡ଼େ, ଯାହାଙ୍କ ହସ୍ତ ପ୍ରତିଦିନ ଶ୍ରୀରାମଚନ୍ଦ୍ରଙ୍କ ଚରଣ ପୂଜା କରେ ଏବଂ ଯାହାଙ୍କ ହୃଦରେ ଶ୍ରୀରାମଙ୍କ ଭରସା ବ୍ୟତୀତ ଅନ୍ୟ କାହାରି ଭରସା ନ ଥାଏ ଏବଂ ଯାହାଙ୍କ ଚରଣ ଶ୍ରୀରାମଙ୍କ ତୀର୍ଥରେ ଚାଲିଯାଏ, ହେ ରାମ ! ଆପଣ ତାଙ୍କରି ମନରେ ନିବାସ କରନ୍ତୁ । ହେ ରାମ ! ଯେ ଆପଣଙ୍କ ରାମନାମ ରୂପ ମନ୍ତ୍ରରାଜକୁ ଜପନ୍ତି ଏବଂ ପରିବାର ସହିତ ଆପଣଙ୍କୁ ପୂଜା କରନ୍ତି, ଆପଣ ତାଙ୍କରି ହୃଦୟରେ ବାସ କରନ୍ତୁ ॥ ୧-୩ ॥ ଯେଉଁମାନେ ଅନେକ ପ୍ରକାର ତର୍ପଣ ଓ ଯଜ୍ଞ କରନ୍ତି ଏବଂ ବ୍ରାହ୍ମଣମାନଙ୍କୁ ଭୋଜନ ଦେଇ ବହୁତ ଦାନ କରନ୍ତି ଏବଂ ଯେଉଁମାନେ ହୃଦୟରେ ଗୁରୁଙ୍କୁ ଆପଣଙ୍କଠାରୁ ସୁଦ୍ଧା ଅଧିକ ଜାଣି ସର୍ବତୋଭାବରେ ସମ୍ମାନପୂର୍ବକ ତାଙ୍କ ସେବା କରନ୍ତି; ॥ ୪ ॥ ଦୋହା :—ଏବଂ ଏହିସବୁ କର୍ମ ସମ୍ପାଦନ କରି ସେ ସମସ୍ତର ଏକମାତ୍ର ଫଳ ରୂପେ ଶ୍ରୀରାମଙ୍କ ଚରଣରେ ପ୍ରୀତି ମାଗନ୍ତି, ସେହିମାନଙ୍କ ମନ-ମନ୍ଦିରରେ, ହେ ସୀତା-ରଘୁନନ୍ଦନ ! ଆପଣ ଦୁହେଁ ବାସ କରନ୍ତୁ ॥ ୧୨୯ ॥ ଚୌପାଇ :—ଯାହାଙ୍କ ମନରେ କାମ, କ୍ରୋଧ, ମଦ, ଅଭିମାନ ଓ ମୋହ ନାହିଁ, ଲୋଭ, କ୍ଷୋଭ, ରାଗ ଓ ଦ୍ୱେଷ ନାହିଁ କିମ୍ବା କପଟ, ଦମ୍ଭ ଓ ମାୟା ନାହିଁ; ହେ ରଘୁରାଜ ! ଆପଣ ସେହିମାନଙ୍କ ହୃଦୟରେ ନିବାସ କରନ୍ତୁ ॥ ୧ ॥ ଯେଉଁମାନେ ସମସ୍ତଙ୍କ ପ୍ରିୟ ଓ ସମସ୍ତଙ୍କ ହିତକାରୀ, ଯାହାଙ୍କୁ ଦୁଃଖ ଓ ସୁଖ ଏବଂ

ତୁମ୍ହହି ଛାଡ଼ି ଗତି ଦୂସରି ନାହୀଁ । ରାମ ବସହୁ ତିନ୍ହ କେ ମନ ମାହୀଁ ॥
ଜନନୀ ସମ ଜାନହିଁ ପରନାରୀ । ଧନୁ ପରାୱ ବିଷ ତେଁ ବିଷ ଭାରୀ ॥୩॥
ଜେ ହରଷହିଁ ପର ସଂପତି ଦେଖୀ । ଦୁଖିତ ହୋହିଁ ପର ବିପତି ବିସେଷୀ ॥
ଜିନ୍ହହି ରାମ ତୁମ୍ହ ପ୍ରାନପିଆରେ । ତିନ୍ହ କେ ମନ ସୁଭ ସଦନ ତୁମ୍ହାରେ ॥୪॥

ସ୍ୱାମି ସଖା ପିତୁ ମାତୁ ଗୁର ଜିନ୍ହ କେ ସବ ତୁମ୍ହ ତାତ ।
ମନ ମଂଦିର ତିନ୍ହ କେଁ ବସହୁ ସୀୟ ସହିତ ଦୋଉ ଭ୍ରାତ ॥୧୩୦॥

ଅବଗୁନ ତଜି ସବ କେ ଗୁନ ଗହହୀଁ । ବିପ୍ର ଧେନୁ ହିତ ସଂକଟ ସହହୀଁ ॥
ନୀତି ନିପୁନ ଜିନ୍ହ କଇ ଜଗ ଲୀକା । ଘର ତୁମ୍ହାର ତିନ୍ହ କର ମନୁ ନୀକା ॥୧॥
ଗୁନ ତୁମ୍ହାର ସମୁଝଇ ନିଜ ଦୋସା । ଜେହି ସବ ଭାଁତି ତୁମ୍ହାର ଭରୋସା ॥
ରାମ ଭଗତ ପ୍ରିୟ ଲାଗହିଁ ଜେହୀ । ତେହି ଉର ବସହୁ ସହିତ ବୈଦେହୀ ॥୨॥

---

ତୁମ୍ଭଙ୍କୁ ଛାଡ଼ି ଯାହାଙ୍କ ଗତି ନାହିଁ ଅନ୍ୟ । ତାହାଙ୍କ ହୃଦୟେ ବସ ଶ୍ରୀ ରଘୁନନ୍ଦନ ॥
ଜନନୀ ସମ ଦେଖନ୍ତି ଯେତୁ ପରନାରୀ । ପର ସମ୍ପତ୍ତି ବିଷହୁଁ ବଳି ବିଷ ଭାରୀ ॥୩॥
ହରଷ ଲଭନ୍ତି ପର ସମ୍ପତ୍ତି ଯେ ଦେଖି । ଦୁଃଖିତ ହୁଅନ୍ତି ପର ବିପତ୍ତି ନିରେଖି ॥
ଯାହାଙ୍କ ପ୍ରାଣର ପ୍ରିୟ ତୁମ୍ଭେ ରଘୁବର । ତାହାଙ୍କ ହୃଦୟ ଶୁଭ ସଦନ ତୁମ୍ଭର ॥୪॥

ଗୁରୁ ସଖା ସ୍ୱାମୀ ଜନକ ଜନନୀ ତୁମ୍ଭେ ସବୁ କିଛୁ ଯା'ର ।
ଜାନକୀ ସହିତ ବସ ବେନି ଭ୍ରାତ ମନ-ମନ୍ଦିରେ ତାହାର ॥୧୩୦॥

ଅବଗୁଣ ତେଜି ଗୁଣ ସମସ୍ତଙ୍କ ଗଣେ । ବିପ୍ର ଧେନୁ ହିତେ ସହେ ସଙ୍କଟ ଆପଣେ ॥
ନୀତି-ନିପୁଣ ପ୍ରତିଷ୍ଠା ଯାହାର ଜଗତେ । ତା' ମନ ଉତ୍ତମ ଗୃହ ତୁମ୍ଭର ନିମନ୍ତେ ॥୧॥
ତୁମ୍ଭ ଗୁଣ ବୁଝି ନିଜ ଦୋଷ ଯେ ହେଳଇ । ସକଳ ପ୍ରକାରେ ତୁମ୍ଭ ଭରସା କରଇ ॥
ରାମଙ୍କ ଭକ୍ତ ଯାହାକୁ ପ୍ରିୟ ଅତିଶୟ । ଜନକ-ସୁତା ସହିତ ବସ ତା' ହୃଦୟ ॥୨॥

---

ପ୍ରଶଂସା ଓ ନିନ୍ଦା ସମାନ, ଯେ ବୁଝି ବିଚାରି ସତ୍ୟ ଓ ପ୍ରିୟ ବଚନ ବୋଲନ୍ତି, ଯେ ଜାଗରଣ ଓ ଶୟନ ସବୁ କାଳରେ ଆପଣଙ୍କ ଶରଣାପନ୍ନ ଏବଂ ଆପଣଙ୍କୁ ଛାଡ଼ି ଯାହାଙ୍କର ଅନ୍ୟ ଗତି ନାହିଁ, ହେ ରାମଚନ୍ଦ୍ର ! ଆପଣ ତାଙ୍କର ମନ ମଧ୍ୟରେ ବାସ କରନ୍ତୁ । ଯେ ପର ସ୍ତ୍ରୀଙ୍କୁ ଜନ୍ମଦାତ୍ରୀ ମାତା ତୁଲ୍ୟ ମାନନ୍ତି, ପର ଧନକୁ ବିଷଠାରୁ ମଧ୍ୟ ଅଧିକ ବୋଲି ଯେଉଁମାନେ ବିବେଚନା କରନ୍ତି, ଯେଉଁମାନେ ଅନ୍ୟର ସମ୍ପତ୍ତି ଦେଖି ହର୍ଷିତ ହୁଅନ୍ତି ଏବଂ ଅନ୍ୟର ବିପତ୍ତି ଦେଖି ବିଶେଷ ଦୁଃଖିତ ହୁଅନ୍ତି ଏବଂ ହେ ରାମ ! ଯେଉଁମାନଙ୍କୁ ଆପଣ ପ୍ରାଣସମ ପ୍ରିୟ, ସେହିମାନଙ୍କର ମନ ଆପଣଙ୍କ ବାସଯୋଗ୍ୟ ସୁଖ-ଭବନ ॥ ୨-୪ ॥ ଦୋହା ।—ହେ ତାତ ! ଯାହାଙ୍କର ସ୍ୱାମୀ, ସଖା, ପିତା, ମାତା ଓ ଗୁରୁ ସବୁ କିଛି ଆପଣ, ସେହିମାନଙ୍କ ମନ-ମନ୍ଦିରରେ ସୀତା ସହିତ ଆପଣ ଦୁଇ ଭାଇ ନିବାସ କରନ୍ତୁ ॥ ୧୩୦ ॥ ଚୌପାଈ —ଯେଉଁମାନେ ଅବଗୁଣ ଛାଡ଼ି ସମସ୍ତଙ୍କର ଗୁଣ ଗ୍ରହଣ କରନ୍ତି, ବ୍ରାହ୍ମଣ ଓ ଗୋରୁଙ୍କ ନିମନ୍ତେ ସଙ୍କଟ ସହନ୍ତି ଏବଂ ନୀତି-ନିପୁଣତାରେ ଜଗତରେ

ଜାତି ପାଁତି ଧନୁ ଧରମୁ ବଡ଼ାଈ । ପ୍ରିୟ ପରିବାର ସଦନ ସୁଖଦାଈ ॥
ସବ ତଜି ତୁମ୍ହହିଁ ରହଇ ଉର ଲାଈ । ତେହି କେ ହୃଦୟଁ ରହହୁ ରଘୁରାଈ ॥୩॥
ସରଗୁ ନରକୁ ଅପବରଗୁ ସମାନା । ଜହଁ ତହଁ ଦେଖ ଧରେଁ ଧନୁ ବାନା ॥
କରମ ବଚନ ମନ ରାଉର ଚେରା । ରାମ କରହୁ ତେହି କେଁ ଉର ଡେରା ॥୪॥

ଜାହି ନ ଚାହିଅ କବହୁଁ କଛୁ ତୁମ୍ହ ସନ ସହଜ ସନେହୁ ।
ବସହୁ ନିରଂତର ତାସୁ ମନ ସୋ ରାଉର ନିଜ ଗେହୁ ॥୧୩୧॥

ଏହି ବିଧି ମୁନିବର ଭବନ ଦେଖାଏ । ବଚନ ସପ୍ରେମ ରାମ ମନ ଭାଏ ॥
କହ ମୁନି ସୁନହୁ ଭାନୁକୁଲନାୟକ । ଆଶ୍ରମ କହଉଁ ସମୟ ସୁଖଦାୟକ ॥୧॥
ଚିତ୍ରକୂଟ ଗିରି କରହୁ ନିବାସୂ । ତହଁ ତୁମ୍ହାର ସବ ଭାଁତି ସୁପାସୂ ॥
ସୈଲୁ ସୁହାୱନ କାନନ ଚାରୂ । କରି କେହରି ମୃଗ ବିହଗ ବିହାରୂ ॥୨॥

---

ଜାତି କୁଳ ଅଭିମାନ ଧରମ ସମ୍ପଦ । ପ୍ରିୟ ପରିବାର ଚାରୁ ସଦନ ସୁଖଦ ॥
ସମସ୍ତ ତେଜିଣ ସଦା ରହେ ତୁମ୍ଭ ଲଗ୍ନେ । ବସ ରଘୁକୁଳମଣି, ତାହାର ହୃଦୟେ ॥୩॥
ସ୍ୱର୍ଗ, ନର୍କ, ଅପବର୍ଗ ସମ ସମସ୍ତଙ୍କୁ । ଦେଖେ ଧନୁଶର-ଧାରି ! ସର୍ବତ୍ର ତୁମ୍ଭଙ୍କୁ ॥
ମନ କର୍ମ ବଚନେ ଯେ ଆପଣଙ୍କ ଦାସ । କର ଶ୍ରୀ ରଘୁନନ୍ଦନ, ତା' ହୃଦେ ନିବାସ ॥୪॥

ଯାହାକୁ କେବେ ହେଁ ଲୋଡ଼ା ନାହିଁ କିଛୁ ଯେ ତୁମ୍ଭର ସ୍ୱତଃ ସ୍ନେହୀ ।
ବସ ନିରନ୍ତର ହୃଦୟେ ତାହାର ତୁମ୍ଭ ନିଜ ଗୃହ ସେହି ॥୧୩୧॥

ଏହି ଭାବେ ମୁନିବର ଦେଖାଇଲେ ଧାମ । ସପ୍ରେମ ବଚନ ଶୁଣି ସୁଖୀ ହେଲେ ରାମ ॥
ବୋଲନ୍ତି ମୁନୀଶ, ଶୁଣ, ଶ୍ରୀ ରଘୁନାୟକ । ଆଶ୍ରମ କହେ ସମୟ-ସୁଖ-ପ୍ରଦାୟକ ॥୧॥
ଚିତ୍ରକୂଟ ପର୍ବତରେ ବାସ କର ଯାଇ । ତହିଁ ସର୍ବ ସୁବ୍ୟବସ୍ଥା ହେବ ତୁମ୍ଭ ପାଇଁ ॥
ଶଇଲ ସୁମନୋହର କାନନ ସୁନ୍ଦର । ବିହରନ୍ତି କରି, ହରି, ମୃଗ, ନଭଚର ॥୨॥

---

ଯାହାଙ୍କ ମର୍ଯ୍ୟାଦା ପ୍ରତିଷ୍ଠିତ, ହେ ରାମ ! ସେହିମାନଙ୍କ ସୁନ୍ଦର ମନ ଆପଣଙ୍କ ଘର ॥୧॥ ଯେ ଗୁଣ ଆପଣଙ୍କର ଓ ଦୋଷ ଆପଣାର ବୋଲି ମନେ କରେ, ଯାହାର ସବୁମତେ ଆପଣଙ୍କ ଉପରେ ଭରସା ଏବଂ ରାମଭକ୍ତ ଯାହାର ପ୍ରିୟ, ତାହାର ହୃଦୟରେ ଆପଣ ନିବାସ କରନ୍ତୁ ॥ ୨ ॥ ଜାତିପାଁତି, ଧନ, ଧର୍ମ, ବଡ଼ାଇ, ପ୍ରିୟ ପରିବାର ଓ ସୁଖଦାୟକ ଗୃହ—ସବୁ ଯେ ଛାଡ଼ି କେବଳ ଆପଣଙ୍କୁ ହୃଦୟରେ ଧାରଣ କରି ରହେ, ହେ ରଘୁନାଥ ! ଆପଣ ତାହାର ହୃଦୟରେ ରୁହନ୍ତୁ ॥ ୩ ॥ ସ୍ୱର୍ଗ, ନର୍କ ଓ ମୋକ୍ଷ ଯାହା ପକ୍ଷରେ ସମାନ, ଯେ କେବଳ ଧନୁଶରଧାରୀ ଆପଣଙ୍କୁ ସବୁଠାରେ ଦେଖେ ଏବଂ ଯେ ମନ, ବଚନ ଓ କର୍ମରେ ଆପଣଙ୍କ ଦାସ, ହେ ରାମ ! ଆପଣ ତାହାର ହୃଦୟରେ ବାସ କରନ୍ତୁ ॥ ୪ ॥ ଦୋହା —ଯାହାର କେବେ ହେଲେ କିଛି ଦରକାର ନାହିଁ ଏବଂ ଯାହାର ଆପଣଙ୍କ ପ୍ରତି ସ୍ୱାଭାବିକ ପ୍ରେମ; ଆପଣ ତାହାର ମନରେ ନିରନ୍ତର ନିବାସ କରନ୍ତୁ । ତାହା ହିଁ ଆପଣଙ୍କ ନିଜର ଗୃହ ।" ॥ ୧୩୧ ॥ ଏହି ରୂପେ ମୁନିବର ବାଲ୍ମୀକି

ନଦୀ ପୁନୀତ ପୁରାନ ବଖାନୀ । ଅତ୍ରିପ୍ରିୟା ନିଜ ତପ ବଲ ଆନୀ ॥
ସୁରସରି ଧାର ନାଉଁ ମଂଦାକିନି । ଜୋ ସବ ପାତକ ପୋତକ ଡାକିନି ॥୩॥
ଅତ୍ରି ଆଦି ମୁନିବର ବହୁ ବସହୀଁ । କରହିଁ ଜୋଗ ଜପ ତପ ତନ କସହୀଁ ॥
ଚଲହୁ ସଫଲ ଶ୍ରମ ସବ କର କରହୂ । ରାମ ଦେହୁ ଗୌରବ ଗିରିବରହୂ ॥୪॥

ଚିତ୍ରକୂଟ ମହିମା ଅମିତ କହୀ ମହାମୁନି ଗାଇ ।
ଆଇ ନହାଏ ସରିତ ବର ସିୟ ସମେତ ଦୋଉ ଭାଇ ॥୧୩୨॥

ରଘୁବର କହେଉ ଲଖନ ଭଲ ଘାଟୂ । କରହୁ କତହୁଁ ଅବ ଠାହର ଠାଟୂ ॥
ଲଖନ ଦୀଖ ପୟ ଉତର କରାରା । ଚହୁଁ ଦିସି ଫିରେଉ ଧନୁଷ ଜିମି ନାରା ॥୧॥

---

ନଦୀ ପୁରାଣ ବର୍ଣ୍ଣିତ ସୁପବିତ୍ର ଅଟଇ । ଅତ୍ରି-ନାରୀ ନିଜ ତପ ବଳେ ଆଣିଛନ୍ତି ॥
ସୁରନଦୀ ଧାର ନାମ ଅଟେ ମନ୍ଦାକିନୀ । ପାତକ ଶିଶୁମାନଙ୍କ ନିମନ୍ତେ ଡାକିନୀ ॥୩॥
ଅତ୍ରି ଆଦି ମୁନିବର ତହିଁ ନିବସନ୍ତି । ଜପ ତପ ଯୋଗ ଦ୍ୱାରା ତନୁକୁ କଷନ୍ତି ॥
ଯାଇଣ ସୁଫଳ ଶ୍ରମ ସମସ୍ତଙ୍କ କର । ଗିରିବରକୁ ଗୌରବ ଦିଅ, ରଘୁବର ॥୪॥

ଗିରି ଚିତ୍ରକୂଟ ମହିମା ଅମିତ କହିଲେ ମୁନିମଣି ଗାଇ ।
ଆସି ସ୍ନାନ କଲେ ପବିତ୍ର ସରିତେ ସୀତା ସହ ବେନି ଭାଇ ॥୧୩୨॥

କହିଲେ ରାମ, ଲକ୍ଷ୍ମଣ, ଘାଟ ମନୋହର । ଏବେ କାହିଁ ରହିବାକୁ ସ୍ଥାନ ଠାବ କର ॥
ଲକ୍ଷ୍ମଣ ଦେଖିଲେ ନଦୀ ଉତ୍ତର କୂଳରେ । ଚଉଦିଗେ ସ୍ଥିତ ନାଳ ଧନୁ ଆକାରରେ ॥୧॥

---

ଶ୍ରୀରାମଙ୍କୁ ତାଙ୍କ ଘର ଦେଖାଇ ଦେଲେ । ତାଙ୍କ ପ୍ରେମପୂର୍ଣ୍ଣ ବଚନ ଶ୍ରୀରାମଙ୍କ ମନକୁ ଅତି ଭଲ ଲାଗିଲା । ତତ୍ପରେ ମୁନି କହିଲେ, "ହେ ସୂର୍ଯ୍ୟକୁଳସ୍ୱାମି ! ଶୁଣନ୍ତୁ; ବର୍ତ୍ତମାନ ମୁଁ ଆପଣଙ୍କୁ ଏ ସମୟ ନିମନ୍ତେ ଗୋଟିଏ ସୁଖଦାୟକ ଆଶ୍ରମ ବିଷୟରେ କହୁଅଛି ॥ ୧ ॥ ଆପଣ ଚିତ୍ରକୂଟ ପର୍ବତରେ ବାସ କରନ୍ତୁ । ସେହିଠାରେ ଆପଣଙ୍କ ନିମନ୍ତେ ସବୁ ପ୍ରକାର ସୁବିଧା ଅଛି । ସୁଶୋଭିତ ପର୍ବତ ଓ ସୁନ୍ଦର ବନ ଅଛି । ଉକ୍ତ ବନ ହସ୍ତୀ, ସିଂହ, ହରିଣ ଓ ପକ୍ଷୀମାନଙ୍କର ବିହାରସ୍ଥଳ ॥ ୨ ॥ ସେଠାରେ ପୁରାଣ-ପ୍ରସିଦ୍ଧ ପବିତ୍ର ନଦୀ ପ୍ରବାହିତ । ଅତ୍ରି ମୁନିଙ୍କ ପତ୍ନୀ ଅନସୂୟା ଆପଣା ତପୋବଳରେ ଉକ୍ତ ନଦୀକୁ ଆଣିଥିଲେ । ତାହା ଗଙ୍ଗାଙ୍କର ଧାରା । ନାମ ମନ୍ଦାକିନୀ । ସେ ସମସ୍ତ ପାପ-ଶିଶୁମାନଙ୍କୁ ଗ୍ରାସିବା ବିଷୟରେ ଡାଆଣୀ ସମାନ ॥ ୩ ॥ ଅତ୍ରି ଆଦି ବହୁତ ମୁନିବର ସେଠାରେ ନିବାସ କରନ୍ତି । ସେମାନେ ଯୋଗ, ଜପ ଓ ତପ କରି ଶରୀରକୁ ଦୃଢ କରନ୍ତି । ହେ ରାମ ! ଚାଲନ୍ତୁ, ସମସ୍ତଙ୍କ ପରିଶ୍ରମକୁ ସଫଳ କରନ୍ତୁ ଏବଂ ଗିରିବର ଚିତ୍ରକୂଟକୁ ମଧ୍ୟ ଗୌରବ ଦିଅନ୍ତୁ ।" ॥ ୪ ॥ ଦୋହା :—ମହାମୁନି ବାଲ୍ମୀକି ଚିତ୍ରକୂଟର ଅପରିମିତ ମହିମା ବଖାଣି କହିଲେ । ତଦନନ୍ତର ସୀତାଙ୍କ ସହିତ ଭାଇ ଦୁହେଁ ଆସି ନଦୀଶ୍ରେଷ୍ଠା ମନ୍ଦାକିନୀରେ ସ୍ନାନ କଲେ ॥ ୧୩୨ ॥ ଚୌପାଇ :—ଶ୍ରୀରାମଚନ୍ଦ୍ର କହିଲେ, "ଲକ୍ଷ୍ମଣ ! ବହୁତ ଉତ୍ତମ ଘାଟ, ବର୍ତ୍ତମାନ ଏଇଠି କେଉଁଠି ରହିବାର ବ୍ୟବସ୍ଥା କର ।" ଲକ୍ଷ୍ମଣ

ନଦୀ ପନଚ ସର ସମ ଦମ ଦାନା । ସକଲ କଲୁଷ କଲି ସାଉଜ ନାନା ॥
ଚିତ୍ରକୂଟ ଜନୁ ଅଚଲ ଅହେରୀ । ଚୁକଇ ନ ଘାତ ମାର ମୁଠଭେରୀ ॥୨॥
ଅସ କହି ଲଖନ ଠାଉଁ ଦେଖରାୱା । ଥଲୁ ବିଲୋକି ରଘୁବର ସୁଖୁ ପାୱା ॥
ରମେଉ ରାମ ମନୁ ଦେବନ୍ହ ଜାନା । ଚଲେ ସହିତ ସୁର ଥପତି ପ୍ରଧାନା ॥୩॥
କୋଲ କିରାତ ବେଷ ସବ ଆଏ । ରଚେ ପରନ ତୃନ ସଦନ ସୁହାଏ ॥
ବରନି ନ ଜାହିଁ ମଂଜୁ ଦୁଇ ସାଲା । ଏକ ଲଲିତ ଲଘୁ ଏକ ବିସାଲା ॥୪॥
ଲଛିମନ ଜାନକୀ ସହିତ ପ୍ରଭୁ ରାଜତ ରୁଚିର ନିକେତ ।
ସୋହ ମଦନୁ ମୁନି ବେଷ ଜନୁ ରତି ରିତୁରାଜ ସମେତ ॥୧୩୩॥

## ମାସପାରାୟଣ, ସପ୍ତଦଶ ବିଶ୍ରାମ

ଅମର ନାଗ କିଂନର ଦିସିପାଲା । ଚିତ୍ରକୂଟ ଆଏ ତେହି କାଲା ॥
ରାମ ପ୍ରନାମୁ କୀନ୍ହ ସବ କାହୂ । ମୁଦିତ ଦେବ ଲହି ଲୋଚନ ଲାହୂ ॥୧॥

---

ନଦୀ ଅଟେ ତୂଣ, ତାର ଶର ଦମ ଦାନ । ସକଳ କଳି-କଲ୍ମଷ ଶିକାର ସମାନ ॥
ଚିତ୍ରକୂଟ ଅବିଚଳ ଶିକାରୀ ଅଟଇ । ସମ୍ମୁଖେ ପ୍ରହାରେ, ଲକ୍ଷ୍ୟଭ୍ରଷ୍ଟ ନ ହୁଅଇ ॥୨॥
ଏହା ଭାବି ଲକ୍ଷ୍ମଣ ସ୍ଥାନ ଦେଖାଇଲେ । ସ୍ଥଳ ବିଲୋକି ଶ୍ରୀରାମ ପ୍ରସନ୍ନ ହୋଇଲେ ॥
ରମିଲା ରାମଙ୍କ ମନ, ଦେବେ ଏହା ମଣି । ଆସିଲେ ବିଶ୍ୱକର୍ମାଙ୍କୁ କରିଣ ଅଗ୍ରଣୀ ॥୩॥
କୋଲ୍ କିରାତ ବେଶରେ ହୋଇ ଉପସ୍ଥିତ । ରଚିଲେ ତୃଣ ପର୍ଣ୍ଣରେ ସଦନ ଶୋଭିତ ॥
ଅବର୍ଣ୍ଣନୀୟ ଅଟଇ ମଞ୍ଜୁ ଦୁଇ ଶାଳ । କ୍ଷୁଦ୍ର ସୁଲଳିତ ଏକ, ଇତର ବିଶାଳ ॥୪॥
ଜାନକୀ ଲକ୍ଷ୍ମଣ ସହିତ ଶ୍ରୀରାମ ରାଜନ୍ତି ପର୍ଣ୍ଣଶାଳାରେ ।
ଶୋଭଇ ମଦନ ମୁନି ବେଶେ ଅବା ରତି ବସନ୍ତ ସଙ୍ଗରେ ॥୧୩୩॥
ଅମର ନାଗ କିନ୍ନର ଦିଗପାଳ ଗଣ । ସେ ସମୟେ ଚିତ୍ରକୂଟେ କଲେ ଆଗମନ ॥
ରାମ ସମସ୍ତଙ୍କୁ କଲେ ପ୍ରଣାମ ସାଦରେ । ଲୋଚନ-ଲାଭ ଲଭିଣ ପ୍ରସନ୍ନ ଅମରେ ॥୧॥

---

ପୟସ୍ୱିନୀ ନଦୀର ଉତ୍ତରରେ ଥିବା ଉଚ୍ଚ କୂଳ ଆଡକୁ ଅନାଇଲେ ଏବଂ କହିଲେ, "ଏହାର ଚତୁର୍ଦ୍ଦିଗରେ ଧନୁପରି ଗୋଟିଏ ନାଳ ଘେରିଅଛି ॥୧॥ ନଦୀ ମନ୍ଦାକିନୀ ସେହି ଧନୁର ତୂଣ ଏବଂ ଶମ, ଦମ ଓ ଦାନ ଶର । କଳିଯୁଗର ସମସ୍ତ ପାପ ତାହାର ଲକ୍ଷ୍ୟସ୍ଥଳ, ସେମାନେ ହିଂସ୍ର ପଶୁ ସଦୃଶ ଶିକାର, ଚିତ୍ରକୂଟ ନିଜେ ଅଚଳ ଶିକାରୀ । ତାହାର ଲକ୍ଷ୍ୟ କେବେ ଭ୍ରଷ୍ଟ ହୁଏ ନାହିଁ । ଏହା ସମ୍ମୁଖରୁ ଶର ମାରେ ।" ॥୨॥ ଏହିପରି କହି ଲକ୍ଷ୍ମଣ ସ୍ଥାନଟି ଦେଖାଇଦେଲେ । ସ୍ଥାନକୁ ଦେଖି ଶ୍ରୀରାମ ସୁଖ ଲାଭ କଲେ । ଯେତେବେଳେ ଦେବତା-ମାନେ ଜାଣିଲେ ଯେ, ଶ୍ରୀରାମଙ୍କ ମନ ସେହିଠାରେ ଲାଗିଗଲାଣି, ସେତେବେଳେ ସେମାନେ ଦେବଗଣଙ୍କ ପ୍ରଧାନ ସ୍ଥପତି (ଶିଳ୍ପୀ) ବିଶ୍ୱକର୍ମାଙ୍କୁ ନେଇ ଚାଲିଲେ ॥୩॥ ସମସ୍ତ ଦେବତା କୋଲ, ଶବର ପ୍ରଭୃତିଙ୍କ ବେଶରେ ସେଠାକୁ ଆସିଲେ ଏବଂ ପତ୍ର ଓ ଘାସରେ

ବରଷି ସୁମନ କହ ଦେବ ସମାଜୂ । ନାଥ ସନାଥ ଭଏ ହମ ଆଜୂ ॥
କରି ବିନତୀ ଦୁଖ ଦୁସହ ସୁନାଏ । ହରଷିତ ନିଜ ନିଜ ସଦନ ସିଧାଏ ॥୨॥
ଚିତ୍ରକୂଟ ରଘୁନଂଦନୁ ଛାଏ । ସମାଚାର ସୁନି ସୁନି ମୁନି ଆଏ ॥
ଆୱତ ଦେଖି ମୁଦିତ ମୁନିବୃଂଦା । କୀହ୍ନ ଦଣ୍ଡବତ ରଘୁକୁଲଚଂଦା ॥୩॥
ମୁନି ରଘୁବରହି ଲାଇ ଉର ଲେହୀଂ । ସୁଫଲ ହୋନ ହିତ ଆସିଷ ଦେହୀଂ ॥
ସିୟ ସୌମିତ୍ରି ରାମ ଛବି ଦେଖହିଂ । ସାଧନ ସକଲ ସଫଲ କରି ଲେଖହିଂ ॥୪॥

ଜଥାଜୋଗ ସନମାନି ପ୍ରଭୁ ବିଦା କିଏ ମୁନିବୃଂଦ ।
କରହିଂ ଜୋଗ ଜପ ଜାଗ ତପ ନିଜ ଆଶ୍ରମନ୍ହି ସୁଛଂଦ ॥୧୩୪॥

---

ପୁଷ୍ପ ବରଷି ବୋଲନ୍ତି ବିବୁଧ-ସମାଜ । ନାଥ, ସନାଥ ହୋଇଲୁ ଆମ୍ଭେ ସର୍ବେ ଆଜ ॥
ବିନତି କରି ଦୁଃସହ ଦୁଃଖ ଶୁଣାଇଲେ । ହରଷିତେ ନିଜ ନିଜ ପୁରକୁ ଗମିଲେ ॥୨॥
ଚିତ୍ରକୂଟେ ରଘୁନାଥ ନିବାସ କରିଲେ । ସମାଚାର ଶୁଣି ଶୁଣି ମୁନି ଆଗମିଲେ ॥
ଦେଖି ପ୍ରମୋଦିତେ ମୁନି-ବୃନ୍ଦଙ୍କ ଆଗତ । ପ୍ରେମେ ରଘୁକୁଳମଣି କଲେ ଦଣ୍ଡବତ ॥୩॥
ରଘୁନନ୍ଦନଙ୍କୁ ହୃଦେ ଲଗାଇ ମୁନୀଶ । ସୁଫଳ ହେବା ନିମନ୍ତେ ଦିଅନ୍ତି ଆଶିଷ ॥
ସୀତା ସୌମିତ୍ରି ରାମଙ୍କ ଛବି ବିଲୋକନ୍ତି । ସମସ୍ତ ନିଜ ସାଧନ ସୁଫଳ ମଣନ୍ତି ॥୪॥

ଯଥାଯୋଗ୍ୟ ପ୍ରଭୁ ସମ୍ମାନ କରିଣ ବିଦା କଲେ ମୁନି-ବୃନ୍ଦେ ।
ଆଚରନ୍ତି ଜପ, ଯୋଗ, ଯଜ୍ଞ ତପ ନିଜ ଆଶ୍ରମେ ସ୍ୱଚ୍ଛନ୍ଦେ ॥୧୩୪॥

---

ସୁନ୍ଦର ଘର ତିଆରି କରିଦେଲେ । ଦୁଇଟି ଏପରି ସୁନ୍ଦର କୁଟୀର ନିର୍ମାଣ କରିଦେଲେ, ତାହାର ବର୍ଣ୍ଣନା କରାଯାଇ ପାରିବ ନାହିଁ । ଦୁଇଟି ମଧ୍ୟରୁ ଗୋଟିଏ ଅତି ସୁନ୍ଦର ସାନ ଏବଂ ଅନ୍ୟଟି ବଡ ଥିଲା ॥ ୪ ॥ ଦୋହା ।—ଲକ୍ଷ୍ମଣ ଓ ଜାନକୀଙ୍କ ସହିତ ପ୍ରଭୁ ଶ୍ରୀରାମଚନ୍ଦ୍ର ସୁନ୍ଦର ଘାସପତ୍ର-ନିର୍ମିତ କୁଟୀରରେ ଶୋଭାୟମାନ । କନ୍ଦର୍ପ ମୁନିବେଶ-ଧାରଣ-ପୂର୍ବକ ପତ୍ନୀ ରତି ଓ ବସନ୍ତ ଋତୁ ସହ ସୁଶୋଭିତ ହେଉଅଛନ୍ତି ଅବା ! ॥ ୧୩୩ ॥ ଚୌପାଇ —ସେହି ସମୟରେ ଦେବତା, ନାଗ, କିନ୍ନର ଓ ଦିଗପାଳମାନେ ଚିତ୍ରକୂଟକୁ ଆସିଲେ ଏବଂ ଶ୍ରୀରାମଚନ୍ଦ୍ର ସମସ୍ତଙ୍କୁ ନମସ୍କାର କଲେ । ଦେବତାମାନେ ନେତ୍ରର ଲାଭ (ଫଳ) ପାଇ ଆନନ୍ଦିତ ହେଲେ ॥ ୧ ॥ ପୁଷ୍ପବୃଷ୍ଟି କରି ଦେବସମାଜ କହିଲେ, "ହେ ନାଥ ! ଆଜି ଆପଣଙ୍କ ଦର୍ଶନ ପାଇ ଆମ୍ଭେମାନେ ସନାଥ ହୋଇଗଲୁ ।" ତତ୍ପରେ ସେମାନେ ବିନମ୍ର ସହକାରେ ସେମାନଙ୍କ ଦୁଃଖ ଶୁଣାଇଲେ ଏବଂ ( ଦୁଃଖନାଶ ନିମନ୍ତେ ଆଶ୍ୱାସନା ପାଇ ) ଆନନ୍ଦିତ ମନରେ ଆପଣା ଆପଣା ସ୍ଥଳକୁ ଫେରିଗଲେ ॥ ୨ ॥ 'ଶ୍ରୀ ରଘୁନାଥ ଚିତ୍ରକୂଟରେ ଆସି ବାସ କରୁଅଛନ୍ତି'—ଏ ସମ୍ବାଦ ପାଇ ବହୁତ ମୁନି ଆସିଲେ । ରଘୁକୁଳଚନ୍ଦ୍ର ଶ୍ରୀରାମ ମୁଦିତ ମୁନିମଣ୍ଡଳୀକୁ ଆସିବାର ଦେଖି ଦଣ୍ଡବତ-ପ୍ରଣାମ କଲେ ॥ ୩ ॥ ମୁନିଗଣ ଶ୍ରୀରାମଙ୍କୁ ଆଲିଙ୍ଗନ କରୁଥାଆନ୍ତି ଏବଂ କୃତକାର୍ଯ୍ୟ ହେବା ନିମନ୍ତେ ଆଶୀର୍ବାଦ ଦେଉଥାଆନ୍ତି । ସେମାନେ ସୀତା, ଲକ୍ଷ୍ମଣ ଓ ଶ୍ରୀରାମଙ୍କ ଛବି

ଯୂହ ଯୂଥି କୋଲ କିରାତହ୍ନ ପାଈ । ହରଷେ ଜନୁ ନବ ନିଧି ଘର ଆଈ ॥
କଂଦ ମୂଲ ଫଲ ଭରି ଭରି ଦୋନା । ଚଲେ ରଂକ ଜନୁ ଲୂଟନ ସୋନା ॥୧॥
ତିହ୍ନ ମହଁ ଜିହ୍ନ ଦେଖେ ଦୋଉ ଭ୍ରାତା । ଅପର ତିହ୍ନହିଁ ପୂଁଛହିଁ ମଗୁ ଜାତା ॥
କହତ ସୁନତ ରଘୁବୀର ନିକାଈ । ଆଇ ସବହ୍ନି ଦେଖେ ରଘୁରାଈ ॥୨॥
କରହିଁ ଜୋହାରୁ ଭେଁଟ ଧରି ଆଗେ । ପ୍ରଭୁହି ବିଲୋକହିଁ ଅତି ଅନୁରାଗେ ॥
ଚିତ୍ର ଲିଖେ ଜନୁ ଜହଁ ତହଁ ଠାଢ଼େ । ପୁଲକ ସରୀର ନୟନ ଜଲ ବାଢ଼େ ॥୩॥
ରାମ ସନେହ ମଗନ ସବ ଜାନେ । କହି ପ୍ରିୟ ବଚନ ସକଲ ସନମାନେ ॥
ପ୍ରଭୁହି ଜୋହାରି ବହୋରି ବହୋରୀ । ବଚନ ବିନୀତ କହହିଁ କର ଜୋରୀ ॥୪॥

---

ଏ ସନ୍ଦେଶ ପାଇ କୋ‌ହ୍ଲ କିରାତେ ପ୍ରସନ୍ନ । ନବନିଧି ଆଗମିଲା ଗୃହକୁ ଯେସନ ॥
କନ୍ଦ ମୂଳ ଫଳ ଦୋନା ପୂର୍ଣ୍ଣ କରି କରି । ସୁନା ଲୁଟିବାକୁ ରଙ୍କ ଚଲିଲେ ଯେପରି ॥୧॥
ତାଙ୍କ ମଧ୍ୟେ ଦେଖିଥିଲେ ଯେ ବେନି ଭ୍ରାତାଙ୍କୁ । ପଥରେ ଯାଆନ୍ତେ ଅନ୍ୟେ ପଚାରନ୍ତି ତାଙ୍କୁ ॥
କହି ଶୁଣି ରଘୁବୀର ବିମଳ ବଡ଼ାଇ । ଆସି ସର୍ବେ ଦରଶନ କଲେ ଦୁଇ ଭାଇ ॥୨॥
ଜୁହାର କରି ଆଦର ଭେଟି ଧରି ଆଗେ । ପ୍ରଭୁଙ୍କୁ ଅବଲୋକନ୍ତି ଅତି ଅନୁରାଗେ ॥
ଚିତ୍ରରେଖା ପରି ହୋଇ ହେଲେ ଯହିଁ ତହିଁ । ପୁଲକ ଶରୀର, ନୀର ନୟନରୁ ବହି ॥୩॥
ରାମ ସେମାନଙ୍କୁ ଅତି ସ୍ନେହ-ମଗ୍ନ ଜାଣି । ସମ୍ମାନିଲେ ସମସ୍ତଙ୍କୁ ଭାଷି ପ୍ରିୟବାଣୀ ॥
ବାରମ୍ବାର ପ୍ରେମବଶ ପ୍ରଭୁଙ୍କୁ ନମନ୍ତି । କର ଯୋଡ଼ି ସବିନୟ ବଚନ ବୋଲନ୍ତି ॥୪॥

---

ଦେଖିଆଆନ୍ତି ଏବଂ ନିଜ ନିଜର ସମସ୍ତ ସାଧନା ସଫଳ ହେଲା ବୋଲି ମନେ କରୁ-ଥାଆନ୍ତି ॥ ୪ ॥ ଦୋହା —ପ୍ରଭୁ ଶ୍ରୀରାମ ଯଥାଯୋଗ୍ୟ ସମ୍ମାନ ଦେଇ ମୁନିମଣ୍ଡଳୀକୁ ବିଦା କଲେ । ଶ୍ରୀରାମଙ୍କ ଆଗମନ ଯୋଗେ ସେମାନେ ଆପଣା ଆପଣା ଆଶ୍ରମରେ ଏବେ ସ୍ୱଚ୍ଛନ୍ଦ ଭାବରେ ତପସ୍ୟା କରିବାକୁ ଲାଗିଲେ ॥ ୧୩୪ ॥ ଚୌପାଈ :—କୋହ୍ଲ, ଭିଲ ଓ ଶବରମାନେ ଯେତେବେଳେ ଶ୍ରୀରାମଙ୍କ ଆଗମନର ସମାଚାର ପାଇଲେ, ସେତେବେଳେ ସେମାନେ ଅତିଶୟ ଆନନ୍ଦିତ ହେଲେ । ସତେ ଅବା ସେମାନଙ୍କ ଘରକୁ ନବନିଧି ଆସିଯାଇଛି ! ସେମାନେ ଚଉପଦୀମାନଙ୍କରେ କନ୍ଦ, ମୂଳ, ଫଳ ଭର୍ତ୍ତି କରି ଚାଲିଲେ । ସତେ ଅବା ଦରିଦ୍ରମାନେ ସୁନା ଲୁଟି କରିବାକୁ ଚାଲିଛନ୍ତି ! ॥୧॥ ସେମାନଙ୍କ ମଧ୍ୟରୁ ଯେଉଁମାନେ ଆଗରୁ ଦୁଇ ଭାଇଙ୍କୁ ଦେଖି ସାରିଥିଲେ, ସେମାନଙ୍କୁ ଅନ୍ୟମାନେ ବାଟରେ ଯାଉ ଯାଉ ପଚାରୁଥା'ନ୍ତି । ଏହି ରୂପେ ଶ୍ରୀରାମଚନ୍ଦ୍ରଙ୍କ ସୌନ୍ଦର୍ଯ୍ୟ ବିଷୟ କହି ଶୁଣି ସମସ୍ତେ ଆସି ଶ୍ରୀ ରଘୁନାଥଙ୍କ ଦର୍ଶନ ଲାଭ କଲେ ॥୨॥ ଆଗରେ ଉପହାର ଥୋଇ ସେମାନେ ଜୁହାର କରୁଥା'ନ୍ତି ଏବଂ ଅତିଶୟ ଅନୁରାଗରେ ପ୍ରଭୁଙ୍କୁ ଦର୍ଶନ କରୁଥାଆନ୍ତି । ସେମାନେ ମୁଗ୍ଧ ହୋଇ ଯେଉଁଠି ସେଇଠି ଚିତ୍ର-ପ୍ରତିମା ପରି ଠିଆ ହୋଇ ପଡ଼ୁଥା'ନ୍ତି । ସେମାନଙ୍କ ଶରୀର ପୁଲକିତ ହେଉଥାଏ ଏବଂ ନେତ୍ରରେ ପ୍ରେମାଶ୍ରୁ-ଜଳର ବନ୍ୟା ମାଡ଼ି ଆସୁଥାଏ ॥୩॥ ସେମାନେ ସମସ୍ତେ ପ୍ରେମ-ମଗ୍ନ ହୋଇଛନ୍ତି ବୋଲି ଶ୍ରୀରାମ

ଅବ ହମ ନାଥ ସନାଥ ସବ ଭଏ ଦେଖି ପ୍ରଭୁ ପାୟ ।
ଭାଗ ହମାରେଁ ଆଗମନୁ ରାଉର କୋସଲରାୟ ॥୧୩୫॥
ଧନ୍ୟ ଭୂମି ବନ ପଂଥ ପହାରା । ଜହଁ ଜହଁ ନାଥ ପାଉ ତୁମ୍ହ ଧାରା ॥
ଧନ୍ୟ ବିହଗ ମୃଗ କାନନଚାରୀ । ସଫଲ ଜନମ ଭଏ ତୁମ୍ହହି ନିହାରୀ ॥୧॥
ହମ ସବ ଧନ୍ୟ ସହିତ ପରିବାରା । ଦୀଖ ଦରସୁ ଭରି ନୟନ ତୁମ୍ହାରା ॥
କୀନ୍ହ ବାସୁ ଭଲ ଠାଉଁ ବିଚାରୀ । ଇହାଁ ସକଲ ରିତୁ ରହବ ସୁଖାରୀ ॥୨॥
ହମ ସବ ଭାଁତି କରବ ସେବକାଈ । କରି କେହରି ଅହି ବାଘ ବରାଈ ॥
ବନ ବେହଡ଼ ଗିରି କଂଦର ଖୋହା । ସବ ହମାର ପ୍ରଭୁ ପଗ ପଗ ଜୋହା ॥୩॥
ତହଁ ତହଁ ତୁମ୍ହହି ଅହେର ଖେଲାଉବ । ସର ନିରଝର ଜଲ ଠାଉଁ ଦେଖାଉବ ॥
ହମ ସେବକ ପରିବାର ସମେତା । ନାଥ ନ ସକୁଚବ ଆୟସୁ ଦେତା ॥୪॥

---

ଆମ୍ଭେ ସର୍ବେ ନାଥ, ହୋଇଲୁ ସନାଥ ଦେଖି ତବ ପଦ ଆଜ ।
ଆପଣଙ୍କ ଆଗ-ମନ ଆମ୍ଭ ଭାଗ୍ୟ, ଶୁଣନ୍ତୁ କୋଶଳ-ରାଜ ॥୧୩୫॥
ଧନ୍ୟ ଭୂମି, ବନ ପଥ, ପର୍ବତ-ମାଳ । ଯହିଁ ଯହିଁ ନାଥ, ତୁମ୍ଭେ ପଦର ସଞ୍ଚାଳ ॥
ଧନ୍ୟ ବିପିନ-ବିହାରୀ ମୃଗ ବିହଙ୍ଗମ । ତୁମ୍ଭଙ୍କୁ ବିଲୋକି ହେଲା ସୁଫଳ ଜନମ ॥୧॥
ଆମ୍ଭେ ସର୍ବେ ଧନ୍ୟ ହେଲୁ ସହିତ କୁଟୁମ୍ବ । ନେତ୍ର ପୂର୍ଣ୍ଣ କରି ରୂପ ନିରେଖିଣ ତୁମ୍ଭ ॥
ଉତ୍ତମ ସ୍ଥାନ ବିଚାରି କରିଲ ନିବାସ । ସମସ୍ତ ଋତୁରେ ଏଥି ରହିବ ଉଲ୍ଲାସ ॥୨॥
କରିବୁ ସବୁ ପ୍ରକାରେ ସେବା ଆମ୍ଭେ ଥାଇ । କରି, ହରି, ବ୍ୟାଘ୍ର, ବ୍ୟାଳ ଭୟରୁ ବଞ୍ଚାଇ ॥
ଗିରି ସଙ୍କଟ କନ୍ଦର ନିବିଡ଼ ବନସ୍ତ । ପଦେ ପଦେ ଦେଖା ପ୍ରଭୁ ଆମ୍ଭର ସମସ୍ତ ॥୩॥
ସେ ସ୍ଥାନେ ପାରିଧି ସଙ୍ଗେ ନେଇ ଖେଳାଇବୁ । ସର ନିର୍ଝରାଦି ସବୁ ଜାଗା ଦେଖାଇବୁ ॥
ଆମ୍ଭେ ପରିବାର ସହ ଅନୁଚର ଏବେ । ଆଦେଶିବାକୁ ସଙ୍କୋଚ ନ କରିବ କେବେ ॥୪॥

---

ଜାଣିଲେ । ପ୍ରିୟ ବଚନ କହି ସେ ସମସ୍ତଙ୍କୁ ସମ୍ମାନ କଲେ । ସେମାନେ ବାରମ୍ବାର ପ୍ରଭୁ ଶ୍ରୀରାମଙ୍କୁ ଜୁହାର କରି ହାତ ଯୋଡ଼ି ବିନୀତ ବଚନ କହୁଥାଆନ୍ତି— ॥ ୪ ॥ ଦୋହା :—"ହେ ନାଥ ! ପ୍ରଭୁଙ୍କ ଚରଣ ପାଇ ଆମ୍ଭେମାନେ ଏବେ ସନାଥ ହୋଇଗଲୁ । ହେ କୋଶଳରାଜ ! ଆମରି ଭାଗ୍ୟ-ବଳରେ ଆପଣଙ୍କର ଏଠାକୁ ଶୁଭାଗମନ ॥ ୧୩୫ ॥ ଚୌପାଈ :—ହେ ନାଥ ! ଯେଉଁଠି ଯେଉଁଠି ଆପଣ ଚରଣ ରଖିଅଛନ୍ତି, ସେହି ପୃଥିବୀ, ବନ, ମାର୍ଗ ଓ ପାହାଡ଼ ଧନ୍ୟ ଏବଂ ଆପଣଙ୍କ ଦର୍ଶନରେ ଯେଉଁ ବନଚାରୀ ପକ୍ଷୀ ଓ ପଶୁମାନେ ଜନ୍ମ ସଫଳ କରିଅଛନ୍ତି, ସେମାନେ ମଧ୍ୟ ଧନ୍ୟ ॥ ୧ ॥ ଆମ୍ଭେମାନେ ସମସ୍ତେ ଆପଣା ପରିବାର ସହିତ ମଧ୍ୟ ଧନ୍ୟ; ନେତ୍ର ପୂରାଇ ଆମ୍ଭେମାନେ ଆପଣଙ୍କ ଦର୍ଶନ ଲାଭ କଲୁ । ଆପଣ ଖୁବ ଉତ୍ତମ ସ୍ଥାନ ବାଛି ବାସସ୍ଥାନ କରିଅଛନ୍ତି । ଏଠାରେ ଆପଣ ସବୁ ଋତୁରେ ସୁଖୀ ରୁହନ୍ତୁ ॥ ୨ ॥ ଆମ୍ଭେମାନେ ସବୁ ପ୍ରକାରେ ହାତୀ, ସିଂହ, ସାପ ଓ ବାଘମାନଙ୍କଠାରୁ ରକ୍ଷା କରି ଆପଣଙ୍କୁ ସେବା କରିବୁ । ହେ ପ୍ରଭୋ !

ବେଦ ବଚନ ମୁନି ମନ ଅଗମ ତେ ପ୍ରଭୁ କରୁନା ଐନ ।
ବଚନ କିରାତନ୍ହ କେ ସୁନତ ଜିମି ପିତୁ ବାଲକ ବୈନ ॥୧୩୬॥

ରାମହି କେବଲ ପ୍ରେମୁ ପିଆରା । ଜାନି ଲେଉ ଜୋ ଜାନନିହାରା ॥
ରାମ ସକଲ ବନଚର ତବ ତୋଷେ । କହି ମୃଦୁ ବଚନ ପ୍ରେମ ପରିପୋଷେ ॥୧॥
ବିଦା କିଏ ସିର ନାଇ ସିଧାଏ । ପ୍ରଭୁ ଗୁନ କହତ ସୁନତ ଘର ଆଏ ॥
ଏହି ବିଧି ସିୟ ସମେତ ଦୋଉ ଭାଈ । ବସହିଁ ବିପିନ ସୁର ମୁନି ସୁଖଦାଈ ॥୨॥
ଜବ ତେଁ ଆଇ ରହେ ରଘୁନାୟକୁ । ତବ ତେଁ ଭୟଉ ବନୁ ମଙ୍ଗଲଦାୟକୁ ॥
ଫୂଲହିଁ ଫଲହିଁ ବିଟପ ବିଧି ନାନା । ମଂଜୁ ବଲିତ ବର ବେଲି ବିତାନା ॥୩॥
ସୁରତରୁ ସରିସ ସୁଭାୟଁ ସୁହାଏ । ମନହୁଁ ବିବୁଧ ବନ ପରିହରି ଆଏ ॥
ଗୁଂଜ ମଂଜୁତର ମଧୁକର ଶ୍ରେନୀ । ତ୍ରିବିଧ ବୟାରି ବହଇ ସୁଖ ଦେନୀ ॥୪॥

---

ମୁନି-ମନ ବେଦ-ବଚନ ଅଗମ୍ୟ ସେ ପ୍ରଭୁ କୃପା-ସଦନ ।
କିରାତଙ୍କ ବାଣୀ ଶୁଣନ୍ତି ଯେମନ୍ତ ପିତା ବାଳକ ବଚନ ॥୧୩୬॥

ରାମଙ୍କୁ କେବଳ ଏକ ପ୍ରେମ ଅଟେ ପ୍ରିୟ । ପ୍ରେମ କରଣ ଜିଜ୍ଞାସୁ ଜନେ ଜାଣି ନିଅ ॥
ରାମ ସକଳ ବିପିନ-ବାସୀଙ୍କୁ ସନ୍ତୋଷି । କହି ମଧୁର ବଚନ ପ୍ରେମେ ପରିପୋଷି ॥୧॥
ବିଦାୟ କରନ୍ତେ ଶିର ନୁଆଁଇ ଗମିଲେ । ପ୍ରଭୁ ଗୁଣ କହି ଶୁଣି ଗୃହେ ଆଗମିଲେ ॥
ଏହି ଭାବେ ବଇଦେହୀ ସହ ବେନି ଭାଇ । ବିପିନେ ରହନ୍ତି ସୁର-ମୁନି-ସୁଖଦାୟୀ ॥୨॥
ଯେ ଦିନୁ ଆସି ରହିଲେ ଶ୍ରୀ ରଘୁନାୟକ । ସେ ଦିନୁ ବନ ହୋଇଲା ମଙ୍ଗଳଦାୟକ ॥
ଫୁଲନ୍ତି ଫଳନ୍ତି ବୃକ୍ଷ ବିବିଧ ବିଧାନେ । ଆବୃତ ମଞ୍ଜୁ ମୃଦୁଳ ଲତିକା-ବିତାନେ ॥୩॥
ବିବୁଧ-ତରୁ ସଦୃଶ ସ୍ୱଭାବେ ଶୋଭନ୍ତି । ମନେ ହୁଏ ସୁରବନ ତେଜି ଆସିଛନ୍ତି ॥
ଗୁଞ୍ଜରନ୍ତି ସୁମଧୁରେ ମଧୁକର-ପୁଞ୍ଜ । ବହଇ ସୁଖଦାୟକ ତ୍ରିବିଧ ମରୁତ ॥୪॥

---

ଏଠିକାର ଦୁର୍ଗମ ବନ, ପାହାଡ଼, ଗୁମ୍ଫା ଓ ଘରର କନ୍ଦିବକନ୍ଦି ଆମେ ଦେଖିଅଛୁ । ୭ ॥ ଆମ୍ଭେମାନେ ସେହି ସେହି ସ୍ଥାନରେ ଆପଣଙ୍କୁ ଶିକାର ଖେଳାଇବୁ ଏବଂ ପୁଷ୍କରିଣୀ, ଝରଣା ଆଦି ଜଳାଶୟ ଦେଖାଇବୁ । ଆମ୍ଭେମାନେ କୁଟୁମ୍ବ ସମେତ ଆପଣଙ୍କ ସେବକ । ହେ ନାଥ ! ଏଣୁ ଆମ୍ଭମାନଙ୍କୁ ଆଜ୍ଞା ଦେବାରେ ସଙ୍କୋଚ କରନ୍ତୁ ନାହିଁ ।” ॥ ୮ ॥
ଦୋହା —ବେଦଗଣଙ୍କ ବଚନ ଓ ମୁନିବୃନ୍ଦଙ୍କ ମନକୁ ସୁଦ୍ଧା ଯେଉଁ ପ୍ରଭୁ ଅଗମ୍ୟ, ସେହି କରୁଣାଧାମ ପ୍ରଭୁ ଶ୍ରୀରାମଚନ୍ଦ୍ର ଭିଲ ଓ ଶବରମାନଙ୍କ ବଚନକୁ ପିତା ବାଳକଗଣଙ୍କ ବଚନ ଶୁଣିଲା ପରି ଶୁଣୁଥାଆନ୍ତି ॥ ୧୩୬ ॥ ଚୌପାଈ —ଶ୍ରୀରାମଙ୍କୁ କେବଳ ପ୍ରେମ ପ୍ରିୟ । ଯେ ଜିଜ୍ଞାସୁ ଜନ, ସେ ଏହା ଜାଣି ନେଉ । ତତ୍ପରେ ଶ୍ରୀରାମ ପ୍ରେମପୂର୍ଣ୍ଣ କୋମଳ ବଚନ କହି ସେ ସମସ୍ତ ବନେଚରଙ୍କୁ ସନ୍ତୁଷ୍ଟ କଲେ ॥ ୧ ॥ ତତ୍ପରେ ସେମାନଙ୍କୁ ବିଦା କଲେ । ସେମାନେ ମୁଣ୍ଡ ନୁଆଁଇ ଚାଲିଲେ ଏବଂ ପ୍ରଭୁଙ୍କ ଗୁଣ କହିଶୁଣି ଘରକୁ ଫେରିଲେ । ଏହି ରୂପେ ଦେବତା ଓ ମୁନିଗଣଙ୍କର ସୁଖଦାୟକ ଦୁଇ ଭାଇ ସୀତାଙ୍କ ସହ

ନୀଲକଂଠ କଲକଂଠ ସୁକ ଚାତକ ଚକ୍କ ଚକୋର ।
ଭାଁତି ଭାଁତି ବୋଲହିଁ ବିହଗ ଶ୍ରବନ ସୁଖଦ ଚିତ ଚୋର ॥୧୩୭॥
କରି କେହରି କପି କୋଲ କୁରଂଗା । ବିଗତ ବୈର ବିଚରହିଁ ସବ ସଂଗା ॥
ଫିରତ ଅହେର ରାମ ଛବି ଦେଖୀ । ହୋହିଁ ମୁଦିତ ମୃଗ ବୃନ୍ଦ ବିସେଷୀ ॥୧॥
ବିବୁଧ ବିପିନ ଜହଁ ଲଗି ଜଗ ମାହୀଁ । ଦେଖି ରାମବନୁ ସକଲ ସିହାହୀଁ ॥
ସୁରସରି ସରସଇ ଦିନକର କନ୍ୟା । ମେକଲସୁତା ଗୋଦାବରି ଧନ୍ୟା ॥୨॥
ସବ ସର ସିଂଧୁ ନଦୀଁ ନଦ ନାନା । ମଂଦାକିନି କର କରହିଁ ବଖାନା ॥
ଉଦୟ ଅସ୍ତ ଗିରି ଅରୁ କୈଲାସୂ । ମଂଦର ମେରୁ ସକଲ ସୁରବାସୂ ॥୩॥

---

ଶୁକ, ନୀଲକଣ୍ଠ, ପୁଣି କଲକଣ୍ଠ, ଚାତକ, ଚକ୍ର, ଚକୋର ।
ବିହଙ୍ଗେ ରାବନ୍ତି ନାନାମତେ, ଶ୍ରୁତି-ସୁଖଦାୟୀ ଚିତ୍ତଚୋର ॥୧୩୭॥
ଗଜ, ପଞ୍ଚାନନ, କପି, ଶୂକର, କୁରଙ୍ଗ । ସର୍ବେ ବୈର ତେଜି ବିହରନ୍ତି ଏକ ସଙ୍ଗ ॥
ପାରଧି ଭ୍ରମଣେ ଦେଖି ଶ୍ରୀରାମଙ୍କ ବେଶ । କୁରଙ୍ଗକୁଳ ହୁଅନ୍ତି ହରଷ ବିଶେଷ ॥୧॥
ଜଗତରେ ଯେତେ ଅଛି ବିବୁଧ କାନନ । ଈରଷା କରନ୍ତି ସର୍ବେ ଦେଖି ରାମ ବନ ॥
ସୁର-ନଦୀ ସରସ୍ୱତୀ ଦିନକର-କନ୍ୟା । ନର୍ମଦା ସିନ୍ଧୁ ଆବର ଗୋଦାବରୀ ଧନ୍ୟା ॥୨॥
ସବୁ ସିନ୍ଧୁ ସରୋବର ନଦୀ ନଦ ଅତି । ମହିମା ମନ୍ଦାକିନୀର ବର୍ଣ୍ଣନ କରନ୍ତି ॥
ଉଦୟ ଅସ୍ତ ଶଇଳ ପୁଣି କଇଲାସ । ମନ୍ଦର ମେରୁ ସମସ୍ତ ସୁରଙ୍କ ନିବାସ ॥୩॥

---

ବନରେ ନିବାସ କରିବାକୁ ଲାଗିଲେ ॥ ୨ ॥ ଯେଉଁଦିନଠାରୁ ଶ୍ରୀ ରଘୁନାଥ ବନରେ ଆସି ରହିଲେ, ସେହି ଦିନଠାରୁ ବନ ମଙ୍ଗଳଦାୟକ ହୋଇଗଲା । ବିବିଧ ବୃକ୍ଷରେ ପୁଷ୍ପ ପ୍ରସ୍ଫୁଟିତ ହେଲା ଏବଂ ଫଳ ଧରିଲା, ସେ ସବୁ ଉପରେ ଲତାମଣ୍ଡପ ବିସ୍ତୃତ ହୋଇଗଲା ॥ ୩ ॥ ସେହିସବୁ ବୃକ୍ଷ କଳ୍ପବୃକ୍ଷ ସମାନ ସ୍ୱାଭାବିକ ଭାବରେ ସୁନ୍ଦର । ଯେପରି ଅବା ସେମାନେ ଦେବବନ ନନ୍ଦନକାନନକୁ ଛାଡ଼ି ଆସିଅଛନ୍ତି ! ଭ୍ରମରପଂକ୍ତି ଅତି ସୁନ୍ଦର ଭାବରେ ଗୁଞ୍ଜନ କରୁଥାଆନ୍ତି ଏବଂ ସୁଖଦାୟକ ଶୀତଳ, ମନ୍ଦ ଓ ସୁଗନ୍ଧିତ ପବନ ବହୁଥାଏ ॥ ୪ ॥ ଦୋହା '—ନୀଳକଣ୍ଠ, କୋକିଳ, ଶୁକ, ଚାତକ, ଚକ୍ରବାକ ଓ ଚକୋର ଆଦି ପକ୍ଷୀ ବିବିଧ ସ୍ୱରରେ କଳରବ କରୁଥା'ନ୍ତି । ସେମାନଙ୍କ କଳରବ କର୍ଣ୍ଣକୁ ସୁଖ ଦାନ କରୁଥାଏ ଏବଂ ଚିତ୍ତ ହରଣ କରି ନେଉଥାଏ ॥ ୧୩୭ ॥ ଚୌପାଈ :—ହସ୍ତୀ, ସିଂହ, ବାନର, ଶୂକର ଓ ହରିଣ—ଏମାନେ ସମସ୍ତେ ପରସ୍ପରର ଶତ୍ରୁତା ଛାଡ଼ି ଏକା ସଙ୍ଗରେ ବିଚରଣ କରୁଥାଆନ୍ତି । ଶିକାର ନିମନ୍ତେ ବୁଲୁଥିବା ଶ୍ରୀରାମଚନ୍ଦ୍ରଙ୍କ ଛବିକୁ ଦେଖି ପଶୁ-ସମୂହ ବିଶେଷ ଆନନ୍ଦିତ ହେଉଥାଆନ୍ତି ॥ ୧ ॥ ଜଗତରେ ଯେତେ ଦେବବନ, ସମସ୍ତେ ଶ୍ରୀରାମଙ୍କ ବନକୁ ଦେଖି ଈର୍ଷ୍ୟା କରୁଥାଆନ୍ତି । ଗଙ୍ଗା, ସରସ୍ୱତୀ, ସୂର୍ଯ୍ୟକୁମାରୀ ଯମୁନା, ନର୍ମଦା, ଗୋଦାବରୀ ଆଦି ଧନ୍ୟା (ପୁଣ୍ୟମୟୀ) ନଦୀ, ସମସ୍ତ ସରୋବର, ସମୁଦ୍ର, ନଦୀ ଓ ଅନେକ ନଦ ସମସ୍ତେ ମନ୍ଦାକିନୀକୁ ପ୍ରଶଂସା

ସୈଲ ହିମାଚଲ ଆଦିକ ଜେତେ । ଚିତ୍ରକୂଟ ଜସୁ ଗାୱହିଁ ତେତେ ॥
ବିଂଧି ମୁଦିତ ମନ ସୁଖୁ ନ ସମାଈ । ଶ୍ରମ ବିନୁ ବିପୁଲ ବଡ଼ାଈ ପାଈ ॥୪॥
ଚିତ୍ରକୂଟ କେ ବିହଗ ମୃଗ ବେଲି ବିଟପ ତୃନ ଜାତି ।
ପୁନ୍ୟ ପୁଂଜ ସବ ଧନ୍ୟ ଅସ କହହିଁ ଦେବ ଦିନ ରାତି ॥୧୩୮॥
ନୟନବଂତ ରଘୁବରହି ବିଲୋକୀ । ପାଇ ଜନମ ଫଲ ହୋହିଁ ବିସୋକୀ ॥
ପରସି ଚରନ ରଜ ଅଚର ସୁଖାରୀ । ଭଏ ପରମ ପଦ କେ ଅଧିକାରୀ ॥୧॥
ସୋ ବନୁ ସୈଲୁ ସୁଭାୟଁ ସୁହାବନ । ମଂଗଲମୟ ଅତିପାବନ ପାବନ ॥
ମହିମା କହିଅ କୱନି ବିଧି ତାସୂ । ସୁଖସାଗର ଜହଁ କୀନ୍ହ ନିବାସୂ ॥୨॥
ପୟ ପୟୋଧି ତଜି ଅବଧ ବିହାଈ । ଜହଁ ସିୟ ଲଖନୁ ରାମୁ ରହେ ଆଈ ॥
କହି ନ ସକହିଁ ସୁଷମା ଜସି କାନନ । ଜୌଁ ସତ ସହସ ହୋହିଁ ସହସାନନ ॥୩॥

---

ହିମାଳୟ ଆଦି କରି ପର୍ବତ ଯେତେ । ଗାଆନ୍ତି ଚିତ୍ରକୂଟର ଶୁଭ୍ର ଯଶ ତେତେ ॥
ବିନ୍ଧ୍ୟ ଉତ୍ଫୁଲ୍ଲ ହୁଅଇ ସୁଖେ ନ ସମ୍ଭାଇ । ଶ୍ରମ ବିହୁନେ ପାଇଲି ବିପୁଳ ବଡ଼ାଇ ॥୪॥
ଚିତ୍ରକୂଟ-ବାସୀ ଖଗ-ମୃଗ-ରାଶି ତରୁ-ଲତା-ତୃଣ ଜାତି ।
ପୁଣ୍ୟ-ପୁଞ୍ଜ ସର୍ବେ ଧନ୍ୟ ବୋଲି ଦେବେ କହନ୍ତି ଦିବସ ରାତି ॥୧୩୮॥
ନୟନବନ୍ତ ଶ୍ରୀ ରଘୁପତିଙ୍କୁ ଦେଖନ୍ତି । ନେତ୍ର-ଫଳ ପାଇ ଶୋକ-ରହିତ ହୁଅନ୍ତି ॥
ପଦ-ରଜ ସ୍ପର୍ଶ କରି ହରଷ ଅଚର । ହେଲେ ବଡ ଅଧିକାରୀ ପରମ ପଦର ॥୧॥
ସେ ବିପିନ ପର୍ବତ ସ୍ୱଭାବେ ଶୋଭନ । ମଙ୍ଗଳମୟ ପରମ ପାବନୁ ପାବନ ॥
ମହିମା କେଉଁ ପ୍ରକାରେ ହେବ ତାର କହି । ସୁଖ-ସାଗର ନିବାସ କରିଛନ୍ତି ଯହିଁ ॥୨॥
ପୟ-ସିନ୍ଧୁ ତ୍ୟାଗକଲେ ଅଯୋଧା ତେଜିଲେ । ଯହିଁ ଆସି ସୀତା ରାମ ଲକ୍ଷ୍ମଣ ରହିଲେ ॥
ବିପିନର ସୁଖ ଶୋଭା କହି ନ ପାରିବେ । ଯେବେ ଲକ୍ଷାନନ ସହସ୍ରାନନ ହୋଇବେ ॥୩॥

---

କରୁଥାଆନ୍ତି । ଉଦୟାଚଳ, ଅସ୍ତାଚଳ, କୈଳାସ, ମନ୍ଦରାଚଳ ଓ ସୁମେରୁ ଆଦି ଦେବଙ୍କର ଯେତେ ବାସସ୍ଥାନ ଏବଂ ହିମାଳୟ ଆଦି ଯେତେ ପର୍ବତ, ସମସ୍ତେ ଚିତ୍ରକୂଟର ଯଶ ଗାଉଅଛନ୍ତି । ବିନ୍ଧ୍ୟାଚଳ ଅତି ଆନନ୍ଦିତ । ବିନା ପରିଶ୍ରମରେ ସେ ବହୁତ ବଡ଼ାଇ ପାଇବାରୁ ତାହାର ଆନନ୍ଦର ସୀମା ରହୁନାହିଁ ॥ ୨-୪ ॥ ଦୋହା ।—ଚିତ୍ରକୂଟର ପକ୍ଷୀ, ପଶୁ, ଲତା, ବୃକ୍ଷ, ତୃଣ, ଅଙ୍କୁରାଦି ସକଳ ଜାତିର ପୁଣ୍ୟରାଶି ଓ ଧନ୍ୟ ବୋଲି ଦେବତାବୃନ୍ଦ ଦିନରାତି କହୁଥାଆନ୍ତି ॥ ୧୩୮ ॥ ଚୌପାଇ ।—ଚକ୍ଷୁବନ୍ତ ଜୀବମାନେ ଶ୍ରୀରାମଙ୍କୁ ଦେଖି ଜନ୍ମର ଫଳ ଲାଭ କରି ଶୋକରହିତ ହୋଇ ଯାଉଥାଆନ୍ତି ଏବଂ ପର୍ବତ, ବୃକ୍ଷ ଓ ଭୂମି ଆଦି ଅଚଳମାନେ ଭଗବାନଙ୍କ ଚରଣରଜର ସ୍ପର୍ଶ ପାଇ ସୁଖୀ ହେଉଥାଆନ୍ତି । ଏହିପରି ସମସ୍ତେ ପରମପଦ (ମୋକ୍ଷର) ଅଧିକାରୀ ହୋଇଗଲେ ॥ ୧ ॥ ସେହି ବନ ଓ ପର୍ବତ ସ୍ୱଭାବତଃ ସୁନ୍ଦର, ମଙ୍ଗଳମୟ ଓ ଅତି ପବିତ୍ରର ମଧ୍ୟ ପବିତ୍ରକାରକ । ସୁଖସାଗର ଶ୍ରୀରାମ ଯେଉଁ ବନରେ ନିବାସ କରିଅଛନ୍ତି, ସେହି ବନର ମହିମା କିପରି

ସୋ ମୈଁ ବରନି କହୌଁ ବିଧି କେହୀଁ । ଡାବର କମଠ କି ମଂଦର ଲେହୀଁ ॥
ସେବହିଁ ଲଖନୁ କରମ ମନ ବାନୀ । ଜାଇ ନ ସୀଲୁ ସନେହୁ ବଖାନୀ ॥୪॥
ଛିନୁ ଛିନୁ ଲଖି ସିୟ ରାମ ପଦ ଜାନି ଆପୁ ପର ନେହୁ ।
କରତ ନ ସପନେହୁଁ ଲଖନୁ ଚିତୁ ବଂଧୁ ମାତୁ ପିତୁ ଗେହୁ ॥୧୩୯॥
ରାମ ସଂଗ ସିୟ ରହତି ସୁଖାରୀ । ପୁର ପରିଜନ ଗୃହ ସୁରତି ବିସାରୀ ॥
ଛିନୁ ଛିନୁ ପିୟ ବିଧୁ ବଦନୁ ନିହାରୀ । ପ୍ରମୁଦିତ ମନହୁଁ ଚକୋର କୁମାରୀ ॥୧॥
ନାହ ନେହୁ ନିତ ବଢ଼ତ ବିଲୋକୀ । ହରଷିତ ରହତି ଦିବସ ଜିମି କୋକୀ ॥
ସିୟ ମନୁ ରାମ ଚରନ ଅନୁରାଗା । ଅୱଧ ସହସ ସମ ବନୁ ପ୍ରିୟ ଲାଗା ॥୨॥

ତାହା ମୁଁ ବର୍ଣ୍ଣି କହିବି କେଉଁ ପ୍ରକାରେ । ଗାଡ଼ିଆ କଇଁଛ ମନ୍ଦର କି ନେଇପାରେ ॥
ମନ କର୍ମ ବଚନରେ ସେବନ୍ତି ଲକ୍ଷ୍ମଣ । ଶୀଳ ଅନୁରାଗ କରି ନ ହୁଏ ବର୍ଣ୍ଣନ ॥୪॥
କ୍ଷଣ କ୍ଷଣ ଦେଖି ସୀତା ରାମ ପଦ ସ୍ନେହ ଜାଣି ନିଜ ପ୍ରତି ।
ସ୍ୱପ୍ନେହେଁ ଲକ୍ଷ୍ମଣ ବନ୍ଧୁ ମାତା ପିତା ଗୃହ ମନେ ନ କରନ୍ତି ॥୧୩୯॥
ରାମଙ୍କ ସଙ୍ଗେ ରହନ୍ତି ପ୍ରମୋଦିତେ ସୀତା । ପାଶୋରିଣ ଗୃହ ପୁର ପରିବାର ଚିନ୍ତା ॥
କ୍ଷଣ କ୍ଷଣ ଚାହିଁ ପ୍ରିୟ ବିଧୁ ମୁଖବଦନ । ପରମାନନ୍ଦ ଚକୋର କୁମାରୀ ଯେସନ ॥୧॥
ନିତ୍ୟ ସ୍ୱାମୀ ସ୍ନେହ ବୃଦ୍ଧି ଦେଖିଣ ହରଷେ । ରହନ୍ତି ଚକୋଇ ଯଥା ପ୍ରସନ୍ନ ଦିବସେ ॥
ସୀତା ମନ ରଘୁବର ଚରଣାନୁରାଗେ । ସହସ୍ର ଅଯୋଧ୍ୟା ସମ ବନ ପ୍ରିୟ ଲାଗେ ॥୨॥

କୁହାଯାଇ ପାରିବ ? ॥ ୨ ॥ କ୍ଷୀର-ସାଗରକୁ ତ୍ୟାଗ କରି ଏବଂ ଅଯୋଧ୍ୟାକୁ ଛାଡ଼ି ସୀତା, ଲକ୍ଷ୍ମଣ ଓ ଶ୍ରୀରାମ ଯେଉଁଠାରେ ଆସି ରହିଅଛନ୍ତି, ସେହି ବନର ପରମ ଶୋଭା କିପରି, ତାହାକୁ ସହସ୍ରାନନ ଶେଷଦେବ ଶତସହସ୍ରାନନ (ଲକ୍ଷାନନ) ହୋଇ ମଧ୍ୟ ବର୍ଣ୍ଣନା କରି ପାରିବେ ନାହିଁ ॥ ୩ ॥ ମୁଁ ଭଲା ତାହାର ବର୍ଣ୍ଣନା କିପରି କରି କହିପାରିବି ? ପୋଖରୀର କଇଁଛ କେଉଁଠି ମନ୍ଦରାଚଳ ପର୍ବତକୁ ଉଠାଇପାରେ ? ଲକ୍ଷ୍ମଣ ମନ, ବଚନ ଓ କର୍ମରେ ଶ୍ରୀରାମଙ୍କ ସେବା କରୁଥା'ନ୍ତି । ତାଙ୍କ ସ୍ନେହ ଓ ଚରିତ୍ରର ବର୍ଣ୍ଣନା କରାଯାଇ ପାରିବ ନାହିଁ ॥ ୪ ॥ ଦୋହା :—କ୍ଷଣେ କ୍ଷଣେ ଶ୍ରୀସୀତାରାମଙ୍କ ଚରଣକୁ ଦେଖି ଏବଂ ଆପଣା ଉପରେ ତାଙ୍କର ଅପାର ସ୍ନେହ ଥିବା କଥା ଜାଣି ଲକ୍ଷ୍ମଣ ସ୍ୱପ୍ନରେ ମଧ୍ୟ ଭାଇ, ମାତାପିତା ଓ ଘର କଥା ମନେ ପକାଉ ନ ଥା'ନ୍ତି ॥ ୧୩୯ ॥ ଚୌପାଇ :—ସୀତା ଅଯୋଧ୍ୟାପୁରୀ, କୁଟୁମ୍ବ ଲୋକ ଓ ଘର କଥା ଭୁଲି ଶ୍ରୀରାମଙ୍କ ସହିତ ଅତି ସୁଖରେ ଦିନ ଯାପନ କରୁଥାଆନ୍ତି । କ୍ଷଣେ କ୍ଷଣେ ପତି ଶ୍ରୀରାମଙ୍କ ମୁଖଚନ୍ଦ୍ରକୁ ଦେଖି ସେ ଚକୋରକୁମାରୀ ଚନ୍ଦ୍ରକୁ ଦେଖି ପ୍ରସନ୍ନ ହେଲାପରି ପରମ ପ୍ରସନ୍ନ ହେଉଥାଆନ୍ତି ! ॥ ୧ ॥ ଆପଣା ପ୍ରତି ସ୍ୱାମୀଙ୍କ ପ୍ରେମ ନିତ୍ୟ ବୃଦ୍ଧି ପାଉଥିବାର ଲକ୍ଷ୍ୟ କରି ଦିନରେ ଚକ୍ରବାକୀ ଆନନ୍ଦିତ ହେଲା ପରି ସୀତା ଆନନ୍ଦିତ ହେଉଥାଆନ୍ତି । ସୀତାଙ୍କ ମନ ଶ୍ରୀରାମଙ୍କ ଚରଣ ପ୍ରତି ଅନୁରକ୍ତ ହୋଇଥିବାରୁ ବନ ତାହାଙ୍କୁ ହଜାର ଅଯୋଧ୍ୟା ସମାନ ପ୍ରିୟ ଲାଗୁଥାଏ ॥ ୨ ॥

ପରନକୁଟୀ ପ୍ରିୟ ପ୍ରିୟତମ ସଂଗା । ପ୍ରିୟ ପରିବାରୁ କୁରଂଗ ବିହଂଗା ॥
ସାସୁ ସସୁର ସମ ମୁନିତିୟ ମୁନିବର । ଅସନୁ ଅମିଅ ସମ କଂଦମୂଲ ଫର ॥୩॥
ନାଥ ସାଥ ସାଁଥରୀ ସୁହାଈ । ମୟନ ସୟନ ସୟ ସମ ସୁଖଦାଈ ॥
ଲୋକପ ହୋହିଁ ବିଲୋକତ ଜାସୂ । ତେହି କି ମୋହି ସକ ବିଷୟ ବିଲାସୂ ॥୪॥

ସୁମିରତ ରାମହି ତଜହିଁ ଜନ ତୃନ ସମ ବିଷୟ ବିଲାସୁ ।
ରାମ ପ୍ରିୟା ଜଗ ଜନନି ସିୟ କଛୁ ନ ଆଚରଜୁ ତାସୁ ॥୧୪୦॥

ସୀୟ ଲଖନ ଜେହି ବିଧି ସୁଖୁ ଲହହୀଂ । ସୋଇ ରଘୁନାଥ କରହିଁ ସୋଇ କହହୀଂ ॥
କହହିଁ ପୁରାତନ କଥା କହାନୀ । ସୁନହିଁ ଲଖନୁ ସିୟ ଅତି ସୁଖୁ ମାନୀ ॥୧॥
ଜବ ଜବ ରାମୁ ଅଵଧ ସୁଧି କରହୀଂ । ତବ ତବ ବାରି ବିଲୋଚନ ଭରହୀଂ ॥
ସୁମିରି ମାତୁ ପିତୁ ପରିଜନ ଭାଈ । ଭରତ ସନେହୁ ସୀଲୁ ସେବକାଈ ॥୨॥

---

ପର୍ଣ୍ଣ କୁଟୀ ଅତି ପ୍ରିୟ ପ୍ରିୟତମ ସଙ୍ଗେ । ପ୍ରିୟ ପରିବାର ବନ କୁରଙ୍ଗ ବିହଙ୍ଗେ ॥
ମୁନି ମୁନିପତ୍ନୀ ଶାଶୁ ଶ୍ୱଶୁର ଯେପରି । କନ୍ଦ ମୂଳ ଫଳାଶନ ସୁଧା ସ୍ୱାଦ ପରି ॥୩॥
ନାଥ ସଙ୍ଗେ କୁଶ ପତ୍ର-ଶଯ୍ୟା ମନୋରମ । ସୁଖ ଦିଏ ଶତ ଶତ କାମଶଯ୍ୟା ସମ ॥
ଲୋକେଶ ହୁଅନ୍ତି କୃପା ବିଲୋକନେ ଯାର । ତାଙ୍କୁ କି ଭୋଗବିଳାସ ମୋହିପାରେ ଛାର ॥୪॥

ସ୍ମରଣେ ରାମ ଭକ୍ତ ତୃଣ ସମ ଭୋଗ ବିଳାସ ତେଜଇ ।
ରାମ ପ୍ରିୟା ସୀତା ଜଗନ୍ମାତା, ତାଙ୍କୁ ଆଶ୍ଚର୍ଯ୍ୟ କିଛି ନୁହଇ ॥୧୪୦॥

ସୀତା ସୌମିତ୍ରି ଯହିଁରେ ଲଭିବେ ଆନନ୍ଦ । ତାହା କରନ୍ତି କହନ୍ତି ପ୍ରଭୁ ରାମଚନ୍ଦ୍ର ॥
ପୁରାତନ ଇତିହାସ ବଖାଣନ୍ତି ବସି । ଶୁଣନ୍ତି ସୀତା ଲକ୍ଷ୍ମଣ ଅତି ସୁଖ ମଣି ॥୧॥
ଅଯୋଧ୍ୟା ମନେ ପକାନ୍ତି ଯେବେ ରଘୁବୀର । ବହଇ ତାହାଙ୍କ ବେନି ନୟନରୁ ନୀର ॥
ସ୍ମରିଣ ମାତା ପିତୃ ଭ୍ରାତା ପରିଜନ । ଭରତଙ୍କ ଶୀଳ ସ୍ନେହ ସୁସେବକ-ପଣ ॥୨॥

---

ପ୍ରିୟତମ ଶ୍ରୀରାମଙ୍କ ସହ ପର୍ଣ୍ଣକୁଟୀର ତାଙ୍କୁ ଅତି ରୁଚିକର ବୋଧ ହେଉଥାଏ । ମୃଗ ଓ ପକ୍ଷୀମାନେ ପ୍ରିୟ କୁଟୁମ୍ବ ଲୋକଙ୍କ ପରି ଲାଗୁଥା'ନ୍ତି । ମୁନି-ନାରୀମାନେ ଶାଶୁ ଓ ମୁନିବରଗଣ ଶ୍ୱଶୁର ତୁଲ୍ୟ ପ୍ରତୀତ ହେଉଥାଆନ୍ତି । କନ୍ଦମୂଳ ଓ ଫଳର ଆହାର ତାହାଙ୍କୁ ଅମୃତ ତୁଲ୍ୟ ସୁସ୍ୱାଦୁ ଲାଗୁଥାଏ ॥ ୩ ॥ ସ୍ୱାମୀଙ୍କ ସହିତ ସୁନ୍ଦର କୁଶ ଓ ପତ୍ରର ଶଯ୍ୟା ଶହ ଶହ କାମଦେବଙ୍କ ଶଯ୍ୟା ତୁଲ୍ୟ ସୁଖ ଦେଉଥାଏ । ଯାହାଙ୍କର କୃପାଦୃଷ୍ଟି ପଡ଼ିବା ମାତ୍ରେ ଜୀବ ଲୋକପାଳ ହୋଇଯାଏ, ତାହାଙ୍କୁ ଭୋଗବିଳାସ କେବେ ମୁଗ୍ଧ କରିପାରେ କି ? ॥ ୪ ॥ ଦୋହା :—ଯେଉଁ ରାମଚନ୍ଦ୍ରଙ୍କୁ କେବଳ ସ୍ମରଣ କରିବା ଯୋଗେ ଭକ୍ତଜନ ସମସ୍ତ ଭୋଗବିଳାସକୁ ତୃଣବତ୍ ତ୍ୟାଗ କରି ଦିଅନ୍ତି, ସେହି ରାମଚନ୍ଦ୍ରଙ୍କ ପ୍ରିୟପତ୍ନୀ ଓ ଜଗନ୍ମାତା ସୀତାଙ୍କ ପକ୍ଷରେ ଏହି ତ୍ୟାଗ କିଛିଏ ହେଲେ ସୁଦ୍ଧା ଆଶ୍ଚର୍ଯ୍ୟଜନକ ନୁହେଁ ॥୧୪୦॥ ଚୌପାଈ—ସୀତା ଓ ଲକ୍ଷ୍ମଣଙ୍କୁ ଯେପରି ଭାବରେ ସୁଖ ମିଳିବ, ଶ୍ରୀ ରଘୁନାଥ କେବଳ ସେଇଆ କରୁଥାଆନ୍ତି ଏବଂ କହୁଥାଆନ୍ତି । ଭଗବାନ୍ ପ୍ରାଚୀନ କଥା ଓ

କୃପାସିଂଧୁ ପ୍ରଭୁ ହୋହିଁ ଦୁଖାରୀ । ଧୀରଜୁ ଧରହିଁ କୁସମଉ ବିଚାରୀ ॥
ଲଖି ସିୟ ଲଖନୁ ବିକଲ ହୋଇ ଜାହୀଁ । ଜିମି ପୁରୁଷହି ଅନୁସର ପରିଛାହୀଁ ॥୩॥
ପ୍ରିୟା ବଂଧୁ ଗତି ଲଖି ରଘୁନଂଦନୁ । ଧୀର କୃପାଲ ଭଗତ ଉର ଚଂଦନୁ ॥
ଲଗେ କହନ କଛୁ କଥା ପୁନୀତା । ସୁନି ସୁଖୁ ଲହହିଁ ଲଖନୁ ଅରୁ ସୀତା ॥୪॥
ରାମୁ ଲଖନ ସୀତା ସହିତ ସୋହତ ପରନ ନିକେତ ।
ଜିମି ବାସବ ବସ ଅମରପୁର ସଚୀ ଜୟଂତ ସମେତ ॥୧୪୧॥
ଜୋଗବହିଁ ପ୍ରଭୁ ସିୟ ଲଖନହି କୈସେଁ । ପଲକ ବିଲୋଚନ ଗୋଲକ ଜୈସେଁ ॥
ସେବହିଁ ଲଖନୁ ସୀୟ ରଘୁବୀରହି । ଜିମି ଅବିବେକୀ ପୁରୁଷ ସରୀରହି ॥୧॥

କୃପାସିନ୍ଧୁ ପ୍ରଭୁ ଅତି ଦୁଃଖିତ ହୁଅନ୍ତି । କୁସମୟ ଭାବି ଧୈର୍ଯ୍ୟ ଧାରଣ କରନ୍ତି ॥
ସୀତା ଲକ୍ଷ୍ମଣ ବିକଳ ହୁଅନ୍ତି ଦେଖିକରି । ଛାୟା ପୁରୁଷକୁ ଅନୁସରଇ ଯେପରି ॥୩॥
ପ୍ରିୟା ବନ୍ଧୁ ଗତି ଦେଖି ଶ୍ରୀ ରଘୁନନ୍ଦନ । ସ୍ଥିର କୃପାଳୁ ଭକ୍ତଙ୍କ ହୃଦୟ-ଚନ୍ଦନ ॥
ସୁପବିତ୍ର କଥା କିଛି କଥନେ ଲାଗନ୍ତି । ଶୁଣି ସୀତା ସଉମିତ୍ରି ହରଷ ଲଭନ୍ତି ॥୪॥
ରାମ ଲକ୍ଷ୍ମଣ ସୀତା ସହ ପର୍ଣ୍ଣ-କୁଟୀରରେ ବିରାଜିତ ।
ଯଥା ପୁରନ୍ଦର ଶୋଭେ ସୁରପୁର ଶଚୀ ଜୟନ୍ତ ସହିତ ॥୧୪୧॥
ପ୍ରଭୁ ସୀତା ଲକ୍ଷ୍ମଣଙ୍କୁ ରଖନ୍ତି ଯେପରି । ରଖେ ପଲକ ନୟନ ଡୋଳାକୁ ଯେପରି ॥
ସେବନ୍ତି ଲକ୍ଷ୍ମଣ ସୀତା ଶ୍ରୀ ରଘୁବୀରଙ୍କୁ । ଯଥା ଅଜ୍ଞାନୀ ପୁରୁଷ ସେବେ ଶରୀରକୁ ॥୧॥

କାହାଣୀମାନ କହୁଥାଆନ୍ତି ଏବଂ ଲକ୍ଷ୍ମଣ ତଥା ସୀତା ଅତି ଆଦରରେ ସେ ସବୁ ଶୁଣୁଥାଆନ୍ତି ॥ ୧ ॥ ଯେତେବେ ଯେତେବେ ଶ୍ରୀରାମଙ୍କର ଅଯୋଧ୍ୟା କଥା ମନେ ପଡ଼ିଯାଏ, ସେତେବେଳେ ତାଙ୍କ ନେତ୍ର ଜଳପୂର୍ଣ୍ଣ ହୋଇଯାଏ । ମାତାପିତା, କୁଟୁମ୍ବୀଜନ ଓ ଭାଇମାନଙ୍କ ବିଷୟ, ବିଶେଷତଃ ଭରତଙ୍କ ପ୍ରେମ, ସ୍ନେହ ଓ ସେବାଭାବ ସ୍ମରଣ କରି କୃପାସାଗର ପ୍ରଭୁ ଶ୍ରୀରାମ ଦୁଃଖିତ ହୋଇ ପଡ଼ୁଥା'ନ୍ତି । କିନ୍ତୁ କୁସମୟ ବୋଲି ବିଚାରି ହୃଦୟରେ ଧୈର୍ଯ୍ୟ ଧାରଣ କରିନେଉଥା'ନ୍ତି । ଶ୍ରୀରାମଙ୍କୁ ଦୁଃଖିତ ଦେଖି ସୀତା ଓ ଲକ୍ଷ୍ମଣ ମଧ୍ୟ ବ୍ୟାକୁଳ ହୋଇ ପଡ଼ୁଥାଆନ୍ତି, ଯେତେ ଯେମିତି କୌଣସି ମନୁଷ୍ୟର ପ୍ରତିବିମ୍ବ ସେହି ମନୁଷ୍ୟର ହାବଭାବ ଓ କ୍ରିୟାକଳାପକୁ ଅନୁସରଣ କରୁଅଛି ॥ ୨-୩ ॥ ତତ୍ପରେ ଧୀର, କୃପାଳୁ ଓ ଭକ୍ତଙ୍କ ହୃଦୟଚନ୍ଦନ ରଘୁନନ୍ଦନ ଶ୍ରୀରାମଚନ୍ଦ୍ର, ପ୍ରିୟପତ୍ନୀ ଓ ଭାଇ ଲକ୍ଷ୍ମଣଙ୍କ ଦଶା ଦେଖି କେତୋଟି ପବିତ୍ର କଥା କହିବାକୁ ଲାଗନ୍ତି । ତାହା ଶୁଣି ଲକ୍ଷ୍ମଣ ଓ ସୀତା ସୁଖ ଲାଭ କରନ୍ତି ॥ ୪ ॥ ଦୋହା :—ଅମରାବତୀରେ ଇନ୍ଦ୍ର ଆପଣା ପତ୍ନୀ ଶଚୀ ଓ ପୁତ୍ର ଜୟନ୍ତ ସହ ବାସ କରି ଶୋଭା ପାଇଲା ପରି ଶ୍ରୀ ରାମଚନ୍ଦ୍ର ପତ୍ନୀ ସୀତା ଓ ଭାଇ ଲକ୍ଷ୍ମଣଙ୍କ ସଙ୍ଗେ ପର୍ଣ୍ଣକୁଟୀରରେ ସୁଶୋଭିତ ହେଉଥାଆନ୍ତି ॥ ୧୪୧ ॥ ଚୌପାଇ :—ପ୍ରଭୁ ଶ୍ରୀରାମ ସୀତା ଓ ଲକ୍ଷ୍ମଣଙ୍କୁ ପଲକ ନୟନର ଡୋଳାକୁ ସମ୍ଭାଳି ରଖିଲା ପରି ସମ୍ଭାଳି ରଖିଥାଆନ୍ତି । ଅନ୍ୟ ପକ୍ଷରେ ଲକ୍ଷ୍ମଣ ସୀତା ଓ ଶ୍ରୀରାମ, ଉଭୟଙ୍କୁ

ଏହି ବିଧି ପ୍ରଭୁ ବନ ବସହିଁ ସୁଖାରୀ । ଖଗ ମୃଗ ସୁର ତାପସ ହିତକାରୀ ॥
କହେଉଁ ରାମ ବନ ଗୱନୁ ସୁହାୱା । ସୁନହୁ ସୁମଂତ୍ର ଅୱଧ ଜିମି ଆୱା ॥୨॥
ଫିରେଉ ନିଷାଦୁ ପ୍ରଭୁହି ପହୁଁଚାଈ । ସଚିବ ସହିତ ରଥ ଦେଖେସି ଆଈ ॥
ମଂତ୍ରୀ ବିକଲ ବିଲୋକି ନିଷାଦୂ । କହି ନ ଜାଇ ଜସ ଭୟଉ ବିଷାଦୂ ॥୩॥
ରାମ ରାମ ସିୟ ଲଖନ ପୁକାରୀ । ପରେଉ ଧରନିତଲ ବ୍ୟାକୁଲ ଭାରୀ ॥
ଦେଖି ଦଖିନ ଦିସି ହୟ ହିହିନାହୀଁ । ଜନୁ ବିନୁ ପଂଖ ବିହଗ ଅକୁଲାହୀଁ ॥୪॥

ନହିଁ ତୃନ ଚରହିଁ ନ ପିଅହିଁ ଜଲୁ ମୋଚହିଁ ଲୋଚନ ବାରି ।
ବ୍ୟାକୁଲ ଭଏ ନିଷାଦ ସବ ରଘୁବର ବାଜି ନିହାରି ॥୧୪୨॥

ଧରି ଧୀରଜୁ ତବ କହଇ ନିଷାଦୂ । ଅବ ସୁମଂତ୍ର ପରିହରହୁ ବିଷାଦୂ ॥
ତୁମ୍ହ ପଣ୍ଡିତ ପରମାରଥ ଜ୍ଞାତା । ଧରହୁ ଧୀର ଲଖି ବିମୁଖ ବିଧାତା ॥୧॥

---

ଏ ଭାବେ ପ୍ରଭୁ ରହନ୍ତି ବନେ ସୁଖେ ଭାରି । ମୃଗ ବିହଙ୍ଗ ତାପସ ସୁର-ହିତକାରୀ ॥
କହିଲି ରାମଙ୍କ ରମ୍ୟ ବିପିନ-ଗମନ । ଶୁଣ ସୁମନ୍ତ୍ର ଅଯୋଧ୍ୟା ଆସିଲେ ଯେସନ ॥୨॥
ପ୍ରଭୁଙ୍କୁ ମେଲାଣି କରି ନିଷାଦ ଫେରିଲା । ସ୍ୟନ୍ଦନ ସହ ସଚିବେ ଆସିଣ ଦେଖିଲା ॥
ମନ୍ତ୍ରୀଙ୍କୁ ବ୍ୟାକୁଳ ତହିଁ ଦେଖିଲା ନିଷାଦ । କହି ନୋହେ ଯେତେ ହେଲା ତା ହୃଦେ ବିଷାଦ ॥୩॥
'ରାମ' 'ହା ରାମ', ଲକ୍ଷ୍ମଣ, ସୀତା ଉଚ୍ଚାରିଣ । ପଡ଼ିଲେ ଭୂମିରେ ମନ୍ତ୍ରୀ ବ୍ୟାକୁଳ ହୋଇଣ ॥
ଦକ୍ଷିଣକୁ ଚାହିଁ ଅଶ୍ୱ ହିଁ ହିଁ ହିଁ କରନ୍ତି । ଯେହ୍ନେ ପକ୍ଷ ବିନା ପକ୍ଷୀ ବ୍ୟାକୁଳ ହୁଅନ୍ତି ॥୪॥

ତୃଣ ନ ଚରନ୍ତି, ଜଳ ନ ପିଅନ୍ତି, ନେତ୍ରୁ ବୁହାନ୍ତି ଲୋତକ ।
ହୋଇଲେ ବିକଳ ନିଷାଦ ସକଳ ଦେଖି ତୁରଙ୍ଗ ରାମଙ୍କ ॥୧୪୨॥

ଧୈର୍ଯ୍ୟ ହୃଦେ ଧରି ତହୁଁ ବୋଲଇ ନିଷାଦ । ପରିହର ଏବେ ଭାଇ ସୁମନ୍ତ୍ର, ବିଷାଦ ।
ତୁମ୍ଭେ ପଣ୍ଡିତ ଆବର ପରମାର୍ଥ-ଜ୍ଞାତା । ଧୈର୍ଯ୍ୟ ମନେ ଘେନ ବାମ ବିଚାରି ବିଧାତା ॥୧॥

---

( କିମ୍ବା ଲକ୍ଷ୍ମଣ ଓ ସୀତା ଉଭୟେ ଶ୍ରୀରାମଙ୍କୁ ) ଅଜ୍ଞାନୀ ପୁରୁଷ ଶରୀରର ସେବା କଲାପରି ସେବା କରୁଥାଆନ୍ତି ॥ ୧ ॥ ପଶୁ, ପକ୍ଷୀ, ଦେବତା ଓ ତପସ୍ୱୀମାନଙ୍କ ହିତକାରୀ ପ୍ରଭୁ ଏହି ରୂପେ ସୁଖରେ ବନରେ ନିବାସ କରୁଥାଆନ୍ତି । ତୁଳସୀ ଦାସ କହନ୍ତି—ମୁଁ ଶ୍ରୀରାମଚନ୍ଦ୍ରଙ୍କ ସୁନ୍ଦର ବନଗମନ-ପ୍ରସଙ୍ଗ କହିଲି । ବର୍ତ୍ତମାନ ଯେପରି ଭାବରେ ସୁମନ୍ତ୍ର ଅଯୋଧ୍ୟାକୁ ଆସିଲେ, ସେହି ପ୍ରସଙ୍ଗ ଶୁଣ ॥ ୨ ॥ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ବନ ମଧ୍ୟରେ ପହଞ୍ଚାଇ ଦେଇ ନିଷାଦରାଜ ଗୁହ ଫେରିଲା । ଆସି ସେ ମନ୍ତ୍ରୀ ସୁମନ୍ତ୍ର ସମେତ ରଥକୁ ଦେଖିଲା । ମନ୍ତ୍ରୀଙ୍କ ବ୍ୟାକୁଳତା ଦେଖି ନିଷାଦର ମନରେ ଅକଥନୀୟ ଦୁଃଖ ହେଲା ॥ ୩ ॥ ନିଷାଦକୁ ଏକାକୀ ଆସିବାର ଦେଖି ସୁମନ୍ତ୍ର "ହା ରାମ !' ହା ରାମ ! ହା ସୀତେ ! ହା ଲକ୍ଷ୍ମଣ !" ଚିତ୍କାର କରି ବ୍ୟାକୁଳ ହୋଇ ପୃଥିବୀ ଉପରେ ପଡ଼ିଗଲେ । ରଥର ଘୋଡ଼ାମାନେ ଶ୍ରୀରାମ ଯାଇଥିବା ଦକ୍ଷିଣ ଦିଗ ଆଡ଼କୁ ଚାହିଁ ଚାହିଁ ହ୍ରେଷାରବ କରୁଥାଆନ୍ତି । ସତେ ଅବା ଡେଣାବିନା ପକ୍ଷୀମାନେ ବ୍ୟାକୁଳ ହେଉଅଛନ୍ତି ! ॥ ୪ ॥

ବିବିଧ କଥା କହି କହି ମୃଦୁ ବାଣୀ । ରଥ ବୈଠାରେଉ ବରବସ ଆଣି ॥
ସୋକ ସିଥିଲ ରଥୁ ସକଇ ନ ହାଁକି । ରଘୁବର ବିରହ ପୀର ଉର ବାଁକି ॥୨॥
ଚରଫରାହିଁ ମଗ ଚଲହିଁ ନ ଘୋରେ । ବନ ମୃଗ ମନହୁଁ ଆନି ରଥ ଜୋରେ ॥
ଅଢ଼ୁକି ପରହିଁ ଫିରି ହେରହିଁ ପୀଛେଁ । ରାମ ବିୟୋଗ ବିକଲ ଦୁଖ ତୀଛେଁ ॥୩॥
ଜୋ କହ ରାମୁ ଲଖନୁ ବୈଦେହୀ । ହିଁକରି ହିଁକରି ହିତ ହେରହିଁ ତେହୀ ॥
ବାଜି ବିରହ ଗତି କହି କିମି ଜାତୀ । ବିନୁ ମନି ଫନିକ ବିକଲ ଜେହି ଭାଁତୀ ॥୪॥

ଭୟଉ ନିଷାଦୁ ବିଷାଦବସ ଦେଖତ ସଚିବ ତୁରଂଗ ।
ବୋଲି ସୁସେବକ ଚାରି ତବ ଦିଏ ସାରଥୀ ସଂଗ ॥୧୪୩॥

---

ବିବିଧ କାହାଣୀ କହି କହି ମୃଦୁ ବାଣୀ । ବାଧ୍ୟ ପୂର୍ବକ ସ୍ୟନ୍ଦନେ ବସାଇଲେ ଆଣି ॥
ଶୋକ-ଶିଥିଳ ଚଳାଇ ନ ପାରନ୍ତି ରଥ । ହୃଦୟେ ରାମ-ବିରହ ସନ୍ତାପ ଅତ୍ୟନ୍ତ ॥୨॥
ଛଟପଟ ହୁଅନ୍ତି ଅଶ୍ୱ ନ ଚାଲନ୍ତି ପଥେ । ବନ୍ୟ ପଶୁ ଆଣି ଅବା ଯୋଚିଛନ୍ତି ରଥେ ॥
ଅଟକି ଯାଆନ୍ତି ପୁଣି ପଛକୁ ଚାହାନ୍ତି । ରାମ ବିୟୋଗ ବିକଳେ ଅତି ଦୁଃଖ ପାନ୍ତି ॥୩॥
ଜାନକୀ ରାମ ଲକ୍ଷ୍ମଣ କହେ କେହି ଯେବେ । ହିଁ ହିଁକାର କରି ତାକୁ ନିରେଖନ୍ତି ତେବେ ॥
ବାଜିଙ୍କ ବିରହ ଦଶା କହିବ କେସନେ । ମଣି ବିନା ଫଣୀ ହୁଏ ବିକଳ ଯେସନେ ॥୪॥

ହୋଇଲା ନିଷାଦ ବିବଶ ବିଷାଦେ ଦେଖି ସଚିବ ତୁରଙ୍ଗେ ।
ଏଥୁ ଅନ୍ତେ ଚାରି ସେବକ ହକାରି ଦେଲା ସାରଥିଙ୍କ ସଙ୍ଗେ ॥୧୪୩॥

---

ସେମାନେ ଘାସ ଚରୁ ନ ଥା'ନ୍ତି କି ପାଣି ପିଉ ନ ଥା'ନ୍ତି । କେବଳ ଆଖିରୁ ପାଣି ବହାଉଥାଆନ୍ତି । ଶ୍ରୀରାମଙ୍କ ଘୋଡାଙ୍କର ଏପରି ଦଶା ଦେଖି ସମସ୍ତ ନିଷାଦ ବ୍ୟାକୁଳ ହୋଇପଡିଲେ ॥ ୧୪ ॥ ଚୌପାଈ :—ତାପରେ ଧୈର୍ଯ୍ୟ ଧରି ନିଷାଦରାଜ କହିବାକୁ ଲାଗିଲା, "ହେ ସୁମନ୍ତ ! ଆପଣ ବିଷାଦ ତ୍ୟାଗ କରନ୍ତୁ । ଆପଣ ପଣ୍ଡିତ ଓ ପରମାର୍ଥଜ୍ଞାନୀ । ବିଧାତାକୁ ପ୍ରତିକୂଳ ଜାଣି ଧୈର୍ଯ୍ୟ ଧାରଣ କରନ୍ତୁ ।" ॥ ୧ ॥ କୋମଳ ବାଣୀରେ ବିବିଧ କଥା କହି ନିଷାଦ ସୁମନ୍ତ୍ରଙ୍କୁ ଆଣି ଜବରଦସ୍ତି ରଥରେ ବସାଇଲା । କିନ୍ତୁ ଶୋକ ହେତୁ ସୁମନ୍ତ ଏତେ ଶିଥିଳ ହୋଇ ପଡିଥିଲେ ଯେ, ସେ ରଥକୁ ଚଳାଇ ପାରୁ ନ ଥା'ନ୍ତି । ତାଙ୍କ ହୃଦୟରୁ ଶ୍ରୀରାମଙ୍କ ବିରହଜନିତ ତୀବ୍ର ବେଦନାରେ ଘାରି ହେଉ-ଥାଏ ॥ ୨ ॥ ଘୋଡାମାନେ ବ୍ୟାକୁଳ ହେଉଥାଆନ୍ତି ଏବଂ ଠିକ୍ ବାଟରେ ଚାଲୁ ନ ଥା'ନ୍ତି । ସତେ ଯେପରି ଜଙ୍ଗଲି ପଶୁଙ୍କୁ ଆଣି ରଥରେ ଯୋଚି ଦିଆଯାଇଛି । ରାମଚନ୍ଦ୍ରଙ୍କ ବିରହୀ ଘୋଡାମାନେ କେବେ ଠୋକର ଖାଇ ଖସି ପଡୁଥା'ନ୍ତି, ତ କେତେବେଳେ ବୁଲିପଡି ପଛ ଆଡକୁ ଅନାଇବାରେ ଲାଗିଥା'ନ୍ତି । ସେମାନେ ରାମଙ୍କ ବିରହ ଯୋଗୁଁ ତୀକ୍ଷ୍ଣ ଦୁଃଖରେ ବ୍ୟାକୁଳ ॥ ୩ ॥ କେହି ଜଣେ ରାମ, ଲକ୍ଷ୍ମଣ ଓ ଜାନକୀଙ୍କ ନାମ କହିଲେ, ଘୋଡାମାନେ ହିଁ ହିଁ କରି ତାହା ଆଡକୁ ପ୍ରେମରେ ଅନାଉଁଥା'ନ୍ତି । ଘୋଡାଙ୍କର ବିରହଦଶା କିପରି କୁହାଯାଇ ପାରିବ ? ମଣି ବିନା ସାପ

ଗୁହ ସାରଥିହି ଫିରେଉ ପହୁଁଚାଈ । ବିରହୁ ବିଷାଦୁ ବରନି ନହିଁ ଜାଈ ॥
ଚଲେ ଅଵଧ ଲେଇ ରଥହି ନିଷାଦା । ହୋହିଁ ଛନହିଁ ଛନ ମଗନ ବିଷାଦା ॥୧॥
ସୋଚ ସୁମଂତ୍ର ବିକଲ ଦୁଖ ଦୀନା । ଧିଗ ଜୀବନ ରଘୁବୀର ବିହୀନା ॥
ରହିହି ନ ଅଂତହୁ ଅଧମ ସରୀରୂ । ଜସୁ ନ ଲହେଉ ବିଛୁରତ ରଘୁବୀରୂ ॥୨॥
ଭଏ ଅଜସ ଅଘ ଭାଜନ ପ୍ରାନା । କଵନ ହେତୁ ନହିଁ କରତ ପୟାନା ॥
ଅହହ ମଂଦ ମନୁ ଅବସର ଚୂକା । ଅଜହୁଁ ନ ହୃଦୟ ହୋତ ଦୁଇ ଟୂକା ॥୩॥
ମୀଜି ହାଥ ସିରୁ ଧୁନି ପଛିତାଈ । ମନହୁଁ କୃପନ ଧନ ରାସି ଗଵାଁଈ ॥
ବିରିଦ ବାଁଧି ବର ବୀରୁ କହାଈ । ଚଲେଉ ସମର ଜନୁ ସୁଭଟ ପରାଈ ॥୪॥

---

ଫେରିଲେ ଗୁହ ସୁତଙ୍କୁ କରିଣ ମେଲାଣି । ବିରହ-ବିଷାଦ କହି ନ ହୁଏ ବଖାଣି ॥
ଗମିଲେ ଅଯୋଧ୍ୟା ରଥ ଘେନିଣ ନିଷାଦେ । ହୁଅନ୍ତି କ୍ଷଣକୁ କ୍ଷଣ ନିମଗ୍ନ ବିଷାଦେ ॥୧॥
ଚିନ୍ତା ବିକଳେ ସୁମନ୍ତ୍ର ଅତି ଦୁଃଖୀ ଦୀନ । ଧିକ ଏ ଜୀବନ ରଘୁନାୟକ-ବିହୀନ ॥
ରହିବ ନାହିଁ ଅନ୍ତକୁ ଅଧମ ଶରୀର । ଯଶ ନ ନିଏ ବିଚ୍ଛେଦ ହୋନ୍ତେ ରଘୁବୀର ॥୨॥
ହୋଇଲା ଅଯଶ ଅଘ ଭାଜନ ଏ ପ୍ରାଣ । କି ହେତୁ ଏବେ ବି ଦେହୁ ନ କରେ ପ୍ରୟାଣ ॥
ଆହାହା ରେ ମନ୍ଦ ମନ, ଗଲା ଭଲ ବେଳ । ଏବେ ମଧ୍ୟ ନ ହୁଅଇ ହୃଦ ଦୁଇ ଫାଳ ॥୩॥
କର ମଳି ସନ୍ତାପନ୍ତି ଶିରେ ମାରି ମାରି ହସ୍ତ । ଧନ-ରାଶି ହରାଇଛି କୃପଣ ଯେମନ୍ତ ॥
ବାନ୍ଧି ବୀର-ବାନା-ଶ୍ରେଷ୍ଠ ସୁବୀର କୁହାଇ । ମନେ ହୁଏ, ଯୋଦ୍ଧା ଯାଏ ସମରୁ ପଳାଇ ॥୪॥

---

ଯେପରି ବ୍ୟାକୁଳ ହୁଏ, ସେମାନେ ସେହିପରି ବ୍ୟାକୁଳ ହେଉଥାଆନ୍ତି ॥ ୪ ॥
ଦୋହା :—ମନ୍ତ୍ରୀ ଓ ଘୋଡାଙ୍କର ଏ ଦଶା ଦେଖି ନିଷାଦରାଜ ବିଷାଦଗ୍ରସ୍ତ ହୋଇ-ପଡିଲେ । ସେ ନିଜର ଚାରିଜଣ ଉତ୍ତମ ସେବକ ଡକାଇ ସାରଥି ସୁମନ୍ତ୍ରଙ୍କ ସଙ୍ଗେ ସାଥୀ କରିଦେଲେ ॥ ୧୪୩ ॥ ଚୌପାଈ —ନିଷାଦରାଜ ଗୁହ ସାରଥି ସୁମନ୍ତ୍ରଙ୍କୁ ବାଟ ବଳାଇ ଦେଇ ଫେରିଲେ । ତାଙ୍କ ବିରହ ଓ ଦୁଃଖର ବର୍ଣ୍ଣନା କରାଯାଇ ପାରିବ ନାହିଁ । ସେ ଚାରିଜଣ ନିଷାଦ ରଥ ନେଇ ଅଯୋଧ୍ୟାକୁ ଚାଲିଲେ । ସୁମନ୍ତ୍ର ଓ ଘୋଡାଙ୍କୁ ଦେଖି ସେମାନେ ମଧ୍ୟ କ୍ଷଣେ କ୍ଷଣେ ବିଷାଦରେ ମଗ୍ନ ହୋଇଯାଉଥା'ନ୍ତି ॥ ୧ ॥ ବ୍ୟାକୁଳ ଓ ଦୁଃଖରେ ଦୀନ ହୋଇ ସୁମନ୍ତ୍ର ଭାବୁଥା'ନ୍ତି—ଶ୍ରୀ ରଘୁବୀରଙ୍କ ବିନା ଜୀବନଧାରଣ କରିବା ଧିକ୍ । ପରିଶେଷରେ ଏ ଅଧମ ଶରୀର ରହିବ ତ ନାହିଁ । ଏବେ ଶ୍ରୀରାମଚନ୍ଦ୍ରଙ୍କ ବିରହ ମାଡେ ଏହା ଚାଲିଯାଇ ଯଶ ଲଭିଲା ନାହିଁ କାହିଁକି ? ॥୨॥ ଏ ପ୍ରାଣ ଅପଯଶ ଓ ପାପର ଭାଣ୍ଡ ହୋଇଯାଇଛି । ବର୍ତ୍ତମାନ କି ହେତୁ ଏହା ବାହାରି ଯାଉନାହିଁ ? ହାୟ ରେ ନୀଚ ମନ ! ଗୋଟିଏ ଅତି ଉତ୍ତମ ଅବସର ହାତରୁ ଚାଲିଗଲା । ଏବେ ସୁଦ୍ଧା ହୃଦୟ ଫାଟି ଦୁଇଖଣ୍ଡ ହୋଇଯାଉନାହିଁ କାହିଁକି ?" ॥୩॥ ସୁମନ୍ତ୍ର ହାତ ମଳି ଓ ମୁଣ୍ଡ ପିଟି ଅନୁତାପ କରୁଥା'ନ୍ତି । ସତେ ଅବା କୃପଣ ଧନଭଣ୍ଡାର ହରାଇ ବସିଛି ! ସେ ଏମିତି ଚାଲି ଯାଉଥା'ନ୍ତି, ସତେ ଯେପରି ଶ୍ରେଷ୍ଠ ବୀରବାନା ବାନ୍ଧିଥିବା ଓ ଶୂରବୀର ନାମରେ ଖ୍ୟାତି ଲଭିଥିବା କୌଣସି ବଡ ଯୋଦ୍ଧା

ବିପ୍ର ବିବେକୀ ବେଦବିଦ ସଂମତ ସାଧୁ ସୁଜାତି ।
ଜିମି ଧୋଖେଁ ମଦ ପାନ କର ସଚିବ ସୋଚ ତେହି ଭାଁତି ॥୧୪୪॥

ଜିମି କୁଲୀନ ତିୟ ସାଧୁ ସୟାନୀ । ପତିଦେବତା କରମ ମନ ବାନୀ ॥
ରହୈ କରମ ବସ ପରିହରି ନାହୂ । ସଚିବ ହୃଦୟଁ ତିମି ଦାରୁନ ଦାହୂ ॥୧॥
ଲୋଚନ ସଜଲ ଡୀଠି ଭଇ ଥୋରୀ । ସୁନଇଁ ନ ଶ୍ରବନ ବିକଲ ମତି ଭୋରୀ ॥
ସୂଖହିଁ ଅଧର ଲାଗି ମୁହଁ ଲାଟୀ । ଜିଉ ନ ଜାଇ ଉର ଅବଧି କପାଟୀ ॥୨॥
ବିବରନ ଭୟଉ ନ ଜାଇ ନିହାରୀ । ମାରେସି ମନହୁଁ ପିତା ମହତାରୀ ॥
ହାନି ଗଲାନି ବିପୁଲ ମନ ବ୍ୟାପୀ । ଜମପୁର ପଂଥ ସୋଚ ଜିମି ପାପୀ ॥୩॥
ବଚନୁ ନ ଆୱ ହୃଦୟଁ ପଛିତାଈ । ଅୱଧ କାହ ମୈଂ ଦେଖବ ଜାଈ ॥
ରାମ ରହିତ ରଥ ଦେଖିହି ଜୋଈ । ସକୁଚିହି ମୋହି ବିଲୋକତ ସୋଈ ॥୪॥

---

ବେଦଜ୍ଞ ବ୍ରାହ୍ମଣ ବିବେକୀ ପରମ ସୁଜାତ ସାଧୁ ସମ୍ମତ ।
ଅଜ୍ଞାନେ ଯେସନ ମଦ୍ୟ କରେ ପାନ, ସଚିବ ଚିନ୍ତେ ତେମନ୍ତ ॥୧୪୪॥

ଯେପରି କୁଳୀନା ସାଧ୍ୱୀ ଚତୁରୀ ରମଣୀ । ମନ କର୍ମ ବଚନେ ସେ ପତି ଦେବେ ଗଣି ॥
ରହଇ କରମବଶେ ପତି ପରିହରି । ସଚିବ ହୃଦେ ଦାରୁଣ ଦାହ ସେହିପରି ॥୧॥
ଶିଥିଳ ହୋଇଲା ଦୃଷ୍ଟି, ନୟନ ସଜଳ । ନ ଶୁଣେ ଶ୍ରବଣ, ମତି ବ୍ୟାକୁଳେ ପାଗଳ ॥
ଶୁଖଇ ଅଧର, ମୁଖେ ଅଠା ଲାଗିଯାଏ । ଅବଧି-କବାଟ ବକ୍ଷେ, ଜୀବନ ନ ଯାଏ ॥୨॥
ବିବର୍ଣ୍ଣ ହୋଇଲେ ଚାହିଁ ନ ହୁଏ ମୁହଁକୁ । ମନେହୁଏ ମାରିଛନ୍ତି ମାତା ପିତୁରଙ୍କୁ ॥
ହାନି ଗ୍ଲାନି ଅପ୍ରମିତ ଘୋଟିଗଲା ମନେ । ଯମପୁର-ପଥ ପାପୀ ଚିନ୍ତଇ ଯେସନେ ॥୩॥
ନ ସ୍ଫୁରେ ବାଣୀ ସନ୍ତାପ କରନ୍ତି ଅନ୍ତରେ । ଦେଖିବି ଯାଇଁ ମୁଁ କିସ ଅଯୋଧ୍ୟାପୁରରେ ॥
ରାମହୀନ ସ୍ୟନ୍ଦନକୁ ଯେ ଅବଲୋକିବେ । ମୋତେ ଦେଖିଣ ସେମାନେ ସଙ୍କୋଚ କରିବେ ॥୪॥

---

ଯୁଦ୍ଧ-ଭୂମିରୁ ପଛଘୁଞ୍ଚା ଦେଇ ପଳାଇ ଆସିଛି କି ! ॥ ୪ ॥ ଦୋହା :—ଯେପରି କୌଣସି ବିବେକୀ, ବେଦବିତ୍, ସାଧୁ-ଆଚରଣକାରୀ ଏବଂ କୁଳୀନ ବ୍ରାହ୍ମଣ ପ୍ରତାରଣାରେ ମଦିରା ପିଇ ପଶ୍ଚାତ୍ତାପ କରେ, ସେହିପରି ମନ୍ତ୍ରୀ ସୁମନ୍ତ୍ର ଅନୁତାପ କରୁଥା'ନ୍ତି ॥ ୧୪୪ ॥ ଚୌପାଈ :—ଯଦି କୌଣସି କୁଳୀନା, ସାଧ୍ୱୀ, ବୁଦ୍ଧିମତୀ ଏବଂ ମନବଚନ ଓ କର୍ମରେ ପତିଙ୍କୁ ଦେବତା ରୂପେ ମାନୁଥିବା ପତିବ୍ରତା ନାରୀ କର୍ମବଶତଃ ପତିଠାରୁ ବିଚ୍ଛିନ୍ନ ହୋଇ ରହେ, ତାହାର ହୃଦରେ ଭୟାନକ ସନ୍ତାପ ଜାତ ହୁଏ । ଠିକ ସେହିପରି ସନ୍ତାପ ମନ୍ତ୍ରୀଙ୍କ ହୃଦୟରେ ଜାତ ହେଉଥାଏ ॥ ୧ ॥ ନେତ୍ର ଅଶ୍ରୁ-ଜଳରେ ପରିପୂର୍ଣ୍ଣ, ଦୃଷ୍ଟି ମନ୍ଦ ହୋଇଯାଇଛି ଏବଂ କାନକୁ ଶୁଭୁନାହିଁ । ବୁଦ୍ଧି ବ୍ୟାକୁଳ ଓ ଭ୍ରାନ୍ତ । ଓଠ ଶୁଖି ଯାଉଛି, ପାଟିରେ ଛେପ ଶୁଖିଯାଉଛି, ତଥାପି ପ୍ରାଣ ବାହାରି ଯାଉନାହିଁ ! କାରଣ ହୃଦୟରେ ଚଉଦ ବର୍ଷର ଅବଧି-କବାଟ ଲାଗିଅଛି । ( ଚଉଦ ବର୍ଷ ବିତିଗଲା ପରେ ଭଗବାନ୍ ପୁଣି ମିଳିବେ, ଏହି ଆଶା ମୃତ୍ୟୁ-ପଥରେ ପ୍ରତିବନ୍ଧକ ସୃଷ୍ଟି

ଧାଇ ପୂଁଛିହହିଁ ମୋହି ଜବ ବିକଲ ନଗର ନର ନାରି ।
ଉତରୁ ଦେବ ମୈଁ ସବହି ତବ ହୃଦୟଁ ବଜ୍ରୁ ବୈଠାରି ॥୧୪୫॥
ପୁଛିହହିଁ ଦୀନ ଦୁଖିତ ସବ ମାତା । କହବ କାହ ମୈଁ ତିହ୍ନହି ବିଧାତା ॥
ପୂଛିହି ଜବହିଁ ଲଖନ ମହତାରୀ । କହିହଉଁ କଵନ ସଁଦେସ ସୁଖାରୀ ॥୧॥
ରାମ ଜନନି ଜବ ଆଇହି ଧାଈ । ସୁମିରି ବଛୁ ଜିମି ଧେନୁ ଲଵାଈ ॥
ପୂଁଛତ ଉତରୁ ଦେବ ମୈଁ ତେହୀ । ଗେ ବନୁ ରାମ ଲଖନୁ ବୈଦେହୀ ॥୨॥
ଜୋଇ ପୂଁଛିହି ତେହି ଉତରୁ ଦେବା । ଜାଇ ଅଵଧ ଅବ ୟହୁ ସୁଖୁ ଲେବା ॥
ପୂଁଛିହି ଜବହିଁ ରାଉ ଦୁଖ ଦୀନା । ଜିବନୁ ଜାସୁ ରଘୁନାଥ ଅଧୀନା ॥୩॥

---

ବ୍ୟାକୁଳେ ନଗର ନର ନାରୀ ଯେବେ ପଚାରିବେ ମୋତେ ଧାଇଁ ।
ତେବେ ମୁଁ ଉତ୍ତର ଦେବି ସମସ୍ତଙ୍କୁ ହୃଦୟେ ବଜ୍ର ବସାଇ ॥୧୪୫॥
ପଚାରିବେ ସର୍ବେ ଦୀନ ସନ୍ତାପିତା ମାତା । କି ଉତ୍ତର ସେମାନଙ୍କୁ ଦେବି ମୁଁ, ବିଧାତା ॥
ଯେତେବେଳେ ପଚାରିବେ ଲକ୍ଷଣଙ୍କ ଅମ୍ବା । କେଉଁ ସୁଖ ସମାଚାର କହିବି ମୁଁ ଅବା ॥୧॥
ରାମଙ୍କ ଜନନୀ ଯେବେ ଆଗମିବେ ଧାଇଁ । ସ୍ମରିଣ ବତ୍ସାକୁ ଯେସନ୍ତେ କଅଁଳିଆ ଗାଈ ॥
ପଚାରନ୍ତେ, ତାଙ୍କୁ ମୁହିଁ ଦେବି ଏ ଉତ୍ତର । ବନକୁ ଗଲେ ଲକ୍ଷ୍ମଣ ସୀତା ରଘୁବର ॥୨॥
ଯେ ପଚାରିବେ ତାହାଙ୍କୁ ଏ ଉତ୍ତର ଦେବି । ଅଯୋଧ୍ୟାକୁ ଯାଇ ଏବେ ଏହି ଯଶ ନେବି ॥
ପଚାରିବେ ଯେତେବେଳେ ନୃପ ଦୁଃଖୀ ଦୀନ । ଜୀବନ ଯାହାଙ୍କ ରଘୁନାଥଙ୍କ ଅଧୀନ ॥୩॥

---

କରୁଥାଏ ।) ॥ ୨ ॥ ସୁମନ୍ତ୍ରଙ୍କ ମୁଖ ବିବର୍ଣ୍ଣ ହୋଇ ପଡ଼ିଥାଏ, ତାହାକୁ ଚାହିଁ ହେଉ ନ ଥାଏ । ଜଣାପଡ଼ୁଥାଏ, ସତେ ଯେପରି ଏ ପିତାମାତାଙ୍କୁ ମାରି ପକାଇଅଛନ୍ତି । ପାପୀ ମନୁଷ୍ୟ ନର୍କକୁ ଗଲାବେଳେ ପଥରେ ଯେପରି ଚିନ୍ତା କରି କରି ଯାଉଥାଏ, ତାଙ୍କ ମନରେ ସେହିପରି ରାମ-ବିରହ-ଜନିତ ଉଦ୍ବେଗ ଯୋଗେ ମହା ଗ୍ଲାନି ବ୍ୟାପିଥାଏ ॥୩॥ ମୁହଁରୁ ବଚନ ବାହାରୁ ନ ଥାଏ । ହୃଦୟରେ ଶୋଚନା—"ଅଯୋଧ୍ୟରେ ଯାଇ ମୁଁ କ'ଣ ଦେଖିବି ! ଶ୍ରୀରାମ ନ ଥିବା ରଥକୁ ଯେ କେହି ଦେଖିବ, ସେ ମୋତେ ମଧ୍ୟ ଦେଖିବାକୁ ସଙ୍କୋଚ କରିବ । (ଅର୍ଥାତ୍ ମୋ ମୁହଁ ଚାହିଁବ ନାହିଁ ।) ॥ ୪ ॥ ଦୋହା —ନଗରର ନରନାରୀମାନେ ସମସ୍ତେ ବ୍ୟାକୁଳ ହୋଇ ଧାଇଁ ଆସି ମୋତେ ଯେତେବେଳେ ପଚାରିବେ, ମୁଁ ହୃଦୟ ଉପରେ ବଜ୍ର ଧରି ସମସ୍ତଙ୍କୁ ଉତ୍ତର ଦେବି ।" । ୧୪୫ ॥ ଚୌପାଈ '—ଯେତେବେଳେ ଦୀନା ଓ ଶୋକାତୁରା ସମସ୍ତ ମାତା ମୋତେ ପଚାରିବେ, ହେ ବିଧାତା ! ମୁଁ ସେତେବେଳେ ସେମାନଙ୍କୁ କ'ଣ କହିବି ? ଯେତେବେଳେ ଲକ୍ଷ୍ମଣଙ୍କ ମାତା ମୋତେ ପଚାରିବେ, ସେତେବେଳେ ମୁଁ ତାଙ୍କୁ କି ସୁଖଦାୟକ ସନ୍ଦେଶ କହିବି ? ॥ ୧ ॥ ଶ୍ରୀରାମଙ୍କ ମାତା ଯେତେବେଳେ ନବପ୍ରସୂତ ଗାଈ ବାଛୁରୀ କଥା ମନେ ପକାଇ ଦୌଡ଼ି ଆସିଲା ପରି ଧାଇଁ ଆସିବେ ଏବଂ ମୋତେ ପଚାରିବେ, ତେବେ ମୁଁ ତାଙ୍କୁ ଏହି ଉତ୍ତର ଦେବି—ଶ୍ରୀରାମ, ଲକ୍ଷ୍ମଣ ଓ

ଦେହଉଁ ଉତରୁ କୌନୁ ମୁହୁ ଲାଈ । ଆୟୁଉଁ କୁସଲ କୁଅଁର ପହୁଁଚାଈ ॥
ସୁନତ ଲଖନ ସିୟ ରାମ ସଁଦେସୂ । ତୃନ ଜିମି ତନୁ ପରିହରିହି ନରେସୂ ॥୩॥

ହୃଦଉ ନ ବିଦରେଉ ପଙ୍କ ଜିମି ବିଛୁରତ ପ୍ରୀତମୁ ନୀରୁ ।
ଜାନତ ହୌଁ ମୋହି ଦୀହ୍ନ ବିଧି ୟହୁ ଜାତନା ସରୀରୁ ॥୧୪୬॥

ଏହି ବିଧି କରତ ପଂଥ ପଛିତାୱା । ତମସା ତୀର ତୁରତ ରଥୁ ଆୱା ॥
ବିଦା କିଏ କରି ବିନୟ ନିଷାଦା । ଫିରେ ପାୟଁ ପରି ବିକଲ ବିଷାଦା ॥୧॥
ପୈଠତ ନଗର ସଚିବ ସକୁଚାଈ । ଜନୁ ମାରେସି ଗୁର ବାଁଭନ ଗାଈ ॥
ବୈଠି ବିଟପ ତର ଦିବସୁ ଗୱାଁୱା । ସାଁଝ ସମୟ ତବ ଅବସରୁ ପାୱା ॥୨॥

---

କେଉଁ ମୁହଁ ନେଇ ତାଙ୍କୁ ଦେବି ମୁଁ ଉତ୍ତର । ଆସିଲି କୁଶଳେ ଛାଡ଼ି ଦେଇଣ କୁମର ॥
ଶୁଣନ୍ତେ ଲକ୍ଷ୍ମଣ ସୀତା ରାମଙ୍କ ସନ୍ଦେଶ । ତୃଣ ପରି ତନୁ ପରିହରିବେ ନରେଶ ॥୪॥

ନ ଫାଟେ ଅନ୍ତର ପ୍ରିୟତମ-ନୀର-ବିୟୋଗେ ପଙ୍କ ପରାୟେ ।
ଜାଣି ମୁଁ ପାରୁଛି ବିଧାତା ଦେଇଛି ମୋତେ ଏ 'ଯାତନାକାୟ' ॥୧୪୬॥

ଏହି ଭାବେ ପଶ୍ଚାତ୍ତାପ କରନ୍ତେ ପଥରେ । ପ୍ରବେଶିଲା ରଥ ଶୀଘ୍ର ତମସା ତଟରେ ॥
ବିଦାୟ କଲେ ବିନୟ କରିଣ ନିଷାଦେ । ଫେରିଲେ ଚରଣେ ପଡ଼ି ବିକଳ ବିଷାଦେ ॥୧॥
ପୁରେ ପଶିବାକୁ ମନ୍ତ୍ରୀ ସଙ୍କୋଚ କରନ୍ତି । ଯେସନେ ଗୁରୁ ବ୍ରାହ୍ମଣ ଗାଈ ମାରିଛନ୍ତି ॥
ବସି ବସି ବୃକ୍ଷତଳେ ଦିବସ କଟାଇ । ସନ୍ଧ୍ୟା ସମୟରେ ତହୁଁ ଅବସର ପାଇ ॥ ॥

---

ସୀତା ବନକୁ ଚାଲିଗଲେ ! ॥ ୨ ॥ ଯିଏ ବି ପଚାରିବ, ତାହାଙ୍କୁ ମୋତେ ଏହି ଉତ୍ତର ଦେବାକୁ ପଡ଼ିବ । ହାୟ ! ଅଯୋଧ୍ୟା ଯାଇ ଏବେ ମୁଁ ଏହି ଯଶ ପାଇବି । ଯେତେ-ବେଳେ ଶୋକାତୁର, ଦୀନ ମହାରାଜ, ଯାହାଙ୍କ ଜୀବନ ଶ୍ରୀ ରଘୁନାଥଙ୍କ ଦର୍ଶନାଧୀନ, ମୋତେ ଶ୍ରୀରାମଙ୍କ ସମାଚାର ପଚାରିବେ, ସେତେବେଳେ ମୁଁ କେଉଁ ମୁହଁରେ ତାଙ୍କୁ ଉତ୍ତର ଦେବି ଯେ, ମୁଁ ରାଜକୁମାରମାନଙ୍କୁ କୁଶଳରେ ଜଙ୍ଗଲରେ ଛାଡ଼ି ଆସିଲି ! ଲକ୍ଷ୍ମଣ, ସୀତା ଓ ଶ୍ରୀରାମଙ୍କ ସମାଚାର ଶୁଣିବା ମାତ୍ରେ ମହାରାଜ ତ ତୃଣବତ୍ ଶରୀର ତ୍ୟାଗ କରିଦେବେ ॥ ୪ ॥ ଦୋହା —ପ୍ରିୟତମ ଶ୍ରୀରାମ-ରୂପକ ଜଳର ବିରହମାତ୍ରେ ମୋର ହୃଦୟ ପଙ୍କ ପରି ଫାଟି ନ ଗଲା କିପରି ' ଏଥିରୁ ମୁଁ ଜାଣୁଛି, ବିଧାତା ମୋତେ ଏହି 'ଯାତନା ଶରୀର' କେବଳ ନର୍କ-ଭୋଗ ନିମନ୍ତେ ଦେଇଅଛନ୍ତି ।" ॥୧୪୬॥
ସୁମନ୍ତ ଏହି ରୂପେ ମାର୍ଗରେ ଅନୁତାପ କରି ଆସୁଥିଲେ । ଇତି ମଧ୍ୟରେ ରଥ ତମସା ନଦୀର ତଟ ନିକଟରେ ଆସି ପହଞ୍ଚିଲା । ମନ୍ତ୍ରୀ ବିନୟ ସହକାରେ ଗୁହ ନିଷାଦଙ୍କୁ ବିଦା କଲେ । ସେମାନେ ବିଷାଦରେ ବ୍ୟାକୁଳ ହୋଇ ସୁମନ୍ତଙ୍କ ପାଦ ଧରି ଫେରିଲେ ॥ ୧ ॥ ନଗରରେ ପ୍ରବେଶ ମାତ୍ରେ ମନ୍ତ୍ରୀ ମାନସିକ ଗ୍ଲାନି ହେତୁ ଏପରି ସଙ୍କୁଚିତ ହେଉଥା'ନ୍ତି, ସତେ ଯେପରି ସେ ଗୁରୁ, ବ୍ରାହ୍ମଣ ଓ ଗୋରୁ ମାରି ଆସିଛନ୍ତି । ସାରା ଦିନ ଗୋଟିଏ ଗଛ ତଳେ ବସି ସେ କଟାଇଲେ । ସନ୍ଧ୍ୟା ହେଲା, ତ ତାଙ୍କୁ ସେଠାରୁ ବାହାରିବାର ଅବକାଶ

ଅୱଧ ପ୍ରବେସୁ କୀନ୍ହ ଅଁଧିଆରେଁ । ପୈଠ ଭବନ ରଥୁ ରାଖି ଦୁଆରେଂ ॥
ଜିନ୍ହ ଜିନ୍ହ ସମାଚାର ସୁନି ପାଏ । ଭୂପ ଦ୍ୱାର ରଥୁ ଦେଖନ ଆଏ ॥୩॥
ରଥୁ ପହିଚାନି ବିକଲ ଲଖି ଘୋରେ । ଗରହିଁ ଗାତ ଜିମି ଆତପ ଓରେ ॥
ନଗର ନାରି ନର ବ୍ୟାକୁଲ କୈସେଁ । ନିଘଟତ ନୀର ମୀନଗନ ଜୈସେଁ ॥୪॥

ସଚିବ ଆଗମନୁ ସୁନତ ସବୁ ବିକଲ ଭୟଉ ରନିବାସୁ ।
ଭବନୁ ଭୟଂକରୁ ଲାଗ ତେହି ମାନହୁଁ ପ୍ରେତ ନିବାସୁ ॥୧୪୭॥

ଅତି ଆରତି ସବ ପୂଛହିଁ ରାନୀ । ଉତରୁ ନ ଆୱ ବିକଲ ଭଇ ବାନୀ ॥
ସୁନଇ ନ ଶ୍ରବନ ନୟନ ନହିଁ ସୂଝା । କହହୁ କହାଁ ନୃପୁ ତେହି ତେହି ବୂଝା ॥୧॥
ଦାସିନ୍ହ ଦୀଖ ସଚିବ ବିକଲାଈ । କୌସଲ୍ୟା ଗୃହଁ ଗଈଂ ଲୱାଈ ॥
ଜାଇ ସୁମଂତ୍ର ଦୀଖ କସ ରାଜା । ଅମିଅ ରହିତ ଜନୁ ଚଂଦୁ ବିରାଜା ॥୨॥

---

ଅଯୋଧ୍ୟାପୁରେ ପ୍ରବେଶ ହେଲେ ଅନ୍ଧକାରେ । ପଶିଲେ ଭବନେ ରଥ ରଖିଣ ଦୁଆରେ ॥
ଯେଉଁ ଯେଉଁ ଲୋକମାନେ ସନ୍ଦେଶ ଶୁଣିଲେ । ରଥ ଦେଖିବାକୁ ନୃପ ଦ୍ୱାରେ ଆଗମିଲେ ॥୩॥
ରଥ ଚହ୍ନି ତୁରଙ୍ଗଙ୍କୁ ଦେଖି ଅତି ବ୍ୟସ୍ତ । ଦ୍ରବିଲା ତନୁ ଆତପେ କରକା ଯେମନ୍ତ ॥
ନଗର ନାରୀ ପୁରୁଷ ବ୍ୟାକୁଳ ସେପରି । ଜଳ ଊଣା ହେଲେ ମୀନ ସମୂହ ଯେପରି ॥୪॥

ସଚିବାଗମନ ଶୁଣନ୍ତେ ବିକଳ ହୋଇଲା ରାଣୀ ଉଆସ ।
ଗୃହ ଭୟାନକ ଲାଗିଲା ସେ କାଳେ ମନେ ହୁଏ ପ୍ରେତାବାସ ॥୧୪୭॥

ଅତି ଆରତରେ ସର୍ବେ ପଚାରନ୍ତି ରାଣୀ । ଉତ୍ତର ନ ଆସେ ହେଲା ଛଟପଟ ବାଣୀ ॥
ଶ୍ରବଣେ ଶୁଣନ୍ତି ନାହିଁ, ନେତ୍ରେ ନ ଦେଖନ୍ତି । ସମସ୍ତଙ୍କୁ ପଚାରନ୍ତି, ନୃପ କାହିଁଛନ୍ତି ॥୧॥
ଦାସୀମାନେ ସଚିବଙ୍କୁ ବ୍ୟାକୁଳ ଦେଖିଣ । କୌଶଲ୍ୟାଙ୍କ ଭବନକୁ ଚାଲିଲେ ନେଇଣ ॥
ଯାଇ ସୁମନ୍ତ୍ର ରାଜାଙ୍କୁ ଦେଖିଲେ ଯେମନ୍ତ । ଅମୃତ-ରହିତ ଚନ୍ଦ୍ର ଗଗନେ ଯେମନ୍ତ ॥୨॥

---

ମିଳିଲା ॥ ୨ ॥ ଅନ୍ଧାର ହେବା ପରେ ସେ ଅଯୋଧ୍ୟାରେ ପ୍ରବେଶ କଲେ ଏବଂ ରଥକୁ ଦ୍ୱାର ନିକଟରେ ଛିଡ଼ା କରାଇ ସେ ଧୀରେ ଧୀରେ ମହଲରେ ପ୍ରବେଶ କଲେ । ଯେଉଁ ଯେଉଁ ଲୋକମାନେ ଏହି ସମାଚାର ଶୁଣି ପାରିଲେ, ସେମାନେ ସମସ୍ତେ ରଥ ଦେଖିବାକୁ ରାଜଦ୍ୱାରକୁ ଆସିଲେ ॥ ୩ ॥ ରଥକୁ ଚହ୍ନି ଏବଂ ଘୋଡ଼ାଙ୍କୁ ବ୍ୟାକୁଳ ହେବାର ଦେଖି ଖରାରେ କୁଆପଥର ତରଳିଲା ପରି ସେମାନଙ୍କ ଶରୀର ତରଳିଗଲା । ଜଳ ଶୁଖିଗଲେ ମାଛମାନେ ବ୍ୟାକୁଳ ହେଲା ପରି ନଗରର ନରନାରୀ ବ୍ୟାକୁଳ ହେଉଥାଆନ୍ତି ॥ ୪ ॥
ଦୋହା :—ମନ୍ତ୍ରୀ ଏକାକୀ ଫେରିଅଛନ୍ତି ଶୁଣି ସାରା ରାଣୀଉଆସ ବ୍ୟାକୁଳ ହୋଇପଡ଼ିଲା । ରାଜମହଲ ତାହାଙ୍କୁ ପ୍ରେତଙ୍କ ବାସସ୍ଥାନ (ଶ୍ମଶାନ) ଭଳି ବୋଧ ହେଲା ॥ ୧୪୭ ॥
ଚୌପାଈ :—ଅତ୍ୟନ୍ତ ଆର୍ତ୍ତ ହୋଇ ସମସ୍ତ ରାଣୀ ପଚାରୁଥା'ନ୍ତି, କିନ୍ତୁ ସୁମନ୍ତ୍ରଙ୍କୁ କୌଣସି ଉତ୍ତର ପଇଠୁ ନ ଥାଏ । ତାଙ୍କ ବଚନ ରୁଦ୍ଧ ହୋଇଯାଉଥାଏ । କାନକୁ ଶୁଭୁ ନ ଥାଏ କି ଆଖିକୁ ବୁଦ୍ଧିବାଟ ଦିଶୁ ନ ଥାଏ । ଯେ ଆଗକୁ ଆସୁଥାଏ, ସେ ତାହାକୁ ପଚାରୁଥା'ନ୍ତି,

ଆସନ ସୟନ ବିଭୂଷନ ହୀନା । ପରେଉ ଭୂମିତଲ ନିପଟ ମଲୀନା ॥
ଲେଇ ଉସାସୁ ସୋଚ ଏହି ଭାଁତୀ । ସୁରପୁର ତେଁ ଜନୁ ଖଁସେଉ ଜଜାତୀ ॥୩॥
ଲେତ ସୋଚ ଭରି ଛିନୁ ଛିନୁ ଛାତୀ । ଜନୁ ଜରି ପଂଖ ପରେଉ ସଂପାତୀ ॥
ରାମ ରାମ କହ ରାମ ସନେହୀ । ପୁନି କହ ରାମ ଲଖନ ବୈଦେହୀ ॥୪॥

ଦେଖି ସଚିବଁ ଜୟ ଜୀବ କହି କୀନ୍ହେଉ ଦଣ୍ଡ ପ୍ରନାମୁ ।
ସୁନତ ଉଠେଉ ବ୍ୟାକୁଲ ନୃପତି କହୁ ସୁମଂତ୍ର କହଁ ରାମୁ ॥୧୪୮॥

ଭୂପ ସୁମଂତ୍ରୁ ଲୀନ୍ହ ଉର ଲାଈ । ବୂଡ଼ତ କଛୁ ଅଧାର ଜନୁ ପାଈ ॥
ସହିତ ସନେହ ନିକଟ ବୈଠାରୀ । ପୂଁଛତ ରାଉ ନୟନ ଭରି ବାରୀ ॥୧॥
ରାମ କୁସଲ କହୁ ସଖା ସନେହୀ । କହଁ ରଘୁନାଥୁ ଲଖନୁ ବୈଦେହୀ ॥
ଆନେ ଫେରି କି ବନହି ସିଧାଏ । ସୁନତ ସଚିବ ଲୋଚନ ଜଲ ଛାଏ ॥୨॥

---

ଭୋଜନ ଶୟନ ତଥା ଭୂଷଣ-ବିହୀନ । ପଡ଼ିଛନ୍ତି ଭୂତଳରେ ନିତାନ୍ତ ମଳିନ ॥
ନିଅନ୍ତି ଚିନ୍ତାରେ ଦୀର୍ଘ ନିଃଶ୍ୱାସ ଏପରି । ସ୍ୱର୍ଗରୁ ଯଯାତି ଖସି ଚିନ୍ତିତ ଯେପରି ॥୩॥
କ୍ଷଣକୁ କ୍ଷଣ ଚିନ୍ତାରେ ମୂର୍ଚ୍ଛି ହୁଏ ଛାତି । ପକ୍ଷ ଜଳି ଯାଇ କିବା ପଡ଼ିଛି ସମ୍ପାତି ॥
ରାମ ରାମ କହି ରାମ ରଘୁବର ସ୍ନେହୀ । ପୁଣି କହନ୍ତି ଶ୍ରୀରାମ ଲକ୍ଷ୍ମଣ ବୈଦେହୀ ॥୪॥

ସଚିବ ଦେଖିଣ 'ଜୟ ଆଜ୍ଞା' କହିଣ କରନ୍ତେ ଦଣ୍ଡ ପ୍ରଣାମ ।
ଶୁଣି ନରପାଳ ଉଠିଲେ ବିକଳେ, କହ ମନ୍ତ୍ରି, କାହିଁ ରାମ ॥୧୪୮॥

ଭୂପ ସୁମନ୍ତ୍ରଙ୍କୁ ନେଲେ ହୃଦୟେ ଲଗାଇ । ବୁଡ଼ିବା କାଳେ ବା କିଛି ଆଶ୍ରା କଲେ ପାଇ ॥
ଅତି ସ୍ନେହେ ବସାଇଣ ନୃପ ନିକଟରେ । ପଚାରନ୍ତି ନୀର ପୂର୍ଣ୍ଣ କରି ନୟନରେ ॥୧॥
ରାମଙ୍କ କୁଶଳ ବେଗେ କହ ସଖା ସ୍ନେହୀ । କାହିଁ ଗଲେ ରଘୁବର ଲକ୍ଷ୍ମଣ ବୈଦେହୀ ॥
ଆଣିଲ ଫେରାଇ କିମ୍ବା ଗମିଲେ କାନନେ । ଶୁଣନ୍ତେ ନୀର ଝରିଲା ସୁମନ୍ତ୍ର ନୟନେ ॥୨॥

---

"ମହାରାଜା କେଉଁଠି ?",—କୁହ ॥ ୧ ॥ ଦାସୀମାନେ ମନ୍ତ୍ରୀଙ୍କୁ ବ୍ୟାକୁଳ ଦେଖି ତାଙ୍କୁ କୌଶଲ୍ୟାଙ୍କ ମହଲକୁ ନେଇଗଲେ । ସୁମନ୍ତ୍ର ଯାଇ ସେଠାରେ ରାଜାଙ୍କୁ ଅମୃତସ୍ୱାନ ଚନ୍ଦ୍ର ପରି ବସିଥିବାର ଦେଖିଲେ ॥୨॥ ରାଜା ଆସନ, ଶଯ୍ୟା ଓ ଆଭୂଷଣରୁ ରହିତ ଏବଂ ବିଲ୍‌କୁଲ ମଳିନ ହୋଇ ପୃଥିବୀ ଉପରେ ପଡ଼ିଥାଆନ୍ତି । ସେ ଦୀର୍ଘ ଶ୍ୱାସ ନେଇ ଏପରି ଚିନ୍ତାକୁଳ, ସତେ ଅବା ରାଜା ଯଯାତି ସ୍ୱର୍ଗରୁ ଖସି ଚିନ୍ତାଗ୍ରସ୍ତ କି ! " ୩ ॥ ରାଜା କ୍ଷଣେ କ୍ଷଣେ ଚିନ୍ତାରେ ଛାତି ମୂର୍ଚ୍ଛି କରି ନେଉଥା'ନ୍ତି । ଏପରି ବିକଳ ଦଶା ଦେଖି ବୋଧହୁଏ, ସତେ ଯେପରି ଜଟାୟୁର ଭାଇ ସମ୍ପାତି ଡେଣା ଜଳିଯିବା ପରେ ପଡ଼ିଯାଇଛି କି ! ରାଜା ବାରମ୍ବାର 'ରାମ', 'ରାମ', 'ହା ସ୍ନେହୀ ରାମ !' ବୋଲି କହୁଥା'ନ୍ତି ଏବଂ ପୁଣି 'ହା ରାମ !' 'ହା ଲକ୍ଷ୍ମଣ !' 'ହା ଜାନକୀ !' ଏହିପରି କହିବାରେ ଲାଗିଥା'ନ୍ତି ॥ ୪ ॥ ଦୋହା :—ମନ୍ତ୍ରୀ 'ଜୟଜୀବ' କହି ଦଣ୍ଡବତ ପ୍ରଣାମ କଲେ । ଶୁଣିବା ମାତ୍ରେ ରାଜା ବ୍ୟାକୁଳ ହୋଇ ଉଠିଲେ ଏବଂ କହିଲେ, "ସୁମନ୍ତ୍ର ! କୁହ, ରାମ ମୋର କାହିଁ ?" ॥୧୪୮

ସୋକ ବିକଲ ପୁନି ପୂଁଛ ନରେସୂ । କହୁ ସିୟ ରାମ ଲଖନ ସଁଦେସୂ ॥
ରାମ ରୂପ ଗୁନ ସୀଲ ସୁଭାଉ । ସୁମିରି ସୁମିରି ଉର ସୋଚତ ରାଉ ॥୩॥
ରାଉ ସୁନାଇ ଦୀହ୍ନ ବନବାସୂ । ସୁନି ମନ ଭୟଉ ନ ହରଷୁ ହରାଁସୂ ॥
ସୋ ସୁତ ବିଛୁରତ ଗଏ ନ ପ୍ରାନା । କୋ ପାପୀ ବଡ ମୋହି ସମାନା ॥୪॥
ସଖା ରାମୁ ସିୟ ଲଖନୁ ଜହଁ ତହାଁ ମୋହି ପହୁଁଚାଉ ।
ନାହିଁ ତ ଚାହତ ଚଲନ ଅବ ପ୍ରାନ କହଉଁ ସତିଭାଉ ॥୧୪୯॥
ପୁନି ପୁନି ପୂଁଛତ ମଂତ୍ରିହି ରାଉ । ପ୍ରିୟତମ ସୁଅନ ସଁଦେସ ସୁନାଉ ॥
କରହି ସଖା ସୋଇ ବେଗି ଉପାଉ । ରାମୁ ଲଖନୁ ସିୟ ନୟନ ଦେଖାଉ ॥୧॥

---

ପୁଣି ପଚ୍ଚରନ୍ତି ଶୋକ-ବିକଳେ ନରେଶ । କହ ସୀତା ରଘୁବର ଲକ୍ଷ୍ମଣ ସନ୍ଦେଶ ॥
ରାମଙ୍କ ସ୍ୱଭାବ ଗୁଣ ସ୍ନେହ ଶୀଳ ରୂପ । ହୃଦୟେ ଚିନ୍ତନ୍ତି ମନେ କରି କରି ଭୂପ ॥୩॥
ରାଜ୍ୟ ଦେବାକୁ ଶୁଣାଇ ଦେଲି ବନବାସ । ଶୁଣି ମନେ ନ ହୋଇଲା ହରଷ ହତାଶ ॥
ସେ ସୁତର ବିରହରେ ନ ଗଲା ଏ ପ୍ରାଣ । କିଏ ପାପୀ ଜଗତରେ ଆନ ମୋ ସମାନ ॥୪॥
ସଖା, ଯହିଁ ରାମ ଜାନକୀ ଲକ୍ଷ୍ମଣ ମୋତେ ତହିଁ ନେଇ ଚଳ ।
ନାହିଁ ତ ସ୍ୱଭାବେ ସତ୍ୟ କହେ ଏବେ ପ୍ରାଣ ଚଳିବ ଚଞ୍ଚଳ ॥୧୪୯॥
ବାରମ୍ବାର ପଚ୍ଚରନ୍ତି ମନ୍ତ୍ରୀଙ୍କୁ ନରେଶ । ପ୍ରିୟତମ କୁମରଙ୍କ ଶୁଣାଅ ସନ୍ଦେଶ ॥
କରି ହେ ସଖା ସୁମନ୍ତ୍ର, ଉପାୟ ତେସନେ । ରାମ ଲକ୍ଷ୍ମଣ ସୀତାଙ୍କୁ ଦେଖାଅ ନୟନେ ॥୧॥

---

ଚୌପାଈ —ରାଜା ସୁମନ୍ତ୍ରଙ୍କୁ ଆଲିଙ୍ଗନ କରିପକାଇଲେ । ଯେତେ ଅବା ବୁଡିଯାଉଥିବା ବ୍ୟକ୍ତିକୁ ଆଶ୍ରୟ ମିଳିଗଲା କି ! ମନ୍ତ୍ରୀଙ୍କୁ ସ୍ନେହ ସହିତ ପାଖରେ ବସାଇ ନେତ୍ର ଜଳପୂର୍ଣ୍ଣ କରି ରାଜା ପଚ୍ଚାରିବାକୁ ଲାଗିଲେ, "ହେ ମୋର ପ୍ରେମୀ ସଖା ! ଶ୍ରୀରାମଙ୍କ କୁଶଳ-ସମାଚାର କୁହ । ଶ୍ରୀରାମ, ଲକ୍ଷ୍ମଣ ଓ ଜାନକୀ କେଉଁଠି, କୁହ । ସେମାନଙ୍କୁ ଫେରାଇ ଆଣିଛ କି ସେମାନେ ବନକୁ ଚାଲିଗଲେ ?" ଏହା ଶୁଣିବା ମାତ୍ରେ ମନ୍ତ୍ରୀଙ୍କ ନେତ୍ର ଅଶ୍ରୁ-ଜଳରେ ଛଳଛଳ ହୋଇ ଆସିଲା ॥ ୨ ॥ ଶୋକରେ ବ୍ୟାକୁଳ ହୋଇ ରାଜା ପୁଣି ପଚ୍ଚାରିଲେ, "ସୀତା, ରାମ ଓ ଲକ୍ଷ୍ମଣଙ୍କ ସନ୍ଦେଶ କୁହ ତ ।" ଶ୍ରୀରାମଙ୍କ ରୂପ, ଗୁଣ, ଶୀଳ ଓ ସ୍ୱଭାବକୁ ସ୍ମରଣ କରି ରାଜା ହୃଦୟରେ ଚିନ୍ତା କରୁଥାନ୍ତି ॥ ୩ ॥ ଏବଂ କହୁଥା'ନ୍ତି "ମୁଁ ରାଜା ହେବା ବିଷୟ ଶୁଣାଇ ବନବାସ ଦେଇଦେଲି, ଏହା ଶୁଣି ମଧ୍ୟ ଯେଉଁ ରାମର ମନରେ ହର୍ଷ କି ବିଷାଦ ହେଲା ନାହିଁ; ଏପରି ପୁତ୍ରର ବିରହରେ ମଧ୍ୟ ମୋ ପ୍ରାଣ ଗଲାନାହିଁ ! ତେବେ ମୋପରି ଆଉ ଏତେ ପାପୀ କିଏ ଅଛି ? ॥ ୪ ॥ ଦୋହା .- ହେ ସଖା ! ଶ୍ରୀରାମ, ଲକ୍ଷ୍ମଣ ଓ ଜାନକୀ ଯେଉଁଠାରେ ଅଛନ୍ତି, ମୋତେ ମଧ୍ୟ ସେଇଠି ନେଇ ପହଞ୍ଚାଇଦିଅ । ନୋହିଲେ, ମୁଁ ସତ କହୁଛି, ମୋର ପ୍ରାଣ ଏହିକ୍ଷଣି ଚାଲିଯିବାକୁ ଉଦ୍ୟତ ।" ॥ ୧୪୯ ॥ ଚୌପାଈ —ରାଜା ବାରମ୍ବାର ମନ୍ତ୍ରୀଙ୍କୁ ପଚ୍ଚାରୁଥା'ନ୍ତି— "ମୋର ପ୍ରିୟତମ ପୁତ୍ରମାନଙ୍କ ସନ୍ଦେଶ ଶୁଣାଅ । ହେ ସଖା ! ତୁମେ ତୁରନ୍ତ ସେହି

ସଚିବ ଧୀର ଧରି କହ ମୃଦୁ ବାନୀ । ମହାରାଜ ତୁହ୍ମ ପଣ୍ଡିତ ଜ୍ଞାନୀ ॥
ବୀର ସୁଧୀର ଧୁରଂଧର ଦେବା । ସାଧୁ ସମାଜୁ ସଦା ତୁହ୍ମ ସେବା ॥୨॥
ଜନମ ମରନ ସବ ଦୁଖ ସୁଖ ଭୋଗା । ହାନି ଲାଭୁ ପ୍ରିୟ ମିଲନ ବିୟୋଗା ॥
କାଲ କରମ ବସ ହୋହିଁ ଗୋସାଈଁ । ବରବସ ରାତି ଦିବସ କୀ ନାଈଁ ॥୩॥
ସୁଖ ହରଷହିଁ ଜଡ ଦୁଖ ବିଲଖାହୀଁ । ଦୋଉ ସମ ଧୀର ଧରହିଁ ମନ ମାହୀଁ ॥
ଧୀରଜ ଧରହୁ ବିବେକୁ ବିଚାରୀ । ଛାଡିଅ ସୋଚ ସକଲ ହିତକାରୀ ॥୪॥

ପ୍ରଥମ ବାସୁ ତମସା ଭୟଉ ଦୂସର ସୁରସରି ତୀର ।
ନ୍ହାଇ ରହେ ଜଲପାନୁ କରି ସିୟ ସମେତ ଦୋଉ ବୀର ॥୧୫୦॥

କେୱଟ କୀହ୍ନି ବହୁତ ସେବକାଈ । ସୋ ଜାମିନି ସିଂଗରୌର ଗୱାଁଈ ॥
ହୋତ ପ୍ରାତ ବଟ ଛୀରୁ ମଗାୱା । ଜଟା ମୁକୁଟ ନିଜ ସୀସ ବନାୱା ॥୧॥

---

ବୋଇଲେ ସଚିବ, ଧୈର୍ଯ୍ୟ ଧରି ମୃଦୁବାଣୀ । ମହାରାଜ ତୁମ୍ଭେ ଅଟ ପଣ୍ଡିତ ବିଜ୍ଞାନୀ ॥
ଦେବ, ତୁମ୍ଭେ ବୀରବର ଧୀର ଅଗ୍ରଗଣ୍ୟ । ସାଧୁଙ୍କ ସମାଜ ସଦା ସେବିଛ ଆପଣ ॥୨॥
ଜନମ ମରଣ ସବୁ ସୁଖ ଦୁଃଖ ଭୋଗ । ହାନି ଲାଭ ପୁଣି ପ୍ରିୟ ମିଳନ ବିୟୋଗ ॥
କାଳ କର୍ମ ବଶୀଭୂତ ହୋଇ, ନରରାୟ । ଦୁଅନ୍ତି ଅଗତ୍ୟା ରାତି ଦିବସ ପରାୟ ॥୩॥
ସୁଖେ ଜଡ ସୁଖୀ ଦୁଃଖେ ବିକଳ ହୁଅନ୍ତି । ଧୀର ଉଭୟଙ୍କୁ ସମ ସ୍ୱରୂପେ ଘେନନ୍ତି ॥
ହୃଦେ ଧୈର୍ଯ୍ୟ ଆଣ ଜ୍ଞାନ-ବିବେକେ ବିଚାରି । ଚିନ୍ତା ପରିତ୍ୟାଗ କର, ସର୍ବହିତକାରୀ ॥୪॥

ପ୍ରଥମ ଦିବସ ତମସା କୂଳରେ ଦ୍ୱିତୀୟ ଜାହ୍ନବୀ ତୀରେ ।
ସ୍ନାନ ଜଳପାନ କରି କଟାଇଲେ ସୀତା ସହ ଦେନି ବୀରେ ॥୧୫୦॥

କେଉଟି ଆସିଣ ସେବା ବହୁତ କରିଲା । ଶୃଙ୍ଗବେର ପୁରେ ସେହି ଯାମିନୀ କଟିଲା ॥
ଦୁଅନ୍ତେ ପ୍ରଭାତ ବଟ କ୍ଷୀର ମଗାଇଲେ । ଜଟା-ମୁକୁଟ ଆପଣା ଶିରେ ବିରଚିଲେ ॥୧॥

---

ଉପାୟ କର, ଯାହା ଫଳରେ ଶ୍ରୀରାମ, ଲକ୍ଷ୍ମଣ ଓ ସୀତାଙ୍କୁ ମୁଁ ଆଖି ଆଗରେ ଦେଖିବି ।" ॥୧॥ ମନ୍ତ୍ରୀ ଧୈର୍ଯ୍ୟ ଧରି କୋମଳ ବାଣୀ କହିଲେ, "ମହାରାଜ ! ଆପଣ ପଣ୍ଡିତ ଓ ଜ୍ଞାନୀ । ହେ ଦେବ ! ଆପଣ ଶୂରବୀର ଏବଂ ଉତ୍ତମ ଧୈର୍ଯ୍ୟବାନ୍ ପୁରୁଷମାନଙ୍କ ମଧ୍ୟରେ ଶ୍ରେଷ୍ଠ । ଆପଣ ସଦା ସାଧୁସମାଜଙ୍କୁ ସେବା କରିଅଛନ୍ତି ॥ ୨ ॥ ଜନ୍ମମରଣ, ସୁଖଦୁଃଖ-ଭୋଗ, ହାନିଲାଭ, ପ୍ରିୟଜନଙ୍କ ମିଳନ ଓ ବିରହ—ହେ ସ୍ୱାମି ! ଏସବୁ କାଳ ଓ କର୍ମର ଅଧୀନ ଏବଂ ଦିନରାତି ପରି ଅବଶ୍ୟମ୍ଭାବୀ ଭାବରେ ଘଟୁଥାଏ ॥ ୩ ॥ ମୂର୍ଖ ଲୋକେ ସୁଖରେ ହର୍ଷିତ ହୋଇପଡନ୍ତି ଏବଂ ଦୁଃଖରେ ରୋଦନ କରନ୍ତି । କିନ୍ତୁ ଧୀର ପୁରୁଷ ଆପଣା ମନରେ ଉଭୟଙ୍କୁ ସମାନ ମନେ କରେ । ହେ ସର୍ବହିତକାରି ! ବିବେକବିଚାର ବଳରେ ଆପଣ ଧୈର୍ଯ୍ୟ ଧରନ୍ତୁ ଏବଂ ଶୋକ ପରିତ୍ୟାଗ କରନ୍ତୁ ॥ ୪ ॥ ଦୋହା —ତମସା କୂଳରେ ଶ୍ରୀରାମଙ୍କ ପ୍ରଥମ ବାସ ହେଲା ଏବଂ ଦ୍ୱିତୀୟ ବାସ ଗଙ୍ଗା-ତୀରରେ । ସୀତାଙ୍କ ସହିତ ଦୁଇ ଭାଇ ସେଦିନ ସ୍ନାନ କରି ମାତ୍ର ଜଳପାନ କରି

ରାମ ସଖାଁ ତବ ନାବ ମଗାଈ । ପ୍ରିୟା ଚଢ଼ାଇ ଚଢ଼େ ରଘୁରାଈ ॥
ଲଖନ ବାନ ଧନୁ ଧରେ ବନାଈ । ଆପୁ ଚଢ଼େ ପ୍ରଭୁ ଆୟସୁ ପାଈ ॥୨॥
ବିକଲ ବିଲୋକି ମୋହି ରଘୁବୀରା । ବୋଲେ ମଧୁର ବଚନ ଧରି ଧୀରା ॥
ତାତ ପ୍ରନାମୁ ତାତ ସନ କହେହୂ । ବାର ବାର ପଦ ପଙ୍କଜ ଗହେହୂ ॥୩॥
କରବି ପାୟଁ ପରି ବିନୟ ବହୋରୀ । ତାତ କରିଅ ଜନି ଚିନ୍ତା ମୋରୀ ॥
ବନ ମଗ ମଂଗଲ କୁସଲ ହମାରେଁ । କୃପ ଅନୁଗ୍ରହ ପୁନ୍ୟ ତୁହ୍ମାରେଁ ॥୪॥

ତୁହ୍ମରେଁ ଅନୁଗ୍ରହ ତାତ କାନନ ଜାତ ସବ ସୁଖୁ ପାଇହୌଂ ।
ପ୍ରତିପାଲି ଆୟସୁ କୁସଲ ଦେଖନ ପାୟ ପୁନି ଫିରି ଆଇହୌଁ ॥
ଜନନୀଁ ସକଲ ପରିତୋଷି ପରି ପରି ପାୟଁ କରି ବିନତୀ ଘନୀ ।
ତୁଲସୀ କରେହୁ ସୋଇ ଜତନୁ ଜେହିଁ କୁସଲୀ ରହହିଁ କୋସଲଧନୀ ॥

---

ରାମ ସଖା ତହୁଁ ନାବ ଆଣନ୍ତେ ମଗାଇ । ଚଢିଲେ ରଘୁନାୟକ ପ୍ରିୟାଙ୍କୁ ଚଢାଇ ॥
ଲକ୍ଷ୍ମଣ ଚାପ ଶାୟକ ସନ୍ଧାନ ଧରିଣ । ନିଜେ ଚଢିଲେ ପ୍ରଭୁଙ୍କ ଆଦେଶ ପାଇଣ ॥୨॥
ବିକଳ ବିଲୋକି ମୋତେ ଶ୍ରୀ ରଘୁନନ୍ଦନ । ଧୈର୍ଯ୍ୟ ଧରାଇ ଭାଷିଲେ ମଧୁର ବଚନ ॥
ତାତ ' ପିତା ଆଗେ କହ ମୋର ନମସ୍କାର । ଧରିବେ ଚରଣ-ସରୋରୁହ ବାରମ୍ବାର ॥୩॥
ପଦ୍ମରେ ପଡି ପୁନଶ୍ଚ ବିନୟ କରିବେ । ପିତା, କଦାପି ମୋହର ଚିନ୍ତା ନ କରିବେ ॥
ବନ ମାର୍ଗରେ କୁଶଳ ମଙ୍ଗଳ ଆମ୍ଭର । ହେବ ଅନୁଗ୍ରହ ପୁଣ୍ୟ-ପ୍ରଭାବେ ତୁମ୍ଭର ॥୪॥

ତୁମ୍ଭ ଅନୁଗ୍ରହରେ ପିତା ' ବନ ମଧ୍ୟରେ ଆନନ୍ଦ ସକଳ ଲଭିବୁ ।
ଆଦେଶ ପାଳି ପୁଣି ଦେଖିବାକୁ ଚରଣ କୁଶଳେ ବାହୁଡ଼ି ଆସିବୁ ।
ବିନମ୍ରି ଚରଣେ ପଡିବେ, ଜନନୀ-ବୃନ୍ଦଙ୍କୁ ତୋଷିବେ,
ତୁଳସୀ ସେ ଯତନ କରୁଥିବେ ଯେସନ କୁଶଳେ ନୃପତି ରହିବେ ॥

---

ରହିଲେ ॥ ୧୫୦ ॥ ଚୌପାଈ :—କୈବର୍ତ୍ତ ନିଷାଦରାଜ ବହୁତ ସେବା କଲେ ।
ସେ ରାତ୍ର ସେମାନେ ଶୃଙ୍ଗବେର ପୁରରେ କଟାଇଲେ । ପରଦିନ ପ୍ରାତଃ କାଳରେ
ବଟକ୍ଷୀର ମଗାଇଲେ । ସେହି କ୍ଷୀରରେ ଶ୍ରୀରାମ, ଲକ୍ଷ୍ମଣ ଆପଣା ଆପଣା ମସ୍ତକରେ
ଜଟା-ମୁକୁଟ ତିଆରି କଲେ ॥ ୧ ॥ ତତ୍ପରେ ଶ୍ରୀରାମଙ୍କ ସଖା ନିଷାଦରାଜ ନୌକା
ମଗାଇଲେ । ପ୍ରଥମେ ପ୍ରିୟା ସୀତାଙ୍କୁ ତାହା ଉପରେ ଚଢାଇ ତା ପରେ ଶ୍ରୀ ରଘୁନାଥ
ତହିଁରେ ଚଢିଲେ । ତଦନନ୍ତର ଲକ୍ଷ୍ମଣ ଧନୁରେ ଶର ଯୋଖି ରଖିଲେ ଏବଂ ପ୍ରଭୁ
ଶ୍ରୀରାମଙ୍କ ଆଦେଶରେ ନିଜେ ଚଢିଲେ ॥ ୨ ॥ ମୋତେ ବ୍ୟାକୁଳ ଦେଖି ଶ୍ରୀରାମ
ଧୈର୍ଯ୍ୟ ଧରି ମଧୁର ବଚନ କହିଲେ, 'ହେ ତାତ ' ପିତାଙ୍କୁ ମୋର ପ୍ରଣାମ କହିଦେବ
ଏବଂ ମୋ ପକ୍ଷରୁ ବାରମ୍ବାର ତାଙ୍କ ଚରଣ-କମଳ ଧରିବ ।' ॥ ୩ ॥ ପୁଣି ପାଦ ଧରି
ବିନୟ ସହକାରେ କହିବ, 'ହେ ପିତା ! ଆପଣ ମୋ ଚିନ୍ତା କରନ୍ତୁ ନାହିଁ । ଆପଣଙ୍କ

ଗୁର ସନ କହବ ସଁଦେସୁ ବାର ବାର ପଦ ପଦୁମ ଗହି ।
କରବ ସୋଇ ଉପଦେସୁ ଜେହିଁ ନ ସୋଚ ମୋହି ଅୱଧପତି ॥୧୫୧॥

ପୁରଜନ ପରିଜନ ସକଲ ନିହୋରୀ । ତାତ ସୁନାଏହୁ ବିନତୀ ମୋରୀ ॥
ସୋଇ ସବ ଭାଁତି ମୋର ହିତକାରୀ । ଜା ତେଁ ରହ ନରନାହୁ ସୁଖାରୀ ॥୧॥
କହବ ସଁଦେସୁ ଭରତ କେ ଆଏଁ । ନୀତି ନ ତଜିଅ ରାଜପଦୁ ପାଏଁ ॥
ପାଲେହୁ ପ୍ରଜହି କରମ ମନ ବାନୀ । ସେଏହୁ ମାତୁ ସକଲ ସମ ଜାନୀ ॥୨॥
ଓର ନିବାହେହୁ ଭାୟପ ଭାଈ । କରି ପିତୁ ମାତୁ ସୁଜନ ସେବକାଈ ॥
ତାତ ଭାଁତି ତେହି ରାଖବ ରାଉ । ସୋଚ ମୋର ଜେହିଁ କରୈ ନ କାଉ ॥୩॥

---

ଧରି ବାରମ୍ବାର ପଙ୍କଜ ପଦ୍ମର ଗୁରୁଙ୍କୁ ଏହା କହିବେ ।
ସେହି ଶିକ୍ଷା ଦେବେ ଯେସନ୍ତେ ନୃପବର ଚିନ୍ତା ମୋର ନ କରିବେ ॥୧୫୧॥

ପୁରଜନ ପରିଜନେ କରି ଅନୁନୟ । ତାତ, ଶୁଣାଇ କହିବ ମୋହର ବିନୟ ॥
ସମସ୍ତ ପ୍ରକାରେ ସେହି ମୋର ହିତକାରୀ । ଯାହା ଦ୍ୱାରା ସୁଖେ ରହିଥିବେ ଦଣ୍ଡଧାରୀ ॥୧॥
ଆସିଲେ ଭାଇ ଭରତ ସନ୍ଦେଶ କହିବ । ରାଜ ପଦବୀ ପାଇ ସେ ନୀତି ନ ତେଜିବ ॥
ମନ କରମ ବଚନେ ପାଳିବ ପ୍ରଜାଙ୍କୁ । ସେବିବ ସମାନ ଜାଣି ସକଳ ମାତାଙ୍କୁ ॥୨॥
ଭାଇ, ନିଭାଇବ ତୁମେ ନିଜେ ଭାଇପଣ । ପିତା ମାତା ସ୍ୱଜନ ସେବାରେ ଦେଇ ମନ ॥
ରା ତ, ରଖିବ ନୃପଙ୍କୁ ତେମନ୍ତ ଯତନେ । ମୋ ଚିନ୍ତା ସେ ନ କରିବେ କଦାପି ଯେସନେ ॥୩॥

---

କୃପା, ଅନୁଗ୍ରହ ଓ ପୁଣ୍ୟ ଯୋଗେ ବନରେ ଓ ମାର୍ଗରେ ଆମ୍ଭମାନଙ୍କର ସମସ୍ତ କୁଶଳ-ମଙ୍ଗଳ ହେବ ।' ॥ ୪ ॥ ଛନ୍ଦ —'ହେ ପିତା ' ଆପଣଙ୍କ ଅନୁଗ୍ରହରୁ ବନ ମାର୍ଗରେ ଯାଉଥିବା ବେଳେ ମୁଁ ସବୁ ପ୍ରକାରେ ସୁଖ ପାଇବି । ଆପଣଙ୍କ ଆଜ୍ଞା ଭଲ ରୂପେ ପାଳନ କରି ଚରଣ ଦର୍ଶନ କରିବାକୁ କୁଶଳରେ ପୁଣି ଫେରି ଆସିବି ।' (ତୁଳସୀ ଦାସ କହନ୍ତି—) ପ୍ରଭୁ ପୁଣି କହିଲେ, "ତୁମେ ସମସ୍ତ ମାତାଙ୍କ ପାଦତଳେ ବାରମ୍ବାର ପଡ଼ି ସେମାନଙ୍କ ପରିତୋଷ ବିଧାନ କରିବ ଏବଂ ସେମାନଙ୍କୁ ବହୁତ ବିନତି କରିବ । ଆଉ ମଧ୍ୟ କୋଶଳପତି ପିତା ଯେପରି କୁଶଳ ରହିବେ, ସେଥି ନିମନ୍ତେ ଯତ୍ନ କରିବ ॥' ସୋରଠା '—'ବାରମ୍ବାର ଗୁରୁ ବଶିଷ୍ଠଙ୍କ ଚରଣ-କମଳ ଧରି ତାଙ୍କୁ ମୋର ଏହି ସନ୍ଦେଶ କହିବ—ଯେପରି ମୋ ପିତା ଅଯୋଧ୍ୟାପତି ଦଶରଥ ମୋ ପାଇଁ ଚିନ୍ତା ନ କରିବେ, ସେଥି ନିମନ୍ତେ ସେ ତାହାଙ୍କୁ ଯଥାର୍ଥ ଉପଦେଶ ଦେବେ ।' ॥ ୧୫୧ ॥ ଚୌପାଈ —'ହେ ତାତ ! ସମସ୍ତ ପୁରବାସୀ ଓ ଆତ୍ମୀୟସ୍ୱଜନଙ୍କୁ ନେହୁରା ହୋଇ ମୋର ଏ ଅନୁରୋଧ ଶୁଣାଇ ଦେବ ଯେ, ଯାହାର ଚେଷ୍ଟାରେ ମହାରାଜ ସୁଖୀ ରହିବେ, ସେହି ଲୋକ ମୋର ସବୁମନ୍ତେ ହିତକାରୀ ॥ ୧ ॥ ଭରତଙ୍କ ଆଗମନ ପରେ ତାଙ୍କୁ ମୋ ସନ୍ଦେଶ କହିଦେବ—ରାଜପଦ ପାଇଯିବା ପରେ ସେ ଯେପରି ନୀତି ତ୍ୟାଗ ନ କରନ୍ତି । କର୍ମ, ବଚନ ଓ ମନରେ ସେ ପ୍ରଜାପାଳନ କରିବେ ଏବଂ ସମସ୍ତ

ଲଖନ କହେ କଛୁ ବଚନ କଠୋରା । ବରଜି ରାମ ପୁନି ମୋହି ନିହୋରା ॥
ବାର ବାର ନିଜ ସପଥ ଦେୱାଈ । କହବି ନ ତାତ ଲଖନ ଲରିକାଈ ॥୪॥
କହି ପ୍ରନାମୁ କଛୁ କହନ ଲିୟ ସିୟ ଭଇ ସିଥିଲ ସନେହ ।
ଥକିତ ବଚନ ଲୋଚନ ସଜଲ ପୁଲକ ପଲ୍ଲବିତ ଦେହ ॥୧୫୨॥
ତେହି ଅବସର ରଘୁବର ରୁଖ ପାଈ । କେୱଟ ପାରହି ନାବ ଚଲାଈ ॥
ରଘୁକୁଲତିଲକ ଚଲେ ଏହି ଭାଁତୀ । ଦେଖଉଁ ଠାଢ଼ କୁଲିସ ଧରି ଛାତୀ ॥୧॥
ମୈଁ ଆପନ କିମି କହୌଁ କଲେସୂ । ଜିଅତ ଫିରେଉଁ ଲେଇ ରାମ ସଁଦେସୂ ॥
ଅସ କହି ସଚିବ ବଚନ ରହି ଗୟଊ । ହାନି ଗଲାନି ସୋଚ ବସ ଭୟଊ ॥୨॥
ସୂତ ବଚନ ସୁନତହିଁ ନରନାହୂ । ପରେଉ ଧରନି ଉର ଦାରୁନ ଦାହୂ ॥
ତଲଫତ ବିଷମ ମୋହ ମନ ମାପା । ମାଜା ମନହୁଁ ମୀନ କହୁଁ ବ୍ୟାପା ॥୩॥

ଲକ୍ଷ୍ମଣ କିଛି କଠୋର ବଚନ କହିଲେ । ବରଜି ରାମ ପୁନଶ୍ଚ ମୋତେ ନିହୋରିଲେ ॥
ବାରମ୍ବାର କରାଇଲେ ଶପଥ ନିଜର । ନ କହିବ ତାତ, ପିଲା-ପଣ ଲକ୍ଷ୍ମଣର ॥୪॥
ପ୍ରଣମି ଜାନକୀ କହୁ କହୁ କିଛି ହୋଇଲେ ସ୍ନେହେ ଶିଥିଳ ।
ବଚନ ରୁନ୍ଧିଲା ତନୁ ପୁଲକିଲା ନେତ୍ରେ ପୂରିଲା ସଲିଳ ॥୧୫୨॥
ସେହି ସମୟରେ ଜାଣି ରଘୁବର ମନ । କେବର୍ତ୍ତ ପାରକୁ ନାବ ବାହିଲା ବହନ ॥
ତରଣି-କୁଳ-ତିଳକ ଚଳିଲେ ଏପରି । ଠିଆ ହୋଇ ଦେଖୁଥିଲି ବକ୍ଷେ ବଜ୍ର ଧରି ॥୧॥
ମୁଁ କେଉଁଭାବେ କହିବ ଆପଣାର କ୍ଳେଶ । ଜୀବିତ ଫେରିଲି ନେଇ ରାମଙ୍କ ସନ୍ଦେଶ ॥
ଏହା କହି ରୁଦ୍ଧ ହେଲା ସଚିବଙ୍କ ଗିର । ହାନି ଗ୍ଲାନି ଚିନ୍ତାବଶ ହୋଇଲେ ଅଧୀର ॥୨॥
ଶୁଣି ସୁମନ୍ତ୍ର ବଚନ ଦୁଃଖେ ନରନାହ । ପଡ଼ିଲେ ମହୀରେ, ହୃଦେ ହେଲା ତୀବ୍ର ଦାହ ॥
ଦାରୁଣ ମୋହରେ ମନ ବିକଳ ହୋଇଲା । ପ୍ରଥମ ବରଷା ଫେଣ ମୀନେ ବା ଘାରିଲା ॥୩॥

ମାତାଙ୍କୁ ସମାନ ମନେ କରି ସେମାନଙ୍କ ସେବା କରିବେ ।' ॥ ୨ ॥ 'ହେ ଭାଇ ! ପିତା ମାତା ଓ ସ୍ୱଜନମାନଙ୍କ ସେବା କରି ଭ୍ରାତୃତ୍ୱକୁ ଶେଷ ପର୍ଯ୍ୟନ୍ତ ନିର୍ବାହ କରିବ । ହେ ତାତ ! ରାଜା ଯେପରି କେବେ ହେଲେ ମୋ ଚିନ୍ତା ନ କରିବେ, ତାହାଙ୍କୁ ସେହି ପ୍ରକାରେ ରଖିବ ।' ॥ ୩ ॥ 'ଲକ୍ଷ୍ମଣ କେତେକ କଠୋର ବଚନ କହିଲେ । ମାତ୍ର ଶ୍ରୀ ରଘୁନାଥ ତାଙ୍କୁ ବାରଣ କରି ମୋତେ ପୁଣି ଅନୁରୋଧ କଲେ ଏବଂ ବାରମ୍ବାର ମୋତେ ତାଙ୍କ ରାଣ ଦେଇ କହିଲେ—'ହେ ତାତ ! ଲକ୍ଷ୍ମଣର ପିଲାଳିଆ ଆଚରଣ ସେଠାରେ ପ୍ରକାଶ କରିବ ନାହିଁ ।' ॥୪॥ ଦୋହା —ପ୍ରଣାମ-ପୂର୍ବକ ସୀତା କିଛି କହିବାକୁ ଆରମ୍ଭ କରି-ଥିଲେ । ମାତ୍ର ସ୍ନେହବଶତଃ ସେ ଶିଥିଳ ହୋଇଗଲେ, ତାଙ୍କ ବଚନ ରୁଦ୍ଧ ହୋଇ ଆସିଲା, ନେତ୍ରରେ ଜଳ ଭରି ଆସିଲା ଏବଂ ଶରୀରରେ ରୋମାଞ୍ଚ ବ୍ୟାପିଗଲା ॥୧୫୨॥ ଚୌପାଈ :— ସେହି ସମୟରେ ଶ୍ରୀରାମଙ୍କ ସଙ୍କେତ ପାଇ କେଉଟ ନଦୀ ପାର ହେବା ନିମନ୍ତେ ନୌକା ଚଳାଇ ଦେଲା । ଏହିରୂପେ ରଘୁବଂଶତିଳକ ଶ୍ରୀରାମଚନ୍ଦ୍ର ଚାଲିଗଲେ ଏବଂ ଛାତି ଉପରେ

କରି ବିଲାପ ସବ ରୋଵହିଁ ରାନୀ । ମହା ବିପତି କିମି ଜାଇ ବଖାନୀ ॥
ସୁନି ବିଲାପ ଦୁଖହୂ ଦୁଖୁ ଲାଗା । ଧୀରଜହୂ କର ଧୀରଜୁ ଭାଗା ॥୩॥

ଭୟଉ କୋଲାହଲୁ ଅଵଧ ଅତି ସୁନି ନୃପ ରାଉର ସୋରୁ ।
ବିପୁଲ ବିହଗ ବନ ପରେଉ ନିସି ମାନହୁଁ କୁଲିସ କଠୋରୁ ॥୧୫୩॥

ପ୍ରାନ କଂଠଗତ ଭୟଉ ଭୁଆଲୂ । ମନି ବିହୀନ ଜନୁ ବ୍ୟାକୁଲ ବ୍ୟାଲୂ ॥
ଇନ୍ଦ୍ରୀଁ ସକଲ ବିକଲ ଭଇଁ ଭାରୀ । ଜନୁ ସର ସରସିଜ ବନୁ ବିନୁ ବାରୀ ॥୧॥
କୌସଲ୍ୟାଁ ନୃପୁ ଦୀଖ ମଲାନା । ରବିକୁଲ ରବି ଅଁଥୟଉ ଜିୟଁ ଜାନା ॥
ଉର ଧରି ଧୀର ରାମ ମହତାରୀ । ବୋଲୀ ବଚନ ସମୟ ଅନୁସାରୀ ॥୨॥

---

ବିଳପି ରାଣୀ-ନିକର କରନ୍ତି ରୋଦନ । ମହା ବିପତ୍ତି କିପରି ହୋଇବ ବର୍ଣ୍ଣନ ॥
ଶୁଣନ୍ତେ ବିଳାପ ଦୁଃଖ ଦୁଃଖକୁ ଲାଗିଲା । ମହା ଧୈର୍ଯ୍ୟବନ୍ତର ବି ଧୈର୍ଯ୍ୟ ପଳାଇଲା ॥୪॥

ଅଯୋଧାରେ ଅତି ହେଲା କୋଳାହଳ ଶୁଣି ଅନ୍ତଃପୁର ଧ୍ୱନି ।
ବିପୁଳ ବିହଙ୍ଗ-ବନେ କି ପଡ଼ିଲା ନିଶି କଠୋର ଅଶନି ॥୧୫୩॥

କଣ୍ଠାଗତ ପ୍ରାଣ ଆସି ହେଲେ ନରପାଳ । ମଣି ବିହୀନେ ବ୍ୟାକୁଳ ହୁଏ ଯେସନ୍ତେ ବ୍ୟାଳ ॥
ବିକଳ ହୋଇଲେ ଅତି ଇନ୍ଦ୍ରିୟ ସମସ୍ତ । ବାରି ବିନା ସରେ ଯଥା ସରୋଜ ବନସ୍ତ ॥୧॥
ନୃପଙ୍କୁ ମଳିନ ଦେଖି କଉଶଲ୍ୟା ରାଣୀ । ରବି-କୁଳ-ରବି ଅସ୍ତ ହେବେ ମନେ ଜାଣି ॥
ହୃଦେ ଧୈର୍ଯ୍ୟ ଧରି ରାମ ଜନନୀ ବହନ । ସମୟ ଅବଲୋକଣ ଭାଷିଲେ ବଚନ ॥୨॥

---

ବଜ୍ର ରଖି ମୁଁ ଛିଡ଼ାହୋଇ ସବୁ ଦେଖୁଥାଏ ॥ ୧ ॥ ମୁଁ ମୋ ନିଜ କ୍ଳେଶ କଥା କିପରି କହିବି ? ଶ୍ରୀରାମଙ୍କ ଏହି ସନ୍ଦେଶ ନେଇ ଜୀବିତାବସ୍ଥାରେ ମୁଁ ଫେରିଆସିଲି !” ଏପରି କହୁ କହୁ ମନ୍ତ୍ରୀଙ୍କ ବାଣୀ ଅବରୁଦ୍ଧ ହୋଇଗଲା । ସେ ହାନି, ଗ୍ଳାନି ଓ ଚିନ୍ତାର ବଶବର୍ତ୍ତୀ ହୋଇପଡ଼ିଲେ ॥୨॥ ସାରଥି ସୁମନ୍ତ୍ରଙ୍କ ବଚନ ଶୁଣିବା ମାତ୍ରେ ରାଜା ପୃଥିବୀ ଉପରେ ପଡ଼ିଗଲେ । ତାଙ୍କ ହୃଦୟରେ ଭୟାନକ ଦାହ ହେବାକୁ ଲାଗିଲା । ସେ ଛଟପଟ ହେବାକୁ ଲାଗିଲେ । ତାଙ୍କ ମନ ଭୀଷଣ ମୋହ ହେତୁ ବ୍ୟାକୁଳ ହେଲା, ଯେପରି ଅବା ମୀନ ପ୍ରଥମ ବର୍ଷାର ଫେନିଳ ଜଳରେ ଘାରି ହେଉଅଛି ! ॥୩॥ ସମସ୍ତ ରାଣୀ ବିଳାପ କରି କାନ୍ଦୁଥା'ନ୍ତି । ସେହି ମହାବିପତ୍ତି କିପରି ବର୍ଣ୍ଣନା କରାଯାଇ ପାରିବ ? ସେ ସମୟର ବିଳାପ ଶୁଣି ଦୁଃଖକୁ ମଧ ଦୁଃଖ ଲାଗିଲା ଏବଂ ଧୈର୍ଯ୍ୟର ଧୈର୍ଯ୍ୟ ମଧ୍ୟ ଲୋପ ପାଇଗଲା ॥ ୪ ॥ ଦୋହା :—ରାଜାଙ୍କ ରାଣୀ-ଉଆସର ବିଳାପଧ୍ୱନି ଶୁଣି ସମଗ୍ର ଅଯୋଧାରେ କୋଳାହଳ ବ୍ୟାପିଗଲା । ବୋଧ ହେଲା, ଯେପରି ପକ୍ଷୀମାନଙ୍କ ବିଶାଳ ବନରେ ରାତ୍ରିକାଳରେ କଠୋର ବଜ୍ର-ପାତ ହୋଇଅଛି ! ॥ ୧୫୩ ॥ ଚୌପାଈ :—ରାଜାଙ୍କ ପ୍ରାଣ କଣ୍ଠାଗତ ହୋଇଗଲା । ଯେପରି ଅବା ମଣିହୀନ ସର୍ପ ବ୍ୟାକୁଳ ହୋଇ ମରଣାସନ୍ନ ହୋଇ ପଡ଼ିଛି ! ଇନ୍ଦ୍ରିୟମାନ ଅତିଶୟ ବିକଳ ହୋଇପଡ଼ିଲେ । ବୋଧ ହେଲା, ଜଳବିନା ସରୋବରରେ କମଳବନ ମଉଳି ପଡ଼ିଲା

ନାଥ ସମୁଝି ମନ କରିଅ ବିଚାରୂ । ରାମ ବିୟୋଗ ପୟୋଧି ଅପାରୂ ॥
କରନଧାର ତୁମ୍ହ ଅୱଧ ଜହାଜୂ । ଚଢ଼େଉ ସକଲ ପ୍ରିୟ ପଥିକ ସମାଜୂ ॥୩॥
ଧୀରଜୁ ଧରିଅ ତ ପାଇଅ ପାରୂ । ନାହିଁତ ବୂଡ଼ିହି ସବୁ ପରିବାରୂ ॥
ଜୌଁ ଜିୟଁ ଧରିଅ ବିନୟ ପିଅ ମୋରୀ । ରାମୁ ଲଖନୁ ସିୟ ମିଲହିଁ ବହୋରୀ ॥୪॥
ପ୍ରିୟା ବଚନ ମୃଦୁ ସୁନତ ନୃପୁ ଚିତୟଉ ଆଁଖି ଉଘାରି ।
ତଲଫତ ମୀନ ମଲୀନ ଜନୁ ସୀଁଚତ ସୀତଲ ବାରି ॥୧୫୪॥
ଧରି ଧୀରଜୁ ଉଠି ବୈଠ ଭୁଆଲୂ । କହୁ ସୁମଂତ୍ର କହଁ ରାମୁ କୃପାଲୂ ॥
କହାଁ ଲଖନୁ କହଁ ରାମୁ ସନେହୀ । କହଁ ପ୍ରିୟ ପୁତ୍ରବଧୂ ବୈଦେହୀ ॥୧॥
ବିଲପତ ରାଉ ବିକଲ ବହୁ ଭାଁତୀ । ଭଇ ଜୁଗ ସରିସ ସିରାତି ନ ରାତୀ ॥
ତାପସ ଅଂଧ ସାପ ସୁଧି ଆଈ । କୌସଲ୍ୟହି ସବ କଥା ସୁନାଈ ॥୨॥

---

ମନ ମଧ୍ୟେ ପ୍ରାଣେଶ୍ୱର, କରନ୍ତୁ ବିଚାର । ରାମ-ବିୟୋଗ ଅଟଇ ପୟୋଧି ଅପାର ॥
କର୍ଣ୍ଣଧାର ଅଟ ତୁମ୍ଭେ ଅବଧ ଜାହାଜ । ଚଢ଼ିଛନ୍ତି ସର୍ବେ ପ୍ରିୟ ପଥିକ-ସମାଜ ॥୩॥
ଧୈର୍ଯ୍ୟ ଧରିଲେ ସମସ୍ତେ ପାଇଯିବେ ପାର । ନାହିଁ ତ ବୁଡ଼ି ମରିବେ ସାରା ପରିବାର ॥
ଯେବେ ନାଥ ! ମୋ ବିନୟ ହୃଦୟେ ଘେନିବେ । ରାମ ଲକ୍ଷ୍ମଣ ଜାନକୀ ବାହୁଡ଼ି ମିଳିବେ ॥୪॥
ଶୁଣି ନରମଣି ପ୍ରିୟା ମୃଦୁ ବାଣୀ ନୟନ ଫେଡ଼ି ଗୁହିଁଲେ ।
ଛଟପଟ ଦୀନ ମୀନ ହୁଏ ଯଥା ଶୀତଳ ବାରି ସିଞ୍ଚିଲେ ॥୧୫୪॥
ଧୈର୍ଯ୍ୟ ଧରି ଉଠି ପୁଣି ବସିଲେ ଭୂପତି । କହ ସୁମନ୍ତ୍ର, କୃପାଳୁ ରାମ କାହିଁଛନ୍ତି ॥
କାହିଁ ସଉମିତ୍ରି, କାହିଁ ରଘୁବର ସ୍ନେହୀ । କାହିଁ ଗଲେ ପ୍ରିୟ ପୁତ୍ର-ବଧୂ ବଇଦେହୀ ॥୧॥
ବିକଳେ ବହୁ ପ୍ରକାରେ ବିଲପନ୍ତି ରାୟ । ନିଶି ଶେଷ ନ ହୁଅଇ, କଟେ ଯୁଗ ପ୍ରାୟ ॥
ସ୍ମରଣ ହୋଇଲା ଶାପ ଅନ୍ଧ ତାପସର । କୌଶଲ୍ୟାଙ୍କୁ ଶୁଣାଇଲେ ପ୍ରସଙ୍ଗ ନିକର ॥୨॥

---

କ ! ॥ ୧ ॥ କୌଶଲ୍ୟା ରାଜାଙ୍କୁ ଅତିଶୟ ଦୁଃଖିତ ଦେଖି ହୃଦୟ ମଧ୍ୟରେ ଜାଣି ପାରିଲେ ଯେ, ଏବେ ସୂର୍ଯ୍ୟବଂଶର ସୂର୍ଯ୍ୟ ଅସ୍ତପ୍ରାୟ । ସେତେବେଳେ ଶ୍ରୀରାମଜନନୀ କୌଶଲ୍ୟା ହୃଦୟରେ ଧୈର୍ଯ୍ୟ ଧରି ସମୟାନୁକୂଳ ବଚନ କହିଲେ— ॥ ୨ ॥ "ହେ ନାଥ ! ଆପଣ ମନ ମଧ୍ୟରେ ବୁଝି ବିଚାର କରନ୍ତୁ, ଶ୍ରୀରାମଙ୍କ ବିରହ ଅପାର ସମୁଦ୍ର । ଅଯୋଧ୍ୟା ଜାହାଜ ଏବଂ ଆପଣ ତାହାର କର୍ଣ୍ଣଧାର । ସମସ୍ତ ପ୍ରିୟଜନ (ପଥିକ ଓ ପ୍ରଜା) ଜାହାଜ ଉପରେ ଆରୂଢ଼ ଯାତ୍ରି ସମାଜ ॥ ୩ ॥ ଆପଣ ଧୈର୍ଯ୍ୟ ଧରନ୍ତୁ, ସମସ୍ତେ ପାରି ହୋଇଯିବେ । ନୋହିଲେ ସମସ୍ତ ପରିବାର ବୁଡ଼ିଯିବେ । "ହେ ପ୍ରିୟ ପତି ! ଯଦି ମୋ ପ୍ରାର୍ଥନା ହୃଦୟରେ ଗ୍ରହଣ କରିବେ, ତେବେ ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ପୁଣି ଆସି ମିଳିବେ !" ॥ ୪ ॥ ଦୋହା :—ପ୍ରିୟପତ୍ନୀ କୌଶଲ୍ୟାଙ୍କ କୋମଳ ବଚନ ଶୁଣି ରାଜା ଆଖି ଖୋଲି ଗୁହିଁଲେ । ସତେ ଅବା ଛଟପଟ ହେଉଥିବା ଦୀନ ମୀନ ଉପରେ କେହି ଶୀତଳ ଜଳ ଛୁଆଡ଼ି ଦେଲା ! ॥ ୧୫୪ ॥ ଚୌପାଇ :—ଧୈର୍ଯ୍ୟ ଧରି

ଭୟଉ ବିକଲ ବରନତ ଇତିହାସା । ରାମ ରହିତ ଧିଗ ଜୀବନ ଆସା ॥
ସୋ ତନୁ ରାଖି କରବ ମୈଁ କାହା । ଜେହିଁ ନ ପ୍ରେମ ପନୁ ମୋର ନିବାହା ॥୩॥
ହା ରଘୁନଂଦନ ପ୍ରାନ ପିରୀତେ । ତୁମ୍ହ ବିନୁ ଜିଅତ ବହୁତ ଦିନ ବୀତେ ।
ହା ଜାନକୀ ଲଖନ ହା ରଘୁବର । ହା ପିତୁ ହିତ ଚିତ ଚାତକ ଜଲଧର ॥୪॥

ରାମ ରାମ କହି ରାମ କହି ରାମ ରାମ କହି ରାମ ।
ତନୁ ପରିହରି ରଘୁବର ବିରହଁ ରାଉ ଗୟଉ ସୁରଧାମ ॥୧୫୫॥

ଜିଅନ ମରନ ଫଲୁ ଦସରଥ ପାୱା । ଅଣ୍ଡ ଅନେକ ଅମଲ ଜସୁ ଛାୱା ॥
ଜିଅତ ରାମ ବିଧୁ ବଦନୁ ନିହାରା । ରାମ ବିରହ କରି ମରନୁ ସଁୱାରା ॥୧॥

---

ବ୍ୟାକୁଳ ହେଲେ ବର୍ଣ୍ଣିଲେ ପୂର୍ବ ଇତିହାସ । ରାମ ବିନା ଧିକ ଏହି ପ୍ରାଣ ଅଭିଳାଷ ॥
କି ଲାଭ ଆଉ ସେ ତନୁ ରଖି, ଅକାରଣ । ଯେ ନିର୍ବାହି ନ ପାରିଲା ମୋର ପ୍ରେମ ପଣ ॥୩॥
ଆହା ହା ରଘୁନନ୍ଦନ, ପ୍ରାଣପ୍ରିୟ ସୁତ । ତୋ ବିନା ଜୀଅନ୍ତେ ଗଲା ଦିବସ ବହୁତ ॥
ହା ଲକ୍ଷଣ, ବଇଦେହି, ହା ରଘୁନନ୍ଦନ । ହା ପିତା-ଚିତ୍ତ-ଚାତକ-ହିତକାରୀ ଘନ ॥୪॥

ରାମ ରାମ କହି ଆହା ରାମ କହି ରାମ ରାମ କହି ରାମ ।
ତନୁ ପରିହରି ରାମଙ୍କ ବିରହେ ନୃପ ଗଲେ ସୁରଧାମ ॥୧୫୫॥

ଜୀବନ ମରଣ ଫଳ ପାଇଲେ ନୃପତି । ବ୍ୟାପିଲା ବହୁ ବ୍ରହ୍ମାଣ୍ଡେ ବିମଳ କୀରତି ॥
ଜୀଅନ୍ତେ ରାମଙ୍କ ବିଧୁ-ବଦନ ଦେଖିଲେ । ରାମ ବିୟୋଗ ହୁଅନ୍ତେ ମୃତ୍ୟୁ ଆଦରିଲେ ॥୧॥

---

ରାଜା ଉଠି ବସିଲେ ଏବଂ କହିଲେ, "ସୁମନ୍ତ୍ର ! କୁହ, କୃପାଳୁ ଶ୍ରୀରାମ କେଉଁଠି ? ଲକ୍ଷ୍ମଣ କେଉଁଠି ? ସ୍ନେହୀ ରାମ କେଉଁଠି ? ମୋର ପ୍ରିୟବଧୂ ଜାନକୀ କେଉଁଠି ?" ॥୧॥ ରାଜା ବ୍ୟାକୁଳ ହୋଇ ବହୁତ ପ୍ରକାରେ ବିଳାପ କରୁଥା'ନ୍ତି । ସେହି ରାତି ଯୁଗ ସମାନ ବଡ଼ ହୋଇଗଲା, ଆଦୌ କଟୁ ନ ଥାଏ । ରାଜାଙ୍କ ମନରେ ଅନ୍ଧ ତପସ୍ୱୀ (ଶ୍ରବଣକୁମାର)ଙ୍କ ଅଭିଶାପ କଥା ମନେ ପଡ଼ିଗଲା । ସେ ସବୁ କଥା କୌଶଲ୍ୟାଙ୍କୁ କହି ଶୁଣାଇଲେ ॥ ୨ ॥ ସେ ଇତିହାସ ବର୍ଣ୍ଣନା କରୁ କରୁ ରାଜା ବ୍ୟାକୁଳ ହୋଇ ପଡ଼ିଲେ ଏବଂ କହିଲେ, "ଶ୍ରୀରାମଙ୍କ ବିନା ଜୀବନଧାରଣର ଆଶା ଧିକ । ଯେଉଁ ଶରୀର ମୋ ପ୍ରେମର ପଣ ନିର୍ବାହ କଲା ନାହିଁ, ସେହି ଶରୀର ରଖି ମୁଁ କ'ଣ କରିବି ? ୩ ॥ ହେ ରଘୁନନ୍ଦନ ମୋର ପ୍ରାଣପ୍ରିୟ ରାମ ! ତୁମ ବିନା ମୋର ଜୀବନ ଧାରଣ କରିବାର ବହୁତ ଦିନ ଅତିବାହିତ ହୋଇଗଲା । ହା ଜାନକୀ ! ହା ଲକ୍ଷ୍ମଣ ! ହା ରଘୁବୀର ! ହା ପିତା-ଚିତ୍ତ-ଚାତକ-ହିତକାରୀ ମେଘ !" ॥୪॥ ଦୋହା:—ରାଜା 'ରାମ' 'ରାମ କହି, ପୁଣି 'ରାମ' କହିଲେ ଏବଂ ଆଉଥରେ 'ରାମ' 'ରାମ' ଉଚ୍ଚାରଣ କଲେ । ପୁଣି ଶେଷଥର ପାଇଁ 'ରାମ' ନାମ କହି ଶ୍ରୀରାମଙ୍କ ବିରହରେ ଶରୀର ତ୍ୟାଗ କରି ସୁରଲୋକକୁ ଗଲେ ॥୧୫୫॥ ଚୌପାଈ:—ଜୀବନ ଓ ମରଣର ଫଳ ତ କେବଳ ଦଶରଥ ପାଇଲେ । ତାଙ୍କର ନିର୍ମଳ ଯଶ ଅନେକ ବ୍ରହ୍ମାଣ୍ଡରେ ବ୍ୟାପିଗଲା । ଜୀଇଥିବା ଅବସ୍ଥାରେ ରାଜା ଶ୍ରୀରାମଚନ୍ଦ୍ରଙ୍କ ଚନ୍ଦ୍ରମୁଖ

ସୋକ ବିକଲ ସବ ରୋଵହିଁ ରାନୀ । ରୂପୁ ସୀଲୁ ବଲୁ ତେଜୁ ବଖାନୀ ॥
କରହିଁ ବିଲାପ ଅନେକ ପ୍ରକାରା । ପରହିଁ ଭୂମିତଲ ବାରହିଁ ବାରା ॥୨॥
ବିଲପହିଁ ବିକଲ ଦାସ ଅରୁ ଦାସୀ । ଘର ଘର ରୁଦନୁ କରହିଁ ପୁରବାସୀ ॥
ଅଁଥଯଉ ଆଜୁ ଭାନୁକୁଲ ଭାନୂ । ଧରମ ଅବଧି ଗୁନ ରୂପ ନିଧାନୂ ॥୩॥
ଗାରୀଂ ସକଲ କୈକଇହି ଦେହୀଂ । ନୟନ ବିହୀନ କୀନ୍ହ ଜଗ ଜେହୀଂ ॥
ଏହି ବିଧି ବିଲପତ ରୈନି ବିହାନୀ । ଆଏ ସକଲ ମହାମୁନି ଜ୍ଞାନୀ ॥୪॥

ତବ ବସିଷ୍ଠ ମୁନି ସମୟ ସମ କହି ଅନେକ ଇତିହାସ ।
ସୋକ ନେବାରେଉ ସବହି କର ନିଜ ବିଜ୍ଞାନ ପ୍ରକାସ ॥୧୫୬॥

ତେଲ ନାଵଁ ଭରି ନୃପ ତନୁ ରାଖା । ଦୂତ ବୋଲାଇ ବହୁରି ଅସ ଭାଷା ॥
ଧାଵହୁ ବେଗି ଭରତ ପହିଁ ଜାହୂ । ନୃପ ସୁଧି କତହୁଁ କହହୁ ଜନି କାହୂ ॥୧॥

---

ଶୋକାକୁଳ ହୋଇ ସର୍ବେ ବିଳପନ୍ତି ରାଣୀ । ରୂପଶୀଳ ତେଜ ବଳ ବଖାଣି ବଖାଣି ॥
କରଣ ରୋଦନ ଅତି ଅନେକ ପ୍ରକାରେ । ବାରମ୍ବାର ମୁଣ୍ଡପିଟି ପଡ଼ନ୍ତି ଧରାରେ ॥୨॥
ବିଳପନ୍ତି ବିକଳରେ ଦାସ ଆଉ ଦାସୀ । କ୍ରନ୍ଦନ କରନ୍ତି ଗୃହେ ଗୃହେ ପୁରବାସୀ ॥
ଅସ୍ତ ହେଲେ ଆଜି ରବି-କୁଳ-ଦିବାକର । ଧର୍ମର ଅବଧି ରୂପ-ସଦ୍‌ଗୁଣ-ସାଗର ॥୩॥
ଗାଳି ଦିଅନ୍ତି ସକଳେ କେକୟୀ ସୁତାକୁ । ନୟନ-ବିହୀନ ଯେହୁ କଲା ବସୁଧାକୁ ॥
ଏହି ଭାବେ ବିଳପନ୍ତେ ରାତି ହେଲା ଅନ୍ତ । ଆସିଲେ ସମସ୍ତ ମହା-ମୁନି ଜ୍ଞାନବନ୍ତ ॥୪॥

କହି ତହିଁ ନାନା ଇତିହାସ ମୁନି ବଶିଷ୍ଠ ସମୟ ସମ ।
କଲେ ସ୍ୱବିଜ୍ଞାନ-ପ୍ରକାଶ ବଳରେ ସମସ୍ତଙ୍କ ଶୋକ ଶମ ॥୧୫୬॥

ତୈଳ ମଧ୍ୟେ ନୃପତିଙ୍କ ଶରୀର ରଖିଲେ । ଦୂତଙ୍କୁ ଡକାଇ ପୁଣି ଏମନ୍ତ କହିଲେ ॥
ଭରତଙ୍କ ପାଶେ ଶୀଘ୍ର ଧାଇଁ କରି ଯିବ । ନୃପ ସନ୍ଦେଶ କାହାକୁ କିଛି ନ କହିବ ॥୧॥

---

ଦେଖୁଥିଲେ ଏବଂ ଶ୍ରୀରାମଙ୍କ ବିରହକୁ ନିମିତ୍ତ କରି ସେ ମରଣପଥ ସୁଗମ କରିନେଲେ ॥୧॥ ସମସ୍ତ ରାଣୀ ଶୋକ ହେତୁ ବ୍ୟାକୁଳ ହୋଇ ରୋଦନ କରୁଥା'ନ୍ତି । ସେମାନେ ରାଜାଙ୍କ ରୂପ, ଶୀଳ, ବଳ ଓ ତେଜ ବାଖାଣି ଅନେକ ପ୍ରକାରେ ବିଳାପ କରୁଥା'ନ୍ତି ଏବଂ ବାରମ୍ବାର ଭୂମି ଉପରେ ପଡ଼ି ପଡ଼ି ଯାଉଥା'ନ୍ତି ॥ ୨ ॥ ଦାସଦାସୀମାନେ ବ୍ୟାକୁଳ ହୋଇ ବିଳାପ କରୁଥା'ନ୍ତି । ନଗରବାସୀମାନେ ଘରେ ଘରେ ବିଳାପରତ । କହୁଥା'ନ୍ତି, "ଆଜି ଧର୍ମର ସୀମା, ଗୁଣ ଓ ରୂପର ଭଣ୍ଡାର ସୂର୍ଯ୍ୟବଂଶର ସୂର୍ଯ୍ୟ ଅସ୍ତ ହୋଇଗଲେ !" ॥୩॥ ସମସ୍ତେ କୈକେୟୀଙ୍କୁ ଗାଳି ଦେଉଥା'ନ୍ତି । ସମଗ୍ର ସଂସାରକୁ ସେ ନେତ୍ରହୀନ କରି-ଦେଲେ । ଏହି ରୂପେ ବିଳାପ କରୁ କରୁ ରାତି ବିତିଗଲା । ପ୍ରାତଃକାଳରେ ସମସ୍ତ ବଡ ବଡ ଜ୍ଞାନୀ ମୁନିମାନେ ଆସିଲେ ॥ ୪ ॥ ଦୋହା :—ସେତେବେଳେ ବଶିଷ୍ଠ ମୁନି ସମୟାନୁକୂଳ ଅନେକ ଇତିହାସ କହି ନିଜ ବିଜ୍ଞାନାଲୋକରେ ସମସ୍ତଙ୍କ ଶୋକ ଦୂର କରିଦେଲେ ॥ ୧୫୬ ॥ ଚୌପାଇ :—ବଶିଷ୍ଠ ଡୋଙ୍ଗାରେ ତେଲ ଭର୍ତ୍ତି କରାଇ

ଏତନେଇ କହେହୁ ଭରତ ସନ ଜାଈ । ଗୁର ବୋଲାଇ ପଠୟଉ ଦୋଉ ଭାଈ ॥
ସୁନି ମୁନି ଆୟସୁ ଧାୱନ ଧାଏ । ଚଲେ ବେଗ ବର ବାଜି ଲଜାଏ ॥୨॥
ଅନରଥୁ ଅୱଧ ଅରଂଭେଉ ଜବ ତେଁ । କୁସଗୁନ ହୋହିଁ ଭରତ କହୁଁ ତବ ତେଁ ॥
ଦେଖହିଁ ରାତି ଭୟାନକ ସପନା । ଜାଗି କରହିଁ କଟୁ କୋଟି କଲପନା ॥୩॥
ବିପ୍ର ଜେୱାଁଇ ଦେହିଁ ଦିନ ଦାନା । ସିବ ଅଭିଷେକ କରହିଁ ବିଧି ନାନା ॥
ମାଗହିଁ ହୃଦୟଁ ମହେସ ମନାଈ । କୁସଲ ମାତୁ ପିତୁ ପରିଜନ ଭାଈ ॥୪॥

ଏହି ବିଧି ସୋଚତ ଭରତ ମନ ଧାୱନ ପହୁଁଚେ ଆଇ ।
ଗୁର ଅନୁସାସନ ଶ୍ରବନ ସୁନି ଚଲେ ଗନେସୁ ମନାଇ ॥୧୫୭॥

ଚଲେ ସମୀର ବେଗ ହୟ ହାଁକେ । ନାଘତ ସରିତ ସୈଲ ବନ ବାଁକେ ॥
ହୃଦୟଁ ସୋଚୁ ବଡ଼ କଛୁ ନ ସୋହାଈ । ଅସ ଜାନହିଁ ଜିୟଁ ଜାଉଁ ଉଡ଼ାଈ ॥୧॥

---

ଏତିକ କହିବ ତୁମ୍ଭେ ଭରତଙ୍କୁ ଯାଇ । ଉଭୟ ଭାଇଙ୍କୁ ଗୁରୁ ଅଛନ୍ତି ଡକାଇ ॥
ଶୁଣି ମୁନିଙ୍କ ଆଦେଶ ଧାଇଁ ଅନୁଚରେ । ଗମିଲେ ନିନ୍ଦିଣ ବର ବାଜିଙ୍କୁ ସତ୍ୱରେ ॥୨॥
ଅଯୋଧ୍ୟାରେ ଆରମ୍ଭିଲା ଅନର୍ଥ ଯେ ଦିନୁ । କୁଶକୁନ ଭରତଙ୍କୁ ହୁଅଇ ସେ ଦିନୁ ॥
ରଜନୀରେ ଭୟଙ୍କର ସ୍ୱପନ ଦେଖନ୍ତି । ଉଠିଣ କୋଟି ଅନିଷ୍ଟ କଳ୍ପନା କରନ୍ତି ॥୩॥
ବିପ୍ରେ ଭୁଞ୍ଜାଇ ଦିଅନ୍ତି ପ୍ରତିଦିନ ଦାନ । ଶିବାଭିଷେକ କରନ୍ତି ବିବିଧ ବିଧାନ ॥
ମାଗନ୍ତି ହୃଦୟେ ମହେଶ୍ୱରଙ୍କୁ ଜଣାଇ । କୁଶଳ ମାତା ପିତୃର ପରିବାର ଭାଇ ॥୪॥

ଭରତ ଏମନ୍ତେ ଚିନ୍ତୁ ଚିନ୍ତୁ ଚଞ୍ଚେ ଗୃହ ଆସି ପ୍ରବେଶିଲେ ।
ଗୁରୁ-ଆଜ୍ଞା ଶୁଣି ଗଣେଶଙ୍କୁ ସ୍ମରି ଶୀଘ୍ର ପ୍ରସ୍ଥାନ କରିଲେ ॥୧୫୭॥

ଚଳିଲେ ମରୁତ ବେଗେ ଚଳାଇଣ ବାଜି । ଲଙ୍ଘି ସରିତ ଶଇଳ ଘନ ବନ-ରାଜି ॥
ହୃଦେ ବଡ ଚିନ୍ତା କିଛି ଭଲ ନ ଲାଗଇ । ଉଡି ବା ଯାଆନ୍ତି, ମନେ ଏପରି ହୁଅଇ ॥୧॥

---

ରାଜାଙ୍କ ଶରୀରକୁ ତହିଁରେ ରଖାଇଦେଲେ । ତତ୍ପରେ ଦୂତମାନଙ୍କୁ ଡକାଇ ସେମାନଙ୍କୁ କହିଲେ, "ତୁମ୍ଭେମାନେ ଶୀଘ୍ର ଦୌଡି ଭରତଙ୍କ ପାଖକୁ ଯାଅ ! ରାଜାଙ୍କ ମୃତ୍ୟୁ ସମ୍ବାଦ କେଉଁଠି ହେଲେ କାହାରିକୁ କହିବ ନାହିଁ ॥ ୧ ॥ ଯାଇ ଭରତଙ୍କୁ ଏତିକି କହିବ— ତୁମ ଭାଇ ଦୁହିଙ୍କୁ ଗୁରୁ ଡକାଇଅଛନ୍ତି ।" ମୁନିଙ୍କ ଆଜ୍ଞା ଶୁଣି ଦୂତମାନେ ଧାଇଁଲେ । ଆପଣା ଆପଣାଇ ଶୀଘ୍ର ଗତିରେ ସେମାନେ ଉତ୍ତମ ଅଶ୍ୱଙ୍କୁ ମଧ ଲଜ୍ଜିତ କରି ଚାଲିଲେ ॥ ୨ ॥ ଅଯୋଧାରେ ଅନର୍ଥ ଆରମ୍ଭ ହେଲା ଦିନଠାରୁ ଭରତଙ୍କୁ ଅଶୁଭ ଲକ୍ଷଣ ସବୁ ଦେଖାଯାଉଥାଏ । ସେ ରାତିରେ ଭୟଙ୍କର ସ୍ୱପ୍ନମାନ ଦେଖୁଥା'ନ୍ତି ଏବଂ ଜାଗରଣ ପରେ ଅସଂଖ୍ୟ ମନ୍ଦ ମନ୍ଦ କଳ୍ପନା କରୁଥା'ନ୍ତି ॥୩॥ ଅନିଷ୍ଟ-ଶାନ୍ତି ନିମନ୍ତେ ସେ ପ୍ରତିଦିନ ବ୍ରାହ୍ମଣ-ଭୋଜନ କରାଇ ଦାନ ଦେଉଥା'ନ୍ତି । ଅନେକ ବିଧିରେ ରୁଦ୍ରାଭିଷେକ କରୁଥା'ନ୍ତି । ମହାଦେବଙ୍କୁ ହୃଦୟରେ ମନାସି ତାଙ୍କୁ ମାତାପିତା, କୁଟୁମ୍ବୀଜନ ଓ ଭାଇମାନଙ୍କର କୁଶଳ-ମଙ୍ଗଳ ଭିକ୍ଷା କରୁଥା'ନ୍ତି ॥ ୪ ॥ ଦୋହା :—ଭରତ ଏହି ରୂପେ ମନରେ

ଏକ ନିମେଷ ବରଷ ସମ ଜାଈ । ଏହି ବିଧି ଭରତ ନଗର ନିଅରାଈ ॥
ଅସଗୁନ ହୋହିଁ ନଗର ପୈଠାରା । ରଟହିଁ କୁଭାଁତି କୁଖେତ କରାରା ॥୨॥
ଖର ସିଆର ବୋଲହିଁ ପ୍ରତିକୂଲା । ସୁନି ସୁନି ହୋଇ ଭରତ ମନ ସୂଲା ॥
ଶ୍ରୀହତ ସର ସରିତା ବନ ବାଗା । ନଗରୁ ବିସେଷି ଭୟାୱନୁ ଲାଗା ॥୩॥
ଖଗ ମୃଗ ହୟ ଗୟ ଜାହିଁ ନ ଜୋଏ । ରାମ ବିୟୋଗ କୁରୋଗ ବିଗୋଏ ॥
ନଗର ନାରି ନର ନିପଟ ଦୁଖାରୀ । ମନହୁଁ ସବନ୍ହି ସବ ସଂପତି ହାରୀ ॥୪॥

ପୁରଜନ ମିଲହିଁ ନ କହହିଁ କଛୁ ଗୱଁହିଁ ଜୋହାରହିଁ ଜାହିଁ ॥
ଭରତ କୁସଲ ପୂଁଛି ନ ସକହିଁ ଭୟ ବିଷାଦ ମନ ମାହିଁ ॥୧୫୮॥

---

ଏକ ନିମେଷ ଯେ ଏକ ବର୍ଷ ସମ କଟେ । ଏ ଭାବେ ଭରତ ହେଲେ ନଗର ନିକଟେ ॥
କୁଶକୁନ ଦେଖାଯାଏ ପଶନ୍ତେ ନଗରେ । କର୍କଶ ରବନ୍ତି କାକ ବସି କୁକ୍ଷେତରେ ॥୨॥
ଖର ଶୃଗାଳ ବୋବାନ୍ତି ଅତି ପ୍ରତିକୂଳ । ଶୁଣି ଶୁଣି ଭରତଙ୍କ ହୃଦେ ହୁଏ ଶୂଳ ॥
ଶ୍ରୀହତ ବନ ଉଦ୍ୟାନ କୂପ ନଦୀ ସର । ଅତିଶୟ ଭୟାନକ ଲାଗଇ ନଗର ॥୩॥
ଚାହିଁ ନ ହୁଅନ୍ତି ଖଗ ମୃଗ ହସ୍ତୀ ହୟ । ରାମ-ବିରହ-କୁରୋଗ କରିଛି ଅଥୟ ॥
ପୁର ନର-ନାରୀ ସର୍ବେ ନିତାନ୍ତ ଦୁଃଖିତ । ମନେ ହୁଏ ହାରିଛନ୍ତି ସର୍ବେ ନିଜ ବିତ୍ତ ॥୪॥

ଭେଟି ପୁରଜନ ଜୁହାର କରଣ ମଉନେ ଫେରି ଆସନ୍ତି ।
ଭରତ ଭୟରେ କୁଶଳାଦି କିଛି ପ୍ରଶ୍ନ କରି ନ ପାରନ୍ତି ॥୧୫୮॥

---

ଚିନ୍ତା କରୁଥିଲା ବେଳେ ଦୂତମାନେ ଆସି ପହଞ୍ଚିଲେ । ଗୁରୁଙ୍କ ଆଜ୍ଞା କାନରେ ପଡ଼ିବା ମାତ୍ରେ ସେ ଗଣେଶଙ୍କୁ ମନାସି ଚାଲିଲେ ॥ ୧୫୭ ॥ ଚୌପାଈ :—ପବନ ପରି ବେଗଗାମୀ ଅଶ୍ୱଙ୍କୁ ହାଙ୍କି ବିକଟ ନଦୀ, ପାହାଡ଼ ଓ ଜଙ୍ଗଲମାନ ଲଙ୍ଘି ଚାଲିଲେ । ତାଙ୍କ ହୃଦୟରେ ବିଶେଷ ଚିନ୍ତା, କିଛି ଭଲ ଲାଗୁ ନ ଥାଏ । କିପରି ଉଡ଼ି ଶୀଘ୍ର ଅଯୋଧ୍ୟାରେ ପହଞ୍ଚି ଯାଆନ୍ତି ହେଲେ !—ଏହି ଚିନ୍ତା ତାଙ୍କ ହୃଦୟରେ ଘୋଟିଥାଏ ॥୧॥ ଗୋଟିଏ ଗୋଟିଏ ନିମେଷ ବର୍ଷ ପରି ବିତୁଥାଏ । ଏହି ରୂପେ ଭରତ ନଗର ନିକଟରେ ଆସି ପହଞ୍ଚିଲେ । ନଗରରେ ପ୍ରବେଶ କରିବା ମାତ୍ରେ ଅଶୁଭ ଲକ୍ଷଣ ଦେଖାଯିବାକୁ ଲାଗିଲା । କୁଆମାନେ ଖରାପ ଜାଗାମାନଙ୍କରେ ବସି ଖରାପ ଭାବରେ 'କାଆ' 'କାଆ' କରୁଥାଆନ୍ତି ॥୨॥ ଗଧ ଓ ବିଲୁଆମାନେ ବିପରୀତ ରଡ଼ି କରୁଥା'ନ୍ତି । ଏହା ସବୁ ଶୁଣି ଭରତଙ୍କ ମନରେ ବଡ଼ ପୀଡ଼ା ଜାତ ହେଉଥାଏ । ସରୋବର, ନଦୀ, ବନ ଓ ଉପବନ ସବୁ ଶୋଭାହୀନ ବୋଧ ହେଉଥାଏ । ନଗର ଅତି ଭୟ'ନକ ବୋଧ ହେଉଥାଏ ॥ ୩ ॥ ଶ୍ରୀରାମଙ୍କ ବିରହରୂପୀ ଅସାଧ୍ୟ ରୋଗରେ ପୀଡ଼ିତ ପକ୍ଷୀପଶୁ ଓ ଘୋଡ଼ାହାତୀମାନଙ୍କର ବ୍ୟଥା ଦେଖି ହେଉନାହିଁ । ନଗରର ସ୍ତ୍ରୀପୁରୁଷ ଅତ୍ୟନ୍ତ ଦୁଃଖିତ । ସତେ ଅବା ସମସ୍ତେ ଆପଣା ଆପଣାର ସମସ୍ତ ସମ୍ପତ୍ତି ହରାଇ ବସିଅଛନ୍ତି ॥ ୪ ॥ ଦୋହା :—ନଗରର ଲୋକେ ଆସି ତାଙ୍କୁ ଭେଟୁଥା'ନ୍ତି, କିନ୍ତୁ କିଛି କହିପାରୁ ନ ଥା'ନ୍ତି । ଚୁପ୍ ଭାବରେ ଜୁହାର କରି

ହାଟ ବାଟ ନହିଁ ଜାଇ ନିହାରୀ । ଜନୁ ପୁର ଦହଁ ଦିସି ଲାଗି ଦଓ୍ୱାରୀ ॥
ଆଓ୍ୱତ ସୁତ ସୁନି କୈକୟନଂଦିନି । ହରଷୀ ରବିକୁଲ ଜଲରୁହ ଚଂଦିନି ॥୧॥
ସଜି ଆରତୀ ମୁଦିତ ଉଠି ଧାଈ । ଦ୍ୱାରେହିଁ ଭେଁଟି ଭବନ ଲେଇ ଆଈ ॥
ଭରତ ଦୁଖିତ ପରିବାରୁ ନିହାରା । ମାନହୁଁ ତୁହିନ ବନଜ ବନୁ ମାରା ॥୨॥
କୈକେଈ ହରଷିତ ଏହି ଭାଁତୀ । ମନହୁଁ ମୁଦିତ ଦବ ଲାଇ କିରାତୀ ॥
ସୁତହି ସସୋଚ ଦେଖି ମନୁ ମାରେଁ । ପୂଁଛତି ନୈହର କୁସଲ ହମାରେଁ ॥୩॥
ସକଲ କୁସଲ କହି ଭରତ ସୁନାଈ । ପୂଁଛୀ ନିଜ କୁଲ କୁସଲ ଭଲାଈ ॥
କହୁ କହଁ ତାତ କହାଁ ସବ ମାତା । କହଁ ସିୟ ରାମ ଲଖନ ପ୍ରିୟ ଭ୍ରାତା ॥୪॥

ସୁନି ସୁତ ବଚନ ସନେହମୟ କପଟ ନୀର ଭରି ନୈନ ।
ଭରତ ଶ୍ରବନ ମନ ସୂଲ ସମ ପାପିନି ବୋଲୀ ବୈନ ॥୧୫୯॥

---

ହାଟ ବାଟ ଭୟଙ୍କର ଗୃହିଁ ନ ହୁଅଇ । ପୁର ଦଶ ଦିଗେ ଯେସନ୍ତେ ଦାବାଗ୍ନି ଜଳଇ ॥
ସୁତ ଆଗମନ ଶୁଣି କେକୟ ନନ୍ଦିନୀ । ହରଷିତେ ରବିକୁଳ-ସରୋଜ-ଚନ୍ଦ୍ରିନୀ ॥୧॥
ସଜାଇ ଆଳତି ଉଠି ଆନନ୍ଦେ ଧାଇଁଲା । ଦ୍ୱାରେ ଭେଟ କରି ନିଜ ଗୃହକୁ ଆଣିଲା ॥
ଦୁଃଖିତ ପରିବାରଙ୍କୁ ଦେଖିଲେ ଭରତ । ଶିଶିର ଜାଳିଛି କିବା ବନଜ ବନସ୍ତ ॥ ॥୨॥
କୈକେୟୀ ହୃଦେ ହରଷ ହୁଅଇ ଏପରି । ଦାବାଗ୍ନି ଲଗାଇ ଯେସନ୍ତେ ପ୍ରସନ୍ନ ଶବରୀ ॥
ଚିନ୍ତିତ ବିରସ ମୁଖ ଦେଖି ତନୟର । କୁଶଳ ପ୍ରଶ୍ନ କରଇ ସ୍ୱପିତା-ଗୃହର ॥୩॥
ଭରତ ଶୁଣାଇ ତହୁଁ ସମସ୍ତ କୁଶଳ । ପଚାରିଲେ ନିଜ କୁଳ-କୁଶଳ-ମଙ୍ଗଳ ॥
କହ,କାହିଁ ପିତା, କାହିଁ ଅନ୍ୟ ସବୁ ମାତା । କାହିଁ ସୀତା, ସଉମିତ୍ରି, ରାମ ପ୍ରିୟ ଭ୍ରାତା ॥୪॥

ଶୁଣି ସ୍ନେହ-ପୂର୍ଣ୍ଣ ତନୟ ବଚନ ଗଡାଇ କପଟ ପାଣି ।
ଭରତଙ୍କ ହୃଦ-ଶ୍ରବଣ-ଦୁଃଖଦ ପାପିନୀ ବୋଲଇ ବାଣୀ ॥୧୫୯॥

---

ଜଳିଯାଉଥାʼନ୍ତି । ମନରେ ଭୟ ଓ ବିଷାଦ ପୂରି ରହିଥିବା ହେତୁ ଭରତ ମଧ୍ୟ କାହାରିକୁ କୁଶଳସମାଚାର ପଚାରି ପାରୁ ନ ଥାʼନ୍ତି ॥ ୧୫୮ ॥ ଚୌପାଈ :—ହାଟବାଟ ଦେଖା ପଡୁ ନ ଥାଏ । ସତେ ଯେପରି ନଗରର ଦଶ ଦିଗରେ ଦାବାଗ୍ନି ଲାଗିଯାଇଛି । ପୁତ୍ରର ଆଗମନ-ବାର୍ତ୍ତା ଶୁଣି ସୂର୍ଯ୍ୟକୁଳ-କମଳ ନିମନ୍ତେ ଚନ୍ଦ୍ରମା-ସ୍ୱରୂପିଣୀ କୈକେୟୀ ଅତିଶୟ ଆନନ୍ଦିତ ହେଲେ ॥୧॥ ସେ ଆରତି ସଜାଇ, ଆନନ୍ଦିତ ମନରେ ଉଠି ଦୌଡ଼ିଲେ ଏବଂ ଦ୍ୱାର ନିକଟରେ ଭରତ, ଶତ୍ରୁଘ୍ନ ଦୁହିଁଙ୍କୁ ଭେଟି ତାଙ୍କୁ ମହଲ ମଧ୍ୟକୁ ନେଇ ଆସିଲେ । ଭରତ ସମଗ୍ର ପରିବାରକୁ ଚିନ୍ତିତ ଓ ଦୁଃଖିତ ଥିବାର ଦେଖିଲେ । ତାଙ୍କୁ ବୋଧ ହେଲା, ସତେ ଯେପରି କମଳବନକୁ ତୁଷାର ନାଶ କରି ପକାଇଛି ॥ ୨ ॥ ଜଣେ ମାତ୍ର କୈକେୟୀ ଆନନ୍ଦିତ ଥିବାର ଲକ୍ଷ୍ୟ କରାଯାଉଛି । ସତେ ଯେପରି ଶବରୀ ଜଙ୍ଗଲରେ ଅଗ୍ନି ଲଗାଇ ଆନନ୍ଦ ଅନୁଭବ କରୁଛି । ପୁତ୍ରକୁ ଚିନ୍ତାକୁଳ ଓ ମନ ମାରିବା ଅବସ୍ଥାରେ ଦେଖି ସେ ପଚାରିଲେ, "ଆମ ବାପଘରେ ସବୁ କୁଶଳ ତ ?" ॥ ୩ ॥ ଭରତ ସବୁ କୁଶଳ-

ତାତ ବାତ ମୈ ସକଲ ସଁୱାରୀ । ଭୈ ମଂଥରା ସହାୟ ବିଚାରୀ ॥
କଛୁକ କାଜ ବିଧି ବୀଚ ବିଗାରେଉ । ଭୂପତି ସୁରପତି ପୁର ପଗୁ ଧାରେଉ ॥୧॥
ସୁନତ ଭରତୁ ଭଏ ବିବସ ବିଷାଦା । ଜନୁ ସହମେଉ କରି କେହରି ନାଦା ॥
ତାତ ତାତ ହା ତାତ ପୁକାରୀ । ପରେ ଭୂମିତଲ ବ୍ୟାକୁଲ ଭାରୀ ॥୨॥
ଚଲତ ନ ଦେଖନ ପାୟଉଁ ତୋହୀ । ତାତ ନ ରାମହି ସୌଁପେହୁ ମୋହୀ ॥
ବହୁରି ଧୀର ଧରି ଉଠେ ସଁଭାରୀ । କହୁ ପିତୁ ମରନ ହେତୁ ମହତାରୀ ॥୩॥
ସୁନି ସୁତ ବଚନ କହତି କୈକେଈ । ମରମୁ ପାଁଛି ଜନୁ ମାହୁର ଦେଈ ॥
ଆଦିହୁ ତେଁ ସବ ଆପନି କରନୀ । କୁଟିଲ କଠୋର ମୁଦିତ ମନ ବରନୀ ॥୪॥

---

ସମ୍ଭାଳି ମୁଁ ନେଇଥିଲି ବତ୍ସ, ସବୁ କାର୍ଯ୍ୟ । ମନ୍ଥରା ବିଚାରି କଲା ବହୁତ ସାହାଯ୍ୟ ॥
ମଝିରେ ବିଧାତା କିଛି ବିଘ୍ନ କଲା କାମେ । ଭୂପତି ଗମନ କଲେ ସୁରପତି-ଧାମେ ॥୧॥
ଶୁଣନ୍ତେ ଭରତ ହେଲେ ବିଷାଦ-ସନ୍ତ୍ରସ୍ତ । ଯେସନ୍ତେ ସିଂହନାଦ ଶୁଣି କରୀ ଭୟ ତ୍ରସ୍ତ ॥
ପିତା ପିତା ! ପିତା ! ଆହା ପିତା ! ଉଚ୍ଚାରିଣ । ପଡ଼ିଲେ ମହୀରେ ଭାରି ବ୍ୟାକୁଳ ହୋଇଣ ॥୨॥
ଦେଖି ନ ପାରିଲି ଯିବା ସମୟେ ତୁମ୍ଭଙ୍କୁ । ତାତ, ମୋତେ ସମର୍ପିଣ ନ ଗଲ ରାମଙ୍କୁ ॥
ଧୈର୍ଯ୍ୟ ଧରି ସାବଧାନେ ଉଠିଲେ ଆବର । କହ ଜନନି, ମରଣ ହେତୁ ପିତାଙ୍କର ॥୩॥
ଶୁଣି ତନୟ ବଚନ କୈକେୟୀ ବୋଲଇ । ମର୍ମ ଚିରି ତହିଁ ମଧ୍ୟେ ବିଷ ବା ଦିଅଇ ॥
ଅଦ୍ୟରୁ ଆରମ୍ଭି ନିଜ କୁକାର୍ଯ୍ୟ ସମସ୍ତ । କଠୋରା କୁଟିଳା କଲା ମୋଦ ମନେ ବ୍ୟକ୍ତ ॥୪॥

---

ସମାଚାର କହି ଶୁଣାଇଲେ । ତତ୍ପରେ ଆପଣା କୁଳର କୁଶଳ-ମଙ୍ଗଳ-ସମାଚାର ପଚାରିଲେ । ଭରତ ପଚାରିଲେ, "କହ, ପିତା କାହାନ୍ତି ? ମୋ ମାତାମାନେ କେଉଁଠି ? ସୀତା ଓ ମୋ ପ୍ରିୟ ଭାଇ ରାମଲକ୍ଷ୍ମଣ କେଉଁଠି ?" ॥ ୪ ॥ ଦୋହା :—ପୁତ୍ରର ସ୍ନେହମୟ ବଚନ ଶୁଣି ନେତ୍ରରେ କପଟାଶ୍ରୁ ଭରି ପାପିନୀ କୈକେୟୀ ଭରତଙ୍କ କାନରେ ମର୍ମ-ଭେଦୀ ଶୂଳ ସମାନ ବଚନ ବୋଇଲେ— ॥ ୧୫୯ ॥ ଚୌପାଇ :—ହେ ତାତ ! ମୁଁ ସବୁ କଥା ଯୋଗାଡ଼ କରି ନେଇଥିଲି । ବିଚାରୀ ମନ୍ଥରା ସହାୟକ ହେଲା । କିନ୍ତୁ ବିଧାତା ମଝିରେ କାମଟାକୁ ଟିକିଏ ବିଗାଡ଼ି ଦେଇ ବସିଲା । ତାହା ହେଉଛି, ରାଜା ଦେବଲୋକ ପ୍ରୟାଣ କଲେ ॥ ୧ ॥ ଭରତ ଏହା ଶୁଣିବା ମାତ୍ରେ ବିଷାଦ ହେତୁ ବିବଶ ହୋଇପଡ଼ିଲେ । ସତେ ଅବା ସିଂହର ଗର୍ଜନ ଶୁଣି ହାତୀ ଶଙ୍କିଗଲା । ସେ 'ହେ ତାତ !' 'ହା ତାତ !' ଚିତ୍କାର କରି ବ୍ୟାକୁଳ ହୋଇ ଭୂମି ଉପରେ ପଡ଼ିଗଲେ ॥ ୨ ॥ ଏବଂ ବିଳାପ କରିବାକୁ ଲାଗିଲେ, "ହେ ତାତ ! ମୁଁ ଆପଣଙ୍କୁ ପ୍ରୟାଣ କାଳରେ ସୁଦ୍ଧା ଦେଖି ପାରିଲି ନାହିଁ ! ହାୟ ! ଆପଣ ମୋତେ ଶ୍ରୀରାମଙ୍କ ହସ୍ତରେ ସମର୍ପଣ ସୁଦ୍ଧା କରି ଗଲେ ନାହିଁ ।" ତତ୍ପରେ ଧୈର୍ଯ୍ୟ ଧରି ସେ ସମ୍ଭାଳି ଉଠିଲେ ଏବଂ କହିଲେ, "ମାତା ! ପିତାଙ୍କ ମୃତ୍ୟୁର କାରଣ ମୋତେ କୁହ ତ ।" ॥ ୩ ॥ ପୁତ୍ରର ବଚନ ଶୁଣି କୈକେୟୀ କହିବାକୁ ଲାଗିଲେ । ସତେ ଅବା ଭରତଙ୍କ ମର୍ମସ୍ଥାନ ଚିରି ମାତା ତହିଁରେ ବିଷ ଭର୍ତ୍ତି କରୁଅଛନ୍ତି ।

ଭରତହି ବିସରେଉ ପିତୁ ମରନ ସୁନତ ରାମ ବନ ଗୌନୁ ।
ହେତୁ ଅପନପଉ ଜାନି ଜିୟଁ ଥକିତ ରହେ ଧରି ମୌନୁ ॥୧୬୦॥

ବିକଲ ବିଲୋକି ସୁତହି ସମୁଝାୱତି । ମନହୁଁ ଜରେ ପର ଲୋନୁ ଲଗାୱତି ॥
ତାତ ରାଉ ନହିଁ ସୋଚୈ ଜୋଗୂ । ବିଢ଼ଇ ସୁକୃତ ଜସୁ କୀନ୍ହେଉ ଭୋଗୂ ॥୧॥
ଜୀୱତ ସକଲ ଜନମ ଫଲ ପାଏ । ଅନ୍ତ ଅମରପତି ସଦନ ସିଧାଏ ॥
ଅସ ଅନୁମାନି ସୋଚୁ ପରିହରହୂ । ସହିତ ସମାଜ ରାଜ ପୁର କରହୂ ॥୨॥
ସୁନି ସୁଠି ସହମେଉ ରାଜକୁମାରୂ । ପାକେଁ ଛତ ଜନୁ ଲାଗ ଅଁଗାରୂ ॥
ଧୀରଜ ଧରି ଭରି ଲେହିଁ ଉସାସା । ପାପିନି ସବହି ଭାଁତି କୁଲ ନାସା ॥୩॥
ଜୌଁ ପୈ କୁରୁଚି ରହୀ ଅତି ତୋହୀ । ଜନମତ କାହେ ନ ମାରେ ମୋହୀ ॥
ପେଡ଼ କାଟି ତୈଁ ପାଲଉ ସୀଁଚା । ମୀନ ଜିଅନ ନିତି ବାରି ଉଲୀଚା ॥୪॥

---

ଭରତ ଭୁଲିଲେ ପିତାଙ୍କ ମରଣ ରାମ ବନବାସ ଶୁଣି ।
ମଉନ ସ୍ତମ୍ଭିତ ହୋଇଲେ ନିଜକୁ ଅନର୍ଥର ହେତୁ ମଣି ॥୧୬୦॥

ସୁତକୁ ବିକଳ ଅବଲୋକିଣ ବୁଝାଏ । ଯେସନେ ପୋଡାଘାଆରେ ଲବଣ ଲଗାଏ ॥
ବତ୍ସ, ନୃପତି ନୁହନ୍ତି ଚିନ୍ତିବାର ଯୋଗ୍ୟ । ବଡ ସୁକୃତ ସୁଯଶ କଲେ ଉପଭୋଗ ॥୧॥
ଜୀବତେ ଜନମ ଫଳ ସକଳ ଲଭିଲେ । ଅନ୍ତକୁ ଅମରପତି-ସଦନେ ଗମିଲେ ॥
ଏହା ମନେ ଅନୁମାନି ଚିନ୍ତା ପରିହର । ସମାଜ ସହିତ ସୁତ ! ରାଜ୍ୟ ପୁରେ କର ॥୨॥
ଶୁଣି ଅତି ଡରିଗଲେ ମହୀପ-ନନ୍ଦନ । ଅଗ୍ନି ସ୍ପର୍ଶ ହୋଇନ୍ତେ ପକ୍ୱ କ୍ଷତରେ ଯେସନ ॥
ଧୈର୍ଯ୍ୟ ହୃଦେ ଧରି ଛାଡିଲେ ଦୀର୍ଘ ସେ ଶ୍ୱାସ । ପାପିନୀ ସବୁ ପ୍ରକାରେ କଲୁ କୁଳ ନାଶ ॥୩॥
ଯେବେ ଏମନ୍ତ କୁରୁଚି ଥିଲା ତୋ ହୃଦୟେ । କିପାଁ ନ ମାରିଲୁ ମୋତେ ଜନ୍ମିବା ସମୟେ ॥
ବୃକ୍ଷ କାଟି ଦେଇ ତୁହି ପଲ୍ଲବେ ସିଞ୍ଚିଲୁ । ମୀନ ଜୀଆଇବା ପାଇ ପାଣି ବୁହାଇଲୁ ॥୪॥

---

କୁଟିଳା ଓ କଠୋରହୃଦୟା କୈକେୟୀ ମୂଳରୁ ଶେଷ ଯାଏ ଆପଣାର ସବୁ କୃତିତ୍ୱ ପ୍ରସନ୍ନ ମନରେ ଭରତଙ୍କୁ କହି ଶୁଣାଇଲେ ॥ ୪ ॥ ଦୋହା :— ଶ୍ରୀରାମଙ୍କ ବନଗମନ-ବିଷୟ ଶୁଣି ଭରତ ପିତାଙ୍କ ମୃତ୍ୟୁ-ବିଷୟ ଭୁଲିଗଲେ ଏବଂ ହୃଦୟରେ ଏ ସମସ୍ତ ଅନର୍ଥର ମୂଳ କାରଣ ନିଜେ ବୋଲି ଅନୁଭବ କରି ମୌନ ଓ ସ୍ତମ୍ଭୀଭୂତ ହେଲେ ॥ ୧୬୦ ॥ ଚୌପାଈ .—ପୁତ୍ରର ବ୍ୟାକୁଳତା ଦେଖି କୈକେୟୀ ତାଙ୍କୁ ବୁଝାଇବାକୁ ଲଗିଲେ । ସତେ ଅବା ସେ ପୋଡା ଘା'ରେ ଲୁଣ ଲଗାଇ ଦେଉଛନ୍ତି ! ସେ କହିଲେ, "ହେ ତାତ ! ରାଜାଙ୍କ ନିମନ୍ତେ ଚିନ୍ତା କରିବା ଉଚିତ ନୁହେଁ । ସେ ପୁଣ୍ୟ ଓ ଯଶ କମାଇ ତାହା ପର୍ଯ୍ୟାପ୍ତ ମାତ୍ରାରେ ଉପଭୋଗ କଲେ ॥୧॥ ତାଙ୍କ ଜୀବନ-କାଳ ମଧ୍ୟରେ ସେ ଜନ୍ମଲାଭର ସମ୍ପୂର୍ଣ୍ଣ ଫଳ ପାଇଅଛନ୍ତି ଏବଂ ଶେଷରେ ସେ ଇନ୍ଦ୍ରଲୋକକୁ ଚାଲିଗଲେ । ଏପରି ବିଚାର କରି ଚିନ୍ତା ପରିହାର କର ଏବଂ ସମାଜ ସହିତ ନଗରରେ ରାଜତ୍ୱ କର ।" ॥ ୨ ॥ ରାଜକୁମାର ଭରତ ଏହା ଶୁଣି ବହୁତ ଶଙ୍କିଗଲେ । ସତେ

ହଂସବଂସୁ ଦସରଥୁ ଜନକୁ ରାମ ଲଖନ ସେ ଭାଇ ।
ଜନନୀ ତୂଁ ଜନନୀ ଭଈ ବିଧି ସନ କଛୁ ନ ବସାଇ ॥୧୬୧॥
ଜବ ତୈଁ କୁମତି କୁମତ ଜିୟଁ ଠୟଊ । ଖଣ୍ଡ ଖଣ୍ଡ ହୋଇ ହୃଦୟୁ ନ ଗୟଊ ॥
ବର ମାଗତ ମନ ଭଇ ନହିଁ ପୀରା । ଗରି ନ ଜୀହ ମୁହଁ ପରେଉ ନ କୀରା ॥୧॥
ଭୂପଁ ପ୍ରତୀତି ତୋରି କିମି କୀନ୍ହୀ । ମରନ କାଲ ବିଧି ମତି ହରି ଲୀନ୍ହୀ ॥
ବିଧିହୁଁ ନ ନାରି ହୃଦୟୁ ଗତି ଜାନୀ । ସକଲ କପଟ ଅଘ ଅବଗୁନ ଖାନୀ ॥୨॥
ସରଲ ସୁସୀଲ ଧରମ ରତ ରାଊ । ସୋ କିମି ଜାନୈଁ ତୀୟ ସୁଭାଊ ॥
ଅସ କୋ ଜୀବ ଜଂତୁ ଜଗ ମାହୀଁ । ଜେହି ରଘୁନାଥ ପ୍ରାନ ପ୍ରିୟ ନାହୀଁ ॥୩॥

---

ହଂସ ବଂଶେ ଜାତ ପିତା ଦଶରଥ ଶ୍ରୀରାମ ଲକ୍ଷ୍ମଣ ଭ୍ରାତା ।
ତୁ ମୋର ଜନନୀ ହୋଇଲୁ ଜନନି ! ଅତି ବଳିଷ୍ଠ ବିଧାତା ॥୧୬୧॥
ଯେ ଦିନ କୁମତି, କଲୁ କୁବୁଦ୍ଧି ନିଶ୍ଚୟ । ଖଣ୍ଡ ଖଣ୍ଡ ନ ଫାଟିଲା କିପାଁ ତୋ ହୃଦୟ ॥
ବର ମାଗନ୍ତେ ହୃଦୟେ ପୀଡ଼ା ନ ହୋଇଲା । ଜିଭ ନ ଛିଣ୍ଡିଲା, ମୁହେଁ ପୋକ ନ ପଡ଼ିଲା ॥୧॥
ବିଶ୍ୱାସ କରିଲେ ତୋତେ ମହୀପ କିପରି । ମରଣ କାଳେ ବିଧାତା ମତି ନେଲା ହରି ॥
ବିଧି ମଧ ନାରୀ ଗତି ନ ପାରିଲ ଗଣି । ସମସ୍ତ କପଟ–ଅଘ–ଅବଗୁଣ–ଖଣି ॥୨॥
ଧରମ-ରତ ସୁଶୀଳ ସରଳ ରାଜନ । ସେ ଜାଣି ପାରିବେ ନାରୀ ସ୍ୱଭାବ କେସନ ॥
ଏମନ୍ତ କେ ଜୀବ-ଜନ୍ତୁ ଜଗତେ ଅଛନ୍ତି । ପ୍ରାଣ-ପ୍ରିୟ ରଘୁନାଥ ଯାହାଙ୍କୁ ନୁହନ୍ତି ॥୩॥

---

ଏବେ ତାଙ୍କ ପାଚିଲା ବଥ ଉପରେ ନିଆଁ ରଜ ଲାଗିଗଲା ! ସେ ଧୈର୍ଯ୍ୟ ଧରି ଅତି ଦୀର୍ଘ ଶ୍ୱାସ ନେଇ କହିଲେ, "ପାପିନି ! ତୁ ସବୁମତେ କୁଳକୁ ନାଶ କରିଦେଲୁ ॥ ୩ ॥ ହାୟ ! ଯଦି ତୋର ଯଦି ଏପରି ମନ୍ଦ ଉଦ୍ଦେଶ୍ୟ ଥିଲା, ତେବେ ତୁ ଜନ୍ମକାଳରୁ ମୋତେ ମାରି ଦେଲୁ ନାହିଁ କାହିଁକି ? ତୁ ଗଛକୁ କାଟିଦେଇ ପତ୍ରରେ ଜଳ ସିଞ୍ଚିଲୁ ଏବଂ ମାଛକୁ ବଞ୍ଚାଇବା ନିମନ୍ତେ ପାଣିକୁ ବାହାର ପକାଇଲୁ ! ॥ ୪ ॥ ଦୋହା —ମୋତେ ସୂର୍ଯ୍ୟବଂଶ ସଦୃଶ ବଂଶ, ଦଶରଥଙ୍କ ସଦୃଶ ପିତା ଓ ରାମ-ଲକ୍ଷ୍ମଣଙ୍କ ସଦୃଶ ଭାଇ ମିଳିଥିଲେ । କିନ୍ତୁ ହେ ଜନନି ! ମୋର ଜନ୍ମଦାତ୍ରୀ ମାତା ତୁହି ହେଲୁ ! ବିଧାତାଙ୍କ ବିଧାନରେ ମନୁଷ୍ୟର ବଶ କ'ଣ ? ॥ ୧୬୧ ॥ ଚୌପାଈ —ଆରେ ଦୁଷ୍ଟମତି ! ଯେତେବେଳେ ତୋର ମନରେ ଏ ମନ୍ଦ ବିଚାର ଜାତ ହେଲା, ସେତେବେଳେ ତୋ ହୃଦୟ ଖଣ୍ଡ ଖଣ୍ଡ ହୋଇ ନ ଗଲା କିପରି ? ବରଦାନ ମାଗିବା ସମୟରେ ତୋ ମନରେ ଟିକିଏ ହେଲେ କଷ୍ଟ ହେଲା ନାହିଁ ? ତୋ ଜିଭ ତରଳି ଛିଣ୍ଡି ଗଲା ନାହିଁ ! ତୋ ପାଟିରେ ଡାଉଁଶ ପଡ଼ିଗଲେ ନାହିଁ ! ॥ ୧ ॥ ରାଜା ତୋତେ ବିଶ୍ୱାସ କଲେ କିପରି ? ବିଧାତା ମରଣ ବେଳକୁ ତାଙ୍କ ବୁଦ୍ଧି ହରଣ କରିନେଲେ ! ସ୍ତ୍ରୀମାନଙ୍କ ହୃଦୟର ଗତି ବିଧାତା ମଧ୍ୟ ଜାଣି ପାରିଲେ ନାହିଁ ! ତାହା କପଟ, ପାପ ଓ ଅବଗୁଣର ଖଣି ॥ ୨ ॥ ଆଉ ରାଜା ତ ସରଳ, ସୁଶୀଳ ଓ ଧର୍ମପରାୟଣ । ସେ ସ୍ତ୍ରୀ-ସ୍ୱଭାବକୁ କିପରି ଜାଣନ୍ତେ ଭଲା ! ଆରେ, ଜଗତର

ତେ ଅତି ଅହିତ ରାମୁ ତେଉ ତୋହୀ । କୋ ତୂ ଅହସି ସତ୍ୟ କହୁ ମୋହୀ ॥
ଜୋ ହସି ସୋ ହସି ମୁହଁ ମସି ଲାଈ । ଆଁଖି ଓଟ ଉଠି ବୈଠହି ଜାଈ ॥୩॥

ରାମ ବିରୋଧୀ ହୃଦୟ ତେଁ ପ୍ରଗଟ କୀହ୍ନ ବିଧି ମୋହି ।
ମୋ ସମାନ କୋ ପାତକୀ ବାଦି କହଉଁ କଛୁ ତୋହି ॥୧୬୨॥

ସୁନି ସତ୍ରୁଘୁନ ମାତୁ କୁଟିଲାଈ । ଜରହିଁ ଗାତ ରିସ କଛୁ ନ ବସାଈ ॥
ତେହି ଅବସର କୁବରୀ ତହଁ ଆଈ । ବସନ ବିଭୂଷନ ବିବିଧ ବନାଈ ॥୧॥
ଲଖି ରିସ ଭରେଉ ଲଖନ ଲଘୁ ଭାଈ । ବରତ ଅନଲ ଘୃତ ଆହୁତି ପାଈ ॥
ହୁମଗି ଲାତ ତକ କୂବର ମାରା । ପରି ମୁହଁ ଭର ମହି କରତ ପୁକାରା ॥୨॥
କୂବର ଟୂଟେଉ ଫୂଟ କପାରୂ । ଦଲିତ ବସନ ମୁଖ ରୁଧିର ପ୍ରଚାରୂ ॥
ଆହ ଦଇଅ ମୈଁ କାହ ନସାଓ୍ୱା । କରତ ନୀକ ଫଲୁ ଅନଇସ ପାଓ୍ୱା ॥୩॥

---

ସେ ରାମ ଅହିତକର ହେଲେ ଅତି ତୋତେ । କିଏ ତୁ ନିଶ୍ଚୟ ଏହା ସତ୍ୟ କହ ମୋତେ ॥
ଯାହା ମନ ତାହା ହୁଅ କଲା ମୁହଁ କରି । ନୟନ ଉହାଡେ ଏବେ ବସ ଅପସରି ॥୪॥

ରାମଙ୍କ ବିରୋଧୀ-ଉଦରରୁ ବିଧି ଉତ୍ପନ୍ନ କରିଲା ମୋତେ ।
ମୋ ସମାନ ଆଉ ପାତକୀ କିଏ ମୁଁ ବୃଥା କହେ କିଛି ତୋତେ ॥୧୬୨॥

ମାତାଙ୍କ କୁଟିଳ-ପଣ ଶୁଣି ଶତ୍ରୁଘାତୀ । ବଳ ନ ଚଳଇ କିଛି କ୍ରୋଧେ ଜଳେ ଛାତି ॥
ସେ କାଳେ କୁବୁଜା ତହିଁ କଲା ଆଗମନ । ଅନେକ ପ୍ରକାରେ ସାଜି ଭୂଷଣ ବସନ ॥୧॥
ଦେଖି ଅତି କ୍ରୋଧାତୁରେ ଲକ୍ଷ୍ମଣଙ୍କ ଭାଇ । ଜଳନ୍ତା ଅନଳ ଯେସନ୍ତେ ଘୃତାହୁତି ପାଇ ॥
ମାରିଲେ ଗୋଇଠା ଏକ ଦେଖି ତା କୁଜରେ । ପଡିଲା ଚିତ୍କାରି ମୁହଁ ମାଡି ଭୂତଳରେ ॥୨॥
କୁଜ ଭାଙ୍ଗିଗଲା, ପୁଣି କପାଳ ଫୁଟିଲା । ଦଳିତ ଦଶନ, ମୁଖୁ ରୁଧିର ବହିଲା ॥
ଆହାରେ ଦଇବ ! ମୁଁ ବା କି ହାନି କରିଲି । ଭଲ କରନ୍ତେ ତା' ଫଳ ଓଲଟା ପାଇଲି ॥୩॥

---

ଜୀବଜନ୍ତୁମାନଙ୍କ ମଧ୍ୟରେ ଏପରି କିଏ ଅଛି, ଯାହାର ଶ୍ରୀରଘୁନାଥ ପ୍ରାଣସମ ପ୍ରିୟ ନୁହନ୍ତି ? ॥ ୩ ॥ ସେ ଶ୍ରୀରାମ ବି ତୋତେ ଅହିତ ହୋଇଗଲେ ' ତୁ କିଏ ? ମୋତେ ସତ ସତ କହ ! ତୁ ଯିଏ ସିଏ ହୋଇଥାଅ ପଛକେ, ଏବେ ମୁହଁରେ କାଳି ବୋଳି ଉଠି ଯାଅ ଏବଂ ମୋ ଆଖି ଆଡୁଆଳରେ ଯାଇ ବସ ॥ ୪ ॥ ଦୋହା :—ବିଧାତା ମୋତେ ତୋ ରାମ-ବିରୋଧୀ ହୃଦୟରୁ ଜନ୍ମ ଦେଲେ ' ମୋ ସମ ପାପୀ ଆଉ କିଏ ? ମୁଁ ବୃଥାରେ ତୋତେ ଏ ସବୁ କିଛି କହୁଛି ।" ॥ ୧୬୨ ॥ ଚୌପାଈ :—ମାତାଙ୍କ କୁଟିଳତା ଶୁଣି ଶତ୍ରୁଘ୍ନଙ୍କ ସମସ୍ତ ଅଙ୍ଗପ୍ରତ୍ୟଙ୍ଗ କ୍ରୋଧରେ ଜଳି ଯାଉଥାଏ । କିନ୍ତୁ ତାଙ୍କର କିଛି ବଶ ଚଳୁ ନ ଥାଏ । ସେତିକିବେଳେ ବିବିଧ ବସ୍ତ୍ର ଓ ଭୂଷଣରେ ସଜ୍ଜିତ ହୋଇ କୁଜା ମନ୍ଥରା ସେଠାକୁ ଆସିଲା ॥ ୧ ॥ ତାହାର ବେଶ ଦେଖି ଲକ୍ଷ୍ମଣଙ୍କ ସାନ ଭାଇ ଶତ୍ରୁଘ୍ନ କ୍ରୋଧରେ ତାତିଗଲେ । ଜଳନ୍ତା ଅଗ୍ନିରେ ଘୃତାହୁତି ପଡିଗଲା କି ! ସେ ଜୋରରେ ଉଞ୍ଚି କୁଜ ଉପରକୁ ଗୋଟିଏ ଗୋଇଠା ମାରିଲେ । ମନ୍ଥରା ଚିତ୍କାର କରି ମୁହଁ ମାଡି

ସୁନି ଶତ୍ରୁହନ ଲଖି ନଖ ସିଖ ଖୋଟୀ । ଲଗେ ଘସୀଟନ ଧରି ଧରି ଝୋଁଟୀ ॥
ଭରତ ଦୟାନିଧି ଦୀହ୍ନି ଛଡ଼ାଈ । କୌସଲ୍ୟା ପହିଁ ଗେ ଦୋଉ ଭାଈ ॥୪॥

ମଲିନ ବସନ ବିବରନ ବିକଲ କୃସ ସରୀର ଦୁଖ ଭାର ।
କନକ କଲପ ବର ବେଲି ବନ ମାନହୁଁ ହନୀ ତୁସାର ॥୧୬୩॥

ଭରତହି ଦେଖି ମାତୁ ଉଠି ଧାଈ । ମୁରୁଛିତ ଅବନି ପରୀ ଝଇଁ ଆଈ ॥
ଦେଖତ ଭରତୁ ବିକଲ ଭଏ ଭାରୀ । ପରେ ଚରନ ତନ ଦସା ବିସାରୀ ॥୧॥
ମାତୁ ତାତ କହଁ ଦେହି ଦେଖାଈ । କହଁ ସିୟ ରାମୁ ଲଖନୁ ଦୋଉ ଭାଈ ॥
କୈକଇ କତ ଜନମୀ ଜଗ ମାଝା । ଜୌଁ ଜନମି ତ ଭଇ କାହେ ନ ବାଁଝା ॥୨॥
କୁଲ କଲଂକୁ ଜେହିଁ ଜନମେଉ ମୋହୀ । ଅପଜସ ଭାଜନ ପ୍ରିୟଜନ ଦ୍ରୋହୀ ॥
କୋ ତ୍ରିଭୁବନ ମୋହି ସରିସ ଅଭାଗୀ । ଗତି ଅସି ତୋରି ମାତୁ ଜେହି ଲାଗୀ ॥୩॥

---

ଶୁଣି ଶତ୍ରୁଘ୍ନ ଆପାଦଶିର ଖଳ ଜାଣି । ଘୋଷାରି ଲାଗିଲେ ତାକୁ ଧରି ଚୁଟି ପାଣି ॥
ଭରତ କୃପାସାଗର ଦେଇଣ ଛଡ଼ାଇ । କୌଶଲ୍ୟାଙ୍କ ନିକଟକୁ ଗଲେ ଦୁଇ ଭାଇ ॥୪॥

ମଳିନ ବସନ ବିକଳ ବିବର୍ଣ୍ଣ କୃଶତନୁ ଦୁଃଖ-ଭାର ।
ବନେ ବୃକ୍ଷ କଳ୍ପ-କନକ ଲତାକୁ ନାଶିଛି ଯେହ୍ନେ ତୁଷାର ॥୧୬୩॥

ଭରତଙ୍କୁ ଦେଖି ଉଠି ଜନନୀ ଧାଇଁଲେ । ଝାଇଁ ମାରି ମୂରୁଛିତେ ମହୀରେ ପଡ଼ିଲେ ॥
ବିଲୋକି ଭରତ ଅତି ବିକଳ ହୋଇଣ । ଚରଣେ ପଡ଼ିଲେ ଦେହ ଦଶା ପାଶୋରିଣ ॥୧॥
ଦିଅ ଜନନି, ଚଞ୍ଚଳ ପିତାଙ୍କୁ ଦେଖାଇ । କାହିଁ ସୀତା, ରାମ ଲକ୍ଷ୍ମଣ ଦୁଇ ଭାଇ ॥
କୈକେୟୀ ଜଗତ ମଧ୍ୟେ କପାଁ ଜନମିଲା । ଯେବେ ଜନ୍ମିଲା କାହିଁକି ବନ୍ଧ୍ୟା ନ ହୋଇଲା ॥୨॥
କୁଳର କଳଙ୍କ ମୋତେ ଯେ କଲା ଉତ୍ପନ୍ନ । ପ୍ରିୟଜନ-ଦ୍ରୋହୀ ଅଘ-ଅଯଶ-ଭାଜନ ॥
ମୋ ସମ ଅଭାଗ୍ୟ କିଏ ଏ ତିନି ଜଗତେ । ଯା' ଲାଗି ହେଲା ଜନନି, ତୋ ଗତି ଏମନ୍ତେ ॥୩॥

---

ଭୂମି ଉପରେ ପଡ଼ିଗଲା ॥ ୨ ॥ ତାହାର କୁଜ ଭାଙ୍ଗିଗଲା, କପାଳ ଫାଟିଗଲା, ଦାନ୍ତ ଭାଙ୍ଗିଗଲା ଏବଂ ମୁହଁରୁ ରକ୍ତ ବହିବାକୁ ଲାଗିଲା । ସେ ଚିତ୍କାର କରିବାକୁ ଲାଗିଲା, "ହା ଦଇବ ! ମୁଁ କ'ଣ ବିଗାଡ଼ିଲି ? ଭଲ କରିବାକୁ ଯାଇ ଭେଲ ଫଳ ପାଇଲି ।" ॥ ୩ ॥ ତାହାର ଏକଥା ଶୁଣି ଏବଂ ତାହାକୁ ଆପାଦମସ୍ତକ ଦୁଷ୍ଟ ବୋଲି ଜାଣି ଶତ୍ରୁଘ୍ନ ତା ଲମ୍ବାବାଳ ଧରି ତାହାକୁ ଘୋଷାରିବାକୁ ଲାଗିଲେ । ତତ୍ପରେ ଦୟାନିଧି ଭରତ ତାହାକୁ ଶତ୍ରୁଘ୍ନଙ୍କଠାରୁ ଛଡ଼ାଇ ନେଲେ ଏବଂ ଦୁଇ ଭାଇ ଶୀଘ୍ର କୌଶଲ୍ୟାଙ୍କ ନିକଟ ଗଲେ ॥ ୪ ॥ ଦୋହା :—କୌଶଲ୍ୟା ମଳିନ ବସ୍ତ୍ର ପିନ୍ଧିଅଛନ୍ତି, ରୂପ ବିକଳ ଓ ବିବର୍ଣ୍ଣ । ଦୁଃଖଭାରରେ ଶରୀର କୃଶ । ଏହିପରି ଦେଖା ଯାଉଅଛନ୍ତି, ସତେ ଅବା ସୁନାର ସୁନ୍ଦର କଳ୍ପଲତାକୁ ବନରେ ତୁଷାର ନାଶ କରି ଦେଇଛି ! ॥ ୧୬୩ ॥ ଚୌପାଈ :— ଭରତଙ୍କୁ ଦେଖିବା ମାତ୍ରେ କୌଶଲ୍ୟା ଉଠି ଧାଇଁଲେ । କିନ୍ତୁ ମୁଣ୍ଡ ବୁଲାଇବାରୁ ମୂର୍ଚ୍ଛିତା ହୋଇ ଭୂମି ଉପରେ ପଡ଼ିଗଲେ । ଏହା ଦେଖି ଭରତ ଅତିଶୟ ବିକଳ ହେଲେ ଏବଂ

ପିତୁ ସୁରପୁର ବନ ରଘୁବର କେତୂ । ମୈଁ କେବଲ ସବ ଅନରଥ ହେତୂ ॥
ଧିଗ ମୋହି ଭୟୁଁ ବେନୁ ବନ ଆଗୀ । ଦୁସହ ଦାହ ଦୁଖ ଦୂଷନ ଭାଗୀ ॥୪॥

ମାତୁ ଭରତ କେ ବଚନ ମୃଦୁ ସୁନି ପୁନି ଉଠୀ ସଁଭାରି ।
ଲିଏ ଉଠାଇ ଲଗାଇ ଉର ଲୋଚନ ମୋଚତି ବାରି ॥୧୬୪॥

ସରଲ ସୁଭାୟ ମାୟଁ ହିୟଁ ଲାଏ । ଅତି ହିତ ମନହୁଁ ରାମ ଫିରି ଆଏ ॥
ଭେଁଟେଉ ବହୁରି ଲଖନ ଲଘୁ ଭାଈ । ସୋକୁ ସନେହୁ ନ ହୃଦୟଁ ସମାଈ ॥୧॥
ଦେଖି ସୁଭାଉ କହତ ସବୁ କୋଈ । ରାମ ମାତୁ ଅସ କାହେ ନ ହୋଈ ॥
ମାତାଁ ଭରତୁ ଗୋଦ ବୈଠାରେ । ଆଁସୁ ପୋଁଛି ମୃଦୁ ବଚନ ଉଚାରେ ॥୨॥

---

ପିତା ସ୍ବର ପୁରେ ବନେ ରଘୁକୁଳ କେତୁ । ମୁଁ କେବଳ ଏ ସମସ୍ତ ଅନର୍ଥର ହେତୁ ॥
ଧିକ ମୋତେ, ବେଣୁ ବନେ ହେଲି ମୁଁ ପାବକ । ଦୁଃସହ ଦାହ ଦାରୁଣ ଦୁଃଖର ଗ୍ରାହକ॥୪॥

ମାତା ଭରତଙ୍କ ମୃଦୁ ବାଣୀ ଶୁଣି ଉଠି ମନ କରି ସ୍ଥିର ।
ନେଇଣ ଉଠାଇ ହୃଦୟେ ଲଗାଇ ନୟନୁ ବୁହାନ୍ତି ନୀର ॥୧୬୪॥

ସରଳ ସ୍ବଭାବେ ମାତା ହୃଦେ ଆଲିଙ୍ଗିଲେ । ଅତି ସ୍ନେହେ ରାମ ଅବା ଲେଉଟି ଆସିଲେ ॥
ଭେଟିଲେ ଆବର ଲକ୍ଷ୍ମଣଙ୍କ ସାନ ଭାଇ । ଶୋକ-ସ୍ନେହ ହୃଦୟରେ ନ ରହେ ସମ୍ଭାଇ ॥୧॥
ସ୍ବଭାବ ଅବଲୋକିଣ କହନ୍ତି ସମସ୍ତେ । ରାମଙ୍କ ଜନନୀ କିପାଁ ନ ହେବେ ଏମନ୍ତେ ॥
ମାତା ଭରତଙ୍କୁ ନେଇ କୋଳେ ବସାଇଲେ । ଅଶ୍ରୁ ପୋଛି ସୁମଧୁର ବଚନ ଭାଷିଲେ ॥୨॥

---

ଶରୀରଦଶା ଭୁଲି ତାଙ୍କ ଚରଣ ତଳେ ପଡ଼ିଗଲେ ॥୧॥ ପୁଣି କହିଲେ "ହେ ମାତ ! ପିତା କାହାନ୍ତି ? ତାଙ୍କୁ ଦେଖାଇ ଦିଅ । ସୀତା ଏବଂ ମୋ ଦୁଇ ଭାଇ ଶ୍ରୀରାମଲକ୍ଷ୍ମଣ କେଉଁଠି ? କୈକେୟୀ ଜଗତରେ କାହିଁକି ଜନ୍ମ ଗ୍ରହଣ କଲା ? ଯଦି ଜନ୍ମ ଗ୍ରହଣ କଲା, ତେବେ ବାଞ୍ଝ ହେଲାନାହିଁ କାହିଁକି ? ॥ ୨ ॥ କୈକେୟୀ ମୋ ପରି କୁଳର କଳଙ୍କ, ଅପଯଶର ଭାଣ୍ଡ ଏବଂ ପ୍ରିୟଜନ-ଦ୍ରୋହୀ ପୁଅକୁ ଜନ୍ମ ଦେଲା ' ତିନି ଲୋକରେ ମୋ ସମ ଅଭାଗା ଆଉ କିଏ—ଯାହା ହେତୁ, ହେ ମାତା ! ତୁମର ଏ ଦଶା ହେଲା ? ॥ ୩ ॥ ପିତା ସ୍ବର୍ଗପୁରରେ ଏବଂ ଶ୍ରୀରାମ ବନରେ । କେତୁପରି କେବଳ ମୁହିଁ ଏହି ସବୁ ଅନର୍ଥର କାରଣ । ମୋତେ ଧିକ୍ ! ମୁଁ ବାଉଁଶ ବନରେ ଅଗ୍ନିପରି ଜନ୍ମ ଲଭିଲି ଏବଂ ଦୁଃସହ ଦାହ, ଦୁଃଖ ଓ ଦୋଷ ସମୁଦାୟର ଭାଗୀ ହେଲି ।" ॥ ୪ ॥ ଦୋହା :—ଭରତଙ୍କ କୋମଳ ବଚନ ଶୁଣି ମାତା କୌଶଲ୍ୟା ପୁଣି ନିଜେ ନିଜକୁ ସମ୍ଭାଳି ଉଠିଲେ । ସେ ଭରତଙ୍କୁ ଉଠାଇ ଆଲିଙ୍ଗନ କଲେ ଏବଂ ନେତ୍ରରୁ ଅଶ୍ରୁ ବୁହାଇବାକୁ ଲାଗିଲେ ॥୧୬୪॥ ଚୌପାଇ :—ସରଳ-ସ୍ବଭାବା ମାତା ବଡ଼ ପ୍ରେମ ସହକାରେ ଭରତଙ୍କୁ ଛାତିରେ ଆଉଜାଇ ନେଲେ । ସତେ ଅବା ଶ୍ରୀରାମ ଲେଉଟି ଆସିଲେ କି ! ତତ୍ପରେ ଲକ୍ଷ୍ମଣଙ୍କ ସାନ ଭାଇ ଶତ୍ରୁଘ୍ନଙ୍କୁ ଆଲିଙ୍ଗନ କଲେ । ହୃଦୟରେ ଶୋକ ଓ ସ୍ନେହ ସମ୍ଭାଳୁ ନ ଥାଏ ॥ ୧ ॥ କୌଶଲ୍ୟାଙ୍କ ସ୍ବଭାବ ଦେଖି ସମସ୍ତେ କହୁଥା'ନ୍ତି, "ଶ୍ରୀରାମଙ୍କ ମାତାଙ୍କର

ଅଜହୁଁ ବଚ୍ଛ ବଲି ଧୀରଜୁ ଧରହୂ । କୁସମଉ ସମୁଝି ସୋକ ପରିହରହୂ ॥
ଜନି ମାନହୁ ହିୟଁ ହାନି ଗଲାନୀ । କାଲ କରମ ଗତି ଅଘଟିତ ଜାନୀ ॥୩॥
କାହୁହି ଦୋସୁ ଦେହୁ ଜନି ତାତା । ଭା ମୋହି ସବ ବିଧି ବାମ ବିଧାତା ॥
ଜୋ ଏତେହୁଁ ଦୁଖ ମୋହି ଜିଆୱା । ଅଜହୁଁ କୋ ଜାନଇ କା ତେହି ଭାୱା ॥୪॥

ପିତୁ ଆୟସ ଭୂଷନ ବସନ ତାତ ତଜେ ରଘୁବୀର ।
ବିସମଉ ହରଷୁ ନ ହୃଦୟଁ କଛୁ ପହିରେ ବଲକଲ ଚୀର ॥୧୬୫॥

ମୁଖ ପ୍ରସନ୍ନ ମନ ରଙ୍ଗ ନ ରୋଷୂ । ସବ କର ସବ ବିଧି କରି ପରିତୋଷୂ ॥
ଚଲେ ବିପିନ ସୁନି ସିୟ ସଁଗ ଲାଗୀ । ରହଇ ନ ରାମ ଚରନ ଅନୁରାଗୀ ॥୧॥
ସୁନତହିଁ ଲଖନୁ ଚଲେ ଉଠି ସାଥା । ରହହିଁ ନ ଜତନ କିଏ ରଘୁନାଥା ॥
ତବ ରଘୁପତି ସବହୀ ସିରୁ ନାଈ । ଚଲେ ସଂଗ ସିୟ ଅରୁ ଲଘୁ ଭାଈ ॥୨॥

---

ନୁହୁଯାଏ ବତ୍ସ ! ଧୈର୍ଯ୍ୟ ଏତେବେଳେ ଧର । କୁସମୟ ବିଚାରିଣ ଶୋକ ପରିହର ॥
ନ ମଣ ହୃଦୟେ କିଛି ହାନି କିମ୍ବା ଗ୍ଲାନି । କାଲ କରମର ଗତି ଅନିବାର୍ଯ୍ୟ ଜାଣି ॥୩॥
କାହାକୁ ଦୂଷଣ ସୁତ, ନ ଦିଅ ବୃଥାରେ । ବିଧି ମୋର ବାମ ହେଲା ସମସ୍ତ ପ୍ରକାରେ ॥
ଏତେଦୁଃଖେ ଜିଆଇ ସେମୋତେରଖେଯେବେ । କିଏଜାଣେ ତାକୁ ଭଲଲାଗଇ କି ଏବେ ॥୪॥

ପିତାଙ୍କ ଆଦେଶେ ଭୂଷଣ ବସନ ତେଜି ବତ୍ସ ରଘୁବୀର ।
ହୃଦେ କିଛି ହର୍ଷ ବିଷାଦ ନ ମଣି ପିନ୍ଧିଲେ ବଲ୍‌କଲ ଚୀର ॥୧୬୫॥

ପ୍ରସନ୍ନ ବଦନ ମନେ ନାହିଁ ରାଗ ରୋଷ । ସବୁ ଭାବେ ସମସ୍ତଙ୍କ କରି ପରିତୋଷ ॥
ଚଳନ୍ତେ ବନ ଜାନକୀ ହୋଇଲେ ସଙ୍ଗିନୀ । ନ ରହିଲେ ରଘୁପତି–ପଦାନୁଗାମିନୀ ॥୧॥
ଶୁଣନ୍ତେ ଲକ୍ଷ୍ମଣ ଉଠି ସଙ୍ଗରେ ଗଲେ । ଯତନ କଲେହେଁ ରାମ ଗୃହେ ନ ରହିଲେ ॥
ତହୁଁ ରାମ ସମସ୍ତଙ୍କୁ ପ୍ରଣାମ କରିଣ । ପ୍ରସ୍ଥାଣ କଲେ ଅନୁଜ ସୀତାଙ୍କୁ ଘେନିଣ ॥୨॥

---

ଏପରି ସ୍ୱଭାବ ବା କାହିଁକି ନୁହନ୍ତା ?" ମାତା ଭରତଙ୍କୁ କୋଳରେ ବସାଇଲେ ଏବଂ ତାଙ୍କର ଲୋତକ ପୋଛି କୋମଳ ବଚନ ବୋଇଲେ— ॥ ୨ ॥ "ହେ ବତ୍ସ ! ତୁମ୍ଭେ ନିଉଛ ଯାଉଛ ( ମରିଯାଏ କିନା ! ) ତୁ ଏବେ ଧୈର୍ଯ୍ୟ ଧର । କୁସମୟ ଜାଣି ଶୋକ ପରିତ୍ୟାଗ କର । କାଲ ଓ କର୍ମର ଗତି ଅନିବାର୍ଯ୍ୟ ଜାଣି ହୃଦୟରେ ହାନି ଓ ଗ୍ଲାନି ଆଣନାହିଁ ॥ ୩ ॥ ବାପ ! କାହାକୁ ଦୋଷ ଦେ ନାହିଁ । ବିଧାତା ସବୁମତେ ମୋତେ ବାମ ହୋଇଗଲା । ଏତେ ଦୁଃଖ ସତ୍ତ୍ୱେ ସେ ମୋତେ ଜୀବିତ ରଖିଛି ! ଏବେ ବି ତାହାର ଇଚ୍ଛା କ'ଣ, କିଏ ଜାଣେ ? ॥ ୪ ॥ ଦୋହା .—ବାପ ! ପିତାଙ୍କ ଆଜ୍ଞାରେ ଶ୍ରୀ ରଘୁବୀର ବସ୍ତ୍ରଭୂଷଣ ତ୍ୟାଗ କରିଦେଲେ ଏବଂ ବଲ୍‌କଲ–ବସ୍ତ୍ର ପିନ୍ଧିଲେ । ତାହାର ହୃଦୟରେ ବିଷାଦ କିମ୍ବା ହର୍ଷ ଲେଶମାତ୍ର ନ ଥିଲା ॥ ୧୬୫ ॥ ଚୌପାଇ .—ତାହାର ମୁଖ ପ୍ରସନ୍ନ ଥିଲା, ମନରେ ଆସକ୍ତି ନ ଥିଲା କିମ୍ବା ରୋଷ ନ ଥିଲା । ସମସ୍ତଙ୍କୁ ସବୁ ପ୍ରକାରେ ସନ୍ତୁଷ୍ଟ କରାଇ ସେ ବନକୁ ଚଳିଲା । ଏହା ଶୁଣି ସୀତା ମଧ୍ୟ ତା' ସଙ୍ଗେ

ରାମୁ ଲଖନୁ ସିୟୁ ବନହି ସିଧାଏ । ଗଇଉଁ ନ ସଂଗ ନ ପ୍ରାନ ପଠାଏ ॥
ୟହୁ ସବୁ ଭା ଇନ୍ହ ଆଁଖିନ୍ହ ଆଗେଁ । ତଉ ନ ତଜା ତନୁ ଜୀବ ଅଭାଗେଁ ॥୩॥
ମୋହି ନ ଲାଜ ନିଜ ନେହୁ ନିହାରୀ । ରାମ ସରିସ ସୁତ ମୈଁ ମହତାରୀ ॥
ଜିଐ ମରୈ ଭଲ ଭୂପତି ଜାନା । ମୋର ହୃଦୟୁ ସତ କୁଲିସ ସମାନା ॥୪॥

କୌସଲ୍ୟା କେ ବଚନ ସୁନି ଭରତ ସହିତ ରନିବାସୁ ।
ବ୍ୟାକୁଲ ବିଲପତ ରାଜଗୃହ ମାନହୁଁ ସୋକ ନିବାସୁ ॥୧୬୨॥

ବିଲପହିଁ ବିକଲ ଭରତ ଦୋଉ ଭାଈ । କୌସଲ୍ୟାଁ ଲିଏ ହୃଦୟଁ ଲଗାଈ ॥
ଭାଁତି ଅନେକ ଭରତୁ ସମୁଝାଏ । କହି ବିବେକମୟ ବଚନ ସୁନାଏ ॥୧॥
ଭରତହୁଁ ମାତୁ ସକଲ ସମୁଝାଈଁ । କହି ପୁରାନ ଶ୍ରୁତି କଥା ସୁହାଈଁ ॥
ଛଲ ବିହୀନ ସୁଚି ସରଲ ସୁବାନୀ । ବୋଲେ ଭରତ ଜୋରି ଜୁଗ ପାନୀ ॥୨॥

---

ରାମ ସୀତା ସହମିଳି ଚାଲିଗଲେ ବନ । ନ ଗଲି ସଙ୍ଗେ ବା ନ ପଠାଇଲି ଜୀବନ ॥
ଏ ସବୁ କାଣ୍ଡ ଏ ଆଖି ଆଗରେ ହୋଇଲା । ତେବେହେଁ ଅଭାଗ୍ୟ ପ୍ରାଣ ତନୁ ନ ତେଜିଲା ॥୩॥
ନିଜ ସ୍ନେହ ଦେଖି ମୋତେ ଲଜ୍ଜା ନ ଲାଗଇ । ରାମ ସଦୃଶ ସୁତର ମାତା ମୁଁ ଅଟଇ ॥
ଜୀବନ ମରଣ ଭଲ ଜାଣିଲେ ମହୀଶ । ମୋ ହୃଦ ଯେସନେ ଶତ ସହସ୍ର କୁଳିଶ ॥୪॥

ଶୁଣି କୌଶଲ୍ୟାଙ୍କ ବଚନ ଭରତ-ସହିତ ରାଣୀ ଉଆସ ।
କରନ୍ତି ବିଳାପ ମନେ ହୁଏ ନୃପ-ସଦନ ଶୋକ-ଆବାସ ॥୧୬୨॥

ବିକଳେ କାନ୍ଦନ୍ତି ଦୁହିଁ ଭରତାଦି ଭାଇ । କୌଶଲ୍ୟା ନେଇଣ ନିଜ ହୃଦୟେ ଲଗାଇ ॥
ବୁଝାଇଲେ ଭରତଙ୍କୁ ଅନେକ ପ୍ରକାର । ଭାଷିଣ ବିବେକ ଯୁକ୍ତ ବାଣୀ ମନୋରମ ॥୧॥
ଭରତ ପୁରାଣ ଶ୍ରୁତି କଥା ମନୋହର । କହି କହି ବୁଝାଇଲେ ମାତାଙ୍କୁ ସକଳ ॥
ଛଳ-ରହିତ ପବିତ୍ର ସରଳ ସୁବାଣୀ । ବୋଇଲେ ଭରତ ପ୍ରେମେ ଯୋଡି ଯୁଗ୍ମପାଣି ॥୨॥

---

ଚାଲିଗଲା । ଶ୍ରୀରାମଙ୍କ ଚରଣର ଅନୁରାଗିଣୀ ସେ ନ ହୁଅନ୍ତା କାହିଁକି ?" ॥ ୧ ॥
ଶୁଣିବା ମାତ୍ରେ ଲକ୍ଷ୍ମଣ ମଧ୍ୟ ଉଠି ସଙ୍ଗରେ ଚଳିଲା । ଶ୍ରୀରାମ ତାଙ୍କୁ ଅଟକାଇବାକୁ ବହୁତ ଯତ୍ନ କଲେ । କିନ୍ତୁ ସେ ରହିଲା ନାହିଁ । ତପୂରେ ଶ୍ରୀ ରଘୁନାଥ ସମସ୍ତଙ୍କୁ ମୁଣ୍ଡ ନୁଆଁଇ ସୀତା ଓ ସାନ ଭାଇ ଲକ୍ଷ୍ମଣଙ୍କୁ ସଙ୍ଗରେ ନେଇ ଚାଲିଗଲା ॥ ୨ ॥ ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ବନକୁ ଚାଲିଗଲେ । ମୁଁ ତ ସଙ୍ଗରେ ଗଲିନାହିଁ କିମ୍ବା ନିଜ ପ୍ରାଣ ସେମାନଙ୍କ ସଙ୍ଗେ ପଠାଇ ପାରିଲି ନାହିଁ । ଏହିସବୁ ଏହି ଆଖି ଆଗରେ ଘଟିଗଲା । ତଥାପି ହତଭାଗ୍ୟ ପ୍ରାଣ ଶରୀର ଛାଡିନାହିଁ ॥ ୩ ॥ ମୋ ନିଜ ସ୍ନେହ ଆଡକୁ ଚାହିଁ ମୋତେ ଲାଜ ହୁଅନ୍ତା ନାହିଁ । ରାମପରି ସୁନ୍ଦର ମୁଁ ମାତା । ଜୀଇବା ଓ ମରିବା ରାଜା ଖୁବ୍ ଜାଣିଲେ । ମୋର ହୃଦୟ ତ ଶହ ଶହ ବଜ୍ର ସମାନ କଠୋର ।" ॥ ୪ ॥ ଦୋହା ।—କୌଶଲ୍ୟାଙ୍କ ବଚନ ଶୁଣି ଭରତଙ୍କ ସମେତ ସମସ୍ତ ରାଣୀମହଲ ବ୍ୟାକୁଳ ହୋଇ ବିଳାପ କରିବାକୁ ଲାଗିଲେ । ରାଜମହଲ ସତେ ଅବା ଶୋକର ନିବାସସ୍ଥଳୀ ହୋଇଗଲା ! ॥ ୧୬୨ ॥

ଜେ ଅଘ ମାତୁ ପିତା ସୁତ ମାରେଁ । ଗାଇ ଗୋଠ ମହିସୁର ପୁର ଜାରେଁ ॥
ଜେ ଅଘ ତିୟ ବାଲକ ବଧ କୀହ୍ନେଁ । ମୀତ ମହୀପତି ମାହୁର ଦୀହ୍ନେଁ ॥୩॥
ଜେ ପାତକ ଉପପାତକ ଅହହୀଁ । କରମ ବଚନ ମନ ଭବ କବି କହହୀଁ ॥
ତେ ପାତକ ମୋହି ହୋହୁଁ ବିଧାତା । ଜୌଁ ୟହୁ ହୋଇ ମୋର ମତ ମାତା ॥୪॥
ଜେ ପରିହରି ହରି ହର ଚରନ ଭଜହିଁ ଭୂତଗନ ଘୋର ।
ତେହି କଇ ଗତି ମୋହି ଦେଉ ବିଧି ଜୌଁ ଜନନୀ ମତ ମୋର ॥୧୬୭॥
ବେଚହିଁ ବେଦୁ ଧରମୁ ଦୁହି ଲେହୀଁ । ପିସୁନ ପରାୟ ପାପ କହି ଦେହୀଁ ॥
କପଟୀ କୁଟିଲ କଲହପ୍ରିୟ କ୍ରୋଧୀ । ବେଦ ବିଦୂଷକ ବିସ୍ୱ ବିରୋଧୀ ॥୧॥

---

ଯେଉଁ ପାପ ମାତା ପିତା ପୁତ୍ରଙ୍କୁ ମାରିଲେ । ଗାଈ-ଗୋଠ ମହୀସୁର-ପୁରକୁ ଜାଳିଲେ ।
ଯେ ପାପ ହୁଏ ବଧିଲେ ନାରୀ ବାଳକଙ୍କୁ । ବିଷ ପ୍ରଦାନ କରନ୍ତେ ମିତ୍ର ମହୀପଙ୍କୁ ॥୩॥
ଯେ ସବୁ ପାତକ ଉପପାତକ ଯେବଣ । ମନ ବାଣୀ କର୍ମ ଭବ-କବିଙ୍କ କଥନ ॥
ସେ ପାତକ ମୋ ଉପରେ ଲଗାନ୍ତୁ ବିଧାତା । ଯେବେ ଏହା ହୋଇଥିବ ମୋର ମତ ମାତା ॥୪॥
ଯେ ତେଜିଣ ହରି-ହରଙ୍କ ଚରଣ ଭଜେ ଭୂତ ଗଣ ଘୋର ।
ତାଙ୍କ ଗତି ଦେଉ ମୋତେ ବିଧି ସତ ମାତା, ଏଥି ମତ ମୋର ॥୧୬୭॥
ବିକିଣି ବେଦ ଧରମେ ଅର୍ଥ ଉପାର୍ଜଇ । ଚୁଗୁଲିଆ, ପର ପାପ ପ୍ରକାଶ କରଇ ॥
କପଟୀ, କଳହପ୍ରିୟ, କୁଟିଳ, ଯେ କ୍ରୋଧୀ । ବେଦ-ବିଦୂଷକ, ଯେହୁ ଜଗତ-ବିରୋଧୀ ॥୧॥

---

ଚୌପାଈ :—ଭରତ, ଶତ୍ରୁଘ୍ନ ଦୁଇ ଭାଇହେଁ ବିକଳ ହୋଇ ବିଳାପ କରିବାକୁ ଲାଗିଲେ । କୌଶଲ୍ୟା ସେମାନଙ୍କୁ କୋଳ କରିପକାଇଲେ । ସେ ଅନେକ ପ୍ରକାରେ ଭରତଙ୍କୁ ବୁଝାଇଲେ ଏବଂ ବିବେକ-ବିସ୍ତାର-ପୂର୍ଣ୍ଣ କଥା ସେମାନଙ୍କୁ କହି ଶୁଣାଇଲେ ॥ ୧ ॥ ଭରତ ମଧ୍ୟ ସମସ୍ତ ମାତାଙ୍କୁ ପୁରାଣ ଓ ବେଦର ସୁନ୍ଦର କଥା କହି ବୁଝାଇଲେ । ଦୁଇ ହାତ ଯୋଡ଼ି ଭରତ ଛଳ, ପବିତ୍ର ଓ ସରଳ-ସୁନ୍ଦର ବଚନ କହିଲେ— ॥ ୨ ॥ "ହେ ମାତ ! ମାତାପିତା ଓ ପୁତ୍ରଙ୍କୁ ମାରିଲେ, ଗୋଶାଳା ଓ ବ୍ରାହ୍ମଣପୁରରେ ନିଆଁ ଲଗାଇଲେ, ସ୍ତ୍ରୀ ଓ ବାଳକ ହତ୍ୟା କଲେ, ମିତ୍ର ଓ ରାଜାଙ୍କୁ ବିଷ ଦେଲେ ଯେଉଁସବୁ ପାପ ହୁଏ, କବିଜନ-କଥିତ କର୍ମ, ବଚନ ଓ ମନରେ ଯେତେ ବଡ଼ ଓ ସାନ ପାପ ଅଛି, ହେ ବିଧାତା ! ଯଦି ଏ କାମରେ ମୋ ମତ ଥାଏ, ସେହି ସବୁ ପାପ ମୋତେ ଲଗୁ ॥ ୩-୪ ॥ ଦୋହା :—ଯେଉଁ ଲୋକମାନେ ଶ୍ରୀହରି ଓ ହରଙ୍କ ଚରଣ ତ୍ୟାଗ କରି ଭୂତପ୍ରେତଗଣଙ୍କୁ ଭଜନ୍ତି, ହେ ମାତ ! ଯଦି ଏଥିରେ ମୋ ମତ ଥାଏ, ତେବେ ସେହି-ମାନଙ୍କ ଦୁର୍ଗତି ମୋତେ ବିଧାତା ଦିଅନ୍ତୁ ॥୧୬୭॥ ଚୌପାଈ:—ଯେଉଁମାନେ ବେଦମାନଙ୍କୁ ବିକ୍ରୟ କରନ୍ତି ଏବଂ ଧର୍ମକୁ ଦୁହିଁ ପକାନ୍ତି (ଧର୍ମଦ୍ୱାରା ଜୀବିକା ନିର୍ବାହ କରନ୍ତି); ଯେଉଁମାନେ ଚୁଗୁଲିଆ ଓ ଅନ୍ୟର ପାପ କହିଥାନ୍ତି; ଯେଉଁମାନେ କପଟୀ, କୁଟିଳ, କଳହପ୍ରିୟ ଓ କ୍ରୋଧୀ; ଯେଉଁମାନେ ବେଦନିନ୍ଦକ ଓ ବିଶ୍ୱବିରୋଧୀ; ଯେ ଲୋଭୀ, ଲମ୍ପଟ ଓ ଲୋଲୁପାଚାରୀ ଏବଂ ଯେ ପର

ଲୋଲୁପ ଲଂପଟ ଲୋଲୁପଚାରା । ଜେ ତାକହିଁ ପରଧନୁ ପରଦାରା ॥
ପାୱୌଁ ମୈଁ ତିନ୍ହ କୈ ଗତି ଘୋରା । ଜୌଁ ଜନନୀ ଯହୁ ସଂମତ ମୋରା ॥୨॥
ଜେ ନହିଁ ସାଧୁସଂଗ ଅନୁରାଗେ । ପରମାରଥ ପଥ ବିମୁଖ ଅଭାଗେ ॥
ଜେ ନ ଭଜହିଁ ହରି ନର ତନୁ ପାଈ । ଜିନ୍ହହି ନ ହରି ହର ସୁଜସୁ ସୋହାଈ ॥୩॥
ତଜି ଶ୍ରୁତି ପଂଥୁ ବାମ ପଥ ଚଲହୀଁ । ବଂଚକ ବିରଚି ବେଷୁ ଜଗୁ ଛଲହୀଁ ॥
ତିନ୍ହ କୈ ଗତି ମୋହି ସଂକର ଦେଉ । ଜନନୀ ଜୌଁ ଯହୁ ଜାନୌଁ ଭେଉ ॥୪॥

ମାତୁ ଭରତ କେ ବଚନ ସୁନି ସାଁଚେ ସରଲ ସୁଭାୟଁ ।
କହତି ରାମ ପ୍ରିୟ ତାତ ତୁମ୍ହ ସଦା ବଚନ ମନ କାୟଁ ॥୧୬୮॥

ରାମ ପ୍ରାନହୁ ତେଁ ପ୍ରାନ ତୁମ୍ହାରେ । ତୁମ୍ହ ରଘୁପତିହି ପ୍ରାନହୁ ତେଁ ପ୍ୟାରେ ॥
ବିଧୁ ବିଷ ଚୱୈ ସ୍ରବୈ ହିମୁ ଆଗୀ । ହୋଇ ବାରିଚର ବାରି ବିରାଗୀ ॥୧॥

---

ଲୋଭୀ, ଲମ୍ପଟ, ଆଉର ଲୋଲୁପାଚରଣ । ଆସକ୍ତ ଯେ ଗୃହେ ପର ଦାରା, ପରଧନ ॥
ପାଇବି ମୁଁ ଏମାନଙ୍କ ଗତି ଅତି ଘୋର । ଯେବେ ଏଥିରେ ସମ୍ମତି ଥାଏ ମାତା, ମୋର ॥୨॥
ଯେ କେବେ ନ କରେ ସାଧୁସଙ୍ଗେ ଅନୁରାଗ । ପରମାର୍ଥ-ପଥ-ପ୍ରତିକୂଳ ହତଭାଗ୍ୟ ॥
ନର-ତନୁ ପାଇ ଯେହୁ ହରି ନ ଭଜଇ । ହରି-ହର ସୁଯଶକୁ ଭଲ ନ ମଣଇ ॥୩॥
ଶ୍ରୁତି ପଥ ପରିହରି ବାମ ପଥେ ଚଳେ । ବଞ୍ଚକ ବେଷ ରଚଣ ଜଗତକୁ ଛଳେ ॥
ତାହାଙ୍କ କୁଗତି ମୋତେ ଦିଅନ୍ତୁ ମହେଶ । ଏହାର ଭେଦ ଜନନୀ ଜାଣେ ଯେବେ ଲେଶ ॥୪॥

ମାତା ଭରତଙ୍କ ସତ୍ୟ ସ୍ୱାଭାବିକ ସରଳ କଥା ଶ୍ରବଣେ ।
ବୋଲନ୍ତି, ତନୟ, ତୁମ୍ଭେ ରାମପ୍ରିୟ ସଦା କାୟ-ବାକ୍ୟ-ମନେ ॥୧୬୮॥

ରାମ ତୁମ୍ଭ ଜୀବନର ଜୀବନ ଅଟନ୍ତି । ତୁମ୍ଭେ ରାମଙ୍କୁ ଜୀବନୁ ବଳି ପ୍ରିୟ ଅତି ॥
ବରଂ ବିଧୁ ବିଷ, ହିମ ଅନଳ ସ୍ରବିବେ । ବାରିଚର ଗଣ ବାରି-ବୈରାଗୀ ହୋଇବେ ॥୧॥

---

ଧନ ଓ ପର ସ୍ତ୍ରୀକୁ ଚାହିଁ ରହିଥା'ନ୍ତି; ହେ ଜନନି ! ଯଦି ଏ କାମରେ ମୋର ସମ୍ମତି ଥାଏ, ତେବେ ମୁଁ ସେହିମାନଙ୍କର ଭୟଙ୍କର ଦୁର୍ଗତି ପାଏ ॥ ୧-୨ ॥ ଯାହାଙ୍କର ସତ୍ସଙ୍ଗରେ ଅନୁରାଗ ନାହିଁ, ଯେଉଁ ହତଭାଗ୍ୟମାନେ ପରମାର୍ଥ ପ୍ରତି ବିମୁଖ, ଯେ ମନୁଷ୍ୟ-ଶରୀର ପାଇ ଶ୍ରୀହରିଙ୍କ ଭଜନ ନ କରନ୍ତି, ଯାହାଙ୍କୁ ହରିହରଙ୍କ ଯଶ ରୁଚେ ନାହିଁ, ଯେଉଁମାନେ ବେଦମାର୍ଗ ତ୍ୟାଗି ବାମମାର୍ଗରେ ଚଳନ୍ତି, ଯେଉଁମାନେ ଠକ ଓ ବେଶ ବନାଇ ଜଗତକୁ ପ୍ରତାରିତ କରନ୍ତି; ହେ ମାତ ! ଯଦି ଏ ରହସ୍ୟ ମୁଁ ଜାଣିଥାଏ, ତେବେ ଶଙ୍କର ମୋତେ ସେହିମାନଙ୍କ ଦୁର୍ଗତି ଦିଅନ୍ତୁ ।" ॥୩-୪॥ ଦୋହା '—ମାତା କୌଶଲ୍ୟା ଭରତଙ୍କ ସତ୍ୟ ଓ ସ୍ୱଭାବ ସରଳ ବଚନ ଶୁଣି କହିବାକୁ ଲାଗିଲେ, "ରେ ବାପ ! ତୁ ତ କାୟମନୋବାକ୍ୟରେ ସଦାସର୍ବଦା ଶ୍ରୀରାମଚନ୍ଦ୍ରଙ୍କ ପ୍ରିୟ ॥ ୧୬୮ ॥ ଚୌପାଇ '-ଶ୍ରୀରାମ ତୋ'ର ପ୍ରାଣଠାରୁ ବଳି ମଧ୍ୟ ପ୍ରାଣ ଏବଂ ତୁ ମଧ୍ୟ ଶ୍ରୀ ରଘୁନାଥଙ୍କୁ ତାହାର ପ୍ରାଣଠାରୁ ବଳି ପ୍ରିୟ । ଚନ୍ଦ୍ର ମାରୁ ଭଲେ ବିଷ ଝରୁ, ତୁଷାର ଅଗ୍ନି ବୃଷ୍ଟି କରୁ ଏବଂ

ଭଏଁ ଜ୍ଞାନୁ ବରୁ ମିଟୈ ନ ମୋହୂ । ତୁମ୍ହ ରାମହି ପ୍ରତିକୂଲ ନ ହୋହୂ ॥
ମତ ତୁମ୍ହାର ଯହୁ ଜୋ ଜଗ କହହୀଁ । ସୋ ସପନେହୁଁ ସୁଖ ସୁଗତି ନ ଲହହୀଁ ॥୨॥
ଅସ କହି ମାତୁ ଭରତୁ ହିୟଁ ଲାଏ । ଥନ ପୟ ସ୍ରବହିଁ ନୟନ ଜଲ ଛାଏ ॥
କରତ ବିଲାପ ବହୁତ ଏହି ଭାଁତି । ବୈଠେହିଁ ବୀତି ଗଇ ସବ ରାତି ॥୩॥
ବାମଦେଉ ବସିଷ୍ଠ ତବ ଆଏ । ସଚିବ ମହାଜନ ସକଲ ବୋଲାଏ ॥
ମୁନି ବହୁ ଭାଁତି ଭରତ ଉପଦେସେ । କହି ପରମାରଥ ବଚନ ସୁଦେସେ ॥୪॥

ତାତ ହୃଦୟଁ ଧୀରଜୁ ଧରହୁ କରହୁ ଜୋ ଅବସର ଆଜୁ ।
ଉଠେ ଭରତ ଗୁର ବଚନ ସୁନି କରନ କହେଉ ସବୁ ସାଜୁ ॥୧୬୯॥

ନୃପ ତନୁ ବେଦ ବିଦିତ ଅନ୍ହୱାୱା । ପରମ ବିଚିତ୍ର ବିମାନୁ ବନାୱା ॥
ଗହି ପଦ ଭରତ ମାତୁ ସବ ରାଖୀ । ରହୀଁ ରାନି ଦରସନ ଅଭିଲାଷୀ ॥୧॥

---

ଜ୍ଞାନ ଉତ୍ପଜନ୍ତେ ବରଂ ମୋହ ନ ତୁଟିବ । ତୁମ୍ଭେ ରାମ ପ୍ରତିକୂଳ କେବେ ନ ହୋଇବ ॥
ତୁମ୍ଭ ମତ ଏମନ୍ତ ଯେ ଜଗତେ କହିବେ । ସେ ସ୍ୱପ୍ନେ ସୁଦ୍ଧା ସୁଗତି ସୁଖ ନ ଲଭିବେ ॥୨॥
ଆଲିଙ୍ଗିଲେ ଭରତଙ୍କୁ ମାତା ଏହା କହି । ନେତ୍ରେ ପୂର୍ଣ୍ଣ ହେଲା ନୀର, ସ୍ତନୁ ପୟ ବହି ॥
କରୁ କରୁ ନାନାବିଧ ବିଲାପ ଏପରି । ଅତୀତ ହୋଇଲା ବସି ସାରା ବିଭାବରୀ ॥୩॥
ବାମଦେବ ବଶିଷ୍ଠାଦି ମୁନି ଆଗମିଲେ । ମନ୍ତ୍ରୀ ମହାଜନ ଗଣ୍ୟ ମାନ୍ୟଙ୍କୁ ରାଇଲେ ॥
ମୁନି ଭରତଙ୍କୁ ବହୁ ଦେଲେ ଉପଦେଶ । କହି ପରମାର୍ଥମୟ ବଚନ ବିଶେଷ ॥୪॥

ବତ୍ସ ! ହୃଦେ ଧୈର୍ଯ୍ୟ ଧରି ତାହା କର ଯେପରି ସମୟ ଆଜ ।
ଉଠିଲେ ଭରତ ଶୁଣି ଗୁରୁବାକ୍ୟ କରିବାକୁ ସବୁ କାର୍ଯ୍ୟ ॥୧୬୯॥

ନୃପ ତନୁ ବେଦ ବିଧି ସ୍ନାନ କରାଇଲେ । ଅତି ବିଚିତ୍ର ବିମାନ ତହୁଁ ବିରଚିଲେ ॥
ରଖାନ୍ତେ ଭରତ ସବୁ ମାତା ପଦ ଧରି । ରହିଲେ ରାମ-ଦର୍ଶନ ଅଭିଲାଷ କରି ॥୧॥

---

ଜଳଚର ଜୀବ ଜଳ ପ୍ରତି ବିରକ୍ତ ପଛେ ହୋଇ ଯାଆନ୍ତୁ; ଜ୍ଞାନ ହେବା ସତ୍ତ୍ୱେ ମୋହର ସମାପ୍ତି ନ ଘଟୁ ପଛକେ; କିନ୍ତୁ ତୁ ରାମଚନ୍ଦ୍ରଙ୍କ ପ୍ରତି କଦାପି ପ୍ରତିକୂଳ ହୋଇ ନ ପାରୁ । ତୋହର ଏଥିରେ ମତ ଅଛି ବୋଲି ଜଗତର ଯେଉଁ ବ୍ୟକ୍ତି କହିବ, ସେ ସ୍ୱପ୍ନରେ ସୁଦ୍ଧା ସୁଖ ଓ ସୁଗତି ପାଇବ ନାହିଁ ।" ॥ ୧-୨ ॥ ଏହିପରି କହି ମାତା କୌଶଲ୍ୟା ଭରତଙ୍କୁ ଛାତିରେ ଆଉଜାଇ ନେଲେ । ତାଙ୍କ ସ୍ତନରୁ ଦୁଗ୍ଧଧାରା ବହିବାକୁ ଲାଗିଲା ଏବଂ ନେତ୍ରରେ ପ୍ରେମାଶ୍ରୁ ଜଳ ଭରିଗଲା । ଏହି ରୂପେ ବହୁତ ବିଳାପ-ପୂର୍ବକ ବସି ବସି ସାରା ରାତି ଅତିବାହିତ ହୋଇଗଲା ॥ ୩ ॥ ତଦନନ୍ତର ବାମଦେବ ଓ ବଶିଷ୍ଠ ଆସିଲେ । ସେମାନେ ସମସ୍ତ ମନ୍ତ୍ରୀ ଓ ମହାଜନଙ୍କୁ ଡକାଇଲେ । ପୁଣି ମୁନି ବଶିଷ୍ଠ ପରମାର୍ଥ ସମ୍ବନ୍ଧୀୟ ସୁନ୍ଦର ସମୟାନୁକୂଳ ବଚନ କହି ବହୁତ ପ୍ରକାରେ ଭରତଙ୍କୁ ଉପଦେଶ ଦେଲେ ॥ ୪ ॥ ଦୋହା :—ବଶିଷ୍ଠ କହିଲେ, "ହେ ବତ୍ସ ! ହୃଦୟରେ ଧୈର୍ଯ୍ୟ ଧାରଣ କର ଏବଂ ଆଜ ଯେଉଁ କାର୍ଯ୍ୟ କରିବାର ଅବସର ଆସି ପହଞ୍ଚିଛି, ତାହା କର ।"

ଚଂଦନ ଅଗର ଭାର ବହୁ ଆଏ । ଅମିତ ଅନେକ ସୁଗଂଧ ସୁହାଏ ॥
ସରଜୁ ତୀର ରଚି ଚିତା ବନାଈ । ଜନୁ ସୁରପୁର ସୋପାନ ସୁହାଈ ॥୨॥
ଏହି ବିଧି ଦାହକ୍ରିୟା ସବ କୀହ୍ନୀ । ବିଧିବତ ହ୍ନାଇ ତିଲାଂଜୁଲି ଦୀହ୍ନୀ ॥
ସୋଧି ସୁମୃତି ସବ ବେଦ ପୁରାନା । କୀହ୍ନ ଭରତ ଦସଗାତ ବିଧାନା ॥୩॥
ଜହଁ ଜସ ମୁନିବର ଆୟସୁ ଦୀହ୍ନା । ତହଁ ତସ ସହସ ଭାଁତି ସବୁ କୀହ୍ନା ॥
ଭଏ ବିସୁଦ୍ଧ ଦିଏ ସବ ଦାନା । ଧେନୁ ବାଜି ଗଜ ବାହନ ନାନା ॥୪॥

ସିଂଘାସନ ଭୂଷନ ବସନ ଅନ୍ନ ଧରନି ଧନ ଧାମ ।
ଦିଏ ଭରତ ଲହି ଭୂମିସୁର ଭେ ପରିପୂରନ କାମ ॥୧୭୦॥

---

ମଗାଇ ଅନେକ ଭାର ଚନ୍ଦନ ଅଗର । ନାନାବିଧ ସୁବାସିତ ପଦାର୍ଥ ସୁନ୍ଦର ॥
ସରଯୂ ତଟରେ ଚିତା କଲେ ବିରଚନ । ସୁର-ପୁରକୁ ସୋପାନ ଶୋଭଇ ଯେସନ ॥୨॥
ଏହି ଭାବେ ଦାହ କ୍ରିୟା ସମାପି ସମସ୍ତ । ସ୍ନାନ କରି ତିଳାଞ୍ଜଳି ଦେଲେ ବିଧିବତ ॥
ବିଚାରି ସକଳ ସ୍ମୃତି ନିଗମ ପୁରାଣ । କରିଲେ ଭରତ ଦଶ ଗାତ୍ରର ବିଧାନ ॥୩॥
ଯହିଁ ମୁନିବର ଦେଲେ ଆଦେଶ ଯେପରି । ସହସ୍ର ପ୍ରକାରେ କଲେ ସେ କାର୍ଯ୍ୟ ସେପରି ॥
ଶୁଦ୍ଧ ହୋଇ ବିତରିଲେ ଦାନ ଅଗଣିତ । ଗଜ ବାଜି ଧେନୁ ଆଦି ବାହନ ଅମିତ ॥୪॥

ଭୂଷଣ ବସନ ଅନ୍ନ ସିଂହାସନ ଧରା ଧନ ମଣି ଧାମ ।
ବାଣ୍ଟିଲେ ଭରତ, ଲଭି ବିପ୍ର-ଯୂଥ ହେଲେ ପୂର୍ଣ୍ଣ-ମନସ୍କାମ ॥୧୭୦॥

---

ଗୁରୁଙ୍କ ବଚନ ଶୁଣି ଭରତ ଉଠିଲେ ଏବଂ ସମସ୍ତ ଆୟୋଜନ କରିବା ନିମନ୍ତେ କହିଲେ ॥ ୧୬୯ ॥ ଚୌପାଇ :—ବେଦକଥିତ ବିଧି ଅନୁସାରେ ରାଜାଙ୍କ ଶରୀରର ସ୍ନାନ-ବିଧାନ କରାଗଲା ଏବଂ ପରମ ପବିତ୍ର ବିମାନ ଗଢାହେଲା । ଭରତ ସମସ୍ତ ମାତାଙ୍କ ଚରଣ ଧରି ସେମାନଙ୍କୁ ରଖାଇଲେ ଅର୍ଥାତ୍ ପ୍ରାର୍ଥନା କରି ସେମାନଙ୍କୁ ସତୀ ହେବାରୁ ନିବୃତ୍ତ କଲେ । ରାଣୀମାନେ ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନ-ଅଭିଲାଷରେ ପ୍ରାଣ ଧରି ରହିଲେ ॥ ୧ ॥ ଚନ୍ଦନ, ଅଗୁରୁ ଓ ବିବିଧ ସୁଗନ୍ଧିତ ଦ୍ରବ୍ୟର ବହୁତ ଭାର ଆସିଲା । ସରଯୂ ତଟରେ ସୁନ୍ଦର ଚିତାଗ୍ନି ରଚିତ ହେଲା । ଜଣା ପଡୁଥିଲା, ତାହା ଯେପରି ସ୍ୱର୍ଗର ସିଡ଼ିରୂପେ ଶୋଭିତ ॥୨॥ ଏହିରୂପେ ଶବ-ସଂସ୍କାର-କ୍ରିୟା ସମ୍ପନ୍ନ କରାଗଲା ଏବଂ ସମସ୍ତେ ବିଧିପୂର୍ବକ ସ୍ନାନ କରି ତିଳତର୍ପଣ କଲେ । ତତ୍ପରେ ବେଦ, ସ୍ମୃତି ଓ ପୁରାଣ ସମସ୍ତର ମତ ନିର୍ଣ୍ଣୟ କରି ତଦନୁସାରେ ଭରତ ପିତାଙ୍କର ଦଶଗାତ୍ର-ବିଧାନ (ଦଶଦିନର-କୃତ୍ୟ) ସମ୍ପନ୍ନ କଲେ ॥ ୩ ॥ ମୁନିବର ବଶିଷ୍ଠ ଯେଉଁଠି ଯେପରି ଆଜ୍ଞା ଦେଲେ, ସେହିଠାରେ ଭରତ ସେହି ରୂପେ ହଜାର ପ୍ରକାରେ କାର୍ଯ୍ୟ କଲେ । ଶୁଦ୍ଧ ହୋଇଯିବା ପରେ ଗୋରୁ, ଘୋଡା, ହାତୀ ଆଦି ଅନେକ ପ୍ରକାର ବାହନ ଓ ଅନ୍ୟାନ୍ୟ ବହୁ ଦ୍ରବ୍ୟ ଦାନ ରୂପେ ଦେଲେ ॥ ୪ ॥ ଦୋହା :—ଭରତ ସିଂହାସନ, ଭୂଷଣ, ବସ୍ତ୍ର, ଅନ୍ନ, ଭୂମି ଓ ଗୃହ ଆଦି ଉପକରଣମାନ ଦାନ-ସ୍ୱରୂପ ଦେଲେ । ଭୂଦେବ ବ୍ରାହ୍ମଣମାନେ ଦାନ ପାଇ

ପିତୁ ହିତ ଭରତ କୀନ୍ହି ଜସି କରନୀ । ସୋ ମୁଖ ଲାଖ ଜାଇ ନହିଁ ବରନୀ ॥
ସୁଦିନୁ ସୋଧି ମୁନିବର ତବ ଆଏ । ସଚିବ ମହାଜନ ସକଲ ବୋଲାଏ ॥୧॥
ବୈଠେ ରାଜସଭାଁ ସବ ଜାଈ । ପଠଏ ବୋଲି ଭରତ ଦୋଉ ଭାଈ ॥
ଭରତୁ ବସିଷ୍ଠ ନିକଟ ବୈଠାରେ । ନୀତି ଧରମମୟ ବଚନ ଉଚାରେ ॥୨॥
ପ୍ରଥମ କଥା ସବ ମୁନିବର ବରନୀ । କୈକଇ କୁଟିଲ କୀନ୍ହି ଜସି କରନୀ ॥
ଭୂପ ଧରମବ୍ରତୁ ସତ୍ୟ ସରାହା । ଜେହିଁ ତନୁ ପରିହରି ପ୍ରେମୁ ନିବାହା ॥୩॥
କହତ ରାମ ଗୁନ ସୀଲ ସୁଭାଊ । ସଜଲ ନୟନ ପୁଲକେଉ ମୁନିରାଊ ॥
ବହୁରି ଲଖନ ସିୟ ପ୍ରୀତି ବଖାନୀ । ସୋକ ସନେହ ମଗନ ମୁନି ଗ୍ୟାନୀ ॥୪॥

ସୁନହୁ ଭରତ ଭାବୀ ପ୍ରବଲ ବିଲଖି କହେଉ ମୁନିନାଥ ।
ହାନି ଲାଭୁ ଜୀବନୁ ମରନୁ ଜସୁ ଅପଜସୁ ବିଧି ହାଥ ॥୧୭୧॥

---

ପିତାଙ୍କ ନିମନ୍ତେ କଲେ ଯେ କାର୍ଯ୍ୟ ଭରତ । ଲକ୍ଷ ମୁଖେ ତାହା ହୋଇ ନ ପାରେ ବ୍ୟକ୍ତ ॥
ଶୁଭଦିନ ବିଚାରି ତହୁଁ ଆସି ମୁନିବର । ଡକାଇଲେ ମହାଜନ ସଚିବ-ନିକର ॥୧॥
ବସିଲେ ସମସ୍ତେ ରାଜ-ସଭା ମଧ୍ୟେ ଯାଇ । ଭରତ ଶତ୍ରୁଘ୍ନଙ୍କୁ ଆଣିଲେ ଡକାଇ ॥
ଭରତଙ୍କୁ ମୁନି ନିଜ ପାଶେ ବସାଇଲେ । ନୀତି-ଧରମ ସଂଯୁକ୍ତ-ବଚନ ଭାଷିଲେ ॥୨॥
କହିଲେ ବଶିଷ୍ଠ ପୂର୍ବ ବୃତ୍ତାନ୍ତ ସମସ୍ତ । କୁଟିଳ କୈକେୟୀ କଲା କୁକାର୍ଯ୍ୟ ଯେମନ୍ତ ॥
ନୃପଙ୍କ ଧରମ ସତ୍ୟ ବ୍ରତ ପ୍ରଶଂସିଲେ । ଯେ ତନୁ ତେଜିଣ ପ୍ରେମପ୍ରତିଜ୍ଞା ପାଳିଲେ ॥୩॥
କହନ୍ତେ ସ୍ୱଭାବ, ଗୁଣ, ଶୀଳ ରାମଙ୍କର । ସଜଳ-ନୟନ ପୁଲକିଲେ ମୁନିବର ॥
ସୀତା ଲକ୍ଷ୍ମଣଙ୍କ ପ୍ରୀତି ଆଦର ବଖାଣି । ଶୋକ ସ୍ନେହରେ ନିମଗ୍ନ ହେଲେ ମୁନିଜ୍ଞାନୀ ॥୪॥

ଶୁଣ ବତ୍ସ ଭରତ ! ଭାବୀ ବଳବନ୍ତ, ବୋଇଲେ ମୁନି କାତରେ ।
ହାନି-ଲାଭ, ଯଶ-ଅଯଶ, ଜୀବନ-ମରଣ, ବିଧାତା କରେ ॥୧୭୧॥

---

ପୂର୍ଣ୍ଣକାମ ହୋଇଗଲେ ॥ ୧୭୦ ॥ ଚୌପାଈ :—ପିତାଙ୍କ ନିମନ୍ତେ ଭରତ ଯାହା ସବୁ କୃତ୍ୟ କଲେ, ତାହା ଲକ୍ଷ ଲକ୍ଷ ମୁହଁରେ ସୁଦ୍ଧା ବର୍ଣ୍ଣନ କରାଯାଇ ପାରିବ ନାହିଁ । ତତ୍ପରେ ଶୁଭଦିନ ନିର୍ଣ୍ଣୟ କରି ମୁନିବର ବଶିଷ୍ଠ ଆସିଲେ ଏବଂ ସେ ମନ୍ତ୍ରୀ ଓ ସମସ୍ତ ମହାଜନଙ୍କୁ ଡକାଇଲେ ॥ ୧ ॥ ସମସ୍ତ ଲୋକ ରାଜସଭାରେ ଯାଇ ବସିଗଲେ । ସେତେବେଳେ ମୁନି ଭରତ ଓ ଶତ୍ରୁଘ୍ନ ଦୁଇ ଭାଇଙ୍କୁ ଡକାଇ ପଠାଇଲେ । ବଶିଷ୍ଠ ଭରତଙ୍କୁ ଆପଣା ନିକଟରେ ବସାଇଲେ ଏବଂ ନୀତି ଓ ଧର୍ମରେ ପରିପୂର୍ଣ୍ଣ ବଚନ କହିଲେ ॥ ୨ ॥ ପ୍ରଥମେ କୈକେୟୀ ଯେପରି କପଟାଚରଣ କରିଥିଲେ, ମୁନିବର ସେହି ସବୁ କଥା କହିଲେ । ତତ୍ପରେ ଶରୀର-ତ୍ୟାଗପୂର୍ବକ ପ୍ରେମନିର୍ବାହ କରିଥିବା ରାଜାଙ୍କ ଧର୍ମବ୍ରତ ଓ ସତ୍ୟର ପ୍ରଶଂସା କଲେ ॥ ୩ ॥ ଶ୍ରୀରାମଚନ୍ଦ୍ରଙ୍କ ଗୁଣ, ଶୀଳ ଓ ସ୍ୱଭାବର ବର୍ଣ୍ଣନା କରୁ କରୁ ମୁନିରାଜଙ୍କ ନେତ୍ରରେ ଜଳ ପୂର୍ଣ୍ଣ ହୋଇ ଆସିଲା ଏବଂ ତାଙ୍କ ଶରୀର ପୁଲକିତ ହୋଇ ଉଠିଲା । ତତ୍ପରେ ଲକ୍ଷ୍ମଣ ଓ ସୀତାଙ୍କ ପ୍ରେମର ବଡ଼ାଇ କରି ଜ୍ଞାନୀ

ଅସ ବିଚାରି କେହି ଦେଇଅ ଦୋସୂ । ବ୍ୟରଥ କାହିପର କୀଜିଅ ରୋସୂ ॥
ତାତ ବିଚାରୁ କରହୁ ମନ ମାହୀଁ । ସୋଚ ଜୋଗୁ ଦସରଥୁ ନୃପୁ ନାହୀଁ ॥୧॥
ସୋଚିଅ ବିପ୍ର ଜୋ ବେଦ ବିହୀନା । ତଜି ନିଜ ଧରମୁ ବିଷୟ ଲୟଲୀନା ॥
ସୋଚିଅ ନୃପତି ଜୋ ନୀତି ନ ଜାନା । ଜେହି ନ ପ୍ରଜା ପ୍ରିୟ ପ୍ରାନ ସମାନା ॥୨॥
ସୋଚିଅ ବୟସୁ କୃପନ ଧନବାନୂ । ଜୋ ନ ଅତିଥି ସିବ ଭଗତି ସୁଜାନୂ ॥
ସୋଚିଅ ସୂଦ୍ରୁ ବିପ୍ର ଅବମାନୀ । ମୁଖର ମାନପ୍ରିୟ ଜ୍ଞାନ ଗୁମାନୀ ॥୩॥
ସୋଚିଅ ପୁନି ପତି ବଂଚକ ନାରୀ । କୁଟିଲ କଲହପ୍ରିୟ ଇଚ୍ଛାଚାରୀ ॥
ସୋଚିଅ ବଟୁ ନିଜ ବ୍ରତୁ ପରିହରଈ । ଜୋ ନହିଁ ଗୁର ଆୟସୁ ଅନୁସରଈ ॥୪॥

---

ଏହା ବିଚାରିଣ ଦେବା କାହା ଶିରେ ଦୋଷ । କାହା ଉପରେ କରିବା ଅକାରଣେ ରୋଷ ॥
ହୃଦରେ ବିଚାର କରି ବିଲୋକ, କୁମର । ଚିନ୍ତିବା ଯୋଗ୍ୟ ନୁହନ୍ତି କୋଶଳ ଈଶ୍ୱର ॥୧॥
ଚିନ୍ତନୀୟ ଅଟେ ବିପ୍ର ଯେ ବେଦ-ବିହୀନ । ତେଜି ନିଜ ଧର୍ମ ରହେ ବିଷୟରେ ଲୀନ ॥
ଚିନ୍ତନୀୟ ନୃପତି ଯେ ନ ଜାଣଇ ନୀତି । ନ କରେ ପ୍ରଜାଙ୍କ ପ୍ରତି ପ୍ରାଣସମ ପ୍ରୀତି ॥୨॥
ଚିନ୍ତନୀୟ ଅଟେ ବୈଶ୍ୟ, ଧନାଢ୍ୟ କୃପଣ । ଯେ ନୁହେ ଅତିଥି-ଶିବ-ଭକ୍ତି-ପରାୟଣ ॥
ଚିନ୍ତନୀୟ ଶୂଦ୍ର ଯେହୁ ବିପ୍ର-ଅପମାନୀ । ବାଚାଳ, ସମ୍ମାନ-ପ୍ରିୟ, ଜ୍ଞାନ-ଅଭିମାନୀ ॥୩॥
ଚିନ୍ତନୀୟ ପୁଣି ପତି-ବଞ୍ଚକିନୀ ନାରୀ । କୁଟିଳା, କଳହ-ପ୍ରିୟା, ନିଜ ଇଚ୍ଛାଚାରୀ ॥
ଚିନ୍ତନୀୟ ବଟୁ ଯେହୁ ବ୍ରତ ପରିହରେ । ଯେ ଗୁରୁ ଆଦେଶ ଅନୁସରଣ ନ କରେ ॥୪॥

---

ମୁନି ଶୋକ ଓ ସ୍ନେହରେ ମଗ୍ନ ହୋଇଗଲେ ॥ ୪ ॥ ଦୋହା :—ମୁନିନାଥ ଦୁଃଖିତ ହୋଇ କହିଲେ, "ହେ ଭରତ ! ଶୁଣ; ଭବିତବ୍ୟତା ବଡ ବଳବାନ୍ । ହାନିଲାଭ, ଜୀବନମରଣ ଓ ଯଶ-ଅଯଶ, ଏସବୁ ବିଧାତାଙ୍କ ହାତରେ ॥ ୧୭୧ ॥ ଚୌପାଈ :— ଏପରି ବିଚାରି କାହାକୁ ଦୋଷ ଦେବା ଉଚିତ ? ବୃଥାରେ କାହା ଉପରେ କ୍ରୋଧ କାହିଁକି ବା କରିବା ? ହେ ବତ୍ସ ! ମନରେ ବିଚାର କର । ରାଜା ଦଶରଥଙ୍କ ପାଇଁ ଚିନ୍ତାର ବିଷୟ କିଛି ନାହିଁ ॥ ୧ ॥ ଯେଉଁ ବ୍ରାହ୍ମଣ ବେଦ ଜାଣେନାହିଁ, ଯେ ଆପଣା ଧର୍ମ ଛାଡି ବିଷୟ-ଭୋଗରେ ଲୀନ ରହେ, ସେହି ବ୍ରାହ୍ମଣ ନିମନ୍ତେ ଚିନ୍ତା କରିବା ସଙ୍ଗତ । ଯେଉଁ ରାଜା ନୀତି ଜାଣନ୍ତି ନାହିଁ ଏବଂ ପ୍ରଜା ପ୍ରାଣସମ ଯାହାଙ୍କର ପ୍ରିୟ ନୁହନ୍ତି, ସେହି ରାଜା ବିଷୟରେ ଚିନ୍ତା କରିବା କଥା ॥ ୨ ॥ ଯେଉଁ ବୈଶ୍ୟ ଧନବାନ୍ ହୋଇ ସୁଦ୍ଧା କୃପଣ ଏବଂ ଅତିଥିଙ୍କ ସତ୍କାର ଓ ଶିବଙ୍କ ଭକ୍ତି କରିବାରେ କୁଶଳ ନୁହେଁ, ତାହାର ପାଇଁ ଚିନ୍ତା କରିବା ସଙ୍ଗତ । ଯେଉଁ ଶୂଦ୍ର ବ୍ରାହ୍ମଣମାନଙ୍କୁ ଅପମାନ ଦିଏ, ବହୁତ ଗୁଡାଏ କଥାବାର୍ତ୍ତା କରେ, ମାନସମ୍ମାନ ଓ ବଡାଇ ଚାହେଁ ଏବଂ ଜ୍ଞାନର ଗର୍ବ କରେ, ସେହି ଶୂଦ୍ର ବିଷୟରେ ଚିନ୍ତା କରିବା ଯଥାର୍ଥ ॥ ୩ ॥ ପୁନଶ୍ଚ ଯେଉଁ ନାରୀ ନିଜ ପତିକୁ ଛଳନା କରେ, ଯେ କୁଟିଳା, କଳହପ୍ରିୟା ଓ ସ୍ୱେଚ୍ଛାଚାରିଣୀ, ସେହି ନାରୀ ବିଷୟରେ ଚିନ୍ତା କରିବା ଉଚିତ । ଯେଉଁ ବ୍ରହ୍ମଚାରୀ ଆପଣା ବ୍ରହ୍ମଚର୍ଯ୍ୟ-ବ୍ରତକୁ ଛାଡିଦିଏ ଏବଂ

ସୋଚଅ ଗୃହୀ ଜୋ ମୋହ ବସ କରଇ କରମପଥ ତ୍ୟାଗ ।
ସୋଚଅ ଜତି ପ୍ରପଂଚ ରତ ବିଗତ ବିବେକ ବିରାଗ ॥୧୭୨॥

ବୈଖାନସ ସୋଇ ସୋଚଇ ଜୋଗୂ । ତପୁ ବିହାଇ ଜେହି ଭାଵଇ ଭୋଗୂ ॥
ସୋଚିଅ ପିସୁନ ଅକାରନ କ୍ରୋଧୀ । ଜନନି ଜନକ ଗୁର ବଂଧୁ ବିରୋଧୀ ॥୧॥
ସବ ବିଧି ସୋଚିଅ ପର ଅପକାରୀ । ନିଜ ତନୁ ପୋଷକ ନିରଦୟ ଭାରୀ ॥
ସୋଚନୀୟ ସବହୀଁ ବିଧି ସୋଈ । ଜୋ ନ ଛାଡ଼ି ଛଲୁ ହରି ଜନ ହୋଈ ॥୨॥
ସୋଚନୀୟ ନହିଁ କୋସଲରାଊ । ଭୁଅନ ଚାରିଦସ ପ୍ରଗଟ ପ୍ରଭାଊ ॥
ଭୟଉ ନ ଅହଇ ନ ଅବ ହୋନିହାରା । ଭୂପ ଭରତ ଜସ ପିତା ତୁମ୍ହାରା ॥୩॥
ବିଧି ହରି ହରୁ ସୁରପତି ଦିସିନାଥା । ବରନହିଁ ସବ ଦସରଥ ଗୁନ ଗାଥା ॥୪॥

---

ଚିନ୍ତନୀୟ ଗୃହୀ ମୋହେ ଯେ କରଇ କର୍ମପଥ ପରିତ୍ୟାଗ ।
ଚିନ୍ତନୀୟ ଯତି ପ୍ରପଞ୍ଚେ ଯା ପ୍ରୀତି, ରହିତ-ଜ୍ଞାନ-ବିରାଗ ॥୧୭୨॥

ସେହି ବାନପ୍ରସ୍ଥ ସଦା ଅଟେ ଚିନ୍ତନୀୟ । ତପ ତେଜିଣ ଯାହାକୁ ଭୋଗ ଲାଗେ ପ୍ରିୟ ॥
ଚିନ୍ତନୀୟ ଚୁଗୁଲିଆ ଅକାରଣ କ୍ରୋଧୀ । ଜନନୀ-ଜନକ-ଗୁରୁ-ବାନ୍ଧବ-ବିରୋଧୀ ॥୧॥
ସର୍ବ ଭାବେ ଚିନ୍ତନୀୟ ପର ଅପକାରୀ । ଆପଣା ତନୁ-ପୋଷକ ନିର୍ଦ୍ଦୟ ଯେ ଭାରି ॥
ସମସ୍ତ ପ୍ରକାରେ ଚିନ୍ତନୀୟ ସେ ଅଟଇ । ଛଳ ଛାଡ଼ି ହରିଜନ ଯେହୁ ନ ହୁଅଇ ॥୨॥
ଚିନ୍ତିବା ଯୋଗ୍ୟ ନୁହନ୍ତି ଅଯୋଧ୍ୟାର ନାଥ । ଚତୁର୍ଦ୍ଦଶ ଭୁବନରେ ପ୍ରଭାବ ବିଖ୍ୟାତ ॥
ହୋଇ ନାହିଁ, ନାହିଁ କିମ୍ବା ହେବେ ନାହିଁ ନୃପ । ଭରତ, ପିତା ତୁମ୍ଭର ଥିଲେ ଯେହ୍ନେ ଭୂପ ॥୩॥
ବିଧି ହରିହର ଦିଗପାଳ ସୁର-ପତି । ଦଶରଥ ଗୁଣ-ରାଶି ସର୍ବେ ବଖାଣନ୍ତି ॥୪॥

---

ଗୁରୁଙ୍କ ଆଜ୍ଞାନୁସାରେ ଆଚରଣ କରେନାହିଁ, ସେହି ବ୍ରାହ୍ମଣ ନିମନ୍ତେ ଶୋଚନା କରିବା ବିଧେୟ ॥ ୪ ॥ ଦୋହା :—ଯେଉଁ ଗୃହସ୍ଥ ମୋହବଶ କର୍ମମାର୍ଗକୁ ତ୍ୟାଗ କରିଦିଏ ଏବଂ ଯେଉଁ ସନ୍ନ୍ୟାସୀ ସଂସାରର ବିଷୟ-ବାସନାରେ ମଜ୍ଜି ଜ୍ଞାନ-ବୈରାଗ୍ୟହୀନ ହୁଏ, ସେହି ଗୃହସ୍ଥ ଓ ସନ୍ନ୍ୟାସୀଙ୍କ ନିମନ୍ତେ ଚିନ୍ତା କରିବା ଯଥାର୍ଥ ॥ ୧୭୨ ॥ ଚୌପାଈ :—ଯେଉଁ ବାନପ୍ରସ୍ଥ ତପସ୍ୟା ଛାଡ଼ି ଭୋଗବିଳାସରେ ଆଗ୍ରହ ପ୍ରକାଶ କରେ, ତାହାର ବିଷୟରେ ଚିନ୍ତା କରଣୀୟ । ଯେ ଚୁଗୁଲିଆ, ଅକାରଣରେ କ୍ରୋଧ କରେ ଏବଂ ମାତା, ପିତା, ଗୁରୁ ଏବଂ ଭାଇବନ୍ଧୁଙ୍କ ସହିତ ଯେ ବିରୋଧାଚରଣ କରେ, ସେହି ବ୍ୟକ୍ତି ଚିନ୍ତାର ଯୋଗ୍ୟ ॥ ୧ ॥ ଯେଉଁ ବ୍ୟକ୍ତି ଅନ୍ୟର ଅନିଷ୍ଟ କରେ, କେବଳ ନିଜର ଶରୀର ପୋଷଣ କରେ ଏବଂ ବିଶେଷ ନିର୍ଦ୍ଦୟ, ତାହାର ବିଷୟରେ ଚିନ୍ତା କରିବା ସଙ୍ଗତ । ଯେଉଁ ବ୍ୟକ୍ତି ଛନ୍ଦ-କପଟ-ତ୍ୟାଗ-ପୂର୍ବକ ହରିଙ୍କ ଭକ୍ତ ହୁଏନାହିଁ, ସେହି ବ୍ୟକ୍ତି ସବୁ ପ୍ରକାରେ ଶୋଚନୀୟ ॥ ୨ ॥ କୋଶଳରାଜ ଦଶରଥଙ୍କ ପ୍ରଭାବ ଚଉଦ ଭୁବନରେ ପ୍ରକାଶିତ । ତାଙ୍କ ନିମନ୍ତେ ଅନୁଶୋଚନା କରିବା ଅନୁଚିତ । ହେ ଭରତ ! ତୁମ ପିତାଙ୍କ ସମାନ ରାଜା ଅତୀତରେ କେହି ହୋଇ ନାହାନ୍ତି, ବର୍ତ୍ତମାନ ନାହାନ୍ତି କିମ୍ବା

କହହୁ ତାତ କେହି ଭାଁତି କୋଉ କରିହି ବଡ଼ାଈ ତାସୁ ।
ରାମ ଲଖନ ତୁମ୍ହ ସତ୍ରୁହନ ସରିସ ସୁଅନ ସୁଚି ଜାସୁ ॥୧୭୩॥
ସବ ପ୍ରକାର ଭୂପତି ବଡ଼ଭାଗୀ । ବାଦି ବିଷାଦୁ କରିଅ ତେହି ଲାଗୀ ॥
ଯହ ସୁନି ସମୁଝି ସୋଚୁ ପରିହରହୂ । ସିର ଧରି ରାଜ ରଜାୟସୁ କରହୂ ॥୧॥
ରାୟଁ ରାଜପଦୁ ତୁମ୍ହ କହୁଁ ଦୀହ୍ନା । ପିତା ବଚନୁ ଫୁର ଚାହିଅ କୀହ୍ନା ॥
ତଜେ ରାମୁ ଜେହିଁ ବଚନହିଁ ଲାଗୀ । ତନୁ ପରିହରେଉ ରାମ ବିରହାଗୀ ॥୨॥
ନୃପହି ବଚନ ପ୍ରିୟ ନହିଁ ପ୍ରିୟ ପ୍ରାନା । କରହୁ ତାତ ପିତୁ ବଚନ ପ୍ରବାନା ॥
କରହୁ ସୀସ ଧରି ଭୂପ ରଜାଈ । ହଇ ତୁମ୍ହ କହଁ ସବ ଭାଁତି ଭଲାଈ ॥୩॥
ପରସୁରାମ ପିତୁ ଅଜ୍ଞା ରାଖୀ । ମାରୀ ମାତୁ ଲୋକ ସବ ସାଖୀ ॥
ତନୟ ଜଜାତିହି ଜୌବନୁ ଦୟଊ । ପିତୁ ଅଗ୍ୟାଁ ଅଘ ଅଜସୁ ନ ଭୟଊ ॥୪॥

---

କହ ସୁତ ! କିଏ କିପରି ଭାବରେ କରିବ ବଡାଇ ତାର ।
ଶ୍ରୀରାମ ଲକ୍ଷ୍ମଣ ଶତ୍ରୁଘ୍ନ ତୁମ ସମ ଶୁଚି ସୁତ ଯାର ॥୧୭୩॥
ସକଳ ପ୍ରକାରେ ଭାଗ୍ୟବାନ ନରସାଇଁ । ବିଷାଦ କରିବା ବ୍ୟର୍ଥ ଅଟେ ତାଙ୍କ ପାଇଁ ॥
ଏହା ଶୁଣି ବିଚାରିଣ ଚିନ୍ତା ପରିହର । ରାଜା ଆଜ୍ଞା ଶିରେ ଘେନ ରାଜ୍ୟ ତୁମ୍ଭେ କର ॥୧॥
ରାଜପଦ ଦେଇଛନ୍ତି ତୁମ୍ଭଙ୍କୁ ରାଜନ । ସତ୍ୟ କରିବା ଉଚିତ ପିତାଙ୍କ ବଚନ ॥
ଯେ ପିତା ବଚନ ଯୋଗେ ରାମଙ୍କୁ ତେଜିଲେ । ରାମ ବିରହ-ଅନଳେ ତନୁ ବିସର୍ଜିଲେ ॥୨॥
ନୃପଙ୍କୁ ବଚନ ପ୍ରିୟ, ପ୍ରିୟ ନୁହେ ପ୍ରାଣ । କର କୁମର ପିତାଙ୍କ ବଚନ ପ୍ରମାଣ ॥
ଶିରୋଧାର୍ଯ୍ୟ କରି ନୃପ ଆଜ୍ଞା ଅନୁସର । ସର୍ବ ପ୍ରକାରେ କଲ୍ୟାଣ ହୋଇବ ତୁମ୍ଭର ॥୩॥
ପରଶୁରାମ ପାଳିଣ ପିତାଙ୍କ ଆଦେଶ । ବଧିଲେ ମାତାଙ୍କୁ, ଏଥି ସାକ୍ଷୀ ସାରା ଦେଶ ॥
ପୁତ୍ର ଯଯାତିଙ୍କୁ ନିଜ ଯୌବନ ଦେଲା । ପିତା ଆଜ୍ଞା ହେତୁ ଅଘ ଅଯଶ ନ ହେଲା ॥୪॥

---

ଭବିଷ୍ୟତରେ ହେବେ ନାହିଁ ॥ ୩ ॥ ବ୍ରହ୍ମା, ବିଷ୍ଣୁ, ଶିବ, ଇନ୍ଦ୍ର ଓ ଦିଗପାଳ ସମସ୍ତେ ଦଶରଥଙ୍କ ଗୁଣକଥା କହନ୍ତି ॥ ୪ ॥ ଦୋହା :—ହେ ବତ୍ସ ! ଯାହାଙ୍କର ଶ୍ରୀରାମ, ଲକ୍ଷ୍ମଣ, ତୁମେ ଓ ଶତ୍ରୁଘ୍ନଙ୍କ ପରି ପବିତ୍ର ପୁତ୍ର, ତାହାଙ୍କର ପ୍ରଶଂସା ଭଲା କିଏ କିପରି କରି ପାରିବ, କହ ତ ॥ ୧୭୩ ॥ ଚୌପାଈ :—ରାଜା ସବୁମନ୍ତେ ବଡ ଭାଗ୍ୟବାନ୍ ଥିଲେ । ତାଙ୍କ ନିମନ୍ତେ ବିଷାଦ କରିବା ବୃଥା । ଏହା ଶୁଣି ଓ ବୁଝିବିଚାରି ତୁମେ ଚିନ୍ତା ପରିତ୍ୟାଗ କର ଏବଂ ରାଜାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ତଦନୁସାରେ କାର୍ଯ୍ୟ କର ॥ ୧ ॥ ରାଜା ତୁମ୍ଭଙ୍କୁ ରାଜପଦ ଦେଇଅଛନ୍ତି । ଯେଉଁ ପିତା କେବଳ ବଚନ ନିମନ୍ତେ ଶ୍ରୀରାମଚନ୍ଦ୍ରଙ୍କୁ ତ୍ୟାଗ କଲେ ଏବଂ ରାମ-ବିରହାଗ୍ନିରେ ନିଜ ଶରୀରକୁ ଆହୁତି ଦେଲେ, ସେହି ପିତାଙ୍କର ବଚନର ସତ୍ୟତା ରକ୍ଷା କରିବା ତୁମର ଉଚିତ ॥ ୨ ॥ ରାଜାଙ୍କୁ ତାଙ୍କ ବଚନ ପ୍ରିୟ ଥିଲା, ପ୍ରାଣ ପ୍ରିୟ ନ ଥିଲା । ଏଣୁ ହେ ବତ୍ସ ! ପିତାଙ୍କ ବଚନର ସତ୍ୟତା ତୁମେ ପ୍ରମାଣ କର । ରାଜାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ତୁମେ ତାହା ପାଳନ

ଅନୁଚିତ ଉଚିତ ବିଚାରୁ ତଜି ଜେ ପାଲହିଁ ପିତୁ ବୈନ ।
ତେ ଭାଜନ ସୁଖ ସୁଜସ କେ ବସହିଁ ଅମରପତି ଐନ ॥୧୭୪॥

ଅବସି ନରେସ ବଚନ ଫୁର କରହୂ । ପାଲହୁ ପ୍ରଜା ସୋକୁ ପରିହରହୂ ॥
ସୁରପୁର ନୃପୁ ପାଇହି ପରିତୋଷୂ । ତୁମ୍ହ କହୁଁ ସୁକୃତୁ ସୁଜସୁ ନହିଁ ଦୋଷୂ ॥୧॥
ବେଦ ବିଦିତ ସଂମତ ସବହୀ କା । ଜେହି ପିତୁ ଦେଇ ସୋ ପାଵଇ ଟୀକା ॥
କରହୁ ରାଜୁ ପରିହରହୁ ଗଲାନୀ । ମାନହୁ ମୋର ବଚନ ହିତ ଜାନୀ ॥୨॥
ସୁନି ସୁଖୁ ଲହବ ରାମ ବୈଦେହୀଁ । ଅନୁଚିତ କହବ ନ ପଂଡିତ କେହୀଁ ॥
କୌସଲ୍ୟାଦି ସକଲ ମହତାରୀଁ । ତେଉ ପ୍ରଜା ସୁଖ ହୋହିଁ ସୁଖାରୀଁ ॥୩॥
ପରମ ତୁମ୍ହାର ରାମ କର ଜାନିହି । ସୋ ସବ ବିଧି ତୁମ୍ହ ସନ ଭଲ ମାନିହି ॥
ସୌଁପେହୁ ରାଜୁ ରାମ କେ ଆଏଁ । ସେବା କରେହୁ ସନେହ ସୁହାଏଁ ॥୪॥

---

ଉଚିତାନୁଚିତ ବିଚାର ତେଜିଣ ଯେ ପାଳେ ପିତା ବଚନେ ।
ଲଭି ଏଥି ସୁଖ-ସୁଯଶ, ଅନ୍ତେ ସେ ବସଇ ଇନ୍ଦ୍ର ଭୁବନେ ॥୧୭୪॥

ଅବଶ୍ୟ ବଚନ ସତ୍ୟ ନୃପତିଙ୍କ କର । ପ୍ରତିପାଳ ପ୍ରଜାଜନେ, ଶୋକ ପରିହର ॥
ଅମର ପୁରେ ପାଇବେ ପିତା ପରିତୋଷ । ହେବ ତୁମ୍ଭ ପୁଣ୍ୟ ଯଶ, ନ ଲାଗିବ ଦୋଷ ॥୧॥
ଶ୍ରୁତି ଖ୍ୟାତ ସମସ୍ତଙ୍କ ସମ୍ମତ ଅଟଇ । ଯାହାକୁ ଦିଅନ୍ତି ପିତା ରାଜ୍ୟ ସେ ଲଭଇ ॥
ରାଜ୍ୟ ପ୍ରତିପାଳ ସୁତ, ଗ୍ଳାନି ପରିହର । ହିତକର ଜାଣି ମାନ ବଚନ ମୋହର ॥୨॥
ଶୁଣି ପ୍ରମୋଦ ଲଭିବେ ରାମ ବଇଦେହୀ । ଅନୁଚିତ ନ କହିବେ ବୁଧଜନ କେହି ॥
କଉଶଲ୍ୟା ଆଦି ଯେତେ ତୁମ୍ଭ ମାତାବୃନ୍ଦ । ପ୍ରଜାଙ୍କ ସୁଖେ ସେମାନେ ହୋଇବେ ଆନନ୍ଦ ॥୩॥
ତୁମ୍ଭ ରଘୁପତିଙ୍କର ପ୍ରୀତି ଯେ ଜାଣିବେ । ସକଳ ପ୍ରକାରେ ଭଲ ତୁମ୍ଭଙ୍କୁ ମଣିବେ ॥
ଆସିଲେ ରଘୁନନ୍ଦନ ରାଜ୍ୟ ସମର୍ପିବ । ସ୍ନେହ ବଢାଇଣ ସେବା-ଶୁଶ୍ରୂଷା କରିବ ॥୪॥

---

କର । ଏଥିରେ ତୁମର ସବୁ ପ୍ରକାରେ ମଙ୍ଗଳ ନିହିତ ॥ ୩ ॥ ପରଶୁରାମ ପିତାଙ୍କ ଆଜ୍ଞା ପାଳନ କଲେ ଏବଂ ମାତାଙ୍କୁ ମାରି ପକାଇଲେ । ସମସ୍ତ ସଂସାର ଏହି ବିଷୟରେ ସାକ୍ଷୀ । ରାଜା ଯଯାତିଙ୍କ ପୁତ୍ର ପିତାଙ୍କୁ ନିଜ ଯୌବନ ଦେଇଦେଲେ । ପିତାଙ୍କ ଆଜ୍ଞା ପାଳନ କରିବାରେ ତାଙ୍କର ପାପ ଓ ଅପଯଶ ହେଲା ନାହିଁ ॥ ୪ ॥ ଦୋହା :—ଯେ ଔଚିତ୍ୟ ଓ ଅନୌଚିତ୍ୟ ବିଚାର ତ୍ୟାଗ କରି ପିତାଙ୍କ ବଚନ ପାଳନ କରେ, ସେ ଇହଲୋକରେ ସୁଖ ଓ ସୁଯଶର ପାତ୍ର ହୋଇ ଶେଷରେ ସ୍ୱର୍ଗପୁରରେ ନିବାସ କରେ ॥୧୭୪॥ ଚୌପାଇ :—ରାଜାଙ୍କ ବଚନର ସତ୍ୟତା ତୁମେ ପାଳନ କର, ଶୋକ ତ୍ୟାଗ କର ଓ ପ୍ରଜାଜନଙ୍କୁ ପାଳନ କର । ଏପରି କଲେ ସୁରପୁରବାସୀ ରାଜା ସନ୍ତୋଷ ପାଇବେ ଏବଂ ତୁମ୍ଭଙ୍କୁ ପୁଣ୍ୟ ଓ ସୁଯଶ ମିଳିବ, ଦୋଷ ଲାଗିବ ନାହିଁ ॥ ୧ ॥ ପିତା ଯାହାକୁ ରାଜ୍ୟ ଦିଅନ୍ତି, ସେହି ପୁତ୍ର ରାଜତିଳକ ପାଏ । ଏହା ବେଦୋକ୍ତ ଏବଂ ସକଳ ଶାସ୍ତ୍ରସମ୍ମତ । ଅତଏବ ତୁମେ ରାଜତ୍ୱ କର, ଗ୍ଳାନି ତ୍ୟାଗ କର । ମୋର ବଚନକୁ ହିତ ବୁଝି

କୀଜିଅ ଗୁର ଆୟସୁ ଅବସି କହହିଁ ସଚିବ କର ଜୋରି ।
ରଘୁପତି ଆଏଁ ଉଚିତ ଜସ ତସ ତବ କରବ ବହୋରି ॥୧୭୫॥
କୌସଲ୍ୟା ଧରି ଧୀରଜୁ କହଈ । ପୂତ ପଥ୍ୟ ଗୁର ଆୟସୁ ଅହଈ ॥
ସୋ ଆଦରିଅ କରିଅ ହିତ ମାନୀ । ତଜିଅ ବିଷାଦୁ କାଲଗତି ଜାନୀ ॥୧॥
ବନ ରଘୁପତି ସୁରପୁର ନରନାହୂ । ତୁହ୍ମ ଏହି ଭାଁତି ତାତ କଦରାହୂ ॥
ପରିଜନ ପ୍ରଜା ସଚିବ ସବ ଅଂବା । ତୁହ୍ମହୀ ସୁତ ସବ କହଁ ଅବଲଂବା ॥୨॥
ଲଖି ବିଧି ବାମ କାଲୁ କଠିନାଈ । ଧୀରଜୁ ଧରହୁ ମାତୁ ବଲି ଜାଈ ॥
ସିର ଧରି ଗୁର ଆୟସୁ ଅନୁସରହୂ । ପ୍ରଜା ପାଲି ପରିଜନ ଦୁଖୁ ହରହୂ ॥୩॥

---

ଗୁରୁଙ୍କ ଆଦେଶ ପାଳନ୍ତୁ ଅବଶ୍ୟ, କହେ ମନ୍ତ୍ରୀ ଯୋଡି କର ।
ଆସିଲେ ଶ୍ରୀରାମ ଉଚିତ ଯେମନ୍ତ ତଥା କରିବ, କୁମର ॥୧୭୫॥
ଧୈର୍ଯ୍ୟ ଧରି ପୁଣି ମାତା କୌଶଲ୍ୟା କହନ୍ତି । ପୁତ୍ର, ପଥ୍ୟ ଅଟେ ଗୁରୁଦେବ ଅନୁମତି ॥
ତାହା ଆଦର ସହିତ କର ହିତ ଜାଣି । ଦୁଃଖ ପରିହର କାଳ ଗତି ଅନୁମାନି ॥୧॥
ବନେ ରଘୁପତି ସୁର-ପୁରେ ନରବର । ତୁମ୍ଭେ ଏହି ଭାବେ ବତ୍ସ ! ହେଉଛ କାତର ॥
ପ୍ରଜା ପରିଜନ ମନ୍ତ୍ରୀ ଜନନୀ ନିଚୟ । ତୁମ୍ଭେ ସମସ୍ତଙ୍କ ଅବଲମ୍ବନ, ତନୟ ॥୨॥
କାଳ ବିକରାଳ ବାମ ବିଲୋକି ବିଧାତା । ଧୈର୍ଯ୍ୟ ହୃଦେ ଧର, ନିଛୁ ଯାଉଆଏ ମାତା ॥
ଶିରେ ଘେନି କରି ଗୁରୁଆଜ୍ଞା ଅନୁସର । ପ୍ରଜାଙ୍କୁ ପାଳିଣ ପୁରଜନ-ଦୁଃଖ ହର ॥୩॥

---

ମାନ ॥୨॥ ଏହି କଥା ଶୁଣିଲେ ଶ୍ରୀରାମ ଓ ଜାନକୀ ସୁଖ ଲାଭ କରିବେ ଏବଂ କୌଣସି ପଣ୍ଡିତ ତାହାକୁ ଅନୁଚିତ ବୋଲି କହିବେ ନାହିଁ । କୌଶଲ୍ୟା ପ୍ରଭୃତି ତୁମର ସମସ୍ତ ମାତା ମଧ୍ୟ ପ୍ରଜାଙ୍କ ସୁଖରେ ସୁଖୀ ହେବେ ॥ ୩ ॥ ଯେ ତୁମର ଓ ଶ୍ରୀରାମଙ୍କ ମଧ୍ୟରେ ଥିବା ପରମ ସମ୍ବନ୍ଧ ଜାଣିବ, ସେ ସବୁ ପ୍ରକାରେ ତୁମଙ୍କୁ ସାଧୁବାଦ ଦେବ । ଶ୍ରୀରାମଙ୍କ ଫେରି ଆସିବା ପରେ ତୁମେ ତାଙ୍କୁ ରାଜ୍ୟ ଅର୍ପଣ କରିଦେବ ଏବଂ ସୁନ୍ଦର ସ୍ନେହରେ ତାଙ୍କୁ ସେବା କରିବ ।" ॥ ୪ ॥ ଦୋହା :—ମନ୍ତ୍ରୀ ହାତ ଯୋଡି କହୁଥାଆନ୍ତି, "ଗୁରୁଙ୍କ ଆଜ୍ଞା ଅବଶ୍ୟ ପାଳନ କରନ୍ତୁ । ଶ୍ରୀ ରଘୁନାଥଙ୍କ ଫେରି ଆସିବା ପରେ ଯେପରି ଉଚିତ, ସେହିପରି କରିବେ ।" ॥ ୧୭୫ ॥ ଚୌପାଈ —କୌଶଲ୍ୟା ଧୈର୍ଯ୍ୟ ଧରି କହୁଥା'ନ୍ତି, "ହେ ପୁତ୍ର ! ଗୁରୁଙ୍କ ଆଦେଶ ପଥ୍ୟ ସ୍ୱରୂପ । ତାହାକୁ ଆଦର କରିବା ଉଚିତ ଏବଂ ହିତ ମାନି ପାଳନ କରିବା ଉଚିତ । କାଳର ଗତି ଜାଣି ବିଷାଦ ତ୍ୟାଗ କରିବା ଉଚିତ ॥ ୧ ॥ ଶ୍ରୀ ରଘୁନାଥ ବନରେ ଏବଂ ମହାରାଜ ଦଶରଥ ଅମର-ଭୁବନରେ ! ରେ ବାପ ! ତୁ ଏପରି କାତର ହେଉଛୁ ! ରେ ପୁତ୍ର ! କୁଟୁମ୍ବ, ପ୍ରଜା, ମନ୍ତ୍ରୀ ଓ ସମସ୍ତ ମାତାଙ୍କର ଏକମାତ୍ର ଅବଲମ୍ବନ ତୁହି ॥୨॥ ବିଧାତାକୁ ପ୍ରତିକୂଳ ଓ କାଳକୁ କଠୋର ଦେଖି ଧୈର୍ଯ୍ୟ ଧାରଣ କର । ମାତା ତୋ ଆଗରେ ନିଉଛି ଯାଉଛି । ଗୁରୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ତଦନୁସାରେ କାର୍ଯ୍ୟକାରକ ହୁଅ । ପ୍ରଜାଜନଙ୍କୁ ପାଳନ କରି କୁଟୁମ୍ବୀ ଜନଙ୍କ

ଗୁର କେ ବଚନ ସଚିବ ଅଭିନଂଦନୁ । ସୁନେ ଭରତ ହିୟ ହିତ ଜନୁ ଚଂଦନୁ ॥
ସୁନୀ ବହୋରି ମାତୁ ମୃଦୁ ବାନୀ । ସୀଲ ସନେହ ସରଲ ରସ ସାନୀ ॥୩॥

ସାନୀ ସରଲ ରସ ମାତୁ ବାନୀ ସୁନି ଭରତୁ ବ୍ୟାକୁଲ ଭଏ ।
ଲୋଚନ ସରୋରୁହ ସ୍ରବତ ସୀଁଚତ ବିରହ ଉର ଅଂକୁର ନଏ ॥
ସୋ ଦସା ଦେଖତ ସମୟ ତେହି ବିସରୀ ସବହି ସୁଧି ଦେହ କୀ ।
ତୁଲସୀ ସରାହତ ସକଲ ସାଦର ସୀଁଵ ସହଜ ସନେହ କୀ ॥

ଭରତୁ କମଲ କର ଜୋରି ଧୀର ଧୁରଂଧର ଧୀର ଧରି ॥
ବଚନ ଅମିଅଁ ଜନୁ ବୋରି ଦେତ ଉଚିତ ଉତ୍ତର ସବହି ॥୧୭୬॥

## ମାସପାରାୟଣ, ଅଷ୍ଟାଦଶ ବିଶ୍ରାମ

ମୋହି ଉପଦେସୁ ଦୀହ୍ନ ଗୁର ନୀକା । ପ୍ରଜା ସଚିବ ସଂମତ ସବ ହୀ କା ॥
ମାତୁ ଉଚିତ ଧରି ଆୟସୁ ଦୀହ୍ନା । ଅବସି ସୀସ ଧରି ଚାହଉଁ କୀହ୍ନା ॥୧॥

ଗୁରୁ କଥା ମନ୍ତ୍ରୀ ଅଭିନନ୍ଦନ ଭରତ । ଶୁଣିଲେ ହୃଦୟ ହିତେ ଚନ୍ଦନ ଯେମନ୍ତ ॥
ଶୁଣିଲେ ପୁଣି ମାତାଙ୍କ ବାଣୀ ସୁଲଳିତ । ସ୍ନେହ ସୁଶୀଳ ସରଳ ରସରେ ସେଚିତ ॥୪॥

ସିକ୍ତ ଜନନୀ ବାଣୀ ସରଳ ରସେ, ଶୁଣି ଭରତ ବିକଳ ଆତୁର ।
ଲୋଚନ-ଅରବିନ୍ଦ ସ୍ରବଣ ସିଞ୍ଚେ ହୃଦ-ବିରହ ନବୀନ ଅଙ୍କୁର ।
ଦେଖି ଅବସ୍ଥା ସେ କାଳର, ପାଶୋରି ଦଶା ସ୍ୱଦେହର,
ତୁଳସୀ ପ୍ରେମେ ଅତି ସମସ୍ତେ ପ୍ରଶଂସନ୍ତି ସୀମାକୁ ସହଜ ସ୍ନେହର ॥

ଯୋଡ଼ି କଞ୍ଜ-କର ଧୀର ଧୁରନ୍ଧର ଭରତ ଧୈର୍ଯ୍ୟ ଧରିଣ ।
ଦିଅନ୍ତି ସବୁରେ ଉଚିତ ଉତ୍ତର ସୁଧା-ବଚନ ଭାଷିଣ ॥୧୭୬॥

ମୋତେ ଗୁରୁ ଉପଦେଶ ଦେଲେ ଭଲ ଅତି । ସକଳ ଅମାତ୍ୟ ପ୍ରଜାଜନଙ୍କ ସମ୍ମତି ॥
ଦେଲେ ଜନନୀ ଆଦର ଆଦେଶ ଆଦର୍ଶ । ଶିରେ ଘେନି ପାଳିବାକୁ ଚାହଇ ଅବଶ୍ୟ ॥୧॥

ଦୁଃଖ ହରଣକର ।" ॥୩॥ ଭରତ ଗୁରୁଙ୍କ ବଚନ ଓ ମନ୍ତ୍ରୀମାନଙ୍କ ଅଭିନନ୍ଦନ ଶୁଣିଲେ । ତାହା ତାଙ୍କ ହୃଦୟ ନିମନ୍ତେ ଚନ୍ଦନ ପରି (ଶୀତଳ ଓ ହିତକର) ବୋଧ ହେଉଥିଲା । ତା' ସାଙ୍ଗକୁ ସେ ମାତା କୌଶଲ୍ୟାଙ୍କ ଶୀଳ-ସ୍ନେହ-ସରଳତା-ରସପୂର୍ଣ୍ଣ କୋମଳ ବାଣୀ ଶୁଣିଲେ ॥୪॥ ଛନ୍ଦ'—ମାତାଙ୍କ ସରଳତା-ରସସିକ୍ତ ବଚନ ଶୁଣି ଭରତ ବ୍ୟାକୁଳ ହୋଇପଡ଼ିଲେ । ତାଙ୍କର ନେତ୍ରକମଳରୁ ଜଳ ବହାଇ ହୃଦୟରେ ଜାତ ବିରହ-ନବୀନାଙ୍କୁରକୁ ସିକ୍ତ କରିବାକୁ ଲାଗିଲା । ତାଙ୍କର ଏହି ଦଶା ଦେଖି ସେହି ସମୟରେ ସମସ୍ତେ ଆପଣା ଆପଣା ଶରୀର ବିଷୟ ଭୁଲିଗଲେ । ତୁଳସୀ ଦାସ କହନ୍ତି—ସହଜ-ସ୍ନେହର ସୀମା ଭରତଙ୍କୁ ସମସ୍ତ ଲୋକ ଆଦରପୂର୍ବକ ପ୍ରଶଂସା କରିବାକୁ ଲାଗିଲେ ॥ ସୋରଠା '—ଧୈର୍ଯ୍ୟ-

ଗୁରୁ ପିତୁ ମାତୁ ସ୍ୱାମି ହିତ ବାନୀ । ସୁନି ମନ ମୁଦିତ କରିଅ ଭଲି ଜାନୀ ॥
ଉଚିତ କି ଅନୁଚିତ କିଏଁ ବିଚାରୂ । ଧରମୁ ଜାଇ ସିର ପାତକ ଭାରୂ ॥୨॥
ତୁମ୍ହ ତୌ ଦେହୁ ସରଲ ସିଖ ସୋଈ । ଜୋ ଆଚରତ ମୋର ଭଲ ହୋଈ ॥
ଜଦ୍ୟପି ୟହ ସମୁଝତ ହଉଁ ନୀକେଂ । ତଦପି ହୋତ ପରିତୋଷୁ ନ ଜୀ କେ ॥୩॥
ଅବ ତୁମ୍ହ ବିନୟ ମୋରି ସୁନି ଲେହୂ । ମୋହି ଅନୁହରତ ସିଖାଓ୍ୱନୁ ଦେହୂ ॥
ଉତରୁ ଦେଉଁ ଛମବ ଅପରାଧୂ । ଦୁଖିତ ଦୋଷ ଗୁନ ଗନହିଁ ନ ସାଧୂ ॥୪॥
ପିତୁ ସୁରପୁର ସିୟ ରାମୁ ବନ କରନ କହହୁ ମୋହି ରାଜୁ ।
ଏହି ତେଁ ଜାନହୁ ମୋର ହିତ କୈ ଆପନ ବଡ଼ କାଜୁ ॥୧୭୭॥

---

ଶୁଣି ଗୁରୁ ପିତା ମାତା ସ୍ୱାମୀ ଶିକ୍ଷା ବାଣୀ । ପ୍ରମୋଦରେ କରଣୀୟ ଶୁଭପ୍ରଦ ଜାଣି ॥
ଉଚିତ କି ଅନୁଚିତ କରନ୍ତେ ବିଚାର । ଧର୍ମ ନଷ୍ଟ ହୁଏ, ଶିରେ ଲାଗେ ପାପ ଭାର ॥୨॥
ତୁମ୍ଭେ ତ ଦିଅ ସରଳ ସେହି ଉପଦେଶ । ଯାହା ଆଚରନ୍ତେ ହିତ ହେବ ମୋ ବିଶେଷ ॥
ଯଦ୍ୟପି ଭଲ ପ୍ରକାରେ ଏହା ମୁଁ ବୁଝୁଛି । ତଥାପି ହୃଦୟେ ପରିତୋଷ ନ ହେଉଛି ॥୩॥
ଏବେ ବିନୟ ମୋହର ତୁମ୍ଭେ ଶୁଣି ନିଅ । ମୋତେ ଉପଯୁକ୍ତ ଶିକ୍ଷା କୃପା କରି ଦିଅ ॥
ଅପରାଧ କ୍ଷମିବ, ମୁଁ ଦିଏ ଯେ ଉତ୍ତର । ସାଧୁ ନ ଗଣନ୍ତି ଗୁଣ ଦୋଷ ଦୁଃଖିତର ॥୪॥
ସ୍ୱର-ପୁରେ ପିତା ବନେ ରାମ ସିଁତ ମୋତେ କୁହ, କର ରାଜ୍ୟ ।
ଏଥିରେ ମୋହର ବୁଝ ଉପକାର, କି ଆପଣା ବଡ କାର୍ଯ୍ୟ ॥୧୭୭॥

---

ଧୁରନ୍ଧର ଭରତ ଧୈର୍ଯ୍ୟ ଧାରଣ କଲେ । ସେ କମଳ-କର ଯୋଡି, ବଚନକୁ ସତେ ଅବା ଅମୃତରସରେ ବୁଡାଇ ସମସ୍ତଙ୍କୁ ଉପଯୁକ୍ତ ଉତ୍ତର ଦେବାକୁ ଲାଗିଲେ— ॥ ୧୭୬ ॥ ଚୌପାଈ :—"ଗୁରୁଜୀ ମୋତେ ସୁନ୍ଦର ଉପଦେଶ ଦେଲେ । ପ୍ରଜା, ମନ୍ତ୍ରୀ ଆଦି ସମସ୍ତଙ୍କର ମଧ୍ୟ ଏହି ମତ । ମାତା ମଧ୍ୟ ଉଚିତ ମନେ କରି ଆଜ୍ଞା ଦେଇଅଛନ୍ତି ଏବଂ ମୁଁ ତାହାକୁ ଆପଣାର ଶିରୋଧାର୍ଯ୍ୟ କରି ଅବଶ୍ୟ ସେହିରୂପେ ପାଳନ କରିବାକୁ ଇଚ୍ଛୁକ ॥୧॥ ଗୁରୁ, ମାତା, ପିତା, ସ୍ୱାମୀ ଓ ସୁହୃଦଙ୍କ ବାଣୀ ଶୁଣି ପ୍ରସନ୍ନ ମନରେ ତାହାକୁ ଭଲ ବିଚାରି ପାଳନ କରିବା ଆବଶ୍ୟକ । ଔଚିତ୍ୟ-ଅନୌଚିତ୍ୟ ବିଚାର କରି ବସିଲେ ଧର୍ମ ନାଶ ଯାଏ ଏବଂ ଶିର ଉପରେ ପାପର ଭାର ମାଡିବସେ ॥ ୨ ॥ ଯେଉଁଭଳି ଆଚରଣ କଲେ ମୋର ହିତ ହେବ, ଆପଣମାନେ ମୋତେ ସେହି ସରଳ ଶିକ୍ଷା ଦେଉଅଛନ୍ତି । ଯଦ୍ୟପି ମୁଁ ଏହି କଥାକୁ ଭଲ ଭାବରେ ବୁଝୁଛି, ତଥାପି ମୋ ମନକୁ ସନ୍ତୋଷ ମିଳୁନାହିଁ ॥ ୩ ॥ ଏବେ ଆପଣମାନେ ମୋ ପ୍ରାର୍ଥନା ଶୁଣନ୍ତୁ ଏବଂ ମୋ ଯୋଗ୍ୟତାନୁସାରେ ମୋତେ ଶିକ୍ଷା ଦିଅନ୍ତୁ । ମୁଁ ଉତ୍ତର ଦେଉଛି । ଏ ଅପରାଧ କ୍ଷମା କରନ୍ତୁ । ସାଧୁ ପୁରୁଷ ଦୁଃଖୀ ମନୁଷ୍ୟର ଦୋଷଗୁଣ ଗଣନ୍ତି ନାହିଁ ॥ ୪ ॥ ଦୋହା :—ପିତା ସ୍ୱର୍ଗରେ, ଶ୍ରୀସୀତାରାମ ବନରେ ଏବଂ ଆପଣମାନେ ଅଯୋଧ୍ୟାରେ ରାଜତ୍ୱ କରିବା ନିମନ୍ତେ ମୋତେ କହୁଅଛନ୍ତି ! ଏଥିରେ ଆପଣମାନେ ମୋର କଲ୍ୟାଣ ନିହିତ ବୋଲି ମନେ କରୁଛନ୍ତି କିମ୍ବା ଆପଣ–

ହିତ ହମାର ସିୟପତି ସେବକାଇଁ । ସୋ ହରି ଲୀହ୍ନ ମାତୁ କୁଟିଲାଇଁ ॥
ମୈଁ ଅନୁମାନି ଦୀଖ ମନ ମାହୀଁ । ଆନ ଉପାୟଁ ମୋର ହିତ ନାହୀଁ ॥୧॥
ସୋକ ସମାଜୁ ରାଜୁ କେହି ଲେଖେଁ । ଲଖନ ରାମ ସିୟ ବିନୁ ପଦ ଦେଖେ ॥
ବାଦି ବସନ ବିନୁ ଭୂଷନ ଭାରୂ । ବାଦି ବିରତି ବିନୁ ବ୍ରହ୍ମବିଚାରୂ ॥୨॥
ସରୁଜ ସରୀର ବାଦି ବହୁ ଭୋଗା । ବିନୁ ହରି ଭଗତି ଜାୟଁ ଜପ ଜୋଗା ॥
ଜାୟଁ ଜୀବ ବିନୁ ଦେହ ସୁହାଈ । ବାଦି ମୋର ସବୁ ବିନୁ ରଘୁରାଈ ॥୩॥
ଜାଉଁ ରାମ ପହିଁ ଆୟସୁ ଦେହୂ । ଏକହିଁ ଆଁକ ମୋର ହିତ ଏହୂ ॥
ମୋହି ନୃପ କରି ଭଲ ଆପନ ଚହହୂ । ସୋଉ ସନେହ ଜଡ଼ତା ବସ କହହୂ ॥୪॥

କୈକେଈ ସୁଅ କୁଟିଲମତି ରାମ ବିମୁଖ ଗତ ଲାଜ ।
ତୁହ୍ମ ଚାହତ ସୁଖୁ ମୋହବସ ମୋହି ସେ ଅଧମ କେଁ ରାଜ ॥୧୭୮॥

---

ସୀତା ପତିଙ୍କ ସେବାରେ କଲ୍ୟାଣ ମୋହର । ଜନନୀ କୁଟିଳ-ପଣେ ତାହା ନେଲା ହରି ॥
ମୁଁ ଅନୁମାନ ଦେଖୁଛି ଜଗତ ମଧ୍ୟରେ । ହିତ ମୋର ନାହିଁ ଅନ୍ୟ କେଉଁ ଉପାୟରେ ॥୧॥
କି ଲେଖାରେ ଗଣା ଏହି ରାଜ୍ୟ ଶୋକାସ୍ପଦ । ନ ଦେଖିଣ ରାମ ସୀତା ଲକ୍ଷ୍ମଣଙ୍କ ପଦ ॥
ବସନ ବିହୁନେ ବୃଥା ବିବିଧ ଭୂଷଣ । ବିନୁ ବଇରାଗ୍ୟ ବ୍ରହ୍ମ ଚିନ୍ତା ଅକାରଣ ॥୨॥
ରୋଗ-ରହିତ ଶରୀରେ ବୃଥା ବହୁ ଭୋଗ । ଶ୍ରୀ ହରିଙ୍କ ଭକ୍ତି ବିନା ବ୍ୟର୍ଥ ଜପ ଯୋଗ ॥
ନିଷ୍ପ୍ରୟୋଜନ ସୁନ୍ଦର ଦେହ ଜୀବ ବିନେ । ବୃଥା ମୋର ସବୁ ରଘୁନନ୍ଦନ ବିହୀନେ ॥୩॥
ଯିବି ରାମଙ୍କ ସମୀପେ, ଦିଅନ୍ତୁ ଆଦେଶ । କେବଳ ଏଥିରେ ମୋର କଲ୍ୟାଣ ଅଶେଷ ॥
ମୋତେ ନୃପ କରି ନିଜ ଭଲ ଯେ ଚାହୁଁଛ । ସ୍ନେହ-ଜଡ଼ତା-ବିବଶ ହୋଇ ତା' କହୁଛ ॥୪॥

କୈକେୟୀ-ତନୟ କୁଟିଳ-ହୃଦୟ ନିର୍ଲଜ୍ଜ ରାମ-ବିମୁଖ ।
ମୋ ପରି ପାମର ରାଜ୍ୟେ ଇଚ୍ଛା କର ମୋହବଶ ତୁମେ ସୁଖ ॥୧୭୮॥

---

ମାନଙ୍କର କୌଣସି ବଡ଼ କାମ ହେବ ବୋଲି ଆଶା କରୁଛନ୍ତି ? ॥ ୧୭୭ ॥

ଚୌପାଇ :—ସୀତାପତି ଶ୍ରୀରାମଙ୍କ ସେବା କରିବାରେ ହିଁ ମୋର କଲ୍ୟାଣ ନିହିତ । ମାତାର କୁଟିଳତା ତାହା ମୋଠାରୁ ଛଡ଼ାଇ ନେଲା । ମୁଁ ଆପଣା ମନରେ ଅନୁମାନ କରି ଦେଖି ନେଇଛି ଯେ, ଅନ୍ୟ କୌଣସି ଉପାୟରେ ମୋର କଲ୍ୟାଣ ନାହିଁ ॥ ୧ ॥ ଶ୍ରୀରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତାଙ୍କ ଚରଣ ଦେଖିବା ବିନା ଏହି ଶୋକ-ସମାଜର ରାଜତ୍ୱ କାହିଁରେ ଗଣା ? ବସ୍ତ୍ର ବିନା ଭୂଷଣଭାର ବୃଥା ଏବଂ ବୈରାଗ୍ୟ ବିନା ବ୍ରହ୍ମବିଚାର ନିଷ୍ଫଳ ॥ ୨ ॥ ରୁଗ୍ଣ ଶରୀର ନିମନ୍ତେ ନାନା ପ୍ରକାର ଭୋଗ ବ୍ୟର୍ଥ । ଶ୍ରୀହରିଙ୍କ ଭକ୍ତି ବିନା ଜପ ଓ ଯୋଗ ବ୍ୟର୍ଥ । ଜୀବନ ବିନା ସୁନ୍ଦର ଦେହ ମଧ୍ୟ ବ୍ୟର୍ଥ । ସେହିପରି ଶ୍ରୀରଘୁନାଥଙ୍କ ବିନା ମୋର ସବୁ କିଛି ବୃଥା ॥ ୩ ॥ ମୋତେ ଆଜ୍ଞା ଦିଅନ୍ତୁ—ମୁଁ ଶ୍ରୀରାମଙ୍କ ନିକଟକୁ ଯିବି । ଏଇଥିରେ ହିଁ ମୋ କଲ୍ୟାଣ । ଏହି ଏକମାତ୍ର ସିଦ୍ଧାନ୍ତ ମୋର ଅଟେ । ମୋତେ ରାଜା କରି ଆପଣମାନେ ଆପଣାର ହିତ ଯାହା ଇଚ୍ଛା

କହଉଁ ସାଁଚୁ ସବ ସୁନି ପତିଆହୂ । ଚାହିଅ ଧରମସୀଲ ନରନାହୂ ॥
ମୋହି ରାଜୁ ହଠି ଦେଇହହୁ ଜବହୀଁ । ରସା ରସାତଲ ଜାଇହି ତବହୀଁ ॥୧॥
ମୋହି ସମାନ କୋ ପାପ ନିବାସୂ । ଜେହି ଲଗି ସୀୟ ରାମ ବନବାସୂ ॥
ରାୟଁ ରାମ କହୁଁ କାନନୁ ଦୀହ୍ନା । ବିଛୁରତ ଗମନୁ ଅମରପୁର କୀହ୍ନା ॥୨॥
ମୈଁ ସଠୁ ସବ ଅନରଥ କର ହେତୂ । ବୈଠ ବାତ ସବ ସୁନଉଁ ସଚେତୂ ॥
ବିନୁ ରଘୁବୀର ବିଲୋକି ଅବାସୂ । ରହେ ପ୍ରାନ ସହି ଜଗ ଉପହାସୂ ॥୩॥
ରାମ ପୁନୀତ ବିଷୟ ରସ ରୂଖେ । ଲୋଲୁପ ଭୂମି ଭୋଗ କେ ଭୂଖେ ॥
କହଁ ଲଗି କହୌଁ ହୃଦୟ କଠିନାଈ । ନିଦରି କୁଲିସୁ ଜେହିଁ ଲହୀ ବଡ଼ାଈ ॥୪॥

କାରନ ତେଁ କାରଜୁ କଠିନ ହୋଇ ଦୋସୁ ନହିଁ ମୋର ।
କୁଲିସ ଅସ୍ଥି ତେଁ ଉପଲ ତେଁ ଲୋହ କରାଲ କଠୋର ॥୧୭୯॥

---

ସତ୍ୟ ମୁଁ କହୁଛି, ମଣ ବିଶ୍ୱାସ ବଚନ । ଧରମ-ଶୀଳ ନୃପତି ହେବା ପ୍ରୟୋଜନ ॥
ମୋତେ ହଠ କରି ରାଜ୍ୟ ଦେବ ଯେଉଁକ୍ଷଣି । ରସା ରସା-ତଳଗାମୀ ହେବ ସେହିକ୍ଷଣି ॥୧॥
ମୋ ସମାନ ଅନ୍ୟ କିଏ ଅଛୁ ପାପ-ରାଶି । ଯାହା ଲାଗି ସୀତା ରାମ ହେଲେ ବନବାସୀ ॥
ରାଜା ବନେ ପଠାଇଣ ରଘୁନନ୍ଦନଙ୍କୁ । ବିୟୋଗେ ଗମନ କଲେ ଅମରପୁରକୁ ॥୨॥
ଏ ସମସ୍ତ ଅନର୍ଥର କାରଣ ମୁଁ ଖଳ । ସଚେତେ ଶୁଣୁଛୁ ବସି ବୃତ୍ତାନ୍ତ ସକଳ ॥
ରଘୁନାୟକ-ବିହୀନ ବିଲୋକି ଆବାସ । ରହିଛି ପ୍ରାଣ ଜଗତେ ସହି ଉପହାସ ॥୩॥
ରାମ ପବିତ୍ର, ବିଷୟ-ରସ ବିରକତ । ଅଟେ ମୁଁ ଲୋଲୁପ ଭୂମି-ଭୋଗ-କ୍ଷୁଧାରତ ॥
କେତେ ବା କହିବି ନିଜ ହୃଦ କଠିନତା । ନିନ୍ଦିଣ କୁଳିଶ ଯେହୁ ଲଭିଛି ମାନ୍ୟତା ॥୪॥

କାରଣରୁ କାର୍ଯ୍ୟ କଠିନ ଅଟଇ ନାହିଁ କିଛି ଦୋଷ ମୋର ।
କୁଳିଶ ଅସ୍ଥିରୁ ଲୌହ ପାଷାଣରୁ ହୁଏ କରାଳ କଠୋର ॥୧୭୯॥

---

କରୁଅଛନ୍ତି, ତାହା ମଧ୍ୟ ଆପଣମାନେ ଜଡ଼ତା ବା ମୋହର ବଶବର୍ତ୍ତୀ ହୋଇ କରୁ-ଅଛନ୍ତି ॥ ୪ ॥ ଦୋହା :—କୈକେୟୀଙ୍କ ପୁତ୍ର, କୁଟିଳବୁଦ୍ଧି, ରାମବିମୁଖ ଓ ନିର୍ଲଜ୍ଜ ମୋ ପରି ଅଧମ ରାଜାର ରାଜତ୍ୱରେ ଆପଣମାନେ ଯାହା ସୁଖ ଚାହୁଁଅଛନ୍ତି, ତାହା ଆପଣମାନଙ୍କର ମୋହ ॥ ୧୭୮ ॥ ଚୌପାଇ :—ମୁଁ ସତ୍ୟ କହୁଛି । ଆପଣମାନେ ସବୁ ଶୁଣି ବିଶ୍ୱାସ କରନ୍ତୁ, ଧର୍ମଶୀଳର ହିଁ ରାଜା ହେବା ନ୍ୟାୟସଙ୍ଗତ । ଆପଣମାନେ ମୋତେ ଜବରଦସ୍ତି ରାଜ୍ୟ ଦେଲାମାତ୍ରେ ପୃଥିବୀ ପାତାଳରେ ପଶିଯିବ ॥ ୧ ॥ ମୋହର ହେତୁ ସୀତା ଓ ଶ୍ରୀରାମଙ୍କ ବନବାସ ହେଲା । ତେବେ ମୋ ପରି ପାପର ଗୃହ ଆଉ କିଏ ହେବ ? ରାଜା ଶ୍ରୀରାମଙ୍କୁ ବନବାସ ଦେଲେ ଏବଂ ତାଙ୍କର ବିରହ ମାତ୍ରେ ସ୍ୱୟଂ ସ୍ୱର୍ଗ ଗମନ କଲେ ॥୨॥ ଆଉ ମୁଁ ଶଠ ସବୁ ଅନର୍ଥର କାରଣ ହୋଇ ଚେତାରେ ବସି ରହି ସବୁ କଥା ଶୁଣୁଛି । ଶ୍ରୀ ରଘୁନାଥ-ବିହୀନ ଗୃହକୁ ଦେଖି ଏବଂ ଜଗତର ଉପହାସ ସବୁ ସହି ମଧ୍ୟ ଏ ପ୍ରାଣ ରହିଅଛି ॥୩॥ ଏହାର କାରଣ, ଏ ପ୍ରାଣ ଶ୍ରୀରାମଙ୍କ ସଦୃଶ ପବିତ୍ର ବିଷୟ-

କୈକେଈ ଭବ ତନୁ ଅନୁରାଗେ । ପାଓଁର ପ୍ରାନ ଅଘାଇ ଅଭାଗେ ॥
ଜୌଁ ପ୍ରିୟ ବିରହଁ ପ୍ରାନ ପ୍ରିୟ ଲାଗେ । ଦେଖବ ସୁନବ ବହୁତ ଅବ ଆଗେ ॥୧॥
ଲଖନ ରାମ ସିୟ କହୁଁ ବନୁ ଦୀନ୍ହା । ପଠଇ ଅମରପୁର ପତି ହିତ କୀନ୍ହା ॥
ଲୀନ୍ହ ବିଧବପନ ଅପଜସୁ ଆପୂ । ଦୀନ୍ହେଉ ପ୍ରଜହି ସୋକୁ ସଂତାପୂ ॥୨॥
ମୋହି ଦୀନ୍ହ ସୁଖୁ ସୁଜସୁ ସୁରାଜୂ । କୀନ୍ହ କୈକଈଁ ସବ କର କାଜୂ ॥
ଏହି ତେଁ ମୋର କାହ ଅବ ନୀକା । ତେହି ପର ଦେନ କହହୁ ତୁମ୍ହ ଟୀକା ॥୩॥
କୈକଇ ଜଠର ଜନମି ଜଗ ମାହୀଁ । ୟହ ମୋହି କହଁ କଛୁ ଅନୁଚିତ ନାହୀଁ ॥
ମୋରି ବାତ ସବ ବିଧିହିଁ ବନାଈ । ପ୍ରଜା ପାଁଚ କତ କରହୁ ସହାଈ ॥୪॥

---

କୈକେୟୀ-ଜାତ ଶରୀରେ କରି ଅନୁରାଗ । ହୁଅଇ ତୃପ୍ତ ପାମର ପ୍ରାଣ ହତଭାଗ୍ୟ ॥
ଯେବେ ପ୍ରିୟ ବିରହରେ ପ୍ରାଣ ପ୍ରିୟ ଲାଗେ । ଦେଖିବି ଶୁଣିବି ଏବେ ବହୁତ ମୁଁ ଆଗେ ॥୧॥
ଲକ୍ଷ୍ମଣ ରାମ ସୀତାଙ୍କୁ ବିପିନ ଦିଆଇ । ହିତ କଲା ସୁର-ପୁରେ ପତିଙ୍କି ପଠାଇ ॥
ସ୍ୱୟଂ ଅଯଶ ବୈଧବ୍ୟ ଦୁଃଖ ଆଦରିଲା । ପ୍ରଜାଙ୍କ ନିମନ୍ତେ ଶୋକ ସନ୍ତାପ ବାଣ୍ଟିଲା ॥୨॥
ମୋତେ ପ୍ରଦାନିଲା ସୁଖ ସୁଯଶ ସୁରାଜ୍ୟ । କଲା କେକୟ-ନନ୍ଦନୀ ସମସ୍ତଙ୍କ କାର୍ଯ୍ୟ ॥
ଏହାଠାରୁ ବଳି ଭଲ ହେବ କି ମୋହର । ରାଜଶ୍ରୀ ଦେବାକୁ ତୁମ୍ଭେ କହୁଛ ଆବର ॥୩॥
କୈକେୟୀ ଜଠରୁ ଜନ୍ମ ହୋଇ ଜଗତରେ । ଏହା କିଛି ଅନୁଚିତ ନୁହେ ମୋ ପକ୍ଷରେ ॥
ମୋ କାର୍ଯ୍ୟ ବିଧାତା କରି ଦେଇଛି ସାଧନ । ପ୍ରଜା ପଞ୍ଚ ସହାୟତା କେଉଁ ପ୍ରୟୋଜନ ॥୪॥

---

ରସ ପ୍ରତି ଆସକ୍ତ ନୁହେଁ । ଏ ଲୋଲୁପ ପ୍ରାଣ ଭୂମି ଓ ଭୋଗ ପ୍ରତି କ୍ଷୁଧାତୁର । ମୁଁ ମୋ ନିଜ ହୃଦୟର କଠୋରତା କେତେ ବୋଲି କ'ଣ କହିବି ? ଏହି ହୃଦୟ ବଜ୍ରକୁ ମଧ୍ୟ ତିରସ୍କାର କରି ବଡ଼ିମା ପାଇଛି ॥ ୪ ॥ ଦୋହା :—କାରଣରୁ କାର୍ଯ୍ୟ କଠିନତର ହୋଇଥାଏ, ଏଥିରେ ମୋର ଦୋଷ ନାହିଁ । ହାଡ଼ରୁ ବଜ୍ର ଓ ପଥରରୁ ଲୁହା ଅଧିକ ଭୟାନକ ଓ କଠୋର ହୋଇଥାଏ ॥ ୧୭୯ ॥ ଚୌପାଈ :—କୈକେୟୀଠାରୁ ଉତ୍ପନ୍ନ ଦେହ ପ୍ରତି ପ୍ରେମ ରଖିଥିବା ଏ ପାମର ପ୍ରାଣ ସଂପୂର୍ଣ୍ଣ ହତଭାଗ୍ୟ ! ଯଦି ପ୍ରିୟ ବିରହରେ ସୁଦ୍ଧା ଏ ପ୍ରାଣ ମୋତେ ପ୍ରିୟ ବୋଧ ହେଉଛି, ତେବେ ଏବେ ଆଗକୁ ତ ମୁଁ ବହୁତ୍‌କିଛି ଦେଖିବି ଓ ଶୁଣିବି ॥୧॥ କୈକେୟୀ ଲକ୍ଷ୍ମଣ, ଶ୍ରୀରାମ ଓ ଜାନକୀଙ୍କୁ ତ ବନବାସ ଦେଲା; ସ୍ୱର୍ଗକୁ ପଠାଇ ପତିଙ୍କ କଲ୍ୟାଣ ସାଧନ କଲା । ନିଜେ ବୈଧବ୍ୟ ଓ ଅପଯଶ ନେଲା, ପ୍ରଜାଙ୍କୁ ଶୋକ ଓ ସନ୍ତାପ ଦେଲା ॥ ୨ ॥ ଏବଂ ମୋତେ ସୁଖ, ସୁଯଶ ଓ ସୁରାଜ୍ୟ ଦେଇଦେଲା ! କୈକେୟୀ ସମସ୍ତଙ୍କ କାମ କରି ଦେଇଛି । ଏହାଠାରୁ ବଳି ଏବେ ମୋ ପାଇଁ ଆଉ ଭଲ କ'ଣ ହେବ ? ତାହା' ଉପରେ ବି ଆପଣମାନେ ମୋତେ ରାଜତିଲକ ଦେବାକୁ କହୁଅଛନ୍ତି ! ॥ ୩ ॥ କୈକେୟୀ ପେଟରୁ ଜନ୍ମ ଗ୍ରହଣ କରିଥିବାରୁ ଏହା ସବୁ ମୋ ନିମନ୍ତେ କିଛି ଅନୁଚିତ ନୁହେଁ । ମୋର ସବୁ କଥା ତ ବିଧାତା ଠିକ୍ କରି ସଜାଡ଼ି ଦେଇଛନ୍ତି । ତହିଁରେ ପୁଣି ପ୍ରଜା ଓ ଆପଣମାନେ ପାଞ୍ଚଲୋକ ମିଶି କାହିଁକି

ଗ୍ରହ ଗ୍ରହୀତ ପୁନି ବାତ ବସ ତେହି ପୁନି ବୀଛୀ ମାର ।
ତେହି ପିଆଇଅ ବାରୁନୀ କହହୁ କାହ ଉପଚାର ॥୧୮୦॥

କୈକଇ ସୁଅନ ଜୋଗୁ ଜଗ ଜୋଈ । ଚତୁର ବିରଂଚି ଦୀହ୍ନ ମୋହି ସୋଈ ॥
ଦସରଥ ତନୟ ରାମ ଲଘୁ ଭାଈ । ଦୀହ୍ନି ମୋହି ବିଧି ବାଦି ବଡ଼ାଈ ॥୧॥
ତୁହ୍ମ ସବ କହହୁ କଢ଼ାୱନ ଟୀକା । ରାୟ ରଜାୟସୁ ସବ କହଁ ନୀକା ॥
ଉତରୁ ଦେଉଁ କେହି ବିଧି କେହି କେହୀ । କହହୁ ସୁଖେନ ଜଥା ରୁଚି ଜେହୀ ॥୨॥
ମୋହି କୁମାତୁ ସମେତ ବିହାଈ । କହହୁ କହିହି କେ କୀହ୍ନ ଭଲାଈ ॥
ମୋ ବିନୁ କୋ ସଚରାଚର ମାହୀଁ । ଜେହି ସିୟ ରାମୁ ପ୍ରାନପ୍ରିୟ ନାହୀଁ ॥୩॥
ପରମ ହାନି ସବ କହଁ ବଡ଼ ଲାହୂ । ଅଦିନୁ ମୋର ନହିଁ ଦୂଷନ କାହୂ ॥
ସଂସୟ ସୀଲ ପ୍ରେମ ବସ ଅହହୂ । ସବୁଇ ଉଚିତ ସବ ଜୋ କଛୁ କହହୂ ॥୪॥

---

ଗ୍ରହ-ଉତ୍ପୀଡ଼ିତ ବାତରେ ଅଶକ୍ତ ତହିଁ ବୃଶ୍ଚିକ ଦଂଶିଛି ।
ତାହାକୁ ବାରୁଣି ପିଆଇଲେ ପୁଣି ଉପାୟ ଅଛି କି କିଛି ॥୧୮୦॥

କୈକେୟୀ ପୁତ୍ରର ଯୋଗ୍ୟ ଜଗତରେ ଯାହା । ଚତୁର ବିରଞ୍ଚି ଦେଖି ଦେଲେ ମୋତେ ତାହା ॥
ଦଶରଥଙ୍କ ତନୟ ରାମ ସାନ ଭାଇ । ବୃଥାରେ ବିଧାତା ଦେଲେ ମୋତେ ଏ ବଡ଼ାଇ ॥୧॥
ତୁମ୍ଭେ କରିବାକୁ କହ ରାଜଶ୍ରୀ ତିଳକ । ରାଜାଙ୍କ ଆଦେଶ, ପୁଣି ମତ ସମସ୍ତଙ୍କ ॥
କାହାକୁ କାହାକୁ ଦେବି ଉତ୍ତର କିପରି । କହ ସୁଖେ ଅଭିରୁଚି ଯାହାର ଯେପରି ॥୨॥
ପରିହରି ମୋତେ ମନ୍ଦ-ମତି ମାତା ସହ । ଭଲ କରିଗଲେ ବୋଲି କେ କହିବ କହ ॥
ମୋ ବିନା ସଚରାଚରେ ଆଉ କେ ଅଛନ୍ତି । ପ୍ରାଣପ୍ରିୟ ସୀତା-ରାମ ଯାହାକୁ ନୁହନ୍ତି ॥୩॥
ବଡ଼ ହାନି ସମସ୍ତଙ୍କ ଲାଭ ହୁଏ ଭାରି । ଅଦିନ ମୋହର, ନାହିଁ ଦୂଷଣ କାହାଙ୍କ ॥
ହୋଇଣ ସଂଶୟ-ଶୀଳ ସ୍ନେହ-ବଶୀଭୂତ । ଯାହା କିଛି କହ ସର୍ବେ ସବୁ ଉପଯୁକ୍ତ ॥୪॥

---

ସାହାଯ୍ୟ କରୁଅଛନ୍ତି ? ॥ ୪ ॥ ଦୋହା —ଯାହାକୁ ମନ୍ଦ ଗ୍ରହ ଗ୍ରାସ କରିଅଛି, ଯେ ବାୟୁ-ରୋଗପୀଡ଼ିତ ଏବଂ ତାକୁ ପୁଣି ଯଦି ବିଛା ଡଙ୍କ ମାରିଦିଏ, ଏପରି ଲୋକକୁ ଯଦି ମଦ ପିଆଇ ଦିଆଯାଏ, ତେବେ କୁହନ୍ତୁ ତ —ଏହା କିପରି ଚିକିତ୍ସା ? ॥ ୧୮୦ ॥
ଚୌପାଇ :—କୈକେୟୀର ପୁତ୍ର ନିମନ୍ତେ ସଂସାରରେ ଯାହା କିଛି ଯୋଗ୍ୟ ଥିଲା, ଚତୁର ବିଧାତା ମୋତେ ତାହା ସବୁ ଦେଇଦେଲେ । କିନ୍ତୁ 'ଦଶରଥଙ୍କ ପୁତ୍ର' ଓ 'ରାମଙ୍କ ସାନ ଭାଇ' ହେବାର ବଡ଼ିମା ବିଧାତା ମୋତେ ବୃଥାରେ ଦେଇଦେଲେ ॥ ୧ ॥ ଆପଣମାନେ ସମସ୍ତେ ମୋତେ ରାଜତିଲକ ଗ୍ରହଣ କରିବାକୁ କହୁଅଛନ୍ତି । ରାଜାଙ୍କ ଆଜ୍ଞା ସମସ୍ତଙ୍କ ନିମନ୍ତେ ହିତକର ! ମୁଁ କାହା କାହାକୁ କି କି ପ୍ରକାରେ ଉତ୍ତର ଦେବି ? ଯାହାକୁ ଯେମିତି ରୁଚିକର, ସେହିପରି ଆପଣମାନେ ସୁଖପୂର୍ବକ କୁହନ୍ତୁ ॥ ୨ ॥ ମୋ କୁମାତା କୈକେୟୀ ସମେତ ମୋତେ ଛାଡ଼ି ଆଉ କିଏ କହିବ—ଏ କାମ ଭଲ କରିଗଲୁ ବୋଲି ? କୁହନ୍ତୁ ତ । ଜଡ଼ଚେତନ ଜଗତରେ ମୋ ବିନା ଆଉ କିଏ ଅଛି, ଯାହାକୁ

ରାମ ମାତୁ ସୁଠି ସରଲଚିତ ମୋ ପର ପ୍ରେମୁ ବିସେଷି ।
କହଇ ସୁଭାଯଁ ସନେହ ବସ ମୋରି ଦୀନତା ଦେଖି ॥୧୮୧॥
ଗୁରୁ ବିବେକ ସାଗର ଜଗୁ ଜାନା । ଜିନ୍ହହି ବିସ୍ୱ କର ବଦର ସମାନା ॥
ମୋ କହଁ ତିଲକ ସାଜ ସଜ ସୋଊ । ଭଏଁ ବିଧି ବିମୁଖ ବିମୁଖ ସବୁ କୋଊ॥୧॥
ପରିହରି ରାମୁ ସୀୟ ଜଗ ମାହୀଁ । କୋଉ ନ କହିହି ମୋର ମତ ନାହୀଁ ॥
ସୋ ମୈଁ ସୁନବ ସହବ ସୁଖୁ ମାନୀ । ଅଂତହୁଁ କୀଚ ତହାଁ ଜହଁ ପାନୀ ॥୨॥
ଡରୁ ନ ମୋହି ଜଗ କହିହି କି ପୋଚୂ । ପରଲୋକହୁ କର ନାହିନ ସୋଚୂ ॥
ଏକଇ ଉର ବସ ଦୁସହ ଦବାରୀ । ମୋହି ଲଗି ଭେ ସିୟ ରାମୁ ଦୁଖାରୀ ॥୩॥

---

ରାମ-ମାତା ମୃଦୁ ସରଲ ସୁଚିତ୍ତ ବହୁତ ପ୍ରେମ ମୋ ପ୍ରତି ।
ସ୍ୱଭାବେ ମୋହର ଦୀନତା ଦେଖିଣ ସ୍ନେହ-ବିବଶ କହନ୍ତି ॥୧୮୧॥
ଗୁରୁ ବିବେକ-ସାଗର ବିଦିତ ଜଗତେ । ବିଶ୍ୱ ବରକୋଳି ସମ ଯାହାଙ୍କର ହସ୍ତେ ॥
ମୋ ପାଇଁ ତିଲକ ସାଜ ସାଜି ସେ ଅଛନ୍ତି । ବିଧି ବାମ ହେଲେ ବାମ ସମସ୍ତେ ହୁଅନ୍ତି ॥୧॥
ତେଜିଣ ରାମ ସୀତାଙ୍କୁ ବାକି ପୃଥିବୀରେ । କେବେ ନ କହିବ ମତ ନାହିଁ ମୋ ଏଥିରେ ॥
ଶୁଣିବି ସହିବି ମୁହିଁ ତାହା ସୁଖ ମାନି । ଅନ୍ତରୁ ତହିଁ କାଦୁଅ, ଯହିଁ ଥାଏ ପାଣି ॥୨॥
ଡର ନାହିଁ ଲୋକେ, ମୋର ହୋଇବ ଛି ଇଛି । ପରଲୋକର ମଧ୍ୟ ମୋ ଚିନ୍ତା ନାହିଁ କିଛି ॥
ଏକ ଦାବାନାଳ ଦହେ ହୃଦୟେ ବିଶେଷ । ମୋ ଲାଗି ଲଭିଲେ ରାମ ବଇଦେହୀ କ୍ଲେଶ ॥୩॥

---

ସୀତାରାମ ପ୍ରାଣସମ ପ୍ରିୟ ନୁହନ୍ତି ? ॥ ୩ ॥ ଯାହା ସବୁଠାରୁ ବଡ ହାନି, ତହିଁରେ ସମସ୍ତଙ୍କୁ ବେଶି ଲାଭ ଦେଖାଯାଉଛି । ମୋର ଦୁର୍ଦ୍ଦିନ ଆସି ପଡ଼ିଅଛି, ଏଥିରେ କାହାରି କୌଣସି ଦୋଷ ନାହିଁ । ଆପଣମାନେ ଯଶସ୍ୱୀ, ଶୀଳ ଓ ପ୍ରେମର ବଶୀଭୂତ ହୋଇ-ଥିବାରୁ ଯାହା କିଛି କହୁଅଛନ୍ତି, ସେ ସବୁ ଆପଣଙ୍କୁ ଉଚିତ ବୋଲି ବୋଧ ହେଉଛି ॥୪॥

ଦୋହା :—ଶ୍ରୀରାମଚନ୍ଦ୍ରଙ୍କ ମାତା ବଡ ସରଳହୃଦୟା ଏବଂ ମୋ ପ୍ରତି ତାଙ୍କର ବିଶେଷ ପ୍ରେମ । ଏଣୁ ମୋର ଦୈନ୍ୟ ଦେଖି ସେ ସ୍ୱାଭାବିକ ସ୍ନେହବଶତଃ ଏପରି କହୁଅଛନ୍ତି ॥୧୮୧॥

ଚୌପାଈ :—ଗୁରୁ ଜ୍ଞାନର ସମୁଦ୍ର, ଏହି କଥା ସାରା ସଂସାର ଜାଣେ । ତାଙ୍କ ପକ୍ଷରେ ଏ ଜଗତ ହାତ ପାପୁଲି ଉପରେ ଥୁଆ ବରକୋଳି ପରି । ସେ ମଧ୍ୟ ମୋ ନିମନ୍ତେ ରାଜତିଲକର ସାଜ ସଜାଡ଼ିଅଛନ୍ତି । ସତ୍ୟ କଥା, ବିଧାତା ବିପରୀତ ହେଲେ ସମସ୍ତେ ବିପରୀତ ହୋଇଯାଆନ୍ତି ॥ ୧ ॥ ଶ୍ରୀରାମ ଓ ସୀତାଙ୍କୁ ଛାଡି ଦେଲେ ଜଗତରେ ଆଉ କେହି କହିବେ ନାହିଁ ଯେ, ଏହି କାର୍ଯ୍ୟରେ ମୋର ସମ୍ମତି ନାହିଁ । ମୁଁ ତାହା ସୁଖପୂର୍ବକ ଶୁଣିବି ଓ ସହିବି । କାରଣ ଯେଉଁଠାରେ ପାଣି, ସେହିଠାରେ ଶେଷରେ କାଦୁଅ ଥାଏ ହିଁ ॥ ୨ ॥ ସଂସାର ମୋତେ ଖରାପ କହିବ, କହୁ; ସେଥି ନିମନ୍ତେ ମୋର ଡର ନାହିଁ କିମ୍ବା ପରଲୋକ ପାଇଁ ମୋର ମଧ୍ୟ ଚିନ୍ତା ନାହିଁ । ମୋର ହୃଦୟରେ କେବଳ ଗୋଟିଏ ଦାବାନଳ ଜଳୁଛି ଯେ, ମୋହର ହେତୁ ଶ୍ରୀସୀତାରାମ ଦୁଃଖୀ ହେଲେ ॥ ୩ ॥

ଜୀବନ ଲାହୁ ଲଖନ ଭଲ ପାୱା । ସବୁ ତଜି ରାମ ଚରନ ମନୁ ଲାୱା ॥
ମୋର ଜନମ ରଘୁବର ବନ ଲାଗୀ । ଝୂଠ କାହ ପଛିତାଉଁ ଅଭାଗୀ ॥୪॥

ଆପନି ଦାରୁନ ଦୀନତା କହଉଁ ସବହି ସିରୁ ନାଇ ।
ଦେଖେଁ ବିନୁ ରଘୁନାଥ ପଦ ଜିଅ କୈ ଜରନି ନ ଜାଇ ॥୧୮୨॥

ଆନ ଉପାଉ ମୋହି ନହିଁ ସୂଝା । କୋ ଜିଅ କୈ ରଘୁବର ବିନୁ ବୂଝା ॥
ଏକହିଁ ଆଁକ ଇହଇ ମନ ମାହୀଁ । ପ୍ରାତକାଲ ଚଲିହଉଁ ପ୍ରଭୁ ପାହୀଁ ॥୧॥
ଜଦ୍ୟପି ମୈଁ ଅନଭଲ ଅପରାଧୀ । ଭୈ ମୋହି କାରନ ସକଲ ଉପାଧୀ ॥
ତଦପି ସରନ ସନମୁଖ ମୋହି ଦେଖୀ । ଛମି ସବ କରିହହିଁ କୃପା ବିସେଷୀ ॥୨॥
ସୀଲ ସକୁଚ ସୁଠି ସରଲ ସୁଭାଊ । କୃପା ସନେହ ସଦନ ରଘୁରାଊ ॥
ଅରିହୁକ ଅନଭଲ କୀନ୍ହ ନ ରାମା । ମୈଁ ସିସୁ ସେବକ ଜଦ୍ୟପି ବାମା ॥୩॥

---

ଜୀବନର ଲାଭ ଭଲ ଲକ୍ଷ୍ମଣ ପାଇଲେ । ସବୁ ତେଜି ରାମ ପଦେ ମନ ଲଗାଇଲେ ॥
ମୋର ଜନ୍ମ ରଘୁବର ବନବାସ ଅର୍ଥେ । କି ଅନୁତାପ କରୁଛୁ ହତଭାଗା ବ୍ୟର୍ଥେ ॥୪॥
କହଇ ବୁଝାଇ ସମସ୍ତଙ୍କ ଆଗେ ଅତି ଦୀନତା ନିଜର ।
ନ ଦେଖିବା ଯାଏ ରଘୁବୀର ପଦ ନ ଯିବ ଜ୍ୱାଳା ହୃଦର ॥୧୮୨॥
ଇତର ଉପାୟ ମୋତେ ଦୃଶ୍ୟ ନ ହୁଅଇ । କିଏ ରଘୁବୀର ବିନା ହୃଦୟ ଜାଣଇ ॥
ଏହି ଏକ ମାତ୍ର ହୁଏ ନିଷ୍ପତ୍ତି ମନରେ । ପ୍ରଭୁଙ୍କ ପାଶେ ଗମିବି କାଲି ପ୍ରଭାତରେ ॥୧॥
ଯଦ୍ୟପି ମୁଁ ମନ୍ଦ-ମତି ଅଟେ ଅପରାଧୀ । ମୋର ହେତୁ ହେଲା ଏହି ସମସ୍ତ ଉପାଧି ॥
ତଥାପି ସମ୍ମୁଖେ ମୋତେ ଶରଣ ଦେଖିଣ । କରିବେ କୃପା ବିଶେଷ ସକଳ କ୍ଷମିଣ ॥୨॥
ସୁଦୟା ଶୀଳ ସଙ୍କୋଚ ସ୍ନେହର ମନ୍ଦିର । ଅତି ସରଳ-ସ୍ୱଭାବ ପ୍ରଭୁ ରଘୁବୀର ॥
ଅରିର ସୁଦ୍ଧା ଅନିଷ୍ଟ ନ କରନ୍ତି ରାମ । ମୁଁ ଅଟେ ଶିଶୁ ସେବକ ହୋଇଲେହେଁ ବାମ ॥୩॥

---

ଜୀବନର ଉତ୍ତମ ଲାଭ ତ ଲକ୍ଷ୍ମଣ ପାଇଲେ, ସବୁ କିଛି ତ୍ୟାଗ କରି ସେ ଶ୍ରୀରାମଙ୍କ ଚରଣଯୁଗଳରେ ମନ ଲଗାଇଲେ । ମୋର ଜନ୍ମ କେବଳ ଶ୍ରୀରାମଚନ୍ଦ୍ରଙ୍କ ବନବାସ ପାଇଁ ହୋଇଥିଲା । ମୁଁ ହତଭାଗ୍ୟ ମିଛଟାରେ ଅନୁତାପ କରୁଛି ॥୪॥ ଦୋହା:—ସମସ୍ତଙ୍କୁ ମୁଣ୍ଡ ନୁଆଁଇ ମୁଁ ନିଜ ଦାରୁଣ ଦୈନ୍ୟ କଥା କହୁଛି । ଶ୍ରୀ ରଘୁନାଥଙ୍କ ଚରଣ ଦର୍ଶନ ବିନା ମୋ ହୃଦୟର ଦାହ ଦୂର ହେବନାହିଁ ॥ ୧୮୨ ॥ ଚୌପାଇ :—ମୋତେ ଆଉ କୌଣସି ଉପାୟ ଦିଶୁନାହିଁ । ଶ୍ରୀରାମଙ୍କ ବିନା ମୋ ହୃଦୟର କଥା ଆଉ କିଏ ଜାଣିପାରିବ ? ମନ ମଧ୍ୟରେ ମୋର ଗୋଟିଏ ମାତ୍ର ସିଦ୍ଧାନ୍ତ—ମୁଁ (କାଲି) ପ୍ରାତଃକାଳରେ ପ୍ରଭୁ ଶ୍ରୀରାମଙ୍କ ନିକଟକୁ ଚାଲିଯିବି ॥ ୧ ॥ ଯଦ୍ୟପି ମୁଁ ମନ୍ଦ ଓ ଅପରାଧୀ ଏବଂ ମୋହରି ହେତୁ ଏ ସବୁ ଉପଦ୍ରବ ଘଟିଅଛି, ତଥାପି ଶ୍ରୀରାମ ଯେତେବେଳେ ଦେଖିବେ ଯେ, ମୁଁ ଶରଣ ପନ୍ନ ହେବା ନିମନ୍ତେ ସମ୍ମୁଖରେ ଆସି ଉପସ୍ଥିତ, ସେତେବେଳେ ସେ ମୋର ସମୁଦାୟ ଅପରାଧ କ୍ଷମା କରିଦେବେ ଏବଂ ମୋ ପ୍ରତି ବିଶେଷ କୃପା କରିବେ ॥ ୨ ॥

ତୁହ୍ମ ପୈ ପାଁଚ ମୋର ଭଲ ମାନୀ । ଆୟସୁ ଆସିଷ ଦେହୁ ସୁବାନୀ ॥
ଜେହିଁ ସୁନି ବିନୟ ମୋହି ଜନୁ ଜାନୀ । ଆୱହିଁ ବହୁରି ରାମୁ ରଜଧାନୀ ॥୪॥

ଜଦ୍ୟପି ଜନମୁ କୁମାତୁ ତେଁ ମୈଁ ସଠୁ ସଦା ସଦୋସ ।
ଆପନ ଜାନି ନ ତ୍ୟାଗିହହିଁ ମୋହି ରଘୁବୀର ଭରୋସ ॥୧୮୩॥

ଭରତ ବଚନ ସବ କହଁ ପ୍ରିୟ ଲାଗେ । ରାମ ସନେହ ସୁଧାଁ ଜନୁ ପାଗେ ॥
ଲୋଗ ବିୟୋଗ ବିଷମ ବିଷ ଦାଗେ । ମଂତ୍ର ସବୀଜ ସୁନତ ଜନୁ ଜାଗେ ॥୧॥
ମାତୁ ସଚିବ ଗୁର ପୁର ନର ନାରୀ । ସକଲ ସନେହଁ ବିକଲ ଭଏ ଭାରୀ ॥
ଭରତହି କହହିଁ ସରାହି ସରାହୀ । ରାମ ପ୍ରେମ ମୂରତି ତନୁ ଆହୀ ॥୨॥
ତାତ ଭରତ ଅସ କାହେ ନ କହହୂ । ପ୍ରାନ ସମାନ ରାମ ପ୍ରିୟ ଅହହୂ ॥
ଜୋ ପାୱଁରୁ ଅପନୀ ଜଡ଼ତାଈଁ । ତୁହ୍ମହି ସୁଗାଇ ମାତୁ କୁଟିଲାଈଁ ॥୩॥

---

ତୁମେ ମଧ ପଞ୍ଚ ମୋର ଭଲ ଏଥି ଜାଣି । ପ୍ରଦାନ କର ଆଦେଶ ଆଶିଷ ସୁବାଣୀ ॥
ଯେମନ୍ତ ବିନୟ ଶୁଣି ମୋତେ ଦାସ ମଣି । ଫେରିବେ ରାଜଧାନୀକୁ ରାମ ରଘୁମଣି ॥୪॥

ଯଦ୍ୟପି ଜାତ ମୁଁ କୁମାତା ଗରଭୁ ଶଠ, ଦୋଷୀଙ୍କ ନାୟକ ।
ଆପଣାର ମଣି ନ କରିବେ ତ୍ୟାଗ, ମୋତେ ଭରସା ରାମଙ୍କ ॥୧୮୩॥

ଭରତ ବାଣୀ ଲାଗିଲା ସମସ୍ତଙ୍କୁ ପ୍ରିୟ । ଆପ୍ଲାବିତ ରାମ-ସ୍ନେହ-ସୁଧା ରମଣୀୟ ॥
ବିୟୋଗ-ବିଷମ-ବିଷେ ଲୋକେ ଜଳିଥିଲେ । ସଞ୍ଜୀବନୀ ମନ୍ତ୍ର ଶୁଣି ଚେତା ବା ଲଭିଲେ ॥୧॥
ଜନନୀ ସଚିବ ଗୁରୁ ପୁର ନର ନାରୀ । ବିକଳ ହୋଇଲେ ସର୍ବେ ସ୍ନେହବଶ ଭାରି ॥
ଭରତଙ୍କୁ ପ୍ରଶଂସନ୍ତି କରିଣ ଆଦର । ରାମ-ପ୍ରେମ-ମୂର୍ତ୍ତି ତୁମ୍ଭେ ଧରି କଳେବର ॥୨॥
କିପାଁ ନ କହିବ ତାତ ଭରତ ଏସନ । ରଘୁପତି ପ୍ରିୟ ତୁମ୍ଭେ ଅଟ ପ୍ରାଣସମ ॥
ଆପଣା ଜଡ଼ ବୁଦ୍ଧିରେ ଯେ ପାମର ଅତି । ମାତା କୁଟିଳତା ଆରୋପିବ ତୁମ ପ୍ରତି ॥୩॥

---

ଶ୍ରୀ ରଘୁନାଥ ଶୀଳ, ସଂକୋଚ, ଅତି ସରଳ ସ୍ୱଭାବ, କୃପା ଓ ସ୍ନେହର ସଦନ । ସେ କଦାପି ଶତ୍ରୁର ସୁଦ୍ଧା ଅନିଷ୍ଟ କରି ନାହାନ୍ତି । ମୁଁ ତାଙ୍କ ପ୍ରତି ବାମ ହୋଇଥିଲେ ସୁଦ୍ଧା ତାଙ୍କ ଆଗରେ ଶିଶୁ ଓ ସେବକ ମାତ୍ର ॥ ୩ ॥ ଆପଣମାନେ ପାଞ୍ଚଜଣ ଏଇଥିରେ ମୋର କଲ୍ୟାଣ ଥିବାର ଅନୁଭବ କରି ସୁନ୍ଦର ବଚନରେ ମୋତେ ଆଜ୍ଞା ଓ ଆଶୀର୍ବାଦ ଦିଅନ୍ତୁ, ଯାହା ଫଳରେ ରାମଚନ୍ଦ୍ର ମୋ ବିନତି ଶୁଣି ଓ ମୋତେ ନିଜର ଦାସ ବୋଲି ଜାଣି ରାଜଧାନୀକୁ ଫେରି ଆସିବେ ॥ ୪ ॥ ଦୋହା '—ଯଦ୍ୟପି ମୁଁ କୁମାତାଠାରୁ ଜନ୍ମ ଲାଭ କରିଅଛି ଏବଂ ମୁଁ ଶଠ ଓ ସଦା ଦୋଷଯୁକ୍ତ, ତଥାପି ଶ୍ରୀରାମଙ୍କ ଉପରେ ମୋର ପୂର୍ଣ୍ଣ ଭରସା—ସେ ମୋତେ ଆପଣାର ଜାଣି ତ୍ୟାଗ କରିବେ ନାହିଁ ।" ॥ ୧୮୩ ॥ ଚୌପାଇ '—ଭରତଙ୍କ ବଚନ ସମସ୍ତଙ୍କୁ ଅତି ପ୍ରିୟ ବୋଧ ହେଲା । ସତେ ଅବା ଶ୍ରୀରାମଙ୍କ ପ୍ରେମାମୃତରେ ତାହା ସରସର ହୋଇଛି କି ! ଶ୍ରୀରାମ ବିରହ ରୂପକ ଭୟାନକ ବିଷଯୋଗେ ସମସ୍ତେ ଜଳିଯାଇଥିଲେ । ସେମାନେ ସତେ ଯେପରି ବୀଜ ସହିତ ମନ୍ତ୍ରକୁ

ସୋ ସଠ କୋଟିକ ପୁରୁଷ ସମେତା । ବସିହିଁ କଲପ ସତ ନରକ ନକେତା ॥
ଅହି ଅଘ ଅବଗୁନ ନହିଁ ମନି ଗହଈ । ହରଇ ଗରଲ ଦୁଖ ଦାରିଦ ଦହଈ ॥୩॥

ଅବସି ଚଲିଅ ବନ ରାମୁ ଜହଁ ଭରତ ମଂତ୍ରୁ ଭଲ କୀହ୍ନ ।
ସୋକ ସିଂଧୁ ବୂଡ଼ତ ସବହି ତୁହ୍ମ ଅବଲଂବନୁ ଦୀହ୍ନ ॥୧୮୪॥

ଭା ସବ କେଁ ମନ ମୋଦୁ ନ ଥୋରା । ଜନୁ ଘନ ଧୁନି ସୁନି ଚାତକ ମୋରା ॥
ଚଲତ ପ୍ରାତ ଲଖି ନିରନଉ ନୀକେ । ଭରତୁ ପ୍ରାନପ୍ରିୟ ଭେ ସବ ହୀ କେ ॥୧॥
ମୁନିହି ବଂଦି ଭରତହି ସିରୁ ନାଈ । ଚଲେ ସକଲ ଘର ବିଦା କରାଈ ॥
ଧନ୍ୟ ଭରତ ଜୀବନୁ ଜଗ ମାହୀଁ । ସୀଲୁ ସନେହୁ ସରାହତ ଜାହୀଁ ॥୨॥

---

ସେ ନର ପାପିଷ୍ଠ କୋଟି ପୁରୁଷ ସଙ୍ଗରେ । ନିବସିବ କଳ୍ପ ଶତ ନରକ ଗୃହରେ ॥
ଫଣୀ ଅଘ ଅବଗୁଣ ମଣି ନ ଘେନଇ । ହରଇ ଗରଳ, ଦୁଃଖ-ଦାରିଦ୍ର୍ୟ ଦହଇ ॥୪॥

ଚାଲ ନିଶ୍ଚେ ବନେ ରାମ ସନ୍ନିଧାନେ, ଭଲ ବିଚାରିଲ ମତ ।
ଶୋକ-ସିନ୍ଧୁ ମଧ୍ୟେ ବୁଡନ୍ତେ ସରବେ ଆଶ୍ରୟ ଦେଲ, ଭରତ ॥୧୮୪॥

ଲଭିଲେ ହୃଦୟେ ସର୍ବେ ଅପାର ସନ୍ତୋଷ । ଚାତକ ମୟୂର ଯେସନ୍ତେ ଶୁଣି ଘନ ଘୋଷ ॥
ପ୍ରଭାତ ଗମନ ଶୁଣି ନିର୍ଣ୍ଣୟ ଉତ୍ତମ । ଲାଗିଲେ ଭରତ ସମସ୍ତଙ୍କୁ ପ୍ରାଣ ସମ ॥୧॥
ମୁନିଙ୍କୁ ବନ୍ଦି ପ୍ରଣାମ କରି ଭରତଙ୍କୁ । ଗମିଲେ ବିଦାୟ ହୋଇ ସକଳେ ଗୃହକୁ ॥
ଧନ୍ୟ ଭରତ ଜୀବନ ଜଗତ ମଧ୍ୟରେ । ଶୀଳ ସ୍ନେହ ପ୍ରଶଂସିଣ ଯାଆନ୍ତି ପଥରେ ॥୨॥

---

ଶୁଣିବା ମାତ୍ରେ ଚେଇଁ ଉଠିଲେ ॥ ୧ ॥ ମାତା, ମନ୍ତ୍ରୀ, ଗୁରୁ, ନଗରର ନରନାରୀ ଆଦି ସମସ୍ତେ ସ୍ନେହ ହେତୁ ବ୍ୟାକୁଳ ହୋଇଉଠିଲେ । ସମସ୍ତେ ଭରତଙ୍କ ପ୍ରଶଂସା କରି କରି କହୁଥା'ନ୍ତି—"ତୁମର ଶରୀର ଶ୍ରୀରାମ-ପ୍ରେମର ସାକ୍ଷାତ ପ୍ରତିମୂର୍ତ୍ତି ॥୨॥ ହେ ବାପ ଭରତ! ତୁମେ ଏପରି କାହିଁକି ନ କହନ୍ତ ? ଶ୍ରୀରାମଙ୍କୁ ତୁମେ ପ୍ରାଣସମ ପ୍ରିୟ । ଯେଉଁ ନୀଚ ଆପଣା ମୂର୍ଖତାବଶତଃ ମାତା କୈକେୟୀଙ୍କ କୁଟିଳତାକୁ ନେଇ ତୁମ ଉପରେ ସନ୍ଦେହ କରିବ, ସେହି ଦୁଷ୍ଟ କୋଟି କୋଟି (ପୂର୍ବ) ପୁରୁଷଙ୍କ ସମେତ ଶହେ କଳ୍ପଯାଏ ନର୍କରେ ଯାଇ ବାସ କରିବ । ସାପର ପାପ ଓ ଅବଗୁଣ ତାହାର ମଣି ଗ୍ରହଣ କରେନାହିଁ । ପକ୍ଷାନ୍ତରରେ ତାହା ବିଷକୁ ହରଣ କରନ୍ତିଏ ଏବଂ ଦୁଃଖ ତଥା ଦାରିଦ୍ର୍ୟକୁ ଭସ୍ମ କରନ୍ତିଏ ॥ ୩-୪ ॥ ଦୋହା —ହେ ଭରତ ! ଶ୍ରୀରାମ ଯେଉଁଠି ଅଛନ୍ତି, ସେହି ବନକୁ ଅବଶ୍ୟ ଚାଲ । ତୁମେ ଅତି ଉତ୍ତମ ମନ୍ତ୍ରଣା ସ୍ଥିର କଲ । ଶୋକ-ସମୁଦ୍ରରେ ନିମଗ୍ନ ସମସ୍ତ ଲୋକଙ୍କୁ ତୁମେ ବଡ ଆଶ୍ରୟ ଦେଲ ।" ॥ ୧୮୪ ॥ ଚୌପାଈ —ସମସ୍ତଙ୍କ ମନରେ କମ ଆନନ୍ଦ ହେଲନାହିଁ । ମେଘଗର୍ଜନ ଶୁଣି ଚାତକ ଓ ମୟୂର ଆନନ୍ଦିତ ହେଉଅଛନ୍ତି ଅବା ! ପରଦିନ ପ୍ରାତଃ କାଳରେ ଅରଣ୍ୟ-ଯାତ୍ରା ହେବ । ଭରତଙ୍କର ଏହି ସୁନ୍ଦର ନିଷ୍ପତ୍ତି ବିଷୟରେ ସମସ୍ତେ ଅବଗତ ହୋଇଗଲେ । ତେଣୁ ଭରତ ସମସ୍ତଙ୍କର ପ୍ରାଣପ୍ରିୟ ହୋଇଗଲେ ॥ ୧ ॥ ମୁନି ବଶିଷ୍ଠଙ୍କୁ ବନ୍ଦନା କରି ଏବଂ ଭରତଙ୍କୁ

କହହିଁ ପରସପର ଭା ବଡ଼ କାଜୂ । ସକଲ ଚଲେଁ କର ସାଜହିଁ ସାଜୂ ॥
ଜେହି ରାଖହିଁ ରହୁ ଘର ରଖଵାରୀ । ସୋ ଜାନଇ ଜନୁ ଗରଦନି ମାରୀ ॥୩॥
କୋଉ କହ ରହନ କହିଅ ନହିଁ କାହୂ । କୋ ନ ଚହଇ ଜଗ ଜୀବନ ଲାହୂ ॥୪॥
ଜରଉ ସୋ ସଂପତି ସଦନ ସୁଖୁ ସୁହୃଦ ମାତୁ ପିତୁ ଭାଇ ।
ସନମୁଖ ହୋତ ଜୋ ରାମ ପଦ କରୈ ନ ସହସ ସହାଇ ॥୧୮୫॥
ଘର ଘର ସାଜହିଁ ବାହନ ନାନା । ହରଷୁ ହୃଦୟଁ ପରଭାତ ପୟାନା ॥
ଭରତ ଜାଇ ଘର କୀହ୍ନ ବିଚାରୂ । ନଗରୁ ବାଜି ଗଜ ଭବନ ଭଁଡ଼ାରୂ ॥୧॥
ସଂପତି ସବ ରଘୁପତି କୈ ଆହୀ । ଜୌଁ ବିନୁ ଜତନ ଚଲୌଁ ତଜି ତାହୀ ॥
ତୌ ପରିନାମ ନ ମୋରି ଭଲାଈ । ପାପ ସିରୋମନି ସାଇଁ ଦୋହାଈ ॥୨॥

---

କହି କହି ପରସ୍ପରେ ହେଲା ବଡ଼ କାର୍ଯ୍ୟ । ସଜାଇବାକୁ ଲାଗିଲେ ସର୍ବେ ଯାତ୍ରା ସାଜ ॥
ଗୃହ ରକ୍ଷା କରିବାକୁ ଯାହାକୁ ରଖନ୍ତି । ବେକ କଟିଗଲା ପରି ସେ ମନେ କରନ୍ତି ॥୩॥
କେ କହେ, ନ କୁହ କା'ରେ ରହିବା ନିମନ୍ତେ । କିଏ ଜୀବନର ଲାଭ ନ ଚାହେଁ ଜଗତେ ॥୪॥
ଜଳୁ ସେ ସମ୍ପଦ, ସଦନ, ସୁହୃଦ, ମାତା, ପିତା, ଭ୍ରାତା ସୁଖ ।
ସହର୍ଷେ ସାହାଯ୍ୟ ନ କରନ୍ତି ଯେହୁ ହେବାରେ ରାମ ସମ୍ମୁଖ ॥୧୮୫॥
ଭବନେ ଭବନେ ନାନା ବାହନ ସାଜନ୍ତି । ପ୍ରଭାତ ଗମନ ଶୁଣି ହରଷ ହୁଅନ୍ତି ॥
ଭରତ ଗୃହେ ଯାଇଣ କଲେ ବିଚାର । ନଗର ଗଜ ତୁରଙ୍ଗ ଭବନ ଭଣ୍ଡାର ॥୧॥
ସମ୍ପତ୍ତି ସକଳ ରଘୁପତିଙ୍କ ଅଟଇ । ଯେବେ ନ ସାଇତି ତାହା ତେଜିଣ ଚଳଇ ॥
ତେବେ ପରିଣାମ ମୋର ଭଲ ନ ହୋଇବ । ପାପ-ଶିରୋମଣି ସ୍ୱାମିଦ୍ରୋହ ଯେ ଲାଗିବ ॥୨॥

---

ମୁଣ୍ଡ ନୁଆଁଇ ସମସ୍ତ ଲୋକ ଆପଣା ଆପଣା ଘରକୁ ଚାଲିଲେ । "ଜଗତରେ ଭରତଙ୍କ ଜୀବନ ଧନ୍ୟ !" ଏହି ରୂପେ ସମସ୍ତେ କଥାବାର୍ତ୍ତା ହୋଇ ଯାଉଥା'ନ୍ତି ଏବଂ ତାଙ୍କର ଚରିତ୍ର ଓ ସ୍ନେହର ପ୍ରଶଂସା କରି କରି ଯାଉଥା'ନ୍ତି ॥ ୨ ॥ ପରସ୍ପର ମଧ୍ୟରେ କଥାବାର୍ତ୍ତା ହେଉଥା'ନ୍ତି, "ବଡ଼ କାମ ଗୋଟାଏ ହେଲା ।" ସମସ୍ତେ ଯିବା ପାଇଁ ଆୟୋଜନ କରିବାକୁ ଲାଗିଲେ । ଯାହାକୁ ସୁଦ୍ଧା ଘର ଦେଖାଦେଖି କରିବା ନିମନ୍ତେ 'ରହ' ବୋଲି କହୁଥା'ନ୍ତି, ତାହାର ବେକ କଟିଗଲା ପରି ସେ ମନେ କରୁଥାଏ ॥ ୩ ॥ କେହି କେହି କହୁଥା'ନ୍ତି, "ଘରେ ରହିବା ନିମନ୍ତେ କାହାରିକୁ କୁହ ନାହିଁ, ଜଗତରେ ଜୀବନର ଲାଭ କିଏ ନ ଚାହେଁ ?" ॥ ୪ ॥ ଦୋହା :—ଯେଉଁ ସମ୍ପତ୍ତି, ଗୃହ ସୁଖ, ମିତ୍ର, ମାତା, ପିତା ଓ ଭ୍ରାତା ଶ୍ରୀରାମଙ୍କ ଚରଣଯୁଗଳର ସମ୍ମୁଖୀନ ହେବାରେ କୌଣସି ବ୍ୟକ୍ତିକୁ ହସି ହସି ସହାୟତା ନ କରେ, ସେହି ସମ୍ପତ୍ତି ଆଦି ଜଳିଯାଉ ॥ ୧୮୫ ॥ ଚୌପାଇ :- ଘରେ ଘରେ ଲୋକମାନେ ବିବିଧ ବାହନ ସଜାଉଥା'ନ୍ତି । କାଲି ସକାଳେ ଯିବାକୁ ହେବ, ଏଥି ନିମନ୍ତେ ହୃଦୟରେ ଅପାର ହର୍ଷ ଜାତ ହେଉଥାଏ । ଭରତ ଘରକୁ ଯାଇ ବିଚାର କଲେ—"ନଗର, ଅଶ୍ୱ, ହସ୍ତୀ, ପ୍ରାସାଦ, କୋଷ ଆଦି ସମସ୍ତ ସମ୍ପତ୍ତି

କରଇ ସ୍ୱାମି ହିତ ସେବକୁ ସୋଈ । ଦୂଷନ କୋଟି ଦେଇ କିନ କୋଈ ॥
ଅସ ବିଚାରି ସୁଚି ସେବକ ବୋଲେ । ଜେ ସପନେହୁଁ ନିଜ ଧରମ ନ ଡୋଲେ ॥୩॥
କହି ସବୁ ମରମୁ ଧରମୁ ଭଲ ଭାଷା । ଜୋ ଜେହି ଲାୟକ ସୋ ତେହିଁ ରାଖା ॥
କରି ସବୁ ଜତନୁ ରାଖି ରଖୱାରେ । ରାମ ମାତୁ ପହିଁ ଭରତୁ ସିଧାରେ ॥୪॥

ଆରତ ଜନନୀ ଜାନି ସବ ଭରତ ସନେହ ସୁଜାନ ।
କହେଉ ବନାୱନ ପାଲକୀଁ ସଜନ ସୁଖାସନ ଜାନ ॥୧୮୬॥

ଚକ୍କ ଚକ୍କି ଜିମି ପୁର ନର ନାରୀ । ଚହତ ପ୍ରାତ ଉର ଆରତ ଭାରୀ ॥
ଜାଗତ ସବ ନିସି ଭୟଉ ବିହାନା । ଭରତ ବୋଲାଏ ସଚିବ ସୁଜାନା ॥୧॥
କହେଉ ଲେହୁ ସବ ତିଲକ ସମାଜୂ । ବନହିଁ ଦେବ ମୁନି ରାମହିଁ ରାଜୂ ॥
ବେଗି ଚଲହୁ ସୁନି ସଚିବ ଜୋହାରେ । ତୁରତ ତୁରଗ ରଥ ନାଗ ସଁୱାରେ ॥୨॥

---

ଯେ ସ୍ୱାମୀହିତ ସାଧଇ ସୁସେବକ ସେହି । କୋଟି ଦୂଷଣ କାହିଁକି ନ ଲଗାଉ କେହି ॥
ଏହା ଭାବି ଡକାଇଲେ ସେବକ ସବୁଜ । ସ୍ୱପ୍ନେହେଁ ସ୍ୱଧର୍ମୁ ନ ହୁଅନ୍ତି ଯେ ସ୍ଖଳିତ ॥୩॥
ସମସ୍ତ ପ୍ରକାର ଧର୍ମ ମରମ ଭାଷିଣ । ଯେ ଯଥାଯୋଗ୍ୟ ତାହାଙ୍କୁ ସେ ସ୍ଥାନେ ରଖିଣ ॥
ସବୁ ସୁଯତନ କରି ରକ୍ଷକ ରଖିଲେ । ରାମ ମାତାଙ୍କ ସମୀପେ ଭରତ ଗମିଲେ ॥୪॥

ସକଳ ଜନନୀ ଆର୍ତ୍ତିବଶ ଜାଣି ସ୍ନେହ-ପ୍ରବୀଣ ଭରତ ।
କହିଲେ, ସଜାଅ ପାଲିଙ୍କି ସୁଖଦ ଆସନ ଯାନ ସମସ୍ତ ॥୧୮୬॥

ଚକୁଆ ଚକୋଇ ପରି ପୁର ନରନାରୀ । ଚାହାନ୍ତି ପ୍ରାତଃକାଳକୁ ଆରତରେ ଭାରି ॥
ସାରା ନିଶି ଜାଗରଣେ ହୋଇଲା ପ୍ରଭାତ । ଭରତ ଡକାଇ ଆଣି ନିପୁଣ ଅମାତ୍ୟ ॥୧॥
କହିଲେ, ନିଅ ସକଳ ଅଭିଷେକ ସାଜ । ବିପିନେ ରାମଙ୍କୁ ରାଜ୍ୟ ଦେବେ ମୁନିରାଜ ॥
ବେଗି ଚାଲ, ଶୁଣି ମନ୍ତ୍ରୀ ପ୍ରଣାମ କରିଲେ । ତଞ୍ଚଳ ତୁରଙ୍ଗ ଗଜ ରଥ ସଜାଇଲେ ॥୨॥

---

ଶ୍ରୀ ରଘୁନାଥଙ୍କର । ଯଦି ଏ ସବୁର ବ୍ୟବସ୍ଥା ନ କରି ଏମିତି ଛାଡ଼ି ଚାଲିଯିବି, ତେବେ ପରିଣାମରେ ମୋର ମଙ୍ଗଳ ନାହିଁ । କାରଣ ସ୍ୱାମିଦ୍ରୋହ ସମସ୍ତ ପାପର ଶିରୋମଣି ॥୧-୨॥ କୋଟି ଦୋଷ କେହି ଦେଉ ପଛକେ, ସେହି ହେଉଛି ପ୍ରକୃତ ସେବକ, ଯେ ସ୍ୱାମୀର ହିତ କରେ । ଏହିପରି ବିଚାର କରି ଭରତ କେତେକ ବିଶ୍ୱସ୍ତ ସେବକଙ୍କୁ ଡକାଇଲେ, ଯେଉଁମାନେ କି ସ୍ୱପ୍ନରେ ସୁଦ୍ଧା କେବେ ଧର୍ମମାର୍ଗରୁ ବିଚଳିତ ହୋଇ ନ ଥିଲେ ॥ ୩ ॥ ଭରତ ସେ ସମସ୍ତଙ୍କୁ ସମସ୍ତ ରହସ୍ୟ ବୁଝାଇ ପୁଣି ଉତ୍ତମ ଧର୍ମ କହିଲେ ଏବଂ ପ୍ରତ୍ୟେକଙ୍କୁ ଯଥାଯୋଗ୍ୟ କର୍ମରେ ନିଯୁକ୍ତ କରିଦେଲେ । ସମସ୍ତ ବ୍ୟବସ୍ଥା ସହ ରକ୍ଷକଗଣଙ୍କୁ ନିଯୁକ୍ତ କରି ଭରତ ରାମମାତା କୌଶଲ୍ୟାଙ୍କ ନିକଟକୁ ଗଲେ ॥ ୪ ॥ ଦୋହା :—ସ୍ନେହସୁଜ୍ଞ ଭରତ ସମସ୍ତ ମାତାଙ୍କୁ ଶୋକାର୍ତ୍ତ ଥିବାର ଜାଣି ସେମାନଙ୍କ ସକାଶେ ପାଲିଙ୍କି ପ୍ରସ୍ତୁତ ଓ ସୁଖାସନ ଯାନ ସଜ୍ଜିତ କରିବା ନିମନ୍ତେ ସେବକମାନଙ୍କୁ କହିଲେ ॥ ୧୮୬ ॥ ଚୌପାଈ :—ନଗରର ନରନାରୀ ଚକ୍ରବାକ-ଚକ୍ରବାକୀଙ୍କ ପରି ହୃଦୟରେ ଅତ୍ୟନ୍ତ

ଅରୁଂଧତୀ ଅରୁ ଅଗିନି ସମାଊ । ରଥ ଚଢ଼ି ଚଲେ ପ୍ରଥମ ମୁନିରାଊ ॥
ବିପ୍ରବୃନ୍ଦ ଚଢ଼ି ବାହନ ନାନା । ଚଲେ ସକଲ ତପ ତେଜ ନିଧାନା ॥୩॥
ନଗର ଲୋଗ ସବ ସଜି ସଜି ଜାନା । ଚିତ୍ରକୂଟ କହଁ କୀହ୍ନ ପୟାନା ॥
ସିବିକା ସୁଭଗ ନ ଜାହିଁ ବଖାନୀ । ଚଢ଼ି ଚଢ଼ି ଚଲତ ଭଈ ସବ ରାନୀ ॥୪॥
ସୌଂପି ନଗର ସୁଚି ସେବକନି ସାଦର ସକଲ ଚଲାଇ ।
ସୁମିରି ରାମ ସିୟ ଚରନ ତବ ଚଲେ ଭରତ ଦୋଊ ଭାଇ ॥୧୮୭॥
ରାମ ଦରସ ବସ ସବ ନର ନାରୀ । ଜନୁ କରି କରିନି ଚଲେ ତକି ବାରୀ ॥
ବନ ସିୟ ରାମୁ ସମୁଝି ମନ ମାହୀଁ । ସାନୁଜ ଭରତ ପୟାଦେହିଁ ଜାହୀଁ ॥୧॥

---

ଅରୁନ୍ଧତୀ, ଅଗ୍ନିହୋତ୍ର ସାମଗ୍ରୀ ଘେନିଣ । ପ୍ରଥମେ ଚଳିଲେ ମୁନି ସ୍ୟନ୍ଦନେ ଚଢ଼ିଣ ॥
ବିପ୍ରବୃନ୍ଦ ଚଢ଼ି ଚଢ଼ି ନାନା ବାହନରେ । ତପ-ତେଜ-ପୁଞ୍ଜ ସର୍ବେ ଗମିଲେ ପଛରେ ॥୩॥
ନଗର ଲୋକ ସକଳେ ସାଜି ସାଜି ଯାନ । ଚିତ୍ରକୂଟ ଅଭିମୁଖେ କଲେ ପ୍ରସ୍ଥାନ ॥
ରୁଚିର ପାଲିଙ୍କି ଶୋଭା ନ ହୁଏ ବଖାଣି । ଚଢ଼ି ଚଢ଼ି ବଜେ ହେଲେ ସମୁଦାୟ ରାଣୀ ॥୪॥
ସମର୍ପି ନଗର ଶୁଚି ସେବକଙ୍କୁ ପ୍ରେମେ ସମାଜ ଚଳାଇ ।
ସୀତା ରାମପଦ ଚିନ୍ତି ଯାତ୍ରାରମ୍ଭ କଲେ ଭ୍ରାତ ବେନି ଭାଇ ॥୧୮୭॥
ରାମ ଦରଶନ ହେତୁ ସର୍ବେ ନରନାରୀ । ଚଳିଲେ କରି-କରିଣୀ ଯେସନେ ତୃଷ୍ଣି ବାରି ॥
ବନେ ରାମ ବଇଦେହୀ ବିଚାରି ମନରେ । ଅନୁଜ ସହ ଭରତ ଚାଲନ୍ତି ପଦ୍ୟରେ ॥୧॥

---

ଦୁଃଖିତ ହୋଇ ପ୍ରାତଃକାଳ ହେବାକୁ ରାହିଁ ବସିଥାଆନ୍ତି । ସାରା ରାତି ଉଜାଗର ରହିବା ପରେ ସକାଳ ହୋଇଗଲା । ଭରତ ଚତୁର ମନ୍ତ୍ରୀମାନଙ୍କୁ ଡକାଇଲେ ॥୧॥ ଏବଂ କହିଲେ, "ରାଜ୍ୟାଭିଷେକର ସମସ୍ତ ସାମଗ୍ରୀ ନେଇ ଚାଲ । ବନରେ ମୁନି ବଶିଷ୍ଠ ଶ୍ରୀରାମଙ୍କୁ ରାଜ୍ୟ ଦେବେ । ଶୀଘ୍ର ଚାଲ ।" ଏହା ଶୁଣି ମନ୍ତ୍ରୀମାନେ ବନ୍ଦନା କଲେ ଏବଂ ତୁରନ୍ତ ଅଶ୍ୱ, ହସ୍ତୀ ଓ ରଥ ସୁସଜ୍ଜିତ କରିଦେଲେ ॥ ୨ ॥ ସର୍ବପ୍ରଥମେ ମୁନିରାଜ ବଶିଷ୍ଠ ଅରୁନ୍ଧତୀ ଓ ସମସ୍ତ ଯଜ୍ଞ ସାମଗ୍ରୀ ସହ ରଥାରୂଢ ହୋଇ ଚଳିଲେ । ତତ୍ପରେ ତପସ୍ୟା ଓ ତେଜର ଭଣ୍ଡାର ବ୍ରାହ୍ମଣ ସମୂହ ଅନେକ ବାହନ ଉପରେ ଚଢ଼ି ଚଳିଲେ ॥ ୩ ॥ ନଗରର ସମସ୍ତ ଲୋକ ରଥ ସବୁକୁ ସଜାଇ ଚିତ୍ରକୂଟକୁ ଚଳିଲେ । ପାଲିଙ୍କିମାନଙ୍କର ସୌନ୍ଦର୍ଯ୍ୟର ବର୍ଣ୍ଣନା କରାଯାଇ ନ ପାରେ । ଏହିପରି ସୁଶୋଭିତ ପାଲିଙ୍କିମାନଙ୍କରେ ରାଣୀମାନେ ଚଢ଼ି ଚଳିଲେ ॥ ୪ ॥ ଦୋହା :—ବିଶ୍ୱାସପାତ୍ର ସେବକମାନଙ୍କୁ ନଗର-ଭାର ସମର୍ପଣ କରିବା ପରେ ସମସ୍ତଙ୍କୁ ଆଦର ସହକାରେ ବନକୁ ପଠାଇ ଶ୍ରୀ ସୀତାରାମଙ୍କ ଚରଣ-କମଳ ଧ୍ୟାନ-ପୂର୍ବକ ଭରତ ଶତ୍ରୁଘ୍ନ ଦୁଇ ଭାଇ ଚଳିଲେ ॥ ୧୮୭ ॥ ଚୌପାଇ :—ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନର ଅନନ୍ୟଲାଳସାରେ ସମସ୍ତ ନରନାରୀ ଏପରି ଚଳିଯାଉଥା'ନ୍ତି, ବୋଧ ହୁଏ ସତେ ଅବା ତୃଷ୍ଣାର୍ତ୍ତ ହସ୍ତୀ-ହସ୍ତିନୀ ଜଳ ଦେଖି ଅତି ଦ୍ରୁତ ଗତିରେ ଚାଲିଛନ୍ତି କି ! ଶ୍ରୀସୀତାରାମ ସମସ୍ତ ସୁଖ ପରିତ୍ୟାଗ-ପୂର୍ବକ ବନରେ

ଦେଖି ସନେହୁ ଲୋଗ ଅନୁରାଗେ । ଉତରି ଚଲେ ହୟ ଗୟ ରଥ ତ୍ୟାଗେ ॥
ଜାଇ ସମୀପ ରାଖି ନିଜ ଡୋଲୀ । ରାମ ମାତୁ ମୃଦୁ ବାଣୀ ବୋଲୀ ॥୨॥
ତାତ ଚଢ଼ହୁ ରଥ ବଲି ମହତାରୀ । ହୋଇହି ପ୍ରିୟ ପରିବାରୁ ଦୁଖାରୀ ॥
ତୁହ୍ମରେଁ ଚଲତ ଚଲିହି ସବୁ ଲୋଗୂ । ସକଲ ସୋକ କୃସ ନହିଁ ମଗ ଜୋଗୂ ॥୩॥
ସିର ଧରି ବଚନ ଚରନ ସିରୁ ନାଈ । ରଥ ଚଢ଼ି ଚଲତ ଭଏ ଦୋଇ ଭାଈ ॥
ତମସା ପ୍ରଥମ ଦିବସ କରି ବାସୂ । ଦୂସର ଗୋମତି ତୀର ନିବାସୂ ॥୪॥

ପୟ ଅହାର ଫଲ ଅସନ ଏକ ନିସି ଭୋଜନ ଏକ ଲୋଗ ।
କରତ ରାମ ହିତ ନେମ ବ୍ରତ ପରିହରି ଭୂଷନ ଭୋଗ ॥୧୮୮॥

ସଈ ତୀର ବସି ଚଲେ ବିହାନେ । ସୃଂଗବେରପୁର ସବ ନିଅରାନେ ॥
ସମାଚାର ସବ ସୁନେ ନିଷାଦା । ହୃଦୟଁ ବିଚାର କରଇ ସବିଷାଦା ॥୧॥

---

ବିଲୋକିଣ ସ୍ନେହ ଲୋକେ ଅନୁରାଗେ ଅତି । ଓହ୍ଲାଇ ଚାଲିଲେ ତେଜି ରଥ ହୟ ହସ୍ତୀ ॥
ତହୁଁ ପାଶେ ଯାଇ ନିଜ ପାଲିଙ୍କି ରଖିଲେ । ରାମଙ୍କ ଜନନୀ ମୃଦୁ ବଚନ ଭାଷିଲେ ॥୨॥
ପୁତ୍ର ରଥେ ଚଢ, ନୁହୁପାଏ ଗର୍ଭଧାରୀ । ନୋହିଲେ ପ୍ରିୟ କୁଟୁମ୍ବ ଦୁଃଖୀ ହେବେ ଭାରି ॥
ତୁମ୍ଭ ଚାଲନ୍ତେ ଓହ୍ଲାଇ ଚାଲୁଛନ୍ତି ଲୋକେ । ନୁହନ୍ତି ମାର୍ଗର ଯୋଗ୍ୟ ସର୍ବେ କୃଶ ଶୋକେ ॥୩॥
ଆଜ୍ଞା ଶିରୋଧାର୍ଯ୍ୟ କରି ପ୍ରଣାମ କରିଣ । ଚଳିଲେ ଉଭୟ ଭାଇ ସ୍ୟନ୍ଦନେ ଚଢିଣ ॥
ପ୍ରଥମ ଦିବସ କରି ତମସା ନିବାସ । ଦ୍ୱିତୀୟ ଦିନ ଗୋମତୀ ତୀରେ କଲେ ବାସ ॥୪॥

ନିଶି ଏକ ବାର ପୟ କନ୍ଦ ଫଳ ଆହାର ଲୋକେ କରିଣ ।
ରାମ ହେତୁ ବ୍ରତ ନିୟମ ପାଳନ୍ତି ଭୂଷଣ ଭୋଗ ତେଜିଣ ॥୧୮୮॥

ସଇ ତୀରେ ବାସ କରି ପ୍ରଭାତେ ଗମିଲେ । ଶୃଙ୍ଗବେର ପୁର ସର୍ବେ ନିକଟ ହୋଇଲେ ॥
ଏ ସକଳ ସମାଚାର ଶୁଣନ୍ତେ ନିଷାଦ । ହୃଦୟ ମଧ୍ୟେ ବିଚାର କରେ ସବିଷାଦ ॥୧॥

---

ବାସ କରୁଅଛନ୍ତି, ମନରେ ଏହିପରି ବିଚାର କରି ସାନଭାଇ ଶତ୍ରୁଘ୍ନଙ୍କ ସହିତ ଭରତ ପଦବ୍ରଜରେ ଚାଲିଥାଆନ୍ତି ॥ ୧ ॥ ସେମାନଙ୍କ ସ୍ନେହ ଦେଖି ଲୋକ ପ୍ରେମମଗ୍ନ ହୋଇ-ଗଲେ । ସମସ୍ତେ ଘୋଡା, ହାତୀ, ରଥମାନଙ୍କରୁ ଓହ୍ଲାଇ ପଡିଲେ ଏବଂ ସେମାନଙ୍କ ସହିତ ପାଦରେ ଚାଲିବାକୁ ଲାଗିଲେ । ସେତେବେଳେ ଶ୍ରୀରାମଙ୍କ ମାତା କୌଶଲ୍ୟା ଭରତଙ୍କ ନିକଟକୁ ଗଲେ ଏବଂ ଆପଣାର ପାଲିଙ୍କି ତାଙ୍କ ନିକଟରେ ଛିଡା କରାଇ କୋମଳ ବାଣୀରେ କହିଲେ,— ॥ ୨ ॥ "ହେ ପୁତ୍ର ! ମାତା ନିହୁଛ ଯାଉଛି । ତୁ ରଥରେ ଚଢ । ଅନ୍ୟଥା ସାରା ପରିବାର ଦୁଃଖିତ ହେବ । ତୁ ପାଦରେ ଚାଲିଲେ ସମସ୍ତ ଲୋକ ପାଦରେ ଚାଲିବେ । ଶୋକ ହେତୁ ସମସ୍ତେ ଦୁର୍ବଳ ହୋଇ ପଡିଛନ୍ତି, ପାଦରେ ଚାଲିବା ପାଇଁ ଏ ମାର୍ଗ ଉପଯୁକ୍ତ ନୁହେଁ ॥ ୩ ॥ ମାତାଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ଏବଂ ତାଙ୍କ ଚରଣତଳେ ମୁଣ୍ଡ ନୁଆଁଇ ଦୁଇ ଭାଇ ରଥରେ ଚଢି ଚାଲିଲେ । ପ୍ରଥମ ଦିନ ତମସା ତଟରେ ବାସ କରି ଦ୍ୱିତୀୟ ଦିନ ସେମାନେ ଗୋମତୀ ତୀରରେ ବିଶ୍ରାମ କଲେ ॥୪॥ ଦୋହା.—

କାରନ କଵନ ଭରତୁ ବନ ଜାହୀଂ । ହୈ କଛୁ କପଟ ଭାଉ ମନ ମାହୀଂ ॥
ଜୌଂ ପୈ ଜିୟଁ ନ ହୋତି କୁଟିଲାଈ । ତୌ କତ ଲୀହ୍ନ ସଂଗ କଟକାଈ ॥୨॥
ଜାନହିଁ ସାନୁଜ ରାମହି ମାରୀ । କରଉଁ ଅକଂଟକ ରାଜୁ ସୁଖାରୀ ॥
ଭରତ ନ ରାଜନୀତି ଉର ଆନୀ । ତବ କଲଂକୁ ଅବ ଜୀବନହାନୀ ॥୩॥
ସକଲ ସୁରାସୁର ଜୁରହିଁ ଜୁଝାରା । ରାମହି ସମର ନ ଜୀତନିହାରା ॥
କା ଆଚରଜୁ ଭରତୁ ଅସ କରହୀଂ । ନହିଁ ବିଷ ବେଲି ଅମିଅ ଫଲ ଫରହୀଂ ॥୪॥

ଅସ ବିଚାରି ଗୁହଁ ଗ୍ୟାତି ସନ କହେଉ ସଜଗ ସବ ହୋହୁ ।
ହଥଵାସହୁ ବୋରହୁ ତରନି କୀଜିଅ ଘାଟାରୋହୁ ॥୧୮୯॥

---

କେଉଁ କାରଣେ ଭରତ ଯାଉଛନ୍ତି ବନେ । କପଟ ଭାବ ଅବଶ୍ୟ ଅଛି କିଛି ମନେ ॥
ଯେବେ କିଛି କୁଟିଳତା ନ ଥାନ୍ତା ମନରେ । ତେବେ କିପାଇଁ ଆଣନ୍ତେ ସେନା ସଙ୍ଗତରେ ॥୨॥
ଭାବଛନ୍ତି ପ୍ରାଣ ନେଇ ସାନୁଜ ରାମଙ୍କ । କରିବେ ସୁଖ-ପୂର୍ବକ ରାଜ୍ୟ ଅକଣ୍ଟକ ॥
ଭରତ ହୃଦେ ନାହାନ୍ତି ରାଜନୀତି ଆଣି । ତେବେ ଅଯଶ ଲଭନ୍ତେ, ଏବେ ପ୍ରାଣହାନି ॥୩॥
ସୁରାସୁର ଯୋଦ୍ଧା ଯଦି ଏକତ୍ର ହୋଇବେ । ସମରେ ରାମଙ୍କୁ କେହି ଜିଣି ନ ପାରିବେ ॥
କିବା ଆଶ୍ଚର୍ଯ୍ୟ ଭରତ ଏମନ୍ତ କରଇ । ବିଷ ଲତିକା ଅମୃତ ଫଳ ନ ଫଳଇ ॥୪॥

ଏହା ଭାବି ଗୁହ ଜ୍ଞାତିଙ୍କୁ କହିଲା, ସାବଧାନ ହୁଅ ଆଜ ।
ବୁଡାଇଣ ନାଉ କେରୁଆଳ ନାବ ଅବରୁଦ୍ଧ କର ଘାଟ ॥୧୮୯॥

---

କେହି କେବଳ ଦୁଧ ପିଉଥାଏ, କେହି ଫଳାହାର କରୁଥାଏ । କେତେକ ଲୋକ ରାତିରେ ଥରେ ମାତ୍ର ଭୋଜନ କରୁଥାଆନ୍ତି । ଭୂଷଣ ଓ ଭୋଗବିଳାସ ତ୍ୟାଗ-ପୂର୍ବକ ସମସ୍ତେ ଶ୍ରୀରାମଚନ୍ଦ୍ରଙ୍କ ନିମନ୍ତେ ନିୟମ ଓ ବ୍ରତ ପାଳନ କରୁଥା'ନ୍ତି ॥ ୧୮୮ ॥ ଚୌପାଈ :— ରାତିଯାକ ସଈନଦୀ ତୀରରେ ବିଶ୍ରାମ କରି ପରଦିନ ସକାଳେ ସେମାନେ ସେଠାରୁ ପ୍ରସ୍ଥାନ କଲେ ଏବଂ ସମସ୍ତେ ଶୃଙ୍ଗବେରପୁର ନିକଟରେ ଯାଇ ପହଞ୍ଚିଲେ । ନିଷାଦରାଜ ସମସ୍ତ ସମାଚାର ଶୁଣିଲା ଏବଂ ମନେ ମନେ ଦୁଃଖିତ ହୋଇ ବିଚାରିବାକୁ ଲାଗିଲା—॥ ୧ ॥ "ଭରତଙ୍କର ବନକୁ ଯିବାର କାରଣ କ'ଣ ? ମନରେ କିଛି କପଟଭାବ ଅବଶ୍ୟ ଅଛି । ଯଦି ମନରେ କୁଟିଳତା ନ ଥା'ନ୍ତା, ତେବେ ସଙ୍ଗରେ ସେନା ନେଇ କାହିଁକି ଯାଉଥାଆନ୍ତେ ॥ ୨ ॥ ସାନଭାଇ ଲକ୍ଷ୍ମଣଙ୍କ ସମେତ ଶ୍ରୀରାମଙ୍କୁ ମାରି ସୁଖରେ ନିଷ୍କଣ୍ଟକ ରାଜତ୍ୱ କରିବା ପାଇଁ ବୋଧ ହୁଏ ସେ ବିଚାର କରୁଛନ୍ତି । ତେବେ ଭରତ ହୃଦୟରେ ରାଜନୀତି କଥା ବିଚାର କଲେ ନାହିଁ । ଅଯୋଧ୍ୟାରେ ରାଜତ୍ୱ କରିଥିଲେ କେବଳ କଳଙ୍କର ଭାଗୀ ହୋଇଥା'ନ୍ତେ । କିନ୍ତୁ ଏବେ ତ ଜୀବନ ମଧ୍ୟ ହରାଇବାକୁ ପଡିବ ॥ ୩ ॥ ସମୁଦାୟ ଦେବତା ଓ ଦୈତ୍ୟମାନେ ଯଦି ଏକଜୁଟ ହୁଅନ୍ତି, ତେବେ ସୁଦ୍ଧା ଶ୍ରୀରାମଙ୍କୁ ରଣରେ କେହି ଜିଣି ପାରିବ ନାହିଁ । ତେବେ ସେ ଯାହା ଏପରି କରୁଅଛନ୍ତି, ଏଥିରେ ଆଶ୍ଚର୍ଯ୍ୟ କ'ଣ ? ବିଷଲତା କଦାପି ଅମୃତ ଫଳ ଫଳିନାହିଁ ।" ॥୪॥

ହୋହୁ ସଁଜୋଇଲ ରୋକହୁ ଘାଟା । ଠାଟହୁ ସକଲ ମରୈ କେ ଠାଟା ॥
ସନମୁଖ ଲୋହ ଭରତ ସନ ଲେଊଁ । ଜିଅତ ନ ସୁରସରି ଉତରନ ଦେଊଁ ॥୧॥
ସମର ମରନୁ ପୁନି ସୁରସରି ତୀରା । ରାମ କାଜୁ ଛନଭଂଗୁ ସରୀରା ॥
ଭରତ ଭାଇ ନୃପୁ ମୈଁ ଜନ ନୀଚୂ । ବଡ଼େଁ ଭାଗ ଅସି ପାଇଅ ମୀଚୂ ॥୨॥
ସ୍ୱାମି କାଜ କରିହଉଁ ରନ ରାରୀ । ଜସ ଧବଲିହଉଁ ଭୁଅନ ଦସ ଚାରୀ ॥
ତଜଉଁ ପ୍ରାନ ରଘୁନାଥ ନିହୋରେଁ । ଦୁହୁଁ ହାଥ ମୁଦ ମୋଦକ ମୋରେଁ ॥୩॥
ସାଧୁ ସମାଜ ନ ଜାକର ଲେଖା । ରାମ ଭଗତ ମହୁଁ ଜାସୁ ନ ରେଖା ॥
ଜାୟଁ ଜିଅତ ଜଗ ସୋ ମହି ଭାରୂ । ଜନନୀ ଜୌବନ ବିଟପ କୁଠାରୂ ॥୪॥

ବିଗତ ବିଷାଦ ନିଷାଦପତି ସବହି ବଢ଼ାଇ ଉଛାହୁ ।
ସୁମିରି ରାମ ମାଗେଉ ଭୁରତ ତରକସ ଧନୁଷ ସନାହୁ ॥୧୯୦॥

---

ଘାଟ ରୁଦ୍ଧ କରି ହୁସିଆର ହୋଇଯାଅ । ମରଣ-ସାଜ ସରବେ ସତ୍ୱର ସଜାଅ ॥
ସମ୍ମୁଖେ ଭରତଠାରୁ ଦ୍ୱନ୍ଦ୍ୱ ଯୁଦ୍ଧ ନିଅ । ଜୀଇ ଥାଉଁ ଗଙ୍ଗା ପାର ହେବାକୁ ନ ଦିଅ ॥୧॥
ସମରେ ମରଣ ପୁଣି ସୁର ନଦୀ ତୀର । ଶ୍ରୀରାମଙ୍କ କାର୍ଯ୍ୟ କ୍ଷଣ-ଭଙ୍ଗୁର ଶରୀର ॥
ଭରତ ଭ୍ରାତା ନୃପତି, ଆମ୍ଭେ ନୀଚଜନ । ବଡ଼ ଭାଗ୍ୟରେ ମିଳଇ ମରଣ ଏସନ ॥୨॥
ସ୍ୱାମୀକାର୍ଯ୍ୟ ହେତୁ ଘୋର ସଂଗ୍ରାମ କରିବା । ଧବଳ ଯଶ ଚଉଦ ଭୁବନେ ଅର୍ଜିବା ॥
ରଘୁନାଥଙ୍କ ନିମନ୍ତେ ପ୍ରାଣ ପରିହର । ଉଭୟ ହସ୍ତରେ ମୋଦ-ମୋଦକ ଆମ୍ଭର ॥୩॥
ସାଧୁ ସମାଜରେ ଯାର ନାମ ନାହିଁ ଲେଖା । ରାମ ଭକ୍ତଙ୍କ ମଧ୍ୟରେ ନାହିଁ ଯାର ରେଖା ॥
ଜଗତେ ଜୀବନ ବ୍ୟର୍ଥ ପୃଥ୍ୱୀର ଭାର । ସେ ଜନନୀ-ଯଉବନ-ବୃକ୍ଷକୁ କୁଠାର ॥୪॥

ନିର୍ବିଷାଦ ଗୁହ ବଢ଼ାଇ ଉତ୍ସାହ ସମସ୍ତଙ୍କ ହୃଦୟରେ ।
ଚିନ୍ତି ରଘୁବୀର ମାଗିଲା ତୂଣୀର ଚାପ କବଚ ସତ୍ୱରେ ॥୧୯୦॥

---

ଦୋହା :—ଏପରି ବିଗତ ନିଷାଦରାଜ ଗୁହ ଆପଣା ଜାତିଭାଇମାନଙ୍କୁ କହିଲ, "ସାବଧାନ ହୋଇଯାଅ । ନୌକା ସବୁ ଅଧିକାର କରିନିଅ । ସେ ସବୁ ବୁଡ଼ାଇଦିଅ । ସବୁ ଘାଟ ଅବରୋଧ କରିପକାଅ ॥ ୧୮୯ ॥ ଚୌପାଇ :—ସୁସଜ୍ଜିତ ହୋଇ ଘାଟ ସବୁ ଅବରୋଧ କରିନିଅ । ସମସ୍ତେ ମରଣ ଲାଗି ପ୍ରସ୍ତୁତ ହୋଇଯାଅ । ମୁଁ ଭରତଙ୍କ ସହିତ ସମ୍ମୁଖରେ ଲଢ଼େଇ କରିବ ଏବଂ ଜୀଇ ଥାଉଁ ଥାଉଁ ତାହାଙ୍କୁ ଗଙ୍ଗା ପାର କରାଇ ଦେବ ନାହିଁ ॥ ୧ ॥ ଯୁଦ୍ଧରେ ମରଣ, ପୁଣି ପବିତ୍ର ଗଙ୍ଗାନଦୀର ତଟ, ଶ୍ରୀରାମଙ୍କ କାର୍ଯ୍ୟ ଏବଂ କ୍ଷଣଭଙ୍ଗୁର ଶରୀର; ଭରତ ଶ୍ରୀରାମଙ୍କ ଭାଇ ଓ ରାଜା । ତାଙ୍କ ହାତରେ ମୋ ପରି ନୀଚ ସେବକର ମୃତ୍ୟୁ—ବଡ଼ ଭାଗ୍ୟ ବଳରେ ଏପରି ମୃତ୍ୟୁ ମିଳେ ॥ ୨ ॥ ସ୍ୱାମୀଙ୍କ କାର୍ଯ୍ୟ ନିମନ୍ତେ ରଣରେ ଲଢ଼ିବି ଏବଂ ଚଉଦ ଭୁବନକୁ ମୋ ନିଜ ଯଶରେ ଉଜ୍ଜ୍ୱଳ କରି ଦେବ । ଶ୍ରୀ ରଘୁନାଥଙ୍କ ନିମନ୍ତେ ପ୍ରାଣ ତ୍ୟାଗ କରିବ । ମୋର ତ ଦୁଇ ହାତରେ ଆନନ୍ଦର ଲଡ଼ୁ ! (ଅର୍ଥାତ୍ ଯୁଦ୍ଧରେ ଜୟଲାଭ କଲେ ରାମ-

ବେଗହୁ ଭାଇହୁ ସଜହୁ ସଁଜୋଉ । ସୁନି ରଜାଇ କଦରାଇ ନ କୋଉ ॥
ଭଲେହିଁ ନାଥ ସବ କହହିଁ ସହରଷା । ଏକହିଁ ଏକ ବଢ଼ାୱଇ କରଷା ॥୧॥
ଚଲେ ନିଷାଦ ଜୋହାରି ଜୋହାରୀ । ସୂର ସକଲ ରନ ରୂଚଇ ରାରୀ ॥
ସୁମିରି ରାମ ପଦ ପଂକଜ ପନହୀଁ । ଭାଥୀଂ ବାଁଧି ଚଢ଼ାଇନ୍ହି ଧନହୀଁ ॥୨॥
ଅଁଗରୀ ପହିରି କୂଁଡ଼ି ସିର ଧରହୀଁ । ଫରସା ବାଁସ ସେଲ ସମ କରହୀଁ ॥
ଏକ କୁସଲ ଅତି ଓଡ଼ନ ଖାଁଡ଼େ । କୂଦହିଁ ଗଗନ ମନହୁଁ ଛିତି ଛାଁଡ଼େ ॥୩॥
ନିଜ ନିଜ ସାଜୁ ସମାଜୁ ବନାଈ । ଗୁହ ରାଉତହି ଜୋହାରେ ଜାଈ ॥
ଦେଖି ସୁଭଟ ସବ ଲାୟକ ଜାନେ । ଲୈ ଲୈ ନାମ ସକଲ ସନମାନେ ॥୪॥

---

ସଂଗ୍ରାମର ସାଜ ଭାଇ ସଜାଅ ସତ୍ୱର । ଶୁଣି ମୋ ଆଦେଶ କେହି ନ ହୁଅ କାତର ॥
"ଯେ ଆଜ୍ଞା" ବୋଲି କହନ୍ତି ସର୍ବେ ସହରଷ । ଏକ ଅନେକର ଦେଖେ ବଢାନ୍ତି ସାହସ ॥୧॥
ଗଲେ ଜୁହାରି ଜୁହାରି ନିଷାଦ ସ୍ୱଧାମେ । ଶୂର ସମସ୍ତେ, ଶର୍ଦ୍ଧା ରୁଚଇ ସଂଗ୍ରାମେ ॥
ସ୍ମରି ରାମ ପଦ-ତ୍ରାଣ ହୃଦୟ ମଧ୍ୟରେ । ବାନ୍ଧି ଶର-ତୂଣୀ ଗୁଣ ବାନ୍ଧନ୍ତି କାର୍ମୁରେ ॥୨॥
ସାଞ୍ଜୁ ପରିଧାନ ପୁଣି ଶିରେ କୁଣ୍ଡି ଧାରି । ସଜାନ୍ତି ବର୍ଚ୍ଛା ବାଣ୍ଟି ପରଶୁ କଟାରି ॥
ଢାଲ କୃପାଣ ଯୁଦ୍ଧରେ କୁଶଳ କେ ଅତି । ମନେ ହୁଏ କ୍ଷିତି ଛାଡ଼ି ଗଗନେ ଉଡ଼ନ୍ତି ॥୩॥
ଆପଣା ଆପଣା ସାଜ ସମାଜ ସଜାଇ । ଜୁହାର କରନ୍ତି ଗୁହ ରାଉତଙ୍କୁ ଯାଇ ॥
ଦେଖି ଭଲ ଯୋଦ୍ଧା ସର୍ବ ଉପଯୁକ୍ତ ଜାଣି । ନାମ ନେଇ ସମସ୍ତଙ୍କୁ କହଇ ସମ୍ମାନି ॥୪॥

---

ସେବକର ଯଶୋଲାଭ ଏବଂ ମଲେ ଶ୍ରୀରାମଙ୍କ ନିତ୍ୟସେବା ଲାଭ କରିବ । ) ॥ ୩ ॥ ସାଧୁ ସମାଜରେ ଯାହାର ଗଣନା ନାହିଁ ଏବଂ ଶ୍ରୀରାମଙ୍କ ଭକ୍ତ-ସମାଜରେ ଯାହାର ସ୍ଥାନ ନାହିଁ, ସେ ପୃଥିବୀର ଭାରସ୍ୱରୂପ ହୋଇ ଜଗତରେ ବୃଥାରେ ଜୀଇଛି । ସେ ମାତାଙ୍କ ଯୌବନ-ବୃକ୍ଷ କାଟିବା ନିମନ୍ତେ କୁରାଢି ମାତ୍ର ।" ॥ ୪ ॥ ଦୋହା :—ଏହି ରୂପେ ଶ୍ରୀରାମଙ୍କ ନିମନ୍ତେ ପ୍ରାଣସମର୍ପଣ କରିବାକୁ ନିଶ୍ଚୟ କରି ନିଷାଦରାଜ ବିଷାଦ-ରହିତ ହୋ'ଇଗଲା । ସେ ସମସ୍ତଙ୍କର ଉତ୍ସାହ ବଢ଼ାଇ ଓ ଶ୍ରୀରାମଙ୍କୁ ସ୍ମରଣ କରି ତୁରନ୍ତ ତୂଣୀର, ଧନୁ ଓ କବଚ ମାଗିଲା ॥ ୧୯୦ ॥ ଚୌପାଇ —ସେ କହିଲା, "ହେ ଭାଇମାନେ ! ଶୀଘ୍ର ଯୁଦ୍ଧର ସାଜ ସବୁ ସଜାଅ । ମୋର ଆଜ୍ଞା ଶୁଣି କେହି ମନରେ ଭୀରୁଭାବ ପୋଷଣ ନ କର ।" ସମସ୍ତେ ହର୍ଷଭରେ କହି ଉଠିଲେ, "ହେ ନାଥ ! ବହୁତ ଆଚ୍ଛା," ଏବଂ ଏହା କହି ସେମାନେ ପରସ୍ପରର ଉତ୍ସାହ ବଢାଇବାକୁ ଲାଗିଲେ ॥ ୧ ॥ ନିଷାଦରାଜଙ୍କୁ ଜୁହାର କରି କରି ସମସ୍ତ ନିଷାଦ ଚାଲିଲେ । ସମସ୍ତେ ବଡ଼ ଶୂରବୀର ଏବଂ ସଂଗ୍ରାମରେ ଲଢିବାକୁ ସେମାନଙ୍କୁ ଅତି ଭଲ ଲାଗେ । ଶ୍ରୀରାମଚନ୍ଦ୍ରଙ୍କ ଚରଣକମଳର ଯୋତାକୁ ସ୍ମରଣ କରି ସେମାନେ ଶ୍ରେଷ୍ଠ ଶ୍ରେଷ୍ଠ ଶରତୂଣୀ ବାନ୍ଧିଲେ ଏବଂ ଶ୍ରେଷ୍ଠ ଧନୁମାନଙ୍କରେ ଗୁଣ ଚଢାଇଲେ ॥୨॥ କେହି କେହି କବଚ ପିନ୍ଧି ଶିର ଉପରେ ଲୁହା ଟୋପି ରଖୁଥା'ନ୍ତି ଏବଂ ଫାରସା, ଭାଲ ଓ ବର୍ଚ୍ଛା ଠିକ୍ କରୁଥା'ନ୍ତି । କେହି ତରବାରିର

ଭାଇହୁ ଲାଓ୍ୱହୁ ଧୋଖ ଜନି ଆଜୁ କାଜ ବଡ଼ ମୋହି ।
ସୁନି ସରୋଷ ବୋଲେ ସୁଭଟ ବୀର ଅଧୀର ନ ହୋହି ॥୧୯୧॥
ରାମ ପ୍ରତାପ ନାଥ ବଲ ତୋରେ । କରହିଁ କଟକୁ ବିନୁ ଭଟ ବିନୁ ଘୋରେ ॥
ଜୀଓ୍ୱତ ପାଉ ନ ପାଛେଁ ଧରହୀଂ । ରୁଣ୍ଡ ମୁଣ୍ଡମୟ ମେଦିନି କରହୀଂ ॥୧॥
ଦୀଖ ନିଷାଦନାଥ ଭଲ ଟୋଲୂ । କହେଉ ବଜାଉ ଜୁଝାଊ ଢୋଲୂ ॥
ଏତନା କହତ ଛୀଁକ ଭଇ ବାଁଏ । କହେଉ ସଗୁନିଅନ୍ହ ଖେତ ସୁହାଏ ॥୨॥
ବୂଢ଼ୁ ଏକୁ କହ ସଗୁନ ବିଚାରୀ । ଭରତହି ମିଲିଅ ନ ହୋଇହି ରାରୀ ॥
ରାମହି ଭରତୁ ମନାଓ୍ୱନ ଜାହୀଂ । ସଗୁନ କହଇ ଅସ ବିଗ୍ରହୁ ନାହୀଂ ॥୩॥

---

ନ କରିବ ଭାଇ, ତ୍ରୁଟି ଯେମନ୍ତେ କେହି ଆଜି ମୋର ବଡ କାର୍ଯ୍ୟ ।
ଶୁଣି ବୀରେ ଅତି ସରୋଷେ ବୋଲନ୍ତି ଧୈର୍ଯ୍ୟ ଧର ବୀର-ରାଜ ॥୧୯୧॥
ରାମଙ୍କ ପ୍ରତାପ ନାଥ, ବଳରୁ ତୋହର । ବୀର-ବାଜି-ଶୂନ୍ୟ ଆଜି କରିବୁ ସତ୍ୱର ॥
ଜୀଇ ଥାଉଁ ଥାଉଁ ପାଦ ପଛେ ନ ରଖିବୁ । ମୁଣ୍ଡ ଗଣ୍ଡିମୟ ସାରା ମେଦିନୀ କରିବୁ ॥୧॥
ଦେଖିଣ ସଜ୍ଜିତ ନିଜ ସୈନ୍ୟଙ୍କୁ ନିଷାଦ । ବୋଇଲା, ବଜାଅ ଏବେ ଯୁଦ୍ଧ ଢୋଲବାଦ୍ୟ ॥
ଏତିକି କହିବା ମାତ୍ରେ ବାମେ ହେଲା ଛିଙ୍କ । ଶୁଭମୟ ରଣଭୂମି, ବୋଲେ ଲକ୍ଷଣିକ ॥୨॥
ଲକ୍ଷଣ ବିଚାର କରି ବୋଲେ ଏକ ବୃଦ୍ଧ । ଭରତଙ୍କ ସଙ୍ଗେ ମିଳ, ନ ହୋଇବ ଯୁଦ୍ଧ ॥
ରାମଙ୍କୁ ଆଣିବା ପାଇଁ ଯାଆନ୍ତି ଭରତ । ବିଗ୍ରହ ନୁହେ, ଲକ୍ଷଣ ଜଣାଏ ଏମନ୍ତ ॥୩॥

---

ଆକ୍ରମଣ ପ୍ରତିରୋଧ କରିବା ବିଷୟରେ ତ କେହି ଢାଲ ଯୁଦ୍ଧରେ ଅତ୍ୟନ୍ତ କୁଶଳ । ସେମାନେ ଏପରି ଉତ୍ସାହରେ ପରିପୂର୍ଣ୍ଣ ହୋଇଥା'ନ୍ତି ଯେ, ଜଣାପଡୁଥାଏ ସତେ ଯେପରି ସେମାନେ ପୃଥିବୀ ଛାଡି ଆକାଶରେ ଯାଇ ଡେଉଁଅଛନ୍ତି ॥୩॥ ଆପଣା ଅପଣା (ଲଢାଇର) ସାଜ-ସମାଜ ସଜାଇ ସେମାନେ ସମସ୍ତେ ଯାଇ ନିଷାଦରାଜ ଗୁହଙ୍କୁ ଜୁହାର କଲେ । ନିଷାଦରାଜ ସୁନ୍ଦର ଯୋଦ୍ଧାମାନଙ୍କୁ ଦେଖି ସମସ୍ତେ ସୁଯୋଗ୍ୟ ବୋଲି ଉପଲବ୍ଧି କଲ ଏବଂ ନାମ ଧରି ଧରି ପ୍ରତ୍ୟେକଙ୍କୁ ଡାକି ସମ୍ମାନିତ କଲ ॥୪॥ ଦୋହା —ସେ କହିଲା, "ହେ ଭାଇମାନେ ! କର୍ତ୍ତବ୍ୟ-ପାଳନରେ କେହି ପ୍ରତାରଣା କରିବ ନାହିଁ । ଆଜି ମୋର ବଡ କାର୍ଯ୍ୟ ।" ଏ କଥା ଶୁଣି ସମସ୍ତ ଯୋଦ୍ଧା ଅତ୍ୟନ୍ତ ଉତ୍ସାହ ସହକାରେ କହିଲେ, "ହେ ବୀର ! ଅଧୀର ହୁଅନାହିଁ ।" ॥୧୯୧॥ ଚୌପାଇ :—"ହେ ନାଥ ! ଶ୍ରୀରାମଙ୍କ ପ୍ରତାପ ଯୋଗେ ଏବଂ ଆପଣଙ୍କ ବଳ ସାହାଯ୍ୟରେ ଆମ୍ଭେମାନେ ଭରତଙ୍କ ସେନାକୁ ବୀରହୀନ ଓ ଅଶ୍ୱହୀନ କରିଦେବୁ । ଜୀଇ ଥାଉଁ ଥାଉଁ ପଛରେ ପଦ ରଖିବୁ ନାହିଁ । ପୃଥିବୀକୁ ଗଣ୍ଡି ମୁଣ୍ଡମୟୀ କରି ପକାଇବୁ ।" ॥୧॥ ନିଷାଦରାଜ ଉତ୍ତମ ବୀରଦଳ ଦେଖି କହିଲା, "ରଣ ଢୋଲ ବଜାଅ ।" ଏତିକି କହିବା ମାତ୍ରେ ବାମ ପାର୍ଶ୍ୱରେ ଛିଙ୍କ ହେଲା । ଲକ୍ଷଣିକମାନେ କହିଲେ, "ରଣକ୍ଷେତ୍ର ଶୁଭ-ଲକ୍ଷଣରେ ପୂର୍ଣ୍ଣ । ଆମର ଜୟ ହେବ ।" ଜଣେ ବୃଦ୍ଧ ଲକ୍ଷଣ ବିଚାର କରି କହିଲେ, "ଭରତ ସଙ୍ଗେ ମିଳିଯାଅ ।

ସୁନି ଗୁହ କହଇ ନୀକ କହ ବୂଢ଼ା । ସହସା କରି ପଛିତାହିଁ ବିମୂଢ଼ା ॥
ଭରତ ସୁଭାଉ ସୀଲୁ ବିନୁ ବୂଝେଁ । ବଡ଼ି ହିତ ହାନି ଜାନି ବିନୁ ଜୂଝେଁ ॥୩॥
ଗହହୁ ଘାଟ ଭଟ ସମିଟି ସବ ଲେଉଁ ମରମ ମିଲି ଜାଇ ।
ବୂଝି ମିତ୍ର ଅରି ମଧ୍ୟ ଗତି ତସ ତବ କରିହଉଁ ଆଇ ॥୧୯୨॥
ଲଖବ ସନେହୁ ସୁଭାୟଁ ସୁହାଏଁ । ବୈରୁ ପ୍ରୀତି ନହିଁ ଦୁରଇଁ ଦୁରାଏଁ ॥
ଅସ କହି ଭେଁଟ ସଁଜୋୱନ ଲାଗେ । କଂଦ ମୂଲ ଫଲ ଖଗ ମୃଗ ମାଗେ ॥୧॥
ମୀନ ପୀନ ପାଠୀନ ପୁରାନେ । ଭରି ଭରି ଭାର କହାରନ୍ହ ଆନେ ॥
ମିଲନ ସାଜୁ ସଜି ମିଲନ ସିଧାଏ । ମଂଗଲ ମୂଲ ସଗୁନ ସୁଭ ପାଏ ॥୨॥
ଦେଖି ଦୂରି ତେଁ କହି ନିଜ ନାମୂ । କୀନ୍ହ ମୁନୀସହି ଦଂଡ ପ୍ରନାମୂ ॥
ଜାନି ରାମ ପ୍ରିୟ ଦୀନ୍ହି ଅସୀସା । ଭରତହି କହେଉ ବୁଝାଇ ମୁନୀସା ॥୩॥

ଶୁଣି ଗୁହ ବୋଲେ, ବୃଦ୍ଧ ଉତ୍ତମ କହଇ । ସହସା କରି ପଛକୁ ମୂଢ ସନ୍ତାପଇ ॥
ଭରତଙ୍କ ଗୁଣ ଶୀଳ ସ୍ୱଭାବ ନ ଜାଣି । ଅବିଚାରେ ଯୁଦ୍ଧ କଲେ ହେବ ହିତ ହାନି ॥୪॥
ହୋଇ ଏକତ୍ରିତ ଜଗି ରହ ଘାଟ ମିଳି ମୁଁ ଭେଦ ଘେନିବି ।
ଶତ୍ରୁ ମିତ୍ର ମଧ୍ୟ-ଭାବ ବୁଝି ପଛେ ଯାହା ଉଚିତ କରିବି ॥୧୯୨॥
ଲକ୍ଷ୍ୟ ମୁଁ କରିବି ସ୍ନେହ ସହଜ ସ୍ୱଭାବ । ଲୁଚାଇଲେ ନ ଲୁଚଇ ବୈର ପ୍ରୀତିଭାବ ॥
ଏମନ୍ତ କହିଣ ଭେଟି ଏକତ୍ର କରିଲା । କନ୍ଦ ମୂଳ ଫଳ ଖଗ ମୃଗ ମଗାଇଲା ॥୧॥
ନାନା ସ୍ଥୂଳ-କାୟ ମୀନ ଭାକୁଡ଼ ପୁରୁଣା । ଆଣିଲେ ଭାରୁଆ ପୂର୍ଣ୍ଣ କରି ଭାରମାନ ॥
ମିଳନ ସାଜ ସାଜିଣ ମିଳନେ ଚଳିଲେ । ସୁମଙ୍ଗଳ ମୂଳ ଶୁଭ ଶକୁନ ଦେଖିଲେ ॥୨॥
ଦୂରରୁ ଦର୍ଶନ କରି କହି ନିଜ ନାମ । ବଶିଷ୍ଠ ମୁନିଙ୍କୁ କଲା ସେ ଦଣ୍ଡ ପ୍ରଣାମ ॥
ଜାଣି ଶ୍ରୀରାମଙ୍କ ପ୍ରିୟ ଦେଇ ଶୁଭାଶିଷ । ଭରତଙ୍କୁ ବୁଝାଇଣ କହିଲେ ମୁନୀଶ ॥୩॥

ତାଙ୍କ ସହ ଲଢାଇ ହେବନାହିଁ ! ଭରତ ଶ୍ରୀରାମଙ୍କୁ ମନାଇ ଲେଉଟାଇ ଆଣିବାକୁ ଯାଉଅଛନ୍ତି । ଲକ୍ଷ୍ମଣ କହେ—ବିରୋଧ ହେବନାହିଁ ।" ॥ ୩ ॥ ଏହା ଶୁଣି ନିଷାଦରାଜ ଗୁହ କହିଲା, "ବୃଦ୍ଧ ଠିକ୍ କହନ୍ତି । ନ ବୁଝି ନ ବିଚାରି ଶୀଘ୍ର କୌଣସି କାମ କରି ମୂର୍ଖମାନେ ଅନୁତାପ କରନ୍ତି । ଭରତଙ୍କ ଚରିତ୍ର ଓ ସ୍ୱଭାବ ନ ବୁଝି ନ ଜାଣି ଯୁଦ୍ଧ କଲେ ବିଶେଷ ମଙ୍ଗଳ ହାନି ଘଟିବ ॥ ୪ ॥ ଦୋହା :—ଅତଏବ ହେ ବୀରଗଣ ! ତୁମ୍ଭେମାନେ ଏକତ୍ର ଯାଇ ସମସ୍ତ ଘାଟ ଅବରୋଧ କରିଥାଅ । ମୁଁ ଭରତଙ୍କ ସହ ମିଳି ତାଙ୍କର ଭେଦ ସଂଗ୍ରହ କରୁଛି । ତାଙ୍କର ମିତ୍ର ବା ଶତ୍ରୁର ଭାବ ବା ଉଦାସୀନର ଭାବ, ଏହା ବୁଝି ଆସି ତଦନୁସାରେ ବ୍ୟବସ୍ଥା କରିବି ॥ ୧୯୨ ॥ ଚୌପାଇ :—ତାଙ୍କ ସୁନ୍ଦର ସ୍ୱଭାବରୁ ମୁଁ ତାଙ୍କ ସ୍ନେହର ପରିଚୟ ପାଇଯିବି । ଶତ୍ରୁତା ଓ ପ୍ରୀତି ଗୁପ୍ତ ରଖିଲେ ମଧ୍ୟ ଗୁପ୍ତ ରହେ ନାହିଁ । ଏପରି କହି ସେ ଭେଟିସାମଗ୍ରୀ ସବୁ ସଜାଇବାକୁ ଲାଗିଲା । ସେ କନ୍ଦମୂଳ, ଫଳ, ପକ୍ଷୀ ଓ ହରିଣ ଆଦି ମଗାଇଲା ॥ ୧ ॥ ଭାରୁଆମାନେ

ରାମ ସଖା ସୁନି ସ୍ୟନ୍ଦନୁ ତ୍ୟାଗା । ଚଲେ ଉତରି ଉମଗତ ଅନୁରାଗା ॥
ଗାଉଁ ଜାତି ଗୁହଁ ନାଉଁ ସୁନାଈ । କୀହ୍ନ ଜୋହାରୁ ମାଥ ମହି ଲାଈ ॥୪॥

କରତ ଦଣ୍ଡବତ ଦେଖି ତେହି ଭରତ ଲୀହ୍ନ ଉର ଲାଇ ।
ମନହୁଁ ଲଖନ ସନ ଭେଁଟ ଭଇ ପ୍ରେମୁ ନ ହୃଦୟଁ ସମାଇ ॥୧୯୩॥

ଭେଁଟତ ଭରତୁ ତାହି ଅତି ପ୍ରୀତୀ । ଲୋଗ ସିହାହିଁ ପ୍ରେମ କୈ ରୀତୀ ॥
ଧନ୍ୟ ଧନ୍ୟ ଧୁନି ମଂଗଲ ମୂଲା । ସୁର ସରାହି ତେହି ବରିସହିଁ ଫୂଲା ॥୧॥
ଲୋକ ବେଦ ସବ ଭାଁତିହିଁ ନୀଚା । ଜାସୁ ଛାଁହ ଛୁଇ ଲେଇଅ ସୀଁଚା ॥
ତେହି ଭରି ଅଂକ ରାମ ଲଘୁ ଭ୍ରାତା । ମିଲତ ପୁଲକ ପରିପୂରିତ ଗାତା ॥୨॥

---

ରାମ ସଖା, ଶୁଣି କରି ସ୍ୟନ୍ଦନ ତେଜିଣ । ଚାଲିଲେ ଭରତ ଅନୁରାଗେ ଉଚ୍ଛୁଳିଣ ॥
ଗ୍ରାମ ଜାତି ନାମ ଗୁହ ଆପଣା ଶୁଣାଇ । ପ୍ରଣାମ କଲା ମହୀରେ ମସ୍ତକ ଲଗାଇ ॥୪॥

ଦୁଇଅନ୍ତେ ବିନତ ଦେଖି ତାକୁ ଭ୍ରତ ହୃଦୟରେ ଆଲିଙ୍ଗିଲେ ।
ଲକ୍ଷ୍ମଣ ସହିତେ ଭେଟିଣ ଯେମନ୍ତେ ଅତି ପ୍ରେମେ ଉଚ୍ଛୁଳିଲେ ॥୧୯୩॥

ଭେଟନ୍ତେ ଭରତ ତାହା ସଙ୍ଗେ ସ୍ନେହେ ଅତି । ପ୍ରୀତି ରୀତି ଦେଖି ଲୋକେ ଲାଳସା କରନ୍ତି ॥
ହୁଏ ସୁମଙ୍ଗଳ ମୂଳ ଧନ୍ୟ ଧନ୍ୟ ସ୍ୱନ । ବିବୁଧେ ପ୍ରଶଂସି ବୃଷ୍ଟି କରନ୍ତି ସୁମନ ॥୧॥
ଯେ ସବୁ ପ୍ରକାରେ ନୀଚ ଲୋକ ବେଦମତେ । ପାଣି ଛୁଆଁ ନଆସାଏ ଯା' ଛାୟା ଛୁଅନ୍ତେ ॥
ତା ସଙ୍ଗେ ରାମ ଅନୁଜ ଭୁଜ ପ୍ରସାରିଣ । ମିଳନ୍ତି ପୁଲକେ ପରିପୂରିତ ହୋଇଣ ॥୨॥

---

ପରୁଣା ଓ ବଡ ଖାକୁର ମାଛ ଭାର ଭାର ନେଇ ଆସିଲେ । ଭେଟି-ସାମଗ୍ରୀମାନ ସଜାଇ ସାକ୍ଷାତ କମନ୍ତେ ବାହାରିଲା ବେଳେ ସେମାନଙ୍କୁ ସୁମଙ୍ଗଳକାରୀ ଶୁଭ ଶକୁନ ଦେଖା-ଗଲା ॥ ୨ ॥ ନିଷାଦରାଜ ମୁନିରାଜ ବଶିଷ୍ଠଙ୍କୁ ଦେଖି ଆପଣାର ନାମ କହି ଦୂରରୁ ଦଣ୍ଡବତ ପ୍ରଣାମ କଲା । ମୁନୀଶ୍ୱର ବଶିଷ୍ଠ ତାହାକୁ ରାମଙ୍କ ପ୍ରିୟ ବୋଲି ଜାଣି ଆଶୀର୍ବାଦ ଦେଲେ ଏବଂ ଭରତଙ୍କୁ ବୁଝାଇ କହିଲେ, "ଏ ରାମଙ୍କର ମିତ୍ର ।" "ଏ ଶ୍ରୀରାମଙ୍କ ମିତ୍ର," ଏହା ଶୁଣିବା ମାତ୍ରେ ଭରତ ରଥ ତ୍ୟାଗ କଲେ । ସେ ରଥରୁ ଓହ୍ଲାଇ ପ୍ରେମରେ ଉଲ୍ଲସିତ ହୋଇ ଅଗ୍ରସର ହେଲେ । ନିଷାଦରାଜ ଗୁହ ଆପଣା ଗ୍ରାମ, ଜାତି ଓ ନାମ ଶୁଣାଇ ପୃଥିବୀ ଉପରେ ମଥା ରଖି ଜୁହାର କଲା ॥ ୪ ॥ ଦୋହା :—ଦଣ୍ଡବତ କରିବାର ଦେଖି ଭରତ ଉଠାଇ ତାହାକୁ ଆଲିଙ୍ଗନ କରି ପକାଇଲେ । ହୃଦୟରେ ପ୍ରେମ ସମ୍ଭାଳି ନ ଥାଏ । ସତେ ଅବା ସ୍ୱୟଂ ଲକ୍ଷ୍ମଣଙ୍କ ସହିତ ଭେଟ ହୋଇଗଲା ॥୧୯୩॥ ଚୌପାଈ —ଭରତ ଅତ୍ୟନ୍ତ ପ୍ରେମରେ ଗୁହକୁ ଆଲିଙ୍ଗନ କରୁଥା'ନ୍ତି । ପ୍ରେମ-ରୀତିକୁ ସମସ୍ତେ ଈର୍ଷ୍ୟାପୂର୍ବକ ପ୍ରଶଂସା କରୁଥା'ନ୍ତି । ମଙ୍ଗଳର ମୂଳ 'ଧନ୍ୟ' 'ଧନ୍ୟ' ଧ୍ୱନି କରି ଦେବତାଗଣ ତାହାର ପ୍ରଶଂସା କରି ପୁଷ୍ପବୃଷ୍ଟି କରୁଥା'ନ୍ତି ॥ ୧ ॥ ସେମାନେ କହୁଥା'ନ୍ତି, "ଯେଉଁ ନିଷାଦ ଲୋକ ଓ ବେଦ ଉଭୟରେ ନୀଚ ବୋଲି ଗଣ୍ୟ, ଯାହାର ଛାୟା ଛୁଇଁଲେ ସ୍ନାନ କରିବାର ବିଧାନ ଅଛି, ସେହି ନିଷାଦକୁ କୋଳରେ ଭରି

ରାମ ରାମ କହି ଜେ ଜମୁହାହୀଁ । ତିନ୍ହହି ନ ପାପ ପୁଞ୍ଜ ସମୁହାହୀଁ ॥
ଯହ ତୌ ରାମ ଲାଇ ଉର ଲୀହ୍ନା । କୁଲ ସମେତ ଜଗୁ ପାବନ କୀହ୍ନା ॥୩॥
କରମନାସ ଜଲୁ ସୁରସରି ପରଈ । ତେହି କୋ କହହୁ ସୀସ ନହିଁ ଧରଈ ॥
ଉଲଟା ନାମୁ ଜପତ ଜଗୁ ଜାନା । ବାଲମୀକି ଭଏ ବ୍ରହ୍ମ ସମାନା ॥୪॥
ସ୍ୱପଚ ସବର ଖସ ଜମନ ଜଡ଼ ପାୱଁର କୋଲ କିରାତ ।
ରାମୁ କହତ ପାବନ ପରମ ହୋତ ଭୁବନ ବିଖ୍ୟାତ ॥୧୯୪॥
ନହିଁ ଅଚରିଜୁ ଜୁଗ ଜୁଗ ଚଲି ଆଈ । କେହି ନ ଦୀହ୍ନି ରଘୁବୀର ବଡ଼ାଈ ॥
ରାମ ନାମ ମହିମା ସୁର କହହୀଁ । ସୁନି ସୁନି ଅୱଧ ଲୋଗ ସୁଖୁ ଲହହୀଁ ॥୧॥
ରାମସଖହି ମିଲି ଭରତ ସପ୍ରେମା । ପୂଁଛୀ କୁସଲ ସୁମଂଗଲ ଖେମା ॥
ଦେଖି ଭରତ କର ସୀଲୁ ସନେହୂ । ଭା ନିଷାଦ ତେହି ସମୟ ବିଦେହୂ ॥୨॥

---

ରାମ ରାମ ଉଚ୍ଚାରଣ ଯେ ହାଇ ମାରନ୍ତି । ତାହାଙ୍କୁ ପାତକ-ପୁଞ୍ଜ ସ୍ପର୍ଶ ନ କରନ୍ତି ॥
ଏହାଙ୍କୁ ତ ରାମଚନ୍ଦ୍ର ବକ୍ଷେ ଆଲିଙ୍ଗିଲେ । କୁଳ ସମେତ ଜଗତ ପବିତ୍ର କରିଲେ ॥୩॥
କର୍ମନାଶା ଜଳ ସୁର-ସରିତେ ମିଳଇ । ତାହାକୁ କହ ମସ୍ତକେ କିଏ ନ ଘେନଇ ॥
ଜଗତ ଜାଣେ ଓଲଟା ନାମ ଜପ କରି । ବାଲ୍ମୀକି ମୁନି ହୋଇଲେ ସ୍ୱୟଂ ବ୍ରହ୍ମ ପରି ॥୪॥
ଚଣ୍ଡାଳ ଶବର ଯବନ ପାମର ଖଇରା କୋହ୍ଲ କିରାତ ।
ଉଚ୍ଚାରଣେ ରାମ ପାବନ ପରମ ହୁଅନ୍ତି ଭୁବନ-ଖ୍ୟାତ ॥୧୯୪॥
ଏ ନୁହେ ଆଶ୍ଚର୍ଯ୍ୟ, ଯୁଗେ ଯୁଗେ ହୁଏ ଭାଇ । କାହାକୁ ଶ୍ରୀରାମ ଦେଇ ନାହାନ୍ତି ବଡ଼ାଇ ॥
ରାମ ନାମର ମହିମା ବିବୁଧେ କହନ୍ତି । ଶୁଣି ଅଯୋଧ୍ୟା-ନିବାସୀ ଆନନ୍ଦ ଲଭନ୍ତି ॥୧॥
ରାମ ସଖା ସଙ୍ଗେ ମିଳି ଭରତ ସପ୍ରେମ । ପ୍ରଶ୍ନ କରନ୍ତି କୁଶଳ ସୁମଙ୍ଗଳ କ୍ଷେମ ॥
ଅବଲୋକି ଭରତଙ୍କ ଗୁଣ ଶୀଳ ସ୍ନେହ । ହୋଇଲା ନିଷାଦ ସେହି ସମୟେ ବିଦେହ ॥୨॥

---

ଶ୍ରୀରାମଙ୍କ ସାନ ଭାଇ ଭରତ ପୁଲକିତ ଶରୀରରେ ତାହା ସହିତ ମିଳନ କରୁଅଛନ୍ତି ॥ ୨ ॥ ଯେଉଁ ଲୋକ 'ରାମ' 'ରାମ' କହି ହାଇ ମାରନ୍ତି, ପାପସମୂହ ତାଙ୍କ ଆଗକୁ ଆସିପାରନ୍ତି ନାହିଁ । ପୁଣି ଏହି ଗୁହକୁ ତ ସ୍ୱୟଂ ଶ୍ରୀରାମଚନ୍ଦ୍ର ଆଲିଙ୍ଗନ କରି ପକାଇଲେ ଏବଂ ବଂଶ ସମେତ ଏହାଙ୍କୁ ଜଗତ୍‌ପାବନ କରି ଦେଇଅଛନ୍ତି ॥ ୩ ॥ କର୍ମନାଶା ନଦୀର ଜଳ ଗଙ୍ଗା ନଦୀରେ ପଡ଼ିଯାଏ ତ କୁହନ୍ତୁ, ତାହାକୁ ଶିର ଉପରେ କିଏ ଧାରଣ ନ କରେ ? ବାଲ୍ମୀକି ଓଲଟା ନାମ ( 'ମରା' 'ମରା' ) ଜପି ଜପି ବ୍ରହ୍ମ ସମାନ ହୋଇ-ଗଲେ ॥ ୪ ॥ ଦୋହା —ମୂର୍ଖ ଓ ପାମର ଚଣ୍ଡାଳ, ଶବର, ଖଇରା, ଯବନ, କୋହ୍ଲ ଓ କିରାତ ମଧ୍ୟ 'ରାମ' ନାମ କହି ପରମ ପବିତ୍ର ଓ ତ୍ରିଭୁବନରେ ବିଖ୍ୟାତ ହୋଇଯାଆନ୍ତି ॥ ୧୯୪ ॥ ଚୌପାଇ :—ଯୁଗଯୁଗାନ୍ତରରୁ ଏହି ରୀତି ଚଳି ଆସିଅଛି । ଶ୍ରୀ ରଘୁପତି କାହାକୁ ବଡ଼ିମା ଦେଇ ନାହାନ୍ତି ?" ଏହିପରି ଦେବତାମାନେ 'ରାମ' ନାମର ମାହାତ୍ମ୍ୟ କହୁଆଆନ୍ତି ଏବଂ ତାହା ଶୁଣି ଶୁଣି ଅଯୋଧ୍ୟାର ଲୋକମାନେ ଆନନ୍ଦ

ସକୁଚ ସନେହୁ ମୋଦୁ ମନ ବାଢ଼ା । ଭରତହି ଚିତଵତ ଏକଟକ ଠାଢ଼ା ॥
ଧରି ଧୀରଜୁ ପଦ ବନ୍ଦି ବହୋରୀ । ବିନୟ ସପ୍ରେମ କରତ କର ଜୋରୀ ॥୩॥
କୁସଲ ମୂଲ ପଦ ପଂକଜ ପେଖୀ । ମୈଁ ତିହୁଁ କାଲ କୁସଲ ନିଜ ଲେଖୀ ॥
ଅବ ପ୍ରଭୁ ପରମ ଅନୁଗ୍ରହ ତୋରେଁ । ସହିତ କୋଟି କୁଲ ମଂଗଲ ମୋରେଁ ॥୪॥

ସମୁଝି ମୋରି କରତୂତି କୁଲୁ ପ୍ରଭୁ ମହିମା ଜିୟଁ ଜୋଇ ।
ଜୋ ନ ଭଜଇ ରଘୁବୀର ପଦ ଜଗ ବିଧି ବଂଚିତ ସୋଇ ॥୧୯୫॥

କପଟୀ କାୟର କୁମତି କୁଜାତୀ । ଲୋକ ବେଦ ବାହେର ସବ ଭାଁତୀ ॥
ରାମ କୀନ୍ହ ଆପନ ଜବହୀ ତେଁ । ଭୟଉଁ ଭୁବନ ଭୂଷନ ତବହୀ ତେଁ ॥୧॥

---

ହୃଦୟେ ସଙ୍କୋଚ ସ୍ନେହ ଆନନ୍ଦ ବଢିଲା । ଅପଲକେ ଭରତଙ୍କୁ ଚାହିଁ ସେ ରହିଲା ॥
ଚରଣ ବନ୍ଦି ଆଦର ମନେ ଧୈର୍ଯ୍ୟ ଧରି । ସପ୍ରେମେ ବିନୟ କରେ କର ଯୋଡ଼ି କରି ॥୩॥
ନିରେଖି କୁଶଳ-ମୂଳ ଚରଣ-କମଳ । ମୁଁ ତିନି କାଳେ ମଣଇ ଆପଣା କୁଶଳ ॥
ଏବେ ପ୍ରଭୁ ଅତି ଅନୁକମ୍ପାରେ ତୁମ୍ଭର । କୋଟି କୁଳ ସହ ହେଲା ମଙ୍ଗଳ ମୋହର ॥୪॥
ମୋ କୁଳ କରମ ପ୍ରଭୁଙ୍କ ମହିମା ବୁଝି ହେଜ ହୃଦଗତେ ।
ରଘୁବୀର ପଦେ ଯେ ନ ଭଜେ ସେହି ବିଧି-ବଞ୍ଚିତ ଜଗତେ ॥୧୯୫॥
କପଟୀ କୁମତି ଭୀରୁ କୁଜାତି ସଂସାରେ । ଲୋକ ବେଦରୁ ବାହାର ସକଳ ପ୍ରକାରେ ॥
ରାମ ମୋତେ ଆପଣାର କଲେ ଯେଉଁ ଦିନୁ । ଭୁବନ-ଭୂଷଣ ମୁହିଁ ହୋଇଲି ସେଦିନୁ ॥୧॥

---

ଲାଭ କରୁଥାଆନ୍ତି ॥ ୧ ॥ ରାମସଖା ନିଷାଦରାଜ ସଙ୍ଗେ ଭରତ ପ୍ରେମରେ ମିଳି ତାହାଙ୍କୁ କୁଶଳ, ମଙ୍ଗଳ ଓ ହିତ ସମାଚାର ପଚାରିଲେ । ଭରତଙ୍କ ଚରିତ ଓ ପ୍ରେମ ଦେଖି ନିଷାଦ ସେତେ ସମୟରେ ଆତ୍ମବିସ୍ମୃତ ହୋଇଗଲା ॥ ୨ ॥ ତାହାର ମନରେ ସଙ୍କୋଚ, ପ୍ରେମ ଓ ଆନନ୍ଦ ଏତେ ବଢିଗଲା ଯେ, ସେ ଛିଡା ହୋଇ ଅପଲକ ନୟନରେ ଭରତଙ୍କୁ ଦେଖିବାରେ ଲାଗିଥାଏ । ତତ୍ପରେ ଧୈର୍ଯ୍ୟ ଧାରଣ-ପୂର୍ବକ ଭରତଙ୍କ ଚରଣ ବନ୍ଦନା କରି ପ୍ରେମରେ ହାତ ଯୋଡି ପ୍ରାର୍ଥନା କରିବାକୁ ଲାଗିଲା— ॥ ୩ ॥ "ହେ ପ୍ରଭୋ ! ସମସ୍ତ କୁଶଳର ମୂଳ ପ୍ରଭୁଙ୍କ ଚରଣ କମଳ । ତାହା ଦର୍ଶନ କରି ମୁଁ ତିନିକାଳ ଯାଏ ନିଜ କଲ୍ୟାଣ ସୁନିଶ୍ଚିତ କରି ପାରିଛି । ବର୍ତ୍ତମାନ ଆପଣଙ୍କ ପରମ ଅନୁଗ୍ରହ ବଳରେ କୋଟି କୁଳ ସମେତ ମୋର ମଙ୍ଗଳ ଲାଭ ହୋଇଗଲା ॥ ୪ ॥ ଦୋହା :—ମୋର ନୀଚ କର୍ମ ଓ ନୀଚ କୁଳ ଏବଂ ପ୍ରଭୁ ଶ୍ରୀରାମଙ୍କ ମହିମା ମନରେ ବିଚାରି ( ପ୍ରଭୁ ଶ୍ରୀରାମ ନିଜ ଅହେତୁକୀ କୃପା-ବଶତଃ ମୋ ପରି ନୀଚକୁ ମଧ୍ୟ ଆପଣାର କରି ନେଲେ । ଅନନ୍ତ କୋଟି ବ୍ରହ୍ମାଣ୍ଡର ସ୍ୱାମୀ ପ୍ରଭୁ ଶ୍ରୀରାମଙ୍କ ଅଲୌକିକ ମହିମା ବୁଝି ) ଏହିପରି କୃପାଳୁ ପ୍ରଭୁଙ୍କୁ ଯେ ନ ଭଜେ, ସେ ବିଧାତାଙ୍କ ଦ୍ୱାରା ପ୍ରତାରିତ ବୋଲି ବୁଝିବାକୁ ହେବ ॥ ୧୯୫ ॥ ଚୌପାଇ :—ମୁଁ କପଟୀ, ଭୀରୁ, କୁବୁଦ୍ଧି ଓ କୁଜାତି ଏବଂ ଲୋକ ଓ ବେଦ-ଉଭୟରୁ ସବୁପ୍ରକାରେ ବାହାରେ । କିନ୍ତୁ ଶ୍ରୀରାମଚନ୍ଦ୍ର ମୋତେ ଆପଣାର

ଦେଖି ପ୍ରୀତି ସୁନି ବିନୟ ସୁହାଈ । ମିଲେଉ ବହୋରି ଭରତ ଲଘୁ ଭାଈ ॥
କହି ନିଷାଦ ନିଜ ନାମ ସୁବାନୀଁ । ସାଦର ସକଲ ଜୋହାରୀଁ ରାନୀଁ ॥୨॥
ଜାନି ଲଖନ ସମ ଦେହିଁ ଅସୀସା । ଜିଅହୁ ସୁଖୀ ସୟ ଲାଖ ବରୀସା ॥
ନିରଖି ନିଷାଦୁ ନଗର ନର ନାରୀ । ଭଏ ସୁଖୀ ଜନୁ ଲଖନୁ ନିହାରୀ ॥୩॥
କହହିଁ ଲହେଉ ଏହିଁ ଜୀବନ ଲାହୂ । ଭେଁଟେଉ ରାମଭଦ୍ର ଭରି ବାହୂ ॥
ସୁନି ନିଷାଦୁ ନିଜ ଭାଗ ବଡ଼ାଈ । ପ୍ରମୁଦିତ ମନ ଲଇ ଚଲେଉ ଲେୱାଈ ॥୪॥

ସନକାରେ ସେବକ ସକଲ ଚଲେ ସ୍ୱାମି ରୁଖ ପାଇ ।
ଘର ତରୁତର ସର ବାଗ ବନ ବାସ ବନାଏନ୍ହି ଜାଇ ॥୧୯୭॥

ସୃଂଗବେରପୁର ଭରତ ଦୀଖ ଜବ । ଭେ ସନେହଁ ସବ ଅଂଗ ସିଥିଲ ତବ ॥
ସୋହତ ଦିଏଁ ନିଷାଦହି ଲାଗୂ । ଜନୁ ତନୁ ଧରେଁ ବିନୟ ଅନୁରାଗୂ ॥୧॥

---

ବିଲୋକି ପ୍ରୀତି ସୁନ୍ଦର ସୁବିନୟ ଶୁଣି । ମିଳିଲେ ଭରତଙ୍କର ଅବରଜ ପୁଣି ॥
ନିଷାଦ ମୃଦୁ ବଚନେ କହି ନିଜ ନାମ । ସାଦରେ କଲା ସମସ୍ତ ରାଣୀଙ୍କୁ ପ୍ରଣାମ ॥୨॥
ଦିଅନ୍ତି ଆଶିଷ ଜାଣି ଲକ୍ଷ୍ମଣ ଯେମନ୍ତ । ସୁଖେ ବଞ୍ଚି ରହ କୋଟି ବରଷ ପର୍ଯ୍ୟନ୍ତ ॥
ନଗର ନାରୀ ପୁରୁଷ ଗୁହଙ୍କୁ ନିରେଖି । ହୋଇଲେ ସୁଖୀ ଯେସନେ ଲକ୍ଷ୍ମଣଙ୍କୁ ଦେଖି ॥୩॥
କହନ୍ତି, ଲଭିଲା ଏହୁ ଲାଭ ଜୀବନର । ଭେଟିଲେ ଭୁଜ ପ୍ରସାରି ପ୍ରଭୁ ରଘୁବର ॥
ଶୁଣି ନିଷାଦ ଆପଣା ସୌଭାଗ୍ୟ ବଡ଼ାଇ । ପ୍ରମୋଦିତ ମନେ ସଙ୍ଗେ ଚଳିଲା ନିଆଇ ॥୪॥

ଚଳିଲେ ସଙ୍କେତେ ସେବକ ସମସ୍ତେ ସ୍ୱାମୀ ଅନୁମତି ପାଇ ।
ବନ ଉପବନ ସର ତରୁ ତଳେ ବାସ ବିରଚିଲେ ଯାଇ ॥୧୯୭॥

ଦେଖିଲେ ଭରତ ଶୃଙ୍ଗବେର ପୁର ଯେବେ । ଶିଥିଳ ଅଙ୍ଗ ହୋଇଲା ସ୍ନେହବଶ ତେବେ ॥
ନିଷାଦ ନାଥ ସଙ୍ଗରେ ଶୋଭିତ ହୁଅନ୍ତି । ବିନୟାନୁରାଗ କିବା ତନୁ ଧରିଛନ୍ତି ॥୧॥

---

କଲା ଦିନୁ ମୁଁ ବିଶ୍ୱଭୂଷଣ ହୋଇଗଲି ॥ ୧ ॥ ନିଷାଦରାଜର ପ୍ରୀତି ଦେଖି ଓ ସୁନ୍ଦର ବିନତି ଶୁଣି ଭରତଙ୍କ ସାନ ଭାଇ ଶତ୍ରୁଘ୍ନ ପୁଣି ତାହା ସହିତ ମିଳିଲେ । ତଦନନ୍ତର ନିଷାଦ ନିଜ ନାମ କହି ନମ୍ର ଓ ମଧୁର ବାଣୀ ବୋ'ଲି ସମସ୍ତ ରାଣୀଙ୍କୁ ଆଦର-ପୂର୍ବକ ଜୁହାର କଲା ॥ ୨ ॥ ରାଣୀମାନେ ତାହାକୁ ଲକ୍ଷ୍ମଣଙ୍କ ସମାନ ମନେ କରି "ତୁମେ ଶହେ ଲକ୍ଷ ବର୍ଷ ପର୍ଯ୍ୟନ୍ତ ସୁଖରେ ଜୀଇ ରହ" ବୋଲି ଆଶୀର୍ବାଦ ଦେଉଥା'ନ୍ତି । ନଗରର ସ୍ତ୍ରୀ ପୁରୁଷମାନେ ନିଷାଦରାଜଙ୍କୁ ଦେଖି ଏପରି ସୁଖୀ ହେଲେ, ସତେ ଅବା ଲକ୍ଷ୍ମଣଙ୍କୁ ଦେଖୁଅଛନ୍ତି ! ॥ ୩ ॥ ସମସ୍ତେ କହୁଥା'ନ୍ତି, "ଏହାକୁ କଲ୍ୟାଣ ସ୍ୱରୂପ ରାମଭଦ୍ର ବାହୁରେ ଭରି ଆଲିଙ୍ଗନ କରିଅଛନ୍ତି, ସୁତରାଂ ଜୀବନର ସୁଫଳ ଏହି ଏକା ଲାଭ କରିଅଛି ।" ନିଷାଦ ଆପଣା ଭାଗ୍ୟର ପ୍ରଶଂସା ଶୁଣି ମନରେ ପରମ ଆନନ୍ଦ ଲାଭ କଲା ଏବଂ ସମସ୍ତଙ୍କୁ ନିଜ ସଙ୍ଗେ ନେଇ ଚଳିଲା ॥ ୪ ॥ ଦୋହା :—ସେ ଆପଣାର ସମସ୍ତ ସେବକଙ୍କୁ ସଙ୍କେତ ଯୋଗେ କିଛି କହିଲା । ସେବକମାନେ ସ୍ୱାମୀଙ୍କ ଅଭିପ୍ରାୟ

ଏହି ବିଧି ଭରତ ସେନୁ ସବ ସଂଗା । ଦୀଖ ଜାଇ ଜଗପାବନି ଗଂଗା ॥
ରାମଘାଟ କହଁ କୀହ୍ନ ପ୍ରନାମୂ । ଭା ମନୁ ମଗନୁ ମିଲେ ଜନୁ ରାମୂ ॥୨॥
କରହିଁ ପ୍ରନାମ ନଗର ନର ନାରୀ । ମୁଦିତ ବ୍ରହ୍ମମୟ ବାରି ନିହାରୀ ॥
କରି ମଜ୍ଜନୁ ମାଗହିଁ କର ଜୋରୀ । ରାମଚନ୍ଦ୍ର ପଦ ପ୍ରୀତି ନ ଥୋରୀ ॥୩॥
ଭରତ କହେଉ ସୁରସରି ତବ ରେନୂ । ସକଲ ସୁଖଦ ସେବକ ସୁରଧେନୂ ॥
ଜୋରି ପାନି ବର ମାଗଉଁ ଏହୂ । ସୀୟ ରାମ ପଦ ସହଜ ସନେହୂ ॥୪॥

ଏହି ବିଧି ମଜ୍ଜନୁ ଭରତୁ କରି ଗୁର ଅନୁସାସନ ପାଇ ।
ମାତୁ ନହାନୀଁ ଜାନି ସବ ଡେରା ଚଲେ ଲୱାଇ ॥୧୯୭॥

---

ଏ ଭାବେ ଭରତ ଘେନି ସମସ୍ତ ସେନାଙ୍କୁ । ଦର୍ଶନ କଲେ ଜଗତପାବନୀ ଗଙ୍ଗାଙ୍କୁ ॥
ରାମ ଘାଟକୁ ସମସ୍ତେ କରିଣ ପ୍ରଣାମ । ହୋଇଲେ ମଗନ-ମନ, ମିଳିଲେ ବା ରାମ ॥୨॥
କରନ୍ତି ସ୍ନେହେ ପ୍ରଣାମ ପୁର ନରନାରୀ । ପ୍ରମୋଦରେ ଅବଲୋକି ବ୍ରହ୍ମମୟ ବାରି ॥
ସ୍ନାନ କରି ସର୍ବେ କର ଯୋଡ଼ିଣ ମାଗନ୍ତି । ସୀତା ରାମ ପଦେ ହେଉ ଅନୁରାଗ ଅତି ॥୩॥
ଭରତ କହିଲେ, ସୁର ନଦୀ ତୁମ୍ଭ ରେଣୁ । ସେବକ-ସୁଖ-ଦାୟକ ଯେହ୍ନେ ସୁରଧେନୁ ॥
ମାଗୁଛି ଏ ବରଦାନ ଯୋଡ଼ି ଯୁଗ୍ମକର । ସହଜ ସ୍ନେହ ଶ୍ରୀରାମ ଜାନକୀ ପୟର ॥୪॥

ଏହି ଭାବେ ସ୍ନାନ ଭରତ କରିଣ ଗୁରୁ ଅନୁମତି ପାଇ ।
ମାତାମାନେ ସ୍ନାନ ସାରିଲେଣି ଜାଣି ଚଳିଲେ ବାସ ଉଠାଇ ॥୧୯୭॥

---

ଭୁଇଁ ଚାଲିଲେ ଏବଂ ସେମାନେ ଗୃହରେ, ବୃକ୍ଷତଳେ, ସରୋବର ତୀରରେ, ଉପବନରେ ଓ ଜଙ୍ଗଲରେ ବିଶ୍ରାମ ନେବା ନିମନ୍ତେ ସ୍ଥାନର ବ୍ୟବସ୍ଥା କରିଦେଲେ ॥୧୯୬॥ ଚୌପାଈ :—ଭରତ ଯେତେବେଳେ ଶୃଙ୍ଗବେରପୁର ଦେଖିଲେ, ପ୍ରେମ ହେତୁ ତାଙ୍କର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ହୋଇଗଲା । ସେ ନିଷାଦରାଜର କାନ୍ଧ ଉପରେ ହାତ ରଖି ଚାଲିଲେ । ସେତେବେଳେ ସେ ଦୁହେଁ ଏପରି ଶୋଭା ପାଉଥାଆନ୍ତି, ସତେ ଯେପରି ବିନୟ ଓ ପ୍ରେମ ଶରୀର ଧାରଣ କରିଅଛନ୍ତି ! ॥ ୧ ॥ ଏହି ରୂପେ ଭରତ ସମସ୍ତ ସେନାଙ୍କୁ ସଙ୍ଗରେ ଧରି ଜଗତପାବନୀ ଗଙ୍ଗାଙ୍କୁ ଦର୍ଶନ କଲେ । ଶ୍ରୀରାମ ସ୍ନାନ ଓ ସନ୍ଧ୍ୟା କରିଥିବା ଶ୍ରୀରାମଘାଟକୁ ଯାଇ ସେ ପ୍ରଣାମ କଲେ । ତାଙ୍କ ମନ ଏତେ ଆନନ୍ଦମଗ୍ନ ହୋଇଗଲା, ସତେ ଅବା ସ୍ୱୟଂ ଶ୍ରୀରାମ ତାହାଙ୍କୁ ମିଳିଗଲେ ! ॥ ୨ ॥ ନଗରର ନରନାରୀ ପ୍ରଣାମ କରୁଥା'ନ୍ତି ଏବଂ ଗଙ୍ଗାଙ୍କ ବ୍ରହ୍ମମୟ ଜଳ ଦେଖି ଆନନ୍ଦିତ ହେଉଥା'ନ୍ତି । ଗଙ୍ଗାଙ୍କ ଜଳରେ ସ୍ନାନ କରି ହାତ ଯୋଡ଼ି ସମସ୍ତେ ବର ମାଗୁଥା'ନ୍ତି—"ଶ୍ରୀରାମଙ୍କ ଚରଣରେ ଆମ୍ଭମାନଙ୍କ ପ୍ରେମ ଅଳ୍ପ ନ ହେଉ (ଅଧିକ ହେଉ) ।" ॥ ୩ ॥ ଭରତ କହିଲେ, "ହେ ଗଙ୍ଗେ ? ତୁମ ବାଲି ସମସ୍ତଙ୍କୁ ସୁଖ ଦିଏ ଏବଂ ସେବକ ନିମନ୍ତେ ତ ତାହା କାମଧେନୁ । ମୁଁ ହାତ ଯୋଡ଼ି ଏହି ବରଦାନ ମାଗୁଛି—"ସୀତାରାମଙ୍କ ଚରଣ ପ୍ରତି ମୋର ସ୍ୱାଭାବିକ ପ୍ରେମ ହେଉ ।" ॥ ୪ ॥ ଦୋହା :—ଏହି ରୂପେ ଭରତ ସ୍ନାନ ଶେଷ କଲେ । ଯେତେବେଳେ ସେ ଜାଣିଲେ

ଜହଁ ତହଁ ଲୋଗନ୍ହ ଡେରା କୀନ୍ହା । ଭରତ ସୋଧୁ ସବହୀ କର ଲୀନ୍ହା ॥
ସୁର ସେବା କରି ଆୟସୁ ପାଈ । ରାମ ମାତୁ ପହିଁ ଗେ ଦୋଉ ଭାଈ ॥୧॥
ଚରନ ଚାଁପି କହି କହି ମୃଦୁ ବାନୀ । ଜନନୀ ସକଲ ଭରତ ସନମାନୀ ॥
ଭାଇହି ସୌଁପି ମାତୁ ସେବକାଈ । ଆପୁ ନିଷାଦହି ଲୀନ୍ହ ବୋଲାଈ ॥୨॥
ଚଲେ ସଖା କର ସୋଁ କର ଜୋରେଁ । ସିଥିଲ ସରୀରୁ ସନେହ ନ ଥୋରେଁ ॥
ପୂଁଛତ ସଖହି ସୋ ଠାଉଁ ଦେଖାଊ । ନେକୁ ନୟନ ମନ ଜରନି ଜୁଡ଼ାଊ ॥୩॥
ଜହଁ ସିୟ ରାମୁ ଲଖନୁ ନିସି ସୋଏ । କହତ ଭରେ ଜଲ ଲୋଚନ କୋଏ ॥
ଭରତ ବଚନ ସୁନି ଭୟଉ ବିଷାଦୂ । ତୁରତ ତହାଁ ଲଇ ଗୟଉ ନିଷାଦୂ ॥୪॥

ଜହଁ ସିଂସୁପା ପୁନୀତ ତର ରଘୁବର କିୟ ବିଶ୍ରାମୁ ।
ଅତି ସନେହଁ ସାଦର ଭରତ କୀନ୍ହେଉ ଦଣ୍ଡ ପ୍ରନାମୁ ॥୧୯୮॥

---

ଯହିଁ ତହିଁ ଲୋକମାନେ ବିଶ୍ରାମ କରିଲେ । ଭରତ ସମସ୍ତଙ୍କର ସନ୍ଦେଶ ନେଲେ ॥
ଗୁରୁଙ୍କ ସେବା କରିଣ ଅନୁମତି ପାଇ । ରାମ ଜନନୀ ସମୀପେ ଗଲେ ଦୁଇ ଭାଇ ॥୧॥
ପଦସେବା କରି କହି କହି ମୃଦୁବାଣୀ । ସାଦରେ ଭରତ ସବୁ ମାତାଙ୍କୁ ସମ୍ମାନି ॥
ଜନନୀଙ୍କ ସେବା ଅର୍ପି ଶତ୍ରୁ-ସଦନଙ୍କୁ । ଡକାଇ ଆଣି ଆପଣେ ନିଷାଦ-ନାଥଙ୍କୁ ॥୨॥
ଚାଲିଲେ ସଖାର କରେ ମିଳାଇଣ କର । ବିଶେଷ ସ୍ନେହେ ଶିଥିଳ ହୁଏ କଳେବର ॥
କହନ୍ତି ସଖାଙ୍କୁ, ମୋତେ ଦେଖାଅ ସେ ସ୍ଥଳ । ନେତ୍ର ମନ ଜ୍ୱାଳା କିଛି କରିବି ଶୀତଳ ॥୩॥
ଯହିଁ ନିଶି ସୀତା ବେନି ଭ୍ରାତା ଶୋଇଥିଲେ । କହୁଁ କହୁଁ ନେତ୍ର କୋଣ ଲୋତକେ ପୂରିଲେ ॥
ଭରତ ବଚନ ଶୁଣି ହୋଇଣ ବିଷାଦ । ତୁରିତ ସେ ସ୍ଥାନେ ନେଇ ଚାଲିଲା ନିଷାଦ ॥୪॥

ପବିତ୍ର ଶିଂଶୁପା ବୃକ୍ଷତଳେ ଯହିଁ ବିଶ୍ରମିଥିଲେ ଶ୍ରୀରାମ ।
ଅତିଶୟ ସ୍ନେହ ଆଦରେ ଭରତ କରିଲେ ଦଣ୍ଡ ପ୍ରଣାମ ॥୧୯୮॥

---

ଯେ, ମାତାମାନେ ସମସ୍ତେ ସ୍ନାନ କରି ସାରିଲେଣି, ସେ ଗୁରୁଙ୍କ ଆଦେଶାନୁସାରେ ସେଠାରୁ ଡେରା ଉଠାଇ ଚାଲିଲେ ॥ ୧୯୭ ॥ ଚୌପାଈ :—ଲୋକମାନେ ବିଭିନ୍ନ ସ୍ଥାନରେ ଡେରା ପକାଇଲେ । ଭରତ ସମସ୍ତଙ୍କ ଖବର ନେଲେ । ତତ୍ପରେ ଦେବପୂଜନ କରି ଆଜ୍ଞା ପାଇ ଦୁଇ ଭାଇ ଶ୍ରୀରାମଙ୍କ ମାତା କୌଶଲ୍ୟାଙ୍କ ପାଖକୁ ଗଲେ ॥ ୧ ॥ ଚରଣ ସେବା କରି ଏବଂ କୋମଳ ବଚନ କହି ଭରତ ସମସ୍ତ ମାତାଙ୍କୁ ସତ୍କାର କଲେ । ପୁଣି ଭାଇ ଶତ୍ରୁଘ୍ନଙ୍କ ହାତରେ ମାତାମାନଙ୍କର ସେବା ସମର୍ପଣ କରି ସେ ନିଷାଦରାଜଙ୍କୁ ଡାକିଲେ ॥ ୨ ॥ ସଖା ନିଷାଦରାଜର ହାତରେ ହାତ ମିଳାଇ ଭରତ ଚାଲିଲେ । ପ୍ରେମ କିଛି କମ ନୁହେଁ । ତାହା ଫଳରେ ତାଙ୍କ ଶରୀର ଶିଥିଳ ହୋଇ-ଯାଉଥାଏ । ଭରତ ସଖାଙ୍କୁ କହୁଥା'ନ୍ତି, "ଯେଉଁଠାରେ ସୀତା, ଶ୍ରୀରାମ ଓ ଲକ୍ଷ୍ମଣ ରାତି ଶୋଇଥିଲେ, ମୋତେ ସେହି ସ୍ଥାନ ଦେଖାଅ ଏବଂ ମୋ ନେତ୍ର ଓ ମନର ଦାହକୁ ଟିକିଏ ଶୀତଳ କରି ।" ଏପରି କହୁ କହୁ ତାଙ୍କ ନେତ୍ରକୋଣରେ ପ୍ରେମାଶ୍ରୁ

କୁସ ସାଁଥରୀ ନିହାରି ସୁହାଈ । କୀନ୍ହ ପ୍ରନାମୁ ପ୍ରଦଚ୍ଛିନ ଜାଈ ॥
ଚରନ ରେଖ ରଜ ଆଁଖିନ୍ହ ଲାଈ । ବନଇ ନ କହତ ପ୍ରୀତି ଅଧିକାଈ ॥୧॥
କନକ ବିନ୍ଦୁ ଦୁଇ ଚାରିକ ଦେଖେ । ରାଖେ ସୀସ ସୀୟ ସମ ଲେଖେ ॥
ସଜଲ ବିଲୋଚନ ହୃଦୟଁ ଗଲାନୀ । କହତ ସଖା ସନ ବଚନ ସୁବାନୀ ॥୨॥
ଶ୍ରୀହତ ସୀୟ ବିରହଁ ଦୁତିହୀନା । ଜଥା ଅବଧ ନର ନାରି ବିଲୀନା ॥
ପିତା ଜନକ ଦେଉଁ ପଟତର କେହୀ । କରତଲ ଭୋଗୁ ଜୋଗୁ ଜଗ ଜେହୀ ॥୩॥
ସସୁର ଭାନୁକୁଲ ଭାନୁ ଭୁଆଲୂ । ଜେହି ସିହାତ ଅମରାବତିପାଲୂ ॥
ପ୍ରାନନାଥୁ ରଘୁନାଥ ଗୋସାଈଂ । ଜୋ ବଡ ହୋତ ସୋ ରାମ ବଡାଈଂ ॥୪॥

---

ପରମ ସୁନ୍ଦର କୁଶ ଶଯ୍ୟା ବିଲୋକିଣ । କରିଲେ ପ୍ରଣାମ ପ୍ରେମେ କରି ପ୍ରଦକ୍ଷିଣ ॥
ପାଦ-ପଦ୍ମ ରେଣୁ ନେତ୍ରେ ଲଗାଇଲେ ଆଣି । ଅତିଶୟ ପ୍ରୀତି କହି ନ ହୁଏ ବଖାଣି ॥୧॥
କନକ ବୁନ୍ଦା ପତିତ ଦୁଇ ଚାରି ଦେଖି । ଘେନିଲେ ମସ୍ତକେ ବଇଦେହୀ ସମ ଲେଖି ॥
ସଜଳ ନୟନ, ଗ୍ଲାନି-ପରିତାପ-ଭରେ । କହନ୍ତି ସଖା ସମ୍ମୁଖେ ବଚନ ମଧୁରେ ॥୨॥
ଶ୍ରୀହତ ସୀତା ବିରହେ ଏହି ଦ୍ୟୁତିହୀନ । ଯେସନେ ଅଯୋଧ୍ୟା ନାରୀ ପୁରୁଷ ମଳିନ ॥
ଜନକ ଜନକେ ଦେବି କେଉଁ ଧଷ୍ଟାନ୍ତର । ଯା'ର କରଗତ ଯୋଗ ଭୋଗ ଜଗତର ॥୩॥
ଶ୍ୱଶୁର ତରଣି-କୁଳ-ତରଣି ଭୂପାଳ । ଯା'ର ଯଶ ପ୍ରଶଂସନ୍ତି ସ୍ୱର୍ଗେ ଲୋକପାଳ ॥
ଯାହାଙ୍କ ବଲ୍ଲଭ ରଘୁନାୟକ ଗୋସାଇଁ । ସେ ବଡ ଯାହାକୁ ରାମ ଦିଅନ୍ତି ବଡାଇ ॥୪॥

---

ଜଳ ଭରି ଆସିଲା । ଭରତଙ୍କ ବଚନ ଶୁଣି ନିଷାଦର ମନରେ ବଡ ବିଷାଦ ହେଲା । ସେ ତାହାଙ୍କୁ ତୁରନ୍ତ ସେହି ସ୍ଥାନକୁ ନେଇଗଲା— ॥ ୩-୪ ॥ ଦୋହା :— ଯେଉଁଠାରେ ପବିତ୍ର ଅଶୋକ ବୃକ୍ଷ ତଳେ ଶ୍ରୀରାମ ବିଶ୍ରାମ କରିଥିଲେ, ସେହି ସ୍ଥାନକୁ ଭରତଙ୍କୁ ନିଷାଦରାଜ ନେଇଗଲା । ଭରତ ସେହିଠାରେ ଅତ୍ୟନ୍ତ ପ୍ରେମ ଓ ଆଦରରେ ଦଣ୍ଡବତ-ପ୍ରଣାମ କଲେ ॥ ୧୯୮ ॥ ଚୌପାଇ :—ସୁନ୍ଦର କୁଶଶଯ୍ୟା ଦେଖି ତାହାକୁ ପ୍ରଦକ୍ଷିଣ-ପୂର୍ବକ ଭରତ ପ୍ରଣାମ କଲେ । ଶ୍ରୀରାମଚନ୍ଦ୍ରଙ୍କ ଚରଣ-ଚିହ୍ନର ରଜ ଆଖିରେ ଲଗାଇଲେ । ସେତେବେଳର ପ୍ରେମର ଆଧିକ୍ୟ କହି ହେବନାହିଁ ॥ ୧ ॥ ଭରତ ସୀତାଙ୍କ ଅଳଙ୍କାରରୁ ଖସି ପଡିଥିବା ଦୁଇଚାରି ଗୋଟି ସ୍ୱର୍ଣ୍ଣକଣ ବା ତାରା ଦେଖିଲେ ଏବଂ ସେଗୁଡିକୁ ସୀତାଙ୍କ ସମାନ ମନେ କରି ଶିର ଉପରେ ରଖିଲେ । ତାହାଙ୍କ ନେତ୍ର ପ୍ରେମାଶ୍ରୁ ଜଳରେ ପରିପୂର୍ଣ୍ଣ ଏବଂ ହୃଦୟରେ ଗ୍ଲାନି ପୂରି ରହିଥାଏ । ସେ ସଖାକୁ ସୁନ୍ଦର ବଚନ କହିଲେ— ॥ ୨ ॥ "ଏ ସ୍ୱର୍ଣ୍ଣକଣ ବା ତାରାଗୁଡିକ ମଧ୍ୟ ସୀତାଙ୍କ ବିରହରେ ଶ୍ରୀହୀନ ଏବଂ କାନ୍ତିହୀନ ହୋଇ ପଡିଅଛନ୍ତି । ରାମ-ବିରହରେ ଅଯୋଧ୍ୟାର ନରନାରୀ ମଧ୍ୟ ସେହିପରି ଶ୍ରୀହୀନ ଓ କ୍ଷୀଣ ହୋଇ ପଡିଅଛନ୍ତି । ସୀତାଙ୍କର ପିତା ରାଜା ଜନକ । ଜଗତରେ ଭୋଗ ଓ ଯୋଗ ଉଭୟ ଯାହାଙ୍କ ହାତମୁଠାରେ, ସେହି ଜନକଙ୍କ ସହିତ ମୁଁ କାହାକୁ ଉପମା ଦେବି ? ॥ ୩ ॥ ସୂର୍ଯ୍ୟବଂଶର ସୂର୍ଯ୍ୟ ରାଜା ଦଶରଥ ସୀତାଙ୍କର

ପତି ଦେବତା ସୁତୀୟ ମନି ସୀୟ ସାଁଥରୀ ଦେଖି ।
ବିହରତ ହୃଦୟ ନ ହହରି ହର ପବିତେଁ କଠିନ ବିସେଷି ॥୧୯୯॥
ଲାଲନ ଜୋଗୁ ଲଖନ ଲଘୁ ଲୋନେ । ଭେ ନ ଭାଇ ଅସ ଅହହିଁ ନ ହୋନେ ॥
ପୁରଜନ ପ୍ରିୟ ପିତୁ ମାତୁ ଦୁଲାରେ । ସିୟ ରଘୁବୀରହି ପ୍ରାନପିଆରେ ॥୧॥
ମୃଦୁ ମୂରତି ସୁକୁମାର ସୁଭାଊ । ତାତ ବାଉ ତନ ଲାଗ ନ କାଊ ॥
ତେ ବନ ସହହିଁ ବିପତି ସବ ଭାଁତୀ । ନିଦରେ କୋଟି କୁଲିସ ଏହିଁ ଛାତୀ ॥୨॥
ରାମ ଜନମି ଜଗୁ କୀହ୍ନ ଉଜାଗର । ରୂପ ସୀଲ ସୁଖ ସବ ଗୁନ ସାଗର ॥
ପୁରଜନ ପରିଜନ ଗୁରୁ ପିତୁ ମାତା । ରାମ ସୁଭାଉ ସବହି ସୁଖଦାତା ॥୩॥
ବୈରିଉ ରାମ ବଡ଼ାଈ କରହୀଁ । ବୋଲନି ମିଲନି ବିନୟ ମନ ହରହୀଁ ॥
ସାରଦ କୋଟି କୋଟି ସତ ସେଷା । କରି ନ ସକହିଁ ପ୍ରଭୁ ଗୁନ ଗନ ଲେଖା ॥୪॥

---

ପତିବ୍ରତା ପୁଣି ସୁରମଣୀ–ମଣି ଦେଖି ସୀତା କୁଶ ଶେଯ ।
ଏ ବକ୍ଷ ବିଦୀର୍ଣ୍ଣ ନ ହୁଅଇ ମୋର ପବିରୁ କଠିନ ହେଳ ॥୧୯୯॥
ଲାଲନ-ଯୋଗ୍ୟ ସୁନ୍ଦର ଅନୁଜ ଲକ୍ଷ୍ମଣ । ହୋଇ ନାହିଁ, ନାହିଁ ଭାଇ, ନ ହେବେ ଏସନ ॥
ପୁରଜନ ପ୍ରିୟ, ପିତା ମାତାଙ୍କ ସମ୍ପତ୍ତି । ସୀତା ରଘୁନନ୍ଦନଙ୍କ ପ୍ରାଣ ପ୍ରିୟ ଅତି ॥୧॥
ସୁକୁମାର ସ୍ୱଭାବ ଯେ ମୃଦୁଳ ଶରୀର । ଲାଗି ନାହିଁ ଦେହେ କେବେ ଉତ୍ତପ୍ତ ସମୀର ॥
ସେ ବନେ ରହନ୍ତି ସହି ବିପତ୍ତି ନିଚୟ । କୋଟି କୁଳିଶକୁ ନିନ୍ଦା କରେ ଏ ହୃଦୟ ॥୨॥
ରାମ ଜନମି ଜଗତ କଲେ ଉଜାଗର । ରୂପ ଶୀଳ ସୁଖ ସର୍ବ ସଦ୍‌ଗୁଣ ସାଗର ॥
ପୁରଜନ ପରିଜନ ଗୁରୁ ପିତା ମାତା । ସ୍ୱଭାବେ ସମସ୍ତଙ୍କର ରାମ ସୁଖଦାତା ॥୩॥
ବଇରୀ ସୁଦ୍ଧା ରାମଙ୍କ ବଡ଼ାଇ କରଇ । କଥାବାର୍ତ୍ତା ବିନମ୍ରତା ମନକୁ ହରଇ ॥
କୋଟି ସରସ୍ୱତୀ ପୁଣି ଶେଷ କୋଟି ଶତ । ଲେଖି ରାମ ଗୁଣ କରି ନ ପାରିବେ ଅନ୍ତ ॥୪॥

---

ସୁନ୍ଦର, ଯାହାଙ୍କ ଐଶ୍ୱର୍ଯ୍ୟ ପ୍ରତି ଅମରାବତୀ-ପତି ଇନ୍ଦ୍ର ମଧ୍ୟ ଈର୍ଷ୍ୟାପରାୟଣ । ପ୍ରଭୁ ଶ୍ରୀ ରଘୁନାଥ ସୀତାଙ୍କର ପ୍ରାଣନାଥ; ସେ ପ୍ରଭୁ ଏତେ ବଡ଼ ଯେ, ସଂସାରରେ ଯେ କେହି ସୁଦ୍ଧା ବଡ଼ ହୁଏ, ସେହି ଶ୍ରୀରାମଙ୍କ ଦ୍ୱାରା ପ୍ରଦତ୍ତ ବଡ଼ିମା ଯୋଗେ ହିଁ ବଡ଼ ହୁଏ ॥ ୪ ॥
ଦୋହା :—ସେହି ପତିଦେବତା ନାରୀଶିରୋମଣି ସୀତାଙ୍କ କୁଶଶଯ୍ୟା ଦେଖି ମୋର ହୃଦୟ ଚକିତ ହୋଇ ଯାହା ଫାଟି ଯାଉନାହିଁ ! ଶଙ୍କର ! ଏହା ବଜ୍ରଠାରୁ ମଧ୍ୟ ଅଧିକ କଠୋର ! ॥ ୧୯୯ ॥ ଚୌପାଇ :—ମୋର ସାନ ଭାଇ ଲକ୍ଷ୍ମଣ ଅତି ସୁନ୍ଦର ଓ ପ୍ରେମର ଯୋଗ୍ୟ । ଏପରି ଭାଇ ଅତୀତରେ କାହାରିକୁ ମିଳିନାହିଁ, ବର୍ତ୍ତମାନ କାହାରି ନାହିଁ କିମ୍ବା ଭବିଷ୍ୟତରେ କାହାରିକୁ ମିଳିବ ନାହିଁ । ଯେଉଁ ଲକ୍ଷ୍ମଣ ଅଯୋଧ୍ୟା ଲୋକଙ୍କର ପ୍ରିୟ, ମାତାପିତାଙ୍କର ଅଲିଅଳ ଏବଂ ଶ୍ରୀ ସୀତାରାମଙ୍କ ପ୍ରାଣପ୍ରିୟ; ଯାହାଙ୍କର ମୂର୍ତ୍ତି କୋମଳ ଏବଂ ସ୍ୱଭାବ ସୁକୁମାର, ଯାହାଙ୍କ ଶରୀରରେ କଦାପି ଗରମ ପବନ ଲାଗିନାହିଁ, ସେ ବନରେ ସମସ୍ତ ପ୍ରକାର ବିପତ୍ତି ସହନ କରୁଅଛନ୍ତି । ହାୟ ! ମୋର ଏ ଛାତି

ସୁଖସରୂପ ରଘୁବଂସମନି ମଂଗଲ ମୋଦ ନିଧାନ ।
ତେ ସୋୱତ କୁସ ଡାସି ମହି ବିଧି ଗତି ଅତି ବଲବାନ ॥୨୦୦॥

ରାମ ସୁନା ଦୁଖୁ କାନ ନ କାଊ । ଜୀବନତରୁ ଜିମି ଜୋଗୱଇ ରାଊ ॥
ପଲକ ନୟନ ଫନି ମନି ଜେହି ଭାଁତୀ । ଜୋଗୱହିଁ ଜନନି ସକଲ ଦିନ ରାତୀ ॥୧॥
ତେ ଅବ ଫିରତ ବିପିନ ପଦଚାରୀ । କନ୍ଦ ମୂଲ ଫଲ ଫୂଲ ଅହାରୀ ॥
ଧିଗ କୈକଈ ଅମଂଗଲ ମୂଲା । ଭଇସି ପ୍ରାନ ପ୍ରିୟତମ ପ୍ରତିକୂଲା ॥୨॥
ମୈଁ ଧିଗ ଧିଗ ଅଘ ଉଦଧି ଅଭାଗୀ । ସବୁ ଉତପାତୁ ଭୟଉ ଜେହି ଲାଗୀ ॥
କୁଲ କଲଂକୁ କରି ସୃଜେଉ ବିଧାତାଁ । ସାଇଁ ଦୋହ ମୋହି କୀନ୍ହ କୁମାତା ॥୩॥

---

ସେ ସୁଖ-ସ୍ୱରୂପ ରଘୁକୁଳ-ଭୂପ ମଙ୍ଗଳ-ମୋଦ-ନିଧାନ ।
କୁଶ ବିଛାଇଣ ଶୁଅନ୍ତି ମହୀରେ ବିଧିଗତି ବଳବାନ ॥୨୦୦॥

ରାମ କେବେ ଦୁଃଖ ଶୁଣି ଶ୍ରବଣେ ନ ଥିଲେ । ଜୀବନ ତରୁ ଯେମନ୍ତେ ରାଜା ଜଗିଥିଲେ ॥
ପଲକ ନୟନେ ଫଣୀ ମଣିକୁ ଯେପରି । ଜଗିଥିଲେ ମାତା ସର୍ବେ ଦିବସ ଶର୍ବରୀ ॥୧॥
ସେ ଏବେ ବନେ ବୁଲନ୍ତି ପାଦରେ ଚାଲିଣ । କନ୍ଦମୂଳ ଫଳ ଫୁଲ ଆହାର କରିଣ ॥
ଧିକ କେକୟ-ତନୟୀ ଅମଙ୍ଗଳ ମୂଳ । ପ୍ରାଣ ପ୍ରିୟତମଙ୍କର ହେଲୁ ପ୍ରତିକୂଳ ॥୨॥
ଅଭାଗ୍ୟ ପାପ ଉଦଧି ମୋତେ ଧିକ ଶତ । ହୋଇଲା ଯା' ଲାଗି ଏହୁ ଉତ୍ପାତ ସମସ୍ତ ॥
କୁଳର କଳଙ୍କ କରି ସୃଜିଲା ବିଧାତା । ସ୍ୱାମିଦ୍ରୋହୀ କରାଇଲା ମୋତେ ମୋ କୁମାତା ॥୩॥

---

କଠୋରତାରେ କୋଟିଏ ବଜ୍ରକୁ ମଧ୍ୟ ହତାଦର କରି ଦେଲା ' ॥ ୧-୨ ॥ ଶ୍ରୀରାମଚନ୍ଦ୍ର ଜନ୍ମ (ଅବତାର) ଗ୍ରହଣ କରି ଜଗତକୁ ଉଜ୍ଜ୍ୱଳ କରିଦେଲେ । ସେ ରୂପ, ଚରିତ୍ର, ସୁଖ ଓ ସମସ୍ତ ଗୁଣର ସାଗର । ନଗରବାସୀ, କୁଟୁମ୍ବୀ ସ୍ୱଜନ, ଗୁରୁ, ପିତାମାତା ଆଦି ସମସ୍ତଙ୍କୁ ଶ୍ରୀରାମଙ୍କ ସ୍ୱଭାବ ସୁଖ ପ୍ରଦାନ କରେ ॥ ୩ ॥ ଶତ୍ରୁ ମଧ୍ୟ ଶ୍ରୀରାମଙ୍କ ପ୍ରଶଂସା କରନ୍ତି । କଥାବାର୍ତ୍ତା, ମିଳନ ଢଙ୍ଗ ଓ ବିନମ୍ରତାରେ ସେ ସମସ୍ତଙ୍କ ମନ ହରଣ କରି ନିଅନ୍ତି । କୋଟିଏ ସରସ୍ୱତୀ ଓ ଶହେ କୋଟି ଶେଷ ମଧ୍ୟ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଗୁଣସମୂହ ଲେଖି ଶେଷ କରି ପାରିବେ ନାହିଁ ॥ ୪ ॥ ଦୋହା :—ସୁଖସ୍ୱରୂପ ରଘୁବଂଶ-ଶିରୋମଣି ଶ୍ରୀରାମଚନ୍ଦ୍ର ମଙ୍ଗଳ ଓ ଆନନ୍ଦର ଭଣ୍ଡାର ! ସେ ପୁଣି ଭୂଇଁ ଉପରେ କୁଶ ବିଛାଇ ଶୋଉଅଛନ୍ତି ' ବିଧାତାର ଗତି ଅତି ବଳବାନ୍ ॥ ୨୦୦ ॥ ଚୌପାଇ :—ଶ୍ରୀରାମଚନ୍ଦ୍ର କଦାପି କାନରେ ଦୁଃଖର ନାମ ଶୁଣି ନାହାନ୍ତି । ମହାରାଜ ସ୍ୱୟଂ ଜୀବନ-ବୃକ୍ଷ ପରି ତାଙ୍କୁ ଜଗି ରହୁଥିଲେ । ସମସ୍ତ ମାତା ମଧ୍ୟ ରାତିଦିନ ପଲକ ନୟନର ଡୋଳା ଏବଂ ସାପ ଆପଣାର ମଣିକୁ ସମ୍ଭାଳି ରଖିଲା ପରି ତାହାଙ୍କୁ ଯତ୍ନ ସହକାରେ ଜଗି ରହୁଥିଲେ ॥୧॥ ସେହି ପ୍ରଭୁ ଶ୍ରୀରାମଚନ୍ଦ୍ର ଏବେ ବନ ମଧ୍ୟରେ ପାଦରେ ବିଚରଣ କରୁଅଛନ୍ତି ଏବଂ କନ୍ଦମୂଳ ଓ ଫଳଫୁଲ ଭୋଜନ କରୁଅଛନ୍ତି । ଅମଙ୍ଗଳର ମୂଳ କୈକେୟୀକୁ ଧିକ୍କାର, ଯେ ଆପଣ ପ୍ରାଣ-ପ୍ରିୟତମ ପତିଙ୍କ ପ୍ରତି ମଧ୍ୟ ପ୍ରତିକୂଳ ହୋଇଗଲା ! ॥ ୨ ॥ ମୋପରି

ସୁନି ସପ୍ରେମ ସମୁଝାୱ ନିଷାଦୂ । ନାଥ କରିଅ କତ ବାଦି ବିଷାଦୂ ॥
ରାମ ତୁମ୍ହହି ପ୍ରିୟ ତୁମ୍ହ ପ୍ରିୟ ରାମହି । ୟହ ନିରଜୋସୁ ଦୋସୁ ବିଧି ବାମହି ॥୩॥

ବିଧି ବାମ କୀ କରନୀ କଠିନ ଜେହିଁ ମାତୁ କୀହ୍ନୀ ବାୱରୀ ।
ତେହି ରାତି ପୁନି ପୁନି କରହିଁ ପ୍ରଭୁ ସାଦର ସରହନା ରାୱରୀ ॥
ତୁଲସୀ ନ ତୁମ୍ହ ସୋ ରାମ ପ୍ରୀତମୁ କହତୁ ହୌଁ ସୌଁହେଁ କିଏଁ ॥
ପରିନାମ ମଂଗଲ ଜାନି ଅପନେ ଆନିଏ ଧୀରଜୁ ହିଏଁ ॥

ଅଂତରଜାମୀ ରାମୁ ସକୁଚ ସପ୍ରେମ କୃପାୟତନ ।
ଚଲିଅ କରିଅ ବିଶ୍ରାମୁ ୟହ ବିଚାରି ଦୃଢ଼ ଆନି ମନ ॥୨୦୧॥

ସଖା ବଚନ ସୁନି ଉର ଧରି ଧୀରା । ବାସ ଚଲେ ସୁମିରତ ରଘୁବୀରା ॥
ୟହ ସୁଧି ପାଇ ନଗର ନର ନାରୀ । ଚଲେ ବିଲୋକନ ଆରତ ଭାରୀ ॥୧॥

---

ଶୁଣି ଅତିଶୟ ପ୍ରେମେ ବୁଝାଏ ନିଷାଦ । ନାଥ, ଅକାରଣେ କିପାଁ କରୁଛ ବିଷାଦ ॥
ରାମ ତୁମ ପ୍ରିୟ, ତୁମେ ପ୍ରିୟ ରାମଙ୍କର । ଏ ଦୋଷ ନିଶ୍ଚୟ ଅଟେ ବିଧାତା ବାମର ॥୪॥

ବିପରୀତ ବିଧିର କର୍ତ୍ତବ୍ୟ ସୁକଠୋର ଯେ କଲା କ୍ଷୁବ୍ଧ ଜନନୀ ।
ତୁମ୍ଭଙ୍କୁ ବାରମ୍ବାର ସାଦରେ ରଘୁବର ପ୍ରଶଂସୁଥିଲେ ସେ ରଜନୀ ।
ସତ୍ୟ କହୁଛି ତୁମ ସମ, ନାହାନ୍ତି ରାମ ପ୍ରିୟତମ,
ହୃଦେ ଧୈର୍ଯ୍ୟ ଆଣ, ତୁଳସୀ ପରିଣାମ ବିଚାରି କଲ୍ୟାଣ ପରମ ॥

ଅନ୍ତର୍ଯ୍ୟାମୀ ରାମ ସଙ୍କୋଚ-ସଦନ, ପ୍ରେମ-କୃପା-ପାରାବାର ।
କରନ୍ତୁ ବିଶ୍ରାମ ହୃଦୟେ ଏସନ ଦୃଢ଼ କରିଣ ବିଚାର ॥୨୦୧॥

ଶୁଣନ୍ତେ ସଖା ବଚନ ହୃଦେ ଧୈର୍ଯ୍ୟ ଧରି । ବାସେ ଆଗମିଲେ ରଘୁନାଥଙ୍କୁ ସ୍ମରି ॥
ଏହି ସମାଚାର ପାଇ ପୁର ନାରୀ ନରେ । ଚଳିଲେ ଦେଖିବା ପାଇଁ ଅତି ଆରତରେ ॥୧॥

---

ପାପ-ସାଗର ଓ ହତଭାଗ୍ୟକୁ ଧିକ୍କାର ! ଧିକ୍କାର ! ଯାହା ଯୋଗୁଁ ଏ ସବୁ ଉତ୍ପାତ ହୋଇଗଲା । ବିଧାତା ମୋତେ କୁଳର କଳଙ୍କ କରି ଜନ୍ମ ଦେଲା ଏବଂ କୁମାତା ମୋତେ ସ୍ୱାମୀଦ୍ରୋହୀ କରିଦେଲା ।" ॥ ୩ ॥ ଏହା ଶୁଣି ନିଷାଦରାଜ ପ୍ରେମପୂର୍ବକ ବୁଝାଇବାକୁ ଲାଗିଲା, "ହେ ନାଥ ! ଆପଣ କାହିଁକି ବୃଥାରେ ବିଷାଦ କରୁଅଛନ୍ତି ? ଶ୍ରୀରାମଚନ୍ଦ୍ର ଆପଣଙ୍କର ପ୍ରିୟ ଏବଂ ଆପଣ ଶ୍ରୀରାମଚନ୍ଦ୍ରଙ୍କ ପ୍ରିୟ । ଏହାହିଁ ନିଶ୍ଚିତ ସିଦ୍ଧାନ୍ତ । ଦୋଷ ତ ପ୍ରତିକୂଳ ବିଧାତାର ॥ ୪ ॥ ଛନ୍ଦ—ପ୍ରତିକୂଳ ବିଧାତାର କାର୍ଯ୍ୟ ବଡ଼ କଠୋର । ତାହା ହିଁ ମାତା କୈକେୟୀଙ୍କ ମତି ବିଭ୍ରମ କରିଦେଲା । ସେ ରାତିରେ ପ୍ରଭୁ ଶ୍ରୀରାମଚନ୍ଦ୍ର ବାରମ୍ବାର ଆଦରପୂର୍ବକ ଆପଣଙ୍କୁ ଅତିଶୟ ପ୍ରଶଂସା କରୁଥିଲେ । ତୁଳସୀ ଦାସ କହନ୍ତି—(ନିଷାଦରାଜ କହୁଅଛି ହେ), ଆପଣଙ୍କ ପରି ଶ୍ରୀରାମଚନ୍ଦ୍ରଙ୍କର ଆଉ କେହି ପ୍ରିୟ ନୁହନ୍ତି; ଏହା ମୁଁ ରାଣ ଖାଇ କହୁଅଛି । ପରିଣାମରେ ମଙ୍ଗଳ ହେବ—ଏହା ଜାଣି

ପରଦଖିନା କରି  କରହିଁ ପ୍ରନାମା । ଦେହିଁ କୈକଇହି ଖୋରି  ନିକାମା ॥
ଭରି ଭରି ବାରି ବିଲୋଚନ ଲେହୀଁ । ବାମ  ବିଧାତାହି  ଦୂଷନ ଦେହୀଁ ॥୨॥
ଏକ  ସରାହହିଁ  ଭରତ  ସନେହୂ । କୋଉ କହ ନୃପତି ନିବାହେଉ ନେହୂ ॥
ନିଂଦହିଁ  ଆପୁ  ସରାହି  ନିଷାଦହି । କୋ କହି ସକଇ ବିମୋହ ବିଷାଦହି ॥୩॥
ଏହି ବିଧି ରାତି ଲୋଗୁ ସବୁ ଜାଗା । ଭା  ଭିନୁସାର   ଗୁଦାରା  ଲାଗା ॥
ଗୁରହି ସୁନାଓଁ ଚଢ଼ାଇ ସୁହାଈଁ । ନଈଂ ନାବ ସବ  ମାତୁ  ଚଢ଼ାଈଁ ॥୪॥
ଦଣ୍ଡ  ଚାରି  ମହଁ  ଭା  ସବୁ  ପାରା । ଉତରି ଭରତ ତବ ସବହି ସଁଭାରା ॥୫॥

ପ୍ରାତକ୍ରିୟା କରି ମାତୁ ପଦ ବଂଦି  ଗୁରହି ସିରୁ ନାଇ ।
ଆଗେଁ କିଏ  ନିଷାଦ ଗନ  ଦୀହ୍ନେଉ କଟକୁ  ଚଲାଇ ॥୨୦୨॥

---

ପ୍ରଦକ୍ଷିଣ କରି  ସର୍ବେ  କରନ୍ତି  ଜୁହାର । କୈକେୟୀଙ୍କୁ ଦୋଷଦେଇ ଅନେକ ପ୍ରକାର ॥
ନେତ୍ର ପୂର୍ଣ୍ଣ  କରି କରି ଅଶ୍ରୁ  ବିସର୍ଜନ୍ତି । ବାମ ବିଧାତା ଉପରେ ଦୋଷ ଆରୋପନ୍ତି ॥୨॥
ଭରତଙ୍କ ସ୍ନେହ କେହୁ  ପ୍ରଶଂସା କରଇ । ପ୍ରେମ ପାଳିଲେ ନୃପତି, ଅନ୍ୟ କେ କହଇ ॥
ଆପଣାକୁ  ନିନ୍ଦି  ନିଷାଦକୁ  ପ୍ରଶଂସନ୍ତି । ବିମୋହ ବିଷାଦ କହିପାରେ କା’ ଶକତି ॥୩॥
ଏ ଭାବେ ରାତ୍ରିରେ ଲୋକେ ଅନିଦ୍ରା ରହିଲେ । ପ୍ରଭାତ ହୁଅନ୍ତେ ପାର ହେବାକୁ ଲାଗିଲେ ॥
ସୁନ୍ଦର ନାବେ ଚଢାଇ  ଗୁରୁ ବଶିଷ୍ଠଙ୍କୁ । ନବ ନାବେ  ଚଢାଇଲେ  ଜନନୀମାନଙ୍କୁ ॥୪॥
ଚାରିଦଣ୍ଡ ମଧ୍ୟେ ପାର ସମସ୍ତେ ହୋଇଲେ । ଓହ୍ଲାଇ  ଭରତ  ସମସ୍ତଙ୍କୁ  ସମ୍ଭାଳିଲେ ॥୫॥

ପ୍ରାତଃ କ୍ରିୟା କରି ମାତା ପଦ ବନ୍ଦି ଗୁରୁଙ୍କୁ  ଶିର ନୁଆଁଇ ।
ଆଗେ ଚଳାଇଣ ନିଷାଦ-ମଣ୍ଡଳୀ ଲୋକଙ୍କୁ ଦେଲେ ଚଳାଇ ॥୨୦୨॥

---

ଆପଣ  ହୃଦୟରେ ଧୈର୍ଯ୍ୟ ଧାରଣ କରନ୍ତୁ ॥  ସୋରଠା —ଶ୍ରୀରାମଚନ୍ଦ୍ର  ଅନ୍ତର୍ଯାମୀ, ସଙ୍କୋଚ,  ପ୍ରେମ  ଓ  କୃପାର ଧାମ,  ଏହା ବିଚାର କରି ଏବଂ ମନରେ ଦୃଢତା ଆଣି ଚାଲନ୍ତୁ ଏବଂ  ବିଶ୍ରାମ  କରନ୍ତୁ ।”  ॥୨୦୧॥  ଚୌପାଇ —ସଖାର ବଚନ ଶୁଣି, ହୃଦୟରେ ଧୈର୍ଯ୍ୟ ଧରି ଶ୍ରୀରାମଙ୍କୁ ସ୍ମରଣ-ପୂର୍ବକ ଭରତ ଡେରାକୁ ଚାଲିଲେ ।  ନଗରର ସମସ୍ତ ସ୍ତ୍ରୀପୁରୁଷ  ଶ୍ରୀରାମ ରହିଥିବା ସ୍ଥାନର ସମାଚାର  ପାଇ  ଅତ୍ୟନ୍ତ  ଆତୁର  ହୋଇ ଉକ୍ତ ସ୍ଥାନ ଦେଖିବାକୁ ଚାଲିଲେ ॥ ୧ ॥  ସେମାନେ ସେହି ସ୍ଥାନକୁ ପରିକ୍ରମା କରୁଥା’ନ୍ତି ଏବଂ କୈକେୟୀଙ୍କୁ ବହୁତ  ଦୋଷ  ଦେଉଥା’ନ୍ତି ।  ନେତ୍ର  ଜଳପୂର୍ଣ୍ଣ  କରି  ପ୍ରତିକୂଳ ବିଧାତାକୁ ମଧ୍ୟ ଦୋଷ ଦେଉଥାଆନ୍ତି ॥ ୨ ॥ କେହି କେହି ଭରତଙ୍କ ସ୍ନେହର ପ୍ରଶଂସା କରୁଥା’ନ୍ତି  ଏବଂ  କେହି  କେହି  କହୁଥା’ନ୍ତି—“ରାଜା ଆପଣାର  ପ୍ରେମ ଭଲ ଭାବରେ ପାଳନ କଲେ !” ସମସ୍ତେ ଆପଣା ଆପଣାର ନିନ୍ଦା କରି ନିଷାଦକୁ ପ୍ରଶଂସା କରୁଥା’ନ୍ତି । ସେହି ସମୟର ବିମୋହ ଓ ବିଷାଦ କିଏ ବର୍ଣ୍ଣନା  କରି ପାରିବ ?  ॥୩॥ ଏହିରୂପେ ସେ ରାତି ସମସ୍ତ ଲୋକ ଜାଗ୍ରତ ରହିଲେ । ସକାଳ ହେବା ମାତ୍ରେ ନୌକାର କ୍ଷେପ ଲାଗିଲା । ସେମାନେ ସୁନ୍ଦର ନୌକା ଉପରେ ପ୍ରଥମେ ଗୁରୁଙ୍କୁ ଚଢାଇଲେ ଏବଂ ତତ୍ପରେ

କିୟଉ ନିଷାଦନାଥୁ ଅଗୁଆଈଁ । ମାତୁ ପାଲକୀଁ ସକଲ ଚଲାଈଁ ॥
ସାଥ ବୋଲାଇ ଭାଇ ଲଘୁ ଦୀହ୍ନା । ବିପ୍ରହ୍ନ ସହିତ ଗବନୁ ଗୁର କୀହ୍ନା ॥୧॥
ଆପୁ ସୁରସରିହି କୀହ୍ନ ପ୍ରନାମୂ । ସୁମିରେ ଲଖନ ସହିତ ସିୟ ରାମୂ ॥
ଗବନେ ଭରତ ପୟାଦେହିଁ ପାଏ । କୋତଲ ସଂଗ ଜାହିଁ ଡୋରିଆଏ ॥୨॥
କହହିଁ ସୁସେବକ ବାରହିଁ ବାରା । ହୋଇଅ ନାଥ ଅଶ୍ୱ ଅସୱାରା ॥
ରାମୁ ପୟାଦେହିଁ ପାୟଁ ସିଧାଏ । ହମ କହଁ ରଥ ଗଜ ବାଜି ବନାଏ ॥୩॥
ସିର ଭର ଜାଉଁ ଉଚିତ ଅସ ମୋରା । ସବ ତେଁ ସେବକ ଧରମୁ କଠୋରା ॥
ଦେଖି ଭରତ ଗତି ସୁନି ମୃଦୁ ବାନୀ । ସବ ସେବକଗନ ଗରହିଁ ଗଲାନୀ ॥୪॥

---

ନିଷାଦ ଅଧିପତିଙ୍କୁ ଅଗ୍ରତେ କରିଣ । ମାତାମାନଙ୍କ ପାଲିଙ୍କି ତହୁଁ ଚଳାଇଣ ॥
ଡକାଇ ସାନଭାଇଙ୍କୁ ସଙ୍ଗେ କରିଦେଲେ । ଗୁରୁ ବଶିଷ୍ଠ ବିପ୍ରଙ୍କ ସହ ବିଜେ ହେଲେ ॥୧॥
ସ୍ୱୟଂ ସୁର-ସରିତଙ୍କୁ କରିଣ ପ୍ରଣାମ । ସ୍ମରି ଲକ୍ଷ୍ମଣ ସହ ବଇଦେହୀ ରାମ ॥
ଗମିଲେ ଭରତ ଖାଲି ପାଦେ ଚାଲିକରି । ସଙ୍ଗେ ଚାଲିଥାନ୍ତି ଖାଲି ଅଶ୍ୱ ବାଗ ଧରି ॥୨॥
ବାରମ୍ବାର କହୁଥାନ୍ତି ସୁସେବକଗଣ । ଚାଲନ୍ତୁ ଗୋସାଇଁ, ଅଶ୍ୱ କରି ଆରୋହଣ ॥
ରାମ ଖାଲି ପାଦେ ଯାଇଛନ୍ତି ଚାଲି ଚାଲି । ରଥ ହସ୍ତ ହସ୍ତୀ ମୋ ନିମନ୍ତେ ଗଢ଼ା ଗଲି ॥୩॥
ଶିର ଭରେ ଯିବା ଅଟେ ଉପଯୁକ୍ତ ମୋର । ସେବକ ଧର୍ମ ସମସ୍ତ ଧର୍ମରୁ କଠୋର ॥
ଶୁଣି ମୃଦୁବାଣୀ ଦେଖି ଗତି ଭରତଙ୍କ । ଗ୍ଲାନିରେ ତରଳି ଯା'ନ୍ତି ସମସ୍ତ ସେବକ ॥୪॥

---

ନୂଆ ନାବ ଉପରେ ମାତାମାନଙ୍କୁ ଚଢ଼ାଇଲେ ॥ ୪ ॥ ଚାରି ଘଡ଼ିରେ ସମସ୍ତେ ଗଙ୍ଗାନଦୀ ପାର ହୋଇଗଲେ । ତତ୍ପରେ ଭରତ ଓହ୍ଲାଇ ସମସ୍ତଙ୍କୁ ସମ୍ଭାଳିଲେ ॥ ୫ ॥
ଦୋହା —ସେ ପ୍ରାତଃକାଳର କ୍ରିୟାସବୁ ସମ୍ପାଦନ କରି ମାତାମାନଙ୍କ ଚରଣ ବନ୍ଦନା କଲେ ଏବଂ ଗୁରୁଙ୍କୁ ଶିର ନୁଆଁଇ ନିଷାଦଗଣଙ୍କୁ ( ପଥ ଦେଖାଇବା ନିମନ୍ତେ ) ଆଗରେ ରଖିଲେ ଏବଂ ସେନା ଚଳାଇ ଦେଲେ ॥ ୨୦୨ ॥ ଚୌପାଈ —ସେ ନିଷାଦରାଜାଙ୍କୁ ଆଗରେ ରଖି ମାତାମାନଙ୍କର ପାଲିଙ୍କି ସବୁ ପଛରେ ଚଳାଇଲେ । ସାନ ଭାଇ ଶତ୍ରୁଘ୍ନଙ୍କୁ ଡାକି ସେମାନଙ୍କ ସାଙ୍ଗ କରିଦେଲେ । ତତ୍ପରେ ବ୍ରାହ୍ମଣମାନଙ୍କ ସହିତ ଗୁରୁ ଗମନ କଲେ ॥ ୧ ॥ ତତ୍ପରେ ଭରତ ଗଙ୍ଗାଙ୍କୁ ପ୍ରଣାମ କଲେ ଏବଂ ଲକ୍ଷ୍ମଣଙ୍କ ସମେତ ସୀତାରାମଙ୍କୁ ସ୍ମରଣ କଲେ । ଭରତ ପାଦରେ ଚାଲିଲେ । ତାଙ୍କ ସହିତ ଖାଲି ଅଶ୍ୱ (ଶୋଭାଯାତ୍ରାର ସୁସଜ୍ଜିତ ଅଶ୍ୱ ପରି) ଲଗାମବନ୍ଧା ହୋଇ ଚାଲିଥାଆନ୍ତି ॥୨॥ ଉତ୍ତମ ସେବକମାନେ ବାରମ୍ବାର କହୁଥା'ନ୍ତି, "ହେ ନାଥ ! ଆପଣ ଘୋଡ଼ା ଉପରେ ଚଢ଼ନ୍ତୁ !" ଭରତ ଉତ୍ତର ଦେଉଥାଆନ୍ତି, "ଶ୍ରୀରାମଚନ୍ଦ୍ର ତ ପାଦରେ ଚାଲି ଗଲେ । ଆଉ ଖାଲି ଆମ ପାଇଁ ରଥ, ହାତୀ ଓ ଘୋଡ଼ା ଗଢାହୋଇଛନ୍ତି ! ॥୩॥ ମୋର ତ ମୁଣ୍ଡରେ ଚାଲି ଚାଲି ଯିବା କଥା । ସେବକର ଧର୍ମ ସବୁଠାରୁ ବଳି କଠିନ । ଭରତଙ୍କ ଦଶା ଦେଖି ଓ କୋମଳବାଣୀ ଶୁଣି ସମସ୍ତ ସେବକ ଗ୍ଲାନି ହେତୁ ତରଳି ଯାଉଥା'ନ୍ତି ॥ ୪ ॥

ଭରତ ତୀସରେ ପହର କହଁ କୀନ୍ହ ପ୍ରବେସୁ ପ୍ରୟାଗ ।
କହତ ରାମ ସିୟ ରାମ ସିୟ ଉମଗି ଉମଗି ଅନୁରାଗ ॥୨୦୩॥
ଝଲକା ଝଲକତ ପାୟନ୍ହ କୈସେଁ । ପଙ୍କଜ କୋସ ଓସ କନ ଜୈସେଁ ॥
ଭରତ ପୟାଦେହିଁ ଆଏ ଆଜୂ । ଭୟଉ ଦୁଖିତ ସୁନି ସକଲ ସମାଜୂ ॥୧॥
ଖବରି ଲୀନ୍ହ ସବ ଲୋଗ ନହାଏ । କୀନ୍ହ ପ୍ରନାମୁ ତ୍ରିବେନିହିଁ ଆଏ ॥
ସବିଧି ସିତାସିତ ନୀର ନହାନେ । ଦିଏ ଦାନ ମହିସୁର ସନମାନେ ॥୨॥
ଦେଖତ ସ୍ୟାମଲ ଧବଲ ହଲୋରେ । ପୁଲକି ସରୀର ଭରତ କର ଜୋରେ ॥
ସକଲ କାମପ୍ରଦ ତୀରଥରାଊ । ବେଦ ବିଦିତ ଜଗ ପ୍ରଗଟ ପ୍ରଭାଊ ॥୩॥
ମାଗଉଁ ଭୀଖ ତ୍ୟାଗି ନିଜ ଧରମୂ । ଆରତ କାହ ନ କରଇ କୁକରମୂ ॥
ଅସ ଜିୟଁ ଜାନି ସୁଜାନ ସୁଦାନୀ । ସଫଲ କରହିଁ ଜଗ ଜାଚକ ବାନୀ ॥୪॥

---

ଭରତ ତୃତୀୟ ପ୍ରହରରେ ଯାଇଣ ପ୍ରବେଶ କଲେ ପ୍ରୟାଗେ ।
କହି କହି ରାମ ରାମ ସୀତା ରାମ ଉଚ୍ଛୁଳିଣ ଅନୁରାଗେ ॥୨୦୩॥
ଫୋଟକା ଚରଣ ତଳେ ଶୋଭଇ ତେମନ୍ତ । ପଙ୍କଜ କୋଷେ ଶିଶିର ଶୀକର ଯେମନ୍ତ ॥
ଭରତ ଆସିଲେ ପାଦେ ଚାଲି ଚାଲି ଆଜ । ଶୁଣି ଦୁଃଖିତ ହୋଇଲେ ସକଳ ସମାଜ ॥୧॥
ଖବର ନେଲେ, ସମସ୍ତେ ସ୍ନାନ କରିଲେଣି । ତହୁଁ ପ୍ରଣାମ କଲେ ଆସିଣ ତ୍ରିବେଣୀ ॥
ବିଧି ସହ ସିତାସିତ ନୀରେ କରି ସ୍ନାନ । ସମ୍ମାନି ମହୀସୁରଙ୍କୁ ଦେଲେ ବହୁ ଦାନ ॥୨॥
ଦେଖି ଶ୍ୟାମଳ ଧବଳ କଲ୍ଲୋଳ ଭରତ । ପୁଲକ ଦେହେ ଭାଷିଲେ ଯୋଡି ଯୁଗ୍ମହସ୍ତ ॥
ସକଳ କାମନା-ପ୍ରଦ ତୀର୍ଥ ଅଧୀଶ୍ୱର । ଲୋକେ ବେଦେ ସୁବିଦିତ ପ୍ରଭାବ ତୁମର ॥୩॥
ମାଗୁଅଛି ଭିକ୍ଷା ତେଜି ଆପଣା ଧରମ । ଆରତ ନ କରେ ଅବା କେଉଁ କୁକରମ ॥
ଏହା ମନେ ବିଚାରିଣ ଚତୁର ସୁଦାନୀ । ସୁଫଳ କରନ୍ତି ଭବେ ଯାଚକର ବାଣୀ ॥୪॥

---

ଦୋହା ।—ପ୍ରେମରେ ଉଲ୍ଲସିତ ହୋଇ 'ସୀତାରାମ' 'ସୀତାରାମ' କହି ଭରତ ତୃତୀୟ ପ୍ରହରରେ ପ୍ରୟାଗରେ ଯାଇ ପ୍ରବେଶ କଲେ ॥ ୨୦୩ ॥ ଚୌପାଈ ।—ତାଙ୍କ ଚରଣରେ କମଳକୋଷ ଉପରେ ଶିଶିର ବିନ୍ଦୁ ପ୍ରକାଶିତ ହେଲା ପରି ଫୋଟକା ଶୋଭା ପାଉଥାଏ । ଭରତ ଆଜି ପାଦରେ ଚାଲି ଆସିଅଛନ୍ତି, ଏହା ଶୁଣି ସାରା ସମାଜ ଦୁଃଖିତ ହେଲା ॥ ୧ ॥ ସମସ୍ତେ ସ୍ନାନ କରି ସାରିଲେଣି ବୋଲି ଭରତ ଯେତେବେଳେ ଶୁଣିଲେ, ସେତେବେଳେ ସେ ତ୍ରିବେଣୀ ପାଖକୁ ଆସି ତାଙ୍କୁ ପ୍ରଣାମ କଲେ । ତତ୍ପରେ ବିଧିପୂର୍ବକ ଗଙ୍ଗାଯମୁନାର ଶ୍ୱେତ ଓ ଶ୍ୟାମଳ ଜଳରେ ସ୍ନାନ କଲେ ଏବଂ ଦାନ ଦେଇ ବ୍ରାହ୍ମଣ-ମାନଙ୍କୁ ସମ୍ମାନିତ କଲେ ॥ ୨ ॥ ଶ୍ୟାମ ଓ ଶ୍ୱେତ ଲହରୀମାନଙ୍କୁ ଦେଖି ଭରତଙ୍କ ଶରୀର ପୁଲକିତ ହୋଇ ଉଠିଲା ଏବଂ ସେ ହାତ ଯୋଡି କହିଲେ, "ହେ ତୀର୍ଥରାଜ ! ତୁମେ ସମସ୍ତ କାମନାର ପୂରଣକାରୀ । ତୁମ ପ୍ରଭାବ ସକଳ ବେଦରେ ପ୍ରସିଦ୍ଧ ଏବଂ ସଂସାରରେ ପ୍ରକାଶିତ ॥ ୩ ॥ ମୁଁ ଆପଣା ଧର୍ମ ତ୍ୟାଗ-ପୂର୍ବକ ତୁମଙ୍କୁ ଭିକ୍ଷା ମାଗୁଅଛି !

ଅରଥ ନ ଧରମ ନ କାମ ରୁଚି ଗତି ନ ଚହଉଁ ନିରବାନ ।
ଜନମ ଜନମ ରତି ରାମ ପଦ ଯହ ବରଦାନୁ ନ ଆନ ॥୨୦୪॥
ଜାନହୁଁ ରାମୁ କୁଟିଲ କରି ମୋହୀ । ଲୋଗ କହଉ ଗୁର ସାହିବ ଦ୍ରୋହୀ ॥
ସୀତା ରାମ ଚରନ ରତି ମୋରେଁ । ଅନୁଦିନ ବଢ଼ଉ ଅନୁଗ୍ରହ ତୋରେଁ ॥୧॥
ଜଲଦୁ ଜନମ ଭରି ସୁରତି ବିସାରଉ । ଜାଚତ ଜଲୁ ପବି ପାହନ ଡାରଉ ॥
ଚାତକୁ ରଟନି ଘଟେଁ ଘଟି ଜାଈ । ବଢ଼େଁ ପ୍ରେମୁ ସବ ଭାଁତି ଭଲାଈ ॥୨॥
କନକହିଁ ବାନ ଚଢ଼ଇ ଜିମି ଦାହେଁ । ତିମି ପ୍ରିୟତମ ପଦ ନେମ ନିବାହେଁ ॥
ଭରତ ବଚନ ସୁନି ମାଝ ତ୍ରିବେନୀ । ଭଇ ମୃଦୁ ବାନି ସୁମଂଗଲ ଦେନୀ ॥୩॥
ତାତ ଭରତ ତୁମ୍ହ ସବ ବିଧି ସାଧୂ । ରାମ ଚରନ ଅନୁରାଗ ଅଗାଧୂ ॥
ବାଦି ଗଲାନି କରହୁ ମନ ମାହୀଁ । ତୁମ୍ହ ସମ ରାମହି କୋଉ ପ୍ରିୟ ନାହୀଁ ॥୪॥

---

ଅର୍ଥ ଧର୍ମ କାମେ ନାହିଁ ମୋ କାମନା ନ ଚହେଁ ଗତି ନିର୍ବାଣ ।
ଜନ୍ମ ଜନ୍ମାନ୍ତରେ ରାମ-ପଦେ ପ୍ରେମ ଦିଅ ଏହି ବରଦାନ ॥୨୦୪॥
କୁଟିଳ ବୋଲିଣ ମୋତେ ଶ୍ରୀରାମ ଜାଣନ୍ତୁ । ଗୁରୁ ସ୍ୱାମିଦ୍ରୋହୀ ବୋଲି ଲୋକେ ବି କହନ୍ତୁ ॥
ସୀତା ରାମ ପାଦ-ପଦ୍ମେ ଅନୁରାଗ ମୋର । ପ୍ରତି ଦିନ ବୃଦ୍ଧି ହେଉ ଅନୁଗ୍ରହେ ତୋର ॥୧॥
ଚାତକ ଆଜନ୍ମ-ସ୍ମୃତି ମେଘ ଭୁଲିଯାଏ । ଜଲ ଯାଚନ୍ତେ ପାଷାଣ ପବି ବରଷାଏ ॥
ଚାତକ ରଟ କମିଲେ ମର୍ଯ୍ୟାଦା କମଇ । ବଢିଲେ ପ୍ରେମ ତାହାହିଁ ଉତ୍ତମ ଅଟଇ ॥୨॥
କନକ ଉଜ୍ଜ୍ୱଳ ହୁଏ ଦାହିଲେ ଯେପରି । ପ୍ରିୟତମ ପଦେ ପ୍ରୀତି ବଢ଼ୁ ସେହିପରି ॥
ତ୍ରିବେଣୀ ମଧ୍ୟରୁ ଶୁଣି ଭରତ ବଚନ । ହେଲା ମଙ୍ଗଳଦାୟକ ମୃଦୁମୟ ସ୍ୱନ ॥୩॥
ସମସ୍ତ ପ୍ରକାରେ ସାଧୁ ତୁମ୍ଭେ, ହେ ତନୟ । ରାମ ଚରଣେ ତୁମ୍ଭର ପ୍ରୀତି ଅତିଶୟ ॥
ବୃଥା ଗ୍ଲାନି ତୁମ୍ଭେ କିନା ମନ ମଧ୍ୟେ କର । ତୁମ୍ଭ ସମ କେହି ନାହିଁ ପ୍ରିୟ ରାମଙ୍କର ॥୪॥

---

ଆଉ ମନୁଷ୍ୟ କେଉଁ କୁକର୍ମ ନ କରେ ? ଏପରି ହୃଦୟରେ ଜାଣି ସୁଜ୍ଞ ଉତ୍ତମ ଦାନ-ମାନେ ଯାଚକଙ୍କ ବାଣୀ ସଫଳ କରିଥାଆନ୍ତି ॥ ୪ ॥ ଦୋହା —ମୋର ଅର୍ଥ, ଧର୍ମ ବା କାମ ପ୍ରତି ରୁଚି ନାହିଁ; କିମ୍ବା ମୋକ୍ଷ ମଧ୍ୟ ମୁଁ ଚାହୁଁନାହିଁ । ଜନ୍ମେ ଜନ୍ମେ ମୋର ଶ୍ରୀରାମଙ୍କ ଚରଣ ପ୍ରତି ପ୍ରୀତି ରହୁ, କେବଳ ଏହି ବରଦାନ ମାଗୁଛି; ଆଉ କିଛି ନାହିଁ ॥ ୨୦୪ ॥ ଚୌପାଈ .—ସ୍ୱୟଂ ଶ୍ରୀରାମଚନ୍ଦ୍ର ମୋତେ କୁଟିଳ ବୁଝନ୍ତୁ ପଛକେ, ଲୋକେ ମୋତେ ଗୁରୁଦ୍ରୋହୀ ଓ ସ୍ୱାମିଦ୍ରୋହୀ କୁହନ୍ତୁ ପଛକେ, କିନ୍ତୁ ତୁମ କୃପା ଯୋଗୁ ସୀତାରାମ ଚରଣରେ ମୋର ପ୍ରେମ ଦିନକୁ ଦିନ ବଢ଼ୁଥାଉ ॥ ୧ ॥ ମେଘ ଆଜନ୍ମପ୍ରେମୀ ଚାତକର ଖବର ଭୁଲି ଯାଇପାରେ, ଜଳ ମାଗିଲେ ସେ ବଜ୍ର-କୁଆପଥର ପକାଇ ପାରେ । କିନ୍ତୁ ଚାତକର ରଟନ କମିଗଲେ ତାହାର ପ୍ରତିଷ୍ଠା ନଷ୍ଟ ହୋଇଯିବ । ପ୍ରେମର ବୃଦ୍ଧିରେ ତାହାର ସବୁ ପ୍ରକାରେ ମଙ୍ଗଳ ॥ ୨ ॥ ଯେପରି ପୋଡିଲେ, ସୁନା ଉପରେ ଜ୍ୟୋତି ପ୍ରକାଶିତ ହୁଏ, ସେହିପରି ପ୍ରିୟତମଙ୍କ ଚରଣରେ ପ୍ରେମର ନିୟମ

ତନୁ ପୁଲକେଉ ହିୟଁ ହରଷୁ ସୁନି ବେନି ବଚନ ଅନୁକୂଲ ।
ଭରତ ଧନ୍ୟ କହି ଧନ୍ୟ ସୁର ହରଷିତ ବରଷହିଁ ଫୂଲ ॥୨୦୫॥
ପ୍ରମୁଦିତ ତୀରଥରାଜ ନିବାସୀ । ବୈଖାନସ ବଟୁ ଗୃହୀ ଉଦାସୀ ॥
କହହିଁ ପରସପର ମିଲି ଦସ ପାଁଚା । ଭରତ ସନେହୁ ସୀଲୁ ସୁଚି ସାଁଚା ॥୧॥
ସୁନତ ରାମ ଗୁନ ଗ୍ରାମ ସୁହାଏ । ଭରଦ୍ୱାଜ ମୁନିବର ପହିଁ ଆଏ ॥
ଦଣ୍ଡ ପ୍ରନାମୁ କରତ ମୁନି ଦେଖେ । ମୂରତିମନ୍ତ ଭାଗ୍ୟ ନିଜ ଲେଖେ ॥୨॥
ଧାଇ ଉଠାଇ ଲାଇ ଉର ଲୀହ୍ନେ । ଦୀହ୍ନି ଅସୀସ କୃତାରଥ କୀହ୍ନେ ॥
ଆସନୁ ଦୀହ୍ନ ନାଇ ସିରୁ ବୈଠେ । ଚହତ ସକୁଚ ଗୃହଁ ଜନୁ ଭଜି ପୈଠେ ॥୩॥

---

ତ୍ରିବେଣୀଙ୍କ ବାଣୀ ଅନୁକୂଳ ଶୁଣି ପୁଲକ ପ୍ରଫୁଲ୍ଲ ଭରେ ।
ଭରତଙ୍କୁ ମୋଦେ 'ଧନ୍ୟ' 'ଧନ୍ୟ' କହୁ ପୁଷ୍ପ ବରଷନ୍ତି ସୁରେ ॥୨୦୫॥
ଅତି ପ୍ରମୋଦିତ ମନ ତୀର୍ଥରାଜ-ବାସୀ । ବ୍ରହ୍ମଚାରୀ ବାନପ୍ରସ୍ଥ ଗୃହସ୍ଥ ଉଦାସୀ ॥
କହନ୍ତି ମିଳିଣ ଦଶ ପାଞ୍ଚ ପରସ୍ପର । ଶୀଲ ସ୍ନେହ ପବିତ୍ରତା ସତ୍ୟ ଭରତର ॥୧॥
ଶୁଣି ଶୁଣି ମନୋହର ରାମ ଗୁଣ ଗାନେ । ପ୍ରବେଶିଲେ ଭରଦ୍ୱାଜ ମୁନି ସନ୍ନିଧାନେ ॥
କରନ୍ତେ ଦଣ୍ଡ ପ୍ରଣାମ ଦେଖି ମୁନିବର । ମୂର୍ତ୍ତିମନ୍ତ ମନେ କଲେ ସୌଭାଗ୍ୟ ନିଜର ॥୨॥
ଧାଇଁ ଉଠାଇ ହୃଦେ ଲଗାଇ ନେଇଣ । କୃତାର୍ଥ କରିଲେ ଶୁଭ ଆଶିଷ ଦେଇଣ ॥
ଆସନ ଦିଅନ୍ତେ ନତ ମସ୍ତକେ ବସିଲେ । ପଳାଇ ଲଜ୍ଜା ଗୃହେ ବା ପଶିବା ଇଚ୍ଛିଲେ ॥୩॥

---

ନିର୍ବାହ କଲେ ପ୍ରେମୀ ସେବକର ଗୌରବ ବଢିଯାଏ ।" ଭରତଙ୍କ ବଚନ ଶୁଣି ତ୍ରିବେଣୀ ମଧ୍ୟରୁ ସୁନ୍ଦର ମଙ୍ଗଳଦାୟିନୀ କୋମଳବାଣୀ ଶୁଣାଗଲା— ॥ ୩ ॥ "ହେ ବତ୍ସ ଭରତ ! ତୁମେ ସବୁ ପ୍ରକାରେ ସାଧୁ । ଶ୍ରୀରାମଙ୍କ ଚରଣରେ ତୁମର ଅଗାଧ ପ୍ରେମ । ତୁମେ ବୃଥାରେ ମନରେ ଗ୍ଲାନି କରୁଅଛ । ଶ୍ରୀରାମଚନ୍ଦ୍ରଙ୍କର ତୁମ ସମାନ ପ୍ରିୟ ଆଉ କେହି ନାହାନ୍ତି ।" ॥ ୪ ॥ ଦୋହା .—ତ୍ରିବେଣୀଙ୍କ ଅନୁକୂଳ ବଚନ ଶୁଣି ଭରତଙ୍କ ଶରୀର ପୁଲକିତ ହୋଇଗଲା । ହୃଦୟରେ ହର୍ଷ ପୂରିଗଲା । "ଭରତ ଧନ୍ୟ ! ଧନ୍ୟ ଭରତ ।" କହି ଦେବତାମାନେ ଆନନ୍ଦିତ ହୋଇ ଫୁଲ ବରଷିବାକୁ ଲାଗିଲେ ॥ ୨୦୫ ॥ ଚୌପାଇ '—ତୀର୍ଥରାଜ-ପ୍ରୟାଗନିବାସୀ ବାନପ୍ରସ୍ଥ, ବ୍ରହ୍ମଚାରୀ, ଗୃହସ୍ଥ ଓ ସନ୍ନ୍ୟାସୀ ସମସ୍ତେ ଅତିଶୟ ଆନନ୍ଦିତ ହେଲେ ଏବଂ ପାଞ୍ଚଦଶ ମିଳି ପରସ୍ପର କଥାବାର୍ତ୍ତା ହେଉଥା'ନ୍ତି, "ଭରତଙ୍କ ପ୍ରେମ ଓ ଚରିତ୍ର ପବିତ୍ର ଓ ସତ୍ୟ ।" ॥ ୧ ॥ ଶ୍ରୀରାମଚନ୍ଦ୍ରଙ୍କ ସୁନ୍ଦର ଗୁଣ-ସମୂହ ଶୁଣି ଶୁଣି ସେ ମୁନିବର ଭରଦ୍ୱାଜଙ୍କ ନିକଟକୁ ଆସିଲେ । ମୁନି ଭରତଙ୍କୁ ଦଣ୍ଡବତ ପ୍ରଣାମ କରିବାର ଦେଖିଲେ ଏବଂ ତାହାଙ୍କୁ ନିଜର ମୂର୍ତ୍ତିମାନ୍ ସୌଭାଗ୍ୟ ବୋଲି ମନେ କଲେ ॥ ୨ ॥ ସେ ଦୌଡ଼ି ଭରତଙ୍କୁ ଉଠାଇ ଆଲିଙ୍ଗନ କରି ପକାଇଲେ ଏବଂ ଆଶୀର୍ବାଦ ଦେଇ କୃତାର୍ଥ କଲେ । ମୁନି ତାହାଙ୍କୁ ଆସନ ଦେଲେ । ସେ ମୁଣ୍ଡ ନୁଆଁଇ ଏପରି ବସିଲେ, ବୋଧ ହେଲା, ସତେ ଯେପରି ସେ

ମୁନି ପୁଁଛବ କଛୁ ଯହ ବଡ଼ ସୋଚୂ । ବୋଲେ ଋଷି ଲଖି ସୀଲୁ ସଁକୋଚୂ ॥
ସୁନହୁ ଭରତ ହମ ସବ ସୁଧି ପାଈ । ବିଧି କରତବ ପର କିଛୁ ନ ବସାଈ ॥୩॥

ତୁହ୍ମ ଗଲାନି ଜିୟଁ ଜନି କରହୁ ସମୁଝି ମାତୁ କରତୂତି ।
ତାତ କୈକଇହି ଦୋସୁ ନହିଁ ଗଈ ଗିରା ମତି ଧୂତି ॥୨୦୬॥

ଯହଉ କହତ ଭଲ କହିହି ନ କୋଊ । ଲୋକୁ ବେଦୁ ବୁଧ ସଂମତ ଦୋଊ ॥
ତାତ ତୁହ୍ମାର ବିମଲ ଜସୁ ଗାଈ । ପାଇହି ଲୋକଉ ବେଦୁ ବଡ଼ାଈ ॥୧॥
ଲୋକ ବେଦ ସଂମତ ସବୁ କହଈ । ଜେହି ପିତୁ ଦେଇ ରାଜୁ ସୋ ଲହଈ ॥
ରାଉ ସତ୍ୟବ୍ରତ ତୁହ୍ମହି ବୋଲାଈ । ଦେତ ରାଜୁ ସୁଖୁ ଧରମୁ ବଡ଼ାଈ ॥୨॥
ରାମ ଗଵନୁ ବନ ଅନରଥ ମୂଲା । ଜୋ ସୁନି ସକଲ ବିସ୍ୱ ଭଇ ସୂଲା ॥
ସୋ ଭାବୀ ବସ ରାନି ଅୟାନୀ । କରି କୁଚାଲି ଅନ୍ତହୁଁ ପଛିତାନୀ ॥୩॥

---

ଋଷି କହୁ ପଚାରିବେ, ଏହି ଚିନ୍ତା ଅତି । ଶୀଲ ସଙ୍କୋଚ ବିଲୋକି ମୁନିଏ ବୋଲନ୍ତି ॥
ଶୁଣ ଭରତ, ମୁଁ ସବୁ ସନ୍ଦେଶ ପାଇଛୁ । ବିଧି ଭିଆଣ ଉପରେ ବଳ ନ ହିଁ କିଛୁ ॥୩॥

ଜନନୀ କୁକର୍ମ ହେଜଣି ନନ୍ଦନ ମଣି ନାହିଁ ମନେ ଗ୍ଲାନି ।
କୈକେୟୀର ଏଥି ଦୋଷ ନାହିଁ କିଛୁ ମତି ହରି ନେଲା ବାଣୀ ॥୨୦୬॥

ଭଲ ନ କହିବେ କେହି ଏହା ବି କହନ୍ତେ । ଲୋକ ବେଦ ବେନି ମାନ୍ୟ ବୁଧଙ୍କ ସମ୍ମତେ ॥
ବତ୍ସ ଭରତ, ତୁମ୍ଭର ଶୁଭ ଯଶ ଗାଇ । ଲୋକ ବେଦ ଏ ଉଭୟେ ପାଇବେ ବଡ଼ାଇ ॥୧॥
ଲୋକ ବେଦ ମତ ଏହା ସମସ୍ତେ କହନ୍ତି । ରାଜ୍ୟ ସେ ଲଭଇ ପିତା ଯାହାଙ୍କୁ ଦିଅନ୍ତି ॥
ତୁମ୍ଭଙ୍କୁ ଡକାଇ ରାଜ୍ୟ ନୃପ ସତ୍ୟବ୍ରତ । ଦେଇଥିଲେ ପାଇଥାନ୍ତେ ଧରମ ମହତ ॥୨॥
ରାମଙ୍କ ବନ ଗମନ ଅନର୍ଥର ମୂଳ । ଯାହା ଶୁଣି ସାରା ବିଶ୍ୱେ ବ୍ୟାପିଗଲା ଶୂଳ ॥
ତାହା ଭାବୀ ବଶ, ରାଣୀ ଅଜ୍ଞାନେ ପଡ଼ିଣ । ପଛେ ଅନୁତପ୍ତ ହୋନ୍ତି କୁବୁଦ୍ଧି କରିଣ ॥୩॥

---

ପଳାଇ ଆସି ସଙ୍କୋଚର ଗୃହରେ ପଶିଯିବାକୁ ବ୍ୟଗ୍ର ॥ ୩ ॥ ମୁନି ପଚାରିଲେ, କ'ଣ ଉତ୍ତର ଦେବି ବୋଲି ଭରତ ମନେ ମନେ ବଡ଼ ଚିନ୍ତା କରୁଥା'ନ୍ତି । ଭରତଙ୍କ ଚରିତ୍ର ଓ ସଙ୍କୋଚ ଦେଖି ଋଷି କହିଲେ, "ଭରତ ! ଶୁଣ । ଆମେ ସବୁ ଖବର ପାଇ ସାରିଛୁ । ବିଧାତାଙ୍କ କର୍ତ୍ତବ୍ୟ ଉପରେ କାହାରି ବଳ ଚଳେ ନାହିଁ ॥ ୪ ॥ ଦୋହା —ମାତାଙ୍କ କୃତତ୍ୱକୁ ମନେ ପକାଇ ତୁମେ ହୃଦୟରେ ଗ୍ଲାନି କରନାହିଁ । ହେ ବତ୍ସ ! କୈକେୟୀଙ୍କର କୌଣସି ଦୋଷ ନାହିଁ । ସରସ୍ୱତୀ ତ ତାଙ୍କ ବୁଦ୍ଧି ବାଉଳା କରି ଦେଇଥିଲେ ॥ ୨୦୬ ॥ ଚୌପାଇ —ତୁମର ଏହି ଚକାନ୍ତରେ ହାତ ଅଛି ବୋଲି କେହି କହିଲେ ବି ସେ ଭଲ କହିବେ ନାହିଁ, କାରଣ ଲୋକମତ ଓ ବେଦମତ ଉଭୟ ବିଦ୍ୱାନ୍‌ମାନଙ୍କ ଦ୍ୱାରା ମାନ୍ୟ । ହେ ବତ୍ସ ! ଲୋକମତ ଓ ବେଦମତ ଉଭୟେ ତୁମ ନିର୍ମଳ ଯଶ ଗାଇ ପ୍ରଶଂସା ଲାଭ କରିବେ ॥ ୧ ॥ ଏହି ଲୋକ ଓ ବେଦ ଉଭୟଙ୍କର ମାନ୍ୟ ଏବଂ ସମସ୍ତେ କହନ୍ତି ଯେ, ପିତା ଯାହାକୁ ରାଜ୍ୟ ଦିଅନ୍ତି, ସେହି

ତହଉଁ ତୁହ୍ମାର ଅଲପ ଅପରାଧୂ । କହୈ ସୋ ଅଧମୁ ଅୟାନ ଅସାଧୂ ॥
କରତେହୁ ରାଜୁ ତ ତୁହ୍ମହି ନ ଦୋଷୂ । ରାମହି ହୋତ ସୁନତ ସଂତୋଷୂ ॥୪॥

ଅବ ଅତି କୀହ୍ନେହୁ ଭରତ ଭଲ ତୁହ୍ମହି ଉଚିତ ମତ ଏହୁ ।
ସକଲ ସୁମଂଗଲ ମୂଲ ଜଗ ରଘୁବର ଚରନ ସନେହୁ ॥୨୦୭॥

ସୋ ତୁହ୍ମାର ଧନୁ ଜୀବନୁ ପ୍ରାନା । ଭୂରିଭାଗ କୋ ତୁହ୍ମହି ସମାନା ॥
ୟହ ତୁହ୍ମାର ଆଚରଜୁ ନ ତାତା । ଦସରଥ ସୁଅନ ରାମ ପ୍ରିୟ ଭ୍ରାତା ॥୧॥
ସୁନହୁ ଭରତ ରଘୁବର ମନ ମାହୀଁ । ପେମ ପାତ୍ରୁ ତୁହ୍ମ ସମ କୋଉ ନାହୀଁ ॥
ଲଖନ ରାମ ସୀତହି ଅତି ପ୍ରୀତୀ । ନିସି ସବ ତୁହ୍ମହି ସରାହତ ବୀତୀ ॥୨॥
ଜାନା ମରମୁ ନହାତ ପ୍ରୟାଗା । ମଗନ ହୋହିଁ ତୁହ୍ମରେଁ ଅନୁରାଗା ॥
ତୁହ୍ମ ପର ଅସ ସନେହୁ ରଘୁବର କେଁ । ସୁଖ ଜୀବନ ଜଗ ଜସ ଜଡ଼ ନର କେଁ ॥୩॥

---

ତହିଁରେ ଅଛୁ କଳ୍ପିତ ଅପ୍ରାଧ ତୁମ୍ଭର । ଯେ କହିବେ ସେ ଅସାଧୁ ଅଜ୍ଞାନୀ ପାମର ॥
ରାଜ୍ୟ କରିଥିଲେ ମଧ୍ୟ ନ ଲାଗନ୍ତା ଦୋଷ । ଶୁଣି ଶ୍ରୀରାମଙ୍କୁ ହୋଇଥାଆନ୍ତା ସନ୍ତୋଷ ॥୪॥

ତୁମ୍ଭର ଏ ମତ ଉଚିତ ଭରତ ଏବେ କଲ ଭଲ ଅତି ।
ଜଗତେ ସକଲ ସୁମଙ୍ଗଳ ମୂଳ ରାମ ପଦରେ ପୀରତି ॥୨୦୭॥

ତାହା ତୁମ୍ଭ ପ୍ରାଣ-ଧନ, ଅଟଇ ଜୀବନ । ବଡ଼ ଭାଗ୍ୟବାନ କିଏ ତୁମ୍ଭ ସମ ଅନ୍ୟ ॥
ଏହା ତୁମ୍ଭ ପକ୍ଷେ ବତ୍ସ, ନୁହଇ ଅଦ୍ଭୁତ । ରାମଙ୍କ ପ୍ରିୟ ଅନୁଜ ଦଶରଥ ସୁତ ॥୧॥
ଶୁଣ ପୁତ୍ର, ତୁମ୍ଭ ସମ ରଘୁପତି ମନେ । ପ୍ରେମପାତ୍ର ଆଉ କେହି ନାହିଁ ତ୍ରିଭୁବନେ ॥
ଅତିଶୟ ପ୍ରେମେ ରାମ ସୀତା ଲକ୍ଷ୍ମଣଙ୍କୁ । ସାରା ନିଶି କଟିଗଲା ପ୍ରଶଂସି ତୁମ୍ଭଙ୍କୁ ॥୨॥
ଜାଣିଲି ମରମ ସ୍ନାନ କରନ୍ତେ ପ୍ରୟାଗେ । ନିମଗ୍ନ ସେ ହେଉଥିଲେ ତୁମ୍ଭ ଅନୁରାଗେ ॥
ତୁମ୍ଭ ଉପରେ ଏମନ୍ତ ସ୍ନେହ ରାମଙ୍କର । ସୁଖ ଜୀବନେ ଯେସନ ଜଡ଼ ମାନବର ॥୩॥

---

ପୁଣି ତାହା ପାଏ । ରାଜା ସତ୍ୟବ୍ରତ ଥିଲେ; ତୁମଙ୍କୁ ତାଙ୍କ ରାଜ୍ୟ ଦେଇଥା'ନ୍ତେ ତ ସୁଖ ମିଳିଥାନ୍ତା, ଧର୍ମ ରହିଥା'ନ୍ତା ଓ ଯଶ ହୋଇଥା'ନ୍ତା ॥ ୨ ॥ ସମସ୍ତ ଅନର୍ଥର ମୂଳ ତ ଶ୍ରୀରାମଙ୍କ ବନଗମନ, ଯାହା ଶୁଣି ସମଗ୍ର ସଂସାର ଆଜି ପୀଡ଼ାଗ୍ରସ୍ତ । ଶ୍ରୀରାମଙ୍କ ସେହି ବନଗମନ ତ ଭବିତବ୍ୟତାବଶତଃ ହେଲା । ବୁଦ୍ଧିହୀନା ରାଣୀ ତ ଭାବୀବଶତଃ ଚକ୍ରାନ୍ତ କରି ଶେଷରେ ଅନୁତାପ କଲେ ॥ ୩ ॥ ତହିଁରେ ତୁମର ଟିକିଏ ହେଲେ ଦୋଷ ଅଛି ବୋଲି ଯଦି କେହି କହେ, ସେ ଅଧମ, ଅଜ୍ଞାନୀ ଓ ଅସାଧୁ । ଯଦି ତୁମେ ରାଜତ୍ୱ କରିଥା'ନ୍ତ, ତେବେ ସୁଦ୍ଧା ତୁମର ଦୋଷ ହୋଇ ନ ଥା'ନ୍ତା । ଶୁଣି ରାମଚନ୍ଦ୍ରଙ୍କୁ ମଧ୍ୟ ସନ୍ତୋଷ ମିଳିଥା'ନ୍ତା ॥ ୪ ॥ ଦୋହା :—ହେ ଭରତ ! ଏବେ ତୁମେ ଯାହା କଲ, ବହୁତ ଭଲ କଲ । ଏହି ମତ ତୁମ ପକ୍ଷରେ ସମୀଚୀନ । ଶ୍ରୀରାମଙ୍କ ଚରଣରେ ପ୍ରେମ ହେବା ହିଁ ସଂସାରର ସମସ୍ତ ମଙ୍ଗଳର ମୂଳ ॥ ୨୦୭ ॥ ଅତଏବ ସେହି ରାମଚରଣ-ପ୍ରେମ ତ ତୁମ ଧନ, ଜୀବନ ଓ ପ୍ରାଣ; ତୁମପରି ବଡ଼ ଭାଗ୍ୟବାନ୍ ଆଉ

ଯହ ନ ଅଧିକ ରଘୁବୀର ବଡ଼ାଈ । ପ୍ରନତ କୁଟୁମ୍ବ ପାଲ ରଘୁରାଈ ॥
ତୁହ୍ମ ତୌ ଭରତ ମୋର ମତ ଏହୂ । ଧରେଁ ଦେହ ଜନୁ ରାମ ସନେହୂ ॥୪॥
ତୁହ୍ମ କହଁ ଭରତ କଲଂକ ଯହ ହମ ସବ କହଁ ଉପଦେସୁ ।
ରାମ ଭଗତି ରସ ସିଦ୍ଧି ହିତ ଭା ଯହ ସମଉ ଗନେସୁ ॥୨୦୮॥
ନବ ବିଧୁ ବିମଲ ତାତ ଜସୁ ତୋରା । ରଘୁବର କିଂକର କୁମୁଦ ଚକୋରା ॥
ଉଦିତ ସଦା ଅଁଥଇହି କବହୂଁ ନା । ଘଟିହି ନ ଜଗ ନଭ ଦିନ ଦିନ ଦୂନା ॥୧॥
କୋକ ତିଲୋକ ପ୍ରୀତି ଅତି କରିହୀ । ପ୍ରଭୁ ପ୍ରତାପ ରବି ଛବିହି ନ ହରିହୀ ॥
ନିସିଦିନ ସୁଖଦ ସଦା ସବ କାହୂ । ଗ୍ରସିହି ନ କୈକଇ କରତବୁ ରାହୂ ॥୨॥

---

ଏ ନୁହେଁ ଅଧିକ କିଛି ବଡ଼ାଇ ରାମଙ୍କ । ପ୍ରଣତ-କୁଟୁମ୍ବ-ପାଳ ଶ୍ରୀ ରଘୁନାୟକ ॥
ତୁମ୍ଭେ ତ ଭରତ, ମୋର ମତ ଏହିପରି । ରାମ-ସ୍ନେହ ମନେ ହୁଏ ଦେହ ଅଛ ଧରି ॥୪॥
ତୁମ୍ଭଙ୍କୁ ଭରତ ! ଏ ବଡ଼ କଳଙ୍କ ଅମ୍ଭ ଲାଗି ଉପଦେଶ ।
ରାମ-ଭକ୍ତି-ରସ-ସିଦ୍ଧି ହେତୁ ହେଲା ଏ ସମୟ ଶ୍ରୀ ଗଣେଶ ॥୨୦୮॥
ବିମଳ ନବ ବିଧୁ ତାତ ! ଯଶ ତୋର ; ରଘୁନାଥଙ୍କ କିଙ୍କର କୁମୁଦ ଚକୋର ॥
ଉଦିତ ରହିବ, ଉଦ-ନଭେ ନ ବୁଡ଼ିବ । ଦ୍ୱିଗୁଣ ବଢ଼ିବ ନିତି, କ୍ଷୟ ନ ଲଭିବ ॥୧॥
ତ୍ରିଲୋକ-ଚକୋର ତା'ରେ ପ୍ରୀତି ଆଚରିବେ । ପ୍ରଭୁଙ୍କ ପ୍ରତାପ-ରବି ଛବି ନ ହରିବେ ॥
ନିଶି ଦିନ ସମସ୍ତଙ୍କ ସୁଖଦ ହୋଇବ । କୈକେୟୀ କୁକର୍ମ-ରାହୁ ଗ୍ରାସ ନ କରିବ ॥୨॥

---

କିଏ ? ହେ ବତ୍ସ ! ତୁମ ପକ୍ଷରେ ଏହା ଅତ୍ୟୁକ୍ତିର ବିଷୟ ନୁହେଁ । କାରଣ ତୁମେ ଦଶରଥଙ୍କ ପୁତ୍ର ଓ ଶ୍ରୀରାମଙ୍କ ପ୍ରିୟ ଭାଇ ॥ ୧ ॥ ହେ ଭରତ ! ଶ୍ରୀରାମଙ୍କ ମନରେ ତୁମ ସମାନ ପ୍ରେମପାତ୍ର ଅନ୍ୟ କେହି ନାହିଁ । ଲକ୍ଷ୍ମଣ, ଶ୍ରୀରାମ ଓ ସୀତା, ତିନି ଜଣ ଆଜି ପ୍ରେମରେ ତୁମ ପ୍ରଶଂସା କରୁ କରୁ ସେଦିନ ରାତି ବିତିଯାଇଛି ॥ ୨ ॥ ପ୍ରୟାଗରାଜରେ ସେମାନେ ସ୍ନାନ କରୁଥିଲେ ବେଳେ ମୁଁ ସେମାନଙ୍କ ମର୍ମ ବୁଝି ପାରିଛି । ସେମାନେ ତୁମ ପ୍ରେମରେ ମଗ୍ନ ହୋଇଅଛନ୍ତି । ମୂର୍ଖ ବିଷୟାସକ୍ତ ମନୁଷ୍ୟର ସଂସାରର ସୁଖମୟ ଜୀବନ ପ୍ରତି ଯେପରି ଆସକ୍ତି, ତୁମ ଉପରେ ଶ୍ରୀରାମଙ୍କ ସ୍ନେହ ସେହିପରି ଅଗାଧ ॥୩॥ ଏହା ରଘୁନାଥଙ୍କ ପକ୍ଷରେ ଅଧିକ ବଡ଼ାଇର ବିଷୟ ନୁହେଁ । କାରଣ ଶ୍ରୀ ରଘୁନାଥ ଶରଣାଗତଙ୍କୁ ସବୁବେଳେ ପାଳନ କରନ୍ତି । ହେ ଭରତ ! ମୋର ଏହି ମତ, ତୁମେ ତ ସତେ ଯେପରି ଶ୍ରୀରାମଙ୍କ ପ୍ରେମର ମୂର୍ତ୍ତିମନ୍ତ ଶରୀର ॥୪॥ ଦୋହା :—ହେ ଭରତ ! ତୁମ ବିଷୟରେ ଏହା ତୁମର କଳଙ୍କ । କିନ୍ତୁ ଆମ ସମସ୍ତଙ୍କ ପକ୍ଷରେ ଏହା ତ ଶିକ୍ଷା ବା ଉପଦେଶ । ଶ୍ରୀରାମ-ଭକ୍ତି-ରସସିଦ୍ଧି ନିମନ୍ତେ ଏହି ସମୟ ଶ୍ରୀ ଗଣେଶ ( ଅତି ଶୁଭମସ୍ତ ) ହୋଇଅଛି ॥୨୦୮॥ ଚୌପାଈ :—ହେ ବତ୍ସ ! ତୁମ ଯଶ ନିର୍ମଳ ଚନ୍ଦ୍ରମା ଏବଂ ଶ୍ରୀରାମଙ୍କ ଦାସ କୁମୁଦ ଓ ଚକୋର । କିନ୍ତୁ ତୁମର ଏହି ଯଶ-ଚନ୍ଦ୍ରମା ସଦାସର୍ବଦା ଉଦିତ ରହିବ, କଦାପି ଅସ୍ତ ହେବନାହିଁ । ଜଗତ୍-ଆକାଶରେ ଏହା କେବେ ଅସ୍ତ ହେବନାହିଁ, ବରଂ ଦିନକୁ ଦିନ

ପୁରନ ରାମ ସୁପେମ ପିୟୂଷା । ଗୁର ଅବମାନ ଦୋଷ ନହିଁ ଦୂଷା ॥
ରାମ ଭଗତ ଅବ ଅମିଅଁ ଅଘାହୂଁ । କୀହ୍ନେହୁ ସୁଲଭ ସୁଧା ବସୁଧାହୂଁ ॥୩॥
ଭୂପ ଭଗୀରଥ ସୁରସରି ଆନୀ । ସୁମିରତ ସକଲ ସୁମଂଗଲ ଖାନୀ ॥
ଦସରଥ ଗୁନ ଗନ ବରନି ନ ଜାହୀଂ । ଅଧିକୁ କହା ଜେହି ସମ ଜଗ ନାହୀଂ ॥୪॥

ଜାସୁ ସନେହ ସକୋଚ ବସ ରାମ ପ୍ରଗଟ ଭଏ ଆଇ ।
ଜେ ହର ହିୟ ନୟନନି କବହୁଁ ନିରଖେ ନହୀଂ ଅଘାଇ ॥୨୦୯॥

କୀରତି ବିଧୁ ତୁମ୍ହ କୀହ୍ନ ଅନୂପା । ଜହଁ ବସ ରାମ ପେମ ମୃଗରୂପା ॥
ତାତ ଗଲାନି କରହୁ ଜିୟଁ ଜାଏଁ । ଡରହୁ ଦରିଦ୍ରହି ପାରସୁ ପାଏଁ ॥୧॥

---

ହୋଇବ ରାମ ସୁପ୍ରେମ-ପୀୟୂଷେ ପୂରିତ । ଗୁରୁ ଅପମାନ-ଦୋଷେ ନ ହେବ ଦୂଷିତ ॥
ରାମ-ଭକ୍ତ ଏବେ ତୃପ୍ତ ହୁଅନ୍ତୁ ସୁଧାରେ । ସୁଲଭ କଲ ଅମୃତ ତୁମ୍ଭେ ବସୁଧାରେ ॥୩॥
ନୃପ ଭଗୀରଥ ଗଙ୍ଗା ଆଣିଲେ ଜଗତେ । ସମସ୍ତ ମଙ୍ଗଳ ହୁଏ ଯାହାଙ୍କ ସ୍ମରଣେ ॥
ଦଶରଥ ଗୁଣାବଳୀ ନ ହୁଏ ବର୍ଣ୍ଣନ । ଅଧିକ କି, ଯାହା ସମ ବିଶ୍ୱେ ନାହିଁ ଅନ୍ୟ ॥୪॥

ଯାହାଙ୍କ ସଙ୍କୋଚ-ପ୍ରେମ-ବଶ ହୋଇ ରାମ ପ୍ରକଟିଲେ ଆସି ।
ଯାହାଙ୍କୁ ହୃଦୟ-ନେତ୍ରେ ଚାହିଁ ତୃପ୍ତ ନ ହୁଅନ୍ତି କାଶୀବାସୀ ॥୨୦୯॥

କୀର୍ତ୍ତି-ବିଧୁ କଲ ତୁମ୍ଭେ ଅତି ଅନୁପମ । ଯହିଁ ବାସ କରେ ରାମ ପ୍ରେମ ମୃଗ ସମ ॥
ବୃଥାରେ କୁମର, ଗ୍ଲାନି ହୃଦେ କରୁଛ । ସ୍ପର୍ଶମଣି ପାଇ ଦରିଦ୍ରତାକୁ ଡରୁଛ ॥୧॥

---

ଦୂଷିତ ହୋଇ ଉଜ୍ଜ୍ୱଳତର ହୋଇଥିବ ॥ ୧ ॥ ତ୍ରୈଲୋକ୍ୟ-ଚକୋର ଏହି ଯଶ-ଚନ୍ଦ୍ର ପ୍ରତି ଅତ୍ୟନ୍ତ ପ୍ରେମ କରିବେ ଏବଂ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପ୍ରତାପ-ସୂର୍ଯ୍ୟ ଏହି ଛବିକୁ ହରଣ କରିବ ନାହିଁ । ଏହି ଚନ୍ଦ୍ରମା ରାତି ଦିନ, ସର୍ବଦା ସମସ୍ତଙ୍କୁ ସୁଖ ଦେବ ଏବଂ କୈକେୟୀଙ୍କ କୁକର୍ମ-ରାହୁ ଏହାକୁ ଗ୍ରାସ କରି ପାରିବ ନାହିଁ ॥ ୨ ॥ ଏହି ଚନ୍ଦ୍ର ଶ୍ରୀରାମଚନ୍ଦ୍ରଙ୍କ ସୁନ୍ଦର ପ୍ରେମାମୃତରେ ପରିପୂର୍ଣ୍ଣ । ଏହା ଗୁରୁ-ଅପମାନ-ଜନିତ ଦୋଷରେ ଦୂଷିତ ନୁହେଁ । ତୁମେ ଏହି ଯଶ-ଚନ୍ଦ୍ରମା ସୃଷ୍ଟି କରି ପୃଥିବୀ ଉପରେ ମଧ୍ୟ ଅମୃତକୁ ସୁଲଭ କରି ଦେଇଅଛ । ଏବେ ଶ୍ରୀରାମଙ୍କ ଭକ୍ତ ଏହି ରସ ଲାଭ କରି ତୃପ୍ତ ହୁଅନ୍ତୁ ॥ ୩ ॥ ରାଜା ଭଗୀରଥ ଗଙ୍ଗାଙ୍କୁ ଆଣିଥିଲେ । ଗଙ୍ଗାଙ୍କ ସ୍ମରଣ ସମସ୍ତ ସୁମଙ୍ଗଳର ଖଣି । ଦଶରଥଙ୍କ ଗୁଣସମୂହର ବର୍ଣ୍ଣନା କରାଯାଇ ପାରିବ ନାହିଁ । ଅଧିକ କ'ଣ କହିବି ? ତାଙ୍କର ସମତା କରିବାକୁ ଜଗତରେ ଆଉ କେହି ନାହିଁ ॥ ୪ ॥ ଦୋହା ।—ତାଙ୍କର ପ୍ରେମ, ଶୀଳ ଓ ସଂକୋଚର ବଶୀଭୂତ ହୋଇ ସ୍ୱୟଂ ସଚ୍ଚିଦାନନ୍ଦ ଘନ ଭଗବାନ୍ ଶ୍ରୀରାମ ଆସି ଆବିର୍ଭୂତ ହୋଇଛନ୍ତି । ସ୍ୱୟଂ ମହାଦେବ ତାହାଙ୍କୁ ହୃଦୟ-ନେତ୍ରରେ ଦେଖି ସୁଦ୍ଧା ଅତୃପ୍ତ ରହିଲେ ॥ ୨୦୯ ॥ ଚୌପାଈ ।—ତୁମେ କୀର୍ତ୍ତି-ଚନ୍ଦ୍ରଙ୍କୁ ଜାତ କଲ । ଯହିଁରେ ରାମପ୍ରେମ ହରିଣ (ଚିହ୍ନ) ରୂପରେ ବାସ କରେ । ହେ ତାତ ! ତୁମେ ବୃଥାରେ ହୃଦୟରେ ଗ୍ଲାନି କରୁଅଛ । ପରଶମଣି ପାଇ ସୁଦ୍ଧା ତୁମ୍ଭେ ଦାରିଦ୍ର୍ୟକୁ

ସୁନହୁ ଭରତ ହମ ଝୂଠ ନ କହହୀଁ । ଉଦାସୀନ ତାପସ ବନ ରହହୀଁ ॥
ସବ ସାଧନ କର ସୁଫଲ ସୁହାଵା । ଲଖନ ରାମ ସିୟ ଦରସନୁ ପାଵା ॥୨॥
ତେହି ଫଲ କର ଫଲୁ ଦରସ ତୁମ୍ହାରା । ସହିତ ପୟାଗ ସୁଭାଗ ହମାରା ॥
ଭରତ ଧନ୍ୟ ତୁମ୍ହ ଜସୁ ଜଗୁ ଜୟଉ । କହି ଅସ ପେମ ମଗନ ମୁନି ଭୟଉ ॥୩॥
ସୁନି ମୁନି ବଚନ ସଭାସଦ ହରଷେ । ସାଧୁ ସରାହି ସୁମନ ସୁର ବରଷେ ॥
ଧନ୍ୟ ଧନ୍ୟ ଧୁନି ଗଗନ ପୟାଗା । ସୁନି ସୁନି ଭରତୁ ମଗନ ଅନୁରାଗା ॥୪॥

ପୁଲକ ଗାତ ହିୟଁ ରାମୁ ସିୟ ସଜଲ ସରୋରୁହ ନୈନ ।
କରି ପ୍ରନାମୁ ମୁନି ମଣ୍ଡଲିହି ବୋଲେ ଗଦଗଦ ବୈନ ॥୨୧୦॥

ମୁନି ସମାଜୁ ଅରୁ ତୀରଥରାଜୂ । ସାଁଚହୁଁ ସପଥ ଅଘାଇ ଅକାଜୂ ॥
ଏହିଁ ଥଲ ଜୌଁ କଛୁ କହିଅ ବନାଈ । ଏହି ସମ ଅଧିକ ନ ଅଘ ଅଧମାଈ ॥୧॥

---

ଶୁଣ ଭରତ, ମୁଁ କେବେ ମିଥ୍ୟା ନ କହଇ । ଉଦାସୀନ ତପସ୍ୱୀଏ ବିପିନେ ରହଇ ॥
ସବୁ ସାଧନର ଏହି ସୁଫଳ ଶୋଭନ । ଲକ୍ଷ୍ମଣ ରାମ ସୀତାଙ୍କ ଲଭିଲୁ ଦର୍ଶନ ॥୨॥
ସେ ଫଳର ଫଳ ଅଟେ ଦର୍ଶନ ତୁମ୍ଭର । ପ୍ରୟାଗ ସମେତ ବଡ଼ ସୌଭାଗ୍ୟ ଆମ୍ଭର ॥
ଧନ୍ୟ ଭରତ, ସୁଯଶେ ଜିଣିଲ ଜଗତ । ମୁନି ପ୍ରେମେ ମଗ୍ନ ହେଲେ ଭାଷିଣ ଏମନ୍ତ ॥୩॥
ଶୁଣି ମୁନି ବାଣୀ ସର୍ବେ ହରଷ ହୋଇଲେ । 'ସାଧୁ' 'ସାଧୁ' କହି ସୁରେ ପୁଷ୍ପ ବରଷିଲେ ॥
'ଧନ୍ୟ' 'ଧନ୍ୟ' ଧ୍ୱନି ହେଲା ଗଗନେ ପ୍ରୟାଗେ । ଶୁଣି ଭରତ ହୁଅନ୍ତି ମଗ୍ନ ଅନୁରାଗେ ॥୪॥

ପୁଲକ ଶରୀର ନେତ୍ର-କଞ୍ଜେ ନୀର ହୃଦୟେ ଜାନକୀ ରାମ ।
ଗଦ୍‌ଗଦ ବଚନ ଭାଷିଲେ, କରିଣ ମୁନିବୃନ୍ଦଙ୍କୁ ପ୍ରଣାମ ॥୨୧୦॥

ମୁନିଙ୍କ ସମାଜ ପୁଣି କ୍ଷେତ୍ର ତୀର୍ଥରାଜ । ସତ୍ୟ ନିୟମରେ ମଧ୍ୟ ହାନି ହୁଏ କାର୍ଯ୍ୟ ॥
ଏହି ସ୍ଥାନେ ଗଢି କିଛି କୁହାଯାଏ ଯେବେ । ଏହା ସମ ନାହିଁ ଅଘ ଅଧମତା ତେବେ ॥୧॥

---

ଡରୁଅଛ ! ॥ ୧ ॥ ହେ ଭରତ ! ଶୁଣ, ଆମେ ମିଛ କହୁନାହୁଁ; ଆମେ ନିରପେକ୍ଷ, ଉଦାସୀନ ତପସ୍ୱୀ ଏବଂ ବନରେ ବାସ କରୁ । ଲକ୍ଷ୍ମଣ, ଶ୍ରୀରାମ ଓ ସୀତାଙ୍କ ଦର୍ଶନ ଆମ୍ଭମାନଙ୍କୁ ସମସ୍ତ ସାଧନାର ସୁଫଳ ରୂପେ ମିଳିଲା ॥ ୨ ॥ ତୁମର ଦର୍ଶନ-ଲାଭ ମଧ୍ୟ ସେହି ମହାନ ଫଳର ପରମ ଫଳ । ପ୍ରୟାଗରାଜ ସମେତ ଆମେ ସମସ୍ତେ ବଡ ଭାଗ୍ୟବାନ୍ । ହେ ଭରତ ! ତୁମେ ଧନ୍ୟ । ତୁମେ ଆପଣା ଯଶରେ ଜଗତକୁ ଜୟ କରି ପକାଇଲ ।" ଏହା କହି ମୁନି ପ୍ରେମମଗ୍ନ ହୋଇ ପଡିଲେ ॥ ୩ ॥ ଭରଦ୍ୱାଜ ମୁନିଙ୍କ ବଚନ ଶୁଣି ସଭାସଦ୍‌ଗଣ ଆନନ୍ଦିତ ହୋଇ ପଡ଼ିଲେ । 'ସାଧୁ' 'ସାଧୁ' କହି ପ୍ରଶଂସା-ପୂର୍ବକ ଦେବତାମାନେ ପୁଷ୍ପ ବୃଷ୍ଟି କରୁଥା'ନ୍ତି । ଆକାଶରେ ଓ ପ୍ରୟାଗରାଜରେ 'ଧନ୍ୟ' 'ଧନ୍ୟ' ଧ୍ୱନି ଶୁଣି ଭରତ ପ୍ରେମମଗ୍ନ ହେଉଥାଆନ୍ତି ॥ ୪ ॥ ଦୋହା :—ଭରତଙ୍କ ଶରୀର ପୁଲକିତ, ହୃଦୟରେ ଶ୍ରୀ ସୀତାରାମ ବିରାଜିତ ଏବଂ କମଲ ସମାନ ନେତ୍ର ପ୍ରେମାଶ୍ରୁରେ ପରିପୂର୍ଣ୍ଣ । ସେ ମୁନିମଣ୍ଡଳୀଙ୍କୁ ପ୍ରଣାମ କରି ଗଦ୍‌ଗଦ୍ ବଚନ

ତୁମ୍ହ ସର୍ବଜ୍ଞ କହଉଁ ସତିଭାଉ । ଉର ଅନ୍ତରଜାମୀ ରଘୁରାଉ ॥
ମୋହି ନ ମାତୁ କରତବ କର ସୋଚୂ । ନହିଁ ଦୁଖୁ ଜିୟଁ ଜଗୁ ଜାନିହି ପୋଚୂ ॥୨॥
ନାହିନ ଡରୁ ବିଗରିହି ପରଲୋକୂ । ପିତହୁ ମରନ କର ମୋହି ନ ସୋକୂ ॥
ସୁକୃତ ସୁଜସ ଭରି ଭୁଅନ ସୁହାଏ । ଲଛିମନ ରାମ ସରିସ ସୁତ ପାଏ ॥୩॥
ରାମ ବିରହଁ ତଜି ତନୁ ଛନଭଂଗୂ । ଭୂପ ସୋଚ କର କଵନ ପ୍ରସଂଗୂ ॥
ରାମ ଲଖନ ସିୟ ବିନୁ ପଗ ପନହୀଂ । କରି ମୁନିବେଷ ଫିରହିଁ ବନ ବନହୀଂ ॥୪॥
ଅଜିନ ବସନ ଫଲ ଅସନ ମହି ସୟନ ଡାସି କୁସ ପାତ ।
ବସି ତରୁ ତର ନିତ ସହତ ହିମ ଆତପ ବରଷା ବାତ ॥୨୧୧॥

---

ତୁମ୍ଭେ ସର୍ବଜ୍ଞ କହୁଛୁ ସତ୍ୟ ଭାବେ ଭଣି । ଅଟନ୍ତି ସର୍ବାନ୍ତର୍ଯ୍ୟାମୀ ରଘୁକୁଳ-ମଣି ॥
ଜନନୀ କୁକର୍ମ ହେତୁ ଚିନ୍ତା ମୁଁ ନ କରେ । ନାହିଁ ମୋ ଦୁଃଖ, ଜାଣନ୍ତୁ ମନ୍ଦ ଜଗତରେ ॥୨॥
ନାହିଁ ଭଲେ ଡର, ନାଶ ହେବ ପରଲୋକ । ପିତାଙ୍କ ମୃତ୍ୟୁରେ ମଧ୍ୟ ନାହିଁ କିଛି ଶୋକ ॥
ଜଗତେ ବ୍ୟାପ୍ତ ସୁକୃତ ସୁଯଶ ସୁନ୍ଦର । ରାମ ଲକ୍ଷ୍ମଣ ସଦୃଶ ପାଇଣ କୁମର ॥୩॥
ରାମ ବିରହେ ତେଜିଲେ ଭଙ୍ଗୁର ଦେହକୁ । ଆଉ ଅବା କି କାରଣେ ଚିନ୍ତିବା ନୃପଙ୍କୁ ॥
ରାମ ଲକ୍ଷ୍ମଣ ଜାନକୀ ପଦତ୍ରାଣ ବିନେ । ମୁନି ବେଶରେ ବୁଲନ୍ତି ବସିନ୍ତି ବିପିନେ ॥୪॥
ବଲ୍‌କଲ ବସନ, ଫଳ-ମୂଳାଶନ କୁଶ ପତ୍ରରେ ଶୟନ ।
ତରୁ ତଳେ ବସି ସହୁଛନ୍ତି ନିତି ଖରା ବରଷା ପବନ ॥୨୧୧॥

---

ବୋଇଲେ— ॥ ୨୧୦ ॥ ଚୌପାଈ :—"ମୁନିମାନଙ୍କ ସମାଜ, ପୁଣି ତୀର୍ଥରାଜ । ଏଠାରେ ସତରେ ରାଣ ଖାଇଲେ ମଧ୍ୟ ପୁଣ୍ୟମାତ୍ରାରେ କ୍ଷତି ହୁଏ । ଏହି ସ୍ଥାନରେ ଯଦି କିଛି ମନଗଢା କଥା କୁହାଯାଏ, ତେବେ ତ ତାହା ସମାନ ଆଉ ବଡ ପାପ ଓ ନୀଚତା ନାହିଁ କହିଲେ ଚଳେ ॥ ୧ ॥ ମୁଁ ସତ୍ୟ ଭାବରେ କହୁଅଛି । ଆପଣମାନେ ସର୍ବଜ୍ଞ ଓ ଶ୍ରୀ ରଘୁନାଥ ସମସ୍ତଙ୍କ ହୃଦୟର ଅନ୍ତର୍ଯ୍ୟାମୀ । ମୋ ମନରେ ମାତା କୈକେୟୀଙ୍କ କୁତତ୍ତ୍ୱ ଲାଗି କୌଣସି ଚିନ୍ତା ନାହିଁ କିମ୍ବା ଜଗତ ମୋତେ ନୀଚ ଭାବିବ ବୋଲି ମଧ୍ୟ ମୋ ମନରେ ଦୁଃଖ ନାହିଁ ॥ ୨ ॥ ମୋର ପରଲୋକ ନଷ୍ଟ ହୋଇଯିବ ବୋଲି ମଧ୍ୟ ମନରେ କ୍ଷୋଭ ନାହିଁ । ପିତାଙ୍କ ମରଣ ଯୋଗୁଁ ମଧ୍ୟ ମୁଁ ଦୁଃଖିତ ନୁହେଁ । କାରଣ, ତାଙ୍କର ସୁନ୍ଦର ପୁଣ୍ୟ ଓ ସୁଯଶ ସମଗ୍ର ବିଶ୍ୱରେ ସୁଶୋଭିତ । ସେ ଶ୍ରୀରାମ-ଲକ୍ଷ୍ମଣଙ୍କ ସଦୃଶ ପୁତ୍ର ଲାଭ କରିଅଛନ୍ତି ॥ ୩ ॥ ପୁଣି ଯେଉଁ ପିତା ଶ୍ରୀରାମଚନ୍ଦ୍ରଙ୍କ ବିରହରେ ଆପଣାର କ୍ଷଣଭଙ୍ଗୁର ଶରୀର ତ୍ୟାଗ କରିଦେଲେ, ସେହିପରି ରାଜାଙ୍କ ନିମନ୍ତେ ଚିନ୍ତାର ବିଷୟ କ'ଣ ଅଛି ? କେବଳ ଚିନ୍ତା ଏତିକି ଯେ, ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ଯୋତା ବିନା ଖାଲି ପାଦରେ ଓ ମୁନି-ବେଶରେ ବନେ ବନେ ବିଚରଣ କରୁଅଛନ୍ତି ॥୪॥ ଦୋହା :—ସେମାନେ ବଲ୍‌କଲ ବସନ ପରିଧାନ କରୁଅଛନ୍ତି, ଫଳ ଭୋଜନ କରୁ-ଅଛନ୍ତି ଏବଂ ଭୂମି ଉପରେ କୁଶ ଓ ପତ୍ର ବିଛାଇ ଶୋଉଅଛନ୍ତି । ଆଉ ମଧ୍ୟ ବୃକ୍ଷତଳେ

ଏହି ଦୁଖ ଦାହଁ ଦହଇ ଦିନ ଛାତୀ । ଭୂଖ ନ ବାସର ନୀଦ ନ ରାତୀ ॥
ଏହି କୁରୋଗ କର ଔଷଧୁ ନାହୀଁ । ସୋଧେଉଁ ସକଲ ବିସ୍ୱ ମନ ମାହୀଁ ॥୧॥
ମାତୁ କୁମତ ବଢ଼ଈ ଅଘ ମୂଲା । ତେହିଁ ହମାର ହିତ କୀହ୍ନ ବଁସୂଲା ॥
କଲି କୁକାଠ କର କୀହ୍ନ କୁଜନ୍ତ୍ରୂ । ଗାଡ଼ି ଅବଧି ପଢ଼ି କଠିନ କୁମନ୍ତ୍ରୂ ॥୨॥
ମୋହି ଲଗି ଯହୁ କୁଠାଟୁ ତେହିଁ ଠାଟା । ଘାଲେସି ସବ ଜଗୁ ବାରହବାଟା ॥
ମିଟଇ କୁଜୋଗୁ ରାମ ଫିରି ଆଏଁ । ବସଇ ଅବଧ ନହିଁ ଆନ ଉପାଏଁ ॥୩॥
ଭରତ ବଚନ ସୁନି ମୁନି ସୁଖୁ ପାଈ । ସବହିଁ କୀହ୍ନି ବହୁ ଭାଁତି ବଡ଼ାଈ ॥
ତାତ କରହୁ ଜନି ସୋଚୁ ବିସେଷୀ । ସବ ଦୁଖୁ ମିଟିହି ରାମ ପଗ ଦେଖୀ ॥୪॥

ଏ ଦୁଃଖ-ଅନଳେ ଜଳେ ନିତ ଦିନ ରାତି । ଦିନରେ କ୍ଷୁଧା ନ ନିଦ୍ରା ନ ଆସଇ ରାତି ॥
ଏହି କୁରୋଗର ନାହିଁ ଔଷଧ କେବଣ । ମନ ମଧ୍ୟେ ହାରି ବିଶ୍ୱ କଲି ଅନ୍ୱେଷଣ ॥୧॥
ମାତା କୁମତି ବଢ଼େଇ ଯେ ପାତକ ରାଶି । ସେ ମୋର ହିତକୁ କଲା ବସୁଦାନ୍ତବାଶି ॥
କଳହ-କୁକାଠେ ଏକ ଗଢ଼ିଣ କୁଯନ୍ତ୍ର । ପୋତିବ ଅବଧେ ପଢ଼ି କଠିନ କୁମନ୍ତ୍ର ॥୨॥
ମୋ ନିମନ୍ତେ ସେହି ଏହି କୁସାଜ ସାଜିଲା । ବାର ବାଟେ ସାରା ବିଶ୍ୱ ବିନଷ୍ଟ କରିଲା ॥
ନ ଫେରିଲେ ରାମ ଏହି କୁଯୋଗ ନ ଟଳିବ । ଅନ୍ୟ ଉପାୟେ ଅଯୋଧ୍ୟା ଶାନ୍ତି ନ ଲଭିବ ॥୩॥
ଭରତ ବଚନ ଶୁଣି ହରଷି ହେଲେ ମୁନି । ସମସ୍ତେ କଲେ ବଡ଼ାଇ ନାନା ମତେ ପୁଣି ॥
ନ ହୁଅ ବତ୍ସ, ଅଧିକ ଚିନ୍ତାରେ ବିକଳ । ରାମ ପଦ ଦେଖି ଦୁଃଖ ତୁଟିବ ସକଳ ॥୪॥

ନିବାସସ୍ୱରୂପ ସେମାନେ ନିତ୍ୟ ଶୀତ, ଗ୍ରୀଷ୍ମ, ବର୍ଷା ଓ ପବନ ସହନ କରୁଅଛନ୍ତି ॥ ୨୧୧ ॥ ଚୌପାଈ :—ଏହି ଦୁଃଖର ଦାହ ଯୋଗେ ଛାତି ମୋର ନିରନ୍ତର ଜଳିଯାଉଛି । ମୋତେ ଦିନରେ କ୍ଷୁଧା ବା ରାତ୍ରିରେ ନିଦ୍ରା ହେଉନାହିଁ । ମୁଁ ମନେ ମନେ ସମସ୍ତ ବିଶ୍ୱ ମଧ୍ୟରେ ଖୋଜି ସାରିଲିଣି । ମାତ୍ର ଏହି ରୋଗ ନିମନ୍ତେ କେଉଁଠାରେ ହେଲେ ଔଷଧ ନାହିଁ ॥ ୧ ॥ ମାତାର କୁବୁଦ୍ଧିର ପାପସମୂହର ମୂଳ ଓ ବଢ଼େଇ ପରି । ତାହା ମୋ ହିତଂଲାଭ-ହିତର ବାରସି ତିଆରି କଲା । ତାହା ସାହାଯ୍ୟରେ କଳହରୂପକ ଖରାପ କାଠରେ ରାମ ବନବାସରୂପକ କୁଯନ୍ତ୍ର ତିଆରି କଲା ଏବଂ ଚଉଦ ବର୍ଷର ଅବଧିରୂପକ କଠିନ କୁମନ୍ତ୍ର ପଢ଼ି ସେହି ଯନ୍ତ୍ରକୁ ପୋତିଦେଲା । ( ଯେପରି ମାରଣଯନ୍ତ୍ରର ପ୍ରୟୋଗକାରୀ ଲୋକ କୌଣସି ବଢ଼େଇକୁ କହି ତାହାର ବାରସିରେ ଖରାପ କାଠର ଯନ୍ତ୍ର ତିଆରି କରାନ୍ତି ଏବଂ ଯାହାକୁ ମାରିବାର କଥା, ତାହା ନାମରେ ମନ୍ତ୍ରପାଠ କରି ଉକ୍ତ ଯନ୍ତ୍ରକୁ ପୋତି ଦିଅନ୍ତି, ସେହିପରି କୈକେୟୀ ମଧ୍ୟ ଘାତକ ସଙ୍କଳ୍ପ କରି ମୋତେ ରାଜ୍ୟ ଦେବା ନିମନ୍ତେ କଳୁଷିତ ବୁଦ୍ଧିରେ ଦୂଷିତ ବର ମାଗି ମୋର ବିନାଶର ବ୍ୟବସ୍ଥା କରିଦେଲା । ) ॥୨॥ ମୋହରି ନିମନ୍ତେ ସେ ଏହି ସମସ୍ତ ଚକ୍ରାନ୍ତ କଲା ଏବଂ ସମସ୍ତ ଜଗତକୁ ଛିନ୍ନଭିନ୍ନ କରି ନଷ୍ଟ କରିଦେଲା । ଏହି କୁଯୋଗ ଶ୍ରୀରାମଚନ୍ଦ୍ର ଫେରି ଆସିଲେ ଯାଇ ମେଣ୍ଟିବ ଏବଂ ସେତିକି ବେଳେ ଅଯୋଧ୍ୟା ଶାନ୍ତିରେ ବସି ପାରିବ । ଅନ୍ୟ କୌଣସି ଉପାୟ ଯୋଗେ

କରି ପ୍ରବୋଧୁ ମୁନିବର କହେଉ ଅତିଥି ପ୍ରେମପ୍ରିୟ ହୋହୁ ।
କଂଦ ମୂଲ ଫଲ ଫୂଲ ହମ ଦେହିଁ ଲେହୁ କରି ଛୋହୁ ॥୨୧୨॥
ସୁନି ମୁନି ବଚନ ଭରତ ହିୟଁ ସୋଚୂ । ଭୟଉ କୁଅବସର କଠିନ ସଁକୋଚୂ ॥
ଜାନି ଗରୁଇ ଗୁର ଗିରା ବହୋରୀ । ଚରନ ବଂଦି ବୋଲେ କର ଜୋରୀ ॥୧॥
ସିର ଧରି ଆୟସୁ କରିଅ ତୁହ୍ମାରା । ପରମ ଧରମ ୟହୁ ନାଥ ହମାରା ॥
ଭରତ ବଚନ ମୁନିବର ମନ ଭାଏ । ସୁଚି ସେବକ ସିଷ ନିକଟ ବୋଲାଏ ॥୨॥
ଚାହିଅ କୀହ୍ନି ଭରତ ପହୁନାଈ । କଂଦ ମୂଲ ଫଲ ଆନହୁ ଜାଈ ॥
ଭଲେହିଁ ନାଥ କହି ତିହ୍ନ ସିର ନାଏ । ପ୍ରମୁଦିତ ନିଜ ନିଜ କାଜ ସିଧାଏ ॥୩॥

---

କରି ପରିତୋଷ କହିଲେ ମୁନିଶ ଅତିଥି ହୁଅ ପ୍ରେମର ।
ଦେଉଛୁ ମୁଁ ଫଳ-ଫୂଲ କନ୍ଦମୂଳ, ସ୍ନେହରେ ଗ୍ରହଣ କର ॥୨୧୨॥
ଶୁଣି ମୁନିଙ୍କ ବଚନ ଚିନ୍ତନ୍ତି ଭରତ । କୁସମୟେ ହେଲା ଆସି ସଙ୍କୋଚ ଅତ୍ୟନ୍ତ ॥
ଗୁରୁ ଆଜ୍ଞା ଗରୀୟସୀ ବିଚାରି ଆଦର । ବୋଇଲେ ପ୍ରଣମି ମୁନିପଦେ ଯୋଡ଼ି କର ॥୧॥
ଶିରୋଧାର୍ଯ୍ୟ କରି ତୁମ୍ଭ ଆଦେଶ ପାଳନ । ନାଥ, ଏହା ଅଟେ ମୋର ପରମ ଧରମ ॥
ମୁନିଙ୍କୁ ଭଲ ଲାଗିଲା ବାଣୀ ଭରତଙ୍କ । କହିଲେ ଡକାଇ ଶୁଚି ଶିଷ୍ୟ ସୁସେବକ ॥୨॥
ଚାହେଁ ଭରତ ଆତିଥ୍ୟ କରିବା ନିମନ୍ତେ । କନ୍ଦମୂଳ, ଫଳ ଆଣ ଯାଇଣ ତୁରିତେ ॥
'ଯେ ଆଜ୍ଞା' କହି ସେମାନେ ପ୍ରଣାମ କରିଲେ । ପ୍ରମୋଦିତେ ନିଜ ନିଜକାର୍ଯ୍ୟରେ ଗମିଲେ ॥୩॥

---

ତାହା ବସି ନ ପାରେ ।" ॥ ୩ ॥ ଭରତଙ୍କ ବଚନ ଶୁଣି ମୁନି ଅତ୍ୟନ୍ତ ଆନନ୍ଦିତ ହେଲେ ଏବଂ ସମସ୍ତେ ତାହାଙ୍କର ବହୁତ ପ୍ରଶଂସା କଲେ । ମୁନି କହିଲେ, "ହେ ବତ୍ସ ! ଅଧିକ ଶୋଚନା କରନାହିଁ । ଶ୍ରୀରାମଚନ୍ଦ୍ରଙ୍କ ଚରଣଯୁଗଳ ଦର୍ଶନ କଲା ମାତ୍ରେ ସମସ୍ତ ଦୁଃଖ ମେଣ୍ଟିଯିବ ।" ॥ ୪ ॥ ଦୋହା :—ଏହି ରୂପେ ମୁନିବର ଭରଦ୍ୱାଜ ସେମାନଙ୍କୁ ସାନ୍ତ୍ୱନା ଦେଇ କହିଲେ, "ଏବେ ଆପଣମାନେ ଆମର ପ୍ରେମପ୍ରିୟ ଅତିଥି ହୁଅନ୍ତୁ ଏବଂ କୃପା କରି କନ୍ଦମୂଳ, ଫଳ, ମୂଳ ଆଦି ଯାହା କିଛି ଆମେ ଦେବୁ, ତାହା ଗ୍ରହଣ କରନ୍ତୁ ।" ॥ ୨୧୨ ॥ ଚୌପାଇ :—ମୁନିଙ୍କ ବଚନ ଶୁଣି ଭରତଙ୍କ ହୃଦୟରେ ଚିନ୍ତା ହେଲା—ଏ ପୁଣି ଅସମୟରେ ଆଉ ଗୋଟିଏ ସଙ୍କୋଚର ବିଷୟ ଆସି ପହଞ୍ଚିଲା । ତଥାପି ଗୁରୁଜନଙ୍କର ବାଣୀ ଆଦରଣୀୟ, ଏହା ବିଚାରି ସେ ଚରଣ-ବନ୍ଦନା-ପୂର୍ବକ ହାତ ଯୋଡ଼ି କହିଲେ,— ॥ ୧ ॥ "ହେ ନାଥ ! ଆପଣଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି ତାହା ପାଳନ କରିବା ଆମ୍ଭମାନଙ୍କର ପରମ ଧର୍ମ ।" ଭରତଙ୍କ ଏ ସବୁ କଥା ମୁନିବରଙ୍କ ମନକୁ ଅତି ରୁଚିକର ବୋଧ ହେଲା । ସେ ବିଶ୍ୱାସପାତ୍ର ସେବକ ଓ ଶିଷ୍ୟମାନଙ୍କୁ ପାଖକୁ ଡକାଇଲେ ॥ ୨ ॥ ଏବଂ କହିଲେ, "ଭରତଙ୍କର ଆତିଥ୍ୟ କରିବା ବିଧେୟ । ଯାଇ କନ୍ଦମୂଳ ଓ ଫଳ ଆଣ ।" ସେମାନେ "ହେ ନାଥ ! ବହୁତ ଆଚ୍ଛା" କହି ମୁଣ୍ଡ ନୁଆଁଇଲେ ଏବଂ ତତ୍ପରେ ସେମାନେ ଅତିଶୟ ଆନନ୍ଦିତ ହୋଇ ଆପଣା ଆପଣା

ମୁନିହି ସୋଚ ପାହୁନ ବଡ଼ ନେୱତା । ତସି ପୂଜା ଚାହିଅ ଜସ ଦେୱତା ॥
ସୁନି ରିଧି ସିଧି ଅନିମାଦିକ ଆଈଁ । ଆୟସୁ ହୋଇ ସୋ କରହିଁ ଗୋସାଈଁ ॥୪॥

ରାମ ବିରହ ବ୍ୟାକୁଲ ଭରତୁ ସାନୁଜ ସହିତ ସମାଜ ।
ପହୁନାଈ କରି ହରହୁ ଶ୍ରମ କହା ମୁଦିତ ମୁନିରାଜ ॥୨୧୩॥

ରିଧି ସିଧି ସିର ଧରି ମୁନିବର ବାନୀ । ବଡ଼ଭାଗିନି ଆପୁହି ଅନୁମାନୀ ॥
କହହିଁ ପରସପର ସିଧି ସମୁଦାଈ । ଅତୁଲିତ ଅତିଥି ରାମ ଲଘୁ ଭାଈ ॥୧॥
ମୁନି ପଦ ବଂଦି କରିଅ ସୋଇ ଆଜୂ । ହୋଇ ସୁଖୀ ସବ ରାଜ ସମାଜୂ ॥
ଅସ କହି ରଚେଉ ରୁଚିର ଗୃହ ନାନା । ଜେହି ବିଲୋକି ବିଲଖାହିଁ ବିମାନା ॥୨॥
ଭୋଗ ବିଭୂତି ଭୂରି ଭରି ରାଖେ । ଦେଖତ ଜିନ୍ହହି ଅମର ଅଭିଲାଷେ ॥
ଦାସୀଁ ଦାସ ସାଜୁ ସବ ଲୀନ୍ହେଁ । ଜୋଗୱତ ରହହିଁ ମନହି ମନୁ ଦୀନ୍ହେଁ ॥୩॥

---

ଚିନ୍ତନ୍ତି ମୁନି ଅତିଥି ବଡ଼ ନିମନ୍ତ୍ରଣ । ଯେପରି ଦେଓ ସେପରି ପୂଜା ପ୍ରୟୋଜନ ॥
ଋଦ୍ଧି ସିଦ୍ଧି ଅଣିମାଦି ହୋଇଲେ ପ୍ରବେଶ । ଆଦେଶ ଦିଅନ୍ତୁ, ତାହା କରିବୁ ବିପ୍ରେଶ ॥୪॥

ରାମଙ୍କ ବିରହେ ବ୍ୟାକୁଳ ଭରତ ସାନୁଜ, ସହ ସମାଜ ।
ଆତିଥ୍ୟ କରିଣ ହର ଯାଇ ଶ୍ରମ, ମୋଦେ ବୋଲେ ମୁନିରାଜ ॥୨୧୩॥

ଋଦ୍ଧି ସିଦ୍ଧି ଶିରେ ଧେନି ମୁନିବର ବାଣୀ । ଅତିଶୟ ସୌଭାଗିନୀ ଆପଣାକୁ ଜାଣି ॥
ପରସ୍ପର ମଧ୍ୟେ ସର୍ବେ ହୋନ୍ତି କଥାବାର୍ତ୍ତା । ଅତୁଳନୀୟ ଅତିଥି ରାମଙ୍କର ଭ୍ରାତା ॥୧॥
ମୁନି ପଦ ବନ୍ଦି ଆଜି କରିବା ତେମନ୍ତ । ସୁଖୀ ହେବେ ସାରା ରାଜସମାଜ ଯେମନ୍ତ ॥
ଏହା କହି ନାନା ଗୃହ ରଚିଲେ ରୁଚିର । ଯାହା ଦେଖି ସୁର ସୌଧ ହୁଅନ୍ତି ଅଧୀର ॥୨॥
ଭୋଗ ବୈଭବ ତହିଁରେ ରଖିଲେ ବିଶାଳ । ଯାହାକୁ ଅଭିଳଷନ୍ତି ଦେଖି ଲୋକପାଳ ॥
ଦାସ ଦାସୀ ଆଦି ସାଜ ସାମଗ୍ରୀ ନେଇଣ । ଜଗି ରହିଥାନ୍ତି ମନ ମନ ଲଗାଇଣ ॥୩॥

---

କାର୍ଯ୍ୟରେ ଲାଗିଗଲେ ॥ ୩ ॥ ମୁନିଙ୍କ ମନରେ ଚିନ୍ତା ହେଲା—"ଆମ୍ଭେମାନେ ଜଣେ ବଡ଼ ଅତିଥିଙ୍କୁ ଆମନ୍ତ୍ରଣ କରିଛୁ । ଏବେ ଯେମିତି ଦେଓ ତାହାଙ୍କର ପୂଜା ମଧ୍ୟ ସେମିତି ହେବା ଉଚିତ ।" ଏହା ଜାଣି ଋଦ୍ଧି ଓ ଅଣିମାଦି ସିଦ୍ଧି ଆସିଗଲେ ଏବଂ କହିଲେ, "ହେ ଗୋସାଇଁ ! ଆପଣଙ୍କ ଆଜ୍ଞା ଯାହା, ଆମେ ସେଇଆ କରିବୁ ।" ॥ ୪ ॥ ଦୋହା :— ମୁନିରାଜ ପ୍ରସନ୍ନ ହୋଇ କହିଲେ, "ସାନ ଭାଇ ଶତ୍ରୁଘ୍ନ ଓ ସମାଜ ସମେତ ଭରତ ଶ୍ରୀରାମଙ୍କ ବିରହରେ ବ୍ୟାକୁଳ । ଏମାନଙ୍କ ଆତିଥ୍ୟ-ସତ୍କାର କରି ଏମାନଙ୍କ କ୍ଲାନ୍ତି ଦୂର କର ।" ॥୨୧୩॥ ଚୌପାଈ :—ଋଦ୍ଧି ସିଦ୍ଧି ଗଣ ମୁନିରାଜଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଆପଣା ଆପଣାକୁ ବଡ଼ ଭାଗ୍ୟବତୀ ମନେ କଲେ । ସମସ୍ତ ସିଦ୍ଧି ପରସ୍ପର କଥାବାର୍ତ୍ତା ହେଉଥା'ନ୍ତି— "ଶ୍ରୀରାମଙ୍କ ସାନଭାଇ ଭରତ ଆମର ଅନୁପମ ଅତିଥି ॥ ୧ ॥ ଅତଏବ ମୁନିଙ୍କ ଚରଣ ବନ୍ଦନା-ପୂର୍ବକ ଆମ୍ଭମାନଙ୍କର ତାହାହିଁ କରିବା ଉଚିତ, ଯାହା ଯୋଗେ ସାରା ରାଜସମାଜ ସୁଖୀ ହେବ ।" ଏହା କହି ସେମାନେ ଅତି ସୁନ୍ଦର ଭବନ ନିର୍ମାଣ କଲେ ।

ସବ ସମାଜୁ ସଜି ସିଧି ପଲ ମାହୀଁ । ଜେ ସୁଖ ସୁରପୁର ସପନେହୁଁ ନାହୀଁ ॥
ପ୍ରଥମହିଁ ବାସ ଦିଏ ସବ କେହୀ । ସୁନ୍ଦର ସୁଖଦ ଜଥା ରୁଚି ଜେହୀ ॥୪॥

ବହୁରି ସପରିଜନ ଭରତ କହୁଁ ରିଷି ଅସ ଆୟସୁ ଦୀହ୍ନ ।
ବିଧି ବିସମୟ ଦାୟକୁ ବିଭବ ମୁନିବର ତପବଲ କୀହ୍ନ ॥୨୧୪॥

ମୁନି ପ୍ରଭାଉ ଜବ ଭରତ ବିଲୋକା । ସବ ଲଘୁ ଲଗେ ଲୋକପତି ଲୋକା ॥
ସୁଖ ସମାଜୁ ନହିଁ ଜାଇ ବଖାନୀ । ଦେଖତ ବିରତି ବିସାରହିଁ ଜ୍ଞାନୀ ॥୧॥
ଆସନ ସୟନ ସୁବସନ ବିତାନା । ବନ ବାଟିକା ବିହଗ ମୃଗ ନାନା ॥
ସୁରଭି ଫୁଲ ଫଲ ଅମିଅ ସମାନା । ବିମଲ ଜଲାସୟ ବିବିଧ ବିଧାନା ॥୨॥

---

ସମସ୍ତ ଯୋଗାଡ଼ କରି ସିଦ୍ଧି କ୍ଷଣକରେ । ଯେ ସୁଖ ସ୍ୱପ୍ନେହେଁ ନାହିଁ ଅମରପୁରରେ ॥
ସମସ୍ତଙ୍କୁ ଦେଲେ ଅଗ୍ରେ ନିବାସ ଭବନ । ସୁନ୍ଦର ସୁଖଦ ରୁଚି ଯାହାର ଯେସନ ॥୪॥

ପୁଣି ଗୃହ ଦେଲେ ଋଷି ଆଜ୍ଞା ମତେ ଭରତଙ୍କୁ ସବାନ୍ଧବ ।
ରଚିଲେ ମୁନିଶ ତପୋବଳେ ବିଧି-ବିସ୍ମୟକର ବୈଭବ ॥୨୧୪॥

ବିଲୋକିଲେ ଯେବେ ମୁନି ପ୍ରଭାବ ଭରତ । ଲୋକ-ପତି-ଲୋକ ତୁଚ୍ଛ ଲାଗିଲା ଅତ୍ୟନ୍ତ ॥
ସୁଖ ସାମଗ୍ରୀ ଯେ କହି ନୁହଇ ବଖାଣି । ଯାହା ନିରେଖି ବୈରାଗ୍ୟ ପାଶୋରନ୍ତି ଜ୍ଞାନୀ ॥୧॥
ରୁଚିର ବିତାନ ଶଯ୍ୟା ଆସନ ବସନ । ବିବିଧ ମୃଗ ବିହଙ୍ଗ ବନ ଉପବନ ॥
ସୁରଭି ସୁମନ-ରାଶି ଫଳ ସୁଧା ସମ । ସୁବିମଳ ଜଳାଶୟ ନାନାବିଧ ରକମ ॥୨॥

---

ସେ ସବୁ ଭବନ ଦେଖି ଦେବ-ବିମାନମାନ ମଧ୍ୟ ଅଧୀର ହୁଅନ୍ତି ॥୨॥ ସେହି ସବୁ ଘରେ ସେମାନେ ବହୁତ ଭୋଗ ଓ ଐଶ୍ୱର୍ଯ୍ୟର ସାମଗ୍ରୀ ଭର୍ତ୍ତି କରି ରଖିଦେଲେ । ତାହା ସବୁ ଦେଖି ଦେବତାମାନେ ମଧ୍ୟ ଲାଳାୟିତ ହେଉଥାଆନ୍ତି । ଦାସଦାସୀମାନେ ସମସ୍ତ ପ୍ରକାର ସାମଗ୍ରୀ ଧରି ମନ ଲଗାଇ ସେମାନଙ୍କ ମନକୁ ଜଗି ରହୁଥା'ନ୍ତି ॥ ୩ ॥ ଯେଉଁ ସବୁ ସୁଖ-ସାମଗ୍ରୀ ସ୍ୱର୍ଗରେ ସୁଦ୍ଧା ସ୍ୱପ୍ନରେ ମିଳେନାହିଁ, ଏପରି ସମସ୍ତ ସାମଗ୍ରୀ ସିଦ୍ଧିମାନେ କ୍ଷଣକ ମଧ୍ୟରେ ସଜାଇ ଦେଲେ । ପ୍ରଥମେ ତ ସେମାନେ ସମସ୍ତଙ୍କୁ ସେମାନଙ୍କ ଆପଣା ଆପଣା ରୁଚି ଅନୁସାରେ ସୁଖଦାୟକ ବାସସ୍ଥାନ ଯୋଗାଇ ଦେଲେ ॥୪॥ ଦୋହା :— ତତ୍ପରେ ସେମାନେ କୁଟୁମ୍ବ ସମେତ ଭରତଙ୍କୁ ବାସସ୍ଥାନ ଯୋଗାଇ ଦେଲେ, କାରଣ ଭରଦ୍ୱାଜ ଭରତଙ୍କ ଇଚ୍ଛାନୁସାରେ (ପ୍ରଥମେ ସାଙ୍ଗସାଥୀମାନଙ୍କ ଓ ତତ୍ପରେ ସପରିବାର ତାଙ୍କ ନିଜ ବିଶ୍ରାମର ବ୍ୟବସ୍ଥା ହେଉ,) ଏହିପରି ଆଜ୍ଞା ଦେଇଥିଲେ । ମୁନିବର ଆପଣାର ତପୋବଳରେ ଏପରି ବୈଭବ ସୃଷ୍ଟି କରିଦେଲେ ଯାହା ବ୍ରହ୍ମାଙ୍କୁ ମଧ୍ୟ ଚକିତ କରି ପକାଇବ ॥ ୨୧୪ ॥ ଚୌପାଇ :—ଯେତେବେଳେ ଭରତ ମୁନିଙ୍କ ପ୍ରଭାବ ଦେଖିଲେ, ସେତେବେଳେ ତାହା ଆଗରେ ଇନ୍ଦ୍ର, ବରୁଣ, ଯମ, କୁବେର ଆଦି ସମସ୍ତ ଦିଗପାଳଙ୍କ ଲୋକ ତାହାଙ୍କୁ ତୁଚ୍ଛ ବୋଧ ହେଲା । ସୁଖସାମଗ୍ରୀର ବର୍ଣ୍ଣନା କରାଯାଇ ପାରିବ ନାହିଁ । ତାହା ସବୁ ଦେଖି ଜ୍ଞାନୀ ଲୋକମାନେ ମଧ୍ୟ ବୈରାଗ୍ୟ ଭୁଲିଯାଆନ୍ତି ॥ ୧ ॥

ଅସନ ପାନ ସୁଚି ଅମିଅ ଅମୀ ସେ । ଦେଖି ଲୋଗ ସକୁଚାତ ଜମୀ ସେ ॥
ସୁର ସୁରଭୀ ସୁରତରୁ ସବହୀ କେଁ । ଲଖି ଅଭିଲାଷୁ ସୁରେସ ସଚୀ କେଁ ॥୩॥
ରିତୁ ବସନ୍ତ ବହ ତ୍ରିବିଧ ବୟାରୀ । ସବ କହଁ ସୁଲଭ ପଦାରଥ ଚାରୀ ॥
ସ୍ରକ ଚନ୍ଦନ ବନିତାଦିକ ଭୋଗା । ଦେଖି ହରଷ ବିସମୟ ବସ ଲୋଗା ॥୪॥

ସମ୍ପତ ଚକଈ ଭରତୁ ଚକ ମୁନି ଆୟସ ଖେଲୱାର ।
ତେହି ନିସି ଆଶ୍ରମ ପିଂଜରାଁ ରାଖେ ଭା ଭିନୁସାର ॥୨୧୫॥

## ମାସପାରାୟଣ, ଊନବିଂଶ ବିଶ୍ରାମ

କୀନ୍ହ ନିମଜ୍ଜନୁ ତୀରଥ ରାଜା । ନାଇ ମୁନିହି ସିରୁ ସହିତ ସମାଜା ॥
ରିଷି ଆୟସୁ ଅସୀସ ସିର ରାଖୀ । କରି ଦଣ୍ଡବତ ବିନୟ ବହୁ ଭାଷୀ ॥୧॥

---

ଅଶନ-ପାନ ପୀୟୂଷେ ଶୁଚିରେ ପୀୟୂଷ । ଦେଖି ଲୋକେ ସଙ୍କୋଚନ୍ତି ସଂଯମୀ ସଦୃଶ ॥
ସୁର-ଧେନୁ ସୁର-ତରୁ ଦ୍ୱାରେ ସମସ୍ତଙ୍କ । ଦେଖି ଅଭିଳାଷ ହୁଏ ଶଚୀ ସୁରେଶଙ୍କ ॥୩॥
ଋତୁ ବସନ୍ତ, ତ୍ରିବିଧ ସମୀର ବହଇ । ଚାରି ପଦାର୍ଥ ଲୋକଙ୍କୁ ସୁଲଭ ଅଟଇ ॥
ଚନ୍ଦନ ମାଳ ବନିତାଦି ଭୋଗ ସମୁଚୟ । ବିଲୋକି ଲୋକେ ହୁଅନ୍ତି ହରଷ ବିସ୍ମୟ ॥୪॥

ସମ୍ପତ୍ତି ଚକୋରୀ ଚକୁଆ ଭରତ ଖେଳାଳି ମୁନି ଆଦେଶ ।
ସେ ନିଶି ଆଶ୍ରମ-ପଞ୍ଜୁରୀରେ ରଖୁଁ ହୋଇଲା ରଜନୀ ଶେଷ ॥୨୧୫॥

ତୀର୍ଥ-ରାଜରେ ସ୍ନାନଦାନ କରିଣ ଭରତ । ସମାଜ ସହ ମୁନିଙ୍କୁ କଲେ ଦଣ୍ଡବତ ॥
ଶିରେ ଘେନିଣ ଋଷିଙ୍କ ଆଶିଷ ଆଦେଶ । କରି ନମସ୍କାର ଭାଷି ବିନୟ ବିଶେଷ ॥୧॥

---

ଆସନ, ଶଯ୍ୟା, ସୁନ୍ଦର ବସ୍ତ୍ର, ଚନ୍ଦ୍ରାତପ, ବନ, ଉପବନ, ନାନାବିଧ ପକ୍ଷୀ ଓ ପଶୁ, ସୁଗନ୍ଧିତ ପୁଷ୍ପ ଓ ଅମୃତ ସମାନ ସ୍ୱାଦିଷ୍ଟ ଫଳ, ବିବିଧ ନିର୍ମଳ ଜଳାଶୟ ଏବଂ ଅମୃତରେ ନିର୍ମିତ ଓ ତାହା ପରି ପବିତ୍ର ଖାଦ୍ୟ-ପାନୀୟ ସାମଗ୍ରୀ ସେଠାରେ ସୁସଜ୍ଜିତ ହୋଇ ରହିଥାଏ । ସେ ସବୁ ଦେଖି ସମସ୍ତ ଲୋକ ସଂଯମୀ ପୁରୁଷମାନଙ୍କ ପରି ସଂକୁଚିତ ହୋଇ ଯାଉଥାଆନ୍ତି । ସମସ୍ତଙ୍କ ଭବନରେ କାମଧେନୁ ଓ କଳ୍ପବୃକ୍ଷ ବିରାଜିତ । ସେମାନଙ୍କୁ ଦେଖି ଇନ୍ଦ୍ରଙ୍କ ସମେତ ଇନ୍ଦ୍ରାଣୀ ମଧ୍ୟ ଲାଳାୟିତ ହୋଇ ପଡୁଥା'ନ୍ତି ॥ ୨-୩ ॥ ବସନ୍ତ ଋତୁ ଆସି ଉପସ୍ଥିତ । ଶୀତଳ, ମନ୍ଦ ଓ ସୁଗନ୍ଧ—ତିନି ପ୍ରକାର ବାୟୁ ପ୍ରବାହିତ ହେଉଥାଏ । ସମସ୍ତଙ୍କୁ ଧର୍ମ, ଅର୍ଥ, କାମ, ମୋକ୍ଷ—ଏହି ଚାରି ପଦାର୍ଥ ସୁଲଭ । ମାଳା, ଚନ୍ଦନ, ସ୍ତ୍ରୀ ଆଦି ଭୋଗ-ସାମଗ୍ରୀମାନ ଦେଖି ସମସ୍ତ ଲୋକ ହର୍ଷ ଓ ବିଷାଦର ବଶବର୍ତ୍ତୀ ହେଉଥା'ନ୍ତି । ମୁନିଙ୍କ ତପଃ ପ୍ରଭାବ ଓ ଏତେ ଭୋଗ-ସାମଗ୍ରୀ ଦେଖି ସେମାନଙ୍କ ମନରେ ହର୍ଷ ଜାତ ହେଉଥାଏ ଏବଂ ଶ୍ରୀରାମଙ୍କ ବିରହରେ ସେମାନେ ନିୟମବ୍ରତ ପାଳନ କରୁଥିବାରୁ ଏ ସବୁ ଭୋଗବିଳାସ-ସାମଗ୍ରୀରେ କାଳେ ସେମାନଙ୍କ ମନ ଆସକ୍ତ ହୋଇଯିବ, ଏଥି ନିମନ୍ତେ ସେମାନଙ୍କ ମନରେ ବିଷାଦ ମଧ୍ୟ ଜାତ ହେଉଥାଏ ॥ ୪ ॥ ଦୋହା :—ସମ୍ପତ୍ତି ( ଭୋଗବିଳାସ-ସାମଗ୍ରୀ ) ଚକବାକୀ,

ପଥ ଗତି କୁସଲ ସାଥ ସବ ଲୀନ୍ହେଁ । ଚଲେ ଚିତ୍ରକୂଟହିଁ ଚିତୁ ଦୀନ୍ହେଁ ॥
ରାମସଖା କର ଦୀନ୍ହେଁ ଲାଗୂ । ଚଲତ ଦେହ ଧରି ଜନୁ ଅନୁରାଗୂ ॥୨॥
ନହିଁ ପଦ ତ୍ରାନ ସୀସ ନହିଁ ଛାୟା । ପେମୁ ନେମୁ ବ୍ରତୁ ଧରମୁ ଅମାୟା ॥
ଲଖନ ରାମ ସିୟ ପନ୍ଥ କହାନୀ । ପୂଁଛତ ସଖହି କହତ ମୃଦୁ ବାନୀ ॥୩॥
ରାମ ବାସ ଥଲ ବିଟପ ବିଲୋକେଁ । ଉର ଅନୁରାଗ ରହତ ନହିଁ ରୋକେଁ ॥
ଦେଖି ଦସା ସୁର ବରିସହିଁ ଫୂଲା । ଭଇ ମୃଦୁ ମହି ମଗୁ ମଂଗଲ ମୂଲା ॥୪॥

କିଏଁ ଜାହିଁ ଛାୟା ଜଲଦ ସୁଖଦ ବହଇ ବର ବାତ ।
ତସ ମଗୁ ଭୟଉ ନ ରାମ କହଁ ଜସ ଭା ଭରତହି ଜାତ ॥୨୧୬॥

---

ପଥ-ଗତି-କୁଶଳ ଯେ ସଙ୍ଗେ ତାଙ୍କୁ ନେଇ । ଚାଲିଲେ ଚିତ୍ରକୂଟକୁ ମନ ଚିତ୍ତ ଦେଇ ॥
ଶ୍ରୀରାମ ସଖା ସ୍କନ୍ଧରେ ରଖିଛନ୍ତି କର । ଚାଲଇ ବା ଅନୁରାଗ ଧରି କଳେବର ॥୨॥
ନାହିଁ ପଦେ ପଦତ୍ରାଣ, ଶିରେ ନାହିଁ ଛାୟା । ଧର୍ମ, ବ୍ରତ, ଅନୁରାଗ, ନିୟମ ନିର୍ମାୟା ॥
ଲକ୍ଷ୍ମଣ ରାମ ସୀତାଙ୍କ ପଥର କାହାଣୀ । ପଚାରନ୍ତି ସଖାକୁ ସେ କହେ ମୃଦୁବାଣୀ ॥୩॥
ରାମଙ୍କ ନିବାସ-ସ୍ଥଳ ବୃକ୍ଷ ବିଲୋକନ୍ତେ । ସମ୍ଭାଳି ନହୁଏ ପ୍ରୀତି ହୃଦୟେ ଅତ୍ୟନ୍ତେ ॥
ଦଶା ଦେଖି ବରଷନ୍ତି ସୁରେ ପୁଷ୍ପଚୟ । ହୋଇଲା ମୃଦୁଳ ଭୂମି ସୁମଙ୍ଗଳମୟ ॥୪॥

ଜଳଧର ଛାଇ କରଣ ଚାଲଇ ସୁଖଦ ବହେ ପବନ ।
ହୋଇଥିଲା ପଥ ରାମଙ୍କୁ ତେମନ୍ତ ଭରତ ପାଇଁ ଯେସନ ॥୨୧୬॥

---

ଭରତ ଚକ୍ରବାକ ଏବଂ ମୁନିଙ୍କ ଆଦେଶ ଖେଳାଳି (ବ୍ୟାଧ) । ମୁନିଙ୍କ ଆଦେଶ ସେହି ରାତି ଆଶ୍ରମ-ପଞ୍ଜୁରୀରେ ଭରତ-ଚକ୍ରବାକ ଓ ସମ୍ପତ୍ତି-ଚକ୍ରବାକୀ ଦୁହିଁଙ୍କୁ ବନ୍ଦ କରି ରଖିଥିଲା । ( ମାତ୍ର ରାତିରେ ଚକ୍ରବାକ-ଚକ୍ରବାକୀଙ୍କ ମିଳନ ହୋଇପାରେ ନାହିଁ । ସେହିପରି ଭରଦ୍ୱାଜଙ୍କ ଆଜ୍ଞାରେ ରାତିଯାକ ଭୋଗସାମଗ୍ରୀମାନଙ୍କ ସଙ୍ଗେ ରହିଲେ ମଧ୍ୟ ଭରତ ମନରେ ବି ସେ ସବୁକୁ ସ୍ପର୍ଶ କଲେ ନାହିଁ । ) କ୍ରମେ ପ୍ରଭାତ ହେଲା ॥୨୧୫॥ ଚୌପାଈ:—ପ୍ରାତଃ କାଳରେ ଭରତ ତୀର୍ଥରାଜରେ ସ୍ନାନ କଲେ ଏବଂ ସସମାଜ ମୁନିଙ୍କୁ ପ୍ରଣାମ କଲେ । ଋଷିଙ୍କ ଆଦେଶ ଓ ଆଶୀର୍ବାଦକୁ ଶିରୋଧାର୍ଯ୍ୟ କରି ଦଣ୍ଡବତପୂର୍ବକ ବହୁ ବିନତି କଲେ ॥ ୧ ॥ ତଦନନ୍ତର କୁଶଳ ପଥପ୍ରଦର୍ଶକମାନଙ୍କ ସହିତ ସମସ୍ତ ସମାଜକୁ ଧରି ଭରତ ଚିତ୍ରକୂଟ ପ୍ରତି ମନଧ୍ୟାନ ଲଗାଇ ଚାଲିଲେ । ଭରତ ରାମସଖା ଗୁହଙ୍କ କାନ୍ଧରେ ହାତ ରଖି ଚାଲିଥା'ନ୍ତି । ବୋଧ ହେଉଥାଏ, ସତେ ଯେପରି ସାକ୍ଷାତ୍ ପ୍ରେମ ହିଁ ଶରୀର ଧାରଣ କରିଅଛି ॥ ୨ ॥ ତାଙ୍କ ପାଦରେ ଜୋତା ନାହିଁ କି ଶିର ଉପରେ ଛାୟା ନାହିଁ । ତାଙ୍କ ପ୍ରେମ, ନିୟମ, ବ୍ରତ ଓ ଧର୍ମ ନିଷ୍କପଟ । ସେ ସଖା ନିଷାଦରାଜଙ୍କୁ ଲକ୍ଷ୍ମଣ, ଶ୍ରୀରାମଚନ୍ଦ୍ର ଓ ସୀତା କେଉଁ ବାଟ ଦେଇ ଗଲେ, ସେ କଥା ପଚାରି ପଚାରି ଚାଲିଥା'ନ୍ତି ଏବଂ ନିଷାଦ କୋମଳ ବାଣୀରେ ଉତ୍ତର ଦେଇ ଦେଇ ଚାଲିଥାଏ ॥ ୩ ॥ ଶ୍ରୀରାମଚନ୍ଦ୍ରଙ୍କ ବାସସ୍ଥାନ ଓ ବୃକ୍ଷମାନଙ୍କୁ ଦେଖି ତାଙ୍କ ହୃଦୟର ପ୍ରେମ ସେତେ ଆବଦ୍ଧ

ଜଡ଼ ଚେତନ ମଗ ଜୀବ ଘନେରେ । ଜେ ଚିତଏ ପ୍ରଭୁ ଜିନ୍ହ ପ୍ରଭୁ ହେରେ ॥
ତେ ସବ ଭଏ ପରମ ପଦ ଜୋଗୂ । ଭରତ ଦରସ ମେଟା ଭବ ରୋଗୂ ॥୧॥
ୟହ ବଡ଼ି ବାତ ଭରତ କଇ ନାହୀଂ । ସୁମିରତ ଜିନହି ରାମୁ ମନ ମାହୀଂ ॥
ବାରକ ରାମ କହତ ଜଗ ଜେଊ । ହୋତ ତରନ ତାରନ ନର ତେଊ ॥୨॥
ଭରତୁ ରାମ ପ୍ରିୟ ପୁନି ଲଘୁ ଭ୍ରାତା । କସ ନ ହୋଇ ମଗୁ ମଂଗଲଦାତା ॥
ସିଦ୍ଧ ସାଧୁ ମୁନିବର ଅସ କହହୀଂ । ଭରତହି ନିରଖି ହରଷୁ ହିୟଁ ଲହହୀଂ ॥୩॥
ଦେଖି ପ୍ରଭାଉ ସୁରେସହି ସୋଚୂ । ଜଗୁ ଭଲ ଭଲେହି ପୋଚ କହୁଁ ପୋଚୂ ॥
ଗୁର ସନ କହେଉ କରିଅ ପ୍ରଭୁ ସୋଈ । ରାମହି ଭରତହି ଭେଁଟ ନ ହୋଈ ॥୪॥

---

ଜଡ଼ ଚୈତନ୍ୟ ଜଗତେ ଜୀବ ଯେତେ ଥିଲେ । ଯେ ଦେଖିଲେ ପ୍ରଭୁ, ପ୍ରଭୁ ଯାହାଙ୍କୁ ଦେଖିଲେ ॥
ହେଲେ ପରମ ପଦର ସେ ସମସ୍ତ ଯୋଗ୍ୟ । ଭରତ ଦର୍ଶନେ ନାଶ ହେଲା ଭବ ରୋଗ ॥୧॥
ଏ ବଡ଼ କଥା ନୁହଇ ଭରତଙ୍କ ପକ୍ଷେ । ଯାହାଙ୍କୁ ରଘୁନାୟକ ସୁମରନ୍ତି ବକ୍ଷେ ॥
ବାରେ ମଧ୍ୟ ଜଗତେ ଯେ 'ରାମ' ଉଚ୍ଚାରଇ । ତରଣ ତାରଣ ଶୀଘ୍ର ସେ ନର କରଇ ॥୨॥
ଭରତ ରାମଙ୍କ ପ୍ରିୟ ପୁଣି ସାନ ଭ୍ରାତା । କିପାଁ ନ ହୋଇବ ମାର୍ଗ ସୁମଙ୍ଗଳ ଦାତା ॥
ସିଦ୍ଧ ସାଧୁ ମୁନିବର ଏମନ୍ତ କହନ୍ତି । ଭରତଙ୍କୁ ଦେଖି ହୃଦେ ହରଷ ହୁଅନ୍ତି ॥୩॥
ଦେଖି ପ୍ରଭାବ ସୁରେଶ ହୁଏ ଚିନ୍ତାଗ୍ରସ୍ତ । ଭଲକୁ ଭଲ, ମନ୍ଦକୁ ମନ୍ଦ ଏ ଜଗତ ॥
ଗୁରୁ ଆଗେ କହେ ପ୍ରଭୁ କର ସେ ଯତନ । ରାମ ଭରତଙ୍କ ଭେଟ ନ ହେବ ଯେସନ ॥୪॥

---

କରିବାକୁ ଚେଷ୍ଟା କଲେ ମଧ୍ୟ ତାହା ଉଚ୍ଛୁଳି ପଡୁଥିଲା । ଭରତଙ୍କ ଏହି ଅବସ୍ଥା ଦେଖି ଦେବତାମାନେ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ଭୂମି କୋମଳ ହୋଇଗଲା ଏବଂ ମାର୍ଗ ମଙ୍ଗଳମୟ ହୋଇଗଲା ॥ ୪ ॥ ଦୋହା ।—ମେଘ ଛାୟା ଦାନ କରି ଚାଲୁଥାଏ । ସୁଖଦ ସୁନ୍ଦର ପବନ ବହୁଥାଏ । ଭରତଙ୍କ ଯିବା ସମୟରେ ତାଙ୍କୁ ମାର୍ଗ ଯେପରି ସୁଖଦାୟକ ହେଲା, ରାମଙ୍କୁ ମଧ୍ୟ ସେହିପରି ହୋଇ ନ ଥିଲା ॥ ୨୧୬ ॥ ଚୌପାଇ :— ମାର୍ଗରେ ଅସଂଖ୍ୟ ଜଡ଼ଚେତନ ଜୀବ ଥିଲେ । ସେମାନଙ୍କ ମଧ୍ୟରୁ ଯେଉଁମାନେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ଦେଖିଥିଲେ ବା ପ୍ରଭୁ ଶ୍ରୀରାମ ଯେଉଁମାନଙ୍କୁ ଦେଖିଥିଲେ, ସେମାନେ ସମସ୍ତେ ସେହି ସମୟରେ ପରମପଦର ଅଧିକାରୀ ହୋଇଗଲେ । କିନ୍ତୁ ଏବେ ଭରତଙ୍କ ଦର୍ଶନ ତ ସେମାନଙ୍କ ଭବରୋଗ ( ଜନ୍ମମରଣର ରୋଗ ) ନାଶ କରିଦେଲା ॥ ୧ ॥ ଭରତଙ୍କ ପକ୍ଷରେ ଏହା କୌଣସି ବଡ଼ କଥା ନୁହେଁ, କାରଣ ସ୍ୱୟଂ ଶ୍ରୀରାମ ମଧ୍ୟ ନିଜ ମନ ମଧ୍ୟରେ ତାଙ୍କ ନାମ ସ୍ମରଣ କରୁଥା'ନ୍ତି । ଜଗତରେ ଯେ କୌଣସି ମନୁଷ୍ୟ ଥରେ ମାତ୍ର ଯଦି 'ରାମ' କହି ପକାନ୍ତି, ସେ ନିଜେ ଭବସାଗରରୁ ତରିଯାଆନ୍ତି ଏବଂ ଅନ୍ୟକୁ ମଧ୍ୟ ତାରି ଦିଅନ୍ତି ॥ ୨ ॥ ପୁଣି ଭରତ ତ ଶ୍ରୀରାମଚନ୍ଦ୍ରଙ୍କ ପ୍ରିୟ ଏବଂ ତାଙ୍କ ସାନ ଭାଇ । ତେବେ ତାଙ୍କ ନିମନ୍ତେ ମାର୍ଗ ମଙ୍ଗଳ ଓ ସୁଖଦାୟକ କିପରି ବା ନ ହୁଅନ୍ତା ? ସିଦ୍ଧ, ସାଧୁ ଓ ଶ୍ରେଷ୍ଠ ମୁନିଗଣ ଏହିପରି କହୁଥା'ନ୍ତି ଏବଂ ଭରତଙ୍କୁ ଦେଖି ହୃଦୟରେ ଆନନ୍ଦ

ରାମୁ ସଁକୋଚୀ ପ୍ରେମ ବସ ଭରତ ସପେମ ପୟୋଧି ।
ବନୀ ବାତ ବେଗରନ ଚହନ୍ତି କରିଅ ଜତନୁ ଛଲୁ ସୋଧି ॥୨୧୭॥

ବଚନ ସୁନତ ସୁରଗୁରୁ ମୁସୁକାନେ । ସହସନୟନ ବିନୁ ଲୋଚନ ଜାନେ ॥
ମାୟାପତି ସେବକ ସନ ମାୟା । କରଇ ତ ଉଲଟି ପରଇ ସୁରରାୟା ॥୧॥
ତବ କଛୁ କୀନ୍ହ ରାମ ରୁଖ ଜାନୀ । ଅବ କୁଚାଲି କରି ହୋଇହି ହାନୀ ॥
ସୁନୁ ସୁରେସ ରଘୁନାଥ ସୁଭାଊ । ନିଜ ଅପରାଧ ରିସାହିଁ ନ କାଊ ॥୨॥
ଜୋ ଅପରାଧୁ ଭଗତ କର କରଈ । ରାମ ରୋଷ ପାବକ ସୋ ଜରଈ ॥
ଲୋକହୁଁ ବେଦ ବିଦିତ ଇତିହାସା । ୟହ ମହିମା ଜାନହିଁ ଦୁରବାସା ॥୩॥
ଭରତ ସରିସ କୋ ରାମ ସନେହୀ । ଜଗୁ ଜପ ରାମ ରାମୁ ଜପ ଜେହୀ ॥୪॥

---

ରାମ ପ୍ରେମବଶ ସଙ୍କୋଚୀ ବିଶେଷ ଭରତ ପ୍ରେମ-ସାଗର ।
ଆମ ଆୟୋଜନ ପଣ୍ଡ ହୁଏ, ଏବେ କପଟ ଉପାୟ କର ॥୨୧୭॥

ବଚନ ଶୁଣନ୍ତେ ଦେବ ଗୁରୁ ମୁରୁକିଲେ । ସହସ୍ର-ନେତ୍ରଙ୍କୁ ନେତ୍ର-ରହିତ ଜାଣିଲେ ॥
ମାୟା କଲେ ମାୟାପତି ସେବକ ଉପରେ । ଉଲଟି ପଡିବ ଜାଣ ସୁରେନ୍ଦ୍ର, ସତ୍ୱରେ ॥୧॥
ତେବେ କିଛି କରିଥିଲି ରାମ ଇଚ୍ଛା ଜାଣି । ଏବେ କୁଚକ୍ର ରଚିଲେ ହେବ ନିଶ୍ଚେ ହାନି ॥
ସ୍ୱଭାବ ରଘୁନାଥଙ୍କ ଶୁଣ ସୁରପତି । ନିଜ ପ୍ରତି କୃତ ଦୋଷେ କେବେ ନ କୋପନ୍ତି ॥୨॥
ଯେହୁ ଅପରାଧ ଭକ୍ତ ଜନଙ୍କ କରଇ । ରାମ ରୋଷ-ପାବକେ ସେ ଅବଶ୍ୟ ଜଳଇ ॥
ଲୋକେ ବେଦେ ଇତିହାସ ଅଟଇ ବିଖ୍ୟାତ । ଏ ମହିମା ଭଲ ଭାବେ ଦୁର୍ବାସାଙ୍କୁ ଜ୍ଞାତ ॥୩॥
ଭରତ ସଦୃଶ କିଏ ରାମ-ସ୍ନେହୀ ଅଛି । ବିଶ୍ୱ ଜପେ ରାମ, ରାମ ଯାହାଙ୍କୁ ଜପନ୍ତି ॥୪॥

---

ଲାଭ କରୁଅଛନ୍ତି ॥ ୩ ॥ ଭରତଙ୍କ ଏହି ପ୍ରେମ-ପ୍ରଭାବ ଦେଖି ଦେବରାଜ ଇନ୍ଦ୍ରଙ୍କ ମନରେ ମଧ୍ୟ ଚିନ୍ତା ହୋଇଗଲା—କାଳେ ଶ୍ରୀରାମ ଏହାଙ୍କ ପ୍ରେମର ବଶବର୍ତ୍ତୀ ହୋଇ ଫେରିଯିବେ ଏବଂ ଆମର ଆୟୋଜିତ କାମ କାଳେ ବିଗିଡିଯିବ । ସଂସାର ଭଲ ନିମନ୍ତେ ଭଲ ଏବଂ ମନ୍ଦ ନିମନ୍ତେ ମନ୍ଦ, ଯେ ନିଜେ ଯେମିତି, ସଂସାର ତାହାଙ୍କୁ ସେହିପରି ଦିଶେ । ସେ ଗୁରୁ ବୃହସ୍ପତିଙ୍କୁ କହିଲେ, "ହେ ପ୍ରଭୋ ! ଯେମିତି ଶ୍ରୀରାମ ଓ ଭରତଙ୍କ ମିଳନ ନ ହେବ, ସେହି ଉପାୟ କରନ୍ତୁ ॥ ୪ ॥ ଦୋହା —ଶ୍ରୀରାମଚନ୍ଦ୍ର ଲଜ୍ଜାଶୀଳ ଓ ପ୍ରେମର ଅଧୀନ ଏବଂ ଭରତ ପ୍ରେମର ସମୁଦ୍ର । ଆମର ଆୟୋଜିତ ସବୁ କାମ ଅସଳ ସମୟରେ ଭଣ୍ଡୁର ହୋଇ ଯାଉଛି । ଏଣୁ ଛନ୍ଦକପଟ ଖୋଜି ଏହାର ଉପାୟ କରନ୍ତୁ ।" ॥ ୨୧୭ ॥
ଚୌପାଇ —ଇନ୍ଦ୍ରଙ୍କ ବଚନ ଶୁଣି ଦେବଗୁରୁ ବୃହସ୍ପତି ହସିଲେ । ସେ ସହସ୍ରନେତ୍ର ଇନ୍ଦ୍ରଙ୍କୁ ଜ୍ଞାନ-ନେତ୍ରହୀନ (ମୂର୍ଖ) ବୋଲି ବିଚାରିଲେ ଏବଂ କହିଲେ, "ହେ ଦେବରାଜ ! ମାୟାପତି ଶ୍ରୀରାମଙ୍କ ସେବକ ସହିତ ଯଦି କେହି ମାୟା କରେ, ସେହି ମାୟା ଓଲଟି ନିଜ ଉପରେ ଆସି ପଡେ ॥ ୧ ॥ ରାଜ୍ୟାଭିଷେକ ସମୟରେ ତ ଶ୍ରୀରାମଙ୍କ ଇଚ୍ଛା ଜାଣି

ମନହୁଁ ନ ଆନିଅ ଅମରପତି ରଘୁବର ଭଗତ ଅକାଜୁ ।
ଅଜସୁ ଲୋକ ପରଲୋକ ଦୁଖ ଦିନ ଦିନ ସୋକ ସମାଜୁ ॥୨୧୮॥

ସୁନୁ ସୁରେସ ଉପଦେସୁ ହମାରା । ରାମହିଁ ସେବକୁ ପରମ ପିଆରା ॥
ମାନତ ସୁଖୁ ସେବକ ସେବକାଈଁ । ସେବକ ବୈର ବୈରୁ ଅଧିକାଈଁ ॥୧॥
ଜଦ୍ୟପି ସମ ନହିଁ ରାଗ ନ ରୋଷୂ । ଗହହିଁ ନ ପାପ ପୂନୁ ଗୁନ ଦୋଷୂ ॥
କରମ ପ୍ରଧାନ ବିସ୍ୱ କରି ରାଖା । ଜୋ ଜସ କରଇ ସୋ ତସ ଫଲୁ ଚାଖା ॥୨॥
ତଦପି କରହିଁ ସମ ବିଷମ ବିହାରା । ଭଗତ ଅଭଗତ ହୃଦୟ ଅନୁସାରା ॥
ଅଗୁନ ଅଲେପ ଅମାନ ଏକରସ । ରାମୁ ସଗୁନ ଭଏ ଭଗତ ପେମ ବସ ॥୩॥

---

ମନେ ଶଙ୍କା ଆଣ ନାହିଁ ଇନ୍ଦ୍ରଦେବ, ରାମ ଭକ୍ତ କାର୍ଯ୍ୟ ହାନି ।
ଅପଯଶ ଏ ଲୋକେ ଦୁଃଖ ପରଲୋକେ ହେବ ନିତ୍ୟ ଶୋକ ଗ୍ଲାନି ॥୨୧୮॥

ଶୁଣ ମୋର ଉପଦେଶ ଅମର-ନାୟକ । ପରମ ପ୍ରିୟ ଶ୍ରୀ ରଘୁନାଥଙ୍କ ସେବକ ॥
ସେବକ ସେବାରେ ସୁଖ ସ୍ୱହୃଦେ ମଣନ୍ତି । ସେବକ-ବୈରେ ଅଧିକ ବୈର ଆଚରନ୍ତି ॥୧॥
ଯଦ୍ୟପି ସମାନ, ନାହିଁ ଅନୁରାଗ ରୋଷ । ନ ଘେନନ୍ତି ପାପ ପୁଣ୍ୟ ଗୁଣ କିମ୍ବା ଦୋଷ ॥
କରମ-ପ୍ରଧାନ ବିଶ୍ୱ କରି ରଖିଛନ୍ତି । ଯେ ଯଥା କରନ୍ତି ତଥା ଫଳ ସେ ଭୋଗନ୍ତି ॥୨॥
ତଥାପି କରନ୍ତି ସମ ବିଷମେ ବିହାର । ଭକ୍ତ ଅଭକ୍ତଙ୍କ ହୃଦ ଭାବ ଅନୁସାର ॥
ଅଗୁଣ ଅମାନ ଅଗୋଚର ଅବିଚ୍ଛିନ୍ନ । ରାମ ସଗୁଣ ହୋଇଲେ ଭକ୍ତ ପ୍ରେମାଧୀନ ॥୩॥

---

ଆମେ କିଛି କରିଥିଲୁ । କିନ୍ତୁ ଏ ସମୟରେ ଏପରି ଚକ୍ରାନ୍ତ କଲେ କେବଳ କ୍ଷତି ହିଁ ସାର ହେବ । ହେ ସୁରେଶ ! ଶ୍ରୀ ରଘୁନାଥଙ୍କ ସ୍ୱଭାବ ଶୁଣ । ତାଙ୍କ ପ୍ରତି ଯଦି କେହି କୌଣସି ଅପରାଧ କରେ, ସେ ସେଥି ନିମନ୍ତେ କଦାପି ରୁଷ୍ଟ ହୁଅନ୍ତି ନାହିଁ ॥ ୨ ॥ କିନ୍ତୁ ଯଦି କେହି ତାଙ୍କ ଭକ୍ତ ପ୍ରତି ଅପରାଧ କରେ, ସେ ଶ୍ରୀରାମଙ୍କ କ୍ରୋଧାଗ୍ନିରେ ଜଳି ଭସ୍ମୀଭୂତ ହୋଇଯାଏ । ଲୋକ ଓ ବେଦ ଉଭୟରେ ଇତିହାସ ପ୍ରସିଦ୍ଧ । ଏହି ମହିମା କଥା ଦୁର୍ବାସା ଜାଣନ୍ତି । ସାରା ଜଗତ ଶ୍ରୀରାମଙ୍କୁ ଜପେ । ସେହି ଶ୍ରୀରାମ ଯାହାଙ୍କୁ ଜପନ୍ତି, ସେହି ଭରତଙ୍କ ସମାନ ରାମଙ୍କର ପ୍ରେମୀ ଆଉ କିଏ ହେବ ? ॥ ୪ ॥

ଦୋହା —ହେ ଦେବରାଜ ! ରଘୁକୁଳଶ୍ରେଷ୍ଠ ଶ୍ରୀରାମଙ୍କ ଭକ୍ତର କାମ ବିଗାଡ଼ିବା କଥା ମନରେ ଶଙ୍କା ଧରନ୍ତୁ ନାହିଁ । ଏହା କଲେ ଇହଲୋକରେ ଅପଯଶ ଏବଂ ପରଲୋକରେ ଦୁଃଖ ହେବ ଏବଂ ଦିନକୁ ଦିନ ଶୋକର ଉପାଦାନ ବଢ଼ି ଚାଲିବ ॥୨୧୮॥

ଚୌପାଈ :—ହେ ଦେବରାଜ ! ଆମ ଉପଦେଶ ଶୁଣ । ଶ୍ରୀରାମଙ୍କୁ ତାଙ୍କ ସେବକ ପରମପ୍ରିୟ । ତାଙ୍କ ସେବକ ପ୍ରତି ସେବା କଲେ ସେ ସୁଖ ମନେ କରନ୍ତି ଏବଂ ସେବକ ସହିତ ଶତ୍ରୁତା କଲେ ସେ ଶତ୍ରୁ ପ୍ରତି ଅଧିକ ଶତ୍ରୁତାଭାବ ପୋଷଣ କରନ୍ତି; ଯଦ୍ୟପି ସେ ସୁଖଦୁଃଖ ସବୁ କାଳରେ ସମାନ, ତାଙ୍କଠାରେ ରାଗ ନାହିଁ କି ଦ୍ୱେଷ ନାହିଁ କିମ୍ବା ସେ କୌଣସି ବ୍ୟକ୍ତିର ପାପପୁଣ୍ୟ ଓ ଗୁଣଦୋଷ ଗ୍ରହଣ କରନ୍ତି ନାହିଁ । ସେ ବିଶ୍ୱରେ

ରାମ ସଦା ସେବକ ରୁଚି ରାଖୀ । ବେଦ ପୁରାନ ସାଧୁ ସୁର ସାଖୀ ॥
ଅସ ଜୟଁ ଜାନି ତଜହୁ କୁଟିଲାଈ । କରହୁ ଭରତ ପଦ ପ୍ରୀତି ସୁହାଈ ॥୪॥

ରାମ ଭଗତ ପରହିତ ନିରତ ପର ଦୁଖ ଦୁଖୀ ଦୟାଲ ।
ଭଗତ ସିରୋମନି ଭରତ ତେଁ ଜନି ଡରପହୁ ସୁରପାଲ ॥୨୧୯॥

ସତ୍ୟସଂଧ ପ୍ରଭୁ ସୁର ହିତକାରୀ । ଭରତ ରାମ ଆୟସୁ ଅନୁସାରୀ ॥
ସ୍ୱାରଥ ବିବସ ବିକଲ ତୁମ୍ହ ହୋହୂ । ଭରତ ଦୋସୁ ନହିଁ ରାଉର ମୋହୂ ॥୧॥
ସୁନି ସୁରବର ସୁରଗୁର ବର ବାନୀ । ଭା ପ୍ରମୋଦୁ ମନ ମିଟୀ ଗଲାନୀ ॥
ବରଷି ପ୍ରସୂନ ହରଷି ସୁରରାଊ । ଲଗେ ସରାହନ ଭରତ ସୁଭାଊ ॥୨॥

---

ରାମ ସଦା ସେବକଙ୍କ ରୁଚି ରଖିଛନ୍ତି । ବେଦ ପୁରାଣ ବିବୁଧ ସାଧୁ ସାକ୍ଷୀଛନ୍ତି ॥
ଏହା ଜାଣି କୁଟିଳତା ମନୁ ପରିହର । ଭରତ ପଦ୍ମରେ କର ପ୍ରୀତି ମନୋହର ॥୪॥

ରାମ-ଭକ୍ତ ପର-ହିତ ରତ, ପର-ଦୁଃଖେ ଦୁଃଖୀ ଦୟାମୟ ।
ଭକ୍ତ-ଶିରୋମଣି ଭରତଙ୍କୁ ଜାଣି ନ କର ଦେବେନ୍ଦ୍ର, ଭୟ ॥୨୧୯॥

ସତ୍ୟସନ୍ଧ ଦାଶରଥି ସୁର-ହିତକାରୀ । ଭରତ ଅଟନ୍ତି ରାମ ଆଜ୍ଞା-ଅନୁସାରୀ ॥
ସ୍ୱାର୍ଥବଶ ହୋଇ ତୁମ୍ଭେ ହେଉଛ କାତର । ଭରତଙ୍କ ଦୋଷ ନାହିଁ ଅଜ୍ଞାନ ତୁମର ॥୧॥
ଶୁଣି ସୁରବର ସୁର-ଗୁରୁଙ୍କ ସୁବାଣୀ । ପ୍ରବୋଧ ଲଭିଲେ ମନୁ ନଷ୍ଟ ହେଲା ଗ୍ଲାନି ॥
ବରଷି ପ୍ରସୂନ ଦେବରାଜ ପ୍ରମୋଦିତ । ପ୍ରଶଂସିବାକୁ ଲାଗିଲେ ଭରତ ଚରିତ ॥୨॥

---

କେବଳ କର୍ମକୁ ପ୍ରଧାନ କରି ରଖିଅଛନ୍ତି । ଯେ ଯେଉଁପରି କର୍ମ କରେ, ସେହିପରି ଫଳ ସେ ଭୋଗ କରେ ॥୧-୨॥ ତଥାପି ସେ ଭକ୍ତ ଓ ଅଭକ୍ତର ହୃଦୟ ଅନୁସାରେ ସମ ଓ ବିଷମ ବ୍ୟବହାର କରନ୍ତି । ନିର୍ଗୁଣ, ନିର୍ଲେପ, ମାନରହିତ ଏବଂ ସଦା ଏକରସ ଭଗବାନ୍ ଶ୍ରୀରାମ କେବଳ ଭକ୍ତଙ୍କ ପ୍ରେମବଶତଃ ସଗୁଣ ହୋଇଅଛନ୍ତି ॥ ୩ ॥ ଶ୍ରୀରାମ ସଦାସର୍ବଦା ନିଜ ଭକ୍ତମାନଙ୍କ ରୁଚି ରକ୍ଷା କରି ଆସିଅଛନ୍ତି । ବେଦ, ପୁରାଣ, ସାଧୁ ଓ ଦେବତା ଏହାର ସାକ୍ଷୀ । ଏପରି ହୃଦୟରେ ବିଚାର କରି କୁଟିଳତା ତ୍ୟାଗ କର ଏବଂ ଭରତଙ୍କ ଚରଣରେ ସୁନ୍ଦର ପ୍ରୀତି କର ॥ ୪ ॥ ଦୋହା .—ହେ ଦେବରାଜ ଇନ୍ଦ୍ର ! ଶ୍ରୀରାମଙ୍କ ଭକ୍ତମାନେ ସଦାସର୍ବଦା ଅନ୍ୟର ହିତରେ ଲାଗି ରହନ୍ତି । ସେମାନେ ଅନ୍ୟର ଦୁଃଖରେ ଦୁଃଖୀ ଓ ଦୟାଳୁ । ପୁଣି ଭରତ ତ ଭକ୍ତ-ଶିରୋମଣି । ତାଙ୍କୁ ଆଦୌ ଡରନାହିଁ ॥ ୨୧୯ ॥ ଚୌପାଇ —ପ୍ରଭୁ ଶ୍ରୀରାମ ସତ୍ୟପ୍ରତିଜ୍ଞ ଓ ଦେବତାମାନଙ୍କର ହିତକାରୀ । ଭରତ ଶ୍ରୀରାମଙ୍କ ଆଜ୍ଞାନୁସାରେ ଚାଳିତ । ତୁମେ ବୃଥାରେ ସ୍ୱାର୍ଥର ବିଶେଷ ବଶବର୍ତ୍ତୀ ହୋଇ ବ୍ୟାକୁଳ ହେଉଅଛ ! ଏଥିରେ ଭରତଙ୍କର କୌଣସି ଦୋଷ ନାହିଁ, ଏହା ତୁମର ମୋହ ମାତ୍ର ।” ॥ ୧ ॥ ଦେବଗୁରୁ ବୃହସ୍ପତିଙ୍କ ଶ୍ରେଷ୍ଠ ବଚନ ଶୁଣି ଇନ୍ଦ୍ରଙ୍କ ମନରେ ବଡ଼ ଆନନ୍ଦ ହେଲା ଏବଂ ତାଙ୍କ ଚିନ୍ତା ଦୂର ହୋଇଗଲା । ତତ୍ପରେ ଦେବରାଜ ଆନନ୍ଦିତ ମନରେ ପୁଷ୍ପ ବୃଷ୍ଟି କରି ଭରତଙ୍କ ସ୍ୱଭାବକୁ ପ୍ରଶଂସା

ଏହି ବିଧି ଭରତ ଚଲେ ମଗ ଜାହୀଁ । ଦସା ଦେଖି ମୁନି ସିଦ୍ଧ ସିହାହୀଁ ॥
ଜବହିଁ ରାମୁ କହି ଲେହିଁ ଉସାସା । ଉମଗତ ପେମୁ ମନହୁଁ ଚହୁ ପାସା ॥୩॥
ଦ୍ରବହିଁ ବଚନ ସୁନି କୁଲିସ ପଷାନା । ପୁରଜନ ପେମୁ ନ ଜାଇ ବଖାନା ॥
ବୀଚ ବାସ କରି ଜମୁନହିଁ ଆଏ । ନିରଖି ନୀରୁ ଲୋଚନ ଜଲ ଛାଏ ॥୪॥

ରଘୁବର ବରନ ବିଲୋକି ବର ବାରି ସମେତ ସମାଜ ।
ହୋତ ମଗନ ବାରିଧି ବିରହ ଚଢ଼େ ବିବେକ ଜହାଜ ॥୨୨୦॥

ଜମୁନ ତୀର ତେହି ଦିନ କରି ବାସୂ । ଭୟଉ ସମୟ ସମ ସବହି ସୁପାସୂ ॥
ରାତହିଁ ଘାଟ ଘାଟ କୀ ତରନୀ । ଆଈଁ ଅଗନିତ ଜାହିଁ ନ ବରନୀ ॥୧॥
ପ୍ରାତ ପାର ଭଏ ଏକହିଁ ଖେୱାଁ । ତୋଷେ ରାମ ସଖା କୀ ସେୱାଁ ॥
ଚଲେ ନହାଇ ନଦିହି ସିର ନାଈ । ସାଥ ନିଷାଦନାଥ ଦୋଉ ଭାଈ ॥୨॥

---

ଏ ଭାବେ ଭରତ ଚାଲି ଯାଆନ୍ତି ପଥରେ । ଦଶା ଦେଖି ପ୍ରଶଂସନ୍ତି ସିଦ୍ଧ ମୁନୀଶ୍ୱରେ ॥
ଯେତେବେଳେ 'ରାମ' କହି ଛାଡନ୍ତି ନିଃଶ୍ୱାସ । ମନେ ହୁଏ ଉଚ୍ଛୁଳଇ ପ୍ରେମ ଚଉପାଶ ॥୩॥
ଦ୍ରବନ୍ତି ପବି ପାଷାଣ ଶୁଣନ୍ତେ ବଚନ । ପୁରଜନ ପ୍ରେମ କଣ ନ ହୁଏ ବର୍ଣ୍ଣନ ॥
ପଥେ ବିଶ୍ରମି ଯମୁନା ତୀରେ ପ୍ରବେଶିଲେ । ନିରେଖି ନୀର ନୟନୁ ନୀର ବୁହାଇଲେ ॥୪॥

ରଘୁବର-ବର୍ଣ୍ଣ ବାରି ବିଲୋକିଣ ଭରତ ସହ ସମାଜ ।
ବିରହ-ସାଗରେ ବୁଡନ୍ତେ ନିମଗ୍ନ ଚଢିଲେ ଜ୍ଞାନ-ଜାହାଜ ॥୨୨୦॥

ଯମୁନା ତୀରେ ସେଦିନ କରିଲେ ବିଶ୍ରାମ । ସମୟାନୁକୂଳ ହେଲା ବ୍ୟବସ୍ଥା ଆରାମ ॥
ରାତି ରାତି ମଧ୍ୟେ ଘାଟ ଘାଟରୁ ତରଣୀ । ଏକାଠି ହେଲେ ଅନେକ ନ ହୁଅଇ ଗଣି ॥୧॥
ପ୍ରଭାତ ହୁଅନ୍ତେ ପାରି ହେଲେ ଏକବାରେ । ସନ୍ତୁଷ୍ଟ ହୋଇଲେ ରାମ ସଖାର ସେବାରେ ॥
ସ୍ନାନ କରି ପୁଣି ଶିର ନଦୀକୁ ନୁଆଁଇ । ଚାଲିଲେ, ସଙ୍ଗେ ନିଷାଦ-ନାଥ ସାନଭାଇ ॥୨॥

---

କରିବାକୁ ଲାଗିଲେ ॥ ୨ ॥ ଏହିରୂପେ ଭରତ ମାର୍ଗରେ ଚାଲି ଯାଉଥାଆନ୍ତି । ତାଙ୍କର ପ୍ରେମମୟୀ ଦଶା ଦେଖି ମୁନି ଓ ସିଦ୍ଧଗଣ ମଧ୍ୟ ଈର୍ଷ୍ୟା କରୁଥାନ୍ତି । ଭରତ ଯେତେବେଳେ ବି 'ରାମ' କହି ଦୀର୍ଘ ଶ୍ୱାସ ନେଉଥା'ନ୍ତି, ସେତେବେଳେ ସତେ ଯେପରି ଚତୁର୍ଦ୍ଦିଗରେ ପ୍ରେମ ଉଚ୍ଛୁଳି ପଡୁଥାଏ ॥ ୩ ॥ ତାଙ୍କ ପ୍ରେମ ଓ ଦୈନ୍ୟ-ପୂର୍ଣ୍ଣ ବଚନ ଶୁଣି ବଜ୍ର ଓ ପଥର ସୁଦ୍ଧା ତରଳି ଯାଉଥାଏ । ଅଯୋଧ୍ୟାବାସୀମାନଙ୍କ ପ୍ରେମ ତ ଅକଥନୀୟ । ମଧ୍ୟେ ମଧ୍ୟେ ଡେରା ପକାଇ ଭରତ ଯମୁନା ତଟକୁ ଆସିଲେ । ଯମୁନା-ଜଳ ଦେଖି ତାଙ୍କ ନେତ୍ରରେ ଜଳ ପୂରି ଆସିଲା ॥ ୪ ॥ ଦୋହା —ଶ୍ରୀ ରଘୁନାଥଙ୍କ ବର୍ଣ୍ଣସମ ଶ୍ୟାମ ରଙ୍ଗର ସୁନ୍ଦର ଜଳ ଦେଖି ସମଗ୍ର ସମାଜ ସମେତ ଭରତ ପ୍ରେମବିହ୍ୱଳ ହୋଇ ପଡିଲେ ଏବଂ ତାଙ୍କୁ ନ ଦେଖି ତାଙ୍କର ବିରହ-ସାଗରରେ ବୁଡ଼ୁ ବୁଡ଼ୁ ପୁଣି ବିବେକ-ଜାହାଜ ଉପରେ ଚଢିଲେ । (ଅର୍ଥାତ୍ ଶୀଘ୍ର ଭଗବାନଙ୍କ ଦର୍ଶନ ଲାଭ-ଲାଳସାରେ ଉତ୍ସାହିତ ହୋଇ ଉଠିଲେ) ॥୨୨୦॥ ଚୌପାଇ :—ସେମାନେ ସେହି ଦିନ

ଆଗେଁ ମୁନିବର ବାହନ ଆଛେଁ । ରାଜସମାଜ ଜାଇ ସବୁ ପାଛେଁ ॥
ତେହି ପାଛେ ଦୋଉ ବଂଧୁ ପୟାଦେଁ । ଭୂଷନ ବସନ ବେଷ ସୁଠି ସାଦେଁ ॥୩॥
ସେବକ ସୁହୃଦ ସଚିବସୁତ ସାଥା । ସୁମିରତ ଲଖନ ସୀୟ ରଘୁନାଥା ॥
ଜହଁ ଜହଁ ରାମ ବାସ ବିଶ୍ରାମା । ତହଁ ତହଁ କରହିଁ ସପ୍ରେମ ପ୍ରନାମା ॥୪॥

ମଗବାସୀ ନର ନାରି ସୁନି ଧାମ କାମ ତଜି ଧାଇ ।
ଦେଖି ସରୂପ ସନେହ ସବ ମୁଦିତ ଜନମ ଫଲୁ ପାଇ ॥୨୨୧॥

କହହିଁ ସପ୍ରେମ ଏକ ଏକ ପାହୀଁ । ରାମୁ ଲଖନୁ ସଖି ହୋହିଁ କି ନାହୀଁ ॥
ବୟ ବପୁ ବରନ ରୂପୁ ସୋଇ ଆଲୀ । ସୀଲୁ ସନେହୁ ସରିସ ସମ ଚାଲୀ ॥୧॥

---

ଆଗେ ଆଗେ ମୁନିବର ସୁନ୍ଦର ବାହନ । ପଛରେ ରାଜ ସମାଜ କରନ୍ତି ଗମନ ॥
ତାଙ୍କ ପଛେ ଦେନି ଭାଇ ପଦ୍ମରେ ଚାଲନ୍ତି । ସାଦା ଭୂଷଣ ବସନ ବେଶ ଚାରୁ ଅତି ॥୩॥
ସଙ୍ଗେ ସେବକ ସଚିବ ସୁହୃଦ ନିକର । ସ୍ମରଣ କରି ଲକ୍ଷ୍ମଣ ସୀତା ରଘୁବୀର ॥
ଯହିଁ ଯହିଁ ପଡେ ରାମ ନିବାସ ବିଶ୍ରାମ । ତହିଁ ତହିଁ ପ୍ରେମ ସହ କରନ୍ତି ପ୍ରଣାମ ॥୪॥

ପଥବାସୀ ନାରୀ-ନର ଶୁଣି ପାରି କାମ-ଧାମ ତେଜି ଧାଇଁ ।
ରୂପ ଦେଖି ସ୍ନେହେ ହୁଅନ୍ତି ପ୍ରସନ୍ନ ଜନମର ଫଳ ପାଇ ॥୨୨୧॥

ଅତି ଅନୁରାଗେ ଏକୁ ଆରେକ କହନ୍ତି । ସଖି, ଏ କାହିଁ ଲକ୍ଷ୍ମଣ ରାମ ତ ନୁହନ୍ତି ॥
ସେହି ରୂପ ବୟସ ଆଲି, ବପୁସ ବରଣ । ସମ ଶୀଳ ସ୍ନେହ ଭାବ ସମ ଆଚରଣ ॥୧॥

---

ଯମୁନା ନଦୀ କୂଳରେ ବାସ କଲେ । ସମୟାନୁସାରେ ଖାଦ୍ୟପାନୀୟ ଆଦିର ବ୍ୟବସ୍ଥା ସମସ୍ତଙ୍କ ନିମନ୍ତେ ହୋଇଗଲା । ନିଷାଦରାଜର ସଙ୍କେତ ପାଇ ରାଶିରାଶି ବିଭିନ୍ନ ଘାଟରୁ ଅଗଣିତ ନାବ ସେଠାରେ ଆସି ପହଞ୍ଚିଲା । ସେ ସବୁର ବର୍ଣ୍ଣନା କରାଯାଇ ନ ପାରେ ॥୧॥ ସକାଳେ ଗୋଟିଏ କ୍ଷଣରେ ସମସ୍ତ ଲୋକ ପାରି ହୋଇଗଲେ ଏବଂ ଶ୍ରୀରାମସଖା ନିଷାଦରାଜର ଏହି ସେବାରେ ସମସ୍ତେ ସନ୍ତୁଷ୍ଟ ହୋଇଗଲେ । ତଦନନ୍ତର ସ୍ନାନ କରି ନଦୀକୁ ପ୍ରଣାମପୂର୍ବକ ନିଷାଦରାଜ ସହିତ ଭାଇ ଦୁହେଁ ଚାଲିଲେ ॥ ୨ ॥ ଆଗରେ ଉତ୍ତମ ବାହନମାନଙ୍କ ଉପରେ ମୁନିବରବୃନ୍ଦ ଚାଲୁଥା'ନ୍ତି । ତାଙ୍କ ପଛରେ ସମସ୍ତ ରାଜସମାଜ ଯାଉଥାଏ । ତାହା ପଛରେ ଭାଇ ଦୁହେଁ ସାଦା-ଭୂଷଣ-ବସ୍ତ୍ର-ବେଶରେ ପାଦରେ ଚାଲି ଯାଉଥାଆନ୍ତି ॥ ୩ ॥ ସେବକ, ମିତ୍ର ଓ ମନ୍ତ୍ରୀଙ୍କ ପୁତ୍ରମାନେ ସେମାନଙ୍କ ସଙ୍ଗେ ଯାଉଥା'ନ୍ତି । ଲକ୍ଷ୍ମଣ, ସୀତା ଓ ଶ୍ରୀରାମଙ୍କୁ ସ୍ମରଣପୂର୍ବକ ସେମାନେ ଚାଲି ଯାଉଥା'ନ୍ତି । ଶ୍ରୀରାମଙ୍କ ବାସ ଓ ବିଶ୍ରାମ-ସ୍ଥଳକୁ ସେମାନେ ପ୍ରେମରେ ପ୍ରଣାମ କରୁଥାଆନ୍ତି ॥ ୪ ॥
ଦୋହା —ମାର୍ଗ ନିକଟରେ ବାସ କରୁଥିବା ସ୍ତ୍ରୀ ପୁରୁଷ ଏ ସମାଚାର ପାଇ ଘର ଓ କାମକାର୍ଯ୍ୟ ଛାଡ଼ି ଦୌଡ଼ି ଯାଉଥାଆନ୍ତି ଏବଂ ସେମାନଙ୍କ ରୂପ ଓ ପ୍ରେମ ଦେଖି ଜନ୍ମଲାଭର ସୁଫଳ ପାଇଲେ ବୋଲି ଆନନ୍ଦିତ ହେଉଥାଆନ୍ତି ॥ ୨୨୧ ॥ ଚୌପାଈ :—ଗ୍ରାମର ସ୍ତ୍ରୀମାନେ ପରସ୍ପର କଥାବାର୍ତ୍ତା ହେଉଥା'ନ୍ତି—"ସଖି ! ଏ ଦୁହେଁ ରାମଲକ୍ଷ୍ମଣ କି

ବେଷୁ ନ ସୋ ସଖି ସୀୟ ନ ସଂଗା । ଆଗେଁ ଅନୀ ଚଲୀ ଚତୁରଂଗା ॥
ନହିଁ ପ୍ରସନ୍ନ ମୁଖ ମାନସ ଖେଦା । ସଖି ସନ୍ଦେହୁ ହୋଇ ଏହିଁ ଭେଦା ॥୨॥
ତାସୁ ତରକ ତିୟଗନ ମନ ମାନ୍ଧ । କହହିଁ ସକଲ ତେହି ସମ ନ ସୟାନୀ ॥
ତେହି ସରାହି ବାନୀ ଫୁରି ପୂଜୀ । ବୋଲୀ ମଧୁର ବଚନ ତିୟ ଦୂଜୀ ॥୩॥
କହି ସପ୍ରେମ ସବ କଥା ପ୍ରସଂଗୁ । ଜେହି ବିଧି ରାମ ରାଜ ରସ ଭଂଗୂ ॥
ଭରତହି ବହୁରି ସରାହନ ଲାଗୀ । ସୀଲ ସନେହ ସୁଭାୟଁ ସୁଭାଗୀ ॥୪॥

ଚଲତ ପୟାଦେଁ ଖାତ ଫଲ ପିତା ଦୀହ୍ନ ତଜି ରାଜୁ ।
ଜାତ ମନାୱନ ରଘୁବରହି ଭରତ ସରିସ କୋ ଆଜୁ ॥୨୨୨॥

ଭାୟପ ଭଗତି ଭରତ ଆଚରନୂ । କହତ ସୁନତ ଦୁଖ ଦୂଷନ ହରନୂ ॥
ଜୋ କଛୁ କହବ ଥୋର ସଖି ସୋଈ । ରାମ ବଂଧୁ ଅସ କାହେ ନ ହୋଈ ॥୧॥

---

ନାହିଁ ସେହି ବେଷ ସଖି, ନାହିଁ ସୀତା ସାଙ୍ଗେ । ଚାଲନ୍ତି ଚତୁରଙ୍ଗିଣୀ ସେନା ଆଗେ ଆଗେ ॥
ନାହିଁ ସେ ପ୍ରସନ୍ନମୁଖ, ମନ ମଧ୍ୟେ ଖେଦ । ସଖି, ସନ୍ଦେହ ହେଉଛୁ ଦେଖି ଏହି ଭେଦ ॥୨॥
ତା' ତର୍କକୁ ଅନ୍ୟ ନାରୀ ଯଥାର୍ଥ ମଣିଲେ । ତୋ ସମ ଚତୁରୀ ନାହିଁ, ସମସ୍ତେ କହିଲେ ॥
ତାହାକୁ ପ୍ରଶଂସି ଉକ୍ତି ସତ୍ୟ ବୋଲି ଭଣି । ମଧୁର ବଚନ ଅନ୍ୟ ବୋଲଇ ରମଣୀ ॥୩॥
କହିଣ ସପ୍ରେମେ ପୂର୍ବ ପ୍ରସଙ୍ଗ ସମସ୍ତ । ରାମ-ରାଜ୍ୟ-ରସ-ଭଙ୍ଗ ହୋଇଲା ଯେମନ୍ତ ॥
ଭରତେ ପ୍ରଶଂସିବାକୁ ଲାଗିଲା ଆଦର । ଗୁଣ ଶୀଳ ଅନୁରାଗ ସୌଭାଗ୍ୟ ସୁନ୍ଦର ॥୪॥

ପାଦେ ଚାଲି ଚାଲି ଫଳ ମୂଳ ଖାଇ ପିତୃ ଦତ୍ତ ତେଜି ରାଜ୍ୟ ।
ଯାଆନ୍ତି ରାମଙ୍କୁ ଲେଉଟାଇବାକୁ, ଭରତ ସମ କେ ଆଜ ॥୨୨୨॥

ଭରତଙ୍କର ଭ୍ରାତୃତ୍ୱ ଭକ୍ତି ଆଚରଣ । କହନ୍ତେ ଶୁଣନ୍ତେ ହରେ ସନ୍ତାପ ଦୂଷଣ ॥
ଯାହା କିଛି କୁହାଯାଏ ଅଳ୍ପ ସେ ସମସ୍ତ । ରାମ ଅବରଜ କପାଁ ନ ହେବେ ଏମନ୍ତ ॥୧॥

---

ନୁହନ୍ତି ? "ହେ ସଖି ! ଏମାନଙ୍କ ବୟସ, ଶରୀର ଓ ରଙ୍ଗରୂପ ତ ଠିକ୍ ତାଙ୍କର ପରି । ଚରିତ୍ର ଓ ସ୍ନେହ ତାଙ୍କର ସଦୃଶ ଏବଂ ଚାଲିଚଳନ ମଧ୍ୟ ତାଙ୍କରି ସମାନ ॥ ୧ ॥ କିନ୍ତୁ ହେ ସଖି ! ଏମାନଙ୍କର ତ ସେ ବଲ୍କଲ ବେଶ ନାହିଁ କି ସୀତା ମଧ୍ୟ ସଙ୍ଗରେ ନାହାନ୍ତି ଏବଂ ଏମାନଙ୍କ ଆଗରେ ଚତୁରଙ୍ଗିଣୀ ସେନା ଚାଲି ଯାଉଅଛନ୍ତି । ପୁଣି ଏମାନଙ୍କ ମୁଖ ପ୍ରସନ୍ନ ନୁହେଁ, ଏମାନଙ୍କ ମନରେ ଦୁଃଖ । ହେ ସଖି ! ଏହି ପାର୍ଥକ୍ୟ ଯୋଗୁ ସନ୍ଦେହ ହେଉଛି ।" ॥୨॥ ତାହାର ଯୁକ୍ତି ଅନ୍ୟ ସ୍ତ୍ରୀମାନଙ୍କ ମନକୁ ପାଇଲା । ସମସ୍ତେ କହୁଥା'ନ୍ତି, "ଏହା ସମାନ ଚତୁରୀ ଆଉ କେହି ନାହାନ୍ତି ।" ତାହାକୁ ପ୍ରଶଂସା କରି ଏବଂ "ତୋ କଥା ସତ୍ୟ" କହି ଅନ୍ୟ ସ୍ତ୍ରୀ ଜଣକ ତାହାକୁ ସମ୍ମାନ ଦେଲା ଏବଂ ମଧୁର ବଚନ ବୋଇଲା ॥ ୩ ॥ ଶ୍ରୀରାମଙ୍କ ରାଜ୍ୟାଭିଷେକର ଆନନ୍ଦ ଯେଉଁପରି ଭଗ୍ନ ହେଲା, ସେ ସେହି ସବୁ କଥା-ପ୍ରସଙ୍ଗ ପ୍ରେମସହକାରେ କହିଲା । ସେ ଭରତଙ୍କ ଚରିତ୍ର, ସ୍ନେହ ଓ ସୌଭାଗ୍ୟର ମଧ୍ୟ ପ୍ରଶଂସା କରିବାକୁ ଲାଗିଲା ॥ ୪ ॥ ଦୋହା :—ସେ କହିଲା, "ଦେଖ ! ଏ

ହମ ସବ ସାନୁଜ ଭରତହି ଦେଖେଁ । ଭଇନ୍ହ ଧନ୍ୟ ଜୁବତୀ ଜନ ଲେଖେଁ ॥
ସୁନି ଗୁନ ଦେଖି ଦସା ପଛିତାହୀଁ । କୈକଇ ଜନନି ଜୋଗୁ ସୁତୁ ନାହୀଁ ॥୨॥
କୋଉ କହ ଦୂଷନୁ ରାନିହି ନାହିନ । ବିଧି ସବୁ କୀନ୍ହ ହମହି ଜୋ ଦାହିନ ॥
କହଁ ହମ ଲୋକ ବେଦ ବିଧି ହୀନୀ । ଲଘୁ ତିୟ କୁଲ କରତୂତି ମଲୀନୀ ॥୩॥
ବସହିଁ କୁଦେସ କୁଗାଁଵ କୁବାମା । କହଁ ୟହ ଦରସୁ ପୁନ୍ୟ ପରିନାମା ॥
ଅସ ଅନଂଦୁ ଅଚିରିଜୁ ପ୍ରତି ଗ୍ରାମା । ଜନୁ ମରୁଭୂମି କଲପତରୁ ଜାମା ॥୪॥
ଭରତ ଦରସୁ ଦେଖତ ଖୁଲେଉ ମଗ ଲୋଗନ୍ହ କର ଭାଗୁ ।
ଜନୁ ସିଂଘଲବାସିନ୍ହ ଭୟଉ ବିଧି ବସ ସୁଲଭ ପ୍ରୟାଗୁ ॥୨୨୩॥

---

ଆମ୍ଭେ ଯେ ସାନୁଜ ଭରତଙ୍କୁ ନିରେଖିଲେ । ଯୁବତୀ ଜନରେ ଧନ୍ୟ ଗଣନା ହୋଇଲେ ॥
ଗୁଣ ଶୁଣି ଦଶା ଦେଖି ଦୁଃଖିତ ହୁଅନ୍ତି । କୈକେୟୀ ଜନନୀ ଯୋଗ୍ୟ ତନୟ ନୁହନ୍ତି ॥୨॥
କେ ବୋଲେ କୌଣସି ଦୋଷ ନାହିଁ ରାଣୀଙ୍କର । ବିଧି ସବୁ କଲା ଯାହା ସପକ୍ଷ ଆମ୍ଭର ॥
କାହିଁ ଆମ୍ଭେ ଲୋକ ବେଦ-ବିଧିମତେ ହୀନ । ନୀଚ ନାରୀ ଜାତି କୁଳ-କର୍ତ୍ତବ୍ୟ ମଳିନ ॥୩॥
କୁବାମା, କରିଛେ ବାସ କୁଦେଶେ କୁଗ୍ରାମେ । କାହିଁ ଏହି ଦରଶନ ପୁଣ୍ୟ ପରିଣାମେ ॥
ପ୍ରତି ଗ୍ରାମେ ହୁଏ ହର୍ଷ ବିସ୍ମୟ ଏପରି । ମରୁଭୂମେ କଳ୍ପତରୁ ଉଠିଛି ଯେପରି ॥୪॥
ଭରତ ଦର୍ଶନ କରନ୍ତେ ଖୋଲଇ ପଥ ଲୋକଙ୍କର ଭାଗ୍ୟ ।
ଦୈବ ବଶେ ଅବା ସିଂହଳ-ବାସୀଙ୍କୁ ସୁଲଭ ହେଲା ପ୍ରୟାଗ ॥୨୨୩॥

---

ଭରତ ପିତୃଦତ୍ତ ରାଜ୍ୟ ତ୍ୟାଗ କରି ପାଦରେ ଚାଲୁଅଛନ୍ତି ଏବଂ ଫଳାହାରପୂର୍ବକ ଶ୍ରୀରାମଙ୍କୁ ମନାଇବା ନିମନ୍ତେ ଯାଉଅଛନ୍ତି । ଏହାଙ୍କ ସମାନ ଆଜି ଆଉ କିଏ ? ॥ ୨୨୨ ॥
ଚୌପାଈ ।—ଭରତଙ୍କ ଭ୍ରାତୃତ୍ୱ, ଭକ୍ତି ଓ ଆଚରଣ କହିଲେ ଏବଂ ଶୁଣିଲେ ଦୁଃଖ ଓ ଦୋଷ ଦୂର ହୋଇଯିବ । ହେ ସଖି ! ତାଙ୍କ ବିଷୟରେ ଯେତେ କଥା କହିଲେ ହେଁ ତାହା ଅତି ଅଳ୍ପ । ଶ୍ରୀରାମଙ୍କ ଭାଇ ଏପରି ନ ହୁଅନ୍ତେ ବା କିମିତି ? ॥ ୧ ॥ ସାନଭାଇ ଶତ୍ରୁଘ୍ନଙ୍କ ସହିତ ଭରତଙ୍କୁ ଦେଖି ଆମ୍ଭେମାନେ ଆଜି ସମସ୍ତେ ଧନ୍ୟା ସ୍ତ୍ରୀମାନଙ୍କ ମଧ୍ୟରେ ପରିଗଣିତ ହେଲୁ । ଏହି ରୂପେ ଭରତଙ୍କ ଗୁଣ ଶୁଣି ଓ ତାଙ୍କ ଦଶା ଦେଖି ସ୍ତ୍ରୀମାନେ ଅନୁତାପ କରୁଥା'ନ୍ତି ଏବଂ କହୁଥାନ୍ତି—ଏ ପୁତ୍ର କୈକେୟୀଙ୍କ ପରି ମାତାର ପୁତ୍ର ହେବା ଯୋଗ୍ୟ ନୁହନ୍ତି ।" ॥ ୨ ॥ କେହି କହୁଥାଏ, "ଏଥିରେ ରାଣୀର କୌଣସି ଦୋଷ ନାହିଁ । ଏ ସବୁ ବିଧାତା ହିଁ କରିଛି । ଯାହା କରିଛି, ତାହା ଆମର ଅନୁକୂଳ । ଆମ୍ଭେମାନେ ତୁଚ୍ଛ ସ୍ତ୍ରୀ, ଲୋକ ଓ ବେଦବିଧି, ଉଭୟରୁ ବଞ୍ଚିତା, କୁଳ ଓ କର୍ମ ଯୋଗୁ ଆମେ ମଳିନା । ଜଙ୍ଗଲି ପ୍ରଦେଶ ଓ ଖରାପ ଗ୍ରାମରେ ଆମେ ବାସ କରୁ ଏବଂ ସ୍ତ୍ରୀମାନଙ୍କ ମଧ୍ୟରେ ମଧ୍ୟ ନୀଚ ସ୍ତ୍ରୀ । ଆମ୍ଭମାନଙ୍କ ସମାନ ଏପରି ହୀନା ସ୍ତ୍ରୀ କେଉଁଠି ? ଏବଂ ମହା ପୁଣ୍ୟବଳର ଫଳସ୍ୱରୂପ ଏମାନଙ୍କ ଦର୍ଶନ କେଉଁଠି !" ଏହିପରି ଆନନ୍ଦ ଓ ଆଶ୍ଚର୍ଯ୍ୟର ତରଙ୍ଗ ଗାଁଆଁ ଗାଁଆଁରେ ଖେଳି ଯାଉଥାଏ । ସତେ ଅବା ମରୁଭୂମିରେ

ନିଜ ଗୁନ ସହିତ ରାମ ଗୁନ ଗାଥା । ସୁନତ ଜାହିଁ ସୁମିରତ ରଘୁନାଥା ॥
ତୀରଥ ମୁନି ଆଶ୍ରମ ସୁରଧାମା । ନିରଖି ନିମଜ୍ଜହିଁ କରହିଁ ପ୍ରନାମା ॥୧॥
ମନହୀଂ ମନ ମାଗହିଁ ବରୁ ଏହୂ । ସୀୟ ରାମ ପଦ ପଦୁମ ସନେହୂ ॥
ମିଲହିଁ କିରାତ କୋଲ ବନବାସୀ । ବୈଖାନସ ବଟୁ ଜତୀ ଉଦାସୀ ॥୨॥
କରି ପ୍ରନାମୁ ପୂଁଛହିଁ ଜେହି ତେହୀ । କେହି ବନ ଲଖନୁ ରାମୁ ବୈଦେହୀ ॥
ତେ ପ୍ରଭୁ ସମାଚାର ସବ କହହୀଂ । ଭରତହି ଦେଖି ଜନମ ଫଲୁ ଲହହୀଂ ॥୩॥
ଜେ ଜନ କହହିଁ କୁସଲ ହମ ଦେଖେ । ତେ ପ୍ରିୟ ରାମ ଲଖନ ସମ ଲେଖେ ॥
ଏହି ବିଧି ବୂଝତ ସବହି ସୁବାନୀ । ସୁନତ ରାମ ବନବାସ କହାନୀ ॥୪॥

---

ନିଜ ଗୁଣ ସହ ରଘୁପତି ଗୁଣ-ଗ୍ରାମେ । ଶୁଣି ଶୁଣି ଚାଲୁଥା'ନ୍ତି ସୁମରିଣ ରାମେ ॥
ତୀର୍ଥ ମୁନିଙ୍କ ଆଶ୍ରମ ପୁଣି ଦେବାଗାର । ଅବଲୋକଣ କରନ୍ତି ସ୍ନାନ ନମସ୍କାର ॥୧॥
ମନେ ମନେ ସମସ୍ତଙ୍କୁ ଏ ବର ମାଗନ୍ତି । ସୀତା ରାମ ପାଦ-ପଦ୍ମେ ପ୍ରୀତି ହେଉ ଅତି ॥
ମିଳନ୍ତି ପଥେ କିରାତ କୋହ୍ଲ ବନବାସୀ । ବାନପ୍ରସ୍ଥ, ବଟୁ ଯତି ଆବର ସନ୍ନ୍ୟାସୀ ॥୨॥
ପଚାରନ୍ତି ସେମାନଙ୍କୁ କରିଣ ପ୍ରଣାମ । କେଉଁ ବନେ ଛନ୍ତି ସୀତା ଲକ୍ଷ୍ମଣ ଶ୍ରୀରାମ ॥
ସେମାନେ ପ୍ରଭୁଙ୍କ ସବୁ ସନ୍ଦେଶ କହନ୍ତି । ଭରତଙ୍କୁ ଦେଖି ଫଳ ଜନ୍ମର ଲଭନ୍ତି ॥୩॥
କୁଶଳେ ଦେଖିଛୁ ସୁହି, ଯେ ଜନ କହଇ । ରାମ ଲକ୍ଷ୍ମଣଙ୍କ ସମ ପ୍ରିୟ ସେ ଲାଗଇ ॥
ଏହି ଭାବେ ସମସ୍ତଙ୍କୁ ପୁଛି ପ୍ରେମ ବାଣୀ । ଶୁଣି ରଘୁବୀର ବନ-ନିବାସ କାହାଣୀ ॥୪॥

---

କଳ୍ପବୃକ୍ଷ ଅଙ୍କୁରିତ ହୋଇଅଛି । ॥ ୪ ॥ ଦୋହା :—ଭରତଙ୍କ ସ୍ୱରୂପ ଦେଖିବା ମାତ୍ରେ ପଥପାର୍ଶ୍ୱବର୍ତ୍ତୀ ଲୋକମାନଙ୍କର ଭାଗ୍ୟ ଖୋଲିଗଲା, ସତେ ଅବା ଦୈବଯୋଗରୁ ସିଂହଳ ( ଲଙ୍କା ) ବାସୀମାନଙ୍କୁ ତୀର୍ଥରାଜ ପ୍ରୟାଗ ସୁଲଭ ହୋଇଗଲା କି । ॥ ୨୨୩ ॥
ଚୌପାଈ :—ଏହି ରୂପେ ଆପଣା ଗୁଣ ସହିତ ଶ୍ରୀରାମଚନ୍ଦ୍ରଙ୍କ ଗୁଣ-କଥା ଶୁଣି ଏବଂ ଶ୍ରୀରାମଚନ୍ଦ୍ରଙ୍କୁ ସ୍ମରଣ କରି ଭରତ ଅଗ୍ରସର ହେଉଥାଆନ୍ତି । ତୀର୍ଥ ଦେଖିଲେ, ସେ ତହିଁରେ ସ୍ନାନ କରୁଥା'ନ୍ତି ଏବଂ ମୁନି ଆଶ୍ରମ ଓ ଦେବମନ୍ଦିର ଦେଖି ସେମାନଙ୍କୁ ପ୍ରଣାମ କରୁଥା'ନ୍ତି ॥ ୧ ॥ ଏବଂ ମନେ ମନେ ଏହି ବରଦାନ ମାଗୁଥା'ନ୍ତି ଯେ, ଶ୍ରୀ ସୀତାରାମଙ୍କ ଚରଣ-କମଳରେ ତାଙ୍କର ଅତ୍ୟନ୍ତ ପ୍ରେମ ରହୁ । ମାର୍ଗରେ ଭିଲ, କିରାତ, କୋହ୍ଲ ଆଦି ବନବାସୀ ଏବଂ ବାନପ୍ରସ୍ଥ, ବ୍ରହ୍ମଚାରୀ, ସନ୍ନ୍ୟାସୀ ଓ ବୈରାଗୀ ଭେଟ ହେଉଥା'ନ୍ତି ॥୨॥ ସେମାନଙ୍କ ମଧ୍ୟରୁ ଯାହାକୁ ତାହାକୁ "ଲକ୍ଷ୍ମଣ, ଶ୍ରୀରାମ ଓ ଜାନକୀ କେଉଁ ବନରେ ଅଛନ୍ତି" ବୋଲି ଭରତ ପଚାରୁଥା'ନ୍ତି, ତ ସେମାନେ ପ୍ରଭୁଙ୍କ ସମାଚାର କହୁଥା'ନ୍ତି ଏବଂ ଭରତଙ୍କୁ ଦେଖି ଜନ୍ମର ଫଳ ଲାଭ କରୁଥା'ନ୍ତି ॥ ୩ ॥ ଯେଉଁ ଲୋକମାନେ କହୁଥା'ନ୍ତି ଯେ ସେମାନେ ସେମାନଙ୍କୁ ସକୁଶଳ ଦେଖିଅଛନ୍ତି, ସେମାନଙ୍କୁ ଭରତ ଶ୍ରୀରାମ-ଲକ୍ଷ୍ମଣ ପରି ପ୍ରିୟ ମନେ କରୁଥା'ନ୍ତି । ଏହି ରୂପେ ସମସ୍ତଙ୍କୁ ସୁନ୍ଦର ବାଣୀରେ ଭରତ ପଚାରୁଥା'ନ୍ତି ଏବଂ ଶ୍ରୀରାମଙ୍କ ବନବାସ କାହାଣୀ ଶୁଣି ଶୁଣି ଯାଉଥା'ନ୍ତି ॥ ୪ ॥

ତେହିଁ ବାସର ବସି ପ୍ରାତହୀଁ ଚଲେ ସୁମିରି ରଘୁନାଥ ।
ରାମ ଦରସ କୀ ଲାଲସା ଭରତ ସରିସ ସବ ସାଥ ॥୨୨୪॥

ମଂଗଲ ସଗୁନ ହୋହିଁ ସବ କାହୂ । ଫରକହିଁ ସୁଖଦ ବିଲୋଚନ ବାହୂ ॥
ଭରତହି ସହିତ ସମାଜ ଉଛାହୂ । ମିଲିହହିଁ ରାମୁ ମିଟିହି ଦୁଖ ଦାହୂ ॥୧॥
କରତ ମନୋରଥ ଜସ ଜିୟଁ ଜାକେ । ଜାହିଁ ସନେହ ସୁରାଁ ସବ ଛାକେ ॥
ସିଥିଲ ଅଂଗ ପଗ ମଗ ଡଗି ଡୋଲହିଁ । ବିହବଲ ବଚନ ପେମ ବସ ବୋଲହିଁ ॥୨॥
ରାମସଖାଁ ତେହି ସମୟ ଦେଖାୱା । ସୈଲ ସିରୋମନି ସହଜ ସୁହାୱା ॥
ଜାସୁ ସମୀପ ସରିତ ପୟ ତୀରା । ସୀୟ ସମେତ ବସହିଁ ଦୋଉ ବୀରା ॥୩॥
ଦେଖି କରହିଁ ସବ ଦଣ୍ଡ ପ୍ରନାମା । କହି ଜୟ ଜାନକି ଜୀବନ ରାମା ॥
ପ୍ରେମ ମଗନ ଅସ ରାଜ ସମାଜୂ । ଜନୁ ଫିରି ଅୱଧ ଚଲେ ରଘୁରାଜୂ ॥୪॥

---

ବିଶ୍ରାମି ସେ ରାତେ ଗମିଲେ ପ୍ରଭାତେ ସୁମରି ଶ୍ରୀ ରଘୁରାଜ ।
ରାମ ଦରଶନ-ଲାଲସା କରିଣ ଭରତ ସହ ସମାଜ ॥୨୨୪॥

ମଙ୍ଗଳ ଶକୁନ ସବୁ ଲୋକଙ୍କୁ ହୁଅଇ । ସୁଖ-ପ୍ରଦାୟକ ବାହୁ ଲୋଚନ କମ୍ପଇ ॥
ଭରତ ସମାଜ ସହ ଲଭନ୍ତି ଉତ୍ସାହ । ମିଳିବେ ରାମ, ବିନଷ୍ଟ ହେବ ଦୁଃଖ ଦାହ ॥୧॥
କରି ମନୋରଥ ଯାର ହୃଦୟେ ଯେମନ୍ତେ । ଯାଆନ୍ତି ସ୍ନେହ-ବାରୁଣୀ ପିଇଣ ସମସ୍ତେ ॥
ଶିଥିଳ ଶରୀର ପଡେ ଏଣେ ତେଣେ ପଦ । ପ୍ରେମବଶ ବୋଲୁଥାନ୍ତି ବଚନ ଗଦ୍‌ଗଦ ॥୨॥
ରାମଙ୍କ ସଖା ଦେଖାଇ ଦେଲା ସେହିକ୍ଷଣି । ସ୍ୱାଭାବିକ ରମଣୀୟ ଶୈଳ-ଶିରୋମଣି ॥
ଯାହାର ସମୀପେ ପୟସ୍ୱିନୀ ନଦୀ ତୀରେ । ନିବାସ କରନ୍ତି ସୀତା ସହ ଦେନି ବୀରେ ॥୩॥
ଦେଖି ସମସ୍ତେ କରିଲେ ଭୂମିଷ୍ଠ ପ୍ରଣାମ । ଉଚାରି ଜୟ ଜାନକୀ-ଜୀବନ ଶ୍ରୀରାମ ॥
ପ୍ରେମରେ ମଗନ ରାଜ-ସମାଜ ଏପରି । ବାହୁଡନ୍ତି ରଘୁରାଜ ଅଯୋଧ୍ୟା ଯେପରି ॥୪॥

---

ଦୋହା —ସେଦିନ ସେହିଠାରେ ରହି ତହିଁ ଆରଦିନ ପ୍ରାତଃ କାଳରେ ଶ୍ରୀ ରଘୁନାଥଙ୍କୁ ସ୍ମରଣ କରି ଚଳିଲେ । ସହଯାତ୍ରୀମାନଙ୍କ ମନରେ ମଧ୍ୟ ଭରତଙ୍କ ପରି ରାମଦର୍ଶନ-ଲାଲସା ଜାଗ୍ରତ ରହିଥାଏ ॥ ୨୨୪ ॥ ଚୌପାଈ :—ସମସ୍ତଙ୍କୁ ମଙ୍ଗଳସୂଚକ ଲକ୍ଷଣ ଦିଶୁଥାଏ । ପୁରୁଷମାନଙ୍କ ଦକ୍ଷିଣ ଏବଂ ସ୍ତ୍ରୀମାନଙ୍କର ବାମ ନେତ୍ର ଓ ବାହୁ ଫୁରୁଥାଏ । ଏହା ସୁଖଦାୟକ ଲକ୍ଷଣର ସୂଚନା । ସମାଜ ସମେତ ଭରତଙ୍କ ଉତ୍ସାହ ବଢି ଚାଲିଥାଏ—ରାମ ମିଳିଯିବେ ତ ଦୁଃସହ ଦାରୁଣ ଦୁଃଖର ଦହନ ମେଣ୍ଟିଯିବ ॥ ୧ ॥ ଯାହାର ମନରେ ଯେପରି ଭାବ, ସେ ସେହିପରି ମନୋରଥ କରୁଥାଏ । ପ୍ରେମ-ମଦିରାରେ ଉନ୍ମତ୍ତ ହୋଇ ସମସ୍ତେ ଚାଲି ଯାଉଥା'ନ୍ତି । ଅଙ୍ଗ ଶିଥିଳ, ରାସ୍ତାରେ ପାଦ ଏପଟସେପଟ ଦୋହଲି ପଡୁଥାଏ ଏବଂ ସମସ୍ତେ ପ୍ରେମ-ବିହ୍ୱଳ ହୋଇ ବଚନ ବୋଲୁଥାଆନ୍ତି ॥ ୨ ॥ ରାମସଖା ନିଷାଦରାଜ ସେହି ସମୟରେ ସ୍ୱଭାବ-ସୁନ୍ଦର ପର୍ବତ-ଶିରୋମଣି କାମଦ ଗିରି ଦେଖାଇ ଦେଲା । ତାହାର ନିକଟରେ ପୟସ୍ୱିନୀ ନଦୀ କୂଳରେ ସୀତା ସହିତ ଦୁଇ ଭାଇ

ଭରତ ପ୍ରେମୁ ତେହି ସମୟ୍ ଜସ ତସ କହି ସକଇ ନ ସେଷୁ ॥
କବିହି ଅଗମ ଜିମି ବ୍ରହ୍ମସୁଖୁ ଅହ ମମ ମଲିନ ଜନେଷୁ ॥୨୨୫॥
ସକଲ ସନେହ ସିଥିଲ ରଘୁବର କେଁ । ଗଏ କୋସ ଦୁଇ ଦିନକର ଢରକେଁ ॥
ଜଲୁ ଥଲୁ ଦେଖି ବସେ ନିସି ବୀତେଁ । କୀନ୍ହ ଗବନ ରଘୁନାଥ ପିଆରେଁ ॥୧॥
ଉହାଁ ରାମୁ ରଜନୀ ଅବସେଷା । ଜାଗେ ସୀୟଁ ସପନ ଅସ ଦେଖା ॥
ସହିତ ସମାଜ ଭରତ ଜନୁ ଆଏ । ନାଥ ବିୟୋଗ ତାପ ତନ ତାଏ ॥୨॥
ସକଲ ମଲିନ ମନ ଦୀନ ଦୁଖାରୀ । ଦେଖୀ ସାସୁ ଆନ ଅନୁହାରୀ ॥
ସୁନି ସିୟ ସପନ ଭରେ ଜଲ ଲୋଚନ । ଭଏ ସୋଚବସ ସୋଚ ବିମୋଚନ ॥୩॥

---

ଭରତଙ୍କ ପ୍ରେମ ସେକାଳେ ଯେସନ ଶେଷ ଅକ୍ଷମ ବର୍ଣ୍ଣିବେ ।
କବିଙ୍କ ଅଗମ୍ୟ, ବ୍ରହ୍ମ ସୁଖ ଯେହ୍ନେ ମମତା-ମଳିନ ଜନେ ॥୨୨୫॥
ରଘୁବୀର ଅନୁରାଗେ ଶିଥିଳ ସମସ୍ତେ । ଗଲେ ଦୁଇ କୋଶ ମାତ୍ର ସୂର୍ଯ୍ୟାସ୍ତ ପର୍ଯ୍ୟନ୍ତେ ॥
ଜଳ ସ୍ଥଳ ଦେଖି କଲେ ରଜନୀ ଯାପନ । ପ୍ରଭାତେ ଗମିଲେ ଆଗେ ରାମ ପ୍ରିୟତମ ॥୧॥
ତେଣେ ନିଦ୍ରାରୁ ଉଠନ୍ତେ ଶେଷ ବିଭାବରୀ । ଶୁଣାଇଲେ ସ୍ୱପ୍ନ ସୀତା ରାମଙ୍କୁ ଏପରି ॥
ସକୁଟୁମ୍ବ ଯେହ୍ନେ ଆସି ଅଛନ୍ତି ଭରତ । ନାଥଙ୍କ ବିୟୋଗ-ତାପେ ତନୁ ସନ୍ତପତ ॥୨॥
ସମସ୍ତେ ଦୀନ ମଳିନ ମନେ ଦୁଃଖ ଭାର । ଦେଖିଲି ଶାଶୁମାନଙ୍କୁ ଇତର ପ୍ରକାର ॥
ଶୁଣି ସୀତା ସ୍ୱପ୍ନ ନୀରେ ପୂରିଲା ଲୋଚନ । ହେଲେ ଚିନ୍ତା ବଶୀଭୂତ ଚିନ୍ତା-ବିମୋଚନ ॥୩॥

---

ନିବାସ କରୁଥାଆନ୍ତି ॥ ୩ ॥ ସମସ୍ତ ଲୋକ ସେହି ପର୍ବତକୁ ଦେଖି 'ଜାନକୀ-ଜୀବନ ଶ୍ରୀରାମଚନ୍ଦ୍ରଙ୍କ ଜୟ ହେଉ !" ଏହିପରି କହି ଦଣ୍ଡବତ-ପ୍ରଣାମ କରୁଥା'ନ୍ତି । ରାଜସମାଜ ପ୍ରେମରେ ଏପରି ମଗ୍ନ ଯେ, ସତେ ଯେପରି ରଘୁନାଥ ଅଯୋଧ୍ୟାକୁ ଲେଉଟି ଯାଉଅଛନ୍ତି, ସେହିପରି ସମସ୍ତଙ୍କୁ ବୋଧ ହେଲା ॥୪॥ ଦୋହା:—ଭରତଙ୍କ ଉକ୍ତ ସମୟର ପ୍ରେମ ଶେଷ ମଧ୍ୟ କହି ପାରିବେ ନାହିଁ । ଅହଙ୍କାର ଓ ମମତା ଯୋଗେ ମଳିନ ମନୁଷ୍ୟ ପକ୍ଷରେ ବ୍ରହ୍ମାନନ୍ଦ ଯେପରି ଅଗମ୍ୟ, କବିଙ୍କ ପକ୍ଷରେ ସେ ପ୍ରେମ ମଧ୍ୟ ସେହିପରି ଅଗମ୍ୟ ॥୨୨୫॥ ଚୌପାଈ:—ସମସ୍ତ ଲୋକ ପ୍ରେମ ହେତୁ ଶିଥିଳ ହୋଇ ପଡ଼ିଥିଲେ । ତେଣୁ ସୂର୍ଯ୍ୟାସ୍ତ ସୁଦ୍ଧା ସେମାନେ ମାତ୍ର ଦୁଇ କୋଶ ଚାଲି ଯାଇପାରିଥିଲେ । ତତ୍ପରେ ଜଳସ୍ଥଳର ସୁବିଧା ଦେଖି ରାତିରେ ସେହିଠାରେ ରହିଗଲେ । ରାତି ପାହିବା ପରେ ଶ୍ରୀ ରଘୁନାଥଙ୍କ ପ୍ରେମୀ ଭରତ ଆଗେ ଆଗେ ଗମନ କଲେ ॥ ୧ ॥ ତେଣେ ଶ୍ରୀରାମଚନ୍ଦ୍ର ରାତି ଅବଶେଷ ଥାଇ ଜାଗ୍ରତ ହେଲେ । ରାତିରେ ସୀତା ଏପରି ଗୋଟିଏ ସ୍ୱପ୍ନ ଦେଖିଲେ, ସତେ ଯେମିତି ଭରତ ସମାଜ ସହିତ ଏଠାକୁ ଆସିଅଛନ୍ତି; ପ୍ରଭୁଙ୍କ ବିରହାଗ୍ନିରେ ସେ ସନ୍ତପ୍ତ ॥ ୨ ॥ ସମସ୍ତ ଲୋକ ମନେ ମନେ ଉଦାସୀ, ଦୀନ ଓ ଦୁଃଖୀ । ଶାଶୁମାନେ ଅନ୍ୟ ରୂପରେ ଦେଖାଯାଉଛନ୍ତି । ଏହି ସ୍ୱପ୍ନ କଥା ଶ୍ରୀରାମ ତାଙ୍କଠାରୁ ଶୁଣିବା ମାତ୍ରେ ତାଙ୍କ ନୟନରେ ଜଳ ଭରି ଆସିଲା ଏବଂ ସମସ୍ତଙ୍କ ଚିନ୍ତା-ହରଣକାରୀ ପ୍ରଭୁ ନିଜେ ମଧ୍ୟ ଚିନ୍ତାର ଅଧୀନ

ଲଖନ ସପନ ଯହ ନୀକ ନ ହୋଈ । କଠିନ କୁଚାହ ସୁନାଇହି କୋଈ ॥
ଅସ କହି ବନ୍ଧୁ ସମେତ ନହାନେ । ପୂଜି ପୁରାରି ସାଧୁ ସନମାନେ ॥୩॥

ସନମାନି ସୁର ମୁନି ବନ୍ଦି ବୈଠେ ଉତର ଦିସି ଦେଖତ ଭଏ ।
ନଭ ଧୂରି ଖଗ ମୃଗ ଭୂରି ଭାଗେ ବିକଲ ପ୍ରଭୁ ଆଶ୍ରମ ଗଏ ॥
ତୁଲସୀ ଉଠେ ଅବଲୋକି କାରନୁ କାହ ଚିତ ସଚକିତ ରହେ ।
ସବ ସମାଚାର କିରାତ କୋଲନ୍ହି ଆଇ ତେହି ଅବସର କହେ ॥

ସୁନତ ସୁମଙ୍ଗଲ ବୈନ ମନ ପ୍ରମୋଦ ତନ ପୁଲକ ଭର ।
ସରଦ ସରୋରୁହ ନୈନ ତୁଲସୀ ଭରେ ସନେହ ଜଲ ॥୨୨୬॥

ବହୁରି ସୋଚବସ ଭେ ସିୟରୱନୂ । କାରନ କୱନ ଭରତ ଆଗୱନୂ ॥
ଏକ ଆଇ ଅସ କହା ବହୋରୀ । ସେନ ସଙ୍ଗ ଚତୁରଙ୍ଗ ନ ଥୋରୀ ॥୧॥

---

ଲକ୍ଷ୍ମଣ, ଏମନ୍ତ ସ୍ୱପ୍ନ ଭଲ ନ ହୋଇବ । କଠିନ କୁସମାଚାର କେହି ଶୁଣାଇବ ॥
ଏହା କହି ଭାଇ ସହ ସମାପିଲେ ସ୍ନାନ । ପୂଜି ଶିବ ପୁରାରି କଲେ ସାଧୁଙ୍କ ସମ୍ମାନ ॥୪॥

ସମ୍ମାନି ସୁର ମୁନି ପ୍ରଣମି ବସି ପୁଣି ଚାହିଁଲେ ଉତ୍ତର ଦିଗକୁ ।
ନଭେ ଧୂଳି ବହୁଳ ଖଗ ମୃଗ ବ୍ୟାକୁଳ ଧାଆନ୍ତି ପ୍ରଭୁ ଆଶ୍ରମକୁ ।
ଉଠିଲେ ହେରି କି କାରଣ, ଚିତ୍ତରେ ଚକିତ ହୋଇଣ,
ସମାଚାର ସମସ୍ତ କୋଲ୍ଲ କିରାତ କହିଲେ ସେକାଳେ ଆସିଣ ।

ଶୁଣି ଶୁଭ ବାଣୀ ତନୁ ପୁଲକିତ ହେଲେ ପ୍ରମୋଦିତ ମନ ।
ତୁଲସୀ ସ୍ନେହଜ ସଲିଳେ ପୂରିତ ଶରଦ କଞ୍ଜ-ଲୋଚନ ॥୨୨୬॥

ପୁଣି ଚିନ୍ତା ବଶ ହେଲେ ଜାନକୀରମଣ । ଭରତଙ୍କ ଆଗମନ ହୁଏ କି କାରଣ ॥
କହିଲା ଆବର କେହି ଏହି ସମାଚାର । ସଙ୍ଗେ ଛନ୍ତି ସେନା ଚତୁରଙ୍ଗିଣୀ ଅପାର ॥୧॥

---

ହୋଇ ପଡିଲେ ॥ ୩ ॥ ସେ କହିଲେ, "ହେ ଲକ୍ଷ୍ମଣ ! ଏହି ସ୍ୱପ୍ନ ଭଲ ନୁହେଁ । କେହି କୌଣସି ଦୁଃସମ୍ବାଦ ଶୁଣାଇବ ।" ଏହା କହି ସେ ଭାଇ ସହ ସ୍ନାନ କଲେ ଏବଂ ଶିବ ପୁରାରି ମହାଦେବଙ୍କୁ ପୂଜା କରି ସାଧୁମାନଙ୍କୁ ସମ୍ମାନ କଲେ ॥ ୪ ॥ ଛନ୍ଦ .—ଦେବତାମାନଙ୍କୁ ପୂଜା-ସମ୍ମାନ ଏବଂ ମୁନିମାନଙ୍କୁ ବନ୍ଦନା କରି ଶ୍ରୀରାମଚନ୍ଦ୍ର ବସିଗଲେ ଏବଂ ଉତ୍ତର ଦିଗ ଆଡକୁ ଚାହିଁବାକୁ ଲାଗିଲେ । ଆକାଶରେ ଧୂଳି ଘୋଟିଯାଇଥାଏ । ବହୁତ ପଶୁପକ୍ଷୀ ବ୍ୟାକୁଳ ହୋଇ ପଳାଇ ପ୍ରଭୁଙ୍କ ଆଶ୍ରମକୁ ଆସୁଥାଆନ୍ତି । ତୁଲସୀ ଦାସ କହନ୍ତି,—ପ୍ରଭୁ ଶ୍ରୀରାମଚନ୍ଦ୍ର ଏହା ସବୁ ଦେଖିଲେ ଏବଂ ଭାବିବାକୁ ଲାଗିଲେ—କାରଣ କ'ଣ ?" ସେ ମନେ ମନେ ଚକିତ ହୋଇ ପଡ଼ିଲେ । ସେହି ସମୟରେ କୋଲ୍ଲ, କିରାତମାନେ ଆସି ସବୁ ସମାଚାର କହିଲେ ॥ ସୋରଠା .—ତୁଲସୀ ଦାସ କହାନ୍ତି, ସୁନ୍ଦର ମଙ୍ଗଳମୟ ବଚନ ଶୁଣିବା ମାତ୍ରେ ଶ୍ରୀରାମଙ୍କ ମନରେ ବଡ଼ ଆନନ୍ଦ ଜାତ ହେଲା ।

ସୋ ମୁନି ରାମହି ଭା ଅତି ସୋଚୁ । ଇତ ପିତୁ ବଚ ଇତ ବଂଧୁ ସକୋଚୁ ॥
ଭରତ ସୁଭାଉ ସମୁଝି ମନ ମାହୀଁ । ପ୍ରଭୁ ଚିତ ହିତ ଥିତି ପାୱତ ନାହୀଁ ॥୨॥
ସମାଧାନ ତବ ଭା ୟହ ଜାନେ । ଭରତୁ କହେ ମହୁଁ ସାଧୁ ସୟାନେ ॥
ଲଖନ ଲଖେଉ ପ୍ରଭୁ ହୃଦୟଁ ଖଭାରୂ । କହତ ସମୟ ସମ ନୀତି ବିଚାରୂ ॥୩॥
ବିନୁ ପୂଛେଁ କଛୁ କହଉଁ ଗୋସାଈଁ । ସେବକୁ ସମୟଁ ନ ଢୀଠ ଢିଠାଈଁ ॥
ତୁମ୍ହ ସର୍ବଜ୍ଞ ସିରୋମନି ସ୍ୱାମୀ । ଆପନି ସମୁଝି କହଉଁ ଅନୁଗାମୀ ॥୪॥
ନାଥ ସୁହ୍ରଦ ସୁଠି ସରଲ ଚିତ ସୀଲ ସନେହ ନିଧାନ ।
ସବ ପର ପ୍ରୀତି ପ୍ରତୀତି ଜିୟଁ ଜାନିଅ ଆପୁ ସମାନ ॥୨୨୭॥

---

ଶୁଣି ମନେ ଚିନ୍ତା ବ୍ୟାପ୍ତ ହୋଇଲା ପ୍ରଭୁଙ୍କ । ଏଣେ ପିତା ଆଜ୍ଞା, ତେଣେ ସଙ୍କୋଚ ଭ୍ରାତୃଙ୍କ ॥
ଭରତ ଗୁଣ ସ୍ୱଭାବ ମନ ମଧ୍ୟେ ଚିନ୍ତି । ପ୍ରଭୁଙ୍କ ଚିତ୍ତ ଉଚିତେ ନ ଲଭଇ ସ୍ଥିତି ॥୨॥
ସମାଧାନ ହେଲା ତାଙ୍କ ଏମନ୍ତ ବିଚାରି । ଭରତ ସାଧୁ ଚତୁର ପୁଣି ଆଜ୍ଞାକାରୀ ॥
ପ୍ରଭୁଙ୍କ ବ୍ୟଗ୍ରତା ଲକ୍ଷ୍ୟ ଲକ୍ଷ୍ମଣ କରିଲେ । ସମୟାନୁକୂଳ ନୀତି ବଚନ ଭଣିଲେ ॥୩॥
ପଚାରିବା ବିନା କିଛି କହୁଛି ଗୋସାଇଁ । ଦାସ ଧୃଷ୍ଟତା ଧୃଷ୍ଟତା ନୁହେ ବେଳ ପାଇ ॥
ଆପଣ ଅଟ ସର୍ବଜ୍ଞ ଶିରୋମଣି ସ୍ୱାମୀ । ଆପଣା ବିଚାର କହେ ଏହି ଅନୁଗାମୀ ॥୪॥
ନାଥ, ସୁକୋମଳ, ସୁହୃଦ ସରଳ, ଶୀଳ ସ୍ନେହର ନିଧାନ ।
ସମସ୍ତଙ୍କ ପ୍ରତି ପ୍ରୀତି ପରତୀତି ଜାଣନ୍ତି ନିଜ ସମାନ ॥୨୨୭॥

---

ଶରୀରରେ ପୁଲକାବଳୀ ଖେଳିଗଲା ଏବଂ ଶରତ୍ ଋତୁର କମଳ ସମାନ ନେତ୍ର ପ୍ରେମାଶ୍ରୁ-ଜଳରେ ପରିପୂର୍ଣ୍ଣ ହୋଇଗଲା ॥ ୨୨୬ ॥ ଚୌପାଈ :—ସୀତାପତି ଶ୍ରୀରାମ ପୁଣି ଥରେ ଚିନ୍ତାର ବଶୀଭୂତ ହୋଇ ପଡିଲେ—ଭରତଙ୍କ ଆସିବାର କାରଣ କ'ଣ ? ପୁଣି ଆଉ ଜଣେ ଆସି କହିଲା, "ତାଙ୍କ ସହିତ ବଡ଼ ଚତୁରଙ୍ଗିଣୀ ସେନା ମଧ୍ୟ ଅଛନ୍ତି ॥ ୧ ॥ ଏହା ଶୁଣି ଶ୍ରୀରାମଙ୍କ ମନରେ ବଡ ଚିନ୍ତା ହେଲା । ଏଣେ ପିତାଙ୍କ ବଚନ ଓ ଏଣେ ଭାଇ ଭରତଙ୍କ ସଙ୍କୋଚ । ଭରତଙ୍କ ସ୍ୱଭାବକୁ ମନେ ମନେ ବୁଝି ପ୍ରଭୁଙ୍କର ଚିତ୍ତ ଯଥାର୍ଥରେ ସ୍ଥିରତା ଲାଭ କରି ପାରୁ ନ ଥାଏ ॥୨॥ ତତ୍ପରେ ଭରତ ସାଧୁ, ବୁଦ୍ଧିମାନ ଏବଂ ମୋର ଆଜ୍ଞାକାରୀ ବୋଲି ଉପଲବ୍ଧି କରି ମନରେ ଜାତ ହୋଇଥିବା ଶଙ୍କା ସମାଧାନ କରିଦେଲେ । ଲକ୍ଷ୍ମଣ ପ୍ରଭୁ ଶ୍ରୀରାମଙ୍କ ହୃଦୟରେ ଚିନ୍ତା ଜାତ ହୋଇଥିବାର ଜାଣି ସମୟାନୁକୂଳ ନୀତିଯୁକ୍ତ ବଚନ କହିଲେ !—॥ ୩ ॥ "ହେ ସ୍ୱାମି ! ଆପଣଙ୍କ ପଚାରିବା ବିନା ମୁଁ କିଛି କହୁଛି; ଉଚିତ ଅବସରରେ ଧୃଷ୍ଟତା କଲେ ସେବକର ଧୃଷ୍ଟତା ଧରାଯାଏ ନାହିଁ । ହେ ସ୍ୱାମି ! ଆପଣ ତ ସର୍ବଜ୍ଞଶିରୋମଣି । ମୁଁ ସେବକ ଆପଣା ବୁଦ୍ଧିବିଚାରର କଥା କହୁଛି ॥ ୪ ॥ ଦୋହା :—ହେ ନାଥ ! ଆପଣ ପରମ ସୁହୃଦ୍, ସରଳହୃଦୟ ଏବଂ ଶୀଳ ଓ ସ୍ନେହର ଭଣ୍ଡାର । ଆପଣଙ୍କ ମନରେ ସମସ୍ତଙ୍କ ପ୍ରତି ପ୍ରେମ ଓ ବିଶ୍ୱାସ । ଆପଣ ନିଜ ହୃଦୟରେ ସମସ୍ତଙ୍କୁ ନିଜ ସମାନ ବୋଲି

ବିଷଇ ଜୀବ ପାଇ ପ୍ରଭୁତାଈ । ମୂଢ଼ ମୋହ ବସ ହୋହିଁ ଜନାଈ ॥
ଭରତୁ ନୀତି ରତ ସାଧୁ ସୁଜାନା । ପ୍ରଭୁ ପଦ ପ୍ରେମୁ ସକଲ ଜଗୁ ଜାନା ॥୧॥
ତେଊ ଆଜୁ ରାମ ପଦୁ ପାଈ । ଚଲେ ଧରମ ମରଜାଦ ମେଟାଈ ॥
କୁଟିଲ କୁବଂଧୁ କୁଅବସରୁ ତାକୀ । ଜାନି ରାମ ବନବାସ ଏକାକୀ ॥୨॥
କରି କୁମନ୍ତ୍ରୁ ମନ ସାଜି ସମାଜୂ । ଆଏ କରୈ ଅକଂଟକ ରାଜୂ ॥
କୋଟି ପ୍ରକାର କଲପି କୁଟିଲାଈ । ଆଏ ଦଲ ବଟୋରି ଦୋଉ ଭାଈ ॥୩॥
ଜୌଁ ଜିୟଁ ହୋତି ନ କପଟ କୁଚାଲୀ । କେହି ସୋହାତି ରଥ ବାଜି ଗଜାଲୀ ॥
ଭରତହି ଦୋସୁ ଦେଇ କୋ ଜାଏଁ । ଜଗ ବୌରାଇ ରାଜ ପଦୁ ପାଏଁ ॥୪॥

ସସି ଗୁର ତିୟ ଗାମୀ ନଘୁଷୁ ଚଢ଼େଉ ଭୂମିସୁର ଜାନ ।
ଲୋକ ବେଦ ତେଁ ବିମୁଖ ଭା ଅଧମ ନ ବେନ ସମାନ ॥୨୨୮॥

---

ବିଷୟ ବିଳାସୀ ଜୀବ ପ୍ରଭୁ ପଦ ପାଇ । ମୂଢ ମୋହବଶ ହୋଇ ହୁଅଇ ଜଣାଇ ॥
ଭରତ ସାଧୁ ନିପୁଣ ପୁଣି ନୀତି-ରତ । ପ୍ରଭୁପଦ ଅନୁରାଗୀ ଜାଣଇ ଜଗତ ॥୧॥
ସେ ମଧ୍ୟ ଆଜି ନୃପତି ପଦବୀ ପାଇଣ । ଗମନ କରେ ଧର୍ମର ମର୍ଯ୍ୟାଦା ଏଡିଣ ॥
କୁଟିଲ କୁଭ୍ରାତା ଏବେ କୁସମୟ ଟାକି । ଜାଣି ରାମ ବନବାସେ ଅଛନ୍ତି ଏକାକୀ ॥୨॥
କରି କୁମନ୍ତ୍ରଣା ମନେ ସାଜିଣ ସମାଜ । ଆସିଛୁ କରିବା ପାଇଁ ଅକଣ୍ଟକ ରାଜ୍ୟ ॥
କୋଟି କୁଟିଳତା କଳ୍ପି ଦୁଇ ଭାଇ ଏଥେ । ଆସିଛନ୍ତି ଠୁଳ ହୋଇ ଜନଙ୍କ ସମେତେ ॥୩॥
ଯେବେ କପଟ କୁଚଳ ହୃଦେ ନ ହୁଅନ୍ତା । ଗଜ ରଥ ବାଜି ଭଲ କାହାକୁ ଲାଗନ୍ତା ॥
ଭରତକୁ ଦୋଷ କିଏ ଦେବ କାହିଁ ପାଇଁ । ଜଗତ ବାଉଳ ହୁଏ ରାଜପଦ ପାଇ ॥୪॥

ଗୁରୁ-ପତ୍ନୀଗାମୀ ଶଶାଙ୍କ, ନହୁଷ ଚଢିଲା ଭୂସୁର ଯାନେ ।
ଲୋକରୁ ବେଦରୁ ବିମୁଖ ହୋଇଲା ମୂଢ କେ ବେଣ ସମାନେ ॥୨୨୮ ॥

---

ଜାଣନ୍ତି ॥ ୨୨୭ ॥ ଚୌପାଇ :--କିନ୍ତୁ ମୂଢ ବିଷୟାସକ୍ତ ଜୀବ ପ୍ରଭୁତ୍ୱ ପାଇ ମୋହବଶତଃ ଆପଣାର ଅସଲ ସ୍ୱରୂପ ପ୍ରକାଶ କରି ଦିଅନ୍ତି । ଭରତ ନୀତି-ପରାୟଣ, ସାଧୁ ଓ ଚତୁର ଏବଂ ପ୍ରଭୁଙ୍କ ଚରଣରେ ତାଙ୍କର ପ୍ରେମ । ଏହି କଥା ସାରା ସଂସାର ଜାଣେ ॥ ୧ ॥ ସେହି ଭରତ ମଧ୍ୟ ଆଜି ଆପଣଙ୍କ ଯୋଗ୍ୟ ରାଜପଦ ପାଇ ଧର୍ମମର୍ଯ୍ୟାଦା ଲଙ୍ଘନ କରି ଚାଲିଅଛନ୍ତି । କୁଟିଳ, କୁଭ୍ରାତା ଭରତ କୁସମୟ ଦେଖି ଏବଂ ରାମ ବନରେ ଏକାକୀ ଅସହାୟ ଅବସ୍ଥାରେ ଥିବାର ଜାଣି ନିଜ ମନରେ ଦୁରଭିସନ୍ଧି ପୋଷଣ କରିଅଛନ୍ତି ଏବଂ ସମାଜ ସାଜି ରାଜ୍ୟକୁ ନିଷ୍କଣ୍ଟକ କରିବା ନିମନ୍ତେ ଏଠାକୁ ଆସିଅଛନ୍ତି । କୋଟିଏ ପ୍ରକାର କୁଟିଳତା ଓ କପଟ ରଚନା କରି ଦୁଇ ଭାଇ ସେନା ସଂଗ୍ରହ-ପୂର୍ବକ ଏଠାକୁ ଆସିଅଛନ୍ତି ॥ ୩ ॥ ଯଦି ଏହାଙ୍କ ହୃଦୟରେ କପଟ ଓ କୁବିଚାର ନ ଥାନ୍ତା, ତେବେ ରଥ, ଅଶ୍ୱ ଓ ହସ୍ତୀମାନଙ୍କର ପଙ୍କ୍ତି ଏତେବେଳେ କାହାକୁ ବା ଭଲ ଲାଗନ୍ତା ? କିନ୍ତୁ ଭରତକୁ ଦୋଷ ଦେଉଛୁ କିଏ ? ରାଜପଦ ପାଇବା ପରେ ସାରା

ସହସବାହୁ ସୁରନାଥୁ ତ୍ରିସଂକୂ । କେହି ନ ରାଜମଦ ଦୀହ୍ନ କଲଂକୂ ॥
ଭରତ କୀହ୍ନ ଯହ ଉଚିତ ଉପାଊ । ରିପୁ ରିନ ରଂଚ ନ ରାଖବ କାଊ ॥୧॥
ଏକ କୀହ୍ନି ନହିଁ ଭରତ ଭଲାଈ । ନିଦରେ ରାମୁ ଜାନି ଅସହାଈ ॥
ସମୁଝି ପରିହି ସୋଉ ଆଜୁ ବିସେଷୀ । ସମର ସରୋଷ ରାମ ମୁଖୁ ପେଖୀ ॥୨॥
ଏତନା କହତ ନୀତି ରସ ଭୂଲା । ରନ ରସ ବିଟପୁ ପୁଲକ ମିସ ଫୂଲା ॥
ପ୍ରଭୁ ପଦ ବଂଦି ସୀସ ରଜ ରାଖୀ । ବୋଲେ ସତ୍ୟ ସହଜ ବଲୁ ଭାଷୀ ॥୩॥
ଅନୁଚିତ ନାଥ ନ ମାନବ ମୋରା । ଭରତ ହମହିଁ ଉପଚାର ନ ଥୋରା ॥
କହଁ ଲଗି ସହିଅ ରହିଅ ମନୁ ମାରେଁ । ନାଥ ସାଥ ଧନୁ ହାଥ ହମାରେଁ ॥୪॥

---

ସହସ୍ର-ବାହୁ ତ୍ରିଶଙ୍କୁ ବିବୁଧ-ନାୟକ । ରାଜ-ମଦ ନ ଦେଇଛି କାହାକୁ କଳଙ୍କ ॥
ଉଚିତ ଉପାୟ ଏହା ଭରତ କରିଛି । ଶତ୍ରୁ ଋଣ ନ ରଖିବ କାହିଁ ମାତ୍ର କିଛି ॥୧॥
କିନ୍ତୁ ଭଲ କଲା ନାହିଁ ଭରତ ଏ କାମ । ହତାଦର କଲା ଜାଣି ଅସହାୟ ରାମ ॥
ଆଜି ତାହା ଭଲ ରୂପେ ବୁଝି ପଡ଼ିଯିବ । ରଣେ ଯେବେ ରାମ ରୋଷ ମୁଖ ବିଲୋକିବ ॥୨॥
ଏତିକ କହନ୍ତେ ଭୁଲି ନୀତି ରସ ପୁଣ । ପୁଲକ ଛଳେ ପ୍ରସ୍ଫୁଟ ରଣ-ରସ-ଦ୍ରୁମ ॥
ପ୍ରଭୁଙ୍କ ପଦ୍ମର ବନ୍ଦି ଶିରେ ରଖି ରଜ । ଭାଷିଲେ ଉଚ୍ଚାରି ସତ୍ୟ ପ୍ରଭାବ ସହଜ ॥୩॥
ନ ମଣନ୍ତୁ ନାଥ, ମୋର କଥା ଅନୁଚିତ । କରିନି ଭରତ ଅଳ୍ପ ଆମର ଅହିତ ॥
କେତେ ସହିଯିବ ରହିଯିବ ମାରି ମନ । ନାଥ ସଙ୍ଗେ, ପୁଣି ମୋର ହସ୍ତେ ଶରାସନ ॥୪॥

---

ଜଗତ ତ ପାଗଳ ହୋଇଯାଏ ॥ ୪ ॥ ଦୋହା :—ଚନ୍ଦ୍ର ଗୁରୁପତ୍ନୀଗାମୀ ହେଲେ, ରାଜା ନହୁଷ ବ୍ରାହ୍ମଣଙ୍କ ପାଲିଙ୍କି ଉପରେ ଚଢ଼ିଲେ । ରାଜା ବେଣଙ୍କ ସମାନ ନୀଚ ତ ଆଉ କେହି ହେବେ ନାହିଁ । ଲୋକ ଓ ବେଦ, ଉଭୟ ପ୍ରତି ସେ ବିମୁଖ ହୋଇ-ଥିଲେ ॥ ୨୨୮ ॥ ଚୌପାଇ :—ସହସ୍ରବାହୁ, ଦେବରାଜ ଇନ୍ଦ୍ର ଓ ତ୍ରିଶଙ୍କୁ ଆଦିଙ୍କ ମଧ୍ୟରୁ କାହାକୁ ରାଜପଦ କଳଙ୍କିତ କରିନାହିଁ ? ଭରତ ଏ ଉପାୟ ଯାହା କରିଅଛନ୍ତି, ତାହା ଠିକ୍ କରିଅଛନ୍ତି । କାରଣ ଶତ୍ରୁ ଓ ଋଣକୁ କେବେ ହେଲେ ରଞ୍ଚେ ମାତ୍ର ବାକି ରଖିବ ନାହିଁ ॥ ୧ ॥ ହଁ, ଭରତ ଗୋଟିଏ କଥା ଭଲ କଲେ ନାହିଁ । ତାହା ହେଉଛି, ରାମଙ୍କୁ ଅସହାୟ ଜାଣି ସେ ତାଙ୍କୁ ହତାଦର କଲେ । କିନ୍ତୁ ଆଜି ସଂଗ୍ରାମରେ ଶ୍ରୀରାମଙ୍କ କ୍ରୋଧପୂର୍ଣ୍ଣ ମୁଖ ଦେଖି ଏ କଥାର ଫଳ ସେ ଭଲରୂପେ ହୃଦୟଙ୍ଗମ କରି ପାରିବେ ।" ॥୨॥ ଏହା କହିବା ମାତ୍ରେ ଲକ୍ଷ୍ମଣ ନୀତିରସ ଭୁଲିଗଲେ ଏବଂ ତାଙ୍କ ଶରୀରରେ ଯୁଦ୍ଧରସ-ବୃକ୍ଷ ପୁଲକାବଳୀ ଛଳରେ ବିକଶିତ ହୋଇ ଉଠିଲା । ( ଅର୍ଥାତ୍ ନୀତିକଥା କହୁ କହୁ ତାଙ୍କ ଶରୀରରେ ବୀରରସ ଭରିଗଲା ) । ସେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଚରଣ-ବନ୍ଦନା ପୂର୍ବକ ତାଙ୍କ ଚରଣ-ରଜ ଶିରୋଧାର୍ଯ୍ୟ କଲେ ଏବଂ ଆପଣା ସତ୍ୟ ଓ ସ୍ୱାଭାବିକ ବଳର ପରିଚୟ ଦେଇ କହିଲେ,—॥ ୩ ॥ "ହେ ନାଥ ! ମୋ କଥା ଅନୁଚିତ ବୋଲି ମନେ କରନ୍ତୁ ନାହିଁ । ଭରତ ଆମ୍ଭମାନଙ୍କ ସହିତ କମ ଅସଦାଚରଣ କରିନାହିଁ । ଯେତେବେଳେ ପ୍ରଭୁ ଆମ୍ଭ

କ୍ଷତ୍ରି ଜାତି ରଘୁକୁଲ ଜନମୁ ରାମ ଅନୁଗ ଜଗୁ ଜାନ ।
ଲାତହୁଁ ମାରେଁ ଚଢ଼ତି ସିର ନୀଚ କୋ ଧୂରି ସମାନ ॥୨୨୯॥

ଉଠି କର ଜୋରି ରଜାୟସୁ ମାଗା । ମନହୁଁ ବୀର ରସ ସୋୱତ ଜାଗା ॥
ବାଁଧି ଜଟା ସିର କସି କଟି ଭାଥା । ସାଜି ସରାସନୁ ସାୟକୁ ହାଥା ॥୧॥
ଆଜୁ ରାମ ସେବକ ଜସୁ ଲେଊଁ । ଭରତହି ସମର ସିଖାୱନ ଦେଊଁ ॥
ରାମ ନିରାଦର କର ଫଲୁ ପାଈ । ସୋୱହୁଁ ସମର ସେଜ ଦୋଉ ଭାଈ ॥୨॥
ଆଇ ବନା ଭଲ ସକଲ ସମାଜୂ । ପ୍ରଗଟ କରଉଁ ରିସ ପାଛିଲ ଆଜୂ ॥
ଜିମି କରି ନିକର ଦଲଇ ମୃଗରାଜୂ । ଲେଇ ଲପେଟି ଲୱା ଜିମି ବାଜୂ ॥୩॥
ତୈସେହିଁ ଭରତହି ସେନ ସମେତା । ସାନୁଜ ନିଦରି ନିପାତଉଁ ଖେତା ॥
ଜୌଁ ସହାୟ କର ସଂକରୁ ଆଈ । ତୌ ମାରଉଁ ରନ ରାମ ଦୋହାଈ ॥୪॥

---

ଜାତିରେ କ୍ଷତ୍ରିୟ ରଘୁକୁଳେ ଜନ୍ମ ରାମାନୁଜ ଭୁବଖ୍ୟାତ ।
ନୀଚ ଧୂଳି ମଧ୍ୟ ଚଢଇ ମସ୍ତକେ ଖାଇଣ ପଦ ଆଘାତ ॥୨୨୯॥

ଉଠି ମାଗିଲେ ଆଦେଶ ଯୋଡ଼ି ବେନିହସ୍ତ । ମନେ ହୁଏ ବୀର ରସ ନିଦ୍ରାରୁ ଜାଗ୍ରତ ॥
ଜଟା ଶିରେ ବାନ୍ଧି କସି ତୂଣୀର କଟିରେ । ସାଜି ଶରାସନ ନେଲେ ଶାୟକ ପାଣିରେ ॥୧॥
ଶ୍ରୀ ରଘୁବୀର ସେବକ ଯଶ ଆଜି ନେବି । ସମରେ ଉଚିତ ଶିକ୍ଷା ଭରତଙ୍କୁ ଦେବି ॥
ରାମ ନିରାଦର ଫଳ ଉପଯୁକ୍ତ ପାଇ । ଶୁଅନ୍ତୁ ସମର ଶେଯେ ମିଳି ଦୁଇ ଭାଇ ॥୨॥
ଆସି ଭଲ ଜୁଟିଛନ୍ତି ସକଳ ସମାଜ । ପ୍ରକଟ କରିବି ଏବେ ପଛ ରୋଷ ଆଜ ॥
ଯଥା କରିନିକରଙ୍କୁ ଦଳେ ମୃଗରାଜ । ଝାମ୍ପି ନେଇଯାଏ ଯେସନ୍ତେ ଲଣ୍ଡ୍ରାଙ୍କୁ ବାଜ ॥୩॥
ତେମନ୍ତେ ହେଲେ ସାନୁଜ ସେନା ସହିତରେ । ବଧି ଭରତଙ୍କୁ ଶୁଆଇବି ଭୂତଳରେ ॥
ଯେବେ ଆସି ସହାୟତା କରିବେ ଶଙ୍କର । ତଥାପି ମାରିବି ରଣେ, ରାଣ ରାମଙ୍କର ॥୪॥

---

ସହିତ ଅଛନ୍ତି ଏବଂ ଆମ ହାତରେ ଧନୁ ଅଛି, ଆମେ କେତେଦୂର ଏହା ସହିବା ଏବଂ ମନ ମାରି ରହିଯିବା ' ॥ ୪ ॥ ଦୋହା :—କ୍ଷତ୍ରିୟ ଜାତି, ରଘୁକୁଳରେ ଜନ୍ମ ଏବଂ ସର୍ବୋପରି ମୁଁ ଶ୍ରୀରାମଙ୍କ ଅନୁଗାମୀ, ଏହା ଜଗତ ଜାଣେ । ଧୂଳି ସମାନ ନୀଚ, କ୍ଷୁଦ୍ର, କିଏ ଅଛି ? କିନ୍ତୁ ତାକୁ ଲାତ ମାରିଲେ ସେ ବି ମୁଣ୍ଡ ଉପରେ ଆସି ଚଢ଼ୁଛି ।" ॥ ୨୨୯ ॥
ଚୌପାଇ :—ଏହା କହି ଲକ୍ଷ୍ମଣ ଉଠି ଯୁଦ୍ଧ କରିବା ନିମନ୍ତେ ଆଜ୍ଞା ମାଗିଲେ । ସତେ ଅବା ବୀରରସ ନିଦରୁ ଚେଇଁ ଉଠିଲା କି ! ଶିରରେ ଜଟା ବାନ୍ଧି କଟିରେ ତୂଣୀରକୁ ସେ ଦୃଢ଼ ଭାବରେ ବାନ୍ଧିଲେ । ଧନୁକୁ ସଜାଇ ଶରକୁ ହାତରେ ଧରି କହିଲେ—॥ ୧ ॥
"ଆଜି ମୁଁ ଶ୍ରୀରାମଙ୍କ ସେବକ ହେବାର ଗୌରବ ଲାଭ କରିବି ଏବଂ ଭରତଙ୍କୁ ସଂଗ୍ରାମରେ ଶିକ୍ଷା ଦେବି । ଶ୍ରୀରାମଙ୍କୁ ନିରାଦର କରିବାର ଫଳ ପାଇ ଆଜି ଦୁଇ ଭାଇ ( ଭରତ-ଶତ୍ରୁଘ୍ନ) ରଣ-ଶଯ୍ୟା ଉପରେ ଶୋଇବେ ! ॥ ୨ ॥ ଭଲ ହେଲା, ସାରା ସମାଜ ଯାହା ଆସି ଏକଜୁଟ ହୋଇଯାଇଛି । ଆଜି ମୁଁ ପୂର୍ବର ସବୁ କ୍ରୋଧ ପ୍ରକାଶ କରିବି । ଯେପରି

ଅତି ସରୋଷ ମାଖେ ଲଖନୁ ଲଖି ସୁନି ସପଥ ପ୍ରୱାନ ।
ସଭୟ ଲୋକ ସବ ଲୋକପତି ଚାହତ ଭଭରି ଭଗାନ ॥୨୫୩॥

ଜଗୁ ଭୟ ମଗନ ଗଗନ ଭଇ ବାନୀ । ଲଖନ ବାହୁବଲୁ ବିପୁଲ ବଖାନୀ ॥
ତାତ ପ୍ରତାପ ପ୍ରଭାଉ ତୁହ୍ମାରା । କୋ କହି ସକଇ କୋ ଜାନନିହାରା ॥୧॥
ଅନୁଚିତ ଉଚିତ କାଜୁ କିଛୁ ହୋଊ । ସମୁଝି କରିଅ ଭଲ କହ ସବୁ କୋଊ ॥
ସହସା କରି ପାଛେ ପଛିତାହୀଁ । କହହିଁ ବେଦ ବୁଧ ତେ ବୁଧ ନାହୀଁ ॥୨॥
ସୁନି ସୁର ବଚନ ଲଖନ ସକୁଚାନେ । ରାମ ସୀୟଁ ସାଦର ସନମାନେ ॥
କହୀ ତାତ ତୁହ୍ମ ନୀତି ସୁହାଈ । ସବ ତେଁ କଠିନ ରାଜମଦୁ ଭାଈ ॥୩॥

---

ରୋଷଭରେ ଅତି ଲକ୍ଷ୍ମଣ ବୋଲନ୍ତି, ସତ୍ୟ ପ୍ରତିଜ୍ଞା ଶୁଣନ୍ତେ ।
ଲୋକ ଲୋକପାଳେ ଚାହାନ୍ତି ବ୍ୟାକୁଳେ ପଳାଇବାକୁ ସମସ୍ତେ ॥୨୫୩॥

ବିଶ୍ୱ ହେଲା ଭୟମଗ୍ନ ନଭୁ ହେଲା ବାଣୀ । ଲକ୍ଷ୍ମଣଙ୍କ ବାହୁବଳ ବହୁତ ବଖାଣି ॥
ତୁମ୍ଭ ପ୍ରତାପ ପ୍ରଭାବ, ବତ୍ସ ଲଇକ୍ଷଣ । କେ ଜାଣି ପାରିବ କରି ପାରିବ ବର୍ଣ୍ଣନ ॥୧॥
ଉଚିତ ବା ଅନୁଚିତ ଯାହା କିଛି କର୍ମ । ବିଚାରି କଲେ ସମସ୍ତେ କହନ୍ତି ଉତ୍ତମ ॥
ସହସା କରି ପଛକୁ ସନ୍ତାପ କରଇ । ବଖାଣନ୍ତି ବେଦ ବୁଧ ବୁଧ ସେ ନୁହଇ ॥୨॥
ସୁରଙ୍କ ବାଣୀ ସୌମିତ୍ରି ଶୁଣି ସଙ୍କୋଚିଲେ । ସାଦରେ ରାମ ବୈଦେହୀ ତାଙ୍କୁ ସମ୍ମାନିଲେ ॥
ବଖାଣିଲ ଭ୍ରାତ, ତୁମ୍ଭେ ନୀତି ମନୋହର । ସମସ୍ତଙ୍କଠାରୁ ରାଜମଦ ଭୟଙ୍କର ॥୩॥

---

ସିଂହ ହାତୀ ଦଳକୁ ଦଳିପକାଏ ଏବଂ ବାଜ ଗୁଣ୍ଡୁରିକୁ ଝାମ୍ପିନିଏ, ସେହିପରି ସେନା ଓ ସାନ ଭାଇ ସମେତ ଭରତଙ୍କୁ ତିରସ୍କାର-ପୂର୍ବକ ରଣାଙ୍ଗନରେ ପରାସ୍ତ କରିଦେବି । ଯଦି ସ୍ୱୟଂ ଶଙ୍କର ଆସି ଯୁଦ୍ଧ୍ୱା ସେମାନଙ୍କୁ ସାହାଯ୍ୟ କରନ୍ତି, ମୋତେ ରାମଙ୍କ ରାଣ, ମୁଁ ଯୁଦ୍ଧରେ ସେ ସମସ୍ତଙ୍କୁ ମାରିପକାଇବି ।" ॥ ୩-୪ ॥ ଦୋହା :—ଲକ୍ଷ୍ମଣଙ୍କୁ ଅତ୍ୟନ୍ତ କ୍ରୋଧରେ ଆରକ୍ତ ବର୍ଣ୍ଣ ଧାରଣ କରିଥିବାର ଦେଖି ଏବଂ ତାହାଙ୍କ ପ୍ରାମାଣିକ ଶପଥ ଶୁଣି ସମସ୍ତ ଲୋକ ଭୟଭୀତ ହୋଇଯାଉଥା'ନ୍ତି ଏବଂ ଲୋକପାଳମାନେ ଘାବରି ପଳାଇଯିବାକୁ ବ୍ୟଗ୍ର ହେଉଥା'ନ୍ତି ॥ ୨୫୩ ॥ ଚୌପାଈ :—ସାରା ସଂସାର ଭୟମଗ୍ନ ହୋଇଗଲା । ସେତେବେଳେ ଲକ୍ଷ୍ମଣଙ୍କ ଅପାର ବାହୁବଳର ପ୍ରଶଂସା କରି ଆକାଶବାଣୀ ହେଲା, "ହେ ବତ୍ସ ! ତୁମ ପ୍ରତାପ ଓ ପ୍ରଭାବକୁ କିଏ ଜାଣି ପାରେ ଓ କିଏ କହି ପାରେ ? ॥ ୧ ॥ କିନ୍ତୁ ଯେ କୌଣସି କାମ ହୋଇଥାଉ ରଜକେ, ତାହା ଉଚିତ କି ଅନୁଚିତ, ଖୁବ ଭଲ ଭାବରେ ବୁଝି କରିବା ବିଧେୟ । ତେବେ ଯାଇ ସମସ୍ତେ ଭଲ ବୋଲି କହନ୍ତି ! ବେଦ ଓ ବିଦ୍ୱାନ୍‌ମାନେ କହନ୍ତି, "ଯେଉଁମାନେ ବିନା ବିଚାରରେ ଶୀଘ୍ର କୌଣସି କାର୍ଯ୍ୟ କରି ପଛରେ ଅନୁତାପ କରନ୍ତି, ସେମାନେ ବୁଦ୍ଧିମାନ୍ ନୁହନ୍ତି ।" ॥ ୨ ॥ ଦେବବାଣୀ ଶୁଣି ଲକ୍ଷ୍ମଣ ସଙ୍କୁଚିତ ହେଲେ । ଶ୍ରୀରାମ ଓ ସୀତା ଆଦରପୂର୍ବକ ତାଙ୍କର ସମ୍ମାନ କଲେ ଏବଂ କହିଲେ, "ହେ ବତ୍ସ ! ତୁମେ ଅତି ସୁନ୍ଦର

ଜୋ ଅଚୱଁତ ନୃପ ମାତହିଁ ତେଈ । ନାହିନ ସାଧୁସଭା ଜେହିଁ ସେଈ ॥
ସୁନହୁ ଲଖନ ଭଲ ଭରତ ସରୀସା । ବିଧି ପ୍ରପଂଚ ମହଁ ସୁନା ନ ଦୀସା ॥୪॥

ଭରତହି ହୋଇ ନ ରାଜମଦୁ ବିଧି ହରି ହର ପଦ ପାଇ ।
କବହୁଁ କି କାଁଜୀ ସୀକରନି ଛୀରସିନ୍ଧୁ ବିନସାଇ ॥୨୩୧॥

ତିମିରୁ ତରୁନ ତରନିହି ମକୁ ଗିଲଈ । ଗଗନୁ ମଗନ ମକୁ ମେଘହିଁ ମିଲଈ ॥
ଗୋପଦ ଜଲ ବୂଡ଼ହିଁ ଘଟଜୋନୀ । ସହଜ ଛମା ବରୁ ଛାଡ଼ୈ ଛୋନୀ ॥୧॥
ମସକ ଫୂଁକ ମକୁ ମେରୁ ଉଡ଼ାଈ । ହୋଇ ନ ନୃପମଦୁ ଭରତହି ଭାଈ ॥
ଲଖନ ତୁମ୍ହାର ସପଥ ପିତୁ ଆନା । ସୁଚି ସୁବଂଧୁ ନହିଁ ଭରତ ସମାନା ॥୨॥
ସଗୁନୁ ଖୀରୁ ଅବଗୁନ ଜଲୁ ତାତା । ମିଲଇ ରଚଇ ପରପଞ୍ଚୁ ବିଧାତା ॥
ଭରତୁ ହଂସ ରବିବଂସ ତଡ଼ାଗା । ଜନମି କୀନ୍ହ ଗୁନ ଦୋଷ ବିଭାଗା ॥୩॥

---

ଯାହା ପାନ କରି ସେହି ନୃପ ହୁଏ ମତ୍ତ । ସାଧୁସଭା ସେବାରେ ଯେ ହୋଇନାହିଁ ରତ ॥
ଶୁଣ ଲଇକ୍ଷଣ, ଭଲ ଭରତ ସାଦୃଶ୍ୟ । ଦେଖି ଶୁଣି ନାହିଁ ବିଧି-ପ୍ରପଞ୍ଚେ ମନୁଷ୍ୟ ॥୪॥

ନ ହେବ ଭରତେ ରାଜ ମଦ, ବିଧି-ହରିହର ପଦ ପାଇ ।
କେବେହେଁ କି କାଞ୍ଜି-ଶୀକର ପଡନ୍ତେ କ୍ଷୀର ସିନ୍ଧୁ ଛୁଟିଯାଇ ॥୨୩୧॥

ତରୁଣ ତପନେ ବରଂ ତମ ପାରେ ଗିଳି । ଗଗନ ନମନ୍ତେ ବରଂ ମେଘେ ଯିବ ମିଳି ॥
ଗୋପଦ ଜଳେ ଘଟଜ ବରଂ ବୁଡିଯିବେ । ସହଜ କ୍ଷମା ବରଂତ ଧରଣୀ ତେଜିବେ ॥୧॥
ମଶକ ଫୁଙ୍କରେ ବରଂ ମେରୁ ଉଡିଯିବ । ଭରତଙ୍କୁ ଭାଇ, ରାଜ-ମଦ ନ ହୋଇବ ॥
ଲକ୍ଷ୍ମଣ, ତୁମ୍ଭ ଶପଥ ପିତାଙ୍କର ଆଣ । ଭରତ ସମାନ ଶୁଚି ଭ୍ରାତା ନାହିଁ ଜାଣ ॥୨॥
ସୁଗୁଣ-କ୍ଷୀର ଦୁର୍ଗୁଣ-ନୀର ରୂପ, ଭ୍ରାତା । ମିଳାଇ ରଚନ୍ତି ଏହି ପ୍ରପଞ୍ଚ ବିଧାତା ॥
ଭରତ ହଂସ ଦିନେଶ-ବଂଶ-ତଡାଗରେ । ଜନମି ବିଭାଗ କଲ ଗୁଣ ଦୋଷ ଦ୍ୱୟରେ ॥୩॥

---

ମାତ କଥା କହିଲ । ହେ ଭାଇ ! ରାଜ୍ୟଲାଭର ମଦ ସବୁଠାରୁ ବଳି କଠିନ ମଦ ॥ ୩ ॥ ଯେଉଁମାନେ ସାଧୁସଭା (ସୁସଙ୍ଗ) ସେବନ କରି ନାହାନ୍ତି, ସେହି ରାଜାମାନେ ରାଜପଦ-ମଦିରା ଆଚମନ କରିବା ମାତ୍ରେ ଉନ୍ମତ୍ତ ହୋଇପଡନ୍ତି । ହେ ଲକ୍ଷ୍ମଣ ! ଶୁଣ; ଭରତ ସଦୃଶ ଉତ୍ତମ ପୁରୁଷ ବ୍ରହ୍ମାଙ୍କ ସୃଷ୍ଟିରେ କେଉଁଠି କେବେ ଥିବାର ଶୁଣା ଯାଇନାହିଁ କି ଦେଖା ଯାଇନାହିଁ ॥ ୪ ॥ ଦୋହା —ଅଯୋଧ୍ୟାର ରାଜତ୍ୱ ବା କି ସାମାନ୍ୟ ! ବ୍ରହ୍ମା, ବିଷ୍ଣୁ ଓ ମହାଦେବଙ୍କ ପଦ ପାଇ ମଧ୍ୟ ଭରତଙ୍କ ମନରେ ରାଜମଦ ଜାତ ହେବନାହିଁ । କେବେ ବିନ୍ଦୁଏ କାଞ୍ଜି ଯୋଗେ କ୍ଷୀର ସମୁଦ୍ର ଫଟିକି ଯାଇପାରେ କି ? ॥ ୨୩୧ ॥ ଚୌପାଇ —ଅନ୍ଧକାର ତରୁଣ ରବି ( ମଧ୍ୟାହ୍ନକାଳୀନ ସୂର୍ଯ୍ୟ )ଙ୍କୁ ଗ୍ରାସ କରି ଦେଉ ପଛକେ, ଆକାଶ ବାଦଲ-ସମୂହ ମଧ୍ୟରେ ସମାଇ ମିଳାଇଯାଉ ପଛକେ, ଗୋରୁଖୁରା ପରିମାଣ ଜଳରେ ଅଗସ୍ତ୍ୟ ମୁନି ବୁଡିଯାଆନ୍ତୁ ପଛକେ, ପୃଥିବୀ ଆପଣାର ସ୍ୱାଭାବିକ ଗୁଣ କ୍ଷମାକୁ ଛାଡିଦେଉ ପଛକେ ଏବଂ ମଶା ଫୁଙ୍କି ଦେଲେ ସୁମେରୁ ପର୍ବତ ଉଡିଯାଉ ପଛକେ;

ଗହି ଗୁନ ପୟ ତଜି ଅବଗୁନ ବାରୀ । ନିଜ ଜସ ଜଗତ କୀହ୍ନି ଉଜିଆରୀ ॥
କହତ ଭରତ ଗୁନ ସୀଲୁ ସୁଭାଊ । ପେମ ପୟୋଧି ମଗନ ରଘୁରାଊ ॥୪॥

ସୁନି ରଘୁବର ବାନୀ ବିବୁଧ ଦେଖି ଭରତ ପର ହେତୁ ।
ସକଲ ସରାହତ ରାମ ସୋ ପ୍ରଭୁ କୋ କୃପାନିକେତୁ ॥୨୩୨॥

ଜୌଁ ନ ହୋତ ଜଗ ଜନମ ଭରତକୋ । ସକଲ ଧରମ ଧୁର ଧରନି ଧରତକୋ ॥
କବିକୁଲ ଅଗମ ଭରତ ଗୁନ ଗାଥା । କୋ ଜାନଇ ତୁମ୍ହ ବିନୁ ରଘୁନାଥା ॥୧॥
ଲଖନ ରାମ ସିୟଁ ସୁନି ସୁର ବାନୀ । ଅତି ସୁଖୁ ଲହେଉ ନ ଜାଇ ବଖାନୀ ॥
ଇହାଁ ଭରତୁ ସବ ସହିତ ସହାଏ । ମଂଦାକିନୀଁ ପୁନୀତ ନହାଏ ॥୨॥

---

ଯେନି ଗୁଣ-ପୟ ତେଜି ଅବଗୁଣ-ଜଳ । ନିଜ ଯଶେ ଜଗତ କରିଲ ଉଜ୍ଜ୍ୱଳ ॥
କହି ଭରତଙ୍କ ଗୁଣ ସ୍ୱଭାବ ଆଦର । ପ୍ରେମ-ପୟୋଧିରେ ମଗ୍ନ ହେଲେ ରଘୁବର ॥୪॥

ରଘୁବର ବାଣୀ ସୁରଗଣେ ଶୁଣି ଦେଖି ଭରତେ ପ୍ରୀତ ।
କିଏ ରାମ ସମ ପ୍ରଭୁ କୃପାଧାମ, କହି ସର୍ବେ ପ୍ରଶଂସନ୍ତି ॥୨୩୨॥

ଯେବେ ଭବେ ଭରତଙ୍କ ଜନ୍ମ ନ ହୁଅନ୍ତା । କିଏ ସର୍ବ ଧର୍ମ-ଧୁର ପୃଥ୍ୱୀରେ ଧରନ୍ତା ॥
କବି-କୁଳର ଅଗମ୍ୟ ଭରତଙ୍କ ଗୁଣ । ତୁମ୍ଭ ବିନା ରାମ, ଅନ୍ୟ କିଏ ଜାଣେ ପୁଣ ॥୧॥
ଲକ୍ଷ୍ମଣ ରାମ ଜାନକୀ ଶୁଣି ସୁର ବାଣୀ । ଅତି ସୁଖ ଲଭି କଲେ, ନ ହୁଏ ବଖାଣି ॥
ଏଣେ ଭରତ ସକଳ ସମାଜ ସଙ୍ଗରେ । ସ୍ନାନ କଲେ ମନ୍ଦାକିନୀ ପବିତ୍ର ଜଳରେ ॥୨॥

---

କିନ୍ତୁ ହେ ଭାଇ ! ଭରତଙ୍କୁ ରାଜମଦ କେବେ ଗ୍ରାସ କରି ନ ପାରେ । ହେ ଲକ୍ଷ୍ମଣ ! ମୁଁ ତୁମର ଶପଥ ଓ ପିତାଙ୍କର ରାଣ ଖାଇ କହୁଛି—ଭରତଙ୍କ ସମାନ ପବିତ୍ର ଓ ସୁନ୍ଦର ଭାଇ ସଂସାରରେ ନାହିଁ ॥ ୧-୨ ॥ ହେ ବତ୍ସ ! ଗୁଣ-ଦୁଗ୍ଧ ଓ ଅବଗୁଣ-ଜଳକୁ ମିଶାଇ ବିଧାତା ଏହି ଦୃଶ୍ୟ ଜଗତକୁ ରଚନା କରନ୍ତି । କିନ୍ତୁ ଭରତ ସୂର୍ଯ୍ୟବଂଶ-ସରୋବରରେ ହଂସ ରୂପେ ଜନ୍ମ ଗ୍ରହଣ କରି ଗୁଣ ଓ ଦୋଷ ବିଭାଗ କରିଦେଇଅଛନ୍ତି ॥ ୩ ॥ ଗୁଣ-ଦୁଧକୁ ଗ୍ରହଣ ପୂର୍ବକ ଏବଂ ଅବଗୁଣ-ଜଳକୁ ତ୍ୟାଗ କରି ଭରତ ଆପଣାର ଯଶରେ ଜଗତକୁ ଆଲୋକିତ କରି ଦେଇଅଛନ୍ତି ।" ଭରତଙ୍କ ଗୁଣ, ଶୀଳ ଓ ସ୍ୱଭାବ କହୁ କହୁ ଶ୍ରୀ ରଘୁନାଥ ପ୍ରେମ-ସମୁଦ୍ରରେ ମଗ୍ନ ହୋଇଗଲେ ॥ ୪ ॥ ଦୋହା ।—ଶ୍ରୀରାମଚନ୍ଦ୍ରଙ୍କ ବାଣୀ ଶୁଣି ଏବଂ ଭରତଙ୍କ ପ୍ରତି ତାଙ୍କର ପ୍ରେମ ଦେଖି ସମସ୍ତ ଦେବତା ତାଙ୍କୁ ପ୍ରଶଂସା କରିବାକୁ ଲାଗିଲେ ଏବଂ କହିବାକୁ ଲାଗିଲେ, "ଶ୍ରୀରାମଙ୍କ ସମାନ କୃପାଧାମ ପ୍ରଭୁ ଆଉ କିଏ ? ॥ ୨୩୨ ॥ ଚୌପାଈ ।—ଯଦି ଜଗତରେ ଭରତଙ୍କ ଜନ୍ମ ନ ହୋଇ-ଥା'ନ୍ତା, ତେବେ ପୃଥିବୀ ଉପରେ ଧର୍ମର ଅଖକୁ ଧାରଣ କରନ୍ତା କିଏ ? ହେ ରଘୁନାଥ ! କବିକୁଳ ପକ୍ଷରେ ଅଗମ୍ୟ ଭରତଙ୍କ ଗୁଣ କଥା ଆପଣଙ୍କ ବିନା ଆଉ କିଏ ଜାଣି ପାରିବ ?" ॥ ୧ ॥ ଲକ୍ଷ୍ମଣ, ଶ୍ରୀରାମଚନ୍ଦ୍ର ଓ ସୀତା ଦେବତାମାନଙ୍କ ବାଣୀ ଶୁଣି ଅତ୍ୟନ୍ତ ସୁଖ ଲାଭ କଲେ । ସେହି ସୁଖର ବର୍ଣ୍ଣନା କରାଯାଇ ପାରିବ ନାହିଁ । ଏଣେ ଭରତ

ସରିତ ସମୀପ ରାଖି ସବ ଲୋଗା । ମାଗି ମାତୁ ଗୁର ସଚିବ ନିୟୋଗା ॥
ଚଲେ ଭରତୁ ଜହଁ ସିୟ ରଘୁରାଈ । ସାଥ ନିଷାଦନାଥୁ ଲଘୁ ଭାଈ ॥୩॥
ସମୁଝି ମାତୁ କରତବ ସକୁଚାହୀଁ । କରତ କୁତରକ କୋଟି ମନ ମାହୀଁ ॥
ରାମୁ ଲଖନୁ ସିୟ ସୁନି ମମ ନାଉଁ । ଉଠି ଜନି ଅନତ ଜାହିଁ ତଜି ଠାଉଁ ॥୪॥

ମାତୁ ମତେ ମହୁଁ ମାନି ମୋହି ଜୋ କଛୁ କରହିଁ ସୋ ଥୋର ।
ଅଘ ଅବଗୁନ ଛମି ଆଦରହିଁ ସମୁଝି ଆପନୀ ଓର ॥୨୩୩॥

ଜୌଂ ପରିହରହିଁ ମଲିନ ମନୁ ଜାନୀ । ଜୌଂ ସନମାନହିଁ ସେବକୁ ମାନୀ ॥
ମୋରେଁ ସରନ ରାମହି କୀ ପନହୀ । ରାମ ସୁସ୍ୱାମି ଦୋସୁ ସବ ଜନହୀ ॥୧॥
ଜଗ ଜସ ଭାଜନ ଚାତକ ମୀନା । ନେମ ପେମ ନିଜ ନିପୁନ ନବୀନା ॥
ଅସ ମନ ଗୁନତ ଚଲେ ମଗ ଜାତା । ସକୁଚ ସନେହଁ ସିଥିଲ ସବ ଗାତା ॥୨॥

---

ସରିତ ସମୀପେ ରଖି ସମସ୍ତ ଲୋକଙ୍କୁ । ମାଗି ଅନୁମତି ମାତା ଗୁରୁ ସଚିବଙ୍କୁ ॥
ଗମିଲେ ଭରତ ଯହିଁ ସୀତା ରଘୁବର । ସଙ୍ଗେ ନିଷାଦ-ନାୟକ ଅନୁଜ ଆବର ॥୩॥
ସୁମରି ମାତା କୁକର୍ମ ସଙ୍କୋଚ କରନ୍ତି । ନାନା ପ୍ରକାର କୁତର୍କ ହୃଦୟେ ପାଞ୍ଚନ୍ତି ॥
ରାମ ସୀତା ଲକ୍ଷ୍ମଣ ମୋ ନାମ ଶୁଣି କରି । ଉଠି ଚାଲି ନ ଯାଆନ୍ତୁ ସ୍ଥାନ ପରିହରି ॥୪॥

ମାତା ମତେ ମୋତେ ମଣି ଯାହା କିଛି କରିବେ ହେବ ନିଊନ ।
ଆପଣା ବୁଝିଲେ ଆଦରିବେ କ୍ଷମି ତେଜି ଅଘ ଅବଗୁଣ ॥୨୩୩॥

ମଳିନମନା ବୁଝିଣ ଯେବେ ବରଜିବେ । ସେବକ ଜାଣି ଯେବେ ବା ସମ୍ମାନ କରିବେ ॥
ଅଟେ ରାମ ପଦତ୍ରାଣ ଶରଣ୍ୟ ମୋହର । ରାମ ସୁସ୍ୱାମୀ ସକଳ ଦୋଷ ଏ ଦାସର ॥୧॥
ଚାତକ ମୀନ ଜଗତେ ସୁଯଶ-ଭାଜନ । ନିଜ ପ୍ରେମ ନିୟମେ ଯେ ନିପୁଣ ନୂତନ ॥
ପଥ ଚାଲି ଯାନ୍ତି ମନେ ବିଚାରି ଏମନ୍ତ । ଲଜ୍ଜା ସ୍ନେହେ ହୁଏ ଅଙ୍ଗ ଶିଥିଳ ସମସ୍ତ ॥୨॥

---

ସମସ୍ତ ସମାଜ ସହିତ ପବିତ୍ର ମନ୍ଦାକିନୀରେ ସ୍ନାନ କଲେ ॥ ୨ ॥ ତତ୍ପରେ ସମସ୍ତଙ୍କୁ ନଦୀ ସମୀପରେ ଅଟକାଇ ମାତା, ଗୁରୁ ଓ ମନ୍ତ୍ରୀଙ୍କ ଆଜ୍ଞା ମାଗି ନିଷାଦରାଜ ଓ ଶତ୍ରୁଘ୍ନଙ୍କୁ ନେଇ ଭରତ ସୀତା ଓ ଶ୍ରୀରାମ ଥିବା ସ୍ଥାନକୁ ଗଲେ ॥ ୩ ॥ ଭରତ ନିଜ ମାତା କୈକେୟୀଙ୍କ କୃତକର୍ମ ବିଷୟ ସ୍ମରଣ କରି ସଙ୍କୁଚିତ ହେଲେ ଏବଂ ମନେ ମନେ ଅନେକ କୁତର୍କ କରିବାକୁ ଲାଗିଲେ । ସେ ଭାବୁଥାନ୍ତି, "ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ମୋ ନାମ ଶୁଣି କାଳେ ସେ ସ୍ଥାନ ଛାଡି ଅନ୍ୟ ସ୍ଥାନକୁ ଚାଲିଯିବେ ॥ ୪ ॥ ଦୋହା :—ମୋତେ ମାତାଙ୍କ ମତାନୁଗାମୀ ମନେ କରି ସେ ଯାହା ବି କରିବେ, ତାହା ଅତି ଅଳ୍ପ । କିନ୍ତୁ ସେ ତାଙ୍କ ନିଜ ଆଡୁ ବୁଝି ମୋ ପାପ ଓ ଅବଗୁଣକୁ ଅବଶ୍ୟ କ୍ଷମା କରି ଦେବେ ଏବଂ ମୋତେ ଆଦର ହିଁ କରିବେ ॥୨୩୩॥ ଚୌପାଈ :—ମଳିନମନା ଜାଣି ମୋତେ ତ୍ୟାଗ କରି ଦିଅନ୍ତୁ କିମ୍ବା ଆପଣା ସେବକ ମନେ କରି ମୋର ସମ୍ମାନ କରନ୍ତୁ; ମୋ ନିମନ୍ତେ ତ ଶ୍ରୀରାମଙ୍କ ଯୋତା ହିଁ ଶରଣ । ଶ୍ରୀରାମ ତ ଉତ୍ତମ ସ୍ୱାମୀ, ଦୋଷ ତ ସବୁ କେବଳ ଏହି ଦାସର ॥୧॥

ଫେରତି ମନହୁଁ ମାତୁ କୃତ ଖୋରୀ । ଚଲତ ଭଗତି ବଲ ଧୀରଜ ଧୋରୀ ॥
ଜବ ସମୁଝତ ରଘୁନାଥ ସୁଭାଊ । ତବ ପଥ ପରତ ଉତାଇଲ ପାଊ ॥୩॥
ଭରତ ଦସା ତେହି ଅବସର କୈସୀ । ଜଲ ପ୍ରବାହଁ ଜଲ ଅଲି ଗତି ଜୈସୀ ॥
ଦେଖି ଭରତ କର ସୋଚୁ ସନେହୂ । ଭା ନିଷାଦ ତେହି ସମୟଁ ବିଦେହୂ ॥୪॥

ଲଗେ ହୋନ ମଂଗଲ ସଗୁନ ସୁନି ଗୁନି କହତ ନିଷାଦୁ ।
ମିଟିହି ସୋଚୁ ହୋଇହି ହରଷୁ ପୁନି ପରିନାମ ବିଷାଦୁ ॥୨୩୪॥

ସେବକ ବଚନ ସତ୍ୟ ସବ ଜାନେ । ଆଶ୍ରମ ନିକଟ ଜାଇ ନିଅରାନେ ॥
ଭରତ ଦୀଖ ବନ ସୈଲ ସମାଜୂ । ମୁଦିତ ଛୁଧିତ ଜନୁ ପାଇ ସୁନାଜୂ ॥୧॥
ଈତି ଭୀତି ଜନୁ ପ୍ରଜା ଦୁଖାରୀ । ତ୍ରିବିଧ ତାପ ପୀଡ଼ିତ ଗ୍ରହ ମାରୀ ॥
ଜାଇ ସୁରାଜ ସୁଦେସ ସୁଖାରୀ । ହୋହିଁ ଭରତ ଗତି ତେହି ଅନୁହାରୀ ॥୨॥

---

ଜନନୀ କୁକର୍ମ ଯେସନ୍ତେ ଫେରାଏ ପଛକୁ । ଭକ୍ତି ବଳ ଧୈର୍ଯ୍ୟ ଭରେ ଚାଲନ୍ତି ଆଗକୁ ॥
ସ୍ୱଭାବ ରଘୁନାଥଙ୍କ ବିଚାରନ୍ତି ଯେବେ । ପଥେ ଏଣେ ତେଣେ ପାଦ ପଡୁଥାଏ ତେବେ ॥୩॥
ଭରତଙ୍କ ଦଶା ସେହି ସମୟେ ଯେପରି । ଜଳ ଅଳି ଗତି ଜଳ ପ୍ରବାହେ ଯେପରି ॥
ବିଲୋକିଣ ଭରତଙ୍କ ଚିନ୍ତା ଅତି ସ୍ନେହ । ହୋଇଲା ନିଷାଦ ସେହି ସମୟେ ବିଦେହ ॥୪॥

ମଙ୍ଗଳ ଶକୁନ ହେବାକୁ ଲାଗିଲା କହଇ ନିଷାଦ ଗୁଣି ।
ଚିନ୍ତା ଦୂର ହେବ ହରଷ ହୋଇବ, ପରିଣାମ ଦୁଃଖ ପୁଣି ॥୨୩୪॥

ସେବକ ବଚନ ସତ୍ୟ ହୃଦୟେ ମଣିଲେ । ଆଶ୍ରମ ନିକଟେ ଯାଇ ପ୍ରବେଶ ହୋଇଲେ ॥
ଭରତ ବନ ଶଇଳ ଶ୍ରେଣୀ ନିରେଖିଣ । ମୁଦିତ କ୍ଷୁଧିତ ଯେସନ୍ତେ ସୁଖାଦ୍ୟ ପାଇଣ ॥୧॥
ଇତି ଭୀତି ଲଭି ପ୍ରଜା ଯେସନେ ଦୁଃଖିତ । କଠିନ ଗ୍ରହ ତ୍ରିବିଧ ତାପେ ପ୍ରପୀଡ଼ିତ ॥
ସୁଦେଶେ ସୁରାଜ୍ୟେ ଯାଇ ସୁଖୀ ସେ ହୁଅନ୍ତି । ସେହି ଅନୁରୂପ ହୁଏ ଭରତଙ୍କ ଗତି ॥୨॥

---

ଜଗତରେ ଯଶର ପାତ୍ର ଚାତକ ଓ ମୀନ । ସେହିମାନେ ଆପଣା ଆପଣା ନିୟମ ଓ ପ୍ରେମକୁ ସଦା ନୂତନ କରି ରଖିବାରେ ନିପୁଣ ।'' ଏପରି ଭାବରେ ମନରେ ବିଚାରି ଭରତ ମାର୍ଗରେ ଚାଲି ଯାଉଥାʼନ୍ତି । ତାଙ୍କର ସମସ୍ତ ଅଙ୍ଗ ପ୍ରତ୍ୟଙ୍ଗ ସଙ୍କୋଚ ଓ ପ୍ରେମବଶତଃ ଶିଥିଳ ହୋଇ ଯାଉଥାଏ ॥ ୨ ॥ ମାତାକୃତ ଦୁଷ୍କର୍ମ ତାଙ୍କୁ ପଛକୁ ଫେରାଇବାକୁ ଚେଷ୍ଟା କରୁଥାଏ । କିନ୍ତୁ ଧୈର୍ଯ୍ୟ-ଧୁରନ୍ଧର ଭରତ ଭକ୍ତିବଳରେ ଅଗ୍ରସର ହେଉଥାʼନ୍ତି । ଶ୍ରୀରାମଙ୍କ ସ୍ୱଭାବକୁ ସ୍ମରଣ କରିବା ମାତ୍ରେ ମାର୍ଗରେ ତାଙ୍କ ପାଦ ଶୀଘ୍ର ଶୀଘ୍ର ପଡୁ-ଥାଏ ॥ ୩ ॥ ସେହି ସମୟରେ ଭରତଙ୍କ ଦଶା ଜଳ-ପ୍ରବାହରେ ଜଳ-ଭ୍ରମରର ଗତି ପରି ହେଉଥାଏ । ଭରତଙ୍କ ଚିନ୍ତା ଓ ପ୍ରେମ ଦେଖି ସେହି ସମୟରେ ନିଷାଦ ମଧ୍ୟ ଦେହର ଅସ୍ତିତ୍ୱ ଭୁଲିଗଲା ॥ ୪ ॥ ଦୋହା —ମଙ୍ଗଳ ଲକ୍ଷଣ ଦେଖାଯିବାକୁ ଲାଗିଲା । ତାହା ଶୁଣି ଓ ବିଚାରି କରି ନିଷାଦରାଜ କହିଲା, "ଚିନ୍ତା ଦୂର ହେବ, ଆନନ୍ଦ ହେବ; କିନ୍ତୁ ପୁଣି ଶେଷରେ ଦୁଃଖ ହେବ ।'' ॥ ୨୩୪ ॥ ଚୌପାଇ :—ଭରତ ସେବକ ଗୁହର

ରାମ ବାସ ବନ ସଂପତି ଭ୍ରାଜା । ସୁଖୀ ପ୍ରଜା ଜନୁ ପାଇ ସୁରାଜା ॥
ସଚିବ ବିରାଗୁ ବିବେକୁ ନରେସୂ । ବିପିନ ସୁହାବନ ପାବନ ଦେସୂ ॥୩॥
ଭଟ ଜମ ନିୟମ ସୈଲ ରଜଧାନୀ । ସାନ୍ତି ସୁମତି ସୁଚି ସୁନ୍ଦର ରାନୀ ॥
ସକଲ ଅଙ୍ଗ ସଂପନ୍ନ ସୁରାଊ । ରାମ ଚରନ ଆଶ୍ରିତ ଚିତ ଚାଊ ॥୪॥

ଜୀତି ମୋହ ମହିପାଲୁ ଦଲ ସହିତ ବିବେକ ଭୁଆଲୁ ।
କରତ ଅକଂଟକ ରାଜୁ ପୁରଁ ସୁଖ ସଂପଦା ସୁକାଲୁ ॥୨୩୫॥

ବନ ପ୍ରଦେସ ମୁନି ବାସ ଘନେରେ । ଜନୁ ପୁର ନଗର ଗାଉଁ ଗନ ଖେରେ ॥
ବିପୁଲ ବିଚିତ୍ର ବିହଗ ମୃଗ ନାନା । ପ୍ରଜା ସମାଜୁ ନ ଜାଇ ବଖାନା ॥୧॥

---

ରାମଙ୍କ ବାସ ବିପିନ ସମ୍ପତ୍ତି ସୁନ୍ଦର । ସୁଖୀ ପ୍ରଜା ପାଇ ଯେସନ୍ତେ ସୁମଣ୍ଡଳେଶ୍ୱର ॥
ସଚିବ ବୈରାଗ୍ୟ ତହିଁ ବିବେକ ନରେଶ । କାନନ ସୁମନୋହର ପାବନ ପ୍ରଦେଶ ॥୩॥
ସଂଯମ ନିୟମ ସୈନ୍ୟ ଶୈଳ ରାଜଧାନୀ । ଶାନ୍ତି ସୁମତି ସୁନ୍ଦରୀ ପତିବ୍ରତା ରାଣୀ ॥
ସମସ୍ତ ଅଙ୍ଗ ସମ୍ପନ୍ନ ଉତ୍ତମ ରାଜନ । ରାମ ପଦାଶ୍ରିତେ ଅତି ଉତ୍ସାହିତ ମନ ॥୪॥

ଦଳ ସହ ମୋହ-ମହୀପଙ୍କୁ ଜିଣି ବିବେକ-ଅବନୀ-ପାଳ ।
କରେ ଅକଣ୍ଟକ ରାଜ୍ୟ ପୁର ଭୋଗ ସୁଖ ସମ୍ପଦ ସୁକାଳ ॥୨୩୫॥

ବନ ପ୍ରଦେଶରେ ମୁନି ବାସ ଅଗଣିତ । ଯେସନ୍ତେ ପଲ୍ଲୀ ପୁର ଗ୍ରାମ ନଗର ଅମିତ ॥
ବିପୁଳ ବିଚିତ୍ର ନାନା ମୃଗ ବିହଙ୍ଗମ । ପ୍ରଜାଙ୍କ ସମାଜ କରି ନ ହୁଏ ବର୍ଣ୍ଣନ ॥୧॥

---

ସମସ୍ତ କଥା ସତ୍ୟ ବୋଲି ଜାଣିଲେ ଏବଂ ସେମାନେ ଆଶ୍ରମ ସମୀପରେ ଯାଇ ପହଞ୍ଚିଲେ । ସେ ସ୍ଥାନରେ ବନ ଓ ପର୍ବତମାନଙ୍କର ଶୋଭା ଦେଖି ଭରତ ଅତ୍ୟନ୍ତ ଆନନ୍ଦିତ ହେଲେ । କ୍ଷୁଧାର୍ତ୍ତ ସତେ ଅବା ଉତ୍ତମ ଅନ୍ନ-ଭୋଜନ ପାଇଗଲା ! ॥ ୧ ॥ ଯେପରି ଅତିବୃଷ୍ଟି, ଅନାବୃଷ୍ଟି ଆଦି ଉପଦ୍ରବ ଯୋଗେ ତ୍ରାସ ଏବଂ ତିନି ତାପ (ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ), କ୍ରୂର ଗ୍ରହ ଓ ମହାମାରୀ ଯୋଗେ ପ୍ରପୀଡ଼ିତ ପ୍ରଜାମାନେ କୌଣସି ଉତ୍ତମ ଦେଶ ଓ ଉତ୍ତମ ରାଜାଙ୍କ ରାଜ୍ୟକୁ ଯାଇ ସୁଖୀ ହୁଅନ୍ତି, ଭରତଙ୍କ ଦଶା ଠିକ୍ ସେହିପରି ହେଉଥାଏ ॥ ୨ ॥ ଶ୍ରୀରାମଙ୍କ ନିବାସ ଯୋଗେ ବନର ଶ୍ରୀ ଏପରି ସୁଶୋଭିତ ହେଉଥାଏ, ବୋଧ ହେଉଥାଏ, ସତେ ଯେପରି ଉତ୍ତମ ରାଜାଙ୍କୁ ପାଇ ପ୍ରଜାମାନେ ସୁଖୀ ହେଉଅଛନ୍ତି । ସୁଶୋଭିତ ବନ ହିଁ ପବିତ୍ର ଦେଶ, ବିବେକ ତାହାର ରାଜା ଓ ବୈରାଗ୍ୟ ମନ୍ତ୍ରୀ ॥ ୩ ॥ ସଂଯମ (ଅହିଂସା, ସତ୍ୟ, ଅସ୍ତେୟ, ବ୍ରହ୍ମଚର୍ଯ୍ୟ ଓ ଅପରିଗ୍ରହ) ଓ ନିୟମ (ଶୌଚ, ସନ୍ତୋଷ, ତପ, ସ୍ୱାଧ୍ୟାୟ ଓ ଈଶ୍ୱର ପ୍ରଣିଧାନ) ଯୋଦ୍ଧା । ପର୍ବତ ରାଜଧାନୀ ଏବଂ ଶାନ୍ତି ଓ ସୁବୁଦ୍ଧି ଦୁଇଟି ସୁନ୍ଦରୀ ପବିତ୍ର ରାଣୀ । ସେହି ଶ୍ରେଷ୍ଠ ରାଜା ରାଜ୍ୟର ସକଳ ଅଙ୍ଗରେ ସମ୍ପନ୍ନ ଏବଂ ଶ୍ରୀ ରାମଚନ୍ଦ୍ରଙ୍କ ଚରଣାଶ୍ରିତ ହୋଇ ରହିବାରେ ତାହାର ଚିତ୍ତରେ ଆନନ୍ଦ ଓ ଉତ୍ସାହ ରହିଥାଏ । [ସ୍ୱାମୀ, ଅମାତ୍ୟ, ସୁହୃଦ, କୋଷ, ରାଷ୍ଟ୍ର, ଦୁର୍ଗ ଓ ସେନା—ଏମାନେ ରାଜ୍ୟର ସାତଗୋଟି ଅଙ୍ଗ ।] ॥ ୪ ॥

ଖଗହା କରି ହରି ବାଘ ବରାହା । ଦେଖି ମହିଷ ବୃଷ ସାଜୁ ସରାହା ॥
ବୟରୁ ବିହାଇ ଚରହିଁ ଏକ ସଂଗା । ଜହଁ ତହଁ ମନହୁଁ ସେନ ଚତୁରଂଗା ॥୨॥
ଝରନା ଝରହିଁ ମତ୍ତ ଗଜ ଗାଜହିଁ । ମନହୁଁ ନିସାନ ବିବିଧି ବିଧି ବାଜହିଁ ॥
ଚକ ଚକୋର ଚାତକ ସୁକ ପିକ ଗନ । କୂଜତ ମଂଜୁ ମରାଲ ମୁଦିତ ମନ ॥୩॥
ଅଲିଗନ ଗାଵତ ନାଚତ ମୋରା । ଜନୁ ସୁରାଜ ମଂଗଲ ଚହୁଁ ଓରା ॥
ବେଲି ବିଟପ ତୃନ ସଫଲ ସଫୁଲା । ସବ ସମାଜୁ ମୁଦ ମଂଗଲ ମୂଲା ॥୪॥

ରାମ ସୈଲ ସୋଭା ନିରଖି ଭରତ ହୃଦୟଁ ଅତି ପେମୁ ।
ତାପସ ତପ ଫଲୁ ପାଇ ଜିମି ସୁଖୀ ସିରାନେଁ ନେମୁ ॥୨୩୬॥

---

ଗଣ୍ଡା, କରି, ହରି, ବ୍ୟାଘ୍ର, ଗୟଳ, ଶୂକର । ବୃଷ, ମହିଷାଦି ବନ୍ୟ ଶ୍ୱାପଦ ନିକର ॥
ବୈର ତେଜି ଏକ ସଙ୍ଗେ ବିହାର କରନ୍ତି । ଯେସନେ ଚତୁରଙ୍ଗିଣୀ ସେନାମାନ ଅଛନ୍ତି ॥୨॥
ମତ୍ତ ଗଜ ଗରଜନ୍ତି ଝରଣା ଝରଇ । ମନେ ହୁଏ ନାନାବିଧ ନିଷାଣ ବାଜଇ ॥
ଚାତକ, ଚକୋର, ଶୁକ, ଚକ୍ରବାକ ବନେ । କୂଜନ୍ତି ମଞ୍ଜୁ ମରାଳ ପିକ ମୋଦ ମନେ ॥୩॥
ମଧୁପ-ଗଣଙ୍କ ଗାନ ମୟୂର ନର୍ତ୍ତନ । ଉତ୍ସବ ହୁଏ ସର୍ବତ୍ର ସୁରାଜ୍ୟ ଯେସନ ॥
ତରୁ ଲତା ତୃଣ ସର୍ବେ ସପୁଷ୍ପ ସଫଳ । ଆନନ୍ଦ-ମଙ୍ଗଳ-ମୟ ସମାଜ ସକଳ ॥୪॥

ରାମ ଶୈଳ ଶୋଭା ଦେଖି ଭରତଙ୍କ ହୃଦୟେ ପ୍ରେମ ପରମ ।
ତପ ଫଳ ପାଇ ତାପସ ଯେସନ ସୁଖେ ସମାପେ ନିୟମ ॥୨୩୬॥

---

ଦୋହା :—ମୋହ-ରାଜାଙ୍କୁ ସେନା ସମେତ ଜୟ କରି ବିବେକ-ରାଜା ନିଷ୍କଣ୍ଟକ ରାଜ୍ୟ ଶାସନ କରୁଥାଏ । ତାହାର ନଗରରେ ସୁଖ, ସମ୍ପତ୍ତି ଓ ସୁକାଳ ବର୍ତ୍ତମାନ ॥୨୩୫॥ ଚୌପାଈ :—ବନ-ପ୍ରଦେଶମାନଙ୍କରେ ଥିବା ମୁନିବୃନ୍ଦଙ୍କ ବହୁ ବାସସ୍ଥାନ ସତେ ଅବା ବହୁ ସହର, ନଗର, ବୃହତ୍ ଓ କ୍ଷୁଦ୍ର ଗ୍ରାମମାନଙ୍କର ସମୂହ । ବହୁ ବିଚିତ୍ର ପକ୍ଷୀ ଓ ବିବିଧ ପଶୁ ସତେ ଅବା ପ୍ରଜାଙ୍କ ସମାଜ । ତାହାର ବର୍ଣ୍ଣନା ଅସମ୍ଭବ ॥ ୧ ॥ ଗଣ୍ଡାର, ହସ୍ତୀ, ସିଂହ, ବ୍ୟାଘ୍ର, ଶୂକର, ଗୟଳ ଓ ବନ୍ୟ ବୃଷମାନଙ୍କୁ ଦେଖି ରାଜାଙ୍କ ସାଜସାମଗ୍ରୀ ରୂପେ ପ୍ରଶଂସା କରିବାକୁ ହେବ । ଏମାନେ ସମସ୍ତେ ପରସ୍ପରର ଶତ୍ରୁତା ଭୁଲି ବିଭିନ୍ନ ସ୍ଥାନରେ ଏକା ସଙ୍ଗରେ ବିଚରଣ କରୁଥା'ନ୍ତି । ମନେ କର, ଏମାନେ ଚତୁରଙ୍ଗିଣୀ ସେନା ॥ ୨ ॥ ଝରଣା ସବୁ ଝରଝର ନାଦରେ ଝରୁଥା'ନ୍ତି ଏବଂ ଉନ୍ମତ୍ତ ହସ୍ତୀମାନେ ଗର୍ଜନ କରୁଥା'ନ୍ତି । ସେ ଶବ୍ଦ ସତେ ଯେପରି ନିଷାଣର ଶବ୍ଦ । ଚକ୍ରବାକ, ଚକୋର, ଚାତକ, ଶୁକ ଓ କୋକିଳ-ସମୂହ ଏବଂ ସୁନ୍ଦର ହଂସମାନେ ପ୍ରସନ୍ନ ମନରେ କଳରବ କରୁଥା'ନ୍ତି ॥ ୩ ॥ ଭ୍ରମର-ସମୂହ ଗୁଞ୍ଜନ କରୁଥାଆନ୍ତି ଏବଂ ମୟୂରମାନେ ନୃତ୍ୟ କରୁଥା'ନ୍ତି । ସତେ ଯେପରି ସେହି ଉତ୍ତମ ରାଜ୍ୟର ଚତୁର୍ଦ୍ଦିଗରେ ମଙ୍ଗଳର ପ୍ରତିଷ୍ଠା । ଲତା, ବୃକ୍ଷ, ତୃଣ; ସମସ୍ତେ ଫଳ ଓ ପୁଷ୍ପରେ ଯୁକ୍ତ । ସାରା ସମାଜ ଆନନ୍ଦ ଓ ମଙ୍ଗଳର ଆଧାର ॥ ୪ ॥ ଦୋହା :—ଶ୍ରୀରାମଙ୍କ ପର୍ବତର ଶୋଭା ଦେଖି ଭରତଙ୍କ

## ମାସପାରାୟଣ, ବିଂଶ ବିଶ୍ରାମ,

## ନବାହ୍ନପାରାୟଣ, ପଞ୍ଚମ ବିଶ୍ରାମ

ତବ କେୱଟ ଊଁଚେଁ ଚଢ଼ି ଧାଈ । କହେଉ ଭରତ ସନ ଭୁଜା ଉଠାଈ ॥
ନାଥ ଦେଖିଅହିଁ ବିଟପ ବିସାଲା । ପାକରି ଜଂବୁ ରସାଲ ତମାଲା ॥୧॥
ଜିନ୍ହ ତରୁବରନ୍ହ ମଧ୍ୟ ବଟୁ ସୋହା । ମଂଜୁ ବିସାଲ ଦେଖି ମନୁ ମୋହା ॥
ନୀଲ ସଘନ ପଲ୍ଲବ ଫଲ ଲାଲା । ଅବିରଲ ଛାଁହ ସୁଖଦ ସବ କାଲା ॥୨॥
ମାନହୁଁ ତିମିର ଅରୁନମୟ ରାସୀ । ବିରଚୀ ବିଧି ସଁକେଲି ସୁଷମାସୀ ॥
ଏ ତରୁ ସରିତ ସମୀପ ଗୋସାଁଈ । ରଘୁବର ପରନକୁଟୀ ଜହଁ ଛାଈ ॥୩॥
ତୁଲସୀ ତରୁବର ବିବିଧ ସୁହାଏ । କହୁଁ କହୁଁ ସିୟଁ କହୁଁ ଲଖନ ଲଗାଏ ॥
ବଟ ଛାୟାଁ ବେଦିକା ବନାଈ । ସିୟଁ ନିଜ ପାନି ସରୋଜ ସୁହାଈ ॥୪॥

---

ତହୁଁ ନିଷାଦେଶ ଧାଇଁ ଉଚ୍ଚେ ଚଢ଼ି ଯାଇ । କହେ ଭରତଙ୍କ ଆଗେ ସ୍ୱଭୁଜ ଉଠାଇ ॥
ନାଥ ! ଏ ଦିଶନ୍ତି ଯେଉଁ ବିଟପ ବିଶାଳ । ଡିମିରି, ଜାମ୍ବୁ ଆବର ରସାଳ ତମାଳ ॥୧॥
ସେ ତରୁବରଙ୍କ ମଧ୍ୟେ ବଟ ସୁଶୋଭିତ । ମଞ୍ଜୁ ବିଶାଳ ବିଲୋକି ମୋହ ଲଭେ ଚିତ୍ତ ॥
ସଘନ ନୀଳ ପଲ୍ଲବ ରକ୍ତ ବର୍ଣ୍ଣ ଫଳ । ସର୍ବକାଳେ ସୁଖଦାୟୀ ଛାୟା ଅବିରଳ ॥୨॥
ମନେ ହୁଏ ତମୋରାଶି ଅରୁଣମୟତା । ଏକତ୍ର ଶୋଭା ଲାବଣ୍ୟ ରଚିଛି କର୍ତ୍ତା ॥
ଏ ସବୁ ତରୁ ସରିତ ସମୀପେ ଗୋସାଇଁ । ରହନ୍ତି ରଘୁନାୟକ ପର୍ଣ୍ଣକୁଟୀ ଛାଇଁ ॥୩॥
ବିବିଧ ତୁଳସୀ ବୃକ୍ଷ ଶୋଭା ପାଏ ଅତି । କାହିଁ ସୀତା କାହିଁ ସଉମିତ୍ରି ରୋପିଛନ୍ତି ॥
ଉତ୍ତମ ସୁନ୍ଦର ବେଦୀ ବଟ ଛାୟା ତଳେ । ରଚିଛନ୍ତି ସୀତା ନିଜ ସରସିଜ-କରେ ॥୪॥

---

ହୃଦୟରେ ଅତ୍ୟନ୍ତ ପ୍ରେମ ଜାତ ହେଲା । ନିୟମର ସମାପ୍ତି ପରେ ତପସ୍ୟାର ଫଳ ପାଇ ତପସ୍ୱୀ ଏହିପରି ସୁଖ ଲାଭ କରେ ॥ ୨୩୭ ॥ ଚୌପାଈ :—ତଦନନ୍ତର କେଉଟ (ନିଷାଦରାଜ) ଦୌଡ଼ି ଉଚ୍ଚ ସ୍ଥାନକୁ ଚଢ଼ିଗଲା ଏବଂ ବାହୁ ଉଠାଇ ଭରତଙ୍କୁ କହିବାକୁ ଲାଗିଲା. "ହେ ନାଥ ! ଏ ଯେଉଁ ଡିମିରି, ଜାମ୍ବୁ, ଆମ୍ବ ଓ ତମାଲ ଆଦି ବିଶାଳ ବୃକ୍ଷ ସବୁ ଦେଖାଯାଉଛି, ସେମାନଙ୍କ ମଧ୍ୟରେ ଗୋଟାଏ ସୁନ୍ଦର ବିଶାଳ ବଟବୃକ୍ଷ ସୁଶୋଭିତ । ତାହାକୁ ଦେଖି ମନ ମୁଗ୍ଧ ହୋଇଯାଏ । ତାହାର ପତ୍ର ନୀଳ ଓ ନିଘଞ୍ଚ ଏବଂ ତହିଁରେ ଲାଲ ଲାଲ ଫଳ ଫଳିଅଛି । ତାହାର ଘନ ଛାୟା ସବୁ ଋତୁରେ ସୁଖ ଦାନ କରେ ॥ ୧-୨ ॥ ସତେ ଅବା ବ୍ରହ୍ମା ସମସ୍ତ ପରମ ଶୋଭାକୁ ଏକତ୍ର କରି ଅନ୍ଧକାର ଓ ଲାଲିମାର ଗୋଟିଏ ସ୍ତୂପ ଗଢ଼ି ଦେଇ ଅଛନ୍ତି । ଗୋସାଇଁ ! ଏ ବୃକ୍ଷମାନ ନଦୀର ସମୀପବର୍ତ୍ତୀ । ସେହିମାନଙ୍କ ମଧ୍ୟରେ ଶ୍ରୀରାମଙ୍କ ପର୍ଣ୍ଣକୁଟୀର ଅବସ୍ଥିତ ॥ ୩ ॥ ସେହି ସ୍ଥାନରେ ବିବିଧ ତୁଳସୀ ତରୁବର ସୁଶୋଭିତ । ସେ ସବୁକୁ କେଉଁଠି ସୀତା ଲଗାଇ ଅଛନ୍ତି ତ କେଉଁଠାରେ ଲକ୍ଷ୍ମଣ ମଧ୍ୟ ଲଗାଇ ଅଛନ୍ତି । ଏହି ବଟବୃକ୍ଷର

ଜହଁା ବୈଠେ ମୁନିଗନ ସହିତ ନିତ ସିୟ ରାମୁ ସୁଜାନ ।
ସୁନହିଁ କଥା ଇତିହାସ ସବ ଆଗମ ନିଗମ ପୁରାନ ॥୨୩୭॥
ସଖା ବଚନ ସୁନି ବିଟପ ନିହାରୀ । ଉମଗେ ଭରତ ବିଲୋଚନ ବାରୀ ॥
କରତ ପ୍ରନାମ ଚଲେ ଦୋଉ ଭାଈ । କହତ ପ୍ରୀତି ସାରଦ ସକୁଚାଈ ॥୧॥
ହରଷହିଁ ନିରଖି ରାମ ପଦ ଅଂକା । ମାନହୁଁ ପାରସୁ ପାୟଉ ରଂକା ॥
ରଜ ସିର ଧରି ହିୟଁ ନୟନନ୍ହି ଲାୱହିଁ । ରଘୁବର ମିଲନ ସରିସ ସୁଖ ପାୱହିଁ ॥୨॥
ଦେଖି ଭରତ ଗତି ଅକଥ ଅତୀବା । ପ୍ରେମମଗନ ମୃଗ ଖଗ ଜଡ଼ ଜୀବା ॥
ସଖହି ସନେହ ବିବସ ମଗ ଭୂଲା । କହି ସୁପନ୍ଥ ସୁର ବରଷହିଁ ଫୂଲା ॥୩॥
ନିରଖି ସିଦ୍ଧ ସାଧକ ଅନୁରାଗେ । ସହଜ ସନେହୁ ସରାହନ ଲାଗେ ॥
ହୋତ ନ ଭୂତଲ ଭାଉ ଭରତ କୋ । ଅଚର ସଚର ଚର ଅଚର କରତ କୋ ॥୪॥

---

ଯହିଁ ବସି ନିତ୍ୟ ମୁନିଙ୍କ ସହିତ ସୁଜ୍ଞ ସୀତା ରଘୁରାଣ ।
ଶୁଣନ୍ତି ସମସ୍ତ କଥା-ଇତିହାସ ନିଗମାଗମ ପୁରାଣ ॥୨୩୭॥
ଶୁଣି ସଖା ବାଣୀ ବୃକ୍ଷ ଦେଖି ଭରତଙ୍କ । ନୟନରୁ ଉଚ୍ଛୁଳିଲା ସଲିଳ ଲୋତକ ॥
କରି କରି ପ୍ରଣିପାତ ଗଲେ ଦୁଇ ଭାଇ । ଶାରଦା ସଙ୍କୋଚେ ପ୍ରୀତି କହିବା କୁ ଯାଇ ॥୧॥
ଦେଖି ରାମ ପଦ-ଚିହ୍ନ ହୁଅନ୍ତି ହରଷ । ମନେ ହୁଏ ରଙ୍କ ଅବା ପାଇଲା ପାରଶ ॥
ରଜ ଶିରେ ରଖି ହୃଦେ ନୟନେ ଘେନନ୍ତି । ରାମ-ମିଳନ ସଦୃଶ ଆନନ୍ଦ ଲଭନ୍ତି ॥୨॥
ଦେଖି ଭରତଙ୍କ ଦଶା ଅକଥ୍ୟ ଅତୀବ । ପ୍ରେମେ ମଗ୍ନ ହୋନ୍ତି ଖଗ ମୃଗ ଜଡଜୀବ ॥
ସ୍ନେହ-ବିବଶ ନିଷାଦ ଭୁଲିଗଲା ପଥ । ପୁଷ୍ପ ବରଷନ୍ତି ସୁରେ କହିଣ ସୁପଥ ॥୩॥
ନିରେଖି ସିଦ୍ଧ ସାଧକ ପ୍ରସନ୍ନ ହୁଅନ୍ତି । ସ୍ୱାଭାବିକ ଶୀଳ ସ୍ନେହ ପ୍ରଶଂସା କରନ୍ତି ॥
ଯେବେ ଭବେ ଭରତଙ୍କ ଜନ୍ମ ନ ହୁଅନ୍ତା । ଅଚରେ ଚର କେ ଚରେ ଅଚର କରନ୍ତା ॥୪॥

---

ଛାୟାରେ ସୀତା ଆପଣା କର-କମଳରେ ସୁନ୍ଦର ବେଦୀ ନିର୍ମାଣ କରିଅଛନ୍ତି ॥ ୪ ॥ ଦୋହା :—ସେହିଠାରେ ସୁଜ୍ଞାନୀ ସୀତାରାମ ମୁନିବୃନ୍ଦଙ୍କ ସହିତ ବସି ନିତ୍ୟ ଶାସ୍ତ୍ର, ବେଦ ଓ ପୁରାଣର କଥା-ଇତିହାସ ଆଦି ଶୁଣନ୍ତି" ॥ ୨୩୭ ॥ ଚୌପାଈ :—ସଖାଙ୍କ ବଚନ ଶୁଣି ଓ ବୃକ୍ଷମାନଙ୍କୁ ଦେଖି ଭରଙ୍କ ନେତ୍ରରେ ଜଳ ଭରି ଆସିଲା । ଦୁଇ ଭାଇ ପ୍ରଣାମ କରି ଚାଲିଲେ । ତାଙ୍କ ପ୍ରେମ ବର୍ଣ୍ଣନା କରିବାକୁ ସରସ୍ୱତୀ ମଧ୍ୟ ସଙ୍କୁଚିତ ହୁଅନ୍ତି ॥ ୧ ॥ ଶ୍ରୀରାମଙ୍କ ଚରଣ-ଚିହ୍ନ ଦେଖି ଭାଇ ଦୁହେଁ ଏପରି ଆନନ୍ଦିତ ହେଉଥା'ନ୍ତି, ସତେ ଅବା ଦରିଦ୍ର ପରଶମଣି ପାଇଲା କି ! ଦୁହେଁ ସେଠିକାର ଧୂଳିକୁ ମସ୍ତକ ଉପରେ ରଖୁଥା'ନ୍ତି ଏବଂ ହୃଦୟ ତଥା ନେତ୍ରରେ ଲଗାଉଥା'ନ୍ତି । ଏହିପରି କରି ଶ୍ରୀରାମଙ୍କ ସହ ମିଳନ ତୁଲ୍ୟ ସୁଖ ଲାଭ କରୁଥା'ନ୍ତି ॥୨॥ ଭରତଙ୍କ ଅନିର୍ବଚନୀୟ ଦଶା ଦେଖି ବନର ପଶୁ, ପକ୍ଷୀ, ଜଡ (ବୃକ୍ଷାଦି) ଓ ଜୀବ ପ୍ରେମରେ ମଗ୍ନ ହୋଇଗଲେ । ଅତ୍ୟଧିକ ପ୍ରେମରେ ବଶୀଭୂତ ହେବା ହେତୁ ସଖା ନିଷାଦରାଜ ମଧ୍ୟ ପଥ ଭୁଲିଗଲା । ସେତେବେଳେ ଦେବତାମାନେ

ପେମ ଅମିଅ ମଂଦରୁ ବିରହୁ ଭରତୁ ପୟୋଧି ଗଁଭୀର ।
ମଥି ପ୍ରଗଟେଉ ସୁର ସାଧୁ ହିତ କୃପାସିଂଧ ରଘୁବୀର ॥୨୩୮॥
ସଖା ସମେତ ମନୋହର ଜୋଟା । ଲଖେଉ ନ ଲଖନ ସଘନ ବନ ଓଟା ॥
ଭରତ ଦୀଖ ପ୍ରଭୁ ଆଶ୍ରମୁ ପାୱନ । ସକଲ ସୁମଂଗଲ ସଦନୁ ସୁହାୱନ ॥୧॥
କରତ ପ୍ରବେସ ମିଟେ ଦୁଖ ଦାୱା । ଜନୁ ଜୋଗାଁ ପରମାରଥୁ ପାୱା ॥
ଦେଖେ ଭରତ ଲଖନ ପ୍ରଭୁ ଆଗେ । ପୂଁଛେ ବଚନ କହତ ଅନୁରାଗେ ॥୨॥
ସୀସ ଜଟା କଟି ମୁନି ପଟ ବାଁଧେଁ । ତୂନ କସେଁ କର ସରୁ ଧନୁ କାଁଧେଁ ॥
ବେଦୀ ପର ମୁନି ସାଧୁ ସମାଜୂ । ସୀୟ ସହିତ ରାଜତ ରଘୁରାଜୂ ॥୩॥

---

ପ୍ରେମ ସୁଧା ବର ବିରହ ମନ୍ଦର ଭରତ ସିନ୍ଧୁ ଗମ୍ଭୀର ।
ମନ୍ଥି ପ୍ରକଟିଲେ ସୁର ସନ୍ଥହିତେ କୃପାସିନ୍ଧୁ ରଘୁବୀର ॥୨୩୮॥
ଲକ୍ଷ୍ମଣ ସଖା ସମେତ ସୁନ୍ଦର ଯୁଗଳେ । ଲକ୍ଷ୍ୟ କରି ନ ପାରିଲେ ଲତା ଉହାଡରେ ॥
ଭରତ ଦେଖିଲେ ପ୍ରଭୁ ଆଶ୍ରମ ପାବନ । ସମସ୍ତ ମଙ୍ଗଳ ଧାମ ପରମ ଶୋଭନ ॥୧॥
କରନ୍ତେ ପ୍ରବେଶ ଦୁଃଖ ଦାହ ତୁଟିଗଲା । ମନେ ହୁଏ ପରମାର୍ଥ ଯୋଗୀ ଲଭି କଲା ॥
ଦେଖିଲେ ଭରତ ଲକ୍ଷ୍ମଣଙ୍କୁ ପ୍ରଭୁ ଆଗେ । ପଚାରନ୍ତେ କହୁଛନ୍ତି ବାଣୀ ଅନୁରାଗେ ॥୨॥
ଶିରେ ଜଟା ପରିଚ୍ଛଦ ଅଟେ ମୁନି ଚୀର । କଟିରେ ତୂଣୀର, କାନ୍ଧେ ଧନୁ, କରେ ତୀର ॥
ବେଦୀରେ ସାଧୁ ଆବର ମୁନିଙ୍କ ସମାଜ । ଜାନକୀ ସହ ରାଜନ୍ତି ପ୍ରଭୁ ରଘୁରାଜ ॥୩॥

---

ସୁନ୍ଦର ରାସ୍ତା ବତାଇ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ ॥ ୩ ॥ ଭରତଙ୍କ ପ୍ରେମର ଏହି ଦଶା ଦେଖି ସିଦ୍ଧ ଓ ସାଧକମାନେ ମଧ୍ୟ ଅନୁରାଗରେ ପରିପୂର୍ଣ୍ଣ ହୋଇଗଲେ ଏବଂ ତାଙ୍କର ସ୍ୱାଭାବିକ ପ୍ରେମର ପ୍ରଶଂସା କରିବାକୁ ଲାଗିଲେ । ସେମାନେ କହିଲେ, "ଯଦି ଏ ଧରାତଳରେ ଭରତଙ୍କ ଜନ୍ମ ହୋଇ ନ ଥା'ନ୍ତା ଏବଂ ତାଙ୍କ ପ୍ରେମର ପ୍ରକାଶ ହୋଇ ନ ଥା'ନ୍ତା, ତେବେ ଜଡକୁ ଚେତନ ଓ ଚେତନକୁ ଜଡ କିଏ କରନ୍ତା ? ॥ ୪ ॥ ଦୋହା '—ପ୍ରେମ ଅମୃତ, ବିରହ ମନ୍ଦରାଚଳ ଏବଂ ଭରତ ଗଭୀର ସମୁଦ୍ର । କୃପାସାଗର ଶ୍ରୀରାମଚନ୍ଦ୍ର, ଦେବତା ଓ ସାଧୁମାନଙ୍କ ହିତ ନିମନ୍ତେ ଭରତ ରୂପକ ଗମ୍ଭୀର ସମୁଦ୍ରକୁ ଆପଣାର ବିରହରୂପୀ ମନ୍ଦରାଚଳ ଯୋଗେ ମନ୍ଥନ କରି ଏହି ପ୍ରେମାମୃତକୁ ପ୍ରକାଶ କରିଅଛନ୍ତି ।" ॥୨୩୮॥ ଚୌପାଈ :— ଘଞ୍ଚ ଜଙ୍ଗଲର ଅନ୍ତରାଳରେ ଲକ୍ଷ୍ମଣ ସଖା (ନିଷାଦରାଜ) ସମେତ ଭରତଙ୍କ ଏହି ମନୋହର ଯୁଗଳ ମୂର୍ତ୍ତିକୁ ଦେଖି ପାରିଲେ ନାହିଁ । ଭରତ ପ୍ରଭୁ ଶ୍ରୀ ରାମଚନ୍ଦ୍ରଙ୍କ ସୁମଙ୍ଗଳ ଧାମ ଓ ପବିତ୍ର ଆଶ୍ରମକୁ ଦେଖିଲେ ॥ ୧ ॥ ଆଶ୍ରମରେ ପ୍ରବେଶ କରିବା ମାତ୍ରେ ଭରତଙ୍କ ଦୁଃଖ ଓ ଦାହ ମେଣ୍ଟିଗଲା । ସତେ ଅବା ଯୋଗୀକୁ ପରମାର୍ଥ ମିଳିଗଲା ! ଭରତ ଦେଖିଲେ, ଲକ୍ଷ୍ମଣ ପ୍ରଭୁଙ୍କ ଆଗରେ ଛିଡା ହୋଇଅଛନ୍ତି ଏବଂ ପ୍ରଭୁଙ୍କ ପ୍ରଶ୍ନର ପ୍ରେମପୂର୍ଣ୍ଣ ଭାବରେ ଉତ୍ତର ଦେଉଅଛନ୍ତି ॥ ୨ ॥ ଶିର ଉପରେ ଜଟା,

ବଲକଲ ବସନ ଜଟିଲ ତନୁ ସ୍ୟାମା । ଜନୁ ମୁନିବେଷ କୀହ୍ନ ରତି କାମା ॥
କର କମଲନି ଧନୁ ସାୟକୁ ଫେରତ । ଜିୟ କୀ ଜରନି ହରତ ହଁସି ହେରତ ॥୩॥

ଲସତ ମଂଜୁ ମୁନି ମଂଡଲୀ ମଧ୍ୟ ସୀୟ ରଘୁଚଂଦୁ ।
ଜ୍ଞାନ ସଭାଁ ଜନୁ ତନୁ ଧରେଁ ଭଗତି ସଚ୍ଚିଦାନଂଦୁ ॥୨୩୯॥

ସାନୁଜ ସଖା ସମେତ ମଗନ ମନ । ବିସରେ ହରଷ ସୋକ ସୁଖ ଦୁଖ ଗନ ॥
ପାହି ନାଥ କହି ପାହି ଗୋସାଇଁ । ଭୂତଲ ପରେ ଲକୁଟ କୀ ନାଇଁ ॥୧॥
ବଚନ ସପେମ ଲଖନ ପହିଚାନେ । କରତ ପ୍ରନାମୁ ଭରତ ଜିୟଁ ଜାନେ ॥
ବଂଧୁ ସନେହ ସରସ ଏହି ଓରା । ଉତ ସାହିବ ସେବା ବସ ଜୋରା ॥୨॥

---

ବଲ୍‌କଲ ବସ୍ତ୍ର ଜଟିଲ କଳେବର ଶ୍ୟାମ । ମୁନିବେଶ ରଚିଛନ୍ତି ଯେସନ୍ତେ ରତି କାମ ॥
କର-କମଳରେ ଚାପ ଶର ପରଖନ୍ତି । ହସି ନିରେଖନ୍ତେ ହୃଦ ଜ୍ୱାଳାକୁ ହରନ୍ତି ॥୪॥

ବିଲସନ୍ତି ମଞ୍ଜୁ ମୁନି-ମଣ୍ଡଳୀରେ ସୀତା ସହ ରାମଚନ୍ଦ୍ର ।
ଜ୍ଞାନ ସଭା ମଧ୍ୟେ ଯେସନ୍ତେ ଭକ୍ତି ସଙ୍ଗେ ସଦେହ ସଚ୍ଚିଦାନନ୍ଦ ॥୨୩୯॥

ଅନୁଜ ସଖାଙ୍କ ସମେତ ପ୍ରେମ-ମଗ୍ନ ମନ । ପାଶୋରିଲେ ହର୍ଷ ଶୋକ ସୁଖ ଦୁଃଖ ଗଣ ॥
ହାହି ନାଥ ! କହି ହାହି ହାହି ରଘୁରାୟ । ପଡ଼ିଲେ ଅବନୀ ପୃଷ୍ଠେ ନଇଁଙ୍କ ପରାୟ ॥୧॥
ସପ୍ରେମ ବଚନ ମୃଦୁ ଲକ୍ଷ୍ମଣ ବାରିଲେ । ଭରତ ପ୍ରଣମୁଛନ୍ତି, ହୃଦୟେ ଜାଣିଲେ ॥
ଭ୍ରାତୃତ୍ୱ ସ୍ନେହ ସୁନ୍ଦର ଆକର୍ଷଇ ଏଣେ । ଟାଣଇ ବଳପୂର୍ବକ ସ୍ୱାମୀ ସେବା ତେଣେ ॥୨॥

---

କଟିରେ ମୁନିଯୋଗ୍ୟ ବଲ୍‌କଲ ବସ୍ତ୍ର ଏବଂ ତହିଁରେ ତୂଣୀର (ଶରମୁଣା) ଦୃଢ଼ଭାବରେ ବନ୍ଧା । ହାତରେ ବାଣ ଓ କାନ୍ଧ ଉପରେ ଧନୁ, ବେଦି ଉପରେ ମୁନି ଓ ସାଧୁ-ସମ୍ପ୍ରଦାୟ ଆସୀନ ଏବଂ ସୀତା ସହିତ ଶ୍ରୀ ରଘୁନାଥ ବିରାଜମାନ ॥ ୩ ॥ ଶ୍ରୀରାମ ବଲ୍‌କଲ-ବସ୍ତ୍ର ପରିଧାନ ଓ ଜଟା ଧାରଣ କରିଅଛନ୍ତି, ତାଙ୍କ ଶରୀର ଶ୍ୟାମଳ । ସତେ ଅବା ରତି ଓ କାମଦେବ ମୁନିବେଶ ଧାରଣ କରି ଅଛନ୍ତି ! ଶ୍ରୀରାମଚନ୍ଦ୍ର ଆପଣା କର-କମଳରେ ଧନୁଶର ପରୀକ୍ଷା କରୁଥା'ନ୍ତି ଏବଂ ହସି ଚାହିଁଦେବା ମାତ୍ରେ ହୃଦୟର ଦାହ ହରଣ କରି ନେଉଥା'ନ୍ତି ॥ ୪ ॥ ଦୋହା :—ସୁନ୍ଦର ମୁନିମଣ୍ଡଳୀ ମଧ୍ୟରେ ସୀତା ଓ ରଘୁକୁଳଚନ୍ଦ୍ର ଶ୍ରୀରାମଚନ୍ଦ୍ର ଏପରି ସୁଶୋଭିତ ହେଉଥା'ନ୍ତି, ସତେ ଅବା ଜ୍ଞାନସଭାରେ ସାକ୍ଷାତ ଭକ୍ତି ଓ ସଚ୍ଚିଦାନନ୍ଦ ଶରୀର-ଧାରଣ-ପୂର୍ବକ ବିରାଜମାନ ହୋଇ ଅଛନ୍ତି ' ॥ ୨୩୯ ॥ ଚୌପାଇ —ସାନଭାଇ ଶତ୍ରୁଘ୍ନ ଓ ସଖା ନିଷାଦରାଜ ସମେତ ଭରତଙ୍କ ମନ ପ୍ରେମରେ ନିମଗ୍ନ ହୋଇଗଲା । ହର୍ଷ, ଶୋକ, ସୁଖ, ଦୁଃଖ ଆଦି ସବୁ ସେ ଭୁଲିଗଲେ । "ହେ ନାଥ ' ରକ୍ଷା କରନ୍ତୁ, ହେ ଗୋସାଇଁ ! ରକ୍ଷା କରନ୍ତୁ," ଏହିପରି କହି ସେ ଭୂମି ଉପରେ ଦଣ୍ଡ ପରି ପଡ଼ିଗଲେ ॥ ୧ ॥ ପ୍ରେମପୂର୍ଣ୍ଣ ବଚନରୁ ଲକ୍ଷ୍ମଣ ଚିହ୍ନି ପକାଇଲେ ଏବଂ ମନେ ମନେ ଜାଣିନେଲେ ଯେ, ଭରତ ପ୍ରଣାମ କରୁଅଛନ୍ତି । [ ଶ୍ରୀରାମଙ୍କ ସମ୍ମୁଖରେ ଛିଡ଼ା ହୋଇ ସେ ତାଙ୍କ ସେବାରେ ରତ ଥିବାରୁ ପଛରେ

ମିଲି ନ ଜାଇ ନହିଁ ଗୁଦରତ ବନଈ । ସୁକବି ଲଖନ ମନ କୀ ଗତି ଭନଈ ॥
ରହେ ରାଖି ସେବା ପର ଭାରୂ । ଚଢ଼ୀ ଚଙ୍ଗ ଜନୁ ଖେଁଚ ଖେଲାରୂ ॥୩॥
କହତ ସପ୍ରେମ ନାଇ ମହି ମାଥା । ଭରତ ପ୍ରନାମ କରତ ରଘୁନାଥା ॥
ଉଠେ ରାମୁ ସୁନି ପେମ ଅଧୀରା । କହୁଁ ପଟ କହୁଁ ନିଷଙ୍ଗ ଧନୁ ତୀରା ॥୪॥

ବରବସ ଲିଏ ଉଠାଇ ଉର ଲାଏ କୃପାନିଧାନ ।
ଭରତ ରାମ କୀ ମିଲନି ଲଖି ବିସରେ ସବହି ଅପାନ ॥୨୪୦॥

ମିଲନି ପ୍ରୀତି କିମି ଜାଇ ବଖାନୀ । କବିକୁଲ ଅଗମ କରମ ମନ ବାନୀ ॥
ପରମ ପେମ ପୂରନ ଦୋଉ ଭାଈ । ମନ ବୁଧି ଚିତ ଅହମିତି ବିସରାଈ ॥୧॥
କହହୁ ସୁପେମ ପ୍ରଗଟ କୋ କରଈ । କେହି ଛାୟାଁ କବିମତି ଅନୁସରଈ ॥
କବିହି ଅରଥ ଆଖର ବଲୁ ସାଁଚା । ଅନୁହରି ତାଲ ଗତିହି ନଟୁ ନାଚା ॥୨॥

---

ଭେଟି ନ ହୁଅଇ କିମ୍ବା ଛାଡି ନ ହୁଅଇ । ଲକ୍ଷ୍ମଣଙ୍କ ମନ ଗତି ସୁକବି ଭଣଇ ॥
ରହିଲେ ସେବା ଉପରେ ଭାର କରି ନ୍ୟସ୍ତ । ଉଡ଼ୁଥିବା ପତଙ୍ଗେ ଟାଣେ ଖେଳାଳି ଯେମନ୍ତ ॥୩॥
ବିନତ ମସ୍ତକ ହୋଇ ସପ୍ରେମେ କହନ୍ତି । ଭରତ ରଘୁନାଥକ, ପ୍ରଣାମ କରନ୍ତି ॥
ଶୁଣି ଉଠି ରାମ ପ୍ରେମ ହୋଇଣ ଅଧୀର । କାହିଁ ବସନ, ତୂଣୀର, କାହିଁ ଧନୁ ତୀର ॥୪॥

ବଳ ସହକାରେ ଉଠାଇ ହୃଦରେ କୃପାନିଧି ଆଲିଙ୍ଗିଲେ ।
ଦେଖି ସର୍ବେ ରାମ-ଭରତ ମିଳନ ନିଜ ଦଶା ପାଶୋରିଲେ ॥୨୪୦॥

ମିଳନ ପ୍ରୀତି କେମନ୍ତେ ହୋଇବ ବଖାଣି । କବିକୁଳ ଅଗମ୍ୟ ଯେ ମନ କର୍ମ ବାଣୀ ॥
ପରମ ପ୍ରେମରେ ପୂର୍ଣ୍ଣ ହେଲେ ବେନିଭାଇ । ମନ ବୁଦ୍ଧି ଚିତ୍ତ ଅହଙ୍କାର ଭୁଲି ଯାଇ ॥୧॥
କହ ସେ ପ୍ରେମ ପ୍ରକଟ କିଏ କରିପାରେ । କବି ମତି ଅନୁଗାମୀ ହେବ କା ଆଧାରେ ॥
କବିର ଅର୍ଥ ଅକ୍ଷର ସତ୍ୟ ବଳ ଅଟେ । ତାଳ ଗତି ଅନୁସରି ନାଚନ୍ତି ତ ନଟେ ॥୨॥

---

ଛିଡା ହୋଇ ପ୍ରଣାମ କରୁଥିବା ଭରତଙ୍କୁ ଦେଖି ପା'ରିଲେ ନାହିଁ ।] ଏବେ ଏକ ଦିଗରେ ଭାଇ ଭରତଙ୍କ ପ୍ରତି ସରସ ପ୍ରେମ ଉଚ୍ଛୁଳି ପଡୁଛି ଏବଂ ଅନ୍ୟ ଦିଗରେ ସ୍ୱାମୀ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ପ୍ରବଳ ସେବା ॥୨॥ କ୍ଷଣମାତ୍ରକ କେମନ୍ତେ ରାମ-ସେବାରୁ ନିଜକୁ ପୃଥକ୍ କରି ସେ ଭରତଙ୍କ ସହ ମିଳନ କରିପାରୁ ନ ଥା'ନ୍ତି କିମ୍ବା ତାହାଙ୍କୁ ଉପେକ୍ଷା ମଧ୍ୟ କରିପାରୁ ନଥା'ନ୍ତି । କୌଣସି ଉତ୍ତମ କବି ଲକ୍ଷ୍ମଣଙ୍କ ଚିତ୍ତର ଏହି ଦ୍ୱିଧା ବର୍ଣ୍ଣନା କରିପାରିବ । ଶେଷରେ ସେ ସେବା ଅଧିକ ମହତ୍ତ୍ୱପୂର୍ଣ୍ଣ ବୋଲି ସ୍ଥିର କରି ତହିଁରେ ରତ ରହିଲେ । ସତେ ଅବା ଉପରକୁ ଉଠିଥିବା ଗୁଡିକୁ ଖେଳାଳି ଟାଣୁଅଛି ! ॥୩॥ ଲକ୍ଷ୍ମଣ ପ୍ରେମରେ ଭୂମି ଉପରେ ମସ୍ତକ ନୁଆଁଇ କହିଲେ, "ହେ ରଘୁନାଥ ! ଭରତ ପ୍ରଣାମ କରୁଅଛନ୍ତି ।" ଏହା ଶୁଣିବା ମାତ୍ରେ ଶ୍ରୀ ରଘୁନାଥ ପ୍ରେମରେ ଅଧୀର ହୋଇ ଉଠିଲେ । କେଉଁଠି ବସ୍ତ୍ର ଖସି ପଡିଲା ତ କେଉଁଠି ତୂଣୀର; କେଉଁଠି ଧନୁ ତ କେଉଁଠି ବାଣ ॥୪॥ ଦୋହା :—କୃପାନିଧାନ ଶ୍ରୀରାମଚନ୍ଦ୍ର ତାହାଙ୍କୁ ଜବରଦସ୍ତି ଉଠାଇ ଆଲିଙ୍ଗନ କରି ପକାଇଲେ । ଭରତ ଓ ଶ୍ରୀରାମଙ୍କ

ଅଗମ ସନେହ ଭରତ ରଘୁବର କୋ । ଜହଁ ନ ଜାଇ ମନୁ ବିଧି ହରି ହର କୋ ॥
ସୋ ମୈଁ କୁମତି କହୌଁ କେହି ଭାଁତି । ବାଜ ସୁରାଗ କି ଗାଁଡର ତାଁତି ॥୩॥
ମିଲନି ବିଲୋକି ଭରତ ରଘୁବର କୀ । ସୁରଗନ ସଭୟ ଧକଧକୀ ଧରକୀ ॥
ସମୁଝାଏ ସୁରଗୁରୁ ଜଡ଼ ଜାଗେ । ବରଷି ପ୍ରସୂନ ପ୍ରସଂସନ ଲାଗେ ॥୪॥

ମିଲି ସପ୍ରେମ ରିପୁସୂଦନହି କେୱଟୁ ଭେଁଟେଉ ରାମ ।
ଭୂରି ଭାୟଁ ଭେଁଟେ ଭରତ ଲଛିମନ କରତ ପ୍ରନାମ ॥୨୪୧॥

ଭେଁଟେଉ ଲଖନ ଲଲକି ଲଘୁ ଭାଈ । ବହୁରି ନିଷାଦୁ ଲୀହ୍ନ ଉର ଲାଈ ॥
ପୁନି ମୁନିଗନ ଦୁହୁଁ ଭାଇନ୍ହ ବଂଦେ । ଅଭିମତ ଆସିଷ ପାଇ ଅନଂଦେ ॥୧॥

---

ଅଗମ୍ୟ ସ୍ନେହ ଭରତ ରାମଙ୍କ ଅଟଇ । ବିଧି ହରି ହର ମନ ଯାଇ ନ ପାରଇ ॥
ତାହା ମୋ କୁମତି କେଉଁ ପ୍ରକାରେ ବର୍ଣ୍ଣିବ । ବେଣାଚେର ସୂତେ କାହିଁ ସୁରାଗ ବାଜିବ ॥୩॥
ମିଳନ ଦେଖି ଭରତ ରଘୁନନ୍ଦନଙ୍କ । ଧୁକୁଧୁକୁ ଧଡ଼କଇ ସଭୟେ ସୁରଙ୍କ ॥
ବୁଝାନ୍ତେ ବିବୁଧ ଗୁରୁ ଆଶ୍ୱସ୍ତ ହୋଇଲେ । ସୁମନ ବରଷି ପୁଣି ପ୍ରଶଂସା କରିଲେ ॥୪॥

ମିଳି ସାନୁରାଗେ ଶତ୍ରୁଘ୍ନଙ୍କ ସଙ୍ଗେ ନିଷାଦେ ଭେଟିଲେ ରାମ ।
ଅତିଶୟ ସ୍ନେହେ ଭେଟିଲେ ଭରତ ଲକ୍ଷ୍ମଣେ କରୁଂ ପ୍ରଣାମ ॥୨୪୧॥

ଭେଟିଲେ ଲକ୍ଷ୍ମଣ ଅତି ପ୍ରେମେ ଅନୁଜଙ୍କୁ । ପୁଣି ହୃଦେ ଆଲିଙ୍ଗନ କଲେ ନିଷାଦଙ୍କୁ ॥
ତହୁଁ ଦୁଇ ଭାଇ ମୁନି-ବୃନ୍ଦଙ୍କୁ ବନ୍ଦିଲେ । ଇଚ୍ଛିତ ଆଶିଷ ପାଇ ଆନନ୍ଦ ଲଭିଲେ ॥୧॥

---

ମିଳନ-ରୀତି ଦେଖି ସମସ୍ତେ ନିଜ ନିଜର ଅସ୍ତିତ୍ୱ ଭୁଲିଗଲେ ॥ ୨୪୦ ॥ ଚୌପାଈ :— ମିଳନର ପ୍ରୀତି କିପରି ବା ବର୍ଣ୍ଣନା କରିବା ? ତାହା ତ କବିକୁଳ ନିମନ୍ତେ କର୍ମ, ମନ ଓ ବାଣୀ, ତିନିର ଅଗୋଚର । ଭରତ ଓ ଶ୍ରୀରାମ ଭାଇ ଦୁହେଁ ମନ, ବୁଦ୍ଧି, ଚିତ୍ତ ଓ ଅହଂକାର ଭୁଲି ପରମ ପ୍ରେମରେ ପରିପୂର୍ଣ୍ଣ ହେଉଅଛନ୍ତି ॥ ୧ ॥ କୁହନ୍ତୁ, ସେ ଉତ୍ତମ ପ୍ରେମକୁ କିଏ ପ୍ରକାଶ କରି ପାରିବ ? କବିର ବୁଦ୍ଧି କାହା ଛାୟାକୁ ଅନୁସରଣ କରିବ ? କବି ପକ୍ଷରେ ତ ଅକ୍ଷର ଓ ଅର୍ଥ ପ୍ରକୃତରେ ବଳ । ନଟ ତାଳର ଗତି ଅନୁସାରେ ହିଁ ନାଚେ ॥ ୨ ॥ ଭରତ ଓ ଶ୍ରୀ ରଘୁନାଥଙ୍କ ପ୍ରେମ ଅଗମ୍ୟ । ବ୍ରହ୍ମା, ବିଷ୍ଣୁ ଓ ମହାଦେବଙ୍କ ମନ ମଧ୍ୟ ତହିଁରେ ପ୍ରବେଶ କରି ପାରିବ ନାହିଁ । ସେହି ପ୍ରେମକୁ ମୁଁ କୁବୁଦ୍ଧି କିପରି କହିବି ? ଭଲା ବେଣାଚେରର ସୂତାରୁ କେଉଁଠି କେବେ ସୁନ୍ଦର ରାଗିଣୀ ଆଳାପିତ ହୋଇ-ପାରେ ? ॥ ୩ ॥ ଭରତ ଓ ଶ୍ରୀରାମଙ୍କ ମିଳନ-ଭଙ୍ଗୀ ଦେଖି ଦେବତାମାନେ ଭୟଭୀତ ହୋଇ ପଡ଼ିଲେ । ସେମାନଙ୍କର ହୃତ୍‌ପିଣ୍ଡ ଧକ୍ ଧକ୍ ହେବାକୁ ଲାଗିଲା । ଦେବଗୁରୁ ବୃହସ୍ପତି ବହୁତ ବୁଝାଇଲେ । ତେବେ ଯାଇ ସେହି ମୂର୍ଖମାନେ ଚେତିଲେ ଏବଂ ପୁଷ୍ପବୃଷ୍ଟି କରି ପ୍ରଶଂସା କରିବାକୁ ଲାଗିଲେ ॥ ୪ ॥ ଦୋହା :—ତତ୍ପରେ ଶ୍ରୀରାମ ପ୍ରେମ ସହକାରେ ଶତ୍ରୁଘ୍ନଙ୍କ ସହ ମିଳନ କଲେ ଏବଂ ପୁଣି ନିଷାଦରାଜ ସହିତ ମିଳିଲେ । ଲକ୍ଷ୍ମଣ ପ୍ରଣାମ କରୁଥିବା ଅବସ୍ଥାରେ ତାଙ୍କ ସହିତ ଭରତ ଅତିଶୟ ପ୍ରେମରେ

ସାନୁଜ ଭରତ ଉମଗି ଅନୁରାଗା । ଧରି ସିର ସିୟ ପଦ ପଦୁମ ପରାଗା ॥
ପୁନି ପୁନି କରତ ପ୍ରନାମ ଉଠାଏ । ସିର କର କମଲ ପରସି ବୈଠାଏ ॥୨॥
ସୀୟଁ ଅସୀସ ଦୀହ୍ନି ମନ ମାହୀଁ । ମଗନ ସନେହଁ ଦେହ ସୁଧି ନାହୀଁ ॥
ସବ ବିଧି ସାନୁକୂଲ ଲଖି ସୀତା । ଭେ ନିସୋଚ ଉର ଅପଡର ବୀତା ॥୩॥
କୋଉ କଛୁ କହଇ ନ କୋଉ କଛୁ ପୂଁଛା । ପ୍ରେମ ଭରା ମନ ନିଜ ଗତି ଛୂଁଛା ॥
ତେହି ଅବସର କେୱଟୁ ଧୀରଜୁ ଧରି । ଜୋରି ପାନି ବିନୱତ ପ୍ରନାମୁ କରି ॥୪॥

ନାଥ ସାଥ ମୁନିନାଥ କେ ମାତୁ ସକଲ ପୁର ଲୋଗ ।
ସେବକ ସେନପ ସଚିବ ସବ ଆଏ ବିକଲ ବିୟୋଗ ॥୨୪୨॥

ସୀଲସିଂଧୁ ସୁନି ଗୁର ଆଗୱନୂ । ସିୟ ସମୀପ ରାଖେ ରିପୁଦୱନୂ ॥
ଚଲେ ସବେଗ ରାମୁ ତେହି କାଲା । ଧୀର ଧରମଧୁର ଦୀନଦୟାଲା ॥୧॥

---

ସାନୁଜ ଭରତ ଅନୁରାଗେ ଉଚ୍ଛୁଳିଣ । ସୀତା-ପଦାମ୍ବୁଜ ରଜ ମସ୍ତକେ ଘେନିଣ ॥
ପୁଣି ପୁଣି ପ୍ରଣିପାତ କରନ୍ତେ ଉଠାଇ । କର-କଞ୍ଜ ଶିରେ ସ୍ପର୍ଶ କରିଣ ବସାଇ ॥୨॥
ମନ ମଧ୍ୟେ ଶୁଭାଶିଷ ସୀତା ପ୍ରଦାନିଲେ । ସ୍ନେହ-ମଗ୍ନ ହୋଇ ଦେହ ଦଶା ପାଶୋରିଲେ ॥
ସମସ୍ତ ପ୍ରକାରେ ଦେଖି ସାନୁକୂଳ ସୀତା । ନଷ୍ଟ ହେଲା ନିଜ ଭୟ ଦୂର ହେଲା ଚିନ୍ତା ॥୩॥
କେହି ନ କହନ୍ତି କିଛି କେହି ନ ପୁଚ୍ଛନ୍ତି । ପ୍ରେମ-ପୂର୍ଣ୍ଣ ମନ ସର୍ବେ ଶୂନ୍ୟ ନିଜ ଗତି ॥
ଧୀବର ସେହି ସମୟେ ହୃଦେ ଧୈର୍ଯ୍ୟ ଧରି । କର ଯୋଡି ଜଣାଇଲା ନମସ୍କାର କରି ॥୪॥

ନାଥ ! ମୁନିନାଥ-ସଙ୍ଗେ ସବୁ ମାତ ନଗର ଲୋକ ସକଳେ ।
ମନ୍ତ୍ରୀ ସେନାପତି ଭୃତ୍ୟ ଆସିଛନ୍ତି ବିୟୋଗ-ଶୋକ ବିକଳେ ॥୨୪୨॥

ଶୁଣନ୍ତେ ଶୀଳସାଗର ଗୁରୁ ଆଗମନ । ସୀତାଙ୍କ ସମୀପେ ରଖି ବଇରି-ଦମନ ॥
ଗମନ କଲେ ସେକ୍ଷଣି ରାମ ଖରତର । ଦୀନ ଦୟାମୟ ଧୀର ଧର୍ମ-ଧୁରନ୍ଧର ॥୧॥

---

ମିଳିଲେ ॥ ୨୪୧ ॥ ଚୌପାଈ :—ତତ୍ପରେ ଲକ୍ଷ୍ମଣ ଅତି ଉଲ୍ଲାସରେ ସାନ ଭାଇ ଶତ୍ରୁଘ୍ନଙ୍କୁ ଭେଟିଲେ । ପୁଣି ସେ ନିଷାଦରାଜଙ୍କୁ ଆଲିଙ୍ଗନ କଲେ । ତଦନନ୍ତର ଭରତ ଶତ୍ରୁଘ୍ନ ଦୁଇ ଭାଇ ଉପସ୍ଥିତ ମୁନିମାନଙ୍କୁ ପ୍ରଣାମ କଲେ ଏବଂ ଅଭିଳଷିତ ଆଶୀର୍ବାଦ ପାଇ ସେମାନେ ଆନନ୍ଦିତ ହେଲେ ॥ ୧ ॥ ସାନ ଭାଇ ଶତ୍ରୁଘ୍ନଙ୍କ ସମେତ ଭରତ ପ୍ରେମରେ ଉଚ୍ଛ୍ୱସିତ ହୋଇ ସୀତାଙ୍କ ଚରଣ-କମଳର ରଜ ଶିରରେ ଧାରଣ କରି ବାରମ୍ବାର ପ୍ରଣାମ କରିବାକୁ ଲାଗିଲେ । ସୀତା ସେମାନଙ୍କୁ ଉଠାଇଲେ ଏବଂ ଆପଣା କର-କମଳରେ ଦୁହିଁଙ୍କ ଶିର ସ୍ପର୍ଶ କରି ଦୁହିଁଙ୍କୁ ବସାଇଲେ ॥ ୨ ॥ ସୀତା ମନେ ମନେ ଆଶୀର୍ବାଦ ଦେଲେ । ସ୍ନେହମଗ୍ନ ହୋଇଥିବାରୁ ତାଙ୍କୁ ଦେହର ଅସ୍ତିତ୍ୱ ବୋଧ ହେଲା ନାହିଁ । ସୀତାଙ୍କୁ ସବୁ ପ୍ରକାରେ ଆପଣାର ଅନୁକୂଳ ଦେଖି ଭରତ ଚିନ୍ତାମୁକ୍ତ ହୋଇଗଲେ ଏବଂ ତାଙ୍କ ହୃଦୟରୁ କଳ୍ପିତ ଭୟ ଅପସରି ଗଲା ॥ ୩ ॥ ସେହି ସମୟରେ କେହି କିଛି କହୁ ନ ଥାଏ କି କେହି କିଛି ପଚାରୁ ନ ଥାଏ । ମନ ପ୍ରେମ-ପରିପୂର୍ଣ୍ଣ ଓ

ଗୁରହି ଦେଖି ସାନୁଜ ଅନୁରାଗେ । ଦଣ୍ଡ ପ୍ରନାମ କରନ ପ୍ରଭୁ ଲାଗେ ॥
ମୁନିବର ଧାଇ ଲିଏ ଉର ଲାଈ । ପ୍ରେମ ଉମଗି ଭେଁଟେ ଦୋଉ ଭାଈ ॥୨॥
ପ୍ରେମ ପୁଲକି କେଵଟ କହି ନାମୂ । କୀହ୍ନ ଦୂରି ତେଁ ଦଣ୍ଡ ପ୍ରନାମୂ ॥
ରାମସଖା ଋଷି ବରବସ ଭେଁଟା । ଜନୁ ମହି ଲୁଠତ ସନେହ ସମେଟା ॥୩॥
ରଘୁପତି ଭଗତି ସୁମଂଗଲ ମୂଲା । ନଭ ସରାହି ସୁର ବରିସହିଁ ଫୂଲା ॥
ଏହି ସମ ନିପଟ ନୀଚ କୋଉ ନାହୀଁ । ବଡ ବସିଷ୍ଠ ସମ କୋ ଜଗ ମାହୀଁ ॥୪॥

ଜେହି ଲଖି ଲଖନହୁ ତେଁ ଅଧିକ ମିଲେ ମୁଦିତ ମୁନିରାଉ ।
ସୋ ସୀତାପତି ଭଜନ କୋ ପ୍ରଗଟ ପ୍ରତାପ ପ୍ରଭାଉ ॥୨୪୩॥

---

ଗୁରୁଙ୍କୁ ଦେଖି ସାନୁଜ ଅନୁରାଗେ ଅତି । ଦଣ୍ଡ ପ୍ରଣାମ କରିଲେ ପ୍ରଭୁ ରଘୁପତି ॥
ମୁନିବର ଧାଇଁ ନେଲେ ହୃଦୟେ ଲଗାଇ । ଭେଟିଲେ ସ୍ନେହେ ଉଚ୍ଛୁଳି ପୁଣି ବେନିଭାଇ ॥୨॥
ପ୍ରେମେ ପୁଲକି ନିଷାଦ କହି ନିଜ ନାମ । ଦୂରେ ଥାଇ କଲା ତହୁଁ ଭୂମିଷ୍ଠ ପ୍ରଣାମ ॥
ମୁନି ବଳାତ୍କାରେ ରାମ ସଖାଙ୍କୁ ଭେଟନ୍ତି । ମହୀରେ ଲୋଟନ୍ତେ ସ୍ନେହ ଯେହ୍ନେ ସାଉଁଟନ୍ତି ॥୩॥
ରଘୁପତି-ଭକ୍ତି ଅଟେ ସୁମଙ୍ଗଳମୟ । ପ୍ରଶଂସି ସୁରେ ସିଞ୍ଚନ୍ତି ନଭୁ ପୁଷ୍ପଚୟ ॥
ଏହା ପରି ନାହିଁ କେହି ନିପଟ ଅଧମ । ବଡ କେ ଜଗତ ମଧ୍ୟେ ବଶିଷ୍ଠଙ୍କ ସମ ॥୪॥

ଲକ୍ଷ୍ମଣୁ ଅଧିକ ମାନିଣ ଯାହାକୁ ମିଳନ୍ତି ମୁନି ମୋଦରେ ।
ତାହା ସୀତା-ପତି-ଭଜନ ପ୍ରଭାବ ପରାକ୍ରମ ପ୍ରତ୍ୟକ୍ଷରେ ॥୨୪୩॥

---

ଶୃଙ୍ଖଳାରୁ ମୁକ୍ତ । ସେହି ଅବସରରେ ନିଷାଦରାଜ ଧୈର୍ଯ୍ୟ ଧରି ଓ ହାତ ଯୋଡି ପ୍ରଣାମ-ପୂର୍ବକ ବିନତି କଲା—॥ ୪ ॥ ଦୋହା :—"ହେ ନାଥ ! ମୁନିନାଥ ବଶିଷ୍ଠଙ୍କ ସଙ୍ଗରେ ସମସ୍ତ ମାତା ଏବଂ ନଗରନିବାସୀ, ସେବକ, ସେନାପତି, ମନ୍ତ୍ରୀ ଆଦି ସମସ୍ତେ ଆପଣଙ୍କ ବିରହରେ ବ୍ୟାକୁଳ ହୋଇ ଆସିଅଛନ୍ତି ।" ॥୨୪୨॥ ଚୌପାଈ:—ଗୁରୁଙ୍କ ଆଗମନ-ସମ୍ବାଦ ଶୁଣି ଶୀଳ-ସାଗର ଶ୍ରୀରାମଚନ୍ଦ୍ର ସୀତାଙ୍କ ନିକଟରେ ଶତ୍ରୁଘ୍ନଙ୍କୁ ରଖିଦେଲେ ଏବଂ ସେହି ପରମଧୀର, ଧର୍ମ-ଧୁରନ୍ଧର ଓ ଦୀନଦୟାଳୁ ଶ୍ରୀରାମଚନ୍ଦ୍ର ସେହିକ୍ଷଣି ବେଗେ ଚାଲିଲେ ॥୧॥ ଗୁରୁଙ୍କୁ ଦର୍ଶନ କରି ଲକ୍ଷ୍ମଣଙ୍କ ସହିତ ପ୍ରଭୁ ଶ୍ରୀରାମଚନ୍ଦ୍ର ପ୍ରେମରେ ନିମଜ୍ଜିତ ହୋଇଗଲେ ଏବଂ ଦଣ୍ଡବତ୍ ପ୍ରଣାମ କରିବାକୁ ଲାଗିଲେ । ମୁନିବର ବଶିଷ୍ଠ ଦୌଡି ସେମାନଙ୍କୁ ଆଲିଙ୍ଗନ କରି ପକାଇଲେ ଏବଂ ପ୍ରେମରେ ଉଲ୍ଲସିତ ହୋଇ ସେ ଦୁଇ ଭାଇଙ୍କ ସହି ସାକ୍ଷାତ କଲେ ॥ ୨ ॥ ତଦନନ୍ତର ପ୍ରେମରେ ପୁଲକିତ ହୋଇ ନିଷାଦରାଜ ଆପଣାର ନାମ କହି ଦୂରରୁ ବଶିଷ୍ଠଙ୍କୁ ଦଣ୍ଡବତ୍-ପ୍ରଣାମ କଲେ । ଋଷି ବଶିଷ୍ଠ ରାମସଖା ବୋଲି ଜାଣି ତାହାକୁ ଜବରଦସ୍ତି ଆଲିଙ୍ଗନ କଲେ । ସତେ ଅବା ଭୂମି ଉପରେ ଲୋଟି ପଡିଥିବା ପ୍ରେମକୁ ସାଉଁଟି ଧରିଲେ ॥ ୩ ॥ "ଶ୍ରୀ ରଘୁନାଥଙ୍କ ଭକ୍ତି ଉତ୍ତମ ମଙ୍ଗଳ ସମୂହର ମୂଳ ।"—ଏହି ରୂପେ କହି ପ୍ରଶଂସା-ପୂର୍ବକ ଦେବଗଣ ଆକାଶରୁ ପୁଷ୍ପ-ବୃଷ୍ଟି କରିବାକୁ ଲାଗିଲେ । ସେମାନେ କହି ଲାଗିଥା'ନ୍ତି, "ଜଗତରେ ଏହାର ସମାନ ନିପଟ

ଆରତ ଲୋଗ ରାମ ସବୁ ଜାନା । କରୁନାକର ସୁଜାନ ଭଗବାନା ॥
ଜୋ ଜେହି ଭାଯଁ ରହା ଅଭିଲାଷୀ । ତେହି ତେହି କୈ ତସି ତସି ରୁଖ ରାଖୀ ॥୧॥
ସାନୁଜ ମିଲି ପଲ ମହୁଁ ସବ କାହୂ । କୀହ୍ନ ଦୂରି ଦୁଖୁ ଦାରୁନ ଦାହୂ ॥
ଯହ ବଡ଼ି ବାତ ରାମ କୈ ନାହୀଁ । ଜିମି ଘଟ କୋଟି ଏକ ରବି ଛାହୀଁ ॥୨॥
ମିଲି କେୱଟହି ଉମଗି ଅନୁରାଗା । ପୁରଜନ ସକଲ ସରାହହିଁ ଭାଗା ॥
ଦେଖୀଁ ରାମ ଦୁଖିତ ମହତାରୀଁ । ଜନୁ ସୁବେଲି ଅବଲୀଁ ହିମ ମାରୀଁ ॥୩॥
ପ୍ରଥମ ରାମ ଭେଁଟୀ କୈକେଈ । ସରଲ ସୁଭାଯଁ ଭଗତି ମତି ଭେଈ ॥
ପଗ ପରି କୀହ୍ନ ପ୍ରବୋଧୁ ବହୋରୀ । କାଲ କରମ ବିଧି ସିର ଧରି ଖୋରୀ ॥୪॥

---

ଜାଣି ରାମ ଅତିଶଯ ଆର୍ତ୍ତ ପୁରବାସୀ । କୃପାସିନ୍ଧୁ ଭଗବାନ ଜ୍ଞାନ-ଗୁଣ-ରାଶି ॥
ଯା'ର ଅଭିଳାଷ ହୃଦେ ଥିଲା ଯେ ପ୍ରକାର । ସେପରି ଭାବରେ ରୁଚି ରଖିଲେ ତାହାର ॥୧॥
ପଲକେ ମିଳି ଲୋକଙ୍କୁ ଅନୁଜ ସହିତ । ଦୂର କଲେ ଦୁଃଖ-ଦାହ ଦାରୁଣ ତୁରିତ ॥
ନୁହଇ ରାମଙ୍କ ପକ୍ଷେ ଏହା ବଡ଼ କଥା । କୋଟି ଘଟ ମଧ୍ୟେ ଏକ ରବି ଛାୟା ଯଥା ॥୨॥
ଭେଟି ନିଷାଦକୁ ସ୍ନେହେ ଉଚ୍ଛୁଳିଣ ଅତି । ପୁରଜନ ସର୍ବେ ଭାଗ୍ୟ ପ୍ରଶଂସା କରନ୍ତି ॥
ନିରେଖି ରାମ ସକଳ ମାତାଙ୍କୁ ଦୁଃଖିତ । ଯେସନ୍ତେ ସୁଲତିକା ଶ୍ରେଣୀ ହିମେ ନିପାତିତ ॥୩॥
ପ୍ରଥମେ ଭେଟିଲେ କୈକେୟୀଙ୍କି ରଘୁପତି । ସରଳ ସ୍ୱଭାବ ଭକ୍ତି ଆପ୍ଳାବିତ ମତି ॥
ପ୍ରବୋଧି କରି ଆଦର ଚରଣେ ପଡ଼ିଣ । କାଳ କର୍ମ ବିଧି ଶିରେ ଦୋଷ ଲଗାଇଣ ॥୪॥

---

ନୀଚ କେହି ନାହିଁ ଏବଂ ବଶିଷ୍ଠଙ୍କ ସମାନ ବଡ଼ ଆଉ କିଏ ? ॥ ୪ ॥ ଦୋହା ।—ଯେଉଁ ନିଷାଦକୁ ଦେଖି ତାହା ସହିତ ମୁନିରାଜ ବଶିଷ୍ଠ ଲକ୍ଷ୍ମଣଙ୍କ ଅପେକ୍ଷା ମଧ୍ୟ ଅଧିକ ପ୍ରେମରେ ମିଳିଲେ, ସେହି ନିଷାଦ କେତେ ଭାଗ୍ୟବାନ ! ଏହା ସବୁ ସୀତାପତି ଶ୍ରୀରାମଚନ୍ଦ୍ରଙ୍କ ଭଜନର ପ୍ରତ୍ୟକ୍ଷ ପ୍ରତାପ ଓ ପ୍ରଭାବ ।"॥୨୪୩॥ ଚୌପାଈ:-ଦୟାର ଆକର ସୁଜ୍ଞାନୀ ଭଗବାନ୍ ଶ୍ରୀରାମଚନ୍ଦ୍ର ସମସ୍ତ ଲୋକ ବ୍ୟାକୁଳ ହୋଇ ପଡ଼ିଛନ୍ତି ବୋଲି ଜାଣିଲେ । ତଦନନ୍ତର ଯେ ଯେଉଁ ଭାବରେ ମିଳନର ଅଭିଳାଷୀ ଥିଲା, ତାହାର ରୁଚି ଅନୁସାରେ ପ୍ରଭୁ ଲକ୍ଷ୍ମଣଙ୍କ ସମେତ ସେହି ଭାବରେ ତାହା ସହିତ କ୍ଷଣକ ମଧ୍ୟରେ ସାକ୍ଷାତ କଲେ ଏବଂ ତାହାର ଦୁଃଖ ଓ କଠିନ ସନ୍ତାପକୁ ଦୂର କରିଦେଲେ । ଶ୍ରୀରାମଚନ୍ଦ୍ରଙ୍କ ପକ୍ଷରେ ଏହା କୌଣସି ବଡ଼ କଥା ନ ଥିଲା । ଯେପରି ଅସଂଖ୍ୟ ଜଳପୂର୍ଣ୍ଣ କଳସରେ ଗୋଟିଏ ମାତ୍ର ସୂର୍ଯ୍ୟର ଅସଂଖ୍ୟ ଛାୟା ପ୍ରତିବିମ୍ବିତ ହୋଇ ଦେଖାଯାଏ, ସେହିପରି ଏକ ରାମଚନ୍ଦ୍ର ଅନେକ ହୋଇ ମୁହୂର୍ତ୍ତିକ ମଧ୍ୟରେ ସମସ୍ତଙ୍କ ସହ ମିଳନ କରି ସମସ୍ତଙ୍କୁ ସନ୍ତୁଷ୍ଟ କଲେ ॥ ୧-୨ ॥ ସମସ୍ତ ପୁରବାସୀ ପ୍ରେମରେ ଉଲ୍ଲସିତ ହୋଇ ନିଷାଦରାଜକୁ ଭେଟି ତାହାର ଭାଗ୍ୟକୁ ପ୍ରଶଂସା କରୁଥା'ନ୍ତି । ଶ୍ରୀରାମଚନ୍ଦ୍ର ସମସ୍ତ ମାତାଙ୍କୁ ଦୁଃଖୀ ଥିବାର ଦେଖିଲେ । ମନୋହର ଲତାପଂକ୍ତିକୁ ହିମବିନ୍ଦୁ ମାରି ପକାଇଥିଲା ପରି ସେମାନେ ନିସ୍ତେଜ ଦେଖାଯାଉଥିଲେ ॥୩॥ ସର୍ବପ୍ରଥମେ ରାମ କୈକେୟୀଙ୍କ ସହିତ ମିଳିଲେ ଏବଂ ନିଜ ସରଳ ସ୍ୱଭାବ ଓ ଭକ୍ତି

ଭେଟିଁ ରଘୁବର ମାତୁ ସବ କରି ପ୍ରବୋଧୁ ପରିତୋଷୁ ।
ଅଂବ ଈସ ଆଧୀନ ଜଗୁ କାହୁ ନ ଦେଇଅ ଦୋଷୁ ॥୨୪୪॥
ଗୁରତିୟ ପଦ ବଂଦେ ଦୁହୁ ଭାଈ । ସହିତ ବିପ୍ରତିଅ ଜେ ସଁଗ ଆଈ ॥
ଗଂଗ ଗୌରି ସମ ସବ ସନମାନୀ । ଦେହିଁ ଅସୀସ ମୁଦିତ ମୃଦୁ ବାନୀ ॥୧॥
ଗହି ପଦ ଲଗେ ସୁମିତ୍ରା ଅଂକା । ଜନୁ ଭେଁଟୀ ସଂପତି ଅତି ରଂକା ॥
ପୁନି ଜନନୀ ଚରନନି ଦୋଉ ଭ୍ରାତା । ପରେ ପେମ ବ୍ୟାକୁଲ ସବ ଗାତା ॥୨॥
ଅତି ଅନୁରାଗ ଅଂବ ଉର ଲାଏ । ନୟନ ସନେହ ସଲିଲ ଅହ୍ୱାଏ ॥
ତେହି ଅବସର କର ହରଷ ବିଷାଦୂ । କିମି କବି କହୈ ମୂକ ଜିମି ସ୍ୱାଦୂ ॥୩॥
ମିଲି ଜନନିହି ସାନୁଜ ରଘୁରାଉ । ଗୁର ସନ କହେଉ କି ଧାରିଅ ପାଉ ॥
ପୁରଜନ ପାଇ ମୁନୀସ ନିୟୋଗୂ । ଜଲ ଥଲ ତକି ତକି ଉତରେଉ ଲୋଗୂ ॥୪॥

ଭେଟି ରଘୁବର ମାତା-ନିକରଙ୍କୁ କଲେ ପ୍ରବୋଧ ସନ୍ତୋଷ ।
ଜନନି, ଈଶ୍ୱର ଅଧୀନ ସଂସାର, କାହାକୁ ନ ଦିଅ ଦୋଷ ॥୨୪୦॥
ଗୁରୁ ପତ୍ନୀ ପଦେ ବେନିଭାଇ ପ୍ରଣମିଲେ । ସହିତ ଯେ ବିପ୍ରନାରୀ ସଙ୍ଗେ ଆସିଥିଲେ ॥
ସମ୍ମାନ କରନ୍ତେ ଗଙ୍ଗା ଗଉରୀ ଯେସନ । ଆନନ୍ଦେ ଆଶିଷ ଦେଲେ ଋଷି ପ୍ରିୟବଚନ ॥୧॥
ପୟର ଧରି ବସିଲେ ସୁମିତ୍ରାଙ୍କ ଅଙ୍କେ । ବହୁମୂଲ୍ୟ ସମ୍ପତ୍ତି ବା ଭେଟ ହେଲା ରଙ୍କେ ॥
ପୁଣି ବେନି ଭାଇ ଜନନୀଙ୍କ ପଦ ତଳେ । ପଡ଼ିଲେ ସର୍ବାଙ୍ଗ ପ୍ରେମ ବିକଳ ବହଳେ ॥୨॥
ଅତି ଅନୁରାଗେ ମାତା ହୃଦେ ଲଗାଇଲେ । ନୟନ ସ୍ନେହ ସଲିଳେ ସ୍ନାନ କରାଇଲେ ॥
ସେହି ସମୟର ଯେଉଁ ହରଷ ବିଷାଦ । କେମନ୍ତେ କହିବ କବି ? ମୂକ ଯେସନ୍ତେ ସ୍ୱାଦ ॥୩॥
ମାତାଙ୍କୁ ମିଳି ଅନୁଜ ସହ ରଘୁବର । ଗୁରୁଙ୍କୁ କହିଲେ, ଧରି ଆଶ୍ରମେ ପୟର ॥
ମୁନିଙ୍କ ଅନୁଶାସନ ପୁରଜନ ପାଇ । ଜଳ ସ୍ଥଳ ଦେଖି ଦେଖି ବସା କଲେ ଯାଇ ॥୪॥

ଯୋଗେ ତାଙ୍କ ସନ୍ତାପିତ ମନକୁ ସିକ୍ତ କରି ଦେଲେ । ତତ୍ପରେ ଚାଣ୍ଡ ତଳେ ପଡ଼ି କାଳ, କର୍ମ ଓ ବିଧାତାଙ୍କ ମୁଣ୍ଡରେ ଦୋଷ ମାଡ଼ି ଶ୍ରୀରାମ ତାହାଙ୍କୁ ସାନ୍ତ୍ୱନା ଦେଲେ ॥ ୪ ॥
ଦୋହା :—ତତ୍ପରେ ଶ୍ରୀ ରଘୁନାଥ ସମସ୍ତ ମାତାଙ୍କୁ ଭେଟିଲେ । ସେ ସମସ୍ତଙ୍କୁ ବୁଝାଇ-ସୁଝାଇ ସନ୍ତୁଷ୍ଟ କଲେ—"ହେ ମାତା ! ଜଗତ ଈଶ୍ୱରଙ୍କ ଅଧୀନ । କାହାରିକୁ ହେଲେ ଦୋଷ ଦେବା ଉଚିତ ନୁହେଁ ।" ॥ ୨୪୪ ॥ ଚୌପାଈ:—ତଦନନ୍ତର ଦୁଇ ଭାଇ ଭରତଙ୍କ ସହିତ ଆସିଥିବା ବ୍ରାହ୍ମଣୀମାନଙ୍କ ସମେତ ଗୁରୁପତ୍ନୀ ଅରୁନ୍ଧତୀଙ୍କ ଚରଣ ବନ୍ଦନା କଲେ ଏବଂ ସେ ସମସ୍ତଙ୍କୁ ଗଙ୍ଗା ଓ ଗୌରୀଙ୍କ ସମାନ ସମ୍ମାନିତ କଲେ । ସେମାନେ ସମସ୍ତେ ଆନନ୍ଦିତ ହୋଇ କୋମଳବାଣୀରେ ଆଶୀର୍ବାଦ ଦେଉଥା'ନ୍ତି ॥ ୧ ॥ ତତ୍ପରେ ଭାଇ ଦୁହେଁ ଯାଇ ପାଦ ଧରି ସୁମିତ୍ରାଙ୍କ କୋଳରେ ଆତ୍ମିଜଗଲେ । ଦରିଦ୍ରର ସମ୍ପତ୍ତି ସହିତ ଭେଟ ହୋଇଗଲା କି ! ତଦନନ୍ତର ଦୁଇ ଭାଇ ମାତା କୌଶଲ୍ୟାଙ୍କ ଚରଣ ତଳେ ପଡ଼ିଗଲେ । ପ୍ରେମ ହେତୁ ସେମାନଙ୍କ ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ଶିଥିଳ ହୋଇ

ମନ୍ତ୍ରସୁର ମଂତ୍ରୀ ମାତୁ ଗୁର ଗନେ ଲୋଗ ଲିଏ ସାଥ ।
ପାବନ ଆଶ୍ରମ ଗଵନୁ କିଯ ଭରତ ଲଖନ ରଘୁନାଥ ॥୨୪୫॥
ସୀଯ ଆଇ ମୁନିବର ପଗ ଲାଗୀ । ଉଚିତ ଅସୀସ ଲହୀ ମନ ମାଗୀ ॥
ଗୁରପତିନିହି ମୁନିତିଯନ୍ହ ସମେତା । ମିଲୀ ପେମୁ କହି ଜାଇ ନ ଜେତା ॥୧॥
ବଂଦି ବଂଦି ପଗ ସିଯ ସବହୀ କେ । ଆସିରବଚନ ଲହେ ପ୍ରିଯ ଜୀ କେ ॥
ସାସୁ ସକଲ ଜବ ସୀଯଁ ନିହାରୀଂ । ମୂଦେ ନଯନ ସହମି ସୁକୁମାରୀଂ ॥୨॥
ପରୀଂ ବଧିକ ବସ ମନହୁଁ ମରାଲୀଂ । କାହ କୀନ୍ହ କରତାର କୁଚାଲୀଂ ॥
ତିନ୍ହ ସିଯ ନିରଖି ନିପଟ ଦୁଖୁ ପାଵା । ସୋ ସବୁ ସହିଅ ଜୋ ଦୈଉ ସହାଵା ॥୩॥

---

ଗୁରୁ ମନ୍ତ୍ରୀସୁର ମାତା ମନ୍ତ୍ରୀବର ସଙ୍ଗେ ନେଇ ମାନ୍ୟଜନ ।
ଚଳିଲେ ପବିତ୍ର ଆଶ୍ରମେ ଭରତ ଲକ୍ଷ୍ମଣ ରଘୁନନ୍ଦନ ॥୨୪୫॥
ସୀତା ଆସି ମୁନିବର ପଦେ ଓଳଗିଲେ । ଉଚିତ ମନ ଇଚ୍ଛିତ ଆଶିଷ ଲଭିଲେ ॥
ଗୁରୁ ଗୃହିଣୀଙ୍କୁ ମୁନି ପତ୍ନୀଙ୍କ ସମେତେ । ମିଳିଲେ ସପ୍ରେମ କହି ନ ହୁଅଇ ଯେତେ ॥୧॥
ବନ୍ଦି ବନ୍ଦି ବଇଦେହୀ ସମସ୍ତଙ୍କ ପଦ । ଲଭିଲେ ଆଶିଷ-ବାଣୀ ହୃଦୟ ସୁଖଦ ॥
ଶାଶୁ ସମସ୍ତଙ୍କୁ ଯେବେ ସୀତା ନିରେଖିଲେ । ଭୟେ ସୁକୁମାରୀ ବେନି ନୟନ ମୁଜିଲେ ॥୨॥
ମନେ ହୁଏ ବ୍ୟାଧବଶ ମରାଳୀ ପଡ଼ିଲା । ହାୟରେ ମନ୍ଦ ଦଇବ ଏହା କି କରିଲା ॥
ସୀତାଙ୍କୁ ଦେଖି ବ୍ୟାକୁଳ ହେଲେ ସର୍ବମାତା । ତାହା ସହାଯାଏ ଯାହା ସହାଏ ବିଧାତା ॥୩॥

---

ପଡ଼ୁଥାଏ ॥ ୨ ॥ ଅତି ସ୍ନେହରେ ମାତା ସେମାନଙ୍କୁ ବକ୍ଷରେ ଆଉଜି ଧରିଲେ ଏବଂ ନୟନରୁ ପ୍ରବାହିତ ପ୍ରେମାଶ୍ରୁ ଜଳରେ ସେମାନଙ୍କୁ ଗାଧୋଇ ଦେଲେ । ସେହି ସମୟର ହର୍ଷ ଓ ବିଷାଦକୁ କିଏ କିପରି ବା କହି ପାରିବ ? ମୂକ ସ୍ୱାଦ କଥା ବା କିପରି କହି ପାରିବ ? ॥ ୩ ॥ ଶ୍ରୀ ରଘୁନାଥ ସାନ ଭାଇ ଲକ୍ଷ୍ମଣଙ୍କ ସମେତ ମାତା କୌଶଲ୍ୟାଙ୍କୁ ଭେଟିଲେ ଏବଂ ଗୁରୁଙ୍କୁ କହିଲେ, "ଆଶ୍ରମରେ ପଦାର୍ପଣ କରନ୍ତୁ ।" ତଦନନ୍ତର ମୁନୀଶ୍ୱର ବଶିଷ୍ଠଙ୍କ ଆଜ୍ଞା ପାଇ ସମସ୍ତ ଲୋକ ଜଳ ଓ ସ୍ଥଳର ସୁବିଧା ଦେଖି ଉତୁରି ପଡ଼ିଲେ ॥ ୪ ॥ ଦୋହା :—ବ୍ରାହ୍ମଣ, ମନ୍ତ୍ରୀ, ମାତା ଓ ଗୁରୁ ଆଦି ବଛାବଛା କେତେକ ଲୋକଙ୍କୁ ସଙ୍ଗରେ ଧରି ଭରତ, ଲକ୍ଷ୍ମଣ ଓ ଶ୍ରୀ ରଘୁନାଥ ପବିତ୍ର ଆଶ୍ରମକୁ ଚାଲିଲେ ॥୨୪୫॥
ଚୌପାଈ :—ସୀତା ଆସି ମୁନିବର ବଶିଷ୍ଠଙ୍କ ଚରଣ ତଳେ ପ୍ରଣାମ କଲେ ଏବଂ ଅଭିଳଷିତ ଉପଯୁକ୍ତ ଆଶିଷ ଲାଭ କଲେ । ତତ୍ପରେ ସେ ମୁନିପତ୍ନୀମାନଙ୍କ ସମେତ ଗୁରୁପତ୍ନୀ ଅରୁନ୍ଧତୀଙ୍କ ସହ ସାକ୍ଷାତ କଲେ । ତାଙ୍କର ଯେତେ ପ୍ରେମ, ତାହା କୁହାଯାଇ ନ ପାରେ ॥ ୧ ॥ ସୀତା ସମସ୍ତଙ୍କ ଚରଣକୁ ଅଲଗା ଅଲଗା ବନ୍ଦନା କରି ଆପଣା ହୃଦୟ ପ୍ରତି ରୁଚିକର ଆଶୀର୍ବାଦ ଲାଭ କଲେ । ସୁକୁମାରୀ ସୀତା ସମସ୍ତ ଶାଶୁଙ୍କୁ ଯେତେବେଳେ ଦେଖିଲେ, ସେ ଶଙ୍କିଯାଇ ଆପଣାର ଚକ୍ଷୁ ବନ୍ଦ କରିଦେଲେ ॥ ୨ ॥ ଶାଶୁମାନଙ୍କର ଦୁର୍ଦ୍ଦଶା ଦେଖି ତାଙ୍କୁ ବୋଧ ହେଲା, ସତେ ଅବା ରାଜହଂସୀ-ଦଳ

ଜନକସୁତା ତବ ଉର ଧରି ଧୀରା । ନୀଲ ନଲିନ ଲୋୟନ ଭରି ନୀରା ॥
ମିଲୀ ସକଲ ସାସୁନ୍ହ ସିୟ ଜାଈ । ତେହି ଅବସର କରୁନା ମହି ଛାଈ ॥୪॥
ଲାଗି ଲାଗି ପଗ ସବନି ସିୟ ଭେଁଟତି ଅତି ଅନୁରାଗ ।
ହୃଦୟଁ ଅସୀସହିଁ ପେମ ବସ ରହିଅହୁ ଭରୀ ସୋହାଗ ॥୨୪୬॥
ବିକଲ ସନେହଁ ସୀୟ ସବ ରାନୀଂ । ବୈଠନ ସବହି କହେଉ ଗୁର ଜ୍ଞାନୀଂ ॥
କହି ଜଗ ଗତି ମାୟିକ ମୁନିନାଥା । କହେ କଛୁକ ପରମାରଥ ଗାଥା ॥୧॥
ନୃପ କର ସୁରପୁର ଗୱନୁ ସୁନାୱା । ସୁନି ରଘୁନାଥ ଦୁସହ ଦୁଖୁ ପାୱା ॥
ମରନ ହେତୁ ନିଜ ନେହୁ ବିଚାରୀ । ଭେ ଅତି ବିକଲ ଧୀର ଧୁର ଧାରୀ ॥୨॥
କୁଲିସ କଠୋର ସୁନତ କଟୁ ବାନୀ । ବିଲପତ ଲଖନ ସୀୟ ସବ ରାନୀ ॥
ସୋକ ବିକଲ ଅତି ସକଲ ସମାଜୂ । ମାନହୁଁ ରାଜୁ ଅକାଜେଉ ଆଜୂ ॥୩॥

---

ହୃଦେ ତହୁଁ ଧୈର୍ଯ୍ୟ ଧରି ଧରଣୀ କୁମାରୀ । ନୀଳ-ନଳିନ-ନୟନେ ପୂରିଣ୍ଡି ନରି ବାରି ॥
ଭେଟିଲେ ଶାଶୁମାନଙ୍କୁ ଜନକ-ନନ୍ଦନୀ । କରୁଣା ସେହି ସମୟେ ଘୋଟିଲା ମେଦିନୀ ॥୪॥
ସମସ୍ତଙ୍କ ପଦ ଧରି ଧରି ସୀତା ଭେଟିଲେ ସ୍ନେହରେ ଅତି ।
ଦିଅନ୍ତି ଆଶିଷ ସର୍ବେ ପ୍ରେମବଶ, ରହ ସଦା ଭାଗ୍ୟବତୀ ॥୨୪୬॥
ହୁଅନ୍ତି ସ୍ନେହେ ବିକଳ ସୀତା ସବୁ ରାଣୀ । ବସାଇଲେ ସମସ୍ତଙ୍କୁ କହି ଗୁରୁ ଜ୍ଞାନୀ ॥
ଜଗତ ଗତି ମାୟିକ ବୁଝାଇଣ ମୁନି । ପରମାର୍ଥ କଥା କିଛି ବଖାଣିଲେ ପୁଣି ॥୧॥
ନୃପତିଙ୍କ ସୁର-ପୁର ଯିବା ଶୁଣାଇଲେ । ଶୁଣି ରଘୁନାଥ ଦୁଃଖ ଦୁଃସହ ପାଇଲେ ॥
ନିଜ ପ୍ରତି ସ୍ନେହ ମୃତ୍ୟୁ କାରଣ ବିଚାରି । ହୋଇଲେ ଅତି ବିକଳ ଧୀର ବ୍ରତଧାରୀ ॥୨॥
ଶୁଣି କୁଳିଶ କଠୋର କର୍କଶ ବଚନ । ବିଳପନ୍ତି ରାଣୀ ସର୍ବେ ସୀତା ସଲକ୍ଷ୍ମଣ ॥
ଅତି ଶୋକାକୁଳ ହେଲେ ସକଳ ସମାଜ । ମନେ ହୁଏ ନରପତି ମରିଛନ୍ତି ଆଜ ॥୩॥

---

ଶିକାରୀର ବଣି (ଫାନ୍ଦ)ରେ ପଡ଼ିଯାଇ ଅଛନ୍ତି କି ! ସେ ମନେ ମନେ ଭାବିବାକୁ ଲାଗିଲେ, "କୁଟିଳୀ ବିଧାତା କ'ଣ କରି ପକାଇଲା !" ସେମାନେ ମଧ୍ୟ ସୀତାଙ୍କୁ ଦେଖି ବଡ଼ ଦୁଃଖ ଅନୁଭବ କଲେ । ଭାବିଲେ, "ଯାହା କିଛି ଦୈବ ସୁହାଏ, ତାହା ସହିବାକୁ ହିଁ ପଡ଼ିବ ॥ ୩ ॥ ତତ୍ପରେ ଜାନକୀ ହୃଦୟରେ ଧୈର୍ଯ୍ୟ ଧରି ନୀଳକମଳ ସମାନ ନେତ୍ରରେ ଜଳ ଭରି ସମସ୍ତ ଶାଶୁଙ୍କ ସହ ଯାଇ ମିଳନ କଲେ । ସେହି ସମୟରେ ପୃଥିବୀ ଉପରେ ସତେ ଯେପରି କରୁଣ ରସର ଧାରା ବହିଗଲା ॥ ୪ ॥ ଦୋହା —ସୀତା ସମସ୍ତଙ୍କ ପାଦରେ ଲାଗି ଅତ୍ୟନ୍ତ ପ୍ରେମରେ ମିଳନ କରୁଥା'ନ୍ତି ଏବଂ ସମସ୍ତ ଶାଶୁ ହୃଦୟରୁ ତାହାଙ୍କୁ ସ୍ନେହାଶୀର୍ବାଦ ଦେଉଥା'ନ୍ତି—"ତୁମେ ସୌଭାଗ୍ୟବତୀ ହୋଇଥାଅ ।" ॥୨୪୬॥ ଚୌପାଈ —ସୀତା ଓ ସମସ୍ତ ରାଣୀ ସ୍ନେହ ହେତୁ ବ୍ୟାକୁଳ । ତତ୍ପରେ ଜ୍ଞାନୀ ଗୁରୁ ସମସ୍ତଙ୍କୁ ବସିପଡ଼ିବା ପାଇଁ କହିଲେ । ମୁନିନାଥ ବଶିଷ୍ଠ ଜଗତର ଗତି ମାୟିକ ବୋଲି କହି, କେତେକ ପରମାର୍ଥ-ସମ୍ବନ୍ଧୀୟ କଥା କହିଲେ ॥ ୧ ॥ ତଦନନ୍ତର ବଶିଷ୍ଠ ରାଜା

ମୁନିବର ବହୁରି ରାମ ସମୁଝାଏ । ସହିତ ସମାଜ ସୁସରିତ ନହାଏ ॥
ବ୍ରତୁ ନିରଂବୁ ତେହି ଦିନ ପ୍ରଭୁ କୀହ୍ନା । ମୁନିହୁ କହେଁ ଜଲୁ କାହୁଁ ନ ଲୀହ୍ନା ।୪॥
ଭୋରୁ ଭଏଁ ରଘୁନଂଦନହି ଜୋ ମୁନି ଆୟସୁ ଦୀହ୍ନ ।
ଶ୍ରଦ୍ଧା ଭଗତି ସମେତ ପ୍ରଭୁ ସୋ ସବୁ ସାଦରୁ କୀହ୍ନ ॥୨୪୭।
କରି ପିତୁ କ୍ରିୟା ବେଦ ଜସି ବରନୀ । ଭେ ପୁନୀତ ପାତକ ତମ ତରନୀ ॥
ଜାସୁ ନାମ ପାବକ ଅଘ ତୂଲା । ସୁମିରତ ସକଲ ସୁମଂଗଲ ମୂଲା ॥୧॥
ସୁଦ୍ଧ ସୋ ଭୟଉ ସାଧୁ ସଂମତ ଅସ । ତୀରଥ ଆବାହନ ସୁରସରି ଜସ ॥
ସୁଦ୍ଧ ଭଏଁ ଦୁଇ ବାସର ବୀତେ । ବୋଲେ ଗୁରୁ ସନ ରାମ ପିରୀତେ ॥୨॥

---

ବୁଝାନ୍ତେ ମୁନି ଆଦର ରଘୁନନ୍ଦନଙ୍କୁ । ସୁସରିତେ ସ୍ନାନ କଲେ ଘେନି ସମସ୍ତଙ୍କୁ ॥
ସେ ଦିନ ପ୍ରଭୁ ନିର୍ଜଳ ବ୍ରତରେ ରହିଲେ । ମୁନି କହିଲେହେଁ ଜଳ କେହି ନ ଘେନିଲେ ॥୪॥
ପ୍ରଭାତ ହୁଅନ୍ତେ ମୁନି ରଘୁନାଥେ ଆଜ୍ଞା ପ୍ରଦାନିଲେ ଯାହା ।
ଶ୍ରଦ୍ଧା ଭକ୍ତି ଭରେ ସମସ୍ତ ସାଦରେ ପ୍ରଭୁ କଲେ ପୁଣି ତାହା ॥୨୪୭॥
କରି ପିତୃ କ୍ରିୟା ବେଦ ବିଧାନ ଯେସନ । ହୋଇଲେ ପବିତ୍ର ପାପ-ତିମିର-ତପନ ॥
ପାତକ-ତୂଳା-ରାଶିକୁ ଯା ନାମ ପାବକ । ସ୍ମରଣ କରନ୍ତେ ସର୍ବ ମଙ୍ଗଳ-କାରକ ॥୧॥
ଶୁଦ୍ଧ ସେ ହୋଇଲେ, ସାଧୁ ସମ୍ମତ ଏମନ୍ତ । ତୀର୍ଥ-ଆବାହନେ ସୁର-ସରିତ ଯେମନ୍ତ ॥
ଶୁଦ୍ଧ ହେବା ପରେ ବେନି ବିତନ୍ତେ ବାସର । ଭାଷିଲେ ମୁନିଙ୍କ ଆଗେ ସ୍ନେହେ ରଘୁବର ॥୨॥

---

ଦଶରଥଙ୍କ ସ୍ୱର୍ଗଗମନ କଥା ଶୁଣାଇଲେ । ତାହା ଶୁଣି ରଘୁନାଥ ଦୁଃସହ ଦୁଃଖ ଅନୁଭବ କଲେ । ନିଜ ପ୍ରତି ତାଙ୍କର ସ୍ନେହକୁ ହିଁ ତାଙ୍କ ମୃତ୍ୟୁର କାରଣ ବୋଲି ମନେ କରି ଧୈର୍ଯ୍ୟ-ଧୁରନ୍ଧର ରାମ ବ୍ୟାକୁଳ ହୋଇ ପଡ଼ିଲେ ॥ ୨ ॥ ବଜ୍ର ସମ ନ କଠୋର ଓ କର୍କଶ ବାଣୀ ଶୁଣି ଲକ୍ଷ୍ମଣ, ସୀତା ଓ ସମସ୍ତ ରାଣୀ ବିଳାପ କରିବାକୁ ଲାଗିଲେ । ସାରା ସମାଜ ଶୋକରେ ବ୍ୟାକୁଳ ହୋଇ ପଡ଼ିଲା । ସତେ ଯେପରି ରାଜା ଆଜି ହିଁ ମରିଛନ୍ତି ॥ ୩ ॥ ପୁଣି ମୁନିବର ବଶିଷ୍ଠ ଶ୍ରୀରାମଙ୍କୁ ବୁଝାଇଲେ । ତତ୍ପରେ ସମାଜ ସହିତ ସେ ସୁସରିତା ମନ୍ଦାକିନୀରେ ସ୍ନାନ କଲେ । ସେ ଦିନ ପ୍ରଭୁ ଶ୍ରୀରାମଚନ୍ଦ୍ର ନିର୍ଜଳ ବ୍ରତ କଲେ । ମୁନି ବଶିଷ୍ଠଙ୍କ କହିବା ସତ୍ତ୍ୱେ କେହି ଜଳ ଗ୍ରହଣ କଲେ ନାହିଁ ॥ ୪ ॥
ଦୋହା '—ତହିଁ ଆର ଦିନ ସକାଳେ ମୁନି ବଶିଷ୍ଠ ଶ୍ରୀ ରଘୁନାଥଙ୍କୁ ଯାହା ଯାହା ଆଜ୍ଞା ଦେଲେ, ପ୍ରଭୁ ଶ୍ରଦ୍ଧା, ଭକ୍ତି ଓ ଆଦର ସହକାରେ ସେହି ସବୁ କାର୍ଯ୍ୟ ସମ୍ପନ୍ନ କଲେ ॥୨୪୭॥
ଚୌପାଈ —ବେଦମାନଙ୍କରେ କଥିତ ମତେ ପିତାଙ୍କ କ୍ରିୟାଦି ସମ୍ପାଦନ କରି ପାପାନ୍ଧକାର-ନାଶକ ସୂର୍ଯ୍ୟ-ସ୍ୱରୂପ ଶ୍ରୀରାମଚନ୍ଦ୍ର ଶୁଦ୍ଧ ହେଲେ । ଯାହାଙ୍କର ନାମ ମାତ୍ର ପାପ-କପାକୁ ତୁରନ୍ତ ଜାଳିଦେବା ନିମନ୍ତେ ଅଗ୍ନି ଏବଂ ଯାହାଙ୍କର ସ୍ମରଣ ମାତ୍ର ସମସ୍ତ ଶୁଭ-ମଙ୍ଗଳର ମୂଳକାରଣ, ସେହି ନିତ୍ୟ, ଶୁଦ୍ଧ, ବୁଦ୍ଧ ଭଗବାନ୍ ଶ୍ରୀରାମ ଶୁଦ୍ଧ ହେଲେ । ସାଧୁମାନଙ୍କର ଏପରି ମତ ଯେ, ତୀର୍ଥମାନଙ୍କୁ ଆବାହନ କରିବା ଯୋଗେ ସ୍ୱଭାବ-ଶୁଦ୍ଧା ଗଙ୍ଗା ଯେପରି

ନାଥ ଲୋଗ ସବ ନିପଟ ଦୁଖାରୀ । କଂଦ ମୂଲ ଫଲ ଅଂବୁ ଅହାରୀ ॥
ସାନୁଜ ଭରତୁ ସଚିବ ସବ ମାତା । ଦେଖି ମୋହି ପଲ ଜିମି ଜୁଗ ଜାତା ॥୩॥
ସବ ସମେତ ପୁର ଧାରିଅ ପାଊ । ଆପୁ ଇହାଁ ଅମରାବତି ରାଊ ॥
ବହୁତ କହେଉଁ ସବ କିୟଉଁ ଢିଠାଈ । ଉଚିତ ହୋଇ ତସ କରିଅ ଗୋସାଁଈ ॥୪॥

ଧର୍ମ ସେତୁ କରୁନାୟତନ କସ ନ କହହୁ ଅସ ରାମ ।
ଲୋଗ ଦୁଖିତ ଦିନ ଦୁଇ ଦରସ ଦେଖି ଲହହୁଁ ବିଶ୍ରାମ ॥୨୪୮॥

ରାମ ବଚନ ସୁନି ସଭୟ ସମାଜୂ । ଜନୁ ଜଲନିଧି ମହୁଁ ବିକଲ ଜହାଜୂ ॥
ସୁନି ଗୁର ଗିରା ସୁମଂଗଲ ମୂଲା । ଭୟଉ ମନହୁଁ ମାରୁତ ଅନୁକୂଲା ॥୧॥
ପାବନ ପୟଁ ତିହୁଁ କାଲ ନହାହୀଁ । ଜୋ ବିଲୋକି ଅଘ ଓଘ ନସାହୀଁ ॥
ମଂଗଲମୂରତି ଲୋଚନ ଭରି ଭରି । ନିରଖହିଁ ହରଷି ଦଣ୍ଡବତ କରି କରି ॥୨॥

---

ନାଥ, ଅତି ଦୁଃଖୀ ପୁର ନିବାସୀ ସକଳ । ଆହାର କରଣି ଶାକ କନ୍ଦମୂଳ ଫଳ ॥
ସାନୁଜ ଭରତ ମନ୍ତ୍ରୀ ମାତା ସମୁଦାୟେ । ଦେଖି ମୋତେ କ୍ଷଣଏକ କଟେ ଯୁଗ ପ୍ରାୟେ ॥୩॥
ସମସ୍ତଙ୍କ ସଙ୍ଗ ପୁରେ ଧରନ୍ତୁ ପୟର । ଆପଣ ଏଠାରେ, ସୁର-ପୁରେ ନରବର ॥
ବହୁତ କହିଲି କଲି, ଧୃଷ୍ଟତା ଅତ୍ୟନ୍ତ । ଉଚିତ ଯାହା ଗୋସାଇଁ, କରନ୍ତୁ ତେମନ୍ତ ॥୪॥

ଧର୍ମ-ସେତୁ କୃପା-ସାଗର ଏସନ କାହିଁ ନ କହିବ ରାମ ।
ଲୋକେ ଅତି ଦୁଃଖୀ, ଦିନ ଦୁଇ ଦେଖି ଲଭନ୍ତୁ ବସ୍ତ୍ର ! ବିଶ୍ରାମ ॥୨୪ ॥

ରାମଙ୍କ ବଚନ ଶୁଣି ଭୟିତ ସମାଜ । ଯେମନ୍ତେ ଜଳନିଧି ମଧ୍ୟେ ବିକଳ ଜାହାଜ ॥
ଶୁଣି ମୁନିଙ୍କ ବଚନ ସୁମଙ୍ଗଳ ମୂଳ । ମନେ ହୁଏ ମରୁତ ବା ହେଲା ଅନୁକୂଳ ॥୧॥
ପବିତ୍ର ପୟେ ତ୍ରିକାଳ ସ୍ନାହାନ କରନ୍ତି । ଯା ଦର୍ଶନେ ପାପ-ପୁଞ୍ଜ ବିନଷ୍ଟ ହୁଅନ୍ତି ॥
ମଙ୍ଗଳ ମୂର୍ତ୍ତିଙ୍କୁ ନେତ୍ର ପୂରାଇ ପୂରାଇ । ଦଣ୍ଡବତ କରି କରି ନିରେଖନ୍ତି ଯାଇ ॥୨॥

---

ଶୁଦ୍ଧ ହୁଅନ୍ତି, ସେହିପରି ସଚ୍ଚିଦାନନ୍ଦ-ସ୍ୱରୂପ ନିତ୍ୟଶୁଦ୍ଧ ଶ୍ରୀରାମ ଆଜି ଶୁଦ୍ଧ ହେଉଛନ୍ତି । ଶୁଦ୍ଧ ହେବାର ଦୁଇ ଦିନ ପରେ ଶ୍ରୀରାମ ପ୍ରୀତି ସହକାରେ ଗୁରୁଙ୍କୁ କହିଲେ, "ହେ ନାଥ ! ସମସ୍ତ ଲୋକ ଏଠାରେ ଅତ୍ୟନ୍ତ ଦୁଃଖରେ କାଳାତିପାତ କରୁଅଛନ୍ତି । କନ୍ଦମୂଳ, ଫଳ ଓ ଜଳ ଆହାର କରୁଅଛନ୍ତି । ଭାଇ ଶତ୍ରୁଘ୍ନ ସହିତ ଭରତଙ୍କୁ, ମନ୍ତ୍ରୀମାନଙ୍କୁ ଓ ସମସ୍ତ ମାତାଙ୍କୁ ଦେଖି ମୋତେ ଗୋଟିଏ ଗୋଟିଏ ମୁହୂର୍ତ୍ତ ଯୁଗ ସମାନ କଟିଲା ପରି ବୋଧ ହେଉଅଛି ॥ ୧-୩ ॥ ଅତଏବ ସମସ୍ତଙ୍କ ସଙ୍ଗେ ଆପଣ ଅଯୋଧ୍ୟାପୁରୀକୁ ଫେରି ଚାଲନ୍ତୁ । ଆପଣ ଏଠାରେ ଏବଂ ରାଜା ଅମରାବତୀରେ । ଅଯୋଧ୍ୟା ଶୂନ୍ୟ । ମୁଁ ବହୁତ କହି ପକାଇଲିଣି । ଏ ସବୁ ମୋର ଧୃଷ୍ଟତା । ହେ ଗୋସାଇଁ ! ଯେପରି ଉଚିତ, ସେହିପରି କରନ୍ତୁ ।" ॥ ୪ ॥ ଦୋହା :—ବଶିଷ୍ଠ କହିଲେ ! "ହେ ରାମ ! ତୁମେ ଧର୍ମର ସେତୁ ଓ ଦୟାର ଧାମ । ତୁମେ ଏପରି ନ କହିବ ବା କାହିଁକି ? ଲୋକମାନେ ଦୁଃଖୀ । ଦୁଇ ଦିନ ମାତ୍ର ତୁମ ଦର୍ଶନ କରି ଶାନ୍ତି ଲାଭ କରି ନିଅନ୍ତୁ ।" ॥ ୨୪୮ ॥ ଚୌପାଈ :—

ରାମ ସୈଲ ବନ ଦେଖନ ଜାହିଁ । ଜହଁ ସୁଖ ସକଲ ସକଲ ଦୁଖ ନାହିଁ ॥
ଝରନା ଝରହିଁ ସୁଧାସମ ବାରୀ । ତ୍ରିବିଧ ତାପହର ତ୍ରିବିଧ ବୟାରୀ ॥୩॥
ବିଟପ ବେଲି ତୃନ ଅଗନିତ ଜାତୀ । ଫଲ ପ୍ରସୂନ ପଲ୍ଲବ ବହୁ ଭାଁତୀ ॥
ସୁନ୍ଦର ସିଲା ସୁଖଦ ତରୁ ଛାହୀଁ । ଜାଇ ବରନି ବନ ଛବି କେହି ପାହୀଁ ॥୪॥

ସରନି ସରୋରୁହ ଜଲବିହଗ କୂଜତ ଗୁଂଜତ ଭୃଂଗ ।
ବୈର ବିଗତ ବିହରତ ବିପିନ ମୃଗ ବିହଂଗ ବହୁରଂଗ ॥୨୪୯॥

କୋଲ କିରାତ ଭିଲ୍ଲ ବନବାସୀ । ମଧୁ ସୁଚି ସୁନ୍ଦର ସ୍ୱାଦୁ ସୁଧା ସୀ ॥
ଭରି ଭରି ପରନ ପୁଟୀଁ ରଚି ରୁରୀ । କଂଦ ମୂଲ ଫଲ ଅଂକୁର ଜୁରୀ ॥୧॥

---

ଶ୍ରୀରାମ ଶଇଳ ବନ କରନ୍ତି ଦର୍ଶନ । ସର୍ବ ଦୁଃଖ ରହିତ ଯେ ସୁଖର ସଦନ ॥
ସୁଧା ସମ ଝରଣାରେ ନିର୍ଝରଇ ବାରି । ତ୍ରିବିଧ ସମୀର ସଦା ତାପତ୍ରୟ-ହାରୀ ॥୩॥
ନାନା ତରୁ ଲତା ତୃଣ ଜାତି ଅଗଣିତ । ବିବିଧ ଫଳ ପଲ୍ଲବ ପ୍ରସୂନେ ପୂରିତ ॥
ସୁନ୍ଦର ସୁଖଦ ଶିଳା ତରୁ ଛାୟା ଘନ । ବନ ଶୋଭା କିଏ କରି ପାରିବ ବର୍ଣ୍ଣନ ॥୪॥

ସରେ ସରସିଜ ଜଳ-ପକ୍ଷୀ ରବ ଗୁଞ୍ଜରନ୍ତି କଳ ଭୃଙ୍ଗ ।
ବୈର ପରିହରି ବନେ ବିହରନ୍ତି ନାନାବିଧ ଖଗ ମୃଗ ॥୨୪୯॥

ବନବାସୀ କୋହ୍ଲ କନ୍ଧ କିରାତ ଆଦିର । ସୁଧା ସମ ସ୍ୱାଦ ଶୁଚି ମଧୁ ମନୋହର ॥
ସୁରୁଚିର ପର୍ଣ୍ଣପୁଟ ଯତନେ ରଚିଣ । କନ୍ଦମୂଳ ଫଳ ପୁଣି ଅଙ୍କୁର ଦେଇଣ ॥୧॥

---

ଶ୍ରୀରାମଙ୍କ ବଚନ ଶୁଣି ସାରା ସମାଜ ଭୟଭୀତ ହୋଇଥିଲେ । ସତେ ଅବା ମଝି ସମୁଦ୍ରରେ ଜାହାଜ କମ୍ପି ଉଠୁଥିଲା ! କିନ୍ତୁ ଯେତେବେଳେ ସେମାନେ ଗୁରୁ ବଶିଷ୍ଠଙ୍କ ଶ୍ରେଷ୍ଠ କଲ୍ୟାଣମୂଳକ ବାଣୀ ଶୁଣିଲେ, ସେତେବେଳେ ସେହି ଜାହାଜ ନିମନ୍ତେ ବାୟୁ ଅନୁକୂଳ ହୋଇଗଲା ପରି ସମସ୍ତେ ବୋଧ କଲେ । ॥ ୧ ॥ ସମସ୍ତ ଲୋକ ପୟସ୍ୱିନୀ ନଦୀର ପବିତ୍ର ଜଳରେ ଦିନରେ ତିନି ଥର ସ୍ନାନ କରୁଥା'ନ୍ତି । ଉକ୍ତ ନଦୀର ଦର୍ଶନ ଯୋଗେ ପାପ-ସମୂହ ନଷ୍ଟ ହୋଇଯାଏ । ସମସ୍ତେ ସ୍ନାନ ପରେ ମଙ୍ଗଳମୂର୍ତ୍ତି ଶ୍ରୀରାମଚନ୍ଦ୍ରଙ୍କୁ ଦଣ୍ଡବତ୍ ପ୍ରଣାମ କରୁଥା'ନ୍ତି ଏବଂ ନେତ୍ର ପୂରାଇ ତାହାଙ୍କୁ ଦର୍ଶନ କରୁଥାଆନ୍ତି ॥ ୨ ॥ ସମସ୍ତେ ଶ୍ରୀରାମଚନ୍ଦ୍ରଙ୍କ ପର୍ବତ ( କାମଦଗିରି ) ଓ ବନ ଦେଖିବାକୁ ଯାଉଥା'ନ୍ତି । ସେଠାରେ ସମସ୍ତ ସୁଖର ସଦ୍ଭାବ ଓ ସମସ୍ତ ଦୁଃଖର ଅଭାବ । ଝରଣାରେ ଅମୃତ ସମାନ ଜଳ ଝରୁଥାଏ ଏବଂ ତିନି ପ୍ରକାର୍ (ଶୀତଳ, ମନ୍ଦ ଓ ସୁଗନ୍ଧ) ବାୟୁ ତିନି ପ୍ରକାର (ଆଧ୍ୟାତ୍ମିକ, ଆଧିଭୌତିକ ଓ ଆଧିଦୈବିକ) ତାପ ହରଣ କରି ନେଉଥାଏ ॥ ୩ ॥ ଅସଂଖ୍ୟ ଜାତିର ବୃକ୍ଷ, ଲତା ଓ ତୃଣ ସେଠାରେ ସୁଶୋଭିତ ଏବଂ ବିବିଧ ଫଳ, ଫୁଲ ଓ ପତ୍ରରେ ସେମାନେ ବିମଣ୍ଡିତ । ସୁନ୍ଦର ଶିଳାମାନ ପରିଶୋଭିତ । ବୃକ୍ଷମାନଙ୍କର ସୁଖଦ ଛାୟା ସର୍ବତ୍ର ପରିବ୍ୟାପ୍ତ । ବନର ଶୋଭା କିଏ ବର୍ଣ୍ଣନ କରି ପାରିବ ? ॥ ୪ ॥

ଦୋହା :—ସରୋବରମାନଙ୍କରେ କମଳ ବିକଶିତ ଏବଂ ଜଳଚର ପକ୍ଷୀ କଳରବରତ ।

ସବନ୍ହି ଦେହିଁ କରି ବିନୟ ପ୍ରନାମା । କହି କହି ସ୍ୱାଦ ଭେଦ ଗୁନ ନାମା ॥
ଦେହିଁ ଲୋଗ ବହୁ ମୋଲ ନ ଲେହୀଁ । ଫେରତ ରାମ ଦୋହାଈ ଦେହୀଁ ॥୨॥
କହହିଁ ସନେହ ମଗନ ମୃଦୁ ବାନୀ । ମାନତ ସାଧୁ ପ୍ରେମ ପହିଚାନୀ ॥
ତୁମ୍ହ ସୁକୃତୀ ହମ ନୀଚ ନିଷାଦା । ପାୱା ଦରସନୁ ରାମ ପ୍ରସାଦା ॥୩॥
ହମହି ଅଗମ ଅତି ଦରସୁ ତୁମ୍ହାରା । ଜସ ମରୁଧରନି ଦେବଧୁନି ଧାରା ॥
ରାମ କୃପାଲ ନିଷାଦ ନେୱାଜା । ପରିଜନ ପ୍ରଜଉ ଚହିଅ ଜସ ରାଜା ॥୪॥

ୟହ ଜିୟଁ ଜାନି ସଁକୋଚୁ ତଜି କରିଅ ଛୋହୁ ଲଖି ନେହୁ ।
ହମହି କୃତାରଥ କରନ ଲଗି ଫଲ ତୃନ ଅଂକୁର ଲେହୁ ॥୨୫୦॥

---

ଦିଅନ୍ତି ଲୋକଙ୍କୁ କରି ବିନୟ ପ୍ରଣାମ । କହି କହି ସ୍ୱାଦ ଭେଦ ବସ୍ତୁ ଗୁଣନାମ ॥
ଦେଲେହେଁ ଲୋକ ବହୁତ ମୂଲ୍ୟ, ନ ନିଅନ୍ତି । ଫେରାଇଲେ ରାମଙ୍କର ନିୟମ ଧରନ୍ତି ॥୨॥
ବୋଲନ୍ତି ସ୍ନେହ-ନିମଗ୍ନ ମଧୁର ବଚନ । ପ୍ରେମ ଚିହ୍ନି ସାଧୁଜନ ହୁଅନ୍ତି ପ୍ରସନ୍ନ ॥
ତୁମ୍ଭେ ପୁଣ୍ୟବନ୍ତ ଆମ୍ଭେ ନିଷାଦ ପାମର । ପାଇଲୁ ରାମ ପ୍ରସାଦେ ଦର୍ଶନ ତୁମ୍ଭର ॥୩॥
ଆମ୍ଭଙ୍କୁ ତୁମ୍ଭ ଦର୍ଶନ ଅଗମ୍ୟ ଅତ୍ୟନ୍ତ । ସୁର-ନଦୀ ଧାର ମରୁ-ଭୂମିରେ ଯେମନ୍ତ ॥
ରାମ କୃପାସିନ୍ଧୁ ମାଣି କଲେ ନିଷାଦଙ୍କୁ । ରାଜାପରି ହେବା ଲୋଡା ପ୍ରଜା ବାନ୍ଧବଙ୍କୁ ॥୪॥

ଏହା ମନେ ହେଜ ସଙ୍କୋଚ ବରଜି ସ୍ନେହ ଦେଖି କୃପା କର ।
ଆମ୍ଭଙ୍କୁ କୃତାର୍ଥ କରିବା ନିମିତ୍ତ ଘେନ ଫଲ-ତୃଣାଙ୍କୁର ॥୨୫୦॥

---

ଭ୍ରମରମାନେ ଗୁଞ୍ଜନ କରୁଅଛନ୍ତି । ବିବିଧ ରଙ୍ଗର ପଶୁପକ୍ଷୀ ବନରେ ଶତ୍ରୁତା-ରହିତ ହୋଇ ବିହାର କରୁଅଛନ୍ତି ॥ ୨୪୯ ॥ ଚୌପାଈ :—କୋଲ୍ଲ, କିରାତ ଓ ଭିଲ ଆଦି ବନବାସୀ ଲୋକମାନେ ପବିତ୍ର, ସୁନ୍ଦର ଓ ଅମୃତ ସମାନ ସ୍ୱାଦିଷ୍ଟ ମଧୁ ଏବଂ କନ୍ଦମୂଳ, ଫଳ ଓ ଅଙ୍କୁର ଆଦି ଚୌପଦୀ ଓ ପତ୍ର-ପୁଡିଆରେ ଭର୍ତ୍ତି କରି ସମସ୍ତଙ୍କୁ ବିନୟ ଓ ପ୍ରଣାମ ସହକାରେ ଦେଉଥା'ନ୍ତି । ସେ ସବୁ ପଦାର୍ଥର ଭିନ୍ନ ଭିନ୍ନ ସ୍ୱାଦ, ଭେଦ (ପ୍ରକାର), ଗୁଣ ଓ ନାମ ଆଦିର ପରିଚୟ ଦେଇ ଖାଇବାକୁ ସେମାନଙ୍କୁ ବତାଉଥା'ନ୍ତି । ଅଯୋଧ୍ୟାବାସୀମାନେ ସେ ସବୁ ଦ୍ରବ୍ୟ ନିମନ୍ତେ ସେମାନଙ୍କୁ ବହୁତ ଦାମ୍ ଦେଉଥା'ନ୍ତି । କିନ୍ତୁ ସେମାନେ ନେଉ ନ ଥା'ନ୍ତି ଏବଂ ଫେରାଇ ଦେଲେ, ଶ୍ରୀରାମଙ୍କ ନିୟମ ପକାଉ-ଥା'ନ୍ତି ॥ ୧-୨ ॥ ସେମାନେ ପ୍ରେମରେ ମଗ୍ନ ହୋଇ କୋମଳ ବାଣୀରେ କହୁଥା'ନ୍ତି, "ସାଧୁ ଲୋକମାନେ ପ୍ରେମକୁ ଚିହ୍ନି ତାହାର ସମ୍ମାନ କରନ୍ତି । ଆପଣମାନେ ତ ପୁଣ୍ୟାତ୍ମା ଏବଂ ଆମ୍ଭେମାନେ ନିଷାଦ । ଶ୍ରୀରାମଙ୍କ କୃପାଯୋଗେ ହିଁ ଆମ୍ଭେମାନେ ଆପଣମାନଙ୍କ ଦର୍ଶନ ଲାଭ କରିଅଛୁ ॥ ୩ ॥ ମରୁଭୂମିରେ ଗଙ୍ଗାଙ୍କ ଧାରା ଦୁର୍ଲ୍ଲଭ ହେଲା ପରି ଆମ୍ଭମାନଙ୍କ ପକ୍ଷରେ ଆପଣମାନଙ୍କ ଦର୍ଶନ ଅତି ଦୁର୍ଲ୍ଲଭ । ଦେଖନ୍ତୁ, କୃପାଳୁ ଶ୍ରୀରାମଚନ୍ଦ୍ର ନିଷାଦ ଉପରେ କିପରି କୃପା କରିଅଛନ୍ତି । ରାଜା ଯେପରି, ତାଙ୍କ ପରିବାର ଓ ପ୍ରଜା ସେହିପରି ମଧ୍ୟ ହେବା ଉଚିତ ॥ ୪ ॥ ଦୋହା :—ହୃଦୟରେ ଏପରି ଜାଣି ସଙ୍କୋଚ

ତୁହ୍ମ ପ୍ରିୟ ପାହୁନେ ବନ ପଗୁ ଧାରେ । ସେବା ଜୋଗୁ ନ ଭାଗ ହମାରେ ॥
ଦେବ କାହ ହମ ତୁହ୍ମହି ଗୋସାଁଈ । ଈଁଧନୁ ପାତ କିରାତ ମିତାଈ ॥୧॥
ୟହ ହମାରି ଅତି ବଡ଼ି ସେବକାଈ । ଲେହିଁ ନ ବାସନ ବସନ ଚୋରାଈ ॥
ହମ ଜଡ଼ ଜୀବ ଜୀବଗନ ଘାତୀ । କୁଟିଲ କୁଚାଲୀ କୁମତି କୁଜାତୀ ॥୨॥
ପାପ କରତ ନିସି ବାସର ଜାହୀଁ । ନହିଁ ପଟ କଟି ନହିଁ ପେଟ ଅଘାହୀଁ ॥
ସପନେହୁଁ ଧରମ ବୁଦ୍ଧି କସ କାଊ । ୟହ ରଘୁନନ୍ଦନ ଦରସ ପ୍ରଭାଊ ॥୩॥
ଜବ ତେଁ ପ୍ରଭୁ ପଦ ପଦୁମ ନିହାରେ । ମିଟେ ଦୁସହ ଦୁଖ ଦୋଷ ହମାରେ ॥
ବଚନ ସୁନତ ପୁରଜନ ଅନୁରାଗେ । ତିହ୍ନ କେ ଭାଗ ସରାହନ ଲାଗେ ॥୪॥

ଲାଗେ ସରାହନ ଭାଗ ସବ ଅନୁରାଗ ବଚନ ସୁନାୱହୀଁ ।
ବୋଲନି ମିଲନି ସିୟ ରାମ ଚରନ ସନେହୁ ଲଖି ସୁଖୁ ପାୱହୀଁ ॥
ନର ନାରି ନିଦରହିଁ ନେହୁ ନିଜ ସୁନି କୋଲ ଭିଲ୍ଲନି କୀ ଗିରା ।
ତୁଲସୀ କୃପା ରଘୁବଂସମନି କୀ ଲୋହ ଲୈ ଲୌକା ତିରା ॥

---

ପ୍ରିୟ ଅତିଥି ଆପଣ ଆସିଛନ୍ତି ବନକୁ । ଦେଇ ନାହିଁ ବିଧି ସେବା ସୌଭାଗ୍ୟ ଆମ୍ଭଙ୍କୁ ॥
ଆପଣଙ୍କୁ ଆମ୍ଭେ ଅବା ଦେବୁ କି ପଦାର୍ଥ । କିରାତ ମିତ୍ରତା କାଷ୍ଠ ପତ୍ର ସଙ୍ଗେ ନାଥ ॥୧॥
ଏ ଆମ୍ଭର ବଡ଼ ଭାରି ସୁସେବକ-ପଣ । ଚୋରାଇ ଯେ ନେଉ ନାହୁଁ ବାସନ ବସନ ॥
ଆମ୍ଭେ ଜଡ଼ ଜୀବାଧମ ଜୀବଗଣ-ଘାତୀ । କପଟୀ କୁପଥଗାମୀ କୁମତି କୁଜାତି ॥୨॥
ପାପ କରମେ ରଜନୀ ଦିବସ ବିତଇ । କଟିରେ ବସନ ନାହିଁ, ପେଟ ନ ପୂରଇ ॥
ସ୍ୱପ୍ନେ ମଧ କାହିଁ କେବେ ଧର୍ମବୁଦ୍ଧି ଥିବ । ଏହା ରଘୁନନ୍ଦନଙ୍କ ଦର୍ଶନ ପ୍ରଭାବ ॥୩॥
ଯେ ଦିନୁ ଦେଖିଲୁ ପ୍ରଭୁ ପଙ୍କଜ-ପୟର । ତୁଟିଗଲା ଦୁଃଖ ଦୋଷ ଦୁଃସହ ଆମ୍ଭର ॥
ବାଣୀ ଶୁଣି ପୁରଜନେ ଲଭି ଅନୁରାଗ । ପ୍ରଶଂସା କରନ୍ତି ସୁଖେ ସେମାନଙ୍କ ଭାଗ୍ୟ ॥୪॥

ତାଙ୍କ ଭାଗ୍ୟ ପ୍ରଶଂସି ଆନନ୍ଦେ ପୁରବାସୀ ସପ୍ରେମ ବଚନ ଶୁଣାନ୍ତି ।
ବୋଲଚାଲ ମିଳନ ସୀତା ରାମ ଚରଣ-ଭାବ ନିରେଖି ସୁଖ ପାନ୍ତି ।
ନିନ୍ଦନ୍ତି ଲୋକେ ସ୍ୱସ୍ନେହକୁ, ଶୁଣି କୋଲଙ୍କ ବଚନକୁ,
ତୁଲସୀ ରଘୁନାଥ-କୃପା ବଳରେ ଲୌହ ତରଇ ନେଇଣ ନାବକୁ ॥

---

ତ୍ୟାଗ କରନ୍ତୁ ଏବଂ ଆମ୍ଭମାନଙ୍କର ପ୍ରେମ ଦେଖି କୃପା କରନ୍ତୁ । ଆମ୍ଭମାନଙ୍କୁ କୃତାର୍ଥ କରିବା ନିମନ୍ତେ ଆମ୍ଭମାନଙ୍କ ପ୍ରଦତ୍ତ ଫଳ, ତୃଣ ଓ ଅଙ୍କୁର ଗ୍ରହଣ କରନ୍ତୁ ॥୨୫୦॥ ଚୌପାଈ'--- ଆପଣମାନେ ପ୍ରିୟ ଅଭ୍ୟାଗତ ରୂପେ ବନରେ ପହଞ୍ଚିଅଛନ୍ତି । ଆମ ଭାଗ୍ୟରେ ଆପଣଙ୍କ ସେବାର ଯୋଗ୍ୟ କିଛି ନାହିଁ । ହେ ସ୍ୱାମି ! ଆପଣଙ୍କୁ ଆମେ ଦେବୁ କ'ଣ ? ମାତ୍ର ଇନ୍ଧନ ଓ ପତ୍ର ପର୍ଯ୍ୟନ୍ତ କିରାତଙ୍କ ମିତ୍ରତା ସୀମିତ ॥ ୧ ॥ ଆମ୍ଭେମାନେ ଯେ, ଆପଣଙ୍କ ବସ୍ତ୍ର ଓ ବାସନ ଚୋରାଇ ନେଉନାହୁଁ, ଏହାହିଁ ଆମର ଆପଣମାନଙ୍କ ପ୍ରତି ବଡ଼ ସେବା ।

ବିହରହିଁ ବନ ଚହୁଁ ଓର ପ୍ରତିଦିନ ପ୍ରମୁଦିତ ଲୋଗ ସବ ।
ଜଲ ଜ୍ୟୋଁ ଦାଦୁର ମୋର ଭଏ ପୀନ ପାବସ ପ୍ରଥମ ॥୨୫୧॥
ପୁରଜନ ନାରି ମଗନ ଅତି ପ୍ରୀତୀ । ବାସର ଜାହିଁ ପଲକ ସମ ବୀତୀ ॥
ସୀୟ ସାସୁ ପ୍ରତି ବେଷ ବନାଈ । ସାଦର କରଇ ସରିସ ସେବକାଈ ॥୧॥
ଲଖା ନ ମରମୁ ରାମ ବିନୁ କାହୁଁ । ମାୟା ସବ ସିୟ ମାୟା ମାହୁଁ ॥
ସୀୟଁ ସାସୁ ସେବା ବସ କୀନ୍ହୀ । ତିନ୍ହ ଲହି ସୁଖ ସିଖ ଆସିଷ ଦୀନ୍ହୀ ॥୨॥

---

ବନ ଚଉଦିଗେ ଲୋକ ମୋଦ ମନେ ବିହରନ୍ତି ପ୍ରତି ଦିନ ।
ପ୍ରଥମ ବରଷା ପାଇଣ ଯେସନେ କେକୀ ଭେକ ହୋଇ ପୀନ ॥୨୫୧॥
ପରମ ପ୍ରେମେ ନିମଗ୍ନ ପୁର ନାରୀ ନର । ପଲକ ସଦୃଶ କଟି ଯାଏ ଦିବାସର ॥
ଶାଶୁଙ୍କ ନିମନ୍ତେ ସୀତା ରଚି ପ୍ରତି ବେଶ । ସମାନ ସେବା କରନ୍ତି ସାଦରେ ବିଶେଷ ॥୧॥
ନ ଜାଣିଲେ ମର୍ମ କେହି ରାମ ବିନା ଆନ । ସମସ୍ତ ମାୟା, ବୈଦେହୀ ମାୟା-ଅଧିଷ୍ଠାନ ॥
ସୀତା ଶାଶୁ ସମସ୍ତଙ୍କୁ କଲେ ସେବାବଶ । ଶିକ୍ଷା ଆଶିଷ ସେମାନେ ଦେଲେ ସହରଷ ॥୨॥

---

ଆମ୍ଭେମାନେ ଜଡ ଜୀବ, ଜୀବହିଂସକ, କୁଟିଳ, କୁଚଳୀ, କୁବୁଦ୍ଧି ଓ କୁଜାତି ॥ ୨ ॥ ଆମ୍ଭମାନଙ୍କର ଦିନରାତି କେବଳ ପାପ କରି କରି କଟୁଛି । ତେବେ ମଧ୍ୟ ଆମ୍ଭମାନଙ୍କ କଟିରେ ବସ୍ତ୍ର ନାହିଁ କିମ୍ବା ଆମ ପେଟ ମଧ୍ୟ ପୂରୁନାହିଁ । ସ୍ୱପ୍ନରେ ମଧ୍ୟ ଆମ୍ଭମାନଙ୍କର ଧର୍ମ-ବୁଦ୍ଧି କାହିଁ ? ଏହା ସବୁ ତ ଶ୍ରୀ ରଘୁନାଥଙ୍କ ଦର୍ଶନର ପ୍ରଭାବ ॥ ୩ ॥ ଯେଉଁ ଦିନଠାରୁ ପ୍ରଭୁଙ୍କ ଚରଣ-କମଳ ଦେଖିଲୁଣି, ସେହି ଦିନଠାରୁ ଆମର ଦୁଃସହ ଦୁଃଖ ଓ ଦୋଷ ଦୂର ହୋଇଗଲାଣି ।" ବନବାସୀମାନଙ୍କର ବଚନ ଶୁଣି ଅଯୋଧ୍ୟାର ଲୋକମାନେ ପ୍ରେମରେ ଭରିଗଲେ ଏବଂ ସେମାନଙ୍କ ଭାଗ୍ୟକୁ ପ୍ରଶଂସା କରିବାକୁ ଲାଗିଲେ ॥ ୪ ॥ ଛନ୍ଦ :—ସମସ୍ତେ ସେମାନଙ୍କ ଭାଗ୍ୟକୁ ପ୍ରଶଂସା କରିବାକୁ ଲାଗିଲେ ଏବଂ ପ୍ରେମପୂର୍ଣ୍ଣ ବଚନ ଶୁଣାଇବାକୁ ଲାଗିଲେ । ସେମାନଙ୍କ କଥାବାର୍ତ୍ତା ଓ ମିଳନର ରୀତି ଏବଂ ଶ୍ରୀରାମଙ୍କ ଚରଣ ପ୍ରତି ସେମାନଙ୍କ ପ୍ରେମ ଦେଖି ସମସ୍ତେ ସୁଖ ଲାଭ କରୁଥା'ନ୍ତି । ସେହି କୋଲ୍ ଓ କିରାତମାନଙ୍କର ବାଣୀ ଶୁଣି ସମସ୍ତ ନରନାରୀ ଆପଣା ଆପଣା ପ୍ରେମକୁ ଧିକ୍କାର କରିବାକୁ ଲାଗିଲେ । ତୁଳସୀଦାସ କହନ୍ତି, ରଘୁବଂଶମଣି ଶ୍ରୀରାମଚନ୍ଦ୍ରଙ୍କ କୃପା ଯୋଗେ ବୁଡ଼ିବା ଯୋଗ୍ୟ ଲୁହା ରାମ-ପ୍ରେମ-ରୂପକ ନୌକା ସାହାଯ୍ୟରେ ପାର ହୋଇଗଲା ॥ ସୋରଠା :—ସମସ୍ତ ଲୋକ ଦିନକୁ ଦିନ ପରମ ଆନନ୍ଦିତ ହୋଇ ବନର ଚତୁର୍ଦ୍ଦିଗରେ ବିଚରଣ କରୁଥା'ନ୍ତି । ପ୍ରଥମ ବର୍ଷା ଜଳରେ ବେଙ୍ଗ ଓ ମୟୂରମାନେ ଆନନ୍ଦରେ ଏହିପରି ମୋଟା ହୋଇଯାଆନ୍ତି ॥ ୨୫୧ ॥ ଚୌପାଈ '—ଅଯୋଧ୍ୟାପୁରର ପୁରୁଷ ଓ ସ୍ତ୍ରୀମାନେ ସମସ୍ତେ ଅତ୍ୟନ୍ତ ପ୍ରେମରେ ମଗ୍ନ ହେଉଥାଆନ୍ତି । ସେମାନଙ୍କ ଦିନ ମୁହୂର୍ତ୍ତକ ପରି କଟିଯାଉଥାଏ । ଯେତେ ଶାଶୁ ଥିଲେ ସେତିକ ରୂପରେ ସୀତା ସମସ୍ତଙ୍କୁ ଅତି ଆଦର ସହକାରେ ସମାନ ସେବା କରୁଥା'ନ୍ତି ॥୧॥

ଲଖି ସିୟ ସହିତ ସରଲ ଦୋଉ ଭାଈ । କୁଟିଲ ରାନି ପଛିତାନି ଅଘାଈ ॥
ଅବନି ଜମହି ଜାଚତି କୈକେଈ । ମହି ନ ବୀଚୁ ବିଧି ମୀଚୁ ନ ଦେଈ ॥୩॥
ଲୋକହୁଁ ବେଦ ବିଦିତ କବି କହହୀଁ । ରାମ ବିମୁଖ ଥଲୁ ନରକ ନ ଲହହୀଁ ॥
ୟହୁ ସଂସଉ ସବ କେ ମନ ମାହୀଁ । ରାମ ଗଓ୍ୱନୁ ବିଧି ଅଓ୍ୱଧ କି ନାହୀଁ ॥୪॥

ନିସି ନ ନୀଦ ନହିଁ ଭୂଖ ଦିନ ଭରତୁ ବିକଲ ସୁଚି ସୋଚ ।
ନୀଚ କୀଚ ବିଚ ମଗନ ଜସ ମୀନହି ସଲିଲ ସଁକୋଚ ॥୨୫୨॥

କୀନ୍ହି ମାତୁ ମିସ କାଲ କୁଚାଲୀ । ଈତି ଭୀତି ଜସ ପାକତ ସାଲୀ ॥
କେହି ବିଧି ହୋଇ ରାମ ଅଭିଷେକୂ । ମୋହି ଅଓ୍ୱକଲତ ଉପାଉ ନ ଏକୂ ॥୧॥

---

ସରଳ ବେନି ଭାଇଙ୍କୁ ଦେଖି ସୀତାସହ । କୁଟିଳା ରାଣୀ ସନ୍ତାପ କରଇ ଦୁଃସହ ॥
ଏବେ ହୃଦୟେ କୈକେୟୀ ଯାଚନା କରଇ । ପୃଥ୍ୱୀ ସ୍ଥାନ 'ନ ଦିନ୍ତି ମୃତ୍ୟୁ ନ ହୁଅଇ' ॥୩॥
ଲୋକେ ବେଦେ ସୁବିଦିତ କବି ବଖାଣନ୍ତି । ରାମ-ବିମୁଖ ନର୍କେ ବି ସ୍ଥାନ ନ ଲଭନ୍ତି ॥
ଏହି ଶଙ୍କା ଆନ୍ଦୋଳଇ ଲୋକଙ୍କ ମନକୁ । ଫେରିବେ କି ନାହିଁ ରାମ ଅଯୋଧ୍ୟାପୁରକୁ ॥୪॥

ନିଶି ନିଦ୍ରା କିମ୍ବା କ୍ଷୁଧା ନାହିଁ ଦିବା ଚିନ୍ତା-ବିକଳ ଭରତ ।
ସଲିଳ କଷ୍ଟରେ ନିମନ ପଙ୍କରେ ନିମଗ୍ନ ମୀନ ଯେମନ୍ତ ॥୨୫୨॥

ମାତା ବାହାନାରେ କାଳ କୁଚକ୍ର କରିଲା । ପାଚନ୍ତେ ଫସଲ ଈତି ଭୀତି ବା ପଡ଼ିଲା ॥
କିପରି ଭାବରେ ହେବ ରାମ ଅଭିଷେକ । ମୋତେ ଦୃଶ୍ୟ ନ ହୁଅଇ ଉପାୟ ଯେ ଏକ ॥୧॥

---

ଶ୍ରୀରାମଙ୍କ ବିନା ଏହି ରହସ୍ୟକୁ ଆଉ କେହି ଜାଣିଲେ ନାହିଁ । ସମସ୍ତ ମାୟା ପରାଶକ୍ତି ମହାମାୟା ସୀତାଙ୍କ ମାୟାର ହିଁ ଅଙ୍ଗୀଭୂତ । ସୀତା ଶାଶୁମାନଙ୍କୁ ନିଜ ସେବାରେ ବଶୀଭୂତ କରିନେଲେ । ସେମାନେ ସୁଖ ଲାଭ କରି ଉପଦେଶ ଓ ଆଶୀର୍ବାଦ ଦେଲେ ॥ ୨ ॥ ସୀତାଙ୍କ ସମେତ ରାମଲକ୍ଷ୍ମଣ ଦୁଇ ଭାଇଙ୍କ ସରଳ ସ୍ୱଭାବ ଦେଖି କୁଟିଳାରାଣୀ କୈକେୟୀ ଯଥେଷ୍ଟ ଅନୁତାପ କଲେ । ସେ ପୃଥିବୀ ଓ ଯମରାଜଙ୍କୁ ମାଗୁଣି କରୁଥା'ନ୍ତି । କିନ୍ତୁ ପୃଥିବୀ ଫାଟି ସମାଇବା ପାଇଁ ତାଙ୍କୁ ବାଟ ଦେଉ ନ ଥାଏ କି ବିଧାତା ମୃତ୍ୟୁ ଦେଉ ନ ଥାଏ ॥ ୩ ॥ ଏ କଥା ଲୋକ ଓ ବେଦରେ ପ୍ରସିଦ୍ଧ ଏବଂ କବିମାନେ କହନ୍ତି ଯେ, ଯେଉଁ ବ୍ୟକ୍ତି ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ବିମୁଖ, ତାହା ନିମନ୍ତେ ନର୍କରେ ହିଁ ସ୍ଥାନ ନାହିଁ । ସମସ୍ତଙ୍କ ମନରେ ଏହି ସନ୍ଦେହ ହେଉଥାଏ—"ହେ ବିଧାତା ! ଶ୍ରୀରାମଚନ୍ଦ୍ରଙ୍କ ଅଯୋଧ୍ୟା ଫେରିବା ହେବ କି ନାହିଁ ।" ॥ ୪ ॥ ଦୋହା :— ଭରତଙ୍କୁ ରାତିରେ ନିଦ୍ରା ହେଉ ନ ଥାଏ, କି ଦିନରେ କ୍ଷୁଧା ବି ହେଉ ନ ଥାଏ । ସେ ପବିତ୍ର ଚିନ୍ତାରେ ଏପରି ବ୍ୟାକୁଳ, ସତେ ଅବା (ଶୁଷ୍କ ସରୋବରସ୍ଥ) ନିମ୍ନତମ ପଙ୍କରେ ନିମଜ୍ଜିତ ମୀନ ଜଳାଭାବ ଯୋଗେ ବ୍ୟାକୁଳ ହେଉଅଛି ॥ ୨୫୨ ॥ ଚୌପାଇ —ଭରତ ଭାବୁଥାନ୍ତି, "ମାତାର ଛଳରେ କାଳ ଆସି ଚକ୍ରାନ୍ତ କରିଛି ! ଧାନ ପାଚିଲା ବେଳକୁ ଈତି (ଫସଲ ହାନିକାରକ ଉପଦ୍ରବ) ଭୟ ଆସି ପହଞ୍ଚିଗଲା କି !

ଅବସି ଫିରହିଁ ଗୁର ଆୟସୁ ମାନୀ । ମୁନି ପୁନି କହବ ରାମ ରୁଚି ଜାନୀ ॥
ମାତୁ କହେହୁଁ ବହୁରହିଁ ରଘୁରାଊ । ରାମ ଜନନି ହଠ କରବି କି କାଊ ॥୨॥
ମୋହି ଅନୁଚର କର କେତିକ ବାତା । ତେହି ମହଁ କୁସମଉ ବାମ ବିଧାତା ॥
ଜୌଁ ହଠ କରଉଁ ତ ନିପଟ କୁକରମୂ । ହରଗିରି ତେଁ ଗୁରୁ ସେବକ ଧରମୂ ॥୩॥
ଏକଉ ଜୁଗୁତି ନ ମନ ଠହରାନୀ । ସୋଚତ ଭରତହି ରୈନି ବିହାନୀ ॥
ପ୍ରାତ ନହାଇ ପ୍ରଭୁହି ସିର ନାଈ । ବୈଠତ ପଠଏ ରିଷୟଁ ବୋଲାଈ ॥୪॥

ଗୁର ପଦ କମଲ ପ୍ରନାମୁ କରି ବୈଠେ ଆୟସୁ ପାଇ ।
ବିପ୍ର ମହାଜନ ସଚିବ ସବ ଜୁରେ ସଭାସଦ ଆଇ ॥୨୫୩॥

ବୋଲେ ମୁନିବରୁ ସମୟ ସମାନା । ସୁନହୁ ସଭାସଦ ଭରତ ସୁଜାନା ॥
ଧରମ ଧୁରୀନ ଭାନୁକୁଲ ଭାନୂ । ରାଜା ରାମୁ ସ୍ୱବସ ଭଗବାନୂ ॥୧॥

---

ଗୁରୁଙ୍କ ଆଦେଶ ମାନି ଅବଶ୍ୟ ଫେରିବେ । ମୁନି ପୁଣି ରାମରୁଚି ଦେଖିଣ କହିବେ ॥
ଜନନୀ କହିଲେ ରଘୁପତି ବାହୁଡ଼ିବେ । ରାମଙ୍କ ମାତା କେବେହେଁ ଜିଦ କି କରିବେ ॥୨॥
କିବା ଗୁରୁ କଥା ମାନି ମୋ ଅନୁଚରର । କୁସମୟ ତହିଁ, ବାମ ବିଧାତା ଆବର ॥
ଯେବେ ଜିଦ କରେ ହେବ ଅତି କୁକରମ । ହର-ଗିରିଠାରୁ ଗରୁ ସେବକ-ଧରମ ॥୩॥
କୌଣସି ଯୁକ୍ତି ହୃଦୟେ ସ୍ଥାନ ନ ପାଇଲା । ଚିନ୍ତା କରନ୍ତେ ଭରତ ରଜନୀ ପାହିଲା ॥
ପ୍ରାତଃ ସ୍ନାନ କରି ଶିର ପ୍ରଭୁଙ୍କୁ ନୁଆଇଁ । ବସିଛନ୍ତି, ପଠାଇଲେ ବଶିଷ୍ଠ ଡକାଇ ॥୪॥

ଗୁରୁ ପାଦପଦ୍ମ ବନ୍ଦନ କରିଣ ଆଦେଶ ପାଇ ବସିଲେ ।
ମନ୍ତ୍ରୀ ମହାଜନ ବିପ୍ର ସଭ୍ୟଗଣ ସମସ୍ତେ ଠୁଳ ହୋଇଲେ ॥୨୫୩॥

ଭାଷିଲେ ମୁନି-ନାୟକ ସମୟ ଯେମନ୍ତ । ଶୁଣ ସର୍ବେ ସଭାସଦ ପ୍ରବୀଣ ଭରତ ॥
ଭାସ୍କର-କୁଳ - ଭାସ୍କର ଧର୍ମ - ଧୁରନ୍ଧର । ସ୍ୱତନ୍ତ୍ର ଶ୍ରୀ ଭଗବାନ ରାଜା ରଘୁବର ॥ ॥

---

ଏବେ ଶ୍ରୀରାମଚନ୍ଦ୍ରଙ୍କ ରାଜ୍ୟାଭିଷେକ କି ରୂପେ ହେବ, ମୋତେ ଗୋଟିଏ ହେଲେ ଉପାୟ ଦିଶୁନାହିଁ ॥ ୧ ॥ ଗୁରୁଙ୍କ ଆଜ୍ଞା ମାନି ଶ୍ରୀରାମ ଅବଶ୍ୟ ଅଯୋଧ୍ୟାକୁ ଫେରିବେ । କିନ୍ତୁ ବଶିଷ୍ଠ ରାମଙ୍କ ରୁଚି ଜାଣି ସେପରି ଫେରିବାକୁ ତାଙ୍କୁ କହି ପାରିଲେ ତ ' ମାତା କୌଶଲ୍ୟା କହିଲେ ମଧ୍ୟ ଶ୍ରୀ ରଘୁନାଥ ଫେରି ପାରନ୍ତି । କିନ୍ତୁ ଶ୍ରୀରାମଙ୍କ ଜନ୍ମଦାତ୍ରୀ ମାତା କ'ଣ କେବେ ତାଙ୍କ ଫେରିବା ନିମନ୍ତେ ଜିଦ୍ କରି ପାରିବେ ? ॥ ୨ ॥ ତେବେ ମୋ ପରି ସେବକର ଗଣନା କାହିଁରେ ? ତହିଁରେ ପୁଣି ସମୟ ଖରାପ ଏବଂ ବିଧାତା ମୋର ପ୍ରତିକୂଳ । ଯଦି ମୁଁ ଜିଦ୍ କରୁଛି, ତେବେ ବି ଏହା ମୋ ପକ୍ଷରେ ଘୋର କୁକର୍ମ ଓ ଅଧର୍ମ ହେବ । କାରଣ ସେବକର ଧର୍ମ ଶିବଙ୍କ କୈଳାସ ପର୍ବତଠାରୁ ମଧ୍ୟ ଅଧିକ ଭାରି (ପାଳନରେ କଠିନ) ।" ॥ ୩ ॥ ଗୋଟିଏ ହେଲେ ଯୁକ୍ତି ଭରତଙ୍କ ମନରେ ସ୍ଥାନ ପାଇଲା ନାହିଁ । ଭାବି ଭାବି ରାତି ବିତିଗଲା । ସେ ପ୍ରାତଃ କାଳରେ ସ୍ନାନ କରି ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ପ୍ରଣାମ ପରେ ବସିଛନ୍ତି, ଏହିପରି ସମୟରେ ଋଷି ବଶିଷ୍ଠ

ସତ୍ୟସନ୍ଧ ପାଲକ ଶ୍ରୁତି ସେତୁ । ରାମ ଜନମୁ ଜଗ ମଂଗଲ ହେତୁ ॥
ଗୁର ପିତୁ ମାତୁ ବଚନ ଅନୁସାରୀ । ଖଲ ଦଲୁ ଦଲନ ଦେବ ହିତକାରୀ ॥୨॥
ନୀତି ପ୍ରୀତି ପରମାରଥ ସ୍ୱାରଥୁ । କୋଉ ନ ରାମ ସମ ଜାନ ଜଥାରଥୁ ॥
ବିଧି ହରି ହରୁ ସସି ରବି ଦିସିପାଲା । ମାୟା ଜୀବ କରମ କୁଲି କାଲା ॥୩॥
ଅହିପ ମହିପ ଜହଁ ଲଗି ପ୍ରଭୁତାଈ । ଜୋଗ ସିଦ୍ଧି ନିଗମାଗମ ଗାଈ ॥
କରି ବିଚାର ଜିୟଁ ଦେଖହୁ ନୀକେଁ । ରାମ ରଜାଇ ସୀସ ସବହୀ କେଁ ॥୪॥

ରାଖେ ରାମ ରଜାଇ ରୁଖ ହମ ସବ କର ହିତ ହୋଇ ।
ସମୁଝି ସୟାନେ କରହୁ ଅବ ସବ ମିଲି ସଂମତ ସୋଇ ॥୨୫୪॥

---

ସତ୍ୟ ସଙ୍କଳ୍ପ-ପାଳକ ଶ୍ରୁତି-ଶାସ୍ତ୍ର ସେତୁ । ରାମ-ଜନମ ଜଗତ ମଙ୍ଗଳର ହେତୁ ॥
ଗୁରୁ ଜନକ ଜନନୀ ବଚନ-ପାଳକ । ଖଳ-ଦଳ-ବିନାଶକ ବିବୁଧ-ରକ୍ଷକ ॥୨॥
ନୀତି ପ୍ରୀତି ପରମାର୍ଥ ଆଦିର ଯେ ସ୍ୱାର୍ଥ । କେହି ନ ଜାଣନ୍ତି ରାମ ସମାନ ଯଥାର୍ଥ ॥
ବିଧି ହରିହର ରବି ଶଶୀ ଦିଗପାଳ । ପ୍ରକୃତି ଜୀବ ସ୍ୱଭାବ ଗୁଣ କର୍ମ କାଳ ॥୩॥
ଅହୀଶ ମହୀଶ ଯୋଗସିଦ୍ଧି ଯେତେ ଜାଣ । ପ୍ରଭୁତ୍ୱ ନିଗମାଗମ କରନ୍ତି ବଖାଣ ॥
ଉତ୍ତମ ରୂପେ ବିଚାରି ଦେଖ ହୃଦୟରେ । ରାମ ଆଜ୍ଞା ସମସ୍ତଙ୍କ ମସ୍ତକ ଉପରେ ॥୪॥

ରଖିଲେ ବିଚାରି ଆଜ୍ଞା ରାମଙ୍କର ହିତ ହୋଇବ ଆମ୍ଭର ।
ବୁଝି ତାହା ଏବେ ପ୍ରବୀଣ ସରବେ ମିଳିତ ସମ୍ମତ କର ॥୨୫୪॥

---

ତାଙ୍କୁ ଡକାଇ ପଠାଇଲେ ॥ ୪ ॥ ଦୋହା :—ଭରତ ଗୁରୁଙ୍କ ଚରଣ-କମଳରେ ପ୍ରଣାମ କଲେ ଏବଂ ଗୁରୁଙ୍କ ଆଜ୍ଞା ପାଇ ବସିଲେ । ସେତିକି ବେଳେ ବ୍ରାହ୍ମଣ, ମହାଜନ, ମନ୍ତ୍ରୀ ଆଦି ସଭାସଦ୍ ସେଠାରେ ଆସି ଏକଜୁଟ ହୋଇଗଲେ ॥ ୨୫୩ ॥ ଚୌପାଈ — ମୁନିବର ବଶିଷ୍ଠ ସମୟୋଚିତ ବଚନ କହିଲେ, "ହେ ସଭାସଦ୍‌ଗଣ ! ହେ ସୁଜ୍ଞାନୀ ଭରତ ! ଶୁଣ । ସୂର୍ଯ୍ୟକୁଳର ସୂର୍ଯ୍ୟ ମହାରାଜ ଶ୍ରୀରାମଚନ୍ଦ୍ର ଧର୍ମଧୁରନ୍ଧର ଓ ସ୍ୱତନ୍ତ୍ର ଭଗବାନ୍ ॥ ୧ ॥ ସେ ସତ୍ୟପ୍ରତିଜ୍ଞ ଓ ବେଦମର୍ଯ୍ୟାଦାର ରକ୍ଷକ । ଶ୍ରୀରାମଙ୍କ ଅବତାର ଜଗତର କଲ୍ୟାଣ ନିମନ୍ତେ ହିଁ ହୋଇଅଛି । ସେ ଗୁରୁ, ମାତା ଓ ପିତାଙ୍କ ବଚନ ଅନୁସାରେ ଚାଳିତ ହେବା ଲୋକ । ସେ ଦୁଷ୍ଟ-ଦଳର ଦଳନକାରୀ ଏବଂ ଦେବତାବୃନ୍ଦଙ୍କ ହିତକାରୀ ॥ ୨ ॥ ନୀତି, ପ୍ରେମ, ପରମାର୍ଥ ଓ ସ୍ୱାର୍ଥକୁ ଶ୍ରୀରାମ ଯେପରି ଯଥାର୍ଥ ତତ୍ତ୍ୱ ସହକାରେ ଜାଣନ୍ତି, ସେହିପରି ଆଉ କେହି ଜାଣନ୍ତି ନାହିଁ । ବ୍ରହ୍ମା, ବିଷ୍ଣୁ, ମହାଦେବ, ଚନ୍ଦ୍ର, ସୂର୍ଯ୍ୟ, ଦିଗପାଳ, ମାୟା, ଜୀବ, ସମସ୍ତ କର୍ମ ଓ କାଳ, ଶେଷ ଏବଂ ( ପୃଥିବୀ ଓ ପାତାଳର ) ଅନ୍ୟାନ୍ୟ ରାଜା ଆଦି ଯେ ପର୍ଯ୍ୟନ୍ତ ପ୍ରଭୁତ୍ୱ ପରିବ୍ୟାପ୍ତ ଏବଂ ବେଦ ଓ ଶାସ୍ତ୍ର ଗାଇଥିବା ମତେ ଯୋଗର ଯେତେ ସିଦ୍ଧି ଅଛନ୍ତି, ଏ ସମସ୍ତଙ୍କ ମସ୍ତକ ଉପରେ ଏକ ମାତ୍ର ଶ୍ରୀରାମଙ୍କ ଆଜ୍ଞା ବିରାଜିତ । (ଅର୍ଥାତ୍ ଶ୍ରୀରାମ ହିଁ ସମସ୍ତଙ୍କର ଏକ ମାତ୍ର ମହାମହିମ ଈଶ୍ୱର ।) ଏହା ହୃଦୟରେ ଭଲ ରୂପେ ବିଚାର କରି ଦେଖ ॥ ୩-୪ ॥ ଦୋହା :—ଅତଏବ

ସବ କହୁଁ ସୁଖଦ ରାମ ଅଭିଷେକୂ । ମଂଗଲ ମୋଦ ମୂଲ ମଗ ଏକୂ ॥
କେହି ବିଧି ଅବଧ ଚଲହିଁ ରଘୁରାଊ । କହହୁ ସମୁଝି ସୋଇ କରିଅ ଉପାଊ ॥୧॥
ସବ ସାଦର ସୁନି ମୁନିବର ବାନୀ । ନୟ ପରମାରଥ ସ୍ୱାରଥ ସାନୀ ॥
ଉତରୁ ନ ଆୱ ଲୋଗ ଭଏ ଭୋରେ । ତବ ସିରୁ ନାଇ ଭରତ କର ଜୋରେ ॥୨॥
ଭାନୁବଂସ ଭଏ ଭୂପ ଘନେରେ । ଅଧିକ ଏକ ତେଁ ଏକ ବଡ଼େରେ ॥
ଜନମ ହେତୁ ସବ କହଁ ପିତୁ ମାତା । କରମ ସୁଭାସୁଭ ଦେଇ ବିଧାତା ॥୩॥
ଦଲି ଦୁଖ ସଜଇ ସକଲ କଲ୍ୟାନା । ଅସ ଅସୀସ ରାଉରି ଜଗୁ ଜାନା ॥
ସୋ ଗୋସାଇଁ ବିଧି ଗତି ଜେହିଁ ଛେଁକୀ । ସକଇ କୋ ଟାରି ଟେକ ଜୋ ଟେକୀ ॥୪॥

ବୂଝିଅ ମୋହି ଉପାଉ ଅବ ସୋ ସବ ମୋର ଅଭାଗୁ ।
ସୁନି ସନେହମୟ ବଚନ ଗୁର ଉର ଉମଗା ଅନୁରାଗୁ ॥୨୫୫॥

---

ସମସ୍ତଙ୍କୁ ସୁଖ-ପ୍ରଦ ରାମ-ଅଭିଷେକ । ଆନନ୍ଦ-ମଙ୍ଗଳ-ମୂଳ ମାର୍ଗ ଏହି ଏକ ॥
ଫେରିବେ ଅଯୋଧ୍ୟା କେଉଁ ଭାବେ ରଘୁରାୟ । ବିଚାରି କହନ୍ତୁ ତାହା, କରିବା ଉପାୟ ॥୧॥
ସାଦରେ ସମସ୍ତେ ମୁନିନାଥଙ୍କ କଥିତ । ଶୁଣି ନୀତି ପରମାର୍ଥ ସ୍ୱାର୍ଥ-ସମ୍ମିଶ୍ରିତ ॥
ବିଭୋଳ ହୋଇଲେ ଲୋକେ ନ ଆସେ ଉତ୍ତର । ବୋଇଲେ ଭରତ ତହୁଁ ନମି ଯୋଡ଼ିକର ॥୨॥
ଭାନୁ ବଂଶେ ହୋଇଛନ୍ତି ମହୀପ ଅନେକ । ଅଧିକ ପ୍ରଭାବବନ୍ତ ଏକୁ ବଳି ଏକ ॥
ସମସ୍ତଙ୍କ ଜନମର ହେତୁ ପିତା ମାତା । କର୍ମ କୃତ ଶୁଭାଶୁଭ ଦିଅଇ ବିଧାତା ॥୩॥
ବିନାଶି ଦୁଃଖ ସକଳ କଲ୍ୟାଣ-ଦାୟକ । ଏମନ୍ତ ଆଶିଷ ଭୁବିଦିତ ଆପଣଙ୍କ ॥
ବିଧି ଗତି ରୋଧି ସେହି ଗୋସାଇଁ ପାରନ୍ତି । କେ ଟାଳି ପାରିବ ଯାହା ସଂକଳ୍ପ କରନ୍ତି ॥୪॥

ଏବେ ବି ଆମଠୁ ଉପାୟ ବୁଝନ୍ତି, ସେ ସବୁ ମୋର ଅଭାଗ୍ୟ ।
ଉପୁଜିଲା ଶୁଣି ସ୍ନେହମୟୀ ବାଣୀ ଗୁରୁ ହୃଦେ ଅନୁରାଗ ॥୨୫୫॥

---

ଶ୍ରୀରାମଙ୍କ ଆଜ୍ଞା ଓ ଅଭିପ୍ରାୟ ରକ୍ଷା କରିବାରେ ଆମ ସମସ୍ତଙ୍କ ହିତ ହେବ । ତୁମ୍ଭେମାନେ ତ ସମସ୍ତେ ବୁଦ୍ଧିମାନ ଲୋକ; ଏହା ବୁଝି ସମସ୍ତେ ଯେଉଁଥିରେ ସମ୍ମତ, ମିଶି ତାହାହିଁ କର ॥ ୨୫୪ ॥ ଚୌପାଈ :—ଶ୍ରୀରାମଙ୍କ ରାଜ୍ୟାଭିଷେକ ସମସ୍ତଙ୍କ ପକ୍ଷରେ ସୁଖ-ଦାୟକ । ମଙ୍ଗଳ ଓ ଆନନ୍ଦର ଏହି ଏକମାତ୍ର ମାର୍ଗ । ଏବେ ଶ୍ରୀ ରଘୁନାଥ କିପରି ଅଯୋଧ୍ୟା ଫେରିବେ ? ବିଚାର କରି କୁହ, ସେହି ଉପାୟ କରାଯିବ ।" ॥ ୧ ॥ ସମସ୍ତେ ମୁନିବର ବଶିଷ୍ଠଙ୍କ ନୀତି-ପରମାର୍ଥ-ସ୍ୱାର୍ଥ ( ଲୌକିକ ହିତ )-ବିଜଡ଼ିତ ବଚନ ଆଦର ସହକାରେ ଶୁଣିଲେ । କିନ୍ତୁ କାହାରିକୁ କୌଣସି ଉତ୍ତର ଆସୁ ନ ଥାଏ । ସମସ୍ତେ ବିଚାର-ଶକ୍ତି-ରହିତ ହୋଇଗଲେ । ସେତେବେଳେ ଭରତ ଶିର ନୁଆଁଇ ହାତ ଯୋଡ଼ିଲେ ॥ ୨ ॥ ସେ କହିଲେ, "ସୂର୍ଯ୍ୟ-ବଂଶରେ ଏକୁ ବଳି ଆରେକ ବଡ଼ ଅନେକ ରାଜା ରାଜତ୍ୱ କରିଅଛନ୍ତି । ସମସ୍ତଙ୍କ ଜନ୍ମକାରଣ ହେଉଛନ୍ତି ପିତାମାତା ଏବଂ ଶୁଭାଶୁଭ କର୍ମର ଫଳ ବିଧାତା ସେମାନଙ୍କୁ ଦିଅନ୍ତି ॥୩॥ ଆପଣଙ୍କ ଆଶିଷ ଏକମାତ୍ର ଗୋଟିଏ

ତାତ ବାତ ଫୁରି ରାମ କୃପାହୀଁ । ରାମ ବିମୁଖ ସିଧି ସପନେହୁଁ ନାହୀଁ ॥
ସକୁଚଉଁ ତାତ କହତ ଏକ ବାତା । ଅରଧ ତଜହିଁ ବୁଧ ସରବସ ଜାତା ॥୧॥
ତୁହ୍ମ କାନନ ଗୱନହୁ ଦୋଉ ଭାଈ । ଫେରିଅହିଁ ଲଖନ ସୀୟ ରଘୁରାଈ ॥
ସୁନି ସୁବଚନ ହରଷେ ଦୋଉ ଭ୍ରାତା । ଭେ ପ୍ରମୋଦ ପରିପୂରନ ଗାତା ॥୨॥
ମନ ପ୍ରସନ୍ନ ତନ ତେଜୁ ବିରାଜା । ଜନୁ ଜିୟ ରାଉ ରାମୁ ଭଏ ରାଜା ॥
ବହୁତ ଲାଭ ଲୋଗହ୍ନ ଲଘୁ ହାନୀ । ସମ ଦୁଖ ସୁଖ ସବ ରୋୱହିଁ ରାନୀ ॥୩॥
କହହିଁ ଭରତୁ ମୁନି କହା ସୋ କୀହ୍ନେ । ଫଲୁ ଜଗ ଜୀବହ୍ନ ଅଭିମତ ଦୀହ୍ନେ ॥
କାନନ କରଉଁ ଜନମ ଭରି ବାସୂ । ଏହି ତେଁ ଅଧିକ ନ ମୋର ସୁପାସୂ ॥୪॥

---

ବତ୍ସ ! କଥା ସତ୍ୟ, ସବୁ ରାମ ପ୍ରସାଦରେ । ରାମ ପରାଙ୍ମୁଖେ ସୁଖ ନାହିଁ ସ୍ୱପନରେ ॥
କହିବାକୁ କଥା ଏକ ଲଜ୍ଜ୍ୟା ମୋତେ ଲାଗେ । ସର୍ବସ୍ୱ ଯିବା ସ୍ଥଳରେ ବୁଧ ଅର୍ଦ୍ଧ ତ୍ୟାଗେ ॥୧॥
ତୁମେ ଦୁଇ ଭାଇ ମିଳି କାନନକୁ ଯାଅ । ଲକ୍ଷ୍ମଣ ଜାନକୀ ରଘୁନାଥଙ୍କୁ ଫେରାଅ ॥
ଦୁଇ ଭାଇ ହରଷିତ ଶୁଣି ସୁବଚନ । ହୋଇଲେ ପ୍ରମୋଦେ ପରିପୂର୍ଣ୍ଣ ଅପଘନ ॥୨॥
ପ୍ରସନ୍ନ ମାନସ ତନୁ ତେଜେ ରାଜେ ଅତି । ଯେହ୍ନେ ରାମ ରାଜା ହେଲେ, ବଞ୍ଚିଲେ ନୃପତି ॥
ବହୁତ ଲାଭ ଲୋକଙ୍କୁ ଲାଗେ ଅଳ୍ପ ହାନି । ସମ ଦୁଃଖ, ସୁଖ ସର୍ବେ ବିଳପନ୍ତି ରାଣୀ ॥୩॥
ଭାଷିଲେ ଭରତ, ମୁନି କହିବା କରନ୍ତୁ । ଜୀବନ ଇଚ୍ଛିତ ଫଳ ଜଗତେ ଲଭନ୍ତୁ ॥
ସମ୍ପୂର୍ଣ୍ଣ ଜନମ ବାସ କରିବି କାନନେ । ଏଥିରୁ ବଳି ସୁବିଧା ନାହିଁ ମୋ ଜୀବନେ ॥୪॥

---

ପଦାର୍ଥ ଯାହା କି ଦୁଃଖ-ସମୂହକୁ ଦମନ କରି ସମସ୍ତ କଲ୍ୟାଣକୁ ସଜାଇ ଦିଏ । ଏହା ଜଗତ ଜାଣେ । ହେ ସ୍ୱାମି ! ଆପଣ ସେହି ଏକମାତ୍ର ପୁରାଣ ପୁରୁଷ ଯେ କି ବିଧାତାଙ୍କ ବିଧାନର ମଧ୍ୟ ପ୍ରତିରୋଧ କରି ପାରନ୍ତି । ଆପଣ ଯାହା ନିଶ୍ଚୟ ବା ସଂକଳ୍ପ କରନ୍ତି, ତାହାକୁ ଟାଳି ପାରିବ କିଏ ? ॥ ୪ ॥ ଦୋହା :—ଏବେ ଆପଣ ମୋତେ ଉପାୟ ପଚାରୁଅଛନ୍ତି, ଏହା ସବୁ ମୋର ଅଭାଗ୍ୟ ।” ଭରତଙ୍କ ପ୍ରେମମୟ ବଚନ ଶୁଣି ଗୁରୁଙ୍କ ହୃଦୟରୁ ପ୍ରେମ ଉଚ୍ଛୁଳି ପଡ଼ିଲା ॥ ୨୫୫ ॥ ଚୌପାଇ :—ସେ କହିଲେ, “ହେ ବତ୍ସ ! କଥାଟା ସତ୍ୟ । କିନ୍ତୁ ତାହା ସବୁ ପ୍ରଭୁ ରାମଙ୍କ କୃପାରେ ହୋଇପାରେ । ରାମ-ବିମୁଖଙ୍କୁ ସ୍ୱପ୍ନରେ ସୁଦ୍ଧା ସିଦ୍ଧି ମିଳେ ନାହିଁ । ହେ ବତ୍ସ ! ମୁଁ ଗୋଟିଏ କଥା କହିବାକୁ ସଂକୋଚ କରୁଛି । ବୁଦ୍ଧିମାନ୍ ଲୋକମାନେ ସର୍ବସ୍ୱ ଯିବାର ଦେଖିଲେ ଅଧା ରକ୍ଷା କରିବା ଉଦ୍ଦେଶ୍ୟରେ ଅଧା ଛାଡ଼ି ଦିଅନ୍ତି ॥ ୧ ॥ ଅତଏବ ତୁମେ ଦୁଇଭାଇ ( ଭରତ ଶତ୍ରୁଘ୍ନ ) ବନକୁ ଯାଅ ଏବଂ ଲକ୍ଷ୍ମଣ, ସୀତା ଓ ଶ୍ରୀରାମଚନ୍ଦ୍ରଙ୍କୁ ଲେଉଟାଇ ନିଆଯାଉ । ”ଏ ସୁନ୍ଦର ବଚନ ଶୁଣି ଦୁଇଭାଇ ଆନନ୍ଦିତ ହୋଇ ପଡ଼ିଲେ । ସେମାନଙ୍କର ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ପରମାନନ୍ଦରେ ପରିପୂର୍ଣ୍ଣ ହୋଇଗଲା ॥ ୨ ॥ ସେମାନଙ୍କ ମନ ପ୍ରସନ୍ନ ହୋଇଗଲା । ଶରୀରରେ ତେଜ ସୁଶୋଭିତ ହୋଇ ଉଠିଲା । ସତେ ଅବା ରାଜା ଦଶରଥ ଜୀଇ ଉଠିଲେ

ଅନ୍ତରଜାମୀ ରାମୁ ସିୟ ତୁମ୍ହ ସରବଜ୍ଞ ସୁଜାନ ।
ଜୌଁ ଫୁର କହହୁ ତ ନାଥ ନିଜ କୀଜିଅ ବଚନୁ ପ୍ରବାନ ॥୨୯୨॥
ଭରତ ବଚନ ସୁନି ଦେଖି ସନେହୂ । ସଭା ସହିତ ମୁନି ଭଏ ବିଦେହୂ ॥
ଭରତ ମହା ମହିମା ଜଲରାସୀ । ମୁନି ମତି ଠାଢ଼ି ତୀର ଅବଲା ସୀ ॥୧॥
ଗା ଚହ ପାର ଜତନୁ ହିୟଁ ହେରା । ପାବତି ନାବ ନ ବୋହିତୁ ବେରା ॥
ଔରୁ କରିହି କୋ ଭରତ ବଡ଼ାଈ । ସରସୀ ସୀପି କି ସିଂଧୁ ସମାଈ ॥୨॥
ଭରତୁ ମୁନିହି ମନ ଭୀତର ଭାଏ । ସହିତ ସମାଜ ରାମ ପହିଁ ଆଏ ॥
ପ୍ରଭୁ ପ୍ରନାମୁ କରି ଦୀହ୍ନ ସୁଆସନୁ । ବୈଠେ ସବ ସୁନି ମୁନି ଅନୁସାସନୁ ॥୩॥

---

ଅନ୍ତର୍ଯ୍ୟାମୀ ରାମ-ଜାନକୀ, ଆପଣ ହୃଦୟର ସର୍ବ ଜାଣ ।
ସତ୍ୟ ଭାଷ ଯେବେ ନାଥ ! ନିଜ ଏବେ କରନ୍ତୁ ବାକ୍ୟ ପ୍ରମାଣ ॥୨୯୨॥
ଭରତ ବଚନ ଶୁଣି ବିଲୋକିଣ ସ୍ନେହ । ସଭା ସହ ମୁନିବର ହୋଇଲେ ବିଦେହ ॥
ଭରତ ମହାମହିମା ଅପାର ଅମ୍ବୁଧି । ଅବଳା ସଦୃଶ ତୀରେ ଉଭା ମୁନି-ବୁଦ୍ଧି ॥୧॥
ଉପାୟ ଖୋଜିଣ ପାର ହିବାକୁ ଚାହାନ୍ତି । ନଉକା ବୋଇତ ଭେଳା କିଛି ନ ପାଆନ୍ତି ॥
ଆଉ କିଏ ଭରତଙ୍କ ବଡ଼ାଇ କରିବ । ସରସୀ ସାମ୍ବୁକାରେ କି ସିନ୍ଧୁ ସମାଇବ ॥୨॥
ମୁନି ମନ ମଧ୍ୟେ ଭଲ ଭରତ ଲାଗିଲେ । ସମାଜ ସହିତ ରାମ ସମୀପେ ଆସିଲେ ॥
ପ୍ରଭୁ ପ୍ରଣାମ କରିଣ ଦେଲେ ସୁଆସନ । ବସିଲେ ସମସ୍ତେ ଶୁଣି ମୁନିଙ୍କ ଶାସନ ॥୩॥

---

ଏବଂ ରାମଚନ୍ଦ୍ର ରାଜା ହେଲେ । ଅନ୍ୟ ଲୋକମାନଙ୍କୁ ତ ଏଥିରେ ଲାଭ ଅଧିକ ଓ ହାନି କମ ବୋଧ ହେଉଛି । କିନ୍ତୁ ରାଣୀମାନଙ୍କର ଦୁଃଖ-ସୁଖ ସମାନ ରହିଲା, ଯେମିତି ହେଲେ ତ ଦୁଇ ପୁଅଙ୍କ ବନବାସ ଯୋଗେ ସେମାନଙ୍କୁ ବିରହଯାତନା ଭୋଗ କରିବାକୁ ପଡ଼ିବ । ଏହା ବିଚାରି ସେମାନେ କାନ୍ଦିବାକୁ ଲାଗିଲେ ।୩॥ ଭରତ କହିଲେ, "ମୁନିଙ୍କ କଥାନୁଯାୟୀ କାମ କଲେ, ତାହାର ଫଳସ୍ୱରୂପ ସମଗ୍ର ଜଗତର ଜୀବମାନଙ୍କୁ ସେମାନଙ୍କ ଅଭିଲଷିତ ବସ୍ତୁ ଲବ୍ଧ ହେବ । ଚଉଦ ବର୍ଷର ଅବଧି ବିଶେଷ କିଛି ନୁହେଁ, ସାରା ଜୀବନଯାକ ମୁଁ ବନରେ ବାସ କରିବି । ଏହାଠାରୁ ବଳି ମୋ ନିମନ୍ତେ ବଡ଼ ସୁଖ ଆଉ କିଛି ନାହିଁ ॥୪॥ ଦୋହା :—ଶ୍ରୀରାମଚନ୍ଦ୍ର ଓ ସୀତା ଅନ୍ତର୍ଯ୍ୟାମୀ । ଆପଣ ସର୍ବଜ୍ଞ ଓ ସୁଜ୍ଞାନୀ । ଯଦି ଆପଣ ସତ୍ୟ କହୁଅଛନ୍ତି, ହେ ନାଥ ! ଆପଣା ବଚନାନୁସାରେ କର୍ମ କରି ତାହାର ସତ୍ୟତା ପ୍ରମାଣିତ କରନ୍ତୁ ।" ॥୨୯୨॥ ଚୌପାଈ :—ଭରତଙ୍କ ବଚନ ଶୁଣି ଏବଂ ତାହାଙ୍କ ପ୍ରେମ ଦେଖି ସମସ୍ତ ସଭାସହ ମୁନି ବଶିଷ୍ଠ ଦେହର ଅସ୍ତିତ୍ୱ ସୁଦ୍ଧା ଭୁଲିଗଲେ । ଭରତଙ୍କ ମହାମହିମା ସମୁଦ୍ର ଏବଂ ମୁନିଙ୍କ ବୁଦ୍ଧି ତା ହାର ତଟ ଉପରେ ଅବଳା ସ୍ତ୍ରୀ ପରି ଛିଡ଼ା ହୋଇଅଛି ॥୧॥ ତାହା ସେହି ସମୁଦ୍ରକୁ ପାରି ହେବାକୁ ଇଚ୍ଛୁକ । ସେଥି ନିମନ୍ତେ ସେ ମନେ ମନେ ଉପାୟ ମଧ୍ୟ ଖୋଜିଲା । କିନ୍ତୁ ନୌକା, ଜାହାଜ ବା ଭେଳା କିଛି ମିଳୁ ନ ଥାଏ । ଭରତଙ୍କ

ବୋଲେ ମୁନିବରୁ ବଚନ ବିଚାରୀ । ଦେସ କାଲ ଅବସର ଅନୁହାରୀ ॥
ସୁନହୁ ରାମ ସରବଜ୍ଞ ସୁଜାନା । ଧରମ ନୀତି ଗୁନ ଜ୍ଞାନ ନିଧାନା ॥୪॥

ସବକେଁ ଉର ଅନ୍ତର ବସହୁ ଜାନହୁ ଭାଉ କୁଭାଉ ।
ପୁରଜନ ଜନନୀ ଭରତ ହିତ ହୋଇ ସୋ କହିଅ ଉପାଉ ॥୨୫୭॥

ଆରତ କହହିଁ ବିଚାରି ନ କାଊ । ସୂଝ ଜୁଆରିହି ଆପନ ଦାଊ ॥
ସୁନି ମୁନି ବଚନ କହତ ରଘୁରାଊ । ନାଥ ତୁମ୍ହାରେହି ହାଥ ଉପାଊ ॥୧॥
ସବ କର ହିତ ରୁଖ ରାଉରି ରାଖେଁ । ଆୟସୁ କିଏଁ ମୁଦିତ ଫୁର ଭାଷେଁ ॥
ପ୍ରଥମ ଜୋ ଆୟସୁ ମୋ କହୁଁ ହୋଈ । ମାଥେଁ ମାନି କରୌଁ ସିଖ ସୋଈ ॥୨॥
ପୁନି ଜେହି କହଁ ଜସ କହବ ଗୋସାଈଁ । ସୋ ସବ ଭାଁତି ଘଟିହି ସେବକାଈଁ ॥
କହ ମୁନି ରାମ ସତ୍ୟ ତୁମ୍ହ ଭାଷା । ଭରତ ସନେହଁ ବିଚାରୁ ନ ରାଖା ॥୩॥

---

ଭାଷିଲେ ମୁନି-ପ୍ରବର ବଚନ ଭାବିଣ । ଦେଶ କାଳ ଅନୁକୂଳ ସମସ୍ତ ଲୋଡ଼ିଣ ॥
ଶୁଣ ସର୍ବଜ୍ଞ ଚତୁର-ଶିରୋମଣି ରାମ । ଧରମ-ନୀତି-ନିୟମ-ଜ୍ଞାନ - ଗୁଣ-ଧାମ ॥୪॥

ସମସ୍ତଙ୍କ ଉର-ମଧ୍ୟେ ବାସ କର ଜାଣ ସୁଭାବ କୁଭାବ ।
ହେବ ଯହିଁ ମାତ, ପରଜା ଭରତ-ହିତ ସେ ଉପାୟ ଭାବ ॥୨୫୭॥

ଆରତ ବିଚାର କରି କେବେ ନ କହଇ । ଜୁଆରୀକୁ ନିଜ ଦାଉ କେବଳ ଦିଶଇ ॥
ଭାଷିଲେ ମୁନି ବଚନ ଶୁଣି ରଘୁରାୟ ! ନାଥ ! ଆପଣଙ୍କ ହସ୍ତେ ସକଳ ଉପାୟ ॥୧॥
ପ୍ରଭୁଙ୍କ ଇଚ୍ଛା ରଖିଲେ ସମସ୍ତଙ୍କ ହିତ । ଆଦେଶ ପାଳନେ ସର୍ବେ ହେବେ ପ୍ରମୋଦିତ ॥
ପ୍ରଥମେ ବିହିବେ ମୋତେ ଯେବଣ ଆଦେଶ । ଶିରେ ଘେନିଣ ପାଳିବି ସେହି ଉପଦେଶ ॥୨॥
ପୁଣି ଯାହା ପ୍ରତି ଆଜ୍ଞା ହୋଇବ ଯେପରି । ସେ ସବୁ ପ୍ରକାରେ ସେବା କରିବ ସେପରି ॥
ଭାଷିଲେ ମୁନୀଶ, ସତ୍ୟ କହ ରଘୁବର । ଭରତ ସେନେହ ରଖି ଦେଇନ ବିଚାର ॥୩॥

---

ବଢ଼ିମା ଆଉ କିଏ ବଖାଣି ପାରିବ ? ଗଡ଼ିଆର ଶାମୁକା ମଧ୍ୟରେ ସମୁଦ୍ର କେଉଁଠି ସମ୍ଭାଇ ପାରିଲାଣି ? ॥ ୨ ॥ ମୁନି ବଶିଷ୍ଠଙ୍କ ଅନ୍ତରସ୍ଥାକୁ ଭରତ ଅତି ପ୍ରିୟ ବୋଧ ହେଲେ ଏବଂ ମୁନି ସମାଜ ସହିତ ପ୍ରଭୁ ଶ୍ରୀରାମଙ୍କ ନିକଟକୁ ଆସିଲେ । ପ୍ରଭୁ ଶ୍ରୀରାମ ତାହାଙ୍କୁ ପ୍ରଣାମ କରି ଉତ୍ତମ ଆସନ ଦେଲେ । ସମସ୍ତ ଲୋକ ମୁନିଙ୍କ ଆଜ୍ଞା ଶୁଣି ବସି ପଡ଼ିଲେ ॥ ୩ ॥ ମୁନିବର ଦେଶ, କାଳ ଓ ଅବସର ଅନୁସାରେ ବିଚାର କରି ବଚନ ବୋଇଲେ, "ହେ ସର୍ବଜ୍ଞ ! ହେ ସୁଜ୍ଞ ! ହେ ଧର୍ମ, ନୀତି ଓ ଗୁଣର ଭଣ୍ଡାର ରାମ ! ଶୁଣନ୍ତୁ—॥ ୪ ॥ ଦୋହା —"ଆପଣ ସମସ୍ତଙ୍କ ହୃଦୟରେ ବାସ କରନ୍ତି ଏବଂ ସମସ୍ତଙ୍କ ଭଲ-ମନ୍ଦ ଭାବକୁ ଜାଣନ୍ତି । ପୁରବାସୀମାନଙ୍କର, ସମସ୍ତ ମାତାଙ୍କର ଏବଂ ଭରତଙ୍କର ଯହିଁରେ ହିତ ହେବ, ସେହି ଉପାୟ କହନ୍ତୁ ॥ ୨୫୭ ॥ ଚୌପାଈ —ଆର୍ତ୍ତ ଲୋକମାନେ କେତେବେଳେ ହେଲେ ବିଚାର କରି କଥା କହନ୍ତି ନାହିଁ । ଜୁଆ-ଖେଳାଳିକୁ ଆପଣାର ସୁଯୋଗ ହିଁ ସୁହାଏ ।" ମୁନିଙ୍କ ବଚନ ଶୁଣି ଶ୍ରୀ ରଘୁନାଥ କହିବାକୁ ଲାଗିଲେ,

ତେହି ତେଁ କହଉଁ ବହୋରି ବହୋରୀ । ଭରତ ଭଗତି ବସ ଭଇ ମତି ମୋରୀ ॥
ମୋରେଁ ଜାନ ଭରତ ରୁଚି ରାଖୀ । ଜୋ କୀଜିଅ ସୋ ସୁଭ ସିବ ସାଖୀ ॥୩॥

ଭରତ ବିନୟ ସାଦର ସୁନିଅ କରିଅ ବିଚାରୁ ବହୋରି ।
କରବ ସାଧୁମତ ଲୋକମତ ନୃପନୟ ନିଗମ ନିଚୋରି ॥୨୫୮॥

ଗୁରୁ ଅନୁରାଗୁ ଭରତ ପର ଦେଖୀ । ରାମ ହୃଦୟଁ ଆନନ୍ଦୁ ବିସେଷୀ ॥
ଭରତହି ଧରମ ଧୁରଂଧର ଜାନୀ । ନିଜ ସେବକ ତନ ମାନସ ବାନୀ ॥୧॥
ବୋଲେ ଗୁରୁ ଆୟସ ଅନୁକୂଲା । ବଚନ ମଂଜୁ ମୃଦୁ ମଂଗଲ ମୂଲା ॥
ନାଥ ସପଥ ପିତୁ ଚରନ ଦୋହାଈ । ଭୟଉ ନ ଭୁଅନ ଭରତ ସମ ଭାଈ ॥୨॥

---

ସେହି କାରଣେ ମୁଁ ବାରମ୍ବାର କହୁଅଛି । ଭରତ ଭକ୍ତି ମୋ ମତି ବଶ କରି ଅଛି ॥
ମୋ ଜାଣିବାରେ ଭରତ ରୁଚି ରଖି ଯାହା । କରିବ, ଶଙ୍କର ସାକ୍ଷୀ, ଶୁଭ ହେବ ତାହା ॥୩॥

ଶୁଣି ଭରତଙ୍କ ବିନୟ ସାଦରେ ବିଚାର କରି ଆବର ।
ସାଧୁ ମତ ଲୋକ-ମତ ରାଜନୀତି ନିଗମ ସାର ଆଚର ॥୨୫୮॥

ଗୁରୁ ଅନୁରାଗ ଦେଖି ଭରତ ଉପରେ । ପରମ ପ୍ରସନ୍ନ ରାମ ହୋଇଲେ ଅନ୍ତରେ ॥
ଭରତଙ୍କୁ ଅତି ଧର୍ମ ଧୁରନ୍ଧର ଜାଣି । ନିଜ ଅନୁଚର ଭାବି ମନ କର୍ମ ବାଣୀ ॥୧॥
ଭାଷିଲେ ଗୁରୁଙ୍କ ଅନୁମତି ଅନୁକୂଳ । ବଚନ ମୃଦୁ ମଞ୍ଜୁଳ ସୁମଙ୍ଗଳ ମୂଳ ॥
ନାଥଙ୍କ ରାଣ ପିତାଙ୍କ ଚରଣ ନିୟମ । ହୋଇ ନାହିଁ ଭାଇ ଭବେ ଭରତଙ୍କ ସମ ॥୨॥

---

"ହେ ନାଥ ! ଉପାୟ ତ ଆପଣଙ୍କ ହାତରେ ॥୧॥ ଆପଣଙ୍କ ଅଭିପ୍ରାୟ ରକ୍ଷା କରିବାରେ ଏବଂ ଆପଣଙ୍କ ଆଜ୍ଞାକୁ ସତ୍ୟ ବୋଲି କହି ପ୍ରସନ୍ନତାପୂର୍ବକ ତାହା ପାଳନ କରିବାରେ ହିଁ ସମସ୍ତଙ୍କର ହିତ ନିହିତ । ପ୍ରଥମେ ତ ମୋ ପ୍ରତି ଯାହା ଆପଣଙ୍କ ଆଜ୍ଞା ହେବ, ମୁଁ ସେହି ଉପଦେଶକୁ ଶିରୋଧାର୍ଯ୍ୟ କରି ପାଳନ କରିବି ॥ ୨ ॥ ହେ ଗୋସାଇଁ ! ପୁଣି ଆପଣ ଯାହାଙ୍କୁ ଯେପରି କହିବେ, ସେ ସବୁମନ୍ତେ ସେହି ସେବାରେ ଲାଗିପଡିବେ ।" ମୁନି ବଶିଷ୍ଠ କହିଲେ, "ହେ ରାମ ! ତୁମେ ସତ କହିଲ । କିନ୍ତୁ ଭରତଙ୍କ ପ୍ରେମ ବିବେକ-ବିଚାରକୁ ରଖାଇ ଦେଇନାହିଁ ॥୩॥ ଏଣୁ ମୁଁ ବାରମ୍ବାର କହୁଅଛି—"ମୋ ବୁଦ୍ଧି ବାରମ୍ବାର ଭରତଙ୍କ ଭକ୍ତିର ଅଧୀନ ହୋଇ ପଡିଛି । ମୋ ବିଚାରରେ ଭରତଙ୍କ ରୁଚି ରଖି ଯାହା କିଛି କରାଯିବ, ଶିବ ସାକ୍ଷୀ, ତାହା ସବୁ ଶୁଭକର ହେବ ॥ ୪ ॥ ଦୋହା :—ପ୍ରଥମେ ଭରତଙ୍କ ପ୍ରାର୍ଥନା ଆଦରସହକାରେ ଶୁଣି ନିଅନ୍ତୁ । ତତ୍ପରେ ତାହା ଉପରେ ବିଚାର କରନ୍ତୁ ଏବଂ ସାଧୁମତ, ଲୋକମତ, ରାଜନୀତି ଓ ବେଦର ସାର ବାହାର କରି ସେହି ଅନୁସାରେ କାର୍ଯ୍ୟ କରନ୍ତୁ ।" ॥ ୨୫୮ ॥ ଚୌପାଇ :—ଭରତଙ୍କ ଉପରେ ଗୁରୁଙ୍କ ସ୍ନେହ ଦେଖି ଶ୍ରୀରାମଙ୍କ ହୃଦୟରେ ଅପାର ଆନନ୍ଦ ଜାତ ହେଲା । ଭରତଙ୍କୁ ଧର୍ମ-ଧୁରନ୍ଧର ଏବଂ ଶରୀର, ମନ ଓ ବଚନରେ ଆପଣା ସେବକ ବୋଲି ଜାଣି ଶ୍ରୀରାମ ଗୁରୁଙ୍କ ଆଜ୍ଞାନୁକୂଳ ମନୋହର, କୋମଳ ଓ କଲ୍ୟାଣମୂଳକ ବଚନ ବୋଇଲେ,

ଜେ ଗୁର ପଦ ଅଂବୁଜ ଅନୁରାଗୀ । ତେ ଲୋକହୁଁ ବେଦହୁଁ ବଡ଼ଭାଗୀ ॥
ରାଉର ଜା ପର ଅସ ଅନୁରାଗୂ । କୋ କହି ସକଇ ଭରତ କର ଭାଗୂ ॥୩॥
ଲଖି ଲଘୁ ବଂଧୁ ବୁଦ୍ଧି ସକୁଚାଈ । କରତ ବଦନ ପର ଭରତ ବଡ଼ାଈ ॥
ଭରତୁ କହହିଁ ସୋଇ କିଏଁ ଭଲାଈ । ଅସ କହି ରାମ ରହେ ଅରଗାଈ ॥୪॥

ତବ ମୁନି ବୋଲେ ଭରତ ସନ ସବ ସଁକୋଚୁ ତଜି ତାତ ।
କୃପାସିନ୍ଧୁ ପ୍ରିୟ ବଂଧୁ ସନ କହହୁ ହୃଦୟ କୈ ବାତ ॥୨୫୯॥

ସୁନି ମୁନି ବଚନ ରାମ ରୁଖ ପାଈ । ଗୁରୁ ସାହିବ ଅନୁକୂଲ ଅଘାଈ ॥
ଲଖି ଅପନେଁ ସିର ସବୁ ଛରୁଭାରୂ । କହି ନ ସକହିଁ କଛୁ କରହିଁ ବିଚାରୂ ॥୧॥
ପୁଲକି ସରୀର ସଭାଁ ଭଏ ଠାଢ଼େ । ନୀରଜ ନୟନ ନେହ ଜଲ ବାଢ଼େ ॥
କହବ ମୋର ମୁନିନାଥ ନିବାହା । ଏହି ତେଁ ଅଧିକ କହୌଁ ମୈଂ କାହା ॥୨॥

---

ଯେ ଗୁରୁ ଚରଣ-ଅରବିନ୍ଦ ଅନୁରକ୍ତ । ଲୋକେ ବେଦେ ସେ ଅଟଇ ବଡ ଭାଗ୍ୟବନ୍ତ ॥
ଯାହା ପ୍ରତି ଆପଣଙ୍କ ଏତେ ଅନୁରାଗ । କେ କହି ପାରିବ ପୁଣି ଭରତଙ୍କ ଭାଗ୍ୟ ॥୩॥
ସଙ୍କୋଚ ଲଭଇ ବୁଦ୍ଧି ଦେଖି ସାନଭାଇ । କରନ୍ତେ ମୁହଁ ଉପରେ ଭରତ ବଡାଇ ॥
ଭରତ କହିବେ ଯାହା, କଲେ ଭଲ ହେବ । ଏହା କହି ରଘୁରାଣ ହୋଇଲେ ନୀରବ ॥୪॥

ଭରତଙ୍କୁ ତହୁଁ ଭାଷିଲେ ମୁନୀଶ, ବତ୍ସ ! ସବୁ ଲଜ୍ଜା ତେଜ ।
କୃପାସିନ୍ଧୁ ପ୍ରିୟ ଭ୍ରାତା ଆଗେ କହ ହୃଦୟ ବେଦନା ହେଜ ॥୨୫୯॥

ଶୁଣି ମୁନି ବାଣୀ ଜାଣି ରାମ ଅଭିମତ । ଗୁରୁ ସ୍ୱାମୀ ଆନୁକୂଲ୍ୟେ ତୃପତ ଭରତ ॥
ବିଲୋକି ନିଜ ଉପରେ ସାରା ବୋଝ ଭାର । କହି ନ ପାରନ୍ତି କିଛି କରନ୍ତି ବିଚାର ॥୧॥
ସଭା ମଧ୍ୟେ ଉଭା ହେଲେ ପୁଲକିତ ତନୁ । ସ୍ନେହ-ସଲିଳ ବହଇ ନୀରଜ-ନୟନୁ ॥
ମୋ କହିବା କହି ସାରିଛନ୍ତି ମୁନି ସ୍ୱାମୀ । ଏଥହୁଁ ଅଧିକ କି କହିବ ଅନୁଗାମୀ ॥୨॥

---

"ହେ ନାଥ ! ଆପଣଙ୍କ ରାଣ ଓ ପିତାଙ୍କ ଚରଣର ଶପଥ । ମୁଁ ସତ୍ୟ କହୁଛି, ସମଗ୍ର ବିଶ୍ୱରେ ଭରତ ପରି ଭାଇ ଜନ୍ମ ଲଭି ନାହିଁ ॥ ୧-୨ ॥ ଯେଉଁ ଲୋକମାନେ ଗୁରୁଙ୍କ ଚରଣ କମଳ ପ୍ରତି ଅନୁରାଗୀ, ସେମାନେ ଲୋକ ଓ ବେଦ, ଉଭୟ ଦୃଷ୍ଟିରୁ ବଡ ଭାଗ୍ୟବାନ୍ । ପୁଣି ଯାହା ପ୍ରତି ଆପଣଙ୍କ ପରି ଗୁରୁଙ୍କର ଏପରି ସ୍ନେହ, ସେହି ଭରତଙ୍କ ଭାଗ୍ୟ କଥା କିଏ କହି ପାରିବ ? ॥୩॥ ସାନ ଭାଇ ଜାଣି ଭରତଙ୍କ ମୁହଁ ଆଗରେ ତାଙ୍କ ପ୍ରଶଂସା କରିବା ବିଷୟରେ ମୋ ବୁଦ୍ଧି ସଙ୍କୁଚିତ ହେଉଅଛି । ତଥାପି ମୁଁ ଏତିକି କହିବି ଯେ, ଭରତ ଯାହା ବା କିଛି କହିବେ, ତାହା କଲେ ମଙ୍ଗଳ ।" ଏହା କହି ଶ୍ରୀ ରାମଚନ୍ଦ୍ର ନୀରବ ରହିଲେ ॥ ୪ ॥ ଦୋହା —ତଦନନ୍ତର ମୁନି ଭରତଙ୍କୁ କହିଲେ, "ହେ ବତ୍ସ ! ସବୁ ସଙ୍କୋଚ ତ୍ୟାଗ କରି କୃପାସାଗର ଓ ପ୍ରିୟ ଭ୍ରାତା (ଶ୍ରୀରାମ)ଙ୍କୁ ହୃଦୟର କଥା କୁହ ॥ ୨୫୯ ॥ ଚୌପାଈ —ମୁନିଙ୍କର ବଚନ ଶୁଣି ଓ ଶ୍ରୀ ରାମଚନ୍ଦ୍ରଙ୍କ କୃପା-ଦୃଷ୍ଟି ପାଇ ଭରତ ଗୁରୁ ଓ ସ୍ୱାମୀଙ୍କୁ ସମ୍ପୂର୍ଣ୍ଣ ରୂପେ ଆପଣାର

ମୈଁ ଜାନଉଁ ନିଜ ନାଥ ସୁଭାଉ । ଅପରାଧିହୁ ପର କୋହ ନ କାଉ ॥
ମୋ ପର କୃପା ସନେହୁ ବିସେଷୀ । ଖେଲତ ଖୁନିସ ନ କବହୂଁ ଦେଖୀ ॥୩॥
ସିସୁପନ ତେଁ ପରିହରେଉଁ ନ ସଂଗୂ । କବହୁଁ ନ କୀହ୍ନ ମୋର ମନ ଭଂଗୂ ॥
ମୈଁ ପ୍ରଭୁ କୃପା ରୀତି ଜିୟଁ ଜୋହୀ । ହାରେହୁଁ ଖେଲ ଜିତାୱହିଁ ମୋହୀ ॥୪॥
ମହୂଁ ସନେହ ସକୋଚ ବସ ସନମୁଖ କହୀ ନ ବୈନ ।
ଦରସନ ତୃପିତ ନ ଆଜୁ ଲଗି ପେମ ପିଆସେ ନୈନ ॥୨୬୦॥
ବିଧି ନ ସକେଉ ସହି ମୋର ଦୁଲାରା । ନୀଚ ବୀଚୁ ଜନନୀ ମିସ ପାରା ॥
ୟହଉ କହତ ମୋହି ଆଜୁ ନ ସୋଭା । ଅପନୀଁ ସମୁଝି ସାଧୁ ସୁଚି କୋ ଭା ॥୧॥

---

ମୁଁ ଜାଣେ ନିଜ ପ୍ରଭୁଙ୍କ ରୁଚିର ପ୍ରକୃତି । କୋପ କେବେ ନ କରନ୍ତି ଅପରାଧୀ ପ୍ରତି ॥
ମୋ ଉପରେ ସ୍ନେହ କୃପା କରନ୍ତି ବିଶେଷ । ଖେଳରେ ବି ତାଙ୍କ ରୋଷ ଦେଖିନାହିଁ ଲେଶ ॥୩॥
ବାଲ୍ୟକାଳରୁ ଉପେକ୍ଷି ନାହାନ୍ତି ମୋ ସଙ୍ଗ । କଦାପି କରି ନାହାନ୍ତି ମୋର ମନ ଭଙ୍ଗ ॥
ପ୍ରଭୁଙ୍କ କୃପା ରୀତି ମୁଁ ହେଜିଛି ହୃଦରେ । ହାରିଥିଲେ ହେଁ ମୋତେ ଜିଣାନ୍ତି ଖେଳରେ ॥୪॥
ମୁଁ ମଧ୍ୟ ସଙ୍କୋଚ ସ୍ନେହବଶ କହି-ନାହିଁ ସମ୍ମୁଖେ ବଚନ ।
ନୁହେଁ ଏ ପର୍ଯ୍ୟନ୍ତ ଦରଶନ ତୃପ୍ତ ପ୍ରେମ-ପିପାସୀ ଲୋଚନ ॥୨୬୦॥
ବିଧି ମୋ ଗେଲବସର ସହି ନ ପାରିଲା । ମାତା ବାହାନାରେ କ୍ଷୁଦ୍ର ଭେଦ ପକାଇଲା ॥
ଏହା ବି କହିବା ଆଜି ମୋତେ ନ ଶୋଭଇ । ଆପଣା ବିଚାରେ ସାଧୁ ଶୁଚି କେ ଅଟଇ ॥୧॥

---

ଅନୁକୂଳ ବୋଲି ଜାଣିଲେ । ସେ ସମସ୍ତ ବୋଝ ଆପଣା ଉପରେ ପଡ଼ିଗଲା ବୋଲି ଜାଣିପାରିଲେ । କିଛି କହିପାରୁ ନ ଥା'ନ୍ତି । କେବଳ ବିଚାର କରିବାରେ ଲାଗିଥା'ନ୍ତି ॥୧॥ ଶେଷରେ ପୁଲକିତ ଶରୀରରେ ସେ ସଭାରେ ଠିଆ ହୋଇ ପଡ଼ିଲେ । କମଳ-ନୟନରେ ପ୍ରେମାଶ୍ରୁର ବନ୍ୟା ଆସିଗଲା । ସେ କହିଲେ, "ମୋ କହିବା କଥା ତ ମୁନିନାଥ ହିଁ କହି ଦେଇଅଛନ୍ତି । ଏହାଠାରୁ ଅଧିକ ମୁଁ ଆଉ କ'ଣ କହିବି ? ॥ ୨ ॥ ଆପଣା ସ୍ୱାମୀଙ୍କ ସ୍ୱଭାବ ମୁଁ ଜାଣିଛି । ସେ ଅପରାଧୀ ଉପରେ ମଧ୍ୟ କଦାପି କ୍ରୋଧ କରନ୍ତି ନାହିଁ । ମୋ ଉପରେ ତ ତାଙ୍କର ବିଶେଷ କୃପା ଓ ସ୍ନେହ । ମୁଁ ଖେଳରେ ମଧ୍ୟ କେବେହେଲେ ତାଙ୍କର ଅପ୍ରସନ୍ନତା ଦେଖି ନାହିଁ ॥ ୩ ॥ ବାଲ୍ୟକାଳରୁ ମୁଁ ତାଙ୍କ ସଙ୍ଗ ଛାଡ଼ି ନାହିଁ ଏବଂ ସେ ମଧ୍ୟ ମୋ ମନ ଭାଙ୍ଗି କେବେ କୌଣସି କାର୍ଯ୍ୟ କରି ନାହାନ୍ତି । ମୁଁ ପ୍ରଭୁଙ୍କ କୃପାରୀତିକୁ ହୃଦୟରେ ଭଲ ରୂପେ ଅନୁଭବ କରିଅଛି । ଖେଳରେ ମୁଁ ହାରିଗଲେ ମଧ୍ୟ ପ୍ରଭୁ ମୋତେ ଜିଣାଇ ଆସିଛନ୍ତି ॥ ୪ ॥ ଦୋହା — ମୁଁ ମଧ୍ୟ ପ୍ରେମ ଓ ସଙ୍କୋଚବଶ କଦାପି ତାଙ୍କ ଆଗରେ ମୁହଁ ଖୋଲି ନାହିଁ । ମୋର ପ୍ରେମପିପାସୁ ନେତ୍ର ଆଜି ପର୍ଯ୍ୟନ୍ତ ପ୍ରଭୁଙ୍କ ଦର୍ଶନରେ ତୃପ୍ତ ହୋଇ ନାହିଁ ॥ ୨୬୦ ॥ ଚୌପାଇ — କିନ୍ତୁ ବିଧାତା ମୋ ଗେହ୍ଲାପଣିଆ ସହି ପାରିଲା ନାହିଁ । ସେ ନୀଚ ମାତା ବ୍ୟପଦେଶରେ (ଛଳରେ) ମୋର ଏବଂ ମୋ ପ୍ରଭୁଙ୍କ ମଧ୍ୟରେ ଅନ୍ତର ସୃଷ୍ଟି କରିଦେଲା ।

ମାତୁ ମଂଦ ମୈଁ ସାଧୁ ସୁଚାଲୀ । ଉର ଅସ ଆନତ କୋଟି କୁଚାଲୀ ॥
ଫରଇ କି କୋଦଓଁ ବାଲି ସୁସାଲୀ । ମୁକୁତା ପ୍ରସବ କି ସଂବୁକ କାଲୀ ॥୨॥
ସପନେହୁଁ ଦୋସକ ଲେସୁ ନ କାହୂ । ମୋର ଅଭାଗ ଉଦଧି ଅବଗାହୂ ॥
ବିନୁ ସମୁଝେଁ ନିଜ ଅଘ ପରିପାକୂ । ଜାରିଉଁ ଜାୟଁ ଜନନି କହି କାକୂ ॥୩॥
ହୃଦୟଁ ହେରି ହାରେଉଁ ସବ ଓରା । ଏକହି ଭାଁତି ଭଲେହିଁ ଭଲ ମୋରା ॥
ଗୁର ଗୋସାଇଁ ସାହିବ ସିୟ ରାମୂ । ଲାଗତ ମୋହି ନୀକ ପରିନାମୂ ॥୪॥

ସାଧୁ ସଭାଁ ଗୁର ପ୍ରଭୁ ନିକଟ କହଉଁ ସୁଥଲ ସତିଭାଉ ।
ପ୍ରେମ ପ୍ରପଂଚୁ କି ଝୂଠ ଫୁର ଜାନହିଁ ମୁନି ରଘୁରାଉ ॥୨୬୧॥

ଭୂପତି ମରନ ପେମ ପନୁ ରାଖୀ । ଜନନୀ କୁମତି ଜଗତୁ ସବୁ ସାଖୀ ॥
ଦେଖି ନ ଜାହିଁ ବିକଲ ମହତାରୀଁ । ଜରହିଁ ଦୁସହ ଜର ପୁର ନର ନାରୀଁ ॥୧॥

---

ମାତା ମନ୍ଦ, ମୁହିଁ ବଡ ସାଧୁ ସଦାଚାରୀ । ଏ ଭାବ ହୃଦେ ଆଣନ୍ତେ କୋଟି ପାପ ସରି ॥
ଫଳଇ କି ସୁଧାନ୍ୟ କାହିଁ କୋଦ୍ରଅ କେଆରେ । ମୁକୁତା କି ଉପୁଜଇ କାଳି ଶାମୁକାରେ ॥୨॥
ସ୍ୱପ୍ନେ ହେଁ ଦୋଷ ଏଥି ଲେଶ ନାହିଁ କା'ର । ମୋର ଅଭାଗ୍ୟ ଅଗାଧ ଉଦଧି ଅପାର ॥
ନ ବୁଝି ନିଜ ପାପ ପରିଣାମ ଫଳ । ଜନନୀଙ୍କୁ କୁବଚନେ ଦହିଲି ବିଫଳ ॥୩॥
ହୃଦୟେ ହାରିଲି ଖୋଜି ଖୋଜି ଚଉଦିଗେ । କେବଳ ଏକ ଉପାୟ ଭଲ ମୋର ଭାଗେ ॥
ଗୁରୁ ଗୋସାଇଁ ଆଦର ସ୍ୱାମୀ ସୀତା ରାମ । ଲାଗୁଛି ମୋତେ, ଉତ୍ତମ ହେବ ପରିଣାମ ॥୪॥

ସାଧୁ ସଭା ମଧ୍ୟେ ଗୁରୁଷ୍ଠାନେ ସଦ୍ଭାବେ ବୋଲେ ଗୁରୁ ସ୍ୱାମୀ କତ୍ତ ।
ପ୍ରେମ ବା ପ୍ରପଞ୍ଚ କିମ୍ବା ସତ ମିଛ ମୁନି ଶ୍ରୀରାମ ଜାଣନ୍ତି ॥୨୬୧॥

ପ୍ରେମ-ପଣ ରଖି ନୃପ ତେଜିଲେ ଜୀବନ । ମାତା କୁମତିକି ସାକ୍ଷୀ ସକଳ ଭୁବନ ॥
ଦେଖି ନ ହୁଏ ବିକଳ ଜନନୀଙ୍କ ଭାବ । ଦୁଃସହ ଦାହେ ଜଳନ୍ତି ପୁର ନର ନାରୀ ॥୧॥

---

ଏହା କହିବା ଆଜି ମୋ ପକ୍ଷରେ ଶୋଭନୀୟ ନୁହେଁ । କାରଣ, ଆପଣା ବିଷୟର ବିବେକରେ ପ୍ରକୃତରେ ସାଧୁ ଓ ପବିତ୍ର କିଏ ହୋଇପାରନ୍ତି ? ॥ ୧ ॥ ମାତା ନୀଚ ଏବଂ ମୁଁ ସାଧୁ ଓ ସଦାଚାରୀ—ଏପରି ଭାବ ହୃଦୟରେ ଆଣିବା ହିଁ ଅସଂଖ୍ୟ ଦୁରାଚାରର ସହିତ ସମାନ । କୋଦ୍ରଅ କେଆରେ ଉତ୍ତମ ଧାନ କେବେ ଫଳି ପାରେ କି ? କଳା ଶାମୁକା କି କେବେ ମୋତି ଜନ୍ମାଇ ପାରେ ? ॥୨॥ ସ୍ୱପ୍ନରେ ହେଁ କାହାରି ଲେଶମାତ୍ର ଦୋଷ ନାହିଁ । ମୋର ଅଭାଗ୍ୟ ଅତଳ ସମୁଦ୍ର । ମୁଁ ଆପଣା ପାପର ପରିଣାମ ନ ବୁଝି ମାତାଙ୍କୁ କଟୁ ବଚନ କହି ବୃଥାରେ ଦଗ୍ଧ କରିଇଲି ॥୩॥ ମୋ ନିଜ ହୃଦୟରେ ସବୁଆଡ ଖୋଜି ମୁଁ ହାରିଗଲି । (ମୋ ହିତର କୌଣସି ଉପାୟ ମୋତେ ଦିଶିଲା ନାହିଁ ।) କେବଳ ଗୋଟିଏ ପ୍ରକାର ଉପାୟରେ ମୋର ହିତ ନିଶ୍ଚୟ ନିହିତ ବୋଲି ମୋତେ ବୋଧ ହେଉଅଛି । ତାହା' ହେଉଛି, ଗୁରୁ ଗୋସାଇଁ ସର୍ବସମର୍ଥ ଏବଂ ସୀତାରାମ ମୋର ସ୍ୱାମୀ । ଏହାର ଯୋଗୁ ପରିଣାମ ଉତ୍ତମ ହେବ ବୋଲି ମୋର ଆଶା ॥ ୪ ॥ ଦୋହା —ସାଧୁମାନଙ୍କ ସଭାରେ ଗୁରୁ ଓ

ମହିଁ ସକଲ ଅନରଥ କର ମୂଲା । ସୋ ସୁନି ସମୁଝି ସହେଉଁ ସବ ସୂଲା ॥
ସୁନି ବନ ଗବନୁ କୀହ୍ନ ରଘୁନାଥା । କରି ମୁନି ବେଷ ଲଖନ ସିୟ ସାଥା ॥୨॥
ବିନୁ ପାନହିନ୍ହ ପୟାଦେହିଁ ପାଏଁ । ସଁକରୁ ସାଖି ରହେଉଁ ଏହି ଘାଏଁ ॥
ବହୁରି ନିହାରି ନିଷାଦ ସନେହୂ । କୁଲିସ କଠିନ ଉର ଭୟଉ ନ ବେହୂ ॥୩॥
ଅବ ସବୁ ଆଁଖିନ୍ହ ଦେଖେଉଁ ଆଈ । ଜିଅତ ଜୀବ ଜଡ଼ ସବଇ ସହାଈ ॥
ଜିନ୍ହହି ନିରଖି ମଗ ସାଁପିନି ବୀଛୀ । ତଜହିଁ ବିଷମ ବିଷୁ ତାମସ ତୀଛୀ ॥୪॥

ତେଇ ରଘୁନଂଦନୁ ଲଖନୁ ସିୟ ଅନହିତ ଲାଗେ ଜାହି ।
ତାସୁ ତନୟ ତଜି ଦୁସହ ଦୁଖ ଦୈଉ ସହାୱଇ କାହି ॥୨୬୨॥

---

କେବଳ ମୁହିଁ ସମସ୍ତ ଅନର୍ଥର ମୂଳ । ତାହା ଶୁଣି ବିଗୁଣିଣ ସହେ ସବୁ ଶୂଳ ॥
ଶୁଣି ଶ୍ରୀରାମ ଗମନ କଲେ ବିପିନକୁ । ମୁନିବେଷେ, ସଙ୍ଗେ ଘେନି ସୀତା ଲକ୍ଷ୍ମଣଙ୍କୁ ॥୨॥
ପଦ-ତ୍ରାଣ ବିନା ଖାଲି ଚାଲିଣ ପାଦରେ । ଶଙ୍କର ସାକ୍ଷୀ, ରହିଲି ଏହି ଆଘାତରେ ॥
ପୁଣି ଅବଲୋକି ଅତି ନିଷାଦର ସ୍ନେହ । ବିଦୀର୍ଣ୍ଣ ନ ହେଲା ବଜ୍ର-କଠୋର ଏ ଦେହ ॥୩॥
ଏବେ ନୟନରେ ସବୁ ଦେଖିଲି ଆସିଣ । ଜୀଇଛୁ ଜଡ଼ ଜୀବନ ଏ ସବୁ ସହିଣ ॥
ଯାହାଙ୍କୁ ବିଲୋକି ବିଛା ସର୍ପିଣୀ ପଥର । ବିଷମ ତାମସ ଜ୍ୱାଳା ତେଜନ୍ତି ବିଷର ॥୪॥

ସେହି ସୀତା ରାମ ଲକ୍ଷ୍ମଣ ଲାଗିଲେ ବଇରୀ ସମ ଯାହାଙ୍କୁ ।
ତା ସୁତେ ଦଇବ ତେଜି ସହାଇବ ଦୁଃସହ ଦୁଃଖ କାହାକୁ ॥୨୬୨॥

---

ପ୍ରଭୁଙ୍କ ସମୀପରେ ଏହି ପବିତ୍ର ତୀର୍ଥସ୍ଥାନରେ ମୁଁ ସତ୍ୟ ଭାବରେ କହୁଛି । ଏହା ପ୍ରେମ କି ଛଳକପଟ ? ମିଥ୍ୟା କି ସତ୍ୟ ? ଏହା ସର୍ବଜ୍ଞ ମୁନି ବଶିଷ୍ଠ ଓ ଅନ୍ତର୍ଯ୍ୟାମୀ ଶ୍ରୀ ରଘୁନାଥଜୀ ଜାଣନ୍ତି ॥ ୨୬୧ ॥ ଚୌପାଈ :—ପ୍ରେମର ପଣ ରକ୍ଷା କରି ମହାରାଜ (ପିତା)ଙ୍କର ମୃତ୍ୟୁବରଣ ଏବଂ ମାତାଙ୍କର କୁବୁର୍ଦ୍ଧି, ଏହି ଉଭୟ ବିଷୟରେ ସାରା-ସଂସାର ସାକ୍ଷୀ । ମାତାଙ୍କର ବ୍ୟାକୁଳତା ଦେଖି ହେଉନାହିଁ । ଅଯୋଧ୍ୟାପୁରୀର ନରନାରୀ ଦୁଃସହ ସନ୍ତାପରେ ଦଗ୍ଧ ହେଉଅଛନ୍ତି ॥ ୧ ॥ ମୁଁ ଏ ସବୁ ଅନର୍ଥର ମୂଳ । ଏହା ଶୁଣି ଓ ବୁଝି ମୁଁ ସବୁ ଦୁଃଖ-ଶୂଳ ସହିଅଛି । ଶ୍ରୀ ରଘୁନାଥ ଲକ୍ଷ୍ମଣ ଓ ସୀତାଙ୍କ ସହିତ ମୁନିବେଶ ଧାରଣ କରି ଯୋତା ନ ପିନ୍ଧି ପାଦରେ ଚାଲି ବନକୁ ଗମନ କଲେ । ଶଙ୍କର ସାକ୍ଷୀ, ଏହି ଆଘାତରେ ମଧ୍ୟ ମୁଁ ଜୀବିତ ରହି ପାରିଲି । ପୁଣି ନିଷାଦରାଜଙ୍କ ପ୍ରେମ ଦେଖି ମଧ୍ୟ ଏ ବଜ୍ରକଠୋର ହୃଦୟ ବିଦୀର୍ଣ୍ଣ ହେଲା ନାହିଁ । ॥ ୨-୩ ॥ ଏବେ ଏଠାକୁ ଆସି ସବୁ ଆଖି ଆଗରେ ଦେଖିଲି । ଏହି ଜଡ଼ ଜୀବନ ମୋତେ ସବୁ ସହାଇ ନେଉ ରହିଛି । ଯେଉଁମାନଙ୍କୁ ଦେଖି ପଥର ସର୍ପିଣୀ ଓ ବିଛା ମଧ୍ୟ ଆପଣାର ଭୟାନକ ବିଷ ଓ ତୀବ୍ର କ୍ରୋଧ ପରିତ୍ୟାଗ କରି ଦିଅନ୍ତି, ॥ ୪ ॥ ଦୋହା :—ସେହି ରଘୁନନ୍ଦନ, ଲକ୍ଷ୍ମଣ ଓ ସୀତା ଯାହାଙ୍କୁ ଶତ୍ରୁ ପରି ଜଣା ପଡ଼ିଲେ, ସେହି କୈକେୟୀ-ପୁତ୍ର ଭରତ ମୁଁ । ମୋତେ ଛାଡ଼ି ଦୈବ ଆଉ କାହାକୁ (ଏପରି) ଦୁଃସହ ଦୁଃଖ ସହାଇବ ?" ॥୨୬୨॥

ସୁନି ଅତି ବିକଲ ଭରତ ବର ବାନୀ । ଆରତି ପ୍ରୀତି ବିନୟ ନୟ ସାନୀ ॥
ସୋକ ମଗନ ସବ ସଭାଁ ଖଭାରୂ । ମନହୁଁ କମଲ ବନ ପରେଉ ତୁସାରୂ ॥୧॥
କହି ଅନେକ ବିଧି କଥା ପୁରାନୀ । ଭରତ ପ୍ରବୋଧୁ କୀନ୍ହ ମୁନି ଜ୍ଞାନୀ ॥
ବୋଲେ ଉଚିତ ବଚନ ରଘୁନଂଦୂ । ଦିନକର କୁଲ କୈରବ ବନ ଚଂଦୂ ॥୨॥
ତାତ ଜାୟଁ ଜିୟଁ କରହୁ ଗଲାନୀ । ଈସ ଅଧୀନ ଜୀବ ଗତି ଜାନୀ ॥
ତୀନି କାଲ ତିଭୁଅନ ମତ ମୋରେଁ । ପୁନ୍ୟସିଲୋକ ତାତ ତର ତୋରେଁ ॥୩॥
ଉର ଆନତ ତୁମ୍ହ ପର କୁଟିଲାଈ । ଜାଇ ଲୋକୁ ପରଲୋକୁ ନସାଈ ॥
ଦୋସୁ ଦେହିଁ ଜନନିହି ଜଡ଼ ତେଈ । ଜିନ୍ହ ଗୁର ସାଧୁ ସଭା ନହିଁ ସେଈ ॥୪॥

ମିଟିହହିଁ ପାପ ପ୍ରପଂଚ ସବ ଅଖିଲ ଅମଂଗଲ ଭାର ।
ଲୋକ ସୁଜସୁ ପରଲୋକ ସୁଖୁ ସୁମିରତ ନାମୁ ତୁମ୍ହାର ॥୨୬୩॥

---

ଶୁଣନ୍ତେ ବିକଳ ବାଣୀ ଭରତଙ୍କ ଅତି । ଆପ୍ଲାବିତ ନୀତି ପ୍ରୀତି ଆରତି ବିନତି ॥
ସଭାସଦେ ହେଲେ ଶୋକ ଉଦ୍‌ବିଗ୍ନ ମଗନ । କମଳ ବନେ ପଡ଼ିଲା ତୁଷାର ଯେସନ ॥୧॥
କହି ଅନେକ ପ୍ରକାରେ ପ୍ରାଚୀନ କାହାଣୀ । ଭରତଙ୍କୁ ପରିତୋଷ କଲେ ମୁନି ଜ୍ଞାନୀ ॥
ଭାଷିଲେ ଉଚିତ ବାଣୀ ଶ୍ରୀ ରଘୁ ପୁଙ୍ଗବ । ଆଦିତ୍ୟ-କୁଳ-କୁମୁଦ-କାନନ ବାନ୍ଧବ ॥୨॥
ଭାଇ, ମନ ମଧ୍ୟେ ବୃଥା କରନାହିଁ ଗ୍ଲାନି । ପରମେଶ୍ୱର ଅଧୀନ ଜୀବ ଗତି ଜାଣି ॥
ତି କାଳେ ତିନିଭୁବନେ ଭ୍ରାତ, ମତ ମୋର । ଯେତେ ପୁଣ୍ୟଶ୍ଲୋକ ଛନ୍ତି ତଳେ ସବୁ ତୋର ॥୩॥
ତୁମ୍ଭେ କୁଟିଳ ବୋଲିଣ ଭାବନ୍ତେ ହୃଦୟେ । ଲୋକ ପରଲୋକ ନାଶ ହୁଅନ୍ତି ଉଭୟେ ॥
ଜନନୀକୁ ଦୋଷ ଦିଏ ମତି ମନ୍ଦ ସେହୁ । ଗୁରୁ ସାଧୁ ସଭା ସେବା କରିନାହିଁ ଯେହୁ ॥୪॥

ନଷ୍ଟ ହେବ ସର୍ବ ଅମଙ୍ଗଳ ଭାର ପାପ ପ୍ରପଞ୍ଚ ନିକର ।
ସୁଯଶ ଏ ଲୋକେ, ସୁଖ ପରଲୋକେ, ସ୍ମରନ୍ତେ ନାମ ତୁମର ॥୨୬୩॥

---

ଚୌପାଇ :—ଅତ୍ୟନ୍ତ ବ୍ୟାକୁଳ ଏବଂ ଦୁଃଖ, ପ୍ରେମ, ବିନୟ ଓ ନୀତିରେ ସିକ୍ତ ଭରତଙ୍କ ଶ୍ରେଷ୍ଠ ବାଣୀ ଶୁଣି ସମସ୍ତେ ଶୋକରେ ନିମଗ୍ନ ହୋଇ ପଡ଼ିଲେ । ସମସ୍ତ ସଭା ମଧ୍ୟରେ ବିଷାଦ ଖେଳିଗଲା । ସତେ ଅବା କମଳବନରେ ତୁଷାର ପଡ଼ିଗଲା ॥ ୧ ॥ ତଦନନ୍ତର ଜ୍ଞାନୀ ମୁନି ବଶିଷ୍ଠ ଅନେକ ପ୍ରକାରର ପୁରାତନ ଐତିହାସିକ କଥା କହି ଭରତଙ୍କୁ ସାନ୍ତ୍ୱନା ଦେଲେ । ପୁଣି ସୂର୍ଯ୍ୟକୁଳ-କୁମୁଦ ବନର ଚନ୍ଦ୍ର, ଶ୍ରୀ ରଘୁନନ୍ଦନ ଉଚିତ ବଚନ ବୋଇଲେ ॥ ॥ "ହେ ବତ୍ସ ! ତୁମେ ଆପଣା ହୃଦୟରେ ବୃଥାରେ ଗ୍ଲାନି କରୁଅଛ । ଜୀବର ଗତି ଈଶ୍ୱରଙ୍କ ଅଧୀନ ବୋଲି ଜାଣ । ମୋ ମତରେ ତିନିକାଳରେ ଓ ତିନିଲୋକରେ ଯେତେ ପୁଣ୍ୟାତ୍ମା ପୁରୁଷ ଅଛନ୍ତି, ସେମାନେ ସମସ୍ତେ ତୁମର ତଳେ ॥ ୩ ॥ ହୃଦୟରେ ସୁଦ୍ଧା ତୁମ ଉପରେ କୁଟିଳତାର ଆରୋପ ଯେ କରିବ, ତାହାର ଇହଲୋକ ଓ ପରଲୋକ, ଉଭୟ ଲୋକ ନଷ୍ଟ ହୋଇଯିବ । ଯେଉଁମାନେ ସାଧୁ-ସଭା ସେବା କରି ନାହାନ୍ତି, ସେହି ମୂର୍ଖମାନେ ତ ମାତା କୈକେୟୀଙ୍କୁ ଦୋଷ

କହଉଁ ସୁଭାଉ ସତ୍ୟ ସିବ ସାଖୀ । ଭରତ ଭୂମି ରହ ରାଉରି ରାଖୀ ॥
ତାତ କୁତରକ କରହୁ ଜନି ଜାଏଁ । ବୈର ପେମ ନହିଁ ଦୁରଇ ଦୁରାଏଁ ॥୧॥
ମୁନିଗନ ନିକଟ ବିହଗ ମୃଗ ଜାହୀଁ । ବାଧକ ବଧିକ ବିଲୋକି ପରାହୀଁ ॥
ହିତ ଅନହିତ ପସୁ ପଚ୍ଛିଉ ଜାନା । ମାନୁଷ ତନୁ ଗୁନ ଜ୍ଞାନ ନିଧାନା ॥୨॥
ତାତ ତୁମ୍ହହି ମୈ ଜାନଉଁ ନୀକେଁ । କରୌଁ କାହ ଅସମଂଜସ ଜୀ କେଁ ॥
ରାଖେଉ ରାୟଁ ସତ୍ୟ ମୋହି ତ୍ୟାଗୀ । ତନୁ ପରିହରେଉ ପେମ ପନ ଲାଗୀ ॥୩॥
ତାସୁ ବଚନ ମେଟତ ମନ ସୋଚୁ । ତେହି ତେଁ ଅଧିକ ତୁମ୍ହାର ସଁକୋଚୁ ॥
ତା ପର ଗୁର ମୋହି ଆୟସୁ ଦୀହ୍ନା । ଅବସି ଜୋ କହହୁ ଚହଉଁ ସୋଇ କୀହ୍ନା ॥୪॥
ମନୁ ପ୍ରସନ୍ନ କରି ସକୁଚ ତଜି କହହୁ କରୌଁ ସୋଇ ଆଜୁ ।
ସତ୍ୟସଂଧ ରଘୁବର ବଚନ ସୁନି ଭା ସୁଖୀ ସମାଜୁ ॥୨୬୪॥

---

କହୁଛି ସ୍ୱଭାବେ ସତ୍ୟ ସାକ୍ଷୀ ରହି ଶିବ । ତୁମ୍ଭ ରଖିଲେ ଭରତ ! ଧରଣୀ ରହିବ ॥
ବ୍ୟର୍ଥ କୁତର୍କ ମନରେ ଭ୍ରାତ, କର ନାହିଁ । ପ୍ରୀତି ବୈର ଲୁଚାଇଲେ ଲୁଚଇ କି କାହିଁ ॥୧॥
ମୁନିଙ୍କ ନିକଟେ ମୃଗ ବିହଙ୍ଗ ଯାଆନ୍ତି । ବାଧକ ବ୍ୟାଧଙ୍କୁ ଦେଖି ସଭୟେ ପଳାନ୍ତି ॥
ନିଜ ହିତାହିତ ପଶୁ ପକ୍ଷୀ ବି ଜାଣଇ । ନର-ତନୁ ଜ୍ଞାନ-ଗୁଣ-ନିଳୟ ଅଟଇ ॥୨॥
ଭ୍ରାତ ! ମୁଁ ତୁମ୍ଭଙ୍କୁ ଜାଣେ ଉତ୍ତମ ପ୍ରକାରେ । ପଡ଼ିଛି କର୍ତ୍ତବ୍ୟ ଘେନି ବଡ ଅଡୁଆରେ ॥
ରଖିଲେ ନୃପତି ସତ୍ୟ ମୋତେ ପରିତ୍ୟାଗି । ତନୁ ତ୍ୟାଗ କଲେ ପୁଣି ପ୍ରେମ-ପଣ ଲାଗି ॥୩॥
ଏଡନ୍ତେ ତାଙ୍କ ବଚନ ଚିନ୍ତା ଉପୁଜଇ । ତାଠାରୁ ଅଧିକ ତୁମ୍ଭ ସଙ୍କୋଚ ଲାଗଇ ॥
ଏହାପରେ ଆଜ୍ଞା ମୋତେ ଦେଲେ ଗୁରୁବର । ଅବଶ୍ୟ କହିବ ଯାହା, କରିବା ସତ୍ୱର ॥୪॥
ପ୍ରସନ୍ନ ମନରେ ଲଜ୍ଜା ତେଜି ଯାହା କହିବ କରିବା ଆଜ ।
ଶୁଣି ସତ୍ୟସନ୍ଧ ରଘୁବର ବାଣୀ ସୁଖୀ ହୋଇଲେ ସମାଜ ॥୨୬୪॥

---

ହିଅନ୍ତି ॥ ୪ ॥ ଦୋହା :—ହେ ଭରତ ! ତୁମର ନାମ ସ୍ମରଣ କରିବା ମାତ୍ରେ ସମସ୍ତ ପାପ, ଅଜ୍ଞାନ ଓ ଅମଙ୍ଗଳରାଶି ଦୂର ହୋଇଯିବ ଏବଂ ଇହଲୋକରେ ସୁଯଶ ଓ ପରଲୋକରେ ମଧ୍ୟ ସୁଖ ଲାଭ ହେବ ॥ ୨୬୩ ॥ ଚୌପାଈ :— ହେ ଭରତ ! ମୁଁ ସ୍ୱଭାବତଃ ସତ୍ୟ କହୁଅଛି; ଶିବ ସାକ୍ଷୀ, ଏହି ପୃଥିବୀ ତୁମରି ସୁରକ୍ଷା ଯୋଗେ ରହିଅଛି । ହେ ବତ୍ସ ! ତୁମେ ଭୁଆରେ କୁତର୍କ ନ କର । ବୈର ଓ ପ୍ରେମ ଲୁଚାଇଲେ ବି ଲୁଚେ ନାହିଁ ॥ ୧ ॥ ପଶୁ ଓ ପକ୍ଷୀମାନେ ମୁନିମାନଙ୍କ ନିକଟକୁ ନିର୍ଭୟରେ ଚାଲିଯାଆନ୍ତି । କିନ୍ତୁ ହିଂସ୍ରକ ଶିକାରୀଙ୍କୁ ଦେଖିବା ମାତ୍ରେ ପଳାଇ ଯାଆନ୍ତି । ମିତ୍ର ଓ ଶତ୍ରୁଙ୍କୁ ପଶୁପକ୍ଷୀ ବୁଝି ଚିହ୍ନନ୍ତି । ଆଉ ମନୁଷ୍ୟ ଶରୀର ତ ଗୁଣ ଓ ଜ୍ଞାନର ଭଣ୍ଡାର ହିଁ ॥ ୨ ॥ ହେ ବତ୍ସ ! ମୁଁ ତୁମକୁ ଭଲ ରୂପେ ଜାଣେ । କରିବି କ'ଣ ? ହୃଦୟରେ ବଡ ଦ୍ୱିଧା । ରାଜା ମୋତେ ତ୍ୟାଗ କରି ସତ୍ୟରକ୍ଷା କଲେ ଏବଂ ପ୍ରେମପଣ ନିମନ୍ତେ ଶରୀର ତ୍ୟାଗ କଲେ ॥ ୩ ॥ ତାଙ୍କ ବଚନ ଏଡ଼ିଲେ ମନରେ ଚିନ୍ତା । ତହିଁରୁ

ସୁରଗନ ସହିତ ସଭୟ ସୁରରାଜୂ । ସୋଚହିଁ ଚାହତ ହୋନ ଅକାଜୂ ॥
ବନତ ଉପାଉ କରତ କଛୁ ନାହାଁ । ରାମ ସରନ ସବ ଗେ ମନ ମାହାଁ ॥୧॥
ବହୁରି ବିଚାରି ପରସପର କହହାଁ । ରଘୁପତି ଭଗତ ଭଗତି ବସ ଅହହାଁ ॥
ସୁଧି କରି ଅଂବରୀଷ ଦୁରବାସା । ଭେ ସୁର ସୁରପତି ନିପଟ ନିରାସା ॥୨॥
ସହେ ସୁରନ୍ହ ବହୁ କାଲ ବିଷାଦା । ନରହରି କିଏ ପ୍ରଗଟ ପ୍ରହଲାଦା ॥
ଲଗି ଲଗି କାନ କହହିଁ ଧୁନି ମାଥା । ଅବ ସୁର କାଜ ଭରତ କେ ହାଥା ॥୩॥
ଆନ ଉପାଉ ନ ଦେଖିଅ ଦେବା । ମାନତ ରାମୁ ସୁସେବକ ସେବା ॥
ହିୟଁ ସପେମ ସୁମିରହୁ ସବ ଭରତହି । ନିଜ ଗୁନ ସୀଲ ରାମ ବସ କରତହି ॥୪॥

---

ସୁର-ସମୂହଙ୍କ ସହ ସୁରେଶ ସଭୟେ । ଚିନ୍ତେ, କାର୍ଯ୍ୟ ନଷ୍ଟ ହେବା ଚାହୁଁଛି ନିଶ୍ଚୟେ ॥
କୌଣସି ଉପାୟ ପୁଣ ନାହିଁ ନିଜ ହସ୍ତେ । ମନ ମଧ୍ୟେ ଗଲେ ରାମ ଶରଣ ସମସ୍ତେ ॥୧॥
ପରସ୍ପର ବିଚାରଣ କହନ୍ତି ଆଦର । ଅଟନ୍ତି ଭକ୍ତର ଭକ୍ତି-ବଶ ରଘୁବର ॥
ଅମ୍ବରୀଷ ଦୁର୍ବାସାଙ୍କ ସ୍ମରି ଇତିହାସ । ହେଲେ ସୁର ସୁର-ମଣି ନିପଟ ନିରାଶ ॥୨॥
ସହନ୍ତେ ବହୁତ କାଳ ବିବୁଧେ ବିଷାଦ । ନରସିଂହଙ୍କୁ ପ୍ରକଟ କଲେ ପ୍ରହ୍ଲାଦ ॥
ମୁଣ୍ଡ ପିଟି କୁହାକୁହି ହୁଅନ୍ତି କାନରେ । ଏବେ ଦେବତାଙ୍କ କାର୍ଯ୍ୟ ଭରତ ହାତରେ ॥୩॥
ନ ଦିଶେ ଦେବେ, କୌଣସି ଉପାୟ ଇତର । ସେବକ-ସେବାରେ ପରସନ୍ନ ରଘୁବୀର ॥
ହୃଦେ ସପ୍ରେମେ ସ୍ମରଣ କର ଭରତଙ୍କୁ । ନିଜ ଗୁଣଶୀଳେ ବଶ କଲେ ଯେ ରାମଙ୍କୁ ॥୪॥

---

ବଲି ତୁମର ସଙ୍କୋଚ । ତତ୍ପରେ ଗୁରୁ ମୋତେ ଆଜ୍ଞା ଦେଇଅଛନ୍ତି । ଅତଏବ ବର୍ତ୍ତମାନ ତୁମେ ଯାହା କିଛି କହିବ, ଅବଶ୍ୟ ମୁଁ ତାହା କରିବାକୁ ଇଚ୍ଛୁକ ॥ ୪ ॥ ଦୋହା ।—ତୁମେ ମନକୁ ପ୍ରସନ୍ନ କରି ଏବଂ ସଙ୍କୋଚ ତ୍ୟାଗ କରି ଯାହା କିଛି କହିବ, ମୁଁ ଆଜ ତାହା ହିଁ କରିବ ।" ସତ୍ୟପ୍ରତିଜ୍ଞ ରଘୁକୁଳମଣି ଶ୍ରୀ ରାମଚନ୍ଦ୍ରଙ୍କ ଏହି ବଚନ ଶୁଣି ସାରା ସମାଜ ସୁଖୀ ହୋଇଗଲା ॥୨୬୪॥ ଚୌପାଈ.—ଦେବଗଣ ସମେତ ଦେବରାଜ ଇନ୍ଦ୍ର ଭୟଭୀତ ହୋଇ ଭାବିବାକୁ ଲାଗିଲେ, "ଏବେ ସଫଳ ହୋଇ ଆସୁଥିବା କାମ ନଷ୍ଟ ହେବାକୁ ଯାଉଛି ।" ସେତେବେଳେ ସେ ମନେ ମନେ ଶ୍ରୀରାମଙ୍କ ଶରଣ ପଶିଲେ ॥ ୧ ॥ ପୁଣି ସେମାନେ ବିଚାର କରି ପରସ୍ପର କଥାବାର୍ତ୍ତା ହେବାକୁ ଲାଗିଲେ, "ଶ୍ରୀ ରଘୁନାଥ ତ ଭକ୍ତର ଭକ୍ତି-ଅଧୀନ ।" ଅମ୍ବରୀଷ ଓ ଦୁର୍ବାସାଙ୍କ ଘଟଣା ମନେ ପକାଇ ଦେବତାଗଣ ଓ ଇନ୍ଦ୍ର ଏକାବେଳକେ ନିରାଶ ହୋଇ ପଡ଼ିଲେ ॥ ୨ ॥ ପ୍ରଥମେ ଦେବତାମାନେ ବହୁତ ସମୟ ଯାଏ ଦୁଃଖ ସହିଲେ । ସେତେବେଳେ ଭକ୍ତ ପ୍ରହ୍ଲାଦ ହିଁ ନୃସିଂହାବତାରରେ ଭଗବାନଙ୍କୁ ଆବିର୍ଭୂତ କରାଇଥିଲେ ।" ସମସ୍ତ ଦେବତା ଓ ଇନ୍ଦ୍ର ପରସ୍ପର କାନକୁ କାନ ଲାଗି ମୁଣ୍ଡ ହଲାଇ କହୁଥା'ନ୍ତି—ଏଥର ଦେବତାମାନଙ୍କ କାମ ଭରତଙ୍କ ହାତରେ ॥ ୩ ॥ "ହେ ଦେବତାମାନେ ! ଆଉ କୌଣସି ଉପାୟ ଦେଖାଯାଉ ନାହିଁ । ଶ୍ରୀରାମ ତାହାଙ୍କ ଶ୍ରେଷ୍ଠ ସେବକମାନଙ୍କ ପ୍ରତି ଯେ

ସୁନି ସୁର ମତ ସୁରଗୁରୁ କହେଉ ଭଲ ତୁହ୍ମାର ବଡ଼ ଭାଗୁ ।
ସକଲ ସୁମଂଗଲ ମୂଲ ଜଗ ଭରତ ଚରନ ଅନୁରାଗୁ ॥୨୧୯॥

ସୀତାପତି ସେବକ ସେବକାଈ । କାମଧେନୁ ସୟ ସରିସ ସୁହାଈ ॥
ଭରତ ଭଗତି ତୁହ୍ମରେଁ ମନ ଆଈ । ତଜହୁ ସୋଚୁ ବିଧି ବାତ ବନାଈ ॥୧॥
ଦେଖୁ ଦେବପତି ଭରତ ପ୍ରଭାଉ । ସହଜ ସୁଭାୟଁ ବିବସ ରଘୁରାଉ ॥
ମନ ଥିର କରହୁ ଦେବ ଡରୁ ନାହୀଁ । ଭରତହି ଜାନି ରାମ ପରିଛାହୀଁ ॥୨॥
ସୁନି ସୁରଗୁର ସୁର ସଂମତ ସୋଚୂ । ଅଂତରଜାମୀ ପ୍ରଭୁହି ସକୋଚୂ ॥
ନିଜ ସିର ଭାରୁ ଭରତ ଜିୟଁ ଜାନା । କରତ କୋଟି ବିଧି ଉର ଅନୁମାନା ॥୩॥

---

ସୁରଙ୍କ ସମ୍ମତି ଶୁଣି ସୁର-ଗୁରୁ କହନ୍ତି, ତୁମ୍ଭ ସୌଭାଗ୍ୟ ।
ଜଗତେ ସକଳ ସୁମଙ୍ଗଳ-ମୂଳ ଭରତ ପଦାନୁରାଗ ॥୨୧୯॥
ସୀତା-ପତି ସେବକର ସେବା ଅନୁରକ୍ତ । ଶତ କାମଧେନୁ ସମ ସୁଖଦ ଅତ୍ୟନ୍ତ ॥
ତୁମ୍ଭ ମନେ ଭରତଙ୍କ ଭକ୍ତି ଯେ ଆସିଲା । ଚିନ୍ତା ପରିହର, ବିଧି କାର୍ଯ୍ୟ ସମ୍ଭାଳିଲା ॥୧॥
ଭରତ ପ୍ରଭାବ ଅବଲୋକ ସୁରପତି । ସହଜ ସ୍ନେହ-ବିବଶ ଶ୍ରୀରାମ ଅଟନ୍ତି ॥
ମନେ ଥୈର୍ଯ୍ୟ ଧର ଦେବେ, ଭୟ ନ କରଣ । ଭରତଙ୍କୁ ଶ୍ରୀରାମଙ୍କ ଛାୟା ବିଚାରଣ ॥୨॥
ଶୁଣି ସୁର-ଗୁରୁ ମତ ଚିନ୍ତା ସୁରଙ୍କର । ସଙ୍କୋଚ ଲଭିଲେ ଅନ୍ତର୍ଯାମୀ ରଘୁବର ॥
ସମସ୍ତ ଭାର ଭରତ ଆପଣା ଉପରେ । ବୁଝି ନାନା ଅନୁମାନ କରନ୍ତି ଅନ୍ତରେ ॥୩॥

---

ସେବା କରେ, ତାହାର ସେବାକୁ ସବୁଠାରୁ ବଡ଼ ମାନନ୍ତି । ଅତଏବ ଆପଣା ଗୁଣ ଓ ଶୀଳ ଯୋଗେ ଶ୍ରୀ ରାମଙ୍କୁ ଯେ ବଶୀଭୂତ କରି ପାରିଛନ୍ତି, ସେହି ଭରତଙ୍କୁ ସମସ୍ତେ ଆପଣା ଆପଣା ହୃଦୟରେ ସପ୍ରେମ ସ୍ମରଣ କର ।" ॥ ୮ ॥ ଦୋହା —ଦେବତା-ଗଣଙ୍କ ମତ ଶୁଣି ଦେବଗୁରୁ ବୃହସ୍ପତି କହିଲେ, "ଭଲ ବିଚାର କଲ, ତୁମମାନଙ୍କର ଭାଗ୍ୟ ବଡ ତେଜସ୍ୱାନ୍ । ଭରତଙ୍କ ଚରଣ ପ୍ରତି ପ୍ରେମ ଜଗତରେ ସକଳ ଶୁଭ-ମଙ୍ଗଳର ମୂଳ କାରଣ ॥ ୨୧୯ ॥ ଚୌପାଈ —ସୀତାନାଥ ଶ୍ରୀରାମଙ୍କ ସେବକ ପ୍ରତି ସେବା ଶତ ଶତ କାମଧେନୁ ସେବା ସମାନ ଫଳଦାୟକ । ତୁମମାନଙ୍କ ମନରେ ଭରତଙ୍କ ପ୍ରତି ଭକ୍ତି ଆସି ପହଞ୍ଚିଛି । ତେବେ ଏବେ ଚିନ୍ତା ପରିହାର କର । ବିଧାତା ଉପାୟ ଗଢି ଦେଲେ ॥ ୧ ॥ ହେ ଦେବରାଜ ! ଭରତଙ୍କ ପ୍ରଭାବ ତ ଦେଖ । ଶ୍ରୀ ରଘୁନାଥ ସହଜ-ସ୍ୱଭାବରେ ତାଙ୍କର ସମ୍ପୂର୍ଣ୍ଣ ବଶୀଭୂତ । ହେ ଦେବଗଣ ! ଭରତ ଶ୍ରୀରାମଙ୍କ ପ୍ରତିବିମ୍ବ — ଏହା ଜାଣି ମନକୁ ସ୍ଥିର କର । ଭୟର କାରଣ କିଛି ନାହିଁ ॥ ୨ ॥ ଦେବଗୁରୁ ବୃହସ୍ପତି ଓ ଦେବଗଣଙ୍କ ମତ ଏବଂ ସେମାନଙ୍କ ଚିନ୍ତାର ବିଷୟ ଶୁଣି ଅନ୍ତର୍ଯାମୀ ପ୍ରଭୁ ଶ୍ରୀରାମଙ୍କ ମନରେ ବଡ ସଂକୋଚ ହେଲା । ସେ ଭରତଙ୍କ କଥା ମାନିବେ କିମ୍ବା ଦେବତାଗଣଙ୍କ କଥା ମାନିବେ, ଏହି ଦ୍ୱନ୍ଦ୍ୱରେ ପଡିଗଲେ । ଏଣେ ଭରତ ସମସ୍ତ ଭାର ଆପଣା ଉପରେ ପଡ଼ିଥିବାର ଦେଖି ରାମଚନ୍ଦ୍ରଙ୍କୁ କହିବେ କି ନ କହିବେ, ସେ

କରି ବିଚାରୁ ମନ ଦୀହ୍ନୀ ଠୀକା । ରାମ ରଜାୟସ ଆପନ ନୀକା ॥
ନିଜ ପନୁ ତଜି ରାଖେଉ ପନୁ ମୋରା । ଛୋହୁ ସନେହୁ କୀହ୍ନ ନହିଁ ଥୋରା ॥୩॥
କୀହ୍ନ ଅନୁଗ୍ରହ ଅମିତ ଅତି ସବ ବିଧି ସୀତାନାଥ ।
କରି ପ୍ରନାମୁ ବୋଲେ ଭରତୁ ଜୋରି ଜଲଜ ଜୁଗ ହାଥ ॥୨୬୭॥
କହୌଂ କହାର୍‌ୱୌଂ କା ଅବ ସ୍ୱାମୀ । କୃପା ଅଂବୁନିଧି ଅଂତରଜାମୀ ॥
ଗୁର ପ୍ରସନ୍ନ ସାହିବ ଅନୁକୂଲା । ମିଟୀ ମଲିନ ମନ କଲପିତ ସୂଲା ॥୧॥
ଅପଡର ଡରେଉଁ ନ ସୋଚ ସମୂଲେଁ । ରବିହି ନ ଦୋସୁ ଦେବ ଦିସି ଭୂଲେଁ ॥
ମୋର ଅଭାଗୁ ମାତୁ କୁଟିଲାଈ । ବିଧି ଗତି ବିଷମ କାଲ କଠିନାଈ ॥୨॥
ପାଉ ରୋପି ସବ ମିଲି ମୋହି ଘାଲା । ପ୍ରନତପାଲ ପନ ଆପନ ପାଲା ॥
ୟହ ନଇ ରୀତି ନ ରାଉରି ହୋଈ । ଲୋକହୁଁ ବେଦ ବିଦିତ ନହିଁ ଗୋଈ ॥୩॥

---

ମନ ମଧ୍ୟେ ବିଚାରିଲେ ଏ ଠିକଣା । ରାମଙ୍କ ଆଜ୍ଞା ପାଳନେ କଲ୍ୟାଣ ଆପଣା ॥
ନିଜ ପଣ ପରିହରି ମୋ ପଣ ରଖିଲେ । ସ୍ନେହ ଅନୁଗ୍ରହ ପ୍ରଭୁ ଅଳ୍ପ ନ କରିଲେ ॥୪॥
କଲେ ସୀତାପତି ଅନୁଗ୍ରହ ଅତି ଅସୀମ ସବୁ ପ୍ରକାର ।
ଯୋଡି ଯୁଗ୍ମ ହସ୍ତ-କମଳ ଭରତ ଭାଷିଲେ କରି ଜୁହାର ॥୨୬୭॥
କି କହିବି, କୁହାଇବି ଏବେ ଆଉ, ସ୍ୱାମି । ଅନୁକମ୍ପା-ଅମ୍ବୁନିଧି ହୃଦ - ଅନ୍ତର୍ଯ୍ୟାମି ॥
ଗୁରୁ ପ୍ରସନ୍ନ ଆବର ସ୍ୱାମୀ ଅନୁକୂଳ । ତୁଟିଲା ମଳିନ ମନ କଳପିତ ଶୂଳ ॥୧॥
ନିଜ ଡରେ ଡରୁଥିଲି ଚିନ୍ତା ଅକାରଣ । ଦିଗ ଭ୍ରମେ ନାହିଁ ଦେବ ! ରବିର ଦୂଷଣ ॥
ମୋର ଅଭାଗ୍ୟ କୁଟିଳା ଜନନୀ କୁମତି । କଠିନ କାଳ, ବିଷମ ବିଧାତାର ଗତି ॥୨॥
ପଣ କରି ମିଳି ମୋତେ ସମସ୍ତେ ମାରିଲେ । ପ୍ରଣତପାଳ ଆପଣା ପ୍ରତିଜ୍ଞା ପାଳିଲେ ॥
ଏ କିଛି ନବୀନ ରୀତି ନାଥଙ୍କ ନୁହଇ । ପ୍ରତ୍ୟକ୍ଷ ଲୋକ ବେଦରେ ବିଦିତ ଅଟଇ ॥୩॥

---

ବିଷୟରେ ମନ ମଧ୍ୟରେ ଅନେକ ପ୍ରକାର କଳ୍ପନା-ଜଳ୍ପନା କରିବାକୁ ଲାଗିଲେ ॥ ୩ ॥ ସବୁ ଆଡୁ ବିଚାର କରି ପରିଶେଷରେ ସେ ଏହି ସିଦ୍ଧାନ୍ତରେ ଉପନୀତ ହେଲେ ଯେ, ଶ୍ରୀରାମଙ୍କ ଆଜ୍ଞା-ପାଳନରେ ହିଁ ତାଙ୍କର କଲ୍ୟାଣ ନିହିତ । ସେ ବିଚାରିଲେ, "ଶ୍ରୀରାମ ନିଜ ପଣ ଛାଡି ମୋ ପଣ ରକ୍ଷା କଲେ । ଏହା ତାଙ୍କର କିଛି କମ୍ କୃପା ଓ ସ୍ନେହ ନୁହେଁ ॥ ୪ ॥ ଦୋହା :—ଶ୍ରୀ ଜାନକୀନାଥ ସବୁ ପ୍ରକାରେ ମୋତେ ଅପାର ଅନୁଗ୍ରହ ଦେଖାଇ ଅଛନ୍ତି ।" ତଦନନ୍ତର ଭରତ କର-କମଳ-ଯୁଗଳ ଯୋଡି ପ୍ରଣାମପୂର୍ବକ କହିଲେ— ॥ ୨୬୭ ॥ ଚୌପାଈ:—"ହେ ସ୍ୱାମି ! ହେ କୃପାସାଗର ! ହେ ଅନ୍ତର୍ଯ୍ୟାମି ! ବର୍ତ୍ତମାନ ମୁଁ ଅଧିକ ଆଉ କ'ଣ କହିବି, କୁହାଇବି ବା କ'ଣ ? ଗୁରୁ ମହାରାଜଙ୍କୁ ପ୍ରସନ୍ନ ଓ ସ୍ୱାମୀଙ୍କୁ ଅନୁକୂଳ ଜାଣି ମୋ ମଳିନ ମନର କଳ୍ପିତ ପୀଡା ମେଣ୍ଟିଗଲା ॥୧॥ ମୁଁ ମିଥ୍ୟା ଭୟରେ ଭୀତ ହୋଇ ପଡିଥିଲି । ମୋ ଚିନ୍ତାର କୌଣସି କାରଣ ନ ଥିଲା । ହେ ଦେବ ! ଦିଗ ଭ୍ରମ ହେବାରେ ସୂର୍ଯ୍ୟଙ୍କର କୌଣସି ଦୋଷ ନାହିଁ । ମୋର

ଜଗୁ ଅନଭଲ ଭଲ ଏକୁ ଗୋସାଈଁ । କହିଅ ହୋଇ ଭଲ କାସୁ ଭଲାଈଁ ॥
ଦେଉ ଦେବତରୁ ସରିସ ସୁଭାଊ । ସନମୁଖ ବିମୁଖ ନ କାହୁହି କାଊ ॥୪॥
ଜାଇ ନିକଟ ପହିଚାନି ତରୁ ଛାହଁ ସମନି ସବ ସୋଚ ।
ମାଗତ ଅଭିମତ ପାୱ ଜଗ ରାଉ ରଂକୁ ଭଲ ପୋଚ ॥୨୬୭॥
ଲଖି ସବ ବିଧି ଗୁର ସ୍ୱାମି ସନେହୂ । ମିଟେଉ ଛୋଭୁ ନହିଁ ମନ ସଂଦେହୂ ॥
ଅବ କରୁନାକର କୀଜିଅ ସୋଈ । ଜନ ହିତ ପ୍ରଭୁ ଚିତ ଛୋଭୁ ନ ହୋଈ ॥୧॥
ଜୋ ସେବକୁ ସାହିବହି ସଁକୋଚୀ । ନିଜ ହିତ ଚହଇ ତାସୁ ମତି ପୋଚୀ ॥
ସେବକ ହିତ ସାହିବ ସେବକାଈ । କରଇ ସକଲ ସୁଖ ଲୋଭ ବିହାଈ ॥୨॥

---

ଅଭଲ ଜଗତେ ଭଲ ଆପଣ କେବଳ । କହନ୍ତୁ, କାହାର ଭଲେ ହୋଇବ କୁଶଳ ॥
ଦେବ ! ଦେବ-ତରୁ ତୁଲ୍ୟ ତୁମ୍ଭର ସ୍ୱଭାବ । କାହା ପ୍ରତି ନାହିଁ କେବେ ଶତ୍ରୁ ମିତ୍ର ଭାବ ॥୪॥
ଚହ୍ନିଣ ବିଟପେ ଯାଆନ୍ତେ ନିକଟେ ଛାୟା ସବୁ ଚିନ୍ତା ହରେ ।
ରାଜା ରଙ୍କ ଭଲ ମନ୍ଦ, ଅଭିମତ ଫଳ ମାଗି ଲାଭ କରେ ॥୨୬୭॥
ସମସ୍ତ ପ୍ରକାରେ ଜାଣି ଗୁରୁ ସ୍ୱାମୀ ସ୍ନେହ । ନ ରହିଲା କ୍ଷୋଭ ମନୁ ତୁଟିଲା ସନ୍ଦେହ ॥
ଏବେ କୃପାଳୁ, କରନ୍ତୁ ତେମନ୍ତ ଯତନ । ମୋ ଲାଗି ବ୍ୟସ୍ତ ନ ହେଉ ଯେମନ୍ତେ ପ୍ରଭୁମନ ॥୧॥
ଯେଉଁ ସେବକ ସ୍ୱାମୀଙ୍କୁ ସଙ୍କୋଚ ଦେଇଣ । ନିଜ ହିତ ଇଚ୍ଛା କରେ ତାର ମତି ହୀନ ॥
ସ୍ୱାମୀଙ୍କ ସେବାରେ ଅଟେ ସେବକର ହିତ । ସମସ୍ତ ପ୍ରକାର ସୁଖ ଲୋଭ ବିବର୍ଜିତ ॥୨॥

---

ଦୁର୍ଭାଗ୍ୟ, ମାତାଙ୍କ କୁଟିଳତା, ବିଧାତାଙ୍କର କୁଟିଳ ଗତି ଓ କାଳର କଠିନତା— ଏ ସବୁ ମିଶି ଅସନ ଜମେଇ ମୋତେ ନଷ୍ଟ କରି ଦେଇଥିଲେ । କିନ୍ତୁ ଶରଣାଗତର ରକ୍ଷକ ଆପଣ । ଆପଣ ନିଜ ପଣ ରକ୍ଷା କରି ମୋତେ ରକ୍ଷା କରି ନେଇଛନ୍ତି । ଏହା ଆପଣଙ୍କ ପକ୍ଷରେ କିଛି ନୂଆ ରୀତି ନୁହେଁ । ଏହା ଲୋକ ଓ ବେଦରେ ପ୍ରକାଶିତ, ଗୁପ୍ତ ହୋଇ ରହିନାହିଁ ॥ ୨-୩ ॥ ସମଗ୍ର ସଂସାର ମନ୍ଦ ବା ପ୍ରତିକୂଳ ହେଉ ପଛକେ, ମାତ୍ର ହେ ସ୍ୱାମି ! ଏକା ଆପଣ ଭଲ ବା ଅନୁକୂଳ ହେଲେ, କୁହନ୍ତୁ, ଅନ୍ୟ କାହାର ହିତ-ସାଧନ ଦ୍ୱାରା ବ୍ୟକ୍ତିର ହିତ ହୋଇ ପାରିବ ? (ସେଥିର ବା ଆବଶ୍ୟକତା ଅଛି କାହିଁକି ପଡିବ ?) ହେ ଦେବ ! ଆପଣଙ୍କ ସ୍ୱଭାବ କଳ୍ପବୃକ୍ଷର ସ୍ୱଭାବ ପରି । ତାହା କେବେ ହେଲେ କାହାର ସମ୍ମୁଖ (ଅନୁକୂଳ) ବା ବିମୁଖ (ପ୍ରତିକୂଳ) ନୁହେଁ ॥ ୪ ॥ ଦୋହା :—ସେହି କଳ୍ପବୃକ୍ଷକୁ ଚହ୍ନି ଯେ ତାହାର ପାଖକୁ ଯାଏ, ତାହାର ଛାୟା ହିଁ ସମସ୍ତ ଚିନ୍ତାକୁ ନାଶ କରିଦିଏ । ରାଜା, ରଙ୍କ, ଭଲ ଓ ମନ୍ଦ; ସମସ୍ତେ ତାହାକୁ ମାଗିବା ମାତ୍ରେ ହିଁ ଅଭିଳଷିତ ବସ୍ତୁ ଲାଭ କରନ୍ତି ॥ ୨୬୭ ॥ ଚୌପାଇ :—ଗୁରୁ ଓ ସ୍ୱାମୀଙ୍କ ସବୁ ପ୍ରକାର ସ୍ନେହ ଦେଖି ମୋର କ୍ଷୋଭ ମେଣ୍ଟି ଯାଇଛି । ମନରେ କିଛି ହେଲେ ସନ୍ଦେହ ନାହିଁ । ହେ ଦୟାର ଆକର ! ଏବେ ସେଇଆ କରନ୍ତୁ, ଯାହା ଦ୍ୱାରା ଦାସ ବିଷୟରେ ପ୍ରଭୁଙ୍କ ମନରେ କୌଣସି ପ୍ରକାର କ୍ଷୋଭ ନ ରହିବ ॥ ୧ ॥ ଯେଉଁ ସେବକ

ସ୍ୱାରଥୁ ନାଥ ଫିରେଁ ସବହୀ କା । କିଏଁ ରଜାଇ କୋଟି ବିଧି ନୀକା ॥
ୟହ ସ୍ୱାରଥ ପରମାରଥ ସାରୂ । ସକଲ ସୁକୃତ ଫଲ ସୁଗତି ସିଁଗାରୂ ॥୩॥
ଦେବ ଏକ ବିନତୀ ସୁନି ମୋରୀ । ଉଚିତ ହୋଇ ତସ କରବ ବହୋରୀ ॥
ତିଲକ ସମାଜୁ ସାଜି ସବୁ ଆନା । କରିଅ ସୁଫଲ ପ୍ରଭୁ ଜୌଁ ମନୁ ମାନା ॥୪॥

ସାନୁଜ ପଠଇଅ ମୋହି ବନ କୀଜିଅ ସବହି ସନାଥ ।
ନତରୁ ଫେରିଅହିଁ ବଂଧୁ ଦୋଉ ନାଥ ଚଲୌଁ ମେଁ ସାଥ ॥୨୬୮॥

ନତରୁ ଜାହିଁ ବନ ତୀନିଉଁ ଭାଈ । ବହୁରିଅ ସୀୟ ସହିତ ରଘୁରାଈ ॥
ଜେହି ବିଧି ପ୍ରଭୁ ପ୍ରସନ୍ନ ମନ ହୋଈ । କରୁନାସାଗର କୀଜିଅ ସୋଈ ॥୧॥
ଦେବଁ ଦୀହ୍ନ ସବୁ ମୋହି ଅଭାରୂ । ମୋରେଁ ନୀତି ନ ଧରମ ବିଚାରୂ ॥
କହଉଁ ବଚନ ସବ ସ୍ୱାରଥ ହେତୂ । ରହତ ନ ଆରତ କେଁ ଚିତ ଚେତୂ ॥୨॥

---

ସ୍ୱାର୍ଥ ସମସ୍ତଙ୍କ ନ୍ୟସ୍ତ ନାଥ, ବାହୁଡ଼ିଲେ । ସର୍ବ ପ୍ରକାରେ ଉତ୍ତମ ଆଦେଶ ପାଳିଲେ ॥
ଏହାହିଁ କେବଳ ସ୍ୱାର୍ଥ ପରମାର୍ଥ ସାର । ସକଳ ସୁକୃତ ଫଳ ସୁଗତି ଶୃଙ୍ଗାର ॥୩॥
ଶୁଣ ଦେବ-ଦେବ ! ଏକ ବିନତି ମୋହର । ଉଚିତ ମଣିଲେ ତାହା କରିବେ ଆବର ॥
ଅଭିଷେକ ସାଜ ସାଜି ଆଣିଛୁ ସକଳ । ମନ ଯେବେ ମାନେ ପ୍ରଭୁ କରନ୍ତୁ ସୁଫଳ ॥୪॥

ଭ୍ରାତା ସହ ମୋତେ ପଠାଇ ବନସ୍ତେ ସୁର ସନାଥ କରନ୍ତୁ ।
କିମ୍ବା ବେନିଭାଇ ନାଥ ଲେଉଟାଇ ମୋତେ ସଙ୍ଗରେ ନିଅନ୍ତୁ ॥୨୬୮॥

କିମ୍ବା ତିନି ଭାଇ ମିଳି ଯିବୁ ବିପିନକୁ । ବାହୁଡ଼ନ୍ତୁ ପ୍ରଭୁ ସୀତା ସହିତ ପୁରକୁ ॥
ଯେ ଭାବେ ନାଥଙ୍କ ମନ ହୋଇବ ପ୍ରସନ୍ନ । କରୁଣା-ସାଗର କର ତେମନ୍ତ ଯତନ ॥୧॥
ଦେବ ! ମୋ ଉପରେ ସାରା ରଖିଦେଲ ଭାର । ମୋର କିଛି ନାହିଁ ନୀତି ଧରମ ବିଚାର ॥
ସ୍ୱାର୍ଥ ଅଭିପ୍ରାୟେ ସବୁ ବଚନ କହଇ । ଆରତ ଚିତ୍ତ ମଧ୍ୟରେ ଚେତା ନ ରହଇ ॥୨॥

---

ସ୍ୱାମୀଙ୍କୁ ସଙ୍କୋଚରେ ପକାଇ ଆପଣାର ଭଲ ଖୋଜେଁ, ତାହାର ବୁଦ୍ଧି ନୀଚ । ସେବକର ହିତ ତ ଏଇଥିରେ ଯେ, ସେ ସମସ୍ତ ସୁଖ ଓ ଲୋଭକୁ ଛାଡ଼ି ସ୍ୱାମୀଙ୍କର ସେବା ମାତ୍ର କରନ୍ତୁ ॥ ୨ ॥ ହେ ନାଥ ! ଆପଣଙ୍କ ଫେରିବାରେ ସମସ୍ତଙ୍କ ସ୍ୱାର୍ଥ ଏବଂ ଆପଣଙ୍କ ଆଜ୍ଞା-ପାଳନରେ କୋଟି କୋଟି ପ୍ରକାର କଲ୍ୟାଣ । ଏହା ହେଉଛି ସ୍ୱାର୍ଥ ଓ ପରମାର୍ଥର ନିର୍ଯ୍ୟାସ, ସମସ୍ତ ପୁଣ୍ୟର ଫଳ ଏବଂ ସମ୍ପୂର୍ଣ୍ଣ ଶୁଭ ଗତିର ଶୃଙ୍ଗାର ॥ ୩ ॥ ହେ ଦେବ ! ଆପଣ ମୋର ଗୋଟିଏ ମାତ୍ର ବିନତି ଶୁଣନ୍ତୁ—ଯେପରି ଉଚିତ ମନେ କରନ୍ତି, ତାହାହିଁ କରନ୍ତୁ । ରାଜ୍ୟାଭିଷେକର ସମସ୍ତ ସାମଗ୍ରୀ ସଜା ହୋଇ ଏଠାକୁ ଅଣାଯାଇଛି । ପ୍ରଭୁଙ୍କ ମନ ମାନିଲେ, ସେ ସବୁକୁ ଉପଯୋଗ କରି କୃତକୃତ୍ୟ କରନ୍ତୁ ॥ ୪ ॥

ଦୋହା ।—ସାନ ଭାଇ ଶତ୍ରୁଘ୍ନ ସହିତ ମୋତେ ବନକୁ ପଠାଇ ଦିଅନ୍ତୁ ଏବଂ ଅଯୋଧ୍ୟା ଫେରି ସମସ୍ତଙ୍କୁ ସନାଥ କରନ୍ତୁ । ନୋହିଲେ ହେ ନାଥ ! ଯେ କୌଣସି ପ୍ରକାରେ ହେଲେ ଲକ୍ଷ୍ମଣ ଓ ଶତ୍ରୁଘ୍ନ, ଦୁଇ ଭାଇଙ୍କୁ ଫେରାଇ ଦିଅନ୍ତୁ ଏବଂ ମୁଁ ଆପଣଙ୍କ ସଙ୍ଗେ

ଉତରୁ ଦେଇ ସୁନି ସ୍ୱାମି ରଜାଈ । ସୋ ସେବକୁ ଲଖି ଲାଜ ଲଜାଈ ॥
ଅସ ମୈଁ ଅବଗୁନ ଉଦଧି ଅଗାଧୂ । ସ୍ୱାମି ସନେହଁ ସରାହତ ସାଧୂ ॥୩॥
ଅବ କୃପାଲ ମୋହି ସୋ ମତ ଭାୱା । ସକୁଚ ସ୍ୱାମି ମନ ଜାଇଁ ନ ପାୱା ॥
ପ୍ରଭୁ ପଦ ସପଥ କହଉଁ ସତି ଭାଊ । ଜଗ ମଂଗଲ ହିତ ଏକ ଉପାଊ ॥୪॥
ପ୍ରଭୁ ପ୍ରସନ୍ନ ମନ ସକୁଚ ତଜି ଜୋ ଜେହି ଆୟସୁ ଦେବ ।
ସୋ ସିର ଧରି ଧରି କରିହି ସବୁ ମିଟିହି ଅନଟ ଅବରେବ ॥୨୬୯॥
ଭରତ ବଚନ ସୁଚି ସୁନି ସୁର ହରଷେ । ସାଧୁ ସରାହି ସୁମନ ସୁର ବରଷେ ॥
ଅସମଂଜସ ବସ ଅୱଧ ନେବାସୀ । ପ୍ରମୁଦିତ ମନ ତାପସ ବନବାସୀ ॥୧॥

---

ଉତ୍ତର ଯେ ଦିଏ ସ୍ୱାମୀ ଆଜ୍ଞା ଶୁଣିକରି । ଲଜ୍ୟା ଲଜ୍ୟା ଲଭେ ଦେଖି ସେବକ ସେପରି ॥
ଏମନ୍ତ ମୁଁ ଅବଗୁଣ ଉଦଧି ଅତଳ । ସ୍ୱାମୀ ସ୍ନେହ ପ୍ରଶଂସନ୍ତି କହି ସାଧୁ ଭଲ ॥୩॥
ଏବେ କୃପାଳୁ,ମୁଁ ସୁଖୀ ହୋଇବି ତହିଁରେ । ସ୍ୱାମୀଙ୍କ ମନେ ସଙ୍କୋଚ ନୋହିବ ଯହିଁରେ ॥
ସ୍ୱଭାବେ କହେ ପ୍ରଭୁଙ୍କ ଚରଣର ରାଣ । ଗୋଟିଏ ଉପାୟେ ହେବ ଜଗତ କଲ୍ୟାଣ ॥୪॥
ପ୍ରଭୁ ସୁପ୍ରସନ୍ନେ ଲଜ୍ୟା ତେଜି ଦେବେ ଯାହାକୁ ଯେଉଁ ଆଦେଶ ॥
ସେ ଶିରେ ଘେନିଣ କରିବ ସକଳ, ଯିବ ଏ ଅତୁଆ କ୍ଲେଶ ॥୨୬୯॥
ଭରତଙ୍କ ଶୁଚି ବାଣୀ ଶୁଣି ସୁହରଷେ । 'ସାଧୁ' 'ସାଧୁ' କହି ପୁଷ୍ପ ସିଞ୍ଚିଲେ ତ୍ରିଦଶେ ॥
ଦ୍ୱିବିଧାବଶ ହୋଇଲେ ଅଯୋଧ୍ୟା ନିବାସୀ । ପ୍ରମୋଦ ମନ ତାପସ ମୁନି ବନବାସୀ ॥୧॥

---

ଚଳିବ ॥ ୨୬୮ ॥ ଚୌପାଈ :—ଅଥବା ଆମେ ତିନି ଭାଇ ବନକୁ ଚାଲିଯାଉଁ ଏବଂ ହେ ରଘୁନାଥ ! ଆପଣ ସୀତାଙ୍କ ସହିତ ଅଯୋଧ୍ୟାକୁ ଫେରି ଯାଆନ୍ତୁ । ହେ ଦୟାସାଗର ! ଯେଉଁପରି ଭାବରେ ପ୍ରଭୁଙ୍କ ମନ ପ୍ରସନ୍ନ ହେବ, ସେଇଆ କରନ୍ତୁ ॥ ୧ ॥ ହେ ଦେବ ! ଆପଣ ସମସ୍ତ ଉତ୍ତର ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରିଦେଲେ । କିନ୍ତୁ ମୋଠାରେ ତ ନୀତି କିମ୍ବା ଧର୍ମର ବିଚାର ନାହିଁ । ମୁଁ ତ ନିଜ ସ୍ୱାର୍ଥ ଦୃଷ୍ଟିରୁ ସମସ୍ତ କଥା କହୁଅଛି । ଆର୍ତ୍ତ ମନୁଷ୍ୟର ଚିତ୍ତରେ ଚେତା (ବିବେକ) ନ ଥାଏ ॥ ୨ ॥ ସ୍ୱାମୀଙ୍କ ଆଜ୍ଞା ଶୁଣି ଯେ ଉତ୍ତର ଦିଏ, ଏଭଳି ସେବକକୁ ଦେଖି ଲଜ୍ଜା ସୁଦ୍ଧା ଲଜ୍ଜିତ ହୁଏ । ମୁଁ ସମସ୍ତ ଅବଗୁଣର ଅଗାଧ ସମୁଦ୍ର । ତଥାପି ହେ ସ୍ୱାମି ! ସ୍ନେହବଶତଃ ମୋତେ 'ସାଧୁ' କହି ଆପଣ ମୋତେ ପ୍ରଶଂସା କରୁଅଛନ୍ତି ॥ ୩ ॥ ହେ କୃପାଳୁ ! ଯେଉଁଥିରେ ସ୍ୱାମୀଙ୍କ ମନ ସଂକୋଚଗ୍ରସ୍ତ ନ ହେବ, ବର୍ତ୍ତମାନ ସେହି କଥା ମୋତେ ମଧ୍ୟ ରୁଚିକର । ପ୍ରଭୁଙ୍କ ଚରଣର ଶପଥ ଧରି ମୁଁ ସତ୍ୟ କହୁଛି, ଜଗତର କଲ୍ୟାଣ ନିମନ୍ତେ ଏହି ହେଉଛି ଏକମାତ୍ର ଉପାୟ ॥ ୪ ॥ ଦୋହା :—ପ୍ରସନ୍ନ ମନରେ ସଂକୋଚ ତ୍ୟାଗ କରି ପ୍ରଭୁ ଯାହାକୁ ଯେଉଁ ଆଜ୍ଞା ଦେବେ, ତାହାକୁ ସେ ଶିରୋଧାର୍ଯ୍ୟ କରି ପାଳନ କରିବେ ଏବଂ ତଦ୍ଦ୍ୱାରା ସମସ୍ତ ଉପଦ୍ରବ ଓ ସମସ୍ୟାର ସମାଧାନ ହୋଇଯିବ ।" ॥ ୨୬୯ ॥ ଚୌପାଈ :— ଭରତଙ୍କ ପବିତ୍ର ବଚନ ଶୁଣି ଦେବତାମାନେ ଆନନ୍ଦିତ ହେଲେ ଏବଂ 'ସାଧୁ ସାଧୁ'

ଚୂପହିଁ ରହେ ରଘୁନାଥ ସଁକୋଚୀ । ପ୍ରଭୁ ଗତି ଦେଖି ସଭା ସବ ସୋଚୀ ॥
ଜନକ ଦୂତ ତେହି ଅବସର ଆଏ । ମୁନି ବସିଷ୍ଠଁ ସୁନି ବେଗି ବୋଲାଏ ॥୨॥
କରି ପ୍ରନାମ ତିନ୍ହ ରାମୁ ନିହାରେ । ବେଷୁ ଦେଖି ଭଏ ନିପଟ ଦୁଖାରେ ॥
ଦୂତନ୍ହ ମୁନିବର ବୂଝୀ ବାତା । କହହୁ ବିଦେହ ଭୂପ କୁସଲାତା ॥୩॥
ସୁନି ସକୁଚାଇ ନାଇ ମହି ମାଥା । ବୋଲେ ଚର ବର ଜୋରେଁ ହାଥା ॥
ବୂଝବ ରାଉର ସାଦର ସାଇଁ । କୁସଲ ହେତୁ ସୋ ଭୟଉ ଗୋସାଇଁ ॥୪॥

ନାହିଁ ତ କୋସଲନାଥ କେଁ ସାଥ କୁସଲ ଗଇ ନାଥ ।
ମିଥିଲା ଅଵଧ ବିସେଷ ତେଁ ଜଗୁ ସବ ଭୟଉ ଅନାଥ ॥୨୭୦॥

କୋସଲପତି ଗତି ସୁନି ଜନକୌରା । ଭେ ସବ ଲୋକ ସୋକ ବସ ବୌରା ॥
ଜେହିଁ ଦେଖେ ତେହି ସମୟ ବିଦେହୂ । ନାମୁ ସତ୍ୟ ଅସ ଲାଗ ନ କେହୂ ॥୧॥

---

ମଉନ ରହିଲେ ସଙ୍କୋଚଣ ରଘୁପତି । ଚିନ୍ତାନ୍ତ ସଭ୍ୟ ସମସ୍ତେ ଦେଖି ପ୍ରଭୁଗତି ॥
ସେ ସମୟେ ଜନକଙ୍କ ଦୂତ ପ୍ରବେଶିଲେ । ଶୁଣି ସତ୍ୱର ବଶିଷ୍ଠ ମୁନି ଡକାଇଲେ ॥୨॥
ପ୍ରଣାମ କରି ସେମାନେ ରାମଙ୍କୁ ନିରେଖି । ହୋଇଲେ ଅତ୍ୟନ୍ତ ଦୁଃଖୀ ପ୍ରଭୁବେଶ ଦେଖି ॥
ଦୂତଙ୍କୁ ମୁନିନାୟକ ପଚାରିଲେ କଥା । କହ ବିଦେହ ନୃପଙ୍କ କୁଶଳ ବାରତା ॥୩॥
ଶୁଣି ସଙ୍କୋଚ ଲଭିଣ ଯୋଡି ଯୁଗ୍ମକର । ବୋଇଲେ ନତମସ୍ତକେ ଚରେଁ ଗୁରୁବର ॥
ସାଦରେ ଗୋସାଇଁ, ପଚାରିଲ ଯେ ଆପଣ । ଏହି ମାତ୍ର ହେଲା ସ୍ୱାମି, କୁଶଳ କାରଣ ॥୪॥

ନାହିଁ ତ କୁଶଳ କୋଶଳପାଳଙ୍କ ସଙ୍ଗେ ଚାଲିଗଲା, ନାଥ ।
ଅଯୋଧ୍ୟା ମିଥିଳା ବିଶେଷେ, ଏମିତି ସାରା ଜଗତ ଅନାଥ ॥୨୭୦॥

ଜନକ ନଗରବାସୀ କୋଶଳେଶ ଗତି । ଶୁଣି ହୋଇଲେ ବାତୁଳ ଶୋକବଶ ଅତି ॥
ସେ ସମୟେ ବିଦେହଙ୍କୁ ଯେ ଅବଲୋକିଲା । ସେ ନାମ କାହାକୁ ସତ୍ୟ ପ୍ରତୀତ ନୋହିଲା ॥୧॥

---

କରି ପ୍ରଶଂସା - ପୂର୍ବକ ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ଅଯୋଧ୍ୟାବାସୀମାନେ ଦ୍ୱିଧାରେ ପଡିଗଲେ—ଦେଖିବା, ପ୍ରଭୁ ଶ୍ରୀରାମ ଏବେ କ'ଣ କହୁଅଛନ୍ତି । ତପସ୍ୱୀ ଓ ବନବାସୀ ଲୋକମାନେ ଶ୍ରୀରାମଙ୍କ ବନରେ ରହିବା ଆଶାରେ ମନେ ମନେ ପରମ ଆନନ୍ଦ ଲାଭ କଲେ ॥ ୧ ॥ କିନ୍ତୁ ସଙ୍କୋଚଶୀଳ ରଘୁନାଥ ନୀରବ ହୋଇ ରହିଥା'ନ୍ତି । ପ୍ରଭୁଙ୍କର ଏପରି ନୀରବତା ଦେଖି ସାରା ସଭା ଚିନ୍ତାରେ ମଗ୍ନ ରହିଗଲା । ସେହି ସମୟରେ ଜନକଙ୍କ ଦୂତ ଆସିଲେ । ମୁନି ବଶିଷ୍ଠ ସେମାନଙ୍କୁ ତୁରନ୍ତ ଡକାଇ ନେଲେ ॥ ୨ ॥ ସେମାନେ ଆସି ପ୍ରଣାମ କଲେ ଏବଂ ଶ୍ରୀରାମଚନ୍ଦ୍ରଙ୍କୁ ଦେଖିଲେ । ତାଙ୍କର ମୁନିବେଶ ଦେଖି ସେମାନେ ବଡ ଦୁଃଖିତ ହେଲେ । ମୁନିବର ବଶିଷ୍ଠ ଦୂତଙ୍କୁ ପଚାରିଲେ— "ରାଜା ଜନକଙ୍କ କୁଶଳ ସମାଚାର କୁହ ।" ॥ ୩ ॥ ମୁନିଙ୍କର କୁଶଳପ୍ରଶ୍ନ ଶୁଣି ଶ୍ରେଷ୍ଠ ଦୂତମାନେ ସଙ୍କୋଚ ପୃଥିବୀ ଉପରେ ମୁଣ୍ଡ ନୁଆଁଇ ପ୍ରଣାମ କଲେ ଏବଂ ହାତ ଯୋଡି କହିଲେ, "ହେ ସ୍ୱାମି ! ଆଦର ସହକାରେ ଆପଣ ଯେଉଁ ପ୍ରଶ୍ନ ପଚାରିଲେ,

ରାନି କୁଚାଲି ସୁନତ ନରପାଲହି । ସୂଝ ନ କଛୁ ଜସ ମନି ବିନୁ ବ୍ୟାଲହି ॥
ଭରତ ରାଜ ରଘୁବର ବନବାସୂ । ଭା ମିଥିଲେସହି ହୃଦୟଁ ହରାଁସୂ ॥୨॥
ନୃପ ବୂଝେ ବୁଧ ସଚିବ ସମାଜୂ । କହହୁ ବିଚାରି ଉଚିତ କା ଆଜୂ ॥
ସମୁଝି ଅଵଧ ଅସମଂଜସ ଦୋଊ । ଚଲିଅ କି ରହିଅ ନ କହ କଛୁ କୋଊ ॥୩॥
ନୃପହିଁ ଧୀର ଧରି ହୃଦୟଁ ବିଚାରୀ । ପଠଏ ଅଵଧ ଚତୁର ଚର ଚାରୀ ॥
ବୂଝି ଭରତ ସତି ଭାଉ କୁଭାଊ । ଆଏହୁ ବେଗି ନ ହୋଇ ଲଖାଊ ॥୪॥

ଗଏ ଅଵଧ ଚର ଭରତ ଗତି ବୂଝି ଦେଖି କରତୂତି ।
ଚଲେ ଚିତ୍ରକୂଟହି ଭରତୁ ଚାର ଚଲେ ତେରହୂତି ॥୨୭୧॥

---

ରାଣୀଙ୍କ କ୍ରୂର କୁଚକ୍ର ଶୁଣନ୍ତେ ଭୂପାଳ । ହେଲେ ହତବୁଦ୍ଧି ଯଥା ମଣି ବିନୁ ବ୍ୟାଳ ॥
ଭରତ ରାଜତ୍ୱ ପୁଣି ରାମ ବନବାସ । ଶୁଣି ମିଥିଳେଶ ହୃଦେ ବିଷାଦ ବିଶେଷ ॥୨॥
ପଚାରିଲେ ଡାକି ବୁଧ ସଚିବ ସମାଜ । କହନ୍ତୁ ବିଚାରି ସର୍ବେ ଉଚିତ କି ଆଜ ॥
ଉଭୟ ପ୍ରକାରେ ବୁଝି ଅସଙ୍ଗତ ଅତି । ଅଯୋଧ୍ୟା ଯିବା ନ ଯିବା କେହି ନ କହନ୍ତି ॥୩॥
ନୃପତି ଧୈର୍ଯ୍ୟ ଧରିଣ ହୃଦୟେ ବିଚାରି । ପଠାଇଲେ ଅଯୋଧ୍ୟାକୁ ପଟୁ ଚାର ଚାରି ॥
ସ୍ୱଭାବ କୁଭାବ ତୁମ୍ଭେ ବୁଝି ଭରତର । ଭେଦ କିଛି ନ ଜଣାଇ ବାହୁଡ଼ ସତ୍ୱର ॥୪॥

ଅଯୋଧ୍ୟା ଯାଇଣ ଭରତଙ୍କ କର୍ମ ଦେଖି ଗତି ବୁଝି ଦୂତେ ।
ଚିତ୍ରକୂଟ ଯାତ୍ରା କରନ୍ତେ ଭରତ, ଚଳିଲେ ଚାର ତିର୍ହୁତେ ॥୨୭୧॥

---

ତାହାହିଁ, ହେ ଗୋସାଇଁ ! କୁଶଳର କାରଣ ହେଲା ॥ ୪ ॥ ଚୌପାଈ :—ନାହିଁ ତ, ହେ ନାଥ ! କୁଶଳମଙ୍ଗଳ ତ ସବୁ କୋଶଳନାଥ ଦଶରଥଙ୍କ ସଙ୍ଗରେ ଚାଲିଯାଇଛି । ତାଙ୍କ ଚାଲିଯିବା ପରେ ଏମିତି ସାରା ଜଗତ ତ ଅନାଥ ହୋଇଗଲା, କିନ୍ତୁ ମିଥିଳା ଓ ଅଯୋଧ୍ୟା ବିଶେଷ ଭାବରେ ଅନାଥ ହୋଇପଡ଼ିଛି ॥ ୨୭୦ ॥ ଚୌପାଈ :—ଅଯୋଧ୍ୟାନାଥ ଦଶରଥଙ୍କ ମରଣ ଶୁଣି ଜନକପୁରବାସୀ ସମସ୍ତ ଲୋକ ଶୋକରେ ପାଗଳ ହୋଇଗଲେ । ସେତେବେଳେ ଯେଉଁମାନେ ବିଦେହଙ୍କୁ ଶୋକନିମଗ୍ନ ଦେଖିଲେ, ସେମାନଙ୍କ ମଧ୍ୟରୁ କାହାରିକୁ ସେମାନଙ୍କର ବିଦେହ ନାମ ଯଥାର୍ଥ ବୋଲି ବୋଧ ହେଲାନାହିଁ । କାରଣ, ବିଦେହ (ଦେହାଭିମାନ-ଶୂନ୍ୟ ପୁରୁଷ) ପକ୍ଷରେ ଶୋକ କିପରି ସମ୍ଭବ ? ॥ ୧ ॥ ରାଣୀଙ୍କ ଚକ୍ରାନ୍ତ ବିଷୟ ଶୁଣି ରାଜା ଜନକଙ୍କୁ ମଣିହୀନ ସର୍ପକୁ କିଛି ବୁଦ୍ଧି ନ ଦିଶିଲା ପରି ବୁଦ୍ଧି ଦିଶିଲା ନାହିଁ । ପୁଣି ଭରତଙ୍କ ରାଜ୍ୟଲାଭ ଓ ଶ୍ରୀରାମଚନ୍ଦ୍ରଙ୍କ ବନବାସ ଶୁଣି ମିଥିଳେଶ୍ୱର ଜନକଙ୍କ ହୃଦୟରେ ବଡ଼ ଦୁଃଖ ହେଲା ॥ ୨ ॥ ରାଜା ବିଦ୍ୱାନ୍ ଓ ମନ୍ତ୍ରିସମାଜଙ୍କୁ ପଚାରିଲେ, 'ବିଚାର କରି କୁହନ୍ତୁ, ଏହି ସମୟରେ କ'ଣ କରିବା ଉଚିତ ?' ଅଯୋଧ୍ୟାର ଦଶା ବୁଝି ଏବଂ ଉଭୟ ଆଡୁ ଅଡୁଆ ଜାଣି 'ଚାଲିବା' କି 'ରହିବା', କେହି କିଛି କହିଲେ ନାହିଁ ॥ ୩ ॥ ଯେତେବେଳେ କେହି କୌଣସି ମତ ଦେଲେ ନାହିଁ, ରାଜା ଧୈର୍ଯ୍ୟ ଧାରଣ କରି ଚାରି ଜଣ ଗୁପ୍ତଚରଙ୍କୁ ଅଯୋଧ୍ୟାକୁ ପଠାଇଲେ ।

ଦୂତନ୍ହ ଆଇ ଭରତ କଇ କରନୀ । ଜନକ ସମାଜ ଜଥାମତି ବରନୀ ॥
ସୁନି ଗୁର ପରିଜନ ସଚିବ ମହୀପତି । ଭେ ସବ ସୋଚ ସନେହଁ ବିକଲ ଅତି ॥୧॥
ଧରି ଧୀରଜୁ କରି ଭରତ ବଡ଼ାଈ । ଲିଏ ସୁଭଟ ସାହନୀ ବୋଲାଈ ॥
ଘର ପୁର ଦେସ ରାଖି ରଖୱାରେ । ହୟ ଗୟ ରଥ ବହୁ ଜାନ ସଁୱାରେ ॥୨॥
ଦୁଘରୀ ସାଧି ଚଲେ ତତକାଲା । କିଏ ବିଶ୍ରାମୁ ନ ମଗ ମହିପାଲା ॥
ଭୋରହିଁ ଆଜୁ ନହାଇ ପ୍ରୟାଗା । ଚଲେ ଜମୁନ ଉତରନ ସବୁ ଲାଗା ॥୩॥
ଖବରି ଲେନ ହମ ପଠଏ ନାଥା । ତିନ୍ହ କହି ଅସ ମହି ନାୟଉ ମାଥା ॥
ସାଥ କିରାତ ଛ ସାତକ ଦୀନ୍ହେ । ମୁନିବର ତୁରତ ବିଦା ଚର କୀନ୍ହେ ॥୪॥

---

ବାହୁଡ଼ି ଆସିଣ ଦୂତେ ମତି ଅନୁସାରେ । ଭରତ କର୍ମ ବର୍ଣ୍ଣିଲେ ଜନକ ସଭାରେ ॥
ଶୁଣି ଗୁରୁ ପୁରଜନ ମନ୍ତ୍ରୀ ମହୀପତି । ବିକଳ ହୋଇଲେ ସର୍ବେ ଚିନ୍ତା ସ୍ନେହେ ଅତି ॥୧॥
ପୁଣି ଧୈର୍ଯ୍ୟ ଧରି କରି ଭରତ ବଡ଼ାଇ । ସେନା ସାଇସଙ୍କୁ କହି ଆଣିଲେ ଡକାଇ ॥
ଘର ପୁର ଦେଶ ମଧ୍ୟେ ରକ୍ଷକ ରଖିଣ । ହୟ ଗଜ ରଥ ବହୁ ଯାନ ଆୟୋଜିଣ ॥୨॥
ଯାତ୍ରାକଲେ ଦ୍ୱିଘଟିକା ସାଧି ତତକାଳ । ବିଶ୍ରାମ ନ କରି ପଥ ମଧ୍ୟେ ମହୀପାଳ ॥
ଆଜି ବଡ଼ଭୋରେ ସ୍ନାନ ପ୍ରୟାଗେ କରିଲେ । ଚଳିଣ ଯମୁନା ପାର ହେବାକୁ ଲାଗିଲେ ॥୩॥
ସନ୍ଦେଶ ହେତୁ ଆମ୍ଭଙ୍କୁ ପଠାଇଲେ, ନାଥ । ଏମନ୍ତ କହି ଭୂମିଷ୍ଠ କଲେ ପ୍ରଣିପାତ ॥
ଛ ସାତ ସଙ୍ଗତେ କରିଦେଇ କିରାତଙ୍କୁ । ବିଦାୟ କଲେ ମୁନୀଶ ସତ୍ୱର ଦୂତଙ୍କୁ ॥୪॥

---

ସେ ସେମାନଙ୍କୁ କହି ଦେଲେ, 'ତୁମ୍ଭେମାନେ ଅଯୋଧ୍ୟା ଯାଅ ଏବଂ ଭରତଙ୍କର ଶ୍ରୀରାମଙ୍କ ପ୍ରତି ସଦ୍‌ଭାବ ବା ଅସଦ୍‌ଭାବର ଯଥାର୍ଥ ସମ୍ବାଦ ଆଣି ଶୀଘ୍ର ଫେରି ଆସ । କାହାରିକୁ ତୁମର ପତ୍ତା ଯେପରି ନ ମିଳେ ।' ॥ ୪ ॥ ଦୋହା ।—ଗୁପ୍ତଚରମାନେ ଅଯୋଧ୍ୟାକୁ ଗଲେ ଏବଂ ଭରତଙ୍କ ଆଚରଣ ଓ ତାଙ୍କ କାର୍ଯ୍ୟ ଦେଖିଲେ । ଭରତ ଚିତ୍ରକୂଟକୁ ଯେମିତି ଚାଲିଲେ, ସଙ୍ଗେ ସଙ୍ଗେ ସେମାନେ ମିଥିଲାକୁ ମଧ୍ୟ ଫେରି-ଗଲେ ॥ ୨୭୧ ॥ ଚୌପାଈ —ଦୂତମାନେ ଆସି ଜନକଙ୍କ ସମ୍ମୁଖରେ ଭରତଙ୍କ କାର୍ଯ୍ୟର ବର୍ଣ୍ଣନା ଆପଣା ଆପଣା ବୁଦ୍ଧି ଅନୁସାରେ କଲେ । ତାହା ଶୁଣି ଗୁରୁ, କୁଟୁମ୍ବୀଜନ, ମନ୍ତ୍ରୀ ଓ ରାଜା ଚିନ୍ତା ଓ ସ୍ନେହ ଯୋଗୁ ଅତି ବ୍ୟାକୁଳ ହୋଇ ପଡ଼ିଲେ ॥ ୧ ॥ ତଦନନ୍ତର ଜନକ ଧୈର୍ଯ୍ୟ-ଧାରଣପୂର୍ବକ ଭରତଙ୍କୁ ପ୍ରଶଂସା କଲେ । ସେ ଉତ୍ତମ ଯୋଦ୍ଧା ଓ ପାରିଷଦ୍‌ମାନଙ୍କୁ ଡକାଇଲେ । ଗୃହ, ନଗର ଓ ଦେଶରେ ରକ୍ଷକମାନଙ୍କୁ ନିଯୁକ୍ତ କରାଇ ସେ ଅଶ୍ୱ, ହସ୍ତୀ, ରଥ ଆଦି ବହୁତ ଯାନବାହନ ସୁସଜ୍ଜିତ କରାଇଲେ ॥ ୨ ॥ ଦୁଇ ଘଡ଼ିଆ ମୁହୂର୍ତ୍ତ ଶୋଧି ସେହି ସମୟରେ ଯାତ୍ରା ଆରମ୍ଭ କରିଦେଲେ । ରାଜା ପଥ ମଧ୍ୟରେ କେଉଁଠି ବିଶ୍ରାମ ସୁଦ୍ଧା କଲେ ନାହିଁ । ଆଜି ବଡ଼ ଭୋରରୁ ସମସ୍ତେ ପ୍ରୟାଗରାଜରେ ସ୍ନାନ କରି ଚାଲିଲେ ଏବଂ ଯମୁନା ପାର ହେଉଥିଲେ ॥୩॥ ହେ ନାଥ ! ରାଜା ସନ୍ଦେଶ ନେବା ନିମନ୍ତେ ସଙ୍ଗେ ସଙ୍ଗେ ଆମ୍ଭମାନଙ୍କୁ ପଠାଇଦେଲେ ।"

ସୁନତ ଜନକ ଆଗୱନୁ ସବୁ ହରଷେଉ ଅୱଧ ସମାଜୁ ।
ରଘୁନନ୍ଦନହି ସକୋଚୁ ବଡ଼ ସୋଚ ବିବସ ସୁରରାଜୁ ॥୨୭୨॥
ଗରଇ ଗଲାନି କୁଟିଲ କୈକେଈ । କାହି କହଇ କେହି ଦୂଷନୁ ଦେଈ ॥
ଅସ ମନ ଆନି ମୁଦିତ ନର ନାରୀ । ଭୟଉ ବହୋରି ରହବ ଦିନ ଚାରୀ ॥୧॥
ଏହି ପ୍ରକାର ଗତ ବାସର ସୋଊ । ପ୍ରାତ ନହାନ ଲାଗ ସବୁ କୋଊ ॥
କରି ମଜ୍ଜନୁ ପୂଜହିଁ ନର ନାରୀ । ଗନପ ଗୌରି ତିପୁରାରି ତମାରୀ ॥୨॥
ରମାରମନ ପଦ ବଂଦି ବହୋରୀ । ବିନୱହିଁ ଅଂଜଲି ଅଞ୍ଚଲ ଜୋରୀ ॥
ରାଜା ରାମୁ ଜାନକୀ ରାନୀ । ଆନଁଦ ଅୱଧି ଅୱଧ ରଜଧାନୀ ॥୩॥
ସୁବସ ବସଉ ଫିରି ସହିତ ସମାଜା । ଭରତହି ରାମୁ କରହୁଁ ଜୁବରାଜା ॥
ଏହି ସୁଖ ସୁଧାଁ ସୀଁଚି ସବ କାହୂ । ଦେବ ଦେହୁ ଜଗ ଜୀବନ ଲାହୂ ॥୪॥

ଜନକାଗମନ ଶୁଣି ସୁପ୍ରସନ୍ନ-ଅଯୋଧ୍ୟା ଲୋକ-ସମାଜ ।
ହେଲେ ରଘୁପତି ଲଜ୍ଜ୍ୟାବଶ ଅତି, ଚିନ୍ତା କରେ ସୁରରାଜ ॥୨୭୨॥
କୁଟିଳା କୈକେୟୀ ସନ୍ତପାଏ ଗ୍ଲାନି ଭରେ । କାହାକୁ କହିବ, ଦୋଷ ଦେବ ବା କାହାରେ ॥
ଏହା ମନେ ଭାବି ପ୍ରମୋଦିତ ନରନାରୀ । ପୁଣି ଏବେ ରହିବାକୁ ହେଲା ଦିନ ଚାରି ॥୧॥
ଅତୀତ ସେହି ବାସର ହୋଇଲା ଏମନ୍ତେ । ପ୍ରାତଃସ୍ନାନ କରିବାକୁ ଲାଗିଲେ ସମସ୍ତେ ॥
ସମାପି ସ୍ନାନ ପୂଜନ୍ତି ପୁର ନର ନାରୀ । ଗଣପତି ତ୍ରିପୁରାରି ଗଉରୀ ତମାରି ॥୨॥
ରମା-ରମଣଙ୍କ ପଦ ଆଦର ବନ୍ଦଣ । ମାଗନ୍ତି ଦାନ ପ୍ରସାରି ଅଞ୍ଜୁଳି ଯୋଡ଼ିଣ ॥
ରାଜା ରଘୁକୁଳ-ମଣି, ବଇଦେହୀ ରାଣୀ । ସୁଖ-ଅବଧି ଅଯୋଧ୍ୟା ହେଉ ରାଜଧାନୀ ॥୩॥
ପ୍ରତିଷ୍ଠିତ ହେଉ ପୁଣି ସହିତ ସମାଜ । ଭରତେ କରନ୍ତୁ ଯୁବରାଜ ରଘୁରାଜ ॥
ଏହି ସୁଖ-ସୁଧା ସିଞ୍ଚି ଲୋକଙ୍କ ଉପରେ । ଦେଉ ଦଇବ ଜୀବନ-ଲାଭ ଜଗତରେ ॥୪॥

ଦୂତମାନେ ଏହିପରି କହି ଭୂମି ଉପରେ ମୁଣ୍ଡ ରଖି ପ୍ରଣାମ କଲେ । ମୁନିବର ବଶିଷ୍ଠ ଛଅସାତ ଜଣ ଯାଏ କିରାତ ସଙ୍ଗରେ ଦେଇ ଦୂତମାନଙ୍କୁ ତୁରନ୍ତ ବିଦା କରିଦେଲେ ॥ ୪ ॥ ଦୋହା :—ଜନକଙ୍କ ଆଗମନ-ବାର୍ତ୍ତା ଶୁଣି ଅଯୋଧ୍ୟାର ସକଳ ସମାଜ ଆନନ୍ଦରେ ନିମଜ୍ଜିତ ହୋଇଗଲେ । ଶ୍ରୀରାମଚନ୍ଦ୍ରଙ୍କ ମନରେ ବଡ଼ ସଂକୋଚ ଜାତ ହେଲା ଏବଂ ଦେବରାଜ ଇନ୍ଦ୍ର ବିଶେଷ ରୂପେ ଚିନ୍ତାକୁଳ ହୋଇ ପଡ଼ିଲେ ॥ ୨୭୨ ॥ ଚୌପାଈ :- କୁଟିଳା କୈକେୟୀ ମନେ ମନେ ଅନୁତାପରେ ସଢ଼ି ଯାଉଥା'ନ୍ତି । କାହାକୁ କ'ଣ କହିବେ ବା କାହାକୁ ଦୋଷ ଦେବେ ? ଅନ୍ୟ ସମସ୍ତ ନରନାରୀ ମନରେ ବିଚାର କରୁଥା'ନ୍ତି, "ଯାହା ହେଉ, ଜନକଙ୍କ ଆସିବା ଦ୍ୱାରା ଭଲ ହେଲା, ଆମ୍ଭମାନଙ୍କର ଏଠି ରହଣି ଆଉ ଚାରିଦିନ ବଢ଼ିଗଲା ।" ମନରେ ଏହିପରି ବିଚାର କରି ସେମାନେ ପ୍ରସନ୍ନ ହେଉଥା'ନ୍ତି ॥ ୧ ॥ ଏହିପରି ସେହିଦିନ ମଧ୍ୟ ବିତିଗଲା । ତହିଁଆରଦିନ ପ୍ରାତଃ କାଳରେ ସମସ୍ତେ ସ୍ନାନ କରିବାକୁ ଲାଗିଲେ । ସ୍ନାନ ପରେ ସମସ୍ତ ନରନାରୀ ଗଣେଶ, ଗୌରି,

ଗୁର ସମାଜ ଭାଇନ୍ହ ସହିତ ରାମ ରାଜୁ ପୁର ହୋଉ ।
ଅଛତ ରାମ ରାମ ରାଜା ଅଉଧ ମରିଅ ମାଗ ସବୁ କୋଉ ॥୨୭୩॥

ସୁନି ସନେହମୟ ପୁରଜନ ବାନୀ । ନିଂଦହିଁ ଜୋଗ ବିରତି ମୁନି ଜ୍ଞାନୀ ॥
ଏହି ବିଧି ନିତ୍ୟ କରମ କରି ପୁରଜନ । ରାମହି କରହିଁ ପ୍ରନାମ ପୁଲକି ତନ ॥୧॥
ଊଁଚ ନୀଚ ମଧ୍ୟମ ନର ନାରୀ । ଲହହିଁ ଦରସୁ ନିଜ ନିଜ ଅନୁହାରୀ ॥
ସାବଧାନ ସବହି ସନମାନହିଁ । ସକଲ ସରାହତ କୃପାନିଧାନହିଁ ॥୨॥
ଲରିକାଇହି ତେଁ ରଘୁବର ବାନୀ । ପାଲତ ନୀତି ପ୍ରୀତି ପହିଚାନୀ ॥
ସୀଲ ସକୋଚ ସିଂଧୁ ରଘୁରାଊ । ସୁମୁଖ ସୁଲୋଚନ ସରଲ ସୁଭାଊ ॥୩॥

---

ପୁରେ ଗୁରୁ ଭ୍ରାତା ସମାଜ ସମେତ ରାମ ରାଜତ୍ୱ କରନ୍ତୁ ।
ରାଜା ଥାଉଁ ରାମ ଅଯୋଧ୍ୟା ନଗରେ ସମସ୍ତେ ମୃତ୍ୟୁ ଲଭନ୍ତୁ ॥୨୭୩॥

ଶୁଣି ସ୍ନେହମୟୀ ମୃଦୁ ପୁରଜନ ବାଣୀ । ନିନ୍ଦନ୍ତି ଯୋଗ ବୈରାଗ୍ୟ ଯୋଗୀ ମୁନିଜ୍ଞାନୀ ॥
ଏହି ଭାବେ ନିତ୍ୟ କର୍ମ କରି ପୁରଜନେ । ରାମଙ୍କୁ ଶିର ନୁଆଁନ୍ତି ପୁଲକିତ ତନେ ॥୧॥
ଉତ୍ତମ ମଧ୍ୟମ ନୀଚ ନରନାରୀ–ଗଣ । ନିଜ ନିଜ ଅନୁରୂପେ କରନ୍ତି ଦର୍ଶନ ॥
ସାବଧାନେ ସମ୍ମାନନ୍ତି ପ୍ରଭୁ ସମସ୍ତଙ୍କୁ । ପ୍ରଶଂସା କରନ୍ତି ସର୍ବେ କୃପା–ସଦନଙ୍କୁ ॥୨॥
ବାଲକପଣରୁ ରଘୁପତିଙ୍କ ସ୍ୱଭାବ । ପାଳନ କରନ୍ତି ନୀତି ଚିହ୍ନି ପ୍ରୀତିଭାବ ॥
ଶୀଳ ସଙ୍କୋଚ–ସାଗର ଶ୍ରୀ ରଘୁନନ୍ଦନ । ସରଳ–ଚରିତ – ସୁଲୋଚନ ସୁବଦନ ॥୩॥

---

ମହାଦେବ ଓ ସୂର୍ଯ୍ୟ ଭଗବାନଙ୍କ ପୂଜା କରନ୍ତି ॥ ୨ ॥ ପୁଣି ଲକ୍ଷ୍ମୀପତି ଭଗବାନ୍ ବିଷ୍ଣୁଙ୍କ ଚରଣ ବନ୍ଦନାପୂର୍ବକ ଦୁଇ ହାତ ଯୋଡ଼ି ପଣନ୍ତ ପସାରି ପ୍ରାର୍ଥନା କରନ୍ତି, "ଶ୍ରୀରାମ ରାଜା ହୁଅନ୍ତୁ, ଜାନକୀ ରାଣୀ ହୁଅନ୍ତୁ ଏବଂ ରାଜଧାନୀ ଅଯୋଧ୍ୟା ଆନନ୍ଦର ସୀମା ହୋଇ ସମାଜ ସହିତ ସୁଖରେ ପ୍ରତିଷ୍ଠିତ ହେଉ ଏବଂ ଶ୍ରୀରାମଚନ୍ଦ୍ର ଭରତଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରନ୍ତୁ । ହେ ଦେବ ! ଲୋକମାନଙ୍କ ଉପରେ ସୁଖାମୃତ ସିଞ୍ଚି ଜଗତରେ ସମସ୍ତଙ୍କୁ ଜୀବନର ଲାଭ ଦାନ କର ॥ ୩–୪ ॥ ଦୋହା :—ଗୁରୁ, ସମାଜ ଓ ଭାଇମାନଙ୍କ ସମେତ ଶ୍ରୀରାମ ଅଯୋଧ୍ୟାପୁରୀରେ ରାଜତ୍ୱ କରନ୍ତୁ ଏବଂ ଶ୍ରୀରାମଚନ୍ଦ୍ର ରାଜତ୍ୱ କରୁଥିବା ଅବସ୍ଥାରେ ହିଁ ଆମ୍ଭେମାନେ ଅଯୋଧ୍ୟାରେ ମରୁ !" ସମସ୍ତେ ଏହି ମାଗୁଣି କରୁଥା'ନ୍ତି ॥ ୨୭୩ ॥ ଚୌପାଇ :—ଅଯୋଧ୍ୟାବାସୀମାନଙ୍କ ପ୍ରେମମୟୀ ବାଣୀ ଶୁଣି ଜ୍ଞାନୀ ମୁନି ସୁଦ୍ଧା ଆପଣାର ଯୋଗବୈରାଗ୍ୟକୁ ନିନ୍ଦା କରୁଥା'ନ୍ତି । ଅଯୋଧ୍ୟାବାସୀ ନରନାରୀ ଏହି ରୂପେ ନିତ୍ୟକର୍ମ କରି ପୁଲକିତ ଶରୀରରେ ଶ୍ରୀରାମଚନ୍ଦ୍ରଙ୍କୁ ପ୍ରଣାମ କରନ୍ତି ॥ ୧ ॥ ଉଚ୍ଚ, ନୀଚ ଓ ମଧ୍ୟମ, ସମସ୍ତ ଶ୍ରେଣୀର ସ୍ତ୍ରୀ-ପୁରୁଷ ନିଜ ନିଜ ଭାବ ଅନୁସାରେ ଶ୍ରୀରାମଙ୍କ ଦର୍ଶନ ଲାଭ କରୁଥା'ନ୍ତି । ସାବଧାନତା ସହକାରେ ଶ୍ରୀରାମ ସମସ୍ତଙ୍କର ସମ୍ମାନ କରନ୍ତି ଏବଂ ସମସ୍ତେ କୃପାନିଧାନ ଶ୍ରୀରାମଙ୍କର ପ୍ରଶଂସା କରୁଥା'ନ୍ତି ॥୨॥ ଶ୍ରୀରାମ ପ୍ରେମକୁ ଚିହ୍ନି ନୀତି ପାଳନ କରନ୍ତି । ବାଲ୍ୟକାଳରୁ ଶ୍ରୀରାମଙ୍କର ଏହି ସ୍ୱଭାବ ।

ସୁନତ ଜନକ ଆଗଵନୁ ସବୁ ହରଷେଉ ଅଵଧ ସମାଜୁ ।
ରଘୁନନ୍ଦନହି ସକୋଚୁ ବଡ଼ ସୋଚ ବିବସ ସୁରରାଜୁ ॥୨୭୨॥
ଗରଇ ଗଲାନି କୁଟିଲ କୈକେଈ । କାହି କହଇ କେହି ଦୂଷନୁ ଦେଈ ॥
ଅସ ମନ ଆନି ମୁଦିତ ନର ନାରୀ । ଭୟଉ ବହୋରି ରହବ ଦିନ ଚାରୀ ॥୧॥
ଏହି ପ୍ରକାର ଗତ ବାସର ସୋଊ । ପ୍ରାତ ନହାନ ଲାଗ ସବୁ କୋଊ ॥
କରି ମଜ୍ଜନୁ ପୂଜହିଁ ନର ନାରୀ । ଗନପ ଗୌରି ତିପୁରାରି ତମାରୀ ॥୨॥
ରମାରମନ ପଦ ବନ୍ଦି ବହୋରୀ । ବିନଵହିଁ ଅଂଜଲି ଅଞ୍ଚଲ ଜୋରୀ ॥
ରାଜା ରାମୁ ଜାନକୀ ରାନୀ । ଆନଁଦ ଅଵଧି ଅଵଧ ରଜଧାନୀ ॥୩॥
ସୁବସ ବସଉ ଫିରି ସହିତ ସମାଜା । ଭରତହି ରାମୁ କରହୁଁ ଜୁବରାଜା ॥
ଏହି ସୁଖ ସୁଧାଁ ସୀଁଚି ସବ କାହୂ । ଦେବ ଦେହୁ ଜଗ ଜୀବନ ଲାହୂ ॥୪॥

---

ଜନକାଗମନ ଶୁଣି ସୁପ୍ରସନ୍ନ ଅଯୋଧ୍ୟା ଲୋକ-ସମାଜ ।
ହେଲେ ରଘୁପତି ଲଜ୍ଜ୍ୟାବଶ ଅତି, ଚିନ୍ତା କଲେ ସୁରରାଜ ॥୨୭୨॥
କୁଟିଳା କୈକେୟୀ ସଢ଼ିଯାଏ ଗ୍ଲାନି ଜ୍ୱରେ । କାହାକୁ କହିବ, ଦୋଷ ଦେବ ବା କାହାରେ ॥
ଏହା ମନେ ଭାବି ପ୍ରମୋଦିତ ନରନାରୀ । ପୁଣି ଏବେ ରହିବାକୁ ହେଲା ଦିନ ଚାରି ॥୧॥
ଅନ୍ତେ ସେହି ବାସର ହୋଇଲା ଏମନ୍ତେ । ପ୍ରାତଃସ୍ନାନ କରିବାକୁ ଲାଗିଲେ ସମସ୍ତେ ॥
ସମାପି ସ୍ନାନ ପୂଜନ୍ତି ପୁର ନର ନାରୀ । ଗଣପତି ତ୍ରିପୁରାରି ଗଉରୀ ତମାରି ॥୨॥
ରମା-ରମଣଙ୍କ ପଦ ଆଦରେ ବନ୍ଦଣ । ମାଗନ୍ତି କାନି ପ୍ରସାରି ଅଞ୍ଜୁଳି ଯୋଡ଼ିଣ ॥
ରାଜା ରଘୁକୁଳ-ମଣି, ବଇଦେହି ରାଣୀ । ସୁଖ-ଅବଧି ଅଯୋଧ୍ୟା ହେଉ ରାଜଧାନୀ ॥୩॥
ପ୍ରତିଷ୍ଠିତ ହେଉ ପୁଣି ସହିତ ସମାଜ । ଭରତେ କରନ୍ତୁ ଯୁବରାଜ ରଘୁରାଜ ॥
ଏହି ସୁଖ-ସୁଧା ସିଞ୍ଚି ଲୋକଙ୍କ ଉପରେ । ଦେଉ ଦଇବ ଜୀବନ-ଲାଭ ଜଗତରେ ॥୪॥

---

ଦୂତମାନେ ଏହାପରେ ନତ ଭୂମି ଉପରେ ମୁଣ୍ଡ ରଖି ପ୍ରଣାମ କଲେ । ମୁନିବର ବଶିଷ୍ଠ ଛଅସାତ ଜଣ ଯାଏ କିରାତ ସଙ୍ଗରେ ଦେଇ ଦୂତମାନଙ୍କୁ ତୁରନ୍ତ ବିଦା କରିଦେଲେ ॥ ୪ ॥ ଦୋହା :—ଜନକଙ୍କ ଆଗମନ-ବାର୍ତ୍ତା ଶୁଣି ଅଯୋଧ୍ୟାର ସକଳ ସମାଜ ଆନନ୍ଦରେ ହର୍ଷିତ ହୋଇଗଲେ । ଶ୍ରୀରାମଚନ୍ଦ୍ରଙ୍କ ମନରେ ବଡ଼ ସଂକୋଚ ଜାତ ହେଲା ଏବଂ ଦେବରାଜ ଇନ୍ଦ୍ର ବିଶେଷ ରୂପେ ଚିନ୍ତାକୁଳ ହୋଇ ପଡ଼ିଲେ ॥ ୨୭୨ ॥ ଚୌପାଇ :- କୁଟିଳା କୈକେୟୀ ମନେ ମନେ ଅନୁତାପରେ ସଢ଼ି ଯାଉଥା'ନ୍ତି । କାହାକୁ କ'ଣ କହିବେ ବା କାହାକୁ ଦୋଷ ଦେବେ ? ଅନ୍ୟ ସମସ୍ତ ନରନାରୀ ମନରେ ବିଚାର କରୁଥା'ନ୍ତି, "ଯାହା ହେଉ, ଜନକଙ୍କ ଆସିବା ଦ୍ୱାରା ଭଲ ହେଲା, ଆମ୍ଭମାନଙ୍କର ଏଠି ରହଣି ଆଉ ଚାରିଦିନ ବଢ଼ିଗଲା ।" ମନରେ ଏହିପରି ବିଚାର କରି ସେମାନେ ପ୍ରସନ୍ନ ହେଉଥା'ନ୍ତି ॥ ୧ ॥ ଏହିପରି ସେହିଦିନ ମଧ୍ୟ ବିତିଗଲା । ତହିଁଆରଦିନ ପ୍ରାତଃ କାଳରେ ସମସ୍ତେ ସ୍ନାନ କରିବାକୁ ଲାଗିଲେ । ସ୍ନାନ ପରେ ସମସ୍ତ ନରନାରୀ ଗଣେଶ, ଗୌରୀ,

ଗୁର ସମାଜ ଭାଇନ୍ହ ସହିତ ରାମ ରାଜୁ ପୁର ହୋଉ ।
ଅଛତ ରାମ ରାମ ରାଜା ଅଉଧ ମରିଅ ମାଗ ସବୁ କୋଉ ॥୨୭୩॥
ସୁନି ସନେହମୟ ପୁରଜନ ବାନୀ । ନିଂଦହିଁ ଜୋଗ ବିରତି ମୁନି ଜ୍ଞାନୀ ॥
ଏହି ବିଧି ନିତ୍ୟ କରମ କରି ପୁରଜନ । ରାମହି କରହିଁ ପ୍ରନାମ ପୁଲକି ତନ ॥୧॥
ଊଁଚ ନୀଚ ମଧ୍ୟମ ନର ନାରୀ । ଲହହିଁ ଦରସୁ ନିଜ ନିଜ ଅନୁହାରୀ ॥
ସାବଧାନ ସବହି ସନମାନହିଁ । ସକଲ ସରାହତ କୃପାନିଧାନହିଁ ॥୨॥
ଲରିକାଇହି ତେଁ ରଘୁବର ବାନୀ । ପାଲତ ନୀତି ପ୍ରୀତି ପହିଚାନୀ ॥
ସୀଲ ସକୋଚ ସିଂଧୁ ରଘୁରାଉ । ସୁମୁଖ ସୁଲୋଚନ ସରଲ ସୁଭାଉ ॥୩॥

---

ପୁରରେ ଗୁରୁ ଭ୍ରାତା ସମାଜ ସମେତ ରାମ ରାଜତ୍ୱ କରନ୍ତୁ ।
ରାଜା ଥାଉଁ ରାମ ଅଯୋଧ୍ୟା ନଗରେ ସମସ୍ତେ ମୃତ୍ୟୁ ଲଭନ୍ତୁ ॥୨୭୩॥
ଶୁଣି ସ୍ନେହମୟୀ ମୃଦୁ ପୁରଜନ ବାଣୀ । ନିନ୍ଦନ୍ତି ଯୋଗ ବୈରାଗ୍ୟ ଯୋଗୀ ମୁନିଜ୍ଞାନୀ ॥
ଏହି ଭାବେ ନିତ୍ୟ କର୍ମ କରି ପୁରଜନେ । ରାମଙ୍କୁ ଶିର ନୁଆଁନ୍ତି ପୁଲକିତ ତନେ ॥୧॥
ଉତ୍ତମ ମଧ୍ୟମ ନୀଚ ନରନାରୀ-ଗଣ । ନିଜ ନିଜ ଅନୁରୂପେ କରନ୍ତି ଦର୍ଶନ ॥
ସାବଧାନେ ସମ୍ମାନନ୍ତି ପ୍ରଭୁ ସମସ୍ତଙ୍କୁ । ପ୍ରଶଂସା କରନ୍ତି ସର୍ବେ କୃପା-ସଦନଙ୍କୁ ॥୨॥
ବାଲକପଣରୁ ରଘୁପତିଙ୍କ ସ୍ୱଭାବ । ପାଳନ କରନ୍ତି ନୀତି ଚିହ୍ନି ପ୍ରୀତିଭାବ ॥
ଶୀଲ ସଙ୍କୋଚ-ସାଗର ଶ୍ରୀ ରଘୁନନ୍ଦନ । ସରଳ-ଚରିତ – ସୁଲୋଚନ ସୁବଦନ ॥୩॥

---

ମହାଦେବ ଓ ସୂର୍ଯ୍ୟ ଭଗବାନଙ୍କ ପୂଜା କରନ୍ତି ॥ ୨ ॥ ପୁଣି ଲକ୍ଷ୍ମୀପତି ଭଗବାନ୍ ବିଷ୍ଣୁଙ୍କ ଚରଣ ବନ୍ଦନାପୂର୍ବକ ଦୁଇ ହାତ ଯୋଡ଼ି ପଣନ୍ତ ପସାରି ପ୍ରାର୍ଥନା କରନ୍ତି, "ଶ୍ରୀରାମ ରାଜା ହୁଅନ୍ତୁ, ଜାନକୀ ରାଣୀ ହୁଅନ୍ତୁ ଏବଂ ରାଜଧାନୀ ଅଯୋଧ୍ୟା ଆନନ୍ଦର ସୀମା ହୋଇ ସମାଜ ସହିତ ସୁଖରେ ପ୍ରତିଷ୍ଠିତ ହେଉ ଏବଂ ଶ୍ରୀରାମଚନ୍ଦ୍ର ଭରତଙ୍କୁ ଯୁବରାଜ ପଦରେ ଅଭିଷିକ୍ତ କରନ୍ତୁ । ହେ ଦେବ ! ଲୋକମାନଙ୍କ ଉପରେ ସୁଧାମୃତ ସିଞ୍ଚି ଜଗତରେ ସମସ୍ତଙ୍କ ଜୀବନର ଲାଭ ଦାନ କର ॥ ୩-୪ ॥ ଦୋହା :—ଗୁରୁ, ସମାଜ ଓ ଭାଇମାନଙ୍କ ସମେତ ଶ୍ରୀରାମ ଅଯୋଧ୍ୟାପୁରରେ ରାଜତ୍ୱ କରନ୍ତୁ ଏବଂ ଶ୍ରୀରାମଚନ୍ଦ୍ର ରାଜତ୍ୱ କରୁଥିବା ଅବସ୍ଥାରେ ହିଁ ଆମ୍ଭେମାନେ ଅଯୋଧ୍ୟାରେ ମରୁ !" ସମସ୍ତେ ଏହି ମାଗୁଣି କରୁଥା'ନ୍ତି ॥ ୨୭୩ ॥ ଚୌପାଇ :—ଅଯୋଧ୍ୟାବାସୀମାନଙ୍କ ପ୍ରେମମୟୀ ବାଣୀ ଶୁଣି ଜ୍ଞାନୀ ମୁନି ସୁଦ୍ଧା ଆପଣାର ଯୋଗବୈରାଗ୍ୟକୁ ନିନ୍ଦା କରୁଥା'ନ୍ତି । ଅଯୋଧ୍ୟାବାସୀ ନରନାରୀ ଏହି ରୂପେ ନିତ୍ୟକର୍ମ କରି ପୁଲକିତ ଶରୀରରେ ଶ୍ରୀରାମଚନ୍ଦ୍ରଙ୍କୁ ପ୍ରଣାମ କରନ୍ତି ॥ ୧ ॥ ଉଚ୍ଚ, ନୀଚ ଓ ମଧ୍ୟମ, ସମସ୍ତ ଶ୍ରେଣୀର ସ୍ତ୍ରୀ-ପୁରୁଷ ନିଜ ନିଜ ଭାବ ଅନୁସାରେ ଶ୍ରୀରାମଙ୍କ ଦର୍ଶନ ଲାଭ କରୁଥା'ନ୍ତି । ସାବଧାନତା ସହକାରେ ଶ୍ରୀରାମ ସମସ୍ତଙ୍କର ସମ୍ମାନ କରନ୍ତି ଏବଂ ସମସ୍ତେ କୃପାନିଧାନ ଶ୍ରୀରାମଙ୍କର ପ୍ରଶଂସା କରୁଥା'ନ୍ତି ॥୨॥ ଶ୍ରୀରାମ ପ୍ରେମକୁ ଚିହ୍ନି ନୀତି ପାଳନ କରନ୍ତି । ବାଲ୍ୟକାଳରୁ ଶ୍ରୀରାମଙ୍କର ଏହି ସ୍ୱଭାବ ।

କହତ ରାମ ଗୁନ ଗନ ଅନୁରାଗେ । ସବ ନିଜ ଭାଗ ସରାହନ ଲାଗେ ॥
ହମ ସମ ପୁନ୍ୟପୁଂଜ ଜଗ ଥୋରେ । ଜିନ୍ହହିଁ ରାମୁ ଜାନତ କରି ମୋରେ ॥୪॥
ପ୍ରେମ ମଗନ ତେହି ସମୟ ସବ ସୁନି ଆୱତ ମିଥିଲେସୁ ।
ସହିତ ସଭା ସଂଭ୍ରମ ଉଠେଉ ରବିକୁଲ କମଲ ଦିନେସୁ ॥୨୭୪॥
ଭାଇ ସଚିବ ଗୁର ପୁରଜନ ସାଥା । ଆଗେଁ ଗୱନୁ କୀନ୍ହ ରଘୁନାଥା ॥
ଗିରିବରୁ ଦୀଖ ଜନକପତି ଜବହୀଁ । କରି ପ୍ରନାମୁ ରଥ ତ୍ୟାଗେଉ ତବହୀଁ ॥୧॥
ରାମ ଦରସ ଲାଲସା ଉଛାହୂ । ପଥ ଶ୍ରମ ଲେସୁ କଲେସୁ ନ କାହୂ ॥
ମନ ତହଁ ଜହଁ ରଘୁବର ବୈଦେହୀ । ବିନୁ ମନ ତନ ଦୁଖ ସୁଖ ସୁଧି କେହୀ ॥୨॥
ଆୱତ ଜନକୁ ଚଲେ ଏହି ଭାଁତୀ । ସହିତ ସମାଜ ପ୍ରେମ ମତି ମାତୀ ॥
ଆଏ ନିକଟ ଦେଖି ଅନୁରାଗେ । ସାଦର ମିଲନ ପରସପର ଲାଗେ ॥୩॥

---

ଗାଇ ରାମ ଗୁଣ ଗଣ ଅନୁରାଗେ ଅତି । ନିଜ ନିଜ ଭାଗ୍ୟ ସର୍ବେ ପ୍ରଶଂସା କରନ୍ତି ॥
ଜଗତେ ଅଳପ ପୁଣ୍ୟ-ପୁଞ୍ଜ ଆମ୍ଭ ପରି । ଯାହାଙ୍କୁ ଜାଣନ୍ତି ରାମ ଆପଣାର କରି ॥୪॥
ସେକାଳେ ଜନକ ଆଗମନ ଶୁଣି ସର୍ବେ ନିମଗ୍ନ ହରଷ ।
ସଭାଜନ ଭୁଲେ ସତ୍ୱର ଉଠିଲେ ରବିକୁଳ-କଞ୍ଜହଂସ ॥୨୭୪॥
ଆଗେ ରଘୁକୁଳ-ମଣି କରିଲେ ଗମନ । ସଙ୍ଗତେ ଭ୍ରାତା ସଚିବ ଗୁରୁ ପୁରଜନ ॥
ଗିରିବର ମିଥିଳେଶ ବିଲୋକିଲେ ଯେବେ । ପ୍ରଣାମ କରି ସ୍ୟନ୍ଦନ ତ୍ୟାଗ କଲେ ତେବେ ॥୧॥
ରାମ ଦର୍ଶନ ଲାଲସା ହୃଦୟେ ବିଶେଷ । କାହାକୁ ନ ଲାଗେ ପଥଶ୍ରମ କ୍ଳେଶ ଲେଶ ॥
ମନ ରାମ ବଇଦେହୀ ନିକଟେ ରହଇ । ମନ ବିନା ତନୁ ଦୁଃଖ ସୁଖ କେ ଜାଣଇ ॥୨॥
ଏହିପରି ଭାବେ ଚାଲି ଜନକ ଆସନ୍ତି । ସମାଜ ସହିତ ହୋଇ ପ୍ରେମ-ମଦ ମତି ॥
ନିକଟେ ଆସି ନିରେଖି ଅନୁରାଗ-ଭରେ । ପରସ୍ପର ମିଳିବାକୁ ଲାଗିଲେ ସାଦରେ ॥୩॥

---

ସେ ଶୀଲ ଓ ସଂକୋଚର ସମୁଦ୍ର । ସେ ସୁମୁଖ, ସୁଲୋଚନ ଓ ସରଳ ସ୍ୱଭାବବିଶିଷ୍ଟ ॥ ୩ ॥ ଶ୍ରୀରାମଙ୍କ ଗୁଣସମୂହ କହୁ କହୁ ସମସ୍ତ ଲୋକ ପ୍ରେମରେ ପରିପୂର୍ଣ୍ଣ ହୋଇଗଲେ ଏବଂ ଆପଣା ଆପଣା ଭାଗ୍ୟର ପ୍ରଶଂସା କରିବାକୁ ଲାଗିଲେ । ସେମାନେ କହୁଥାଂନ୍ତି, "ସଂସାରରେ ଆମ ସମାନ ପୁଣ୍ୟରାଶି ଅତି ଅଳ୍ପ, ଯାହାଙ୍କୁ କି ଶ୍ରୀରାମ "ଏମାନେ ମୋର" ବୋଲି ଜାଣନ୍ତି ।" ॥ ୪ ॥ ଦୋହା :—ସେହି ସମୟରେ ସମସ୍ତ ଲୋକ ପ୍ରେମ-ମଗ୍ନ । ଇତି ମଧ୍ୟରେ ମିଥିଳାପତି ଜନକଙ୍କ ଆସିବାର ଶୁଣି ସୂର୍ଯ୍ୟକୁଳ-କମଳ-ଦିବାକର ଶ୍ରୀରାମଚନ୍ଦ୍ର ସଭା-ସମେତ ଆଦରରେ ଶୀଘ୍ର ଉଠି ଛିଡ଼ା ହେଲେ ॥ ୨୭୪ ॥ ଚୌପାଈ :—ଭାଇ, ମନ୍ତ୍ରୀ, ଗୁରୁ ଓ ପୁରବାସୀମାନଙ୍କୁ ସଙ୍ଗରେ ନେଇ ଶ୍ରୀ ରଘୁନାଥ ଜନକଙ୍କ ସ୍ୱାଗତ ନିମନ୍ତେ ଚାଲିଲେ । ଜନକ ଗିରିବର କାମଦନାଥଙ୍କୁ ଦେଖିଲା ମାତ୍ରେ ପ୍ରଣାମ କଲେ ଏବଂ ରଥ ଛାଡ଼ି ପାଦରେ ଚାଲିଲେ ॥ ୧ ॥ ଶ୍ରୀରାମଙ୍କ ଦର୍ଶନ-ଲାଲସା ଓ ଉତ୍ସାହ ଯୋଗେ କାହାରିକୁ ହେଲେ ପଥକ୍ଳାନ୍ତି ବା କ୍ଳେଶ କିଞ୍ଚିତ ହେଲେ ଜଣା ପଡ଼

ଲଗେ ଜନକୁ ମୁନିଜନ ପଦ ବଂଦନ । ଋଷିହ୍ନ ପ୍ରନାମୁ କୀହ୍ନ ରଘୁନନ୍ଦନ ॥
ଭାଇହ୍ନ ସହିତ ରାମୁ ମିଲି ରାଜହି । ଚଲେ ଲୱାଇ ସମେତ ସମାଜହି ॥୩॥
ଆଶ୍ରମ ସାଗରୁ ସାନ୍ତ ରସ ପୂରନ ପାବନ ପାଥୁ ।
ସେନ ମନହୁଁ କରୁନା ସରିତ ଲିଏଁ ଜାହିଁ ରଘୁନାଥୁ ॥୨୭୫॥
ବୋରତି ଜ୍ଞାନ ବିରାଗ କରାରେ । ବଚନ ସସୋକ ମିଲତ ନଦ ନାରେ ॥
ସୋଚ ଉସାସ ସମୀର ତରଂଗା । ଧୀରଜ ତଟ ତରୁବର କର ଭଂଗା ॥୧॥
ବିଷମ ବିଷାଦ ତୋରାୱତି ଧାରା । ଭୟ ଭ୍ରମ ଭୱଁର ଅବର୍ତ ଅପାରା ॥
କେୱଟ ବୁଧ ବିଦ୍ୟା ବଡ଼ି ନାୱା । ସକହିଁ ନ ଖେଇ ଐକ ନହିଁ ଆୱା ॥୨॥

---

ମୁନିଗଣ ପଦ କଲେ ଜନକ ବନ୍ଦନ । ଋଷି-ମାନଙ୍କୁ ନମିଲେ ଶ୍ରୀ ରଘୁନନ୍ଦନ ॥
ଭ୍ରାତାଙ୍କ ସହିତ ରାମ ମିଳିଣ ନୃପଙ୍କୁ । ଗମନ କଲେ ସଙ୍ଗରେ ନେଇ ସମାଜଙ୍କୁ ॥୪॥
ଶାନ୍ତ ରସମୟ ପବିତ୍ର ସଲିଳେ ପୂର୍ଣ୍ଣ-ଆଶ୍ରମ ସାଗର ।
ମନେ ହୁଏ ସେନା-କରୁଣା-ନଦୀକୁ ନେଇଯାନ୍ତି ରଘୁବର ॥୨୭୫॥
ବିବେକ-ବୈରାଗ୍ୟ-କୂଳ ବୁଡ଼ାଇଣ ଯାଏ । ମିଳନ୍ତି ସଶୋକ ବାଣୀ ନଦୀନାଳ ପ୍ରାୟେ ॥
ଚିନ୍ତା ଶ୍ୱାସ ବାୟୁସୃଷ୍ଟି ତରଙ୍ଗ ଯେସନ । ଧୈର୍ଯ୍ୟ-ତଟ-ତରୁବରେ କରେ ଉତ୍ପାଟନ ॥୧॥
ବିଷମ ବିଷାଦ ଘୋର ଖର ସ୍ରୋତ ଧାର । ଭୟ ଭ୍ରମ ସନ୍ଦେହାଦି ଆବର୍ତ୍ତ ଅପାର ॥
ବୁଧ କୈବର୍ତ୍ତ ବିଦ୍ୟା ବଡ଼ ନାବ ପ୍ରାୟ । ବାହି ନ ପାରନ୍ତି, କିଛି ନ ଦିଶେ ଉପାୟ ॥୨॥

---

ନ ଥାଏ । ଯେଉଁଠାରେ ଶ୍ରୀରାମ ଓ ଜାନକୀ ବିରାଜିତ, ସେହିଠାରେ ଯାଇ ସେମାନଙ୍କର ମନ । ବିନା ମନରେ ଶରୀର-ସୁଖଦୁଃଖର ଜ୍ଞାନ କାହାକୁ ହୁଏ ? ॥ ୨ ॥ ଜନକ ଏହି ରୂପେ ଚାଲି ଆସୁଥା'ନ୍ତି । ସମାଜ ସମେତ ତାଙ୍କର ବୁଦ୍ଧି ପ୍ରେମରେ ଉନ୍ମତ୍ତ ହେଉଥାଏ । ନିକଟକୁ ଆସିବାର ଦେଖି ସମସ୍ତେ ପ୍ରେମରେ ଭରିଗଲେ ଏବଂ ସେମାନେ ପରସ୍ପରକୁ ଆଦର ସହିତ ଭେଟିବାକୁ ଲାଗିଲେ ॥ ୩ ॥ ଜନକ ବଶିଷ୍ଠ ପ୍ରଭୃତି ଅଯୋଧ୍ୟାର ମୁନିମାନଙ୍କ ଚରଣ ବନ୍ଦନା କରିବାକୁ ଲାଗିଲେ ଏବଂ ଶ୍ରୀରାମଚନ୍ଦ୍ର ଶତାନନ୍ଦ ଆଦି ଜନକପୁରବାସୀ ମୁନିମାନଙ୍କୁ ପ୍ରଣାମ କଲେ । ପୁଣି ଭାଇମାନଙ୍କ ସମେତ ଶ୍ରୀରାମ ଜନକଙ୍କ ସହି ସାକ୍ଷାତ କରି ସସମାଜ ତାହାଙ୍କୁ ଆପଣାର ଆଶ୍ରମକୁ ନେଇଗଲେ ॥ ୪ ॥ ଦୋହା :- ଶ୍ରୀରାମଙ୍କ ଆଶ୍ରମ ଶାନ୍ତରସର ପବିତ୍ର ଜଳରେ ପରିପୂର୍ଣ୍ଣ ସମୁଦ୍ର । ଜନକଙ୍କ ସେନା (ସମାଜ) ସତେ ଅବା କରୁଣ-ରସର ନଦୀ । ଉକ୍ତ ନଦୀକୁ ଶାନ୍ତରସ-ସମୁଦ୍ର ସହିତ ମିଳାଇବା ନିମନ୍ତେ ଶ୍ରୀରାମ ନେଇ ଯାଉଅଛନ୍ତି ॥ ୨୭୫ ॥ ଚୌପାଈ —ଏହି କରୁଣା—ନଦୀର ବନ୍ୟା ଜ୍ଞାନ-ବୈରାଗ୍ୟ-କୂଳମାନଙ୍କୁ ବୁଡ଼ାଇ ଦେଇଯାଉଛି । ଶୋକପୂର୍ଣ୍ଣ ବଚନ ନଦ ଓ ନାଳ । ସେମାନେ ଏହି ନଦୀରେ ମିଳନ୍ତି ଏବଂ ଚିନ୍ତାର ଦୀର୍ଘ ଶ୍ୱାସ (ଆହା) ବାୟୁସୃଷ୍ଟ ତରଙ୍ଗାବଳୀ । ଏହା କୂଳବର୍ତ୍ତୀ ଉତ୍ତମ ଧୈର୍ଯ୍ୟ-ବୃକ୍ଷମାନଙ୍କୁ ଭାଙ୍ଗି ପକାଉଅଛି ॥ ୧ ॥ ଭୟାନକ ବିଷାଦ ସେହି ନଦୀର ବେଗବତୀ ଧାରା । ଭୟ ଓ ଭ୍ରମ

ବନଚର କୋଲ କିରାତ ବିଚାରେ । ଥକେ ବିଲୋକି ପଥିକ ହିୟଁ ହାରେ ॥
ଆଶ୍ରମ ଉଦଧି ମିଲୀ ଜବ ଜାଈ । ମନହୁଁ ଉଠେଉ ଅମ୍ବୁଧି ଅକୁଲାଈ ॥୩॥
ସୋକ ବିକଲ ଦୋଉ ରାଜ ସମାଜା । ରହା ନ ଜ୍ଞାନୁ ନ ଧୀରଜୁ ଲାଜା ॥
ଭୂପ ରୂପ ଗୁନ ସୀଲ ସରାହୀ । ରୋୱହିଁ ସୋକ ସିଂଧୁ ଅବଗାହୀ ॥୪॥

ଅବଗାହି ସୋକ ସମୁଦ୍ର ସୋଚହିଁ ନାରି ନର ବ୍ୟାକୁଲ ମହା ।
ଦୈ ଦୋଷ ସକଲ ସରୋଷ ବୋଲହିଁ ବାମ ବିଧି କୀହ୍ନୋ କହା ॥
ସୁର ସିଦ୍ଧ ତାପସ ଜୋଗିଜନ ମୁନି ଦେଖି ଦସା ବିଦେହ କୀ ।
ତୁଲସୀ ନ ସମରଥୁ କୋଉ ଜୋ ତରି ସକୈ ସରିତ ସନେହ କୀ ॥

---

ବଣୁଆ କୋହ୍ଲ କିରାତ ପଥିକ ସକଳ । ଅବଲୋକି ହୃଦେ ହାରି ରହିଲେ ନିଶ୍ଚଳ ॥
ଯେବେ ଯାଇଣ ଆଶ୍ରମ-ସିନ୍ଧୁରେ ମିଳିଲା । ମନେ ହୁଏ, ଅମ୍ବୁନିଧି ଆକୁଳେ ଉଠିଲା ॥୩॥
ଶୋକ ବିକଳ ଉଭୟ ମହୀପ ସମାଜ । ନ ରହିଲା ହୃଦେ କିଛି ଜ୍ଞାନ ଧୈର୍ଯ୍ୟ ଲାଜ ॥
ଭୂପ ରୂପ ଗୁଣ ଶୀଳ ପ୍ରଶଂସା କରିଣ । ରୋଦନ କରନ୍ତି ଶୋକ-ସିନ୍ଧୁରେ ମଜ୍ଜିଣ ॥୪॥

ମଜ୍ଜି ଶୋକ-ସାଗରେ ଚିନ୍ତନ୍ତି ନାରୀ ନରେ ବ୍ୟାକୁଳେ ଅତ୍ୟନ୍ତ ବ୍ୟଥିତ ।
ସର୍ବେ ଦେଇଣ ଦୋଷ ବୋଲନ୍ତି ହୋଇ ରୋଷ କି କଲା ବିଧି ବିପରୀତ ।
ବିଦେହ ଦଶା ଦେଖି କରି, ତାପସ ସୁର ମୁନି ଧରି,
ତୁଳସୀ ସମରଥ ନ ହେଲେ କେ ଏମନ୍ତ ଯେ ଯିବ ସ୍ନେହ-ନଦୀ ତରି ॥

---

ତାହାର ଅସଂଖ୍ୟ ଭଉଁରୀ ଓ ତରଙ୍ଗ । ବିଦ୍ୱାନ୍‌ମାନେ କୈବର୍ତ୍ତ । ବିଦ୍ୟା ହିଁ ବଡ଼ ନୌକା । କିନ୍ତୁ ସେମାନେ ତାହାକୁ ବାହି ପାରୁନାହାନ୍ତି, ଅର୍ଥାତ୍ ବିଦ୍ୟାର ସଦୁପଯୋଗ କରିପାରୁ ନାହାନ୍ତି । କାହାରି ଅଟକଳରେ ତାହା ଆସିପାରୁ ନ ଥାଏ ॥୨॥ ବନରେ ବିଚରଣକାରୀ ବିଚରା କୋହ୍ଲ-କିରାତମାନେ ଯାତ୍ରୀ। ସେମାନେ ଏହି ନଦୀକୁ ଦେଖି ହୃଦୟରେ ହାରି ଥକି ଯାଇଅଛନ୍ତି । ଏହି କରୁଣା-ନଦୀ ଯେତେବେଳେ ଯାଇ ଆଶ୍ରମ-ସମୁଦ୍ରରେ ମିଶିଲା, ସେତେବେଳେ ସେହି ସମୁଦ୍ର ସତେ ଅବା ଉଦ୍‌ବେଳିତ ହୋଇଉଠିଲା ! ॥ ୩ ॥ ଉଭୟ ରାଜସମାଜ ଶୋକ ହେତୁ ବ୍ୟାକୁଳ ହୋଇ ପଡ଼ିଲେ । କାହାରି ଜ୍ଞାନ, ଧୈର୍ଯ୍ୟ ବା ଲଜ୍ଜା କିଛି ରହିଲା ନାହିଁ । ରାଜା ଦଶରଥଙ୍କର ରୂପ, ଗୁଣ ଓ ଶୀଳର ପ୍ରଶଂସା କରି ସମସ୍ତେ ରୋଦନ କରୁଆଆନ୍ତି ଏବଂ ଶୋକ-ସାଗରରେ ନିମଜ୍ଜିତ ହେଉଥା'ନ୍ତି ॥ ୪ ॥ ଛନ୍ଦ '—ଶୋକ-ସାଗରରେ ନିମଜ୍ଜିତ ହୋଇ ସକଳ ନରନାରୀ ବ୍ୟାକୁଳ ଓ ବ୍ୟଥିତ ହୋଇ ଚିନ୍ତା କରୁଥା'ନ୍ତି । ସେମାନେ କ୍ରୁଦ୍ଧ ହୋଇ ବିଧାତାକୁ ଦୋଷ ଦେଉଥା'ନ୍ତି— "ବିଧାତା ବାମ ହୋଇ ଏହା କ'ଣ କଲା ?" ତୁଳସୀଦାସ କହନ୍ତି—ଦେବତା, ସିଦ୍ଧ, ତପସ୍ୱୀ, ଯୋଗୀ ଓ ମୁନିଗଣଙ୍କ ମଧ୍ୟରେ ଏପରି କେହି ସମର୍ଥ ବ୍ୟକ୍ତି ନାହିଁ, ଯେ କି ଉକ୍ତ ସମୟରେ ବିଦେହରାଜ ଜନକଙ୍କ ଦଶା ଦେଖି ପ୍ରେମ-ନଦୀକୁ ପାରି ହୋଇଯିବ ।

କଏ ଅମିତ ଉପଦେସ ଜହଁ ତହଁ ଲୋଗନ୍ହ ମୁନିବରନ୍ହ ।
ଧୀରଜୁ ଧରିଅ ନରେସ କହେଉ ବସିଷ୍ଠ ବିଦେହ ସନ ॥୨୭୬॥
ଜାସୁ ଗ୍ୟାନୁ ରବି ଭବ ନିସି ନାସା । ବଚନ କିରନ ମୁନି କମଲ ବିକାସା ॥
ତେହି କି ମୋହ ମମତା ନିଅରାଈ । ୟହ ସିୟ ରାମ ସନେହ ବଡ଼ାଈ ॥୧॥
ବିଷଈ ସାଧକ ସିଦ୍ଧ ସୟାନେ । ତ୍ରିବିଧ ଜୀବ ଜଗ ବେଦ ବଖାନେ ॥
ରାମ ସନେହ ସରସ ମନ ଜାସୂ । ସାଧୁ ସଭାଁ ବଡ଼ ଆଦର ତାସୂ ॥୨॥
ସୋହ ନ ରାମ ପେମ ବିନୁ ଗ୍ୟାନୂ । କରନଧାର ବିନୁ ଜିମି ଜଲଜାନୂ ॥
ମୁନି ବହୁବିଧି ବିଦେହୁ ସମୁଝାଏ । ରାମ ଘାଟ ସବ ଲୋଗ ନହାଏ ॥୩॥
ସକଲ ସୋକ ସଂକୁଲ ନର ନାରୀ । ସୋ ବାସରୁ ବୀତେଉ ବିନୁ ବାରୀ ॥
ପସୁ ଖଗ ମୃଗନ୍ହ ନ କୀନ୍ହ ଅହାରୂ । ପ୍ରିୟ ପରିଜନ କର କୌନ ବିଚାରୂ ॥୪॥

---

ସ୍ଥାନେ ସ୍ଥାନେ ମୁନି-ନିକର ଲୋକଙ୍କୁ ଦେଲେ ବହୁ ଉପଦେଶ ।
କହନ୍ତି ବଶିଷ୍ଠ ବିଦେହ ନୃପଙ୍କୁ, ଧୈର୍ଯ୍ୟ ଧରନ୍ତୁ ନରେଶ ॥୨୭୬॥
ଯାହାଙ୍କ ଜ୍ଞାନ-ମାର୍ତ୍ତଣ୍ଡ ଭବ-ନିଶି ନାଶେ । ବଚନ-କିରଣ ମୁନି-କମଳେ ବିକାଶେ ॥
ମୋହ ମମତା କି ପାରେ ତାଙ୍କପାଶେ ଯାଇ । ଏହା ସୀତା ଶ୍ରୀରାମଙ୍କ ସ୍ନେହର ବଡ଼ାଇ ॥୧॥
ବିଷୟୀ ସାଧକ ତଥା ସୁଚତୁର ସିଦ୍ଧ । ବେଦ ବଖାଣଇ ଜୀବ ଜଗତେ ତ୍ରିବିଧ ॥
ରାମ ସ୍ନେହ-ରସ-ଯୁକ୍ତ ମନ ଅଟେ ଯାର । ସାଧୁ-ସମାଜରେ ବଡ଼ ଆଦର ତାହାର ॥୨॥
ଶୋଭା ନ ଲଭଇ ରାମପ୍ରେମ ବିନା ଜ୍ଞାନ । କର୍ଣ୍ଣଧାର ଅଭାବରେ ଯେସନ୍ତେ ଜଳଯାନ ॥
ନାନାଭାବେ ବିଦେହଙ୍କୁ ମୁନି ବୁଝାଇଲେ । ତହୁଁ ରାମଘାଟେ ସ୍ନାନ ସମସ୍ତେ କଲେ ॥୩॥
ଶୋକ ବିଷାଦରେ ଗ୍ରସ୍ତ ସର୍ବେ ନରନାରୀ । ଏହିପରି ସେ ବାସର ଗଲା ବିନା ବାରି ॥
ପଶୁ ଖଗ ମୃଗ ମଧ୍ୟ ନ କଲେ ଆହାର । ପ୍ରିୟ ପରିଜନଙ୍କର କେବଣ ବିଚାର ॥୪॥

---

(ଅର୍ଥାତ୍ ପ୍ରେମନଦୀରେ ନ ବୁଡ଼ି ତରିଯିବ) ॥ ସୋରଠା :—ବିଭିନ୍ନ ସ୍ଥାନରେ ମୁନିମାନେ ଲୋକଙ୍କୁ ବହୁତ ଉପଦେଶ ଦେଲେ ଏବଂ ବଶିଷ୍ଠ ବିଦେହନରେଶ ଜନକଙ୍କୁ କହିଲେ, "ହେ ରାଜନ୍ ! ଆପଣ ଧୈର୍ଯ୍ୟ ଧାରଣ କରନ୍ତୁ ॥ ୨୭୬ ॥ ଚୌପାଈ :—ଯେଉଁ ରାଜା ଜନକଙ୍କ ଜ୍ଞାନ-ରବି ଭବର ଜନ୍ମମରଣଚକ୍ର-ରାତ୍ରି ନାଶ କରିଦିଏ, ଯାହାଙ୍କର ବଚନ-କିରଣ ମୁନି-କମଳମାନଙ୍କୁ ବିକଶିତ କରେ, ମୋହ ଓ ମମତା ତାଙ୍କ ନିକଟକୁ ହୁଡ଼ା ଆସିପାରେ କି ? ଏହା ତ ଶ୍ରୀସୀତାରାମଙ୍କ ପ୍ରେମର ମହିମା ॥ ୧ ॥ ବିଷୟୀ, ସାଧକ ଓ ଜ୍ଞାନବାନ୍ ସିଦ୍ଧ ପୁରୁଷ—ଜଗତର ଏ ତିନି ପ୍ରକାର ଜୀବଙ୍କ ବିଷୟରେ ବେଦଗଣ କହିଅଛନ୍ତି । ଏହି ତିନିଙ୍କ ମଧ୍ୟରେ ଯାହାର ଚିତ୍ତ ଶ୍ରୀରାମଙ୍କ ସ୍ନେହରେ ସରସ, ସାଧୁସମାଜରେ କେବଳ ତାହାର ବଡ଼ ଆଦର ॥ ୨ ॥ ଯେପରି ନୌକା ବା ଜାହାଜ କର୍ଣ୍ଣଧାର ବିନା ଶୋଭା ପାଏ ନାହିଁ, ସେହିପରି ଶ୍ରୀରାମଙ୍କ ପ୍ରେମ ବିନା ଜ୍ଞାନ ଶୋଭା ପାଏ ନାହିଁ ।" ବଶିଷ୍ଠ ବିଦେହରାଜ ଜନକଙ୍କୁ ବହୁତ ପ୍ରକାରେ ବୁଝାଇଲେ । ତଦନନ୍ତର

ଦେଖି ଦେଖି ତରୁବର ଅନୁରାଗେ । ଜହଁ ତହଁ ପୁରଜନ ଉତରନ ଲାଗେ ॥
ଦଲ ଫଲ ମୂଲ କନ୍ଦ ବିଧି ନାନା । ପାବନ ସୁନ୍ଦର ସୁଧା ସମାନା ॥୪॥
ସାଦର ସବ କହଁ ରାମଗୁର ପଠଏ ଭରି ଭରି ଭାର ।
ପୂଜି ପିତର ସୁର ଅତିଥି ଗୁର ଲଗେ କରନ ଫରହାର ॥୨୭୯॥
ଏହି ବିଧି ବାସର ବୀତେ ଚାରୀ । ରାମୁ ନିରଖି ନର ନାରି ସୁଖାରୀ ॥
ଦୁହୁ ସମାଜ ଅସି ରୁଚି ମନମାହୀଁ । ବିନୁ ସିୟ ରାମ ଫିରବ ଭଲ ନାହୀଁ ॥୧॥
ସୀତା ରାମ ସଂଗ ବନବାସୂ । କୋଟି ଅମରପୁର ସରିସ ସୁପାସୂ ॥
ପରିହରି ଲଖନ ରାମୁ ବୈଦେହୀ । ଜେହି ଘରୁ ଭାଓ ବାମ ବିଧି ତେହୀ ॥୨॥
ଦାହିନ ଦଇଉ ହୋଇ ଜବ ସବହୀ । ରାମ ସମୀପ ବସିଅ ବନ ତବହୀ ॥
ମନ୍ଦାକିନି ମଜ୍ଜନୁ ତିହୁ କାଲା । ରାମ ଦରସୁ ମୁଦ ମଂଗଲ ମାଲା ॥୩॥

---

ଦେଖି ଦେଖି ତରୁ ତଳ ଅନୁରାଗ ମନେ । ବିଶ୍ରାମ କରିଲେ ସ୍ଥାନେ ସ୍ଥାନେ ପୁରଜନେ ॥
ଅନେକ ପ୍ରକାରେ କନ୍ଦମୂଳ ଫଳ ଦଳ । ଅମୃତ ସମାନ ସ୍ୱାଦ ପବିତ୍ର ବିମଳ ॥୪॥
ସାଦରେଁ ବଶିଷ୍ଠ ସମସ୍ତଙ୍କ ପାଇଁ ପଠାଇଲେ ବହୁ ଭାର ।
ପୂଜି ପିତୃ ସୁର ଅତିଥି ଗୁରୁଙ୍କୁ କଲେ ସର୍ବେ ଫଳାହାର ॥୨୭୯॥
କଟିଗଲା ଦିନ ଚାରିଁ ଏପରି ଭାବରେ । ରାମଙ୍କୁ ଦେଖି ହୁଅନ୍ତି ସୁଖୀ ନାରୀ ନରେ ॥
ଦୋନି ସମାଜଙ୍କ ଏହି ଆକାଙ୍‌କ୍ଷା ହୁଅଇ । ବିନା ସୀତା ରାମ ଭଲ ଫେରିବା ନୁହଇ ॥୧॥
ସୀତା ରାମ ସଙ୍ଗେ ବନ ନିବାସ ପରମ । ସୁବିଧା-ଜନକ କୋଟି ସୁରପୁର ସମ ॥
ପରିହରି ସୀତା ରାମ ସୁମିତ୍ରା କୁମାର । ଗୃହେ ଯା'ର ରୁଚି ବିଧି ବିପକ୍ଷ ତାହାର ॥୨॥
ସପକ୍ଷ ହେବ ଦଇବ ସମସ୍ତଙ୍କୁ ଯେବେ । କରିବା ରାମଙ୍କ ପାଶେ ବନବାସ ତେବେ ॥
ତ୍ରିକାଳ ଅବଗାହନ ମନ୍ଦାକିନୀ ଜଳ । ରାମ ଦର୍ଶନ ଆନନ୍ଦ ମଙ୍ଗଳ ସକଳ ॥୩॥

---

ସୁଗନ୍ଧିତ ପବନ ବହୁଥାଏ ॥ ୨ ॥ ବନର ମନୋହରତା ବର୍ଣ୍ଣନା କରାଯାଇ ପାରିବ ନାହିଁ । ସତେ ଅବା ଧରଣୀ ଜନକଙ୍କର ଆତିଥ୍ୟ-ସତ୍କାର କରୁଅଛି କି ! ତଦନନ୍ତର ଜନକ-ପୁରବାସୀ ସମସ୍ତ ଲୋକ ସ୍ନାନ ପରେ ଶ୍ରୀ ରାମଚନ୍ଦ୍ର, ଜନକ ଓ ମୁନିଙ୍କ ଆଜ୍ଞା ପାଇ ସୁନ୍ଦର ବୃକ୍ଷ ଦେଖି ପ୍ରେମପୂର୍ଣ୍ଣ ହୃଦୟରେ ସ୍ଥାନେ ସ୍ଥାନେ ବସିଗଲେ । (ଗୁରୁ) ପବିତ୍ର, ସୁନ୍ଦର ଓ ଅମୃତସମ ସ୍ୱାଦିଷ୍ଟ ନାନାବିଧ ପତ୍ର, ଫଳ ମୂଳ ଓ କନ୍ଦ ଆଦି (ସେମାନଙ୍କ ନିମନ୍ତେ ପଠାଇଲେ) ॥ ୩-୪ ॥ ଦୋହା :—ଶ୍ରୀରାମଙ୍କ ଗୁରୁ ବଶିଷ୍ଠ ବୋଝ ଭର୍ତ୍ତି କରି ବିଭିନ୍ନ ଫଳ ସମସ୍ତଙ୍କ ନିକଟକୁ ଆଦର ସହକାରେ ପଠାଇଲେ । ପିତୃପୁରୁଷ, ଦେବତା, ଅତିଥି ଓ ଗୁରୁଙ୍କୁ ପୂଜା କରିବା ପରେ ସେମାନେ ଫଳାହାର କରିବାକୁ ଲାଗିଲେ ॥ ୨୭୯ ॥ ଚୌପାଈ :—ଏହିପରି ଭାବରେ ଚାରିଦିନ କଟିଗଲା । ଶ୍ରୀରାମ-ଚନ୍ଦ୍ରଙ୍କୁ ଦେଖି ସମସ୍ତ ନରନାରୀ ସୁଖୀ । ଉଭୟ ସମାଜ ମନରେ ଇଚ୍ଛା ଓ ଅନୁଭବ କରୁଥା'ନ୍ତି, ଶ୍ରୀ ସୀତାରାମଙ୍କ ବିନା ଫେରିବା ଭଲ ନୁହେଁ ॥ ୧ ॥ ଶ୍ରୀ ସୀତାରାମଙ୍କ ସହ

ଅଟନୁ ରାମ ଗିରି ବନ ତାପସ ଥଲ । ଅସନୁ ଅମିଅ ସମ କନ୍ଦ ମୂଲ ଫଲ ॥
ସୁଖ ସମେତ ସମ୍ବତ ଦୁଇ ସାତା । ପଲ ସମ ହୋହିଁ ନ ଜନିଅହିଁ ଜାତା ॥୪॥
ଏହି ସୁଖ ଜୋଗ ନ ଲୋଗ ସବ କହହିଁ କହାଁ ଅସ ଭାଗୁ ।
ସହଜ ସୁଭାଯଁ ସମାଜ ଦୁହୁ ରାମ ଚରନ ଅନୁରାଗୁ ॥୨୮୦॥
ଏହି ବିଧି ସକଲ ମନୋରଥ କରହୀଁ । ବଚନ ସପ୍ରେମ ସୁନତ ମନ ହରହୀଁ ॥
ସୀଯ ମାତୁ ତେହି ସମଯ ପଠାଈଁ । ଦାସୀଁ ଦେଖି ସୁଅବସରୁ ଆଈଁ ॥୧॥
ସାବକାସ ସୁନି ସବ ସିଯ ସାସୂ । ଆଯଉ ଜନକରାଜ ରନିବାସୂ ॥
କୌସଲ୍ୟାଁ ସାଦର ସନମାନୀ । ଆସନ ଦିଏ ସମଯ ସମ ଆନୀ ॥୨॥

---

ଭ୍ରମଣ ରାମ-ଶଇଳ ମୁନି-ସ୍ଥଳ ବନ । କନ୍ଦମୂଳ ଫଳ ସୁଧା ସଦୃଶ ଅଶନ ॥
ପରମ ସୁଖ ସମେତ ଦ୍ୱିସପ୍ତ ବରଷ । ଯିବ ଜାଣି ନ ପାରିବା ପଲକ ସଦୃଶ ॥୪॥
କହନ୍ତି ଲୋକେ, 'ଏ ସୁଖ-ଯୋଗ୍ୟ ନୋହୁଁ', 'ଆମର କାହିଁ ଏ ଭାଗ୍ୟ' ।
ସହଜ ସ୍ୱଭାବେ ଦେନି ସମାଜଙ୍କ ରାମପଦେ ଅନୁରାଗ ॥୨୮୦॥
ଏହି ଭାବେ ମନୋରଥ କରନ୍ତି ସମସ୍ତେ । ସପ୍ରେମ ବଚନ ମନ ହରଇ ଶୁଣନ୍ତେ ॥
ସୀତା ମାତା ସେ ସମୟେ ଦାସୀ ପଠାଇଲେ । ଭଲ ଅବସର ଆସି ସେମାନେ ଦେଖିଲେ ॥୧॥
ସୀତାଙ୍କ ସବୁ ଶାଶୁଙ୍କୁ ଅଛି ଅବକାଶ । ଶୁଣି ଆସିଲେ ଜନକ ମହିଷୀ ଉଆସ ॥
କୌଶଲ୍ୟା ଅତି ଆଦରେ କରିଣ ସମ୍ମାନ । ସମୟ-ଉଚିତ କଲେ ଆସନ ପ୍ରଦାନ ॥୨॥

---

ବନରେ ବାସ କରିବା କୋଟିଏ ଦେବଲୋକରେ ନିବାସ ସମାନ ସୁଖଦାୟକ । ଲକ୍ଷ୍ମଣ, ଶ୍ରୀରାମ ଓ ଜାନକୀଙ୍କୁ ଛାଡ଼ି ଯାହାଙ୍କୁ ଘର-ସଂସାର ରୁଚିକର ହୁଏ, ବିଧାତା ତାହାର ପ୍ରତିକୂଳ ବୋଲି ବୁଝିବାକୁ ହେବ ॥ ୨ ॥ ଯେତେବେଳେ ଦୈବ ସମସ୍ତଙ୍କର ଅନୁକୂଳ ହେବ, ସେତେବେଳେ ଯାଇ ଶ୍ରୀରାମଙ୍କ ପାଖରେ ବନରେ ନିବାସ ସମ୍ଭବ ହେବ । ମନ୍ଦାକିନୀରେ ତିନିବେଳା ସ୍ନାନ, ଆନନ୍ଦ ଓ ମଙ୍ଗଳମାଳା ଶ୍ରୀରାମଙ୍କ ରୂପ-ଦର୍ଶନ, ଶ୍ରୀରାମ ପର୍ବତ (କାମଦନାଥ)ରେ, ବନରେ ଓ ତପସ୍ୱୀମାନଙ୍କ ଆଶ୍ରମରେ ଭ୍ରମଣ ଏବଂ ଅମୃତ ସମାନ କନ୍ଦମୂଳ ଓ ଫଳ ଆହାର ଭୋଜନ । ସୁଖରେ ଚଉଦବର୍ଷ କାଳ ମୁହୂର୍ତ୍ତିକ ସମାନ ଅତିବାହିତ ହୋଇଯିବ । କିମିତି ବିତିଯିବ, ଜଣାପଡ଼ିବ ନାହିଁ ॥୩-୪॥ ଦୋହା :—ସମସ୍ତ ଲୋକ କହୁଥା'ନ୍ତି, "ଆମ୍ଭେମାନେ ଏହି ସୁଖର ଭାଜନ ନୋହୁଁ । ଆମର ଏପରି ଭାଗ୍ୟ କାହିଁ ?" ଶ୍ରୀ ରାମଚନ୍ଦ୍ରଙ୍କ ଚରଣ ପ୍ରତି ଉଭୟ ସମାଜର ସହଜ ସ୍ୱାଭାବିକ ପ୍ରେମ ॥୨୮୦॥ ଚୌପାଇ :—ଏହି ରୂପେ ସମସ୍ତେ ମନୋରଥ ପୋଷଣ କରୁଥା'ନ୍ତି । ସେମାନଙ୍କ ମଧୁର ଓ ପ୍ରେମମୟୀ ବାଣୀ ଶୁଣିବା ମାତ୍ରେ ଶ୍ରୋତାର ମନ ସ୍ୱତଃ ହରଣ (ମୁଗ୍ଧ) ହୋଇ ଯାଉଥାଏ । ସେହି ସମୟରେ ସୀତାଙ୍କ ମାତା ଶ୍ରୀ ସୁନୟନାଙ୍କଦ୍ୱାରା ପ୍ରେରିତ ଦାସୀମାନେ ସୁଅବସର ଦେଖି ଆସିଲେ ॥ ୧ ॥ ସୀତାଙ୍କ ଶାଶୁମାନେ ବର୍ତ୍ତମାନ ଫୁରୁସତ ପାଇ-ଅଛନ୍ତି ବୋଲି ଦାସୀମାନଙ୍କ ମୁଖରୁ ଶୁଣି ଜନକଙ୍କ ରାଣୀମହଲ ସେମାନଙ୍କ ସହ ସାକ୍ଷାତ

ସୀଲୁ ସନେହୁ ସକଲ ଦୁହୁ ଓରା । ଦ୍ରବହିଁ ଦେଖି ସୁନି କୁଲିସ କଠୋରା ॥
ପୁଲକ ସିଥିଲ ତନ ବାରି ବିଲୋଚନ । ମହି ନଖ ଲିଖନ ଲଗୀଁ ସବ ସୋଚନ ॥୩॥
ସବ ସିୟ ରାମ ପ୍ରୀତି କି ସି ମୂରତି । ଜନୁ କରୁନା ବହୁ ବେଷ ବିସୂରତି ॥
ସୀୟ ମାତୁ କହ ବିଧି ବୁଧି ବାଁକୀ । ଜୋ ପୟ ଫେନୁ ଫୋର ପବି ଟାଁକୀ ॥୪॥

ସୁନିଅ ସୁଧା ଦେଖିଅହିଁ ଗରଲ ସବ କରତୂତି କରାଲ ।
ଜହଁ ତହଁ କାକ ଉଲୂକ ବକ ମାନସ ସକୃତ ମରାଲ ॥୨୮୧॥

ସୁନି ସସୋଚ କହ ଦେବି ସୁମିତ୍ରା । ବିଧି ଗତି ବଡ଼ି ବିପରୀତ ବିଚିତ୍ରା ॥
ଜୋ ସୃଜି ପାଲଇ ହରଇ ବହୋରୀ । ବାଲକେଲି ସମ ବିଧି ମତି ଭୋରୀ ॥୧॥
କୌସଲ୍ୟା କହ ଦୋସୁ ନ କାହୂ । କରମ ବିବସ ଦୁଖ ସୁଖ ଛତି ଲାହୂ ॥
କଠିନ କରମ ଗତି ଜାନ ବିଧାତା । ଜୋ ସୁଭ ଅସୁଭ ସକଲ ଫଲ ଦାତା ॥୨॥

---

ସମ ଶୀଳ ସ୍ନେହ ବେନି ପକ୍ଷଙ୍କ ଅଛଇ । ଦେଖି ଶୁଣି ସୁକଠୋର କୁଳିଶ ଦ୍ରବଇ ॥
ପୁଲକେ ଶିଥିଲ ତନୁ ନୟନ ସନୀର । ନଖେ ମହୀ ଖୋଳି ହେଲେ ଚିନ୍ତାରେ ଅଧୀର ॥୩॥
ସୀତା ଶ୍ରୀରାମଙ୍କ ପ୍ରେମ-ପ୍ରତିମା ସମସ୍ତେ । ବହୁ ବେଷ ଧରି ଚିନ୍ତେ କରୁଣା ଯେମନ୍ତେ ॥
ବିଧି ବୁଦ୍ଧି ବଙ୍କ, ସୀତା ଜନନୀ ବୋଇଲେ । ବଜ୍ର ଲିହ୍ଣରେ ପୟଫେଣ ସେ ଫୋଡ଼ିଲେ ॥୪॥

ଶୁଣୁଛେ ପୀୟୂଷ, ଦେଖାଯାଏ ବିଷ, ସମସ୍ତ କର୍ମ କରାଳ ।
ଯେଣେ ତେଣେ ବକ-ବାୟସ ଉଲ୍ଲୂକ, ମାନସେ ସ୍ୱଳ୍ପ ମରାଳ ॥୨୮୧॥

ଶୁଣି ଚିନ୍ତା-ହୃଦେ ଦେବୀ ସୁମିତ୍ରା କହନ୍ତି । ବିଧାତା-ଗତି ବିଚିତ୍ର ବିପରୀତ ଅତି ॥
ସେ ସୃଜି ପାଳି ଅନ୍ତକୁ ହରଇ ସମସ୍ତ । ବିଧି-ଗତି ଭୋଳ ଶିଶୁ-କୌତୁକ ଯେମନ୍ତ ॥୧॥
ଭାଷିଲେ କୌଶଲ୍ୟା, କା'ର ଦୋଷ ନାହିଁ ରାଣୀ । କର୍ମାଧୀନ ହୁଏ ସୁଖ ଦୁଃଖ, ଲାଭ ହାନି ॥
କଠିନ କର୍ମର ଗତି ଜାଣଇ ବିଧାତା । ଯେ ଶୁଭ ଅଶୁଭ ସର୍ବ କର୍ମଫଳ-ଦାତା ॥୨॥

---

ନିରିବାକୁ ଆସିଲେ । କୌଶଲ୍ୟା ଆଦର ସହକାରେ ସେମାନଙ୍କୁ ସମ୍ମାନ ଦେଲେ ଏବଂ ସମୟୋଚିତ ଆସନ ଆଣି ଦେଲେ ॥ ୨ ॥ ଉଭୟ ଦଳରୁ ସମସ୍ତଙ୍କର ଶୀଳ ଓ ପ୍ରେମ ଦେଖି ଓ ଶୁଣି କଠୋର ବଜ୍ର ସୁଦ୍ଧା ତରଳି ଯାଉଥାଏ । ଶରୀର ପୁଲକିତ ଓ ଶିଥିଳ ଏବଂ ନେତ୍ରରେ ଶୋକ ଓ ପ୍ରେମର ଅଶ୍ରୁ । ସମସ୍ତେ ପାଦନଖରେ ଭୂମିରେ ଗାର ପକାଉଥା'ନ୍ତି ଏବଂ ଚିନ୍ତା କରିବାରେ ଲାଗିଥା'ନ୍ତି ॥ ୩ ॥ ସମସ୍ତେ ସୀତା-ରାମଙ୍କ ପ୍ରେମ-ମୂର୍ତ୍ତିସ୍ୱରୂପା । ସତେ ଅବା କରୁଣା ବହୁତ ରୂପ ଧାରଣ କରି ଶୋକ କରୁଛି । ସୀତାଙ୍କ ଜନନୀ ସୁନୟନା କହିଲେ, "ବିଧାତାର ବୁଦ୍ଧି ବଡ଼ କୁଟିଳ, ସେ ଦୁଧ ଫେଣ ପରି କୋମଳ ବସ୍ତୁକୁ ବଜ୍ର-ଲିହଣରେ ବିଦୀର୍ଣ୍ଣ କରୁଅଛି ॥ ୪ ॥ ଦୋହା .—ଅମୃତ କେବଳ ଶୁଣା-ଶୁଣି ଦ୍ରବ୍ୟ । ବିଷ ବିଭିନ୍ନ ସ୍ଥାନରେ ପ୍ରତ୍ୟକ୍ଷ ଦେଖିବାକୁ ମିଳେ । ବିଧାତାର ସବୁ କୃତିତ୍ୱ ଭୟଙ୍କର । ଯେଉଁଠି ଇଚ୍ଛା ସେଇଠି କୁଆ, ଉଲ୍ଲୁକ ଏବଂ ବଗମାନେ ଦେଖା ଯା'ନ୍ତି । ମାତ୍ର ହଂସମାନେ ତ ଏକା ମାନସରୋବରରେ କେବଳ ଥାଆନ୍ତି ।" ॥ ୨୮୧ ॥

ଈସ ରଜାଇ ସୀସ ସବହୀ କେଁ । ଉତପତି ଥିତି ଲୟ ବିଷହୁ ଅମୀ କେଁ ॥
ଦେବି ମୋହ ବସ ସୋଚିଅ ବାଦୀ । ବିଧି ପ୍ରପଞ୍ଚୁ ଅସ ଅଚଲ ଅନାଦୀ ॥୩॥
ଭୂପତି ଜିଅବ ମରବ ଉର ଆନୀ । ସୋଚିଅ ସଖି ଲଖି ନିଜ ହିତ ହାନୀ ॥
ସୀୟ ମାତୁ କହ ସତ୍ୟ ସୁବାନୀ । ସୁକୃତୀ ଅବଧି ଅଵଧପତି ରାନୀ ॥୪॥

ଲଖନୁ ରାମୁ ସିୟ ଜାହୁଁ ବନ ଭଲ ପରିନାମ ନ ପୋଚୁ ।
ଗହବରି ହିୟଁ କହ କୌସିଲା ମୋହି ଭରତ କର ସୋଚୁ ॥୨୮୨॥

ଈସ ପ୍ରସାଦ ଅସୀସ ତୁମ୍ହାରୀ । ସୁତ ସୁତବଧୂ ଦେବସରି ବାରୀ ॥
ରାମ ସପଥ ମୈଁ କୀନ୍ହି ନ କାଊ । ସୋ କରି କହଉଁ ସଖୀ ସତି ଭାଊ ॥୧॥

---

ସମସ୍ତଙ୍କ ଶିରେ ଈଶ ଅନୁମତି ନ୍ୟସ୍ତ । ସୃଷ୍ଟି ସ୍ଥିତି ଲୟ ବିଷ ସୁଧାଦି ଯାବତ ॥
ଦେବି ! ମୋହବଶ ଚିନ୍ତା କରିବା ବିଫଳ । ବିଧି ପ୍ରପଞ୍ଚ ଏମନ୍ତ ଅନାଦି ଅଚଳ ॥୩॥
ନୃପ ଜୀବନ ମରଣ ହୃଦେ ସଖି ! ସ୍ମରି । ଚିନ୍ତୁଅଛେ ନିଜ ହିତ ହାନି ଜାଣି କରି ॥
ସୀତା ମାତା 'ସତ୍ୟ' ବୋଲି ଭାଷିଲେ ସୁବାଣୀ । ସୁକୃତ ସୀମା ଅଯୋଧ୍ୟା ନୃପତିଙ୍କ ରାଣୀ ॥୪॥

ଲକ୍ଷ୍ମଣ ଶ୍ରୀରାମ ସୀତା ଯା'ନ୍ତୁ ବନ, ପରିଣାମ ହିତକର ।
ବ୍ୟଥାପୂର୍ଣ୍ଣ ହୃଦେ କୌଶଲ୍ୟା ବୋଲନ୍ତି, ମୋତେ ଚିନ୍ତା ଭରତର ॥୨୮୨॥

ଈଶ୍ୱରଙ୍କ କୃପା ତୁମ୍ଭ ଆଶୀର୍ବାଦ ଫଳ । ସୁତ ସୁତ-ବଧୂ ଯେସନ୍ତେ ସୁର-ନଦୀ ଜଳ ॥
ରାମ ରାଣ ସଖି ! ମୁହିଁ ଯେବେ ନାହିଁ କେବେ । ତାହା ପକାଇ କହୁଛି ସତ୍ୟ ଭାବେ ଏବେ ॥୧॥

---

ଚୌପାଈ —ଏହା ଶୁଣି ଦେବୀ ସୁମିତ୍ରା ଶୋକାତୁର ହୋଇ କହିଲେ, "ବିଧାତାଙ୍କର ଗତି ବା ବିଧାନ ବଡ ବିପରୀତ ଓ ବିଚିତ୍ର । ସେ ସୃଷ୍ଟିର ଉତ୍ପତ୍ତି କରି, ପାଳନ କରେ ଏବଂ ପୁଣି ନାଶ କରେ । ବିଧାତାର ବୁଦ୍ଧି ବାଳକମାନଙ୍କ ଖେଳ ପରି ବିବେକ-ବିଚାରଶୂନ୍ୟ ଓ ଅତି ଭୋଳା ।" ॥ ୧ ॥ କୌଶଲ୍ୟା କହିଲେ, "କାହାର ଦୋଷ ନାହିଁ । ଦୁଃଖ ସୁଖ, ହାନିଲାଭ ସବୁ କର୍ମର ଅଧୀନ । କର୍ମର ଗତି ଜାଣିବା କଷ୍ଟକର । ତାହା ବିଧାତା ହିଁ ଜାଣେ । ବିଧାତା ହିଁ ଶୁଭାଶୁଭ, ସମସ୍ତ ଫଳର ଦାତା ॥ ୨ ॥ ଈଶ୍ୱରଙ୍କ ଆଜ୍ଞା ସମସ୍ତଙ୍କ ଶିର ଉପରେ । ଉତ୍ପତ୍ତି, ସ୍ଥିତି ଓ ଲୟ ଏବଂ ଅମୃତ ଓ ବିଷ—ଏ ସବୁ ମଧ୍ୟ ଈଶ୍ୱରଙ୍କ ଆଜ୍ଞାଧୀନ । ହେ ଦେବି ! ମୋହବଶତଃ ଚିନ୍ତା କରିବା ବୃଥା । ବିଧାତାର ଏହି ସୃଷ୍ଟି ଏହି ରୂପେ ଅଚଳ ଓ ଅନାଦି ॥୩॥ ହେ ସଖି ! ମହାରାଜାଙ୍କ ଜୀବନ ଓ ମରଣ-ବିଷୟ ହୃଦୟରେ ସ୍ମରଣ କରି ଆମ୍ଭେମାନେ ଯେଉଁ ଚିନ୍ତା କରୁଛୁ, ତାହା ଆମ୍ଭେମାନେ ଆପଣା ଆପଣାର ହିତ-ହାନି ଦେଖି କରୁଥାଉଁ ।" ସୀତାଙ୍କ ମାତା କହିଲେ, "ଆପଣଙ୍କ ଉକ୍ତି ଉତ୍ତମ ଓ ସତ୍ୟ । ଆପଣମାନେ ପୁଣ୍ୟାତ୍ମାଶିରୋମଣି ଅଯୋଧ୍ୟାପତି ମହାରାଜ ଦଶରଥଙ୍କ ରାଣୀ । ଏପରି କାହିଁକି ନ କହନ୍ତେ ?" ॥ ୪ ॥ ଦୋହା :—କୌଶଲ୍ୟା ଦୁଃଖପୂର୍ଣ୍ଣ ହୃଦୟରେ କହିଲେ, "ଶ୍ରୀରାମ, ଲକ୍ଷ୍ମଣ ଓ ସୀତା ବନକୁ ଯାଆନ୍ତୁ, ଏହାର ପରିଣାମ ଉତ୍ତମ ହେବ, ଖରାପ ହେବନାହିଁ । ମୋତେ ତ ଭରତ ବିଷୟର

ଭରତ ସୀଲ ଗୁନ ବିନୟ ବଡ଼ାଈ । ଭାୟପ ଭଗତି ଭରୋସ ଭଲାଈ ॥
କହତ ସାରଦହୁ କର ମତି ହୀଚେ । ସାଗର ସୀପ କି ଜାହିଁ ଉଲୀଚେ ॥୨॥
ଜାନଉଁ ସଦା ଭରତ କୁଲଦୀପା । ବାର ବାର ମୋହି କହେଉ ମହୀପା ॥
କସେଁ କନକୁ ମନି ପାରିଖି ପାଏଁ । ପୁରୁଷ ପରିଖିଅହିଁ ସମୟଁ ସୁଭାଏଁ ॥୩॥
ଅନୁଚିତ ଆଜୁ କହବ ଅସ ମୋରା । ସୋକ ସନେହଁ ସୟାନପ ଥୋରା ॥
ସୁନି ସୁରସରି ସମ ପାବନି ବାନୀ । ଭଈଁ ସନେହ ବିକଲ ସବ ରାନୀ ॥୪॥

କୌସଲ୍ୟା କହ ଧୀର ଧରି ସୁନହୁ ଦେବି ମିଥିଲେସି ।
କୋ ବିବେକନିଧି ବଲ୍ଲଭହି ତୁମ୍ହହି ସକଇ ଉପଦେସି ॥୨୮୩॥

---

ବିନୟ ବଡ଼ାଇ ଗୁଣଶୀଳ ଭରତର । ଭ୍ରାତୃତ୍ୱ ଭକ୍ତି ଉତ୍ତମ ଭରସା ଆଦର ॥
କହନ୍ତେ ଶାରଦା ମତି କୁଣ୍ଠିତ ହୁଅଇ । ସାଗରକୁ ଶାମୁକାରେ କେ ବାନ୍ଧି ପାରଇ ॥୨॥
ଭରତକୁ ସଦା କୁଳ-ଦୀପ ବୋଲି ଜାଣ । ବାରମ୍ବାର କହୁଛନ୍ତି ମୋତେ ନରରାଣ ॥
କନକ କଷିଣ, ମଣି ଜହୁରୀ ଲକ୍ଷଣ । ପୁରୁଷ ପରଖା ଯାଏ ସମୟ ପାଇଣ ॥୩॥
ଏହା କହିବା ମୋହର ଆଜ ଅନୁଚିତ । ଶୋକ ସ୍ନେହରେ ହୋଇଛି ଜ୍ଞାନ ତିରୋହିତ ॥
ଶୁଣି ସୁର-ନଦୀ ସମ ସୁପବିତ୍ର ବାଣୀ । ସ୍ନେହରେ ଶିଥିଳ ହେଲେ ଯେତେ ଥିଲେ ରାଣୀ ॥୪॥

ହୃଦେ ଧୈର୍ଯ୍ୟ ଧରି ବୋଲନ୍ତି କୌଶଲ୍ୟା, ଶୁଣ ଦେବି ! ମିଥିଳେଶି ।
ବିବେକ-ଅମ୍ବୁଧି-ବଲ୍ଲଭ, ତୁମଙ୍କୁ କେ ପାରିବ ଉପଦେଶି ॥୨୮୩॥

---

ଚିନ୍ତା ॥ ୨୮୨ ॥ ଚୌପାଈ :—ଈଶ୍ୱରଙ୍କ ଅନୁଗ୍ରହ ଓ ଆପଣଙ୍କ ଆଶୀର୍ବାଦରୁ ମୋର ପୁତ୍ରପୁତ୍ର ଓ ପୁତ୍ରବଧୂ ଗଙ୍ଗାଜଳ ସମାନ ପବିତ୍ର । ହେ ସଖି ! ମୁଁ ଆଜଯାଏ ଶ୍ରୀରାମର ନାମରେ କୌଣସି ଶପଥ କରି ନ ଥିଲି । ଏଣୁ ଆଜ ଶ୍ରୀରାମ ନାମରେ ଶପଥ ନେଇ ସତ୍ୟ ଭାବରେ କହୁଛି,— ॥ ୧ ॥ "ଭରତର ଶୀଳ, ଗୁଣ, ନମ୍ରତା, ବଡ଼ପଣିଆ, ଭ୍ରାତୃତ୍ୱ, ଭକ୍ତି, ଭରସା ଓ ସଜ୍ଜନତାର ବର୍ଣ୍ଣନା କରିବାକୁ ଏପରି କି ସରସ୍ୱତୀଙ୍କ ବୁଦ୍ଧି ମଧ୍ୟ କୁଣ୍ଠିତ ହୁଏ । ଶାମୁକାରେ କେଉଁଠି ସମୁଦ୍ର ଉଛୁଳା ଯାଇପାରିଛି ? ॥ ୨ ॥ ମୁଁ ଭରତକୁ ସଦା କୁଳଦୀପ ରୂପେ ଜାଣେ । ମହାରାଜ ମଧ୍ୟ ମୋତେ ବାରମ୍ବାର ଏହି କଥା କହୁଥିଲେ । ସୁନାକୁ କଷଟି ପଥରରେ କଷି ଲୋକେ ଚିହ୍ନନ୍ତି ଏବଂ ରତ୍ନକୁ ଉତ୍ତମ ଜହୁରୀ ହାତରେ ହିଁ ପରଖି ଚିହ୍ନାଯାଏ । ସେହିପରି ସମୟ ପଡ଼ିଲେ ପୁରୁଷର ପରୀକ୍ଷା ତାହାର ସ୍ୱଭାବ ଓ ଚରିତ୍ର ଦ୍ୱାରା ହିଁ କରାଯାଇଥାଏ ॥ ୩ ॥ କିନ୍ତୁ ଆଜ ମୋର ଏପରି କହିବା ମଧ୍ୟ ଅନୁଚିତ । ଶୋକ ଓ ସ୍ନେହ ହେତୁ ବିବେକ-ବୁଦ୍ଧି କମିଯାଏ । ( ଲୋକେ କହିବେ—ମୁଁ ସ୍ନେହବଶତଃ ଭରତର ବଡ଼ାଇ କରୁଛି । )" କୌଶଲ୍ୟାଙ୍କ ଗଙ୍ଗାସମ ପବିତ୍ର ବାଣୀ ଶୁଣି ସମସ୍ତ ରାଣୀ ସ୍ନେହ ହେତୁ ବ୍ୟାକୁଳ ହୋଇ ଉଠିଲେ ॥ ୪ ॥ ଦୋହା :—କୌଶଲ୍ୟା ପୁଣି ଧୈର୍ଯ୍ୟ ଧରି କହିଲେ, "ହେ ଦେବି ମିଥିଳେଶ୍ୱରି ! ଶୁଣନ୍ତୁ । ଜ୍ଞାନଭଣ୍ଡାର ଜନକ ଆପଣଙ୍କ ପତି । ଆପଣଙ୍କୁ କିଏ ଉପଦେଶ ଦେଇ

ରାନି ରାଯ଼ ସନ ଅବସରୁ ପାଈ । ଅପନୀ ଭାଁତି କହବ ସମୁଝାଈ ॥
ରଖିଅହିଁ ଲଖନୁ ଭରତୁ ଗବନହିଁ ବନ । ଜୌଁ ଯହ ମତ ମାନୈ ମହୀପ ମନ ॥୧॥
ତୌ ଭଲ ଜତନୁ କରବ ସୁବିଚାରୀ । ମୋରେଁ ସୋଚୁ ଭରତ କର ଭାରୀ ॥
ଗୂଢ଼ ସନେହ ଭରତ ମନ ମାହୀଁ । ରହେଁ ନୀକ ମୋହି ଲାଗତ ନାହୀଁ ॥୨॥
ଲଖି ସୁଭାଉ ସୁନି ସରଲ ସୁବାନୀ । ସବ ଭଇ ମଗନ କରୁନ ରସ ରାନୀ ॥
ନଭ ପ୍ରସୂନ ଝରି ଧନ୍ୟ ଧନ୍ୟ ଧୁନି । ସିଥିଲ ସନେହଁ ସିଦ୍ଧ ଜୋଗୀ ମୁନି ॥୩॥
ସବୁ ରନିବାସୁ ବିଥକି ଲଖି ରହେଊ । ତବ ଧରି ଧୀର ସୁମିତ୍ରାଁ କହେଊ ॥
ଦେବି ଦଣ୍ଡ ଜୁଗ ଜାମିନି ବୀତୀ । ରାମ ମାତୁ ସୁନି ଉଠୀ ସପ୍ରୀତୀ ॥୪॥

ବେଗି ପାଉ ଧାରିଅ ଥଲହି କହ ସନେହଁ ସତିଭାଯ଼ ।
ହମରେଁ ତୌ ଅବ ଈସ ଗତି କୈ ମିଥିଲେସ ସହାଯ଼ ॥୨୮୪॥

---

ରାଣି ! ନୃପତିଙ୍କ ଆଗେ ସମୟ ପାଇଣ । କହିବ ଆପେ କହିଲା ପରି ବୁଝାଇଣ ॥
ଲକ୍ଷ୍ମଣ ରହନ୍ତୁ, ଭରତ ସଙ୍ଗେ ଯାଉ ବନ । ଯେବେ ଏହି ମତ ମାନେ ମହୀପଙ୍କ ମନ ॥୧॥
ତେମନ୍ତ ଯତନ ତେବେ କରନ୍ତୁ ବିଚାରି । ମୋତେ ଭରତର ଚିନ୍ତା ଲାଗୁଅଛି ଭାରି ॥
ନିଗୂଢ଼ ସ୍ନେହ ଭରତ ହୃଦୟ ମଧ୍ୟରେ । ଭଲ ମୋତେ ନ ଲାଗଇ ରହିବା ଗୃହରେ ॥୨॥
ନିରେଖି ସ୍ୱଭାବ ଶୁଣି ସରଳ ସୁବାଣୀ । କରୁଣା ରସେ ନିମଗ୍ନ ହେଲେ ସବୁ ରାଣୀ ॥
ଝଡ଼ିଲା ନଭୁ ପ୍ରସୂନ 'ଧନ୍ୟ' 'ଧନ୍ୟ' ଧ୍ୱନି । ସ୍ନେହରେ ଶିଥିଳହେଲେ ଯୋଗୀ ମୁନି ଜ୍ଞାନୀ ॥୩॥
ଶୁଣି ସବୁ ଅନ୍ତଃପୁର ସ୍ତବ୍ଧ ରହିଲେ । ଦୃଢ଼େ ଧୈର୍ଯ୍ୟ ଧରି ତହୁଁ ସୁମିତ୍ରା କହିଲେ ॥
ଦେବି ! ବେନି ଦଣ୍ଡ ହେଲା ଅତୀତ ରଜନୀ । ଶୁଣି ସପ୍ରେମେ ଉଠିଲେ ରାମଙ୍କ ଜନନୀ ॥୪॥

ବାସକୁ ବହନ କରନ୍ତୁ ଗମନ, ଭାଷିଲେ ବଢାଇ ସ୍ନେହ ।
ଏବେ ତ ଆମ୍ଭର ଗତି ଭଗବାନ କିମ୍ବା ସହାୟ ବିଦେହ ॥୨୮୪॥

---

ପାରିବ ? ॥ ୨୮୩ ॥ ଚୌପାଈ :—ହେ ରାଣି ! ସୁଯୋଗ ପାଇ ଆପଣ ରାଜାଙ୍କୁ ଆପଣା ଆଡୁ ଯଥାସମ୍ଭବ ବୁଝାଇ କୁହନ୍ତୁ—ଲକ୍ଷ୍ମଣଙ୍କୁ ଘରକୁ ନେଇ ସେଠାରେ ରଖାଯାଉ ଏବଂ ଭରତ ବନକୁ ଯାଉ । କାଳେ ଏହି ମତ ରାଜାଙ୍କ ମନକୁ ପାଇଯିବ । ଭଲ ଭାବରେ ବିଚାର କରି ଏହିପରି ଚେଷ୍ଟା କରନ୍ତୁ । ମୋ ମନରେ ଭରତ ବିଷୟରେ ଅତ୍ୟଧିକ ଚିନ୍ତା । ଭରତର ମନରେ ନିଗୂଢ଼ ସ୍ନେହ ରହିଅଛି । ତାହାର ଘରେ ରହିବାରେ ଭଲ ହେବ ବୋଲି ମୋତେ ଜଣା ପଡୁନାହିଁ ।" ॥ ୧-୨ ॥ କୌଶଲ୍ୟାଙ୍କ ସ୍ୱଭାବ ଦେଖି ଏବଂ ତାଙ୍କ ଉତ୍ତମ ବାଣୀ ଶୁଣି ସମସ୍ତ ରାଣୀ କରୁଣ ରସରେ ନିମଗ୍ନ ହୋଇପଡ଼ିଲେ । ଆକାଶରୁ ପୁଷ୍ପବୃଷ୍ଟି ର ଝଡ଼ି ହେବାକୁ ଲାଗିଲା ଏବଂ 'ଧନ୍ୟ' 'ଧନ୍ୟ' ଧ୍ୱନି ହେବାକୁ ଲାଗିଲା । ସିଦ୍ଧ ଯୋଗୀ ଓ ମୁନିମାନେ ସ୍ନେହବଶତଃ ଶିଥିଳ ହୋଇ ପଡ଼ିଲେ ॥ ୩ ॥ ସମଗ୍ର ରାଣୀସମାଜ ଏହା ଦେଖି ନିସ୍ତବ୍ଧ ହୋଇପଡ଼ିଲା । ତଦନନ୍ତର ସୁମିତ୍ରା ଧୈର୍ଯ୍ୟ ଧରି କହିଲେ, "ହେ ଦେବି ! ରାତି ଦୁଇଘଡ଼ି ବିତିଗଲାଣି ।" ଏହା ଶୁଣି ଶ୍ରୀରାମଙ୍କ ମାତା

ଲଖି ସନେହ ସୁନି ବଚନ ବିନୀତା । ଜନକପ୍ରିୟା ଗହ ପାୟ ପୁନୀତା ॥
ଦେବି ଉଚିତ ଅସି ବିନୟ ତୁମ୍ହାରୀ । ଦସରଥ ଘରିନି ରାମ ମହତାରୀ ॥୧॥
ପ୍ରଭୁ ଅପନେ ନୀଚହୁ ଆଦରହୀଁ । ଅଗିନି ଧୂମ ଗିରି ସିର ତିନୁ ଧରହୀଁ ॥
ସେବକୁ ରାଉ କରମ ମନ ବାନୀ । ସଦା ସହାୟ ମହେସୁ ଭବାନୀ ॥୨॥
ରଉରେ ଅଂଗ ଜୋଗୁ ଜଗ କୋ ହୈ । ଦୀପ ସହାୟ କି ଦିନକର ସୋହୈ ॥
ରାମୁ ଜାଇ ବନୁ କରି ସୁର କାଜୂ । ଅଚଲ ଅବଧପୁର କରିହହିଁ ରାଜୂ ॥୩॥
ଅମର ନାଗ ନର ରାମ ବାହୁବଲ । ସୁଖ ବସିହହିଁ ଅପନେ ଅପନେ ଥଲ ॥
ୟହ ସବ ଜାଗବଲିକ କହି ରାଖା । ଦେବି ନ ହୋଇ ମୁଧା ମୁନି ଭାଷା ॥୪॥

---

ଅବଲୋକି ସ୍ନେହ ଶୁଣି ବିନୀତ ବଚନ । ଜନକ-ପ୍ରିୟା ଧରିଣ ପଦୁର ପାବନ ॥
ଦେବି ! ଯଥାର୍ଥ ତୁମର ଏମନ୍ତ ବିନୟ । ରାମଙ୍କ ଜନନୀ ଦଶରଥ-ପ୍ରଣୟିନୀ ॥୧॥
ପ୍ରଭୁ ନିଜ ନୀଚ ଜନେ ଆଦର କରନ୍ତି । ଅଗ୍ନି ଧୂମ, ଗିରି ତୃଣ ମସ୍ତକେ ଧରନ୍ତି ॥
ମନ କର୍ମ ବଚନରେ ସେବକ ନରେଶ । ସଦା ସହାୟକ ଏଥି ଭବାନୀ ମହେଶ ॥୨॥
ତୁମ ସହାୟ ଯୋଗ୍ୟ କେ ଅଛି ଜଗତରେ । ଦିବାକର ଶୋଭଇ କି ଦୀପ ସାହାଯ୍ୟରେ ॥
ରାମ ଯିବେ ବନେ କରିବାକୁ ସୁର କାର୍ଯ୍ୟ । ଅଚଳ ଅଯୋଧ୍ୟାପୁରେ କରିବେ ସୁରାଜ୍ୟ ॥୩॥
ଅମର ନାଗ ମନୁଷ୍ୟ ରାମ ବାହୁବଳେ । ସୁଖେ ନିବାସ କରିବେ ନିଜ ନିଜ ସ୍ଥଳେ ॥
ଏହା ସବୁ ଯାଜ୍ଞବଲ୍କ୍ୟ କହି ରଖିଛନ୍ତି । ଦେବି ! ମିଥ୍ୟା ନ ହୋଇବ ଋଷିଙ୍କ ଭାରତୀ ॥୪॥

---

କୌଶଲ୍ୟା ପ୍ରେମପୂର୍ଣ୍ଣ ହୃଦୟରେ ଉଠିଲେ ॥ ୪ ॥ ଦୋହା :—ସେ ପ୍ରେମ ଓ ସଦ୍ଭାବର ସହିତ କହିଲେ, "ବର୍ତ୍ତମାନ ଆପଣମାନେ ଶୀଘ୍ର ଡେରାକୁ ଫେରନ୍ତୁ । ଆମ୍ଭମାନଙ୍କର ତ ବର୍ତ୍ତମାନ ଈଶ୍ୱର ହିଁ ଏକମାତ୍ର ଗତି ଅଥବା ମିଥିଳେଶ୍ୱର ଜନକ ସହାୟକ ।" ॥ ୨୮୪ ॥ ଚୌପାଈ :—କୌଶଲ୍ୟାଙ୍କ ପ୍ରେମ ଦେଖି ଏବଂ ତାଙ୍କର ବିନମ୍ର ବଚନ ଶୁଣି ଜନକଙ୍କ ପ୍ରିୟପତ୍ନୀ ତାଙ୍କର ପବିତ୍ର ଚରଣ ଧରି ପକାଇଲେ ଏବଂ କହିଲେ, "ହେ ଦେବି ! ଆପଣ ରାଜା ଦଶରଥଙ୍କ ପତ୍ନୀ ଏବଂ ଶ୍ରୀରାମଙ୍କ ମାତା । ଆପଣଙ୍କ ପକ୍ଷେ ଏପରି ବିନମ୍ରତା ସମୀଚୀନ ॥ ୧ ॥ ପ୍ରଭୁ ଆପଣା ନୀଚ ଜନ (ସେବକ)ଙ୍କୁ ମଧ୍ୟ ଆଦର କରନ୍ତି । ଅଗ୍ନି ଧୂମକୁ ଓ ପର୍ବତ ତୃଣକୁ ଆପଣା ଶିର ଉପରେ ଧାରଣ କରେ । ଆମ ରାଜା ମନ, କର୍ମ ଓ ବଚନରେ ଆପଣଙ୍କ ସେବକ । ଶ୍ରୀ ମହାଦେବ ଓ ପାର୍ବତୀ ଆପଣଙ୍କର ତ ସଦା ସହାୟକ ॥ ୨ ॥ ଆପଣଙ୍କର ସହାୟକ ହେବା ଯୋଗ୍ୟ ଜଗତରେ ଆଉ କିଏ ଅଛି ? ଭଲା ଦୀପ ସାହାଯ୍ୟରେ ସୂର୍ଯ୍ୟ କେଉଁଠି ଶୋଭା ପାଇପାରନ୍ତି ? ଶ୍ରୀରାମଚନ୍ଦ୍ର ବନକୁ ଯାଇ ଦେବତାମାନଙ୍କ କାର୍ଯ୍ୟ ସମ୍ପାଦନ କରିବେ ଏବଂ ତତ୍ପରେ ଅଯୋଧ୍ୟାପୁରୀକୁ ଫେରି ଅଚଳ ରାଜତ୍ୱ କରିବେ ॥ ୩ ॥ ଶ୍ରୀରାମଙ୍କ ବାହୁବଳର ଆଶ୍ରୟରେ ଦେବତା, ନାଗ ଓ ମନୁଷ୍ୟମାନେ ଆପଣା ଆପଣା ଲୋକରେ ଯାଇ ସୁଖଶାନ୍ତିରେ ବାସ କରିବେ । ଏହା ସବୁ ଯାଜ୍ଞବଲ୍କ୍ୟ ମୁନି ପ୍ରଥମରୁ କହି ରଖିଅଛନ୍ତି । ହେ ଦେବି ! ମୁନିଙ୍କ ବଚନ ମିଥ୍ୟା

ଅସ କହି ପଗ ପରି ପେମ ଅତି ସିୟ ହିତ ବିନୟ ସୁନାଇ ।
ସିୟ ସମେତ ସିୟମାତୁ ତବ ଚଲୀ ସୁଆୟସୁ ପାଇ ॥୨୮୬॥
ପ୍ରିୟ ପରିଜନହି ମିଲୀ ବୈଦେହୀ । ଜୋ ଜେହି ଜୋଗୁ ଭାଁତି ତେହି ତେହୀ ॥
ତାପସ ବେଷ ଜାନକୀ ଦେଖୀ । ଭା ସବୁ ବିକଲ ବିଷାଦ ବିସେଷୀ ॥୧॥
ଜନକ ରାମ ଗୁର ଆୟସୁ ପାଈ । ଚଲେ ଥଲହି ସିୟ ଦେଖୀ ଆଈ ॥
ଲୀହ୍ନି ଲାଇ ଉର ଜନକ ଜାନକୀ । ପାହୁନ ପାବନ ପେମ ପ୍ରାନ କୀ ॥୨॥
ଉର ଉମଗେଉ ଅଂବୁଧି ଅନୁରାଗୁ । ଭୟଉ ଭୂପ ମନୁ ମନହୁଁ ପୟାଗୁ ॥
ସିୟସନେହ ବଟୁ ବାଢ଼ତ ଜୋହା । ତା ପର ରାମ ପେମ ସିସୁ ସୋହା ॥୩॥
ଚିରଜୀବୀ ମୁନି ଜ୍ଞାନୁ ବିକଲ ଜନୁ । ବୂଡ଼ତ ଲହେଉ ବାଲ ଅବଲଂବନୁ ॥
ମୋହ ମଗନ ମତି ନହିଁ ବିଦେହ କୀ । ମହିମା ସିୟ ରଘୁବର ସନେହ କୀ ॥୪॥

---

ଏହା କହି ପ୍ରେମେ ପଡ଼ିଣ ଚରଣେ ସୀତାଙ୍କୁ ନେବା ଜଣାଇ ।
ସୀତାଙ୍କ ସମେତ ତହୁଁ ସୀତା ମାତା ଗମିଲେ ଆଦେଶ ପାଇ ॥୨୮୬॥
ପ୍ରିୟ ପରିଜନ ସଙ୍ଗେ ବୈଦେହୀ ମିଳିଲେ । ଯେ ଯଥାଯୋଗ୍ୟ ତାହାଙ୍କୁ ତେମନ୍ତ ଭେଟିଲେ ॥
ଅବଲୋକି ଜାନକୀଙ୍କ ତପସ୍ଵିନୀ ବେଷ । ହୋଇଲେ ସର୍ବେ ବିଷାଦେ ବିକଳ ବିଶେଷ ॥୧॥
ଜନକ ରାମ ଗୁରୁଙ୍କ ଆଦେଶ ପାଇଣ । ବାହୁଡ଼ି ବାସେ ସୀତାଙ୍କୁ ଦେଖିଲେ ଆସିଣ ॥
ନେଲେ ଜନକ ସୀତାଙ୍କୁ ହୃଦୟେ ଲଗାଇ । ପବିତ୍ର ଅତିଥି ପ୍ରିୟ ଜୀବନର ପାଇ ॥୨॥
ଅନୁରାଗ-ଅମ୍ବୁନିଧି ହୃଦେ ଉଚ୍ଛୁଳିଲା । ମନେ ହୁଏ ଭୂପମନ ପ୍ରୟାଗ ହୋଇଲା ॥
ସୀତାଙ୍କ ସ୍ନେହ-ଅକ୍ଷୟ-ବଟ ବଢ଼ିଯାଏ । ତା ଉପରେ ରାମ-ପ୍ରେମ-ଶିଶୁ ଶୋଭା ପାଏ ॥୩॥
ଜ୍ଞାନ-ଚିରଞ୍ଜୀବୀ ମୁନି ବିକଳ ଯେସନ । ବୁଡ଼ନ୍ତେ ଲାଭ କରିଲେ ବାଳାବଲମ୍ବନ ॥
ମୋହମଗ୍ନ ମତି ନୁହେ ବିଦେହ ନୃପଙ୍କ । ସ୍ନେହର ମହିମା ଏହା ଜାନକୀ ରାମଙ୍କ ॥୪॥

---

ହୋଇ ନ ପାରେ ।" ॥ ୪ ॥ ଦୋହା :—ଏହିପରି କହି ଜାନକୀଙ୍କ ମାତା ଅତିଶୟ ପ୍ରେମରେ କୌଶଲ୍ୟାଙ୍କ ଚରଣ ତଳେ ପଡ଼ି ସୀତାଙ୍କୁ ତାଙ୍କ ସଙ୍ଗରେ ପଠାଇବା ନିମନ୍ତେ ତାଙ୍କୁ ପ୍ରାର୍ଥନା କଲେ । ତାଙ୍କଠାରୁ ସୁଆଦେଶ ପାଇ ସୀତାଙ୍କ ସମେତ ସୀତାମାତା ଡେରାକୁ ଚାଲିଲେ ॥ ୨୮୬ ॥ ଚୌପାଇ :—ଜାନକୀ ଆପଣା ପ୍ରିୟ ପରିଜନଙ୍କୁ ଯଥାଯୋଗ୍ୟ ସମ୍ମାନ ଦେଇ ସେମାନଙ୍କ ସହିତ ମିଳିଲେ । ତାହାଙ୍କୁ ତପସ୍ଵିନୀ ବେଶରେ ଦେଖି ସମସ୍ତେ ଶୋକରେ ଅତ୍ୟନ୍ତ ବିକଳ ହୋଇ ପଡ଼ିଲେ ॥ ୧ ॥ ଜନକ ଶ୍ରୀରାମଙ୍କ ଗୁରୁ ବଶିଷ୍ଠଙ୍କ ଆଜ୍ଞା ପାଇ ଡେରାକୁ ଚାଲିଲେ ଏବଂ ଆସି ସୀତାଙ୍କୁ ଦେଖିଲେ । ଜନକ ଆପଣାର ପବିତ୍ର ପ୍ରେମ ଓ ପ୍ରାଣର ଅତିଥି ଜାନକୀଙ୍କୁ ବକ୍ଷରେ ଆଉଜାଇ ନେଲେ ॥ ୨ ॥ ତାଙ୍କ ହୃଦୟରୁ ବାତ୍ସଲ୍ୟ ପ୍ରେମର ସମୁଦ୍ର ଉଚ୍ଛୁଳି ପଡ଼ିଲା ! ରାଜାଙ୍କ ମନ ସତେ ଅବା ପ୍ରୟାଗ ହୋଇଗଲା ! ସେହି ସମୁଦ୍ର ମଧ୍ୟରେ ସେ ଆଦିଶକ୍ତି ସୀତାଙ୍କ ଅଲୌକିକ ସ୍ନେହ ରୂପକ ଅକ୍ଷୟବଟ ବଢ଼ୁଥିବାର ଦେଖିଲେ । ସୀତାଙ୍କର ସେହି ପ୍ରେମ-ବଟ ଉପରେ

ସିୟ ପିତୁ ମାତୁ ସନେହ ବସ ବିକଲ ନ ସକୀ ସଁଭାରି ।
ଧରନିସୁତାଁ ଧୀରଜୁ ଧରେଉ ସମଉ ସୁଧରମୁ ବିଚାରି ॥୨୮୬॥
ତାପସ ବେଷ ଜନକ ସିୟ ଦେଖୀ । ଭୟଉ ପେମୁ ପରିତୋଷୁ ବିସେଷୀ ॥
ପୁତ୍ରି ପବିତ୍ର କିଏ କୁଲ ଦୋଉ । ସୁଜସ ଧବଲ ଜଗୁ କହ ସବୁ କୋଉ ॥୧॥
ଜିତି ସୁରସରି କୀରତି ସରି ତୋରୀ । ଗବନୁ କୀନ୍ହ ବିଧି ଅଣ୍ଡ କରୋରୀ ॥
ଗଙ୍ଗ ଅବନି ଥଲ ତୀନି ବଡେରେ । ଏହିଁ କିଏ ସାଧୁ ସମାଜ ଘନେରେ ॥୨॥
ପିତୁ କହ ସତ୍ୟ ସନେହଁ ସୁବାନୀ । ସୀୟ ସକୁଚ ମହୁଁ ମନହୁଁ ସମାନୀ ॥
ପୁନି ପିତୁ ମାତୁ ଲୀନ୍ହି ଉର ଲାଈ । ସିଖ ଆସିଷ ହିତ ଦୀନ୍ହି ସୁହାଈ ॥୩॥

---

ବିକଳ ସମ୍ଭାଳି ନ ପାରିଲେ ପିତା-ମାତା-ସ୍ନେହବଶ ସୀତା ।
ସମୟ ସ୍ୱଧର୍ମ ବିଚାରିଣ ଧୈର୍ଯ୍ୟ ଧରିଲେ ଧରା-ଦୁହିତା ॥୨୮୬॥
ଦେଖି ଜନକ ସୀତାଙ୍କ ତପସ୍ୱିନୀ ବେଷ । ପ୍ରେମ ପରିତୋଷ ହୃଦେ ହୋଇଲା ଅଶେଷ ॥
ପୁତ୍ରି ! ପରମ ପବିତ୍ର କଲୁ ବେନି କୁଳ । ଜଗତେ ଗାଆନ୍ତି ସର୍ବେ ସୁଯଶ ଉଜ୍ଜ୍ୱଳ ॥୧॥
ଜିଣି ସୁର-ସରିତକୁ ତୋ କୀର୍ତ୍ତି-ସରିତ । ଭେଟିଣ କୋଟି ବ୍ରହ୍ମାଣ୍ଡେ ହେଲା ପ୍ରବାହିତ ॥
ଗଙ୍ଗା କଲେ ଭବେ ତ୍ରିସ୍ଥଳ ସ୍ଥାନ ଶ୍ରେଷ୍ଠ । ତୋ କୀରତି-ନଦୀ ତୀର୍ଥ କଲା ସାଧୁ ଶ୍ରେଷ୍ଠ ॥୨॥
ସତ୍ୟ ସ୍ନେହ ମୃଦୁବାଣୀ ଜନକ ଭାଷନ୍ତି । ସୀତା ତାହା ଶୁଣି ଅବା ସଙ୍କୋଚେ ବୁଡ଼ନ୍ତି ॥
ସ୍ନେହେ ପିତା ମାତା ହୃଦେ ଲଗାଇ ଆଦର । ଦେଲେ ହିତକର ଶିକ୍ଷା ଆଶିଷ ସୁନ୍ଦର ॥୩॥

---

ଶ୍ରୀରାମଙ୍କ ପ୍ରେମ-ଶିଶୁ ( ବାଳକ ରୂପଧାରୀ ଭଗବାନ୍ ) ଶୋଭା ପାଉଥା'ନ୍ତି ॥୩॥ ଜନକଙ୍କ ଜ୍ଞାନ ରୂପକ ଚିରଞ୍ଜୀବୀ ମାର୍କଣ୍ଡେୟ ମୁନି ବ୍ୟାକୁଳ ହୋଇ ବୁଡ଼ୁ ବୁଡ଼ୁ ସତେ ଅବା ରାମ-ପ୍ରେମ ରୂପକ ଶିଶୁ ବାଳକର ଆଶ୍ରୟ ପାଇ ରକ୍ଷା ପାଇଗଲେ ! ବାସ୍ତବରେ ଜ୍ଞାନଶିରୋମଣି ବିଦେହରାଜଙ୍କ ବୁଦ୍ଧି ମୋହମଗ୍ନ ହୋଇ ନ ଥାଏ । ଏହା ତ ଶ୍ରୀ ସୀତାରାମଙ୍କ ପ୍ରେମର ମହିମା, ଯାହା କି ଜନକଙ୍କ ପରି ମହାଜ୍ଞାନୀଙ୍କ ଜ୍ଞାନକୁ ମଧ୍ୟ ବିକଳ କରି ପକାଇଲା ॥୪॥ ଦୋହା :—ପିତାମାତାଙ୍କର ପ୍ରେମ ହେତୁ ସୀତା ଏତେ ବିକଳ ହୋଇ ପଡ଼ିଲେ ଯେ, ସେ ନିଜକୁ ସମ୍ଭାଳି ପାରିଲେ ନାହିଁ । କିନ୍ତୁ ପରମ-ଧୈର୍ଯ୍ୟବତୀ ପୃଥିବୀ-କନ୍ୟା ସୀତା ସମୟ ଓ ସ୍ୱଧର୍ମ କଥା ବିଚାର କରି ଧୈର୍ଯ୍ୟ ଧାରଣ କଲେ ॥୨୮୬॥ ଚୌପାଇ :—ସୀତାଙ୍କୁ ତପସ୍ୱିନୀ ବେଶରେ ଦେଖି ଜନକଙ୍କ ମନରେ ବିଶେଷ ପ୍ରେମ ଓ ସନ୍ତୋଷ ଜାତ ହେଲା । ସେ କହିଲେ, "ମା ! ତୁ ଦୁଇକୁଳ ପବିତ୍ର କରିଦେଲୁ । ତୋର ନିର୍ମଳ ଯଶ ଯୋଗେ ସାରା ସଂସାର ସମୁଜ୍ଜ୍ୱଳ ହେଉଅଛି ବୋଲି ସମସ୍ତେ କହୁଅଛନ୍ତି ॥୧॥ ତୋହର କୀର୍ତ୍ତି-ନଦୀ ସୁରସରିତା ଗଙ୍ଗାଙ୍କୁ ସୁଦ୍ଧା ଜିଣି କୋଟି ବ୍ରହ୍ମାଣ୍ଡରେ ବହି ଚାଲିଛି । ଗଙ୍ଗା ଗୋଟିଏ ମାତ୍ର ବ୍ରହ୍ମାଣ୍ଡରେ ପ୍ରବାହିତ । ଗଙ୍ଗା ହରିଦ୍ୱାର, ପ୍ରୟାଗ ଓ ଗଙ୍ଗାସାଗର, ଏହି ତିନୋଟି ସ୍ଥାନକୁ ପ୍ରଧାନ ତୀର୍ଥ କରିଅଛି । ମାତ୍ର ତୋର ଏହି କୀର୍ତ୍ତି-ନଦୀ ଅଶେଷ ସନ୍ଥ-ସମାଜକୁ ଶ୍ରେଷ୍ଠ ତୀର୍ଥ-କ୍ଷେତ୍ରରେ

କହତି ନ ସୀୟ ସକୁଚି ମନ ମାହୀଁ । ଇହାଁ ବସବ ରଜନୀଁ ଭଲ ନାହୀଁ ॥
ଲଖି ରୁଖ ରାନି ଜନାୟଉ ରାଊ । ହୃଦୟଁ ସରାହତ ସୀଲୁ ସୁଭାଊ ॥୩॥
ବାର ବାର ମିଲି ଭେଁଟି ସିୟ ବିଦା କୀହ୍ନି ସନମାନି ।
କହୀ ସମୟ ସିର ଭରତ ଗତି ରାନି ସୁବାନି ସୟାନି ॥୨୮୭॥
ସୁନି ଭୂପାଲ ଭରତ ବ୍ୟବହାରୂ । ସୋନ ସୁଗଂଧ ସୁଧା ସସି ସାରୂ ॥
ମୂଦେ ସଜଲ ନୟନ ପୁଲକେ ତନ । ସୁଜସୁ ସରାହନ ଲଗେ ମୁଦିତ ମନ ॥୧॥
ସାବଧାନ ସୁନୁ ସୁମୁଖି ସୁଲୋଚନି । ଭରତ କଥା ଭବ ବଂଧ ବିମୋଚନି ॥
ଧରମ ରାଜନୟ ବ୍ରହ୍ମବିଚାରୂ । ଇହାଁ ଜଥାମତି ମୋର ପ୍ରଚାରୂ ॥୨॥

---

ନ କହନ୍ତି ସୀତା ଲଜ୍ୟା ଲଭିଣ ମନରେ । ରହିବା ଭଲ ନୁହଇ ନିଶି ଏ ସ୍ଥାନରେ ॥
ମନ ଜାଣି ନୃପତିଙ୍କୁ ରାଣୀ ଜଣାଇଲେ । ଶୀଳ ସ୍ୱଭାବ ହୃଦୟେ ପ୍ରଶଂସା କରିଲେ ॥୩॥
ବାରମ୍ବାର ମିଳି ଭେଟି ଜାନକୀଙ୍କୁ ସାଦରେ କଲେ ମେଲାଣି ।
ତହୁଁ ବେଳ ଦେଖି ଭରତଙ୍କ ଦଶା କହିଲେ ରାଣୀ ସୁବାଣୀ ॥୨୮୭॥
ଶୁଣି ମହୀପାଳ ଭରତଙ୍କ ବ୍ୟବହାର । ସଦୃଶ ସ୍ୱର୍ଣ୍ଣ ସୁଗନ୍ଧ ଶଶୀ ସୁଧା ସାର ॥
ପୁଲକ ତନୁ ସଜଳ ନୟନ ବୁଜିଲେ । ପ୍ରସନ୍ନ ମନେ ସୁଯଶ ପ୍ରଶଂସି ଲାଗିଲେ ॥୧॥
ସାବଧାନେ ଶୁଣ ସୁବଦନି ସୁଲୋଚନି । ଭରତଙ୍କ କଥା ଭବ-ବନ୍ଧନ-ମୋଚନୀ ॥
ଧର୍ମ, ରାଜ-ନୀତି, ବ୍ରହ୍ମବିବେକ ପ୍ରଚାର । ଏଥି ଯଥାମତି କରିପାରେ ମୁଁ ବିଚାର ॥୨॥

---

ପରିଣତ କରିଅଛୁ ।" ॥ ୨ ॥ ପିତା ଜନକ ପିନା ସ୍ନେହରେ ସତ୍ୟ ସୁମନୋହର ବାଣୀ କହିଗଲେ । କିନ୍ତୁ ସୀତା ଆପଣାର ବଡ଼ିମା ଶୁଣି ସତେ ଯେପରି ସଂକୋଚରେ ମଛି ଗଲେ । ପିତାମାତା ତାହାଙ୍କୁ ପୁଣି ବକ୍ଷରେ ଆଉଜାଇ ନେଲେ ଏବଂ କଲ୍ୟାଣ-ପରିପୂର୍ଣ୍ଣ ସୁନ୍ଦର ଶିକ୍ଷା ଓ ଆଶିଷ ଦେଲେ ॥ ୩ ॥ ସୀତା କିଛି କହୁ ନ ଥା'ନ୍ତି, କିନ୍ତୁ ରାତିରେ ଶାଶୁମାନଙ୍କ ସେବା ଛାଡ଼ି ଏଠାରେ ରହିବା ଭଲ ହେବନାହିଁ ବୋଲି ମନେ ମନେ ସଂକୋଚ କରୁଥା'ନ୍ତି । ରାଣୀ ସୁନୟନା ଜାନକୀଙ୍କ ଅଭିପ୍ରାୟ ବୁଝି ରାଜା ଜନକଙ୍କୁ ଜଣାଇ ଦେଲେ । ଦୁହେଁଯାକ ଆପଣା ଅପଣା ହୃଦୟରେ ସୀତାଙ୍କର ଶୀଳ ଓ ସ୍ୱଭାବର ପ୍ରଶଂସା କରିବାକୁ ଲାଗିଲେ ॥ ୪ ॥ ଦୋହା :—ରାଜାରାଣୀ ବାରମ୍ବାର ସୀତାଙ୍କ ସହ ମିଳନ-ପୂର୍ବକ ତାହାଙ୍କୁ ଆଲିଙ୍ଗନ କଲେ ଏବଂ ପରିଶେଷରେ ଯଥୋଚିତ ସମ୍ମାନ ସହିତ ତାହାଙ୍କୁ ବିଦା କଲେ । ଚତୁରା ରାଣୀ ସମୟ ପାଇ ରାଜାଙ୍କ ଆଗରେ ସୁମନୋହର ବାଣୀରେ ଭରତଙ୍କ ଦଶା ବର୍ଣ୍ଣନ କଲେ ॥ ୨୮୭ ॥ ଚୌପାଈ :— ସୁନାରେ ସୁଗନ୍ଧ ଓ ଚନ୍ଦ୍ରମାରେ ସାର ସୁଧା ସମ ଭରତଙ୍କ ବ୍ୟବହାର ଶୁଣି ରାଜା ପ୍ରେମବିହ୍ୱଳ ହୋଇ ପ୍ରେମାଶ୍ରୁଜଳ-ପରିପୂର୍ଣ୍ଣ ନେତ୍ର ବନ୍ଦ କରିଦେଲେ । (ସତେ ଅବା ଭରତଙ୍କ ପ୍ରେମରେ ସେ ଧ୍ୟାନମଗ୍ନ ହୋଇପଡ଼ିଲେ ।) ତାଙ୍କ ଶରୀର ପୁଲକିତ ହୋଇ ଉଠିଲା ଏବଂ ସେ ମନେ ମନେ ଆନନ୍ଦିତ ହୋଇ ଭରତଙ୍କ ସୁମନୋହର ଯଶର ପ୍ରଶଂସା

ସୋ ମତି ମୋରି ଭରତ ମହିମାହୀ । କହୈ କାହ ଛଲି ଛୁଅତି ନ ଛାଁହୀ ॥
ବିଧି ଗନପତି ଅହିପତି ସିବ ସାରଦ । କବି କୋବିଦ ବୁଧ ବୁଦ୍ଧି ବିସାରଦ ॥୩॥
ଭରତ ଚରିତ କୀରତି କରତୂତୀ । ଧରମ ସୀଲ ଗୁନ ବିମଲ ବିଭୂତୀ ॥
ସମୁଝତ ସୁନତ ସୁଖଦ ସବ କାହୂ । ସୁଚି ସୁରସରି ରୁଚି ନିଦର ସୁଧାହୂ ॥୪॥

ନିରବଧି ଗୁନ ନିରୁପମ ପୁରୁଷୁ ଭରତୁ ଭରତ ସମ ଜାନି ।
କହିଅ ସୁମେରୁ କି ସେର ସମ କବିକୁଲ ମତି ସକୁଚାନି ॥୨୮୮॥

ଅଗମ ସବହି ବରନତ ବରବରନୀ । ଜିମି ଜଲହୀନ ମୀନ ଗମୁ ଧରନୀ ॥
ଭରତ ଅମିତ ମହିମା ସୁନୁ ରାନୀ । ଜାନହିଁ ରାମୁ ନ ସକହିଁ ବଖାନୀ ॥୧॥

---

ସେ ମତି ମୋର ଭରତ ମହିମାକୁ କଲି । କି କହିବ, ଛାୟା ଛୁଇଁ ନ ପାରଇ ଛଳି ॥
ବିଧି ଗଣପତି ଶିବ ସରସ୍ୱତୀ ଶେଷ । ବୁଧ ବିଶାରଦ କବି କୋବିଦ ବିଶେଷ ॥୩॥
ଭରତଙ୍କ କୃତ କର୍ମ, ସୁଯଶ ଚରିତ । ଧର୍ମ, ଶୀଳ, ଶୁଭ୍ର ଗୁଣ, ବିଭୂତି ପବିତ ॥
ବୁଝନ୍ତେ ଶୁଣନ୍ତେ ସୁଖ ଲଭନ୍ତି ସମସ୍ତେ । ନିନ୍ଦେ ତା ଶୁଚିରେ ଗଙ୍ଗା, ରୁଚିରେ ଅମୃତେ ॥୪॥

ନିରବଧି ଗୁଣ, ପୁରୁଷାନୁପମ, ଭରତ ଭରତ ସମ ।
କବି କୁଳମତି କହି ସଙ୍କୋଚନ୍ତି ସୁମେରୁ କି ସେର ସମ ॥୨୮୮॥

ସମସ୍ତଙ୍କୁ ବରବର୍ଣ୍ଣେ, ଅଗମ୍ୟ ବର୍ଣ୍ଣନ୍ତେ । ଜଳହୀନ ଭୂମି ମାର୍ଗ ମୀନଙ୍କୁ ଯେମନ୍ତେ ॥
ଭରତ ମହିମା ରାଣି ! ଅପ୍ରମିତ ଅଟେ । ଜାଣନ୍ତି ରାମ, ମାତ୍ର ସେ ବର୍ଣ୍ଣି ନ ପାରନ୍ତି ॥୧॥

---

କରିବାକୁ ଲାଗିଲେ ॥ ୧ ॥ ସେ କହିଲେ, "ହେ ସୁମୁଖି ! ହେ ସୁନୟନେ ! ସାବଧାନ ହୋଇ ଶୁଣ । ଭରତଙ୍କ କଥା ଭବବନ୍ଧନ-ବିମୋଚନକାରିଣୀ । ଧର୍ମ, ରାଜନୀତି ଓ ବ୍ରହ୍ମବିଚାର—ଏହି ତିନିଗୋଟି ବିଷୟରେ ନିଜ ବୁଦ୍ଧି ଅନୁସାରେ ମୋର ଅଳ୍ପ-ବହୁତ ପ୍ରବେଶ ଅଛି ॥ ୨ ॥ ମୋର ସେ ପ୍ରକାର ବୁଦ୍ଧି ଭରତଙ୍କ ମହିମା ବା କିପରି ବର୍ଣ୍ଣନା କରି ପାରିବ ? ତାହା ଛଳ କରି ସୁଦ୍ଧା ତାଙ୍କ ଛାୟାକୁ ଛୁଇଁ ପାରିବ ନାହିଁ । ବ୍ରହ୍ମା, ଗଣେଶ, ଶେଷ, ମହାଦେବ ସରସ୍ୱତୀ, କବି, ଜ୍ଞାନୀ, ପଣ୍ଡିତ ଓ ବୁଦ୍ଧିମାନ୍—ସମସ୍ତେ ଭରତଙ୍କ ଚରିତ, କୀର୍ତ୍ତି, କୃତିତ୍ୱ, ଧର୍ମ, ଶୀଳ, ଗୁଣ ଓ ନିର୍ମଳ ଐଶ୍ୱର୍ଯ୍ୟ ବିଷୟ ଶୁଣି ଏବଂ ବୁଝି ସୁଖ ଲାଭ କରନ୍ତି । ତାଙ୍କର ଗୁଣରାଶି ପବିତ୍ରତାରେ ଗଙ୍ଗା ଓ ମଧୁରତାରେ ଅମୃତକୁ ମଧ୍ୟ ନିନ୍ଦା କରେ ॥ ୩-୪ ॥ ଦୋହା :—ଭରତ ଅସୀମ ଗୁଣ-ସମ୍ପନ୍ନ ଓ ଅନୁପମ ପୁରୁଷ । ଭରତଙ୍କ ସମାନ କେବଳ ଭରତ ହିଁ ଅଟନ୍ତି, ବେଶ, ଏତିକି ଜାଣ । ସୁମେରୁ ପର୍ବତ କ'ଣ ସେର ସହିତ ସମାନ ବୋଲି ଆମେ କହିପାରିବା ? ଅତଏବ ତାହାଙ୍କୁ କୌଣସି ପୁରୁଷ ସହିତ ଉପମା ଦେବାରେ କବିସମାଜର ବୁଦ୍ଧି ମଧ୍ୟ ସଙ୍କୁଚିତ ହୋଇଗଲା ॥ ୨୮୮ ॥ ଚୌପାଇ :—ହେ ବରବର୍ଣ୍ଣିନି ! ଜଳହୀନ ଭୂମି ଉପରେ ଚାଲିବା ମାଛ ପକ୍ଷରେ ଯେପରି କଷ୍ଟକର, ଭରତଙ୍କ ମହିମା ବର୍ଣ୍ଣନ ସମସ୍ତଙ୍କ ପକ୍ଷରେ ସେହିପରି ଅଗମ୍ୟ । ହେ ରାଣି ! ଶୁଣ, ଭରତଙ୍କ ଅପରିମିତ ମହିମା ବିଷୟ ଜଣେ ମାତ୍ର,

ବରନି ସପ୍ରେମ ଭରତ ଅନୁଭାଉ । ତିୟ ଜିୟ କୀ ରୁଚି ଲଖି କହ ରାଉ ॥
ବହୁରହିଁ ଲଖନୁ ଭରତୁ ବନ ଜାହିଁ । ସବ କର ଭଲ ସବ କେ ମନ ମାହିଁ ॥୨॥
ଦେବି ପରଂତୁ ଭରତ ରଘୁବର କୀ । ପ୍ରୀତି ପ୍ରତୀତି ଜାଇ ନହିଁ ତରକୀ ॥
ଭରତୁ ଅବଧି ସନେହ ମମତା କୀ । ଜଦ୍ୟପି ରାମୁ ସୀମ ସମତା କୀ ॥୩॥
ପରମାରଥ ସ୍ୱାରଥ ସୁଖ ସାରେ । ଭରତ ନ ସପନେହୁଁ ମନହୁଁ ନିହାରେ ॥
ସାଧନ ସିଦ୍ଧି ରାମ ପଗ ନେହୂ । ମୋହି ଲଖି ପରତ ଭରତ ମତ ଏହୂ ॥୪॥

ଭୋରେହୁଁ ଭରତ ନ ପେଲିହହିଁ ମନସହୁଁ ରାମ ରଜାଇ ।
କରିଅ ନ ସୋଚୁ ସନେହ ବସ କହେଉ ଭୂପ ବିଲଖାଇ ॥୨୮୯॥

ରାମ ଭରତ ଗୁନ ଗନତ ସପ୍ରୀତୀ । ନିସି ଦଂପତିହି ପଲକ ସମ ବୀତୀ ॥
ରାଜ ସମାଜ ପ୍ରାତ ଜୁଗ ଜାଗେ । ନ୍ହାଇ ନ୍ହାଇ ସୁର ପୂଜନ ଲାଗେ ॥୧॥

---

ଭରତ ପ୍ରଭାବ ବର୍ଣ୍ଣି ସପ୍ରେମ ଶ୍ୱଶୁର । କହନ୍ତି ସ୍ତ୍ରୀ ମନ ରୁଚି ଜାଣି ଦଣ୍ଡଧାରୀ ॥
ଫେରିଲେ ଲକ୍ଷ୍ମଣ ଗଲେ ଭରତ ବନକୁ । ମମତ୍ରେ ଭାବନ୍ତି ଭଲ ହେବ ସମସ୍ତଙ୍କୁ ॥୨॥
ଦେବି ! ପରନ୍ତୁ ଭରତ ରଘୁନାଥଙ୍କର । କଳି ନ ହୁଅଇ ପ୍ରୀତି ପ୍ରତୀତି ମନର ॥
ଭରତ ଅବଧି ସ୍ନେହ-ଶୀଳ ମମତାର । ଯଦ୍ୟପି ରଘୁନାଥକ ସୀମା ସମତାର ॥୩॥
ପରମାର୍ଥ ସୁଖ କାମ୍ୟ ସ୍ୱାର୍ଥ ସୁଖଚୟ । ସ୍ୱପ୍ନେହେଁ ଭରତ ମନେ ନ କରନ୍ତି ଲୟ ॥
ସାଧନ ସିଦ୍ଧି ରାମଙ୍କ ପଦ ଅନୁରକ୍ତି । ମୋତେ ଜଣାପଡେ ଏହା ଭରତଙ୍କ ମତ ॥୪॥

ସ୍ୱପ୍ନେ ଭ୍ରମେ କେବେ ମନୁ ନ ଟାଳିବେ ଭୁଲି ରାମ ଅନୁମତି ।
ନ କର ବିଶେଷ ଚିନ୍ତା ସ୍ନେହବଶ, ବିକଳେ ନୃପ ବୋଲନ୍ତି ॥୨୮୯॥

ରାମ ଭରତଙ୍କ ଗୁଣ ପ୍ରେମେ ଗୁଣି କରି । କ୍ଷଣ ସମ ଦମ୍ପତିଙ୍କୁ କଟିଲା ଶର୍ବରୀ ॥
ରାଜ-ସମାଜ ଉଭୟ ପ୍ରଭାତେ ଉଠିଲେ । ସ୍ନାନ କରି କରି ଦେବ-ଅର୍ଚ୍ଚନେ ଲାଗିଲେ ॥୧॥

---

କେବଳ ଶ୍ରୀରାମଚନ୍ଦ୍ର ଜାଣନ୍ତି, କିନ୍ତୁ ସେ ସୁଦ୍ଧା ତାହା ବର୍ଣ୍ଣନା କରିପାରନ୍ତି ନାହିଁ ॥ ୧ ॥ ଏହି ରୂପେ ପ୍ରେମରେ ଭରତଙ୍କ ପ୍ରଭାବର ବର୍ଣ୍ଣନା କରି ରାଜା ଜନକ ପତ୍ନୀଙ୍କ ମନ-ରୁଚି ଅନୁସାରେ କହିଲେ, "ଲକ୍ଷ୍ମଣ ଫେରିଯାଆନ୍ତୁ ଏବଂ ଭରତ ବନକୁ ଯାଆନ୍ତୁ । ଏଥିରେ ସମସ୍ତଙ୍କ କଲ୍ୟାଣ ନିହିତ ଏବଂ ଏହା ହିଁ ସମସ୍ତଙ୍କ ମନରେ ଅଛି ॥ ୨ ॥ କିନ୍ତୁ ହେ ଦେବି ! ଭରତ ଓ ଶ୍ରୀରାମଙ୍କ ପରସ୍ପରର ପ୍ରେମ ଏବଂ ବିଶ୍ୱାସ ବୁଦ୍ଧି ଓ ବିଚାରର ପରିସର ମଧ୍ୟରେ ଆସି ପାରିବ ନାହିଁ । ଯଦ୍ୟପି ଶ୍ରୀରାମ ସମତାର ସୀମା, ଭରତ ପ୍ରେମ ଓ ମମତାର ସୀମା ॥ ୩ ॥ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ଅନନ୍ୟପ୍ରେମକୁ ଛାଡି ଭରତ ସମସ୍ତ ପରମାର୍ଥ, ସ୍ୱାର୍ଥ ଓ ସୁଖ ଆଡକୁ ସ୍ୱପ୍ନରେ ସୁଦ୍ଧା ମନ ଦେଇ ନାହାନ୍ତି । ଶ୍ରୀରାମଙ୍କ ଚରଣ ପ୍ରେମ ହିଁ ତାଙ୍କର ସାଧନା ଓ ତାହାହିଁ ତାଙ୍କର ସିଦ୍ଧି । ଭରତଙ୍କ ବିଷୟରେ ବେଶି, ଏହି ଗୋଟିଏ ମାତ୍ର ସିଦ୍ଧାନ୍ତ ମୋତେ ଜଣାପଡେ ।" ॥୪॥ ଦୋହା '—ରାଜା ପ୍ରେମରେ ଗଦ୍‌ଗଦ ହୋଇ କହିଲେ, "ଭରତ ଭୁଲରେ ସୁଦ୍ଧା ଶ୍ରୀରାମଙ୍କ ଆଦେଶକୁ ମନରୁ ଟାଳିବେ

ଗେ ନହାଇ ଗୁର ପହିଁ ରଘୁରାଈ । ବଂଦି ଚରନ ବୋଲେ ରୁଖ ପାଈ ॥
ନାଥ ଭରତୁ ପୁରଜନ ମହତାରୀ । ସୋକ ବିକଲ ବନବାସ ଦୁଖାରୀ ॥୨॥
ସହିତ ସମାଜ ରାଉ ମିଥିଲେସୂ । ବହୁତ ଦିବସ ଭଏ ସହତ କଲେସୂ ॥
ଉଚିତ ହୋଇ ସୋଇ କୀଜିଅ ନାଥା । ହିତ ସବହୀ କର ରୌରେଂ ହାଥା ॥୩॥
ଅସ କହି ଅତି ସକୁଚେ ରଘୁରାଊ । ମୁନି ପୁଲକେ ଲଖି ସୀଲୁ ସୁଭାଊ ॥
ତୁମ୍ହ ବିନୁ ରାମ ସକଲ ସୁଖ ସାଜା । ନରକ ସରିସ ଦୁହୁ ରାଜ ସମାଜା ॥୪॥

ପ୍ରାନ ପ୍ରାନ କେ ଜୀବ କେ ଜିବ ସୁଖ କେ ସୁଖ ରାମ ।
ତୁମ୍ହ ତଜି ତାତ ସୋହାତ ଗୃହ ଜିନ୍ହହି ତିନ୍ହହି ବିଧି ବାମ ॥୨୯୦॥

---

ସ୍ନାନ କରି ରଘୁମଣି ଗୁରୁ ପାଶେ ଯାଇ । ଚରଣ ବନ୍ଦି କହିଲେ ଅନୁକମ୍ପା ପାଇ ॥
ନାଥ ! ପୁରଜନ ସବେଁ ଜନନୀ ଭରତ । ବନବାସଦୁଃଖୀ, ଶୋକ-ବିକଳ ଅତ୍ୟନ୍ତ ॥୨॥
ସମାଜ ସହିତ ମହାରାଜ ମିଥିଳେଶ । ବହୁତ ଦିନ ହେଲାଣି ସହୁଛନ୍ତି କ୍ଲେଶ ॥
କରନ୍ତୁ ତାହା ଗୋସାଇଁ, ଉଚିତ ଯେମନ୍ତେ । ସମସ୍ତଙ୍କ ହିତ ନ୍ୟସ୍ତ ଆପଣଙ୍କ ହସ୍ତେ ॥୩॥
ଏହା କହି ରଘୁନାଥ ଅତି ସଙ୍କୋଚିଲେ । ବିଲୋକି ଶୀଳ ସ୍ୱଭାବ ମୁନି ପୁଲକିଲେ ॥
ତୁମ ବିନା, ରାମ, ସୁଖ ଭୋଗ ସାଜ ମାନ । ବେନି ନୃପତି ସମାଜେ ନରକ ସମାନ ॥୪॥

ପ୍ରାଣର ପରାଣ ଜୀବର ଜୀବନ ସୁଖର ସୁଖ ଶ୍ରୀରାମ ।
ତୁମ ବିନା ଗୃହ ଯେ ଭଲ ମଣଇ, ବିଧି ଅଟେ ତାର ବାମ ॥୨୯୦॥

---

ନାହିଁ । ସୁତରାଂ ସ୍ନେହର ବଶବର୍ତ୍ତୀ ହୋଇ ଚିନ୍ତା କରିବା ଉଚିତ ନୁହେଁ ।" ॥ ୨୮୯ ॥
ଚୌପାଈ —ଶ୍ରୀରାମ ଓ ଭରତଙ୍କ ଗୁଣଗ୍ରାମ ବିଷୟରେ ସପ୍ରେମ କଥୋପକଥନ କରୁ କରୁ ପତିପତ୍ନୀଙ୍କ ଆଗରେ ରାତି ପଲକ ମାତ୍ର ପରି ବିତିଗଲା । ପ୍ରାତଃକାଳରେ ଉଭୟ ରାଜସମାଜ ଜାଗ୍ରତ ହେଲେ ଏବଂ ସ୍ନାନ-ପ୍ରକାର ଆଦି ସାରି ଦେବତାମାନଙ୍କୁ ପୂଜା କରିବାକୁ ଲାଗିଲେ ॥ ୧ ॥ ଶ୍ରୀ ରଘୁନାଥ ସ୍ନାନ କରି ଗୁରୁ ବଶିଷ୍ଠଙ୍କ ନିକଟକୁ ଗଲେ ଏବଂ ତାଙ୍କ ଚରଣ ବନ୍ଦନା କଲେ । ତାଙ୍କ କୃପାଦୃଷ୍ଟି ପାଇ ସେ କହିଲେ, "ହେ ନାଥ ! ଭରତ, ଅଯୋଧ୍ୟାପୁରବାସୀ ଓ ମାତାମାନେ ସମସ୍ତେ ଶୋକରେ ବ୍ୟାକୁଳ ଏବଂ ବନବାସ ହେତୁ ଦୁଃଖୀ ॥ ୨ ॥ ମିଥିଳାପତି ରାଜା ଜନକଙ୍କର ମଧ୍ୟ ସମାଜ ସହିତ କଷ୍ଟ ସହିବାର ବହୁତ ଦିନ ହୋଇଗଲାଣି । ସୁତରାଂ ହେ ନାଥ ! ଯାହା ଉଚିତ, ତାହା ହିଁ କରନ୍ତୁ । ଆପଣଙ୍କ ହାତରେ ହିଁ ସମସ୍ତଙ୍କର କଲ୍ୟାଣ ।" ॥ ୩ ॥ ଏହା କହି ଶ୍ରୀ ରଘୁନାଥ ଅତ୍ୟନ୍ତ ସଙ୍କୁଚିତ ହୋଇପଡ଼ିଲେ । ତାଙ୍କର ଶୀଳସ୍ୱଭାବ ଦେଖି ମୁନି ବଶିଷ୍ଠ ପ୍ରେମ ଓ ଆନନ୍ଦରେ ପୁଲକିତ ହୋଇ ପଡ଼ିଲେ । ସେ କହିଲେ, "ହେ ରାମ ! ତୁମ ବିନା ଘରଦ୍ୱାର ଆଦି ସମସ୍ତ ସୁଖସାମଗ୍ରୀ ଉଭୟ ରାଜସମାଜ ପକ୍ଷରେ ନର୍କ ସମାନ ॥ ୪ ॥ ଦୋହା :—"ହେ ରାମ ! ତୁମେ ପ୍ରାଣର ପ୍ରାଣ, ଆତ୍ମାର ଆତ୍ମା ଓ ସୁଖର ସୁଖ । ହେ ବତ୍ସ ! ତୁମ୍ଭ ବିନା ଯାହାଙ୍କୁ ଘର ରୁଚିକର ବୋଧ ହୁଏ, ସେମାନଙ୍କୁ

ସୋ ସୁଖୁ କରମୁ ଧରମୁ ଜରି ଜାଊ । ଜହଁ ନ ରାମ ପଦ ପଙ୍କଜ ଭାଊ ॥
ଜୋଗୁ କୁଜୋଗୁ ଗ୍ୟାନୁ ଅଗ୍ୟାନୂ । ଜହଁ ନହିଁ ରାମ ପେମ ପରଧାନୂ ॥୧॥
ତୁମ୍ହ ବିନୁ ଦୁଖୀ ସୁଖୀ ତୁମ୍ହ ତେହୀଂ । ତୁମ୍ହ ଜାନହୁ ଜିଅ ଜୋ ଜେହି କେହୀଂ ॥
ରାଉର ଆୟସୁ ସିର ସବହୀ କେଂ । ବିଦିତ କୃପାଲହି ଗତି ସବ ନୀକେଂ ॥୨॥
ଆପୁ ଆଶ୍ରମହି ଧାରିଅ ପାଊ । ଭୟଉ ସନେହ ସିଥିଲ ମୁନିରାଊ ॥
କରି ପ୍ରନାମୁ ତବ ରାମୁ ସିଧାଏ । ରିଷି ଧରି ଧୀର ଜନକ ପହିଁ ଆଏ ॥୩॥
ରାମବଚନ ଗୁରୁ ନୃପହି ସୁନାଏ । ସୀଲ ସନେହ ସୁଭାୟଁ ସୁହାଏ ॥
ମହାରାଜ ଅବ କୀଜିଅ ସୋଈ । ସବ କର ଧରମ ସହିତ ହିତ ହୋଈ ॥୪॥
ଗ୍ୟାନ ନିଧାନ ସୁଜାନ ସୁଚି ଧରମ ଧୀର ନରପାଲ ।
ତୁମ୍ହ ବିନୁ ଅସମଂଜସ ସମନ କୋ ସମରଥ ଏହି କାଲ ॥୨୯୧॥

---

ଜଳି ଯାଉ ସେହି ସୁଖ କରମ ଧରମ । ଯହିଁ ନାହିଁ ରାମ ପଦେ ପ୍ରୀତି ମନୋରମ ॥
ସେ ଯୋଗ କୁଯୋଗ ଭଳି, ସେ ଜ୍ଞାନ ଅଜ୍ଞାନ । ଯା ମଧ୍ୟରେ ରାମପ୍ରେମ ନୁହଇ ପ୍ରଧାନ ॥୧॥
ତୁମ ବିନା ଦୁଃଖୀ ଲୋକେ, ସୁଖୀ ତୁମ ସହ । ତୁମେ ସବୁ ଜାଣ ଯଥା ଯାହାର ହୃଦୟ ॥
ସମସ୍ତଙ୍କ ଶିରୋଧାର୍ଯ୍ୟ ତୁମ ଅନୁମତି । ବିଦିତ କୃପାନିଧିଙ୍କୁ ସମସ୍ତଙ୍କ ଗତି ॥୨॥
ଆପଣ ଶୁଭ ଆଶ୍ରମେ ଚାଲନ୍ତୁ ସତ୍ୱର । ଋଷି ସ୍ନେହରେ ଶିଥିଳ ହେଲେ ମୁନିବର ॥
ତହୁଁ ଚାଲିଲେ ଶ୍ରୀରାମ ପ୍ରଣିପାତ କରି । ଜନକ ପାଶେ ଆସିଲେ ଋଷି ଧୈର୍ଯ୍ୟ ଧରି ॥୩॥
ରାମ ବଚନ ନୃପଙ୍କୁ କହିଲେ ବଶିଷ୍ଠ । ଶୀଳ ସ୍ନେହ ମନୋହର ଆଚରଣ ଶିଷ୍ଟ ॥
ମହାରାଜ, ଏବେ ତାହା କରନ୍ତୁ ନିଶ୍ଚିତ । ଯହିଁରେ ହେବ ସ୍ୱଧର୍ମ ସମସ୍ତଙ୍କ ହିତ ॥୪॥
ଜ୍ଞାନ-ନିକେତନ ଶୁଚି ଧର୍ମବାନ ଚତୁର ଧୀର ଭୂପତି ।
ତୁମ ବିନା କିଏ ଏ କାଳେ ସମର୍ଥ ତୁଟାଇବ ଅସଙ୍ଗତି ॥୨୯୧॥

---

ବିଧାତା ପ୍ରତିକୂଳ ବୋଲି ଜାଣ ॥ ୨୯୦ ॥ ଚୌପାଈ :—ଯେଉଁଠି ଶ୍ରୀରାମଙ୍କ ଚରଣ-କମଳରେ ପ୍ରେମ ନାହିଁ, ସେ ସୁଖ, କର୍ମ ଓ ଧର୍ମ ଜଳିଯାଉ । ଯେଉଁ ଯୋଗ ଓ ଜ୍ଞାନରେ ଶ୍ରୀରାମ ପ୍ରେମର ପ୍ରାଧାନ୍ୟ ନାହିଁ, ସେହି ଯୋଗ କୁଯୋଗ ଏବଂ ସେହି ଜ୍ଞାନ ଅଜ୍ଞାନ ॥ ୧ ॥ ତୁମ ବିନା ସମସ୍ତେ ଦୁଃଖୀ ଏବଂ ଯେଉଁମାନେ ସୁଖୀ, ସେହିମାନେ କେବଳ ତୁମର ସଙ୍ଗ ଯୋଗେ ସୁଖୀ । ଯାହାର ହୃଦୟରେ ଯାହା ଅଛି, ତୁମେ ସବୁ ଜାଣ । ତୁମ ଆଜ୍ଞା ସମସ୍ତଙ୍କର ଶିରୋଧାର୍ଯ୍ୟ । ତୁମେ କୃପାଳୁ ଏବଂ ତୁମଙ୍କୁ ସମସ୍ତଙ୍କ ସ୍ଥିତି ଭଲ ରୂପେ ଜଣା ॥ ୨ ॥ ଅତଏବ ତୁମେ ଆଶ୍ରମରେ ପଦାର୍ପଣ କର ।" ଏତିକ କହି ମୁନିରାଜ ସ୍ନେହରେ ଶିଥିଳ ହୋଇପଡିଲେ । ତତ୍ପରେ ଶ୍ରୀରାମ ପ୍ରଣାମ କରି ଚାଲିଗଲେ ଏବଂ ଋଷି ବଶିଷ୍ଠ ଧୈର୍ଯ୍ୟ ଧରି ଜନକଙ୍କ ନିକଟକୁ ଆସିଲେ ॥ ୩ ॥ ଗୁରୁଜୀ ଶ୍ରୀରାମଙ୍କ ସ୍ନେହ-ଶୀଳ-ଯୁକ୍ତ ସ୍ୱଭାବ-ସୁନ୍ଦର ବଚନ ରାଜା ଜନକଙ୍କୁ ଶୁଣାଇଲେ ଏବଂ କହିଲେ, "ହେ ମହାରାଜ ! ଯେଉଁଥିରେ ସମସ୍ତଙ୍କର ଧର୍ମାନୁକୂଳ କଲ୍ୟାଣ ହେବ, ଆପଣ

ସୁନି ମୁନି ବଚନ ଜନକ ଅନୁରାଗେ । ଲଖି ଗତି ଜ୍ଞାନୁ ବିରାଗୁ ବିରାଗେ ॥
ସିଥିଲ ସନେହଁ ଗୁନତ ମନ ମାହୀଁ । ଆଏ ଇହାଁ କୀହ୍ନ ଭଲ ନାହୀଁ ॥୧॥
ରାମହି ରାୟଁ କହେଉ ବନ ଜାନା । କୀହ୍ନ ଆପୁ ପ୍ରିୟ ପ୍ରେମ ପ୍ରବାନା ॥
ହମ ଅବ ବନ ତେଁ ବନହି ପଠାଈ । ପ୍ରମୁଦିତ ଫିରବ ବିବେକ ବଡ଼ାଈ ॥୨॥
ତାପସ ମୁନି ମହିସୁର ସୁନି ଦେଖୀ । ଭଏ ପ୍ରେମବସ ବିକଲ ବିସେଷୀ ॥
ସମଉ ସମୁଝି ଧରି ଧୀରଜୁ ରାଜା । ଚଲେ ଭରତ ପହିଁ ସହିତ ସମାଜା ॥୩॥
ଭରତ ଆଇ ଆଗେଁ ଭଇ ଲୀନ୍ହେ । ଅବସର ସରିସ ସୁଆସନ ଦୀନ୍ହେ ॥
ତାତ ଭରତ କହ ତେରହୁତି ରାଊ । ତୁମ୍ହହି ବିଦିତ ରଘୁବୀର ସୁଭାଊ ॥୪॥

---

ଶୁଣି ମୁନି ବାଣୀ ନୃପ ହୃଦେ ଅନୁରକ୍ତ । ଗତି ଦେଖି ହୁଏ ଜ୍ଞାନ ବୈରାଗ୍ୟ ବିରକ୍ତ ॥
ସ୍ନେହେ ଶିଥିଳ ଜନକ ଗୁଣନ୍ତି ମନରେ । ଭଲ କଲୁ ନାହିଁ ମୁହିଁ ଆସି ଏ ସ୍ଥାନରେ ॥୧॥
ରାମଙ୍କୁ ରାଜା ବିପିନେ ଯିବାକୁ କହିଲେ । ପ୍ରିୟ ପ୍ରେମ-ପଣ ସ୍ୱୟଂ ପ୍ରମାଣ କରିଲେ ॥
ଆମେ ଏବେ ବନସ୍ତରୁ ବନସ୍ତେ ପଠାଇ । ପ୍ରମୋଦିତେ ବାହୁଡ଼ିବୁ ବିବେକ ବଢ଼ାଇ ॥ ॥
ତାପସ ମୁନି ବ୍ରାହ୍ମଣ ବିଲୋକଣ ଗତି । ହେଲେ ବିଶେଷ ବିକଳ ପ୍ରେମବଶ ଅତି ॥
ସମୟ ବିଚାରି ଧୈର୍ଯ୍ୟ ଧରି ନରରାଜ । ଗମିଲେ ଭରତ ପାଶେ ସହିତ ସମାଜ ॥୩॥
ଭରତ ଆସି ସାଦରେ ଆଗେ କରିନେଲେ । ସମୟାନୁକୂଳ ଆଣି ସୁଆସନ ଦେଲେ ॥
ବତ୍ସ ଭରତ ' କହନ୍ତି ତିହୁତର ରାଣ । ରଘୁନାଥଙ୍କ ସ୍ୱଭାବ ତୁମେ ଭଲ ଜାଣ ॥୪॥

---

ତାହା ହିଁ କରନ୍ତୁ ॥ ୪ ॥ ଦୋହା :—ହେ ରାଜନ୍ ! ତୁମେ ଜ୍ଞାନଭଣ୍ଡାର, ସୁଜ୍ଞାନୀ ପବିତ୍ର ଓ ଧର୍ମରେ ଧୀର । ଏତେବେଳେ ତୁମ ବିନା ଏହି ଦ୍ୱିଧାକୁ ଦୂର କରିବାକୁ ଆଉ କିଏ ସମର୍ଥ ହେବ ?" ॥ ୨୯୧ ॥ ଚୌପାଈ :—ମୁନି ବଶିଷ୍ଠଙ୍କ ବଚନ ଶୁଣି ଜନକ ପ୍ରେମମଗ୍ନ ହୋଇପଡ଼ିଲେ । ତାଙ୍କ ଦଶା ଦେଖି ଜ୍ଞାନ ଓ ବୈରାଗ୍ୟର ମଧ୍ୟ ବୈରାଗ୍ୟ ହୋଇଗଲା । (ଅର୍ଥାତ୍ ତାଙ୍କ ଜ୍ଞାନ-ବୈରାଗ୍ୟ ଦୂର ହୋଇଗଲା । ସେ ପ୍ରେମରେ ଶିଥିଳ ହୋଇଗଲେ । ) ସେ ମନେ ମନେ ବିଚାର କରିବାକୁ ଲାଗିଲେ, "ଆମେ ଏଠାକୁ ଆସିବା ଦ୍ୱାରା କିଛି ଭଲ କଲୁନାହିଁ ॥ ୧ ॥ ରାଜା ଦଶରଥ ଶ୍ରୀରାମଙ୍କୁ ବନଗମନ ନିମନ୍ତେ କହିଲେ ଏବଂ ନିଜେ ପ୍ରିୟ (ପୁତ୍ର) ପ୍ରତି ତାଙ୍କର ପ୍ରେମକୁ ପ୍ରମାଣିତ କରିଦେଲେ । ପ୍ରିୟର ବିରହରେ ପ୍ରାଣତ୍ୟାଗ କରି ସେ ନିଜ ପ୍ରକୃତ ପ୍ରେମର ସତ୍ୟତା ପ୍ରତିପାଦନ କରିଦେଲେ । କିନ୍ତୁ ଆମ୍ଭେମାନେ ଏହାଙ୍କୁ ଗହନରୁ ଗହନତର ବନକୁ ପଠାଇ ଆପଣା ଆପଣାର ବିବେକ-ବଡ଼ାଇ କରି ଆନନ୍ଦିତ ମନରେ ଫେରିବୁ ।' ॥ ୨ ॥ ତପସ୍ୱୀ, ମୁନି ଓ ବ୍ରାହ୍ମଣମାନେ ଏହା ସବୁ ଶୁଣି ଓ ଦେଖି ଅତିଶୟ ବିକଳ ହେଲେ । ସମୟକୁ ବିଚାର କରି ରାଜା ଜନକ ଧୈର୍ଯ୍ୟଧାରଣ-ପୂର୍ବକ ସସମାଜ ଭରତଙ୍କ ନିକଟକୁ ଚାଲିଲେ ॥ ୩ ॥ ଭରତ ଆଗକୁ ଆସି ତାଙ୍କୁ ସ୍ୱାଗତ କଲେ ଏବଂ ସମୟାନୁକୂଳ ଉତ୍ତମ ଆସନ ଦେଲେ । ତିରହୁତରାଜ ଜନକ କହିବାକୁ ଲାଗିଲେ, "ହେ ବତ୍ସ ଭରତ !

ରାମ ସତ୍ୟବ୍ରତ ଧରମରତ ସବ କର ସୀଲୁ ସନେହୁ ।
ସଂକଟ ସହତ ସକୋଚ ବସ କହିଅ ଜୋ ଆୟସୁ ଦେହୁ ॥୨୯୨॥
ସୁନି ତନ ପୁଲକି ନୟନ ଭରି ବାରୀ । ବୋଲେ ଭରତୁ ଧୀର ଧରି ଭାରୀ ॥
ପ୍ରଭୁ ପ୍ରିୟ ପୂଜ୍ୟ ପିତା ସମ ଆପୂ । କୁଲଗୁରୁ ସମ ହିତ ମାୟ ନ ବାପୂ ॥୧॥
କୌସିକାଦି ମୁନି ସଚିବ ସମାଜୂ । ଜ୍ଞାନ ଅମ୍ବୁନିଧି ଆପୁନୁ ଆଜୂ ॥
ସିସୁ ସେବକୁ ଆୟସୁ ଅନୁଗାମୀ । ଜାନି ମୋହି ସିଖ ଦେଇଅ ସ୍ୱାମୀ ॥୨॥
ଏହି ସମାଜ ଥଲ ବୁଝବ ରାଉର । ମୌନ ମଲିନ ମୈଁ ବୋଲବ ବାଉର ॥
ଛୋଟେ ବଦନ କହଉଁ ବଡି ବାତା । ଛମବ ତାତ ଲଖି ବାମ ବିଧାତା ॥୩॥
ଆଗମ ନିଗମ ପ୍ରସିଦ୍ଧ ପୁରାନା । ସେବାଧରମୁ କଠିନ ଜଗୁ ଜାନା ॥
ସ୍ୱାମି ଧରମ ସ୍ୱାରଥହି ବିରୋଧୂ । ବୈରୁ ଅଂଧ ପ୍ରେମହି ନ ପ୍ରବୋଧୂ ॥୪॥

---

ରାମ ସତ୍ୟବ୍ରତ ଶ୍ରୁତ ଧର୍ମରତ ଶୀଳ ସ୍ନେହେ ଲୋକଙ୍କର ।
ସଙ୍କୋଚେ ସଙ୍କଟ ସହୁଛନ୍ତି, ଏବେ କହିବ ଯେ ଆଜ୍ଞା କର ॥୨୯୨॥
ଶୁଣି ତନୁ ପୁଲକିତ ନେତ୍ରୁ ବହେ ବାରି । କହିଲେ ଭରତ ହୃଦେ ଧୈର୍ଯ୍ୟ ଧରି ଭାରି ॥
ପ୍ରଭୁ ପ୍ରିୟ ପୂଜ୍ୟ, ପିତା ସଦୃଶ ଆପଣ । ନୁହନ୍ତି ମାତା ପିଅର କୁଳ-ଗୁରୁ ସମ ॥୧॥
କୌଶିକ ପ୍ରଭୃତି ମୁନି ସଚିବ ସମାଜ । ଜ୍ଞାନ-ସାଗର ଆପଣ ବିଦ୍ୟମାନ ଆଜ ॥
ଶିଶୁ ସେବକ ମୁଁ ଅଟେ ଆଜ୍ଞା ଅନୁଗାମୀ । ଏହା ବିଚାରଣ ମୋତେ ଶିକ୍ଷା ଦିଅ, ସ୍ୱାମି ॥୨॥
ବୁଝନ୍ତି ଏପରି ବିଜ୍ଞ ଆପଣ ଏ ସ୍ଥଳେ । ମଉନେ ମଳିନ, ଭାଷେ ରଣା ମୁଁ ପାଗଳେ ॥
ଛୋଟ ବଦନରେ ବଡି କଥା କହେ ଭାରି । କ୍ଷମିବ ଗୋସାଇଁ, ବିଧି ବିପକ୍ଷ ବିଚାରି ॥୩॥
ଆଗମ ନିଗମ ଶାସ୍ତ୍ର ପୁରାଣ ବିଖ୍ୟାତ । ସେବା ଧରମ କଠିନ ଜଗତରେ ଜ୍ଞାତ ॥
ସ୍ୱାମୀ ଧର୍ମ ତଥା ସ୍ୱାର୍ଥ ମଧ୍ୟରେ ବିରୋଧ । ବଇର ଅନ୍ଧ, ପ୍ରେମର ନାହିଁ ଜ୍ଞାନବୋଧ ॥୪॥

---

ତୁମଙ୍କୁ ଶ୍ରୀରାମଙ୍କ ସ୍ୱଭାବ ଭଲ ରୂପେ ତ ଜଣା ॥ ୪ ॥ ଦୋହା :—ଶ୍ରୀରାମଚନ୍ଦ୍ର ସତ୍ୟବ୍ରତ ଓ ଧର୍ମପରାୟଣ, ସମସ୍ତଙ୍କ ଶୀଳ ଓ ସ୍ନେହର ରକ୍ଷକ । ଏଣୁ ସେ ସଂକୋଚବଶତଃ ସଂକଟ ସହନ କରୁଅଛନ୍ତି, ଏବେ ତୁମେ ଯେଉଁ ଆଜ୍ଞା ଦେବ, ତାହା ତାଙ୍କୁ କୁହାଯିବ ।" ॥ ୨୯୨ ॥ ଚୌପାଈ :—ଏହି କଥା ଶୁଣି ଭରତଙ୍କ ଶରୀର ପୁଲକିତ ହୋଇଗଲା ଏବଂ ନୟନ ଅଶ୍ରୁପୂର୍ଣ୍ଣ ହୋଇଗଲା । ଅତି ଧୈର୍ଯ୍ୟର ସହିତ ସେ କହିଲେ, "ହେ ପ୍ରଭୋ ! ଆପଣ ଆମ ପିତାଙ୍କ ତୁଲ୍ୟ ପ୍ରିୟ ଓ ପୂଜ୍ୟ ଏବଂ କୁଳଗୁରୁ ଶ୍ରୀ ବଶିଷ୍ଠଙ୍କ ସମାନ ହିତୈଷୀ, ତ ମାତାପିତା ହୁଦା ନୁହନ୍ତି ॥ ୧ ॥ ବିଶ୍ୱାମିତ୍ର ଆଦି ମୁନି ଓ ମନ୍ତ୍ରୀମାନଙ୍କର ସମାଜ ତ ଏଠି ବର୍ତ୍ତମାନ ଏବଂ ଆଜ ଦିନ ଜ୍ଞାନ-ସାଗର ଆପଣ ମଧ୍ୟ ଉପସ୍ଥିତ । ହେ ସ୍ୱାମି ! ମୋତେ ଆପଣାର ଶିଶୁ ବାଳକ, ସେବକ ଓ ଆଜ୍ଞାନୁବର୍ତ୍ତୀ ବୋଲି ମନେ କରି ଉପଦେଶ ଦିଅନ୍ତୁ ॥ ୨ ॥ ଏହି ସମାଜ ଓ ପୁଣ୍ୟ-ସ୍ଥଳୀରେ ଆପଣଙ୍କ ପରି ଜ୍ଞାନୀ ଓ ପୂଜ୍ୟଙ୍କର ମୋତେ ପ୍ରଶ୍ନ ! ଏଥିରେ ମୁଁ ନୀରବ

ରଷି ରାମ ରୁଚ ଧରମୁ ବ୍ରତୁ ପରାଧୀନ ମୋହି ଜାନି ।
ସବ କେଁ ସମତ ସବ ହିତ କରିଅ ପେମୁ ପହିଚାନି ॥୨୯୩॥
ଭରତ ବଚନ ସୁନି ଦେଖି ସୁଭାଉ । ସହିତ ସମାଜ ସରାହତ ରାଉ ॥
ସୁଗମ ଅଗମ ମୃଦୁ ମଂଜୁ କଠୋରେ । ଅରଥୁ ଅମିତ ଅତି ଆଖର ଥୋରେ ॥୧॥
ଜ୍ୟୌ ମୁଖୁ ମୁକୁର ମୁକୁରୁ ନିଜ ପାନୀ । ଗହି ନ ଜାଇ ଅସ ଅଦଭୁତ ବାନୀ ॥
ଭୂପ ଭରତୁ ମୁନି ସହିତ ସମାଜୂ । ଗେ ଜହଁ ବିବୁଧ କୁମୁଦ ଦ୍ୱିଜରାଜୂ ॥୨॥
ସୁନି ସୁଧି ସୋଚ ବିକଲ ସବ ଲୋଗା । ମନହୁଁ ମୀନଗନ ନବ ଜଲ ଜୋଗା ॥
ଦେବଁ ପ୍ରଥମ କୁଲଗୁର ଗତି ଦେଖୀ । ନିରଖି ବିଦେହ ସନେହ ବିସେଷୀ ॥୩॥

---

ଋଷି ରାମଙ୍କର ଧର୍ମବ୍ରତ ଇଚ୍ଛା ମୋତେ ଜାଣି ପରାଧୀନ ।
ଯେ ସର୍ବ-ସମ୍ମତ ସମସ୍ତଙ୍କ ହିତ କରନ୍ତୁ ପ୍ରେମ ଚହ୍ନିଣ ॥୨୯୩॥
ଭରତ ବଚନ ଶୁଣି ବିଲୋକି ଚରିତ । ପ୍ରଶଂସା କରନ୍ତି ନୃପ ସମାଜ ସହିତ ॥
ସୁଗମ୍ୟ ଅଗମ୍ୟ ମୃଦୁ କଠୋର ସୁନ୍ଦର । ଅର୍ଥ ଅପ୍ରମିତ ଅତି ଅଳପ ଅକ୍ଷର ॥୧॥
ମୁକୁରେ ମୁଖ, ମୁକୁର ହାତରେ ଦେଖନ୍ତି । ଧରା ନ ଯାଏ ଏମନ୍ତ ଅଦ୍ଭୁତ ବଚନ ॥
ଗଲେ ଭୂପତି ଭରତ ମୁନି ସସମାଜ । ଯହିଁ ଥିଲେ ଦେବ-କଇରବ-ଦ୍ୱିଜରାଜ ॥୨॥
ଶୁଣି ସମାଚାର ଲୋକେ ଚିନ୍ତାରେ ବିକଳ । ଯେମନ୍ତେ ମୀନ-ନିକର ଲଭି ନବ ଜଳ ॥
ଦେବେ ପ୍ରଥମରୁ କୁଳଗୁରୁ ଗତି ଦେଖି । ପୁଣି ବିଦେହଙ୍କ ସ୍ନେହ ବିଶେଷ ନିରେଖି ॥୩॥

---

ରହିଲେ, ମଳିନ ବୋଲି ବିବେଚିତ ହେବି ଏବଂ (ପକ୍ଷାନ୍ତରରେ) ମୋର ଉତ୍ତର ଦେବା ପାଗଳାମି ହେବ । ତଥାପି ହେ ତାତ ! ଛୋଟ ମୁହଁରେ ବଡ କଥା ଭଲ ମୁଁ ବାଛି ବାଛି କହୁଛି । ହେ ତାତ ! ବିଧାତା ପ୍ରତିକୂଳ ବୋଲି ମନେ କରି ଦୟାପୂର୍ବକ କ୍ଷମା କରନ୍ତୁ ॥ ୩ ॥ ବେଦ, ଶାସ୍ତ୍ର ଓ ପୁରାଣମାନଙ୍କରେ ଏ କଥା ପ୍ରସିଦ୍ଧ ଏବଂ ଜଗତ ଏହା ଜାଣେ ଯେ, ସେବାଧର୍ମ ବଡ଼ କଠିନ । ସ୍ୱାମୀଧର୍ମ ଓ ସ୍ୱାର୍ଥ ପରସ୍ପର ପ୍ରତି ବିରୋଧୀ । ଶତ୍ରୁତା ଅନ୍ଧ ଏବଂ ପ୍ରେମର ଜ୍ଞାନ ନ ଥାଏ । ମୁଁ ସ୍ୱାର୍ଥର ବଶବର୍ତ୍ତୀ କିମ୍ବା ପ୍ରେମର ବଶବର୍ତ୍ତୀ ହୋଇ କିଛି କହିବି; ଉଭୟରେ ଭ୍ରାନ୍ତି ରହିବାର ଆଶଙ୍କା ରହିଛି ॥ ୪ ॥ ଦୋହା :—ଅତଏବ ମୋତେ ପରାଧୀନ ଜାଣନ୍ତୁ ଏବଂ ମୋତେ ନ ପଚାରି ଶ୍ରୀରାମଚନ୍ଦ୍ରଙ୍କ ରୁଚି, ଧର୍ମ ଓ ସତ୍ୟବ୍ରତର ସୁରକ୍ଷାପୂର୍ବକ ଯାହା ସର୍ବସମ୍ମତ ଏବଂ ସାର୍ବଜନୀନ, ସମସ୍ତଙ୍କ ପ୍ରେମ ଚହ୍ନି ତାହା ହିଁ ଆପଣ କରନ୍ତୁ ।” ॥ ୨୯୩ ॥ ଚୌପାଈ :—ଭରତଙ୍କ ବଚନ ଶୁଣି ଏବଂ ତାହାଙ୍କର ସ୍ୱଭାବ ଦେଖି ସସମାଜ ରାଜା ଜନକ ତାଙ୍କର ପ୍ରଶଂସା କରିବାକୁ ଲାଗିଲେ । ଭରତଙ୍କ ବଚନ ସୁଗମ ଓ ଅଗମ, ସୁନ୍ଦର, କୋମଳ ଓ କଠୋର । ତହିଁରେ ଅକ୍ଷର ଅଳ୍ପ ଥିଲେ ମଧ୍ୟ ଅପାର ଅର୍ଥ ସନ୍ନିବିଷ୍ଟ ॥ ୧ ॥ ମୁଖର ପ୍ରତିବିମ୍ବ ଦର୍ପଣରେ ଦିଶେ ଏବଂ ଦର୍ପଣ ହାତରେ ଥାଇ ମଧ୍ୟ ପ୍ରତିବିମ୍ବ ଧରା ପଡେନାହିଁ । ସେହିପରି ଭରତଙ୍କର ଏହି ଅଦ୍ଭୁତ ବାଣୀର ଅଭିପ୍ରାୟ ବୁଝାପଡ଼ୁ ନ ଥାଏ । ତାହାଙ୍କୁ

ରାମ ଭଗତିମୟ ଭରତୁ ନିହାରେ । ସୁର ସ୍ୱାରଥୀ ହହରି ହିୟଁ ହାରେ ॥
ସବ କୋଉ ରାମ ପେମମୟ ପେଖା । ଭଏ ଅଲେଖ ସୋଚ ବସ ଲେଖା ॥୪॥

ରାମୁ ସନେହ ସକୋଚ ବସ କହ ସସୋଚ ସୁରରାଜୁ ।
ରଚହୁ ପ୍ରପଞ୍ଚହି ପଞ୍ଚ ମିଲି ନାହିଁ ତ ଭୟଉ ଅକାଜୁ ॥୨୧୭॥

ସୁରହ୍ନ ସୁମିରି ସାରଦା ସରାହୀ । ଦେବି ଦେବ ସରନାଗତ ପାହୀ ॥
ଫେରି ଭରତ ମତି କରି ନିଜ ମାୟା । ପାଲୁ ବିବୁଧକୁଲ କରି ଛଲ ଛାୟା ॥୧॥
ବିବୁଧ ବିନୟ ସୁନି ଦେବି ସୟାନୀ । ବୋଲୀ ସୁର ସ୍ୱାରଥ ଜଡ ଜାନୀ ॥
ମୋ ସନ କହହୁ ଭରତ ମତି ଫେରୂ । ଲୋଚନ ସହସ ନ ସୂଝ ସୁମେରୂ ॥୨॥

---

ଭରତଙ୍କୁ ବିଲୋକଣ ରାମ-ଭକ୍ତିମୟ । ହା ହା କାର କଲା ସୁର ସ୍ୱାର୍ଥୀଙ୍କ ହୃଦୟ ॥
ସର୍ବେ ରାମ-ପ୍ରେମମୟ ଦେଖିଣ ନିର୍ବିଶେଷ । ରହିଲେ ଅକଳନୀୟ ଅତି ଚିନ୍ତାବଶେ ॥୪॥

'ସ୍ନେହ-ସଙ୍କୋଚର ବଶ ରଘୁବର', ଚିନ୍ତି କହେ ସୁରରାଜ ।
ବିରଚ ପ୍ରପଞ୍ଚ ମିଳି କରି ପଞ୍ଚ, ନାହିଁ ତ ହେଲା ଅକାର୍ଯ୍ୟ ॥୨୧୭॥

ପ୍ରଶଂସା କରିଲେ ସୁରେ ଶାରଦାଙ୍କୁ ସ୍ମରି । ଦେବି ! ଶରଣାଗତଙ୍କୁ ରଖ କୃପା କରି ॥
ଭୁଲାଅ ଭରତ ମତି କରି ନିଜ ମାୟା । ପାଳ ବୃନ୍ଦାରକ-କୁଳେ ରଚି ଛଳ ଛାୟା ॥୧॥
ଶୁଣି ସୁଚତୁରୀ ଦେବୀ ଦେବଙ୍କ ବିନତି । ସ୍ୱାର୍ଥରେ ଅନ୍ଧ ସୁରଙ୍କୁ ବିଚାରି ବୋଲନ୍ତି ॥
ଭରତଙ୍କ ମତି ମୋତେ କହୁଛ ବିଭ୍ରମେ । ଦେଖା ନ ଯାଏ ସୁମେରୁ ସହସ୍ର ନୟନେ ॥୨॥

---

କୌଣସି ଉତ୍ତର ଆସୁ ନ ଥାଏ । ତଦନନ୍ତର ରାଜା ଜନକ, ଭରତ ଓ ମୁନି ବଶିଷ୍ଠ ସସମାଜ ଦେବକୁଳ-କୁମୁଦବନ-ଚନ୍ଦ୍ରମା ଶ୍ରୀରାମଚନ୍ଦ୍ରଙ୍କ ନିକଟକୁ ଗଲେ ॥ ୨ ॥ ଏହି ସମାଚାର ଶୁଣି ସମସ୍ତ ଲୋକ ଚିନ୍ତାରେ ବ୍ୟାକୁଳ ହୋଇପଡିଲେ । ପ୍ରଥମ ବର୍ଷାର ଜଳ-ସଂଯୋଗରେ ମୀନମାନେ ଏହିପରି ବ୍ୟାକୁଳ ହୁଅନ୍ତି । ଦେବତାମାନେ ପ୍ରଥମେ କୁଳଗୁରୁ ବଶିଷ୍ଠଙ୍କ ପ୍ରେମବିହ୍ୱଳ ଦଶା ଦେଖିଲେ ଏବଂ ପୁଣି ବିଦେହରାଜ ଜନକଙ୍କର ବିଶେଷ ସ୍ନେହ ଦେଖିଲେ ॥ ୩ ॥ ଆହୁରି ସେତିକିବେଳେ ଶ୍ରୀରାମ-ଭକ୍ତିରେ ଓତପ୍ରୋତ ଭରତଙ୍କୁ ଦେଖିଲେ । ଏହିସବୁ ଦେଖି ସ୍ୱାର୍ଥପର ଦେବତାମାନେ ହୃଦୟରେ ପରାଜୟ ସ୍ୱୀକାର କରି ନିରାଶ ହେଲେ । ସେମାନେ ସମସ୍ତଙ୍କୁ ରାମପ୍ରେମରେ ଆର୍ଦ୍ର ହୋଇଥିବାର ଦେଖିଲେ । ଫଳରେ ସେମାନେ ଅକଳନୀୟ ଚିନ୍ତାର ଅଧୀନ ହୋଇପଡିଲେ ॥ ୪ ॥ ଦୋହା :—ଦେବରାଜ ଇନ୍ଦ୍ର ଚିନ୍ତାରେ ଅଭିଭୂତ ହୋଇ କହିଲେ, "ଶ୍ରୀରାମଚନ୍ଦ୍ର ତ ସ୍ନେହ ଓ ସଂକୋଚର ବଶବର୍ତ୍ତୀ ହୋଇପଡିଛନ୍ତି । ଅତଏବ ସମସ୍ତେ ମିଶି କିଛି ଗୋଟାଏ ମାୟା ରଚନା କର, ନୋହିଲେ କାମ ବିଗିଡିଲା ବୋଲି ଜାଣ ॥ ୨୧୭ ॥ ଚୌପାଈ :—ଦେବତାମାନେ ସରସ୍ୱତୀଙ୍କୁ ସ୍ମରଣ କରି ତାଙ୍କର ସ୍ତୁତି ଗାନ କଲେ ଏବଂ କହିଲେ, "ହେ ଦେବି ! ଦେବତାମାନେ ଆପଣଙ୍କ ଶରଣାଗତ । ସେମାନଙ୍କୁ ରକ୍ଷା କରନ୍ତୁ । ଆପଣାର ମାୟା ରଚି ଭରତଙ୍କ ବୁଦ୍ଧି

ବିଧି ହରି ହର ମାୟା ବଡ଼ି ଭାରୀ । ସୋଉ ନ ଭରତ ମତି ସକଇ ନିହାରୀ ॥
ସୋ ମତି ମୋହି କହତ କରୁ ଭୋରୀ । ଚନ୍ଦିନି କର କି ଚଣ୍ଡକର ଚୋରୀ ॥୩॥
ଭରତ ହୃଦୟଁ ସିୟ ରାମ ନିବାସୂ । ତହଁ କି ତିମିର ଜହଁ ତରନି ପ୍ରକାସୂ ॥
ଅସ କହି ସାରଦ ଗଇ ବିଧି ଲୋକା । ବିବୁଧ ବିକଲ ନିସି ମାନହୁଁ କୋକା ॥୪॥

ସୁର ସ୍ୱାରଥୀ ମଲୀନ ମନ କୀନ୍ହ କୁମଂତ୍ର କୁଠାଟୁ ।
ରଚି ପ୍ରପଂଚ ମାୟା ପ୍ରବଲ ଭୟ ଭ୍ରମ ଅରତି ଉଚାଟୁ ॥୨୯୫॥

କରି କୁଚାଲି ସୋଚତ ସୁରରାଜୂ । ଭରତ ହାଥ ସବୁ କାଜୁ ଅକାଜୂ ॥
ଗଏ ଜନକୁ ରଘୁନାଥ ସମୀପା । ସନମାନେ ସବ ରବିକୁଲ ଦୀପା ॥୧॥

---

ବିଧି ହରି ହର ମାୟା ପ୍ରଚଣ୍ଡ ଅଟଇ । ସେ ମଧ ଭରତ ମତି ଦେଖି ନ ପାରଇ ॥
ସେ ମତିକୁ କହ ମୋତେ ଭୋଳ କରିବାକୁ । ଜ୍ୟୋତ୍ସ୍ନା କି ଚୋରି କରଇ ଭାନୁଙ୍କ ପ୍ରଭାକୁ ॥୩॥
ଭରତ ହୃଦୟେ ସୀତା ରାମଙ୍କ ନିବାସ । ତହିଁ କି ତମିର, ଯହିଁ ତପନ ପ୍ରକାଶ ॥
ଏହା କହି ସରସ୍ୱତୀ ଗଲେ ବିଧି ପୁର । ନିଶି ଚକ୍ରବାକ ପରି ଦୁଃଖୀ ହେଲେ ସୁର ॥୪॥

ସ୍ୱାର୍ଥୀ ଦେବଗଣ ମଳିନ କୁମନ ପାଞ୍ଚି କୁମନ୍ତ୍ର କୁଥାଟ ।
ବିରଚିଲେ ମାୟା ପ୍ରପଞ୍ଚ ପ୍ରବଳ ଦୁଃଖ ଭୟ ଭ୍ରମୋଚ୍ଚାଟ ॥୨୯୫॥

କରିଣ କୁଚକ୍ର ପୁଣି ଚିନ୍ତେ ସୁରଧବ । ଭରତ ହସ୍ତରେ କାର୍ଯ୍ୟ ଅକାର୍ଯ୍ୟ ସରବ ॥
ଗଲେ ମିଥିଳେଶ ରଘୁନାଥଙ୍କ ସମୀପ । ସମ୍ମାନିଲେ ସର୍ବମତେ ରଘୁକୁଳ-ଦୀପ ॥୧॥

---

ଭ୍ରଷ୍ଟ କରିଦିଅନ୍ତୁ । ଛଳଛନ୍ଦା ରଚନା କରି ଦେବକୁଳକୁ ରକ୍ଷା କରନ୍ତୁ ।” ॥ ୧ ॥ ଦେବତାମାନଙ୍କର ବିନତି ଶୁଣି ସରସ୍ୱତୀ ଜାଣିଲେ ଯେ, ଏମାନେ ସ୍ୱାର୍ଥର ବଶବର୍ତ୍ତୀ ହୋଇ ମୂର୍ଖ ହୋଇପଡ଼ିଛନ୍ତି । ତହୁଁ ବୁଦ୍ଧିମତୀ ସରସ୍ୱତୀ କହିଲେ, “ମୋତେ କହୁଛ ଭରତଙ୍କ ବୁଦ୍ଧି ଭ୍ରଷ୍ଟ କରିଦେବାକୁ ! ସହସ୍ର ନେତ୍ରରେ ତୁମ୍ଭଙ୍କୁ ସୁମେରୁ ପର୍ବତ ଦିଶୁନାହିଁ ? ॥ ୨ ॥ ବ୍ରହ୍ମା, ବିଷ୍ଣୁ ଓ ମହେଶଙ୍କ ମାୟା ଅତି ପ୍ରବଳ । ସେମାନଙ୍କ ମାୟା ସୁଦ୍ଧା ଭରତଙ୍କ ବୁଦ୍ଧି ଆଡ଼କୁ ଦୃଷ୍ଟିପାତ କରି ପାରେନାହିଁ । ସେହି ବୁଦ୍ଧିକୁ ପୁଣି ତୁମ୍ଭେମାନେ ମୋତେ ଭ୍ରଷ୍ଟ କରିଦେବାକୁ କହୁଛ ? ଆରେ ! ଚନ୍ଦ୍ରମା ପ୍ରଚଣ୍ଡକର ସୂର୍ଯ୍ୟଙ୍କୁ କେଉଁଠି ଚୋରି କରି ପାରିଲାଣି ? ॥ ୩ ॥ ଭରତଙ୍କ ହୃଦୟରେ ସୀତାରାମଙ୍କ ନିବାସ । ଯେଉଁଠାରେ ସୂର୍ଯ୍ୟଙ୍କ ପ୍ରକାଶ, ସେଠାରେ ଅନ୍ଧକାର କେଉଁଠି ରହିପାରିବ ? ଏହିପରି କହି ସରସ୍ୱତୀ ବ୍ରହ୍ମଲୋକକୁ ଚାଲିଗଲେ । ଦେବଗଣ ରାତ୍ରିରେ ଚକ୍ରବାକ ବ୍ୟାକୁଳ ହେଲା ପ୍ରାୟ ବ୍ୟାକୁଳ ହେଲେ ॥ ୪ ॥ ଦୋହା :—ମଳିନ-ମନା ଓ ସ୍ୱାର୍ଥପର ଦେବତାମାନେ ଅସତ୍ ପରାମର୍ଶ କରି କୁଷଡ଼ଯନ୍ତ୍ର ରଚନା କଲେ । ସେମାନେ ପ୍ରବଳ ମାୟାଜାଲ ରଚନା କରି ଭୟ, ଭ୍ରମ, ଅପ୍ରୀତି ଓ ଉଚ୍ଚାଟନ ଆଦି ବିସ୍ତାର କରିଦେଲେ ॥ ୨୯୫ ॥ ଚୌପାଈ :—କୁଚକ୍ରାନ୍ତ ରଚନା କରି ଦେବରାଜ ଇନ୍ଦ୍ର ଭାବିବାକୁ ଲାଗିଲେ, “କାମ ସଫଳ ବା ବିଫଳ ହେବା ସବୁ ଭରତଙ୍କ ହାତରେ ।”

ସମସ୍ତ ସମାଜ ଧରମ ଅବିରୋଧା । ବୋଲେ ତବ ରଘୁବଂସ ପୁରୋଧା ॥
ଜନକ ଭରତ ସଂବାଦୁ ସୁନାଈ । ଭରତ କହାଉତି କହୀ ସୁହାଈ ॥୨॥
ତାତ ରାମ ଜସ ଆୟସୁ ଦେହୂ । ସୋ ସବୁ କରୈ ମୋର ମତ ଏହୂ ॥
ସୁନି ରଘୁନାଥ ଜୋରି ଜୁଗ ପାନୀ । ବୋଲେ ସତ୍ୟ ସରଲ ମୃଦୁ ବାନୀ ॥୩॥
ବିଦ୍ୟମାନ ଆପୁନି ମିଥିଲେସୂ । ମୋର କହବ ସବ ଭାଁତି ଭଦେସୂ ॥
ରାଉର ରାୟ ରଜାୟସୁ ହୋଈ । ରାଉରି ସପଥ ସହୀ ସିର ସୋଈ ॥୪॥

ରାମ ସପଥ ସୁନି ମୁନି ଜନକୁ ସକୁଚେ ସଭା ସମେତ ।
ସକଲ ବିଲୋକତ ଭରତ ମୁଖୁ ବନଇ ନ ଉତରୁ ଦେତ ॥୨୯୭॥

ସଭା ସକୁଚ ବସ ଭରତ ନିହାରୀ । ରାମବନ୍ଧୁ ଧରି ଧୀରଜୁ ଭାରୀ ॥
କୁସମଉ ଦେଖି ସନେହୁ ସଁଭାରା । ବଢ଼ତ ବିଂଧି ଜିମି ଘଟଜ ନିବାରା ॥୧॥

---

ସମସ୍ତ, ସମାଜ ତଥା ଧରମ ଉଚିତ । ଭାଷିଲେ ବଚନ ରଘୁକୁଳ-ପୁରୋହିତ ॥
ଜନକ ଭରତଙ୍କର ସମ୍ବାଦ ବଖାଣି । ଭରତ କଥିତ ପୁଣି କହିଲେ ସୁବାଣୀ ॥୨॥
ଦେବ ଯେମନ୍ତ ଆଦେଶ, ବତ୍ସ ରଘୁବର ' । ସମସ୍ତେ ପାଳିବେ ତାହା ଏ ମତ ମୋହର ॥
ଶୁଣି ରଘୁକୁଳ-ମଣି ଯୋଡ଼ି ଯୁଗପାଣି । ଭାଷିଲେ ସତ୍ୟ ସରଳ ମୃଦୁ ମଞ୍ଜୁ ବାଣୀ ॥୩॥
ବିଦ୍ୟମାନ ସ୍ୱୟଂ ନାଥ, ମିଥିଳାଧୀଶ୍ୱର । ମୋ କହିବା ସବୁ ଭାବେ ହେବ ଅସୁନ୍ଦର ॥
ଆପଣଙ୍କ, ନୃପତିଙ୍କ ଆଜ୍ଞା ହେବ ଯାହା । ଆପଣଙ୍କ ରାଣ, ସତ୍ୟ ଶିରୋଧାର୍ଯ୍ୟ ତାହା ॥୪॥

ରାମଙ୍କ ନିୟମ ଶୁଣି ସଙ୍କୋଚିଲେ ମୁନି, ନୃପ, ସଭାଜନେ ।
ଦେଇ ନ ପାରିଲେ ଉତ୍ତର ଚାହାନ୍ତି ସର୍ବେ ଭରତ ବଦନେ ॥୨୯୭॥

ସଙ୍କୋଚ-ବଶ ସମାଜ ବିଲୋକି ଭରତ । ରଘୁବର-ଭ୍ରାତା ଧୈର୍ଯ୍ୟ ଧରିଣ ଅତ୍ୟନ୍ତ ॥
କୁସମୟ ଅବଲୋକି ସ୍ନେହ ସମ୍ଭାଳିଲେ । ବଢନ୍ତେ ବିନ୍ଧ୍ୟ କୁମ୍ଭଜ ଯେସନ୍ତେ ନିବାରିଲେ ॥୧॥

---

ଏଣେ ରାଜା ଜନକ ( ମୁନି ବଶିଷ୍ଠ ଆଦିଙ୍କ ସହ ) ଶ୍ରୀ ରଘୁନାଥଙ୍କ ନିକଟକୁ ଗଲେ । ସୂର୍ଯ୍ୟକୁଳ-ଦୀପକ ଶ୍ରୀରାମଚନ୍ଦ୍ର ସମସ୍ତଙ୍କର ଯଥୋଚିତ ସମ୍ମାନ କଲେ ॥ ୧ ॥ ସେତେବେଳେ ରଘୁକୁଳ-ପୁରୋହିତ ବଶିଷ୍ଠ ସମସ୍ତ, ସମାଜ ଓ ଧର୍ମର ଅନୁକୂଳ ବଚନ କହିଲେ । ସେ ପ୍ରଥମେ ଜନକ ଓ ଭରତଙ୍କ ସମ୍ବାଦ ଶୁଣାଇଲେ । ତତ୍ପରେ ଭରତ କହିଥିବା ସୁନ୍ଦର କଥାମାନ କହି ଶୁଣାଇଲେ ॥ ୨ ॥ ସେ କହିଲେ, "ହେ ବତ୍ସ ରାମ ! ମୋର ମତ ହେଉଛି—ତୁମେ ଯେପରି ଆଜ୍ଞା ଦେବ, ସେହିପରି ସମସ୍ତେ କରିବେ । ' ଏହା ଶୁଣି ଦୁଇ ହାତ ଯୋଡ଼ି ଶ୍ରୀ ରଘୁନାଥ ସତ୍ୟ, ସରଳ ଓ କୋମଳ ବଚନ ବୋଇଲେ— ॥୩॥ "ଆପଣ ଓ ମିଥିଳେଶ୍ୱର ଜନକଙ୍କ ଉପସ୍ଥିତି ସମୟରେ ମୋର କିଛି କହିବା ଧୃଷ୍ଟତା ମାତ୍ର । ଆପଣଙ୍କ ଓ ମହାରାଜଙ୍କର ଯାହା ଆଜ୍ଞା ହେବ, ମୁଁ ଆପଣଙ୍କ ନାମରେ ଶପଥ କରି କହୁଛି, ସତ୍ୟରେ ତାହା ସମସ୍ତଙ୍କ ଶିରୋଧାର୍ଯ୍ୟ ହେବ ।" ॥୪॥ ଦୋହା - ଶ୍ରୀରାମଙ୍କ ଶପଥ ଶୁଣି ସଭାସମେତ ମୁନି ଓ ଜନକ ସଙ୍କୁଚିତ ହୋଇଗଲେ । କାହାରି

ସୋକ କନକଲୋଚନ ମତି ଛୋଣୀ । ହରୀ ବିମଲ ଗୁନଗନ ଜଗଜୋନୀ ॥
ଭରତ ବିବେକ ବରାହଁ ବିସାଲା । ଅନାୟାସ ଉଧରୀ ତେହି କାଲା ॥୨॥
କରି ପ୍ରନାମୁ ସବ କହଁ କର ଜୋରେ । ରାମୁ ରାଉ ଗୁର ସାଧୁ ନିହୋରେ ॥
ଛମବ ଆଜୁ ଅତି ଅନୁଚିତ ମୋରା । କହଉଁ ବଦନ ମୃଦୁ ବଚନ କଠୋରା ॥୩॥
ହିୟଁ ସୁମିରୀ ସାରଦା ସୁହାଈ । ମାନସ ତେଁ ମୁଖ ପଙ୍କଜ ଆଈ ॥
ବିମଲ ବିବେକ ଧରମ ନୟ ସାଲୀ । ଭରତ ଭାରତୀ ମଂଜୁ ମରାଲୀ ॥୪॥
ନିରଖି ବିବେକ ବିଲୋଚନନ୍ହି ସିଥିଲ ସନେହଁ ସମାଜୁ ।
କରି ପ୍ରନାମୁ ବୋଲେ ଭରତୁ ସୁମିରି ସୀୟ ରଘୁରାଜୁ ॥୨୯୭॥

---

ଶୋକ-ହିରଣ୍ୟଲୋଚନ ସୁମତି-ଧରଣୀ । ହରିଲା ବିମଳ ଗୁଣ-ଗଣ-ପ୍ରସବିନୀ ॥
ଭରତଙ୍କ ସୁବିବେକ ବରାହ ବିଶାଳ । ଅନାୟାସେ ସମୁଦ୍ଧାର କଲା ସେହି କାଳ ॥୨॥
କର ଯୋଡ଼ି ସମସ୍ତଙ୍କୁ ପ୍ରଣାମ କରିଲେ । ରାମ ଗୁରୁ, ସାଧୁ, ନୃପେ ବିନତି କହିଲେ ॥
କ୍ଷମିବ ଆଜ ଅତ୍ୟନ୍ତ ଅନୁଚିତ ମୋର । କହଇ ମୃଦୁ ବଦନେ ବଚନ କଠୋର ॥୩॥
ହୃଦୟେ ସରସ୍ୱତୀଙ୍କୁ କରନ୍ତେ ଚିନ୍ତନ । ମାନସରୁ ମୁଖାମ୍ବୁଜେ କଲେ ଆଗମନ ॥
ବିମଳ ବିବେକ ଶୁଭ ଧର୍ମ ନୀତିଶାଳୀ । ଭରତ-ଭାରତୀ ମୃଦୁ ମଞ୍ଜୁଳ ମରାଳୀ ॥୪॥
ବିବେକ-ଲୋଚନେ କରି ବିଲୋକନ ସ୍ନେହ-ଶିଥିଳ ସମାଜେ ।
କରି ଦଣ୍ଡବତ ଭାଷିଲେ ଭରତ ସ୍ମରି ସୀତା ରଘୁରାଜେ ॥୨୯୭॥

---

ମୁହଁରେ ଉତ୍ତର ଆସୁ ନ ଥାଏ । ସମସ୍ତ ଲୋକ ଭରତଙ୍କ ମୁହଁକୁ ଅନାଉଁଥା'ନ୍ତି ॥ ୨୯୬ ॥

ଚୌପାଈ'—ଭରତ ସାରା ସଭାକୁ ସଂକୋଚର ବଶବର୍ତ୍ତୀ ହୋଇ ପଡ଼ିଥିବାର ଦେଖିଲେ । ରାମଭ୍ରାତା ଭରତ ବଡ଼ ଧୈର୍ଯ୍ୟ ଧରିଲେ ଏବଂ କୁସମୟ ଦେଖି ନିଜ ହୃଦୟରୁ ଉଚ୍ଛୁଳି ପଡ଼ୁଥିବା ପ୍ରେମକୁ ସମ୍ଭାଳିଲେ । ଅଗସ୍ତ୍ୟ ମୁନି କ୍ରମବର୍ଦ୍ଧିଷ୍ଣୁ ବିନ୍ଧ୍ୟାଚଳକୁ ଏହିପରି ବର୍ଦ୍ଧିତ ହେବାରୁ ନିବୃତ୍ତ କରିଥିଲେ ॥ ୧ ॥ ଶୋକ ରୂପକ ହିରଣ୍ୟାକ୍ଷ ବିମଳ-ଗୁଣ-ଜଗତର ପ୍ରସବିନୀ ବୁଦ୍ଧି-ପୃଥିବୀକୁ ହରଣ କରିନେଲା । ଭରତଙ୍କ ବିବେକ ବିଶାଳ ବରାହ ରୂପରେ ଶୋକ-ହିରଣ୍ୟାକ୍ଷକୁ ବିନାଶ କରି ଅନାୟାସରେ ତାହାକୁ ଉଦ୍ଧାର କରିଦେଲା ॥ ୨ ॥ ଭରତ ପ୍ରଣାମ-ପୂର୍ବକ ସମସ୍ତଙ୍କୁ ହାତ ଯୋଡ଼ିଲେ । ସେ ଶ୍ରୀରାମଚନ୍ଦ୍ର, ରାଜା ଜନକ, ଗୁରୁ ବଶିଷ୍ଠ ଏବଂ ସାଧୁ-ସନ୍ଥ ସମସ୍ତଙ୍କୁ ବିନତି ସହକାରେ କହିଲେ, "ଆଜି ମୋର ଏହି ଅତି ଅନୁଚିତ ଆଚରଣକୁ କ୍ଷମା କରନ୍ତୁ । ମୁଁ କୋମଳ (ଶ୍ରେଷ୍ଠ) ମୁଖରେ କଠୋର (ଧୃଷ୍ଟତାପୂର୍ଣ୍ଣ) ବଚନ କହୁଛି ॥ ୩ ॥ ପୁଣି ସେ ସୁଶୋଭନା ସରସ୍ୱତୀ ଦେବୀଙ୍କୁ ମନ ମଧ୍ୟରେ ସ୍ମରଣ କଲେ । ସରସ୍ୱତୀ ତାଙ୍କ ମାନସ-ମାନସରୋବରରୁ ଆସି ତାଙ୍କ ମୁଖାରବିନ୍ଦ ଉପରେ ବିରାଜିତ ହେଲେ । ନିର୍ମଳ ବିବେକ, ଧର୍ମ ଓ ନୀତିଯୁକ୍ତ ଭରତଙ୍କ ବାଣୀ ସୁନ୍ଦର ହଂସୀ ॥ ୪ ॥ ଦୋହା'—ଭରତ ବିବେକ-ନୟନରେ ସମସ୍ତ ସମାଜକୁ ପ୍ରେମରେ ଶିଥିଳ ହୋଇଥିବାର ଦେଖିଲେ ଏବଂ ସମସ୍ତଙ୍କୁ ପ୍ରଣାମପୂର୍ବକ ସୀତା ଓ ଶ୍ରୀରାମଙ୍କୁ

ପ୍ରଭୁ ପିତୁ ମାତୁ ସୁହୃଦ ଗୁର ସ୍ୱାମୀ । ପୂଜ୍ୟ ପରମ ହିତ ଅନ୍ତରଜାମୀ ॥
ସରଲ ସୁସାହିବୁ ସୀଲ ନିଧାନୂ । ପ୍ରନତପାଲ ସର୍ବଜ୍ଞ ସୁଜାନୂ ॥୧॥
ସମରଥ ସରନାଗତ ହିତକାରୀ । ଗୁନଗାହକୁ ଅବଗୁନ ଅଘ ହାରୀ ॥
ସ୍ୱାମି ଗୋସାଁଇହି ସରିସ ଗୋସାଈଁ । ମୋହି ସମାନ ମୈଁ ସାଇଁ ଦୋହାଈଁ ॥୨॥
ପ୍ରଭୁ ପିତୁ ବଚନ ମୋହ ବସ ପେଲୀ । ଆୟଉଁ ଇହାଁ ସମାଜୁ ସକେଲୀ ॥
ଜଗ ଭଲ ପୋଚ ଊଁଚ ଅରୁ ନୀଚୂ । ଅମିଅ ଅମରପଦ ମାହୁରୁ ମୀଚୂ ॥୩॥
ରାମ ରଜାଇ ମେଟ ମନ ମାହୀଁ । ଦେଖା ସୁନା କତହୁଁ କୋଉ ନାହୀଁ ॥
ସୋ ମୈଁ ସବ ବିଧି କୀହ୍ନି ଢିଠାଈ । ପ୍ରଭୁ ମାନୀ ସନେହ ସେବକାଈ ॥୪॥

କୃପାଁ ଭଲାଈଁ ଆପନୀ ନାଥ କୀହ୍ନ ଭଲ ମୋର ।
ଦୂଷନ ଭେ ଭୂଷନ ସରିସ ସୁଜସୁ ଚାରୁ ଚହୁ ଓର ॥୨୯୮॥

---

ପ୍ରଭୁ ପିତା, ମାତା, ଗୁରୁ, ବନ୍ଧୁ, ସଖା, ସ୍ୱାମୀ । ପୂଜ୍ୟ, ପରମ ହିତୈଷୀ ଅଟ ଅନ୍ତର୍ଯାମୀ ॥
ସରଳ ସୁସ୍ୱାମୀ, ଶୀଳ ସ୍ନେହର ସାଗର । ପ୍ରଣତ-ପାଳ, ସର୍ବଜ୍ଞ, ପ୍ରବୀଣ ଶେଖର ॥୧॥
ସମର୍ଥ, ଶରଣାଗତ ଜନହିତକାରୀ । ଗୁଣର ଗ୍ରାହକ, ଅଘ-ଅବଗୁଣ-ହାରୀ ॥
ଗୋସାଇଁଙ୍କ ପରି ସ୍ୱାମୀ ଗୋସାଇଁ ଅଟନ୍ତି । ମୋ ସମାନ ସ୍ୱାମୀ-ଦ୍ରୋହୀ ଅଟଇ ମୁଁ ଅତି ॥୨॥
ମୋହ-ବଶ ପ୍ରଭୁ ପିତା ବଚନ ଏଡ଼ିଣ । ଆସିଲି ଏ ସ୍ଥାନେ ସାରି ସମାଜ ଘେନିଣ ॥
ଜଗତରେ ଭଲ ମନ୍ଦ ଉଚ୍ଚ ନୀଚ ଯେତେ । ସୁଧା ଅମରତ୍ୱ ମୃତ୍ୟୁ ମହୁରି ସମେତେ ॥୩॥
ରାମ ରାଜାନୁଶାସନ ଲଙ୍ଘିଅଛୁ ମନେ । ଦେଖି ଶୁଣି ନାହିଁ କାହିଁ କାହାକୁ ଭୁବନେ ॥
ତାହା ମୁଁ ସବୁ ପ୍ରକାରେ କଲେହେଁ ଧୃଷ୍ଟତା । ପ୍ରଭୁ ମାନିଲେ କରିଣ ସ୍ନେହ ସେବକତା ॥୪॥

କୃପା ବିଲୋକନେ ନିଜ ଭଲପଣେ କଲ ମୋର ଭଲ, ନାଥ ।
ହୋଇଲା ଦୂଷଣ ଭୂଷଣ ସମାନ, ସୁଯଶ ଭୁବନେ ଖ୍ୟାତ ॥୨୯୮॥

---

ସ୍ମରଣ କରି କହିଲେ,— ॥ ୨୯୭ ॥ ଚୌପାଇ :—"ହେ ପ୍ରଭୋ ! ଆପଣ ପିତା, ମାତା, ସୁହୃଦ୍, ଗୁରୁ, ସ୍ୱାମୀ, ପୂଜ୍ୟ, ପରମହିତୈଷୀ ଓ ଅନ୍ତର୍ଯାମୀ । ସରଳ-ହୃଦୟ, ଶ୍ରେଷ୍ଠ ମାଲିକ, ଶୀଳର ଭଣ୍ଡାର, ଶରଣାଗତର ରକ୍ଷକ, ସର୍ବଜ୍ଞ, ସୁଜ୍ଞାନୀ, ସମର୍ଥ, ଶରଣାଗତର ହିତକାରୀ, ଗୁଣ-ସମୂହର ଆଦରକାରୀ ଏବଂ ଅବଗୁଣ ଓ ପାପରାଶିର ହରଣକାରୀ । ହେ ଗୋସାଇଁ ! ଆପଣଙ୍କ ସମାନ ସ୍ୱାମୀ କେବଳ ଆପଣ । ହେ ଗୋସାଇଁ ! ସ୍ୱାମୀଙ୍କ ସଙ୍ଗେ ଦ୍ରୋହାଚରଣ କରିବାରେ ମୋ ସମାନ କେବଳ ମୁହିଁ ॥ ୧-୨ ॥ ମୁଁ ମୋହବଶତଃ ପ୍ରଭୁ ଓ ପିତାଙ୍କର ବଚନ ଉଲ୍ଲଙ୍ଘନ କରି, ସମାଜ ସହିତ ଏଠାକୁ ଆସିଅଛି । ଜଗତରେ ଭଲମନ୍ଦ, ଉଚ୍ଚନୀଚ, ଅମୃତ ଓ ଅମରପଦ, ବିଷମୃତ୍ୟୁ ଆଦି କେହି କେବେ ଶ୍ରୀରାମଚନ୍ଦ୍ରଙ୍କ ଆଜ୍ଞାକୁ ମନରେ ସୁଦ୍ଧା ଲଙ୍ଘନ କରିଥିବାର ଦେଖାଶୁଣା ଯାଇନାହିଁ । ମୁଁ ସବୁ ପ୍ରକାରେ ସେହି ଧୃଷ୍ଟତା କରିଅଛି । କିନ୍ତୁ ପ୍ରଭୁ ସେହି ଧୃଷ୍ଟତାକୁ ମୋର ସ୍ନେହ ଓ ସେବା ବୋଲି ସ୍ୱୀକାର କରିନେଇଅଛନ୍ତି ॥ ୩-୪ ॥ ଦୋହା :—

ରାଉରି ରୀତି ସୁବାନି ବଡ଼ାଈ । ଜଗତ ବିଦିତ ନିଗମାଗମ ଗାଈ ॥
କୂର କୁଟିଲ ଖଲ କୁମତି କଲଂକୀ । ନୀଚ ନିସୀଲ ନିରୀସ ନିସଂକୀ ॥୧॥
ତେଉ ସୁନି ସରନ ସାମୁହେଁ ଆଏ । ସକୃତ ପ୍ରନାମୁ କିହେଁ ଅପନାଏ ॥
ଦେଖି ଦୋଷ କବହୁଁ ନ ଉର ଆନେ । ସୁନି ଗୁନ ସାଧୁ ସମାଜ ବଖାନେ ॥୨॥
କୋ ସାହିବ ସେବକହି ନେୱାଜୀ । ଆପୁ ସମାଜ ସାଜ ସବ ସାଜୀ ॥
ନିଜ କରତୂତି ନ ସମୁଝିଅ ସପନେଁ । ସେବକ ସକୁଚ ସୋଚୁ ଉର ଅପନେଁ ॥୩॥
ସୋ ଗୋସାଇଁ ନହିଁ ଦୂସର କୋପୀ । ଭୁଜା ଉଠାଇ କହଉଁ ପନ ରୋପୀ ॥
ପସୁ ନାଚତ ସୁକ ପାଠ ପ୍ରବୀନା । ଗୁନ ଗତି ନଟ ପାଠକ ଆଧୀନା ॥୪॥

---

ରୀତି-ନୀତି ଆପଣଙ୍କ ସ୍ୱଭାବ ବଡାଇ । ବିଶ୍ୱ-ବିଦିତ ନିଗମାଗମ ଛନ୍ତି ଗାଇ ॥
କ୍ରୂର ଯେ କୁଟିଳ, ଖଳ, କୁମତି, କଳଙ୍କୀ । ନୀଚ, ନିଃଶୀଳ, ଆବର ନିରୀଶ, ନିଃଶଙ୍କୀ ॥୧॥
ସେ ଶୁଣି ଶରଣ ହେତୁ ସମ୍ମୁଖେ ଆସନ୍ତେ । ଆପଣା କଲ ବାରେକ ପ୍ରଣାମ କରନ୍ତେ ॥
ଦୋଷ ଦେଖି ମଧ୍ୟ କେବେ ହୃଦେ ନ ହେଜିଲ । ଗୁଣ ଶୁଣି ସାଧୁ ସମାଜରେ ବଖାଣିଲ ॥୨॥
କେଉଁ ସ୍ୱାମୀ ସେବକଙ୍କୁ ରଖଇ ଏମନ୍ତ । ଆପଣା ସମାନ ସାଜ ସଜାଇ ସମସ୍ତ ॥
ନିଜ ସୁକୃତ ଭାବନ୍ତି ନାହିଁ ସ୍ୱପନରେ । ସେବକ ସଙ୍କୋଚେ ଚିନ୍ତା କରନ୍ତି ମନରେ ॥୩॥
ତେମନ୍ତ ଆପଣ ଏକ, ଅନ୍ୟ ନାହିଁ କେହି । ଭୁଜ ଉଠାଇଣ କହେ ସତ୍ୟପଣ ଏହି ॥
ପଶୁ ନାଚେ, ଶୁକ ପାଠ-ପଠନେ ପ୍ରବୀଣ । ଗୁଣ ଗତି ଯେସନ୍ତେ ନଟ ପାଠକ ଅଧୀନ ॥୪॥

---

ହେ ନାଥ ! ଆପଣ ନିଜ କୃପା ଓ ସଜ୍ଜନତା ବଳରେ ମୋର ହିତ କରିଅଛନ୍ତି । ଫଳରେ ମୋର ସମସ୍ତ ଦୂଷଣ (ଦୋଷ) ଭୂଷଣ (ଗୁଣ) ସମାନ ହୋଇଅଛି ଏବଂ ଚତୁର୍ଦ୍ଦିଗରେ ମୋର ସୁନ୍ଦର ଯଶ ବ୍ୟାପିଯାଇଅଛି ॥ ୨୯୮ ॥ ଚୌପାଈ :—ହେ ନାଥ ! ଆପଣଙ୍କ ରୀତିନୀତି ଓ ସୁନ୍ଦର ସ୍ୱଭାବର ପ୍ରଶଂସା ଜଗତରେ ପ୍ରସିଦ୍ଧ ଏବଂ ବେଦଶାସ୍ତ୍ର ମଧ୍ୟ ଗାଇଅଛନ୍ତି । ଯେଉଁମାନେ କ୍ରୂର, କୁଟିଳ, ଦୁଷ୍ଟ, କୁବୁଦ୍ଧି, କଳଙ୍କୀ, ନୀଚ, ଶୀଳରହିତ, ନିରୀଶ୍ୱରବାଦୀ (ନାସ୍ତିକ) ଓ ନିଃଶଙ୍କ, ସେମାନେ ମଧ୍ୟ ଆପଣଙ୍କ ଶରଣରେ ଆସି ଥରେ ମାତ୍ର ପ୍ରଣାମ କଲେ ତ ଆପଣ ସେମାନଙ୍କୁ ନିଜର କରିନେଲେ । ସେହି ଶରଣାଗତମାନଙ୍କ ଦୋଷ ଆପଣ କେବେ ହେଲେ ମନରେ ଆଣି ନାହାନ୍ତି । ବରଂ ସେମାନଙ୍କ ଗୁଣ ଶୁଣି ସାଧୁ-ସମାଜରେ ତାହାର ବର୍ଣ୍ଣନା କରିଅଛନ୍ତି ॥ ୧-୨ ॥ ସେବକର ସମସ୍ତ ସାଜସମାଜ ନିଜେ ସଜାଇ (ତାହାର ସମସ୍ତ ଆବଶ୍ୟକତା ପୂରଣ କରି) ତାକୁ ସୁଖରେ ରଖନ୍ତି; ଏପରି ପ୍ରଭୁ ଆପଣଙ୍କ ପରି ଆଉ କିଏ ? ପୁଣି ସ୍ୱପ୍ନରେ ସୁଦ୍ଧା "ମୁଁ ସେବକ ନିମନ୍ତେ ଏ କାର୍ଯ୍ୟ କରିଛି" ବୋଲି ନ ଭାବି ଓଲଟି କାଳେ ସେବକଙ୍କୁ ସଙ୍କୋଚ ହେବ, ସେଥିଲାଗି ଆପଣ ଯେପରି ଚିନ୍ତା କରନ୍ତି, ଆଉ କିଏ ସେପରି କରିବ ? ॥ ୩ ॥ ମୁଁ ବାହୁ ଉଠାଇ ପଣ କରି କହୁଛି—ଏପରି ସ୍ୱାମୀ ଆପଣଙ୍କ ବିନା ଆଉ କେହି ନାହିଁ । ବାନର ଆଦି ପଶୁ ନାଚନ୍ତି ଏବଂ ଶୁକମାନେ ପଠିତ ପାଠରେ

ଯୋଁ ସୁଧାରି ସନମାନି ଜନ କିଏ ସାଧୁ ସିରମୋର ।
କୋ କୃପାଲ ବିନୁ ପାଲିହୈ ବିରଦାବଲି ବରଜୋର ॥୨୯୯॥

ସୋକ ସନେହ କି ବାଲ ସୁଭାଏଁ । ଆୟଉଁ ଲାଇ ରଜାୟସୁ ବାଏଁ ॥
ତବହୁଁ କୃପାଲ ହେରି ନିଜ ଓରା । ସବହି ଭାଁତି ଭଲ ମାନେଉ ମୋରା ॥୧॥
ଦେଖେଉଁ ପାୟ ସୁମଂଗଲ ମୂଲା । ଜାନେଉଁ ସ୍ୱାମି ସହଜ ଅନୁକୂଲା ॥
ବଡ଼େଁ ସମାଜ ବିଲୋକେଉଁ ଭାଗୂ । ବଡ଼ୀଁ ଚୂକ ସାହିବ ଅନୁରାଗୂ ॥୨॥
କୃପା ଅନୁଗ୍ରହୁ ଅଂଗୁ ଅଘାଈ । କୀହ୍ନି କୃପାନିଧି ସବ ଅଧିକାଈ ॥
ରାଖା ମୋର ଦୁଲାର ଗୋସାଇଁ । ଅପନେଁ ସୀଲ ସୁଭାୟଁ ଭଲାଈଁ ॥୩॥
ନାଥ ନିପଟ ମୈଁ କୀହ୍ନି ଢିଠାଈ । ସ୍ୱାମି ସମାଜ ସକୋଚ ବିହାଈ ॥
ଅବିନୟ ବିନୟ ଜଥାରୁଚି ବାନୀ । ଛମିହି ଦେଉ ଅତି ଆରତି ଜାନୀ ॥୪॥

---

ଏ ଭାବେ ମାର୍ଜିଣ ଜନେ ସମ୍ମାନିଣ କଲ ସାଧୁ ଅଗ୍ରେ ସାର ।
କେ କୃପାଳୁ ବିନା ପାଳିବ ସବଳେ ପ୍ରତିଜ୍ଞାବଳି ନିଜର ॥୨୯୯॥

ଶୋକେ, ସ୍ନେହରେ ଅଥବା ବାଳକ ସ୍ୱଭାବେ । ଆସିଲି ନୃପଙ୍କ ଆଜ୍ଞା ଉଲ୍ଲଂଘିଣ ଭାବେ ॥
ତଥାପି ଆପଣା ଆଡୁ କରୁଣା-ସାଗର । ସମସ୍ତ ପ୍ରକାରେ ଭଲ ମଣିଲ ମୋହର ॥୧॥
ଦରଶନ କଲି ପଦ ସୁମଙ୍ଗଳ-ମୂଳ । ଜାଣିଲି ସହଜେ ସ୍ୱାମୀ ଜନ-ଅନୁକୂଳ ॥
ବିଶାଳ ସମାଜେ ନିଜ ବିଲୋକିଲି ଭାଗ୍ୟ । ବଡ ଦୋଷେ ସୁଦ୍ଧା ସ୍ୱାମୀ କଲେ ଅନୁରାଗ ॥୨॥
କୃପା ଅନୁଗ୍ରହ ବହୁ ପାଇ ମୁଁ ତୃପତ । କରିଲ କରୁଣାନିଧି ଅଧିକ ସମସ୍ତ ॥
ରଖିଲ ଗୋସାଇଁ ଗେଲବସର ମୋହର । ନିଜ ଭଲ-ପଣ ଶୀଳ ସ୍ୱଭାବେ ସୁନ୍ଦର ॥୩॥
ନାଥ ! ନିପଟ ଧୃଷ୍ଟତା ଏହା ଆଚରିଲି । ସ୍ୱାମୀ ସମାଜେ ସଙ୍କୋଚ ମୁହିଁ ଯେ ତେଜିଲି ॥
ମୋ ଅବିନୟ ବିନୟ ଯଥା-ରୁଚି ବାଣୀ । କ୍ଷମିବ ଦେବ ! ଆରତ ଅତିଶୟ ଜାଣି ॥୪॥

---

ପ୍ରବୀଣ ହୋଇଯାଆନ୍ତି । କିନ୍ତୁ ପକ୍ଷୀର ନୃତ୍ୟ ଗତି ଓ ଶୁକର ପାଠ-ପ୍ରବୀଣତା ଗୁଣ ନୃତ୍ୟ-ଶିକ୍ଷକ ଓ ପାଠ-ଶିକ୍ଷକର ଅଧୀନ ॥ ୪ ॥ ଦୋହା :—ଏହି ରୂପେ ଆପଣା ସେବକଙ୍କର ସଂଶୋଧନ-ମାର୍ଜନ ଆଦି କରି ଆପଣ ସେମାନଙ୍କୁ ଉପଯୁକ୍ତ ସମ୍ମାନ ଦେଇଅଛନ୍ତି ଏବଂ ସେମାନଙ୍କୁ ସାଧୁଗଣଙ୍କ ଶିରୋମଣି କରିଦେଇଛନ୍ତି । କୃପାଳୁଙ୍କ ବିନା ନିଜ ଯଶାବଳୀକୁ ଦୃଢତା ସହକାରେ ଆଉ କିଏ ପାଳନ କରିବ ? ॥ ୨୯୯ ॥ ଚୌପାଇ :—ମୁଁ ଶୋକ ବା ସ୍ନେହ-ବଶତଃ ନିଜ ବାଳକ ସ୍ୱଭାବ ହେତୁ ଆଜ୍ଞା ନ ମାନି ଚାଲି ଆସିଥିଲି । ତଥାପି କୃପାଳୁ ସ୍ୱାମୀ ନିଜ ଗୁଣ ମନେ ପକାଇ ସବୁମତେ ମୋର କାର୍ଯ୍ୟ ସଂଗତ ହୋଇଛି ବୋଲି ସ୍ୱୀକାର କରିନେଲେ ॥ ୧ ॥ ମୁଁ ସମସ୍ତ ସୁମଙ୍ଗଳର ମୂଳ କାରଣ ଆପଣଙ୍କ ଚରଣଯୁଗଳର ଦର୍ଶନ ଲାଭ କଲି ଏବଂ ଜାଣି ପାରିଲି ଯେ, ସ୍ୱାମୀ ସ୍ୱଭାବବଶତଃ ମୋ ପ୍ରତି ଅନୁକୂଳ । ଏତେ ବଡ଼ ସମାଜରେ ମୁଁ ନିଜ ଭାଗ୍ୟ କେତେ ଉଚ୍ଚ ତାହା ଜାଣି ପାରିଲି । ମୁଁ ଏତେ ବଡ ଭୁଲ କରିଥିଲେ ସୁଦ୍ଧା ସ୍ୱାମୀଙ୍କର ମୋ ପ୍ରତି କେତେ

ସୁହୃଦ ସୁଜାନ ସୁସାହିବହି ବହୁତ କହବ ବଡ଼ି ଖୋରି ।
ଆୟସୁ ଦେଇଅ ଦେବ ଅବ ସବଇ ସୁଧାରୀ ମୋରି ॥୩୦୦॥
ପ୍ରଭୁ ପଦ ପଦୁମ ପରାଗ ଦୋହାଈ । ସତ୍ୟ ସୁକୃତ ସୁଖ ସୀଁୱ ସୁହାଈ ॥
ସୋ କରି କହଉଁ ହିଏ ଅପନେ କୀ । ରୁଚି ଜାଗତ ସୋୱତ ସପନେ କୀ ॥୧॥
ସହଜ ସନେହଁ ସ୍ୱାମି ସେବକାଈ । ସ୍ୱାରଥ ଛଲ ଫଲ ଚାରି ବିହାଈ ॥
ଅଗ୍ୟା ସମ ନ ସୁସାହିବ ସେବା । ସୋ ପ୍ରସାଦୁ ଜନୁ ପାୱଇ ଦେବା ॥୨॥
ଅସ କହି ପ୍ରେମ ବିବସ ଭଏ ଭାରୀ । ପୁଲକ ସରୀର ବିଲୋଚନ ବାରୀ ॥
ପ୍ରଭୁ ପଦ କମଲ ଗହେ ଅକୁଲାଈ । ସମଉ ସନେହୁ ନ ସୋ କହି ଜାଈ ॥୩॥

---

ସୁହୃଦସ୍ତ ସୁଜ୍ଞ ସୁସ୍ୱାମୀଙ୍କୁ ବେଶି କହିବାଟା ଦୋଷ ଭାରି ।
ଆଦେଶନ୍ତୁ ନାଥ ! ଏବେ ମୋତେ, ସବୁ କଥା ମୋ ଛନ୍ତି ସୁଧାରି ॥୩୦୦॥
ପ୍ରଭୁ-ଚରଣ-କମଳ-ରଜ ମନୋରମ । ସୁକୃତ ସତ୍ୟ ସୁଖର ଅବଧି ଉତ୍ତମ ॥
ଗ୍ଣ ଖାଇ ତା'ର କହେ ନିଜ ହୃଦୟର । ଅଭିଳାଷ ଜାଗରଣ ନିଦ୍ରା ସ୍ୱପନର ॥୧॥
ସହଜେ ସ୍ୱାମୀ ସେବାରେ ହେଉ ଅନୁରାଗ । ସ୍ୱାର୍ଥ ଛଳ, ଚତୁଃଫଳ କରି ପରିତ୍ୟାଗ ॥
ଆଜ୍ଞାସମ ସୁସ୍ୱାମୀଙ୍କ ସେବା ନାହିଁ ଅନ୍ୟ । ସେ ପ୍ରସାଦ ନାଥ ! ସେବକେ ଲଭନ୍ତୁ ଜନ ॥୨॥
ଏହା କହି ପ୍ରେମବଶ ହୋଇଲେ ଅଧୀର । ପୁଲକିତ କଳେବର ବିଲୋଚନେ ନୀର ॥
ଆକୁଳେ ଧରିଲେ ପ୍ରଭୁ କମଳ ଚରଣ । ସେ ସମୟ ସ୍ନେହ କରି ନ ହୁଏ ବର୍ଣ୍ଣନ ॥୩॥

---

ଅନୁରାଗ ! ॥ ୨ ॥ କୃପାନିଧାନ ମୋର ସମସ୍ତ ଅଯୋଗ୍ୟତା ସତ୍ତ୍ୱେ ମୋ ପ୍ରତି ସର୍ବାଙ୍ଗୀନ କୃପା ଓ ଅନୁଗ୍ରହ ସର୍ବାଧିକ ମାତ୍ରାରେ କରିଅଛନ୍ତି । ହେ ଗୋସାଇଁ ! ଆପଣ ନିଜ ଶୀଳ, ସ୍ୱଭାବ ଓ ସଜ୍ଜନତାର ବଶବର୍ତ୍ତୀ ହୋଇ ମୋର ଖେଳବସରପଣିଆ ରକ୍ଷା କରି-ଅଛନ୍ତି ॥ ୩ ॥ ହେ ନାଥ ! ମୁଁ ସ୍ୱାମୀ ଓ ସମାଜଙ୍କ ପ୍ରତି ସଙ୍କୋଚ ଏଡ଼ିଦେଇ ନିଜ ରୁଚି ଅନୁସାରେ ଅବିନୟ ବା ବିନୟପୂର୍ଣ୍ଣ ବଚନ କହି ସର୍ବଥା ଧୃଷ୍ଟତା କରିଅଛି । ହେ ଦେବ ! ମୋର ଆତୁରତା ବିଚାର କରି ଆପଣ ମୋତେ କ୍ଷମା କରିବେ ।' ୪ ॥ ଦୋହା :—ସୁହୃଦ୍, ବୁଦ୍ଧିମାନ୍ ଓ ଶ୍ରେଷ୍ଠ ପ୍ରଭୁଙ୍କୁ ବହୁତ ଗୁଡ଼ାଏ କହିବା ବଡ଼ ଅପରାଧ । ଅତଏବଂ ହେ ଦେବ ! ଏବେ ମୋତେ ଆଜ୍ଞା ଦିଅନ୍ତୁ । ଆପଣ ମୋର ସବୁ କଥା ସୁଧାରି ଦେଇଅଛନ୍ତି ॥ ୩୦୦ ॥ ଚୌପାଇ :—ପ୍ରଭୁଙ୍କ ଚରଣ-କମଳର ସୁମନୋହର ରଜ ସତ୍ୟ, ସୁକୃତ ଓ ସୁଖର ସୁଶୋଭନୀ ସୀମା । ତାହାର ଶପଥ ନେଇ ଜାଗରଣ, ଶୟନ ଓ ସ୍ୱପ୍ନରେ ସୁଦ୍ଧା ମୋ ହୃଦୟରେ ଯେଉଁ ଅଭିଳାଷ ନିହିତ ଥାଏ, ତାହା ମୁଁ ପ୍ରକାଶ କରୁଅଛି ॥ ୧ ॥ ସେହି ଅଭିଳାଷ ହେଉଛି—କପଟ, ସ୍ୱାର୍ଥ ଏବଂ ଧର୍ମ, ଅର୍ଥ, କାମ, ମୋକ୍ଷ ରୂପ ଚାରି ଫଳକୁ ତ୍ୟାଗ କରି ସ୍ୱାଭାବିକ ପ୍ରେମ ସହକାରେ ସ୍ୱାମୀଙ୍କର ସେବା । ଆଜ୍ଞା ପାଳନ ସମାନ ସ୍ୱାମୀଙ୍କର ଅନ୍ୟ କୌଣସି ସେବା ଶ୍ରେଷ୍ଠ ହୋଇ ନ ପାରେ । ହେ ଦେବ ! ବର୍ତ୍ତମାନ ସେବକକୁ ଉକ୍ତ ଆଜ୍ଞା-ପ୍ରସାଦ ମିଳିଯାଉ ।" ॥ ୨ ॥

କୃପାସିନ୍ଧୁ ସନମାନି ସୁବାନୀ । ବୈଠାଏ ସମୀପ ଗହି ପାନୀ ॥
ଭରତ ବିନୟ ସୁନି ଦେଖି ସୁଭାଊ । ସିଥିଲ ସନେହଁ ସଭା ରଘୁରାଊ ॥୩॥

ରଘୁରାଉ ସିଥିଲ ସନେହଁ ସାଧୁ ସମାଜ ମୁନି ମିଥିଲା ଧନୀ ।
ମନ ମହୁଁ ସରାହତ ଭରତ ଭାୟପ ଭଗତି କୀ ମହିମା ଘନୀ ॥
ଭରତହି ପ୍ରସଂସତ ବିବୁଧ ବରଷତ ସୁମନ ମାନସ ମଲିନ ସେ ।
ତୁଲସୀ ବିକଲ ସବ ଲୋଗ ସୁନି ସକୁଚେ ନିସାଗମ ନଲିନ ସେ ॥

ଦେଖି ଦୁଖାରୀ ଦୀନ ଦୁହୁ ସମାଜ ନର ନାରି ସବ ।
ମଘବା ମହା ମଲୀନ ମୁଏ ମାରି ମଂଗଲ ଚହତ ॥୩୦୧॥

---

ସମ୍ମାନି କରୁଣାନିଧି ଭାଷି ମଞ୍ଜୁ ବାଣୀ । ନିଜ ନିକଟରେ ବସାଇଲେ ଧରି ପାଣି ॥
ଭରତ ବିନୟ ଶୁଣି ଅବଲୋକି ଶୀଳ । ସଭା, ରଘୁରାଜ ହେଲେ ସ୍ନେହରେ ଶିଥିଳ ॥୪॥

ଶିଥିଳ ରଘୁରାଜ ସ୍ନେହେ ସାଧୁ-ସମାଜ, ମୁନି, ମିଥିଳା ନରପତି ।
ଭରତ ଭାଇପଣ ଭକ୍ତି ମହିମା ଘନ ମନ ମଧ୍ୟରେ ପ୍ରଶଂସନ୍ତି ।
ମଳିନ-ମନ ସୁରଗଣ, ପ୍ରଶଂସି ସିଞ୍ଚନ୍ତି ସୁମନ,
ତୁଳସୀ ସର୍ବଜନେ ବିକଳ, ନିଶାଗମେ ସଙ୍କୋଚ ସରୋଜ ଯେସନ ॥

ଉଭୟ ସମାଜ ନାରୀ ପୁରୁଷଙ୍କୁ ଦେଖି ଅତି ଦୁଃଖୀ ଜନ ।
ଇଚ୍ଛଇ କଲ୍ୟାଣ ମାରି ମୃତକଙ୍କୁ ମଘବା ମହା ମଳିନ ॥୩୦୧॥

---

ଭରତ ଏପରି କହି ପ୍ରେମରେ ଅଭିଭୂତ ହୋଇ ପଡ଼ିଲେ । ଶରୀର ପୁଲକିତ ହୋଇ ଉଠିଲା । ନେତ୍ରରେ ପ୍ରେମାଶ୍ରୁ-ଜଳ ପୂରି ଆସିଲା । ବ୍ୟାକୁଳ ହୋଇ ସେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଚରଣ-କମଳ ଧରି ପକାଇଲେ । ସେହି ସମୟ ଓ ସ୍ନେହର ବର୍ଣ୍ଣନା କରିଯାଇ ପାରିବ ନାହିଁ ॥ ୩ ॥ କୃପାସିନ୍ଧୁ ଶ୍ରୀରାମ ସୁମନୋହର ବାଣୀରେ ଭରତଙ୍କ ସମ୍ମାନ କଲେ ଏବଂ ହାତ ଧରି ତାହାଙ୍କୁ ନିଜ ପାଖରେ ବସାଇଲେ । ଭରତଙ୍କ ବିନତି ଶୁଣି ଓ ତାଙ୍କ ସ୍ୱଭାବ ଦେଖି ସମସ୍ତ ସଭା ଓ ଶ୍ରୀ ରଘୁନାଥ ସ୍ନେହରେ ଶିଥିଳ ହୋଇ ପଡ଼ିଲେ ॥ ୪ ॥ ଛନ୍ଦ :—ଶ୍ରୀ ରଘୁନାଥ, ସାଧୁ-ସମାଜ, ମୁନି ବଶିଷ୍ଠ ଓ ମିଥିଳାପତି ଜନକ ସ୍ନେହରେ ଶିଥିଳ ହୋଇ ପଡ଼ିଲେ । ସମସ୍ତେ ମନେ ମନେ ଭରତଙ୍କ ଭ୍ରାତୃତ୍ୱ ଓ ଭକ୍ତିର ଅତିଶୟ ମାହାତ୍ମ୍ୟକୁ ପ୍ରଶଂସା କରିବାକୁ ଲାଗିଲେ । ଦେବତାମାନେ ମଳିନ ମନରେ ଭରତଙ୍କୁ ପ୍ରଶଂସା କରି ତାଙ୍କ ଉପରେ ପୁଷ୍ପ-ବୃଷ୍ଟି କରିବାକୁ ଲାଗିଲେ । ତୁଳସୀ ଦାସ କହନ୍ତି— ସମସ୍ତ ଲୋକ ଭରତଙ୍କ ଭାଷଣ ଶୁଣି ବ୍ୟାକୁଳ ହୋଇପଡ଼ିଲେ ଏବଂ ରାତ୍ରି ଆଗମନରେ କମଳ ସଙ୍କୁଚିତ ହେଲା ପରି ସଙ୍କୁଚିତ ହୋଇପଡ଼ିଲେ ॥ ସୋରଠା :—ଉଭୟ ସମାଜର ନରନାରୀମାନଙ୍କୁ ଦୀନ ଓ ଦୁଃଖୀ ଦେଖି ମହାମଳିନ-ମନା ଇନ୍ଦ୍ର ମୃତକମାନଙ୍କୁ ମାରି ଆପଣାର ମଙ୍ଗଳ କାମନା କରୁଥାଆନ୍ତି ॥ ୩୦୧ ॥

କପଟ କୁଚାଲି ସୀଓଁ ସୁରରାଜୂ । ପର ଅକାଜ ପ୍ରିୟ ଆପନ କାଜୂ ॥
କାକ ସମାନ ପାକରିପୁ ରୀତୀ । ଛଲୀ ମଲୀନ କତହୁଁ ନ ପ୍ରତୀତୀ ॥୧॥
ପ୍ରଥମ କୁମତ କରି କପଟୁ ସଁକେଲା । ସୋ ଉଚାଟୁ ସବ କେଁ ସିର ମେଲା ॥
ସୁରମାୟାଁ ସବ ଲୋଗ ବିମୋହେ । ରାମପ୍ରେମ ଅତିସୟ ନ ବିଛୋହେ ॥୨॥
ଭୟ ଉଚାଟ ବସ ମନ ଥିର ନାହୀଁ । ଛନ ବନ ରୁଚି ଛନ ସଦନ ସୋହାହୀଁ ॥
ଦୁବିଧ ମନୋଗତି ପ୍ରଜା ଦୁଖାରୀ । ସରିତ ସିଂଧୁ ସଂଗମ ଜନୁ ବାରୀ ॥୩॥
ଦୁଚିତ କତହୁଁ ପରିତୋଷୁ ନ ଲହହୀଁ । ଏକ ଏକ ସନ ମରମୁ ନ କହହୀଁ ॥
ଲଖି ହିୟଁ ହଁସି କହ କୃପାନିଧାନୂ । ସରିସ ସ୍ୱାନ ମଘବାନ ଜୁବାନୂ ॥୪॥

ଭରତୁ ଜନକୁ ମୁନିଜନ ସଚିବ ସାଧୁ ସଚେତ ବିହାଇ ।
ଲାଗି ଦେବମାୟା ସବହି ଜଥାଜୋଗୁ ଜନୁ ପାଇ ॥୩୦୨॥

---

କପଟ-କୁଚାଳ-ସୀମା ଅଟେ ସୁରରାଜ । ପର କାର୍ଯ୍ୟ ହାନି, ଅତି ପ୍ରିୟ ନିଜ କାର୍ଯ୍ୟ ॥
କାକ ସମାନ ଅଟଇ ପାକ-ରିପୁ ରୀତି । ଛଳୀ ମଳିନ ନ କରେ କାହାକୁ ପ୍ରତୀତି ॥୧॥
ପ୍ରଥମେ କୁମତି ପାଞ୍ଚି କପଟ ଯୋଡ଼ିଲା । ସେ ଉଚାଟ ସମସ୍ତଙ୍କ ଶିରେ ପକାଇଲା ॥
ସୁର ମାୟାରେ ମୋହିତ ହେଲେ ଲୋକଚୟ । ବିଚ୍ଛେଦ ନ ହୁଏ ରାମପ୍ରେମ ଅତିଶୟ ॥୨॥
ଭୟ ଉଚାଟେ ଅସ୍ଥିର ସମସ୍ତଙ୍କ ମନ । କ୍ଷଣେ ବନ ରୁଚେ, କ୍ଷଣେ ରୁଚଇ ସଦନ ॥
ଦ୍ୱିବିଧ ମନ ଉଦ୍‌ବେଗ ପ୍ରଜା ଦୁଃଖୀ ଭାରି । ସରିତ ସିନ୍ଧୁ ସଙ୍ଗମେ ଯେଉଁପରି ବାରି ॥୩॥
ଦ୍ୱିଚିତ୍ତରେ କାହିଁ ମଧ୍ୟ ତୋଷ ନ ଲଭନ୍ତି । କେହି କାହାକୁ ଏଥିର ମର୍ମ ନ କହନ୍ତି ॥
ବିଲୋକି ହସି ଭାଷନ୍ତି କରୁଣା-ନିଧାନ । ସମ ସ୍ୱଭାବ ଯୌବନ ଶ୍ୱାନ ମଘବାନ ॥୪॥

ଭରତ ଜନକ ମୁନି-ବୃନ୍ଦ ମନ୍ତ୍ରୀ ତେଜି ସାଧୁ ସଚେତଙ୍କୁ ।
ବ୍ୟାପିଲା ପାଇଣ ଯଥାଯୋଗ୍ୟ ଜନେ ସୁରମାୟା ସମସ୍ତଙ୍କୁ ॥୩୦୨॥

---

ଚୌପାଈ:—ଦେବରାଜ ଇନ୍ଦ୍ର କପଟ ଓ କୁଚାଲିର ଶେଷସୀମା । ପରର କାର୍ଯ୍ୟହାନି ଓ ଆପଣାର ସ୍ୱାର୍ଥସାଧନ ତାଙ୍କର ଅତି ପ୍ରିୟ । ତାଙ୍କ ସ୍ୱଭାବ କୁଆର ସ୍ୱଭାବ ପରି । ସେ କପଟୀ ଓ ମଳିନମନା । ତାଙ୍କର କେଉଁଠି କାହା ଉପରେ ହେଲେ ବିଶ୍ୱାସ ନ ଥାଏ ॥ ୧ ॥ ପ୍ରଥମେ ସେ କୁବିଚାର ପାଞ୍ଚି ଛଳ-କପଟ ସଂଗ୍ରହ କଲେ । ତତ୍ପରେ ସେହି କପଟ-ମନ୍ତ୍ରଯୋଗେ ସମସ୍ତଙ୍କୁ ବଶୀଭୂତ କରିଦେଲେ । ପୁଣି ଦେବମାୟା ବଳରେ ସମସ୍ତଙ୍କୁ ବିମୋହିତ କରିଦେଲେ । କିନ୍ତୁ ଶ୍ରୀରାମଚନ୍ଦ୍ରଙ୍କ ପ୍ରେମଠାରୁ ତାଙ୍କର ବିଶେଷ ବିରହ ହୋଇ ନ ଥାଏ ॥ ୨ ॥ ଭୟ ଓ ଉଦ୍‌ବେଗ ହେତୁ କାହାରି ମନ ସ୍ଥିର ହେଉ ନ ଥାଏ । ଏ ମୁହୂର୍ତ୍ତରେ ବନରେ ରହିବାକୁ ସେମାନଙ୍କ ଇଚ୍ଛା ହେଉଛି, ତ ପର ମୁହୂର୍ତ୍ତରେ ଘର ଭଲ ଲାଗୁଛି । ମନର ଏ ପ୍ରକାର ଦ୍ୱିଧାତ୍ମକ ଅବସ୍ଥାରେ ପ୍ରଜାମାନେ ଦୁଃଖୀ ହେଉଥା'ନ୍ତି । ଯଥା ଯେପରି ନଦୀ ଓ ସମୁଦ୍ରର ସଙ୍ଗମ ସ୍ଥଳରେ ଜଳ କ୍ଷୁବ୍ଧ ହେଉଅଛି ॥ ୩ ॥ ଚିତ୍ତର ଏପରି ଦ୍ୱିଧାତ୍ମକ ଅବସ୍ଥାରେ ସେମାନେ କେଉଁଠି ହେଲେ

କୃପାସିନ୍ଧୁ ଲଖି ଲୋଗ ଦୁଖାରେ । ନିଜ ସନେହଁ ସୁରପତି ଛଲ ଭାରେ ॥
ସଭା ରାଉ ଗୁରୁ ମହିସୁର ମଂତ୍ରୀ । ଭରତ ଭଗତି ସବ କୈ ମତି ଜନ୍ତ୍ରୀ ॥୧॥
ରାମହି ଚିତବତ ଚିତ୍ର ଲିଖେ ସେ । ସକୁଚତ ବୋଲତ ବଚନ ସିଖେ ସେ ॥
ଭରତ ପ୍ରୀତି ନତି ବିନୟ ବଡ଼ାଈ । ସୁନତ ସୁଖଦ ବରନତ କଠିନାଈ ॥୨॥
ଜାସୁ ବିଲୋକି ଭଗତି ଲବଲେସୂ । ପ୍ରେମ ମଗନ ମୁନିଗନ ମିଥିଲେସୂ ॥
ମହିମା ତାସୁ କହୈ କିମି ତୁଲସୀ । ଭଗତି ସୁଭାୟଁ ସୁମତି ହିୟଁ ହୁଲସୀ ॥୩॥
ଆପୁ ଛୋଟି ମହିମା ବଡ଼ି ଜାନୀ । କବିକୁଲ କାନି ମାନି ସକୁଚାନୀ ॥
କହି ନ ସକତି ଗୁନ ରୁଚି ଅଧିକାଈ । ମତି ଗତି ବାଲ ବଚନ କୀ ନାଈ ॥୪॥

---

ଦୁଃଖିତ ଦେଖି ଲୋକଙ୍କୁ କରୁଣା-ସାଗର । ହେତୁ ନିଜ ସ୍ନେହ, ଭାରି ଛଳ ସୁରେଶର ॥
ସଭାସଦ ଗୁରୁ ବିପ୍ର ମନ୍ତ୍ରୀ ମହୀପତି । କଣିଛି ଭରତ ଭକ୍ତି ସମସ୍ତଙ୍କ ମତି ॥୧॥
ରାମଙ୍କୁ ଅନାଇଛନ୍ତି ଚିତ୍ରଲେଖା ପରି । ସଙ୍କୋଚ ବୋଲନ୍ତି ବାଣୀ ଶିଖାଇଲା ପରି ॥
ଭରତଙ୍କ ପ୍ରୀତି ନୀତି ବିନୟ ବଡ଼ାଇ । ବର୍ଣ୍ଣିବେ କଠିନ, ଶୁଣିବାକୁ ସୁଖଦାୟୀ ॥୨॥
ଯାହାଙ୍କ ଅବଲୋକଣ ଭକ୍ତି ଲବ ଲେଶ । ପ୍ରେମରେ ନିମଗ୍ନ ମୁନିଗଣ, ମିଥିଲେଶ ॥
ତାଙ୍କ ମହିମା କେମନ୍ତେ କହିବ ତୁଳସୀ । ଭକ୍ତି ସ୍ୱଭାବେ ସୁମତି ପଡ଼ଇ ଉଲ୍ଲସି ॥୩॥
ନିଜକୁ ହୀନ ମହାନ ମହିମା ଜାଣିଣ । ସଙ୍କୋଚେ କବିକୁଳଙ୍କ ମର୍ଯ୍ୟାଦା ମାନିଣ ॥
କହି ନ ପାରଇ ଗୁଣ ହୃଦେ ରୁଚି ଅତି । ବାଳକ ବଚନ ସମ ହୁଏ ମତି ଗତି ॥୪॥

---

ସନ୍ତୋଷ ପାଉ ନ ଥା'ନ୍ତି ଏବଂ କେହି କାହାରିକୁ ଏଥିର ମର୍ମ କହୁ ନ ଥା'ନ୍ତି । କୃପାନିଧାନ ଶ୍ରୀରାମଚନ୍ଦ୍ର ସେମାନଙ୍କର ଏପରି ଦଶା ଦେଖି ହସି ମନେ ମନେ କହିଲେ, "କୁକ୍କୁର, ଇନ୍ଦ୍ର ଓ ନବଯୁବକଙ୍କ ସ୍ୱଭାବ ଏକା ପରି ।" (ପାଣିନୀୟ ବ୍ୟାକରଣ ଅନୁସାରେ ଶ୍ୱନ୍, ଯୁବନ୍ ଓ ମଘବନ୍—ଶବ୍ଦତ୍ରୟର ରୂପ ଏକା ପରି) ॥ ୪ ॥ ଦୋହା '—ଭରତ, ଜନକ, ମୁନିଜନ, ମନ୍ତ୍ରୀ, ଜ୍ଞାନୀ ଓ ସାଧୁସନ୍ଥଙ୍କୁ ଛାଡ଼ି ଅନ୍ୟ ସମସ୍ତଙ୍କୁ ସେମାନଙ୍କ ପ୍ରକୃତି ଓ ସ୍ଥିତି ଅନୁସାରେ ଦେବମାୟା ଗ୍ରାସ କରି ପକାଇଲା ॥ ୩୦୨ ॥ ଚୌପାଇ '—କୃପାସିନ୍ଧୁ ଦୀନବନ୍ଧୁ ଶ୍ରୀରାମଚନ୍ଦ୍ର ଲୋକମାନଙ୍କୁ ନିଜ ସ୍ନେହ ଓ ଇନ୍ଦ୍ରଙ୍କ ଛଳ ହେତୁ ଦୁଃଖିତ ହେବାର ଦେଖିଲେ । ସଭାସଦ୍, ରାଜା, ଜନକ, ଗୁରୁ, ବ୍ରାହ୍ମଣ ଓ ମନ୍ତ୍ରୀ ଆଦି ସମସ୍ତଙ୍କ ବୁଦ୍ଧିକୁ ଭରତଙ୍କ ଭକ୍ତି ବଶୀଭୂତ କରିପକାଇଲା ॥ ୧ ॥ ସମସ୍ତେ ଚିତ୍ରପ୍ରତିମା ପରି ଶ୍ରୀରାମଙ୍କ ଆଡ଼କୁ ଅନାଇଥା'ନ୍ତି । ସେମାନେ ସଙ୍କୁଚିତ ହୋଇ କେହି ଶିଖାଇଦେଲା ପରି କଥା କହୁଥା'ନ୍ତି । ଭରତଙ୍କ ପ୍ରୀତି, ନମ୍ରତା, ବିନୟ ଓ ବଡ଼ାଇ ଶୁଣିବାକୁ ସୁଖଦାୟକ । କିନ୍ତୁ ତାହା ବର୍ଣ୍ଣନା କରିବା କଷ୍ଟକର ॥ ୨ ॥ ଯେଉଁ ଭରତଙ୍କ ଭକ୍ତିର ଲବଲେଶ ମାତ୍ର ଦେଖି ମିଥିଳେଶ ଜନକ ପ୍ରେମରେ ନିମଜ୍ଜିତ ହୋଇଗଲେ, ସେହି ଭରତଙ୍କ ଭକ୍ତିର ମହିମା ତୁଳସୀ ଦାସ କିପରି କହିବ ? ତାଙ୍କ ଭକ୍ତି ସ୍ୱଭାବ ହେତୁ ଅବଶ୍ୟ କବିର ହୃଦୟରେ ସୁମତି (ସୁବୁଦ୍ଧି) ଉଲ୍ଲସିତ ହୋଇ ଉଠିଲା ॥ ୩॥ କିନ୍ତୁ ସେ ବୁଦ୍ଧି ନିଜେ

ଭରତ ବିମଲ ଜସୁ ବିମଲ ବିଧୁ ସୁମତି ଚକୋରକୁମାରି ।
ଉଦିତ ବିମଲ ଜନ ହୃଦୟ ନଭ ଏକଟକ ରହୀ ନିହାରି ॥୩୦୩॥
ଭରତ ସୁଭାଉ ନ ସୁଗମ ନିଗମହୂଁ । ଲଘୁ ମତି ଚାପଲତା କବି ଛମହୂଁ ॥
କହତ ସୁନତ ସତି ଭାଉ ଭରତ କୋ । ସୀୟ ରାମ ପଦ ହୋଇ ନ ରତ କୋ ॥୧॥
ସୁମିରତ ଭରତହି ପ୍ରେମୁ ରାମ କୋ । ଜେହି ନ ସୁଲଭୁ ତେହି ସରିସ ବାମ କୋ ॥
ଦେଖି ଦୟାଲ ଦସା ସବହୀ କୀ । ରାମ ସୁଜାନ ଜାନି ଜନ ଜୀ କୀ ॥୨॥
ଧରମ ଧୁରୀନ ଧୀର ନୟ ନାଗର । ସତ୍ୟ ସନେହ ସୀଲ ସୁଖ ସାଗର ॥
ଦେସୁ କାଲୁ ଲଖି ସମଉ ସମାଜୂ । ନୀତି ପ୍ରୀତି ପାଲକ ରଘୁରାଜୂ ॥୩॥

---

ଭରତଙ୍କ ଶୁଭ୍ର-ଯଶ ଶୁଭ୍ର ଶଶୀ ଚକୋର କନ୍ୟା ସୁମତି ।
ଉଦିତ ଭକ୍ତଙ୍କ ହୃଦ-ଶୁଭ୍ର କାଶେ ନିର୍ନିମେଷ ନିରେଖନ୍ତି ॥୩୦୩॥
ଭରତ ସ୍ୱଭାବ ନୁହେଁ ଶ୍ରୁତିଙ୍କୁ ସୁଗମ । କ୍ଷୁଦ୍ର ବୁଦ୍ଧି ଚପଳତା କବି ଜନ, କ୍ଷମ ॥
କହନ୍ତେ ଶୁଣନ୍ତେ ସତ୍ୟ ଭାବ ଭରତଙ୍କ । ଚରଣେ ରତ ନ ହୁଏ କେ ସୀତା ରାମଙ୍କ ॥୧॥
ସୁମରନ୍ତେ ଭରତଙ୍କୁ ରାମ ଅନୁରାଗ । ଯାହାକୁ ଦୁର୍ଲ୍ଲଭ କିଏ ତା' ସମ ଅଭାଗ୍ୟ ॥
ନିରେଖିଣ ସମସ୍ତଙ୍କ ଦଶା ଦୟାମୟ । ଚତୁର ଶ୍ରୀ ରାମ ଜାଣି ଜନଙ୍କ ହୃଦୟ ॥୨॥
ଧର୍ମ-ଧୁରନ୍ଧର, ଧୀର, ନୀତିର ନାଗର । ସତ୍ୟ-ସ୍ନେହ-ଶୀଳ-ସୁଖ-ଆନନ୍ଦ-ସାଗର ॥
ଅବଲୋକି ଦେଶ, କାଳ, ସମୟ, ସମାଜ । ପାଳକ ନୀତି ପ୍ରୀତିର ସଦା ରଘୁରାଜ ॥୩॥

---

ଅତି ଶ୍ରେଷ୍ଠ ଏବଂ ଭରତଙ୍କ ମହିମା ଅତି ବଡ଼ ବୋଲି ଜାଣି କବିପରମ୍ପରାର ମର୍ଯ୍ୟାଦା ମାନ ସଙ୍କୁଚିତ ହୋଇଗଲା । ( ବର୍ଣ୍ଣନା କରିବାକୁ ସାହସ କଲେନାହିଁ । ) ଗୁଣ ପ୍ରତି ତାହାର ରୁଚି ତ ବହୁତ, କିନ୍ତୁ ତାହା ସବୁ କହିବାକୁ ସେ ଅସମର୍ଥ । ବୁଦ୍ଧିର ଗତି ବାଳକ-ବଚନ ସମାନ କୁଣ୍ଠିତ ହୋଇଗଲା ॥ ୪ ॥ ଦୋହା —ଭରତଙ୍କ ନିର୍ମଳ ଯଶ ନିର୍ମଳ ଚନ୍ଦ୍ରମା ଏବଂ କବିଙ୍କ ସୁବୁଦ୍ଧି ଚକୋରୀ । ଉକ୍ତ ଚକୋରୀ ଭକ୍ତଗଣଙ୍କ ହୃଦୟ-ନିର୍ମଳାକାଶରେ ଯଶ-ଚନ୍ଦ୍ରମାଙ୍କୁ ଉଦିତ ହେବାର ଦେଖି ତାହାଙ୍କ ଆଡ଼କୁ ନିନିମେଷ ନୟନରେ ମାତ୍ର ଅନାଇଁ ରହିଲା । ( ତେବେ ତାହାର ବର୍ଣ୍ଣନା କିଏ କରି ପାରିବ ? ) ॥ ୩୦୩ ॥ ଚୌପାଈ :—ଭରତଙ୍କ ସ୍ୱଭାବର ବର୍ଣ୍ଣନା କରିବା ବେଦ-ମାନଙ୍କ ପକ୍ଷରେ ମଧ୍ୟ ସହଜ ନୁହେଁ । ଅତଏବ ମୋର ତୁଚ୍ଛ ବୁଦ୍ଧିର ଚଞ୍ଚଳତାକୁ କବିମାନେ କ୍ଷମା କରନ୍ତୁ । ଭରତଙ୍କ ସ୍ୱଭାବ କଥା କହୁ କହୁ ଏବଂ ଶୁଣୁ ଶୁଣୁ ଏପରି କିଏ ଅଛି, ଯେ ସୀତାରାମଙ୍କ ଚରଣପ୍ରତି ଅନୁରକ୍ତ ନ ହେବ ? ॥ ୧ ॥ ଭରତଙ୍କୁ ସ୍ମରଣ କରିବା ମାତ୍ରେ ଯାହାକୁ ଶ୍ରୀରାମପ୍ରେମ ସୁଲଭ ନ ହୁଏ, ତାହା ସମାନ ହତଭାଗ୍ୟ ଆଉ କିଏ ? ଦୟାଳୁ ଓ ସୁଜ୍ଞ ଶ୍ରୀରାମ ସମସ୍ତଙ୍କ ଦଶା ଦେଖିଲେ ଏବଂ ଭକ୍ତ ଭରତଙ୍କ ହୃଦୟର ଅବସ୍ଥା ମଧ୍ୟ ଜାଣିଲେ ॥ ୨ ॥ ଦେଖି ଓ ଜାଣି ଧର୍ମ-ଧୁରନ୍ଧର, ଧୀର, ନୀତିଚତୁର, ସତ୍ୟ, ସ୍ନେହ, ଶୀଳ ଓ ସୁଖର ସାଗର ଏବଂ ନୀତି ଓ ପ୍ରୀତିର ପାଳନକାରୀ

ବୋଲେ ବଚନ ବାନି ସରବସୁ ସେ । ହିତ ପରିନାମ ସୁନତ ସସି ରସୁ ସେ ॥
ତାତ ଭରତ ତୁମ୍ହ ଧରମ ଧୁରୀନା । ଲୋକ ବେଦ ବିଦ ପ୍ରେମ ପ୍ରବୀନା ॥୪॥
କରମ ବଚନ ମାନସ ବିମଲ ତୁମ୍ହ ସମାନ ତୁମ୍ହ ତାତ ।
ଗୁର ସମାଜ ଲଘୁ ବଂଧୁ ଗୁନ କୁସମୟଁ କିମି କହି ଜାତ ॥୩୦୪॥
ଜାନହୁ ତାତ ତରନିକୁଲ ରୀତୀ । ସତ୍ୟସଂଧ ପିତୁ କୀରତି ପ୍ରୀତୀ ॥
ସମଉ ସମାଜୁ ଲାଜ ଗୁରଜନ କୀ । ଉଦାସୀନ ହିତ ଅନହିତ ମନ କୀ ॥୧॥
ତୁମ୍ହହି ବିଦିତ ସବହୀ କର କରମୂ । ଆପନ ମୋର ପରମ ହିତ ଧରମୂ ॥
ମୋହି ସବ ଭାଁତି ଭରୋସ ତୁମ୍ହାରା । ତଦପି କହଉଁ ଅବସର ଅନୁସାରା ॥୨॥
ତାତ ତାତ ବିନୁ ବାତ ହମାରୀ । କେବଲ ଗୁରକୁଲ କୃପାଁ ସଁଭାରୀ ॥
ନତରୁ ପ୍ରଜା ପରିଜନ ପରିବାରୂ । ହମହି ସହିତ ସବୁ ହୋତ ଖୁଆରୂ ॥୩॥

---

ଭାଷିଲେ ବଚନ ବାଣୀ ସର୍ବସ୍ୱ ଯେମନ୍ତେ । ଶ୍ରୁଣିବାକୁ ସୁଧାସମ ହିତକର ଅନ୍ତେ ॥
ତୁମେ ହେ ଭ୍ରାତ ଭରତ ! ଧରମ ଧୁରୀଣ । ଲୋକବେଦ ବେନି ଜ୍ଞାତା ପ୍ରେମରେ ପ୍ରବୀଣ ॥୪॥
କରମ ବଚନ ମନେ ସୁପାବନ ଭାଇ, ତୁମେ ତୁମ ସରି ।
କୁସମୟେ ଗୁରୁ-ସମାଜେ କହିବି ଅନୁଜ ଗୁଣ କିପରି ॥୩୦୪॥
ଜାଣ ତୁମେ ଭ୍ରାତ, ଦିବାକର-କୁଳରୀତି । ସତ୍ୟ-ସନ୍ଧ ପିତାଙ୍କର ଅନୁରାଗ କୀର୍ତ୍ତି ॥
ସମୟ ସମାଜ ଲାଜ ଗୁରୁଜନଙ୍କର । ଭାବ ଉଦାସୀନ ଶତ୍ରୁ ମିତ୍ରଙ୍କ ମନର ॥୧॥
ତୁମଙ୍କୁ ସମସ୍ତଙ୍କର ବିଦିତ କରମ । ତୁମ ଆମର ପରମ କଲ୍ୟାଣ ଧରମ ॥
ମୋତେ ତୁମର ଭରସା ସମସ୍ତ ପ୍ରକାରେ । ତଥାପି କହୁଛୁ କିଛୁ ସମୟାନୁସାରେ ॥୨॥
ଭ୍ରାତ ! ପିତା ବିନା ଆମ ବିଷୟ ସକଳ । ସମ୍ଭାଳିଲା କୁଳଗୁରୁ କରୁଣା କେବଳ ॥
ନରୁ ପ୍ରଜା ପରିଜନ ଗୃହ ପରିବାର । ଆମ ସହ ହୋଇଥାନ୍ତେ ସର୍ବେ ନାରଖାର ॥୩॥

---

ଶ୍ରୀରାମ ଦେଶ, କାଳ, ଅବସର ଓ ସମାଜ ଅନୁସାରେ ବଚନ ବୋଇଲେ । ଉକ୍ତ ବଚନ ବାଣୀସର୍ବସ୍ୱ ହେବା ସଙ୍ଗେ ସଙ୍ଗେ ପରିଣାମରେ ମଧ୍ୟ ହିତପ୍ରଦ ଏବଂ ଶ୍ରୁଣିବାକୁ ତାହା ଚନ୍ଦ୍ରମାରସ (ଅମୃତ) ସମାନ ଆନନ୍ଦଦାୟକ । ସେ କହିଲେ, "ବତ୍ସ ଭରତ ! ତୁମେ ଧର୍ମ-ଧୁରନ୍ଧର, ଲୋକ-ବେଦର ଜ୍ଞାତା ଏବଂ ପ୍ରେମପ୍ରବୀଣ ॥ ୪ ॥ ଦୋହା :—ହେ ବତ୍ସ ! ମନ, ବଚନ ଓ କର୍ମରେ ତୁମେ ହିଁ ତୁମ ସମାନ ନିର୍ମଳ । ଗୁରୁଜନଙ୍କ ସମାଜରେ ଏବଂ ଏପରି କୁସମୟରେ ସାନ ଭାଇର ଗୁଣ କେତେ ପ୍ରକାରେ କୁହାଯାଇ ପାରିବ ? ॥ ୩୦୪ ॥ ଚୌପାଇ :—ହେ ବତ୍ସ ! ତୁମେ ସୂର୍ଯ୍ୟକୁଳର ରୀତି, ସତ୍ୟ-ପ୍ରତିଜ୍ଞ ପିତାଙ୍କ ପ୍ରୀତି ଓ କୀର୍ତ୍ତି, ସମୟ, ସମାଜ ଓ ଗୁରୁଜନଙ୍କ ଲଜ୍ଜାମର୍ଯ୍ୟାଦା ଏବଂ ଉଦାସୀନ, ମିତ୍ର ଓ ଶତ୍ରୁ—ସମସ୍ତଙ୍କ ମନ କଥା ଜାଣ ॥ ୧ ॥ ତୁମଙ୍କୁ ସମସ୍ତଙ୍କ କର୍ତ୍ତବ୍ୟ, ଏବଂ ତୁମ ନିଜର ଓ ମୋର ପରମ-ହିତକାରୀ ଧର୍ମ ବିଷୟ ବିଦିତ । ଯଦ୍ୟପି ତୁମଠାରେ ମୋର ସମସ୍ତ ପ୍ରକାର ଭରସା, ତଥାପି ମୁଁ ସମୟାନୁସାରେ କିଛି କହୁଛି ॥ ୨ ॥ ହେ

ଜୌଁ ବିନୁ ଅବସର ଅଥଵଁ ଦିନେସୂ । ଜଗ କେହି କହହୁ ନ ହୋଇ କଲେସୂ ॥
ତସ ଉତପାତୁ ତାତ ବିଧି କୀନ୍ହା । ମୁନି ମିଥିଲେସ ରାଖି ସବୁ ଲୀନ୍ହା ॥୩॥
ରାଜ କାଜ ସବ ଲାଜ ପତି ଧରମ ଧରନି ଧନ ଧାମ ।
ଗୁର ପ୍ରଭାଉ ପାଲିହି ସବହି ଭଲ ହୋଇହି ପରିନାମ ॥୨୫୪॥
ସହିତ ସମାଜ ତୁମ୍ହାର ହମାରା । ଘର ବନ ଗୁର ପ୍ରସାଦ ରଖଵାରା ॥
ମାତୁ ପିତା ଗୁର ସ୍ୱାମି ନିଦେସୂ । ସକଲ ଧରମ ଧରନୀଧର ସେସୂ ॥୧॥
ସୋ ତୁମ୍ହ କରହୁ କରାଵହୁ ମୋହୂ । ତାତ ତରନିକୁଲ ପାଲକ ହୋହୂ ॥
ସାଧକ ଏକ ସକଲ ସିଧି ଦେନୀ । କୀରତି ସୁଗତି ଭୂତିମୟ ବେନୀ ॥୨॥
ସୋ ବିଚାରି ସହି ସଂକଟୁ ଭାରୀ । କରହୁ ପ୍ରଜା ପରିବାରୁ ସୁଖାରୀ ॥
ବାଁଟୀ ବିପତି ସବହିଁ ମୋହି ଭାଈ । ତୁମ୍ହହି ଅବଧି ଭରି ବଡ଼ି କଠିନାଈ ॥୩॥

---

ଯେବେ ଅସମୟେ ଅସ୍ତ ହୁଅନ୍ତି ଦିନେଶ ' ଜଗତେ କାହାକୁ, କହ, ନ ହୁଅଇ କ୍ଳେଶ ॥
ତେମନ୍ତ ପିତାଙ୍କ ହରି ବିଧାତା ଉତ୍ପାତ । ମୁନି ମିଥିଳେଶ ସବୁ ରଖିନେଲେ, ତାତ ! ॥୩॥
ସର୍ବ ରାଜ କାର୍ଯ୍ୟ, ଧନ, ମାନ, ଲାଜ, ଧରଣୀ, ଧରମ, ଧାମ ।
ଗୁରୁଙ୍କ ପ୍ରଭାବ ପାଳନ କରିବ, ଭଲ ହେବ ପରିଣାମ ॥୨୫୪॥
ହେ ତାତ ! ତୁମର ଆମର ଅନ୍ୟ ସମସ୍ତଙ୍କ । ଗୃହେ ବନେ ହେବ ଗୁରୁ-ପ୍ରସାଦ ରକ୍ଷକ ॥
ଜନନୀ ଜନକ ଗୁରୁ ସ୍ୱାମୀଙ୍କ ନିର୍ଦ୍ଦେଶ । ସମସ୍ତ ଧର୍ମ-ଧରଣୀ-ଧାରଣେ ବା ଶେଷ ॥୧॥
ତାହା ତୁମେ କର ଅଉ ମୋ କରେ କରାଅ । ତରଣିକୁଳର ହେ ତାତ ! ପାଳକ ହୁଅ ॥
ଏହି ଏକ ସର୍ବ ସିଦ୍ଧିଦାୟକ ସାଧନ । କୀର୍ତ୍ତି ସଦ୍ଗତି ବିଭୂତିର ତ୍ରିବେଣୀ ଶୋଭନ ॥୨॥
ଏମନ୍ତ ବିଚାରି ସହ ସଙ୍କଟ ବିପୁଳ । ସୁଖୀ କର ଯାଇ ପ୍ରଜା ପରିଜନ-କୁଳ ॥
ସର୍ବେ ନେଲେ ଭାଇ ! ମୋର ବାଣ୍ଟି କରି ବିପତ୍ତି । ତୁମକୁ ଅବଧି ଯାଏ କଷ୍ଟ ହେବ ଅତି ॥୩॥

---

ବତ୍ସ ! ପିତାଙ୍କ ଅନୁପସ୍ଥିତିରେ କେବଳ ଗୁରୁ ବଶିଷ୍ଠଙ୍କ କୃପା ଆମ୍ଭମାନଙ୍କ ଦାୟିତ୍ୱ ସମ୍ଭାଳି ରହିଅଛି । ଅନ୍ୟଥା ଆମ୍ଭମାନଙ୍କ ସହ ସମସ୍ତ ପ୍ରଜା, କୁଟୁମ୍ବ, ପରିବାର ଆଦି ସମସ୍ତେ ନାରଖାର ହୋଇ ଯାଇଥା'ନ୍ତେ ॥୨॥ ଯଦି ଅସମୟରେ (ସନ୍ଧ୍ୟା ପୂର୍ବରୁ) ସୂର୍ଯ୍ୟାସ୍ତ ହୋଇଯାଏ, ତେବେ ଜଗତରେ କାହାକୁ କ୍ଳେଶ ନ ହେବ ? କୁହ ତ ! ହେ ବତ୍ସ ! ପିତାଙ୍କର ଅକାଳ ମୃତ୍ୟୁ ଘଟାଇ ସେହିପରି ଘୋର ଏ ଉତ୍ପାତ ବିଧାତା କରି ଦେଇଛନ୍ତି । କିନ୍ତୁ ମୁନି ମହାରାଜ ଓ ମିଥିଳେଶ୍ୱର ସମସ୍ତଙ୍କୁ ରକ୍ଷା କରି ନେଇଛନ୍ତି ॥୩॥ ଦୋହା'—ଗୁରୁଙ୍କ ପ୍ରଭାବ ବା ସାମର୍ଥ୍ୟ ରାଜାର ସମସ୍ତ କାର୍ଯ୍ୟ, ଲଜ୍ଜା, ପ୍ରତିଷ୍ଠା, ଧର୍ମ, ପୃଥିବୀ, ଧନ, ଗୃହ ଆଦି ସମସ୍ତ ବିଷୟର ରକ୍ଷଣାବେକ୍ଷଣ କରିବ ଏବଂ ପରିଣାମ ଶୁଭମୟ ହେବ ' ୨୫୪ ॥ ଚୌପାଇ :—ଗୁରୁଙ୍କର ପ୍ରସାଦ ହିଁ ଗୃହରେ ଓ ବନରେ ସମାଜ ସମେତ ତୁମର ଓ ଆମର ରକ୍ଷକ । ମାତା, ପିତା, ଗୁରୁ ଓ ସ୍ୱାମୀଙ୍କ ଆଜ୍ଞା-ପାଳନ ସମସ୍ତ ଧର୍ମ-ଧରଣୀକୁ ଧାରଣ କରିବା ବିଷୟରେ ଶେଷଙ୍କ ସମାନ ॥୧॥ ହେ ବତ୍ସ !

ଜାନି ତୁମ୍ହହି ମୃଦୁ କହଉଁ କଠୋରା । କୁସମୟଁ ତାତ ନ ଅନୁଚିତ ମୋରା ॥
ହୋହିଁ କୁଠାୟଁ ସୁବଂଧୁ ସହାଏ । ଓଡିଅହିଁ ହାଥ ଅସନିହୁ କେ ଘାଏ ॥୪॥

ସେବକ କର ପଦ ନୟନ ସେ ମୁଖ ସୋ ସାହିବୁ ହୋଇ ।
ତୁଲସୀ ପ୍ରୀତି କି ରୀତି ସୁନି ସୁକବି ସରାହହିଁ ସୋଇ ॥୩୦୬॥

ସଭା ସକଲ ସୁନି ରଘୁବର ବାନୀ । ପ୍ରେମ ପୟୋଧି ଅମିଅଁ ଜନୁ ସାନୀ ॥
ସିଥିଲ ସମାଜ ସନେହ ସମାଧୀ । ଦେଖି ଦସା ଚୁପ ସାରଦ ସାଧୀ ॥୧॥
ଭରତହି ଭୟଉ ପରମ ସଂତୋଷୂ । ସନମୁଖ ସ୍ୱାମି ବିମୁଖ ଦୁଖ ଦୋଷୂ ॥
ମୁଖ ପ୍ରସନ୍ନ ମନ ମିଟା ବିଷାଦୂ । ଭା ଜନୁ ଗୂଁଗେହି ଗିରା ପ୍ରସାଦୂ ॥୨॥

---

ଜାଣି ମୁଁ ତୁମଙ୍କୁ ମୃଦୁ କହୁଛି କଠୋର । କୁସମୟ ଭ୍ରାତ ! ନୁହେ ଅନୁଚିତ ମୋର ॥
କୁସ୍ଥାନେ ଉତ୍ତମ ଭ୍ରାତା ସାହାଯ୍ୟ କରଇ । ବଜ୍ର ଆଦି ଆଘାତକୁ ହସ୍ତ ନିବାରଇ ॥୪॥

ସେବକ ନୟନ କରପଦ ସମ ସ୍ୱାମୀ ହେଲେ ମୁଖ ପ୍ରାଏ ।
ତୁଲସୀ, ପ୍ରୀତିର ରୀତି ଦେଖିବାର ସୁକବି ପ୍ରଶଂସି ଗାଏ ॥୩୦୬॥

ସମସ୍ତ ସମାଜ ଶୁଣି ରାମଙ୍କ ବଚନ । ପ୍ରେମ ସୁଧା-ପୟୋଧିରେ ପ୍ଲାବିତ ଯେସନ ॥
ସ୍ନେହ-ସମାଧିରେ ଲୋକେ ଶିଥିଳ ହୋଇଲେ । ଦଶା ଦେଖି ସରସ୍ୱତୀ ମଉନ ସାଧିଲେ ॥୧॥
ଭରତ ହୃଦେ ଲଭିଲେ ପରମ ସନ୍ତୋଷ । ସ୍ୱାମୀଙ୍କର ଆନୁକୂଲ୍ୟେ ନଷ୍ଟ ଦୁଃଖ ଦୋଷ ॥
ମୁଖ ପ୍ରସନ୍ନ ମନରୁ ତୁଟିଲା ବିଷାଦ । ହୋଇଲା କିବା ମୂକକୁ ବାଣୀଙ୍କ ପ୍ରସାଦ ॥୨॥

---

ତୁମେ ତାହା ହିଁ କର ଏବଂ ମୋତେ ତାହା କରିବା ଦିଗରେ ସାହାଯ୍ୟ କର । ଏହିପରି ସୂର୍ଯ୍ୟକୁଳର ରକ୍ଷକ ହୁଅ । ସାଧକ ନିମନ୍ତେ ଏହି ଏକମାତ୍ର ଆଜ୍ଞା-ପାଳନର ସାଧନା ସମସ୍ତ ସିଦ୍ଧିର ଦାତ୍ରୀ ଏବଂ ଏହା କୀର୍ତ୍ତିମୟୀ, ସଦ୍‌ଗତିମୟୀ ଓ ଐଶ୍ୱର୍ଯ୍ୟମୟୀ ତ୍ରିବେଣୀ ॥୨॥ ଏହାକୁ ବିଚାର କରି କଠିନତମ ସଙ୍କଟ ସହନପୂର୍ବକ ପ୍ରଜା ଓ ପରିବାରବର୍ଗଙ୍କୁ ସୁଖୀ କର । ହେ ଭାଇ ! ମୋର ବିପତ୍ତି ତ ସମସ୍ତେ ବାଣ୍ଟି ନେଇଅଛନ୍ତି । କିନ୍ତୁ ତୁମ ପକ୍ଷରେ ତ ଚଉଦ ବର୍ଷ ପର୍ଯ୍ୟନ୍ତ ବଡ କଠିନ ସମୟ ॥ ୩ ॥ ତୁମଙ୍କୁ କୋମଳ ଜାଣି ମଧ୍ୟ ମୁଁ କଠୋର କହୁଛି । ହେ ବତ୍ସ ! କୁସମୟରେ ଏହା ମୋ ପକ୍ଷରେ କୌଣସି ଅନୁଚିତ କଥା ନୁହେଁ । କୁସ୍ଥାନରେ ଉତ୍ତମ ଭାଇ ହିଁ ସହାୟକ ହୋଇଥାଏ । ବଜ୍ର ଆଦିର ଆଘାତକୁ ମଧ୍ୟ ହାତରେ ନିବାରଣ କରାଯାଇପାରେ ॥ ୪ ॥ ଦୋହା —ସେବକ ହାତ, ପାଦ ଓ ନୟନ ପରି ଏବଂ ସ୍ୱାମୀ ମୁଖ ସମାନ । ତୁଲସୀ ଦାସ କହନ୍ତି—ସେବକ-ସ୍ୱାମୀଙ୍କ ମଧ୍ୟରେ ଏପରି ପ୍ରୀତିର ରୀତି ଶୁଣି ସୁକବିମାନେ ତାହାକୁ ପ୍ରଶଂସା କରନ୍ତି ।" ॥ ୩୦୬ ॥ ଚୌପାଇ —ଶ୍ରୀରାମଚନ୍ଦ୍ରଙ୍କ ବାଣୀ ସତେ ଅବା ପ୍ରେମ-ସମୁଦ୍ରରୁ ଜାତ ଅମୃତ ଦ୍ୱାରା ସିକ୍ତ ହୋଇଥିଲା । ସାରା ସମାଜ ତାହା ଶୁଣି ଶିଥିଳ ହୋଇଗଲା । ସମସ୍ତେ ସତେ ଯେପରି ପ୍ରେମସମାଧିସ୍ଥ ହୋଇ ପଡିଛନ୍ତି ! ଏହି ଦଶା ଦେଖି ସରସ୍ୱତୀ ମୌନ ସାଧନ କଲେ ॥ ୧ ॥ ଭରତ ପରମ ସନ୍ତୋଷ ଲାଭ କଲେ ।

କହି ସପ୍ରେମ ପ୍ରନାମୁ ବହୋରି । ବୋଲେ ପାନି ପଙ୍କରୁହ ଜୋରି ॥
ନାଥ ଭୟଉଁ ସୁଖ ସାଥ ଗଏ କୋ । ଲହେଉଁ ଲାହୁ ଜଗ ଜନମୁ ଭଏ କୋ ॥୩॥
ଅବ କୃପାଲ ଜସ ଆୟସୁ ହୋଈ । କରୌଂ ସୀସ ଧରି ସାଦର ସୋଈ ॥
ସୋ ଅବଲମ୍ବ ଦେବ ମୋହି ଦେଈ । ଅବଧି ପାରୁ ପାଵୌଂ ଜେହି ସେଈ ॥୪॥

ଦେବ ଦେବ ଅଭିଷେକ ହିତ ଗୁର ଅନୁସାସନୁ ପାଇ ।
ଆନେଉଁ ସବ ତୀରଥ ସଲିଲୁ ତେହି କହଁ କାହ ରଜାଇ ॥୩୦୭॥

ଏକୁ ମନୋରଥୁ ବଡ଼ ମନ ମାହୀଂ । ସଭୟଁ ସକୋଚ ଜାତ କହି ନାହୀଂ ॥
କହହୁ ତାତ ପ୍ରଭୁ ଆୟସୁ ପାଈ । ବୋଲେ ବାନି ସନେହ ସୁହାଈ ॥୧॥
ଚିତ୍ରକୂଟ ସୁଚି ଥଲ ତୀରଥ ବନ । ଖଗ ମୃଗ ସର ସରି ନିର୍ଝର ଗିରିଗନ ॥
ପ୍ରଭୁ ପଦ ଅଙ୍କିତ ଅବନି ବିସେଷୀ । ଆୟସୁ ହୋଇ ତ ଆଵୌଂ ଦେଖୀ ॥୨॥

---

ଅତି ପ୍ରେମ ଭରେ ସ୍ତୁତି କରି ପ୍ରଣିପାତ । କହିଲେ ଯୋଡ଼ି ଯୁଗଳ କର-ଜଳଜାତ ॥
ନାଥ ! ଆପଣଙ୍କ ସଙ୍ଗ ସଙ୍ଗରେ ଯିବାର । ଲଭିଲି ମୁଁ ଜଗତେ ଜନ୍ମ ଲଭିବାର ॥୩॥
ଏବେ କୃପାଳୁ, ଆଦେଶ ହୋଇବ ଯେପରି । ସାଦରେ କରିବି ତାହା ଶିରୋଧାର୍ଯ୍ୟ କରି ॥
ଦିଅନ୍ତୁ ଗୋସାଇଁ, ମୋତେ ସେ ଅବଲମ୍ବନ । ଅବଧି ପାର ପାଇବି କରି ଯା ସେବନ ॥୪॥

ଦେବ, ଦେବଙ୍କର ଅଭିଷେକ ପାଇଁ ଲଭି ଗୁରୁ ଅନୁମତି ।
ଆଣିଛି ସକଳ ତୀର୍ଥର ସୁଜଳ, କି ଆଦେଶ ସେଥି ପ୍ରତି ॥୩୦୭॥

ଏକ ଅଭିଳାଷ ମୋର ମନେ ଉପୁଜଇ । ସଭୟ ସଙ୍କୋଚ ବଶ କହି ନ ହୁଅଇ ॥
'କହ ହେ ତାତ !' ଲଭିଣ ପ୍ରଭୁ ଅନୁମତି । କହିଲେ ଭରତ ସ୍ନେହେ ସୁନ୍ଦର ଭାରତୀ ॥୧॥
ଚିତ୍ରକୂଟ ପୁନିତ ତୀର୍ଥ ବନ ସର । ସରିତ ଶଇଳ ମୃଗ ବିହଙ୍ଗ ନିର୍ଝର ॥
ପ୍ରଭୁ ଚରଣ ଚିହ୍ନିତ ଅବନୀ ବିଶେଷ । ଦର୍ଶନ କରି ଆସିବି ହୋଇଲେ ଆଦେଶ ॥୨॥

---

ପୂର୍ଣ୍ଣ ଅନୁକୂଳ ହେବା ମାତ୍ରେ ତାଙ୍କର ଦୁଃଖ ଓ ଦୋଷ ସବୁ ଦୂର ହୋଇଗଲା । ତାଙ୍କ ମୁଖ ପ୍ରସନ୍ନ ହୋଇଗଲା ଏବଂ ମନର ବିଷାଦ ମେଣ୍ଟିଗଲା । ମୂକକୁ ସରସ୍ୱତୀଙ୍କ ପ୍ରସାଦ (ବାଣୀ) ମିଳିଗଲା କି ! ॥ ୨ ॥ ସେ ସ୍ତୁତି ପ୍ରେମ-ପୂର୍ବକ ପ୍ରଣାମ କଲେ ଏବଂ କର-କମଳ ଯୋଡ଼ି କହିଲେ, "ହେ ନାଥ ! ଆପଣଙ୍କ ସହ ଗମନ କରିବାର ସୁଖ ମୋତେ ମିଳିଗଲା ଏବଂ ମୁଁ ଜଗତରେ ଜନ୍ମଗ୍ରହଣ କରିଥିବାର ସୁଫଳ ମଧ୍ୟ ପାଇଗଲି ॥ ୩ ॥ ହେ କୃପାଳୁ ! ଏବେ ଯେଉଁପରି ଆଜ୍ଞା ହେବ, ମୁଁ ତାହା ଶିରୋଧାର୍ଯ୍ୟ କରି ଆଦର ସହିତ ପାଳନ କରିବି । କିନ୍ତୁ ହେ ଦେବ ! ଆପଣ ମୋତେ କୌଣସି ଏକ ଅବଲମ୍ବନ ଦିଅନ୍ତୁ, ଯାହାକୁ ସେବା କରି ମୁଁ ଏହି ଅବଧି ପାର ହୋଇ ପାରିବି ॥୪॥ ଦୋହା :— ହେ ଦେବ ! ପ୍ରଭୁ (ଆପଣ)ଙ୍କ ଅଭିଷେକ ନିମନ୍ତେ ମୁଁ ଗୁରୁଙ୍କ ଆଜ୍ଞାନୁସାରେ ସମସ୍ତ ତୀର୍ଥର ଜଳ ନେଇ ଆସିଅଛି । ସେଥିନିମନ୍ତେ ପ୍ରଭୁଙ୍କର କି ଆଜ୍ଞା ହେଉଛି ? ॥ ୩୦୭ ॥ ଚୌପାଈ :—ମୋ ମନରେ ଗୋଟିଏ ବଡ଼ ମନୋରଥ ରହିଛି । ଭୟ ଓ ସଙ୍କୋଚ

ଅବସି ଅତ୍ରି ଆୟସୁ ସିର ଧରହୂ । ତାତ ବିଗତଭୟ କାନନ ଚରହୂ ॥
ମୁନି ପ୍ରସାଦ ବନୁ ମଂଗଲ ଦାତା । ପାବନ ପରମ ସୁହାୱନ ଭ୍ରାତା ॥୩॥
ରିଷିନାୟକୁ ଜହଁ ଆୟସୁ ଦେହୀଁ । ରାଖେହୁ ତୀରଥ ଜଲୁ ଥଲ ତେହୀଁ ॥
ସୁନି ପ୍ରଭୁ ବଚନ ଭରତ ସୁଖୁ ପାୱା । ମୁନି ପଦ କମଲ ମୁଦିତ ସିରୁ ନାୱା ॥୪॥
ଭରତ ରାମ ସଂବାଦୁ ସୁନି ସକଲ ସୁମଂଗଲ ମୂଲ ।
ସୁର ସ୍ୱାରଥୀ ସରାହି କୁଲ ବରଷତ ସୁରତରୁ ଫୂଲ ॥୩୦୮॥
ଧନ୍ୟ ଭରତ ଜୟ ରାମ ଗୋସାଈଁ । କହତ ଦେବ ହରଷତ ବରିଆଈଁ ॥
ମୁନି ମିଥିଲେସ ସଭାଁ ସବ କାହୂ । ଭରତ ବଚନ ସୁନି ଭୟଉ ଉଛାହୂ ॥୧॥

---

ଅବଶ୍ୟ ଅତ୍ରି ମୁନିଙ୍କ ଆଜ୍ଞା ଶିରେ ଧରି । ଭ୍ରାତ ! ବିପିନେ ବିଚର ଭୟ ତ୍ୟାଗ କରି ॥
ମୁନି ପ୍ରସାଦେ କାନନ ସୁମଙ୍ଗଳ-ଦାତା । ପରମ ପାବନ ଅତି ଶୋଭାମୟ, ଭ୍ରାତା ॥୩॥
ଋଷିନାୟକ ଆଦେଶ ଦେବେ ପୁଣି ଯହିଁ । ରଖିବ ତୀର୍ଥ ସଲିଳ ସ୍ଥଳ ଦେଖି ତହିଁ ॥
ଶୁଣି ପ୍ରଭୁ ବାଣୀ ସୁଖ ଭରତ ଲଭିଲେ । ମୁନି ପଦ-କଞ୍ଜେ ପ୍ରେମେ ପ୍ରଣାମ କଲେ ॥୪॥
ଶୁଣନ୍ତେ ଭରତ-ରାମଙ୍କ ବୃତ୍ତାନ୍ତ ସକଳ ମଙ୍ଗଳ ମୂଳ ।
ସ୍ୱାର୍ଥୀ ସୁରଦଳ ସୁର-ତରୁ ଫୁଲ ସିଞ୍ଚନ୍ତି ପ୍ରଶଂସି କୁଳ ॥୩୦୮॥
ଧନ୍ୟ ହେ ଭରତ, ଜୟ ପ୍ରଭୁ ରାମଚନ୍ଦ୍ର । କହୁ ଉଚ୍ଚସ୍ୱରେ ସୁରେ ଭୁଞ୍ଜନ୍ତି ଆନନ୍ଦ ॥
ସମସ୍ତ ସମାଜ ମୁନି ମିଥିଳା ନୃପତି । ହେଲେ ଉତ୍ସାହିତ ଶୁଣି ଭରତ ଭାରତୀ ॥୧॥

---

ହେତୁ ମୁଁ ତାହା ପ୍ରକାଶ କରି ପାରୁନାହିଁ ।" ଶ୍ରୀରାମଚନ୍ଦ୍ର କହିଲେ, "ହେ ଭାଇ ! କହ ।" ପ୍ରଭୁଙ୍କ ଆଜ୍ଞା ପାଇ ଭରତ ସ୍ନେହ-ସୁମନୋହର ବଚନ ବୋଇଲେ— ॥ ୧ ॥ "ହେ ପ୍ରଭୋ ! ଯଦି ଆପଣଙ୍କର ଆଜ୍ଞା ହୁଏ, ଚିତ୍ରକୂଟର ପବିତ୍ର ସ୍ଥାନ, ତୀର୍ଥ, ବନ, ପଶୁ, ପକ୍ଷୀ, ସରୋବର, ନଦୀ, ଝରଣା ଓ ପର୍ବତ, ବିଶେଷତଃ ପ୍ରଭୁଙ୍କ ଚରଣାଙ୍କିତ ଭୂମିକୁ ଟିକିଏ ଦେଖି ଆସନ୍ତି ।" ॥ ୨ ॥ ଶ୍ରୀ ରଘୁନାଥ କହିଲେ, "ଅବଶ୍ୟ, ଅତ୍ରି ଋଷିଙ୍କ ଆଜ୍ଞା ଶିରୋଧାର୍ଯ୍ୟ କର (ତାଙ୍କୁ ପଚାରି ତାଙ୍କ ନିର୍ଦ୍ଦେଶାନୁସାରେ କାର୍ଯ୍ୟ କର) ଏବଂ ନିର୍ଭୟରେ ବନରେ ବିଚରଣ କର । ହେ ଭାଇ ' ଅତ୍ରି ମୁନିଙ୍କ ପ୍ରସାଦରୁ ବନ ସମସ୍ତ ମଙ୍ଗଳର ଦାତା, ପରମ ପବିତ୍ର ଓ ଅତ୍ୟନ୍ତ ସୁନ୍ଦର ॥ ୩ ॥ ଏବଂ ଋଷିନାୟକ ଅତ୍ରି ଯେଉଁ ଯେଉଁଠାରେ ଆଜ୍ଞା ଦେବେ, ଆଣିଥିବା ତୀର୍ଥଜଳ ସେହି ସେହି ସ୍ଥାନରେ ସ୍ଥାପନ କରିଦେବ ।" ପ୍ରଭୁଙ୍କ ବଚନ ଶୁଣି ଭରତ ସୁଖ ପାଇଲେ ଏବଂ ଆନନ୍ଦିତ ହୋଇ ମୁନି ଅତ୍ରିଙ୍କର ଚରଣ-କମଲରେ ମସ୍ତକ ନତ କଲେ ॥ ୪ ॥ ଦୋହା :—ସମସ୍ତ ସୁମଙ୍ଗଳର ମୂଳ ଭରତ ଓ ଶ୍ରୀରାମଚନ୍ଦ୍ରଙ୍କ ସମ୍ବାଦ ଶୁଣି ସ୍ୱାର୍ଥପର ଦେବତାମାନେ ରଘୁକୁଳର ପ୍ରଶଂସାଗାନପୂର୍ବକ କଳ୍ପବୃକ୍ଷରୁ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ ॥ ୩୦୮ ॥ ଚୌପାଈ :—"ଭରତ ଧନ୍ୟ, ସ୍ୱାମୀ ଶ୍ରୀରାମଙ୍କର ଜୟ ହେଉ !" ଏହିପରି କହି ଦେବତାମାନେ ଅତ୍ୟଧିକ ଆନନ୍ଦିତ ହେବାକୁ ଲାଗିଲେ । ଭରତଙ୍କ ବଚନ ଶୁଣି ମୁନି

ଭରତ ରାମ ଗୁନ ଗ୍ରାମ ସନେହୂ । ପୁଲକି ପ୍ରସଂସତ ରାଉ ବିଦେହୂ ॥
ସେବକ ସ୍ୱାମି ସୁଭାଉ ସୁହାଓ୍ୱନ । ନେମୁ ପେମୁ ଅତି ପାବନ ପାବନ ॥୨॥
ମତି ଅନୁସାର ସରାହନ ଲାଗେ । ସଚିବ ସଭାସଦ ସବ ଅନୁରାଗେ ॥
ସୁନି ସୁନି ରାମ ଭରତ ସଂବାଦୂ । ଦୁହୁଁ ସମାଜ ହିୟଁ ହରଷୁ ବିଷାଦୂ ॥୩॥
ରାମ ମାତୁ ଦୁଖୁ ସୁଖୁ ସମ ଜାନୀ । କହି ଗୁନ ରାମ ପ୍ରବୋଧୀଁ ରାନୀ ॥
ଏକ କହହିଁ ରଘୁବୀର ବଡ଼ାଈ । ଏକ ସରାହତ ଭରତ ଭଲାଈ ॥୪॥
ଅତ୍ରି କହେଉ ତବ ଭରତ ସନ ସୈଲ ସମୀପ ସୁକୂପ ।
ରାଖିଅ ତୀରଥ ତୋୟ ତହଁ ପାବନ ଅମିଅ ଅନୂପ ॥୩୦୯॥
ଭରତ ଅତ୍ରି ଅନୁସାସନ ପାଈ । ଜଲ ଭାଜନ ସବ ଦିଏ ଚଲାଈ ॥
ସାନୁଜ ଆପୁ ଅତ୍ରି ମୁନି ସାଧୂ । ସହିତ ଗଏ ଜହଁ କୂପ ଅଗାଧୂ ॥୧॥

---

ଭରତ ରଘୁପତିଙ୍କ ଗୁଣ, ଗ୍ରାମ, ସ୍ନେହ । ପୁଲକିତେ ପ୍ରଶଂସନ୍ତି ନୃପତି ବିଦେହ ॥
ସେବକ ସ୍ୱାମୀ ସ୍ୱଭାବ ଅତି ମନୋରମ । ପ୍ରେମ ନିୟମ ପାବନ୍ତୁ ପାବନ ପରମ ॥୨॥
ପ୍ରଶଂସିବାକୁ ଲାଗିଲେ ସ୍ୱମତି ଯେଉଁନେ । ମନ୍ତ୍ରୀ ସଭାସଦ ସର୍ବେ ଅନୁରାଗ ମନେ ॥
ଶୁଣି ଶୁଣି ରଘୁନାଥ ଭରତ ସମ୍ବାଦ । ଦୋନ ସମାଜ ହୃଦୟେ ହରଷ ବିଷାଦ ॥୩॥
ରାମ ମାତା ଦୁଃଖ ସୁଖ ସମ ବୋଲି ଜାଣି । କହି ରାମ ଗୁଣ ଗ୍ରାମ ପ୍ରବୋଧିଲେ ରାଣୀ ॥
କେହି ରଘୁନାଥଙ୍କର ବଡ଼ାଇ କରଇ । ଭରତଙ୍କ ଅନୁରାଗ କେହି ପ୍ରଶଂସଇ ॥୪॥
ଅତ୍ରି ଏଥୁ ଅନ୍ତେ କହିଲେ ଭରତେ, ଗିରି ପାଶେ କୂପୋତ୍ତମ ।
ରଖ ସେହି ସ୍ଥଳେ ଶୁଚି ତୀର୍ଥ ଜଳେ ନିର୍ମଳ ଯେ ଅନୁପମ ॥୩୦୯॥
ଭରତ ଅତ୍ରିଙ୍କ ଅନୁଶାସନ ପାଇଣ । ସଲିଳ-ଭାଣ୍ଡ ସକଳ ଆଗେ ପଠାଇଣ ॥
ଭ୍ରାତା ଅତ୍ରି ମୁନି, ସାଧୁ-ବୃନ୍ଦ ସହ ନେଇ । ଗଭୀର କୂପ ସମୀପେ କଲେ ତହୁଁ ବିଜେ ॥୧॥

---

ବଶିଷ୍ଠ, ମିଥିଳାପତି ଜନକ ଏବଂ ସଭାରେ ଉପସ୍ଥିତ ସମସ୍ତଙ୍କ ମନରେ ବଡ଼ ଉତ୍ସାହ ଓ ଆନନ୍ଦ ଜାତ ହେଲା ॥ ୧ ॥ ବିଦେହରାଜ ଜନକ ପୁଲକିତ ହୋଇ ଭରତ ଓ ଶ୍ରୀରାମଙ୍କ ଗୁଣରାଶି ଓ ପ୍ରେମର ପ୍ରଶଂସା କରୁଥାଆନ୍ତି । ସେବକ ଓ ସ୍ୱାମୀ—ଉଭୟଙ୍କର ସୁନ୍ଦର ସ୍ୱଭାବ । ଏମାନଙ୍କ ପ୍ରେମ ଓ ନିୟମ ପବିତ୍ରକୁ ମଧ୍ୟ ପବିତ୍ରତର କରିପାରେ ॥ ୨ ॥ ମନ୍ତ୍ରୀ ଓ ସଭାସଦ୍ ସମସ୍ତେ ପ୍ରେମମୁଗ୍ଧ ହୋଇ ଆପଣା ଆପଣା ବୁଦ୍ଧି ଅନୁସାରେ ପ୍ରଶଂସା କରିବାକୁ ଲାଗିଲେ । ଶ୍ରୀରାମ ଓ ଭରତଙ୍କ ସମ୍ବାଦ ଶୁଣି ଶୁଣି ଉଭୟ ସମାଜର ହୃଦୟରେ ଯୁଗପତ୍ ହର୍ଷ ଓ ବିଷାଦର ତରଙ୍ଗ ଖେଳିଗଲା । ଭରତଙ୍କ ସେବାଧର୍ମ ଦେଖି ସେମାନେ ପ୍ରସନ୍ନ ଓ ରାମଙ୍କଠାରୁ ବିରହର ସମ୍ଭାବନା ଥିବାରୁ ବିଷଣ୍ଣ ହେଲେ ॥ ୩ ॥ ଶ୍ରୀରାମଚନ୍ଦ୍ରଙ୍କ ମାତା କୌଶଲ୍ୟା ଦୁଃଖ ଓ ସୁଖକୁ ସମାନ ମନେ କଲେ ଏବଂ ଶ୍ରୀରାମଙ୍କ ଗୁଣଗ୍ରାମ କହି ଅନ୍ୟାନ୍ୟ ରାଣୀମାନଙ୍କୁ ସାନ୍ତ୍ୱନା ଦେଲେ । କେହି ଶ୍ରୀରାମଚନ୍ଦ୍ରଙ୍କ ବଡ଼ିମା (ମହିମା) ଚର୍ଚ୍ଚା କରୁଥାଆନ୍ତି ତ କେହି ଭରତଙ୍କ ସଜ୍ଜନତାର ପ୍ରଶଂସା କରୁଥାଆନ୍ତି ॥ ୪ ॥

ପାବନ ପାଥ ପୁନ୍ୟଥଲ ରାଖା । ପ୍ରମୁଦିତ ପ୍ରେମ ଅତ୍ରି ଅସ ଭାଷା ॥
ତାତ ଅନାଦି ସିଦ୍ଧ ଥଲ ଏହୂ । ଲୋପେଉ କାଲ ବିଦିତ ନହିଁ କେହୂ ॥୨॥
ତବ ସେବକନ୍ହ ସରସ ଥଲୁ ଦେଖା । କୀନ୍ହ ସୁଜଲ ହିତ କୂପ ବିସେଷା ॥
ବିଧି ବସ ଭୟଉ ବିସ୍ୱ ଉପକାରୂ । ସୁଗମ ଅଗମ ଅତି ଧରମ ବିଚାରୂ ॥୩॥
ଭରତକୂପ ଅବ କହିହହିଁ ଲୋଗା । ଅତି ପାବନ ତୀରଥ ଜଲ ଜୋଗା ॥
ପ୍ରେମ ସନେମ ନିମଜ୍ଜତ ପ୍ରାନୀ । ହୋଇହହିଁ ବିମଲ କରମ ମନ ବାନୀ ॥୪॥
କହତ କୂପ ମହିମା ସକଲ ଗଏ ଜହାଁ ରଘୁରାଉ ।
ଅତ୍ରି ସୁନାୟଉ ରଘୁବରହି ତୀରଥ ପୁନ୍ୟ ପ୍ରଭାଉ ॥୩୧୦॥

---

ପବିତ୍ର ଜଳ ରଖିଣ ସେ ପୁଣ୍ୟ ସ୍ଥଳରେ । ଭାଷିଲେ ଅତ୍ରି ଏସନ ପ୍ରେମ ପ୍ରମୋଦରେ ॥
ବତ୍ସ ! ଅଟଇ ଅନାଦି ସିଦ୍ଧ ସ୍ଥଳ ଏହି । କାଳ ପାଇ ଲୋପ ହେଲା, ନ ଜାଣନ୍ତି କେହି ॥୨॥
ଦେଖି ସେ ସରସ ସ୍ଥାନ ତୁମ୍ଭ ସେବକ-ଗଣ । ଶୁଦ୍ଧ ଜଳ ପାଇଁ କୂପ କରିଲେ ଖନନ ॥
ହୋଇଲା ଦୈବ ଯୋଗରୁ ବିଶ୍ୱ ଉପକାର । ସୁଗମ୍ୟ ହେଲା ଅଗମ୍ୟ ଧରମ ବିଚାର ॥୩॥
'ଭରତ କୂପ' କହିବେ ଏବେ ଲୋକମାନେ । ଅତ୍ୟନ୍ତ ପବିତ୍ର, ତୀର୍ଥ ଜଳ ସମାଧାନେ ॥
ସପ୍ରେମ ନିୟମେ ସ୍ନାନ ଯେ ପ୍ରାଣୀ କରିବେ । ମନ କର୍ମ ବଚନରେ ବିମଳ ହୋଇବେ ॥୪॥
କହି କହି କୂପ ମହିମା ସମସ୍ତେ ଗଲେ ଯହିଁ ରଘୁବର ।
ଶୁଣାଇଲେ ଅତ୍ରି ଶ୍ରୀ ରଘୁପତିଙ୍କୁ ପୁଣ୍ୟ ପ୍ରଭାବ ତୀର୍ଥର ॥୩୧୦॥

---

ଦୋହା :—ତଦନନ୍ତର ଅତ୍ରି ମୁନି ଭରତଙ୍କୁ କହିଲେ, "ଏହି ପର୍ବତର ସମୀପରେ ଗୋଟିଏ କୂପ ଅଛି । ତହିଁରେ ଏହି ପବିତ୍ର, ଅନୁପମ ଏ ଅମୃତ ସମାନ ତୀର୍ଥଜଳକୁ ସ୍ଥାପନ କରିଦିଅ ।" ॥ ୩୦୯ ॥ ଚୌପାଈ :—ଭରତ ଅତ୍ରି ମୁନିଙ୍କ ଆଜ୍ଞା ପାଇ ସମସ୍ତ ଜଳପାତ୍ର ସେଠାକୁ ପଠାଇ ଦେଲେ ଏବଂ ସାନ ଭାଇ ଶତ୍ରୁଘ୍ନ, ଅତ୍ରି ମୁନି ଓ ଅନ୍ୟାନ୍ୟ ସାଧୁ-ସନ୍ଥମାନଙ୍କ ସହିତ ସେହି ତଥ୍ୟର କୂପ ଥିବା ସ୍ଥାନକୁ ଗଲେ ॥ ୧ ॥ ସେହି ପୁଣ୍ୟ-ସ୍ଥଳରେ ଉକ୍ତ ପବିତ୍ର ଜଳକୁ ରଖିଦେଲେ । ଅତ୍ରି ମୁନି ପ୍ରେମରେ ଆନନ୍ଦିତ ହୋଇ କହିଲେ, "ହେ ବତ୍ସ ! ଏହା ଅନାଦି ସିଦ୍ଧସ୍ଥଳ । କାଳକ୍ରମେ ଏହା ଲୋପ ପାଇଯାଇଥିଲା । ଏଣୁ କାହାରିକୁ ଏହାର ପତ୍ତା ନ ଥିଲା ।" ॥ ୨ ॥ ଭରତଙ୍କ ସେବକମାନେ ସେହି ସରସ ସ୍ଥାନ ଦେଖିଲେ ଏବଂ ଉକ୍ତ ପବିତ୍ର ଜଳ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର କୂପ ଖୋଳିଲେ । ଦୈବଯୋଗରୁ ସମଗ୍ର ବିଶ୍ୱର ଉପକାର ହୋଇଗଲା । ଯେଉଁ ଧର୍ମବିଚାର ଅତି ଅଗମ ଥିଲା, ଏହି କୂପ ପ୍ରଭାବରୁ ତାହା ସୁଗମ ହୋଇଗଲା ॥ ୩ ॥ ଏଣିକି ଲୋକେ ଏହି କୂପକୁ 'ଭରତ କୂପ' କହିବେ । ତୀର୍ଥ ଜଳର ସଂଯୋଗରେ ଏହା ଅତି ପବିତ୍ର ହୋଇଗଲା । ଏହି ଜଳରେ ବିଧି ଓ ପ୍ରେମପୂର୍ବକ ସ୍ନାନ କଲେ ପ୍ରାଣୀମାନେ ମନ, ବଚନ ଓ କର୍ମରେ ନିର୍ମଳ ହୋଇଯିବେ ॥ ୪ ॥ ଦୋହା :—କୂପର ମହିମା ବିଷୟରେ କଥାବାର୍ତ୍ତା ହୋଇ ସମସ୍ତ ଲୋକ ଶ୍ରୀ ରଘୁନାଥ ଥିବା ସ୍ଥାନକୁ ଗଲେ । ଅତ୍ରି ମୁନି ଶ୍ରୀ ରଘୁନାଥଙ୍କୁ

କହତ ଧରମ ଇତିହାସ ସପ୍ରୀତୀ । ଭୟଉ ଭୋରୁ ନିସି ସୋ ସୁଖ ବୀତୀ ॥
ନିତ୍ୟ ନିବାହି ଭରତ ଦୋଉ ଭାଈ । ରାମ ଅତ୍ରି ଗୁର ଆୟସୁ ପାଈ ॥୧॥
ସହିତ ସମାଜ ସାଜ ସବ ସାଦେଁ । ଚଲେ ରାମବନ ଅଟନ ପୟାଦେଁ ॥
କୋମଲ୍ ଚରନ ଚଲତ ବିନୁ ପନହୀଁ । ଭଇ ମୃଦୁ ଭୂମି ସକୁଚି ମନ ମନହୀଁ ॥୨॥
କୁସ କଂଟକ କାଁକରୀଁ କୁରାଈଁ । କଟୁକ କଠୋର କୁବସ୍ତୁ ଦୁରାଈଁ ॥
ମହି ମଂଜୁଲ ମୃଦୁ ମାରଗ କୀନ୍ହେ । ବହତ ସମୀର ତ୍ରିବିଧ ସୁଖ ଲୀନ୍ହେ ॥୩॥
ସୁମନ ବରଷି ସୁର ଘନ କରି ଛାହୀଁ । ବିଟପ ଫୂଲି ଫଲି ତୃନ ମୃଦୁତାହୀଁ ॥
ମୃଗ ବିଲୋକି ଖଗ ବୋଲି ସୁବାନୀ । ସେବହିଁ ସକଲ ରାମପ୍ରିୟ ଜାନୀ ॥୪॥

ସୁଲଭ ସିଦ୍ଧି ସବ ପ୍ରାକୃତହୁ ରାମ କହତ ଜମୁହାତ ।
ରାମ ପ୍ରାନପ୍ରିୟ ଭରତ କହୁଁ ୟହ ନ ହୋଇ ବଡ଼ି ବାତ ॥୩୧୧॥

---

କହନ୍ତେ ଧରମ ଇତିହାସ ପ୍ରେମ-ଭରେ । ହୋଇଲା ପ୍ରଭାତ ବିତି ସେ ନିଶି ସୁଖରେ ॥
ନିତ୍ୟ କର୍ମ ସମାପିଣ ତହୁଁ ଦୁଇ ଭାଇ । ଗୁରୁ ରଘୁପତି ଅତ୍ରି ଅନୁମତି ପାଇ ॥୧॥
ଭ୍ରମଣେ ରାମ ବିପିନ ସହିତ ସମାଜ । ଗମିଲେ ପଦବ୍ରଜରେ ସାଜି ସାଦା ସାଜ ॥
ପଦତ୍ରାଣ ବିନା ମୃଦୁ ପୟର ଗମନେ । ହୋଇଲା ମୃଦୁଳ ମହୀ ସଙ୍କୋଚିତ ମନେ ॥୨॥
କୁଶ କଣ୍ଟା ଗୋଡ଼ିରେ ଯା' ଅଙ୍ଗ ଥିଲା ଭରି । ତୀକ୍ଷ୍ଣ, କଠୋର, କୁବସ୍ତୁ ଲୁଚାଇ ସେ ଧରି ॥
ଉତ୍ତମ ମୃଦୁ ମଞ୍ଜୁଳ ମାରଗ ରଚିଲା । ତ୍ରିବିଧ ସୁଖ ଦେଇଣ ସମୀର ବହିଲା ॥୩॥
ଘନ କରି ଛାଇ ସୁରେ ସୁମନ ବରଷି । ବୃକ୍ଷେ ଫୁଲି ଫଳି ତୃଣ ହୋଇ ମୃଦୁସ୍ପର୍ଶୀ ॥
ମୃଗ ଅବଲୋକି ଖଗ ବୋଲି ମଞ୍ଜୁ ବାଣୀ । ସମସ୍ତେ ସେବା କରନ୍ତି ରାମପ୍ରିୟ ଜାଣି ॥୪॥

ସାଧାରଣ ଲୋକ 'ରାମ' କହି ହାଇ ମାରନ୍ତେ ସିଦ୍ଧି ଲଭଇ ।
ରାମ-ପ୍ରାଣପ୍ରିୟ ଭରତଙ୍କ ପକ୍ଷେ ଏ ବଡ଼ କଥା ନୁହଇ ॥୩୧୧॥

---

ସେହି ତୀର୍ଥର ପୁଣ୍ୟ ପ୍ରଭାବ ଶୁଣାଇଲେ ॥ ୩୧୦ ॥ ଚୌପାଈ :—ପ୍ରେମରେ ଧର୍ମ-ଇତିହାସ କହୁ କହୁ ସେହି ରାତି ସୁଖରେ ବିତିଗଲା ଏବଂ ସକାଳ ହେଲା । ଭରତ ଓ ଶତ୍ରୁଘ୍ନ ଦୁଇ ଭାଇ ନିତ୍ୟକର୍ମ ଶେଷ କଲେ । ତଦନନ୍ତର ଉଭୟେ ଶ୍ରୀରାମ, ଅତ୍ରି ଓ ଗୁରୁ ବଶିଷ୍ଠଙ୍କ ଆଜ୍ଞାନୁସାରେ ସମାଜ ସହିତ ସାଦାସିଧା ସାଜରେ ଶ୍ରୀରାମ ବନରେ ଭ୍ରମଣ କରିବା ନିମନ୍ତେ ପଦବ୍ରଜରେ ବାହାରିଲେ । କୋମଳ ଚରଣ ଏବଂ ବିନା ଜୋତାରେ ଚାଲୁଥା'ନ୍ତି । ଏହା ଦେଖି ପୃଥିବୀ ମନେ ମନେ ଲଜ୍ଜିତା ହୋଇ କୋମଳ ହୋଇ-ଗଲା ॥୧-୨॥ କୁଶ, କଣ୍ଟା, ଗୋଡ଼ି, ଫାଟ ଓ ଆବଡ଼ାଖାବଡ଼ା ମାଟି ଆଦି କର୍କଶ, କଠୋର ଓ ଖରାପ ବସ୍ତୁକୁ ଲୁଚାଇ ପୃଥିବୀ ସୁନ୍ଦର ଓ କୋମଳ ପଥ ସୃଷ୍ଟି କରିଦେଲା । ସୁଖଦାୟକ ଶୀତଳ, ମନ୍ଦ ଓ ସୁଗନ୍ଧିତ ବାୟୁ ବହିବାକୁ ଲାଗିଲା ॥ ୩ ॥ ସମସ୍ତେ ଭରତଙ୍କୁ ଶ୍ରୀରାମଙ୍କ ପ୍ରିୟ ଜାଣି ତାଙ୍କର ସେବା କରିବାକୁ ଲାଗିଲେ । ପଥ ମଧ୍ୟରେ ଦେବତାମାନେ ପୁଷ୍ପ ବୃଷ୍ଟି କରୁଥା'ନ୍ତି, ମେଘ ଛାୟା କରୁଥାଏ, ବୃକ୍ଷମାନେ ପୁଷ୍ପିତ ହୋଇ ସେବା କରୁଥା'ନ୍ତି

ଏହି ବିଧି ଭରତୁ ଫିରତ ବନ ମାହୀଁ । ନେମୁ ପ୍ରେମୁ ଲଖି ମୁନି ସକୁଚାହୀଁ ॥
ପୁନ୍ୟ ଜଲାଶ୍ରୟ ଭୂମି ବିଭାଗା । ଖଗ ମୃଗ ତରୁ ତୃନ ଗିରି ବନ ବାଗା ॥୧॥
ଚାରୁ ବିଚିତ୍ର ପବିତ୍ର ବିସେଷୀ । ବୂଝତ ଭରତୁ ଦିବ୍ୟ ସବ ଦେଖୀ ॥
ସୁନି ମନ ମୁଦିତ କହତ ରିଷିରାଊ । ହେତୁ ନାମ ଗୁନ ପୁନ୍ୟ ପ୍ରଭାଊ ॥୨॥
କତହୁଁ ନିମଜ୍ଜନ କତହୁଁ ପ୍ରନାମା । କତହୁଁ ବିଲୋକତ ମନ ଅଭିରାମା ॥
କତହୁଁ ବୈଠି ମୁନି ଆୟସୁ ପାଈ । ସୁମିରତ ସୀୟ ସହିତ ଦୋଉ ଭାଈ ॥୩॥
ଦେଖି ସୁଭାଉ ସନେହୁ ସୁସେବା । ଦେହିଁ ଅସୀସ ମୁଦିତ ବନଦେବା ॥
ଫିରହିଁ ଗଏଁ ଦିନୁ ପହର ଅଢାଈ । ପ୍ରଭୁ ପଦ କମଲ ବିଲୋକହିଁ ଆଈ ॥୪॥

---

ଏ ଭାବେ ଭରତ ବନ ମଧ୍ୟରେ ଭ୍ରମନ୍ତି । ପ୍ରେମ ନିୟମ ବିଲୋକି ମୁନି ସଙ୍କୋଚନ୍ତି ॥
ପୁଣ୍ୟ ଜଳାଶୟ ତୀର୍ଥ, ଭୂମି, ଗିରି, ଘନ । ଖଗ ମୃଗ, ତରୁ ତୃଣ, ବନ ଉପବନ ॥୧॥
ପବିତ୍ର ବିଚିତ୍ର ଚାରୁ ଅତୀବ ବିମଳ । ବୁଝନ୍ତି ଭରତ ଦିବ୍ୟ ବିଲୋକି ସକଳ ॥
ଶୁଣି କହନ୍ତି ମୁଦିତ ମନେ ଋଷିବର । ହେତୁ ନାମ ଗୁଣ ପୁଣ୍ୟ ପ୍ରଭାବ ଆବର ॥୨॥
କାହିଁ ସ୍ନାନ କାହିଁ ଅବା କରନ୍ତି ପ୍ରଣାମ । କାହିଁ ଦରଶନେ ହୁଏ ମନେ ଅଭିରାମ ॥
କାହିଁ ବସି ମୁନିଙ୍କର ଅନୁମତି ପାଇ । ସ୍ମରଣ କରନ୍ତି ସୀତା ସହ ବେନି ଭାଇ ॥୩॥
ଅବଲୋକିଣ ସ୍ୱଭାବ ସ୍ନେହ ସେବକତା । ଦିଅନ୍ତି ଆଶିଷ ମନ ମୁଦିତେ ଦେବତା ॥
ଦିନ ଅଢାଇ ପ୍ରହର ଗତନ୍ତେ ଫେରନ୍ତି । ପ୍ରଭୁ ପଦ୍ମ-ପଙ୍କଜ ଆସି ବିଲୋକନ୍ତି ॥୪॥

---

ଏବଂ ତୃଣ ନିଜ କୋମଳତା ଦ୍ୱାରା ସେବା କରୁଥାଏ । ପଶୁମାନେ ଅବଲୋକନ ଓ ପକ୍ଷୀମାନେ ମଧୁର ବାଣୀ ଦ୍ୱାରା ସେବାରତ ॥ ୪ ॥ ଦୋହା :—କୌଣସି ସାଧାରଣ ବ୍ୟକ୍ତି ଆଳସ୍ୟବଶତଃ ହାଇ ମାରିଲା ବେଳେ ଯଦି 'ରାମ' ନାମ କହିଦିଏ, ତେବେ ସମସ୍ତ ସିଦ୍ଧି ତାହାକୁ ସୁଲଭ ହୋଇଯାଏ । ତେବେ ଶ୍ରୀରାମଚନ୍ଦ୍ରଙ୍କ ପ୍ରାଣପ୍ରିୟ ଭାଇ ଭରତଙ୍କ ପକ୍ଷରେ ଏହା କୌଣସି ବଡ଼ କଥା ନୁହେଁ ॥ ୩୧୧ ॥ ଚୌପାଈ :—ଏହି ରୂପେ ଭରତ ବନରେ ବିଚରଣ କରୁଥା'ନ୍ତି । ତାଙ୍କର ନିୟମ ଓ ପ୍ରେମକୁ ଦେଖି ମୁନିମାନେ ମଧ୍ୟ ଲଜ୍ଜିତ ହେଉଥା'ନ୍ତି । ପବିତ୍ର ଜଳାଶୟ, ଭୂମିର ବିଭିନ୍ନ ବିଭାଗ, ପକ୍ଷୀ, ପଶୁ, ବୃକ୍ଷ, ତୃଣ, ପର୍ବତ, ବନ ଓ ଉପବନ—ସବୁକୁ ବିଶେଷ ରୂପେ ସୁନ୍ଦର, ବିଚିତ୍ର, ପବିତ୍ର ଓ ଦିବ୍ୟ ଅବସ୍ଥାରେ ଦେଖି ଭରତ ନାନା ପ୍ରଶ୍ନ ପଚାରୁଥା'ନ୍ତି ଏବଂ ତାଙ୍କ ପ୍ରଶ୍ନ ଶୁଣି ଋଷିରାଜ ଅତ୍ରି ପ୍ରସନ୍ନ ମନରେ ସମସ୍ତର କାରଣ, ନାମ, ଗୁଣ ଓ ପୁଣ୍ୟପ୍ରଭାବ କହୁ-ଥା'ନ୍ତି ॥ ୧-୨ ॥ ଭରତ କେଉଁଠାରେ ସ୍ନାନ କରୁଥା'ନ୍ତି, କେଉଁଠାରେ ପ୍ରଣାମ କରୁଥା'ନ୍ତି, କେଉଁଠି ମନୋହର ସ୍ଥାନ ଦର୍ଶନ କରୁଥା'ନ୍ତି ଏବଂ କେଉଁଠି ଅତ୍ରି ମୁନିଙ୍କ ଆଜ୍ଞା ନେଇ ବସି ସୀତାଙ୍କ ସମେତ ଶ୍ରୀରାମ ଲକ୍ଷ୍ମଣ ଭାଇ ଦୁହିଁଙ୍କୁ ସ୍ମରଣ କରୁଥା'ନ୍ତି ॥୩॥ ଭରତଙ୍କ ସ୍ୱଭାବ, ପ୍ରେମ ଓ ସୁନ୍ଦର ସେବାଭାବ ଦେଖି ବନଦେବତାମାନେ ଆନନ୍ଦିତ ହୋଇ ଆଶୀର୍ବାଦ ଦେଉଥା'ନ୍ତି । ଏହିପରି ଭ୍ରମଣ କରି କରି ସେ ଅଢ଼ାଇ ପ୍ରହର ଦିନ

ଦେଖେ ଥଲ ତୀରଥ ସକଲ ଭରତ ପାଁଚ ଦିନ ମାଁଝ ।
କହତ ସୁନତ ହରି ହର ସୁଜସୁ ଗୟଉ ଦିବସୁ ଭଇ ସାଁଝ ॥୩୧୨॥

ଭୋର ନ୍ହାଇ ସବୁ ଜୁରା ସମାଜୁ । ଭରତ ଭୂମିସୁର ତେରହୁତିରାଜୁ ॥
ଭଲ ଦିନୁ ଆଜୁ ଜାନି ମନ ମାହୀଁ । ରାମୁ କୃପାଲ କହତ ସକୁଚାହୀଁ ॥୧॥
ଗୁର ନୃପ ଭରତ ସଭା ଅବଲୋକୀ । ସକୁଚି ରାମ ଫିରି ଅବନି ବିଲୋକୀ ॥
ସୀଲ ସରାହି ସଭା ସବ ସୋଚୀ । କହୁଁ ନ ରାମ ସମ ସ୍ୱାମି ସଁକୋଚୀ ॥୨॥
ଭରତ ସୁଜାନ ରାମରୁଖ ଦେଖୀ । ଉଠି ସପ୍ରେମ ଧରି ଧୀର ବିସେଷୀ ॥
କରି ଦଣ୍ଡବତ କହତ କର ଜୋରୀ । ରାଖୀଁ ନାଥ ସକଲ ରୁଚି ମୋରୀ ॥୩॥
ମୋହି ଲଗି ସହେଉ ସବହିଁ ସଂତାପୂ । ବହୁତ ଭାଁତି ଦୁଖୁ ପାଵା ଆପୂ ॥
ଅବ ଗୋସାଇଁ ମୋହି ଦେଉ ରଜାଈ । ସେବଉଁ ଅଵଧ ଅବଧି ଭରି ଜାଈ ॥୪॥

---

ଦେଖିଲେ ସକଳ ଦିବ୍ୟ ତୀର୍ଥସ୍ଥଳ ପାଞ୍ଚ ଦିନରେ ଭରତ ।
କହନ୍ତେ ଶୁଣନ୍ତେ ହରିହର ଯଶ ସନ୍ଧ୍ୟା ହେଲା ଦିବା ଗତ ॥୩୧୨॥

ପ୍ରାତଃ ସ୍ନାନ କରି ସର୍ବେ ହେଲେ ଏକତ୍ରିତ । ଭରତ ଭୂସୁର ମନ୍ତ୍ରୀ ବିଦେହ ସହିତ ॥
ଭଲ ଦିନ ବୋଲି ଆଜ ଜାଣି ରଘୁପତି । କହିବାକୁ କୃପାନିଧି ମନେ ସଙ୍କୋଚନ୍ତି ॥୧॥
ଗୁରୁ, ନୃପ, ସଭା, ଭରତଙ୍କୁ ବିଲୋକିଲେ । ସଙ୍କୋଚେ ଶ୍ରୀ ରଘୁମଣି ମସ୍ତକ ନୁହିଁଲେ ॥
ଚିନ୍ତନ୍ତି ଶୀଳ ପ୍ରଶଂସି ସଭା ସମୁଦାୟ । କାହିଁ କେ ନାହିଁ ସଙ୍କୋଚୀ ସ୍ୱାମୀ ରାମ ପ୍ରାୟ ॥୨॥
ଚତୁର ଭରତ ରାମ ମନ ଜାଣି ପାରି । ଉଠିଣ ପ୍ରେମ ସହିତ ଧୈର୍ଯ୍ୟ ଧରି ଭାରି ॥
କରି ଦଣ୍ଡବତ କର ଯୋଡ଼ିଣ ଭାଷିଲେ । ନାଥ ! ମନ ରୁଚି ମୋର ସକଳ ରଖିଲେ ॥୩॥
ସର୍ବେ ସନ୍ତାପ ସହନ କଲେ ମୋ କାରଣେ । ବହୁତ ପ୍ରକାର ଦୁଃଖ ସହିଲ ଆପଣେ ॥
ଦିଅନ୍ତୁ ଅନୁଶାସନ ଏବେ ମୋତେ ସାଇଁ । ଅବଧି ଯାଏ ସେବିବି ଅଯୋଧ୍ୟାକୁ ଯାଇ ॥୪॥

---

ବିତଲ ପରେ ଫେରନ୍ତୁ ଏବଂ ଫେରି ଆସି ଶ୍ରୀ ରଘୁନାଥଙ୍କ ଚରଣ-କମଳ ଦର୍ଶନ କରନ୍ତୁ ॥ ୪ ॥ ଦୋହା :—ଭରତ ପାଞ୍ଚଦିନ ମଧ୍ୟରେ ସମସ୍ତ ତୀର୍ଥସ୍ଥଳ ଦର୍ଶନ କରି ପକାଇଲେ । ଭଗବାନ୍ ବିଷ୍ଣୁ ଓ ମହାଦେବଙ୍କ ସୁଯଶ କହିବା ଓ ଶୁଣିବାରେ ପଞ୍ଚମ ଦିନ ମଧ୍ୟ ଅତିବାହିତ ହୋଇଗଲା । ସନ୍ଧ୍ୟା ଆସି ଉପସ୍ଥିତ ହେଲା ॥ ୩୧୨ ॥
ଚୌପାଈ :—ପରଦିନ ପ୍ରାତଃକାଳରେ ସ୍ନାନ କରି ଭରତ, ବ୍ରାହ୍ମଣଗଣ, ମିଥିଳାଧିପତି ଜନକ ଓ ସମସ୍ତ ସମାଜ ଏକତ୍ର ଜୁଟିଲେ । ଆଜି ସମସ୍ତଙ୍କୁ ବିଦାୟ କରିବା ନିମନ୍ତେ ଉତ୍ତମ ଦିବସ—ଏହା ମନେ ମନେ ଜାଣି ସୁଦ୍ଧା କୃପାଳୁ ଶ୍ରୀରାମଚନ୍ଦ୍ର କିଛି କହିବାକୁ ସଙ୍କୋଚ କରୁଥା'ନ୍ତି ॥ ୧ ॥ ଶ୍ରୀରାମ ଗୁରୁ ବଶିଷ୍ଠ, ରାଜା ଜନକ, ଭରତ ଓ ସମସ୍ତ ସଭା ଆଡ଼କୁ ଚାହିଁଲେ । ମାତ୍ର ପୁଣି ସଙ୍କୁଚିତ ହୋଇ ଦୃଷ୍ଟି ଫେରାଇ ସେ ପୃଥିବୀ ଆଡ଼କୁ ଚାହିଁବାକୁ ଲାଗିଲେ । ସଭା ତାଙ୍କ ସ୍ୱଭାବ ଓ ଶୀଳକୁ ପ୍ରଶଂସା କରି ଭାବୁଥାଏ ଯେ ଶ୍ରୀରାମଙ୍କ ସମାନ ଲଜ୍ଜାଶୀଳ ସ୍ୱାମୀ କେଉଁଠି ହେଲେ ନାହାନ୍ତି ॥ ୨ ॥ ସୁଜ୍ଞାନୀ ଭରତ

ଜେହିଁ ଉପାୟ ପୁନ ପାୟ ଜନୁ ଦେଖୈ ଦୀନଦୟାଲ ।
ସୋ ସିଖ ଦେଇଅ ଅବଧି ଲଗି କୋସଲପାଲ କୃପାଲ ॥୩୧୩॥
ପୁରଜନ ପରିଜନ ପ୍ରଜା ଗୋସାଈଁ । ସବ ସୁଚି ସରସ ସନେହଁ ସଗାଈଁ ॥
ରାଉର ବଦି ଭଲ ଭବଦୁଖ ଦାହୂ । ପ୍ରଭୁ ବିନୁ ବାଦି ପରମପଦ ଲାହୂ ॥୧॥
ସ୍ୱାମି ସୁଜାନୁ ଜାନି ସବ ହୀ କୀ । ରୁଚି ଲାଲସା ରହନି ଜନ ଜୀ କୀ ॥
ପ୍ରନତପାଲୁ ପାଲିହି ସବ କାହୂ । ଦେଉ ଦୁହୂଁ ଦିସି ଓର ନିବାହୂ ॥୨॥
ଅସ ମୋହି ସବ ବିଧି ଭୂରି ଭରୋସୋ । କିଏଁ ବିଚାରୁ ନ ସୋଚୁ ଖରୋ ସୋ ॥
ଆରତି ମୋର ନାଥ କର ଛୋହୂ । ଦୁହୁଁ ମିଲି କୀନ୍ହ ଢୀଠୁ ହଠି ମୋହୂ ॥୩॥

---

ଯେ ଉପାୟେ ଦାସ ପୁଣି ଶ୍ରୀଚରଣ ଦେଖିବ, ଦୀନ ଦୟାଳୁ ।
ଅବଧି ପର୍ଯ୍ୟନ୍ତେ ଦିଅନ୍ତୁ ସେ ଶିକ୍ଷା କୋଶଳପାଳ, କୃପାଳୁ ॥୩୧୩॥
ନାଥ ! ପୁରଜନ ପରିଜନ ପ୍ରଜାଜନ । ସମସ୍ତ ସ୍ନେହୀ ବାନ୍ଧବ ସରସ ପାବନ ॥
ଆପଣଙ୍କ ଲାଗି ଭଲ ଭବ-ଦୁଃଖାନଳ । ପ୍ରଭୁ ବିନା ମୋକ୍ଷ ପଦ ଲଭିବା ବିଫଳ ॥୧॥
ଚତୁର ସ୍ୱାମୀ ଜାଣନ୍ତି ଭକ୍ତଜନଙ୍କର । ସ୍ଥିତି, ଅଭିରୁଚି, ସର୍ବ ଲାଳସା ମନର ॥
ପ୍ରଣତପାଳ, ସକଳ ଲୋକଙ୍କୁ ପାଳିବେ । ଅନ୍ତ ପର୍ଯ୍ୟନ୍ତ ,ଉଭୟ ପକ୍ଷ ନିର୍ବାହିବେ ॥୨॥
ମୋତେ ସର୍ବଭାବେ ଭାରି ଭରସା ଏମନ୍ତେ । କୁଣ୍ଠା ଟିକକର ଚିନ୍ତା ନୋହେ ବିଚାରନ୍ତେ ॥
ଆରତି ମୋର ନାଥଙ୍କ ସ୍ନେହ ସୁସରସ । ଦୁହେଁ ମିଳି ମୋତେ କଲେ ଧୃଷ୍ଟତା ବିବଶ ॥୩॥

---

ଶ୍ରୀରାମଚନ୍ଦ୍ରଙ୍କ ଅଭିପ୍ରାୟ ଜାଣିପାରି ପ୍ରେମରେ ଉଠିଲେ ଏବଂ ବିଶେଷ ରୂପେ ଧୈର୍ଯ୍ୟ-ଧାରଣ କରି ଦଣ୍ଡବତ କଲେ । ସେ ହାତ ଯୋଡ଼ି କହିଲେ, "ହେ ନାଥ ! ଆପଣ ମୋର ସମସ୍ତ ମନରୁଚି ରଖିଲେ ॥ ୩ ॥ ମୋହରି ନିମନ୍ତେ ସମସ୍ତ ଲୋକ ସନ୍ତାପ ସହିଲେ ଏବଂ ଆପଣ ମଧ୍ୟ ମୋହରି ହେତୁ ବହୁତ ପ୍ରକାରରେ ଦୁଃଖ ପାଇଲେ । ଏବେ ପ୍ରଭୁ ମୋତେ ଆଜ୍ଞା ଦିଅନ୍ତୁ—ମୁଁ ଯାଇ ଚଉଦ ବର୍ଷର ମିଆଦ ପୂରିବା ଯାଏ ଅଯୋଧ୍ୟାର ସେବା କରେ ॥ ୪ ॥ ଦୋହା .—ହେ ଦୀନଦୟାଳୁ କୋଶଳାଧୀଶ ' ଯେଉଁ ଉପାୟରେ ଏହି ଦାସ ପୁଣି ଶ୍ରୀଚରଣ ଦର୍ଶନ କରି ପାରିବ, ହେ କୃପାଳୁ ! ଅବଧିଯାପନ ନିମନ୍ତେ ମୋତେ ସେହି ଶିକ୍ଷା ଦିଅନ୍ତୁ ॥ ୩୧୩ ॥ ଚୌପାଈ :—ହେ ଗୋସାଇଁ ! ଆପଣଙ୍କ ପ୍ରେମ ଓ ସମ୍ବନ୍ଧ ଯୋଗେ ଅଯୋଧ୍ୟାପୁରବାସୀ ପ୍ରିୟ ପରିଜନ ଓ ପ୍ରଜା ସମସ୍ତେ ପବିତ୍ର ଓ ସରସ । ଆପଣଙ୍କ ନିମନ୍ତେ ଭବଜ୍ୱାଳାରେ ମରିଯିବା ବରଂ ଭଲ । କିନ୍ତୁ ପ୍ରଭୁଙ୍କ ବିନା ଏପରି କି ପରମପଦ (ମୋକ୍ଷ)ର ଲାଭ ହେବା ବ୍ୟର୍ଥ ॥ ୧ ॥ ହେ ସ୍ୱାମି ! ଆପଣ ସୁଜ୍ଞାନ; ହେ ପ୍ରଣତପାଳ ' ସମସ୍ତଙ୍କ ହୃଦୟ ଏବଂ ମୋ ମନର ରୁଚି, ଲାଳସା ଓ ଆଚରଣ ଜାଣି ଆପଣ ସମସ୍ତଙ୍କୁ ପାଳନ କରିବେ ଏବଂ ଶେଷ ପର୍ଯ୍ୟନ୍ତ ଉଭୟ ପକ୍ଷ ନିର୍ବାହ କରିବେ ॥ ୨ ॥ ମୋର ସବୁ ପ୍ରକାରେ ଏହି ବଡ଼ ଭରସା । ବିଚାର କରି ଦେଖିଲେ, ତୃଣବତ୍ ଚିନ୍ତା ହେବା ମନରେ ରହୁ ନାହିଁ । ମୋର ଦୈନ୍ୟ ଓ ପ୍ରଭୁଙ୍କ ସ୍ନେହ ଉଭୟ ମିଶି ମୋତେ

ଯୁହ ବଡ ଦୋଷୁ ଦୂରି କରି ସ୍ୱାମୀ । ତଜି ସକୋଚ ସିଖଇଅ ଅନୁଗାମୀ ॥
ଭରତ ବିନୟ ସୁନି ସବହିଁ ପ୍ରସଂସୀ । ଖୀର ନୀର ବିବରନ ଗତି ହଂସୀ ॥୪॥
ଦୀନବଂଧୁ ସୁନି ବଂଧୁ କେ ବଚନ ଦୀନ ଛଲହୀନ ।
ଦେସ କାଲ ଅବସର ସରିସ ବୋଲେ ରାମୁ ପ୍ରବୀନ ॥୩୧୪॥

ତାତ ତୁହ୍ମାରି ମୋରି ପରିଜନ କୀ । ଚିନ୍ତା ଗୁରହି ନୃପହି ଘର ବନ କୀ ॥
ମାଥେ ପର ଗୁର ମୁନି ମିଥିଲେସୂ । ହମହିଁ ତୁହ୍ମହିଁ ସପନେହୁଁ ନ କଲେସୂ ॥୧॥
ମୋର ତୁହ୍ମାର ପରମ ପୁରୁଷାରଥୁ । ସ୍ୱାରଥୁ ସୁଜସୁ ଧରମୁ ପରମାରଥୁ ॥
ପିତୁ ଆୟସୁ ପାଲିହିଁ ଦୁହୁ ଭାଈ । ଲୋକ ବେଦ ଭଲ ଭୂପ ଭଲାଈ ॥୨॥
ଗୁର ପିତୁ ମାତୁ ସ୍ୱାମି ସିଖ ପାଲେଁ । ଚଲେହୁଁ କୁମଗ ପଗ ପରହିଁ ନ ଖାଲେଁ ॥
ଅସ ବିଚାରି ସବ ସୋଚ ବିହାଈ । ପାଲହୁ ଅୱଧ ଅବଧି ଭରି ଜାଈ ॥୩॥

ଏ ବଡ ଦୋଷ ମୋହର ଦୂର କରି ସ୍ୱାମୀ । ନିଃସଙ୍କୋଚ ଶିକ୍ଷା ଦିଅ ଜାଣି ଅନୁଗାମୀ ॥
ଭରତ ବିନୟ ଶୁଣି ସର୍ବେ ପ୍ରଶଂସନ୍ତି । କ୍ଷୀର ନୀର ବିଭଜନେ ଯେ ହଂସିନୀ ଗତି ॥୪॥
ଦୀନବନ୍ଧୁ ଶୁଣି ଭ୍ରାତା ଦୀନ ବାଣୀ ସରଳ ଛଳ-ବିହୀନ ।
ଦେଖି ଦେଶ କାଳ ସମୟାନୁକୂଳ ଭାଷିଲେ ରାମ ପ୍ରବୀଣ ॥୩୧୪॥

ଭ୍ରାତ ! ଗୁରୁ ନୃପତିଙ୍କୁ ତୁମର ମୋହର । ସବୁ ଚିନ୍ତା ସ୍ୱଜନଙ୍କ ଗୃହ ବିପିନର ॥
ମସ୍ତକ ଉପରେ ଗୁରୁ ମୁନି ମିଥିଳେଶ । ଆମ୍ଭଙ୍କୁ ତୁମ୍ଭଙ୍କୁ ନାହିଁ ସ୍ୱପନେହେଁ କ୍ଲେଶ ॥ ॥
ତୁମ୍ଭର ମୋର ଏହାହିଁ ଅଟେ ପୁରୁଷାର୍ଥ । ସ୍ୱାର୍ଥ ସୁଯଶ ଆଦର ଧର୍ମ ପରମାର୍ଥ ॥
ପାଳିବା ଆଦେଶ ବେନି ଭାଇ ଜନକଙ୍କ । ଲୋକେ ବେଦେ ଭଲ ହେବ ମଙ୍ଗଳ ନୃପଙ୍କ ॥୨॥
ଗୁରୁ ପିତା ମାତା ସ୍ୱାମୀ ଶିକ୍ଷା ଯେ ପାଳଇ । କୁମାର୍ଗେ ଗଲେହେଁ ପାଦ ଖାଲେ ନ ପଡଇ ॥
ଏମନ୍ତ ବିଚାରି ଚିନ୍ତା ସକଳ ତେଜିଣ । ଅବଧି ପର୍ଯ୍ୟନ୍ତେ ପାଳ ଅଯୋଧ୍ୟା ଯାଇଣ ॥୩॥

ଜବରଦସ୍ତି ଧୃଷ୍ଟ କରି ଦେଇଛୁ ॥ ୩ ॥ ହେ ସ୍ୱାମି ! ମୋର ଏହି ବଡ ଦୋଷକୁ ଆପଣ ଦୂର କରିଦିଅନ୍ତୁ ଏବଂ ସଙ୍କୋଚ ତ୍ୟାଗ କରି ମୋ ପରି ସେବକକୁ ଶିକ୍ଷା ଦିଅନ୍ତୁ ।” ଜଳ-ମିଶ୍ରିତ ଦୁଧରୁ ଦୁଧକୁ ଅଲଗା କରି ପାରିବାରେ ହଂସୀର ବିଚାର ସ୍ୱଭାବ ସଦୃଶ ଭରତଙ୍କ ବିନତି ଶୁଣି ସମସ୍ତେ ତାହାର ବିଶେଷ ପ୍ରଶଂସା କଲେ ॥ ୪ ॥ ଦୋହା .— ଦୀନବନ୍ଧୁ ଓ ପରମ ବୁଦ୍ଧିମାନ୍ ପୁରୁଷ ଶ୍ରୀରାମ ଭ୍ରାତା ଭରତଙ୍କ ଦୈନ୍ୟପୂର୍ଣ୍ଣ ଓ ଛଳକପଟ-ହୀନ ବଚନ ଶୁଣି ଦେଶ, କାଳ ଓ ସମୟର ଅନୁକୂଳ ବଚନ ବୋଇଲେ,— ॥ ୩୧୪ ॥ ଚୌପାଈ —“ହେ ଭ୍ରାତ ! ଗୁରୁ ବଶିଷ୍ଠ ଓ ମହାରାଜ ଜନକଙ୍କୁ ତୁମର, ମୋର, ପରିବାରର, ଘରର ଓ ବନର ସମସ୍ତ ଚିନ୍ତା । ଆମ ମୁଣ୍ଡ ଉପରେ ଯେତେବେଳେ ଗୁରୁ, ମୁନି ବିଶ୍ୱାମିତ୍ର ଓ ମିଥିଳାପତି ଜନକ ଅଛନ୍ତି, ସେତେବେଳେ ଆମ୍ଭର ବା ତୁମ୍ଭର ସ୍ୱପ୍ନରେ ସୁଦ୍ଧା କୌଣସି କ୍ଲେଶ ନାହିଁ ॥ ୧ ॥ ଆମେ ଦୁଇ ଭାଇ ପିତାଙ୍କ ଆଜ୍ଞା ପାଳନ କରିବା —ମୋର ଓ ତୁମର ପରମ ପୁରୁଷାର୍ଥ, ସ୍ୱାର୍ଥ, ସୁଯଶ, ଧର୍ମ ଓ ପରମାର୍ଥ ଏଇଥିରେ

ଦେସୁ କୋସୁ ପରିଜନ ପରିବାରୂ । ଗୁରପଦ ରଜହିଁ ଲାଗ ଛରୁଭାରୂ ॥
ତୁମ୍ହ ମୁନି ମାତୁ ସଚିବ ସିଖ ମାନୀ । ପାଲେହୁ ପୁହୁମି ପ୍ରଜା ରଜଧାନୀ ॥୪॥
ମୁଖିଆ ମୁଖୁ ସୋ ଚାହିଐ ଖାନ ପାନ କହୁଁ ଏକ ।
ପାଲଇ ପୋଷଇ ସକଲ ଅଁଗ ତୁଲସୀ ସହିତ ବିବେକ ॥୩୧୫॥
ରାଜଧରମ ସରବସୁ ଏତନୋଈ । ଜିମି ମନ ମାହଁ ମନୋରଥ ଗୋଈ ॥
ବଂଧୁ ପ୍ରବୋଧୁ କୀନ୍ହ ବହୁ ଭାଁତୀ । ବିନୁ ଅଧାର ମନ ତୋଷୁ ନ ସାଁତୀ ॥୧॥
ଭରତ ସୀଲୁ ଗୁର ସଚିବ ସମାଜୂ । ସକୁଚ ସନେହ ବିବସ ରଘୁରାଜୂ ॥
ପ୍ରଭୁ କରି କୃପା ପାଁଵରୀଁ ଦୀନ୍ହୀଁ । ସାଦର ଭରତ ସୀସ ଧରି ଲୀନ୍ହୀଁ ॥୨॥

---

ଦେଶକାଳ ପରିଜନ ଗୃହ ପରିବାର । ଗୁରୁଙ୍କ ପଦ-ରଜେ ନ୍ୟସ୍ତ ସଂରକ୍ଷଣ ଭାର ॥
ମୁନି, ମାତା, ସଚିବଙ୍କ ଶିକ୍ଷା ତୁମ୍ଭେ ମାନି । ପାଳନ କର ପୃଥିବୀ, ପ୍ରଜା, ରାଜଧାନୀ ॥୪॥
ମୁଖ ପ୍ରାପ୍ତେ ଭୁକ୍ତ, ମୁରବୀ ଉଚିତ ଭୋଜନ ପାନକୁ ଏକ ।
ପାଳେ ପୋଷେ ସର୍ବ ଅଙ୍ଗ ଅବଶ୍ୟ ତୁଳସୀ ସହ ବିବେକ ॥୩୧୫॥
ଏତିକି ମାତ୍ର ସମସ୍ତ ରାଜ-ଧର୍ମ ସାର । ମନ ମଧ୍ୟେ ମନୋରଥ ଗୁପ୍ତ ଯେ ପ୍ରକାର ॥
ଭାଇଙ୍କୁ ବୋଧ କଲେହେଁ ବିବିଧ ଯତନେ । ଆଧାର ବିନା ନ ଆସେ ତୋଷ ଶାନ୍ତି ମନେ ॥୧॥
ଭରତଙ୍କ ଶୀଳ ଗୁରୁ ସଚିବ ସମାଜ । ସଙ୍କୋଚ ସ୍ନେହ ବିବଶ ହୋଇ ରଘୁରାଜ ॥
ପ୍ରଭୁ ଚରଣ ପାଦୁକା କୃପା କରି ଦେଲେ । ସାଦରେ ଭରତ ତାହା ଶିରେ ଘେନି ନେଲେ ॥୨॥

---

ନିହିତ । ନୃପଙ୍କର ବ୍ରତରକ୍ଷା ଆମେ କରି ପାରିଲେ ତାଙ୍କର ଲୋକ ଓ ବେଦ, ଉଭୟରେ ମଙ୍ଗଳ ହେବ ॥ ୨ ॥ ଗୁରୁ, ପିତା, ମାତା ଓ ସ୍ୱାମୀଙ୍କ ଶିକ୍ଷା ପାଳନ କଲେ କୁମାର୍ଗରେ ଚାଲିଲେ ହେଁ ବା ଖାଲରେ ପଡ଼ିବାର ଆଶଙ୍କା ନ ଥାଏ । ଏହିପରି ବିଚାର କରି ସମସ୍ତ ଚିନ୍ତା ପରିତ୍ୟାଗ କର ଏବଂ ଅଯୋଧ୍ୟା ଯାଇ ଏହି ଚଉଦ ବର୍ଷ ରାଜ୍ୟ ପାଳନ କର ॥ ୩ ॥ ଦେଶ, ରାଜକୋଷ, କୁଟୁମ୍ବ, ପରିବାର ଆଦି ସମସ୍ତଙ୍କ ଦାୟିତ୍ୱ ଗୁରୁଙ୍କ ଚରଣ-ରଜ ଉପରେ ନ୍ୟସ୍ତ । ତୁମେ ମୁନି ବଶିଷ୍ଠ, ମାତା ଓ ମନ୍ତ୍ରୀମାନଙ୍କର ଉପଦେଶ ମାନି ତଦନୁସାରେ ପୃଥିବୀ, ପ୍ରଜା ଓ ରାଜଧାନୀ ପାଳନ କରୁଥାଅ ॥ ୪ ॥ ଦୋହା—ତୁଳସୀ ଦାସ କହନ୍ତି—ଶ୍ରୀରାମ କହିଲେ, "ମୁଖିଆ (ମୁରବୀ) ମୁଖ (ପାଟି) ପରି ହେବା ଉଚିତ । ଏହା ଏକାକୀ ଖାଏ ପିଏ ସିନା, କିନ୍ତୁ ବିବେକ ସହିତ ସମସ୍ତ ଅଙ୍ଗପ୍ରତ୍ୟଙ୍ଗ ପାଳନ-ପୋଷଣ କରୁଥାଏ ॥ ୩୧୫ ॥ ଚୌପାଈ—ରାଜଧର୍ମର ସାର କଥା ଏତିକି—ମନରେ ମନୋରଥ ଯେପରି ଗୋପନୀୟ ହୋଇ ରହିଥାଏ, ସେହିପରି ରାଜନୀତିକୁ ଗୋପନୀୟ କରି ରଖିବ ।" ଶ୍ରୀ ରଘୁନାଥ ଭାଇ ଭରତଙ୍କୁ ବହୁତ ପ୍ରକାରେ ବୁଝାଇଲେ । କିନ୍ତୁ କୌଣସି ଅବଲମ୍ବନ ନ ପାଇ ଭରତଙ୍କ ମନରେ ସନ୍ତୋଷ ହେଲା ନାହିଁ କି ଶାନ୍ତି ହେଲା ନାହିଁ ॥ ୧ ॥ ଏଣେ ଭରତଙ୍କ ଚରିତ ଓ ପ୍ରେମ; ତେଣେ ଗୁରୁଜନ, ମନ୍ତ୍ରିବୃନ୍ଦ ଓ ସମାଜଙ୍କ ଉପସ୍ଥିତି । ଏହା ଦେଖି ଶ୍ରୀ ରଘୁନାଥ ସଙ୍କୋଚ ଓ ପ୍ରେମର ଅତି ବଶୀଭୂତ

ଚରନପୀଠ କରୁନାନିଧାନ କେ । ଜନୁ ଜୁଗ ଜାମିକ ପ୍ରଜା ପ୍ରାନ କେ ॥
ସଂପୁଟ ଭରତ ସନେହ ରତନ କେ । ଆଖର ଜୁଗ ଜନୁ ଜୀବ ଜତନ କେ ॥୩॥
କୁଲ କପାଟ କର କୁସଲ କରମ କେ । ବିମଲ ନୟନ ସେବା ସୁଧରମ କେ ॥
ଭରତ ମୁଦିତ ଅବଲଂବ ଲହେ ତେଁ । ଅସ ସୁଖ ଜସ ସିୟ ରାମୁ ରହେ ତେଁ ॥୪॥
ମାଗେଉ ବିଦା ପ୍ରନାମୁ କରି ରାମ ଲିଏ ଉର ଲାଇ ।
ଲୋଗ ଉଚାଟେ ଅମରପତି କୁଟିଲ କୁଅବସରୁ ପାଇ ॥୩୧୬॥
ସୋ କୁଚାଲି ସବ କହଁ ଭଇ ନୀକୀ । ଅବଧି ଆସ ସମ ଜୀବନି ଜୀ କୀ ॥
ନତରୁ ଲଖନ ସିୟ ରାମ ବିୟୋଗା । ହହରି ମରତ ସବ ଲୋଗ କୁରୋଗା ॥୧॥

---

ଚରଣ ପାଦୁକା ଦେନି କୃପାନିଧିଙ୍କର । ଯେସନେ ଯୁଗ୍ମ ପ୍ରହରୀ ପ୍ରଜାଙ୍କ ପ୍ରାଣର ॥
ସମ୍ପୁଟ ଭରତଙ୍କର ସ୍ନେହ-ରତନର । ଯୁଗଲ ବର୍ଣ୍ଣ କି ଅବା ଜୀବ ସାଧନର ॥୩॥
କୁଳର କବାଟ, କର ମଙ୍ଗଳ କର୍ମର । ବିମଳ ବେନି ନୟନ, ସେବା ସୁଧର୍ମର ॥
ଭରତ ପ୍ରମୋଦ ଅବଲମ୍ବନ ଲଭନ୍ତେ । ତଥା ସୁଖ ଯଥା ରାମ ଜାନକୀ ରହନ୍ତେ ॥୪॥
ପ୍ରଣମି ବିଦାୟ ମାଗନ୍ତେ, ହୃଦୟେ ନେଲେ ଶ୍ରୀରାମ ଲଗାଇ ।
ଲୋକଙ୍କୁ ଉଚାଟ କଲା ସୁର-ରାଣ କୁଟିଳ କୁବେଳ ପାଇ ॥୩୧୬॥
ସେ କୁଚକ୍ର ସମସ୍ତଙ୍କ ହୋଇଲା କଲ୍ୟାଣ । ଅବଧି ଆଶାରେ ସର୍ବେ ରଖିଲେ ପରାଣ ॥
ଅନ୍ୟଥା ଲକ୍ଷ୍ମଣ ସୀତା ରାମଙ୍କ ବିୟୋଗେ । ହାହାକାର କରି ମରିଥାଆନ୍ତେ କୁରୋଗେ ॥୧॥

---

ହୋଇପଡ଼ିଲେ । ପରିଶେଷରେ ଶ୍ରୀରାମ କୃପା କରି ନିଜ କଠଉ ଦେଲେ ଏବଂ ଭରତ ଆଦର ସହକାରେ ସେଗୁଡ଼ିକୁ ନିଜ ଶିର ଉପରେ ଧାରଣ କରି ନେଲେ ॥ ୨ ॥ କରୁଣା-ନିଧାନ ଶ୍ରୀରାମଚନ୍ଦ୍ରଙ୍କର କଠଉ ଦୁଇଟି ପ୍ରଜାଜନଙ୍କ ପ୍ରାଣ-ରକ୍ଷା ନିମନ୍ତେ ସତେ ଯେମିତି ଦୁଇଟି ପ୍ରହରୀ, ଭରତଙ୍କ ପ୍ରେମ-ରତ୍ନ ନିମନ୍ତେ ସମ୍ପୁଟ ଏବଂ ଜୀବର ସାଧନା ନିମନ୍ତେ ସତେ ଯେପରି 'ରାମ' ନାମକ ଦୁଇଟି ଅକ୍ଷର ॥ ୩ ॥ ରଘୁକୁଳର ରକ୍ଷା ନିମନ୍ତେ ସେ ଦୁଇଟି ସତେ ଯେପରି ଦୁଇଟି କବାଟ, କୁଶଳ କର୍ମ କରିବା ନିମନ୍ତେ ଦୁଇ ହସ୍ତ ପରି (ସହାୟକ) ଏବଂ ସେବା-ସୁଧର୍ମର ସୁସ୍ପଷ୍ଟୀକରଣ ନିମନ୍ତେ ଦୁଇଟି ନିର୍ମଳ ନେତ୍ର । ଏହି ଅବଲମ୍ବନ ମିଳିଯିବାରୁ ଭରତ ପରମ ଆନନ୍ଦିତ । ସୀତାରାମ ପାଖରେ ରହିଲେ ତାଙ୍କୁ ଯେପରି ସୁଖ ମିଳନ୍ତା, ଉକ୍ତ କଠଉ ଦୁଇଟି ପାଇ ସେ ସେହିପରି ସୁଖ ଅନୁଭବ କଲେ ॥ ୪ ॥ ଦୋହା :—ଭରତ ପ୍ରଣାମ କରି ବିଦାୟ ମାଗିଲେ । ଶ୍ରୀରାମଚନ୍ଦ୍ର ତାହାଙ୍କୁ ଆଲିଙ୍ଗନ କରି ପକାଇଲେ । ଏଣେ କୁଟିଳ ଇନ୍ଦ୍ର କୁସମୟ ପାଇ ଲୋକଙ୍କ ମନ ଉଚାଟ କରି ଦେଲେ । (ଅଯୋଧ୍ୟା ଆଡ଼କୁ ଆକୃଷ୍ଟ କରିଦେଲେ ।) ॥୩୧୬॥ ଚୌପାଇ :—ସେ କୁଚକ୍ରାନ୍ତ ମଧ୍ୟ ସମସ୍ତଙ୍କ ନିମନ୍ତେ ହିତକର ହେଲା । ଅବଧି-ଆଶା ପରି ତାହା ଜୀବନ ନିମନ୍ତେ ସଞ୍ଜୀବନୀ ମନ୍ତ୍ର ହୋଇଗଲା । ଅନ୍ୟଥା ଶ୍ରୀରାମଚନ୍ଦ୍ର, ଲକ୍ଷ୍ମଣ ଓ ସୀତାଙ୍କ ବିରହ-କୁରୋଗରେ ସମସ୍ତେ ଛଟପଟ ହୋଇ ମରିଯାଇଥା'ନ୍ତେ ॥୧॥

ରାମକୃପାଁ ଅବରେବ ସୁଧାରୀ । ବିବୁଧ ଧାରି ଭଇ ଗୁନଦ ଗୋହାରୀ ॥
ଭେଁଟତ ଭୁଜ ଭରି ଭାଇ ଭରତ ସୋ । ରାମ ପ୍ରେମ ରସୁ କହି ନ ପରତ ସୋ ॥୨॥
ତନ ମନ ବଚନ ଉମଗ ଅନୁରାଗା । ଧୀର ଧୁରଂଧର ଧୀରଜୁ ତ୍ୟାଗା ॥
ବାରିଜ ଲୋଚନ ମୋଚତ ବାରୀ । ଦେଖି ଦସା ସୁର ସଭା ଦୁଖାରୀ ॥୩॥
ମୁନିଗନ ଗୁର ଧୁର ଧୀର ଜନକ ସେ । ଜ୍ଞାନ ଅନଲ ମନ କସେଁ କନକ ସେ ॥
ଜେ ବିରଂଚି ନିରଲେପ ଉପାଏ । ପଦୁମ ପତ୍ର ଜିମି ଜଗ ଜଲ ଜାଏ ।୪॥

ତେଉ ବିଲୋକି ରଘୁବର ଭରତ ପ୍ରୀତି ଅନୂପ ଅପାର ।
ଭଏ ମଗନ ମନ ତନ ବଚନ ସହିତ ବିରାଗ ବିଚାର ॥୩୧୭॥

ଜହାଁ ଜନକ ଗୁରୁ ଗତି ମତି ଭୋରୀ । ପ୍ରାକୃତ ପ୍ରୀତି କହତ ବଡ଼ି ଖୋରୀ ॥
ବରନତ ରଘୁବର ଭରତ ବିୟୋଗୂ । ସୁନି କଠୋର କବି ଜାନିହି ଲୋଗୂ ॥୧॥

ରାମଙ୍କ କୃପା ସମସ୍ତ ଅଡୁଆ ଫେଡ଼ିଲା । ଦେବ-ମାୟା ସହାୟକ ଗୁଣଦ ହୋଇଲା ॥
ଭେଟନ୍ତେ ଭରତ ସଙ୍ଗେ ଭୁଜ ପ୍ରସାରିଣ । ରାମ, ପ୍ରେମରସ କିଏ କହିବ ବର୍ଣ୍ଣିଣ ॥୨॥
ଉଚ୍ଛୁଳିଲା କାୟ ମନ ବାକ୍ୟ ଅନୁରାଗ । ଧୈର୍ଯ୍ୟ-ଧୂରନ୍ଧର କଲେ ଧୈର୍ଯ୍ୟ ପରିତ୍ୟାଗ ॥
ବାରିଜନୟନୁ ହେଲା ବାରି ପ୍ରବାହିତ । ଦଶା ଅବଲୋକି ସୁର-ସମାଜ ଦୁଃଖିତ ॥୩॥
ମୁନି-ଗଣ, ଗୁରୁ, ଧୀର-ଧୂରୀଣ ଜନକ । ଜ୍ଞାନାନଳେ କଷିଛନ୍ତି ଯେ ମନ-କନକ ॥
ଯେହୁ ନିର୍ଲିପ୍ତ ବିରଞ୍ଚି ପ୍ରପଞ୍ଚେ ରହିଣ । ପଙ୍କଜ ପତ୍ର ଯେପରି ଜଳରେ ଜନ୍ମିଣ ॥୪॥

ସେ ମଧ୍ୟ ବିଲୋକି ରାମ ଭରତଙ୍କ ପ୍ରୀତି ଅନୁପ ଅପାର ।
ହୋଇଲେ ବଚନ-ତନ-ମନେ ମଗ୍ନ ସହ ବୈରାଗ୍ୟ ବିଚାର ॥୩୧୭॥

ଯହିଁ ଗୁରୁ ଜନକଙ୍କ ଭୋଳ ମତି ଗତି । ପ୍ରାକୃତ ପ୍ରୀତି କହିବା ତାକୁ ଦୋଷ ଅତି ॥
ରଘୁବର ଭରତଙ୍କ ବିରହ ବର୍ଣ୍ଣନେ । ଶୁଣି ଜାଣିବେ କଠୋର କବି ବୋଲି ଜନେ ॥୧॥

ଶ୍ରୀରାମଙ୍କ କୃପା ସମସ୍ତ ସମସ୍ୟାର ସମାଧାନ କରିଦେଲା । ଯେଉଁ ଦେବସେନା ଲୁଟିବା ଉଦ୍ଦେଶ୍ୟରେ ଆସିଥିଲେ, ସେମାନେ ମଧ୍ୟ ଗୁଣଦାୟକ (ହିତକାରୀ) ଓ ରକ୍ଷକ ହୋଇଗଲେ । ଶ୍ରୀରାମ ବାହୁ ପ୍ରସାରଣ କରି ଭରତଙ୍କ ସହ ମିଳନ କରୁଥା'ନ୍ତି । ଶ୍ରୀରାମଙ୍କ ପ୍ରେମର ସେ ରସ କହି ହେବନାହିଁ ॥ ୨ ॥ କାୟୋ-ମନୋବଚନରେ ପ୍ରେମ ଉଚ୍ଛୁଳି ପଡ଼ିଲା । ଧୈର୍ଯ୍ୟ-ଧୂରନ୍ଧର ଶ୍ରୀରାମ ସୁଦ୍ଧା ଧୈର୍ଯ୍ୟ ତ୍ୟାଗ କରି ପକାଇଲେ । ସେ କମଳ-ନୟନରୁ ପ୍ରେମାଶ୍ରୁଜଳ ବୁହାଇବାକୁ ଲାଗିଲେ । ତାଙ୍କର ଏ ଦଶା ଦେଖି ଦେବସମାଜ ମଧ୍ୟ ଦୁଃଖିତ ହୋଇପଡ଼ିଲେ ॥ ୩ ॥ ମୁନିଗଣ, ଗୁରୁ ବଶିଷ୍ଠ ଓ ଜନକଙ୍କ ସଦୃଶ ଧୈର୍ଯ୍ୟ-ଧୂରନ୍ଧର ଓ ସ୍ଥିତପ୍ରଜ୍ଞ ବ୍ୟକ୍ତିମାନେ ଆପଣା ଆପଣା ମନକୁ ଜ୍ଞାନାଗ୍ନିରେ ସୁବର୍ଣ୍ଣ ପରି କଷି ସାରିଥିଲେ । ବ୍ରହ୍ମା ସେମାନଙ୍କୁ ନିର୍ଲିପ୍ତ କରି ସୃଷ୍ଟି କରିଥିଲେ । ଜଗତ-ଜଳରେ ସେମାନେ ପଦ୍ମପତ୍ର ତୁଲ୍ୟ (ଅନାସକ୍ତ ହୋଇ) ଜନ୍ମ ଗ୍ରହଣ କରିଥିଲେ ॥ ୪ ॥
ଦୋହା :—ସେମାନେ ମଧ୍ୟ ଶ୍ରୀରାମ ଓ ଭରତଙ୍କ ଅନୁପମ ଓ ଅପାର ପ୍ରେମ ଦେଖି

ସୋ ସକୋଚ ରସୁ ଅକଥ ସୁବାନୀ । ସମଉ ସନେହୁ ସୁମିରି ସକୁଚାନୀ ॥
ଭେଁଟି ଭରତୁ ରଘୁବର ସମୁଝାଏ । ପୁନି ରିପୁଦବନୁ ହରଷି ହିୟଁ ଲାଏ ॥୨॥
ସେବକ ସଚିବ ଭରତ ରୁଖ ପାଈ । ନିଜ ନିଜ କାଜ ଲଗେ ସବ ଜାଈ ॥
ସୁନି ଦାରୁନ ଦୁଖୁ ଦୁହୁଁ ସମାଜା । ଲଗେ ଚଲନ କେ ସାଜନ ସାଜା ॥୩॥
ପ୍ରଭୁ ପଦ ପଦୁମ ବଂଦି ଦୋଉ ଭାଈ । ଚଲେ ସୀସ ଧରି ରାମ ରଜାଈ ॥
ମୁନି ତାପସ ବନଦେବ ନିହୋରୀ । ସବ ସନମାନି ବହୋରି ବହୋରୀ ॥୪॥
ଲଖନହି ଭେଁଟି ପ୍ରନାମୁ କରି ସିର ଧରି ସିୟ ପଦ ଧୂରି ।
ଚଲେ ସପ୍ରେମ ଅସୀସ ସୁନି ସକଲ ସୁମଂଗଲ ମୂରି ॥୩୧୮॥

---

ସେ ସଙ୍କୋଚରସ ବାଣୀର ଅକଥ୍ୟ ଅଟଇ । ସମୟ ସ୍ନେହ ସ୍ମରଣେ ସଙ୍କୋଚ ଲଭଇ ॥
ଭେଟି ଭରତଙ୍କୁ ରଘୁବର ବୁଝାଇଲେ । ପୁଣି ହର୍ଷେ ଶତ୍ରୁଘ୍ନଙ୍କୁ ହୃଦେ ଲଗାଇଲେ ॥୨॥
ସେବକ ସଚିବ ଜାଣି ଭରତଙ୍କ ମନ । ନିଜ ନିଜ କାର୍ଯ୍ୟେ ସର୍ବେ ଲାଗିଲେ ବହନ ॥
ଶୁଣନ୍ତେ ଦାରୁଣ ଦୁଃଖ ଉଭୟ ସମାଜ । ସଜାଇବାକୁ ଲାଗିଲେ ପ୍ରସ୍ଥାନର ସାଜ ॥୩॥
ପ୍ରଭୁ ଚରଣ-ପଙ୍କଜ ବନ୍ଦି ଭ୍ରାତା ବେନି । ଯାତ୍ରା ଆରମ୍ଭିଲେ ଶିରେ ରାମ ଆଜ୍ଞା ଘେନି ॥
ବନ୍ଦି ମୁନି ତପସ୍ୱୀ ବିପିନ ଦେବଙ୍କୁ । ବାରମ୍ବାର ସମ୍ମାନିଲେ ପ୍ରେମେ ସମସ୍ତଙ୍କୁ ॥୪॥
ଭେଟି ଲକ୍ଷ୍ମଣଙ୍କୁ ପ୍ରଣମି ସୀତାଙ୍କୁ ଶିରେ ଧରି ପଦରଜ ।
ଚଳିଲେ ସପ୍ରେମେ ଶୁଣି ଶୁଭାଶିଷ ମଙ୍ଗଳମୟ ସହଜ ॥୩୧୮॥

---

ବୈରାଗ୍ୟ ଓ ବିବେକ ସହିତ ମଧ୍ୟ କାର୍ଯ୍ୟମନୋବାକ୍ୟରେ ଉକ୍ତ ପ୍ରେମରେ ନିମଗ୍ନ ହୋଇ-ଗଲେ ॥ ୩୧୭ ॥ ଚୌପାଈ :—ଯେଉଁ ପ୍ରେମ ଦେଖି ଗୁରୁ ବଶିଷ୍ଠଙ୍କ ବୁଦ୍ଧିର ଗତି କୁଣ୍ଠିତ ହୋଇଗଲା, ସେହି (ଦିବ୍ୟ) ପ୍ରେମକୁ ଲୌକିକ ପ୍ରେମ କହିବା ବଡ଼ ଦୋଷାବହ । କବି ଯଦି ଶ୍ରୀରାମ ଓ ଭରତଙ୍କ ବିରହବର୍ଣ୍ଣନା କରିବାକୁ ବସେ, ତେବେ ସେ ବର୍ଣ୍ଣନା ଶୁଣି ଲୋକେ ତାହାକୁ କଠୋରହୃଦୟ ବୋଲି ମନେ କରିବେ ॥ ୧ ॥ ଏହି ସଙ୍କୋଚରସ ଅକଥନୀୟ । ଅତଏବ କବିର ସୁନ୍ଦର ବାଣୀ ସେହି ସମୟର ସୁମନୋହର ପ୍ରେମ ସ୍ମରଣ କରି ସଙ୍କୁଚିତ ହୋଇଗଲା । ଭରତଙ୍କୁ ଭେଟି ଶ୍ରୀ ରଘୁନାଥ ତାହାଙ୍କୁ ବୁଝାଇଲେ । ପୁଣି ହର୍ଷିତ ହୋଇ ଶତ୍ରୁଘ୍ନଙ୍କୁ ଆଲିଙ୍ଗନ କରିପକାଇଲେ ॥ ୨ ॥ ସେବକ ଓ ମନ୍ତ୍ରୀମାନେ ଭରତଙ୍କ ଅଭିପ୍ରାୟ ବୁଝି ସମସ୍ତେ ନିଜ ନିଜ କାମରେ ଯାଇ ଲାଗିଲେ । ଏହା ଶୁଣି ଉଭୟ ସମାଜରେ ଦାରୁଣ ଦୁଃଖ ବ୍ୟାପିଗଲା । ସେମାନେ ଫେରିବା ନିମନ୍ତେ ଆୟୋଜନ କରିବାକୁ ଲାଗିଲେ ॥ ୩ ॥ ପ୍ରଭୁଙ୍କ ଚରଣ-କମଳ ବନ୍ଦନା କରି ଓ ଶ୍ରୀରାମଚନ୍ଦ୍ରଙ୍କ ଆଜ୍ଞାକୁ ଶିରୋଧାର୍ଯ୍ୟ କରି ଭରତ-ଶତ୍ରୁଘ୍ନ ଦୁଇ ଭାଇ ଚଳିଲେ । ଦୁହେଁ ମୁନି, ତପସ୍ୱୀ ଓ ବନଦେବତା ସମସ୍ତଙ୍କୁ ବାରମ୍ବାର ସସମ୍ମାନ ବିନତି କଲେ ॥ ୪ ॥ ଦୋହା :—ତଦନନ୍ତର ସେ ଦୁହେଁ ଲକ୍ଷ୍ମଣଙ୍କୁ ଭେଟି ପ୍ରଣାମ କଲେ ଏବଂ ସୀତାଙ୍କ ଚରଣ-ଧୂଳି ଶିର ଉପରେ ଧାରଣ-ପୂର୍ବକ ସମସ୍ତ ସୁମଙ୍ଗଳମୟ ଆଶୀର୍ବାଦ

ସାନୁଜ ରାମ ନୃପହିଁ ସିର ନାଈ । କୀହ୍ନି ବହୁତ ବିଧି ବିନୟ ବଡ଼ାଈ ॥
ଦେବ ଦୟା ବସ ବଡ଼ ଦୁଖୁ ପାୟଉ । ସହିତ ସମାଜ କାନନହିଁ ଆୟଉ ॥୧॥
ପୁର ପଗୁ ଧାରିଅ ଦେଇ ଅସୀସା । କୀହ୍ନ ଧୀର ଧରି ଗବନୁ ମହୀସା ॥
ମୁନି ମହିଦେବ ସାଧୁ ସନମାନେ । ବିଦା କିଏ ହରି ହର ସମ ଜାନେ ॥୨॥
ସାସୁ ସମୀପ ଗଏ ଦୋଉ ଭାଈ । ଫିରେ ବଂଦି ପଗ ଆସିଷ ପାଈ ॥
କୌସିକ ବାମଦେଵ ଜାବାଲୀ । ପୁରଜନ ପରିଜନ ସଚିବ ସୁଚାଲୀ ॥୩॥
ଜଥା ଜୋଗୁ କରି ବିନୟ ପ୍ରନାମା । ବିଦା କିଏ ସବ ସାନୁଜ ରାମା ॥
ନାରି ପୁରୁଷ ଲଘୁ ମଧ୍ୟ ବଡ଼େରେ । ସବ ସନମାନି କୃପାନିଧି ଫେରେ ॥୪॥

ଭରତ ମାତୁ ପଦ ବଂଦି ପ୍ରଭୁ ସୁଚି ସନେହଁ ମିଲି ଭେଁଟି ।
ବିଦା କୀହ୍ନ ସଜି ପାଲକୀ ସକୁଚ ସୋଚ ସବ ମେଟି ॥୩୧୯॥

ସାନୁଜ ରାମ ନୃପଙ୍କୁ କରି ନମସ୍କାର । କଲେ ବିନୟ ବଡ଼ାଇ ଅନେକ ପ୍ରକାର ॥
ଦେବ ! ଦୟାବଶ ଦୁଃଖ ବିଶେଷ ସହିଲ । ସମାଜ ସଙ୍ଗତେ ଘେନି ବନକୁ ଆସିଲ ॥୧॥
ପୁରେ ପଦାର୍ପଣ କର, ଦେଇ ସୁଆଶିଷ । ଧୈର୍ଯ୍ୟ ଧରିଣ ଗମନ କଲେ ଅବନୀଶ ॥
ମୁନି ମହୀଦେବ ସାଧୁ-ବୃନ୍ଦଙ୍କୁ ସମ୍ମାନି । ବିଦାୟ କରିଲେ ହରିହର ସମ ଜାଣି ॥୨॥
ଶାଶୁଙ୍କ ସମୀପେ ପୁଣି ଯାଇ ବେନିଭାଇ । ଚରଣ ବନ୍ଦି ଫେରିଲେ ଆଶୀର୍ବାଦ ପାଇ ॥
କଉଶିକ ବାମଦେବ ଜାବାଲି ଆଦର । ପୁରଜନ ପରିଜନ ସଚିବ ନିକର ॥୩॥
ଯଥାଯୋଗ୍ୟ କରି କରି ବିନୟ ପ୍ରଣାମ । ବିଦାୟ କଲେ ଲୋକଙ୍କୁ ସାନୁଜ ଶ୍ରୀରାମ ॥
ଉତ୍ତମ ମଧ୍ୟମ ନୀଚ ଯେତେ ନାରୀ ନର । ଫେରାଇଲେ ସମସ୍ତଙ୍କୁ କରୁଣା-ସାଗର ॥୪॥

କୈକେୟୀ ପଦରେ ବନ୍ଦି ରଘୁବର ଶୁଚି ସ୍ନେହେ ମିଳି କରି ।
ପାଲିଙ୍କି ସଜାଇ ବିଦାୟ କରିଲେ ଲଜ୍ଜା ଚିନ୍ତା ସବୁ ହରି ॥୩୧୯॥

ଶୁଣି ପ୍ରେମରେ ଚାଲିଲେ ॥ ୩୧୮ ॥ ସାନ ଭାଇ ଲକ୍ଷ୍ମଣଙ୍କ ସମେତ ଶ୍ରୀରାମ ରାଜା ଜନକଙ୍କୁ ପ୍ରଣାମପୂର୍ବକ ତାଙ୍କୁ ବହୁତ ପ୍ରକାରେ ବିନୟ ଓ ପ୍ରଶଂସା କଲେ ଏବଂ କହିଲେ, "ହେ ଦେବ ! ଦୟାର ବଶବର୍ତ୍ତୀ ହୋଇ ଆପଣ ବହୁତ ଦୁଃଖ ପାଇଲେ । ସମାଜ ସହିତ ଆପଣ ବନକୁ ଆସିଲେ ॥ ୧ ॥ ବର୍ତ୍ତମାନ ଆଶୀର୍ବାଦ ଦେଇ ନଗରରେ ପଦାର୍ପଣ କରନ୍ତୁ । ଏହା ଶୁଣି ରାଜା ଜନକ ଧୈର୍ଯ୍ୟ-ଧାରଣ-ପୂର୍ବକ ପ୍ରତ୍ୟାଗମନ କଲେ । ତତ୍ପରେ ଶ୍ରୀରାମଚନ୍ଦ୍ର ମୁନି, ବ୍ରାହ୍ମଣ ଓ ସାଧୁମାନଙ୍କୁ ବିଷ୍ଣୁ ଓ ଶିବଙ୍କ ସମାନ ମନେ କରି ସମସ୍ତଙ୍କୁ ସମ୍ମାନ ସହିତ ବିଦାୟ କଲେ ॥ ୨ ॥ ଶ୍ରୀରାମଲକ୍ଷ୍ମଣ ଭାଇ ଦୁହେଁ ଶାଶୁ ସୁନୟନାଙ୍କ ନିକଟକୁ ଗଲେ ଏବଂ ତାହାଙ୍କର ଚରଣ ବନ୍ଦନା-ପୂର୍ବକ ଆଶୀର୍ବାଦ ପାଇ ଫେରି ଆସିଲେ । ତତ୍ପରେ ବିଶ୍ୱାମିତ୍ର, ବାମଦେବ, ଜାବାଲି, ସଦାଚାରୀ ଆତ୍ମୀୟ ସ୍ୱଜନ ଓ ପରିଜନ, ନଗରନିବାସୀ ଏବଂ ମନ୍ତ୍ରୀମାନଙ୍କୁ ଶ୍ରୀରାମ ସାନଭାଇ ଲକ୍ଷ୍ମଣଙ୍କ ସମେତ ଯଥାଯୋଗ୍ୟ ବିନୟ ଏବଂ ପ୍ରଣାମ କରି ବିଦାୟ ଦେଲେ । କୃପାନିଧାନ ଶ୍ରୀରାମଚନ୍ଦ୍ର

ପରିଜନ ମାତୁ ପିତହି ମିଲି ସୀତା । ଫିରି ପ୍ରାନପ୍ରିୟ ପ୍ରେମ ପୁନୀତା ॥
କରି ପ୍ରନାମୁ ଭେଁଟୀଁ ସବ ସାସୂ । ପ୍ରୀତି କହତ କବି ହିୟଁ ନ ହୁଲସୂ ॥୧॥
ସୁନି ସିଖ ଅଭିମତ ଆସିଷ ପାଈ । ରହୀ ସୀୟ ଦୁହୁଁ ପ୍ରୀତି ସମାଈ ॥
ରଘୁପତି ପଟୁ ପାଲକୀଁ ମଗାଈଁ । କରି ପ୍ରବୋଧୁ ସବ ମାତୁ ଚଢ଼ାଈଁ ॥୨॥
ବାର ବାର ହିଲି ମିଲି ଦୁହୁଁ ଭାଈଁ । ସମ ସନେହଁ ଜନନୀଁ ପହୁଁଚାଈଁ ॥
ସାଜି ବାଜି ଗଜ ବାହନ ନାନା । ଭରତ ଭୂପ ଦଲ କୀହ୍ନ ପୟାନା ॥୩॥
ହୃଦୟଁ ରାମୁ ସିୟ ଲଖନ ସମେତା । ଚଲେ ଜାହିଁ ସବ ଲୋଗ ଅଚେତା ॥
ବସହ ବାଜି ଗଜ ପସୁ ହିୟଁ ହାରେଁ । ଚଲେ ଜାହିଁ ପରବସ ମନ ମାରେଁ ॥୪॥

---

ଭେଟି ପରିଜନ ମାତା ପିଅରଙ୍କୁ ସୀତା । ଫେରିଲେ ପ୍ରାଣବଲ୍ଲଭ-ପ୍ରେମ-ସୁପ୍ରସନ୍ନତା ॥
କରି ପ୍ରଣାମ ସକଳ ଶାଶୁଙ୍କୁ ଭେଟନ୍ତେ । କବି ଅନୁଲ୍ଲାସ ଚିତ୍ତ ପ୍ରୀତି ବଖାଣନ୍ତେ ॥୧॥
ଶୁଣି ଶିକ୍ଷା ଅଭିମତ ଆଶିଷ ଲଭିଣ । ରହିଲେ ସୀତା ଉଭୟ ପ୍ରୀତିରେ ମଜ୍ଜିଣ ॥
ତହୁଁ ରଘୁପତି ଗୁରୁ ପାଲିଙ୍କି ମଗାଇ । ପ୍ରବୋଧ କରି ସମସ୍ତ ମାତାଙ୍କୁ ଚଢାଇ ॥୨॥
ବାରମ୍ବାର ବେଢାଇ ଭେଟି ସମସ୍ତଙ୍କୁ । ସମ ସ୍ନେହେ ବାଟେଇଲେ ଜନନୀମାନଙ୍କୁ ॥
ସାଜି ସାଜି ଗଜରଥ ବିବିଧ ବାହାନ । ଭୂପ ଭରତ ସମାଜ କରିଲେ ପ୍ରସ୍ଥାନ ॥୩॥
ହୃଦୟେ ରାମ ଜାନକୀ ଲକ୍ଷ୍ମଣ ସମେତେ । ପଥ ଚଳିଯାନ୍ତି ଲୋକ ସକଳେ ଅଚେତେ ॥
ଖଚର ବାଜି ଗଜାଦି ପଶୁ ହୃଦେ ହାରି । ପରାଧୀନ ହୋଇ ଚାଲିଯାନ୍ତି ମନ ମାରି ॥୪॥

---

ସାନ, ମଝିଆଁ ଓ ବଡ, ସମସ୍ତ ଶ୍ରେଣୀର ସ୍ତ୍ରୀ-ପୁରୁଷଙ୍କୁ ସମ୍ମାନର ସହିତ ଫେରାଇଲେ ॥ ୫-୪ ॥ ଦୋହା :—ଭରତଙ୍କ ମାତା କୈକେୟୀଙ୍କ ଚରଣ ବନ୍ଦନା-ପୂର୍ବକ ପ୍ରଭୁ ଶ୍ରୀରାମଚନ୍ଦ୍ର ପବିତ୍ର ଓ ନିଶ୍ଛଳ ପ୍ରେମ ସହକାରେ ସେମାନଙ୍କ ସହ ମିଳନ କଲେ ଏବଂ ସେମାନଙ୍କ ସମସ୍ତ ସଙ୍କୋଚ ଓ ଚିନ୍ତା ଦୂର କରି ପାଲିଙ୍କି ସଜାଇ ସେମାନଙ୍କୁ ବିଦାୟ ଦେଲେ ॥ ୩୧୯ ॥ ଚୌପାଇ :—ପ୍ରାଣପ୍ରିୟ ପତି ଶ୍ରୀରାମଚନ୍ଦ୍ରଙ୍କ ପ୍ରେମରେ ପୁନିତା ସୀତାଦେବୀ ବାପ-ଘରର କୁଟୁମ୍ବୀ ପରିଜନ ଓ ମାତାପିତାଙ୍କ ସହ ମିଳନ କରି ଫେରି ଆସିଲେ । ପୁଣି ପ୍ରଣାମ କରି ସମସ୍ତ ଶାଶୁଙ୍କ ସହ ମିଳିଲେ । ତାଙ୍କ ପ୍ରେମ ବର୍ଣ୍ଣନା କରିବା ନିମନ୍ତେ କବିର ହୃଦୟରେ ଉତ୍ସାହ ଓ ଉଲ୍ଲାସର ଅଭାବ ॥ ୧ ॥ ସେମାନଙ୍କଠାରୁ ଉପଦେଶ ଶୁଣି ଏବଂ ଅଭିଲଷିତ ଆଶୀର୍ବାଦ ପାଇ ସୀତା ଉଭୟ ପକ୍ଷର ପ୍ରୀତିରେ ବହୁତ କାଳ ନିମଜ୍ଜିତ ରହିଲେ । ତତ୍ପରେ ଶ୍ରୀ ରଘୁନାଥ ସୁନ୍ଦର ପାଲିଙ୍କି ମଗାଇଲେ ଏବଂ ସମସ୍ତ ମାତାଙ୍କୁ ଆଶ୍ୱାସନା ଦେଇ ତହିଁରେ ଚଢାଇଲେ ॥ ୨ ॥ ଦୁଇ ଭାଇ ମାତାମାନଙ୍କୁ ସମାନ ପ୍ରେମରେ ଭେଟି ସେମାନଙ୍କୁ ବାଟେଇ ଦେଲେ । ଭରତ ଓ ରାଜା ଜନକଙ୍କ ଦଳ ଅଶ୍ୱ, ହସ୍ତୀ ଓ ଅନେକ ପ୍ରକାର ଯାନ-ବାହନ ସଜାଇ ପ୍ରସ୍ଥାନ କଲେ ॥ ୩ ॥ ସମସ୍ତ ଲୋକ ସୀତା, ଲକ୍ଷ୍ମଣଙ୍କ ସମେତ ଶ୍ରୀରାମଙ୍କୁ ହୃଦୟରେ ଧାରଣ କରି ଅଚେତ ଅବସ୍ଥାରେ ସତେ ଯେମିତି ଚାଲି ଯାଉଥା'ନ୍ତି ।

ଗୁର ଗୁରତିୟ ପଦ ବଂଦି ପ୍ରଭୁ ସୀତା ଲଖନ ସମେତ ।
ଫିରେ ହରଷ ବିସମୟ ସହିତ ଆଏ ପରନ ନିକେତ ॥୩୨୦॥

ବିଦା କୀନ୍ହ ସନମାନି ନିଷାଦୂ । ଚଲେଉ ହୃଦୟଁ ବଡ଼ ବିରହ ବିଷାଦୂ ॥
କୋଲ କିରାତ ଭିଲ୍ଲ ବନଚାରୀ । ଫେରେ ଫିରେ ଜୋହାରି ଜୋହାରୀ ॥୧॥
ପ୍ରଭୁ ସିୟ ଲଖନ ବୈଠି ବଟ ଛାହୀଁ । ପ୍ରିୟ ପରିଜନ ବିୟୋଗ ବିଲଖାହୀଁ ॥
ଭରତ ସନେହ ସୁଭାଉ ସୁବାନୀ । ପ୍ରିୟା ଅନୁଜ ସନ କହତ ବଖାନୀ ॥୨॥
ପ୍ରୀତି ପ୍ରତୀତି ବଚନ ମନ କରନୀ । ଶ୍ରୀମୁଖ ରାମ ପ୍ରେମ ବସ ବରନୀ ॥
ତେହି ଅବସର ଖଗ ମୃଗ ଜଲ ମୀନା । ଚିତ୍ରକୂଟ ଚର ଅଚର ମଲୀନା ॥୩॥
ବିବୁଧ ବିଲୋକି ଦସା ରଘୁବର କୀ । ବରଷି ସୁମନ କହି ଗତି ଘର ଘର କୀ ॥
ପ୍ରଭୁ ପ୍ରନାମୁ କରି ଦୀନ୍ହ ଭରୋସୋ । ଚଲେ ମୁଦିତ ମନ ଡର ନ ଖରୋ ସୋ ॥୪॥

---

ଗୁରୁ ଗୁରୁପତ୍ନୀ-ପଦ ବନ୍ଦି ପ୍ରଭୁ ଘେନ ସୀତା ଲକ୍ଷ୍ମଣଙ୍କୁ ।
ବାହୁଡ଼ି ହରଷ-ବିଷାଦ-ବିବଶ ଆସିଲେ ପର୍ଣ୍ଣ ଗୃହକୁ ॥୩୨୦॥

ସମ୍ମାନ କରି ବିଦାୟ କରନ୍ତେ ନିଷାଦେ । ଗମିଲା ହୃଦୟେ ଅତି ବିରହ-ବିଷାଦେ ॥
କୋହ୍ଲ, କନ୍ଧ, କିରାତାଦି ଯେତେ ବନଚାରୀ । ଫେରିଲେ ସର୍ବେ ପ୍ରଭୁଙ୍କୁ ଜୁହାରି ଜୁହାରି ॥୧॥
ପ୍ରଭୁ ସୀତା ସଲକ୍ଷ୍ମଣ ବସି ବଟ ତଳ । ପ୍ରିୟ କୁଟୁମ୍ବ ବିରହେ ହୁଅନ୍ତି ବିକଳ ॥
ଭରତଙ୍କ ଆଚରଣ ସ୍ନେହ ସୁବଚନ । ପ୍ରିୟା ଅନୁଜଙ୍କ ଆଗେ କରନ୍ତି କଥନ ॥୨॥
ପ୍ରୀତି ପ୍ରତୀତି କରମ ମନ ବଚନରେ । ପ୍ରେମବଶ ଉଚ୍ଚାରନ୍ତି ରାମ ଶ୍ରୀମୁଖରେ ॥
ସେହି ସମୟରେ ପଶୁ ପକ୍ଷୀ ଜଳ ମୀନ । ହେଲେ ଚିତ୍ରକୂଟ ଚର ଅଚର ମଳିନ ॥୩॥
ବିବୁଧେ ବିଲୋକି ଦଶା ରଘୁପତିଙ୍କର । ବରଷେ ସୁମନ ଗତି କହିଲେ ଘରର ॥
ପ୍ରଭୁ ଭରସା ଦିଅନ୍ତେ ପ୍ରଣିପାତ କରି । ଗମିଲେ ମୁଦିତେ ମନୁ ଭୟ ପରିହରି ॥୪॥

---

ବଳଦ, ଘୋଡ଼ା, ହାତୀ ଆଦି ପଶୁ ଶିଥିଳ ହୃଦୟରେ ସତେ ଯେପରି ପରାଧୀନ ହୋଇ ମନ ମାରି ଚାଲି ଯାଉଥା'ନ୍ତି ॥ ୪ ॥ ଦୋହା :—ସୀତା, ଲକ୍ଷ୍ମଣଙ୍କ ସମେତ ଶ୍ରୀରାମଚନ୍ଦ୍ର ଗୁରୁ ବଶିଷ୍ଠ ଓ ଗୁରୁପତ୍ନୀ ଅରୁନ୍ଧତୀଙ୍କ ଚରଣବନ୍ଦନା-ପୂର୍ବକ ହର୍ଷବିଷାଦର ସହିତ ପର୍ଣ୍ଣକୁଟୀରକୁ ଫେରିଲେ ॥ ୩୨୦ ॥ ଚୌପାଇ :—ତତ୍ପରେ ସସମ୍ମାନ ନିଷାଦରାଜାଙ୍କୁ ବିଦାୟ ଦେଲେ । ନିଷାଦରାଜ ଚାଲିଲେ ସତ, କିନ୍ତୁ ତାଙ୍କ ହୃଦୟରେ ବିରହ-ଜନିତ ବିଷାଦ ଥିଲା । ତତ୍ପରେ ଶ୍ରୀରାମ କୋହ୍ଲ, କିରାତ, ଭିଲ ଆଦି ବନବାସୀ ଲୋକଙ୍କୁ ଫେରାଇଲେ । ସେମାନେ ସମସ୍ତେ ପ୍ରଭୁଙ୍କୁ ବାରମ୍ବାର ଜୁହାର କରି ଫେରିଲେ ॥ ୧ ॥ ପ୍ରଭୁ ଶ୍ରୀରାମ, ସୀତା ଓ ଲକ୍ଷ୍ମଣ ବରଗଛ ଛାୟା ତଳେ ବସି ପ୍ରିୟଜନ ଏବଂ ପରିବାରଙ୍କ ବିରହ ଯୋଗୁ ଦୁଃଖ ପ୍ରକାଶ କରୁଥା'ନ୍ତି । ସେ ପ୍ରିୟପତ୍ନୀ ସୀତା ଓ ସାନ ଭାଇ ଲକ୍ଷ୍ମଣଙ୍କ ଆଗରେ ଭରତଙ୍କ ସ୍ନେହ, ସ୍ୱଭାବ ଓ ସୁମନୋହର ବାଣୀ ବଖାଣିବାକୁ ଲାଗିଲେ ॥ ୨ ॥ ଶ୍ରୀରାମଚନ୍ଦ୍ର ପ୍ରେମର ବଶବର୍ତ୍ତୀ ହୋଇ ଆପଣା ଶ୍ରୀମୁଖରେ ଭରତଙ୍କ ବଚନ, ମନ, କର୍ମପ୍ରୀତି

ସାନୁଜ ସୀୟ ସମେତ ପ୍ରଭୁ ରାଜତ ପରନ କୁଟୀର ।
ଭଗତି ଗ୍ୟାନୁ ବୈରାଗ୍ୟ ଜନୁ ସୋହତ ଧରେଁ ସରୀର ॥୩୨୧॥

ମୁନି ମହିସୁର ଗୁର ଭରତ ଭୁଆଲୂ । ରାମ ବିରହଁ ସବୁ ସାଜୁ ବିହାଲୂ ॥
ପ୍ରଭୁ ଗୁନ ଗ୍ରାମ ଗନତ ମନ ମାହୀଁ । ସବ ଚୁପଚାପ ଚଲେ ମଗ ଜାହୀଁ ॥୧॥
ଜମୁନା ଉତରି ପାର ସବୁ ଭୟଊ । ସୋ ବାସରୁ ବିନୁ ଭୋଜନ ଗୟଊ ॥
ଉତରି ଦେବସରି ଦୂସର ବାସୂ । ରାମସଖାଁ ସବ କୀହ୍ନ ସୁପାସୂ ॥୨॥
ସଈ ଉତରି ଗୋମତୀଁ ନହାଏ । ଚୌଥେଁ ଦିବସ ଅଵଧପୁର ଆଏ ॥
ଜନକୁ ରହେ ପୁର ବାସର ଚାରୀ । ରାଜ କାଜ ସବ ସାଜ ସଁଭାରୀ ॥୩॥

---

ଜାନକୀ ଅନୁଜ ସଙ୍ଗେ ରଘୁରାଜ ଶୋଭନ୍ତି ପର୍ଣ୍ଣ କୁଟୀରେ ।
ଅବା ଜ୍ଞାନ ଭକ୍ତି ବୈରାଗ୍ୟ ଶୋଭନ୍ତି ସୁନ୍ଦର ନର ଶରୀରେ ॥୩୨୧॥

ମୁନି, ମହୀସୁର, ଗୁରୁ, ଭୂପତି, ଭରତ । ରାମ ବିରହେ ବ୍ୟାକୁଳ ସମାଜ ସମସ୍ତ ॥
ପ୍ରଭୁ ଗୁଣଗ୍ରାମ ଗଣି ହୃଦୟ ମଧ୍ୟରେ । ସର୍ବେ ନୀରବରେ ଚାଲି ଯାଆନ୍ତି ପଥରେ ॥୧॥
ଆଗୀ ଲୋକମାନେ ପାରି ଯମୁନା ହୋଇଲେ । ସେହି ବାସର ଭୋଜନ ବିନା କଟାଇଲେ ॥
ହୋଇଲା ଦ୍ୱିତୀୟ ଗଙ୍ଗାପାରେ ବାସସ୍ଥଳ । ରାମସଖା କଲେ ଉଚିତ ବ୍ୟବସ୍ଥା ସକଳ ॥୨॥
ସଈ ପାରି ହୋଇ ସ୍ନାନ କଲେ ଗୋମତୀରେ । ଚତୁର୍ଥ ଦିନେ ପ୍ରବେଶ ଅଯୋଧ୍ୟାପୁରୀରେ ॥
ଜନକ ଦିବସ ଚାରି ନଗରେ ରହିଣ । ରାଜକାର୍ଯ୍ୟ ଆଦି ସର୍ବ ବସ୍ତୁ ସମ୍ଭାଳିଣ ॥୩॥

---

ଓ ବିଶ୍ୱାସ ବିଷୟ ବର୍ଣ୍ଣନା କଲେ । ସେତେବେଳେ ପକ୍ଷୀ, ପଶୁ ଓ ଜଳର ମୀନ ଆଦି ଚିତ୍ରକୂଟର ସମସ୍ତ ଚେତନ ଏବଂ ଜଡ଼ ଜୀବ ପୁଲକିତ ହୋଇ ପଡ଼ିଲେ ॥ ୩ ॥ ଶ୍ରୀ ରଘୁନାଥଙ୍କ ଦଶା ଦେଖି ଦେବତାମାନେ ତାଙ୍କ ଉପରେ ପୁଷ୍ପବୃଷ୍ଟି କଲେ ଏବଂ ତାଙ୍କ ଆଗରେ ଆପଣା ଘର ଘରର ଦଶା କହିଲେ । ପ୍ରଭୁ ଶ୍ରୀରାମ ସେମାନଙ୍କୁ ପ୍ରଣାମ-ପୂର୍ବକ ଆଶ୍ୱାସନା ଦେଲେ । ତେଣୁ ସେମାନେ ପ୍ରସନ୍ନ ହୋଇ ଫେରିଲେ । ମନ ମଧ୍ୟରେ ଟିକିଏ ହେଲେ ଚିନ୍ତା ଡର ରହିଲା ନାହିଁ ॥ ୪ ॥ ଦୋହା :—ସାନ ଭାଇ ଲକ୍ଷ୍ମଣ ଓ ସୀତାଙ୍କ ସମେତ ପ୍ରଭୁ ଶ୍ରୀରାମଚନ୍ଦ୍ର ପର୍ଣ୍ଣକୁଟୀରରେ ଏପରି ସୁଶୋଭିତ ହେଉଅଛନ୍ତି, ଯେପରି ଅବା ବୈରାଗ୍ୟ, ଭକ୍ତି ଓ ଜ୍ଞାନ ଶରୀର ଧାରଣପୂର୍ବକ ସୁଶୋଭିତ ହେଉ-ଅଛନ୍ତି ॥ ୩୨୧ ॥ ଚୌପାଈ :—ମୁନି, ବ୍ରାହ୍ମଣ, ଗୁରୁ, ବଶିଷ୍ଠ, ଭରତ, ରାଜା ଜନକ—ସାରା ସମାଜ ଶ୍ରୀରାମଙ୍କ ବିରହରେ ବ୍ୟାକୁଳ । ସମସ୍ତେ ପ୍ରଭୁଙ୍କ ଗୁଣାବଳୀ ମନେ ମନେ ସ୍ମରଣ କରି ମାର୍ଗରେ ଚୁପଚାପ ଚାଲିଯାଉଥା'ନ୍ତି ॥ ୧ ॥ ପ୍ରଥମ ଦିନ ସମସ୍ତ ଲୋକ ଯମୁନା ପାରି ହେଲେ । ସେ ଦିନ ବିନା ଭୋଜନରେ କଟିଗଲା । ଗଙ୍ଗା ପାରି ହେବା ପରେ ଶୃଙ୍ଗବେରପୁରରେ ଦ୍ୱିତୀୟ ଡେରା ପଡ଼ିଲା । ସେହିଠାରେ ରାମସଖା ନିଷାଦରାଜ ବସବାସର ସମସ୍ତ ସୁବ୍ୟବସ୍ଥା କରିଦେଲେ ॥ ୨ ॥ ତହିଁରେ ସଈ ନଦୀ ପାରି ହୋଇ ସେମାନେ ଗୋମତୀରେ ସ୍ନାନ କଲେ ଏବଂ ଚତୁର୍ଥ ଦିନ ସମସ୍ତେ ଅଯୋଧ୍ୟାରେ ଯାଇ

ସୌଁପି ସଚିବ ଗୁରୁ ଭରତହି ରାଜୂ । ତେରହୁତି ଚଲେ ସାଜି ସବୁ ସାଜୂ ॥
ନଗର ନାରି ନର ଗୁରୁ ସିଖ ମାନୀ । ବସେ ସୁଖେନ ରାମ ରଜଧାନୀ ॥୪॥

ରାମ ଦରସ ଲଗି ଲୋଗ ସବ କରତ ନେମ ଉପବାସ ।
ତଜି ତଜି ଭୂଷନ ଭୋଗ ସୁଖ ଜିଅତ ଅବଧି କୀ ଆସ ॥୩୨୨॥

ସଚିବ ସୁସେବକ ଭରତ ପ୍ରବୋଧେ । ନିଜ ନିଜ କାଜ ପାଇ ସିଖ ଓଧେ ॥
ପୁନି ସିଖ ଦୀହ୍ନି ବୋଲି ଲଘୁ ଭାଈ । ସୌଁପୀ ସକଲ ମାତୁ ସେବକାଈ ॥୧॥
ଭୂସୁର ବୋଲି ଭରତ କର ଜୋରେ । କରି ପ୍ରନାମ ବୟ ବିନୟ ନିହୋରେ ॥
ଊଁଚ ନୀଚ କାରଜୁ ଭଲ ପୋଚୂ । ଆୟସୁ ଦେବ ନ କରବ ସଁକୋଚୂ ॥୨॥
ପରିଜନ ପୁରଜନ ପ୍ରଜା ବୋଲାଏ । ସମାଧାନୁ କରି ସୁବସ ବସାଏ ॥
ସାନୁଜ ଗେ ଗୁରୁ ଗେହଁ ବହୋରୀ । କରି ଦଣ୍ଡବତ କହତ କର ଜୋରୀ ॥୩॥

---

ସମର୍ପି ସଚିବ ଗୁରୁ ଭରତଙ୍କୁ ରାଜ୍ୟ । ଚଳିଲେ ମିଥିଳା ସାଜି ଆପଣା ସମାଜ ॥
ନଗର ନାରୀ ପୁରୁଷ ଗୁରୁଶିକ୍ଷା ମାନି । ରହିଲେ ସୁଖ ପୂର୍ବକ ରାମ ରାଜଧାନୀ ॥୪॥

ରାମ ଦରଶନ ହେତୁ ପୁରଜନ ନାନା ବ୍ରତ ଉପବାସେ ।
ତେଜି ଭୋଗ ସୁଖ ଭୂଷଣ ସମସ୍ତ ରହିଲେ ଅବଧି ଆଶେ ॥୩୨୨॥

ପାଳି ମନ୍ତ୍ରୀ କିଙ୍କରଙ୍କୁ ଭରତ ବୋଧିଲେ । ଶିକ୍ଷା ପାଇ ନିଜ ନିଜ କାର୍ଯ୍ୟରେ ଲାଗିଲେ ॥
ପୁଣି ଶିଖାଇଲେ ଡାକି କନିଷ୍ଠ ଭ୍ରାତାଙ୍କୁ । ସମସ୍ତ ମାତାଙ୍କ ସେବା ସମର୍ପି ତାହାଙ୍କୁ ॥୧॥
ଡକାଇ ଭରତ ବିପ୍ରବୃନ୍ଦେ ଯୋଡ଼ି କର । ପ୍ରଣମି କହିଲେ କଥା ବିନୟ ସୁନ୍ଦର ॥
ଉଚ୍ଚ ନୀଚ ଭଲ ମନ୍ଦ କାର୍ଯ୍ୟାଦି ବିଶେଷ । ସଙ୍କୋଚ ନ କରି ମନେ ଦିଅନ୍ତୁ ଆଦେଶ ॥୨॥
ପରିଜନ ପୁରଜନ ପ୍ରଜାଙ୍କୁ ଡକାଇ । ସମସ୍ତଙ୍କ ସର୍ବ ଭାବେ ବ୍ୟବସ୍ଥା କରାଇ ॥
ପୁଣି ଗୁରୁ ଗୃହେ ଗଲେ ଅନୁଜଙ୍କୁ ଘେନି । ଭୂମିଷ୍ଠ ହୋଇ ଭାଷିଲେ ଯୋଡ଼ି କର ବେନି ॥୩॥

---

ପହଞ୍ଚିଲେ । ଜନକ ଶ୍ରୀରାମଙ୍କ ଅଯୋଧ୍ୟାରେ ରହିଲେ ଏବଂ ରାଜକାର୍ଯ୍ୟ ସାଜସାମଗ୍ରୀ ସମ୍ଭାଳିଲେ । ତତ୍ପରେ ମନ୍ତ୍ରୀ, ଗୁରୁ ଏବଂ ଭରତଙ୍କୁ ରାଜ୍ୟ ସମର୍ପଣ କଲେ ଏବଂ ଆପଣା ଦଳବଳ ସାଜି ମିଥିଳା ଚଳିଲେ । ନଗରର ସ୍ତ୍ରୀ-ପୁରୁଷମାନେ ଗୁରୁଙ୍କ ଉପଦେଶ ମାନି ଶ୍ରୀରାମଙ୍କ ରାଜଧାନୀ ଅଯୋଧ୍ୟାରେ ସୁଖରେ ବାସ କରିବାକୁ ଲାଗିଲେ ॥ ୩-୪ ॥ ଦୋହା :—ସମସ୍ତ ଲୋକ ଶ୍ରୀରାମଚନ୍ଦ୍ରଙ୍କ ଦର୍ଶନ ନିମନ୍ତେ ନିୟମ ଓ ଉପବାସ କରିବାକୁ ଲାଗିଲେ । ସେମାନେ ଭୂଷଣ ଓ ଭୋଗ-ବିଳାସ ତ୍ୟାଗ-ପୂର୍ବକ ଅବଧି ଆଶାରେ ଜୀବନ ଯାପନ କରିବାକୁ ଲାଗିଲେ ॥୩୨୨॥ ଚୌପାଈ :—ଭରତ ମନ୍ତ୍ରୀ ଓ ବିଶ୍ୱସ୍ତ ସେବକଙ୍କୁ ବୁଝାଇ କର୍ମ ନିମନ୍ତେ ସେମାନଙ୍କୁ ଉଦ୍‌ବୁଦ୍ଧ କଲେ । ସେମାନେ ସମସ୍ତେ ଉପଦେଶ ପାଇ ଆପଣା ଆପଣା କାମରେ ଲାଗିଗଲେ । ତତ୍ପରେ ସେ ସାନ ଭାଇ ଶତ୍ରୁଘ୍ନଙ୍କୁ ଡାକି ତାଙ୍କୁ ଉପଯୁକ୍ତ ଉପଦେଶ ଦେଲେ ଏବଂ ତାଙ୍କ ଉପରେ ସମସ୍ତ ମାତାଙ୍କ ସେବାଭାର ସମର୍ପଣ କରିଦେଲେ ॥ ୧ ॥ ବ୍ରାହ୍ମଣମାନଙ୍କୁ ଡକାଇ ଭରତ ହାତ ଯୋଡ଼ି ସେମାନଙ୍କୁ ପ୍ରଣାମ

ଆୟସୁ ହୋଇ ତ ରହଉଁ ସନେମା । ବୋଲେ ମୁନି ତନ ପୁଲକି ସପେମା ॥
ସମୁଝବ କହବ କରବ ତୁମ୍ହ ଜୋଈ । ଧରମସାରୁ ଜଗ ହୋଇହି ସୋଈ ॥୪॥

ସୁନି ସିଖ ପାଇ ଅସୀସ ବଡ଼ି ଗନକ ବୋଲି ଦିନୁ ସାଧି ।
ସିଂଘାସନ ପ୍ରଭୁ ପାଦୁକା ବୈଠାରେ ନିରୁପାଧି ॥୩୨୩॥

ରାମ ମାତୁ ଗୁର ପଦ ସିରୁ ନାଈ । ପ୍ରଭୁ ପଦପୀଠ ରଜାୟସୁ ପାଈ ॥
ନଂଦିଗାଓଁ କରି ପରନ କୁଟୀରା । କୀହ୍ନ ନିବାସୁ ଧରମ ଧୁର ଧୀରା ॥୧॥
ଜଟାଜୂଟ ସିର ମୁନିପଟ ଧାରୀ । ମହି ଖନି କୁସ ସାଁଥରୀ ସଁଓାରୀ ॥
ଅସନ ବସନ ବାସନ ବ୍ରତ ନେମା । କରତ କଠିନ ରିଷିଧରମ ସପେମା ॥୨॥

---

ନିୟମ ସହି ରହିବା ଆଦେଶ ହୋଇଲେ । ପୁଲକ ଶରୀରେ ମୁନି ସପ୍ରେମେ କହିଲେ ॥
ବୁଝିବ କହିବ ତୁମ୍ଭେ ଆଚରିବ ଯାହା । ଧରମ ସାର ହୋଇବ ଜଗତରେ ତାହା ॥୪॥

ମୁନି ଶିକ୍ଷା ଶିଷ ପାଇଣ ଜ୍ୟୋତିଷ ଡକାଇ ସୁଦିନ ସାଧି ।
ସିଂହାସନ ପୃଷ୍ଠେ ପ୍ରଭୁଙ୍କ ପାଦୁକା ସଂସ୍ଥାପିଲେ ନିରୁପାଧି ॥୩୨୩॥

ରାମ ମାତା ଗୁରୁପଦେ ଶିର ନୁଆଁଇଣ । ପ୍ରଭୁ ଚରଣ ପାଦୁକା ରାଜାଜ୍ଞା ପାଇଣ ॥
ନନ୍ଦିଗ୍ରାମେ ବିରଚିଣ ପରନ କୁଟୀର । ନିବାସ କଲେ ଧରମ-ଧୁରନ୍ଧର ଧୀର ॥୧॥
ଜଟାଜୁଟ ଶିରେ ବହି ମୁନିବସ୍ତ୍ର-ଧାରୀ । ମହୀ ଖୋଳି ତହିଁ ମଧ୍ୟେ କୁଶଶଯ୍ୟା ପାରି ॥
ଅଶନ ବସନ ପାନ୍ଦ ବ୍ରତାଦି ନିୟମ । ଆଚରିଲେ ପ୍ରେମେ ଋଷି କଠିନ ଧରମ ॥୨॥

---

କଲେ ଏବଂ ଅବସ୍ଥାନୁସାରେ ସେମାନଙ୍କୁ ବିନୟ ଓ ନେହୁରା କଲେ—"ଆପଣମାନେ ଉଚ୍ଚ ନୀଚ (ବଡ ସାନ), ଭଲ ମନ୍ଦ ଆଦି ଯାହା କିଛି କାର୍ଯ୍ୟ ହେବ, ସେଥି ନିମନ୍ତେ ଆଜ୍ଞା ଦିଅନ୍ତୁ । ସଂକୋଚ କରନ୍ତୁ ନାହିଁ ।" ॥ ୨ ॥ ଭରତ ପୁଣି ପରିବାର ଲୋକ, ନାଗରିକ ଏବଂ ପ୍ରଜାମାନଙ୍କୁ ଡକାଇ ସେମାନଙ୍କୁ ଆଶ୍ୱାସନା ଦେଲେ ଏବଂ ସେମାନଙ୍କୁ ସୁଖରେ ବସାଇଲେ । ତତ୍ପରେ ସାନଭାଇ ଶତ୍ରୁଘ୍ନଙ୍କ ସହିତ ସେ ଗୁରୁଙ୍କ ଘରକୁ ଗଲେ ଓ ଏବଂ ଦଣ୍ଡବତ କରି ହାତ ଯୋଡ଼ି କହିଲେ, "ହେ ଗୁରୁଦେବ ! ଆଜ୍ଞା ହେଲେ ମୁଁ ନିୟମରେ ରହିବି ।" ମୁନି ବଶିଷ୍ଠ ପୁଲକିତ ଶରୀରରେ ପ୍ରେମର ସହିତ କହିଲେ, "ହେ ଭରତ ! ତୁମେ ଯାହା କିଛି ବୁଝିବ, କହିବ ବା କରିବ, ତାହାହିଁ ଜଗତରେ ଧର୍ମର ସାର ହେବ ॥ ୩-୪ ॥ ଦୋହା :—ଭରତ ଏହା ଶୁଣି ଏବଂ ଉପଦେଶ ଓ ବଡ଼ ଆଶୀର୍ବାଦ ପାଇ ଜ୍ୟୋତିଷୀମାନଙ୍କୁ ଡକାଇଲେ ଏବଂ ଶୁଭଦିନ ଓ ଶୁଭ ମୁହୂର୍ତ୍ତ ନିର୍ଣ୍ଣୟ କରି ପ୍ରଭୁଙ୍କ ଚରଣ-ପାଦୁକା ନିର୍ବିଘ୍ନରେ ସିଂହାସନ ଉପରେ ସ୍ଥାପିତ କରାଇଲେ ॥ ୩୨୩ ॥ ଚୌପାଈ :—ତତ୍ପରେ ଭରତ ଶ୍ରୀରାମଙ୍କ ମାତା କୌଶଲ୍ୟା ଓ ଗୁରୁଙ୍କ ଚରଣରେ ପ୍ରଣାମ କଲେ । ପ୍ରଭୁଙ୍କ ଚରଣ-ପାଦୁକାର ଆଜ୍ଞା ନେଇ ଧର୍ମଧୁରନ୍ଧର ଓ ଧୀର ଭରତ ନନ୍ଦିଗ୍ରାମରେ ପର୍ଣ୍ଣକୁଟୀର ନିର୍ମାଣପୂର୍ବକ ତହିଁରେ ନିବାସ କଲେ ॥ ୧ ॥ ସେ ଶିର ଉପରେ ଜଟାଜଟ ଏବଂ ଶରୀରରେ ମୁନିମାନଙ୍କ ପରିଧେୟ ବଲ୍‌କଳ ବସ୍ତ୍ର ପରିଧାନ

ଭୂଷନ ବସନ ଭୋଗ ସୁଖ ଭୂରୀ । ମନ ତନ ବଚନ ତଜେ ତିନ ତୂରୀ ॥
ଅଉଧ ରାଜୁ ସୁରରାଜୁ ସିହାଈ । ଦସରଥ ଧନୁ ସୁନି ଧନଦୁ ଲଜାଈ ॥୩॥
ତେହିଁ ପୁର ବସତ ଭରତ ବିନୁ ରାଗା । ଚଂଚରୀକ ଜିମି ଚମ୍ପକ ବାଗା ॥
ରମା ବିଲାସୁ ରାମ ଅନୁରାଗୀ । ତଜତ ବମନ ଜିମି ଜନ ବଡ଼ଭାଗୀ ॥୪॥

ରାମ ପେମ ଭାଜନ ଭରତୁ ବଡେ଼ ନ ଏହିଁ କରତୂତି ।
ଚାତକ ହଂସ ସରାହିଅତ ଟେଁକ ବିବେକ ବିଭୂତି ॥୩୨୪॥

ଦେହ ଦିନହୁଁ ଦିନ ଦୂବରି ହୋଈ । ଘଟଇ ତେଜୁ ବଲୁ ମୁଖଛବି ସୋଈ ॥
ନିତ ନବ ରାମ ପେମ ପନୁ ପୀନା । ବଢ଼ତ ଧରମ ଦଲୁ ମନୁ ନ ମଲୀନା ॥୧॥

---

ବସନ ଭୂଷଣ ଭୋଗ ସୁଖ ସମୁଦାୟ । ତେଜିଲେ ମନ ବଚନ ତନୁ ତୃଣ ପ୍ରାୟ ॥
ଅଯୋଧ୍ୟା ରାଜ୍ୟକୁ ଦେବରାଜ ପ୍ରଶଂସଇ । ଦଶରଥ ଧନ ଶୁଣି ଧନଦ ଲଜ୍ଜଇ ॥୩॥
ସେ ପୁରେ ନିଃସ୍ପୃହେ ବାସ କରନ୍ତି ଭରତ । ଚଞ୍ଚରୀକ ରହେ ଚମ୍ପା ବନରେ ଯେମନ୍ତ ॥
ବଡ ଭାଗ୍ୟବାନ ରାମ ଅନୁରାଗୀ ଜନ । ତେଜନ୍ତି ରମା ବିଳାସ ବମନ ଯେସନ ॥୪॥

ରାମ ପ୍ରେମପାତ୍ର ଅଟନ୍ତି ଭରତ, ବିଚିତ୍ର ନୋହେ ଏ କଥା ।
ପ୍ରତିଜ୍ଞା ବିବେକ ଗୁଣରେ ଚାତକ ହଂସ ପ୍ରଶଂସ୍ୟ ସର୍ବଥା ॥୩୨୪॥

ଦିନୁ ଦିନ କଳେବର ଦୁର୍ବଳ ହୁଅଇ । ସେହି ମୁଖ ଛବି ବଳ, ତେଜ ହିଁ କମଇ ॥
ନିତ୍ୟ ନବ ରାମ-ପ୍ରେମ ପଣ ହୁଏ ପୀନ । ବଢେ ଧର୍ମବଳ, ମନ ନ ହୁଏ ମଳିନ ॥୧॥

---

କଲେ । ଭୂମି ଖୋଳି ତାହା ଉପରେ କୁଶାସନ ବିଛାଇ ଦେଲେ । ଭୋଜନ, ବସ୍ତ୍ର, ବାସନ, ବ୍ରତ, ନିୟମ—ସମସ୍ତ ବିଷୟରେ ସେ ପ୍ରେମ ସହକାରେ ଋଷିମାନଙ୍କର କଠୋର ଧର୍ମାଚରଣ କରିବାକୁ ଲାଗିଲେ ॥୨॥ ଭୂଷଣ, ବସ୍ତ୍ର ଓ ବିବିଧ ଭୋଗ ବିଳାସକୁ ସେ ତୃଣବତ୍ ତ୍ୟାଗ କରିଦେଲେ । ଯେଉଁ ଅଯୋଧ୍ୟାର ଶୋଭାକୁ ଦେବରାଜ ଇନ୍ଦ୍ର ଈର୍ଷ୍ୟା କରୁଥିଲେ ଏବଂ ଯେଉଁ ଅଯୋଧ୍ୟାର ରାଜା (ଦଶରଥ)ଙ୍କର ସମ୍ପତ୍ତି କଥା ଶୁଣି କୁବେର ମଧ୍ୟ ଲଜ୍ଜିତ ହେଉଥିଲେ, ସେହି ଅଯୋଧ୍ୟା ପୁରରେ ଭରତ ଅନାସକ୍ତ ହୋଇ ଚମ୍ପା ଉଦ୍ୟାନରେ ଭ୍ରମର ବାସ କଲା ପରି ବାସ କରୁଥା'ନ୍ତି । ଶ୍ରୀରାମଚନ୍ଦ୍ରଙ୍କ ପ୍ରେମୀ ବଡ ଭାଗ୍ୟବାନ୍ । ସେ ଲକ୍ଷ୍ମୀବିଳାସ (ଭୋଗ ଓ ଐଶ୍ୱର୍ଯ୍ୟ)କୁ ବମନ (ବାନ୍ତି) ପରି ତ୍ୟାଗ କରିଦିଅନ୍ତି ॥୪॥ ଦୋହା :—ପୁଣି ଭରତ ତ 'ସ୍ୱୟଂ' ଶ୍ରୀରାମଚନ୍ଦ୍ରଙ୍କ ପ୍ରେମପାତ୍ର । ଏହି ପ୍ରକାର ତ୍ୟାଗ ତାଙ୍କ ପକ୍ଷରେ କିଛି ବିଚିତ୍ର କଥା ନୁହେଁ । ଚାତକ ଭୂମି-ଜଳ ପାନ ନ କରିବାକୁ ତାହାର ପ୍ରତିଜ୍ଞା ଏବଂ ହଂସ କ୍ଷୀର-ନୀର ପୃଥକ୍ କରିବାରେ ତାହାର ବିଚାର ଶକ୍ତି ହେତୁ ପ୍ରଶଂସାର ପାତ୍ର । ଭରତଙ୍କ ପ୍ରତିଜ୍ଞା ଓ ଶକ୍ତି ଏହି ଦୁଇ ପକ୍ଷୀଙ୍କ ପରି ପ୍ରଶଂସନୀୟ ॥୩୨୪॥ ଚୌପାଇ :—ଭରତଙ୍କ ଶରୀର ଦିନକୁ ଦିନ ଦୁର୍ବଳ ହୋଇ ପଡୁଥାଏ । ତେଜ (ମେଦ) କମି ଯାଉଥାଏ । ବଳ ଓ ମୁଖଛବି ସେହିପରି ଥାଏ । ରାମ-ପ୍ରେମର ପଣ ନିତ୍ୟ ନୂତନ ଓ ପୁଷ୍ଟ ହେଉଥାଏ । ଧର୍ମ-ଦଳ ବୃଦ୍ଧିଲାଭ କରୁଥାଏ । ମନ ବିଷଣ୍ଣ ହେଉ ନ ଥାଏ ॥୧॥

ଜିମି ଜଳୁ ନିଘଟତ ସରଦ ପ୍ରକାସେ । ବିଲସତ ବେତସ ବନଜ ବିକାସେ ॥
ସମ ଦମ ସଂଜମ ନିୟମ ଉପାସା । ନଖତ ଭରତ ହିୟ ବିମଲ ଅକାସା ॥୨॥
ଧ୍ରୁବ ବିସ୍ୱାସୁ ଅବଧି ରାକା ସୀ । ସ୍ୱାମି ସୁରତି ସୁରବୀଥି ବିକାସୀ ॥
ରାମ ପେମ ବିଧୁ ଅଚଲ ଅଦୋଷା । ସହିତ ସମାଜ ସୋହ ନିତ ଚୋଖା ॥୩॥
ଭରତ ରହନି ସମୁଝନି କରତୂତି । ଭଗତି ବିରତି ଗୁନ ବିମଲ ବିଭୂତି ॥
ବରନତ ସକଲ ସୁକବି ସକୁଚାହୀଁ । ସେସ ଗନେସ ଗିରା ଗମୁ ନାହୀଁ ॥୪॥

ନିତ ପୂଜତ ପ୍ରଭୁ ପାଁଉରି ପ୍ରୀତି ନ ହୃଦୟଁ ସମାତି ।
ମାଗି ମାଗି ଆୟସୁ କରତ ରାଜ କାଜ ବହୁ ଭାଁତି ॥୩୨୫॥

ପୁଲକ ଗାତ ହିୟଁ ସିୟ ରଘୁବୀରୂ । ଜୀହ ନାମୁ ଜପ ଲୋଚନ ନୀରୂ ॥
ଲଖନ ରାମ ସିୟ କାନନ ବସହୀଁ । ଭରତୁ ଭବନ ବସି ତପ ତନୁ କସହୀଁ ॥୧॥

---

ଯେମନ୍ତେ ଜଳ ଊଣା ହୁଏ ଶରଦ ପ୍ରକାଶେ । ବିଲସିତ ବେତ-ବନ ବନଜ ବିକାଶେ ॥
ଶମ ଦମ ଉପବାସ ନିୟମ ସଂଯମ । ଭରତ ହୃଦୟ ଶୁଭ୍ର ନଭେ ତାରା ସମ ॥୨॥
ଧ୍ରୁବ ବିଶ୍ୱାସ ଅବଧି ପୌର୍ଣ୍ଣମାସୀ ସମ । ପ୍ରଭୁଙ୍କ ସ୍ମରଣ ସୁରମାର୍ଗ ମନୋରମ ॥
ରାମ ପ୍ରେମ-ବିଧୁ ଅଟେ ଅଦୋଷ ଅଚଳ । ସହିତ ସମାଜ ନିତ୍ୟ ଶୋଭେ ସୁବିମଳ ॥୩॥
ଭରତଙ୍କ ସ୍ଥିତି ଗୁଣ କାର୍ଯ୍ୟ ବ୍ୟବହାର । ଭକ୍ତି ବୈରାଗ୍ୟ ବିମଳ ବିଭୂତି ଆଗାର ॥
ବର୍ଣ୍ଣିବାକୁ ସଙ୍କୋଚନ୍ତି ସୁକବି ସମସ୍ତ । ବାଣୀ ଶେଷ ଗଣେଶଙ୍କ ଅଗମ୍ୟ ଅତ୍ୟନ୍ତ ॥୪॥

ନିତ୍ୟ ଅସମ୍ଭାଳ ପ୍ରେମ-ପୂର୍ଣ୍ଣ ହୃଦେ ପ୍ରଭୁ ପାଦୁକା ପୂଜନ୍ତି ।
ମାଗି ମାଗି ଆଜ୍ଞା ଅନେକ ପ୍ରକାରେ ରାଜକାର୍ଯ୍ୟ ସମ୍ଭାଳନ୍ତି ॥୩୨୫॥

ପୁଲକ ତନୁ ହୃଦୟେ ସୀତା ରଘୁବୀର । ଜିହ୍ୱାରେ ଜପନ୍ତି ନାମ, ବିଲୋଚନେ ନୀର ॥
ସୀତା ସଉମିତ୍ରି ରାମ ରହନ୍ତି କାନନେ । ଭରତ ତପରେ ତନୁ କଷନ୍ତି ଭବନେ ॥୧॥

---

ଶରତ ଋତୁର ପ୍ରକାଶ ଯୋଗେ ଜଳ ଏହିପରି ହ୍ରାସ ପାଏ । କିନ୍ତୁ ବେତସ ଶୋଭା ପାଏ ଏବଂ କମଳ ବିକଶିତ ହୁଏ । ଶମ, ଦମ, ସଂଯମ, ନିୟମ ଓ ଉପବାସ ଆଦି ଭରତଙ୍କ ନିର୍ମଳ ଆକାଶର ନକ୍ଷତ୍ରଗଣ ॥ ୨ ॥ ସେହି ଆକାଶରେ ବିଶ୍ୱାସ ଧ୍ରୁବତାରା । ଚଉଦ-ବର୍ଷର ଅବଧି ପୂର୍ଣ୍ଣିମା ଏବଂ ଶ୍ରୀରାମଙ୍କ ସ୍ମୃତି ଆକାଶ-ଗଙ୍ଗା ସଦୃଶ ପ୍ରକାଶିତ । ରାମ ପ୍ରେମ ହିଁ ଅଚଳ ଓ ନିଷ୍କଳଙ୍କ ଚନ୍ଦ୍ରମା । ସେ ଆପଣାର ସମାଜ (ନକ୍ଷତ୍ରଗଣ) ସହିତ ନିତ୍ୟ ସୁବିମଳ ଭାବରେ ସୁଶୋଭିତ ॥ ୩ ॥ ଭରତଙ୍କ ବସବାସ, ଆଚରଣ, କାର୍ଯ୍ୟ, ଭକ୍ତି, ବୈରାଗ୍ୟ, ନିର୍ମଳ ଗୁଣ ଓ ଐଶ୍ୱର୍ଯ୍ୟ ବର୍ଣ୍ଣନା କରିବାକୁ ସମସ୍ତ ସୁକବି ସଙ୍କୁଚିତ ହୁଅନ୍ତି; ସ୍ୱୟଂ ଶେଷ, ଗଣେଶ ଓ ସରସ୍ୱତୀଙ୍କ ପକ୍ଷରେ ସୁଦ୍ଧା ସେ ଗୁଣରାଶିର ବର୍ଣ୍ଣନା ଅଗମ୍ୟ । ଅନ୍ୟମାନଙ୍କ କଥା ବା କ'ଣ କହିବା ? ॥ ୪ ॥ ଦୋହା :—ସେ ନିତ୍ୟ ପ୍ରତି ପ୍ରଭୁଙ୍କ ପାଦୁକା ପୂଜନ କରନ୍ତି । ତାଙ୍କ ହୃଦୟରୁ ପ୍ରେମ ଉଚ୍ଛୁଳି ପଡୁଥାଏ । ପାଦୁକା-ଠାରୁ ଆଜ୍ଞା ମାଗି ସେ ବହୁତ ପ୍ରକାର ରାଜକାର୍ଯ୍ୟ କରୁଥା'ନ୍ତି ॥ ୩୨୫ ॥ ଚୌପାଇ :—

ତୋଊ କହି ସମୁଝି କହତ ସବୁ ଲୋଗୂ । ସବ ବିଧି ଭରତ ସରାହନ ଜୋଗୂ ॥
ସୁନି ବ୍ରତ ନେମ ସାଧୁ ସକୁଚାହୀଁ । ଦେଖି ଦସା ମୁନିରାଜ ଲଜାହୀଁ ॥୨॥
ପରମ ପୁନୀତ ଭରତ ଆଚରନୂ । ମଧୁର ମଂଜୁ ମୁଦ ମଂଗଲ କରନୂ ॥
ହରନ କଠିନ କଲି କଲୁଷ କଲେସୂ । ମହାମୋହ ନିସି ଦଲନ ଦିନେସୂ ॥୩॥
ପାପ ପୁଞ୍ଜ କୁଂଜର ମୃଗରାଜୂ । ସମନ ସକଲ ସଂତାପ ସମାଜୂ ॥
ଜନ ରଂଜନ ଭଂଜନ ଭବଭାରୂ । ରାମ ସନେହ ସୁଧାକର ସାରୂ ॥୪॥

ସିୟ ରାମ ପ୍ରେମ ପିୟୂଷ ପୂରନ ହୋତ ଜନମୁ ନ ଭରତ କୋ ।
ମୁନି ମନ ଅଗମ ଜମ ନିୟମ ସମ ଦମ ବିଷମ ବ୍ରତ ଆଚରତ କୋ ॥
ଦୁଖ ଦାହ ଦାରିଦ ଦଂଭ ଦୂଷନ ସୁଜସ ମିସ ଅପହରତ କୋ ।
କଲିକାଲ ତୁଲସୀ ସେ ସଠନ୍ହି ହଠି ରାମ ସନମୁଖ କରତ କୋ ॥

---

ଉଭୟ ଦିଗକୁ ଖିବ କହନ୍ତି ସମସ୍ତେ । ଭରତ ପ୍ରଶଂସିବାର ଯୋଗ୍ୟ ସବୁ ମତେ ॥
ଶୁଣନ୍ତେ ବ୍ରତ ନିୟମ ସାଧୁ ସଙ୍କୋଚନ୍ତି । ଦଶା ଦେଖି ମୁନୀଶ୍ୱରେ ଲଜ୍ଜିତ ହୁଅନ୍ତି ॥୨॥
ପରମ ପବିତ୍ର ଭରତଙ୍କ ଆଚରଣ । ମଧୁର ମଞ୍ଜୁଳ ମୋଦ ମଙ୍ଗଳ କାରଣ ॥
ହରଇ କଳି କଳୁଷ ଭୟଙ୍କର କ୍ଳେଶ । ମହାମୋହ ଅନ୍ଧକାର ଦଳନେ ଦିନେଶ ॥୩॥
ପାପ-ପୁଞ୍ଜ-କୁଞ୍ଜରକୁ ବିଦାରନ୍ତେ କେଶରୀ । ସକଳ ଶୋକ-ସନ୍ତାପେ ଯମରାଜ ପରି ॥
ଜନ-ରଞ୍ଜନ ଭଞ୍ଜନ ଭବ-ଭୟ-ଭାର । ଅଟଇ ଶ୍ରୀରାମ ସ୍ନେହ ସୁଧାକର ସାର ॥୪॥

ସୀତା ରଘୁନନ୍ଦନ-ପ୍ରେମ-ପୀୟୂଷେ ପୂର୍ଣ୍ଣ ଭରତ ଜନ୍ମ ନ ହୁଅନ୍ତା ।
ମୁନି ମନ ଅଗମ୍ୟ ନିୟମ ଶମ ଦମ ବିଷମ ବ୍ରତ କେ ଧରନ୍ତା ।
ଦମ୍ଭ ଦୁଃଖ ଯେ ଦାରିଦ୍ର୍ୟତା, ସୁଯଶ ଛଳେ କେ ହରନ୍ତା,
କିଏ ଏ କଳି କାଳେ ତୁଳସୀ ଶଠେ ବଳେ ରାମଙ୍କ ସମ୍ମୁଖ କରନ୍ତା ॥

---

ଶରୀର ପୁଲକିତ, ହୃଦୟରେ ଶ୍ରୀ ସୀତାରାମ ବିରାଜିତ । ଜିଭ 'ରାମ' ନାମ ଜପ କରୁଥାଏ । ନେତ୍ରରେ ପ୍ରେମାଶ୍ରୁ-ଜଳ ପରିପୂର୍ଣ୍ଣ । ଲକ୍ଷ୍ମଣ, ଶ୍ରୀରାମ ଓ ସୀତା ବନରେ ବାସ କରୁଅଛନ୍ତି । କିନ୍ତୁ ଭରତ ଘରେ ରହି ସୁଦ୍ଧା ତପସ୍ୟାଯୋଗେ ଶରୀରକୁ ଦୁର୍ବଳ କରୁଥାଆନ୍ତି ॥ ୧ ॥ ଉଭୟଆଡର ପରିସ୍ଥିତି ବିଚାର କରି ଲୋକମାନେ କହନ୍ତି, "ଭରତ ସବୁମତେ ପ୍ରଶଂସାର ଯୋଗ୍ୟ ।" ତାଙ୍କ ବ୍ରତ ଓ ନିୟମ କଥା ଶୁଣି ସାଧୁସନ୍ଥମାନେ ମଧ୍ୟ ସଙ୍କୁଚିତ ହୁଅନ୍ତି । ତାଙ୍କ ଅବସ୍ଥା ଦେଖି ମୁନିରାଜ ମଧ୍ୟ ଲଜ୍ଜିତ ହୁଅନ୍ତି ॥ ୨ ॥ ଭରତଙ୍କ ପରମ ପବିତ୍ର ଆଚରଣ ମଧୁର, ସୁନ୍ଦର ଓ ଆନନ୍ଦ-ମଙ୍ଗଳକାରୀ, କଳିଯୁଗର କଠିନ ପାପ ଓ କ୍ଳେଶ-ସମୂହର ହରଣକାରୀ । ଏହା ସୂର୍ଯ୍ୟଙ୍କ ତୁଲ୍ୟ ମହାମୋହରୂପୀ ନିଶାର ବିନାଶକାରୀ ॥ ୩ ॥ ଏହା ପାପରାଶି-ହସ୍ତୀ ନିମନ୍ତେ ସିଂହ । ସମସ୍ତ ସନ୍ତାପ-ପୁଞ୍ଜର ନାଶକାରୀ । ଏହା ଭକ୍ତମାନଙ୍କର ଆନନ୍ଦଦାୟକ ଏବଂ ଭବ-ଭାର-

ଭରତ ଚରିତ କରି ନେମୁ ତୁଲସୀ ଜୋ ସାଦର ସୁନହିଁ ।
ସୀୟ ରାମ ପଦ ପେମୁ ଅବସି ହୋଇ ଭବ ରସ ବିରତି ॥୩୨୬॥

## ମାସପାରାୟଣ, ଏକବିଂଶ ବିଶ୍ରାମ

ଇତି ଶ୍ରୀମଦ୍ରାମଚରିତମାନସେ ସକଲକଲିକଲୁଷବିଧ୍ୱଂସନେ
ଦ୍ୱିତୀୟଃ ସୋପାନଃ ସମାପ୍ତଃ ।

---

ଭରତ ଚରିତ୍ର ନିୟମ ସାଦରେ ତୁଳସୀ, ଯେହୁ ଶୁଣିବେ ।
ସୀତା ଦେବ ସୀତା ରାମଙ୍କ ପଦରେ, ଭବ ବୈରାଗ୍ୟ ଲଭିବେ ॥୩୨୬॥

*    *    *    *

ଶ୍ରୀରାମ ଚରଣ-ସରୋଜେ ପ୍ରଣମିଣ ରାମ-ରୂପ କରି ଧ୍ୟାନ ।
ନିଜାନୁଭାବରେ ରାମଗୀତ କରେ ବଳରାମ ଦାସ ଗାନ ॥
ନ ଜାଣଇ ଜପ, ଯୋଗ ଯଜ୍ଞ ତପ ନ ଜାଣେ ପୂଜା ଭଜନ ।
ମୋ ପରି ପାମର ଅଧମ ଉପରେ ଦୟା କର, ରଘୁପତି ॥
ପ୍ରାଣେଶ ସ୍ନେହ ରାମ ବଇଦେହୀ, ଜଗତର ବଳ, ଆଶ ।
କୃପା କରି ଥରେ ବାଟୋଇ ବେଶରେ ଯାଇ ହୁଦେ କର ବାସ ॥
ରାମ-ପ୍ରିୟ ଭକ୍ତ ତ୍ରିଭୁବନ ଭରତ ଚରଣ-କଞ୍ଜେ ପ୍ରଣାମ ।
ତବ ପଥ ଅନୁଗାମୀ ହେଉ ତନୁ, ମାଗେ ଦାସ ବଳରାମ ॥

ଇତି ଶ୍ରୀରାମଚରିତମାନସେ ସକଳ କଳି-କଲୁଷ-ବିଧ୍ୱଂସନେ
ଦ୍ୱିତୀୟ ସୋପାନ ସମାପ୍ତ ।

---

ବିଭକ୍ତିନକାରୀ ଏବଂ ଶ୍ରୀରାମ-ପ୍ରେମ-ଚନ୍ଦ୍ରମାର ସାର (ଅମୃତ) ପରି ॥ ୪ ॥ ଛନ୍ଦ:— ଶ୍ରୀ ସୀତାରାମ-ପ୍ରେମାମୃତ-ପରିପୂର୍ଣ୍ଣ ଭରତଙ୍କ ଜନ୍ମ ନ ହୋଇଥିଲେ, ଏପରି କି ମୁନି ମନର ଅଗମ୍ୟ ଯମ, ନିୟମ, ଶମ, ଦମ ଆଦି କଠିନ ବ୍ରତ କିଏ ଆଚରଣ କରନ୍ତା ? ଦୁଃଖ, ଦାରିଦ୍ର୍ୟ, ସନ୍ତାପ, ଦମ୍ଭ ଆଦି ଦୋଷକୁ ଆପଣା ସୁଯଶ ଛଳରେ କିଏ ହରଣ କରନ୍ତା ? ଏବଂ ତୁଳସୀ ଦାସ ପରି ଶଠକୁ ଜବରଦସ୍ତି କିଏ ଶ୍ରୀରାମଙ୍କ ସମ୍ମୁଖୀନ କରନ୍ତା ? ସୋରଠା :—ତୁଳସୀ ଦାସ କହନ୍ତି, "ଯେ କୌଣସି ବ୍ୟକ୍ତି ଯେଉଁ ଭରତଙ୍କ ଚରିତ ନିୟମ ଓ ଆଦର ସହକାରେ ଶୁଣିବେ, ସେ ସୀତାରାମଙ୍କ ଚରଣ-କମଳରେ ପ୍ରେମ ଲାଭ କରିବେ ଏବଂ ସାଂସାରିକ ବିଷୟ-ରସ ପ୍ରତି ତାଙ୍କର ବୈରାଗ୍ୟ ଜାତ ହେବ ।"

କଳିଯୁଗର ସମ୍ପୂର୍ଣ୍ଣ ପାପବିଧ୍ୱଂସନକାରୀ ଶ୍ରୀରାମଚରିତମାନସର
ଦ୍ୱିତୀୟ ସୋପାନ ( ଅଯୋଧ୍ୟାକାଣ୍ଡ ) ସମାପ୍ତ ।

---

ଓଁ

ଶ୍ରୀ ଗଣେଶାୟ ନମଃ

ଶ୍ରୀ ଜାନକୀବଲ୍ଲଭୋ ବିଜୟତେ

ଗୋସ୍ୱାମୀ ତୁଳସୀଦାସକୃତ

# ଶ୍ରୀରାମଚରିତ ମାନସ

## ତୃତୀୟ ସୋପାନ

## ଅରଣ୍ୟ କାଣ୍ଡ

ମୂଳଂ ଧର୍ମତରୋର୍ବିବେକଜଳଧେଃ ପୂର୍ଣ୍ଣେନ୍ଦୁମାନନ୍ଦଦଂ
ବୈରାଗ୍ୟାମ୍ବୁଜଭାସ୍କରଂ ହ୍ୟଘଘନଧ୍ୱାନ୍ତାପହଂ ତାପହମ୍ ।
ମୋହାମ୍ଭୋଧରପୂଗପାଟନବିଧୌ ସ୍ୱଃସମ୍ଭବଂ ଶଙ୍କରଂ
ବନ୍ଦେ ବ୍ରହ୍ମକୁଳଂ କଳଙ୍କଶମନଂ ଶ୍ରୀରାମଭୂପପ୍ରିୟମ୍ ॥୧॥

ସାନ୍ଦ୍ରାନନ୍ଦ-ପୟୋଦସୌଭଗତନୁଂ ପୀତାମ୍ବରଂ ସୁନ୍ଦରଂ
ପାଣୌ ବାଣଶରାସନଂ କଟିଲସତ୍ତୂଣୀରଭାରଂ ବରମ୍ ।
ରାଜୀବାୟତଲୋଚନଂ ଧୃତଜଟାଜୂଟେନ ସଂଶୋଭିତଂ ।
ସୀତାଲକ୍ଷ୍ମଣସଂଯୁତଂ ପଥିଗତଂ ରାମାଭିରାମଂ ଭଜେ ॥୨॥

---

ଧର୍ମ-ତରୁ ମୂଳ, ବିବେକ-ସିନ୍ଧୁଙ୍କୁ ସୁଖଦ ପୂର୍ଣ୍ଣେନ୍ଦୁ ଯେସନ ।
ବୈରାଗ୍ୟାମ୍ବୁଜର ବିକାଶେ ଭାସ୍କର ଘୋର ପାପ-ତାପ-ତମଘ୍ନ ।
ମରୁତ, ନାଶେ ମୋହ-ମେଘନିକରେ,
ବନ୍ଦେ ବ୍ରହ୍ମକୁଳ କଳଙ୍କ-ଶମନ ଶ୍ରୀରାମଙ୍କ ପ୍ରିୟ ଶଙ୍କରେ ॥୧॥

ସାନ୍ଦ୍ରାନନ୍ଦ ଘନ ଶରୀର ଶୋଭନ ପୀତାମ୍ବର-ଧର ସୁନ୍ଦର ॥
କରେ ଧନୁଶର କଟିରେ ତୂଣୀର ଆୟତ ନେତ୍ର ଇନ୍ଦୀବର ॥
ମସ୍ତକେ, ଜଟାଜୂଟ-ଭାର ଶୋଭିତ ।
ଭଜେ ପଥଗାମୀ ରାମାଭିରାମଙ୍କୁ ସୀତା ସଉମିତ୍ରି ସହିତ ॥୨॥

---

ଧର୍ମ-ବୃକ୍ଷର ମୂଳ, ବିବେକ-ସମୁଦ୍ରର ଆନନ୍ଦଦାୟକ ପୂର୍ଣ୍ଣଚନ୍ଦ୍ର, ବୈରାଗ୍ୟ-କମଳର ବିକାଶକାରୀ ସୂର୍ଯ୍ୟ, ପାପ-ଘୋରତମର ଅବଶ୍ୟ ନାଶକାରୀ,* ତାପହାରୀ-

ଉମା ରାମ ଗୁନ ଗୂଢ଼ ପଣ୍ଡିତ ମୁନି ପାୱହିଁ ବିରତି ।
ପାୱହିଁ ମୋହ ବିମୂଢ଼ ଜେ ହରି ବିମୁଖ ନ ଧର୍ମ ରତି ॥
ପୁର ନର ଭରତ ପ୍ରୀତି ମୈଁ ଗାଈ । ମତି ଅନୁରୂପ ଅନୂପ ସୁହାଈ ॥
ଅବ ପ୍ରଭୁ ଚରିତ ସୁନହୁ ଅତି ପାବନ । କରତ ଜେ ବନ ସୁର ନର ମୁନି ଭାବନ ॥୧॥
ଏକ ବାର ଚୁନି କୁସୁମ ସୁହାଏ । ନିଜ କର ଭୂଷନ ରାମ ବନାଏ ॥
ସୀତହି ପହିରାଏ ପ୍ରଭୁ ସାଦର । ବୈଠେ ଫଟିକ ସିଲା ପର ସୁନ୍ଦର ॥୨॥
ସୁରପତି ସୁତ ଧରି ବାୟସ ବେଷା । ସଠ ଚାହତ ରଘୁପତି ବଲ ଦେଖା ॥
ଜିମି ପିପୀଲିକା ସାଗର ଥାହା । ମହା ମନ୍ଦମତି ପାୱନ ଚାହା ॥୩॥

---

ଉମା, ଗୂଢ଼ ରାମ-ଗୁଣ ଶୁଣି ବୁଧ, ମୁନି ବୈରାଗ୍ୟ ଲଭନ୍ତି ।
ଯେ ହରି-ବିମୁଖ ଅଧର୍ମୀ, ଅବୁଧ, ସେ ମୋହ ପ୍ରାପ୍ତ ହୁଅନ୍ତି ॥
ପୁରଜନ ଭରତଙ୍କ ପ୍ରୀତି ଅନୁପମ । ମତି ଅନୁରୂପ ଗାନ କଲି ମୁଁ ଉତ୍ତମ ॥
ପବିତ୍ର ଚରିତ୍ର ଏବେ ଶୁଣ ପ୍ରଭୁଙ୍କର । ବନେ ଯେ କରନ୍ତି ସୁର ମୁନି ହିତକର ॥୧॥
ଏକଦା କୁସୁମ ରମ୍ୟ ବନୁ ତୋଳି ଆଣି । ନିଜ କରେ ରଘୁବର ଭୂଷଣ ନିର୍ମାଣି ॥
ଜନକ ସୁତାଙ୍କୁ ପ୍ରଭୁ ପିନ୍ଧାଇ ଶ୍ରଦ୍ଧାରେ । ବସିଥିଲେ ରମଣୀୟ ସ୍ଫଟିକ ଶିଳାରେ ॥୨॥
ସୁରପତି ସୁତ କାକ ଶରୀର ଧରିଲା । ରଘୁପତି ବଳ ଶଠ ଦେଖିବା ଚାହିଁଲା ॥
ମହା ମନ୍ଦବୁଦ୍ଧି କ୍ଷୁଦ୍ର ପିମ୍ପୁଡ଼ି ଯେମନ୍ତେ । ଚାହେଁ ସିନ୍ଧୁ ମାପି ସ୍ଥଳ ପାଇବା ନିମନ୍ତେ ॥୩॥

---

ହରଣକାରୀ, ମୋହ-ମେଘ-ସମୂହକୁ ଖଣ୍ଡ-ବିଖଣ୍ଡିତ କରିବାରେ ଆକାଶ-ସମ୍ଭୂତ ପବନ-ସ୍ୱରୂପ, ବ୍ରହ୍ମାଙ୍କର ବଂଶଜ (ଆତ୍ମଜ) ଏବଂ କଳଙ୍କ-ନାଶକାରୀ ମହାରାଜ ଶ୍ରୀରାମଚନ୍ଦ୍ରଙ୍କ ପ୍ରିୟ ଶ୍ରୀ ଶଙ୍କରଙ୍କୁ ମୁଁ ବନ୍ଦନା କରୁଛି ॥ ୧ ॥ ଯାହାଙ୍କର ଶରୀର ସଜଳ ମେଘ ସଦୃଶ ସୁନ୍ଦର (ଶ୍ୟାମଳ ବର୍ଣ୍ଣ), ଯେ ଘନ ଆନନ୍ଦଯୁକ୍ତ, ଯେ ସୁନ୍ଦର ବଲ୍କଲ-ପୀତବସ୍ତ୍ର ପରିଧାନ କରିଅଛନ୍ତି, ଯାହାଙ୍କର ହସ୍ତ ଧନୁଶର-ଶୋଭିତ ଏବଂ କଟିଦେଶ ଶ୍ରେଷ୍ଠ ତୂଣୀର (ଶରପୂର୍ଣ୍ଣ) ଭାରରେ ଶୋଭମାନ, ଯାହାଙ୍କର କମଳ-ନେତ୍ର ବିସ୍ତୃତ ଏବଂ ଯେ ଜଟାଜୂଟ-ସୁଶୋଭିତ, ସୀତା ଓ ଲକ୍ଷ୍ମଣଙ୍କ ସମେତ ପଥଗାମୀ ସେହି ଆନନ୍ଦଦାୟକ ଶ୍ରୀରାମଙ୍କୁ ମୁଁ ଭଜନ କରୁଛି ॥ ୨ ॥ ସୋରଠା :—ହେ ପାର୍ବତି ! ଶ୍ରୀରାମଙ୍କ ଗୁଣ ଅତି ଗୂଢ଼ । ପଣ୍ଡିତ ଏବଂ ମୁନିମାନେ ତାହା ସବୁ ଶୁଣି ବୈରାଗ୍ୟ ଲାଭ କରନ୍ତି । କିନ୍ତୁ ଭଗବାନଙ୍କ ପ୍ରତି ଯେ ବିମୁଖ ଏବଂ ଯେଉଁମାନଙ୍କର ଧର୍ମ ପ୍ରତି ପ୍ରେମ ନାହିଁ, ସେହି ମହାମୂଢ଼ ବ୍ୟକ୍ତିମାନେ ତାହା ସବୁ ଶୁଣି ମୋହଗ୍ରସ୍ତ ହୁଅନ୍ତି ॥ ଚୌପାଈ :—ପୁରବାସୀମାନଙ୍କର ଓ ଭରତଙ୍କର ଅନୁପମ ପ୍ରେମ ମୁଁ ମୋ ନିଜର ବୁଦ୍ଧି ଅନୁସାରେ ଗାନ କଲି । ବର୍ତ୍ତମାନ ପ୍ରଭୁ ଶ୍ରୀରାମଚନ୍ଦ୍ର ବନରେ ଯେ ସମସ୍ତ ଲୀଳା କରୁଅଛନ୍ତି, ସେ ସବୁ ଲୀଳାର ଅତି ପବିତ୍ର ଚରିତ ଶୁଣ । ଉକ୍ତ ଚରିତ ଦେବତା, ମନୁଷ୍ୟ ଓ ମୁନିଗଣଙ୍କ ମନକୁ ବିଶେଷ ରୁଚିକର ॥ ୧ ॥ ଏକଦା ଶ୍ରୀରାମ ସୁନ୍ଦର ସୁନ୍ଦର ଫୁଲ ତୋଳି ଆପଣା ହାତରେ

ସୀତା ଚରନ ଚୋଁଚ ହତି ଭାଗା । ମୂଢ଼ ମଂଦମତି କାରନ କାଗା ॥
ଚଲା ରୁଧିର ରଘୁନାୟକ ଜାନା । ସୀଂକ ଧନୁଷ ସାୟକ ସଂଧାନା ॥୪॥

ଅତି କୃପାଲ ରଘୁନାୟକ ସଦା ଦୀନ ପର ନେହ ।
ତା ସନ ଆଇ କୀହ୍ନ ଛଲୁ ମୂରୁଖ ଅବଗୁନ ଗେହ ॥୧॥

ପ୍ରେରିତ ମଂତ୍ର ବ୍ରହ୍ମସର ଧାୱା । ଚଲା ଭାଜି ବାୟସ ଭୟ ପାୱା ॥
ଧରି ନିଜ ରୂପ ଗୟଉ ପିତୁ ପାହୀଁ । ରାମ ବିମୁଖ ରାଖା ତେହି ନାହୀଁ ॥୧॥
ଭା ନିରାସ ଉପଜୀ ମନ ତ୍ରାସା । ଜଥା ଚକ୍ର ଭୟ ରିଷି ଦୁର୍ବାସା ॥
ବ୍ରହ୍ମଧାମ ସିବପୁର ସବ ଲୋକା । ଫିରା ଶ୍ରମିତ ବ୍ୟାକୁଲ ଭୟ ସୋକା ॥୨॥
କାହୂଁ ବୈଠନ କହା ନ ଓହୀ । ରାଖି କୋ ସକଇ ରାମ କର ଦ୍ରୋହୀ ॥
ମାତୁ ମୃତ୍ୟୁ ପିତୁ ସମନ ସମାନା । ସୁଧା ହୋଇ ବିଷ ସୁନୁ ହରିଜାନା ॥୩॥

---

ସୀତା ଚରଣେ ସେ ଚଞ୍ଚୁ ପଳାଇଲା ମାରି । କାରଣ କାକ ଅଧମ କ୍ଷୁଦ୍ର ବୁଦ୍ଧି ଭାରି ॥
ବହନ୍ତେ ରୁଧିର ରଘୁନାୟକ ଜାଣିଲେ । ଧନୁରେ କାଶ ଶାୟକ ସନ୍ଧାନ କରିଲେ ॥୪॥

ପରମ କୃପାଳୁ ରଘୁକୁଳମଣି ଦୀନ-ସ୍ନେହୀ ନିରନ୍ତର ।
ତାଙ୍କ ନିକଟରେ ଛଳ ଆସି କରେ ମୂର୍ଖ ଅବଗୁଣାକର ॥୧॥

ମନ୍ତ୍ରରେ ପ୍ରେରିତ ଯେବେ ବ୍ରହ୍ମାସ୍ତ୍ର ଧାଇଁଲା । ଦେଖି ଭୟଭୀତ ହୋଇ କାକ ପଳାଇଲା ॥
ଧରି ନିଜ ରୂପ ଗଲା ପିତା ସନ୍ନିଧାନ । ରାମ ପରାଙ୍ମୁଖ ଜାଣି ନ ଦେଲେ ସେ ସ୍ଥାନ ॥୧॥
ହୃଦେ ଭୟ ଉପୁଜିଲା ହୁଅନ୍ତେ ନିରାଶ । ଯଥା ବିଷ୍ଣୁ ଚକ୍ର ତ୍ରାସେ ତପିତ ଦୁର୍ବାସା ॥
ବ୍ରହ୍ମଧାମ, ଶିବପୁର ଅନ୍ୟ ସର୍ବ ଲୋକେ । ଭ୍ରମିଲା ଅତି ବ୍ୟାକୁଳ ଶ୍ରାନ୍ତ ଭୟ ଶୋକେ ॥୨॥
କେହି ମଧ୍ୟ ନ କହିଲେ ବସିବାକୁ କ୍ଷଣେ । କେ ରଖି ପାରିବ ରାମଦ୍ରୋହୀକୁ ଶରଣେ ॥
ମାତା ମୃତ୍ୟୁ ତୁଲ୍ୟ, ପିତା ଶମନ ସମାନ । ସୁଧା ହୁଏ ବିଷ ସମ, ଶୁଣ ହରିଯାନ ॥୩॥

---

ବିଭିନ୍ନ ପ୍ରକାରର ଭୂଷଣ ତିଆରି କଲେ ଏବଂ ସୁନ୍ଦର ସ୍ଫଟିକ ଶିଳା ଉପରେ ବସି ପ୍ରଭୁ ଆଦର ସହିତ ସେହି ଅଳଙ୍କାର ସବୁ ସୀତାଙ୍କୁ ପିନ୍ଧାଇଲେ ॥ ୨ ॥ ଦେବରାଜ ଇନ୍ଦ୍ରଙ୍କ ମୂର୍ଖପୁତ୍ର ଜୟନ୍ତ କୁଆରୂପ ଧରି ଶ୍ରୀ ରଘୁନାଥଙ୍କ ବଳ ଦେଖିବାକୁ ଇଚ୍ଛା କଲା । ମହାମନ୍ଦମତି ପିମ୍ପୁଡ଼ି ଅତଳ ସମୁଦ୍ରର ଗଭୀରତା ମାପିବାକୁ ଯାଉଛି ॥ ୩ ॥ ସେହି ମୂଢ଼ ମନ୍ଦମତି, ଛଦ୍ମବେଶୀ କୁଆ ସୀତାଙ୍କ ପାଦରେ ଥଣ୍ଟଦ୍ୱାରା ଆଘାତ କରି ପଳାଇଗଲା । ରକ୍ତ ବହି ଚାଲିଲା । ଏହା ଦେଖି ଶ୍ରୀ ରଘୁନାଥ ଧନୁରେ କାଶ ଜାତୀୟ ତୃଣର ଶର ଯୋଖିଲେ ॥ ୪ ॥ ଦୋହା :—ଶ୍ରୀ ରଘୁନାଥ ଅତିଶୟ କୃପାଳୁ ଏବଂ ଦୀନଗଣଙ୍କ ପ୍ରତି ତାଙ୍କର ସଦାସର୍ବଦା ପ୍ରେମ । ସମସ୍ତ ଅବଗୁଣର ସଦନ ମୂର୍ଖ ଜୟନ୍ତ ଆସି ତାଙ୍କ ପ୍ରତି ମଧ୍ୟ ଛଳକପଟ କଲା ॥ ୧ ॥ ଚୌପାଇ :—ମନ୍ତ୍ର ଦ୍ୱାରା ପ୍ରେରିତ ହୋଇ ଉକ୍ତ ବ୍ରହ୍ମବାଣ ଦୌଡ଼ିଲା । କୁଆ ଭୟଭୀତ ହୋଇ ଦୌଡ଼ି ପଳାଇଲା । ନିଜର ପ୍ରକୃତ ରୂପ ଧରି ସେ ପିତା ଇନ୍ଦ୍ରଙ୍କ ନିକଟକୁ ଗଲା । କିନ୍ତୁ ଶ୍ରୀରାମଙ୍କ ବିରୋଧୀ ବୋଲି ଜାଣି ଇନ୍ଦ୍ର ତାହାକୁ

ମିତ୍ର କରଇ ସତ ରିପୁ କୈ କରନୀ । ତା କହଁ ବିବୁଧନଦୀ ବୈତରନୀ ॥
ସବ ଜଗୁ ତାହି ଅନଲହୁ ତେଁ ତାତା । ଜୋ ରଘୁବୀର ବିମୁଖ ସୁନୁ ଭ୍ରାତା ॥୪॥
ନାରଦ ଦେଖା ବିକଲ ଜୟଂତା । ଲଗି ଦୟା କୋମଲ ଚିତ ସଂତା ॥
ପଠୱା ତୁରତ ରାମ ପହିଁ ତାହୀ । କହେସି ପୁକାରି ପ୍ରନତ ହିତ ପାହୀ ॥୫॥
ଆତୁର ସଭୟ ଗହେସି ପଦ ଜାଈ । ତ୍ରାହି ତ୍ରାହି ଦୟାଲ ରଘୁରାଈ ॥
ଅତୁଲିତ ବଲ ଅତୁଲିତ ପ୍ରଭୁତାଈ । ମୈଁ ମତିମଂଦ ଜାନି ନହିଁ ପାଈ ॥୬॥
ନିଜ କୃତ କର୍ମ ଜନିତ ଫଲ ପାୟଉଁ । ଅବ ପ୍ରଭୁ ପାହି ସରନ ତକି ଆୟଉଁ ॥
ସୁନି କୃପାଲ ଅତି ଆରତ ବାନୀ । ଏକନୟନ କରି ତଜା ଭବାନୀ ॥୭॥

---

ମିତ୍ର ଶତ୍ରୁ, ଶତ୍ରୁ ଆଚରଣ କରଇ । ଗଙ୍ଗା ବୈତରଣୀ ପରି ତା ପାଇଁ ଅଟଇ ॥
ଅଗ୍ନି ଠାରୁ ତପ୍ତ ତାକୁ ସକଳ ଜଗତ । ଯେ ରଘୁବୀର ବିପକ୍ଷ ଶୁଣ ଭ୍ରାତ ! ସତ ॥୪॥
ନାରଦ ଅବଲୋକନ୍ତେ ଜୟନ୍ତ ବିକଳ । ଉପୁଜିଲା ଦୟା ସନ୍ଥ ସ୍ୱଭାବେ କୋମଳ ॥
ପଠାଇଲେ ତାକୁ ଶୀଘ୍ର ସମୀପେ ରାମଙ୍କ । କହିଲା ଚିତ୍କାରି, 'ତ୍ରାହି ପ୍ରଣତପାଳକ' ॥୫॥
ଭୟାତୁରେ ତହିଁ ଯାଇ ଧରିଲା ପୟର । ତ୍ରାହି ତ୍ରାହି ଦୟାମୟ, ପ୍ରଭୁ ରଘୁବର ॥
ଅତୁଳନୀୟ ପ୍ରଭୁଙ୍କ ବଳ ଅନୁପମ । ଜାଣି ନ ପାରିଲି, ମତି ମନ୍ଦ ମୁଁ ଅଧମ ॥୬॥
ସ୍ୱକୃତ କର୍ମ-ଜନିତ ଫଳ ମୁଁ ପାଇଲି । ଏବେ ପ୍ରଭୁ ! ତ୍ରାହି ତୁମ୍ଭ ଶରଣେ ଆସିଲି ॥
ଶୁଣି କୃପାନିଧି ଅତି ଆରତ ବଚନ । ତେଜିଲେ ଭବାନୀ ! ଏକ କରିଣ ଲୋଚନ ॥୭॥

---

ରଖିବେ ନାହିଁ ॥ ୧ ॥ ତେଣୁ ସେ କାରଣ ହୋଇ ପଡ଼ିଲା । ଦୁର୍ବାସା ଋଷିଙ୍କ ମନରେ ଚକ୍ର ପ୍ରତି ଭୟ ଜାତ ହେଲା ପରି ତାହାର ମନରେ ଭୟ ଜନ୍ମିଲା । ସେ କ୍ଳାନ୍ତ ଓ ଭୟ-ଶୋକରେ ବ୍ୟାକୁଳ ହୋଇ ବ୍ରହ୍ମଲୋକ, ଶିବଲୋକ ଆଦି ସମସ୍ତ ଲୋକରେ ଭ୍ରମି ବୁଲିଲା ॥ ୨ ॥ ମାତ୍ର ରଖିବା ତ ଦୂରର କଥା, କେହି ଏପରି କି ତାକୁ ବସିବା ନିମନ୍ତେ ସୁଦ୍ଧା କହିଲେ ନାହିଁ । ଶ୍ରୀରାମଙ୍କ ବିଦ୍ରୋହୀକୁ କିଏ ରକ୍ଷା କରିପାରିବ ? କାକ ଭୁଶୁଣ୍ଡି କହନ୍ତି, "ହେ ଗରୁଡ଼ ! ଶୁଣନ୍ତୁ; ରାମଦ୍ରୋହୀ ପ୍ରତି ତ ତାହାର ମାତା ମୃତ୍ୟୁ, ପିତା ଯମରାଜ ଓ ଅମୃତ ବିଷ ସମାନ ହୋଇଯା'ନ୍ତି ॥ ୩ ॥ ମିତ୍ର ଶତ ଶତ୍ରୁଙ୍କ ଭଳି କାର୍ଯ୍ୟ କରିବାକୁ ଲାଗେ । ଦେବନଦୀ ଗଙ୍ଗା ତାହା ନିମନ୍ତେ ବୈତରଣୀ (ଯମପୁରର ନଦୀ) ହୋଇଯାଏ । ହେ ଭାଇ ! ଶୁଣନ୍ତୁ; ଯେ ଶ୍ରୀ ରଘୁନାଥଙ୍କ ପ୍ରତି ବିମୁଖ ହୁଏ, ତାହା ନିମନ୍ତେ ସମସ୍ତ ଜଗତ ଅଗ୍ନି ଠାରୁ ମଧ୍ୟ ଅଧିକ ସନ୍ତାପଦାୟକ ହୁଏ ।" ॥ ୪ ॥ ନାରଦ ଜୟନ୍ତର ଏପରି ବ୍ୟାକୁଳ ଅବସ୍ଥା ଦେଖିଲେ । ତାଙ୍କ ମନରେ ଦୟା ଆସିଗଲା । କାରଣ ସାଧୁସନ୍ଥଙ୍କ ହୃଦୟ ବଡ଼ କୋମଳ । ସେ ତାହାକୁ ବୁଝାଇ ଶୀଘ୍ର ଶ୍ରୀରାମଙ୍କ ନିକଟକୁ ପଠାଇଦେଲେ । ସେ ଚିତ୍କାର କରି କହିଲା, "ହେ ଶରଣାଗତ-ହିତକାରକ ! ମୋତେ ରକ୍ଷା କରନ୍ତୁ ।" ॥୫॥ ଆତୁର ଓ ଭୟଭୀତ ଜୟନ୍ତ ଯାଇ ଶ୍ରୀରାମଙ୍କ ଚରଣ ଧରି ପକାଇଲା ଏବଂ କହିଲା, "ହେ ଦୟାଳୁ ରଘୁନାଥ ! ରକ୍ଷା କରନ୍ତୁ, ରକ୍ଷା କରନ୍ତୁ । ଆପଣଙ୍କ ବଳ

କାହୂ ମୋହ ବସ ଦ୍ରୋହ ଜଦ୍ୟପି ତେହି କର ବଧ ଉଚିତ ।
ପ୍ରଭୁ ଛାଡେଉ କରି ଛୋହ କୋ କୃପାଲ ରଘୁବୀର ସମ ॥୨॥

ରଘୁପତି ଚିତ୍ରକୂଟ ବସି ନାନା । ଚରିତ କିଏ ଶ୍ରୁତି ସୁଧା ସମାନା ॥
ବହୁରି ରାମ ଅସ ମନ ଅନୁମାନା । ହୋଇହି ଭୀର ସବହିଁ ମୋହି ଜାନା ॥୧॥
ସକଲ ମୁନିହ୍ନ ସନ ବିଦା କରାଈ । ସୀତା ସହିତ ଚଲେ ଦ୍ୱୌ ଭାଈ ॥
ଅତ୍ରି କେ ଆଶ୍ରମ ଜବ ପ୍ରଭୁ ଗୟଊ । ସୁନତ ମହାମୁନି ହରଷିତ ଭୟଊ ॥୨॥
ପୁଲକିତ ଗାତ ଅତ୍ରି ଉଠି ଧାଏ । ଦେଖି ରାମୁ ଆତୁର ଚଲି ଆଏ ॥
କରତ ଦଣ୍ଡବତ ମୁନି ଉର ଲାଏ । ପ୍ରେମ ବାରି ଦ୍ୱୌ ଜନ ଅହ୍ନୱାଏ ॥୩॥

---

ମୋହେ ବଶୀଭୂତ କାକ ଦ୍ରୋହ କର୍ମ ଯଦ୍ୟପି ସେ ବଧଯୁକ୍ତ ।
କେ ଅଛି କୃପାଳୁ ପ୍ରଭୁ ରାମ ସମ, ସ୍ନେହେ କରିଦେଲେ ମୁକ୍ତ ॥୨॥

ରଘୁପତି ଚିତ୍ରକୂଟ ବନେ ବାସ କରି । ବିବିଧ ଚରିତ କଲେ ଶ୍ରୁତି ସୁଧା ପରି ॥
ପୁଣି ପ୍ରଭୁ ମନେ ଏହା ଅନୁମାନ କଲେ । ଭିଡ ଏବେ ହେବ ମୋତେ ସର୍ବେ ଜାଣିଗଲେ ॥୧॥
ସମସ୍ତ ମୁନିଙ୍କଠାରୁ ମାଗିଣ ବିଦାୟ । ଗମିଲେ ସୀତା ଲକ୍ଷ୍ମଣ ସହ ରଘୁରାୟ ॥
ଅତ୍ରିଙ୍କ ଆଶ୍ରମେ ପ୍ରଭୁ କରିଲେ ଗମନ । ଶୁଣି ମହାମୁନି ଅତି ହୋଇଲେ ପ୍ରସନ୍ନ ॥୨॥
ପୁଲକ ଶରୀରେ ଅତ୍ରି ଉଠିଣ ଧାଇଁଲେ । ବିଲୋକି ଶ୍ରୀରାମ ଏଣେ ଆତୁରେ ଚାଲିଲେ ॥
କରନ୍ତେ ପ୍ରଣାମ ମୁନି ଲଗାଇ ହୃଦୟେ । ସ୍ନାନ କରାଇଲେ ପ୍ରେମ-ସଲିଳେ ଉଭୟେ ॥୩॥

---

ଅତୁଳିତ ଏବଂ ପ୍ରଭୁତ୍ୱ ମଧ୍ୟ ଅନୁପମ; ମୁଁ ମନ୍ଦବୁଦ୍ଧି ତାହା ଜାଣି ପାରି ନ ଥିଲି ॥ ୬ ॥ ଆପଣା କର୍ମରୁ ଜାତ ଫଳ ମୁଁ ପାଇସାରିଛି । ହେ ପ୍ରଭୁ ! ବର୍ତ୍ତମାନ ମୋତେ ରକ୍ଷା କରନ୍ତୁ । ମୁଁ ଆପଣଙ୍କ ଶରଣ ଆଶା କରି ଆସିଅଛି ।" ଶିବ କହନ୍ତି, "ହେ ପାର୍ବତି ! କୃପାଳୁ ଶ୍ରୀ ରଘୁନାଥ ତାହାର ଅତିଶୟ ବିକଳ ବାଣୀ ଶୁଣି ତାହାକୁ କଣା କରି ଛାଡିଦେଲେ ॥ ୭ ॥ ସୋରଠା :—ସେ ମୋହବଶତଃ ଶତ୍ରୁତା ଆଚରଣ କରିଥିଲା । ସୁତରାଂ ବଧର ଯୋଗ୍ୟ । ତଥାପି ପ୍ରଭୁ ଦୟାପରବଶ ହୋଇ ତାହାକୁ ଛାଡିଦେଲେ । ଶ୍ରୀରାମଙ୍କ ପରି ଦୟାଳୁ ଆଉ କିଏ ହେବ ?" ॥ ୨ ॥ ଚୌପାଈ :—ଚିତ୍ରକୂଟରେ ବାସ କରୁଥିବା ସମୟରେ ଶ୍ରୀରାମଚନ୍ଦ୍ର ନାନାବିଧ ଲୀଳା କଲେ । ସେ ସବୁ ପ୍ରସଙ୍ଗ କାନକୁ ଅମୃତତୁଲ୍ୟ ମଧୁର । ପୁଣି କିଛି ଦିନ ପରେ ଶ୍ରୀରାମ ମନେ ମନେ ଅନୁମାନ କଲେ, 'ମୋତେ ସମସ୍ତେ ଏଠି ଜାଣିଗଲେଣି । ଏଣୁ ଏଠାରେ ଏଣିକି ବଡ ଜନଗହଳି ହେବ ।' ॥ ୧ ॥ ତେଣୁ ସମସ୍ତ ମୁନିଙ୍କଠାରୁ ବିଦାୟ ନେଇ ସୀତାଙ୍କ ସହ ଦୁଇ ଭାଇ ଚାଲିଲେ । ତତ୍ପରେ ସେ ଅତ୍ରିମୁନିଙ୍କ ଆଶ୍ରମରେ ପହଞ୍ଚିଲେ । ତାଙ୍କ ଆଗମନ-ବାର୍ତ୍ତା ଶୁଣି ମହାମୁନିଙ୍କର ଆନନ୍ଦର ସୀମା ରହିଲା ନାହିଁ ॥ ୨ ॥ ତାଙ୍କ ଶରୀର ପୁଲକିତ ହୋଇଗଲା । ଅତ୍ରି ଉଠି ଧାଇଁଲେ । ତାଙ୍କୁ ଦୌଡି ଆସୁଥିବାର ଦେଖି ଶ୍ରୀରାମ ଆହୁରି ଶୀଘ୍ର ତାଙ୍କ ନିକଟକୁ ଚାଲି ଆସିଲେ । ଶ୍ରୀରାମ ଦଣ୍ଡବତ କରିବା ମାତ୍ରେ ମୁନି ତାଙ୍କୁ

ଦେଖି ରାମ ଛବି ନୟନ ଜୁଡ଼ାନେ । ସାଦର ନିଜ ଆଶ୍ରମ ତବ ଆନେ ॥
କରି ପୂଜା କହି ବଚନ ସୁହାଏ । ଦିଏ ମୂଲ ଫଲ ପ୍ରଭୁ ମନ ଭାଏ ॥୪॥
ପ୍ରଭୁ ଆସନ ଆସୀନ ଭରି ଲୋଚନ ସୋଭା ନିରଖି ।
ମୁନିବର ପରମ ପ୍ରବୀନ ଜୋରି ପାନି ଅସ୍ତୁତି କରତ ॥୩॥

ନମାମି ଭକ୍ତବତ୍ସଲଂ । କୃପାଲୁଶୀଲ କୋମଲଂ ॥
ଭଜାମି ତେ ପଦାଂବୁଜଂ । ଅକାମିନାଂ ସ୍ୱଧାମଦଂ ॥୧॥
ନିକାମ ଶ୍ୟାମସୁଂଦରଂ । ଭବାଂବୁନାଥ ମଂଦରଂ ॥
ପ୍ରଫୁଲ୍ଲ କଂଜ ଲୋଚନଂ । ମଦାଦି ଦୋଷ ମୋଚନଂ ॥୨॥
ପ୍ରଲଂବ ବାହୁ ବିକ୍ରମଂ । ପ୍ରଭୋଽପ୍ରମେୟ ବୈଭବଂ ॥
ନିଷଂଗ ଚାପ ସାୟକଂ । ଧରଂ ତ୍ରିଲୋକ ନାୟକଂ ॥୩॥

---

ଦେଖି ରାମ ଛବି ନେତ୍ର ଶୀତଳ କରିଲେ । ସାଦରେ ତହୁଁ ଆପଣା ଆଶ୍ରମେ ଆଣିଲେ ॥
ପୂଜା କରି ଋଷି ମୃଦୁ ମଧୁର ବଚନ । ଦେଲେ ଫଳମୂଳ, ପ୍ରଭୁ ଲଭିଲେ ପ୍ରସନ୍ନ ॥୪॥
ଆସନେ ଆସୀନ ପ୍ରଭୁଙ୍କର ମୂର୍ତ୍ତି ନେତ୍ର ପୂରାଇ ଗ୍ରହିଣ ।
ସାଦରେ କରନ୍ତି କର ଯୋଡ଼ି ସ୍ତୁତି ମୁନି ପରମ ପ୍ରବୀଣ ॥୩॥

ନମଇ ଭକତ-ବତ୍ସଳ । କୃପାଳୁ ସୁଶୀଳ କୋମଳ ॥
ଭଜଇ ତବ କଞ୍ଜ-ପଦ । ଅକାମୀ ଜନେ ସ୍ୱଧାମଦ ॥୧॥
ନିଷ୍କାମ ଶ୍ୟାମଳ ସୁନ୍ଦର । ସଂସାର-ପୟୋଧି - ମନ୍ଦର ॥
ପ୍ରଫୁଲ୍ଲ ପଙ୍କଜ ଲୋଚନ । ମଦାଦି ଦୋଷ ବିମୋଚନ ॥୨॥
ବିକ୍ରମ ବାହୁ ସୁପ୍ରଲମ୍ବ । ପ୍ରଭୋ, ଅପ୍ରମେୟ ବୈଭବ ॥
କୋଦଣ୍ଡ ତୂଣୀର ଶାୟକ । ଧର ତ୍ରିଭୁବନ ନାୟକ ॥୩॥

---

ଉଠାଇ ଆଲିଙ୍ଗନ କଲେ ଏବଂ ପ୍ରେମାଶ୍ରୁ ଜଳରେ ଦୁଇ ଭାଇଙ୍କୁ ଗାଧୋଇ ପକାଇଲେ ॥ ୩ ॥ ଶ୍ରୀରାମଙ୍କ ଛବି ଦେଖି ମୁନିଙ୍କ ନେତ୍ର ଶୀତଳ ହୋଇଗଲା । ତଦନନ୍ତର ସେ ତାଙ୍କୁ ଆପଣାର ଆଶ୍ରମକୁ ଆଦର ସହକାରେ ନେଇଗଲେ । ତାଙ୍କୁ ପୂଜା କରିବା ପରେ ସୁନ୍ଦର ବଚନ କହି ମୁନି ଫଳମୂଳ ଦେଲେ । ପ୍ରଭୁଙ୍କ ମନକୁ ତାହା ସବୁ ଅତି ରୁଚିକର ହେଲା ॥ ୪ ॥ ସୋରଠା :—ପ୍ରଭୁ ଆସନରେ ବିରାଜମାନ । ନେତ୍ର ପୂରାଇ ତାଙ୍କ ଶୋଭାଦର୍ଶନ-ପୂର୍ବକ ପରମ ପ୍ରବୀଣ ମୁନିବର ହାତ ଯୋଡ଼ି ସ୍ତୁତି କରିବାକୁ ଲାଗିଲେ ॥ ୩ ॥ ଛନ୍ଦ :—ହେ ଭକ୍ତବତ୍ସଳ ! ହେ କୃପାଳୁ ! ହେ କୋମଳସ୍ୱଭାବ ! ମୁଁ ଆପଣଙ୍କୁ ନମସ୍କାର କରୁଅଛି । ଆପଣଙ୍କର ଯେଉଁ ଚରଣକମଳ-ଦ୍ୱୟ ନିଷ୍କାମ ପୁରୁଷମାନଙ୍କୁ ଆପଣଙ୍କ ସ୍ୱ ପରମଧାମ ପ୍ରଦାନ କରେ, ସେହି ଚରଣ-କମଳ ଦ୍ୱୟକୁ ମୁଁ ଭଜନ କରୁଅଛି ॥ ୧ ॥ ଆପଣ ଅତ୍ୟନ୍ତ ସୁନ୍ଦର ଓ ଶ୍ୟାମଳ ଏବଂ ସଂସାର-ସମୁଦ୍ରକୁ

ଦିନେଶ ବଂଶ ମଣ୍ଡନଂ । ମହେଶ ଚାପ ଖଣ୍ଡନଂ ॥
ମୁନୀଂଦ୍ର ସଂତ ରଂଜନଂ । ସୁରାରି ବୃଂଦ ଭଂଜନଂ ॥୪॥

ମନୋଜ ବୈରି ବଂଦିତଂ । ଅଜାଦି ଦେବ ସେବିତଂ ॥
ବିଶୁଦ୍ଧ ବୋଧ ବିଗ୍ରହଂ । ସମସ୍ତ ଦୂଷଣାପହଂ ॥୫॥

ନମାମି ଇଂଦିରା ପତିଂ । ସୁଖାକରଂ ସତାଂ ଗତିଂ ॥
ଭଜେ ସଶକ୍ତି ସାନୁଜଂ । ଶଚୀ ପତି ପ୍ରିୟାନୁଜଂ ॥୬॥

ତ୍ୱଦଂଘ୍ରି ମୂଳ ଯେ ନରାଃ । ଭଜଂତି ହୀନ ମତ୍ସରାଃ ॥
ପତଂତି ନୋ ଭବାର୍ଣ୍ଣବେ । ବିତର୍କ ବୀଚି ସଂକୁଳେ ॥୭॥

ବିବିକ୍ତ ବାସିନ ସଦା । ଭଜଂତି ମୁକ୍ତୟେ ମୁଦା ॥
ନିରସ୍ୟ ଇଂଦ୍ରିୟାଦିକଂ । ପ୍ରୟାଂତି ତେ ଗତିଂ ସ୍ୱକଂ ॥୮॥

---

ଦିନେଶ ବଂଶ ବିମଣ୍ଡନ । ମହେଶ ଚାପ ଦ୍ୱିଖଣ୍ଡନ ॥
ମୁନୀନ୍ଦ୍ର ସଜ୍ଜନ ରଞ୍ଜନ । ସୁରାରି – ସମୂହ ଭଞ୍ଜନ ॥୪॥

ମନୋଜ ବଇରି ବନ୍ଦିତ । ଅନାଦି ଅମର ସେବିତ ॥
ବିଶୁଦ୍ଧ ବିଗ୍ରହ ବିଜ୍ଞାନ । ସମସ୍ତ ସନ୍ତାପ ନାଶନ ॥୫॥

ନମାମି ପଦ୍ମାଳୟା ପତି । ସୁଖ ଆକର ସନ୍ଥ ଗତି ॥
ଭଜଇ ସଶକ୍ତି ସାନୁଜ । ଶଚୀ-ପତିଙ୍କ ପ୍ରିୟାନୁଜ ॥୬॥

ତୁମ୍ଭ ଚରଣ ଯେଉଁ ନର । ଭଜନ୍ତି ତେଜିଣ ମତ୍ସର ॥
ଭବ-ଅର୍ଣ୍ଣବେ ନ ପଡନ୍ତି । ତର୍କ-ତରଙ୍ଗ ମଧ୍ୟେ ଅଛି ॥୭॥

ବିଷୟୁ ସଦା ଯେ ବିରାଗୀ । ଭଜନ୍ତି ମୋଦେ ମୁକ୍ତି ଲାଗି ॥
ନିରସି ଇନ୍ଦ୍ରିୟାଦି ଯେତେ । ଲଭନ୍ତି ତୁମ୍ଭ ଗତି ସେତେ ॥୮॥

---

ମନ୍ଥନ କରିବା ବିଷୟରେ ମନ୍ଦରାଚଳ ସ୍ୱରୂପ । ଆପଣ ବିକଶିତ-କମଳ-ନୟନ ଏବଂ ମଦାଦି ଦୋଷରୁ ମନୁଷ୍ୟଙ୍କୁ ମୁକ୍ତି ପ୍ରଦାନ କରନ୍ତି ॥ ୨ ॥ ହେ ପ୍ରଭୋ ! ଆପଣଙ୍କ ବିଳମ୍ବିତ ବାହୁଦ୍ୱୟର ପରାକ୍ରମ ଓ ଆପଣଙ୍କ ଐଶ୍ୱର୍ଯ୍ୟ ଅପ୍ରମେୟ । ( ବୁଦ୍ଧି ବା ତର୍କର ଊର୍ଦ୍ଧ୍ୱରେ ଅଥବା ଅସୀମ ) । ତୂଣୀର ଓ ଧନୁଶର-ଧାରଣକାରୀ ଆପଣ ତିନି ଲୋକର ସ୍ୱାମୀ ॥ ୩ ॥ ଆପଣ ସୂର୍ଯ୍ୟବଂଶର ଭୂଷଣ, ଶିବଧନୁ-ବିଭଞ୍ଜନକାରୀ, ମୁନିଜନ ତଥା ସନ୍ଥଜନଙ୍କ ଆନନ୍ଦ-ପ୍ରଦାୟକ ଏବଂ ଦେବଶତ୍ରୁ ଅସୁରବୃନ୍ଦଙ୍କ ବିନାଶକାରୀ ॥ ୪ ॥ କାମଦେବ-ଶତ୍ରୁ ମହାଦେବଙ୍କ ଦ୍ୱାରା ଆପଣ ବନ୍ଦିତ, ବ୍ରହ୍ମାଦି ଦେବଗଣଙ୍କ ଦ୍ୱାରା ସେବିତ, ବିଶୁଦ୍ଧ-ଜ୍ଞାନମୟ ବିଗ୍ରହ ଏବଂ ସମସ୍ତ ଦୋଷର ବିନାଶକାରୀ ॥ ୫ ॥ ହେ ଲକ୍ଷ୍ମୀପତି ! ହେ ସୁଖାକର ଓ ସତ୍ପୁରୁଷଗଣଙ୍କ ଏକମାତ୍ର ଗତି ! ମୁଁ ଆପଣଙ୍କୁ ନମସ୍କାର କରୁଅଛି ।

ତ୍ୱମେକମଦ୍ଭୁତଂ ପ୍ରଭୁଂ । ନିରୀହମୀଶ୍ୱରଂ ବିଭୁଂ ॥
ଜଗଦ୍‌ଗୁରୁଂ ଚ ଶାଶ୍ୱତଂ । ତୁରୀୟମେବ କେବଳଂ ॥୯॥
ଭଜାମି ଭାବବଲ୍ଲଭଂ । କୁଯୋଗିନାଂ ସୁଦୁର୍ଲ୍ଲଭଂ ॥
ସ୍ୱଭକ୍ତ କଳ୍ପପାଦପଂ । ସମଂ ସୁସେବ୍ୟମନ୍ୱହଂ ॥୧୦॥
ଅନୂପ ରୂପ ଭୂପତିଂ । ନତୋଽହମୁର୍ବିଜାପତିଂ ॥
ପ୍ରସୀଦ ମେ ନମାମି ତେ । ପଦାବ୍‌ଜ ଭକ୍ତି ଦେହି ମେ ॥୧୧॥
ପଠନ୍ତି ଯେ ସ୍ତବଂ ଇଦଂ । ନରାଦରେଣ ତେ ପଦଂ ॥
ବ୍ରଜଂତି ନାତ୍ର ସଂଶୟଂ । ତ୍ୱଦୀୟ ଭକ୍ତି ସଂଯୁତାଃ ॥୧୨॥

---

ତୁମ୍ଭେ ଅଦ୍ଭୁତ ଏକ ପ୍ରଭୁ । ନିରୀହ ପରମେଶ ବିଭୁ ॥
ଜଗତଗୁରୁ ନିରନ୍ତର । ତୁରୀୟ ମାତ୍ରକ କେବଳ ॥୯॥
ଭଜଇ ହେ ଭାବ-ବଲ୍ଲଭ । କୁଯୋଗୀ ଜନେ ସୁଦୁର୍ଲ୍ଲଭ ॥
ସ୍ୱଭକ୍ତ କଳ୍ପତରୁ ତୁଲ୍ୟ । ସମ ସୁସେବ୍ୟ ଆନୁକୂଲ୍ୟ ॥୧୦॥
ଅନୂପ ରୂପ ମହୀପତି । ନମଇ ଜନକଜା - ପତି ॥
ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ପଦାବ୍‌ଜ-ଭକ୍ତି ପ୍ରଦାନନ୍ତୁ ॥୧୧॥
ଏହି ସ୍ତବକୁ ଯେଉଁ ନର । ପଢନ୍ତି ସହିତ ଆଦର ॥
ସେ ନିଃସଂଶୟ ତୁମ୍ଭ ଗତି । ଲଭନ୍ତି ସଂଯୁକ୍ତ ଭକତି ॥୧୨॥

---

ହେ ଶଚୀପତି ( ଇନ୍ଦ୍ର )ଙ୍କ ପ୍ରିୟ ଅନୁଜ ! ( ହେ ବାମନ ! ) ସ୍ୱରୂପାଶକ୍ତି ଶ୍ରୀ ସୀତା ଓ ଅନୁଜ ଲକ୍ଷ୍ମଣଙ୍କ ସହ ମୁଁ ଆପଣଙ୍କୁ ଭଜନ କରୁଅଛି ॥ ୬ ॥ ଯେଉଁ ମନୁଷ୍ୟମାନେ ମାତ୍ସର୍ଯ୍ୟମୁକ୍ତ ହୋଇ ଆପଣଙ୍କ ଚରଣ-କମଳ ସେବା କରନ୍ତି, ସେମାନେ ତର୍କ-ବିତର୍କ (ଅନେକ ସଂଶୟ) ରୂପକ ତରଙ୍ଗରେ ପରିପୂର୍ଣ୍ଣ ସଂସାର-ସମୁଦ୍ରର ଆବର୍ତ୍ତନରେ ପଡନ୍ତି ନାହିଁ, ଅର୍ଥାତ୍ ବାରମ୍ବାର ଜନ୍ମ-ମୃତ୍ୟୁର ଭଉଁରିରେ ପଡନ୍ତି ନାହିଁ ॥ ୭ ॥ ଏକାନ୍ତବାସୀ ଯେଉଁ ପୁରୁଷମାନେ ମୁକ୍ତି ଉଦ୍ଦେଶ୍ୟରେ ଇନ୍ଦ୍ରିୟ ପ୍ରଭୃତିର ନିଗ୍ରହ କରି ପ୍ରସନ୍ନତାପୂର୍ବକ ଆପଣଙ୍କୁ ଭଜନ କରନ୍ତି, ସେମାନେ ଆପଣଙ୍କ ସ୍ୱରୂପ ଲାଭ କରନ୍ତି ॥ ୮ ॥ ଆପଣ ଏକ (ଅଦ୍ୱିତୀୟ), ଅଦ୍ଭୁତ (ମାୟାମୟ ଜଗତଠାରୁ ବିଲକ୍ଷଣ), ପ୍ରଭୁ (ସର୍ବସମର୍ଥ), ଇଚ୍ଛାରହିତ, ଈଶ୍ୱର (ସମସ୍ତଙ୍କ ସ୍ୱାମୀ), ବ୍ୟାପକ, ଜଗଦ୍‌ଗୁରୁ, ସନାତନ (ନିତ୍ୟ), ତୁରୀୟ (ତିନି ଗୁଣଠାରୁ ସର୍ବଥା ଊର୍ଦ୍ଧ୍ୱରେ ଏବଂ କେବଳ ନିଜ ସ୍ୱରୂପରେ ହିଁ ସ୍ଥିତ ॥ ୯ ॥ ଆପଣ ଭାବପ୍ରିୟ, କୁଯୋଗୀ (ବିଷୟୀ ପୁରୁଷ)ମାନଙ୍କ ନିମନ୍ତେ ଅତ୍ୟନ୍ତ ଦୁର୍ଲ୍ଲଭ, ଆପଣ ଭକ୍ତବୃନ୍ଦଙ୍କ ନିମନ୍ତେ କଳ୍ପବୃକ୍ଷ, ସମଦର୍ଶୀ ଏବଂ ସଦାସର୍ବଦା ଆନନ୍ଦ ସହିତ ସେବ୍ୟ । ମୁଁ ଆପଣଙ୍କୁ ନିରନ୍ତର ଭଜନ କରୁଛି ॥୧୦॥ ହେ ଅନୁପମ ସୁନ୍ଦର ! ହେ ଭୂପତି ! ହେ ଜାନକୀ-ନାଥ ! ମୁଁ ଆପଣଙ୍କୁ ନମସ୍କାର କରୁଛି । ମୋ ପ୍ରତି ପ୍ରସନ୍ନ ହୁଅନ୍ତୁ । ମୁଁ ଆପଣଙ୍କୁ

ବିନତୀ କରି ମୁନି ନାଇ ସିରୁ କହ କର ଜୋରି ବହୋରି ।
ଚରନ ସରୋରୁହ ନାଥ ଜନି କବହୁଁ ତଜୈ ମତି ମୋରି ॥୪॥
ଅନୁସୁଇୟା କେ ପଦ ଗହି ସୀତା । ମିଲୀ ବହୋରି ସୁସୀଲ ବିନୀତା ॥
ରିଷିପତିନୀ ମନ ସୁଖ ଅଧିକାଈ । ଆସିଷ ଦେଇ ନିକଟ ବୈଠାଈ ॥୧॥
ଦିବ୍ୟ ବସନ ଭୂଷନ ପହିରାଏ । ଜେ ନିତ ନୂତନ ଅମଲ ସୁହାଏ ॥
କହ ରିଷିବଧୂ ସରସ ମୃଦୁ ବାନୀ । ନାରିଧର୍ମ କଛୁ ବ୍ୟାଜ ବଖାନୀ ॥୨॥
ମାତୁ ପିତା ଭ୍ରାତା ହିତକାରୀ । ମିତପ୍ରଦ ସବ ସୁନୁ ରାଜକୁମାରୀ ॥
ଅମିତ ଦାନି ଭର୍ତା ବୟଦେହୀ । ଅଧମ ସୋ ନାରି ଜୋ ସେବ ନ ତେହୀ ॥୩॥
ଧୀରଜ ଧର୍ମ ମିତ୍ର ଅରୁ ନାରୀ । ଆପଦ କାଲ ପରିଖିଅହିଁ ଚାରୀ ॥
ବୃଦ୍ଧ ରୋଗବସ ଜଡ଼ ଧନହୀନା । ଅନ୍ଧ ବଧିର କ୍ରୋଧୀ ଅତି ଦୀନା ॥୪॥

---

ବିନତି କରିଣ ମୁନି ପ୍ରଣମିଣ ଉଚାରିଲେ ଯୋଡ଼ି କର ।
ଚରଣ-ସରୋଜ ନାଥ ଯେମନ୍ତେ କେବେ ନ ତେଜୁ ମତି ମୋହର ॥୪॥
ଧରି ବଇଦେହୀ ଅନସୂୟାଙ୍କ ପୟର । ସୁଶୀଳ ବିନୀତ ଭାବେ ମିଳିଲେ ଆବର ॥
ଋଷି-ପତ୍ନୀ ମନେ ସୁଖ ବିଶେଷ ଲଭିଲେ । ଆଶିଷ ଦେଇ ନିକଟେ ଆଣି ବସାଇଲେ ॥୧॥
ପୁଣି ପିନ୍ଧାଇଲେ ଦିବ୍ୟ ଭୂଷଣ ବସନ । ନିର୍ମଳ ଶୁଚି ସୁନ୍ଦର ଯେ ନିତ୍ୟ ନୂତନ ॥
ଋଷି-ବଧୂ ସରଳ ସୁମନେ ହର ବାଣୀ । ନାରୀ ଧର୍ମ ଛଳେ କିଛି କହିଲେ ବଖାଣି ॥୨॥
ମାତା, ପିତା, ଭ୍ରାତା ଆଦି ଯେତେ ହିତକାରୀ । ସର୍ବେ ସ୍ୱଳ୍ପପ୍ରଦ ଶୁଣ, ନରେଶ କୁମାରୀ ॥
ଅପ୍ରମିତ ଦାନୀ ଭର୍ତ୍ତା, ବୈଦେହି, ଅଟନ୍ତି । ଅଧମ ସେ ନାରୀ, ତାଙ୍କୁ ଯେଉଁ ନ ସେବନ୍ତି ॥୩॥
ଧୈର୍ଯ୍ୟ ଧରମ ଆବର ମିତ୍ର ଜନ ନାରୀ । ଆପଡ କାଳେ ପରଖା ଯାଆନ୍ତି ଏ ଚାରି ॥
ବୃଦ୍ଧ, ବ୍ୟାଧି-ପ୍ରପୀଡିତ, ଜଡ଼, ଧନ-ହୀନ । ଅନ୍ଧ, ବଧିର, ଅଥବା କ୍ରୋଧୀ, ଅତି ଦୀନ ॥୪॥

---

ନମସ୍କାର କରୁଛି । ମୋତେ ଆପଣଙ୍କ ଚରଣ-କମଳ ପ୍ରତି ଭକ୍ତି ଦିଅନ୍ତୁ ॥ ୧୧ ॥ ଯେଉଁ ବ୍ୟକ୍ତିମାନେ ଏହି ସ୍ତୁତିକୁ ଆଦର ସହକାରେ ପଢନ୍ତି, ସେମାନେ ଆପଣଙ୍କ ଭକ୍ତି ଦ୍ୱାରା ଯୁକ୍ତ ହୋଇ ଆପଣଙ୍କ ପରମପଦ ଲାଭ କରନ୍ତି । ଏଥିରେ କୌଣସି ସନ୍ଦେହ ନାହିଁ ॥୧୨॥ ଦୋହା :—ଏହି ରୂପେ ବିନତି ସହକାରେ ପୁଣି ମୁଣ୍ଡ ନୁଆଁଇ, ହାତ ଯୋଡ଼ି ମୁନି କହିଲେ, "ହେ ନାଥ ! ମୋର ମତି ଆପଣଙ୍କ ଚରଣ-କମଳକୁ କେବେ ତ୍ୟାଗ ନ କରୁ ।" ॥ ୪ ॥ ଚୌପାଇ :—ତଦନନ୍ତର ପରମ ସୁଶୀଳା ଓ ବିନମ୍ରା ସୀତା ଅତ୍ରିପତ୍ନୀ ଅନସୂୟାଙ୍କ ଚରଣ ଧରି ତାଙ୍କୁ ସାକ୍ଷାତ କଲେ । ଋଷି-ପତ୍ନୀଙ୍କ ମନରେ ଅତ୍ୟନ୍ତ ସୁଖ ଜାତ ହେଲା । ସେ ଆଶିଷ ପ୍ରଦାନ କରି ସୀତାଙ୍କୁ ପାଖରେ ବସାଇଲେ ॥୧॥ ଏବଂ ତାଙ୍କୁ ନିତ୍ୟ ନୂତନ, ନିର୍ମଳ ଓ ସୁଶୋଭିତ ଦିବ୍ୟ ବସ୍ତ୍ର ଏବଂ ଆଭୂଷଣମାନ ପିନ୍ଧାଇଲେ । ତତ୍ପରେ ଋଷି ପତ୍ନୀ ସୀତାଙ୍କୁ ଲକ୍ଷ୍ୟ କରି ମଧୁର ଓ କୋମଳ ବାଣୀରେ କେତେକ ନାରୀଧର୍ମ ବର୍ଣ୍ଣନାପୂର୍ବକ କହିବାକୁ ଲାଗିଲେ— ॥ ୨ ॥ "ହେ ରାଜକୁମାରୀ !

ଐସେହୁ ପତି କର କିଏଁ ଅପମାନା । ନାରି ପାଵ ଜମପୁର ଦୁଖ ନାନା ॥
ଏକଇ ଧର୍ମ ଏକ ବ୍ରତ ନେମା । କାୟଁ ବଚନ ମନ ପତି ପଦ ପ୍ରେମା ॥୫॥
ଜଗ ପତିବ୍ରତା ଚାରି ବିଧି ଅହହୀଁ । ବେଦ ପୁରାନ ସନ୍ତ ସବ କହହୀଁ ॥
ଉତ୍ତମ କେ ଅସ ବସ ମନ ମାହୀଁ । ସପନେହୁଁ ଆନ ପୁରୁଷ ଜଗ ନାହୀଁ ॥୬॥
ମଧ୍ୟମ ପରପତି ଦେଖଇ କୈସେଁ । ଭ୍ରାତା ପିତା ପୁତ୍ର ନିଜ ଜୈସେଁ ॥
ଧର୍ମ ବିଚାରି ସମୁଝି କୁଲ ରହଈ । ସୋ ନିକୃଷ୍ଟ ତ୍ରିୟ ଶ୍ରୁତି ଅସ କହଈ ॥୭॥
ବିନୁ ଅବସର ଭୟ ତେଁ ରହ ଜୋଈ । ଜାନେହୁ ଅଧମ ନାରି ଜଗ ସୋଈ ॥
ପତି ବଂଚକ ପରପତି ରତି କରଈ । ରୌରବ ନରକ କଲ୍ପ ସତ ପରଈ ॥୮॥

---

ଏମନ୍ତ ପତିର ମଧ୍ୟ ଅପମାନ କଲେ । ନାରୀ ଯମପୁରେ ପାଏ ନାନା ଦୁଃଖ ଭଲେ ॥
କେବଳ ଏକ ନିୟମ ଏକ ବ୍ରତ ଧର୍ମ । ପତି ପଦ ପ୍ରେମେ ନ୍ୟସ୍ତ ମନ ବାଣୀ କର୍ମ ॥୫॥
ଚତୁର୍ବିଧ ପତିବ୍ରତା ଜଗତେ ଅଛନ୍ତି । ସନ୍ଥ ଶ୍ରୁତି ପୁରାଣାଦି ଏମନ୍ତ କହନ୍ତି ॥
ଉତ୍ତମର ମନୋଭାବ ରହେ ଏହି ମତେ । ସ୍ୱପ୍ନେ ମଧ୍ୟ ନାହିଁ ଅନ୍ୟ ପୁରୁଷ ଜଗତେ ॥୬॥
ମଧ୍ୟମ ପର ପତିଙ୍କୁ ଦେଖଇ ତେମନ୍ତ । ଭ୍ରାତା ପିତା ପୁତ୍ର ନିଜ ତନୟ ଯେମନ୍ତ ॥
କୁଳ ଧରମ ବିଚାରି କରିଣ ଯେ ରହେ । ନିକୃଷ୍ଟ ସେ ନାରୀ ଶ୍ରୁତି ଏହିପରି କହେ ॥୭॥
ଅସମୟେ କିମ୍ବା ଭୟେ ପତି-ସେବା ରତ । ଜାଣ ସେ ଅଧମ ନାରୀ ଅଟଇ ଜଗତ ॥
ପତିଙ୍କୁ ପ୍ରତାରି ପରପୁରୁଷେ ରମଇ । ଶତକଳ୍ପ ସେ ରୌରବ ନରକେ ପଡ଼ଇ ॥୮॥

---

ଶୁଣନ୍ତୁ । ମାତା ପିତା, ଭ୍ରାତା ଆଦି ସମସ୍ତେ ହିତକାରକ । କିନ୍ତୁ ଏମାନେ ସମସ୍ତେ ଏକ ନିର୍ଦ୍ଦିଷ୍ଟ ସୀମା ମଧ୍ୟରେ ସୁଖଦାୟକ ହୋଇଥାଆନ୍ତି । ମାତ୍ର ହେ ଜାନକି! ପତି ତ (ମୋକ୍ଷରୂପକ) ଅସୀମ ସୁଖର ଦାତା । ଯେଉଁ ସ୍ତ୍ରୀ ଏପରି ପତିଙ୍କ ସେବା ନ କରେ, ସେ ସ୍ତ୍ରୀ ଅଧମ ॥ ୩ ॥ ଧୈର୍ଯ୍ୟ, ଧର୍ମ, ମିତ୍ର ଓ ନାରୀ—ଏ ଚାରିଙ୍କର ପରୀକ୍ଷା ବିପତ୍ତି ସମୟରେ ହିଁ ହୋଇଥାଏ । ବୃଦ୍ଧ, ରୋଗୀ, ମୂର୍ଖ, ନିର୍ଦ୍ଧନ, ଅନ୍ଧ, ବଧିର, କ୍ରୋଧୀ ଓ ଅତ୍ୟନ୍ତ ଦୀନ ପତିଙ୍କର ଅପମାନ କରିବା ଯୋଗେ ନାରୀ ଯମପୁରରେ ବହୁବିଧ ଦୁଃଖ ପାଏ । ଶରୀର, ବଚନ ଓ ମନରେ ପତିଙ୍କ ଚରଣ ପ୍ରତି ପ୍ରେମ କରିବା, ବେଶ୍, ସ୍ତ୍ରୀର ଏହି ଏକମାତ୍ର ଧର୍ମ, ଏକମାତ୍ର ବ୍ରତ ଏବଂ ଏକମାତ୍ର ନିୟମ ॥ ୪-୫ ॥ ଜଗତରେ ଚାରିପ୍ରକାର ପତିବ୍ରତା ଅଛନ୍ତି । ବେଦ, ପୁରାଣ ଓ ସନ୍ଥମାନେ କହନ୍ତି ଯେ ପତିବ୍ରତାର ମନରେ ସଦାସର୍ବଦା ଏହି ଗୋଟିଏ ମାତ୍ର ଭାବ ଜାଗରୂକ ଥାଏ—'ଜଗତରେ ମୋ ପତିଙ୍କ ବିନା ଅନ୍ୟ ପୁରୁଷ ସ୍ୱପ୍ନରେ ମୁଦ୍ଧା ନାହିଁ ।' ॥ ୬ ॥ ମଧ୍ୟମ ଶ୍ରେଣୀର ପତିବ୍ରତା ପରପୁରୁଷଙ୍କୁ ଆପଣାର ସହୋଦର ଭାଇ, ପିତା ବା ପୁତ୍ର ରୂପରେ ଦେଖେ । ଯେଉଁ ନାରୀ ଧର୍ମକୁ ବିଚାର କରି ଏବଂ ନିଜ କୁଳର ମର୍ଯ୍ୟାଦା ବୁଝି ନିଜକୁ ବଞ୍ଚାଇ ରଖେ, ସେହି ସ୍ତ୍ରୀ ନିକୃଷ୍ଟ ବୋଲି ବେଦଗଣ କହନ୍ତି ॥ ୭ ॥ ଯେଉଁ ନାରୀ ଅସମୟରେ ବା ଭୟବଶତଃ ପତିବ୍ରତା ହୋଇଥାଏ, ସଂସାରରେ ସେ ଅଧମ ନାରୀ ବୋଲି ଜାଣ । ଯେଉଁ ନାରୀ ଆପଣା ପତିଙ୍କୁ

ଛନ ସୁଖ ଲଗି ଜନମ ସତ କୋଟୀ । ଦୁଖ ନ ସମୁଝ ତେହି ସମ କୋ ଖୋଟୀ ॥
ବିନୁ ଶ୍ରମ ନାରି ପରମ ଗତି ଲହଇ । ପତିବ୍ରତ ଧର୍ମ ଛାଡ଼ି ଛଲ ଗହଇ ॥୯॥
ପତି ପ୍ରତିକୂଲ ଜନମ ଜହଁ ଜାଈ । ବିଧବା ହୋଇ ପାଇ ତରୁନାଈ ॥୧୦॥

ସହଜ ଅପାବନି ନାରି ପତି ସେବତ ସୁଭ ଗତି ଲହଇ ।
ଜସୁ ଗାୱତ ଶ୍ରୁତି ଚାରି ଅଜହୁଁ ତୁଲସିକା ହରିହି ପ୍ରିୟ ॥୫ (କ)॥
ସୁନୁ ସୀତା ତବ ନାମ ସୁମିରି ନାରି ପତିବ୍ରତ କରହିଁ ।
ତୋହି ପ୍ରାନପ୍ରିୟ ରାମ କହିଉଁ କଥା ସଂସାର ହିତ ॥୫ (ଖ)॥

ସୁନି ଜାନକୀଁ ପରମ ସୁଖ ପାୱା । ସାଦର ତାସୁ ଚରନ ସିରୁ ନାୱା ॥
ତବ ମୁନି ସନ କହ କୃପାନିଧାନା । ଆୟସୁ ହୋଇ ଜାଉଁ ବନ ଆନା ॥୧॥

---

କ୍ଷଣ ସୁଖ ଲାଗି କୋଟି ସହସ୍ର ଜନମ । ଦୁଃଖ ଯେ ନ ବୁଝେ କିଏ ମନ୍ଦ ତାହା ସମ ॥
ପରମ ଗତି ଲଭଇ ନାରୀ ବିନା ଶ୍ରମେ । ସେବେ ଛଳ ଛାଡ଼ି ରହେ ପତିବ୍ରତ ଧର୍ମେ ॥୯॥
ପତି ପ୍ରତିକୂଳ ଯହିଁ ଯାଇ ଜନମଇ । ଯୌବନ କାଳେ ସେହି ବିଧବା ହୁଅଇ ॥୧୦॥

ସେବି ନିଜ ପତି ଲଭେ ଶୁଭଗତି, ସହଜେ ଅଶୁଚି ନାରୀ ।
ଅଦ୍ୟାପି ତୁଳସୀ ହରି ପ୍ରିୟ ଅତି ଯଶ ଗା'ନ୍ତି ଶ୍ରୁତି ଚାରି ॥୫ (କ)॥
ଶୁଣ ସୀତା, ଆଚରିବେ ପତିବ୍ରତା ନାରୀ ସ୍ମରି ତୁମ୍ଭ ନାମ ।
ସଂସାର ହିତାର୍ଥେ କହିଲି ସମସ୍ତ ତୁମର ତ ପ୍ରାଣ ରାମ ॥୫ (ଖ)॥

ଶୁଣି ଜାନକୀ ପରମ ପ୍ରମୋଦ ଲଭିଲେ । ସାଦରେ ତାଙ୍କ ଚରଣେ ଶିର ନୁଆଁଇଲେ ॥
ତହୁଁ ମୁନିଙ୍କୁ କହିଲେ କରୁଣା-ନିଧାନ । ଆଦେଶ ପ୍ରଦାନ କରନ୍ତୁ ଯିବି ବନେ ଆନ ॥୧॥

---

ପ୍ରତାରିତ କରି ପରପୁରୁଷ ସହ ରମଣ କରେ, ସେହି ନାରୀ ତ କଳ୍ପ ପର୍ଯ୍ୟନ୍ତ ରୌରବ ନର୍କରେ ପଡ଼େ ॥ ୮ ॥ କ୍ଷଣମାତ୍ର ସୁଖ ନିମନ୍ତେ ଯେଉଁ ନାରୀ କୋଟି କୋଟି ଜନ୍ମର ଦୁଃଖ ବୁଝେ ନାହିଁ, ତାହା ପରି ଦୁଷ୍ଟା ଆଉ କିଏ ? ଯେଉଁ ନାରୀ ଛଳକପଟ ଛାଡ଼ି ପତିବ୍ରତା ଧର୍ମକୁ ଗ୍ରହଣ କରେ, ସେ ବିନା ପରିଶ୍ରମରେ ପରମଗତି ଲାଭ କରେ ॥ ୯ ॥ କିନ୍ତୁ ଯେଉଁ ନାରୀ ପତିଙ୍କର ପ୍ରତିକୂଳାଚରଣ କରେ, ସେ ଯେଉଁଠି ଜନ୍ମଗ୍ରହଣ କରୁ ପଛକେ, ଯୌବନାବସ୍ଥାରେ ସେହି ବିଧବା ହୋଇଯାଏ ॥ ୧୦ ॥ ସୋରଠା :—ସ୍ତ୍ରୀ ଜନ୍ମରୁ ହିଁ ଅପବିତ୍ର । ମାତ୍ର ପତିଙ୍କୁ ସେବା କରି ସେ ସହଜରେ ଶୁଭଗତି ଲାଭ କରିଥାଏ । ପାତିବ୍ରତ୍ୟ ଧର୍ମ ଯୋଗେ ହିଁ ଆଜି ତୁଳସୀ (ବୃନ୍ଦାବତୀ) ଭଗବାନଙ୍କର ଏତେ ପ୍ରିୟ ଏବଂ ଚାରି ବେଦ ତାଙ୍କର ଯଶ ଗାନ କରନ୍ତି ॥ ୫ (କ) ॥ ହେ ସୀତା ! ଶୁଣ । ତୁମର ନାମମାତ୍ର ଧରି ଧରି ସ୍ତ୍ରୀମାନେ ପାତିବ୍ରତ୍ୟ-ଧର୍ମ ପାଳନ କରିବେ । ଶ୍ରୀରାମ ତ ତୁମର ପ୍ରାଣସମ ପ୍ରିୟ । ଏହି ପାତିବ୍ରତ୍ୟ-ଧର୍ମ କଥା ତ ସଂସାରର ହିତ ନିମନ୍ତେ ମୁଁ କହୁଅଛି ।" ॥ ୫ (ଖ) ॥ ଚୌପାଇ :—ଜାନକୀ ଏହା ଶୁଣି ପରମ ସୁଖ ଲାଭ କଲେ ଏବଂ ଆଦର ସହକାରେ ତାଙ୍କ ଚରଣରେ ମଥା ନୁଆଁଇଲେ । ତତ୍ପରେ କୃପାନିଧାନ

ସଂତତ ମୋ ପର କୃପା କରେହୂ । ସେବକ ଜାନି ତଜେହୁ ଜନି ନେହୂ ॥
ଧର୍ମ ଧୁରଂଧର ପ୍ରଭୁ କୈ ବାନୀ । ସୁନି ସପ୍ରେମ ବୋଲେ ମୁନି ଜ୍ଞାନୀ ॥୨॥
ଜାସୁ କୃପା ଅଜ ସିବ ସନକାଦୀ । ଚହତ ସକଲ ପରମାରଥ ବାଦୀ ॥
ତେ ତୁମ୍ହ ରାମ ଅକାମ ପିଆରେ । ଦୀନ ବଂଧୁ ମୃଦୁ ବଚନ ଉଚାରେ ॥୩॥
ଅବ ଜାନୀ ମୈଁ ଶ୍ରୀ ଚତୁରାଈ । ଭଜୀ ତୁମ୍ହହି ସବ ଦେବ ବିହାଈ ॥
ଜେହି ସମାନ ଅତିସୟ ନହିଁ କୋଈ । ତା କର ସୀଲ କସ ନ ଅସ ହୋଈ ॥୪॥
କେହି ବିଧି କହୌଁ ଜାହୁ ଅବ ସ୍ୱାମୀ । କହହୁ ନାଥ ତୁମ୍ହ ଅନ୍ତରଜାମୀ ॥
ଅସ କହି ପ୍ରଭୁ ବିଲୋକି ମୁନି ଧୀରା । ଲୋଚନ ଜଲ ବହ ପୁଲକ ସରୀରା ॥୫॥

ତନ ପୁଲକ ନିର୍ଭର ପ୍ରେମ ପୂରନ ନୟନ ମୁଖ ପଙ୍କଜ ଦିଏ ।
ମନ ଜ୍ଞାନ ଗୁନ ଗୋତୀତ ପ୍ରଭୁ ମୈଁ ଦୀଖ ଜପ ତପ କା କିଏ ॥
ଜପ ଜୋଗ ଧର୍ମ ସମୂହ ତେଁ ନର ଭଗତି ଅନୁପମ ପାୱଈ ।
ରଘୁବୀର ଚରିତ ପୁନୀତ ନିସି ଦିନ ଦାସ ତୁଲସୀ ଗାୱଈ ॥

---

ସଦା ମୋ ଉପରେ ଅନୁକମ୍ପା ରଖିଥିବେ । ସେବକ ବୋଲି ସ୍ନେହ ତ୍ୟାଗ ନ କରିବେ ॥
ଧର୍ମ-ଧୁରନ୍ଧର ପ୍ରଭୁ ଶ୍ରୀରାମଙ୍କ ବାଣୀ । ଶୁଣି ସପ୍ରେମେ ଭାଷିଲେ ମୁନିବର ଜ୍ଞାନୀ ॥୨॥
ଯାହାଙ୍କ କରୁଣା ବିଧି,ଶିବ ସନକାଦି । ଅଭିଳଷନ୍ତି ସମସ୍ତେ ପରମାର୍ଥ-ବାଦୀ ॥
ତୁମ୍ଭେ ସେହି ରାମ ପ୍ରିୟ ନିଷ୍କାମୀ ଜନର । ଦୀନବନ୍ଧୁ ଉଚ୍ଚାରିଲ ବଚନ ସୁନ୍ଦର ॥୩॥
ଏବେ ମୁଁ ଜାଣି ପାରିଲି ଶ୍ରୀର ଚତୁରତା । ତୁମ୍ଭଙ୍କୁ ଭଜିଲେ ତେଜି ସକଳ ଦେବତା ॥
ଯାହାଙ୍କ ସମାନ କିମ୍ବା ବଡ଼ କେହି ନାହିଁ । ତାହାଙ୍କ ଶୀଳ ଏମନ୍ତ ନ ହେବ କିପାଇଁ ॥୪॥
କହିବି କିପରି ଯିବେ, 'ଯାଅ' ବୋଲି ସ୍ୱାମି । କହ ନାଥ ! ତୁମ୍ଭେ ସର୍ବ ଜୀବ ଅନ୍ତର୍ଯାମୀ ॥
ପ୍ରଭୁଙ୍କୁ ଚାହିଁଲେ ଏହା କହି ମୁନି ଧୀର । ଲୋଚନୁ ବହିଲା ନୀର ପୁଲକ ଶରୀର ॥୫॥

ଶରୀର ପୁଲକିତ ପ୍ରେମେ ପୂର୍ଣ୍ଣ ଅତ୍ୟନ୍ତ ମୁଖ-ଅମ୍ବୁଜେ ନେତ୍ର ସ୍ଥିତ ।
କି ଜପ ତପ କରି ଦେଖିଲି ମୁହିଁ ହରି ଇନ୍ଦ୍ରିୟ ଗୁଣ ଜ୍ଞାନାତୀତ ।
ଜପ ଯୋଗାଦି ଧରମରେ, ଅନୁପ ଭକ୍ତି ପା'ନ୍ତି ନରେ,
ନିଶି ଦିନ ପବିତ୍ର ରଘୁବୀର ଚରିତ୍ର ତୁଳସୀ ଦାସ ଗାନ କରେ ॥

---

ଶ୍ରୀରାମ ମୁନିଙ୍କୁ କହିଲେ, "ଆପଣଙ୍କ ଆଜ୍ଞା ହେଲେ ଅନ୍ୟ ବନକୁ ଯିବି ॥ ୧ ॥
ମୋ ପ୍ରତି ନିରନ୍ତର କୃପା ରଖି ଥା'ନ୍ତୁ ଏବଂ ଆପଣା ସେବକ ଜାଣି ସ୍ନେହ ତ୍ୟାଗ ନ କରନ୍ତୁ ।" ଧର୍ମଧୁରନ୍ଧର ପ୍ରଭୁ ଶ୍ରୀରାମଙ୍କ ବଚନ ଶୁଣି ଜ୍ଞାନୀ ମୁନି ପ୍ରେମରେ କହିଲେ— ॥୨॥
"ବ୍ରହ୍ମା, ଶିବ ଓ ସନକାଦି ସମସ୍ତ ପରମାର୍ଥବାଦୀ (ତତ୍ତ୍ୱବେତ୍ତା) ଯାହାଙ୍କର କୃପା ଆକାଙ୍‌କ୍ଷା କରନ୍ତି, ହେ ରାମ ! ଆପଣ ସେହି ନିଷ୍କାମ-ପୁରୁଷ-ପ୍ରେମୀ ଓ ଦୀନବନ୍ଧୁ ଭଗବାନ୍ । ଏହିପରି କୋମଳ ବଚନ ବୋଲିବା ଆପଣଙ୍କ ପକ୍ଷରେ ତ ଅତି

କଲିମଲ ସମନ ଦମନ ମନ ରାମ ସୁଜସ ସୁଖମୂଲ ।
ସାଦର ସୁନହିଁ ଜେ ତିହ୍ନ ପର ରାମ ରହହିଁ ଅନୁକୂଲ ॥୭ (କ)॥
କଠିନ କାଲ ମଲ କୋସ ଧର୍ମ ନ ଜ୍ଞାନ ନ ଜୋଗ ଜପ ॥
ପରିହରି ସକଲ ଭରୋସ ରାମହି ଭଜହିଁ ତେ ଚତୁର ନର ॥୭ (ଖ)॥
ମୁନିପଦ କମଲ ନାଇ କରି ସୀସା । ଚଲେ ବନହି ସୁର ନର ମୁନି ଈସା ॥
ଆଗେଁ ରାମ ଅନୁଜ ପୁନି ପାଛେଁ । ମୁନି ବର ବେଷ ବନେ ଅତି କାଛେଁ ॥୧॥

---

କଳି ଅଘମନ ଶମନ ଦମନ ରାମ-ଯଶ ସୁଖ-ମୂଳ ।
ଯେ ଶୁଣେ ସାଦରେ ରାମ ତା ଉପରେ ରହନ୍ତି ସଦାନୁକୂଳ ॥୭ (କ)॥
ନାହିଁ ଯୋଗ, ଜ୍ଞାନ, ଜପ, ଧର୍ମ, କର୍ମ ଘୋର କଳି ପାପାର୍ଣ୍ଣବ ॥
ସେ ଚତୁର ଜନ ଯେ ଭଜଇ ରାମ ତେଜି ଭରସା ସର୍ବ ॥୭ (ଖ)॥
ମୁନି ଚରଣ-କମଳେ କରି ପ୍ରଣିପାତ । ଚଳିଲେ ବନକୁ ସୁର-ନର-ମୁନିନାଥ ॥
ଆଗେ ରାମ ପଛେ ପୁଣି ଅନୁଜ ଚାଲନ୍ତି । ମୁନିବର ବେଷ ରଚି ମନୋହର ଅତି ॥୧॥

---

ସ୍ୱାଭାବିକ ॥ ୩ ॥ ଏବେ ମୁଁ ସମସ୍ତ ଦେବତାଙ୍କୁ ଛାଡ଼ି କେବଳ ଆପଣଙ୍କୁ ଭଜୁଥିବା ଲକ୍ଷ୍ମୀଙ୍କର ସ୍ୱରୂପ ବୁଝିଲି । ସମସ୍ତ ବିଷୟରେ ଯାହାଙ୍କଠାରୁ ଅଧିକ ଶ୍ରେଷ୍ଠ ଆଉ କେହି ନାହାନ୍ତି, ତାହାଙ୍କର ଚରିତ ଏପରି ନ ହୁଅନ୍ତା କିପରି ଭଲା ! ॥୪॥ ମୁଁ କିପରି କହିବି— ହେ ସ୍ୱାମି ! ଏବେ ଆପଣ ଯାଆନ୍ତୁ ? ହେ ନାଥ ! ଆପଣ ଅନ୍ତର୍ଯାମୀ, ଆପଣ ହିଁ କୁହନ୍ତୁ ।" ଏହିପରି କହି ଧୀର ମୁନି ପ୍ରଭୁଙ୍କୁ ଦେଖିବାକୁ ଲାଗିଲେ । ମୁନିଙ୍କ ନେତ୍ରରୁ ପ୍ରେମାଶ୍ରୁ ଜଳ ବହୁଥାଏ ଏବଂ ଶରୀର ପୁଲକିତ ହେଉଥାଏ ॥ ୫ ॥ ଛନ୍ଦ :—ମୁନି ଅତ୍ୟନ୍ତ ପ୍ରେମରେ ପରିପୂର୍ଣ୍ଣ । ତାଙ୍କ ଶରୀର ପୁଲକିତ ଏବଂ ଶ୍ରୀରାମଙ୍କ ମୁଖ-କମଳରେ ତାଙ୍କ ନେତ୍ର ସନ୍ନିବେଶିତ । ସେ ମନେ ମନେ ବିଚାର କରୁଥା'ନ୍ତି—"ମୁଁ ଏପରି କେଉଁ ଜପତପ କରିଥିଲି—ଯାହା ଫଳରେ ମନ, ଜ୍ଞାନ, ଗୁଣ ଓ ଇନ୍ଦ୍ରିୟଗଣଙ୍କ ଊର୍ଦ୍ଧ୍ୱରେ ସ୍ଥିତ ପ୍ରଭୁଙ୍କ ଦର୍ଶନ ଲାଭ କଲି ! ଜପ, ଯୋଗ ଓ ଧର୍ମସମୂହ ଯୋଗେ ମନୁଷ୍ୟ ଅନୁପମ ଭକ୍ତି ଲାଭ କରେ । ଶ୍ରୀ ରଘୁବୀରଙ୍କ ପବିତ୍ର ଚରିତକୁ ତୁଳସୀ ଦାସ ରାତ୍ର ଦିନ ସବଦା ଗାନ କରେ ॥ ଦୋହା'—ଶ୍ରୀରାମଙ୍କ ସୁମନୋହର ଯଶ କଳିଯୁଗର ପାପ-ରାଶିର ବିନାଶକାରୀ, ମନର ଦମନକାରୀ ଏବଂ ସମସ୍ତ ସୁଖର ମୂଳ । ଯେଉଁମାନେ ଏହା ଆଦର ସହକାରେ ଶୁଣନ୍ତି, ଶ୍ରୀରାମ ସେମାନଙ୍କଠାରେ ପ୍ରସନ୍ନ ହୁଅନ୍ତି ॥ ୭ (କ) ॥ ସୋରଠା :—ଏହି କଠିନ କଳିକାଳ ପାପର ଭଣ୍ଡାର; ଏଥିରେ ଧର୍ମ ନାହିଁ, ଜ୍ଞାନ ନାହିଁ ଯୋଗ ବା ଜପ କିଛି ନାହିଁ । ଏହି କାଳରେ ଯେଉଁମାନେ ସକଳ ଭରସାକୁ ଛାଡ଼ି କେବଳ ଶ୍ରୀରାମଙ୍କୁ ଭଜନ କରନ୍ତି, ସେହିମାନେ ହିଁ ଚତୁର ॥ ୭ ( ଖ ) ॥ ଚୌପାଇ :— ମୁନିଙ୍କ ଚରଣ-କମଳରେ ମୁଣ୍ଡ ନୁଆଁଇ ଦେବତା, ମନୁଷ୍ୟ ଓ ମୁନିଗଣଙ୍କ ସ୍ୱାମୀ ଶ୍ରୀରାମ ବନକୁ ଚଳିଲେ । ଆଗରେ ଶ୍ରୀରାମ, ପଛରେ ସାନଭାଇ ଲକ୍ଷ୍ମଣ । ଉଭୟେ ମୁନିବର

ଉଭୟ ବୀଚ ଶ୍ରୀ ସୋହଇ କୈସୀ । ବ୍ରହ୍ମ ଜୀବ ବିଚ ମାୟା ଜୈସୀ ॥
ସରିତା ବନ ଗିରି ଅବଘଟ ଘାଟା । ପତି ପହିଚାନି ଦେହିଁ ବର ବାଟା ॥୨॥
ଜହଁ ଜହଁ ଜାହିଁ ଦେବ ରଘୁରାୟା । କରହିଁ ମେଘ ତହଁ ତହଁ ନଭ ଛାୟା ॥
ମିଲା ଅସୁର ବିରାଧ ମଗ ଜାତା । ଆୱତହିଁ ରଘୁବୀର ନିପାତା ॥୩॥
ତୁରତହିଁ ରୁଚିର ରୂପ ତେହିଁ ପାୱା । ଦେଖି ଦୁଖୀ ନିଜ ଧାମ ପଠାୱା ॥
ପୁନି ଆଏ ଜହଁ ମୁନି ସରଭଂଗା । ସୁଂଦର ଅନୁଜ ଜାନକୀ ସଂଗା ॥୪॥

ଦେଖି ରାମ ମୁଖ ପଙ୍କଜ ମୁନିବର ଲୋଚନ ଭୃଂଗ ।
ସାଦର ପାନ କରତ ଅତି ଧନ୍ୟ ଜନ୍ମ ସରଭଂଗ ॥୭॥

କହ ମୁନି ସୁନୁ ରଘୁବୀର କୃପାଲା । ସଂକର ମାନସ ରାଜ ମରାଲା ॥
ଜାତ ରହେଉଁ ବିରଂଚି କେ ଧାମା । ସୁନେଉଁ ଶ୍ରବନ ବନ ଅଇହହିଁ ରାମା ॥୧॥

---

ଉଭୟଙ୍କ ମଧ୍ୟେ ସୀତା ଶୋଭନ୍ତି ତେମନ୍ତ । ବ୍ରହ୍ମ ଜୀବ ମଧ୍ୟେ ମାୟା ଶୋଭଇ ଯେମନ୍ତ ॥
ବିପିନ ଗିରି ସଙ୍କଟ ସୁଦୁସ୍ତର ଘାଟ । ନିଜ ସ୍ୱାମୀଙ୍କୁ ଚହ୍ନିଣ ଦିଅନ୍ତି ସୁବାଟ ॥୨॥
ଯେଣେ ଯେଣେ ଦେବ ରଘୁନାୟକ ଗମନ୍ତି । ତେଣେ ତେଣେ ମେଘଛାୟା ଗଗନେ କରନ୍ତି ॥
ଯାଆନ୍ତେ ପଥେ ବିରାଧ ରାକ୍ଷସେ ଭେଟିଲେ । ସେହିକ୍ଷଣି ରଘୁବୀର ତାହାକୁ ବଧିଲେ ॥୩॥
ଶୀଘ୍ର ସେ ଲଭିଲା ରୂପ ରୁଚିର ନବୀନ । ନିଜ ଧାମେ ପଠାଇଲେ ଦେଖି ତାକୁ ଦୀନ ॥
ପୁଣି ଆଗମିଲେ ଶରଭଙ୍ଗ ଆଶ୍ରମକୁ । ସଙ୍ଗରେ ଘେନି ସୁନ୍ଦର ସୀତା ଅନୁଜଙ୍କୁ ॥୪॥

ବିଲୋକିଣ ରାମ ରାଜୀବ ଆନନ ମୁନିଙ୍କ ଲୋଚନ-ଭୃଙ୍ଗ ।
କରନ୍ତି ସାନନ୍ଦେ ପାନ ମକରନ୍ଦ ଧନ୍ୟ ଜନ୍ମ ଶରଭଙ୍ଗ ॥୭॥

ବୋଲନ୍ତି ମୁନୀଶ, ଶୁଣ, ରାମ କୃପାକର । ଶମ୍ଭୁ-ମନ-ମାନସର ରାଜହଂସ ବର ॥
ଯିବା ପାଇଁ ବସିଥିଲି ପରମେଷ୍ଠୀ ଧାମ । ଶ୍ରବଣେ ଶୁଣିଲି ବନେ ଆସିବେ ଶ୍ରୀରାମ ॥୧॥

---

ବେଶ ଧାରଣ କରି ଅତ୍ୟନ୍ତ ଶୋଭା ପାଉଥା'ନ୍ତି ॥ ୧ ॥ ଉଭୟଙ୍କ ମଧ୍ୟରେ ଜାନକୀ ବ୍ରହ୍ମ ଓ ଜୀବଙ୍କ ମଧ୍ୟରେ ମାୟା ଭଳି ସୁଶୋଭିତା । ନଦୀ, ବନ, ପର୍ବତ ଓ ଦୁର୍ଗମଘାଟୀ, ସମସ୍ତେ ଆପଣା ଆପଣା ସ୍ୱାମୀଙ୍କୁ ଚିହ୍ନି ସତେ ଯେମିତି ସୁନ୍ଦର ମାର୍ଗ ଦେଇ ଦେଉଥା'ନ୍ତି ॥ ୨ ॥ ଯେଉଁ ଯେଉଁ ପଥ ଦେଇ ଶ୍ରୀ ରଘୁନାଥ ଯାଉଥା'ନ୍ତି, ସେହି ସେହି ପଥ ଉପରେ ମେଘ ଆକାଶରେ ଉଦିତ ହୋଇ ଛାଇ କରୁଥାଏ । ପଥରେ ଯାଉ ଯାଉ ବିରାଟ ରାକ୍ଷସ ଆସି ମିଳିଲା । ସମ୍ମୁଖକୁ ଆସିବା ମାତ୍ରେ ଶ୍ରୀରାମ ତାହାକୁ ବଧ କଲେ ॥୩॥ ଶ୍ରୀରାମଙ୍କ ହାତରେ ମରିବା ମାତ୍ରେ ସେ ତୁରନ୍ତ ସୁନ୍ଦର (ଦିବ୍ୟ) ରୂପ ଲାଭ କଲା । ତାହାକୁ ଦୁଃଖିତ ଦେଖି ପ୍ରଭୁ ତାକୁ ଆପଣା ପରମଧାମକୁ ପଠାଇଦେଲେ । ତଦନନ୍ତର ସେ ଅନୁଜ ଲକ୍ଷ୍ମଣ ଓ ସୀତାଙ୍କ ସହିତ ଶରଭଙ୍ଗ ଋଷିଙ୍କ ଆଶ୍ରମକୁ ଆସିଲେ ॥ ୪ ॥ ଦୋହା :—ଶ୍ରୀରାମଙ୍କ ମୁଖ-କମଳ ଦେଖି ମୁନିବରଙ୍କ ନେତ୍ର-ଭ୍ରମର ଅତ୍ୟନ୍ତ ଆଦର ସହକାରେ ତହିଁରୁ ମକରନ୍ଦ-ରସ ପାନ କରୁଥାଏ । ଶରଭଙ୍ଗଙ୍କ ଜନ୍ମ ଧନ୍ୟ ॥ ୭ ॥ ଚୌପାଇ :—ମୁନି

ଚିତୱତ ପନ୍ଥ ରହେଉଁ ଦିନ ରାତୀ । ଅବ ପ୍ରଭୁ ଦେଖି ଜୁଡ଼ାନୀ ଛାତୀ ॥
ନାଥ ସକଲ ସାଧନ ମୈଁ ହୀନା । କୀହ୍ନୀ କୃପା ଜାନି ଜନ ଦୀନା ॥୨॥
ସୋ କଛୁ ଦେବ ନ ମୋହି ନିହୋରା । ନିଜ ପନ ରାଖେହୁ ଜନ ମନ ଚୋରା ॥
ତବ ଲଗି ରହହୁ ଦୀନ ହିତ ଲାଗୀ । ଜବ ଲଗି ମିଲୌଁ ତୁମ୍ହହି ତନୁ ତ୍ୟାଗୀ ॥୩॥
ଜୋଗ ଜଗ୍ୟ ଜପ ତପ ବ୍ରତ କୀହ୍ନା । ପ୍ରଭୁ କହଁ ଦେଇ ଭଗତି ବର ଲୀହ୍ନା ॥
ଏହି ବିଧି ସର ରଚି ମୁନି ସରଭଂଗା । ବୈଠେ ହୃଦୟଁ ଛାଡ଼ି ସବ ସଂଗା ॥୪॥

ସୀତା ଅନୁଜ ସମେତ ପ୍ରଭୁ ନୀଲ ଜଲଦ ତନୁ ସ୍ୟାମ ।
ମମ ହିୟଁ ବସହୁ ନିରଂତର ସଗୁନରୂପ ଶ୍ରୀରାମ ॥୮॥

ଅସ କହି ଜୋଗ ଅଗିନି ତନୁ ଜାରା । ରାମ କୃପା ବୈକୁଂଠ ସିଧାରା ॥
ତାତେଁ ମୁନି ହରି ଲୀନ ନ ଭୟଊ । ପ୍ରଥମହିଁ ଭେଦ ଭଗତି ବର ଲୟଊ ॥୧॥

---

ତୁମ୍ଭ ପଥ ଚାହିଁ ବସିଅଛୁ ଦିନ ରାତି । ପ୍ରଭୁଙ୍କୁ ଦେଖି ଶୀତଳ ହେଲା ଏବେ ଛାତି ॥
ନାଥ ! ମୁଁ ଅଟେ ସମସ୍ତ ସାଧନ ବିହୀନ । କଲ ବଡ ଅନୁଗ୍ରହ ଜାଣି ଜନ ଦୀନ ॥୨॥
ନୁହଇ ବିନୟ ଦେବ ! ତାହା କିଛୁ ମୋର । ଆପଣା ପଣ ରଖିଲ ଭକ୍ତ-ଚିତ୍ତ-ଚୋର ॥
ରୁହ ସେ ପର୍ଯ୍ୟନ୍ତେ ଏଠି ଦୀନ ହିତ ଲାଗି । ତୁମଠି ମୁଁ ଲୀନ ହେବାଯାଏ ତନୁ ତ୍ୟାଗି ॥୩॥
ଯୋଗ ଯଜ୍ଞ ଜପ ତପ ବ୍ରତ ଯେ କରିଲି । ପ୍ରଭୁଙ୍କୁ ସମର୍ପି ଭକ୍ତି ବର ମୁଁ ଘେନିଲି ॥
ଏହି ଭାବେ ଚିତା ରଚି ମୁନି ଶରଭଙ୍ଗ । ବସିଲେ ହୃଦୟୁ ପରିହରି ସର୍ବ ସଙ୍ଗ ॥୪॥

ଜାନକୀ ଅନୁଜ ସହ ରଘୁରାଜ ନୀଳଘନ ତନୁ ଶ୍ୟାମ ।
ହୃଦୟେ ମୋହର ବସ ନିରନ୍ତର ସଗୁଣ ରୂପ ଶ୍ରୀରାମ ॥୮॥

ଏହା କହି ଯୋଗାଗ୍ନିରେ ଜାଳି କଳେବର । ରାମ କୃପା ଲଭି ଗଲେ ବୈକୁଣ୍ଠେ ସତ୍ୱର ॥
ତେଣୁ ହରିଠାରେ ମୁନି ଲୀନ ନ ହୋଇଲେ । ପ୍ରଥମରୁ ଭେଦ ଭକ୍ତି ବର ଘେନିଥିଲେ ॥୧॥

---

କହିଲେ, "ହେ କୃପାଳୁ ରଘୁବୀର ! ହେ ଶଙ୍କର-ମନ-ମାନସରୋବର-ରାଜହଂସ ! ଶୁଣନ୍ତୁ । ମୁଁ ବ୍ରହ୍ମଲୋକକୁ ଯାଉଥିଲି । ଇତି ମଧ୍ୟରେ ମୋ କାନରେ ପଡ଼ିଗଲା ଯେ, ଶ୍ରୀରାମ ବନ ମଧ୍ୟକୁ ଆସିବେ ॥ ୧ ॥ ସେହି ସମୟଠାରୁ ମୁଁ ଦିନରାତି ଆପଣଙ୍କ ବାଟକୁ ଚାହିଁ ବସିଛି । ଏବେ ଆଜି ପ୍ରଭୁଙ୍କୁ ଦେଖି ମୋ ହୃଦୟ ଶୀତଳ ହୋଇଗଲା । ହେ ନାଥ ! ମୁଁ ଏବେ ସମ୍ବଳହୀନ । ମୋତେ ଆପଣ ନିଜର ଦୀନ ସେବକ ଜାଣି ମୋ ପ୍ରତି କୃପା କରିଅଛନ୍ତି ॥ ୨ ॥ ହେ ଦେବ ! ଏହା କିଛି ଆପଣଙ୍କର ମୋ ପ୍ରତି ଉପକାର ନୁହେଁ । ହେ ଭକ୍ତ-ମନଚୋର ! ଏପରି କରି ଆପଣ ନିଜର ପଣ ରକ୍ଷା କରିଅଛନ୍ତି । ଏବେ ଏହି ଦୀନର କଲ୍ୟାଣ ଦୃଷ୍ଟିରୁ ଯେତେବେଳ ଯାଏ ଶରୀର ତ୍ୟାଗ କରି ମୁଁ ଆପଣଙ୍କ ପରମଧାମରେ ଆପଣଙ୍କଠାରେ ଲୀନ ନ ହୋଇଛି, ସେତେବେଳ ପର୍ଯ୍ୟନ୍ତ ଏହିଠାରେ ରୁହନ୍ତୁ ।" ॥ ୩ ॥ ଯୋଗ, ଯଜ୍ଞ, ତପ ଆଦି ଯାହା କିଛି ବ୍ରତ ମୁନି କରିଥିଲେ, ସବୁ ପ୍ରଭୁଙ୍କୁ ସମର୍ପଣ କରି ତତ୍ପରିବର୍ତ୍ତେ ଭକ୍ତି-ବର ଗ୍ରହଣ କଲେ । ଏହି ରୂପେ ଦୁର୍ଲ୍ଲଭ

ଋଷି ନିକାୟ ମୁନିବର ଗତି ଦେଖୀ । ସୁଖୀ ଭଏ ନିଜ ହୃଦୟଁ ବିସେଷୀ ॥
ଅସ୍ତୁତି କରହିଁ ସକଲ ମୁନି ବୃନ୍ଦା । ଜୟତି ପ୍ରନତ ହିତ କରୁନା କଂଦା ॥୨॥
ପୁନି ରଘୁନାଥ ଚଲେ ବନ ଆଗେ । ମୁନିବର ବୃନ୍ଦ ବିପୁଲ ସଁଗ ଲାଗେ ॥
ଅସ୍ଥି ସମୂହ ଦେଖି ରଘୁରାୟା । ପୂଛୀ ମୁନିହ୍ନ ଲାଗି ଅତି ଦାୟା ॥୩॥
ଜାନତହୁଁ ପୂଛିଅ କସ ସ୍ୱାମୀ । ସବଦରସୀ ତୁହ୍ମ ଅଂତରଜାମୀ ॥
ନିସିଚରନିକର ସକଲ ମୁନି ଖାଏ । ସୁନି ରଘୁବୀର ନୟନ ଜଲ ଛାଏ ॥୪॥

ନିସିଚର ହୀନ କରଉଁ ମହି ଭୁଜ ଉଠାଇ ପନ କୀହ୍ନ ।
ସକଲ ମୁନିହ୍ନ କେ ଆଶ୍ରମହ୍ନି ଜାଇ ଜାଇ ସୁଖ ଦୀହ୍ନ ॥୯॥

---

ଅବଲୋକି ମୁନୀଶଙ୍କ ଗତି ଋଷି ବୃନ୍ଦ । ହୋଇଲେ ନିଜ ହୃଦୟେ ପରମ ଆନନ୍ଦ ॥
ପ୍ରଭୁଙ୍କୁ ସ୍ତୁତି କରନ୍ତି ମୁନି ସମୁଦାୟ । ଜୟ ଆଶ୍ରିତହିତକାରୀ, କରୁଣା-ନିଳୟ ॥୨॥
ପୁଣି ରଘୁନାଥ ହେଲେ ଅଗ୍ରସର ବନେ । ପୁଲକିତ ହୋଇ ସଙ୍ଗେ ଗଲେ ମୁନିଜନେ ॥
ନିରେଖି ଅସ୍ଥି-ସମୂହ ତହୁଁ ରଘୂତ୍ତମ । ପୁଚ୍ଛିଲେ ମୁନିଙ୍କୁ ଦୟା ଲଭନ୍ତେ ପରମ ॥୩॥
ଜାଣି ସବୁ ପୁଣି କିସ ପଚାରୁଛ, ସ୍ୱାମି । ସର୍ବଦର୍ଶୀ ଅଟ ତୁମ୍ଭେ ଜୀବ ଅନ୍ତର୍ଯ୍ୟାମୀ ॥
ନିଶାଚର ବୃନ୍ଦ ସବୁ ମୁନିଙ୍କୁ ଖାଇଲେ । ଶୁଣି ରଘୁବୀର ନେତ୍ରୁ ନୀର ବୁହାଇଲେ ॥୪॥

ଶୂନ୍ୟ ନିଶାଚର କରିବି ସଂସାର ଭୁଜ ଟେକି କଲେ ପଣ ।
ଯାଇ ଯାଇ ସବୁ ମୁନିଙ୍କ ଆଶ୍ରମେ ସୁଖ ଦେଲେ ଶ୍ରୀ ରମଣ ॥୯॥

---

ଭକ୍ତି ଲାଭ କରିବା ପରେ ମୁନି ଚିତାଗ୍ନି ପ୍ରସ୍ତୁତ କଲେ ଏବଂ ହୃଦୟରୁ ସମସ୍ତ ଆସକ୍ତି ତ୍ୟାଗ କରି ତାହା ଉପରେ ଯାଇ ବସିଲେ ॥ ୪ ॥ ଦୋହା :—"ହେ ଶ୍ୟାମ-ଘନ-ଶରୀର ସଗୁଣରୂପ ପ୍ରଭୁ ଶ୍ରୀରାମ ! ସୀତା ଓ ଲକ୍ଷ୍ମଣଙ୍କ ସମେତ ଆପଣ ନିରନ୍ତର ମୋ ହୃଦୟରେ ନିବାସ କରନ୍ତୁ ।" ॥ ୮ ॥ ଏହିପରି କହି ଶରଭଙ୍ଗ ଯୋଗାଗ୍ନିରେ ନିଜ ଶରୀର ଜଳାଇ ଦେଲେ ଏବଂ ଶ୍ରୀରାମଙ୍କ କୃପାଯୋଗେ ସେ ବୈକୁଣ୍ଠକୁ ଚାଲିଗଲେ । ମୁନି ପ୍ରଥମରୁ ଭେଦ-ଭକ୍ତିର ବର ଗ୍ରହଣ କରିଥିବାରୁ ଭଗବାନ୍‌ଙ୍କଠାରେ ଲୀନ ହେଲେ ନାହିଁ ॥ ୧ ॥ ଋଷିବୃନ୍ଦ ମୁନିବର ଶରଭଙ୍ଗଙ୍କ ଏହି ଦୁର୍ଲ୍ଲଭ ଗତି ଦେଖି ହୃଦୟରେ ବିଶେଷ ସୁଖ ଲାଭ କଲେ । ସମସ୍ତ ମୁନି "ଶରଣାଗତ-ହିତକାରୀ କରୁଣାନିଧାନ ପ୍ରଭୁ ଶ୍ରୀରାମଚନ୍ଦ୍ର ଙ୍କ ଜୟ" କହି ଶ୍ରୀରାମଙ୍କ ସ୍ତୁତି କରୁଥା'ନ୍ତି ॥ ୨ ॥ ତତ୍ପରେ ଶ୍ରୀ ରଘୁନାଥ ବନ ପଥରେ ଅଗ୍ରସର ହେଲେ । ମୁନିବରବୃନ୍ଦ ତାହାଙ୍କ ସହିତ ଚାଲିଲେ । ଅସ୍ଥି ଗଦା ଦେଖି ଶ୍ରୀ ରଘୁନାଥଙ୍କ ମନରେ ବଡ଼ ଦୟା ଆସିଲା । ସେ ମୁନିମାନଙ୍କୁ ସେହି ପ୍ରସଙ୍ଗ ପଚାରିଲେ । ମୁନିମାନେ ଉତ୍ତର ଦେଲେ, "ହେ ସ୍ୱାମି ! ଆପଣ ସର୍ବଦର୍ଶୀ, ସର୍ବଜ୍ଞ ଓ ଅନ୍ତର୍ଯ୍ୟାମୀ । ଆପଣ ସବୁ ଜାଣି ମଧ୍ୟ ନ ଜାଣିଲା ପରି ଆମ୍ଭମାନଙ୍କୁ ପଚାରୁଛନ୍ତି କିପରି ? ରାକ୍ଷସଦଳ ମୁନିମାନଙ୍କୁ ଖାଇସାରିଛନ୍ତି । ଏ ସବୁ ସେହି ମୁନିମାନଙ୍କର ଅସ୍ଥି । ଏହା ଶୁଣିବା ମାତ୍ରେ ଶ୍ରୀ ରଘୁବୀରଙ୍କ ନେତ୍ର କରୁଣାଶ୍ରୁରେ ପୂର୍ଣ୍ଣ ହୋଇଗଲା ॥ ୪ ॥

ମୁନି ଅଗସ୍ତି କର ସିଷ୍ୟ ସୁଜାନା । ନାମ ସୁତୀକ୍ଷନ ରତି ଭଗବାନା ॥
ମନ କ୍ରମ ବଚନ ରାମପଦ ସେବକ । ସପନେହୁଁ ଆନ ଭରୋସ ନ ଦେବକ ॥୧॥
ପ୍ରଭୁ ଆଗବନୁ ଶ୍ରବନ ସୁନି ପାୱା । କରତ ମନୋରଥ ଆତୁର ଧାୱା ॥
ହେ ବିଧି ଦୀନବଂଧୁ ରଘୁରାୟା । ମୋ ସେ ସଠ ପର କରିହହିଁ ଦାୟା ॥୨॥
ସହିତ ଅନୁଜ ମୋହି ରାମ ଗୋସାଈଁ । ମିଲିହହିଁ ନିଜ ସେବକ କୀ ନାଈଁ ॥
ମୋରେ ଜିୟଁ ଭରୋସ ଦୃଢ଼ ନାହୀଁ । ଭଗତି ବିରତି ନ ଜ୍ଞାନ ମନ ମାହୀଁ ॥୩॥
ନହିଁ ସତସଂଗ ଜୋଗ ଜପ ଜାଗା । ନହିଁ ଦୃଢ଼ ଚରନ କମଲ ଅନୁରାଗା ॥
ଏକ ବାନି କରୁନାନିଧାନ କୀ । ସୋ ପ୍ରିୟ ଜା କେ ଗତି ନ ଆନ କୀ ॥୪॥
ହୋଇହହିଁ ସୁଫଲ ଆଜୁ ମମ ଲୋଚନ । ଦେଖି ବଦନ ପଙ୍କଜ ଭବ ମୋଚନ ॥
ନିର୍ଭର ପ୍ରେମ ମଗନ ମୁନି ଜ୍ଞାନୀ । କହି ନ ଜାଇ ସୋ ଦସା ଭବାନୀ ॥୫॥

---

ମୁନି ଅଗସ୍ତିଙ୍କ ଶିଷ୍ୟ ପରମ ପ୍ରବୀଣ । ନାମ ଯେ ସୁତୀକ୍ଷ୍ଣ ସଦା ହରିପରାୟଣ ॥
କାୟେ ମନୋବାକ୍ୟେ ରାମ ଚରଣସେବକ । ସ୍ୱପ୍ନେହେଁ ନୁହନ୍ତି ଅନ୍ୟ ଦେବ ଆରାଧକ ॥୧॥
ପ୍ରଭୁ ଆଗମନ ଯହୁଁ ଶ୍ରବଣେ ଶୁଣିଲେ । କରି ନାନା ମନୋରଥ ଆତୁରେ ଧାଇଁଲେ ॥
ହେ ବିଧି ! ଦୀନବାନ୍ଧବ ପ୍ରଭୁ ରଘୁପତି । କୃପା କି କରିବେ ମୋ ସମାନ ଶଠ ପ୍ରତି ॥୨॥
ସୀତା ଅନୁଜ ସହିତ ପ୍ରଭୁ ରଘୁରାୟ । ମିଳିବେ କି ମୋତେ ନିଜ ସେବକ ପରାୟ ॥
ନାହିଁ ମନ ମଧ୍ୟେ ମୋର ଭରସା ଅଟଳ । ନାହିଁ ହୃଦୟେ ବୈରାଗ୍ୟ ଜ୍ଞାନ ଭକ୍ତି ବଳ ॥୩॥
ନାହିଁ ଜପ ଯୋଗ ଯଜ୍ଞ ସୁଜନଙ୍କ ସାଙ୍ଗ । ନାହିଁ ଚରଣ-କମଳେ ଦୃଢ଼ ଅନୁରାଗ ॥
କିନ୍ତୁ ଏ ପ୍ରକୃତି ଏକ କୃପାନିଧିଙ୍କର । ସେ ପ୍ରିୟ ଯାହାର ଯହିଁ ଆଶ୍ରୟ ଇତର ॥୪॥
ହୋଇବ ସୁଫଳ ଆଜି ମୋହର ଲୋଚନ । ଦେଖି ବଦନ-ସରୋଜ ଭବ ବିମୋଚନ ॥
ବିଭୋର ପ୍ରେମରେ ମଗ୍ନ ହେଲେ ମୁନିଜ୍ଞାନୀ । ବର୍ଣ୍ଣନ କରି ନ ହୁଏ ସେ ଦଶା, ଭବାନି ॥୫॥

---

ଦୋହା —ଶ୍ରୀରାମ ବାହୁ ଟେକି ପ୍ରତିଜ୍ଞା କଲେ, "ମୁଁ ଏହି ପୃଥିବୀକୁ ରାକ୍ଷସହୀନ କରିଦେବି ।" ତତ୍ପରେ ସମସ୍ତ ମୁନିଙ୍କ ଆଶ୍ରମକୁ ଯାଇ ଶ୍ରୀରାମ ସେମାନଙ୍କୁ ଦର୍ଶନ ଓ ସମ୍ଭାଷଣ ଯୋଗେ ସୁଖ ପ୍ରଦାନ କଲେ ॥ ୯ ॥ ଚୌପାଈ .—ମୁନି ଅଗସ୍ତ୍ୟଙ୍କର ସୁତୀକ୍ଷ୍ଣ ନାମକ ଜଣେ ସୁଜ୍ଞାନୀ ଶିଷ୍ୟ ଥିଲେ । ଭଗବାନ୍‌ଙ୍କଠାରେ ତାଙ୍କର ପ୍ରୀତି ଥିଲା । ସେ ମନ, ବଚନ ଓ କର୍ମରେ ଶ୍ରୀରାମଙ୍କ ଚରଣ-ସେବକ ଥିଲେ । ସ୍ୱପ୍ନରେ ସୁଦ୍ଧା ଅନ୍ୟ କୌଣସି ଦେବତାଙ୍କ ଉପରେ ତାଙ୍କର ଭରସା ନ ଥିଲା ॥ ୧ ॥ ସେ କାନରେ ପ୍ରଭୁଙ୍କ ଆଗମନ-ସମାଚାର ପାଇବା ମାତ୍ରେ ବହୁବିଧ ମନୋରଥ ପୋଷଣ କରି ଆତୁର ଭାବରେ ତାଙ୍କ ନିକଟକୁ ଦୌଡ଼ି ଆସିଲେ । "ହେ ବିଧାତା ! ଦୀନବନ୍ଧୁ ଶ୍ରୀ ରଘୁନାଥ କ'ଣ ମୋ ପରି ଦୁଷ୍ଟ ଉପରେ ଦୟା କରିବେ ? ॥ ୨ ॥ ସ୍ୱାମୀ ଶ୍ରୀରାମ ସାନଭାଇ ଲକ୍ଷ୍ମଣଙ୍କ ସହ କ'ଣ ମୋତେ ସେବକ ଦୃଷ୍ଟିରେ ଦେଖି ମୋ ସହିତ ଭେଟିବେ ? ମୋ ହୃଦୟରେ ଦୃଢ଼ ବିଶ୍ୱାସ ହେଉ ନାହିଁ । କାରଣ ମୋ ମନରେ ଭକ୍ତି, ବୈରାଗ୍ୟ ବା ଜ୍ଞାନ କିଛି

ଦିସି ଅରୁ ବିଦିସି ପନ୍ଥ ନହିଁ ସୂଝା । କୋ ମୈଁ ଚଲେଉଁ କହାଁ ନହିଁ ବୂଝା ॥
କବହୁଁକ ଫିରି ପାଛେଁ ପୁନି ଜାଈ । କବହୁଁକ ନୃତ୍ୟ କରଇ ଗୁନ ଗାଈ ॥୨॥
ଅବିରଲ ପ୍ରେମ ଭଗତି ମୁନି ପାଈ । ପ୍ରଭୁ ଦେଖୈଁ ତରୁ ଓଟ ଲୁକାଈ ॥
ଅତିସୟ ପ୍ରୀତି ଦେଖି ରଘୁବୀରା । ପ୍ରଗଟେ ହୃଦୟଁ ହରନ ଭବ ଭୀରା ॥୩॥
ମୁନି ମଗ ମାଝ ଅଚଲ ହୋଇ ବୈସା । ପୁଲକ ସରୀର ପନସ ଫଲ ଜୈସା ॥
ତବ ରଘୁନାଥ ନିକଟ ଚଲି ଆଏ । ଦେଖି ଦସା ନିଜ ଜନ ମନ ଭାଏ ॥୪॥
ମୁନିହି ରାମ ବହୁ ଭାଁତି ଜଗାୱା । ଜାଗ ନ ଧ୍ୟାନ ଜନିତ ସୁଖ ପାୱା ॥
ଭୂପ ରୂପ ତବ ରାମ ଦୁରାୱା । ହୃଦୟଁ ଚତୁର୍ଭୁଜ ରୂପ ଦେଖାୱା ॥୫॥

---

ଦିଗ ଅଦିଗ କୌଣସି ପଥ ନ ଦିଶଇ । କିଏ ମୁଁ, କାହିଁ ଯାଉଛି, ଜଣା ନ ପଡ଼ଇ ॥
କେବେ କେବେ ଫେରି ପୁଣି ପଛକୁ ଚାଲନ୍ତି । କେବେ କେବେ ଗୁଣ ଗାଇ ନର୍ତ୍ତନ କରନ୍ତି ॥୨॥
ଅବିରଳ ପ୍ରେମ ଭକ୍ତି ମୁନି ପାଇଛନ୍ତି । ତରୁ ଉହାଡ଼େ ଲୁଚିଣ ପ୍ରଭୁ ନିରେଖନ୍ତି ॥
ବିଲୋକି ରାମ ମୁନିଙ୍କ ପ୍ରୀତି ଅତି ଭାରୀ । ହୃଦୟେ ପ୍ରକଟ ହେଲେ ଭବ-ଭୟ ହାରୀ ॥୩॥
ପଥ ମଧ୍ୟେ ବସି ଗଲେ ମୁନି ହୋଇ ସ୍ଥିର । ପଣସ ସଦୃଶ ଦିଶେ ପୁଲକ ଶରୀର ॥
ତହୁଁ ରଘୁନାଥ ଚାଲି ନିକଟେ ଆସିଲେ । ନିଜ ଜନ ଦଶା ଦେଖି ହରଷ ହୋଇଲେ ॥୪॥
ବହୁତ ଯତନେ ରାମ ଜାଗ୍ରତ କରନ୍ତି । ଧ୍ୟାନ ସୁଖ ଲଭି କରି ମୁନି ନ ଉଠନ୍ତି ॥
ଭୂପ ରୂପ ରଘୁପତି ତହୁଁ ଲୁଚାଇଲେ । ହୃଦ ମଧ୍ୟେ ଚତୁର୍ଭୁଜ ରୂପ ଦେଖାଇଲେ ॥୫॥

---

ହେଲେ ନାହିଁ ॥ ୩ ॥ ମୁଁ ସତ୍ସଙ୍ଗ, ଯୋଗ, ଜପ ବା ଯଜ୍ଞ କିଛି ହେଲେ କରିନାହିଁ । କିମ୍ବା ପ୍ରଭୁଙ୍କ ଚରଣ-କମଳରେ ମୋର ଦୃଢ଼ ଅନୁରାଗ ମଧ୍ୟ ନାହିଁ । ହଁ, କରୁଣାନିଧାନ ପ୍ରଭୁଙ୍କର ଗୋଟିଏ ସ୍ୱଭାବ ହେଉଛି, ଯାହାର ଅନ୍ୟ କେହି ସହାୟକ ବା ଆଶ୍ରୟ ନାହିଁ, ସେହି ବ୍ୟକ୍ତି ତାହାଙ୍କର ପ୍ରିୟ ।" ॥ ୪ ॥ ଭଗବାନଙ୍କର ଏହି ସ୍ୱଭାବ କଥା ମନେ ପଡ଼ିବା ମାତ୍ରେ ମୁନି ଆନନ୍ଦମଗ୍ନ ହୋଇ ବିଚାର କଲେ, "ଆହା ! ଭବବନ୍ଧନର ମୁକ୍ତିଦାତା ପ୍ରଭୁଙ୍କ ମୁଖାରବିନ୍ଦକୁ ଦେଖି ଆଜି ମୋର ନେତ୍ର ସୁଫଳ ହେବ ।" ଶିବ କହନ୍ତି, "ହେ ଭବାନି ! ଜ୍ଞାନୀ ମୁନି ସମ୍ପୂର୍ଣ୍ଣ ରୂପେ ପ୍ରେମରେ ନିମଗ୍ନ । ତାଙ୍କର ଉକ୍ତ ସମୟର ଅବସ୍ଥା ବର୍ଣ୍ଣନାତୀତ ॥ ୫ ॥ ତାଙ୍କୁ ଦିଗବିଦିଗ ବା ବାଟଅବାଟ କିଛି ଦିଶୁ ନ ଥାଏ । "ମୁଁ କିଏ ଏବଂ କୁଆଡ଼େ ଯାଉଛି"—ଏ କଥା ସେ ନିଜେ ଜାଣିପାରୁ ନ ଥା'ନ୍ତି । କେତେବେଳେ ସେ ପଛକୁ ବୁଲିପଡ଼ି ପୁଣି ଆଗକୁ ଚାଲୁଥା'ନ୍ତି ତ ଆଉ କେତେବେଳେ ପ୍ରଭୁଙ୍କ ଗୁଣଗାନ କରି ନୃତ୍ୟ କରୁଥା'ନ୍ତି ॥ ୨ ॥ ମୁନି ପ୍ରଗାଢ଼ ପ୍ରେମଭକ୍ତି ଲାଭ କରି ପକାଇଲେ । ପ୍ରଭୁ ଶ୍ରୀରାମ ବୃକ୍ଷର ଅନ୍ତରାଳରେ ଲୁଚି ରହି ଭକ୍ତର ପ୍ରେମୋନ୍ମତ୍ତ ଦଶା ଦେଖୁଥା'ନ୍ତି । ମୁନିଙ୍କର ପ୍ରେମାତିଶଯ୍ୟ ଦେଖି ଭବଭୟହାରୀ ଶ୍ରୀ ରଘୁନାଥ ମୁନିଙ୍କ ହୃଦୟରେ ଆବିର୍ଭୂତ ହେଲେ ॥ ୩ ॥ ହୃଦୟରେ ପ୍ରଭୁଙ୍କ ଦର୍ଶନଲାଭ କରି ମୁନି ମାର୍ଗ ମଧ୍ୟରେ ଅଚଳ (ସ୍ଥିର) ହୋଇ ବସିପଡ଼ିଲେ । ତାଙ୍କ ଶରୀର ରୋମାଞ୍ଚ ଯୋଗେ

ମୁନି ଅକୁଲାଇ ଉଠା ତବ କୈସେଁ । ବିକଲ ହୀନ ମନି ଫନିବର ଜୈସେଁ ॥
ଆଗେ ଦେଖି ରାମ ତନ ସ୍ୟାମା । ସୀତା ଅନୁଜ ସହିତ ସୁଖ ଧାମା ॥୧୦॥
ପରେଉ ଲକୁଟ ଇବ ଚରନନ୍ହି ଲାଗୀ । ପ୍ରେମ ମଗନ ମୁନିବର ବଡ଼ଭାଗୀ ॥
ଭୁଜ ବିସାଲ ଗହି ଲିଏ ଉଠାଈ । ପରମ ପ୍ରୀତି ରାଖେ ଉର ଲାଈ ॥୧୧॥
ମୁନିହି ମିଲତ ଅସ ସୋହ କୃପାଲା । କନକ ତରୁହି ଜନୁ ଭେଁଟ ତମାଲା ॥
ରାମ ବଦନୁ ବିଲୋକ ମୁନି ଠାଢ଼ା । ମାନହୁଁ ଚିତ୍ର ମାଝ ଲିଖି କାଢ଼ା ॥୧୨॥

ତବ ମୁନି ହୃଦୟଁ ଧୀର ଧରି ଗହି ପଦ ବାରହିଁ ବାର ।
ନିଜ ଆଶ୍ରମ ପ୍ରଭୁ ଆନି କରି ପୂଜା ବିବିଧ ପ୍ରକାର ॥୧୦॥

---

ମୁନି ଆକୁଳ ହୋଇଣ ଉଠିଲେ ତେମନ୍ତେ । ମଣି ବିନା ଫଣିବର ବ୍ୟାକୁଳ ଯେମନ୍ତେ ॥
ସମ୍ମୁଖେ ଦର୍ଶନ କଲେ ଶ୍ୟାମ ତନୁ ରାମ । ସୀତା ଅନୁଜ ସହିତ ପ୍ରଭୁ ସୁଖ-ଧାମ ॥୧୦॥
ପଡ଼ିଲେ ଚରଣ ତଳେ ଲଉଡ଼ି ସମାନ । ପ୍ରେମେ ମଗ୍ନ ମୁନିବର ବଡ଼ ଭାଗ୍ୟବାନ ॥
ସୁବିଶାଳ ଭୁଜେ ପ୍ରଭୁ ନେଇଣ ଉଠାଇ । ପରମ ପ୍ରେମେ ରଖିଲେ ହୃଦୟେ ଲଗାଇ ॥୧୧॥
ମୁନିଙ୍କି ମିଳି କୃପାଳୁ ଶୋଭନ୍ତି ତେସନେ । କନକ ତରୁକୁ ଭେଟେ ତମାଳ ଯେସନେ ॥
ମୁନି ସ୍ତମ୍ଭୀଭୂତ ରାମ ମୁଖ ନିରେଖିଣ । ଉଭା କରାଇଛୁ ଅବା ଚିତ୍ର କେ ଲେଖିଣ ॥୧୨॥

ତହୁଁ ମୁନିରାଜ ହୃଦେ ଧରି ଧୈର୍ଯ୍ୟ ପାଦେ ପଡ଼ି ବାରମ୍ବାର ।
ନିଜ ଆଶ୍ରମକୁ ନେଇଣ ପ୍ରଭୁଙ୍କି ପୂଜିଲେ ବହୁ ପ୍ରକାର ॥୧୦॥

---

ପଣସ ଫଳ ପରି ପୁଲକିତ ହୋଇ ଉଠିଲା । ତତ୍ପରେ ରଘୁନାଥ ତାଙ୍କ ନିକଟକୁ ଚାଲି ଆସିଲେ ଏବଂ ଆପଣା ଭକ୍ତର ପ୍ରେମଦଶା ଦେଖି ମନେ ମନେ ଅତିଶୟ ପ୍ରସନ୍ନ ହେଲେ ॥ ୮ ॥ ଶ୍ରୀରାମ ମୁନିଙ୍କୁ ବହୁତ ପ୍ରକାରେ ଜାଗି ଉଠାଇଲେ । କିନ୍ତୁ ମୁନି ଉଠିଲେ ନାହିଁ । ସେ ତ ପ୍ରଭୁଙ୍କ ଧ୍ୟାନରେ ସୁଖଲାଭ କରୁଥିଲେ । ତତ୍ପରେ ଶ୍ରୀରାମ ଆପଣାର ରାଜାରୂପ ଲୁଚାଇ ରଖିଲେ ଏବଂ ତାଙ୍କ ହୃଦୟରେ ନିଜର ଚତୁର୍ଭୁଜ ରୂପ ପ୍ରକାଶ କଲେ ॥ ୯ ॥ ଆପଣା ଇଷ୍ଟଦେବଙ୍କ ସ୍ୱରୂପ ଅନ୍ତର୍ହିତ ହେବା ମାତ୍ରେ ମୁନି ମଣିଧର ସର୍ପଶ୍ରେଷ୍ଠ ମଣି ବିନା ବ୍ୟାକୁଳ ହେଲା ପରି ବ୍ୟାକୁଳ ହୋଇ ଉଠିଲେ । ମୁନି ଆପଣା ଆଗରେ ସୀତା ଲକ୍ଷ୍ମଣଙ୍କ ସହିତ ଶ୍ୟାମସୁନ୍ଦର ବିଗ୍ରହ ସୁଖଧାମ ଶ୍ରୀରାମଙ୍କୁ ଦେଖିଲେ ॥ ୧୦ ॥ ଅତି ଭାଗ୍ୟବାନ୍ ମୁନିବର ପ୍ରେମମଗ୍ନ ହୋଇ ଦଣ୍ଡ ପରି ପଡ଼ି ଶ୍ରୀରାମଙ୍କ ଚରଣରେ ଲାଗିଗଲେ । ଆପଣା ବିଶାଳ ବାହୁଯୋଗେ ପ୍ରଭୁ ତାଙ୍କୁ ଉଠାଇ-ନେଲେ ଏବଂ ବଡ଼ ପ୍ରେମରେ ତାଙ୍କୁ ଛାତିରେ କୁଣ୍ଢାଇ ରଖିଲେ ॥ ୧୧ ॥ ଦୟାଳୁ ଶ୍ରୀରାମ ମୁନିଙ୍କ ସହ ମିଳି ସୁବର୍ଣ୍ଣ ବୃକ୍ଷ ସଙ୍ଗେ ତମାଳ ବୃକ୍ଷ ମିଳିଲା ପ୍ରାୟ ସୁଶୋଭିତ ହେଉଥା'ନ୍ତି । ମୁନି ନିସ୍ତବ୍ଧ ଭାବରେ ଛିଡ଼ା ହୋଇ ନିର୍ନିମେଷ ନୟନରେ ଶ୍ରୀରାମଙ୍କ ମୁଖ ଦେଖୁଥାଆନ୍ତି । ସତେ ଯେପରି ଚିତ୍ରାଙ୍କିତ ମୂର୍ତ୍ତିଟିଏ କେହି ଉଭା କରି ଥୋଇ ଦେଇଛି ॥ ୧୨ ॥ ଦୋହା :—ତଦନନ୍ତର ମୁନି ହୃଦୟରେ ଧୈର୍ଯ୍ୟଧାରଣ କରି ବାରମ୍ବାର

କହ ମୁନି ପ୍ରଭୁ ସୁନୁ ବିନତୀ ମୋରୀ । ଅସ୍ତୁତି କରୌଁ କଉନ ବିଧି ତୋରୀ ॥
ମହିମା ଅମିତ ମୋରି ମତି ଥୋରୀ । ରବିସନ୍ମୁଖ ଖଦ୍ୟୋତ ଅଁଜୋରୀ ॥୧॥
ଶ୍ୟାମ ତାମରସ ଦାମ ଶରୀରଂ । ଜଟା ମୁକୁଟ ପରିଧନ ମୁନିଚୀରଂ ॥
ପାଣି ଚାପ ଶର କଟି ତୂଣୀରଂ । ନୌମି ନିରଂତର ଶ୍ରୀ ରଘୁବୀରଂ ॥୨॥
ମୋହ ବିପିନ ଘନ ଦହନ କୃଶାନୁଃ । ସଂତ ସରୋରୁହ କାନନ ଭାନୁଃ ॥
ନିଶିଚର କରି ବରୂଥ ମୃଗରାଜଃ । ତ୍ରାତୁ ସଦା ନୋ ଭବ ଖଗ ବାଜଃ ॥୩॥
ଅରୁଣ ନୟନ ରାଜୀବ ସୁବେଶଂ । ସୀତା ନୟନ ଚକୋର ନିଶେଶଂ ॥
ହର ହୃଦି ମାନସ ବାଲ ମରାଳଂ । ନୌମି ରାମ ଉର ବାହୁ ବିଶାଳଂ ॥୪॥
ସଂଶୟ ସର୍ପ ଗ୍ରସନ ଉରଗାଦଃ । ଶମନ ସୁକର୍କଶ ତର୍କ ବିଷାଦଃ ॥
ଭବ ଭଂଜନ ରଂଜନ ସୁର ଯୂଥଃ । ତ୍ରାତୁ ସଦା ନୋ କୃପା ବରୂଥଃ ॥୫॥

---

ବୋଲନ୍ତି ମୁନି, ବିନତି ଶୁଣନ୍ତୁ ମୋହର । କେଉଁ ଭାବେ ପ୍ରଭୁ, ସ୍ତୁତି କରିବି ତୁମର ॥
ମହିମା ଅମିତ ସ୍ୱଳ୍ପ ମୋ ବୁଦ୍ଧି ଅଶକ୍ତ । ରବି ସମ୍ମୁଖେ ଖଦ୍ୟୋତ ପ୍ରକାଶ ଯେମନ୍ତ ॥୧॥
ଶ୍ୟାମ ତାମରସ ବୃନ୍ଦ ସଦୃଶ ଶରୀର । ଜଟାର ମୁକୁଟ ପରିଧାନ ମୁନି ଚୀର ॥
ହସ୍ତରେ ଚାପ ଶାୟକ କଟିରେ ତୂଣୀର । ପ୍ରଣମଇ ନିରନ୍ତର ଶ୍ରୀ ରଘୁ ପ୍ରବୀର ॥୨॥
ମୋହ-ନିବିଡ଼-ବିପିନ ଦହନେ କୃଶାନୁ । ସନ୍ଥ-ସରୋରୁହ-ବନ ବିକାଶକ ଭାନୁ ॥
ରଜନୀଚର - କୁଞ୍ଜର - ଯୂଥ - ପଶୁରାଜ । ରଖନ୍ତୁ ଆମଙ୍କୁ ସଦା ଭବ-ଖଗ-ବାଜ ॥୩॥
ଅରୁଣ କଞ୍ଜ-ନୟନ ମନୋହର ବେଶ । ଜନକ ସୁତା ଲୋଚନ-ଚକୋର-ନିଶେଶ ॥
ହର ହୃଦ-ମାନସର ରାଜ ମରାଳ । ନମଇ ଶ୍ରୀରାମ, ବାହୁ ହୃଦୟ ବିଶାଳ ॥୪॥
ସଂଶୟ-ସର୍ପ-ଗ୍ରସନେ ବିହଙ୍ଗ-ନାୟକ । କ୍ଲେଶ-ଦାୟକ କୁତର୍କ-ବିଷାଦ-ନାଶକ ॥
ଭବ-ଭଞ୍ଜନ ରଞ୍ଜନ ବିବୁଧ ନିକର । ରଖନ୍ତୁ ଆମଙ୍କୁ ସଦା କରୁଣାସାଗର ॥୫॥

---

ତାଙ୍କ ଚରଣକୁ ସ୍ପର୍ଶ କଲେ । ତତ୍ପରେ ପ୍ରଭୁଙ୍କୁ ଆପଣା ଆଶ୍ରମକୁ ଆଣି ଅନେକ ପ୍ରକାର ତାଙ୍କର ପୂଜାବିଧାନ କଲେ ॥ ୧୦ ॥ ଚୌପାଈ :—ମୁନି କହିବାକୁ ଲାଗିଲେ— "ହେ ପ୍ରଭୋ ! ମୋ ବିନତି ଶୁଣନ୍ତୁ । ମୁଁ କିପରି ଭାବରେ ଆପଣଙ୍କ ସ୍ତୁତି କରିବି ? ଆପଣଙ୍କ ମହିମା ଅପାର ଓ ମୋ ବୁଦ୍ଧି ଅତି ଅଳ୍ପ । ସୂର୍ଯ୍ୟଙ୍କ ଆଗରେ ଜୁଳୁଜୁଳିଆ ପୋକର କି ଆଲୋକ ? ॥ ୧ ॥ ହେ ନୀଳ କମଳମାଳା-ଶ୍ୟାମଶରୀର ! ହେ ଜଟା-ମୁକୁଟଧାରୀ ! ହେ ମୁନିଜନଯୋଗ୍ୟ-ବଲ୍‌କଲ-ବସ୍ତ୍ର-ପରିଧାନକାରୀ ! ହେ ଧନୁଶରପାଣି, ତୂଣୀର-କଟି ଶ୍ରୀରାମ ! ମୁଁ ଆପଣଙ୍କୁ ନିରନ୍ତର ନମସ୍କାର କରୁଅଛି ॥ ୨ ॥ ଯେଉଁ ପ୍ରଭୁ ମୋହରୂପକ ଗହନବନକୁ ଦହନ କରିବାରେ ଅଗ୍ନି, ସନ୍ଥ କମଳ-ବନକୁ ପ୍ରଫୁଲ୍ଲିତ କରିବା ବିଷୟରେ ସୂର୍ଯ୍ୟ, ରାକ୍ଷସ-ହସ୍ତି ବୃନ୍ଦଙ୍କୁ ପରାସ୍ତ କରିବାରେ ସିଂହ ଏବଂ ସଂସାରର ଜନ୍ମମରଣ-ଚକ୍ରରୂପୀ ପକ୍ଷୀକୁ ନାଶିବା ନିମନ୍ତେ ସଞ୍ଚାଣ ସ୍ୱରୂପ, ସେହି ପ୍ରଭୁ ସଦା ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ॥ ୩ ॥ ହେ ଅରୁଣନୟନ ଓ କମଳସୁବେଶ !

ନିର୍ଗୁଣ ସଗୁଣ ବିଷମ ସମ ରୂପଂ । ଜ୍ଞାନ ଗିରା ଗୋତୀତମନୂପଂ ॥
ଅମଳମଖିଳମନବଦ୍ୟମପାରଂ । ନୌମି ରାମ ଭଂଜନ ମହି ଭାରଂ ॥୬॥
ଭକ୍ତ କଲ୍ପପାଦପ ଆରାମଃ । ତର୍ଜନ କ୍ରୋଧ ଲୋଭ ମଦ କାମଃ ॥
ଅତି ନାଗର ଭବ ସାଗର ସେତୁଃ । ତ୍ରାତୁ ସଦା ଦିନକର କୁଳ କେତୁଃ ॥୭॥
ଅତୁଳିତ ଭୁଜ ପ୍ରତାପ ବଲ ଧାମଃ । କଳି ମଲ ବିପୁଲ ବିଭଂଜନ ନାମଃ ॥
ଧର୍ମ ବର୍ମ ନର୍ମଦ ଗୁଣ ଗ୍ରାମଃ । ସଂତତ ଶଂ ତନୋତୁ ମମ ରାମଃ ॥୮॥
ଜଦପି ବିରଜ ବ୍ୟାପକ ଅବିନାସୀ । ସବ କେ ହୃଦୟଁ ନିରଂତର ବାସୀ ॥
ତଦପି ଅନୁଜ ଶ୍ରୀ ସହିତ ଖରାରୀ । ବସତୁ ମନସି ମମ କାନନଚାରୀ ॥୯॥

---

ନିର୍ଗୁଣ ସଗୁଣ ସମ ବିଷମ ସ୍ୱରୂପ । ଜ୍ଞାନ-ଇନ୍ଦ୍ରିୟ-ବଚନ-ଅତୀତ ଅନୁପ ॥
ଅମଳ ଅଖଣ୍ଡ ଅଜ ଅନବଦ୍ୟ ଅପାର । ନମଇ ରାମ ଭଞ୍ଜନ ବସୁମତୀ ଭାର ॥୬॥
ଭକ୍ତ ଜନଙ୍କର କଳ୍ପ ପାଦପ ଆରାମ । ତର୍ଜକ ସକଳ କ୍ରୋଧ ଲୋଭ ମଦ କାମ ॥
ପରମ ନାଗର ଭବ-ପାରାବାର ସେତୁ । ତ୍ରାଣ କର ସଦା ଦିନକର-କୁଳକେତୁ ॥୭॥
ଅତୁଳନୀୟ ପ୍ରତାପ ଭୁଜବଳ ଧାମ । କଳି - କଳୁଷ-ବିପୁଳ-ବିଭଞ୍ଜନ ନାମ ॥
ଧର୍ମର ବର୍ମ ଆନନ୍ଦ ପ୍ରଦ ଗୁଣ ଗ୍ରାମ । ସଦା ମଙ୍ଗଳ ବିଧାନ କର ମୋର ରାମ ॥୮॥
ଯଦ୍ୟପି ବ୍ୟାପକ ନିର୍ବିକାର ଅବିନାଶୀ । ସମସ୍ତଙ୍କ ହୃଦୟରେ ନିରନ୍ତର ବାସୀ ॥
ତଥାପି ଅନୁଜ ସୀତା ସହିତ ଖରାରି । ନିବାସ କର ମୋ ମନ, ବିପିନବିହାରି ॥୯॥

---

ହେ ସୀତା-ନୟନ-ଚକୋର ଚନ୍ଦ୍ରମା ! ହେ ଶିବ-ମନ-ମାନସରୋବରର ବାଲହଂସ ! ହେ ବିଶାଳହୃଦୟ ଓ ବିଶାଳବାହୁ ଶ୍ରୀରାମଚନ୍ଦ୍ର ! ମୁଁ ଆପଣଙ୍କୁ ନମସ୍କାର କରୁ-ଅଛି ॥ ୪ ॥ ଯେଉଁ ପ୍ରଭୁ ସଂଶୟ-ସର୍ପକୁ ଗ୍ରାସ କରିବା ବିଷୟରେ ଗରୁଡ଼, ଅତିଶୟ କଠୋର ତର୍କରୁ ଜାତ ବିଷାଦର ନାଶକାରକ, ଜନ୍ମମରଣ-ଚକ୍ରର ଅନ୍ତକ ତଥା ଦେବତାବୃନ୍ଦଙ୍କ ଆନନ୍ଦଦାୟକ, ସେହି କୃପାପତି ଶ୍ରୀରାମ ସଦାସର୍ବଦା ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ॥ ୫ ॥ ହେ ନିର୍ଗୁଣ, ସଗୁଣ, ବିଷମ ଓ ସମରୂପ ! ହେ ଜ୍ଞାନ, ବାଣୀ ଓ ଇନ୍ଦ୍ରିୟର ଅତୀତ ! ହେ ଅନୁପମ, ନିର୍ମଳ, ଅଖିଳ ଅନବଦ୍ୟ, ଅନନ୍ତ ଏବଂ ଭରଭାର-ବିଭଞ୍ଜନ ଶ୍ରୀରାମଚନ୍ଦ୍ର ! ମୁଁ ଆପଣଙ୍କୁ ନମସ୍କାର କରୁଅଛି ॥ ୬ ॥ ଯେ ଭକ୍ତଜନବୃନ୍ଦଙ୍କ ନିମନ୍ତେ କଳ୍ପବୃକ୍ଷର ଉଦ୍ୟାନ, କ୍ରୋଧ, ଲୋଭ, ମଦ ଓ କାମର ଭୟପ୍ରଦ, ଯେ ଅତି ଚତୁର ଏବଂ ସଂସାର-ସମୁଦ୍ରରୁ ତରିବା ନିମନ୍ତେ ସେତୁସ୍ୱରୂପ, ସେହି ସୂର୍ଯ୍ୟକୁଳ-କେତନ ଶ୍ରୀରାମ ସଦାସର୍ବଦା ମୋତେ ରକ୍ଷା କରନ୍ତୁ ॥ ୭ ॥ ଯାହାଙ୍କର ବାହୁପ୍ରତାପ ଅତୁଳନୀୟ, ଯେ ବଳରଧାମ, ଯାହାଙ୍କର ନାମମାତ୍ର କଳିଯୁଗର ଅସଂଖ୍ୟ ବଡ଼ ବଡ଼ ପାପର ବିନାଶକାରୀ, ଯେ ଧର୍ମର କବଚ ବା ରକ୍ଷକ, ଯାହାଙ୍କ ଗୁଣସମୂହ ଆନନ୍ଦ-ଦାୟକ, ସେହି ପ୍ରଭୁ ଶ୍ରୀରାମଚନ୍ଦ୍ର ନିରନ୍ତର ମୋର କଲ୍ୟାଣ ବିସ୍ତାର କରନ୍ତୁ ॥ ୮ ॥ ଯଦ୍ୟପି ଆପଣ ନିର୍ମଳ, ବ୍ୟାପକ, ଅବିନାଶୀ ଓ ସମସ୍ତଙ୍କ ହୃଦୟରେ ନିରନ୍ତର ନିବାସ

ଜେ ଜାନହିଁ ତେ ଜାନହୁ ସ୍ୱାମୀ । ସଗୁନ ଅଗୁନ ଉର ଅଂତରଜାମୀ ॥
ଜୋ କୋସଲପତି ରାଜିବ ନୟନା । କରଉ ସୋ ରାମ ହୃଦୟ ମମ ଅୟନା ॥୧୦॥
ଅସ ଅଭିମାନ ଜାଇ ଜନି ଭୋରେଁ । ମୈଁ ସେବକ ରଘୁପତି ପତି ମୋରେ ॥
ସୁନି ମୁନି ବଚନ ରାମ ମନ ଭାଏ । ବହୁରି ହରଷି ମୁନିବର ଉର ଲାଏ ॥୧୧॥
ପରମ ପ୍ରସନ୍ନ ଜାନୁ ମୁନି ମୋହୀ । ଜୋ ବର ମାଗହୁ ଦେଉଁ ସୋ ତୋହୀ ॥
ମୁନି କହ ମୈଁ ବର କବହୁଁ ନ ଜାଚା । ସମୁଝି ନ ପରଇ ଝୂଠ କା ସାଚା ॥୧୨॥
ତୁମ୍ହହି ନୀକ ଲାଗୈ ରଘୁରାଈ । ସୋ ମୋହି ଦେହୁ ଦାସ ସୁଖଦାଈ ॥
ଅବିରଲ ଭଗତି ବିରତି ବିଜ୍ଞାନା । ହୋହୁ ସକଲ ଗୁନ ଜ୍ଞାନ ନିଧାନା ॥୧୩॥
ପ୍ରଭୁ ଜୋ ଦୀନ୍ହ ସୋ ବରୁ ମୈଁ ପାଵା । ଅବ ସୋ ଦେହୁ ମୋହି ଜୋ ଭାଵା ॥୧୪॥

---

ଯେ ଜାଣନ୍ତି ସେ ଜାଣନ୍ତୁ ଅପଣଙ୍କୁ ସ୍ୱାମୀ । ସଗୁଣ ନିର୍ଗୁଣ ସମସ୍ତଙ୍କ ଅନ୍ତର୍ଯ୍ୟାମୀ ॥
ଯେଉଁ କୋଶଳାଧିପତି ରାଜୀବନୟନ । କରନ୍ତୁ ସେ ରାମ ମୋର ହୃଦେ ନିକେତନ ॥୧୦॥
ଏହି ଅଭିମାନ ଭୁଲି ନ ଯାଉ ଗୋସାଇଁ । ମୁହିଁ ସେବକ ଶ୍ରୀ ରଘୁପତି ମୋର ସାଇଁ ॥
ଶୁଣି ମୁନିବାଣୀ, ରାମ ପ୍ରମୋଦ ଲଭିଲେ । ହରଷେ ପୁଣି ମୁନିଙ୍କୁ ହୃଦେ ଆଲିଙ୍ଗିଲେ ॥୧୧॥
ପରମ ପ୍ରସନ୍ନ ମୋତେ ଜାଣି ମୁନିରାଜ । ଯେ ବର ମାଗିବ ତାହା ଦେବି ନିଶ୍ଚେ ଆଜ ॥
ବୋଇଲେ ମୁନି, ମୁଁ କେବେ ବର ମାଗିନାହିଁ । କିଏ ସତ କିଏ ମିଛ, ଜଣାପଡ଼େ ନାହିଁ ॥୧୨॥
ତୁମକୁ ଭଲ ଲାଗଇ ରଘୁପତି ଯାହା । ଦାସ ସୁଖଦାୟୀ ମୋତେ ପ୍ରଦାନକର ତାହା ॥
ହୁଅ ଅବିରଳ ଭକ୍ତି ବୈରାଗ୍ୟ ବିଜ୍ଞାନ । ସକଳ ଗୁଣ ଅବର ବିବେକ-ନିଧାନ ॥୧୩॥
ପ୍ରଭୁ, ଯାହା ଦେଲ ପ୍ରାପ୍ତ କଲି ମୁଁ ସେ ବର । ଏବେ ଦିଅ ଯାହା ମୋତେ ଲାଗଇ ସୁନ୍ଦର ॥୧୪॥

---

କରନ୍ତୁ, ତଥାପି ହେ ଈଶ୍ୱର ଶ୍ରୀରାମ ! ଅନୁଜ ଓ ସୀତାଙ୍କ ସହ ଧନୁର୍ଦ୍ଧର ଏହି ରୂପରେ ଅପଣ ମୋ ହୃଦୟରେ ନିବାସ କରନ୍ତୁ ॥ ୯ ॥ ହେ ସ୍ୱାମି ! ଅପଣଙ୍କୁ ଯେଉଁମାନେ ସଗୁଣ, ନିର୍ଗୁଣ ଓ ଅନ୍ତର୍ଯ୍ୟାମୀ ବୋଲି ଜାଣନ୍ତି, ସେମାନେ ଜାଣନ୍ତୁ । କେବଳ କୋଶଳପତି, କମଳନୟନ ଶ୍ରୀରାମ ହିଁ ମୋ ହୃଦୟକୁ ନିଜର ଗୃହ କରନ୍ତୁ ॥ ୧୦ ॥ ମୁଁ ସେବକ ଏବଂ ଶ୍ରୀ ରଘୁନାଥ ମୋର ସ୍ୱାମୀ । ଏହି ଅଭିମାନ ଭୁଲରେ ମଧ୍ୟ ମୋଠାରୁ ଦୂର ନ ହେଉ ।" ମୁନିଙ୍କ ବଚନ ଶୁଣି ଶ୍ରୀରାମ ମନେ ମନେ ବଡ଼ ପ୍ରସନ୍ନ ହେଲେ । ତହୁଁରେ ସେ ମୁନିବରଙ୍କୁ ଆଲିଙ୍ଗନ କରି ପକାଇଲେ ॥ ୧୧ ॥ ଏବଂ କହିଲେ, "ହେ ମୁନି ! ମୁଁ ତୁମଠାରେ ପରମ ପ୍ରସନ୍ନ ବୋଲି ଜାଣ । ଯେଉଁ ବର ମାଗିବ, ତାହା ମୁଁ ତୁମ୍ଭକୁ ଦେବି ।" ମୁନି ସୁତୀକ୍ଷ୍ଣ କହିଲେ, "ମୁଁ ତ କେବେ କେହେଲେ ବର ମାଗି ନାହିଁ । ମିଥ୍ୟା କ'ଣ, ସତ୍ୟ କ'ଣ—ଏହା ମୋ ବୁଦ୍ଧି ବିବେକରେ ତ ପଡ଼ୁ ନାହିଁ ।' ୧୨ ॥ ଅତଏବ ହେ ରଘୁନାଥ ! ହେ ଦାସ-ସୁଖଦାତା ! ଅପଣଙ୍କୁ ଯାହା ଭଲ ଲାଗେ, ତାହାହିଁ ମୋତେ ଦିଅନ୍ତୁ ।" ଶ୍ରୀରାମଚନ୍ଦ୍ର କହିଲେ, "ହେ ମୁନି ! ତୁମେ ପ୍ରଗାଢ଼ ଭକ୍ତି, ବୈରାଗ୍ୟ, ବିଜ୍ଞାନ ଓ ସମସ୍ତ ଗୁଣ ତଥା ଜ୍ଞାନର ନିଧାନ

ଅନୁଜ ଜାନକୀ ସହିତ ପ୍ରଭୁ ଚାପ ବାନ ଧର ରାମ ।
ମମ ହିୟ ଗଗନ ଇଂଦୁ ଇବ ବସହୁ ସଦା ନିହକାମ ॥୧୧॥

ଏବମସ୍ତୁ କରି ରମାନିବାସା । ହରଷି ଚଲେ କୁମ୍ଭଜ ଋଷି ପାସା ॥
ବହୁତ ଦିବସ ଗୁର ଦରସନୁ ପାଏଁ । ଭଏ ମୋହି ଏହିଁ ଆଶ୍ରମ ଆଏଁ ॥୧॥
ଅବ ପ୍ରଭୁ ସଂଗ ଜାଉଁ ଗୁର ପାହୀଁ । ତୁମ୍ହ କହଁ ନାଥ ନିହୋରା ନାହୀଁ ॥
ଦେଖି କୃପାନିଧି ମୁନି ଚତୁରାଈ । ଲିଏ ସଂଗ ବିହସେ ଦ୍ୱୌ ଭାଈ ॥୨॥
ପନ୍ଥ କହତ ନିଜ ଭଗତି ଅନୂପା । ମୁନି ଆଶ୍ରମ ପହୁଁଚେ ସୁରଭୂପା ॥
ତୁରତ ସୁତୀଛନ ଗୁର ପହିଁ ଗୟଊ । କରି ଦଣ୍ଡବତ କହତ ଅସ ଭୟଊ ॥୩॥
ନାଥ କୋସଲଧୀସ କୁମାରା । ଆଏ ମିଲନ ଜଗତ ଆଧାରା ॥
ରାମ ଅନୁଜ ସମେତ ବୈଦେହୀ । ନିସି ଦିନୁ ଦେବ ଜପତ ହହୁ ଜେହୀ ॥୪॥

---

ଜାନକୀ ଅନୁଜ ସଙ୍ଗେ ରଘୁରାଜ ଚାପବାଣଧାରୀ ରାମ ।
ମୋ ହୃଦ-ଗଗନେ ସଦା ଇନ୍ଦୁ ଯେସନ୍ତେ କରନ୍ତୁ ବାସ ନିଷ୍କାମ ॥୧୧॥

ଏବମସ୍ତୁ କହି ତହୁଁ ଇନ୍ଦିରା ନିବାସ । ହରଷେ ଚଳିଲେ କୁମ୍ଭଯୋନି ଋଷି ପାଶ ॥
ବହୁ ଦିନ ଗୁରୁ ଦରଶନ ନ ପାଇଣ । ହୋଇଲାଣି ମୋତେ ଏହି ଆଶ୍ରମେ ରହିଣ ॥୧॥
ଏବେ ପ୍ରଭୁ ସଙ୍ଗେ ଯିବି ଗୁରୁଙ୍କ ନିକଟ । ତୁମ୍ଭଙ୍କୁ ନାଥ କୌଣସି ନ ହୋଇବ କଷ୍ଟ ॥
ଦେଖି ମୁନି ଚତୁରତା କରୁଣା ସାଗର । ସଙ୍ଗେ ତାଙ୍କୁ ନେଲେ ହସି ଅନୁଜ ସହିତ ॥୨॥
ପଥେ କହି କହି ନିଜ ଅନୁପ ଭକତି । ମୁନିଙ୍କ ଆଶ୍ରମେ ପ୍ରବେଶିଲେ ସୁରପତି ॥
ଶୀଘ୍ର ସୁତୀକ୍ଷ୍ଣ ଗୁରୁଙ୍କ ନିକଟେ ଗମିଲେ । କରି ଦଣ୍ଡବତ ପ୍ରେମେ ଏମନ୍ତ କହିଲେ ॥୩॥
ନାଥ ! କୋଶଳ ନୃପଙ୍କ ସୁନ୍ଦର କୁମାର । ଆସନ୍ତି ମିଳିବା ହେତୁ ଜଗତ ଆଧାର ॥
ରାମ ସଙ୍ଗରେ ଘେନିଣ ଅନୁଜ ସୀତାଙ୍କୁ । ନିଶି ଦିନ ଦେବ ' ଜପ କରୁଛ ଯାହାଙ୍କୁ ॥୪॥

---

ହୋଇଯାଅ ॥ ୧୩ ॥ ଉତ୍ତରରେ ମୁନି କହିଲେ, "ପ୍ରଭୁ ଯେଉଁ ବର ଦାନ ଦେଲେ, ତାହା ମୁଁ ଗ୍ରହଣ କରିନେଲି । ବର୍ତ୍ତମାନ ମୋତେ ଯାହା ଭଲ ଲାଗେ, ତାହା ଦିଅନ୍ତୁ ॥ ୧୪ ॥ ଦୋହା '—ହେ ପ୍ରଭୋ ! ହେ ଶ୍ରୀରାମ ' ସାନଭାଇ ଲକ୍ଷ୍ମଣ ଓ ସୀତାଙ୍କ ସହ ଧନୁଶରଧାରୀ ରୂପରେ ଆପଣ ନିଷ୍କାମ (ସ୍ଥିର) ହୋଇ ମୋର ହୃଦୟାକାଶରେ ଚନ୍ଦ୍ରମା ସଦୃଶ ସଦା ନିବାସ କରନ୍ତୁ ।" ॥ ୧୧ ॥ ଚୌପାଈ :—"ଏବମସ୍ତୁ" (ଏହାହିଁ ହେଉ) ଉଚ୍ଚାରଣ କରି ଲକ୍ଷ୍ମୀନିବାସ ଶ୍ରୀରାମଚନ୍ଦ୍ର ଆନନ୍ଦିତ ହୋଇ ଅଗସ୍ତ୍ୟ ଋଷିଙ୍କ ପାଖକୁ ଚାଲିଲେ । ସୁତୀକ୍ଷ୍ଣ କହିଲେ, "ମୋର ଗୁରୁ ଅଗସ୍ତ୍ୟଙ୍କ ଦର୍ଶନଲାଭ ଓ ଏହି ଆଶ୍ରମକୁ ଆଗମନ କରିବା ପରେ ବହୁତ ଦିନ ଅତିବାହିତ ହୋଇଗଲାଣି ॥ ୧ ॥ ବର୍ତ୍ତମାନ ମୁଁ ମଧ୍ୟ ପ୍ରଭୁଙ୍କ ସହିତ ଗୁରୁଙ୍କ ସମୀପକୁ ଯାଏ । ହେ ନାଥ ! ଏହାଦ୍ୱାରା ମୁଁ ଆପଣଙ୍କୁ ଉପକୃତ କରୁନାହିଁ ।" ମୁନିଙ୍କ ଚତୁରତା ଦେଖି କୃପାନିଧାନ ଶ୍ରୀରାମ ତାହାଙ୍କୁ ସଙ୍ଗରେ ନେଲେ ଏବଂ ଦୁଇ ଭାଇ ହସିବାକୁ ଲାଗିଲେ ॥ ୨ ॥

ସୁନତ ଅଗସ୍ତି ତୁରତ ଉଠି ଧାଏ । ହରି ବିଲୋକି ଲୋଚନ ଜଲ ଛାଏ ॥
ମୁନି ପଦ କମଲ ପରେ ଦ୍ୱୌ ଭାଈ । ରିଷି ଅତି ପ୍ରୀତି ଲିଏ ଉର ଲାଈ ॥୫॥
ସାଦର କୁସଲ ପୂଛି ମୁନି ଜ୍ଞାନୀ । ଆସନ ବର ବୈଠାରେ ଆନୀ ॥
ପୁନି କରି ବହୁ ପ୍ରକାର ପ୍ରଭୁ ପୂଜା । ମୋହି ସମ ଭାଗ୍ୟବନ୍ତ ନହିଁ ଦୂଜା ॥୬॥
ଜହଁ ଲଗି ରହେ ଅପର ମୁନି ବୃନ୍ଦା । ହରଷେ ସବ ବିଲୋକି ସୁଖକଂଦା ॥୭॥
ମୁନି ସମୂହ ମହଁ ବୈଠେ ସନ୍ମୁଖ ସବ କୀ ଓର ।
ସରଦ ଇନ୍ଦୁ ତନ ଚିତୱତ ମାନହୁଁ ନିକର ଚକୋର ॥୧୨॥

---

ଶୁଣନ୍ତେ ଅଗସ୍ତି ଉଠି ଧାଇଁଲେ ଚଞ୍ଚଳ । ହରିଙ୍କୁ ଦେଖି ନୟନେ ପୂର୍ଣ୍ଣ ହେଲା ଜଳ ॥
ପଡ଼ିଲେ ମୁନିଙ୍କ ପାଦପଦ୍ମେ ଦୁଇ ଭାଇ । ଋଷି ଅତି ସ୍ନେହେ ନେଲେ ହୃଦୟେ ଲଗାଇ ॥୫॥
ସାଦରେ କୁଶଳ ପଚାରିଣ ମୁନି ଜ୍ଞାନୀ । ଆଶ୍ରମେ ରମ୍ୟ ଆସନେ ବସାଇଲେ ଆଣି ॥
ପୁଣି ପ୍ରଭୁଙ୍କୁ ପୂଜିଣ ବିବିଧ ବିଧାନ । କହିଲେ, ମୋ ସମ ଆଜ ନାହିଁ ଭାଗ୍ୟବାନ ॥୬॥
ଯେତେ ଦୂର ଯାଏ ଥିଲେ ଅନ୍ୟ ମୁନିବୃନ୍ଦେ । ହରଷ ହୋଇଲେ ସର୍ବେ ଦେଖି ସୁଖକନ୍ଦେ ॥୭॥
ମୁନିଙ୍କ ସମାଜେ ରଘୁରାଜ ବସେ ସମ୍ମୁଖେ ସମସ୍ତଙ୍କର ।
ରାମ-ଶରଦିନ୍ଦୁ ନିରେଖନ୍ତି ଅବା ମୁନି-ଚକୋର ନିକର ॥୧୨॥

---

ମାର୍ଗରେ ଦେବଗଣଙ୍କ ରାଜରାଜେଶ୍ୱର ଶ୍ରୀରାମ ନିଜ ଅନୁପମ ଭକ୍ତର ବର୍ଣ୍ଣନା କରି କରି ଅଗସ୍ତ୍ୟ ମୁନିଙ୍କ ଆଶ୍ରମରେ ପହଞ୍ଚିରେ । ସୁତୀକ୍ଷ୍ଣ ତୁରନ୍ତ ଗୁରୁ ଅଗସ୍ତ୍ୟଙ୍କ ନିକଟକୁ ଗଲେ ଏବଂ ଦଣ୍ଡବତ କରି ପ୍ରେମରେ ଏପରି କହିବାକୁ ଲାଗିଲେ— ॥ ୩ ॥ "ହେ ନାଥ ! ଅଯୋଧ୍ୟାର ରାଜା ଦଶରଥଙ୍କ କୁମାର ଜଗଦାଧାର ଶ୍ରୀରାମଚନ୍ଦ୍ର, ସାନଭାଇ ଲକ୍ଷ୍ମଣ ଓ ପତ୍ନୀ ସୀତାଙ୍କ ସହ ଆପଣଙ୍କ ସଙ୍ଗେ ସାକ୍ଷାତ କରିବାକୁ ଆସିଅଛନ୍ତି । ହେ ଦେବ ! ଯେଉଁ ପ୍ରଭୁଙ୍କୁ ଆପଣ ଦିନରାତି ଜପ କରୁଥା'ନ୍ତି, ଏହି ହେଉଛନ୍ତି ସେହି ରାମଚନ୍ଦ୍ର ।" ॥ ୪ ॥ ଏହା ଶୁଣିବା ମାତ୍ରେ ଅଗସ୍ତ୍ୟ ମୁନି ଉଠି ଧାଇଁଲେ । ଭଗବାନଙ୍କୁ ଦେଖିବା ମାତ୍ରେ ତାଙ୍କ ନେତ୍ର ପ୍ରେମାଶ୍ରୁ-ଜଳରେ ପୂର୍ଣ୍ଣ ହୋଇଗଲା । ଭାଇ ଦୁହେଁ ମୁନିଙ୍କ ଚରଣ-କମଳରେ ପଡ଼ିଗଲେ । ଋଷି ସେମାନଙ୍କୁ ଉଠାଇ ଅତ୍ୟନ୍ତ ପ୍ରେମ ସହକାରେ ଆଲିଙ୍ଗନ କରିପକାଇଲେ ॥ ୫ ॥ ଜ୍ଞାନୀ ମୁନି ଆଦର ସହିତ କୁଶଳ ସମାଚାର ପଚାରି ସେମାନଙ୍କୁ ଶ୍ରେଷ୍ଠ ଆସନରେ ବସାଇଲେ । ତଦନନ୍ତର ବହୁତ ପ୍ରକାରେ ପ୍ରଭୁଙ୍କୁ ପୂଜା କରି କହିଲେ, "ମୋ ସମ ଭାଗ୍ୟବାନ୍ ଆଜି ଅନ୍ୟ କେହି ନାହିଁ ।" ॥ ୬ ॥ ସେଠାରେ ଥିବା ଅନ୍ୟାନ୍ୟ ସମସ୍ତ ମୁନି ଆନନ୍ଦକନ୍ଦ ଶ୍ରୀରାମଙ୍କ ଦର୍ଶନ ଲାଭ କରି ଆନନ୍ଦିତ ହେଲେ ॥ ୭ ॥ ଦୋହା .— ମୁନିସଭା ମଧ୍ୟରେ ଶ୍ରୀରାମଚନ୍ଦ୍ର ପ୍ରତ୍ୟେକ ମୁନିଙ୍କ ଆଡ଼କୁ ମୁହଁ କରି ବସିଗଲେ । ମୁନିବୃନ୍ଦ ତାଙ୍କ ଆଡ଼କୁ ଚାହିଁ ଏପରି ଦେଖାଯାଉଥା'ନ୍ତି, ସତେ ଯେପରି ଚକୋରସମୂହ ଶରତ-ପୂର୍ଣ୍ଣିମାର ଚନ୍ଦ୍ର ଆଡ଼କୁ ଅପଲକ ନୟନରେ ଅନାଉଅଛନ୍ତି ! ॥ ୧୨ ॥

ତବ ରଘୁବୀର କହା ମୁନି ପାହୀଁ । ତୁହ୍ମ ସନ ପ୍ରଭୁ ଦୁରାଓ କଛୁ ନାହୀଁ ॥
ତୁହ୍ମ ଜାନହୁ ଜେହି କାରନ ଆୟଉଁ । ତାତେଁ ତାତ ନ କହି ସମୁଝାୟଉଁ ॥୧॥
ଅବ ସୋ ମନ୍ତ୍ର ଦେହୁ ପ୍ରଭୁ ମୋହୀ । ଜେହି ପ୍ରକାର ମାରୌଁ ମୁନିଦ୍ରୋହୀ ॥
ମୁନି ମୁସୁକାନେ ସୁନି ପ୍ରଭୁ ବାନୀ । ପୂଛେହୁ ନାଥ ମୋହି କା ଜାନୀ ॥୨॥
ତୁହ୍ମରେଇଁ ଭଜନ ପ୍ରଭାବ ଅଘାରୀ । ଜାନଉଁ ମହିମା କଛୁକ ତୁହ୍ମାରୀ ॥
ଊମରି ତରୁ ବିସାଲ ତବ ମାୟା । ଫଲ ବ୍ରହ୍ମାଣ୍ଡ ଅନେକ ନିକାୟା ॥୩॥
ଜୀବ ଚରାଚର ଜଂତୁ ସମାନା । ଭୀତର ବସହିଁ ନ ଜାନହିଁ ଆନା ॥
ତେ ଫଲ ଭଚ୍ଛକ କଠିନ କରାଲା । ତବ ଭୟଁ ଡରତ ସଦା ସୋଉ କାଲା ॥୪॥
ତେ ତୁହ୍ମ ସକଲ ଲୋକପତି ସାଈଁ । ପୂଁଛେହୁ ମୋହି ମନୁଜ କୀ ନାଈଁ ॥
ୟହ ବର ମାଗଉଁ କୃପାନିକେତା । ବସହୁ ହୃଦୟଁ ଶ୍ରୀ ଅନୁଜ ସମେତା ॥୫॥

---

କହିଲେ ଶ୍ରୀ ରଘୁବୀର ତହୁଁ ମୁନୀଶଙ୍କୁ । ପ୍ରଭୁ, କେଉଁ କଥା ନାହିଁ ଅଜ୍ଞାତ ତୁମଙ୍କୁ ॥
ତୁମେ ଜାଣିଅଛ ଯେଉଁ କାରଣେ ଆସିଛୁ । ଦେବ ! ସେହି ହେତୁ କହି ନ ବୁଝାଏ କିଛୁ॥୧॥
ଏବେ ସେ ମନ୍ତ୍ରଣା ମୋତେ ଦିଅ ମୁନୀଶ୍ୱର । ଯେ ଭାବେ ମୁନିଦ୍ରୋହୀଙ୍କୁ ମାରିବି ସତ୍ୱର ॥
ମଧୁର ହସିଲେ ମୁନି ଶୁଣି ପ୍ରଭୁ ବାଣୀ । ପଚାରିଲ ଦୀନନାଥ' ମୋତେ କିଏ ଜାଣି ॥୨॥
ତୁମ ଭଜନ ପ୍ରତାପ ପ୍ରଭାବେ, ତୁମର । ମହିମା ଜାଣଇ କିଛି ଗୁଣ ଅଘ-ଅରି ॥
ଡିମିରି ତରୁ ବିଶାଳ ମାୟା ଯେ ତୁମର । ଅନେକାନେକ ବ୍ରହ୍ମାଣ୍ଡ ଫଳ ସେ ବୃକ୍ଷର ॥୩॥
ଚରାଚର ଜୀବ ତହିଁ ଜୀବାଣୁ ସମାନ । ଭିତରେ ରହନ୍ତି, କିଛି ନ ଜାଣନ୍ତି ଆନ ॥
ସେ ଫଳ ଭକ୍ଷକ ଅଟେ କାଳ ବିକଟାଳ । ତୁମ ଭୟେ ଭୟ କରେ ସଦା ସେହି କାଳ ॥୪॥
ସେ ତୁମେ ସମସ୍ତ ଲୋକ ଲୋକପାଳଧବ । ପଚାରୁଛ ମୋତେ ଯେସନ୍ତେ ପ୍ରାକୃତ ମାନବ ॥
ଏହି ବର ମାଗୁଅଛି କରୁଣା-ନିଳୟ । ସୀତା ଅନୁଜ ସହିତ ବସ ମୋ ହୃଦୟ ॥୫॥

---

ଚୌପାଇ :—ତତ୍ପରେ ଶ୍ରୀରାମ ମୁନିଙ୍କୁ କହିଲେ, "ହେ ପ୍ରଭୋ ! ଆପଣଙ୍କଠାରେ ତ କିଛି ଗୋପନୀୟ ନାହିଁ । ମୁଁ ଯେଉଁ କାରଣରୁ ଆସିଅଛି, ତାହା ଆପଣ ତ ଜାଣନ୍ତି । ହେ ତାତ ' ଏହି ହେତୁ ମୁଁ ଆପଣଙ୍କୁ ବୁଝାଇ କିଛି କହିଲି ନାହିଁ ॥ ୧ ॥ ହେ ପ୍ରଭୋ ! ଆପଣ ମୋତେ ସେହି ମନ୍ତ୍ର ବା ପରାମର୍ଶ ଦିଅନ୍ତୁ, ଯେପରି କି ମୁଁ ମୁନିଦ୍ରୋହୀ ରାକ୍ଷସମାନଙ୍କୁ ମାରି ପକାଇବି ।" ପ୍ରଭୁଙ୍କ ବାଣୀ ଶୁଣି ମୁନି ମୃଦୁକ ହସିଲେ ଏବଂ କହିଲେ, "ଆପଣ କ'ଣ ବିଚାରି ମୋତେ ଏ ପ୍ରଶ୍ନ ପଚାରିଲେ ? ॥ ୨ ॥ ହେ ପାପନାଶକ ! ମୁଁ ତ ଆପଣଙ୍କ ଭଜନ-ପ୍ରଭାବ ଯୋଗେ ଆପଣଙ୍କର ଅଳ୍ପ କିଛି ମହିମା ଜାଣେ । ଆପଣଙ୍କ ମାୟା ବିଶାଳ ଡିମିରି ବୃକ୍ଷ ପରି । ଅନେକ ବ୍ରହ୍ମାଣ୍ଡସମୂହ ତାହାର ଫଳ ॥ ୩ ॥ ଚରାଚର ଜୀବ ସକଳ ଡିମିରି ଫଳ ମଧ୍ୟସ୍ଥ କୀଟାଣୁ ପରି ସେହି ବ୍ରହ୍ମାଣ୍ଡ ମଧ୍ୟରେ ବାସ କରନ୍ତି ଏବଂ ସେମାନେ ସେହି କ୍ଷୁଦ୍ର ଜଗତ ଛଡ଼ା ଅନ୍ୟ କିଛି ଜାଣନ୍ତି ନାହିଁ । ସେହି ସବୁ ଫଳର ଭକ୍ଷକ କଠୋର ଓ କରାଳ କାଳ । ସେହି କାଳ ମଧ୍ୟ ସଦାସର୍ବଦା ଆପଣଙ୍କୁ

ଅବିରଲ ଭଗତି ବିରତି ସତସଂଗା । ଚରନ ସରୋରୁହ ପ୍ରୀତି ଅଭଂଗା ॥
ଜଦ୍ୟପି ବ୍ରହ୍ମ ଅଖଣ୍ଡ ଅନଂତା । ଅନୁଭବ ଗମ୍ୟ ଭଜହିଁ ଜେହି ସଂତା ॥୬॥
ଅସ ତବ ରୂପ ବଖାନଉଁ ଜାନଉଁ । ଫିରି ଫିରି ସଗୁନ ବ୍ରହ୍ମ ରତି ମାନଉଁ ॥
ସଂତତ ଦାସନ୍ହ ଦେହୁ ବଡ଼ାଈ । ତାତେଁ ମୋହି ପୂଁଛେହୁ ରଘୁରାଈ ॥୭॥
ହୈ ପ୍ରଭୁ ପରମ ମନୋହର ଠାଉଁ । ପାବନ ପଂଚବଟୀ ତେହି ନାଉଁ ॥
ଦଣ୍ଡକ ବନ ପୁନୀତ ପ୍ରଭୁ କରହୂ । ଉଗ୍ର ସାପ ମୁନିବର କର ହରହୂ ॥୮॥
ବାସ କରହୁ ତହଁ ରଘୁକୁଲ ରାୟା । କୀଜେ ସକଲ ମୁନିନ୍ହ ପର ଦାୟା ॥
ଚଲେ ରାମ ମୁନି ଆୟସୁ ପାଈ । ତୁରତହିଁ ପଂଚବଟୀ ନିଅରାଈ ॥୯॥

---

ଭକ୍ତି ବୈରାଗ୍ୟ ସଜ୍ଜନ ସଙ୍ଗ ଅବିରଳ । ଚରଣ-ସରୋଜେ ପ୍ରୀତି ଉପୁଜୁ ଅଟଳ ॥
ଯଦ୍ୟପି ବ୍ରହ୍ମ ବ୍ୟାପକ ଅଖଣ୍ଡ ଅନନ୍ତ । ଅନୁଭବ-ଗମ୍ୟ ଯାରେ ସୁମରନ୍ତି ସନ୍ତ ॥୬॥
ଏମନ୍ତ ରୂପ ତୁମର କହଇ ଜାଣଇ । ତଥାପି ସଗୁଣ ବ୍ରହ୍ମେ ପ୍ରୀତି ମୁଁ କରଇ ॥
ସତତ ଦାସଙ୍କୁ ଦିଅ ବଡ଼ାଇ ଆଦର । ସେ କାରଣେ ପଚାରୁଛ ମୋତେ, ରଘୁବର ॥୭॥
ଅଛି ପ୍ରଭୁ ସ୍ଥାନ ଏକ ପରମ ଶୋଭନ । ପଞ୍ଚବଟୀ ନାମ ତାର ଅତ୍ୟନ୍ତ ପାବନ ॥
ଦଣ୍ଡକ ବନକୁ ପ୍ରଭୁ, ପବିତ୍ର କରନ୍ତୁ । ଉଗ୍ର ଅଭିଶାପ ମୁନିବରଙ୍କ ହରନ୍ତୁ ॥୮॥
ନିବାସ କରିଣ ତହିଁ ପ୍ରଭୁ ରଘୁପତି । କରନ୍ତୁ ଦୟା ସମସ୍ତ ମୁନିଜନ ପ୍ରତି ॥
ଆଜ୍ଞାଲଭି କରି ତହୁଁ ଶ୍ରୀରାମ ଚଳିଲେ । ଶୀଘ୍ର ପଞ୍ଚବଟୀ ବନ ନିକଟ ହୋଇଲେ ॥୯॥

---

ତରେ ॥ ୪ ॥ ସେହି ପ୍ରଭୁ ଆପଣ ସମସ୍ତ ଲୋକପାଳଙ୍କ ସ୍ୱାମୀ ହୋଇ ସୁଦ୍ଧା ମୋତେ ସାଧାରଣ ମନୁଷ୍ୟ ପରି ପ୍ରଶ୍ନ କଲେ ! ହେ କୃପାଧାମ ! ମୁଁ ଏହି ବର ଆପଣଙ୍କୁ ମାଗୁଛି ଯେ, ଆପଣ ସୀତା ଓ ସାନଭାଇ ଲକ୍ଷ୍ମଣଙ୍କ ସମେତ ମୋ ହୃଦୟରେ ସଦାସର୍ବଦା ନିବାସ କରନ୍ତୁ ॥ ୫ ॥ ପ୍ରଗାଢ଼ ଭକ୍ତି, ବୈରାଗ୍ୟ, ସତ୍ସଙ୍ଗ ଓ ଆପଣଙ୍କ ଚରଣ-କମଳରେ ଅତୁଟ ପ୍ରେମ ମୋତେ ମିଳୁ । ଯଦ୍ୟପି ଆପଣ ଅଖଣ୍ଡ ଓ ଅନନ୍ତ ବ୍ରହ୍ମ, ଆପଣଙ୍କୁ ଅନୁଭବ ଦ୍ୱାରା ହିଁ ଜାଣିହୁଏ ଏବଂ ସନ୍ଥମାନେ ଆପଣଙ୍କର ଭଜନ କରନ୍ତି । ଯଦ୍ୟପି ମୁଁ ଆପଣଙ୍କର ଏମନ୍ତ ରୂପକୁ ଜାଣେ ଏବଂ ତାହାର ବର୍ଣ୍ଣନା କରେ, ତଥାପି ଫେରି ଫେରି ମୁଁ ଆପଣଙ୍କର କେବଳ ସଗୁଣ ବ୍ରହ୍ମଙ୍କଠାରେ (ଏହି ସୁନ୍ଦର ସ୍ୱରୂପଠାରେ) ପ୍ରେମ ମାନେ । ଆପଣ ସେବକଗଣଙ୍କୁ ସଦାସର୍ବଦା ଗୌରବ ଦେଇ ଆସିଛନ୍ତି । ସେହିହେତୁ ହେ ରଘୁନାଥ ! ଆପଣ ମୋତେ ପଚାରିଅଛନ୍ତି ॥ ୬-୭ ॥ ହେ ପ୍ରଭୋ ! ଏକ ପରମ ମନୋହର ଓ ପବିତ୍ର ସ୍ଥାନ ଅଛି । ତାହାର ନାମ ପଞ୍ଚବଟୀ । ହେ ପ୍ରଭୋ ! ପଞ୍ଚବଟୀ ଥିବା (ଧ୍ୱସ୍ତବିଧ୍ୱସ୍ତ ଓ ଅପବିତ୍ର) ଦଣ୍ଡକାରଣ୍ୟକୁ ଆପଣ ପବିତ୍ର ଓ ସବୁଜ-ଶ୍ୟାମଳ କରନ୍ତୁ ଏବଂ ମୁନିବର ଗୌତମଙ୍କର ଋଷିମାନଙ୍କ ପ୍ରତି (କିମ୍ବା ଶୁକ୍ରାଚାର୍ଯ୍ୟଙ୍କର ଦଣ୍ଡନୃପଙ୍କ ପ୍ରତି) କଠୋର ଅଭିଶାପ ହରଣ କରିନିଅନ୍ତୁ ॥ ୮ ॥ ହେ ରଘୁକୁଳସ୍ୱାମି ! ସମସ୍ତ ମୁନିଙ୍କ ପ୍ରତି ଆପଣ ଦୟା ପ୍ରକାଶ କରି ସେହିଠାରେ ନିବାସ କରନ୍ତୁ ।” ମୁନିଙ୍କ ଆଜ୍ଞା ପାଇ

ଗୀଧରାଜ ସୈଁ ଭେଁଟ ଭଇ ବହୁ ବିଧି ପ୍ରୀତି ବଢାଇ ।
ଗୋଦାବରୀ ନିକଟ ପ୍ରଭୁ ରହେ ପରନ ଗୃହ ଛାଇ ॥୧୩॥
ଜବ ତେଁ ରାମ କୀହ୍ନ ତହଁ ବାସା । ସୁଖୀ ଭଏ ମୁନି ବୀତୀ ତ୍ରାସା ॥
ଗିରି ବନ ନଦୀଁ ତାଲ ଛବି ଛାଏ । ଦିନ ଦିନ ପ୍ରତି ଅତି ହୋହିଁ ସୁହାଏ ॥୧॥
ଖଗ ମୃଗ ବୃନ୍ଦ ଅନଂଦିତ ରହହୀଁ । ମଧୁପ ମଧୁର ଗୁଂଜତ ଛବି ଲହହୀଁ ॥
ସୋ ବନ ବରନି ନ ସକ ଅହିରାଜା । ଜହାଁ ପ୍ରଗଟ ରଘୁବୀର ବିରାଜା ॥୨॥
ଏକ ବାର ପ୍ରଭୁ ସୁଖ ଆସୀନା । ଲଛିମନ ବଚନ କହେ ଛଲହୀନା ॥
ସୁର ନର ମୁନି ସଚରାଚର ସାଇଁ । ମେଁ ପୂଛଉଁ ନିଜ ପ୍ରଭୁ କୀ ନାଇଁ ॥୩॥
ମୋହି ସମୁଝାଇ କହହୁ ସୋଇ ଦେବା । ସବ ତଜି କରୌଁ ଚରନରଜ ସେବା ॥
କହହୁ ଜ୍ଞାନ ବିରାଗ ଅରୁ ମାୟା । କହହୁ ସୋ ଭଗତି କରହୁ ଜେହିଁ ଦାୟା ॥୪॥

---

ଗୃଧ୍ରରାଜ ସଙ୍ଗେ ହୋଇଲା ମିଳନ ଅତି ପ୍ରୀତି ବଢାଇଣ ।
ଗୋଦାବରୀ ପାଖେ ପ୍ରଭୁ କଲେ ବାସ ପର୍ଣ୍ଣକୁଟୀର ରଚିଣ ॥୧୩॥
ଯେଉଁ ଦିନୁ ରାମ ତହିଁ କରିଲେ ନିବାସ । ସୁଖୀ ହେଲେ ମୁନିଗଣ ଦୂର ହେଲା ତ୍ରାସ ॥
ଗିରି ନଦୀ ପୁଷ୍କରିଣୀ ବନ ସୁଶୋଭିତ । ଦିନୁଦିନ ହେଲେ ବହୁ ଶୋଭାରେ ପୂରିତ ॥୧॥
ଆନନ୍ଦରେ ଖଗ ମୃଗ ନିକର ରହନ୍ତି । ମଧୁପ ମୃଦୁ ଗୁଞ୍ଜରି ସୁଷମା ଲଭନ୍ତି ॥
ବର୍ଣ୍ଣି ନ ପାରେ ସେ ବନ ଶୋଭା ଅହିରାଜ । ପ୍ରତ୍ୟକ୍ଷରେ ବିରାଜନ୍ତି ଯହିଁ ରଘୁରାଜ ॥୨॥
ଏକଦା ସୁଖ ପୂର୍ବକ ପ୍ରଭୁ ସମାସୀନ । ଭାଷିଲେ ବଚନ ଲକ୍ଷ୍ମଣ ଛଳ ହୀନ ॥
ସୁର-ନର-ମୁନି-ଜୀବ ଚରାଚର ସ୍ୱାମି । ମୁଁ ପଚାରୁ ଅଛି ମୋର ପ୍ରଭୁଙ୍କ ପରାୟି ॥୩॥
ମୋ ଆଗେ କହନ୍ତୁ ଦେବ ! ତାହା ବୁଝାଇଣ । ସେବିବି ଚରଣରଜ ସକଳ ତେଜିଣ ॥
କହନ୍ତୁ ଜ୍ଞାନ ବୈରାଗ୍ୟ ମାୟା ଯେ ଆବର । କୁହ ସେ ଭକ୍ତି ଯହିଁରେ ଦୟା ତୁମେ କର ॥୪॥

---

ଶ୍ରୀରାମ ସେଠାରୁ ଚାଲିଗଲେ ଏବଂ ଶୀଘ୍ର ପଞ୍ଚବଟୀ ନିକଟରେ ପହଞ୍ଚିଲେ ॥ ୯ ॥
ଦୋହା :—ସେଠାରେ ଗୃଧ୍ରରାଜ (ଜଟାୟୁ) ସହ ତାଙ୍କର ସାକ୍ଷାତ ହେଲା । ତାହା ସଙ୍ଗେ ବହୁ ପ୍ରକାରେ ପ୍ରେମ ବଢାଇ ପ୍ରଭୁ ଶ୍ରୀରାମଚନ୍ଦ୍ର ଗୋଦାବରୀ ସମୀପରେ ପର୍ଣ୍ଣକୁଟୀର ନିର୍ମାଣ କରି ରହିବାକୁ ଲାଗିଲେ ॥ ୧୩ ॥ ଚୌପାଇ —ଶ୍ରୀରାମ ସେହି ସ୍ଥାନରେ ବାସ କରିବା ଦିନଠାରୁ ମୁନିଗଣ ସୁଖୀ ହେଲେ । ସେମାନଙ୍କ ଭୟ ଦୂର ହୋଇଗଲା । ପର୍ବତ, ବନ, ନଦୀ ଓ ସରୋବର ଛବିରେ ପରିପୂର୍ଣ୍ଣ ହୋଇଗଲେ । ସେମାନେ ଦିନକୁ ଦିନ ଅଧିକରୁ ଅଧିକ ଶୋଭା ପାଇବାକୁ ଲାଗିଲେ ॥୧॥ ପକ୍ଷୀ ଓ ପଶୁମାନେ ଆନନ୍ଦିତ ହୋଇ ବାସ କରୁଥା'ନ୍ତି ଏବଂ ଭ୍ରମରମାନେ ମଧୁର ଗୁଞ୍ଜନ କରି ଶୋଭା ପାଉଥାଆନ୍ତି । ଯେଉଁଠାରେ ଶ୍ରୀରାମ ପ୍ରତ୍ୟକ୍ଷ ରୂପରେ ବିରାଜମାନ, ସର୍ପରାଜ ଶେଷଦେବ ସୁଦ୍ଧା ସେହି ବନର ବର୍ଣ୍ଣନା କରିପାରିବେ ନାହିଁ ॥ ୨ ॥ ଏକଦା ପ୍ରଭୁ ଶ୍ରୀରାମ ସୁଖରେ ବସିଥାଆନ୍ତି । ସେତିକିବେଳେ ଲକ୍ଷ୍ମଣ ତାହାଙ୍କୁ ଛଳହୀନ ସରଳ ବଚନ କହିଲେ,

ଈସ୍ୱର ଜୀବହି ଭେଦ ପ୍ରଭୁ ସକଲ କହହୁ ସମୁଝାଇ ।
ଜାତେଁ ହୋଇ ଚରନ ରତି ସୋକ ମୋହ ଭ୍ରମ ଜାଇ ॥୧୪॥

ଥୋରେହି ମହଁ ସବ କହଉଁ ବୁଝାଈ । ସୁନହୁ ତାତ ମତି ମନ ଚିତ ଲାଈ ॥
ମୈଁ ଅରୁ ମୋର ତୋର ତୈଁ ମାୟା । ଜେହିଁ ବସ କୀହ୍ନେ ଜୀବ ନିକାୟା ॥୧॥
ଗୋ ଗୋଚର ଜହଁ ଲଗି ମନ ଜାଈ । ସୋ ସବ ମାୟା ଜାନେହୁ ଭାଈ ॥
ତେହି କର ଭେଦ ସୁନହୁ ତୁମ୍ହ ସୋଊ । ବିଦ୍ୟା ଅପର ଅବିଦ୍ୟା ଦୋଊ ॥୨॥
ଏକ ଦୁଷ୍ଟ ଅତିସୟ ଦୁଖରୂପା । ଜା ବସ ଜୀବ ପରା ଭବକୂପା ॥
ଏକ ରଚଇ ଜଗ ଗୁନ ବସ ଜାକେଁ । ପ୍ରଭୁ ପ୍ରେରିତ ନହିଁ ନିଜ ବଲ ତାକେଁ ॥୩॥

---

ଈଶ୍ୱର ଜୀବଙ୍କ ମଧ୍ୟେ ଯେ ପ୍ରଭେଦ କହି ସମସ୍ତ ବୁଝାଇ ।
ହୋଇବ ଯଦ୍ଦ୍ୱାରା ତବ ପଦେ ପ୍ରୀତି ଶୋକ ମୋହ ଭ୍ରମ ଯାଇ ॥୧୪॥

ସଂକ୍ଷେପରେ କହୁଅଛୁ ସେ ସବୁ ବୁଝାଇ । ଶୁଣ ଭ୍ରାତ ! ମତି ଚିତ୍ତ ମାନସ ଲଗାଇ ॥
'ମୁଁ' 'ମୋର' ତୁ 'ତୋର' ସବୁ ମାୟାରେ ସୁମାରି । ଯେ ବଶ କରି ରଖିଛି ଜୀବ ଦେହଧାରୀ॥୧॥
ଗୋଗୋଚର ଯାଇପାରେ ଯେତେଦୂର ମନ । ସେସବୁକୁ ମାୟା ବୋଲି ଜାଣ, ହେ ଲକ୍ଷ୍ମଣ ॥
ଶୁଣ ଭାଇ ! ତୁମେ ଏବେ ପ୍ରଭେଦ ତାହାର । ବିଦ୍ୟା ଆଉର ଅବିଦ୍ୟା ଉଭୟ ପ୍ରକାର ॥୨॥
ଏକ ଅତି ଦୁଷ୍ଟା, ଦୁଃଖ ରୂପିଣୀ ଅଟଇ । ଯା ଅଧୀନ ଜୀବ ଭବ-କୂପରେ ପଡଇ ॥
ଏକ ବିରଚଇ ବିଶ୍ୱ, ଗୁଣ ବଶ ଯାର । ପ୍ରଭୁ ପ୍ରେରଣାରେ, ନିଜ ବଳ ନାହିଁ ତାର ॥୩॥

---

"ହେ ଦେବ-ନର-ମୁନି-ଚରାଚର ସ୍ୱାମୀ ! ମୁଁ ଆପଣଙ୍କୁ ନିଜର ପ୍ରଭୁ ବୋଲି ମନେ କରି ପଚାରୁଛି ॥ ୩ ॥ ହେ ଦେବ ! ମୁଁ ଯେପରି ସବୁ ତ୍ୟାଗ କରି ଆପଣଙ୍କ ଚରଣ-ରଜମାନଙ୍କର ସେବା କରିପାରିବି, ତାହାହିଁ କେବଳ ମୋତେ କହି ଦିଅନ୍ତୁ । ଜ୍ଞାନ, ବୈରାଗ୍ୟ ଓ ମାୟାର ବର୍ଣ୍ଣନା କରନ୍ତୁ ଏବଂ ଯେଉଁ ଭକ୍ତି ଯୋଗେ ଆପଣ ଦୟା କରନ୍ତି, ସେହି ଭକ୍ତି ମୋତେ କୁହନ୍ତୁ ॥୪॥ ଦୋହା :—ହେ ପ୍ରଭୋ ! ଈଶ୍ୱର ଓ ଜୀବର ଭେଦ ଆଦି ସବୁ ବିଷୟ ମୋତେ ବୁଝାଇ କୁହନ୍ତୁ—ଯାହା ଯୋଗେ ଆପଣଙ୍କ ଚରଣରେ ମୋର ପ୍ରୀତି ହେବ ଏବଂ ମୋ ମନରୁ ଶୋକ, ମୋହ ଓ ଭ୍ରମ ନଷ୍ଟ ହୋଇଯିବ ॥ ୧୪ ॥ ଚୌପାଇ :—ଶ୍ରୀରାମ କହିଲେ, "ହେ ବତ୍ସ ! ମୁଁ ଚୁମ୍ନକରେ ସବୁ ବୁଝାଇ କହି ଦେଉଛି । ତୁମେ ମନ, ଚିତ୍ତ ଓ ବୁଦ୍ଧି ଲଗାଇ ଶୁଣ । 'ମୁଁ' ଓ 'ମୋର', 'ତୁ' ଓ 'ତୋର'—ଏହାହିଁ ମାୟା; ଏହାହିଁ ସମସ୍ତ ଜୀବଙ୍କୁ ବଶୀଭୂତ କରି ରଖିଅଛି ॥ ୧ ॥ ଇନ୍ଦ୍ରିୟ-ଗୋଚର ସମସ୍ତ ବିଷୟକୁ ଏବଂ ଯେତେ ଦୂର ମନ ଯାଇପାରେ, ହେ ଭାଇ ! ସେ ସବୁକୁ ମାୟା ବୋଲି ଜାଣିବ । ତାହାର ମଧ୍ୟ, ଗୋଟିଏ ବିଦ୍ୟା ଓ ଅନ୍ୟଟି ଅବିଦ୍ୟା, ଏହିପରି ଦୁଇଟି ଭେଦ ତୁମେ ଶୁଣ— ॥ ୨ ॥ ଗୋଟିଏ (ଅବିଦ୍ୟା) ଦୁଷ୍ଟ ବା ଦୋଷଯୁକ୍ତ ଏବଂ ଅତ୍ୟନ୍ତ ଦୁଃଖରୂପା । ତାହାର ବଶୀଭୂତ ହୋଇ ଜୀବ ସଂସାର-କୂପରେ ପଡେ । ଆଉ ଗୋଟିଏ ହେଉଛି ବିଦ୍ୟା । ଗୁଣ ତାହାର ବଶୀଭୂତ ଏବଂ ଏହା ଜଗତ

ଜ୍ଞାନ ମାନ ଜହଁ ଏକଉ ନାହୀଁ । ଦେଖ ବ୍ରହ୍ମ ସମାନ ସବ ମାହୀଁ ॥
କହିଅ ତାତ ସୋ ପରମ ବିରାଗୀ । ତୃନ ସମ ସିଦ୍ଧି ତୀନି ଗୁନ ତ୍ୟାଗୀ ॥୪॥
ମାୟା ଈସ ନ ଆପୁ କହୁଁ ଜାନ କହିଅ ସୋ ଜୀବ ।
ବଂଧ ମୋଚ୍ଛ ପ୍ରଦ ସର୍ବପର ମାୟା ପ୍ରେରକ ସୀବ ॥୧୫॥
ଧର୍ମ ତେଁ ବିରତି ଜୋଗ ତେଁ ଜ୍ଞାନା । ଜ୍ଞାନ ମୋଚ୍ଛପ୍ରଦ ବେଦ ବଖାନା ॥
ଜା ତେଁ ବେଗି ଦ୍ରବଉଁ ମେଁ ଭାଈ । ସୋ ମମ ଭଗତି ଭଗତ ସୁଖଦାଈ ॥୧॥
ସୋ ସୁତଂତ୍ର ଅବଲଂବ ନ ଆନା । ତେହି ଆଧୀନ ଜ୍ଞାନ ବିଜ୍ଞାନା ॥
ଭଗତି ତାତ ଅନୁପମ ସୁଖମୂଲା । ମିଲଇ ଜୋ ସଂତ ହୋଇଁ ଅନୁକୂଲା ॥୨॥
ଭଗତି କି ସାଧନ କହଉଁ ବଖାନୀ । ସୁଗମ ପନ୍ଥ ମୋହି ପାୱହିଁ ପ୍ରାନୀ ॥
ପ୍ରଥମହି ବିପ୍ର ଚରନ ଅତି ପ୍ରୀତୀ । ନିଜ ନିଜ କର୍ମ ନିରତ ଶ୍ରୁତି ରୀତୀ ॥୩॥

---

ଜ୍ଞାନ ସେ କୁହାଏ ଯହିଁ ନାହିଁ କିଛି ମାନ । ସମସ୍ତଙ୍କ ମଧ୍ୟେ ବ୍ରହ୍ମ ଦେଖଇ ସମାନ ॥
କୁହାଯାଏ ଭ୍ରାତ ! ସେହି ପରମ ବୈରାଗୀ । ତୃଣ ସଦୃଶ ଯେ ସିଦ୍ଧି, ତିନି ଗୁଣ ତ୍ୟାଗୀ ॥୪॥
ଯେ ନ ଜାଣେ ମାୟା ଈଶ ନିଜକୁ ସେ ଜୀବ କୁହାଏ ଆବର ।
ବନ୍ଧ-ମୋକ୍ଷଦାତା ସର୍ବାତୀତ ଭ୍ରାତା, ମାୟା-ପ୍ରେରକ ଈଶ୍ୱର ॥୧୫॥
ଧର୍ମରୁ ବୈରାଗ୍ୟ, ଜ୍ଞାନ ଯୋଗରୁ ହୁଅଇ । ଜ୍ଞାନ ମୋକ୍ଷପ୍ରଦ, ବେଦ ବର୍ଣ୍ଣନ କରଇ ॥
ଯହିଁରେ ଶୀଘ୍ର ପ୍ରସନ୍ନ ହୁଅଇ ମୁଁ, ଭାଇ । ସେ ମୋର ଭକ୍ତି କୁହାଏ ଭକ୍ତ ସୁଖଦାୟୀ ॥୧॥
ସ୍ୱତନ୍ତ୍ର ସେ ଅନ୍ୟ ଅବଲମ୍ବନ ବିହୀନ । ଜ୍ଞାନ ବିଜ୍ଞାନ ଅଟନ୍ତି ତାହାର ଅଧୀନ ॥
ଭକ୍ତି ଭ୍ରାତ ! ଅତି ଅନୁପମ ସୁଖ-ମୂଳ । ମିଳଇ, ଯେବେ ହୁଅନ୍ତି ସନ୍ଥ ଅନୁକୂଳ ॥୨॥
ଭକ୍ତିର ସାଧନ ଶୁଣ, କହୁଛି ବଖାଣି । ଲଭନ୍ତି ଯେଉଁ ସୁଗମ ପଥେ ମୋତେ ପ୍ରାଣୀ ॥
ପ୍ରଥମ, ବିପ୍ର ଚରଣେ ଅତିଶୟ ପ୍ରୀତି । ନିଜ ନିଜ କର୍ମେ ବ୍ୟସ୍ତ ସଦା ଶ୍ରୁତି ରୀତି ॥୩॥

---

ରଚନା କରେ । ଏହି ବିଦ୍ୟା ପ୍ରଭୁଙ୍କ ଦ୍ୱାରା ହିଁ ପ୍ରେରିତ ହୁଏ । ତାହାର ନିଜର ବଳ ଟିକିଏ ହେଲେ ସୁଦ୍ଧା ନାହିଁ ॥୩॥ ଯେଉଁଥିରେ ମାନ ଆଦି ଗୋଟିଏ ହେଲେ ସୁଦ୍ଧା ଦୋଷ ନାହିଁ, ତାହା ହେଉଛି ଜ୍ଞାନ । ତାହା ସମସ୍ତଙ୍କଠାରେ ବ୍ରହ୍ମଙ୍କୁ ସମାନ ରୂପରେ ଦେଖେ । ହେ ବତ୍ସ ! ଯେ ସମସ୍ତ ସିଦ୍ଧି ଓ ତିନି ଗୁଣକୁ ତୃଣବତ୍ ତ୍ୟାଗ କରି ଦେଇଛି, ତାହାକୁ ପରମ ବୈରାଗୀ ବୋଲି କହିବା ଉଚିତ ॥୪॥ ଦୋହା:—ଯେ ମାୟାକୁ, ଈଶ୍ୱରଙ୍କୁ ଓ ଆପଣାର ସ୍ୱରୂପକୁ ଜାଣେ ନାହିଁ, ତାହାକୁ ଜୀବ କହିବା ଉଚିତ । ଯେ କର୍ମାନୁସାରେ ବନ୍ଧନ ଓ ମୋକ୍ଷର ଦାତା, ସମସ୍ତଙ୍କର ଊର୍ଦ୍ଧ୍ୱରେ ଓ ମାୟାର ପ୍ରେରକ, ସେହି ହେଉଛନ୍ତି ଈଶ୍ୱର ॥୧୫॥ ଚୌପାଈ:—ଧର୍ମାଚରଣରୁ ବୈରାଗ୍ୟ ଏବଂ ଯୋଗରୁ ଜ୍ଞାନ ଜାତ ହୁଏ ଏବଂ ଜ୍ଞାନ ମୋକ୍ଷ ପ୍ରଦାନ କରେ ବୋଲି ବେଦଗଣ ବର୍ଣ୍ଣନା କରିଛନ୍ତି । ହେ ଭାଇ ! ଯାହା ଯୋଗେ ମୁଁ ଶୀଘ୍ର ପ୍ରସନ୍ନ ହୁଏ, ତାହା ହେଉଛି ମୋ ପ୍ରତି ଭକ୍ତି; ମୋ ପ୍ରତି ଏହି ଭକ୍ତି ଭକ୍ତମାନଙ୍କୁ ସୁଖ ପ୍ରଦାନ କରେ ॥ ୧ ॥ ଉକ୍ତ ଭକ୍ତି ସ୍ୱତନ୍ତ୍ର । ତାହା ଜ୍ଞାନ-ବିଜ୍ଞାନ ଆଦି କୌଣସି

ଏହି କର ଫଲ ପୁନି ବିଷୟ ବିରାଗା । ତବ ମମ ଧର୍ମ ଉପଜ ଅନୁରାଗା ॥
ଶ୍ରବନାଦିକ ନବ ଭକ୍ତି ଦୃଢ଼ାହୀଁ । ମମ ଲୀଲା ରତି ଅତି ମନ ମାହୀଁ ॥୪॥
ସଂତ ଚରନ ପଙ୍କଜ ଅତି ପ୍ରେମା । ମନ କ୍ରମ ବଚନ ଭଜନ ଦୃଢ଼ ନେମା ॥
ଗୁରୁ ପିତୁ ମାତୁ ବଂଧୁ ପତି ଦେବା । ସବ ମୋହି କହଁ ଜାନୈ ଦୃଢ଼ ସେବା ॥୫॥
ମମ ଗୁନ ଗାୱତ ପୁଲକ ସରୀରା । ଗଦଗଦ ଗିରା ନୟନ ବହ ନୀରା ॥
କାମ ଆଦି ମଦ ଦମ୍ଭ ନ ଜାକେଁ । ତାତ ନିରଂତର ବସ ମୈଁ ତାକେଁ ॥୬॥

ବଚନ କର୍ମ ମନ ମୋରି ଗତି ଭଜନୁ କରହିଁ ନିଷ୍କାମ ।
ତିନ୍ହ କେ ହୃଦୟ କମଲ ମହୁଁ କରଉଁ ସଦା ବିଶ୍ରାମ ॥୧୬॥

---

ଏହାର ଫଲ ଅଟଇ ବିଷୟରୁ ବୈରାଗ୍ୟ । ତେବେ ମୋ ଚରଣେ ଉପୁଜଇ ଅନୁରାଗ ॥
ଶ୍ରବଣାଦି ନବବିଧ ଭକ୍ତି ଦୃଢ କରେ । ଅତ୍ୟଧିକ ସ୍ନେହ ମନ ମୋ ଲୀଳା ଉପରେ ॥୪॥
ସନ୍ଥ ଚରଣ-ପଙ୍କଜେ ପ୍ରୀତି ମନୋରମ । ମନ କର୍ମ ବାକ୍ୟେ ଦୃଢ ଭଜନ ନିୟମ ॥
ଗୁରୁ ଜନନୀ ଜନକ ବନ୍ଧୁ ସ୍ୱାମୀ ଦେବା । ସବୁ ମୋତେ ଜାଣିକରେ ଦୃଢଚିତ୍ତେ ସେବା ॥୫॥
ମୋର ଗୁଣ ଗାଇ ଗାଇ ପୁଲକ ଶରୀର । ଗଦ୍‌ଗଦ ବଚନ ବହେ ନୟନରୁ ନୀର ॥
କାମ ମଦ ଦମ୍ଭ ଆଦି ନାହିଁ କିଛି ଯାର । ଭ୍ରାତା ! ନିରନ୍ତର ବଶ ଅଟେ ମୁଁ ତାହାର ॥୬॥

ମୁହିଁ ଗତି, ମନ-କର୍ମ-ବାକ୍ୟେ କରି ବିଶ୍ୱାସ, ଭଜେ ନିଷ୍କାମ ।
ତାହାର ହୃଦୟ-କମଳ-ନିଳୟେ କରଇ ସଦା ବିଶ୍ରାମ ॥୧୬॥

---

ଅନ୍ୟ ଉପାୟ ବା ସାଧନକୁ ଅପେକ୍ଷା କରେ ନାହିଁ । ଜ୍ଞାନ-ବିଜ୍ଞାନ ପ୍ରଭୃତି ତ ତାହାର ଅଧୀନ । ହେ ତାତ ' ଭକ୍ତି ଅନୁପମ ଏବଂ ସୁଖର ମୂଳ । ତାହା ମଧ୍ୟ ଯେତେବେଳେ ସନ୍ଥକୁଳ ଅନୁକୂଳ ହୁଅନ୍ତି, ଭକ୍ତକୁ ମିଳେ ॥ ୨ ॥ ବର୍ତ୍ତମାନ ମୁଁ ଭକ୍ତିର ସାଧନଗୁଡିକ ବିସ୍ତୃତ ଭାବରେ ବର୍ଣ୍ଣନ କରୁଛି । ଏହା ସୁଗମ ମାର୍ଗ, କାରଣ ଏହାର ଯୋଗେ ଜୀବ ମୋତେ ଅନାୟାସରେ ଲାଭ କରେ । ପ୍ରଥମେ ତ ବ୍ରାହ୍ମଣଗଣଙ୍କ ଚରଣରେ ଅତିଶୟ ପ୍ରୀତି ହେବା ଯୁକ୍ତ । ବେଦର ରୀତି ଅନୁସାରେ ସମସ୍ତଙ୍କ ପକ୍ଷେ ଆପଣା ଆପଣା ବର୍ଣ୍ଣାଶ୍ରମ-ସମର୍ଥିତ କର୍ମରେ ଲାଗି ରହିବା ଆବଶ୍ୟକ ॥ ୩ ॥ ତତ୍ପରେ ଏହାର ଫଳ-ସ୍ୱରୂପ ଜୀବ ମନରେ ସମସ୍ତ ବିଷୟବାସନା ପ୍ରତି ବୈରାଗ୍ୟ ଜାତ ହେବ । ବୈରାଗ୍ୟ ଜାତ ହେବା ପରେ ମୋ ଧର୍ମ (ଭାଗବତ ଧର୍ମ) ପ୍ରତି ପ୍ରେମ ଉତ୍ପନ୍ନ ହେବ । ତଦନନ୍ତର ଶ୍ରବଣ ଆଦି ନ' ପ୍ରକାର ଭକ୍ତି ଦୃଢ ହେବ ଏବଂ ତାହାର ମନରେ ମୋର ଲୀଳା-ସମୂହ ପ୍ରତି ଅତ୍ୟନ୍ତ ପ୍ରେମ ଜାତ ହେବ ॥ ୪ ॥ ଯାହାର ମନରେ ସାଧୁସନ୍ଥଙ୍କ ଚରଣ ପ୍ରତି ପ୍ରେମ ଜାତ ହୁଏ; ମନ, ବଚନ ଓ କର୍ମରେ ଯେ, ଭଜନର ଦୃଢ ନିୟମ ଜାଣେ ଏବଂ ଯେ ମୋତେ ଗୁରୁ, ପିତା, ମାତା, ଭ୍ରାତା, ପତି ଓ ଦେବତା ଆଦି ସମସ୍ତ ରୂପରେ ଜାଣେ ଏବଂ ମୋ ସେବାରେ ଯେଉଁ ଜୀବ ଦୃଢ, ମୋର ଗୁଣ ଗାଇବା ସମୟରେ ଯାହାର ଶରୀର ପୁଲକିତ ହୁଏ, ବାଣୀ ଗଦ୍‌ଗଦ ହୋଇପଡେ ଏବଂ ନେତ୍ରରୁ ପ୍ରେମାଶ୍ରୁ ଜଳ

ଭଗତି ଜୋଗ ସୁନି ଅତି ସୁଖ ପାଓ୍ଵା । ଲଛିମନ ପ୍ରଭୁ ଚରନନ୍ହି ସିରୁ ନାଓ୍ଵା ॥
ଏହି ବିଧି ଗଏ କଛୁକ ଦିନ ବୀତୀ । କହତ ବିରାଗ ଜ୍ଞାନ ଗୁନ ନୀତୀ ॥୧॥
ସୂପନଖା ରାବନ କୈ ବହିନୀ । ଦୁଷ୍ଟ ହୃଦୟ ଦାରୁନ ଜସି ଅହିନୀ ॥
ପଞ୍ଚବଟୀ ସୋ ଗଇ ଏକ ବାରା । ଦେଖି ବିକଲ ଭଇ ଜୁଗଲ କୁମାରା ॥୨॥
ଭ୍ରାତା ପିତା ପୁତ୍ର ଉରଗାରୀ । ପୁରୁଷ ମନୋହର ନିରଖତ ନାରୀ ॥
ହୋଇ ବିକଲ ସକ ମନହି ନ ରୋକୀ । ଜିମି ରବିମନି ଦ୍ରବ ରବିହି ବିଲୋକୀ ॥୩॥
ରୁଚିର ରୂପ ଧରି ପ୍ରଭୁ ପହିଁ ଜାଈ । ବୋଲୀ ବଚନ ବହୁତ ମୁସୁକାଈ ॥
ତୁମ୍ହ ସମ ପୁରୁଷ ନ ମୋ ସମ ନାରୀ । ଯହ ସଁଜୋଗ ବିଧି ରଚା ବିଚାରୀ ॥୪॥

---

ଭକ୍ତି ଯୋଗ ଶୁଣି ଅତି ପ୍ରସନ୍ନ ହୋଇଲେ । ଲକ୍ଷ୍ମଣ ରାମ ଚରଣେ ଶିର ନୁଆଁଇଲେ ॥
ଏହି ଭାବେ କିଛି ଦିନ ହୋଇଲା ଯାପନ । ଜ୍ଞାନ ନୀତି ବୈରାଗ୍ୟାଦି କରନ୍ତେ କଥନ ॥୧॥
ଶୂର୍ପଣଖା ରାବଣର ଅଟଇ ଭଗିନୀ । ଦାରୁଣା ଦୁଷ୍ଟ-ହୃଦୟା ଯେସନ୍ତେ ଭୁଜଙ୍ଗିନୀ ॥
ଏକଦା ସେ ଆସି ପଞ୍ଚବଟୀ ବିପିନକୁ । ବିକଳ ହୋଇଲା ଦେଖି ବେନି କୁମାରଙ୍କୁ ॥୨॥
ଭ୍ରାତା, ପିତା, ପୁତ୍ର ଆଦି ଶୁଣ ଉରଗାରି । ମନୋହର ପୁରୁଷକୁ ନିରେଖଇ ନାରୀ ॥
ବ୍ୟାକୁଳ ହୋଇ ସମ୍ଭାଳି ନ ପାରେ ମନକୁ । ଯଥା ସୂର୍ଯ୍ୟମଣି ଦ୍ରବେ ବିଲୋକି ସୂର୍ଯ୍ୟଙ୍କୁ ॥୩॥
ରମ୍ୟ ରୂପ ଧରି ପ୍ରଭୁ ନିକଟେ ଗମିଲା । ବହୁତ ହସି ହସିଣ ବଚନ କହିଲା ॥
ତୁମ ସମ ପୁରୁଷ ମୋ ସମ ନାହିଁ ନାରୀ । ଏହି ସଂଯୋଗ ବିଧାତା ରଚିଛି ବିଚାରି ॥୪॥

---

ବିହିବାକୁ ଲାଗେ, ଆଉ ମଧ୍ୟ କାମ, ମଦ, ଦମ୍ଭ ଆଦି ଯାହାଠାରେ ନ ଥାଏ; ହେ ଭାଇ ! ମୁଁ ସଦାସର୍ବଦା ତାହାର ଅଧୀନରେ ହିଁ ରହେ ॥ ୫-୬ ॥ ଦୋହା :—ଯେଉଁମାନେ କର୍ମ, ବଚନ ଓ ମନ ସହିତ ମୁହିଁ ଗତି ବୋଲି ବିଶ୍ୱାସ କରନ୍ତି ଏବଂ ନିଷ୍କାମ ଭାବରେ ମୋହର ଭଜନ କରନ୍ତି, ସେହିମାନଙ୍କ ହୃଦୟ-କମଳରେ ମୁହିଁ ସଦା ବିଶ୍ରାମ କରେ ।” ॥ ୧୬ ॥ ଚୌପାଇ :—ଏହି ଭକ୍ତିଯୋଗ ବିଷୟ ଶୁଣି ଲକ୍ଷ୍ମଣ ଅତ୍ୟନ୍ତ ସୁଖ ଲାଭ କଲେ ଏବଂ ସେ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଚରଣରେ ଶିର ନୁଆଁଇଲେ । ଏହି ରୂପେ ବୈରାଗ୍ୟ, ଜ୍ଞାନ, ଗୁଣ ଓ ନୀତି କହୁ କହୁ କିଛି ଦିନ ଅତିବାହିତ ହୋଇଗଲା ॥୧॥ ଶୂର୍ପଣଖା ନାମକ ରାବଣର ଗୋଟିଏ ଭଉଣୀ ଥିଲା । ସେ ନାଗୁଣୀ ସମାନ ଭୟାନକ ଏବଂ ଦୁଷ୍ଟହୃଦୟା ଥିଲା । ଏକଦା ସେ ପଞ୍ଚବଟୀକୁ ଗଲା ଏବଂ ରାଜକୁମାର ଦୁହିଙ୍କୁ ଦେଖି କାମପୀଡ଼ାରେ ଆକୁଳ ହୋଇ ପଡ଼ିଲା ॥ ୨ ॥ କାକ ଭୁଷୁଣ୍ଡି କହନ୍ତି, “ହେ ଗରୁଡ ! ଶୂର୍ପଣଖା ସମାନ ରାକ୍ଷସୀ, ଧର୍ମଜ୍ଞାନଶୂନ୍ୟା କାମାନ୍ଧିନୀ ସ୍ତ୍ରୀ ଭ୍ରାତା, ପିତା ବା ପୁତ୍ର ଯେ ହୋଇଥାଉ ପଛକେ, କୌଣସି ମନୋହର ପୁରୁଷକୁ ଦେଖି ବିକଳ ହୋଇପଡ଼େ ଏବଂ ମନକୁ ନିୟନ୍ତ୍ରିତ-ସଂଯତ କରିପାରେ ନାହିଁ । ସୂର୍ଯ୍ୟକାନ୍ତମଣି ସୂର୍ଯ୍ୟଙ୍କୁ ଦେଖି ଯେପରି ତରଳିଯାଏ, ସେହିପରି ଶୂର୍ପଣଖାର ଅବସ୍ଥା ହେଲା ॥ ୩ ॥ ସେ ସୁନ୍ଦରୀ ରୂପ ଧରି ପ୍ରଭୁଙ୍କ ପାଖକୁ ଗଲା ଏବଂ ବହୁତ ହସି ହସି କହିଲା, “ତୁମ ପରି ଆଉ କେହି ପୁରୁଷ ନାହିଁ କି

ମମ ଅନୁରୂପ ପୁରୁଷ ଜଗ ମାହୀଁ । ଦେଖେଉଁ ଖୋଜି ଲୋକ ତିହୁଁ ନାହୀଁ ॥
ତାତେଁ ଅବ ଲଗି ରହିଉଁ କୁମାରୀ । ମନୁ ମାନା କଛୁ ତୁମ୍ହହି ନିହାରୀ ॥୫॥
ସୀତହି ଚିତଇ କହୀ ପ୍ରଭୁ ବାତା । ଅହଇ କୁମାର ମୋର ଲଘୁ ଭ୍ରାତା ॥
ଗଇ ଲଛିମନ ରିପୁ ଭଗିନୀ ଜାନୀ । ପ୍ରଭୁ ବିଲୋକି ବୋଲେ ମୃଦୁ ବାନୀ ॥୬॥
ସୁନ୍ଦରି ସୁନୁ ମୈଁ ଉନ୍ହ କର ଦାସା । ପରାଧୀନ ନହିଁ ତୋର ସୁପାସା ॥
ପ୍ରଭୁ ସମର୍ଥ କୋସଲପୁର ରାଜା । ଜୋ କଛୁ କରହିଁ ଉନହି ସବ ଛାଜା ॥୭॥
ସେବକ ସୁଖ ଚହ ମାନ ଭିଖାରୀ । ବ୍ୟସନୀ ଧନ ସୁଭ ଗତି ବିଭିଚାରୀ ॥
ଲୋଭୀ ଜସୁ ଚହ ଚାର ଗୁମାନୀ । ନଭ ଦୁହି ଦୁଧ ଚହତ ଏ ପ୍ରାନୀ ॥୮॥
ପୁନି ଫିରି ରାମ ନିକଟ ସୋ ଆଈ । ପ୍ରଭୁ ଲଛିମନ ପହିଁ ବହୁରି ପଠାଈ ॥
ଲଛିମନ କହା ତୋହି ସୋ ବରଈ । ଜୋ ତୃନ ତୋରି ଲାଜ ପରିହରଈ ॥୯॥

---

ମୋ ଅନୁରୂପ ପୁରୁଷ ନାହିଁ ଜଗତରେ । ଖୋଜି ମୁଁ ଦେଖିଲି ତିନିଭୁବନ ମଧ୍ୟରେ ॥
ସେ କାରଣୁ ଆଜି ଯାଏ କୁମାରୀ ରହିଛୁ । ତୁମ୍ଭଙ୍କୁ ଚାହିଁ ମୋ ମନ ମାନୁଅଛି କିଛି ॥୫॥
ସୀତାଙ୍କୁ ଚାହିଁ ଭାଷିଲେ ପ୍ରଭୁ ବାଣୀବର । ଅଟଇ ଯୁବା କୁମାର ଅନୁଜ ମୋହର ॥
ଯାଆନ୍ତେ ଲକ୍ଷ୍ମଣ ପାଶେ, ଶତ୍ରୁଭଗ୍ନୀ ଜାଣି । ପ୍ରଭୁଙ୍କୁ ଚାହିଁ ବୋଇଲେ ତହୁଁ ମୃଦୁବାଣୀ ॥୬॥
ସୁନ୍ଦରି, ଶୁଣ ମୁଁ ଅଟେ ଦାସ ତାହାଙ୍କର । ପରାଧୀନେ ସୁବ୍ୟବସ୍ଥା ନ ହେବ ତୋହର ॥
ପ୍ରଭୁ ଅଟନ୍ତି ସମର୍ଥ ଅଯୋଧ୍ୟାର ଧବ । ଯାହା କରିବେ ତାହାଙ୍କୁ ସାଜିବ ସରବ ॥୭॥
ସେବକ ସୁଖ ଇଚ୍ଛଇ, ସମ୍ମାନ ଭିଖାରୀ । ବ୍ୟସନୀ ସମ୍ପଦ, ଶୁଭ ଗତି ବ୍ୟଭିଚାରୀ ॥
ଲୋଭୀର ଯଶ ଆକାଂକ୍ଷା ଚରର ଗୁମାନ । ଏ ସବୁ ଆକାଶୁ ଦୁଗ୍ଧ ଦୁହିଁବା ସମାନ ॥୮॥
ପ୍ରଭୁଙ୍କ ନିକଟେ ଫେରି ଆସିଲା ସେ ପୁଣି । ଲକ୍ଷ୍ମଣଙ୍କ ପାଶେ ରାମ ପଠାଇଲେ ପୁଣି ॥
କହିଲେ ଲକ୍ଷ୍ମଣ ତହୁଁ, ତୋତେ ସେ ବରିବ । ତୃଣ ଛିଣ୍ଡାଇ ଯେ ଦୂରେ ଲଜ୍ଜ୍ୟା ବିସର୍ଜିବ ॥୯॥

---

ମୋ ସମାନ ସ୍ତ୍ରୀ ଆଉ କେହୁ ନାହିଁ । ବିଧାତା ବହୁତ ବୁଝିବିଚାରି ଭାଗ୍ୟରେ ଆମ ଦୁହିଙ୍କ ମିଳନ ଲେଖିଅଛି ॥ ୪ ॥ ତିନି ଭୁବନରେ ମୁଁ ଖୋଜି ଦେଖିଲି ଯେ, ମୋ ଲାଗି ବର କେଉଁଠି ହେଲେ ନାହିଁ । ଏହି ହେତୁ ମୁଁ ଆଜିଯାଏ କୁମାରୀ ରହିଛି । ବର୍ତ୍ତମାନ ତୁମ୍ଭଙ୍କୁ ଦେଖି ମୋ ମନ କେତେକ ପରିମାଣରେ ମାନି ଯାଇଛି ।" ॥ ୫ ॥ ସୀତାଙ୍କ ଆଡକୁ ଚାହିଁ ପ୍ରଭୁ ଶ୍ରୀରାମ କହିଲେ, "ମୋ ସାନ ଭାଇ କୁମାର ।" ତେଣୁ ସେ ଲକ୍ଷ୍ମଣଙ୍କ ନିକଟକୁ ଗଲା । ଲକ୍ଷ୍ମଣ ତାହାକୁ ଶତ୍ରୁର ଭଉଣୀ ବୋଲି ବିଚାରିଲେ ଏବଂ ପ୍ରଭୁଙ୍କ ଆଡ଼କୁ ଚାହିଁ କୋମଳ ବଚନ କହିଲେ— ॥ ୬ ॥ "ହେ ସୁନ୍ଦରି ! ଶୁଣ; ମୁଁ ଏହାଙ୍କର ଦାସ । ମୁଁ ପରାଧୀନ । ଏଣୁ ମୋ ପାଖରେ ତୁମଙ୍କୁ ସୁଖସୁବିଧା ମିଳିବ ନାହିଁ । ପ୍ରଭୁ ସମର୍ଥ, କୋଶଳପୁରର ରାଜା, ସେ ଯାହା କିଛି କରି ପାରିବେ । ତାଙ୍କୁ ସବୁ ସୁନ୍ଦର ॥ ୭ ॥ ଯିଏ ସେବକ ସୁଖ କାମନା କରେ, ଭିକାରୀ ସମ୍ମାନ ଚାହେଁ, ବ୍ୟସନୀ ଧନ ଓ ବ୍ୟଭିଚାରୀ ଶୁଭଗତି ଚାହେଁ, ଲୋଭୀ ଯଶ ଚାହେଁ ଏବଂ ଅଭିମାନୀ ଧର୍ମ,

ତବ ଖିସିଆନି ରାମ ପହିଁ ଗଈ । ରୂପ ଭୟଙ୍କର ପ୍ରଗଟତ ଭଈ ॥
ସୀତହି ସଭୟ ଦେଖି ରଘୁରାଈ । କହା ଅନୁଜ ସନ ସୟନ ବୁଝାଈ ॥୧୦॥
ଲଛିମନ ଅତି ଲାଘବଁ ସୋ ନାକ କାନ ବିନୁ କୀହ୍ନି ।
ତାକେ କର ରାବନ କହୁଁ ମନହୁ ଚୁନୌତୀ ଦୀହ୍ନି ॥୧୭॥
ନାକ କାନ ବିନୁ ଭଇ ବିକରାରା । ଜନୁ ସ୍ରବ ସୈଲ ଗେରୁ କୈ ଧାରା ॥
ଖର ଦୂଷନ ପହିଁ ଗଇ ବିଲପାତା । ଧିଗ ଧିଗ ତବ ବଲ ପୌରୁଷ ଭ୍ରାତା ॥୧॥
ତେହିଁ ପୂଛା ସବ କହେସି ବୁଝାଈ । ଜାତୁଧାନ ସୁନି ସେନ ବନାଈ ॥
ଧାଏ ନିସିଚର ନିକର ବରୂଥା । ଜନୁ ସପଚ୍ଛ କଜ୍ଜଲ ଗିରି ଜୂଥା ॥୨॥

---

ତହୁଁ କ୍ରୋଧାନ୍ୱିତ ହୋଇ ଗଲା ରାମ କତି । ପ୍ରକଟ କରିଲା ରୂପ ଭୟଙ୍କର ଅତି ॥
ସୀତାଙ୍କୁ ଭୟ-କମ୍ପିତ ଦେଖି ରଘୁସାଇଁ । କହିଲେ ଅନୁଜ ଆଗେ ସଙ୍କେତେ ବୁଝାଇ ॥୧୦॥
ଅତି ଅନାୟାସେ ଲକ୍ଷ୍ମଣ ତାହାର ଛେଦନ କଲେ ନାକ କାନ ।
ତା ହସ୍ତେ ଆହ୍ୱାନ-ପତ୍ର ଦେଲେ ଯେସନ୍ତେ ଦଶଶିର ସନ୍ନିଧାନ ॥୧୭॥
ନାସା କର୍ଣ୍ଣ ବିନା ଦିଶେ ଅତି ଭୟଙ୍କର । ମନେ ହୁଏ ଶଇଳରୁ ସ୍ରବେ ଗେରୁଧାର ॥
ବ୍ୟାକୁଳେ ଖର ଦୂଷଣ ପାଶେ ବୋଲେ ଯାଇ । ଧିକ ଧିକ ତୁମ୍ଭ ବଳ ପୁରୁଷତ୍ୱ, ଭାଇ ॥୧॥
ସେ ପଚାରନ୍ତେ, ସମସ୍ତ ବୁଝାଇ କହିଲା । ଶୁଣି ଜାତୁଧାନ ନିଜ ସୈନ୍ୟଙ୍କୁ ରଚିଲା ॥
ଧାଇଁଲେ ରଜନୀଚର-ନିକର ତତକ୍ଷଣ । ସପକ୍ଷ କଜ୍ଜଳ-ଗିରି-ସମୂହ ଯେସନ ॥୨॥

---

ଅର୍ଥ, କାମ, ମୋକ୍ଷ ଚାହେଁ, ତେବେ ବୁଝିବାକୁ ହେବ ଯେ, ଏ ସମସ୍ତ ପ୍ରାଣୀ ଆକାଶ ଦୁହିଁ ଦୁଧ ପାଇବାକୁ ଇଚ୍ଛା କରନ୍ତି ବା ଅସମ୍ଭବକୁ ସମ୍ଭବ କରିବାକୁ ଚାହାନ୍ତି ॥୮॥ ସେ ଫେରି ପୁଣି ଶ୍ରୀରାମଙ୍କ ନିକଟକୁ ଆସିଲା । ପ୍ରଭୁ ପୁଣି ଥରେ ତାହାକୁ ଲକ୍ଷ୍ମଣଙ୍କ ନିକଟକୁ ପଠାଇ ଦେଲେ । ଲକ୍ଷ୍ମଣ କହିଲେ, "ଯେଉଁ ପୁରୁଷ ଲଜ୍ଜାକୁ ପ୍ରତିଜ୍ଞାପୂର୍ବକ ତ୍ୟାଗ କରିଦେବ, ଅର୍ଥାତ୍ ଯେ ନିପଟ ନିର୍ଲଜ୍ଜ, ସେହି କେବଳ ତୁମକୁ ବରଣ କରିବ ।" ॥ ୯ ॥ ତତ୍ପରେ ରାଗରେ ଗରଗର ହୋଇ ଶୂର୍ପଣଖା ଶ୍ରୀରାମଙ୍କ ନିକଟକୁ ଗଲା ଏବଂ ଆପଣାର ଭୟଙ୍କର ରୂପ ପ୍ରକାଶ କଲା । ତାହାର ବିକଟାଳ ରୂପ ଦର୍ଶନରେ ସୀତାଙ୍କୁ ଭୟଭୀତ ହେବାର ଦେଖି ଶ୍ରୀରଘୁନାଥ ଲକ୍ଷ୍ମଣଙ୍କୁ ସଙ୍କେତ ସାହାଯ୍ୟରେ କିଛି କହିଦେଲେ ॥୧୦॥ ଦୋହା —ଲକ୍ଷ୍ମଣ ଅତି ସହଜରେ ତାହାକୁ ନାକକାନ-ବିହୀନ କରିଦେଲେ । ସତେ ଯେପରି ତାହାରି ହାତରେ ସେ ରାବଣକୁ ଯୁଦ୍ଧ ନିମନ୍ତ୍ରେ ଆହ୍ୱାନ ଦେଲେ ! ॥ ୧୭ ॥ ଚୌପାଇ —ନାକକାନ ବିନା ସେ ବିକରାଳ ହୋଇଗଲା । ପର୍ବତରୁ ଗେରୁର ଧାରା ବହିଲା ପରି ତାହାର ଶରୀରରୁ ରକ୍ତଧାରା ବହିବାକୁ ଲାଗିଲା । ସେ ବିଳାପ କରି କରି ଖରଦୂଷଣଙ୍କ ନିକଟକୁ ଗଲା ଏବଂ କହିଲା, "ହେ ଭାଇ ! ତୁମ ପୌରୁଷକୁ ଧିକ୍କାର, ତୁମ ବଳକୁ ଧିକ୍କାର !" ॥ ୧ ॥ ସେମାନେ କାରଣ ପଚାରନ୍ତେ, ଶୂର୍ପଣଖା ସବୁ ବୁଝାଇ କହିଲା । ସବୁ ଶୁଣି ରାକ୍ଷସମାନେ ସେନା ପ୍ରସ୍ତୁତ କଲେ । ରାକ୍ଷସବୃନ୍ଦ

ନାନା ବାହନ ନାନାକାରା । ନାନାୟୁଧ ଧର ଘୋର ଅପାରା ॥
ସୂପନଖା ଆଗେଁ କରି ଲୀନ୍ହୀ । ଅସୁଭ ରୂପ ଶ୍ରୁତି ନାସା ହୀନୀ ॥୩॥
ଅସଗୁନ ଅମିତ ହୋହିଁ ଭୟକାରୀ । ଗନହିଁ ନ ମୃତ୍ୟୁ ବିବସ ସବ ଝାରୀ ॥
ଗର୍ଜହିଁ ତର୍ଜହିଁ ଗଗନ ଉଡ଼ାହୀଁ । ଦେଖି କଟକୁ ଭଟ ଅତି ହରଷାହୀଁ ॥୪॥
କୋଉ କହ ଜିଅତ ଧରହୁ ଦ୍ୱୌ ଭାଈ । ଧରି ମାରହୁ ତିୟ ଲେହୁ ଛଡ଼ାଈ ॥
ଧୂରି ପୂରି ନଭ ମଣ୍ଡଲ ରହା । ରାମ ବୋଲାଇ ଅନୁଜ ସନ କହା ॥୫॥
ଲୈ ଜାନକିହି ଜାହୁ ଗିରି କଂଦର । ଆୱା ନିସିଚର କଟକୁ ଭୟଂକର ॥
ରହେହୁ ସଜଗ ସୁନି ପ୍ରଭୁ କୈ ବାନୀ । ଚଲେ ସହିତ ଶ୍ରୀ ସର ଧନୁ ପାନୀ ॥୬॥
ଦେଖି ରାମ ରିପୁଦଲ ଚଲି ଆୱା । ବିହସି କଠିନ କୋଦଣ୍ଡ ଚଢ଼ାୱା ॥୭॥

---

ବିବିଧ ବାହନ ପୁଣି ବିବିଧ ଆକାର । କରେ ଧରିଛନ୍ତି ନାନା ଆୟୁଧ ଅପାର ॥
ଆଗେ ଚଳାଇଲେ ଶୂର୍ପଣଖାକୁ ସଇନ । ଅମଙ୍ଗଳ ବେଷ, ଶ୍ରୁତି ନାସିକା ବିହୀନ ॥୩॥
ଭୟଙ୍କର ଅଲକ୍ଷଣ ହୁଅଇ ଅମିତ । ନ ଗଣନ୍ତି ମୃତ୍ୟୁବଶ ସକଳ ଦଇତ ॥
ଗରଜନ୍ତି ତରଜନ୍ତି ଗଗନେ ଉଡ଼ନ୍ତି । ଥାଟ ଦେଖି ଯୋଦ୍ଧା ଅତି ହରଷ ହୁଅନ୍ତି ॥୪॥
କିଏ କହେ, ଜୀଇଁ ଥାଉଁ ଧର ଦୁଇ ଭାଇ । ଧରି ମାରି କରି ନିଅ ନାରୀକୁ ଛଡ଼ାଇ ॥
ଧୂଳି ଆଚ୍ଛାଦି ରହିଲା ନଭୋମଣ୍ଡଳରେ । ରାମ ଡାକିଣ କହିଲେ ଅନୁଜ ଆଗରେ ॥୫॥
ନେଇ ଜାନକୀଙ୍କୁ ଯାଅ ଶଇଳ କନ୍ଦର । ଆସୁଛନ୍ତି ନିଶାଚର-ଯୂଥ ଭୟଙ୍କର ॥
ରହିବ ସତର୍କ, ଶୁଣି ପ୍ରଭୁଙ୍କର ବାଣୀ । ଚଳିଲେ ସୀତା ସହିତ ଧନୁଶର ପାଣି ॥୬॥
ଦେଖି ରାମ ଘୋଟି ଆସୁଛନ୍ତି ଶତ୍ରୁ ଘୋର । ହସି ଗୁଣ ଚଢାଇଲେ କୋଦଣ୍ଡେ କଠୋର ॥୭॥

---

ଦଳ ଦଳ ହୋଇ ଦୌଡ଼ିଲେ । ସତେ ଯେପରି ପକ୍ଷଧାରୀ କଜ୍ଜଳ ପର୍ବତ ସବୁ ଦୌଡ଼ି ଛୁଟିଛନ୍ତି ! ॥ ୨ ॥ ସେମାନେ ଅନେକ ପ୍ରକାର ଯାନବାହନ ଉପରେ ଆରୂଢ ହୋଇ-ଅଛନ୍ତି । ସେମାନଙ୍କର ଆକାରପ୍ରକାର ମଧ୍ୟ ଅନେକ । ସେମାନେ ବିଭିନ୍ନ ପ୍ରକାରର ଅସଂଖ୍ୟ ଆୟୁଧ ଧାରଣ କରିଅଛନ୍ତି । ନାକକାନ-ବିହୀନା-ଅମଙ୍ଗଳ ସ୍ୱରୂପିଣୀ ଶୂର୍ପଣଖାକୁ ସେମାନେ ଆଗରେ ରଖିଥା'ନ୍ତି ॥ ୩ ॥ ଅଗଣିତ ଭୟଙ୍କର ଅଶୁଭ ଲକ୍ଷଣ ଦେଖା-ଯାଉଥାଏ । କିନ୍ତୁ ମୃତ୍ୟୁର ବଶ ହେବା ଯୋଗୁଁ ସେମାନେ ସମସ୍ତଙ୍କୁ ସମସ୍ତେ ସେ ସବୁକୁ ଗଣୁ ନ ଥା'ନ୍ତି । ଗର୍ଜନ କରୁଥା'ନ୍ତି, ଆହ୍ୱାନ ଦେଉଥା'ନ୍ତି ଏବଂ ଆକାଶରେ ଉଡ଼ୁଥା'ନ୍ତି । ସେନାକୁ ଦେଖି ଯୋଦ୍ଧାମାନେ ଅତ୍ୟନ୍ତ ଆନନ୍ଦିତ ହେଉଥା'ନ୍ତି ॥ ୪ ॥ କିଏ କହୁଥାଏ, "ଦୁଇ ଭାଇଙ୍କୁ ଜୀଅନ୍ତା ଧରି ପକାଅ, ଧରି ମାରି ପକାଅ ଏବଂ ସ୍ତ୍ରୀକୁ ଛଡ଼ାଇ ଆଣ ।" ଆକାଶମଣ୍ଡଳ ଧୂଳିରେ ପରିପୂର୍ଣ୍ଣ ହୋଇଗଲା । ସେତେବେଳେ ଶ୍ରୀରାମ ଲକ୍ଷ୍ମଣଙ୍କୁ ଡାକି ତାଙ୍କୁ କହିଲେ, "ରାକ୍ଷସମାନଙ୍କର ଭୟାନକ ସେନା ଆସି ପହଞ୍ଚିଲାଣି । ଜାନକୀଙ୍କୁ ଧରି ତୁମେ ପର୍ବତ ଗୁମ୍ଫାକୁ ଚାଲିଯାଅ । ସାବଧାନ ରହିବ ।" ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କର ବଚନ ଶୁଣି ଲକ୍ଷ୍ମଣ ହାତରେ ଧନୁଶର ଧରି ସୀତାଙ୍କ ସହିତ

କୋଦଣ୍ଡ କଠିନ ଚଢ଼ାଇ ସିର ଜଟ ଜୁଟ ବାଁଧତ ସୋହ କ୍ୟୋଁ ।
ମରକତ ସୟଲ ପର ଲରତ ଦାମିନି କୋଟି ସୋଁ ଜୁଗ ଭୁଜଗ ଜ୍ୟୋଁ ॥
କଟି କସି ନିଷଂଗ ବିସାଲ ଭୁଜ ଗହି ଚାପ ବିସିଖ ସୁଧାରି କୈ ।
ଚିତୱତ ମନହୁଁ ମୃଗରାଜ ପ୍ରଭୁ ଗଜରାଜ ଘଟା ନିହାରି କୈ ॥

ଆଇ ଗଏ ବଗମେଲ ଧରହୁ ଧରହୁ ଧାୱତ ସୁଭଟ ।
ଜଥା ବିଲୋକି ଅକେଲ ବାଲରବିହି ଘେରତ ଦନୁଜ ॥୧୮॥

ପ୍ରଭୁ ବିଲୋକି ସର ସକହିଁ ନ ଡାରୀ । ଥକିତ ଭଈ ରଜନୀଚର ଧାରୀ ॥
ସଚିବ ବୋଲି ବୋଲେ ଖର ଦୂଷନ । ୟହ କୋଉ ନୃପବାଲକ ନରଭୂଷନ ॥୧॥
ନାଗ ଅସୁର ସୁର ନର ମୁନି ଜେତେ । ଦେଖେ ଜିତେ ହତେ ହମ କେତେ ॥
ହମ ଭରି ଜନ୍ମ ସୁନହୁ ସବ ଭାଈ । ଦେଖୀ ନହିଁ ଅସି ସୁଂଦରତାଈ ॥୨॥

---

କଠୋର କୋଦଣ୍ଡରେ ଗୁଣ ଚଢାଇ ଶିରେ ଜଟା ବାନ୍ଧନ୍ତେ ବିରାଜନ୍ତି ।
ମର୍କତାଦ୍ରି ଶିଖରେ କୋଟି ବିଦ୍ୟୁତ୍‌ସଙ୍ଗରେ ବେନି କି ଭୁଜଙ୍ଗ ଯୁଝନ୍ତି ।
ଭୁଜେ କୋଦଣ୍ଡ କରେ ଶର, କଟିରେ କଷିଲେ ତୂଣୀର,
କି ଅବା ଗଜପତି-ଯୂଥଙ୍କୁ ନିରେଖନ୍ତି ମୃଗେନ୍ଦ୍ର, ପ୍ରଭୁ ରଘୁବୀର ॥
କହି 'ଧର' 'ଧର' ଧାଇଁ ବୀରବରେ ଆସି ହେଲେ ସମ୍ମୁଖୀନ ।
ଘେରନ୍ତି ଦନୁଜେ ବାଳ ଦିବାକରେ ଯେସନ୍ତେ ଏକାକୀ ଦେଖିଣ ॥୧୮॥

ପ୍ରଭୁଙ୍କୁ ବିଲୋକି ଛାଡି ନ ପାରନ୍ତି ଶର । ସ୍ତମ୍ଭିତ ହୋଇ ରହିଲେ ରାକ୍ଷସ ନିକର ॥
ସଚିବେ ଡକାଇ ବୋଇଲେ ଖର ଦୂଷଣ । ଏ କେଉଁ ନୃପ ବାଳକ ନର-ବିଭୂଷଣ ॥୧॥
ଦେବ ଦାନବ ମାନବ ନାଗ ମୁନି ଯେତେ । ଦେଖିଛୁ, ଜିଣିଛୁ, ଆମ୍ଭେ ବିନାଶିଛୁ କେତେ ॥
ଜନ୍ମରୁ ଆଜ ପର୍ଯ୍ୟନ୍ତ ଶୁଣ ଭାଇ ସର୍ବେ । ଏମନ୍ତ ସୁନ୍ଦର ରୂପ ଦେଖି ନାହୁଁ ଭବେ ॥୨॥

---

ଚଳିଲେ ॥ ୫-୭ ॥ ଶତ୍ରୁମାନଙ୍କ ସେନା ନିକଟକୁ ଆସିଗଲାଣି—ଏହା ଦେଖି ଶ୍ରୀରାମ ହସି କଠିନ କୋଦଣ୍ଡରେ ଗୁଣ ଚଢାଇଲେ ॥ ୮ ॥ ଛନ୍ଦ '—କଠିନ କୋଦଣ୍ଡ ଚଢାଇ ମସ୍ତକ ଉପରେ ଜଟାର ଜୁଡ଼ା ବାନ୍ଧୁଥିବା ସମୟରେ ପ୍ରଭୁ କିପରି ଶୋଭା ପାଉଅଛନ୍ତି ନା, ମର୍କତମଣି-ପର୍ବତ ଉପରେ କୋଟି କୋଟି ବିଜୁଳି ସହିତ ଦୁଇଟି ସର୍ପ ସତେ ଯେମିତି ଲଢୁଅଛନ୍ତି । କଟିରେ ତୂଣୀର କଷି, ବିଶାଳ ବାହୁରେ ଧନୁ ଧରି ଓ ଶର ଯୋଖି ପ୍ରଭୁ ଶ୍ରୀରାମ ରାକ୍ଷସମାନଙ୍କ ଆଡକୁ ଚାହୁଁଅଛନ୍ତି । ସତେ ଯେପରି ଉନ୍ମତ୍ତ ହସ୍ତିସମୂହଙ୍କୁ ଆସିବାର ଦେଖି ସିଂହ ସେମାନଙ୍କ ଆଡକୁ ନିରୀକ୍ଷଣ କରୁଅଛି ! ସୋରଠା '—"ଧର", "ଧର" ବୋଲି କୁହାଟି ଘୋଡାମାନଙ୍କ ଲଗାମ ମିଳାଇ ପଂକ୍ତିବଦ୍ଧ ଭାବରେ ରାକ୍ଷସ-ସେନା ଅତି ଶୀଘ୍ର ଦୌଡି ଆସିଲେ । ବାଳରବିଙ୍କୁ ଏକାକୀ ଦେଖି ତାଙ୍କୁ ଯେପରି ମନ୍ଦେହ ନାମକ ରାକ୍ଷସଗଣ ଘେରଯାଆନ୍ତି, ଏହି ରାକ୍ଷସମାନେ

ଜଦ୍ୟପି ଭଗିନୀ କୀହ୍ନି କୁରୁପା । ବଧ ଲାୟକ ନହିଁ ପୁରୁଷ ଅନୂପା ॥
ଦେହୁ ତୁରତ ନିଜ ନାରି ଦୁରାଈ । ଜୀବତ ଭବନ ଜାହୁ ଦ୍ୱୌ ଭାଈ ॥୩॥
ମୋର କହା ତୁମ୍ହ ତାହି ସୁନାଓ୍ୱହୁ । ତାସୁ ବଚନ ସୁନି ଆତୁର ଆଓ୍ୱହୁ ॥
ଦୂତନ୍ହ କହା ରାମ ସନ ଜାଈ । ସୁନତ ରାମ ବୋଲେ ମୁସୁକାଈ ॥୪॥
ହମ ଛତ୍ରୀ ମୃଗୟା ବନ କରହୀଂ । ତୁମ୍ହ ସେ ଖଲ ମୃଗ ଖୋଜତ ଫିରହୀଂ ॥
ରିପୁ ବଲବଂତ ଦେଖି ନହିଁ ଡରହୀଂ । ଏକ ବାର କାଲହୁ ସନ ଲରହୀଂ ॥୫॥
ଜଦ୍ୟପି ମନୁଜ ଦନୁଜକୁଲ ଘାଲକ । ମୁନି ପାଲକ ଖଲ ସାଲକ ବାଲକ ॥
ଜୌଁ ନ ହୋଇ ବଲ ଘର ଫିରି ଜାହୂ । ସମରବିମୁଖ ମୈଁ ହତଉଁ ନ କାହୂ ॥୬॥

---

ଯଦ୍ୟପି ଏ ଭଗିନୀକୁ କରିଲେ କୁରୂପ । ବଧିବା ଯୋଗ୍ୟ ନୁହଇ ପୁରୁଷ ଅନୁପ ॥
ଲୁଚାଇ ଥିବା ନାରୀକୁ ଦେଇଣ ତୁରିତ । ଯାଆନ୍ତୁ ଉଭୟ ଭାଇ ଭବନେ ଜୀବିତ ॥୩॥
ଶୁଣାଇ ତୁମ୍ଭେ ତାହାକୁ କଥନ ଆମ୍ଭର । ତାହାର ଉତ୍ତର ନେଇ ଆସୁଥ ସତ୍ୱର ॥
ଦୂତେ କହିଲେ ଶ୍ରୀରାମଚନ୍ଦ୍ରଙ୍କୁ ଯାଇଣ । ଶୁଣନ୍ତେ ରାମ ଭାଷିଲେ ମଧୁରେ ହସିଣ ॥୪॥
ଆମ୍ଭେ କ୍ଷତ୍ରିୟ ମୃଗୟା ଅର୍ଥେ ବନେ ଯାଉ । ତୁମ୍ଭ ସମ ଖଳ ମୃଗ ଖୋଜି ବୁଲୁଥାଉ ॥
ବଳବନ୍ତ ଶତ୍ରୁ ଅବଲୋକିଣ ନ ଡରୁ । ଏକ ବାର କାଳ ସଙ୍ଗେ ସୁଦ୍ଧା ଯୁଦ୍ଧ କରୁ ॥୫॥
ଯଦ୍ୟପି ନର, ଦନୁଜ-କୁଳ-ବିଧ୍ୱଂସକ । ମୁନି-ପାଳକ, ବାଳକ, ଖଳ-ବିନାଶକ ॥
ଯେବେ ବଳ ନାହିଁ ତେବେ ବାହୁଡ ଗୃହକୁ । ମାରଇ ନାହିଁ ମୁଁ କେବେ ରଣ ବିମୁଖକୁ ॥୬॥

---

ସେହିପରି ଘୃଣ ହଗରୁ ଶ୍ରୀରାମଙ୍କୁ ଦେଖି ପକାଇଲେ ॥ ୧୮ ॥ ଚୌପାଈ — ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟ-ନିଧି ପ୍ରଭୁ ଶ୍ରୀରାମଙ୍କୁ ଦେଖି ରାକ୍ଷସଙ୍କ ସେନା ସ୍ତମ୍ଭୀଭୂତ ହୋଇ ପଡିଲେ । ସେମାନେ ତାଙ୍କ ଉପରକୁ ଶର ବିନ୍ଧି ପାରିଲେ ନାହିଁ । ମନ୍ତ୍ରୀଙ୍କୁ ଡକାଇ ଖରଦୂଷଣ କହିଲେ, "ଏହି ରାଜକୁମାର ତ ମନୁଷ୍ୟମାନଙ୍କର ଭୂଷଣ ॥ ୧ ॥ ଯେତେ ବି ନାଗ, ଅସୁର, ଦେବତା, ମନୁଷ୍ୟ ଓ ମୁନି ଅଛନ୍ତି; ସେମାନଙ୍କ ମଧ୍ୟରୁ କେଜାଣି କେତେ ଆମେ ଦେଖିଛୁ, ଜିଣିଛୁ ଏବଂ ମାରିଅଛୁ । ପରନ୍ତୁ ହେ ଭାଇମାନେ ! ଶୁଣ, ଜନ୍ମରୁ ଆଜଯାଏ ଏପରି ସୁନ୍ଦରତା କେଉଁଠି ହେଲେ ଦେଖିନାହୁଁ ॥ ୨ ॥ ଏ ଆମ୍ଭର ଭଉଣୀକୁ କୁରୂପ କରିଥିଲେ ମଧ୍ୟ, ଏପରି ଅନୁପମ ପୁରୁଷ ବଧର ଯୋଗ୍ୟ ନୁହେଁ । 'ଲୁଚାଇ ରଖିଥିବା ନିଜ ସ୍ତ୍ରୀ ଆମ୍ଭଙ୍କୁ ଦେଇଦିଅ ଏବଂ ଭାଇ ଦୁହେଁ ଜୀବିତା-ବସ୍ଥାରେ ଗୃହକୁ ଫେରିଯାଅ ।'—ଆମ୍ଭର ଏହି କଥା ତୁମ୍ଭେମାନେ ତାହାକୁ ଶୁଣାଇ ଦିଅ ଏବଂ ତାହାଠାରୁ ଉତ୍ତର ଆଣି ଶୀଘ୍ର ଆମ୍ଭ ନିକଟ ଆସ ।" ଦୂତମାନେ ଯାଇ ଶ୍ରୀରାମଙ୍କୁ ଏହି ସନ୍ଦେଶ କହିଲେ । ଏହା ଶୁଣିବା ମାତ୍ରେ ଶ୍ରୀରାମ ମୁରୁକି ହସି କହିଲେ, "ଆମ୍ଭେ କ୍ଷତ୍ରିୟ, ବନରେ ଶିକାର କରୁ ଏବଂ ତୁମ ସରି ଦୁଷ୍ଟ ପଶୁମାନଙ୍କୁ ହିଁ ଖୋଜି ବୁଲୁ । ଆମ୍ଭେ ବଳବାନ ଶତ୍ରୁଙ୍କୁ ଦେଖି ଡରୁନାହିଁ । ଲଢିବାକୁ ଆସିଲେ ଏପରିକି କାଳ ସହିତ ମଧ୍ୟ ଆମ୍ଭେ ଏକବାର ଲଢିପାରୁ । ଆମ୍ଭେ ମନୁଷ୍ୟ ହେଲେ ସୁଦ୍ଧା

ରନ ଚଢି କରିଅ କପଟ ଚତୁରାଈ। ରିପୁ ପର କୃପା ପରମ କଦରାଈ॥
ଦୂତନ୍ହ ଜାଇ ତୁରତ ସବ କହେଊ। ସୁନି ଖର ଦୂଷନ ଉର ଅତି ଦହେଊ॥୭॥

ଉର ଦହେଉ କହେଉ କି ଧରହୁ ଧାଏ ବିକଟ ଭଟ ରଜନୀଚରା।
ସର ଚାପ ତୋମର ସକ୍ତି ସୂଲ କୃପାନ ପରିଘ ପରସୁ ଧରା॥
ପ୍ରଭୁ କୀନ୍ହି ଧନୁଷ ଟଁକୋର ପ୍ରଥମ କଠୋର ଘୋର ଭୟାବହା।
ଭଏ ବଧିର ବ୍ୟାକୁଲ ଜାତୁଧାନ ନ ଜ୍ଞାନ ତେହି ଅବସର ରହା॥

ସାବଧାନ ହୋଇ ଧାଏ ଜାନି ସବଲ ଆରାତି।
ଲାଗେ ବରଷନ ରାମ ପର ଅସ୍ତ୍ର ସସ୍ତ୍ର ବହୁ ଭାଁତି॥୧୯ (କ)॥
ତିନ୍ହ କେ ଆୟୁଧ ତିଲ ସମ କରି କାଟେ ରଘୁବୀର।
ତାନି ସରାସନ ଶ୍ରବନ ଲଗି ପୁନି ଛାଁଡ଼େ ନିଜ ତୀର॥୧୯ (ଖ)॥

---

ସଂଗ୍ରାମେ ଆସି ଚାତୁର୍ଯ୍ୟ ଛଳ ଆଚରଣ। ଶତ୍ରୁ ପ୍ରତି କୃପା କାପୁରୁଷର ଲକ୍ଷଣ॥
ଦୂତମାନେ ଯାଇ ଏହା କହିଲେ ସତ୍ୱର। ଶୁଣି ଖର ଦୂଷଣଙ୍କ ଦହିଲା ଅନ୍ତର॥୭॥

କହନ୍ତି, ଜଳେ ଉର, 'ଧରରେ', ଶୁଣି ବୀର ଧାଇଁଲେ ଦୈତ୍ୟ ଭୟଙ୍କର।
କୁଠାର, ଚାପଶର, ଯଷ୍ଟି ଖଡ୍‌ଗ, ମୁଦ୍‌ଗର, ପରଶୁ, ଶୂଳ ଶକ୍ତିଧର।
ପ୍ରଭୁ ପ୍ରଚଣ୍ଡ ପ୍ରଥମରେ, ଧନୁ ଟଙ୍କାର କଲେ ଖରେ,
ହୋଇଗଲେ ବଧିର ବ୍ୟାକୁଳେ ନିଶାଚର ହଜିଲା ଜ୍ଞାନ ସେ କାଳରେ॥

ଶତ୍ରୁ ବଳବାନ ଜାଣି, ସାବଧାନ ହୋଇ ପାପିଷ୍ଠେ ଧାଇଁଲେ।
ପ୍ରଭୁଙ୍କ ଉପରେ ବହୁ ଅସ୍ତ୍ରଶସ୍ତ୍ର ବର୍ଷିବାକୁ ଲାଗିଲେ॥୧୯ (କ)॥
ଆୟୁଧ ତାହାଙ୍କ ଶ୍ରୀ ରଘୁନାଥଙ୍କ କାଟିଣ ତିଳ ପ୍ରମାଣ।
ଶ୍ରବଣ ପର୍ଯ୍ୟନ୍ତେ ଟାଣି ଶରାସନ ଛାଡ଼ିଲେ ପୁଣି ସ୍ୱବାଣ॥୧୯ (ଖ)॥

---

ଦୈତ୍ୟକୁଳର ବିନାଶକ ଓ ମୁନିଗଣଙ୍କ ରକ୍ଷକ, ଆମ୍ଭେମାନେ ବାଳକ, ତଥାପି ଦୁଷ୍ଟମାନଙ୍କର ଦଣ୍ଡଦାତା। ଯଦି ବଳ ନ ଥାଏ, ତେବେ ଘରକୁ ଫେରିଯାଅ। ସମରବିମୁଖ କୌଣସି ପ୍ରାଣୀକୁ ମୁଁ ହତ୍ୟା କରେ ନାହିଁ ॥୩-୬॥ ରଣ ଭୂମିକୁ ମାଡ଼ିଆସି କପଟ-ଚାତୁରୀ କରିବା ଏବଂ ଶତ୍ରୁ ଉପରେ ଦୟା କରିବା ତ ବଡ଼ କାପୁରୁଷତା।" ଦୂତମାନେ ଫେରି ତୁରନ୍ତ ଖରଦୂଷଣଙ୍କୁ ସମସ୍ତ ସମାଚାର ଦେଲେ। ଉକ୍ତ ସମାଚାର ଶୁଣି ରାକ୍ଷସ-ନେତା ଦୁହିଁଙ୍କର ହୃଦୟ କ୍ରୋଧରେ ଜଳି ଉଠିଲା ॥ ୭ ॥ ଛନ୍ଦ :— ଖର-ଦୂଷଣଙ୍କ ହୃଦୟ ଜଳି ଉଠିଲା। ତଦନନ୍ତର ସେ ଦୁହେଁ କହିଲେ, "ଧରି ଆଣ, ବନ୍ଦୀ କରି ପକାଅ।" ଏହି ଆଦେଶ ପାଇ ଭୟାନକ ରାକ୍ଷସ ଯୋଦ୍ଧାମାନେ ବାଣ, ଧନୁ, ଢାଲ, ଶକ୍ତି, ଶୂଳ, କୃପାଣ, ବର୍ଚ୍ଛା ଓ ଫାର୍ସା ଧରି ଧାଇଁଲେ। ପ୍ରଭୁ ଶ୍ରୀରାମ ପ୍ରଥମେ ଧନୁରେ ଅତି କଠୋର ଓ ଭୟାନକ ଟଙ୍କାର କଲେ। ତାହା ଶୁଣି ରାକ୍ଷସମାନେ

ତବ ଚଲେ ବାନ କରାଲ । ଫୁଙ୍କରତ ଜନୁ ବହୁ ବ୍ୟାଲ ॥
କୋପେଉ ସମର ଶ୍ରୀରାମ । ଚଲେ ବିସିଖ ନିସିତ ନିକାମ ॥୧॥
ଅବଲୋକି ଖରତର ତୀର । ମୁରି ଚଲେ ନିସିଚର ବୀର ॥
ଭଏ କ୍ରୁଦ୍ଧ ତୀନିଉ ଭାଇ । ଜୋ ଭାଗି ରନ ତେଁ ଜାଇ ॥୨॥
ତେହି ବଧବ ହମ ନିଜ ପାନି । ଫିରେ ମରନ ମନ ମହୁଁ ଠାନି ॥
ଆୟୁଧ ଅନେକ ପ୍ରକାର । ସନମୁଖ ତେ କରହିଁ ପ୍ରହାର ॥୩॥
ରିପୁ ପରମ କୋପେ ଜାନି । ପ୍ରଭୁ ଧନୁଷ ସର ସଂଧାନି ॥
ଛାଁଡ଼େ ବିପୁଲ ନାରାଚ । ଲଗେ କଟନ ବିକଟ ପିସାଚ ॥୪॥

---

(ତ୍ରିଭଙ୍ଗୀ) ଧାଇଁଲେ ବାଣ ବିକରାଳ । ଫୁତ୍କାରି ଯେହ୍ନେ ବହୁବ୍ୟାଳ ।
କୋପନ୍ତେ ଶ୍ରୀରାମ ସମରେ । ଚଳିଲେ ଶାୟକ ନିକରେ ॥୧॥
ବିଲୋକି ଖର ତର ତୀର । ପଳାନ୍ତି ନିଶାଚର ବୀର ॥
ହୋଇଲେ କ୍ରୁଦ୍ଧ ତିନି ଭାଇ । ଯେ ଯିବ ସମରୁ ପଳାଇ ॥୨॥
ତାକୁ ବଧିବୁ ନିଜ ପାଣି । ଫେରିଲେ ମନେ ମୃତ୍ୟୁ ଠାଣି ॥
ଆୟୁଧ ଅନେକ ପ୍ରକାର । ସମ୍ମୁଖେ କଲେ ସେ ପ୍ରହାର ॥୩॥
ରିପୁ ପରମ କୋପ ଜାଣି । ପ୍ରଭୁ ଧନୁରେ ଶର ଟାଣି ॥
ଛାଡ଼ିଲେ ବିପୁଳ ନାରାଚ । କଟନ୍ତି ବିକଟ ପିଶାଚ ॥୪॥

---

ବଧିର ଓ ବ୍ୟାକୁଳ ହୋଇ ପଡ଼ିଲେ । ସେତେବେଳେ ସେମାନଙ୍କର ଟିକିଏ ହେଲେ ଚେତାଚୈତନ୍ୟ ରହିଲା ନାହିଁ ॥ ଦୋହା :—ଶତ୍ରୁକୁ ବଳବାନ୍ ଜାଣି ସେମାନେ ସାବଧାନ ହୋଇ ଧାଇଁଲେ ଏବଂ ଶ୍ରୀରାମଚନ୍ଦ୍ରଙ୍କ ଉପରେ ବହୁତ ପ୍ରକାର ଅସ୍ତ୍ରଶସ୍ତ୍ର ବର୍ଷା କରିବାକୁ ଲାଗିଲେ ॥ ୧୯ (କ) ॥ ଶ୍ରୀ ରଘୁବୀର ସେମାନଙ୍କ ଅସ୍ତ୍ରଶସ୍ତ୍ର ସବୁ ତିଳ ପରି ଟିକି ଟିକି କରି କାଟି ପକାଇଲେ । ତତ୍ପରେ ଧନୁକୁ କର୍ଣ୍ଣପର୍ଯ୍ୟନ୍ତ ଆକର୍ଷି ତାଙ୍କ ଶର ଛାଡ଼ିଲେ ॥ ୧୯ (ଖ) ॥ ଛନ୍ଦ :—ବହୁତ ସର୍ପ 'ଫଁ' 'ଫଁ' କରି ଉଡ଼ି ଯାଉଥିବା ପରି ପ୍ରଭୁଙ୍କ ଧନୁରୁ ଭୟାନକ ବାଣମାନ ଉଡ଼ି ଯାଉଥିଲା । ଶ୍ରୀରାମ ସଂଗ୍ରାମରେ ଅଧିକରୁ ଅଧିକ କ୍ରୋଧାନ୍ୱିତ ହେଉଥା'ନ୍ତି ଏବଂ ତୀକ୍ଷ୍ଣରୁ ତୀକ୍ଷ୍ଣତର ଶର ତାଙ୍କ ଧନୁରୁ ଛୁଟି ଯାଉଥାଏ ॥ ୧ ॥ ଅତ୍ୟନ୍ତ ତୀକ୍ଷ୍ଣ ବାଣ-ସମୂହ ଦେଖି ରାକ୍ଷସବୀରମାନେ ପଛଘୁଞ୍ଚା ଦେଇ ଧାଇଁ ପଳାଇଲେ । ତତ୍ପରେ ଖର, ଦୂଷଣ ଓ ତ୍ରିଶିରା, ତିନି ଭାଇ କ୍ରୁଦ୍ଧ ହୋଇ କହିଲେ, "ଯେ ରଣ-କ୍ଷେତ୍ରରୁ ଦୌଡ଼ି ପଳାଇବ, ତାହାକୁ ଆମେ ନିଜ ହାତରେ ବଧ କରିବୁ ।" ତେଣୁ ପଳାଇ ଯାଉଥିବା ରାକ୍ଷସମାନେ ମନେ ମନେ ମୃତ୍ୟୁ ନିଶ୍ଚିତ ବୋଲି ଜାଣି ଲେଉଟି ପଡ଼ିଲେ ଏବଂ ସମ୍ମୁଖକୁ ଆସି ସେମାନେ ଅନେକ ପ୍ରକାର ଅସ୍ତ୍ର-ଶସ୍ତ୍ରରେ ଶ୍ରୀରାମଙ୍କ ଉପରେ ପ୍ରହାର କରିବାକୁ ଲାଗିଲେ ॥ ୨-୩ ॥ ଶତ୍ରୁକୁ ଅତି କ୍ରୁଦ୍ଧ ବୋଲି ଜାଣି ପ୍ରଭୁ ଧନୁରେ ଶର ଚଢାଇ ବହୁତ ଶର ଛାଡ଼ିଲେ

ଉର ସୀସ ଭୁଜ କର ଚରନ । ଜହଁ ତହଁ ଲଗେ ମହି ପରନ ॥
ଚିକ୍କରତ ଲଗତ ବାନ । ଧର ପରତ କୁଧର ସମାନ ॥୪॥
ଭଟ କଟତ ତନ ସତ ଖଣ୍ଡ । ପୁନି ଉଠତ କରି ପାଷଣ୍ଡ ॥
ନଭ ଉଡତ ବହୁ ଭୁଜ ମୁଣ୍ଡ । ବିନୁ ମୌଲି ଧାୱତ ରୁଣ୍ଡ ॥୫॥
ଖଗ କଙ୍କ କାକ ସୃଗାଲ । କଟକଟହିଁ କଠିନ କରାଲ ॥୬॥

କଟକଟହିଁ ଜଂବୁକ ଭୂତ ପ୍ରେତ ପିସାଚ ଖର୍ପର ସଂଚହୀଁ ।
ବେତାଲ ବୀର କପାଲ ତାଲ ବଜାଇ ଜୋଗିନି ନଂଚହୀଁ ॥
ରଘୁବୀର ବାନ ପ୍ରଚଣ୍ଡ ଖଣ୍ଡହିଁ ଭଟନ୍ହ କେ ଉର ଭୁଜ ସିରା ।
ଜହଁ ତହଁ ପରହିଁ ଉଠି ଲରହିଁ ଧର ଧରୁ ଧରୁ କରହିଁ ଭୟଂକର ଗିରା ॥୧॥

---

ମସ୍ତରେ କର ଶିର ହୃଦ । ପଡଇ ଯହିଁ ତହିଁ ପଦ ॥
ଲାଗନ୍ତେ ବାଣ ଚିତ୍କାରନ୍ତି । ପାହାଡ ସମାନ ପଡନ୍ତି ॥୪॥
ହୁଅଇ ତନୁ ଶତ ଖଣ୍ଡ । ପୁନର୍ଶ୍ଚ ଉଠନ୍ତି ପାଷଣ୍ଡ ॥
ଖେ ବହୁ ଭୁଜ ମୁଣ୍ଡ ଉଡେ । ନିର୍ମୁଣ୍ଡ ଗଣ୍ଡି ଯେ ଦଉଡେ ॥୫॥
ଗୃଧ୍ର ଶୃଗାଳ କାକ କଙ୍କ । କଟି - କଟାନ୍ତି ଭୟାନକ ॥୬॥

କଟି-କଟାନ୍ତି ବୃକ, ଭୂତ ପ୍ରେତ ଜମ୍ବୁକ, ପିଶାଚ ଖର୍ପର ସଞ୍ଚନ୍ତି ।
ବଜାନ୍ତି ଯେ ବେତାଳ ବୀର କପାଳେ ତାଳ, ଯୋଗିନୀ ଆବର ନାଚନ୍ତି ।
ପ୍ରଚଣ୍ଡ ରଘୁବର ଶର, କାଟେ ବୀରଙ୍କ ଭୁଜ ଶିର,
ଯେଣେ ତେଣେ ପଡନ୍ତି ଗଣ୍ଡି ଉଠି ଯୁଝନ୍ତି, ଭୟଦ 'ଧର' 'ଧର' ଗିର ॥୧॥

---

ଏବଂ ସେହି ସବୁ ଶର ଯୋଗେ ଭୟାନକ ରାକ୍ଷସମାନେ କଟିବାକୁ ଲାଗିଲେ ॥ ୪ ॥ ସେମାନଙ୍କ ଛାତି, ମୁଣ୍ଡ, ବାହୁ, ହାତ ଓ ଗୋଡ ଭୂମି ଉପରେ ଯେଉଁଠି ସେଇଠି ପଡିବାକୁ ଲାଗିଲା । ଶର ବାଜିବା ମାତ୍ରେ ସେମାନେ ହାତୀ ପରି ଚିତ୍କାର କରୁଥା'ନ୍ତି । ପାହାଡ ପରି ସେମାନଙ୍କ ଗଣ୍ଡି କଟି ଖସି ପଡୁଥାଏ ॥ ୫ ॥ ଯୋଦ୍ଧାମାନଙ୍କର ଶରୀର ଶହ ଶହ ଖଣ୍ଡ ହୋଇ ଯାଉଥାଏ । ସେମାନେ ପୁଣି ମାୟାବଳରେ ଉଠି ଛିଡା ହେଉଥା'ନ୍ତି । ଆକାଶରେ ବହୁତ ବାହୁ ଓ ମୁଣ୍ଡ ଉଡୁଥାଏ ଏବଂ ମୁଣ୍ଡ ବିନା ଗଣ୍ଡି ସବୁ ଦୌଡୁଥାଏ ॥ ୬ ॥ ଚିଲ, କାଉ ଆଦି ପକ୍ଷୀ ଓ ବିଲୁଆମାନେ ଭୟଙ୍କର କର୍କଶ ରଡି କରୁଥା'ନ୍ତି ॥ ୭ ॥ ଛନ୍ଦ :—ଶୃଗାଳମାନେ କଟ କଟ ଶବ୍ଦ କରୁଥାଆନ୍ତି; ଭୂତପ୍ରେତ ଓ ପିଶାଚମାନେ ଖୋପଡି ସବୁ ସଂଗ୍ରହ କରୁଥାଆନ୍ତି । ବୀର ବେତାଳମାନେ ଖୋପଡି ଉପରେ ତାଳ ବଜାଉଥା'ନ୍ତି ଏବଂ ଯୋଗିନୀମାନେ ନାଚ କରୁଥା'ନ୍ତି । ଶ୍ରୀ ରଘୁବୀରଙ୍କ ପ୍ରଚଣ୍ଡ ବାଣ ଯୋଦ୍ଧାମାନଙ୍କ ବକ୍ଷସ୍ଥଳ, ବାହୁ ଓ ମସ୍ତକ ପ୍ରଭୃତିକୁ ଖଣ୍ଡବିଖଣ୍ଡିତ କରି ପକାଉଥାଏ । ସେମାନଙ୍କ ଗଣ୍ଡି ଏଠିସେଠି ଖସି ପଡୁଥାନ୍ତି, ସେଗୁଡିକ

ଅଁତାଓ୍ୱରି ଗହ୍ୱ ଉଡ଼ତ ଗୀଧ ପିସାଚ କର ଗହ୍ୱ ଧାଓ୍ୱହିଁ ।
ସଂଗ୍ରାମ ପୁର ବାସୀ ମନହୁଁ ବହୁ ବାଲ ଗୁଡ଼ୀ ଉଡ଼ାଓ୍ୱହିଁ ॥
ମାରେ ପଛାରେ ଉର ବିଦାରେ ବିପୁଲ ଭଟ କହଁରତ ପରେ ॥
ଅବଲୋକି ନିଜ ଦଲ ବିକଲ ଭଟ ତିସିରାଦି ଖର ଦୂଷନ ଫିରେ ॥୨॥

ସର ସକ୍ତି ତୋମର ପରସୁ ସୂଲ କୃପାନ ଏକହି ବାରହିଁ ।
କରି କୋପ ଶ୍ରୀରଘୁବୀର ପର ଅଗନିତ ନିସାଚର ଡାରହିଁ ॥
ପ୍ରଭୁ ନିମିଷ ମହୁଁ ରିପୁ ସର ନିବାରି ପଚାରି ଡାରେ ସାୟକା ।
ଦସ ଦସ ବିସିଖ ଉର ମାଝ ମାରେ ସକଲ ନିସିଚର ନାୟକା ॥୩॥

ମହି ପରତ ଉଠି ଭଟ ଭିରତ ମରତ ନ କରତ ମାୟା ଅତି ଘନୀ ।
ସୁର ଡରତ ଚୌଦହ ସହସ ପ୍ରେତ ବିଲୋକି ଏକ ଅଓ୍ୱଧ ଧନୀ ॥
ସୁର ମୁନି ସଭୟ ପ୍ରଭୁ ଦେଖି ମାୟାନାଥ ଅତି କୌତୁକ କରେ୍ୟା ।
ଦେଖହିଁ ପରସପର ରାମ କରି ସଂଗ୍ରାମ ରିପୁଦଲ ଲରି ମରେ୍ୟା ॥୪॥

---

ଅନ୍ତ ଘେନି ଉଡନ୍ତେ ଗୃଧ୍ର, ପିଶାଚ ହସ୍ତେ ଧରିଣ ଭୂମିରେ ଧାଆନ୍ତି ।
ସଂଗ୍ରାମ ପୁରବାସୀ ଯେସନ୍ତେ ବାଳକ ଗ୍ରୀଷ୍ମ ଋତୁରେ ପତଙ୍ଗ ଉଡାନ୍ତି ।
ବହୁତ ମରନ୍ତି, ହାରନ୍ତି, ଛାତି ଫାଟି କେ ଚିତ୍କାରନ୍ତି,
ଦଶା ନିଜ ଦଳର ଦେଖି ବିକଟ ଖର ଦୂଷଣ ତ୍ରିଶିରା ଆସନ୍ତି ॥୨॥

ସ୍ତୂପ, ମୁଦ୍‌ଗର, ବାଣ ଶକ୍ତି, ଶୂଳ, କୃପାଣ ପରଶୁ ଏକ ବାର କରେ ।
କୋପ କରି ପ୍ରଖର ରଘୁବୀର ଉପର ଫିଙ୍ଗିଲେ ବହୁ ନିଶାଚରେ ॥
ପ୍ରଭୁ ନିମିଷେ ଶତ୍ରୁ ଶର, କାଟିଲେ ଶାୟକେ ନିକର ॥
ପୁଣି ସବ ଦୈତ୍ୟେଶ ହୃଦୟେ ଦଶ ଦଶ ବିଶିଖ ମାରିଲେ ସତ୍ୱର ॥୩॥

ପୃଥିବୀରେ ପଡନ୍ତି ପୁଣି ଉଠି ଲଢନ୍ତି ନ ମରି ମାୟା ଆଚରନ୍ତି ।
ଦେଖି ଡରନ୍ତି ସୁରେ ଦୈତ୍ୟ ଚୌଦ୍ଦହଜାରେ ଏକାକୀ କୋଶଳ ଭୂପତି ॥
ଦେଖି ସୁରଙ୍କୁ ଭୟାକ୍ରାନ୍ତ, କୌତୁକ କଲେ ମାୟାକାନ୍ତ ॥
ପରସ୍ପରଙ୍କୁ ରାମ ଦେଖି କରି ସଂଗ୍ରାମ ପଞ୍ଚତ୍ୱ ଶତ୍ରୁ ହେଲେ ପ୍ରାପ୍ତ ॥୪॥

---

ପୁଣି ଉଠି ଲଢୁଆନ୍ତି ଏବଂ 'ଧର' 'ଧର' କହି ଭୟଙ୍କର ଶବ୍ଦ କରୁଥାʼନ୍ତି ॥ ୧ ॥
ଅନ୍ତ-ଦଉଡ଼ର ଗୋଟିଏ ମୁଣ୍ଡ ଧରି ଶାଗୁଣା ଉଡୁଆଆନ୍ତି ଏବଂ ଅନ୍ୟ ମୁଣ୍ଡଟିକୁ ଧରି ପିଶାଚ ଦୌଡ଼ୁଆʼନ୍ତି । ଜଣା ପଡୁଥାଏ, ସତେ ଯେପରି ସଂଗ୍ରାମ-ନଗର-ନିବାସୀ ବହୁତ ବାଳକ ଗୁଡ଼ି ଉଡାଇବାରେ ବ୍ୟସ୍ତ । ଅନେକ ଯୋଦ୍ଧା ନିହତ ଓ ପରାସ୍ତ ହେଲେ । ଅନେକଙ୍କ ଛାତି ଫାଟି ଯାଇଥାଏ ଏବଂ ସେମାନେ ପଡି ଚିତ୍କାର କରୁଥାଆନ୍ତି । ଆପଣା ସେନାଙ୍କ ବ୍ୟାକୁଳ ଦଶା ଦେଖି ତ୍ରିଶିରା ଓ ଖର-ଦୂଷଣ ଆଦି ଯୋଦ୍ଧା ଶ୍ରୀରାମଙ୍କ

ରାମ ରାମ କହି ତନୁ ତଜହିଁ ପାୱହିଁ ପଦ ନିର୍ବାନ ।
କରି ଉପାୟ ରିପୁ ମାରେ ଛନ ମହୁଁ କୃପାନିଧାନ ॥୨୦ (କ)॥
ହରଷିତ ବରଷହିଁ ସୁମନ ସୁର ବାଜହିଁ ଗଗନ ନିସାନ ।
ଅସ୍ତୁତି କରି କରି ସବ ଚଲେ ସୋଭିତ ବିବିଧ ବିମାନ ॥୨୦ (ଖ)॥
ଜବ ରଘୁନାଥ ସମର ରିପୁ ଜୀତେ । ସୁର ନର ମୁନି ସବ କେ ଭୟ ବୀତେ ॥
ତବ ଲଛିମନ ସୀତହି ଲୈ ଆଏ । ପ୍ରଭୁ ପଦ ପରତ ହରଷି ଉର ଲାଏ ॥୧॥
ସୀତା ଚିତୱ ସ୍ୟାମ ମୃଦୁ ଗାତା । ପରମ ପ୍ରେମ ଲୋଚନ ନ ଅଘାତା ॥
ପଞ୍ଚବଟୀଁ ବସି ଶ୍ରୀରଘୁନାୟକ । କରତ ଚରିତ ସୁର ମୁନି ସୁଖଦାୟକ ॥୨॥

---

'ରାମ' 'ରାମ' କହି ତନୁ ପରିହରି ପାଆନ୍ତି ପଦ ନିର୍ବାଣ ।
କରିଣ ଉପାୟ ରିପୁ କଲେ କ୍ଷୟ କ୍ଷଣକେ କୃପା-ନିଧାନ ॥୨୦ (କ)॥
ବିବୁଧେ ହରଷି ସୁମନ ବରଷି ବଜାଇ ନଭେ ନିଷାଣ ।
ସ୍ତୁତି କରି କରି ସର୍ବେ ଗଲେ ଚଢ଼ି ଶୋଭିତ ନାନା ବିମାନ ॥୨୦ (ଖ)॥
ଯେବେ ରଘୁନାଥ ରଣେ ରିପୁ କଲେ ଜୟ । ସୁର ନର ମୁନି ସର୍ବେ ହୋଇଲେ ନିର୍ଭୟ ॥
ତହୁଁ ଲକ୍ଷ୍ମଣ ସୀତାଙ୍କୁ ଘେନି ଆଗମିଲେ । ପ୍ରଭୁପାଦେ ପଡ଼ୁଁ ହର୍ଷେ ହୃଦେ ଲଗାଇଲେ ॥୧॥
ଶ୍ୟାମ ମୃଦୁ ତନୁ ସୀତା କରି ବିଲୋକନ । ପରମ ପ୍ରେମରେ ତୃପ୍ତ ନ ହୁଏ ଲୋଚନ ॥
ପଞ୍ଚବଟୀ ବନେ ବାସ କରି ରଘୁପତି । ସୁର ମୁନି ସୁଖ-ଦାୟୀ ଚରିତ କରନ୍ତି ॥୨॥

---

ଆଡ଼କୁ ମୁହାଁଇଲେ ॥ ୨ ॥ ଅଗଣିତ ରାକ୍ଷସ କ୍ରୋଧ କରି ଏକାଥରକେ ବାଣ, ଶକ୍ତି, ଖଲ, ଫାର୍ସା, ଶୂଳ ଓ କୃପାଣ ଆଦି ସବୁ ଅସ୍ତ୍ରଶସ୍ତ୍ର ଶ୍ରୀ ରଘୁବୀରଙ୍କ ଉପରକୁ ଛାଡ଼ିଲେ । ପ୍ରଭୁ କ୍ଷଣକ ମଧ୍ୟରେ ଶତ୍ରୁମାନଙ୍କ ବାଣ ସବୁ କାଟି ଦେଲେ ଏବଂ ଆହ୍ୱାନ ଦେଇ ସେମାନଙ୍କ ଉପରେ ନିଜର ବାଣ ନିକ୍ଷେପ କଲେ । ପ୍ରତ୍ୟେକ ରାକ୍ଷସ-ସେନାପତିର ବକ୍ଷରେ ଦଶ-ଦଶ କରି ବାଣ ବିନ୍ଧିଲେ ॥ ୩ ॥ ଯୋଦ୍ଧାମାନେ ପୃଥିବୀ ଉପରେ ଖସି ପଡ଼ୁଥାଆନ୍ତି । ପୁଣି ଉଠି ଲଢ଼ୁଥାଆନ୍ତି । ମରୁ ନ ଥା'ନ୍ତି, ବରଂ ବହୁତ ପ୍ରକାର ଅତି-ମାୟା ରଚନା କରୁଥା'ନ୍ତି । ଦେବତାମାନେ ପ୍ରେତ (ରାକ୍ଷସ)ଙ୍କ ସଂଖ୍ୟା ଚଉଦ ହଜାର ଓ ଅଯୋଧ୍ୟାନାଥ ଶ୍ରୀରାମଙ୍କୁ ଏକାକୀ ଦେଖି ଡରୁଥାଆନ୍ତି । ଦେବତା ଓ ମୁନିମାନଙ୍କୁ ଭୟଭୀତ ହେବାର ଦେଖି ମାୟାଧୀଶ ପ୍ରଭୁ ଗୋଟିଏ ବଡ଼ କୌତୁକ କଲେ । ସେହି ମାୟା ବଳରେ ଶତ୍ରୁସୈନ୍ୟମାନେ ପରସ୍ପରକୁ ରାମ ରୂପରେ ଦେଖିଲେ ଏବଂ ପରସ୍ପର ମଧ୍ୟରେ ଯୁଦ୍ଧ କରି ମଲେ ॥ ୪ ॥ ଦୋହା .—ସମସ୍ତେ "ଏହି ରାମ, ଏହାକୁ ମାର" ଏହିପରି 'ରାମ' 'ରାମ' କହି ଶରୀର ତ୍ୟାଗ କରୁଥା'ନ୍ତି ଏବଂ ନିର୍ବାଣ ପଦ ଲାଭ କରୁଥା'ନ୍ତି । କୃପାନିଧାନ ଶ୍ରୀରାମ ଏହି ଉପାୟ ବଳରେ କ୍ଷଣକ ମଧ୍ୟରେ ଶତ୍ରୁମାନଙ୍କୁ ମାରି ପକାଇଲେ ॥ ୨୦ (କ) ॥ ଦେବତାମାନେ ପ୍ରସନ୍ନ ମନରେ ପୁଷ୍ପବୃଷ୍ଟି କରୁଥା'ନ୍ତି । ଆକାଶରେ ନାଗରା ବାଜୁଥାଏ । ତତ୍ପରେ ସେମାନେ ସମସ୍ତେ ସ୍ତୁତି କରି ଅନେକ

ଧୂଆଁ ଦେଖି ଖର ଦୂଷନ କେରା । ଜାଇ ସୁପନଖା ରାବନ ପ୍ରେରା ॥
ବୋଲି ବଚନ କ୍ରୋଧ କରି ଭାରୀ । ଦେସ କୋସ କୈ ସୁରତି ବିସାରୀ ॥୩॥
କରସି ପାନ ସୋଔସି ଦିନୁ ରାତୀ । ସୁଧି ନହିଁ ତବ ସିର ପର ଆରାତୀ ॥
ରାଜ ନୀତି ବିନୁ ଧନ ବିନୁ ଧର୍ମା । ହରିହି ସମର୍ପେ ବିନୁ ସତକର୍ମା ॥୪॥
ବିଦ୍ୟା ବିନୁ ବିବେକ ଉପଜାଏଁ । ଶ୍ରମ ଫଲ ପଢ଼େଁ କିଏଁ ଅରୁ ପାଏଁ ॥
ସଙ୍ଗ ତେଁ ଜତୀ କୁମନ୍ତ୍ର ତେଁ ରାଜା । ମାନ ତେଁ ଜ୍ଞାନ ପାନ ତେଁ ଲାଜା ॥୫॥
ପ୍ରୀତି ପ୍ରନୟ ବିନୁ ମଦ ତେଁ ଗୁନୀ । ନାସହିଁ ବେଗି ନୀତି ଅସି ସୁନୀ ॥୬॥

ରିପୁ ରୁଜ ପାବକ ପାପ ପ୍ରଭୁ ଅହି ଗନିଅ ନ ଛୋଟ କରି ।
ଅସ କହି ବିବିଧ ବିଲାପ କରି ଲାଗୀ ରୋଦନ କରନ ॥୨୧ (କ)॥

---

ଖର ଦୂଷଣ ଆଦିଙ୍କ ଧ୍ୱଂସ ବିଲୋକଣି । ଶୂର୍ପଣଖା ରାବଣକୁ ପ୍ରେରିଲା ଯାଇଣ ॥
ବୋଇଲା ବଚନ କ୍ରୋଧ ଅତିଶୟ କରି । ଦେଶ କୋଷାଦିର ନାହିଁ ସ୍ମରଣ ତୋହରି ॥୩॥
ସୁରାପାନ କରି ଶୋଇ ରହୁ ଦିନ ରାତି । ଖବର ନାହିଁ, ତୋ ଶିର ଉପରେ ଅରାତି ॥
ନୀତି ବିନା ରାଜ୍ୟ ତଥା ଧନ ବିନା ଧର୍ମ । ହରି ସମର୍ପଣ ବିନା ନାନା ଶୁଭ କର୍ମ ॥୪॥
ବିଦ୍ୟା, ବିବେକ ଉତ୍ପନ୍ନ କରାଇବା ବିନା । ପଢିବା ଆଦିର ଶ୍ରମ ଶେଷେ ସାର ସିନା ॥
ଆସକ୍ତିରେ ଯତି ପୁଣି ରାଜା କୁମନ୍ତ୍ରରେ । ମାନ ଦୋଷେ ଜ୍ଞାନ, ଲଜ୍ଜା ମଦ୍ୟ ସେବନରେ ॥୫॥
ନମ୍ରତା ବିହୁନେ ପ୍ରୀତି, ଗର୍ବ ଦୋଷେ ଗୁଣୀ । ନଷ୍ଟ ଶୀଘ୍ର, ଏମନ୍ତ ମୁଁ ନୀତି ଅଛି ଶୁଣି ॥୬॥

ଶତ୍ରୁ, ରୋଗ, ସର୍ପ, ପ୍ରଭୁ, ଅଗ୍ନି, ପାପ କ୍ଷୁଦ୍ର ନ ଗଣ ଏହାଙ୍କୁ ।
ଏହା କହି ନାନା ପ୍ରକାରେ ବିଲପି ଲାଗିଲା ସେ କାନ୍ଦିବାକୁ ॥୨୧(କ)॥

---

ସୁଶୋଭିତ ବିମାନରେ ଚଳିଲେ ॥ ୨୦ (ଖ) ॥ ଚୌପାଈ .—ଯେତେବେଳେ ଶ୍ରୀ ରଘୁନାଥ ଯୁଦ୍ଧରେ ଶତ୍ରୁମାନଙ୍କୁ ଜୟ କଲେ ଏବଂ ଦେବତା, ମନୁଷ୍ୟ ଓ ମୁନି, ସମସ୍ତଙ୍କ ଭୟ ଦୂର ହୋଇଗଲା, ସେତେବେଳେ ଲକ୍ଷ୍ମଣ ସୀତାଙ୍କୁ ନେଇ ଆସିଲେ । ପ୍ରଭୁଙ୍କ ଚରଣରେ ସେମାନେ ପଡ଼ୁଥିବା ବେଳେ ପ୍ରଭୁ ପ୍ରସନ୍ନ ମନରେ ସେମାନଙ୍କୁ ଉଠାଇ କୋଳ କରି ପକାଇଲେ ॥ ୧ ॥ ସୀତା ଶ୍ରୀରାମଙ୍କ ଶ୍ୟାମଳ ଓ କୋମଳ ଶରୀରକୁ ପ୍ରେମ ସହକାରେ ଦେଖୁଥା'ନ୍ତି । ନେତ୍ର ପରିତୃପ୍ତ ହେଉ ନ ଥାଏ । ଏହି ରୂପେ ପଞ୍ଚବଟୀରେ ବାସ କରୁଥିବା ସମୟରେ ଶ୍ରୀରାମ ଦେବତା ଓ ମୁନିଗଣଙ୍କ ସୁଖ-ଦାୟକ ଲୀଳା କରିବାକୁ ଲାଗିଲେ ॥ ୨ ॥ ଖର-ଦୂଷଣଙ୍କ ଧ୍ୱଂସ ଦେଖି ଶୂର୍ପଣଖା ଯାଇ ରାବଣକୁ ଉତ୍ତେଜିତ କଲା । ଅତିଶୟ କ୍ରୋଧ ସହକାରେ ସେ ବଚନ ବୋଇଲା, "ତୁ ଦେଶ ଓ ରାଜକୋଷର ଖବର ଭୁଲିଗଲୁଣି ॥ ୩ ॥ ମଦ ପିଉଛୁ, ଦିନରାତି ପଡି ଶୋଇ ରହୁଛୁ । ଶତ୍ରୁ ତୋ ମୁଣ୍ଡ ଉପରେ, ଏ ଖବର ତୁ ରଖିନାହୁଁ ? ନୀତି ବିନା ରାଜ୍ୟ ଓ ଧର୍ମ ବିନା ଧନ ଲାଭ କଲେ, ଭଗବାନଙ୍କୁ ସମର୍ପଣ ନ କରି ଉତ୍ତମ କର୍ମ କଲେ ଏବଂ ବିବେକ ଉତ୍ପନ୍ନ ନ କରି ବିଦ୍ୟା ପଢିଲେ ପରିଣାମରେ କେବଳ ପରିଶ୍ରମ ହିଁ ସାର ହେବ ।

ସଭା ମାଁଝ ପରି ବ୍ୟାକୁଲ ବହୁ ପ୍ରକାର କହ ରୋଇ ।
ତୋହି ଜିଅତ ଦସକଂଧର ମୋରି କି ଅସି ଗତି ହୋଇ ॥୨୧ (ଖ)॥
ସୁନତ ସଭାସଦ ଉଠେ ଅକୁଲାଈ । ସମୁଝାଈ ଗହି ବାଁହ ଉଠାଈ ॥
କହ ଲଂକେସ କହସି ନିଜ ବାତା । କେଇଁ ତବ ନାସା କାନ ନିପାତା ॥୧॥
ଅବଧ ନୃପତି ଦସରଥ କେ ଜାଏ । ପୁରୁଷ ସିଂଘ ବନ ଖେଲନ ଆଏ ॥
ସମୁଝି ପରୀ ମୋହି ଉନ୍ହ କୈ କରନୀ । ରହିତ ନିସାଚର କରିହହିଁ ଧରନୀ ॥୨॥
ଜିନ୍ହ କର ଭୁଜବଲ ପାଇ ଦସାନନ । ଅଭୟ ଭଏ ବିଚରତ ମୁନି କାନନ ॥
ଦେଖତ ବାଲକ କାଲ ସମାନା । ପରମ ଧୀର ଧନ୍ୱୀ ଗୁନ ନାନା ॥୩॥

---

ସଭା ମଧ୍ୟ ସ୍ଥଳେ ପଡ଼ିଲା ବିକଳେ କହି କାନ୍ଦି ନାନା ମତେ ॥
ଦଶକଣ୍ଠ, ତୋର ପ୍ରାଣ ଥାଉ ମୋର ଗତି କାହୁଁ ଏମନ୍ତେ ॥୨୧ (ଖ)॥
ଏହା ଶୁଣି ସଭାସଦେ ଆକୁଳେ ଉଠିଲେ । ବାହୁ ଧରି ଉଠାଇଣ ବହୁ ବୁଝାଇଲେ ॥
କହ ଆପଣା ବୃତ୍ତାନ୍ତ ବୋଲେ ଲଙ୍କେଶ୍ୱର । କେ କଲା ନାସିକା କର୍ଣ୍ଣ-ଛେଦନ ତୋହର ॥୧॥
ଅଯୋଧ୍ୟା ନୃପତି ଦଶରଥଙ୍କ ନନ୍ଦନ । ପୁରୁଷ-ସିଂହ କ୍ରୀଡ଼ାର୍ଥେ ଆସିଛନ୍ତି ବନ ॥
ବୁଝି ପଡ଼ୁଅଛି ମୋତେ କର୍ମ ତାହାଙ୍କର । କରିବେ ବସୁନ୍ଧରାକୁ ଶୂନ୍ୟ ନିଶାଚର ॥୨॥
ଯାହାଙ୍କର ଭୁଜବଳ ପାଇ ଦଶାନନ । ଅଭୟ ହୋଇଣ ମୁନି ଭ୍ରମନ୍ତି କାନନ ॥
ଅଟନ୍ତି କାଳ ସମାନ ଦେଖନ୍ତେ ବାଳୁତ । ଅତି ଧୀର ଧନୁର୍ଦ୍ଧାରୀ ନାନା ଗୁଣ ଯୁକ୍ତ ॥୩॥

---

ବିଷୟ ସଙ୍ଗରେ ସନ୍ନ୍ୟାସୀ, କୁମନ୍ତ୍ରଣା ହେତୁ ରାଜା, ମାନ ଦ୍ୱାରା ଜ୍ଞାନ, ମଦିରା-ପାନ ହେତୁ ଲଜ୍ଜା, ନମ୍ରତା ବିନା ପ୍ରୀତି ଓ ମଦ (ଅହଙ୍କାର) ହେତୁ ଗୁଣୀ ଶୀଘ୍ର ନଷ୍ଟ ହୁଏ । ଏହି ପ୍ରକାର ନୀତିବାକ୍ୟ ମୁଁ ଶୁଣିଅଛି ॥ ୪-୬ ॥ ସୋରଠା :—ଶତ୍ରୁ, ରୋଗ, ଅଗ୍ନି, ପାପ, ସ୍ୱାମୀ ଓ ସର୍ପକୁ କ୍ଷୁଦ୍ର ବୋଲି ମନେ କରିବା ଉଚିତ ନୁହେଁ ।" ଏହିପରି କହି ଶୂର୍ପଣଖା ଅନେକ ପ୍ରକାରେ ବିଳାପ କରିବାକୁ ଲାଗିଲା ॥ ୨୧ (କ) ॥ ଦୋହା — ରାବଣର ସଭା ମଧ୍ୟରେ ସେ ବ୍ୟାକୁଳ ହୋଇ ପଡ଼ି ବହୁତ ପ୍ରକାରେ ବିଳାପ କରୁଥାଏ ଏବଂ କହୁଥାଏ, "ଆରେ ଦଶଗ୍ରୀବ ! ତୁ ଜୀଇ ଥାଉଁ ଥାଉଁ ମୋର କ'ଣ ଏପରି ଦଶା ହେବା ସମୀଚୀନ ?" ॥ ୨୧ (ଖ) ॥ ଚୌପାଈ :—ଶୂର୍ପଣଖାର ବଚନ ଶୁଣିବା ମାତ୍ରେ ସଭାସଦ୍‌ମାନେ ବ୍ୟାକୁଳ ହୋଇ ଉଠିଲେ । ସେମାନେ ଶୂର୍ପଣଖାର ବାହୁ ଧରି ତାହାକୁ ଉଠାଇଲେ ଏବଂ ବୁଝାଇଲେ । ଲଙ୍କାପତି ରାବଣ କହିଲା, "ତୋ ନିଜ କଥା କହ ମ ! କିଏ ତୋ ନାକ-କାନ କାଟିଲା ?" ॥ ୧ ॥ ସେ କହିଲା, "ଅଯୋଧ୍ୟାର ରାଜା ଦଶରଥଙ୍କ ପୁରୁଷସିଂହ ପୁତ୍ର ଶିକାର ଉଦ୍ଦେଶ୍ୟରେ ବନକୁ ଆସିଅଛନ୍ତି । ତାଙ୍କ କାର୍ଯ୍ୟରୁ ମୋତେ ତ ଜଣା ପଡ଼ୁଛି ଯେ ସେ ପୃଥିବୀକୁ ରାକ୍ଷସଶୂନ୍ୟ କରିଦେବେ ॥ ୨ ॥ ହେ ଦଶମୁଖ ! ତାଙ୍କର ବାହୁବଳର ଆଶ୍ରୟ ପାଇ ମୁନିମାନେ ବନରେ ନିର୍ଭୟରେ ବିଚରଣ କରିବାକୁ ଲାଗିଲେଣି । ସେମାନେ ଦେଖିବାକୁ ତ ବାଳକ, କିନ୍ତୁ ବାସ୍ତବରେ କାଳ

ଅତୁଲିତ ବଲ ପ୍ରତାପ ଦ୍ୱୌ ଭ୍ରାତା । ଖଲ ବଧ ରତ ସୁର ମୁନି ସୁଖଦାତା ॥
ସୋଭାଧାମ ରାମ ଅସ ନାମା । ତିନ୍ହ କେଁ ସଂଗ ନାରି ଏକ ସ୍ୟାମା ॥୪॥
ରୂପରାସି ବିଧି ନାରି ସଁୱାରୀ । ରତି ସତ କୋଟି ତାସୁ ବଲିହାରୀ ॥
ତାସୁ ଅନୁଜ କାଟେ ଶ୍ରୁତି ନାସା । ସୁନି ତବ ଭଗିନି କରହିଁ ପରିହାସା ॥୫॥
ଖର ଦୂଷନ ସୁନି ଲଗେ ପୁକାରା । ଛନ ମହୁଁ ସକଲ କଟକ ଉନ୍ହ ମାରା ॥
ଖର ଦୂଷନ ତିସିରା କର ଘାତା । ସୁନି ଦସସୀସ ଜରେ ସବ ଗାତା ॥୬॥

ସୂପନଖହି ସମୁଝାଇ କରି ବଲ ବୋଲେସି ବହୁ ଭାଁତି ।
ଗୟଉ ଭବନ ଅତି ସୋଚବସ ନୀଦ ପରଇ ନହିଁ ରାତି ॥୨୨॥

ସୁର ନର ଅସୁର ନାଗ ଖଗ ମାହୀଁ । ମୋରେ ଅନୁଚର କହଁ କୋଉ ନାହୀଁ ॥
ଖର ଦୂଷନ ମୋହି ସମ ବଲବଂତା । ତିନ୍ହହି କୋ ମାରଇ ବିନୁ ଭଗବଂତା ॥୧॥

---

ଅତୁଳିତ ପରାକ୍ରମ-ବଳେ ବେନି ଭ୍ରାତା । ଖଳ-ବଧରତ ସୁର-ମୁନି-ସୁଖଦାତା ॥
ଶୋଭାଧାମ ରାମ ନାମ ବଡ଼ର ଏମନ୍ତେ । ଅଛି ଏକ ଶ୍ୟାମା ନାରୀ ତାହାର ସଙ୍ଗତେ ॥୪॥
ରୂପ ରାଶିରେ ବିଧାତା ଗଢ଼ିଛି ବାମାକୁ । ରତି ଶତ କୋଟି ହୋନ୍ତି ଉତ୍ସର୍ଗ ତାହାକୁ ॥
ତା ଅନୁଜ କରିଲା ମୋ ଶ୍ରୁତି ନାସା ନାଶ । 'ମୁଁ ତବ ଭଗିନୀ', ଶୁଣି କଲେ ପରିହାସ ॥୫॥
ସାହାଯ୍ୟ ହେତୁ ଡାକନ୍ତେ ଖର ଦୂଷଣଙ୍କୁ । କ୍ଷଣ ମଧ୍ୟେ ନାଶିଲେ ସେ ସକଳ ସୈନ୍ୟଙ୍କୁ ॥
ଖର ଦୂଷଣ ଆବର ତ୍ରିଶିରାଙ୍କ ହତ । ଶୁଣି ରାବଣର ଅଙ୍ଗ ଜଳିଲା ସମସ୍ତ ॥୬॥

ବୁଝାଇଣ ଶୂର୍ପଣଖାକୁ ଲଙ୍କେଶ ପ୍ରବଳ ବର୍ଣ୍ଣନ କରି ।
ଗମିଲା ନିବାସେ, ଅତି ଚିନ୍ତାବଶେ ନିଦ ନ ଲାଗେ ଶର୍ବରୀ ॥୨୨॥

ସୁରାସୁର ନର ନାଗ ଖଗ ମଧ୍ୟେ କାହିଁ । ମୋ ଅନୁଚର ସମାନ କେହି ସୁଦ୍ଧା ନାହିଁ ॥
ଖର ଦୂଷଣ ମୋ ସମ ବୀର ବଳବାନ । ତାହାଙ୍କୁ ମାରିବ କିଏ ବିନା ଭଗବାନ ॥୧॥

---

ସମାନ । ସେମାନେ ପରମଧୀର, ମାତ୍ର ଶ୍ରେଷ୍ଠ ଧନୁର୍ଦ୍ଧର ଏବଂ ଅନେକ ଗୁଣରେ ପରିପୂର୍ଣ୍ଣ ॥ ୩ ॥ ଉଭୟ ଭାଇଙ୍କ ବଳ ଓ ପ୍ରତାପ ଅତୁଳନୀୟ । ଦୁଷ୍ଟଗଣଙ୍କୁ ବଧ କରିବାରେ ସେ ଦୁହେଁ ଏବେ ବ୍ୟସ୍ତ । ଖଳବଧ କରି ସେ ଦେବତା ଓ ମୁନିମାନଙ୍କୁ ସୁଖ ଦାନ କରୁଅଛନ୍ତି । ତାଙ୍କ ମଧ୍ୟରୁ 'ରାମ' ବୋଲି ଯାହାଙ୍କ ନାମ, ସେ ଶୋଭାର ଧାମ । ତାଙ୍କ ସହିତ ଗୋଟିଏ ତରୁଣୀ ସୁନ୍ଦରୀ ସ୍ତ୍ରୀ ଅଛି ॥ ୪ ॥ ବିଧାତା ସେହି ସ୍ତ୍ରୀକୁ ଏପରି ମନୋହର ରୂପରାଶି କରି ଗଢ଼ିଅଛି ଯେ, କୋଟିଏ ରତି ସୁଦ୍ଧା ସେ ରୂପ ଆଗରେ ନିଅଣ୍ଟ ଦିସିବେ । ତାଙ୍କର ସାନ ଭାଇ ମୋ ନାକ-କାନ କାଟି ଦେଇଛି । ମୁଁ ତୋର ଭଉଣୀ—ଏହା ଶୁଣି ସେମାନେ ମୋତେ ଉପହାସ କରିବାକୁ ଲାଗିଲେ ॥ ୫ ॥ ମୋର ଚିତ୍କାର ଶୁଣି ଖର-ଦୂଷଣ ମୋତେ ସାହାଯ୍ୟ କରିବା ନିମନ୍ତେ ଆସିଲେ । କିନ୍ତୁ ସେମାନେ କ୍ଷଣକ ମଧ୍ୟରେ ସମସ୍ତ ସେନାଙ୍କୁ ମାରି ପକାଇଲେ ।" ଖର, ଦୂଷଣ ଓ ତ୍ରିଶିରାର ବଧ ବିଷୟ ଶୁଣି ରାବଣର ସମସ୍ତ ଅଙ୍ଗ ଜଳି ଉଠିଲା ॥ ୬ ॥ ଦୋହା '—ସେ ଶର୍ପଣଖାକୁ ବୁଝାଇ ନାନା

ସୁର ରଂଜନ ଭଂଜନ ମହି ଭାରା । ଜୌଁ ଭଗବଂତ ଲୀହ୍ନ ଅବତାରା ॥
ତୌ ମୈଁ ଜାଇ ବୈରୁ ହଠି କରଊଁ । ପ୍ରଭୁ ସର ପ୍ରାନ ତଜେଁ ଭବ ତରଊଁ ॥୨॥
ହୋଇହି ଭଜନୁ ନ ତାମସ ଦେହା । ମନ କ୍ରମ ବଚନ ମନ୍ତ୍ର ଦୃଢ ଏହା ॥
ଜୌଁ ନରରୂପ ଭୂପସୁତ କୋଊ । ହରିହଉଁ ନାରି ଜୀତି ରନ ଦୋଊ ॥୩॥
ଚଲା ଅକେଲ ଜାନ ଚଢି ତହୱାଁ । ବସ ମାରୀଚ ସିଂଧୁ ତଟ ଜହୱାଁ ॥
ଇହାଁ ରାମ ଜସି ଜୁଗୁତି ବନାଈ । ସୁନହୁ ଉମା ସୋ କଥା ସୁହାଈ ॥୪॥

ଲଛିମନ ଗଏ ବନହିଁ ଜବ ଲେନ ମୂଲ ଫଲ କଂଦ ।
ଜନକସୁତା ସନ ବୋଲେ ବିହସି କୃପା ସୁଖ ବୃନ୍ଦ ॥୨୩॥

---

ସୁର ରଞ୍ଜନ ଭଞ୍ଜନ ବସୁମତୀ ଭାର । ଯେବେ ଜଗନ୍ନାଥ ହୋଇଥାନ୍ତି ଅବତାର ॥
ତେବେ ମୁଁ ଯାଇଣ ହଠେ ଶତ୍ରୁତା କରିବି । ପ୍ରଭୁ ଶରେ ପ୍ରାଣ ତେଜି ସଂସାରୁ ତରିବି ॥୨॥
ଭଜନ ହୋଇ ନ ପାରେ ତାମସ ଦେହରେ । ଏ ଦୃଢ ସଂକଳ୍ପ ମନ କର୍ମ ବଚନରେ ॥
ଯେବେ ନର ରୂପ କେହି ନୃପତି ତନୟ । ହରିବି ନାରୀ ତେନଙ୍କ ରଣେ କରି ଜୟ ॥୩॥
ଚଳି ସେ ଏକାକୀ ଯାନ ଆରୋହଣ ତହିଁ । ସମୁଦ୍ରତଟେ ମାରୀଚ ବାସ କରେ ଯହିଁ ॥
ଯେମନ୍ତ କୌଶଳ ଏଣେ କଲେ ରଘୁବର । ଶୁଣ ପାର୍ବତି, ସେହି କଥା ମନୋହର ॥୪॥

ଯେବେ ଫଳ ମୂଳ ଆଣିବାକୁ ବନେ ଲକ୍ଷ୍ମଣ କଲେ ଗମନ ।
ଭାଷିଲେ ଜନକ-ତନୟାଙ୍କୁ ହସି କରୁଣା-ସୁଖ-ସଦନ ॥୨୩॥

---

ପ୍ରକାରେ ନିଜର ବଳ ବର୍ଣ୍ଣନ କଲା, ସତ । କିନ୍ତୁ ଅତିଶୟ ଚିନ୍ତିତ ହୋଇ ଆପଣା ମହଲକୁ ଗଲା । ଚିନ୍ତାବଶତଃ ତାହାକୁ ସାରା ରାତି ନିଦ ଆସିଲା ନାହିଁ ॥ ୨୨ ॥
ଚୌପାଇ —ସେ ମନେ ମନେ ବିଚାର କରିବାକୁ ଲାଗିଲା, "ଦେବତା, ମନୁଷ୍ୟ, ଅସୁର, ନାଗ ଓ ପକ୍ଷୀମାନଙ୍କ ମଧ୍ୟରେ ଏପରି କେହି ନାହିଁ, ଯେ ମୋର ସେବକ ସଙ୍ଗେ ସୁଦ୍ଧା ସମାନ ହେବ । ଆଉ ଖର ଦୂଷଣ ତ ମୋହରି ପରି ବଳବାନ୍ । ସେ ଦୁହିଙ୍କୁ ଭଗବାନ୍‌ଙ୍କ ବିନା ଆଉ କିଏ ମାରି ପାରନ୍ତା ? ॥ ୧ ॥ ସୁରରଞ୍ଜନ ଓ ମହୀଭାର-ବିଭଞ୍ଜନ ଭଗବାନ୍ ସ୍ୱୟଂ ଯଦି ଅବତାର ଗ୍ରହଣ କରିଅଛନ୍ତି, ତେବେ ମୁଁ ଯାଇ ଜବରଦସ୍ତି ତାଙ୍କ ସହିତ ଶତ୍ରୁତା କରିବି ଏବଂ ପ୍ରଭୁଙ୍କ ବାଣରେ ପ୍ରାଣତ୍ୟାଗ କରି ଭବସାଗରରୁ ପାରି ହୋଇଯିବି ॥ ୨ ॥ ଏହି ତାମସ ଶରୀରରେ ଭଜନ ତ ହେବ ନାହିଁ । ଅତଏବ ମନ, ବଚନ ଓ କର୍ମରେ ମୋର ଏହା ହିଁ ଦୃଢ ନିଶ୍ଚୟ ଯେ, ଯଦି ସେମାନେ ନରରୂପ କୌଣସି ରାଜକୁମାର ହୋଇଥିବେ, ତେବେ ସେ ଦୁହିଙ୍କୁ ଯୁଦ୍ଧରେ ଜିଣି ତାଙ୍କ ସ୍ତ୍ରୀକୁ ହରଣ କରି ନେବି ।" ॥ ୩ ॥ ଏହିପରି ବିଚାର କରି ରାବଣ ରଥରେ ଚଢି ସମୁଦ୍ରତଟରେ ଯେଉଁଠାରେ ମାରୀଚ ରହୁଥିଲା, ସେହି ସ୍ଥାନକୁ ଏକାକୀ ଗଲା । ଶିବ କହନ୍ତି, "ହେ ପାର୍ବତି ! ଏଣେ ଶ୍ରୀରାମଚନ୍ଦ୍ର ଯେଉଁ କର୍ମ କଲେ, ସେହି ମନୋହର କଥା ଶୁଣ । —॥୪॥
ଦୋହା :—ଲକ୍ଷ୍ମଣ ଯେତେବେଳେ କନ୍ଦମୂଳ, ଫଳ ଇତ୍ୟାଦି ଆଣିବା ପାଇଁ ବନ

ସୁନହୁ ପ୍ରିୟା ବ୍ରତ ରୁଚିର ସୁସୀଲା । ମୈଁ କଛୁ କରବି ଲଲିତ ନର ଲୀଲା ॥
ତୁମ୍ହ ପାବକ ମହୁଁ କରହୁ ନିବାସା । ଜୌ ଲଗି କରୌଁ ନିସାଚର ନାସା ॥୧॥
ଜବହିଁ ରାମ ସବ କହା ବଖାନୀ । ପ୍ରଭୁ ପଦ ଧରି ହିୟଁ ଅନଲ ସମାନୀ ॥
ନିଜ ପ୍ରତିବିମ୍ବ ରାଖି ତହଁ ସୀତା । ତୈସଇ ସୀଲ ରୂପ ସୁବିନୀତା ॥୨॥
ଲଛିମନହୁଁ ୟହ ମରମୁ ନ ଜାନା । ଜୋ କଛୁ ଚରିତ ରଚା ଭଗବାନା ॥
ଦସମୁଖ ଗୟଉ ଜହାଁ ମାରୀଚା । ନାଇ ମାଥ ସ୍ୱାରଥ ରତ ନୀଚା ॥୩॥
ନଵନି ନୀଚ କୈ ଅତି ଦୁଖଦାଈ । ଜିମି ଅଂକୁସ ଧନୁ ଉରଗ ବିଲାଈ ॥
ଭୟଦାୟକ ଖଲ କୈ ପ୍ରିୟ ବାନୀ । ଜିମି ଅକାଲ କେ କୁସୁମ ଭବାନୀ ॥୪॥

କରି ପୂଜା ମାରୀଚ ତବ ସାଦର ପୂଛୀ ବାତ ।
କଵନ ହେତୁ ମନ ବ୍ୟଗ୍ର ଅତି ଅକସର ଆୟହୁ ତାତ ॥୨୪॥

---

ଶୁଣ ପ୍ରିୟା ପତିବ୍ରତା ସୁନ୍ଦରୀ ସୁଶୀଳା । ମୁଁ କିଛି କରିବା ବୃହେଁ ସୌମ୍ୟ ନରଲୀଳା ॥
ତୁମ୍ଭେ ପାବକ ମଧ୍ୟରେ କର ଯାଇ ବାସ । ଯେ ପର୍ଯ୍ୟନ୍ତ କରଇ ମୁଁ ନିଶାଚର ନ'ଶ ॥୧॥
ଯେବେ ରାମଚନ୍ଦ୍ର ସବୁ ବିସ୍ତାରି କହିଲେ । ପ୍ରଭୁ ପଦ ଧରି ହୃଦେ ଅନଳେ ମିଳିଲେ ॥
ନିଜ ପ୍ରତିବିମ୍ବ ତହିଁ ରଖିଗଲେ ସୀତା । ତେମନ୍ତ ଶୀଳ ସ୍ୱରୂପ ଆବର ବିନୀତା ॥୨॥
ଲକ୍ଷ୍ମଣ ସୁଦ୍ଧା ଏହାର ମର୍ମ ନ ଜାଣିଲେ । ଯେ କିଛି ଚରିତ ରଘୁନନ୍ଦନ ରଚିଲେ ॥
ଦଶମୁଖ ଗଲା ଯହିଁ ରହଇ ମାରୀଚ । ଶିର ନୁଆଁଇଲା ତାକୁ ସ୍ୱାର୍ଥ-ରତ ନୀଚ ॥୩॥
ନୀଚଙ୍କ ନଇଁବା ଅଟେ ଦୁଃଖଦ ଅତ୍ୟନ୍ତ । ଅଙ୍କୁଶ, ଧନୁ, ଉରଗ, ବିରାଡ଼ି ଯେମନ୍ତ ॥
ଭୟ-ପ୍ରଦାୟକ ଜାଣ ଖଳ ମୃଦୁ ବାଣୀ । ଯେପରି ଅସମୟର କୁସୁମ, ଭବାନୀ ॥୪॥

ପୂଜା କରି ତହୁଁ ମାରୀଚ ବୋଲଇ କହ କୁଶଳାଦି ବାର୍ତ୍ତା ।
କେବଣ କାରଣେ ଅତି ବ୍ୟଗ୍ର ମନେ ଏକାକୀ ଆସିଲ ଭ୍ରାତା ॥୨୪॥

---

ମଧ୍ୟକୁ ଗଲେ, ସେତେବେଳେ କୃପା ଓ ସୁଖର ରାଶି ଶ୍ରୀରାମ ହସି ଜାନକୀଙ୍କୁ କହିଲେ— ॥ ୨୩ ॥ "ହେ ପ୍ରିୟେ ! ହେ ସୁନ୍ଦରୀ ପତିବ୍ରତେ ! ହେ ସୁଶୀଳେ ! ଶୁଣ, ମୁଁ ବର୍ତ୍ତମାନ କିଛି ମନୋହର ମନୁଷ୍ୟ-ଲୀଳା କରିବି । ସୁତରାଂ ମୁଁ ରାକ୍ଷସମାନଙ୍କୁ ବଧ କରୁଅଛି । ତୁମେ ଟିକିଏ ଅଗ୍ନି ମଧ୍ୟରେ ରୁହ ।" ॥ ୧ ॥ ଶ୍ରୀରାମ ସୀତାଙ୍କୁ ସବୁ କଥା ବୁଝାଇ କହିବା ମାତ୍ରେ ସୀତା ପ୍ରଭୁଙ୍କ ଚରଣ ପଦ୍ମ-ଯୁଗଳକୁ ହୃଦୟରେ ଧାରଣ କରି ଅଗ୍ନିରେ ପ୍ରବେଶ କଲେ । ସୀତା ନିଜର ଛାୟାମୂର୍ତ୍ତି ସେହିଠାରେ ରଖିଦେଲେ । ଉକ୍ତ ଛାୟାମୂର୍ତ୍ତି ଠିକ୍ ତାଙ୍କରି ପରି ଶୀଳ-ସ୍ୱଭାବ-ରୂପବତୀ ଓ ସେହିପରି ବିନମ୍ରା ॥ ୨ ॥ ଭଗବାନ୍ ଯାହା କିଛି ଲୀଳା ରଚନା କଲେ, ସେ ରହସ୍ୟକୁ ଲକ୍ଷ୍ମଣ ସୁଦ୍ଧା ଜାଣି ପାରିଲେ ନାହିଁ । ସ୍ୱାର୍ଥପର ଓ ନୀଚ ରାବଣ ଯେଉଁଠି ମାରୀଚ ଥିଲା, ସେହି ସ୍ଥାନକୁ ଗଲା ଏବଂ ତାହାକୁ ମଥା ନୁଆଁଇ ପ୍ରଣାମ କଲା ॥ ୩ ॥ ଅଙ୍କୁଶ, ଧନୁ, ସାପ ଓ ବିରାଡ଼ିର ନଇଁବା ଯେପରି ଦୁଃଖଦାୟକ, ନୀଚର ନଇଁବା (ନମ୍ରତା) ମଧ୍ୟ ସେହିପରି ଦୁଃଖଦାୟକ ।

ଦସମୁଖ ସକଲ କଥା ତେହି ଆଗେଁ । କହୀ ସହିତ ଅଭିମାନ ଅଭାଗେଁ ॥
ହୋହୁ କପଟ ମୃଗ ତୁମ୍ହ ଛଲକାରୀ । ଜେହି ବିଧି ହରି ଆନୌଁ ନୃପନାରୀ ॥୧॥
ତେହିଁ ପୁନି କହା ସୁନହୁ ଦସସୀସା । ତେ ନରରୂପ ଚରାଚର ଈସା ॥
ତାସୋଁ ତାତ ବୟରୁ ନହିଁ କୀଜୈ । ମାରେଁ ମରିଅ ଜିଆଏଁ ଜୀଜୈ ॥୨॥
ମୁନିମଖ ରାଖନ ଗୟଉ କୁମାରା । ବିନୁ ଫର ସର ରଘୁପତି ମୋହି ମାରା ॥
ସତ ଜୋଜନ ଆୟଉଁ ଛନ ମାହୀଁ । ତିନ୍ହ ସନ ବୟରୁ କିଏଁ ଭଲ ନାହୀଁ ॥୩॥
ଭଇ ମମ କୀଟ ଭୃଂଗ କୀ ନାଈ । ଜହଁ ତହଁ ମୈଁ ଦେଖଉଁ ଦୋଉ ଭାଈ ॥
ଜୌଁ ନର ତାତ ତଦପି ଅତି ସୂରା । ତିନ୍ହହି ବିରୋଧି ନ ଆଇହି ପୂରା ॥୪॥

---

ସକଳ ପ୍ରସଙ୍ଗ ଦଶମୁଖ ତା ଆଗରେ । ଶୁଣାଇଲା ହତଭାଗ୍ୟ ଗର୍ବ ସହିତରେ ॥
ହୁଅ କପଟ କୁରଙ୍ଗ ତୁମ୍ଭେ ଛଳକାରୀ । ଯେଉଁମତେ ଆଣିବି ମୁଁ ହରି ନୃପ ନାରୀ ॥୧॥
ଶୁଣି ବୋଲଇ ମାରୀଚ, ଶୁଣ ଲଙ୍କପତି । ସେ ନର ରୂପ ଜଗତନାୟକ ଅଟନ୍ତି ॥
ତାଙ୍କ ସଙ୍ଗେ ବୈର ତବ ଉଚିତ ନୁହଇ । ସେ ଜୀଆନ୍ତି, ପ୍ରାଣୀ ଜୀଏ, ମାରିଲେ ମରଇ ॥୨॥
ମୁନି ଯଜ୍ଞ ରଖିବାକୁ କୁମାରେ ଆସିଲେ । ବିନାଫଳ ଶର ମୋତେ ଶ୍ରୀରାମ ମାରିଲେ ॥
ଶତ ଯୋଜନ ଆସିଲି ପଲକ ମଧ୍ୟରେ । କୁଶଳ ନାହିଁ ତାହାଙ୍କ ସଙ୍ଗେ ବିରୋଧରେ ॥୩॥
ହୋଇଲା ମୋ ଦଶା ଭୃଙ୍ଗୀ କୀଟାଣୁ ସମାନ । ଯେଣେ ତେଣେ ଭ୍ରାତାଦ୍ୱୟେ କରେ ମୁଁ ଦର୍ଶନ ॥
ବଡ ଶୂରବୀର ସେହୁ ହେଲେ ହିଁବା ନର । ତାଙ୍କ ସଙ୍ଗେ ବିରୋଧରେ ନ ମିଳିବ ଫଳ ॥୪॥

---

ହେ ଭବାନି ! ଅକାଳ କୁସୁମ ଯେପରି ଭୟପ୍ରଦ, ଦୁଷ୍ଟର ମଧୁର ବାଣୀ ମଧ୍ୟ ସେହିପରି ଭୟ ଦିଏ ! ॥ ୪ ॥ ଦୋହା .—ତଦନନ୍ତର ମାରୀଚ ରାବଣକୁ ପୂଜା କରି ଆଦରରେ ତାହାକୁ ସମାଚାର ପଚାରିଲା— "ହେ ତାତ ! ଆପଣଙ୍କ ମନ କି ହେତୁ ଆଜି ଏତେ ବ୍ୟଗ୍ର ଏବଂ ଆପଣ ଏକାକୀ କାହିଁକି ଆସିଅଛନ୍ତି ?" ॥ ୨୪ ॥ ଚୌପାଈ —ହତଭାଗ୍ୟ ରାବଣ ଅଭିମାନରେ ତାହାକୁ ସମସ୍ତ ବିଷୟ କହିଲା ଏବଂ ପୁଣି କହିଲା, "ତୁମେ ଛଳ କରି କପଟ-ମୃଗ ହୁଅ । ଏହି ଉପାୟରେ ମୁଁ ସେହି ରାଜବଧୂକୁ ନେଇ ଆସିବି ।" ॥ ୧ ॥ ମାରୀଚ କହିଲା, "ହେ ଦଶଶିର ! ଶୁଣନ୍ତୁ । ସେ ହେଉଛନ୍ତି ମନୁଷ୍ୟ-ରୂପଧାରୀ ଚରାଚରର ଈଶ୍ୱର । ହେ ତାତ ! ତାଙ୍କ ସହିତ ଶତ୍ରୁତା ଆଚରଣ କରନ୍ତୁ ନାହିଁ । ସେ ମାରିଲେ ପ୍ରାଣୀ ମରେ ଏବଂ ସେ ଜିଆଇଲେ ପ୍ରାଣୀ ଜୀଏ । ଅର୍ଥାତ୍ ସମସ୍ତଙ୍କ ଜୀବନ-ମରଣ ତାଙ୍କରି ଅଧୀନ ॥ ୨ ॥ ଏହି ରାଜକୁମାର ଦୁହେଁ ମୁନି ବିଶ୍ୱାମିତ୍ରଙ୍କ ଯଜ୍ଞରକ୍ଷା ନିମନ୍ତେ ଯାଇଥିଲେ । ସେହି ସମୟରେ ଶ୍ରୀ ରଘୁନାଥ ମୋତେ ଫଳହୀନ ଶର ମାରିଥିଲେ, ଯାହା ଫଳରେ ମୁଁ କ୍ଷଣକ ମଧ୍ୟରେ ଶହେ ଯୋଜନ ଦୂରରେ ଆସି ପଡିଲି । ତାଙ୍କ ସହ ଶତ୍ରୁତା କଲେ ମଙ୍ଗଳ ହେବ ନାହିଁ ॥ ୩ ॥ ମୋ ଦଶା ତ ଭୃଙ୍ଗୀ କୀଟ ସମାନ ହୋଇ ପଡିଛି । ବର୍ତ୍ତମାନ ମୁଁ ଯେଉଁଆଡେ ଅନାଉଛି, ସେ ଆଡେ ଶ୍ରୀରାମଲକ୍ଷ୍ମଣ ଦୁଇ ଭାଇଙ୍କୁ ହିଁ ଦେଖୁଅଛି । ହେ ତାତ ! ସେମାନେ ମନୁଷ୍ୟ ହୋଇ-

ଜେହିଁ ତାଡ଼କା ସୁବାହୁ ହତି ଖଣ୍ଡେଉ ହରକୋଦଣ୍ଡ ।
ଖର ଦୂଷନ ତିସିରା ବଧେଉ ମନୁଜ କି ଅସ ବରିବଣ୍ଡ ॥୨୫॥
ଜାହୁ ଭବନ କୁଲ କୁସଲ ବିଚାରୀ । ସୁନତ ଜରା ଦୀହ୍ନିସି ବହୁ ଗାରୀ ॥
ଗୁରୁ ଜିମି ମୂଢ଼ କରସି ମମ ବୋଧା । କହୁ ଜଗ ମୋହି ସମାନ କୋ ଜୋଧା ॥୧॥
ତବ ମାରୀଚ ହୃଦୟଁ ଅନୁମାନା । ନବହି ବିରୋଧେଁ ନହିଁ କଲ୍ୟାନା ॥
ସସ୍ତ୍ରୀ ମର୍ମୀ ପ୍ରଭୁ ସଠ ଧନୀ । ବୈଦ ବଂଦି କବି ଭାନସ ଗୁନୀ ॥୨॥
ଉଭୟ ଭାଁତି ଦେଖା ନିଜ ମରନା । ତବ ତାକେସି ରଘୁନାୟକ ସରନା ॥
ଉତରୁ ଦେତ ମୋହି ବଧବ ଅଭାଗେଁ । କସ ନ ମରୌଁ ରଘୁପତି ସର ଲାଗେଁ ॥୩॥
ଅସ ଜିୟଁ ଜାନି ଦସାନନ ସଂଗା । ଚଲା ରାମ ପଦ ପ୍ରେମ ଅଭଂଗା ॥
ମନ ଅତି ହରଷ ଜନାୱ ନ ତେହୀ । ଆଜୁ ଦେଖିହଉଁ ପରମ ସନେହୀ ॥୪॥

---

ତାଡକା ସୁବାହୁ ବଧ କରି ଯେହୁ ଖଣ୍ଡିଲେ ହର କୋଦଣ୍ଡ ।
ବଧିଲେ ଯେ ଖର ଦୂଷଣେ, ନର କି ଏସନ ବୀର ପ୍ରଚଣ୍ଡ ॥୨୫॥
ଯାଅ ଭବନକୁ କୁଳ କୁଶଳ ବିଚାରି । ଶୁଣି ରୋଷେ ଜଳି ତାକୁ ଗାଳି ଦେଲା ଭାରି ॥
ଗୁରୁ ପ୍ରାୟେ କରୁ ମୋର ପ୍ରବୋଧ ଅଧମ । କହ ଏ ଜଗତେ ଯୋଦ୍ଧା କିଏ ସେ ମୋ ସମ ॥୧॥
ତହୁଁ ମାରୀଚ ହୃଦୟେ କଲା ଅନୁମାନ । ନବଙ୍କ ବିରୋଧେ ନାହିଁ କଦାପି କଲ୍ୟାଣ ॥
ଶସ୍ତ୍ରୀ, ମର୍ମୀ, ପ୍ରଭୁ, ଶଠ, ଧନବନ୍ତ ପୁଣି । ବୈଦ୍ୟ, ବନ୍ଦୀଜନ, କବି ଯେ ପ୍ରକାର ଗୁଣି ॥୨॥
ଉଭୟ ପ୍ରକାରେ ଦେଖି ଆପଣା ମରଣ । ତହୁଁ ଗୃହିଲା ଶ୍ରୀ ରଘୁନାୟକ ଶରଣ ॥
ବଧିବ ଏ ଖଳ ଦେବ ପ୍ରତ୍ୟୁତ୍ତର ଯେବେ । କିପାଁ ନ ମରିବି ପ୍ରଭୁ କର ଶରେ ତେବେ ॥୩॥
ଏହା ମନେ ଭାବି ଦଶ ଆନନ ସହିତେ । ଗଲା ରାମ ପଦେ ଅବିଚ୍ଛିନ୍ନ ପ୍ରୀତି ଚିତ୍ତେ ॥
ନ ଜଣାଏ ତାକୁ ଅତିଶୟ ମୋଦ ମନ । ଆଜି ପରମ ପ୍ରଭୁଙ୍କୁ କରିବି ଦର୍ଶନ ॥୪॥

---

ଥିଲେ ସୁଦ୍ଧା ଅତି ଶୂରବୀର । ସେମାନଙ୍କ ସହ ବିରୋଧ ବା ଶତ୍ରୁତା କଲେ ଆପଣଙ୍କ କୌଣସି ଉଦ୍ଦେଶ୍ୟ ସଫଳ ହେବନାହିଁ ॥ ୪ ॥ ଦୋହା :—ସେ ତାଡକା ଓ ସୁବାହୁଙ୍କୁ ମାରି ଶିବଧନୁ ଅନାୟାସରେ ଭାଙ୍ଗିଦେଲେ ଏବଂ ଖରଦୂଷଣ ଓ ତ୍ରିଶିରଙ୍କୁ ବଧ କରି ପକାଇଲେ । ମନୁଷ୍ୟ କେଉଁଠି ଏତେ ପ୍ରଚଣ୍ଡ ବଳବାନ୍ ଶୂରବୀର ହୋଇ ପାରନ୍ତି ? ॥ ୨୫ ॥ ଚୌପାଈ :—ଅତଏବ ଆପଣା କୁଳର କୁଶଳ କାମନା କରି ଆପଣ ଫେରି ଯାଆନ୍ତୁ ।" ଏହା ଶୁଣି ରାବଣ ଜଳି ଉଠିଲା ଏବଂ ତାହାକୁ ବହୁତ ଗାଳି ଦେଇ ଦୁର୍ବଚନ କହିଲା, "ଆରେ ମୂର୍ଖ ! ତୁ ଗୁରୁ ପରି ମୋତେ ଜ୍ଞାନ ଶିଖାଉଛୁ " କହିଲୁ ଭଲା, ସଂସାରରେ ମୋ ପରି ଯୋଦ୍ଧା ଆଉ କିଏ ଅଛି ?" ॥ ୧ ॥ ତତ୍ପରେ ମାରୀଚ ମନ ମଧ୍ୟରେ ଅନୁମାନ କଲା ଯେ ଶସ୍ତ୍ରଧାରୀ, ମର୍ମଜ୍ଞ, ସମର୍ଥ ସ୍ୱାମୀ, ଶଠ, ଧନବାନ୍, ବୈଦ୍ୟ, ଭାଟ, କବି ଓ ପ୍ରକାରି—ଏହି ନଅ ଜଣ ବ୍ୟକ୍ତିଙ୍କ ସହିତ ଶତ୍ରୁତା ଆଚରଣ କଲେ ମଙ୍ଗଳ ହୁଏନାହିଁ ॥ ୨ ॥ ଯେତେବେଳେ ମାରୀଚ ଉଭୟ ପ୍ରକାରେ

ନିଜ ପରମ ପ୍ରୀତମ ଦେଖି ଲୋଚନ ସୁଫଲ କରି ସୁଖ ପାଇହୌଁ ।
ଶ୍ରୀ ସହିତ ଅନୁଜ ସମେତ କୃପାନିକେତ ପଦ ମନ ଲାଇହୌଁ ॥
ନିର୍ବାନ ଦାୟକ କ୍ରୋଧ ଜା କର ଭଗତ ଅବସହି ବସକରୀ ।
ନିଜ ପାନି ସର ସନ୍ଧାନି ସୋ ମୋହି ବଧିହି ସୁଖସାଗର ହରୀ ॥

ମମ ପାଛେ ଧର ଧାୱତ ଧରେଁ ସରାସନ ବାନ ।
ଫିରି ଫିରି ପ୍ରଭୁହି ବିଲୋକିହଉଁ ଧନ୍ୟ ନ ମୋ ସମ ଆନ ॥୨୭॥

ତେହି ବନ ନିକଟ ଦସାନନ ଗୟଉ । ତବ ମାରୀଚ କପଟ ମୃଗ ଭୟଉ ॥
ଅତି ବିଚିତ୍ର କଛୁ ବରନି ନ ଜାଈ । କନକ ଦେହ ମନି ରଚିତ ବନାଈ ॥୧॥

---

ପରମ ପ୍ରିୟତମ ଦେଖି ନିଜ ନୟନ ସୁଫଳ କରି ସୁଖୀ ହେବି ।
ଶ୍ରୀ ଅନୁଜ ସହିତ କରୁଣା-ନିଧାନଙ୍କ ଚରଣେ ମନ ଚଉ ଦେବି ।
ନିର୍ବାଣ ପ୍ରଦ ଯେ କ୍ରୋଧରେ, ଭକ୍ତ ଅବଶ୍ୟ ବଶ କରେ,
ସେ ସୁଖ-ସିନ୍ଧୁ ହରି ମୋତେ ବଧିବେ କରି ସନ୍ଧାନ ଶର ନିଜ କରେ ॥

ମୋ ପଛେ ଧାଆନ୍ତେ ଧରିବା ନିମନ୍ତେ ଧରି ଶରାସନ ବାଣ ।
ଫେରି ଫେରି ଚାହିଁ, ପ୍ରଭୁଙ୍କୁ ଦେଖିବି ମୋ ସମ ଧନ୍ୟ କେ ଆନ ॥୨୭॥

ସେ ବନ ନିକଟେ ଦଶ-ବଦନ ଚଳିଲା । ତହୁଁ ମାରୀଚ କପଟ କୁରଙ୍ଗ ହୋଇଲା ॥
ଅତ୍ୟନ୍ତ ବିଚିତ୍ର କରି ନ ହୁଏ ବର୍ଣ୍ଣନ । ମଣି-ଖଚିତ କନକ ଶରୀର ରଚନ ॥୧॥

---

ନିଜର ମରଣ ଦେଖିଲା, ସେତେବେଳେ ସେ ରଘୁନାଥଙ୍କଠାରେ ଶରଣ ପଶିବାକୁ ଅଧିକ ପସନ୍ଦ କଲା । ସେ ଭାବିଲା, "ଉତ୍ତର ଦେଲା (ନାହିଁ କଲା) ମାତ୍ରେ ଏହି ହତଭାଗ୍ୟ ମୋତେ ମାରି ପକାଇବ । ତେବେ ଶ୍ରୀ ରଘୁନାଥଙ୍କ ଶରର ଆଘାତରେ କାହିଁକି ନ ମରିବି ?" ॥ ୩ ॥ ହୃଦୟରେ ଏହିପରି ବିଚାରି ସେ ରାବଣ ସଙ୍ଗେ ଚାଲିଲା । ଶ୍ରୀରାମଙ୍କ ଚରଣରେ ତାହାର ଅଖଣ୍ଡ ପ୍ରେମ । "ଆଜି ମୁଁ ମୋ ପରମସ୍ନେହୀ ଶ୍ରୀରାମଙ୍କୁ ଦେଖିବି"— ଏହା ବିଚାରି ସେ ମନ ମଧ୍ୟରେ ଅପାର ହର୍ଷ ଲାଭ କରୁଥାଏ । କିନ୍ତୁ ଆପଣା ହୃଦୟର ହର୍ଷ ସେ ରାବଣକୁ ଜଣାଇଲା ନାହିଁ ॥ ୪ ॥ ଛନ୍ଦ :—ମନେ ମନେ ସେ ଭାବୁଥାଏ, "ମୋ ପରମପ୍ରିୟତମଙ୍କୁ ଦେଖି ନେତ୍ର ସଫଳ କରିବି ଏବଂ ପରମସୁଖ ଲାଭ କରିବି । ଜାନକୀ ଓ ସାନ ଭାଇ ଲକ୍ଷ୍ମଣଙ୍କ ସହିତ କୃପାନିଧାନ ଶ୍ରୀରାମଙ୍କ ଚରଣରେ ମନଧ୍ୟାନ ଲଗାଇବି । ଯାହାଙ୍କର କ୍ରୋଧ ମଧ୍ୟ ମୋକ୍ଷ ଦାନ କରେ ଏବଂ ଯାହାଙ୍କଠାରେ ଭକ୍ତ ସେହି ଅବଶ (ସ୍ୱତନ୍ତ୍ର) ଭଗବାନ୍‌ଙ୍କୁ ମଧ୍ୟ ବଶୀଭୂତ କରିପାରେ, ଆହା ! ସେହି ଆନନ୍ଦ-ସାଗର ଶ୍ରୀହରି ଆପଣା ହସ୍ତରେ ଧନୁଶର ଯୋଡି ମୋତେ ବଧ କରିବେ ! ଦୋହା :— ମୋତେ ଧରିବା ନିମନ୍ତେ ଧନୁଶର ଧରି ପୃଥିବୀ ଉପରେ ଦୌଡୁଥିବା ପ୍ରଭୁଙ୍କୁ ମୁଁ ଫେରି ଫେରି ଅନାଇବି । ମୋ ସମାନ ଧନ୍ୟ ଆଉ କେହି ନାହିଁ ।" ॥ ୨୭ ॥ ଚୌପାଇ :— ଯେତେବେଳେ ରାବଣ ଶ୍ରୀରାମ ବାସ କରୁଥିବା ବନ ନିକଟରେ ପହଞ୍ଚିଲା, ମାରୀଚ

ସୀତା ପରମ ରୁଚିର ମୃଗ ଦେଖା । ଅଙ୍ଗ ଅଙ୍ଗ ସୁମନୋହର ବେଷା ॥
ସୁନହୁ ଦେବ ରଘୁବୀର କୃପାଲା । ଏହି ମୃଗ କର ଅତି ସୁନ୍ଦର ଛାଲା ॥୨॥
ସତ୍ୟସନ୍ଧ ପ୍ରଭୁ ବଧି କରି ଏହୀ । ଆନହୁ ଚର୍ମ କହତି ବୈଦେହୀ ॥
ତବ ରଘୁପତି ଜାନତ ସବ କାରନ । ଉଠେ ହରଷି ସୁର କାଜୁ ସଁଵାରନ ॥୩॥
ମୃଗ ବିଲୋକି କଟି ପରିକର ବାଁଧା । କରତଲ ଚାପ ରୁଚିର ସର ସାଁଧା ॥
ପ୍ରଭୁ ଲଛିମନହି କହା ସମୁଝାଈ । ଫିରତ ବିପିନ ନିସିଚର ବହୁ ଭାଈ ॥୪॥
ସୀତା କେରି କରେହୁ ରଖଵାରୀ । ବୁଧି ବିବେକ ବଲ ସମୟ ବିଚାରୀ ॥
ପ୍ରଭୁହି ବିଲୋକି ଚଲା ମୃଗ ଭାଜୀ । ଧାଏ ରାମୁ ସରାସନ ସାଜୀ ॥୫॥
ନିଗମ ନେତି ସିବ ଧ୍ୟାନ ନ ପାଵା । ମାୟାମୃଗ ପାଛେଁ ସୋ ଧାଵା ॥
କବହୁଁ ନିକଟ ପୁନି ଦୂରି ପରାଈ । କବହୁଁକ ପ୍ରଗଟଇ କବହୁଁ ଛପାଈ ॥୬॥

---

ସୀତା ବିଲୋକିଲେ ମୃଗ ପରମ ସୁନ୍ଦର । ଅଙ୍ଗ ଅଙ୍ଗ ପ୍ରତି ଅତି ବେଶ ମନୋହର ॥
ଶୁଣ ଦେବ ! ରଘୁବୀର କରୁଣା ନିଳୟ । ଏହି କୁରଙ୍ଗର ଛାଲ ରମ୍ୟ ଅତିଶୟ ॥୨॥
ସତ୍ୟସନ୍ଧ ପ୍ରଭୁ, ଏହି କୁରଙ୍ଗକୁ ମାରି । ଆଣନ୍ତୁ ଚର୍ମ, ବୋଇଲେ ଜନକ କୁମାରୀ ॥
ତହୁଁ ସମସ୍ତ କାରଣ ଜ୍ଞାତା ରଘୁରାଜ । ଉଠିଲେ କରିବା ପାଇଁ ହର୍ଷେ ସୁର କାର୍ଯ୍ୟ ॥୩॥
ମୃଗକୁ ବିଲୋକି ବଦ୍ଧ-ପରିକର ହେଲେ । କରେ ମନୋହର ଶର ଶରାସନ ନେଲେ ॥
ପ୍ରଭୁ ଲକ୍ଷ୍ମଣଙ୍କ ଆଗେ କହିଲେ ବୁଝାଇ । ଭ୍ରମନ୍ତି ବିପିନେ ବହୁ ନିଶାଚର, ଭାଇ ॥୪॥
ସୀତାଙ୍କ ରକ୍ଷା କରିବ ସଜାଗେ ରହିଣ । ବିବେକ ସମୟ ବଳ ବୁଦ୍ଧି ବିଚାରିଣ ॥
ପ୍ରଭୁଙ୍କୁ ଦେଖିଣ ମୃଗ ଚଳିଲା ପଳାଇ । ଧାଇଁଲେ ରଘୁନନ୍ଦନ କୋଦଣ୍ଡ ସଜାଇ ॥୫॥
ନିଗମ ଅଗମ୍ୟ ଶିବ ଧ୍ୟାନେ ନ ପାଆନ୍ତି । ମାୟାମୃଗ ପଛେ ପଛେ ସେ ପ୍ରଭୁ ଧାଆନ୍ତି ॥
କେବେ ସନ୍ନିକଟ କେବେ ଦୂରକୁ ପଳାଏ । କେବେ ଦେଖାଦେଇ ପୁଣି କେବେ ଲୁଚିଯାଏ ॥୬॥

---

କପଟ-ମୃଗ ରୂପ ଧାରଣ କଲା । ଉକ୍ତ ମୃଗ ଅତିଶୟ ବିଚିତ୍ର, ଅବର୍ଣ୍ଣନୀୟ ରୂପ ତାର । ସୁନା ଶରୀରରେ ମଣି ଜଡ଼ିତ ହୋଇ ତାହାର ରୂପ ଗଢ଼ାହୋଇଥିଲା ॥ ୧ ॥ ସୀତା ସେହି ପରମ-ସୁନ୍ଦର ହରିଣକୁ ଦେଖିଲେ । ତାର ଅଙ୍ଗ-ଅଙ୍ଗର ଛଟା ଅତି ମନୋହର ଥିଲା । ସେ କହିବାକୁ ଲାଗିଲେ, "ହେ ଦେବ ! ହେ କୃପାଳୁ ରଘୁବୀର ! ଶୁଣନ୍ତୁ, ଏ ମୃଗର ଛାଲ ଅତି ସୁନ୍ଦର ॥ ୨ ॥ ଜାନକୀ କହିଲେ, "ହେ ସତ୍ୟପ୍ରତିଜ୍ଞ ପ୍ରଭୋ ! ଏହାକୁ ମାରି ଏହାର ଚମଡ଼ା ଆଣି ମୋତେ ଦିଅନ୍ତୁ ।" ତଦନନ୍ତର ଶ୍ରୀରାମ ସବୁ କାରଣ ଜାଣି ସୁଦ୍ଧା ଦେବଗଣଙ୍କ କାର୍ଯ୍ୟ ପୂରଣ ଉଦ୍ଦେଶ୍ୟରେ ଆନନ୍ଦିତ ମନରେ ଉଠିଲେ ॥ ୩ ॥ ହରିଣକୁ ଦେଖି ରାମ କଟି-ବସ୍ତ୍ର କଷି ବାନ୍ଧିଲେ ଏବଂ ହାତରେ ଧନୁ ଧରି ତାହାକୁ ଲକ୍ଷ୍ୟ କରି ସୁନ୍ଦର ଶର ଯୋଖିଲେ । ତତ୍ପରେ ପ୍ରଭୁ ଲକ୍ଷ୍ମଣଙ୍କୁ ବୁଝାଇ କହିଲେ, "ହେ ଭାଇ ! ବନରେ ବହୁତ ରାକ୍ଷସ ବୁଲୁଅଛନ୍ତି ॥ ୪ ॥ ତୁମେ ବୁଦ୍ଧି ଓ ବିବେକ ଯୋଗେ ବଳ ଓ ସମୟ ବିଚାର କରି ସୀତାଙ୍କ ରକ୍ଷଣାବେକ୍ଷଣା କର ।" ପ୍ରଭୁଙ୍କୁ ଦେଖି

ପ୍ରଗଟତ ଦୁରତ କରତ ଛଲ ଭୂରୀ । ଏହି ବିଧି ପ୍ରଭୁହି ଗୟଉ ଲୈ ଦୂରୀ ॥
ତବ ତକି ରାମ କଠିନ ସର ମାରା । ଧରନି ପରେଉ କରି ଘୋର ପୁକାରା ॥୭॥
ଲଛିମନ କର ପ୍ରଥମହି ଲୈ ନାମା । ପାଛେଁ ସୁମିରେସି ମନ ମହୁଁ ରାମା ॥
ପ୍ରାନ ତଜତ ପ୍ରଗଟେସି ନିଜ ଦେହା । ସୁମିରେସି ରାମୁ ସମେତ ସନେହା ॥୮॥
ଅନ୍ତର ପ୍ରେମ ତାସୁ ପହିଚାନା । ମୁନି ଦୁର୍ଲଭ ଗତି ଦୀହ୍ନି ସୁଜାନା ॥୯॥

ବିପୁଲ ସୁମନ ସୁର ବରଷହିଁ ଗାଵହିଁ ପ୍ରଭୁ ଗୁନ ଗାଥ ।
ନିଜ ପଦ ଦୀହ୍ନ ଅସୁର କହୁଁ ଦୀନବଂଧୁ ରଘୁନାଥ ॥୨୭॥

ଖଲ ବଧି ତୁରତ ଫିରେ ରଘୁବୀରା । ସୋହ ଚାପ କର କଟି ତୂନୀରା ॥
ଆରତ ଗିରା ସୁନୀ ଜବ ସୀତା । କହ ଲଛିମନ ସନ ପରମ ସଭୀତା ॥୧॥

---

ଲୁଚି ପ୍ରକଟି ସେ ଛଳ ଆଚରି ପ୍ରଚୁର । ଏମନ୍ତେ ପ୍ରଭୁଙ୍କୁ ନେଇ ଗଲା ବହୁ ଦୂର ॥
ତହୁଁ ରାମ ତୀକ୍ଷ୍ଣ ତୀର ମାରନ୍ତେ ଲକ୍ଷ୍ୟରେ । ପଡ଼ିଲା ଘୋର ଚିତ୍କାରି ଧରଣୀ ପୃଷ୍ଠରେ ॥୭॥
ପ୍ରଥମରେ ଉଚ୍ଚାରିଣ ଲକ୍ଷ୍ମଣଙ୍କ ନାମ । ପଛେ ପୁଣି ମନ ମଧ୍ୟେ ସ୍ମରିଲା ଶ୍ରୀରାମ ॥
ତେଜନ୍ତେ ପ୍ରାଣ ପ୍ରକଟ କଲା ନିଜ ଦେହ । ସ୍ମରଣ କରିଣ ରାମଚନ୍ଦ୍ରଙ୍କୁ ସସ୍ନେହ ॥୮॥
ଅନ୍ତର ପ୍ରେମ ତାହାର ଚିହ୍ନି ରଘୁପତି । ଦେଲେ ତାହାକୁ ମୁନିଙ୍କ ସୁଦୁର୍ଲ୍ଲଭ ଗତି ॥୯॥

ବିପୁଳ ସୁମନ ସୁରେ ବରଷିଣ ଗାଆନ୍ତି ଗୁଣ ନିକର ।
ନିଜ ପଦ ପ୍ରଭୁ ଦେଲେ ଅସୁରକୁ ଦୀନବନ୍ଧୁ ରଘୁବର ॥୨୭॥

ଖଳ ବଧି ବାହୁଡ଼ିଲେ ବେଗି ରଘୁବୀର । ଶୋଭେ କରେ ଶରାସନ କଟିରେ ତୂଣୀର ॥
ଆରତବାଣୀ ଶୁଣିଲେ ଯେତେବେଳେ ସୀତା । କହିଲେ ଲକ୍ଷ୍ମଣ ଆଗେ ହୋଇ ଭୟଭୀତା ॥୧॥

---

ମୃଗ ଧାଇଁ ପଳାଇଗଲା । ଶ୍ରୀରାମଚନ୍ଦ୍ର ମଧ୍ୟ ଧନୁରେ ଶର ଯୋଖି ତାହାର ପଛରେ ଧାଇଁଲେ ॥ ୫ ॥ ଦେବଗଣ ଯାହାଙ୍କ ବିଷୟରେ 'ନେତି' ନେତି କହି ରହିଯାଆନ୍ତି ଏବଂ ଶିବ ମଧ୍ୟ ଯାହାଙ୍କୁ ଧ୍ୟାନରେ ପାଆନ୍ତି ନାହିଁ, ସେହି ପ୍ରଭୁ ଶ୍ରୀରାମ ମାୟାବିରଚିତ ମୃଗ ପଛରେ ଦୌଡ଼ୁଅଛନ୍ତି । ମୃଗ କେତେବେଳେ ନିକଟକୁ ଆସି ଯାଉଥାଏ, ତ ଆଉ କେତେବେଳେ ଦୂରକୁ ପଳାଇ ଯାଉଥାଏ । କେତେବେଳେ ଦୃଶ୍ୟ ହେଉଥାଏ, ତ କେତେବେଳେ ଅଦୃଶ୍ୟ ॥ ୬ ॥ ଏହିପରି ଦୃଶ୍ୟ ଓ ଅଦୃଶ୍ୟ ହୋଇ ପ୍ରଭୁଙ୍କ ସଙ୍ଗେ ବହୁବିଧ ଛଳକପଟ କରି ସେ ପ୍ରଭୁଙ୍କୁ ବହୁତ ଦୂରକୁ ନେଇଗଲା । ସେତେବେଳେ ଶ୍ରୀରାମଚନ୍ଦ୍ର ଲକ୍ଷ୍ୟ ସ୍ଥିର କରି କଠୋର ଶର ନିକ୍ଷେପ କଲେ । ସେହି ଶରାଘାତରେ ହରିଣ ଘୋର ଚିତ୍କାର କରି ଭୂମି ଉପରେ ପଡ଼ିଗଲା ॥ ୭ ॥ ପ୍ରଥମେ ଲକ୍ଷ୍ମଣଙ୍କ ନାମ ନେଇ ସେ ପରେ ମନରେ ଶ୍ରୀରାମଙ୍କୁ ସ୍ମରଣ କଲା । ପ୍ରାଣତ୍ୟାଗ ସମୟରେ ସେ ନିଜ ରାକ୍ଷସ ଶରୀର ପ୍ରକାଶ କଲା ଏବଂ ପ୍ରେମରେ ଶ୍ରୀରାମଙ୍କୁ ସ୍ମରଣ କଲା ॥ ୮ ॥ ସର୍ବଜ୍ଞ ଶ୍ରୀରାମଚନ୍ଦ୍ର ତାହାର ହୃଦୟର ପ୍ରେମକୁ ଚିହ୍ନି ତାକୁ ମୁନିଜନ-ଦୁର୍ଲ୍ଲଭ ନିଜ ପରମପଦ-ଗତି ଦେଲେ ॥ ୯ ॥ ଦୋହା ।—ଦେବତାଗଣ ବହୁତ ପୁଷ୍ପବୃଷ୍ଟି କରୁଥାଆନ୍ତି ଏବଂ

ଜାହୁ ବେଗି ସଙ୍କଟ ଅତି ଭ୍ରାତା । ଲଛିମନ ବିହସି କହା ସୁନୁ ମାତା ॥
ଭୃକୁଟି ବିଲାସ ସୃଷ୍ଟି ଲୟ ହୋଈ । ସପନେହୁଁ ସଙ୍କଟ ପରଇ କି ସୋଈ ॥୨॥
ମରମ ବଚନ ଜବ ସୀତା ବୋଲା । ହରି ପ୍ରେରିତ ଲଛିମନ ମନ ଡୋଲା ॥
ବନ ଦିସି ଦେବ ସୌଁପି ସବ କାହୂ । ଚଲେ ଜହାଁ ରାବନ ସସି ରାହୂ ॥୩॥
ସୂନ ବୀଚ ଦସକଂଧର ଦେଖା । ଆୱା ନିକଟ ଜତୀ କେଁ ବେଷା ॥
ଜାକେଁ ଡର ସୁର ଅସୁର ଡେରାହୀଁ । ନିସି ନ ନୀଁଦ ଦିନ ଅନ୍ନ ନ ଖାହୀଁ ॥୪॥
ସୋ ଦସସୀସ ସ୍ୱାନ କୀ ନାଈଁ । ଇତ ଉତ ଚିତଇ ଚଲା ଭଡ଼ିହାଈଁ ॥
ଇମି କୁପନ୍ଥ ପଗୁ ଦେତ ଖଗେସା । ରହ ନ ତେଜ ତନ ବୁଧି ବଲ ଲେସା ॥୫॥

---

ଯାଅ ଶୀଘ୍ର ସଙ୍କଟରେ ପଡିଛନ୍ତି ଭ୍ରାତା । ହସି ଉଚାରିଲେ ସଉମିତ୍ରି, ଶୁଣ ମାତା ॥
ଭୃକୁଟି ବିଳାସେ ସୃଷ୍ଟି ବିଲୟ ହୁଅଇ । ସ୍ୱପ୍ନେହେଁ କେବେ କି ତାଙ୍କୁ ସଙ୍କଟ ପଡଇ ॥୨॥
କହିଲେ ଜାନକୀ ଯହୁଁ ମରମ ବଚନ । ହରି ପ୍ରେରିତେ ଟଳିଲା ଲକ୍ଷ୍ମଣଙ୍କ ମନ ॥
ସମର୍ପି ସୀତାଙ୍କୁ ବନ ଦିଗି ଦେବଗଣେ । ଗମିଲେ ରାବଣ ଶଶୀ-ରାହୁ ସନ୍ନିଧାନେ ॥୩॥
ଶୂନ୍ୟ ମଧ୍ୟରେ ସେ ଦଶ କନ୍ଧର ଦେଖିଲା । ଯତିବେଷ ଧରି ତହୁଁ ନିକଟେ ଆସିଲା ॥
ଯାର ଅତି ଡରେ ସୁର ଅସୁର ଡରନ୍ତି । ନିଶି ନ ଶୁଅନ୍ତି ଦିବା ଅନ୍ନ ନ ଭୁଞ୍ଜନ୍ତି ॥୪॥
ସେହି ଦଶଶିର ଏବେ ହୋଇ ଶ୍ୱାନ ପ୍ରାଏ । ଏଣେ ତେଣେ ଚାହିଁ ଚୋରି କରିବାକୁ ଯାଏ ॥
ଏପରି କୁପଥେ ପଦ ଦିଅନ୍ତେ ଖଗେଶ । ନ ରହଇ ଦେହେ ତେଜ ବୁଦ୍ଧି ବଳ ଲେଶ ॥୫॥

---

ପ୍ରଭୁଙ୍କ ଗୁଣଗାଥା ସ୍ତୁତି କରୁଥା'ନ୍ତି—"ପ୍ରଭୁ ଶ୍ରୀ ରଘୁନାଥଙ୍କ ଦୀନ-ବତ୍ସଳତା ଦେଖ । ସେ ମାରୀଚ ପରି ଅସୁରକୁ ମଧ୍ୟ ଆପଣା ପରମପଦ ( ବୈକୁଣ୍ଠ ଲୋକ ) ଦେଇ-ଦେଲେ ।" ॥ ୨୭ ॥ ଚୌପାଈ :—ଦୁଷ୍ଟ ମାରୀଚକୁ ମାରି ଶ୍ରୀ ରଘୁବୀର ତୁରନ୍ତ ଲେଉଟି ପଡିଲେ । ହାତରେ ଧନୁ ଓ କଟିରେ ତୂଣୀର ଶୋଭା ପାଉଥାଏ । ଏଣେ ସୀତା ମାରୀଚର ମୃତ୍ୟୁକାଳୀନ ଆର୍ତ୍ତନାଦ ( 'ହା ଲକ୍ଷ୍ମଣ !' ସ୍ୱର ) ଶୁଣି ଅତ୍ୟନ୍ତ ଭୟଭୀତ ହେଲେ ଏବଂ ଲକ୍ଷ୍ମଣଙ୍କୁ କହିଲେ— ॥ ୧ ॥ "ତୁମେ ଶୀଘ୍ର ଯାଅ, ତୁମ ବଡଭାଇ ସଙ୍କଟରେ ପଡିଅଛନ୍ତି ।" ଲକ୍ଷ୍ମଣ ହସି ହସି କହିଲେ, "ହେ ମାତା ! ଶୁଣ, ଯାହାଙ୍କର ଭ୍ରୂକୁଟି-ବିଳାସ ମାତ୍ରଦ୍ୱାରା ସମସ୍ତ ସୃଷ୍ଟିରେ ପ୍ରଳୟ ବ୍ୟାପିଯାଏ, ସେହି ଶ୍ରୀରାମ କି କେବେ ସ୍ୱପ୍ନରେ ସୁଦ୍ଧା ସଙ୍କଟରେ ପଡି ପାରନ୍ତି ?" ॥ ୨ ॥ ଏହା ଶୁଣି ସୀତା ଲକ୍ଷ୍ମଣଙ୍କୁ କେତେକ ମର୍ମଭେଦୀ ବଚନ କହିଲେ । ତାହାରି ଫଳରେ ଏବଂ ଭଗବାନଙ୍କ ପ୍ରେରଣାରେ ଲକ୍ଷ୍ମଣଙ୍କ ମନ ମଧ୍ୟ ଚଞ୍ଚଳ ହୋଇ ଉଠିଲା । ତତ୍ପରେ ସେ ବନ-ଦେବତା ଓ ଦିଗ-ଦେବତାମାନଙ୍କୁ ସୀତାଙ୍କୁ ସମର୍ପଣ କରି ରାବଣ-ଚନ୍ଦ୍ରମା ନିମନ୍ତେ ରାହୁସଦୃଶ ଶ୍ରୀରାମ ଥିବା ସ୍ଥଳକୁ ଗଲେ ॥ ୩ ॥ ଏଣେ ରାବଣ ସୁବିଧା ଦେଖି ଶୂନ୍ୟସ୍ଥାନ ଦେଖି ସନ୍ନ୍ୟାସୀ ବେଶରେ ସୀତାଙ୍କ ନିକଟରେ ଆସି ପହଞ୍ଚିଲା । ଯେଉଁ ରାବଣର ଡରରେ ଦେବତା ଓ ଦାନବ ଏତେ ଭୀତ ହୋଇ ରହୁଥା'ନ୍ତି ଯେ, ରାତିରେ ସେମାନଙ୍କୁ ନିଦ ଓ

ନାନା ବିଧି କହି କଥା ସୁହାଇ । ରଜନୀତି ଭୟ ପ୍ରୀତି ଦେଖାଈ ॥
କହ ସୀତା ସୁନୁ ଜତି ଗୋସାଇଁ । ବୋଲେହୁ ବଚନ ଦୁଷ୍ଟ କୀ ନାଇଁ ॥୬॥
ତବ ରାବନ ନିଜ ରୂପ ଦେଖାଓ୍ୱା । ଭଈ ସଭୟ ଜବ ନାମୁ ସୁନାଓ୍ୱା ॥
କହ ସୀତା ଧରି ଧୀରଜୁ ଗାଢ଼ା । ଆଇ ଗୟଉ ପ୍ରଭୁ ରହୁ ଖଲ ଠାଢ଼ା ॥୭॥
ଜିମି ହରିବଧୁହି ଛୁଦ୍ର ସସ ଚାହା । ଭଏସି କାଲବସ ନିସିଚର ନାହା ॥
ସୁନତ ବଚନ ଦସସୀସ ରିସାନା । ମନ ମହୁ ଚରନ ବଂଦି ସୁଖ ମାନା ॥୮॥
କ୍ରୋଧବନ୍ତ ତବ ରାବନ ଲୀନ୍ହିସି ରଥ ବୈଠାଇ ।
ଚଲା ଗଗନପଥ ଆତୁର ଭୟଁ ରଥ ହାଁକି ନ ଜାଇ ॥୨୮॥

---

ଅନେକ ପ୍ରକାରେ କହି ଶୁଣାଇଲା କଥା । ରାଜନୀତି ଭୟ ପ୍ରୀତି ଦେଖାଇଲା ତଥା ॥
କହନ୍ତି ଜନକସୁତା ଶୁଣ ଯତି-ରାୟ । ବଚନ ବୋଲୁଛ ତୁମ୍ଭେ ଦୁଷ୍ଟଙ୍କ ପରାୟ ॥୬॥
ତହୁଁ ଦଶଶିର ନିଜ ରୂପ ଦେଖାଇଲା । ଭୀତ ହେଲେ ସୀତା ଯେବେ ନାମ ଶୁଣାଇଲା ॥
ଧରି ଦୃଢ଼ ଧୈର୍ଯ୍ୟ ଧରା-ଦୁହିତା ବୋଲନ୍ତି । ଖଳ, କ୍ଷଣେ ଛିଡ଼ା ରହ ପ୍ରଭୁ ଆସୁଛନ୍ତି ॥୭॥
ଯେସନେ ସିଂହ ବଧୂକୁ ଚାହେଁ କ୍ଷୁଦ୍ରଶଶ । ମୋତେ ଚାହିଁ ରକ୍ଷନାଥ, ହେଲୁ କାଳ ବଶ ॥
ଶୁଣି ଏ ବଚନ କ୍ରୋଧ ଲଭିଲା ରାବଣ । ସୁଖୀ ହେଲା ମନ ମଧ୍ୟେ ବନ୍ଦିଣ ଚରଣ ॥୮॥
କ୍ରୋଧବନ୍ତ ହୋଇ ତହୁଁ ଲଙ୍କାଧୀଶ ରଥରେ ନେଲା ବସାଇ ।
ଚଳେ ନଭପଥ ଭୟାତୁରେ ରଥ ନ ପାରଇ ସେ ଚଳାଇ ॥୨୮॥

---

ହୃଦୟରେ ଶୋକ ହୁଏ ନାହିଁ, ସେହି ଦଶଶିର ରାବଣ କୁକୁର ପରି ଏଣେ ତେଣେ ଅନାଇଁ (ଭଣ୍ଡ ପରି) ହାସ୍ୟାସ୍ପଦ ଆଚରଣ କରିବାକୁ ଅଗ୍ରସର ହେଲା । କାକ ଭୁଶୁଣ୍ଡି କହନ୍ତି, "ହେ ଗରୁଡ ! ଏହିପରି କୁମାର୍ଗରେ ପାଦ ଦେବା ମାତ୍ରେ ଶରୀରରେ ତେଜ, ବୁଦ୍ଧି ଏବଂ ବଳ ଲେଶମାତ୍ର ରହେ ନାହିଁ ।" ॥ ୪-୫ ॥ ରାବଣ ଅନେକ ପ୍ରକାର ସୁନ୍ଦର କଥା ଗଢି ସୀତାଙ୍କୁ ଶୁଣାଇବାରେ ଲାଗିଲା ଏବଂ ତତ୍ପରେ ରାଜନୀତି, ଭୟ ଓ ପ୍ରେମ ବିଷୟ ପ୍ରକାଶ କଲା । ସୀତା କହିଲେ, "ହେ ଯତି ଗୋସାଇଁ ! ତୁମେ ତ ଦୁଷ୍ଟ ପରି ବଚନ କହୁଛ ।" ॥ ୬ ॥ ତତ୍ପରେ ରାବଣ ଆପଣାର ପ୍ରକୃତ ରୂପ ଦେଖାଇଲା ଏବଂ ନାମ 'ରାବଣ' ବୋଲି ତାହାଠାରୁ ଶୁଣିବା ମାତ୍ରେ ସୀତା ଭୟ-ଭୀତ ହୋଇ ଉଠିଲେ । ସେ ଗମ୍ଭୀର ଧୈର୍ଯ୍ୟ ଧାରଣ କରି କହିଲେ, "ଆରେ ଦୁଷ୍ଟ ! ଛିଡ଼ା ହୋଇ ରହ । ପ୍ରଭୁ ହେଇଟି ଆସି ପହଞ୍ଚିଲେ ॥ ୭ ॥ ସିଂହ-ବଧୂକୁ ସାମାନ୍ୟ ଶଶକ ଯେପରି ଚାହେଁ, ହେ ରାକ୍ଷସରାଜ ! ତୁ ମୋତେ ଲାଳସା କରି ସେହିପରି କାଳବଶ ହେବାକୁ ଯାଉଅଛୁ ।" ଏହିପରି ବଚନ ଶୁଣିବା ମାତ୍ରେ ରାବଣର ମନରେ କ୍ରୋଧ ଆସିଗଲା । କିନ୍ତୁ ମନ ମଧ୍ୟରେ ସେ ସୀତାଙ୍କ ଚରଣ ବନ୍ଦନା କରି ସୁଖାନୁଭବ କଲା ॥ ୮ ॥ ସୋରଠା ।—ତତ୍ପରେ କ୍ରୋଧରେ ପରିପୂର୍ଣ୍ଣ ହୋଇ ରାବଣ ସୀତାଙ୍କୁ ରଥ ଉପରେ ନେଇ ବସାଇଲା ଏବଂ ଅତି ଆତୁରତା ସହ ଆକାଶ ମାର୍ଗରେ ଚଳିଲା । ( ରାମଙ୍କ ) ଡରରେ ସେ ରଥକୁ ହାଁକି

ହା ଜଗ ଏକ ବୀର ରଘୁରାୟା । କେହିଁ ଅପରାଧ ବିସାରେହୁ ଦାୟା ॥
ଆରତି ହରନ ସରନ ସୁଖଦାୟକ । ହା ରଘୁକୁଲ ସରୋଜ ଦିନନାୟକ ॥୧॥
ହା ଲଛିମନ ତୁହ୍ମାର ନହିଁ ଦୋସା । ସୋ ଫଲୁ ପାୟଉଁ କୀହ୍ନେଉଁ ରୋସା ॥
ବିବିଧ ବିଲପ କରତି ବୈଦେହୀ । ଭୂରି କୃପା ପ୍ରଭୁ ଦୂରି ସନେହୀ ॥୨॥
ବିପତି ମୋରି କୋ ପ୍ରଭୁହି ସୁନାୱା । ପୁରୋଡାସ ଚହ ରାସଭ ଖାୱା ॥
ସୀତା କୈ ବିଲପ ସୁନି ଭାରୀ । ଭଏ ଚରାଚର ଜୀବ ଦୁଖାରୀ ॥୩॥
ଗୀଧରାଜ ସୁନି ଆରତ ବାନୀ । ରଘୁକୁଲ ତିଲକ ନାରି ପହିଚାନୀ ॥
ଅଧମ ନିସାଚର ଲୀହ୍ନେଁ ଜାଈ । ଜିମି ମଲେଛ ବସ କପିଲା ଗାଈ ॥୪॥
ସୀତେ ପୁତ୍ରି କରସି ଜନି ତ୍ରାସା । କରିହଉଁ ଜାତୁଧାନ କର ନାସା ॥
ଧାୱା କ୍ରୋଧବନ୍ତ ଖଗ କୈସେଁ । ଛୂଟଇ ପବି ପରବତ କହୁଁ ଜୈସେଁ ॥୫॥

---

ହା ! ଜଗତେ ଏକ ବୀର ରଘୁକୁଳକେତୁ । ତମ୍ଭେ ପାଶୋରିଲେ କେଉଁ ଅପରାଧ ହେତୁ ॥
ଆରତ-ତ୍ରାଣ, ଶରଣ-ସୁଖ ପ୍ରଦାୟକ । ହା ! ରଘୁକୁଳ-ସରୋଜ-ଦିବସ-ନାୟକ ॥୧॥
ହା ଲକ୍ଷ୍ମଣ ! କିଛି ମାତ୍ର ନାହିଁ ତୁମ୍ଭ ଦୋଷ । ତାହାର ଫଳ ପାଇଲି କଲି ଯେଉଁ ରୋଷ ॥
କରନ୍ତି ଅନେକ ମତେ ବିଳାପ ବୈଦେହୀ । ଦୂରେ ରହିଗଲ ପ୍ରଭୁ, କୃପା ଗୁଣ ସ୍ନେହୀ ॥୨॥
ପ୍ରଭୁଙ୍କି କେ ଶୁଣାଇବ ବିପଦ ମୋହର । ହୋମ ଦ୍ରବ୍ୟ ଭକ୍ଷିବାକୁ ଇଚ୍ଛାକରେ ଖର ॥
ଶୁଣନ୍ତେ ବଇଦେହୀଙ୍କ ବିଳାପ ଅମିତ । ଚରାଚର ଜୀବ ସର୍ବେ ହୋଇଲେ ଦୁଃଖିତ ॥୩॥
ଗୃଧ୍ରରାଜ ଶୁଣି କରୁ ଏ ଆରତ ବାଣୀ । ରଘୁକୁଳ ତିଳକଙ୍କ ବଧୂ ବୋଲି ଜାଣି ॥
ନେଇ ଯାଉଅଛି ନଭେ ନିଶାଚର ସ୍ଥାନ । କପିଳା ଗାଈ ହୋଇଛୁ ଯେସନେ ମ୍ଲେଚ୍ଛାଧୀନ ॥୪॥
ପୁତ୍ରି, ଜନକ ନନ୍ଦନ୍ନ, କର ନାହିଁ ତ୍ରାସ । କରିବି ମୁହିଁ ରଜନୀ-ଚରଙ୍କୁ ବିନାଶ ॥
ଅତି କ୍ରୋଧ-ବନ୍ତ ଖଗ ଧାଇଁଲା ତେମନ୍ତେ । ପଡ଼ଇ ପବି ପର୍ବତ ଉପରେ ଯେମନ୍ତେ ॥୫॥

---

ପାରୁ ନ ଥାଏ ॥ ୨୮ ॥ ଚୌପାଇ :—ସୀତା ବିଳାପ କରୁଥା'ନ୍ତି, ହା ଜଗତର ଅଦ୍ୱିତୀୟ ବୀର ରଘୁନାଥ ! ଆପଣ ମୋର କେଉଁ ଅପରାଧ ଯୋଗେ ମୋତେ ଭୁଲି-ଗଲେ ? ହା ଦୁଃଖହର ! ହା ଶରଣାଗତ-ସୁଖଦାୟକ ! ହା ରଘୁକୁଳ-କମଳ-ଦିବାକର ! ହା ଲକ୍ଷ୍ମଣ ! ତୁମର କୌଣସି ଦୋଷ ନାହିଁ । ମୁଁ କ୍ରୋଧ କରିଥିଲି । ତାହାର ଫଳ ପାଇଗଲି ।" ଜାନକୀ ବହୁତ ପ୍ରକାରେ ବିଳାପ କରୁଥା'ନ୍ତି—"ହାୟ ! ପ୍ରଭୁଙ୍କ କୃପା ତ ଅପାର । ପରନ୍ତୁ ସେହି ସ୍ନେହୀ ପ୍ରଭୁ ମୋର ବହୁତ ଦୂରରେ ରହିଗଲେ ॥ ୧-୨ ॥ ପ୍ରଭୁଙ୍କୁ ମୋର ଏ ବିପତ୍ତି କଥା କିଏ ଶୁଣାଇବ ? ଯଜ୍ଞାନ୍ନକୁ ଗଧ ଖାଇବାକୁ ଚାହୁଁଅଛି ।" ସୀତାଙ୍କ ଅତିଶୟ ବିଳାପ ଶୁଣି ଜଡ଼ଚେତନ ସମସ୍ତ ଜୀବ ଦୁଃଖିତ ହୋଇ ପଡ଼ିଲେ ॥ ୩ ॥ ଗୃଧ୍ରରାଜ ଜଟାୟୁ ସୀତାଙ୍କ ଦୁଃଖଭରା ବାଣୀ ଶୁଣି ଚିହ୍ନିଗଲେ ଯେ, ଏ ରଘୁକୁଳତିଳକ ଶ୍ରୀରାମଚନ୍ଦ୍ରଙ୍କ ପତ୍ନୀ ଏବଂ ଅଧମ ରାକ୍ଷସ ଏହାଙ୍କୁ ବଳାତ୍କାର କରି ନେଇ ଯାଉଅଛି । କପିଳା ଗାଈ ମ୍ଲେଚ୍ଛ ପାଲରେ ପଡ଼ିଯାଇଛି ଯେ ।

ରେ ରେ ଦୁଷ୍ଟ ଠାଡ଼ କନ ହୋଷ୍ଟା । ନିର୍ଭୟ ଚଲେସି ନ ଜାନେହି ମୋହ୍ଟା ॥
ଆଓ୍ୱତ ଦେଖି କୃତାନ୍ତ ସମାନା । ଫିରି ଦସକଂଧର କର ଅନୁମାନା ॥୬॥
କି ମୈନାକ କି ଖଗପତି ହୋଈ । ମମ ବଲ ଜାନ ସହିତ ପତି ସୋଈ ॥
ଜାନା ଜରଠ ଜଟାୟୁ ଏହା । ମମ କର ତୀରଥ ଛାଡ଼ିହି ଦେହା ॥୭॥
ସୁନତ ଗୀଧ କ୍ରୋଧାତୁର ଧାଓ୍ୱା । କହ ସୁନୁ ରାବନ ମୋର ସିଖାଓ୍ୱା ॥
ତଜି ଜାନକିହି କୁସଲ ଗୃହ ଜାହୂ । ନାହିଁ ତ ଅସ ହୋଇହି ବହୁବାହୂ ॥୮॥
ରାମ ରୋଷ ପାବକ ଅତି ଘୋରା । ହୋଇହି ସଲଭ ସକଲ କୁଲ ତୋରା ॥
ଉତରୁ ନ ଦେତ ଦସାନନ ଜୋଧା । ତବହିଁ ଗୀଧ ଧାଓ୍ୱା କରି କ୍ରୋଧା ॥୯॥
ଧରି କଚ ବିରଥ କୀନ୍ହ ମହି ଗିରା । ସୀତହି ରାଖି ଗୀଧ ପୁନି ଫିରା ॥
ଚୋଁଚନ୍ହ ମାରି ବିଦାରେସି ଦେହୀ । ଦଣ୍ଡ ଏକ ଭଇ ମୁରୁଛା ତେହୀ ॥୧୦॥

ରେ ରେ ଦୁଷ୍ଟ କିପାଁ କ୍ଷଣେ ଛିଡ଼ା ନ ହେଉଛୁ । ମୋତେ ନ ଦେଖିଣ ଚାଲି ନିର୍ଭୟେ ଯାଉଛୁ ॥
ଆସିବା ଦେଖି ଖଗଙ୍କୁ କୃତାନ୍ତ ସମାନ । ପକ୍ଷୀଙ୍କୁ ଚାହିଁ ଲଙ୍କେଶ କରେ ଅନୁମାନ ॥୬॥
କି ମଇନାକ ଅଥବା ଖଗପତି ଏହୁ । ଜାଣିଛୁ ବଳ ମୋହର ସ୍ୱାମୀ ସହ ଯେହୁ ॥
ଜାଣିଲା ପ୍ରନଷ୍ଟ ବୃଦ୍ଧ ଜଟାୟୁ ସେ ଏହି । ମୋ କର ପବିତ୍ର ତୀର୍ଥେ ତେଜିବ ଏ ଦେହୀ ॥୭॥
ଶୁଣି ଅତି କ୍ରୋଧାତୁରେ ଧାଇଁଣ ଖଗେଶ । ବୋଇଲା ଶୁଣ ରାବଣ, ମୋର ଉପଦେଶ ॥
ତେଜି ଜାନକୀଙ୍କି ଯାଅ କୁଶଳେ ଭବନ । ଅନ୍ୟଥା ବିପୁଳବାହୁ, ହୋଇବୁ ଏସନ ॥୮॥
ରାମଙ୍କ ରୋଷ-ପାବକ ଅତିଶୟ ଘୋର । ପତଙ୍ଗ ହୋଇବେ ସାରା ପରିବାର ତୋର ॥
ଉତ୍ତର ଦିଅଇ ନାହିଁ ବୀର ଲଙ୍କପତି । ତହୁଁ ଜଟାୟୁ ଧାଇଁଲା କ୍ରୋଧ କରି ଅତି ॥୯॥
ବିରଥ କରିଣ କେଶ ଧରି କଚାଡ଼ିଲା । ସୀତାଙ୍କୁ ରଖି ଗୃଧ୍ରେଶ ଆବର ଫେରିଲା ॥
ଚଞ୍ଚୁ ମାରିଣ ତାହାର ଦେହ ବିଦାରିଲା । ଦଣ୍ଡେକ ପର୍ଯ୍ୟନ୍ତେ ମୂର୍ଚ୍ଛା ତାହାକୁ ହୋଇଲା ॥୧୦॥

ସେ କହିଲା, "ହେ ପୁତ୍ରୀ ସୀତେ ! ଭୟ କର ନାହିଁ । ମୁଁ ଏହି ରାକ୍ଷସକୁ ନାଶ କରିବି । ଏହା କହି ସେହି ପକ୍ଷୀ କ୍ରୋଧରେ ପରିପୂର୍ଣ୍ଣ ହୋଇ ପର୍ବତ ଆଡ଼କୁ ବଜ୍ର ଛୁଟିଲା ପରି ସେହି ରଥ ଆଡ଼କୁ ଦୌଡ଼ିଲା ॥ ୫ ॥ ସେ ଆହ୍ୱାନ ଦେଇ କହିଲା, "ରେ ରେ ଦୁଷ୍ଟ ! ଛିଡ଼ା ହେଉ ନାହୁଁ କାହିଁକି ? ନିର୍ଭୟରେ ଚାଲିଯାଉଛୁ ? ମୋତେ ତୁ ଜାଣି ନାହୁଁ ?" ତାହାକୁ ଯମରାଜ ସମାନ ଆସିବାର ଦେଖି ରାବଣ ବୁଲିପଡ଼ି ମନେ ମନେ ଅନୁମାନ କରିବାକୁ ଲାଗିଲା—ଏ ମୈନାକ ପର୍ବତ ବା ପକ୍ଷୀମାନଙ୍କର ସ୍ୱାମୀ ଗରୁଡ଼ । ମାତ୍ର ସେ ଗରୁଡ଼ ତ ଆପଣା ସ୍ୱାମୀ ବିଷ୍ଣୁଙ୍କ ସମେତ ମୋ ବଳ କଥା ଜାଣେ ! ଟିକିଏ ପାଖକୁ ଆସି ରାବଣ ତାହାକୁ ଚିହ୍ନି ପକାଇଲା ଏବଂ କହିଲା, "ଏ ତ ବୃଦ୍ଧ ଜଟାୟୁ । ମୋର ହାତ-ତୀର୍ଥରେ ଏ ଶରୀର ତ୍ୟାଗ କରିବ ।" ॥ ୬-୭ ॥ ଏହା ଶୁଣିବା ମାତ୍ରେ ଗୃଧ୍ର କ୍ରୋଧରେ ପରିପୂର୍ଣ୍ଣ ହୋଇ ଅତି ବେଗରେ ଧାଇଁଲା ଏବଂ କହିଲା, "ରାବଣ ! ମୋ ଉପଦେଶ ଶୁଣ୍ । ଜାନକୀଙ୍କୁ ଛାଡ଼ି କୁଶଳପୂର୍ବକ ତୋ ନିଜ ଘରକୁ ଚାଲିଯାଅ ।

ତବ ସକ୍ରୋଧ ନିସିଚର ଖିସିଆନା । କାଢ଼େସି ପରମ କରାଲ କୃପାନା ॥
କାଟେସି ପଙ୍ଖ ପରା ଖଗ ଧରନୀ । ସୁମିରି ରାମ କରି ଅଦଭୁତ କରନୀ ॥୧୧॥
ସୀତହି ଜାନ ଚଢ଼ାଇ ବହୋରୀ । ଚଲା ଉତାଇଲ ତ୍ରାସ ନ ଥୋରୀ ॥
କରତି ବିଲାପ ଜାତି ନଭ ସୀତା । ବ୍ୟାଧ ବିବସ ଜନୁ ମୃଗୀ ସଭୀତା ॥୧୨॥
ଗିରି ପର ବୈଠେ କପିହ୍ନ ନିହାରୀ । କହି ହରି ନାମ ଦୀହ୍ନ ପଟ ଡାରୀ ॥
ଏହି ବିଧି ସୀତହି ସୋ ଲୈ ଗୟଉ । ବନ ଅସୋକ ମହଁ ରାଖତ ଭୟଉ ॥୧୩॥

ହାରି ପରା ଖଲ ବହୁ ବିଧି ଭୟ ଅରୁ ପ୍ରୀତି ଦେଖାଇ ।
ତବ ଅସୋକ ପାଦପ ତର ରାଖିସି ଜତନ କରାଇ ॥୨୯ (କ)॥

---

ତହୁଁ ଅତି କ୍ରୋଧ କରି ନିଶାଚର-ପାଳ । କାଢ଼ିଲା ଅତି କଠୋର କୃପାଣ କରାଳ ॥
କାଟନ୍ତେ ଖଗର ପକ୍ଷ ହେଲା ଭୂପତିତ । ସ୍ମରି ରାମ ଅଦ୍ଭୁତ କୃତିତ୍ୱ ସହିତ ॥୧୧॥
ଜନକ ସୁତାଙ୍କୁ ଯାନେ ଚଢାଇ ଆବର । ଚଳିଲା ଅତ୍ୟନ୍ତ ତ୍ରାସେ ହୋଇ ଡରଭର ॥
ବିଲାପ କରି ଯାଆନ୍ତି ନଭ ପଥେ ସୀତା । ବ୍ୟାଧ ବଶୀଭୂତ ଯେହ୍ନେ ମୃଗୁଣୀ ସଭୀତା ॥୧୨॥
ଗିରି ପୃଷ୍ଠେ ଉପବିଷ୍ଟ କପିଙ୍କୁ ଦେଖିଣ । ଫିଙ୍ଗିଦେଲେ ପଟ ହରି ନାମ ଉଚ୍ଚାରିଣ ॥
ଏହି ପ୍ରକାରେ ସୀତାଙ୍କୁ ଯେନ ସେ ଗମିଲା । ସୁନ୍ଦର ଅଶୋକ ବନ ମଧ୍ୟରେ ରଖିଲା ॥୧୩॥

ହାରିଗଲା ଖଳ ଅନେକ ପ୍ରକାରେ ଭୟ କୁପ୍ରୀତି ଦେଖାଇ ।
ଅଶୋକ ପାଦପ ତଳେ ତହୁଁ ନେଇ ରଖିଲା ଯତ୍ନ କରାଇ ॥୨୯ (କ)॥

---

ନୋହିଲେ ରେ ବହୁବାହୁ ! ଏପରି ଅବସ୍ଥା ହେବ ଯେ, ରାମଙ୍କ କ୍ରୋଧରୂପୀ ଅତ୍ୟନ୍ତ ଭୟଙ୍କର ଅଗ୍ନିରେ ତୋର ସାରା ବଂଶ ପତଙ୍ଗ ହୋଇ ପଡ଼ି ଭସ୍ମୀଭୂତ ହୋଇଯିବେ ।" ଯୋଦ୍ଧା ରାବଣ କିଛି ଉତ୍ତର ଦେଉ ନ ଥାଏ । ତତ୍ପରେ ଗୃଧ୍ର କ୍ରୋଧ କରି ଧାଇଁଲା ॥୮-୯॥ ସେ ରାବଣର ବାଳ ଧରି ତାହାକୁ ରଥ ତଳେ ଏପରି ଜୋରରେ ଫିଙ୍ଗିଦେଲା ଯେ, ସେ ଧରଣୀ ଉପରେ ଯାଇ ପଡ଼ିଲା । ଗୃଧ୍ର ସୀତାଙ୍କୁ ଗୋଟିଏ ପାଖରେ ବସାଇ ପୁଣି ଫେରିଲା ଏବଂ ଥଣ୍ଟରେ ଆଘାତ କରି କରି ରାବଣର ଦେହକୁ ବିଦୀର୍ଣ୍ଣ କରିଦେଲା । ଫଳରେ ଘଡ଼ିଏ କାଳ ଯାଏ ରାବଣର ମୂର୍ଚ୍ଛା ହୋଇଗଲା ॥୧୦॥ ତଦନନ୍ତର ରାବଣ ଲଜ୍ଜାବଶତଃ ଅଧିକ କ୍ରୁଦ୍ଧ ହୋଇ ଅତି ଭୟାନକ କୃପାଣ ବାହାର କଲା ଏବଂ ତହିଁରେ ଜଟାୟୁର ଡେଣା କାଟି ଦେଲା । ପକ୍ଷୀ ଶ୍ରୀରାମଙ୍କ ଅଦ୍ଭୁତ ଲୀଳା ବିଷୟ ସ୍ମରଣ କରି ପୃଥିବୀ ଉପରେ ଖସିପଡ଼ିଲା ॥ ୧୧ ॥ ସୀତାଙ୍କୁ ପୁଣି ରଥ ଉପରେ ଚଢାଇ ରାବଣ ଅତି ଆତୁରତା ସହକାରେ ଚଳିଲା । ତାହାର ଭୟ କମ୍ ନ ଥିଲା । ସୀତା ଆକାଶରେ ବିଳାପ କରି କରି ଯାଉଥା'ନ୍ତି । ସତେ ଅବା କୌଣସି ଭୟଭୀତା ହରିଣୀ ବିବଶା ହୋଇ ବ୍ୟାଧ କବଳରେ ପଡ଼ିଯାଇଛି କି ! ॥୧୨॥ ପର୍ବତ ଉପରେ ବସିଥିବା ବାନରମାନଙ୍କୁ ଦେଖି ସୀତା ହରିନାମ ନେଇ ଉତ୍ତରୀୟ-ବସ୍ତ୍ର ପକାଇ ଦେଲେ । ଏହି ରୂପେ ସେ ସୀତାଙ୍କୁ ନେଇଗଲା ଏବଂ ତାଙ୍କୁ ନେଇ ଅଶୋକ ବନରେ ରଖିଲା ॥ ୧୩ ॥ ଦୋହା :—ସୀତାଙ୍କୁ ବହୁତ

## ନବାହ୍ନପାରାୟଣ, ଷଷ୍ଠ ବିଶ୍ରାମ

ଜେହି ବିଧି କପଟ କୁରଂଗ ସଁଗ ଧାଇ ଚଲେ ଶ୍ରୀରାମ ।
ସୋ ଛବି ସୀତା ରାଖି ଉର ରଟତି ରହତି ହରିନାମ ॥୨୯ (ଖ)॥

ରଘୁପତି ଅନୁଜହି ଆୱତ ଦେଖୀ । ବାହିଜ ଚିନ୍ତା କୀହ୍ନି ବିସେଷୀ ॥
ଜନକସୁତା ପରିହରିହୁ ଅକେଲୀ । ଆୟହୁ ତାତ ବଚନ ମମ ପେଲୀ ॥୧॥
ନିସିଚର ନିକର ଫିରହିଁ ବନ ମାହୀଁ । ମମ ମନ ସୀତା ଆଶ୍ରମ ନାହୀଁ ॥
ଗହି ପଦ କମଲ ଅନୁଜ କର ଜୋରୀ । କହେଉ ନାଥ କଛୁ ମୋହି ନ ଖୋରୀ ॥୨॥
ଅନୁଜ ସମେତ ଗଏ ପ୍ରଭୁ ତହୱାଁ । ଗୋଦାବରି ତଟ ଆଶ୍ରମ ଜହୱାଁ ॥
ଆଶ୍ରମ ଦେଖି ଜାନକୀ ହୀନା । ଭଏ ବିକଲ ଜସ ପ୍ରାକୃତ ଦୀନା ॥୩॥
ହା ଗୁନଖାନି ଜାନକୀ ସୀତା । ରୂପ ସୀଲ ବ୍ରତ ନେମ ପୁନୀତା ॥
ଲଛିମନ ସମୁଝାଏ ବହୁ ଭାଁତୀ । ପୂଛତ ଚଲେ ଲତା ତରୁ ପାଁତୀ ॥୪॥

---

ଯେମନ୍ତେ କପଟ କୁରଙ୍ଗ ସଙ୍ଗରେ ଧାଇଁ ଚାଲିଲେ ଶ୍ରୀରାମ ।
ହୃଦେ ରଖି ସେହି ଛବି ବଇଦେହୀ ରଟୁଥାନ୍ତି ହରି ନାମ ॥୨୯ (ଖ)॥

ଅନୁଜଙ୍କୁ ଆସିବାର ଦେଖି ରଘୁସୁତ । ବାହ୍ୟିକ ଚିନ୍ତା ବ୍ୟଥିତ ହୋଇଲେ ବହୁତ ॥
ଜନକ ସୁତାଙ୍କୁ ଭ୍ରାତ ! ଏକାକୀ ଛାଡ଼ିଣ । ଆସିଲ ଏଥକୁ ମୋର ବଚନ ଏଡ଼ିଣ ॥୧॥
ଅସୁର ବୃନ୍ଦ ଭ୍ରମନ୍ତି ବିପିନ ମଧ୍ୟରେ । ମୋ ମନେ ହୁଏ, ନ ଥିବେ ସୀତା ଆଶ୍ରମରେ ॥
ଚରଣାମ୍ବୁଜ ଅନୁଜ ଧରି ଯୋଡ଼ି କର । ବୋଇଲେ ଗୋସାଇଁ, ନାହିଁ ଅପ୍ରାଧ ମୋହର ॥୨॥
ଅନୁଜ ସହିତ ତହିଁ ପ୍ରଭୁ ବାହୁଡ଼ିଲେ । ଗୋଦାବରୀ ତଟେ ରମ୍ୟ ଆଶ୍ରମେ ଆସିଲେ ॥
ଆଶ୍ରମ ଅବଲୋକିଣ ଜାନକୀ ବିହୀନ । ହୋଇଲେ ବିକଳ ଯେସନ୍ତେ ସାଧାରଣ ଦୀନ ॥୩॥
ଆହା ! ଗୁଣମୟୀ ସୀତା ଜନକ ଦୁହିତା । ରୂପଶୀଳ ସ୍ନେହବ୍ରତ ନିୟମ ପବିତା ॥
ଲକ୍ଷ୍ମଣ ବହୁ ପ୍ରକାରେ ବୁଝାଇ କହିଲେ । ଲତା ତରୁ-ନିକରଙ୍କୁ ପଚାରି ଚାଲିଲେ ॥୪॥

---

ପ୍ରକାରେ ଭୟ ଓ ପ୍ରୀତି ଦେଖାଇ ଯେତେବେଳେ ସେ ଦୁଷ୍ଟ ହାରିଗଲା, ସେତେବେଳେ ଯତ୍ନପୂର୍ବକ ତାହାଙ୍କୁ ଅଶୋକ ବୃକ୍ଷ ତଳେ ନେଇ ରଖିଦେଲା ॥ ୨୯ (କ) ॥ ଯେଉଁପରି ଭାବରେ କପଟ ମୃଗ ସଙ୍ଗେ ଶ୍ରୀରାମ ଦୌଡ଼ି ଚାଲିଥିଲେ, ସେହି ଛବିକୁ ହୃଦୟରେ ରଖି ସୀତା ନିରନ୍ତର ହରିନାମ ଜପ କରୁଥା'ନ୍ତି ॥ ୨୯ (ଖ) ॥ ଚୌପାଈ :—ଏଣେ ଶ୍ରୀ ରଘୁନାଥ ସାନଭାଇ ଲକ୍ଷ୍ମଣଙ୍କୁ ଆସିବାର ଦେଖି ବାହ୍ୟ ରୂପରେ ବହୁତ ଚିନ୍ତା କଲେ ଏବଂ କହିଲେ, "ହେ ଭାଇ ! ତୁମେ ଜାନକୀଙ୍କୁ ଏକାକିନୀ ଛାଡ଼ି ମୋର ଆଦେଶ ଲଙ୍ଘନ କରି ଏଠାକୁ ଚାଲି ଆସିଲ ! ॥ ୧ ॥ ରାକ୍ଷସ ଦଳମାନେ ବନରେ ବିଚରଣ କରୁଅଛନ୍ତି । ମୋର ମନରେ ଏପରି କମିତି ଆଶଙ୍କା ହେଉଛି ଯେ, ସୀତା ଆଶ୍ରମରେ ନାହାନ୍ତି ।" ସାନଭାଇ ଲକ୍ଷ୍ମଣ ଶ୍ରୀରାମଙ୍କ ଚରଣ-କମଳ ଧରି ହାତ ଯୋଡ଼ି କହିଲେ, "ହେ ନାଥ !

ହେ ଖଗ ମୃଗ ହେ ମଧୁକର ଶ୍ରେଣୀ । ତୁମ୍ହ ଦେଖୀ ସୀତା ମୃଗନୈନୀ ॥
ଖଞ୍ଜନ ସୁକ କପୋତ ମୃଗ ମୀନା । ମଧୁପ ନିକର କୋକିଲା ପ୍ରବୀନା ॥୫॥
କୁଂଦ କଲୀ ଦାଡିମ ଦାମିନୀ । କମଲ ସରଦ ସସି ଅହିଭାମିନୀ ॥
ବରୁନ ପାସ ମନୋଜ ଧନୁ ହଂସା । ଗଜ କେହରି ନିଜ ସୁନତ ପ୍ରସଂସା ॥୬॥
ଶ୍ରୀଫଲ କନକ କଦଲି ହରଷାହୀଁ । ନେକୁ ନ ସଂକ ସକୁଚ ମନ ମାହୀଁ ॥
ସୁନୁ ଜାନକୀ ତୋହି ବିନୁ ଆଜୂ । ହରଷେ ସକଲ ପାଇ ଜନୁ ରାଜୂ ॥୭॥
କିମି ସହି ଜାତ ଅନଖ ତୋହି ପାହୀଁ । ପ୍ରିୟା ବେଗି ପ୍ରଗଟସି କସ ନାହୀଁ ॥
ଏହି ବିଧି ଖୋଜତ ବିଲପତ ସ୍ୱାମୀ । ମନହୁଁ ମହା ବିରହୀ ଅତି କାମୀ ॥୮॥

---

ଆହେ ଖଗ ମୃଗ, ଆହେ ମଧୁକର ବ୍ରଜ । ତୁମ୍ଭେ କି ଦେଖିଛ ମୃଗ-ନୟନାକୁ ଆଜ ॥
ଖଞ୍ଜନ ଶୁକ କପୋତ ମୃଗଗଣ ମୀନ । ମଧୁପ ନିକର କଳ କୋକିଳ ପ୍ରବୀଣ ॥୫॥
କୁନ୍ଦ କଢି ଡାଳିମ୍ବ ଯେ ଆଉର ଦାମିନୀ । ଶରଦ କମଳ ଶଶୀ ଭୁଜଙ୍ଗ କାମିନୀ ॥
ବରୁଣ ପାଶ ମଦନ ଧନୁ ହଂସ-ବର । ଗଜ କେଶରୀ ପ୍ରଶଂସା ଶୁଣନ୍ତି ନିଜର ॥୬॥
ଶ୍ରୀଫଳ ହେମ କଦଳୀ ହରଷ ହୁଅନ୍ତି । ଲଜ୍ଜ୍ୟା ଭୟ କିଛି ମାତ୍ର ମନେ ନ କରନ୍ତି ॥
ଶୁଣ ବିଦେହ-ତନୁଜା ତୁମ୍ଭ ବିନା ଆଜ । ପ୍ରସନ୍ନ ସମସ୍ତେ ଯେସନ୍ତେ ପାଇଛନ୍ତି ରାଜ୍ୟ ॥୭॥
କେମନ୍ତେ ଏ ଅଭିମାନ ସହି ତୁ ପାରୁଛୁ । ପ୍ରିୟା କାହିଁ ପାଇଁ ବେଗି ପ୍ରକଟ ନୋହୁଛୁ ॥
ଖୋଜନ୍ତି ବିଳାପ କରି ଏହି ଭାବେ ସ୍ୱାମୀ । ଯେସନେ ମହାବିରହୀ ଅତିଶୟ କାମୀ ॥୮॥

---

ମୋର ଏଥିରେ କିଛି ମାତ୍ର ଦୋଷ ନାହିଁ ।" ॥ ୨ ॥ ଲକ୍ଷ୍ମଣଙ୍କ ସହିତ ପ୍ରଭୁ ଶ୍ରୀରାମ ଗୋଦାବରୀ ତଟରେ ଯେଉଁଠି ତାଙ୍କ ଆଶ୍ରମ ଥିଲା, ସେହିଠାକୁ ଗଲେ । ଆଶ୍ରମରେ ଜାନକୀଙ୍କୁ ନ ଥିବାର ଦେଖି ଶ୍ରୀରାମ ସାଧାରଣ ମନୁଷ୍ୟ ପରି ବ୍ୟାକୁଳ ଓ ଦୀନ ହୋଇ ପଡିଲେ ॥ ୩ ॥ ସେ ବିଳାପ କରିବାକୁ ଲାଗିଲେ, "ହେ ଗୁଣଖଣି ଜାନକି ! ହା ରୂପ-ଶୀଳ-ବ୍ରତ-ନିୟମ-ପବିତ୍ରା ସୀତେ !" ଲକ୍ଷ୍ମଣ ବହୁତ ପ୍ରକାରେ ବୁଝାଇଲେ । ତଦନନ୍ତର ଶ୍ରୀରାମ ଲତା ଓ ବୃକ୍ଷ-ପଂକ୍ତି ଆଦିଙ୍କୁ ପଚାରି ପଚାରି ଚାଲିଲେ—॥ ୪ ॥ ହେ ପକ୍ଷୀମାନେ ! ହେ ପଶୁମାନେ ! ହେ ଭ୍ରମରଶ୍ରେଣି ! ତୁମେ କେଉଁଠି ମୃଗନୟନୀ ସୀତାଙ୍କୁ ଦେଖିଅଛ କି ? ଖଞ୍ଜନ, ଶୁକ, କପୋତ, ହରିଣ, ମୀନ, ଭ୍ରମର-ସମୂହ, ପ୍ରବୀଣ କୋକିଳ, କୁନ୍ଦକଳୀ, ଡାଳିମ୍ବ, ବିଜୁଳି, କମଳ, ଶରଚ୍ଚନ୍ଦ୍ର ଓ ନାଗୁଣୀ, ବରୁଣଙ୍କ ପାଶ, କାମଦେବଙ୍କ ଧନୁ, ହଂସ, ଗଜ ଓ ସିଂହ—ଏମାନେ ସମସ୍ତେ ଆଜି ନିଜ ନିଜ ପ୍ରଶଂସା ଶୁଣୁଅଛନ୍ତି ॥ ୫-୬ ॥ ଶ୍ରୀଫଳ, ସୁବର୍ଣ୍ଣ ଓ କଦଳୀ ଆନନ୍ଦିତ ହେଉଅଛନ୍ତି । ଏମାନଙ୍କ ମନରେ ଟିକିଏ ହେଲେ ଶଙ୍କା ଓ ସଂକୋଚ ନାହିଁ । ହେ ଜାନକି ! ଶୁଣ, ତୁମ ବିନା ଏମାନେ ରାଜ୍ୟ ପାଇଗଲା ପରି ଆନନ୍ଦିତ ହେଉଅଛନ୍ତି । (ଅର୍ଥାତ୍ ତୁମ ଅଙ୍ଗ-ପ୍ରତ୍ୟଙ୍ଗ ଆଗରେ ଏମାନେ ସବୁ ତୁଚ୍ଛ ଓ ଅପମାନିତ ଥିଲେ । ଆଜି ତୁମକୁ ନ ଦେଖି ଏମାନେ ନିଜ ନିଜ ଶୋଭାର ଗର୍ବରେ ଫୁଲି ଯାଉଛନ୍ତି ।) ॥ ୭ ॥ ସେମାନଙ୍କ ଏହି ସ୍ପର୍ଦ୍ଧା ତୁମେ

ପୂରନକାମ ରାମ ସୁଖ ରାସୀ । ମନୁଜ ଚରିତ କର ଅଜ ଅବିନାସୀ ॥
ଆଗେଁ ପରା ଗୀଧପତି ଦେଖା । ସୁମିରତ ରାମ ଚରନ ଜିନ୍ହ ରେଖା ॥୯॥

କର ସରୋଜ ସିର ପରସେଉ କୃପାସିଂଧୁ ରଘୁବୀର ।
ନିରଖି ରାମ ଛବି ଧାମ ମୁଖ ବିଗତ ଭଈ ସବ ପୀର ॥୩୦॥

ତବ କହ ଗୀଧ ବଚନ ଧରି ଧୀରା । ସୁନହୁ ରାମ ଭଞ୍ଜନ ଭବ ଭୀରା ॥
ନାଥ ଦସାନନ ୟହ ଗତି କୀନ୍ହୀ । ତେହିଁ ଖଲ ଜନକସୁତା ହରି ଲୀନ୍ହୀ ॥୧॥
ଲୈ ଦଚ୍ଛିନ ଦିସି ଗୟଉ ଗୋସାଈଁ । ବିଲପତି ଅତି କୁରରୀ କୀ ନାଈଁ ॥
ଦରସ ଲାଗି ପ୍ରଭୁ ରାଖେଉଁ ପ୍ରାନା । ଚଲନ ଚହତ ଅବ କୃପାନିଧାନା ॥୨॥
ରାମ କହା ତନୁ ରାଖହୁ ତାତା । ମୁଖ ମୁସୁକାଇ କହୀ ତେହିଁ ବାତା ॥
ଜାକର ନାମ ମରତ ମୁଖ ଆୱା । ଅଧମଉ ମୁକୁତ ହୋଇ ଶ୍ରୁତି ଗାୱା ॥୩॥

---

ପୂର୍ଣ୍ଣକାମ ପ୍ରଭୁ ରାମଚନ୍ଦ୍ର ସୁଖରାଶି । ନର ଚରିତ କରନ୍ତି ଅଜ ଅବିନାଶୀ ॥
ଦେଖିଲେ ଗୃଧ୍ରକୁ ପଡ଼ିଥିବାର ଆଗରେ । ସ୍ମରଣ ରାମ ଚରଣ ଚିହ୍ନ ହୃଦୟରେ ॥୯॥

ସରସିଜ ହସ୍ତେ ଶିର ପରଶନ୍ତେ ରଘୁବୀର କୃପାକର ।
ନିରେଖିଣ ରାମ ମୁଖ ଛବି-ଧାମ ନାଶିଲା ପୀଡ଼ା ନିକର ॥୩୦॥

ତହୁଁ ଧୈର୍ଯ୍ୟ ଧରି ଗୃଧ୍ର ବୋଲଇ ବଚନ । ଶୁଣ ରଘୁନାଥ, ଭବ-ଭୟ-ବିଭଞ୍ଜନ ॥
ନାଥ ! ଦଶାନନ ମୋର ଏହି ଦଶା କଲା । ସେ ଖଲ ସତୀ ସୀତାଙ୍କୁ ହରି ନେଇଗଲା ॥୧॥
ଦକ୍ଷିଣଦିଗେ ଗୋସାଇଁ, ଘେନିଗଲା ସେହି । ବିଳପୁ ଥିଲେ କୁରରୀ ସଦୃଶ ବୈଦେହୀ ॥
ଦରଶନ ହେତୁ ପ୍ରଭୁ ରଖିଥିଲି ପ୍ରାଣ । ଯିବା ପାଇଁ ଚାହେଁ ଏବେ, କରୁଣାନିଧାନ ॥୨॥
ରାମ କହିଲେ ହେ ତାତ ! ରଖ କଳେବର । ମନ୍ଦ ମନ୍ଦ ହସି ଗୃଧ୍ର ଦିଅଇ ଉତ୍ତର ॥
ଯା' ନାମ ମୁଖେ ଆସନ୍ତେ ମୃତ୍ୟୁ ସମୟରେ । ଶ୍ରୁତି କହେ, ଶଠ ମଧ୍ୟ ମୁକ୍ତି ଲାଭ କରେ ॥୩॥

---

ସହୁଛ କପରି ? ହେ ପ୍ରିୟେ ! ତୁମେ ଶୀଘ୍ର ଦେଖା ଦେଉନାହଁ କାହିଁକି ? ଏହି ରୂପେ ଅନନ୍ତ ବ୍ରହ୍ମାଣ୍ଡ ଅଥବା ମହାମହିମାମୟୀ ସ୍ୱରୂପା-ଶକ୍ତି ସୀତାଙ୍କ ସ୍ୱାମୀ ଶ୍ରୀରାମ ସୀତାଙ୍କୁ ଖୋଜି ଖୋଜି ବିଳାପ କରୁଥା'ନ୍ତି । ସତେ ଯେମିତି କୌଣସି ଜଣେ ମହାବିରହୀ ଓ କାମୁକ ପୁରୁଷ ସେ ' ॥ ୮ ॥ ପୂର୍ଣ୍ଣକାମ, ଆନନ୍ଦରାଶି, ଅଜନ୍ମା ଓ ଅବିନାଶୀ ଶ୍ରୀରାମ ମନୁଷ୍ୟଙ୍କ ପରି ଲୀଳା କରୁଅଛନ୍ତି ! କିଛିଦୂର ଅଗ୍ରସର ହେବା ପରେ ସେ ଗୃଧ୍ରପତି ଜଟାୟୁଙ୍କୁ ପଡ଼ିଥିବାର ଦେଖିଲେ । ସେ ଧ୍ୱଜା, କୁଳିଶ ଆଦି ରେଖାଙ୍କିତ ଶ୍ରୀରାମଙ୍କ ଚରଣଦ୍ୱୟ ସ୍ମରଣ କରୁଥିଲେ ॥ ୯ ॥ ଦୋହା :—କୃପାସାଗର ଶ୍ରୀ ରଘୁବୀର ନିଜ କର-କମଳରେ ତାହାର ଶିର ସ୍ପର୍ଶ କଲେ । ଶୋଭାଧାମ ଶ୍ରୀରାମଙ୍କ ପରମସୁନ୍ଦର ମୁଖ ଦେଖି ତାହାର ସବୁ ପୀଡ଼ା ଚାଲିଯାଇଥାଏ ॥ ୩୦ ॥ ଚୌପାଈ —ଉପରେ ଧୈର୍ଯ୍ୟ ଧାରଣ କରି ଗୃଧ୍ର ଏ କଥା କହିଲେ, "ହେ ଭବଭୟ-ବିନାଶକ ଶ୍ରୀରାମ ! ଶୁଣନ୍ତୁ, ହେ ନାଥ ! ରାବଣ ମୋର ଏ ଦଶା କରିଅଛି । ସେହି ଦୁଷ୍ଟ ଜାନକୀଙ୍କୁ ହରଣ କରି ନେଇଅଛି ॥ ୧ ॥

ସୋ ମମ ଲୋଚନ ଗୋଚର ଆଗେଁ । ରାଖୌଁ ଦେହ ନାଥ କେହି ଖାଁଗେଁ ॥
ଜଲ ଭରି ନୟନ କହହିଁ ରଘୁରାଈ । ତାତ କର୍ମ ନିଜ ତେଁ ଗତି ପାଈ ॥୩॥
ପରହିତ ବସ ଜିହ୍ନ କେ ମନ ମାହୀଁ । ତିହ୍ନ କହୁଁ ଜଗ ଦୁର୍ଲଭ କଛୁ ନାହୀଁ ॥
ତନୁ ତଜି ତାତ ଜାହୁ ମମ ଧାମା । ଦେଉଁ କାହ ତୁହ୍ମ ପୂରନକାମା ॥୪॥

ସୀତା ହରନ ତାତ ଜନି କହହୁ ପିତା ସନ ଜାଇ ।
ଜୌଁ ମୈଁ ରାମ ତ କୁଲ ସହିତ କହିହି ଦସାନନ ଆଇ ॥୩୧॥

ଗୀଧ ଦେହ ତଜି ଧରି ହରି ରୁପା । ଭୂଷନ ବହୁ ପଟ ପୀତ ଅନୂପା ॥
ସ୍ୟାମ ଗାତ ବିସାଲ ଭୁଜ ଚାରୀ । ଅସ୍ତୁତି କରତ ନୟନ ଭରି ବାରୀ ॥୧॥

---

ମୋ ନୟନ ସମ୍ମୁଖରେ ଅଛି ପ୍ରଭୁ ସେହି । କେଉଁ ଅଭାବରୁ ନାଥ ! ରଖିବି ଏ ଦେହି ॥
ଭାଷିଲେ ନୟନୁ ନୀର ଢାଳି ରଘୁପତି । ତାତ ! ନିଜ କରମରୁ ଲଭିଲ ସଦ୍‌ଗତି ॥୩॥
ପରହିତ ଯା'ର ମନେ ନିବାସ କରଇ । ତାହାକୁ ଜଗତେ କିଛି ଦୁର୍ଲ୍ଲଭ ନୁହଇ ॥
ତନୁ ପରିହରି ବେଗେ କର ମୋର ଧାମ । କି ଦେବି ତୁମ୍ଭଙ୍କୁ, ତୁମ୍ଭେ ସ୍ୱୟଂ ପୂର୍ଣ୍ଣକାମ ॥୪॥

ଜାନକୀ ହରଣ ପିତାଙ୍କ ଆଗରେ ତାତ, ଯାଇ ନ କହିବ ।
ରାମ ମୁହିଁ ଯେବେ କୁଳ ସହ ତେବେ ରାବଣ ଯାଇ କହିବ ॥୩୧॥

ଦେହ ତ୍ୟାଗ କରି ଗୃଧ୍ର ଧରି ହରି ରୂପ । ବିବିଧ ଭୂଷଣ ପୀତ ବସନ ଅନୁପ ॥
ଶ୍ୟାମଳ ତନୁ ବିଶାଳ ଭୁଜଦଣ୍ଡ ଚାରି । ସ୍ତୁତି କରଇ ନୟନେ ପୂର୍ଣ୍ଣ କରି ବାରି ॥୧॥

---

ହେ ଗୋସାଇଁ ! ସେ ତାହାଙ୍କୁ ନେଇ ଦକ୍ଷିଣ ଦିଗକୁ ଯାଇଅଛି । ସୀତା କୁରରୀ ପରି ଅତି କରୁଣ ସ୍ୱରରେ ବିଳାପ କରୁଥିଲେ । ହେ ପ୍ରଭୋ ! ମୁଁ ଆପଣଙ୍କର କେବଳ ଦର୍ଶନ ନିମନ୍ତେ ପ୍ରାଣ ବଞ୍ଚାଇ ରଖିଥିଲି । ହେ କୃପାନିଧାନ ! ବର୍ତ୍ତମାନ ଏ ପ୍ରାଣ ଚାଲିଯିବାକୁ ଇଚ୍ଛୁକ ।" ॥୨॥ ଶ୍ରୀରାମ କହିଲେ, "ବାପ ! ଶରୀରକୁ ବଞ୍ଚାଇ ରଖ ।" ଏହା ଶୁଣି ହସି ହସି ଜଟାୟୁ କହିଲା, "ମଲାବେଳେ ଯାହାଙ୍କ ନାମ ମାତ୍ର ମୁଖରେ ଆସିଗଲେ ଅଧମ ମଧ୍ୟ ମୁକ୍ତି ପାଇଯାଏ ବୋଲି ବେଦମାନେ ଗାନ କରନ୍ତି, ସେହି ପ୍ରଭୁ ଆପଣ ମୋ ନେତ୍ରଗୋଚର ହୋଇ ସମ୍ମୁଖରେ ଦଣ୍ଡାୟମାନ । ହେ ପ୍ରଭୋ ! କେଉଁ ଅଭାବ ପୂରଣ ନିମନ୍ତେ ମୁଁ ଏବେ ଆଉ ଦେହ ରଖିବି ?" ଅଶ୍ରୁପୂର୍ଣ୍ଣ ନୟନରେ ଶ୍ରୀ ରଘୁନାଥ କହିବାକୁ ଲାଗିଲେ, "ବାପ ! ତୁମେ ନିଜ ଶ୍ରେଷ୍ଠ କର୍ମଯୋଗେ ଦୁର୍ଲ୍ଲଭ ଗତି ଲାଭ କରିଅଛ ॥ ୩-୪ ॥ ଯାହାଙ୍କ ମନରେ ଅନ୍ୟର ହିତ-କାମନା ବାସ କରେ, ତାଙ୍କ ନିମନ୍ତେ ଜଗତରେ କୌଣସି ଗତି ଦୁର୍ଲ୍ଲଭ ନୁହେଁ । ହେ ତାତ ! ଶରୀର ତ୍ୟାଗ କରି ତୁମେ ମୋ ପରମଧାମକୁ ଯାଅ । ମୁଁ ତୁମକୁ ଦେବି କ'ଣ ? ତୁମେ ତ ପୂର୍ଣ୍ଣକାମ ଅର୍ଥାତ୍ ସବୁ କିଛି ପାଇସାରିଛ ॥ ୫ ॥ ଦୋହା :—ହେ ତାତ ! ସୀତା-ହରଣ ବିଷୟ ତୁମେ ଯାଇ ପିତାଙ୍କୁ କହିବ ନାହିଁ । ଯଦି ମୁଁ ରାମ ହୋଇଥାଏ, ତେବେ ଦଶମୁଖ ରାବଣ ସକୁଟୁମ୍ବ ସେଠାକୁ ଯାଇ ନିଜେ କହିବ ।" ॥ ୩୧ ॥ ଚୌପାଈ :—ଜଟାୟୁ ଗୃଧ୍ରର ଶରୀର

ଜୟ ରାମ ରୂପ ଅନୂପ ନିର୍ଗୁନ ସଗୁନ ଗୁନ ପ୍ରେରକ ସହୀ ।
ଦସସୀସ ବାହୁ ପ୍ରଚଣ୍ଡ ଖଣ୍ଡନ ଚଣ୍ଡ ସର ମଣ୍ଡନ ମହୀ ॥
ପାଥୋଦ ଗାତ ସରୋଜ ମୁଖ ରାଜୀବ ଆୟତ ଲୋଚନଂ ।
ନିତ ନୌମି ରାମୁ କୃପାଲ ବାହୁ ବିସାଲ ଭବ ଭୟ ମୋଚନଂ ॥୧॥

ବଲମପ୍ରମେୟମନାଦିମଜମବ୍ୟକ୍ତମେକମଗୋଚରଂ ।
ଗୋବିନ୍ଦ ଗୋପର ଦ୍ୱଂଦ୍ୱହର ବିଜ୍ଞାନଘନ ଧରଣୀଧରଂ ॥
ଜୋ ରାମ ମନ୍ତ୍ର ଜପନ୍ତ ସନ୍ତ ଅନନ୍ତ ଜନ ମନ ରଂଜନଂ ।
ନିତ ନୌମି ରାମ ଅକାମ ପ୍ରିୟ କାମାଦି ଖଲ ଦଲ ଗଂଜନଂ ॥୨॥

ଜେହି ଶ୍ରୁତି ନିରଂଜନ ବ୍ରହ୍ମ ବ୍ୟାପକ ବିରଜ ଅଜ କହି ଗାୱହୀଁ ।
କରି ଧ୍ୟାନ ଜ୍ଞାନ ବିରାଗ ଜୋଗ ଅନେକ ମୁନି ଜେହି ପାୱହୀଁ ॥
ସୋ ପ୍ରଗଟ କରୁନା କଂଦ ସୋଭା ବୃଂଦ ଅଗ ଜଗ ମୋହଈ ।
ମମ ହୃଦୟ ପଙ୍କଜ ଭୃଂଗ ଅଙ୍ଗ ଅନଂଗ ବହୁ ଛବି ସୋହଈ ॥୩॥

---

ଜୟ ଜୟ ଶ୍ରୀରାମ ନିର୍ଗୁଣ ଅନୁପମ ସଗୁଣ ଗୁଣର ପ୍ରେରକ ।
ଦଶଶିର ପ୍ରଚଣ୍ଡ ଖଣ୍ଡନ ଭୁଜ ଚଣ୍ଡ ପ୍ରଚଣ୍ଡ ଶାୟକ ଧାରକ ।
ଜଳଦ ତନୁ କଞ୍ଜାନନ, ଆୟତ ନେତ୍ର ଭୂମଣ୍ଡନ,
ନିତ୍ୟ ନମଇ ରାମ ଭବ-ଭୟ-ମୋଚନ ବିଶାଳ ବାହୁ ଦୟା-ଘନ ॥୧॥

ପ୍ରତାପ ଅପ୍ରମେୟ ଅନାଦି ଅଦ୍ୱିତୀୟ ଅଜ ଅବ୍ୟକ୍ତ ଅଗୋଚର ।
ଗୋବିନ୍ଦ ସେ ଗୋପର, ଦ୍ୱନ୍ଦ୍ୱ-ବିକାର-ହର, ବିଜ୍ଞାନ-ଘନ ଧରା-ଧର ।
'ରାମ' ମନ୍ତ୍ରର ଜପକାରୀ, ସନ୍ଥ ଜନଙ୍କ ମନୋହାରୀ,
ନିତ୍ୟ ନମେ ସେ ରାମ, ନିଷ୍କାମ ପ୍ରିୟ, କାମ-ମଦାଦି ଦୂଷଣ-ଗଞ୍ଜନ ॥୨॥

ଯାହାଙ୍କୁ ନିରଞ୍ଜନ, ଅଜ, ବ୍ୟାପକ ବ୍ରହ୍ମ କହିଣ ଶ୍ରୁତିବେଦ ଗାଆନ୍ତି ।
କରି ବିବିଧ ଧ୍ୟାନ ଯୋଗ ବୈରାଗ୍ୟ ଜ୍ଞାନ ଯାହାଙ୍କୁ ମୁନିଗଣେ ଧ୍ୟାଆନ୍ତି ।
ପ୍ରକଟ ସେ ଶୋଭା ନିଳୟ, ଜଗନ୍ମୋହନ ଦୟାମୟ,
ମୋ ହୃଦ-କଞ୍ଜ ଭୃଙ୍ଗ, ଶୋଭେ ଯା'ପ୍ରତି ଅଙ୍ଗ ଅନଙ୍ଗ ସୌନ୍ଦର୍ଯ୍ୟ ନିଚୟ ॥୩॥

---

ତ୍ୟାଗ କରି ହରିଙ୍କ ରୂପ ଧାରଣ କଲେ ଏବଂ ବହୁ ଅନୁପମ ଦିବ୍ୟ ଭୂଷଣ ଓ ଦିବ୍ୟ ପୀତାମ୍ବର ପରିଧାନ କଲେ । ଶ୍ୟାମଳ ଶରୀର, ବିଶାଳ ଚତୁର୍ଭୁଜ ଓ ନେତ୍ରଦ୍ୱୟକୁ ପ୍ରେମ-ଆନନ୍ଦାଶ୍ରୁରେ ପରିପୂର୍ଣ୍ଣ କରି ସେ ସ୍ତୁତି କରୁଅଛି— ॥ ୧ ॥ ଛନ୍ଦ '—"ହେ ରାମ ! ଆପଣଙ୍କର ଜୟ ହେଉ । ଆପଣଙ୍କ ରୂପ ଅନୁପମ, ଆପଣ ନିର୍ଗୁଣ ଓ ସଗୁଣ ଏବଂ ସତ୍ୟରେ ଗୁଣ (ବା ମାୟା)ର ପ୍ରେରକ । ଦଶଶିର ରାବଣର ପ୍ରଚଣ୍ଡ ବାହୁମାନଙ୍କୁ ଖଣ୍ଡ-ଖଣ୍ଡ କରିବା ନିମନ୍ତେ ଆପଣ ପ୍ରଚଣ୍ଡ ବାଣ-ଧାରଣକାରୀ ଏବଂ ପୃଥିବୀର ବିମଣ୍ଡନକାରୀ । ସଜଳ-

ଜୋ ଅଗମ ସୁଗମ ସୁଭାବ ନିର୍ମଲ ଅସମ ସମ ସୀତଲ ସଦା ।
ପସ୍ୟଂତି ଜଂ ଜୋଗୀ ଜତନ କରି କରତ ମନ ଗୋ ବସ ସଦା ॥
ସୋ ରାମ ରମାନିବାସ ସଂତତ ଦାସ ବସ ତ୍ରିଭୁବନ ଧନୀ ।
ମମ ଉର ବସଉ ସୋ ସମନ ସଂସୃତି ଜାସୁ କୀରତି ପାବନୀ ॥୪॥

ଅବିରଲ ଭଗତି ମାଗି ବର ଗୀଧ ଗୟଉ ହରିଧାମ ।
ତେହି କୀ କ୍ରିୟା ଜଥୋଚିତ ନିଜ କର କୀନ୍ହୀ ରାମ ॥୩୨॥

---

ଯେ ସୁଗମ୍ୟ ଅଗମ୍ୟ ସ୍ୱଭାବ ସମାସମ ଶୀତଲ ସ୍ୱଚ୍ଛ ରମଣୀୟ ।
ଯତ୍ନେ ଯାହାଙ୍କୁ ହୃଦେ ଦେଖନ୍ତି ଯୋଗିବୃନ୍ଦେ ସ୍ୱବଶ କରି ମନେନ୍ଦ୍ରିୟ ।
ସଦା ସେ ରାମ ରମାପତି, ସେବକ ବଶ ବିଶ୍ୱପତି,
ବସନ୍ତୁ ହୃଦେ ମମ ସେ ସଂସୃତି ଶମନ, ଯାହାଙ୍କ ପବିତ୍ର କୀରତି ॥୪॥

ମାଗି ଅବିରଳ ଭକ୍ତି ସୁବିମଳ ଗୃଧ୍ର ଗଲା ହରିଧାମ ।
ତାହାର ସମସ୍ତ କ୍ରିୟା ଯଥୋଚିତ କଲେ ନିଜ କରେ ରାମ ॥୩୨॥

---

ଜଳଦ-ଶ୍ୟାମ-ଶରୀର, କମଳମୁଖ ଓ ବିଶାଳ-ରାଜୀବ-ଲୋଚନ, ବିଶାଳ-ବାହୁ ଓ ଭବଭୟବିଭଞ୍ଜନ କୃପାଳୁ ଶ୍ରୀରାମଙ୍କୁ ମୁଁ ନିତ୍ୟ ନମସ୍କାର କରୁଅଛି ॥ ୧ ॥ ଆପଣ ଅପରିମିତ-ବଳ, ଅନାଦି, ଅଜନ୍ମା, ଅବ୍ୟକ୍ତ, ଏକ, ଅଗୋଚର, ଗୋବିନ୍ଦ, ଇନ୍ଦ୍ରିୟାତୀତ, (ଜନ୍ମମରଣ, ସୁଖଦୁଃଖ, ହର୍ଷଶୋକାଦି) ଦ୍ୱନ୍ଦ୍ୱର ହରଣକାରୀ, ବିଜ୍ଞାନର ଘନମୂର୍ତ୍ତି ଓ ପୃଥିବୀର ଆଧାର ଏବଂ 'ରାମମନ୍ତ୍ର' ଜପକାରୀ ଅନନ୍ତ ସନ୍ଥଜନମାନଙ୍କ ମନୋରଞ୍ଜନକାରୀ । ସେହି ନିଷ୍କାମପ୍ରିୟ ତଥା କାମାଦି ଖଳଦଳଙ୍କ ଦଳନକାରୀ ଶ୍ରୀରାମଙ୍କୁ ମୁଁ ନିତ୍ୟ ନମସ୍କାର କରୁଅଛି ॥ ୨ ॥ ଯାହାଙ୍କୁ ଶ୍ରୁତି (ବେଦ) ଗଣ ନିରଞ୍ଜନ, ବ୍ରହ୍ମ, ବ୍ୟାପକ, ନିର୍ବିକାର ଓ ଅଜନ୍ମା କହି ଗାନ କରନ୍ତି, ମୁନିଗଣ ଯାହାଙ୍କୁ ଧ୍ୟାନ, ଜ୍ଞାନ, ବୈରାଗ୍ୟ ଓ ଯୋଗ ପ୍ରଭୃତି ଅନେକ ସାଧନା ବଳରେ ଲାଭ କରନ୍ତି; ସେହି କରୁଣାକନ୍ଦ, ଶୋଭାବୃନ୍ଦ ଓ ଅଗମ୍ୟ ଶ୍ରୀ ଭଗବାନ୍ ଆବିର୍ଭୂତ ହୋଇ ଚରାଚର ଜଗତକୁ ମୋହିତ କରୁଅଛନ୍ତି । ସେ ମୋର ହୃଦୟ-କମଳର ଭ୍ରମରସ୍ୱରୂପ । ତାଙ୍କ ପ୍ରତ୍ୟେକ ଅଙ୍ଗରେ ଅନେକ କାମଦେବଙ୍କ ଛବି ଶୋଭା ପାଉଅଛି ॥ ୩ ॥ ଯେ ଅଗମ ଓ ସୁଗମ, ନିର୍ମଳ-ସ୍ୱଭାବ, ବିଷମ ଓ ସମ ଏବଂ ସଦା ଶୀତଳ (ଶାନ୍ତ); ମନ ଓ ଇନ୍ଦ୍ରିୟଗଣଙ୍କୁ ବଶୀଭୂତ କରି ବହୁତ ସାଧନା-ବଳରେ ଯୋଗୀମାନେ ଯାହାଙ୍କୁ ଦର୍ଶନ କରନ୍ତି. ସେହି ତିନିଭୁବନର ସ୍ୱାମୀ, ନିରନ୍ତର ଦାସ-ବଶୀଭୂତ, ରମାନିବାସ ଶ୍ରୀରାମ, ଯାହାଙ୍କ ପବିତ୍ର କୀର୍ତ୍ତି ସଂସାରର ଜନ୍ମ-ମରଣଚକ୍ରକୁ ନାଶ କରେ, ସେହି ପ୍ରଭୁ ରାମଚନ୍ଦ୍ର, ମୋହର ହୃଦୟରେ ନିବାସ କରନ୍ତୁ ।" ॥୪॥ ଦୋହା :—ଅବିରଳ (ଅଖଣ୍ଡ) ଭକ୍ତି-ବର ମାଗି ଗୃଧ୍ରରାଜ ଜଟାୟୁ ଶ୍ରୀହରିଙ୍କ ପରମଧାମକୁ ଚାଲିଗଲା । ଶ୍ରୀରାମ ତାହାର ସତ୍କାରାଦି କ୍ରିୟା ଆପଣା ହାତରେ ଯଥାଯୋଗ୍ୟ ସମ୍ପାଦନ

କୋମଲ ଚିତ ଅତି ଦୀନଦୟାଲା । କାରନ ବିନୁ ରଘୁନାଥ କୃପାଲା ॥
ଗୀଧ ଅଧମ ଖଗ ଆମିଷ ଭୋଗୀ । ଗତି ଦୀହ୍ନୀ ଜୋ ଜାଚତ ଜୋଗୀ ॥୧॥
ସୁନହୁ ଉମା ତେ ଲୋଗ ଅଭାଗୀ । ହରି ତଜି ହୋହିଁ ବିଷୟ ଅନୁରାଗୀ ॥
ପୁନି ସୀତହି ଖୋଜତ ଦ୍ୱୌ ଭାଈ । ଚଲେ ବିଲୋକତ ବନ ବହୁତାଈ ॥୨॥
ସଂକୁଲ ଲତା ବିଟପ ଘନ କାନନ । ବହୁ ଖଗ ମୃଗ ତହଁ ଗଜ ପଞ୍ଚାନନ ॥
ଆୱତ ପନ୍ଥ କବଂଧ ନିପାତା । ତେହିଁ ସବ କହୀ ସାପ କୈ ବାତା ॥୩॥
ଦୁରବାସା ମୋହି ଦୀହ୍ନୀ ସାପା । ପ୍ରଭୁ ପଦ ପେଖି ମିଟା ସୋ ପାପା ॥
ସୁନୁ ଗଂଧର୍ବ କହଉଁ ମୈଁ ତୋହୀ । ମୋହି ନ ସୋହାଇ ବ୍ରହ୍ମକୁଲ ଦ୍ରୋହୀ ॥୪॥

ମନ କ୍ରମ ବଚନ କପଟ ତଜି ଜୋ କର ଭୂସୁର ସେବ ।
ମୋହି ସମେତ ବିରଂଚି ସିବ ବସ ତାକେଁ ସବ ଦେବ ॥୩୩॥

---

କୋମଳ ଚିତ୍ତ ଦୀନଙ୍କ ଉପରେ ଦୟାଳୁ । ହେତୁ ରହିତ ଶ୍ରୀ ରଘୁନାୟକ କୃପାଳୁ ॥
ଅଧମ ପକ୍ଷୀ ଗିଧ ଅମିଷାଦ ଭୋଗୀ । ସେହି ଗତି ଦେଲେ ତାକୁ, ମାଗନ୍ତି ଯା ଯୋଗୀ ॥୧॥
ଶୁଣ ଉମା ! ହତଭାଗ୍ୟ ସେ ଲୋକ ଅଟନ୍ତି । ହରି ତେଜି ବିଷୟେ ଯେ ଆସକ୍ତ ହୁଅନ୍ତି ॥
ପୁଣି ବେନି ଭାଇ ବଇଦେହୀଙ୍କୁ ଖୋଜିଣ । ଚାଲିଲେ ବିସ୍ତୀର୍ଣ୍ଣ ଘନ ବନ ବିଲୋକିଣ ॥୨॥
ସଙ୍କୁଳ ଲତା ବିଟପ ନିବିଡ଼ କାନନ । ବହୁ ଖଗ ମୃଗ ତହିଁ ଗଜ ପଞ୍ଚାନନ ॥
ଆସନ୍ତେ ପଥରେ କଲେ କବନ୍ଧକୁ ହତ । କହିଲା ସେ ଅଭିଶାପ ବୃତ୍ତାନ୍ତ ସମସ୍ତ ॥୩॥
ଦୁର୍ବାସା ମୁନି ପ୍ରଦାନ କଲେ ମୋତେ ଶାପ । ପ୍ରଭୁପଦ ଦେଖି ନଷ୍ଟ ହୋଇଲା ସେ ପାପ ॥
ଶୁଣ ଗନ୍ଧର୍ବ ପ୍ରବୀଣ ତୋତେ ମୁଁ କହଇ । ବ୍ରହ୍ମକୁଳ-ଦ୍ରୋହୀ ମୋତେ ଭଲ ନ ଲାଗଇ ॥୪॥

ତେଜି ମନ-କର୍ମ-ବଚନୁ କପଟ ଯେ ଭୂଦେବେ ସେବା କରେ ।
ମୋ ସହିତ ହର ବିରଞ୍ଚି ତାହାର ଅଧୀନ ସର୍ବ ଅମରେ ॥୩୩॥

---

କଲେ ॥ ୩୨ ॥ ଚୌପାଇ :—ଶ୍ରୀ ରଘୁନାଥ ଅତ୍ୟନ୍ତ କୋମଳସ୍ୱଭାବ, ଦୀନଦୟାଳୁ ଏବଂ ବିନା-କାରଣ-କୃପାଳୁ । ଗୃଧ୍ର ପକ୍ଷୀମାନଙ୍କ ମଧ୍ୟରେ ଅଧମ ଓ ମାଂସାହାରୀ । ଯୋଗୀଜନଙ୍କ ଅଭିଳଷିତ ଦୁର୍ଲ୍ଲଭ ଗତି ମଧ୍ୟ ଭଗବାନ୍ ତାହାକୁ ପ୍ରଦାନ କଲେ ॥ ୧ ॥ ଶିବ କହନ୍ତି, "ହେ ପାର୍ବତି ! ଶୁଣ । ଯେଉଁମାନେ ଭଗବାନ୍‌ଙ୍କୁ ଛାଡ଼ି ବିଷୟ-ବାସନା ପ୍ରତି ଅନୁରାଗ ରଖନ୍ତି, ସେମାନେ ହତଭାଗ୍ୟ ।" ତତ୍ପରେ ଦୁଇ ଭାଇ ସୀତାଙ୍କୁ ଖୋଜି ଖୋଜି ଅଗ୍ରସର ହେଲେ । ସେମାନେ ବନର ନିବିଡ଼ତା ଦେଖି ଦେଖି ଚାଲିଥା'ନ୍ତି ॥ ୨ ॥ ଉକ୍ତ ସଘନ ନିବିଡ଼ ବନ ଲତା ଓ ବୃକ୍ଷାବଳୀରେ ପରିପୂର୍ଣ୍ଣ । ତହିଁରେ ବହୁତ ପକ୍ଷୀ, ମୃଗ, ହସ୍ତୀ ଓ ସିଂହ ବାସ କରୁଥା'ନ୍ତି । ଶ୍ରୀରାମଚନ୍ଦ୍ର ମାର୍ଗରେ ଆସୁ ଆସୁ କବନ୍ଧ ରାକ୍ଷସକୁ ମାରି ପକାଇଲେ । ସେହି ରାକ୍ଷସ ଆପଣା ଅଭିଶାପ ପ୍ରଭୃତି ବିଷୟ ସବୁ କହିଲା ॥ ୩ ॥ ସେ କହିଲା, "ଦୁର୍ବାସା ଋଷି ମୋତେ ଅଭିଶାପ ଦେଇଥିଲେ । ବର୍ତ୍ତମାନ ପ୍ରଭୁଙ୍କ ଚରଣ ଦେଖିବା ମାତ୍ରେ ସେ ସବୁ ପାପ ମେଣ୍ଟିଗଲା ।" ଶ୍ରୀରାମ କହିଲେ, "ହେ

ସାପତ ତାଡ଼ତ ପରୁଷ କହଂତା । ବିପ୍ର ପୂଜ୍ୟ ଅସ ଗାୱହିଁ ସଂତା ॥
ପୂଜିଅ ବିପ୍ର ସୀଲ ଗୁନ ହୀନା । ସୂଦ୍ର ନ ଗୁନ ଗନ ଜ୍ଞାନ ପ୍ରବୀନା ॥୧॥
କହି ନିଜ ଧର୍ମ ତାହି ସମୁଝାୱା । ନିଜ ପଦ ପ୍ରୀତି ଦେଖି ମନ ଭାୱା ॥
ରଘୁପତି ଚରନ କମଲ ସିରୁ ନାଈ । ଗୟଉ ଗଗନ ଆପନି ଗତି ପାଈ ॥୨॥
ତାହି ଦେଇ ଗତି ରାମ ଉଦାରା । ସବରୀ କେଁ ଆଶ୍ରମ ପଗୁ ଧାରା ॥
ସବରୀ ଦେଖି ରାମ ଗୃହଁ ଆଏ । ମୁନି କେ ବଚନ ସମୁଝି ଜିୟଁ ଭାଏ ॥୩॥
ସରସିଜ ଲୋଚନ ବାହୁ ବିସାଲା । ଜଟା ମୁକୁଟ ସିର ଉର ବନମାଲା ॥
ସ୍ୟାମ ଗୌର ସୁନ୍ଦର ଦୋଉ ଭାଈ । ସବରୀ ପରୀ ଚରନ ଲପଟାଈ ॥୪॥
ପ୍ରେମ ମଗନ ମୁଖ ବଚନ ନ ଆୱା । ପୁନି ପୁନି ପଦ ସରୋଜ ସିର ନାୱା ॥
ସାଦର ଜଲ ଲୈ ଚରନ ପଖାରେ । ପୁନି ସୁନ୍ଦର ଆସନ ବୈଠାରେ ॥୫॥

---

ଅଭିଶାପି, ତାଡ଼ି, କହି କଠୋର ବଚନ । ବିପ୍ର ସ୍ୱଭା ପୂଜ୍ୟ, ସନ୍ଥ କହନ୍ତି ଏସନ ॥
ପୂଜନୀୟ ଅଟେ ବିପ୍ର ଗୁଣଶୀଳ ହୀନ । ପୂଜ୍ୟ ନୁହେ ଶୂଦ୍ର ଗୁଣ ଜ୍ଞାନେ ସେ ପ୍ରବୀଣ ॥୧॥
କହି ଆପଣା ଧରମ ତାକୁ ବୁଝାଇଲେ । ନିଜ ପଦେ ପ୍ରୀତି ଦେଖି ପ୍ରସନ୍ନ ହୋଇଲେ ॥
ରଘୁପତି ପାଦ-ପଦ୍ମେ ମସ୍ତକ ନୁଆଁଇ । ଗଲା ସେ ଗଗନ ପଥେ ନିଜ ଗତି ପାଇ ॥୨॥
ତାହାକୁ ଗତି ଦେଇଣ ଶ୍ରୀରାମ ଉଦାର । ଶବରୀ ଆଶ୍ରମେ ଆଗମିଲେ ଶୋଭାଧାର ॥
ଶବରୀ ଦେଖିଲା ଗୃହେ ରାମ ଉପସ୍ଥିତ । ମୁନିଙ୍କ ବଚନ ସ୍ମରି ହରଷ ଅମିତ ॥୩।
ସରୋଜ ଲୋଚନ ବାହୁ ପ୍ରଲମ୍ବ ବିଶାଳ । ମସ୍ତକେ ଜଟା ମୁକୁଟ ହୃଦେ ବନମାଳ ॥
ଶ୍ୟାମଳ ଗଉର ବେନି ଭ୍ରାତା ମନୋହରେ । ଦେଖି ଶବରୀ ସାନନ୍ଦେ ଲୋଟିଲା ପୟରେ ॥୪॥
ପ୍ରେମରେ ନିମଗ୍ନ, ମୁଖୁ ବାଣୀ ନ ସ୍ଫୁରଇ । ବାରମ୍ବାର ପଦ-ସରୋରୁହେ ପ୍ରଣମଇ ॥
ସାଦରେ ସଲିଳ ଆଣି ପଦ ପ୍ରକ୍ଷାଳିଲା । ସୁନ୍ଦର ଆସନେ ପୁଣି ନେଇ ବସାଇଲା ॥୫॥

---

ଗନ୍ଧର୍ବ ! ଶୁଣ, ମୁଁ ତୁମ୍ଭଙ୍କୁ କହୁଛି, ବ୍ରାହ୍ମଣକୁଳ ପ୍ରତି ଦ୍ରୋହାଚରଣ କରୁଥିବା ବ୍ୟକ୍ତି ମୋତେ ଭଲ ଲାଗେ ନାହିଁ ॥ ୪ ॥ ଦୋହା :—ମନ, ବଚନ ଓ କର୍ମରେ କପଟ ତ୍ୟାଗ କରି ଯେଉଁମାନେ ଭୂଦେବ ବ୍ରାହ୍ମଣଙ୍କ ସେବା କରନ୍ତି, ମୋତେ ମିଶାଇ ବ୍ରହ୍ମା, ଶିବ ଆଦି ସମସ୍ତ ଦେବତା ସେମାନଙ୍କର ବଶୀଭୂତ ହୁଅନ୍ତି ॥ ୩୩ ॥ ଚୌପାଇ :— ଅଭିଶାପ ଦେଇ, ମାରି ଓ କଠୋର ବଚନ କହି ମଧ୍ୟ ବ୍ରାହ୍ମଣ ପୂଜନୀୟ ବୋଲି ସନ୍ଥଜନଗଣ କହନ୍ତି । ଶୀଲ ଓ ଗୁଣହୀନ ହୋଇ ସୁଦ୍ଧା ବ୍ରାହ୍ମଣ ପୂଜନୀୟ । ଅନ୍ୟାନ୍ୟ ଗୁଣଗଣଯୁକ୍ତ ଓ ଜ୍ଞାନ-ନିପୁଣ ହୋଇ ସୁଦ୍ଧା ଶୂଦ୍ର ପୂଜ୍ୟ ନୁହେଁ ।" ॥ ୧ ॥ ଶ୍ରୀରାମଚନ୍ଦ୍ର ଆପଣା ଧର୍ମ ( ଭାଗବତ ଧର୍ମ ) କହି ତାହାକୁ ବୁଝାଇଲେ । ପ୍ରଭୁ ନିଜ ଚରଣରେ ତାହାର ପ୍ରେମ ଦେଖି ତାହାକୁ ମନେ ମନେ ଆଦର କଲେ । ତଦନନ୍ତର ଶ୍ରୀ ରଘୁନାଥଙ୍କ ଚରଣ-କମଳରେ ମୁଣ୍ଡ ନୁଆଁଇ ସେ ସ୍ୱଗତି (ଗନ୍ଧର୍ବର ସ୍ୱରୂପ) ପାଇ ଆକାଶକୁ ଚାଲିଗଲା ॥ ୨ ॥ ଉଦାର ଶ୍ରୀରାମ ତାହାକୁ ଗତିମୁକ୍ତି ଦେଇ ଶବରୀ ଆଶ୍ରମରେ ଆସି

କଂଦ ମୂଲ ଫଲ ସୁରସ ଅତି ଦିଏ ରାମ କହୁଁ ଆନି ।
ପ୍ରେମ ସହିତ ପ୍ରଭୁ ଖାଏ ବାରମ୍ବାର ବଖାନି ॥୩୪॥
ପାନି ଜୋରି ଆଗେଁ ଭଇ ଠାଢ଼ୀ । ପ୍ରଭୁହି ବିଲୋକି ପ୍ରୀତି ଅତି ବାଢ଼ୀ ॥
କେହି ବିଧି ଅସ୍ତୁତି କରଉଁ ତୁହ୍ମାରୀ । ଅଧମ ଜାତି ମୈଁ ଜଡ଼ମତି ଭାରୀ ॥୧॥
ଅଧମ ତେଁ ଅଧମ ଅଧମ ଅତି ନାରୀ । ତିହ୍ନ ମହଁ ମୈଁ ମତିମନ୍ଦ ଅଘାରୀ ॥
କହ ରଘୁପତି ସୁନୁ ଭାମିନି ବାତା । ମାନଉଁ ଏକ ଭଗତି କର ନାତା ॥୨॥
ଜାତି ପାଁତି କୁଲ ଧର୍ମ ବଡ଼ାଈ । ଧନ ବଲ ପରିଜନ ଗୁନ ଚତୁରାଈ ॥
ଭଗତି ହୀନ ନର ସୋହଇ କୈସା । ବିନୁ ଜଲ ବାରିଦ ଦେଖିଅ ଜୈସା ॥୩॥

---

କନ୍ଦ ମୂଳ ଫଳ ସୁରସ ସୁସ୍ୱାଦ ଦେଲା ଶ୍ରୀରାମଙ୍କୁ ଆଣି ।
ପ୍ରଭୁ ପ୍ରେମେ ଅତି ବସିଣ ଭୁଞ୍ଜନ୍ତି ବହୁ ପ୍ରକାରେ ବଖାଣି ॥୩୪॥
କର ଯୋଡ଼ି ଆଗେ ଉଭା ହେଲା ଏଥୁ ଅନ୍ତେ । ପ୍ରଭୁଙ୍କୁ ବିଲୋକି ପ୍ରୀତି ବଢ଼ିଲା ଅତ୍ୟନ୍ତେ ॥
କିପରି ଭାବରେ ସ୍ତୁତି କରିବି ତୁମର । ଅଧମ ଜାତି ମୁଁ ଅତି ନିର୍ବୁଦ୍ଧି ପାମର ॥୧॥
ଅଧମୁ ବଳି ଅଧମ ଅଧମାତି ନାରୀ । ତହିଁରେ ମୁଁ ଅଶିକ୍ଷିତା ମତି-ମନ୍ଦ ଭାରି ॥
ବୋଲନ୍ତି ରାମ, ଶବରି, ଶୁଣ ମୋ ବଚନ । ଭକ୍ତି ସମ୍ବନ୍ଧରେ ଏକ ହୁଏ ମୁଁ ପ୍ରସନ୍ନ ॥୨॥
ଜାତି ପଂକ୍ତି କୁଳ ଧର୍ମ ଆଦର ମାନ୍ୟତା । ଧନବଳ ପରିଜନ ଗୁଣ ଚତୁରତା ॥
ଭକ୍ତିହୀନ ନର ଶୋଭା ଲଭଇ ତେମନ୍ତେ । ବାରି ବିନା ଦେଖାଯାଏ ବାରିଦ ଯେମନ୍ତେ ॥୩॥

---

ପହଞ୍ଚିଲେ । ଶବରୀ ଶ୍ରୀରାମଙ୍କୁ ଘରକୁ ଆସୁଥିବାର ଦେଖିଲା । ସେତେବେଳେ ମୁନି ମତଙ୍ଗଙ୍କ କଥା ମନେ ପକାଇ ତାହାର ମନ ପ୍ରସନ୍ନ ହୋଇଗଲା ॥ ୩ ॥ କମଳନୟନ, ବିଶାଳବାହୁ, ଜଟାମୁକୁଟ-ମସ୍ତକ ଓ ବନମାଳା-ହୃଦୟ ଶ୍ୟାମଳ ଶ୍ରୀରାମ ଓ ଗୌର ଲକ୍ଷ୍ମଣ—ସୁନ୍ଦର ଦୁଇ ଭାଇଙ୍କ ଚରଣରେ ଶବରୀ ଲୋଟି ପଡ଼ିଲା ॥ ୪ ॥ ସେ ପ୍ରେମରେ ମଗ୍ନ ହୋଇ ପଡ଼ିଲା, ମୁହଁରୁ କଥା ବାହାରୁ ନ ଥାଏ । ବାରମ୍ବାର ଚରଣ-କମଳରେ ମୁଣ୍ଡ ନୁଆଁଉ ଥାଏ । ତତ୍ପରେ ଜଳ ନେଇ ଆଦରରେ ଭାଇ ଦୁହିଁଙ୍କ ଚରଣ ଧୋଇ ଦେଲା ଏବଂ ସେମାନଙ୍କୁ ସୁନ୍ଦର ଆସନ ଉପରେ ବସାଇଲା ॥ ୫ ॥ ଦୋହା .—ସେ ଅତ୍ୟନ୍ତ ରସାଳ, ଓ ସ୍ୱାଦିଷ୍ଟ କନ୍ଦ-ମୂଳ ଓ ଫଳ ଆଣି ଶ୍ରୀରାମଙ୍କୁ ଦେଲା । ପ୍ରଭୁ ବାରମ୍ବାର ପ୍ରଶଂସା କରି ସେ ସବୁକୁ ପ୍ରେମ ସହିତ ଭୋଜନ କଲେ ॥ ୩୪ ॥ ଚୌପାଇ .— ତତ୍ପରେ ଶବରୀ ହାତ ଯୋଡ଼ି ଆଗରେ ଛିଡ଼ା ହୋଇ ପଡ଼ିଲା । ପ୍ରଭୁଙ୍କୁ ଦେଖି ତାହାର ପ୍ରେମ ଅତି ମାତ୍ରାରେ ବଢ଼ିଗଲା । ସେ କହିଲା, "ମୁଁ କିପରି ଭାବରେ ଆପଣଙ୍କ ସ୍ତୁତି କରିବି ? ମୁଁ ଜାତିରେ ନୀଚ ଓ ଅତି ମନ୍ଦବୁଦ୍ଧି ॥ ୧ ॥ ଅଧମରୁ ଅଧମମାନଙ୍କ ମଧ୍ୟରେ ସ୍ତ୍ରୀମାନେ ଅତ୍ୟନ୍ତ ଅଧମ ଏବଂ ସେମାନଙ୍କ ମଧ୍ୟରେ "ହେ ପାପନାଶନ ! ମୁଁ ମନ୍ଦବୁଦ୍ଧି ।" ଶ୍ରୀ ରଘୁନାଥ କହିଲେ, "ହେ ଭାମିନି ! ମୋ କଥା ଶୁଣ, ମୁଁ ତ କେବଳ ଗୋଟିଏ ମାତ୍ର ଭକ୍ତିର ସମ୍ବନ୍ଧ ସ୍ୱୀକାର କରେ ॥ ୨ ॥ ଜାତିପାଁତି, କୁଳ, ଧର୍ମ, ବଡ଼ାଇ, ଧନ,

ନବଧା ଭଗତି କହଉଁ ତୋହି ପାହିଁ । ସାବଧାନ ସୁନୁ ଧରୁ ମନ ମାହିଁ ॥
ପ୍ରଥମ ଭଗତି ସନ୍ତନ୍ହ କର ସଂଗା । ଦୁସରି ରତି ମମ କଥା ପ୍ରସଂଗା ॥୪॥

ଗୁରୁ ପଦ ପଙ୍କଜ ସେବା ତୀସରି ଭଗତି ଅମାନ ।
ଚୌଥି ଭଗତି ମମ ଗୁନଗନ କରଇ କପଟ ତଜି ଗାନ ॥୩୫॥

ମନ୍ତ୍ର ଜାପ ମମ ଦୃଢ଼ ବିସ୍ୱାସା । ପଞ୍ଚମ ଭଜନ ସୋ ବେଦ ପ୍ରକାସା ॥
ଛଠ ଦମ ସୀଲ ବିରତି ବହୁ କରମା । ନିରତ ନିରଂତର ସଜ୍ଜନ ଧରମା ॥୧॥
ସାତଵଁ ସମ ମୋହି ମୟ ଜଗ ଦେଖା । ମୋ ତେଂ ସନ୍ତ ଅଧିକ କରି ଲେଖା ॥
ଆଠଵଁ ଜଥାଲାଭ ସନ୍ତୋଷା । ସପନେହୁଁ ନହିଁ ଦେଖଇ ପରଦୋଷା ॥୨॥
ନବମ ସରଲ ସବ ସନ ଛଲହୀନା । ମମ ଭରୋସ ହିୟଁ ହରଷ ନ ଦୀନା ॥
ନବ ମହୁଁ ଏକଉ ଜିନ୍ହ କେଁ ହୋଈ । ନାରି ପୁରୁଷ ସଚରାଚର କୋଈ ॥୩॥

---

ନବଧା ଭକ୍ତି ବଖାଣି କହେ ତୋ ଆଗରେ । ସାବଧାନେ ଶୁଣି ଧର ହୃଦୟ ମଧ୍ୟରେ ॥
ସଜ୍ଜନ ସଙ୍ଗ କୁହାଏ ପ୍ରଥମ ଭକତି । ଦ୍ୱିତୀୟ ମୋ କଥା ପ୍ରତି ଅନୁରାଗ ମତି ॥୪॥

ଗୁରୁଙ୍କ ଚରଣ-ସରୋରୁହ ସେବା ତୃତୀୟ ଭକ୍ତି ଅମାନ ।
ଚତୁର୍ଥ ଭକତି ଅଟେ ମମ ଗୁଣ କପଟ ତେଜିଣ ଗାନ ॥୩୫॥

ମୋହର ମନ୍ତ୍ର ଜପରେ ସୁଦୃଢ ବିଶ୍ୱାସ । ପଞ୍ଚମ ଭଜନ ତାହା ବେଦରେ ପ୍ରକାଶ ॥
ଷଷ୍ଠ ଦମ ଶୀଳ ବହୁ କର୍ମରୁ ବିରାଗ । ସଜ୍ଜନ ଧର୍ମେ ସତତ ରତି ଅନୁରାଗ ॥୧॥
ସପ୍ତମ ମୋ ମୟ ସର୍ବ ଜଗତକୁ ଦେଖେ । ମୋଠାରୁ ଅଧିକ କରି ସନ୍ଥଜନେ ଲେଖେ ॥
ଅଷ୍ଟମ ଯଥା ଲାଭରେ କରଇ ସନ୍ତୋଷ । ସ୍ୱପ୍ନରେ ହିଁ ବା ପରର ନ ଦେଖଇ ଦୋଷ ॥୨॥
ନବମ ସରଳ ସର୍ବ ଛଳ ବିବର୍ଜିତ । ହୃଦେ ମୋ ଭରସା ହର୍ଷ-ବିଷାଦ-ରହିତ ॥
ଏ ନବରୁ ଏକ ଗୋଟି ଭକ୍ତିଯୁକ୍ତ ଯେହୁ । ହେଉ ନର ନାରୀ ଚର ଅଚର ଯେ କେହୁ ॥୩॥

---

ବଳ, କୁଟୁମ୍ବ, ଗୁଣ ଓ ଚତୁରତା—ଏହି ସବୁ ଥାଇ ମଧ୍ୟ ଭକ୍ତିହୀନ ମନୁଷ୍ୟ ଜଳହୀନ ବାଦଲ ପରି ନୀରସ ଓ ଶୁଷ୍କ ଦେଖାଯାଏ ॥ ୩ ॥ ମୁଁ ତୁମକୁ ଏବେ ମୋ ନବଧା ଭକ୍ତି ବିଷୟ କହୁଛି । ତୁମେ ସାବଧାନ ହୋଇ ଶୁଣ ଓ ହୃଦୟ ମଧ୍ୟରେ ଅବଧାରଣ କର । ପ୍ରଥମ ଭକ୍ତି ହେଉଛି ସାଧୁସନ୍ଥଙ୍କର ସଙ୍ଗ, ଦ୍ୱିତୀୟ ଭକ୍ତି ହେଉଛି ମୋ କଥା-ପ୍ରସଙ୍ଗରେ ପ୍ରେମ ॥ ୪ ॥ ଦୋହା —ତୃତୀୟ ଭକ୍ତି ହେଉଛି, ଅଭିମାନଶୂନ୍ୟ ହୋଇ ଗୁରୁଙ୍କ ଚରଣ-କମଳର ସେବା କରିବା ଏବଂ ଚତୁର୍ଥ ଭକ୍ତି ହେଉଛି, କପଟ ତେଜି ମୋର ଗୁଣ-ଗଣ ଗାନ କରିବା ॥ ୩୫ ॥ ଚୌପାଈ :—ମୋର ('ରାମ') ମନ୍ତ୍ରର ଜପ ଓ ମୋଠାରେ ଦୃଢ ବିଶ୍ୱାସ—ଏହା ପଞ୍ଚମ ଭକ୍ତି । ଏହା ବେଦରେ ପ୍ରସିଦ୍ଧ । ଷଷ୍ଠ ଭକ୍ତି ହେଉଛି, ଇନ୍ଦ୍ରିୟ-ନିଗ୍ରହ, ଶୀଳ, ବହୁତ କାର୍ଯ୍ୟରୁ ବୈରାଗ୍ୟ ଏବଂ ନିରନ୍ତର ସନ୍ଥ ପୁରୁଷମାନଙ୍କ ଧର୍ମାଚରଣରେ ନିୟୋଜିତ ରହିବା ॥ ୧ ॥ ସପ୍ତମ ଭକ୍ତି ହେଉଛି ସମସ୍ତ ଜଗତକୁ ସମାନ ଭାବରେ 'ମୋ'ମୟ (ରାମମୟ) ଦେଖିବା ଏବଂ ସାଧୁସନ୍ଥଙ୍କୁ

ସୋଇ ଅତିସୟ ଭାମିନି ପ୍ରିୟ ମୋରେଁ । ସକଲ ପ୍ରକାର ଭଗତି ଦୃଢ ତୋରେଁ ॥
ଜୋଗିବୃନ୍ଦ ଦୁରଲଭ ଗତି ଜୋଈ । ତୋ କହୁଁ ଆଜୁ ସୁଲଭ ଭଇ ସୋଈ ॥୪॥
ମମ ଦରସନ ଫଲ ପରମ ଅନୂପା । ଜୀବ ପାଓ୍ୱ ନିଜ ସହଜ ସରୂପା ॥
ଜନକସୁତା କଇ ସୁଧି ଭାମିନୀ । ଜାନହି କହୁ କରିବରଗାମିନୀ ॥୫॥
ପମ୍ପା ସରହି ଜାହୁ ରଘୁରାଈ । ତହଁ ହୋଇହି ସୁଗ୍ରୀବ ମିତାଈ ॥
ସୋ ସବ କହିହି ଦେବ ରଘୁବୀରା । ଜାନତହୂଁ ପୁଛହୁ ମତିଧୀରା ॥୬॥
ବାର ବାର ପ୍ରଭୁ ପଦ ସିରୁ ନାଈ । ପ୍ରେମ ସହିତ ସବ କଥା ସୁନାଈ ॥୭॥

କହି କଥା ସକଲ ବିଲୋକି ହରି ମୁଖ ହୃଦୟଁ ପଦ ପଙ୍କଜ ଧରେ ।
ତଜି ଜୋଗ ପାବକ ଦେହ ହରି ପଦ ଲୀନ ଭଇ ଜହଁ ନହିଁ ଫିରେ ॥
ନର ବିବିଧ କର୍ମ ଅଧର୍ମ ବହୁ ମତ ସୋକପ୍ରଦ ସବ ତ୍ୟାଗହୂ ।
ବିସ୍ୱାସ କରି କହ ଦାସ ତୁଲସୀ ରାମ ପଦ ଅନୁରାଗହୂ ॥

---

ସେହି ଅତିଶୟ ପ୍ରିୟ, ତପସ୍ୱିନି, ମୋର । ସମସ୍ତ ପ୍ରକାର ଭକ୍ତି ଦୃଢ ଅଟେ ତୋର ॥
ଯୋଗିବୃନ୍ଦଙ୍କୁ ସେ ଗତି ଅଟଇ ଦୁର୍ଲଭ । ତୋତେ ଆଜି ସେହି ଗତି ହୋଇଲା ସୁଲଭ ॥୪॥
ମୋର ଦରଶନ ଫଳ ଅତି ଅନୁପମ । ଜୀବ ଲାଭ କରେ ନିଜ ସ୍ୱରୂପ ଉତ୍ତମ ॥
ଗଜଗାମିନୀ ଜାନକୀ ସମାଚାର ଯେବେ । ଜାଣିଥାଅ କିଛି କହ, ରାମାବର, ତେବେ ॥୫॥
ପମ୍ପା ସରକୁ ଯାଆନ୍ତୁ ଶ୍ରୀ ରଘୁନନ୍ଦନ । ତହିଁ ହୋଇବ ସୁଗ୍ରୀବେ ମିତ୍ରତା ସ୍ଥାପନ ॥
କହିବ ସେ ସବୁ କଥା, ଦେବ ରଘୁବୀର । ଜାଣିଥାଇ ସୁଦ୍ଧା ପଚାରୁଛ ମତି ଧୀର ॥୬॥
ବାରମ୍ବାର ପ୍ରଭୁ ପଦେ କରି ଦଣ୍ଡବତ । ପ୍ରେମେ ଶୁଣାଇଲା ନିଜ ବୃତ୍ତାନ୍ତ ସମସ୍ତ ॥୭॥

ସବ ବୃତ୍ତାନ୍ତ କହି ହରିଙ୍କ ମୁଖ ଚାହିଁ ଧାରିଣ ଚରଣ ନଳିନ ।
ତନୁ ଯୋଗାନଳରେ ତ୍ୟାଗି ହରି ପଦ୍ମରେ ସମ୍ପୃକ୍ତ ନାଶି ହେଲା ଲୀନ ।
ବିବିଧ କର୍ମ ଧର୍ମ ମତ, ଦୁଃଖଦ, ତେଜିଣ ସମସ୍ତ,
କହେ ତୁଳସୀ ଦାସ, ହୁଅ କରି ବିଶ୍ୱାସ ରାମଙ୍କ ପଦେ ଅନୁରକ୍ତ ॥

---

ମୋଠାରୁ ମଧ୍ୟ ଅଧିକ କରି ମାନିବା । ଅଷ୍ଟମ ଭକ୍ତି ହେଉଛି, ଯାହା କିଛି ମିଳିଯିବ, ତହିଁରେ ସନ୍ତୁଷ୍ଟ ରହିବ ଓ ସ୍ୱପ୍ନରେ ସୁଦ୍ଧା ଅନ୍ୟର ଦୋଷ ଦେଖିବ ନାହିଁ ॥ ୨ ॥ ନବମ ଭକ୍ତି ହେଉଛି ସମସ୍ତଙ୍କ ସହ ସରଳ ଓ କପଟରହିତ ବ୍ୟବହାର କରିବ, ହୃଦୟରେ ମୋ ପ୍ରତି ଭରସା ରଖିବ ଏବଂ ଯେ କୌଣସି ଅବସ୍ଥାରେ ସୁଦ୍ଧା ହର୍ଷ ବା ବିଷାଦଗ୍ରସ୍ତ ହେବନାହିଁ । ଏହି ନଅଟି ଭକ୍ତି ମଧ୍ୟରୁ ଯାହାଙ୍କର ଗୋଟିଏ ହେଲେ ବି ଭକ୍ତି ଥାଏ, ସେ ସ୍ତ୍ରୀପୁରୁଷ, ଜଡଚେତନ, ଯେ କେହି ହେଉ ପଛକେ, ହେ ଭାମିନି ! ମୋର ଅତ୍ୟନ୍ତ ପ୍ରିୟ । ପୁଣି ତୁମଠାରେ ତ ସମସ୍ତ ପ୍ରକାର ଭକ୍ତି ଦୃଢ । ଅତଏବ ଯୋଗୀବୃନ୍ଦଙ୍କୁ ଯେଉଁ ଗତି ଦୁର୍ଲଭ, ଆଜି ତୁମ ନିମନ୍ତେ ସେହି ଗତି ସୁଲଭ ହୋଇଯାଇଛି ॥ ୩–୪ ॥

ଜାତି ହୀନ ଅଘ ଜନ୍ମ ମହି ମୁକ୍ତ କୀହ୍ନି ଅସି ନାରି ।
ମହାମନ୍ଦ ମନ ସୁଖ ଚହସି ଐସେ ପ୍ରଭୁହି ବିସାରି ॥୩୬॥
ଚଲେ ରାମ ତ୍ୟାଗା ବନ ସୋଊ । ଅତୁଲିତ ବଲ ନର କେହରି ଦୋଊ ॥
ବିରହୀ ଇବ ପ୍ରଭୁ କରତ ବିଷାଦା । କହତ କଥା ଅନେକ ସଂବାଦା ॥୧॥
ଲଛିମନ ଦେଖୁ ବିପିନ କଇ ସୋଭା । ଦେଖତ କେହି କର ମନ ନହିଁ ଛୋଭା ॥
ନାରି ସହିତ ସବ ଖଗ ମୃଗ ବୃନ୍ଦା । ମାନହୁଁ ମୋରି କରତ ହହିଁ ନିଂଦା ॥୨॥

---

ଜାତି କୁଳହୀନ ପାପ ରୂପେ ଜନ୍ମ ଥାଇଲେ ନାରୀ ଏସନ ।
ଏପରି ପ୍ରଭୁଙ୍କୁ ପାଶୋରିଣ ସୁଖ ଚାହେଁ ମହାମନ୍ଦ ମନ ॥୩୬॥
ଚଳିଲେ ଶ୍ରୀରାମ ସେହି ବନ ପରିହରି । ଅତୁଳ ବଳିଷ୍ଠ ଦେନି ମାନବ-କେଶରୀ ॥
ବିରହୀ ସଦୃଶ ପ୍ରଭୁ କରିଣ ବିଷାଦ । କହନ୍ତି କଥା ପ୍ରସଙ୍ଗେ ଅନେକ ସମ୍ବାଦ ॥୧॥
କାନନ ଶୋଭା ଲକ୍ଷ୍ମଣ, କର ବିଲୋକନ । ଦେଖନ୍ତେ ଉଦ୍‌ବିଗ୍ନ କା'ର ନ ହୋଇବ ମନ ॥
ନାରୀଙ୍କୁ ସଙ୍ଗରେ ନେଇ ଖଗ ମୃଗ ପନ୍ତି । ମନେ ହୁଏ ଅବା ମୋର ନିନ୍ଦା କରୁଛନ୍ତି ॥୨॥

---

ମୋ ଦର୍ଶନ-ଲାଭର ଫଳ ଅନୁପମ । ଯାହା ବଳରେ ଜୀବ ଆପଣା ସହଜ ସ୍ୱରୂପକୁ ପାଏ । ହେ ଭାମିନି ! ଏବେ ତୁମେ ଯଦି କରିବର (ଐରାବତ)-ଗାମିନୀ ଜାନକୀଙ୍କ କିଛି ଖବର ଜାଣିଥାଅ, ତେବେ ମୋତେ କୁହ ।' ॥ ୫ ॥ ଶବରୀ କହିଲା, "ହେ ରଘୁନାଥ ! ଆପଣ ପମ୍ପା ନାମକ ସରୋବର କୂଳକୁ ଯାଆନ୍ତୁ । ସେଠାରେ ସୁଗ୍ରୀବଙ୍କ ସହ ଆପଣଙ୍କର ମିତ୍ରତା ହେବ । ହେ ଦେବ ! ହେ ରଘୁବୀର ! ସେ ସମସ୍ତ ଘଟନା କହିବ । ହେ ଧୀରମତି ' ଆପଣ ସବୁ ଜାଣି ମଧ୍ୟ ମୋତେ ପଚାରୁଅଛନ୍ତି !" ॥ ୬ ॥ ପ୍ରଭୁଙ୍କ ଚରଣରେ ବାରମ୍ବାର ମୁଣ୍ଡ ନୁଆଁଇ ପ୍ରେମ ସହକାରେ ସେ ସମସ୍ତ କଥା ଶୁଣାଇଲା ॥୭॥ ଛନ୍ଦ.—ସବୁ କଥା କହି ଭଗବାନଙ୍କ ମୁଖ ଦର୍ଶନ କରି, ସେ ହୃଦୟରେ ତାଙ୍କ ଚରଣ-କମଳ ଧାରଣ କଲା ଏବଂ ଯୋଗାଗ୍ନିରେ ଦେହ ତ୍ୟାଗ କରି ସେ ସେହି ଦୁର୍ଲଭ ହରି-ପଦରେ ଲୀନ ହୋଇଗଲା, ଯେଉଁଠାରୁ ଆଉ ଫେରିବାକୁ ପଡ଼େନାହିଁ । ତୁଳସୀ ଦାସ କହନ୍ତି, "ଅନେକ ପ୍ରକାର କର୍ମ, ଅଧର୍ମ ଓ ବହୁ ମତବାଦ—ଏ ସବୁ ଶୋକଦାୟକ । ହେ ମନୁଷ୍ୟମାନେ ! ଏ ସବୁ ତ୍ୟାଗ କର ଏବଂ ବିଶ୍ୱାସ ସହକାରେ ଶ୍ରୀରାମଙ୍କ ଚରଣରେ ପ୍ରେମ କର । ଦୋହା :—ଯେ ନୀଚଜାତି ଓ ପାପର ଜନ୍ମଭୂମି ଥିଲା, ଏପରି ସ୍ତ୍ରୀକୁ ମଧ୍ୟ ପ୍ରଭୁ ଶ୍ରୀରାମ ମୁକ୍ତ କରିଦେଲେ । ଆରେ ମହାଦୁର୍ମତି ମନ ! ତୁ ଏପରି ପ୍ରଭୁଙ୍କୁ ଭୁଲି (ପାର୍ଥିବ) ସୁଖ ଲୋଡ଼ୁଛୁ ? ॥ ୩୬ ॥ ଚୌପାଇ :—ଶ୍ରୀରାମ ସେହି ବନକୁ ଛାଡ଼ି ଅଗ୍ରସର ହେଲେ । ଉଭୟ ଭାଇ ଅତୁଳିତ ବଳ ଓ ନରମାନଙ୍କ ମଧ୍ୟରେ ସିଂହ ସମାନ । ପ୍ରଭୁ ବିରହୀ ପରି ବିଷାଦ ପ୍ରକାଶ କରି ଅନେକ କଥା ଓ ସମ୍ବାଦ କହି ଚାଲିଥା'ନ୍ତି—॥ ୧ ॥ ହେ ଲକ୍ଷ୍ମଣ ! ଟିକିଏ ବନର ଶୋଭା ଦେଖ ତ । ଏହାକୁ ଦେଖି କାହାର ମନ କ୍ଷୁବ୍ଧ ନ ହେବ ? ପକ୍ଷୀପଶୁବୃନ୍ଦ ସମସ୍ତେ ସସ୍ତ୍ରୀକ, ସତେ ଯେପରି ସେମାନେ ମୋତେ ନିନ୍ଦା କରୁ-

ହମହିଁ ଦେଖି ମୃଗ ନିକର ପରାହୀଁ । ମୃଗୀଁ କହହିଁ ତୁମ୍ହ କହଁ ଭୟ ନାହୀଁ ॥
ତୁମ୍ହ ଆନନ୍ଦ କରହୁ ମୃଗ ଜାଏ । କଞ୍ଚନ ମୃଗ ଖୋଜନ ଏ ଆଏ ॥୩॥
ସଂଗ ଲାଇ କରିନୀ କରି ଲେହୀଁ । ମାନହୁଁ ମୋହି ସିଖାୱନୁ ଦେହୀଁ ॥
ସାସ୍ତ୍ର ସୁଚିନ୍ତିତ ପୁନି ପୁନି ଦେଖିଅ । ଭୂପ ସୁସେବିତ ବସ ନହିଁ ଲେଖିଅ ॥୪॥
ରାଖିଅ ନାରି ଜଦପି ଉର ମାହୀଁ । ଜୁବତୀ ସାସ୍ତ୍ର ନୃପତି ବସ ନାହୀଁ ॥
ଦେଖହୁ ତାତ ବସନ୍ତ ସୁହାୱା । ପ୍ରିୟା ହୀନ ମୋହି ଭୟ ଉପଜାୱା ॥୫॥

ବିରହ ବିକଲ ବଲହୀନ ମୋହି ଜାନେସି ନିପଟ ଅକେଲ ।
ସହିତ ବିପିନ ମଧୁକର ଖଗ ମଦନ କୀହ୍ନ ବଗମେଲ ॥୩୭(କ)॥
ଦେଖି ଗୟଉ ଭ୍ରାତା ସହିତ ତାସୁ ଦୂତ ସୁନି ବାତ ।
ଡେରା କୀହ୍ନେଉ ମନହୁଁ ତବ କଟକୁ ହଟକି ମନଜାତ ॥୩୭(ଖ)॥

---

ଆମ୍ଭଙ୍କୁ ଦେଖି ପଳାନ୍ତି କୁରଙ୍ଗ ନିକର । କୁରଙ୍ଗୀ କହନ୍ତି, ତୁମ୍ଭେ କାହିଁପାଇଁ ଡର ॥
ଆନନ୍ଦେ ବିଚର ତୁମ୍ଭେ, ହେ ମୃଗନନ୍ଦନ । ଆସିଛନ୍ତି ଖୋଜିବାକୁ ଏ ମୃଗ କାଞ୍ଚନ ॥୩॥
କରୀ କରଣୀଙ୍କୁ ସଙ୍ଗେ ଘେନି ଯାଉଛନ୍ତି । ମନେହୁଏ, ଉପଦେଶ ମୋତେ ଦେଉଛନ୍ତି ॥
ବାରମ୍ବାର ଦେଖ ଶାସ୍ତ୍ର ହୋଇ ସୁଚିନ୍ତିତ । ବଶ ନୋହେ ନୃପ ହେଲେ ହୋଇ ସୁସେବିତ ॥୪॥
ରଖିଲେ ନାରୀକୁ ନିଜ ହୃଦୟ ପ୍ରଦେଶେ । ଯୁବତୀ, ଶାସ୍ତ୍ର, ନୃପତି ନ ରହନ୍ତି ବଶେ ॥
ବିଲୋକ ଭ୍ରାତ ! ବସନ୍ତ ପରମ ସୁନ୍ଦର । ପ୍ରିୟା-ହୀନ ହୋନ୍ତେ ମୋତେ ଉପୁଜାଏ ଡର ॥୫॥

ବିରହ ବିକଳ ମୋତେ ହୀନବଳ ଅତ୍ୟନ୍ତ ଏକାକୀ ଜାଣି ।
ବନ ଖଗ ଭୃଙ୍ଗ ସଙ୍ଗତେ ଅନଙ୍ଗ ମୋ ସମ୍ମୁଖୀନ ହେଲାଣି ॥୩୭ (କ)॥
ଦେଖିଗଲେ ଭ୍ରାତ ସହିତ ତା' ଦୂତ, ଶୁଣି ତାହାଙ୍କ ବଚନ ॥
ଛାଉଣି ପକାଇ ଦେଇଛୁ ଯେସନେ ସୈନ୍ୟ ଅଟକି ମଦନ ॥୩୭ (ଖ)॥

---

ଅଛନ୍ତି ! ॥ ୨ ॥ ଆମ୍ଭଙ୍କୁ ଦେଖି ହରିଣ-ଦଳ ଭୟ ହେତୁ ଦୌଡି ପଳାଉଅଛନ୍ତି ଓ ହରିଣୀମାନେ ସେମାନଙ୍କୁ କହୁଅଛନ୍ତି, "ତୁମର କୌଣସି ଭୟ ନାହିଁ । ତୁମେ ତ ସାଧାରଣ ହରିଣଙ୍କଠାରୁ ଜାତ, ଅତଏବ ତୁମ୍ଭେମାନେ ଆନନ୍ଦ କର । ଏମାନେ ତ ସୁନାର ହରିଣ ଖୋଜିବାକୁ ଆସିଅଛନ୍ତି ।" ॥ ୩ ॥ ହସ୍ତୀମାନେ ହସ୍ତିନୀମାନଙ୍କୁ ସଙ୍ଗରେ ଲଗାଇ ନେଇ ଆସୁଛନ୍ତି । ସେମାନେ ସତେ ଯେପରି ମୋତେ ଶିକ୍ଷା ଦେଉଛନ୍ତି (ଯେ ସ୍ତ୍ରୀକୁ କଦାପି ଏକାକିନୀ ଛାଡିଯିବା ଉଚିତ ନୁହେଁ) । ଉତ୍ତମ ଭାବରେ ଚିନ୍ତନ କରାଯାଇଥିବା ଶାସ୍ତ୍ରକୁ ମଧ୍ୟ ବାରମ୍ବାର ଦେଖୁଥିବା ଆବଶ୍ୟକ । ଉତ୍ତମ ରୂପେ ସେବିତ ରାଜା ମଧ୍ୟ ବଶୀଭୂତ ହେଲା ବୋଲି ବିଚାରିବା ଉଚିତ ନୁହେଁ ॥ ୪ ॥ ନାରୀକୁ ଯେତେ ହୃଦୟ ମଧ୍ୟରେ ରଖି ପଛକେ, ସେ ବଶରେ ରହେନାହିଁ । ଏହିପରି ଯୁବତୀ ସ୍ତ୍ରୀ, ଶାସ୍ତ୍ର ଓ ରାଜା କାହାର ବଶରେ ରହନ୍ତି ନାହିଁ । ହେ ଭାଇ ! ଏହି ସୁନ୍ଦର ବସନ୍ତକୁ ଦେଖ ତ । ପ୍ରିୟା-ବିନା ମୋଠାରେ ଏହା ଭୟ ଜାତ କରାଉଅଛି ॥ ୫ ॥ ଦୋହା :—ମୋତେ ବିରହ-

ବିଟପ ବିସାଲ ଲତା ଅରୁଝାନୀ । ବିବିଧ ବିତାନ ଦିଏ ଜନୁ ତାନୀ ॥
କଦଲି ତାଲ ବର ଧୁଜା ପତାକା । ଦେଖି ନ ମୋହ ଧୀର ମନ ଜାକା ॥୧॥
ବିବିଧ ଭାଁତି ଫୂଲେ ତରୁ ନାନା । ଜନୁ ବାନୈତ ବନେ ବହୁ ବାନା ॥
କହୁଁ କହୁଁ ସୁନ୍ଦର ବିଟପ ସୁହାଏ । ଜନୁ ଭଟ ବିଲଗ ବିଲଗ ହୋଇ ଛାଏ ॥୨॥
କୂଜତ ପିକ ମାନହୁଁ ଗଜ ମାତେ । ଢେକ ମହୋଖ ଊଁଟ ବିସରାତେ ॥
ମୋର ଚକୋର କୀର ବର ବାଜୀ । ପାରାବତ ମରାଲ ସବ ତାଜୀ ॥୩॥
ତୀତର ଲାବକ ପଦଚର ଜୂଥା । ବରନି ନ ଜାଇ ମନୋଜ ବରୂଥା ॥
ରଥ ଗିରି ସିଲା ଦୁଂଦୁଭୀଁ ଝରନା । ଚାତକ ବଂଦୀ ଗୁନ ଗନ ବରନା ॥୪॥

---

ବିଶାଳ ବୃକ୍ଷ ଉପରେ ଲତା ମାଡିଛନ୍ତି । ମନେ ହୁଏ ନାନାବିଧ ତମ୍ବୁ ଟାଣିଛନ୍ତି ॥
କଦଳୀ ତାଳ ଯେ ଧ୍ୱଜା ପତାକା ରୁଚିର । ଦେଖି ସେ ମୋହ ନ ଲଭେ ଯାର ମନସ୍ଥିର ॥୧॥
ନାନାବିଧ ରଙ୍ଗେ ନାନା ତରୁ ପ୍ରସ୍ଫୁଟିତ । ଯେସନ୍ତେ ଧନୁର୍ଦ୍ଧାରୀ ନାନାବେଷ ସୁଶୋଭିତ ॥
କାହିଁ କାହିଁ ମନୋହର ପାଦପେ ଶୋଭନ୍ତି । ଭିନ୍ନ ଭିନ୍ନ ହୋଇ ଅବା ଯୋଦ୍ଧା ଜଗିଛନ୍ତି ॥୨॥
କୋକିଳ ସ୍ୱନ କି ମତ୍ତ ବାରଣ ଗର୍ଜନ । ସାରସ କ୍ରୁମ୍ଭାଟ ଓଟ ଖଚର ଯେସନ ॥
ମୟୂର ଶୁକ ଚକୋର ବାଜି ମନୋହର । କପୋତ ମରାଳ ଆଦି ବିହଙ୍ଗମବର ॥୩॥
ତିତିର ଗୁଣ୍ଡୁରି ଯେସନ୍ତେ ପଦଚର ଗଣ । ବର୍ଣ୍ଣି ନ ହୁଅଇ କାମ ସେନା ଅଗଣନ ॥
ଝରଣା ନିଷାଣ ଗିରିଶିଳା ରଥ ପ୍ରାୟେ । ଚାତକ ବନ୍ଦୀ ସମାନ ଗୁଣ-ଗଣ ଗାଏ ॥୪॥

---

ବ୍ୟାକୁଳ, ବଳହୀନ ଓ ଏକାବେଳକେ ଏକାକୀ ଜାଣି କାମଦେବ ବନ, ଭ୍ରମର ଓ ପକ୍ଷୀମାନଙ୍କ ସଙ୍ଗରେ ଧରି ମୋ ଉପରେ ଷଡ଼ଯନ୍ତ୍ରବଦ୍ଧ ଆକ୍ରମଣ କରିଦେଇଛି ॥ ୩୭ (କ) ॥ କିନ୍ତୁ ଯେତେବେଳେ ତାହାର ଦୂତ ଦେଖିଗଲା ଯେ, ମୁଁ ମୋ ଭାଇ ସହିତ ଅଛି, ତାହାର କଥା ଶୁଣି କାମଦେବ ସତେ ଯେପରି ସେନାକୁ ଅଟକାଇ ଡେରା ପକାଇ ଦେଇଛି ॥ ୩୭ (ଖ) ॥ ଚୌପାଈ :—ବିଶାଳ ବୃକ୍ଷମାନଙ୍କରେ ଲତାମାନେ ଛନ୍ଦାଛନ୍ଦି ହୋଇ ଏପରି ଜଟାପଡ଼ିଛନ୍ତି ସତେ ଯେପରି ନାନା ପ୍ରକାରର ତମ୍ବୁ ଟାଣି ଦିଆହୋଇଅଛି କି ! କଦଳୀ ଓ ତାଳପତ୍ର ଶ୍ରେଷ୍ଠ ପତାକାତୁଲ୍ୟ । ଏସବୁ ଦେଖି କେବଳ ଯାହାର ମନ ଧୀର, ସେହି ମୋହିତ ହୁଏ ନାହିଁ ॥ ୧ ॥ ଅନେକ ବୃକ୍ଷ ନାନାବିଧ ପୁଷ୍ପରେ ବିମଣ୍ଡିତ । ସତେ ଅବା ବିଭିନ୍ନ ପୋଷାକଧାରୀ ବହୁତ ଧନୁର୍ଦ୍ଧର ବୀର ! କେଉଁଠି କେଉଁଠି ସୁନ୍ଦର ବୃକ୍ଷ ଏପରି ଶୋଭା ପାଉଛନ୍ତି, ସତେ ଯେପରି ଯୋଦ୍ଧାମାନେ ଅଲଗା ଅଲଗା ଛାଉଣି ପକାଇ ଅଟଳ ଭାବରେ ରହିଅଛନ୍ତି ॥ ୨ ॥ କୋକିଳମାନେ କଳରବ କରୁଅଛନ୍ତି; ଉକ୍ତ କଳରବ ଉନ୍ମତ୍ତ ହସ୍ତୀମାନଙ୍କ ଗର୍ଜନ ତୁଲ୍ୟ ପ୍ରତୀତ ହେଉଛି । ସାରସ ଓ କ୍ରୁମ୍ଭାଟୁଆ ପକ୍ଷୀ ସତେ ଯେପରି ଓଟ ଓ ଖଚର ! ମୟୂର, ଚକୋର, ଶୁକ, କପୋତ ଓ ହଂସ ସତେ ଯେପରି ସୁନ୍ଦର ଆରବ ଦେଶୀୟ ଘୋଡ଼ା ॥ ୩ ॥ ତିତିର ଓ ଗୁଣ୍ଡୁରି ପକ୍ଷୀ ସତେ ଅବା ପଦାତିକ ଦଳ । କାମଦେବଙ୍କ ଅଗଣିତ ସେନାର ବର୍ଣ୍ଣନା କରିହେବ

ମଧୁକର ମୁଖର ଭେରି ସହନାଈ । ତ୍ରିବିଧ ବୟାରି ବସୀଠୀଁ ଆଈ ॥
ଚତୁରଂଗିନୀ ସେନ ସଁଗ ଲୀନ୍ହେଁ । ବିଚରତ ସବହି ଚୁନୌତୀ ଦୀନ୍ହେଁ ॥୫॥
ଲଛିମନ ଦେଖତ କାମ ଅନୀକା । ରହହିଁ ଧୀର ତିନ୍ହ କୈ ଜଗ ଲୀକା ॥
ଏହି କେଁ ଏକ ପରମ ବଲ ନାରୀ । ତେହି ତେଁ ଉବର ସୁଭଟ ସୋଇ ଭାରୀ ॥୬॥

ତାତ ତୀନି ଅତି ପ୍ରବଲ ଖଲ କାମ କ୍ରୋଧ ଅରୁ ଲୋଭ ।
ମୁନି ବିଜ୍ଞାନ ଧାମ ମନ କରହିଁ ନିମିଷ ମହୁଁ ଛୋଭ ॥୩୮ (କ)॥
ଲୋଭ କେଁ ଇଚ୍ଛା ଦମ୍ଭ ବଲ କାମ କେଁ କେବଲ ନାରି ॥
କ୍ରୋଧ କେଁ ପରୁଷ ବଚନ ବଲ ମୁନିବର କହହିଁ ବିଚାରି ॥୩୮ (ଖ)॥

ଗୁନାତୀତ ସଚରାଚର ସ୍ୱାମୀ । ରାମ ଉମା ସବ ଅନ୍ତରଜାମୀ ॥
କାମିନ୍ହ କୈ ଦୀନତା ଦେଖାଈ । ଧୀରନ୍ହ କେଁ ମନ ବିରତି ଦୃଢ଼ାଈ ॥୧॥

---

ମଧୁକର ରବ ଭେରୀ ପେହେଁକାଳି ପରି । ତ୍ରିବିଧ ବାତ ଆସନ୍ତି ଦୂତ ରୂପ ଧରି ॥
ଚତୁରଙ୍ଗିଣୀ ସକଳ ସେନାଙ୍କୁ ଘେନିଣ । ବିଚରଇ ସମସ୍ତଙ୍କୁ ଆହ୍ୱାନ କରିଣ ॥୫॥
ଲକ୍ଷ୍ମଣ, ଅବଲୋକଣ ସେନା ମଦନର । ଧୈର୍ଯ୍ୟ ଯେ ରଖନ୍ତି, ବିଶ୍ୱେ ଗଣନା ତାଙ୍କର ॥
ଏହାର ପରମ ବଳ ଅଟେ ଏକ ନାରୀ । ତହିଁରୁ ଯେ ଉଦ୍ଧରନ୍ତି ଯୋଦ୍ଧା ସେହି ଭାରୀ ॥୬॥

ଭ୍ରାତ ! ତିନି ଖଳ ପରମ ପ୍ରବଳ କାମ କ୍ରୋଧ ଆଉ ଲୋଭ ।
କରନ୍ତି ବିଜ୍ଞାନ-ଧାମ ମୁନି ମନ ନିମିଷ ମଧ୍ୟରେ କ୍ଷୋଭ ॥୩୮ (କ)॥
ଅଟଇ ଲୋଭର ଇଚ୍ଛା ଦମ୍ଭ ବଳ, କାମର କେବଳ ନାରୀ ।
ବଚନ କଠୋର ଏ ବଳ କ୍ରୋଧର, କହନ୍ତି ମୁନି ବିଚାରି ॥୩୮ (ଖ)॥

ତ୍ରିଗୁଣ ଅତୀତ ଚର ଅଚରଙ୍କ ସ୍ୱାମୀ । ରାମ ପାର୍ବତି ! ସର୍ବ ହୃଦ-ଅନ୍ତର୍ଯ୍ୟାମୀ ॥
କାମୀ ଜନଙ୍କ ଦୀନତା ଦେଖାଉ ଅଛନ୍ତି । ଧୀରଙ୍କ ମନ ବୈରାଗ୍ୟେ ଦୃଢ଼ କରୁଛନ୍ତି ॥୧॥

---

ପାରିବ ନାହିଁ । ପର୍ବତ ଶିଳାମାନ ରଥ ଏବଂ ଝରଣାମାନ ନିଶାଣ । ଚାତକମାନେ ଭାଟ ହୋଇ ଯଶାବଳୀ ବର୍ଣ୍ଣନା କରୁଅଛନ୍ତି ॥ ୪ ॥ ଭ୍ରମରଗଣଙ୍କ ଗୁଞ୍ଜନ ଭେରୀ ଓ ପେହେଁକାଳି । ଶୀତଳ, ମନ୍ଦ ଓ ସୁଗନ୍ଧିତ ପବନ ଦୂତ ରୂପ ଧରି ଆସିଲା ପରି ଜଣାପଡୁଥାଆନ୍ତି । ଏହି ରୂପେ ଚତୁରଙ୍ଗିଣୀ ସେନାଙ୍କୁ ସାଙ୍ଗରେ ନେଇ କାମଦେବ ସତେ ଯେପରି ସମସ୍ତଙ୍କୁ ଆହ୍ୱାନ ଦେଇ ବିଚରଣ କରୁଅଛି ! ॥ ୫ ॥ ହେ ଲକ୍ଷ୍ମଣ ! କାମଦେବଙ୍କ ଏହି ସେନାକୁ ଦେଖି ଯେଉଁମାନେ ଧୀର ହୋଇ ରହନ୍ତି, ସେହିମାନେ ହିଁ ଜଗତରେ ବୀର ରୂପେ ପ୍ରତିଷ୍ଠା ଲାଭ କରନ୍ତି । ଏହି କାମଦେବର ଗୋଟିଏ ବଡ଼ ବଳ ହେଉଛି, ନାରୀ । ତାହାଠାରୁ ଯେ ଉଦ୍ଧାର ପାଇଯାଆନ୍ତି, ସେହି ଜଗତରେ ଶ୍ରେଷ୍ଠ ଯୋଦ୍ଧା ॥ ୬ ॥
ଦୋହା ।—ହେ ଭାଇ ! କାମ, କ୍ରୋଧ ଓ ଲୋଭ—ଏ ତିନିହେଁ ଅତି ପ୍ରବଳ ଦୁଷ୍ଟ । ଏମାନେ ବିଜ୍ଞାନଧାମ ମୁନିଗଣଙ୍କ ମନକୁ ମଧ୍ୟ କ୍ଷଣକ ମଧ୍ୟରେ କ୍ଷୁବ୍ଧ କରିଦିଅନ୍ତି ॥୩୮ (କ)॥ ଲୋଭର ଇଚ୍ଛା ଓ ଦମ୍ଭ ବଳ, କାମର ବଳ କେବଳ ନାରୀ । କ୍ରୋଧର କଠୋର ବଚନ

କ୍ରୋଧ ମନୋଜ ଲୋଭ ମଦ ମାୟା । ଛୁଟହିଁ ସକଲ ରାମ କୀଂ ଦାୟା ॥
ସୋ ନର ଇନ୍ଦ୍ରଜାଲ ନହିଁ ଭୂଲା । ଜା ପର ହୋଇ ସୋ ନଟ ଅନୁକୂଲା ॥୨॥
ଉମା କହଉଁ ମୈଁ ଅନୁଭବ ଅପନା । ସତ ହରିଭଜନ ଜଗତ ସବ ସପନା ॥
ପୁନି ପ୍ରଭୁ ଗଏ ସରୋବର ତୀରା । ପମ୍ପା ନାମ ସୁଭଗ ଗଂଭୀରା ॥୩॥
ସଂତ ହୃଦୟ ଜସ ନିର୍ମଲ ବାରୀ । ବାଁଧେ ଘାଟ ମନୋହର ଚାରୀ ॥
ଜହଁ ତହଁ ପିଅହିଁ ବିବିଧ ମୃଗ ନୀରା । ଜନୁ ଉଦାର ଗୃହ ଜାଚକ ଭୀରା ॥୪॥

ପୁରଇନି ସଘନ ଓଟ ଜଲ ବେଗି ନ ପାଇଅ ମର୍ମ ।
ମାୟାଛନ୍ନ ନ ଦେଖିଐ ଜୈସେଁ ନିର୍ଗୁନ ବ୍ରହ୍ମ ॥୩୯ (କ)॥
ସୁଖୀ ମୀନ ସବ ଏକରସ ଅତି ଅଗାଧ ଜଲ ମାହିଁ ।
ଜଥା ଧର୍ମସୀଲନ୍ହ କେ ଦିନ ସୁଖ ସଂଜୁତ ଜାହିଁ ॥୩୯ (ଖ)॥

---

କାମ କ୍ରୋଧ ଲୋଭ ମୋହମାୟା ଯେ ଆବର । ରାମଙ୍କ କୃପାରେ ନଷ୍ଟ ହୁଅନ୍ତି ନିକର ॥
ସେ ନର ଇନ୍ଦ୍ରଜାଲରେ କେବେ ନ ଭୁଲଇ । ନଟ ଅନୁକୂଳ ଯାହା ଉପରେ ହୁଅଇ ॥୨॥
ଉମା, ନିଜ ଅନୁଭବ କରେ ମୁଁ କଥନ । ହରିଙ୍କ ଭଜନ ସତ୍ୟ, ଜଗତ ସ୍ୱପନ ॥
ପୁଣି ପ୍ରଭୁ ପହଞ୍ଚିଲେ ସରୋବର ତୀର । ପମ୍ପା ନାମ ରମଣୀୟ ବିମଳ ଗମ୍ଭୀର ॥୩॥
ସନ୍ଥ ହୃଦୟ ସମାନ ସୁବିମଳ ବାରି । ନିବଦ୍ଧ ହୋଇଛି ଘାଟ ମନୋହର ଚାରି ॥
ପିଅନ୍ତି ମୃଗ ବିହଙ୍ଗ ଯହିଁ ତହିଁ ଜଳ । ଯେସନ୍ତେ ଉଦାର ଗୃହରେ ଯାଚକ ଗହଳ ॥୪॥

ସଘନ କମଳ-ପତ୍ରାବୃତ ଜଳ ବେଗି ନ ମିଳଇ ମର୍ମ ।
ମାୟା-ପରିଛନ୍ନ ହୋଇଣ ଯେସନ ନ ଦିଶେ ନିର୍ଗୁଣ ବ୍ରହ୍ମ ॥୩୯ (କ)॥
ଅଖଣ୍ଡ ସୁଖରେ ଅଗାଧ ଜଳରେ ରହନ୍ତି ମୀନ ନିକର ।
କଟେ ସୁଖ-ଯୁକ୍ତ ଦିବସ ଯେସନ୍ତ ଧର୍ମଶୀଳ ଲୋକଙ୍କର ॥୩୯ (ଖ)।

---

ହେଉଛନ୍ତି ବଳ । ମୁନିବର ଏକଥା ବିଚାରି କହୁଅଛନ୍ତି ।" ॥ ୩୮ (ଖ) ॥ ଚୌପାଈ :— ଶିବ କହନ୍ତି, "ହେ ପାର୍ବତି ! ଶ୍ରୀରାମ ଗୁଣାତୀତ ଏବଂ ଚରାଚର ଜଗତର ସ୍ୱାମୀ ଏବଂ ସମସ୍ତଙ୍କ ଅନ୍ତର୍ଯାମୀ ।" ଉପର୍ଯ୍ୟୁକ୍ତ କଥାମାନ କହି ସେ କାମୁକ ବ୍ୟକ୍ତିମାନଙ୍କ ଦୈନ୍ୟ ଦେଖାଇଅଛନ୍ତି ଏବଂ ଧୀର ପୁରୁଷମାନଙ୍କଠାରେ ଥିବା ବୈରାଗ୍ୟଗୁଣର ଦୃଢତା ସ୍ୱୀକାର କରିଅଛନ୍ତି ॥୧॥ କ୍ରୋଧ, କାମ, ଲୋଭ, ମଦ ଓ ମାୟା—ଏସବୁ ଶ୍ରୀରାମଙ୍କ ଦୟାଯୋଗେ ଅପସରିଯାଏ । ସେ ନଟ ଯାହା ପ୍ରତି ପ୍ରସନ୍ନ ହୁଅନ୍ତି, ସେହି ମନୁଷ୍ୟ ଇନ୍ଦ୍ରଜାଲ ବା ମାୟାରେ କେବେ ହେଲେ ଭୁଲେ ନାହିଁ ॥ ୨ ॥ ହେ ଉମା ! ମୁଁ ତୁମକୁ ମୋ ନିଜ ଅନୁଭବ କହୁଛି— ହରି-ଭଜନ ମାତ୍ର ହିଁ ସତ୍ୟ ଏବଂ ଏ ସାରା ଜଗତ ସ୍ୱପ୍ନବତ୍ ମିଥ୍ୟା ।" ତତ୍ପରେ ପ୍ରଭୁ ଶ୍ରୀରାମ ପମ୍ପା ନାମକ ସୁନ୍ଦର ଓ ଗଭୀର ସରୋବର ତୀରକୁ ଗଲେ ॥ ୩ ॥ ତାହାର ଜଳ ସନ୍ଥ ହୃଦୟ ତୁଲ୍ୟ ନିର୍ମଳ । ମନୋହର ସୁନ୍ଦର ଚାରିଗୋଟି ଘାଟ ବନ୍ଧା ହୋଇଛି । ବିବିଧ ପଶୁ ଏଠିସେଠି ଜଳପାନ କରୁଅଛନ୍ତି । ଉଦାର ଦାନୀ ପୁରୁଷଙ୍କ ଦ୍ୱାରରେ

ବିକସେ ସରସିଜ ନାନା ରଂଗା । ମଧୁର ମୁଖର ଗୁଂଜତ ବହୁ ଭୃଂଗା ॥
ବୋଲତ ଜଲକୁକ୍କୁଟ କଲହଂସା । ପ୍ରଭୁ ବିଲୋକି ଜନୁ କରତ ପ୍ରସଂସା ॥୧॥
ଚକ୍ରବାକ ବକ ଖଗ ସମୁଦାଈ । ଦେଖତ ବନଇ ବରନି ନହିଁ ଜାଈ ॥
ସୁଂଦର ଖଗ ଗନ ଗିରା ସୁହାଈ । ଜାତ ପଥିକ ଜନୁ ଲେତ ବୋଲାଈ ॥୨॥
ତାଲ ସମୀପ ମୁନିହ୍ନ ଗୃହ ଛାଏ । ଚହୁ ଦିସି କାନନ ବିଟପ ସୁହାଏ ॥
ଚମ୍ପକ ବକୁଲ କଦଂବ ତମାଲା । ପାଟଲ ପନସ ପରାସ ରସାଲା ॥୩॥
ନବ ପଲ୍ଲବ କୁସୁମିତ ତରୁ ନାନା । ଚଞ୍ଚରୀକ ପଟଲୀ କର ଗାନା ॥
ସୀତଲ ମନ୍ଦ ସୁଗନ୍ଧ ସୁଭାଊ । ସଂତତ ବହଇ ମନୋହର ବାଊ ॥୪॥
କୁହୂ କୁହୂ କୋକିଲ ଧୁନି କରହୀଁ । ସୁନି ରବ ସରସ ଧ୍ୟାନ ମୁନି ଟରହୀଁ ॥୫॥

---

ବିକସିତ ସରସିଜ ନାନାବିଧ ରଙ୍ଗେ । ମଧୁର ସୁଖଦାୟକ ଗୁଞ୍ଜରନ୍ତି ଭୃଙ୍ଗେ ॥
ବକ ହଂସ ଜଳକାକ ଆନନ୍ଦେ ରବନ୍ତି । ପ୍ରଭୁଙ୍କୁ ବିଲୋକି ଅବା ପ୍ରଶଂସା କରନ୍ତି ॥୧॥
ଚକ୍ରବାକ, ବକ ଆଦି ନାନାବିଧ ପକ୍ଷୀ । କେବଳ ଦେଖି ହୁଅଇ, ନ ହୁଏ ବିବକ୍ଷି ॥
ସୁନ୍ଦର ଖଗ-ବୃନ୍ଦଙ୍କ ସୁମଧୁର ସ୍ୱନ । ପଥ ପଥିକଙ୍କୁ ଡାକି ନିଅନ୍ତି ଯେସନ ॥୨॥
ସରସୀ ପାଶେ ମୁନିଙ୍କ ବାସ ମନୋହର । ଚଉଦିଗେ ରାଜେ ବନ ବିଟପ ସୁନ୍ଦର ॥
ଚମ୍ପକ, ବକୁଳ, ରମ୍ୟ କଦମ୍ବ ତମାଳ । ପାଟଳ, ପଣସ, ବହୁ ପଳାଶ ରସାଳ ॥୩॥
ନବ ପଲ୍ଲବିତ ନାନା ତରୁ କୁସୁମିତ । ତହିଁ ଉପରେ ମଧୁପ ନିକରଙ୍କ ଗୀତ ॥
ଶୀତଳ ମନ୍ଦ ସୁଗନ୍ଧ ସହଜେ ରୁଚିର । ପ୍ରବାହିତ ହୁଏ ସଦା ସୁଖଦ ସମୀର ॥୪॥
କୁହୁ କୁହୁ ଧ୍ୱନି ପୁଣି କୋକିଳ କରଇ । ଶୁଣି କଳରବ ଧ୍ୟାନ ମୁନିଙ୍କ ଭାଜଇ ॥୫॥

---

ଭିକ୍ଷୁକଗଣଙ୍କ ସମାବେଶ ହେଲା ପ୍ରାୟ ସେଠାରେ ପଶୁପକ୍ଷୀଙ୍କ ସମାବେଶ ହୋଇଅଛି ॥୪॥ ଦୋହା '—ମାୟାବୃତ ଜୀବକୁ ଯେପରି ନିର୍ଗୁଣ ବ୍ରହ୍ମ ଦେଖାଯାଆନ୍ତି ନାହିଁ, ସେହିପରି ଘନ କମଳ-ପତ୍ରଦ୍ୱାରା ଆବୃତ ହୋଇଥିବା ହେତୁ ଜଳର ଅସ୍ତିତ୍ୱ ଶୀଘ୍ର ଜାଣି ହେଉନାହିଁ ॥ ୩୯ (କ) ॥ ଧର୍ମପରାୟଣ ଲୋକମାନେ ସୁଖଶାନ୍ତିରେ ଆପଣା ଆପଣା ଦିବସ ଯାପନ କଲା ପରି ସେହି ସରୋବରର ଅଗାଧ ଜଳରେ ଅଖଣ୍ଡ ସୁଖରେ ମତ୍ସ୍ୟମାନେ ବାସ କରୁଥା'ନ୍ତି ॥ ୩୯ (ଖ) ॥ ଚୌପାଈ '—ତହିଁରେ ବିବିଧ ରଙ୍ଗର କମଳ ଫୁଟିଥାଏ । ବହୁତ ଭ୍ରମର ମଧୁର ସ୍ୱରରେ ଗୁଞ୍ଜନ କରୁଥାଆନ୍ତି । ବକ, ହଂସ ଓ ଜଳକାକ କଳରବ କରୁଥା'ନ୍ତି । ପ୍ରଭୁଙ୍କୁ ଦେଖି ସତେ ଅବା ସେମାନେ ପ୍ରଶଂସା କରୁଥାଆନ୍ତି ॥ ୧ ॥ ଚକ୍ରବାକ, ବକ ଆଦି ପକ୍ଷୀସମୂହଙ୍କୁ ଦେଖିବା କଥା । ସେମାନଙ୍କ ବର୍ଣ୍ଣନା ଅସମ୍ଭବ । ସୁନ୍ଦର ପକ୍ଷୀମାନଙ୍କର କଳରବ ରୁଚିକର ବୋଧ ହେଉଥାଏ । ସତେ ଯେପରି ସେମାନେ ମାର୍ଗଗାମୀ ପଥିକଙ୍କୁ ଡାକି ନେଉଥା'ନ୍ତି ॥ ୨ ॥ ସେହି ସରୋବର ସମୀପରେ ମୁନିମାନେ ଆଶ୍ରମ ନିର୍ମାଣ କରିଥାଆନ୍ତି । ତାହାର ଚତୁର୍ଦ୍ଦିଗରେ ବନର ସୁନ୍ଦର ବୃକ୍ଷରାଜି । ଚମ୍ପା, ବକୁଳ, କଦମ୍ବ, ତମାଳ, ପାଟଳ, ପଣସ, ପଳାଶ ଓ

ଫଲ ଭାରନ ନମି ବିଟପ ସବ ରହେ ଭୂମି ନିଅରାଇ ।
ପର ଉପକାରୀ ପୁରୁଷ ଜିମି ନଵହିଁ ସୁସଂପତି ପାଇ ॥୪୦॥

ଦେଖି ରାମ ଅତି ରୁଚିର ତଲାଵା । ମଜ୍ଜନୁ କୀନ୍ହ ପରମ ସୁଖ ପାଵା ॥
ଦେଖୀ ସୁନ୍ଦର ତରୁବର ଛାୟା । ବୈଠେ ଅନୁଜ ସହିତ ରଘୁରାୟା ॥୧॥
ତହଁ ପୁନି ସକଲ ଦେବ ମୁନି ଆଏ । ଅସ୍ତୁତି କରି ନିଜ ଧାମ ସିଧାଏ ॥
ବୈଠେ ପରମ ପ୍ରସନ୍ନ କୃପାଲା । କହତ ଅନୁଜ ସନ କଥା ରସାଲା ॥୨॥
ବିରହଵଂତ ଭଗଵଂତହି ଦେଖୀ । ନାରଦ ମନ ଭା ସୋଚ ବିସେଷୀ ॥
ମୋର ସାପ କରି ଅଙ୍ଗୀକାରା । ସହତ ରାମ ନାନା ଦୁଖ ଭାରା ॥୩॥
ଐସେ ପ୍ରଭୁହି ବିଲୋକଉଁ ଜାଈ । ପୁନି ନ ବନିହି ଅସ ଅବସରୁ ଆଈ ॥
ୟହ ବିଚାରି ନାରଦ କର ବୀନା । ଗଏ ଜହାଁ ପ୍ରଭୁ ସୁଖ ଆସୀନା ॥୪॥

---

ଫଲ ଭରେ ନତ ବିଟପ ସମସ୍ତ ଭୂମିକୁ ଛୁଇଁ ରହନ୍ତି ।
ପର ଉପକାରୀ ପୁରୁଷ ଯେପରି ନମନ୍ତି ପାଇ ସମ୍ପତ୍ତି ॥୪୦॥

ଦେଖି ରାମ ପୁଷ୍କରିଣୀ ଅତି ମନୋରମ । ସ୍ନାନ ସମାପିଣ ସୁଖ ଲଭିଲେ ପରମ ॥
ବିଲୋକି ସୁନ୍ଦର ତରୁ ସୁଶୀତଳ ଛାଇ । ବସିଲେ ଅନୁଜ ସହ ରଘୁକୁଳ ସାଇଁ ॥୧॥
ତହିଁ ଋଷି ଦେବ ମୁନି ସମସ୍ତେ ଆସିଲେ । ସ୍ତୁତି କରି କରି ନିଜ ଧାମକୁ ଗମିଲେ ॥
ପରମ ପ୍ରସନ୍ନ ମନେ ବସି ଜନପାଳ । କହନ୍ତି ଅନୁଜ ଆଗେ କଥା ସୁରସାଳ ॥୨॥
ନିରେଖି ଭଗବାନଙ୍କୁ ବିରହ ବ୍ୟଥିତ । ନାରଦ ହୋଇଲେ ଅତି ହୃଦୟେ ଚକିତ ॥
ମୋର ଦତ୍ତ ଅଭିଶାପ କରି ଅଙ୍ଗୀକାର । ସହନ୍ତି ରଘୁନାୟକ ନାନା ଦୁଃଖ ଭାର ॥୩॥
ଏମନ୍ତ ପ୍ରଭୁଙ୍କୁ ଯାଇ କରିବି ଦର୍ଶନ । ପୁଣି ନ ମିଳିବ ଆଉ ସୁଯୋଗ ଏସନ ॥
ଏହା ବିଚାରି ନାରଦ ବୀଣା କରେ ଧରି । ବନେ ଗଲେ ଯହିଁ ଥିଲେ ସୁଖାସୀନ ହରି ॥୪॥

---

ଆମ୍ର ଆଦି ବହୁବିଧ ବୃକ୍ଷ ନବ ନବ ପତ୍ର ଓ ସୁଗନ୍ଧିତ ପୁଷ୍ପରେ ସୁମଣ୍ଡିତ । ସେମାନଙ୍କ ଉପରେ ଭ୍ରମର-ବୃନ୍ଦ ଗୁଞ୍ଜନ-ରତ । ସ୍ୱଭାବତଃ ଶୀତଳ, ମନ୍ଦ, ସୁଗନ୍ଧିତ ଏବଂ ମନୋହର ବାୟୁ ନିରନ୍ତର ବହୁଥାଏ ॥ ୩-୪ ॥ କୋଇଲିମାନେ 'କୁହୁ' 'କୁହୁ' ରବ କରୁଥା'ନ୍ତି । ସେମାନଙ୍କ ରସାଳ କଳରବ ଶୁଣି ମୁନିଗଣଙ୍କ ଧ୍ୟାନ ମଧ୍ୟ ଭଙ୍ଗ ହୋଇ ଯାଉଥାଏ ॥ ୫ ॥ ଦୋହା :—ଫଳ ଭାରରେ ଅବନତ ହୋଇ ସମସ୍ତ ବୃକ୍ଷ ପୃଥିବୀକୁ ଛୁଇଁ ରହିଥା'ନ୍ତି । ସେମାନେ ପରୋପକାରୀ ପୁରୁଷ ସମ୍ପତ୍ତି ପାଇ ବିନମ୍ର ସହକାରେ ନଇଁ ପଡ଼ିଥିବା ପ୍ରାୟ ବୋଧ ହେଉଥାନ୍ତି ॥ ୪୦ ॥ ଚୌପାଈ :—ଅତି ରୁଚିର ସରୋବର ଦେଖି ଶ୍ରୀରାମ ତହିଁରେ ସ୍ନାନ କଲେ ଏବଂ ପରମସୁଖ ଲାଭ କଲେ । ଗୋଟିଏ ସୁନ୍ଦର ଉତ୍ତମ ବୃକ୍ଷର ଛାୟା ଦେଖି ଶ୍ରୀ ରଘୁନାଥ ସାନ ଭାଇ ଲକ୍ଷ୍ମଣଙ୍କ ସହିତ ସେହିଠାରେ ବସିଗଲେ ॥ ୧ ॥ ସେଠାକୁ ସମସ୍ତ ଦେବତା ଓ ମୁନି ଆସିଲେ ଏବଂ ସ୍ତୁତି କରି ଆପଣା ଆପଣା ଧାମକୁ ଗମନ କଲେ । କୃପାଳୁ ଶ୍ରୀରାମ ପରମ ପ୍ରସନ୍ନ ମନରେ ବସି ସାନ ଭାଇ ଲକ୍ଷ୍ମଣଙ୍କ ସଙ୍ଗେ

ଗାୱତ ରାମ ଚରିତ ମୃଦୁ ବାନୀ । ପ୍ରେମ ସହିତ ବହୁ ଭାଁତି ବଖାନୀ ॥
କରତ ଦଣ୍ଡବତ ଲିଏ ଉଠାଈ । ରାଖେ ବହୁତ ବାର ଉର ଲାଈ ॥୫॥
ସ୍ୱାଗତ ପୂଁଛି ନିକଟ ବୈଠାରେ । ଲଛିମନ ସାଦର ଚରନ ପଖାରେ ॥୬॥

ନାନା ବିଧି ବିନତୀ କରି ପ୍ରଭୁ ପ୍ରସନ୍ନ ଜିୟଁ ଜାନି ।
ନାରଦ ବୋଲେ ବଚନ ତବ ଜୋରି ସରୋରୁହ ପାନି ॥୪୧॥

ସୁନହୁ ଉଦାର ସହଜ ରଘୁନାୟକ । ସୁନ୍ଦର ଅଗମ ସୁଗମ ବର ଦାୟକ ॥
ଦେହୁ ଏକ ବର ମାଗଉଁ ସ୍ୱାମୀ । ଜଦ୍ୟପି ଜାନତ ଅନ୍ତରଜାମୀ ॥୧॥
ଜାନହୁ ମୁନି ତୁମ୍ହ ମୋର ସୁଭାଊ । ଜନ ସନ କବହୁଁ କି କରଉଁ ଦୁରାଊ ॥
କବନ ବସ୍ତୁ ଅସି ପ୍ରିୟ ମୋହି ଲାଗୀ । ଜୋ ମୁନିବର ନ ସକହୁ ତୁମ୍ହ ମାଗୀ ॥୨॥

---

ଗାଇଣ ରାମ ଚରିତ ସୁମଧୁର ବାଣୀ । ପ୍ରେମ ସହିତ ଅନେକ ପ୍ରକାରେ ବଖାଣି ॥
କରନ୍ତେ ଦଣ୍ଡ ପ୍ରଣାମ ନେଇଣ ଉଠାଇ । ରଖିଲେ ବହୁ ସମୟ ହୃଦୟେ ଲଗାଇ ॥୫॥
ସ୍ୱାଗତ କରି ଆପଣା ପାଶେ ବସାଇଲେ । ସାଦରେ ସୁମିତ୍ରାସୁତ ପଦ ପ୍ରକ୍ଷାଳିଲେ ॥୬॥

କରି ନାନାମତେ ବିନୟ ସୁଚତୁରେ ପ୍ରଭୁଙ୍କୁ ପ୍ରସନ୍ନ ଜାଣି ।
ଭାଷିଲେ ନାରଦ ବଚନ ସୁଖଦ ଯୋଡ଼ି ସରୋରୁହ ପାଣି ॥୪୧॥

ଶୁଣ ପରମ ଉଦାର ଶ୍ରୀ ରଘୁନାୟକ । ସୁଗମ ଅଗମ ରମ୍ୟ ବର ପ୍ରଦାୟକ ॥
ମାଗୁଅଛି ମୁହିଁ, ଦିଅ ଏକ ବର, ସ୍ୱାମୀ । ଯଦ୍ୟପି ଜାଣ ସକଳ ହୃଦ ଅନ୍ତର୍ଯ୍ୟାମୀ ॥୧॥
ଜାଣ ମୁନିବର, ତୁମ୍ଭେ ମୋହର ସ୍ୱଭାବ । ଜନଠାରେ କେବେ କି ମୁଁ କରଇ ଦୁର୍ଭାବ ॥
ଏପରି କି ବସ୍ତୁ ମୋତେ ପ୍ରିୟ ଲାଗେ ଅତି । ଯାହା ମାଗି ନ ପାରୁଛ ତୁମ୍ଭେ ଯତି-ପତି ॥୨॥

---

ରସପୂର୍ଣ୍ଣ କଥାବାର୍ତ୍ତା କରୁଥା'ନ୍ତି ॥ ୨ ॥ ଭଗବାନ୍‌ଙ୍କୁ ବିରହ-ବ୍ୟଥିତ ଦେଖି ନାରଦଙ୍କ ମନରେ ବିଶେଷ ରୂପେ ଚିନ୍ତା ହେଲା ଯେ, ତାଙ୍କରି ଅଭିଶାପ ଗ୍ରହଣ କରି ଶ୍ରୀରାମ ନାନା ପ୍ରକାର ଦୁଃଖର ଭାର ସହନ କରୁଅଛନ୍ତି ॥ ୩ ॥ "ଏପରି ଭକ୍ତବତ୍ସଳ ପ୍ରଭୁଙ୍କୁ ଯାଇ ଟିକିଏ ଦେଖି ଆସେ, ଆଉ ଏପରି ଅବସର ଆସିବ ନାହିଁ ।"—ଏହା ବିଚାରି ନାରଦ ହାତରେ ବୀଣା ଧରି ପ୍ରଭୁ ସୁଖରେ ଯେଉଁଠାରେ ବସିଥିଲେ, ସେହି ସ୍ଥାନକୁ ଗଲେ ॥ ୪ । ସେ ପ୍ରେମଭରା କୋମଳ ବାଣୀରେ ବହୁତ ପ୍ରକାରେ ବର୍ଣ୍ଣନା-ପୂର୍ବକ ରାମ-ଚରିତ ଗାଇ ଗାଇ ଚାଲି ଆସୁଥିଲେ । ଦଣ୍ଡବତ କରିବାର ଦେଖି ଶ୍ରୀରାମଚନ୍ଦ୍ର ନାରଦଙ୍କୁ ଉଠାଇନେଲେ ଏବଂ ବହୁ ସମୟ ପର୍ଯ୍ୟନ୍ତ ତାଙ୍କୁ ଛାତିରେ କୁଣ୍ଢାଇ ଧରିଲେ ॥୫॥ ତତ୍ପରେ ସ୍ୱାଗତ-କାଳୀନ କୁଶଳ-ସମାଚାର ଆଦି ପଚାରି ପାଖରେ ବସାଇଲେ । ଲକ୍ଷ୍ମଣ ଆଦର ସହକାରେ ତାଙ୍କ ଚରଣ ଧୋଇଦେଲେ ॥ ୬ ॥ ବହୁ ପ୍ରକାରେ ବିନତି କରି ପ୍ରଭୁଙ୍କୁ ମନ ମଧ୍ୟରେ ପ୍ରସନ୍ନ ଜାଣି ନାରଦ କର-କମଳ ଯୋଡ଼ି ବଚନ ବୋଇଲେ—॥ ୪୧ ॥ ଚୌପାଇ '—"ହେ ସହଜ-ଉଦାର ଶ୍ରୀ ରଘୁନାଥ ! ଶୁଣନ୍ତୁ, ଆପଣ ସୁମନୋହର, ଅଗମ ଓ ସୁଗମ ବରଦାୟକ । ହେ ସ୍ୱାମି ! ମୁଁ ଗୋଟିଏ ବର ମାଗୁଅଛି । ତାହା

ଜନି କହୁଁ କଛୁ ଅଦେୟ ନହିଁ ମୋରେଁ । ଅସ ବିସ୍ୱାସ ତଜହୁ ଜନି ଭୋରେଁ ॥
ତବ ନାରଦ ବୋଲେ ହରଷାଈ । ଅସ ବର ମାଗଉଁ କରଉଁ ଢିଠାଈ ॥୩॥
ଜଦ୍ୟପି ପ୍ରଭୁ କେ ନାମ ଅନେକା । ଶ୍ରୁତି କହ ଅଧିକ ଏକ ତେଁ ଏକା ॥
ରାମ ସକଲ ନାମହ୍ନ ତେଁ ଅଧିକା । ହୋଉ ନାଥ ଅଘ ଖଗ ଗନ ବଧିକା ॥୪॥

ରାକା ରଜନୀ ଭଗତି ତବ ରାମ ନାମ ସୋଇ ସୋମ ।
ଅପର ନାମ ଉଡ଼ଗନ ବିମଲ ବସହୁଁ ଭଗତ ଉର ବ୍ୟୋମ ॥୪୨(କ)॥
ଏବମସ୍ତୁ ମୁନି ସନ କହେଉ କୃପାସିନ୍ଧୁ ରଘୁନାଥ ।
ତବ ନାରଦ ମନ ହରଷ ଅତି ପ୍ରଭୁ ପଦ ନାୟଉ ମାଥ ॥୪୨(ଖ)॥

ଅତି ପ୍ରସନ୍ନ ରଘୁନାଥହି ଜାନୀ । ପୁନି ନାରଦ ବୋଲେ ମୃଦୁ ବାନୀ ॥
ରାମ ଜବହିଁ ପ୍ରେରେହୁ ନିଜ ମାୟା । ମୋହେହୁ ମୋହି ସୁନହୁ ରଘୁରାୟା ॥୧॥

---

ଭକ୍ତ ପାଇଁ ନାହିଁ କିଛି ଅଦେୟ ମୋ ପାଶେ । ଭୁଲି ମଧ ନ ତେଜିବ ଏମନ୍ତ ବିଶ୍ୱାସେ ॥
କହିଲେ ନାରଦ ତହୁଁ ହରଷ ହୋଇଣ । ଏହି ବର ମାଗୁଅଛି ଧୃଷ୍ଟତା କରଣ ॥୩॥
ଯଦ୍ୟପି ପ୍ରଭୁଙ୍କ ନାମ ଜଗତେ ଅନେକ । ଶ୍ରୁତି ବଖାଣେ ପ୍ରସିଦ୍ଧ ଏକୁ ବଳି ଏକ ॥
'ରାମ' ସକଳ ନାମଙ୍କ ଅପେକ୍ଷା ଅଧିକ । ହେଉ ନାଥ ଅଘ-ଖଗ-ଗଣଙ୍କୁ ବଧିକ ॥୪॥

ପୂର୍ଣ୍ଣିମା ରଜନୀ ଅଟେ ତୁମ୍ଭ ଭକ୍ତି, 'ରାମ' ନାମ ଶୁଭ୍ର ସୋମ ।
ଅନ୍ୟ ଯେତେ ନାମ ତାରାଗଣ ସମ ବସ୍ତୁ ଭକ୍ତ-ହୃଦ-ବ୍ୟୋମ ॥୪୨ (କ)॥
'ଏବମସ୍ତୁ' ବୋଲି କହିଲେ ମୁନିଙ୍କୁ କୃପାସିନ୍ଧୁ ରଘୁବୀର ॥
ନାରଦ ପ୍ରସନ୍ନେ ପ୍ରଭୁଙ୍କ ଚରଣେ ନୁଆଁଇଲେ ତହୁଁ ଶିର ॥୪୨ (ଖ)॥

ଅତ୍ୟନ୍ତ ପ୍ରସନ୍ନ ରଘୁନାୟକଙ୍କୁ ଜାଣି । ଭାଷିଲେ ନାରଦ ମୁନି ସୁମଧୁର ବାଣୀ ॥
ରାମ, ଯେଉଁକ୍ଷଣି ନିଜ ମାୟାକୁ ପ୍ରେରିଲ । ଶୁଣ ରଘୁକୁଳମଣି, ମୋତେ ବିମୋହିଲ ॥୧॥

---

ମୋତେ ଦିଅନ୍ତୁ । ଆପଣ ଅନ୍ତର୍ଯାମୀ ହୋଇଥିବା ହେତୁ ସବୁ ତ ଜାଣନ୍ତି ।" ॥ ୧ ॥ ଶ୍ରୀରାମ କହିଲେ, "ହେ ମୁନି ! ତୁମେ ମୋର ସ୍ୱଭାବ ତ ଜାଣ । ମୁଁ କ'ଣ ଆପଣା ଭକ୍ତଙ୍କଠାରୁ କେବେ କିଛି ଗୁପ୍ତ ରଖେ ? ହେ ମୁନିବର ! ମୋର ଏପରି କି ପ୍ରିୟ ବସ୍ତୁ ଅଛି, ଯାହା ତୁମେ ମାଗି ପାରିବ ନାହିଁ ? ॥ ୨ ॥ ଭକ୍ତଙ୍କ ନିମନ୍ତେ ମୋର ଅଦେୟ ହୋଇ କିଛି ନାହିଁ"—ଏହିପରି ବିଶ୍ୱାସ ଭୁଲ୍‌ରେ ମୁଦ୍ଧା ଛାଡ଼ ନାହିଁ ।" ନାରଦ ଆନନ୍ଦିତ ହୋଇ କହିଲେ, ହେ ପ୍ରଭୋ ! ମୁଁ ଧୃଷ୍ଟତା କରି ଏହି ବର ମାଗୁଅଛି—॥ ୩ ॥ ଯଦ୍ୟପି ପ୍ରଭୁଙ୍କର ଅନେକ ନାମ ଅଛି ଏବଂ ସେ ସବୁ ଏକୁ ବଳି ଆରେକ ଅଧିକ, ତଥାପି ହେ ନାଥ ! 'ରାମ' ନାମ ସବୁ ନାମଠାରୁ ଅଧିକ ହେଉ ଏବଂ ସେହି ନାମ ପାପ-ପକ୍ଷୀମାନଙ୍କର ବଧକାରୀ ଶିକାରୀ ସମାନ ହେଉ ॥୪॥ ଦୋହା :- ଆପଣଙ୍କ ଭକ୍ତି ପୂର୍ଣ୍ଣିମା ରାତି, ତହିଁରେ 'ରାମ' ନାମ ଏହି ପୂର୍ଣ୍ଣଚନ୍ଦ୍ର ଏବଂ ଅନ୍ୟ ନାମ ସବୁ ତାରାଗଣ ହୋଇ ଭକ୍ତଗଣଙ୍କ ହୃଦୟ ରୂପକ ନିର୍ମଳ ଆକାଶରେ ନିବାସ କରୁ ॥ ୪୨ (କ) ॥

ତବ ବିବାହ ମୈଁ ଚାହଉଁ କୀହ୍ନା । ପ୍ରଭୁ କେହି କାରନ କରୈ ନ ଦୀହ୍ନା ॥
ସୁନୁ ମୁନି ତୋହି କହଉଁ ସହରୋସା । ଭଜହିଁ ଜେ ମୋହି ତଜି ସକଲ ଭରୋସା ॥୨॥
କରଉଁ ସଦା ତିନ୍ହ କୈ ରଖୱାରୀ । ଜିମି ବାଲକ ରାଖଇ ମହତାରୀ ॥
ଗହ ସିସୁ ବଚ୍ଛ ଅନଲ ଅହି ଧାଈ । ତହଁ ରାଖଇ ଜନନୀ ଅରଗାଈ ॥୩॥
ପ୍ରୌଢ଼ ଭଏଁ ତେହି ସୁତ ପର ମାତା । ପ୍ରୀତି କରଇ ନହିଁ ପାଛିଲି ବାତା ॥
ମୋରେଁ ପ୍ରୌଢ଼ ତନୟ ସମ ଜ୍ଞାନୀ । ବାଲକ ସୁତ ସମ ଦାସ ଅମାନୀ ॥୪॥
ଜନହି ମୋର ବଲ ନିଜ ବଲ ତାହୀ । ଦୁହୁ କହଁ କାମ କ୍ରୋଧ ରିପୁ ଆହୀ ॥
ୟହ ବିଚାରି ପଣ୍ଡିତ ମୋହି ଭଜହୀଁ । ପାଏହୁଁ ଜ୍ଞାନ ଭଗତି ନହିଁ ତଜହୀଁ ॥୫॥

---

ତେବେ ମୋର ଇଚ୍ଛା ଥିଲା ବିଭା ହେବା ପାଇଁ । ପ୍ରଭୁ କେଉଁ କାରଣରୁ ନ ଦେଲ କରାଇ ॥
ଶୁଣ ମୁନି, କହୁଛି ମୁଁ ସହରଷେ ତୋତେ । ସମସ୍ତ ଭରସା ତେଜି ଯେ ଭଜଇ ମୋତେ ॥୨॥
ତାହାର ରକ୍ଷା ସର୍ବଦା ସ୍ୱୟଂ ମୁଁ କରଇ । ଯେଉଁ ଭାବେ ବାଳକକୁ ଜନନୀ ରଖଇ ॥
ଧାଏଁ ଶିଶୁ ବତ୍ସ ଅଗ୍ନି ସର୍ପ ଧରିବାକୁ । ରଖଇ ତହିଁ ଓଗାଳି ଜନନୀ ତାହାକୁ ॥୩॥
ପୌଢ ହୁଅନ୍ତେ ମାତା ସେ ତନୟ ଉପରେ । ପୂର୍ବ ସମୟର ସ୍ନେହ ହୃଦୟେ ନ କରେ ॥
ମୋହର ପ୍ରୌଢ କୁମର ସମ ଅଟେ ଜ୍ଞାନୀ । ବାଳକ ସୁତ ସଦୃଶ ସେବକ ଅମାନୀ ॥୪॥
ଭକ୍ତର ମୁଁ ଅଟେ ବଳ ତାର ନିଜ ବଳ । ବେନଙ୍କ ଶତ୍ରୁ ଅଟନ୍ତି କାମ କ୍ରୋଧ ଖଳ ॥
ଏହା ବିଚାରିଣ ମୋତେ ପଣ୍ଡିତେ ଭଜନ୍ତି । ଜ୍ଞାନ ପାଇଲେହେଁ ଭକ୍ତି ତ୍ୟାଗ ନ କରନ୍ତି ॥୫॥

---

କୃପାସାଗର ଶ୍ରୀ ରଘୁନାଥ ମୁନିଙ୍କୁ 'ଏବମସ୍ତୁ' ('ଏହାହିଁ ହେଉ') ବୋଲି କହିଲେ । ତଦନନ୍ତର ନାରଦ ମନ ମଧ୍ୟରେ ଅତ୍ୟନ୍ତ ଆନନ୍ଦିତ ହୋଇ ପ୍ରଭୁଙ୍କ ଚରଣରେ ମଥା ନୁଆଁଇଲେ ॥ ୪୧ (ଖ) ॥ ଚୌପାଇ '—ଶ୍ରୀ ରଘୁନାଥଙ୍କୁ ଅତ୍ୟନ୍ତ ପ୍ରସନ୍ନ ଜାଣି ନାରଦ ପୁଣି କୋମଳବାଣୀରେ କହିଲେ, "ହେ ରାମ ! ହେ ରଘୁନାଥ ! ଶୁଣନ୍ତୁ; ଆପଣ ଯେବେ ଆପଣା ମାୟାକୁ ପ୍ରେରଣ କରି ମୋତେ ମୋହିତ କରିଥିଲେ, ସେତେବେଳେ ମୁଁ ବିବାହ କରିବାକୁ ଇଚ୍ଛା କରୁଥିଲି । ହେ ପ୍ରଭୋ ! ଆପଣ ମୋତେ କି ହେତୁ ବିବାହ କରିବାକୁ ଦେଲେ ନାହିଁ ?" ପ୍ରଭୁ କହିଲେ, "ହେ ମୁନି ! ଶୁଣ, ମୁଁ ତୁମକୁ ହର୍ଷରେ କହୁଛି ଯେ, ଯେ ସମସ୍ତ ଆଶା–ଭରସା ଛାଡ଼ି କେବଳ ମୋତେ ହିଁ ଭଜନ କରେ, ବାଳକକୁ ଜନନୀ ରକ୍ଷା କଲା ପରି ମୁହିଁ ସ୍ୱୟଂ ତାହାର ରକ୍ଷଣାବେକ୍ଷଣ କରେ । ଶିଶୁ ବାଳକ ଯେତେବେଳେ ଧାଇଁ ଅଗ୍ନି ଓ ସର୍ପକୁ ଧରିବାକୁ ଉଦ୍ୟତ ହୁଏ, ସେତେବେଳେ ମାତା ତାହାକୁ ଆପଣା ହାତରେ ଅଲଗା କରି ବଞ୍ଚାଇ ନିଏ ॥ ୧–୩ ॥ ପ୍ରୌଢ଼ ହୋଇଗଲେ ସେହି ପୁତ୍ରଠାରେ ମାତା ଅବଶ୍ୟ ପ୍ରେମ କରେ, କିନ୍ତୁ ପୂର୍ବ ପରି ତାହାର ରକ୍ଷଣାବେକ୍ଷଣ ବିଷୟରେ ସେ ଆଉ ଚିନ୍ତା କରେନାହିଁ । ଜ୍ଞାନୀ ମୋର ପ୍ରୌଢ଼ ପୁତ୍ର ପରି ଏବଂ ଆପଣା ବଳ ବିଷୟରେ ନିରଭିମାନ ସେବକ ମୋର ଶିଶୁ ପୁତ୍ର ସମାନ ॥ ୪ ॥ ମୋ ସେବକ ଭକ୍ତର କେବଳ ମୋହରି ବଳ ଉପରେ ଭରସା । ଜ୍ଞାନୀର ଆପଣା ବଳ

କାମ କ୍ରୋଧ ଲୋଭାଦି ମଦ ପ୍ରବଲ ମୋହ କୈ ଧାରି ।
ତିହ୍ନ ମହଁ ଅତି ଦାରୁନ ଦୁଖଦ ମାୟାରୂପୀ ନାରି ॥୪୩॥
ସୁନୁ ମୁନି କହ ପୁରାନ ଶ୍ରୁତି ସନ୍ତା । ମୋହ ବିପିନ କହୁଁ ନାରି ବସନ୍ତା ।
ଜପ ତପ ନେମ ଜଲାଶ୍ରୟ ଝାରୀ । ହୋଇ ଗ୍ରୀଷମ ସୋଷଇ ସବ ନାରୀ ॥୧॥
କାମ କ୍ରୋଧ ମଦ ମତ୍ସର ଭେକା । ଇନ୍ହହି ହରଷପ୍ରଦ ବରଷା ଏକା ॥
ଦୁର୍ବାସନା କୁମୁଦ ସମୁଦାଈ । ତିହ୍ନ କହଁ ସରଦ ସଦା ସୁଖଦାଈ ॥୨॥
ଧର୍ମ ସକଲ ସରସୀରୁହ ବୃନ୍ଦା । ହୋଇ ହିମ ତିହ୍ନହି ଦହଇ ସୁଖ ମନ୍ଦା ॥
ପୁନି ମମତା ଜବାସ ବହୁତାଈ । ପଲୁହଇ ନାରି ସିସିର ରିତୁ ପାଈ ॥୩॥
ପାପ ଉଲୂକ ନିକର ସୁଖକାରୀ । ନାରି ନିବିଡ଼ ରଜନୀ ଅଁଧିଆରୀ ॥
ବୁଧି ବଲ ସୀଲ ସତ୍ୟ ସବ ମୀନା । ବନସୀ ସମ ତ୍ରିୟ କହହିଁ ପ୍ରବୀନା ॥୪॥

---

କାମ କ୍ରୋଧ ଲୋଭ ମଦାଦି ସରବ ପ୍ରବଲ ମୋହ କଟକ ।
ମାୟା ରୂପୀ ନାରୀ ତାଙ୍କ ମଧ୍ୟେ ଖରା ଦାରୁଣ ଦୁଃଖ-ଦାୟକ ॥୪୩॥
ଶୁଣ ମୁନୀଶ, ଭଣନ୍ତି ଶ୍ରୁତି ଶାସ୍ତ୍ର ସନ୍ତ । ମୋହ-ବିପିନକୁ ନାରୀ ଅଟଇ ବସନ୍ତ ॥
ଜପ ତପ ନିୟମାଦି ଜଲାଶ୍ରୟ ପ୍ରାୟ । ଗ୍ରୀଷ୍ମ ହୋଇଣ ଶୋଷଇ ନାରୀ ସମୁଦାୟ ॥୧॥
କାମ କ୍ରୋଧ ମଦ ମୋହ ମତ୍ସରାଦି ଭେକ । ଏହାଙ୍କୁ ସୁଖ ଦେବାକୁ ନାରୀ ବର୍ଷା ଏକ ॥
କୁମୁଦ ସମାନ ମନ୍ଦ ବାସନା ନିକର । ତାହାଙ୍କୁ ନାରୀ-ଶରତ ସଦା ସୁଖକର ॥୨॥
ଧର୍ମ ସକଲ ଅଟନ୍ତି ସରସିଜ-ବୃନ୍ଦ । ହିମ ହୋଇଣ ତାହାଙ୍କୁ ଦିଏ ଦୁଃଖ ମନ୍ଦ ॥
ପୁଣି ମମତା ଜବାସ କଣ୍ଟକ ଅମିତ । ପାଇ ନାରୀ-ଶୀତ-ଋତୁ ହୁଅନ୍ତି ବର୍ଦ୍ଧିତ ॥୩॥
ପାପ-ଉଲୂକ-ଗଣଙ୍କ ସଦା ସୁଖ ଦାତ୍ରୀ । ଅଟଇ ନାରୀ ନିବିଡ ଅନ୍ଧକାର ରାତ୍ରୀ ॥
ବୁଦ୍ଧି ବଲ ଶୀଲ ସତ୍ୟ ଏ ସମସ୍ତେ ମୀନ । ବନଶି ସମ ରମଣୀ, କହନ୍ତି ପ୍ରବୀଣ ॥୪॥

---

ଉପରେ ବିଶ୍ୱାସ ଜାତ ହୋଇ ଯାଇଥାଏ । କିନ୍ତୁ କାମକ୍ରୋଧ ରୂପକ ଶତ୍ରୁ ତ ଉଭୟଙ୍କ ପଥ ଓଗାଳନ୍ତି । (ସେବକ ଭକ୍ତର ଶତ୍ରୁଙ୍କୁ ଦମନ କରିବା ଦାୟିତ୍ୱ ମୋ ଉପରେ ନ୍ୟସ୍ତ । କିନ୍ତୁ ଆପଣା ବଳ ବିଷୟରେ ସଚେତ ଜ୍ଞାନୀକୁ ଶତ୍ରୁକବଳରୁ ରକ୍ଷା କରିବା ଦାୟିତ୍ୱ ମୋର ନୁହେଁ ।) ଏହା! ବିଜ୍ଞ ପଣ୍ଡିତମାନେ ମୋତେ ହିଁ ଭଜନ୍ତି । ଜ୍ଞାନ ଲାଭ ପରେ ମଧ୍ୟ ସେମାନେ ଭକ୍ତିକୁ ତ୍ୟାଗ କରନ୍ତି ନାହିଁ ॥ ୬ ॥ ଦୋହା :—କାମ, କ୍ରୋଧ, ଲୋଭ ଓ ମଦ ପ୍ରଭୃତି ମୋହର ପ୍ରବଳ ସେନା । ଏମାନଙ୍କ ମଧ୍ୟରେ ମାୟା-ସ୍ୱରୂପିଣୀ ନାରୀ ଅତିଶୟ ଦାରୁଣ ଦୁଃଖଦାୟିନୀ ॥ ୪୩ ॥ ଚୌପାଇ :—ହେ ମୁନି ! ଶୁଣ; ପୁରାଣ, ବେଦ ଓ ସନ୍ଥମାନେ କହନ୍ତି ଯେ, ମୋହ-ବନକୁ ପଲ୍ଲବିତ କରିବା ବିଷୟରେ ନାରୀ ବସନ୍ତ ଋତୁ ସମାନ । ଜପ, ତପ, ନିୟମାଦି ସମୁଦାୟ ଜଳାଶୟକୁ ନାରୀ ଗ୍ରୀଷ୍ମଋତୁ ପରି ସର୍ବଥା ଶୋଷି ପକାଏ ॥ ୧ ॥ କାମ, କ୍ରୋଧ, ମଦ ଓ ମାତ୍ସର୍ଯ୍ୟ ଆଦି ବେଙ୍ଗ । ବର୍ଷାଋତୁ ରୂପୀ ଏମାନଙ୍କୁ ଆନନ୍ଦ ପ୍ରଦାନ କରେ ଏହି ନାରୀ । ଦୁର୍ବାସନା ସବୁ କୁମୁଦ-

ଅବଗୁନ ମୂଲ ସୂଲପ୍ରଦ ପ୍ରମଦା ସବ ଦୁଖ ଖାନି ।
ତାତେଁ କୀହ୍ନ ନିବାରନ ମୁନି ମୈଁ ୟହ ଜିୟଁ ଜାନି ।୪୪।
ସୁନି ରଘୁପତି କେ ବଚନ ସୁହାଏ । ମୁନି ତନ ପୁଲକ ନୟନ ଭରି ଆଏ ॥
କହହୁ କବନ ପ୍ରଭୁ କୈ ଅସି ରୀତୀ । ସେବକ ପର ମମତା ଅରୁ ପ୍ରୀତୀ ॥୧॥
ଜେ ନ ଭଜହିଁ ଅସ ପ୍ରଭୁ ଭ୍ରମ ତ୍ୟାଗୀ । ଗ୍ୟାନ ରଂକ ନର ମନ୍ଦ ଅଭାଗୀ ॥
ପୁନି ସାଦର ବୋଲେ ମୁନି ନାରଦ । ସୁନହୁ ରାମ ବିଗ୍ୟାନ ବିସାରଦ ॥୨॥
ସଂତନ୍ହ କେ ଲଚ୍ଛନ ରଘୁବୀରା । କହହୁ ନାଥ ଭଞ୍ଜନ ଭବ ଭୀରା ॥
ସୁନୁ ମୁନି ସଂତନ୍ହ କେ ଗୁନ କହଊଁ । ଜାତେଁ ମୈଁ ଉନ୍ହ କେଁ ବସ ରହଊଁ ॥୩॥

---

ଅବଗୁଣ-ମୂଳ ନାରୀ ସର୍ବ ଶୂଳ-ପ୍ରଦାୟିନୀ, ଦୁଃଖ-ଖଣି ।
ତେଣୁ ନିବାରଣ କଲି, ମୁନିବର, ଏହା ମୁଁ ହୃଦୟେ ଗଣି ॥୪୪॥
ଶୁଣନ୍ତେ ରଘୁପତିଙ୍କ ବଚନ ରୁଚିର । ମୁନି ତନୁ ପୁଲକିତ ନେତ୍ରେ ପୂର୍ଣ୍ଣ ନୀର ॥
କହ, କେଉଁ ପ୍ରଭୁଙ୍କର ଏହିପରି ରୀତି । ଦାସ ଉପରେ ମମତା ପୁଣି ଅତି ପ୍ରୀତି ॥୧॥
ଏମନ୍ତ ପ୍ରଭୁ ଯେ ଭ୍ରମ ତେଜି ନ ଭଜଇ । ଜ୍ଞାନରଙ୍କ ସେ ଅଭାଗ୍ୟ, କୁମତି ଅଟଇ ॥
ସାଦରେ କହିଲେ ପୁଣି ଦେବର୍ଷି ନାରଦ । ଶୁଣ ରଘୁନାଥ, ସୁବିଜ୍ଞାନ ବିଶାରଦ ॥୨॥
ସାଧୁଜନଙ୍କ ଲକ୍ଷଣ ଶ୍ରୀ ରଘୁନନ୍ଦନ । ବର୍ଣ୍ଣନ କରନ୍ତୁ, ଭବ-ଭୟ-ବିଭଞ୍ଜନ ॥
ଶୁଣ ମୁନି ! ସନ୍ଥ ଗୁଣ ବର୍ଣ୍ଣନ କରୁଛି । ଯହିଁରେ ସଦା ମୁଁ ତାଙ୍କ ଅଧୀନେ ରହୁଛି ॥୩॥

---

ସମୂହ । ସେମାନଙ୍କୁ ସର୍ବଦା ସୁଖ ଦେବା ବିଷୟରେ ନାରୀ ଶରତଋତୁ ॥ ୨ ॥ ସମସ୍ତ ଧର୍ମ କମଳ-ସମୂହ । ନିକୃଷ୍ଟ ସୁଖ-ଦାୟିନୀ ନାରୀ ହିମ ରୂପେ ତାହାକୁ ଜଳାଇ ନଷ୍ଟ କରିଦିଏ । ପୁଣି ମମତା ରୂପୀ ଜବାସସମୂହ ନାରୀ-ଶିଶିର-ଋତୁ ପାଇ ପଲ୍ଲବିତ ହୋଇ ଉଠେ ॥ ୩ ॥ ପାପ-ଉଲ୍ଲୁକ-ସମୂହଙ୍କ ପକ୍ଷରେ ନାରୀ ଘୋର ଅନ୍ଧକାରମୟୀ ରଜନୀ ଭଳି ସୁଖଦାୟିନୀ । ବୁଦ୍ଧି, ବଳ, ଶୀଳ ଓ ସତ୍ୟ ଏ ସବୁ ମତ୍ସ୍ୟ ଏବଂ ସେମାନଙ୍କୁ ନାଶ କରିବା ବିଷୟରେ ନାରୀ ବଡଶୀ ବୋଲି ପ୍ରବୀଣ ପୁରୁଷ କହନ୍ତି ॥ ୪ ॥ ଯୁବତୀ ନାରୀ ସମସ୍ତ ଅବଗୁଣର ମୂଳ, ପୀଡାଦାୟିନୀ ଏବଂ ସମସ୍ତ ଦୁଃଖର ଖଣି । ହେ ମୁନି ! ଏହିସବୁ କାରଣରୁ ମୁଁ ଆପଣଙ୍କୁ ଜାଣିଶୁଣି ବିବାହରୁ ନିବୃତ୍ତ କରିଥିଲି ।" ॥ ୪୪ ॥ ଚୌପାଈ .—
ଶ୍ରୀ ରଘୁନାଥଙ୍କ ସୁମନୋହର ବଚନ ଶୁଣି ମୁନିଙ୍କ ଶରୀର ପୁଲକିତ ହୋଇ ଉଠିଲା ଏବଂ ନେତ୍ର ପ୍ରେମାଶ୍ରୁ ଜଳରେ ପୂରିଗଲା । ମନେ ମନେ ସେ ଭାବିଲେ, "କହ ତ କେଉଁ ପ୍ରଭୁଙ୍କର ଏପରି ରୀତି, ଯାହାର ସେବକଠାରେ ଏତେ ମମତା ଓ ପ୍ରେମ ! ॥ ୧ ॥ ଯେଉଁ ମନୁଷ୍ୟମାନେ ଭ୍ରମ ତ୍ୟାଗ ପୂର୍ବକ ଏପରି ପ୍ରଭୁଙ୍କୁ ଭଜନ୍ତି ନାହିଁ, ସେମାନେ ଜ୍ଞାନ-ରଙ୍କ, ଦୁର୍ବୁଦ୍ଧି ଓ ହତଭାଗ୍ୟ ।" ତତ୍ପରେ ନାରଦମୁନି ଆଦର ସହିତ କହିଲେ, "ହେ ବିଜ୍ଞାନ-ବିଶାରଦ ଶ୍ରୀରାମ ! ଶୁଣନ୍ତୁ ॥ ୨ ॥ ହେ ରଘୁବୀର ! ହେ ଭବଭୟ-ବିଭଞ୍ଜନ ମୋ ନାଥ ! ଏବେ କୃପାପୂର୍ବକ ସନ୍ଥଙ୍କ ଲକ୍ଷଣ ମୋତେ କୁହନ୍ତୁ ।" ଶ୍ରୀରାମ କହିଲେ,

ଷଟ ବିକାର ଜିତ ଅନଘ ଅକାମା । ଅଚଲ ଅକିଞ୍ଚନ ସୁଚି ସୁଖଧାମା ॥
ଅମିତବୋଧ ଅନୀହ ମିତଭୋଗୀ । ସତ୍ୟସାର କବି କୋବିଦ ଜୋଗୀ ॥୪॥
ସାବଧାନ ମାନଦ ମଦହୀନା । ଧୀର ଧର୍ମ ଗତି ପରମ ପ୍ରବୀନା ॥୫॥
ଗୁନାଗାର ସଂସାର ଦୁଖ ରହିତ ବିଗତ ସନ୍ଦେହ ।
ତଜି ମମ ଚରନ ସରୋଜ ପ୍ରିୟ ତିହ୍ନ କହୁଁ ଦେହ ନ ଗେହ ॥୪୫॥
ନିଜ ଗୁନ ଶ୍ରବନ ସୁନତ ସକୁଚାହୀଁ । ପର ଗୁନ ସୁନତ ଅଧିକ ହରଷାହୀଁ ॥
ସମ ସୀତଲ ନହିଁ ତ୍ୟାଗହିଁ ନୀତୀ । ସରଲ ସୁଭାଉ ସବହି ସନ ପ୍ରୀତୀ ॥୧॥
ଜପ ତପ ବ୍ରତ ଦମ ସଂଜମ ନେମା । ଗୁରୁ ଗୋବିନ୍ଦ ବିପ୍ର ପଦ ପ୍ରେମା ॥
ଶ୍ରଦ୍ଧା ଛମା ମୟତ୍ରୀ ଦାୟା । ମୁଦିତା ମମ ପଦ ପ୍ରୀତି ଅମାୟା ॥୨॥

---

ଷଡ ବିକାର ରହିତ ନିଷ୍ପାପ ନିଷ୍କାମ । ଅବିଚଳ ଅକିଞ୍ଚନ ଶୁଚି ସୁଖ ଧାମ ॥
ଅମିତ ଜ୍ଞାନ ନିଃସ୍ପୃହ ପୁଣି ମିତ ଭୋଗୀ । ସତ୍ୟସଙ୍କଳ୍ପ କୋବିଦ କବି ଗୁଣୀ ଯୋଗୀ ॥୪॥
ସାବଧାନ, ମାନପ୍ରଦ, ମଦାନ୍ଧ ବିହୀନ । ଧୈର୍ଯ୍ୟବନ୍ତ, ଧର୍ମେ, ଜ୍ଞାନେ ପରମ ପ୍ରବୀଣ ॥୫॥
ଗୁଣ-ନିକେତନ ଭବ-ଦୁଃଖ-ଶୂନ୍ୟ ରହିତ ସବ ସନ୍ଦେହ ।
ମୋ ପଦ-ପଙ୍କଜ ତେଜି ତାଙ୍କୁ ପ୍ରିୟ ନ ଲାଗଇ ଗୃହ ଦେହ ॥୪୫॥
ଶୁଣନ୍ତେ ଆପଣା ଗୁଣ ସଙ୍କୋଚ କରନ୍ତି । ପର ଗୁଣ ଶୁଣି ଅତି ପ୍ରସନ୍ନ ହୁଅନ୍ତି ॥
ସମ ଶୀତଳ କଦାପି ନ ତେଜନ୍ତି ନୀତି । ସରଳ ସ୍ୱଭାବ ସମସ୍ତଙ୍କ ସଙ୍ଗେ ପ୍ରୀତି ॥୧॥
ଜପ ତପ ବ୍ରତ ଆଉ ନିୟମ ସଂଯମ । ଗୁରୁ ଗୋବିନ୍ଦ ବ୍ରାହ୍ମଣ ପଦେ ପ୍ରେମ ସମ ॥
ଶ୍ରଦ୍ଧା କ୍ଷମା କରୁଣତା ମିତ୍ରତା ଆଦର । ପ୍ରସନ୍ନତା ନିଷ୍କପଟ ପ୍ରୀତି ମୋ ପଦ୍ମର ॥୨॥

---

"ହେ ମୁନି ! ଶୁଣ; ମୁଁ ସନ୍ତଗୁଣାବଳୀ, ଯାହା ହେତୁ ମୁଁ ସେହିମାନଙ୍କ ବଶରେ ରହେ, ବଖାଣି କହୁଛି— ॥ ୩ ॥ ସେହି ସନ୍ତମାନେ କାମ, କ୍ରୋଧ, ଲୋଭ, ମୋହ, ମଦ ଓ ମାତ୍ସର୍ଯ୍ୟ, ଏହି ଛଅ ବିକାରକୁ ଜିଣି, ନିଷ୍ପାପ, ନିଷ୍କାମ, ନିଶ୍ଚଳ (ସ୍ଥିର) ଅକିଞ୍ଚନ (ସର୍ବତ୍ୟାଗୀ), ବାହାରେ ଭିତରେ ପବିତ୍ର, ସୁଖଧାମ, ଅସୀମ, ଜ୍ଞାନବାନ୍, ଇଚ୍ଛା-ରହିତ, ମିତାହାରୀ, ସତ୍ୟନିଷ୍ଠ, କବି, ବିଦ୍ୱାନ୍ ଓ ଯୋଗୀ ହୁଅନ୍ତି ॥ ୪ ॥ ସେମାନେ ସାବଧାନ, ଅନ୍ୟପ୍ରତି ସମ୍ମାନପ୍ରଦ, ଅଭିମାନଶୂନ୍ୟ, ଧୈର୍ଯ୍ୟବାନ୍, ଧର୍ମ, ଜ୍ଞାନ ଓ ଆଚରଣରେ ଅତ୍ୟନ୍ତ ନିପୁଣ ଏବଂ ଅନ୍ୟମାନଙ୍କୁ ସେମାନଙ୍କ ଯଥୋଚିତ ମାନ-ସମ୍ମାନ ପ୍ରଦାନ କରନ୍ତି ॥ ୫ ॥ ଚୌପାଇ :—ସେମାନେ ଗୁଣାଗାର, ସଂସାରର ଦୁଃଖରୁ ରହିତ ଏବଂ ସନ୍ଦେହରୁ ସର୍ବଥା ବିମୁକ୍ତ । ମୋର ଚରଣ-କମଳକୁ ଛାଡି ସେମାନଙ୍କୁ ଆପଣା ଆପଣାର ଦେହ ପ୍ରିୟ ନୁହେଁ କି ଗୃହ ବି ପ୍ରିୟ ନୁହେଁ ॥ ୪୫ ॥ ଚୌପାଇ :—ସେମାନେ କାନରେ ଆପଣାର ଗୁଣ ଶୁଣିବାକୁ ସଙ୍କୁଚିତ ହୁଅନ୍ତି ଏବଂ ଅନ୍ୟର ଗୁଣ ଶୁଣିଲେ ବିଶେଷ ଆନନ୍ଦିତ ହୁଅନ୍ତି । ସେମାନେ ସମଶୀତଳ, ନ୍ୟାୟକୁ କଦାପି ତ୍ୟାଗ କରନ୍ତି ନାହିଁ । ସରଳ ସ୍ୱଭାବ ଏବଂ ସମସ୍ତଙ୍କ ସହିତ ପ୍ରେମଭାବ ରଖନ୍ତି ॥ ୧ ॥ ସେମାନେ ଜପ, ତପ, ବ୍ରତ, ଦମ,

ବିରତି ବିବେକ ବିନୟ ବିଜ୍ଞାନା । ବୋଧ ଜଥାରଥ ବେଦ ପୁରାନା ॥
ଦମ୍ଭ ମାନ ମଦ କରହିଁ ନ କାଊ । ଭୂଲି ନ ଦେହିଁ କୁମାରଗ ପାଊ ॥୩॥
ଗାୱହିଁ ସୁନହିଁ ସଦା ମମ ଲୀଲା । ହେତୁ ରହିତ ପରହିତ ରତ ସୀଲା ॥
ମୁନି ସୁନୁ ସାଧୁନ୍ହ କେ ଗୁନ ଜେତେ । କହି ନ ସକହିଁ ସାରଦ ଶ୍ରୁତି ତେତେ ॥୪॥

କହି ସକ ନ ସାରଦ ସେଷ ନାରଦ ସୁନତ ପଦ ପଙ୍କଜ ଗହେ ।
ଅସ ଦୀନବନ୍ଧୁ କୃପାଲ ଅପନେ ଭଗତ ଗୁନ ନିଜ ମୁଖ କହେ ॥
ସିରୁ ନାଇ ବାରହିଁ ବାର ଚରନହ୍ନି ବ୍ରହ୍ମପୁର ନାରଦ ଗଏ ।
ତେ ଧନ୍ୟ ତୁଲସୀଦାସ ଆସ ବିହାଇ ଜେ ହରି ରଙ୍ଗ ରଁଏ ॥

ରାବନାରି ଜସୁ ପାବନ ଗାୱହିଁ ସୁନହିଁ ଜେ ଲୋଗ ।
ରାମ ଭଗତି ଦୃଢ଼ ପାୱହିଁ ବିନୁ ବିରାଗ ଜପ ଜୋଗ ॥୪୬ (କ)॥

---

ବିବେକ ବୈରାଗ୍ୟ ତଥା ବିନୟ ବିଜ୍ଞାନ । ବେଦ ଶାସ୍ତ୍ର ପୁରାଣରେ ଯଥାରଥ ଜ୍ଞାନ ॥
ଦମ୍ଭ ମାନ ମଦ ଛଳ କେବେ ନ କରନ୍ତି । ଭୁଲି ମଧ୍ୟ କୁମାର୍ଗରେ ପଦ ନ ଦିଅନ୍ତି ॥୩॥
ଗାଆନ୍ତି ଶୁଣନ୍ତି ମୋର ଲୀଳା ଗୁଣ ନିତ୍ୟ । ପରହିତେ ସଦା ବୃତ୍ତି କାରଣ ରହିତ ॥
ଶୁଣ ମୁନିବର, ଗୁଣ ସାଧୁଙ୍କର ଯେତେ । କହି ନ ପାରନ୍ତି ଶ୍ରୁତି ସରସ୍ୱତୀ ତେତେ ॥୪॥

"ନ ପାରନ୍ତି ବଖାଣି ଶେଷ ଶାରଦା", ଶୁଣି ଧରିଲେ ପ୍ରଭୁପଦ ମୁନି ।
କୃପାଳୁ ଦୀନନାଥ ଭକ୍ତ ଗୁଣ ଏମନ୍ତ କହିଲେ ନିଜ ମୁଖେ ଗୁଣି ।
ନମି ଚରଣେ ବାରମ୍ବାର, ନାରଦ ଗଲେ ବ୍ରହ୍ମାଗାର,
ତୁଳସୀ ସେହି ଧନ୍ୟ ହରି ରଙ୍ଗେ ଯା ମନ ରଙ୍ଗଇ ତେଜି ଆଶା ଆର ॥

ରାବଣାରି ଯଶ ପବିତ୍ର ସରସ ଯେଉଁ ଜନ ଶୁଣେ, ଗାଏ ।
ବିନା ଜପ ଯୋଗ ସାଧନ ବୈରାଗ୍ୟ ରାମ-ଭକ୍ତି ଦୃଢ ପାଏ ॥୪୬ (କ)॥

---

ସଂଯମ ଓ ନିୟମାଦିରେ ରତ ରହନ୍ତି ଏବଂ ଗୁରୁ, ଗୋବିନ୍ଦ ତଥା ବ୍ରାହ୍ମଣମାନଙ୍କ ଚରଣରେ ପ୍ରେମ ରଖନ୍ତି । ସେମାନଙ୍କଠାରେ ଶ୍ରଦ୍ଧା, କ୍ଷମା, ମୈତ୍ରୀ, ଦୟା, ମୋଦ (ପ୍ରସନ୍ନତା) ଏବଂ ମୋ ଚରଣ ପ୍ରତି ନିଷ୍କପଟ ପ୍ରେମ ଥାଏ ॥ ୨ ॥ ଆଉ ମଧ୍ୟ ବୈରାଗ୍ୟ, ବିବେକ, ବିନୟ, ବିଜ୍ଞାନ (ପରମାତ୍ମା ଜ୍ଞାନ) ଏବଂ ବେଦପୁରାଣ-ସମ୍ବନ୍ଧୀୟ ଯଥାର୍ଥ ଜ୍ଞାନ ସେମାନଙ୍କଠାରେ ଥାଏ । ସେମାନେ ଦମ୍ଭ, ଅଭିମାନ ଓ ମଦ କେବେ କରନ୍ତି ନାହିଁ ଏବଂ ଭୁଲ୍‌ରେ ସୁଦ୍ଧା କୁମାର୍ଗରେ ପାଦ ରଖନ୍ତି ନାହିଁ ॥ ୩ ॥ ସଦା ମୋହରି ଲୀଳାପ୍ରସଙ୍ଗ ଗାଆନ୍ତି ଓ ଶୁଣନ୍ତି ଏବଂ ଅହେତୁକ ଭାବରେ ଅନ୍ୟର ହିତରେ ଲାଗି ରହନ୍ତି । ହେ ମୁନି ! ଶୁଣ, ସାଧୁସନ୍ଥଙ୍କର ଯେତେ ଗୁଣ, ତାହା ସବୁ ସରସ୍ୱତୀ ଓ ବେଦ ସୁଦ୍ଧା କହିପାରନ୍ତି ନାହିଁ ।" ॥ ୪ ॥ ଛନ୍ଦ —"ଶେଷ ଓ ଶାରଦା ସୁଦ୍ଧା କହି ପାରିବେ ନାହିଁ," ଏହା ଶୁଣିବା ମାତ୍ରେ ନାରଦ ଶ୍ରୀରାମଙ୍କ ଚରଣ-କମଳ ଧରି ପକାଇଲେ । ଦୀନବନ୍ଧୁ କୃପାଳୁ

ଦୀପସିଖା ସମ ଜୁବତି ତନ ମନ ଜନି ହୋସି ପତଙ୍ଗ ।
ଭଜହି ରାମ ତଜି କାମ ମଦ କରହି ସଦା ସତସଙ୍ଗ ॥୪୬ (ଖ)॥

## ମାସପାରାୟଣ, ଦ୍ୱାବିଂଶ ବିଶ୍ରାମ

ଇତି ଶ୍ରୀମଦ୍ରାମଚରିତମାନସେ ସକଳକଳିକଳୁଷବିଧ୍ୱଂସନେ
ତୃତୀୟଃ ସୋପାନଃ ସମାପ୍ତଃ ।

---

ଦୀପ-ଶିଖା ସମ ଯୁବତୀ ଯୌବନ, ମନ, ନ ହୁଅ ପତଙ୍ଗ ।
ଭଜ ରାମଚନ୍ଦ୍ର ତେଜି କାମ ମଦ କର ସଦା ସତ-ସଙ୍ଗ ॥୪୬ (ଖ)॥

* * * * *

ବିଷୟ ସମ୍ପଦ ତେଜି ମତି ମନ୍ଦ ଦୀନ ଦାସ ବଳରାମ ।
ଗୁରୁ ଉପଦେଶ ଘେନ ସହରଷ ଭଜ ପ୍ରେମେ 'ରାମ' ନାମ ॥
ନାହିଁ ତୋ ଭରସା ବୁଦ୍ଧି ବଳ ଆଶା ନାହିଁ ଦୃଢ଼ଭକ୍ତି ମତି ।
ପଶ ତୁ ଶରଣ ପଙ୍କଜ ଚରଣ, ନିସ୍ତାରିବେ ରଘୁପତି ॥
ଦେଖି ଯୁବତୀର ରମ୍ୟ ରକ୍ତାଧର ନୟନ ଜ୍ୟୋତି ସୁନ୍ଦର ।
ନ ଭୁଲରେ ମନ, ହରି ଦରଶନ ନିମନ୍ତେ ଯତନ କର ॥
ଜନ୍ମ ଜନ୍ମାନ୍ତରେ ଜପିଣ ସାଦରେ ଯେଉଁ ନାମ ମୁନିଜନ ।
ପାଇଲେ ରାମଙ୍କୁ ଜପ ସେ ନାମକୁ ବଳରାମ ଅକିଞ୍ଚନ ॥

ଇତି ଶ୍ରୀରାମଚରିତମାନସେ ସକଳ କଳିକଳୁଷବିଧ୍ୱଂସନେ
ତୃତୀୟ ସୋପାନ (ଅରଣ୍ୟକାଣ୍ଡ) ସମାପ୍ତ ।

---

ପ୍ରଭୁ ଏହି ରୂପେ ଆପଣା ଶ୍ରୀମୁଖରେ ନିଜ ଭକ୍ତଗଣଙ୍କ ଗୁଣ କହିଲେ । ଶ୍ରୀ ଭଗବାନ୍‌ଙ୍କ ଚରଣରେ ବାରମ୍ବାର ଶିର ନୁଆଁଇ (ପ୍ରଣାମ କରି) ନାରଦ ବ୍ରହ୍ମଲୋକକୁ ଚାଲିଗଲେ । ତୁଳସୀ ଦାସ କହନ୍ତି ଯେ, ଯେଉଁ ପୁରୁଷମାନେ ସକଳ ଆଶାଭରସା ତ୍ୟାଗ କରି କେବଳ ଶ୍ରୀହରିଙ୍କ ରଙ୍ଗରେ ରଞ୍ଜିତ, ସେହି ପୁରୁଷମାନେ ଧନ୍ୟ ॥ ୫ ॥ ଦୋହା .—ଯେଉଁ ଲୋକମାନେ ରାବଣର ଶତ୍ରୁ ଶ୍ରୀରାମଙ୍କ ପବିତ୍ର ଯଶ ଗାନ ଓ ଶ୍ରବଣ କରିବେ, ସେମାନେ ବୈରାଗ୍ୟ, ଜପ ଓ ଯୋଗ ବିନା ଶ୍ରୀରାମଙ୍କ ଦୃଢ଼ ଭକ୍ତି ଲାଭ କରିବେ ॥ ୪୬ (କ) ॥ ଯୁବତୀ ନାରୀର ଶରୀର ଦୀପକର ଜ୍ୟୋତି ପରି । ରେ ମନ ! ତୁ ତହିଁରେ ପତଙ୍ଗ ହୁଅନାହିଁ । କାମ ଓ ମଦ ତ୍ୟାଗପୂର୍ବକ ଶ୍ରୀରାମଚନ୍ଦ୍ରଙ୍କୁ ଭଜନ କର ଏବଂ ସଦା ସତ୍ସଙ୍ଗ କର ॥ ୪୬ (ଖ) ॥

କଳି ଯୁଗର ସମସ୍ତ ପାପର ବିଧ୍ୱଂସନକାରୀ ଶ୍ରୀରାମଚରିତମାନସର
ତୃତୀୟ ସୋପାନ (ଅରଣ୍ୟକାଣ୍ଡ) ସମାପ୍ତ ।

---

ଓଁ

ଶ୍ରୀ ଗଣେଶାୟ ନମଃ

ଶ୍ରୀ ଜାନକୀବଲ୍ଲଭୋ ବିଜୟତେ

ଗୋସ୍ୱାମୀ ତୁଳସୀଦାସକୃତ

# ଶ୍ରୀରାମଚରିତ ମାନସ

## ଚତୁର୍ଥ ସୋପାନ

## କିଷ୍କିନ୍ଧା କାଣ୍ଡ

କୁନ୍ଦେନ୍ଦୀବରସୁନ୍ଦରାବତିବଲୌ ବିଜ୍ଞାନଧାମାବୁଭୌ ।
ଶୋଭାଢ୍ୟୌ ବରଧନ୍ୱିନୌ ଶ୍ରୁତିନୁତୌ ଗୋବିପ୍ରବୃନ୍ଦପ୍ରିୟୌ ॥
ମାୟାମାନୁଷରୂପିଣୌ ରଘୁବରୌ ସଦ୍ଧର୍ମବର୍ମୌ ହିତୌ ।
ସୀତାନ୍ୱେଷଣତତ୍ପରୌ ପଥିଗତୌ ଭକ୍ତିପ୍ରଦୌ ତୌ ହି ନଃ ॥୧॥

ବ୍ରହ୍ମାମ୍ଭୋଧିସମୁଦ୍ଭବଂ କଳିମଳପ୍ରଧ୍ୱଂସନଂ ଚାବ୍ୟୟଂ ।
ଶ୍ରୀମଚ୍ଛମ୍ଭୁମୁଖେନ୍ଦୁସୁନ୍ଦରବରେ ସଂଶୋଭିତଂ ସର୍ବଦା ॥
ସଂସାରାମୟଭେଷଜଂ ସୁଖକରଂ ଶ୍ରୀଜାନକୀଜୀବନଂ ।
ଧନ୍ୟାସ୍ତେ କୃତିନଃ ପିବନ୍ତି ସତତଂ ଶ୍ରୀରାମନାମାମୃତମ୍ ॥୨॥

---

କୁନ୍ଦ ଇନ୍ଦୀବର ସଦୃଶ ସୁନ୍ଦର ବଳିଷ୍ଠ ବିଜ୍ଞାନ ସାଗର ।
ଶୋଭାଧାର ଧନୁର୍ଧର ଶ୍ରୁତି ସେବ୍ୟ ପ୍ରିୟ ଗୋବିପ୍ରବୃନ୍ଦଙ୍କର ।
ସଦ୍ଧର୍ମ,-ରକ୍ଷକ ମାୟା ରୂପୀ ନର,
ସୀତା-ଅନ୍ୱେଷଣ-ରତ, ପଥଗତ ଭକ୍ତିଦ ହେବ ରଘୁବର ॥୧॥

ବେଦ-ଅମ୍ବୁନିଧି ଉଦ୍ଭବ ଅବ୍ୟୟ କଳି-କଳୁଷ ବିନାଶନ ।
ଶିବଙ୍କ ସୁନ୍ଦର ଶଶି ମୁଖେ ସଦା ଶୋଭିତ ଜାନକୀ ଜୀବନ ।
ମଧୁର, ମହୌଷଧ ଭବ-ରୋଗକୁ,
ଧନ୍ୟ ସେ ପୁଣ୍ୟାତ୍ମା ପିଅନ୍ତି ଯେ ସଦା 'ଶ୍ରୀରାମ' ନାମ ଅମୃତକୁ ॥୨॥

---

କୁନ୍ଦପୁଷ୍ପ ଓ ନୀଳକମଳ ସମାନ ସୁନ୍ଦର ଗୌର ଓ ଶ୍ୟାମବର୍ଣ୍ଣ, ଅତ୍ୟନ୍ତ ବଳବାନ୍, ବିଜ୍ଞାନର ଧାମ, ଶୋଭାସମ୍ପନ୍ନ, ଶ୍ରେଷ୍ଠ ଧନୁର୍ଦ୍ଧର, ବେଦଗଣ-ବନ୍ଦିତ, ଗୋବ୍ରାହ୍ମଣବୃନ୍ଦ-

ମୁକ୍ତି ଜନ୍ମ ମହି ଜାନି ଜ୍ଞାନ ଖାନି ଅଘ ହାନି କର ।
ଜହଁ ବସ ସଂଭୁ ଭବାନି ସୋ କାସୀ ସେଇଅ କସ ନ ॥
ଜରତ ସକଲ ସୁର ବୃନ୍ଦ ବିଷମ ଗରଲ ଜେହିଁ ପାନ କିଅ ।
ତେହି ନ ଭଜସି ମନ ମନ୍ଦ କୋ କୃପାଲ ସଂକର ସରିସ ॥

ଆଗେଁ ଚଲେ ବହୁରି ରଘୁରାୟା । ଋଷ୍ୟମୂକ ପର୍ବତ ନିଅରାୟା ॥
ତହଁ ରହ ସଚିବ ସହିତ ସୁଗ୍ରୀୱା । ଆୱତ ଦେଖି ଅତୁଲ ବଲ ସୀଁୱା ॥୧॥
ଅତି ସଭୀତ କହ ସୁନୁ ହନୁମାନା । ପୁରୁଷ ଜୁଗଲ ବଲ ରୂପ ନିଧାନା ॥
ଧରି ବଟୁ ରୂପ ଦେଖୁ ତେଁ ଜାଈ । କହେସୁ ଜାନି ଜିୟଁ ସୟନ ବୁଝାଈ ॥୨॥

ମୁକ୍ତି-ଜନ୍ମଭୂମି ଜାଣି ଜ୍ଞାନ-ଖଣି ଶମନ ପାତକ-ରାଶି ।
ଯହିଁ ନିବସନ୍ତି ଶଙ୍କର ଭବାନୀ କିପାଁ ନ ସେବ ସେ କାଶୀ ॥
ଜଳନ୍ତେ ଅମର-ନିକର, ଯେ ହର ପିଇଲେ ବିଷ ବିଷମ ।
ତାହାଙ୍କୁ ନ ଭଜୁ ଦୁର୍ବୁଦ୍ଧି ପାମର; କୃପାଳୁ କେ ଶିବ ସମ ॥

ଆଗେ ପୁଣି ରଘୁନାଥ ଗମନ କରିଲେ । ଋଷ୍ୟମୂକ ପରବତ ନିକଟ ହୋଇଲେ ॥
ତହିଁ ରହଇ ସୁଗ୍ରୀବ ସଚିବ ସଙ୍ଗତେ । ଆସିବା ଦେଖି ଅତୁଳନୀୟ ବଳବନ୍ତେ ॥୧॥
ଅତି ସଭୟେ କହଇ, ଶୁଣ ହନୁମାନ । ପୁରୁଷ ଯୁଗଳ ବଳ-ସୌନ୍ଦର୍ଯ୍ୟ-ନିଧାନ ॥
ବଟୁ ରୂପେ କପି ! ତୁମେ ଯାଅ ସେ ଠାବକୁ । ଯାହା କଥା ବୁଝି କହ ଠାରରେ ଆମକୁ ॥୨॥

ପ୍ରିୟ, ମାୟା-ମନୁଷ୍ୟ-ରୂପଧାରୀ, ସତ୍ ଧର୍ମର ରକ୍ଷା-କବଚସ୍ୱରୂପ, ସର୍ବହିତକାରୀ, ସୀତାନ୍ୱେଷଣ-ତତ୍ପର ଓ ପଥିକ ରଘୁବର ଶ୍ରୀରାମଚନ୍ଦ୍ର ଏବଂ ଶ୍ରୀଲକ୍ଷ୍ମଣ ଉଭୟେ ନିଶ୍ଚୟ ଆମ୍ଭମାନଙ୍କୁ ଭକ୍ତି ପ୍ରଦାନ କରନ୍ତୁ ॥ ୧ ॥ ଯେଉଁ ପୁଣ୍ୟାତ୍ମା ପୁରୁଷମାନେ ବେଦ-ସମୁଦ୍ର-ମନ୍ଥନରୁ ଜାତ, କଳିକାଳ-ମଳର ସର୍ବଥା ବିଧ୍ୱଂସନକାରୀ, ଅବିନାଶୀ, ଭଗବାନ୍ ଶ୍ରୀଶମ୍ଭୁଙ୍କ ସୁନ୍ଦର ଓ ଶ୍ରେଷ୍ଠ ମୁଖ-ଚନ୍ଦ୍ରରେ ସଦା ଶୋଭମାନ, ଜନ୍ମମରଣ-ରୋଗର ଔଷଧ, ସର୍ବସୁଖଦାତା ଓ ଶ୍ରୀଜାନକୀଙ୍କ ଜୀବନ-ସ୍ୱରୂପ 'ଶ୍ରୀରାମ' ନାମାମୃତ ନିରନ୍ତର ପାନ କରୁଥା'ନ୍ତି, ସେହିମାନେ ଧନ୍ୟ ॥ ୨ ॥ ସୋରଠା :—ଯେଉଁଠାରେ ଶିବ-ପାର୍ବତୀ ବାସ କରନ୍ତି, ସେହି କାଶୀକୁ ମୁକ୍ତିର ଜନ୍ମଭୂମି, ଜ୍ଞାନର ଖଣି ଓ ପାପର ବିନାଶକାରିଣୀ ବୋଲି ଜାଣି ତା'ର ସେବା କାହିଁକି ନ କରୁଛ ? ଯେଉଁ ହଳାହଳ ବିଷଯୋଗେ ସମସ୍ତ ଦେବତାବୃନ୍ଦ ଜଳୁଥିଲେ, ସେହି ବିଷକୁ ସ୍ୱୟଂ ଶଙ୍କର ପାନ କରି ପକାଇଲେ । ରେ ମନ୍ଦମତି ! ତୁ ସେହି ଶଙ୍କରଙ୍କୁ ନ ଭଜୁ କାହିଁକି ? ତାଙ୍କପରି କୃପାଳୁ ଆଉ କିଏ ? ଚୌପାଈ :—ରଘୁନାଥ ପୁଣି ଅଗ୍ରସର ହେଲେ । ଋଷ୍ୟମୂକ ପର୍ବତ ପାଖେଇ ଆସିଲେ । ସେହିଠାରେ ମନ୍ତ୍ରିବୃନ୍ଦଙ୍କ ସହ ସୁଗ୍ରୀବ ବାସ କରୁଥିଲେ । ଅତୁଳନୀୟ ବଳସୀମା ଶ୍ରୀରାମ ଓ ଲକ୍ଷ୍ମଣଙ୍କୁ ଆସୁଥିବାର ଦେଖି ସୁଗ୍ରୀବ ଅତ୍ୟନ୍ତ ଭୟଭୀତ ହୋଇ କହିଲେ, "ହେ ହନୁମାନ୍ ! ଶୁଣ; ଏ ପୁରୁଷ ଦୁହେଁ ବଳ ଓ

ପଠଏ ବାଲି ହୋହିଁ ମନ ମୈଲା । ଭାଗୌଁ ତୁରତ ତଜୌଁ ୟହ ସୈଲା ॥
ବିପ୍ର ରୂପ ଧରି କପି ତହଁ ଗୟଊ । ମାଥ ନାଇ ପୂଛତ ଅସ ଭୟଊ ॥୩॥
କୋ ତୁମ୍ହ ସ୍ୟାମଲ ଗୌର ସରୀରା । ଛତ୍ରୀ ରୂପ ଫିରହୁ ବନ ବୀରା ॥
କଠିନ ଭୂମି କୋମଲ ପଦ ଗାମୀ । କବନ ହେତୁ ବିଚରହୁ ବନ ସ୍ୱାମୀ ॥୪॥
ମୃଦୁଲ ମନୋହର ସୁନ୍ଦର ଗାତା । ସହତ ଦୁସହ ବନ ଆତପ ବାତା ॥
କୀ ତୁମ୍ହ ତୀନି ଦେବ ମହଁ କୋଊ । ନର ନାରାୟନ କୀ ତୁମ୍ହ ଦୋଊ ॥୫॥

ଜଗ କାରନ ତାରନ ଭବ ଭଞ୍ଜନ ; ଧରନୀ ଭାର ।
କୀ ତୁମ୍ହ ଅଖିଲ ଭୁବନ ପତି ଲୀନ୍ହ ମନୁଜ ଅବତାର ॥୧॥

କୋସଲେସ ଦସରଥ କେ ଜାଏ । ହମ ପିତୁ ବଚନ ମାନି ବନ ଆଏ ॥
ନାମ ରାମ ଲଛିମନ ଦୋଊ ଭାଈ । ସଙ୍ଗ ନାରି ସୁକୁମାରି ସୁହାଈ ॥୧॥

---

ଯଦି ସେ ମଳିନମନା ବାଳିରେ ପ୍ରେରିତ । ପଳାଇବି ତୁରିତ ମୁଁ ଏ ପର୍ବତ ତ୍ୟଜି ॥
ବ୍ରାହ୍ମଣର ରୂପେ ତହିଁ ଗଲେ ହନୁମାନ । ପ୍ରଣମି କୃପାଧାମଙ୍କୁ କରିଲେ ପ୍ରଶନ ॥୩॥
କିଏ ଆପଣ ଶ୍ୟାମଳ ଗଉର ଶରୀର । କ୍ଷତ୍ରିୟ ରୂପେ ବିଚର ବନ ମଧ୍ୟେ ବୀର ॥
କଠିନ ଭୂମି କୋମଳ ଚରଣେ ଚାଲୁଛ । କେଉଁ କାରଣରୁ ସ୍ୱାମି, ବିପିନେ ବୁଲୁଛ ॥୪॥
ମୃଦୁ ମନୋହର ରମ୍ୟ ତନୁ ସୁଶୋଭନ । ସହୁଛ ବନେ ଦୁଃସହ ଆତପ ପବନ ॥
ତ୍ରି ଦେବଙ୍କ ମଧ୍ୟରୁ କି ତୁମ୍ଭେ କେହି ଅଟ । ନର-ନାରାୟଣ ତୁମ୍ଭେ ବେନି କି ପ୍ରକଟ ॥୫॥

ଜଗତ-କାରଣ ଭବ-ଉଦ୍ଧାରଣ ଭଞ୍ଜନ ଧରଣୀ-ଭାର ।
କି ତୁମ୍ଭେ ଅଖିଳ ଭୁବନାଧି ମୂଳ, ନେଲ ନର ଅବତାର ॥୧॥

ଅଯୋଧ୍ୟା ନରେଶ ଦଶରଥଙ୍କ ନନ୍ଦନ । ପିତା ସତ୍ୟ ମାନି ଆମ୍ଭେ ଆସିଛୁ କାନନ ॥
ନାମ ରାମ ଲକ୍ଷ୍ମଣ ବେନି ଭାଇ ଅଟୁ । ସଙ୍ଗେ ଶ୍ୟାମା ସୁକୁମାରୀ ନାରୀ ଥିଲା, ବଟୁ ! ॥୧॥

---

ରୂପର ନିଧାନ । ତୁମେ ବ୍ରହ୍ମଚାରୀ ରୂପ ଧରି ଯାଇ ଦେଖ । ମନରେ ସେମାନଙ୍କର ଯଥାର୍ଥ ପରିଚୟ ଜାଣି ମୋତେ ସଙ୍କେତ ସାହାଯ୍ୟରେ ବୁଝାଇଦିଅ ॥ ୧-୨ ॥ ଯଦି ସେ ମଳିନମନା ବାଳିଦ୍ୱାରା ପ୍ରେରିତ ହୋଇଥା'ନ୍ତି, ତେବେ ମୁଁ ଶୀଘ୍ର ଏ ପର୍ବତକୁ ଛାଡ଼ି ପଳାଇଯିବି ।" ଏହା ଶୁଣି ହନୁମାନ୍ ବ୍ରାହ୍ମଣ ରୂପ ଧରି ସେଠାକୁ ଗଲେ ଏବଂ ମସ୍ତକ ନୁଆଁଇ ପଚାରିବାକୁ ଲାଗିଲେ—॥ ୩ ॥ "ହେ ବୀର ! ଶ୍ୟାମଳ ଓ ଗୌରଶରୀର-ଧାରୀ ଆପଣମାନେ କିଏ ? କ୍ଷତ୍ରିୟର ରୂପ ଧରି ବନରେ ଏପରି ବିଚରଣ କରୁଅଛନ୍ତି କି ଉଦ୍ଦେଶ୍ୟରେ ? ହେ ସ୍ୱାମି ! ଆପଣ କୋମଳ ଚରଣରେ ଏହି କର୍କଶ ବନଭୂମି ଉପରେ କି ହେତୁ ଭ୍ରମଣ କରନ୍ତି ? ॥ ୪ ॥ ଆପଣଙ୍କର ମୃଦୁଳ, ମନୋହର, ସୁନ୍ଦର ଶରୀର; ଆପଣ ବନର ଦୁଃସହ ଆତପ ଓ ବାୟୁକୁ ସହନ କରୁଅଛନ୍ତି ! ଆପଣ ବ୍ରହ୍ମା, ବିଷ୍ଣୁ ଓ ମହେଶ—ଏହି ତିନି ଦେବତାଙ୍କ ମଧ୍ୟରୁ 'କେହି ଅଟନ୍ତି କି ? ଅଥବା ଆପଣ ଉଭୟେ ନର ଓ ନାରାୟଣ ? ॥ ୫ ॥ ଦୋହା ।—ଅଥବା ଆପଣ ଜଗତର ମୂଳ କାରଣ ଓ

ଇହାଁ ହରି ନିସିଚର ବୈଦେହୀ । ବିପ୍ର ଫିରହିଁ ହମ ଖୋଜତ ତେହୀ ॥
ଆପନ ଚରିତ କହା ହମ ଗାଈ । କହହୁ ବିପ୍ର ନିଜ କଥା ବୁଝାଈ ॥୨॥
ପ୍ରଭୁ ପହିଚାନି ପରେଉ ଗହି ଚରନା । ସୋ ସୁଖ ଉମା ଜାଇ ନହିଁ ବରନା ॥
ପୁଲକିତ ତନ ମୁଖ ଆଵ ନ ବଚନା । ଦେଖତ ରୁଚିର ବେଷ କୈ ରଚନା ॥୩॥
ପୁନି ଧୀରଜୁ ଧରି ଅସ୍ତୁତି କୀହ୍ନୀ । ହରଷ ହୃଦୟଁ ନିଜ ନାଥହି ଚୀହ୍ନୀ ॥
ମୋର ନ୍ୟାଉ ମୈଁ ପୂଛା ସାଈଁ । ତୁହ୍ମ ପୂଛହୁ କସ ନର କୀ ନାଈଁ ॥୪॥
ତବ ମାୟା ବସ ଫିରଉଁ ଭୁଲାନା । ତା ତେଁ ମୈଁ ନହିଁ ପ୍ରଭୁ ପହିଚାନା ॥୫॥

ଏକୁ ମୈଁ ମନ୍ଦ ମୋହବସ କୁଟିଲ ହୃଦୟ ଅଜ୍ଞାନ ।
ପୁନି ପ୍ରଭୁ ମୋହି ବିସାରେଉ ଦୀନବନ୍ଧୁ ଭଗବାନ ॥୨॥

---

ଏଥି ନିଶାଚର ହରି ନେଲା ସେ ସୀତାଙ୍କୁ । ଆମ୍ଭେ ଖୋଜି ବୁଲୁ ବିପ୍ର ! ବିପିନେ ତାହାଙ୍କୁ ॥
ଆପଣା ବୃତ୍ତାନ୍ତ ମୁହିଁ କହିଲି ଗୋସାଇଁ । କହ ନିଜ କଥା ଏବେ ଆମ୍ଭଙ୍କୁ ବୁଝାଇ ॥୨॥
ପ୍ରଭୁଙ୍କୁ ଚିହ୍ନି ପଡିଲେ ଶ୍ରୀଚରଣ ଧରି । ସେ ସୁଖ ଉମା ! ବର୍ଣ୍ଣନ ନ ହୁଅଇ କରି ॥
ପୁଲକିତ ତନୁ ମୁଖେ ନ ଆସେ ବଚନ । ଦେଖନ୍ତି ଅତି ରୁଚିର ବେଶ ବିରଚନ ॥୩॥
ପୁଣି ମନେ ଧୈର୍ଯ୍ୟ ଧରି ବିନତି କରିଲେ । ନିଜ ନାଥେ ଚିହ୍ନି ହୃଦେ ହରଷ ହୋଇଲେ ॥
ମୁଁ ଯେ ପଚାରିଲି ସ୍ୱାମି, ଉଚିତ ମୋହର । ତୁମ୍ଭେ ମନୁଷ୍ୟଙ୍କ ପ୍ରାୟେ ପଚାର କିପରି ॥୪॥
ତୁମ୍ଭ ମାୟାଚକ୍ରେ ପଡି ଭ୍ରମିଣ ଭୁଲିଲି । ତେଣୁ ନିଜ ପ୍ରଭୁଙ୍କୁ ମୁଁ ଚିହ୍ନି ନ ପାରିଲି ॥୫॥

ଏକେ ତ ମୁଁ ମନ୍ଦ କୁଟିଳ କୁହୃଦ ମୋହ ବିବଶ ଅଜ୍ଞାନ ।
ପୁଣି ପ୍ରଭୁ ମୋତେ ପାଶୋରିଲ ମନୁ, ଦୀନବନ୍ଧୁ ଭଗବାନ ॥୨॥

---

ସମ୍ପୂର୍ଣ୍ଣ ଲୋକର ସ୍ୱାମୀ ସ୍ୱୟଂ ଭଗବାନ୍, ଯେ କି ଲୋକମାନଙ୍କୁ ଭବ-ସାଗରରୁ ପାର କରିବାକୁ ଓ ପୃଥିବୀର ଭାର ନାଶ କରିବା ନିମନ୍ତେ ମନୁଷ୍ୟ ରୂପରେ ଅବତାର ଗ୍ରହଣ କରିଅଛନ୍ତି ?" ॥ ୧ ॥ ଚୌପାଇ :—ଶ୍ରୀରାମଚନ୍ଦ୍ର କହିଲେ, "ଆମ୍ଭେ ଦୁହେଁ କୋଶଳରାଜା ଦଶରଥଙ୍କ ପୁତ୍ର ଏବଂ ପିତାଙ୍କ ବଚନ ରକ୍ଷା କରି ବନକୁ ଆସିଅଛୁ । ଆମ ଦୁହିଁଙ୍କ ନାମ ରାମ-ଲକ୍ଷ୍ମଣ । ଆମେ ଦୁହେଁ ଭାଇ । ଆମ ସଙ୍ଗରେ (ମୋର) ସୁନ୍ଦରୀ ସୁକୁମାରୀ ସ୍ତ୍ରୀ ଥିଲେ ॥ ୧ ॥ ଏଠି ବନରେ ରାକ୍ଷସ ମୋ ପତ୍ନୀ ଜାନକୀଙ୍କୁ ହରଣ କରି ନେଲା । ହେ ବ୍ରାହ୍ମଣ ! ଆମେ ତାହାଙ୍କୁ ହିଁ ଖୋଜି ବୁଲୁଛୁ । ଆମେ ତ ଆପଣା ବୃତ୍ତାନ୍ତ କହି ଶୁଣାଇଲୁ । ବର୍ତ୍ତମାନ ହେ ବ୍ରାହ୍ମଣ ! ତୁମେ ଆପଣା କଥା ବୁଝାଇ କୁହ ।" ॥ ୨ ॥ ପ୍ରଭୁଙ୍କୁ ଚିହ୍ନି ହନୁମାନ୍ ତାହାଙ୍କ ଚରଣ ଧରି ପୃଥିବୀ ଉପରେ ପଡିଗଲେ । ଶିବ କହନ୍ତି, "ହେ ପାର୍ବତି ! ସେ ସୁଖ ଅବର୍ଣ୍ଣନୀୟ । ଶରୀର ପୁଲକିତ, ମୁହଁରୁ ବଚନ ବାହାରୁ ନାହିଁ । ସେ ପ୍ରଭୁଙ୍କ ସୁନ୍ଦର ବେଶ-ପରିପାଟୀ ଦେଖିବାରେ ଲାଗିଥା'ନ୍ତି ॥ ୩ ॥ ତାପରେ ଧୈର୍ଯ୍ୟ ଧରି ସେ ସ୍ତୁତି କଲେ । ତାପରେ ହନୁମାନ୍ କହିଲେ, "ହେ ନାଥ ! ମୁଁ ଯାହା ପଚାରିଲି, ତାହା ପଚାରିବା ତ ମୋ ପକ୍ଷରେ ନ୍ୟାୟସଙ୍ଗତ । (ବହୁବର୍ଷ ପରେ ଆପଣଙ୍କୁ

ଜଦପି ନାଥ ବହୁ ଅବଗୁନ ମୋରେଁ । ସେବକ ପ୍ରଭୁହି ପରୈ ଜନି ଭୋରେଁ ॥
ନାଥ ଜୀବ ତବ ମାୟାଁ ମୋହା । ସୋ ନିସ୍ତରଇ ତୁମ୍ହାରେହିଁ ଛୋହା ॥୧॥
ତା ପର ମୈଁ ରଘୁବୀର ଦୋହାଈ । ଜାନଉଁ ନହିଁ କଛୁ ଭଜନ ଉପାଈ ॥
ସେବକ ସୁତ ପତି ମାତୁ ଭରୋସେଁ । ରହଇ ଅସୋଚ ବନଇ ପ୍ରଭୁ ପୋସେଁ ॥୨॥
ଅସ କହି ପରେଉ ଚରନ ଅକୁଲାଈ । ନିଜ ତନୁ ପ୍ରଗଟି ପ୍ରୀତି ଉର ଛାଈ ॥
ତବ ରଘୁପତି ଉଠାଇ ଉର ଲାୱା । ନିଜ ଲୋଚନ ଜଲ ସୀଁଚି ଜୁଡ଼ାୱା ॥୩॥
ସୁନୁ କପି ଜିୟଁ ମାନସି ଜନି ଊନା । ତୈଁ ମମ ପ୍ରିୟ ଲଛିମନ ତେ ଦୂନା ॥
ସମଦରସୀ ମୋହି କହ ସବ କୋଊ । ସେବକ ପ୍ରିୟ ଅନନ୍ୟ ଗତି ସୋଊ ॥୪॥

---

ଯଦ୍ୟପି ନାଥ ! ମୋଠାରେ ଦୁର୍ଗୁଣ ଅମିତ । ସେବକେ ଭୁଲିବା ନୁହେ ପ୍ରଭୁଙ୍କ ଉଚିତ ॥
ନାଥ ! ଜୀବ ତୁମ୍ଭ ମାୟା ମୋହିତ ଅଟଇ । ଆପଣଙ୍କ କୃପାରେ ସେ ନିସ୍ତାର ଲଭଇ ॥୧॥
ତାହା ପରେ ମୋତେ ତୁମ୍ଭ ରାଣ, ରଘୁରାୟ । ଜାଣଇ ନାହିଁ ମୁଁ କିଛି ଭଜନ ଉପାୟ ॥
ସେବକ ତନୟ ସ୍ୱାମୀ ମାତାଙ୍କ ବଳରେ । ରହନ୍ତି ନିଶ୍ଚିନ୍ତ, ପ୍ରଭୁ ପୋଷନ୍ତି ବାଧରେ ॥୨॥
ଏହା କହି ଶ୍ରୀ ଚରଣେ ପଡ଼ିଲେ ଅଥୟେ । ପ୍ରକଟ ସ୍ୱତନୁ, ପ୍ରୀତି ପୂରିତ ହୃଦୟେ ॥
ତହୁଁ ରଘୁପତି ହୃଦେ ଉଠାଇ ଆଣିଲେ । ଲୋଚନ ସଲିଳ ସିଞ୍ଚି ଶୀତଳ କରିଲେ ॥୩॥
ଶୁଣ କପି, ମନ ମଧ୍ୟେ ମାନ ନାହିଁ ଊଣା । ଲକ୍ଷ୍ମଣ ଅପେକ୍ଷା ତୁମ୍ଭେ ପ୍ରିୟ ଦୁଇ ଗୁଣା ॥
ସମଦର୍ଶୀ ବୋଲି ମୋତେ ସମସ୍ତେ କହନ୍ତି । ଅନନ୍ୟଗତି ସେବକ ପ୍ରିୟ ମୋର ଅତି ॥୪॥

---

ଦେଖିଲି, ତାହା ପୁଣି ତପସ୍ୱୀ ବେଶରେ । ମୋର ତ ବାନର ବୁଦ୍ଧି । ଏଣୁ ଚିହ୍ନି ପାରିଲି ନାହିଁ । ଆପଣା ପରିସ୍ଥିତିର ବଶବର୍ତ୍ତୀ ହୋଇ ମୁଁ ପଚାରି ଦେଲି ।) କିନ୍ତୁ ଆପଣ ମନୁଷ୍ୟ ପରି କାହିଁକି ପଚାରୁ ଅଛନ୍ତି ? ॥ ୪ ॥ ମୁଁ ଆପଣଙ୍କର ମାୟା ହେତୁ ଭୁଲି ଭ୍ରମୁଛି । ତେଣୁ ମୋ ନିଜର ପ୍ରଭୁଙ୍କୁ ଚିହ୍ନି ପାରିଲି ନାହିଁ ॥ ୫ ॥ ଦୋହା '—ଏକେ ତ ମୁଁ ସ୍ୱଭାବତଃ ମନ୍ଦ । ଦ୍ୱିତୀୟତଃ ମୋହର ବଶବର୍ତ୍ତୀ ଏବଂ ତୃତୀୟତଃ କୁଟିଳ ଓ ଅଜ୍ଞାନ । ପୁଣି ତହିଁରେ ହେ ଦୀନବନ୍ଧୁ ଭଗବାନ୍ ! ଆପଣ ମଧ୍ୟ ମୋତେ ଭୁଲିଗଲେ '! ॥ ୨ ॥
ଚୌପାଈ :—ହେ ନାଥ ! ଯଦ୍ୟପି ମୋଠାରେ ବହୁତ ଅବଗୁଣ, ତଥାପି ସେବକକୁ ଭୁଲିଯିବା ସ୍ୱାମୀଙ୍କ ପକ୍ଷେ ଉଚିତ ନୁହେଁ । ହେ ନାଥ ! ଜୀବ ଆପଣଙ୍କ ମାୟାରେ ବିମୋହିତ । ସେ କେବଳ ଆପଣଙ୍କ କୃପାଦ୍ୱାରା ହିଁ ନିସ୍ତାର ପାଇପାରେ ॥ ୧ ॥ ତଦୁପରି ହେ ରଘୁବୀର ! ତୁମ ରାଣ ପକାଇ ମୁଁ କହୁଛି ଯେ, ମୁଁ ଭଜନ-ସାଧନ କିଛି ଜାଣେନାହିଁ । ସେବକ ସ୍ୱାମୀଙ୍କର ଏବଂ ପୁତ୍ର ମାତାଙ୍କର ଭରସାରେ ନିଶ୍ଚିନ୍ତ ରହେ । ପ୍ରଭୁଙ୍କୁ ତ ସେବକର ପାଳନ-ପୋଷଣ କରିବାକୁ ପଡ଼ିଥାଏ ।" ॥ ୨ ॥ ଏହିପରି କହି ହନୁମାନ୍ ଆକୁଳ ହୃଦୟରେ ପ୍ରଭୁଙ୍କ ଚରଣ ତଳେ ପଡ଼ିଗଲେ । ସେ ଆପଣା ପ୍ରକୃତ ଶରୀର ପ୍ରକାଶ କଲେ । ତାଙ୍କ ହୃଦୟରେ ପ୍ରେମ ଭରିଗଲା । ରଘୁନାଥ ତାଙ୍କୁ ଉଠାଇ ଆଲିଙ୍ଗନ କରି ପକାଇଲେ ଏବଂ ଆପଣା ନୟନ-ଜଳରେ ସିକ୍ତ କରି ତାଙ୍କୁ ଶୀତଳ କଲେ ॥ ୩ ॥

ସୋ ଅନନ୍ୟ ଜାକେଁ ଅସି ମତି ନ ଟରଇ ହନୁମନ୍ତ ।
ମୈଁ ସେବକ ସଚରାଚର ରୂପ ସ୍ୱାମି ଭଗବନ୍ତ ॥୩॥
ଦେଖି ପବନସୁତ ପତି ଅନୁକୂଲା । ହୃଦୟଁ ହରଷ ବୀତୀ ସବ ସୂଲା ॥
ନାଥ ସୈଲ ପର କପିପତି ରହଈ । ସୋ ସୁଗ୍ରୀବ ଦାସ ତବ ଅହଈ ॥୧॥
ତେହି ସନ ନାଥ ମଇତ୍ରୀ କୀଜେ । ଦୀନ ଜାନି ତେହି ଅଭୟ କରୀଜେ ॥
ସୋ ସୀତା କର ଖୋଜ କରାଇହି । ଜହଁ ତହଁ ମରକଟ କୋଟି ପଠାଇହି ॥୨॥
ଏହି ବିଧି ସକଲ କଥା ସମୁଝାଈ । ଲିଏ ଦୁଔ ଜନ ପୀଠି ଚଢ଼ାଈ ॥
ଜବ ସୁଗ୍ରୀବଁ ରାମ କହୁଁ ଦେଖା । ଅତିସୟ ଜନ୍ମ ଧନ୍ୟ କରି ଲେଖା ॥୩॥
ସାଦର ମିଲେଉ ନାଇ ପଦ ମାଥା । ଭେଁଟେଉ ଅନୁଜ ସହିତ ରଘୁନାଥା ॥
କପି କର ମନ ବିଚାର ଏହି ରୀତୀ । କରିହହିଁ ବିଧି ମୋ ସନ ଏ ପ୍ରୀତୀ ॥୪॥

---

ସେ ଅଟେ ଅନନ୍ୟ ଯାହାର ଏପରି ମତି ଦୃଢ଼ ହନୁମାନ ।
ମୁଁ ସେବକ, ଚର-ଅଚର ସଂସାର ରୂପ-ସ୍ୱାମୀ ଭଗବାନ ॥୩॥
ବିଲୋକି ପବନ-ସୁତ ସ୍ୱାମୀ ଅନୁକୂଳ । ହୃଦୟେ ହରଷ ଦୂର ହେଲା ସର୍ବ ଶୂଳ ॥
ନାଥ ! ଗିରି ପୃଷ୍ଠେ କପି-ନାୟକ ରହଇ । ସେ ସୁଗ୍ରୀବ ଆପଣଙ୍କ ସେବକ ଅଟଇ ॥୧॥
ତାହା ସଙ୍ଗତରେ ପ୍ରଭୁ ! ମିତ୍ରତା କରନ୍ତୁ । ଦୀନ ବିଚକ୍ଷଣ ତାକୁ ଅଭୟ ଦିଅନ୍ତୁ ॥
ଜାନକୀଙ୍କ ଅନ୍ୱେଷଣ ସେହି କରାଇବ । ଯେଣେ ତେଣେ ଅଗଣିତ କପି ପଠାଇବ ॥୨॥
ଏହି ପ୍ରକାରେ ସମସ୍ତ ପ୍ରସଙ୍ଗ ବୁଝାଇ । ନେଇଗଲା ଉଭୟଙ୍କୁ ପିଠିରେ ବସାଇ ॥
ଯେବେ ଶ୍ରୀରାମ ଚନ୍ଦ୍ରଙ୍କୁ ସୁଗ୍ରୀବ ଦେଖିଲା । ଅତିଶୟ ଧନ୍ୟ ନିଜ ଜନମ ଲେଖିଲା ॥୩॥
ସାଦରେ ମିଳି ଚରଣେ ନୁଆଁଇଲା ଶିର । ଭେଟିଲେ ଅନୁଜ ସହ ପ୍ରେମେ ରଘୁବୀର ॥
କପି ମନ ମଧ୍ୟେ ବିଚାରଇ ଏହି ରୀତି । କରିବେ ବିଧାତା, ଏହି ମୋ ସଙ୍ଗେ କି ପ୍ରୀତି ॥୪॥

---

ତତ୍ପରେ ଶ୍ରୀରାମ କହିଲେ, "ହେ କପି ! ଶୁଣ; ମନକୁ ଛୋଟ କରନାହିଁ । ତୁମେ ଲକ୍ଷ୍ମଣଙ୍କଠାରୁ ମୋର ଦୁଇଗୁଣ ପ୍ରିୟ । ସମସ୍ତେ ମୋତେ ସମଦର୍ଶୀ ବୋଲି କହନ୍ତି । ମାତ୍ର ସେବକ ଅନନ୍ୟଗତି ହୋଇଥିବାରୁ ମୋର ସବୁଠାରୁ ଅଧିକ ପ୍ରିୟ ॥ ୪ ॥ ଦୋହା :—ହେ ହନୁମାନ୍ ! ନିଜେ ସେବକ ଏବଂ ଏହି ଚରାଚର ଜଗତ ତାହାର ସ୍ୱାମୀ ଭଗବାନଙ୍କର ରୂପ ବୋଲି ଯାହାର ବୁଦ୍ଧି ଓ ଜ୍ଞାନ ଅଟଳ, ସେହି ହେଉଛନ୍ତି ଅନନ୍ୟ (ଭକ୍ତ) ।" ॥ ୩ ॥ ଚୌପାଇ :— ସ୍ୱାମୀଙ୍କୁ ଅନୁକୂଳ ଦେଖି ପବନକୁମାର ହନୁମାନଙ୍କ ହୃଦୟରେ ଆନନ୍ଦ ପୂରିଗଲା ଏବଂ ତାଙ୍କର ସମସ୍ତ ଦୁଃଖ ଅପସରିଗଲା । ସେ କହିଲେ, "ହେ ନାଥ ! ଏହି ପର୍ବତ ଉପରେ ବାନରରାଜ ସୁଗ୍ରୀବ ରହନ୍ତି, ସେ ଆପଣଙ୍କ ଦାସ ॥ ୧ ॥ ହେ ନାଥ ! ତାଙ୍କ ସହ ମିତ୍ରତା କରନ୍ତୁ ଏବଂ ତାଙ୍କୁ ଦୀନ ଜାଣି ନିର୍ଭୀକ କରିଦିଅନ୍ତୁ । ସେ ସୀତାଙ୍କ ଅନ୍ୱେଷଣ କରାଇବେ ଏବଂ ବିଭିନ୍ନ ସ୍ଥାନକୁ କୋଟି କୋଟି ବାନର ପଠାଇବେ ।" ॥ ୨ ॥

ତବ ହନୁମନ୍ତ ଉଭୟ ଦିସି କୀ ସବ କଥା ସୁନାଇ ।
ପାବକ ସାଖୀ ଦେଇ କରି ଜୋରୀ ପ୍ରୀତି ଦୃଢ଼ାଇ ॥୪॥
କୀନ୍ହି ପ୍ରୀତି କଛୁ ବୀଚ ନ ରାଖା । ଲଛିମନ ରାମ ଚରିତ ସବ ଭାଷା ॥
କହ ସୁଗ୍ରୀବ ନୟନ ଭରି ବାରୀ । ମିଲିହି ନାଥ ମିଥିଲେସକୁମାରୀ ॥୧॥
ମନ୍ତ୍ରିନ୍ହ ସହିତ ଇହାଁ ଏକ ବାରା । ବୈଠ ରହେଉଁ ମୈଁ କରତ ବିଚାରା ॥
ଗଗନ ପନ୍ଥ ଦେଖୀ ମୈଁ ଜାତା । ପରବସ ପରୀ ବହୁତ ବିଲପାତା ॥୨॥
ରାମ ରାମ ହା ରାମ ପୁକାରୀ । ହମହି ଦେଖି ଦୀନ୍ହେଉ ପଟ ଡାରୀ ॥
ମାଗା ରାମ ତୁରତ ତେହିଁ ଦୀନ୍ହା । ପଟ ଉର ଲାଇ ସୋଚ ଅତି କୀନ୍ହା ॥୩॥

---

କହି ହନୁମନ୍ତ ସକଳ ବୃତ୍ତାନ୍ତ ଉଭୟ ପକ୍ଷେ ବୁଝାଇ ।
କଲେ ପରସ୍ପର ପ୍ରୀତି ଦୃଢ଼ତର ପାବକ ସାକ୍ଷୀ ରଖାଇ ॥୪॥
ପ୍ରୀତି କଲେ ଦୁହେଁ କିଛି ନ ରଖି ଅନ୍ତର । ଲକ୍ଷ୍ମଣ ଭାଷିଲେ ରାମ ଚରିତ ନିକର ॥
ବୋଲଇ ସୁଗ୍ରୀବ ନେତ୍ରେ ପୂର୍ଣ୍ଣ କରି ବାରି । ମିଳିବେ ନାଥ ! ମିଥିଳା ନରେଶ-କୁମାରୀ ॥୧॥
ମନ୍ତ୍ରୀଙ୍କ ସହିତ ଏହି ସ୍ଥାନେ ଏକବାର । ବସିଥାଇ କରୁଥିଲି ମୁଁ କିଛି ବିଚାର ॥
ଗଗନ ମାର୍ଗରେ ମୁହିଁ ଦେଖିଛି ଯିବାର । ପରବଶେ ପଡି କରି ବିଳାପ ଅପାର ॥୨॥
ରାମ, ରାମ, ରାମ, ଆହା ରାମ ! ଉଚ୍ଚାରଣ । ଫିଙ୍ଗିଦେଲେ ପଟ ଆମ୍ଭ ଦଗକୁ ଗୃହିଣ ॥
ମାଗନ୍ତେ ରାମ, ସୁଗ୍ରୀବ ଆଣିଲେ ଝଟତ । ବସନ ହୃଦେ ଲଗାଇ ଶୋକ କଲେ ଅତ ॥୩॥

---

ଏହି ରୂପେ ସମସ୍ତ କଥା ବୁଝାଇ ହନୁମାନ୍ ଶ୍ରୀରାମ ଓ ଲକ୍ଷ୍ମଣ ଦୁଇ ଭାଇଙ୍କୁ ପିଠିରେ ବସାଇ ନେଲେ । ସୁଗ୍ରୀବ ଶ୍ରୀରାମଙ୍କୁ ଦେଖି ଆପଣା ଜନ୍ମ ଅତି ଧନ୍ୟ ବୋଲି ମନେ କଲେ ॥ ୩ ॥ ସୁଗ୍ରୀବ ଶ୍ରୀରାମଙ୍କ ଚରଣତଳେ ମସ୍ତକ ନୁଆଁଇ ଆଦର ସତ୍କାରରେ ତାଙ୍କ ସହିତ ମିଳନ କଲେ । ଶ୍ରୀ ରଘୁନାଥ ମଧ୍ୟ ସାନ ଭାଇ ଲକ୍ଷ୍ମଣଙ୍କ ସମେତ ତାଙ୍କୁ ଆଲିଙ୍ଗନ କରି ଭେଟିଲେ । ସୁଗ୍ରୀବ ମନେ ମନେ ଚିନ୍ତା କରୁଥା'ନ୍ତି, "ହେ ବିଧାତା ! ଏ କ'ଣ ମୋ ସହିତ ପ୍ରୀତି କରିବେ ?" ॥ ୫ ॥ ଦୋହା :—ତଦନନ୍ତର ହନୁମାନ୍ ଉଭୟ ତରଫର ସମସ୍ତ କଥା ଶୁଣାଇ ଅଗ୍ନିଙ୍କୁ ସାକ୍ଷୀ କରି ପରସ୍ପରଙ୍କ ପ୍ରୀତି ଦୃଢ଼ କରିଦେଲେ । ( ଉଭୟଙ୍କୁ ମିତ୍ରତା-ସୂତ୍ରରେ ଆବଦ୍ଧ କରିଦେଲେ । ) ॥ ୪ ॥ ଚୌପାଇ :—ଉଭୟେ ପରସ୍ପରଙ୍କୁ ହୃଦୟର ସହିତ ପ୍ରୀତି କଲେ, ଟିକିଏ ହେଲେ ଅନ୍ତର ରଖିଲେ ନାହିଁ । ତତ୍ପରେ ଲକ୍ଷ୍ମଣ ଶ୍ରୀରାମଙ୍କର ସମସ୍ତ ଇତିହାସ କହିଲେ । ସୁଗ୍ରୀବ ସାଶ୍ରୁ ନୟନରେ କହିଲେ, "ହେ ନାଥ ! ମିଥିଳେଶକୁମାରୀ ଜାନକୀ ମିଳିଯିବେ ॥ ୧ ॥ ଏକଦା ମୁଁ ଏଠାରେ ମନ୍ତ୍ରୀମାନଙ୍କ ସହ ବସି କିଛି ବିଚାର କରୁଥିଲି । ସେତେବେଳେ ପରାଧୀନା ଓ ଅତ୍ୟନ୍ତ ବିଳାପରତା ଜାନକୀଙ୍କୁ ଆକାଶ ମାର୍ଗରେ ଯାଉଥିବାର ଦେଖିଲି ॥ ୨ ॥ ଆମ୍ଭଙ୍କୁ ଦେଖି ସେ "ରାମ ! ରାମ ! ହା ରାମ !" ବୋଲି ଆର୍ତ୍ତନାଦ କରି ଉତ୍ତରୀୟ-ବସ୍ତ୍ର ପକାଇ ଦେଲେ ।" ଶ୍ରୀରାମ ଉକ୍ତ ବସ୍ତ୍ର ମାଗିବା ମାତ୍ରେ ସୁଗ୍ରୀବ ତାହା ଆଣି ଦେଲେ ।

କହ ସୁଗ୍ରୀବ ସୁନହୁ ରଘୁବୀରା । ତଜହୁ ସୋଚ ମନ ଆନହୁ ଧୀରା ॥
ସବ ପ୍ରକାର କରିହଉଁ ସେବକାଈ । ଜେହି ବିଧି ମିଲିହି ଜାନକୀ ଆଈ ॥୪॥
ସଖା ବଚନ ସୁନି ହରଷେ କୃପାସିନ୍ଧୁ ବଲସୀଁୱ ।
କାରନ କୱନ ବସହୁ ବନ ମୋହି କହହୁ ସୁଗ୍ରୀୱ ॥୫॥
ନାଥ ବାଲି ଅରୁ ମେଁ ଦ୍ୱୌ ଭାଈ । ପ୍ରୀତି ରହୀ କଛୁ ବରନି ନ ଜାଈ ॥
ମୟସୁତ ମାୟାବୀ ତେହି ନାଉଁ । ଆୱା ସୋ ପ୍ରଭୁ ହମରେଁ ଗାଉଁ ॥୧॥
ଅର୍ଧ ରାତି ପୁର ଦ୍ୱାର ପୁକାରା । ବାଲୀ ରିପୁ ବଲ ସହଇ ନ ପାରା ॥
ଧାୱା ବାଲି ଦେଖି ସୋ ଭାଗା । ମୈଁ ପୁନି ଗୟଉଁ ବନ୍ଧୁ ସଁଗ ଲାଗା ॥୨॥
ଗିରିବର ଗୁହାଁ ପୈଠ ସୋ ଜାଈ । ତବ ବାଲୀ ମୋହି କହା ବୁଝାଈ ॥
ପରିଖେସୁ ମୋହି ଏକ ପଖୱାରା । ନହିଁ ଆୱଉଁ ତବ ଜାନେସୁ ମାରା ॥୩॥

---

କହଇ ସୁଗ୍ରୀବ; ଶୁଣ ପ୍ରଭୁ ରଘୁବର । ଚିନ୍ତା ପରିହରି, ଧୈର୍ଯ୍ୟ ମନ ମଧ୍ୟେ ଧର ॥
ସକଳ ପ୍ରକାରେ ସେବା କରିବି ତୁମର । ଜନକ କୁମାରୀ ପୁଣି ମିଳିବେ ଯେପରି ॥୪॥
ସଖାଙ୍କ ବଚନେ ତୋଷ ହେଲେ ମନେ କୃପାଳୁ ବଳୀ ଅତୀବ ।
କେଉଁ କାରଣରୁ ବନେ ବାସ କର, ମୋ ଆଗେ କହ ସୁଗ୍ରୀବ ॥୫॥
ନାଥ ! ବାଳି ଆବର ମୁଁ ଅଟୁ ବେନି ଭାଇ । ଥିଲା ଯେତେ ପ୍ରୀତି, କହି ନ ହୁଅଇ ତାଇ ॥
ମାୟାବୀ ନାମରେ ମୟ ଦାନବ କୁମର । ଆସିଲା ଏକଦା ପ୍ରଭୁ ସେ ଆମ୍ଭ ନଗର ॥୧॥
ଅର୍ଦ୍ଧରାତ୍ରେ ପୁରଦ୍ୱାରେ ଚିତ୍କାର କରିଲା । ବାଳି ମଧ୍ୟ ଶତ୍ରୁ ବଳ ସହି ନ ପାରିଲା ॥
ଧାଆନ୍ତେ ବାଳି ବିଲୋକି ଗଲା ସେ ପଳାଇ । ମୁଁ ପଛେ ଗମିଲି ଭ୍ରାତା ସହାୟତା ପାଇଁ ॥୨॥
ଗିରିବର ଗୁହା ମଧ୍ୟେ ପଶିଲା ସେ ଯାଇ । ତାହା ଦେଖି ବାଳି ମୋତେ କହିଲା ବୁଝାଇ ॥
ଏକ ପକ୍ଷ ଯାଏ ମୋତେ ଅପେକ୍ଷା କରିବୁ । ଯେବେ ନ ଆସିବି ତେବେ ମରିବା ଜାଣିବୁ ॥୩॥

---

ବନ୍ଧୁଙ୍କୁ ବକ୍ଷରେ ଲଗାଇ ରାମଚନ୍ଦ୍ର ବହୁତ ଶୋକ କଲେ ॥ ୩ ॥ ସୁଗ୍ରୀବ କହିଲେ, "ହେ ରଘୁବୀର ! ଶୁଣନ୍ତୁ; ଶୋକ ତ୍ୟାଗ କରନ୍ତୁ ଏବଂ ମନରେ ଧୈର୍ଯ୍ୟ ଆଣନ୍ତୁ । ମୁଁ ସବୁମତେ ଆପଣଙ୍କ ସେବା କରିବି, ଯାହା ଫଳରେ ଜାନକୀଙ୍କୁ ଆପଣ ପାଇ ପାରିବେ ।" ॥ ୪ ॥ ଦୋହା :—କୃପାସାଗର ଓ ବଳସୀମା ଶ୍ରୀରାମ ସଖା ସୁଗ୍ରୀବଙ୍କ ବଚନ ଶୁଣି ଆନନ୍ଦିତ ହେଲେ । କହିଲେ, "ହେ ସୁଗ୍ରୀବ ! ତୁମେ ବନରେ କି ହେତୁ ବାସ କରୁଅଛ ?—ମୋତେ କୁହ ତ ॥ ୫ ॥ ଚୌପାଇ :—ସୁଗ୍ରୀବ କହିଲେ, "ହେ ନାଥ ! ବାଳି ଓ ମୁଁ ଦୁଇ ଭାଇ । ଆମ ଦୁହିଙ୍କ ଭିତରେ ଅବର୍ଣ୍ଣନୀୟ ଅତ୍ୟନ୍ତ ପ୍ରୀତି ଥିଲା । ହେ ପ୍ରଭୋ ! ମୟ ଦାନବର ଗୋଟିଏ ପୁତ୍ର ଥିଲା । ତାହାର ନାମ ମାୟାବୀ । ସେ ଥରେ ଆମ ଗାଆଁକୁ ଆସିଲା ॥ ୧ ॥ ସେ ରାତି ଅଧରେ ନଗରର ଫାଟକ ନିକଟକୁ ଆସି ଚିତ୍କାର କଲା । ବାଳି ଶତ୍ରୁର ବଳ (ଆହ୍ୱାନ) ସହି ପାରିଲା ନାହିଁ, ସେ ଦୌଡ଼ିଲା । ତାହାକୁ ଦେଖି ମାୟାବୀ ଦୌଡ଼ି ପଳାଇଲା । ମୁଁ ମଧ୍ୟ ଭାଇ ସଙ୍ଗେ ଲାଗି ଚାଲିଲି ।' ॥

ମାସ ଦିବସ ତହିଁ ରହେଉଁ ଖରାରି । ନିସରି ରୁଧିର ଧାର ତହିଁ ଭାରି ॥
ବାଲି ହତେସି ମୋହି ମାରିହି ଆଇ । ସିଲା ଦେଇ ତହିଁ ଚଲେଉଁ ପରାଇ ॥୪॥
ମଂତ୍ରିହ୍ନ ପୁର ଦେଖା ବିନୁ ସାଇଁ । ଦୀହ୍ନେଉ ମୋହି ରାଜ ବରିଆଈଁ ॥
ବାଲି ତାହି ମାରି ଗୃହ ଆଓ୍ୱା । ଦେଖି ମୋହି ଜିଅଁ ଭେଦ ବଢ଼ାଓ୍ୱା ॥୫॥
ରିପୁ ସମ ମୋହି ମାରେସି ଅତି ଭାରୀ । ହରି ଲୀହ୍ନେସି ସର୍ବସୁ ଅରୁ ନାରୀ ॥
ତାକେଁ ଭୟ ରଘୁବୀର କୃପାଲୁ । ସକଲ ଭୁବନ ମୈଁ ଫିରେଉଁ ବିହାଲୁ ॥୬॥
ଇହାଁ ସାପ ବସ ଆଓ୍ୱତ ନାହୀଁ । ତଦପି ସଭୀତ ରହଉଁ ମନ ମାହୀଁ ॥
ସୁନି ସେବକ ଦୁଖ ଦୀନଦୟାଲୁ । ଫରକି ଉଠୀଁ ଦ୍ୱୈ ଭୁଜା ବିସାଲୁ ॥୭॥
ସୁନୁ ସୁଗ୍ରୀବ ମାରିହଉଁ ବାଲିହି ଏକହି ବାନ ।
ବ୍ରହ୍ମ ରୁଦ୍ର ସରନାଗତ ଗଏଁ ନ ଉବରିହିଁ ପ୍ରାନ ॥୬॥

---

ମାସେ ପର୍ଯ୍ୟନ୍ତ ସେ ସ୍ଥାନେ ରହିଲି, ଖରାରି । ରୁଧିର-ଧାରା ତହିଁରୁ ବାହାରିଲା ଭାରି ॥
ବାଳିକି ମାରି ମାରିବ ମୋତେ ଆସି ଏବେ । ଭାବି, ଶିଳା ଦ୍ୱାରେ ରଖି ପଳାଇଲି ତେବେ ॥୪॥
ପୁରକୁ ସ୍ୱାମୀ-ରହିତ ଦେଖି ମନ୍ତ୍ରିଗଣ । ବଳାତ୍କାରେ ରାଜ୍ୟ ମୋତେ କଲେ ସମର୍ପଣ ॥
ବାଳି ତାହାକୁ ବିନାଶି ଗୃହକୁ ଆସିଲା । ମୋତେ ବିଲୋକି ହୃଦୟେ ବୈର ବଢାଇଲା ॥୫॥
ଶତ୍ରୁ ସମାନ ବହୁତ ମାରିଣ ଆବର । ହରିଣ କଲା ସର୍ବସ୍ୱ ନାରୀକୁ ମୋହର ॥
ତା ଭୟରେ ରଘୁବୀର, କରୁଣା-ସଦନ । ବିକଳେ ଭ୍ରମିଲି ମୁହିଁ ସକଳ ଭୁବନ ॥୬॥
ଅଭିଶାପ ଥିବା ହେତୁ ଏଥି ନ ଆସଇ । ତଥାପି ଅତ୍ୟନ୍ତ ଭୟ ସହିତ ରହଇ ॥
ଶୁଣି ସେବକର ଦୁଃଖ ଦୀନ ଦୟାମୟ । କମ୍ପିତ ହୋଇଲା ଭୁଜ ବିଶାଳ ଉଭୟ ॥୭॥
ଶୁଣ ରବିସୁତ, ବାଳିକୁ ମୁଁ ହତ କରିବି ଏକ ବାଣରେ ।
ବିରଞ୍ଚି ଈଶାନ ଗଲେହେଁ ଶରଣ ବଞ୍ଚିବ ନାହିଁ ପ୍ରାଣରେ ॥୬॥

---

ସେ ମାୟାବୀ ଗୋଟିଏ ପର୍ବତ ଗୁମ୍ଫାରେ ଯାଇ ପଶିଲା । ତତ୍ପରେ ବାଳି ମୋତେ ବୁଝାଇ କହିଲା, "ତୁ ଗୋଟିଏ ପକ୍ଷଯାଏ ମୋ ପଥ ଅନେଇ ରହିବୁ । ଯଦି ମୁଁ ଉକ୍ତ ସମୟ ମଧ୍ୟରେ ନ ଆସେ, ତେବେ ବୁଝିବୁ ଯେ ମୁଁ ନିହତ ॥ ୩ ॥ ହେ ଖରାରି ! ମୁଁ ସେହିଠାରେ ମାସେ ପର୍ଯ୍ୟନ୍ତ ରହିଲି । ସେହି ଗୁମ୍ଫା ମଧ୍ୟରୁ ରକ୍ତର ଗୋଟିଏ ବଡ ଧାରା ବାହାରିଲା । ତେଣୁ ମୁଁ ବୁଝିଲି ଯେ, ସେହି ରାକ୍ଷସ ବାଳିକୁ ମାରି ପକାଇଛି । ଏବେ ଆସି ମୋତେ ମାରିବ । ଏଣୁ ମୁଁ ଗୁମ୍ଫା ଦ୍ୱାରରେ ଖଣ୍ଡେ ପଥର ଲଗାଇ ପଳାଇ ଆସିଲି ॥୪॥ ମନ୍ତ୍ରୀମାନେ ପୁରକୁ ପ୍ରଭୁହୀନ (ଅରାଜକ) ଦେଖି ମୋତେ ଜବରଦସ୍ତି ରାଜ୍ୟ ସମର୍ପଣ କରିଦେଲେ । ବାଳି ତାହାକୁ ମାରି ଘରକୁ ଫେରିଲା ଏବଂ ମୋତେ ରାଜସିଂହାସନ ଉପରେ ବସିଥିବାର ଦେଖି ମନ ମଧ୍ୟରେ ମୋ ପ୍ରତି ଶତ୍ରୁତା ପୋଷିଲା ॥ ୫ ॥ ସେ ମୋତେ ଶତ୍ରୁ ମନେ କରି ବହୁତ ମାରିଲା ଏବଂ ମୋର ସର୍ବସ୍ୱ ଓ ମୋର ସ୍ତ୍ରୀକୁ ମଧ୍ୟ ହରଣ କରି ନେଲା ।

ଜେ ନ ମିତ୍ର ଦୁଖ ହୋହିଁ ଦୁଖାରୀ । ତିନ୍ହହି ବିଲୋକତ ପାତକ ଭାରୀ ॥
ନିଜ ଦୁଃଖ ଗିରି ସମ ରଜ କରି ଜାନା । ମିତ୍ରକ ଦୁଖ ରଜ ମେରୁ ସମାନା ॥୧॥
ଜିନ୍ହ କେଁ ଅସି ମତି ସହଜ ନ ଆଈ । ତେ ସଠ କତ ହଠି କରତ ମିତାଈ ॥
କୁପଥ ନିବାରି ସୁପଂଥ ଚଲାୱା । ଗୁନ ପ୍ରଗଟଇ ଅବଗୁନହ୍ନି ଦୁରାୱା ॥୨॥
ଦେତ ଲେତ ମନ ସଙ୍କ ନ ଧରଈ । ବଲ ଅନୁମାନ ସଦା ହିତ କରଈ ॥
ବିପତି କାଲ କର ସତଗୁନ ନେହା । ଶ୍ରୁତି କହ ସନ୍ତ ମିତ୍ର ଗୁନ ଏହା ॥୩॥
ଆଗେଁ କହ ମୃଦୁ ବଚନ ବନାଈ । ପାଛେଁ ଅନହିତ ମନ କୁଟିଲାଈ ॥
ଜା କର ଚିତ ଅହି ଗତି ସମ ଭାଈ । ଅସ କୁମିତ୍ର ପରିହରେହିଁ ଭଲାଈ ॥୪॥

---

ଯେ ମିତ୍ର ଦୁଃଖରେ ଦୁଃଖ ଲାଭ ନ କରଇ । ତାକୁ ବିଲୋକନ୍ତେ ଭାରି ପାତକ ଲାଗଇ ॥
ନିଜ ଗିରିସମ ଦୁଃଖେ ରଜ ତୁଲ୍ୟ ମଣେ । ମିତ୍ରର ଦୁଃଖ-ରଜକୁ ମେରୁ ପରି ଗଣେ ॥୧॥
ସହଜେ ଯାର ଏମନ୍ତ ବୁଦ୍ଧି ନ ସ୍ଫୁରଇ । ସେ ଶଠ ମିଥ୍ୟାରେ କିପାଁ ମିତ୍ରତା କରଇ ॥
କୁପଥରୁ ନିବାରଣ ସୁପଥେ ଚଳାଏ । ଗୁଣ ପ୍ରକଟିଣ ଅବଗୁଣକୁ ଲୁଚାଏ ॥୨॥
ଦେବା ନେବାରେ ସଙ୍କୋଚ ନ ମଣେ ଅନ୍ତରେ । ବଳ ଅନୁମାନେ ସଦା ସହାୟତା କରେ ॥
ବିପତ୍ତି କାଳେ କରଇ ସ୍ନେହ ଶତ ଗୁଣ । ଶ୍ରୁତି କହନ୍ତି ଏମନ୍ତ ସନ୍ତ ମିତ୍ର ଗୁଣ ॥୩॥
ସମ୍ମୁଖେ କହଇ ଗଢ଼ି କୋମଳ ବଚନ । ପରୋକ୍ଷେ ଅହିତ ପାଖେ କୁଟିଳ ତା' ମନ ॥
ଯାର ଚିତ୍ତ ବକ୍ର ଭାଇ, ଅହିଗତି ସମ । ଏମନ୍ତ କୁମିତ୍ର ପରିହରିବା ଉତ୍ତମ ॥୪॥

---

ହେ କୃପାଳୁ ରଘୁବୀର ! ତାହାର ଭୟରେ ମୁଁ ସମସ୍ତ ଲୋକରେ ବ୍ୟାକୁଳ ହୋଇ ଭ୍ରମିଲି ॥ ୭ ॥ ସେ ଅଭିଶାପ ହେତୁ ଏଠାକୁ ଆସୁନାହିଁ, ସତ; ତଥାପି ମୁଁ ତାହା ପ୍ରତି ଭୟଭୀତ ହୋଇ ରହୁଛି ।" ସେବକର ଦୁଃଖ ଶୁଣି ଦୀନଦୟାଳୁ ଶ୍ରୀ ରଘୁନାଥଙ୍କ ଦୁଇ ବାହୁ କମ୍ପି ଉଠିଲା ॥ ୭ ॥ ଦୋହା :—ସେ କହିଲେ, ହେ ସୁଗ୍ରୀବ ! ମୁଁ ଗୋଟିଏ ମାତ୍ର ବାଣରେ ବାଳୀକୁ ମାରି ପକାଇବି । ବ୍ରହ୍ମା ଓ ଶିବଙ୍କ ଶରଣାଗତ ହେଲେ ସୁଦ୍ଧା ତାହାର ପ୍ରାଣରକ୍ଷା ହୋଇ ପାରିବ ନାହିଁ ॥ ୭ ॥ ଚୌପାଇ :—ଯେଉଁ ଲୋକମାନେ ମିତ୍ର ଦୁଃଖରେ ଦୁଃଖୀ ହୁଅନ୍ତି ନାହିଁ, ସେମାନଙ୍କୁ କେବଳ ଦେଖିଦେଲେ ବଡ ପାପ ଲାଗେ । ଆପଣାର ପର୍ବତ ସମାନ ଦୁଃଖକୁ ଧୂଳି ତୁଲ୍ୟ ଓ ମିତ୍ରର ଧୂଳିସମାନ ଦୁଃଖକୁ ସୁମେରୁ ପର୍ବତ ତୁଲ୍ୟ ବୁଝିବା ଉଚିତ ॥ ୧ ॥ ଯାହାଙ୍କୁ ସହଜରେ ଏପରି ବୁଦ୍ଧି ମିଳିନାହିଁ, ସେହି ଶଠମାନେ ଜବରଦସ୍ତି କାହିଁକି ମିତ୍ରତା କରନ୍ତି ? ମିତ୍ରତାର ଧର୍ମ ହେଉଛି, ତାହା ମିତ୍ରକୁ ମନ୍ଦ ମାର୍ଗରୁ ନିବାରଣ କରି ଭଲ ମାର୍ଗରେ ଚଲାଇବ । ତାହାର ଗୁଣ ସେ ପ୍ରକାଶ କରିବ ଏବଂ 'ଅବଗୁଣ'(ଦୋଷ)କୁ ଲୁଚାଇ ରଖିବ ॥ ୨ ॥ ଦେଣନେଣ ବିଷୟରେ ସେ ମନରେ ଶଙ୍କା ରଖେ ନାହିଁ । ବିପତ୍ତି ସମୟରେ ତ ଶହେ ଗୁଣ ସ୍ନେହ କରିବ । ବେଦଗଣ କହନ୍ତି, ସନ୍ତ ମିତ୍ରଙ୍କର

ସେବକ ସଠ ନୃପ କୃପନ କୁନାରୀ । କପଟୀ ମିତ୍ର ସୂଲ ସମ ଚାରୀ ॥
ସଖା ସୋଚ ତ୍ୟାଗହୁ ବଲ ମୋରେଁ । ସବ ବିଧି ଘଟବ କାଜ ମୈଁ ତୋରେଁ ॥୫॥
କହ ସୁଗ୍ରୀବ ସୁନହୁ ରଘୁବୀରା । ବାଲି ମହାବଲ ଅତି ରନଧୀରା
ଦୁଂଦୁଭି ଅସ୍ଥି ତାଲ ଦେଖରାଏ । ବିନୁ ପ୍ରୟାସ ରଘୁନାଥ ଢହାଏ ॥୬॥
ଦେଖି ଅମିତ ବଲ ବାଢୀ ପ୍ରୀତୀ । ବାଲି ବଧବ ଇନ୍ହ ଭଇ ପରତୀତୀ ॥
ବାର ବାର ନାୱଇ ପଦ ସୀସା । ପ୍ରଭୁହି ଜାନି ମନ ହରଷ କପୀସା ॥୭॥
ଉପଜା ଜ୍ଞାନ ବଚନ ତବ ବୋଲା । ନାଥ କୃପାଁ ମନ ଭୟଉ ଅଲୋଲା ॥
ସୁଖ ସମ୍ପତି ପରିବାର ବଡ଼ାଈ । ସବ ପରିହରି କରିହଉଁ ସେବକାଈ ॥୮॥

---

ଶଠ ସେବକ, କୃପଣ, ନୃପତି, କୁନାରୀ । କପଟୀ ମିତ୍ର ଅଟନ୍ତି ଶୂଳ ସମ ଚାରି ॥
ସଖା ! ମନୁ ଚିନ୍ତା ପରିହର ବଳେ ମୋର । ସବୁ ପ୍ରକାରେ ସାହାଯ୍ୟ କରିବି ମୁଁ ତୋର ॥୫॥
ବୋଲଇ ସୁଗ୍ରୀବ, ଶୁଣ, ହେ ରଘୁବୀର । ବାଳି ମହାବଳୀ ଅଟେ ଅତି ରଣଧୀର ॥
ଦେଖାନ୍ତେ ଦୁନ୍ଦୁଭି ଅସ୍ଥି ପୁଣି ସପ୍ତତାଳ । ପ୍ରୟାସ ବିନା ଧ୍ୱଂସିଲେ ରଘୁକୁଳ-ପାଳ ॥୬॥
ଦେଖି ଅପ୍ରମିତ ବଳ ବୃଦ୍ଧି ହେଲା ପ୍ରୀତି । ବାଳିକୁ ବିନାଶିବାରେ ହୋଇଲା ପ୍ରତୀତି ॥
ବାରମ୍ବାର ଚରଣରେ କରି ପ୍ରଣିପାତ । ପ୍ରଭୁଙ୍କୁ ଚିହ୍ନି ହରଷ ମନ କପିନାଥ ॥୭॥
ଉପୁଜନ୍ତେ ଜ୍ଞାନ ତହୁଁ କହିଲା ଏସନ । ନାଥ, କୃପାରେ ହୋଇଲା ଅବିଚଳ ମନ ॥
ସୁଖ ଧନ ଧାମ ପରିବାର ବଡପଣ । ସବୁ ପରିହରି ସେବା କରିବି ଚରଣ ॥୮॥

---

ଏଗୁଡିକ ସବୁ ଗୁଣ (ଲକ୍ଷଣ) ॥ ୩ ॥ ଯେଉଁ ବ୍ୟକ୍ତି ଆଗରେ ବନେଇଚୁନେଇ କୋମଳ ବଚନ କହେ ଓ ପଛରେ ମନ୍ଦ କାମ କରେ ଏବଂ ମନରେ ଯାହାର କୁଟିଳତା ପୂରି ରହିଥାଏ, ହେ ଭାଇ ! ସର୍ପଗତି ପରି ଯାହାର ମନ ବଙ୍କା, ସେହି କୁମିତ୍ର ବ୍ୟକ୍ତିକୁ ତ୍ୟାଗ କରିବାରେ ହିଁ ମଙ୍ଗଳ ॥ ୪ ॥ ମୂର୍ଖ ସେବକ, କୃପଣ ରାଜା, କୁଳଟା ସ୍ତ୍ରୀ ଓ କପଟୀ ମିତ୍ର—ଏ ଚାରି ଜଣ ଶୂଳସମାନ ପୀଡ଼ାଦାୟକ । ହେ ସଖା ! ମୋହରି ବଳ-ଭରସା ଉପରେ ତୁମେ ସବୁ ଚିନ୍ତା ଓ ଶୋକ ତ୍ୟାଗ କର । ମୁଁ ସବୁମତେ ତୁମଙ୍କୁ ସାହାଯ୍ୟ କରିବି ।" ॥ ୫ ॥ ସୁଗ୍ରୀବ କହିଲେ, "ହେ ରଘୁବୀର ! ଶୁଣନ୍ତୁ—ବାଳି ମହାବଳୀ ଏବଂ ଅତ୍ୟନ୍ତ ରଣଧୀର ।" ତତ୍ପରେ ସୁଗ୍ରୀବ ଶ୍ରୀରାମଙ୍କୁ ଦୁନ୍ଦୁଭି ରାକ୍ଷସର ଅସ୍ଥି ଓ ତାଳବୃକ୍ଷ ଦେଖାଇଲେ । ଶ୍ରୀ ରଘୁନାଥ ସେଗୁଡିକୁ ଅନାୟାସରେ ଧ୍ୱଂସ କରି ଦେଲେ ॥୬॥ ଶ୍ରୀରାମଙ୍କର ଅପରିମିତ ବଳ ଦେଖି ତାହାଙ୍କ ପ୍ରତି ସୁଗ୍ରୀବଙ୍କ ପ୍ରୀତି ଆହୁରି ବଢିଗଲା ଏବଂ ତାହାଙ୍କର ବିଶ୍ୱାସ ହୋଇଗଲା ଯେ, ଏ ଅବଶ୍ୟ ବାଳିକୁ ବଧ କରି ପାରିବେ । ସେ ବାରମ୍ବାର ପ୍ରଭୁଙ୍କ ଚରଣରେ ମୁଣ୍ଡ ଲଗାଇଲେ । ପ୍ରଭୁଙ୍କୁ ଚିହ୍ନି ସୁଗ୍ରୀବ ମନେ ମନେ ଅପାର ଆନନ୍ଦ ଲାଭ କରୁଥାଆନ୍ତି ॥ ୭ ॥ ଯେତେବେଳେ ଜ୍ଞାନ ଉତ୍ପନ୍ନ ହେଲା, ସେ ବଚନ ବୋଇଲେ—"ହେ ନାଥ ! ଆପଣଙ୍କ କୃପାରେ ବର୍ତ୍ତମାନ ମୋ ମନ ସ୍ଥିର ହୋଇଗଲା । ମୁଁ ସୁଖ, ସମ୍ପତ୍ତି, ପରିବାର ଓ ବଡାଇ ସବୁ ତ୍ୟାଗ କରି କେବଳ

ଏ ସବ ରାମ ଭଗତି କେ ବାଧକ । କହହିଁ ସନ୍ତ ତବ ପଦ ଅବରାଧକ ॥
ସତ୍ରୁ ମିତ୍ର ସୁଖ ଦୁଖ ଜଗ ମାହୀଁ । ମାୟାକୃତ ପରମାରଥ ନାହୀଁ ॥୯॥
ବାଲି ପରମ ହିତ ଜାସୁ ପ୍ରସାଦା । ମିଲେହୁ ରାମ ତୁହ୍ମ ସମନ ବିଷାଦା ॥
ସପନେଁ ଜେହି ସନ ହୋଇ ଲରାଈ । ଜାଗେ ସମୁଝତ ମନ ସକୁଚାଈ ॥୧୦॥
ଅବ ପ୍ରଭୁ କୃପା କରହୁ ଏହି ଭାଁତୀ । ସବ ତଜି ଭଜନୁ କରୌଁ ଦିନ ରାତୀ ॥
ସୁନି ବିରାଗ ସଂଜୁତ କପି ବାନୀ । ବୋଲେ ବିହଁସି ରାମୁ ଧନୁପାନୀ ॥୧୧॥
ଜୋ କଛୁ କହେହୁ ସତ୍ୟ ସବ ସୋଈ । ସଖା ବଚନ ମମ ମୃଷା ନ ହୋଈ ॥
ନଟ ମରକଟ ଇବ ସବହି ନଚାୱତ । ରାମୁ ଖଗେସ ବେଦ ଅସ ଗାୱତ ॥୧୨॥
ଲୈ ସୁଗ୍ରୀବ ସଂଗ ରଘୁନାଥା । ଚଲେ ଚାପ ସାୟକ ଗହି ହାଥା ॥
ତବ ରଘୁପତି ସୁଗ୍ରୀବ ପଠାୱା । ଗର୍ଜେସି ଜାଇ ନିକଟ ବଲ ପାୱା ॥୧୩॥

---

ଏ ସବୁ ଅଟନ୍ତି ରାମ ଭକ୍ତିର ବାଧକ । ବଖାଣନ୍ତି ସନ୍ଥ ତବ ପଦ ଆରାଧକ ॥
ଶତ୍ରୁ ମିତ୍ର ସୁଖ ଦୁଃଖ ଜଗତ ମଧ୍ୟରେ । ମାୟାକୃତ, ପରମାର୍ଥ ନାହିଁ ଯଥାର୍ଥରେ ॥୯॥
ପରମ ହିତୈଷୀ ବାଳି ଏହା ତା' ପ୍ରସାଦ । ମିଳିଲେ ରାମ ଆପଣ ଶମନ-ବିଷାଦ ॥
ସ୍ୱପ୍ନେ ଏବେ ଯାହାସଙ୍ଗେ ଲଢ଼ାଇ ହୋଇବ । ଜାଗ୍ରତ ହୁଅନ୍ତେ ଭାବି ମନ ସଙ୍କୋଚିବ ॥୧୦॥
ଏବେ କୃପା-ସିନ୍ଧୁ, କୃପା କରନ୍ତୁ ଏସନ । ସବୁ ତେଜି ଦିନ ରାତି କରିବି ଭଜନ ॥
ଶୁଣି ବୈରାଗ୍ୟ ସଂଯୁକ୍ତ କପିବର ବାଣୀ । ଭାଷିଲେ ହସିଣ ରାମ ଧନୁଃଶର ପାଣି ॥୧୧॥
ଯାହା କିଛି କହ ସତ୍ୟ ସକଳ ଅଟଇ । ସଖା ବଚନ ମୋହର ମିଥ୍ୟା ନ ହୁଅଇ ॥
ସମସ୍ତଙ୍କୁ ରାମ ନଟ ମର୍କଟ ଯେମନ୍ତ । ନଚାନ୍ତି ଖଗେଶ ! ବେଦ ବଖାଣେ ଏମନ୍ତ ॥୧୨॥
ସୁଗ୍ରୀବଙ୍କୁ ରଘୁନାଥ ସଙ୍ଗରେ ନେଇଣ । ଚଳିଲେ ଚାପ ଶାୟକ ହସ୍ତରେ ଧରିଣ ॥
ପଠାଇଲେ ସୁକଣ୍ଠଙ୍କୁ ତହୁଁ ରଘୁସାଇଁ । ବଳ ପାଇ ନିକଟରେ ଗରଜିଲେ ଯାଇ ॥୧୩॥

---

ଆପଣଙ୍କର ସେବା କରିବି ॥ ୮ ॥ କାରଣ, ଆପଣଙ୍କ ଚରଣାରାଧକ ସନ୍ଥଗଣ କହନ୍ତି— ଏହି ସମସ୍ତ ସୁଖ-ସମ୍ପତ୍ତି ଆଦି ରାମଭକ୍ତିର ବିରୋଧୀ । ଜଗତରେ ଯେତେ ସବୁ ଶତ୍ରୁ ମିତ୍ର ଓ ସୁଖଦୁଃଖ ଆଦି ଦ୍ୱନ୍ଦ୍ୱ ଅଛନ୍ତି, ସେ ସବୁ ମାୟାବିରଚିତ; ପରମାର୍ଥତଃ ସେ ସବୁର କିଛି ମୂଲ୍ୟ ନାହିଁ ॥ ୯ ॥ ହେ ଶ୍ରୀରାମ ! ବାଳି ତ ମୋହର ପରମହିତକାରୀ, କାରଣ ତାହାରି ଅନୁଗ୍ରହ ଯୋଗୁ ହେ ଶୋକନାଶକାରକ ରାମ ! ଆପଣ ମୋତେ ଦର୍ଶନ ଦେଲେ । ଯଦି ତାହା ସହିତ ଏବେ ସ୍ୱପ୍ନରେ ଯୁଦ୍ଧ ହୁଏ, ତେବେ ଜାଗ୍ରତ ହୋଇ ସେ କଥା ମନେ ପକାଇଲେ ମନରେ ସଂକୋଚ ହେବ ( ଯେ ସ୍ୱପ୍ନରେ ଯୁଦ୍ଧ ମୁଁ କାହିଁକି ତାହା ସହିତ ଲଢିଲି । ) ॥ ୧୦ ॥ ହେ ପ୍ରଭୋ ! ଏବେ ଏପରି କୃପା କରନ୍ତୁ ଯେ, ଦିନରାତି ସବୁ ଛାଡି ମୁଁ କେବଳ ଆପଣଙ୍କୁ ଭଜନ କରେ ।" ସୁଗ୍ରୀବଙ୍କ ବୈରାଗ୍ୟପୂର୍ଣ୍ଣ ବାଣୀ ଶୁଣି ଧନୁର୍ଦ୍ଧାରୀ ଶ୍ରୀରାମ ମୃଦୁଳ ହସି କହିଲେ, "ତୁମେ ଯାହା କିଛି କହିଲ, ତାହା ସବୁ ସତ୍ୟ । ପରନ୍ତୁ ହେ ସଖେ ! ମୋ ବଚନ ମିଥ୍ୟା ହୁଏନାହିଁ, ଅର୍ଥାତ୍ ବାଳିକୁ ବଧ କରାଯିବ

ସୁନତ ବାଲି କ୍ରୋଧାତୁର ଧାଓ୍ୱା । ଗହି କର ଚରନ ନାରି ସମୁଝାଓ୍ୱା ॥
ସୁନୁ ପତି ଜିନ୍ହହି ମିଲେଉ ସୁଗ୍ରୀଓ୍ୱା । ତେ ଦ୍ୱୌ ବଂଧୁ ତେଜ ବଲ ସୀଁଓ୍ୱା ॥୧୩॥
କୋସଲେସ ସୁତ ଲଛିମନ ରାମା । କାଲହୁ ଜୀତି ସକହିଁ ସଂଗ୍ରାମା ॥୧୫॥
କହ ବାଲି ସୁନୁ ଭୀରୁ ପ୍ରିୟ ସମଦରସୀ ରଘୁନାଥ ।
ଜୌଁ କଦାଚି ମୋହି ମାରହିଁ ତୌ ପୁନି ହୋଉଁ ସନାଥ ॥୭॥
ଅସ କହି ଚଲା ମହା ଅଭିମାନୀ । ତୃନ ସମାନ ସୁଗ୍ରୀବହି ଜାନୀ ॥
ଭିରେ ଉଭୌ ବାଲୀ ଅତି ତର୍ଜା । ମୁଠିକା ମାରି ମହାଧୁନି ଗର୍ଜା ॥୧॥
ତବ ସୁଗ୍ରୀବ ବିକଲ ହୋଇ ଭାଗା । ମୁଷ୍ଟି ପ୍ରହାର ବଜ୍ର ସମ ଲାଗା ॥
ମୈଁ ଜୋ କହା ରଘୁବୀର କୃପାଲା । ବଂଧୁ ନ ହୋଇ ମୋର ୟହ କାଲା ॥୨॥

---

ଶୁଣନ୍ତେ ବାଳି ଧାଇଁଲା କ୍ରୋଧାତୁରେ ଭାରି । କର ଚରଣ ଧରିଣ ବୁଝାଇଲା ନାରୀ ॥
ମିଳିଛି ସୁଗ୍ରୀବ ଯାହା ସଙ୍ଗେ ଶୁଣ, ଧବ । ଅତୁଳିତ ବଳ ସୀମା ସେ ଦୁଇ ବାନ୍ଧବ ॥୧୪॥
କୋଶଳପତିଙ୍କ ସୁତ ଲକ୍ଷ୍ମଣ ରାମ । କାଳକୁ ଜିଣି ପାରନ୍ତି କରିଣ ସଂଗ୍ରାମ ॥୧୫॥
ବୋଲେ ତହୁଁ ବାଳି ଶୁଣ ଭୀରୁ ପ୍ରିୟେ, ସମଦର୍ଶୀ ରଘୁନାଥ ।
କଦାଚିତ ଯେବେ ମୋତେ ବା ମାରିବେ ତେବେ ହୋଇବି ସନାଥ ॥୭॥
ଏହା କହି ଚଳିଲା ସେ ମହା ଅଭିମାନୀ । ତୃଣ ସମ ତୁଚ୍ଛ ବୋଲି ସୁଗ୍ରୀବକୁ ମାନି ॥
ଯୁଝିଲେ ଉଭୟେ, ବାଳି ଅତି ତରଜିଣ । ମହାଧ୍ୱନି ଗରଜିଲା ମୁଷ୍ଟିକ ମାରିଣ ॥୧॥
ବିକଳ ହୋଇ ସୁଗ୍ରୀବ ତହୁଁ ପଳାଇଲା । ମୁଷ୍ଟିକ ପ୍ରହାର ବଜ୍ର ସମାନ ଲାଗିଲା ॥
ମୁଁ ଯେ କହିଥିଲି, ରଘୁବୀର କୃପାକର । ଭାଇ ନୁହଇ, ଏ କାଳ ଅଟଇ ମୋହର ॥୨॥

---

ଏବଂ ତୁମଙ୍କୁ ରାଜ୍ୟ ମିଳିବ ।” କାକ ଭୁଷୁଣ୍ଡି କହନ୍ତି, “ହେ ପକ୍ଷିରାଜ ଗରୁଡ଼ ! ନଟ ମର୍କଟକୁ ନଚାଇଲା ପରି ଶ୍ରୀରାମ ସମସ୍ତଙ୍କୁ ନଚାନ୍ତି ବୋଲି ବେଦଗଣ ବଖାଣନ୍ତି ॥୧୧-୧୨॥ ତଦନନ୍ତର ସୁଗ୍ରୀବଙ୍କୁ ସଙ୍ଗରେ ନେଇ ଏବଂ ହାତରେ ଧନୁଶର ଧାରଣ କରି ଶ୍ରୀ ରଘୁନାଥ ଚାଲିଲେ । ତତ୍ପରେ ଶ୍ରୀ ରଘୁନାଥ ସୁଗ୍ରୀବଙ୍କୁ ବାଳି ନିକଟକୁ ପ୍ରେରଣ କଲେ । ସେ ଶ୍ରୀ ରାମଙ୍କ ବଳ ପାଇ ବାଳି ନିକଟକୁ ଆସି ଗର୍ଜନ କଲେ ॥୧୩॥ ଶୁଣିବା ମାତ୍ରେ ବାଳି କ୍ରୋଧାତୁର ହୋଇ ଧାଇଁଲା । ତାହାର ସ୍ତ୍ରୀ ତାରା ଚରଣ ଧରି ତାହାକୁ ବୁଝାଇଲା, “ହେ ନାଥ ! ଶୁଣନ୍ତୁ—ସୁଗ୍ରୀବ ଯାହାଙ୍କ ସଙ୍ଗେ ମିଶି ଆସିଅଛନ୍ତି, ସେ ଦୁଇ ଭାଇ ତେଜ ଓ ବଳର ସୀମା ॥ ୧୪ ॥ ସେହି କୋଶଳାଧୀଶ ଦଶରଥଙ୍କ ପୁତ୍ର ରାମ ଓ ଲକ୍ଷ୍ମଣ ସଂଗ୍ରାମରେ କାଳକୁ ମଧ୍ୟ ଜୟ କରି ପାରନ୍ତି ।” ॥ ୧୫ ॥ ଦୋହା :— ବାଳି କହିଲା, ହେ ଭୀରୁ ! ହେ ପ୍ରିୟେ ! ଶୁଣ—ଶ୍ରୀ ରଘୁନାଥ ସମଦର୍ଶୀ । ଯଦ୍ୟପି ସେ କଦାପି ମୋତେ ମାରନ୍ତି, ତେବେ ମୁଁ ସନାଥ ହୋଇଯିବି ।” ॥ ୭ ॥ ଚୌପାଈ :— ଏହିପରି କହି ମହାଭିମାନୀ ବାଳି ସୁଗ୍ରୀବଙ୍କୁ ତୃଣବତ୍ ମନେ କରି ଚାଲିଲା । ଉଭୟେ ପରସ୍ପର ଭିଡ଼ି ପଡ଼ିଲେ । ବାଳି ସୁଗ୍ରୀବଙ୍କୁ ବହୁତ ଧମକାଇଲା ଏବଂ ବିଧା ମାରି ବଡ଼

ଏକରୂପ ତୁମ୍ହ ଭ୍ରାତା ଦୋଊ । ତେହି ଭ୍ରମ ତେଁ ନହିଁ ମାରେଉଁ ସୋଊ ॥
କର ପରସା ସୁଗ୍ରୀବ ସରୀରା । ତନୁ ଭା କୁଲିସ ଗଈ ସବ ପୀରା ॥୩॥
ମେଲୀ କଂଠ ସୁମନ କୈ ମାଲା । ପଠୱା ପୁନି ବଲ ଦେଇ ବିସାଲା ॥
ପୁନି ନାନା ବିଧି ଭଈ ଲରାଈ । ବିଟପ ଓଟ ଦେଖହିଁ ରଘୁରାଈ ॥୪॥

ବହୁ ଛଲ ବଲ ସୁଗ୍ରୀବ କର ହିୟଁ ହାରା ଭୟ ମାନି ।
ମାରା ବାଲି ରାମ ତବ ହୃଦୟ ମାଝ ସର ତାନି ॥୮॥

ପରା ବିକଲ ମହି ସର କେ ଲାଗେଁ । ପୁନି ଉଠି ବୈଠ ଦେଖି ପ୍ରଭୁ ଆଗେଁ ॥
ସ୍ୟାମ ଗାତ ସିର ଜଟା ବନାଏଁ । ଅରୁନ ନୟନ ସର ଚାପ ଚଢ଼ାଏଁ ॥୧॥
ପୁନି ପୁନି ଚିତଇ ଚରନ ଚିତ ଦୀନ୍ହା । ସୁଫଲ ଜନ୍ମ ମାନା ପ୍ରଭୁ ଚୀନ୍ହା ॥
ହୃଦୟଁ ପ୍ରୀତି ମୁଖ ବଚନ କଠୋରା । ବୋଲା ଚିତଇ ରାମ କୀ ଓରା ॥୨॥

---

ଦେଖି ଏକ ରୂପ ତୁମ୍ଭ ଉଭୟ ଭ୍ରାତାଙ୍କୁ । ଭ୍ରମ ବଶ ମାରିଲି ନାହିଁ ମୁଁ ତାହାଙ୍କୁ ॥
ସୁଗ୍ରୀବ ଶରୀରେ ପ୍ରଭୁ ସ୍ପର୍ଶ କଲେ କର । ହରି ସବୁ ପୀଡ଼ା ହେଲା ବଜ୍ର କଳେବର ॥୩॥
ଲମ୍ବାଇ କଣ୍ଠରେ ତାର ସୁମନର ମାଳ । ପୁଣି ପଠାଇଲେ ବଳ ଦେଇଣ ବିଶାଳ ॥
ଅନେକ ପ୍ରକାରେ ପୁଣି ହୋଇଲା ସଂଗ୍ରାମ । ବିଟପ ଉହାଡ଼େ ଥାଇ ଦେଖଥା'ନ୍ତି ରାମ ॥୪॥

ବହୁ ଛଳ ବଳ କରିଣ ସୁଗ୍ରୀବ ଡରନ୍ତେ ହୃଦୟେ ହାରି ।
ମାରିଲେ ବାଳିର ହୃଦ ମଧ୍ୟେ ଶର ଆକର୍ଷି ତହୁଁ ଖରାରି ॥୮॥

ବାଜନ୍ତେ ବାଣ ବିକଳେ ମହୀରେ ପଡ଼ିଲା । ପୁଣି ଉଠି ବସି ଆଗେ ପ୍ରଭୁଙ୍କୁ ଦେଖିଲା ॥
ଶ୍ୟାମଳ ଶରୀର ଶିରେ ଜଟା ବିରଚନ । ଖଚିତ ଚାପ ଶାୟକ ଅରୁଣ ଲୋଚନ ॥୧॥
ପୁଣି ପୁଣି ଚାହିଁ ଚିତ୍ତ ଚରଣେ ଅର୍ପିଲା । ପ୍ରଭୁଙ୍କୁ ଚିହ୍ନି ସୁଫଳ ଜନମ ମଣିଲା ॥
ହୃଦୟେ ପ୍ରୀତି ମୁଖରେ କଠୋର ବଚନ । ବୋଇଲା ଚାହିଁ ସମ୍ମୁଖେ ରାମଙ୍କ ବଦନ ॥୨॥

---

ଜୋରରେ ଗର୍ଜନ କଲା ॥ ୧ ॥ ତତ୍ପରେ ସୁଗ୍ରୀବ ବ୍ୟାକୁଳ ହୋଇ ପଳାଇଲେ । ବିଧାର ଆଘାତ ତାହାଙ୍କୁ ବଜ୍ର ସମାନ କଷ୍ଟକର ହେଲା । ସେ ଆସି କହିଲେ, "ହେ କୃପାଳୁ ରଘୁବୀର ? ମୁଁ ଆପଣଙ୍କୁ ପ୍ରଥମରୁ କହିଥିଲି ନା—ବାଳି ମୋ ଭାଇ ନୁହେଁ, କାଳ ବୋଲି ' ॥ ୨ ॥ ଶ୍ରୀରାମ କହିଲେ, "ତୁମ ଦୁଇ ଭାଇଙ୍କ ରୂପ ଏକା ପରି । ଏହି ଭ୍ରମରେ ମୁଁ ତାହାକୁ ମାରିଲି ନାହିଁ ।" ତତ୍ପରେ ଶ୍ରୀରାମ ସୁଗ୍ରୀବଙ୍କ ଶରୀରକୁ ହାତରେ ସ୍ପର୍ଶ କଲେ । ଫଳତଃ ତାହାଙ୍କ ଶରୀର ବଜ୍ର ପରି ଶକ୍ତ ହୋଇଗଲା ଏବଂ ସମସ୍ତ ପୀଡ଼ା ଅପସରି ଗଲା ॥ ୩ ॥ ତତ୍ପରେ ଶ୍ରୀରାମ ସୁଗ୍ରୀବଙ୍କ ଗଳାରେ ଫୁଲମାଳା ଲମ୍ବାଇ ଦେଲେ ଏବଂ ପୁଣି ତାହାଙ୍କୁ ବହୁତ ବଳ ଦେଇ ପଠାଇଲେ । ଉଭୟଙ୍କ ମଧ୍ୟରେ ପୁଣି ଅନେକ ପ୍ରକାର ଯୁଦ୍ଧ ହେଲା । ଶ୍ରୀ ରଘୁନାଥ ବୃକ୍ଷ ଆଢ଼ୁଆଳରେ ରହି ଦୁହିଙ୍କ ଯୁଦ୍ଧ ଦେଖୁଥାଆନ୍ତି ॥ ୪ ॥
ଦୋହା :—ସୁଗ୍ରୀବ ବହୁତ ଛଳବଳ ପ୍ରୟୋଗ କଲେ । କିନ୍ତୁ ଶେଷରେ ଡର ହୃଦୟରେ ହାରିଗଲେ । ସେତେବେଳେ ଶ୍ରୀରାମ ଧନୁ ଆକର୍ଷି ବାଳିର ବକ୍ଷ ମଧ୍ୟକୁ ଲକ୍ଷ୍ୟ କରି

ଧର୍ମ ହେତୁ ଅବତରେହୁ ଗୋସାଈଁ । ମାରେହୁ ମୋହି ବ୍ୟାଧ କୀ ନାଈଁ ॥
ମୈଁ ବୈରୀ ସୁଗ୍ରୀବ ପିଆରା । ଅବଗୁନ କଵନ ନାଥ ମୋହି ମାରା ॥୩॥
ଅନୁଜ ବଧୂ ଭଗିନୀ ସୁତ ନାରୀ । ସୁନୁ ସଠ କନ୍ୟା ସମ ଏ ଚାରୀ ॥
ଇନ୍ହହି କୁଦୃଷ୍ଟି ବିଲୋକଇ ଜୋଈ । ତାହି ବଧେଁ କଛୁ ପାପ ନ ହୋଈ ॥୪॥
ମୂଢ଼ ତୋହି ଅତିସୟ ଅଭିମାନା । ନାରି ସିଖାଵନ କରସି ନ କାନା ॥
ମମ ଭୁଜ ବଲ ଆଶ୍ରିତ ତେହି ଜାନୀ । ମାରା ଚହସି ଅଧମ ଅଭିମାନୀ ॥୫॥

ସୁନହୁ ରାମ ସ୍ୱାମୀ ସନ ଚଲ ନ ଚାତୁରୀ ମୋରି ।
ପ୍ରଭୁ ଅଜହୁଁ ମୈଁ ପାପୀ ଅନ୍ତକାଲ ଗତି ତୋରି ॥୯॥

---

ଧର୍ମହେତୁ ଅବତାର ହୋଇଣ ଗୋସାଇଁ । ବ୍ୟାଧ ପରି ଲୁଚି ମୋତେ ମାରିଲ କପାଇଁ ॥
ମୁଁ ହେଲି ବଇରି ପ୍ରିୟ ସୁଗ୍ରୀବ କେମନ୍ତ । କେଉଁ କାରଣରୁ ନାଥ, ମୋତେ କଲ ହତ ॥୩॥
ଅନୁଜ, ବଧୂ, ଭଗିନୀ, ପୁଣି ସୁତ ନାରୀ । କନ୍ୟା ସମାନ ଅଟନ୍ତି ଶଠ, ଏହି ଚାରି ॥
ଏମାନଙ୍କୁ କୁଦୃଷ୍ଟିରେ ଯେହୁ ବିଲୋକଇ । ତାହାକୁ ବଧିଲେ କିଛି ପାପ ନ ଲାଗଇ ॥୪॥
ମୂଢ, ତୋର ବଢିଗଲା ଅତି ଅଭିମାନ । ନାରୀର ସୁନ୍ଦର ଶିକ୍ଷା ନ କରିଲୁ କାନ ॥
ମୋ ଭୁଜବଳ ଆଶ୍ରିତ ତାକୁ ସୁଦ୍ଧା ଜାଣି । ମାରିବାକୁ ଇଚ୍ଛା କରୁ ଅଧମାଭିମାନୀ ॥୫॥

ଶୁଣ ସ୍ୱାମୀ ରାମ, ସୁନ୍ଦର ପ୍ରବୀଣ ନ ଖାଟେ ଚାତୁରୀ ମୋର ।
ପ୍ରଭୁ, ଏବେ ବି ମୁଁ ରହିଲି ପାତକୀ ଅନ୍ତେ ପାଇ ଗତି ତୋର ॥୯॥

---

ଶର ମାରିଲେ ॥ ୮ ॥ ଚୌପାଈ :—ବାଣ ବାଜିବା ମାତ୍ରେ ବାଳି ବ୍ୟାକୁଳ ହୋଇ ପୃଥିବୀ ଉପରେ ପଡିଗଲା । କିନ୍ତୁ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ଆଗରେ ଦେଖି ସେ ପୁଣି ଉଠି ବସିଲା । ଭଗବାନ୍‌ଙ୍କ ଶ୍ୟାମଳ ଶରୀର, ଶିର ଉପରେ ଜଟା, ଲାଲ ନେତ୍ର ଏବଂ ସେ ଶରସହିତ ଧନୁ ଧାରଣ କରିଅଛନ୍ତି ॥ ୧ ॥ ବାଳି ବାରମ୍ବାର ଭଗବାନ୍‌ଙ୍କ ଆଡକୁ ଚାହିଁ ତାଙ୍କ ଚରଣ-କମଳ-ଯୁଗଳରେ ଚିତ୍ତ ଲଗାଇଲା । ପ୍ରଭୁଙ୍କୁ ଚିହ୍ନି ସେ ନିଜ ଜନ୍ମ ସଫଳ ମନେ କଲା । ତାହାର ହୃଦୟରେ ପ୍ରୀତି ଥିଲା, କିନ୍ତୁ ମୁହଁରେ କଠୋର ବଚନ । ଶ୍ରୀରାମଙ୍କ ଆଡକୁ ଚାହିଁ ସେ କହିଲା, "ହେ ନାଥ ! କି ଦୋଷରେ ଆପଣ ମୋତେ ମାରିଲେ ? ଆପଣ ଧର୍ମରକ୍ଷା ନିମନ୍ତେ ଅବତାର ଗ୍ରହଣ କରିଅଛନ୍ତି ଏବଂ ମୋତେ ବ୍ୟାଧ ପରି ଲୁଚି ମାରିଲେ ! ମୁଁ ଆପଣଙ୍କ ଶତ୍ରୁ ଏବଂ ସୁଗ୍ରୀବ ପ୍ରିୟମିତ୍ର ! ହେ ନାଥ ! ଆପଣ କେଉଁ ଦୋଷ ହେତୁ ମୋତେ ମାରିଲେ ?" ॥୨-୩॥ ଶ୍ରୀରାମ କହିଲେ, "ରେ ମୂର୍ଖ ! ଶୁଣ୍ ! ସାନ ଭାଇର ସ୍ତ୍ରୀ, ଭଗିନୀ, ପୁତ୍ରବଧୂ ଓ କନ୍ୟା—ଏ ଚାରି ହେଁ ସମାନ । ଏମାନଙ୍କୁ ଯେ କେହି ଖରାପ ଦୃଷ୍ଟିରେ ଦେଖେ, ତାହାକୁ ବଧ କରିବାରେ ଆଦୌ ପାପ ହୁଏନାହିଁ ॥୪॥ ହେ ମୂଢ ! ତୋ ମନରେ ତ ଅତି ଅଭିମାନ । ତୁ ନିଜ ସ୍ତ୍ରୀର ଉପଦେଶ ପ୍ରତି ସୁଦ୍ଧା କର୍ଣ୍ଣପାତ କଲୁନାହିଁ ! ଆରେ ଅଧମ ଅଭିମାନୀ ! ସୁଗ୍ରୀବକୁ ମୋ ବାହୁବଳରେ ଆଶ୍ରିତ ଜାଣି ସୁଦ୍ଧା ତୁ ତାହାକୁ ମାରିବାକୁ ଚାହୁଁଥିଲୁ ! ॥ ୫ ॥ ଦୋହା :—ବାଳି କହିଲା,

ସୁନତ ରାମ ଅତି କୋମଲ ବାନୀ । ବାଲି ସୀସ ପରସେଉ ନିଜ ପାନୀ ॥
ଅଚଲ କରୌଁ ତନୁ ରାଖହୁ ପ୍ରାନା । ବାଲି କହା ସୁନୁ କୃପାନିଧାନା ॥୧॥
ଜନ୍ମ ଜନ୍ମ ମୁନି ଜତନୁ କରାହୀଁ । ଅନ୍ତ ରାମ କହି ଆୱତ ନାହୀଁ ॥
ଜାସୁ ନାମ ବଲ ସଂକର କାସୀ । ଦେତ ସବହି ସମ ଗତି ଅବିନାସୀ ॥୨॥
ମମ ଲୋଚନ ଗୋଚର ସୋଇ ଆୱା । ବହୁରି କି ପ୍ରଭୁ ଅସ ବନିହି ବନାୱା ॥୩॥

ସୋ ନୟନ ଗୋଚର ଜାସୁ ଗୁନ ନିତ ନେତି କହି ଶ୍ରୁତି ଗାୱହୀଁ ।
ଜିତି ପବନ ମନ ଗୋ ନିରସ କରି ମୁନି ଧ୍ୟାନ କବହୁଁକ ପାୱହୀଁ ॥
ମୋହି ଜାନି ଅତି ଅଭିମାନ ବସ ପ୍ରଭୁ କହେଉ ରାଖୁ ସରୀରହୀ ।
ଅସ କୱନ ସଠ ହଠି କାଟି ସୁରତରୁ ବାରି କରିହି ବବୂରହୀ ॥୧॥

---

ଶୁଣି ରଘୁନାଥ ଅତି ସୁକୋମଳ ବାଣୀ । ବାଳି ମସ୍ତକରେ ସ୍ପର୍ଶ କଲେ ନିଜ ପାଣି ॥
ଅଚଳ କରୁଛି ତନୁ, ରଖ ନିଜ ପ୍ରାଣ । ବାଳି କହିଲା, ଶୁଣନ୍ତୁ, କରୁଣା-ନିଧାନ ॥୧॥
ଜନମ ଜନମ, ମୁନି ଯତନ କରଇ । ଅନ୍ତ ସମୟକୁ 'ରାମ' କହି ନ ଆସଇ ॥
ଯାର ନାମ ବଳେ ଅବିନାଶୀ ଉମାପତି । ସମସ୍ତଙ୍କୁ ସମଗତି କାଶୀରେ ଦିଅନ୍ତି ॥୨॥
ମୋ ଲୋଚନ ସମ୍ମୁଖରେ ସେ ପ୍ରଭୁ ଆଗତ । ପୁଣି କେବେ ଘଟିବ କି ସଂଯୋଗ ଏମନ୍ତ ॥୩॥

ସେହି ମୋ ସମ୍ମୁଖରେ ଶ୍ରୁତି ଗୁଣ ଯାହାର 'ନେତି' 'ନେତି' କହି ଗାଆନ୍ତି ।
ଜିଣି ଇନ୍ଦ୍ରିୟ ମନ ପବନ ମୁନିଜନ କଦାପି ଧ୍ୟାନେ କେ ପାଆନ୍ତି ।
ଜାଣି ମୁଁ ଅଭିମାନୀ ଅତି, ରଖ ଏ ଦେହକୁ କହନ୍ତି,
ଏମନ୍ତ କେଉଁ ଶଠ କାଟି ସୁର ବିଟପ ବାଡ଼ରେ ଗୋହିରା ରୋପନ୍ତି ॥୧॥

---

"ହେ ଶ୍ରୀରାମ ! ଶୁଣନ୍ତୁ—ଆପଣ ପ୍ରବୀଣ ସୁନ୍ଦର ସ୍ୱାମୀ, ଆପଣଙ୍କ ଆଗରେ ମୋ ଚାତୁରୀ ଖଟିବ ନାହିଁ । ହେ ପ୍ରଭୋ ! ଅନ୍ତକାଳରେ ଆପଣଙ୍କ ଗତି (ଶରଣ) ପାଇ ସୁଦ୍ଧା ମୁଁ ପାପୀ ହୋଇ ରହିଲି !" ॥ ୯ ॥ ଚୌପାଇ :—ବାଳିର ଅତି କୋମଳ ବାଣୀ ଶୁଣି ଶ୍ରୀରାମ ତାହାର ଶିରକୁ ଆପଣା ହାତରେ ସ୍ପର୍ଶ କଲେ ଏବଂ କହିଲେ, ମୁଁ ତୋ ଶରୀରକୁ ଅଚଳ କରିଦେଉଛି । ତୁ ଆପଣା ପ୍ରାଣ ରଖ ।" ବାଳି କହିଲା, ହେ କୃପାନିଧାନ ! ଶୁଣନ୍ତୁ ॥ ୧ ॥ "ମୁନି-ଗଣ ଜନ୍ମେ ଜନ୍ମେ ବହୁବିଧ ସାଧନ କରୁଥାଆନ୍ତି । ତଥାପି ଅନ୍ତକାଳରେ ସେମାନଙ୍କୁ 'ରାମ' ନାମ କହି ଆସେନାହିଁ । ଯାହାଙ୍କ ନାମ ବଳରେ ଶଙ୍କର କାଶୀରେ ସମସ୍ତଙ୍କୁ ସମାନ ଭାବରେ ଅବିନାଶିନୀ ଗତି (ମୁକ୍ତି) ଦିଅନ୍ତି, ସେହି ରାମଚନ୍ଦ୍ର ମୋ ନେତ୍ର ସମ୍ମୁଖରେ ବିରାଜମାନ । ହେ ପ୍ରଭୋ ! ଏହିପରି ସୁଯୋଗ ଆଉ କେବେ ମୋତେ ମିଳିବ କି ? ଛନ୍ଦ —ଶ୍ରୁତିଗଣ 'ନେତି' 'ନେତି' କହି ନିରନ୍ତର ଯାହାଙ୍କ ଗୁଣ ଗାନ କରନ୍ତି ଏବଂ ପ୍ରାଣ-ମନକୁ ଜୟ କରି ଓ ଇନ୍ଦ୍ରିୟମାନଙ୍କୁ ନୀରସ (ନିଗ୍ରହ) କରି ମୁନିମାନେ ଧ୍ୟାନ ବଳରେ ସୁଦ୍ଧା ଯାହାଙ୍କର ରୂପ କ୍ୱଚିତ୍ ଦର୍ଶନ କରନ୍ତି,

ଅବ ନାଥ କରି କରୁନା ବିଲୋକହୁ ଦେହୁ ଜୋ ବର ମାଗଉଁ ।
ଜେହିଁ ଜୋନି ଜନ୍ମୌଁ କର୍ମ ବସ ତହଁ ରାମପଦ ଅନୁରାଗଉଁ ॥
ଯହ ତନୟ ମମ ସମ ବିନୟ ବଲ କଲ୍ୟାନପ୍ରଦ ପ୍ରଭୁ ଲୀଜିଏ ।
ଗହି ବାଁହ ସୁର ନର ନାହ ଆପନ ଦାସ ଅଙ୍ଗଦ କୀଜିଏ ॥୨॥

ରାମ ଚରନ ଦୃଢ଼ ପ୍ରୀତି କରି ବାଲି କୀନ୍ହ ତନୁ ତ୍ୟାଗ ।
ସୁମନମାଲ ଜିମି କଣ୍ଠ ତେଁ ଗିରତ ନ ଜାନଇ ନାଗ ॥୧୦॥
ରାମ ବାଲି ନିଜ ଧାମ ପଠାୱା । ନଗର ଲୋଗ ସବ ବ୍ୟାକୁଲ ଧାୱା ॥
ନାନା ବିଧି ବିଲାପ କର ତାରା । ଛୁଟେ କେସ ନ ଦେହ ସଁଭାରା ॥୧॥

---

କରୁଣା ଦୃଷ୍ଟିପାତ କରିଣ ଏବେ ନାଥ, ଦିଅନ୍ତୁ ବର ମାଗେ ଏହୁ ।
ଯେଉଁଣ ଯୋନି ଜନ୍ମ ହେବି ସ୍ୱକର୍ମୁ, ରାମ ପଦ୍ମରେ ପ୍ରୀତି ତବ ହେଉ ।
ଏ ସୁତେ ଦିଅ ସୁରାଶିଷ, ବିନୟ ବଳେ ମୋ ସରସ,
ଅଙ୍ଗଦ କର ଧରି ଆପଣା ଦାସ କରି ଘେନନ୍ତୁ ସୁର ନର ଈଶ ॥୨॥

ରାମ ପଦେ ଅତି ଦୃଢ଼ କରି ପ୍ରୀତି ବାଲି କଲା ତନୁ ତ୍ୟାଗ ।
କଣ୍ଠରୁ ଯେମନ୍ତ ପୁଷ୍ପମାଳ ଚ୍ୟୁତ ହୁଅନ୍ତେ ନ ଜାଣେ ନାଗ ॥୧୦॥
ରାମ ବାଳିକୁ ଆପଣା ଧାମେ ପଠାଇଲେ । ନଗର ଲୋକ ସମସ୍ତେ ବ୍ୟାକୁଳେ ଧାଇଁଲେ ॥
ବିଳାପ କରଇ ତାରା ବିବିଧ ପ୍ରକାରେ । ମୁକୁଳିତ କେଶ ଦେହ ସମ୍ଭାଳି ନ ପାରେ ॥୧॥

---

ସେହି ପ୍ରଭୁ ସାକ୍ଷାତ ଆପଣ ମୋ ସମ୍ମୁଖରେ ଆବିର୍ଭୂତ । ଆପଣ ମୋତେ ଅତ୍ୟନ୍ତ ଅଭିମାନର ବଶବର୍ତ୍ତୀ ବୋଲି ମନେ କରି ଦେହ ରଖିବାକୁ ମୋତେ କହିଲେ । ପରନ୍ତୁ ଏପରି ମୂର୍ଖ କିଏ ହେବ, ଯେ ଜବରଦସ୍ତି କଳ୍ପବୃକ୍ଷକୁ କାଟି ତାହା ସ୍ଥାନରେ ବୋହିରି ବୃକ୍ଷର ବଗିଚା କରିବ ? ॥ ୧ ॥ ହେ ନାଥ ! ଏବେ ମୋ ଉପରେ କୃପାଦୃଷ୍ଟି ଦିଅନ୍ତୁ ଏବଂ ମୁଁ ଯାହା ବର ମାଗୁଛି, ତାହା ଦିଅନ୍ତୁ । ମୁଁ କର୍ମବଶରେ ଯେ କୌଣସି ଯୋନିରେ ଜନ୍ମଗ୍ରହଣ କରେ ନା କାହିଁକି, ଶ୍ରୀରାମଙ୍କ ଚରଣରେ ପ୍ରେମ କରେ । ହେ ମଙ୍ଗଳପ୍ରଦ ପ୍ରଭୋ ! ଏହି ମୋର ପୁତ୍ର ଅଙ୍ଗଦ ବିନୟ ଓ ବଳ ବିଷୟରେ ମୋ ସଦୃଶ ସମାନ, ଏହାକୁ ଗ୍ରହଣ କରନ୍ତୁ । ହେ ଦେବତା ଓ ମନୁଷ୍ୟଗଣଙ୍କ ନାଥ । ବାହୁ ଧରି ଏହାକୁ ଆପଣା ଦାସ ରୂପେ ସ୍ୱୀକାର କରନ୍ତୁ ॥ ୨ ॥ ଦୋହା —ଶ୍ରୀରାମଙ୍କ ଚରଣରେ ଦୃଢ଼ ପ୍ରୀତି ରଖି ବାଲି ତାହାର ଶରୀରକୁ ହାତୀ ନିଜ ଗଳାରୁ ଫୁଲମାଳା ଖସିପଡ଼ିଲା ବେଳେ ଜାଣି ନ ପାରିଲା ପରି ଅତି ସହଜରେ ତ୍ୟାଗ କରି ପକାଇଲା ॥ ୧୦ ॥ ଚୌପାଇ :—ଶ୍ରୀରାମ ବାଳିକୁ ଆପଣା ପରମଧାମକୁ ପଠାଇ ଦେଲେ । ନଗରର ସମସ୍ତ ଲୋକ ବ୍ୟାକୁଳ ହୋଇ ଧାଇଁଲେ । ବାଲିପତ୍ନୀ ତାରା ଅନେକ ପ୍ରକାରେ ବିଳାପ କରିବାକୁ ଲାଗିଲା । ତାହାର କେଶ ମୁକୁଳା ପଡ଼ିଥାଏ ଏବଂ ସେ ଆପଣା ଦେହକୁ ସମ୍ଭାଳି ପାରୁ ନ ଥାଏ ॥୧॥

ତାରା ବିକଲ ଦେଖି ରଘୁରାୟା । ଦୀନ୍ହ ଜ୍ଞାନ ହରି ଲୀନ୍ହୀ ମାୟା ॥
ଛିତି ଜଲ ପାବକ ଗଗନ ସମୀରା । ପଞ୍ଚ ରଚିତ ଅତି ଅଧମ ସରୀରା ॥୨॥
ପ୍ରଗଟ ସୋ ତନୁ ତବ ଆଗେଁ ସୋୱା । ଜୀବ ନିତ୍ୟ କେହି ଲଗି ତୁମ୍ହ ରୋୱା ॥
ଉପଜା ଜ୍ଞାନ ଚରନ ତବ ଲାଗୀ । ଲୀନ୍ହେସି ପରମ ଭଗତି ବର ମାଗୀ ॥୩॥
ଉମା ଦାରୁ ଜୋଷିତ କୀ ନାଈଁ । ସବହି ନଚାୱତ ରାମୁ ଗୋସାଈଁ ॥
ତବ ସୁଗ୍ରୀବହି ଆୟସୁ ଦୀନ୍ହା । ମୃତକ କର୍ମ ବିଧିବତ ସବ କୀନ୍ହା ॥୪॥
ରାମ କହା ଅନୁଜହି ସମୁଝାଈ । ରାଜ ଦେହୁ ସୁଗ୍ରୀବହି ଜାଈ ॥
ରଘୁପତି ଚରନ ନାଇ କରି ମାଥା । ଚଲେ ସକଲ ପ୍ରେରିତ ରଘୁନାଥା ॥୫॥

ଲଛିମନ ତୁରତ ବୋଲାଏ ପୁରଜନ ବିପ୍ର ସମାଜ ।
ରାଜୁ ଦୀନ୍ହ ସୁଗ୍ରୀବ କହଁ ଅଙ୍ଗଦ କହଁ ଜୁବରାଜ ॥୧୧॥

---

ତାରାଙ୍କୁ ବିକଳ ଦେଖି ରଘୁକୁଳ-ମଣି । ଦେଇ ଜ୍ଞାନଶିକ୍ଷା ମାୟା ହରିଲେ ସେ କ୍ଷଣି ॥
କ୍ଷିତି ଜଳ ହୁତାଶନ ଗଗନ ସମୀର । ପଞ୍ଚ ବିରଚିତ ଏହି ଅଧମ ଶରୀର ॥୨॥
ପ୍ରତ୍ୟକ୍ଷ ସେ ତନୁ ତୋର ସମ୍ମୁଖେ ଶୟନ । ଜୀବ ନିତ୍ୟ, କାହା ପାଇଁ କରୁ ତୁ ରୋଦନ ॥
ଉତ୍ପନ୍ନେ ଜ୍ଞାନ ତାହାଙ୍କ ଚରଣେ ପଡ଼ିଣ । ସୁଦୁର୍ଲ୍ଲଭ ଭକ୍ତି ବର ଘେନିଲା ମାଗିଣ ॥୩॥
ଶୁଣ ଶୈଳ ସୁତା ! କାଷ୍ଠ ପିତୁଳା ପରାୟେ । ସମସ୍ତଙ୍କୁ ନଚାଅନ୍ତି ପ୍ରଭୁ ରାମ ରାୟେ ॥
ପୁଣି ସୁଗ୍ରୀବଙ୍କୁ ପ୍ରଭୁ ଆଦେଶ ଦିଅନ୍ତେ । ମୃତକ କର୍ମ ସକଳ କଲା ବିଧିମତେ ॥୪॥
ରାମ ଅନୁଜଙ୍କୁ ତହୁଁ କହିଲେ ବୁଝାଇ । ରାଜ୍ୟ ସମର୍ପଣ କର ସୁଗ୍ରୀବଙ୍କୁ ଯାଇ ॥
ରଘୁ-ନାୟକ ଚରଣେ ପ୍ରଣାମ କରିଣ । ଚଳିଲେ ରଘୁନାଥଙ୍କ ପ୍ରେରିତ ହୋଇଣ ॥୫॥

ସତ୍ୱର ଲକ୍ଷ୍ମଣ ମନ୍ତ୍ରୀ ପୁରଜନ ଡକାଇ ବିପ୍ର-ସମାଜ ।
ସୁଗ୍ରୀବଙ୍କୁ ରାଜ୍ୟ ଦେଲେ ସାଜି ସାଜ, ଅଙ୍ଗଦଙ୍କୁ ଯୁବରାଜ ॥୧୧॥

---

ତାରାଙ୍କୁ ବ୍ୟାକୁଳ ଦେଖି ଶ୍ରୀ ରଘୁନାଥ ତାହାଙ୍କୁ ଜ୍ଞାନ ଦେଲେ ଏବଂ ତାହାର ମାୟା (ଅଜ୍ଞାନ) ହରଣ କରିନେଲେ । ସେ କହିଲେ, "କ୍ଷିତି, ଅପ, ତେଜଃ, ବ୍ୟୋମ ଓ ମରୁତ୍—ଏହି ପାଞ୍ଚ ତତ୍ତ୍ୱରେ ଏହି ଅତି ଅଧମ ଶରୀର ଗଠିତ ॥୨॥ ସେହି ନଶ୍ୱର ଶରୀର ତ ପ୍ରତ୍ୟକ୍ଷ ତୁମ ଆଗରେ ଶାୟିତ ଏବଂ ଜୀବାତ୍ମା ନିତ୍ୟ । ତେବେ ତୁମେ କାହିଁକି ବିଳାପ କରୁଅଛ ?" ଯେତେବେଳେ ତାରାର ଜ୍ଞାନ ଉତ୍ପନ୍ନ ହେଲା, ସେ ଭଗବାନଙ୍କ ଚରଣରେ ଲାଗିଗଲା ଏବଂ ପରମ ଭକ୍ତିର ବର ମାଗିଲା ॥ ୩ ॥ ଶିବ କହନ୍ତି, "ହେ ଉମା ! ସ୍ୱାମୀ ଶ୍ରୀରାମ କାଠକଣ୍ଢେଇ ପରି ସମସ୍ତଙ୍କୁ ନଚାନ୍ତି ।" ତଦନନ୍ତର ଶ୍ରୀରାମ ସୁଗ୍ରୀବଙ୍କୁ ଆଦେଶ ଦେଲେ ଏବଂ ସୁଗ୍ରୀବ ବାଳିର ସମସ୍ତ ଅନ୍ତ୍ୟେଷ୍ଟି କ୍ରିୟା ଯଥାବିଧି ସମ୍ପାଦନ କଲେ ॥ ୪ ॥ ତତ୍ପରେ ଶ୍ରୀରାମ ସାନଭାଇ ଲକ୍ଷ୍ମଣଙ୍କୁ କହିଲେ, "ତୁମେ ଯାଇ ସୁଗ୍ରୀବଙ୍କୁ ରାଜ୍ୟ ଦାନ କରିଦିଅ ।" ଶ୍ରୀରାମଙ୍କ ପ୍ରେରଣା ଯୋଗେ ସମସ୍ତେ ତାହାଙ୍କର ଚରଣରେ ମସ୍ତକ ନୁଆଁଇ ଚାଲିଲେ ॥ ୫ ॥ ଦୋହା :—ଲକ୍ଷ୍ମଣ ତୁରନ୍ତ ମନ୍ତ୍ରୀ, ପୁରଜନ ଓ ବ୍ରାହ୍ମଣ-

ଉମା ରାମ ସମ ହିତ ଜଗ ମାହୀଁ । ଗୁରୁ ପିତୁ ମାତୁ ବଂଧୁ ପ୍ରଭୁ ନାହୀଁ ॥
ସୁର ନର ମୁନି ସବ କୈ ଯହ ରୀତି । ସ୍ୱାରଥ ଲାଗି କରହିଁ ସବ ପ୍ରୀତି ॥୧॥
ବାଲି ତ୍ରାସ ବ୍ୟାକୁଲ ଦିନ ରାତୀ । ତନ ବହୁ ବ୍ରନ ଚିନ୍ତାଁ ଜର ଛାତୀ ॥
ସୋଇ ସୁଗ୍ରୀବ କୀହ୍ନ କପିରାଊ । ଅତି କୃପାଲ ରଘୁବୀର ସୁଭାଊ ॥୨॥
ଜାନତହୁଁ ଅସ ପ୍ରଭୁ ପରିହରହୀଁ । କାହେ ନ ବିପତି ଜାଲ ନର ପରହୀଁ ॥
ପୁନି ସୁଗ୍ରୀବହି ଲୀହ୍ନ ବୋଲାଈ । ବହୁ ପ୍ରକାର ନୃପନୀତି ସିଖାଈ ॥୩॥
କହ ପ୍ରଭୁ ସୁନୁ ସୁଗ୍ରୀବ ହରୀସା । ପୁର ନ ଜାଉଁ ଦସ ଚାରି ବରୀସା ॥
ଗତ ଗ୍ରୀଷମ ବରଷା ରିତୁ ଆଈ । ରହିହଉଁ ନିକଟ ସୈଲ ପର ଛାଈ ॥୪॥
ଅଂଗଦ ସହିତ କରହୁ ତୁମ୍ହ ରାଜୂ । ସଂତତ ହୃଦୟଁ ଧରେହୁ ମମ କାଜୂ ॥
ଜବ ସୁଗ୍ରୀବ ଭବନ ଫିରି ଆଏ । ରାମୁ ପ୍ରବରଷନ ଗିରି ପର ଛାଏ ॥୫॥

---

ଉମା ! ରାମ ସମ ଅତି ହିତକାରୀ ଭବେ । ନାହାନ୍ତି ଗୁରୁ ଜନକ ଜନନୀ ବାନ୍ଧବେ ॥
ସୁର ନର ମୁନି ସମସ୍ତଙ୍କ ଏହି ରୀତି । କରନ୍ତି ସମସ୍ତେ ନିଜ ସ୍ୱାର୍ଥ ହେତୁ ପ୍ରୀତି ॥୧॥
ବାଲିର ତ୍ରାସେ ବ୍ୟାକୁଳ ହୋଇ ଦିନରାତି । ବିବର୍ଣ୍ଣ ତନୁ, ଚିନ୍ତାରେ ଜଳୁଥିଲା ଛାତି ॥
ସେହି ସୁଗ୍ରୀବଙ୍କୁ କଲେ କପିଙ୍କ ଈଶ୍ୱର । ଅତି କୋମଳ ସ୍ୱଭାବ ରଘୁପତିଙ୍କର ॥୨॥
ଜାଣି ସୁଦ୍ଧା ଯେ ଏମନ୍ତ ପ୍ରଭୁଙ୍କୁ ତେଜିବେ । ବିପତ୍ତି ଜାଲେ କିପାଁ ସେ ନର ନ ପଡ଼ିବେ ॥
ପୁଣି ସୁଗ୍ରୀବଙ୍କୁ ପାଶେ ଡକାଇ ଆଣିଲେ । ବହୁତ ପ୍ରକାରେ ନୃପ ନୀତି ଶିଖାଇଲେ ॥୩॥
କହନ୍ତି ପ୍ରଭୁ ସୁଗ୍ରୀବେ, ଶୁଣ ହରିରାଣ । ପୁରେ ନ ଯିବି ଚଉଦ ବରଷ ପ୍ରମାଣ ॥
ବିଗତ ଗ୍ରୀଷ୍ମ ବରଷା ଋତୁ ଆସିଲାଣି । ରହିବି ନିକଟ ଶୈଳେ କୁଟୀର ନିର୍ମାଣି ॥୪॥
ଅଙ୍ଗଦ ସହିତ ତୁମ୍ଭେ କର ଯାଇ ରାଜ୍ୟ । ସଦା ହୃଦେ ଧ୍ୟାନ ରଖିଥିବ ମୋର କାର୍ଯ୍ୟ ॥
ତହୁଁ ସୁଗ୍ରୀବ ଭବନେ ବାହୁଡ଼ି ଆସିଲେ । ପ୍ରବର୍ଷଣ ଗିରି ପୃଷ୍ଠେ ଶ୍ରୀରାମ ରହିଲେ ॥୫॥

---

ସମାଜଙ୍କୁ ଡକାଇଲେ ଏବଂ ସେମାନଙ୍କ ସମ୍ମୁଖରେ ସୁଗ୍ରୀବଙ୍କୁ ରାଜ୍ୟ ଓ ଅଙ୍ଗଦଙ୍କୁ ଯୁବରାଜ ପଦ ଦେଲେ ॥ ୧୧ ॥ ଚୌପାଈ —"ହେ ପାର୍ବତି ! ଜଗତରେ ଶ୍ରୀରାମଙ୍କ ସଦୃଶ ହିତକାରୀ ଗୁରୁ, ପିତା, ମାତା, ବନ୍ଧୁ ଓ ସ୍ୱାମୀ ଆଦି କେହି ନାହାନ୍ତି । ଦେବତା, ମନୁଷ୍ୟ ଓ ମୁନି, ସମସ୍ତଙ୍କର ଏହି ରୀତି ଯେ, ସେମାନେ କେବଳ ସ୍ୱାର୍ଥ ନିମନ୍ତେ ସବୁ ପ୍ରୀତି କରନ୍ତି ॥ ୧ ॥ ଯେଉଁ ସୁଗ୍ରୀବ ଦିନରାତି ବାଲି ଭୟରେ ବ୍ୟାକୁଳ ହୋଇ ରହୁଥିଲେ, ଯାହାଙ୍କ ଶରୀର ବହୁ ବ୍ରଣ ଯୋଗେ ବିବର୍ଣ୍ଣ ହୋଇ ପଡ଼ିଥିଲା ଏବଂ ଚିନ୍ତାରେ ଯାହାଙ୍କ ହୃଦୟ ଜଳୁଥିଲା, ସେହି ସୁଗ୍ରୀବଙ୍କୁ ସେ ବାନରମାନଙ୍କ ରାଜା କରିଦେଲେ । ଶ୍ରୀରାମଚନ୍ଦ୍ରଙ୍କ ସ୍ୱଭାବ ଅତି ଦୟାଳୁ ॥ ୨ ॥ ଯେଉଁ ଲୋକମାନେ ଜାଣିଶୁଣି ସୁଦ୍ଧା ଏପରି ପ୍ରଭୁଙ୍କୁ ତ୍ୟାଗ କରନ୍ତି, ସେମାନେ ବିପତ୍ତି- ଜାଲରେ କାହିଁକି ବା ନ ପଡ଼ିବେ ?" ତତ୍ପରେ ଶ୍ରୀରାମ ସୁଗ୍ରୀବଙ୍କୁ ଡକାଇ ନେଲେ ଏବଂ ବହୁତ ପ୍ରକାରେ ତାହାଙ୍କୁ ରାଜନୀତି ଶିକ୍ଷା ଦେଲେ ॥ ୩ ॥ ତତ୍ପରେ ପ୍ରଭୁ କହିଲେ, "ହେ ବାନରପତି ସୁଗ୍ରୀବ ! ଶୁଣ—ମୁ

ପ୍ରଥମହିଁ ଦେବନ୍ହ ଗିରି ଗୁହା ରାଖେଉ ରୁଚିର ବନାଇ ।
ରାମ କୃପାନିଧି କଛୁ କାଲ ବାସ କରହିଁଗେ ଆଇ ॥୧୨॥
ସୁନ୍ଦର ବନ କୁସୁମିତ ଅତି ସୋଭା । ଗୁଞ୍ଜତ ମଧୁପ ନିକର ମଧୁ ଲୋଭା ॥
କନ୍ଦ ମୂଲ ଫଲ ପତ୍ର ସୁହାଏ । ଭଏ ବହୁତ ଜବ ତେଁ ପ୍ରଭୁ ଆଏ ॥୧॥
ଦେଖି ମନୋହର ସୈଲ ଅନୂପା । ରହେ ତହଁ ଅନୁଜ ସହିତ ସୁରଭୂପା ॥
ମଧୁକର ଖଗ ମୃଗ ତନୁ ଧରି ଦେବା । କରହିଁ ସିଦ୍ଧ ମୁନି ପ୍ରଭୁ କୈ ସେବା ॥୨॥
ମଙ୍ଗଲ ରୂପ ଭୟଉ ବନ ତବ ତେଁ । କୀନ୍ହ ନିବାସ ରମାପତି ଜବ ତେଁ ॥
ଫଟିକ ସିଲା ଅତି ସୁଭ୍ର ସୁହାଈ । ସୁଖ ଆସୀନ ତହାଁ ଦ୍ୱୌ ଭାଈ ॥୩॥

---

ପ୍ରଥମରୁ ଦେବେ ଶଇଲ କନ୍ଦର ରଖିଥିଲେ ସଜାଇଣ ।
ରାମ କୃପାନିଧି କଛୁ ଦିନ ଆସି ବାସ କରିବେ ଭାବିଣ ॥୧୨॥
ସୁନ୍ଦର ବନ ବିଟପ କୁସୁମିତ ଶୋଭେ । ଗୁଞ୍ଜାର କରନ୍ତି ଚଞ୍ଚରୀକ ମଧୁ ଲୋଭେ ॥
ସ୍ୱାଦ କନ୍ଦମୂଳ ଫଳ ଅଙ୍କୁର ମଧୁର । ଯେ ଦିନୁ ପ୍ରଭୁ ଆସିଲେ ହୋଇଲା ପ୍ରଚୁର ॥୧॥
ଦେଖି ଅନୁପମ ଶୈଳ ମନୋହର ଅତି । ରହିଲେ ଅନୁଜ ସହ ତହିଁ ସୁର-ପତି ॥
ମଙ୍ଗଳ ରୂପ ହୋଇଲା ଶଇଳ ସେ ଦିନୁ । ନିବାସ କଲେ ରମା-ରମଣ ଯେ ଦିନୁ ॥୨॥
ଦେବଗଣ ଖଗ ମୃଗ ମଧୁକର ଦେହେ । ପ୍ରଭୁଙ୍କ ସେବା କରନ୍ତି ସିଦ୍ଧ ମୁନି ସ୍ନେହେ ॥
ସ୍ଫଟିକ ଶିଳା ସୁନ୍ଦର ଶୁଭ୍ର ଅତିଶୟ । ସୁଖେ ଉପବିଷ୍ଟ ତହିଁ ବାନ୍ଧବ ଉଭୟ ॥୩॥

---

ଚଉଦ ବର୍ଷ ପର୍ଯ୍ୟନ୍ତ ବସ୍ତିକୁ ଯିବନାହିଁ । ଗ୍ରୀଷ୍ମଋତୁ ଶେଷ ବର୍ଷାଋତୁ ଆସିଗଲାଣି । ମୁଁ ଏଠାରେ ନିକଟବର୍ତ୍ତୀ ପର୍ବତ ଉପରେ ବାସ କରିବି ॥ ୪ ॥ ତୁମେ ଅଙ୍ଗଦ ସହ ରାଜତ୍ୱ କର । ମୋ କାର୍ଯ୍ୟ ବିଷୟ ସଦା ହୃଦୟରେ ଧ୍ୟାନ ରଖିଥିବ ।" ତଦନନ୍ତର ସୁଗ୍ରୀବ ଆପଣା ଭବନକୁ ଫେରି ଆସିଲେ ଏବଂ ଶ୍ରୀରାମ ପ୍ରବର୍ଷଣ ପର୍ବତ ଉପରେ ଯାଇ ବାସ କଲେ ॥ ୫ ॥ ଦୋହା :—ଦେବତାମାନେ ପୂର୍ବରୁ ସେହି ପର୍ବତର ଗୋଟିଏ ଗୁମ୍ଫାକୁ ସୁନ୍ଦର ଭାବରେ ସଜାଇ ରଖିଥିଲେ । ସେମାନେ ଭାବିଥିଲେ, କୃପାନିଧି ରାମ କିଛି ଦିନ ପାଇଁ ଏଠାରେ ଆସି ନିବାସ କରିବେ ॥ ୧୨ ॥ ଚୌପାଈ :—ସୁନ୍ଦର ବନ କୁସୁମିତ ହୋଇ ଅତି ଶୋଭା ପାଉଛି । ମଧୁ ଲୋଭରେ ଭ୍ରମର-ସମୂହ ଗୁଞ୍ଜନ କରୁଛନ୍ତି । ଯେଉଁ ଦିନଠାରୁ ପ୍ରଭୁ ସେହି ବନ ମଧ୍ୟକୁ ଆସିଲେ, ସେହି ଦିନଠାରୁ ବନରେ ସୁନ୍ଦର କନ୍ଦ ମୂଳ, ଫଳ ଓ ପତ୍ରର ପରିମାଣ ପ୍ରଚୁର ହୋଇଗଲା ॥ ୧ ॥ ମନୋହର ଓ ଅନୁପମ ପର୍ବତକୁ ଦେଖି ଦେବାଧିରାଜ ଶ୍ରୀରାମ ସାନଭାଇ ଲକ୍ଷ୍ମଣଙ୍କ ସହ ସେହିଠାରେ ରହିଲେ । ଦେବତା, ସିଦ୍ଧ ଓ ମୁନିମାନେ ଭ୍ରମର, ପକ୍ଷୀ ଓ ପଶୁ ଶରୀର ଧାରଣପୂର୍ବକ ପ୍ରଭୁଙ୍କ ସେବା କରିବାକୁ ଲାଗିଲେ ॥ ୨ ॥ ଯେଉଁ ଦିନଠାରୁ ରମାପତି ଶ୍ରୀରାମ ସେଠାରେ ନିବାସ କଲେ, ସେହି ଦିନଠାରୁ ବନ ମଙ୍ଗଳ-ସ୍ୱରୂପ ହୋଇଗଲା । ସ୍ଫଟିକମଣିର ଗୋଟିଏ ଶୁଭ୍ର ଶିଳା ସୁଶୋଭିତ । ତହିଁ ଉପରେ ଦୁଇ ଭାଇ ସୁଖରେ

କହତ ଅନୁଜ ସନ କଥା ଅନେକା । ଭଗତି ବିରତି ନୃପନୀତି ବିବେକା ॥
ବରଷା କାଲ ମେଘ ନଭ ଛାଏ । ଗରଜତ ଲାଗତ ପରମ ସୁହାଏ ॥୪॥
ଲଛିମନ ଦେଖୁ ମୋର ଗନ ନାଚତ ବାରିଦ ପେଖି ।
ଗୃହୀ ବିରତି ରତ ହରଷ ଜସ ବିଷ୍ଣୁ ଭଗତ କହୁଁ ଦେଖି ॥୧୩॥
ଘନ ଘମଣ୍ଡ ନଭ ଗରଜତ ଘୋରା । ପ୍ରିୟା ହୀନ ଡରପତ ମନ ମୋରା ॥
ଦାମିନି ଦମକ ରହ ନ ଘନ ମାହୀଁ । ଖଲ କୈ ପ୍ରୀତି ଜଥା ଥିର ନାହୀଁ ॥୧॥
ବରଷହିଁ ଜଲଦ ଭୂମି ନିଅରାଏଁ । ଜଥା ନବହିଁ ବୁଧ ବିଦ୍ୟା ପାଏଁ ॥
ବୁଁଦ ଅଘାତ ସହହିଁ ଗିରି କୈସେଁ । ଖଲ କେ ବଚନ ସନ୍ତ ସହ ଜୈସେଁ ॥୨॥
ଛୁଦ୍ର ନଦୀଁ ଭରି ଚଲୀଁ ତୋରାଈ । ଜସ ଥୋରେହୁଁ ଧନ ଖଲ ଇତରାଈ ॥
ଭୂମି ପରତ ଭା ଢାବର ପାନୀ । ଜନୁ ଜୀବହି ମାୟା ଲପଟାନୀ ॥୩॥

---

ଅନୁଜଙ୍କ ଆଗେ କଥା କହନ୍ତି ଅନେକ । ନୃପ ନୀତି ଭକ୍ତି ତଥା ବୈରାଗ୍ୟ ବିବେକ ॥
ବରଷା କାଳ ମେଘରେ ଆଚ୍ଛନ୍ନ ଅମ୍ବର । ଗରଜନ୍ତେ ଲାଗୁଅଛି ପରମ ସୁନ୍ଦର ॥୪॥
ବିଲୋକ ଲକ୍ଷ୍ମଣ ମୟୂରଙ୍କ ଗଣ ନାଚନ୍ତି ଅଭ୍ର ନିରେଖି ।
ବୈରାଗ୍ୟ ନିରତ ଗୃହସ୍ଥ ଯେମନ୍ତ ହର୍ଷ ବିଷ୍ଣୁ ଭକ୍ତେ ଦେଖି ॥୧୩॥
ଗର୍ବୀ ଘନ ଗଗନରେ ଗରଜଇ ଘୋର । ପ୍ରିୟା ବିହୁନରୁ ମନ ଡରୁଅଛି ମୋର ॥
ଚପଳା ଚମକ ଘନେ ସ୍ଥିତ ନ ହୁଅଇ । ଖଳଙ୍କ ପ୍ରୀତି ଯେପରି ସ୍ଥିର ନ ରହଇ ॥୧॥
ବରଷେ ଜଳଦ ଭୂମି ନିକଟ ହୋଇଣ । ଯେସନେ ନତ ହୁଏ ବୁଧ ସୁବିଦ୍ୟା ପାଇଣ ॥
ବିନ୍ଦୁ ଆଘାତ ଶଇଳ ସହନ୍ତି ସେପରି । ଖଳଙ୍କ ବଚନ ସନ୍ଥ ସହେ ଯେଉଁ ପରି ॥୨॥
କ୍ଷୁଦ୍ର ନଦୀ ପୂରି ବେଗେ ଉଚ୍ଛୁଳି ଚଳନ୍ତି । ଯେସନେ ସ୍ୱଳ୍ପଧନେ ଖଳ ବାତୁଳ ହୁଅନ୍ତି ॥
ଆବିଳ ହୋଇଲା ପାଣି ଭୂମିରେ ପଡନ୍ତେ । ଜୀବଙ୍କୁ ମାୟା ଗୁଡ଼ାଇ ରଖିଛି ଯେମନ୍ତେ ॥୩॥

---

ତରଜମାନ ॥ ୩ ॥ ଶ୍ରୀରାମ ସାନଭାଇ ଲକ୍ଷ୍ମଣଙ୍କୁ ଭକ୍ତି, ବୈରାଗ୍ୟ, ରାଜନୀତି ଓ ଜ୍ଞାନ ସମ୍ବନ୍ଧରେ ଅନେକ କଥା କହୁଥାଆନ୍ତି । ବର୍ଷା କାଳରେ ଆକାଶ ମେଘାଚ୍ଛନ୍ନ ହୋଇ ଗର୍ଜନ କଲାବେଳେ ଅତି ସୁନ୍ଦର ଲାଗୁଥାଏ ॥ ୪ ॥ ଦୋହା :—ଶ୍ରୀରାମ କହିବାକୁ ଲାଗିଲେ, "ହେ ଲକ୍ଷ୍ମଣ ! ଦେଖ, ମୟୂରଗଣ ବାଦଲମାନଙ୍କୁ ଦେଖି ନାଚୁଅଛନ୍ତି । ବୈରାଗ୍ୟରେ ଅନୁରକ୍ତ ଗୃହସ୍ଥ କୌଣସି ବିଷ୍ଣୁଭକ୍ତଙ୍କୁ ଦେଖି ଠିକ୍ ସେହିପରି ଆନନ୍ଦିତ ହୁଏ ॥ ୧୩ ॥ ଚୌପାଈ :—ଆକାଶରେ ଗର୍ବୀ ବାଦଲ ଘୋର ଗର୍ଜନ କରୁଛି । ପ୍ରିୟା ବିନା ମୋ ମନ ଡରୁଅଛି । ଦୁଷ୍ଟ ପ୍ରୀତି ସ୍ଥିର ନ ରହିଲା ପ୍ରାୟ ବାଦଲରେ ଚପଳାର ଚମକ ସ୍ଥିର ହୋଇ ରହୁନାହିଁ ॥ ୧ ॥ ବିଦ୍ୱାନ୍‌ମାନେ ବିଦ୍ୟା ପାଇ ନମ୍ର ହୋଇଯାଆନ୍ତି, ସେହିପରି ବାଦଲ ପୃଥିବୀ ନିକଟକୁ ନଇଁ ବର୍ଷା କରୁଅଛି । ଖଳଙ୍କ ବଚନ ସନ୍ଥମାନେ ସହିଲା ପରି ବର୍ଷା-ବିନ୍ଦୁମାନଙ୍କର ଆଘାତ ପର୍ବତଗଣ ସହନ କରୁଅଛନ୍ତି ॥ ୨ ॥ ଅଳ୍ପ ଧନରେ ମୂର୍ଖ ଦୁଷ୍ଟମାନେ ଗର୍ବୋନ୍ମତ୍ତ ହେଲା ପରି କ୍ଷୁଦ୍ର

ସମିଟି ସମିଟି ଜଲ ଭରହିଁ ତଲାଓ୍ୱା । ଜିମି ସଦଗୁନ ସଜ୍ଜନ ପହିଁ ଆଓ୍ୱା ॥
ସରିତା ଜଲ ଜଲନିଧି ମହୁଁ ଜାଈ । ହୋଇ ଅଚଲ ଜିମି ଜିବ ହରି ପାଈ ॥୩॥
ହରିତ ଭୂମି ତୃନ ସଂକୁଲ ସମୁଝି ପରହିଁ ନହିଁ ପନ୍ଥ ।
ଜିମି ପାଖଣ୍ଡ ବାଦ ତେଁ ଗୁପ୍ତ ହୋହିଁ ସଦଗ୍ରନ୍ଥ ॥୧୪॥
ଦାଦୁର ଧୁନି ଚହୁଁ ଦିସାଁ ସୁହାଈ । ବେଦ ପଢ଼ହିଁ ଜନୁ ବଟୁ ସମୁଦାଈ ॥
ନବ ପଲ୍ଲବ ଭଏ ବିଟପ ଅନେକା । ସାଧକ ମନ ଜସ ମିଲେ ବିବେକା ॥୧॥
ଅର୍କ ଜବାସ ପାତ ବିନୁ ଭୟଊ । ଜସ ସୁରାଜ ଖଲ ଉଦ୍ୟମ ଗୟଊ ॥
ଖୋଜତ କତହୁଁ ମିଲଇ ନହିଁ ଧୂରୀ । କରଇ କ୍ରୋଧ ଜିମି ଧରମହି ଦୂରୀ ॥୨॥
ସସି ସଂପନ୍ନ ସୋହ ମହି କୈସୀ । ଉପକାରୀ କୈ ସଂପତି ଜୈସୀ ॥
ନିସି ତମ ଘନ ଖଦ୍ୟୋତ ବିରାଜା । ଜନୁ ଦଂଭିନ୍ହ କର ମିଲା ସମାଜା ॥୩॥

---

ବହୁ ବହୁ ଜଳ କଲେ ଜଳାଶୟେ ପୂର୍ଣ୍ଣ । ସଜ୍ଜନ ପାଶେ ଯେସନେ ଆସନ୍ତି ସଦ୍‌ଗୁଣ ॥
ସରିତ ସଲିଳ ମିଳେ ସିନ୍ଧୁ ମଧ୍ୟେ ଯାଇ । ଅଚଳ ହୁଏ ଯେପରି ଜୀବ ହରି ପାଇ ॥୪॥
ଧରଣୀ ହରିତ ତୃଣେ ଆଚ୍ଛାଦିତ ଦୃଶ୍ୟ ନ ହୁଅଇ ପଥ ।
ପାଷଣ୍ଡ ଲୋକଙ୍କ ବିବାଦେ ଯେମନ୍ତ ଲୁପ୍ତ ହୁଅନ୍ତି ସଦ୍‌ଗ୍ରନ୍ଥ ॥୧୪॥
ଚଉଦିଗେ ଶୁଣାଯାଏ ମଣ୍ଡୂକଙ୍କ ସ୍ୱନ । ବଟୁଗଣ ବେଦପାଠ କରନ୍ତି ଯେସନ ॥
ନବ ପଲ୍ଲବିତ ହେଲେ ତରୁ ସମୁଦାୟ । ସାଧକ ମନେ ବିବେକ ଉପୁଜିଲା ପ୍ରାୟ ॥୧॥
ହୋଇଲେ ପତ୍ର ବିହୀନ ଅରଖ ଜବାସ । ସୁରାଜ୍ୟେ ଖଳ ଉଦ୍ୟମ ଯେସନ୍ତେ ହୁଏ ନାଶ ॥
ଖୋଜନ୍ତେ ସୁଦ୍ଧା ମାର୍ଗରେ ଧୂଳି ନ ମିଳଇ । କ୍ରୋଧ ଧରମକୁ ଦୂର ଯେସନେ କରଇ ॥୨॥
ଶସ୍ୟରେ ସମ୍ପନ୍ନ ମହୀ ଶୋଭଇ ତେମନ୍ତ । ପର ଉପକାରୀଙ୍କର ସମ୍ପତ୍ତି ଯେମନ୍ତ ॥
ନିବିଡ଼ ନିଶାରେ ନଭେ ଖଦ୍ୟୋତ ରାଜନ୍ତି । ଦାମ୍ଭିକ ଦଳ ଏକତ୍ର ଯେସନ୍ତେ ହୋଇଛନ୍ତି ॥୩॥

---

ନଦୀମାନେ ଜଳପୂର୍ଣ୍ଣ ହୋଇ କୂଳ ଲଙ୍ଘନ କରନ୍ତି । ଜୀବ ମାୟାରେ ଜଡ଼ି ଦୂଷିତ ହେଲା ପ୍ରାୟ ପୃଥିବୀରେ ପଡ଼ିବା ମାତ୍ରେ ପାଣି ଗୋଳିଆ ହୋଇଯାଉଛି ॥ ୩ ॥ ସଦ୍‌ଗୁଣମାନ ସଜ୍ଜନ ନିକଟକୁ ଚାଲି ଆସିଲା ପରି ଜଳ ଏକତ୍ର ଆସି ସରୋବରକୁ ପରିପୂର୍ଣ୍ଣ କରୁଛି । ଜୀବ ଶ୍ରୀହରିଙ୍କୁ ପାଇ ଅଚଳ ହେଲା ପରି ନଦୀ-ଜଳ ସମୁଦ୍ରରେ ମିଶି ସ୍ଥିର ହୋଇ-ଯାଏ ॥ ୪ ॥ ଦୋହା '—ପୃଥିବୀ ଘାସରେ ପରିପୂର୍ଣ୍ଣ ହୋଇ ସବୁଜ ବର୍ଣ୍ଣ ଧାରଣ କରିଅଛି । ଫଳରେ ପଥ ଦେଖାଯାଉନାହିଁ । ପାଷଣ୍ଡ ମତ ପ୍ରଚାର ଯୋଗେ ସଦ୍‌ଗ୍ରନ୍ଥ ଏହିପରି ଗୁପ୍ତ (ଲୁପ୍ତ) ହୋଇଯାଏ ॥ ୧୪ ॥ ଚୌପାଈ '—ବ୍ରହ୍ମଚାରୀମାନେ ବେଦପାଠ କଲା ପରି ଚତୁର୍ଦ୍ଦିଗରେ ମଣ୍ଡୂକଗଣଙ୍କ ଧ୍ୱନି ସୁନ୍ଦର ଭାବରେ ଶୁଣାଯାଉଛି । ସାଧକ ମନରେ ବିବେକର ଉଦୟ ହେଲେ ତାହା ସତେଜ ଓ ସୁନ୍ଦର ହୋଇପଡେ । ସେହିପରି ଅନେକ ଅନେକ ବୃକ୍ଷ ନବ ପତ୍ରରାଜିରେ ପଲ୍ଲବିତ ହୋଇ ସବୁଜ, ସତେଜ ଓ ସୁଶୋଭିତ ଦେଖାଯାଉଛନ୍ତି ॥୧॥ ଅର୍କଜବାସ ପତ୍ରଶୂନ୍ୟ ହୋଇ ଯାଇଛନ୍ତି । ସୁରାଜ୍ୟରେ

ମହାବୃଷ୍ଟି ଚଲି ଫୂଟି କିଆରୀଁ । ଜିମି ସୁତନ୍ତ୍ର ଭଏଁ ବିଗରହିଁ ନାରୀଁ ॥
କୃଷୀ ନିରାୱହିଁ ଚତୁର କିସାନା । ଜିମି ବୁଧ ତଜହିଁ ମୋହ ମଦ ମାନା ॥୪॥
ଦେଖିଅତ ଚକ୍ରବାକ ଖଗ ନାହୀଁ । କଲିହି ପାଇ ଜିମି ଧର୍ମ ପରାହୀଁ ॥
ଊଷର ବରଷଇ ତୃନ ନହିଁ ଜାମା । ଜିମି ହରିଜନ ହିୟଁ ଉପଜ ନ କାମା ॥୫॥
ବିବିଧ ଜଂତୁ ସଂକୁଲ ମହି ଭ୍ରାଜା । ପ୍ରଜା ବାଢ଼ ଜିମି ପାଇ ସୁରାଜା ॥
ଜହଁ ତହଁ ରହେ ପଥିକ ଥକି ନାନା । ଜିମି ଇନ୍ଦ୍ରିୟ ଗନ ଉପଜେଁ ଜ୍ଞାନା ॥୬॥

କବହୁଁ ପ୍ରବଲ ବହ ମାରୁତ ଜହଁ ତହଁ ମେଘ ବିଲାହିଁ ।
ଜିମି କପୂତ କେ ଉପଜେଁ କୁଲ ସଦ୍ଧର୍ମ ନସାହିଁ ॥୧୫ (କ)॥

---

ମହାବୃଷ୍ଟି ଜଳ ବନ୍ଧେ ଭାଙ୍ଗିଣ କିଆରୀ । ସ୍ୱତନ୍ତ୍ର ହୋଇ ଯେସନେ ଭ୍ରଷ୍ଟ ହୁଏ ନାରୀ ॥
ଚତୁର କୃଷକ କୃଷି କରେ ବେଉଷଣ । ମୋହ ମଦ ମାନ ବୁଧ ତ୍ୟାଗଇ ଯେସନ ॥୪॥
ଚକ୍ରବାକ ପକ୍ଷୀ କାହିଁ ଦୃଶ୍ୟ ନ ହୁଅଇ । କଳି ଆଗମନେ ଯେସନ୍ତେ ଧରମ ଲୁଚଇ ॥
ତୃଣ ନ ଜନ୍ମଇ ବର୍ଷା ହେଲେହେଁ ଊଷରେ । କାମ ନ ଉପୁଜେ ଯେସନ୍ତେ ସନ୍ଥ ହୃଦୟରେ ॥୫॥
ବିବିଧ ଜନ୍ତୁରେ ପୂର୍ଣ୍ଣ ରାଜେ ବସୁନ୍ଧରା । ସୁରାଜ୍ୟ ପାଇଣ ପ୍ରଜା ବଢନ୍ତି ଯେପରା ॥
ପଥିକ ଯଥା ସ୍ଥାନରେ ସ୍ଥଗିତ ରହିଲେ । ଯେମନ୍ତେ ଇନ୍ଦ୍ରିୟଗଣ ଜ୍ଞାନ ଉପୁଜିଲେ ॥୬॥

କେବେ କେବେ ବହି ପ୍ରବଳ ମାରୁତ ମେଘ ସମୂହ ଉଡାଏ ।
କୁପୁତ୍ର ଜନମ ହୋଇଣ ଯେସନ କୁଳ ସଦ୍ଧର୍ମ ବୁଡ଼ାଏ ॥୧୫ (କ)॥

---

ଖଳଙ୍କ ଉଦ୍ୟମ ଏହିପରି ନାଶ ଯାଏ । କ୍ରୋଧ ଧର୍ମକୁ ଦୂର କରିଦେଲା ପରି ଖୋଜିଲେ ସୁଦ୍ଧା ମାର୍ଗ ମଧ୍ୟରେ ଧୂଳି ଟିକିଏ ମିଳୁନାହିଁ ॥ ୨ ॥ ଉପକାରୀ ପୁରୁଷର ସମ୍ପତ୍ତି ସୁଶୋଭିତ ହେଲା ପରି ଶସ୍ୟସମ୍ପନ୍ନା ହୋଇ ମହୀ ଶୋଭା ପାଉଅଛି । ଦାମ୍ଭିକ ସମାଜ ଏକତ୍ର ଜୁଟିଲା ପରି ରାତ୍ରିର ଘନ ଅନ୍ଧକାରରେ ଜୁଳୁଜୁଳିଆ ପୋକମାନେ ଶୋଭା ପାଉଅଛନ୍ତି ॥ ୩ ॥ ମହାବୃଷ୍ଟି-ଜଳ ଶସ୍ୟ କିଆରୀ ଲଙ୍ଘନ କରି ବହି ଯାଉଛି । ସ୍ୱତନ୍ତ୍ରା ହେଲେ ସ୍ତ୍ରୀମାନେ ଏହିପରି କୁଳମର୍ଯ୍ୟାଦା ଲଙ୍ଘନ କରି ନଷ୍ଟ ହୁଅନ୍ତି । ବିଦ୍ୱାନ୍ ବ୍ୟକ୍ତି ଆପଣା ହୃଦୟରୁ ମୋହ, ମଦ ଓ ମାନ ତ୍ୟାଗ କଲା ପରି ଚତୁର କୃଷକମାନେ କୃଷି କ୍ଷେତ୍ରରୁ ବାଳୁଙ୍ଗା ଆଦି ଓପାଡ଼ି ଫୋପାଡ଼ି ଦିଅନ୍ତି (ଏବଂ କୃଷି ବେଉଷଣ କରନ୍ତି) ॥ ୪ ॥ କଳିଯୁଗକୁ ପାଇ ଧର୍ମ ପଳାଇଗଲା ପରି ଚକ୍ରବାକ ପକ୍ଷୀମାନେ ଜଳରୁ ପଳାଇଯାଆନ୍ତି । ବିକାର ସତ୍ତ୍ୱେ ହରିଭକ୍ତର ହୃଦୟରେ କାମର ଉଦ୍ରେକ ହୁଏ ନାହିଁ । ସେହିପରି ଊଷର ଭୂମିରେ ବର୍ଷା ସତ୍ତ୍ୱେ ଘାସଟିଏ ସୁଦ୍ଧା ଜନ୍ମେ ନାହିଁ ॥ ୫ ॥ ମହୀ ବିବିଧ ଜନ୍ତୁରେ ପରିପୂର୍ଣ୍ଣ ହୋଇ ସୁରାଜତ୍ୱ ପାଇ ରାଜ୍ୟ ପ୍ରଜା-ପରିପୂର୍ଣ୍ଣ ହେଲା ପରି ଶୋଭା ପାଉଛି । ଦିବ୍ୟ ଜ୍ଞାନର ଉଦୟ ହେଲେ ଇନ୍ଦ୍ରିୟମାନେ ଯେପରି ଶିଥିଳ ହୋଇ ପଡନ୍ତି, ସେହିପରି ପଥିକମାନେ ଠାବେ ଠାବେ (ବର୍ଷାଯୋଗୁଁ) ଅଟକି ଯାଉଅଛନ୍ତି ॥ ୬ ॥ ଦୋହା :— କେବେ କେବେ ବାୟୁ ବଡ ଜୋରରେ ବହିବାକୁ ଲାଗେ । ତାହା କୁପୁତ୍ର ଜନ୍ମ ଲାଭ

କବହୁଁ ଦିବସ ମହଁ ନିବିଡ଼ ତମ କବହୁଁକ ପ୍ରଗଟ ପତଙ୍ଗ ।
ବିନସଇ ଉପଜଇ ଜ୍ଞାନ ଜିମି ପାଇ କୁସଙ୍ଗ ସୁସଙ୍ଗ ॥୧୫ (ଖ)॥
ବରଷା ବିଗତ ସରଦ ରିତୁ ଆଈ । ଲଛିମନ ଦେଖହୁ ପରମ ସୁହାଈ ॥
ଫୂଲେଁ କାସ ସକଲ ମହି ଛାଈ । ଜନୁ ବରଷାଁ କୃତ ପ୍ରଗଟ ବୁଢ଼ାଈ ॥୧॥
ଉଦିତ ଅଗସ୍ତି ପନ୍ଥ ଜଲ ସୋଷା । ଜିମି ଲୋଭହି ସୋଷଇ ସନ୍ତୋଷା ॥
ସରିତା ସର ନିର୍ମଲ ଜଲ ସୋହା । ସନ୍ତ ହୃଦୟ ଜସ ଗତ ମଦ ମୋହା ॥୨॥
ରସ ରସ ସୂଖ ସରିତ ସର ପାନୀ । ମମତା ତ୍ୟାଗ କରହିଁ ଜିମି ଜ୍ଞାନୀ ॥
ଜାନି ସରଦ ରିତୁ ଖଞ୍ଜନ ଆଏ । ପାଇ ସମୟ ଜିମି ସୁକୃତ ସୁହାଏ ॥୩॥
ପଙ୍କ ନ ରେନୁ ସୋହ ଅସି ଧରନୀ । ନୀତି ନିପୁନ ନୃପ କୈ ଜସି କରନୀ ॥
ଜଲ ସଂକୋଚ ବିକଲ ଭଇଁ ମୀନା । ଅବୁଧ କୁଟୁମ୍ବୀ ଜିମି ଧନହୀନା ॥୪॥

---

କେବେ ଦିବସରେ ଘନ ଅନ୍ଧକାର କେବେ ଆଦିତ୍ୟ ପ୍ରକାଶ ।
କୁସଙ୍ଗ ସୁସଙ୍ଗ ପାଇ ଯେସନ୍ତେ ଜ୍ଞାନ ଲଭେ ବିନାଶ ବିକାଶ ॥୧୫ (ଖ)॥
ବର୍ଷା ବିଗତ ଶରଦ ଋତୁ ପ୍ରବେଶଇ । ନିରେଖ ଲକ୍ଷ୍ମଣ, ଅତି ସୁନ୍ଦର ଦିଶଇ ॥
କାଶତଣ୍ଡୀ ଫୁଲେ ମହୀ ହୋଇଲା ଆଚ୍ଛନ୍ନ । ବରଷା ଆକୃତି ବୃଦ୍ଧ ପ୍ରକଟେ ଯେସନ ॥୧॥
ଉଦିତ ଅଗସ୍ତି ଶୋଷେ ପଥ ସଲିଳକୁ । ଯେହ୍ନେ ସନ୍ତୋଷ ଶୋଷଣ କରଇ ଲୋଭକୁ ॥
ସର ସରିତର ଜଳ ଦିଶେ ପରିଷ୍କାର । ମୋହ-ମଦ-ଶୂନ୍ୟ ସନ୍ତ ହୃଦ ଯେ ପ୍ରକାର ॥୨॥
ଧୀରେ ଧୀରେ ଶୁଖେ ନଦୀ ପୁଷ୍କରିଣୀ ପାଣି । ମମତା ତ୍ୟାଗ କରଇ ଯେଉଁ ବିବେ ଜ୍ଞାନୀ ॥
ଶରଦ ଆଗତ ଜାଣି ଆସିଲେ ଖଞ୍ଜନ । ସମୟ ପାଇ ସୁକୃତ ଶୋଭଇ ଯେସନ ॥୩॥
ଧୂଳି ପଙ୍କଶୂନ୍ୟ ଶୋଭେ ଧରଣୀ ଏପରି । ନୀତି-ନିପୁଣ ନୃପର କୃତିତ୍ୱ ଯେପରି ॥
ବିକଳ ହୋଇଲେ ଜଳ ନିଅଣ୍ଟରୁ ମୀନ । ଅବୁଧ କୁଟୁମ୍ବୀ ଯେସନ୍ତେ ହୋନ୍ତେ ଧନହୀନ ॥୪॥

---

କରି କୂଳର ଶ୍ରେଷ୍ଠ ଧର୍ମ ନାଶ କଲା ପରି ବାଦଲକୁ ଇତସ୍ତତଃ ଉଡ଼ାଇ ଦିଏ ॥ ୧୫ (କ) ॥ କେବେ କେବେ ବାଦଲ ଯୋଗେ ଦିନବେଳେ ମଧ୍ୟ ଅନ୍ଧକାର ଘୋଟିଯାଏ ଏବଂ ପୁଣି କେତେବେଳେ ସୂର୍ଯ୍ୟ ପ୍ରକାଶିତ ହୁଅନ୍ତି । କୁସଙ୍ଗ ଏହିପରି ଜ୍ଞାନ ନାଶ କରେ ଏବଂ ସୁସଙ୍ଗ ଯୋଗେ ତାହା ପୁଣି ଜନ୍ମ ଲଭ କରେ ॥ ୧୫ (ଖ) ॥ ଚୌପାଇ —ହେ ଲକ୍ଷ୍ମଣ ! ଦେଖ, ବର୍ଷାଋତୁ ଅତିବାହିତ ହୋଇଗଲା ଏବଂ ପରମସୁନ୍ଦର ଶରତ ଋତୁ ଆସିଲା । ବିକଶିତ କାଶତଣ୍ଡୀ ଫୁଲରେ ପୃଥିବୀ ଆଚ୍ଛାଦିତ । ସତେ ଅବା ବର୍ଷାଋତୁ ଅପଣାର ବାର୍ଦ୍ଧକ୍ୟ ପ୍ରକାଶ କରୁଅଛି ! ॥ ୧ ॥ ସନ୍ତୋଷ ଲୋଭକୁ ଶୋଷି ନେଲା ପରି ଅଗସ୍ତ୍ୟ ନକ୍ଷତ୍ର ଉଦିତ ହୋଇ ମାର୍ଗବର୍ତ୍ତୀ ଜଳକୁ ଶୋଷି ନେଲେଣି । ମଦ-ମୋହ-ରହିତ ସନ୍ତଗଣଙ୍କ ହୃଦୟ ଯେପରି ନିର୍ମଳ (ସ୍ୱଚ୍ଛ) ଭାବରେ ଶୋଭା ପାଏ, ସେହିପରି ନଦୀ-ସରୋବରର ନିର୍ମଳ ଜଳ ଶୋଭା ପାଉଅଛି ॥୨॥ ଯେପରି ଜ୍ଞାନୀ (ବିବେକୀ) ପୁରୁଷମାନେ ମମତା ତ୍ୟାଗ କରନ୍ତି, ସେହିପରି ନଦୀ-ସରୋବରର ଜଳ ଧୀରେ ଧୀରେ ଶୁଖିଯାଏ ।

ବିନୁ ଘନ ନିର୍ମଳ ସୋହ ଅକାସା । ହରିଜନ ଇବ ପରିହରି ସବ ଆସା ॥
କହୁଁ କହୁଁ ବୃଷ୍ଟି ସାରଦୀ ଥୋରୀ । କୋଉ ଏକ ପାୱ ଭଗତି ଜିମି ମୋରୀ ॥୪॥
ଚଲେ ହରଷି ତଜି ନଗର ନୃପ ତାପସ ବନିକ ଭିଖାରି ।
ଜିମି ହରିଭଗତ ପାଇ ଶ୍ରମ ତଜହିଁ ଆଶ୍ରମୀ ଚାରି ॥୧୬॥
ସୁଖୀ ମୀନ ଜେ ନୀର ଅଗାଧା । ଜିମି ହରି ସରନ ନ ଏକଉ ବାଧା ॥
ଫୂଲେଁ କମଲ ସୋହ ସର କୈସା । ନିର୍ଗୁନ ବ୍ରହ୍ମ ସଗୁନ ଭଏଁ ଜୈସା ॥୧॥
ଗୁଂଜତ ମଧୁକର ମୁଖର ଅନୂପା । ସୁନ୍ଦର ଖଗ ରବ ନାନା ରୂପା ॥
ଚକ୍ରବାକ ମନ ଦୁଖ ନିସି ପେଖୀ । ଜିମି ଦୁର୍ଜନ ପର ସଂପତି ଦେଖୀ ॥୨॥

---

ମେଘ ବିନା ନିର୍ମଳ ଶୋଭଇ ଆକାଶ । ଯେସନ୍ତେ ହରିଜନ ତେଜି ସର୍ବ ଅଭିଲାଷ ॥
କାହିଁ କାହିଁ ସ୍ୱଳ୍ପ ବୃଷ୍ଟି ଶାରଦୀ ହୁଅଇ । ଯେମନ୍ତେ କ୍ୱଚିତ କେହି ମୋ ଭକ୍ତି ଲଭଇ ॥୪॥
ସୁଖେ ତେଜି ବାସ ଗମିଲେ ତାପସ ନୃପ ବଣିକ ଭିଖାରି ।
ଯେସନ୍ତେ ହରି ଭକ୍ତି ପାଇଣ ତେଜନ୍ତି ଶ୍ରମ, ସୁଆଶ୍ରମୀ ଗୃହୀ ॥୧୬॥
ସୁଖୀ ସେ ମୀନ ଯେ ଥିଲେ ଅଗାଧ ଜଳରେ । ଯେସନ୍ତେ କିଛି ବାଧା ନାହିଁ ହରି ଶରଣରେ ॥
ପ୍ରସ୍ଫୁଟିତ ପଦ୍ମେ ସର ଶୋଭଇ ତେମନ୍ତ । ନିର୍ଗୁଣ ବ୍ରହ୍ମ ସଗୁଣ ହୋଇଲେ ଯେମନ୍ତ ॥୧॥
ଗୁଞ୍ଜାର କରନ୍ତି ଅଳିବୃନ୍ଦ ଅନୁପମ । ବିବିଧ ଖଗ-ଗଣଙ୍କ ରବ ମନୋରମ ॥
ଚକ୍ରବାକ ନିଶି ଦେଖି ଦୁଃଖୀ ହୁଏ ମନେ । ବିଲୋକି ପର ସମ୍ପତ୍ତି ଦୁର୍ଜନ ଯେସନେ ॥୨॥

---

ଶରତ ଋତୁ ଆସିବାର ଜାଣି ଖଞ୍ଜନ ପକ୍ଷୀମାନେ ଆସିଗଲେ । ଅବସର ପାଇ ସୁନ୍ଦର ସୁକୃତ (ପୁଣ୍ୟ) ଏହିପରି ଆସିଯାଏ ॥ ୩ ॥ ପଙ୍କ ଓ ଧୂଳିଶୂନ୍ୟ ହୋଇ ଧରଣୀ (ନିର୍ମଳ ହେବାରେ) ନୀତିନିପୁଣ ରାଜାର କୃତିତ୍ୱ ପରି ଶୋଭା ପାଏ । ମୂର୍ଖ କୁଟୁମ୍ବୀ ଧନ ବିନା ଯେପରି ବ୍ୟାକୁଳ ହୁଏ, ସେହିପରି ଜଳ ନିଅଣ୍ଟ ହୋଇ ପଡ଼ିବାରୁ ମୀନମାନେ ବ୍ୟାକୁଳ ହେଉଅଛନ୍ତି ॥ ୪ ॥ ଭଗବଦ୍‌ଭକ୍ତ ସମସ୍ତ ଆଶା ତ୍ୟାଗ କରି ସୁଶୋଭିତ ହେଲା ପରି ବାଦଲ ବିନା ନିର୍ମଳ ଆକାଶ ସୁଶୋଭିତ ହେଉଅଛି । କେଉଁଠି କେଉଁଠି ଶରତକାଳୀନ ଅତି ଅଳ୍ପ ବୃଷ୍ଟି ହେଉଅଛି । ମୋର ଭକ୍ତି ସେହିପରି କେହି କେହି କ୍ୱଚିତ୍ ଲାଭ କରନ୍ତି ॥ ୫ ॥ ଦୋହା :—ଏହି ଋତୁରେ ରାଜା, ତପସ୍ୱୀ, ବେପାରୀ ଓ ଭିକ୍ଷୁକ ( ଯଥାକ୍ରମେ ବିଜୟ, ତପସ୍ୟା, ବେପାର ଓ ଭିକ୍ଷା ନିମନ୍ତେ ) ଆନନ୍ଦିତ ମନରେ ନଗର ତ୍ୟାଗ କରି ଚାଲିଲେଣି । ଶ୍ରୀହରିଙ୍କ ଭକ୍ତି ଲାଭ କରି ଚାରି ଆଶ୍ରମୀ ଜନମାନେ ସମସ୍ତ ଶ୍ରମସାଧନ ଏହିପରି ତ୍ୟାଗ କରି ଦିଅନ୍ତି ॥ ୧୬ ॥ ଚୌପାଈ :—ଯେଉଁ ମୀନମାନେ ଅତଳ ଜଳରେ ବାସ କରୁଅଛନ୍ତି, ସେମାନେ ସୁଖୀ । ଶ୍ରୀହରିଙ୍କ ଶରଣାପନ୍ନ ହୋଇଯିବା ପରେ ଜୀବର ଗୋଟିଏ ବୋଲି ବାଧା ରହେ ନାହିଁ । ନିର୍ଗୁଣ ବ୍ରହ୍ମ ସଗୁଣ ହୋଇଗଲେ ଯେପରି ଶୋଭା ପାଆନ୍ତି, ସେହିପରି ବିକଶିତ କମଳମାନଙ୍କ ଦ୍ୱାରା ସରୋବର ଶୋଭା ପାଉଅଛି ॥ ୧ ॥ ଭ୍ରମରଗଣ ଅନୁପମ ଶବ୍ଦ କରି ଗୁଞ୍ଜନ କରୁଅଛନ୍ତି ଏବଂ

ଚାତକ ରଟତ ତୃଷା ଅତି ଓହୀ । ଜିମି ସୁଖ ଲହଇ ନ ସଙ୍କରଦ୍ରୋହୀ ॥
ସରଦାତପ ନିସି ସସି ଅପହରଈ । ସନ୍ତ ଦରସ ଜିମି ପାତକ ଟରଈ ॥୩॥
ଦେଖି ଇନ୍ଦୁ ଚକୋର ସମୁଦାଈ । ଚିତର୍ୱହିଁ ଜିମି ହରିଜନ ହରି ପାଈ ॥
ମସକ ଦଂସ ବୀତେ ହିମ ତ୍ରାସା । ଜିମି ଦ୍ୱିଜଦ୍ରୋହ କିଏଁ କୁଲ ନାସା ॥୪॥

ଭୂମି ଜୀବ ସଂକୁଲ ରହେ ଗଏ ସରଦ ରିତୁ ପାଇ ।
ସଦଗୁର ମିଲେଁ ଜାହିଁ ଜିମି ସଂସୟ ଭ୍ରମ ସମୁଦାଇ ॥୧୭॥

ବରଷା ଗତ ନିର୍ମଲ ରିତୁ ଆଈ । ସୁଧି ନ ତାତ ସୀତା କୈ ପାଈ ॥
ଏକ ବାର କୈସେହୁଁ ସୁଧି ଜାନୌଁ । କାଲହୁ ଜୀତି ନିମିଷ ମହୁଁ ଆନୌଁ ॥୧॥
କତହୁଁ ରହଉ ଜୌଁ ଜୀବତି ହୋଈ । ତାତ ଜତନ କରି ଆନଉଁ ସୋଈ ॥
ସୁଗ୍ରୀବହୁଁ ସୁଧି ମୋରି ବିସାରୀ । ପାୱା ରାଜ କୋସ ପୁର ନାରୀ ॥୨॥

---

ଅତ୍ୟନ୍ତ ତୃଷିତ ହୋଇ ଚାତକ ରଟଇ । ଶଙ୍କର-ଦ୍ରୋହୀ ଯେମନ୍ତେ ସୁଖ ନ ଲଭଇ ॥
ଶରଦାତପକୁ ନିଶି ଶଶୀ ଅପହରେ । ସନ୍ଥ ଦରଶନ ଯେସନ୍ତେ ପାପ ଦୂର କରେ ॥୩॥
ଇନ୍ଦୁକୁ ଅବଲୋକନ୍ତି ଚକୋର ସମସ୍ତ । ହରିଙ୍କୁ ପାଇ ଗୃହାନ୍ତି ଯେସନ୍ତେ ହରି ଭକ୍ତ ॥
ମଶକ ଡାଉଁଶ ମଲେ ପାଇ ହିମ ତ୍ରାସ । ଦ୍ୱିଜଦ୍ରୋହ କଲେ ଯେସନ୍ତେ କୁଳ ଯାଏ ନାଶ ॥୪॥

ଭୂମି ଜୀବେ ପୂର୍ଣ୍ଣ ହୋଇ ରହିଥିଲେ ଗଲେ ପାଇଣ ଶରତ ।
ସଦ୍‌ଗୁରୁ ମିଳନ୍ତେ ପଳାନ୍ତି ଯେମନ୍ତେ ସଂଶୟ ଭ୍ରମ ସମସ୍ତ ॥୧୭॥

ବରଷା ବିଗତ, ଋତୁ ନିର୍ମଳ ପ୍ରବେଶ । ନ ପାଇଲି ତାତ, ବଇଦେହୀଙ୍କ ସନ୍ଦେଶ ॥
ଯାପରି ଯେବେ ଥରେ ମୁଁ ସନ୍ଦେଶ ଲଭନ୍ତି । କାଳକୁ ଜିଣି ନିମିଷ ମଧ୍ୟରେ ଆଣନ୍ତି ॥୧॥
କାହିଁ ଅବା ଥିବେ ଯେବେ ଜୀବିତ ହୋଇଣ । ଆଣିବି ଭ୍ରାତ, ତାହାଙ୍କୁ ଯତନ କରିଣ ॥
ସୁଗ୍ରୀବ ସୁଦ୍ଧା ଭୁଲିଲା ସ୍ମରଣ ମୋହର । ପାଇ ରାଜ୍ୟକୋଷ ପୁର ପ୍ରମଦା ଆଦର ॥୨॥

---

ପକ୍ଷୀମାନେ ନାନାବିଧ କଳରବ କରୁଅଛନ୍ତି । ଅନ୍ୟର ସମ୍ପତ୍ତି ଦେଖି ଦୁର୍ଜନ ମନରେ ଯେପରି ଦୁଃଖ ଜନ୍ମେ, ରାତ୍ରି ଦେଖି ଚକ୍ରବାକ ମନରେ ସେହିପରି ଦୁଃଖ ଜାତ ହେଉଛି ॥୨॥ ଚାତକ ଅତିଶୟ ତୃଷାର୍ତ୍ତ ହୋଇ ରଟୁଅଛି । ଶଙ୍କର-ଦ୍ରୋହୀ ଜନ ଏହିପରି ସୁଖ ପାଏ ନାହିଁ । ସାଧୁସନ୍ଥଙ୍କ ଦର୍ଶନରେ ପାପ ଦୂର ହୋଇଗଲା ପରି ଶରତ ଋତୁର ଆତପକୁ ରଜନୀରେ ଚନ୍ଦ୍ରମା ହରଣ କରି ନିଅନ୍ତି ॥ ୩ ॥ ଯେପରି ଭଗବଦ୍‌ଭକ୍ତ ଭଗବାନ୍‌ଙ୍କୁ ପାଇ ନିର୍ନିମେଷ ନୟନରେ ତାଙ୍କୁ ଦର୍ଶନ କରନ୍ତି, ଚକୋରସମୂହ ଚନ୍ଦ୍ରମାଙ୍କୁ ସେହିପରି ଅବଲୋକନ କରନ୍ତି । ବ୍ରାହ୍ମଣଙ୍କ ସଙ୍ଗେ ଶତ୍ରୁତାଚରଣ କଲେ ଯେପରି କୁଳନାଶ ଯାଏ, ସେହିପରି ହିମ ଭୟରେ ମଶକ ଓ ଡାଉଁଶମାନେ ନାଶ ଗଲେ ॥ ୪ ॥ ଦୋହା :—ସଦଗୁରୁ-ଲାଭ ଯୋଗେ ସନ୍ଦେହ ଓ ଭ୍ରମସମୂହ ଯେପରି ଚାଲି ଯାଆନ୍ତି, ସେହିପରି (ବର୍ଷାଋତୁ ହେତୁ) ପୃଥିବୀରେ ପରିପୂର୍ଣ୍ଣ ହୋଇଥିବା ଜୀବଜନ୍ତୁ ସବୁ ଶରତ ଋତୁ ପାଇ କେଉଁଆଡେ ଚାଲିଗଲେ ॥ ୧୭ ॥ ଚୌପାଇ :—ବର୍ଷା ଅତିବାହିତ ହୋଇଗଲା,

ଜେହିଁ ସାୟକ ମାରା ମୈଁ ବାଲୀ । ତେହିଁ ସର ହତଉଁ ମୂଢ଼ କହୁଁ କାଲୀ ॥
ଜାସୁ କୃପାଁ ଛୂଟହିଁ ମଦ ମୋହା । ତା କହୁଁ ଉମା କି ସପନେହୁଁ କୋହା ॥୩॥
ଜାନହିଁ ୟହ ଚରିତ୍ର ମୁନି ଗ୍ୟାନୀ । ଜିନ୍ହ ରଘୁବୀର ଚରନ ରତି ମାନୀ ॥
ଲଛିମନ କ୍ରୋଧବନ୍ତ ପ୍ରଭୁ ଜାନା । ଧନୁଷ ଚଢ଼ାଇ ଗହେ କର ବାନା ॥୪॥

ତବ ଅନୁଜହି ସମୁଝାୱା ରଘୁପତି କରୁନା ସୀଁୱ ।
ଭୟ ଦେଖାଇ ଲୈ ଆୱହୁ ତାତ ସଖା ସୁଗ୍ରୀୱ ॥୧୮॥

ଇହାଁ ପବନସୁତ ହୃଦୟଁ ବିଚାରା । ରାମ କାଜୁ ସୁଗ୍ରୀବଁ ବିସାରା ॥
ନିକଟ ଜାଇ ଚରନନ୍ହି ସିରୁ ନାୱା । ଚାରିହୁ ବିଧି ତେହି କହି ସମୁଝାୱା ॥୧॥

---

ବାଳିକି ବଧିଲି ମୁହିଁ ଯେଉଁ ଶାୟକରେ । ମୂଢ଼କୁ କାଲି ବିନାଶ କରିବି ସେ ଶରେ ॥
ଯା.କୃପାରେଳଷ୍ଟହୋନ୍ତିମୋହମଦ ଦୋଷ । ତାଂକୁଉମା!ସ୍ୱପ୍ନେହେଁକିହୋଇପାରେରୋଷ॥୩॥
ଜ୍ଞାନୀ ମୁନିବର ଏହି ରହସ୍ୟ ଜାଣନ୍ତି । ଯେ ରଘୁବୀର ଚରଣେ ପ୍ରୀତି କରନ୍ତି ॥
ଲକ୍ଷ୍ମଣ ରଘୁନାଥଙ୍କୁ କ୍ରୋଧବନ୍ତ ଜାଣି । ଧରିଲେ ତୂଣ ବାନ୍ଧିଣ ଧନୁଶର ପାଣି ॥୪॥

ତହୁଁ କୃପା ମୂର୍ତ୍ତି-ପ୍ରଭୁ ରଘୁପତି ବୁଝାଇଲେ ଅନୁଜକୁ ।
ଭୟ ଦେଖାଇଣ ଯାଇ ଡାକିଆଣ ଭ୍ରାତ ! ସଖା ସୁଗ୍ରୀବକୁ ॥୧୮॥

ଏଣେ ପବନ-ତନୟ ହୃଦେ ବିଚାରିଲା । ଶ୍ରୀ ରଘୁନାଥଙ୍କ କାର୍ଯ୍ୟ ସୁଗ୍ରୀବ ଭୁଲିଲା ॥
ନିକଟକୁ ଯାଇ ଶିର ଚରଣେ ନୁଆଁଇ । ଚତୁର୍ବିଧ ରାଜନୀତି କହିଲା ବୁଝାଇ ॥୧॥

---

ନିର୍ମଳ ଶରତ ଋତୁ ଆସିଲା । ମାତ୍ର ହେ ଭାଇ ! ସୀତାଙ୍କର କୌଣସି ସନ୍ଦେଶ ମିଳିଲା ନାହିଁ । ଥରେ ମାତ୍ର ଠିକଣା ଯଦି ପାଆନ୍ତି, ତେବେ କାଳକୁ ଜୟ କରି କ୍ଷଣକ ମଧ୍ୟରେ ଜାନକୀଙ୍କୁ ନେଇ ଆସନ୍ତି ॥ ୧ ॥ ଯେଉଁଠି ଥାଆନ୍ତୁ ପଛକେ, ହେ ଭାଇ ! ଯଦି ଜୀବିତ ଥିବେ, ସତ୍ୟ କରି ମୁଁ ତାହାଙ୍କୁ ଅବଶ୍ୟ ଆଣିବି । ସୁଗ୍ରୀବ ରାଜ୍ୟ, କୋଷ, ନଗର ଓ ନାରୀ ପାଇଗଲେ, ତେଣୁ ମୋ ଖବର ଭୁଲିଗଲେ ॥ ୨ ॥ ଯେଉଁ ବାଣଦ୍ୱାରା ମୁଁ ବାଳିକୁ ମାରିଥିଲି, ସେହି ବାଣରେ କାଲି ସେ ମୂର୍ଖକୁ ବଧ ମାରିବି ।” ଶିବ କହନ୍ତି, ହେ ଉମା ! ଯାହାଙ୍କ କୃପାରେ ମଦ ଓ ମୋହ ଦୂର ହୋଇଯାଏ, ତାଙ୍କୁ ସ୍ୱପ୍ନରେ କ୍ରୋଧ ହୋଇପାରେ କି ? ( ଏହା ତ ଲୀଳା ମାତ୍ର । )” ॥ ୩ ॥ ଯେଉଁ ଜ୍ଞାନୀ ମୁନିଗଣ ଶ୍ରୀ ରଘୁନାଥଙ୍କ ଚରଣରେ ପ୍ରୀତି ଯୋଡ଼ିଅଛନ୍ତି, ସେହିମାନେ କେବଳ ଏହି ଲୀଳା-ରହସ୍ୟକୁ ଜାଣନ୍ତି । ଲକ୍ଷ୍ମଣ ଯେତେବେଳେ ପ୍ରଭୁଙ୍କୁ କ୍ରୁଦ୍ଧ ହେବାର ଜାଣିଲେ, ସେ ଧନୁରେ ଶର ଯୋଖି ହାତରେ ଧାରଣ କଲେ ॥ ୪ ॥ ଦୋହା —ତତ୍ପରେ କରୁଣାସୀମା ଶ୍ରୀ ରଘୁନାଥ ସାନଭାଇ ଲକ୍ଷ୍ମଣଙ୍କୁ ବୁଝାଇଲେ, “ହେ ଭ୍ରାତ ! ସଖା ସୁଗ୍ରୀବଙ୍କୁ କେବଳ ଭୟ ଦେଖାଇ ନେଇ ଆସ । ( ତାହାଙ୍କୁ ମାରିବା କଥା ନୁହେଁ । )” ॥ ୧୮ ॥ ଚୌପାଇ :—ଏଣେ ପବନ କୁମାର ଶ୍ରୀ ହନୁମାନ୍ ବିଚାର କଲେ, “ସୁଗ୍ରୀବ ଶ୍ରୀରାମଙ୍କ କାର୍ଯ୍ୟ ଭୁଲିଗଲେ ।” ସେ ସୁଗ୍ରୀବଙ୍କ ନିକଟକୁ ଯାଇ

ସୁନି ସୁଗ୍ରୀବଁ ପରମ ଭୟ ମାନା । ବିଷୟଁ ମୋର ହରି ଲୀନ୍ହେଉ ଜ୍ଞାନା ॥
ଅବ ମାରୁତସୁତ ଦୂତ ସମୂହା । ପଠୱହୁ ଜହଁ ତହଁ ବାନର ଜୂହା ॥୨॥
କହହୁ ପାଖ ମହୁଁ ଆୱ ନ ଜୋଈ । ମୋରେଁ କର ତା କର ବଧ ହୋଈ ॥
ତବ ହନୁମନ୍ତ ବୋଲାଏ ଦୂତା । ସବ କର କରି ସନମାନ ବହୂତା ॥୩॥
ଭୟ ଅରୁ ପ୍ରୀତି ନୀତି ଦେଖରାଈ । ଚଲେ ସକଲ ଚରନହ୍ନି ସିର ନାଈ ॥
ଏହି ଅବସର ଲଛିମନ ପୁର ଆଏ । କ୍ରୋଧ ଦେଖି ଜହଁ ତହଁ କପି ଧାଏ ॥୪॥

ଧନୁଷ ଚଢ଼ାଇ କହା ତବ ଜାରି କରଉଁ ପୁର ଛାର ।
ବ୍ୟାକୁଲ ନଗର ଦେଖି ତବ ଆୟଉ ବାଲିକୁମାର ॥୧୯॥

ଚରନ ନାଇ ସିରୁ ବିନତୀ କୀନ୍ହୀ । ଲଛିମନ ଅଭୟ ବାଁହ ତେହି ଦୀନ୍ହୀ ॥
କ୍ରୋଧବନ୍ତ ଲଛିମନ ସୁନି କାନା । କହ କପୀସ ଅତି ଭୟଁ ଅକୁଲାନା ॥୧॥

---

ଶୁଣନ୍ତେ ସୁଗ୍ରୀବ ଅତି ଭୟ ମଣି କରି । ବୋଲଇ ବିଷୟ ମୋର ଜ୍ଞାନ ନେଲା ହରି ॥
ଏବେ ମରୁତ-ନନ୍ଦନ, ଡାକ ବହୁ ଦୂତ । ପଠାଅ ଘୂରି ଦିଗକୁ ବାନରଙ୍କ ଯୂଥ ॥୨॥
କୁହ, ଏକ ପକ୍ଷ ମଧ୍ୟେ ଯେହୁ ନ ଆସିବ । ମୋ କରେ ତାହାର ବଧ ଅବଶ୍ୟ ହୋଇବ ॥
ଏଥୁ ଅନ୍ତେ ହନୁମାନ ଦୂତଙ୍କୁ ଗଇଣ । ସମସ୍ତଙ୍କ ସବୁ ମତେ ସମ୍ମାନ କରିଣ ॥୩॥
ଭୟ ପ୍ରୀତି ନୀତି ଆଦି କହନ୍ତେ ବୁଝାଇ । ଗମିଲେ ସର୍ବେ ଚରଣେ ମସ୍ତକ ନୁଆଇଁ ॥
ସେହି ସମୟରେ ପୁରରେ ଲକ୍ଷ୍ମଣ ଆସିଲେ । କ୍ରୋଧଦେଖିଯେଣେତେଣେବାନରେଧାଇଁଲେ॥୪॥

ଚାପେ ବାନ୍ଧି ଗୁଣ ବୋଇଲେ ଜାଳିଣ କରିବି ମୁଁ ପୁର ଛାର ।
ଅତି ଭୟାତୁର ବିଲୋକି ନଗର ଆସିଲା ବାଳି କୁମାର ॥୧୯॥

ଚରଣେ ପ୍ରଣାମ କରି କରନ୍ତେ ବିନୟ । ଲକ୍ଷ୍ମଣ ପ୍ରଦାନ କଲେ ତାହାଙ୍କୁ ଅଭୟ ॥
କ୍ରୋଧବନ୍ତ ସଉମିତ୍ରି ଶ୍ରବଣେ ଶୁଣିଣ । ବୋଲଇ କପୀଶ ଅତି ଆକୁଳ ହୋଇଣ ॥୧॥

---

ତାଙ୍କ ଚରଣରେ ମୁଣ୍ଡ ନୁଆଁଇଲେ । ସାମ, ଦାନ, ଦଣ୍ଡ, ଭେଦ—ଏହି ଚାରି ନୀତି ବିଷୟ ତାଙ୍କୁ କହି ବୁଝାଇଲେ ॥ ୧ ॥ ହନୁମାନଙ୍କ ବଚନ ଶୁଣି ସୁଗ୍ରୀବ ବଡ ଭୟ କଲେ ଏବଂ କହିଲେ, "ବିଷୟ-ବାସନା ମୋ ଜ୍ଞାନ ହରଣ କରି ନେଇଅଛି । ହେ ପବନସୁତ ! ଯେଉଁଠ ଯେଉଁଠି ବାନରଯୂଥ ସବୁ ରହନ୍ତି, ସେହି ସବୁ ସ୍ଥାନକୁ ଦୂତମାନଙ୍କୁ ପଠାଅ ॥ ୨ ॥ ଏବଂ କହିଦିଅ ଯେ, ପକ୍ଷକ ମଧ୍ୟରେ ଯେ ନ ଆସିବ, ତାହାର ବଧ ଅବଶ୍ୟ ମୋହରି ହାତରେ ହେବ ।" ତଦନନ୍ତର ହନୁମାନ ଦୂତଙ୍କୁ ଡକାଇଲେ ଏବଂ ସମସ୍ତଙ୍କୁ ବହୁତ ସମ୍ମାନ କରି ଭୟ, ପ୍ରୀତି ଓ ନୀତି ଦେଖାଇଲେ । ସମସ୍ତ ବାନର ଚରଣରେ ଶିର ନୁଆଁଇ ଚାଲିଲେ । ଏତିକିବେଳେ ଲକ୍ଷ୍ମଣ ନଗର ମଧ୍ୟକୁ ଆସିଲେ । ତାଙ୍କ କ୍ରୋଧ ଦେଖି ବାନରମାନେ ଏଣେ ତେଣେ ଦୌଡ଼ି ପଳାଇ ଗଲେ ॥ ୩-୪ ॥ ଦୋହା :—ତହୁଁରେ ଲକ୍ଷ୍ମଣ ଧନୁରେ ଶର ଯୋଖି କହିଲେ, "ଏହିକ୍ଷଣି ନଗରକୁ ଜାଳି ଭସ୍ମ କରିଦେବି ।" ସମଗ୍ର ନଗରକୁ ବ୍ୟାକୁଳ ହେବାର

ସୁନୁ ହନୁମନ୍ତ ସଙ୍ଗ ଲୈ ତାରା । କରି ବିନତୀ ସମୁଝାଉ କୁମାରା ॥
ତାରା ସହିତ ଜାଇ ହନୁମାନା । ଚରନ ବଂଦି ପ୍ରଭୁ ସୁଜସ ବଖାନା ॥୨॥
କରି ବିନତୀ ମଂଦିର ଲୈ ଆଏ । ଚରନ ପଖାରି ପଲଁଗ ବୈଠାଏ ॥
ତବ କପୀସ ଚରନନ୍ହି ସିରୁ ନାୱା । ଗହି ଭୁଜ ଲଛିମନ କଂଠ ଲଗାୱା ॥୩॥
ନାଥ ବିଷୟ ସମ ମଦ କଛୁ ନାହୀଁ । ମୁନିମନ ମୋହ କରଇ ଛନ ମାହୀଁ ॥
ସୁନତ ବିନୀତ ବଚନ ସୁଖ ପାୱା । ଲଛିମନ ତେହି ବହୁବିଧି ସମୁଝାୱା ॥୪॥
ପବନ ତନୟ ସବ କଥା ସୁନାଈ । ଜେହି ବିଧି ଗଏ ଦୂତ ସମୁଦାଈ ॥୫॥

ହରଷି ଚଲେ ସୁଗ୍ରୀବ ତବ ଅଙ୍ଗଦାଦି କପି ସାଥ ।
ରାମାନୁଜ ଆଗେଁ କରି ଆଏ ଜହଁ ରଘୁନାଥ ॥୨୦॥

---

ତୁମ୍ଭେ ହନୁମାନ, ତାରା ସଙ୍ଗେ ମିଳି ଯାଅ । ବିନତି କରିଣ ରାଜକୁମାରେ ବୁଝାଅ ॥
ତାରା ସଙ୍ଗେ ଯାଇ ତହୁଁ ପବନ ନନ୍ଦନ । ଚରଣ ବନ୍ଦି ସୁଯଶ କରିଲେ ବର୍ଣ୍ଣନ ॥୨॥
ବିନତି କରି ଗୃହକୁ ଆଣିଲେ ସାଦରେ । ପଦ ଧୋଇ ବସାଇଲେ ପଲଙ୍କ ଉପରେ ॥
ତହୁଁ କପୀଶ୍ୱର ଆସି ପ୍ରଣମନ୍ତେ ପଦେ । ଭୁଜ ଧରି ଲକ୍ଷ୍ମଣ ଲଗାଇଲେ ହୃଦେ ॥୩॥
ନାଥ ! ବିଷୟ ସମାନ ମଦ ନାହିଁ ଅନ୍ୟ । କ୍ଷଣକ ମଧ୍ୟେ ମୋହଇ ମୁନିବର ମନ ॥
ଶୁଣି ବିନୀତ ବଚନ ସନ୍ତୋଷ ଲଭିଲେ । ଲକ୍ଷ୍ମଣ ତାହାଙ୍କୁ ନାନାମତେ ବୁଝାଇଲେ ॥୪॥
ସମସ୍ତ ବୃତ୍ତାନ୍ତ ପୁଣି ପବନ କୁମାର । ଶୁଣାଇଲା, ଦୂତ ସବୁ ଗଲେ ଯେ ପ୍ରକାର ॥୫॥

ସୁଗ୍ରୀବ ସାନନ୍ଦେ ଘେନି ତହୁଁ ସଙ୍ଗେ ଅଙ୍ଗଦାଦି ମର୍କଟ ।
ଲକ୍ଷ୍ମଣଙ୍କୁ ଆଗେ କରି ଆଗମିଲେ ରଘୁପତିଙ୍କ ନିକଟ ॥୨୦॥

---

ଦେଖି ବାଳପୁଞ୍ଜ ଅଙ୍ଗଦ ତାଙ୍କ ନିକଟକୁ ଆସିଲେ ॥ ୧୯ ॥ ଚୌପାଈ :—ଅଙ୍ଗଦ ତାହାଙ୍କ ଚରଣ ତଳେ ଶିର ନୁଆଁଇ ବିନତି କଲେ । ଲକ୍ଷ୍ମଣ ସେମାନଙ୍କୁ ଅଭୟବାହୁର ଆଶ୍ରୟ ଦେଲେ । କପିରାଜ ସୁଗ୍ରୀବ ଆପଣା କାନରେ ଲକ୍ଷ୍ମଣଙ୍କୁ କ୍ରୁଦ୍ଧ ହେବାର ଶୁଣି ଭୟରେ ବ୍ୟାକୁଳ ହୋଇ କହିଲେ, "ହେ ହନୁମାନ୍ ' ଶୁଣ; ତୁମେ ତାରାକୁ ସଙ୍ଗରେ ନେଇ ବିନୟ ସହକାରେ ରାଜକୁମାରଙ୍କୁ ବୁଝାଇ-ସୁଝାଇ ଶାନ୍ତ କର ।" ହନୁମାନ ତାରା ସଙ୍ଗେ ଯାଇ ଲକ୍ଷ୍ମଣଙ୍କ ଚରଣ ବନ୍ଦନା କଲେ ଏବଂ ପ୍ରଭୁଙ୍କ ସୁନ୍ଦର ଯଶ ବର୍ଣ୍ଣନା କଲେ ॥ ୧-୨ ॥ ସେ ବିନତି କରି ତାହାଙ୍କୁ ମହଲ ଭିତରକୁ ନେଇ ଆସିଲେ ଏବଂ ତାଙ୍କ ଚରଣ ଧୋଇ ତାଙ୍କୁ ପଲଙ୍କ ଉପରେ ବସାଇଲେ । ତତ୍ପରେ ବାନରରାଜ ସୁଗ୍ରୀବ ତାଙ୍କ ଚରଣରେ ଶିର ନୁଆଁଇଲେ ଏବଂ ଲକ୍ଷ୍ମଣ ହାତ ଧରି ତାହାଙ୍କୁ ଆଲିଙ୍ଗନ କରି ପକାଇଲେ ॥ ୩ ॥ ସୁଗ୍ରୀବ କହିଲେ, "ହେ ନାଥ ! ବିଷୟ ସମାନ ମଦ ଆଉ ନାହିଁ । ଏହା ମୁନିମାନଙ୍କ ମନରେ ମୁଦ୍ଧା କ୍ଷଣକ ମଧ୍ୟରେ ମୋହ ଉତ୍ପନ୍ନ କରିଦିଏ ।" ସୁଗ୍ରୀବଙ୍କ ସବିନୟ ବଚନ ଶୁଣି ଲକ୍ଷ୍ମଣ ସୁଖ ପାଇଲେ ଏବଂ ତାହାଙ୍କୁ ବହୁତ ପ୍ରକାରେ ବୁଝାଇଲେ ॥ ୪ ॥ ତତ୍ପରେ ପବନସୁତ ହନୁମାନ ଯେଉଁପରି ଭାବରେ ବିଭିନ୍ନ ଦିଗକୁ

ନାଇ ଚରନ ସିରୁ କହ କର ଜୋରୀ । ନାଥ ମୋହି କଛୁ ନାହିନ ଖୋରୀ ॥
ଅତିସୟ ପ୍ରବଲ ଦେବ ତବ ମାୟା । ଛୂଟଇ ରାମ କରହୁ ଜୌଁ ଦାୟା ॥୧॥
ବିଷୟ ବସ୍ୟ ସୁର ନର ମୁନି ସ୍ୱାମୀ । ମୈଁ ପାୱଁର ପସୁ କପି ଅତି କାମୀ ॥
ନାରି ନୟନ ସର ଜାହି ନ ଲାଗା । ଘୋର କ୍ରୋଧତମ ନିସି ଜୋ ଜାଗା ॥୨॥
ଲୋଭ ପାଁସ ଜେହିଁ ଗର ନ ବଁଧାୱା । ସୋ ନର ତୁମ୍ହ ସମାନ ରଘୁରାୟା ॥
ୟହ ଗୁନ ସାଧନ ତେଁ ନହିଁ ହୋଈ । ତୁମ୍ହରୀ କୃପାଁ ପାୱ କୋଇ କୋଈ ॥୩॥
ତବ ରଘୁପତି ବୋଲେ ମୁସୁକାଈ । ତୁମ୍ହ ପ୍ରିୟ ମୋହି ଭରତ ଜିମି ଭାଈ ॥
ଅବ ସୋଇ ଜତନୁ କରହୁ ମନ ଲାଈ । ଜେହି ବିଧି ସୀତା କୈ ସୁଧି ପାଈ ॥୪॥

ଏହି ବିଧି ହୋତ ବତକହୀ ଆଏ ବାନର ଜୂଥ ।
ନାନା ବରନ ସକଲ ଦିସି ଦେଖିଅ କୀସ ବରୂଥ ॥୨୧॥

---

ଚରଣେ ପ୍ରଣମି ବୋଲେ କର ଯୋଡ଼ିକରି । ନାଥ ! ନାହିଁ କିଛି ମାତ୍ର ଦୂଷଣ ମୋହରି ॥
ଦେବ ! ଅତିଶୟ ମାୟା ପ୍ରବଳ ତୁମ୍ଭର । ଦୂର ହୁଏ ତେବେ ଯେବେ ତୁମ୍ଭେ ଦୟା କର ॥୧॥
ବିଷୟ ବିବଶ ସୁର ନର ମୁନି ସ୍ୱାମୀ । ମୁଁ ଅଟେ ପାମର ପଶୁ କପି ଅତି କାମୀ ॥
ଯେ ନାରୀ ନୟନ-ଶରେ ବିଦ୍ଧ ନ ହୁଅଇ । ଘୋର କ୍ରୋଧ-ତମୀରେ ଯେ ଜାଗ୍ରତ ରହଇ ॥୨॥
ଲୋଭ-ପାଶ ନିଜ ଗଳେ ନ ବନ୍ଧାଏ ଯେହୁ । ତୁମ୍ଭ ସମ ରଘୁନାଥ ଅଟେ ନର ସେହୁ ॥
ଏହୁ ଗୁଣ ନ ହୁଅଇ ସାଧନ ବଳରେ । ତୁମ୍ଭ କରୁଣାରେ କେହି କେହି ଲାଭ କରେ ॥୩॥
ତହୁଁ ହସି ଉଚ୍ଚାରିଲେ ଶ୍ରୀ ରଘୁନନ୍ଦନ । ତୁମ୍ଭେ ମୋର ପ୍ରିୟ ଭାଇ ଭରତ ଯେସନ ॥
ମନ ଲଗାଇଣ ଏବେ ସେ ଯତନ କର । ପାଇବ ଯେଉଁ ପ୍ରକାରେ ସୀତାଙ୍କ ଖବର ॥୪॥

ଏଣେ ବାର୍ତ୍ତାଳାପ ହେଉଥିଲା ବେଳେ ଆସିଲେ ଯୂଥ ବାନର ।
ନାନାବିଧ ବର୍ଣ୍ଣ ସବୁ ଦିଗେ ପୂର୍ଣ୍ଣ ଦିଶନ୍ତି କପି-ନିକର ॥୨୧॥

---

ଦୂତ ସମୂହ ଯାଇଥିଲେ, ସେ ସବୁ ଘଟନା କହି ଶୁଣାଇଲେ ॥ ୬ ॥ ଦୋହା :— ତତ୍ପରେ ଅଙ୍ଗଦ ପ୍ରଭୃତି ବାନରଗଣଙ୍କୁ ସଙ୍ଗରେ ନେଇ ଓ ଶ୍ରୀରାମଙ୍କ ସାନଭାଇ ଲକ୍ଷ୍ମଣଙ୍କୁ ଆଗରେ ରଖି ସୁଗ୍ରୀବ ଆନନ୍ଦିତ ମନରେ ଚାଲିଲେ ଏବଂ ଶ୍ରୀରାମ ଯେଉଁଠାରେ ଥିଲେ, ସେଠାକୁ ଆସିଲେ ॥ ୨୦ ॥ ଚୌପାଈ :—ଶ୍ରୀ ରଘୁନାଥଙ୍କ ଚରଣରେ ଶିର ନୁଆଁଇ ହାତ ଯୋଡି ସୁଗ୍ରୀବ କହିଲେ, "ହେ ନାଥ ! ମୋର କୌଣସି ଦୋଷ ନାହିଁ । ହେ ଦେବ ! ଆପଣଙ୍କ ମାୟା ପ୍ରବଳ । ହେ ରାମ ! ଆପଣ ଯେବେ ଦୟା କରନ୍ତି, ଏହା ଦୂର ହୁଏ ॥ ୧ ॥ ହେ ସ୍ୱାମି ! ଦେବତା, ମନୁଷ୍ୟ ଓ ମୁନି ସମସ୍ତେ ବିଷୟର ବଶୀଭୂତ । ମୁଁ ତ ପାମର ପଶୁ ଏବଂ ପଶୁଗଣଙ୍କ ମଧ୍ୟରେ ପୁଣି ଅତି କାମୀ ବାନର । ସ୍ତ୍ରୀର ନୟନ-ବାଣ ଯାହାକୁ ବିଦ୍ଧ କରି ନାହିଁ, ଯେ ଭୟଙ୍କର କ୍ରୋଧରୂପୀ ଅନ୍ଧକାରମୟୀ ରଜନୀରେ ମଧ୍ୟ ଜାଗ୍ରତ ଥାଏ ଏବଂ ଲୋଭ-ପାଶରେ ଯେ ଆପଣାର ଗଳା ବନ୍ଧାଇ ନାହିଁ, ହେ ରଘୁନାଥ ! ସେହି ମନୁଷ୍ୟ କେବଳ ଆପଣଙ୍କର ସମାନ । ଏ ସବୁ ଗୁଣ ସାଧନା-

ବାନର କଟକ ଉମା ମୈଁ ଦେଖା । ସୋ ମୂରୁଖ ଜୋ କରନ ଚହ ଲେଖା ॥
ଆଇ ରାମ ପଦ ନାୱହିଁ ମାଥା । ନିରଖି ବଦନୁ ସବ ହୋହିଁ ସନାଥା ॥୧॥
ଅସ କପି ଏକ ନ ସେନା ମାହୀଁ । ରାମ କୁସଲ ଜେହି ପୂଛୀ ନାହୀଁ ॥
ୟହ କଛୁ ନହିଁ ପ୍ରଭୁ କଇ ଅଧିକାଈ । ବିସ୍ୱରୂପ ବ୍ୟାପକ ରଘୁରାଈ ॥୨॥
ଠାଢ଼େ ଜହଁ ତହଁ ଆୟସୁ ପାଈ । କହ ସୁଗ୍ରୀବ ସବହି ସମୁଝାଈ ॥
ରାମ କାଜୁ ଅରୁ ମୋର ନିହୋରା । ବାନର ଜୂଥ ଜାହୁ ଚହୁଁ ଓରା ॥୩॥
ଜନକ ସୁତା କହୁଁ ଖୋଜହୁ ଜାଈ । ମାସ ଦିବସ ମହଁ ଆଏହୁ ଭାଈ ॥
ଅବଧି ମେଟି ଜୋ ବିନୁ ସୁଧି ପାଏଁ । ଆୱଇ ବନିହି ସୋ ମୋହି ମରାଏଁ ॥୪॥

---

ବାନରଙ୍କ ଆଟ ମୁହିଁ ଦେଖିଲି, ପାର୍ବତୀ । ସେ ମୂର୍ଖେ ଗଣା ଯେ ଗଣି ଲେଖିବା ଇଚ୍ଛନ୍ତି ॥
ଆସି ରଘୁପତି ପଦେ କରି ପ୍ରଣିପାତ । ନିରେଖି ବଦନ ସର୍ବେ ହୁଅନ୍ତି ସନାଥ ॥୧॥
ସେନାରେ ଏପରି କେହି କପି ନ ରହିଲେ । ରାମ ଯାହାଙ୍କୁ କୁଶଳ ପ୍ରଶ୍ନ ନ କରିଲେ ॥
ଏହା କିଛି ବିଶେଷତ୍ୱ ନୁହେ ପ୍ରଭୁଙ୍କର । ବ୍ୟାପକ ବିଶ୍ୱ ସ୍ୱରୂପ ଶ୍ରୀ ରଘୁ ପ୍ରବର ॥୨॥
ଉଭା ହେଲେ ଯଥା ସ୍ଥାନେ ଅନୁମତି ପାଇ । ବୋଲଇ ସୁଗ୍ରୀବ ସର୍ବ କପିଙ୍କୁ ବୁଝାଇ ॥
ରାମଙ୍କ କାର୍ଯ୍ୟ ଆବର ଏଥି ମୋ ବିନୟ । ଚତୁର୍ଦ୍ଦିଗେ ଚାଲିଯାଅ ବାନର ନିଚୟ ॥୩॥
ଜନକ ସୁତାଙ୍କ କର ଅନ୍ୱେଷଣ ଯାଇ । ମାସ ଦିବସ ମଧ୍ୟରେ ବାହୁଡ଼ିବ ଭାଇ ॥
ସନ୍ଦେଶ ନ ପାଇ ଯେହୁ ଅବଧି ଲଂଘିବ । ଆସିଲେ ମୋ କରେ ସେହୁ ଅବଶ୍ୟ ମରିବ ॥୪॥

---

ବଳରେ ଲବ୍ଧ ହୁଏ ନାହିଁ । ଆପଣଙ୍କ କୃପାବଳରେ କେହି କେହି ଏହି ଗୁଣଗୁଡ଼ିକୁ ଲାଭ କରନ୍ତି ।" ॥ ୨-୩ ॥ ତତ୍ପରେ ଶ୍ରୀ ରଘୁନାଥ ହସି କହିଲେ, "ହେ ଭାଇ ! ତୁମେ ଭରତ ପରି ମୋର ପ୍ରିୟ । ଏବେ ଯେପରି ସୀତାଙ୍କ ଖବର ମିଳିବ, ମନ ଲଗାଇ ସେହି ଉପାୟ କର ॥ ୪ ॥ ଦୋହା :—ଏହିପରି କଥାବାର୍ତ୍ତା ଚାଲିଥିଲାବେଳେ ବାନର-ଯୂଥମାନେ ଆସିଗଲେ । ସବୁ ଦିଗରେ ଅନେକ ରଙ୍ଗର ବାନର-ଦଳ ଦେଖା-ଗଲେ ॥ ୨୧ ॥ ଚୌପାଈ :—ଶିବ କହନ୍ତି, "ହେ ଉମା ! ସେହି ବାନରସେନା ମୁଁ ଦେଖିଥିଲି । ତାହାର ଗଣନା କରିବାକୁ ଯେ ଇଚ୍ଛା କରିବ, ସେ ମହାମୂର୍ଖ । ସମସ୍ତ ବାନର ଏକ ପରେ ଏକ ଆସି ଶ୍ରୀରାମଙ୍କ ଚରଣରେ ମସ୍ତକ ନୁଆଁଉଥା'ନ୍ତି ଏବଂ ସୌନ୍ଦର୍ଯ୍ୟ-ମାଧୁର୍ଯ୍ୟନିଧି ଶ୍ରୀମୁଖର ଦର୍ଶନ ଲାଭ କରି କୃତାର୍ଥ ହେଉଥା'ନ୍ତି ॥ ୧ ॥ ସେନା ମଧ୍ୟରେ ଏପରି କୌଣସି ବାନର ରହିଁ ଗଲେ ନାହିଁ ଯାହାଙ୍କୁ ଶ୍ରୀରାମ କୁଶଳବାର୍ତ୍ତା ପଚାରିଲେ ନାହିଁ । ପ୍ରଭୁଙ୍କ ପକ୍ଷରେ ଏ କୌଣସି ବଡ଼ କଥା ନୁହେଁ । କାରଣ ଶ୍ରୀ ରଘୁନାଥ ବିଶ୍ୱରୂପ ଓ ସର୍ବବ୍ୟାପକ ॥ ୨ ॥ ଆଜ୍ଞା ପାଇ ସମସ୍ତେ ଯେଉଁଠି ସେଇଠି ଛିଡ଼ା ହୋଇ-ଗଲେ । ତତ୍ପରେ ସୁଗ୍ରୀବ ସମସ୍ତ ବାନରଙ୍କୁ ବୁଝାଇ କହିଲେ, "ହେ ବାନର ସମୂହ ! ଏହା ଶ୍ରୀରାମଚନ୍ଦ୍ରଙ୍କ କାର୍ଯ୍ୟ ଏବଂ ମୋର ଅନୁରୋଧ—ତୁମ୍ଭେମାନେ ଚାରିଦିଗକୁ ଯାଅ ॥୩॥ ଯାଇ ଜାନକୀଙ୍କୁ ଖୋଜ । ହେ ଭାଇମାନେ ! ମାସକ ମଧ୍ୟରେ ଫେରି ଆସିବ । ଯେ

ବଚନ ସୁନତ ସବ ବାନର ଜହଁ ତହଁ ଚଲେ ତୁରଂତ ।
ତବ ସୁଗ୍ରୀବଁ ବୋଲାଏ ଅଂଗଦ ନଲ ହନୁମଂତ ॥୨୨॥
ସୁନହୁ ନୀଲ ଅଙ୍ଗଦ ହନୁମାନା । ଜାମବନ୍ତ ମତିଧୀର ସୁଜାନା ॥
ସକଲ ସୁଭଟ ମିଲି ଦଚ୍ଛିନ ଜାହୂ । ସୀତା ସୁଧି ପୂଁଛେହୁ ସବ କାହୂ ॥୧॥
ମନ କ୍ରମ ବଚନ ସୋ ଜତନ ବିଚାରେହୁ । ରାମଚନ୍ଦ୍ର କର କାଜୁ ସଁୱାରେହୁ ॥
ଭାନୁ ପୀଠି ସେଇଅ ଉର ଆଗୀ । ସ୍ୱାମିହି ସର୍ବ ଭାବ ଛଲ ତ୍ୟାଗୀ ॥୨॥
ତଜି ମାୟା ସେଇଅ ପରଲୋକା । ମିଟହିଁ ସକଲ ଭବସମ୍ଭବ ସୋକା ॥
ଦେହ ଧରେ କର ଯହ ଫଲୁ ଭାଈ । ଭଜିଅ ରାମ ସବ କାମ ବିହାଈ ॥୩॥
ସୋଇ ଗୁନଜ୍ଞ ସୋଈ ବଡ଼ଭାଗୀ । ଜୋ ରଘୁବୀର ଚରନ ଅନୁରାଗୀ ॥
ଆୟସୁ ମାଗି ଚରନ ସିରୁ ନାଈ । ଚଲେ ହରଷି ସୁମିରତ ରଘୁରାଈ ॥୪॥

---

ଶୁଣନ୍ତେ ବଚନ ଯେଣେ ତେଣେ ସୈନ୍ୟ ଗମିଲେ ସବେ ସତ୍ୱର ।
ତହୁଁ ହନୁମାନ, ନଳ, ଅଙ୍ଗଦଙ୍କୁ ଡାକି କହେ କପୀଶ୍ୱର ॥୨୨॥
ଶୁଣ ନଳ ନୀଳ ବାଲି ସୁତ ହନୁମନ୍ତ । ଅତି ସୁଚତୁର ମତି ଧୀର ଜାମ୍ବବନ୍ତ ॥
ସକଳ ଯୋଦ୍ଧା ମିଳିଣ ଯାଅ ଦକ୍ଷିଣକୁ । ସୀତାଙ୍କ ସନ୍ଦେଶ ପଚାରିବ ସମସ୍ତଙ୍କୁ ॥୧॥
ମନ କର୍ମ ବଚନେ ସେ ଉପାୟ ଚିନ୍ତିବ । ପ୍ରଭୁ ରାମଚନ୍ଦ୍ରଙ୍କର କାର୍ଯ୍ୟକୁ ସାଧିବ ॥
ଭାନୁ ପୃଷ୍ଠ ଦେଶେ ସେବ୍ୟ ସମ୍ମୁଖେ ଅନଳ । ସ୍ୱାମୀ ସର୍ବ ଭାବେ ସେବ୍ୟ ପରିହରି ଛଳ ॥୨॥
ମାୟା ତ୍ୟାଗକରି ସେବା କଲେ ପରଲୋକ । ବିନଷ୍ଟ ହୁଅନ୍ତି ଭବ-ସମ୍ଭୂତ ଶୋକ ॥
ଦେହ ଧରିବାର ଭାଇ ଅଟେ ଏହି ଫଳ । ରାମଙ୍କୁ ଭଜ ତେଜିଣ କାମନା ସକଳ ॥୩॥
ସେହି ଗୁଣବନ୍ତ ସେହି ଭାଗ୍ୟବାନ ଅତି । ରଘୁବୀର ପଦ ଅନୁରାଗୀ ଯେ ଅଟନ୍ତି ॥
ଆଦେଶ ମାଗି ଚରଣେ ପ୍ରଣାମ କରିଣ । ଚଳିଲେ ହୃଦୟେ ରଘୁନାଥଙ୍କୁ ସ୍ମରିଣ ॥୪॥

---

ମାସକ ପରେ ସନ୍ଦେଶ ବିନା ଫେରି ଆସିବ, ମୋ ହାତରେ ତାହାର ବଧ ସୁନିଶ୍ଚିତ ।” ॥ ୪ ॥ ଦୋହା :—ସୁଗ୍ରୀବଙ୍କ ବଚନ ଶୁଣି ସମସ୍ତ ବାନର ତୁରନ୍ତ ବିଭିନ୍ନ ଦିଗକୁ ଚାଲିଲେ । ତତ୍ପରେ ସୁଗ୍ରୀବ ଅଙ୍ଗଦ, ନଳ ଓ ହନୁମାନ୍ ଆଦି ପ୍ରଧାନ ପ୍ରଧାନ ଯୋଦ୍ଧାମାନଙ୍କୁ ଡକାଇଲେ ॥୨୨॥ ଚୌପାଈ :—ଏବଂ କହିଲେ, “ହେ ଧୀରବୁଦ୍ଧି ଚତୁର ନଳ, ନୀଳ, ଅଙ୍ଗଦ, ଜାମ୍ବବାନ୍ ଓ ହନୁମାନ୍ ! ଶୁଣ—ତୁମେ ସବୁ ଶ୍ରେଷ୍ଠ ଯୋଦ୍ଧା ମିଶି ଦକ୍ଷିଣ ଦିଗକୁ ଯାଅ ଏବଂ ସମସ୍ତଙ୍କୁ ସୀତାଙ୍କ ସନ୍ଦେଶ ପଚାର ॥ ୧ ॥ ମନ, ବଚନ ଓ କର୍ମରେ ତାହାଙ୍କ ଠିକଣା ପାଇବାର ଯତ୍ନ କର, ଶ୍ରୀରାମଙ୍କ କାର୍ଯ୍ୟ ସମ୍ପନ୍ନ କର । ସୂର୍ଯ୍ୟଙ୍କୁ ପିଠିରେ ଏବଂ ଅଗ୍ନିଙ୍କୁ ହୃଦୟରେ (ଆଗରେ) ସେବନ କରିବା ଉଚିତ ।” କିନ୍ତୁ ଛନ୍ଦକପଟ ଛାଡ଼ି ମନ, ବଚନ ଓ କର୍ମ ସକଳ ଭାବରେ ପ୍ରଭୁଙ୍କର ସେବା କରିବା ଉଚିତ ॥ ୨ ॥ ମାୟା (ବିଷୟ ପ୍ରତି ମମତା ଆସକ୍ତି) ତ୍ୟାଗ କରି ପରଲୋକର ସେବା (ଭଗବାନଙ୍କ ଦିବ୍ୟଧାମ ପ୍ରାପ୍ତି ନିମନ୍ତେ ଭଗବତ୍ ସେବା ରୂପୀ ସାଧନା) କରିବା ଉଚିତ । ଯାହା

ପାଛେଁ ପବନତନୟ ସିରୁ ନାଓ୍ୱା । ଜାନି କାଜୁ ପ୍ରଭୁ ନିକଟ ବୋଲାଓ୍ୱା ॥
ପରସା ସୀସ ସରୋରୁହ ପାନୀ । କରମୁଦ୍ରିକା ଦୀହ୍ନି ଜନ ଜାନୀ ॥୫॥
ବହୁ ପ୍ରକାର ସୀତହି ସମୁଝାଏହୁ । କହି ବଲ ବିରହ ବେଗି ତୁହ୍ମ ଆଏହୁ ॥
ହନୁମତ ଜନ୍ମ ସୁଫଲ କରି ମାନା । ଚଲେଉ ହୃଦୟଁ ଧରି କୃପାନିଧାନା ॥୬॥
ଜଦ୍ୟପି ପ୍ରଭୁ ଜାନତ ସବ ବାତା । ରାଜନୀତି ରାଖତ ସୁରତ୍ରାତା ॥୭॥

ଚଲେ ସକଲ ବନ ଖୋଜତ ସରିତା ସର ଗିରି ଖୋହ ।
ରାମ କାଜ ଲୟଲୀନ ମନ ବିସରା ତନ କର ଛୋହ ॥୨୩॥

କତହୁଁ ହୋଇ ନିସିଚର ସୈଁ ଭେଁଟା । ପ୍ରାନ ଲେହିଁ ଏକ ଏକ ଚପେଟା ॥
ବହୁ ପ୍ରକାର ଗିରି କାନନ ହେରହିଁ । କୋଉ ମୁନି ମିଲଇ ତାହି ସବ ଘେରହିଁ ॥୧॥

---

ପଛେ ପବନ ତନୟ କରନ୍ତେ ପ୍ରଣାମ । କାର୍ଯ୍ୟକାରୀ ଜାଣି ପାଖେ ଡକାଇଲେ ରାମ ॥
ଶିରେ ସ୍ପର୍ଶ କରି ନିଜ ସରୋରୁହ ପାଣି । କର ମୁଦ୍ରିକା ପ୍ରଦାନ କଲେ ଜନ ଜାଣି ॥୫॥
ଜନକ ସୁତାଙ୍କୁ ନାନା ମତେ ବୁଝାଇବ । କହୁଣ ବଳ ବିରହ ଶୀଘ୍ର ବାହୁଡ଼ିବ ॥
ସୁଫଳ ଜନମ ମଣି ତହୁଁ ହନୁମାନ । ଚଳିଲେ ହୃଦୟେ ସ୍ମରି କରୁଣା-ନିଧାନ ॥୬॥
ଯଦ୍ୟପି ପ୍ରଭୁ ସକଳ ବୃତ୍ତାନ୍ତ ଜାଣନ୍ତି । ରାଜନୀତି ସୁର-ତ୍ରାତା ପାଳନ କରନ୍ତି ॥୭॥

ଗଲେ ସର୍ବେ ବନ ଗିରି ଅନ୍ୱେଷିଣ ସର ସରିତ କନ୍ଦର ।
ରାମ କାର୍ଯ୍ୟେ ମନ କରି ଲୟ ଲୀନ ଭୁଲିଲେ ସ୍ନେହ ଦେହର ॥୨୩॥

କାହିଁ କଦାଚିତେ ଯେବେ ଅସୁରେ ଭେଟନ୍ତି । ଏକ ଏକ ଚପୁଡ଼ାରେ ଜୀବନ ନିଅନ୍ତି ॥
ବହୁତ ପ୍ରକାରେ ଗିରି କାନନ ଖୋଜନ୍ତି । କୌଣସି ମୁନି ମିଳିଲେ ତାହାଙ୍କୁ ଘେରନ୍ତି ॥୧॥

---

ଫଳରେ ଭବସମ୍ଭୂତ ସମସ୍ତ ଦୁଃଖ ଶୋକ ମେଣ୍ଟିଯାଏ । ହେ ଭାଇ ' ଶରୀର ଧାରଣ କରିବାର ଗୋଟିଏ ମାତ୍ର ଫଳ ଏହି ଯେ, ସମସ୍ତ କାମନାକୁ ତ୍ୟଜି ଶ୍ରୀରାମଙ୍କ ଭଜନ କରିବା ବିଧେୟ ॥ ୩ ॥ ଯେ ଶ୍ରୀରାମଚନ୍ଦ୍ରଙ୍କ ଚରଣପ୍ରେମୀ, ସେହି ଗୁଣଜ୍ଞ ଓ ଅତି ଭାଗ୍ୟବନ୍ତ ।'' ଆଜ୍ଞା ମାଗି ଓ ଚରଣ ତଳେ ଶିର ନୁଆଁଇ ଶ୍ରୀରାମଙ୍କ ନାମ ସ୍ମରଣ କରି ସମସ୍ତେ ଆନନ୍ଦିତ ହୋଇ ଚାଲିଲେ ॥ ୪ ॥ ସମସ୍ତଙ୍କ ପଛରେ ପବନସୁତ ଶ୍ରୀ ହନୁମାନ ମସ୍ତକ ଅବନତ କଲେ । କାର୍ଯ୍ୟ କଥା ବିଚାର ଲାଗି ପ୍ରଭୁ ତାହାଙ୍କୁ ଆପଣା ନିକଟକୁ ଡକାଇଲେ । ସେ ଆପଣା କର-କମଳରେ ତାହାଙ୍କର ଶିର ସ୍ପର୍ଶ କଲେ ଏବଂ ତାହାଙ୍କୁ ଆପଣାର ସେବକ ଜାଣି ତାଙ୍କୁ ଆପଣା ହାତର ମୁଦି ବାହାର କରି ଦେଲେ ॥ ୫ ॥ ଏବଂ କହିଲେ, "ବହୁତ ପ୍ରକାରେ ସୀତାଙ୍କୁ ବୁଝାଇବ ଏବଂ ମୋ ବଳ ତଥା ବିରହ କଥା କହି ତୁମେ ଶୀଘ୍ର ଫେରି ଆସିବ । ହନୁମାନ୍ ଆପଣା ଜନ୍ମ ସଫଳ ମନେ କଲେ ଏବଂ କୃପାନିଧାନ ପ୍ରଭୁଙ୍କୁ ହୃଦୟରେ ଧାରଣ କରି ସେ ଚାଲିଲେ ॥ ୬ ॥ ଯଦ୍ୟପି ଦେବରକ୍ଷକ ପ୍ରଭୁ ସବୁ ଜାଣନ୍ତି, ତଥାପି ସେ ରାଜନୀତି ରକ୍ଷା କରୁଅଛନ୍ତି ॥ ୭ ॥ ଦୋହା :—ସମସ୍ତ ବାନର ବନ, ନଦୀ, ସରୋବର, ପର୍ବତ ଓ ଗୁମ୍ଫାମାନ ଖୋଜି ଖୋଜି

ଲାଗି ତୃଷା ଅତିସୟ ଅକୁଲାନେ । ମିଲଇ ନ ଜଲ ଘନ ଗହନ ଭୁଲାନେ ॥
ମନ ହନୁମାନ କୀହ୍ନ ଅନୁମାନା । ମରନ ଚହତ ସବ ବିନୁ ଜଲ ପାନା ॥୨॥
ଚଢ଼ି ଗିରି ସିଖର ଚହୂଁ ଦିସି ଦେଖା । ଭୂମି ବିବର ଏକ କୌତୁକ ପେଖା ॥
ଚକ୍ରବାକ ବକ ହଂସ ଉଡ଼ାହୀଁ । ବହୁତକ ଖଗ ପ୍ରବିସହିଁ ତେହି ମାହୀଁ ॥୩॥
ଗିରି ତେଁ ଉତରି ପବନସୁତ ଆୱା । ସବ କହୁଁ ଲୈ ସୋଇ ବିବର ଦେଖାୱା ॥
ଆଗେଁ କୈ ହନୁମନ୍ତହି ଲୀହ୍ନା । ପୈଠେ ବିବର ବିଲଂବୁ ନ କୀହ୍ନା ॥୪॥

ଦୀଖ ଜାଇ ଉପବନ ବର ସର ବିଗସିତ ବହୁ କଂଜ ।
ମନ୍ଦିର ଏକ ରୁଚିର ତହଁ ବୈଠି ନାରି ତପ ପୁଂଜ ॥୨୪॥

---

ଲାଗନ୍ତେ ତୃଷା ଅତ୍ୟନ୍ତ ହୋଇଲେ ବିକଳ । ଭ୍ରମିଲେ ଗହନ ବନେ, ନ ମିଳଇ ଜଳ ॥
ତହୁଁ ହନୁମାନ ମନେ କଲା ଅନୁମାନ । ମରଣ ଚାହାନ୍ତି ସର୍ବେ ବିନା ଜଳ ପାନ ॥୨॥
ଚଢି ଗିରି ଶୃଙ୍ଗେ ଚତୁର୍ଦ୍ଦିଗେ ନିରେଖିଲା । କୌତୁକ ଏକ ଭୂମି ବିବରେ ଦେଖିଲା ॥
ଚକ୍ରବାକ କଳହଂସ ସାରସ ଉଡନ୍ତି । ବହୁ ଖଗ ତାହା ମଧ୍ୟେ ପ୍ରବେଶ କରନ୍ତି ॥୩॥
ଗିରିରୁ ଅବତରଣ ପବନ କୁମର । ନେଇ ସମସ୍ତଙ୍କୁ ଦେଖାଇଲା ସେ ବିବର ॥
ହନୁମନ୍ତଙ୍କୁ ସର୍ବେ ଅଗ୍ରସର କରି । ପଶିଲେ ବିବର ମଧ୍ୟେ ବିଳମ୍ବ ନ କରି ॥୪॥

ଦେଖିଲେ ଯାଇଣ ରମ୍ୟ ଉପବନ ସରେ ପ୍ରସ୍ଫୁଟିତ କଞ୍ଜ ।
ତହିଁ ମନୋହର ଶୋଭେ ମନ୍ଦିର ରହେ ନାରୀ ତପପୁଞ୍ଜ ॥୨୪॥

---

ଚାଲି ଯାଉଥା'ନ୍ତି । ମନ ଶ୍ରୀରାମଙ୍କ କାମରେ ଲାଗିଥାଏ । ଆପଣା ଆପଣା ଶରୀର ପ୍ରତି ସ୍ନେହ ମମତା ତୁଟି ଯାଇଥାଏ ॥ ୨୩ ॥ ଚୌପାଇ :—କେଉଁଠି କୌଣସି ରାକ୍ଷସ ସହ ଭେଟାଭେଟି ହୋଇଯାଉଛି ତ, ଗୋଟିଏ ଚାପୁଡାରେ ତାହାର ପ୍ରାଣ ନେଇ ଯାଉ-ଥା'ନ୍ତି । ପର୍ବତ ଓ ବନ ସବୁ ବହୁ ପ୍ରକାରେ ଅନୁସନ୍ଧାନ କରୁଥା'ନ୍ତି । କୌଣସି ମୁନି ବା ସନ୍ନ୍ୟାସୀଙ୍କ ସହ ଭେଟ ହୋଇଗଲେ, ସୀତାଙ୍କ ଖବର ପଚାରିବା ନିମନ୍ତେ ତାଙ୍କୁ ଘେରି ଯାଉଥା'ନ୍ତି ॥ ୧ ॥ ଇତି ମଧ୍ୟରେ ସମସ୍ତଙ୍କୁ ତୃଷା ହେଲା । ସମସ୍ତେ ବ୍ୟାକୁଳ ହୋଇ ପଡିଲେ । କିନ୍ତୁ ଜଳ କେଉଁଠି ହେଲେ ମିଳିଲା ନାହିଁ । ଗହନ ବନରେ ସମସ୍ତେ ଭ୍ରମି ବୁଲିଲେ । ହନୁମାନ୍ ମନେ ମନେ ଅନୁମାନ କଲେ ଯେ, ଜଳ ପିଇବାକୁ ନ ପାଇ ସମସ୍ତେ ମରିବାକୁ ଯେମିତି ଇଚ୍ଛା କଲେଣି ॥ ୨ ॥ ସେମାନେ ପାହାଡ ଅଗରେ ଚଢି ଚାରି ଆଡକୁ ଦୃଷ୍ଟି ପକାଇଲେ । ଭୂମି ମଧ୍ୟସ୍ଥ ଗୋଟିଏ ବିଲରେ ସେମାନଙ୍କୁ ଗୋଟିଏ ଆଶ୍ଚର୍ଯ୍ୟ ଦେଖାଗଲା । ତାହାର ଉପରେ ଚକ୍ରବାକ, ବଗ ଓ ହଂସମାନେ ଉଡୁ-ଥାଆନ୍ତି ଏବଂ ବହୁତ ପକ୍ଷୀ ତହିଁ ମଧ୍ୟରେ ପ୍ରବେଶ କରୁଥାଆନ୍ତି ॥ ୩ ॥ ପବନକୁମାର ହନୁମାନ୍ ପର୍ବତରୁ ଓହ୍ଲାଇ ଆସିଲେ ଏବଂ ସମସ୍ତଙ୍କୁ ସଙ୍ଗରେ ନେଇ ସେହି ଗୁମ୍ଫା ଦେଖାଇଲେ । ସମସ୍ତେ ହନୁମାନଙ୍କୁ ଅଗ୍ରଭାଗରେ ରଖି ସେହି ଗୁମ୍ଫା ମଧ୍ୟରେ ପ୍ରବେଶ କଲେ । ବିଳମ୍ବ କଲେନାହିଁ ॥ ୪ ॥ ଦୋହା :—ଭିତରେ ସେମାନେ ଯାଇ ଗୋଟିଏ

ଦୂରି ତେଁ ତାହି ସବନ୍ହି ସିରୁ ନାୱା । ପୂଛେଁ ନିଜ ବୃତ୍ତାଂତ ସୁନାୱା ॥
ତେହିଁ ତବ କହା କରହୁ ଜଲ ପାନା । ଖାହୁ ସୁରସ ସୁନ୍ଦର ଫଲ ନାନା ॥୧॥
ମଜ୍ଜନୁ କୀନ୍ହ ମଧୁର ଫଲ ଖାଏ । ତାସୁ ନିକଟ ପୁନି ସବ ଚଲି ଆଏ ॥
ତେହିଁ ସବ ଆପନି କଥା ସୁନାଈ । ମୈଁ ଅବ ଜାବ ଜହାଁ ରଘୁରାଈ ॥୨॥
ମୂଁଦହୁ ନୟନ ବିବର ତଜି ଜାହୂ । ପୈହହୁ ସୀତହି ଜନି ପଛିତାହୂ ॥
ନୟନ ମୂଁଦି ପୁନି ଦେଖହିଁ ବୀରା । ଠାଢ଼େ ସକଲ ସିନ୍ଧୁ କେ ତୀରା ॥୩॥
ସୋ ପୁନି ଗଈ ଜହାଁ ରଘୁନାଥା । ଜାଇ କମଲ ପଦ ନାଏସି ମାଥା ॥
ନାନା ଭାଁତି ବିନୟ ତେହିଁ କୀନ୍ହୀ । ଅନପାୟନୀ ଭଗତି ପ୍ରଭୁ ଦୀନ୍ହୀ ॥୪॥

ବଦରୀ ବନ କହୁଁ ସୋ ଗଈ ପ୍ରଭୁ ଅଗ୍ୟା ଧରି ସୀସ ।
ଉର ଧରି ରାମ ଚରନ ଜୁଗ ଜେ ବନ୍ଦତ ଅଜ ଈସ ॥୨୪॥

---

ଦୂରେ ଥାଇ ସର୍ବେ ତାଙ୍କୁ ପ୍ରଣାମ କଲେ । ପଚାରନ୍ତେ ନିଜ କଥା କହି ଶୁଣାଇଲେ ॥
ତହୁଁ ବୋଲେ ତପସ୍ୱିନୀ ଜଳ ପାନ କର । ଖାଅ ନାନାବିଧ ଫଳ ସୁସ୍ୱାଦୁ ସୁନ୍ଦର ॥୧॥
ସ୍ନାନ କରି କପି ଖାଇ ମଧୁ ଫଳମୂଳ । ପୁଣି ତା'ନିକଟେ ଆସି ହେଲେ ସର୍ବେ ଠୁଳ ॥
ଶୁଣାଇଲା ସେ ଆପଣା ବୃତ୍ତାନ୍ତ ସରବ । ମୁଁ ଏବେ ଯାଉଛି ଯହିଁ ଶ୍ରୀ ରଘୁପୁଙ୍ଗବ ॥୨॥
ମୁଦ ବିଲୋଚନ, ଯିବ ତେଜିଣ ବିବର । ପାଇବ ସୀତାଙ୍କୁ ଆଉ ନ ହୁଅ କାତର ॥
ନୟନ ମୁଦଣ ପୁଣି ବିଲୋକିଲେ ବାରେ । ଛିଡ଼ା ହୋଇଛନ୍ତି ସର୍ବେ ଜଳନିଧି ତୀରେ ॥୩॥
ସେ ପୁଣି ଗମିଲା ଯହିଁ ଥିଲେ ରଘୁନାଥ । ଯାଇ ଚରଣ-କମଳେ କଲା ପ୍ରଣିପାତ ॥
ଅନେକ ପ୍ରକାରେ ତହୁଁ କରନ୍ତେ ବିନତି । ପ୍ରଭୁ ତାଙ୍କୁ ଦେଲେ ନିଜ ଅଚଳା ଭକତି ॥୪॥

ବଦରୀକାନନ ଗଲା ସେ ବହନ ପ୍ରଭୁ ଆଜ୍ଞା ଶିରେ ଘେନି ।
ହୃଦେ ରଖି ବିଧି ହର, ପ୍ରଭୁଙ୍କର ବନ୍ଦନୀୟ ପଦ ବେନି ॥୨୪॥

---

ବଗିଚା ଓ ପୋଖରୀ ଦେଖିଲେ । ତହିଁରେ ବହୁତ କମଳ ଫୁଟିଥାଏ । ସେଠାରେ ଗୋଟିଏ ସୁନ୍ଦର ମନ୍ଦିର ଥାଏ, ତହିଁରେ ଗୋଟିଏ ତପସ୍ୱୀ ମୂର୍ତ୍ତି ନାରୀ ବସିଥାଏ ॥ ୨୪ ॥
ଚୌପାଈ .—ଦୂରରୁ ସମସ୍ତେ ତାହାଙ୍କୁ ଶିର ନୁଆଁଇ ପ୍ରଣାମ କଲେ । ପଚାରନ୍ତେ, ସେ ନିଜର ସମସ୍ତ ବୃତ୍ତାନ୍ତ କହି ଶୁଣାଇଲା । ତତ୍ପରେ ସେ କହିଲା, "ଜଳ ପାନ କର ଏବଂ ବିଭିନ୍ନ ପ୍ରକାରର ରସାଳ ସୁନ୍ଦର ଫଳ ଭୋଜନ କର ।" ॥ ୧ ॥ ଆଜ୍ଞା ପାଇ ସମସ୍ତେ ସ୍ନାନ କଲେ, ମଧୁର ଫଳ ଖାଇଲେ ଏବଂ ପୁଣି ସମସ୍ତେ ତାହା ନିକଟକୁ ଚାଲି ଆସିଲେ । ତତ୍ପରେ ସେ ଆପଣା କଥା ସବୁ କହି ଶୁଣାଇଲା ଏବଂ କହିଲା "ମୁଁ ବର୍ତ୍ତମାନ ଶ୍ରୀ ରଘୁନାଥ ଥିବା ସ୍ଥାନକୁ ଯିବି ॥ ୨ ॥ ତୁମେମାନେ ଆଖି ବୁଜି ଗୁମ୍ଫା ଛାଡି ବାହାରକୁ ଯା । । ତୁମେମାନେ ସୀତାଙ୍କୁ ପାଇବ । ନିରାଶ ହୁଅନାହିଁ ।" ଆଖି ବୁଜି ପୁଣି ଖୋଲିବା ମାତ୍ରେ ସମସ୍ତ ବୀର ଦେଖିଲେ ଯେ, ସେମାନେ ସମୁଦ୍ର ତୀରରେ ଛିଡା ହୋଇଅଛନ୍ତି ॥୩॥ ସେହି ନାରୀ ଯେଉଁଠାରେ ଶ୍ରୀ ରଘୁନାଥ ଥିଲେ, ସେଠାକୁ ଗଲା । ସେ ଯାଇ ପ୍ରଭୁଙ୍କ

ଇହାଁ ବିଚାରହିଁ କପି ମନ ମାହୀଁ । ବୀତି ଅବଧି କାଜ କଛୁ ନାହୀଁ ॥
ସବ ମିଲି କହହିଁ ପରସ୍ପର ବାତା । ବିନୁ ସୁଧି ଲଏଁ କରବ କା ଭ୍ରାତା ॥୧॥
କହ ଅଙ୍ଗଦ ଲୋଚନ ଭରି ବାରୀ । ଦୁହୁଁ ପ୍ରକାର ଭଇ ମୃତ୍ୟୁ ହମାରୀ ॥
ଇହାଁ ନ ସୁଧି ସୀତା କୈ ପାଈ । ଉହାଁ ଗଏଁ ମାରିହି କପିରାଈ ॥୨॥
ପିତା ବଧେ ପର ମାରତ ମୋହୀ । ରାଖା ରାମ ନିହୋର ନ ଓହୀ ॥
ପୁନି ପୁନି ଅଙ୍ଗଦ କହ ସବ ପାହୀଁ । ମରନ ଭୟଉ କଛୁ ସଂସୟ ନାହୀଁ ॥୩॥
ଅଙ୍ଗଦ ବଚନ ସୁନତ କପି ବୀରା । ବୋଲି ନ ସକହିଁ ନୟନ ବହ ନୀରା ॥
ଛନ ଏକ ସୋଚ ମଗନ ହୋଇ ରହେ । ପୁନି ଅସ ବଚନ କହତ ସବ ଭଏ ॥୪॥

---

ଏଣେ କପି ମନ ମଧ୍ୟେ ବିଚାରନ୍ତି ଆଜ । ପୂରିଲା ଅବଧି, କିଛି ନ ହୋଇଲା କାର୍ଯ୍ୟ ॥
ସର୍ବେ ମିଳି ପରସ୍ପର ହୋନ୍ତି କଥାବାର୍ତ୍ତା । ସମାଚାର ନେବା ବିନା କି କରିବା ଭ୍ରାତା ॥୧॥
କହଇ ଅଙ୍ଗଦ ଅଶ୍ରୁ ନେତ୍ରେ ପୂର୍ଣ୍ଣ କରି । ଦୁଇ ପ୍ରକାରେ ହୋଇଲା ମରଣ ଆମ୍ଭର ॥
ସୀତାଙ୍କ ସନ୍ଦେଶ କିଛି ନ ପାଇଲେ ଏଣେ । ଗଲେ ମାରିବ ମର୍କଟ ଅଧିପତି ତେଣେ ॥୨॥
ପିତାଙ୍କ ବଧ ଉତ୍ତାରେ ମୋତେ ଥାନ୍ତା ମାରି । ରଖିଲେ ରାମ, ନୁହଇ କରୁଣା ତାହାରି ॥
ବାରମ୍ବାର ସମସ୍ତଙ୍କୁ ଅଙ୍ଗଦ କହଇ । ମରଣ ହୋଇଲା ଏବେ ସଂଶୟ ନୁହଇ ॥୩॥
ବାଳି ତନୟ ବଚନ ଶୁଣି କପି ବୀର । ବୋଲି ନ ପାରନ୍ତି କିଛି ନେତ୍ରୁ ବହେ ନୀର ॥
କ୍ଷଣ ଏକ ରହି ସର୍ବେ ଶୋକରେ ମଗନ । କହିଲେ ଭାବ ଆବର ଏମନ୍ତ ବଚନ ॥୪॥

---

ଚରଣ-କମଳରେ ମସ୍ତକ ନୁଆଁଇଲା ଏବଂ ବହୁ ପ୍ରକାରେ ବିନତି କଲା । ପ୍ରଭୁ ତାହାକୁ ଆପଣାର ଅଚଳା ଭକ୍ତି ପ୍ରଦାନ କଲେ ॥ ୪ ॥ ଦୋହା :—ପ୍ରଭୁଙ୍କ ଆଜ୍ଞା ଶିରୋଧାର୍ଯ୍ୟ କରି, ବ୍ରହ୍ମାମହେଶ-ବନ୍ଦିତ ପ୍ରଭୁଙ୍କ ଚରଣ-ଯୁଗଳ-ସ୍ମୃତି ହୃଦୟରେ ଧାରଣ କରି ସେହି ନାରୀ (ସ୍ୱୟଂପ୍ରଭା) ବଦରିକାଶ୍ରମକୁ ଚାଲିଗଲା ॥ ୨୫ ॥ ଚୌପାଇ :— ଏଣେ ବାନରଗଣ ମନରେ ବିଚାର କରୁଥାଆନ୍ତି, "ସୀତା ସନ୍ଧାନ ସମୟ ତ ଅତିବାହିତ ହୋଇଗଲା, ମାତ୍ର କାମ ତ କିଛି ହେଲାନାହିଁ ।" ସମସ୍ତେ ମିଶି ପରସ୍ପର କଥାବାର୍ତ୍ତା କରିବାକୁ ଲାଗିଲେ, "ହେ ଭାଇ ! ଏବେ ସୀତାଙ୍କ ଖବର ନ ନେଇ ଆମ୍ଭେମାନେ ଫେରି କ'ଣ କରିବା ?" ॥ ୧ ॥ ଅଙ୍ଗଦ ଅଶ୍ରୁପୂର୍ଣ୍ଣ ନେତ୍ରରେ କହିଲେ, "ଉଭୟ ପ୍ରକାରେ ଆମର ମୃତ୍ୟୁ ସୁନିଶ୍ଚିତ । ଏଣେ ସୀତାଙ୍କ ଖବର ମିଳିଲା ନାହିଁ ଏବଂ ତେଣେ ସେଠାକୁ ଫେରିଗଲେ ବାନରରାଜ ସୁଗ୍ରୀବ ମାରି ପକାଇବେ ॥ ୨ ॥ ପିତାଙ୍କ ବଧ ପରେ ତ ସେ ମୋତେ ମାରି ପକାଇଥା'ନ୍ତେ । ଶ୍ରୀରାମ ମୋତେ ରକ୍ଷା କଲେ । ଏଥିରେ ସୁଗ୍ରୀବଙ୍କର କୌଣସି ଉପକାର ନାହିଁ । ଅଙ୍ଗଦ ବାରମ୍ବାର ସମସ୍ତଙ୍କୁ କହୁଥା'ନ୍ତି— ଏବେ ମରଣ ହେଲା ଜାଣ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ ॥ ୩ ॥ ବାନର ବୀରବୃନ୍ଦ ଅଙ୍ଗଦଙ୍କ ବଚନ ଶୁଣୁଥାଆନ୍ତି, ମାତ୍ର କିଛି କହିପାରୁ ନ ଥା'ନ୍ତି । ସମସ୍ତଙ୍କ ନୟନରୁ ଜଳଧାରା ବହି ଚାଲିଥାଏ । କ୍ଷଣକାଳ ସମସ୍ତେ ଚିନ୍ତାମଗ୍ନ ହୋଇ ରହିଲେ । ତତ୍ପରେ

ହମ ସୀତା କୈ ସୁଧି ଲୀନ୍ହେଁ ବିନା । ନହିଁ ଜୈହେଁ ଜୁବରାଜ ପ୍ରବୀନା ॥
ଅସ କହି ଲବନ ସିନ୍ଧୁ ତଟ ଜାଇ । ବୈଠେ କପି ସବ ଦର୍ଭ ଡସାଇ ।୫॥
ଜାମବନ୍ତ ଅଙ୍ଗଦ ଦୁଖ ଦେଖୀ । କହୀଁ କଥା ଉପଦେସ ବିସେଷୀ ॥
ତାତ ରାମ କହୁଁ ନର ଜନି ମାନହୁ । ନିର୍ଗୁନ ବ୍ରହ୍ମ ଅଜିତ ଅଜ ଜାନହୁ ॥୬॥
ହମ ସବ ସେବକ ଅତି ବଡଭାଗୀ । ସନ୍ତତ ସଗୁନ ବ୍ରହ୍ମ ଅନୁରାଗୀ ॥୭॥

ନିଜ ଇଚ୍ଛାଁ ପ୍ରଭୁ ଅବତରଇ ସୁର ମହି ଗୋ ଦ୍ୱିଜ ଲାଗି ।
ସଗୁନ ଉପାସକ ସଙ୍ଗ ତହଁ ରହହିଁ ମୋଚ୍ଛ ସବ ତ୍ୟାଗି ॥୨୬॥

ଏହି ବିଧି କଥା କହହିଁ ବହୁ ଭାଁତୀ । ଗିରି କଂଦରାଁ ସୁନୀ ସଂପାତୀ ॥
ବାହେର ହୋଇ ଦେଖି ବହୁ କୀସା । ମୋହି ଅହାର ଦୀନ୍ହ ଜଗଦୀସା ॥୧॥

---

ସୀତାଙ୍କର ସମାଚାର ଆମ୍ଭେ ନ ନେଇଣ । ନ ଯିବୁ ଫେରିକି ଯୁବରାଜ ସୁପ୍ରବୀଣ ॥
ଏମନ୍ତ ବିଚାରି ଯାଇ କ୍ଷାର ସିନ୍ଧୁ ତଟେ । ବସିଲେ କୁଶ ବିଛାଇ ସକଳ ମର୍କଟେ ॥୫॥
ଜାମ୍ବବନ୍ତ ଅବଲୋକି ଅଙ୍ଗଦେ ଦୁଃଖିତ । ଉପଦେଶ କଥା କହି ଶୁଣାଏ ଅମିତ ॥
ବତ୍ସ ! ନର ରୂପେ ରଘୁନାଥଙ୍କୁ ନ ମଣ । ନିର୍ଗୁଣ ବ୍ରହ୍ମ ଅଜିତ ଅଜ ବୋଲି ଗଣ ॥୬॥
ଆମ୍ଭେ ସେବକ ସମସ୍ତ ପରମ ସୌଭାଗୀ । ସତତ ସଗୁଣ ବ୍ରହ୍ମ ପଦ ଅନୁରାଗୀ ॥୭॥

ସୁର ମହୀ ଦ୍ୱିଜ ଧେନୁ ହେତୁ ନିଜ ଇଚ୍ଛାରେ ପ୍ରକଟିଛନ୍ତି ।
ସଗୁଣୋପାସକ ମୋକ୍ଷ ଆଦି ସୁଖ ତେଜି ଆସକ୍ତ ରହନ୍ତି ॥୨୬॥

ଏ ଭାବେ କହନ୍ତେ କଥା ବହୁତ ପ୍ରକାରେ । ଶୁଣିଲା ସମ୍ପାତି ଥାଇ ଗିରି କନ୍ଦରରେ ॥
ବାହାର ହୋଇ ଦେଖିଣ ମର୍କଟ ବିଶେଷ । କହଇ ଆହାର ମୋତେ ଦେଲେ ପରମେଶ ॥ ॥

---

ଏପରି ବଚନ ବୋଇଲେ, "ହେ ସୁଯୋଗ୍ୟ ଯୁବରାଜ ! ଆମ୍ଭେମାନେ ସୀତାଙ୍କ ଖବର ନ ନେଇ ଫେରିବୁ ନାହିଁ ।" ଏହାପରି କହି ସମସ୍ତ ବାନର ଲବଣ ସାଗର ତଟକୁ ଗଲେ ଏବଂ ସେହିଠାରେ କୁଶ ବିଛାଇ ବସିଗଲେ ॥ ୪-୫ ॥ ଜାମ୍ବବାନ୍ ଅଙ୍ଗଦଙ୍କ ଦୁଃଖ ଦେଖି ବିଶେଷ ଉପଦେଶ କଥା କହିଲେ । ସେ କହିଲେ, "ହେ ଭାଇ ! ଶ୍ରୀରାମଙ୍କୁ ମନୁଷ୍ୟ ବୋଲି ନ ଗଣ । ସେ ନିର୍ଗୁଣ ବ୍ରହ୍ମ, ଅଜେୟ ଓ ଅଜନ୍ମା ବୋଲି ଜାଣ ॥ ୬ ॥ ନିରନ୍ତର ସଗୁଣବ୍ରହ୍ମ ଶ୍ରୀରାମଙ୍କଠାରେ ପ୍ରୀତି ରଖିଥିବାରୁ ଆମେ ସମସ୍ତ ସେବକ ଅତି ଭାଗ୍ୟବାନ୍ ॥ ୭ ॥ ଦୋହା :—ଦେବତା, ପୃଥିବୀ, ଗୋରୁ ଓ ବ୍ରାହ୍ମଣମାନଙ୍କ ନିମନ୍ତେ ପ୍ରଭୁ ନିଜ ଇଚ୍ଛା ବଳରେ ଅବତାର ଗ୍ରହଣ କରନ୍ତି । ସେତେବେଳେ ସଗୁଣୋପାସକ ଭକ୍ତଗଣ ସାଲୋକ୍ୟ ସାମୀପ୍ୟ, ସାରୂପ୍ୟ, ସାର୍ଷ୍ଟି ଓ ସାଯୁଜ୍ୟ ଆଦି ସମସ୍ତ ପ୍ରକାର ମୋକ୍ଷ ତ୍ୟାଗ କରି ତାଙ୍କର ସେବାରେ ଲାଗି ରହନ୍ତି ।" ॥ ୨୬ ॥ ଚୌପାଇ :—ଏହିରୂପେ ଜାମ୍ବବାନ୍ ଅନେକ ପ୍ରକାର କଥା କହୁଥାଆନ୍ତି । ପର୍ବତ କନ୍ଦରରେ ବାସ କରୁଥିବା ସମ୍ପାତି ତାଙ୍କ କଥା ଶୁଣିଲା । ବାହାରକୁ ଆସି ସେ ବହୁତ ବାନର ଦେଖିଲା । ସେ କହିଲା, "ଜଗଦୀଶ୍ୱର ଆଜି ମୁଁ ଘରେ ବସି ଥାଉଁ ଥାଉଁ ମୋ ନିମନ୍ତେ ବହୁତ ଆହାର

ଆଜୁ ସବହି କହଁ ଭଚ୍ଛନ କରଉଁ । ଦିନ ବହୁ ଚଲେ ଅହାର ବିନୁ ମରଉଁ ॥
କବହୁଁ ନ ମିଲ ଭରି ଉଦର ଅହାରା । ଆଜୁ ଦୀହ୍ନ ବିଧି ଏକହିଁ ବାରା ॥୨॥
ଡରପେ ଗୀଧ ବଚନ ସୁନି କାନା । ଅବ ଭା ମରନ ସତ୍ୟ ହମ ଜାନା ॥
କପି ସବ ଉଠେ ଗୀଧ କହଁ ଦେଖୀ । ଜାମବଂତ ମନ ସୋଚ ବିସେଷୀ ॥୩॥
କହ ଅଂଗଦ ବିଚାରି ମନ ମାହୀଁ । ଧନ୍ୟ ଜଟାୟୂ ସମ କୋଉ ନାହୀଁ ॥
ରାମ କାଜ କାରନ ତନୁ ତ୍ୟାଗୀ । ହରିପୁର ଗୟଉ ପରମ ବଡ଼ଭାଗୀ ॥୪॥
ସୁନି ଖଗ ହରଷ ସୋକ ଜୁତ ବାନୀ । ଆଵା ନିକଟ କପିହ୍ନ ଭୟ ମାନୀ ॥
ତିହ୍ନହି ଅଭୟ କରି ପୂଛେସି ଜାଈ । କଥା ସକଲ ତିହ୍ନ ତାହି ସୁନାଈ ॥୫॥
ସୁନି ସଂପାତି ବଂଧୁ କୈ କରନୀ । ରଘୁପତି ମହିମା ବହୁବିଧି ବରନୀ ॥୬॥

---

ଆଜି ଏହି ସମସ୍ତଙ୍କୁ କରିବି ଭକ୍ଷଣ । ବହୁ ଦିନ ହେଲା ମରେ ନ ପାଇ ଭୋଜନ ॥
କେବେ ମିଳି ନାହିଁ ପୂର୍ଣ୍ଣ ଉଦର ଆହାର । ଆଜି ବିଧାତା ପ୍ରଦାନ କଲା ଏକ ବାର ॥୨॥
ଗୃଧ୍ର ବଚନ ଶ୍ରବଣେ ଶୁଣନ୍ତେ ଡରିଲେ । ସତ୍ୟ ମରଣ ହେବାର ସମସ୍ତେ ଜାଣିଲେ ॥
ବିଲୋକି ଗୃଧ୍ରକୁ ଉଭା ହେଲେ କପିକୁଳ । ଜାମ୍ବବନ୍ତ ମନେ ଚିନ୍ତା ହୋଇଲା ବିପୁଳ ॥୩॥
ମନେ ବିଚାରିଣ ବାଳି ତନୟ କହଇ । ଜଟାୟୁ ସଦୃଶ ଧନ୍ୟ ଅନ୍ୟ କେ ନୁହଇ ॥
ରାମଙ୍କ କାର୍ଯ୍ୟ ନିମନ୍ତେ ତନୁ ପରିତ୍ୟାଗି । ହରି ପୁର ଯାଇ ହେଲା ପରମ ସୌଭାଗୀ ॥୪॥
ଶୁଣି ହର୍ଷ-ଶୋକଯୁକ୍ତ ବଚନ ସମ୍ପାତି । ଆସନ୍ତେ ନିକଟେ ଭୀତ ହେଲେ କପିଜାତି ॥
ଅଭୟ ଦେଇଣ ଯାଇ ପଚାରିଲା ତାଙ୍କୁ । ସମସ୍ତ ବୃତ୍ତାନ୍ତ କପି ଶୁଣାଇଲେ ତାଙ୍କୁ ॥୫॥
ଭ୍ରାତାର କୃତ୍ୟ ସମ୍ପାତି ଶ୍ରବଣ କରନ୍ତେ । ରଘୁପତିଙ୍କ ମହିମା ବର୍ଣ୍ଣି ନାନା ମତେ ॥୬॥

---

ପଠାଇଅଛନ୍ତି ' ॥ ୧ ॥ ଆଜି ଏ ସମସ୍ତଙ୍କୁ ଖାଇଯିବି । ବହୁ ଦିନ ବିତିଗଲାଣି । ଭୋଜନ ବିନା ମରୁଥିଲି । ପେଟପୁରା ଭୋଜନ କେବେ ମିଳେ ନାହିଁ । ଆଜି ବିଧାତା ଗୋଟିଏ ଥରକେ ମୋତେ ବହୁତ ଭୋଜନ ଦେଇ ପକାଇଛନ୍ତି ।" ॥ ୨ ॥ ଗୃଧ୍ରର ବଚନ କାନରେ ଶୁଣିବା ମାତ୍ରେ ସମସ୍ତେ ଡରିଗଲେ ଏବଂ ଭାବିଲେ, "ଆଜି ସମସ୍ତେ ମଲୁ, ଏହା ଆମେ ଜାଣି ସାରିଲୁଣି ।" ତତ୍ପରେ ସେହି ସମ୍ପାତି ନାମକ ଗୃଧ୍ରକୁ ଦେଖି ସବୁ ବାନର ଉଠି ଛିଡ଼ା ହେଲେ । ଜାମ୍ବୁବାନଙ୍କ ମନରେ ବିଶେଷ ଚିନ୍ତା ହେଲା ॥ ୩ ॥ ଅଙ୍ଗଦ ମନେ ମନେ ବିଚାର କରି କହିଲେ, "ଆହା ! ଜଟାୟୁ ପରି ଧନ୍ୟ ଆଉ କେହି ନାହିଁ । ଶ୍ରୀରାମଙ୍କ କାର୍ଯ୍ୟ ନିମନ୍ତେ ଶରୀର ତ୍ୟାଗ କରି ସେହି ପରମ-ଭାଗ୍ୟବନ୍ତ ଭଗବାନଙ୍କ ପରମଧାମକୁ ଚାଲିଗଲେ ।" ॥ ୪ ॥ ହର୍ଷ ଓ ଶୋକଭରା ବଚନ ଶୁଣି ସେହି ପକ୍ଷୀ (ସମ୍ପାତି) ବାନରଗଣଙ୍କ ନିକଟକୁ ଆସିଲା । ବାନରମାନେ ଡରିଗଲେ । ସେମାନଙ୍କୁ ଅଭୟ ବଚନ ଦେଇ ସେ ନିକଟକୁ ଗଲା ଏବଂ ଜଟାୟୁର ସମାଚାର ପଚାରିଲା । ସେମାନେ ତାହାକୁ ସମସ୍ତ କଥା କହି ଶୁଣାଇଲେ ॥ ୫ ॥ ଭାଇ ଜଟାୟୁର କୃତିତ୍ୱ ଶୁଣି ସମ୍ପାତି ବହୁତ ପ୍ରକାରେ ଶ୍ରୀ ରଘୁନାଥଙ୍କ ମହିମା ବର୍ଣ୍ଣନା କଲା ॥ ୬ ॥ ଦୋହା :—

ମୋହି ଲୈ ଜାହୁ ସିଂଧୁତଟ ଦେଉଁ ତିଲାଂଜଲି ତାହି ।
ବଚନ ସହାଇ କରବି ମୈଁ ପୈହହୁ ଖୋଜହୁ ଜାହି ॥୨୭॥

ଅନୁଜ କ୍ରିୟା କରି ସାଗର ତୀରା । କହି ନିଜ କଥା ସୁନହୁ କପି ବୀରା ॥
ହମ ଦ୍ୱୌ ବଂଧୁ ପ୍ରଥମ ତରୁନାଈ । ଗଗନ ଗଏ ରବି ନିକଟ ଉଡ଼ାଈ ॥୧॥
ତେଜ ନ ସହି ସକ ସୋ ଫିରି ଆୱା । ମୈଁ ଅଭିମାନୀ ରବି ନିଅରାୱା ॥
ଜରେ ପଙ୍ଖ ଅତି ତେଜ ଅପାରା । ପରେଉଁ ଭୂମି କରି ଘୋର ଚିକାରା ॥୨॥
ମୁନି ଏକ ନାମ ଚନ୍ଦ୍ରମା ଓହୀ । ଲାଗୀ ଦୟା ଦେଖି କରି ମୋହୀ ॥
ବହୁ ପ୍ରକାର ତେହିଁ ଜ୍ଞାନ ସୁନାୱା । ଦେହଜନିତ ଅଭିମାନ ଛୁଡ଼ାୱା ॥୩॥
ତ୍ରେତାଁ ବ୍ରହ୍ମ ମନୁଜ ତନୁ ଧରିହୀ । ତାସୁ ନାରି ନିସିଚରପତି ହରିହୀ ॥
ତାସୁ ଖୋଜ ପଠଇହି ପ୍ରଭୁ ଦୂତା । ତିହ୍ନହି ମିଲେଁ ତୈଁ ହୋବ ପୁନୀତା ॥୪॥

---

ନେଇଯାଅ ମୋତେ ଜଳନିଧି ତଟେ ଦେବି ଜଳାଞ୍ଜଳି ତାଙ୍କୁ ।
ବଚନ ଦ୍ୱାରା ମୁଁ କରିବି ସାହାଯ୍ୟ, ପାଇବ ଖୋଜ ଯାହାଙ୍କୁ ॥୨୭॥

ଅନୁଜ କ୍ରିୟା କରିଣ ପାରାବାର ତୀରେ । କହଇ ଆପଣା କଥା ଶୁଣ ମତି ଧୀରେ ॥
ପ୍ରଥମ ତରୁଣ କାଳେ ଆମ୍ଭେ ଦୁଇ ଭାଇ । ଗଗନେ ଉଡ଼ିଲୁ ରବି ପାଶେ ଯିବା ପାଇଁ ॥୧॥
ତେଜ ସେ ସହି ନ ପାରି ଆସିଲା ବାହୁଡ଼ି । ମୁଁ ଅଭିମାନୀ ଗମିଲି ରବି ପାଶେ ଉଡ଼ି ॥
ଜଳିଗଲା ପକ୍ଷ ମୋର ଅପାର ତେଜରେ । ପଡ଼ିଲି ଘୋର ଚିତ୍କାରି ଅବନୀ ତଳରେ ॥୨॥
ଚନ୍ଦ୍ରମା ନାମରେ ଏକ ଥିଲେ ମୁନିବର । ଲାଗିଲା ଦୟା ବିଲୋକି ବିପତ୍ତି ମୋହର ॥
ବହୁତ ପ୍ରକାରେ ମୋତେ ଜ୍ଞାନ ଶିଖାଇଲେ । ଦେହ ବିଷୟକ ଅଭିମାନ ସେ ହରିଲେ ॥୩॥
ତ୍ରେତାଯୁଗେ ବ୍ରହ୍ମ ହେବେ ନରତନୁଧାରୀ । ଅସୁରପତି ହରିବ ତାଙ୍କ ପ୍ରିୟ ନାରୀ ॥
ତାଙ୍କୁ ଖୋଜିବାକୁ ପ୍ରଭୁ ପଠାଇବେ ଦୂତ । ମିଳିଲେ ସେମାନେ ତୁହି ହେବୁ ଶୁଦ୍ଧପୂତ ॥୪॥

---

ସେ କହିଲା, "ମୋତେ ସମୁଦ୍ର କୂଳକୁ ନେଇ ଚାଲ । ମୁଁ ଜଟାୟୁ ଉଦ୍ଦେଶ୍ୟରେ ତିଳତର୍ପଣ କରିବି । ତୁମର ଏହି ସେବା ବିନିମୟରେ ମୁଁ ତୁମ୍ଭଙ୍କୁ ବଚନରେ ସାହାଯ୍ୟ କରିବି । (ସୀତାଙ୍କ ସନ୍ଦେଶ ଦେବି ।) ଯାହାଙ୍କୁ ତୁମେ ଖୋଜୁଅଛ, ତାହାଙ୍କୁ ପାଇଯିବ ।" ॥ ୨୭ ॥ ଚୌପାଈ :—ସମୁଦ୍ର ତଟରେ ସାନଭାଇ ଜଟାୟୁର କ୍ରିୟା ପ୍ରଭୃତି ସମ୍ପନ୍ନ କରି ସମ୍ପାତି ଆପଣା କଥା କହିବାକୁ ଲାଗିଲା—"ହେ ବୀର ବାନରମାନେ ! ଶୁଣ—ଆମେ ଦୁଇ ଭାଇ ପ୍ରଥମ ଯୌବନରେ ଥରେ ଆକାଶରେ ଉଡ଼ି ସୂର୍ଯ୍ୟଙ୍କ ନିକଟକୁ ଚାଲିଗଲୁ ॥ ୧ ॥ ଜଟାୟୁ ତେଜ ସହି ପାରିଲା ନାହିଁ । କିନ୍ତୁ ମୁଁ ବଡ଼ ଅଭିମାନୀ ଥିଲି । ଏଣୁ ସୂର୍ଯ୍ୟଙ୍କ ନିକଟକୁ ଚାଲିଗଲି । ଅତି ଅପାର ତେଜରେ ମୋର ଡେଣା ଦୁଇଟି ଜଳିଗଲା । ମୁଁ ବଡ଼ ଜୋରରେ ଚିତ୍କାର କରି ଭୂମି ଉପରେ ପଡ଼ିଗଲି ॥ ୨ ॥ ସେଠାରେ ଚନ୍ଦ୍ରମା ନାମକ ଜଣେ ମୁନି ଥିଲେ । ମୋତେ ଦେଖି ତାଙ୍କ ମନରେ ଅତି ଦୟା ଜାତ ହେଲା । ସେ ମୋତେ ବହୁତ ପ୍ରକାରେ ଜ୍ଞାନ ଶୁଣାଇଲେ ଏବଂ ମୋର ଦେହଜନିତ

ଜମିହହିଁ ପଙ୍ଖ କରସି ଜନି ଚିଂତା । ତିହ୍ନହି ଦେଖାଇ ଦେଇହେସୁ ତୈଁ ସୀତା ॥
ମୁନି କଇ ଗିରା ସତ୍ୟ ଭଇ ଆଜୂ । ସୁନି ମମ ବଚନ କରହୁ ପ୍ରଭୁ କାଜୂ ॥୫॥
ଗିରି ତ୍ରିକୂଟ ଊପର ବସ ଲଂକା । ତହଁ ରହ ରାବନ ସହଜ ଅସଂକା ॥
ତହଁ ଅସୋକ ଉପବନ ଜହଁ ରହଈ । ସୀତା ବୈଠି ସୋଚ ରତ ଅହଈ ॥୬॥
ମେଁ ଦେଖଉଁ ତୁମ୍ହ ନାହୀଁ ଗୀଧହି ଦୃଷ୍ଟି ଅପାର ।
ବୂଢ଼ ଭୟଉଁ ନ ତ କରତେଉଁ କଛୁକ ସହାୟ ତୁମ୍ହାର ॥୨୮॥
ଜୋ ନାଘଇ ସତ ଜୋଜନ ସାଗର । କରଇ ସୋ ରାମ କାଜ ମତି ଆଗର ॥
ମୋହି ବିଲୋକି ଧରହୁ ମନ ଧୀରା । ରାମ କୃପାଁ କସ ଭୟଉ ସରୀରା ॥୧॥
ପାପିଉ ଜା କର ନାମ ସୁମିରହୀଁ । ଅତି ଅପାର ଭବସାଗର ତରହୀଁ ॥
ତାସୁ ଦୂତ ତୁମ୍ହ ତଜି କଦରାଈ । ରାମ ହୃଦୟଁ ଧରି କରହୁ ଉପାଈ ॥୨॥

---

କଅଁଳିବ ପକ୍ଷ, ମନେ କରନାହିଁ ଚିନ୍ତା । ତାହାଙ୍କୁ ଠାବ କରାଇଦେବୁ ତୁହ୍ମେ ସୀତା ॥
ମୁନିଙ୍କ ଭାରତୀ ସତ୍ୟ ହେଲା ଆସି ଆଜ । ଶୁଣି ମୋ ବଚନ ତୁମ୍ଭେ କର ପ୍ରଭୁ କାର୍ଯ୍ୟ ॥୫॥
ତ୍ରିକୂଟ ଗିରି ଉପରେ ଅବସ୍ଥିତ ଲଙ୍କା । ତହିଁ ରହଇ ରାବଣ ସହଜେ ନିଃଶଙ୍କା ॥
ଅଶୋକ ଉଦ୍ୟାନ ତହିଁ ମଧ୍ୟେ ରମ୍ୟ ଅଛି । ସେଠାରେ ବସି ଜନକ ଦୁହିତା ଚିନ୍ତନ୍ତି ॥୬॥
ମୋତେ ଦୃଶ୍ୟ ହୁଏ ତୁମ୍ଭଙ୍କୁ ନ ହୁଏ ଗୃଧ୍ରଙ୍କ ଦୃଷ୍ଟି ପ୍ରଖର ।
ବୃଦ୍ଧ ହୋଇଗଲି ନୋହିଲେ କରନ୍ତି ସାହାଯ୍ୟ କିଛି ତୁମ୍ଭର ॥୨୮॥
ସାଗର ଶତ ଯୋଜନ ଯେହୁ ଲଂଘିଯିବ । ସେ ବୁଦ୍ଧିମନ୍ତ ରାମଙ୍କ ଏ କାର୍ଯ୍ୟ କରିବ ॥
ମୋତେ ବିଲୋକିଣ ତୁମ୍ଭେ ଧୈର୍ଯ୍ୟ ଧର ମନେ । ରାମ କୃପାରେ ଶରୀର ହୋଇଲା କେସନେ ॥୧॥
ପାପୀ ମଧ୍ୟ ଯାହାଙ୍କର ନାମ ସ୍ମରନ୍ତି । ଅତ୍ୟନ୍ତ ଅପାର ଭବ-ସାଗର ତରନ୍ତି ॥
ତାଙ୍କ ଦୂତ ତୁମ୍ଭେମାନେ ଭୀରୁତା ତେଜିଣ । ଉପାୟ କର, ରାମଙ୍କୁ ହୃଦୟେ ଚିନ୍ତିଣ ॥୨॥

---

ଅଭିମାନକୁ ମୋଠାରୁ ଛଡାଇ ଦେଲେ ॥ ୩ ॥ ସେ ପୁଣି କହିଲେ, 'ତ୍ରେତାଯୁଗରେ ସାକ୍ଷାତ୍ ପରଂବ୍ରହ୍ମ ମନୁଷ୍ୟ ଶରୀର ଧାରଣ କରିବେ । ତାଙ୍କ ସ୍ତ୍ରୀଙ୍କୁ ରାକ୍ଷସରାଜା ହରି ନେଇଯିବ । ତାଙ୍କ ସନ୍ଧାନରେ ପ୍ରଭୁ ଦୂତ ପଠାଇବେ । ତାଙ୍କ ସହ ମିଳନ ପରେ ତୁ ପବିତ୍ର ହୋଇଯିବୁ ॥ ୪ ॥ ଏବଂ ତୋ ଡେଣା ପୁଣି ଅଙ୍କୁରିବ । ଚିନ୍ତା କରନାହିଁ । ତାଙ୍କୁ ତୁ ସୀତାଙ୍କୁ ଦେଖାଇ ଦେବୁ ।' ମୁନିଙ୍କ ବାଣୀ ଆଜ ସତ୍ୟ ହେଲା । ଏବେ ମୋ ବଚନ ଶୁଣି ତୁମେ ପ୍ରଭୁଙ୍କ କାର୍ଯ୍ୟ କର ॥ ୫ ॥ ତ୍ରିକୂଟ ପର୍ବତ ଉପରେ ଲଙ୍କା ନଗରୀ ଅବସ୍ଥିତ । ସେଠାରେ ସ୍ୱଭାବତଃ ନିର୍ଭୀକ ରାବଣ ବାସ କରେ । ସେଠାରେ ଥିବା ଅଶୋକ ନାମକ ଉପବନରେ ସୀତା ଅଛନ୍ତି । ବର୍ତ୍ତମାନ ମଧ୍ୟ ସେ ସେଠାରେ ଚିନ୍ତାମଗ୍ନ ହୋଇ ବସି-ଅଛନ୍ତି ॥ ୬ ॥ ଦୋହା —ମୁଁ ତାହାଙ୍କୁ ଦେଖୁଅଛି । ତୁମେ ଦେଖିପାରୁନାହଁ । ଗୃଧ୍ରର ଅପାର ଦୃଷ୍ଟିଶକ୍ତି ବଳରେ ମୁଁ ତାହାଙ୍କୁ ଦେଖିପାରୁଅଛି । କ'ଣ କରିବି ? ମୁଁ ବୁଢା ହୋଇଗଲିଣି; ନୋହିଲେ ତୁମଙ୍କୁ ଅବଶ୍ୟ କିଛି ସାହାଯ୍ୟ କରନ୍ତି ॥ ୨୮ ॥

ଅସ କହି ଗରୁଡ଼ ଗୀଧ ଜବ ଗୟଊ । ତିନ୍ହ କେ ମନ ଅତି ବିସମୟ ଭୟଊ ॥
ନିଜ ନିଜ ବଲ ସବ କାହୂଁ ଭାଷା । ପାର ଜାଇ କର ସଂସୟ ରାଖା ॥୩॥
ଜରଠ ଭୟଉଁ ଅବ କହଇ ରିଛେସା । ନହିଁ ତନ ରହା ପ୍ରଥମ ବଲ ଲେସା ॥
ଜବହିଁ ତ୍ରିବିକ୍ରମ ଭଏ ଖରାରୀ । ତବ ମୈଁ ତରୁନ ରହେଉଁ ବଲ ଭାରୀ ॥୪॥

ବଲି ବାଁଧତ ପ୍ରଭୁ ବାଢ଼େଉ ସୋ ତନୁ ବରନି ନ ଜାଇ ।
ଉଭୟ ଘରୀ ମହଁ ଦୀନ୍ହୀଁ ସାତ ପ୍ରଦଚ୍ଛିନ ଧାଇ ॥୨୯॥

ଅଂଗଦ କହଇ ଜାଉଁ ମୈଁ ପାରା । ଜିୟ ସଂସୟ କଛୁ ଫିରତୀ ବାରା ॥
ଜାମବନ୍ତ କହ ତୁମ୍ହ ସବ ଲାୟକ । ପଠଇଅ କିମି ସବହୀ କର ନାୟକ ॥୫॥

---

ଏହା କହି ଗୃଧ୍ର ଯେବେ ହେ ଗରୁଡ଼ ! ଚଳିଲା । ସମସ୍ତଙ୍କ ମନେ ଅତି ବିସ୍ମୟ ହୋଇଲା ॥
ନିଜ ନିଜ ବଳ ତହୁଁ ସମସ୍ତେ ଭାଷିଲେ । ପାରକୁ ଯିବାକୁ କିଛି ସଂଶୟ ରଖିଲେ ॥୩॥
ବୃଦ୍ଧ ମୁଁ ହୋଇଲି ଏବେ, ବୋଲଇ ଋକ୍ଷେଶ । ପ୍ରଥମ ବଳ ଶରୀରେ ନାହିଁ ଲବ ଲେଶ ॥
ଯେବେ ତ୍ରିବିକ୍ରମ ରୂପ ହୋଇଲେ ଖରାରି । ତେବେ ମୁଁ ତରୁଣ ଥିଲି, ଥିଲା ବଳ ଭାରି ॥୪॥

ବଳିକୁ ବାନ୍ଧନ୍ତେ ପ୍ରଭୁ ଯେ ବଢ଼ିଲେ ନୁହେଁ ସେ ରୂପ ବର୍ଣ୍ଣନା ।
ବେନି ଘଡ଼ି ମଧ୍ୟେ କରିଥିଲି ମୁହିଁ ଧାଇଁ ସପ୍ତ ପରିକ୍ରମା ॥୨୯॥

ଅଙ୍ଗଦ ବୋଲଇ, ମୁହିଁ ହୋଇଯିବି ପାର । ସଂଶୟ ହେଉଛି କିଛି ଫେରି ଆସିବାର ॥
ସବୁମନ୍ତେ ଯୋଗ୍ୟ ତୁମ୍ଭେ, ବୋଲେ ଜାମ୍ବବନ୍ତ । ନାୟକ ସମସ୍ତଙ୍କର, ପେଷିବୁ କେମନ୍ତ ॥୫॥

---

ଚୌପାଈ :—ଯେ ଶହେ ଯୋଜନ ସମୁଦ୍ର ଲଙ୍ଘି ପାରିବ ଏବଂ ବୁଦ୍ଧିର ଗୃହ ହୋଇଥିବ, ସେହି କେବଳ ଶ୍ରୀରାମଙ୍କ କାର୍ଯ୍ୟ କରି ପାରିବ । ମୋତେ ଦେଖି ମନରେ ଧୈର୍ଯ୍ୟ ଧାରଣ କର । ଦେଖ, ଶ୍ରୀରାମଙ୍କ କୃପାବଳରେ ଦେଖୁ ଦେଖୁ ମୋ ଶରୀର ପକ୍ଷଯୁକ୍ତ ହୋଇ କିପରି ସୁନ୍ଦର ହୋଇଯାଇଛି ! ॥ ୧ ॥ ପାପୀ ମଧ୍ୟ ଯାହାଙ୍କ ନାମମାତ୍ର ସ୍ମରଣ କରିବା ମାତ୍ରେ ଅପାର ଭବସାଗରରୁ ତରିଯାଏ, ତୁମେ ତାହାଙ୍କର ଦୂତ । ଅତଏବ କାପୁରୁଷତା ତ୍ୟାଗ କରି ଶ୍ରୀରାମଙ୍କୁ ହୃଦୟରେ ଧାରଣପୂର୍ବକ ଉପାୟ କର ।" ॥ ୨ ॥ କାକ ଭୁଶୁଣ୍ଡି କହନ୍ତି, "ହେ ଗରୁଡ଼ ! ଏହି ରୂପେ କହି ଯେତେବେଳେ ଗୃଧ୍ର ଚାଲିଗଲା, ସେତେବେଳେ ବାନରଗଣଙ୍କ ମନରେ ଅତିଶୟ ବିସ୍ମୟ ଜାତ ହେଲା । ସମସ୍ତେ ଆପଣା ଆପଣା ବଳ ବଖାଣିଲେ । କିନ୍ତୁ ସମୁଦ୍ରକୁ ପାର ହେବା ବିଷୟରେ ସମସ୍ତେ ସନ୍ଦେହ ପ୍ରକାଶ କଲେ ॥୩॥ ଋକ୍ଷରାଜ ଜାମ୍ବବାନ୍ କହିବାକୁ ଲାଗିଲେ, "ମୁଁ ଏବେ ବୁଢ଼ା ହୋଇଗଲିଣି । ଶରୀରରେ ପୂର୍ବପରି ବଳ ଆଉ ଲେଶମାତ୍ର ନାହିଁ । ଯେତେବେଳେ ଖରାରି ଶ୍ରୀରାମ ବାମନ ଅବତାର ଗ୍ରହଣ କରିଥିଲେ, ସେତେବେଳେ ମୁଁ ଯୁବକ ଥିଲି ଏବଂ ମୋଠାରେ ବହୁତ ବଳ ଥିଲା ॥ ୪ ॥ ଦୋହା :—ବଳିକୁ ବାନ୍ଧିବା ସମୟରେ ପ୍ରଭୁ ଏତେ ବଢ଼ିଗଲେ ଯେ ସେ ଶରୀରର ବର୍ଣ୍ଣନା କରାଯାଇ ପାରିବ ନାହିଁ । କିନ୍ତୁ ମୁଁ ମାତ୍ର ଦୁଇ ଘଡ଼ି ମଧ୍ୟରେ ଦୌଡ଼ି ସେହି ଶରୀରକୁ ସାତଥର ପ୍ରଦକ୍ଷିଣ କରି ପକାଇଲି ॥ ୨୯ ॥ ଚୌପାଈ :—

କହ ଋଛପତି ସୁନହୁ ହନୁମାନା । କା ଚୁପ ସାଧି ରହେହୁ ବଲବାନା ॥
ପବନ ତନୟ ବଲ ପବନ ସମାନା । ବୁଧି ବିବେକ ବିଜ୍ଞାନ ନିଧାନା ॥୨॥
କଵନ ସୋ କାଜ କଠିନ ଜଗ ମାହୀଂ । ଜୋ ନହିଁ ହୋଇ ତାତ ତୁମ୍ହ ପାହୀଂ ॥
ରାମ କାଜ ଲଗି ତବ ଅବତାରା । ସୁନତହିଁ ଭୟଉ ପର୍ବତାକାରା ॥୩॥
କନକ ବରନ ତନ ତେଜ ବିରାଜା । ମାନହୁଁ ଅପର ଗିରିହ୍ନ କର ରାଜା ॥
ସିଂହନାଦ କରି ବାରହିଁ ବାରା । ଲୀଲହିଁ ନାଘଉଁ ଜଲନିଧି ଖାରା ॥୪॥
ସହିତ ସହାୟ ରାବନହି ମାରୀ । ଆନଉଁ ଇହାଁ ତ୍ରିକୂଟ ଉପାରୀ ॥
ଜାମବନ୍ତ ମୈଁ ପୂଛଉଁ ତୋହୀ । ଉଚିତ ସିଖାଵନୁ ଦୀଜହୁ ମୋହୀ ॥୫॥
ଏତନା କରହୁ ତାତ ତୁମ୍ହ ଜାଈ । ସୀତହି ଦେଖି କହହୁ ସୁଧି ଆଈ ॥
ତବ ନିଜ ଭୁଜ ବଲ ରାଜିବନୈନା । କୌତୁକ ଲାଗି ସଂଗ କପି ସେନା ॥୬॥

---

କହେ ଋକ୍ଷପତି, ତହୁଁ ଶୁଣ ହନୁମାନ । ମଉନ ସାଧି ବସିଛ କାହିଁ ? ବଳବାନ ॥
ପବନ-ତନୟ, ବଳ ପବନ ସମାନ । ବୁଦ୍ଧି ବିବେକ ଆବର ବିଜ୍ଞାନନିଧାନ ॥୨॥
ଏମନ୍ତ କେଉଁ କଠିନ କାର୍ଯ୍ୟ ଜଗତରେ । ଯାହା ହୋଇ ନ ପାରଇ ବତ୍ସ ! ତୁମ୍ଭ କରେ ॥
ରାମ କାର୍ଯ୍ୟ କରିବାକୁ ତବ ଅବତାର । ଶୁଣନ୍ତେ କପି ହୋଇଲା ପର୍ବତ ଆକାର ॥୩॥
ସୁବର୍ଣ୍ଣ ବର୍ଣ୍ଣ ଶରୀର ତେଜେ ବିରାଜଇ । ମନେ ହୁଏ ଅନ୍ୟ ଗିରି-ରାଜ କି ଅଟଇ ॥
ସିଂହନାଦ କରେ ତହୁଁ କପି ବାରମ୍ବାର । କୌତୁକରେ ଲଂଘି ଯିବି ଜଳନିଧି ଖାର ॥୪॥
ସହାୟକ ସହ ଦଶଶିରକୁ ମାରିବି । ତ୍ରିକୂଟ ଶଇଳ ଏଥି ଉପାଡ଼ି ଆଣିବି ॥
ଶୁଣ ଜାମ୍ବବନ୍ତ, ମୁହିଁ ପଚାରଇ ତୋତେ । ଉଚିତ କର୍ତ୍ତବ୍ୟ ଶିକ୍ଷା ଦିଅ ଏବେ ମୋତେ ॥୫॥
ଏତିକି ମାତ୍ର କୁମର ! ତୁମ୍ଭେ ଯାଇ କର । ସୀତାଙ୍କୁ ଦର୍ଶନ କରି ଶୁଣାଅ ଖବର ॥
ପଦ୍ମନେତ୍ର ପ୍ରକାଶିବେ ନିଜ ବାହୁବଳ । କଉତୁକେ କପି ସୈନ୍ୟ ନେବେ ସେ ସଙ୍ଗର ॥୬॥

---

ଅଙ୍ଗଦ କହିଲେ, "ମୁଁ ଆରପାରିକୁ ତ ଚାଲିଯିବି ସତ, କିନ୍ତୁ ଫେରି ଆସିବା ବିଷୟରେ ମୋ ମନରେ କିଛି ସନ୍ଦେହ ଜାତ ହେଉଅଛି ।" ଜାମ୍ବବାନ୍ କହିଲେ, "ତୁମେ ସବୁ ପ୍ରକାରେ ଯୋଗ୍ୟ । କିନ୍ତୁ ତୁମେ ସମସ୍ତଙ୍କ ନେତା । ତୁମଙ୍କୁ କିପରି ପଠାଯିବ ?" ॥ ୧ ॥ ଋକ୍ଷରାଜ ଜାମ୍ବବାନ୍ ଶ୍ରୀ ହନୁମାନ୍‌ଙ୍କୁ କହିଲେ, "ହେ ହନୁମାନ୍ ! ହେ ବଳବାନ୍ ! ଶୁଣ; ତୁମେ ଏପରି ଚୁପ୍ ହୋଇ ରହିଛ କାହିଁକି ? ତୁମେ ପବନଙ୍କ ପୁତ୍ର ଓ ବଳରେ ପବନଙ୍କ ସମାନ । ତୁମେ ବୁଦ୍ଧି, ବିବେକ ଓ ବିଜ୍ଞାନର ଖଣି ॥ ୨ ॥ ଜଗତରେ ଏପରି କଠିନ କାମ କ'ଣ ଅଛି, ଯାହା ହେ ଭାଇ ! ତୁମ ଦ୍ୱାରା ନ ହୋଇ ପାରିବ ? କେବଳ ଶ୍ରୀରାମଙ୍କ କାର୍ଯ୍ୟ ନିମନ୍ତେ ତ ତୁମ ଅବତାର ହୋଇଅଛି ।" ଏହା ଶୁଣିବା ମାତ୍ରେ ହନୁମାନ୍ ପର୍ବତାକାର ହୋଇଗଲେ ॥ ୩ ॥ ତାଙ୍କ ଦେହର ରଙ୍ଗ ସୁବର୍ଣ୍ଣ ପରି ଦୀପ୍ତିମାନ୍ ଏବଂ ଶରୀରର ତେଜ ସୁଶୋଭିତ ହୋଇ ଉଠିଲା, ସତେ ଯେପରି ପର୍ବତମାନଙ୍କ ଅପର ରାଜା ସୁମେରୁ ଆସି ଉଭା ହେଲା କି ! ବାରମ୍ବାର ସିଂହନାଦ କରି ହନୁମାନ୍ କହିଲେ,

କପି ଟେସନ ସଂଗ ସଁଘାରି ନିସିଚର ରାମୁ ସୀତହି ଆନିହୈଁ ।
ତ୍ରୈଲୋକ ପାବନ ସୁଜସୁ ସୁର ମୁନି ନାରଦାଦି ବଖାନି ହୈଁ ॥
ଜୋ ସୁନତ ଗାୱତ କହତ ସମୁଝତ ପରମ ପଦ ନର ପାୱଇ ।
ରଘୁବୀର ପଦ ପାଥୋଜ ମଧୁକର ଦାସ ତୁଲସୀ ଗାୱଇ ॥

ଭବ ଭେଷଜ ରଘୁନାଥ ଜସୁ ସୁନହିଁ ଜେ ନର ଅରୁ ନାରି ।
ତିନ୍ହ କର ସକଲ ମନୋରଥ ସିଦ୍ଧ କରହିଁ ତ୍ରିସିରାରି ॥୩୦ (କ)॥

ନୀଲୋତ୍ପଲ ତନ ସ୍ୟାମ କାମ କୋଟି ସୋଭା ଅଧିକ ।
ସୁନିଅ ତାସୁ ଗୁନ ଗ୍ରାମ ଜାସୁ ନାମ ଅଘ ଖଗ ବଧିକ ॥୩୦ (ଖ)॥

## ମାସପାରାୟଣ, ତ୍ରୟୋବିଂଶ ବିଶ୍ରାମ

ଇତି ଶ୍ରୀମଦ୍ରାମଚରିତମାନସେ ସକଲକଲିକଲୁଷବିଧ୍ୱଂସନେ
ଚତୁର୍ଥଃ ସୋପାନଃ ସମାପ୍ତଃ ।

---

କପି ସୈନ୍ୟ ସଙ୍ଗରେ ସଂହାରି ନିଶାଚରେ ଶ୍ରୀରାମ ସୀତାଙ୍କୁ ଆଣିବେ ।
ତ୍ରିଭୁବନ ପାବନ ସୁଯଶ ସୁରଗଣ ନାରଦାଦି ମୁନି ଗାଇବେ ।
କହିବେ ଶୁଣିବେ ଯେ ଜନ, ଲଭିବେ ସେ ପଦ ପାବନ ॥
ରଘୁବୀର ପଦ୍ମର - ପଙ୍କଜ - ମଧୁକର ତୁଲସୀ କରଇ ଗାୟନ ॥

ସଂସାର ଭେଷଜ ରଘୁନାଥ ଯଶ ଶୁଣନ୍ତି ଯେ ନର ନାରୀ ।
ତାହାଙ୍କ ସମସ୍ତ ମନ ଅଭିଳାଷ ପୂର୍ଣ୍ଣ କରନ୍ତି ଖରାରି ॥୩୦ (କ)॥

ନୀଲୋତ୍ପଳଶ୍ୟାମ ତନୁ କୋଟି କାମ ଶୋଭାକୁ ଜିଣି ଅଧିକ ॥
ତାଙ୍କ ଗୁଣ-ଗ୍ରାମ ଶୁଣ ଯାର ନାମ ଅଘ-ଖଗକୁ ବଧିକ ॥୩୦ (ଖ)॥

---

"ମୁଁ ଏହି ଲବଣାକ୍ତ ସମୁଦ୍ରକୁ ଖେଳ ଖେଳରେ ଲଙ୍ଘନ କରିପାରିବି ॥ ୪ ॥ ଏବଂ ସହାୟକ ଅନୁଚର-ବର୍ଗଙ୍କ ସମେତ ରାବଣକୁ ମାରି ତ୍ରିକୂଟ ପର୍ବତକୁ ଉପାଡ଼ି ଏଠାକୁ ନେଇ ଆସି ପାରିବି । ହେ ଜାମ୍ବବାନ୍ ! ମୁଁ ତୁମଙ୍କୁ ପଚାରେ--ଏ ବିଷୟରେ ମୋର କ'ଣ କର୍ତ୍ତବ୍ୟ, ତାହାର ଉଚିତ ଶିକ୍ଷା ମୋତେ ଦିଅ ।" ॥ ୫ ॥ ଜାମ୍ବବାନ୍ କହିଲେ, ହେ ଭାଇ ! ତୁମେ ଯାଇ କେବଳ ଏତିକି କର । କେବଳ ଯାଇ ସୀତାଙ୍କୁ ଦେଖି ଲେଉଟି ଆସ ଏବଂ ତାହାଙ୍କ ସମାଚାର କୁହ । ତତ୍ପରେ କମଳନୟନ ଶ୍ରୀରାମ ଆପଣା ବାହୁବଳ ପ୍ରକାଶ କରିବେ ଏବଂ ରାକ୍ଷସଗଣଙ୍କୁ ସଂହାର କରି ସୀତାଙ୍କୁ ନେଇ ଆସିବେ । କେବଳ କୌତୁକବଶତଃ ସେ ବାନର ସେନାଙ୍କୁ ସଙ୍ଗରେ ନେବେ ॥୬॥ ଛନ୍ଦ :—ବାନର ସେନାଙ୍କୁ ସଙ୍ଗରେ ଧରି ରାକ୍ଷସଗଣଙ୍କୁ ସଂହାର କରି ଶ୍ରୀରାମ ସୀତାଙ୍କୁ ନେଇ ଆସିବେ । ସେତେବେଳେ ଦେବତା ଓ ନାରଦାଦି ମୁନିଗଣ ଭଗବାନଙ୍କ ତ୍ରିଭୁବନ-ପାବନୀ ସୁନ୍ଦର ଯଶାବଳୀ ବର୍ଣ୍ଣନା କରିବେ । ତାହାକୁ ଶୁଣିଲେ, ଗାଇଲେ, କହିଲେ ଏବଂ ବୁଝିଲେ

ପତିତପାବନ ଦୁରିତ ନାଶନ ଭକ୍ତ ବିଶ୍ରାମଦାୟକ ।
ତେଜ ସର୍ବ ଆଶ ବଳରାମ ଦାସ, ଭଜ ଶ୍ରୀ ରଘୁନାୟକ ॥
ହୁଅନ୍ତୁ ପ୍ରସନ୍ନ ପ୍ରଚଣ୍ଡାନୁରାଗୀ ଖଳ-ଦଳନ ଖରାରି ।
କରନ୍ତୁ କରୁଣା ଜନହିତ ଲାଗି ଚରଣେ କରେ ଗୁହାରି ॥

ଇତି ଶ୍ରୀରାମଚରିତମାନସେ ସକଳ କଳିକଳୁଷବିଧ୍ୱଂସନେ
ଚତୁର୍ଥ ସୋପାନ (କିଷ୍କିନ୍ଧା କାଣ୍ଡ) ସମାପ୍ତ ।

---

ମନୁଷ୍ୟମାନେ ପରମପଦ ପାଆନ୍ତି । ତାହାଙ୍କୁ ଶ୍ରୀ ରଘୁବୀର-ଚରଣ-କମଳ-ମଧୁକର ତୁଳସୀଦାସ ଗାନ କରନ୍ତି । ଦୋହା :—ଶ୍ରୀ ରଘୁବୀରଙ୍କ ଯଶ ଜନ୍ମମରଣ ରୂପକ ରୋଗ ନିମନ୍ତେ ଅବ୍ୟର୍ଥ ଔଷଧ । ଯେଉଁ ନରନାରୀଗଣ ଏହାକୁ ଶୁଣିବେ, ତ୍ରିଶିରାରି ଶ୍ରୀରାମ ସେମାନଙ୍କ ସକଳ ମନୋରଥ ସିଦ୍ଧ କରିବେ ॥ ୩୦ (କ) ॥ ସୋରଠା :—ଯାହାଙ୍କର ଶରୀର ନୀଳୋତ୍ପଳ ସମ ଶ୍ୟାମଳ, ଯାହାଙ୍କର ଶୋଭା କୋଟି କନ୍ଦର୍ପଙ୍କଠାରୁ ମଧ୍ୟ ଅଧିକ, ଏବଂ ଯାହାଙ୍କର ନାମ ପାପ-ପକ୍ଷିଗଣଙ୍କୁ ମାରିବା ନିମନ୍ତେ ବ୍ୟାଧ ସମାନ, ସେହି ଶ୍ରୀରାମଙ୍କ ଗୁଣସମୂହକୁ ଅବଶ୍ୟ ଶୁଣିବା ଉଚିତ ॥ ୩୦ (ଖ) ॥

କଳିଯୁଗର ସମସ୍ତ ପାପର ବିଧ୍ୱଂସନକାରୀ ଶ୍ରୀରାମଚରିତମାନସର
ଚତୁର୍ଥ ସୋପାନ (କିଷ୍କିନ୍ଧାକାଣ୍ଡ) ସମାପ୍ତ ।

---

ଓଁ

ଶ୍ରୀ ଗଣେଶାୟ ନମଃ

ଶ୍ରୀ ଜାନକୀବଲ୍ଲଭୋ ବିଜୟତେ

ଗୋସ୍ୱାମୀ ତୁଳସୀଦାସକୃତ

# ଶ୍ରୀରାମଚରିତ ମାନସ

## ପଞ୍ଚମ ସୋପାନ

## ସୁନ୍ଦର କାଣ୍ଡ

ଶାନ୍ତଂ ଶାଶ୍ୱତମପ୍ରମେୟମନଘଂ ନିର୍ବାଣଶାନ୍ତିପ୍ରଦଂ
ବ୍ରହ୍ମାଶମ୍ଭୁଫଣୀନ୍ଦ୍ରସେବ୍ୟମନିଶଂ ବେଦାନ୍ତବେଦ୍ୟଂ ବିଭୁମ୍ ।
ରାମାଖ୍ୟଂ ଜଗଦୀଶ୍ୱରଂ ସୁରଗୁରୁଂ ମାୟାମନୁଷ୍ୟଂ ହରିଂ
ବନ୍ଦେଽହଂ କରୁଣାକରଂ ରଘୁବରଂ ଭୂପାଳଚୂଡ଼ାମଣିମ୍ ॥୧॥

ନାନ୍ୟା ସ୍ପୃହା ରଘୁପତେ ହୃଦୟେଽସ୍ମଦୀୟେ
ସତ୍ୟଂ ବଦାମି ଚ ଭବାନଖିଳାନ୍ତରାତ୍ମା ।
ଭକ୍ତିଂ ପ୍ରୟଚ୍ଛ ରଘୁପୁଙ୍ଗବ ନିର୍ଭରାଂ ମେ
କାମାଦିଦୋଷରହିତଂ କୁରୁ ମାନସଂ ଚ ॥୨॥

---

ଶାନ୍ତ, ସନାତନ, ଅନଘ, ନିର୍ବାଣ, ଶାନ୍ତିଦ, ପ୍ରମାଣରୁ ପର ।
ସଦା ବ୍ରହ୍ମ-ଶମ୍ଭୁ-ଶେଷ-ସେବ୍ୟ ବିଭୁ ବେଦବେଦ୍ୟ ବିଶ୍ୱ-ଈଶ୍ୱର ।
ବନ୍ଦଇ 'ରାମ' ନାମଧାରୀ ରାଘବ ।
ନୃପ-ଚୂଡାମଣି, ହରି କୃପା-ଖଣି, ସୁର-ଗୁରୁ, ମାୟା-ମାନବ ॥୧॥

ନାହିଁ ହୃଦେ ମୋର କାମନା ଆନ, ଅଖିଳାନ୍ତରାତ୍ମା ଅଟ ଆପଣ ।
ସତ୍ୟ ମୁଁ କହୁଛି, ହେ ରଘୁପତି ! ଦିଅ ମୋତେ ନିଜ ନିର୍ଭର ଭକ୍ତି ।
ମନକୁ ମୋହର
କାମ ଆଦି ଦୋଷ ରହିତ କର ॥୨॥

---

ଶାନ୍ତ, ସନାତନ, ଅପ୍ରମେୟ, ନିଷ୍ପାପ, ମୋକ୍ଷରୂପ ପରମ ଶାନ୍ତିର ଦାତା, ବ୍ରହ୍ମା, ଶମ୍ଭୁ ଓ ଶେଷଙ୍କ ଦ୍ୱାରା ନିରନ୍ତର ସେବିତ, ବେଦାନ୍ତ ଦ୍ୱାରା ଜ୍ଞେୟ (ଜାଣିବା ଯୋଗ୍ୟ), ସର୍ବବ୍ୟାପକ, ସୁରଗଣଙ୍କ ଗୁରୁ, ମାୟା-ମନୁଷ୍ୟ, ସମସ୍ତ ପାପର ହରଣକାରୀ, କରୁଣାକର,

ଅତୁଲିତବଲଧାମଂ ହେମଶୈଲାଭଦେହଂ
ଦନୁଜବନକୃଶାନୁଂ ଜ୍ଞାନିନାମଗ୍ରଗଣ୍ୟମ୍ ।
ସକଲଗୁଣନିଧାନଂ ବାନରାଣାମଧୀଶଂ
ରଘୁପତିପ୍ରିୟଭକ୍ତଂ ବାତଜାତଂ ନମାମି ॥୩॥

ଜାମବଂତ କେ ବଚନ ସୁହାଏ । ସୁନି ହନୁମନ୍ତ ହୃଦୟ ଅତି ଭାଏ ॥
ତବ ଲଗି ମୋହି ପରିଖେହୁ ତୁମ୍ହ ଭାଈ । ସହି ଦୁଖ କଂଦ ମୂଲ ଫଲ ଖାଈ ॥୧॥
ଜବ ଲଗି ଆୱୌଁ ସୀତହି ଦେଖୀ । ହୋଇହି କାଜୁ ମୋହି ହରଷ ବିସେଷୀ ॥
ୟହ କହି ନାଇ ସବହ୍ନି କହୁଁ ମାଥା । ଚଲେଉ ହରଷି ହିୟଁ ଧରି ରଘୁନାଥା ॥୨॥
ସିଂଧୁ ତୀର ଏକ ଭୂଧର ସୁଂଦର । କୌତୁକ କୂଦି ଚଢ଼େଉ ତା ଊପର ॥
ବାର ବାର ରଘୁବୀର ସଁଭାରୀ । ତରକେଉ ପବନତନୟ ବଲ ଭାରୀ ॥୩॥

ଅତୁଳନୀୟ ଯେ ବଳର ଧାମ, ହେମ ଶୈଳ ତନୁ ଗୁଣ-ନିଧାନ ।
ଜ୍ଞାନୀ-ଅଗ୍ରଗଣ୍ୟ କପି-ନାୟକ, ଦଇତ-ବନକୁ ସେହୁ ପାବକ ॥
ପ୍ରଭଞ୍ଜନ-ସୁତ,
ନମଇ ଶ୍ରୀ ରଘୁପତିଙ୍କ ଦୂତ ॥୩॥
ଶୁଣନ୍ତେ ଜାମ୍ବବନ୍ତର ସୁନ୍ଦର ବଚନ । ହୃଦେ ହନୁମାନ ଅତି ହୋଇଲେ ପ୍ରସନ୍ନ ॥
ଅପେକ୍ଷି ରହିବ ମୋତେ ସେ ପର୍ଯ୍ୟନ୍ତ, ଭାଇ । ସହି ଦୁଃଖ କନ୍ଦମୂଳ ଫଳ ଫୁଲ ଖାଇ ॥୧॥
ଯେ ପର୍ଯ୍ୟନ୍ତ ସୀତାଙ୍କୁ ମୁଁ ଦେଖି ନ ଆସଇ । ହୋଇବ କାର୍ଯ୍ୟ ମନରେ ହରଷ ହୁଅଇ ॥
ଏହା କହି ପ୍ରଣିପାତ କରି ସମସ୍ତଙ୍କୁ । ଚଳିଲେ ହରଷ ହୃଦେ ସ୍ମରି ଶ୍ରୀରାମଙ୍କୁ ॥୨॥
ସିନ୍ଧୁ ତୀରେ ଥିଲା ଏକ ଶଇଳ ସୁନ୍ଦର । କୌତୁକେ ଡେଇଁ ଚଢିଲେ କପି ତା ଉପର ॥
ବାରମ୍ବାର ରଘୁବୀରେ ହୃଦେ କରି ଲୟ । ଡେଇଁଲେ ଭାରି ବଳିଷ୍ଠ ପବନ ତନୟ ॥୩॥

ରଘୁବର, ଭୂପାଳ-ଶିରୋମଣି, 'ରାମ' ନାମରେ ଅଭିହିତ ଜଗଦୀଶ୍ୱରଙ୍କୁ ମୁଁ ବନ୍ଦନା କରୁଅଛି ॥ ୧ ॥ ହେ ରଘୁନାଥଜୀ ! ମୁଁ ସତ୍ୟ କହୁଅଛି । ଆପଣ ତ ବିଶେଷରେ ସମସ୍ତଙ୍କର ଅନ୍ତରାତ୍ମା ଏବଂ ଅନ୍ତର୍ଯ୍ୟାମୀ । ମୋ ହୃଦୟରେ ଅନ୍ୟ କୌଣସି କାମନା ନାହିଁ । ହେ ରଘୁ ପୁଙ୍ଗବ ! ମୋତେ ଆପଣଙ୍କର ନିର୍ଭର (ପୂର୍ଣ୍ଣ) ଭକ୍ତି ଦିଅନ୍ତୁ ଏବଂ ମୋର ମନକୁ କାମାଦି ଦୋଷରୁ ମୁକ୍ତ କରନ୍ତୁ ॥ ୨ ॥ ଅତୁଳନୀୟ ବଳଧାମ, ସ୍ୱର୍ଣ୍ଣ-ପର୍ବତ (ସୁମେରୁ)-କାନ୍ତି-ଶରୀର, ଦୈତ୍ୟ-ବନ-ଦହନକାରୀ ଅଗ୍ନି, ଜ୍ଞାନି-ଗଣଙ୍କ ମଧ୍ୟରେ ଅଗ୍ରଗଣ୍ୟ, ସକଳ ଗୁଣ-ନିଧାନ ବାନର-ଗଣଙ୍କ ପ୍ରଭୁ, ରଘୁନାଥଙ୍କ ପ୍ରିୟଭକ୍ତ ପବନ-ପୁତ୍ର ହନୁମାନଙ୍କୁ ମୁଁ ପ୍ରଣାମ କରୁଛି ॥ ୩ ॥ ଚୌପାଈ — ଜାମ୍ବବାନ୍‌ଙ୍କ ମନୋହର ବଚନ ହନୁମାନ୍‌ଙ୍କ ହୃଦୟକୁ ଅତି ରୁଚିକର ବୋଧ ହେଲା । ତାହା ଶୁଣି ସେ କହିଲେ, "ହେ ଭାଇ ! ତୁମ୍ଭେମାନେ ଦୁଃଖ ସହି କନ୍ଦମୂଳ ଫଳ ଖାଇ ମୁଁ ସୀତାଙ୍କୁ ଦେଖି ନ ଫେରିବା ପର୍ଯ୍ୟନ୍ତ ମୋ ବାଟକୁ ଚାହିଁ ବସିଥିବ । କାର୍ଯ୍ୟ ଅବଶ୍ୟ ସଫଳ

ଜେହିଁ ଗିରି ଚରନ ଦେଇ ହନୁମଂତା । ଚଲେଉ ସୋ ଗା ପାତାଲ ତୁରଂତା ॥
ଜିମି ଅମୋଘ ରଘୁପତି କର ବାନା । ଏହୀ ଭାଁତି ଚଲେଉ ହନୁମାନା ॥୩॥
ଜଲନିଧି ରଘୁପତି ଦୂତ ବିଚାରୀ । ତୈଁ ମୈନାକ ହୋହି ଶ୍ରମହାରୀ ॥୪॥
ହନୂମାନ ତେହି ପରସା କର ପୁନି କୀନ୍ହ ପ୍ରନାମ ।
ରାମ କାଜୁ କୀନ୍ହେଁ ବିନୁ ମୋହି କହାଁ ବିଶ୍ରାମ ॥୧॥
ଜାତ ପବନସୁତ ଦେବନ୍ହ ଦେଖା । ଜାନୈଁ କହୁଁ ବଲ ବୁଦ୍ଧି ବିସେଷା ॥
ସୁରସା ନାମ ଅହିନ୍ହ କୈ ମାତା । ପଠଇନ୍ହି ଆଇ କହୀ ତେହିଁ ବାତା ॥୧॥
ଆଜୁ ସୁରନ୍ହ ମୋହି ଦୀନ୍ହ ଅହାରା । ସୁନତ ବଚନ କହ ପବନକୁମାରା ॥
ରାମ କାଜୁ କରି ଫିରି ମୈଁ ଆୱୌଁ । ସୀତା କଇ ସୁଧି ପ୍ରଭୁହି ସୁନାୱୌଁ ॥୨॥

---

ସେ ଗିରି ହନୁମନ୍ତଙ୍କ ଚରଣ ସ୍ପର୍ଶରେ । ପଶିଗଲା ସେହିକ୍ଷଣି ପାତାଳ ଭିତରେ ॥
ଯେମନ୍ତେ ଅମୋଘ ଅଟେ ରଘୁପତି ବାଣ । ସେହି ଭାବେ ହନୁମାନ କରିଲେ ପ୍ରୟାଣ ॥୩॥
ଜଳନିଧି-ରାମ ଦୂତ ବୋଲିଣ ବିଚାରି । କହେ ମଇନାକ ଆଗେ, ହୁଅ ଶ୍ରମହାରୀ ॥୪॥
ହନୁମାନ ତାର ଶିରେ ଛୁଇଁ କରି କହିଲେ କରି ପ୍ରଣାମ ।
ରଘୁପତି କାର୍ଯ୍ୟ ନ କରିବାଯାଏ ମୋତେ ବା କାହିଁ ବିଶ୍ରାମ ॥୧॥
ବିବୁଧେ ଦେଖିଣ ବାତ-ସୁତଙ୍କୁ ଯିବାର । ଜାଣିବା ନିମନ୍ତେ ଇଚ୍ଛି ବଳ ବୁଦ୍ଧି ତାର ॥
ସୁରସା ନାମେ ଅହିଙ୍କ ମାତା ଏକ ଥିଲା । ପଠାନ୍ତେ ତାଙ୍କୁ ସେ ଆସି ଏମନ୍ତ କହିଲା ॥୧॥
ଆଜ ସୁରେ ଦେଲେ ମୋତେ ଉତ୍ତମ ଆହାର । ଶୁଣି ବଚନ ବୋଲଇ ପବନ-କୁମାର ॥
ରାମ କାର୍ଯ୍ୟ କରି ମୁହିଁ ବାହୁଡି ଆସିବି । ସୀତାଙ୍କ ସନ୍ଦେଶ ଯାଇ ପ୍ରଭୁଙ୍କୁ କହିବି ॥୨॥

---

ହେବ । କାରଣ ମୋର ହୃଦୟରେ ବିଶେଷ ହର୍ଷ ଜାତ ହେଉଅଛି ।" ଏହା କହି ସେ ସମସ୍ତଙ୍କୁ ମୁଣ୍ଡ ନୁଆଇଁଲେ ଏବଂ ହୃଦୟରେ ଶ୍ରୀ ରଘୁନାଥଙ୍କ ମୂର୍ତ୍ତି ଧାରଣ କରି ଆନନ୍ଦିତ ମନରେ ଚାଲିଲେ ॥ ୧-୨ ॥ ସମୁଦ୍ର ତୀରରେ ଗୋଟିଏ ସୁନ୍ଦର ପର୍ବତ ଥିଲା । ହନୁମାନ୍ ଅବଲୀଳାକ୍ରମେ ଡେଇଁ ତା ଉପରେ ଚଢିଗଲେ ଏବଂ ବାରମ୍ବାର ଶ୍ରୀ ରଘୁବୀରଙ୍କୁ ସ୍ମରଣ କରି ଅତ୍ୟନ୍ତ ବଳବାନ୍ ହନୁମାନ ତାହା ଉପରୁ ଅତି ବେଗରେ ଡେଇଁପଡିଲେ ॥୩॥ ଯେଉଁ ପର୍ବତ ଉପରେ ହନୁମାନ୍ ପାଦ ରଖି ଡେଇଁଲେ, ତାହା ଶୀଘ୍ର ପାତାଳ ଭିତରକୁ ଧସିକି ଗଲା । ରଘୁନାଥଙ୍କ ଅମୋଘ ବାଣ ଯେପରି ଦ୍ରୁତ ଗତିରେ ଚଲେ, ହନୁମାନ୍ ସେହିପରି ଦ୍ରୁତ ଗତିରେ ଚାଲିଲେ ॥ ୪ ॥ ସମୁଦ୍ର ତାହାଙ୍କୁ ଶ୍ରୀ ରଘୁନାଥଙ୍କ ଦୂତ ବୋଲି ଜାଣି ମୈନାକ ପର୍ବତକୁ କହିଲା, "ହେ ମୈନାକ ! ତୁ ଏହାଙ୍କୁ ତୋ ନିଜ ଉପରେ ବିଶ୍ରାମ ଦେଇ, ଏହାଙ୍କର କ୍ଳାନ୍ତି ଦୂର କର ।" ॥ ୫ ॥ ଦୋହା '—ହନୁମାନ୍ ତାହାଙ୍କୁ ହାତରେ ଛୁଇଁ ଦେଲେ ଏବଂ ପ୍ରଣାମ କରି କହିଲେ, "ହେ ଭାଇ ! ଶ୍ରୀ ରାମଙ୍କ କାମ ନ ସାରିବା ପର୍ଯ୍ୟନ୍ତ ମୋର ବିଶ୍ରାମ କାହିଁ ?" ॥ ୧ ॥ ଚୌପାଈ '—ଦେବତାମାନେ ପବନ-ପୁତ୍ର ହନୁମାନ୍‌ଙ୍କୁ ଯାଉଥିବାର ଦେଖିଲେ ।

ତବ ତବ ବଦନ ପୈଠିହଉଁ ଆଈ । ସତ୍ୟ କହଉଁ ମୋହି ଜାନ ଦେ ମାଈ ॥
କଵନେହୁଁ ଜତନ ଦେଇ ନହିଁ ଜାନା । ଗ୍ରସସି ନ ମୋହି କହେଉ ହନୁମାନା ॥୩॥
ଜୋଜନ ଭରି ତେହିଁ ବଦନୁ ପସାରା । କପି ତନୁ କୀନ୍ହ ଦୁଗୁନ ବିସ୍ତାରା ॥
ସୋରହ ଜୋଜନ ମୁଖ ତେହିଁ ଠୟଉ । ତୁରତ ପବନସୁତ ବତ୍ତିସ ଭୟଉ ॥୪॥
ଜସ ଜସ ସୁରସା ବଦନୁ ବଢ଼ାଵା । ତାସୁ ଦୂନ କପି ରୂପ ଦେଖାଵା ॥
ସତ ଜୋଜନ ତେହିଁ ଆନନ କୀନ୍ହା । ଅତି ଲଘୁ ରୂପ ପବନସୁତ ଲୀନ୍ହା ॥୫॥
ବଦନ ପଇଠି ପୁନି ବାହେର ଆଵା । ମାଗା ବିଦା ତାହି ସିରୁ ନାଵା ॥
ମୋହି ସୁରନ୍ହ ଜେହି ଲାଗି ପଠାଵା । ବୁଧି ବଲ ମରମୁ ତୋର ମୈଁ ପାଵା ॥୬॥

---

ତେବେ ଆସି ପ୍ରବେଶିବି ତୁମ୍ଭ ବଦନରେ । ଛାଡିଦିଅ ମାତ, ସତ୍ୟ କହେ ତୋ ଆଗରେ ॥
ଗିଳିବାକୁ ନ ହଏ ବହୁ କଲେହେଁ ଯତନ । ଖାଅ ନା ମୋତେ, ବୋଇଲେ ପବନ-ନନ୍ଦନ ॥୩॥
ଯୋଜନ ପର୍ଯ୍ୟନ୍ତେ ମୁଖ କଲା ସେ ପ୍ରସାର । କପି କଳେବର ହେଲା ଦ୍ୱିଗୁଣ ବିସ୍ତାର ॥
ଷୋହଳ ଯୋଜନ ସେହି ବଦନ ମେଲିଲା । ସତ୍ୱର ପବନ-ପୁତ୍ର ବତିଶ ହୋଇଲା ॥୪॥
ଯେମନ୍ତେ ଯେମନ୍ତେ ମୁଖ ସୁରସା ବଢାଏ । କପି ନିଜ ରୂପ ତାର ଦ୍ୱିଗୁଣ ଦେଖାଏ ॥
ଶତ ଯୋଜନ ବିସ୍ତାର କଲା ସେ ବଦନ । ଅତି କ୍ଷୁଦ୍ର ରୂପ ଧରି ମରୁତ-ନନ୍ଦନ ॥୫॥
ମୁଖ ମଧ୍ୟେ ପଶି ପୁଣି ବାହାରି ଆସିଲେ । ପ୍ରଣାମ କରି ତାହାକୁ ବିଦାୟ ମାଗିଲେ ॥
ମୋତେ ପେଷିଲେ ଯେ ହେତୁ ବିବୁଧ ନିକର । ବୁଦ୍ଧି ବଳ ମରମ ମୁଁ ପାଇଲି ତୋହର ॥୬॥

---

ତାଙ୍କର ବିଶେଷ ବଳବୁଦ୍ଧି ପରୀକ୍ଷା କରିବା ନିମନ୍ତେ ସେମାନେ ସୁରସା ନାମକ ସର୍ପ-ମାତାକୁ ପଠାଇଲେ । ସେ ଆସି ହନୁମାନ୍‌ଙ୍କୁ ଏହି କଥା କହିଲେ— ॥ ୧ ॥ "ଆଜି ଦେବତାମାନେ ମୋତେ ଆହାର ଦେଇଅଛନ୍ତି ।" ଏହି କଥା ଶୁଣି, ପବନ-କୁମାର ହନୁମାନ କହିଲେ, "ଶ୍ରୀରାମଙ୍କ କାର୍ଯ୍ୟ କରି ମୁଁ ଫେରି ଆସେ ଏବଂ ସୀତାଙ୍କ ଖବର ପ୍ରଭୁଙ୍କୁ ଶୁଣାଇ ଦିଏ ॥ ୨ ॥ ତତ୍ପରେ ମୁଁ ଆସି ତୋ ପାଟିରେ ପଶିଯିବି ଏବଂ ତୁ ମୋତେ ଖାଇବୁ । ହେ ମାତା ! ମୁଁ ସତ୍ୟ କହୁଛି, ଏବେ ମୋତେ ଯିବାକୁ ଦେ । ଯେତେବେଳେ କୌଣସି ଉପାୟରେ ସୁଦ୍ଧା ସୁରସା ହନୁମାନଙ୍କୁ ଛାଡିଲା ନାହିଁ, ସେତେବେଳେ ହନୁମାନ କହିଲେ, "ତେବେ ମୋତେ ଖାଇ ଯାଅ ।" ॥ ୩ ॥ ସୁରସା ଯୋଜନ ଆକାନ୍ତରେ ମୁହଁ ମେଲେଇଲା । ସେତେବେଳେ ହନୁମାନ ଆପଣାର ଶରୀରକୁ ଦୁଇଗୁଣ ବୃଦ୍ଧି କରିଦେଲେ । ସୁରସା ଷୋହଳ ଯୋଜନ ଆକାନ୍ତରେ ମୁହଁ ମେଲା କଲା । ହନୁମାନ୍ ସଙ୍ଗେ ସଙ୍ଗେ ବତିଶ ଯୋଜନ ଆକାନ୍ତରେ ଆପଣା ଶରୀରକୁ ବଢାଇ ଦେଲେ । ସୁରସା ମୁହଁର ବିସ୍ତାର ବଢ଼ାଇ ଚାଲିଥାଏ ତ ହନୁମାନ୍ ଆପଣାର ଦୁଇଗୁଣ ରୂପ ବୃଦ୍ଧି ଦେଖାଇ ଚାଲିଥା'ନ୍ତି । ସୁରସା ଶହେ ଯୋଜନ ଆକାନ୍ତରେ ମୁଖ ବିସ୍ତୃତ କଲା । ସେତେବେଳେ ହନୁମାନ୍ ଅତି କ୍ଷୁଦ୍ର ରୂପ ଧାରଣ କରି ପକାଇଲେ ॥ ୪ ॥ ଏବଂ ସେ ତାହାର ପାଟି ଭିତରେ ପଶି ଶୀଘ୍ର ବାହାରି ଆସିଲେ ଏବଂ ମୁଣ୍ଡ ନୁଆଁଇ

ରାମ କାଜୁ ସବୁ କରିହହୁ ତୁହ୍ମ ବଲ ବୁଦ୍ଧି ନିଧାନ ।
ଆସିଷ ଦେଇ ଗଈ ସୋ ହରଷି ଚଲେଉ ହନୁମାନ ॥୨॥

ନିସିଚରି ଏକ ସିନ୍ଧୁ ମହୁଁ ରହଈ । କରି ମାୟା ନଭୁ କେ ଖଗ ଗହଈ ॥
ଜୀବ ଜନ୍ତୁ ଜେ ଗଗନ ଉଡାହୀଁ । ଜଲ ବିଲୋକି ତିହ୍ନ କୈ ପରିଛାହୀଁ ॥୧॥
ଗହଈ ଛାହଁ ସକ ସୋ ନ ଉଡ଼ାଈ । ଏହି ବିଧି ସଦା ଗଗନଚର ଖାଈ ॥
ସୋଇ ଛଲ ହନୁମାନ କହଁ କୀହ୍ନା । ତାସୁ କପଟୁ କପି ତୁରତହିଁ ଚୀହ୍ନା ॥୨॥
ତାହି ମାରି ମାରୁତସୁତ ବୀରା । ବାରିଧି ପାର ଗୟଉ ମତିଧୀରା ॥
ତହାଁ ଜାଇ ଦେଖୀ ବନ ସୋଭା । ଗୁଞ୍ଜତ ଚଞ୍ଚରୀକ ମଧୁ ଲୋଭା ॥୩॥
ନାନା ତରୁ ଫଲ ଫୂଲ ସୁହାଏ । ଖଗ ମୃଗ ବୃନ୍ଦ ଦେଖି ମନ ଭାଏ ॥
ସୈଲ ବିସାଲ ଦେଖି ଏକ ଆଗେଁ । ତା ପର ଧାଇ ଚଢେଉ ଭୟ ତ୍ୟାଗେ ॥୪॥

---

ରାମଙ୍କର କାର୍ଯ୍ୟ କରିବ ସକଳ ତୁ ବଳ-ବୁଦ୍ଧି-ନିଧାନ ।
ଆଶିଷ ଦେଇଣ ସୁରସା ଗମିଲା, ହର୍ଷେ ଗଲେ ହନୁମାନ ॥୨॥

ନିଶାଚରୀ ଏକ ସିନ୍ଧୁ ମଧ୍ୟରେ ରହଇ । ମାୟା କରି ନଭଗାମୀ ଖଗଙ୍କୁ ଧରଇ ॥
ଯେ ଜୀବ ଜନ୍ତୁ ଉଡନ୍ତି ଗଗନ ପଥରେ । ସେମାନଙ୍କ ପ୍ରତିବିମ୍ବ ବିଲୋକି ଜଳରେ ॥୧॥
ଧରନ୍ତେ ଛାଇ ସେ ଜୀବ ଉଡି ନ ପାରଇ । ଏ ଭାବେ ସଦା ଗଗନ-ଚରଙ୍କୁ ଭକ୍ଷଇ ॥
ହନୁମାନ ପ୍ରତି ସୁଦ୍ଧା କଲା ସେହି ଛଳ । ତାହାର କପଟ କପି ଚିହ୍ନିଲେ ଚଞ୍ଚଳ ॥୨॥
ତାହାକୁ ମାରି ମରୁତ-ସୁତ ମହାବୀର । ବାରିଧି ପାର ହୋଇଲେ ଅତି ମତି ଧୀର ॥
ତହିଁ ଯାଇ ବିଲୋକିଲେ ଶୋଭା ବିପିନର । ଗୁଞ୍ଜାର କରନ୍ତି ମଧୁଲୋଭୀ ମଧୁକର ॥୩॥
ନାନା-ବିଧ ତରୁ ଫଳ ପୁଷ୍ପେ ସୁଶୋଭିତ । ଖଗ ମୃଗ ବୃନ୍ଦ ଦେଖି ମନ ଆନନ୍ଦିତ ॥
ବିଶାଳ ଶଇଳ ଏକ ଦେଖି ସମ୍ମୁଖରେ । ଧାଇଁ ଚଢିଗଲେ ଭୟ ତେଜି ତା ଉପରେ ॥୪॥

---

ତାଙ୍କୁ ବିଦାୟ ମାଗିଲେ । ସୁରସା କହିଲା, "ଦେବତାମାନେ ତୁମ ବୁଦ୍ଧି ବଳର ରହସ୍ୟ ପରୀକ୍ଷା କରିବା ନିମନ୍ତେ ମୋତେ ପଠାଇଥିଲେ । ତୁମ ବୁଦ୍ଧି ବଳର ରହସ୍ୟ ମୁଁ ପାଇଗଲି ॥ ୬ ॥ ଦୋହା :—ତୁମେ ଶ୍ରୀରାମଙ୍କର ସମସ୍ତ କାର୍ଯ୍ୟ କରିବ, କାରଣ ତୁମେ ବଳ-ବୁଦ୍ଧିର ଭଣ୍ଡାର ।" ଏହି ଆଶୀର୍ବାଦ ଦେଇ ସେ ଚାଲିଗଲା । ତଦନନ୍ତର ହନୁମାନ୍ ଆନନ୍ଦିତ ମନରେ ଚଳିଲେ ॥ ୨ ॥ ଚୌପାଇ :—ସମୁଦ୍ରରେ ଗୋଟିଏ ରାକ୍ଷସୀ ରହୁଥିଲା । ସେ ମାୟା କରି ଅକାଶରେ ଉଡୁଥିବା ପକ୍ଷୀମାନଙ୍କୁ ଧରି ନେଉଥାଏ । ଆକାଶରେ ଯେଉଁ ଜୀବଜନ୍ତୁମାନେ ଉଡୁଥାନ୍ତି, ଜଳରେ ସେମାନଙ୍କର ପ୍ରତିବିମ୍ବ ଦେଖି ସେ ଉକ୍ତ ପ୍ରତିବିମ୍ବଗୁଡିକୁ ଧରି ନେଉଥାଏ, ଯାହା ଫଳରେ ସେମାନେ ଉଡି ନ ପାରି ଜଳରେ ଖସି ପଡୁଥାନ୍ତି । ଏହି ରୂପେ ସେ ସଦାସର୍ବଦା ଆକାଶରେ ଉଡୁଥିବା ଜୀବମାନଙ୍କୁ ଖାଉଥାଏ । ସେ ହନୁମାନ୍‌ଙ୍କ ସଙ୍ଗରେ ସେହି ଛଳ-କପଟ [illegible] କଲା । ହନୁମାନ୍ ସଙ୍ଗେ ସଙ୍ଗେ ତାହାର କପଟ ଜାଣି ପକାଇଲେ [illegible]

ଉମା ନ କଛୁ କପି କୈ ଅଧିକାଈ । ପ୍ରଭୁ ପ୍ରତାପ ଜୋ କାଲହି ଖାଈ ॥
ଗିରି ପର ଚଢ଼ି ଲଂକା ତେହିଁ ଦେଖୀ । କହି ନ ଜାଇ ଅତି ଦୁର୍ଗ ବିସେଷୀ ॥୪॥
ଅତି ଉତଂଗ ଜଲନିଧି ଚହୁଁ ପାସା । କନକ କୋଟ କର ପରମ ପ୍ରକାସା ॥୫॥

କନକ କୋଟ ବିଚିତ୍ର ମନି କୃତ ସୁନ୍ଦରାୟତନା ଘନା ।
ଚଉହଟ୍ଟ ହଟ୍ଟ ସୁବଟ୍ଟ ବୀଥୀଁ ଚାରୁ ପୁର ବହୁ ବିଧି ବନା ॥
ଗଜ ବାଜି ଖଚ୍ଚର ନିକର ପଦଚର ରଥ ବରୂଥନ୍ହି କୋ ଗନୈ ।
ବହୁରୂପ ନିସିଚର ଜୂଥ ଅତିବଲ ସେନ ବରନତ ନହିଁ ବନୈ ॥୧॥

ବନ ବାଗ ଉପବନ ବାଟିକା ସର କୂପ ବାପୀଁ ସୋହହୀଁ ।
ନର ନାଗ ସୁର ଗଂଧର୍ବ କନ୍ୟା ରୂପ ମୁନି ମନ ମୋହହୀଁ ॥
କହୁଁ ମାଲ ଦେହ ବିସାଲ ସୈଲ ସମାନ ଅତିବଲ ଗର୍ଜହୀଁ ।
ନାନା ଅଖାରେନ୍ହ ଭିରହିଁ ବହୁବିଧି ଏକ ଏକନ୍ହ ତର୍ଜହୀଁ ॥୨॥

---

ଉମା ! ଏହା କିଛି କପି ବଡ଼ିମା ନୁହଇ । ପ୍ରଭୁଙ୍କ ପ୍ରତାପ, କାଳେ ଯେ ଭକ୍ଷି ପାରଇ ॥
ଶଇଳେ ଚଢ଼ି ସେ ଲଙ୍କା କଲେ ବିଲୋକନ । ପରମ ବିଶାଳ ଦୁର୍ଗ ନ ହୁଏ ବର୍ଣ୍ଣନ ॥୪॥
ଅତ୍ୟନ୍ତ ଉତ୍ତୁଙ୍ଗ ଜଳନିଧି ଚଉପାଶେ । କନକ ପ୍ରାଚୀର ପୁଣି ପରମ ପ୍ରକାଶେ ॥୫॥

ହେମମୟ ପ୍ରାଚୀର ମଣିକୃତ ରୁଚିର ବିଚିତ୍ର ଘନ ଆୟତନ ।
ରାଜ ମାର୍ଗେ ଚଉକ ଗଳି ହାଟ ଅନେକ ସୁନ୍ଦର ନଗର ରଚନ ।
ଗଜ ତୁରଙ୍ଗ ପଦଚର, ଅସଂଖ୍ୟ ସ୍ୟନ୍ଦନ ଖଚ୍ଚର,
ନାନା ରୂପ ଦଇତ ସୈନିକ ବଳବନ୍ତ, କେ ବର୍ଣ୍ଣି ପାରିବ ନିକର ॥୧॥

ବିବିଧ କୋଠାବନ ଉଦ୍ୟାନ ଉପବନ କୂପ ସରସୀ ବିରାଜନ୍ତି ।
ଗନ୍ଧର୍ବ ନାଗ ନର ସୁର କନ୍ୟା ନିଜର ସୌନ୍ଦର୍ଯ୍ୟେ ମୁନିଙ୍କୁ ମୋହନ୍ତି ।
କାହିଁ ପାହାଡ଼ ସମ ଅତି, ବିଶାଳ ମଲ୍ଲ ଗରଜନ୍ତି,
ବହୁ କୁସ୍ତିଶାଳାରେ ଯୁଝି ନାନା ପ୍ରକାରେ ଏକକୁ ଏକ ତରଜନ୍ତି ॥୨॥

---

ଧୀର-ବୁଦ୍ଧି, ବୀର ହନୁମାନ୍ ତାହାକୁ ମାରି ସମୁଦ୍ର ପାରି ହୋଇଗଲେ । ସେଠାକୁ ଯାଇ ସେ ବନର ଶୋଭା ଦେଖିଲେ । ମଧୁ-ଲୋଭରେ ଭ୍ରମରମାନେ ସେଠାରେ ଗୁଞ୍ଜନ କରୁଥା'ନ୍ତି ।॥ ୩ ॥ ବିବିଧ ବୃକ୍ଷ ଫଳପୁଷ୍ପରେ ସୁଶୋଭିତ । ପକ୍ଷୀ ଓ ପଶୁମାନଙ୍କୁ ଦେଖି ସେ ମନେ ମନେ ଅତି ପ୍ରସନ୍ନ ହେଲେ । ସମ୍ମୁଖରେ ଗୋଟିଏ ବିଶାଳ ପର୍ବତ ଦେଖି, ହନୁମାନ ଭୟ ତ୍ୟାଗ କରି, ତାହା ଉପରକୁ ଦଉଡ଼ି ଚଢ଼ିଗଲେ ॥୪॥ ଶିବ କହନ୍ତି, "ହେ ଉମା ! ଏଥିରେ ବାନର ହନୁମାନ୍‌ଙ୍କର ଟିକିଏ ହେଲେ ବଡ଼ିବଡ଼େଇ ନାହିଁ । ଏହା ପ୍ରଭୁଙ୍କର ପ୍ରତାପ । ଯେଉଁ ପ୍ରଭାବ କାଳକୁ ମଧ୍ୟ ଗ୍ରାସ କରିପକାଏ । ପର୍ବତ ଉପରେ ଚଢ଼ି ସେ ଲଙ୍କା ଦେଖିଲେ । ଅତି ବିରାଟ ଦୁର୍ଗ, ଭାଷାରେ ବର୍ଣ୍ଣନା କରାଯାଇ ପାରିବ

କରି ଜତନ ଭଟ କୋଟିନ୍ହ ବିକଟ ତନ ନଗର ଚହୁଁ ଦିସି ରଚ୍ଛହୀଁ ॥
କହୁଁ ମହିଷ ମାନୁଷ ଧେନୁ ଖର ଅଜ ଖଲ ନିସାଚର ଭଚ୍ଛହୀଁ ॥
ଏହି ଲାଗି ତୁଲସୀଦାସ ଇନ୍ହ କୀ କଥା କଛୁ ଏକ ହୈ କହୀ ।
ରଘୁବୀର ସର ତୀରଥ ସରୀରନ୍ହି ତ୍ୟାଗି ଗତି ପୈହହିଁ ସହୀ ॥୩॥

ପୁର ରଖଵାରେ ଦେଖି ବହୁ କପି ମନ କୀନ୍ହ ବିଚାର ।
ଅତି ଲଘୁ ରୂପ ଧରୌଁ ନିସି ନଗର କରୌଁ ପଇସାର ॥୩॥

---

କରି ଯତ୍ନ ବହୁଧା ବିକଟ-ବପୁ ଯୋଦ୍ଧା ନଗର ସୁରକ୍ଷା କରନ୍ତି ।
କାହିଁ ଧେନୁ ମହିଷ ଖର ଛାଗ ମନୁଷ୍ୟ ପାପିଷ୍ଠ ରାକ୍ଷସେ ଭକ୍ଷନ୍ତି ।
ଏଣୁ ତୁଲସୀ ସୂକ୍ଷ୍ମେ ଅଛି, କଲି ଏ ଚରିତ ଭଣନ୍ତି,
ଶ୍ରୀ ରଘୁବୀର ଶର-ତୀର୍ଥେ ତେଜି ଶରୀର ପାଇବେ ପରମ ସୁଗତି ॥୩॥

ନଗର-ରକ୍ଷକ ବିଲୋକି ଅନେକ କପି ବିଚାରେ ମନରେ ।
ଅତି ସୂକ୍ଷ୍ମ ରୂପ ଧରି ରଜନୀରେ ପଶିବି ପୁର ମଧ୍ୟରେ ॥୩॥

---

ନାହିଁ ॥ ୫ ॥ ତାହା ଅତ୍ୟନ୍ତ ଉଚ୍ଚ ଏବଂ ତାର ଚତୁର୍ଦ୍ଦିଗରେ ସମୁଦ୍ର । ସୁବର୍ଣ୍ଣ ପ୍ରାଚୀରରୁ ପରମ ଜ୍ୟୋତି ପ୍ରକାଶିତ ହେଉଥାଏ ॥ ୬ ॥ ଛନ୍ଦ :—ବିଚିତ୍ର ମଣି-ଖଚିତ ସ୍ୱର୍ଣ୍ଣ ପ୍ରାଚୀର, ତାହାର ମଧ୍ୟରେ ବହୁତ ସୁନ୍ଦର ସୁନ୍ଦର ଗୃହ । ଛକ, ବଜାର, ସୁନ୍ଦର ମାର୍ଗ ଓ ଗଳିମାନ ରହିଥାଏ । ସୁନ୍ଦର ନଗର ବହୁତ ପ୍ରକାରେ ସୁସଜ୍ଜିତ । ହସ୍ତୀ, ଅଶ୍ୱ, ଖଚର ତଥା ପଦାତିକ ଓ ରଥ ସମୂହଙ୍କୁ କିଏ ଗଣି ପାରିବ ? ବିବିଧ ରୂପର ରାକ୍ଷସ-ଦଳ ରହିଅଛନ୍ତି । ସେମାନଙ୍କର ବଳବତ୍ତା ସେନା ବିଷୟରେ ବର୍ଣ୍ଣନ କରିବା ଅସମ୍ଭବ ॥ ୧ ॥ ବନ, ଉଦ୍ୟାନ, ଉପବନ, ଫୁଲ ବଗିଚା, କୂପ ଓ ବାପୀ ପ୍ରଭୃତି ଶୋଭା ପାଉଥାଏ । ମନୁଷ୍ୟ, ନାଗ, ଦେବତା ଓ ଗନ୍ଧର୍ବ କନ୍ୟାମାନେ ନିଜ ନିଜ ସୌନ୍ଦର୍ଯ୍ୟରେ ମୁନିମାନଙ୍କ ମନ ମଧ୍ୟ ମୋହି ନେଉଥା'ନ୍ତି । କେଉଁଠି ପର୍ବତ ସମାନ ବୃହତ୍-କାୟ ବଳବାନ୍ ମଲ୍ଲମାନେ ଗର୍ଜନ କରୁଥାଆନ୍ତି । ସେମାନେ ଅନେକ ଆଖଡାରେ ବହୁତ ପ୍ରକାରେ ଲଢାଇ କରୁଥା'ନ୍ତି ଏବଂ ପରସ୍ପରଙ୍କୁ ଆହ୍ୱାନ କରୁଥା'ନ୍ତି ॥ ୨ ॥ ଭୟଙ୍କର ଶରୀର-ବିଶିଷ୍ଟ କୋଟି କୋଟି ଯୋଦ୍ଧା ଅତି ସାବଧାନତାର ସହିତ ନଗରର ଚତୁର୍ଦ୍ଦିଗରେ ଘେରି ତାହାର ରକ୍ଷଣାବେକ୍ଷଣା କରୁଥାଆନ୍ତି । କେଉଁଠି ଦୁଷ୍ଟ ରାକ୍ଷସମାନେ ପଣ୍ଡା, ମନୁଷ୍ୟ, ଗାଈ, ଗଧ ଓ ଛେଳିମାନଙ୍କୁ ଖାଉଥାଆନ୍ତି । ଏମାନେ ନିଶ୍ଚୟ ଶ୍ରୀ ରାମଚନ୍ଦ୍ରଙ୍କ ଶର-ତୀର୍ଥରେ ଶରୀର ତ୍ୟାଗ କରି ପରମ ଗତି ଲାଭ କରିବେ । ଏଇଥି ପାଇଁ ତୁଳସୀ ଦାସ ଅତି ଅଳ୍ପକରେ ଏମାନଙ୍କ କଥା କହି ସାରିଦେଲେ । ॥ ୩ ॥ ଦୋହା :—ନଗରର ବହୁ ସଂଖ୍ୟକ ସଂରକ୍ଷକମାନଙ୍କୁ ଦେଖି ହନୁମାନ୍ ଅତ୍ୟନ୍ତ କ୍ଷୁଦ୍ର ରୂପ ଧାରଣ-ପୂର୍ବକ ରାତିରେ ନଗରରେ ପ୍ରବେଶ କରିବା ନିମନ୍ତେ ମନେ ମନେ ବିଚାର କଲେ । ॥ ୩ ॥

ମସକ ସମାନ ରୂପ କପି ଧରୀ । ଲଙ୍କହି ଚଲେଉ ସୁମିରି ନରହରୀ ॥
ନାମ ଲଂକିନୀ ଏକ ନିସିଚରୀ । ସୋ କହ ଚଲେସି ମୋହି ନିନ୍ଦରୀ ॥୧॥
ଜାନେହି ନହୀଁ ମରମୁ ସଠ ମୋରା । ମୋର ଅହାର ଜହାଁ ଲଗି ଚୋରା ॥
ମୁଠିକା ଏକ ମହା କପି ହନୀ । ରୁଧିର ବମତ ଧରନୀଁ ଢନମନୀ ॥୨॥
ପୁନି ସଂଭାରି ଉଠୀ ସୋ ଲଂକା । ଜୋରି ପାନି କର ବିନୟ ସସଂକା ॥
ଜବ ରାବନହି ବ୍ରହ୍ମ ବର ଦୀହ୍ନା । ଚଲତ ବିରଂଚି କହା ମୋହି ଚୀହ୍ନା ॥୩॥
ବିକଲ ହୋସି ତୈଁ କପି କେଁ ମାରେ । ତବ ଜାନେସୁ ନିସିଚର ସଂଘାରେ ॥
ତାତ ମୋର ଅତି ପୁନ୍ୟ ବହୂତା । ଦେଖେଉଁ ନୟନ ରାମ କର ଦୂତା ॥୪॥
ତାତ ସ୍ୱର୍ଗ ଅପବର୍ଗ ସୁଖ ଧରିଅ ତୁଲା ଏକ ଅଂଗ ।
ତୂଲ ନ ତାହି ସକଲ ମିଲି ଜୋ ସୁଖ ଲବ ସତସଂଗ ॥୪॥

ମଶକ ସମାନ ରୂପ କପି ତହୁଁ ଧରି । ଲଙ୍କାରେ ପ୍ରବେଶ କଲେ ସ୍ମରି ନରହରି ॥
ଲଙ୍କିନୀ ନାମରେ ଥିଲା ଏକ ନିଶାଚରୀ । କହଇ ସେ, କାହିଁ ଯାଉ ମୋତେ ଅନାଦରି ॥୧॥
ଜାଣି ନାହୁଁ ଆରେ ଶଠ, ମରମ ତୁ ମୋର । ମୋର ଆହାର ଅଟନ୍ତି ଯହିଁ ଯେତେ ଚୋର ॥
ମୁଷ୍ଟିକ ଏକ କପୀଶ ତାହାକୁ ମାରିଲେ । ରୁଧିର ବମନ କରି ମହୀରେ ପଡିଲା ॥୨॥
ପୁଣି ନିଜକୁ ସମ୍ଭାଳି ଉଠି ସେ ଲଙ୍କିନୀ । କର ଯୋଡି ସଶଙ୍କିତେ କରଇ ବିନତି ॥
ଯେବେ ରାବଣକୁ ବ୍ରହ୍ମା ବର ପ୍ରଦାନ କଲେ । ବାହୁଡିବା ବେଳେ ମୋତେ ଚିହ୍ନାଇ କହିଲେ ॥୩॥
କପି ପ୍ରହାରେ ତୁ ଯେବେ ବିକଳ ହୋଇବୁ । ତେବେ ନିଶାଚରଙ୍କର ସଂହାର ଜାଣିବୁ ॥
ତାତ ! ପୂର୍ବ ପୁଣ୍ୟ ମୋର ଅଟଇ ବହୁତ । ଦେଖିଲି ନିଜ ନୟନେ ରାମଙ୍କର ଦୂତ ॥୪॥
ଧରି ସପ୍ତ ସ୍ୱର୍ଗ-ସୁଖ ଅପବର୍ଗ ନିକିତିର ଏକ ଅଙ୍ଗେ ।
ନ ହୋଇବେ ତୁଲ୍ୟ ସବେ ମିଳି ତାହା ଯେ ସୁଖ କ୍ଷଣ ସତ୍ସଙ୍ଗେ ॥୪॥

ଚୌପାଈ—ହନୁମାନ୍ ମଶାର ରୂପ ଧାରଣ କରି ନର ରୂପରେ ଲୀଳା କରୁଥିବା ଭଗବାନ୍ ଶ୍ରୀ ରାମଚନ୍ଦ୍ରଙ୍କୁ ସ୍ମରଣ କରି, ଲଙ୍କାକୁ ଚାଲିଲେ । ଲଙ୍କାର ଦ୍ୱାର ଦେଶରେ ଲଙ୍କିନୀ ନାମକ ଗୋଟିଏ ରାକ୍ଷସୀ ରହୁଥିଲା । ସେ କହିଲା, "ମୋତେ କିଛି ନ ପଚାରି ଏପରି ବେଖାତିରି କରି କୁଆଡେ ଚାଲିଯାଉଛୁ ? ॥ ୧ ॥ ରେ ମୂର୍ଖ ! ତୁ ମୋ ରହସ୍ୟ ଜାଣିନାହୁଁ ! ଯେଉଁଠାରେ ଯେତେ ଚୋର ଅଛନ୍ତି, ସେମାନେ ସମସ୍ତେ ମୋର ଆହାର ।" ମହାକପି ହନୁମାନ୍ ତାହାକୁ ଗୋଟାଏ ବିଧା ମାରିଲେ, ଫଳରେ ସେ ରକ୍ତ ବାନ୍ତି କରି ପୃଥିବୀ ଉପରେ ଟଳି ପଡିଲା ॥ ୨ ॥ ସେହି ଲଙ୍କିନୀ ପୁଣି ଥରେ ଆପଣାକୁ ସମ୍ଭାଳି ଉଠିଲା ଏବଂ ଭୟ ହେତୁ ହାତ ଯୋଡ଼ି ପ୍ରାର୍ଥନା କରିବାକୁ ଲାଗିଲା । ସେ କହିଲା, "ରାବଣକୁ ବ୍ରହ୍ମା ବର ଦେଇ ଯେତେବେଳେ ଫେରି ଯାଉଥିଲେ, ସେତେବେଳେ ସେ ମୋତେ ରାକ୍ଷସ-ଗଣଙ୍କ ବିନାଶର ନିଦର୍ଶନ କହି ଦେଇଥିଲେ ॥ ୩ ॥ ତାହା ହେଉଛି, ମୁଁ ଯେତେବେଳେ ବାନରର ମାଡ଼ରେ ବ୍ୟାକୁଳ ହୋଇ ପଡିବି, ସେତେବେଳେ

ପ୍ରବିସି ନଗର କୀଜେ ସବ କାଜା । ହୃଦୟଁ ରାଖି କୋସଲପୁର ରାଜା ॥
ଗରଲ ସୁଧା ରିପୁ କରହିଁ ମିତାଈ । ଗୋପଦ ସିନ୍ଧୁ ଅନଲ ସିତଲାଈ ॥୧॥
ଗରୁଡ଼ ସୁମେରୁ ରେନୁ ସମ ତାହୀ । ରାମ କୃପା କରି ଚିତୱା ଜାହୀ ॥
ଅତି ଲଘୁ ରୂପ ଧରେଉ ହନୁମାନା । ପୈଠା ନଗର ସୁମିରି ଭଗବାନା ॥୨॥
ମଂଦିର ମଂଦିର ପ୍ରତି କରି ସୋଧା । ଦେଖେ ଜହଁ ତହଁ ଅଗନିତ ଜୋଧା ॥
ଗୟଉ ଦସାନନ ମନ୍ଦିର ମାହୀଁ । ଅତି ବିଚିତ୍ର କହି ଜାତ ସୋ ନାହୀଁ ॥୩॥
ସୟନ କିଏଁ ଦେଖା କପି ତେହୀ । ମଂଦିର ମହୁଁ ନ ଦୀଖି ବୈଦେହୀ ॥
ଭବନ ଏକ ପୁନି ଦୀଖ ସୁହାୱା । ହରି ମଂଦିର ତହଁ ଭିନ୍ନ ବନାୱା ॥୪॥

---

ନଗରେ ପ୍ରବେଶି ସୁଖେ କର ସର୍ବ କାର୍ଯ୍ୟ । ହୃଦୟେ ଚିନ୍ତି କୋଶଲ ପୁର ନରରାଜ ॥
ଗରଲ ଅମୃତ, ଶତ୍ରୁ ମିତ୍ରତା କରଇ । ଗୋଷ୍ପଦ ସିନ୍ଧୁ, ଅନଲ ଶୀତଲ ଲାଗଇ ॥୧॥
ବିଶାଲ ସୁମେରୁ ରେଣୁ ସଦୃଶ ତାହାଙ୍କୁ । ରାମ କୃପା ଦୃଷ୍ଟି କରି ଚାହାନ୍ତି ଯାହାଙ୍କୁ ॥
ଅତି ସୂକ୍ଷ୍ମ ରୂପ ତହୁଁ ଧରି ହନୁମାନ । ପ୍ରବେଶ କଲେ ନଗରେ ସ୍ମରି ଭଗବାନ ॥୨॥
ଭିନ୍ନ ଭିନ୍ନ କରି ପ୍ରତି ଭବନ ଖୋଜିଲେ । ଯେଣେ ତେଣେ ଅଗଣିତ ଯୋଦ୍ଧାଙ୍କୁ ଦେଖିଲେ ॥
ଗଲେ ଏଥୁ ଅନ୍ତେ ଦଶ ଆନନ ଆଗାରେ । ଅତି ବିଚିତ୍ର ବର୍ଣ୍ଣନ ହୋଇ ସେ ନ ପାରେ ॥୩॥
ଶୟନ କରି ଥିବାର ଦେଖିଲେ ତାହାଙ୍କୁ । ଗୃହ ମଧ୍ୟେ ନ ଦେଖିଲେ ଜନକସୁତାଙ୍କୁ ॥
ବିଲୋକିଲେ ପୁଣି ଏକ ସୁନ୍ଦର ଭବନ । ହରି ମନ୍ଦିର ସେ ସ୍ଥାନେ ପୃଥକ ରଚନ ॥୪॥

---

ରାକ୍ଷସମାନଙ୍କ ସଂହାର ହେଲା ବୋଲି ଧରି ନେବାକୁ ହେବ । ହେ ବାପ ! ମୋର ବଡ ପୁଣ୍ୟ ଯେ, ମୁଁ ଶ୍ରୀରାମଚନ୍ଦ୍ରଙ୍କ ଦୂତଙ୍କୁ ଆଜି ନେତ୍ରରେ ଦେଖି ପାରିଲି ॥ ୪ ॥ ଦୋହା '—ବାପ ! ସ୍ୱର୍ଗ ଏବଂ ମୋକ୍ଷର ସମସ୍ତ ସୁଖକୁ ତରାଜୁର ଗୋଟିଏ ପଲାରେ ଯଦି ରଖାଯାଏ, ତେବେ ତାହା ସବୁ ମିଶି ସୁଦ୍ଧା ଅନ୍ୟ ପଲାରେ ରଖା ହୋଇଥିବା କ୍ଷଣମାତ୍ର ସାଧୁସଙ୍ଗ-ଜନିତ ସୁଖ ସଙ୍ଗେ ସମାନ ହୋଇପାରେ ନାହିଁ ॥ ୪ ॥ ଚୌପାଈ '— ଅଯୋଧ୍ୟା ପୁରୀର ରାଜା ଶ୍ରୀରାମଚନ୍ଦ୍ରଙ୍କୁ ହୃଦୟରେ ଧାରଣ କରି ନଗରରେ ପ୍ରବେଶ କରି, ସବୁ କାମ କରିଯାଅ ।" ହେ ଗରୁଡ ! ଯାହାଙ୍କୁ ଭଗବାନ୍ ଶ୍ରୀରାମଚନ୍ଦ୍ର ଥରେ ମାତ୍ର କୃପା-ଦୃଷ୍ଟିରେ ଦେଖି ଦେଇଛନ୍ତି, ତାହା ପକ୍ଷରେ ବିଷ ଅମୃତ ହୋଇଯାଏ । ଶତ୍ରୁ ମିତ୍ରତା କରିବାକୁ ଲାଗେ, ସମୁଦ୍ର ଗାଈ ଖୁରା ପରି ଛୋଟ ହୋଇଯାଏ । ଅଗ୍ନିରେ ଶୀତଳତା ଆସିଯାଏ ଏବଂ ସୁମେରୁ ପର୍ବତ ତାହା ନିମନ୍ତେ ଧୂଳିକଣା ସଙ୍ଗେ ସମାନ ହୋଇଯାଏ । ତଦନନ୍ତର ହନୁମାନ୍ ଅତି କ୍ଷୁଦ୍ର ରୂପ ଧାରଣ କଲେ ଏବଂ ଭଗବାନ୍‌ଙ୍କୁ ସ୍ମରଣ କରି ନଗରରେ ପ୍ରବେଶ କଲେ ॥ ୨ ॥ ସେ ଗୋଟି ଗୋଟି କରି ପ୍ରତ୍ୟେକ ମହଲ ଅନୁସନ୍ଧାନ କଲେ । ଏଠି ସେଠି ଅସଂଖ୍ୟ ଯୋଦ୍ଧା ଦେଖିଲେ । ତତ୍ପରେ ସେ ରାବଣର ମହଲକୁ ଗଲେ । ତାହା ଅତି ବିଚିତ୍ର ଥିଲା । ତାହା ଭାଷାରେ ଅବର୍ଣ୍ଣନୀୟ ॥୩॥ ହନୁମାନ୍ ରାବଣକୁ ଶୟନ କରିଥିବାର ଦେଖିଲେ । କିନ୍ତୁ ମହଲରେ ଜାନକୀ ଦେଖାଗଲେ

ରାମାୟୁଧ ଅଙ୍କିତ ଗୃହ ସୋଭା ବରନି ନ ଜାଇ ।
ନବ ତୁଲସିକା ବୃନ୍ଦ ତହଁ ଦେଖି ହରଷ କପିରାଇ ॥୫॥

ଲଙ୍କା ନିସିଚର ନିକର ନିବାସା । ଇହାଁ କହାଁ ସଜ୍ଜନ କର ବାସା ॥
ମନ ମହୁଁ ତରକ କରୈଁ କପି ଲାଗା । ତେହୀଁ ସମୟ ବିଭୀଷନୁ ଜାଗା ॥୧॥
ରାମ ରାମ ତେହିଁ ସୁମିରନ କୀହ୍ନା । ହୃଦୟଁ ହରଷ କପି ସଜ୍ଜନ ଚୀହ୍ନା ॥
ଏହି ସନ ହଠି କରିହଉଁ ପହିଚାନୀ । ସାଧୁ ତେଁ ହୋଇ ନ କାରଜ ହାନୀ ॥୨॥
ବିପ୍ର ରୂପ ଧରି ବଚନ ସୁନାଏ । ସୁନତ ବିଭୀଷନ ଉଠି ତହଁ ଆଏ ॥
କରି ପ୍ରନାମ ପୂଁଛୀ କୁସଲାଈ । ବିପ୍ର କହହୁ ନିଜ କଥା ବୁଝାଈ ॥୩॥
କୀ ତୁହ୍ମ ହରି ଦାସହ୍ନ ମହଁ କୋଈ । ମୋରେଁ ହୃଦୟ ପ୍ରୀତି ଅତି ହୋଈ ॥
କୀ ତୁହ୍ମ ରାମୁ ଦୀନ ଅନୁରାଗୀ । ଆୟହୁ ମୋହି କରନ ବଡ଼ଭାଗୀ ॥୪॥

---

ରାମାୟୁଧେ ଘର ଚର୍ଚ୍ଚିତ ସୁନ୍ଦର ଶୋଭା ନୁହଇ ବରଣି ।
ନବୀନ ତୁଳସୀ ବିଟପ ଅନେକ ଦେଖି ହର୍ଷ କପିମଣି ॥୫॥

ଲଙ୍କା ଅଟେ ନିଶାଚର ଜାତଙ୍କ ନିବାସ । ଏ ସ୍ଥାନେ କାହୁଁ ଆସିଲା ସଜ୍ଜନଙ୍କ ବାସ ॥
ମନ ମଧ୍ୟେ ଅନୁମାନ କପି କରୁଥିଲା । ଏ ସମୟେ ବିଭୀଷଣ ଜାଗ୍ରତ ହୋଇଲା ॥୧॥
'ରାମ' ନାମ ସେହି ପୁଣି କରନ୍ତେ ଚିନ୍ତନ । ହରଷ ହୋଇଲା କପି ଚିହ୍ନିଣ ସଜ୍ଜନ ॥
ଏହା ସଙ୍ଗେ କରିବି ମୁଁ ଚିହ୍ନା ପରିଚୟ । ସାଧୁ ଦ୍ୱାରା ନ ହୁଅଇ କୌଣସି ଅହିତ ॥୨॥
ବିପ୍ର ରୂପ ଧରି ତହୁଁ ବାକ୍ୟ ଉଚ୍ଚାରିଲେ । ପୁଣି ବିଭୀଷଣ ଉଠି ତା' ପାଶେ ଆସିଲେ ॥
ପ୍ରଣାମ କରି ପୁଚ୍ଛିଲେ କୁଶଳ ବାରତା । କହ ବିପ୍ର, ବୁଝାଇଣ ମୋତେ ନିଜ କଥା ॥୩॥
ତୁମେ କି ଶ୍ରୀ ହରିଙ୍କର ଅଟ କେହି ଦାସ ? । ମୋ ହୃଦେ ଉପୁଜେ ଅତି ଶରଧା ବିଶ୍ୱାସ ॥
କି ତୁମେ ଦୀନାନୁରାଗୀ ରାମ ଭଗବାନ । ଆସିଛ ମୋତେ କରିବା ପାଇଁ ଭାଗ୍ୟବାନ ॥୪॥

---

ନାହିଁ । ତପରେ ପୁଣି ଗୋଟିଏ ସୁନ୍ଦର ମହଲ ଦେଖାଗଲା । ତହିଁରେ ଭଗବାନ୍‌ଙ୍କର ଗୋଟିଏ ଅଲଗା ମନ୍ଦିର ତିଆରି ହୋଇଥିଲା ॥ ୪ ॥ ଦୋହା '—ସେହି ମହଲରେ ଶ୍ରୀରାମଙ୍କ ଆୟୁଧ (ଧନୁଶରର ଚିହ୍ନ) ଅଙ୍କିତ ହୋଇଥିଲା । ତାହାର ଶୋଭା ଅବର୍ଣ୍ଣନୀୟ । ସେଠାରେ ନୂଆ ନୂଆ ତୁଳସୀ ଗଛ ଗୁଡ଼ିକୁ ଦେଖି ହନୁମାନ୍ ଆନନ୍ଦିତ ହେଲେ ॥ ୫ ॥ ଚୌପାଈ '—"ଲଙ୍କା ତ ରାକ୍ଷସ-ବୃନ୍ଦଙ୍କ ନିବାସ ସ୍ଥାନ । ଏଠାରେ ସାଧୁ ସଜ୍ଜନଙ୍କର ନିବାସ କାହୁଁ ଆସିଲା ?"—ହନୁମାନ୍ ମନେ ମନେ ଏହି ରୂପେ ତର୍କ କରିବାକୁ ଲାଗିଲେ । ସେହି ସମୟରେ ବିଭୀଷଣ ଜାଗି ଉଠିଲେ ॥ ୧ ॥ ବିଭୀଷଣ 'ରାମ' ନାମ ସ୍ମରଣ ଓ ଉଚ୍ଚାରଣ କଲେ । ହନୁମାନ ତାହାଙ୍କୁ ସଜ୍ଜନ ବୋଲି ଜାଣିଲେ ଏବଂ ହୃଦୟରେ ଅପାର ଆନନ୍ଦ ଲାଭ କଲେ । ସେ ମନରେ ବିଚାର କଲେ, "ଏହାଙ୍କୁ ମୋ ନିଜ ଆଡ଼ୁ ଆଗ ପରିଚୟ ପ୍ରଦାନ କରିବି । କାରଣ ସାଧୁଙ୍କ ଦ୍ୱାରା କାର୍ଯ୍ୟର ହାନି ହୁଏନାହିଁ । ପଶ୍ଚାନ୍ତରରେ କାର୍ଯ୍ୟ ସଫଳ ହୁଏ ।" ॥ ୨ ॥ ବ୍ରାହ୍ମଣ ରୂପ ଧରି ହନୁମାନ୍ ତାଙ୍କୁ ବଚନ

ତବ ହନୁମନ୍ତ କହୀ ସବ ରାମ କଥା ନିଜ ନାମ ।
ସୁନତ ଜୁଗଲ ତନ ପୁଲକ ମନ ମଗନ ସୁମିରି ଗୁନଗ୍ରାମ ॥୬॥
ସୁନହୁ ପବନସୁତ ରହନି ହମାରୀ । ଜିମି ଦସନନ୍ହି ମହୁଁ ଜୀଭ ବିଚାରୀ ॥
ତାତ କବହୁଁ ମୋହି ଜାନି ଅନାଥା । କରିହହିଁ କୃପା ଭାନୁକୁଲ ନାଥା ॥୧॥
ତାମସ ତନୁ କଛୁ ସାଧନ ନାହୀଁ । ପ୍ରୀତି ନ ପଦ ସରୋଜ ମନ ମାହୀଁ ॥
ଅବ ମୋହି ଭା ଭରୋସ ହନୁମଂତା । ବିନୁ ହରି କୃପା ମିଲହିଁ ନହିଁ ସଂତା ॥୨॥
ଜୌଁ ରଘୁବୀର ଅନୁଗ୍ରହ କୀନ୍ହା । ତୌ ତୁମ୍ହ ମୋହି ଦରସୁ ହଠି ଦୀନ୍ହା ॥
ସୁନହୁ ବିଭୀଷନ ପ୍ରଭୁ କୈ ରୀତୀ । କରହିଁ ସଦା ସେବକ ପର ପ୍ରୀତୀ ॥୩॥

---

ତହୁଁ ହନୁମନ୍ତ କହନ୍ତେ ସମସ୍ତ ରାମ କଥା ନିଜ ନାମ ।
ପୁଲକ ଆନନ୍ଦେ ମଗ୍ନ ହେଲେ ଦୁହେଁ ଶୁଣି ସ୍ମରି ଗୁଣ ଗ୍ରାମ ॥୬॥
ଶୁଣ ମୋର ଅବସ୍ଥିତି, ପବନ-ନନ୍ଦନ । ଦଶନଙ୍କ ମଧ୍ୟେ ଜିହ୍ୱା ଦୁଃଖିନୀ ଯେସନ ॥
କହ କପି, କେବେ ମୋତେ ଜାଣିଣ ଅନାଥ । କରିବେ କରୁଣା ପ୍ରଭୁ ଭାନୁକୁଳ-ନାଥ ॥୧॥
ସାଧନ ନ ହୁଏ କିଛି ତାପସ ଦେହରେ । ମନ ମଧ୍ୟେ ପ୍ରୀତି ନାହିଁ ପଙ୍କଜ ପଦରେ ॥
ଏବେ ଭରସା ହୋଇଲା ମୋତେ ହନୁମନ୍ତ । ଶ୍ରୀ ହରିଙ୍କ କୃପା ବିନା ନ ମିଳନ୍ତି ସନ୍ତ ॥୨॥
କଲେ ରଘୁବୀର କୃପା ମୋ ଉପରେ ଯେଣୁ । ଅଯାଚକେ ଦରଶନ ଦେଲ ତୁମ୍ଭେ ତେଣୁ ॥
ଶୁଣ ବିଭୀଷଣ, ଏହା ପ୍ରଭୁଙ୍କର ରୀତି । କରନ୍ତି ସଦା ଆପଣା ଦାସ ପ୍ରତି ପ୍ରୀତି ॥୩॥

---

ଶୁଣାଇଲେ ଅର୍ଥାତ୍ ଡାକିଲେ । ଶୁଣିବା ମାତ୍ରେ ବିଭୀଷଣ ସେଠାକୁ ଆସିଲେ । ସେ ବ୍ରାହ୍ମଣ ରୂପଧାରୀ ହନୁମାନ୍‌ଙ୍କୁ ପ୍ରଣାମ କରି କୁଶଳ ବାର୍ତ୍ତା ପଚାରିଲେ ଏବଂ କହିଲେ, "ହେ ବ୍ରାହ୍ମଣ ଦେବ ! ଆପଣା କଥା ବୁଝାଇ କୁହ ॥ ୩ ॥ ତୁମେ କଣ ହରି-ଭକ୍ତମାନଙ୍କ ମଧ୍ୟରୁ କେହି ଜଣେ ? ତୁମକୁ ଦେଖି ମୋ ହୃଦୟରୁ ଅତିଶୟ ପ୍ରେମ ଉଚ୍ଛୁଳି ପଡୁଛି ବୋଲି ମୁଁ ଏହି ପ୍ରଶ୍ନ ପଚାରୁଛି, ଅଥବା ତୁମେ ଦୀନ-ପ୍ରେମୀ ସ୍ୱୟଂ ଶ୍ରୀରାମଚନ୍ଦ୍ର ଏବଂ ମୋତେ ଦର୍ଶନ ଦେଇ ଅତି ଭାଗ୍ୟବାନ୍ କରିବା ନିମନ୍ତେ ଆସିଅଛ କି ? ॥ ୪ ॥ ଦୋହା :—ହନୁମାନ୍ ଶ୍ରୀରାମଙ୍କ ସମସ୍ତ କଥା କହି ନିଜର ନାମ ବ୍ୟକ୍ତ କଲେ । ଶୁଣିବା ମାତ୍ରେ ଉଭୟଙ୍କ ଶରୀର ପୁଲକିତ ହୋଇଗଲା ଏବଂ ଶ୍ରୀରାମଙ୍କ ଗୁଣ-ସମୂହ ସ୍ମରଣ କରି ଉଭୟଙ୍କ ମନ ପ୍ରେମ ଓ ଆନନ୍ଦରେ ନିମଗ୍ନ ହୋଇଗଲା ॥ ୬ ॥ ଚୌପାଈ :—ବିଭୀଷଣ କହିଲେ, "ହେ ପବନପୁତ୍ର ! ଦାନ୍ତଗଣଙ୍କ ଭିତରେ ବିଚରା ଜିଭ ରହିଲା ପରି ମୁଁ ଏଠାରେ (ଅତି ଭୟରେ) ରହିଅଛି । ହେ ତାତ ! ମୋତେ ଅନାଥ ବୋଲି ଜାଣି ସୂର୍ଯ୍ୟବଂଶ-ନାଥ ଶ୍ରୀରାମଚନ୍ଦ୍ର ମୋ ପ୍ରତି କେବେ କୃପା କରିବେ କି ? ॥ ୧ ॥ ମୋର ତାମସୀ (ରାକ୍ଷସ) ଶରୀର ହୋଇଥିବା ଯୋଗୁଁ ଉପାୟ ବା ସାଧନ କିଛି ନାହିଁ ଏବଂ ମୋ ମନରେ ଶ୍ରୀରାମଚନ୍ଦ୍ରଙ୍କ ଚରଣକମଳ ପ୍ରତି ପ୍ରେମ ନାହିଁ । କିନ୍ତୁ ହେ ହନୁମାନ୍ ! ଏବେ ଶ୍ରୀରାମଚନ୍ଦ୍ରଙ୍କର ମୋ ପ୍ରତି କୃପାଦୃଷ୍ଟି ଅଛି ବୋଲି ମୋ ମନରେ ଦୃଢ଼ ବିଶ୍ୱାସ

କହହୁ କଵନ ମୈଁ ପରମ କୁଲୀନା । କପି ଚଞ୍ଚଲ ସବହୀଁ ବିଧି ହୀନା ॥
ପ୍ରାତ ଲେଇ ଜୋ ନାମ ହମାରା । ତେହି ଦିନ ତାହି ନ ମିଲୈ ଅହାରା ॥୪॥
ଅସ ମୈଁ ଅଧମ ସଖା ସୁନୁ ମୋହୂ ପର ରଘୁବୀର ।
କୀହ୍ନୀ କୃପା ସୁମିରି ଗୁନ ଭରେ ବିଲୋଚନ ନୀର ॥୭॥
ଜାନତହୂଁ ଅସ ସ୍ୱାମି ବିସାରୀ । ଫିରହିଁ ତେ କାହେ ନ ହୋହିଁ ଦୁଖାରୀ ॥
ଏହି ବିଧି କହତ ରାମ ଗୁନ ଗ୍ରାମା । ପାୱା ଅନିର୍ବାଚ୍ୟ ବିଶ୍ରାମା ॥୧॥
ପୁନି ସବ କଥା ବିଭୀଷନ କହୀ । ଜେହି ବିଧି ଜନକସୁତା ତହଁ ରହୀ ॥
ତବ ହନୁମନ୍ତ କହା ସୁନୁ ଭ୍ରାତା । ଦେଖୀ ଚହଉଁ ଜାନକୀ ମାତା ॥୨॥
ଜୁଗୁତି ବିଭୀଷନ ସକଲ ସୁନାଈ । ଚଲେଉ ପବନସୁତ ବିଦା କରାଈ ॥
କରି ସୋଇ ରୂପ ଗୟଉ ପୁନି ତହୱାଁ । ବନ ଅସୋକ ସୀତା ରହ ଜହୱାଁ ॥୩॥

---

କହ, ମୁଁ ଅଟଇ କେଉଁ ପରମ କୁଳୀନ । କପି ଚଞ୍ଚଳ ପ୍ରକୃତି, ସର୍ବଭାବେ ହୀନ ॥
ପ୍ରାତଃକାଳେ ଉଠି ଆମ ନାମ ଯେ ନଅଇ । ସେ ଦିନସାକ ଆହାର ତାକୁ ନ ମିଳଇ ॥୪॥
ଏମନ୍ତ ଅଧମ ମୁହିଁ, ସଖେ, ଶୁଣ ମୋ ଉପରେ ରଘୁବୀର ।
କଲେ ଅନୁଗ୍ରହ, ସ୍ମରି ଗୁଣ ସ୍ନେହ ନେତ୍ରେ ପୂର୍ଣ୍ଣ ହେଲା ନୀର ॥୭॥
ଜାଣି ସୁଦ୍ଧା ଯେ ଏମନ୍ତ ପ୍ରଭୁଙ୍କୁ ଭୁଲିବେ । ବିଷୟେ ପଡ଼ି ସେ କିପାଁ ଦୁଃଖୀ ନ ହୋଇବେ ॥
କହନ୍ତେ ଏହି ପ୍ରକାରେ ରାମ ଗୁଣ ଗ୍ରାମ । ଅନିର୍ବଚନୀୟ ହୁହେଁ ଲଭିଲେ ବିଶ୍ରାମ ॥୧॥
ପୁଣି ବିଭୀଷଣ ସବୁ ବୃତ୍ତାନ୍ତ କହିଲେ । ଯେ ରୀତେ ଜନକସୁତା ଯେଉଁ ସ୍ଥାନେ ଥିଲେ ॥
ଶୁଣି ତହୁଁ ହନୁମାନ ବୋଲେ ଶୁଣ, ଭ୍ରାତା । ଦେଖିବାକୁ ଇଚ୍ଛା କରେ ବଇଦେହୀ ମାତା ॥୨॥
ଉପାୟ ସକଳ ବିଭୀଷଣ ଶୁଣାଇଲେ । ବିଦାୟ ହୋଇ ପବନ ତନୟ ଚଳିଲେ ॥
ଧରି ସେ ରୂପ ଆବର ଆଗମିଲେ ତହିଁ । ଅଶୋକ ବନରେ ସୀତା ରହିଥିଲେ ଯହିଁ ॥୩॥

---

ହୋଇଗଲା । କାରଣ ହରିଙ୍କ କୃପା ବିନା ସାଧୁସନ୍ଥଙ୍କର ଦର୍ଶନ ମିଳେନାହିଁ ॥ ୨ । ଯେତେବେଳେ ଶ୍ରୀ ରଘୁବୀର ମୋ ପ୍ରତି କୃପା କରିଅଛନ୍ତି, ତୁମେ ମୋତେ ଆପଣା ଆଡୁ ଦର୍ଶନ ଦେଇଅଛ ।” ହନୁମାନ୍ କହିଲେ, “ହେ ବିଭୀଷଣ ! ଶୁଣ, ପ୍ରଭୁଙ୍କର ଏହି ରୀତି ଯେ, ସେ ସର୍ବଦା ସେବକକୁ ପ୍ରେମ କରନ୍ତି ॥୩॥ ମୁଁ ଅବା କେଉଁ ବଡ଼ କୁଳୀନ ?—ଭଲ କୁହ ତ । ଜାତିରେ ଚଞ୍ଚଳ ବାନର ଏବଂ ସବୁ ପ୍ରକାରେ ନୀଚ ଓ ହୀନ । ସକାଳେ ଯେଉଁ ବ୍ୟକ୍ତି ଆମ ବାନରମାନଙ୍କ ନାମ ଧରିପକାଏ ତାହାକୁ ସେ ଦିନସାକ ଭୋଜନ ମିଳେ ନାହିଁ ॥ ୪ ॥ ଦୋହା :—ହେ ସଖେ । ଶୁଣ—ମୁଁ ଏଡ଼େ ଅଧମ, ତଥାପି ଶ୍ରୀରାମଚନ୍ଦ୍ର ମୋ ପ୍ରତି କୃପା କରିଅଛନ୍ତି ।” ଭଗବାନ୍‌ଙ୍କ ଗୁଣ ସ୍ମରଣ କରି ହନୁମାନ୍‌ଙ୍କ ଦୁଇ ନେତ୍ରରେ ପ୍ରେମାଶ୍ରୁଜଳ ପୂର୍ଣ୍ଣ ହୋଇ ଆସିଲା ॥ ୭ ॥ ଚୌପାଇ :—ଯେଉଁମାନେ ଜାଣିଶୁଣି ମଧ୍ୟ ଏପରି ସ୍ୱାମୀ ଶ୍ରୀ ରଘୁନାଥଙ୍କୁ ଭୁଲି ବିଷୟବାସନା ପଛରେ ଭ୍ରମି ବୁଲନ୍ତି, ସେମାନେ କାହିଁକି ବା ଦୁଃଖ ଭୋଗ ନ କରିବେ ?” ଏହି ରୂପେ ଶ୍ରୀରାମଙ୍କ ଗୁଣ-ଗ୍ରାମ

ଦେଖି ମନହି ମହୁଁ କୀହ୍ନ ପ୍ରନାମା । ବୈଠେହିଁ ବୀତି ଜାତ ନିସି ଜାମା ॥
କୃସ ତନୁ ସୀସ ଜଟା ଏକ ବେନୀ । ଜପତି ହୃଦୟଁ ରଘୁପତି ଗୁନ ଶ୍ରେନୀ ॥୪॥
ନିଜ ପଦ ନୟନ ଦିଏଁ ମନ ରାମ କମଲ ପଦ ଲୀନ ।
ପରମ ଦୁଖୀ ଭା ପବନସୁତ ଦେଖି ଜାନକୀ ଦୀନ ॥୮॥
ତରୁ ପଲ୍ଲବ ମହୁଁ ରହା ଲୁକାଈ । କରଇ ବିଚାର କରୌଁ କା ଭାଈ ॥
ତେହି ଅବସର ରାବନୁ ତହଁ ଆୱା । ସଂଗ ନାରି ବହୁ କିଏଁ ବନାୱା ॥୧॥
ବହୁ ବିଧି ଖଲ ସୀତହି ସମୁଝାୱା । ସାମ ଦାନ ଭୟ ଭେଦ ଦେଖାୱା ॥
କହ ରାବନୁ ସୁନୁ ସୁମୁଖି ସୟାନୀ । ମନ୍ଦୋଦରୀ ଆଦି ସବ ରାନୀ ॥୨॥

---

ବିଲୋକିଣ ମନ ମଧ୍ୟେ କରିଲେ ପ୍ରଣାମ । ବସି ବସି କଟି ଯାଉଥାଏ ନିଶି ଯାମ ॥
କୃଶ କଳେବର, ଶିରେ ଏକଜଟା ବେଣୀ । ଜପନ୍ତି ହୃଦୟେ ରଘୁପତି ଗୁଣ ଶ୍ରେଣୀ ॥୪॥
ନିବିଷ୍ଟ ନୟନ ନିଜ ପଦେ, ମନ ରାମ ଚରଣରେ ଲୀନ ।
ଅତ୍ୟନ୍ତ ଦୁଃଖିତ ହେଲେ ବାୟୁସୁତ ନିରେଖି ଜାନକୀ ଦୀନ ॥୮॥
ତରୁ ପଲ୍ଲବ ମଧ୍ୟରେ ନିଜକୁ ଲୁଚାଇ । ବସି ବିଚାରଇ, ଏବେ କି କରିବି, ଭାଇ ॥
ସେହି ସମୟରେ ତହିଁ ଆସିଲା ରାବଣ । ସଙ୍ଗେ ବହୁ ନାରୀ ଥିଲେ ଭୂଷିତ ଭୂଷଣ ॥୧॥
ବହୁ ପ୍ରକାରେ ସୀତାଙ୍କୁ ଖଳ ବୁଝାଇଲା । ସାମ ଦାନ ଭୟ ତଥା ଭେଦ ଦେଖାଇଲା ॥
କହଇ ରାବଣ, ଶୁଣ ସୁମୁଖି, ନାଗରି । ମନ୍ଦୋଦରୀ ଆଦି ଯେତେ ମହିଷୀ ମୋହରି ॥୨॥

---

କହୁ କହୁ, ସେ ଅନିର୍ବଚନୀୟ (ପରମ) ଶାନ୍ତି ଲାଭ କଲେ ॥ ୧ ॥ ତତ୍ପରେ ବିଭୀଷଣ ଶ୍ରୀମତୀ ଜାନକୀ ଯେଉଁପରି ଭାବରେ ସେଠି ଲଙ୍କାରେ ରହୁଥିଲେ, ସେ ସବୁ କଥା କହିଲେ । ତାହା ଶୁଣି ହନୁମାନ୍ କହିଲେ, "ହେ ଭାଇ ! ଶୁଣ; ମୁଁ ଜାନକୀ ମାତାଙ୍କୁ ଦେଖିବାକୁ ଇଚ୍ଛା କରେ ।" ॥ ୨ ॥ ବିଭୀଷଣ ମାତାଙ୍କ ଦର୍ଶନର ସମସ୍ତ ଉପାୟ କହି ଶୁଣାଇଲେ । ହନୁମାନ୍ ବିଦାୟ ନେଇ ଚାଲିଲେ । ପୁଣି ସେହି ମଶାର ରୂପ ଧରି ଅଶୋକ ବନରେ ଯେଉଁଠି ସୀତା ରହୁଥିଲେ, ସେଠାକୁ ଗଲେ ॥ ୩ ॥ ସୀତାଙ୍କୁ ଦେଖି ହନୁମାନ୍ ତାହାଙ୍କୁ ମନେ ମନେ ପ୍ରଣାମ କଲେ । ବସି ବସି ତାଙ୍କର ରାତ୍ରିର ଚାରି ପ୍ରହର ବିତି ଯାଉଥାଏ । ଶରୀର ଦୁର୍ବଳ ହୋଇଯାଇଥାଏ । ଶିର ଉପରେ ଜଟାର ଗୋଟିଏ ବେଣୀ ସୁଶୋଭିତ । ସେ ହୃଦୟରେ ଶ୍ରୀ ରଘୁନାଥଙ୍କ ଗୁଣାବଳୀ ଜପ କରୁଥାଆନ୍ତି ॥ ୪ ॥ ଦୋହା — ଶ୍ରୀମତୀ ଜାନକୀ ତାଙ୍କ ନେତ୍ରଯୁଗଳକୁ ନିଜ ଚରଣରେ ସନ୍ନିବେଶିତ କରିଥାଆନ୍ତି ଏବଂ ତାଙ୍କ ମନଧ୍ୟାନ ଶ୍ରୀରାମଙ୍କ ଚରଣ-କମଳରେ ଲୀନ ହୋଇ ରହିଥାଏ । ଜାନକୀଙ୍କୁ ଦୀନା ଓ ଦୁଃଖିତା ଦେଖି ପବନ-ସୁତ ହନୁମାନ୍ ମଧ୍ୟ ଅତିଶୟ ଦୁଃଖିତ ହୋଇ-ପଡ଼ିଲେ ॥ ୮ ॥ ଚୌପାଇ.—ହନୁମାନ୍ ବୃକ୍ଷର ପତ୍ର ଅନ୍ତରାଳରେ ଲୁଚିଗଲେ ଏବଂ ବିଚାର କଲେ, "ଆରେ ଭାଇ, କି ଉପାୟରେ ଏହାଙ୍କ ଦୁଃଖ ହରଣ କରିବି ?" ସେହି ସମୟରେ ବହୁତ ସ୍ତ୍ରୀଙ୍କୁ ସଙ୍ଗରେ ନେଇ ଆଡ଼ମ୍ବର ସହକାରେ ରାବଣ ସେଠାକୁ

ତବ ଅନୁଚରୀଁ କରଉଁ ପନ ମୋରା । ଏକ ବାର ବିଲୋକୁ ମମ ଓରା ॥
ତୃନ ଧରି ଓଟ କହତି ବୈଦେହୀ । ସୁମିରି ଅବଧପତି ପରମ ସନେହୀ ॥୩॥
ସୁନୁ ଦସମୁଖ ଖଦ୍ୟୋତ ପ୍ରକାସା । କବହୁଁ କି ନଳିନୀ କରଇ ବିକାସା ॥
ଅସ ମନ ସମୁଝୁ କହତି ଜାନକୀ । ଖଲ ସୁଧି ନହିଁ ରଘୁବୀର ବାନ କୀ ॥୪॥
ସଠ ସୂନେଁ ହରି ଆନେହି ମୋହୀ । ଅଧମ ନିଲଜ୍ଜ ଲାଜ ନହିଁ ତୋହୀ ॥୫॥

ଆପୁହି ସୁନି ଖଦ୍ୟୋତ ସମ ରାମହି ଭାନୁ ସମାନ ।
ପରୁଷ ବଚନ ସୁନି କାଢ଼ି ଅସି ବୋଲା ଅତି ଖସିଆନ ॥୯॥

ସୀତା ତେଁ ମମ କୃତ ଅପମାନା । କଟିହଉଁ ତବ ସିର କଠିନ କୃପାନା ॥
ନାହିଁ ତ ସପଦି ମାନୁ ମମ ବାନୀ । ସୁମୁଖି ହୋତି ନ ତ ଜୀବନ ହାନୀ ॥୧॥

---

ତୋ ଅନୁଚରୀ କରିବି ମୋର ଏହି ପଣ । ମୋ ଆଡ଼କୁ ଏକବାର କର ନିରୀକ୍ଷଣ ॥
ତୃଣ କରି ଆବରଣ କହନ୍ତି ବୈଦେହୀ । ସ୍ମରଣ ଅଯୋଧ୍ୟାପତି ପ୍ରିୟତମ ସ୍ନେହୀ ॥୩॥
ଶୁଣ ଦୁଷ୍ଟ ଦଶମୁଖ, ଖଦ୍ୟୋତ ପ୍ରକାଶ । କେବେହେଁ କି ନଳିନୀକୁ କରଇ ବିକାଶ ॥
ଏହା ମନ ମଧ୍ୟେ ବୁଝ, କହନ୍ତି ଜାନକୀ । ଖଳ ! ରଘୁବୀର ବାଣ ନାହିଁ ସ୍ମରଣ କି ॥୪॥
ହରଣ କରି ଆଣିଲୁ, ଶଠ, ଶୂନ୍ୟ ମୋତେ । ଅଧମ ନିର୍ଲଜ୍ଜ ଲାଜ ନ ଲାଗଇ ତୋତେ ॥୫॥

ଶୁଣି ଆପଣାକୁ ଖଦ୍ୟୋତ ସଦୃଶ ରାମଙ୍କୁ ଭାନୁ ସମାନ ।
ପରୁଷ ବଚନ ଶୁଣି ଅତି ରୋଷେ କାଢ଼ିଲା କାଢି କୃପାଣ ॥୯॥

ସୀତା, ତୁହି କଲୁ ମୋର ଅପମାନ ଭାରୀ । କାଟିବି ତୋ ଶିର ଘୋର କୃପାଣ ପ୍ରହାରି ॥
ନାହିଁ ତ ସତ୍ୱର ଏବେ ମାନ ମୋର ବାଣୀ । ଅନ୍ୟଥା ସୁମୁଖି, ହେବୁ ଜୀବନରେ ହାନି ॥୧॥

---

ଆସିଲା ॥ ୧ ॥ ସେହି ଦୁଷ୍ଟ ସୀତାଙ୍କୁ ବହୁତ ପ୍ରକାରେ ବୁଝାଇଲା; ସାମ, ଦାନ, ଭୟ ଓ ଭେଦ ନୀତି ଦେଖାଇଲା । ରାବଣ କହିଲା, "ହେ ସୁମୁଖି ! ହେ ଚତୁର ! ଶୁଣ, ମନ୍ଦୋଦରୀ ଆଦି ସମସ୍ତ ରାଣୀଙ୍କୁ ମୁଁ ତୁମର ଦାସୀ କରିଦେବି । ଏହା ମୋର ପଣ । ତୁମେ ଥରେ ମାତ୍ର ମୋ ଆଡ଼କୁ ଚାହିଁ ତ ଦିଅ !" ଆପଣାର ପରମ ସ୍ନେହୀ ଅଯୋଧ୍ୟା-ପତି ଶ୍ରୀରାମଚନ୍ଦ୍ରଙ୍କୁ ସ୍ମରଣ କରି ଜାନକୀ ତୃଣ ଅନ୍ତରାଳରେ କହିବାକୁ ଲାଗିଲେ, "ହେ ଦଶମୁଖ ! ଶୁଣ, ଖଦ୍ୟୋତର ପ୍ରକାଶରେ କେବେ କମଳିନୀ ବିକଶିତ ହୋଇପାରେ କି ? ତୁ ଆପଣାକୁ ସେହିପରି ମନେ କର । ରେ ଦୁଷ୍ଟ ! ତୋତେ ଶ୍ରୀ ରଘୁବୀରଙ୍କ ବାଣର ଖବର ନାହିଁ କି ? ରେ ଶଠ ! ତୁ ମୋତେ ଶୂନ୍ୟ ଆକାଶରେ ହରଣ କରି ନେଇ ଆସିଛୁ । ରେ ଅଧମ ! ତୋତେ ଲଜ୍ଜା ମାଡୁ ନାହିଁ ? ॥ ୨-୫ ॥ ଦୋହା :— ରାବଣ ନିଜେ ଖଦ୍ୟୋତ ସମାନ ଏବଂ ରାମଚନ୍ଦ୍ର ସୂର୍ଯ୍ୟ ସମାନ ବୋଲି ଶୁଣି ଏବଂ ସୀତାଙ୍କର କଠୋର ବଚନ ଶୁଣି, ଖଣ୍ଡା ବାହାର କରି ଅତ୍ୟନ୍ତ କ୍ରୋଧରେ କହିଲା— ॥ ୯ ॥ ଚୌପାଈ :—ସୀତା ! ତୁ ମୋତେ ଅପମାନିତ କରିଅଛୁ । ମୁଁ ଏହି କଠୋର କୃପାଣରେ ତୋର ଶିର କାଟି ପକାଇବି । ନାହିଁ ତ ଏବେ ବି ଶୀଘ୍ର

ସ୍ୟାମ ସରୋଜ ଦାମ ସମ ସୁନ୍ଦର । ପ୍ରଭୁ ଭୁଜ କରି କର ସମ ଦସକନ୍ଧର ॥
ସୋ ଭୁଜ କଂଠ କି ତବ ଅସି ଘୋରା । ସୁନୁ ସଠ ଅସ ପ୍ରୱାନ ପନ ମୋରା ॥୨॥
ଚନ୍ଦ୍ରହାସ ହରୁ ମମ ପରିତାପଂ । ରଘୁପତି ବିରହ ଅନଲ ସଂଜାତଂ ॥
ସୀତଲ ନିସିତ ବହସି ବର ଧାରା । କହ ସୀତା ହରୁ ମମ ଦୁଖ ଭାରା ॥୩॥
ସୁନତ ବଚନ ପୁନି ମାରନ ଧାୱା । ମୟତନୟାଁ କହି ନୀତି ବୁଝାୱା ॥
କହେସି ସକଲ ନିସିଚରିନ୍ହ ବୋଲାଈ । ସୀତହି ବହୁବିଧି ତ୍ରାସହୁ ଜାଈ ॥୪॥
ମାସ ଦିବସ ମହୁଁ କହା ନ ମାନା । ତୌ ମୈଁ ମାରବି କାଢ଼ି କୃପାନା ॥୫॥
ଭବନ ଗୟଉ ଦସକଂଧର ଇହାଁ ପିସାଚିନି ବୃନ୍ଦ ।
ସୀତହି ତ୍ରାସ ଦେଖାୱହିଁ ଧରହିଁ ରୂପ ବହୁ ମନ୍ଦ ॥୧୦॥

---

ଶ୍ୟାମ ଅରବିନ୍ଦ ଦାମ ସଦୃଶ ଶୋଭନ । ପ୍ରଭୁ ଭୁଜ କରିକର ସମ, ଦଶାନନ ॥
ସେ ଭୁଜ ଏ କଣ୍ଠେ କିମ୍ବା ଘୋରଖଡ୍‌ଗ ତୋର । ଶୁଣ ଶଠ, ସତ୍ୟ ଅଟେ ଏହି ପଣ ମୋର ॥୨॥
ଚନ୍ଦ୍ରହାସ, ହର ମୋର ସନ୍ତାପ ସରବ । ରଘୁପତିଙ୍କ ବିରହ – ଅନଳ – ସମ୍ଭବ ॥
ଶୀତଳ ତୀକ୍ଷ୍ଣ ଧାର ତୁ କରିଛୁ ଧାରଣ । କହନ୍ତି ଜାନକୀ, କର ମୋ ଦୁଃଖ ହରଣ ॥୩॥
ଶୁଣନ୍ତେ ପୁଣି ମାରିବା ନିମନ୍ତେ ଧାଇଁଲା । ମୟ–ତନୟା କହିଣ ନୀତି ବୁଝାଇଲା ॥
ବୋଲାଇ ଅନେକ ନିଶାଚରୀଙ୍କୁ ଡକାଇ । ସୀତାଙ୍କୁ ତ୍ରାସ ଦେଖାଅ ତୁମ୍ଭେମାନେ ଯାଇ ॥୪॥
ମାସକ ମଧ୍ୟେ କହିବା ନ ମାନିବ ଯେବେ । ନିଜ କୃପାଣେ ତା ଶିର କାଟିବି ମୁଁ ତେବେ ॥୫॥
ଫେରିଲା ଭବନ ତହୁଁ ଦଶାନନ, ଏଣେ ନିଶାଚରୀ–ବୃନ୍ଦ ।
ଜାନକୀଙ୍କୁ ତ୍ରାସ ଦେଖାନ୍ତି ବିଶେଷ ଧରି ରୂପ ବହୁ ମନ୍ଦ ॥୧୦॥

---

ମୋ କଥା ମାନି ନେ । ହେ ସୁମୁଖି ! ଅନ୍ୟଥା ତୋତେ ଜୀବନ ହରାଇବାକୁ ପଡ଼ିବ ॥୧॥ ସୀତା କହିଲେ, "ହେ ଦଶଗ୍ରୀବ ! ପ୍ରଭୁଙ୍କ ବାହୁ ନୀଳକମଳ ମାଳା ସମାନ ସୁନ୍ଦର ଏବଂ ହସ୍ତୀ ଶୁଣ୍ଢ ସଦୃଶ ପୁଷ୍ଟ ଓ ବିଶାଳ । ସେହି ବାହୁ ହିଁ ମୋ କଣ୍ଠରେ ପଡ଼ିବ କିମ୍ବା ତୋର ଭୟଙ୍କର ଖଣ୍ଡା ପଡ଼ିବ ! ରେ ଶଠ ' ଶୁଣ, ଏହା ମୋର ପ୍ରକୃତ ପଣ ॥ ୨ ॥ ସୀତା କହନ୍ତି, "ରେ ଚନ୍ଦ୍ରହାସ (ଖଣ୍ଡା) ! ଶ୍ରୀ ରଘୁନାଥଙ୍କ ବିରହାଗ୍ନିରୁ ଜାତ ମୋର ଅତ୍ୟନ୍ତ ଜ୍ୱାଳାକୁ ତୁ ହରଣ କରି ନେ । ରେ ଚନ୍ଦ୍ରହାସ ' ତୁ ଶୀତଳ, ତୀକ୍ଷ୍ଣ ଓ ଶ୍ରେଷ୍ଠ ଧାର ବହନ କରିଅଛୁ । ଅର୍ଥାତ୍, ତୋର ଧାର ଶୀତଳ ଓ ତୀକ୍ଷ୍ଣ । ତୁ ମୋର ଦୁଃଖ–ଭାରକୁ ହରଣ କରିନେ ।" ॥୩॥ ସୀତାଙ୍କର ଏ ବଚନ ଶୁଣିବା ମାତ୍ରେ ରାବଣ (ତାହାଙ୍କୁ) ମାରିବାକୁ ଦଉଡ଼ିଲା । ସେତେବେଳେ ମୟ ଦାନବର କନ୍ୟା ମନ୍ଦୋଦରୀ ନୀତିବାଣୀ କହି ତାହାଙ୍କୁ ବୁଝାଇଲା । ତଦନନ୍ତର ରାବଣ ସମସ୍ତ ରାକ୍ଷସୀଙ୍କୁ ଡାକି କହିଲା, "ତୁମେମାନେ ଯାଇ ସୀତାଙ୍କୁ ବହୁତ ପ୍ରକାରେ ଭୟ ଦେଖାଅ ॥ ୪ ॥ ଯଦି ମାସକ ମଧ୍ୟରେ ସେ କଥା ନ ମାନେ, ତେବେ ମୁଁ ଏହି ଖଣ୍ଡା ବାହାର କରି ତାହାଙ୍କୁ ମାରି ପକାଇବି ।" ॥ ୫ ॥
ଦୋହା :—ଏହିପରି କହି ରାବଣ ଘରକୁ ଚାଲିଗଲା । ଏଣେ ରାକ୍ଷସୀଗଣ ଅତି କୁରୂପ

ତ୍ରିଜଟା ନାମ ରାଚ୍ଛସୀ ଏକା । ରାମ ଚରନ ରତି ନିପୁନ ବିବେକା ॥
ସବନ୍ହୌ ବୋଲି ସୁନାଏସି ସପନା । ସୀତହି ସେଇ କରହୁ ହିତ ଅପନା ॥୧॥
ସପନେଁ ବାନର ଲଙ୍କା ଜାରୀ । ଜାତୁଧାନ ସେନା ସବ ମାରୀ ॥
ଖର ଆରୂଢ଼ ନଗନ ଦସସୀସା । ମୁଣ୍ଡିତ ସିର ଖଣ୍ଡିତ ଭୁଜ ବୀସା ॥୨॥
ଏହି ବିଧି ସୋ ଦଚ୍ଛିନ ଦିସି ଜାଈ । ଲଙ୍କା ମନହୁଁ ବିଭୀଷନ ପାଈ ॥
ନଗର ଫିରୀ ରଘୁବୀର ଦୋହାଈ । ତବ ପ୍ରଭୁ ସୀତା ବୋଲି ପଠାଈ ॥୩॥
ଯହ ସପନା ମୈଁ କହଉଁ ପୁକାରୀ । ହୋଇହି ସତ୍ୟ ଗଏଁ ଦିନ ଚାରୀ ॥
ତାସୁ ବଚନ ସୁନି ତେ ସବ ଡରୀଁ । ଜନକସୁତା କେ ଚରନନ୍ହି ପରୀଁ ॥୪॥

ଜହଁ ତହଁ ଗଈଁ ସକଲ ତବ ସୀତା କର ମନ ସୋଚ ।
ମାସ ଦିବସ ବୀତେଁ ମୋହି ମାରିହି ନିସିଚର ପୋଚ ॥୧୧॥

---

ତ୍ରିଜଟା ନାମରେ ଥିଲା ନିଶାଚରୀ ଏକ । ରାମଙ୍କ ଚରଣେ ପ୍ରୀତି ନିପୁଣ ବିବେକ ॥
ଶୁଣାଏ ସେ ସ୍ୱପ୍ନ ସମସ୍ତଙ୍କୁ ଡକାଇଣ । କରି ନିଜ ନିଜ ହିତ ସୀତାଙ୍କୁ ସେବିଣ ॥୧॥
ସ୍ୱପ୍ନରେ ବାନର ଏକ ଲଙ୍କାକୁ ଜାଳିଲା । ସମ୍ପ୍ରଦାୟ ଯାତୁଧାନ ସେନାଙ୍କୁ ମାରିଲା ॥
ଖର ଉପରେ ଆରୂଢ ଲଙ୍କେଶ ଉଲଗ୍ନ । ମୁଣ୍ଡିତ ଶିର ଆବର ଭୁଜ ବିଂଶ ଭଗ୍ନ ॥୨॥
ଏମନ୍ତ ବେଶରେ ସେହି ଦକ୍ଷିଣକୁ ଗଲା । ମନେ ହୁଏ, ବିଭୀଷଣ ଲଙ୍କା ପ୍ରାପ୍ତ କଲା ॥
ନଗରେ ରାମଙ୍କ ଜୟ ଘୋଷଣା କରାଇ । ତହୁଁ ପ୍ରଭୁ ଜାନକୀଙ୍କୁ ଆଣିଲେ ଡକାଇ ॥୩॥
ଏପରି ସ୍ୱପନ ମୁହିଁ କହୁଛି ବିଚାରି । ହୋଇବ ସତ୍ୟ ଅବଶ୍ୟ ଗଲେ ଦିନ ଚାରି ॥
ତାହାର ବଚନ ଶୁଣି ସମସ୍ତେ ଡରିଲେ । ଜନକ ତନୟାଙ୍କର ଚରଣେ ପଡ଼ିଲେ ॥୪॥

ସର୍ବେ ଯେଣେ ତେଣେ ଚାଲିଗଲେ, ଏଣେ ସୀତା ହୁଅନ୍ତି ଚିନ୍ତିତ ।
ପୂର୍ଣ୍ଣ ଏକ ମାସ ହୋଇଲେ ଅବଶ୍ୟ ବଧିବ ଦୁଷ୍ଟ ଦୈତ ॥୧୧॥

---

ଧାରଣ କରି ସୀତାଙ୍କୁ ଭୟ ଦେଖାଇବାକୁ ଲାଗିଲେ ॥ ୧୦ ॥ ଚୌପାଈ :— ସେମାନଙ୍କ ମଧ୍ୟରେ ତ୍ରିଜଟା ନାମକ ଜଣେ ରାକ୍ଷସୀ ଥିଲା । ଶ୍ରୀରାମଚନ୍ଦ୍ରଙ୍କ ଚରଣରେ ତାହାର ଅଗାଧ ପ୍ରୀତି ଥିଲା ଏବଂ ସେ ବିବେକଜ୍ଞାନରେ ନିପୁଣା ଥିଲା । ସେ ସମସ୍ତଙ୍କୁ ଡାକି ସେମାନଙ୍କୁ ଆପଣାର ସ୍ୱପ୍ନ ବିଷୟ ଶୁଣାଇଲା ଏବଂ କହିଲା, "ସୀତାଙ୍କୁ ସେବା କରି ନିଜ ନିଜର କଲ୍ୟାଣ ସାଧନ କର ॥ ୧ ॥ ସ୍ୱପ୍ନରେ ମୁଁ ଦେଖିଲି, ଗୋଟିଏ ବାନର ଲଙ୍କା ପୋଡି ଦେଇଛି । ସମସ୍ତ ରାକ୍ଷସ ସେନାଙ୍କୁ ସେ ବଧ କରି ଦେଇଅଛି । ରାବଣ ଉଲଗ୍ନ ହୋଇ ଗଧ ଉପରେ ଆରୂଢ଼ ହୋଇଅଛି । ତାହାର ମୁଣ୍ଡ ଲଣ୍ଡା ହୋଇଅଛି ଏବଂ ବିଂଶ ବାହୁ ଖଣ୍ଡ ଖଣ୍ଡ ହୋଇ କଟି ଯାଇଅଛି ॥ ୨॥ ଏହି ରୂପେ ସେ ଦକ୍ଷିଣ (ଯମପୁରୀ) ଦିଗକୁ ଯାଉଅଛି ଏବଂ ଧରି ନିଅ, ବିଭୀଷଣ ଲଙ୍କା ପାଇଅଛି । ନଗରରେ ଶ୍ରୀରାମଙ୍କ ଜୟନାଦ ମୁଖରିତ ହେଉଅଛି । ତଦନନ୍ତର ପ୍ରଭୁ ସୀତାଙ୍କୁ ଡକାଇ ପଠାଇଲେ ॥ ୩ ॥ ମୁଁ ନିଶ୍ଚୟ କରି କହୁଛି ଯେ, "ଏହି ସ୍ୱପ୍ନ ଚାରିଦିନ ପରେ ସତ୍ୟ ହୋଇ ପ୍ରମାଣିତ ହେବ ।" ତାହାର

ତ୍ରିଜଟା ସନ ବୋଲୀଁ କର ଜୋରୀ । ମାତୁ ବିପତି ସଂଗିନି ତୈଁ ମୋରୀ ॥
ତଜୌଁ ଦେହ କରୁ ବେଗି ଉପାଈ । ଦୁସହ ବିରହୁ ଅବ ନହିଁ ସହି ଜାଈ ॥୧॥
ଆନି କାଠ ରଚୁ ଚିତା ବନାଈ । ମାତୁ ଅନଲ ପୁନି ଦେହି ଲଗାଈ ॥
ସତ୍ୟ କରହି ମମ ପ୍ରୀତି ସୟାନୀ । ସୁନୈ କୋ ଶ୍ରବନ ସୂଲ ସମ ବାନୀ ॥୨॥
ସୁନତ ବଚନ ପଦ ଗହି ସମୁଝାଏସି । ପ୍ରଭୁ ପ୍ରତାପ ବଲ ସୁଜସୁ ସୁନାଏସି ॥
ନିସି ନ ଅନଲ ମିଲ ସୁନୁ ସୁକୁମାରୀ । ଅସ କହି ସୋ ନିଜ ଭବନ ସିଧାରୀ ॥୩॥
କହ ସୀତା ବିଧି ଭା ପ୍ରତିକୂଲା । ମିଲିହି ନ ପାବକ ମିଟିହି ନ ସୂଲା ॥
ଦେଖିଅତ ପ୍ରଗଟ ଗଗନ ଅଂଗାରା । ଅବନି ନ ଆବତ ଏକଉ ତାରା ॥୪॥

---

ତ୍ରିଜଟା ଆଗେ ବୋଲନ୍ତି ଯୋଡି ହସ୍ତକର । ବିପତ୍ତିକାଳେ ତୁ ମାତ, ସଙ୍ଗିନୀ ମୋହର ॥
ଚଞ୍ଚଳ ଉପାୟ କର, ଶରୀର ତେଜିବି । ଦୁଃସହ ବିରହ ଆଉ ସହି ନ ପାରିବି ॥୧॥
ଆଣି କାଷ୍ଠ ଯତ୍ନେ କର ଚିତା ବିରଚନ । ତହିଁରେ ଅନଳ ପୁଣି ଲଗାଅ ବହନ ॥
ସତ୍ୟ କରାଅ ଚତୁରି, ପ୍ରୀତିକୁ ମୋହରି । ଶୁଣିବ ଶ୍ରବଣେ କିଏ ବାଣୀ ଶୂଳ ପରି ॥୨॥
ଶୁଣନ୍ତେ ବଚନ ପଦ ଧରି ବୁଝାଇଲା । ପ୍ରଭୁଙ୍କ ପ୍ରତାପ ବଳ ସୁଯଶ ଭଣିଲା ॥
ନିଶିରେ ମିଳିବ ନାହିଁ ଅନଳ, ବୈଦେହୀ । ଏହା କହି ଗଲା ନିଜ ଭବନକୁ ସେହି ॥୩॥
କହନ୍ତି ସୀତା, ବିଧାତା ହେଲେ ପ୍ରତିକୂଳ । ନ ମିଳେ ପାବକ, ନଷ୍ଟ ନ ହୁଅଇ ଶୂଳ ॥
ପ୍ରତ୍ୟକ୍ଷ ଗଗନ ମଧ୍ୟେ ଅନଳ ଦିଶଇ । ଅବନୀକୁ ଏକ ମଧ୍ୟ ତାରା ନ ଆସଇ ॥୪॥

---

ବଚନ ଶୁଣି ସେହି ସମସ୍ତ ରାକ୍ଷସୀ ଡରିଗଲେ ଏବଂ ଜାନକୀଙ୍କ ଚରଣ ତଳେ ପଡିଗଲେ ॥ ୯ ॥ ଦୋହା :—ଅନନ୍ତର ସେମାନେ ସମସ୍ତେ ଯେ ଯୁଆଡେ ଚାଲିଗଲେ । ସୀତା ମନରେ ଭାବିବାକୁ ଲାଗିଲେ, "ଗୋଟିଏ ମାସ ଅତିବାହିତ ହେବା ପରେ ନୀଚ ରାକ୍ଷସ ରାବଣ ଆସି ମୋତେ ମାରିବ ।" ॥ ୧୧ ॥ ଚୌପାଇ :—ସୀତା ହାତ ଯୋଡି ତ୍ରିଜଟାକୁ କହିଲେ, "ହେ ମାତା ! ତୁ ମୋର ବିପତ୍ତିର ସଙ୍ଗିନୀ । ଶୀଘ୍ର ଏପରି କୌଣସି ଉପାୟ କର ଯେପରି ମୁଁ ଶରୀର ତ୍ୟାଗ କରି ପାରିବି । ବିରହ ଅସହ୍ୟ ହୋଇ ଯାଉଛି । ଏବେ ଏହା ଆଉ ସହ୍ୟ ହେଉନାହିଁ ॥ ୧ ॥ କାଠ ଆଣି ଚିତା ସଜାଡି ଦେ । ହେ ମାତା ! ପୁଣି ତହିଁରେ ନିଆଁ ଲଗାଇ ଦେ । ହେ ଚତୁରି ! ତୁ ମୋ ପ୍ରୀତିକୁ ସତ୍ୟ ବୋଲି ପ୍ରମାଣିତ କରି ଦେ । ରାବଣର ଶୂଳ ପରି ଦୁଃଖଦାୟକ ବାଣୀ କାନରେ ଏତେ କିଏ ଶୁଣିବ ? ॥୨॥ ସୀତାଙ୍କର ବଚନ ଶୁଣି ତ୍ରିଜଟା ଚରଣ ଧରି ତାଙ୍କୁ ବୁଝାଇଲା ଏବଂ ପ୍ରଭୁଙ୍କ ପ୍ରତାପ, ବଳ ଓ ସୁଯଶ ଶୁଣାଇଲା । ସେ କହିଲା, "ହେ ସୁକୁମାରି ! ଶୁଣ, ରାତି ସମୟରେ ଅଗ୍ନି ମିଳିବ ନାହିଁ ।" ଏହିପରି କହି ସେ ଆପଣା ଘରକୁ ଚାଲିଗଲା ॥୩॥ ସୀତା ମନେ ମନେ କହିବାକୁ ଲାଗିଲେ, "କଣ କରିବି ? ବିଧାତା ତ ବିପରୀତ ହୋଇଗଲା । ଅଗ୍ନି ମିଳିବ ନାହିଁ କିମ୍ବା ପୀଡା ମେଣ୍ଟିବ ନାହିଁ । ଆକାଶରେ (ତାରାମାନେ) ନିଆଁରଡପରି ଝଟକୁଥିବାର ଦେଖାଯାଉଛନ୍ତି । କିନ୍ତୁ ପୃଥିବୀ ଉପରକୁ ଗୋଟିଏ

ହରିଜନ ଜାନି ପ୍ରୀତି ଅତି ଗାଢ଼ୀ । ସଜଲ ନୟନ ପୁଲକାବଲି ବାଢ଼ୀ ॥
ବୂଡ଼ତ ବିରହ ଜଲଧି ହନୁମାନା । ଭୟହୁ ତାତ ମୋ କହୁଁ ଜଲଜାନା ॥୧॥
ଅବ କହୁ କୁସଲ ଜାଉଁ ବଲିହାରୀ । ଅନୁଜ ସହିତ ସୁଖ ଭବନ ଖରାରୀ ॥
କୋମଲଚିତ କୃପାଲ ରଘୁରାଈ । କପି କେହି ହେତୁ ଧରୀ ନିଠୁରାଈ ॥୨॥
ସହଜ ବାନି ସେବକ ସୁଖଦାୟକ । କବହୁଁକ ସୁରତି କରତ ରଘୁନାୟକ ॥
କବହୁଁ ନୟନ ମମ ସୀତଲ ତାତା । ହୋଇହହିଁ ନିରଖି ସ୍ୟାମ ମୃଦୁ ଗାତା ॥୩॥
ବଚନୁ ନ ଆୱ ନୟନ ଭରେ ବାରୀ । ଅହହ ନାଥ ହୌଁ ନିପଟ ବିସାରୀ ॥
ଦେଖି ପରମ ବିରହାକୁଲ ସୀତା । ବୋଲା କପି ମୃଦୁ ବଚନ ବିନୀତା ॥୪॥

---

ହରିଜନ ଜାଣି ପ୍ରୀତି ବଢ଼ିଲା ଅମିତ । ସଜଳ ନୟନ ରୋମାବଳୀ ପୁଲକିତ ॥
ବୁଡ଼ନ୍ତେ ବିରହ-ସିନ୍ଧୁ ମଧ୍ୟେ ହନୁମାନ । ମୋ ପାଇଁ ହୋଇଲୁ ସୁତ ! ତୁହି ଜଳଯାନ ॥୧॥
ପୁଚ୍ଛୁଥାଏ ବତ୍ସ ! ଏବେ କୁଶଳ ଶୁଣାଅ । ଅନୁଜ ସହିତ ସୁଖ-ସିନ୍ଧୁ ରଘୁରାୟ ॥
କୋମଳ ଚିତ୍ତ କୃପାଳୁ ରଘୁକୁଳ କେତୁ । ନିଷ୍ଠୁର ପଣ ଧରିଲେ କପି, କେଉଁ ହେତୁ ॥୨॥
ସତ୍ୟ-ସଂକଳ୍ପ ସେବକ ସୁଖ-ପ୍ରଦାୟକ । କେବେ କି ମନେ ପକାନ୍ତି ଶ୍ରୀ ରଘୁନାୟକ ॥
କେବେ ବତ୍ସ ! ଏ ନୟନ ଶୀତଳ ମୋହର । ହୋଇବ, ନିରେଖି ଶ୍ୟାମ ମୃଦୁ କଳେବର ॥୩॥
ନ ସ୍ଫୁରେ ବାଣୀ, ନୟନେ ପୂରିଲା ସଲିଳ । ଆହା ହା ନାଥ, ନିପଟ ମୋତେ ପାଶୋରିଲ ॥
ଦେଖି ସୀତାଙ୍କୁ ବିରହାକୁଳ ଅତିଶୟ । ବୋଲଇ ମାରୁତି ମୃଦୁ ବଚନ ବିନୟ ॥୪॥

---

ଏହି ମୁଦ୍ରି ମୁହିଁ ଆଣିଛି । ଶ୍ରୀରାମ ମୋ ହାତରେ ଆପଣଙ୍କ ବିଶ୍ୱାସ ନିମନ୍ତେ ଏହି ସନ୍ତକ ଦେଇଅଛନ୍ତି ।" ॥୫॥ ସୀତା ପଚାରିଲେ, "ନର ଓ ବାନରଙ୍କ ସଙ୍ଗ କିପରି ହେଲା, କୁହ ।" ହନୁମାନ୍ ଯେଉଁପରି ଭାବରେ ଉଭୟ ସଙ୍ଗ ବା ମିଳନ ହୋଇଥିଲା, ସେ ସବୁ କଥା କହିଲେ ॥୬॥ ଦୋହା :—ହନୁମାନଙ୍କ ପ୍ରେମଭରା ବଚନ ଶୁଣି, ସୀତାଙ୍କ ମନରେ ବିଶ୍ୱାସ ଜାତ ହେଲା । ସେ ଜାଣିନେଲେ, ଏହି ବାନର ମନ, ବଚନ ଓ କର୍ମରେ କୃପାସାଗର ଶ୍ରୀ ରଘୁନାଥଙ୍କ ଦାସ ॥ ୧୩ ॥ ଚୌପାଇ :—ଭଗବାନଙ୍କ ସେବକ ବୋଲି ଜାଣିବାରୁ ତାଙ୍କ ପ୍ରତି ସୀତାଙ୍କର ମନରେ ପ୍ରଗାଢ଼ ପ୍ରେମ ଜାତ ହେଲା । ନେତ୍ରରେ ପ୍ରେମାଶ୍ରୁ-ଜଳ ପୂର୍ଣ୍ଣ ହୋଇ ଆସିଲା ଏବଂ ଶରୀର ଅତିଶୟ ପୁଲକିତ ହୋଇଗଲା । ସୀତା କହିଲେ, "ହେ ବତ୍ସ ହନୁମାନ୍ ! ବିରହ-ସାଗରରେ ମୁଁ ବୁଡ଼ି ଯାଉଥିଲା ବେଳେ ତୁମେ ଜାହାଜ ହେଲ ॥ ୧ ॥ ମୁଁ ନିଛୁଟି ଯାଉଛି, ବର୍ତ୍ତମାନ ସାନ ଭାଇ ଲକ୍ଷ୍ମଣ ସମେତ ଖରାରି ସୁଖଧାମ ପ୍ରଭୁଙ୍କର କୁଶଳ ଓ ମଙ୍ଗଳ ବାର୍ତ୍ତା ମୋତେ କୁହ । ଶ୍ରୀ ଶ୍ରୀ ରଘୁନାଥ ତ କୋମଳ-ହୃଦୟ ଏବଂ କୃପାଳୁ, ତେବେ ହେ ହନୁମାନ୍ ! ସେ କେଉଁ କାରଣରୁ ଏପରି ନିଷ୍ଠୁରତା ପୋଷଣ କଲେ ? ॥ ୨ ॥ ସେବକଙ୍କୁ ସୁଖ ଦାନ କରିବା ତାଙ୍କର ସ୍ୱାଭାବିକ ମହତ୍ତ୍ୱ । ସେ ରଘୁନାଥ କଣ କେବେ ମୋତେ ମନେ ପକାନ୍ତି ? ହେ ବତ୍ସ ! କେବେ ତାଙ୍କର ଶ୍ୟାମଳ କୋମଳ ଅଙ୍ଗକୁ ଦର୍ଶନ କରି ମୋ ନେତ୍ର ଶୀତଳ ହେବ କି ?" ॥ ୩ ॥

ମାତୁ କୁସଲ ପ୍ରଭୁ ଅନୁଜ ସମେତା । ତବ ଦୁଖ ଦୁଖୀ ସୁକୃପା ନିକେତା ॥
ଜନି ଜନନୀ ମାନହୁ ଜିୟଁ ଊନା । ତୁମ୍ହ ତେଁ ପ୍ରେମୁ ରାମ କେଁ ଦୂନା ॥୫॥
ରଘୁପତି କର ସଂଦେସୁ ଅବ ସୁନୁ ଜନନୀ ଧରି ଧୀର ।
ଅସ କହି କପି ଗଦଗଦ ଭୟଉ ଭରେ ବିଲୋଚନ ନୀର ॥୧୪॥
କହେଉ ରାମ ବିୟୋଗ ତବ ସୀତା । ମୋ କହୁଁ ସକଲ ଭଏ ବିପରୀତା ॥
ନବ ତରୁ କିସଲୟ ମନହୁଁ କୃସାନୂ । କାଲନିସା ସମ ନିସି ସସି ଭାନୂ ॥୧॥
କୁବଲୟ ବିପିନ କୁଂତ ବନ ସରିସା । ବାରିଦ ତପତ ତେଲ ଜନୁ ବରିସା ॥
ଜେ ହିତ ରହେ କରତ ତେଇ ପୀରା । ଉରଗ ସ୍ୱାସ ସମ ତ୍ରିବିଧ ସମୀରା ॥୨॥

---

ମାତ, ସକୁଶଳ ପ୍ରଭୁ ଅନୁଜ ସହିତ । ତୁମ୍ଭ ଦୁଃଖେ ଦୁଃଖୀ ସେହି କରୁଣା-ସରିତ ॥
ଜନନୀ, ମନ ମଧ୍ୟରେ ମଣ ନାହିଁ ଊଣା । ତୁମ୍ଭ ପ୍ରତି ପ୍ରେମ ରଘୁନାଥଙ୍କ ଦ୍ୱିଗୁଣା ॥୫॥
ରଘୁପତିଙ୍କର ସଂଦେଶ ଜନନୀ, ଶୁଣ ଏବେ ହୋଇ ସ୍ଥିର ।
ଏହା କହି କପି ହୋଇଲା ଗଦ୍‌ଗଦ, ପୂର୍ଣ୍ଣ ହେଲା ନେତ୍ରେ ନୀର ॥୧୪॥
ରାମ କହିଛନ୍ତି ସୀତେ ! ତୁମ୍ଭ ବିୟୋଗରେ । ବିପରୀତ ହୋଇଛନ୍ତି ସବେଁ ମୋ ଉପରେ ॥
ନବ କିଶଳୟ ମନେ ହୁଅଇ କୃଶାନୁ । କାଳନିଶା ସମ ନିଶି, ଶଶୀ ଯେସନ୍ତେ ଭାନୁ ॥୧॥
ବରଷ୍ଟି ବିପିନ ପ୍ରାୟେ କମଳ କାନନ । ବାରିଦ ତପତ ତୈଳ ବରଷେ ଯେସନ ॥
ହିତ କରୁଥିଲେ ଯେହୁ, ଦିଅନ୍ତି ସେ ବ୍ୟଥା । ତ୍ରିବିଧ ସମୀର ଲାଗେ ସର୍ପଶ୍ୱାସ ଯଥା ॥୨॥

---

ତାଙ୍କ ମୁହଁରୁ ଆଉ ବଚନ ବାହାରିଲା ନାହିଁ । ନେତ୍ରରେ ବିରହ-ଜନିତ ଅଶ୍ରୁ-ଜଳ ଭରିଆସିଲା ଏବଂ ଅତ୍ୟନ୍ତ ଦୁଃଖର ସହିତ ସେ କହିଲେ, "ହା ନାଥ ! ଆପଣ କ'ଣ ଏକାବେଳକେ ମୋତେ ଭୁଲିଗଲେ ?" ସୀତାଙ୍କୁ ବିରହ ହେତୁ ପରମ ବ୍ୟାକୁଳ ଦେଖି ହନୁମାନ୍ କୋମଳ ଏବଂ ବିନମ୍ର ବଚନ ବୋଇଲେ— ॥ ୪ ॥ ହେ ମାତ ! "ସୁନ୍ଦରସ୍ୱାଧାମ ପ୍ରଭୁ ଲକ୍ଷ୍ମଣଙ୍କ ସହିତ କୁଶଳରେ ଅଛନ୍ତି । କିନ୍ତୁ ସେ ଆପଣଙ୍କ ଦୁଃଖରେ ଦୁଃଖିତ । ହେ ମାତ ! ମନରେ ଗ୍ଲାନି କରନ୍ତୁ ନାହିଁ । ଶ୍ରୀରାମଙ୍କ ହୃଦୟରେ ଆପଣଙ୍କ ପ୍ରତି ଦୁଇଗୁଣ ପ୍ରେମ ନିହିତ ॥ ୫ ॥ ଦୋହା :—ହେ ମାତ ! ଏବେ ଧୈର୍ଯ୍ୟ ଧରି ଶ୍ରୀ ରଘୁନାଥଙ୍କ ସନ୍ଦେଶ ଶୁଣନ୍ତୁ ।" ଏପରି କହି ହନୁମାନ୍ ପ୍ରେମରେ ଗଦ୍‌ଗଦ୍ ହୋଇ ପଡ଼ିଲେ । ତାଙ୍କ ନୟନରେ ପ୍ରେମାଶ୍ରୁ-ଜଳ ଭରି ଆସିଲା ॥ ୧୪ ॥ ଚୌପାଈ :—(ହନୁମାନ୍ କହିଲେ) "ରାମଚନ୍ଦ୍ର କହିଅଛନ୍ତି, 'ହେ ସୀତେ ! ତୁମର ବିରହରେ ମୋ ନିମନ୍ତେ ସମସ୍ତ ପଦାର୍ଥ ବିପରୀତ ହୋଇଯାଇଅଛି । ବୃକ୍ଷର ନବ କିଶଳୟ ସତେ ଯେପରି ଅଗ୍ନି ସମାନ; ରାତ୍ରି କାଳ-ରାତ୍ରିପରି ଏବଂ ଚନ୍ଦ୍ରମା ସୂର୍ଯ୍ୟଙ୍କ ସଦୃଶ ହୋଇଅଛନ୍ତି ॥୧॥ କମଳବନ ଭାଲ ବା ବର୍ଚ୍ଛାର ବନ ସଦୃଶ ହୋଇଅଛି । ମେଘ ସତେ ଅବା ତପ୍ତ ତୈଳ ବୃଷ୍ଟି କରୁଛି । ଯେଉଁମାନେ ହିତ କରୁଥିଲେ, ସେମାନେ ଏବେ ପୀଡ଼ା ଦେବାରେ ଲାଗିଛନ୍ତି । ତ୍ରିବିଧ (ଶୀତଳ, ମନ୍ଦ ଓ ସୁଗନ୍ଧ) ବାୟୁ ସର୍ପର ଶ୍ୱାସ ସଦୃଶ ବିଷାକ୍ତ ଓ ଗରମ ହୋଇ ପଡ଼ିଅଛି ॥ ୨ ॥

କହେହୂ ତେଁ କଛୁ ଦୁଖ ଘଟି ହୋଈ । କାହି କହୌଁ ୟହ ଜାନ ନ କୋଈ ॥
ତତ୍ତ୍ୱ ପ୍ରେମ କର ମମ ଅରୁ ତୋରା । ଜାନତ ପ୍ରିୟା ଏକୁ ମନୁ ମୋରା ॥୩॥
ସୋ ମନୁ ସଦା ରହତ ତୋହି ପାହୀଁ । ଜାନୁ ପ୍ରୀତି ରସୁ ଏତନେହି ମାହୀଁ ॥
ପ୍ରଭୁ ସଂଦେସୁ ସୁନତ ବୈଦେହୀ । ମଗନ ପ୍ରେମ ତନ ସୁଧି ନହିଁ ତେହୀ ॥୪॥
କହ କପି ହୃଦୟଁ ଧୀର ଧରୁ ମାତା । ସୁମିରୁ ରାମ ସେବକ ସୁଖଦାତା ॥
ଉର ଆନହୁ ରଘୁପତି ପ୍ରଭୁତାଈ । ସୁନି ମମ ବଚନ ତଜହୁ କଦରାଈ ॥୫॥

ନିସିଚର ନିକର ପତଂଗ ସମ ରଘୁପତି ବାନ କୃସାନୁ ।
ଜନନୀ ହୃଦୟଁ ଧୀର ଧରୁ ଜରେ ନିସାଚର ଜାନୁ ॥୧୫॥

ଜୌଁ ରଘୁବୀର ହୋତି ସୁଧି ପାଈ । କରତେ ନହିଁ ବିଲଂବୁ ରଘୁରାଈ ॥
ରାମ ବାନ ରବି ଉଏଁ ଜାନକୀ । ତମ ବରୁଥ କହଁ ଜାତୁଧାନ କୀ ॥୧॥

---

କହନ୍ତେ କେତେକ ଦୁଃଖ ଅଳପ ହୁଅଇ । କାହାକୁ କହିବ ଏହା କେହି ନ ଜାଣଇ ॥
ପ୍ରେମ ତତ୍ତ୍ୱ ତୁମ୍ଭ ଆମ୍ଭ ଦୁହିଁଙ୍କ ମଧ୍ୟର । ଜାଣଇ ପ୍ରିୟେ, କେବଳ ଏ ମନ ମୋହର ॥୩॥
ସେହି ମନ ରହେ ସଦା ତୁମ୍ଭ ନିକଟରେ । ଜାଣ ପ୍ରୀତି ରସ ଏହି ଅଳପ ସଙ୍କେତରେ ॥
ପ୍ରଭୁଙ୍କସନ୍ଦେଶ ଯେବେବୈଦେହୀ ଶୁଣିଲେ । ପ୍ରେମମଗ୍ନହୋଇ ଦେହ ଦଶା ପାଶୋରିଲେ॥୪॥
କହଇ କପି, ହୃଦୟେ ଧୈର୍ଯ୍ୟ ଧର ମାତା । ସ୍ମରଣ ରାମ, ସେବକ-ଆନନ୍ଦ-ପ୍ରଦାତା ॥
ମହିମା ରଘୁପତିଙ୍କ ହୃଦୟେ ବିଚାର । ଶୁଣି ମୋ ବଚନ ଚିନ୍ତା କର ପରିହାର ॥୫॥

ନିଶାଚରଗଣେ ପତଙ୍ଗ ସମାନ କୃଶାନୁ ରାମଙ୍କ ବାଣ ।
ଜନନି, ହୃଦୟେ ଧୈର୍ଯ୍ୟ ଘେନା କର ଭସ୍ମ ଯାତୁଧାନ ଜାଣ ॥୧୫॥

ଯେବେ ରଘୁବୀର ପାଇଥାଆନ୍ତେ ସନ୍ଦେଶ । ବିଳମ୍ବ କରନ୍ତେ ନାହିଁ କେବେହେଁ ହରେଶ ॥
ରାମ ବାଣ-ଦିବାକର ହୋଇଲେ ଉଦୟ । କାହିଁ ଯାତୁଧାନ ସେନା ତମ ସମୁଦୟ ॥୧॥

---

ମନର ଦୁଃଖ କହିଦେବା ଯୋଗେ ମଧ୍ୟ କିଛି କମିଯାଏ । କିନ୍ତୁ କହିବ କାହାକୁ ? ଏହି ଦୁଃଖ କେହି ଜାଣେ ନାହିଁ । ହେ ପ୍ରିୟେ ! ମୋର ଏବଂ ତୁମର ପ୍ରେମର ତତ୍ତ୍ୱ (ରହସ୍ୟ) କେବଳ ମୋର ମନହିଁ ଜାଣେ ॥ ୩ ॥ ଏବଂ ସେହି ମନ ସବୁବେଳେ ତୁମର ପାଖରେ ରହିଅଛି । ବେଶ୍, ମୋର ପ୍ରେମର ସାର ମାତ୍ର ଏତିକରେ ବୁଝିନିଅ ।" ପ୍ରଭୁଙ୍କ ସନ୍ଦେଶ ଶୁଣିବା ମାତ୍ରେ ଜାନକୀ ପ୍ରେମ-ମଗ୍ନ ହୋଇଗଲେ । ତାଙ୍କୁ ଶରୀରର ଖୋଜ-ଖବର କିଛି ରହିଲା ନାହିଁ । ହନୁମାନ୍ କହିଲେ, "ହେ ମାତ ! ହୃଦୟରେ ଧୈର୍ଯ୍ୟ ଧାରଣ କର ଏବଂ ସେବକଗଣଙ୍କ ସୁଖ-ଦାତା ଶ୍ରୀ ରାମଚନ୍ଦ୍ରଙ୍କୁ ସ୍ମରଣ କର । ଶ୍ରୀ ରଘୁନାଥଙ୍କ ପ୍ରଭୁତ୍ୱ ହୃଦୟରେ ଧ୍ୟାନ କର ଏବଂ ମୋର ବଚନ ଶୁଣି କାପୁରୁଷତା ତ୍ୟାଗ କର ॥ ୫ ॥ ଦୋହା :—ରାକ୍ଷସବୃନ୍ଦ ପତଙ୍ଗ ତୁଲ୍ୟ ଏବଂ ଶ୍ରୀ ରଘୁନାଥଙ୍କ ବାଣ ଅଗ୍ନି ତୁଲ୍ୟ । ହେ ମାତ ' ହୃଦୟରେ ଧୈର୍ଯ୍ୟ ଧାରଣ କର ଏବଂ ରାକ୍ଷସମାନେ ହେଇ ଜଳିଲେ ବୋଲି ଜାଣ ॥ ୧୫ ॥ ଚୌପାଈ :—ଶ୍ରୀରାମଚନ୍ଦ୍ର ଯଦି ଖବର

ଅବହିଁ ମାତୁ ମୈଁ ଜାଉଁ ଲଓ୍ୱାଈ । ପ୍ରଭୁ ଆୟସୁ ନହିଁ ରାମ ଦୋହାଈ ॥
କଛୁକ ଦିବସ ଜନନୀ ଧରୁ ଧୀରା । କପିନ୍ହ ସହିତ ଅଇହହିଁ ରଘୁବୀରା ॥୨॥
ନିସିଚର ମାରି ତୋହି ଲୈ ଜୈହହିଁ । ତିହୁଁ ପୁର ନାରଦାଦି ଜସୁ ଗୈହହିଁ ॥
ହୈଁ ସୁତ କପି ସବ ତୁମ୍ହହି ସମାନା । ଜାତୁଧାନ ଅତି ଭଟ ବଲବାନା ॥୩॥
ମୋରେଁ ହୃଦୟ ପରମ ସଂଦେହା । ସୁନି କପି ପ୍ରଗଟ କୀହ୍ନି ନିଜ ଦେହା ॥
କନକ ଭୂଧରାକାର ସରୀରା । ସମର ଭୟଂକର ଅତିବଲ ବୀରା ॥୪॥
ସୀତା ମନ ଭରୋସ ତବ ଭୟଉ । ପୁନି ଲଘୁ ରୂପ ପବନସୁତ ଲୟଉ ॥୫॥
ସୁନୁ ମାତା ସାଖାମୃଗ ନହିଁ ବଲ ବୁଦ୍ଧି ବିସାଲ ।
ପ୍ରଭୁ ପ୍ରତାପ ତେଁ ଗରୁଡ଼ହି ଖାଇ ପରମ ଲଘୁ ବ୍ୟାଲ ॥୧୬॥

---

ଏହିକ୍ଷଣି ମାତ ! ଘେନି ତୁମ୍ଭଙ୍କୁ ଯାଆନ୍ତି । ପ୍ରଭୁଙ୍କ ରାଣ, ଆଦେଶ ଦେଇ ସେ ନାହାନ୍ତି ॥
ଆଉ କେତେଦିନ ମାତ, ହୃଦେ ଧୈର୍ଯ୍ୟ ଧର । କପିଙ୍କ ସହିତ ଆଗମିବେ ରଘୁବର ॥୨॥
ଦୁଷ୍ଟଙ୍କୁ ମାରି ତୁମ୍ଭଙ୍କୁ ସଙ୍ଗେ ନେଇଯିବେ । ତ୍ରିଭୁବନେ ନାରଦାଦି ସୁଯଶ ଗାଇବେ ॥
ହେ ସୁତ ! କପି ନିକର ତୁମ୍ଭରି ସମାନ । ଯାତୁଧାନ ମହାଯୋଦ୍ଧା ଅତି ବଳବାନ ॥୩॥
ଏଣୁ ମୋର ହୃଦେ ହୁଏ ପରମ ସନ୍ଦେହ । ଶୁଣନ୍ତେ କପି ପ୍ରକଟ କଲା ନିଜ ଦେହ ॥
କନକ ଭୂଧର ତୁଲ୍ୟ ବିଶାଳ ଶରୀର । ସମରେ ସୁଭୟଙ୍କର, ମହାବଳୀ ବୀର ॥୪॥
ସୀତାଙ୍କ ମନରେ ତହୁଁ ଭରସା ହୋଇଲା । ପୁଣି ସୂକ୍ଷ୍ମ ରୂପ ବାୟୁ-ତନୟ ଧରିଲା ॥୫॥
ଶୁଣ ମାତ, ଶାଖାମୃଗଙ୍କର ବଳ-ବୁଦ୍ଧି ନୁହଇ ବିଶାଳ ।
ପ୍ରଭୁଙ୍କ ପ୍ରତାପେ ଗରୁଡ଼କୁ ସୁଦ୍ଧା ଖାଏ ଅତି କ୍ଷୁଦ୍ର ବ୍ୟାଳ ॥୧୬॥

---

ପାଇଥା'ନ୍ତେ, ତେବେ ସେ ବିଳମ୍ବ କରି ନ ଥା'ନ୍ତେ । ହେ ଜାନକି ! ରାମଙ୍କ ବାଣ-ରବି ଉଦିତ ହେଲେ ରାକ୍ଷସ-ସେନା ରୂପକ ଅନ୍ଧକାର କାହୁଁ ରହିପାରିବ ? ॥ ୧ ॥ ହେ ମାତା ! ମୁଁ ଆପଣଙ୍କୁ ବର୍ତ୍ତମାନ ଏଠାରୁ ନେଇ ଯାଆନ୍ତି । କିନ୍ତୁ ଶ୍ରୀରାମଙ୍କ ରାଣ, ମୋତେ ପ୍ରଭୁଙ୍କ ଆଜ୍ଞା ନାହିଁ । ଅତଏବ ହେ ମାତା '" ଆଉ କିଛି ଦିନ ଧୈର୍ଯ୍ୟ ଧର । ଶ୍ରୀରାମଚନ୍ଦ୍ର, ବାନରମାନଙ୍କ ସହିତ ଏଠାକୁ ଆସିବେ ॥ ୨ ॥ ଏବଂ ରାକ୍ଷସମାନଙ୍କୁ ମାରି ଆପଣଙ୍କୁ ନେଇଯିବେ । ନାରଦ ଆଦି ମୁନି ଋଷିମାନେ ତିନି ଲୋକରେ ତାଙ୍କର ଯଶ ଗାନ କରିବେ ।" ସୀତା କହିଲେ, "ହେ ବତ୍ସ ! ସମସ୍ତ ବାନର ତୁମରି ସମାନ କ୍ଷୁଦ୍ରାକୃତି-ବିଶିଷ୍ଟ, ରାକ୍ଷସମାନେ ଅତି ବଳବାନ୍ ଯୋଦ୍ଧା । ସୁତରାଂ ମୋ ମନରେ ବଡ ସନ୍ଦେହ ଜାତ ହେଉଅଛି—ତୁମପରି ବାନରମାନେ ରାକ୍ଷସମାନଙ୍କୁ କିପରି ଜିଣି ପାରିବେ ?" ଏହା ଶୁଣି, ହନୁମାନ୍ ନିଜର ଶରୀର ପ୍ରକାଶ କଲେ । ସ୍ୱର୍ଣ୍ଣ ପର୍ବତ (ସୁମେରୁ) ଆକାରର ଅତି ବିଶାଳ ଶରୀର ତାଙ୍କର । ତାହା ଯୁଦ୍ଧରେ ଶତ୍ରୁର ହୃଦୟରେ ଭୟ ଜାତ କରାଏ । ଏହିପରି ଅତି ବଳବାନ୍ ଓ ବୀର ଶରୀର ତାହାଙ୍କର ॥ ୪ ॥ ସେତେବେଳେ ସେହି ଶରୀର ଦେଖି ସୀତାଙ୍କ ମନରେ ବିଶ୍ୱାସ ହେଲା । ହନୁମାନ୍

ମନ ସଂତୋଷ ସୁନତ କପି ବାନୀ । ଭଗତି ପ୍ରତାପ ତେଜ ବଲ ସାନୀ ॥
ଆସିଷ ଦୀହ୍ନି ରାମପ୍ରିୟ ଜାନା । ହୋହୁ ତାତ ବଲ ସୀଲ ନିଧାନା ॥୧॥
ଅଜର ଅମର ଗୁନନିଧି ସୁତ ହୋହୂ । କରହୁଁ ବହୁତ ରଘୁନାୟକ ଛୋହୂ ॥
କରହୁଁ କୃପା ପ୍ରଭୁ ଅସ ସୁନି କାନା । ନିର୍ଭର ପ୍ରେମ ମଗନ ହନୁମାନା ॥୨॥
ବାର ବାର ନାଏସି ପଦ ସୀସା । ବୋଲା ବଚନ ଜୋରି କର କୀସା ॥
ଅବ କୃତକୃତ୍ୟ ଭୟଉଁ ମୈଁ ମାତା । ଆସିଷ ତବ ଅମୋଘ ବିଖ୍ୟାତା ॥୩॥
ସୁନହୁ ମାତୁ ମୋହି ଅତିସୟ ଭୂଖା । ଲାଗି ଦେଖି ସୁନ୍ଦର ଫଲ ରୂଖା ॥
ସୁନୁ ସୁତ କରହିଁ ବିପିନ ରଖୱାରୀ । ପରମ ସୁଭଟ ରଜନୀଚର ଭାରୀ ॥୪॥
ତିନ୍ହ କର ଭୟ ମାତା ମୋହି ନାହୀଁ । ଜୌଁ ତୁମ୍ହ ସୁଖ ମାନହୁ ମନ ମାହୀଁ ॥୫॥

---

ଲଭିଲେ ମନେ ସନ୍ତୋଷ କପିବାଣୀ ଶୁଣି । ସେଚିତ ଭକ୍ତି-ପ୍ରତାପ-ତେଜ-ବଳେ ପୁଣି ॥
ଜାଣି ରାମପ୍ରିୟ କଲେ ଆଶିଷ ପ୍ରଦାନ । ହୁଅ ସୁତ ! ତେଜ ବଳ ବୁଦ୍ଧିର ନିଧାନ ॥୧॥
ହୁଅ ବତ୍ସ ! ଗୁଣନିଧି ଅଜର ଅମର । କରନ୍ତୁ ସତତ ରାମ ସ୍ନେହ ତୋ ଉପର ॥
କରିବେ କରୁଣା ପ୍ରଭୁ, ଶୁଣି ଶ୍ରବଣରେ । ମଗ୍ନ ହେଲେ ହନୁମାନ ନିସର୍ଗ ପ୍ରେମରେ ॥୨॥
ବାରମ୍ବାର ପାଦତଳେ ପ୍ରଣାମ କରିଲେ । କେନି କର ଯୋଡ଼ି କପି ବଚନ କହିଲେ ॥
ଏବେ କୃତକୃତ୍ୟ ମୁହିଁ ହେଲି ନିଶ୍ଚେ ମାତ । ଅନିଷ୍ଫଳ ଅଟେ ତୁମ୍ଭ ଆଶିଷ ବିଖ୍ୟାତ ॥୩॥
ଶୁଣ ମାତ, ଲାଗେ ମୋତେ କ୍ଷୁଧା ଅତିଶୟ । ବିଲୋକଣ ମନୋହର ପକ୍ୱ ଫଳଚୟ ॥
ଶୁଣ ସୁତ ! ବିପିନକୁ ରକ୍ଷା କରୁଛନ୍ତି । ବହୁ ନିଶାଚର ଯୋଦ୍ଧା ବଳବାନ ଅତି ॥୪॥
ତାହାଙ୍କର ଭୟ ମୋତେ ନାହିଁ କିଛିମାତ୍ର । ଯେବେ ତୁମ୍ଭେ ମନ ମଧ୍ୟେ ଭଲ ମାନ, ମାତ ॥୫॥

---

ପୁଣି କ୍ଷୁଦ୍ର ରୂପ ଧାରଣ କରିନେଲେ ॥ ୫ ॥ ଦୋହା :—"ହେ ମାତା ! ଶୁଣ, ବାନରମାନଙ୍କଠାରେ ବେଶି ବଲ ବୁଦ୍ଧି ନ ଥାଏ । କିନ୍ତୁ ପ୍ରଭୁଙ୍କ ପ୍ରତାପରେ ଅତି କ୍ଷୁଦ୍ର ସର୍ପ ମଧ୍ୟ ଗରୁଡ଼କୁ ଭକ୍ଷଣ କରିପାରେ ।" ॥ ୧୬ ॥ ଚୌପାଈ :—ଭକ୍ତି, ପ୍ରତାପ, ତେଜ ଓ ବଳରେ ସିକ୍ତ ହନୁମାନ୍‌ଙ୍କ ବାଣୀ ଶୁଣି, ସୀତାଙ୍କ ମନରେ ସନ୍ତୋଷ ଜାତ ହେବ । ସେ ହନୁମାନ୍‌ଙ୍କୁ ଶ୍ରୀରାମଙ୍କ ପ୍ରିୟ ପାତ୍ର ଜାଣି ଆଶୀର୍ବାଦ ଦେଲେ ଏବଂ କହିଲେ, "ହେ ବତ୍ସ ! ତୁମେ ବଳ ଓ ଶୀଳର ନିଧାନ ହୁଅ ॥ ୧ ॥ ହେ ପୁତ୍ର ! ତୁମେ ଅଜର, ଅମର ଓ ଗୁଣନିଧି ହୁଅ । ଶ୍ରୀ ରଘୁନାଥ ତୁମ ଉପରେ ବିଶେଷ କୃପା କରନ୍ତୁ ।" "ପ୍ରଭୁ କୃପା କରନ୍ତୁ" କାନରେ ଏପରି ଶୁଣିବା ମାତ୍ରେ ହନୁମାନ୍ ପୂର୍ଣ୍ଣ ପ୍ରେମରେ ମଗ୍ନ ହୋଇଗଲେ ॥ ୨ ॥ ହନୁମାନ୍ ବାରମ୍ବାର ସୀତାଙ୍କ ଚରଣରେ ମୁଣ୍ଡ ନୁଆଁଇଲେ ଏବଂ ପୁଣି ହାତ ଯୋଡ଼ି କହିଲେ, "ହେ ମାତା ! ଏବେ ମୁଁ କୃତାର୍ଥ ହୋଇଗଲି । ଆପଣଙ୍କ ଆଶୀର୍ବାଦ ଅମୋଘ । —ଏହି କଥା ପ୍ରସିଦ୍ଧ ॥ ୩ ॥ ହେ ମାତା ! ଶୁଣ, ସୁନ୍ଦର ଫଳ-ସମନ୍ୱିତ ବୃକ୍ଷ ଦେଖି ମୋତେ ଅତି କ୍ଷୁଧା ଲାଗୁଅଛି ।" ସୀତା କହିଲେ, "ହେ ପୁତ୍ର ! ଶୁଣ, ଅତି ବଡ଼ ଯୋଦ୍ଧା ରାକ୍ଷସମାନେ ଏହି ବନର ରକ୍ଷଣାବେକ୍ଷଣ

ଦେଖି ବୁଦ୍ଧି ବଲ ନିପୁନ କପି କହେଉ ଜାନକୀଁ ଜାହୁ ।
ରଘୁପତି ଚରନ ହୃଦୟଁ ଧରି ତାତ ମଧୁର ଫଲ ଖାହୁ ॥୧୭॥

ଚଲେଉ ନାଇ ସିରୁ ପୈଠେଉ ବାଗା । ଫଲ ଖାଏସି ତରୁ ତୋରୈଁ ଲାଗା ॥
ରହେ ତହାଁ ବହୁ ଭଟ ରଖଵାରେ । କଛୁ ମାରେସି କଛୁ ଜାଇ ପୁକାରେ ॥୧॥
ନାଥ ଏକ ଆଵା କପି ଭାରୀ । ତେହିଁ ଅସୋକ ବାଟିକା ଉଜାରୀ ॥
ଖାଏସି ଫଲ ଅରୁ ବିଟପ ଉପାରେ । ରଚ୍ଛକ ମର୍ଦ୍ଦି ମର୍ଦ୍ଦି ମହି ଡାରେ ॥୨॥
ସୁନି ରାବନ ପଠଏ ଭଟ ନାନା । ତିନ୍ହହି ଦେଖି ଗର୍ଜେଉ ହନୁମାନା ॥
ସବ ରଜନୀଚର କପି ସଂଘାରେ । ଗଏ ପୁକାରତ କଛୁ ଅଧମାରେ ॥୩॥
ପୁନି ପଠୟଉ ତେହିଁ ଅଚ୍ଛକୁମାରା । ଚଲା ସଂଗ ଲୈ ସୁଭଟ ଅପାରା ॥
ଆଵତ ଦେଖି ବିଟପ ଗହି ତର୍ଜା । ତାହି ନିପାତି ମହାଧୁନି ଗର୍ଜା ॥୪॥

---

ବୁଦ୍ଧି ବଳେ କପି ନିପୁଣ ବିଲୋକି କହିଲେ ଜାନକୀ, ଯାଅ ।
ରଘୁପତି ପଦ ଧରି ସୁତ ! ହୃଦେ ସୁମଧୁର ଫଳ ଖାଅ ॥୧୭॥

ଚଳିଲେ ପ୍ରଣାମ କରି ପ୍ରବେଶିଲେ ବନେ । ଫଳ ଖାଇଣ ବିଟପ ଲାଗିଲେ ଭଞ୍ଜନେ ॥
ବହୁ ଯୋଦ୍ଧା ସେ ବନକୁ ରକ୍ଷା କରୁଥିଲେ । କେତେକଙ୍କୁ ମାରିଲେ, କେତେ ଯାଇ ଗୁହାରିଲେ ॥୧॥
ନାଥ ! ଆସିଅଛି ଏକ ବିଶାଳ ମର୍କଟ । ଅଶୋକ ଉଦ୍ୟାନ ସେହୁ କରୁଛି ବିନଷ୍ଟ ॥
ଖାଅଇ ଫଳ ଆବର ବୃକ୍ଷ ଉପାଡଇ । ରକ୍ଷକଙ୍କୁ ମର୍ଦ୍ଦି ମର୍ଦ୍ଦି ମହୀରେ ଫିଙ୍ଗଇ ॥୨॥
ଶୁଣି ରାବଣ ପେଷିଲା ଯୋଦ୍ଧା ଅଗଣନ । ତାହାଙ୍କୁ ଦେଖି ଗର୍ଜିଲା ପବନ-ନନ୍ଦନ ॥
ସମସ୍ତ ନିଶାଚରଙ୍କୁ କପି ସଂହାରିଲେ । ଦରମରା ହୋଇ କେତେ ଯାଇ ଚିତ୍କାରିଲେ ॥୩॥
ପୁଣି ପଠାଇଲା ସେହି ଅକ୍ଷୟ କୁମାର । ଚଳିଲା ସେ ସଙ୍ଗେ ସୈନ୍ୟ ଘେନିଣ ଅପାର ॥
ଆସିବା ଦେଖି ବିଟପ ଧରି ତର୍ଜିଲା । ତାହାଙ୍କୁ ବିନାଶି ମହାଧ୍ୱନି ଗର୍ଜିଲା ॥୪॥

---

କରୁଅଛନ୍ତି ।' ॥ ୪ ॥ ହନୁମାନ୍ କହିଲେ, ହେ ମାତା ! ଯଦି ଆପଣ ମନ ମଧ୍ୟରେ ପ୍ରସନ୍ନ ହୋଇ ଆଜ୍ଞା ଦେବେ, ତେବେ ମୋ ମନରେ ସେମାନଙ୍କ ପ୍ରତି ଆଦୌ ଭୟ ରହିବ ନାହିଁ ।" ॥ ୫ ॥ ଦୋହା —ହନୁମାନ୍‌ଙ୍କ ବୁଦ୍ଧି ଓ ବଳରେ ନିପୁଣ ଦେଖି ଜାନକୀ କହିଲେ, "ହେ ବତ୍ସ ! ଯାଅ, ଶ୍ରୀ ରଘୁନାଥଙ୍କ ଚରଣ-ଯୁଗଳକୁ ହୃଦୟରେ ଧାରଣ କରି ମଧୁର ଫଳ ଭୋଜନ କର ।" ॥ ୧୭ ॥ ଚୌପାଈ :—ସେ ସୀତାଙ୍କୁ ପ୍ରଣାମ କରି ଚାଲିଲେ ଏବଂ ଉଦ୍ୟାନରେ ପ୍ରବେଶ କଲେ । ସେଠାରେ ଫଳ ଖାଇଲେ ଏବଂ ବୃକ୍ଷମାନ ଭାଙ୍ଗିବାକୁ ଲାଗିଲେ । ସେଠାରେ ବହୁତ ଯୋଦ୍ଧା ଜଗୁଆଳି ଥିଲେ । ସେମାନଙ୍କ ମଧ୍ୟରୁ ସେ କେତେକଙ୍କୁ ମାରି ପକାଇଲେ ଏବଂ ଆଉ କେତେ ଜଣ ଯାଇ ରାବଣ ଆଗରେ ଅଭିଯୋଗ କଲେ ॥ ୧ ॥ ସେମାନେ କହିଲେ, "ହେ ନାଥ ! ଗୋଟିଏ ବଡ଼ ବାନର ଆସିଅଛି । ସେ ଅଶୋକବାଟିକା ଉଜାଡ଼ି ଦେଇଛି, ଫଳ ସବୁ ଖାଇ ଦେଉଛି, ବୃକ୍ଷ ସବୁ ଓପାଡ଼ି ପକାଇଛି ଏବଂ ଜଗୁଆଳିମାନଙ୍କୁ ଦଳି ଭୂମି ଉପରେ ପକାଇ

କଛୁ ମାରେସି କଛୁ ମର୍ଦେସି କଛୁ ମିଲଏସି ଧରି ଧୂରି ।
କଛୁ ପୁନି ଜାଇ ପୁକାରେ ପ୍ରଭୁ ମର୍କଟ ବଲ ଭୂରି ॥୧୮॥
ସୁନି ସୁତ ବଧ ଲଂକେସ ରିସାନା । ପଠଏସି ମେଘନାଦ ବଲବାନା ॥
ମାରସି ଜନି ସୁତ ବାଁଧେସୁ ତାହୀ । ଦେଖିଅ କପିହି କହାଁ କର ଆହୀ ॥୧॥
ଚଲା ଇନ୍ଦ୍ରଜିତ ଅତୁଲିତ ଜୋଧା । ବଂଧୁ ନିଧନ ସୁନି ଉପଜା କ୍ରୋଧା ॥
କପି ଦେଖା ଦାରୁନ ଭଟ ଆୱା । କଟକଟାଇ ଗର୍ଜା ଅରୁ ଧାୱା ॥୨॥
ଅତି ବିସାଲ ତରୁ ଏକ ଉପାରା । ବିରଥ କୀହ୍ନ ଲଂକେସ କୁମାରା ॥
ରହେ ମହାଭଟ ତାକେ ସଂଗା । ଗହି ଗହି କପି ମର୍ଦଇ ନିଜ ଅଂଗା ॥୩॥

---

କେତେଙ୍କୁ ମାରିଲା କେତେଙ୍କୁ ଦଳିଲା, କେତେ ଧୂଳି କଲା ଧରି ।
କେତେ ପୁଣି ଯାଇ ଚିତ୍କାରିଲେ ପ୍ରଭୁ, ମର୍କଟ ବିଶେଷ ବଳୀ ॥୧୮॥
ଶୁଣି ସୁତ ବଧ ଅତି ରୋଷେ ଲଙ୍କାରାଣ । ପଠାଇଲା ମେଘନାଦ ପୁତ୍ର ବଳବାନ ॥
ନ ମାରି ତାହାକୁ ବାନ୍ଧି ଆଣିବ, କୁମର । ଦେଖିବା କେଉଁ ସ୍ଥାନରୁ ଆସିଛି ବାନର ॥୧॥
ତହୁଁ ଅତୁଳିତ ଯୋଦ୍ଧା ଚଳିଲା ଶନାରି । ଭ୍ରାତୃବଧ ଶୁଣି କ୍ରୋଧ ଉପୁଜିଲା ଭାରି ॥
ଦାରୁଣ ବୀର ଆସଇ, କପି ବିଲୋକଣ । ଧାଇଁଲା ସତ୍ୱର କଟକଟ ଗରଜଣ ॥୨॥
ଅତ୍ୟନ୍ତ ବିଶାଳ ଏକ ତରୁ ଉପାଡ଼ିଲା । ଲଙ୍କପତି କୁମରକୁ ବିରଥ କରିଲା ॥
ଥିଲେ ଯେଉଁ ମହା ମହା ଯୋଦ୍ଧା ତାର ସଙ୍ଗେ । ଧରି ଧରି ମରଦିଲା କପି ନିଜ ଅଙ୍ଗେ ॥୩॥

---

ଦେଇଛି ।” ॥ ୨ ॥ ଏହା ଶୁଣି ରାବଣ ବହୁତ ଯୋଦ୍ଧା ପଠାଇଲା । ସେମାନଙ୍କୁ ଦେଖି ହନୁମାନ୍ ଗର୍ଜନ କଲେ । ହନୁମାନ୍ ସମସ୍ତ ରାକ୍ଷସଙ୍କୁ ମାରି ପକାଇଲେ । ଯେଉଁମାନେ ଦରମରା ହୋଇଥିଲେ, ସେମାନେ ଚିତ୍କାର କରି ପଳାଇଗଲେ ॥ ୩ ॥ ତତ୍ପରେ ରାବଣ ଅକ୍ଷୟକୁମାରକୁ ପଠାଇଲା । ସେ ଅସଂଖ୍ୟ ଶ୍ରେଷ୍ଠ ଯୋଦ୍ଧା ସଙ୍ଗରେ ଧରି ଚଳିଲା । ତାହାକୁ ଆସୁଥିବାର ଦେଖି ହନୁମାନ୍ ଗୋଟାଏ ବୃକ୍ଷ ହାତରେ ଧରି ତାହାକୁ ତର୍ଜନା କଲେ ଏବଂ ତାହାକୁ ମାରି ମହାଧ୍ୱନି କରି ଗର୍ଜନ କଲେ ॥ ୪ ॥ ଦୋହା — ସେ ସେନା ମଧ୍ୟରୁ କେତେକଙ୍କୁ ମାରି ପକାଇଲେ ଏବଂ କେତେକଙ୍କୁ ଦଳି ପକାଇଲେ । ଆଉ କେତେକଙ୍କୁ ସେ ଧରି ଧରି ଧୂଳିରେ ମିଳାଇ ଦେଲେ । କେତେକ ପୁଣି ଯାଇ “ରାବଣ ଆଗରେ ଚିତ୍କାର କଲେ, “ହେ ପ୍ରଭୋ ! ବାନର ଅତି ବଳବାନ୍ ॥ ୧୮ ॥ ଚୌପାଈ :—ପୁତ୍ରର ବଧ ଖବର ଶୁଣି ରାବଣ କ୍ରୁଦ୍ଧ ହୋଇ ଉଠିଲା ଏବଂ ସେ ଆପଣାର ଜ୍ୟେଷ୍ଠପୁତ୍ର ବଳବାନ ମେଘନାଦକୁ ପଠାଇଲା । ତାହାକୁ ସେ କହିଲା, “ହେ ପୁତ୍ର ! କପିକୁ ମାରିବୁ ନାହିଁ, ତାହାକୁ ବାନ୍ଧି ଆଣିବୁ । ଦେଖାଯାଉ, ସେ ବାନର କେଉଁଠାରୁ ଆସିଅଛି ॥ ୧ ॥ ଇନ୍ଦ୍ରବିଜେତା ଅନୁପମ ଯୋଦ୍ଧା ମେଘନାଦ ଚଳିଲା । ଭାଇ ନିହତ ହୋଇଛି ବୋଲି ଜାଣିବାରୁ ତାହାର ମନରେ କ୍ରୋଧ ଜାତ ହେଲା । ହନୁମାନ ଦେଖିଲେ, ଏଥର ଭୟଙ୍କର ଯୋଦ୍ଧା ଜଣେ ଆସିଅଛି । ତେଣୁ ସେ କଟକଟ ଶବ୍ଦରେ

ତିହ୍ନହି ନପାତି ତାହି ସନ ବାଜା । ଭିରେ ଜୁଗଲ ମାନହୁଁ ଗଜରାଜା ॥
ମୁଠିକା ମାରି ଚଢ଼ା ତରୁ ଜାଈ । ତାହି ଏକ ଛନ ମୁରୁଛା ଆଈ ॥୪॥
ଉଠି ବହୋରି କୀହ୍ନିସି ବହୁ ମାୟା । ଜୀତି ନ ଜାଇ ପ୍ରଭଞ୍ଜନ ଜାୟା ॥୫॥

ବ୍ରହ୍ମ ଅସ୍ତ୍ର ତେହି ସାଁଧା କପି ମନ କୀହ୍ନ ବିଚାର ।
ଜୌଁ ନ ବ୍ରହ୍ମସର ମାନଉଁ ମହିମା ମିଟଇ ଅପାର ॥୧୯॥

ବ୍ରହ୍ମବାନ କପି କହୁଁ ତେହି ମାରା । ପରତିହୁଁ ବାର କଟକୁ ସଂଘାରା ॥
ତେହି ଦେଖା କପି ମୁରୁଛିତ ଭୟଊ । ନାଗପାସ ବାଁଧେସି ଲୈ ଗୟଊ ॥୧॥
ଜାସୁ ନାମ ଜପି ସୁନହୁ ଭବାନୀ । ଭବ ବନ୍ଧନ କାଟହିଁ ନର ଗ୍ୟାନୀ ॥
ତାସୁ ଦୂତ କି ବନ୍ଧ ତରୁ ଆୱା । ପ୍ରଭୁ କାରଜ ଲଗି କପିହିଁ ବଁଧାୱା ॥୨॥

---

ତାହାଙ୍କୁ ବଧି ତା' ସଙ୍ଗେ ଯୁଝିଲା ଆବର । ଯୁଝନ୍ତି ବା ବେନି ଗଜରାଜ ପରସ୍ପର ॥
ମୁଷ୍ଟିକ ମାରିଣ ତରୁ ଉପରେ ଚଢ଼ିଲା । ତାହାଙ୍କୁ ମୂର୍ଚ୍ଛା କ୍ଷଣକ ପର୍ଯ୍ୟନ୍ତେ ହୋଇଲା ॥୪॥
ଉଠି ପୁଣି ବହୁତ ସେ ମାୟା ଆରମ୍ଭିଲା । ପ୍ରଭଞ୍ଜନ-ତନୟଙ୍କୁ ଜିଣି ନ ପାରିଲା ॥୫॥

ବ୍ରହ୍ମାସ୍ତ୍ର ସନ୍ଧାନ କରନ୍ତେ ସେ ପୁଣ କପି କରିଲା ବିଚାର ।
ଯେବେ ବ୍ରହ୍ମଶର ନ ମାନିବି, ନଷ୍ଟ ହେବ ମହିମା ଅପାର ॥୧୯॥

ବ୍ରହ୍ମବାଣ ସନ୍ଧି ସେହୁ କପିଙ୍କୁ ମାରିଲା । ପଡ଼ିଲା ସମୟେ ବହୁ ସୈନ୍ୟ ସଂହାରିଲା ॥
କପି ମୂର୍ଚ୍ଛିତ ହେବାର ଜାଣି ଇନ୍ଦ୍ରଜିତ । ନାଗପାଶେ ବାନ୍ଧି ନେଇ ଚଳିଲା ତୁରିତ ॥୧॥
ଯାହାଙ୍କ ନାମ ସ୍ମରଣ କରିଣ ଭବାନୀ । ଭବ ବନ୍ଧନ କାଟନ୍ତି ମୁନିବର ଜ୍ଞାନୀ ॥
ତାହାଙ୍କ ଦୂତ କେବେ କି ବନ୍ଧନେ ଆସଇ । ପ୍ରଭୁ କାର୍ଯ୍ୟ ହେତୁ କପି ନିଜକୁ ବାନ୍ଧଇ ॥୨॥

---

ଗର୍ଜନ କରି ଦୌଡ଼ିଲେ ॥ ୨ ॥ ସେ ଗୋଟିଏ ଅତି ବଡ଼ ଗଛ ଓପାଡ଼ି ପକାଇଲେ ଏବଂ ତାହାର ପ୍ରହାରରେ ଲଙ୍କେଶ୍ୱର ରାବଣର ପୁତ୍ର ମେଘନାଦର ରଥ ଭାଙ୍ଗି ତାହାକୁ ବିରଥ କରିଦେଲେ । ତାହାର ସଙ୍ଗରେ ଥିବା ବଡ଼ ବଡ଼ ଯୋଦ୍ଧାମାନଙ୍କୁ ହନୁମାନ୍ ଆପଣା ଅଙ୍ଗରେ ଦଳି ଚକଟିବାକୁ ଲାଗିଲେ ॥ ୩ ॥ ସେ ସମସ୍ତଙ୍କୁ ମାରିବା ପରେ ହନୁମାନ୍ ମେଘନାଦ ସହିତ ଲଢ଼ିବାକୁ ଲାଗିଲେ । ସେ ଦୁହେଁ ପରସ୍ପର ସହିତ ଲଢ଼ିବା ସମୟରେ ଦୁଇଟି ଗଜରାଜ ପରସ୍ପର ସହିତ ଲଢ଼ିଲା ପରି ଜଣାପଡ଼ୁଥା'ନ୍ତି । ହନୁମାନ୍ ତାହାକୁ ଗୋଟିଏ ବିଧା ମାରି ଯାଇ ବୃକ୍ଷ ଉପରେ ଚଢ଼ିଲେ । କ୍ଷଣକ ନିମନ୍ତେ ତାହାର ମୂର୍ଚ୍ଛା ଆସିଗଲା ॥ ୪ ॥ ସେ ପୁଣି ଉଠି ବହୁତ ପ୍ରକାର ମାୟା ରଚନା କଲା । କିନ୍ତୁ ପବନପୁତ୍ର ହନୁମାନ୍‌ଙ୍କୁ ଜିଣିପାରୁ ନ ଥାଏ ॥୫॥ ଦୋହା :—ପରିଶେଷରେ ମେଘନାଦ ବ୍ରହ୍ମାସ୍ତ୍ର ପ୍ରୟୋଗ କଲା । ହନୁମାନ୍ ମନରେ ବିଚାର କଲେ, "ଯଦି ମୁଁ ବ୍ରହ୍ମାସ୍ତ୍ରକୁ ନ ମାନିବି, ତେବେ ତାହାର ଅପାର ମହିମା ହ୍ରାସ ଲଭିବ ।" ॥୧୯॥ ଚୌପାଇ :—ରାକ୍ଷସପୁତ୍ର ହନୁମାନ୍‌ଙ୍କୁ ବ୍ରହ୍ମବାଣ ମାରିଲା । ତାହା ବାଜିବା ମାତ୍ରେ ସେ ବୃକ୍ଷରୁ ତଳେ ଖସି ପଡ଼ିଲେ । କିନ୍ତୁ ପଡ଼ିବା ସମୟରେ ମଧ୍ୟ ସେ ଅନେକ ସୈନ୍ୟ ମାରି ପକାଇଲେ ।

କପି ବନ୍ଧନ ସୁନି ନିସିଚର ଧାଏ । କୌତୁକ ଲାଗି ସଭାଁ ସବ ଆଏ ॥
ଦସମୁଖ ସଭା ଦୀଖି କପି ଜାଈ । କହି ନ ଜାଇ କଛୁ ଅତି ପ୍ରଭୁତାଈ ॥୩॥
କର ଜୋରେଁ ସୁର ଦିସିପ ବିନୀତା । ଭୃକୁଟି ବିଲୋକତ ସକଲ ସଭୀତା ॥
ଦେଖି ପ୍ରତାପ ନ କପି ମନ ସଂକା । ଜିମି ଅହିଗନ ମହୁଁ ଗରୁଡ଼ ଅସଂକା ॥୪॥

କପିହି ବିଲୋକି ଦସାନନ ବିହସା କହି ଦୁର୍ବାଦ ।
ସୁତବଧ ସୁରତି କୀନ୍ହି ପୁନି ଉପଜା ହୃଦୟଁ ବିଷାଦ ॥୨୦॥

କହ ଲଙ୍କେସ କଵନ ତୈଁ କୀସା । କେହି କେ ବଲ ଘାଲେହି ବନ ଖୀସା ॥
କୀ ଧୌଁ ଶ୍ରବନ ସୁନେହି ନହିଁ ମୋହୀ । ଦେଖଉଁ ଅତି ଅସଙ୍କ ସଠ ତୋହୀ ॥୧॥

---

ଶୁଣନ୍ତେ କପି ବନ୍ଧନ ରାକ୍ଷସେ ଧାଇଁଲେ । କୌତୁକ ଦେଖିବା ପାଇଁ ସଭାକୁ ଆସିଲେ ॥
ଦଶମୁଖ ସଭା ଯାଇ ଦେଖେ ହନୁମନ୍ତ । କହି ନ ହୁଅଇ କିଛି ଐଶ୍ୱର୍ଯ୍ୟ ଅତ୍ୟନ୍ତ ॥୩॥
ଦେବ ଦିଗପାଳ କର ଯୋଡ଼ିଣ ବିନୀତେ । ଭ୍ରୁକୁଟି ଅବଲୋକନ୍ତି ସକଳେ ସଭୀତେ ॥
ପ୍ରତାପ ଦେଖି ନ ହୁଏ କପି ମନେ ଶଙ୍କା । ଯେସନ୍ତେ ଅହିଗଣ ମଧ୍ୟେ ଗରୁଡ ଅଶଙ୍କା ॥୪॥

କପିକୁ ଚାହିଁଣ କହି ଦୁର୍ବଚନ ଦଶବଦନ ହସିଲା ।
ସୁତର ମରଣ ସ୍ମରନ୍ତେ ପୁଣ ହୃଦେ ଦୁଃଖ ଉପୁଜିଲା ॥୨୦॥

ବୋଲେ ଲଙ୍କେଶ୍ୱର, ତୁହି କାହିଁକା ମର୍କଟ । କାହାର ବଳରେ ଦୁଷ୍ଟ, ବନ କଲୁ ନଷ୍ଟ ॥
କେବେକି ଶ୍ରବଣେ କପେ ଶୁଣିନାହୁଁ ମୋତେ । ଅତ୍ୟନ୍ତ ନିଃଶଙ୍କ ଶଠ, ଦେଖୁଅଛୁ ତୋତେ ॥୧॥

---

ରାକ୍ଷସମାନେ ଯେତେବେଳେ ଦେଖିଲେ ଯେ ହନୁମାନ୍ ମୂର୍ଚ୍ଛିତ ହୋଇ ପଡ଼ିଛନ୍ତି, ସେତେବେଳେ ସେ ତାହାଙ୍କୁ ନାଗପାଶରେ ବାନ୍ଧି ନେଇଗଲେ ॥୧॥ (ଶିବ କହନ୍ତି) "ହେ ଭବାନି ! ଯାହାଙ୍କ ନାମ ଜପି ଜ୍ଞାନୀ ମନୁଷ୍ୟ ସଂସାର-ବନ୍ଧନକୁ କାଟି ପକାନ୍ତି, ତାହାଙ୍କ ଦୂତ କେଉଁଠି ବନ୍ଧନରେ ପଡ଼ିପାରନ୍ତି ? କିନ୍ତୁ ପ୍ରଭୁଙ୍କ କାର୍ଯ୍ୟ ସମ୍ପାଦନ ନିମନ୍ତେ ହନୁମାନ୍ ନିଜେ ନିଜକୁ ବନ୍ଧାଇ ନେଲେ ।" ॥୨॥ ବାନର ବନ୍ଧନରେ ପଡ଼ିଅଛି, ଏହା ଶୁଣି ରାକ୍ଷସମାନେ ଦୌଡ଼ିଲେ ଏବଂ କୌତୁକ ଦେଖିବା ନିମନ୍ତେ ସମସ୍ତେ ସଭାକୁ ଆସିଲେ । ହନୁମାନ୍ ଯାଇ ରାବଣର ସଭା ଦେଖିଲେ । ତାହାର ଅତିଶୟ ପ୍ରଭୁତ୍ୱ ବା ଐଶ୍ୱର୍ଯ୍ୟ ବିଷୟ ଭାଷାରେ ବର୍ଣ୍ଣନା କରିବା ଅସମ୍ଭବ ॥୩॥ ଦେବତା ଓ ଦିଗପାଳମାନେ ହାତ ଯୋଡ଼ି ବଡ଼ ନମ୍ରତାର ସହିତ ଭୟଭୀତ ଅବସ୍ଥାରେ ରାବଣର ଭ୍ରୂ ଚାଳନାକୁ (ଆଜ୍ଞାକୁ) ଚାହିଁ ବସିଥାନ୍ତି । ତାହାର ଏପରି ପ୍ରତାପ ଦେଖି ସୁଦ୍ଧା ହନୁମାନ୍‌ଙ୍କ ମନରେ ଟିକେ ମାତ୍ର ଭୟ ହେଲାନାହିଁ । ସର୍ପଗଣଙ୍କ ମଧ୍ୟରେ ଗରୁଡ଼ ନିର୍ଭୟରେ ରହିଲା ପରି ସେ ନିର୍ଭୀକ ଭାବରେ ଛିଡ଼ା ହୋଇ ରହିଲେ ॥୪॥ ଦୋହା :—ହନୁମାନ୍‌ଙ୍କୁ ଦେଖି, ରାବଣ ଦୁର୍ବଚନ କହି ଖୁବ୍ ହସିଲା । ପୁଣି ପୁତ୍ରବଧ ବିଷୟ ସ୍ମରଣ କରିବା ମାତ୍ରେ ତାହାର ହୃଦୟରେ ବିଷାଦ ଜାତ ହେଲା ॥୨୦॥ ଚୌପାଇ :—ଲଙ୍କାପତି ରାବଣ କହିଲା, "ରେ ବାନର ! ତୁ କିଏ ? କାହା ବଳରେ ତୁ ବନକୁ ଉଜାଡ଼ି ନଷ୍ଟ କରି ପକାଇଲୁ ? ତୁ କଣ କେବେ

ମାରେ ନିସିଚର କେହିଁ ଅପରାଧା । କହୁ ସଠ ତୋହି ନ ପ୍ରାନ କଇ ବାଧା ॥
ସୁନୁ ରାବନ ବ୍ରହ୍ମାଣ୍ଡ ନିକାୟା । ପାଇ ଜାସୁ ବଲ ବିରଚତି ମାୟା ॥୨॥
ଜାକେଁ ବଲ ବିରଂଚି ହରି ଈସା । ପାଲତ ସୃଜତ ହରତ ଦସସୀସା ॥
ଜା ବଲ ସୀସ ଧରତ ସହସାନନ । ଅଣ୍ଡକୋସ ସମେତ ଗିରି କାନନ ॥୩॥
ଧରଇ ଜୋ ବିବିଧ ଦେହ ସୁରତ୍ରାତା । ତୁମ୍ହ ସେ ସଠନ୍ହ ସିଖାୱନୁ ଦାତା ॥
ହର କୋଦଣ୍ଡ କଠିନ ଜେହିଁ ଭଞ୍ଜା । ତେହି ସମେତ ନୃପ ଦଲ ମଦ ଗଞ୍ଜା ॥୪॥
ଖର ଦୂଷନ ତ୍ରିସିରା ଅରୁ ବାଲୀ । ବଧେ ସକଲ ଅତୁଲିତ ବଲସାଲୀ ॥୫॥
ଜାକେ ବଲ ଲବଲେସ ତେଁ ଜିତେହୁ ଚରାଚର ଝାରି ।
ତାସୁ ଦୂତ ମୈଁ ଜା କରି ହରି ଆନେହୁ ପ୍ରିୟ ନାରି ॥୨୧॥

---

କେଉଁ ଅପରାଧେ ବଧ କଲୁ ନିଶାଚର । କହ ଶଠ, ତୋତେ ନାହିଁ ଜୀବନର ଡର ॥
ଶୁଣ ନିଶାଚର–ନାଥ ! ବ୍ରହ୍ମାଣ୍ଡ ସକଳ । ରଚନ କରଇ ମାୟା ପାଇ ଯାର ବଳ ॥୨॥
ଯାହାର ବଳରେ ବିଷ୍ଣୁ ବିରଞ୍ଚି ମହେଶ । ପାଳନ୍ତି ସୃଜନ୍ତି ପୁଣି ହରନ୍ତି, ଲଙ୍କେଶ ॥
ଯା' ବଳେ ବହଇ ଶିରେ ସହସ୍ର ଆନନ । ବ୍ରହ୍ମାଣ୍ଡ ସହିତ ନଦୀ ଶଇଳ କାନନ ॥୩॥
ଧରନ୍ତି ବିବିଧ ଦେହ ଯେଉଁ ସୁର ତ୍ରାତା । ତୁମ୍ଭ ସମାନ ଶଠଙ୍କ ସଦା ଶିକ୍ଷା ଦାତା ॥
କଠୋର ହରକୋଦଣ୍ଡ ଯେହୁ ବିଭଞ୍ଜିଲେ । ତାହା ସଙ୍ଗେ ନୃପତିଙ୍କ ଗର୍ବ ଯେ ଗଞ୍ଜିଲେ ॥୪॥
ଖର ଦୂଷଣ ତ୍ରିଶିର ଆଦିର ଯେ ବାଳି । ବଧିଲେ ଅତୁଳନୀୟ ସର୍ବ ବଳଶାଳୀ ॥୫॥
ଯାର ବଳ ଲବ ଲେଶ ମାତ୍ର ପାଇ ଜିଣିଲୁ ସଚରାଚର ।
ମୁହିଁ ଦୂତ ତାର ଆଣିଲୁ ତୁ ଯାର ହରି ପ୍ରିୟ ନାରୀବର ॥୨୧॥

---

ମୋତେ ଅର୍ଥାତ୍ ମୋ ନାମ ଓ ଯଶକୁ କାନରେ ଶୁଣିନାହୁଁ ? ରେ ଶଠ ! ମୁଁ ତୋତେ ଅତିଶୟ ନିର୍ଭୀକ ଦେଖୁଛି ॥ ୧ ॥ ତୁ କେଉଁ ଅପରାଧରେ ରାକ୍ଷସମାନଙ୍କୁ ମାରିଲୁ ? ରେ ମୂର୍ଖ ! କହ, ତୋ ମନରେ କଣ ପ୍ରାଣ ଯିବ ବୋଲି ଭୟ ନାହିଁ ?" ହନୁମାନ କହିଲେ, "ହେ ରାବଣ ! ଶୁଣ; ଯାହାଙ୍କର ବଳ ପାଇ ମାୟା ସମଗ୍ର ବ୍ରହ୍ମାଣ୍ଡ-ସମୂହ ସୃଷ୍ଟି କରେ, ହେ ଦଶଶିର ! ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଯାହାଙ୍କ ବଳରେ ସଂସାରର ସୃଜନ, ପାଳନ ଓ ସଂହାର କରନ୍ତି, ଯାହାଙ୍କ ବଳରେ ସହସ୍ର-ମୁଖ ଶେଷ ପର୍ବତ ଓ ବନ ସମେତ ସମସ୍ତ ବ୍ରହ୍ମାଣ୍ଡକୁ ଶିର ଉପରେ ଧାରଣ କରନ୍ତି, ଯେ ଦେବତାମାନଙ୍କ ରକ୍ଷା ନିମନ୍ତେ ନାନାବିଧ ଶରୀର ଧାରଣ କରନ୍ତି ଏବଂ ଯେ ତୁମ ପରି ମୂର୍ଖଙ୍କୁ ଶିକ୍ଷା ଦିଅନ୍ତି, ଯେ ଶିବଙ୍କର କଠୋର ଧନୁକୁ ଭାଙ୍ଗି ପକାଇଲେ ଏବଂ ତାହା ସହିତ ନୃପବୃନ୍ଦଙ୍କ ଗର୍ବ ଖର୍ବ କରିଦେଲେ, ଯେ ଖର, ଦୂଷଣ, ତ୍ରିଶିରା ଓ ବାଲି ଆଦି ସକଳ ଅତୁଳନୀୟ ବଳବାନ୍ ବୀରଙ୍କୁ ବଧ କଲେ ॥ ୨-୫ ॥ ଦୋହା :— ଯାହାଙ୍କର ଲେଶ ମାତ୍ର ବଳରେ ତୁମେ ସମସ୍ତ ଚରାଚର ଜଗତକୁ ଜୟ କରିଅଛ ଏବଂ ଯାହାଙ୍କର ପ୍ରିୟପତ୍ନୀଙ୍କୁ ତୁମେ ହରଣ କରି ଆଣିଛ; ମୁଁ ତାହାଙ୍କର ଦୂତ ॥ ୨୧ ॥

ଜାନଉଁ ମୈଁ ତୁହ୍ମାରି ପ୍ରଭୁତାଈ । ସହସବାହୁ ସନ ପରୀ ଲରାଈ ॥
ସମର ବାଲି ସନ କରି ଜସୁ ପାୱା । ସୁନି କପି ବଚନ ବିହସି ବିହରାୱା ॥୧॥
ଖାୟଉଁ ଫଲ ପ୍ରଭୁ ଲାଗୀ ଭୂଖା । କପି ସୁଭାଉ ତେଁ ତୋରେଉଁ ରୂଖା ॥
ସବ କେଁ ଦେହ ପରମ ପ୍ରିୟ ସ୍ୱାମୀ । ମାରହିଁ ମୋହି କୁମାରଗ ଗାମୀ ॥୨॥
ଜିହ୍ନ ମୋହି ମାରା ତେ ମୈଁ ମାରେ । ତେହି ପର ବାଁଧେଉ ତନୟଁ ତୁହ୍ମାରେଁ ॥
ମୋହି ନ କଛୁ ବାଁଧେ କଇ ଲାଜା । କୀହ୍ନ ଚହଉଁ ନିଜ ପ୍ରଭୁ କର କାଜା ॥୩॥
ବିନତୀ କରଉଁ ଜୋରି କର ରାବନ । ସୁନହୁ ମାନ ତଜି ମୋରି ସିଖାୱନ ॥
ଦେଖହୁ ତୁହ୍ମ ନିଜ କୁଲହି ବିଚାରୀ । ଭ୍ରମ ତଜି ଭଜହୁ ଭଗତ ଭୟହାରୀ ॥୪॥
ଜାକେଁ ଡର ଅତି କାଲ ଡେରାଈ । ଜୋ ସୁର ଅସୁର ଚରାଚର ଖାଈ ॥
ତାସୋଁ ବୟରୁ କବହୁଁ ନହିଁ କୀଜୈ । ମୋରେ କହେଁ ଜାନକୀ ଦୀଜୈ ॥୫॥

---

ଜାଣଇ ମୁହିଁ ପ୍ରଭୁତା ବିକ୍ରମ ତୋହର । ସହସ୍ରବାହୁ ସଙ୍ଗତେ ହୁଅନ୍ତେ ସମର ॥
ବାଳି ସହ ରଣେ ଯଶ ଲଭିଅଛୁ ପୁଣି । ହସି ବାଆଁରେଇ ଦେଲା କପି ବାଣୀ ଶୁଣି ॥୧॥
କ୍ଷୁଧା ଲାଗିବାରୁ ମୋତେ ଫଳ ମୁଁ ଭୁଞ୍ଜିଲି । କପି ସ୍ୱଭାବ କାରଣେ ବିଟପ ଭାଙ୍ଗିଲି ॥
ସମସ୍ତଙ୍କୁ ଅତି ପ୍ରିୟ ନିଜ ଦେହ, ସ୍ୱାମୀ । ମାରିଲେ ମୋତେ ରାକ୍ଷସ କୁମାରଗ-ଗାମୀ ॥୨॥
ମାରିଲି ମୁହିଁ ତାହାଙ୍କୁ ଯେ ମୋତେ ମାରିଲେ । ଏହା ପରେ ଆସି ତୋର ତନୟ ବାନ୍ଧିଲା ॥
ମୋତେ ବାନ୍ଧିବାରେ କିଛି ନ ଲାଗଇ ଲାଜ । କରିବାକୁ ଚାହେଁ ନିଜ ପ୍ରଭୁଙ୍କର କାର୍ଯ୍ୟ ॥୩॥
ବିନତି କରୁଛି କର ଯୋଡ଼ି, ଲଙ୍କେଶ୍ୱର । ଶୁଣ ମାନ ପରିହରି ଶିକ୍ଷା ମୋହର ॥
ଦେଖ ତୁହି ଆପଣାର କୁଳକୁ ବିଚାରି । ଭ୍ରମ ତ୍ୟାଗ କରି ଭଜ ଭକ୍ତ ଭୟହାରୀ ॥୪॥
ଯାର ଅତି ତ୍ରାସେ କାଳ ଶଙ୍କିତ ହୁଅଇ । ଯେ ସୁର ଅସୁର ଚର ଅଚରେ ଭକ୍ଷଇ ॥
ତାହାଙ୍କ ସଙ୍ଗତେ ବୈର କଦାପି ନ କର । ସୀତାଙ୍କୁ ଦିଅ ବଚନ ମାନିଣ ମୋହର ॥୫॥

---

ଚୌପାଈ:—ମୁଁ ତୁମ ପ୍ରଭୁତ୍ୱକୁ ଭଲରୂପେ ଜାଣେ । ସହସ୍ରବାହୁ ସଙ୍ଗରେ ତୁମର ଲଢ଼ାଇ ହୋଇଥିଲା ଏବଂ ବାଳି ସହିତ ଯୁଦ୍ଧ କରି ତୁମେ ଯଶଗୌରବ ଲାଭ କରିଥିଲ ।” ହନୁମାନଙ୍କ ମର୍ମଭେଦୀ ବଚନ ଶୁଣି, ରାବଣ ହସି ଉକ୍ତ କଥାକୁ ଟାଳି ଦେଲା ॥୧॥ (ହନୁମାନ୍ ପୁଣି କହିଲେ) “ହେ ରାକ୍ଷସଗଣଙ୍କ ପ୍ରଭୁ ! ମୋତେ ଭୋକ ଲାଗୁଥିଲା । ଏଣୁ ମୁଁ ଫଳ ଖାଇଲି ଏବଂ ବାନର ସ୍ୱଭାବ ହେତୁ ଗଛ ଭାଙ୍ଗି ପକାଇଲି । ହେ ନିଶାଚରଗଣଙ୍କ ସ୍ୱାମି ! ଶରୀର ସମସ୍ତଙ୍କର ପରମପ୍ରିୟ । କୁପଥଗାମୀ ଦୁଷ୍ଟ ରାକ୍ଷସମାନେ ମୋତେ ମାରିବାକୁ ଲାଗିଲେ ॥୨॥ ସେତେବେଳେ ମୋତେ ଯେଉଁମାନେ ମାରିଲେ, ମୁଁ ସେହିମାନଙ୍କୁ ମଧ୍ୟ ମାରିଲି । ତାହା ଉପରେ ତୁମ ପୁଅ ମୋତେ ବାନ୍ଧି ପକାଇଲା । କିନ୍ତୁ ବନ୍ଧା ଯିବାରେ ମୋର ଟିକିଏ ହେଲେ ଲଜ୍ଜା ନାହିଁ । ମୁଁ ତ ମୋ ପ୍ରଭୁଙ୍କ କାର୍ଯ୍ୟ କରିବା ହେତୁ, ସେଇଥିରେ ଆଗ୍ରହ ॥୩॥ ହେ ରାବଣ ! ମୁଁ ହାତଯୋଡ଼ି ତୁମକୁ ପ୍ରାର୍ଥନା କରୁଛି—ତୁମେ ଅଭିମାନ ଛାଡ଼ି ମୋ ଉପଦେଶ ଶୁଣ । ନିଜର ପବିତ୍ର କୁଳ ବିଷୟରେ ବିଚାର କରି ଦେଖ ଏବଂ ଭ୍ରମକୁ ପରିହାର କରି

ପ୍ରନତପାଲ ରଘୁନାୟକ କରୁନାସିନ୍ଧୁ ଖରାରି ।
ଗଏଁ ସରନ ପ୍ରଭୁ ରାଖିହେଁ ତବ ଅପରାଧ ବିସାରି ॥୨୨॥

ରାମ ଚରନ ପଂକଜ ଉର ଧରହୂ । ଲଙ୍କା ଅଚଲ ରାଜୁ ତୁମ୍ହ କରହୂ ॥
ରିଷି ପୁଲସ୍ତି ଜସୁ ବିମଲ ମୟଂକା । ତେହି ସସି ମହୁଁ ଜନି ହୋହୁ କଲଂକା ॥୧॥
ରାମ ନାମ ବିନୁ ଗିରା ନ ସୋହା । ଦେଖୁ ବିଚାରି ତ୍ୟାଗି ମଦ ମୋହା ॥
ବସନହୀନ ନହିଁ ସୋହ ସୁରାରୀ । ସବ ଭୂଷନ ଭୂଷିତ ବର ନାରୀ ॥୨॥
ରାମ ବିମୁଖ ସଂପତି ପ୍ରଭୁତାଈ । ଜାଇ ରହୀ ପାଈ ବିନୁ ପାଈ ॥
ସଜଲ ମୂଲ ଜିନ୍ହ ସରିତନ୍ହ ନାହୀଁ । ବରଷି ଗଏଁ ପୁନି ତବହିଁ ସୁଖାହୀଁ ॥୩॥
ସୁନୁ ଦସକଂଠ କହଉଁ ପନ ରୋପୀ । ବିମୁଖ ରାମ ତ୍ରାତା ନହିଁ କୋପୀ ॥
ସଙ୍କର ସହସ ବିଷ୍ଣୁ ଅଜ ତୋହୀ । ସକହିଁ ନ ରାଖି ରାମ କର ଦ୍ରୋହୀ ॥୪॥

---

ପ୍ରଣତ-ପାଳକ ଶ୍ରୀ ରଘୁନାୟକ କରୁଣା-ସିନ୍ଧୁ ଖରାରି ।
ଗଲେ ତୁ ଶରଣ ରଖିବେ ଭୁଲିଣ ତୋର ଅପରାଧ ରାଶି ॥୨୨॥

ରାମ ଚରଣ-ପଙ୍କଜ ସ୍ମରଣ ହୃଦୟେ । ଲଙ୍କାରେ ଅଚଳ ରାଜ୍ୟ କର ତୁ ନିର୍ଭୟେ ॥
ଋଷି ପୁଲସ୍ତ୍ୟଙ୍କ ଯଶ ନିର୍ମଳ ନିଃଶେଷ । ସେ କୁଳେ କଳଙ୍କ କେବେ ନ ହୁଅ, ଲଙ୍କେଶ ॥୧॥
'ରାମ' ନାମ ବିନା ବାଣୀ ନ ହୁଏ ଶୋଭନ । ଦେଖ ଭାବି ମଦ ମୋହ କରିଣ ବର୍ଜନ ॥
ବସନ ବିହୁନେ ଶୋଭା ନ ପାଏ, ସୁରାରି । ସର୍ବାଲଙ୍କାର-ମଣ୍ଡିତା ନାରୀ ମନୋହାରୀ ॥୨॥
ରାମ-ବିମୁଖ ଜନର ସଂପତ୍ତି ପ୍ରଭୁତା । ଥାଇ ନ ଥିଲା ପରାୟ, ଜାଣ ଏହା କଥା ॥
ସଜଳ ମୂଳ ନୁହନ୍ତି ଯେବଣ ସରିତ । ବର୍ଷା ବିତିଗଲେ ଶୁଖି ଯାଆନ୍ତି ତୁରିତ ॥୩॥
ପଣ କରି କହୁଛି ମୁଁ, ଶୁଣ, ଲଙ୍କେଶ୍ୱର । କେହି ହୁବା ତ୍ରାତା ନାହିଁ ରାମ ବିମୁଖର ॥
ସହସ୍ର ବିଷ୍ଣୁ ବିରଞ୍ଚି ବିରୂପାକ୍ଷ ତୋତେ । ରଖି ନ ପାରିବେ କେବେ ରାମଦ୍ରୋହୀ ହୋଲେ ॥୪॥

---

ଭକ୍ତ-ଭୟ-ହାରକ ଭଗବାନଙ୍କୁ ଭଜନ କର ॥ ୪ ॥ ଯେ ଦେବତା, ରାକ୍ଷସ ଓ ସମସ୍ତ ଚରାଚରଙ୍କୁ ଗ୍ରାସ କରି ପକାଏ, ସେହି କାଳ ମଧ୍ୟ ପ୍ରଭୁଙ୍କ ଭୟରେ ଅତିଶୟ ଭୀତ ହୁଏ । ସେହି ପ୍ରଭୁଙ୍କ ସହିତ କଦାପି ଶତ୍ରୁତା କରନାହିଁ ଏବଂ ମୋର କଥାନୁସାରେ ଜାନକୀଙ୍କୁ ଫେରାଇ ଦିଅ ॥୫॥ ଦୋହା :—ଖରଶତ୍ରୁ ଶ୍ରୀରଘୁନାଥ ଶରଣାଗତଙ୍କ ରକ୍ଷକ ଓ ଦୟାର ସାଗର । ଶରଣ ଗଲେ ପ୍ରଭୁ ତୁମର ଅପରାଧ ଭୁଲି ତୁମଙ୍କୁ ତାଙ୍କ ଶରଣରେ ଗ୍ରହଣ କରିନେବେ ॥ ୨୨ ॥ ଚୌପାଈ :—ତୁମେ ଶ୍ରୀରାମଙ୍କ ଚରଣ-କମଳକୁ ହୃଦୟରେ ଧାରଣ କର ଏବଂ ଲଙ୍କାରେ ଅଚଳ ରାଜତ୍ୱ କର । ଋଷି ପୁଲସ୍ତ୍ୟଙ୍କ ଯଶ ନିର୍ମଳ ଚନ୍ଦ୍ରମା ସମାନ । ତୁମେ ସେହି ଚନ୍ଦ୍ରମାରେ କଳଙ୍କ ହୁଅନାହିଁ ॥ ୧ ॥ 'ରାମ' ନାମ ବିନା ବାଣୀ ଶୋଭା ପାଏନାହିଁ । ମଦ ମୋହ ପରିତ୍ୟାଗ କରି ବିଚାରି ଦେଖ । ହେ ଦେବଗଣଙ୍କ ଶତ୍ରୁ ! ସମସ୍ତ ଭୂଷଣରେ ଭୂଷିତା ସୁନ୍ଦରୀ ସ୍ତ୍ରୀ ମଧ୍ୟ ବସ୍ତ୍ର ବିନା ଶୋଭା ପାଏ ନାହିଁ ॥ ୨ ॥ ରାମ-ବିମୁଖ ପୁରୁଷ ପାଖରେ ସମ୍ପତ୍ତି ଓ ପ୍ରଭୁତ୍ୱ ରହି ମଧ୍ୟା ଗଲା ପରି ଏବଂ ତାହା

ମୋହ ମୂଲ ବହୁ ସୂଲ ପ୍ରଦ ତ୍ୟାଗହୁ ତମ ଅଭିମାନ ।
ଭଜହୁ ରାମ ରଘୁନାୟକ କୃପାସିନ୍ଧୁ ଭଗବାନ ॥୨୩॥
ଜଦପି କହୀ କପି ଅତି ହିତ ବାନୀ । ଭଗତି ବିବେକ ବିରତି ନୟ ସାନୀ ॥
ବୋଲା ବିହସି ମହା ଅଭିମାନୀ । ମିଲା ହମହି କପି ଗୁର ବଡ ଜ୍ଞାନୀ ॥୧॥
ମୃତ୍ୟୁ ନିକଟ ଆଈ ଖଲ ତୋହୀ । ଲାଗେସି ଅଧମ ସିଖାୱନ ମୋହୀ ॥
ଉଲଟା ହୋଇହି କହ ହନୁମାନା । ମତିଭ୍ରମ ତୋର ପ୍ରଗଟ ମୈଁ ଜାନା ॥୨॥
ସୁନି କପି ବଚନ ବହୁତ ଖିସିଆନା । ବେଗି ନ ହରହୁ ମୂଢ଼ କର ପ୍ରାନା ॥
ସୁନତ ନିସାଚର ମାରନ ଧାଏ । ସଚିବନ୍ହ ସହିତ ବିଭୀଷନୁ ଆଏ ॥୩॥

---

ମୋହ ଅଟେ ମୂଳ ବିବିଧ ଶୂଳର ତ୍ୟାଗ କରି ଅଭିମାନ ।
ଭଜନ ତୁ କର ରାମ ରଘୁବର କୃପାସିନ୍ଧୁ ଭଗବାନ ॥୨୩॥
ଯଦ୍ୟପି କହିଲା କପି ହିତ ବାଣୀ ଅତି । ବିବେକ ବୈରାଗ୍ୟ ନୀତି ମିଶ୍ରିତ ଭକତି ॥
ବୋଇଲା ହସି ରାବଣ ମହା ଅଭିମାନୀ । ମିଳିଛି ମୋତେ ମର୍କଟ ଗୁରୁ ବଡ ଜ୍ଞାନୀ ॥୧॥
ଖଳ, ତୋ ନିକଟେ ମୃତ୍ୟୁ ହେଲାଣି ପ୍ରବେଶ । ଦେଉଛୁ ଅଧମ, ତେଣୁ ମୋତେ ଉପଦେଶ ॥
ଓଲଟା ଅଟେ, ପବନ ତନୟ କହଇ । ମତିଭ୍ରମ ତୋହର ମୁଁ ପ୍ରତ୍ୟକ୍ଷେ ଜାଣଇ ॥୨॥
ଶୁଣନ୍ତେ କପି ବଚନ ହୋଇ କ୍ରୋଧାନ୍ୱିତ । ବୋଲେ ମୂଢ, ପ୍ରାଣ କପିଁ ନ ହର ତୁରିତ ॥
ଶୁଣି ମାରିବା ନିମନ୍ତେ ଅସୁରେ ଧାଇଁଲେ । ମନ୍ତ୍ରୀ ସହ ବିଭୀଷଣ ତେବେ ଆଗମିଲେ ॥୩॥

---

ପାଇ ସୁଦ୍ଧା ନ ପାଇବା ସଙ୍ଗେ ସମାନ । ଯେଉଁ ନଦୀର ମୂଳରେ ଜଳ-ସ୍ରୋତ ନ ଥାଏ, ଅର୍ଥାତ୍ ଯେ କେବଳ ବୃଷ୍ଟି ଜଳ ଉପରେ ନିର୍ଭର କରେ, ସେହି ନଦୀ ବର୍ଷା ବିତିଯିବା ମାତ୍ରେ ଶୀଘ୍ର ଶୁଖିଯାଏ ॥ ୩ ॥ ହେ ରାବଣ ! ଶୁଣ । ମୁଁ ପ୍ରତିଜ୍ଞା କରି କହୁଛି ଯେ, ରାମ-ବିମୁଖ ଜନଙ୍କୁ କେହି ରକ୍ଷା କରି ପାରିବେ ନାହିଁ । ସହସ୍ର ସହସ୍ର ଶଙ୍କର, ବିଷ୍ଣୁ ଓ ବ୍ରହ୍ମା ସୁଦ୍ଧା ଶ୍ରୀରାମଦ୍ରୋହୀ ହୋଇଥିବାରୁ ତୁମଙ୍କୁ ରକ୍ଷା କରି ପାରିବେ ନାହିଁ ॥ ୪ ॥ ଦୋହା :—ମୋହହିଁ ଯାହାର ମୂଳ, ଅଜ୍ଞାନ-ଜନିତ ଏପରି ଅତିଶୟ ପୀଡ଼ାଦାୟକ ତମ ସଦୃଶ ଅଭିମାନକୁ ତ୍ୟାଗ କରିଦିଅ ଏବଂ ରଘୁକୁଳ-ନାୟକ କୃପାସାଗର ଭଗବାନ୍ ଶ୍ରୀରାମଚନ୍ଦ୍ରଙ୍କ ଭଜନ କର ।" ॥ ୨୩ ॥ ଚୌପାଇ :—ହନୁମାନ୍ ଭକ୍ତି, ଜ୍ଞାନ, ବୈରାଗ୍ୟ ଓ ନୀତି-ସମ୍ବଳିତ ବହୁତ ହିତକର କଥା କହିଲେ ହେଁ ମହା-ଅଭିମାନୀ ରାବଣ ହସି ବ୍ୟଙ୍ଗ କରି କହିଲା, "ମୋତେ ଏହି ବାନର ଗୋଟାଏ ବଡ ଜ୍ଞାନୀ ଗୁରୁ ରୂପେ ମିଳିଗଲା ।" ॥ ୧ ॥ ରେ ଦୁଷ୍ଟ ! ତୋ ମୃତ୍ୟୁ ଆସନ୍ନ । ଅଧମ ! ମୋତେ ଶିକ୍ଷା ଦେଇ ଚାଲିଛୁ ।" ହନୁମାନ୍ କହିଲେ, "ଏହାର ଠିକ୍ ବିପରୀତ ଘଟଣା ଘଟିବ (ଅର୍ଥାତ୍ ତୋହରି ମୃତ୍ୟୁ ଆସନ୍ନ, ମୋହର ନୁହେଁ) । ମୁଁ ପ୍ରତ୍ୟକ୍ଷ ଭାବରେ ଜାଣିଲିଣି, ଏହା ତୋର ମତିଭ୍ରମ ।" ॥ ୨ ॥ ହନୁମାନଙ୍କ ବଚନ ଶୁଣି, ରାବଣ ଅତିଶୟ କୋପ କଲା ଏବଂ କହିଲା, "ଆରେ ! ଏ ମୂର୍ଖର ପ୍ରାଣ ଶୀଘ୍ର କାହିଁକି ହରଣ କରୁନାହଁ ?"

ନାଇ ସୀସ କରି ବିନୟ ବହୂତା । ନୀତି ବିରୋଧ ନ ମାରିଅ ଦୂତା ॥
ଆନ ଦଣ୍ଡ କଛୁ କରିଅ ଗୋସାଁଈ । ସବହୀଁ କହା ମନ୍ତ୍ର ଭଲ ଭାଈ ॥୪॥
ସୁନତ ବିହସି ବୋଲା ଦସକଂଧର । ଅଂଗ ଭଂଗ କରି ପଠଇଅ ବଂଦର ॥୫॥

କପି କେଁ ମମତା ପୂଁଛ ପର ସବହି କହଉଁ ସମୁଝାଇ ।
ତେଲ ବୋରି ପଟ ବାଁଧି ପୁନି ପାବକ ଦେହୁ ଲଗାଇ ॥୨୪॥

ପୂଁଛହୀନ ବାନର ତହଁ ଜାଇହି । ତବ ସଠ ନିଜ ନାଥହି ଲଇ ଆଇହି ॥
ଜିନ୍ହ କୈ କୀନ୍ହିସି ବହୁତ ବଡ଼ାଈ । ଦେଖଉଁ ମୈଁ ତିନ୍ହ କୈ ପ୍ରଭୁତାଈ ॥୧॥
ବଚନ ସୁନତ କପି ମନ ମୁସୁକାନା । ଭଇ ସହାୟ ସାରଦ ମୈଁ ଜାନା ॥
ଜାତୁଧାନ ସୁନି ରାବନ ବଚନା । ଲାଗେ ରଚୈଁ ମୂଢ଼ ସୋଇ ରଚନା ॥୨॥

---

ପ୍ରଣମି ବୋଇଲେ କରି ବିନୟ ବହୁତ । ନୀତି ବିରୋଧ, ଲଙ୍କେଶ, ନ ମାରନ୍ତୁ ଦୂତ ॥
ଇତର ଦଣ୍ଡ ବିଧାନ କରନ୍ତୁ, ଗୋସାଇଁ । ସମସ୍ତେ କହିଲେ ଭଲ ଏ ମନ୍ତ୍ରଣା, ଭାଇ ॥୪॥
ଶୁଣନ୍ତେ ହସି ବୋଇଲା ନିଶାଚରେଶ୍ୱର । ଅଙ୍ଗ ଭଗ୍ନ କରି ତେବେ ପଠାଅ ବାନର ॥୫॥

କପିର ବହୁତ ପୁଚ୍ଛରେ ମମତ୍ୱ କହେ ଦୈତ୍ୟଙ୍କୁ ବୁଝାଇ ।
ତଇଲ ବୋଳଣ ବସ୍ତ୍ର ବାନ୍ଧି ପୁଣ ପାବକ ଦିଅ ଲଗାଇ ॥୨୪॥

ପୁଚ୍ଛହୀନ ହୋଇ ଯେବେ ମର୍କଟ ଯିବ । ତେବେ ଶଠ ସଙ୍ଗେ ନିଜ ସ୍ୱାମୀଙ୍କୁ ଆଣିବ ॥
କରୁଛି ଅତି ଅମିତ ବଡ଼ାଇ ଯାହାର । ଦେଖିବି ମୁହିଁ କେମନ୍ତ ପ୍ରଭୁତ୍ୱ ତାହାର ॥୧॥
ବଚନ ଶୁଣନ୍ତେ କପି ମନେ ମୁରୁକିଲା । ଜାଣୁଛି ମୁହିଁ, ଶାରଦା ସହାୟ ହୋଇଲା ॥
ଶୁଣି ଯାତୁଧାନେ ଦଶବଦନ ବଚନ । ମୂଢେ ଅଗ୍ନିସଂଯୋଗର କରିଲେ ରଚନ ॥୨॥

---

ଶୁଣିବା ମାତ୍ରେ ରାକ୍ଷସମାନେ ତାହାଙ୍କୁ ମାରିବାକୁ ଦୌଡ଼ିଲେ । ସେତିକିବେଳେ ମନ୍ତ୍ରୀମାନଙ୍କ ସହିତ ବିଭୀଷଣ ସେଠାରେ ଆସି ପହଞ୍ଚିଲେ ॥ ୩ ॥ ସେ ମୁଣ୍ଡ ନୁଆଇଁ ଅତି ବିନୟ ସହକାରେ ରାବଣଙ୍କୁ କହିଲେ, "ଦୂତକୁ ମାରିବା ଉଚିତ ନୁହେଁ । ଏହା ନୀତି-ବିରୁଦ୍ଧ । ହେ ଗୋସାଇଁ ! ଅନ୍ୟ କୌଣସି ଦଣ୍ଡ ଦିଆଯାଉ । ସମସ୍ତେ କହିଲେ, "ଭାଇ, ଏହି ପରାମର୍ଶ ଉତ୍ତମ ।" ॥ ୪ ॥ ଏହା ଶୁଣିବା ମାତ୍ରେ ରାବଣ ହସି କହିଲା, "ଆଚ୍ଛା, ବାନରର ଅଙ୍ଗଭଙ୍ଗ କରି ତାହାକୁ ପଠାଇ ଦିଆଯାଉ ॥ ୫ ॥ ଦୋହା —ମୁଁ ସମସ୍ତଙ୍କୁ ବୁଝାଇ କହୁଛି । ଲାଙ୍ଗୁଳଠାରେ ବାନରର ମମତା ବେଶୀ, ଅତଏବ ତେଲରେ ଲୁଗା ବୁଡ଼ାଇ ଏହାର ଲାଙ୍ଗୁଳରେ ବାନ୍ଧିଦିଅ ଏବଂ ତହିଁରେ ନିଆଁ ଲଗାଇ ଦିଅ ॥୨୪॥ ଚୌପାଈ:—ଯେତେବେଳେ ଏହି ବାନର ଲାଙ୍ଗୁଳ-ହୀନ ଅବସ୍ଥାରେ ସେଠାକୁ (ନିଜ ପ୍ରଭୁଙ୍କ ନିକଟକୁ) ଯିବ, ସେତେବେଳେ ଏହି ମୂର୍ଖ ତାହାର ସ୍ୱାମୀଙ୍କୁ ଅବଶ୍ୟ ସଙ୍ଗରେ ନେଇ ଆସିବ । ଯାହାଙ୍କର ଏ ଏତେ ବଡ଼ାଇ କରୁଛି, ମୁଁ ତାଙ୍କ ପ୍ରଭୁତ୍ୱ ଓ ସାମର୍ଥ୍ୟ ଟିକିଏ ଦେଖିନେବି ଭଲା ।" ॥ ୧ ॥ ଏହି ବଚନ ଶୁଣି ହନୁମାନ୍ ମନେ ମନେ ହସିଲେ ଏବଂ ଭାବିଲେ, "ସରସ୍ୱତୀ ଏହାର ଏପରି ବୁଦ୍ଧି-ପ୍ରାପ୍ତିରେ ସହାୟକ ହୋଇଛନ୍ତି

ରହା ନ ନଗର ବସନ ଘୃତ ତେଲା । ବାଢ଼ୀ ପୂଁଛ କୀନ୍ହ କପି ଖେଲା ॥
କୌତୁକ କହଁ ଆଏ ପୁରବାସୀ । ମାରହିଁ ଚରନ କରହିଁ ବହୁ ହାଁସୀ ॥୩॥
ବାଜହିଁ ଢୋଲ ଦେହିଁ ସବ ତାରୀ । ନଗର ଫେରି ପୁନି ପୂଁଛ ପ୍ରଜାରୀ ॥
ପାବକ ଜରତ ଦେଖି ହନୁମଂତା । ଭୟଉ ପରମ ଲଘୁରୂପ ତୁରଂତା ॥୪॥
ନିବୁକି ଚଢ଼େଉ କପି କନକ ଅଟାରୀଁ । ଭଈଁ ସଭୀତ ନିସାଚର ନାରୀଁ ॥୫॥

ହରି ପ୍ରେରିତ ତେହି ଅବସର ଚଲେ ମରୁତ ଉନଚାସ ।
ଅଟ୍ଟହାସ କରି ଗର୍ଜା କପି ବଢ଼ି ଲାଗ ଅକାସ ॥୨୫॥

ଦେହ ବିସାଲ ପରମ ହରୁଆଈ । ମଂଦିର ତେଁ ମଂଦିର ଚଢ଼ ଧାଈ ॥
ଜରଇ ନଗର ଭା ଲୋଗ ବିହାଲା । ଝପଟ ଲପଟ ବହୁ କୋଟି କରାଲା ॥୧॥

---

ନ ରହିଲ ପୁର ମଧ୍ୟେ ଘୃତ ବସ୍ତ୍ର ତୈଳ । ବଢ଼ିଲା ପୁଚ୍ଛ କୌତୁକ କପି କଲା ଖେଳ ॥
କଉତୁକ ଦେଖିବାକୁ ନଗର ନିବାସୀ । ଗୋଇଠା ମାରି କରନ୍ତି ଉପହାସ ଅସି ॥୩॥
ବଜାଇ ଢୋଲ ସକଳେ ଦେଇ କରତାଳି । ନଗରେ ବୁଲାଇ ପୁଚ୍ଛେ ଅଗ୍ନି ଦେଲେ ଜାଳି ॥
ବିଲୋକି ପବନ ସୁତ ଅଗ୍ନି ପ୍ରଜ୍ୱଳିତ । ହୋଇଲେ ଅତ୍ୟନ୍ତ ସୂକ୍ଷ୍ମ ଶରୀର ତୁରିତ ॥୪॥
ଖସି ଚଢ଼ିଗଲେ ହେମ ଅଟ୍ଟାଳି ଉପରେ । ହେଲେ ନିଶାଚର ନାରୀ କାତର ଭୟରେ ॥୫॥

ହରିଙ୍କ ଇଚ୍ଛାରେ ବହିଲ ସେ କାଳେ ପ୍ରଭଞ୍ଜନ ଅଣଚାଶ ।
କରି ଅଟ୍ଟହାସ ଗରଜି କପିଶ ବଢ଼ି ଛୁଇଁଲା ଆକାଶ ॥୨୫॥

ବିଶାଳ ଦେହ ପରମ ଲଘୁତା ଅଛଇ । ଗୃହରୁ ଗୃହ ସବେଗେ ଧାଇଁଣ ଚଢ଼ଇ ॥
ଜଳଇ ନଗର, ଲୋକେ ବ୍ୟାକୁଳ ହୁଅନ୍ତି । ବାହାରଇ ଜ୍ୱାଳାମାଳା ଭୟଙ୍କର ଅତି ॥୧॥

---

ବୋଲି ହୁଁ ଜାଣିଗଲି ।” ରାବଣର ବଚନ ଶୁଣି, ମୂର୍ଖ ରାକ୍ଷସମାନେ ଅଗ୍ନି-ସଂଯୋଗର ବ୍ୟବସ୍ଥାରେ ଲାଗିପଡ଼ିଲେ ॥୨॥ ଲାଙ୍ଗୁଳରେ ଗୁଡ଼େଇବାରେ ଏତେ ଲୁଗା ଓ ବୋଳିବାରେ ଘିଅ-ତେଲ ଏତେ ଲାଗିଲା ଯେ, ନଗରରେ ଆଉ ଲୁଗା, ଘିଅ ଓ ତେଲ ରହିଲା ନାହିଁ । ହନୁମାନ୍ ଏପରି ଲୀଳା କଲେ ଯେ, ଲାଙ୍ଗୁଳ ବହୁତ ବଢ଼ି ଲମ୍ବା ହୋଇଗଲା । ନଗରବାସୀ ଲୋକମାନେ ତାମସା ଦେଖିବାକୁ ଆସିଲେ । ସେମାନେ ହନୁମାନ୍ଙ୍କୁ ଗୋଇଠା ମାରୁଥା'ନ୍ତି ଏବଂ ବହୁତ ଉପହାସ ଓ ପରିହାସ କରୁଥା'ନ୍ତି ॥୩॥ ଢୋଲ୍ ବାଜୁଥାଏ, ସମସ୍ତେ ତାଳି ବଜାଉଥା'ନ୍ତି । ହନୁମାନ୍ଙ୍କୁ ନଗରରେ ବୁଲାଇ ତାଙ୍କରି ଲାଙ୍ଗୁଳରେ ନିଆଁ ଲଗାଇ ଦେଲେ । ନିଆଁ ଜଳିବାର ଦେଖି, ହନୁମାନ୍ ଶୀଘ୍ର ଅତି କ୍ଷୁଦ୍ର ରୂପ ଧାରଣ କଲେ ॥୪॥ ବନ୍ଧନରୁ ବାହାରି ସେ ସୁନାର ଅଟ୍ଟାଳିକା ଉପରେ ଡେଇଁ ଚଢ଼ିଲେ । ତାଙ୍କୁ ଦେଖି ରାକ୍ଷସ-ନାରୀମାନେ ଭୟଭୀତ ହୋଇ ପଡ଼ିଲେ ॥୫॥
ଦୋହା :—ସେହି ସମୟରେ ଭଗବାନ୍ଙ୍କ ପ୍ରେରଣାରେ ଅଣଚାଶ ପବନ ବହିବାକୁ ଲାଗିଲା । ହନୁମାନ୍ ଅଟ୍ଟହାସ କରି ଗର୍ଜ୍ଜନ କଲେ ଏବଂ ବଢ଼ି ଆକାଶରେ ଯାଇ ଲାଗିଲେ ॥୨୫॥ ଚୌପାଈ :—ଦେହ ଅତି ବିଶାଳ, କିନ୍ତୁ ଅତିଶୟ ହାଲୁକା

ତାତ ମାତୁ ହା ସୁନିଅ ପୁକାରା । ଏହିଁ ଅବସର କୋ ହମହି ଉବାରା ॥
ହମ ଜୋ କହା ୟହ କପି ନହିଁ ହୋଈ । ବାନର ରୂପ ଧରେଁ ସୁର କୋଈ ॥୨॥
ସାଧୁ ଅବଗ୍ୟା କର ଫଲୁ ଐସା । ଜରଇ ନଗର ଅନାଥ କର ଜୈସା ॥
ଜାରା ନଗରୁ ନିମିଷ ଏକ ମାହୀଁ । ଏକ ବିଭୀଷନ କର ଗୃହ ନାହୀଁ ॥୩॥
ତା କର ଦୂତ ଅନଲ ଜେହିଁ ସିରିଜା । ଜରା ନ ସୋ ତେହି କାରନ ଗିରିଜା ॥
ଉଲଟି ପଲଟି ଲଙ୍କା ସବ ଜାରୀ । କୂଦି ପରା ପୁନି ସିନ୍ଧୁ ମଝାରୀ ॥୪॥

ପୂଁଛ ବୁଝାଇ ଖୋଇ ଶ୍ରମ ଧରି ଲଘୁ ରୂପ ବହୋରି ।
ଜନକ ସୁତା କେଁ ଆଗେଁ ଠାଢ଼ ଭୟଉ କର ଜୋରି ॥୨୬॥

ମାତୁ ମୋହି ଦୀଜେ କଛୁ ଚୀହ୍ନା । ଜୈସେଁ ରଘୁନାୟକ ମୋହି ଦୀହ୍ନା ॥
ଚୂଡ଼ାମନି ଉତାରି ତବ ଦୟଊ । ହରଷ ସମେତ ପବନସୁତ ଲୟଊ ॥୧॥

---

ତାତ, ମାତ, ବୋଲି ସର୍ବେ କରନ୍ତି ଚିତ୍କାର । ଏ କାଳେ ଆମ୍ଭଙ୍କୁ କିଏ କରିବ ଉଦ୍ଧାର ॥
ମୁଁ ଯେ କହୁଥିଲି ଏହୁ ନୁହଇ ମର୍କଟ । କପି ରୂପରେ କୌଣସି ଦେବତା ପ୍ରକଟ ॥୨॥
ସାଧୁ ଅବଜ୍ଞାର ଫଳ ହୁଅଇ ଏପରି । ନଗର ଜଳେ ଅନାଥ ଲୋକଙ୍କ ଯେପରି ॥
ନିମିଷ ମଧ୍ୟରେ ସାରା ନଗର ଜାଳିଲା । ବିଭୀଷଣେ ଛାଡ଼ି କାରି ଗୃହ ନ ରହିଲା ॥୩॥
ତାହାଙ୍କ ଭକ୍ତ, ଅନଳ ଯେ କଲେ ସୃଜନ । ସେହି ହେତୁ ଗିରିଜା ! ସେ ନ ହେଲା ଦହନ ॥
ଓଲଟି ପାଲଟି ଜାଳି ଲଙ୍କାକୁ ସମସ୍ତ । ଡେଇଁ ପଡ଼ିଲା ସିନ୍ଧୁରେ ତହୁଁ ହନୁମନ୍ତ ॥୪॥

ପୁଚ୍ଛ ଲିଭାଇଣ ଅପହରି ଶ୍ରମ ଲଘୁ ରୂପରେ ଆବରି ।
ଜନକ ସୁତାଙ୍କ ସମ୍ମୁଖରେ ଆସି ଉଭା ହେଲା ଯୋଡ଼ି କର ॥୨୬॥

ମାତା ! ମୋତେ ଚିହ୍ନ କିଛି କରନ୍ତୁ ପ୍ରଦାନ । ଯେଉଁଭାବେ ଦେଇଥିଲେ ମୋତେ ରଘୁରାଣ ॥
ମଥାମଣି କାଢ଼ି ତହୁଁ ବଇଦେହୀ ଦେଲେ । ହରଷ ସମେତ କରେ ହନୁମନ୍ତ ନେଲେ ॥୧॥

---

(ଅର୍ଥାତ୍ ସ୍ଥୂଳିଦାୟକ) । ସେ ଡେଇଁ ଗୋଟିଏ ମହଲରୁ ଆଉ ଗୋଟିଏ ମହଲ ଉପରେ ଚଢ଼ି ଯାଉଥା'ନ୍ତି । ନଗର ଜଳୁଥାଏ । ଲୋକମାନେ ବ୍ୟାକୁଳ ହେଉଥା'ନ୍ତି । ଅଗ୍ନିର କୋଟି କୋଟି ଭୟଙ୍କର ଶିଖା ଚତୁର୍ଦ୍ଦିଗରେ ବ୍ୟାପି ଯାଉଥାଏ ॥ ୧ ॥ ହାୟ ବାପ ! ହାୟ ମାଆ ! ଏହି ଅବସରରେ ଆମକୁ କିଏ ରକ୍ଷା କରିବ ?—ଚତୁର୍ଦ୍ଦିଗରେ ଏହି କରୁଣ ସ୍ୱର ଶୁଭୁଥାଏ । ସେମାନେ କହୁଥା'ନ୍ତି, "ଆମେ ପ୍ରଥମରୁ କହୁଥିଲୁ--ଏ ବାନର ନୁହେଁ, ବାନର-ରୂପଧାରୀ କୌଣସି ଜଣେ ଦେବତା ! ॥୨॥ ସାଧୁଙ୍କୁ ଅପମାନ ଦେବାର ଫଳ ଏହିପରି । ଦେଖ, ନଗର ଅନାଥ ନଗର ପରି କିପରି ଜଳି ଯାଉଛି ।" ହନୁମାନ୍ ଗୋଟିଏ ମାତ୍ର କ୍ଷଣରେ ସମସ୍ତ ନଗର ଜାଳି ଦେଲେ । ଏକମାତ୍ର ବିଭୀଷଣଙ୍କ ଘର ଜାଳିଲେ ନାହିଁ ॥ ୩ ॥ ଶିବ କହନ୍ତି, "ହେ ପାର୍ବତି ! ଯେ ଅଗ୍ନିକୁ ସୃଷ୍ଟି କରିଛନ୍ତି, ହନୁମାନ୍ ତାଙ୍କର ଦୂତ । ଏହି ହେତୁ ସେ ଅଗ୍ନିରେ ଜଳିଲେ ନାହିଁ । ହନୁମାନ୍ ଓଲଟ-ପାଲଟ କରି ସମଗ୍ର ଲଙ୍କା ଜାଳି ଦେଲେ । ତତ୍ପରେ ସେ ସମୁଦ୍ରରେ ଡେଇଁ ପଡ଼ିଲେ ॥ ୪ ॥

କହେହୁ ତାତ ଅସ ମୋର ପ୍ରନାମା । ସବ ପ୍ରକାର ପ୍ରଭୁ ପୂରନକାମା ॥
ଦୀନ ଦୟାଲ ବିରିଦୁ ସଂଭାରୀ । ହରହୁ ନାଥ ମମ ସଂକଟ ଭାରୀ ॥୨॥
ତାତ ସକ୍ରସୁତ କଥା ସୁନାଏହୁ । ବାନ ପ୍ରତାପ ପ୍ରଭୁହି ସମୁଝାଏହୁ ॥
ମାସ ଦିବସ ମହୁଁ ନାଥୁ ନ ଆୱା । ତୌ ପୁନି ମୋହି ଜିଅତ ନହିଁ ପାୱା ॥୩॥
କହୁ କପି କେହି ବିଧି ରାଖୌଁ ପ୍ରାନା । ତୁମ୍ହହୂ ତାତ କହତ ଅବ ଜାନା ॥
ତୋହି ଦେଖି ସୀତଲି ଭଇ ଛାତୀ । ପୁନି ମୋ କହୁଁ ସୋଇ ଦିନୁ ସୋ ରାତୀ ॥୪॥

ଜନକସୁତହି ସମୁଝାଇ କରି ବହୁ ବିଧି ଧୀରଜୁ ଦୀହ୍ନ ।
ଚରନ କମଲ ସିରୁ ନାଇ କପି ଗୱନୁ ରାମ ପହିଁ କୀହ୍ନ ॥୨୭॥

---

କହିବ ସୁତ ! ପ୍ରଭୁଙ୍କୁ ମୋହର ପ୍ରଣାମ । ସକଳ ପ୍ରକାରେ ତୁମ୍ଭେ ଅଟ ପୂର୍ଣ୍ଣକାମ ॥
ଦୀନ ଦୟାନିଧି ନିଜ ପ୍ରତିଜ୍ଞା ସୁମରି । ହରନ୍ତୁ ନାଥ, ଅତ୍ୟନ୍ତ ସଙ୍କଟ ମୋହରି ॥୨॥
ସୁତ ! ଶକ୍ର ତନୟର କଥା ଶୁଣାଇବ । ବାଣ ପ୍ରତାପ ପ୍ରଭୁଙ୍କୁ କହି ବୁଝାଇବ ॥
ମାସ ଦିନ ମଧ୍ୟେ ଯେବେ ନାଥ ନ ଆସିବେ । ତେବେ ପୁଣି ଜୀବିତରେ ମୋତେ ନ ପାଇବେ ॥୩॥
କହ କେଉଁଭାବେ ପ୍ରାଣ ରଖିବି ମୁଁ, ବତ୍ସ । ତୁମ୍ଭେ ମଧ୍ୟ ଯିବା ପାଇଁ ଏବେ କହୁଅଛ ॥
ତୁମ୍ଭଙ୍କୁ ଦେଖି ଶୀତଳ ହୋଇଥିଲା ଛାତି । ପୁଣି ମୋ ନିମନ୍ତେ ସେହି ଦିନ ସେହି ରାତି ॥୪॥

ଜନକ ସୁତାଙ୍କୁ ବୁଝାଇଣ କପି ଧୈର୍ଯ୍ୟ ବହୁ ପ୍ରଦାନିଲେ ।
ଚରଣ-କମଳେ ପ୍ରଣାମ କରିଣ ରାମଙ୍କ ପାଶେ ଗମିଲେ ॥୨୭॥

---

ଦୋହା :—ହନୁମାନ୍ ଲାଙ୍ଗୁଳକୁ ଲିଭାଇ କ୍ଳାନ୍ତି ଦୂର କଲେ ଏବଂ ପୁଣି କ୍ଷୁଦ୍ର ରୂପ ଧାରଣ କରି ଶ୍ରୀମତୀ ଜାନକୀଙ୍କ ସମ୍ମୁଖରେ ଯାଇଁ ହାତ ଯୋଡ଼ି ଛିଡ଼ା ହେଲେ ॥ ୨୬ ॥ ଚୌପାଈ —ହନୁମାନ କହିଲେ, "ହେ ମାତା ! ଶ୍ରୀ ରଘୁନାଥ ମୋ ହାତରେ ତୁମ ପାଖକୁ ଯେପରି ଗୋଟିଏ ସନ୍ତକ ଦେଇଥିଲେ, ତୁମେ ସେହିପରି ଗୋଟିଏ ସନ୍ତକ ମୋତେ ଦିଅ ।" ତେଣୁ ସୀତା ନିଜ ଚୂଡ଼ାମଣି ଉତାରି ତାହାଙ୍କୁ ଦେଲେ । ହନୁମାନ୍ ତାହା ଆନନ୍ଦ ସହକାରେ ଗ୍ରହଣ କରିନେଲେ । ଜାନକୀ କହିଲେ, "ହେ ବତ୍ସ ! ମୋର ପ୍ରଣାମ ନିବେଦନ କରିବ—"ହେ ପ୍ରଭୋ ! ଆପଣ ସମସ୍ତ ପ୍ରକାରେ ପୂର୍ଣ୍ଣକାମ । ତଥାପି ଦୀନ-ଦୁଃଖୀଙ୍କୁ ଦୟା କରିବା ଆପଣଙ୍କର ଗୌରବ ଏବଂ ମୁଁ ଅତି ଦୀନା । ଅତଏବ ସେହି ଗୌରବକୁ ସ୍ମରଣ କରି ହେ ନାଥ ! ମୋର ଭାରୀ ସଙ୍କଟକୁ ଦୂର କରନ୍ତୁ ।" ॥ ୨ ॥ "ହେ ବତ୍ସ ! ଇନ୍ଦ୍ରପୁତ୍ର ଜୟନ୍ତର କଥା ତାହାଙ୍କୁ ଶୁଣାଇବ ଏବଂ ପ୍ରଭୁଙ୍କୁ ତାହାଙ୍କ ବାଣର ପ୍ରତାପ ସ୍ମରଣ କରାଇ ଦେବ । ଯଦି ମାସକ ମଧ୍ୟରେ ନାଥ ନ ଆସନ୍ତି, ତେବେ ମୋତେ ଆଉ ଜୀବିତାବସ୍ଥାରେ ପାଇବେ ନାହିଁ ।" ॥ ୩ ॥ "ହେ ହନୁମାନ୍ ! କୁହ, ମୁଁ କିପରି ପ୍ରାଣ ରଖିବି । ହେ ତାତ ! ତୁମେ ବି ବର୍ତ୍ତମାନ ଯିବାକୁ କହୁଅଛ । ତୁମକୁ ଦେଖି ମୋ ହୃଦୟ ଶୀତଳ ହେଉଥିଲା । ବର୍ତ୍ତମାନ ମୋ ପକ୍ଷରେ ସେଇ ଦିନ ଓ ସେଇ ରାତି !" ॥ ୪ ॥ ଦୋହା :—ହନୁମାନ୍ ଜାନକୀଙ୍କୁ ବୁଝାଇ

ଚଲତ ମହାଧୁନି ଗର୍ଜେସି ଭାରୀ । ଗର୍ଭ ସ୍ରବହିଁ ସୁନି ନିସିଚର ନାରୀ ॥
ନାଘି ସିନ୍ଧୁ ଏହି ପାରହି ଆୱା । ସବଦ କିଲକିଲା କପିନ୍ହ ସୁନାୱା ॥୧॥
ହରଷେ ସବ ବିଲୋକି ହନୁମାନା । ନୂତନ ଜନ୍ମ କପିନ୍ହ ତବ ଜାନା ॥
ମୁଖ ପ୍ରସନ୍ନ ତନ ତେଜ ବିରାଜା । କୀନ୍ହେସି ରାମଚନ୍ଦ୍ର କର କାଜା ॥୨॥
ମିଲେ ସକଲ ଅତି ଭଏ ସୁଖାରୀ । ତଲଫତ ମୀନ ପାୱ ଜିମି ବାରୀ ॥
ଚଲେ ହରଷି ରଘୁନାୟକ ପାସା । ପୁଁଛତ କହତ ନୱଲ ଇତିହାସା ॥୩॥
ତବ ମଧୁବନ ଭୀତର ସବ ଆଏ । ଅଙ୍ଗଦ ସଂମତ ମଧୁ ଫଲ ଖାଏ ॥
ରଖୱାରେ ଜବ ବରଜନ ଲାଗେ । ମୁଷ୍ଟି ପ୍ରହାର ହନତ ସବ ଭାଗେ ॥୪॥

ଜାଇ ପୁକାରେ ତେ ସବ ବନ ଉଜାର ଜୁବରାଜ ।
ସୁନି ସୁଗ୍ରୀବ ହରଷ କପି କରି ଆଏ ପ୍ରଭୁ କାଜ ॥୨୮॥

---

ଚଳନ୍ତେ ଗର୍ଜନ କଲେ ଧ୍ୱନି ଭୟଙ୍କର । ଶୁଣି ଗର୍ଭପାତ ହେଲା ଦୈତ୍ୟନାରୀଙ୍କର ॥
ଲଂଘି ପାରାବାର ଏହି ପାରକୁ ଆସିଲେ । ବାନରଙ୍କୁ କିଳିକିଳା ଶବ୍ଦ ଶୁଣାଇଲେ ॥୧॥
ହରଷିତ ଦେଖି ସର୍ବେ ପବନ ସୁତଙ୍କୁ । ନୂତନ ଜନ୍ମ ବୋଲିଣ ମଣିଲେ ନିଜକୁ ॥
ପ୍ରସନ୍ନ ବଦନ ତେଜେ ରାଜେ କଳେବର । ରାମ କାର୍ଯ୍ୟ କରିଛନ୍ତି ଜାଣିଲେ ବାନର ॥୨॥
ମିଳି ସର୍ବେ ଅତିଶୟ ପ୍ରସନ୍ନ ହୋଇଲେ । ଛଟପଟ ହେଉଁ ମୀନ ପାଣି ବା ପାଇଲେ ॥
ଚଳିଲେ ହରଷେ ରଘୁନାୟକଙ୍କ ପାଶ । କହି ଶୁଣି ପଥ ମଧ୍ୟେ ନବ ଇତିହାସ ॥୩॥
ତହୁଁ ମଧୁବନ ମଧ୍ୟେ ପଶିଣ ବାନରେ । ମଧୁର ଫଳ ଖାଇଲେ ଅଙ୍ଗଦ ସଙ୍ଗରେ ॥
ରକ୍ଷକ ନିକର ଯହୁଁ ବାରଣ କରିଲେ । ମୁଷ୍ଟି ପ୍ରହାର କରନ୍ତେ ସର୍ବେ ପଳାଇଲେ ॥୪॥

ସମସ୍ତେ ଆସିଣ ଗୁହାରିଲେ, ବନ ଉଜାଡନ୍ତି ଯୁବରାଜ ।
ଶୁଣି କପିପତି ହରଷିତ ଅତି ଭାବି କପି କୃତକାର୍ଯ୍ୟ ॥୨୮॥

---

ବହୁରୂପେ ଧୈର୍ଯ୍ୟ ଦେଲେ ଏବଂ ତାଙ୍କ ଚରଣ-କମଳରେ ମୁଣ୍ଡ ନୁଆଁଇ ଶ୍ରୀରାମଙ୍କ ନିକଟକୁ ଗମନ କଲେ ॥ ୨୭ ॥ ଚୌପାଈ —ଫେରିବା ସମୟରେ ସେ ମହା ଧ୍ୱନି କରି ଭାରି ଗର୍ଜ୍ଜନ କଲେ ଏବଂ ତାହାକୁ ଶୁଣି ରାକ୍ଷସ ନାରୀଙ୍କ ଗର୍ଭପାତ ହେବାକୁ ଲାଗିଲା । ସମୁଦ୍ର ଲଙ୍ଘନ କରି ସେ ଏପାରିକୁ ଆସିଲେ ଏବଂ ବାନରମାନଙ୍କୁ କିଳିକିଳା ଧ୍ୱନି ଶୁଣାଇଲେ ॥ ୧ ॥ ହନୁମାନଙ୍କୁ ଦେଖି, ସମସ୍ତେ ଆନନ୍ଦିତ ହୋଇ ପଡିଲେ ଏବଂ ସେତେବେଳେ ବାନରମାନେ ଆପଣା ଆପଣାର ନବଜନ୍ମ ହେଲା ବୋଲି ବିଚାର କଲେ । ହନୁମାନଙ୍କ ମୁଖ ପ୍ରସନ୍ନ ଓ ଶରୀରରେ ତେଜ ବିରାଜମାନ । ତହିଁରୁ ବାନରମାନେ ବୁଝିପାରିଲେ ଯେ, ସେ ଶ୍ରୀରାମଙ୍କ କାର୍ଯ୍ୟ ସମ୍ପାଦନ କରି ଆସିଅଛନ୍ତି ॥ ୨ ॥ ସମସ୍ତେ ହନୁମାନଙ୍କ ସହିତ ମିଳନ କଲେ ଏବଂ ଅତି ସୁଖ ଲାଭ କଲେ । ସତେ ଅବା ଛଟପଟ ହେଉଥିବା ମୀନକୁ ଜଳ ମିଳିଗଲା । ସମସ୍ତେ ଆନନ୍ଦିତ ହୋଇ ନୂଆ ନୂଆ ଇତିହାସ-ବୃତ୍ତାନ୍ତ ଆଦି କଥାବାର୍ତ୍ତା ହୋଇ ଶ୍ରୀ ରଘୁନାୟକଙ୍କ ପାଖକୁ ଗଲେ ॥ ୩ ॥

ଜୌଁ ନ ହୋତି ସୀତା ସୁଧି ପାଈ । ମଧୁବନ କେ ଫଲ ସକହିଁ କି ଖାଈ ॥
ଏହି ବିଧି ମନ ବିଚାର କର ରାଜା । ଆଇ ଗଏ କପି ସହିତ ସମାଜା ॥୧॥
ଆଇ ସବନ୍ହି ନାୱା ପଦ ସୀସା । ମିଲେଉ ସବନ୍ହି ଅତି ପ୍ରେମ କପୀସା ॥
ପୂଁଛୀ କୁସଲ କୁସଲ ପଦ ଦେଖୀ । ରାମକୃପାଁ ଭା କାଜୁ ବିସେଷୀ ॥୨॥
ନାଥ କାଜୁ କୀନ୍ହେଉ ହନୁମାନା । ରାଖେ ସକଲ କପିନ୍ହ କେ ପ୍ରାନା ॥
ସୁନି ସୁଗ୍ରୀବ ବହୁରି ତେହି ମିଲେଉ । କପିନ୍ହ ସହିତ ରଘୁପତି ପହିଁ ଚଲେଉ ॥୩॥
ରାମ କପିନ୍ହ ଜବ ଆୱତ ଦେଖା । କିଏଁ କାଜୁ ମନ ହରଷ ବିସେଷା ॥
ଫଟିକ ସିଲା ବୈଠେ ଦ୍ୱୌ ଭାଈ । ପରେ ସକଲ କପି ଚରନନ୍ହି ଜାଈ ॥୪॥

---

ଯେବେ ନ ଥାନ୍ତେ ହିଁ ତାଙ୍କ ସମାଚାର ପାଇ । ତେବେ ମଧୁବନ ଫଳ ପାରନ୍ତେ କି ଖାଇ ॥
ଏମନ୍ତେ ମନେ ବିଚାର କରୁ କପିରାଜ । ପ୍ରବେଶ ହୋଇଲେ ଆସି ମର୍କଟ ସମାଜ ॥୧॥
ଆସି ସର୍ବେ ପଦ ତଳେ ପ୍ରଣାମ କରିଲେ । ଅତି ପ୍ରେମେ ସମସ୍ତଙ୍କୁ କପୀଶ ଭେଟିଲେ ॥
ପୁଚ୍ଛନ୍ତେ କୁଶଳ, "ପଦ ଦେଖି ସବୁ ଭଲ । ରାମଙ୍କ କୃପାରେ କାର୍ଯ୍ୟ ହୋଇଲା ସଫଳ" ॥୨॥
ନାଥ ! ଏ କାର୍ଯ୍ୟ ସାଧିଲେ ପବନ କୁମର । ରଖିଲେ ପ୍ରାଣ ସକଳ କପି ସୈନ୍ୟଙ୍କର ॥
ଶୁଣନ୍ତେ ସୁଗ୍ରୀବ ଉଠି ପୁନଶ୍ଚ ମିଳିଲେ । କପିଙ୍କ ସହ ଶ୍ରୀରାମ ସମୀପେ ଚଳିଲେ ॥୩॥
ରାମ ବିଲୋକନ୍ତେ କପି ସେନା ଆଗମନ୍ତ । କୃତକାର୍ଯ୍ୟ ହେବ ମନେ ହର୍ଷ ହେଲେ ଅତି ॥
ସ୍ଫଟିକ ଶିଳାରେ ବସିଥିଲେ ଦୁଇ ଭାଇ । ପଡ଼ିଲେ ଚରଣତଳେ କପି ସର୍ବେ ଯାଇ ॥୪॥

---

ସେତେବେଳେ ସମସ୍ତେ ମଧୁବନ ଭିତରକୁ ଆସିଲେ ଏବଂ ଅଙ୍ଗଦଙ୍କ ସମ୍ମତି କ୍ରମେ ସମସ୍ତେ ମଧୁର ଫଳ ଭୋଜନ କଲେ । ରକ୍ଷକମାନେ ବାରଣ କରିବାରୁ ବାନରମାନେ ବିଧା ମାରିଲେ ଏବଂ ବିଧାମାଡ଼ ଖାଇବା ମାତ୍ରେ ସେମାନେ ମଧୁବନ ଛାଡ଼ି ପଳାଇଲେ ॥୪॥ ଦୋହା —ସେମାନେ ସମସ୍ତେ ଯାଇ ଚିତ୍କାର କଲେ ଯେ, ଯୁବରାଜ ଅଙ୍ଗଦ ବନ ଉଜାଡ଼ି ପକାଉଛନ୍ତି । ଏହା ଶୁଣି ସୁଗ୍ରୀବ ବାନରମାନେ ପ୍ରଭୁଙ୍କ କାର୍ଯ୍ୟ ସମ୍ପାଦନ କରି ଆସିଅଛନ୍ତି ବୋଲି ଜାଣି, ଆନନ୍ଦିତ ହେଲେ ॥ ୨୮ ॥ ଚୌପାଈ —ଯଦି ସୀତାଙ୍କ ଖବର ପାଇ ନ ଥା'ନ୍ତେ, ତେବେ ସେମାନେ ମଧୁବନର ଫଳ ଖାଇ ପାରନ୍ତେ କି ? ରାଜା ସୁଗ୍ରୀବ ଏହିରୂପେ ମନରେ ବିଚାର କରୁଥିବା ବେଳେ ବାନର ସମାଜ ଆସି ସେଠାରେ ପହଞ୍ଚିଲେ ॥ ୧ ॥ ସମସ୍ତେ ଆସି ସୁଗ୍ରୀବଙ୍କ ଚରଣରେ ପ୍ରଣାମ କଲେ । କପିରାଜ ସୁଗ୍ରୀବ ସମସ୍ତଙ୍କ ସହିତ ବଡ଼ ପ୍ରେମରେ ମିଳନ କଲେ । ସେ ସମସ୍ତଙ୍କୁ କୁଶଳ-ବାର୍ତ୍ତା ପଚାରିଲେ । ବାନରମାନେ ଉତ୍ତର ଦେଲେ, "ଆପଣଙ୍କ ଚରଣ ଦର୍ଶନ ହେତୁ ସମସ୍ତ କୁଶଳ । ଶ୍ରୀରାମଙ୍କ କୃପାହେତୁ କାର୍ଯ୍ୟରେ ବିଶେଷ ସଫଳତା ମିଳିଅଛି ॥ ୨ ॥ ହେ ନାଥ ! ହନୁମାନ୍ ହିଁ ସମସ୍ତ କାର୍ଯ୍ୟ ସାଧନ କରିଅଛନ୍ତି ଏବଂ ସମସ୍ତ ବାନରଙ୍କ ପ୍ରାଣ ରକ୍ଷା କରିଅଛନ୍ତି ।" ଏହା ଶୁଣି ସୁଗ୍ରୀବ ହନୁମାନ୍‌ଙ୍କୁ ପୁଣି ଭେଟିଲେ ଏବଂ ସମସ୍ତ ବାନରଙ୍କ ସମେତ ଶ୍ରୀ ରଘୁନାଥଙ୍କ ନିକଟକୁ ଚାଲିଲେ ॥୩॥ ଶ୍ରୀରାମ ବାନରମାନଙ୍କୁ

ପ୍ରୀତି ସହିତ ସବ ଭେଟେ ରଘୁପତି କରୁନା ପୁଂଜ ।
ପୁଁଛୀ କୁସଲ ନାଥ ଅବ କୁସଲ ଦେଖି ପଦ କଂଜ ॥୨୯॥
ଜାମବନ୍ତ କହ ସୁନୁ ରଘୁରାୟା । ଜା ପର ନାଥ କରହୁ ତୁମ୍ହ ଦାୟା ॥
ତାହି ସଦା ସୁଭ କୁସଲ ନିରନ୍ତର । ସୁର ନର ମୁନି ପ୍ରସନ୍ନ ତା ଊପର ॥୧॥
ସୋଇ ବିଜଈ ବିନଈ ଗୁନସାଗର । ତାସୁ ସୁଜସୁ ତ୍ରୈଲୋକ ଉଜାଗର ॥
ପ୍ରଭୁ କୀ କୃପା ଭୟଉ ସବୁ କାଜୂ । ଜନ୍ମ ହମାର ସୁଫଲ ଭା ଆଜୂ ॥୨॥
ନାଥ ପବନସୁତ କୀହ୍ନି ଜୋ କରନୀ । ସହସହୁଁ ମୁଖ ନ ଜାଇ ସୋ ବରନୀ ॥
ପବନତନୟ କେ ଚରିତ ସୁହାଏ । ଜାମବନ୍ତ ରଘୁପତିହି ସୁନାଏ ॥୩॥
ସୁନତ କୃପାନିଧି ମନ ଅତି ଭାଏ । ପୁନି ହନୁମାନ ହରଷି ହିୟଁ ଲାଏ ॥
କହହୁ ତାତ କେହି ଭାଁତି ଜାନକୀ । ରହତି କରତି ରଚ୍ଛା ସ୍ୱପ୍ରାନ କୀ ॥୪॥

ସମସ୍ତଙ୍କୁ ପ୍ରୀତି ସହି ରଘୁପତି ଭେଟିଲେ କରୁଣାପୁଞ୍ଜ ।
ପୁଚ୍ଛନ୍ତେ କୁଶଳ, "ନାଥ ! ସକୁଶଳ ଦେଖି ଏବେ ପଦକଞ୍ଜ" ॥୨୯॥
ଜାମ୍ବବନ୍ତ ବୋଲେ ଶୁଣ ରଘୁକୁଳକାନ୍ତ । ଅନୁଗ୍ରହ କର ତୁମ୍ଭେ ଯା ଉପରେ, ନାଥ ॥
ତାହାର ସଦା କୁଶଳ ମଙ୍ଗଳ ସଂସାରେ । ସୁର ନର ମୁନି ସର୍ବେ ପ୍ରସନ୍ନ ତାଠାରେ ॥୧॥
ବିଜୟୀ ବିନୟୀ ସେହି ଗୁଣ ଅକୂପାର । ତିନିଲୋକେ ଆଲୋକିତ ସୁଯଶ ତାହାର ॥
ପ୍ରଭୁଙ୍କ କୃପାରେ ସିଦ୍ଧ ହେଲା ସର୍ବ କାର୍ଯ୍ୟ । ହୋଇଲା ଫଳ ସଂଯୁକ୍ତ ଆମ୍ଭ ଜନ୍ମ ଆଜ ॥୨॥
ନାଥ ! ଯେଉଁ କାର୍ଯ୍ୟ କଲା ପବନ ନନ୍ଦନ । ଲକ୍ଷମୁଖେ ତାହା ହୋଇ ନ ପାରେ ବର୍ଣ୍ଣନ ॥
ପ୍ରଭଞ୍ଜନ ତନୟର ଚରିତ ସୁନ୍ଦର । ଶ୍ରୀ ରଘୁନାଥଙ୍କୁ ଶୁଣାଇଲା ଋକ୍ଷେଶ୍ୱର ॥୩॥
ଶୁଣି କୃପାନିଧି ଅତି ପ୍ରସନ୍ନ ହୋଇଲେ । ହରଷେ ହନୁମାନଙ୍କୁ ହୃଦେ ଲଗାଇଲେ ॥
କହ ବତ୍ସ ! କେଉଁଭାବେ ଜନକ ସନ୍ତତି । ନିଜ ଜୀବନର ରକ୍ଷା କରିଣ ରହନ୍ତି ॥୪॥

କାର୍ଯ୍ୟ ସମ୍ପାଦନ କରି ଆସୁଥିବାର ଦେଖିଲେ ଏବଂ ମନରେ ଅପାର ଆନନ୍ଦ ଲାଭ କଲେ । ହୁଇଭାଇ ସ୍ଫଟିକ ଶିଳା ଉପରେ ବସିଥିଲେ । ସମସ୍ତ ବାନର ଯାଇ ତାଙ୍କ ଚରଣତଳେ ପଡ଼ିଗଲେ ॥ ୪ ॥ ଦୋହା :—କରୁଣାପୁଞ୍ଜ ଶ୍ରୀ ରଘୁନାଥ ସମସ୍ତଙ୍କ ସହିତ ପ୍ରେମରେ ମିଳନ କଲେ ଏବଂ ସମସ୍ତଙ୍କୁ କୁଶଳ-ବାର୍ତ୍ତା ପଚାରିଲେ । ବାନରମାନେ କହିଲେ, "ହେ ନାଥ ! ଆପଣଙ୍କ ଚରଣ-କମଳର ଦର୍ଶନ ପାଇ ବର୍ତ୍ତମାନ ସମସ୍ତ କୁଶଳ ।" ॥ ୨୯ ॥ ଚୌପାଇ —ଜାମ୍ବବାନ୍ କହିଲେ, "ହେ ରଘୁନାଥ ! ଶୁଣନ୍ତୁ; ହେ ନାଥ ! ଯାହା ଉପରେ ଆପଣ ଦୟା କରନ୍ତି, ତାହାର ସଦାସର୍ବଦା କଲ୍ୟାଣ ଓ ନିରନ୍ତର କୁଶଳ । ଦେବତା, ମନୁଷ୍ୟ ଓ ମୁନି ସମସ୍ତେ ତା ଉପରେ ପ୍ରସନ୍ନ ରହନ୍ତି ॥୧॥ ସେହି ବିଜୟୀ, ବିନୟୀ ଏବଂ ଗୁଣସାଗର ହୋଇଯାଏ । ତାହାର ସୁନ୍ଦର ଯଶ ତିନିଲୋକରେ ପ୍ରକାଶିତ ହୁଏ । ପ୍ରଭୁଙ୍କ କୃପାରେ ସମସ୍ତ କାର୍ଯ୍ୟ ସୁଚାରୁ ରୂପେ ସମ୍ପନ୍ନ ହୋଇଅଛି । ଆଜି ଆମ ଜନ୍ମ ସଫଳ ହୋଇଗଲା ॥ ୨ ॥ ହେ ନାଥ ! ପବନପୁତ୍ର

ନାମ ପାହରୁ ଦିବସ ନିସି ଧ୍ୟାନ ତୁମ୍ହାର କପାଟ ।
ଲୋଚନ ନିଜ ପଦ ଜନ୍ତ୍ରିତ ଜାହିଁ ପ୍ରାନ କେହିଁ ବାଟ ॥୩୦॥
ଚଲତ ମୋହି ଚୂଡ଼ାମନି ଦୀହ୍ନୀ । ରଘୁପତି ହୃଦୟଁ ଲାଇ ସୋଇ ଲୀହ୍ନୀ ॥
ନାଥ ଜୁଗଲ ଲୋଚନ ଭରି ବାରି । ବଚନ କହେ କଛୁ ଜନକକୁମାରୀ ॥୧॥
ଅନୁଜ ସମେତ ଗହେହୁ ପ୍ରଭୁ ଚରନା । ଦୀନବନ୍ଧୁ ପ୍ରନତାରତି ହରନା ॥
ମନ କ୍ରମ ବଚନ ଚରନ ଅନୁରାଗୀ । କେହିଁ ଅପରାଧ ନାଥ ହୌଂ ତ୍ୟାଗୀ ॥୨॥
ଅବଗୁନ ଏକ ମୋର ମୈଂ ମାନା । ବିଛୁରତ ପ୍ରାନ ନ କୀହ୍ନ ପୟାନା ॥
ନାଥ ସୋ ନୟନନ୍ହି କୋ ଅପରାଧା । ନିସରତ ପ୍ରାନ କରହିଁ ହଠି ବାଧା ॥୩॥

---

ନାମ ନିଶିଦିନ ପହରା ଦିଅଇ, ପଡ଼ିଛି ଧ୍ୟାନ କବାଟ ।
ନିଜ ପଦେ ନେତ୍ର-ତାଲା ସୁସଂଯୁକ୍ତ, ପ୍ରାଣ ଯିବ କେଉଁ ବାଟ ॥୩୦॥
ଆସିବାସମୟେ ମୋତେ ଚୂଡ଼ାମଣି ଦେଲେ । ହୃଦୟେ ଲଗାଇ ତାହା ରଘୁପତି ନେଲେ ॥
ନାଥ ! ଯୁଗଲ ନୟନେ ପୂର୍ଣ୍ଣ କରି ବାରି । ବଚନ କହିଲେ କିଛି ଜନକ-କୁମାରୀ ॥୧॥
ଅନୁଜ ସହ ଧରିବ ପ୍ରଭୁଙ୍କ ଚରଣ । ଦୀନବନ୍ଧୁ ପ୍ରଣତର ସଙ୍କଟ ହରଣ॥
ମନ କର୍ମ ବଚନରେ ଚରଣାନୁରାଗୀ । କେଉଁଅପରାଧୁ ନାଥ ! ମୋତେ ଦେଲ ତ୍ୟାଗି॥୨॥
ଅବଗୁଣ ଏକ ମୁହିଁ ଜାଣଇ ମୋହର । ବିଚ୍ଛେଦେ ଦେହରୁ ପ୍ରାଣ ନ ହେଲା ଅନ୍ତର ॥
ନାଥ ! ନୟନର ଅଟେ ଅପରାଧ ଏହି । ପ୍ରାଣ ବାହାରନ୍ତେ ବାଧା ଉପୁଜାଏ ସେହି ॥୩॥

---

ହନୁମାନ୍ ଯେଉଁ କୃତିତ୍ବ କରି ଦେଖାଇଲେ, ହଜାର ମୁଖରେ ତାହାର ବର୍ଣ୍ଣନା କରାଯାଇ ପାରିବ ନାହିଁ । ତାପରେ ଜାମ୍ବବାନ୍ ହନୁମାନଙ୍କ ସୁନ୍ଦର ଚରିତ ରଘୁନାଥଙ୍କୁ କହି ଶୁଣାଇଲେ ॥ ୩ ॥ ଉକ୍ତ ଚରିତ କୃପାନିଧି ଶ୍ରୀ ରାମଚନ୍ଦ୍ରଙ୍କ ମନକୁ ଅତିଶୟ ରୁଚିକର ବୋଧ ହେଲା । ସେ ଅତ୍ୟନ୍ତ ଆନନ୍ଦିତ ହୋଇ, ହନୁମାନଙ୍କୁ ପୁଣି ଥରେ ଆଲିଙ୍ଗନ କରିପକାଇଲେ ଏବଂ କହିଲେ, "ହେ ବତ୍ସ ! କହ, ସୀତା କିପରି ଭାବରେ ରହନ୍ତି ଓ କିପରି ନିଜ ପ୍ରାଣ ରକ୍ଷା କରନ୍ତି ।" ॥ ୪ ॥ ଦୋହା :—ହନୁମାନ୍ କହିଲେ, "ଆପଣଙ୍କ ନାମ ଦିନରାତି ପ୍ରହରୀ ରୂପେ କାର୍ଯ୍ୟ କରୁଛି, ଆପଣଙ୍କର ଧ୍ୟାନହିଁ କବାଟ । ନେତ୍ରଯୁଗଳ ନିଜର ଚରଣରେ ସନ୍ନିବିଷ୍ଟ, ଏହା ତାଲା ପରି ଲାଗିଅଛି, ତେବେ ପ୍ରାଣ ଯିବ କେଉଁବାଟେ ? ॥ ୩୦ ॥ ଚୌପାଇ :—ଫେରିବା ବେଳେ ସେ ମୋତେ ତାଙ୍କ ଚୂଡ଼ାମଣି ଉତାରି ଦେଲେ ।" ଶ୍ରୀ ରଘୁନାଥ ତାହା ନେଇ ହୃଦୟରେ ଲଗାଇଲେ । ହନୁମାନ୍ ପୁଣି କହିଲେ, "ହେ ନାଥ ! ଦୁଇ ନେତ୍ରରେ ଜଳ ଭରି ଜାନକୀ ମୋତେ କିଛି କଥା କହିଅଛନ୍ତି— ॥ ୧ ॥ "ସାନ ଭାଇ ସମେତ ପ୍ରଭୁଙ୍କ ଚରଣ ଧରିବ ଏବଂ କହିବ, 'ଆପଣ ଦୀନବନ୍ଧୁ, ଶରଣାଗତର ଦୁଃଖ ହରଣକାରୀ ଏବଂ ମୁଁ ମନ, ବଚନ ଓ କର୍ମରେ ଆପଣଙ୍କର ଚରଣ ପ୍ରତି ଅନୁରାଗିଣୀ । ତଥାପି ସ୍ୱାମୀ କେଉଁ ଅପରାଧରେ ମୋତେ ତ୍ୟାଗ କରିଦେଲେ ? ॥ ୨ ॥ ହଁ, ମୁଁ ମୋର ଗୋଟିଏ ଦୋଷ ସ୍ୱୀକାର କରୁଛି ଯେ,

ବିରହ ଅଗିନି ତନୁ ତୂଲ ସମୀରା । ସ୍ୱାସ ଜରଇ ଛନ ମାହିଁ ସରୀରା ॥
ନୟନ ସ୍ରବହିଁ ଜଲୁ ନିଜ ହିତ ଲାଗୀ । ଜରୈଁ ନ ପାୱ ଦେହ ବିରହାଗୀ ॥୪॥
ସୀତା କୈ ଅତି ବିପତି ବିସାଲା । ବିନହିଁ କହେଁ ଭଲି ଦୀନଦୟାଲା ॥୫॥

ନିମିଷ ନିମିଷ କରୁନାନିଧି ଜାହିଁ କଲପ ସମ ବୀତି ।
ବେଗି ଚଲିଅ ପ୍ରଭୁ ଆନିଅ ଭୁଜବଲ ଖଲଦଲ ଜୀତି ॥୩୧॥

ସୁନି ସୀତା ଦୁଃଖ ପ୍ରଭୁ ସୁଖ ଅୟନା । ଭରି ଆଏ ଜଲ ରାଜିବ ନୟନା ॥
ବଚନ କାୟଁ ମନ ମମ ଗତି ଜାହୀ । ସପନେହୁଁ ବୂଝିଅ ବିପତି କି ତାହୀ ॥୧॥
କହ ହନୁମନ୍ତ ବିପତି ପ୍ରଭୁ ସୋଇ । ଜବ ତବ ସୁମିରନ ଭଜନ ନ ହୋଇ ॥
କେତିକ ବାତ ପ୍ରଭୁ ଜାତୁଧାନ କୀ । ରିପୁହି ଜୀତି ଆନିବୀ ଜାନକୀ ॥୨॥

---

ବିରହ ଅନଳ, ତନୁ ଅଟେ ତୂଳା ପ୍ରାୟ । ଶ୍ୱାସ-ସମୀରେ କ୍ଷଣେକେ ଜଳିଯା'ନ୍ତା କାୟ ॥
ନିଜ ହିତ ଲାଗି ନେତ୍ର ସଲିଳ ସ୍ରବଇ । ବିରହ-ଅଗ୍ନିରେ ଦେହ ଜଳି ନ ପାରଇ ॥୪॥
ଜନକ ସୁତାଙ୍କ ଅତି ବିପତ୍ତି ବିଶାଳ । ନ କହିବା ଭଲ ମଣେ, ପ୍ରଭୁ ଦୀନପାଳ ॥୫॥
ନିମେଷ ନିମେଷ କରୁଣା-ନିବାସ, ବିତଇ କଳ୍ପ ସମାନ ।
ଯାଇଣ ଚଳିଲେ ଆଣ ଭୁଜବଳେ ଜିଣି ଖଳ ଜାତୁଧାନ ॥୩୧॥
ଶୁଣି ସୀତା ଦୁଃଖ ପ୍ରଭୁ ସୁଖ-ନିକେତନ । ସଲିଳେ ପୂରିଣ ହୋଇଲା ରାଜୀବ ଲୋଚନ ॥
ମନ କର୍ମ ବଚନରେ ଯାହାର ମୁଁ ଗତି । ସ୍ୱପ୍ନରେ ସୁଦ୍ଧା ତାହାକୁ ପଡେ କି ବିପତ୍ତି ॥୧॥
ବୋଲେ ହନୁମାନ, ସେହି ବିପତ୍ତି ଅଟଇ । ଯେବେ ତୁମ୍ଭ ସୁମରଣ ଧ୍ୟାନ ନ ହୁଅଇ ॥
କେଉଁ ଛାର କଥା ମାତ୍ର ନିଶାଚରଙ୍କର । ରିପୁଙ୍କୁ ଜିଣି ସୀତାଙ୍କୁ ଆଣନ୍ତୁ ସତ୍ୱର ॥୨॥

---

ଆପଣଙ୍କର ବିରହ ହେବା ମାତ୍ରେ ମୋ ପ୍ରାଣ ଚାଲିଯାଇ ନାହିଁ । କିନ୍ତୁ ହେ ନାଥ ! ପ୍ରାଣ ବାହାରି ଯିବାରେ ନେତ୍ର ବଳ-ପୂର୍ବକ ବାଧା ଦେଉଛି । ଏହା ତ ନେତ୍ରଯୁଗଳର ଅପରାଧ । ॥ ୩ ॥ ବିରହ ଅଗ୍ନି, ଶରୀର ତୂଳା ଏବଂ ଶ୍ୱାସ ପବନ, ଏହିରୂପେ ଅଗ୍ନି ଓ ପବନର ସଂଯୋଗରେ ଏହି ଶରୀର କ୍ଷଣକ ମଧ୍ୟରେ ଜଳି ଯାଇପାରନ୍ତା । କିନ୍ତୁ ନେତ୍ର ପ୍ରଭୁଙ୍କ ସ୍ୱରୂପ ଦେଖି ସୁଖୀ ହେବ ବୋଲି ଆପଣା ହିତ ଦୃଷ୍ଟିରୁ ଅଶ୍ରୁଜଳ ବୃଷ୍ଟି କରୁଛି । ଯାହା ଫଳରେ ବିରହ ଅଗ୍ନିରେ ଏ ଦେହ ମଧ୍ୟ ଜଳି ପାରୁନାହିଁ ॥ ୪ ॥ ସୀତାଙ୍କର ବିପତ୍ତି ଅତି ବଡ । ହେ ଦୀନଦୟାଳୁ ! ତାହା ନ କହିଲେ ଅତି ଭଲ । କାରଣ, କହିଲେ ଆପଣଙ୍କୁ ଅତି କ୍ଲେଶ ହେବ ॥ ୫ ॥ ଦୋହା :—ହେ କରୁଣା-ନିଧାନ ! ତାଙ୍କର ଗୋଟିଏ ଗୋଟିଏ ମୁହୂର୍ତ୍ତ କଳ୍ପପରି ଅତିବାହିତ ହେଉଛି । ଅତଏବ ହେ ପ୍ରଭୋ ! ଶୀଘ୍ର ଚାଲନ୍ତୁ ଏବଂ ନିଜର ଭୁଜବଳରେ ଦୁଷ୍ଟ ଦଳଙ୍କୁ ଜୟ କରି ସୀତାଙ୍କୁ ନେଇ ଆସନ୍ତୁ ॥ ୩୧ ॥ ଚୌପାଇ :—ସୀତାଙ୍କ ଦୁଃଖ ଶୁଣି, ସୁଖ-ସଦନ ପ୍ରଭୁଙ୍କ କମଳ-ନୟନରେ ଜଳ ଭରି ଆସିଲା ଏବଂ ସେ କହିଲେ, "ମନ, ବଚନ ଓ ଶରୀରରେ ଯାହାର ମୁଁ ଗତି, ତାହା ଉପରେ କେବେ ସ୍ୱପ୍ନରେ ସୁଦ୍ଧା ବିପତ୍ତି

ସୁନୁ କପି ତୋହି ସମାନ ଉପକାରୀ । ନହିଁ କୋଉ ସୁର ନର ମୁନି ତନୁଧାରୀ ॥
ପ୍ରତି ଉପକାର କରୌଁ କା ତୋରା । ସନମୁଖ ହୋଇ ନ ସକତ ମନ ମୋରା ॥୩॥
ସୁନୁ ସୁତ ତୋହି ଉରିନ ମୈଁ ନାହୀଁ । ଦେଖେଉଁ କରି ବିଚାର ମନ ମାହୀଁ ॥
ପୁନି ପୁନି କପିହି ଚିତଵ ସୁରତ୍ରାତା । ଲୋଚନ ନୀର ପୁଲକ ଅତି ଗାତା ॥୪॥

ସୁନି ପ୍ରଭୁ ବଚନ ବିଲୋକି ମୁଖ ଗାତ ହରଷି ହନୁମନ୍ତ ।
ଚରନ ପରେଉ ପ୍ରେମାକୁଲ ତ୍ରାହି ତ୍ରାହି ଭଗବନ୍ତ ॥୩୨॥

ବାର ବାର ପ୍ରଭୁ ଚହଇ ଉଠାଵା । ପ୍ରେମମଗନ ତେହି ଉଠବ ନ ଭାଵା ॥
ପ୍ରଭୁ କର ପଙ୍କଜ କପି କେ ସୀସା । ସୁମିରି ସୋ ଦସା ମଗନ ଗୌରୀସା ॥୧॥

---

ଶୁଣ କପି ! ତୋ ସମାନ ବଡ଼ ଉପକାରୀ । ନାହିଁ କେହି ସୁର ନର ମୁନି ତନୁଧାରୀ ॥
କେଉଁ ପ୍ରତି-ଉପକାର କରିବି ମୁଁ ତୋର । ତୋ ସମ୍ମୁଖ ହୋଇପାରୁ ନାହିଁ ମନ ମୋର ॥୩॥
ଶୁଣ କପି ! ତୋ ଋଣରୁ ନୁହେଁ ମୁଁ ଉନ୍ମୁକ୍ତ । ଦେଖିଲି ମନ ମଧ୍ୟରେ ବିଚାରି ବହୁତ ॥
ଚାହାନ୍ତି କପିଙ୍କୁ ବାରମ୍ବାର ସୁରପତି । ନୟନେ ନୀର ପୁଲକ କଳେବର ଅତି ॥୪॥

ପ୍ରଭୁ ବାଣୀ ଶୁଣି ହରଷିତେ ମୂର୍ତ୍ତି ମୁଖ ଦେଖି ହନୁମାନ ।
ଅତି ପ୍ରେମାତୁରେ ପଡ଼ିଲେ ପୟରେ "ତ୍ରାହି ତ୍ରାହି ଭଗବାନ" ॥୩୨॥

ପ୍ରଭୁ ବହୁ ବେଳେ ଉଠାଇବାକୁ ଯତନ । ଉଠିବା ନ ଇଚ୍ଛେ ସେହି ପ୍ରେମେ ନିମଗନ ॥
ପ୍ରଭୁଙ୍କ କର-କମଳ ଶିରେ କପିଙ୍କର । ସେ ଦଶା ସ୍ମରି ମଗନ ହେଲେ ଉମାବର ॥୧॥

---

ପଡ଼ିପାରେ କି ?" ॥ ୧ ॥ ହନୁମାନ୍ କହିଲେ, "ହେ ପ୍ରଭୋ ! ଯେତେବେଳେ ଆପଣଙ୍କ ଭଜନ ମନେ ନ ପଡ଼େ, ସେତିକି ବେଳେ ବିପତ୍ତି ପଡ଼ିବା ବୋଲି ଜାଣ । ହେ ପ୍ରଭୋ ! ରାକ୍ଷସମାନଙ୍କ କଥା କେତେ ଅବା ! ଆପଣ ଶତ୍ରୁକୁ ଜିଣି ଜାନକୀଙ୍କୁ ନେଇ ଆସିବେ ।" ॥ ୨ ॥ ଭଗବାନ୍ କହିବାକୁ ଲାଗିଲେ, "ହେ ହନୁମାନ୍ ! ଶୁଣ, କେବଳ ମନୁଷ୍ୟ ଓ ମୁନି, ଶରୀରଧାରୀ କେହି ଜଣେ ହେଲେ ତୁମ ସମାନ ମୋର ଉପକାରୀ ନୁହନ୍ତି । ମୁଁ ତୁମର ପ୍ରତ୍ୟୁପକାର କିପରି କରିବି ? ମୋ ମନ ତୁମ ଆଗରେ କିଛି ସ୍ଥିର କରିପାରୁନାହିଁ ॥ ୩ ॥ ହେ ପୁତ୍ର ! ମୁଁ ମନରେ ବହୁତ ବିଚାର କରି ଦେଖିଲି ଯେ, ମୁଁ ତୁମଠାରୁ ଋଣମୁକ୍ତ ହୋଇ ପାରିବି ନାହିଁ । ଦେବଗଣଙ୍କ ରକ୍ଷକ ପ୍ରଭୁ ବାରମ୍ବାର ହନୁମାନଙ୍କୁ ଦେଖୁଥାଆନ୍ତି । ତାଙ୍କ ନେତ୍ରଯୁଗଳରେ ପ୍ରେମାଶ୍ରୁ ଜଳ ପରିପୂର୍ଣ୍ଣ ଏବଂ ଶରୀର ଅତି ପୁଲକିତ ॥ ୪ ॥ ଦୋହା :—ପ୍ରଭୁଙ୍କ ବଚନ ଶୁଣି ଏବଂ ତାଙ୍କର ପ୍ରସନ୍ନ ମୁଖ ଓ ପୁଲକିତ ଅଙ୍ଗକୁ ଦେଖି ହନୁମାନ୍ ଆନନ୍ଦିତ ହୋଇ ପଡ଼ିଲେ ଏବଂ ପ୍ରେମରେ ବିକଳ ହୋଇ, "ହେ ଭଗବାନ୍ ! ମୋତେ ରକ୍ଷା କର, ରକ୍ଷା କର" କହି ଶ୍ରୀରାମଙ୍କ ଚରଣ ତଳେ ପଡ଼ିଗଲେ ॥ ୩୨ ॥ ଚୌପାଇ —ପ୍ରଭୁ ତାହାଙ୍କୁ ବାରମ୍ବାର ଉଠାଇବାକୁ ଇଚ୍ଛୁକ, କିନ୍ତୁ ପ୍ରେମମଗ୍ନ ହନୁମାନ୍ ପ୍ରଭୁଙ୍କ ଚରଣ ଛାଡ଼ି ଉଠିବାକୁ ପସନ୍ଦ କରୁ ନ ଥାଆନ୍ତି । ପ୍ରଭୁଙ୍କ କର-କମଳ ହନୁମାନଙ୍କ ଶିର ଉପରେ

ସାବଧାନ ମନ କରି ପୁନି ସଙ୍କର । ଲାଗେ କହନ କଥା ଅତି ସୁନ୍ଦର ॥
କପି ଉଠାଇ ପ୍ରଭୁ ହୃଦୟଁ ଲଗାୱା । କର ଗହି ପରମ ନିକଟ ବୈଠାୱା ॥୨॥
କହୁ କପି ରାବନ ପାଲିତ ଲଙ୍କା । କେହି ବିଧି ଦହେଉ ଦୁର୍ଗ ଅତି ବଙ୍କା ॥
ପ୍ରଭୁ ପ୍ରସନ୍ନ ଜାନା ହନୁମାନା । ବୋଲା ବଚନ ବିଗତ ଅଭିମାନା ॥୩॥
ସାଖାମୃଗ କୈ ବଡ଼ି ମନୁସାଈ । ସାଖା ତେଁ ସାଖା ପର ଜାଈ ॥
ନାଘି ସିନ୍ଧୁ ହାଟକପୁର ଜାରା । ନିସିଚରଗନ ବଧି ବିପିନ ଉଜାରା ॥୪॥
ସୋ ସବ ତବ ପ୍ରତାପ ରଘୁରାଈ । ନାଥ ନ କଛୂ ମୋରି ପ୍ରଭୁତାଈ ॥୫॥

ତା କହୁଁ ପ୍ରଭୁ କଛୁ ଅଗମ ନହିଁ ଜା ପର ତୁମ୍ହ ଅନୁକୂଲ ।
ତବ ପ୍ରଭାବଁ ବଡ଼ବାନଲହି ଜାରି ସକଇ ଖଲୁ ତୂଲ ॥୩୩॥

ନାଥ ଭଗତି ଅତି ସୁଖଦାୟନୀ । ଦେହୁ କୃପା କରି ଅନପାୟନୀ ॥
ସୁନି ପ୍ରଭୁ ପରମ ସରଲ କପି ବାନୀ । ଏବମସ୍ତୁ ତବ କହେଉ ଭବାନୀ ॥୧॥

---

ସାବଧାନ ମନ ପୁଣି କରି ତ୍ରିଲୋଚନ । କହିବାକୁ ଆରମ୍ଭିଲେ ସେ କଥା ଶୋଭନ ॥
କପିକି ଉଠାଇ ପ୍ରଭୁ ହୃଦେ ଲଗାଇଲେ । କର ଧରି ନିଜ ଅତି ପାଶେ ବସାଇଲେ ॥୨॥
କହ କପି ! ଦଶାନନ ପାଳିତ ସୁଦୃଢ଼ । ସୁଦୃଢ଼ ଲଙ୍କା ଦୁର୍ଗକୁ ଦହିଲ କେମନ୍ତ ॥
ପ୍ରଭୁଙ୍କ ପ୍ରସନ୍ନ ଜାଣି ପବନ ନନ୍ଦନ । ପରିହରି ଅଭିମାନ ଭାଷିଲେ ବଚନ ॥୩॥
ଶାଖା-ମୃଗର ଏ ବଡ଼ ପୌରୁଷ ଅଟଇ । ଶାଖାରୁ ଅନ୍ୟ ଶାଖାକୁ ଯାଇ ସେ ପାରଇ ॥
ଲଂଘିଣ ସିନ୍ଧୁ କନକ ନଗର ଜାଳିଲି । ନିଶାଚର-ଗଣ ବଧି ବନ ଉଜାଡ଼ିଲି ॥୪॥
ସେ ସବୁ ତୁମ୍ଭ ପ୍ରତାପ ପରାକ୍ରମ, ନାଥ । ନାହିଁ କିଛି ପ୍ରଭୁ ଏଥି ମୋର ପୁରୁଷାର୍ଥ ॥୫॥

ତାହାଙ୍କୁ ଅଗମ୍ୟ ନୁହେଁ କିଛି ପ୍ରଭୁ ତୁମ୍ଭେ ପ୍ରସନ୍ନ ଯାଠାରେ ।
ତୁମ୍ଭ ପ୍ରତାପରେ ବଡ଼ବାନଳକୁ ତୂଳା ନିଶ୍ଚେ ଜାଳି ପାରେ ॥୩୩॥

ନାଥ ! ଭକ୍ତି ଅତି ସୁଖଦାୟିନୀ ତୁମ୍ଭରି । ଅଲଭ୍ୟ ଅମୂଲ୍ୟ ତାହା ଦିଅ କୃପା କରି ॥
ପରମ ସରଳ ଶୁଣି କପିବର ବାଣୀ । "ଏବମସ୍ତୁ" ବୋଲି ପ୍ରଭୁ ଭାଷିଲେ ଭବାନୀ ॥୧॥

---

ରହିଥାଏ । ସେହି ଅବସ୍ଥା ସ୍ମରଣ କରି, ଶିବ ପ୍ରେମମଗ୍ନ ହୋଇଗଲେ ॥ ୧ ॥ ତତ୍ପରେ ମନକୁ ସାବଧାନ କରି ଶଙ୍କର ଅତି ସୁନ୍ଦର କଥା କହିବାକୁ ଲାଗିଲେ—ହନୁମାନ୍‌ଙ୍କୁ ଉଠାଇ ପ୍ରଭୁ ଆଲିଙ୍ଗନ କଲେ ଏବଂ ତାଙ୍କ ହାତ ଧରି ଅତି ନିକଟରେ ବସାଇଲେ ॥୨॥ (ଏବଂ ତାହାଙ୍କୁ ପଚାରିଲେ) "ହେ ହନୁମାନ୍ ! ରାବଣ ଦ୍ୱାରା ସୁରକ୍ଷିତ ଲଙ୍କା ଏବଂ ତାହାର ବହୁ-ଆଡ଼ମ୍ବରମୟ ଦୁର୍ଗକୁ ତୁମେ କିପରି ଜାଳିଲ ?" ହନୁମାନ୍ ପ୍ରଭୁ ପ୍ରସନ୍ନ ବୋଲି ଜାଣି, ଅଭିମାନ-ରହିତ ବଚନ କହିଲେ—॥ ୩ ॥ "ବାନରର ବେଶ୍ ଏତିକି ପୁରୁଷାର୍ଥ ଯେ, ସେ ଏକ ଡାଳରୁ ଅନ୍ୟ ଡାଳକୁ ଚାଲିଯାଏ । ମୁଁ ସମୁଦ୍ର ଲଙ୍ଘନ କରି ଯାହା ନଗର ଜାଳିଲି ଏବଂ ରାକ୍ଷସଗଣଙ୍କୁ ମାରି ଅଶୋକବନକୁ ଉଜାଡ଼ି ଦେଲି, ହେ ରଘୁନାଥ ! ଏ ସବୁ ତ କେବଳ ଆପଣଙ୍କ ପ୍ରତାପର ଫଳ । ହେ ନାଥ ! ଏଥିରେ ମୋର ପ୍ରଭୁତ୍ୱ

ଉମା ରାମ ସୁଭାଉ ଜେହିଁ ଜାନା । ତାହି ଭଜନୁ ତଜି ଭାଵ ନ ଆନା ॥
ୟହ ସମ୍ବାଦ ଜାସୁ ଉର ଆଵା । ରଘୁପତି ଚରନ ଭଗତି ସୋଇ ପାଵା ॥୨॥
ସୁନି ପ୍ରଭୁ ବଚନ କହହିଁ କପିବୃନ୍ଦା । ଜୟ ଜୟ ଜୟ କୃପାଲ ସୁଖକନ୍ଦା ॥
ତବ ରଘୁପତି କପିପତିହି ବୋଲାଵା । କହା ଚଲେଁ କର କରହୁ ବନାଵା ॥୩॥
ଅବ ବିଲମ୍ବୁ କେହି କାରନ କୀଜେ । ତୁରତ କପିହ୍ନ କହୁଁ ଆୟସୁ ଦୀଜେ ॥
କୌତୁକ ଦେଖି ସୁମନ ବହୁ ବରଷୀ । ନଭ ତେଁ ଭବନ ଚଲେ ସୁର ହରଷୀ ॥୪॥

କପିପତି ବେଗି ବୋଲାଏ ଆଏ ଜୂଥପ ଜୂଥ ।
ନାନା ବରନ ଅତୁଲ ବଲ ବାନର ଭାଲୁ ବରୂଥ ॥ ୩୪ ॥

---

ଉମା ! ରାମଙ୍କ ସ୍ୱଭାବ ଜାଣଇ ଯେ ଜନ । ଅନ୍ୟ ନ ଇଚ୍ଛଇ ତେଜି ତାହାଙ୍କ ଭଜନ ॥
ଏହି ସମ୍ବାଦକୁ ଯେହୁ ସ୍ମରଣ କରଇ । ରଘୁନାଥଙ୍କ ଚରଣ ଭକ୍ତି ସେ ଲଭଇ ॥୨॥
ଶୁଣି ପ୍ରଭୁ ବାଣୀ, ଉଚ୍ଚାରନ୍ତି କପିବୃନ୍ଦ । ଜୟ ଜୟ ଜୟ କୃପାସିନ୍ଧୁ ସୁଖ-କନ୍ଦ ॥
ଡକାଇ କପିପତିଙ୍କୁ ତହୁଁ ରଘୁସୁତ । କହିଲେ ହୁଅ ପ୍ରସ୍ଥାନ ନିମନ୍ତେ ପ୍ରସ୍ତୁତ ॥୩॥
ବିଳମ୍ବ କରୁଛ ଅଉ କେଉଁ କାରଣେ । ସତ୍ୱର ଆଦେଶ ଦିଅ ଋକ୍ଷ-କପି-ଗଣେ ॥
କଉତୁକ ଦେଖି ବହୁ ସୁମନ ବରଷି । ନଭୁ ନିଜ ପୁରେ ଗଲେ ବିବୁଧେ ହରଷି ॥୪॥

କପି ଅଧୀଶ୍ୱର ଡକାନ୍ତେ ସତ୍ୱର ଆସିଲେ ଯୂଥପଗଣେ ।
ନାନାବିଧ ବର୍ଣ୍ଣ ବଳ ଅନୁପମ ଋକ୍ଷ କପି ଅଗଣନ ॥୩୪॥

---

(ବଡ଼େଇ) ଟିକିଏ ହେଲେ ନାହିଁ । ॥୪-୫॥ ଦୋହା :—ହେ ପ୍ରଭୋ ! ଯାହାପ୍ରତି ଆପଣ ପ୍ରସନ୍ନ, ତାହା ପକ୍ଷରେ କିଛି ହେଲେ କଠିନ ହୁଏନାହିଁ । ଆପଣଙ୍କ ପ୍ରଭାବରେ ତୁଳା ବାଡ଼ବାନଳକୁ ନିଶ୍ଚୟ ଜାଳି ଦେଇପାରେ । ଅର୍ଥାତ୍ ଅସମ୍ଭବ ମଧ୍ୟ ସମ୍ଭବ ହୋଇ-ପାରେ । ୩୩ ॥ ଚୌପାଈ :—ହେ ନାଥ ! ମୋତେ ଆପଣଙ୍କ ଅତି ସୁଖଦାୟିନୀ ଅଚଳା ଭକ୍ତି କୃପା କରି ଦିଅନ୍ତୁ ।" ହେ ଭବାନି ! ହନୁମାନ୍‌ଙ୍କ ଅତି ସରଳ ବାଣୀ ଶୁଣି, ପ୍ରଭୁ ଶ୍ରୀରାମଚନ୍ଦ୍ର 'ତଥାସ୍ତୁ' କହିଲେ ॥ ୧ ॥ ହେ ଉମା ! ଯେଉଁ ବ୍ୟକ୍ତି ଶ୍ରୀରାମଙ୍କ ସ୍ୱଭାବ ଜାଣିଛି, ଶ୍ରୀରାମଙ୍କ ଭଜନ ଛାଡ଼ି ତାହାକୁ ଅନ୍ୟ କଥା ରୁଚିକର ହୁଏନାହିଁ । ଏହି ସ୍ୱାମୀ ସେବକଙ୍କ ସମ୍ବାଦ ଯାହାର ହୃଦୟରେ ଆସିଗଲା, ସେହି ବ୍ୟକ୍ତି ଶ୍ରୀରାମଙ୍କ ଚରଣ-କମଳରେ ଭକ୍ତି ପାଇଗଲା ବୋଲି ଜାଣ ॥ ୨ ॥ ପ୍ରଭୁଙ୍କ ବଚନ ଶୁଣି, ବାନରଗଣ କହିବାକୁ ଲାଗିଲେ, "କୃପାଳୁ ଆନନ୍ଦକନ୍ଦ ଶ୍ରୀରାମଙ୍କ ଜୟ ହେଉ, ଜୟ ହେଉ, ଜୟ ହେଉ ।" ତଦନନ୍ତର ଶ୍ରୀ ରଘୁନାଥ କପିରାଜ ସୁଗ୍ରୀବଙ୍କୁ ଡକାଇଲେ ଏବଂ କହିଲେ—"ପ୍ରସ୍ଥାନ (ଅଭିଯାନ) ପାଇଁ ଆୟୋଜନ କର ॥ ୩ ॥ ବର୍ତ୍ତମାନ ବିଳମ୍ବ କାହିଁକି କରାଯିବ ? ବାନରଗଣଙ୍କୁ ତୁରନ୍ତ ଆଦେଶ ଦିଅ ।" ଭଗବାନ୍‌ଙ୍କର ଏହି ରାବଣ-ବଧ-ଲୀଳାର ଆୟୋଜନ ଦେଖି ଦେବତାମାନେ ବହୁତ ପୁଷ୍ପ ବୃଷ୍ଟି କରି ଆନନ୍ଦିତ ମନରେ ଆକାଶମାର୍ଗରେ ଆପଣା ଆପଣା ଲୋକକୁ ଚଳିଲେ ॥ ୪ ॥ ଦୋହା :—ବାନର-ରାଜ

ପ୍ରଭୁ ପଦ ପଙ୍କଜ ନାୱହିଁ ସୀସା । ଗର୍ଜହିଁ ଭାଲୁ ମହାବଲ କୀସା ॥
ଦେଖୀଁ ରାମ ସକଲ କପି ସେନା । ଚିତଇ କୃପା କରି ରାଜିବ ନୈନା ॥୧॥
ରାମ କୃପା ବଲ ପାଇ କପିଂଦା । ଭଏ ପଚ୍ଛଜୁତ ମନହୁଁ ଗିରିଂଦା ॥
ହରଷି ରାମ ତବ କୀନ୍ହ ପୟାନା । ସଗୁନ ଭଏ ସୁନ୍ଦର ସୁଭ ନାନା ॥୨॥
ଜାସୁ ସକଲ ମଙ୍ଗଲମୟ କୀତୀ । ତାସୁ ପୟାନ ସଗୁନ ୟହ ନୀତୀ ॥
ପ୍ରଭୁ ପୟାନ ଜାନା ବୈଦେହୀଁ । ଫରକି ବାମ ଅଁଗ ଜନୁ କହି ଦେହୀଁ ॥୩॥
ଜୋଇ ଜୋଇ ସଗୁନ ଜାନକିହି ହୋଈ । ଅସଗୁନ ଭୟଉ ରାବନହି ସୋଈ ॥
ଚଲା କଟକୁ କୋ ବରନୈଁ ପାରା । ଗର୍ଜହିଁ ବାନର ଭାଲୁ ଅପାରା ॥୪॥
ନଖ ଆୟୁଧ ଗିରି ପାଦପଧାରୀ । ଚଲେ ଗଗନ ମହି ଇଚ୍ଛାଚାରୀ ॥
କେହରିନାଦ ଭାଲୁ କପି କରହୀଁ । ଡଗମଗାହିଁ ଦିଗ୍ଗଜ ଚିକ୍କରହୀଁ ॥୫॥

---

ପ୍ରଭୁ ପଦ୍ମର-ପଙ୍କଜେ ନୁଆଁଇଣ ଶିର । ଗରଜନ୍ତି ମହାବଳୀ ଋକ୍ଷ କପି ବୀର ॥
କପିଙ୍କ ସେନାକୁ ରାମ କରି ନିରୀକ୍ଷଣ । ଚାହିଁଲେ କୃପା ଦୃଷ୍ଟିରେ ରାଜୀବ ଈକ୍ଷଣ ॥୧॥
ରାମ କୃପାବଳ ଲାଭ କରିଣ କପୀନ୍ଦ୍ର । ହୋଇଲେ ପକ୍ଷ ସଂଯୁକ୍ତ ଯେସନେ ଗିରୀନ୍ଦ୍ର ॥
ହରଷେ ପ୍ରସ୍ଥାନ ତହୁଁ କଲେ ରଘୁବର । ହୋଇଲା ଅନେକ ଶୁଭ ଶକୁନ ସୁନ୍ଦର ॥୨॥
ମଙ୍ଗଳମୟ ସକଳ ଯାହାଙ୍କର କୀର୍ତ୍ତି । ତାହାଙ୍କ ଯାତ୍ରା ଶକୁନଯୁକ୍ତ ହେବା ନୀତି ॥
ଜାଣି ପାରିଲେ ଜାନକୀ ପ୍ରଭୁଙ୍କ ପ୍ରସ୍ଥାଣ । ବାମାଙ୍ଗ ସ୍ପନ୍ଦନ ହୋଇ କହୁଦିଏ ଜାଣ ॥୩॥
ଶକୁନ ହୁଏ ଜନକ କୁମାରୀଙ୍କୁ ଯାହା । ଅଶକୁନ ହୁଏ ଲଙ୍କ-ନାୟକଙ୍କୁ ତାହା ॥
ଚଳିଲେ ଠାଟ, କେ କରି ପାରିବ ବର୍ଣ୍ଣନ । ଗର୍ଜନ କରନ୍ତି ଋକ୍ଷ କପି ଅଗଣନ ॥୪॥
ନଖ ଆୟୁଧ ପାଷାଣ ଗିରିଦ୍ରୁମ ଧାରୀ । ଚଳନ୍ତି ମହୀଗଗନେ କପି ଇଚ୍ଛାଚାରୀ ॥
କେଶରୀ ନିନାଦ ଭାଲୁ ମର୍କଟ କରନ୍ତି । ବିଚଳିତ ଦିଗଗଜେ ଘୋର ଚିତ୍କାରନ୍ତି ॥୫॥

---

ସୁଗ୍ରୀବ ଶୀଘ୍ର ବାନରମାନଙ୍କୁ ଡକାଇଲେ । ସେନାପତିମାନଙ୍କ ଦଳ ସବୁ ଆସିଗଲେ । ବାନର ଓ ଭଲ୍ଲୁକମାନଙ୍କ ଦଳ ବିବିଧ ରଙ୍ଗର ଏବଂ ସେମାନଙ୍କଠାରେ ଅତୁଳନୀୟ ବଳ ॥ ୩୪ ॥ ଚୌପାଈ ।—ସେମାନେ ପ୍ରଭୁଙ୍କ ଚରଣ-କମଳରେ ଶିର ନୁଆଁଉ ଥାଆନ୍ତି । ମହାବଳୀ ଋକ୍ଷ ଓ ବାନରମାନେ ଗର୍ଜନ କରୁଥା'ନ୍ତି । ଶ୍ରୀରାମ ସମସ୍ତ ବାନରସେନାଙ୍କୁ ଦେଖିଲେ, ତଦନନ୍ତର ସେ କୃପା-କମଳ-ନେତ୍ରରେ ସେମାନଙ୍କ ଆଡକୁ ଦୃଷ୍ଟି ପକାଇଲେ ॥ ୧ ॥ ରାମଙ୍କ କୃପାଦୃଷ୍ଟିର ବଳ ପାଇ ଶ୍ରେଷ୍ଠ ବାନରମାନେ ସତେ ଯେପରି ପକ୍ଷଧାରୀ ବଡ ପର୍ବତ ହୋଇଗଲେ । ତତ୍ପରେ ଶ୍ରୀରାମ ଆନନ୍ଦିତ ହୋଇ ରଣାଭିଯାନ ଆରମ୍ଭ କଲେ । ଅନେକ ସୁନ୍ଦର ଓ ଶୁଭ ଶକୁନ ଦେଖାଗଲା । ଯାହାଙ୍କର କୀର୍ତ୍ତି ସମସ୍ତ ଶୁଭରେ ପରିପୂର୍ଣ୍ଣ, ତାଙ୍କର ପ୍ରସ୍ଥାନ ବେଳେ ଶୁଭ ଶକୁନ ହେବା ଲୌକିକ ନୀତି ମାତ୍ର । ପ୍ରଭୁଙ୍କ ପ୍ରସ୍ଥାନ ଜାନକୀ ମଧ୍ୟ ଜାଣି ପକାଇଲେ । ତାଙ୍କର ବାମ ଅଙ୍ଗରେ ସ୍ଫୁରଣ ହୋଇ ସତେ ଯେମିତି କହୁଥାଏ—ଶ୍ରୀରାମଚନ୍ଦ୍ର ଆସୁଅଛନ୍ତି ॥ ୩ ॥ ଜାନକୀଙ୍କୁ

ଚକ୍କରହିଁ ଦିଗ୍‌ଗଜ ଡୋଲ ମହି ଗିରି ଲୋଲ ସାଗର ଖରଭରେ ॥
ମନ ହରଷ ସଭ ଗନ୍ଧର୍ବ ସୁର ମୁନି ନାଗ କିଂନର ଦୁଖ ଟରେ ॥
କଟକଟହିଁ ମର୍କଟ ବିକଟ ଭଟ ବହୁ କୋଟି କୋଟିନ୍ହ ଧାୱହୀଁ ।
ଜୟ ରାମ ପ୍ରବଲ ପ୍ରତାପ କୋସଲନାଥ ଗୁନଗନ ଗାୱହୀଁ ॥୧॥

ସହି ସକ ନ ଭାର ଉଦାର ଅହିପତି ବାର ବାରହିଁ ମୋହଈ ।
ଗହ ଦସନ ପୁନି ପୁନି କମଠ ପୃଷ୍ଟ କଠୋର ସୋ କିମି ସୋହଈ ॥
ରଘୁବୀର ରୁଚିର ପ୍ରୟାନ ପ୍ରସ୍ଥିତି ଜାନି ପରମ ସୁହାୱନୀ ।
ଜନୁ କମଠ ଖର୍ପର ସର୍ପରାଜ ସୋ ଲିଖତ ଅବିଚଲ ପାୱନୀ ॥୨॥

---

ଦିଗ୍‌ଗଜେ ଚିତ୍କାରନ୍ତି ମହୀ ଗିରି ଥରନ୍ତି ଚଞ୍ଚଳେ ଉଚ୍ଛୁଳେ ସାଗର ।
ତୁଟିଲା ଦୁଃଖ, ହର୍ଷ ହେଲେ ସୁର ମୁନିଗଣ କିନ୍ନର ରବି ନିଶାକର ।
ମର୍କଟେ ଦଶନ ଘେଷୁବାନ୍ତି, ଅସଂଖ୍ୟ ଅସଂଖ୍ୟ ଧାଆନ୍ତି ।
'ଜୟ ରାମ ପ୍ରବଳ ପରାକ୍ରମୀ', କୋଶଳ-ନାଥଙ୍କ ସୁଯଶ ଗାଆନ୍ତି ॥୧॥

ସେନାଙ୍କ ଭାର ଅହି-ପତି ଉଦାର ସହି ନ ପାରେ, ଅତି ବିଚଳିତ ।
ଦଶନେ ବାରମ୍ବାର କୂର୍ମ ପୃଷ୍ଠ କଠୋର ଧରନ୍ତେ ତେମନ୍ତ ଶୋଭିତ ।
ରାମ ରୁଚିର ଅଭିଯାନ, ବିସ୍ତୃତ ପରମ ଶୋଭନ,
ଯେହ୍ନେ କଚ୍ଛପ ପୃଷ୍ଠେ ଭୁଜଙ୍ଗରାଜ ଲେଖେ ସେ କଥା ଅଟଳ ପାବନ ॥୨॥

---

ଯାହା ଯାହା ଶୁଭ ଶକୁନ ହେଉଥାଏ, ତାହା ସବୁ ରାବଣ ପକ୍ଷରେ ଅଶୁଭ ଲକ୍ଷଣ ରୂପେ ଦୃଷ୍ଟିଗୋଚର ହେଉଥାଏ । ସେନା ଚଳିଲେ; ତାହାର ବର୍ଣ୍ଣନା କିଏ କରି ପାରିବ ? ଅସଂଖ୍ୟ ବାନର ଓ ଭଲ୍ଲୁକ ଗର୍ଜ୍ଜନ କରୁଥା'ନ୍ତି । କେବଳ ନଖ ଯେଉଁମାନଙ୍କ ଆୟୁଧ, ଇଚ୍ଛାନୁସାରେ ଅବାଧରେ ଯେଉଁ ଭଲ୍ଲୁକମାନେ ଚାଲିପାରନ୍ତି, ଏହିପରି ଭଲ୍ଲୁକ ଓ ବାନରଗଣ ପର୍ବତ ଓ ବୃକ୍ଷମାନ ଧାରଣ କରି କେହି ଆକାଶ ମାର୍ଗରେ ଏବଂ କେହି ପୃଥିବୀ ଉପରେ ଚାଲିଯାଉଥା'ନ୍ତି । ସେମାନେ ସିଂହ ସମାନ ଗର୍ଜ୍ଜନ କରୁଥା'ନ୍ତି । ସେମାନଙ୍କର ଚାଲିବା ଓ ଗର୍ଜ୍ଜନ କରିବା ଯୋଗେ ଦିଗ୍‌ଗଜମାନେ ବିଚଳିତ ହୋଇ ଭୀଷଣ ଗର୍ଜ୍ଜନ କରୁଥା'ନ୍ତି ॥ ୫ ॥ ଛନ୍ଦ :—ଦିଗ୍‌ଗଜମାନେ ଭୟଙ୍କର ଗର୍ଜ୍ଜନ କରିବାକୁ ଲାଗିଲେ । ପୃଥିବୀ ଦୋହଲିବାକୁ ଲାଗିଲା, ପର୍ବତମାନେ ଚଞ୍ଚଳ ହେବାକୁ ଲାଗିଲେ ଏବଂ ସମୁଦ୍ରମାନେ ଉଚ୍ଛୁଳିବାକୁ ଲାଗିଲେ । ଗନ୍ଧର୍ବ, ଦେବତା, ମୁନି, ନାଗ ଓ କିନ୍ନରମାନେ ସମସ୍ତେ 'ଏବେ ଆମର ଦୁଃଖ ଦୂର ହେଲା' ବୋଲି ମନେ କରି ଆନନ୍ଦିତ ହେବାକୁ ଲାଗିଲେ । କୋଟି କୋଟି ଭୟଙ୍କର ବାନର-ଯୋଦ୍ଧା ଦାନ୍ତ, କଟକଟ କରୁଥା'ନ୍ତି ଏବଂ କୋଟି କୋଟି ସଂଖ୍ୟାରେ ସେମାନେ ଦୌଡ଼ୁଥା'ନ୍ତି । 'ପ୍ରବଳପ୍ରତାପ କୋଶଳନାଥ ଶ୍ରୀରାମଚନ୍ଦ୍ରଙ୍କର ଜୟ ହେଉ' ଏହିପରି ଧ୍ୱନି କରି ସେମାନେ

ଏହି ବିଧି ଜାଇ କୃପାନିଧି ଉତରେ ସାଗର ତୀର ।
ଜହଁ ତହଁ ଲାଗେ ଖାନ ଫଲ ଭାଲୁ ବିପୁଲ କପି ବୀର ।।୩୫।।

ଉହାଁ ନିସାଚର ରହହିଁ ସସଙ୍କା । ଜବ ତେଁ ଜାରି ଗୟଉ କପି ଲଙ୍କା ।।
ନିଜ ନିଜ ଗୃହଁ ସବ କରହିଁ ବିଚାରା । ନହିଁ ନିସିଚର କୁଲ କେର ଉବାରା ।।୧।।
ଜାସୁ ଦୂତ ବଲ ବରନି ନ ଜାଈ । ତେହି ଆଏଁ ପୁର କବନ ଭଲାଈ ।।
ଦୂତିନ୍ହ ସନ ସୁନି ପୁରଜନ ବାନୀ । ମନ୍ଦୋଦରୀ ଅଧିକ ଅକୁଲାନୀ ।।୨।।
ରହସି ଜୋରି କର ପତି ପଗ ଲାଗୀ । ବୋଲୀ ବଚନ ନୀତି ରସ ପାଗୀ ।।
କନ୍ତ କରଷ ହରି ସନ ପରିହରହୂ । ମୋର କହା ଅତି ହିତ ହିୟଁ ଧରହୂ ।।୩।।

---

ଏ ଭାବେ ଯାଇଣ କୃପାନିକେତନ ପ୍ରବେଶିଲେ ସିନ୍ଧୁ ତୀରେ ।
ଯହିଁ ତହିଁ ଫଳ ଖାଇଲେ ବିପୁଳ ଋକ୍ଷ ମରକଟ ବୀରେ ।।୩୫।।

ଶଙ୍କିତେ ରହନ୍ତି ତେଣେ ଖଳ ଯାତୁଧାନ । ଯେଉଁ ଦିନୁ ଲଙ୍କା ଜାଳି ଗଲା ହନୁମାନ ।।
ନିଜ ନିଜ ଗୃହେ ସର୍ବେ କରନ୍ତି ବିଚାର । ନାହିଁ ରଜନୀଚରଙ୍କ କୁଳର ନିସ୍ତାର ।।୧।।
ଯାର ଦୂତ ବଳ କରି ନ ହୁଏ ବର୍ଣ୍ଣନ । ଭଲ କି ହେବ ସେ ପୁରେ କଲେ ଆଗମନ ।।
ଦୂତୀଙ୍କ ମୁଖରୁ ଶୁଣି ପୁରଜନ ବାଣୀ । ହୋଇଲା ବ୍ୟାକୁଳ ବହୁ ମନ୍ଦୋଦରୀ ରାଣୀ ।।୨।।
ଏକାନ୍ତେ କର ଯୋଡ଼ିଣ ପତି ପଦ ଧରି । ବୋଲଇ ବଚନ ନୀତି-ରସଯୁକ୍ତ କରି ।।
କାନ୍ତ, ଈର୍ଷା ଦ୍ୱେଷ ହରି ସଙ୍ଗୁ ପରିହର । ମୋ କଥନ ହିତ ମଣି ହୃଦେ ଘେନାକର ।।୩।।

---

ତାହାଙ୍କ ଗୁଣାବଳୀ ଗାନ କରୁଥାଆନ୍ତି ।। ୧ ।। ଉଦାର ସର୍ପରାଜ ଶେଷ ମଧ୍ୟ ସେନାମାନଙ୍କ ଭାର ସହିପାରୁ ନ ଥା'ନ୍ତି । ସେ ବାରମ୍ବାର ମୋହଗ୍ରସ୍ତ (ବିଚଳିତ) ହୋଇ ପଡ଼ୁଥା'ନ୍ତି ଏବଂ ବାରମ୍ବାର କଚ୍ଛପର କଠୋର ପୃଷ୍ଠଦେଶକୁ ଦାନ୍ତରେ ଧାରଣ (ଭେଦନ) କରୁଥା'ନ୍ତି । ଏହିପରି କରୁଥିବା ବେଳେ ସେ ଏପରି ଶୋଭା ପାଉଥାଆନ୍ତି, ସତେ ଯେପରି ଶ୍ରୀରାମଙ୍କ ସୁନ୍ଦର ଅଭିଯାନକୁ ପରମ ମନୋହର ପ୍ରସଙ୍ଗ ରୂପେ ମନେ କରି ସେହି ଅଚଳ ପବିତ୍ର କଥାକୁ ସର୍ପରାଜ ଶେଷ କଚ୍ଛପର ପିଠିରେ ଲେଖୁଅଛନ୍ତି ।।୨।।
ଦୋହା —ଏହି ରୂପେ କୃପାନିଧାନ ଶ୍ରୀରାମ ସମୁଦ୍ର ତଟରେ ଯାଇ ପହଞ୍ଚିଲେ । ଅନେକ ଋକ୍ଷ-ବାନର ବୀର ଯେଉଁଠି ଇଚ୍ଛା ସେଇଠି ଫଳ ଖାଇବାକୁ ଲାଗିଲେ ।। ୩୫ ।।
ଚୌପାଈ —ତେଣେ ଯେଉଁଦିନଠାରୁ ହନୁମାନ୍ ଲଙ୍କା ଜଳାଇ ଗଲେ, ସେହିଦିନୁ ରାକ୍ଷସମାନେ ଭୟଭୀତ ଅବସ୍ଥାରେ ରହୁଥା'ନ୍ତି । ଆପଣା ଆପଣା ଘରେ ସମସ୍ତେ ବିଚାର କରୁଥା'ନ୍ତି—ଏବେ ରାକ୍ଷସ-କୁଳର ରକ୍ଷା ନିମନ୍ତେ ଆଉ କୌଣସି ଉପାୟ ନାହିଁ ।। ୧ ।। ଯାହାଙ୍କ ଦୂତର ବଳ ଅବର୍ଣ୍ଣନୀୟ ସେହି ପ୍ରଭୁ ସ୍ୱୟଂ ନଗରକୁ ଆସିଲେ, ନଗରର ମଙ୍ଗଳ କାହିଁ ? ଦୂତୀମାନଙ୍କଠାରୁ ନଗରବାସୀମାନଙ୍କ କଥା ଶୁଣି, ମନ୍ଦୋଦରୀ ଅତ୍ୟନ୍ତ ବ୍ୟାକୁଳ ହୋଇ ପଡ଼ିଲା ।। ୨ ।। ସେ ଏକାନ୍ତରେ ହାତ ଯୋଡ଼ି ପତିଙ୍କ ଚରଣ ତଳେ ପଡ଼ିଗଲା ଏବଂ ନୀତି-ରସ-ସିକ୍ତ ବାଣୀ କହିଲା, "ହେ ପ୍ରିୟତମ ! ଶ୍ରୀହରିଙ୍କ

ସମୁଝତ ଜାସୁ ଦୂତ କଇ କରନୀ । ସ୍ରବହିଁ ଗର୍ଭ ରଜନୀଚର ଘରନୀ ॥
ତାସୁ ନାରି ନିଜ ସଚିବ ବୋଲାଈ । ପଠୱହୁ କନ୍ତ ଜୋ ଚହହୁ ଭଲାଈ ॥୩॥
ତବ କୁଲ କମଲ ବିପିନ ଦୁଖଦାଈ । ସୀତା ସୀତ ନିସା ସମ ଆଈ ॥
ସୁନହୁ ନାଥ ସୀତା ବିନୁ ଦୀନ୍ହେଁ । ହିତ ନ ତୁମ୍ହାର ସମ୍ଭୁ ଅଜ କୀନ୍ହେଁ ॥୫॥

ରାମ ବାନ ଅହିଗନ ସରିସ ନିକର ନିସାଚର ଭେକ ।
ଜବ ଲଗି ଗ୍ରସତ ନ ତବ ଲଗି ଜତନୁ କରହୁ ତଜି ଟେକ ॥୩୬॥

ଶ୍ରବନ ସୁନୀ ସଠ ତା କରି ବାନୀ । ବିହସା ଜଗତ ବିଦିତ ଅଭିମାନୀ ॥
ସଭୟ ସୁଭାଉ ନାରି କର ସାଚୁ । ମଙ୍ଗଲ ମହୁଁ ଭୟ ମନ ଅତି କାଚୁ ॥୧॥
ଜୌଁ ଆୱଇ ମର୍କଟ କଟକାଈ । ଜିଅହିଁ ବିଚାରେ ନିସିଚର ଖାଈ ॥
କମ୍ପହିଁ ଲୋକପ ଜାକୀଁ ତ୍ରାସା । ତାସୁ ନାରି ସଭୀତ ବଡ଼ି ହାସା ॥୨॥

---

ଯାହାଙ୍କ ଦୂତର କର୍ମ ସ୍ମରନ୍ତେ ଚିତ୍ତରେ । ନିଶାଚର ନାରୀ ଗର୍ଭ ସ୍ରବନ୍ତି ଝଡ଼ରେ ॥
ତାହାଙ୍କ ନାରୀଙ୍କୁ ନିଜ ସଚିବେ ଡକାଇ । ଭଲ ଯେବେ ଚାହଁ ନାଥ, ଦିଅନ୍ତୁ ପଠାଇ ॥୪॥
ତୁମ୍ଭ କୁଳ-ସରୋରୁହ-ବନ ଦୁଃଖ ଦାୟୀ । ଆସିଅଛି ସୀତା ହେମନ୍ତ ଶୀତଋତୁ ରାତ୍ରୀ ॥
ଶୁଣ ନାଥ, ତୁମ୍ଭେ ଯେବେ ସୀତାଙ୍କୁ ନ ଦେବ । ଶମ୍ଭୁ ଅଜ ସାହାଯ୍ୟେ ବି କଲ୍ୟାଣ ନ ହେବ ॥୫॥

ରାମ ବାଣ ଅହି-ସମୂହ ସମାନ ଭେକ ଅସୁର ନିକର ।
ଯେ ପର୍ଯ୍ୟନ୍ତ ଗ୍ରାସ ନ କରିଛି ନାଥ, ହଠ ତେଜି ଯତ୍ନ କର ॥୩୬॥

ଶୁଣନ୍ତେ ଶ୍ରବଣେ ଖଳ ମନ୍ଦୋଦରୀ ବାଣୀ । ଉପହାସ କଲା ବିଶ୍ୱ-ବିଦିତାଭିମାନୀ ॥
ସଭୟ ସ୍ୱଭାବ ସତ୍ୟ ଅଟେ ନାରୀଙ୍କର । ମଙ୍ଗଳରେ ଭୟେ ମନ ହୁଅଇ କାତର ॥୧॥
ଯେବେ ମରକଟ ଦଳ ବାନ୍ଧିଣ ଆସିବେ । ବିଚରା ରାକ୍ଷସେ ଖାଇ ତାହାଙ୍କୁ ବଞ୍ଚିବେ ॥
ଯାହାର ତ୍ରାସେ କମ୍ପନ୍ତି ସର୍ବେ ଲୋକପତି । ତା ନାରୀ ସଭୀତ, ଏହା ଉପହାସ୍ୟ ଅତି ॥୨॥

---

ସହିତ ଶତ୍ରୁତା ପରିହାର କରନ୍ତୁ । ମୋ କଥାକୁ ଅତି ହିତକର ମନେ କରି ହୃଦୟରେ ଧାରଣ କରନ୍ତୁ ॥ ୩ ॥ ଯାହାଙ୍କର ଦୂତର କୃତିତ୍ୱ ମନେ ପଡ଼ିବା ମାତ୍ରେ ରାକ୍ଷସ ନାରୀମାନଙ୍କ ଗର୍ଭପାତ ହୁଏ, ହେ ପ୍ରିୟତମ ! ଯଦି ମଙ୍ଗଳ ଚାହାନ୍ତି, ତେବେ ଆପଣା ମନ୍ତ୍ରୀଙ୍କୁ ଡକାଇ ତାହାଙ୍କ ସଙ୍ଗେ ତାଙ୍କ ସ୍ତ୍ରୀଙ୍କୁ ପଠାଇ ଦିଅନ୍ତୁ ॥ ୪ ॥ ସୀତା ଆପଣଙ୍କ କୁଳ-କମଳକାନନ ପ୍ରତି ଦୁଃଖ-ଦାୟିନୀ ଶୀତ ରାତ୍ରି ରୂପେ ଆସିଅଛନ୍ତି । ହେ ନାଥ ! ଶୁଣନ୍ତୁ, ସୀତାଙ୍କୁ ନ ଫେରାଇଲେ ଶମ୍ଭୁ ଓ ବ୍ରହ୍ମାଙ୍କ କୃତ କାର୍ଯ୍ୟ ଯୋଗେ ସୁଦ୍ଧା ଆପଣଙ୍କର ମଙ୍ଗଳ ହୋଇ ପାରିବ ନାହିଁ ॥ ୫ ॥ ଦୋହା :—ଶ୍ରୀରାମଚନ୍ଦ୍ରଙ୍କ ବାଣମାନ ସର୍ପଗଣ ସମାନ ଏବଂ ରାକ୍ଷସସମୂହ ବେଙ୍ଗମାନଙ୍କ ସଙ୍ଗେ ସମାନ । ସେମାନେ ଏମାନଙ୍କୁ ଗିଳିଯିବା ପୂର୍ବରୁ ଜିଦ୍ ଛାଡ଼ି ଉପାୟ କରି ନିଅନ୍ତୁ ।" ॥ ୩୬ ॥ ଚୌପାଇ :- ମୂର୍ଖ ଜଗତ-ବିଦିତ-ଅଭିମାନୀ ରାବଣ ମନ୍ଦୋଦରୀର କଥା ଶୁଣି ଖୁବ୍ ହସିଲା ଏବଂ କହିଲା, "ସ୍ତ୍ରୀମାନଙ୍କ ସ୍ୱଭାବ ବାସ୍ତବିକ ଅତି ଭୀରୁ । ମଙ୍ଗଳରେ ସୁଦ୍ଧା ତୁମେ ଏତେ

ଅସ କହି ବିହସି ତାହି ଉର ଲାଈ । ଚଲେଉ ସଭାଁ ମମତା ଅଧିକାଈ ॥
ମଂଦୋଦରୀ ହୃଦୟଁ କର ଚିଂତା । ଭୟଉ କନ୍ତ ପର ବିଧି ବିପରୀତା ॥୩॥
ବୈଠେଉ ସଭାଁ ଖବରି ଅସି ପାଈ । ସିଂଧୁ ପାର ସେନା ସବ ଆଈ ॥
ବୂଝେସି ସଚିବ ଉଚିତ ମତ କହହୂ । ତେ ସବ ହଁସେ ମଷ୍ଟ କରି ରହହୂ ॥୪॥
ଜିତେହୁ ସୁରାସୁର ତବ ଶ୍ରମ ନାହୀଁ । ନର ବାନର କେହି ଲେଖେ ମାହୀଁ ॥୫॥

ସଚିବ ବୈଦ ଗୁର ତୀନି ଜୌଁ ପ୍ରିୟ ବୋଲହିଁ ଭୟ ଆସ ।
ରାଜ ଧର୍ମ ତନ ତୀନି କର ହୋଇ ବେଗିହିଁ ନାସ ॥୩୭॥

ସୋଇ ରାବନ କହୁଁ ବନୀ ସହାଈ । ଅସ୍ତୁତି କରହିଁ ସୁନାଇ ସୁନାଈ ॥
ଅବସର ଜାନି ବିଭୀଷନୁ ଆୱା । ଭ୍ରାତା ଚରନ ସୀସୁ ତେହିଁ ନାୱା ॥୧॥

---

ଏହା କହି ହୃଦେ ତାଙ୍କୁ କରି ଆଲିଙ୍ଗନ । ଅଧିକ ମମତ୍ୱେ ଗଲେ ସଭାକୁ ବଦନ ॥
ମନ୍ଦୋଦରୀ ଚିନ୍ତା କରେ ହୃଦୟ ମଧ୍ୟରେ । ବିଧି ବିପରୀତ ହେଲେ କାନ୍ତଙ୍କ ଉପରେ ॥୩॥
ବସନ୍ତେ ସଭାରେ ଏହି ପାଇଲେ ସନ୍ଦେଶ । ସିନ୍ଧୁ ପାରେ କପିସେନା ହେଲେଣି ପ୍ରବେଶ ॥
ପଚାରେ ମନ୍ତ୍ରୀଙ୍କି କହ ସମ୍ମତ ଉଚିତ । ହସିଣ କହିଲେ ସର୍ବେ, ରହନ୍ତୁ ନିଶ୍ଚିନ୍ତ ॥୪॥
ଜିଣନ୍ତେ ସୁରାସୁରଙ୍କୁ ନ ପାଇଲ କଷ୍ଟ । କେଉଁ ଲେଖାରେ ଗଣନା ମନୁଷ୍ୟ ମର୍କଟ ॥୫॥

ମନ୍ତ୍ରୀ ବୈଦ୍ୟଗୁରୁ ଏ ତିନି ଭୟାଶେ ବୋଲନ୍ତେ ପ୍ରିୟ ବଚନ ।
ରାଜ୍ୟ ତନୁ ଧର୍ମ ତିନିଙ୍କ ନିଶ୍ଚୟେ ବିନାଶ ହୁଏ ବହନ ॥୩୭॥

ସେହି ସହାୟକ ରାବଣକୁ ମିଳିଛନ୍ତି । ଶୁଣାଇ ଶୁଣାଇ ସ୍ତୁତି ସର୍ବେ କରନ୍ତି ॥
ବେଳ ଜାଣି ବିଭୀଷଣ ତହିଁ ଆଗମିଲେ । ଭ୍ରାତା ଚରଣରେ ସେହି ଶିର ନୁଆଇଲେ ୧॥

---

ଭୟ କରୁଅଛ । ତୁମ ମନ ଅତି ଦୁର୍ବଳ ॥ ୧ ॥ ଯଦି ବାନରମାନଙ୍କର ସେନା ଆସିବ, ତେବେ ବିଚରା ରାକ୍ଷସମାନେ ସେମାନଙ୍କୁ ଖାଇ ଆପଣା ଜୀବନ ନିର୍ବାହ କରିବେ । ଲୋକପାଳମାନେ ମଧ୍ୟ ଯାହାର ଡରରେ କମ୍ପି ଉଠନ୍ତି, ତାହାର ସ୍ତ୍ରୀ ତୁମେ ହୋଇ ଡରୁଅଛ ! ଏହା ବଡ ଉପହାସର କଥା ।” ॥ ୨ ॥ ରାବଣ ଏପରି କହି ହସିଲେ ଏବଂ ମନ୍ଦୋଦରୀଙ୍କୁ ଆଲିଙ୍ଗନ କଲେ । ତାହା ପ୍ରତି ଅଧିକ ମମତା ଦେଖାଇ ସେ ସଭାକୁ ଚାଲିଗଲେ । ମନ୍ଦୋଦରୀ ହୃଦୟରେ ଚିନ୍ତା କରିବାକୁ ଲାଗିଲେ—ବିଧାତା ପତିଙ୍କ ପ୍ରତିକୂଳ ହେଲେଣି ॥ ୩ ॥ ସଭାରେ ସେ ଯାଇଁ ବସିବା ମାତ୍ରେ ଖବର ପାଇଲେ ଯେ, ଶତ୍ରୁପକ୍ଷର ସମଗ୍ର ସେନା ସମୁଦ୍ରର ସେ ପାରରେ ଆସି ପହଞ୍ଚିଗଲେଣି । ସେ ମନ୍ତ୍ରୀମାନଙ୍କୁ କହିଲେ, “ଉଚିତ-ପରାମର୍ଶ ଦିଅନ୍ତୁ—ବର୍ତ୍ତମାନ କଣ କରିବାକୁ ହେବ ।” ସେତେବେଳେ ସେମାନେ ଖୁବ୍ ହସିଲେ ଏବଂ କହିଲେ, “ବର୍ତ୍ତମାନ ପରାମର୍ଶ ପାଇଁ କ’ଣ ଆଉ ଅଛି ? ଆପଣ ଚୁପ୍ ହୋଇ ବସି ରହନ୍ତୁ ॥ ୪ ॥ ଆପଣ ଦେବତା ଓ ରାକ୍ଷସମାନଙ୍କୁ ଜୟ କରିଛନ୍ତି । ସେତେବେଳେ ତ ଆପଣଙ୍କୁ ପରିଶ୍ରମ ଆଦୌ ପଡିନାହିଁ । ଏବେ ମନୁଷ୍ୟ ଓ ବାନରଙ୍କ ଗଣନା କାହିଁରେ ?” ॥ ୫ ॥ ଦୋହା :—ମନ୍ତ୍ରୀ, ବୈଦ୍ୟ ଓ

ପୁନି ସିରୁ ନାଇ ବୈଠ ନିଜ ଆସନ । ବୋଲ ବଚନ ପାଇ ଅନୁସାସନ ॥
ଜୌ କୃପାଲ ପୂଁଛିହୁ ମୋହି ବାତା । ମତି ଅନୁରୂପ କହଉଁ ହିତ ତାତା ॥୨॥
ଜୋ ଆପନ ଚାହୈ କଲ୍ୟାନା । ସୁଜସୁ ସୁମତି ସୁଭ ଗତି ସୁଖ ନାନା ॥
ସୋ ପରନାରି ଲିଲାର ଗୋସାଇଁ । ତଜଉ ଚଉଥି କେ ଚନ୍ଦ କି ନାଇଁ ॥୩॥
ଚୌଦହ ଭୁବନ ଏକ ପତି ହୋଈ । ଭୂତଦ୍ରୋହ ତିଷ୍ଟଇ ନହିଁ ସୋଈ ॥
ଗୁନସାଗର ନାଗର ନର ଜୋଊ । ଅଲପ ଲୋଭ ଭଲ କହଇ ନ କୋଊ ॥୪॥

କାମ କ୍ରୋଧ ମଦ ଲୋଭ ସବ ନାଥ ନରକ କେ ପଂଥ ।
ସବ ପରିହରି ରଘୁବୀରହି ଭଜହୁ ଭଜହିଁ ଜେହି ସଂତ ॥୩୮॥

---

ପ୍ରଣମି ବସିଲେ ପୁଣି ଆପଣା ଆସନେ । ଭାଷିଲେ ବଚନ ତହୁଁ ଭ୍ରାତାନୁଶାସନେ ॥
ଯେବେ କୃପାମୟ ! ମୋତେ ଉପାୟ ପଚାର । କହୁଛି ମୁଁ ହିତକଥା ମତି ଅନୁସାର ॥୨॥
ଯେବେ ଅଭିଲାଷ କର ଆପଣା କୁଶଳ । ସୁଗତି ସୁମତି ସୁଖ ସୁଯଶ ସକଳ ॥
ତେବେ ପରରମଣୀର ମୁଖାବଲୋକନ । ତେଜନ୍ତୁ ନାଥ ଚତୁର୍ଥୀ ଚନ୍ଦ୍ରମା ଯେସନ ॥୩॥
ଚଉଦ ଭୁବନ ମଧ୍ୟେ ଏକ ପତି ଯେହୁ । ଭୂତ ଦ୍ରୋହ କରି ତିଷ୍ଠି ନ ପାରଇ ସେହୁ ॥
ଗୁଣ-ସାଗର ନାଗର ଯେ ନର ଅଟଇ । ଅଳ୍ପ ଲୋଭେ ତାକୁ କେହି ଭଲ ନ କହଇ ॥୪॥

କାମ କ୍ରୋଧ ଲୋଭ ମଦାଦି ସରବ ନାଥ ' ନରକର ପଥ ।
ତେଜିଣ ସକଳ ରାମ ପଦ ଭଜ, ଭଜନ୍ତି ଯାହାଙ୍କୁ ସନ୍ଥ ॥୩୮॥

---

ଗୁରୁ—ଏ ତିନିହେଁ ଯଦି ସ୍ୱାମୀଙ୍କ ଅପ୍ରସନ୍ନତାର ଆଶଙ୍କା ବା ଲାଭ ଆଶାରେ ହିତ କଥା ନ କହି ଚାଟୁକ୍ତି କରନ୍ତି, ତେବେ ରାଜ୍ୟ, ଶରୀର ଓ ଧର୍ମ ଯଥାକ୍ରମେ ଏ ତିନିଗୋଟି ଧନର ଶୀଘ୍ର ବିନାଶ ଘଟେ ॥ ୩୭ ॥ ଚୌପାଇ :—ରାବଣ ନିମନ୍ତେ ମଧ୍ୟ ସେହି ପ୍ରକାର ସୁଯୋଗ ଆସି ପହଞ୍ଚିଛି । ମନ୍ତ୍ରୀମାନେ ତାହାକୁ ଶୁଣାଇ ଶୁଣାଇ ମୁହଁରେ ସ୍ତୁତି କରୁଥା'ନ୍ତି । ଏହି ସମୟରେ ଉପଯୁକ୍ତ ଅବସର ଜାଣି ବିଭୀଷଣ ଆସି ପହଞ୍ଚିଲେ । ସେ ବଡ ଭାଇଙ୍କ ଚରଣରେ ଶିର ନୁଆଁଇଲେ ॥ ୧ ॥ ପୁଣି ଥରେ ମଥା ନୁଆଁଇ ଆପଣା ଆସନରେ ବସିଗଲେ ଏବଂ ଆଜ୍ଞା ପାଇ ବଚନ ବୋଇଲେ, "ହେ କୃପାଳୁ ! ଯେତେବେଳେ ଆପଣ ମୋ ପରାମର୍ଶ ଲୋଡ଼ିଛନ୍ତି, ମୁଁ ମୋ ବୁଦ୍ଧି ଅନୁସାରେ ଆପଣଙ୍କ ହିତକଥା କହୁଅଛି—॥ ୨ ॥ ଯେଉଁବ୍ୟକ୍ତି ନିଜ କଲ୍ୟାଣ, ସୁଯଶ, ସୁବୁଦ୍ଧି, ସୁଗତି ଓ ନାନାବିଧ ସୁଖ ଚାହେଁ, ହେ ପ୍ରଭୋ ! ତାହାର ପର ସ୍ତ୍ରୀର ଲଲାଟକୁ ଚତୁର୍ଥୀ ଚନ୍ଦ୍ର ପରି ନ ଚାହିଁବା ଉଚିତ ॥ ୩ ॥ ଚଉଦ ଭୁବନର ପ୍ରଭୁ ହୋଇ ସୁଦ୍ଧା ଜୀବମାନଙ୍କ ସହିତ ଶତ୍ରୁତା କଲେ କେହି ତିଷ୍ଠି ପାରିବ ନାହିଁ । ଯେଉଁ ମନୀଷ ଗୁଣର ସମୁଦ୍ର ଏବଂ ଚତୁର, ଯଦି ତାହାର ଟିକିଏ ମାତ୍ର ଲୋଭ ଥାଏ, କେହି ତାହାକୁ ଭଲ ବୋଲି କହନ୍ତି ନାହିଁ । ॥ ୪ ॥ ଦୋହା :—ହେ ନାଥ ! କାମ କ୍ରୋଧ, ମଦ ଓ ଲୋଭ—ଏ ସବୁ ନର୍କର ମାର୍ଗ । ଏ ସମସ୍ତଙ୍କୁ ଛାଡି ଶ୍ରୀରାମଙ୍କୁ ଭଜନ୍ତୁ, ଯାହାଙ୍କୁ ସ

ତାତ ରାମ ନହିଁ ନର ଭୂପାଲା । ଭୁବନେଶ୍ୱର କାଲହୁ କର କାଲା ॥
ବ୍ରହ୍ମ ଅନାମୟ ଅଜ ଭଗବଂତା । ବ୍ୟାପକ ଅଜିତ ଅନାଦି ଅନଂତା ॥୧॥
ଗୋ ଦ୍ୱିଜ ଧେନୁ ଦେବ ହିତକାରୀ । କୃପାସିଂଧୁ ମାନୁଷ ତନୁଧାରୀ ॥
ଜନ ରଞ୍ଜନ ଭଞ୍ଜନ ଖଲ ବ୍ରାତା । ବେଦ ଧର୍ମ ରକ୍ଷକ ସୁନୁ ଭ୍ରାତା ॥୨॥
ତାହି ବୟରୁ ତଜି ନାଇଅ ମାଥା । ପ୍ରନତାରତି ଭଂଜନ ରଘୁନାଥା ॥
ଦେହୁ ନାଥ ପ୍ରଭୁ କହୁଁ ବୈଦେହୀ । ଭଜହୁ ରାମ ବିନୁ ହେତୁ ସନେହୀ ॥୩॥
ସରନ ଗଏଁ ପ୍ରଭୁ ତାହୁ ନ ତ୍ୟାଗା । ବିସ୍ୱଦ୍ରୋହ କୃତ ଅଘ ଜେହି ଲାଗା ॥
ଜାସୁ ନାମ ତ୍ରୟ ତାପ ନସାୱନ । ସୋଇ ପ୍ରଭୁ ପ୍ରଗଟ ସମୁଝୁ ଜିୟଁ ରାବନ ॥୪॥

ବାର ବାର ପଦ ଲାଗଉଁ ବିନୟ କରଉଁ ଦସସୀସ ।
ପରିହରି ମାନ ମୋହ ମଦ ଭଜହୁ କୋସଲାଧୀସ ॥୩୯ (କ)॥

---

ଭ୍ରାତ ! ରାମଚନ୍ଦ୍ର ନର ଭୂପାଳ ନୁହନ୍ତି । ବିଶ୍ୱେଶ, କାଳର ସୁଦ୍ଧା କାଳ ସେ ଅଟନ୍ତି ॥
ବ୍ରହ୍ମ ଅନାମୟ ସେହି ଅଜ ଭଗବନ୍ତ । ବ୍ୟାପକ ଅଜିତ ପୁଣି ଅନାଦି ଅନନ୍ତ ॥୧॥
ମହୀ ମହୀସୁର ସୁର ଧେନୁ ହିତକାରୀ । କରୁଣା-ସିନ୍ଧୁ ମାନବ କଳେବର-ଧାରୀ ॥
ସଜ୍ଜନ-ରଞ୍ଜନ, ଖଳ-ସମୂହ-ଗଞ୍ଜନ । ଶୁଣ ଭ୍ରାତ, ସଦା ବେଦ ଧରମ-ରକ୍ଷଣ ॥୨॥
ତାଙ୍କଠାରେ ବୈର ତେଜି ନୁଆଁଅ ମସ୍ତକ । ପ୍ରଣତ-ଦୁଃଖ-ଭଞ୍ଜନ ଶ୍ରୀ ରଘୁନାୟକ ॥
ସମର୍ପଣ କର ନାଥ, ପ୍ରଭୁଙ୍କୁ ବୈଦେହୀ । ଭଜ ରଘୁରାଜ ସେହୁ ଅକାରଣ ସ୍ନେହୀ ॥୩॥
ଶରଣେ ଆସନ୍ତେ ପ୍ରଭୁ ନ ତେଜନ୍ତି ତାଙ୍କୁ । ବିଶ୍ୱଦ୍ରୋହ କୃତ ପାପ ଲାଗିଛି ଯାହାଙ୍କୁ ॥
ଯାହାଙ୍କ ନାମ ତ୍ରିବିଧ ତାପ ବିନାଶନ । ସେ ପ୍ରଭୁ ପ୍ରକଟ ହୃଦେ, ହେଜ ଦଶାନନ ॥୪॥

ପଡ଼ି ଲଙ୍କେଶ୍ୱର ! ପଦେ ବାରମ୍ବାର କରୁଛି ମୁହିଁ ବିନତି ।
ପରିହରି ଦ୍ରୋହ ମାନ ମଦ ମୋହ ଭଜ କୋଶଳାଧିପତି ॥୩୯ (କ)॥

---

ସନ୍ଥଜନମାନେ ଭଜନ କରନ୍ତି ॥ ୩୮ ॥ ଚୌପାଈ :—ହେ ଭ୍ରାତ ! ରାମ କେବଳ ମନୁଷ୍ୟମାନଙ୍କ ରାଜା ନୁହନ୍ତି । ସେ ସମସ୍ତ ଲୋକର ସ୍ୱାମୀ ଏବଂ କାଳର ମଧ୍ୟ କାଳ । ସେ ସମ୍ପୂର୍ଣ୍ଣ ଐଶ୍ୱର୍ଯ୍ୟ, ଯଶ, ଶ୍ରୀ, ଧର୍ମ, ବୈରାଗ୍ୟ ଏବଂ ଜ୍ଞାନର ଭଣ୍ଡାର ଭଗବାନ୍ । ସେ ନିରାମୟ, ବିକାର-ରହିତ, ଅଜନ୍ମା, ବ୍ୟାପକ, ଅଜେୟ, ଅନାଦି ଓ ଅନନ୍ତ ପରଂବ୍ରହ୍ମ ॥ ୧ ॥ ସେହି କୃପାସାଗର ଭଗବାନ୍ ପୃଥିବୀ, ବ୍ରାହ୍ମଣ, ଗୋରୁ ଓ ଦେବତାମାନଙ୍କ ହିତ ସାଧନ କରିବା ନିମନ୍ତେ ମନୁଷ୍ୟ ଶରୀର ଧାରଣ କରିଅଛନ୍ତି । ହେ ଭାଇ ! ଶୁଣନ୍ତୁ, ସେ ସେବକମାନଙ୍କର ଆନନ୍ଦଦାୟକ, ଦୁଷ୍ଟଗଣଙ୍କ ବିନାଶକାରକ ଏବଂ ବେଦ ଓ ଧର୍ମର ରକ୍ଷକ ॥ ୨ ॥ ଶତ୍ରୁତା ତ୍ୟାଗ କରି ତାହାଙ୍କୁ ଶିର ନୁଆଁନ୍ତୁ । ସେହି ଶ୍ରୀ ରଘୁନାଥ ଶରଣାଗତର ଦୁଃଖନାଶକାରୀ । ହେ ନାଥ ! ସେହି ସର୍ବେଶ୍ୱର ପ୍ରଭୁଙ୍କୁ ଜାନକୀଙ୍କୁ ଦେଇ ଦିଅନ୍ତୁ ଏବଂ ଅହେତୁକୀ ପ୍ରେମିକ ଶ୍ରୀରାମଙ୍କୁ ଭଜନ କରନ୍ତୁ ॥୩॥ ସମସ୍ତ ଜଗତ ପ୍ରତି ଦ୍ରୋହାଚରଣ କରିବାର ପାପ ଯାହାଙ୍କୁ ଲାଗିଥାଏ, ସେ ଯଦି ପ୍ରଭୁଙ୍କର

ମୁନି ପୁଲସ୍ତି ନିଜ ସିଷ୍ୟ ସନ କହି ପଠଈ ଯହ ବାତ ।
ତୁରତ ସୋ ମୈଁ ପ୍ରଭୁ ସନ କହୀ ପାଇ ସୁଅବସରୁ ତାତ ॥୩୯ (ଖ)॥

ମାଲ୍ୟବନ୍ତ ଅତି ସଚିବ ସୟାନା । ତାସୁ ବଚନ ସୁନି ଅତି ସୁଖ ମାନା ॥
ତାତ ଅନୁଜ ତବ ନୀତି ବିଭୂଷନ । ସୋ ଉର ଧରହୁ ଜୋ କହତ ବିଭୀଷନ ॥୧॥
ରିପୁ ଉତକରଷ କହତ ସଠ ଦୋଊ । ଦୂରି ନ କରହୁ ଇହାଁ ହଇ କୋଊ ॥
ମାଲ୍ୟବନ୍ତ ଗୃହ ଗୟଉ ବହୋରୀ । କହଇ ବିଭୀଷନୁ ପୁନି କର ଜୋରୀ ॥୨॥
ସୁମତି କୁମତି ସବ କେଁ ଉର ରହହୀଁ । ନାଥ ପୁରାନ ନିଗମ ଅସ କହହୀଁ ॥
ଜହାଁ ସୁମତି ତହଁ ସଂପତି ନାନା । ଜହାଁ କୁମତି ତହଁ ବିପତି ନିଦାନା ॥୩॥

---

ପୁଲସ୍ତ୍ୟ ମହର୍ଷି ପେଷିଛନ୍ତି ନିଜ ଶିଷ୍ୟଙ୍କୁ ଏହା କୁହାଇ ।
କହିଲି ତାହା ମୁଁ ତୁମ୍ଭ ଆଗେ ଶୀଘ୍ର ତାତ ! ସୁସମୟ ପାଇ ॥୩୯ (ଖ)॥

ମାଲ୍ୟବନ୍ତ ନାମେ ଥିଲା ସଚିବ ସୁମତି । ଶୁଣି ତା ବଚନ କହେ ସୁଖ ଲଭି ଅତି ॥
ବତ୍ସ, ଅନୁଜ ତୁମ୍ଭର ନୀତି-ବିଭୂଷଣ । ହୃଦେ ଧର ତାହା ଯେଉଁ କହେ ବିଭୀଷଣ ॥୧॥
ଶତ୍ରୁ ଗୌରବ ଭଣନ୍ତି ଦେନି ଶଠ ଏହି । ଦୂର ନ କରାଅ କିପାଁ ଏ ସ୍ଥାନରୁ କେହି ॥
ମାଲ୍ୟବନ୍ତ ନିଜ ଗୃହେ ବାହୁଡି ଆସିଲା । କର ଯୋଡି ବିଭୀଷଣ ପୁନଶ୍ଚ ଭାଷିଲା ॥୨॥
ସମସ୍ତଙ୍କ ହୃଦେ ବାସ ସୁମତି କୁମତି । ନାଥ ! ନିଗମ ପୁରାଣ ଏମନ୍ତ କହନ୍ତି ॥
ସୁମତି ସ୍ଥାନେ ବିବିଧ ସମ୍ପତ୍ତି ନିବାସ । କୁମତି ପାଶେ ରହନ୍ତି ବିପତ୍ତି ବିନାଶ ॥୩॥

---

ଶରଣାଗତ ହୁଏ, ପ୍ରଭୁ ଶ୍ରୀରାମ ତାହାଙ୍କୁ ସୁଦ୍ଧା ତ୍ୟାଗ କରନ୍ତି ନାହିଁ । ଯାହାଙ୍କର ନାମ ତିନି ପାପର ନାଶକାରୀ, ସେହି ପ୍ରଭୁ ମନୁଷ୍ୟ ରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି । ହେ ରାବଣ ! ହୃଦୟରେ ଏହି କଥା ଦୃଢ଼ ରଖନ୍ତୁ ॥ ୪ ॥ ଦୋହା :—ହେ ଦଶଶିର ! ମୁଁ ବାରମ୍ବାର ଆପଣଙ୍କ ଚରଣତଳେ ପଡୁଛି ଏବଂ ପ୍ରାର୍ଥନା କରୁଛି—ମାନ, ମୋହ ଓ ମଦ ତ୍ୟାଗପୂର୍ବକ ଆପଣ କୋଶଳପତି ଶ୍ରୀରାମଚନ୍ଦ୍ରଙ୍କ ଭଜନ କରନ୍ତୁ ॥ ୩୯ (କ) ॥ ମୁନି ପୁଲସ୍ତ୍ୟଙ୍କ ତାଙ୍କ ଶିଷ୍ୟ ହାତରେ ଏହି କଥା କହି ପଠାଇଅଛନ୍ତି । ହେ ତାତ ! ସୁଅବସର ପାଇ ମୁଁ ତୁରନ୍ତ ଏହି କଥା ପ୍ରଭୁ (ଆପଣ)ଙ୍କୁ କହିଦେଲି ।” ॥ ୩୯ (ଖ) ॥ ଚୌପାଈ :—ମାଲ୍ୟବନ୍ତ ନାମକ ଜଣେ ଅତି ବୁଦ୍ଧିମାନ୍ ମନ୍ତ୍ରୀ ଥିଲେ । ସେ ବିଭୀଷଣଙ୍କ ବଚନ ଶୁଣି ଅତି ସୁଖ ମଣିଲେ । ସେ କହିଲେ, “ହେ ତାତ ! ଆପଣଙ୍କ ସାନ ଭାଇ ବିଭୀଷଣ ନୀତିବିଭୂଷଣ, ଅର୍ଥାତ୍ ନୀତିବାନ୍ । ବିଭୀଷଣ ଯାହା କିଛି କହୁଛନ୍ତି, ତାହା ହୃଦୟରେ ଅବଧାରଣ କରି ନିଅନ୍ତୁ ।” ॥ ୧ ॥ ରାବଣ କହିଲେ, “ଏହି ମୂର୍ଖ ଦୁହେଁ ଶତ୍ରୁର ମହିମା ବଖାଣୁ ଅଛନ୍ତି । ଏଠାରେ କିଏ ଅଛରେ ? ଏମାନଙ୍କୁ ଦୂର କର ନା !” ମାଲ୍ୟବାନ୍ ତ ଏହା ଶୁଣି ଘରକୁ ଫେରିଗଲେ ଏବଂ ବିଭୀଷଣ ହାତ ଯୋଡି କହିବାକୁ ଲାଗିଲେ— ॥ ୨ ॥ “ହେ ନାଥ ! ପୁରାଣ ଓ ବେଦ ଏହିପରି କହନ୍ତି ଯେ, ସୁବୁଦ୍ଧି ଓ କୁବୁଦ୍ଧି ସମସ୍ତଙ୍କ ହୃଦୟରେ ଥାଏ । ଯେଉଁଠାରେ ସୁବୁଦ୍ଧି ଥାଏ, ସେଠାରେ

ତବ ଉର କୁମତି ବସୀ ବିପରୀତା । ହିତ ଅନହିତ ମାନହୁ ରିପୁ ପ୍ରୀତା ॥
କାଲରାତି ନିସିଚରକୁଲ କେରୀ । ତେହି ସୀତା ପର ପ୍ରୀତି ଘନେରୀ ॥୪॥

ତାତ ଚରନ ଗହି ମାଗଉଁ ରାଖହୁ ମୋର ଦୁଲାର ।
ସୀତା ଦେହୁ ରାମ କହୁଁ ଅହିତ ନ ହୋଇ ତୁମ୍ହାର ॥୪୦॥

ବୁଧ ପୁରାନ ଶ୍ରୁତି ସଂମତ ବାନୀ । କହୀ ବିଭୀଷନ ନୀତି ବଖାନୀ ॥
ସୁନତ ଦସାନନ ଉଠା ରିସାଈ । ଖଲ ତୋହି ନିକଟ ମୃତ୍ୟୁ ଅବ ଆଈ ॥୧॥
ଜିଅସି ସଦା ସଠ ମୋର ଜିଆୱା । ରିପୁ କର ପଚ୍ଛ ମୂଢ଼ ତୋହି ଭାୱା ॥
କହସି ନ ଖଲ ଅସ କୋ ଜଗ ମାହୀଁ । ଭୁଜ ବଲ ଜାହି ଜିତା ମୈଂ ନାହୀଁ ॥୨॥
ମମ ପୁର ବସି ତପସିନ୍ହ ପର ପ୍ରୀତୀ । ସଠ ମିଲୁ ଜାଇ ତିନ୍ହହି କହୁ ନୀତୀ ॥
ଅସ କହି କୀନ୍ହେସି ଚରନ ପ୍ରହାରା । ଅନୁଜ ଗହେ ପଦ ବାରହିଁ ବାରା ॥୩॥

---

ତୁମ୍ଭ ହୃଦୟେ କୁମତି ବସେ ବିପରୀତ । ହିତକୁ ଅହିତ ମଣ ବଇରୀକୁ ମିତ ॥
ନିଶାଚର-କୁଳକୁ ଯେ କାଳରାତ୍ରି ପରି । ସେ ସୀତା ଉପରେ ପ୍ରୀତି ଅଧିକ ତୁମ୍ଭରି ॥୪॥

ପଦ ଧରି ଭାଇ, ଏହା ମୁଁ ମାଗଇ ରଖ ମୋ ଗେଲବସର ।
ଦିଅନ୍ତୁ ଜାନକୀ ରାମଙ୍କୁ ସମର୍ପି, ନ ହେବ ହାନି ତୁମ୍ଭର ॥୪୦॥

ବୁଧ ପୁରାଣ ଶ୍ରୁତିଙ୍କ ସମ୍ମତ ବଚନ । ବର୍ଣ୍ଣନ କରି କହିଲା ନୀତି ବିଭୀଷଣ ॥
ଶୁଣନ୍ତେ ଦଶବଦନ ସରୋଷେ ଉଠିଲା । ଖଳ ! ତୋ ନିକଟ ଏବେ ମୃତ୍ୟୁ ଆଗମିଲା ॥୧॥
ମୋର ଜୀଆଇବା ନେଇ ଜୀଉ ସଦା ଶଠ । ଶତ୍ରୁ ପକ୍ଷ ତୋତେ ଏବେ ଭଲ ଲାଗେ, ନଷ୍ଟ ॥
କହ ଖଳ ! ଏପରି କେ ଅଛି ଜଗତରେ । ଯାହାକୁ ମୁଁ ଜିଣିନାହିଁ ସ୍ୱଭୁଜ ବଳରେ ॥୨॥
ମୋ ପୁରେ ରହି ତପସ୍ୱୀ ସଙ୍ଗେ କରୁ ପ୍ରୀତି । ଶଠ ! ତାଙ୍କୁ ମିଳି ଯାଇ ଶିଖା ଏହି ନୀତି ॥
ଏହା କହି କଲା ସେହୁ ଚରଣ ପ୍ରହାର । ଅନୁଜ ଧରଇ ଭ୍ରାତା ପଦ ବାରମ୍ବାର ॥୩॥

---

ନାନା ପ୍ରକାରର ସମ୍ପଦ ଓ ସୁଖ ରହିଥାଏ ଏବଂ ଯେଉଁଠାରେ କୁବୁଦ୍ଧି ଥାଏ, ସେଠାରେ ପରିଣାମରେ ବିପଦ ଓ ଦୁଃଖ ରହିଥାଏ ॥ ୩ ॥ ଆପଣଙ୍କ ହୃଦୟରେ ବିପରୀତ ବୁଦ୍ଧି ଆସି ପଡ଼ିଅଛି । ଏହି ହେତୁ ଆପଣ ହିତକୁ ଅହିତ ଏବଂ ଶତ୍ରୁକୁ ମିତ୍ର ବୋଲି ମନେ କରୁଅଛନ୍ତି । ଯେ ରାକ୍ଷସକୁଳ ପ୍ରତି କାଳରାତ୍ରି ସମାନ, ସେହି ସୀତାଙ୍କ ପ୍ରତି ଆପଣଙ୍କର ବଡ଼ ପ୍ରୀତି ! ॥ ୪ ॥ ଦୋହା —ହେ ତାତ ! ମୁଁ ଚରଣ ଧରି ଆପଣଙ୍କୁ ଭିକ୍ଷା ମାଗୁଛି—ଆପଣ ମୋର ବାଲକୋଚିତ ଆଗ୍ରହ ରକ୍ଷା କରନ୍ତୁ, ଶ୍ରୀରାମଙ୍କୁ ସୀତାଙ୍କୁ ଫେରାଇ ଦିଅନ୍ତୁ । ସେଥିରେ ଆପଣଙ୍କର କିଛି ଅହିତ ହେବ ନାହିଁ ।" ॥୪୦॥ ଚୌପାଈ — ବିଭୀଷଣ ପଣ୍ଡିତ ଜନୋଚିତ ଏବଂ ପୁରାଣ ଓ ବେଦଗଣ-ସମ୍ମତ ବାଣୀରେ ନୀତି କଥା ବଖାଣି କହିଲେ । କିନ୍ତୁ ତାହା ସବୁ ଶୁଣିବା ମାତ୍ରେ ରାବଣ କ୍ରୁଦ୍ଧ ହୋଇ କହିଲା, "ରେ ଦୁଷ୍ଟ ! ଏବେ ମୃତ୍ୟୁ ତୋ ନିକଟକୁ ଆସିଗଲାଣି ॥ ୧ ॥ ଆରେ ମୂର୍ଖ ! ତୁ ଜୀଇଛୁ କେବଳ ମୋହରି ଅନ୍ନରେ । କିନ୍ତୁ ରେ ମୂର୍ଖ ! ତୋତେ

ଉମା ସନ୍ତ କଇ ଇହଇ ବଡାଈ । ମନ୍ଦ କରତ ଜୋ କରଇ ଭଲାଈ ॥
ତୁହ୍ମ ପିତୁ ସରିସ ଭଲେହିଁ ମୋହି ମାରା । ରାମୁ ଭଜେଁ ହିତ ନାଥ ତୁହ୍ମାରା ॥୪॥
ସଚିବ ସଂଗ ଲୈ ନଭପଥ ଗୟଊ । ସବହି ସୁନାଇ କହତ ଅସ ଭୟଊ ॥୫॥

ରାମୁ ସତ୍ୟସଂକଲ୍ପ ପ୍ରଭୁ ସଭା କାଲବସ ତୋରି ।
ମୈଁ ରଘୁବୀର ସରନ ଅବ ଜାଉଁ ଦେହୁ ଜନି ଖୋରି ॥୪୧॥

ଅସ କହି ଚଲା ବିଭୀଷନୁ ଜବହୀଁ । ଆୟୂହୀନ ଭଏ ସବ ତବହୀଁ ॥
ସାଧୁ ଅବଜ୍ଞା ତୁରତ ଭବାନୀ । କର କଲ୍ୟାନ ଅଖିଲ କୈ ହାନୀ ॥୧॥
ରାବନ ଜବହିଁ ବିଭୀଷନ ତ୍ୟାଗା । ଭୟଉ ବିଭବ ବିନୁ ତବହିଁ ଅଭାଗା ॥
ଚଲେଉ ହରଷି ରଘୁନାୟକ ପାହୀଁ । କରତ ମନୋରଥ ବହୁ ମନ ମାହୀଁ ॥୨॥

---

ଉମା, ସନ୍ଥଙ୍କର ଏହି ବଡାଇ ଅଟଇ । ତା ପ୍ରତି ଭଲ କରନ୍ତି ଯେ ମନ୍ଦ କରଇ ॥
ତୁମ୍ଭେ ପିତା ସମ ମୋତେ ମାରିଲ ଯଥାର୍ଥ । ରାମଙ୍କୁ ଭଜିଲେ ତୁମ୍ଭ ହିତ ହେବ, ନାଥ ॥୪॥
ସଚିବଙ୍କ ସଙ୍ଗେ ତହୁଁ ନଭ ପଥେ ଯାଇ । କହିଲା ଏମନ୍ତ ସଭାଜନଙ୍କୁ ଶୁଣାଇ ॥୫॥

ରାମ ସତ୍ୟବ୍ରତ ସ୍ୱାମୀ ସମରଥ କାଲବଶ ସଭା ତୋର ।
ଏବେ ରଘୁବୀର ଶରଣେ ମୁଁ ଯାଏ ନ ଦିଅିବ ଦୋଷ ମୋର ॥୪୧॥

ଏହା କହି ବିଭୀଷଣ ଗଲା ଯେଉଁକ୍ଷଣି । ଆୟୁହୀନ ନିଶାଚରେ ହୋଇଲେ ସେକ୍ଷଣି ॥
ସାଧୁଜନଙ୍କ ଅବଜ୍ଞା କରନ୍ତେ, ଭବାନି । ହୁଅଇ ଶୀଘ୍ର ଅଖିଳ କଲ୍ୟାଣର ହାନି ॥୧॥
ରାବଣ ବିଭୀଷଣଙ୍କୁ ତେଜିଲା ଯେ ଦିନୁ । ହୋଇଲା ଭାଗ୍ୟ-ବୈଭବ-ରହିତ ସେଦିନୁ ॥
ଚଳିଲା ରଘୁନାଥଙ୍କ ସମୀପେ ହରଷେ । ନାନାବିଧ ଅଭିଳାଷା କରଣ ମାନସେ ॥୨॥

---

ଶତ୍ରୁପକ୍ଷ ବେଶି ଭଲ ଲାଗେ । ଆରେ ଦୁଷ୍ଟ ! କହ ତ, ଜଗତରେ ଏପରି କିଏ ଅଛି, ଯାହାକୁ ମୁଁ ମୋ ବାହୁବଳରେ ନ ଜିଣିଛି ? ॥ ୨ ॥ ମୋ ନଗରରେ ରହି ତୁ ପ୍ରେମ କରୁଛୁ ତପସ୍ୱୀମାନଙ୍କ ସହିତ ! ମୂର୍ଖ ! ସେହିମାନଙ୍କ ସହ ଯାଇ ମିଶ୍ ଏବଂ ସେହିମାନଙ୍କୁ ନୀତିବାକ୍ୟ କହ ।” ଏହିପରି କହି ରାବଣ ତାଙ୍କୁ ଗୋଇଠା ମାରିଲା । ମାତ୍ର ସାନଭାଇ ବିଭୀଷଣ ମାଡ ଖାଇ ସୁଦ୍ଧା ବାରମ୍ବାର ତାହାର ଚରଣ ଧରିଲେ ॥ ୩ ॥ ଶିବ କହନ୍ତି— ହେ ଉମା ! ସାଧୁସନ୍ଥମାନଙ୍କର ଏହି ହେଉଛି ମହିମା ଯେ, ସେମାନଙ୍କ ପ୍ରତି କେହି ଅସଦାଚରଣ କଲେ ସୁଦ୍ଧା ସେମାନେ ଅସଦାଚାରୀମାନଙ୍କର ହିତ କରିଥା'ନ୍ତି । ବିଭୀଷଣ କହିଲେ, “ଆପଣ ମୋର ପିତାଙ୍କ ସମାନ । ମୋତେ ଯାହା ମାରିଲେ, ଭଲ ତ କଲେ । କିନ୍ତୁ ହେ ନାଥ ! ଶ୍ରୀରାମଙ୍କ ଭଜନରେ ହିଁ ଆପଣଙ୍କ ମଙ୍ଗଳ ନିହିତ ।” ॥ ୪ ॥ ଏତିକି କହି ବିଭୀଷଣ ଆପଣାର ମନ୍ତ୍ରୀମାନଙ୍କୁ ସଙ୍ଗରେ ନେଇ ଆକାଶମାର୍ଗକୁ ଉଠିଗଲେ ଏବଂ ସମସ୍ତଙ୍କୁ ଶୁଣାଇ ଏହିପରି କହିବାକୁ ଲାଗିଲେ—॥ ୫ ॥ ଦୋହା '—“ଶ୍ରୀରାମ ସତ୍ୟସଙ୍କଳ୍ପ ଏବଂ ସର୍ବସମର୍ଥ ପ୍ରଭୁ ଏବଂ ହେ ରାବଣ ! ତୁମ ସମାଜ କାଳର ବଶ ହେଲାଣି । ସୁତରାଂ ମୁଁ ଏବେ ଶ୍ରୀରାମଙ୍କ ଶରଣାପନ୍ନ ହେଉଛି;

ଦେଖିହଉଁ ଜାଇ ଚରନ ଜଲଜାତା । ଅରୁନ ମୃଦୁଲ ସେବକ ସୁଖଦାତା ॥
ଜେ ପଦ ପରସି ତରୀ ରିଷିନାରୀ । ଦଣ୍ଡକ କାନନ ପାବନକାରୀ ॥୩॥
ଜେ ପଦ ଜନକସୁତାଁ ଉର ଲାଏ । କପଟ କୁରଂଗ ସଙ୍ଗ ଧର ଧାଏ ॥
ହର ଉର ସର ସରୋଜ ପଦ ଜେଈ । ଅହୋଭାଗ୍ୟ ମୈଁ ଦେଖିହଉଁ ତେଈ ॥୪॥
ଜିହ୍ନ ପାୟନ୍ହ କେ ପାଦୁକନ୍ହି ଭରତୁ ରହେ ମନୁ ଲାଇ ।
ତେ ପଦ ଆଜୁ ବିଲୋକିହଉଁ ଇନ୍ହ ନୟନନ୍ହି ଅବ ଜାଇ ॥୪୨॥
ଏହି ବିଧି କରତ ସପ୍ରେମ ବିଚାରା । ଆୟଉ ସପଦି ସିନ୍ଧୁ ଏହିଁ ପାରା ॥
କପିନ୍ହ ବିଭୀଷନୁ ଆୱତ ଦେଖା । ଜାନା କୋଉ ରିପୁ ଦୂତ ବିସେଷା ॥୧॥

---

ବିଲୋକିବି ଯାଇ ଆଜି ସରୋରୁହ ପଦ । ଅରୁଣ ମୃଦୁ ମଞ୍ଜୁଳ ସେବକ ସୁଖଦ ॥
ଯେଉଁ ପଦ ସ୍ପର୍ଶେ ତରିଗଲା ଋଷି ନାରୀ । ଦଣ୍ଡକ କାନନ ଯେହୁ ସୁପାବନକାରୀ ॥୩॥
ଯେ ପଦ ଜନକସୁତା ହୃଦୟେ ଧାରିଲେ । କପଟ କୁରଙ୍ଗ ଧରିବାକୁ ଯେ ଧାଇଁଲେ ॥
ହର ହୃଦ-ସର ସରସିଜ ଯେ ପସୁର । ଅହୋଭାଗ୍ୟ ଦେଖିବି ମୁଁ ସେ ପଦ ସୁନ୍ଦର ॥୪॥
ଯେବଣ ଚରଣ-ପାଦୁକାରେ ମନ ରହନ୍ତି ଭରତ ଲଗାଇ ।
ବିଲୋକିବି ସେହି ପଦ ଆଜି ଏହି ନୟନରେ ଏବେ ଯାଇ ॥୪୨॥
ଏହି ଭାବେ କରୁ କରୁ ସପ୍ରେମ ବିଚାର । ହୋଇଲା ଆସି ସେ ଶୀଘ୍ର ପାରାବାର ପାର ॥
ବିଭୀଷଣ ଆଗମନ ବାନର ଦେଖିଣ । କୌଣସି ଶତ୍ରୁର ଦୂତ ହୃଦୟେ ଭାବିଣ ॥୧॥

---

ମୋତେ ଆଉ ଦୋଷ ଦେବନାହିଁ ।" ॥ ୪୧ ॥ ଚୌପାଈ :—ଏହାପରେ କହି ବିଭୀଷଣ ଚାଲିଯିବା ମାତ୍ରେ ସମସ୍ତ ରାକ୍ଷସ ଆୟୁଷହୀନ ହେଲାପରି ବୋଧ କଲେ । ଶିବ କହନ୍ତି— ହେ ଭବାନି ! ସାଧୁଙ୍କ ପ୍ରତି ଅପମାନ ଅତିଶୀଘ୍ର ସମ୍ପୂର୍ଣ୍ଣ କଲ୍ୟାଣର ନାଶକାରକ ହୋଇଥାଏ ॥ ୧ ॥ ରାବଣ ଯେଉଁ ମୁହୂର୍ତ୍ତରେ ବିଭୀଷଣଙ୍କୁ ପରିତ୍ୟାଗ କରି ଦେଲା, ସେହି ମୁହୂର୍ତ୍ତରେ ସେ ହତଭାଗ୍ୟ ଐଶ୍ୱର୍ଯ୍ୟହୀନ ହୋଇ ପଡ଼ିଲା । ବିଭୀଷଣ ଆନନ୍ଦିତ ହୋଇ ମନରେ ନାନାବିଧ ମନୋରଥ ପୋଷଣ କରି ଶ୍ରୀ ରଘୁନାଥଙ୍କ ନିକଟକୁ ଚାଲିଲେ ॥ ୨ ॥ ସେ ଭାବୁଥାଆନ୍ତି, "ମୁଁ ଯାଇ ଭଗବାନ୍‌ଙ୍କ କୋମଳ ଓ ଲାଲବର୍ଣ୍ଣର ସୁନ୍ଦର ଚରଣ-କମଳ ଦର୍ଶନ କରିବି । ଉକ୍ତ ଚରଣଦ୍ୱୟ ସେବକର ସୁଖଦାୟକ । ସେହି ଚରଣଯୁଗଳର ସ୍ପର୍ଶ ଲାଭ କରି ଋଷିପତ୍ନୀ ଅହଲ୍ୟା ତରିଗଲେ ଏବଂ ତାହା ଦଣ୍ଡକାରଣ୍ୟର ପବିତ୍ରକାରକ ॥ ୩ ॥ ସେହି ଚରଣଯୁଗଳକୁ ଜାନକୀ ହୃଦୟରେ ଧାରଣ କରି ରଖିଅଛନ୍ତି । ଉକ୍ତ ଚରଣଦ୍ୱୟ ମାୟାମୃଗ ସଙ୍ଗେ ପୃଥିବୀ ଉପରେ ଦୌଡ଼ିଥିଲା । ସେହି ଚରଣ-କମଳଦ୍ୱୟ ଶିବଙ୍କର ହୃଦୟ-ସରୋବରରେ ବିରାଜମାନ । ମୋହର ଅହୋଭାଗ୍ୟ ଯେ, ମୁଁ ଆଜି ସେହି ଚରଣ-ଯୁଗଳ ଦେଖିବି ॥ ୪ ॥ ଦୋହା :— ଯେଉଁ ଚରଣଯୁଗଳର ପାଦୁକାଦ୍ୱୟଠାରେ ଭରତ ନିଜ ମନଧ୍ୟାନ ଲଗାଇ ରଖିଅଛନ୍ତି, ଆହା ! ମୁଁ ଆଜି ଏହିକ୍ଷଣି ଯାଇ ସେହି ଚରଣ-ଯୁଗଳକୁ ଏହି ମୋର ନେତ୍ରରେ

ତାହି ରାଖି କପୀସ ପହିଁ ଆଏ । ସମାଚାର ସବ ତାହି ସୁନାଏ ॥
କହ ସୁଗ୍ରୀବ ସୁନହୁ ରଘୁରାଈ । ଆୱା ମିଲନ ଦସାନନ ଭାଈ ॥୨॥
କହ ପ୍ରଭୁ ସଖା ବୂଝିଐ କାହା । କହଇ କପୀସ ସୁନହୁ ନରନାହା ॥
ଜାନି ନ ଜାଇ ନିସାଚର ମାୟା । କାମରୂପ କେହି କାରନ ଆୟା ॥୩॥
ଭେଦ ହମାର ଲେନ ସଠ ଆୱା । ରାଖିଅ ବାଁଧି ମୋହି ଅସ ଭାୱା ॥
ସଖା ନୀତି ତୁମ୍ହ ନୀକି ବିଚାରୀ । ମମ ପନ ସରନାଗତ ଭୟହାରୀ ॥୪॥
ସୁନି ପ୍ରଭୁ ବଚନ ହରଷ ହନୁମାନା । ସରନାଗତ ବଚ୍ଛଲ ଭଗବାନା ॥୫॥

ସରନାଗତ କହୁଁ ଜେ ତଜହିଁ ନିଜ ଅନହିତ ଅନୁମାନି ।
ତେ ନର ପାୱଁର ପାପମୟ ତିନ୍ହହି ବିଲୋକତ ହାନି ॥୪୩॥

---

ତାହାଙ୍କୁ ରଖି କପୀଶ ନିକଟେ ଆସିଲେ । ସମାଚାର ସବୁ ତାଙ୍କୁ କହି ଶୁଣାଇଲେ ॥
କହଇ ସୁଗ୍ରୀବ, ଶୁଣ, ରଘୁକୁଳ-ସାଇଁ । ମିଳିବା ପାଇଁ ଆସିଛି ଦଶାନନ ଭାଇ ॥୨॥
ପଚାରନ୍ତି ପ୍ରଭୁ ସଖା ! ଭାବ ତୁମ୍ଭେ କିସ । ବୋଲଇ ସୁଗ୍ରୀବ, ଶୁଣ ରଘୁକୁଳ ଈଶ ॥
ରଜନୀଚରଙ୍କ ମାୟା ଜାଣି ନ ହୁଅଇ । କାମରୂପୀ କି କାରଣେ ଏଠାକୁ ଆସଇ ॥୩॥
ଶଠ ଆସିଅଛି ଭେଦ ନେବାକୁ ଆମ୍ଭର । ରଖନ୍ତୁ ବାନ୍ଧି, ଏମନ୍ତ ବିଚାର ମୋହର ॥
ସଖା, ଭଲ ନୀତି ତୁମ୍ଭେ କହିଲ ବିଚାରି । ପ୍ରତିଜ୍ଞା ମୋର ଶରଣାଗତ-ଭୟହାରୀ ॥୪॥
ଶୁଣି ପ୍ରଭୁ ବାଣୀ ହର୍ଷ ହେଲେ ହନୁମାନ । ଶରଣାଗତ-ବତ୍ସଳ ରାମ ଭଗବାନ ॥୫॥

ଶରଣାଗତଙ୍କୁ ତେଜଇ ଯେ ନିଜ ଅପକାର ଅନୁମାନି ।
ସେ ଶଠ ପାମର ପାପମୟ ନର, ତାଙ୍କୁ ବିଲୋକନ୍ତେ ହାନି ॥୪୩॥

---

ଦେଖିବ ।" ॥ ୪୨ ॥ ଚୌପାଇ :—ଏହି ରୂପେ ପ୍ରେମ ସହିତ ବିଚାର କରି ସେ ଶୀଘ୍ର ସମୁଦ୍ର ଆର ପାଖରେ ଶ୍ରୀରାମଚନ୍ଦ୍ରଙ୍କ ସେନା ଥିବା ସ୍ଥାନରେ ଆସି ପହଞ୍ଚିଲେ । ବାନରମାନେ ବିଭୀଷଣଙ୍କୁ ଆସୁଥିବାର ଦେଖି ତାହାଙ୍କୁ ଶତ୍ରୁ ପକ୍ଷର କୌଣସି ଜଣେ ବିଶିଷ୍ଟ ଦୂତ ବୋଲି ମନେ କଲେ ॥ ୧ ॥ ତାହାଙ୍କୁ କଡ଼ା ପହରାରେ ରଖି ସେମାନେ ସୁଗ୍ରୀବଙ୍କ ନିକଟକୁ ଆସିଲେ ଏବଂ ସମସ୍ତ ସମାଚାର ତାଙ୍କୁ କହି ଶୁଣାଇଲେ । ସୁଗ୍ରୀବ ଶ୍ରୀରାମଙ୍କ ନିକଟକୁ ଯାଇ କହିଲେ, "ହେ ରଘୁନାଥ ! ଶୁଣନ୍ତୁ, ରାବଣର ଭାଇ ଆପଣଙ୍କ ସଙ୍ଗେ ସାକ୍ଷାତ କରିବାକୁ ଆସିଅଛି ।" ॥ ୨ ॥ ପ୍ରଭୁ ଶ୍ରୀରାମ କହିଲେ, "ହେ ମିତ୍ର ! ତୁମେ କ'ଣ ଭାବୁଛ ?" ବାନରରାଜ ସୁଗ୍ରୀବ କହିଲେ, "ହେ ମହାରାଜ ! ଶୁଣନ୍ତୁ, ରାକ୍ଷସମାନଙ୍କ ମାୟା ଜାଣି ହୁଏନାହିଁ । ମନଇଚ୍ଛାନୁସାରେ ରୂପ-ପରିବର୍ତ୍ତନକାରୀ ଏ କପଟୀ କେଜାଣି କି ହେତୁ ଆସିଅଛି ॥ ୩ ॥ ବୋଧ ହେଉଛି, ଏହି ମୂର୍ଖ ଆମର ଭେଦ ଖୋଜି ନେବାକୁ ଆସିଅଛି । ଏଣୁ ମୋତେ ଉଚିତ ବୋଧ ହେଉଛି ଯେ, ଏହାକୁ ବାନ୍ଧି ରଖାଯାଉ ।" ଶ୍ରୀରାମ କହିଲେ, "ହେ ମିତ୍ର ! ତୁମେ ନୀତି ତ ଉତ୍ତମ ବିଚାରିଲ । କିନ୍ତୁ ଶରଣାଗତର ଭୟକୁ ହରଣ କରିବା ମୋର ତ ପଣ ।" ॥ ୪ ॥

କୋଟି ବିପ୍ର ବଧ ଲାଗହିଁ ଜାହୂ । ଆଏଁ ସରନ ତଜଉଁ ନହିଁ ତାହୂ ॥
ସନମୁଖ ହୋଇ ଜୀବ ମୋହି ଜବହୀଁ । ଜନ୍ମ କୋଟି ଅଘ ନାସହିଁ ତବହୀଁ ॥୧॥
ପାପବନ୍ତ କର ସହଜ ସୁଭାଊ । ଭଜନୁ ମୋର ତେହି ଭାୱ ନ କାଊ ॥
ଜୌଁ ପୈ ଦୁଷ୍ଟହୃଦୟ ସୋଇ ହୋଈ । ମୋରେଁ ସନମୁଖ ଆୱ କି ସୋଈ ॥୨॥
ନିର୍ମଲ ମନ ଜନ ସୋ ମୋହି ପାୱା । ମୋହି କପଟ ଛଲ ଛିଦ୍ର ନ ଭାୱା ॥
ଭେଦ ଲେନ ପଠୱା ଦସସୀସା । ତବହୁଁ ନ କଛୁ ଭୟ ହାନି କପୀସା ॥୩॥
ଜଗ ମହୁଁ ସଖା ନିସାଚର ଜେତେ । ଲଛିମନୁ ହନଇ ନିମିଷ ମହୁଁ ତେତେ ॥
ଜୌଁ ସଭୀତ ଆୱା ସରନାଈ । ରଖିହଉଁ ତାହି ପ୍ରାନ କୀ ନାଈଁ ॥୪॥

---

କୋଟି ବିପ୍ରବଧ ପାପ ଲାଗଇ ଯାହାକୁ । ଶରଣେ ଆସିଲେ ତ୍ୟାଗ ନ କରେ ବି ତାକୁ ॥
ମୋର ସମ୍ମୁଖୀନ ଜୀବ ହୁଏ ଯେଉଁକ୍ଷଣି । କୋଟି ଜନ୍ମର କଳୁଷ ନାଶେ ସେହିକ୍ଷଣି ॥୧॥
ପାପବନ୍ତର ସହଜ ସ୍ୱଭାବ ଅଟଇ । ମୋ ଭଜନ ତାକୁ କେବେ ଭଲ ନ ଲାଗଇ ॥
ଯେବେ ବା ଦୁଷ୍ଟହୃଦୟେ ସେହି ହୋଇଥିବ । ମୋର ସମ୍ମୁଖକୁ କେବେ ଆସି କି ପାରିବ ॥୨॥
ନିର୍ମଳ ମନ ଯେ ଜନ ସେ ମୋତେ ଲଭଇ । କପଟ ଛଳ ଛିଦ୍ର ମୁଁ ଭଲ ନ ମଣଇ ॥
ଭେଦ ନେବା ପାଇଁ ପେଷିଥିଲେ ଲଙ୍କପତି । ତଥାପି କପୀଶ ! କିଛି ନାହିଁ ଭୟ କ୍ଷତି ॥୩॥
ଜଗତ ମଧ୍ୟରେ ସଖା, ନିଶାଚର ଯେତେ । ନିମେଷ ମଧ୍ୟେ ଲକ୍ଷ୍ମଣ ବିନାଶିବ ତେତେ ॥
ଯେବେ ସଭୟେ ଶରଣ ସେହି ଆସିଥାଏ । ରଖିବି ତାହାକୁ ନିଜ ପରାଣ ପରାୟେ ॥୪॥

---

ପ୍ରଭୁଙ୍କ ବଚନ ଶୁଣି ହନୁମାନ୍ ହର୍ଷିତ ହେଲେ ଏବଂ ମନେ ମନେ କହିବାକୁ ଲାଗିଲେ, "ଭଗବାନ୍ କିପରି ଶରଣାଗତବତ୍ସଳ, ଦେଖ !" ॥ ୫ ॥ ଦୋହା :—ଶ୍ରୀରାମ କହିଲେ, "ଯେଉଁ ମନୁଷ୍ୟମାନେ ଆପଣାର ଅହିତ ଅନୁମାନ କରି ଶରଣାଗତଙ୍କୁ ତ୍ୟାଗ କରିଦିଅନ୍ତି, ସେମାନଙ୍କୁ ଦେଖିଲେ ସୁଦ୍ଧା ପାପ ଲାଗେ ॥ ୪୩ ॥ ଚୌପାଈ :— ଯାହାକୁ କୋଟି ବ୍ରାହ୍ମଣହତ୍ୟାର ଦୋଷ ଲାଗିଥାଏ, ମୋ ଶରଣରେ ସେ ଆସିଲେ ମୁଁ ତାହାକୁ ସୁଦ୍ଧା ତ୍ୟାଗ କରେ ନାହିଁ । ଜୀବ ମୋର ସମ୍ମୁଖୀନ ହେଲା ମାତ୍ରେ ତାହାର କୋଟି କୋଟି ଜନ୍ମର ପାପ ନାଶ ହୋଇଯାଏ ॥ ୧ ॥ ପାପୀକୁ ମୋ ଭଜନ ଜମା ଭଲ ଲାଗେନାହିଁ । ଏହା ତାହାର ସହଜ ସ୍ୱଭାବ । ଯଦି ରାବଣର ସେହି ଭାଇ ଦୁଷ୍ଟମନା ହୋଇଥାଆନ୍ତା, ତେବେ ସେ ମୋ ସମ୍ମୁଖକୁ କଦାପି ଆସି ପାରିଥା'ନ୍ତା କି ? ॥ ୨ ॥ ଯେଉଁ ମନୁଷ୍ୟ ନିର୍ମଳମନା, ସେହି ମୋତେ ପାଏ । ମୋତେ କପଟ, ଛଳ ଓ ଛିଦ୍ର ଭଲ ଲାଗେନାହିଁ । ଯଦି ବା ରାବଣ (ଆମର) ଭେଦ ଖୋଜି ନେବାକୁ ଏହାଙ୍କୁ ପଠାଇଥାଏ, ତଥାପି ହେ ସୁଗ୍ରୀବ ! ଆମର ନିକର କୌଣସି ଭୟ ବା କ୍ଷତି ହେବନାହିଁ ॥ ୩ ॥ କାରଣ ହେ ସଖେ ! ଜଗତରେ ଯେତେ ବି ରାକ୍ଷସ ଅଛନ୍ତି, ଲକ୍ଷ୍ମଣ କ୍ଷଣକ ମଧ୍ୟରେ ସେ ସମସ୍ତଙ୍କୁ ମାରି ଦେଇ ପାରିବେ ଏବଂ ଯଦି ସେ ଭୟଭୀତ ହୋଇ ମୋ ଶରଣରେ ଆସିଅଛି, ତେବେ ମୁଁ ତାହାକୁ ପ୍ରାଣ ପରି ସୁରକ୍ଷା କରିବି ॥ ୪ ॥

ଉଭୟ ଭାଁତି ତେହି ଆନହୁ ହଁସି କହ କୃପାନିକେତ ।
ଜୟ କୃପାଲ କହି କପି ଚଲେ ଅଙ୍ଗଦ ହନୂ ସମେତ ॥୪୫॥
ସାଦର ତେହି ଆଗେଁ କରି ବାନର । ଚଲେ ଜହାଁ ରଘୁପତି କରୁନାକର ॥
ଦୂରିହି ତେଁ ଦେଖେ ଦ୍ୱୌ ଭ୍ରାତା । ନୟନାନନ୍ଦ ଦାନ କେ ଦାତା ॥୧॥
ବହୁରି ରାମ ଛବିଧାମ ବିଲୋକୀ । ରହେଉ ଠଟୁକି ଏକଟକ ପଲ ରୋକୀ ॥
ଭୁଜ ପ୍ରଲଂବ କଂଜାରୁନ ଲୋଚନ । ସ୍ୟାମଲ ଗାତ ପ୍ରନତ ଭୟମୋଚନ ॥୨॥
ସିଂଘ କଂଧ ଆୟତ ଉର ସୋହା । ଆନନ ଅମିତ ମଦନ ମନ ମୋହା ॥
ନୟନ ନୀର ପୁଲକିତ ଅତି ଗାତା । ମନ ଧରି ଧୀର କହୀ ମୃଦୁ ବାତା ॥୩॥
ନାଥ ଦସାନନ କର ମୈଁ ଭ୍ରାତା । ନିସିଚର ବଂସ ଜନମ ସୁରତ୍ରାତା ॥
ସହଜ ପାପପ୍ରିୟ ତାମସ ଦେହା । ଜଥା ଉଲୂକହି ତମ ପର ନେହା ॥୪॥

---

ଉଭୟ ପ୍ରକାରେ ନେଇ ଆସ ତାଙ୍କୁ ହସି କୃପାଳୁ କହିଲେ ।
ଜୟ କୃପାଧାମ, କହି ହନୁମାନ ଅଙ୍ଗଦ ଆଦି ଗମିଲେ ॥୪୫॥
ସାଦରେ ତାହାଙ୍କୁ ଆଗେ କରିଣ ମର୍କଟେ । ଆସିଲେ କୃପାଳୁ ରଘୁନାଥଙ୍କ ନିକଟେ ॥
ଦୂରୁ ବିଭୀଷଣ ବିଲୋକିଲେ ବେନ ଭ୍ରାତା । ନୟନାନନ୍ଦ ଦାନର ଅଟନ୍ତି ଯେ ଦାତା ॥୧॥
ପୁଣି ଛବିଧାମ ରାମଚନ୍ଦ୍ରଙ୍କୁ ଦେଖିଣ । ରହିଲେ ସେ ନିର୍ନିମେଷ ସ୍ଥକିତ ହୋଇଣ ॥
ପ୍ରଲମ୍ବଭୁଜ ଅରୁଣ ପଙ୍କଜ ଲୋଚନ । ଶ୍ୟାମଳ ଗାତ୍ର ପ୍ରଣତ-ଭୟ-ବିମୋଚନ ॥ ॥
କେଶରୀ ସ୍କନ୍ଧ ଆୟତ ହୃଦୟ ଶୋଭଇ । ବଦନ ବହୁ ମଦନ ମନକୁ ମୋହଇ ॥
ନୟନେ ନୀର ଅତ୍ୟନ୍ତ ପୁଲକ ଶରୀର । ମନ ଧୈର୍ଯ୍ୟ ଧରି ବାଣୀ ଭାଷିଲେ ରୁଚିର ॥୩॥
ନିଶାଚର ବଂଶେ ମୋର ଜନ୍ମ ସୁରତ୍ରାତା । ନାଥ ! ଦଶବଦନର ଅଟଇ ମୁଁ ଭ୍ରାତା ॥
ସ୍ୱଭାବରେ ପାପପ୍ରିୟ ତାମସିକ ଦେହ । ଅନ୍ଧକାର ପ୍ରତି ଯେସନ୍ତେ ଉଲୁକର ସ୍ନେହ ॥୪॥

---

ଦୋହା :—କୃପାସଦନ ଶ୍ରୀରାମ ହସି କହିଲେ, "ଉଭୟ ପରିସ୍ଥିତିରେ ତାହାଙ୍କୁ ନେଇଆସ ।" ତତ୍ପରେ ଅଙ୍ଗଦ ଓ ହନୁମାନଙ୍କ ସମେତ ସୁଗ୍ରୀବ "କୃପାଳୁ ଶ୍ରୀରାମଚନ୍ଦ୍ରଙ୍କର ଜୟ ହେଉ" କହି ଚାଲିଲେ ॥ ୪୫ ॥ ଚୌପାଇ —ବିଭୀଷଣଙ୍କୁ ଆଦର ସହକାରେ ଅଗ୍ର ଭାଗରେ ରଖି ବାନରଗଣ କରୁଣାକର ଶ୍ରୀ ରଘୁନାଥ ଥିବା ସ୍ଥାନକୁ ଚାଲେ । ନେତ୍ରାନନ୍ଦଦାୟକ ଦୁଇ ଭ୍ରାତାଙ୍କୁ ବିଭୀଷଣ ଦୂରରୁ ଦେଖିନେଲେ ॥ ୧ ॥ ପୁଣି ଶୋଭାସଦନ ଶ୍ରୀରାମଚନ୍ଦ୍ରଙ୍କୁ ଦେଖି ସେ ଅପଲକ ନୟନରେ ସ୍ତବ୍ଧ ହୋଇ ରହିଁ ରହିଲେ । ଭଗବାନଙ୍କର ବିଶାଳ ବାହୁ । ରକ୍ତ କମଳ ସଦୃଶ ନେତ୍ର ଏବଂ ଶରଣାଗତର ଭୟନାଶକାରକ ଶ୍ୟାମଳ ଶରୀର ॥ ୨ ॥ ସିଂହର ସ୍କନ୍ଧ ସଦୃଶ ସ୍କନ୍ଧ ଓ ବିଶାଳ ବକ୍ଷସ୍ଥଳ ଅତ୍ୟନ୍ତ ଶୋଭା ପାଉଥାଏ । ଅସଂଖ୍ୟ କାମଦେବଙ୍କ ମନବିମୋହନକାରୀ ମୁଖ ଶ୍ରୀରାମଙ୍କର । ଭଗବାନଙ୍କର ସ୍ୱରୂପ ଦର୍ଶନ କରି ବିଭୀଷଣଙ୍କ ନେତ୍ରରେ ପ୍ରେମାଶ୍ରୁ-ଜଳ ପୂରି ଆସିଲା ଏବଂ ଶରୀର ଅତ୍ୟନ୍ତ ପୁଲକିତ ହୋଇ ଉଠିଲା । ପୁଣି ମନରେ

ଶ୍ରବନ ସୁଜସୁ ସୁନି ଆୟଉଁ ପ୍ରଭୁ ଭଂଜନ ଭବ ଭୀର ।
ତ୍ରାହି ତ୍ରାହି ଆରତି ହରନ ସରନ ସୁଖଦ ରଘୁବୀର ॥୪୫॥
ଅସ କହି କରତ ଦଣ୍ଡବତ ଦେଖା । ତୁରତ ଉଠେ ପ୍ରଭୁ ହରଷ ବିସେଷା ॥
ଦୀନ ବଚନ ସୁନି ପ୍ରଭୁ ମନ ଭାୱା । ଭୁଜ ବିସାଲ ଗହି ହୃଦୟଁ ଲଗାୱା ॥୧॥
ଅନୁଜ ସହିତ ମିଲି ଢିଗ ବୈଠାରୀ । ବୋଲେ ବଚନ ଭଗତ ଭୟହାରୀ ॥
କହୁ ଲଙ୍କେସ ସହିତ ପରିବାରା । କୁସଲ କୁଠାହର ବାସ ତୁମ୍ହାରା ॥୨॥
ଖଲମଣ୍ଡଲୀଁ ବସହୁ ଦିନୁ ରାତୀ । ସଖା ଧରମ ନିବହଇ କେହି ଭାଁତୀ ॥
ମୈଁ ଜାନଉଁ ତୁମ୍ହାରି ସବ ରୀତୀ । ଅତି ନୟ ନିପୁନ ନ ଭାୱ ଅନୀତୀ ॥୩॥

---

ଶ୍ରବଣେ ସୁଯଶ ଶୁଣି ଆସିଲି ପ୍ରଭୁ ଭବଭୟହାରୀ ।
ତ୍ରାହି ତ୍ରାହି ଦୁଃଖ-ହରଣ ଶରଣ୍ୟ ରଘୁବୀର ସୁଖକାରୀ ॥୪୫॥
ଏହା କହି ଦଣ୍ଡବତ କରିବା ଦେଖନ୍ତେ । ତୁରିତ ଉଠିଲେ ପ୍ରଭୁ ହରଷ ଅତ୍ୟନ୍ତେ ॥
ଦୀନ ବାଣୀ ଶୁଣି ପ୍ରଭୁ ପ୍ରମୋଦ ଲଭିଣ । ବିଶାଳଭୁଜେ ଉଠାଇ ହୃଦେ ଆଲିଙ୍ଗିଣ ॥୧॥
ଅନୁଜ ସହିତ ମିଳି ପାଶେ ବସାଇଲେ । ପ୍ରଭୁ ଭକ୍ତ-ଭୟହାରୀ ବଚନ ଭାଷିଲେ ॥
ସପରିବାର କୁଶଳ କହ, ଲଙ୍କେଶ୍ୱର । କୁତ୍ସିତ ସ୍ଥାନରେ ବାସ ଅଟଇ ତୁମ୍ଭର ॥୨॥
ଦିନ ରାତି ରହ ଖଳ ମଣ୍ଡଳୀ ମଧ୍ୟରେ । ସଖା ! ଧର୍ମ ପ୍ରତି ପାଳ କିପରି ଭାବରେ ॥
ଜାଣଇ ମୁହିଁ ତୁମ୍ଭର ସମୁଦାୟ ରୀତି । ଅତ୍ୟନ୍ତ ନ୍ୟାୟ-ନିପୁଣ, ନ ଭାବ ଅନୀତି ॥୩॥

---

ଧୈର୍ଯ୍ୟ ଧାରଣ କରି ସେ କୋମଳ ବଚନ କହିଲେ—॥ ୩ ॥ "ହେ ନାଥ ! ମୁଁ ଦଶମୁଖ ରାବଣର ଭାଇ । ହେ ଦେବପରିତ୍ରାତା ! ମୋର ଜନ୍ମ ରାକ୍ଷସକୁଳରେ । ମୋର ତାମସ ଶରୀର । ଉଲ୍ଲୁକର ଅନ୍ଧକାର ପ୍ରତି ଯେପରି ସହଜ ସ୍ନେହ, ସେହିପରି ସ୍ୱଭାବତଃ ପାପ ମୋର ଅତି ପ୍ରିୟ ॥ ୪ ॥ ଦୋହା —ପ୍ରଭୁ ଭବ-ଭୟ-ନାଶକାରୀ— କାନରେ ଆପଣଙ୍କର ଏହି ସୁଯଶ ଶୁଣି ମୁଁ ଆପଣଙ୍କ ନିକଟକୁ ଆସିଅଛି । ହେ ଦୁଃଖୀର ଦୁଃଖହାରକ ଓ ଶରଣାଗତର ସୁଖଦାୟକ ଶ୍ରୀ ରଘୁବୀର ! ମୋତେ ରକ୍ଷା କରନ୍ତୁ, ମୋତେ ରକ୍ଷା କରନ୍ତୁ ।" ॥୪୫॥ ଚୌପାଈ :—ପ୍ରଭୁ ତାହାଙ୍କୁ ଏହିପରି କହି ଦଣ୍ଡବତ୍ କରୁଥିବାର ଦେଖିଲେ । ସେତେବେଳେ ସେ ଅତ୍ୟନ୍ତ ଆନନ୍ଦିତ ହୋଇ ଶୀଘ୍ର ଉଠିଲେ । ବିଭୀଷଣଙ୍କ ଦୈନ୍ୟପୂର୍ଣ୍ଣ ବଚନ ପ୍ରଭୁଙ୍କ ମନକୁ ଅତି ରୁଚିକର ବୋଧ ହେଲା । ସେ ଆପଣା ବିଶାଳ ବାହୁରେ ତାହାଙ୍କୁ ଧରି ଆଲିଙ୍ଗନ କରି ପକାଇଲେ ॥ ୧ ॥ ଅନୁଜ ଲକ୍ଷ୍ମଣଙ୍କ ସହିତ ତାହାଙ୍କୁ ଆଲିଙ୍ଗନ କରି ପ୍ରଭୁ ଆପଣା ପାଖରେ ତାଙ୍କୁ ବସାଇଲେ ଏବଂ ଭକ୍ତ-ଭୟହାରକ ବଚନ କହିଲେ, "ହେ ଲଙ୍କେଶ ! ପରିବାର ସମେତ ଆପଣାର କୁଶଳ ବାର୍ତ୍ତା କୁହ । ତୁମର ନିବାସ ଗୋଟିଏ ଖରାପ ସ୍ଥାନରେ ॥ ୨ ॥ ତୁମେ ଦିନରାତି ଦୁଷ୍ଟଙ୍କ ମଣ୍ଡଳୀରେ ବାସ କର । ଏପରି ଅବସ୍ଥାରେ, ହେ ସଖେ ! ତୁମ ଧର୍ମର କିପରି ଭାବରେ ନିର୍ବାହ ହେଉଛି ? ମୁଁ ତୁମର ସମସ୍ତ ରୀତି ( ଆଚାର

ବରୁ ଭଲ ବାସ ନରକ କର ତାତା । ଦୁଷ୍ଟ ସଂଗ ଜନି ଦେଇ ବିଧାତା ॥
ଅବ ପଦ ଦେଖି କୁସଲ ରଘୁରାୟା । ଜୌଁ ତୁମ୍ହ କୀହ୍ନି ଜାନି ଜନ ଦାୟା ॥୩॥
ତବ ଲଗି କୁସଲ ନ ଜୀବ କହୁଁ ସପନେହୁଁ ମନ ବିଶ୍ରାମ ।
ଜବ ଲଗି ଭଜତ ନ ରାମ କହୁଁ ସୋକଧାମ ତଜି କାମ ॥୪୬॥
ତବ ଲଗି ହୃଦୟଁ ବସତ ଖଲ ନାନା । ଲୋଭ ମୋହ ମଚ୍ଛର ମଦ ମାନା ॥
ଜବ ଲଗି ଉର ନ ବସତ ରଘୁନାଥା । ଧରେଁ ଚାପ ସାୟକ କଟି ଭାଥା ॥୧॥
ମମତା ତରୁନ ତମୀ ଅଁଧିଆରୀ । ରାଗ ଦ୍ୱେଷ ଉଲୂକ ସୁଖକାରୀ ॥
ତବ ଲଗି ବସତି ଜୀବ ମନ ମାହୀଁ । ଜବ ଲଗି ପ୍ରଭୁ ପ୍ରତାପ ରବି ନାହୀଁ ॥୨॥
ଅବ ମୈଁ କୁସଲ ମିଟେ ଭୟ ଭାରେ । ଦେଖି ରାମ ପଦ କମଲ ତୁମ୍ହାରେ ॥
ତୁମ୍ହ କୃପାଲ ଜା ପର ଅନୁକୂଲା । ତାହି ନ ବ୍ୟାପ ତ୍ରିବିଧ ଭବସୂଲା ॥୩॥

---

ନରକେ ବାସ କରିବା ବରଂ ଭଲ, ଭ୍ରାତା । ଦୁଷ୍ଟଙ୍କ ସଙ୍ଗ ଯେପରି ନ ଦେବ ବିଧାତା ॥
କୁଶଳ ଏବେ ବିଲୋକି ପଦ ରଘୁମଣି । ତୁମ୍ଭେ ଯେ କରୁଣା କଲ ନିଜ ଜନେ ଗଣି ॥୪॥
ସେ ପର୍ଯ୍ୟନ୍ତ ନାହିଁ ଜୀବର କୁଶଳ ସ୍ୱପ୍ନେହେଁ ମନେ ବିଶ୍ରାମ ।
ଯେ ପର୍ଯ୍ୟନ୍ତ ସେହି 'ରାମ' ନ ଭଜଇ ତେଜି ଶୋକଧାମ କାମ ॥୪୬॥
ସେ ପର୍ଯ୍ୟନ୍ତ ନିବସନ୍ତି ହୃଦେ ନାନା ଖଳ । ଲୋଭ ମୋହ ମଦ ମାନ ମତ୍ସର ସକଳ ॥
ଯେ ପର୍ଯ୍ୟନ୍ତ ଉରେ ନ ବସନ୍ତି ରଘୁବୀର । ଧରିଣ ଚାପ ଶାୟକ କଟିରେ ତୂଣୀର ॥୧॥
ମମତା ଅଟେ ନିବିଡ଼ ଅନ୍ଧକାର ରାତ୍ରି । ରାଗ ଦ୍ୱେଷ ଉଲୁକଙ୍କ ଅତି ସୁଖ ଦାତ୍ରୀ ॥
ରହଇ ଜୀବ ହୃଦୟ ମଧ୍ୟେ ସେ ପର୍ଯ୍ୟନ୍ତ । ପ୍ରଭୁଙ୍କ ପ୍ରତାପ ରବି ନାହିଁ ଯେ ପର୍ଯ୍ୟନ୍ତ ॥୨॥
ଏବେ ମୁଁ କୁଶଳ, ଭୟ ତୁଟିଲା ଭୀଷଣ । ଅବଲୋକି ରାମ ! ତୁମ୍ଭ ରାଜୀବ ଚରଣ ॥
ତୁମ୍ଭେ କୃପାଳୁ ଯା ପ୍ରତି ହୁଅ ଅନୁକୂଳ । ତାକୁ ନ ବାଧଇ ତ୍ରୟ ତାପ ଭୟ ଶୂଳ ॥୩॥

---

ବ୍ୟବହାର ) ଜାଣେ । ତୁମେ ଅତି ନୀତିନିପୁଣ, ତୁମ୍ଭଙ୍କୁ ଅନୀତି କମା ସୁହାଏନାହିଁ ॥୩॥
ହେ ବନ୍ଧୁ ! ନର୍କରେ ବାସ କରିବା ବରଂ ଭଲ । କିନ୍ତୁ ବିଧାତା ଦୁଷ୍ଟଙ୍କ ସଙ୍ଗ କଦାପି ନ ଦିଅନ୍ତୁ ।" ବିଭୀଷଣ କହିଲେ, "ହେ ରଘୁନାଥ ! ଆପଣ ମୋତେ ନିଜ ସେବକ ବୋଲି ଜାଣି ମୋ ପ୍ରତି ଦୟା ପ୍ରକାଶ କରି ମୋତେ ଦର୍ଶନ ଦେଇଅଛନ୍ତି । ଏବେ ଆପଣଙ୍କ ଚରଣ ଦର୍ଶନ କରି ମୁଁ କୁଶଳରେ ଅଛି ॥ ୪ ॥ ଦୋହା :—ଯେତେବେଳ ଯାଏ ଜୀବ ବିଷୟ ବାସନା, କାମନା ଆଦି ଶୋକର ଧାମକୁ ତ୍ୟାଗ କରି ଶ୍ରୀରାମଙ୍କୁ ଭଜନ ନ କରେ, ସେତେବେଳ ଯାଏ ଜୀବର କୁଶଳମଙ୍ଗଳ ନାହିଁ ଏବଂ ସେ ସ୍ୱପ୍ନରେ ସୁଦ୍ଧା ମନରେ ଶାନ୍ତି ଲାଭ କରିପାରେନାହିଁ ॥ ୪୬ ॥ ଚୌପାଇ :—ଯେତେବେଳଯାଏ ହସ୍ତରେ ଧନୁଶର ଓ କଟିରେ ତୂଣୀର ଧାରଣ କରି ପ୍ରଭୁ ଶ୍ରୀ ରଘୁନାଥ ହୃଦୟରେ ନ ବସନ୍ତି, ସେତେବେଳଯାଏ ଲୋଭ, ମୋହ, ମାତ୍ସର୍ଯ୍ୟ, ମଦ, ମାନ ଆଦି ଅନେକ ଖଳ ହୃଦୟରେ ବାସ କରୁଥିବେ ॥ ୧ ॥ ମମତା ନିବିଡ଼ ଅନ୍ଧକାରମୟୀ ରଜନୀ ।

ମୈଁ ନିସିଚର ଅତି ଅଧମ ସୁଭାଊ । ସୁଭ ଆଚରନୁ କୀହ୍ନ ନହିଁ କାଊ ॥
ଜାସୁ ରୂପ ମୁନି ଧ୍ୟାନ ନ ଆୱା । ତେହିଁ ପ୍ରଭୁ ହରଷି ହୃଦୟଁ ମୋହି ଲାୱା ॥୪॥
ଅହୋଭାଗ୍ୟ ମମ ଅମିତ ଅତି ରାମ କୃପା ସୁଖ ପୁଞ୍ଜ ।
ଦେଖେଉଁ ନୟନ ବିରଂଚି ସିବ ସେବ୍ୟ ଜୁଗଲ ପଦ କଞ୍ଜ ॥୪୭॥
ସୁନହୁ ସଖା ନିଜ କହଉଁ ସୁଭାଊ । ଜାନ ଭୁସୁଣ୍ଡି ସମ୍ଭୁ ଗିରିଜାଊ ॥
ଜୌଁ ନର ହୋଇ ଚରାଚର ଦ୍ରୋହୀ । ଆୱଇ ସଭୟ ସରନ ତକି ମୋହୀ ॥୧॥
ତଜି ମଦ ମୋହ କପଟ ଛଲ ନାନା । କରଉଁ ସଦ୍ୟ ତେହି ସାଧୁ ସମାନା ॥
ଜନନୀ ଜନକ ବନ୍ଧୁ ସୁତ ଦାରା । ତନୁ ଧନୁ ଭବନ ସୁହୃଦ ପରିବାରା ॥୨॥

---

ମୁହିଁ ନିଶାଚର ଅତି ଅଧମ ସ୍ୱଭାବ । କେବେ କରି ନାହିଁ ଶୁଭ ଆଚରଣ ଭାବ ॥
ଧ୍ୟାନେ ନ ଲଭନ୍ତି ଯେଉଁ ରୂପ ମୁନିଜନ । ସେ ପ୍ରଭୁ ହରଷେ ମୋତେ କଲେ ଆଲିଙ୍ଗନ॥୪॥
ଅହୋଭାଗ୍ୟ ମୋର ଅତୀବ ଅପାର ରାମ କୃପା-ସୁଖ-ପୁଞ୍ଜ ।
ଦେଖିଲି ନୟନେ ବିରଞ୍ଚି ଶିବଙ୍କ ସେବ୍ୟ ଯୁଗ୍ମ ପଦକଞ୍ଜ ॥୪୭॥
ଶୁଣ ସଖା ! କହୁଅଛୁ ସ୍ୱଭାବ ନିଜର । ଜାଣନ୍ତି କାକ ଭୁଶୁଣ୍ଡି ଗିରିଜା ଶଙ୍କର ॥
ଯେଉଁ ନର ଚରାଚର ଦ୍ରୋହୀ ହୋଇକରି । ଆସଇ ସଭୟେ ଚାହିଁ ଶରଣ ମୋହର ॥୧॥
ତେଜିଣ ଛଳ କପଟ ମୋହ ମଦ ମାନ । କରଇ ସଦ୍ୟ ତାହାଙ୍କୁ ସାଧୁଙ୍କ ସମାନ ॥
ଜନନୀ ଜନକ ବନ୍ଧୁ ବନିତା ତନୟ । ତନୁ ଧନ ପରିଜନ ସୁହୃତ ନିଳୟ ॥୨॥

---

ରାଗଦ୍ୱେଷ-ଉଲ୍ଲୁକଙ୍କୁ ଏହା ସୁଖ ଦାନ କରେ । ଯେତେବେଳ ଯାଏ ପ୍ରଭୁଙ୍କର ପ୍ରତାପ-ରବି ଉଦିତ ହୋଇ ନାହିଁ, ସେତେବେଳ ଯାଏ ମମତା-ରାତ୍ରି ଜୀବର ହୃଦୟରେ ବସବାସ କରୁଥାଏ ॥ ୨ ॥ ହେ ଶ୍ରୀରାମ ! ଆପଣଙ୍କ ଚରଣ-କମଳ ଦର୍ଶନ କରି ମୁଁ ବର୍ତ୍ତମାନ କୁଶଳରେ ଅଛି ଏବଂ ମୋର ଭାରି ଭୟ ଦୂର ହୋଇଯାଇଛି । ହେ କୃପାଳୁ ! ଆପଣ ଯାହା ପ୍ରତି ଅନୁକୂଳ ହୁଅନ୍ତି, ତାହାକୁ ତିନି ପ୍ରକାରର ଭବବ୍ୟଥା (ଆଧ୍ୟାତ୍ମିକ, ଆଧିଦୈବିକ ଓ ଆଧିଭୌତିକ ତାପ) ବ୍ୟାପେ ନାହିଁ ॥ ୩ ॥ ମୁଁ ଅତି ନୀଚ ସ୍ୱଭାବର ରାକ୍ଷସ । ମୁଁ କେବେ ହେଲେ ଶୁଭ ଆଚରଣ କରି ନାହିଁ । ତଥାପି ଯାହାଙ୍କର ରୂପ ମୁନିଜନଙ୍କ ଧ୍ୟାନରେ ମଧ୍ୟ ଆସେ ନାହିଁ, ସେହି ପ୍ରଭୁ ଆନନ୍ଦିତ ହୋଇ ମୋତେ ଆଲିଙ୍ଗନ କରିନେଲେ ' ॥ ୪ ॥ ଦୋହା :—ହେ କୃପା-ସୁଖପୁଞ୍ଜ ଶ୍ରୀରାମ ! ମୋର ଅସୀମ ସୌଭାଗ୍ୟ ଯେ, ବ୍ରହ୍ମା ଓ ଶିବଙ୍କ ଦ୍ୱାରା ସେବିତ ପ୍ରଭୁଙ୍କ ଚରଣ-କମଳଯୁଗଳକୁ ମୁଁ ଆପଣା ନେତ୍ରରେ ଦେଖିଲି ।' ॥ ୪୭ ॥ ଚୌପାଇ :—ଶ୍ରୀରାମ କହିଲେ, "ହେ ସଖେ ! ତୁମକୁ ମୁଁ ମୋ ସ୍ୱଭାବ ବିଷୟରେ କହୁଅଛି । ଶୁଣ, ମୋର ସ୍ୱଭାବ କାକ ଭୁଶୁଣ୍ଡି, ଶିବ ଓ ପାର୍ବତୀ ଜାଣନ୍ତି । କୌଣସି ମନୁଷ୍ୟ ସମ୍ପୂର୍ଣ୍ଣ ଜଡଚେତନ ଜଗତର ଦ୍ରୋହୀ ହୋଇଥାଉ ପଛକେ; ଯଦି ସେ ଭୟଭୀତ ଅବସ୍ଥାରେ ମୋର ଶରଣାପନ୍ନ ହୁଏ ଏବଂ ଯଦି ମଦ, ମୋହ ଓ ନାନାବିଧ ଛଳକପଟ ତ୍ୟାଗ କରିଦିଏ, ତେବେ ମୁଁ

ସବ କର ମମତା ତାଗ ବଟୋରୀ । ମମ ପଦ ମନହି ବାଁଧ ବରି ଡୋରୀ ॥
ସମଦରସୀ ଇଚ୍ଛା କଛୁ ନାହୀଁ । ହରଷ ସୋକ ଭୟ ନହିଁ ମନ ମାହୀଁ ॥୩॥
ଅସ ସଜ୍ଜନ ମମ ଉର ବସ କୈସେଁ । ଲୋଭୀ ହୃଦୟଁ ବସଇ ଧନୁ ଜୈସେଁ ॥
ତୁମ୍ହ ସାରିଖେ ସଂତ ପ୍ରିୟ ମୋରେଁ । ଧରଉଁ ଦେହ ନହିଁ ଆନ ନିହୋରେଁ ॥୪॥

ସଗୁନ ଉପାସକ ପରହିତ ନିରତ ନୀତି ଦୃଢ଼ ନେମ ।
ତେ ନର ପ୍ରାନ ସମାନ ମମ ଜିନ୍ହ କେଁ ଦ୍ୱିଜ ପଦ ପ୍ରେମ ॥୪୮॥

ସୁନୁ ଲଂକେସ ସକଲ ଗୁନ ତୋରେଁ । ତାତେଁ ତୁମ୍ହ ଅତିଶୟ ପ୍ରିୟ ମୋରେଁ ॥
ରାମ ବଚନ ସୁନି ବାନର ଜୂଥା । ସକଲ କହହିଁ ଜୟ କୃପା ବରୂଥା ॥୧॥
ସୁନତ ବିଭୀଷନୁ ପ୍ରଭୁ କୈ ବାନୀ । ନହିଁ ଅଘାତ ଶ୍ରବନାମୃତ ଜାନୀ ॥
ପଦ ଅମ୍ବୁଜ ଗହି ବାରହିଁ ବାରା । ହୃଦୟଁ ସମାତ ନ ପ୍ରେମୁ ଅପାରା ॥୨॥

---

ଠୁଳ କରି ସମସ୍ତଙ୍କ ମମତ୍ୱ-ସୂତ୍ରକୁ । ରଜ୍ଜୁ ବଳି ମୋ ଚରଣେ ବାନ୍ଧେ ଯେ ମନକୁ ॥
ସମଦର୍ଶୀ, କିଛି ମାତ୍ର ଆକାଂକ୍ଷା ନ କରେ । ହର୍ଷ ଶୋକ ଭୟ ନାହିଁ ହୃଦୟ ମଧ୍ୟରେ ॥୩॥
ଏମନ୍ତ ସଜ୍ଜନ ମୋର ହୃଦେ ବସେ ଯେସନ୍ତେ । ଲୋଭୀ ହୃଦୟରେ ଧନ ବାସ କରେ ଯେସନ୍ତେ ॥
ତୁମ୍ଭ ସମ ସନ୍ତ ପ୍ରିୟ ଅଟନ୍ତି ମୋହର । ଆନ ନେହୁରାରେ ନ ଧରେ ମୁଁ କଲେବର ॥୪॥

ସଗୁଣୋପାସକ ପରହିତ-ରତ ଅଟଳ ନିୟମ ନୀତି ।
ଅଟଇ ସେ ନର ପ୍ରାଣତୁଲ୍ୟ ମୋର ଦ୍ୱିଜପଦେ ଯାର ପ୍ରୀତି ॥୪ ॥

ଶୁଣ ଲଙ୍କେଶ୍ୱର ! ତୁମ୍ଭେ ସର୍ବ ଗୁଣାଳୟ । ସେ କାରଣୁ ଅଟ ମୋର ପ୍ରିୟ ଅତିଶୟ ॥
ରାମଙ୍କ ବଚନ ଶୁଣି ମର୍କଟ ନିକର । ସମସ୍ତେ କହନ୍ତି, ଜୟ ଜୟ କୃପାକର ॥୧॥
ଶୁଣି ବିଭୀଷଣ ପ୍ରିୟ ପ୍ରଭୁଙ୍କର ବାଣୀ । ପରିତୃପ୍ତି ନ ଲଭଇ କର୍ଣ୍ଣାମୃତ ଜାଣି ॥
ଧରଇ ପଦ-ଅମ୍ବୁଜ ସ୍ନେହେ ବାରମ୍ବାର । ହୃଦେ ନ ସମ୍ଭାଏ ପ୍ରେମ ଅତ୍ୟନ୍ତ ଅପାର ॥୨॥

---

ତାହାଙ୍କୁ ଅତି ଶୀଘ୍ର ସାଧୁଙ୍କ ସମାନ କରିଦିଏ । ମାତା, ପିତା, ଭ୍ରାତା, ପୁତ୍ର, ସ୍ତ୍ରୀ, ଶରୀର, ଧନ, ଗୃହ, ମିତ୍ର ଓ ପରିବାର—ଏ ସମସ୍ତଙ୍କ ମମତା-ସୂତ୍ରକୁ ଏକାଠି କରି ତଦ୍ଦ୍ୱାରା ଗୋଟିଏ ଡୋରି ବଳି ଯେ ନିଜର ମନକୁ ମୋର ଚରଣରେ ବାନ୍ଧି ଦିଏ, ( ଅର୍ଥାତ୍ ସମସ୍ତ ସାଂସାରିକ ସମ୍ବନ୍ଧର କେନ୍ଦ୍ର ମୋତେ କରିନିଏ ), ଯେ ସମଦର୍ଶୀ, ଯାହାର ମନରେ କିଛି ହେଲେ ଇଚ୍ଛା ( କାମନା ) ନାହିଁ ଏବଂ ଯାହାର ମନରେ ହର୍ଷ, ଶୋକ ଓ ଭୟ ନାହିଁ, ଏହିପରି ସଜ୍ଜନ, ଲୋଭୀ ହୃଦୟରେ ଧନ ବସା ବାନ୍ଧିଲା ପରି ମୋ ହୃଦୟରେ ବାସ କରେ । ତୁମ ସଦୃଶ ସନ୍ଥ ମୋର ପ୍ରିୟ । ଅନ୍ୟ କୌଣସି ବ୍ୟକ୍ତିର ନେହୁରା ଯୋଗେ ମୁଁ ଦେହ ଧାରଣ କରେ ନାହିଁ ॥ ୧-୪ ॥ ଦୋହା ।—ଯେଉଁମାନେ ସଗୁଣ ( ସାକାର ) ଭଗବାନ୍‌ଙ୍କ ଉପାସକ, ଅନ୍ୟର ହିତରେ ଲାଗି ରହନ୍ତି, ନୀତି ଓ ନିୟମରେ ଦୃଢ଼, ବ୍ରାହ୍ମଣଗଣଙ୍କ ଚରଣରେ ଯେଉଁମାନଙ୍କର ଅବିରତ ପ୍ରେମ, ସେହି ମନୁଷ୍ୟମାନେ ମୋର ପ୍ରାଣସମ ପ୍ରିୟ ॥ ୪୮ ॥ ଚୌପାଇ :—ହେ ଲଙ୍କାପତି !

ସୁନହୁ ଦେବ ସଚରାଚର ସ୍ୱାମୀ । ପ୍ରନତପାଲ ଉର ଅନ୍ତରଜାମୀ ॥
ଉର କଛୁ ପ୍ରଥମ ବାସନା ରହୀ । ପ୍ରଭୁ ପଦ ପ୍ରୀତି ସରିତ ସୋ ବହୀ ॥୩॥
ଅବ କୃପାଲ ନିଜ ଭଗତି ପାଵନୀ । ଦେହୁ ସଦା ସିବ ମନ ଭାଵନୀ ॥
ଏବମସ୍ତୁ କହି ପ୍ରଭୁ ରନଧୀରା । ମାଗା ତୁରତ ସିନ୍ଧୁ କର ନୀରା ॥୪॥
ଜଦପି ସଖା ତବ ଇଚ୍ଛା ନାହୀଁ । ମୋର ଦରସୁ ଅମୋଘ ଜଗ ମାହୀଁ ॥
ଅସ କହି ରାମ ତିଲକ ତେହି ସାରା । ସୁମନ ବୃଷ୍ଟି ନଭ ଭଈ ଅପାରା ॥୫॥
ରାବନ କ୍ରୋଧ ଅନଲ ନିଜ ସ୍ୱାସ ସମୀର ପ୍ରଚଣ୍ଡ ।
ଜରତ ବିଭୀଷନୁ ରାଖେଉ ଦୀନ୍ହେଉ ରାଜ ଅଖଣ୍ଡ ॥୪୯ (କ)॥

---

ଶୁଣ ଦେବ ରଘୁବୀର ! ଚରାଚର ସ୍ୱାମୀ । ପ୍ରଣତପାଳ ସର୍ବଙ୍କ ହୃଦ ଅନ୍ତର୍ଯାମୀ ॥
ହୃଦୟେ ବାସନା କିଛି ଥିଲା ପ୍ରଥମରେ । ବହିଗଲା ପ୍ରଭୁ-ପଦ-ପ୍ରୀତି-ସରିତରେ ॥୩॥
ଏବେ କୃପାଳୁ, ସ୍ୱଭକ୍ତି ପରମ ପାବନୀ । ଦିଅ କୃପା କରି ଶିବ ମନ ବିମୋହନୀ ॥
"ଏବମସ୍ତୁ" କହି ତହୁଁ ପ୍ରଭୁ ରଣଧୀର । ମଗାଇ ଆଣିଲେ ଶୀଘ୍ର ପାରାବାର ନୀର ॥୪॥
ଯଦ୍ୟପି ଆକାଂକ୍ଷା-ଶୂନ୍ୟ ସଖା ! ତୁମ୍ଭ ମନ । ଜଗତେ ନିଷ୍ଫଳ ନୁହେ ମୋର ଦରଶନ ॥
ଏହା କହି ରାମ ରାଜ-ତିଳକ ରଚିଲେ । ଅପାର ସୁମନ ନଭୁ ସୁରେ ବରଷିଲେ ॥୫॥
ରାବଣର କ୍ରୋଧ-ହୁତାଶନେ ନିଜ ଶ୍ୱାସ-ସମୀରେ ପ୍ରଚଣ୍ଡ ।
ଜଳୁଁ ବିଭୀଷଣେ ରକ୍ଷା କରି ଦେଲେ ଶ୍ରୀରାମ ରାଜ୍ୟ ଅଖଣ୍ଡ ॥୪୯ (କ)॥

---

ଶୁଣ, ତୁମଠାରେ ଉପର୍ଯ୍ୟୁକ୍ତ ସମସ୍ତ ଗୁଣ ନିହିତ । ଏହି ହେତୁ ତୁମେ ମୋର ଅତି ପ୍ରିୟ ।" ଶ୍ରୀରାମଙ୍କ ବଚନ ଶୁଣି ସମସ୍ତ ବାନର କହିବାକୁ ଲାଗିଲେ, "କୃପାପୁଞ୍ଜ ଶ୍ରୀରାମଚନ୍ଦ୍ରଙ୍କର ଜୟ ହେଉ ।" ॥ ୧ ॥ ପ୍ରଭୁଙ୍କ ବାଣୀ ବିଭୀଷଣ ଶୁଣୁଥାʼନ୍ତି ଏବଂ ତାହାକୁ କର୍ଣ୍ଣ ନିମନ୍ତେ ଅମୃତ ମନେ କରି ତହିଁରେ ଆଦୌ ତୃପ୍ତ ହେଉ ନ ଥାʼନ୍ତି । ସେ ବାରମ୍ବାର ଶ୍ରୀରାମଙ୍କ ଚରଣ-କମଳକୁ ଧରୁଥାଆନ୍ତି । ଅପାର ପ୍ରେମ ହୃଦୟରେ ସମ୍ଭାଉ ନ ଥାଏ ॥୨॥ ବିଭୀଷଣ କହିଲେ, "ହେ ଦେବ ! ହେ ଚରାଚର ଜଗତର ସ୍ୱାମି ! ହେ ଶରଣାଗତ-ରକ୍ଷକ ! ହେ ଅନ୍ତର୍ଯାମି ! ଶୁଣନ୍ତୁ, ପ୍ରଥମେ ମୋ ହୃଦୟରେ କିଛି ବାସନା ଥିଲା । ତାହା ପ୍ରଭୁଙ୍କ ଚରଣର ପ୍ରୀତି-ନଦୀରେ ବହିଗଲା ॥ ୩ ॥ ଏବେ ହେ କୃପାଳୁ ! ଶିବଙ୍କ ମନର ସଦା-ବିମୋହନକାରିଣୀ ଆପଣାର ପବିତ୍ର ଭକ୍ତି ମୋତେ ଦିଅନ୍ତୁ ।" "ତଥାସ୍ତୁ" କହି ରଣଧୀର ପ୍ରଭୁ ଶ୍ରୀରାମଚନ୍ଦ୍ର ତୁରନ୍ତ ସମୁଦ୍ର ଜଳ ମାଗିଲେ ॥ ୪ ॥ ଏବଂ କହିଲେ, "ହେ ସଖେ ! ଯଦ୍ୟପି ତୁମର ଇଚ୍ଛା ନାହିଁ, ଜଗତରେ ମୋର ଦର୍ଶନ ଅମୋଘ । (ତାହା ବ୍ୟର୍ଥ ହୁଏ ନାହିଁ ।)" ଏହା କହି ଶ୍ରୀରାମ ତାହାଙ୍କର ରାଜାଭିଷେକ କରି ଦେଲେ । ଆକାଶରୁ ଅପାର ପୁଷ୍ପବୃଷ୍ଟି ହେଲା ॥ ୫ ॥ ଦୋହା :—ରାବଣର କ୍ରୋଧାଗ୍ନି ବିଭୀଷଣର ଶ୍ୱାସ-(ବଚନ)-ପବନରେ ପ୍ରଚଣ୍ଡ ହୋଇ ଜଳୁଥିଲା । ତହିଁରେ ପ୍ରଜ୍ୱଳିତ ବିଭୀଷଣଙ୍କୁ ଶ୍ରୀରାମ ରକ୍ଷା କରିନେଲେ ଏବଂ ତାହାଙ୍କୁ ଲଙ୍କାର ଅଖଣ୍ଡ ରାଜ୍ୟ

ଜୋ ସଂପତି ସିବ ରାବନହି ଦୀନ୍ହି ଦିଏଁ ଦସ ମାଥ ।
ସୋଇ ସଂପଦା ବିଭୀଷନହି ସକୁଚି ଦୀନ୍ହି ରଘୁନାଥ ॥୪୯ (ଖ)॥

ଅସ ପ୍ରଭୁ ଛାଡ଼ି ଭଜହିଁ ଜେ ଆନା । ତେ ନର ପସୁ ବିନୁ ପୂଁଛ ବିଷାନା ॥
ନିଜ ଜନ ଜାନି ତାହି ଅପନାୱା । ପ୍ରଭୁ ସୁଭାବ କପିକୁଲ ମନ ଭାୱା ॥୧॥
ପୁନି ସର୍ବଗ୍ୟ ସର୍ବ ଉର ବାସୀ । ସର୍ବରୂପ ସବ ରହିତ ଉଦାସୀ ॥
ବୋଲେ ବଚନ ନୀତି ପ୍ରତିପାଲକ । କାରନ ମନୁଜ ଦନୁଜକୁଲ ଘାଲକ ॥୨॥
ସୁନୁ କପୀସ ଲଙ୍କାପତି ବୀରା । କେହି ବିଧି ତରିଅ ଜଲଧି ଗଂଭୀରା ॥
ସଂକୁଲ ମକର ଉରଗ ଝଷ ଜାତୀ । ଅତି ଅଗାଧ ଦୁସ୍ତର ସବ ଭାଁତୀ ॥୩॥
କହ ଲଙ୍କେସ ସୁନହୁ ରଘୁନାୟକ । କୋଟି ସିନ୍ଧୁ ସୋଷକ ତବ ସାୟକ ॥
ଜଦ୍ୟପି ତଦପି ନୀତି ଅସି ଗାଈ । ବିନୟ କରିଅ ସାଗର ସନ ଜାଈ ॥୪॥

---

ଯେ ସମ୍ପତ୍ତି ଶିବ ରାବଣଙ୍କୁ ଦେଲେ ଦିଅନ୍ତେ ଦଶ ମସ୍ତକ ॥
ସେ ସମ୍ପଦ ଦେଲେ ବିଭୀଷଣ ପାଶେ ସଙ୍କୋଚେ ରଘୁନାୟକ ॥୪୯ (ଖ)॥

ଏମନ୍ତ ପ୍ରଭୁଙ୍କୁ ତେଜି ଆନେ ଯେ ଭଜଇ । ଶୃଙ୍ଗ-ପୁଚ୍ଛ-ହୀନ ପଶୁ ସେ ନର ଅଟଇ ॥
ଆପଣାର କଲେ ତାଙ୍କୁ ଜାଣି ନିଜ ଜନ । ପ୍ରଭୁଙ୍କ ସ୍ୱଭାବେ କପି ହୋଇଲେ ପ୍ରସନ୍ନ ॥୧॥
ପୁନଶ୍ଚ ସର୍ବଜ୍ଞ ସର୍ବ ଅନ୍ତଃପୁର ବାସୀ । ସର୍ବରୂପ ସଦା ସର୍ବ-ରହିତ ଉଦାସୀ ॥
ଭାଷିଲେ ବଚନ ନୀତି ଧରମ ପାଳକ । କାରଣ ନର, ଅସୁରକୁଳ ସଂହାରକ ॥୨॥
ଶୁଣ କପି-ଅଧୀଶ୍ୱର, ଲଙ୍କାପତି ବୀର । କେଉଁଭାବେ ପାର ହେବା ଜଳଧି ଗମ୍ଭୀର ॥
ଉରଗ ମକର ମୀନ ଜାତି ଅଗଣିତ । ସବୁ ପ୍ରକାରେ ଦୁସ୍ତର ଗଭୀର ଅମିତ ॥୩॥
ବୋଲଇ ଲଙ୍କେଶ ଶୁଣ, ଶ୍ରୀ ରଘୁନାୟକ । କୋଟି ସମୁଦ୍ର ଶୋଷକ ତୁମ୍ଭର ଶାୟକ ॥
ଯଦ୍ୟପି, ତଥାପି ନୀତି ଭଣଇ ଏପରି । ବିନୟ କରନ୍ତୁ ସିନ୍ଧୁ ଆଗେ ଯାଇ କରି ॥୪॥

---

ଦେଲେ ॥ ୪୯ (କ) ॥ ରାବଣ ଦଶଶିର ବଳି ଦେଇ ଯେଉଁ ସମ୍ପଦ ଶିବଙ୍କଠାରୁ ଲାଭ କରିଥିଲା, ଶ୍ରୀ ରଘୁନାଥଙ୍କ ଉକ୍ତ ସଂପତ୍ତି ବିଭୀଷଣଙ୍କୁ ଅତି ସଂକୋଚ ସହକାରେ ଦାନ କଲେ ॥ ୪୯ (ଖ) ॥ ଚୌପାଈ :—ଏହିପରି ପରମକୃପାଳୁ ପ୍ରଭୁଙ୍କୁ ତ୍ୟାଗ କରି ଯେଉଁ ମନୁଷ୍ୟମାନେ ଅନ୍ୟକୁ ଭଜନ କରନ୍ତି, ସେମାନେ ଶିଙ୍ଗ ଓ ଲାଙ୍ଗୁଳ ନ ଥିବା ପଶୁ । ଶ୍ରୀରାମ ବିଭୀଷଣଙ୍କୁ ନିଜର ସେବକ ବୋଲି ଜାଣି ଆପଣାର କରି ନେଲେ । ପ୍ରଭୁଙ୍କ ସ୍ୱଭାବ ବାନରକୁଳଙ୍କ ମନକୁ ଅତିଶୟ ରୁଚିକର ହେଲା ॥ ୧ ॥ ତତ୍ପରେ ସର୍ବଜ୍ଞ, ସମସ୍ତଙ୍କ ହୃଦୟ-ନିବାସୀ, ସର୍ବରୂପ, ସର୍ବରହିତ, ଉଦାସୀନ, କାରଣ ସହିତ (ଭକ୍ତଜନଙ୍କ ଉପରେ କୃପା କରିବା ନିମନ୍ତେ) ମନୁଷ୍ୟାବତାରୀ ଏବଂ ରାକ୍ଷସକୁଳଙ୍କ ନାଶକାରୀ ଶ୍ରୀରାମ ନୀତିରକ୍ଷକ ବଚନ ବୋଇଲେ— ॥ ୨ ॥ "ହେ ବୀର ବାନରରାଜ ସୁଗ୍ରୀବ ଓ ଲଙ୍କାପତି ବିଭୀଷଣ ! ଶୁଣ, ଏହି ଗଭୀର ସମୁଦ୍ରକୁ କିପରି ପାର କରାଯିବ ? ନାନା ଜାତିର ମଗର, ସର୍ପ ଓ ମତ୍ସ୍ୟମାନଙ୍କ ଦ୍ୱାରା ପରିପୂର୍ଣ୍ଣ ଏହି ଅତି ଅଗାଧ ସମୁଦ୍ରକୁ ପାର କରିବା ନିତାନ୍ତ

ପ୍ରଭୁ ତୁମ୍ହାର କୁଲଗୁର ଜଲଧି କହିହି ଉପାୟ ବିଚାରି ।
ବିନୁ ପ୍ରୟାସ ସାଗର ତରିହି ସକଲ ଭାଲୁ କପି ଧାରି ॥୫୦॥
ସଖା କହୀ ତୁମ୍ହ ନୀକି ଉପାଈ । କରିଅ ଦୈବ ଜୌଁ ହୋଇ ସହାଈ ॥
ମନ୍ତ୍ର ନ ୟହ ଲଛିମନ ମନ ଭାୱା । ରାମ ବଚନ ସୁନି ଅତି ଦୁଖ ପାୱା ॥୧॥
ନାଥ ଦୈବ କର କୱନ ଭରୋସା । ସୋଷିଅ ସିନ୍ଧୁ କରିଅ ମନ ରୋସା ॥
କାଦର ମନ କହୁଁ ଏକ ଅଧାରା । ଦୈବ ଦୈବ ଆଲସୀ ପୁକାରା ॥୨॥
ସୁନତ ବିହସି ବୋଲେ ରଘୁବୀରା । ଐସେହିଁ କରବ ଧରହୁ ମନ ଧୀରା ॥
ଅସ କହି ପ୍ରଭୁ ଅନୁଜହି ସମୁଝାଈ । ସିଂଧୁ ସମୀପ ଗଏ ରଘୁରାଈ ॥୩॥
ପ୍ରଥମ ପ୍ରନାମ କୀନ୍ହ ସିରୁ ନାଈ । ବୈଠେ ପୁନି ତଟ ଦର୍ଭ ଡସାଈ ॥
ଜବହିଁ ବିଭୀଷନ ପ୍ରଭୁ ପହିଁ ଆଏ । ପାଛେଁ ରାବନ ଦୂତ ପଠାଏ ॥୪॥

---

ପ୍ରଭୁ ! ତୁମ୍ଭ କୁଳ-ଗୁରୁ ଜଳନିଧି, କହିବେ ଭାବି ଉପାୟ ।
ବିନା ପ୍ରୟାସରେ ତରିବେ ସାଗର ଋକ୍ଷ କପି ସମୁଦାୟ ॥୫୦॥
ସଖା ! ବଖାଣିଲ ତୁମ୍ଭେ ଉତ୍ତମ ଉପାୟ । କରିବା ଦଇବ ଯେବେ ହୋଇବ ସହାୟ ॥
ଲକ୍ଷ୍ମଣ ଏ ମନ୍ତ୍ରଣାକୁ ଭଲ ନ ମଣିଲେ । ରାମଙ୍କ ବଚନ ଶୁଣି ଦୁଃଖିତ ହୋଇଲେ ॥୧॥
ନାଥ ! ଦଇବର କେଉଁ ଭରସା କରନ୍ତୁ । ଶୋଷନ୍ତୁ ସାଗର ମନେ ରୋଷ ବହି ଅତି ॥
ଭୀରୁଙ୍କ ମନର ଏହି ଆଧାର ଅଟଇ । ଅଳସୁଆ 'ଦୈବ ଦୈବ' ଗୁହାରି କରଇ ॥୨॥
ଶୁଣନ୍ତେ ହସି ଭାଷିଲେ ରଘୁକୁଳ-କାନ୍ତ । ଏପରି କରିବା ମନେ, ଧୈର୍ଯ୍ୟ ଧର, ଭ୍ରାତ ॥
ଏହା କହି ବୁଝାଇଣ ପ୍ରଭୁ ଅନୁଜଙ୍କୁ । ଚଳିଲେ ରଘୁନାୟକ ସାଗର ତୀରକୁ ॥୩॥
ପ୍ରଥମରେ ଯାଇଣ ସେ ପ୍ରଣାମ କରିଲେ । ପୁଣି ତଟେ କୁଶାସନ ବିଛାଇ ବସିଲେ ॥
ଯେବେ ବିଭୀଷଣ ପ୍ରଭୁ ନିକଟେ ଆସିଲା । ପଛେ ପଛେ ଗୁପ୍ତଚର ରାବଣ ପେଷିଲା ॥୪॥

---

କଠିନ ବ୍ୟାପାର ॥ ୩ ॥ ଲଙ୍କେଶ୍ୱର ବିଭୀଷଣ କହିଲେ, "ହେ ରଘୁନାଥ ! ଯଦ୍ୟପି ଆପଣଙ୍କର ଗୋଟିଏ ମାତ୍ର ବାଣ କୋଟି କୋଟି ସମୁଦ୍ରକୁ ଶୁଖାଇ ଦେଇପାରେ, ତଥାପି ନୀତିଶାସ୍ତ୍ର କହେ ଯେ, ପ୍ରଥମେ ଯାଇ ସମୁଦ୍ରକୁ ପ୍ରାର୍ଥନା କରିବା ଆପଣଙ୍କର ଉଚିତ ॥ ୪ ॥ ଦୋହା :—ହେ ପ୍ରଭୋ ! ସମୁଦ୍ର ଆପଣଙ୍କର କୁଳର ପୂର୍ବପୁରୁଷ, ସେ ବିଚାରି କରି ଉପାୟ କହି ଦେବେ । ସେହି ଉପାୟ ବଳରେ ଋକ୍ଷ ଓ ବାନରଗଣଙ୍କ ସମସ୍ତ ସେନା ବିନା ପରିଶ୍ରମରେ ସମୁଦ୍ର ପାର ହୋଇଯିବେ ।" ॥୫୦॥ ଚୌପାଈ :—ଶ୍ରୀରାମ କହିଲେ, "ହେ ସଖେ ! ତୁମେ ଉତ୍ତମ ଉପାୟ ବତାଇ ଦେଲ । ଏହାହିଁ କରାଯାଉ; କେଜାଣି ଯଦି ଦୈବ ସହାୟକ ହୁଏ ।" ଏହି ପରାମର୍ଶ ଲକ୍ଷ୍ମଣଙ୍କ ମନକୁ ପାଇଲା ନାହିଁ । ଶ୍ରୀରାମଙ୍କ ବଚନ ଶୁଣି ସେ ଅତିଶୟ ଦୁଃଖ ପାଇଲେ ॥ ୧ ॥ ଲକ୍ଷ୍ମଣ କହିଲେ, "ହେ ନାଥ ! ଦୈବ ଉପରେ କି ଭରସା ? ମନରେ କ୍ରୋଧ କରନ୍ତୁ ଏବଂ ସମୁଦ୍ରକୁ ଶୁଖାଇ ଦିଅନ୍ତୁ । ଏହି ଦୈବ ତ କାପୁରୁଷ ମନର ଗୋଟିଏ ଆଧାର ବା ଅବଲମ୍ବନ ।

ସକଲ ଚରିତ ତିନ୍ହ ଦେଖେ ଧରେଁ କପଟ କପି ଦେହ ।
ପ୍ରଭୁ ଗୁନ ହୃଦୟଁ ସରାହହିଁ ସରନାଗତ ପର ନେହ ॥୫୧॥
ପ୍ରଗଟ ବଖାନହିଁ ରାମ ସୁଭାଊ । ଅତି ସପ୍ରେମ ଗା ବିସରି ଦୁରାଊ ॥
ରିପୁ କେ ଦୂତ କପିନ୍ହ ତବ ଜାନେ । ସକଲ ବାଁଧି କପୀସ ପହିଁ ଆନେ ॥୧॥
କହ ସୁଗ୍ରୀବ ସୁନହୁ ସବ ବାନର । ଅଂଗ ଭଂଗ କରି ପଠବହୁ ନିସିଚର ॥
ସୁନି ସୁଗ୍ରୀବ ବଚନ କପି ଧାଏ । ବାଁଧି କଟକ ଚହୁଁ ପାସ ଫିରାଏ ॥୨॥
ବହୁ ପ୍ରକାର ମାରନ କପି ଲାଗେ । ଦୀନ ପୁକାରତ ତଦପି ନ ତ୍ୟାଗେ ॥
ଜୋ ହମାର ହର ନାସା କାନା । ତେହି କୋସଲାଧୀସ କୈ ଆନା ॥୩॥

---

ସମସ୍ତ ଚରିତ ଦେଖିଣ ସେ କପି-ଦେହ ଧରି କପଟରେ ।
ପ୍ରଭୁଙ୍କ ଶରଣା-ଗତ, ସ୍ନେହ ଗୁଣ ପ୍ରଶଂସନ୍ତି ହୃଦୟରେ ॥୫୧॥
ପ୍ରକାଶ୍ୟେ ବର୍ଣ୍ଣି ଲାଗିଲେ ରାମଙ୍କ ସ୍ୱଭାବ । ଅତିଶୟ ପ୍ରେମେ ଭୁଲି ତନୁ ଛଦ୍ମଭାବ ॥
ରିପୁଦୂତ ବୋଲି ତେବେ ଜାଣିଲେ ମର୍କଟେ । ତାହାଙ୍କୁ ବାନ୍ଧି ଆଣିଲେ କପୀଶ ନିକଟେ ॥୧॥
କହଇ କପୀଶ, ଶୁଣ, ସର୍ବ ବାନରେ । ଅଙ୍ଗ ଭଙ୍ଗ କରି ଛାଡ଼ି ଦିଅ ନିଶାଚରେ ॥
ଶୁଣି ସୁଗ୍ରୀବ ବଚନ ବାନରେ ଧାଇଁଲେ । ବାନ୍ଧିଣ କଟକ ଚଉଦିଗେ ଭ୍ରମାଇଲେ ॥୨॥
ଅନେକ ପ୍ରକାରେ କପି ପ୍ରହାର କରନ୍ତି । ଦୀନେ ଚିତ୍କାର କଲେହେଁ ଛାଡ଼ି ନ ଦିଅନ୍ତି ॥
କାଟିବ ଯେହୁ ଶ୍ରବଣ ନାସିକା ଆମ୍ଭର । ତାହାଙ୍କୁ ରାଣ କୋଶଳ ନରେଶ୍ୱରଙ୍କର ॥୩॥

---

ଅଲସୁଆ ଲୋକମାନେ ହିଁ 'ହା ଦୈବ ' ହା ଦୈବ !' ବୋଲି ଚିତ୍କାର କରନ୍ତି ।" ॥ ' ॥ ଏହା ଶୁଣି ଶ୍ରୀ ରଘୁବୀର ହସି କହିଲେ, "ଏହିପରି ଆମେ କରିବା, ମନରେ ଧୈର୍ଯ୍ୟ ଧର ।" ଏହିପରି କହି ସାନ ଭାଇଙ୍କୁ ବୁଝାଇ ପ୍ରଭୁ ଶ୍ରୀ ରଘୁନାଥ ସମୁଦ୍ର ନିକଟକୁ ଗଲେ ॥ ୩ ॥ ସେ ପ୍ରଥମେ ଶିର ନୁଆଁଇ ପ୍ରଣାମ କଲେ । ତତ୍ପରେ କୂଳରେ କୁଶ ବିଛାଇ ବସିପଡ଼ିଲେ । ଏଣେ ବିଭୀଷଣ ପ୍ରଭୁଙ୍କ ନିକଟକୁ ଆସିବା ମାତ୍ରେ ରାବଣ ତାହାଙ୍କ ପଛେ ପଛେ କେତେକ ଦୂତ ପଠାଇଥିଲା ॥ ୪ ॥ ଦୋହା :—ଦୂତମାନେ କପଟରେ ବାନର-ଶରୀର ଧାରଣ କରି ସମସ୍ତ ଲୀଳା ଦେଖିଲେ । ସେମାନେ ଆପଣା ଆପଣା ମନରେ ପ୍ରଭୁଙ୍କ ଗୁଣାବଳୀ ଏବଂ ଶରଣାଗତ ପ୍ରତି ତାହାଙ୍କ ସ୍ନେହର ପ୍ରଶଂସା କରିବାକୁ ଲାଗିଲେ ॥ ୫୧ ॥ ଚୌପାଈ —ପୁଣି ସେମାନେ କପଟ ରୂପରେ ମଧ୍ୟ ଅତିଶୟ ପ୍ରେମରେ ଶ୍ରୀରାମଙ୍କ ସ୍ୱଭାବର ପ୍ରଶଂସା କରିବାକୁ ଲାଗିଲେ ଏବଂ ଆପଣା ଆପଣା କପଟ-ବେଶ ଭୁଲିଗଲେ । ସେତେବେଳେ ବାନରମାନେ ଜାଣିଲେ ଯେ, ସେମାନେ ଶତ୍ରୁର ଦୂତ । ଏହା ଜାଣି ସେମାନେ ସେ ସମସ୍ତଙ୍କୁ ବାନ୍ଧି ସୁଗ୍ରୀବଙ୍କ ନିକଟକୁ ନେଇ ଆସିଲେ ॥ ୧ ॥ ସୁଗ୍ରୀବ କହିଲେ, "ହେ ବାନରମାନେ ! ରାକ୍ଷସମାନଙ୍କୁ ସେମାନଙ୍କ ଅଙ୍ଗ ଭଙ୍ଗ କରି ପଠାଇଦିଅ ।" ସୁଗ୍ରୀବଙ୍କ ବଚନ ଶୁଣି ବାନରମାନେ ଧାଇଁଲେ । ଦୂତମାନଙ୍କୁ ବାନ୍ଧି ସେମାନେ ସେନାଙ୍କ ଚାରିପାଖରେ ବୁଲାଇଲେ ॥ ୨ ॥ ବାନରମାନେ

ସୁନତ ଲଛିମନ ସବ ନିକଟ ବୋଲାଏ । ଦୟା ଲାଗି ହଁସି ତୁରତ ଛୋଡ଼ାଏ ॥
ରାବନ କର ଦୀଜହୁ ଯହ ପାତୀ । ଲଛିମନ ବଚନ ବାଚୁ କୁଲଘାତୀ ॥୩॥
କହେହୁ ମୁଖାଗର ମୂଢ଼ ସନ ମମ ସଂଦେସୁ ଉଦାର ।
ସୀତା ଦେଇ ମିଲହୁ ନ ତ ଆୱା କାଲୁ ତୁମ୍ହାର ॥୫୨॥
ତୁରତ ନାଇ ଲଛିମନ ପଦ ମାଥା । ଚଲେ ଦୂତ ବରନତ ଗୁନଗାଥା ॥
କହତ ରାମ ଜସୁ ଲଙ୍କାଁ ଆଏ । ରାବନ ଚରନ ସୀସ ତିନ୍ହ ନାଏ ॥୧॥
ବିହସି ଦସାନନ ପୂଁଛୀ ବାତା । କହସି ନ ସୁକ ଆପନି କୁସଲାତା ॥
ପୁନି କହୁ ଖବରି ବିଭୀଷନ କେରୀ । ଜାହି ମୃତ୍ୟୁ ଆଈ ଅତି ନେରୀ ॥୨॥
କରତ ରାଜ ଲଂକା ସଠ ତ୍ୟାଗୀ । ହୋଇହି ଜବ କର କୀଟ ଅଭାଗୀ ॥
ପୁନି କହୁ ଭାଲୁ କୀସ କଟକାଈ । କଠିନ କାଲ ପ୍ରେରିତ ଚଲି ଆଈ ॥୩॥

---

ଶୁଣି ସଉମିତ୍ରି ତାଙ୍କୁ ନିକଟେ ଡକାଇ । ଦୟା ଉପୁଜନ୍ତେ ହସି ଦେଲେ ମୁକୁଳାଇ ॥
ରାବଣ ହସ୍ତରେ ଦେବ ଏହି ପତ୍ର ମମ । ଲକ୍ଷ୍ମଣଙ୍କ ଚିଠି ପଢ, କୁଳାଙ୍ଗାରାଧମ ॥୪॥
ଯାଇ ମୂଢ ଆଗେ କହିବ ମୁଖାଗ୍ର ଉଦାର ସନ୍ଦେଶ ମୋର ।
ସୀତା ଦେଇ ମିଳ, ତା ନୋହିଲେ କାଳ ନିକଟେ ହେଲାଣି ତୋର ॥୫୨॥
ଲକ୍ଷ୍ମଣ ଚରଣେ ଶୀଘ୍ର କରିଣ ପ୍ରଣାମ । ଗମିଲେ ଦୂତେ ବର୍ଣ୍ଣନ କରି ଗୁଣଗ୍ରାମ ॥
କହୁଁ କହୁଁ ରାମ ଯଶ ଲଙ୍କା ଆଗମିଲେ । ରାବଣ ପଦେ ସେମାନେ ଶିର ନୁଆଁଇଲେ ॥୧॥
ହସି ତହୁଁ ଦଶାନନ ପଚାରେ ବାରତା । ଶୁଣାଅ ଶୁକ ! ଆପଣା କୁଶଳାଦି କଥା ॥
ପୁଣି ସେ ବିଭୀଷଣର କହ ସମାଚାର । ମୃତ୍ୟୁ ଅତ୍ୟନ୍ତ ନିକଟେ ଉପସ୍ଥିତ ଯାର ॥୨॥
ରାଜ୍ୟ କରନ୍ତେ ସେ ଶଠ ଲଙ୍କା କଲା ତ୍ୟାଗ । ଯବ କୀଟ ସମ ଏବେ ହେବ ହତଭାଗ୍ୟ ॥
ପୁଣି କହ ଋକ୍ଷ ମର୍କଟଙ୍କ ସୈନ୍ୟ ପଂକ୍ତି । ଘୋର କାଳ ପ୍ରେରଣାରେ ଚାଲି ଆସୁଛନ୍ତି ॥୩॥

---

ସେମାନଙ୍କୁ ବହୁତ ପ୍ରକାରେ ମାରିବାକୁ ଲାଗିଲେ । ସେମାନେ ଦୀନ ଭାବରେ ଚିତ୍କାର କରୁଥା'ନ୍ତି । ତଥାପି ବାନରମାନେ ସେମାନଙ୍କୁ ଛାଡିଲେ ନାହିଁ । ସେତେବେଳେ ଦୂତମାନେ ଚିତ୍କାର କରି କହିଲେ, "ଯେ ଆମର ନାକ କାନ କାଟିବ, ତାହାକୁ କୋଶଳାଧୀଶ ଶ୍ରୀରାମଚନ୍ଦ୍ରଙ୍କ ରାଣ ।" ॥ ୩ ॥ ଏହା ଶୁଣି ଲକ୍ଷ୍ମଣ ସମସ୍ତଙ୍କୁ ନିକଟକୁ ଡକାଇଲେ । ତାଙ୍କ ମନରେ ବଡ ଦୟା ହେଲା । ସେ ହସି ରାକ୍ଷସମାନଙ୍କୁ ତୁରନ୍ତ ଛାଡି ଦେଲେ ଏବଂ ସେମାନଙ୍କୁ କହିଲେ, "ରାବଣର ହାତରେ ଏହି ପତ୍ର ଦେବ ଏବଂ ତାହାକୁ କହିବ—'ହେ କୁଳଘାତକ ! ଲକ୍ଷ୍ମଣଙ୍କ ସନ୍ଦେଶ ପଢ ।' ॥ ୪ ॥ ଦୋହା :—ପୁଣି ସେହି ମୂର୍ଖ ଆଗରେ ମୋର ଏହି ଉଦାର (କୃପାପୂର୍ଣ୍ଣ) ସନ୍ଦେଶ କଣ୍ଠସ୍ଥ କରି କହିବ—ସୀତାଙ୍କୁ ଦେଇ ଶ୍ରୀରାମଙ୍କ ସହିତ ମିଳନ କର, ଅନ୍ୟଥା ତୁମର କାଳ ଆସିଗଲା ବୋଲି ଜାଣ ।" ॥ ୫୨ ॥ ଚୌପାଇ :—ଲକ୍ଷ୍ମଣଙ୍କ ଚରଣରେ ମସ୍ତକ ନୁଆଁଇ ଶ୍ରୀରାମଙ୍କ ଗୁଣାବଳୀ ବର୍ଣ୍ଣନା କରି ଦୂତମାନେ ଶୀଘ୍ର ଚାଲିଗଲେ । ଶ୍ରୀରାମଙ୍କ

ଜିନ୍ହ କେ ଜୀବନ କର ରଖଵାରା । ଭୟଉ ମୃଦୁଲ ଚିତ ସିନ୍ଧୁ ବିଚାରା ॥
କହୁ ତପସିନ୍ହ କୈ ବାତ ବହୋରୀ । ଜିନ୍ହ କେ ହୃଦୟଁ ତ୍ରାସ ଅତି ମୋରୀ ॥୪॥
ଭୀ ଭଇ ଭେଁଟ କି ଫିରି ଗଏ ଶ୍ରବନ ସୁଜସୁ ସୁନି ମୋର ।
କହସି ନ ରିପୁଦଲ ତେଜ ବଲ ବହୁତ ଚକିତ ଚିତ ତୋର ॥୫୩॥
ନାଥ କୃପା କରି ପୂଁଛେହୁ ଜୈସେଁ । ମାନହୁ କହା କ୍ରୋଧ ତଜି ତୈସେଁ ॥
ମିଲା ଜାଇ ଜବ ଅନୁଜ ତୁମ୍ହାରା । ଜାତହିଁ ରାମ ତିଲକ ତେହି ସାରା ॥୧॥
ରାବନ ଦୂତ ହମହି ସୁନି କାନା । କପିନ୍ହ ବାଁଧି ଦୀନ୍ହେ ଦୁଖ ନାନା ॥
ଶ୍ରବନ ନାସିକା କାଟୈଁ ଲାଗେ । ରାମ ସପଥ ଦୀନ୍ହେଁ ହମ ତ୍ୟାଗେ ॥୨॥

---

ଯାହାଙ୍କର ପ୍ରିୟ ପ୍ରାଣ-ରକ୍ଷକ ଉଦାର । ହୋଇଛୁ ବିଚରା ମୃଦୁମନା ପାରାବାର ॥
କହ ବେନି ତପସ୍ୱୀଙ୍କ ଆବର ସନ୍ଦେଶ । ଯାହାଙ୍କ ହୃଦୟେ ତ୍ରାସ ମୋହର ବିଶେଷ ॥୪॥
ହୋଇଲା ଭେଟ କି ଫେରିଗଲେ ଶୁଣି କର୍ଣ୍ଣେ ସୁଯଶ ମୋହର ।
କହ ଶତ୍ରୁଦଳ ତେଜ ବଳ, କିପାଁ ଚକିତ ଚିତ୍ତ ତୋହର ॥୫୩॥
ନାଥ ! ପଚାରିଲ କୃପା କରିଣ ଯେମନ୍ତ । ମାନନ୍ତୁ ବଚନ କ୍ରୋଧ ତେଜିଣ ତେମନ୍ତ ॥
ମିଳିଲା ତୁମ୍ଭ ଅନୁଜ ଯାଇ ଯେଉଁକ୍ଷଣି । କରାଇଲେ ରାମ ରାଜତିଳକ ସେକ୍ଷଣି ॥୧॥
ରାବଣର ଦୂତ ବୋଲି ଆମ୍ଭଙ୍କୁ ଜାଣିଣ । ନାନାବିଧ ଦୁଃଖ ଦେଲେ ବାନରେ ବାନ୍ଧିଣ ॥
ଶ୍ରବଣ ନାସିକା କାଟିବାକୁ ଆରମ୍ଭିଲେ । ରାମଙ୍କ ରାଣ ଦିଅନ୍ତେ ଆମ୍ଭଙ୍କୁ ତ୍ୟାଗିଲେ ॥୨॥

---

ଯଶଗାଥା କହି କହି ସେମାନେ ଲଙ୍କାକୁ ଆସିଲେ ଏବଂ ରାବଣର ଚରଣରେ ଶିର ନୁଆଁଇଲେ ॥ ୧ ॥ ଦଶମୁଖ ରାବଣ ହସି ପଚାରିଲା, "ଆରେ ଶୁକ ! ଆପଣା କୁଶଳ ସମାଚାର କହୁନୁ ନାହିଁକି ? ଆହୁରି ପୁଣି ଯେଉଁ ବିଭୀଷଣର ମୃତ୍ୟୁ ଆସନ୍ନ, ତାହାର ସମାଚାର ଶୁଣା ॥ ୨ ॥ ମୂର୍ଖ ରାଜତ୍ୱ କରୁଥିବା ଅବସ୍ଥାରେ ଲଙ୍କାକୁ ତ୍ୟାଗ କରିଦେଲା । ହତଭାଗ୍ୟ ଏବେ ଯବର କୀଟ ପରି ନର ବାନରଙ୍କ ସହିତ ପେଷି ହୋଇ ମରିବ । ଆହୁରି ପୁଣି ଯେଉଁ ଭାଲୁ ଓ ବାନରଗଣ କଠୋର କାଳର ପ୍ରେରଣାରେ ଏଠାକୁ ଚାଲି ଆସିଛନ୍ତି, ସେମାନଙ୍କ ଖବର କହ ॥୩॥ କୋମଳମତି ବିଚରା ସମୁଦ୍ର ସେହି ସେନାମାନଙ୍କର ଜୀବନ-ରକ୍ଷକ ହୋଇଅଛୁ । (ସମୁଦ୍ର ନ ଥିଲେ ରାକ୍ଷସମାନେ ସେମାନଙ୍କୁ କେଉଁ କାଳରୁ ମାରି ଖାଇ ଯାଇଥା'ନ୍ତେ ।) ଆଉ ମୋତେ ପ୍ରାଣେ ପ୍ରାଣେ ଡରୁଥିବା ସେହି ତପସ୍ୱୀମାନଙ୍କ ଖବର କହ ॥ ୪ ॥ ଦୋହା ।—ସେମାନଙ୍କ ସହିତ ତୋର ଭେଟ ହେଲା ନା ମୋ ସୁଯଶ ଶୁଣିବା ମାତ୍ରେ ସେମାନେ ଫେରିଗଲେ ? ଶତ୍ରୁ-ସେନାର ତେଜ ଓ ବଳ କହୁ ନାହୁଁ କାହିଁକି ? ତୋର ଚିତ୍ତ ତ ଅତିଶୟ ଚକିତ ହୋଇଥିଲା ପରି ବୋଧ-ହେଉଛି ।" ॥ ୫୩ ॥ ଚୌପାଇ —ଦୂତ କହିଲା, "ହେ ନାଥ ! ଆପଣ କୃପା କରି ଯେପରି ପଚାରିଲେ, ସେହିପରି କ୍ରୋଧ ତ୍ୟାଗ କରି ମୋ କଥା ମାନନ୍ତୁ, ଅର୍ଥାତ୍ ମୋ କଥା ବିଶ୍ୱାସ କରନ୍ତୁ । ଆପଣଙ୍କ ସାନଭାଇ ଶ୍ରୀରାମଙ୍କ ସହିତ ଯାଇ ସାକ୍ଷାତ କଲା ମାତ୍ରେ

ପୁଁଛିହୁ ନାଥ ରାମ କଟକାଈ । ବଦନ କୋଟି ସତ ବରନି ନ ଜାଈ ॥
ନାନା ବରନ ଭାଲୁ କପି ଧାରୀ । ବିକଟାନନ ବିସାଲ ଭୟକାରୀ ॥୩॥
ଜେହିଁ ପୁର ଦହେଉ ହତେଉ ସୁତ ତୋରା । ସକଲ କପିନ୍ହ ମହଁ ତେହି ବଲୁ ଥୋରା ॥
ଅମିତ ନାମ ଭଟ କଠିନ କରାଲା । ଅମିତ ନାଗ ବଲ ବିପୁଲ ବିସାଲା ॥୪॥

ଦ୍ୱିବିଦ ମୟଂଦ ନୀଲ ନଲ ଅଙ୍ଗଦ ଗଦ ବିକଟାସି ।
ଦଧିମୁଖ କେହରି ନିସଠ ସଠ ଜାମବନ୍ତ ବଲରାସି ॥୫୪॥

ଏ କପି ସବ ସୁଗ୍ରୀବ ସମାନା । ଇନ୍ହ ସମ କୋଟିନ୍ହ ଗନଇ କୋ ନାନା ॥
ରାମ କୃପାଁ ଅତୁଲିତ ବଲ ତିନ୍ହହୀଁ । ତୃନ ସମାନ ତ୍ରୈଲୋକହି ଗନହୀଁ ॥୧॥

---

ପଚାରିଲ କପି-ସୈନ୍ୟ-ବୃତ୍ତାନ୍ତ, ରାଜନ । କୋଟି ଶତମୁଖେ କରି ନ ହେବ ବର୍ଣ୍ଣନ ॥
ବିବିଧ ବର୍ଣ୍ଣର ଭାଲୁ କପି ଦେହଧାରୀ । ବିକଟାନନ ବିଶାଳ ଭୟଙ୍କାତଙ୍କାରୀ ॥୩॥
ଯେ ତୁମ୍ଭ ପୁର ଦହଣ ବଧିଲା କୁମାର । ସମସ୍ତ କପିଙ୍କଠାରୁ ଅଳ୍ପ ବଳ ତାର ॥
ଅସଂଖ୍ୟ ଯୋଦ୍ଧାଙ୍କ ନାମ କଠୋର କରାଳ । ଅସଂଖ୍ୟ ବାରଣ ବଳ ଅତ୍ୟନ୍ତ ବିଶାଳ ॥୪॥

ଦ୍ୱିବିଦ ମୟନ୍ଦ କେଶରୀ କୁମୁଦ ବିକଟାସ୍ୟ ନଳ ନୀଳ ।
ଗଦ ଦଧି ମୁଖ ଅଙ୍ଗଦ ପ୍ରମୁଖ ଜାମ୍ବବନ୍ତ ବଳଶୀଳ ॥୫୪॥

ଏ କପି ସର୍ବେ ଅଟନ୍ତି ସୁଗ୍ରୀବ ସମାନେ । ଏହାଙ୍କ ସଦୃଶ କୋଟି, ଗଣିବ କେ ଆନେ ॥
ରାମ କୃପାରେ ତାହାଙ୍କ ବଳ ଅନୁପମ । ଗଣନ୍ତି ତିନି ଲୋକଙ୍କୁ ତୁଚ୍ଛ ତୃଣ ସମ ॥୧॥

---

ଶ୍ରୀରାମ ତାହାର ଅଭିଷେକ ବିଧାନ କରିଦେଲେ ॥ ୧ ॥ ଆମ୍ଭେମାନେ ରାବଣର ଦୂତ, ଏହା କାନରେ ଶୁଣି ବାନରମାନେ ଆମ୍ଭଙ୍କୁ ବାନ୍ଧି ବହୁତ କଷ୍ଟ ଦେଲେ, ଏପରି କି ଆମ ନାକକାନ କାଟିବାକୁ ଲାଗିଲେ । ଶ୍ରୀରାମଙ୍କ ରାଣ ପକାଇବାରୁ ସେମାନେ ଯାଇ ଆମ୍ଭମାନଙ୍କୁ ଛାଡ଼ିଲେ ॥ ୨ ॥ ହେ ନାଥ ! ଆପଣ ଶ୍ରୀରାମଙ୍କ ସେନା ବିଷୟରେ ପଚାରିଲେ । ତାହା ତ ଶହେ କୋଟି ମୁଖରେ ମଧ୍ୟ ବର୍ଣ୍ଣନା କରାଯାଇ ପାରିବ ନାହିଁ । ବିବିଧ ରଙ୍ଗର ଭାଲୁ ଓ ବାନରସେନା ଅଛନ୍ତି । ସେମାନଙ୍କର ମୁଖ ଭୟଙ୍କର, ଶରୀର ବିଶାଳ ଓ ଭୟାନକ ॥ ୩ ॥ ଯେଉଁ ବାନର ନଗରକୁ ଜାଳିଦେଲା ଏବଂ ଆପଣଙ୍କ ପୁତ୍ର ଅକ୍ଷୟ କୁମାରକୁ ମାରିଲା, ତାହାର ବଳ ତ ସମସ୍ତ ବାନରଙ୍କ ମଧ୍ୟରେ ଅଳ୍ପ । ଅସଂଖ୍ୟ ନାମଧାରୀ ଅତି କଠୋର ଓ ଭୟଙ୍କର ଯୋଦ୍ଧା ଅଛନ୍ତି । ସେମାନଙ୍କଠାରେ ଅସଂଖ୍ୟ ହସ୍ତୀର ବଳ ନିହିତ ଏବଂ ସେମାନେ ଅତି ବିଶାଳ ॥ ୪ ॥ ଦୋହା '—ଦ୍ୱିବିଦ, ମୟନ୍ଦ, ନୀଳ, ନଳ, ଅଙ୍ଗଦ, ଗଦ, ବିକଟାସ୍ୟ, ଦଧିମୁଖ, କେଶରୀ, ନିଶଠ, ଶଠ ଓ ଜାମ୍ବବାନ୍—ଏମାନେ ସମସ୍ତେ ବଳରାଶି ॥ ୫୪ ॥ ଚୌପାଇ —ଏ ସମସ୍ତ ବାନର ବଳରେ ସୁଗ୍ରୀବଙ୍କ ସମାନ ଏବଂ ଏମାନଙ୍କ ପରି ଗୋଟିଏ ଦୁଇଟି ନୁହେଁ, କୋଟି କୋଟି ଅଛନ୍ତି । ସେହି ବହୁ-ସଂଖ୍ୟକ ସୈନ୍ୟଙ୍କୁ କିଏ ଗଣି ପାରିବ ? ଶ୍ରୀରାମଙ୍କ କୃପାରୁ ସେମାନଙ୍କଠାରେ ଅତୁଳନୀୟ ବଳ । ସେମାନେ ତ୍ରିଲୋକକୁ ତୃଣ ସମାନ ମନେ

ଅସ ମୈଁ ସୁନା ଶ୍ରବନ ଦସକଂଧର । ପଦୁମ ଅଠାରହ ଜୁଥପ ବଂଦର ॥
ନାଥ କଟକ ମହଁ ସୋ କପି ନାହୀଁ । ଜୋ ନ ତୁହ୍ମହି ଜୀତୈ ରନ ମାହୀଁ ॥୨॥
ପରମ କ୍ରୋଧ ମୀଜହିଁ ସବ ହାଥା । ଆୟସୁ ପୈ ନ ଦେହିଁ ରଘୁନାଥା ॥
ସୋଷହିଁ ସିନ୍ଧୁ ସହିତ ଝଷ ବ୍ୟାଲା । ପୂରହିଁ ନ ତ ଭରି କୁଧର ବିସାଲା ॥୩॥
ମର୍ଦ୍ଦି ଗର୍ଦ୍ଦ ମିଲୱହିଁ ଦସସୀସା । ଐସେଇ ବଚନ କହହିଁ ସବ କୀସା ॥
ଗର୍ଜହିଁ ତର୍ଜହିଁ ସହଜ ଅସଂକା । ମାନହୁଁ ଗ୍ରସନ ଚହତ ହହିଁ ଲଂକା ॥୪॥

ସହଜ ସୂର କପି ଭାଲୁ ସବ ପୁନି ସିର ପର ପ୍ରଭୁ ରାମ ।
ରାବନ କାଲ କୋଟି କହୁଁ ଜୀତି ସକହିଁ ସଂଗ୍ରାମ ।୫୫॥

ରାମ ତେଜ ବଲ ବୁଧି ବିପୁଲାଈ । ସେଷ ସହସ ସତ ସକହିଁ ନ ଗାଈ ॥
ସକ ସର ଏକ ସୋଷି ସତ ସାଗର । ତବ ଭ୍ରାତହି ପୂଁଛେଉ ନୟ ନାଗର ॥୧॥

---

ଏମନ୍ତ ଶ୍ରବଣେ ମୁହିଁ ଶୁଣିଲି ଲଙ୍କପ । ଅଠର ପଦ୍ମ ବାନର ଅଟନ୍ତି ୟୂଥପ ॥
ଏପରି କୌଣସି କପି ନାହିଁ ସେ ୟୂଥରେ । ଜିଣି ନ ପାରିବ ଯେହୁ ତୁମ୍ଭଙ୍କୁ ସମରେ ॥୨॥
ପରମ କ୍ରୋଧେ ମଳନ୍ତି କପି ସର୍ବେ ହାତ । ଆଜ୍ଞା ନ ଦିଅନ୍ତି କିନ୍ତୁ ରଘୁକୁଳ-କାନ୍ତ ॥
ଉରଗ ଝଷ ସହିତ ସାଗର ଶୋଷିବା । ନାହିଁ ତ ଆଣି ବିଶାଳ ଶଇଳେ ପୋତିବା ॥୩॥
ମର୍ଦ୍ଦିଣ ଧୂଳିରେ ମିଳାଇବା ଦଶାନନେ । କହନ୍ତି କପି-ସମୂହ ବଚନ ଏସନେ ॥
ଗରଜନ୍ତି ତରଜନ୍ତି ସହଜେ ଆଶଙ୍କା । ମନେ ହୁଏ ଗ୍ରାସିବାକୁ ଚାହୁଁଛନ୍ତି ଲଙ୍କା ॥୪॥

ଏବେ ତ ବାନର ଭାଲୁ ସର୍ବେଶ୍ୱର ପୁଣି ପ୍ରଭୁ ରାମ ଶିରେ ।
ରାବଣ ! ଅସଂଖ୍ୟ କାଳକୁ ସେ ଜିଣି-ପାରିବେ ରଣ-ଭୂମିରେ ॥୫୫॥

ରାମ ତେଜ ବୁଦ୍ଧି ବଳ ବିପୁଳ ବଡ଼ାଇ । ସହସ୍ର ଶତ ଅହୀଶ ନ ପାରିବେ ଗାଇ ॥
ଶରକରେ ଶୋଷି ଶତ ପାରନ୍ତି ସାଗର । ନୀତି-ନିପୁଣ ପୁଚ୍ଛିଲେ ଭ୍ରାତାଙ୍କୁ ତୁମ୍ଭର ॥୧॥

---

କରନ୍ତି ॥ ୧ ॥ ହେ ଦଶଗ୍ରୀବ ! ମୁଁ କାନରେ ଏପରି ଶୁଣିଅଛି ଯେ, ଏକା ବାନର ସେନାପତିଙ୍କ ସଂଖ୍ୟା ଅଠର ପଦ୍ମ । ହେ ନାଥ ! ସେହି ସେନା ମଧ୍ୟରେ ଏପରି କେହି ଗୋଟିଏ ବାନର ନାହିଁ ଯେ ଆପଣଙ୍କୁ ରଣରେ ଜୟ ନ କରି ପାରିବ ॥ ୨ ॥ ସମସ୍ତଙ୍କୁ ସମସ୍ତେ ଅତିଶୟ କ୍ରୋଧରେ ହାତ ମଳୁ ଅଛନ୍ତି । କିନ୍ତୁ ଶ୍ରୀ ରଘୁନାଥ ସେମାନଙ୍କୁ ଆଜ୍ଞା ଦେଉ ନାହାନ୍ତି । "ଆମ୍ଭେମାନେ ମାଛ ଓ ସାପମାନଙ୍କ ସମେତ ସମଗ୍ର ସମୁଦ୍ରକୁ ଶୋଷି ପକାଇବୁ । ନଚେତ୍ ବଡ଼ ବଡ଼ ପର୍ବତ ଦ୍ୱାରା ତାହାକୁ ପୋତି ସମତଳ କରିଦେବୁ ॥୩॥ ଏବଂ ରାବଣକୁ ଦଳି ଚକଟି ଧୂଳିରେ ମିଳାଇ ଦେବୁ ।" —ସମସ୍ତ ବାନର ଏହିପରି କଥାବାର୍ତ୍ତା ହେଉଅଛନ୍ତି । ସମସ୍ତେ ସ୍ୱଭାବତଃ ନିର୍ଭୀକ । ସେମାନେ ଏପରି ଗର୍ଜନ କରୁଛନ୍ତି ଓ ଧମକଚମକ ହେଉଅଛନ୍ତି ଯେ ସତେ ଯେପରି ସେମାନେ ଲଙ୍କାକୁ ଗିଳି ପକାଇବାକୁ ବ୍ୟଗ୍ର ହୋଇ ପଡ଼ିଅଛନ୍ତି ॥ ୪ ॥ ଦୋହା :—ସମସ୍ତ ବାନର ଓ ଭଲ୍ଲୁକ ସ୍ୱଭାବତଃ ଶୂରବୀର ଏବଂ ସେମାନଙ୍କ ଶିର ଉପରେ ପ୍ରଭୁ ସର୍ବେଶ୍ୱର ଶ୍ରୀରାମ । ହେ ରାବଣ !

ତାସୁ ବଚନ ସୁନି ସାଗର ପାହୀଁ । ମାଗତ ପନ୍ଥ କୃପା ମନ ମାହୀଁ ॥
ସୁନତ ବଚନ ବିହସା ଦସସୀସା । ଜୌଁ ଅସି ମତି ସହାୟ କୃତ କୀସା ॥୨॥
ସହଜ ଭୀରୁ କର ବଚନ ଦୃଢ଼ାଈ । ସାଗର ସନ ଠାନୀ ମଚଲାଈ ॥
ମୂଢ଼ ମୃଷା କା କରସି ବଡ଼ାଈ । ରିପୁ ବଲ ବୁଦ୍ଧି ଥାହ ମୈଁ ପାଈ ॥୩॥
ସଚିବ ସଭୀତ ବିଭୀଷନ ଜାକେଁ । ବିଜୟ ବିଭୂତି କହାଁ ଜଗ ତାକେଁ ॥
ସୁନି ଖଲ ବଚନ ଦୂତ ରିସ ବାଢ଼ୀ । ସମୟ ବିଚାରି ପତ୍ରିକା କାଢ଼ୀ ॥୪॥
ରାମାନୁଜ ଦୀନ୍ହୀ ୟହ ପାତୀ । ନାଥ ବଚାଇ ଜୁଡ଼ାୱହୁ ଛାତୀ ॥
ବିହସି ବାମ କର ଲୀନ୍ହୀ ରାବନ । ସଚିବ ବୋଲି ସଠ ଲାଗ ବଚାୱନ ॥୫॥

---

ତାହାଙ୍କ ବଚନ ଶୁଣି ସିନ୍ଧୁ ନିକଟରେ । ମାଗନ୍ତି ମାର୍ଗ, କରୁଣା ଅଶେଷ ମନରେ ॥
ବଚନ ଶୁଣି ହସିଲା ସେ ଦଶ ମସ୍ତକ । ଏହି ବୁଦ୍ଧିକୁ ତ ବୃକ୍ଷ କପି ସହାୟକ ॥୨॥
ସହଜେ ଭୀରୁ, ବଚନ ସତ୍ୟ ବିସ୍ତରଣ । ସାଗର ସମୀପେ ଅଳି କରଇ ମାଇଣ ॥
ମୂଢ, ମିଛଟାରେ କେତେ କରୁଛୁ ବଡାଇ । ଶତ୍ରୁ ବଳ ବୁଦ୍ଧି ସୀମା ପାଇଛୁ ମୁଁ ପାଇ ॥୩॥
ସଚିବ ଅଟେ ଭୟାକ୍ରୁ ବିଭୀଷଣ ଯାର । ବିଜୟ ବିଭୂତି କେଉଁ ପର୍ଯ୍ୟନ୍ତେ ବା ତାର ॥
ଶୁଣି ଖଳ ବାକ୍ୟ କ୍ରୋଧ ଦୂତର ବଢିଲା । ସମୟ ବିଚାରି ତହୁଁ ପତ୍ରିକା କାଢିଲା ॥୪॥
ରାମାନୁଜ ଏହି ପତ୍ର ଅଛନ୍ତି ପଠାଇ । ନାଥ ! ହୃଦୟ ଶୀତଳ କରନ୍ତୁ ପଢାଇ ॥
ହସିଣ ଦଶବଦନ ବାମ କରେ ନେଲା । ସଚିବଙ୍କୁ ଡାକି ଶଠ ପଢାଇ ଲାଗିଲା ॥୫॥

---

ସେ ସଂଗ୍ରାମରେ କୋଟି କୋଟି କାଳଙ୍କୁ ମଧ୍ୟ ଜିଣି ପାରନ୍ତି ॥ ୫୫ ॥ ଚୌପାଈ :— ଶ୍ରୀରାମଙ୍କ ତେଜ (ସାମର୍ଥ୍ୟ), ବଳ ଓ ବୁଦ୍ଧିର ଆଧିକ୍ୟ ଲକ୍ଷ ଲକ୍ଷ ଶେଷ ମଧ୍ୟ ଗାଇ ପାରିବେ ନାହିଁ । ସେ ଗୋଟିଏ ମାତ୍ର ବାଣରେ ଶହ ଶହ ସମୁଦ୍ର ଶୁଖାଇ ଦେଇପାରନ୍ତି । କିନ୍ତୁ ନୀତିନିପୁଣ ଶ୍ରୀରାମ ନୀତିରକ୍ଷା ନିମନ୍ତେ ଆପଣଙ୍କ ଭାଇଙ୍କୁ ଉପାୟ ପଚାରିଲେ ॥ ୧ ॥ ଆପଣଙ୍କ ଭାଇଙ୍କ ବଚନ ଶୁଣି ଶ୍ରୀରାମ ସମୁଦ୍ରକୁ ବାଟ ମାଗୁଛନ୍ତି । ତାଙ୍କ ମନରେ କୃପା ପରିପୂର୍ଣ୍ଣ । ତେଣୁ ସେ ସମୁଦ୍ରକୁ ଶୁଖାଉ ନାହାନ୍ତି ।" ଦୂତର ଏହି ସବୁ କଥା ଶୁଣି ରାବଣ ଖୁବ୍ ହସିଲା ଏବଂ କହିଲା, "ଏହିପରି ବୁଦ୍ଧି ଥିବା ଯୋଗୁଁ ତ ସେ ବାନରଗଣଙ୍କୁ ସହାୟକ କରିଅଛି ॥ ୨ ॥ ସ୍ୱଭାବତଃ ଭୟାଳୁ ବିଭୀଷଣର ବଚନକୁ ପ୍ରମାଣ କରି ସେ ସମୁଦ୍ର ଉପରେ ପିଲାଳିଆ ଜିଦ ଧରି ବସିଛି । ଆରେ ମୂର୍ଖ ! ମିଛଟାରେ ତାହାର ବଡାଇ କେତେ କରୁଅଛୁ ! ବେଶ, ଶତ୍ରୁ ରାମର ବଳ ଓ ବୁଦ୍ଧିର ପରିଚୟ ମୁଁ ପାଇ ସାରିଛି ॥୩॥ ଯାହାର ବିଭୀଷଣ ପରି କାପୁରୁଷ ମନ୍ତ୍ରୀ, ତାହାକୁ ଜଗତରେ ବିଜୟ ଓ ବିଭୂତି (ଐଶ୍ୱର୍ଯ୍ୟ) କାହୁଁ ମିଳିବ ?" ଦୁଷ୍ଟ ରାବଣର ବଚନ ଶୁଣି ଦୂତର କ୍ରୋଧ ବଢିଗଲା । ସେ ଉପଯୁକ୍ତ ଅବସର ଦେଖି ପତ୍ର ବାହାର କଲା ॥ ୪ ॥ କହିଲା, "ଶ୍ରୀରାମଙ୍କ ସାନଭାଇ ଲକ୍ଷ୍ମଣ ଏହି ପତ୍ର ଦେଇଅଛନ୍ତି । ହେ ନାଥ ! ଏହାକୁ ପଢାଇ ହୃଦୟ ଶୀତଳ କରନ୍ତୁ ।" ରାବଣ ହସି ପତ୍ରଟିକୁ ବାମ ହସ୍ତରେ ଗ୍ରହଣ କଲା ଏବଂ ମନ୍ତ୍ରୀକୁ ଡକାଇ ସେହି ମୂର୍ଖ

ବାତନ୍ହ ମନହି ରିଝାଇ ସଠ ଜନି ଘାଲସି କୁଲ ଖୀସ ।
ରାମ ବିରୋଧ ନ ଉବରସି ସରନ ବିଷ୍ଣୁ ଅଜ ଈସ ॥୫୬ (କ)॥
କୀ ତଜି ମାନ ଅନୁଜ ଇବ ପ୍ରଭୁ ପଦ ପଙ୍କଜ ଭୃଂଗ ।
ହୋହି କି ରାମ ସରାନଲ ଖଲ କୁଲ ସହିତ ପତଂଗ ॥୫୬ (ଖ)॥

ସୁନତ ସଭୟ ମନ ମୁଖ ମୁସୁକାଈ । କହତ ଦସାନନ ସବହି ସୁନାଈ ॥
ଭୂମି ପରା କର ଗହତ ଅକାସା । ଲଘୁ ତାପସ କର ବାଗ ବିଲାସା ॥୧॥
କହ ସୁକ ନାଥ ସତ୍ୟ ସବ ବାନୀ । ସମୁଝହୁ ଛାଡ଼ି ପ୍ରକୃତି ଅଭିମାନୀ ॥
ସୁନହୁ ବଚନ ମମ ପରିହରି କ୍ରୋଧା । ନାଥ ରାମ ସନ ତଜହୁ ବିରୋଧା ॥୨॥
ଅତି କୋମଲ ରଘୁବୀର ସୁଭାଊ । ଜଦ୍ୟପି ଅଖିଲ ଲୋକ କର ରାଊ ॥
ମିଲତ କୃପା ତୁମ୍ହ ପର ପ୍ରଭୁ କରିହୀ । ଉର ଅପରାଧ ନ ଏକଉ ଧରିହୀ ॥୩॥

---

କଥାରେ ମନକୁ ଖୁସି କରି ଶଠ କୁଳ ବିନାଶ ନ କର ।
ରାମ ବିରୋଧେ ନ ବଞ୍ଚିବୁ, ଶରଣ ଗଲେ ବ୍ରହ୍ମା ବିଷ୍ଣୁ ହର ॥୫୬ (କ)॥
ପରିହରି ମାନ ହୁଅ ଭ୍ରାତା ସମ ପ୍ରଭୁ ପଦାବଜେ ଭୃଙ୍ଗ ।
କିମ୍ବା ହୁଅ ରାମ ଶରାନଳେ ଖଳ, କୁଳ ସହିତ ପତଙ୍ଗ ॥୫୬ (ଖ)॥

ଶୁଣନ୍ତେ ସଭୟ ମନ ମୁଖେ ମୁସ୍କାଇ । ବୋଲେ ସମସ୍ତଙ୍କୁ ଦଶବଦନ ଶୁଣାଇ ॥
ଭୂମିରେ ପଡ଼ିତ ଯେହ୍ନେ ଧରଇ ଆକାଶ । କ୍ଷୁଦ୍ର ତପସ୍ୱୀଙ୍କ ତେହ୍ନେ ବଚନ ବିଳାସ ॥୧॥
ବୋଲଇ ଶୁକ ମଣିମା ! ସତ୍ୟ ସବୁ ବାଣୀ । ବୁଝନ୍ତୁ ତେଜିଣ ଆଚରଣ ଅଭିମାନୀ ॥
ଶୁଣନ୍ତୁ ମୋର ବଚନ ପରିହରି କ୍ରୋଧ । ନାଥ ! ରଘୁନାଥ ସଙ୍ଗେ ତେଜନ୍ତୁ ବିରୋଧ ॥୨॥
ଅତି କୋମଳ ସ୍ୱଭାବ ପ୍ରଭୁ ରଘୁପତି । ଅଖିଳ ଲୋକନାୟକ ଯଦ୍ୟପି ଅଟନ୍ତି ॥
ମିଳନ୍ତେ ତୁମ୍ଭ ଉପରେ କରୁଣା କରିବେ । ତିଳେ ମାତ୍ର ଅପରାଧ ହୃଦେ ନ ଧରିବେ ॥୩॥

---

ତାହାଦ୍ୱାରା ପଢ଼ିଟି ପଢ଼ାଇବାକୁ ଲାଗିଲା ॥୫॥ ଦୋହା :—ପତ୍ରିକାରେ ଲେଖାଥିଲା—"ଆରେ ମୂର୍ଖ ! କେବଳ କଥାରେ ହିଁ ମନକୁ ପ୍ରସନ୍ନ କରି ଆପଣା କୁଳକୁ ତୁ ଏପରି ନଷ୍ଟ ଭ୍ରଷ୍ଟ କର ନାହିଁ । ଶ୍ରୀରାମଙ୍କ ସହ ଶତ୍ରୁତା କରି ତୁ ବ୍ରହ୍ମା, ବିଷ୍ଣୁ ଓ ମହେଶଙ୍କ ଶରଣାପନ୍ନ ହେଲେ ମଧ୍ୟ ବଞ୍ଚି ପାରିବୁ ନାହିଁ ॥ ୫୬ (କ) ॥ ଅଭିମାନ ଛାଡ଼ି ନିଜ ସାନଭାଇ ବିଭୀଷଣ ପରି ପ୍ରଭୁଙ୍କ ଚରଣ-କମଳର ଭ୍ରମର ହୋଇଯାଆ, ଅଥବା ରେ ଦୁଷ୍ଟ ! ଶ୍ରୀରାମଙ୍କ ଶରାନଳରେ ପରିବାର ସହିତ ପତଙ୍ଗ ହୋଇଯାଆ । ( ଏହି ଦୁଇଟି କଥାରୁ ତୋତେ ଯାହା ଭଲ ଲାଗେ, ତାହା ହିଁ କର । )" ॥ ୫୬ (ଖ) ॥ ଚୌପାଇ :—ପତ୍ରର ବିଷୟ-ବସ୍ତୁ ଶୁଣିବା ମାତ୍ରେ ରାବଣ ମନରେ ଭୟ-ଭୀତ ହୋଇଗଲା । କିନ୍ତୁ ମୁହଁରେ ( ଉପରେ ଉପରେ ) ହସି ସମସ୍ତଙ୍କୁ ଶୁଣାଇ କହିବାକୁ ଲାଗିଲା—"ପୃଥିବୀ ଉପରେ ପଡ଼ିଥିବା କୌଣସି ବ୍ୟକ୍ତି ହାତରେ ଆକାଶକୁ ଧରିବାକୁ ଯେପରି ଚେଷ୍ଟା କରେ, ସେହିପରି ଏହି ଲଘୁ ତପସ୍ୱୀ ଲକ୍ଷ୍ମଣ ବାକ୍ ବିଳାସ କରୁଅଛି (ଫୁଟାଣି

ଜନକସୁତା ରଘୁନାଥହି ଦୀଜେ । ଏତନା କହା ମୋର ପ୍ରଭୁ କୀଜେ ॥
ଜବ ତେହିଁ କହା ଦେନ ବୈଦେହୀ । ଚରନ ପ୍ରହାର କୀହ୍ନ ସଠ ତେହୀ ॥୪॥
ନାଇ ଚରନ ସିରୁ ଚଲା ସୋ ତହାଁ । କୃପାସିନ୍ଧୁ ରଘୁନାୟକ ଜହାଁ ॥
କରି ପ୍ରନାମୁ ନିଜ କଥା ସୁନାଈ । ରାମ କୃପାଁ ଆପନି ଗତି ପାଈ ॥୫॥
ରିଷି ଅଗସ୍ତି କୀଁ ସାପ ଭବାନୀ । ରାଛସ ଭୟଉ ରହା ମୁନି ଗ୍ୟାନୀ ॥
ବନ୍ଦି ରାମ ପଦ ବାରହିଁ ବାରା । ମୁନି ନିଜ ଆଶ୍ରମ କହୁଁ ପଗୁ ଧାରା ॥୬॥

ବିନୟ ନ ମାନତ ଜଲଧି ଜଡ଼ ଗଏ ତୀନି ଦିନ ବୀତି ।
ବୋଲେ ରାମ ସକୋପ ତବ ଭୟ ବିନୁ ହୋଇ ନ ପ୍ରୀତି ॥୫୭॥

---

ଜନକ-ତନୟା ରଘୁନାଥଙ୍କୁ ଦିଅନ୍ତୁ । ଏତିକି କହିବା ପ୍ରଭୁ ! ମୋହର କରନ୍ତୁ ॥
ଯେବେ ସେ ବଇଦେହୀଙ୍କୁ ଦେବାକୁ କହିଲା । ଚରଣ ପ୍ରହାର ଶଠ ତାହାକୁ କରିଲା ॥୪॥
ଚରଣେ ଶିର ନୁଆଁଇ କଲା ସେ ପ୍ରସ୍ଥାନ । କରୁଣା-ସାଗର ରଘୁରାଜ ସନ୍ନିଧାନ ॥
ପ୍ରଣାମ କରି ଆପଣା ବୃତ୍ତାନ୍ତ ଶୁଣାଇ । ରାମଙ୍କ କୃପାରେ ଗଲା ନିଜ ଗତି ପାଇ ॥୫॥
ଋଷି ଅଗସ୍ତିଙ୍କ ଅଭିଶାପରୁ, ଭବାନୀ । ରାକ୍ଷସ ସେ ହୋଇଥିଲା, ଥିଲା ମୁନି ଜ୍ଞାନୀ ॥
ବନ୍ଦି ବାରମ୍ବାର ରଘୁନାଥଙ୍କ ପୟର । ନିଜ ଆଶ୍ରମକୁ ଚାଲିଗଲା ଅନନ୍ତର ॥୬॥

ନ ଶୁଣେ ବିନୟ ଜଡ଼ ଜଳରାଶି କଟିଗଲା ତିନି ଦିନ ।
ଭୟ ବିନା ପ୍ରୀତି ନ ହୁଏ, ବୋଲନ୍ତି ଶ୍ରୀରାମ ରୋଷ ହୋଇଣ ॥୫୭॥

---

ମାରୁଅଛୁ) ।" ॥ ୧ ॥ ଦୂତ ଶୁକ କହିଲା—"ହେ ନାଥ ! ଅଭିମାନୀ ସ୍ୱଭାବ ତ୍ୟାଗ କରି ଏହି ପତ୍ରରେ ଲିଖିତ ସମସ୍ତ ବିଷୟକୁ ସତ୍ୟ ବୋଲି ମନେ କରନ୍ତୁ । କ୍ରୋଧ ତ୍ୟାଗ କରି, ମୋ ବଚନ ଶୁଣନ୍ତୁ । "ହେ ନାଥ ! ଶ୍ରୀରାମଙ୍କ ସହିତ ଶତ୍ରୁତା ତ୍ୟାଗ କରନ୍ତୁ ॥ ୨ ॥ ଶ୍ରୀ ରଘୁବୀର ସମସ୍ତ ଲୋକର ସ୍ୱାମୀ । ତଥାପି ତାଙ୍କ ସ୍ୱଭାବ ଅତି କୋମଳ । ଆପଣ ତାଙ୍କ ସହିତ ମିଳିବା ମାତ୍ରେ ପ୍ରଭୁ ଆପଣଙ୍କ ଉପରେ କୃପା କରିବେ ଏବଂ ଆପଣଙ୍କର ଗୋଟିଏ ବୋଲି ଅପରାଧ ସେ ହୃଦୟରେ ଧରିବେ ନାହିଁ ॥ ୩ ॥ ଶ୍ରୀ ରଘୁନାଥଙ୍କୁ ଜାନକୀଙ୍କୁ ସମର୍ପଣ କରି ଦିଅନ୍ତୁ । ହେ ପ୍ରଭୋ ! ମୋର ଏତିକି କହିବା କଥା କରନ୍ତୁ ।" ଯେତେବେଳେ ସେହି ଦୂତ ଜାନକୀଙ୍କୁ ସମର୍ପଣ କରିବା କଥା କହିଲା, ଦୁଷ୍ଟ ରାବଣ ତାହାକୁ ଗୋଇଠା ମାରିଲା ॥ ୪ ॥ ସେ ମଧ୍ୟ ବିଭୀଷଣ ପରି ରାବଣ ଚରଣରେ ଶିର ନୁଆଁଇ କୃପାସାଗର ଶ୍ରୀ ରଘୁନାଥ ଥିବା ସ୍ଥାନକୁ ଗଲା । ପ୍ରଣାମ କରି ସେ ପ୍ରଭୁଙ୍କୁ ନିଜ କଥା ଶୁଣାଇଲା ଏବଂ ଶ୍ରୀରାମଙ୍କ କୃପା ହେତୁ ଆପଣାର ଗତି ( ମୁନିର ସ୍ୱରୂପ ) ପାଇଲା ॥ ୫ ॥ ଶିବ କହନ୍ତି—ହେ ଭବାନି ! ସେ ପୂର୍ବେ ଜ୍ଞାନୀ ମୁନି ଥିଲା, ଅଗସ୍ତ୍ୟ ମୁନିଙ୍କ ଅଭିଶାପ ହେତୁ ରାକ୍ଷସ ହୋଇ ପଡ଼ିଥିଲା । ବାରମ୍ବାର ଶ୍ରୀରାମଙ୍କ ଚରଣ ବନ୍ଦନା କରି ସେହି ମୁନି ଆପଣା ଆଶ୍ରମକୁ ଚାଲିଗଲା ॥ ୬ ॥ ଦୋହା :—ଏଣେ ତିନି ଦିନ ବିତିଗଲାଣି । କିନ୍ତୁ ଜଡ଼ ସମୁଦ୍ର ଭଗବାନଙ୍କ ପ୍ରାର୍ଥନା ଶୁଣି ନ ଥାଏ । ତେଣୁ ଶ୍ରୀରାମ

ଲଛିମନ ବାନ ସରାସନ ଆନୂ । ସୋଷୌଁ ବାରିଧି ବିସିଖ କୃସାନୂ ॥
ସଠ ସନ ବିନୟ କୁଟିଲ ସନ ପ୍ରୀତି । ସହଜ କୃପନ ସନ ସୁନ୍ଦର ନୀତି ॥୧॥
ମମତାରତ ସନ ଗ୍ୟାନ କହାନୀ । ଅତି ଲୋଭୀ ସନ ବିରତି ବଖାନୀ ॥
କ୍ରୋଧିହି ସମ କାମିହି ହରି କଥା । ଊସର ବୀଜ ବଏଁ ଫଲ ଜଥା ॥୨॥
ଅସ କହି ରଘୁପତି ଚାପ ଚଢ଼ାୱା । ୟହ ମତ ଲଛିମନ କେ ମନ ଭାୱା ॥
ସନ୍ଧାନେଉ ପ୍ରଭୁ ବିସିଖ କରାଲା । ଉଠୀ ଉଦଧି ଉର ଅନ୍ତର ଜ୍ୱାଲା ॥୩॥
ମକର ଉରଗ ଝଷ ଗନ ଅକୁଲାନେ । ଜରତ ଜନ୍ତୁ ଜଲନିଧି ଜବ ଜାନେ ॥
କନକ ଥାର ଭରି ମନିଗନ ନାନା । ବିପ୍ର ରୂପ ଆୟଉ ତଜି ମ.ନା ॥୪॥

କାଟେହିଁ ପଇ କଦରୀ ଫରଇ କୋଟି ଜତନ କୋଉ ସୀଁଚ ।
ବିନୟ ନ ମାନ ଖଗେସ ସୁନୁ ଡାଟେହିଁ ପଇ ନୱ ନୀଚ ॥୫୮॥

---

ଆଣ ବାଣ ଶରାସନ, ଲକ୍ଷ୍ମଣ, ମୋହର । କୃଶାନୁ ଶାୟକେ ଏବେ ଶୋଷିବି ସାଗର ॥
ଶଠ ଆଗେ ବିନୟ କୁଟିଳ ଆଗେ ପ୍ରୀତି । ସହଜ କୃପଣ ଆଗେ ମନୋହର ନୀତି ॥୧॥
ମମତା-ରତ ସମ୍ମୁଖେ ଜ୍ଞାନର କଥନ । ଅତି ଲୋଭୀ ସମ୍ମୁଖରେ ବୈରାଗ୍ୟ ବର୍ଣ୍ଣନ ॥
କ୍ରୋଧୀ ଆଗେ ଶମ, କାମୀ ଆଗେ ହରିକଥା । ଊଷରେ ବୀଜ ବୋଇଲେ ଫଳ ହୁଏ ଯଥା ॥୨॥
ଏହା କହି ଚାପେ ଗୁଣ ଶ୍ରୀରାମ ବାନ୍ଧିଲେ । ଏ ମତେ ଲକ୍ଷ୍ମଣ ମନେ ପ୍ରସନ୍ନ ହୋଇଲେ ॥
ସନ୍ଧାନ କରନ୍ତେ ପ୍ରଭୁ ବିଶିଖ କରାଳ । ଉଠିଲା ଉଦଧି ଅଭ୍ୟନ୍ତରୁ ଜ୍ୱାଳାମାଳ ॥୩॥
ବିକଳ ହୋଇଲେ ଝଷ ଉରଗମକର । ଜଳନ୍ତେ ଜନ୍ତୁ ଜାଣିଲା ତହୁଁ ରତ୍ନାକର ॥
କନକ ଥାଳରେ ନାନା ମଣି ପୂର୍ଣ୍ଣ କରି । ବିପ୍ର ରୂପେ ଆଗମିଲା ମାନ ପରହରି ॥୪॥

କାଟିଲେ କଦଳୀ ଫଳଇ, ଅଥଚ କୋଟି ଯତ୍ନ କରି ସିଞ୍ଚ ।
ବିନୟ ନ ମାନେ ଖଗପତି ! ଶୁଣ, ଭୟେ ନତ ହୁଏ ନୀଚ ॥୫୮॥

---

କ୍ରୋଧରେ କହିଲେ, "ବିନା ଭୟରେ ପ୍ରୀତି ହୁଏ ନାହିଁ ॥ ୫୭ ॥ ଚୌପାଈ — ହେ ଲକ୍ଷଣ ! ଧନୁଶର ଆଣ, ମୁଁ ଅଗ୍ନି-ଶରରେ ସମୁଦ୍ରକୁ ଶୁଖାଇ ଦେବି । ମୂର୍ଖ ପ୍ରତି ବିନୟ ପ୍ରକାଶ କରିବା, କୁଟିଳ ସହିତ ପ୍ରୀତି କରିବା, ସ୍ୱଭାବତଃ କୃପଣକୁ ସୁନ୍ଦର ନୀତି-ଉପଦେଶ ଦେବା, ମମତାବଦ୍ଧ ମନୁଷ୍ୟ ଆଗରେ ଜ୍ଞାନ ବଚନ ବୋଲିବା, ଅତି ଲୋଭୀ ଆଗରେ ବୈରାଗ୍ୟ ବର୍ଣ୍ଣନ କରିବା, କ୍ରୋଧୀ ନିକଟରେ ଶାନ୍ତିର କଥା କହିବା ଏବଂ କାମୁକ ଆଗରେ ଭଗବାନଙ୍କ କଥା ବଖାନ କରିବା ଊଷର ଭୂମିରେ ବୀଜ ବପନ କରିବା ପରି ନିଷ୍ଫଳ ହୋଇଥାଏ" ॥ ୧-୨ ॥ ଏହିପରି କହି ଶ୍ରୀ ରଘୁନାଥ ଧନୁରେ ଶର ଯୋଖିଲେ । ପ୍ରଭୁଙ୍କର ଏହି ମତ ଲକ୍ଷ୍ମଣଙ୍କ ମନକୁ ଅତି ରୁଚିକର ବୋଧ ହେଲା । ପ୍ରଭୁ ଭୟାନକ ଅଗ୍ନିବାଣ ଯୋଖିବା ମାତ୍ରେ ସମୁଦ୍ରର ହୃଦୟ ମଧ୍ୟରେ ଅଗ୍ନି ଜ୍ୱାଳା ଉଠିଲା ॥ ୩ ॥ ମକର, ସର୍ପ ଓ ମତ୍ସ୍ୟମାନେ ବ୍ୟାକୁଳ ହୋଇ ଉଠିଲେ । ଯେତେବେଳେ ସମୁଦ୍ର ଜୀବ ସମସ୍ତେ ଜଳୁଛନ୍ତି ବୋଲି ଜାଣିଲା, ସେ ସୁନା ଥାଳରେ ଅନେକ ମଣି ପୂର୍ଣ୍ଣ କରି

ସଭୟ ସିନ୍ଧୁ ଗହି ପଦ ପ୍ରଭୁ କେରେ । ଛମହୁ ନାଥ ସବ ଅବଗୁନ ମେରେ ॥
ଗଗନ ସମୀର ଅନଲ ଜଲ ଧରନୀ । ଇନ୍ହ କଇ ନାଥ ସହଜ ଜଡ଼ କରନୀ ॥୧॥
ତବ ପ୍ରେରିତ ମାୟାଁ ଉପଜାଏ । ସୃଷ୍ଟି ହେତୁ ସବ ଗ୍ରନ୍ଥନି ଗାଏ ॥
ପ୍ରଭୁ ଆୟସୁ ଜେହି କହଁ ଜସ ଅହଈ । ସୋ ତେହି ଭାଁତି ରହେଁ ସୁଖ ଲହଈ ॥୨॥
ପ୍ରଭୁ ଭଲ କୀନ୍ହ ମୋହି ସିଖ ଦୀନ୍ହୀ । ମରଜାଦା ପୁନି ତୁମ୍ହରୀ କୀନ୍ହୀ ॥
ଢୋଲ ଗଵାଁର ସୂଦ୍ର ପସୁ ନାରୀ । ସକଲ ତାଡ଼ନା କେ ଅଧିକାରୀ ॥୩॥
ପ୍ରଭୁ ପ୍ରତାପ ମୈଁ ଜାବ ସୁଖାଈ । ଉତରିହି କଟକୁ ନ ମୋରି ବଡ଼ାଈ ॥
ପ୍ରଭୁ ଅଗ୍ୟା ଅପେଲ ଶ୍ରୁତି ଗାଈ । କରୌଁ ସୋ ବେଗି ଜୋ ତୁମ୍ହହି ସୋହାଈ ॥୪॥

ସୁନତ ବିନୀତ ବଚନ ଅତି କହ କୃପାଲ ମୁସୁକାଇ ।
ଜେହି ବିଧି ଉତରୈ କପି କଟକୁ ତାତ ସୋ କହହୁ ଉପାଇ ॥୫୯॥

---

ସଭୟେ ଜଳଧି ଧରି ପ୍ରଭୁଙ୍କ ପୟର । କ୍ଷମ ନାଥ ' ଅବଗୁଣ ସକଳ ମୋହର ॥
ଆକାଶ ବାୟୁ ଅନଳ ଜଳ ବସୁନ୍ଧରା । ନାଥ ' ସ୍ୱାଭାବିକ ଜଡ଼ କର୍ମ ଏହାଙ୍କର ॥୧॥
ତୁମ୍ଭ ପ୍ରେରଣାରେ ମାୟା କରିଛି ଉତ୍ପନ୍ନ । ସୃଷ୍ଟି ହେତୁ ସବୁ ଗ୍ରନ୍ଥ କରନ୍ତି ବର୍ଣ୍ଣନ ॥
ପ୍ରଭୁଙ୍କ ଆଜ୍ଞା ଯା ପ୍ରତି ଯେମନ୍ତ ଅଟଇ । ସେ ସେହି ପ୍ରକାରେ ରହି ଆନନ୍ଦ ଲଭଇ ॥୨॥
ପ୍ରଭୁ ମୋତେ ଶିକ୍ଷା ଦେଇ ଉତ୍ତମ କରିଛ । ମର୍ଯ୍ୟାଦା ସକଳ ନାଥ ' ତୁମ୍ଭେ ବିରଚିଛ ॥
ଢୋଲ ଅବାଧ ଆବର ଶୂଦ୍ର ପଶୁ ନାରୀ । ଏ ସର୍ବେ ଅଟନ୍ତି ଜାଣ ତାଡ଼ନାଧିକାରୀ ॥୩॥
ପ୍ରଭୁଙ୍କ ପ୍ରତାପେ ଶୁଖିଯିବି ମୁଁ ସତ୍ୱର । ପାରି ହେବେ ଠାଟ, ଯଶ ନ ହେବ ମୋହର ॥
ପ୍ରଭୁଙ୍କ ଆଜ୍ଞା ଅଲଂଘ୍ୟ, ଶ୍ରୁତି ବଖାଣଇ । କରି ତାହା, ଯାହା ଭଲ ତୁମ୍ଭଙ୍କୁ ଲାଗଇ ॥୪॥

ବିନୀତ ବଚନ ଶୁଣନ୍ତେ ହସିଣ ଭାଷିଲେ କରୁଣାକର ।
ମରକଟ ଠାଟ ପାରି ହେବେ ଯେଉଁରେ ତାତ ! ସେ ଯତନ କର ॥୫୯॥

---

ଅଭିମାନ ଛାଡ଼ି ବ୍ରାହ୍ମଣ ରୂପରେ ଆସିଲା ॥ ୪ ॥ ଦୋହା :—କାକ ଭୁଶୁଣ୍ଡି କହନ୍ତି— ହେ ଗରୁଡ଼ ! ଶୁଣନ୍ତୁ, କେହି କୋଟି କୋଟି ଉପାୟ କରି ଜଳ ସିଞ୍ଚୁ ପଛକେ, କିନ୍ତୁ କଦଳୀ ଗଛକୁ ତ କାଟିବା ଯୋଗେ ହିଁ ତାହା ଫଳେ । ନୀଚ ବ୍ୟକ୍ତିକୁ ବିନୟ ଯୋଗେ ମନାଇ ହୁଏ ନାହିଁ । ସେ ଧମକ ଯୋଗେ ହିଁ ନମ୍ର ହୁଏ ଏବଂ ବାଟକୁ ଆସେ ॥ ୫୮ ॥ ଚୌପାଇ :—ସମୁଦ୍ର ଭୟଭୀତ ହୋଇ ପ୍ରଭୁଙ୍କ ଚରଣ ଧରି କହିଲା, "ହେ ନାଥ ! ମୋର ସମସ୍ତ ଅବଗୁଣ (ଦୋଷ) କ୍ଷମା କରନ୍ତୁ । ହେ ନାଥ ! ଆକାଶ, ବାୟୁ, ଅଗ୍ନି, ଜଳ ଓ ପୃଥିବୀ—ଏ ସମସ୍ତଙ୍କ କାର୍ଯ୍ୟ ସ୍ୱଭାବତଃ ଜଡ଼ ॥ ୧ ॥ ଆପଣଙ୍କ ପ୍ରେରଣାରେ ମାୟା ଏମାନଙ୍କୁ ସୃଷ୍ଟି ନିମନ୍ତେ ଉତ୍ପନ୍ନ କରିଛି । ସମସ୍ତ ଗ୍ରନ୍ଥ ଏହି ବିଷୟ ଗାଇଛନ୍ତି । ଯାହା ନିମନ୍ତେ ସ୍ୱାମୀଙ୍କର ଯେପରି ଆଜ୍ଞା, ସେ ସେହି ପ୍ରକାରେ ରହିବାରେ ସୁଖ ପାଏ ॥ ୨ ॥ ପ୍ରଭୁ ମୋତେ ଶିକ୍ଷା ( ଦଣ୍ଡ ) ଦେଇ ଭଲ କଲେ । କିନ୍ତୁ ମର୍ଯ୍ୟାଦା (ଜୀବଙ୍କ ସ୍ୱଭାବ) ମଧ୍ୟ ଆପଣଙ୍କ ଦ୍ୱାରା ହିଁ ସୃଷ୍ଟ । ଢୋଲ, ଗୁଆଁର (ମୂର୍ଖ), ଶୂଦ୍ର, ପଶୁ ଓ

ନାଥ ନୀଲ ନଲ କପି ଦ୍ୱୌ ଭାଈ । ଲରିକାଈଁ ରିଷି ଆସିଷ ପାଈ ॥
ତିନ୍ହ କେଁ ପରସ କିଏଁ ଗିରି ଭାରେ । ତରିହହିଁ ଜଲଧି ପ୍ରତାପ ତୁମ୍ହାରେ ॥୧॥
ମୈଁ ପୁନି ଉର ଧରି ପ୍ରଭୁ ପ୍ରଭୁତାଈ । କରିହଉଁ ବଲ ଅନୁମାନ ସହାଈ ॥
ଏହି ବିଧି ନାଥ ପୟୋଧି ବଁଧାଇଅ । ଜେହିଁ ୟହ ସୁଜସୁ ଲୋକ ତିହୁଁ ଗାଇଅ ॥୨॥
ଏହିଁ ସର ମମ ଉତ୍ତର ତଟ ବାସୀ । ହତହୁ ନାଥ ଖଲ ନର ଅଘ ରାସୀ ॥
ସୁନି କୃପାଲ ସାଗର ମନ ପୀରା । ତୁରତହିଁ ହରୀ ରାମ ରନଧୀରା ॥୩॥
ଦେଖି ରାମ ବଲ ପୌରୁଷ ଭାରୀ । ହରଷି ପୟୋନିଧି ଭୟଉ ସୁଖାରୀ ॥
ସକଲ ଚରିତ କହି ପ୍ରଭୁହି ସୁନାୱା । ଚରନ ବନ୍ଦି ପାଥୋଧି ସିଧାୱା ॥୪॥

---

ଶୁଣ ନାଥ ! ନଲ ନୀଲ କପି ଦୁଇ ଭାଇ । ବାଲ୍ୟକାଳେ ଥିଲେ ଋଷି ଆଶୀର୍ବାଦ ପାଇ ॥
ତାହାଙ୍କ କର ସ୍ପର୍ଶରେ ଭାରୀ ଗିରିବର । ଭାସିବେ ଜଳଧି ମଧ୍ୟେ ପ୍ରତାପେ ତୁମ୍ଭର ॥୧॥
ମୁଁ ପୁଣି ହୃଦେ ପ୍ରଭୁଙ୍କ ପ୍ରତାପ ଧରିବି । ବଳ ଅନୁମାନେ କିଛି ସାହାଯ୍ୟ କରିବି ॥
ଏହି ଭାବେ ନାଥ କର ପୟୋଧି ବନ୍ଧନ । ଗାଇବେ ତିନି ଲୋକେ ଏହି ସୁଯଶ ଯେସନ ॥୨॥
ଏ ଶରେ ମୋର ଉତ୍ତରତଟସ୍ଥ ନିବାସୀ । ବିନାଶନ୍ତୁ ନାଥ ! ଖଳ ନର, ପାପରାଶି ॥
ଶୁଣି ଦୟାନିଧି ମନସ୍ତାପ ଜଳଧିର । ତ୍ୱରିତ ହରଣ କଲେ ରାମ ରଣଧୀର ॥୩॥
ବିଲୋକି ରାମଙ୍କ ବଳ ପୌରୁଷ ଅପାର । ହରଷେ ସୁଖୀ ହୋଇଲା ତହୁଁ ଅକୂପାର ॥
ସବୁ ଚରିତ ପ୍ରଭୁଙ୍କୁ କହି ଶୁଣାଇଲା । ଚରଣ ବନ୍ଦନ କରି ପୟୋଧି ଗମିଲା ॥୪॥

---

ନାରୀ— ଏମାନେ ସମସ୍ତେ ତାଡ଼ନା (ଦଣ୍ଡ)ର ଅଧିକାରୀ ॥୩॥ ପ୍ରଭୁଙ୍କ ପ୍ରତାପରେ ମୁଁ ଶୁଖିଯିବି ଏବଂ ସେନା ଆର ପାରକୁ ପାରି ହୋଇଯିବେ । ଏଥିରେ ମୋର ବଡ଼ାଇ ରହିବ ନାହିଁ । ପ୍ରଭୁଙ୍କ ଆଜ୍ଞା ଅନୁଲ୍ଲଙ୍ଘନୀୟ ବୋଲି ବେଦମାନେ ଗାଆନ୍ତି । ଏବେ ଆପଣଙ୍କୁ ଯାହା ରୁଚିକର, ମୁଁ ସେଇଆ କରିବି ।" ॥୦॥ ଦୋହା :— ସମୁଦ୍ରର ଅତିଶୟ ବିନୀତ ବଚନ ଶୁଣି କୃପାଳୁ ଶ୍ରୀରାମଚନ୍ଦ୍ର ହସି କହିଲେ, "ହେ ତାତ ! ଯେପରି ଭାବରେ ବାନର ସେନା ପାରି ହୋଇଯିବେ, ସେହି ଉପାୟ କହି ଦିଅ ।" ॥୫୯॥ ଚୌପାଈ :—ସମୁଦ୍ର କହିଲା, "ହେ ନାଥ ! ନୀଲ ଓ ନଳ ଦୁଇ ବାନର ଭାଇ । ସେମାନେ ବାଲ୍ୟକାଳରେ ଋଷିଙ୍କଠାରୁ ଆଶୀର୍ବାଦ ପାଇଥିଲେ । ଆପଣଙ୍କ ପ୍ରତାପରେ ସେମାନଙ୍କ ସ୍ପର୍ଶ ମାତ୍ରଦ୍ୱାରା ଭାରି ପର୍ବତ ଗୁଡ଼ା ସମୁଦ୍ର ଉପରେ ଭାସିବେ ॥୧॥ ମୁଁ ମଧ୍ୟ ପ୍ରଭୁଙ୍କ ପ୍ରଭୁତ୍ୱ ହୃଦୟରେ ଧାରଣ କରି ନିଜ ବଳ ଅନୁସାରେ ମୋ ଦ୍ୱାରା ଯେତେ ଦୂର ସମ୍ଭବ, ସାହାଯ୍ୟ କରିବି । ହେ ନାଥ ! ଏହି ରୂପେ ସମୁଦ୍ରକୁ ବନ୍ଧାନ୍ତୁ, ଯାହା ଫଳରେ ତିନି ଲୋକରେ ଆପଣଙ୍କର ସୁଯଶ ଗାନ ହୋଇ ପାରିବ ॥୨॥ ଏହି ବାଣ ଯୋଗେ ମୋର ଉତ୍ତର ତଟରେ ବାସ କରୁଥିବା ପାପରାଶି ଦୁଷ୍ଟ, ନରମାନଙ୍କୁ ବଧ କରନ୍ତୁ ।" କୃପାଳୁ ଓ ରଣଧୀର ଶ୍ରୀରାମ ସମୁଦ୍ରର ମନର ପୀଡ଼ା ଶୁଣି ତୁରନ୍ତ ସେହି ପୀଡ଼ା ହରଣ କରିନେଲେ । ଅର୍ଥାତ୍ ବାଣ ଯୋଗେ ସେହି ଦୁଷ୍ଟମାନଙ୍କୁ ବଧ

ନିଜ ଭବନ ଗଵନେଉ ସିନ୍ଧୁ ଶ୍ରୀରଘୁପତିହି ୟହ ମତ ଭାୟଉ ॥
ୟହ ଚରିତ କଲିମଲ ହର ଜଥାମତି ଦାସ ତୁଲସୀ ଗାୟଉ ॥
ସୁଖ ଭବନ ସଂସୟ ସମନ ଦଵନ ବିଷାଦ ରଘୁପତି ଗୁନ ଗନା ॥
ତଜି ସକଲ ଆସ ଭରୋସ ଗାଵହି ସୁନହି ସଂତତ ସଠ ମନା ॥
ସକଲ ସୁମଙ୍ଗଲ ଦାୟକ ରଘୁନାୟକ ଗୁନ ଗାନ ।
ସାଦର ସୁନହିଁ ତେ ତରହିଁ ଭବ ସିନ୍ଧୁ ବିନା ଜଲଜାନ ॥୬୦॥

## ମାସପାରାୟଣ, ଚତୁର୍ବିଂଶ ବିଶ୍ରାମ

ଇତି ଶ୍ରୀମଦ୍ରାମଚରିତମାନସେ ସକଲକଲିକଲୁଷବିଧ୍ୱଂସନେ
ପଞ୍ଚମଃ ସୋପାନଃ ସମାପ୍ତଃ ।

---

ସିନ୍ଧୁ ସ୍ୱଭବନକୁ ଯାଆନ୍ତେ, ଶ୍ରୀରାମଙ୍କୁ ଏ ମତ ଉତ୍ତମ ଲାଗିଲା ।
କଳି-କଳୁଷ-ନାଶୀ ଏ ଚରିତ ତୁଳସୀ ଯେସନେ ସ୍ୱମତି ଗାଇଲା ।
ଦୁଃଖ ସଂଶୟ ବିନାଶନ, ସୁଖଭବନ ରାମଗୁଣ,
ତେଜି ସକଳ ଆଶା ସଂସାରର ଭରସା ସଦା ଗା' ଶୁଣ ମୂଢ ମନ ॥
ସଦା ସୁମଙ୍ଗଳ-ଦାୟକ ସକଳ ରଘୁପତି-ଗୁଣଗାନ ।
ଶୁଣେ ଯେ ସାଦର ଭବସିନ୍ଧୁ ପାର ହୁଏ, ବିନା ଜଳଯାନ ॥୬୦॥

× × × ×

ସୁମରି ପବନ-ସୁତ ହନୁମାନ ହୃଦେ ଧ୍ୟାୟି ପ୍ରଭୁ ପାଦ ।
ସୁନ୍ଦର ସୋପାନ ଦାସ ବଳରାମ କଲା ସାଧା ଅନୁବାଦ ॥
ଖୋଜି ହନୁମନ୍ତ, ସୀତାଙ୍କ ଯେମନ୍ତ ସନ୍ଦେଶ ଦେଲେ ରାମଙ୍କୁ ।
ତେମନ୍ତ ଏ ଗାନ ବିନମ୍ର ବେଦନ ଜଣାଇ ଦିଅ ନାଥଙ୍କୁ ॥

---

କରି ପକାଇଲେ ॥ ୩ ॥ ଶ୍ରୀରାମଙ୍କ ଖାଣ୍ଟି ବଳ ଓ ପୌରୁଷ ଦେଖି ସମୁଦ୍ର ହର୍ଷ ଓ ସୁଖ ଲାଭ କଲା । ସେ ସେହି ଦୁଷ୍ଟମାନଙ୍କ ସମସ୍ତ ଚରିତ ପ୍ରଭୁଙ୍କୁ କହି ଶୁଣାଇଲା । ତାପରେ ପ୍ରଭୁଙ୍କ ଚରଣ ବନ୍ଦନା କରି ସମୁଦ୍ର ଚାଲିଗଲା ॥ ୪ ॥ ଛନ୍ଦ :—ସମୁଦ୍ର ନିଜ ଘରକୁ ଚାଲିଗଲା । ଶ୍ରୀ ରଘୁନାଥଙ୍କୁ ସମୁଦ୍ରର ପରାମର୍ଶ ରୁଚିକର ବୋଧ ହେଲା । ଏହି ଚରିତ କଳିଯୁଗର ପାପସମୂହର ହରଣକାରୀ । ତୁଳସୀ ଦାସ ନିଜ ବୁଦ୍ଧି ଅନୁସାରେ ଏହାକୁ ଗାଇଅଛି । ଶ୍ରୀ ରଘୁନାଥଙ୍କ ଗୁଣାବଳୀ ସୁଖର ସଦନ, ସନ୍ଦେହର ନାଶକାରୀ ଏବଂ ବିଷାଦର ଦମନକାରୀ । ଆରେ ମୂର୍ଖ ମନ ! ତୁ ସଂସାରର ସମସ୍ତ ଆଶା ଭରସା ତ୍ୟାଗ କରି ନିରନ୍ତର ଏ ସବୁକୁ ଗାନ ଏବଂ ଶ୍ରବଣ କର । ଦୋହା :—ଶ୍ରୀ ରଘୁନାଥଙ୍କ

ଶରଣ-ବତ୍ସଳ ଭକ୍ତ-ପ୍ରତିପାଳ ଦୟାଳୁ ଦୀନ-ବିଶ୍ରାମ ।
ଏ ଅଧମ ଜନେ ଆପଣା ଶରଣେ ନେବେ ଦୟା କରି ରାମ ॥
ସୁନ୍ଦର ସୁନ୍ଦର ସୋପାନ ଯେ ନର ସ୍ନେହେ ପଢ଼ିବେ ଶୁଣିବେ ।
କହେ ବଳରାମ, ତାର ମନସ୍କାମ ମାରୁତି ପୂର୍ଣ୍ଣ କରିବେ ॥

ଇତି ଶ୍ରୀରାମଚରିତ ମାନସେ ସକଳ କଳି କଲୁଷ ବିଧ୍ୱଂସନେ
ପଞ୍ଚମ ସୋପାନ (ସୁନ୍ଦରକାଣ୍ଡ) ସମାପ୍ତ ।

---

ଗୁଣଗାନ ସଂପୂର୍ଣ୍ଣ ସୁମଙ୍ଗଳର ଦାତା । ଯେଉଁମାନେ ଏହାକୁ ଆଦରରେ ଶୁଣିବେ, ସେମାନେ ତରି ବା ଅନ୍ୟ କୌଣସି ଜଳଯାନ ବିନା ଭବ-ସାଗରରୁ ତରି-ଯିବେ ॥ ୬୦ ॥

କଳି ଯୁଗର ସମସ୍ତ ପାପର ବିଧ୍ୱଂସନକାରୀ ଶ୍ରୀରାମଚରିତମାନସର
ପଞ୍ଚମ ସୋପାନ (ସୁନ୍ଦରକାଣ୍ଡ) ସମାପ୍ତ ।

---

ଓଁ

ଶ୍ରୀ ଗଣେଶାୟ ନମଃ

ଶ୍ରୀ ଜାନକୀବଲ୍ଲଭୋ ବିଜୟତେ

ଗୋସ୍ୱାମୀ ତୁଳସୀଦାସକୃତ

# ଶ୍ରୀରାମଚରିତ ମାନସ

## ଷଷ୍ଠ ସୋପାନ

## ଲଙ୍କା କାଣ୍ଡ

ରାମଂ କାମାରିସେବ୍ୟଂ ଭବଭୟହରଣଂ କାଲମତ୍ତେଭସିଂହଂ ।
ଯୋଗୀନ୍ଦ୍ରଂ ଜ୍ଞାନଗମ୍ୟଂ ଗୁଣନିଧିମଜିତଂ ନିର୍ଗୁଣଂ ନିର୍ବିକାରମ୍ ॥
ମାୟାତୀତଂ ସୁରେଶଂ ଖଲବଧନିରତଂ ବ୍ରହ୍ମବୃନ୍ଦୈକଦେବଂ ।
ବନ୍ଦେ କନ୍ଦାବଦାତଂ ସରସିଜନୟନଂ ଦେବମୁର୍ବୀଶରୂପମ୍ ॥୧॥

ଶଙ୍ଖେନ୍ଦ୍ୱାଭମତୀବସୁନ୍ଦରତନୁଂ ଶାର୍ଦ୍ଦୂଲଚର୍ମାମ୍ବରଂ ।
କାଲବ୍ୟାଲକରାଲଭୂଷଣଧରଂ ଗଙ୍ଗାଶଶାଙ୍କପ୍ରିୟମ୍ ॥
କାଶୀଶଂ କଲିକଲ୍ମଷୌଘଶମନଂ କଲ୍ୟାଣକଲ୍ପଦ୍ରୁମଂ ।
ନୌମୀଡ୍ୟଂ ଗିରିଜାପତିଂ ଗୁଣନିଧିଂ କନ୍ଦର୍ପହଂ ଶଙ୍କରମ୍ ॥୨॥

---

କାମାରି ସେବ୍ୟ ରାମ ଭବ-ଭୟ-ହରଣ କାଲ-ମତ୍ତ-କରୀ-କେଶରୀ ।
ଯୋଗୀନ୍ଦ୍ର ଜ୍ଞାନ-ଗମ୍ୟ ନିର୍ବିକାର ନିର୍ଗୁଣ ଅଜିତ ଗୁଣନିଧି ହରି ।
ବ୍ରାହ୍ମଣ୍ୟ ଦେବ ମାୟାତୀତ, ସୁରେଶ ଖଳ-ବଧରତ,
ବନ୍ଦେ ନିର୍ମଳ ଘନ ସରସିଜ-ନୟନ ଭୂପତି-ରୂପ ଭଗବନ୍ତ ॥୧॥

ଶଙ୍ଖ ଇନ୍ଦୁ ସମ ତନୁ ଅତି ରମ୍ୟ କାଶୀଶ ବ୍ୟାଘ୍ର ଚର୍ମାମ୍ବର ।
କାଲ-ସର୍ପ ଶିର-ବିଭୂଷଣ-ଧର ଗଙ୍ଗା-ଶଶୀ-ପ୍ରିୟ ଶଙ୍କର ।
ନମସ୍ତେ, କଳି-ମଳ-ପାପ-ଶମନ,
କାମାରି, କଲ୍ୟାଣ-କଳ୍ପ-ଦ୍ରୁମ, ଗୁଣ-ନିଧାନ ଗିରିଜା-ରମଣ ॥୨॥

---

କାମାରି ଶିବଙ୍କ ସେବ୍ୟ, ଭବଭୟ-ହରଣକାରୀ, କାଳରୂପୀ ମତ୍ତ ହସ୍ତୀ ନିମନ୍ତେ
ସିଂହ, ଯୋଗୀନ୍ଦ୍ର, ଜ୍ଞାନଦ୍ୱାରା ଜ୍ଞେୟ, ଗୁଣନିଧି, ଅଜିତ, ନିର୍ଗୁଣ, ନିର୍ବିକାର,

ଯୋ ଦଦାତି ସତାଂ ଶମ୍ଭୁଃ କୈବଲ୍ୟମପି ଦୁର୍ଲଭମ୍ ।
ଖଳାନାଂ ଦଣ୍ଡକୃଦ୍ୟୋଽସୌ ଶଂକରଃ ଶଂ ତନୋତୁ ମେ ॥୩॥

ଲବ ନିମେଷ ପରମାନୁ ଜୁଗ ବରଷ କଲପ ସର ଚଣ୍ଡ ।
ଭଜସି ନ ମନ ତେହି ରାମ କୋ କାଲୁ ଜାସୁ କୋଦଣ୍ଡ ॥

ସିଂଧୁ ବଚନ ସୁନି ରାମ ସଚିବ ବୋଲି ପ୍ରଭୁ ଅସ କହେଉ ।
ଅବ ବିଲଂବୁ କେହି କାମ କରହୁ ସେତୁ ଉତରୈ କଟକୁ ॥
ସୁନହୁ ଭାନୁକୁଲକେତୁ ଜାମବନ୍ତ କର ଜୋରି କହ ।
ନାଥ ନାମ ତବ ସେତୁ ନର ଚଢ଼ି ଭବସାଗର ତରହିଁ ॥

---

ଯେ ଶିବ ଦିଅନ୍ତି ସନ୍ଥଙ୍କୁ କୈବଲ୍ୟ-ଦୁର୍ଲ୍ଲଭ ଗତି ।
କଲ୍ୟାଣ କରନ୍ତୁ ସେ ଶଙ୍କର ଯେହୁ ଖଳେ ଦଣ୍ଡନ୍ତି ॥୩॥

ଲବ ଯେ ନିମେଷ ପରମାଣୁ ବର୍ଷ ଯୁଗ କଳ୍ପ ଶର ଚଣ୍ଡ ।
ସେ ରାମଙ୍କୁ ମନ ନ କରୁ ଭଜନ, କାଳ ଯାହାଙ୍କ କୋଦଣ୍ଡ ॥

ସିନ୍ଧୁ ବାଣୀ ଶୁଣି ମନ୍ତ୍ରୀଙ୍କୁ ଡକାଇ ଭାଷିଲେ ଏସନ ରାମ ।
ସେତୁ ରଚ, ଏବେ ସେନା ହେବେ ପାରି, ଆଉ ବିଳମ୍ବେ କି କାମ ॥
କହେ ଜାମ୍ବବନ୍ତ ଯୋଡ଼ି ଯୁଗକର, ଶୁଣ ଭାନୁକୁଳ-କେତୁ ।
ତରି ଭବସିନ୍ଧୁ ପାରି ହୋନ୍ତି ନର ନାଥ ! ତୁମ ନାମ-ସେତୁ ॥

---

ମାୟାତୀତ, ସୁରେଶ, ଖଳବଧ-ତତ୍ପର, ବ୍ରାହ୍ମଣବୃନ୍ଦ ଯାହାଙ୍କର ଏକମାତ୍ର ଦେବତା, ଜଳଦ-ନିର୍ମଳ (ମେଘଶ୍ୟାମ), କମଳନୟନ ଏବଂ ପୃଥିବୀପତି ରୂପରେ ଅବତୀର୍ଣ୍ଣ ପରମଦେବ ଶ୍ରୀରାମଙ୍କୁ ମୁଁ ବନ୍ଦନା କରୁଅଛି ॥ ୧ ॥ ଶଙ୍ଖଚନ୍ଦ୍ରମା-କାନ୍ତିଯୁକ୍ତ, ବ୍ୟାଘ୍ରଚର୍ମ-ପରିହିତ, କୃଷ୍ଣସର୍ପରୂପୀ ଭୟାନକ ଭୂଷଣରେ ଭୂଷିତ, ଗଙ୍ଗାଚନ୍ଦ୍ରମାପ୍ରେମୀ, କାଶୀପତି, କଳିଯୁଗ-ପାପସମୂହ-ନାଶକାରୀ, କଲ୍ୟାଣ-କଳ୍ପବୃକ୍ଷ, ଗୁଣନିଧାନ ଏବଂ କାମଦେବ-ଭସ୍ମକାରୀ, ପାର୍ବତୀପତି, ବନ୍ଦନୀୟ ଶ୍ରୀ ଶଙ୍କରଙ୍କୁ ମୁଁ ନମସ୍କାର କରୁଅଛି ॥ ୨ ॥ ଯେ ସନ୍ଥ ପୁରୁଷମାନଙ୍କୁ ଅତି ଦୁର୍ଲ୍ଲଭ କୈବଲ୍ୟମୁକ୍ତି ପର୍ଯ୍ୟନ୍ତ ଦିଅନ୍ତି ଏବଂ ଯେ ଦୁଷ୍ଟମାନଙ୍କୁ ଦଣ୍ଡଦାନ କରନ୍ତି, ସେହି କଲ୍ୟାଣକାରୀ ଶ୍ରୀ ଶମ୍ଭୁ ମୋହର ମଙ୍ଗଳ ବିସ୍ତାର କରନ୍ତୁ ॥ ୩ ॥
ଦୋହା :—ଲବ, ନିମେଷ, ପରମାଣୁ, ବର୍ଷ, ଯୁଗ ଓ କଳ୍ପ ଯାହାଙ୍କର ପ୍ରଚଣ୍ଡ ଶର ଏବଂ କାଳ ଯାହାଙ୍କର ଧନୁ, ରେ ମନ ! ତୁ ସେହି ଶ୍ରୀରାମଙ୍କୁ ନ ଭଜୁ କାହିଁକି ?
ସୋରଠା :—ସମୁଦ୍ରର ବଚନ ଶୁଣି ପ୍ରଭୁ ଶ୍ରୀରାମ ମନ୍ତ୍ରୀମାନଙ୍କୁ ଡକାଇ ଏପରି କହିଲେ, "ବର୍ତ୍ତମାନ ଆଉ ବିଳମ୍ବ କାହିଁକି ? ସେତୁ ତିଆରି କର । ସେନାମାନେ ପାରି ହେବେ ।" ଜାମ୍ବବାନ୍ ହାତ ଯୋଡ଼ି କହିଲେ, "ହେ ଭାନୁକୁଳକେତୁ ଶ୍ରୀରାମ ! ଶୁଣନ୍ତୁ । ହେ ନାଥ ! ସବୁଠାରୁ ବଡ଼ ସେତୁ ତ ଆପଣଙ୍କ ନାମ । ତାହାର ଆଶ୍ରୟରେ ମନୁଷ୍ୟ ସଂସାର-

ୟହ ଲଘୁ ଜଲଧି ତରତ କତି ବାରା । ଅସ ସୁନି ପୁନି କହ ପବନକୁମାରା ॥
ପ୍ରଭୁ ପ୍ରତାପ ବଡବାନଲ ଭାରୀ । ସୋଷେଉ ପ୍ରଥମ ପୟୋନିଧି ବାରୀ ॥୧॥
ତବ ରିପୁ ନାରି ରୁଦନ ଜଲ ଧାରା । ଭରେଉ ବହୋରି ଭୟଉ ତେହିଁ ଖାରା ॥
ସୁନି ଅତି ଉକୁତି ପବନସୁତ କେରୀ । ହରଷେ କପି ରଘୁପତି ତନ ହେରୀ ॥୨॥
ଜାମବନ୍ତ ବୋଲେ ଦୋଉ ଭାଈ । ନଲ ନୀଲହି ସବ କଥା ସୁନାଈ ॥
ରାମ ପ୍ରତାପ ସୁମିରି ମନ ମାହୀଁ । କରହୁ ସେତୁ ପ୍ରୟାସ କଛୁ ନାହୀଁ ॥୩॥
ବୋଲି ଲିଏ କପି ନିକର ବହୋରୀ । ସକଲ ସୁନହୁ ବିନତୀ କଛୁ ମୋରୀ ॥
ରାମ ଚରନ ପଙ୍କଜ ଉର ଧରହୂ । କୌତୁକ ଏକ ଭାଲୁ କପି କରହୂ ॥୪॥
ଧାୱହୁ ମର୍କଟ ବିକଟ ବରୂଥା । ଆନହୁ ବିଟପ ଗିରିନ୍ହ କେ ଜୂଥା ॥
ସୁନି କପି ଭାଲୁ ଚଲେ କରି ହୂହା । ଜୟ ରଘୁବୀର ପ୍ରତାପ ସମୂହା ॥୫॥

---

ଏ କ୍ଷୁଦ୍ର ସିନ୍ଧୁକୁ ପାର ହୋଇବା କି ଭାର । ଏହା ଶୁଣି ପୁଣି ବୋଲେ ପବନ କୁମାର ॥
ପ୍ରଭୁ ପ୍ରତାପ ବଡବାନଳ ଅତି ଭାରୀ । ଶୋଷି ନେଲା ପ୍ରଥମରୁ ପୟୋନିଧି ବାରି ॥୧॥
ତୁମ ଶତ୍ରୁ-ରମଣୀର ଅଶ୍ରୁଜଳ ଧାର । ବହୁ ପୂର୍ଣ୍ଣ ହୋନ୍ତେ ପୁଣି ହୋଇଲା ସେ ଖାର ॥
ପବନ ସୁତର ଶୁଣି ଅତ୍ୟୁକ୍ତି ଏସନ । କପି ରଘୁନାଥେ ଚାହିଁ ହୁଅନ୍ତି ପ୍ରସନ୍ନ ॥୨॥
ତହୁଁ ଜାମ୍ବବନ୍ତ ବେନି ଭାଇଙ୍କୁ ରାଇଲା । ନଳ ନୀଳଙ୍କୁ ସମସ୍ତ କଥା ଶୁଣାଇଲା ॥
ରାମଙ୍କ ପ୍ରତାପ ନିଜ ମନ ମଧ୍ୟେ ଚିନ୍ତ । ସେତୁ ରଚ, ନ ହୋଇବ ପ୍ରୟାସ କିଞ୍ଚିତ ॥୩॥
ଡକାଇ ଆଣି ଆବର କପି ଯୂଥଚୟ । ବୋଇଲା ଶୁଣ ସମସ୍ତେ କିଛି ମୋ ବିନୟ ॥
ରାମ ଚରଣ ପଙ୍କଜ ହୃଦୟରେ ସ୍ମର । କଉତୁକ କର ଏକ ମିଳି ଋକ୍ଷ ହରି ॥୪॥
ଧାଅଁ, ବିକଟ ମର୍କଟ କଟକ ନିକର । ଉପାଡ଼ି ଆଣ ବିଟପ ଶଇଳ ସତ୍ୱର ॥
ଶୁଣି 'ହୁହୁ' 'ହାଆ' କରି ଭାଲୁ କପିକୁଳ । ଗଲେ ଘୋଷି ରଘୁବୀର ପ୍ରତାପ ବହୁଳ ॥୫॥

---

ସମୁଦ୍ରକୁ ପାର ହୋଇଯାଆନ୍ତି । ଚୌପାଈ :—ତେବେ ଏହି କ୍ଷୁଦ୍ର ସମୁଦ୍ର ପାର କରିବାକୁ କେତେ ସମୟ ଲାଗିବ ?" ଏପରି ଶୁଣି ପୁଣି ହନୁମାନ୍ କହିଲେ, "ପ୍ରଭୁଙ୍କ ପ୍ରତାପ ପ୍ରବଳ ବାଡବାନଳ ସଙ୍ଗେ ସମାନ । ଏହା ପ୍ରଥମେ ସମୁଦ୍ର ଜଳ ଶୁଖାଇ ଦେଇଥିଲା ॥ ୧ ॥ କିନ୍ତୁ ଆପଣଙ୍କ ଶତ୍ରୁ-ରମଣୀଗଣଙ୍କ ଅଶ୍ରୁଧାରାରେ ଏହା ପୁଣି ପୂର୍ଣ୍ଣ ହୋଇଗଲା । ଆଉ ମଧ୍ୟ ସେହି କାରଣରୁ ଏହା ଲବଣାକ୍ତ ହୋଇଗଲା ।" ହନୁମାନଙ୍କର ଏହି ଅତ୍ୟୁକ୍ତି ଶୁଣି ବାନରମାନେ ଶ୍ରୀ ରଘୁନାଥଙ୍କ ଆଡକୁ ଚାହିଁ ଆନନ୍ଦିତ ହୋଇ ପଡିଲେ ॥ ୨ ॥ ଜାମ୍ବବାନ୍ ନଳନୀଳ, ଦୁଇ ଭାଇଙ୍କୁ ଡକାଇ ସେମାନଙ୍କୁ ସବୁ କଥା କହି ଶୁଣାଇଲେ ଏବଂ କହିଲେ, "ମନରେ ଶ୍ରୀରାମଙ୍କ ପ୍ରତାପ କଥା ସ୍ମରଣ କରି ସେତୁ ନିର୍ମାଣ କର । ରାମଙ୍କ ପ୍ରତାପ ଯୋଗେ ତୁମ୍ଭମାନଙ୍କୁ ଟିକିଏ ହେଲେ ପରିଶ୍ରମ ପଡିବ ନାହିଁ ।" ॥ ୩ ॥ ପୁଣି ବାନରମାନଙ୍କୁ ଡକାଇଲେ ଏବଂ କହିଲେ, "ତୁମ୍ଭେମାନେ ସମସ୍ତେ ମୋର କିଛି ବିନତି ଶୁଣ । ନିଜ ନିଜ ହୃଦୟରେ ଶ୍ରୀରାମଙ୍କ ଚରଣ-କମଳ-

ଅତି ଉତଂଗ ଗିରି ପାଦପ ଲୀଲହିଁ ଲେହିଁ ଉଠାଇ ।
ଆନି ଦେହିଁ ନଲ ନୀଲହି ରଚହିଁ ତେ ସେତୁ ବନାଇ ॥୧॥
ସୈଲ ବିସାଲ ଆନି କପି ଦେହୀଂ । କଂଦୁକ ଇବ ନଲ ନୀଲ ତେ ଲେହୀଂ ॥
ଦେଖି ସେତୁ ଅତି ସୁନ୍ଦର ରଚନା । ବିହସି କୃପାନିଧି ବୋଲେ ବଚନା ॥୧॥
ପରମ ରମ୍ୟ ଉତ୍ତମ ଯହ ଧରଣୀ । ମହିମା ଅମିତ ଜାଇ ନହିଁ ବରଣୀ ॥
କରିହଉଁ ଇହାଁ ସଂଭୁ ଥାପନା । ମୋରେ ହୃଦୟଁ ପରମ କଲପନା ॥୨॥
ସୁନି କପୀସ ବହୁ ଦୂତ ପଠାଏ । ମୁନିବର ସକଲ ବୋଲି ଲୈ ଆଏ ॥
ଲିଙ୍ଗ ଥାପି ବିଧିବତ କରି ପୂଜା । ସିବ ସମାନ ପ୍ରିୟ ମୋହି ନ ଦୂଜା ॥୩॥

---

ଅତ୍ୟନ୍ତ ଉତ୍ତୁଙ୍ଗ ତରୁ ଗିରି ଶୃଙ୍ଗ କୌତୁକେ ଆଣି ଉଠାଇ ।
ନଳ ନୀଳ କରେ ଦିଅନ୍ତି ସକଳେ ରଚନ୍ତି ସେତୁ ସଜାଇ ॥୧॥
ଶଇଳ ବିଶାଳ ଆଣି ମର୍କଟେ ଦିଅନ୍ତି । ନଳ ନୀଳ ତାହା ପେଣ୍ଡୁ ସଦୃଶ ନିଅନ୍ତି ॥
ବିଲୋକି ସେତୁ ଅତ୍ୟନ୍ତ ସୁନ୍ଦର ରଚନ । ହସିଣ କରୁଣାନିଧି ଭାଷିଲେ ବଚନ ॥୧॥
ପରମ ରମ୍ୟ ଉତ୍ତମ ଏ ଭୂମି ଅଟଇ । ଅପାର ମହିମା ବର୍ଣ୍ଣି ହୋଇ ନ ପାରଇ ॥
କରିବି ଏହି ସ୍ଥାନରେ ଶଙ୍କର ସ୍ଥାପନା । ମୋର ହୃଦୟେ ହୁଅଇ ପରମ କଳ୍ପନା ॥୨॥
ଶୁଣି କପିନାଥ ବହୁ ଦୂତ ପଠାଇଲେ । ମୁନିବର ନିକରଙ୍କୁ ଡାକି ସେ ଆଣିଲେ ॥
ଲିଙ୍ଗ ସ୍ଥାପି ପୂଜା କଲେ ସବିଧି ବିଧାନ । ଶଙ୍କର ସମାନ ପ୍ରିୟ ନାହିଁ ମୋର ଆନ ॥୩॥

---

ଯୁଗଳ ଧାରଣ କରି ଏବଂ ସମସ୍ତ ଭାଲୁ ଓ ବାନର ମିଶି ଗୋଟିଏ କଉତୁକ ଭଳି ଏହି କାମ କର ॥ ୪ ॥ ଭୟଙ୍କର ବାନରମାନେ ସମସ୍ତେ ଦୌଡ଼ିଯାଅ ଏବଂ ବୃକ୍ଷ ଓ ପର୍ବତମାନ ଓପାଡ଼ି ଆଣ ।" ଏହା ଶୁଣି ବାନର ଓ ଭାଲୁମାନେ ହୁଙ୍କାର ରଡ଼ି ଛାଡ଼ି ଏବଂ ଶ୍ରୀରାମଚନ୍ଦ୍ରଙ୍କ ପ୍ରତାପସମୂହର ଜୟଗାନ କରି ଚାଲିଲେ ॥ ୫ ॥ ଦୋହା — ସେମାନେ ଅତି ଉଚ୍ଚ ଉଚ୍ଚ ପର୍ବତ ଓ ବୃକ୍ଷମାନ ଅବଲୀଳାକ୍ରମେ (ଓପାଡ଼ି) ଉଠାଇ ନେଇ ଆସୁଥା'ନ୍ତି ଏବଂ ଆଣି ନଳନୀଳଙ୍କୁ ଦେଉଥାଆନ୍ତି । ସେ ଦୁହେଁ ଭଲ ଭାବରେ ସଜାଇ ସୁନ୍ଦର ସେତୁ ନିର୍ମାଣ କରୁଥାଆନ୍ତି ॥ ୧ ॥ ଚୌପାଇ :—ବାନରମାନେ ବଡ ବଡ ପାହାଡ଼ ଆଣି ଦେଉଥାଆନ୍ତି ଏବଂ ନଳନୀଳ ସେଗୁଡ଼ିକୁ କନ୍ଦୁକ (ପେଣ୍ଡୁ) ପରି ନେଇ ଯାଉଥା'ନ୍ତି । ସେତୁର ଅତି ସୁନ୍ଦର ଗଠନ ଦେଖି ଶ୍ରୀରାମଚନ୍ଦ୍ର ହସି ବଚନ ବୋଇଲେ—॥ ୧ ॥ "ଏଠିକାର ଭୂମି ପରମ ରମଣୀୟ ଓ ଉତ୍ତମ । ଏହାର ଅସୀମ ମହିମା ବର୍ଣ୍ଣନା କରାଯାଇ ପାରିବ ନାହିଁ । ମୁଁ ଏଠାରେ ଶିବଙ୍କୁ ସ୍ଥାପନା କରିବି । ମୋର ହୃଦୟରେ ଏହି ମହାସଂକଳ୍ପ ରହିଛି ।" ॥ ୨ ॥ ଶ୍ରୀରାମଙ୍କ ବଚନ ଶୁଣି ବାନରରାଜ ସୁଗ୍ରୀବ ବହୁତ ଦୂତ ପଠାଇଲେ । ସେମାନେ ସମସ୍ତ ଶ୍ରେଷ୍ଠମୁନିଙ୍କୁ ଡାକି ଆଣିଲେ । ପ୍ରଭୁ ଶିବଲିଙ୍ଗ ସ୍ଥାପନା କରି ବିଧିପୂର୍ବକ ତାହାଙ୍କର ପୂଜାବିଧାନ କଲେ । ପୁଣି ଭଗବାନ୍ କହିଲେ, "ଶିବଙ୍କ ସମାନ ମୋର ଅନ୍ୟ କେହି ପ୍ରିୟ ନୁହନ୍ତି ॥ ୩ ॥

ସିବଦ୍ରୋହୀ ମମ ଭଗତ କହାୱା । ସୋ ନର ସପନେହୁଁ ମୋହି ନ ପାୱା ॥
ସଙ୍କର ବିମୁଖ ଭଗତି ଚହ ମୋରୀ । ସୋ ନାରକୀ ମୂଢ଼ ମତି ଥୋରୀ ॥୩॥

ସଙ୍କରପ୍ରିୟ ମମ ଦ୍ରୋହୀ ସିବଦ୍ରୋହୀ ମମ ଦାସ ।
ତେ ନର କରହିଁ କଲପ ଭରି ଘୋର ନରକ ମହୁଁ ବାସ ॥୨॥

ଜେ ରାମେସ୍ୱର ଦରସନୁ କରିହହିଁ । ତେ ତନୁ ତଜି ମମ ଲୋକ ସିଧରିହହିଁ ॥
ଜୋ ଗଙ୍ଗାଜଲୁ ଆନି ଚଢ଼ାଇହି । ସୋ ସାଜୁଜ୍ୟ ମୁକ୍ତି ନର ପାଇହି ॥୧॥
ହୋଇ ଅକାମ ଜୋ ଛଲ ତଜି ସେଇହି । ଭଗତି ମୋରି ତେହି ସଂକର ଦେଇହି ॥
ମମ କୃତ ସେତୁ ଜୋ ଦରସନୁ କରିହୀ । ସୋ ବିନୁ ଶ୍ରମ ଭବସାଗର ତରିହୀ ॥୨॥
ରାମ ବଚନ ସବ କେ ଜିୟ ଭାଏ । ମୁନିବର ନିଜ ନିଜ ଆଶ୍ରମ ଆଏ ॥
ଗିରିଜା ରଘୁପତି କୈ ୟହ ରୀତୀ । ସଂତତ କରହିଁ ପ୍ରନତ ପର ପ୍ରୀତୀ ॥୩॥

---

ଶିବ-ଦ୍ରୋହୀ ହୋଇ ମୋର ଦାସ ଯେ କୁହାଏ । ସ୍ୱପନରେ ହେଁ ମୋତେ ସେ ନର ନ ପାଏ ॥
ଶିବ ପରାଙ୍‌ମୁଖ ଯେହୁ ରୁହେଁ ମୋ ଭକତ । ସେ ଅଟେ ନାରକୀ ମୂଢ ହୀନ ମନ୍ଦ-ମତି ॥୪॥

ଶିବ ପ୍ରିୟ ହୋଇ ଯେ ମୋହର ଦ୍ରୋହୀ ଶିବଦ୍ରୋହୀ ମୋର ଦାସ ।
କରଇ ସେ ନର କଳ୍ପ ଏକ ଘୋର ନରକ ମଧ୍ୟରେ ବାସ ॥୨॥

ଯେ ରାମେଶ୍ୱର ସାଦରେ ଦର୍ଶନ କରିବେ । ତନୁ ପରିହରି ମମ ଧାମେ ସେ ଚଳିବେ ॥
ଯେଉଁ ନର ଗଙ୍ଗାଜଳ ଆଣି ଚଢାଇବେ । ସାଯୁଜ୍ୟ ମୁକ୍ତି ସେ ନର ସହଜେ ପାଇବେ ॥୧॥
ନିଷ୍କାମ ହୋଇଣ ଛଳ ତେଜି ଯେ ସେବିବେ । ଶଙ୍କର ତାହାଙ୍କୁ ମୋର ଭକ୍ତି ପ୍ରଦାନିବେ ॥
ମୋ ରଚିତ ସେତୁ ଯେହୁ ଦର୍ଶନ କରିବେ । ଶ୍ରମ ବିହୁନେ ସେ ଭବସାଗର ତରିବେ ॥୨॥
ରାମଙ୍କ ବଚନେ ସର୍ବେ ପ୍ରମୋଦ ଲଭିଲେ । ମୁନିବର ନିଜ ନିଜ ଆଶ୍ରମେ ଗମିଲେ ॥
ଗିରିଜା ! ରଘୁପତିଙ୍କ ଅଟେ ଏହି ରୀତି । ସତତ କରନ୍ତି ନିଜ ଦାସ ପ୍ରତି ପ୍ରୀତି ॥୩॥

---

ଯେ ଶିବଙ୍କ ସହିତ ଦ୍ରୋହାଚରଣ କରି ମୋର ଭକ୍ତ ନାମରେ ଅଭିହିତ ହୁଏ, ସେହି ମନୁଷ୍ୟ ସ୍ୱପ୍ନରେ ହେଁ ମୋତେ ପାଏ ନାହିଁ । ଶଙ୍କରଙ୍କ ପ୍ରତି ବିମୁଖ ହୋଇ ଯେ ମୋର ଭକ୍ତି କାମନା କରେ, ସେ ନରକଗାମୀ, ମୂର୍ଖ ଓ ଅଳ୍ପବୁଦ୍ଧି ॥ ୪ ॥ ଦୋହା :— ଯେଉଁମାନେ ଶଙ୍କର-ପ୍ରିୟ, କିନ୍ତୁ ମୋର ଦ୍ରୋହୀ ଏବଂ ଯେଉଁମାନେ ଶିବଦ୍ରୋହୀ ହୋଇ ମୋର ଦାସ ହେବାକୁ କାମନା କରନ୍ତି, ସେହି ମନୁଷ୍ୟମାନେ କଳ୍ପ ପର୍ଯ୍ୟନ୍ତ ଘୋର ନରକରେ ନିବାସ କରନ୍ତି ॥ ୨ ॥ ଚୌପାଈ :—ଯେଉଁ ଲୋକମାନେ ମୋ ଦ୍ୱାରା ସ୍ଥାପିତ ଏହି ରାମେଶ୍ୱରଙ୍କୁ ଦର୍ଶନ କରିବେ, ସେମାନେ ଶରୀର ତ୍ୟାଗ ପରେ ମୋର ଲୋକକୁ ଯିବେ । ଯେଉଁ ବ୍ୟକ୍ତି ଗଙ୍ଗାଜଳ ଆଣି ଏହାଙ୍କ ଉପରେ ଚଢାଇବ, ସେ ସାଯୁଜ୍ୟ ମୁକ୍ତି ପାଇବ ॥ ୧ ॥ ଯେଉଁ ବ୍ୟକ୍ତି ଛଳକପଟ ଛାଡି ନିଷ୍କାମ ମନରେ ଶ୍ରୀରାମେଶ୍ୱରଙ୍କୁ ପୂଜା କରିବ, ତାହାକୁ ଶଙ୍କର ମୋହର ଭକ୍ତି ଦାନ କରିବେ ଏବଂ ଯେ ମୋ ଦ୍ୱାରା ନିର୍ମିତ ସେତୁ ଦର୍ଶନ କରିବ, ସେ ବିନା ପରିଶ୍ରମରେ ସଂସାର-ସମୁଦ୍ରରୁ ପାର

ବାଁଧା ସେତୁ ନୀଲ ନଲ ନାଗର । ରାମ କୃପାଁ ଜସୁ ଭୟଉ ଉଜାଗର ॥
ବୂଡ଼ହିଁ ଆନହି ବୋରହିଁ ଜେଈ । ଭଏ ଉପଲ ବୋହିତ ସମ ତେଈ ॥୪॥
ମହିମା ଯହ ନ ଜଲଧି କଇ ବରନୀ । ପାହନ ଗୁନ ନ କପିହ୍ନ କଇ କରନୀ ॥୫॥

ଶ୍ରୀ ରଘୁବୀର ପ୍ରତାପ ତେଁ ସିନ୍ଧୁ ତରେ ପାଷାନ ।
ତେ ମତିମନ୍ଦ ଜେ ରାମ ତଜି ଭଜହିଁ ଜାଇ ପ୍ରଭୁ ଆନ ॥୩॥

ବାଁଧି ସେତୁ ଅତି ସୁଦୃଢ଼ ବନାୱା । ଦେଖି କୃପାନିଧି କେ ମନ ଭାୱା ॥
ଚଲୀ ସେନ କଛୁ ବରନି ନ ଜାଈ । ଗର୍ଜହିଁ ମର୍କଟ ଭଟ ସମୁଦାଈ ॥୧॥
ସେତୁବନ୍ଧ ଢିଗ ଚଢ଼ି ରଘୁରାଈ । ଚିତୱ କୃପାଲ ସିନ୍ଧୁ ବହୁତାଈ ॥
ଦେଖନ କହୁଁ ପ୍ରଭୁ କରୁନାକଂଦା । ପ୍ରଗଟ ଭଏ ସବ ଜଲଚରବୃନ୍ଦା ॥୨॥

---

ବାନ୍ଧିଲେ ସେତୁ ପ୍ରବୀଣ କପି ନୀଲ ନଳ । ରାମ କୃପାରେ ସୁଯଶ ହୋଇଲା ଉଜ୍ଜ୍ୱଳ ॥
ବୁଡାଇ ଅନ୍ୟଙ୍କୁ ଯେଉଁ ନିଜେ ବୁଡିଯାଏ । ହୋଇଲେ ସେହି ଉପଲ ବୋଇତ ପରାଏ ॥୪॥
ସିନ୍ଧୁ ମହିମା ବୋଲି ଏ କଥା ନ ହୁଅଇ । ପଥର ଗୁଣ ବା କପି କୃତିତ୍ୱ ନୁହଇ ॥୫॥

ଶ୍ରୀ ରଘୁବୀରଙ୍କ ପ୍ରତାପ ବଳରେ ସିନ୍ଧୁରେ ଭାସେ ପାଷାଣ ।
ସେ ମତି ମଳିନ ଯେ ରାମେ ତେଜିଣ ଭଜେ ଯାଇ ପ୍ରଭୁ ଆନ ॥୩॥

ବାନ୍ଧି ସେତୁ ଅତିଶୟ ସୁଦୃଢ କରିଲେ । ଦେଖି କୃପାନିଧି ମନେ ପ୍ରସନ୍ନ ଲଭିଲେ ॥
ଚାଲିଲେ ସୈନ୍ୟ ଯେ କରି ନ ହୁଏ ବର୍ଣ୍ଣନ । ମର୍କଟ ବୀର ସମୂହ କରନ୍ତି ଗର୍ଜନ ॥୧॥
ସେତୁ ବନ୍ଧ ତଟ ପରେ ଚଢି ରଘୁପତି । ସାଗର ବିସ୍ତାର କୃପାମୟ ନିରେଖନ୍ତି ॥
କରୁଣାକର ପ୍ରଭୁଙ୍କୁ ଦେଖିବା ନିମନ୍ତେ । ଜଳଚର ବୃନ୍ଦ ରୁଣ୍ଡ ହୋଇଲେ ସମସ୍ତେ ॥୨॥

---

ହୋଇଯିବ ।" ॥ ୨ ॥ ଶ୍ରୀରାମଙ୍କ ବଚନ ସମସ୍ତଙ୍କ ମନକୁ ରୁଚିକର ବୋଧ ହେଲା । ତଦନନ୍ତର ଭକ୍ତଶ୍ରେଷ୍ଠ ମୁନିବୃନ୍ଦ ଆପଣା ଆପଣା ଆଶ୍ରମକୁ ଫେରି ଆସିଲେ । ଶିବ କହନ୍ତି, "ହେ ପାର୍ବତି ! ଶ୍ରୀ ରଘୁନାଥଙ୍କର ଏହି ରୀତି ଯେ, ସେ ଶରଣାଗତ ପ୍ରତି ସଦା ପ୍ରୀତି କରନ୍ତି ।" ॥ ୩ ॥ ଚତୁର ନଳ ଓ ନୀଳ ସେତୁ ବାନ୍ଧିଲେ । ଶ୍ରୀରାମଙ୍କ କୃପା ହେତୁ ସେମାନଙ୍କର ଏହି ଉଜ୍ଜ୍ୱଳ ଯଶ ସର୍ବତ୍ର ବ୍ୟାପିଗଲା । ଯେଉଁ ପଥର ଆପେ ଆପେ ବୁଡିଯାଏ ଏବଂ ଅନ୍ୟମାନଙ୍କୁ ମଧ୍ୟ ବୁଡାଇଦିଏ, ସେଗୁଡିକ ଆଜି ବୋଇତ ପରି (ଜାହାଜ) ହୋଇଗଲା ॥ ୪ ॥ ଏଥିରେ ସମୁଦ୍ରର ମହିମା ବର୍ଣ୍ଣନା କରାଯାଇ ନାହିଁ କିମ୍ବା ଏହା ପଥରର ଗୁଣ ଅଥବା ବାନରଗଣଙ୍କ କରାମତି ନୁହେଁ ॥ ୫ ॥ ଦୋହା :—ଶ୍ରୀ ରଘୁବୀରଙ୍କ ପ୍ରତାପ ଯୋଗେ ପଥର ମଧ୍ୟ ସମୁଦ୍ର ଉପରେ ଭାସିଲା । ଏପରି ପ୍ରଭୁ ଶ୍ରୀରାମଙ୍କୁ ତ୍ୟାଗ କରି ଯେ ଅନ୍ୟ କୌଣସି ପ୍ରଭୁଙ୍କୁ ଭଜନ କରେ, ସେ ନିଶ୍ଚୟ ମନ୍ଦବୁଦ୍ଧି ॥ ୩ ॥ ଚୌପାଇ :—ନଳନୀଳ ସେତୁ ବାନ୍ଧି ତାହାକୁ ଅତି ମଜଭୁତ କରିଦେଲେ । ଏହା ଦେଖି କୃପାନିଧାନ ଶ୍ରୀରାମଙ୍କ ମନ ଅତିଶୟ ଆନନ୍ଦ ଲାଭ କଲା । ସେନା ଚାଲିଲେ । ସେମାନଙ୍କ ବର୍ଣ୍ଣନା ଅସମ୍ଭବ । ଯୋଦ୍ଧା ବାନରମାନେ ଗର୍ଜନ କରୁଥାଆନ୍ତି ॥୧॥ କୃପାଳୁ ଶ୍ରୀରାମଚନ୍ଦ୍ର

ମକର ନକ୍ର ନାନା ଝଷ ବ୍ୟାଲା । ସତ ଜୋଜନ ତନ ପରମ ବିସାଲା ॥
ଅଇସେଉ ଏକ ତିନ୍ହହି ଜେ ଖାହୀଁ । ଏକନ୍ହ କେ ଡର ତେପି ଡେରାହୀଁ ॥୩॥
ପ୍ରଭୁହି ବିଲୋକହିଁ ଟରହିଁ ନ ଟାରେ । ମନ ହରଷିତ ସବ ଭଏ ସୁଖାରେ ॥
ତିନ୍ହ କୀଁ ଓଟ ନ ଦେଖିଅ ବାରୀ । ମଗନ ଭଏ ହରି ରୂପ ନିହାରୀ ॥୪॥
ଚଲା କଟକୁ ପ୍ରଭୁ ଆୟସୁ ପାଈ । କୋ କହି ସକ କପି ଦଲ ବିପୁଲାଈ ॥୫॥

ସେତୁବନ୍ଧ ଭଇ ଭୀର ଅତି କପି ନଭ ପନ୍ଥ ଉଡ଼ାହିଁ ।
ଅପର ଜଲଚରନ୍ହି ଊପର ଚଢ଼ି ଚଢ଼ି ପାରହି ଜାହିଁ ॥୪॥

ଅସ କୌତୁକ ବିଲୋକି ଦ୍ୱୌ ଭାଈ । ବିହଁସି ଚଲେ କୃପାଲ ରଘୁରାଈ ॥
ସେନ ସହିତ ଉତରେ ରଘୁବୀରା । କହି ନ ଜାଇ କପି ଜୂଥପ ଭୀରା ॥୧॥

---

ନାନା ପ୍ରକାର ମଗର ମୀନ ନକ୍ର ବ୍ୟାଳ । ଶତ ଯୋଜନରେ ପୂର୍ଣ୍ଣ ଶରୀର ବିଶାଳ ॥
ଏମନ୍ତ ଏକ ତାହାଙ୍କୁ ଧରି ଯେ ଭକ୍ଷଇ । ଅନ୍ୟର ଭୟରେ ସେ ବି ପଳାଇ ଚଳଇ ॥୩॥
ଟାଳିଲେ ଟଳନ୍ତି ନାହିଁ ପ୍ରଭୁଙ୍କୁ ଦେଖନ୍ତି । ମନ ହରଷିତ ଦେଖି ସରବେ ହୁଅନ୍ତି ॥
ତାହାଙ୍କ ଉହାଡେ ନ ଦିଶଇ ସିନ୍ଧୁ ଜଳ । ହରି ରୂପ ଚାହିଁ ପ୍ରେମେ ନିମଗ୍ନ ସକଳ ॥୪॥
ଚଳିଲେ ସୈନ୍ୟ ପାଇଣ ଆଦେଶ ରାମଙ୍କ । ଗଣି କେ ପାରିବ ଅସଂଖ୍ୟତା ମର୍କଟଙ୍କ ॥୫॥

ସେତୁବନ୍ଧେ ଅତି ଭିଡ ହେଲା, କପି ଗଗନ ପଥେ ଉଡନ୍ତି ।
ଅନ୍ୟେ ଜଳଚର ଉପରେ ଚଢ଼ିଣ ଅକ୍ଳେଶେ ପାରି ହୁଅନ୍ତି ॥୪॥

ଏହି କଉତୁକ ଅବଲୋକି ଦେନି ଭ୍ରାତ । ହସି ଯାତ୍ରା କଲେ କୃପାସିନ୍ଧୁ ରଘୁନାଥ ॥
ସୈନ୍ୟଙ୍କ ସହିତ ପାରି ହେଲେ ରଘୁମଣି । ଯୂଥପଙ୍କ ଭିଡ କିଛି ନ ହୁଅଇ ବର୍ଣ୍ଣି ॥୧॥

---

ସେତୁବନ୍ଧ ତଟ ଉପରେ ଚଢ଼ି ସମୁଦ୍ରର ବିସ୍ତାର ଦେଖିବାକୁ ଲାଗିଲେ । କରୁଣାକନ୍ଦ ପ୍ରଭୁଙ୍କ ଦର୍ଶନ ଲାଭ ନିମନ୍ତେ ସମସ୍ତ ଜଳଚର ଜୀବ ଜଳ ଉପରେ ଆସି ଦେଖା ଦେଲେ ॥ ୨ ॥ ବହୁତ ପ୍ରକାର ମଗର, କୁମ୍ଭୀର, ମତ୍ସ୍ୟ ଓ ସର୍ପ ଥିଲେ । ସେମାନଙ୍କର ଶହେ ଶହେ ଯୋଜନ ପର୍ଯ୍ୟନ୍ତ ଅତି ବିଶାଳ ଶରୀର । ସେମାନଙ୍କୁ ଖାଇ ପାରିଲା ଭଳି ଜନ୍ତୁ କେତେକ ମଧ୍ୟ ଥିଲେ । ସେମାନେ ବି ଅନ୍ୟ କାହାରି କାହାରି ଭୟ ହେତୁ ସ୍ୱଭାବତଃ ଡରୁଥିଲେ ॥୩॥ କିନ୍ତୁ ସେମାନେ ଆଜି ସମସ୍ତେ ସ୍ୱାଭାବିକ ଶତ୍ରୁତା ଭୁଲି ପ୍ରଭୁଙ୍କ ଦର୍ଶନରତ । ଘଉଡିଲେ ସୁଦ୍ଧା ଦୂର ହେଉ ନ ଥା'ନ୍ତି, ସମସ୍ତଙ୍କ ମନ ଆନନ୍ଦିତ, ସମସ୍ତେ ସୁଖୀ, ସେମାନେ ଆଡୁଆଳ କରିବା ହେତୁ ଜଳ ଦିଶୁ ନ ଥାଏ । ସେମାନେ ସମସ୍ତେ ଭଗବାନଙ୍କ ରୂପ ଦେଖି ଆନନ୍ଦ ଓ ପ୍ରେମରେ ମଗ୍ନ ହୋଇଗଲେ ॥ ୪ ॥ ପ୍ରଭୁ ଶ୍ରୀରାମଙ୍କ ଆଜ୍ଞା ପାଇ ସେନାମାନେ ଚାଲିଲେ । ବାନର-ସେନାଙ୍କ ବିପୁଳ ସଂଖ୍ୟା କିଏ କହି ପାରିବ ? ॥ ୫ ॥ ଦୋହା —ସେତୁବନ୍ଧ ଉପରେ ବଡ଼ ଭିଡ ହୋଇଗଲା । ଏହି ହେତୁ କେତେକ ବାନର ଆକାଶମାର୍ଗରେ ଉଡିବାକୁ ଲାଗିଲେ ଏବଂ ଅନ୍ୟ କେତେକ ଜଳଚର ଜୀବଜନ୍ତୁମାନଙ୍କ ଉପରେ ଚଢ଼ି ଚଢ଼ି ପାରି ହେବାକୁ ଲାଗିଲେ ॥ ୪ ॥

ସିନ୍ଧୁ ପାର ପ୍ରଭୁ ଡେରା କୀନ୍ହା । ସକଲ କପିନ୍ହ କହୁଁ ଆୟସୁ ଦୀନ୍ହା ॥
ଖାହୁ ଜାଇ ଫଲ ମୂଲ ସୁହାଏ । ସୁନତ ଭାଲୁ କପି ଜହଁ ତହଁ ଧାଏ ॥୨॥
ସବ ତରୁ ଫରେ ରାମ ହିତ ଲାଗୀ । ରିତୁ ଅରୁ କୁରିତୁ କାଲ ଗତି ତ୍ୟାଗୀ ॥
ଖାହିଁ ମଧୁର ଫଲ ବିଟପ ହଲାୱହିଁ । ଲଙ୍କା ସନ୍ମୁଖ ସିଖର ଚଲାୱହିଁ ॥୩॥
ଜହଁ କହୁଁ ଫିରତ ନିସାଚର ପାୱହିଁ । ଘେରି ସକଲ ବହୁ ନାଚ ନଚାୱହିଁ ॥
ଦସନନ୍ହି କାଟି ନାସିକା କାନା । କହି ପ୍ରଭୁ ସୁଜସୁ ଦେହିଁ ତବ ଜାନା ॥୪॥
ଜିନ୍ହ କର ନାସା କାନ ନିପାତା । ତିନ୍ହ ରାବନହି କହୀ ସବ ବାତା ॥
ସୁନତ ଶ୍ରବନ ବାରିଧି ବଂଧାନା । ଦସମୁଖ ବୋଲି ଉଠା ଅକୁଲାନା ॥୫॥

ବାଁଧ୍ୟୋ ବନନିଧି ନୀରନିଧି ଜଲଧି ସିଂଧୁ ବାରୀସ ।
ସତ୍ୟ ତୋୟନିଧି କଂପତି ଉଦଧି ପୟୋଧି ନଦୀସ ॥୫॥

---

ସିନ୍ଧୁ ପାରେ ଡେରା କଲେ ପ୍ରଭୁ ରଘୁପତି । ସକଳ କପିଙ୍କୁ ତହୁଁ ଦେଲେ ଅନୁମତି ॥
ଖାଅ ଯାଇ ଫଳ ମୂଳ ସୁସ୍ୱାଦୁ ସୁନ୍ଦର । ଏହା ଶୁଣି ଯେଣେତେଣେ ଧାଇଁଲେ ବାନର ॥୨॥
ସବୁ ତରୁ ଫଳିଥିଲେ ରାମ ହିତ ଲାଗି । ଋତୁ ଅଣଋତୁ କାଳ ଗତି ପରିତ୍ୟାଗି ॥
ଖାଆନ୍ତି ମଧୁର ଫଳ ବିଟପ ଝୁଣନ୍ତି । ଲଙ୍କା ଉପରକୁ ଗିରି ଶିଖର ଫିଙ୍ଗନ୍ତି ॥୩॥
ଭ୍ରମନ୍ତେ ଯଦି କୌଣସି ରାକ୍ଷସେ ପାଆନ୍ତି । ଘେରି ସଙ୍ଗେ ତାକୁ ନାଚ ବହୁତ ନଚାନ୍ତି ॥
ଦଶନେ କର୍ଣ୍ଣ ଆଦର ନାସିକା କାଟନ୍ତି । କୁହାଇ ପ୍ରଭୁ ସୁଯଶ ଯିବାକୁ ଦିଅନ୍ତି ॥୪॥
ଯାହାଙ୍କର ନାକ କାନ କପି କାଟିଥିଲେ । ରାବଣ ଆଗେ ସେ ସବୁ ବୃତ୍ତାନ୍ତ କହିଲେ ॥
ଶୁଣନ୍ତେ ଶ୍ରବଣେ ସେତୁ ସମୁଦ୍ରେ ବନ୍ଧନ । ଆକୁଳେ କହି ଉଠିଲେ ସେ ଦଶବଦନ ॥୫॥

ସତ୍ୟ ନୀରନିଧି ଉଦଧି ପୟୋଧି ସଲିଳପତି ବାରିଶ ।
ସିନ୍ଧୁ ବନନିଧି ଜଳଧି ତୋୟଧି ବାନ୍ଧିଲେ କି ତଟିନୀଶ ॥୫॥

---

ଚୌପାଈ :—କୃପାଳୁ ଶ୍ରୀ ରଘୁନାଥ ଏବଂ ଲକ୍ଷ୍ମଣ, ଦୁଇ ଭାଇ ଏହି କୌତୁକ ଦେଖି ହସି ହସି ଚାଲିଲେ । ଶ୍ରୀ ରଘୁବୀର ସେନାଗଣଙ୍କ ସହିତ ସମୁଦ୍ର ପାର ହୋଇଗଲେ । ବାନର ଯୂଥପତିମାନଙ୍କର ଭିଡ ଭାଷାରେ କହି ହେବନାହିଁ ॥ ୧ ॥ ପ୍ରଭୁ ସମୁଦ୍ର ଏ ପାରିରେ ଡେରା ପକାଇଲେ ଏବଂ ସମସ୍ତ ବାନରଙ୍କୁ ଆଜ୍ଞା ଦେଲେ, "ତୁମ୍ଭେମାନେ ଯାଇ ରୁଚିକର ଫଳମୂଳ ଖାଅ ।" ଏହା ଶୁଣିବା ମାତ୍ରେ ଭାଲୁ ଓ ବାନରମାନେ ଏଣେତେଣେ ଧାଇଁବାକୁ ଲାଗିଲେ ॥ ୨ ॥ ଶ୍ରୀରାମଙ୍କ ହିତ (ସେବା) ନିମନ୍ତେ ସମସ୍ତ ବୃକ୍ଷ ଋତୁ-ଅଋତୁ (ଅର୍ଥାତ୍ ସମୟର ଗତି) ଭୁଲି ଫଳିବାକୁ ଲାଗିଲେ । ବାନର ଓ ଭାଲୁମାନେ ମିଠା ମିଠା ଫଳ ଖାଉଥାଆନ୍ତି, ବୃକ୍ଷମାନଙ୍କୁ ଦୋହଲାଉଥା'ନ୍ତି ଏବଂ ପର୍ବତ ଶିଖରମାନଙ୍କୁ ଲଙ୍କା ଆଡକୁ ଫିଙ୍ଗୁଥାଆନ୍ତି ॥ ୩ ॥ ବୁଲି ବୁଲି ଯେଉଁଠାରେ ସେମାନେ କୌଣସି ରାକ୍ଷସଙ୍କୁ ଭେଟୁଥା'ନ୍ତି, ତାକୁ ସମସ୍ତେ ଘେରି ଖୁବ୍ ନାଚ ନଚାଉଥା'ନ୍ତି, ଦାନ୍ତରେ ତାହାର ନାକକାନ ଛିଣ୍ଡାଇ ଦେଉଥା'ନ୍ତି ଏବଂ ତାହାକୁ ପ୍ରଭୁଙ୍କ ସୁଯଶ

ନିଜ ବିକଲତା ବିଚାରି ବହୋରୀ । ବିହଁସି ଗୟଉ ଗୃହ କରି ଭୟ ଭୋରୀ ॥
ମଂଦୋଦରୀଁ ସୁନେ୍ୟା ପ୍ରଭୁ ଆୟେଉ । କୌତୁକହୀଁ ପାଥୋଧି ବଁଧାୟେଉ ॥୧॥
କର ଗହି ପତିହି ଭବନ ନିଜ ଆନୀ । ବୋଲୀ ପରମ ମନୋହର ବାନୀ ॥
ଚରନ ନାଇ ସିରୁ ଅଂଚଲୁ ରୋପା । ସୁନହୁ ବଚନ ପିୟ ପରିହରି କୋପା ॥୨॥
ନାଥ ବୟରୁ କୀଜେ ତାହୀ ସୌଁ । ବୁଧି ବଲ ସକିଅ ଜୀତି ଜାହୀ ସୌଁ ॥
ତୁହ୍ମହି ରଘୁପତିହି ଅନ୍ତର କୈସା । ଖଲୁ ଖଦ୍ୟୋତ ଦିନକରହି ଜୈସା ॥୩॥
ଅତି ବଲ ମଧୁ କୈଟଭ ଜେହିଁ ମାରେ । ମହାବୀର ଦିତିସୁତ ସଂଘାରେ ॥
ଜେହିଁ ବଲି ବାଁଧି ସହସଭୁଜ ମାରା । ସୋଇ ଅବତରେଉ ହରନ ମହି ଭାରା ॥୪॥
ତାସୁ ବିରୋଧ ନ କୀଜିଅ ନାଥା । କାଲ କରମ ଜିବ ଜାକେଁ ହାଥା ॥୫॥

---

ନିଜ ବ୍ୟାକୁଳତା କରି ବିଚାର ଆବର । ହସି ଭୟ ଲୁଚାଇଣ ଚଳିଲା ସେ ଘର ॥
ମନ୍ଦୋଦରୀ ଶୁଣି ପାରି ପ୍ରଭୁ ଆଗମନ । କଉତୁକେ ପାରାବାର କରିଣ ବନ୍ଧନ ॥୧॥
ପତି କର ଧରି ନିଜ ଭବନକୁ ଆଣି । ଭାଷିଲା ମୃଦୁ ପରମ ମନୋହର ବାଣୀ ॥
ଅଞ୍ଚଳ ପ୍ରସାରି ଶିର ଚରଣେ ନୁଆଁଇ । କୋପ ପରିହରି ଶୁଣ ମୋ ବଚନ ସାଇଁ ॥୨॥
ନାଥ! ଶତ୍ରୁତା କରିବା ଉଚିତ ତାଠାରେ । ବୁଦ୍ଧି ବଳରେ ଯାହାକୁ ଜିଣାଯାଇ ପାରେ ॥
ତୁମ୍ଭ ରଘୁପତି ମଧ୍ୟେ ଅନ୍ତର ତେମନ୍ତ । ନିଶ୍ଚୟ ଜାଣ ଖଦ୍ୟୋତ ଭାସ୍କରେ ଯେମନ୍ତ ॥୩॥
ଅତି ବଳୀ ମଧୁ କଇଟଭ ଯେ ମାରିଲେ । ମହାବୀର ଦିତି ସୁତେ ସଂହାର କରିଲେ ॥
ଯେ ବଳି ବାନ୍ଧି ମାରିଲେ ସହସ୍ରଭୁଜାକୁ । ସେ ଅବତରିଲେ ମହୀ ଭାର ହରିବାକୁ ॥୪॥
ବିରୋଧ ନ କର ନାଥ! ତାହାଙ୍କ ସଙ୍ଗତେ । କାଳ କର୍ମ ଗୁଣ ନ୍ୟସ୍ତ ଯାହାଙ୍କର ହସ୍ତେ ॥୫॥

---

କିମ୍ବା ବା ତାହା ଦ୍ୱାରା କୁହାଇ ତାକୁ ଶୁଣ ଦେଉଥା'ନ୍ତି ॥ ୪ ॥ ଯେଉଁ ରାକ୍ଷସମାନଙ୍କର ନାକକାନ କଟିଗଲା, ସେମାନେ ଯାଇ ରାବଣ ଆଗରେ ସମସ୍ତ ସମାଚାର କହିଲେ । ସମୁଦ୍ର ଉପରେ ସେତୁବନ୍ଧ ବନ୍ଧା ଯାଇଥିବାର ଖବର ରାବଣ ଜାଣିବା ମାତ୍ରେ ଘାବରେଇଗଲା ଏବଂ ଦଶମୁଖରେ କହି ଉଠିଲା— ॥ ୫ ॥ ଦୋହା — "ବନନିଧି, ନୀରନିଧି, ଜଳଧି, ସିନ୍ଧୁ, ବାରୀଶ, ତୋୟନିଧି, କମ୍ପତି, ଉଦଧି, ପୟୋଧି, ନଦୀଶକୁ ସତରେ ସେମାନେ ବାନ୍ଧି ପକାଇଲେ ।" ॥ ୫ ॥ ଚୌପାଈ '—ପୁଣି ରାବଣ ନିଜର ବ୍ୟାକୁଳତା ଭଲ ରୂପେ ହୃଦୟଙ୍ଗମ କରି ଉପରେ ଉପରେ ହସିଲା ଏବଂ ଭୟ ଭୁଲି ତାହାର ମହଲ ଭିତରକୁ ଗଲା । ମନ୍ଦୋଦରୀ ଯେତେବେଳେ ଶୁଣିଲା ଯେ, ପ୍ରଭୁ ଶ୍ରୀରାମ ଆସିଗଲେଣି ଏବଂ ସେ କୌତୁକ-କୌତୁକରେ ସମୁଦ୍ରରେ ବନ୍ଧ ବନ୍ଧାଇ ସାରିଛନ୍ତି, ସେ ହାତ ଧରି ପତିଙ୍କୁ ଆପଣା ମହଲ ମଧ୍ୟକୁ ନେଇ ଆସି ଅତି ମନୋହର ବାଣୀ କହିଲା । ଚରଣରେ ମସ୍ତକ ନୁଆଇଁ ସେ ଆପଣାର ଅଞ୍ଚଳ ପସାରି କହିଲା, "ହେ ପ୍ରିୟତମ ! କୋପ ପରିତ୍ୟାଗ କରି ମୋ ବଚନ ଶୁଣନ୍ତୁ ।" ॥୧-୨॥ ହେ ନାଥ ! ବୁଦ୍ଧି ଓ ବଳ ଦ୍ୱାରା ଯାହାକୁ ଜୟ କରାଯାଇ ପାରେ, ତାହାରି ସଙ୍ଗେ

ରାମହିଁ ସୌଁପି ଜାନକୀ ନାଇ କମଲ ପଦ ମାଥ ।
ସୁତ କହୁଁ ରାଜ ସମର୍ପି ବନ ଜାଇ ଭଜିଅ ରଘୁନାଥ ॥୬॥

ନାଥ ଦୀନଦୟାଲ ରଘୁରାଈ । ବାଘଉ ସନମୁଖ ଗଏ ନ ଖାଈ ॥
ଚାହିଅ କରନ ସୋ ସବ କରି ବୀତେ । ତୁମ୍ହ ସୁର ଅସୁର ଚରାଚର ଜୀତେ ॥୧॥
ସନ୍ତ କହହିଁ ଅସି ନୀତି ଦସାନନ । ଚୌଥେଁପନ ଜାଇହି ନୃପ କାନନ ॥
ତାସୁ ଭଜନ କୀଜିଅ ତହଁ ଭର୍ତ୍ତା । ଜୋ କର୍ତ୍ତା ପାଲକ ସଂହର୍ତ୍ତା ॥୨॥
ସୋଇ ରଘୁବୀର ପ୍ରନତ ଅନୁରାଗୀ । ଭଜହୁ ନାଥ ମମତା ସବ ତ୍ୟାଗୀ ॥
ମୁନିବର ଜତନୁ କରହିଁ ଜେହି ଲାଗୀ । ଭୂପ ରାଜୁ ତଜି ହୋହିଁ ବିରାଗୀ ॥୩॥

---

ଜନକ ସୁତାଙ୍କୁ ସମର୍ପି ରାମଙ୍କୁ ନମି ପଦକଞ୍ଜେ ଶିର ।
ରାଜ୍ୟଭାର ସୁତେ ସମର୍ପି ବନସ୍ତେ ଭଜ ଯାଇ ରଘୁବୀର ॥୬॥

ନାଥ ! ଦୀନ ଦୟାନିଧି ଶ୍ରୀ ରଘୁନନ୍ଦନ । ଶରଣ ଗଲେ, ବ୍ୟାଘ୍ର ବି ନ କରେ ଭକ୍ଷଣ ॥
ଯାହା କରିବାର ଥିଲା ସେ ସବୁ କରିଲ । ତୁମ୍ଭେ ଚରାଚର ସୁର ଅସୁର ଜିଣିଲ ॥୧॥
ସନ୍ଥ କହନ୍ତି ଏମନ୍ତ ନୀତି, ଦଶାନନ । ବାର୍ଦ୍ଧକ୍ୟେ ନୃପଙ୍କୁ ଯିବା ଉଚିତ କାନନ ॥
ତାହାଙ୍କ ଭଜନ ତହିଁ କର ଯାଇ, ଭର୍ତ୍ତା । ଯେ ବ୍ରହ୍ମାଣ୍ଡ କର୍ତ୍ତା ଧର୍ତ୍ତା ଆବର ସଂହର୍ତ୍ତା ॥୨॥
ସେ ରଘୁବୀର ଅଟନ୍ତି ପ୍ରଣତାନୁରାଗୀ । ଭଜନ୍ତୁ ନାଥ ! ମମତା ମଦ ପରିତ୍ୟାଗି ॥
ଯତନ କରନ୍ତି ମୁନିବର ଯାହା ଲାଗି । ରାଜ୍ୟ ତ୍ୟକ୍ତ କରି ଭୂପ ହୁଅନ୍ତି ବୈରାଗୀ ॥୩॥

---

ଶତ୍ରୁତା କରିବା ବିଧେୟ । ଜୁଳୁଜୁଳିଆ ପୋକ ଓ ସୂର୍ଯ୍ୟଙ୍କ ମଧ୍ୟରେ ଯେତିକି ପ୍ରଭେଦ, ଆପଣ ଓ ଶ୍ରୀରାମଙ୍କ ମଧ୍ୟରେ ନିଶ୍ଚୟ ପ୍ରଭେଦ ସେତିକି ॥ ୩ ॥ ଯେଉଁ ପ୍ରଭୁ ବିଷ୍ଣୁ ରୂପରେ ମହାବଳୀ, ମଧୁ ଓ କୈଟଭ ନାମକ ଦୈତ୍ୟ ଦ୍ୱୟଙ୍କୁ ମାରିଲେ, ଏବଂ ବରାହ ଓ ନୃସିଂହ ରୂପରେ ମହାଶୂରବୀର ହିରଣ୍ୟାକ୍ଷ ଓ ହିରଣ୍ୟକଶିପୁ ନାମକ ଦୈତ୍ୟପୁଙ୍ଗ ଦୁହିଁଙ୍କୁ ସଂହାର କଲେ, ଯେଉଁ ପ୍ରଭୁ ବାମନ ରୂପରେ ବଳିଙ୍କୁ ବାନ୍ଧିଲେ ଏବଂ ପରଶୁରାମ ରୂପରେ ସହସ୍ରବାହୁଙ୍କୁ ମାରିଲେ, ସେହି ଭଗବାନ୍ ପୃଥିବୀର ଭାର ହରଣ କରିବା ନିମନ୍ତେ ରାମ ରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି ॥ ୪ ॥ ହେ ନାଥ ! ଯାହାଙ୍କ ହସ୍ତରେ କାଳ, କର୍ମ ଓ ଜୀବ ସମସ୍ତେ ରହିଅଛନ୍ତି, ତାହାଙ୍କ ସହିତ ଶତ୍ରୁତା କରନ୍ତୁ ନାହିଁ ॥ ୫ ॥ ଦୋହା —ଶ୍ରୀରାମଙ୍କ ଚରଣ-କମଳରେ ମୁଣ୍ଡ ନୁଆଁଇ ତାଙ୍କର ଶରଣ ପଶନ୍ତୁ, ତାଙ୍କୁ ଜାନକୀଙ୍କୁ ସମର୍ପଣ କରି ଦିଅନ୍ତୁ ଏବଂ ପୁତ୍ରଙ୍କୁ ରାଜ୍ୟ ଦେଇ ବନକୁ ଯାଇ ଶ୍ରୀ ରଘୁନାଥଙ୍କୁ ଭଜନ କରନ୍ତୁ ॥ ୬ ॥ ଚୌପାଇ —ହେ ନାଥ ! ଶ୍ରୀ ରଘୁନାଥ ଦୀନଗଣଙ୍କ ଉପରେ ଦୟା କରନ୍ତି । ତାଙ୍କର ଶରଣାଗତ ହେଲେ, ବ୍ୟକ୍ତିଙ୍କୁ ବ୍ୟାଘ୍ର ସୁଦ୍ଧା ଖାଏ ନାହିଁ । ଆପଣଙ୍କ ପକ୍ଷେ ଯାହା କରିବା ଉଚିତ ଥିଲା, ତାହା ସବୁ ଆପଣ କରି ସାରିଛନ୍ତି । ଆପଣ ଦେବତା, ରାକ୍ଷସ ଓ ଚରାଚର ସମସ୍ତଙ୍କୁ ଜୟ କରି ପକାଇଛନ୍ତି ॥ ୧ ॥ ହେ ଦଶମୁଖ ! ସନ୍ଥଜନ ଏପରି ନୀତି କହୁଥା'ନ୍ତି—ଚତୁର୍ଥ ଅବସ୍ଥାରେ ଅର୍ଥାତ୍ ବାର୍ଦ୍ଧକ୍ୟରେ

ସୋଇ କୋସଲଧୀସ ରଘୁରାୟା । ଆୟଉ କରନ ତୋହି ପର ଦାୟା ॥
ଜୌଁ ପିୟ ମାନହୁ ମୋର ସିଖାୱନ । ସୁଜସୁ ହୋଇ ତିହୁଁ ପୁର ଅତି ପାୱନ ॥୩॥
ଅସ କହି ନୟନ ନୀର ଭରି ଗହି ପଦ କଂପିତ ଗାତ ।
ନାଥ ଭଜହୁ ରଘୁନାଥହି ଅଚଲ ହୋଇ ଅହିୱାତ ॥୬॥
ତବ ରାବନ ମୟସୁତା ଉଠାଈ । କହୈ ଲାଗ ଖଲ ନିଜ ପ୍ରଭୁତାଈ ॥
ସୁନୁ ତୈଁ ପ୍ରିୟା ବୃଥା ଭୟ ମାନା । ଜଗ ଜୋଧା କୋ ମୋହି ସମାନା ॥୧॥
ବରୁନ କୁବେର ପବନ ଜମ କାଲା । ଭୁଜବଲ ଜିତେଉଁ ସକଲ ଦିଗପାଲା ॥
ଦେବ ଦନୁଜ ନର ସବ ବସ ମୋରେଁ । କୱନ ହେତୁ ଉପଜା ଭୟ ତୋରେଁ ॥୨॥

---

ସେହି ଅଯୋଧ୍ୟା-ନାୟକ ରଘୁକୁଳ ପତି । ଦୟା କରିବାକୁ ଆସିଛନ୍ତି ତୁମ୍ଭ ପ୍ରତି ॥
ଯେବେ ଗାବେଶ୍ୱର, ମୋର ବଚନ ମାନିବ । ତିନିଭୁବନେ ପବିତ୍ର ସୁଯଶ ଲଭିବ ॥୪॥
ଏହା କହି ବାଣି ନେତ୍ରେ ପୂର୍ଣ୍ଣ କରି କମ୍ପିତେ ଧରେ ଚରଣ ।
ଭଜ ରଘୁନାଥ ପଦ ଯାଇ ନାଥ, ନ ଯିବ ମୋ ସୁଲକ୍ଷଣ ॥୬॥
ତହୁଁ ଦଶଶିର ମୟ-ସୁତାକୁ ଉଠାଇ । ବର୍ଣ୍ଣିନ କରିଲା ଖଳ ଆପଣା ବଡ଼ାଇ ॥
ଶୁଣ ପ୍ରିୟାବର, ତୁମ୍ଭେ ବୃଥା ଭୟ ମାନ । ଜଗତ ମଧ୍ୟରେ କିଏ ଯୋଦ୍ଧା ମୋ ସମାନ ॥୧॥
ବରୁଣ କୁବେର ପ୍ରଭଞ୍ଜନ ଯମ କାଳ । ଭୁଜବଳେ ଜିଣିଲି ମୁଁ ଦଶ ଦିଗପାଳ ॥
ଦେବ ଦାନବ ମାନବ ସର୍ବେ ବଶ ମୋର । କେଉଁ କାରଣରୁ ଭୟ ଉପୁଜଇ ତୋର ॥୨॥

---

ରାଜାଙ୍କ ପକ୍ଷରେ ବନଗମନ ବିଧେୟ । ହେ ସ୍ୱାମି ! ସେଠାରେ ଆପଣ ସୃଷ୍ଟିର କର୍ତ୍ତା, ପାଳକ ଓ ସଂହାରକ ଶ୍ରୀହରିଙ୍କୁ ଭଜନ କରନ୍ତୁ ॥ ୨ ॥ ହେ ନାଥ ! ଆପଣ ସମସ୍ତ ବିଷୟ-ମମତା ତ୍ୟାଗ କରି ସେହି ଶରଣାଗତ-ପ୍ରେମୀ ଭଗବାନ୍‌ଙ୍କୁ ଭଜନ କରନ୍ତୁ । ଯାହାଙ୍କ ନିମନ୍ତେ ଶ୍ରେଷ୍ଠ ମୁନିଗଣ ସାଧନା କରନ୍ତି ଏବଂ ରାଜାମାନେ ରାଜ୍ୟ ଛାଡ଼ି ବୈରାଗୀ ହୋଇଯାଆନ୍ତି, ସେହି କୋଶଳାଧୀଶ ଶ୍ରୀ ରଘୁନାଥ ଆପଣଙ୍କ ଉପରେ ଦୟା କରିବା ନିମନ୍ତେ ଆସିଅଛନ୍ତି । ହେ ପ୍ରିୟତମ ! ଯଦି ଆପଣ ମୋ ଶିକ୍ଷା ମାନିନେବେ, ତେବେ ଆପଣଙ୍କର ଅତି ପବିତ୍ର ଓ ସୁନ୍ଦର ଯଶ ତିନି ଲୋକରେ ବ୍ୟାପି ଯିବ ।" ॥ ୩-୪ ॥ ଦୋହା :—ଏପରି କହି ସାଶ୍ରୁ ପୂର୍ଣ୍ଣ ନେତ୍ରରେ ପତିଙ୍କ ଚରଣ ଧରି ପ୍ରକମ୍ପିତ ଶରୀରରେ ପୁଣି ମନ୍ଦୋଦରୀ କହିଲା, "ହେ ନାଥ ! ଶ୍ରୀ ରଘୁନାଥଙ୍କୁ ଭଜନ କରନ୍ତୁ, ଯାହା ଫଳରେ ମୋର ହାତ-କାଚ ବଜ୍ର ହୋଇ ରହିଥିବ ।" ॥ ୬ ॥
ଚୌପାଈ :—ତଦନନ୍ତର ରାବଣ ମୟସୁତା ମନ୍ଦୋଦରୀକୁ ଉଠାଇଲା ଏବଂ ସେହି ଦୁଷ୍ଟ ତାହାକୁ ଆପଣା ପ୍ରଭୁତ୍ୱ ବିଷୟରେ କହିବାକୁ ଲାଗିଲା—"ହେ ପ୍ରିୟେ ! ଶୁଣ । ତୁ ବୃଥାରେ ଭୟ ପୋଷଣ କରିଛୁ । ଜଗତରେ ମୋ ସମାନ ଯୋଦ୍ଧା କିଏ କହ ତ ॥୧॥ ବରୁଣ, କୁବେର, ପବନ, ଯମରାଜା ଆଦି ସମସ୍ତ ଦିଗପାଳଙ୍କୁ ଏବଂ କାଳକୁ ମଧ୍ୟ ମୁଁ ଆପଣା ବାହୁ-ବଳରେ ଜିଣି ରଖିଛି । ଦେବତା, ଦାନବ ଓ ମନୁଷ୍ୟ ସମସ୍ତେ ମୋର

ନାନା ବିଧି ତେହି କହେସି ବୁଝାଈ । ସଭାଁ ବହୋରି ବୈଠ ସୋ ଜାଈ ॥
ମଂଦୋଦରୀଁ ହୃଦୟଁ ଅସ ଜାନା । କାଲବସ୍ୟ ଉପଜା ଅଭିମାନା ॥୩॥
ସଭାଁ ଆଇ ମନ୍ତ୍ରିହ୍ନ ତେହିଁ ବୂଝା । କରବ କଵନ ବିଧି ରିପୁ ସୈଁ ଜୂଝା ॥
କହହିଁ ସଚିବ ସୁନୁ ନିସିଚରନାହା । ବାର ବାର ପ୍ରଭୁ ପୂଛହୁ କାହା ॥୪॥
କହହୁ କଵନ ଭୟ କରିଅ ବିଚାରା । ନର କପି ଭାଲୁ ଅହାର ହମାରା ॥୫॥

ସବ କେ ବଚନ ଶ୍ରବନ ସୁନି କହ ପ୍ରହସ୍ତ କର ଜୋରି ।
ନୀତି ବିରୋଧ ନ କରିଅ ପ୍ରଭୁ ମଂତ୍ରିହ୍ନ ମତି ଅତି ଥୋରି ॥୮॥

କହହିଁ ସଚିବ ସଠ ଠକୁରସୋହାତୀ । ନାଥ ନ ପୂର ଆଵ ଏହି ଭାଁତୀ ॥
ବାରିଧି ନାଘି ଏକ କପି ଆଵା । ତାସୁ ଚରିତ ମନ ମହୁଁ ସବୁ ଗାଵା ॥୧॥

---

କହିଲେ ତାହାକୁ ପ୍ରିୟା ବହୁତ ବୁଝାଇ । ନ ଶୁଣି ସଭାରେ ପୁଣି ବସିଲେ ସେ ଯାଇ ॥
ମନ୍ଦୋଦରୀ ମନ ମଧ୍ୟେ ଏମନ୍ତ ଜାଣିଲେ । କାଳ ବଶ ଅଭିମାନ କାନ୍ତେ ଉପୁଜିଲେ ॥୩॥
ସଭାକୁ ଯାଇ ପଚାରେ ମନ୍ତ୍ରୀଙ୍କ ଆଗରେ । କେଉଁ ପ୍ରକାରେ ଯୁଝିବା ଶତ୍ରୁ ସଙ୍ଗତରେ ॥
ବୋଲନ୍ତି ସଚିବେ ଶୁଣ, ନିଶାଚର-ଈଶ । ବାରମ୍ବାର ପ୍ରଭୁ, ତୁମ୍ଭେ ପଚାରୁଛ କିସ ॥୪॥
କହ, କେଉଁ ଭୟ ହେତୁ କରିବା ବିଚାର । ମନୁଷ୍ୟ ଋକ୍ଷ ମର୍କଟ ଆମ୍ଭର ଆହାର ॥୫॥

ଶୁଣି ସମସ୍ତଙ୍କ ବଚନ ପ୍ରହସ୍ତ କହଇ ସଯୋଡି କର ।
ନୀତି ପ୍ରତିକୂଳ ନ ଚଳ ଭୂପାଳ, ଅଳ୍ପ ବୁଦ୍ଧି ମନ୍ତ୍ରୀଙ୍କର ॥୮॥

ମୁହଁଚୁହାଁ କଥା ସବେ କହନ୍ତି ସଚିବ । ନାଥ! ଏ କଥା କୌଣସି କାମେ ନ ଆସିବ ॥
ଲଂଘି ବାରିନିଧି ଏକ ଆସିଲା ବାନର । ତା ଚରିତ ଗାଉଛନ୍ତି ଏବେ ନିଶାଚର ॥୧॥

---

ବଶୀଭୂତ । ତଥାପି ତୋ ମନରେ କି ହେତୁ ଏ ଭୟ ଜାତ ହେଲା ?" ॥ ୨ ॥
ମନ୍ଦୋଦରୀ ତାହାକୁ ବହୁତ ପ୍ରକାରେ ବୁଝାଇ କହିଲା । କିନ୍ତୁ 'ରାବଣ ତାହାର ପକ୍ଷେ ହେଲେ କଥା ଶୁଣିଲା ନାହିଁ । ସେ ପୁଣି ଯାଇ ସଭାରେ ବସିପଡ଼ିଲା । ମନ୍ଦୋଦରୀ ହୃଦୟରେ ଅନୁଭବ କରିପାରିଲା ଯେ, କାଳର ବଶ ହେବା ହେତୁ ସ୍ୱାମୀ ମନରେ ଅଭିମାନ ଆସିଯାଇଛି ॥୩॥ ସଭାକୁ ଆସି ରାବଣ ଶତ୍ରୁ ସହିତ କିପରି ଭାବରେ ଯୁଦ୍ଧ କରିବାକୁ ହେବ ତାହା ମନ୍ତ୍ରୀମାନଙ୍କୁ ପଚାରିଲା । ମନ୍ତ୍ରୀମାନେ କହିବାକୁ ଲାଗିଲେ, "ହେ ରାକ୍ଷସ-ନାଥ ! ହେ ପ୍ରଭୋ ! ଶୁଣନ୍ତୁ, ଆପଣ ବାରମ୍ବାର ଏମିତି କ'ଣ ପଚାରୁ ଅଛନ୍ତି ? ॥୪॥ ଏପରି ଗୋଟାଏ ବଡ ଭୟ କ'ଣ ଅଛି, ଯାହା ଉପରେ ଏତେ ବିଚାର ଦରକାର ପଡ଼ୁଛି ? କୁହନ୍ତୁ ତ ! ମନୁଷ୍ୟ ଏବଂ ବାନର ଭଲ୍ଲୁକ ତ ଆମର ଭୋଜନ-ସାମଗ୍ରୀ ।" ॥୫॥
ଦୋହା:—କାନରେ ସମସ୍ତଙ୍କ କଥା ଶୁଣି, ରାବଣର ପୁଅ ପ୍ରହସ୍ତ ହାତ ଯୋଡି କହିବାକୁ ଲାଗିଲା—"ହେ ପ୍ରଭୋ ' ନୀତି ବିରୁଦ୍ଧରେ କିଛି କରିବା ଉଚିତ ନୁହେଁ । ମନ୍ତ୍ରୀମାନଙ୍କର ବୁଦ୍ଧି ଅତି ଅଳ୍ପ ॥ ୮ ॥ ଚୌପାଈ :—ଏହି ସବୁ ମୂର୍ଖ ଚାଟୁକାର ମନ୍ତ୍ରୀମାନେ ତୋଷାମଦ କରୁଅଛନ୍ତି । ହେ ନାଥ ! ଏ ପ୍ରକାର କଥାରେ ମାତ୍ର କାମ କିଛି ହୁଏନାହିଁ ।

ଛୁଧା ନ ରହୀ ତୁମ୍ହହି ତବ କାହୂ । ଜାରତ ନଗରୁ କସ ନ ଧରି ଖାହୂ ॥
ସୁନତ ନୀକ ଆଗେଁ ଦୁଖ ପାୱା । ସଚିବନ ଅସ ମତ ପ୍ରଭୁହି ସୁନାୱା ॥୨॥
ଜେହିଁ ବାରୀସ ବଁଧାୟଉ ହେଲା । ଉତରେଉ ସେନ ସମେତ ସୁବେଲା ॥
ସୋ ଭନୁ ମନୁଜ ଖାବ ହମ ଭାଈ । ବଚନ କହହିଁ ସବ ଗାଲ ଫୁଲାଈ ॥୩॥
ତାତ ବଚନ ମମ ସୁନୁ ଅତି ଆଦର । ଜନି ମନ ଗୁନହୁ ମୋହି କରି କାଦର ॥
ପ୍ରିୟ ବାନୀ ଜେ ସୁନହିଁ ଜେ କହହୀଁ । ଐସେ ନର ନିକାୟ ଜଗ ଅହହୀଁ ॥୪॥
ବଚନ ପରମ ହିତ ସୁନତ କଠୋରେ । ସୁନହିଁ ଜେ କହହିଁ ତେ ନର ପ୍ରଭୁ ଥୋରେ ॥
ପ୍ରଥମ ବସୀଠ ପଠଉ ସୁନୁ ନୀତୀ । ସୀତା ଦେଇ କରହୁ ପୁନି ପ୍ରୀତୀ ॥୫॥
ନାରି ପାଇ ଫିରି ଜାହିଁ ଜୌଁ ତୌ ନ ବଢ଼ାଇଅ ରାରି ।
ନାହିଁ ତ ସନମୁଖ ସମର ମହି ତାତ କରିଅ ହଠି ମାରି ॥୬॥

---

କ୍ଷୁଧା କି ନ ଥିଲା ତେବେ ସମସ୍ତଙ୍କୁ, ଭାଇ । ଜାଳନ୍ତେ ନଗର ଧରି ନ ପାରିଲ ଖାଇ ॥
ଶୁଣିବାକୁ ଭଲ, ଦୁଃଖ-ଦାୟକ ଅନ୍ତକୁ । ମନ୍ତ୍ରିଗଣ ସେହି ମତ ଶୁଣାନ୍ତି ନାଥଙ୍କୁ ॥୨॥
ଯେ ବାରିନିଧି ବାନ୍ଧିଲେ କୌତୁକ ଖେଳରେ । କପିଦଳ ସହ ଡେରା କଲେ ସୁବେଳାରେ ॥
ତାଙ୍କୁ ନର ମଣି ଆମ୍ଭେ କରିବୁ ଭୋଜନ । ମୁହଁ ଆଣ୍ଠି କରି ସର୍ବେ ବୋଲନ୍ତି ବଚନ ॥୩॥
ସାଦରେ ତାତ, ମୋହର କଥନ ଶୁଣନ୍ତୁ । ଭୀରୁ ବୋଲି ନିଜ ମନ ମଧ୍ୟେ ନ ଗୁଣନ୍ତୁ ॥
ପ୍ରିୟ ବାଣୀ ଯେ ଶୁଣନ୍ତି ପୁଣି ଯେ କହନ୍ତି । ଏମନ୍ତ ନର ସଂସାରେ ବହୁତ ମିଳନ୍ତି ॥୪॥
ବଚନ ପରମ ହିତ କଠୋର ଶୁଣନ୍ତେ । କହନ୍ତି ଶୁଣନ୍ତି ଅଳ୍ପ ମନୁଷ୍ୟ ଜଗତେ ॥
ନୀତି ଅନୁରୂପ ଦୂତ ପେଷି ପ୍ରଥମରେ । ସୀତାଙ୍କୁ ଦେଇ କରନ୍ତୁ ପ୍ରୀତି ଏହା ପରେ ॥୫॥
ନାରୀ ପାଇ ଯେବେ ଫେରିଯିବେ ତେବେ ବୈରବୃଦ୍ଧି ନ କରନ୍ତୁ ।
ନାହିଁ ତ ସମ୍ମୁଖ ସଂଗ୍ରାମରେ ତାତ, ବଳ ପୂର୍ବକ ମାରନ୍ତୁ ॥୬॥

---

ଗୋଟିଏ ମାତ୍ର ବାନର ସମୁଦ୍ର ଲଙ୍ଘନ କରି ଆସିଥିଲା । ତାହାର ଲୀଳା ସମସ୍ତ ରାକ୍ଷସ ଅଦ୍ୟାବଧି ମନେ ମନେ ଗାଇ ହେଉଛନ୍ତି ' ॥ ୧ ॥ ସେତେବେଳେ ତୁମ୍ଭମାନଙ୍କ ମଧ୍ୟରୁ କାହାରିକୁ କ୍ଷୁଧା ଲାଗୁ ନ ଥିଲା ! ବାନର ତ ତୁମ୍ଭମାନଙ୍କର ଭୋଜନ-ସାମଗ୍ରୀ । ନଗର ଜାଳିବା ସମୟରେ ତାକୁ ଧରି କାହିଁକି ଖାଇ ଦେଲ ନାହିଁ ? ଏହି ମନ୍ତ୍ରୀମାନେ ସ୍ୱାମୀଙ୍କୁ ଏପରି ପରାମର୍ଶ ଦେଉଅଛନ୍ତି, ଯାହା ଶ୍ରୁତିମଧୁର, କିନ୍ତୁ ତାହା ଯୋଗେ ଭବିଷ୍ୟତରେ ଦୁଃଖ ମିଳିବ ॥ ୨ ॥ ଯେ ଅବଲୀଳାକ୍ରମେ ସମୁଦ୍ର ବନ୍ଧାଇ ପକାଇଲେ ଏବଂ ସେନା ସମେତ ସୁବେଳ ପର୍ବତ ଉପରେ ଆସି ଓହ୍ଲାଇଅଛନ୍ତି, ହେ ଭାଇ ! କୁହ ତ, ସେ ମନୁଷ୍ୟ କି—ଯାହାକୁ କି କହୁଛ, ଆମେମାନେ ଖାଇଦେବା ବୋଲି ? ସମସ୍ତେ ଗାଲୁ ମାରି ପାଗଳଙ୍କ ପରି କଥାବାର୍ତ୍ତା କରୁଅଛ ! ॥ ୩ ॥ ହେ ତାତ ! ମୋର କଥା ସବୁ ଅତି ଆଦରରେ ଶୁଣନ୍ତୁ । ମୋତେ କାପୁରୁଷ ବୋଲି ମନେ କରନ୍ତୁ ନାହିଁ । ଜଗତରେ ଏପରି ମନୁଷ୍ୟ ପଲ ପଲ ହୋଇ ରହିଅଛନ୍ତି, ଯେଉଁମାନେ ମୁଖମଧୁର କଥା ଶୁଣନ୍ତି

ଯହ ମତ ଜୌଁ ମାନହୁ ପ୍ରଭୁ ମୋରା । ଉଭୟ ପ୍ରକାର ସୁଜସୁ ଜଗ ତୋରା ॥
ସୁତ ସନ କହ ଦସକଂଠ ରିସାଈ । ଅସି ମତି ସଠ କେହିଁ ତୋହି ସିଖାଈ ॥୧॥
ଅବହୀଂ ତେଁ ଉର ସଂସୟ ହୋଈ । ବେନୁମୂଲ ସୁତ ଭୟହୁ ଘମୋଈ ॥
ସୁନି ପିତୁ ଗିରା ପରୁଷ ଅତି ଘୋରା । ଚଲା ଭବନ କହି ବଚନ କଠୋରା ॥୨॥
ହିତ ମତ ତୋହି ନ ଲାଗତ କୈସେଁ । କାଲ ବିବସ କହୁଁ ଭେଷଜ ଜୈସେଁ ॥
ସନ୍ଧ୍ୟା ସମୟ ଜାନି ଦସସୀସା । ଭବନ ଚଲେଉ ନିରଖତ ଭୁଜ ବୀସା ॥୩॥
ଲଙ୍କା ସିଖର ଉପର ଆଗାରା । ଅତି ବିଚିତ୍ର ତହଁ ହୋଇ ଅଖାରା ॥
ବୈଠ ଜାଇ ତେହିଁ ମନ୍ଦିର ରାବନ । ଲାଗେ କିଂନର ଗୁନଗନ ଗାଵନ ॥୪॥
ବାଜହିଁ ତାଲ ପଖାଉଜ ବୀନା । ନୃତ୍ୟ କରହିଁ ଅପଛରା ପ୍ରବୀନା ॥୫॥

---

ଏହି ମତ ଯେବେ ପ୍ରଭୁ, ମାନିବ ମୋହର । ଦୋଇ ପ୍ରକାରେ ସୁଯଶ ଜଗତେ ତୁମ୍ଭର ॥
ଶୁଣି ସୁତକୁ କହିଲା କ୍ରୋଧେ ଦଶକଣ୍ଠ । ଏମନ୍ତ ବୁଦ୍ଧି କେ ତୋତେ ଶିଖାଇଲା ଶଠ ॥୧॥
ଏତେବେଳୁ ତୋ ହୃଦୟେ ହୁଅଇ ସଂଶୟ । ବେଣୁ-ମୂଳ ସତ୍ୟାନାଶୀ ହୋଇଲୁ ତନୟ ॥
ଶୁଣି ପିତାର ପୌରୁଷ ବାକ୍ୟ ଅତଘୋର । ଗମିଲା ଭବନେ କହି ବଚନ କଠୋର ॥୨॥
ହିତ ମତ ତୋତେ ଭଲ ନ ଲାଗେ ଯେମନ୍ତ । କାଲ ବିବଶ ପ୍ରାଣୀକୁ ଔଷଧ ଯେମନ୍ତ ॥
ସନ୍ଧ୍ୟା ଉପସ୍ଥିତ ଲଙ୍କନାୟକ ଦେଖିଣ । ଚଳିଲା ଗୃହକୁ ବିଂଶଭୁଜେ ନିରେଖିଣ ॥୩॥
ଲଙ୍କାର ଶିଖରେ ରମ୍ୟ ଆଗାର ଶୋଭିତ । ଅତି ବିଚିତ୍ର ଆଖଡ଼ା ହୁଏ ତହିଁ ନିତ୍ୟ ॥
ବସିଲା ସେହି ଭବନେ ଯାଇ ଲଙ୍କେଶ୍ୱର । ଗୁଣ ଗାୟନେ ଲାଗିଲେ କିନ୍ନର ନିକର ॥୪॥
ବାଜଇ ଝାଂଝ ଆଦର ପଖଉଜ ବୀଣା । ନୃତ୍ୟ କରନ୍ତି ସୁନ୍ଦରୀ ଅପ୍‌ସରା ପ୍ରବୀଣା ॥୫॥

---

ଓ କହନ୍ତି ॥ ୪ ॥ ହେ ପ୍ରଭୋ ' ଶୁଣିବାକୁ କଠୋର, କିନ୍ତୁ ପରିଣାମରେ ପରମହିତକର ବଚନ ଯେଉଁମାନେ ଶୁଣନ୍ତି ଓ କହନ୍ତି, ସେପରି ମନୁଷ୍ୟ ସଂସାରରେ ଅତି ଅଳ୍ପ । ନୀତି ଶୁଣନ୍ତୁ; ତଦନୁସାରେ ପ୍ରଥମେ ଦୂତ ପଠାନ୍ତୁ ଏବଂ ତତ୍ପରେ ସୀତାଙ୍କୁ ଦେଇ ଶ୍ରୀରାମଙ୍କ ସହିତ ପ୍ରୀତି ସ୍ଥାପନ କରନ୍ତୁ ॥ ୫ ॥ ଦୋହା '—ଯଦି ସେ ସ୍ତ୍ରୀ ପାଇ ଫେରି ଯାଆନ୍ତି, ତେବେ ବୃଥାରେ ଆଉ ଦ୍ୱନ୍ଦ୍ୱ ବଢାନ୍ତୁ ନାହିଁ । ନଚେତ୍ (ଯଦି ନ ଫେରନ୍ତି) ସମ୍ମୁଖ ଯୁଦ୍ଧଭୂମିରେ ତାଙ୍କ ସହିତ ଦୃଢ ଭାବରେ ଲଢେଇ କରି ମାର-କାଟ କରନ୍ତୁ ॥ ୧ । ଚୌପାଈ '—ହେ ପ୍ରଭୋ ' ଯଦି ଆପଣ ମୋର ପରାମର୍ଶ ମାନିବେ, ତେବେ ଜଗତରେ ଉଭୟ ପ୍ରକାରେ ଆପଣଙ୍କର ସୁଯଶ ହେବ ।” ରାବଣ କ୍ରୋଧରେ ପରିପୂର୍ଣ୍ଣ ହୋଇ ପୁତ୍ରକୁ କହିଲା, “ଆରେ ମୂର୍ଖ ! ତୋତେ ଏପରି ବୁଦ୍ଧି କିଏ ଶିଖାଇଲା ? ॥ ୧ ॥ ବର୍ତ୍ତମାନଠାରୁ ତୋ ମନରେ ସଂଶୟ ହେଉଛି ? ରେ ପୁତ୍ର ! ତୁ ତ ବାଉଁଶ ମୂଳରେ ଘମୋଇ (ବାଉଁଶମାରା ରୋଗ) ହେଲୁ !” ପିତାଙ୍କର ଅତି ଘୋର ଓ କଠୋର ବାଣୀ ଶୁଣି ପ୍ରହସ୍ତ ଏପରି କଠୋର ବଚନ କହି କହି ଘରକୁ ଗଲାଚଳିଗଲା— ॥୨॥ “ହେ ପିତା ! ଯେପରି କାଳକବଳରେ ପଡିଥିବା ରୋଗୀକୁ ଔଷଧ ଭଲ ଲାଗେ

ସୁନାସୀର ସତ ସରିସ ସୋ ସନ୍ତତ କରଇ ବିଲାସ ।
ପରମ ପ୍ରବଲ ରିପୁ ସୀସ ପର ତଦ୍ୟପି ସୋଚ ନ ତ୍ରାସ ॥୧୦॥

ଇହାଁ ସୁବେଲ ସୈଲ ରଘୁବୀରା । ଉତରେ ସେନ ସହିତ ଅତି ଭୀରା ॥
ସିଖର ଏକ ଉତଙ୍ଗ ଅତି ଦେଖୀ । ପରମ ରମ୍ୟ ସମ ସୁଭ୍ର ବିସେଷୀ ॥୧॥
ତହଁ ତରୁ କିସଲୟ ସୁମନ ସୁହାଏ । ଲଛିମନ ରଚି ନିଜ ହାଥ ଡସାଏ ॥
ତା ପର ରୁଚିର ମୃଦୁଲ ମୃଗଛାଲା । ତେହିଁ ଆସନ ଆସୀନ କୃପାଲା ॥୨॥
ପ୍ରଭୁ କୃତ ସୀସ କପୀସ ଉଛଙ୍ଗା । ବାମ ଦହିନ ଦିସି ଚାପ ନିଷଙ୍ଗା ॥
ଦୁହୁଁ କର କମଲ ସୁଧାରତ ବାନା । କହ ଲଙ୍କେସ ମନ୍ତ୍ର ଲଗି କାନା ॥୩॥

---

ଶତ ସୁନାସୀରର ସମ ଦଶଶିର ସତତ କରେ ବିଳାସ ।
ପରମ ପ୍ରବଳ ଶତ୍ରୁ ଶିରେ ଥିଲା, ତଥାପି ନ କରେ ତ୍ରାସ ॥୧୦॥

ଏଣେ ସୁବେଲ ଶଇଳେ ଶ୍ରୀ ରଘୁନନ୍ଦନ । ପହଞ୍ଚିଲେ ସଙ୍ଗେ ଘେନି ସୈନ୍ୟ ଅଗଣନ ॥
ବିଲୋକି ସୁନ୍ଦର ଏକ ଗିରିବର ଶୃଙ୍ଗ । ଅତି ସ୍ୱଚ୍ଛ ସମତଳ ଅତ୍ୟନ୍ତ ଉତ୍ତୁଙ୍ଗ ॥୧॥
ସେ ସ୍ଥାନେ ମୃଦୁ ସୁମନ କିଶଳୟ ଆଣି । ବିଛାଇଲେ ସଉମିତ୍ରି ସାଜି ନିଜ ପାଣି ॥
ମୃଦୁ ମୃଗ ଛାଲ ତହିଁ ଉପରେ ସୁନ୍ଦର । ସେହି ଆସନେ ଆସୀନ ହେଲେ କୃପାକର ॥୨॥
କପୀଶ ଉତ୍ସଙ୍ଗେ ପ୍ରଭୁ ରଖିଛନ୍ତି ଶିର । ବାମ ଡାହାଣ ପାର୍ଶ୍ୱରେ କୋଦଣ୍ଡ ତୂଣୀର ॥
ବେନି କର-କମଳରେ ଶର ସଳଖନ୍ତି । କର୍ଣ୍ଣ ସମୀପେ ମନ୍ତ୍ରଣା କହେ ଲଙ୍କପତି ॥୩॥

---

ନାହିଁ, ସେହିପରି ହିତକର ପରାମର୍ଶ ଆପଣଙ୍କ ଉପରେ ପ୍ରଭାବ ପକାଉନାହିଁ ।" ସନ୍ଧ୍ୟା ସମୟର ଆଗମନ ଜାଣି ରାବଣ ତାହାର ବିଂଶ ବାହୁକୁ ନିରୀକ୍ଷଣ କରି କରି ମହଲ ମଧ୍ୟକୁ ଚାଲିଗଲା ॥ ୩ ॥ ଲଙ୍କାର ଶିଖର ଦେଶରେ ଗୋଟିଏ ଅତି ବିଚିତ୍ର ମହଲ ଥିଲା । ସେହିଠାରେ ନୃତ୍ୟଗୀତର ଆଖଡା ଜମୁଥିଲା । ରାବଣ ସେହି ମହଲ ମଧ୍ୟକୁ ଯାଇ ବସିପଡ଼ିଲା । କିନ୍ନରମାନେ ତାହାର ଗୁଣାବଳୀର ଗାଥା ଗାଇବାକୁ ଲାଗିଲେ ॥୪॥ କରତାଳି, ମୃଦଙ୍ଗ ଓ ବୀଣା ବାଜୁଥାଏ । ପ୍ରବୀଣା ଅପ୍ସରାମାନେ ନୃତ୍ୟ କରୁଥାଆନ୍ତି ॥୫॥ ଦୋହା —ସେଠାରେ ରାବଣ ଶହ ଶହ ଇନ୍ଦ୍ରଙ୍କ ତୁଲ୍ୟ ନିରନ୍ତର ଭୋଗବିଳାସ କରୁଥାଏ । ରାମଙ୍କ ସଦୃଶ ଅତି ପ୍ରବଳ ଶତ୍ରୁ ମୁଣ୍ଡ ଉପରେ ଥିଲେ ହେଁ ତାହାର ମନରେ ଚିନ୍ତା ନ ଥାଏ କି ଡର ବି ନ ଆଏ ॥ ୧୦ ॥ ଚୌପାଈ :—ଏଣେ ଶ୍ରୀ ରଘୁବୀର ସୁବେଲ ପର୍ବତ ଉପରେ ବିରାଟ ସେନାଦଳ ସହିତ ଓହ୍ଲାଇଲେ । ପର୍ବତର ଗୋଟିଏ ଅତି ଉଚ୍ଚ, ପରମରମଣୀୟ, ସମତଳ ଓ ବିଶେଷ ରୂପେ ଉଜ୍ଜ୍ୱଳ ଶିଖର ପ୍ରଦେଶ ଦେଖି ସେହିଠାରେ ଲକ୍ଷ୍ମଣ ବୃକ୍ଷର କୋମଳ ପତ୍ର ଓ ସୁନ୍ଦର ଫୁଲ ନିଜ ହାତରେ ସଜାଇ ବିଛାଇ ଦେଲେ । ତାହା ଉପରେ ସୁନ୍ଦର ଓ କୋମଳ ମୃଗଛାଲ ବିଛାଇ ଦେଲେ । ସେହି ଆସନ ଉପରେ କୃପାଳୁ ଶ୍ରୀ ରଘୁନାଥ ବିରାଜମାନ ହେଲେ ॥ ୧-୨ ॥ ପ୍ରଭୁ ଶ୍ରୀରାମ ବାନରରାଜ ସୁଗ୍ରୀବଙ୍କ କୋଳରେ ନିଜ ମସ୍ତକ ରଖିଅଛନ୍ତି । ତାଙ୍କର ବାମ ପାର୍ଶ୍ୱରେ ଧନୁ ଓ

ବଡ଼ଭାଗୀ ଅଙ୍ଗଦ ହନୁମାନା । ଚରନ କମଲ ଚାପତ ବିଧି ନାନା ॥
ପ୍ରଭୁ ପାଛେଁ ଲଛିମନ ବୀରାସନ । କଟି ନିଷଂଗ କର ବାନ ସରାସନ ॥୪॥

ଏହି ବିଧି କୃପା ରୂପ ଗୁନ ଧାମ ରାମୁ ଆସୀନ ।
ଧନ୍ୟ ତେ ନର ଏହିଁ ଧ୍ୟାନ ଜେ ରହତ ସଦା ଲୟ ଲୀନ ॥୧୧(କ)॥
ପୂରବ ଦିସା ବିଲୋକି ପ୍ରଭୁ ଦେଖା ଉଦିତ ମୟଂକ ।
କହତ ସବହି ଦେଖହୁ ସସିହି ମୃଗପତି ସରିସ ଅସଂକ ॥୧୧(ଖ)॥

ପୂରବ ଦିସି ଗିରିଗୁହା ନିବାସୀ । ପରମ ପ୍ରତାପ ତେଜ ବଲ ରାସୀ ॥
ମତ୍ତ ନାଗ ତମ କୁମ୍ଭ ବିଦାରୀ । ସସି କେସରୀ ଗଗନ ବନ ଚାରୀ ॥୧॥
ବିଥୁରେ ନଭ ମୁକୁତାହଲ ତାରା । ନିସି ସୁନ୍ଦରୀ କେର ସିଂଗାରା ॥
କହ ପ୍ରଭୁ ସସି ମହୁଁ ମେଚକତାଈ । କହହୁ କାହ ନିଜ ନିଜ ମତି ଭାଈ ॥୨॥

---

ଅନେକ ପ୍ରକାରେ ବାଳିସୁତ, ହନୁମନ୍ତ । ସେବନ୍ତି ପଦ-ପଙ୍କଜ ବଡ଼ ଭାଗ୍ୟବନ୍ତ ॥
ପ୍ରଭୁଙ୍କ ପଛେ ଲକ୍ଷ୍ମଣ ସ୍ଥିତ ବୀରାସନେ । ସଜ୍ଜିତ କଟି ନିଷଙ୍ଗ ବାଣ ଶରାସନେ ॥୪॥

ଏହି ଭାବେ ଗୁଣ-ଶୀଳ ସୁଖଧାମ କୃପାଳୁ ରାମ ଆସୀନ ।
ଧନ୍ୟ ନର ସେହି ଏହି ଧ୍ୟାନେ ଯେହି ରହଇ ସତତ ଲୀନ ॥୧୧ (କ)॥
ପୂରୁବ ଦିଗକୁ ଅବଲୋକି ପ୍ରଭୁ ନିରେଖି ଇନ୍ଦୁ ଉଦୟ ॥
ଭାଷିଲେ ସେନାଙ୍କୁ, ଦେଖ ଚନ୍ଦ୍ରମାକୁ ମୃଗେନ୍ଦ୍ର ସମ ନିର୍ଭୟ ॥୧୧(ଖ)॥

ପୂର୍ବ ଦିଗ ଗିରି ଗୁହା ଗହ୍ୱର ନିବାସୀ । ପରମ ପ୍ରତାପଶାଳୀ ତେଜ-ବଳ-ରାଶି ॥
ଉନ୍ମତ୍ତ ମାତଙ୍ଗ ତମ ଗଣ୍ଡକୁ ବିଦାରି । ଶଶୀ-କେଶରୀ ଗଗନ-ବିପିନ ବିହାରୀ ॥୧॥
ବିଞ୍ଚିଯାଏ ମୁକ୍ତାଚୟ ନଭେ ତାରାଗଣ । ନିଶି-ନାରୀ ସୁନ୍ଦରୀର ରୁଚିର ଭୂଷଣ ॥
ବୋଲନ୍ତି ପ୍ରଭୁ ଶଶାଙ୍କ ମଧ୍ୟେ ଯେ ଶ୍ୟାମତ୍ୱ । କିସ ତାହା କହ ଭାଇ, ନିଜ ନିଜ ମତ ॥୨॥

---

ଦକ୍ଷିଣ ପାର୍ଶ୍ୱରେ ତୂଣୀର ରଖା ହୋଇଛି । ସେ ଆପଣାର କର-କମଳ-ଦ୍ୱୟରେ ବାଣ ସୁଧାରୁଥା'ନ୍ତି । ଲଙ୍କେଶ ବିଭୀଷଣ କାନ ପାଖକୁ ଲାଗି ପରାମର୍ଶ ଦେଉଅଛନ୍ତି ॥ ୩ ॥ ପରମ ଭାଗ୍ୟବାନ୍ ଅଙ୍ଗଦ ଓ ହନୁମାନ୍ ଅନେକ ପ୍ରକାରରେ ପ୍ରଭୁଙ୍କର ଚରଣ-କମଳ ଘଷି ଦେଉଥା'ନ୍ତି । ଲକ୍ଷ୍ମଣ କଟିରେ ତୂଣୀର କଷି ଓ ହସ୍ତରେ ଧନୁଶର ଧରି ବୀରାସନରେ ପ୍ରଭୁଙ୍କ ପଛରେ ସୁଶୋଭିତ ହେଉଥା'ନ୍ତି ॥ ୪ ॥ ଦୋହା :—ଏହି ରୂପେ କୃପା, ରୂପ (ସୌନ୍ଦର୍ଯ୍ୟ) ଓ ଗୁଣର ଧାମ ଶ୍ରୀରାମ ବିରାଜମାନ । ଯେଉଁ ଲୋକମାନେ ଏହି ରୂପ-ଧ୍ୟାନରେ ସଦା ଲୟ ରହନ୍ତି, ସେମାନେ ଏହି ସଂସାରରେ ଧନ୍ୟ ॥ ୧୧ (କ) ॥ ପୂର୍ବ ଦିଗ ଆଡକୁ ଚାହିଁ ପ୍ରଭୁ ଶ୍ରୀରାମଚନ୍ଦ୍ର ଚନ୍ଦ୍ରଙ୍କର ଉଦୟ ଦେଖିଲେ । ସେତେବେଳେ ସେ ସମସ୍ତଙ୍କୁ କହିବାକୁ ଲାଗିଲେ, "ଚନ୍ଦ୍ରମାଙ୍କୁ ଦେଖ ତ, ସିଂହ ସମାନ କେଡ଼େ ନିର୍ଭୀକ ! ॥ ୧୧ (ଖ) ॥ ଚୌପାଇ :—ପୂର୍ବ ଦିଗ ରୂପକ ଗୁମ୍ଫାରେ ବାସ କରୁଥିବା ପରମ ପ୍ରତାପ, ତେଜ ଓ ବଳର ପୁଞ୍ଜ ଏହି ଚନ୍ଦ୍ରମା ରୂପକ ସିଂହ ଅନ୍ଧକାର ରୂପକ

କହ ସୁଗ୍ରୀବ ସୁନହୁ ରଘୁରାଈ । ସସି ମହୁଁ ପ୍ରଗଟ ଭୂମି କୈ ଝାଁଈ ॥
ମାରେଉ ରାହୁ ସସିହି କହ କୋଈ । ଉର ମହଁ ପରୀ ସ୍ୟାମତା ସୋଈ ॥୩॥
କୋଉ କହ ଜବ ବିଧି ରତିମୁଖ କୀହ୍ନା । ସାର ଭାଗ ସସି କର ହରି ଲୀହ୍ନା ॥
ଛିଦ୍ର ସୋ ପ୍ରଗଟ ଇନ୍ଦୁ ଉର ମାହୀଁ । ତେହି ମଗ ଦେଖିଅ ନଭ ପରିଛାହୀଁ ॥୪॥
ପ୍ରଭୁ କହ ଗରଲ ବନ୍ଧୁ ସସି କେରା । ଅତି ପ୍ରିୟ ନିଜ ଉର ଦୀହ୍ନ ବସେରା ॥
ବିଷସଂଜୁତ କରନିକର ପସାରୀ । ଜାରତ ବିରହବନ୍ତ ନରନାରୀ ॥୫॥

କହ ହନୁମନ୍ତ ସୁନହୁ ପ୍ରଭୁ ସସି ତୁମ୍ହାର ପ୍ରିୟ ଦାସ ।
ତବ ମୂରତି ବିଧୁ ଉର ବସତି ସୋଇ ସ୍ୟାମତା ଅଭାସ ॥୧୨(କ)॥

## ନବାହ୍ନପାରାୟଣ, ସପ୍ତମ ବିଶ୍ରାମ

---

ବୋଲଇ ସୁଗ୍ରୀବ, ଶୁଣ, ପ୍ରଭୁ ରଘୁବୀର । ପଡିଛି ଶଶୀ ଉପରେ ଛାୟା ପୃଥିବୀର ॥
ମାରିଲା ରାହୁ ଶଶୀକୁ, କହେ ଅନ୍ୟ କେହି । ହୃଦୟ ମଧ୍ୟେ ପଡିଛି ଶ୍ୟାମଳତା ସେହି ॥୩॥
କେ କହେ ବିଧି ରଚିଲା ରତି ମୁଖ ଯେବେ । ଚନ୍ଦ୍ରମାର ସାରଭାଗ ହରିନେଲା ତେବେ ॥
ଛିଦ୍ର ସେ ପ୍ରତ୍ୟକ୍ଷ ଇନ୍ଦୁ ହୃଦୟ ମଧ୍ୟରେ । ନଭ ଛାୟା ଦେଖାଯାଏ ସେହି ମାର୍ଗରେ ॥୪॥
ଭାଷିଲେ ପ୍ରଭୁ ଗରଳ ବିଧୁବନ୍ଧୁ ଯେଣୁ । ଅତିଶୟ ପ୍ରିୟ, ହୃଦେ ବାସ ଦେଲା ତେଣୁ ॥
ବିଷ ସମ୍ମିଶ୍ରିତ ରଶ୍ମି ନିକର ପ୍ରସାରି । ଜାଳଇ ବିରହ-ବନ୍ତ ନର ଆଉ ନାରୀ ॥୫॥

ବୋଲେ ହନୁମନ୍ତ ଶୁଣ ସୁରନାଥ ! ଶଶୀ ତବ ପ୍ରିୟ ଦାସ ।
ତୁମ୍ଭ ମୂର୍ତ୍ତି ତାର ହୃଦେ ବାସ କରେ, ସେହି ଶ୍ୟାମତ୍ୱ ଆଭାସ ॥୧୨ (କ)॥

---

ଅନ୍ଧାର ହସ୍ତୀର ମସ୍ତକକୁ ବିଦାରଣ କରି ଆକାଶ-କାନନରେ ନିର୍ଭୟରେ ବିଚରଣ କରୁଅଛି ॥ ୧ ॥ ଆକାଶରେ ବିଞ୍ଚି ହୋଇ ପଡିଥିବା ତାରାମାନେ ମୋତି ସଦୃଶ । ସେଗୁଡିକ ନିଶା ରୂପିଣୀ ସୁନ୍ଦରୀ ସ୍ତ୍ରୀର ଶୃଙ୍ଗାର ।" ପ୍ରଭୁ କହିଲେ, "ଭାଇମାନେ ! ଚନ୍ଦ୍ରଠାରେ ଯେଉଁ କାଳିମା ଅଛି, ତାହା କଣ ? ଆପଣା ଆପଣା ବୁଦ୍ଧି ଅନୁସାରେ କୁହ" ॥ ୨ ॥ ସୁଗ୍ରୀବ କହିଲେ, "ହେ ରଘୁନାଥ ! ଶୁଣନ୍ତୁ, ଚନ୍ଦ୍ରମାଠାରେ ପୃଥିବୀର ଛାୟା ଦେଖାଯାଉଛି ।" କେହି ଜଣେ କହିଲା, "ଚନ୍ଦ୍ରଙ୍କୁ ରାହୁ ମାରିଥିଲା ! ସେହି ଆଘାତର କଳା ଚିହ୍ନ ଚନ୍ଦ୍ର ହୃଦୟରେ ପଡିଛି ।" ॥ ୩ ॥ ଆଉ କେହି ଜଣେ କହିଲା, "ଯେତେବେଳେ ବ୍ରହ୍ମା କାମପତ୍ନୀ ରତିଙ୍କର ମୁଖ ଗଢିଲେ, ସେତେବେଳେ ସେ ଚନ୍ଦ୍ରଙ୍କର ସାର ଭାଗ ବାହାର କରିନେଲେ । ଫଳରେ ରତିଙ୍କ ମୁଖ ତ ପରମ ସୁନ୍ଦର ହୋଇଗଲା, କିନ୍ତୁ ଚନ୍ଦ୍ରଙ୍କର ହୃଦୟରେ ଛିଦ୍ର ରହିଗଲା । ସେହି ଛିଦ୍ର ଚନ୍ଦ୍ରମା ହୃଦୟରେ ଏବେ ବର୍ତ୍ତମାନ । ସେହି ବାଟ ଦେଇ ଆକାଶର କଳାଛାଇ ଚନ୍ଦ୍ରମାଠାରେ ଦେଖାଯାଉଛି ।" ॥ ୪ ॥ ପ୍ରଭୁ ଶ୍ରୀରାମ କହିଲେ, "ବିଷ ଚନ୍ଦ୍ରମାଙ୍କର ଅତି ପ୍ରିୟ ଭାଇ । ଏହି ହେତୁ ସେ ବିଷକୁ ନିଜ ହୃଦୟରେ ସ୍ଥାନ ଦେଇ ରଖିଅଛନ୍ତି । ବିଷଯୁକ୍ତ ନିଜର

ପବନତନୟ କେ ବଚନ ସୁନି ବିହଁସେ ରାମୁ ସୁଜାନ ।
ଦଚ୍ଛିନ ଦିସି ଅବଲୋକି ପ୍ରଭୁ ବୋଲେ କୃପାନିଧାନ ॥୧୨(ଖ)॥
ଦେଖୁ ବିଭୀଷନ ଦଚ୍ଛିନ ଆସା । ଘନ ଘମଂଡ ଦାମିନୀ ବିଲାସା ॥
ମଧୁର ମଧୁର ଗରଜଇ ଘନ ଘୋରା । ହୋଇ ବୃଷ୍ଟି ଜନି ଉପଲ କଠୋରା ॥୧॥
କହତ ବିଭୀଷନ ସୁନହୁ କୃପାଲା । ହୋଇ ନ ତଡ଼ିତ ନ ବାରିଦମାଲା ॥
ଲଙ୍କା ସିଖର ଉପର ଆଗାରା । ତହଁ ଦସକନ୍ଧର ଦେଖ ଅଖାରା ॥୨॥
ଛତ୍ର ମେଘଡମ୍ବର ସିର ଧାରୀ । ସୋଇ ଜନୁ ଜଲଦଘଟା ଅତି କାରୀ ॥
ମନ୍ଦୋଦରୀ ଶ୍ରବନ ତାଟଂକା । ସୋଇ ପ୍ରଭୁ ଜନୁ ଦାମିନୀ ଦମଂକା ॥୩॥
ବାଜହିଁ ତାଲ ମୃଦଙ୍ଗ ଅନୂପା । ସୋଇ ରବ ମଧୁର ସୁନହୁ ସୁରଭୂପା ॥
ପ୍ରଭୁ ମୁସୁକାନ ସମୁଝି ଅଭିମାନା । ଚାପ ଚଢ଼ାଇ ବାନ ସଂଧାନା ॥୪॥

---

ଶୁଣନ୍ତେ ପବନ-ତନୟ ବଚନ ହସିଲେ ପ୍ରବୀଣ ରାମ ।
ପୁନଶ୍ଚ ଦକ୍ଷିଣ ଦିଗକୁ ଗ୍ରହିଣ ଭାଷିଲେ କରୁଣାଧାମ ॥୧୨ (ଖ)॥
ଦକ୍ଷିଣ ଦିଗକୁ ଅବଲୋକ, ଲଙ୍କେଶ୍ୱର । ମେଘଗର୍ଜନ ଚପଳା ଚମକ ଆବର ॥
ମଧୁର ମଧୁର ମେଘ ଗରଜଇ ଘୋର । ବୃଷ୍ଟି ବା ହେବ କରକା ପଥର କଠୋର ॥୧॥
ବୋଲେ ବିଭୀଷଣ ପ୍ରଭୁ ! କୃପାମୟ ଶୁଣ । ନୁହେ ମେଘମାଳ କିମ୍ବା ସୌଦାମିନୀ ପୁଣ ॥
ଲଙ୍କା ଶିଖର ଉପରେ ଆଗାର ସୁନ୍ଦର । ତହିଁ ଆଖେଡ଼ା ଦୁଅଇ ଦଶବଦନର ॥୨॥
ଛତ୍ର-ମେଘଡମ୍ବର ତା ଶିରରେ ଶୋହଇ । ଅତି କୃଷ୍ଣ ଘନ ଘଟା ପରି ସେ ଦିଶଇ ॥
ଯେଉଁ କର୍ଣ୍ଣଫୁଲ ଶୋଭେ ମନ୍ଦୋଦରୀ କର୍ଣ୍ଣେ । ଚପଳା ଚମକେ ପ୍ରଭୁ ଯେସନେ ଗଗନେ ॥୩॥
ବାଜଇ ତାଳ ଆବର ମୃଦଙ୍ଗ ଅନୁପ । ସେ ଅଟେ ମଧୁର ଘୋଷ, ଶୁଣ ସୁର-ଭୂପ ॥
ପ୍ରଭୁ ମୃଦୁ ମୁରୁକିଲେ ବୁଝି ଅଭିମାନ । ଚାପେ ଗୁଣ ବାନ୍ଧି କଲେ ଶାୟକ ସନ୍ଧାନ ॥୪॥

---

କରଣ-ସମୂହକୁ ବିସ୍ତାର କରି ସେ ବରଷା ନରନାରୀମାନଙ୍କୁ ବିରହାଗ୍ନିରେ ଜଳାଉ-ଅଛନ୍ତି ।" ॥ ୫ ॥ ଦୋହା :—ହନୁମାନ୍ କହିଲେ, "ହେ ପ୍ରଭୋ ! ଶୁଣନ୍ତୁ; ଚନ୍ଦ୍ର ଆପଣଙ୍କର ପ୍ରିୟ ସେବକ, ଆପଣଙ୍କର ସୁନ୍ଦର ଶ୍ୟାମଳ ମୂର୍ତ୍ତି ଚନ୍ଦ୍ର ହୃଦୟରେ ବାସ କରେ । ସେହି ଶ୍ୟାମଳିମାର ସଙ୍କେତ ଚନ୍ଦ୍ରମାଠାରେ ପ୍ରତିଭାତ ॥ ୧୨ (କ) ॥ ପବନ-ପୁତ୍ର ହନୁମାନ୍‌ଙ୍କ ବଚନ ଶୁଣି, ସୁଜ୍ଞାନୀ ଶ୍ରୀରାମଚନ୍ଦ୍ର ହସିଲେ । ତତ୍ପରେ ଦକ୍ଷିଣ ଦିଗକୁ ଗ୍ରହି କୃପାନିଧାନ ପ୍ରଭୁ କହିଲେ—॥ ୧୨ (ଖ) ॥ ଚୌପାଈ :—"ହେ ବିଭୀଷଣ ! ଦକ୍ଷିଣ ଦିଗ ଆଡ଼କୁ ଚାହଁ, ବାଦଲ କିପରି ଘଡଘଡି କରୁଛି ଏବଂ ବିଜୁଳି କିପରି ଚମକୁଛି । ଭୟଙ୍କର ବାଦଲ ମଧୁର ମଧୁର ସ୍ୱରରେ ଗର୍ଜନ କରୁଅଛି । କାଳେ କଠୋର କୁଆପଥର ବୃଷ୍ଟି ହେବ ।" ॥ ୧ ॥ ବିଭୀଷଣ କହିଲେ, "ହେ କୃପାଳୁ ! ଶୁଣନ୍ତୁ । ତାହା ବିଜୁଳି ନୁହେଁ କିମ୍ବା ଘନଘଟା ନୁହେଁ । ଲଙ୍କାର ଶିଖର ଦେଶରେ ଗୋଟିଏ ମହଲ ଅଛି । ଦଶଗ୍ରୀବ ରାବଣ ସେଠାରେ ନୃତ୍ୟ-ଗାନର ଆଖଡ଼ା ଦେଖୁଅଛି ॥୨॥ ରାବଣ ଆପଣା ଶିର

ଛତ୍ର ମୁକୁଟ ତାଟଂକ ତବ ହତେ ଏକହୀଁ ବାନ ।
ସବ କେଁ ଦେଖତ ମହି ପରେ ମରମୁ ନ କୋଉ ଜାନ ॥୧୩(କ)॥
ଅସ କୌତୁକ କରି ରାମ ସର ପ୍ରବିସେଉ ଆଇ ନିଷଂଗ ।
ରାବନ ସଭା ସସଂକ ସବ ଦେଖି ମହା ରସଭଂଗ ॥୧୩(ଖ)॥
କଂପ ନ ଭୂମି ନ ମରୁତ ବିସେଷା । ଅସ୍ତ୍ରସସ୍ତ୍ର କଛୁ ନୟନ ନ ଦେଖା ॥
ସୋଚହିଁ ସବ ନିଜ ହୃଦୟ ମଝାରୀ । ଅସଗୁନ ଭୟଉ ଭୟଂକର ଭାରୀ ॥୧॥
ଦସମୁଖ ଦେଖି ସଭା ଭୟ ପାଈ । ବିହସି ବଚନ କହ ଜୁଗୁତି ବନାଈ ॥
ସିରଉ ଗିରେ ସଂତତ ସୁଭ ଜାହୀ । ମୁକୁଟ ପରେ କସ ଅସଗୁନ ତାହୀ ॥୨॥

---

ଛତ୍ର କର୍ଣ୍ଣଫୁଲ ମୁକୁଟ ସକଳ କାଟି ଦେଲେ ଏକ ବାଣେ ।
ସର୍ବେ ଦେଖୁ ଦେଖୁ ମହୀରେ ପଡ଼ିଲେ ମରମ କେହି ନ ଜାଣେ ॥୧୩ (କ)॥
କରି କଉତୁକ ଶ୍ରୀରାମ ଶାୟକ ତୂଣୀରେ ହେଲା ପ୍ରବେଶ ।
ମହା ରସଭଙ୍ଗ ଦେଖି ସଭାସଦ ଶଙ୍କିତ ହେଲେ ବିଶେଷ ॥୧୩ (ଖ)॥
ନ କମ୍ପେ ଭୂମି ପ୍ରବଳ ବାୟୁ ନ ବହଇ । ଅସ୍ତ୍ରଶସ୍ତ୍ର କିଛି ନେତ୍ରେ ଦୃଶ୍ୟ ନ ହୁଅଇ ॥
ଚିନ୍ତନ୍ତି ସର୍ବେ ଆପଣା ହୃଦୟେ ବିଚାରି । ଅଶକୁନ ହେଲା ଆସି ରାବଣକୁ ଭାରି ॥୧॥
ସଭା ଭୟ ପାଇବାର ଦେଖି ଦଶାନନ । ହସିଣ ଯୁକ୍ତି ସହିତ କହିଲା ବଚନ ॥
ମସ୍ତକ ପତନ ସଦା କଲ୍ୟାଣ ଯାହାର । ମୁକୁଟ ଖସିଲେ କେଉଁଠୁ ଅଶକୁନ ତାର ॥୨॥

---

ଉପରେ ମେଘଡମ୍ବର ସଦୃଶ ଛତ୍ର ଧାରଣ କରିଅଛି । ତାହା ସତେ ଯେପରି ବିଶାଳ ଓ ଗାଢ କଳା ଘନଘଟା । ମନ୍ଦୋଦରୀ କାନରେ ଯେଉଁ କର୍ଣ୍ଣଫୁଲ ଦୋହଲୁଅଛି, ହେ ପ୍ରଭୋ ! ତାହା ସତେ ଅବା ବିଜୁଳି ପରି ଚମକୁଛି ॥ ୩ ॥ ହେ ସୁରାଧିପ ! ଶୁଣନ୍ତୁ; ଅନୁପମ ତାଳ ଓ ମୃଦଙ୍ଗ ବାଜୁଅଛି । ତାହା ଘନର ମଧୁର ଧ୍ୱନି ।" ରାବଣର ଅଭିମାନ ବୁଝିପାରି, ପ୍ରଭୁ ମୃଦୁଳ ହସିଲେ । ସେ ଧନୁରେ ଗୁଣ ଚଢାଇ ତା ଉପରେ ଶର ଯୋଖିଲେ ॥ ୪ ॥ ଦୋହା .—ପ୍ରଭୁ ଗୋଟିଏ ବାଣରେ ରାବଣର ଛତ୍ର, ମୁକୁଟ ଓ ମନ୍ଦୋଦରୀର କର୍ଣ୍ଣଫୁଲ କାଟି ପକାଇ ଦେଲେ । ସେଗୁଡ଼ିକ ସମସ୍ତଙ୍କ ଆଖି ଆଗରେ ଭୂମି ଉପରେ ଆସି ପଡ଼ିଲା । କିନ୍ତୁ ଏହାର ରହସ୍ୟ କେହି ଜାଣିଲେ ନାହିଁ ॥ ୧୩ (କ) ॥ ଏପରି ଚମତ୍କାର ସୃଷ୍ଟି କରି ଶ୍ରୀରାମଙ୍କ ଶର ଫେରିଆସି ତୂଣୀରରେ ପଶିଗଲା । ଏହି ମହାନ ରସଭଙ୍ଗ ଦେଖି ରାବଣର ସମସ୍ତ ସଭା ଭୟଭୀତ ହୋଇ ପଡ଼ିଲା ॥ ୧୩ (ଖ) ॥ ଚୌପାଇ —-ଭୂମିକମ୍ପ ହେଲାନାହିଁ କିମ୍ବା ପ୍ରବଳ ପବନ ବା ତୋଫାନ ବହିଲା ନାହିଁ । କେହି ନୟନରେ କୌଣସି ଅସ୍ତ୍ରଶସ୍ତ୍ର ସୁଦ୍ଧା ଦେଖିଲେ ନାହିଁ । ତଥାପି ଏ ଛତ୍ର, ମୁକୁଟ ଓ କର୍ଣ୍ଣଫୁଲ କିପରି ଛିଣ୍ଡି ପଡ଼ିଲା ? ଏହି ବିଷୟ ସମସ୍ତେ ନିଜ ନିଜ ହୃଦୟରେ ଚିନ୍ତା କରୁଥା'ନ୍ତି । ଏ ଯେ ଅତି ଭୟଙ୍କର ଅଶୁଭ ଲକ୍ଷଣ ! ॥ ୧ ॥ ସଭାକୁ ଭୟଭୀତ ହେବାର ଦେଖି, ରାବଣ ହସି ଯୁକ୍ତି ଛଳରେ ଏ ବଚନ କହିଲା—

ସୟନ କରହୁ ନିଜ ନିଜ ଗୃହ ଜାଈ । ଗୱନେ ଭବନ ସକଲ ସିର ନାଈ ॥
ମନ୍ଦୋଦରୀ ସୋଚ ଉର ବସେଉ । ଜବ ତେଁ ଶ୍ରବନପୂର ମହି ଖସେଉ ॥୩॥
ସଜଲ ନୟନ କହ ଜୁଗ କର ଜୋରୀ । ସୁନହୁ ପ୍ରାନପତି ବିନତୀ ମୋରୀ ॥
କନ୍ତ ରାମ ବିରୋଧ ପରିହରହୂ । ଜାନି ମନୁଜ ଜନି ହଠ ମନ ଧରହୂ ॥୪॥

ବିସ୍ୱରୂପ ରଘୁବଂସମନି କରହୁ ବଚନ ବିସ୍ୱାସୁ ।
ଲୋକ କଲ୍ପନା ବେଦ କର ଅଂଗ ଅଂଗ ପ୍ରତି ଜାସୁ ॥୧୪॥

ପଦ ପାତାଲ ସୀସ ଅଜ ଧାମା । ଅପର ଲୋକ ଅଁଗ ଅଁଗ ବିଶ୍ରାମା ॥
ଭୃକୁଟି ବିଲାସ ଭୟଙ୍କର କାଲା । ନୟନ ଦିବାକର କଚ ଘନମାଲା ॥୧॥
ଜାସୁ ଘ୍ରାନ ଅସ୍ୱିନୀକୁମାରା । ନିସି ଅରୁ ଦିବସ ନିମେଷ ଅପାରା ॥
ଶ୍ରବନ ଦିସା ଦସ ବେଦ ବଖାନୀ । ମାରୁତ ସ୍ୱାସ ନିଗମ ନିଜ ବାନୀ ॥୨॥

---

ନିଜ ନିଜ ଗୃହେ କର ଶୟନ ଯାଇଣ । ଗମିଲେ ଭବନେ ସର୍ବେ ଜୁହାର କରିଣ ॥
ମନ୍ଦୋଦରୀ ହୃଦେ ଅତି ଚିନ୍ତିତ ହୋଇଲା । ଯେ ଦିନୁ ମହୀରେ କର୍ଣ୍ଣ ଭୂଷଣ ପଡ଼ିଲା ॥୩॥
ସଜଲ ନୟନେ ବୋଲେ ଯୋଡ଼ିଯୁଗ୍ମକର । ଶୁଣ ପ୍ରାଣପତି, ଏହି ବିନତି ମୋହର ॥
ନାଥ ! ରଘୁନାଥ ସଙ୍ଗେ ବିରୋଧ ତେଜନ୍ତୁ । ମନୁଷ୍ୟ ମଣି ହୃଦୟେ ହଠ ନ ଧରନ୍ତୁ ॥୪॥

ବିଶ୍ୱରୂପ ପ୍ରଭୁ ରଘୁବଂଶମଣି ବିଶ୍ୱାସ କର ବଚନ ।
ଯାର ପ୍ରତି ଅଙ୍ଗେ ବ୍ରହ୍ମାଣ୍ଡ କଳ୍ପନା କରଇ ବେଦ ଏସନ ॥୧୪॥

ଚରଣ ପାତାଳ ଶିର ପରମେଷ୍ଠୀ ଧାମ । ଅନ୍ୟ ଲୋକ ଭିନ୍ନ ଭିନ୍ନ ଅଙ୍ଗରେ ବିଶ୍ରାମ ॥
ଭ୍ରୂକୁଟି ବିଳାସ ଘୋର ଭୟଙ୍କର କାଳ । ନୟନ ସୂର୍ଯ୍ୟ ଆବର କେଶ ମେଘମାଳ ॥୧॥
ଯାହାର ଘ୍ରାଣ ଅଟନ୍ତି ଅଶ୍ୱିନୀ କୁମାର । ରଜନୀ ଦିବସ ନେତ୍ର ପଲକ ଅପାର ॥
ଶ୍ରବଣ ଛ’ ଗୁରୁଦଗ ନିଗମେ ବର୍ଣ୍ଣିନ । ମରୁତ ନିଃଶ୍ୱାସ ବେଦ ଆପଣା ବଚନ ॥୨॥

---

“ଶିରପାତ ଦ୍ୱାରା ଯାହା ପକ୍ଷରେ ନିରନ୍ତର ମଙ୍ଗଳ-ଦାୟକ ହୋଇଅଛି, ମୁକୁଟ-ପାତ ତାହା ନିମନ୍ତେ ଅଶୁଭ ଲକ୍ଷଣ ହେବ କିପରି ? ॥ ୨ ॥ ସମସ୍ତେ ନିଜ ନିଜ ଘରକୁ ଯାଇ ଶୟନ କର । ଭୟର କାରଣ କିଛି ନାହିଁ ।” ତେଣୁ ସମସ୍ତେ ମୁଣ୍ଡ ନୁଆଁଇ ନିଜ ନିଜ ଘରକୁ ଗଲେ । ଯେତେବେଳଠାରୁ କର୍ଣ୍ଣଫୁଲ ଭୂମି ଉପରେ ପଡ଼ିଲାଣି, ସେତେବେଳୁ ମନ୍ଦୋଦରୀ ହୃଦୟରେ ଚିନ୍ତାର କଣ୍ଟା ବାସ କଲାଣି ॥ ୩ ॥ ସଜଳ ନେତ୍ରରେ ଦୁଇହାତ ଯୋଡ଼ି ମନ୍ଦୋଦରୀ ରାବଣକୁ କହିବାକୁ ଲାଗିଲା, “ହେ ପ୍ରାଣନାଥ ! ମୋର ବିନତି ଶୁଣନ୍ତୁ । ହେ ପ୍ରିୟତମ ! ଶ୍ରୀରାମଙ୍କ ସହିତ ବିରୋଧ (ଶତ୍ରୁତା) ପରିହାର କରନ୍ତୁ । ତାଙ୍କୁ ମନୁଷ୍ୟ ବୋଲି ଜାଣି ମନରେ ଜିଦ ଧରନ୍ତୁ ନାହିଁ ॥ ୪ ॥ ଦୋହା :— ରଘୁକୁଳ-ଶିରୋମଣି ଶ୍ରୀରାମଚନ୍ଦ୍ର ବିଶ୍ୱରୂପ । ବେଦ ତାହାଙ୍କର ପ୍ରତ୍ୟେକ ଅଙ୍ଗରେ ଅସଂଖ୍ୟ ଲୋକର କଳ୍ପନା କରନ୍ତି । ମୋର ଏହି ବଚନ ଉପରେ ଆପଣ ବିଶ୍ୱାସ କରନ୍ତୁ ॥ ୧୪ ॥ ଚୌପାଈ :—ପାତାଳ ଯେଉଁ ବିଶ୍ୱରୂପ ଭଗବାନ୍‌ଙ୍କର ଚରଣ,

ଅଧର ଲୋଭ ଜମ ଦସନ କରାଲା । ମାୟା ହାସ ବାହୁ ଦିଗପାଲା ॥
ଆନନ ଅନଲ ଅମ୍ବୁପତି ଜୀହା । ଉତପତି ପାଲନ ପ୍ରଲୟ ସମୀହା ॥୩॥
ରୋମରାଜି ଅଷ୍ଟାଦଶ ଭାରା । ଅସ୍ଥି ସୈଲ ସରିତା ନସ ଜାରା ॥
ଉଦର ଉଦଧି ଅଧଗୋ ଜାତନା । ଜଗମୟ ପ୍ରଭୁ କା ବହୁ କଲପନା ॥୪॥

ଅହଙ୍କାର ସିବ ବୁଦ୍ଧି ଅଜ ମନ ସସି ଚିତ୍ତ ମହାନ ।
ମନୁଜ ବାସ ସଚରାଚର ରୂପ ରାମ ଭଗବାନ ॥୧୫(କ)॥
ଅସ ବିଚାରି ସୁନୁ ପ୍ରାନପତି ପ୍ରଭୁ ସନ ବୟରୁ ବିହାଇ ।
ପ୍ରୀତି କରହୁ ରଘୁବୀର ପଦ ମମ ଅହିବାତ ନ ଜାଇ ॥୧୫(ଖ)॥

ବିହଁସା ନାରି ବଚନ ସୁନି କାନା । ଅହୋ ମୋହ ମହିମା ବଲବାନା ॥
ନାରି ସୁଭାଉ ସତ୍ୟ ସବ କହହୀଁ । ଅବଗୁନ ଆଠ ସଦା ଉର ରହହୀଁ ॥୧॥

---

ଅଧର ଲୋଭ ଦଶନ ଯମ ବିକରାଳ । ମାୟା ଅଟ୍ଟହାସ ଯାର ବାହୁ ଦିଗପାଳ ॥
ଆନନ ଅନଳ ଜିହ୍ୱା ଅଟଇ ବରୁଣ । ଉତ୍ପତ୍ତି ପାଳନ ନାଶ ନିତ୍ୟ କର୍ମ ପୁଣ ॥୩॥
ରୋମାବଳୀ ଅଷ୍ଟାଦଶ ଭାର ବନସ୍ପତି । ଅସ୍ଥି ଶଇଳ, ସରିତ ଅଙ୍ଗ ଶିରା ପନ୍ତି ॥
ଉଦର ଉଦଧି ଗ୍ରାହ୍ୟ ନରକ ଯାତନା । ସକଳ ସୃଷ୍ଟି ପ୍ରଭୁଙ୍କ ଅମିତ କଳ୍ପନା ॥୪॥

ଅହଙ୍କାର ଶିବ ବୁଦ୍ଧି ବ୍ରହ୍ମା, ମନ-ଚନ୍ଦ୍ରମା ଚିତ୍ତ ମହାନ ।
ଚରାଚର ବିଶ୍ୱ-ନିବାସ, ମନୁଷ୍ୟ-ରୂପ ରାମ ଭଗବାନ ॥୧୫ (କ)॥
ଏହା ବିଚାରିଣ ପ୍ରାଣନାଥ, ଶୁଣ, ପ୍ରଭୁ ସଙ୍ଗେ ବୈର ତ୍ୟାଗ ।
ଅନୁରାଗ କର ରାମଙ୍କ ପଦରେ, ନ ଯିବ ମୋର ସୌଭାଗ୍ୟ ॥୧୫ (ଖ)॥

ହସିଲା ରମଣୀ ବାଣୀ ଶୁଣି ଲଙ୍କରାଣ । ଅହୋ ! ମୋହ ପରାକ୍ରମ କେଡେ ବଳବାନ ॥
ସତ୍ୟ ଏହା ସର୍ବେ ନାରୀ ସ୍ୱଭାବ ଭଣନ୍ତି । ଅବଗୁଣ ଆଠ ସଦା ହୃଦୟେ ରହନ୍ତି ॥୧॥

---

ବ୍ରହ୍ମଲୋକ ଯାହାଙ୍କର ମସ୍ତକ ଏବଂ ଯାହାଙ୍କର ଅନ୍ୟାନ୍ୟ ବିଭିନ୍ନ ଅଙ୍ଗରେ ମଧ୍ୟଭାଗସ୍ଥ ସମସ୍ତ ଲୋକର ବିଶ୍ରାମ, ଭୟଙ୍କର କାଳ ଯାହାଙ୍କର ଭ୍ରୂକୁଟି-ସଞ୍ଚାଳନରେ ବାସ କରେ, ସୂର୍ଯ୍ୟ ଯାହାଙ୍କର ନେତ୍ର, ମେଘମାଳ ଯାହାଙ୍କର ବାଳ, ଅଶ୍ୱିନୀକୁମାର ଯାହାଙ୍କର ନାସା, ରାତ୍ରି ଓ ଦିନ ଯାହାଙ୍କର ଅପାର ନିମେଷ, ଦଶଦିଗ କର୍ଣ୍ଣ, ବାୟୁ ଶ୍ୱାସ, ବେଦ ଯାହାଙ୍କର ନିଜର ବାଣୀ, ଲୋଭ ଯାହାଙ୍କର ଅଧର, ଯମରାଜ ଭୟାନକ ଦାନ୍ତ, ମାୟା ହାସ୍ୟ, ଦିଗପାଳ ବାହୁ, ଅଗ୍ନି ମୁଖ, ବରୁଣ ଜିହ୍ୱା, ଉତ୍ପତ୍ତି, ପାଳନ ଓ ପ୍ରଳୟ ଯାହାଙ୍କର ଚେଷ୍ଟା ବା କ୍ରିୟା, ଅଠର ପ୍ରକାର ଅସଂଖ୍ୟ ବନସ୍ପତି ଯାହାଙ୍କର ରୋମାବଳୀ, ପର୍ବତଗଣ ଅସ୍ଥି, ନଦୀମାନେ ଶିରାପ୍ରଶିରାସମୂହ, ସମୁଦ୍ର ଉଦର, ନରକ ଯାହାଙ୍କର ନିମ୍ନସ୍ଥ ଇନ୍ଦ୍ରିୟ, ଏହି ରୂପେ ଯେଉଁ ପ୍ରଭୁ ବିଶ୍ୱମୟ, ତାଙ୍କର ଅଧିକ କଳ୍ପନା ବା କ'ଣ କରାଯାଇ ପାରେ ? ॥ ୧–୪ ॥ ଦୋହା :—ଶିବ ଯାହାଙ୍କର ଅହଙ୍କାର, ବ୍ରହ୍ମା ବୁଦ୍ଧି, ଚନ୍ଦ୍ରମା ମନ ଏବଂ ମହାନ ବିଷ୍ଣୁ ହିଁ ଯାହାଙ୍କର ଚିତ୍ତ, ସେହି ଚରାଚର ରୂପ ଭଗବାନ୍

ସାହସ ଅନୃତ ଚପଲତା ମାୟା । ଭୟ ଅବିବେକ ଅସୌଚ ଅଦାୟା ॥
ରିପୁ କର ରୂପ ସକଲ ତେଁ ଗାୱା । ଅତି ବିସାଲ ଭୟ ମୋହି ସୁନାୱା ॥୨॥
ସୋ ସବ ପ୍ରିୟା ସହଜ ବସ ମୋରେଁ । ସମୁଝି ପରା ପ୍ରସାଦ ଅବ ତୋରେଁ ॥
ଜାନଉଁ ପ୍ରିୟା ତୋରି ଚତୁରାଈ । ଏହି ବିଧି କହହୁ ମୋରି ପ୍ରଭୁତାଈ ॥୩॥
ତବ ବତକହୀ ଗୂଢ଼ ମୃଗଲୋଚନି । ସମୁଝତ ସୁଖଦ ସୁନତ ଭୟମୋଚନି ॥
ମଂଦୋଦରି ମନ ମହୁଁ ଅସ ଠୟଊ । ପିୟହି କାଲବସ ମତିଭ୍ରମ ଭୟଊ ॥୪॥

ଏହି ବିଧି କରତ ବିନୋଦ ବହୁ ପ୍ରାତ ପ୍ରଗଟ ଦସକଂଧ ।
ସହଜ ଅସଂକ ଲଂକପତି ସଭାଁ ଗୟଉ ମଦ ଅଂଧ ॥୧୬(କ)॥

---

ସାହସ ମିଥ୍ୟା ଆଉର ମାୟା ଚଞ୍ଚଳତା । ଭୟ ଅବିବେକ ଅପବିତ୍ର ନିର୍ଦ୍ଦୟତା ॥
ଶତ୍ରୁର ରୂପ ସକଳ ତୁହି ବଖାଣିଲୁ । ଅତ୍ୟନ୍ତ ବିଶାଳ ଭୟ ମୋତେ ଦେଖାଇଲୁ ॥୨॥
ସେ ସବୁ ପ୍ରିୟେ ! ସହଜେ ଅଧୀନ ମୋହର । ବୁଝି ମୁଁ ପାରିଲି ଏବେ ପ୍ରସାଦେ ତୋହର ॥
ଜାଣିଲି ପ୍ରିୟେ ! ତୋହର ଚତୁରିମା ପରମ । ଏହି ଭାବେ କହୁଛୁ ତୁ ମୋର ପରାକ୍ରମ ॥୩॥
ତୋର ବାର୍ତ୍ତାଳାପ ଗୂଢ଼ ମୃଗବିଲୋଚନୀ । ବୁଝନ୍ତେ ସୁଖ, ଶୁଣନ୍ତେ ଭୟ-ବିମୋଚନୀ ॥
ମନ୍ଦୋଦରୀ ମନ ମଧ୍ୟେ ଏମନ୍ତ ଠାଣିଲା । କାଳ ବଶ ମତି ଭ୍ରମ କାନ୍ତଙ୍କ ହୋଇଲା ॥୪॥

ଏ ଭାବେ ବିବିଧ ବିନୋଦ କରିଣ ପ୍ରାତ ହୋଇନ୍ତେ ଦଶକନ୍ଧ ।
ସହଜେ ନିଃଶଙ୍କ ସେ ତ୍ରିଲଙ୍କନାୟକ ସଭା ଗଲା ମଦ ଅନ୍ଧ ॥୧୬ (କ)॥

---

ଶ୍ରୀରାମ ମନୁଷ୍ୟ ରୂପରେ ନିବାସ କରିଅଛନ୍ତି ॥ ୧୫ (କ) ॥ ହେ ପ୍ରାଣପତି ! ଶୁଣନ୍ତୁ । ଏହାପରେ ବିଗ୍ରହ କରି ପ୍ରଭୁଙ୍କ ସହିତ ଶତ୍ରୁତା ଛାଡ଼ି ଦିଅନ୍ତୁ ଏବଂ ଶ୍ରୀରାମଙ୍କ ଚରଣରେ ପ୍ରେମ କରନ୍ତୁ । ଫଳରେ ମୋ ଅହିସ୍ତ୍ରୀଲକ୍ଷଣୀପଣିଆ କୁଆଡ଼େ ଯିବନାହିଁ ଏବଂ ହାତ କାଚ ମୋର ବଜାୟ ହୋଇ ରହିଥିବ । ୧୫ (ଖ) ॥" ଚୌପାଈ !—ପତ୍ନୀର ବଚନ କାନରେ ଶୁଣି ରାବଣ ଖୁବ୍ ଜୋରରେ ହସିଲା ଏବଂ କହିଲା, "ଓହୋ ! ମୋହ ମହିମା ଅତି ବଳବତୀ । ସ୍ତ୍ରୀର ସ୍ୱଭାବ ବିଷୟରେ ତାହାର ହୃଦୟରେ ଆଠଟି ଅବଗୁଣ ସଦା ବାସ କରେ ବୋଲି ସମସ୍ତେ ଯାହା କହନ୍ତି, ତାହା ଅକ୍ଷରେ ଅକ୍ଷରେ ସତ୍ୟ ॥ ୧ ॥ ସାହସ, ମିଥ୍ୟା, ଚଞ୍ଚଳତା, ମାୟା ଅର୍ଥାତ୍ ଛନ୍ଦ, କପଟ, ଭୟ, ଅବିବେକ ବା ମୂର୍ଖତା, ଅପବିତ୍ରତା ଏବଂ ନିର୍ଦ୍ଦୟତା—ଏହି ଆଠଟି ଅବଗୁଣ ସ୍ତ୍ରୀ ହୃଦୟରେ ବାସ କରେ । ତୁ ଶତ୍ରୁର ସମଗ୍ର ବିରାଟ ରୂପ ବିଷୟ ଗାଇଗଲୁ ଏବଂ ମୋତେ ତାହା ବିଷୟରେ ଅତି ଭୟପ୍ରଦ କାହାଣୀ ଶୁଣାଇଲୁ ॥ ୨ ॥ ହେ ପ୍ରିୟେ ! ଏହି ସମସ୍ତ ଚରାଚର ବିଶ୍ୱ ସହଜରେ ମୋ ଅଧୀନ । ତୋର କୃପାରୁ ମୋତେ ସବୁ ବର୍ତ୍ତମାନ ବୁଝି ପଡ଼ିଲା । ହେ ପ୍ରିୟେ ! ତୋ ଚତୁରତା ମୁଁ ଜାଣିଗଲି, ତୁ ଏହିରୂପେ ମୋ ପ୍ରଭୁତ୍ୱ ବର୍ଣ୍ଣନା କରୁଅଛୁ ॥ ୩ ॥ ହେ ମୃଗ-ନୟନ ! ତୋର କଥାଗୁଡାକ ଅତି ରହସ୍ୟମୟୀ । ବୁଝିଲେ ସୁଖ ଦାନ କରେ ଏବଂ ଶୁଣିଲେ ଭୟରୁ ମୁକ୍ତ ହୁଏ ।" ମନ୍ଦୋଦରୀ ମନରେ

ଫୂଲଇ ଫରଇ ନ ବେତ ଜଦପି ସୁଧା ବରଷହିଁ ଜଲଦ ।
ମୂରୁଖ ହୃଦୟଁ ନ ଚେତ ଜୌଁ ଗୁର ମିଲହିଁ ବିରଂଚି ସମ ॥୧୬(ଖ)

ଇହାଁ ପ୍ରାତ ଜାଗେ ରଘୁରାଈ । ପୂଛା ମତ ସବ ସଚିବ ବୋଲାଈ ॥
କହହୁ ବେଗି କା କରିଅ ଉପାଈ । ଜାମବନ୍ତ କହ ପଦ ସିରୁ ନାଈ ॥୧॥
ସୁନୁ ସର୍ବଜ୍ଞ ସକଲ ଉର ବାସୀ । ବୁଧି ବଲ ତେଜ ଧର୍ମ ଗୁନ ରାସୀ ॥
ମଂନ୍ତ୍ର କହଉଁ ନିଜ ମତି ଅନୁସାରା । ଦୂତ ପଠାଇଅ ବାଲିକୁମାରା ॥୨॥
ନୀକ ମନ୍ତ୍ର ସବ କେ ମନ ମାନା । ଅଂଗଦ ସନ କହ କୃପାନିଧାନା ॥
ବାଲିତନୟ ବୁଧି ବଲ ଗୁନ ଧାମା । ଲଙ୍କା ଜାହୁ ତାତ ମମ କାମା ॥୩॥
ବହୁତ ବୁଝାଇ ତୁମ୍ହହି କା କହଊଁ । ପରମ ଚତୁର ମୈଁ ଜାନତ ଅହଊଁ ॥
କାଜୁ ହମାର ତାସୁ ହିତ ହୋଈ । ରିପୁ ସନ କରେହୁ ବତକହୀ ସୋଈ ॥୪॥

---

ବରଷିଲେ ହିଁ ଜଳଦ ପୀୟୂଷ ନ ଫୁଲେ ନ ଫଳେ ବେତ ।
ମିଳିଲେହେଁ ଗୁରୁ ବିରଞ୍ଚି ସଦୃଶ ମୂର୍ଖ ହୃଦୟ ଅଚେତ ॥୧୬ (ଖ)॥

ଏଣେ ପ୍ରାତଃକାଳେ ରାମ ଜାଗ୍ରତ ହୋଇଲେ । ଡକାଇ ମନ୍ତ୍ରୀଗଣଙ୍କ ମତ ପଚାରିଲେ ॥
କହନ୍ତୁ ଶୀଘ୍ର, କରିବା କେଉଁ ଉପାୟ । ଚରଣେ ପ୍ରଣାମ କରି ବୋଲେ ଋକ୍ଷ ରାୟ ॥୧॥
ଶୁଣ ସର୍ବଜ୍ଞ ସକଳ ହୃଦୟ ନିବାସୀ । ବୁଦ୍ଧି ବଳ ଶୀଳ ତେଜ ଧର୍ମ ଗୁଣ ରାଶି ॥
ମନ୍ତ୍ରଣା କହୁଛି ନିଜ ମତି ଅନୁସାରେ । ଦୂତ କରି ପଠାନ୍ତୁ ବାଳିର କୁମାରେ ॥୨॥
ଉତ୍ତମ ମତ, ମାନନ୍ତେ ସମସ୍ତଙ୍କ ମନ । ଅଙ୍ଗଦ ଆଗେ କହିଲେ କରୁଣା-ସଦନ ॥
ବାଳି ସୁତ ! ବୁଦ୍ଧି ବଳ ବିବେକ ଆଳୟ । ମୋ କାର୍ଯ୍ୟ ନିମନ୍ତେ ଯାଅ ଲଙ୍କାକୁ ତନୟ ॥୩॥
ବୁଝାଇ ତୁମ୍ଭଙ୍କୁ କିସ କହିବି ପ୍ରଚୁର । ଜାଣେ ଭଲ ରୂପେ ତୁମ୍ଭେ ପରମ ଚତୁର ॥
ଆମ୍ଭର କାର୍ଯ୍ୟ ତାହାର କଲ୍ୟାଣ ହୋଇବ । ଶତ୍ରୁ ସଙ୍ଗେ ସେହିପରି ବାରତା କରିବ ॥୪॥

---

ନିଶ୍ଚୟ କରିନେଲି ଯେ, କାଳର ବଶୀଭୂତ ହେବାରୁ ପତିଙ୍କର ବର୍ତ୍ତମାନ ମତିଭ୍ରମ ହୋଇଗଲାଣି ॥ ୪ ॥ ଦୋହା —ଏହି ରୂପେ ଅଜ୍ଞାନବଶତଃ ବହୁ ବିନୋଦ କରୁ କରୁ ରାବଣ ଆଗରେ ସକାଳ ହୋଇଗଲା । ସ୍ୱଭାବତଃ ନିର୍ଭୀକ ଓ ଗର୍ବାନ୍ଧ ଲଙ୍କାପତି ସଭା ମଧ୍ୟକୁ ଗଲା ॥ ୧୬ (କ) ॥ ସୋରଠା —ମେଘ ଅମୃତ ବୃଷ୍ଟି କଲେ ମଧ୍ୟ ବେତସ ଲତା ପୁଷ୍ପିତ ବା ଫଳିତ ହୁଏନାହିଁ । ଏହି ରୂପେ ବ୍ରହ୍ମାଙ୍କ ସଦୃଶ ଜ୍ଞାନୀ ଗୁରୁ ମିଳିଲେ ମଧ୍ୟ ମୂର୍ଖ ହୃଦୟରେ ଜ୍ଞାନ ଜନ୍ମେ ନାହିଁ ॥ ୧୬ (ଖ) ॥ ଚୌପାଈ —ଏଣେ ସୁବେଲ ପର୍ବତ ଉପରେ ପ୍ରାତଃକାଳରେ ଶ୍ରୀ ରଘୁନାଥ ଜାଗ୍ରତ ହେଲେ ଏବଂ ସେ ସମସ୍ତ ମନ୍ତ୍ରୀଙ୍କୁ ଡକାଇ ପରାମର୍ଶ ମାଗିଲେ—"ବର୍ତ୍ତମାନ କି ଉପାୟ କରାଯିବ, ଶୀଘ୍ର କୁହନ୍ତୁ ।" ଜାମ୍ବବାନ୍ ଶ୍ରୀରାମଙ୍କ ଚରଣରେ ଶିର ନୁଆଁଇ କହିଲେ— ॥ ୧ ॥ "ହେ ସର୍ବଜ୍ଞ ! ହେ ସର୍ବାନ୍ତର୍ଯ୍ୟାମି ! ହେ ବୁଦ୍ଧି ବଳ-ତେଜ ଧର୍ମ-ଗୁଣ ରାଶି ! ଶୁଣନ୍ତୁ; ମୁଁ ମୋ ବୁଦ୍ଧି ଅନୁସାରେ ପରାମର୍ଶ ଦେଉଅଛି—ବାଳିକୁମାର ଅଙ୍ଗଦଙ୍କୁ ଦୂତ କରି

ପ୍ରଭୁ ଅଜ୍ଞା ଧରି ସୀସ ଚରନ ବଂଦି ଅଂଗଦ ଉଠେଉ ।
ସୋଇ ଗୁନସାଗର ଈସ ରାମ କୃପା ଜା ପର କରହୁ ॥୧୭(କ)॥
ସ୍ୱୟଂସିଦ୍ଧ ସବ କାଜ ନାଥ ମୋହି ଆଦରୁ ଦିୟଉ ।
ଅସ ବିଚାରି ଜୁବରାଜ ତନ ପୁଲକିତ ହରଷିତ ହିୟଉ ॥୧୭(ଖ)॥

ବଂଦି ଚରନ ଉର ଧରି ପ୍ରଭୁତାଈ । ଅଂଗଦ ଚଲେଉ ସବହି ସିରୁ ନାଈ ॥
ପ୍ରଭୁ ପ୍ରତାପ ଉର ସହଜ ଅସଂକା । ରନବାଁକୁରା ବାଲିସୁତ ବଂକା ॥୧॥
ପୁର ପୈଠତ ରାବନ କର ବେଟା । ଖେଲତ ରହା ସୋ ହୋଇ ଗୈ ଭେଟା ॥
ବାତହିଁ ବାତ କରଷ ବଢ଼ି ଆଈ । ଜୁଗଲ ଅତୁଲ ବଲ ପୁନି ତରୁନାଈ ॥୨॥

---

ପ୍ରଭୁ ଆଜ୍ଞା ଶିରେ ଘେନିଣ ଅଙ୍ଗଦ ଉଠିଲା ବନ୍ଦି ପୟର ।
ସେ ସମର୍ଥ ଗୁଣ-ସିନ୍ଧୁ ରାମଚନ୍ଦ୍ର, ଯା' ଉପରେ କୃପା କର ॥୧୭ (କ)॥
ନାଥ, ସ୍ୱୟଂସିଦ୍ଧ ଆପଣଙ୍କ କାର୍ଯ୍ୟ ଦିଅନ୍ତି ମୋତେ ଆଦର ।
କହି ପ୍ରମୋଦିତ ହେଲା ଯୁବରାଜ ପୁଲକିତ କଳେବର ॥୧୭ (ଖ)॥

ବନ୍ଦି ଶ୍ରୀଚରଣ ହୃଦେ ମହିମା ସ୍ମରଣ । ଅଙ୍ଗଦ ଗମିଲା ସମସ୍ତଙ୍କୁ ପ୍ରଣମିଣ ॥
ପ୍ରଭୁ ପ୍ରତାପେ ସହଜ ନିଃଶଙ୍କ ହୃଦୟ । ସମର-ଉନ୍ମତ୍ତ ବୀର ବାଳିର ତନୟ ॥୧॥
ପୁରେ ପ୍ରବେଶନ୍ତେ ଖେଳୁଥିବା ସମୟରେ । ଭେଟ ହୋଇଲା ରାବଣ ତନୟ ସଙ୍ଗରେ ॥
କଥାରେ କଥାରେ କ୍ରୋଧ ବଢ଼ିଗଲା ପୁଣ । ଉଭୟେ ଅତୁଳ ବଳୀ ପ୍ରତାପୀ ତରୁଣ ॥୨॥

---

ପଠାଯାଉ ।" ॥ ୨ ॥ ଏହି ସତ୍‌ପରାମର୍ଶ ସମସ୍ତଙ୍କ ମନକୁ ପାଇଗଲା । କୃପାନିଧାନ ଶ୍ରୀରାମ ଅଙ୍ଗଦଙ୍କୁ କହିଲେ, "ହେ ବଳ-ବୁଦ୍ଧି-ଗୁଣ-ଧାମ ବାଳିପୁତ୍ର ! ହେ ବତ୍ସ ! ତୁମେ ମୋ କାମ ନିମନ୍ତେ ଲଙ୍କା ଯାଅ ॥ ୩ ॥ ତୁମକୁ ବେଶିଗୁଡ଼ାଏ ବୁଝାଇ କଣ କହିବି ? ମୁଁ ଜାଣିଛି, ତୁମେ ପରମ ଚତୁର । ଯେପରି ଆମର କାମ ହେବ ଏବଂ ଶତ୍ରୁର କଲ୍ୟାଣ ହେବ, ଶତ୍ରୁ ସଙ୍ଗେ ସେହି ରୂପେ କଥାବାର୍ତ୍ତା କରିବ ।" ॥ ୪ ॥ ସୋରଠା :- ପ୍ରଭୁଙ୍କ ଆଦେଶ ଶିରୋଧାର୍ଯ୍ୟ କରି ଏବଂ ତାଙ୍କ ଚରଣ ବନ୍ଦନା କରି, ଅଙ୍ଗଦ ଉଠିଲେ ଏବଂ କହିଲେ, "ହେ ଭଗବାନ୍ ଶ୍ରୀରାମ ! ଆପଣ ଯାହା ଉପରେ କୃପା କରନ୍ତି, ସେ ଗୁଣ-ସାଗର ହୋଇଯାଏ ॥ ୧୭ (କ) ॥ ସ୍ୱାମୀଙ୍କର ସକଳ କାର୍ଯ୍ୟ ସ୍ୱୟଂସିଦ୍ଧ; ତଥାପି ପ୍ରଭୁ ନିଜ କାର୍ଯ୍ୟ ନିମନ୍ତେ ଯାହା ମୋତେ ପଠାଉଛନ୍ତି ଏହା ପ୍ରଭୁଙ୍କର ମୋ ପ୍ରତି ଆଦରର ପରିଚାୟକ ।" ଏହିପରି ବିଚାରି ଯୁବରାଜ ଅଙ୍ଗଦଙ୍କ ହୃଦୟ ଆନନ୍ଦିତ ଓ ଶରୀର ପୁଲକିତ ହୋଇଗଲା ॥ ୧୭ (ଖ) ॥ ଚୌପାଈ :—ଚରଣ ବନ୍ଦନା କରି ଏବଂ ଭଗବାନଙ୍କ ପ୍ରଭୁତ୍ୱ ହୃଦୟରେ ଧାରଣ କରି ଅଙ୍ଗଦ ସମସ୍ତଙ୍କୁ ମୁଣ୍ଡ ନୁଆଁଇ ଚାଲିଲେ । ପ୍ରଭୁଙ୍କ ପ୍ରତାପ ହୃଦୟରେ ଧାରଣ କରି ସ୍ୱଭାବତଃ ନିର୍ଭୀକ ରଣବୀର ବାଳିପୁତ୍ର ଚାଲିଲେ ॥ ୧ ॥ ଲଙ୍କାରେ ପ୍ରବେଶ କରିବା ମାତ୍ରେ ରାବଣର ପୁତ୍ର ସଙ୍ଗେ ତାଙ୍କର ଭେଟ ହୋଇଗଲା । ସେ ସେଠାରେ ଖେଳୁଥିଲା । କଥା କଥାକେ ଦୁହିଁଙ୍କ

ତେହିଁ ଅଙ୍ଗଦ କହୁଁ ଲାତ ଉଠାଈ । ଗହି ପଦ ପଟକେଉ ଭୂମି ଭୱାଁଈ ॥
ନିସିଚରନିକର ଦେଖି ଭଟ ଭାରୀ । ଜହଁ ତହଁ ଚଲେ ନ ସକହିଁ ପୁକାରୀ ॥୩॥
ଏକ ଏକ ସନ ମରମୁ ନ କହହୀଁ । ସମୁଝି ତାସୁ ବଧ ଚୁପ କରି ରହହୀଁ ॥
ଭୟଉ କୋଲାହଲ ନଗର ମଝାରୀ । ଆୱା କପି ଲଂକା ଜେହିଁ ଜାରୀ ॥୪॥
ଅବ ଧୌଁ କହା କରିହି କରତାରା । ଅତି ସଭୀତ ସବ କରହିଁ ବିଚାରା ॥
ବିନୁ ପୂଛେଁ ମଗୁ ଦେହିଁ ଦେଖାଈ । ଜେହି ବିଲୋକ ସୋଇ ଜାଇ ସୁଖାଈ ॥୫॥

ଗୟଉ ସଭା ଦରବାର ତବ ସୁମିରି ରାମ ପଦକଞ୍ଜ ।
ସିଂହ ଠୱନି ଇତ ଉତ ଚିତୱ ଧୀର ବୀର ବଲପୁଞ୍ଜ ॥୧୮॥

ତୁରତ ନିସାଚର ଏକ ପଠାୱା । ସମାଚାର ରାବନହି ଜନାୱା ॥
ସୁନତ ବିହଁସି ବୋଲା ଦସସୀସା । ଆନହୁ ବୋଲି କହାଁ କର କୀସା ॥୧॥

---

ସେ ଅଙ୍ଗଦ ଉପରକୁ ଲାତ ଉଠାଇଲା । ପଦ ଧରି ଭ୍ରମାଇଣ ଭୂମିରେ ଟେକିଲେ ॥
ରଜନୀଚର ସମୂହ ଦେଖି ବୀର ଭାରୀ । ଯେଣେତେଣେ ପଳାଇଲେ ନ ପାରି ଚିତ୍କାରି ॥୩॥
ଏକ ଅନ୍ୟ ସମ୍ମୁଖରେ ମର୍ମ ନ କହଇ । ବୁଝିଣ ତାହାର ବଧ ନୀରବ ରହଇ ॥
ନଗର ମଧ୍ୟରେ ଏହି ଗହଳ ପଡ଼ିଲା । ଆସିଛି ସେ କପି ଯେହୁ ଲଙ୍କା ଜାଳିଥିଲା ॥୪॥
କେଜାଣି ବିଧାତା ଏବେ ଦେବ କି ବିପତ୍ତି । ଅତି ଭୟ ତ୍ରାସେ ସର୍ବେ ବିଚାର କରନ୍ତି ॥
ନ ପଚାରିଲେ ହେଁ ମାର୍ଗ ଦିଅନ୍ତି ଦେଖାଇ । ଯାହାକୁ ଚାହେଁ ସେ ରହେ ଭୟେ ଶୁଖିଯାଇ ॥୫॥

ପ୍ରବେଶିଲା ଶତ୍ରୁ-ସଭା ଦ୍ୱାର ଦେଶେ ସ୍ମରି ରାମ ପଦକଞ୍ଜ ।
ସିଂହ ଠାଣି, ଏଣେ ତେଣେ ନିରେଖଇ ଧୀର ବୀର ବଳପୁଞ୍ଜ ॥୧୮॥

ସେହିକ୍ଷଣି ଏକ ନିଶାଚରକୁ ପେଷିଲା । ସମାଚାର ରାବଣକୁ ଯାଇ ଶୁଣାଇଲା ॥
ଶୁଣନ୍ତେ ହସି ବୋଇଲା ସେ ଦଶ କନ୍ଧର । ଡାକିଆଣ ଏଥି, କେଉଁ ସ୍ଥାନର ବାନର ॥୧॥

---

ମଧ୍ୟରେ କଳହ ବଢ଼ିଗଲା । ତୁମ୍ଭେ ଅତୁଳନୀୟ ବଳବାନ୍ ଏବଂ ତୁମ୍ଭଙ୍କର ଯୌବନାବସ୍ଥା ॥ ୨ ॥ ସେ ଅଙ୍ଗଦ ଉପରକୁ ଗୋଇଠା ଉଞ୍ଚାଇଲା । ଅଙ୍ଗଦ ସେହି ପାଦକୁ ଧରି ବୁଲାଇ ବୁଲାଇ ତାହାକୁ ଭୂମି ଉପରେ କଚାଡ଼ି ମାରିଦେଲେ । ରାକ୍ଷସମାନେ ଏକ ବିରାଟ ଯୋଦ୍ଧାକୁ ଦେଖି ଏଣେତେଣେ ଦୌଡ଼ି ପଳାଇଲେ । ଭୟ ହେତୁ ସେମାନେ ଡାକ ମଧ୍ୟ ଦେଇପାରୁ ନ ଥା'ନ୍ତି । କେହି କାହାରିକୁ ପ୍ରକୃତ ରହସ୍ୟ କହୁ ନ ଥା'ନ୍ତି । ରାବଣର ସେହି ପୁତ୍ରର ବଧ ବିଷୟ ଜାଣି ସମସ୍ତେ ଚୁପ ହୋଇ ରହୁଥାନ୍ତି । (ରାବଣ ପୁତ୍ରର ମୃତ୍ୟୁ-ସମ୍ବାଦ-ପ୍ରସ୍ତର ଏବଂ ରାକ୍ଷସମାନଙ୍କର ଭୟରେ ପଳାୟନ ହେତୁ) ସମଗ୍ର ନଗରରେ କୋଳାହଳ ବ୍ୟାପିଗଲା ଯେ, ଯେଉଁ ବାନର ଲଙ୍କା ଜଳାଇଥିଲା, ସେହି ପୁଣି ଆସିଅଛି ॥ ୪ ॥ ସମସ୍ତେ ଅତି ଭୟଭୀତ ହୋଇ ବିଚାର କରିବାକୁ ଲାଗିଲେ ଯେ, ବିଧାତା ଏବେ କ'ଣ କରିବ କେଜାଣି । ସେମାନେ ବିନା ପ୍ରଶ୍ନରେ ସ୍ୱତଃପ୍ରବୃତ୍ତ ହୋଇ ଅଙ୍ଗଦଙ୍କୁ ରାବଣ ଦରବାରକୁ ରାସ୍ତା କହୁ

ଆୟସୁ ପାଇ ଦୂତ ବହୁ ଧାଏ । କପିକୁଞ୍ଜରହି ବୋଲି ଲୈ ଆଏ ॥
ଅଙ୍ଗଦ ଦୀଖ ଦସାନନ ବୈସେଁ । ସହିତ ପ୍ରାନ କଜ୍ଜଲଗିରି ଜୈସେଁ ॥୨॥
ଭୁଜା ବିଟପ ସିର ସୃଙ୍ଗ ସମାନା । ରୋମାବଲୀ ଲତା ଜନୁ ନାନା ॥
ମୁଖ ନାସିକା ନୟନ ଅରୁ କାନା । ଗିରି କଂଦରା ଖୋହ ଅନୁମାନା ॥୩॥
ଗୟଉ ସଭାଁ ମନ ନେକୁ ନ ମୁରା । ବାଲିତନୟ ଅତିବଲ ବାଁକୁରା ॥
ଉଠେ ସଭାସଦ କପି କହୁଁ ଦେଖୀ । ରାବନ ଉର ଭା କ୍ରୋଧ ବିସେଷୀ ॥୪॥

ଜଥା ମତ୍ତ ଗଜଜୂଥ ମହୁଁ ପଞ୍ଚାନନ ଚଲି ଜାଇ ।
ରାମ ପ୍ରତାପ ସୁମରି ମନ ବୈଠ ସଭାଁ ସିରୁ ନାଇ ॥୧୯॥

---

ଆଦେଶ ପାଆନ୍ତେ ଦୂତ ବହୁତ ଧାଇଁଲେ । କପି-କୁଞ୍ଜରଙ୍କୁ ଡାକି ସତ୍ୱର ଆଣିଲେ ॥
ଅଙ୍ଗଦ ଦେଖିଲ ଦଶାନନଙ୍କୁ ତେମନ୍ତ । ପ୍ରାଣ ସହିତ କଜ୍ଜଳ ଶଇଳ ଯେମନ୍ତ ॥୨॥
ଭୁଜା ବିଟପ, ମସ୍ତକ ଶିଖର ସମାନ । ରୋମାବଳୀ ଲତାତୃଣ ବିବିଧ ବିଧାନ ॥
ମୁଖ ନାସିକା ନୟନ ଶ୍ରବଣ ଆବର । ହୁଏ ଅନୁମାନ ଗିରି ଗହ୍ୱର କନ୍ଦର ॥୩॥
ସଭାକୁ ଗଲା ନ କରି ମନେ ଟିକେ ଭୟ । ଅତ୍ୟନ୍ତ ବଳୀ ଉଦ୍ଧତ ବାଳିର ତନୟ ॥
କପିଙ୍କୁ ଦେଖି ଉଠିଲେ ସର୍ବ ସଭାସଦେ । ଅତି କ୍ରୋଧ ଉପୁଜିଲା ଦଶାନନ ହୃଦେ ॥୪॥

ଯଥା ମତ୍ତଗଜ-ଯୂଥଙ୍କ ମଧ୍ୟରେ ପଞ୍ଚାନନ ଚାଲିଯାଇ ।
ଶ୍ରୀରାମ ପ୍ରତାପ ମନେ ସ୍ମରି ସଭା ବସିଲା ଶିର ନୁଆଁଇ ॥୧୯॥

---

ଦେଉଥା'ନ୍ତି । ଅଙ୍ଗଦଙ୍କ ଦୃଷ୍ଟି ଯାହା ଉପରେ ପଡ଼ୁଥାଏ, ଭୟ ହେତୁ ସେ ଶୁଖି ଯାଇଥାଏ ॥ ୫ ॥ ଦୋହା :—ଶ୍ରୀରାମଙ୍କ ଚରଣ-କମଳ ସ୍ମରଣ କରି ଅଙ୍ଗଦ ରାବଣର ସଭା ଦରବାରକୁ ଗଲେ । ସେହି ବୀର ଏବଂ ବଳରାଶି ଅଙ୍ଗଦ ସିଂହଠାଣିରେ ଏଣେତେଣେ ଚାହିଁବାକୁ ଲାଗିଲେ ॥ ୧୮ ॥ ଚୌପାଇ :—ଅଙ୍ଗଦ ଶୀଘ୍ର ଜଣେ ରାକ୍ଷସକୁ ରାବଣ ନିକଟକୁ ପଠାଇ ତାଙ୍କ ଆଗମନର ସମାଚାର ଜଣାଇଲେ । ଶୁଣିବା ମାତ୍ରେ ରାବଣ ହସି କହିଲା, "ଡାକି ଆଣ, କେଉଁଠିକାର ବାନର, ମୁଁ ଟିକିଏ ଦେଖେ ।" ॥ ୧ ॥ ଆଜ୍ଞା ପାଇ ବହୁତ ଦୂତ ଦୌଡ଼ିଲେ ଏବଂ ବାନରମାନଙ୍କ ମଧ୍ୟରେ ହସ୍ତୀ ସମାନ ଅଙ୍ଗଦଙ୍କୁ ଡାକି ଆଣିଲେ । ଅଙ୍ଗଦ ରାବଣକୁ ଏପରି ଭାବରେ ବସି ଥିବାର ଦେଖିଲେ, ସତେ ଯେମିତି ସେ ଗୋଟାଏ ଜୀବନ୍ତ କଜ୍ଜଳ ପର୍ବତ ! ॥ ୨ ॥ ତାହାର ବାହୁମାନେ ବୃକ୍ଷ ଏବଂ ମୁଣ୍ଡମାନେ ପର୍ବତ ଶିଖରସମୂହ ସଙ୍ଗେ ସମାନ । ରୋମାବଳୀ ସତେ ଅବା ଲତାସମୂହ ' ମୁଖ, ନାସିକା, ନେତ୍ର ଓ କର୍ଣ୍ଣ ପର୍ବତର କନ୍ଦରା ଓ ଗୁମ୍ଫା ସଦୃଶ ॥ ୩ ॥ ଅତ୍ୟନ୍ତ ବଳବାନ୍ ବୀର ବାଳିପୁତ୍ର ଅଙ୍ଗଦ ସଭା ମଧ୍ୟକୁ ଗଲେ । ସେ ମନରେ ଟିକିଏ ହେଲେ ସଙ୍କୋଚ କଲେ ନାହିଁ । ଅଙ୍ଗଦଙ୍କୁ ଦେଖିବା ମାତ୍ରେ ସମସ୍ତ ସଭାସଦ୍ ଉଠି ଛିଡ଼ା ହେଲେ । ଏହା ଦେଖି ରାବଣର ମନରେ ବଡ଼ କ୍ରୋଧ ଜାତ ହେଲା ॥ ୪ ॥ ଦୋହା :—ଯେପରି ଉନ୍ମତ୍ତ ହସ୍ତିଯୂଥ ମଧ୍ୟରେ ସିଂହ

କହ ଦସକଂଠ କଵନ ତୈଁ ବନ୍ଦର । ମୈଁ ରଘୁବୀର ଦୂତ ଦସକଂଧର ॥
ମମ ଜନକହି ତୋହି ରହୀ ମିତାଈ । ତବ ହିତ କାରନ ଆୟଉଁ ଭାଈ ।୧॥
ଉତ୍ତମ କୁଲ ପୁଲସ୍ତି କର ନାତୀ । ସିବ ବିରଂଚି ପୂଜେହୁ ବହୁ ଭାଁତୀ ॥
ବର ପାୟହୁ କୀହ୍ନେହୁ ସବ କାଜା । ଜୀତେହୁ ଲୋକପାଲ ସବ ରାଜା ॥୨॥
ନୃପ ଅଭିମାନ ମୋହବସ କିଂବା । ହରି ଆନିହୁ ସୀତା ଜଗଦଂବା ॥
ଅବ ସୁଭ କହା ସୁନହୁ ତୁହ୍ମ ମୋରା । ସବ ଅପରାଧ ଛମିହିଁ ପ୍ରଭୁ ତୋରା ॥୩॥
ଦସନ ଗହହୁ ତୃନ କଂଠ କୁଠାରୀ । ପରିଜନ ସହିତ ସଂଗ ନିଜ ନାରୀ ॥
ସାଦର ଜନକସୁତା କରି ଆଗେଁ । ଏହି ବିଧି ଚଲହୁ ସକଲ ଭୟ ତ୍ୟାଗେଁ ॥୪॥

ପ୍ରନତପାଲ ରଘୁବଂସମନି ତ୍ରାହି ତ୍ରାହି ଅବ ମୋହି ।
ଆରତ ଗିରା ସୁନତ ପ୍ରଭୁ ଅଭୟ କରୈଗୋ ତୋହି ॥୨୦॥

---

ବୋଲେ ଦଶକଣ୍ଠ, କପି କାହିଁକାର ତୁହି । ଶୁଣ ଦଶାନନ, ରଘୁବୀର ଦୂତ ମୁହିଁ ॥
ମୋ ପିତା ସଙ୍ଗରେ ଥିଲା ମିତ୍ରତା ତୁମ୍ଭର । ତେଣୁ ତୁମ୍ଭ ହିତେ ଧାଇଁ ଆସିଲି ସତ୍ୱର ॥୧॥
ପୁଲସ୍ତିଙ୍କ ନାତି, ଜନ୍ମ ଉତ୍ତମ କୁଳରେ । ଶିବ ବିରଞ୍ଚି ପୂଜିଲ ବିବିଧ ଭାବରେ ॥
ବର ପ୍ରାପ୍ତ କରି କର୍ମ ସକଳ କରିଲ । ସର୍ବଲୋକ-ପାଳେ ସବୁ ରାଜାଙ୍କୁ ଜିଣିଲ ॥୨॥
ନରପତି ଅଭିମାନ ମୋହ ବଶେ କମ୍ବା । ହରି ଆଣିଲ ଜନକ-ସୁତା ଜଗଦମ୍ବା ॥
ଏବେ ଶୁଣ ଶୁଭ ଉପଦେଶ ଏ ମୋହର । ସବୁ ଅପରାଧ ପ୍ରଭୁ କ୍ଷମିବେ ତୁମ୍ଭର ॥୩॥
କଣ୍ଠରେ କୁଠାର ତୃଣ ଧରିଣ ଦଶନେ । ସଙ୍ଗେ ଘେନି ନାରୀ ପରିବାର ସ୍ୱଜନେ ॥
ସାଦରେ ବଇଦେହୀଙ୍କୁ ଅଗ୍ରତେ କରିଣ । ଏହି ଭାବେ ଚାଲ ଭୟ ସମସ୍ତ ତେଜିଣ ॥୪॥

“ଶରଣପାଳକ ଶ୍ରୀ ରଘୁ ନାୟକ ତ୍ରାହି ତ୍ରାହି ଏବେ ମୋତେ ।”
ଆରତ ବଚନ ଶୁଣନ୍ତେ ଶ୍ରୀରାମ ଅଭୟ କରିବେ ତୋତେ ॥୨୦॥

---

ନିଃଶଙ୍କ ହୋଇ ବୁଲିଯାଏ, ସେହିପରି ଶ୍ରୀରାମଙ୍କ ପ୍ରତାପ ହୃଦୟରେ ସ୍ମରଣ କରି ସେ ନିର୍ଭୟରେ ସଭା ମଧ୍ୟରେ ମଥା ନୁଆଁଇ ବସିଗଲେ ॥ ୧୯ ॥ ଚୌପାଈ :— ରାବଣ କହିଲା, “ଆରେ ବାନର ! ତୁ କିଏ ?” ଅଙ୍ଗଦ କହିଲେ, “ରେ ଦଶଗ୍ରୀବ ! ମୁଁ ଶ୍ରୀ ରଘୁବୀରଙ୍କର ଦୂତ, ମୋର ପିତାଙ୍କର ତୋ ସହିତ ମିତ୍ରତା ଥିଲା । ଏଣୁ ଆରେ ଭାଇ ! ମୁଁ ତୋ ମଙ୍ଗଳ ନିମନ୍ତେ ଆସିଅଛି ॥ ୧ ॥ ତୋହର କୁଳ ଉତ୍ତମ, ପୁଲସ୍ତ୍ୟ ଋଷିଙ୍କର ତୁ ନାତି । ଶିବ ଓ ବ୍ରହ୍ମାଙ୍କୁ ତୁ ବହୁ ପ୍ରକାରେ ପୂଜା କରିଅଛୁ । ଉଭୟଙ୍କଠାରୁ ବର ପାଇଅଛୁ ଏବଂ ସମସ୍ତ କାମରେ ସିଦ୍ଧି ଲାଭ କରିଅଛୁ । ଲୋକପାଳ ଏବଂ ସମସ୍ତ ରାଜାଙ୍କୁ ତୁ ଜିଣି ପାରିଅଛୁ ॥ ୨ ॥ ରାଜମଦ ବା ମୋହର ବଶବର୍ତ୍ତୀ ହୋଇ ତୁ ଜଗଜ୍ଜନନୀ ସୀତାଙ୍କୁ ହରଣ କରି ନେଇ ଆସିଛୁ । ଏବେ ତୁ ମୋର ହିତ କଥା ଶୁଣ ! ମୋ କଥାନୁସାରେ ଚଳିଲେ ପ୍ରଭୁ ଶ୍ରୀରାମ ତୋର ସମସ୍ତ ଅପରାଧ କ୍ଷମା କରିଦେବେ । ଦାନ୍ତରେ କୁଟା ଦେଇ ଗଳାରେ କୁରାଢ଼ି ପକା ଏବଂ କୁଟୁମ୍ବୀ [illegible]

ରେ କପିପୋତ ବୋଲୁ ସଂଭାରୀ । ମୂଢ଼ ନ ଜାନେହି ମୋହି ସୁରାରୀ ॥
କହୁ ନିଜ ନାମ ଜନକ କର ଭାଈ । କେହି ନାତେଁ ମାନିଐ ମିତାଈ ॥୧॥
ଅଂଗଦ ନାମ ବାଲି କର ବେଟା । ତା ସୋଁ କବହୁଁ ଭଈ ହୀ ଭେଟା ॥
ଅଙ୍ଗଦ ବଚନ ସୁନତ ସକୁଚାନା । ରହା ବାଲି ବାନର ମୈଁ ଜାନା ॥୨॥
ଅଙ୍ଗଦ ତହୀଁ ବାଲି କର ବାଲକ । ଉପଜେହୁ ବଂସ ଅନଲ କୁଲଘାଲକ ॥
ଗର୍ଭ ନ ଗୟୂହୁ ବ୍ୟର୍ଥ ତୁମ୍ହ ଜାୟହୁ । ନିଜ ମୁଖ ତାପସ ଦୂତ କହାୟହୁ ॥୩॥
ଅବ କହୁ କୁସଲ ବାଲି କହଁ ଅହଈ । ବିହଁସି ବଚନ ତବ ଅଙ୍ଗଦ କହଈ ॥
ଦିନ ଦସ ଗଏଁ ବାଲି ପହିଁ ଜାଈ । ବୂଝେହୁ କୁସଲ ସଖା ଉର ଲାଈ ॥୪॥

---

ରେ କପି ! ମନ୍ଦ ବଚନ ବୋଲ ସମ୍ଭାଳିଣ । ମୂଢ଼, ଜାଣିନାହୁଁ ମୋତେ ସୁରାରି ବୋଲିଣ ॥
କହ ନିଜ ନାମ ନିଜ ପିତାର ଆବର । କେଉଁ ସମ୍ବନ୍ଧରୁ ମିତ୍ର ମାନିଛୁ ବାନର ॥୧॥
ଅଙ୍ଗଦ ନାମ ମୋହର ବାଳିର କୁମର । ତାସଙ୍ଗେଭେଟକି କେବେହୋଇଛି ତୋହର॥
ଅଙ୍ଗଦ ବଚନ ଶୁଣି ସଙ୍କୋଚ ଲଭିଲା । ଜାଣେ ମୁହିଁ, ବାଳି ଏକ ମର୍କଟ ଥିଲା ॥୨॥
ଅଙ୍ଗଦ, ହୋଇ ତୁ ସେହି ବାଳିର ବାଳକ । ଜନ୍ମିଲୁ ବେଣୁ ଅନଳ କୁଳ-ବିନାଶକ ॥
ଗର୍ଭ ନ ଫାଟିଲା, ବୃଥା ତୁହି ଉପୁଜିଲୁ । ନିଜ ବଦନେ ତାପସ ଦୂତ କୁହାଇଲୁ ॥୩॥
ଏବେ ଶୁଣାଅ, କୁଶଳ ବାଳି କାହିଁ ରହେ । ଶୁଣନ୍ତେ ହସି ବଚନ ବାଳିସୁତ କହେ ॥
ଦିନ ଦଶ ଅନ୍ତେ ବାଳି ନିକଟକୁ ଯାଇ । ପଚାରିବୁ ସବୁ ହୃଦେ ସଖାକୁ ଲଗାଇ ॥୪॥

---

ନାରୀମାନଙ୍କ ସହିତ ଆଦରରେ ଜାନକୀଙ୍କୁ ପୁରୋଭାଗରେ ରଖି ସମସ୍ତ ଭୟ ତ୍ୟାଗ କରି ଚାଲ୍—॥ ୪ ॥ ଦୋହା —ଏବଂ ଏହିରୂପେ ଆର୍ତ୍ତ ପ୍ରାର୍ଥନା କର—"ହେ ଶରଣାଗତପାଳକ ରଘୁବଂଶ-ଶିରୋମଣି ଶ୍ରୀରାମ ! ମୋତେ ରକ୍ଷା କରନ୍ତୁ, ରକ୍ଷା କରନ୍ତୁ ।" ତୋହର ଆର୍ତ୍ତନାଦ ଶୁଣିବା ମାତ୍ରେ ପ୍ରଭୁ ତୋତେ ନିର୍ଭୀକ କରି ଦେବେ ॥ ୨୦ ॥ ଚୌପାଈ — ରାବଣ କହିଲା, ଆରେ ବାନର ପିଲା ! ସମ୍ଭାଳି କରି କଥା କହ । ମୂର୍ଖ ! ମୁଁ ଦେବତାମାନଙ୍କ ଶତ୍ରୁ । ତୁ ମୋତେ ଜାଣିନାହୁଁ ? ଆରେ ଭାଇ : ତୋ ନିଜର ଓ ତୋ ବାପର ନାମ କହ ତ, କେଉଁ ସମ୍ବନ୍ଧରୁ ତୁ ମିତ୍ରତା ସ୍ୱୀକାର କରୁଛୁ ?" ॥ ୧ ॥ ଅଙ୍ଗଦ କହିଲେ, "ମୋର ନାମ ଅଙ୍ଗଦ, ମୁଁ ବାଳିପୁତ୍ର । ତାଙ୍କ ସହିତ ତୋହର କେବେ ଭେଟ ହୋଇଥିଲା କି ?" ଅଙ୍ଗଦଙ୍କ ବଚନ ଶୁଣିବା ମାତ୍ରେ ରାବଣ ଟିକିଏ ଶଙ୍କିଗଲା ଏବଂ କହିଲା, "ହଁ, ମୋର ମନେ ପଡ଼ିଲା, ବାଳି ନାମରେ ଗୋଟିଏ ବାନର ଥିଲା ॥ ୨ ॥ ଆରେ ଅଙ୍ଗଦ ! ତୁହି ବାଳିର ପୁତ୍ର ନା ? ଆରେ କୁଳ-ନାଶକ ! ତୁ ତୋ ନିଜ କୁଳ-ବଂଶବନ (ବାଉଁଶବନ) ନିମନ୍ତେ ଅଗ୍ନି ରୂପରେ ଜାତ ହେଲୁ ! ମାତାର ଗର୍ଭରେ ହିଁ କାହିଁକି ନଷ୍ଟ ହେଲୁ ନାହିଁ ? ତୁ ବୃଥାରେ ଜନ୍ମଲାଭ କଲୁ ଏବଂ ଆପଣା ମୁହଁରେ ତପସ୍ୱୀମାନଙ୍କ ଦୂତ ବୋଲି ନିଜର ପରିଚୟ ଦେଲୁ ॥ ୩ ॥ ଏବେ ବାଳିର କୁଶଳ-ବାର୍ତ୍ତା କହ ତ ! ସେ ଆଜିକାଲି କେଉଁଠି ?" ଅଙ୍ଗଦ ହସି

ରାମ ବିରୋଧ କୁସଲ ଜସି ହୋଈ । ସୋ ସବ ତୋହି ସୁନାଇହି ସୋଈ ॥
ସୁନୁ ସଠ ଭେଦ ହୋଇ ମନ ତାକେଁ । ଶ୍ରୀରଘୁବୀର ହୃଦୟଁ ନହିଁ ଜାକେଁ ॥୬॥
ହମ କୁଲଘାଲକ ସତ୍ୟ ତୁମ୍ହ କୁଲପାଲକ ଦସସୀସ ।
ଅନ୍ଧଉ ବଧିର ନ ଅସ କହହିଁ ନୟନ କାନ ତବ ବୀସ ॥୨୧॥
ସିବ ବିରଂଚି ସୁର ମୁନି ସମୁଦାଈ । ଚାହତ ଜାସୁ ଚରନ ସେବକାଈ ॥
ତାସୁ ଦୂତ ହୋଇ ହମ କୁଲ ବୋରା । ଅଇସିହୁଁ ମତି ଉର ବିହର ନ ତୋରା ॥୧॥
ସୁନି କଠୋର ବାନୀ କପି କେରୀ । କହତ ଦସାନନ ନୟନ ତରେରୀ ॥
ଖଲ ତବ କଠିନ ବଚନ ସବ ସହଉଁ । ନୀତି ଧର୍ମ ମୈଁ ଜାନତ ଅହଉଁ ॥୨॥
କହ କପି ଧର୍ମସୀଲତା ତୋରୀ । ହମହୁଁ ସୁନୀ କୃତ ପର ତ୍ରିୟ ଚୋରୀ ॥
ଦେଖୀ ନୟନ ଦୂତ ରଖବାରୀ । ବୂଡି ନ ମରହୁ ଧର୍ମ ବ୍ରତଧାରୀ ॥୩॥

---

ରାମଙ୍କ ବିରୋଧେ ଯେମନ୍ତେ ହୁଅଇ କୁଶଳ । ତୋ ଆଗରେ ଶୁଣାଇବ ବାଳି ସେ ସକଳ ॥
ଶୁଣ ଶଠ ! ମନେ ଭେଦ ହୁଅଇ ତାହାର । ଶ୍ରୀ ରଘୁବୀର ନାହାନ୍ତି ହୃଦୟେ ଯାହାର ॥୬॥
ମୁଁ କୁଳନାଶକ, ତୁ କୁଳପାଳକ ସତ୍ୟ, ଶୁଣ ଲଙ୍କ ଈଶ ।
ଅନ୍ଧ ବଧିର ନ କହିବେ ଏସନ ନେତ୍ର କର୍ଣ୍ଣ ତୋର ବିଂଶ ॥୨୧॥
ବିରଞ୍ଚି ଶଙ୍କର ସୁର ମୁନିବର ଗଣ । ସେବନେ ଅଭିଳଷନ୍ତି ଯାହାଙ୍କ ଚରଣ ॥
ତାହାଙ୍କ ଦୂତ ହୋଇ ମୁଁ କୁଳ ବୁଡାଉଛି । ଏମନ୍ତ ବୁଦ୍ଧିକୁ ତୋର ହୃଦ ନ ଫାଟୁଛି ॥୧॥
ଶୁଣନ୍ତେ କପିର ଏହି କଠୋର ବଚନ । ନୟନ ତରାଟି ତହୁଁ ବୋଲେ ଦଶାନନ ॥
ଶଠ, ମୁଁ ତୋର କଠିନ ବଚନ ସହଇ । ନୀତି ଧର୍ମ ସମ୍ପ୍ରଦାୟ ଉତ୍ତମ ଜାଣଇ ॥୨॥
ବୋଲଇ କପି, ଧରମଶୀଳ ପଣ ତୋର । ମୁହିଁ ବି ଶୁଣିଛି, ଅଟୁ ପର ନାରୀ ଚୋର ॥
ଦେଖିଲି ନିଜ ନୟନେ ଦୂତ ରକ୍ଷାକାରୀ । ବୁଡି ନ ମରୁଛୁ ଯାହା ଧର୍ମ-ବ୍ରତ ଧାରୀ ॥୩॥

---

କହିଲେ, "ଦଶ ବାର ଦିନ ପରେ ତୁ ନିଜେ ବାଲିଙ୍କ ପାଖକୁ ଯିବୁ ଏବଂ ମିତ୍ରଙ୍କୁ ଆଲିଙ୍ଗନ କରି ତାହାଙ୍କ କୁଶଳ-ବାର୍ତ୍ତା ପଚାରିବୁ ॥ ୪ ॥ ଶ୍ରୀରାମଙ୍କ ସହିତ ଶତ୍ରୁତା କଲେ ଯେପରି କୁଶଳ ହୁଏ, ସେ ତୋତେ ସବୁ ଶୁଣାଇ କହିବେ । ରେ ମୂର୍ଖ ! ଶୁଣ, ଯାହାର ହୃଦୟରେ ଶ୍ରୀ ରଘୁବୀର ବାସ ନ କରନ୍ତି, ଭେଦ ନୀତି ତାହା ଉପରେ ନିଜର ପ୍ରଭାବ ପକାଇ ପାରେ ॥ ୬ ॥ ଦୋହା —ମୁଁ ତ କୁଳ-ନାଶକ, ଏହା ସତ୍ୟ ଏବଂ ହେ ରାବଣ ! ତୁ କୁଳ-ରକ୍ଷକ ! ଅନ୍ଧ ଓ ବଧିରମାନେ ସୁଦ୍ଧା ଏପରି କଥା କହନ୍ତି ନାହିଁ, ତୋର ତ ବିଂଶ ନେତ୍ର, ବିଂଶ କର୍ଣ୍ଣ ଅଛି ॥ ୨୧ ॥ ଚୌପାଈ —ଶିବ, ବ୍ରହ୍ମାଦି ଦେବତା ଏବଂ ମୁନିବୃନ୍ଦ ଯାହାଙ୍କର ଚରଣ-ସେବା ନିମନ୍ତେ ଆଗ୍ରହୀ, ସେହି ପ୍ରଭୁଙ୍କ ଦୂତ ହୋଇ ମୁଁ କୁଳ ବୁଡାଇଦେଲି ? ଆରେ ! ଏପରି ବୁଦ୍ଧି ହୋଇ ହେଲା ତୋ ହୃଦୟ ଫାଟି ଯାଉନାହିଁ ?" ॥ ୧ ॥ ବାନର ଅଙ୍ଗଦଙ୍କ କଠୋର ବାଣୀ ଶୁଣି, ରାବଣ ବକ୍ର ଚାହାଣି କରି କହିଲା, "ଆରେ ଦୁଷ୍ଟ ! ମୁଁ ନୀତି ଓ ଧର୍ମ-ରକ୍ଷା କଥା ଜାଣିଛି

କାନ ନାକ ବିନୁ ଭଗିନି ନିହାରୀ । ଛମା କୀହ୍ନି ତୁହ୍ମ ଧର୍ମ ବିଚାରୀ ॥
ଧର୍ମସୀଲତା ତବ ଜଗ ଜାଗୀ । ପାୱା ଦରସୁ ହମହୁଁ ବଡ଼ଭାଗୀ ॥୪॥
ଜନି ଜଲ୍ପସି ଜଡ଼ ଜନ୍ତୁ କପି ସଠ ବିଲୋକୁ ମମ ବାହୁ ।
ଲୋକପାଲ ବଲ ବିପୁଲ ସସି ଗ୍ରସନ ହେତୁ ସବ ରାହୁ ॥୨୨(କ)॥
ପୁନି ନଭ ସର ମମ କର ନିକର କମଲନ୍ହି ପର କରି ବାସ ।
ସୋଭତ ଭୟଉ ମରାଲ ଇବ ସମ୍ଭୁ ସହିତ କୈଲାସ ॥୨୨(ଖ)॥
ତୁହ୍ମରେ କଟକ ମାଝଁ ସୁନୁ ଅଙ୍ଗଦ । ମୋ ସନ ଭିରିହି କୱନ ଜୋଧା ବଦ ॥
ତବ ପ୍ରଭୁ ନାରି ବିରହଁ ବଲହୀନା । ଅନୁଜ ତାସୁ ଦୁଖ ଦୁଖୀ ମଲୀନା ॥୧॥
ତୁହ୍ମ ସୁଗ୍ରୀବ କୂଲଦ୍ରୁମ ଦୋଊ । ଅନୁଜ ହମାର ଭୀରୁ ଅତି ସୋଊ ॥
ଜାମବନ୍ତ ମନ୍ତ୍ରୀ ଅତି ବୂଢ଼ା । ସୋ କି ହୋଇ ଅବ ସମରାରୂଢ଼ା ॥୨॥

---

ନାକକାନହୀନା ଯେବେ ଭଗ୍ନୀକୁ ଦେଖିଲୁ । ଧରମ ବିଚାରି ତୁହି କ୍ଷମା ଆଚରିଲୁ ॥
ତୋର ଧର୍ମଶୀଳ ପଣ ବିଶ୍ୱେ ପ୍ରକାଶିତ । ଦର୍ଶନ ପାଇଲି ମୋର ସୌଭାଗ୍ୟ ଅମିତ ॥୪॥
ବୃଥାରେ ନ ଜଳ୍ପ କପି ଜଡଜନ୍ତୁ, ଶଠ, ଦେଖ ମୋର ବାହୁ ।
ଲୋକପାଳ ବଳ-ଚନ୍ଦ୍ରମା ବିପୁଳ ଗ୍ରାସିବାକୁ ଯେସନ୍ତେ ରାହୁ ॥୨୨(କ)॥
ପୁଣି ନଭ-ସର ମୋ କର ନିକର-କମଳ ଉପରେ ବାସ ।
ହୋଇଲେ ଶୋଭିତ ମରାଳ ଯେସନ ଶମ୍ଭୁ ସହ କଇଲାସ ॥୨୨(ଖ)॥
ଶୁଣୁରେ ଅଙ୍ଗଦ,ତୋର ସୈନ୍ୟଙ୍କମଧ୍ୟରେ । ଯୁଝିବ କେ ଯୋଦ୍ଧା ଅଛୁ ମୋହରି ସଙ୍ଗରେ ॥
ନାରୀ ବିରହରେ ତୋର ପ୍ରଭୁ ବଳହୀନ । ଅନୁଜ ତାହାର ଦୁଃଖେ ଦୁଃଖିତ ମଳିନ ॥୧॥
ତୁ ଆଉ ସୁଗ୍ରୀବ କୂଳ ବିଟପ ଉଭୟ । ଅନୁଜ ମୋର ଅଟଇ ଭୀରୁ ଅତିଶୟ ॥
ଅତ୍ୟନ୍ତ ବୃଦ୍ଧ ତୋହର ମନ୍ତ୍ରୀ ଜାମ୍ବବନ୍ତ । ସମର ଆରୂଢ ସେହୁ ହୋଇବ କେମନ୍ତ ॥୨॥

---

ବୋଲି ତୋହର ସମସ୍ତ କର୍କଶ ବଚନ ସହୁଛୁ ।" ॥ ୨ ॥ ଅଙ୍ଗଦ କହିଲେ, "ତୋ ଧର୍ମଶୀଳତା କଥା ମୁଁ ଭଲରୂପେ ଶୁଣିଛୁ । ତୁ ପର ସ୍ତ୍ରୀକୁ ହରଣ କରିଛୁ ଏବଂ ଦୂତଙ୍କୁ ରକ୍ଷା କରିବା କଥା ତ ମୁଁ ଆପଣା ଆଖିରେ ଦେଖିଛିନଲି ! ଏପରି ଧର୍ମ ବ୍ରତ-ଧାରୀ ତୁ ! ବୁଡି ମରୁପାଉନାହୁଁ ! ॥ ୩ ॥ ନାସାକର୍ଣ୍ଣବିହୀନା ଭଗିନୀକୁ ଦେଖି, ତୁ ଧର୍ମ ବିଚାରି କରି (ଶତ୍ରୁଙ୍କୁ) ତ କ୍ଷମା କରି ଦେଇଥିଲୁ ! ତୋହର ଧର୍ମପରାୟଣତା ଜଗତ୍-ପ୍ରସିଦ୍ଧ । ମୁଁ ଯେ ତୋ ଦର୍ଶନ ପାଇଲି, ସେଥିଲାଗି ନିଜକୁ ବଡ ଭାଗ୍ୟବାନ୍ ମନେ କରୁଛୁ ।" ॥ ୪ ॥ ଦୋହା :—ରାବଣ କହିଲା, "ଆରେ ଜଡଜନ୍ତୁ ବାନର ! ବୃଥାରେ ବକ୍‌ବକ୍ କରନାହିଁ; ଆରେ ମୂର୍ଖ ! ମୋର ବାହୁ-ଗୁଡିକୁ ଦେଖ୍ ତ । ଏମାନେ ସମସ୍ତ ଲୋକପାଳଙ୍କ ବିଶାଳ ବଳ-ଚନ୍ଦ୍ରମାକୁ ଗ୍ରାସ କରିବା ନିମନ୍ତେ ରାହୁ ଅଟନ୍ତି ॥ ୨୨ (କ) ॥ ପୁଣି ତୁ ଶୁଣିଥିବୁ ଯେ, ଆକାଶ-ସରୋବରରେ ମୋର ବାହୁ-କମଳ ଉପରେ ବସି ଶିବ ସମେତ କୈଳାସ ପର୍ବତ ହଂସ ସଦୃଶ ଶୋଭା ଲାଭ କରିଥିଲା ! ॥ ୨୨ (ଖ) ॥ ଚୌପାଈ :—

ସିଲ୍‌ପ କର୍ମ ଜାନହିଁ ନଲ ନୀଲା । ହୈ କପି ଏକ ମହା ବଲସୀଲା ॥
ଆଓ୍ୱା ପ୍ରଥମ ନଗରୁ ଜେହିଁ ଜାରା । ସୁନତ ବଚନ କହ ବାଲିକୁମାରା ॥୩॥
ସତ୍ୟ ବଚନ କହୁ ନିସିଚର ନାହା । ସାଁଚେହୁଁ କୀସ କୀହ୍ନ ପୁର ଦାହା ॥
ରାବନ ନଗର ଅଲ୍‌ପ କପି ଦହଈ । ସୁନି ଅସ ବଚନ ସତ୍ୟ କୋ କହଈ ॥୪॥
ଜୋ ଅତି ସୁଭଟ ସରାହେହୁ ରାବନ । ସୋ ସୁଗ୍ରୀବ କେର ଲଘୁ ଧାଓ୍ୱନ ॥
ଚଲଇ ବହୁତ ସୋ ବୀର ନ ହୋଈ । ପଠଓ୍ୱା ଖବରି ଲେନ ହମ ସୋଈ ॥୫॥
ସତ୍ୟ ନଗରୁ କପି ଜାରେଉ ବିନୁ ପ୍ରଭୁ ଆୟସୁ ପାଇ ।
ଫିରି ନ ଗୟଉ ସୁଗ୍ରୀବ ପହିଁ ତେହିଁ ଭୟ ରହା ଲୁକାଇ ॥୨୩(କ)॥

---

ଶିଳ୍ପ କରମ ଜାଣନ୍ତି ନଳ ଆଉ ନୀଳ । ଅଛୁ ଏକ ମର୍କଟ ମହାବଳଶୀଳ ॥
ଆସିଣ ପ୍ରଥମେ ଯେହୁ ନଗର ଜାଳିଲା । ଶୁଣି ଉପହାସ କରି ଅଙ୍ଗଦ କହିଲା ॥୩॥
ସତ୍ୟ କଥନ କରୁ କି ରାକ୍ଷସ ରାଜନ । ସତ୍ୟ ତୋର ପୁର କପି କରିଲା ଦହନ ॥
ରାବଣ ପୁରକୁ କ୍ଷୁଦ୍ର ମର୍କଟ ଦହଇ । ଏମନ୍ତ ବଚନ ଶୁଣି ସତ୍ୟ କେ କହଇ ॥୪॥
ଅତି ଯୋଦ୍ଧା ଯାହାକୁ ତୁ କହୁ, ଲଙ୍କେଶ୍ୱର । ସାମାନ୍ୟ ହରକରା ସେ ଅଟେ ସୁଗ୍ରୀବର ॥
ବୀର ନ କୁହାଏ ସେହୁ ଚାଲେ ଯେ ବିଶେଷ । ପେଷିଥିଲୁ ଆମ୍ଭେ ତାକୁ ନେବାକୁ ସନ୍ଦେଶ ॥୫॥
ସତ୍ୟ କି ଏ କଥା, ପ୍ରଭୁ ଆଜ୍ଞା ବିନା କପି ନଗର ଜାଳିଲା ?
ତେଣୁ ନ ଫେରି ସେ ସୁଗ୍ରୀବଙ୍କ ପାଖେ, ଭୟରେ ଲୁଚି ରହିଲା ॥୨୩(କ)॥

---

ଆରେ ଅଙ୍ଗଦ ! ଶୁଣ, ତୋ ସେନା ମଧ୍ୟରେ ମୋ ସହିତ ଲଢି ପାରିବ, ଏପରି ଯୋଦ୍ଧା କିଏ ଅଛି ? ତୋ ମାଲିକ ତ ସ୍ତ୍ରୀ ବିରହରେ ବଳହୀନ ହୋଇଅଛି ଏବଂ ତାହାର ସାନ ଭାଇ ତାହାରି ଦୁଃଖ ହେତୁ ଦୁଃଖୀ ଓ ଉଦାସୀନ ॥ ୧ ॥ ତୁ ଓ ସୁଗ୍ରୀବ ଉଭୟେ ନଦୀ ତଟର ବୃକ୍ଷ । ରହିଲା ମୋ ସାନ ଭାଇ ବିଭୀଷଣ । ସେ ତ ବଡ ଡରକୁଳା । ମନ୍ତ୍ରୀ ଜାମ୍ବବାନ୍ ଅତି ବୃଦ୍ଧ, ସେ ବର୍ତ୍ତମାନ ଲଢାଇ ନିମନ୍ତେ କଣ ସମର୍ଥ ହୋଇ ପାରିବ ? ॥ ୨ ॥ ନଳ ନୀଳ ତ କାରିଗର କର୍ମ ମାତ୍ର ଜାଣନ୍ତି । ହଁ, ଗୋଟିଏ ବାନର ନିଶ୍ଚୟ ମହା ବଳବାନ୍, ଯେ ପ୍ରଥମେ ଆସିଥିଲା ଏବଂ ଲଙ୍କା ଜାଳି ଦେଇଥିଲା ।” ଏହି ବଚନ ଶୁଣି ବାଳି-ପୁତ୍ର ଅଙ୍ଗଦ କହିଲେ—॥ ୩ ॥ “ହେ ରାକ୍ଷସ-ରାଜ ! ସତକଥା କହ, ସେହି ବାନର ପ୍ରକୃତରେ ତୋ ନଗର ଜାଳି ଦେଇଥିଲା କି ? ରାବଣ ପରି ଜଗଦ୍‌ବିଜୟୀ ଯୋଦ୍ଧାର ନଗର ! ତାହା ପୁଣି ଗୋଟିଏ କ୍ଷୁଦ୍ର ବାନର ଜାଳିଦେଲା ! ଏପରି କଥା ଶୁଣି ଏହାକୁ ସତ୍ୟ ବୋଲି କିଏ କହିବ ! ଯାହାକୁ ତୁ ଅତି ବଡ ଯୋଦ୍ଧା ବୋଲି କହି ପ୍ରଶଂସା କରିଛୁ, ସେ ତ ସୁଗ୍ରୀବଙ୍କ ଗୋଟିଏ ଅତି ସାମାନ୍ୟ ହରକରା । ସେ ବହୁତ ଚାଲେ, ବୀର ନୁହେଁ । ଆମେ ତ ତାହାକୁ କେବଳ ଖବର ନେବା ନିମନ୍ତେ ପଠାଇଥିଲୁ ॥ ୫ ॥ ଦୋହା :—ସତରେ କଣ ସେହି ବାନର ପ୍ରଭୁଙ୍କ ଆଜ୍ଞା ବିନା ତୋ ନଗର ଜାଳିଦେଲା ? ଜଣାପଡୁଛି, ସେହି ଭୟରେ

ସତ୍ୟ କହହି ଦସକଂଠ ସବ ମୋହି ନ ସୁନି କଛୁ କୋହ ।
କୋଉ ନ ହମାରେଁ କଟକ ଅସ ତୋ ସନ ଲରତ ଜୋ ସୋହ ॥୨୩(ଖ)॥
ପ୍ରୀତି ବିରୋଧ ସମାନ ସନ କରିଅ ନୀତି ଅସି ଆହି ।
ଜୌଁ ମୃଗପତି ବଧ ମେଡୁକନ୍ହି ଭଲ କି କହଇ କୋଉ ତାହି ॥୨୩(ଗ)॥
ଜଦ୍ୟପି ଲଘୁତା ରାମ କହୁଁ ତୋହି ବଧେଁ ବଡ଼ ଦୋଷ ।
ତଦପି କଠିନ ଦସକଣ୍ଠ ସୁନୁ ଛତ୍ର ଜାତି କର ରୋଷ ॥୨୩(ଘ)॥
ବକ୍ର ଉକ୍ତି ଧନୁ ବଚନ ସର ହୃଦୟ ଦହେଉ ରିପୁ କୀସ ।
ପ୍ରତିଉତ୍ତର ସଡ଼ସିନ୍ହ ମନହୁଁ କାଢ଼ତ ଭଟ ଦସସୀସ ॥୨୩(ଙ)॥
ହଁସି ବୋଲେଉ ଦସମୌଲି ତବ କପି କର ବଡ଼ ଗୁନ ଏକ ।
ଜୋ ପ୍ରତିପାଲଇ ତାସୁ ହିତ କରଇ ଉପାୟ ଅନେକ ॥୨୩(ଚ)॥

---

ସତ୍ୟ ତୁ କଥନ କରୁ ଦଶାନନ, କ୍ରୋଧ ବ ମୋତେ ନ ଲଗେ ।
ଆମ୍ଭ ଥାଟେ କେହି ଏହିପରି ନାହିଁ ଶୋଭନ ଯୁଝି ତୋ ସାଙ୍ଗେ ॥୨୩(ଖ)॥
ସମ ସଙ୍ଗେ ପ୍ରୀତି ବିରୋଧ ଉଚିତ ନୀତି ଏମନ୍ତ ଭଣଇ ।
ସିଂହ ମଣ୍ଡୂକଙ୍କୁ ବଧେ ଯେବେ, ତାକୁ ଭଲ କେହି କି କହଇ ॥୨୩(ଗ)॥
ଯଦ୍ୟପି ରାମଙ୍କ ପକ୍ଷେ ଏ ଲଘୁତା ତୋର ବଧେ ବଡ଼ ଦୋଷ ।
ତଥାପି କଠିନ ଶୁଣ ଦଶାନନ, କ୍ଷତ୍ରିୟ ଜାତିଙ୍କ ରୋଷ ॥୨୩(ଘ)॥
ବକ୍ର ଉକ୍ତି-ରୂପେ ବଚନ-ନାରାଚେ କପି ଦହେ ଶତ୍ରୁ ଉର ।
ଅବା ପ୍ରତ୍ୟୁତ୍ତର-ସଣ୍ଡାଶିରେ ବୀର କାଢ଼ଇ ଲଙ୍କା-ଈଶ୍ୱର ॥୨୩(ଙ)॥
ହସି ପ୍ରତିଉକ୍ତି କରେ ଲଙ୍କାପତି, କପି ଗୁଣ ବଡ଼ ଏକ ।
ଯେ ପ୍ରତିପାଳଇ ତାର ହିତ ପାଇଁ କରେ ଉପାୟ ଅନେକ ॥୨୩(ଚ)॥

---

ସେ ଫେରି ସୁଗ୍ରୀବଙ୍କ ପାଖକୁ ଯାଇନାହିଁ ଏବଂ କେଉଁଠି ଲୁଚି ରହିଛି ! ॥ ୨୩ (କ) ॥ ରେ ରାବଣ ! ତୁ ସବୁ କଥା ସତ୍ୟ କହୁଛୁ— ଶୁଣି ମୋର ଟିକିଏ ହେଲେ କ୍ରୋଧ ନାହିଁ । ବାସ୍ତବିକ୍ ଆମ ସେନା ମଧ୍ୟରେ ଏପରି କେହି ହେଲେ ନାହିଁ ଯେ କି ତୋ ସଙ୍ଗରେ ଲଢ଼ି ଶୋଭା ପାଇବ ॥ ୨୩ (ଖ) ॥ ନୀତି କହେ, ପ୍ରୀତି ଓ ଶତ୍ରୁତା ସମସ୍କନ୍ଧ ବ୍ୟକ୍ତିଙ୍କ ସହିତ କରିବା ଉଚିତ । ସିଂହ ଯଦି ବେଙ୍ଗମାନଙ୍କୁ ବଧ କରେ, ତେବେ ତାହାକୁ କେହି ଭଲ କହିବ କି ? ॥ ୨୩ (ଗ) ॥ ଯଦ୍ୟପି ତୋତେ ବଧ କରିବାରେ ଶ୍ରୀରାମଙ୍କର ଲଘୁତା ଏବଂ ଅତି ଦୋଷ ପ୍ରକାଶ ପାଇବ, ତଥାପି ହେ ରାବଣ ! ଶୁଣ୍ ! କ୍ଷତ୍ରିୟ ଜାତିର କ୍ରୋଧ ବଡ଼ କଠୋର ।" ॥ ୨୩ (ଘ) ॥ ବକ୍ରୋକ୍ତି-ଧନୁରେ ବଚନ-ବାଣ ମାରି ଅଙ୍ଗଦ ଶତ୍ରୁର ହୃଦୟ ଜଳାଇ ଦେଲେ । ବୀର ରାବଣ ସେହି ସବୁ ବାଣକୁ ସତେ ଯେପରି ପ୍ରତ୍ୟୁତ୍ତର ରୂପକ ସଣ୍ଡୁଆଶି ଯୋଗେ ବାହାର କରୁଥାଏ ॥ ୨୩ (ଙ) ॥ ତଦନନ୍ତର ରାବଣ ହସି କହିଲା, "ବାନରଠାରେ ଗୋଟିଏ

ଧନ୍ୟ କୀସ ଜୋ ନିଜ ପ୍ରଭୁ କାଜା । ଜହଁ ତହଁ ନାଚଇ ପରିହରି ଲାଜା ॥
ନାଚି କୂଦି କରି ଲୋଗ ରିଝାଈ । ପତି ହିତ କରଇ ଧର୍ମ ନିପୁନାଈ ॥୧॥
ଅଙ୍ଗଦ ସ୍ୱାମିଭକ୍ତ ତବ ଜାତୀ । ପ୍ରଭୁଗୁନ କସ ନ କହସି ଏହି ଭାଁତୀ ॥
ମୈଁ ଗୁନଗାହକ ପରମ ସୁଜାନା । ତବ କଟୁ ରଟନି କରଉଁ ନହିଁ କାନା ॥୨॥
କହ କପି ତବ ଗୁନଗାହକତାଈ । ସତ୍ୟ ପବନସୁତ ମୋହି ସୁନାଈ ॥
ବନ ବିଧଂସି ସୁତ ବଧି ପୁର ଜାରା । ତଦପି ନ ତେହିଁ କଛୁ କୃତ ଅପକାରା ॥୩॥
ସୋଇ ବିଚାରି ତବ ପ୍ରକୃତି ସୁହାଈ । ଦସକଂଧର ମୈଁ କୀହ୍ନି ଢିଠାଈ ॥
ଦେଖେଉଁ ଆଇ ଜୋ କଛୁ କପି ଭାଷା । ତୁମ୍ହରେଁ ଲାଜ ନ ରୋଷ ନ ମାଖା ॥୪॥
ଜୌଁ ଅସି ମତି ପିତୁ ଖାଏ କୀସା । କହି ଅସ ବଚନ ହଁସା ଦସସୀସା ॥
ପିତହି ଖାଇ ଖାତେଉଁ ପୁନି ତୋହୀ । ଅବହୀଁ ସମୁଝି ପରା କଛୁ ମୋହୀ ॥୫॥

---

ଧନ୍ୟ କପି ଯେଉଁ ନିଜ ପ୍ରଭୁ କାର୍ଯ୍ୟ ଲାଗି । ଯହିଁ ତହିଁ ନାଚୁଥାଏ ଲଜ୍ଜା ପରିତ୍ୟାଗି ॥
ନାଚ ଶୂନ୍ୟଚଡ ମାରି ଲୋକଙ୍କୁ ମୋହଇ । ସ୍ୱାମୀ ନିମନ୍ତେ ନିପୁଣ କୌଶଳ କରଇ ॥୧॥
ଅଙ୍ଗଦ, ଅଟଇ ତୋର ଜାତି ସ୍ୱାମୀ ଭକ୍ତ । ପ୍ରଭୁ ଗୁଣ ନ କହୁ କିପାଁ ତୁ ଏମନ୍ତ ॥
ମୁଁ ଗୁଣ-ଗ୍ରାହକ ବଡ ଚତୁର ଅଟଇ । ତୋ କଟୁ ବଚନ କର୍ଣ୍ଣପାତ ନ କରଇ ॥୨॥
ଅଙ୍ଗଦ କହିଲା, ତୋର ଗୁଣ-ଗ୍ରାହୀପଣ । ସତ୍ୟ ମୋତେ ଶୁଣାଇଛି ପବନ-ନନ୍ଦନ ॥
ବନ ଧ୍ୱଂସି ସୁତ ବଧି ପୁର କଲା ଛାରି । ତଥାପି ନ କଲୁ କିଛି ଅପକାର ତାରି ॥୩॥
ବିଚାରି ତୋହର ସେହି ସୁନ୍ଦର ପ୍ରକୃତି । ଧୃଷ୍ଟତା କରିଲି ମୁହିଁ, ଶୁଣ ଲଙ୍କାପତି ॥
ଦେଖିଲି ଯେ କିଛି କହିଥିଲା ହନୁମାନ । ନାହିଁ ତୋର ସ୍ୱଳ୍ପ ଲଜ୍ଜା ରୋଷ ଅଭିମାନ ॥୪॥
ପିତାଙ୍କୁ ଖାଇଲୁ ଯେଣୁ ତୋ ବୁଦ୍ଧି ଏସନ । ହସିଲା ରାବଣ କହି ଏମନ୍ତ ବଚନ ॥
ପିତାଙ୍କୁ ଖାଇଣ ଏବେ ଖାଇଥାନ୍ତି ତୋତେ । ସ୍ମରଣ ହୋଇଲା ଏବେ କଥା କିଛି ମୋତେ ॥୫॥

---

ବିଶିଷ୍ଟ ଗୁଣ ଯେ, ତାହାକୁ ଯେ ପ୍ରତିପାଳନ କରେ, ସେ ଅନେକ ଉପାୟରେ ତାହାର ହିତ କରିବାକୁ ଚେଷ୍ଟା କରେ ॥୨୩(ଚ)॥ ଚୌପାଈ :—ବାନର ନିଜ ମାଲିକ ନିମନ୍ତେ ଲଜ୍ଜା ଛାଡି ଯେଉଁଠି ଇଚ୍ଛା ସେଇଠି ନାଚେ । ସେଥିଲାଗି ସେ ଧନ୍ୟ । ନାଚିକୁଦି ଏବଂ ଶୂନ୍ୟଂଚଡ ମାରି ସେ ଲୋକଙ୍କୁ ଖୁସି କରେ । ଏହିପରି ସେ ମାଲିକର ହିତ ସାଧନ କରେ । ଏହା ତାହାର ଧର୍ମର ନିପୁଣତା ॥୧॥ ହେ ଅଙ୍ଗଦ ' ତୋ ଜାତି ସ୍ୱାମିଭକ୍ତ, ତେଣୁ ତୁ ତୋ ମାଲିକ-ଗୁଣ ଏପରି ଭାବରେ କିପରି ନ ବଖାଣନ୍ତୁ ? ମୁଁ ଗୁଣ-ଗ୍ରାହକ ଏବଂ ପରମ ସୁଜ୍ଞାନୀ । ଏହି ହେତୁ ତୋହର କଠୋର ବଚନ ପ୍ରତି ଧ୍ୟାନ ଦେଉନାହିଁ ।” ॥ ୨ ॥ ଅଙ୍ଗଦ କହିଲେ, “ତୋହର ପ୍ରକୃତ ଗୁଣ-ଗ୍ରାହକତା ତ ହନୁମାନ୍ ମୋତେ ଶୁଣାଇଥିଲେ । ସେ ଅଶୋକ-ବନକୁ ବିଧ୍ୱଂସ କରି ତୋ ପୁଅକୁ ବଧ କରି ନଗରକୁ ଜଳାଇ ଦେଇଥିଲେ । ତଥାପି ତୋର ଗୁଣଗ୍ରାହକତା ହେତୁ ତୁ ବୁଝିଲୁ ଯେ, ସେ ତୋହର କିଛି ହେଲେ ଅପକାର କରି ନାହାନ୍ତି ॥ ୩ ॥ ରେ ଦଶଗ୍ରୀବ ! ତୋର ସେହି ସୁନ୍ଦର

ବାଲି ବିମଲ ଜସ ଭାଜନ ଜାନୀ । ହତଉଁ ନ ତୋହି ଅଧମ ଅଭିମାନୀ ॥
କହୁ ରାବନ ରାବନ ଜଗ କେତେ । ମୈଁ ନିଜ ଶ୍ରବନ ସୁନେ ସୁନୁ ଜେତେ ॥୬॥
ବଲିହି ଜିତନ ଏକ ଗୟଉ ପତାଲା । ରାଖେଉ ବାଁଧି ସିସୁନ୍ହ ହୟସାଲା ॥
ଖେଲହିଁ ବାଲକ ମାରହିଁ ଜାଈ । ଦୟା ଲାଗି ବଲି ଦୀନ୍ହ ଛୋଡ଼ାଈ ॥୭॥
ଏକ ବହୋରି ସହସଭୁଜ ଦେଖା । ଧାଇ ଧରା ଜିମି ଜଂତୁ ବିସେଷା ॥
କୌତୁକ ଲାଗି ଭବନ ଲୈ ଆୱା । ସୋ ପୁଲସ୍ତି ମୁନି ଜାଇ ଛୋଡ଼ାୱା ॥୮॥

ଏକ କହତ ମୋହି ସକୁଚ ଅତି ରହା ବାଲି କୀଁ କାଁଖ ।
ଇନ୍ହ ମହୁଁ ରାବନ ତୈଁ କୱନ ସତ୍ୟ ବଦହି ତଜି ମାଖ ॥୨୪॥

---

ବାଳିର ବିମଳ ଯଶ-ଭାଜନ ବିଚାରି । ନ ବଧେ ତୋତେ ଅଧମ ଅଭିମାନୀ ହାରି ॥
କହ ରାବଣ, ରାବଣ ଜଗତରେ କେତେ । ଶୁଣ, ଶୁଣାଉଛୁ ତୋତେ ଶୁଣିଛୁ ମୁଁ ଯେତେ ॥୬॥
ବଳି ଜିଣିବାକୁ ଏକ ଗମିଲା ପାତାଳେ । ରଖିଲେ ଶିଶୁ-ସମୂହ ବାନ୍ଧି ହୟ-ଶାଳେ ॥
ଖେଳନ୍ତି ବାଳକ-ବୃନ୍ଦ ପ୍ରହାରନ୍ତି ଯାଇ । ଦୟା ଲାଗିବାରୁ ବଳି ଦେଲା ମୁକୁଳାଇ ॥୭॥
ସହସ୍ର-ଭୁଜ ଇତର ରାବଣେ ଦେଖିଲା । କୌଣସି ଜନ୍ତୁ ବିଶେଷ ଭାବି ଧଇଲା ॥
ଆଣିଲା ନିଜ ଭବନେ କଉତୁକ ପାଇଁ । ତାହାକୁ ପୁଲସ୍ତି ମୁନି ମୁକ୍ତ କଲେ ଯାଇ ॥୮॥

ଇତର କହନ୍ତେ ଲଜ୍ଜା ଲାଗେ ମୋତେ ଥିଲା ସେ ବାଳି କାଖରେ ।
ତୁ କେଉଁ ରାବଣ ସତ୍ୟ କହ, ମାନ ତେଜି ଏହାଙ୍କ ମଧ୍ୟରେ ॥୨୪॥

---

ସୁଗ୍ରୀବ କଥା ବିଚାର କରି ମୁଁ କିଛି ଧୃଷ୍ଟତା କରିଅଛୁ । ହନୁମାନ୍ ଯାହା କିଛି କହିଥିଲେ, ମୁଁ ଆସି ତାହା ପ୍ରତ୍ୟକ୍ଷରେ ଦେଖିପାରିଛୁ । ବାସ୍ତବରେ ତୋହର ଲଜ୍ଜା, କ୍ରୋଧ ଓ ବିରକ୍ତି କିଛି ହେଲେ ନାହିଁ ।" ॥୪॥ ରାବଣ କହିଲା, "ଅରେ ବାନର ! ତୋର ଏପରି ବୁଦ୍ଧି ହୋଇଥିବାରୁ ତୁ ତୋ ବାପକୁ ଖାଇଗଲୁ ।" ଏପରି ବଚନ କହି ରାବଣ ହସିଲା । ଅଙ୍ଗଦ କହିଲେ, "ପିତାଙ୍କୁ ଖାଇ ପୁଣି ତୋତେ ମଧ୍ୟ ଖାଇଯାଆନ୍ତି, କିନ୍ତୁ ବର୍ତ୍ତମାନ ଆଉ ଗୋଟାଏ କଥା ଶୀଘ୍ର ମୋ ମନକୁ ଆସିଯାଇଛି ! ॥୫॥ ଅରେ ନୀଚ ଅଭିମାନୀ ! ବାଳିଙ୍କ ନିର୍ମଳ ଯଶର ପାତ୍ର ରୂପେ ତୋତେ ଜାଣି, ମୁଁ ତୋତେ ମାରୁନାହିଁ । ରାବଣ ! ଜଗତରେ କେତେ ଜଣ ରାବଣ ଅଛନ୍ତି, କହ ତ । ମୁଁ ଯେତେ ରାବଣଙ୍କ କଥା ମୋ କାନରେ ଶୁଣିଛି, ସେ ସବୁ ଶୁଣ୍—॥୬॥ ଜଣେ ରାବଣ ତ ବଳିଙ୍କୁ ଜିଣିବାକୁ ପାତାଳକୁ ଯାଇଥିଲା । ସେତେବେଳେ ପିଲାମାନେ ତାହାକୁ ଅଶ୍ୱଶାଳାରେ ବାନ୍ଧି ରଖିଥିଲେ । ବାଳକମାନେ ଖେଳୁଥା'ନ୍ତି ଏବଂ ତା ନିକଟକୁ ଯାଇ ଯାଇ ତାହାକୁ ମାରୁଥା'ନ୍ତି । ବଳିଙ୍କ ମନରେ ଦୟା ଆସିଲା । ସେ ତାକୁ ମୁକ୍ତ କରାଇଦେଲେ ॥୭॥ ପୁଣି ଜଣେ ରାବଣକୁ ସହସ୍ର-ବାହୁ ଦେଖିଥିଲା ଏବଂ ସେ ଦୌଡ଼ି ତାହାକୁ ଗୋଟିଏ ବିଚିତ୍ର ଜନ୍ତୁ ବୋଲି ମନେ କରି ଧରି ପକାଇଲା । କୌତୁକ ଦେଖିବା ନିମନ୍ତେ ସେ ତାହାକୁ ଘରକୁ ନେଇଆସିଲା । ତତ୍ପରେ ପୁଲସ୍ତ୍ୟ ମୁନି ଯାଇ ତାହାକୁ ମୁକ୍ତ କଲେ ॥୮॥ ଦୋହା'–ଆଉ ଜଣେ

ସୁନୁ ସଠ ସୋଇ ରାବନ ବଲସୀଲା । ହରଗିରି ଜାନ ଜାସୁ ଭୁଜ ଲୀଲା ॥
ଜାନ ଉମାପତି ଜାସୁ ସୁରାଈ । ପୂଜେଉଁ ଜେହି ସିର ସୁମନ ଚଢ଼ାଈ ॥୧॥
ସିର ସରୋଜ ନିଜ କରନ୍ହି ଉତାରୀ । ପୂଜେଉଁ ଅମିତ ବାର ତ୍ରିପୁରାରୀ ॥
ଭୁଜ ବିକ୍ରମ ଜାନହିଁ ଦିଗପାଲା । ସଠ ଅଜହୂଁ ଜିନ୍ହ କେଁ ଉର ସାଲା ॥୨॥
ଜାନହିଁ ଦିଗ୍‌ଗଜ ଉର କଠିନାଈ । ଜବ ଜବ ଭିରଉଁ ଜାଇ ବରିଆଈ ॥
ଜିନ୍ହ କେ ଦସନ କରାଲ ନ ଫୂଟେ । ଉର ଲାଗତ ମୂଲକ ଇବ ଟୂଟେ ॥୩॥
ଜାସୁ ଚଲତ ଡୋଲତି ଇମି ଧରନୀ । ଚଢ଼ତ ମତ୍ତ ଗଜ ଜିମି ଲଘୁ ତରନୀ ॥
ସୋଇ ରାବନ ଜଗ ବିଦିତ ପ୍ରତାପୀ । ସୁନେହି ନ ଶ୍ରବନ ଅଲୀକ ପ୍ରଲାପୀ ॥୪॥

---

ଶୁଣ ଶଠ ! ମୁହିଁ ସେ ରାବଣ ବଳଶୀଳ । ଯା'ର ଭୁଜବଳ ଜାଣେ ଶଙ୍କର ଶଇଳ ॥
ଜାଣନ୍ତି ଯାର ଶୂରତା ପାରବତୀ-ସାଇଁ । ପୂଜିଲି ଯାହାଙ୍କୁ ଶିର-ସୁମନ ଚଢାଇ ॥୧॥
ଛିଣ୍ଡାଇ ଶିର-ସରୋଜ ଆପଣା ହସ୍ତରେ । ଅନେକ ବାର ପୂଜିଲି ଶିବଙ୍କୁ ସାଦରେ ॥
ଭୁଜ-ବିକ୍ରମ ଜାଣନ୍ତି ଦିଗପାଳ ଗଣ । ଅଦ୍ୟାପି ଶଠ ଯାହାଙ୍କ ହୃଦୟେ କଷଣ ॥୨॥
ଜାଣନ୍ତି ଦିଗ୍‌ଗଜେ ହୃଦ କଠିନତା ମୋର । ଯେବେ ଯେବେ ବଳାତ୍କାରେ ଯୁଝିଲି ସଜୋର ॥
ଯାହାଙ୍କ କରାଳ ଦନ୍ତେ ବକ୍ଷ ନ ଫୁଟିଲା । ହୃଦୟେ ବାଜନ୍ତେ ମୂଳା ସଦୃଶ ଟୁଟିଲା ॥୩॥
ଯାହାର ଚାଲନ୍ତେ କମ୍ପେ ଧରଣୀ ଏମନ୍ତେ । ଯଥା କ୍ଷୁଦ୍ର ନାବେ ମତ୍ତ ବାରଣ ଚଢନ୍ତେ ॥
ସେହି ରାବଣ ମୁଁ ବିଶ୍ୱ ବିଦିତ ପ୍ରତାପୀ । ଶୁଣି ନାହୁଁ ଶ୍ରବଣେ କି ରେ ମିଥ୍ୟା ପ୍ରଳାପୀ ॥୪॥

---

ରାବଣର କଥା କହିବାକୁ ମୋ ମନରେ ବଡ ସଙ୍କୋଚ ହେଉଅଛି— । ସେ ବହୁତ ଦିନ ଯାଏ ବାଲିଙ୍କ କାଖରେ ରହିଥିଲା । ଏମାନଙ୍କ ମଧ୍ୟରେ ତୁ କେଉଁ ରାବଣ ? ଚଟାଚଟ ଖୁଲି ସତ ସତ କହିଯାଆ ।" ॥ ୨୪ ॥ ଚୌପାଈ :—ରାବଣ କହିଲା, "ଆରେ ମୂର୍ଖ ! ଶୁଣ୍, ଯେଉଁ ରାବଣର ବାହୁର କରାମତି କୈଳାସ ପର୍ବତ ଜାଣେ, ମୁଁ ସେହି ବଳବାନ୍ ରାବଣ । ଯାହାର ବୀରତା ଉମାପତି ମହାଦେବ ଜାଣନ୍ତି, ଯାହାଙ୍କୁ କି ମୁଁ ଆପଣାର ଶିର-ସୁମନ ଚଢାଇ ପୂଜା କରିଥିଲି, ମୁଁ ହେଉଛି ସେହି ରାବଣ ॥୧॥ ମୁଁ ମୋ ଶିର-କମଳ ସବୁ ଆପଣା ହସ୍ତରେ ଉତାରି ଅସଂଖ୍ୟ ଥର ତ୍ରିପୁରାରି ଶିବଙ୍କୁ ପୂଜା କରିଅଛି । ଆରେ ମୂର୍ଖ ! ମୋ ବାହୁ-ପରାକ୍ରମ ଦିଗପାଳମାନେ ଜାଣନ୍ତି । ସେମାନଙ୍କ ହୃଦୟରେ ଅଦ୍ୟାବଧି ମୋର ପରାକ୍ରମ-ଜନିତ ଆଘାତ ପୀଡ଼ା ଦେଉଅଛି ॥୨॥ ଦିଗ୍‌ଗଜମାନେ ମୋର ବକ୍ଷର କଠୋରତା ଜାଣନ୍ତି । ଯେବେ ଯେବେ ଯାଇ ମୁଁ ଜବରଦସ୍ତି ସେମାନଙ୍କ ସଙ୍ଗେ ଲଢିଛି, ସେମାନଙ୍କ ଭୟାନକ ଦାନ୍ତ ମୋ ଛାତିରେ କେବେ ଫୁଟି ନାହିଁ କିମ୍ବା ଆଘାତ-ଚିହ୍ନ ସୃଷ୍ଟି କରିପାରି ନାହିଁ । ପକ୍ଷାନ୍ତରରେ ମୋ ଛାତିରେ ଲାଗିବା ମାତ୍ରେ ସେମାନଙ୍କ ଦାନ୍ତ ସବୁ ମୂଳା ପରି ଭାଙ୍ଗି ଯାଇଛି ॥୩॥ ଉନ୍ମତ୍ତ ହସ୍ତୀ କ୍ଷୁଦ୍ର ନୌକା ଉପରେ ଚଢିଲା ବେଳେ ତାହା ଯେପରି ଦୋହଲି ଉଠେ, ସେହିପରି ଯାହାର ଚାଲିବା ସମୟରେ ପୃଥିବୀ ଦୋହଲି ଉଠେ, ମୁଁ ସେହି ଜଗତ୍‌ପ୍ରସିଦ୍ଧ

ତେହି ରାବନ କହଁ ଲଘୁ କହସି ନର କର କରସି ବଖାନ ।
ରେ କପି ବର୍ବର ଖର୍ବ ଖଲ ଅବ ଜାନା ତବ ଜ୍ଞାନ ॥୨୫॥

ସୁନି ଅଙ୍ଗଦ ସକୋପ କହ ବାନୀ । ବୋଲୁ ସଁଭାରି ଅଧମ ଅଭିମାନୀ ॥
ସହସବାହୁ ଭୁଜ ଗହନ ଅପାରା । ଦହନ ଅନଲ ସମ ଜାସୁ କୁଠାରା ॥୧॥
ଜାସୁ ପରସୁ ସାଗର ଖର ଧାରା । ବୁଡେ ନୃପ ଅଗନିତ ବହୁ ବାରା ॥
ତାସୁ ଗର୍ବ ଜେହି ଦେଖତ ଭାଗା । ସୋ ନର କ୍ୟୋଁ ଦସସୀସ ଅଭାଗା ॥୨॥
ରାମ ମନୁଜ କସ ରେ ସଠ ବଂଗା । ଧନ୍ୱୀ କାମୁ ନଦୀ ପୁନି ଗଂଗା ॥
ପସୁ ସୁରଧେନୁ କଲ୍ପତରୁ ରୂଖା । ଅନ୍ନଦାନ ଅରୁ ରସ ପୀୟୂଷା ॥୩॥
ବୈନତେୟ ଖଗ ଅହି ସହସାନନ । ଚିନ୍ତାମନି ପୁନି ଉପଲ ଦସାନନ ॥
ସୁନୁ ମତିମନ୍ଦ ଲୋକ ବୈକୁଣ୍ଠା । ଲାଭ କି ରଘୁପତି ଭଗତି ଅକୁଣ୍ଠା ॥୪॥

---

ତୁଚ୍ଛ କହୁ ସେହି ରାବଣକୁ ତୁହି ନରର କରୁ ବଖାଣ ।
ରେ କପି ବର୍ବର ! ଖର୍ବ ଖଲ, ତୋର ଜାଣିଲି ମୁଁ ଏବେ ଜ୍ଞାନ ॥୨୫॥

ଶୁଣି ଅଙ୍ଗଦ କହଇ କୋପଭରା ବାଣୀ । ସମ୍ଭାଳି ବଚନ ବୋଲ ଅଧମାଭିମାନୀ ॥
ସହସ୍ର-ବାହୁର ଭୁଜ ଗହନ ଅପାର । ଦହନେ ଅନଲ ସମ ଯାହାର କୁଠାର ॥୧॥
ଯାହାର ପରଶୁ-ସିନ୍ଧୁ ତୀକ୍ଷ୍ଣ ଲହଡାରେ । ବୁଡିଗଲେ ଅଗଣିତ ନୃପ ବହୁବାରେ ॥
ଗର୍ବ ତାର ପଳାଇଲା ଯାହାଙ୍କୁ ଦେଖନ୍ତେ । ଅଭାଗା ଦଶକନ୍ଧର, ନର ସେ କେମନ୍ତେ ॥୨॥
ରାମ ମନୁଷ୍ୟ କିପରି ରେ ଶଠ, ପାମର । କାମ ଧନୁର୍ଦ୍ଧାରୀ, ଗଙ୍ଗା ନଦୀ କି ଆବର ॥
ପଶୁ ସୁରଧେନୁ, କଳ୍ପବୃକ୍ଷ ବୃକ୍ଷପରେ । ଅନ୍ନ କି ଦାନ ? ପୀୟୂଷ ଲେଖା କି ରସରେ ॥୩॥
ବୈନତେୟ ବିହଙ୍ଗ କି, ଅହି ଅଟେ ଶେଷ । ଚିନ୍ତାମଣି ପଥର କି କହ, ଅସୁରେଶ ॥
ଶୁଣ ମତିମନ୍ଦ, ଲୋକ କି ବୈକୁଣ୍ଠପୁରୀ । ରଘୁପତି ଭକତି କି ଆନ ଲାଭ ପରି ॥୪॥

---

ପ୍ରତାପୀ ରାବଣ । ଆରେ ମିଥ୍ୟା ପ୍ରଳାପକାରୀ ! ତୁ କ'ଣ ମୋ ବିଷୟ ଆପଣା କାନରେ କେବେ ଶୁଣିନାହୁଁ ? ॥ ୪ ॥ ଦୋହା :—ସେହି ମହାପ୍ରତାପୀ ଓ ଜଗତ୍-ପ୍ରସିଦ୍ଧ ରାବଣ ହେଉଛି ମୁଁ । ତୁ ମୋତେ ସାମାନ୍ୟ ବୋଲି କହୁଛୁ ଏବଂ ମନୁଷ୍ୟର ବଡାଇ କରୁଛୁ ? ଆରେ ଦୁଷ୍ଟ, ଅସଭ୍ୟ, ତୁଚ୍ଛ ବାନର ! ଏବେ ମୁଁ ତୋର ଜ୍ଞାନ ଜାଣି-ପାରିଲି ।" ॥ ୨୫ ॥ ଚୌପାଇ :—ରାବଣର ଏ ସବୁ ବଚନ ଶୁଣି, ଅଙ୍ଗଦ କ୍ରୋଧରେ ବଚନ ବୋଇଲେ, "ଆରେ ନୀଚ ଅଭିମାନୀ ! ସମ୍ଭାଳି କଥାବାର୍ତ୍ତା କର । ଯାହାଙ୍କର ଫାରଶା, ସହସ୍ର ବାହୁର ଭୁଜାରୂପୀ ଅପାର ବନକୁ ଜଳାଇବା ନିମନ୍ତେ ଅଗ୍ନି ସମାନ ଥିଲା, ଯାହାଙ୍କର ଫାରଶା-ସାଗରର ତୀବ୍ର ଧାରାରେ ଅଗଣିତ ରାଜା ଅନେକ ଥର ବୁଡିଗଲେ, ସେହି ପରଶୁରାମଙ୍କ ଗର୍ବ ଯାହାଙ୍କୁ ଦେଖିବା ମାତ୍ରେ ପଳାଇଗଲା, ଆରେ ଅଭାଗା ଦଶଶିର ! ସେ ମନୁଷ୍ୟ କିପରି ? ॥ ୨ ॥ ରେ ମୂର୍ଖ ଉଦ୍ଦଣ୍ଡ ! ଶ୍ରୀରାମଚନ୍ଦ୍ର ମନୁଷ୍ୟ କିପରି ? କାମଦେବ ଧନୁର୍ଦ୍ଧାରୀ କି ? ଗଙ୍ଗା କ'ଣ ନଦୀ ? କାମଧେନୁ କ'ଣ

ସେନ ସହିତ ତବ ମାନ ମଥି ବନ ଉଜାରି ପୁର ଜାରି ।
କସ ରେ ସଠ ହନୁମାନ କପି ଗୟଉ ଜୋ ତବ ସୁତ ମାରି ॥୨୬॥

ସୁନୁ ରାବନ ପରିହରି ଚତୁରାଈ । ଭଜସି ନ କୃପାସିଂଧୁ ରଘୁରାଈ ॥
ଜୌଁ ଖଲ ଭଏସି ରାମ କର ଦ୍ରୋହୀ । ବ୍ରହ୍ମ ରୁଦ୍ର ସକ ରାଖି ନ ତୋହୀ ॥୧॥
ମୂଢ଼ ବୃଥା ଜନି ମାରସି ଗାଲା । ରାମ ବୟରୁ ଅସ ହୋଇହି ହାଲା ॥
ତବ ସିର ନିକର କପିନ୍ହ କେ ଆଗେଁ । ପରିହହିଁ ଧରନି ରାମସର ଲାଗେଁ ॥୨॥
ତେ ତବ ସିର କଂଦୁକ ସମ ନାନା । ଖେଲିହହିଁ ଭାଲୁ କୀସ ଚୌଗାନା ॥
ଜବହିଁ ସମର କୋପିହି ରଘୁନାୟକ । ଛୁଟିହହିଁ ଅତି କରାଲ ବହୁ ସାୟକ ॥୩॥
ତବ କି ଚଲିହି ଅସ ଗାଲ ତୁମ୍ହାରା । ଅସ ବିଚାରି ଭଜୁ ରାମ ଉଦାରା ॥
ସୁନତ ବଚନ ରାବନ ପରଜରା । ଜରତ ମହାନଲ ଜନୁ ଘୃତ ପରା ॥୪॥

---

ସେନା ସହ ତୋର ମାନ ମର୍ଦ୍ଦି ପୁର ଜାଳି ବନ ଧ୍ୱଂସ କରି ।
ରେ ଶଠ ! କେମନ୍ତ କପି ହନୁମନ୍ତ ? ଗଲା ଯେ ତୋ ସୁତେ ମାରି ॥୨୬॥

ଚତୁରତା ପରିହରି ଶୁଣ ଲଙ୍କପତି । ନ ଭଜୁ ତୁ କିପାଁ କୃପାସିନ୍ଧୁ ରଘୁପତି ॥
ଯେବେ ଖଳ ହୋଇଲୁ ତୁ ଦ୍ରୋହୀ ରାମଙ୍କର । ରଖି ନ ପାରିବେ ତୋତେ ବିରଞ୍ଚି ଶଙ୍କର ॥୧॥
ନ କର ଆଉ ପ୍ରଳାପ ମୂଢ଼, ଅକାରଣେ । ରାମବିରୋଧେ ତୋ ଦଶା ହୋଇବ ଏସନେ ॥
ତୋହର ଶିର ନିକର କପିଙ୍କ ଅଗ୍ରତେ । ପଡ଼ିବ ମହୀରେ ରାମ ଶାୟକ ଲାଗନ୍ତେ ॥୨॥
ତେବେ ତୋର ଶିର ଘେନି ବାନର ଭଲ୍ଲୁକ । ଖେଳିବେ ପେଣ୍ଡୁ ସଦୃଶ ଖେଳ କଉତୁକ ॥
ଯେବେ ଶ୍ରୀ ରଘୁନାୟକ ସମରେ କୋପିବେ। ଅତି କରାଳ ଅସଂଖ୍ୟ ଶାୟକ ମାରିବେ ॥୩॥
ତେବେ କି ଏମନ୍ତ ଆଉ ରହିବ ତୋହର । ଏହା ବିଚାରି ଉଦାର ଭଜ ରଘୁବର ॥
ଶୁଣନ୍ତେ ବଚନ ଦଶବଦନ ଜଳିଲା । ଜ୍ୱଳନ୍ତ ଅନଳେ ଘୃତ କି ଅବା ପଡ଼ିଲା ॥୪॥

---

ପଶୁ ? କଳ୍ପବୃକ୍ଷ କ'ଣ ଗଛ ? ଅନ୍ନ କ'ଣ ଦାନ ? ଅମୃତ କ'ଣ ରସ ? ॥ ୩ ॥ ଗରୁଡ଼ କ'ଣ ପକ୍ଷୀ ? ଶେଷ କଣ ସର୍ପ ? ଆରେ ରାବଣ ! ଚିନ୍ତାମଣି ବି କ'ଣ ପଥର ? ଆରେ ଏ ମୂର୍ଖ ! ଶୁଣ୍, ବୈକୁଣ୍ଠ ବି କ'ଣ ଲୋକ (ସଂସାର) ? ଏବଂ ଶ୍ରୀରାମଙ୍କ ଅଖଣ୍ଡ ଭକ୍ତି କ'ଣ ଇତର ଲାଭ ପରି ? ॥୪॥ ଦୋହା —ସେନା ସମେତ ତୋର ଅଭିମାନକୁ ମନ୍ଥନ କରି, ଅଶୋକବନକୁ ଉଜାଡ଼ି, ନଗରକୁ ଜଳାଇ ଓ ତୋ ପୁଅକୁ ମାରି ଯେ ଫେରିଗଲେ, ତାଙ୍କର ତୁ କିଛି କରିପାରିଲୁ ନାହିଁ । କରେ ଦୁଷ୍ଟ ! ସେ ହନୁମାନ୍ କ'ଣ ବାନର ? ॥ ୨୬ ॥ ଚୌପାଈ —ଆରେ ରାବଣ ! ଚତୁରତା କପଟ ଆଦି ତ୍ୟାଗ କରି ଶୁଣ୍, କୃପାସାଗର ଶ୍ରୀ ରଘୁନାଥଙ୍କୁ ତୁ କାହିଁକି ଭଜନ କରୁନାହୁଁ ? ଆରେ ଦୁଷ୍ଟ ! ଯଦି ତୁ ଶ୍ରୀରାମଙ୍କ ଶତ୍ରୁ ହେଲୁ, ତେବେ ତୋତେ ବ୍ରହ୍ମା ଓ ରୁଦ୍ର ସୁଦ୍ଧା ରକ୍ଷା କରି ପାରିବେ ନାହିଁ । ॥ ୧ ॥ ରେ ମୂଢ଼ ! ବୃଥାରେ ଗାଲୁ ମାର ନାହିଁ । ଶ୍ରୀରାମଙ୍କ ସଙ୍ଗେ ଶତ୍ରୁତା କଲେ ତୋର ଦଶା ଏପରି ହେବ ଯେ ତୋର ଶିର ସବୁ ଶ୍ରୀରାମଙ୍କ ବାଣ ଲାଗିବା

କୁମ୍ଭକରନ ଅସ ବଂଧୁ ମମ ସୁତ ପ୍ରସିଦ୍ଧ ସକ୍ରାରି ।
ମୋର ପରାକ୍ରମ ନହିଁ ସୁନେହି ଜିତେଉଁ ଚରାଚର ଝାରି ॥୨୮॥
ସଠ ସାଖାମୃଗ ଜୋରି ସହାଈ । ବାଁଧା ସିଂଧୁ ଇହଇ ପ୍ରଭୁତାଈ ॥
ନାଘହିଁ ଖଗ ଅନେକ ବାରୀସା । ସୂର ନ ହୋହିଁ ତେ ସୁନୁ ସବ କୀସା ॥୧॥
ମମ ଭୁଜ ସାଗର ବଲ ଜଲ ପୂରା । ଜହଁ ବୂଡ଼େ ବହୁ ସୁର ନର ସୂରା ॥
ବୀସ ପୟୋଧି ଅଗାଧ ଅପାରା । କୋ ଅସ ବୀର ଜୋ ପାଇହି ପାରା ॥୨॥
ଦିଗପାଲନ୍ହ ମୈଁ ନୀର ଭରାଓା । ଭୂପ ସୁଜସ ଖଲ ମୋହି ସୁନାଓା ॥
ଜୌଁ ପୈ ସମର ସୁଭଟ ତବ ନାଥା । ପୁନି ପୁନି କହସି ଜାସୁ ଗୁନ ଗାଥା ॥୩॥

---

କୁମ୍ଭକର୍ଣ୍ଣ ସମ ସହୋଦର ମମ ସୁତ ଶକ୍ରାରି ବିଦିତ ।
ପରାକ୍ରମ ମୋର ଶୁଣିନାହୁଁ ? ଶଠ, ମୁଁ ଚରାଚର ବିଜିତ ॥୨୮॥
ଶଠ, ଶାଖା-ଜନ୍ତୁଙ୍କର ପାଇ ସହାୟତା । ବାନ୍ଧିଲ ସେତୁ ଏତିକି ମାତ୍ର ପ୍ରଭୁତା ॥
ଲଂଘନ୍ତି ବହୁ ବିହଙ୍ଗ ବିସ୍ତୃତ ସାଗର । ଶୂର ସେ ନୁହନ୍ତି ଶୁଣ, ଜଡ଼ ବନଚର ॥୧॥
ମୋର ଭୁଜ-ପାରାବାର ବଳ-ଜଳେ ପୂରେ । ଯହିଁରେ ବୁଡ଼ିଲେ ବହୁ ସୁର ନର ଶୂରେ ॥
ବିଂଶ ପୟୋନିଧି ଅତି ଗମ୍ଭୀର ଅପାର । ଏମନ୍ତ ବୀର କିଏ ସେ ହୋଇଥିବ ପାର ॥ ॥
ଦିଗପାଳଙ୍କ ହସ୍ତେ ମୁଁ ବୁହାଇଲି ଜଳ । ନୃପ ସୁଯଶ ଶୁଣାଉ ମୋ ସମ୍ମୁଖେ, ଖଳ ॥
ଯେବେ ବା ସମରେ ବୀର ଅଟଇ ତୋ ପତି । ବାରମ୍ବାର ବଖାଣୁଛୁ ଯା ଗୁଣ ଖ୍ୟାତି ॥୩॥

---

ମାଡ଼େ ବାନରମାନଙ୍କ ସମ୍ମୁଖରେ ଭୂମି ଉପରେ ଲୋଟିବ ॥୬॥ ଏବଂ ଭଲ୍ଲୁକ-ବାନରମାନେ ତୋର ସେହି କନ୍ଦୁକ ସମାନ ଶିରମାନଙ୍କୁ ଧରି ଫୋପାଡ଼ି ଖେଳିବେ । ଯେତେବେଳେ ଶ୍ରୀ ରଘୁନାଥ ଯୁଦ୍ଧରେ କୋପ କରିବେ ଏବଂ ତାଙ୍କର ଅତି ତୀକ୍ଷ୍ଣ ବହୁଳ ବାଣ ଧନୁରୁ ଛୁଟି ଆସିବ, ସେତେବେଳେ ତୋର ଏପରି ଗାଲୁ ଚଳିବ କି ? ଏପରି ବିଚାରି ଉଦାର ଶ୍ରୀରାମଙ୍କୁ ଭଜ ।" ଅଙ୍ଗଦଙ୍କ ଏହି ସବୁ ବଚନ ଶୁଣି, ରାବଣ ଅତ୍ୟଧିକ ମାତ୍ରାରେ ଜଳି ଉଠିଲା । ଯେପରି ଅବା ପ୍ରଜ୍ଜ୍ୱଳିତ ପ୍ରଚଣ୍ଡ ଅଗ୍ନିରେ ଘୃତର ଆହୁତି ହେଲା କି ! ॥୭-୮॥ ଦୋହା :—ରାବଣ କହିଲା, "ଅରେ ମୂର୍ଖ ! କୁମ୍ଭକର୍ଣ୍ଣ ପରି ମୋର ଭାଇ, ଇନ୍ଦ୍ରଶତ୍ରୁ ସୁପ୍ରସିଦ୍ଧ ମେଘନାଦ ମୋର ପୁତ୍ର ! ଏବଂ ମୋ ପରାକ୍ରମ ତ ତୁ ଶୁଣି ନାହୁଁ । ମୁଁ ସମ୍ପୂର୍ଣ୍ଣ ଜଡ଼ଚେତନ ଜଗତକୁ ଜୟ କରିଅଛି ! ॥୨୮॥
ଚୌପାଇ :—ରେ ଦୁଷ୍ଟ ! ବାନରମାନଙ୍କ ସାହାଯ୍ୟରେ ରାମ ସମୁଦ୍ର ବାନ୍ଧି ପକାଇଲେ; ବେଶ୍, ଏହା ହିଁ ତାହାର ପ୍ରଭୁତ୍ୱ । ସମୁଦ୍ରକୁ ତ ଅନେକ ପକ୍ଷୀ ଲଙ୍ଘନ କରି ଯାଉଛନ୍ତି । କିନ୍ତୁ ଏହା ଯୋଗେ ସେମାନେ ସମସ୍ତେ ଶୂରବୀର ହୋଇ ଯାଉନାହାନ୍ତି । ଅରେ ମୂର୍ଖ ବାନର ! ଶୁଣ— ॥୧॥ ମୋର ଗୋଟିଏ ଗୋଟିଏ ବାହୁ-ସମୁଦ୍ର ବଳ-ଜଳରେ ପରିପୂର୍ଣ୍ଣ । ଯହିଁରେ ବହୁତ ଶୂରବୀର ଦେବତା ଓ ମନୁଷ୍ୟ ବୁଡ଼ି ସାରିଛନ୍ତି । କହ ଏପରି ଶୂରବୀର କିଏ, ଯେ ମୋର ଏହି ଅଗାଧ ଓ ଅପାର ବିଂଶ ସମୁଦ୍ରକୁ ପାର

ତୌ ବସୀଠ ପଠଓ୍ୱତ କେହି କାଜା । ରିପୁ ସନ ପ୍ରୀତି କରତ ନହିଁ ଲାଜା ॥
ହରଗିରି ମଥନ ନିରଖୁ ମମ ବାହୂ । ପୁନି ସଠ କପି ନିଜ ପ୍ରଭୁହି ସରାହୂ ॥୪॥
ସୂର କଓ୍ୱନ ରାବନ ସରିସ ସ୍ୱକର କାଟି ଜେହିଁ ସୀସ ।
ହୁନେ ଅନଲ ଅତି ହରଷ ବହୁ ବାର ସାଖି ଗୌରୀସ ॥୨୮॥
ଜରତ ବିଲୋକେଉଁ ଜବହିଁ କପାଲା । ବିଧି କେ ଲିଖେ ଅଙ୍କ ନିଜ ଭାଲା ॥
ନର କେଁ କର ଆପନ ବଧ ବାଁଚୀ । ହସେଉଁ ଜାନି ବିଧି ଗିରା ଅସାଁଚୀ ॥୧॥
ସୋଉ ମନ ସମୁଝି ତ୍ରାସ ନହିଁ ମୋରେଁ । ଲିଖା ବିରଞ୍ଚି ଜରଠ ମତି ଭୋରେଁ ॥
ଆନ ବୀର ବଲ ସଠ ମମ ଆଗେଁ । ପୁନି ପୁନି କହସି ଲାଜ ପତି ତ୍ୟାଗେଁ ॥୨॥
କହ ଅଙ୍ଗଦ ସଲଜ୍ଜ ଜଗ ମାହୀଁ । ରାବନ ତୋହି ସମାନ କୋଉ ନାହୀଁ ॥
ଲାଜବନ୍ତ ତବ ସହଜ ସୁଭାଊ । ନିଜ ମୁଖ ନିଜ ଗୁନ କହସି ନ କାଊ ॥୩॥

---

ତେବେ ତୁମ୍ଭେ ପଠାଇଛ ଦୂତ କି ନିମନ୍ତେ । ଶତ୍ରୁ ସଙ୍ଗେ ପ୍ରୀତି, ଲଜ୍ଜା ନ ଲାଗେ କରନ୍ତେ ॥
ହରଗିରି ବିମନ୍ଥନ ମୋର ଭୁଜଦଣ୍ଡ । ଦେଖି ନିଜ ନାଥେ ତୁମ୍ଭେ ପ୍ରଶଂସ ପାଷଣ୍ଡ ॥୪॥
ଶୂର କିଏ ଦଶ-ବଦନ ସଦୃଶ ଶିର ଯେ କାଟି ସ୍ୱକର ।
ଅନଳରେ ହୋମ କଲା ବହୁବାର ହରଷିତେ, ସାକ୍ଷୀ ହର ॥୨୮॥
ଜଳନ୍ତେ ଶିର ଦେଖିଲି ସେହି ସମୟରେ । ବିଧାତା ଲିଖିତ ଚିହ୍ନ ସ୍ୱଭାଲ ପଟ୍ଟରେ ॥
ମନୁଷ୍ୟ ହସ୍ତେ ଆପଣା ନିଧନ ପଢ଼ିଣ । ହସିଲି ବିଧି ଲେଖନ ଅସତ୍ୟ ଭାବିଣ ॥୧॥
ତାହା ମନ ମଧ୍ୟେ ବୁଝି ତ୍ରାସ ମୋର ନାହିଁ । ବୃଦ୍ଧ ଭୋଳପଣେ ବ୍ରହ୍ମା ଲେଖିଅଛି କାହିଁ ॥
ଅନ୍ୟ ବୀର ବଳ ଶଠ କପି, ବାର ବାହୁ । ଲଜ୍ଜା ପ୍ରତିଷ୍ଠା ତେଜିଣ ମୋ ଆଗରେ କହୁ ॥୨॥
ବୋଲଇ ଅଙ୍ଗଦ, ବିଶ୍ୱ ମଧ୍ୟରେ ତୋ ପ୍ରାୟ । ନ ଥିବେ ସଲଜ୍ଜ କେହି ଶୁଣ ଲଙ୍କରାୟ ॥
ଲଜ୍ଜାଶୀଳତା ସହଜେ ସ୍ୱଭାବ ତୋହର । ନିଜ ମୁଖେ କେବେ ଗୁଣ ନ କହୁ ନିଜର ॥୩॥

---

ହୋଇଯିବ ? ॥ ୨ ॥ ଆରେ ଦୁଷ୍ଟ ! ମୁଁ ଏପରି କି ଦିଗପାଳମାନଙ୍କ ଦ୍ୱାରା ଜଳ ଭରାଉଛି । ଏବଂ ତୁ ଜଣେ ରାଜାର ସୁଯଶ ମୋତେ ଶୁଣାଉଛୁ ! ସେହି ପ୍ରଭୁର ଗୁଣଗାଥା ତୁ ବାରମ୍ବାର କହୁଛୁ, ଯଦି ତୋର ସେହି ପ୍ରଭୁ ସଂଗ୍ରାମରେ ଲଢ଼ୁଆ ଯୋଦ୍ଧା ଅଟେ, ତେବେ ସେ ଦୂତ କି ନିମନ୍ତେ ପଠାଉଛି ? ଶତ୍ରୁ ସଙ୍ଗେ ପ୍ରୀତି (ସନ୍ଧି) କରିବାରେ ତାହାକୁ ଲଜ୍ଜା ଆସୁନାହିଁ ! ପ୍ରଥମେ କୈଳାସ ପର୍ବତର ମନ୍ଥନକାରୀ ମୋର ଭୁଜା-ସମୂହ ଦେଖ୍ । ତତ୍ପରେ ଆରେ ମୂର୍ଖ ବାନର ! ନିଜ ମାଲିକର ପ୍ରଶଂସା କର ॥ ୪ ॥ ଦୋହା —ରାବଣ ସମାନ ଶୂରବୀର ଆଉ କିଏ—ଯେ ନିଜ ହାତରେ ଶିର କାଟି କାଟି ଅତି ଆନନ୍ଦରେ ବହୁତ ଥର ସେଗୁଡ଼ିକୁ ଅଗ୍ନିରେ ହୋମ ଦେଇଥିଲା ? ସ୍ୱୟଂ ଗୌରୀପତି ଶିବ ଏହି କଥାର ସାକ୍ଷୀ ॥ ୨୮ ॥ ଚୌପାଇ —ମୁଣ୍ଡଗୁଡ଼ିକ ଜଳିବା ସମୟରେ ଯେତେବେଳେ ମୁଁ ଲଲାଟରେ ଲିଖିତ ବିଧାତାଙ୍କ ଅକ୍ଷର ଦେଖିଲି, ସେତେବେଳେ ମନୁଷ୍ୟ ହାତରେ ମୋ ମୃତ୍ୟୁ କଥା ମୁଁ ପଢ଼ିଲି ଏବଂ ବିଧାତାଙ୍କ ବାଣୀ

ସିର ଅରୁ ସୈଲ କଥା ଚିତ ରହୀ । ତା ତେଁ ବାର ବାର ତୈଁ କହୀ ॥
ସୋ ଭୁଜବଲ ରାଖେହୁ ଉର ଘାଲୀ । ଜୀତେହୁ ସହସବାହୁ ବଲି ବାଲୀ ॥୪॥
ସୁନୁ ମତିମନ୍ଦ ଦେହି ଅବ ପୂରା । କାଟେଁ ସୀସ କି ହୋଇଅ ସୂରା ॥
ଇଂଦ୍ରଜାଲି କହୁଁ କହିଅ ନ ବୀରା । କାଟଇ ନିଜ କର ସକଲ ସରୀରା ॥୫॥

ଜରହିଁ ପତଂଗ ମୋହବସ ଭାର ବହହିଁ ଖରବୃନ୍ଦ ।
ତେ ନହିଁ ସୂର କହାୱହିଁ ସମୁଝି ଦେଖୁ ମତିମନ୍ଦ ॥୨୯॥

ଅବ ଜନି ବତବଢ଼ାୱ ଖଲ କରହୀ । ସୁନୁ ମମ ବଚନ ମାନ ପରିହରହୀ ॥
ଦସମୁଖ ମୈଁ ନ ବସୀଠୀଁ ଆୟୁଉଁ । ଅସ ବିଚାରି ରଘୁବୀର ପଠାୟଉଁ ॥୧॥

---

ଶିର ଶଇଲ କାହାଣୀ ରହିଛି ତୋ ମନେ । କହୁଲୁଣି ବାଂଶବାର ତୁ ଦଶବଦନେ ॥
ସେହି ଭୁଜ-ବଳ ହୃଦେ ଲୁଚାଇ ରଖିଛୁ । ବଳି ବାଳି ସହସ୍ରବାହୁକୁ ଯେ ଜିଣିଛୁ ॥୪॥
ଶୁଣ ମତିମନ୍ଦ, ଦିଅ ଉତ୍ତର ଏଥିର । କାଟି ଶିର କେହି କେବେ କୁହାଏ କି ବୀର ॥
କୁହୁକିଆକୁ ତ କେହି ବୀର ନ କହଇ । ଆପଣା କରେ ସର୍ବାଙ୍ଗ ଶରୀର କାଟଇ ॥୫॥

ଜଳନ୍ତି ପତଙ୍ଗ ମୋହବଶ, ଭାର ବହନ୍ତି ଯେ ଖରବୃନ୍ଦ ।
ଶୂର ବୋଲି କେହି ନ କୁହାନ୍ତି ତାହିଁ ବୁଝି ଦେଖ, ମତିମନ୍ଦ ॥୨୯॥

ଏବେ ଖଳ, ନ ବଢାଅ ପ୍ରଲାପ କଥନ । ମାନ ପରିହରି ଶୁଣ ମୋହର ବଚନ ॥
ଦଶମୁଖ ଆସି ନାହିଁ ଦୂତ ମୁଁ ହୋଇଣ । ପେଷିଛନ୍ତି ରଘୁବୀର ଏହା ବିଚାରିଣ ॥୧॥

---

(ଲିଖନ)କୁ ଅସତ୍ୟ ଜାଣି ମୁଁ ହସିଲି । ॥ ୧ ॥ ସେହି କଥାକୁ ବୁଝି ବା ସ୍ମରଣ କରି, ସୁଦ୍ଧା ମୋ ମନରେ ଭୟ ନାହିଁ । କାରଣ ମୁଁ ମନେ କରୁଛି ଯେ, ବୃଦ୍ଧ ବ୍ରହ୍ମା ବୁଦ୍ଧି-ଭ୍ରମ ହେତୁ ଏହିପରି ଲେଖି ଦେଇଛନ୍ତି । ଆରେ ମୂର୍ଖ ! ତୁ ଲଜ୍ଜା ଓ ମର୍ଯ୍ୟାଦା ତ୍ୟାଗ କରି ମୋ ଆଗରେ ବାରମ୍ବାର ଅନ୍ୟ ବୀରର ବଳ ବଖାଣୁଛୁ !" ॥ ୨ ॥ ଅଙ୍ଗଦ କହିଲେ, "ଆରେ ରାବଣ ! ତୋ ସମାନ ସଲଜ୍ଜ ଜଗତରେ କେହି ନାହିଁ । ଲଜ୍ଜାଶୀଳତା ତୋର ସହଜ ସ୍ୱଭାବ । ତୁ ଆପଣା ମୁହଁରେ ତୋ ନିଜ ଗୁଣ କେତେବେଳେ ହେଲେ ତ କହୁନୁ !" ॥ ୩ ॥ ଶିର କାଟିବା ଓ କୈଳାସ ଉଠାଇବା କଥା ତୋ ମନରେ ବସା ବାନ୍ଧି ରହିଥିଲା । ଏହି ହେତୁ ଇତି ମଧ୍ୟରେ ତୁ ସେହି କଥା କୋଡ଼ିଏ ଥର କହିସାରିଲୁଣି । ଯେଉଁ ବାହୁ-ବଳରେ ତୁ ସହସ୍ରବାହୁ, ବଳି ଓ ବାଳିଙ୍କୁ ଜୟ କରିଥିଲୁ, ସେହି ବାହୁବଳ କଥା ତୁ ମନ ଭିତରେ ଲୁଚାଇ ରଖିଛୁ ॥୪॥ ଆରେ ମନ୍ଦବୁଦ୍ଧି ! ଶୁଣ୍, ଏବେ ସେତିକି କହୁଥା । ଶିର କାଟିଲେ ସୁଦ୍ଧା କେହି କଣ ଶୂରବୀର ହୋଇଯାଏ ? ଉତ୍ତର ଦେ । ଐନ୍ଦ୍ରଜାଲିକ ନିଜ ହାତରେ ତାହାର ସମସ୍ତ ଶରୀର କାଟି ପକାଇଲେ ସୁଦ୍ଧା ତାହାକୁ ବୀର ବୋଲି କୁହାଯାଏ ନାହିଁ ॥ ୫ ॥ ଦୋହା :—ଆରେ ମନ୍ଦବୁଦ୍ଧି ! ବୁଝି ଦେଖ୍, ପତଙ୍ଗମାନେ ମୋହବଶ ଅଗ୍ନିରେ ଜଳି ମରନ୍ତି । ଗଧମାନେ ବୋଝ ବୋହି ଚାଲନ୍ତି; କିନ୍ତୁ ଏହି ହେତୁ ସେମାନେ ଶୂରବୀର ନାମରେ ଅଭିହିତ ହୁଅନ୍ତି ନାହିଁ ॥ ୨୯ ॥

ବାର ବାର ଅସ କହଇ କୃପାଲା । ନହିଁ ଗଜାରି ଜସୁ ବଧେଁ ସୃକାଲା ॥
ମନ ମହୁଁ ସମୁଝି ବଚନ ପ୍ରଭୁ କେରେ । ସହେଉଁ କଠୋର ବଚନ ସଠ ତେରେ ॥୨॥
ନାହିଁ ତ କରି ମୁଖ ଭଞ୍ଜନ ତୋରା । ଲୈ ଜାତେଉଁ ସୀତହି ବରଜୋରା ॥
ଜାନେଉଁ ତବ ବଲ ଅଧମ ସୁରାରୀ । ସୂନେଁ ହରି ଆନିହି ପରନାରୀ ॥୩॥
ତୈଂ ନିସିଚର ପତି ଗର୍ବ ବହୂତା । ମୈଂ ରଘୁପତି ସେବକ କର ଦୂତା ॥
ଜୌଂ ନ ରାମ ଅପମାନହିଁ ଡରଉଁ । ତୋହି ଦେଖତ ଅସ କୌତୁକ କରଉଁ ॥୪॥

ତୋହି ପଟକି ମହି ସେନ ହତି ଚୌପଟ କରି ତବ ଗାଉଁ ।
ତବ ଜୁବତିନ୍ହ ସମେତ ସଠ ଜନକସୁତହି ଲୈ ଜାଉଁ ॥୩୦॥

ଜୌଂ ଅସ କରୌଂ ତଦପି ନ ବଡ଼ାଈ । ମୁଏହି ବଧେଁ ନହିଁ କଛୁ ମନୁସାଈ ॥
କୌଲ କାମବସ କୃପିନ ବିମୂଢ଼ା । ଅତି ଦରିଦ୍ର ଅଜସୀ ଅତି ବୂଢ଼ା ॥୧॥

---

ବାରମ୍ବାର କୃପାନିଧି ଏହା କହୁଛନ୍ତି । ଶୃଗାଳେ ବଧିଲେ ସିଂହ ନ ଲଭେ କୀରତି ॥
ମନ ମଧ୍ୟେ ପ୍ରଭୁଙ୍କର ପ୍ରତିଜ୍ଞା ସୁମରି । ସହୁଛି ଶଠ କଠୋର ବଚନ ତୋହରି ॥୨॥
ନାହିଁ ତ ଏବେ ତୋ ମୁଖ କରିଣ ଭଞ୍ଜନ । ବଳାତ୍କାରେ ଘେନିଯାନ୍ତି ସୀତାଙ୍କୁ ବହନ ॥
ଜାଣିଲି ତୋହର ବଳ ଅଧମ ସୁରାରି । ଶୂନ୍ୟରେ ଆଣିଲୁ ଯେବେ ହରି ପରନାରୀ ॥୩॥
ତୁହି ନିଶାଚର-ପତି ଗରବ ବହୁତ । ଅଟଇ ମୁଁ ରଘୁପତି ସେବକର ଦୂତ ॥
ରାମଙ୍କ ଅପମାନକୁ ଯେବେ ନ ଡରନ୍ତି । ତୋ ନେତ୍ର ସମ୍ମୁଖେ ଏହି କୌତୁକ କରନ୍ତି ॥୪॥

ତୋତେ କଚାଡ଼ିଣ ସେନାଙ୍କୁ ମାରିଣ ରାଜ୍ୟ ତୋର ନଷ୍ଟ କରି ।
ତୋ ନାରୀଙ୍କ ସହ ଜନକ ସୁତାଙ୍କୁ ନେଇ ଯାନ୍ତି ଶଠ ! ଧରି ॥୩୦॥

ଏହା କଲେ ସୁଦ୍ଧା କିଛି ନ ହେବ ବଡ଼ାଇ । ମଡ଼ାକୁ ମାରିଲେ କେହି ବୀର ନ କୁହାଇ ॥
ବାମମାର୍ଗୀ କାମୁକ ବିମୂଢ଼ କୃପଣ । ଅତି ଦରିଦ୍ର ନିନ୍ଦିତ ଅତି ବୃଦ୍ଧ ଜନ ॥୧॥

---

ଚୌପାଇ —ଆରେ ଦୁଷ୍ଟ ! ଆଉ କଥା ବଢ଼ା ନାହିଁ, ମୋ ବଚନ ଶୁଣ ଏବଂ ଅଭିମାନ ତ୍ୟାଗ କର ! ହେ ଦଶମୁଖ ! ମୁଁ ଦୂତ ପରି ସନ୍ଧି କରିବାକୁ ଆସିନାହିଁ । ଶ୍ରୀ ରଘୁବୀର ଏହିପରି ବିଚାର କରି ମୋତେ ପଠାଇ ଅଛନ୍ତି—॥ ୧ ॥ କୃପାଳୁ ଶ୍ରୀରାମ ବାରମ୍ବାର ଏପରି କହନ୍ତି ଯେ, ଶୃଗାଳକୁ ବଧ କଲେ ସିଂହକୁ ଯଶ ମିଳେନାହିଁ । ଆରେ ମୂର୍ଖ ! ପ୍ରଭୁଙ୍କର ସେହି ବଚନକୁ ସ୍ମରଣ କରି ମୁଁ ତୋର କଠୋର ବଚନ ସହୁଅଛି ॥ ୨ ॥ ଅନ୍ୟଥା ତୋ ମୁହଁ ଭାଙ୍ଗି ମୁଁ ସୀତାଙ୍କୁ ଜବରଦସ୍ତି ନେଇ ଯାଆନ୍ତି । ଆରେ ଅଧମ ସୁରାରି ! ଯେଉଁଦିନଠାରୁ ତୁ ଶୂନ୍ୟରେ ପରସ୍ତ୍ରୀକୁ ହରଣ କରି ଆଣିଲୁଣି, ସେହିଦିନଠାରୁ ତୋ ବଳ ମୁଁ ଜାଣି ସାରିଛି । ତୁ ରାକ୍ଷସମାନଙ୍କ ରାଜା ଏବଂ ବଡ଼ ଗର୍ବୀ । କିନ୍ତୁ ମୁଁ ରଘୁନାଥଙ୍କ ସେବକ (ସୁଗ୍ରୀବ)ଙ୍କ ଦୂତ । ଅର୍ଥାତ୍ ସେବକର ସେବକ । ଯଦି ମୁଁ ଶ୍ରୀରାମଙ୍କ ଅପମାନକୁ ନ ଡରନ୍ତି, ତେବେ ତୋର ଆଖି ଆଗରେ ଏପରି ଅଭିନୟ କରନ୍ତି—॥ ୪ ॥ ଦୋହା ,—ତୋତେ ଭୂମିରେ ପକାଇ ତୋର ସେନାଙ୍କୁ ବଧ

ସଦା ରୋଗବସ ସନ୍ତତ କ୍ରୋଧୀ । ବିଷ୍ଣୁ ବିମୁଖ ଶ୍ରୁତି ସନ୍ତ ବିରୋଧୀ ॥
ତନୁ ପୋଷକ ନିନ୍ଦକ ଅଘ ଖାନୀ । ଜୀବ୍ତ ସବ ସମ ଚୌଦହ ପ୍ରାନୀ ॥୨॥
ଅସ ବିଚାରି ଖଲ ବଧଉଁ ନ ତୋହୀ । ଅବ ଜନି ରିସ ଉପଜାବ୍ସି ମୋହୀ ॥
ସୁନି ସକୋପ କହ ନିସିଚରନାଥା । ଅଧର ଦସନ ଦସି ମୀଜତ ହାଥା ॥୩॥
ରେ କପି ଅଧମ ମରନ ଅବ ଚହସୀ । ଛୋଟେ ବଦନ ବାତ ବଡି କହସୀ ॥
କଟୁ ଜଲ୍ପସି ଜଡ କପି ବଲ ଜାକେଁ । ବଲ ପ୍ରତାପ ବୁଧି ତେଜ ନ ତାକେଁ ॥୪॥

ଅଗୁନ ଅମାନ ଜାନି ତେହି ଦୀହ୍ନ ପିତା ବନବାସ ।
ସୋ ଦୁଖ ଅରୁ ଜୁବତୀ ବିରହ ପୁନି ନିସି ଦିନ ମମ ତ୍ରାସ ॥୩୧(କ)॥

---

ସଦା ରୋଗଗ୍ରସ୍ତ ପୁଣି ନିରନ୍ତର କ୍ରୋଧୀ । ବିଷ୍ଣୁ ପରାଙ୍ମୁଖ ଶ୍ରୁତି ସଜ୍ଜନ ବିରୋଧୀ ॥
ସ୍ୱତନୁ-ପୋଷକ ନିନ୍ଦାକାରୀ ପାପ-ଖଣି । ଜୀବନ୍ତେ ବି ଶବ ସମ ଏ ଚଉଦ ପ୍ରାଣୀ ॥୨॥
ଏହା ବିଚାରିଣ ତୋତେ ନ ବଧଇ, ଖଳ । ଏବେ ଉପୁଜାଅ ନାହିଁ ମୋର କ୍ରୋଧାନଳ ॥
ଶୁଣି ସରୋଷେ ବୋଲଇ ନିଶାଚରନାଥ । ଦଶନେ ଅଧର କାଟି ମଳ ଦେନି ହାତ ॥୩॥
ରେ କପି ଅଧମ ! ଏବେ ମୃତ୍ୟୁ ଅଭିଳାଷୁ । ଛୋଟ ବଦନରେ ବଡି ବଡି କଥା ଭାଷୁ ॥
କଟୁ ପ୍ରଳପୁଛୁ ଜଡ କପି, ବଳେ ଯାର । ନାହିଁ ବୁଦ୍ଧି ବଳ ତେଜ ପରାକ୍ରମ ତାର ॥୪॥

ଅମାନ ଅଗୁଣ ତାହାଙ୍କୁ ଜାଣି ଦେଲେ ପିତା ବନବାସ ।
ସେ ଦୁଃଖ ଆଉର ବିରହ ନାରୀର ନିଶି ଦିନ ମୋର ତ୍ରାସ ॥୩୧ (କ)॥

---

କରି ଦିଅନ୍ତି । ଆରେ ମୂର୍ଖ ! ତୋର ପୁରକୁ ନଷ୍ଟଭ୍ରଷ୍ଟ କରି, ତୋ ପ୍ରବଧୀ ସ୍ତ୍ରୀମାନଙ୍କ ସମେତ ଜାନକୀଙ୍କୁ ନେଇଯାଆନ୍ତି ॥ ୩୦ ॥ ଚୌପାଈ :—ଏପରି କଲେ ମଧ୍ୟ, ଏଥିରେ ମୋର କୌଣସି ବଡାଇ ନାହିଁ । ମୃତ୍ୟୁକୁ ମାରିବାରେ କିଛି ହେଲେ ପୁରୁଷତ୍ୱ (ବାହାଦୁରୀ) ନାହିଁ । ବାମମାର୍ଗୀ, କାମୁକ, କୃପଣ, ଅତିମୂଢ, ଅତି ଦରିଦ୍ର, ନିନ୍ଦିତ, ଅତି ବୃଦ୍ଧ, ନିତ୍ୟ ରୋଗୀ, ନିରନ୍ତର କ୍ରୋଧୀ, ଭଗବାନ୍ ବିଷ୍ଣୁଙ୍କ ପ୍ରତି ବିମୁଖ, ବେଦ ଓ ସାଧୁସନ୍ଥଙ୍କ ବିରୋଧୀ, କେବଳ ନିଜର ଶରୀର-ପୋଷଣକାରୀ, ପରନିନ୍ଦୁକ ଏବଂ ପାପର ଖଣି—ଏହି ଚଉଦ ପ୍ରାଣୀ ଜୀଇ ଥାଇ ଥାଇ ମଲା ପରି ॥ ୧-୨ ॥ ଆରେ ଦୁଷ୍ଟ ! ଏହି ବିଚାରରେ ମୁଁ ତୋତେ ବଧ କରୁନାହିଁ । ଏବେ ତୁ ଆଉ ମୋଠାରେ କ୍ରୋଧ ଜନ୍ମା ନ ଦେ ।" ଅଙ୍ଗଦର ବଚନ ଶୁଣି, ରାକ୍ଷସରାଜ ରାବଣ କ୍ରୋଧରେ ଦାନ୍ତ କାମୁଡି ପକାଇଲା ଏବଂ ହାତ ମଳି କହିଲା,—॥ ୩ ॥ "ଆରେ ନୀଚ ବାନର ! ଏବେ ତୁ ମରିବାକୁ ଚାହୁଁଛୁ । ଏହି ହେତୁ ଛୋଟ ମୁହଁରେ ବଡ କଥା କହୁଛୁ । ଆରେ ମୂର୍ଖ ବାନର ! ଯାହା ବଳରେ ତୁ ଏତେ କର୍କଶ କଥା କହି ଯାଉଛୁ, ତାହାଠାରେ ବଳ, ପ୍ରତାପ, ବୁଦ୍ଧି ଅଥବା ତେଜ କିଛିଏ ହେଲେ ନାହିଁ ॥ ୪ ॥ ଦୋହା :—ପିତା ତ ତାହାଙ୍କୁ ଗୁଣହୀନ ଓ ମାନହୀନ ମନେ କରି ବନବାସ ଦେଇଦେଲେ । ସେହି ହେତୁ ତାହାର ମନରେ ଦୁଃଖ, ତାହା ଉପରେ ପ୍ରବଧୀ ସ୍ତ୍ରୀର ବିରହ ଏବଂ ପୁଣି ଦିନରାତି

ଜିନ୍ହ କେ ବଲ କର ଗର୍ବ ତୋହି ଅଇସେ ମନୁଜ ଅନେକ ।
ଖାହିଁ ନିସାଚର ଦିବସ ନିସି ମୂଢ଼ ସମୁଝୁ ତଜି ଟେକ ॥୩୧(ଖ)॥
ଜବ ତେହିଁ କୀହ୍ନି ରାମ କୈ ନିନ୍ଦା । କ୍ରୋଧବନ୍ତ ଅତି ଭୟଉ କପିନ୍ଦା ॥
ହରି ହର ନିନ୍ଦା ସୁନଇ ଜୋ କାନା । ହୋଇ ପାପ ଗୋଘାତ ସମାନା ॥୧॥
କଟକଟାନ କପିକୁଞ୍ଜର ଭାରୀ । ଦୁହୁଁ ଭୁଜଦଣ୍ଡ ତମକି ମହି ମାରୀ ॥
ଡୋଲତ ଧରନି ସଭାସଦ ଖସେ । ଚଲେ ଭାଜି ଭୟ ମାରୁତ ଗ୍ରସେ ॥୨॥
ଗିରତ ସଁଭାରି ଉଠା ଦସକଂଧର । ଭୂତଲ ପରେ ମୁକୁଟ ଅତି ସୁଂଦର ॥
କଛୁ ତେହିଁ ଲୈ ନିଜ ସିରନ୍ହି ସଁୱାରେ । କଛୁ ଅଙ୍ଗଦ ପ୍ରଭୁ ପାସ ପବାରେ ॥୩॥
ଆୱତ ମୁକୁଟ ଦେଖି କପି ଭାଗେ । ଦିନହୀଁ ଲୂକ ପରନ ବିଧି ଲାଗେ ॥
କି ରାବନ କରି କୋପ ଚଲାଏ । କୁଲିସ ଚାରି ଆୱତ ଅତି ଧାଏ ॥୪॥

---

ମୂଢ଼ ଯା ବଳର ଗରବ ତୋହର ଏପରି ନର ଅନେକ ।
ଖାଆନ୍ତି ରାକ୍ଷସ ରଜନୀ ଦିବସ, ବୁଝ ତେଜି ଅବିବେକ ॥୩୧ (ଖ)॥
ଯହୁଁ ରଘୁପତିଙ୍କର ନିନ୍ଦା ସେ କରିଲା । ଅତି କ୍ରୋଧାନ୍ୱିତ ତହୁଁ କପୀନ୍ଦ୍ର ହୋଇଲା ॥
ହରିହର ନିନ୍ଦା ଯେହୁ ଶ୍ରବଣେ ଶୁଣଇ । ଗୋବଧ ସଦୃଶ ପାପ ତାହାକୁ ଲାଗଇ ॥୧॥
କଟ କଟ କରି କପି-କୁଞ୍ଜର ପ୍ରଚଣ୍ଡ । ପିଟିଲା ମହୀରେ ବେଗେ ବେନି ଭୁଜ ଦଣ୍ଡ ॥
କମ୍ପିଲା ଧରଣୀ, ସଭ୍ୟେ ଓଲଟି ପଡ଼ିଲେ । ତ୍ରାସ-ମରୁତ ଗ୍ରାସନ୍ତେ ପଳାଇ ଚାଲିଲେ ॥୨॥
ପଡ଼ନ୍ତେ ସମ୍ଭାଳି ଦଶବଦନ ଉଠିଲା । ସୁନ୍ଦର ମୁକୁଟ ଦଶ ଭୂତଳେ ପଡ଼ିଲା ॥
କିଛି ସେ ଉଠାଇ ନିଜ ଶିରେ ରଖିନେଲା । କିଛି ଅଙ୍ଗଦ ପ୍ରଭୁଙ୍କ ପାଖେ ଫିଙ୍ଗିଦେଲା ॥୩॥
ମୁକୁଟ ଆସିବା ଦେଖି ପଳାନ୍ତି ବାନରେ । ଉଲ୍‌କାପାତ ହୁଅଇ କି ବିଧାତା ! ଦିନରେ ॥
କିମ୍ବା କୋପ କରି ପେଷିଅଛି ଲଙ୍କସାଇଁ । କୁଳିଶ ଚାରି ଆସନ୍ତି ଅତି ବେଗେ ଧାଇଁ ॥୪॥

---

ମୋର ତର ॥ ୩୧ (କ) ॥ ଯାହାର ବଳ ବିଷୟରେ ତୋ ମନରେ ଏତେ ଗର୍ବ, ସେହିପରି ଅନେକ ମନୁଷ୍ୟଙ୍କୁ ତ ରାକ୍ଷସମାନେ ଦିନରାତି ଭୋଜନ କରନ୍ତି । ଆରେ ମୂଢ଼ ! ଜିଦ୍ ଛାଡ଼ି କଥା ବୁଝ ॥ ୩୧ (ଖ) ॥ ଚୌପାଈ :—ଯେତେବେଳେ ସେ ଶ୍ରୀରାମଙ୍କ ନିନ୍ଦା କଲା, ସେତେବେଳେ କପୀଶ ଅଙ୍ଗଦ ଅତିଶୟ କ୍ରୁଦ୍ଧ ହେଲେ । କାରଣ ଶାସ୍ତ୍ର କହେ ଯେ, ଯେଉଁ ବ୍ୟକ୍ତି ନିଜ କାନରେ ଭଗବାନ୍ ବିଷ୍ଣୁ ଓ ଶିବଙ୍କର ନିନ୍ଦା ଶୁଣେ, ତାହାର ଗୋବଧ ସମାନ ପାପ ହୁଏ ॥ ୧ ॥ ବାନର-ଶ୍ରେଷ୍ଠ ଅଙ୍ଗଦ ଅତି ଜୋରରେ ଗର୍ଜନ କଲେ ଏବଂ ସେ ଅତି ଜୋରରେ ନିଜ ଦୁଇ ବାହୁକୁ ଭୂମି ଉପରେ ପ୍ରହାର କଲେ । ପୃଥିବୀ କମ୍ପିବାକୁ ଲାଗିଲା । ଫଳରେ ବସିଥିବା ସଭାସଦ୍‌ମାନେ ଖସି ପଡ଼ିଲେ ଏବଂ ଭୟ ରୂପକ ପବନ ଦ୍ୱାରା ଗ୍ରସ୍ତ ହୋଇ ଦୌଡ଼ି ପଳାଇଲେ ॥ ୨ ॥ ରାବଣ ପଡ଼ୁ ପଡ଼ୁ ସମ୍ଭାଳି ଉଠିଲା । ତାହାର ଅତି ସୁନ୍ଦର ମୁକୁଟଗୁଡ଼ିକ ପୃଥିବୀ ଉପରେ ଖସିପଡ଼ିଲା । କେତୋଟିକୁ ସେ ଉଠାଇ ନିଜ ମୁଣ୍ଡ ଉପରେ ସଜାଇ ରଖିଲା

କହ ପ୍ରଭୁ ହଁସି ଜନି ହୃଦୟଁ ଡେରାହୂ । ଲୂକ ନ ଅସନି କେତୁ ନହିଁ ରାହୂ ॥
ଏ କିରୀଟ ଦସକନ୍ଧର କେରେ । ଆୱତ ବାଲିତନୟ କେ ପ୍ରେରେ ॥୫॥

ତରକି ପବନସୁତ କର ଗହେ ଆନି ଧରେ ପ୍ରଭୁ ପାସ ।
କୌତୁକ ଦେଖହିଁ ଭାଲୁ କପି ଦିନକର ସରିସ ପ୍ରକାସ ॥୩୨(କ)॥
ଉହାଁ ସକୋପି ଦସାନନ ସବ ସନ କହତ ରିସାଇ ।
ଧରହୁ କପିହି ଧରି ମାରହୁ ସୁନି ଅଙ୍ଗଦ ମୁସୁକାଇ ॥୩୨(ଖ)॥

ଏହି ବିଧି ବେଗି ସୁଭଟ ସବ ଧାୱହୁ । ଖାହୁ ଭାଲୁ କପି ଜହଁ ଜହଁ ପାୱହୁ ॥
ମର୍କଟହୀନ କରହୁ ମହି ଜାଈ । ଜିଅତ ଧରହୁ ତାପସ ଦ୍ୱୌ ଭାଈ ॥୧॥

---

ହସି ଭାଷିଲେ ଶ୍ରୀରାମ ହୃଦୟେ ନ ଡର । ନୁହେ ଉଲ୍‌କା ରାହୁ କେତୁ ଅଶନି ଆବର ॥
ଦଶ-ମଉଳିର ଏହୁ କିରୀଟ ଅଟନ୍ତି । ବାଳି-ତନୟ ପ୍ରେରିତ ହୋଇ ଆସୁଛନ୍ତି ॥୫॥

ଡେଇଁ କରେ ଧରି ସମୀର-କୁମର ଆଣିଲେ ପ୍ରଭୁଙ୍କ ପାଶେ ।
କୌତୁକ ଦେଖନ୍ତି ଋକ୍ଷକପିବୃନ୍ଦ ଦିନେଶ ସମ ପ୍ରକାଶେ ॥୩୨ (କ)॥
ତେବେଁ ସଭା ମଧ୍ୟେ ଦଶାନନ କ୍ରୋଧେ ବୋଲଇ ସକଳେ ବାଣୀ ।
'ବାନରଙ୍କୁ ଧର, ଧରି ତାଙ୍କୁ ମାର', ହସନ୍ତି ଅଙ୍ଗଦ ଶୁଣି ॥୩୨ (ଖ)॥

ଏହିଭାବେ ଶୀଘ୍ର ସର୍ବେ ଦୈତ୍ୟବର, ଧାଅଁ । ଯହିଁ ପାଅ ତହିଁ ଋକ୍ଷ ମର୍କଟଙ୍କୁ ଖାଅ ॥
ମହୀ ଅମର୍କଟ, ମୋର ନସ୍ତ ଘୋଷ କର । ଜୀବନ୍ତେ ଆଣ ଉଭୟ ତପସ୍ୱୀଙ୍କୁ ଧର ॥୧॥

---

ଏବଂ ଆଉ କେତୋଟି ଅଙ୍ଗଦ ଉଠାଇ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପାଖକୁ ଫିଙ୍ଗି ଦେଲେ ॥ ୩ ॥ ମୁକୁଟଗୁଡ଼ିକ ଆସୁଥିବାର ଦେଖି ବାନରମାନେ ଦୌଡ଼ି ପଳାଇଗଲେ । ସେମାନେ ଭାବିବାକୁ ଲାଗିଲେ, "ହେ ବିଧାତା ! ଦିନରେ କଣ ଉଲ୍‌କାପାତ ହେଲା କି ? ଅଥବା ରାବଣ କ୍ରୋଧ କରି ଏକା ସଙ୍ଗେ ଚାରିବଜ୍ର ଚଳାଇବାରୁ ସେଗୁଡ଼ିକ ଅତି ବେଗରେ ଆସୁଅଛି କି ?" ॥ ୪ ॥ ପ୍ରଭୁ ସେମାନଙ୍କ ଅନ୍ତରକଥା ଜାଣି, ହସି କହିଲେ "ମନରେ ଡର ନାହିଁ । ଏଗୁଡ଼ିକ ଉଲ୍‌କା ନୁହେଁ କିମ୍ବା ବଜ୍ର, କେତୁ କିମ୍ବା ରାହୁ ନୁହେଁ । ଭାଇମାନେ ! ଏଗୁଡ଼ିକ ତ ରାବଣର ମୁକୁଟ, ବାଲିପୁତ୍ର ଅଙ୍ଗଦ ଦ୍ୱାରା ଫିଙ୍ଗାହୋଇ ଏ ସବୁ ଆସୁଅଛି ।" ॥ ୫ ॥ ଦୋହା :—ପବନପୁତ୍ର ହନୁମାନ୍ ଡେଇଁପଡ଼ି ସେଗୁଡ଼ିକୁ ହାତରେ ଧରିନେଲେ ଏବଂ ଆଣି ପ୍ରଭୁଙ୍କ ପାଖରେ ସେଗୁଡ଼ିକୁ ରଖିଦେଲେ । ଭଲ୍ଲୁକ ଓ ବାନରମାନେ ଏ କୌତୁକ ଦେଖିବାକୁ ଲାଗିଲେ । ସେଗୁଡ଼ିକ ସୂର୍ଯ୍ୟଙ୍କ ପରି ପ୍ରକାଶିତ ହେଉଥିଲା ॥ ୩୨ (କ) ॥ ତେଣେ ସଭାରେ ରାବଣ କ୍ରୋଧରେ ଗର୍ଜି ସମସ୍ତଙ୍କୁ କହିଲା, "ବାନରକୁ ଧରିନିଅ ଏବଂ ଧରି ମାରିପକାଅ ।" ଅଙ୍ଗଦ ଏହା ଶୁଣି, ମୁରୁକି ହସିବାକୁ ଲାଗିଲେ ॥ ୩୨ (ଖ) ॥ ଚୌପାଈ :—ରାବଣ ପୁଣି କହିଲା, "ଏହାକୁ ମାରି ସମସ୍ତ ଯୋଦ୍ଧା ଶୀଘ୍ର ଦୌଡ଼ ଏବଂ ଯେଉଁଠି ଯେଉଁଠି ଭଲ୍ଲୁକ ଏବଂ ବାନରଙ୍କୁ ପାଉଛ, ସେଇଠାରେ ତାଙ୍କୁ ଖାଇଦିଅ । ପୃଥିବୀକୁ ବାନରହୀନ କରିଦିଅ ଏବଂ ଯାଇ

ସୁନ ସକୋପ ବୋଲେଉ ଜୁବରାଜା । ଗାଲ ବଜାୱତ ତୋହି ନ ଲାଜା ॥
ମରୁ ଗର କାଟି ନିଲଜ କୁଲଘାତୀ । ବଲ ବିଲୋକି ବିହରତି ନହିଁ ଛାତୀ ॥୨॥
ରେ ତ୍ରିୟଚୋର କୁମାରଗଗାମୀ । ଖଲ ମଲ ରାସି ମନ୍ଦମତି କାମୀ ॥
ସନ୍ୟପାତ ଜଲ୍‌ପସି ଦୁର୍ବାଦା । ଭଏସି କାଲବସ ଖଲ ମନୁଜାଦା ॥୩॥
ୟା କୋ ଫଲୁ ପାୱହିଗୋ ଆଗେଁ । ବାନର ଭାଲୁ ଚପେଟନ୍ହି ଲାଗେଁ ॥
ରାମୁ ମନୁଜ ବୋଲତ ଅସି ବାନୀ । ଗିରହିଁ ନ ତବ ରସନା ଅଭିମାନୀ ॥୪॥
ଗିରିହହିଁ ରସନା ସଂସୟ ନାହୀଁ । ସିରନ୍ହି ସମେତ ସମର ମହି ମାହୀଁ ॥୫॥

ସୋ ନର କ୍ୟୋଁ ଦସକନ୍ଧ ବାଲି ବଧ୍ୟୋ ଜେହିଁ ଏକ ସର ।
ବୀସହୁଁ ଲୋଚନ ଅନ୍ଧ ଧିଗ ତବ ଜନ୍ମ କୁଜାତି ଜଡ ॥୩୩(କ)॥

---

ଶୁଣି ସକୋପେ ଆବର ବୋଲେ ଯୁବରାଜ । ଆସ୍ଫାଳ ଦେଖାଉଛୁ, ତୋତେ ନ ଲାଗଇ ଲାଜ ॥
ଗଳା କାଟି ନିର୍ଲଜ୍ଜ ତୁ ମର, କୁଳଘାତି । ମୋ ବଳ ଦେଖି ବିଦୀର୍ଣ୍ଣ ନ ହୁଏ ତୋ ଛାତି ॥୨॥
ରେ ନାରୀଚୋର ଅଧମ କୁମାରଗଗାମୀ । ଖଳ ପାପରାଶି ଅନ୍ଧ ମନ୍ଦମତି କାମୀ ॥
ସନ୍ନିପାତ ହେଲା ପରି କହୁ ଦୁର୍ବଚନ । ଶଠ ନରଖାଦ, କାଳ ଅଟେ ତୋ ଆସନ୍ନ ॥୩॥
ଏହାର ଫଳ ପାଇବୁ ଆଗେ ଯାଇକରି । ଚାପୁଡ଼ା ବିଧା ମାରିବେ ଯେବେ ଋକ୍ଷ ହରି ॥
ରାମ ମନୁଷ୍ୟ, ବୋଲନ୍ତେ ଏହିପରି ବାଣୀ । ଛିଡ଼ି ନ ପଡ଼ଇ ତୋର ଜିହ୍ୱା ଅଭିମାନୀ ॥୪॥
ଛିଡ଼ିବ ରସନା, ନାହିଁ ସଂଶୟ ଏଥିରେ । ଦଶମସ୍ତକ ସମେତ ସମର ଭୂମିରେ ॥୫॥

ଯେ ବଧିଲେ ବାଲି ମାରି ଏକ ଶର ସେ ନର କି ? ଦଶକନ୍ଧ !
ଧିକ ତୋ ଜନମ କୁଜାତି ପାମର ବିଂଶ ନେତ୍ର ଥାଇ ଅନ୍ଧ ॥୩୩(କ)॥

---

ଦୁଇ ତପସ୍ୱୀ ଭାଇ ରାମଲକ୍ଷ୍ମଣଙ୍କୁ ଜୀବିତ ଅବସ୍ଥାରେ ଧରିପକାଅ ।" ॥ ୧ ॥ ରାବଣର କ୍ରୋଧପୂର୍ଣ୍ଣ ବଚନ ଶୁଣି, ଯୁବରାଜ ଅଙ୍ଗଦ ଅତ୍ୟନ୍ତ କ୍ରୁଦ୍ଧ ହୋଇ କହିଲେ, "ଗାଲୁ ମାରିବାରେ ତୋତେ ଲାଜ ଲାଗୁନାହିଁ । ଆରେ ନିର୍ଲଜ୍ଜ ! ଆରେ କୁଳନାଶକ ! ଗଳା କାଟି ( ଆତ୍ମହତ୍ୟା କରି ) ମରିଯାଅ । ମୋର ବଳ ଦେଖି ସୁଦ୍ଧା ତୋ ଛାତି ଫାଟୁନାହିଁ ? ॥ ୨ ॥ ରେ ନାରୀଚୋର ! ଆରେ କୁପଥଗାମି ! ଆରେ ଦୁଷ୍ଟ ! ଆରେ ପାପପୁଞ୍ଜ ! ମନ୍ଦମତି କାମୁକ ! ତୁ ସନ୍ନିପାତ ଯୋଗୁଁ ଏପରି ଦୁର୍ବଚନ ବକୁଅଛୁ କି ? ଆରେ ଦୁଷ୍ଟ ରାକ୍ଷସ ! ତୁ କାଳର ବଶ ହେଲୁଣି । ॥ ୩ ॥ ଏହାର ଫଳ ତୁ ଆଗକୁ ବାନର ଓ ଭାଲୁମାନଙ୍କଠାରୁ ଚାପୁଡ଼ା ଖାଇଲେ ପାଇବୁ । ରାମ ମନୁଷ୍ୟ—ଆରେ ଅଭିମାନି ! ଏପରି ବଚନ ବୋଲିବା ମାତ୍ରେ ତୋ ଜିଭମାନ ଛିଣ୍ଡି ପଡ଼ୁନାହିଁ ? ॥ ୪ ॥ ତୋର କେବଳ ଜିଭଗୁଡ଼ିକ (ଏକାକୀ) ନୁହେଁ, ସେଗୁଡ଼ିକ ଶିରମାନଙ୍କ ସମେତ ରଣଭୂମିରେ ଖସି ପଡ଼ିବ, ଏଥିରେ ସନ୍ଦେହ ନାହିଁ ॥୫॥ ସୋରଠା '—ରେ ଦଶକନ୍ଧ ! ଯେ ଗୋଟିଏ ମାତ୍ର ଶରରେ ବାଲିକୁ ମାରି ପକାଇଲେ, ସେ ମନୁଷ୍ୟ କିପରି ? ଆରେ କୁଜାତି ! ଆରେ ଜଡ ! କୋଡ଼ିଏ ଆଖି ଥାଇ ମଧ୍ୟ ତୁ ଅନ୍ଧ ! ତୋର ଜନ୍ମକୁ ଧିକ୍‌କାର ॥୩୩(କ)॥

ତବ ସୋନିତ କୀ ପ୍ୟାସ ତୃଷିତ ରାମ ସାୟକ ନିକର ।
ତଜଉଁ ତୋହି ତେହି ତ୍ରାସ କଟୁ ଜଲ୍‌ପକ ନିସିଚର ଅଧମ ॥୩୨(ଖ)॥
ମୈଁ ତବ ଦସନ ତୋରିବେ ଲାୟକ । ଆୟସୁ ମୋହି ନ ଦୀହ୍ନ ରଘୁନାୟକ ॥
ଅସି ରିସ ହୋତି ଦସଉମୁଖ ତୋରୌଁ । ଲଙ୍କା ଗହି ସମୁଦ୍ର ମହଁ ବୋରୌଁ ॥୧॥
ଗୂଲରି ଫଲ ସମାନ ତବ ଲଂକା । ବସହୁ ମଧ୍ୟ ତୁମ୍ହ ଜନ୍ତୁ ଅସଂକା ॥
ମୈଁ ବାନର ଫଲ ଖାତ ନ ବାରା । ଆୟସୁ ଦୀହ୍ନ ନ ରାମ ଉଦାରା ॥୨॥
ଜୁଗୁତି ସୁନତ ରାବନ ମୁସୁକାଈ । ମୂଢ଼ ସିଖିହି କହଁ ବହୁତ ଝୁଠାଈ ॥
ବାଲି ନ କବହୁଁ ଗାଲ ଅସ ମାରା । ମିଲି ତପସିହ୍ନ ତୈଁ ଭଏସି ଲବାରା ॥୩॥
ସାଁଚେହୁଁ ମୈଁ ଲବାର ଭୁଜ ବୀହା । ଜୌଁ ନ ଉପାରିଉଁ ତବ ଦସ ଜୀହା ॥
ସମୁଝି ରାମ ପ୍ରତାପ କପି କୋପା । ସଭା ମାଝ ପନ କରି ପଦ ରୋପା ॥୪॥

---

ତୋହର ଶୋଣିତ-ତୃଷାରେ ତୃଷିତ ରାମ ଶାୟକ ନିକର ।
ଏସ ଆଶାରେ ତୋତେ ଛାଡ଼ଇ ଘୃଣିତ, ବାବଦୂକ ନିଶାଚର ॥୩୨ (ଖ)॥
ଭାଙ୍ଗିବା ପାଇଁ ମୁଁ ଯୋଗ୍ୟ ତୋହର ଦଶନ । ଆଦେଶି ନାହାନ୍ତି କିନ୍ତୁ ଶ୍ରୀ ରଘୁନନ୍ଦନ ॥
ଏମନ୍ତ କ୍ରୋଧ ହୁଏ କି, ଦଶଶିର ତାଡ଼ି । ସମୁଦ୍ରେ ବୁଡ଼ାନ୍ତି ତୋର ଲଙ୍କାକୁ ଉପାଡ଼ି ॥୧॥
ଡିମିରି ଫଳ ସମାନ ଅଟଇ ତୋ ଲଙ୍କା । ରହ ତୁମ୍ଭେ ଜନ୍ତୁ ତହିଁ ମଧ୍ୟରେ ନିଃଶଙ୍କା ॥
ମୁଁ କପି, ଫଳ ଖାଆନ୍ତେ ନ ଲାଗେ ବିଳମ୍ବ । ଆଦେଶ ଦେଇନାହାନ୍ତି ଉଦାର ରାଘବ ॥୨॥
ଯୁକ୍ତି ଶୁଣନ୍ତେ ମୁରୁକି ବୋଲେ ଲଙ୍କସାଇଁ । ମୂଢ଼, ଏତେ ମିଛ ଗୁଡ଼େ ଶିଖିଅଛୁ କାହିଁ ॥
ବାଲି ଆସ୍ଫାଳନ କରିନାହିଁ କେବେହେଁ ଏମନ୍ତେ । ବାଚାଳ ହେଲୁ ତୁ ମିଳି ତପସ୍ୱୀ ସଙ୍ଗତେ ॥୩॥
ସତ୍ୟ ମୁଁ ବାଚାଳ ଶୁଣ, ବିଂଶଭୁଜ ତେବେ । ଉପାଡ଼ିବ ନାହିଁ ତୋର ଦଶଜିହ୍ୱା ଯେବେ ॥
ରାମଙ୍କ ପ୍ରତାପ କପି ସ୍ମରଣ କୋପିଲା । ସଭା ମଧ୍ୟେ ପଣ କରି ଚରଣ ଥାପିଲା ॥୪॥

---

ଶ୍ରୀରାମଚନ୍ଦ୍ରଙ୍କ ଶର-ସମୂହ ତୋ ରକ୍ତର ପିପାସୁ । ଆରେ କଠୋର ବାବଦୂକ ନୀଚ ରାକ୍ଷସ ! ଏହି ଭୟରେ ମୁଁ ତୋତେ ଛାଡ଼ି ଦେଉଛି । ॥ ୩୨ (ଖ) ॥ ଚୌପାଇ — ମୁଁ ତୋର ଦାନ୍ତ ଭାଙ୍ଗିବାକୁ ସମର୍ଥ; କିନ୍ତୁ କରେ କଣ ? ଶ୍ରୀ ରଘୁନାଥ ମୋତେ ଆଦେଶ ଦେଇ ନାହାନ୍ତି । ଏପରି କ୍ରୋଧ ଆସୁଛି ଯେ, ମୁଁ ତୋର ଦଶମୁଖ ଭାଙ୍ଗି ଦିଅନ୍ତି ଏବଂ ତୋର ଲଙ୍କାକୁ ଧରି ସମୁଦ୍ରରେ ବୁଡ଼ାଇ ଦିଅନ୍ତି ॥ ୧ ॥ ତୋ ଲଙ୍କା ଡିମିରି ବୃକ୍ଷ ପରି, ତୁମେ ସବୁ କୀଟ ପରି, ତାହା ଭିତରେ ଅଜ୍ଞାନ-ବଶତଃ ନିର୍ଭୀକ ହୋଇ ବାସ କରୁଅଛ । ମୁଁ ବାନର, ଏହି ଫଳକୁ ଖାଇବାକୁ ମୋତେ ବା କେତେ ସମୟ ଲାଗିଥା'ନ୍ତା ! କିନ୍ତୁ ଉଦାର ଶ୍ରୀରାମଚନ୍ଦ୍ର ସେପରି ଆଦେଶ ଦେଇନାହାନ୍ତି ।" ॥ ୨ ॥ ଅଙ୍ଗଦଙ୍କ ଯୁକ୍ତି ଶୁଣି ରାବଣ ମୁରୁକି ହସିଲା ଏବଂ କହିଲା, "ଆରେ ମୂର୍ଖ ! ବହୁତ ମିଛ କହିବା ତୁ କେଉଁଠାରୁ ଶିଖିଲୁ ? ବାଲି ତ ଏପରି ଗାଲୁ କେବେ ମାରି ନ ଥିଲା । ଜଣାପଡ଼ୁଛି, ତୁ ତପସ୍ୱୀମାନଙ୍କ ସହିତ ମିଶି ମିଛୁଆ ହୋଇଯାଇଛୁ" ॥ ୩ ॥ ଅଙ୍ଗଦ

ଜୌଁ ମମ ଚରନ ସକସି ସଠ ଟାରୀ । ଫିରହିଁ ରାମୁ ସୀତା ମୈଁ ହାରୀ ॥
ସୁନହୁ ସୁଭଟ ସବ କହ ଦସସୀସା । ପଦ ଗହି ଧରନି ପଛାରହୁ କୀସା ॥୫॥
ଇନ୍ଦ୍ରଜୀତ ଆଦିକ ବଲବାନା । ହରଷି ଉଠେ ଜହଁ ତହଁ ଭଟ ନାନା ॥
ଝପଟହିଁ କରି ବଲ ବିପୁଲ ଉପାଈ । ପଦ ନ ଟରଇ ବୈଠହିଁ ସିରୁ ନାଈ ॥୬॥
ପୁନି ଉଠି ଝପଟହିଁ ସୁର ଆରାତୀ । ଟରଇ ନ କୀସ ଚରନ ଏହି ଭାଁତୀ ॥
ପୁରୁଷ କୁଜୋଗୀ ଜିମି ଉରଗାରୀ । ମୋହ ବିଟପ ନହିଁ ସକହିଁ ଉପାରୀ ॥୭॥
କୋଟିନ୍ହ ମେଘନାଦ ସମ ସୁଭଟ ଉଠେ ହରଷାଇ ।
ଝପଟହିଁ ଟରୈ ନ କପି ଚରନ ପୁନି ବୈଠହିଁ ସିରୁ ନାଇ ॥୩୪(କ)॥

---

ଯଦି ମୂଢ଼, ମୋ ପାଦ କେ ଉଠାଇ ପାରିବେ । ଜାନକୀ ହାରିଲି ବୋଲି ରାମ ଫେରିଯିବେ ॥
ଶୁଣି ସର୍ବେ ବୀରବର, ବୋଲେ ଲଙ୍କେଶ୍ୱର । ପଦ ଧରି ଧରଣୀରେ କଚାଡ଼ ବାନର ॥୫॥
ଇନ୍ଦ୍ରଜିତ ଆଦି ବଳବନ୍ତ ନିଶାଚର । ହରଷେ ଉଠି ଆସିଲେ ବହୁ ବୀରବର ॥
ବିପୁଳ ବଳ ଉପାୟ କରିଣ ଟେକନ୍ତି । ପାଦ ନ ଉଠନ୍ତେ, ନତମସ୍ତକେ ବସନ୍ତି ॥୬॥
ଉଠି ଉଠାନ୍ତି ଅମର-ଶତ୍ରୁ ବାରମ୍ବାରେ । ନ ଉଠେ କପି ଚରଣ ଏମନ୍ତ ପ୍ରକାରେ ॥
କୁଯୋଗୀ ପୁରୁଷ ଯେସନ୍ତେ, ବିହଙ୍ଗରାଜନ । କରି ନ ପାରନ୍ତି ମୋହ-ଦ୍ରୁମ ଉତ୍ପାଟନ ॥୭॥
ବଳେ ମେଘନାଦ ସମ କୋଟି ଯୋଦ୍ଧା ଉଠିଲେ ହରଷଭରେ ।
କୁଦନ୍ତି ଉଠାନ୍ତି, ନ ଉଠେ, ଲାଜରେ ବସିଯା'ନ୍ତି ନଇଁ ଶିରେ ॥୩୪ (କ)॥

---

କହିଲେ, "ଆରେ ବିଂଶବାହୁ ! ଯଦି ତୋର ଦଶ ଜିଭ ମୁଁ ଓଟାରି ନ ପାରିଲି, ତେବେ ମୁଁ ବାସ୍ତବିକ ଚପଳ ଓ ମିଥ୍ୟାବାଦୀ ।" ଶ୍ରୀରାମଚନ୍ଦ୍ରଙ୍କ ପ୍ରତାପ ସ୍ମରଣ କରି ଅଙ୍ଗଦ କ୍ରୋଧାନ୍ୱିତ ହୋଇ ଉଠିଲେ ଏବଂ ସେ ରାବଣ ସଭାରେ ଦୃଢ ପ୍ରତିଜ୍ଞା କରି ପାଦ ଜମାଇ ଦେଲେ ॥୪॥ ଏବଂ କହିଲେ, "ଆରେ ମୂର୍ଖ ! ଯଦି ତୁମ୍ଭମାନଙ୍କ ମଧ୍ୟରୁ କେହି ମୋ ପାଦ ଉଠାଇପାରିବ, ତେବେ ଶ୍ରୀରାମ ଫେରିଯିବେ । ସୀତାଙ୍କୁ ହରାଇଲେ ବୋଲି ତାଙ୍କର ଧାରଣା ହେବ ।" ରାବଣ କହିଲା, "ହେ ବୀରମାନେ ! ଶୁଣ, ପାଦ ଧରି ବାନରକୁ ଭୂମି ଉପରେ ପକାଇ ଦିଅ" ॥ ୫ ॥ ଇନ୍ଦ୍ରଜିତ (ମେଘନାଦ) ପ୍ରଭୃତି ଅନେକ ବଳବାନ୍ ଯୋଦ୍ଧା ସେମାନଙ୍କ ଆସନରୁ ଆନନ୍ଦିତ ହୋଇ ଉଠିଲେ । ସେମାନେ ପୂରା ବଳ-ପ୍ରୟୋଗରେ ବହୁତ ଉପାୟ କରି ଝପଟି ପଡ଼ୁଥାନ୍ତି । କିନ୍ତୁ ପାଦ ଟଳୁ ନ ଥାଏ । ତତ୍ପରେ ଲଜ୍ଜାରେ ମଥା ନୁଆଁଇ ସେମାନେ ପୁଣି ନିଜ ନିଜ ସ୍ଥାନରେ ଯାଇ ବସୁ'ଥାନ୍ତି ॥୬॥ କାକ ଭୁଶୁଣ୍ଡି କହନ୍ତି, "ସେହି ଦେବଶତ୍ରୁ ରାକ୍ଷସମାନେ ପୁଣି ଉଠି ଝପଟୁ'ଥାନ୍ତି । ହେ ସର୍ପଶତ୍ରୁ ଗରୁଡ଼ ' ଯେପରି ବିଷୟୀ ପୁରୁଷର ମୋହ-ବୃକ୍ଷ ଉପୁଡ଼ି ପାରେନାହିଁ, ସେହିପରି ଅଙ୍ଗଦଙ୍କ ଚରଣ ଆଦୌ ଟଳୁ ନ ଥାଏ ॥ ୭ ॥ ଦୋହା :—ମେଘନାଦ ସମାନ କୋଟି କୋଟି ବଳବାନ୍ ବୀର ଯୋଦ୍ଧା ଆନନ୍ଦିତ ହୋଇ ଉଠିଲେ । ସେମାନେ ବାରମ୍ବାର ଲମ୍ଫ ପ୍ରଦାନ କରୁଥା'ନ୍ତି, କିନ୍ତୁ ବାନରର ଚରଣ ଉଠୁ ନ ଥାଏ । ତେଣୁ ଲଜ୍ଜା

ଭୂମି ନ ଛାଁଡ଼ତ କପି ଚରନ ଦେଖତ ରିପୁ ମଦ ଭାଗ ।
କୋଟି ବିଘ୍ନ ତେଁ ସନ୍ତ କର ମନ ଜିମି ନୀତି ନ ତ୍ୟାଗ ॥୩୪(ଖ)॥
କପି ବଲ ଦେଖି ସକଲ ହିୟଁ ହାରେ । ଉଠା ଆପୁ କପି କେ ପରଚାରେ ॥
ଗହତ ଚରନ କହ ବାଲିକୁମାରା । ମମ ପଦ ଗହେଁ ନ ତୋର ଉବାରା ॥୧॥
ଗହହି ନ ରାମ ଚରନ ସଠ ଜାଈ । ସୁନତ ଫିରା ମନ ଅତି ସକୁଚାଈ ॥
ଭୟଉ ତେଜହତ ଶ୍ରୀ ସବ ଗଈ । ମଧ୍ୟ ଦିବସ ଜିମି ସସି ସୋହଈ ॥୨॥
ସିଂଘାସନ ବୈଠେଉ ସିର ନାଈ । ମାନହୁଁ ସମ୍ପତି ସକଲ ଗଁଵାଈ ॥
ଜଗଦାତମା ପ୍ରାନପତି ରାମା । ତାସୁ ବିମୁଖ କିମି ଲହ ବିଶ୍ରାମା ॥୩॥
ଉମା ରାମ କୀ ଭୃକୁଟି ବିଲାସା । ହୋଇ ବିସ୍ୱ ପୁନି ପାଵଇ ନାସା ॥
ତୃନ ତେଁ କୁଲିସ କୁଲିସ ତୃନ କରଈ । ତାସୁ ଦୂତ ପନ କହୁ କିମି ଟରଈ ॥୪॥

ଭୂମି ନ ଛାଡ଼ଇ ଅଙ୍ଗଦ ଚରଣ ଦେଖି ଶତ୍ରୁ ଗର୍ବ ଭାଙ୍ଗେ ।
ସନ୍ଥ କୋଟି ବିଘ୍ନ ପଡ଼ନ୍ତେ ଯେସନ ତଥାପି ନୀତି ନ ତ୍ୟାଗେ ॥୩୪ (ଖ)॥
ହାରିଲେ ସମସ୍ତେ କପି ବଳ ବିଲୋକିଣ । ଉଠିଲା ନିଜେ ଅଙ୍ଗଦ ଆହ୍ୱାନ ଶୁଣିଣ ॥
ଧରନ୍ତେ ଚରଣ ବୋଲେ ବାଳିର କୁମାର । ମୋ ପଦ ଧରିଲେ ତୋର ନୋହିବ ନସ୍ତାର ॥୧॥
ନ ଧରୁ ରଘୁନାଥଙ୍କ ପଦ ଶଠ, ଯାଇ । ଶୁଣି ବାହୁଡ଼ିଲା ମନେ ଅତି ଲଜ୍ଜା ପାଇ ॥
ଶ୍ରୀ ସକଳ ନଷ୍ଟ ତାର ତେଜ ହେଲା ହତ । ମଧ୍ୟାହ୍ନ ସମୟେ ଶଶୀ ଶୋଭଇ ଯେମନ୍ତ ॥୨॥
ସିଂହାସନେ ଯାଇ ଶିର ନୁଆଁଇ ବସିଲା । ମନେ ହୁଏ ଯେସନ୍ତେ ସର୍ବ ସମ୍ପତ୍ତି ହାରିଲା ॥
ଜଗତ ଆଧାର ପ୍ରାଣ ପ୍ରିୟତମ ରାମ । ତାହାଙ୍କ ବିମୁଖ କେବେହେଁ ଲଭିବ ବିଶ୍ରାମ ॥୩॥
ଉମା, ରଘୁପତିଙ୍କର ଭ୍ରୂକୁଟି ବିଳାସ । ଉପୁଜାଏ ବିଶ୍ୱ, ପୁଣି କରଇ ବିନାଶ ॥
ତୃଣକୁ ଯେ ବଜ୍ର ବଜ୍ରେ ତୃଣ ପାରେ କରି । ତାଙ୍କ ଦୂତ ପଣ କହ, ଟଳିବ କିପରି ॥୪॥

ହେବାରୁ ସମସ୍ତେ ଶିର ନୁଆଇଁ ବସି ପଡ଼ୁଥା'ନ୍ତି ॥ ୩୪ (କ) ॥ ଯେପରି କୋଟି କୋଟି ବିଘ୍ନ ଆସିଲେ ହେଁବା ସାଧୁର ମନ ନୀତି ତ୍ୟାଗ କରେନାହିଁ, ସେହିପରି ବାନର (ଅଙ୍ଗଦ)ଙ୍କ ଚରଣ ପୃଥିବୀକୁ ଛାଡ଼ୁ ନ ଥାଏ । ଏହା ଦେଖି ଶତ୍ରୁ ରାବଣର ମଦ ଦୂର ହୋଇଗଲା ॥ ୩୪ (ଖ) ॥ ଚୌପାଇ :—ଅଙ୍ଗଦଙ୍କ ବଳ ଦେଖି, ସମସ୍ତେ ହୃଦୟରେ ହାରିଗଲେ । ତଦନନ୍ତର ତାଙ୍କ ଆହ୍ୱାନ କ୍ରମେ ରାବଣ ନିଜେ ଉଠିଲା । ଯେତେବେଳେ ସେ ଅଙ୍ଗଦଙ୍କ ଚରଣ ଧରିଲା, ସେତେବେଳେ ବାଳିକୁମାର କହିଲେ, "ମୋ ଚରଣ ଧରିଲେ ତୋର ନିସ୍ତାର ହେବନାହିଁ ॥ ୧ ॥ ଆରେ ମୂର୍ଖ ! ତୁ ଯାଇ କାହିଁକି ଶ୍ରୀରାମଙ୍କ ଚରଣ ଧରୁନାହୁଁ ?" ଏହା ଶୁଣି ରାବଣ ମନେ ମନେ ଅତି ସଙ୍କୋଚ କରି ଫେରିଗଲା । ତାହାର ସମସ୍ତ ଶିରୀ ଚାଲିଯାଇଥାଏ । ମଧ୍ୟାହ୍ନ କାଳରେ ଚନ୍ଦ୍ର ଯେପରି ମ୍ଳାନପ୍ରଭ ଦିଶନ୍ତି, ସେ ସେହିପରି ତେଜହୀନ ହୋଇଗଲା । ସେ ଲଜ୍ଜାରେ ମୁଣ୍ଡ ନୁଆଁଇ ସିଂହାସନ ଉପରେ ଯାଇ ବସିଲା । ସତେ ଅବା ସମସ୍ତ ସମ୍ପତ୍ତି ହରାଇ ବସିଅଛି କି !

ପୁନି କପି କହୀ ନୀତି ବିଧି ନାନା । ମାନ ନ ତାହି କାଲୁ ନିଅରାନା ॥
ରିପୁ ମଦ ମଥି ପ୍ରଭୁ ସୁଜସୁ ସୁନାୟୋ । ୟହ କହି ଚଲ୍ୟୋ ବାଲି ନୃପ ଜାୟୋ ॥୫॥
ହତୌଁ ନ ଖେତ ଖେଲାଇ ଖେଲାଈ । ତୋହି ଅବହିଁ କା କରୌଁ ବଡ଼ାଈ ॥
ପ୍ରଥମହିଁ ତାସୁ ତନୟ କପି ମାରା । ସୋ ସୁନି ରାବନ ଭୟଉ ଦୁଖାରା ॥୬॥
ଜାତୁଧାନ ଅଙ୍ଗଦ ପନ ଦେଖୀ । ଭୟ ବ୍ୟାକୁଲ ସବ ଭଏ ବିସେଷୀ ॥୭॥

ରିପୁ ବଲ ଧରଷି ହରଷି କପି ବାଲିତନୟ ବଲପୁଞ୍ଜ ।
ପୁଲକ ସରୀର ନୟନ ଜଲ ଗହେ ରାମ ପଦକଞ୍ଜ ॥୩୫(କ)॥
ସାଁଝ ଜାନି ଦସକନ୍ଧର ଭବନ ଗୟଉ ବିଲଖାଇ ।
ମନ୍ଦୋଦରୀଁ ରାବନହି ବହୁରି କହା ସମୁଝାଇ ॥୩୫(ଖ)॥

---

ପୁଣି କପି ନୀତି କହେ ବିବିଧ ବିଧାନ । ମାନଇ ନାହିଁ ହୁଅନ୍ତେ କାଳ ସନ୍ନିଧାନ ॥
ରିପୁ ମଦ ମର୍ଦ୍ଦି ପ୍ରଭୁ ଯଶ ଶୁଣାଇଲା । ଏହା କହି ବାଲି ନୃପ ତନୟ ଫେରିଲା ॥୫॥
ଏବେ ନିଜ ମୁଖେ କିସ କରିବି ବଡ଼ାଇ । ମାରିବି ତୋତେ ସମରେ ଖେଳାଇ ଖେଳାଇ ॥
ପ୍ରଥମୁ କପି ମାରିଲା ତାହାର କୁମର । ଏହା ଶୁଣି ଅତି ଦୁଃଖୀ ହେଲା ଲଙ୍କେଶ୍ୱର ॥୬॥
ଜାତୁଧାନଗଣ ପଣ ଦେଖି ଅଙ୍ଗଦର । ଭୟ ଆତଙ୍କରେ ହେଲେ ବିଶେଷ କାତର ॥୭॥

ରିପୁ ବଳ ଧର୍ଷି ହୃଦୟେ ହରଷି ବାଳିସୁତ ତେଜ-ପୁଞ୍ଜ ।
ପୁଲକ ଶରୀର-ନୟନେ ଧରିଲା ଯାଇ ରାମ ପଦ-କଞ୍ଜ ॥୩୫ (କ)॥
ଅସ୍ତ ଦିବାକର ଜାଣି ଦଶଶିର ବିକଳେ ଗୃହେ ଗମିଲା ।
ମନ୍ଦୋଦରୀ ପୁଣି ଅନେକ ପ୍ରକାରେ କହି କଥା ବୁଝାଇଲା ॥୩୫ (ଖ)॥

---

ଶ୍ରୀରାମଚନ୍ଦ୍ର ସମସ୍ତ ଜଗତର ଆତ୍ମା ଓ ସମସ୍ତ ପ୍ରାଣୀର ସ୍ୱାମୀ । ଯେଉଁ ପ୍ରାଣୀ ତାଙ୍କ ପ୍ରତି ବିମୁଖ ହୁଏ, ସେ କିପରି ଶାନ୍ତି ପାଇ ପାରିବ ? ॥ ୩ ॥ ଶିବ କହନ୍ତି, "ହେ ଉମା ! ଯେଉଁ ଶ୍ରୀରାମଚନ୍ଦ୍ରଙ୍କ ଭ୍ରୂ ବିଳାସ ଯୋଗେ ବିଶ୍ୱ ଉତ୍ପନ୍ନ ହୁଏ ଏବଂ ପୁଣି ଲୟ ଭଜେ, ଯେ ତୃଣକୁ ବଜ୍ର ଏବଂ ବଜ୍ରକୁ ତୃଣ କରି ଦିଅନ୍ତି, ତାହାଙ୍କ ଦୂତର ପଣ କିପରି ଟଳି ପାରିବ, କୁହତ ।" ॥ ୪ ॥ ଅଙ୍ଗଦ ପୁଣି ଅନେକ ପ୍ରକାରେ ନୀତି ବାକ୍ୟ କହିଲେ, କିନ୍ତୁ ରାବଣର କାଳ ନିକଟ ହୋଇଥିବାରୁ ସେ କିଛି ମାନିଲା ନାହିଁ । ଶତ୍ରୁର ଦର୍ପକୁ ଚୂର୍ଣ୍ଣ କରି ଅଙ୍ଗଦ ତାହାକୁ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ସୁଯଶ ଶୁଣାଇଲେ ଏବଂ ସେ ରାଜା ବାଳିର ପୁତ୍ର ବୋଲି କହି ଚାଲିଲେ ॥ ୫ ॥ ପୁଣି କହିଲେ, "ରଣ-ଭୂମିରେ ତୋତେ ଖେଳାଇ ଖେଳାଇ ଯଦି ମାରି ନ ପାରେ, ତେବେ ଏବେଠାରୁ ବା କି ବଡ଼ାଇ କରିବି ?" ଅଙ୍ଗଦ ପୂର୍ବରୁ ତାହାର ପୁତ୍ରକୁ ମାରି ସାରିଥିଲେ । ଉକ୍ତ ସମ୍ବାଦ ଶୁଣି, ରାବଣ ଦୁଃଖିତ ହେଲା ॥ ୬ ॥ ଅଙ୍ଗଦଙ୍କ ପ୍ରତିଜ୍ଞା ସଫଳ ହେବାର ଦେଖି ସମସ୍ତ ରାକ୍ଷସ ଭୟ ହେତୁ ଅତିଶୟ ବ୍ୟାକୁଳ ହୋଇପଡ଼ିଲେ ॥ ୭ ॥
ଦୋହା :—ଶତ୍ରୁ ବଳ ମର୍ଦ୍ଦନ କରି, ବଳ-ପୁଞ୍ଜ ବାଳିପୁତ୍ର ଅଙ୍ଗଦ ଆନନ୍ଦିତ ହୋଇ

କନ୍ତ ସମୁଝି ମନ ତଜହୁ କୁମତିହୀ । ସୋହ ନ ସମର ତୁହ୍ମହି ରଘୁପତିହୀ ॥
ରାମାନୁଜ ଲଘୁ ରେଖ ଖଚାଈ । ସୋଉ ନହିଁ ନାଘେହୁ ଅସି ମନୁସାଈ ॥୧॥
ପିୟ ତୁହ୍ମ ତାହି ଜିତବ ସଂଗ୍ରାମା । ଜା କେ ଦୂତ କେର ଯହ କାମା ॥
କୌତୁକ ସିନ୍ଧୁ ନାଘି ତବ ଲଂକା । ଆୟଉ କପି କେହରୀ ଅସଂକା ॥୨॥
ରଖବାରେ ହତି ବିପିନ ଉଜାରା । ଦେଖତ ତୋହି ଅଚ୍ଛ ତେହିଁ ମାରା ॥
ଜାରି ସକଲ ପୁର କୀହ୍ନେସି ଛାରା । କହାଁ ରହା ବଲ ଗର୍ବ ତୁହ୍ମାରା ॥୩॥
ଅବ ପତି ମୃଷା ଗାଲ ଜନି ମାରହୁ । ମୋର କହା କଛୁ ହୃଦୟଁ ବିଚାରହୁ ॥
ପତି ରଘୁପତିହି ନୃପତି ଜନି ମାନହୁ । ଅଗ ଜଗ ନାଥ ଅତୁଲବଲ ଜାନହୁ ॥୪॥

---

କାନ୍ତ ! ବିଚାରି କୁମତି ମନୁ ପରିହର । ନ ଶୋଭେ ରାମଙ୍କ ସଙ୍ଗେ ସମର ତୁମ୍ଭର ॥
ରାମାନୁଜ ଧନୁରେଖା ଟାଣିଥିଲେ ଯେହୁ । ତାହା ଲଙ୍ଘି ନ ପାରିଲ, ମନୁଷ୍ୟତା ଏହୁ ॥୧॥
ତାଙ୍କୁ କି ଜିଣି ପାରିବ ରଣେ, ପ୍ରାଣେଶ୍ୱର । ଏମନ୍ତ କୃତିତ୍ୱ ଦେଖ ଯାହାଙ୍କ ଦୂତର ॥
କଉତୁକେ ସିନ୍ଧୁ ଲଙ୍ଘି ନିର୍ଭୟେ, ଲଙ୍କେଶ । କପି-ସିଂହ ତୁମ୍ଭ ଗଡେ ହୋଇଲା ପ୍ରବେଶ ॥୨॥
ରକ୍ଷକଗଣଙ୍କୁ ବଧି ବନ ଉଜାଡିଲା । ତୁମ୍ଭ ସମ୍ମୁଖେ ଅକ୍ଷୟ ସୁତକୁ ମାରିଲା ॥
ଜାଳି ସାରା ପୁର ଯେବେ କଲା ସେ ପାଉଁଶ । କାହିଁ ଥିଲା ତୁମ୍ଭ ବଳ ଗରବ ପୌରୁଷ ॥୩॥
ଏବେ ପ୍ରାଣପତି, ମିଥ୍ୟା ପ୍ରଳାପ ନ କର । ହୃଦୟେ ବିଚାର କିଛି କଥନ ମୋହର ॥
ପତି, ଶ୍ରୀ ରଘୁପତିଙ୍କୁ ମନୁଷ୍ୟ ନ ମଣ । ଚରାଚର ନାଥ ଅତୁଳିତ ବଳୀ ଗଣ ॥୪॥

---

ଆସି ଶ୍ରୀରାମଚନ୍ଦ୍ରଙ୍କ ଚରଣ-କମଳ ଧରି ପକାଇଲେ । ତାଙ୍କର ଶରୀର ପୁଲକିତ ଏବଂ ନେତ୍ର ଆନନ୍ଦାଶ୍ରୁ-ଜଳରେ ପରିପୂର୍ଣ୍ଣ ॥ ୩୫ (କ) ॥ ସନ୍ଧ୍ୟା ହୋଇ ଗଲାଣି, ଜାଣି ଦଶଗ୍ରୀବ ବିଷଣ୍ଣ ବଦନରେ ମହଲ ମଧ୍ୟକୁ ଗଲା । ମନ୍ଦୋଦରୀ ରାବଣଙ୍କୁ ବୁଝାଇ ପୁଣି କହିଲା—॥ ୩୫ (ଖ) ॥ ଚୌପାଇ :—"ହେ କାନ୍ତ ! ମନରେ ବିଚାର କରି କୁବୁଦ୍ଧି ତ୍ୟାଗ କରନ୍ତୁ । ଆପଣ ଓ ଶ୍ରୀରାମଙ୍କ ମଧ୍ୟରେ ଯୁଦ୍ଧ ଶୋଭା ପାଏନାହିଁ । ତାଙ୍କର ସାନଭାଇ ସାମାନ୍ୟ ଗୋଟିଏ ରେଖା ଟାଣି ଦେଇଥିଲେ । ତାହାକୁ ଆପଣ ଲଙ୍ଘନ କରି ପାରିଲେ ନାହିଁ, ଏଇ ତ ଆପଣଙ୍କ ପୁରୁଷତ୍ୱ ॥ ୧ ॥ ହେ ପ୍ରିୟତମ ! ଯାହାଙ୍କ ଦୂତର କାମ ଏହିପରି, ତାଙ୍କୁ ଆପଣ ସଂଗ୍ରାମରେ ଜିଣି ପାରିବେ କି ? ସେହି ବାନର-କେଶରୀ ହନୁମାନ୍ ଅବଲୀଳାକ୍ରମେ ସମୁଦ୍ର ଲଙ୍ଘନ କରି ଆପଣଙ୍କ ଲଙ୍କାକୁ ନିର୍ଭୟରେ ଚାଲିଆସିଥିଲା ! ॥ ୨ ॥ ପ୍ରହରୀମାନଙ୍କୁ ମାରି ସେ ଅଶୋକ ବନ ଉଜାଡି ଦେଲା । ଆପଣଙ୍କ ଆଖି ଆଗରେ ଅକ୍ଷୟକୁମାରକୁ ବଧ କରି ଦେଲା ଏବଂ ସମ୍ପୂର୍ଣ୍ଣ ନଗରକୁ ଜଳାଇ ପାଉଁଶ କରିଦେଲା । ସେ ସମୟରେ ଆପଣଙ୍କ ବଳର ଗର୍ବ କୁଆଡେ ଚାଲିଯାଇଥିଲା ? ॥ ୩ ॥ ବର୍ତ୍ତମାନ ହେ ସ୍ୱାମି ! ବୃଥାରେ ଗାଲୁ ମାରନ୍ତୁ ନାହିଁ । ମୋ କଥା ମାନି ମନରେ କିଛି ବିଚାର କରନ୍ତୁ । ହେ ପତି ! ଆପଣ ଶ୍ରୀ ରଘୁପତିଙ୍କୁ କେବଳ ରାଜା ବୋଲି ମନେ କରନ୍ତୁ ନାହିଁ । ପକ୍ଷାନ୍ତରରେ, ସେ ଚରାଚର ଜଗତର

ବାନ ପ୍ରତାପ ଜାନ ମାରୀଚୁ । ତାସୁ କହା ନହିଁ ମାନେହି ନୀଚୁ ॥
ଜନକ ସଭାଁ ଅଗନିତ ଭୂପାଲା । ରହେ ତୁମ୍ହଉ ବଲ ଅତୁଲ ବିସାଲା ॥୫॥
ଭଂଜି ଧନୁଷ ଜାନକୀ ବିଆହୀ । ତବ ସଂଗ୍ରାମ ଜିତେହୁ କିନ ତାହୀ ॥
ସୁରପତି ସୁତ ଜାନଇ ବଲ ଥୋରା । ରାଖା ଜିଅତ ଆଁଖି ଗହି ଫୋରା ॥୬॥
ସୂପନଖା କୈ ଗତି ତୁମ୍ହ ଦେଖୀ । ତଦପି ହୃଦୟଁ ନହିଁ ଲାଜ ବିସେଷୀ ॥

ବଧି ବିରାଧ ଖର ଦୂଷନହି ଲୀଲାଁ ହତ୍ୟୋ କବଂଧ ।
ବାଲି ଏକ ସର ମାରେ୍ୟା ତେହି ଜାନହୁ ଦସକଂଧ ॥୩୬॥

ଜେହିଁ ଜଲନାଥ ବଁଧାୟଉ ହେଲା । ଉତରେ ପ୍ରଭୁ ଦଲ ସହିତ ସୁବେଲା ॥
କାରୁନୀକ ଦିନକର କୁଲ କେତୂ । ଦୂତ ପଠାୟଉ ତବ ହିତ ହେତୂ ॥୧॥

---

ବାଣ ପ୍ରତାପ ପ୍ରଭୁଙ୍କ ଜାଣଇ ମାରୀଚ । ତା କଥାକୁ ନ ମାନିଲ ଠାଣି ବୁଦ୍ଧି ନୀଚ ॥
ଜନକ ସଭାରେ ଅଗଣିତ ମହୀପାଳ । ଥିଲ ତୁମ୍ଭେ ବଳବାନ ଅତୁଳ ବିଶାଳ ॥୫॥
ଧନୁଭଙ୍ଗି ବିବାହ ସେ ହୋଇଲେ ସୀତାଙ୍କୁ । ତେବେ ସଂଗ୍ରାମରେ କିପାଁ ନ ଜିଣିଲ ତାଙ୍କୁ ॥
ସୁର-ପତି-ସୁତ ବଳ ଜାଣଇ କିଞ୍ଚିତ । ଏକ ଆଖି କଣା କରି ରଖିଲେ ଜୀବିତ ॥୬॥
ଶୂର୍ପଣଖା ଗତି ନିଜ ନୟନେ ଦେଖିଲ । ତଥାପି ହୃଦୟେ କିଛି ଲଜ୍ଜା ନ ଲଭିଲ ॥୭॥

ବଧି ବିରାଧକୁ ଖର ଦୂଷଣଙ୍କୁ ହେଳେ ନାଶିଲେ କବନ୍ଧ ।
ଏକା ବାଣକରେ ବାଳିକୁ ବଧିଲେ, ତାଙ୍କୁ ଚିହ୍ନ ଦଶକନ୍ଧ ॥୩୬॥

ଯେ ଜଳନିଧି ବନ୍ଧନ କରାଇ ଖେଳରେ । କପି ଦଳ ସହ ତେରି କଲେ ସୁବେଳରେ ॥
ଅତି କାରୁଣିକ ଦିନକର-କୁଳ-କେତୁ । ସଚିବ ସେ ପଠାଇଲେ ତୁମ୍ଭ ହିତ ହେତୁ ॥୧॥

---

ସ୍ୱାମୀ ଏବଂ ଅତୁଳନୀୟ ବଳବାନ୍ ପ୍ରଭୁ ବୋଲି ଜାଣନ୍ତି ॥ ୪ ॥ ନୀଚ ମାରୀଚ ମଧ୍ୟ ଶ୍ରୀରାମଙ୍କ ଶରର ପ୍ରତାପ ଜାଣିଥିଲା । କିନ୍ତୁ ଆପଣ ତା କଥା ସୁଦ୍ଧା ମାନିଲେ ନାହିଁ । ଜନକଙ୍କ ସଭାରେ ଅଗଣିତ ରାଜାବୃନ୍ଦ ଥିଲେ । ସେଠାରେ ବିଶାଳ ଓ ଅତୁଳନୀୟ ବଳବାନ୍ ଆପଣ ମଧ୍ୟ ଥିଲେ ॥ ୫ ॥ ସେହିଠାରେ ଶ୍ରୀରାମ ଶିବଧନୁ ଭାଙ୍ଗି ଜାନକୀଙ୍କୁ ବିବାହ କଲେ । ସେତେବେଳେ ଆପଣ ତାହାଙ୍କୁ ସଂଗ୍ରାମରେ କାହିଁକି ଜିଣିଲେ ନାହିଁ ? ଇନ୍ଦ୍ରପୁତ୍ର ଜୟନ୍ତ ତାଙ୍କ ବଳ ବିଷୟରେ କିଛି କିଛି ଜାଣେ । ଶ୍ରୀରାମ ତାକୁ ଧରି ତାର ଗୋଟିଏ ମାତ୍ର ଆଖି ଫୋଡି ଦେଲେ ଏବଂ ତାହାକୁ ଜୀବିତାବସ୍ଥାରେ ଛାଡିଦେଲେ ॥ ୬ ॥ ଶୂର୍ପଣଖା ଦଶା ତ ଆପଣ ଦେଖିଛନ୍ତି । ତଥାପି ଆପଣଙ୍କ ହୃଦୟରେ ଲଢେଇ ବିଷୟ ଚିନ୍ତା କରି ଆପଣଙ୍କୁ ବିଶେଷ ଲଜ୍ଜା ଲାଗୁନାହିଁ ! ॥ ୭ ॥ ଦୋହା :—ଯେ ବିରାଧ ଓ ଖରଦୂଷଣଙ୍କୁ ମାରି ଅବଲୀଳାକ୍ରମେ କବନ୍ଧଙ୍କୁ ମଧ୍ୟ ବଧ କରିଦେଲେ ଏବଂ ଗୋଟିଏ ମାତ୍ର ଶରରେ ବାଳିକୁ ବିନାଶ କଲେ, ହେ ଦଶକନ୍ଧ ! ଆପଣ ତାଙ୍କ ମହତ୍ତ୍ୱ ବୁଝନ୍ତୁ ॥ ୩୬ ॥ ଚୌପାଇ :—ଯେଉଁ ପ୍ରଭୁ ଅବଲୀଳାକ୍ରମେ ସମୁଦ୍ରକୁ ବାନ୍ଧି ପକାଇଲେ ଏବଂ ସେନା ସମେତ ସୁବେଳ ପର୍ବତ ଉପରେ ଆସି

ସଭା ମାଝ ଜେହିଁ ତବ ବଲ ମଥା । କରି ବରୂଥ ମହୁଁ ମୃଗପତି ଜଥା ॥
ଅଂଗଦ ହନୁମତ ଅନୁଚର ଜାକେ । ରନବାଁକୁରେ ବୀର ଅତି ବାଁକେ ॥୨॥
ତେହି କହଁ ପିୟ ପୁନି ପୁନି ନର କହହୂ । ମୁଧା ମାନ ମମତା ମଦ ବହହୂ ॥
ଅହହ କନ୍ତ କୃତ ରାମ ବିରୋଧା । କାଲ ବିବସ ମନ ଉପଜ ନ ବୋଧା ॥୩॥
କାଲ ଦଣ୍ଡ ଗହି କାହୁ ନ ମାରା । ହରଇ ଧର୍ମ ବଲ ବୁଦ୍ଧି ବିଚାରା ॥
ନିକଟ କାଲ ଜେହି ଆୱତ ସାଈଁ । ତେହି ଭ୍ରମ ହୋଇ ତୁମ୍ହାରିହି ନାଈଁ ॥୪॥

ଦୁଇ ସୁତ ମରେ ଦହେଉ ପୁର ଅଜହୁଁ ପୂର ପିୟ ଦେହୁ ॥
କୃପାସିଂଧୁ ରଘୁନାଥ ଭଜି ନାଥ ବିମଲ ଜସୁ ଲେହୁ ॥୩୭॥

ନାରି ବଚନ ସୁନି ବିସିଖ ସମାନା । ସଭାଁ ଗୟଉ ଉଠି ହୋତ ବିହାନା ॥
ବୈଠ ଜାଇ ସିଂହାସନ ଫୂଲୀ । ଅତି ଅଭିମାନ ତ୍ରାସ ସବ ଭୂଲୀ ॥୧॥

---

ସଭା ମଧ୍ୟେ ତୁମ୍ଭ ବଳ ଯେ କଲା ମନ୍ଥନ । ଗଜ-ଯୂଥ ମଧ୍ୟେ ମୃଗନାୟକ ଯେସନ ॥
ଅଙ୍ଗଦ ହନୁମନ୍ତାଦି ଯାର ଅନୁଚର । ସମର-ଉନ୍ମତ୍ତ ଅତି ଧୀର ବୀରବର ॥୨॥
ତାଙ୍କୁ ନାଥ, ବାରମ୍ବାର ମନୁଷ୍ୟ କହୁଛ । ବୃଥା ହୃଦେ ମାନ, ମଦ, ମମତା ବହୁଛ ॥
ଆହାହା ! କାନ୍ତ କରିଲ ରାମଙ୍କ ବିରୋଧ । କାଳ-ବଶ, ମନେ ଉପୁଜିଲା ନାହିଁ ବୋଧ ॥୩॥
କାଳ ଦଣ୍ଡ ଧରି କେହୁ ନ ମାରେ କାହାକୁ । ହରଇ ବୁଦ୍ଧି ଧରମ ବଳ ବିଚାରକୁ ॥
ଯାହାର ନିକଟେ ନାଥ ! କାଳ ପ୍ରବେଶଇ । ତୁମ୍ଭ ସଦୃଶ ତାହାର ମସ୍ତିଷ୍କ ଭ୍ରମଇ ॥୪॥

ମଲେ ବେନିସୁତ ପୁର ଭସ୍ମୀଭୂତ, ଅଦ୍ୟାପି ସୀତାଙ୍କୁ ଦିଅ ।
କୃପାସିନ୍ଧୁ ରଘୁବୀରଙ୍କୁ ଭଜିଣ ନାଥ ଶୁଭ୍ର ଯଶ ନିଅ ॥୩୭॥

ନାରୀ ବଚନ ବିଶିଖ ସମାନ ଶୁଣନ୍ତେ । ଉଠି ସଭା ଗୃହେ ଗଲା ପ୍ରଭାତ ହୁଅନ୍ତେ ॥
ବସିଲା ଯାଇଣ ଖଳ ସିଂହାସନେ ଫୁଲି । ଅତି ଅଭିମାନ ବଶ ତ୍ରାସ ସବୁ ଭୁଲି ॥୧॥

---

ଉତ୍ତରୁଛନ୍ତି, ସେହି ଭାସ୍କର-କୁଳ-କେତନ କରୁଣାମୟ ଭଗବାନ୍ ଆପଣଙ୍କ ମଙ୍ଗଳ ନିମନ୍ତେ ଦୂତ ପଠାଇଥିଲେ ॥ ୧ ॥ ଉକ୍ତ ଦୂତ ସଭା-ସ୍ଥଳକୁ ଆସି ସିଂହ, ହସ୍ତୀଦଳ ମଧ୍ୟରେ ପଶି ତାହାକୁ ଛିନ୍ନଭିନ୍ନ କଲା ପରି ଆପଣଙ୍କ ବଳକୁ ମନ୍ଥି ପକାଇଲା । ରଣରେ ଅଜେୟ ଅତି ବିକଟ ବୀର ଅଙ୍ଗଦ ଓ ହନୁମାନ୍ ତାହାଙ୍କର ସେବକ ॥ ୨ ॥ ହେ ପତି ! ଆପଣ ତାହାଙ୍କୁ ବାରମ୍ବାର ମନୁଷ୍ୟ ବୋଲି କହୁଅଛନ୍ତି । ଆପଣ ବୃଥାରେ ମାନ, ମମତା ଓ ମଦର ବୋଝ ମସ୍ତକ ଉପରେ ବହନ କରୁଅଛନ୍ତି । ହା ପ୍ରିୟତମ ! ଆପଣ ଶ୍ରୀରାମଙ୍କ ସହିତ ଶତ୍ରୁତା କରିଅଛନ୍ତି ଏବଂ କାଳର ଅତିଶୟ ବଶ ହେବାରୁ ଆପଣଙ୍କ ମନରେ ଏବେ ସୁଦ୍ଧା ଜ୍ଞାନ ଉତ୍ପନ୍ନ ହେଉନାହିଁ ॥ ୩ ॥ କାଳ ଦଣ୍ଡ ବା ବାଡ଼ି ସାହାଯ୍ୟରେ କାହାକୁ ମାରେନାହିଁ । ସେ ଧର୍ମ, ବଳ, ବୁଦ୍ଧି ଓ ବିଚାରକୁ ହରଣ କରିନିଏ । ହେ ସ୍ୱାମି ! ଯାହାର କାଳ ବା ମରଣ ସମୟ ପାଖେଇ ଆସେ, ତାହାର ଆପଣଙ୍କ ପରି ଭ୍ରମ ଜାତ ହୁଏ ॥ ୪ ॥ ଦୋହା :—ଆପଣଙ୍କର ଦୁଇ ପୁତ୍ର ନିହତ ହେଲେଣି ଏବଂ

ଇହାଁ ରାମ ଅଂଗଦହି ବୋଲାଓ୍ୱା । ଆଇ ଚରନ ପଂକଜ ସିରୁ ନାଓ୍ୱା ॥
ଅତି ଆଦର ସମୀପ ବୈଠାରି । ବୋଲେ ବିହଁସି କୃପାଲ ଖରାରି ॥୨॥
ବାଲିତନୟ କୌତୁକ ଅତି ମୋହୀ । ତାତ ସତ୍ୟ କହୁ ପୂଛଉଁ ତୋହୀ ॥
ରାବନୁ ଜାତୁଧାନ କୁଲ ଟୀକା । ଭୁଜବଲ ଅତୁଲ ଜାସୁ ଜଗ ଲୀକା ॥୩॥
ତାସୁ ମୁକୁଟ ତୁମ୍ହ ଚାରି ଚଲାଏ । କହହୁ ତାତ କଓ୍ୱନୀ ବିଧି ପାଏ ॥
ସୁନୁ ସର୍ବଜ୍ଞ ପ୍ରନତ ସୁଖକାରୀ । ମୁକୁଟ ନ ହୋହିଁ ଭୂପଗୁନ ଚାରି ॥୪॥
ସାମ ଦାନ ଅରୁ ଦଣ୍ଡ ବିଭେଦା । ନୃପ ଉର ବସହିଁ ନାଥ କହ ବେଦା ॥
ନୀତି ଧର୍ମ କେ ଚରନ ସୁହାଏ । ଅସ ଜିୟଁ ଜାନି ନାଥ ପହିଁ ଆଏ ॥୫॥

---

ଏଣେ ଅଙ୍ଗଦଙ୍କୁ ଡକାଇଲେ ରଘୁବୀର । ଆସି ଚରଣ-କମଳେ ନୁଆଁଇଲା ଶିର ॥
ଅତି ଆଦରେ ସମୀପେ ବସାଇଲେ ଆଣି । ଭାଷିଲେ ହସି କରୁଣାସିନ୍ଧୁ ଧନୁପାଣି ॥୨॥
ବାଳିସୁତ, ଲାଗେ ଅତି କଉତୁକ ମୋତେ । ସତ୍ୟ କହ ବତ୍ସ ! ମୁହିଁ ପଚାରଇ ତୋତେ ॥
ରାବଣ ରାକ୍ଷସ-କୁଳ-ତିଳକ ଅଟଇ । ଅତୁଳିତ ଭୁଜ-ବଳୀ ବୋଲି ଯେ ଗଣଇ ॥୩॥
ତାହାର ମୁକୁଟ ଚାରି ତୁମ୍ଭେ ପଠାଇଲ । କହ ସୁତ, ତାହା କେଉଁ ପ୍ରକାରେ ପାଇଲ ॥
ଶୁଣ ସର୍ବଜ୍ଞ, ଆରତ ଜନ-ସୁଖ-କାରୀ । ମୁକୁଟ ନୁହନ୍ତି, ସେହୁ ନୃପ ଗୁଣ ଚାରି ॥୪॥
ନାଥ ! ସାମ, ଦାନ, ଦଣ୍ଡ, ଆବର ବିଭେଦ । ନୃପ ହୃଦେ ସଦା ନିବସନ୍ତି, ଭଣେ ବେଦ ॥
ନୀତି ଧର୍ମର ଏ ଚାରୁ ଚରଣ ଅଟନ୍ତି । ଏହା ମନେ ଜାଣି ଆଗମିଲେ ପ୍ରଭୁ କତି ॥୫॥

---

ନଗର ଜଳି ଛାରଖାର ହୋଇଛି । ଯାହା ହେବାର କଥା, ହୋଇଯାଇଛି । ହେ ପ୍ରିୟତମ ! ଏବେ ବି ଏହି ଭୁଲ୍ (କ୍ଷତି)କୁ ପୂରଣ କରି ନଅନ୍ତୁ । ଅର୍ଥାତ୍ ଶ୍ରୀରାମଙ୍କ ସହିତ ଶତ୍ରୁତା ତ୍ୟାଗ କରନ୍ତୁ । ହେ ନାଥ ! କୃପାସାଗର ଶ୍ରୀରାମଙ୍କ ଭଜନ କରି, ନିର୍ମଳ ଯଶ ଲାଭ କରନ୍ତୁ ।" ॥ ୩୭ ॥ ଚୌପାଈ '—ସ୍ତ୍ରୀର ବାଣ ସମାନ ବଚନ ଶୁଣି, ସକାଳ ହେବା ମାତ୍ରେ ରାବଣ ସଭାକ୍ଷେତ୍ରକୁ ଚାଲିଗଲା ଏବଂ ସମସ୍ତ ଭୟ ବିସ୍ମୃତ ହୋଇ, ଅତି ଅଭିମାନରେ ଫୁଲି ସିଂହାସନରେ ଯାଇ ବସିଲା ॥ ୧ ॥ ଏଣେ ସୁବେଲ ପର୍ବତ ଉପରେ ଶ୍ରୀରାମ ଅଙ୍ଗଦଙ୍କୁ ଡାକିଲେ । ସେ ଆସି ଚରଣ-କମଳରେ ମୁଣ୍ଡ ନୁଆଁଇଲେ । ଅତି ଆଦରରେ ତାହାଙ୍କୁ ପାଖରେ ବସାଇ ଖରାରି କୃପାଳୁ ଶ୍ରୀରାମ ହସି କହିଲେ—॥ ୨ ॥ "ହେ ବାଳିପୁତ୍ର ! ମୋତେ ବଡ଼ କୌତୁକ ଲାଗୁଛି । ହେ ବତ୍ସ ! ଏଇଥି ପାଇଁ ମୁଁ ତୁମକୁ ପଚାରୁଛି । ମୋତେ ସତ୍ୟ କହିବ । ରାବଣ ରାକ୍ଷସ-କୁଳର ତିଳକ ଏବଂ ସମଗ୍ର ଜଗତରେ ତାହାର ଅତୁଳନୀୟ ବାହୁବଳର ଆତଙ୍କ ପରିବ୍ୟାପ୍ତ ॥ ୩ ॥ ତାହାର ଚାରିଗୋଟି ମୁକୁଟ ତୁମେ ଫିଙ୍ଗିଦେଲ । ହେ ବତ୍ସ ! ତୁମେ ସେଗୁଡ଼ିକ କିପରି ପାଇଲ, କୁହ ତ ।" ଅଙ୍ଗଦ କହିଲେ, "ହେ ସର୍ବଜ୍ଞ ! ହେ ଶରଣାଗତ-ସୁଖଦାୟକ ! ଶୁଣନ୍ତୁ, ସେଗୁଡ଼ିକ ମୁକୁଟ ନୁହେଁ । ସେ ସବୁ ରାଜାଙ୍କର ଚାରିଗୁଣ ॥ ୪ ॥ ହେ ନାଥ ! ବେଦଗଣ କହନ୍ତି— ସାମ, ଦାନ, ଦଣ୍ଡ ଓ ଭେଦ—ଏହି

ଧର୍ମହୀନ ପ୍ରଭୁ ପଦ ବିମୁଖ କାଲ ବିବସ ଦସସୀସ ।
ତେହି ପରିହରି ଗୁନ ଆଏ ସୁନହୁ କୋସଲାଧୀସ ॥୩୮(କ)॥
ପରମ ଚତୁରତା ଶ୍ରବନ ସୁନି ବିହଁସେ ରାମୁ ଉଦାର ।
ସମାଚାର ପୁନି ସବ କହେ ଗଢ଼ କେ ବାଲିକୁମାର ॥୩୮(ଖ)॥
ରିପୁ କେ ସମାଚାର ଜବ ପାଏ । ରାମ ସଚିବ ସବ ନିକଟ ବୋଲାଏ ॥
ଲଂକା ବାଁକେ ଚାରି ଦୁଆରା । କେହି ବିଧି ଲାଗିଅ କରହୁ ବିଚାରା ॥୧॥
ତବ କପୀସ ରିଚ୍ଛେସ ବିଭୀଷନ । ସୁମିରି ହୃଦୟଁ ଦିନକର କୁଲ ଭୂଷନ ॥
କରି ବିଚାର ତିନ୍ହ ମନ୍ତ୍ର ଦୃଢ଼ାୱା । ଚାରି ଅନୀ କପି କଟକୁ ବନାୱା ॥୨॥
ଜଥାଜୋଗ ସେନାପତି କୀନ୍ହେ । ଜୁଥପ ସକଲ ବୋଲି ତବ ଲୀନ୍ହେ ॥
ପ୍ରଭୁ ପ୍ରତାପ କହି ସବ ସମୁଝାଏ । ସୁନି କପି ସିଂଘନାଦ କରି ଧାଏ ॥୩॥

---

ଧର୍ମହୀନ ପ୍ରଭୁ-ଚରଣ-ବିମୁଖ କାଳ-ବିବଶ ଲଙ୍କେଶ ।
ତାହାଙ୍କୁ ତେଜିଣ ଆସିଲେ ଏ ଗୁଣ, ଶୁଣ କୋଶଳ ନରେଶ ॥୩୮ (କ)॥
ସୁଚତୁର ବାଣୀ ଶ୍ରବଣରେ ଶୁଣି ହସିଲେ ରାମ ଉଦାର ।
ଗଡର ସକଳ ସମାଚାର ତାହୁଁ କହିଲେ ବାଳିକୁମାର ॥୩୮ (ଖ)॥
ସମାଚାର ରାମ ଯେବେ ଶତ୍ରୁର ପାଇଲେ । ସଚିବଙ୍କୁ ତାହୁଁ ନିଜ ନିକଟେ ରାଇଲେ ॥
ଲଙ୍କାରେ ଦୁର୍ଗମ ଅତି ଦୃଢ ଚାରି ଦ୍ୱାର । ଲଂଘିବା କେଉଁ ପ୍ରକାରେ କରନ୍ତୁ ବିଚାର ॥୧॥
ତହୁଁ କପିପତି ଋକ୍ଷପତି ବିଭୀଷଣ । ସୁମରି ହୃଦୟେ ରଘୁକୁଳ-ବିଭୂଷଣ ॥
ବିଚାରି ସେମାନେ ସ୍ଥିର ମନ୍ତ୍ରଣା କରିଲେ । ଚାରି ଭାଗ କରି କପି ସୈନ୍ୟଙ୍କୁ ବାଣ୍ଟିଲେ ॥୨॥
ଯଥାଯୋଗ୍ୟ ସେନାପତି ନିଯୁକ୍ତ କରାଇ । ସମସ୍ତ ଯୂଥପତିଙ୍କୁ ଆଣିଲେ ଡକାଇ ॥
ପ୍ରଭୁଙ୍କ ପ୍ରତାପ କହି ତାଙ୍କୁ ବୁଝାଇଲେ । ଶୁଣି ସିଂହନାଦ କରି ସକଳେ ଧାଇଁଲେ ॥୩॥

---

ଚାରିଗୋଟି ଗୁଣ ରାଜାଙ୍କ ହୃଦୟରେ ବାସ କରନ୍ତି । ଏଗୁଡିକ ନୀତି-ଧର୍ମର ଚାରିଗୋଟି ସୁନ୍ଦର ଚରଣ । ମନରେ ଏହା ଜାଣି ଏମାନେ ନାଥଙ୍କ ପାଖକୁ ଆସି ଯାଇଛନ୍ତି—॥ ୫ ॥ ଦୋହା '— ଦଶଶିର ରାବଣ ଧର୍ମହୀନ, ପ୍ରଭୁଙ୍କ ପଦଠାରୁ ବିମୁଖ ଏବଂ କାଳର ବଶୀଭୂତ । ସୁତରାଂ ହେ କୋଶଳରାଜ ! ଶୁଣନ୍ତୁ; ଏହି ଗୁଣଗୁଡିକ ରାବଣକୁ ଛାଡି ଆପଣଙ୍କ ନିକଟକୁ ଆସି ଯାଇଛନ୍ତି ।" ॥ ୩୮ (କ) ॥ ଅଙ୍ଗଦଙ୍କ ପରମ ଚାତୁର୍ଯ୍ୟପୂର୍ଣ୍ଣ ଉକ୍ତି କାନରେ ଶୁଣି, ଉଦାର ଶ୍ରୀରାମଚନ୍ଦ୍ର ହସିବାକୁ ଲାଗିଲେ । ତତ୍ପରେ ବାଳିପୁତ୍ର ଲଙ୍କାଗଡର ସମସ୍ତ ସମାଚାର କହିଲେ ॥ ୩୮ (ଖ) ॥ ଚୌପାଈ —ଯେତେବେଳେ ଶତ୍ରୁର ସମାଚାର ସବୁ ମିଳିଗଲା, ରାମଚନ୍ଦ୍ର ସମସ୍ତ ମନ୍ତ୍ରୀଙ୍କୁ ପାଖକୁ ଡାକିଲେ ଏବଂ କହିଲେ, "ଲଙ୍କାର ଚାରିଗୋଟି ଅତି ବିକଟ ଦ୍ୱାର ଅଛି, ସେଗୁଡ଼ିକ ଉପରେ କିପରି ଆକ୍ରମଣ କରାଯିବ, ଏ ବିଷୟରେ ବିଚାର କର ।" ॥ ୧ ॥ ତଦନନ୍ତର ବାନରରାଜା ସୁଗ୍ରୀବ, ଋକ୍ଷପତି ଜାମ୍ବବାନ୍ ଓ ବିଭୀଷଣ ହୃଦୟରେ ସୂର୍ଯ୍ୟବଂଶ-ଭୂଷଣ ଶ୍ରୀରାମଚନ୍ଦ୍ରଙ୍କୁ

ହରଷିତ ରାମ ଚରନ ସିର ନାୱହିଁ । ଗହି ଗିରି ସିଖର ବୀର ସବ ଧାୱହିଁ ॥
ଗର୍ଜହିଁ ତର୍ଜହିଁ ଭାଲୁ କପୀସା । ଜୟ ରଘୁବୀର କୋସଲାଧୀସା ॥୩॥
ଜାନତ ପରମ ଦୁର୍ଗ ଅତି ଲଂକା । ପ୍ରଭୁ ପ୍ରତାପ କପି ଚଲେ ଅସଂକା ॥
ଘଟାଟୋପ କରି ଚହୁଁ ଦିସି ଘେରୀ । ମୁଖହିଁ ନିସାନ ବଜାୱହିଁ ଭେରୀ ॥୪॥
ଜୟତି ରାମ ଜୟ ଲଛିମନ ଜୟ କପୀସ ସୁଗ୍ରୀୱ ।
ଗର୍ଜହିଁ ସିଂଘନାଦ କପି ଭାଲୁ ମହା ବଲସୀୱ ॥୩୯॥
ଲଂକାଁ ଭୟଉ କୋଲାହଲ ଭାରୀ । ସୁନା ଦସାନନ ଅତି ଅହଁକାରୀ ॥
ଦେଖହୁ ବନରନ୍ହ କେରି ଢିଠାଈ । ବିହଁସି ନିସାଚର ସେନ ବୋଲାଈ ॥୧॥

---

ହରଷିତେ ରାମ ପଦେ ମସ୍ତକ ନୁଆନ୍ତି । ଧରି ଗିରି ଶୃଙ୍ଗ ବୀର ସକଳେ ଧାଆନ୍ତି ॥
ଗରଜନ୍ତି ତରଜନ୍ତି ଋକ୍ଷ କପି ବର । ଜୟ ଜୟ ରଘୁବୀର କୋଶଳାଧୀଶ୍ୱର ॥୩॥
ଜାଣି ସୁଦ୍ଧା ସୁବିଶାଳ ଦୁର୍ଗ ଗଡ ଲଙ୍କା । ପ୍ରଭୁଙ୍କ ପ୍ରତାପେ କପି ଚଳିଲେ ନିଃଶଙ୍କା ॥
ଘନଘଟା ପରି ଚଉଦିଗେ ଗଲେ ଘେରି । ବଜାନ୍ତି ମୁଖେ ନିଶାଣ ପେହେଁକାଳୀ ଭେରୀ ॥୪॥
'ଜୟ ରଘୁନାଥ' ଅନୁଜ ସହିତ ଜୟ ସୁଗ୍ରୀବ କପୀଶ ।
ସିଂହନାଦ କରି ଗରଜନ୍ତି ହରି ଋକ୍ଷ ମହା ବଳାଧୀଶ ॥୩୯॥
ହୁଅନ୍ତେ ଲଙ୍କାଗଡରେ କୋଳାହଳ ଭାରି । ଶୁଣିଲା ଦଶବଦନ ଅତି ଅହଙ୍କାରୀ ॥
ଦେଖ ଏ ମାଙ୍କଡଙ୍କର ଧୃଷ୍ଟତା କେମନ୍ତ । ହସି ଡକାଇଲା ନିଶାଚରଙ୍କୁ ସମସ୍ତ ॥୧॥

---

ସ୍ମରଣ କଲେ ଏବଂ ବିଚାର କରି ସେମାନେ କର୍ତ୍ତବ୍ୟ ନିରୂପଣ କଲେ । ସେମାନେ ବାନରସେନାଙ୍କର ଚାରିଗୋଟି ଦଳ ଗଢିଲେ ॥ ୨ ॥ ଏବଂ ସେମାନଙ୍କ କ୍ରମରେ ଯଥାଯୋଗ୍ୟ ସେନାପତି ନିଯୁକ୍ତ କଲେ । ତତ୍ପରେ ସମସ୍ତ ଦଳପତିଙ୍କୁ ଡକାଇ ଆଣିଲେ ଏବଂ ପ୍ରଭୁଙ୍କ ପ୍ରତାପ କହି, ସମସ୍ତଙ୍କୁ ବୁଝାଇଲେ । ତାହା ଶୁଣି ବାନରମାନେ ସିଂହପରି ଗର୍ଜନ କରି ଦୌଡିଲେ ॥ ୩ ॥ ସେମାନେ ଆନନ୍ଦିତ ହୋଇ ଶ୍ରୀରାମଙ୍କ ଚରଣରେ ମୁଣ୍ଡ ନୁଆଁଉଥା'ନ୍ତି ଏବଂ ପର୍ବତର ଶିଖର ପ୍ରଦେଶ ଧରି ସମସ୍ତ ବୀର ଦୌଡୁଥା'ନ୍ତି । "କୋଶଳରାଜ ଶ୍ରୀ ରଘୁବୀରଙ୍କର ଜୟ ହେଉ" ବୋଲି ଡାକ ଡାକି ସମସ୍ତ ଭାଲୁ ଓ ବାନରମାନେ ଗର୍ଜ୍ଜନ କରୁଥା'ନ୍ତି ଏବଂ ଆହ୍ୱାନ କରୁଥା'ନ୍ତି ॥ ୪ ॥ ଲଙ୍କାକୁ ପରମ ଅଜେୟ ଗଡ ଜାଣି ସୁଦ୍ଧା ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ପ୍ରତାପରେ ବାନରମାନେ ନିର୍ଭୀକ ହୋଇ ଚାଲିଲେ । ସେମାନେ ଘଟାଟୋପ (ଚତୁର୍ଦ୍ଦିଗରୁ ଘେରି ରହିଥିବା ଘନଘଟା) ପରି ଲଙ୍କାକୁ ଚାରିଆଡୁ ଘେରିଗଲେ ଏବଂ ମୁହଁରେ ରଣବାଦ୍ୟ ଓ ଭେରୀ ଆଦି ବଜାଇବାକୁ ଲାଗିଲେ ॥ ୫ ॥ ଦୋହା —ମହାବଳ-ସୀମା ରୂପ ବାନର ଓ ଭଲ୍ଲୁକମାନେ ସିଂହ ପରି ଉଚ୍ଚ ସ୍ୱରରେ "ଶ୍ରୀରାମଙ୍କ ଜୟ", "ଲକ୍ଷ୍ମଣଙ୍କ ଜୟ" ଏବଂ "ବାନରରାଜ ସୁଗ୍ରୀବଙ୍କ ଜୟ"—ଏହିପରି ଗର୍ଜନ କରିବାକୁ ଲାଗିଲେ ॥ ୩୯ ॥ ଚୌପାଇ :—ଲଙ୍କାରେ ବଡ କୋଳାହଳ ବ୍ୟାପିଗଲା । ଅତି ଅହଙ୍କାରୀ ରାବଣ ତାହା ଶୁଣି କହିଲା, "ବାନର-

ଆଏ କୀସ କାଲ କେ ପ୍ରେରେ । ଛୁଧାବଂତ ସବ ନିସିଚର ମେରେ ॥
ଅସ କହି ଅଟ୍ଟହାସ ସଠ କୀହ୍ନା । ଗୃହ ବୈଠେଁ ଅହାର ବିଧି ଦୀହ୍ନା ॥୨॥
ସୁଭଟ ସକଲ ଚାରିହୁଁ ଦିସି ଜାହୂ । ଧରି ଧରି ଭାଲୁ କୀସ ସବ ଖାହୂ ॥
ଉମା ରାବନହି ଅସ ଅଭିମାନା । ଜିମି ଟିଟ୍ଟିଭ ଖଗ ସୂତ ଉତାନା ॥୩॥
ଚଲେ ନିସାଚର ଆୟସୁ ମାଁଗୀ । ଗହି କର ଭିଂଡିପାଲ ବର ସାଁଗୀ ॥
ତୋମର ମୁଦ୍‌ଗର ପରସୁ ପ୍ରଚଣ୍ଡା । ସୂଲ କୃପାନ ପରିଘ ଗିରିଖଣ୍ଡା ॥୪॥
ଜିମି ଅରୁନୋପଲ ନିକର ନିହାରୀ । ଧାୱହିଁ ସଠ ଖଗ ମାଂସ ଅହାରୀ ॥
ଚୋଁଚ ଭଂଗ ଦୁଖ ତିନ୍ହହି ନ ସୂଝା । ତିମି ଧାଏ ମନୁଜାଦ ଅବୂଝା ॥୫॥

ନାନାୟୁଧ ସର ଚାପ ଧର ଜାତୁଧାନ ବଲବୀର ।
କୋଟ କଁଗୂରନ୍ହି ଚଢ଼ି ଗଏ କୋଟି କୋଟି ରନଧୀର ॥୪୦॥

---

କାଳର ପ୍ରେରିତ ହୋଇ କପି ଆସିଛନ୍ତି । କ୍ଷୁଧାବନ୍ତ ସବେ ମୋର ରାକ୍ଷସ ଅଛନ୍ତି ॥
ଏହା କହି ଅଟ୍ଟହାସ କଲା ଦଶାନନ । ଘରେ ବସି ଆଣିଦେଲା ବିଧାତା ଭୋଜନ ॥୨॥
ବୀର ସମୁଦାୟେ, ମିଳି ଚତୁର୍ଦିଗେ ଯାଅ । ଧରି ଧରି ସବୁ ଋକ୍ଷ ମର୍କଟଙ୍କୁ ଖାଅ ॥
ଉମା ! ରାବଣଙ୍କୁ ହୁଏ ଅଭିମାନ ତଥା । ଶୁଅଇ ଟିଟ୍ଟିଭ ଖଗ ପାଦ ଟେକି ଯଥା ॥୩॥
ଚଳିଲେ ରଜନୀଚର ଆଦେଶ ମାଗିଣ । ଭଲ ଭିନ୍ଦିପାଲ ବର୍ଚ୍ଛା ହସ୍ତରେ ଧରିଣ ॥
ତୋମର, ମୁଦ୍‌ଗର, ପୁଣି ପରଶୁ ପ୍ରଚଣ୍ଡ । କୃପାଣ ପରିଘ ଶକ୍ତି ଶୂଳ ଗିରି-ଖଣ୍ଡ ॥୪॥
ଯେମନ୍ତେ ଦେଖି ଅରୁଣ ଉପଲ ନିକର । ମୂର୍ଖ ମାଂସାହାରୀ ପକ୍ଷୀ ଧାଆନ୍ତି ସତ୍ୱର ॥
ଚଞ୍ଚୁଭଗ୍ନ ଦୁଃଖ ତାଙ୍କୁ ନ ହୁଅଇ ବୋଧ । ତେମନ୍ତେ ଧାଇଁଲେ ନରଆହାରୀ ନବୋଧ ॥୫॥

ନାନାୟୁଧ ଶର ଚାପ ଧରି କରି ଜାତୁଧାନ ବଳବୀର ।
ଚଢ଼ିଗଲେ ଦୁର୍ଗ ଶିଖର ଉପରେ କୋଟି କୋଟି ରଣଧୀର ॥୪୦॥

---

ମାନଙ୍କ ଧୃଷ୍ଟତା ଦେଖ ତ ।" ଏହା କହି ସେ ହସି ରାକ୍ଷସମାନଙ୍କ ସେନାଙ୍କୁ ଡକାଇଲା ॥୧॥ "ବାନରମାନେ କାଳର ପ୍ରେରଣାରେ ଚାଲି ଆସିଛନ୍ତି । ମୋର ରାକ୍ଷସ ସମସ୍ତେ କ୍ଷୁଧାତୁର । ବିଧାତା ଏମାନଙ୍କୁ ଘରେ ବସିଥିବା ଅବସ୍ଥାରେ ଭୋଜନ ଦେଇଦେଲା ।"— ଏହା କହି ସେହି ମୂର୍ଖ ଅଟ୍ଟହାସ କଲା ॥ ୨ ॥ ଏବଂ କହିଲା, "ହେ ବୀରମାନେ ! ତୁମ୍ଭେମାନେ ସମସ୍ତେ ଚାରି ଦିଗକୁ ଯାଅ ଏବଂ ଭଲ୍ଲୁକ ଓ ବାନର ସମସ୍ତଙ୍କୁ ଧରି ଖାଅ ।" ଶିବ କହନ୍ତି, "ହେ ଉମା ! ଟିଟ୍ଟିଭ ପକ୍ଷୀ ଗୋଡ ଉପରକୁ କରି ଶୋଇଥାଏ । ସତେ ଅବା ଆକାଶକୁ ମାପି ନେବ ! ରାବଣର ସେହିପରି ଅଭିମାନ ଥିଲା ॥ ୩ ॥ ରାକ୍ଷସମାନେ ରାବଣର ଆଦେଶ ମାନି ଏବଂ ହାତରେ ଉତ୍ତମ ଭିନ୍ଦିପାଲ, ବର୍ଚ୍ଛା, ତୋମର, ମୁଦ୍‌ଗର, ପ୍ରଚଣ୍ଡ ଫାର୍ଶା, ଶୂଳ, ଦୁଧାରୁଆ ତରବାରି, ପରିଘ (ଲୌହକଣ୍ଟକ ମୁଦ୍‌ଗର) ଏବଂ ପାହାଡଖଣ୍ଡ ଧରି ଚାଲିଲେ ॥୪॥ ଯେପରି ମୂର୍ଖ ମାଂସାହାରୀ ପକ୍ଷୀ ଲାଲ ବର୍ଣ୍ଣର ପଥର-ସମୂହ ଦେଖି ତାହାକୁ ମାଂସ ମନେ କରନ୍ତି ଓ ତାହା ଉପରକୁ ଝାମ୍ପି ପଡି ଥଣ୍ଟ ମାରନ୍ତି ଏବଂ

କୋଟ କଙ୍ଗୁରନ୍ହି ସୋହହିଁ କୈସେ । ମେରୁକେ ସୃଂଗନ୍ହି ଜନୁ ଘନ ବୈସେ ॥
ବଜହିଁ ଢୋଲ ନିସାନ ଜୁଝାଊ । ସୁନି ଧୁନି ହୋଇ ଭଟନ୍ହି ମନ ଚାଊ ॥୧॥
ବାଜହିଁ ଭେରି ନଫୀରି ଅପାରା । ସୁନି କାଦର ଉର ଜାହିଁ ଦରାରା ॥
ଦେଖନ୍ହି ଜାଇ କପିନ୍ହ କେ ଠଟ୍ଟା । ଅତି ବିସାଲ ତନୁ ଭାଲୁ ସୁଭଟ୍ଟା ॥୨॥
ଧାୱହିଁ ଗନହିଁ ନ ଅବଘଟ ଘାଟା । ପର୍ବତ ଫୋରି କରହିଁ ଗହି ବାଟା ॥
କଟକଟାହିଁ କୋଟିନ୍ହ ଭଟ ଗର୍ଜହିଁ । ଦସନ ଓଠ କାଟହିଁ ଅତି ତର୍ଜହିଁ ॥୩॥
ଉତ ରାବନ ଇତ ରାମ ଦୋହାଈ । ଜୟତି ଜୟତି ଜୟ ପରୀ ଲରାଈ ॥
ନିସିଚର ସିଖର ସମୂହ ଢହାୱହିଁ । କୂଦି ଧରହିଁ କପି ଫେରି ଚଲାୱହିଁ ॥୪॥

---

ଦୁର୍ଗ ଶିଖରରେ ଶୋଭା ପାଆନ୍ତି ତେମନ୍ତ । ମେରୁ ଶୃଙ୍ଗେ ଘନରାଜି ଶୋଭନ୍ତି ଯେମନ୍ତ ॥
ହୁଅଇ ଢୋଲ ନିଶାଣ ପ୍ରଭୃତି ବାଦ୍ୟନାଦ । ଶୁଣନ୍ତେ ବୀରଙ୍କ ମନେ ଉପୁଜେ ଉନ୍ମାଦ ॥୧॥
ତୁରି ଭେରୀ ଫୁଟେହେଁକାଳୀ ଅପାର ବାଜଇ । ଶୁଣି କାତରଙ୍କ ମନ ଭୟରେ କମ୍ପଇ ॥
ଦେଖିଲେ ରାକ୍ଷସେ ଯାଇ ଆଟ କପିଙ୍କର । ଅତ୍ୟନ୍ତ ବିଶାଳ ତନୁ ଋକ୍ଷ ବୀରବର ॥୨॥
ଧାଆନ୍ତି ଗଣନ୍ତି ନାହିଁ ଘାଟ କି ଅଘାଟ । ପର୍ବତ ଖୋଳି କରନ୍ତି ତହିଁ ମଧ୍ୟେ ବାଟ ॥
କଟ କଟ କରି କୋଟି ଯୋଦ୍ଧା ଗରଜନ୍ତି । ଦଶନେ ଅଧର କାଟି ଅତି ତରଜନ୍ତି ॥୩॥
ତେଣେ 'ଜୟ ଦଶାନନ' ଏଣେ 'ଜୟ ରାମ' । 'ଜୟତୁ', 'ଜୟତୁ' କରି ହୋଇଲା ସଂଗ୍ରାମ ॥
ନିଶାଚର ଗିରି ଶୃଙ୍ଗ ସମୂହ ଫିଙ୍ଗନ୍ତି । ଡେଇଁ ଧରି କପି ପୁଣି ତାହା ପ୍ରହାରନ୍ତି ॥୪॥

---

ପଥରରେ ଅଣ୍ଟା ଭାଙ୍ଗିଯିବାର ଦୁଃଖ ସେମାନଙ୍କୁ ବୋଧ ହୁଏନାହିଁ, ସେହିପରି ସେହି ନିର୍ବୋଧ ରାକ୍ଷସମାନେ (ଆପଣା ଆପଣା କଷ୍ଟ ଭୁଲି) ଦୌଡ଼ିବାକୁ ଲାଗିଲେ ॥୬॥ ଦୋହା —ଅନେକ ପ୍ରକାର ଅସ୍ତ୍ରଶସ୍ତ୍ର ଓ ଧନୁଶର ଧାରଣ କରି କୋଟି କୋଟି ବଳବାନ ଓ ରଣଧୀର ରାକ୍ଷସ ବୀର ଦୁର୍ଗପ୍ରାଚୀରର ସ୍ତମ୍ଭମାନଙ୍କ ଉପରେ ଚଢ଼ିଗଲେ ॥ ୪୦ ॥ ଚୌପାଈ - ସୁମେରୁ ଶିଖର ଉପରେ ବାଦଲମାନେ ରହିଗଲେ ଯେପରି ଦୃଶ୍ୟ ଦେଖାଯାଏ, ପ୍ରଧାନ ପ୍ରାଚୀରର ସ୍ତମ୍ଭମାନଙ୍କ ଉପରେ ସେମାନେ ବସି ସେହିପରି ଶୋଭା ପାଉଥା'ନ୍ତି । ରଣୋଦ୍ଦୀପକ ଢୋଲ, ନିଶାଣ ଓ ଦୁନ୍ଦୁଭି ଆଦି ବାଜୁଥାଏ । ସେମାନଙ୍କର ଧ୍ୱନି ଶୁଣି, ଯୋଦ୍ଧାମାନଙ୍କ ମନରେ ଲଢ଼ାଇ କରିବା ନିମନ୍ତେ ଉତ୍ସାହ ଜାତ ହେଉଥାଏ ॥୧॥ ଅଗଣିତ ଶାହନାଇ ଓ ଭେରୀ ବାଜୁଥାଏ । ସେଗୁଡ଼ିକର ଧ୍ୱନି ଶୁଣି କାପୁରୁଷମାନଙ୍କ ହୃଦୟରେ ଆତଙ୍କ ଜାତ ହେଉଥାଏ । ରାକ୍ଷସମାନେ ଯାଇ ସୁବିଶାଳ-କାୟ ମହାଯୋଦ୍ଧା ବାନର ଓ ଭାଲୁକମାନଙ୍କ ଥାଟ ଦେଖିଲେ ॥ ୨ ॥ ସେମାନେ ଦେଖିଲେ ଯେ, ଭାଲୁକ ଓ ବାନରମାନେ ଦୌଡ଼ୁଛନ୍ତି । ସେମାନେ ଘାଟଅଘାଟ ଏବଂ ଉଚ୍ଚନୀଚ, ବିକଟ ଘାଟୀ ଆଦି କିଛି ଗଣୁ ନ ଥା'ନ୍ତି । ପାହାଡ଼କୁ ଫଟାଇ ତା ଭିତରେ ରାସ୍ତା ତିଆରି କରି ପକାଉଥା'ନ୍ତି । କୋଟି କୋଟି ଯୋଦ୍ଧା ଦାନ୍ତ କଟକଟ କରି ଗର୍ଜନ କରୁଥା'ନ୍ତି । ଦାନ୍ତରେ ଓଠ କାମୁଡ଼ୁଥା'ନ୍ତି ଏବଂ ଖୁବ୍ ଧମକଚମକ ଦେଉଥା'ନ୍ତି ॥୩॥

ଧରି କୁଧର ଖଂଡ ପ୍ରଚଂଡ ମର୍କଟ ଭାଲୁ ଗଢ଼ ପର ଡାରହୀଁ ।
ଝଂପଟହିଁ ଚରନ ଗହି ପଟକି ମହି ଭଜି ଚଲତ ବହୁରି ପଚାରହୀଁ ॥
ଅତି ତରଲ ତରୁନ ପ୍ରତାପ ତରପହିଁ ତମକି ଗଢ଼ ଚଢ଼ି ଚଢ଼ି ଗଏ ।
କପି ଭାଲୁ ଚଢ଼ି ମନ୍ଦିରନ୍ହ ଜହଁ ତହଁ ରାମ ଜସୁ ଗାୱତ ଭଏ ॥

ଏକୁ ଏକୁ ନିସିଚର ଗହି ପୁନି କପି ଚଲେ ପରାଇ ।
ଊପର ଆପୁ ହେଠ ଭଟ ଗିରହିଁ ଧରନି ପର ଆଇ ॥୪୧॥
ରାମ ପ୍ରତାପ ପ୍ରବଲ କପିଜୂଥା । ମର୍ଦହିଁ ନିସିଚର ସୁଭଟ ବରୂଥା ॥
ଚଢ଼େ ଦୁର୍ଗ ପୁନି ଜହଁ ତହଁ ବାନର । ଜୟ ରଘୁବୀର ପ୍ରତାପ ଦିବାକର ॥୧॥

---

ଋକ୍ଷ କପି ପ୍ରଚଣ୍ଡ ଧରି ଭୂଧର ଖଣ୍ଡ ଗଡ଼ ଉପରକୁ ଫିଙ୍ଗନ୍ତି ।
ଡେଇଁ ପାଦ ଧରନ୍ତି ମହୀରେ କଚାଡନ୍ତି ପଳାନ୍ତେ ଗର୍ଜିଣ ଡାକନ୍ତି ॥
ଚପଳ ଯୁବା ବଳୀ ହରି,-ଭଲ୍ଲୁକେ ତର୍ଜି ଡେଇଁ ଚଢ଼ି,
ଆଗେ ଗଡ ଉପରେ ପଶି ସଉଧେ ପରେ ଗାଆନ୍ତି ରାମ ଯଶାବଳି ॥

ଧରି ଏକ ଏକ ରଜନୀ-ଚରକୁ କପି ଡେଇଁ ଏହା ପରେ ।
ଆପଣେ ଉପର ତଳେ ନିଶାଚର ,ପଡନ୍ତି ଧରା ପୃଷ୍ଠରେ ॥୪୧॥
ରାମ ପ୍ରତାପେ ପ୍ରବଳ ମର୍କଟ ନିକର । ମର୍ଦ୍ଦନ କରନ୍ତି ବୃନ୍ଦ ବୃନ୍ଦ ନିଶାଚର ॥
ପୁଣି ଦୁର୍ଗେ ଚଢି ଜୟ ଘୋଷିଲେ ପ୍ରଚଣ୍ଡ । ଜୟ ଜୟ ରଘୁବୀର ପ୍ରତାପ-ମାର୍ତ୍ତଣ୍ଡ ॥୧॥

---

ତେଣେ ରାବଣର ଏବଂ ଏଣେ ଶ୍ରୀରାମଙ୍କ ଜୟଧ୍ୱନି ନିନାଦିତ ହେଉଥାଏ । "ଜୟ" "ଜୟ" "ଜୟ" ଧ୍ୱନି ହେବା ମାତ୍ରେ ଲଢ଼ାଇ ଆରମ୍ଭ ହେଲା । ରାକ୍ଷସମାନେ ଗଦା ଗଦା ପର୍ବତ-ଶୃଙ୍ଗ ଫିଙ୍ଗୁଥା'ନ୍ତି । ବାନରମାନେ ଡେଇଁ ସେଗୁଡ଼ିକୁ ଧରି ନେଉଥା'ନ୍ତି ଏବଂ ସେହିମାନଙ୍କ ଆଡ଼କୁ ଓଲଟାଇ ଫିଙ୍ଗୁଥା'ନ୍ତି ॥ ୪ ॥ ଛନ୍ଦ :—ପ୍ରଚଣ୍ଡ ବାନର ଓ ଭଲ୍ଲୁକମାନେ ପର୍ବତ ଖଣ୍ଡମାନ ଧରି ଗଡ଼ ଉପରକୁ ପକାଉଥା'ନ୍ତି । ସେମାନେ ଝପଟି ପଡ଼ୁଥା'ନ୍ତି ଏବଂ ରାକ୍ଷସମାନଙ୍କ ପାଦ ଧରି ସେମାନଙ୍କୁ ପୃଥିବୀ ଉପରେ କଚାଡ଼ି ଦେଉଥାଆନ୍ତି । ସେମାନେ ଦୌଡ଼ି ପଳାଇଲେ, ବାନରମାନେ ପୁଣି ଆହ୍ୱାନ ଦେଉଥା'ନ୍ତି । ଅତି ଚଞ୍ଚଳ ଓ ତରୁଣ ପ୍ରତାପୀ ଭଲ୍ଲୁକମାନେ ଗର୍ଜନ କରି ଡେଇଁ ଗଡ଼ ଉପରେ ଚଢିଗଲେ ଏବଂ ଯେଉଁଠି ଇଚ୍ଛା ସେଇଠି ମହଲମାନଙ୍କରେ ପଶି ଶ୍ରୀରାମଙ୍କ ଯଶାବଳୀ ଗାଇବାକୁ ଲାଗିଲେ ॥ ଦୋହା :—ପୁଣି ଜଣେ ଜଣେ ରାକ୍ଷସକୁ ଧରି ସେହି ବାନରମାନେ ଦୌଡ଼ି ପଳାଇଲେ । ଉପରେ ବାନରମାନେ ନିଜେ ଏବଂ ତଳେ ରାକ୍ଷସ ଯୋଦ୍ଧାମାନେ—ଏହି ରୂପେ ସେମାନେ ଦୁର୍ଗ ଉପରୁ ପୃଥିବୀ ଉପରେ ଆସି ପଡ଼ୁଥା'ନ୍ତି ॥ ୪୧ ॥ ଚୌପାଇ :—ଶ୍ରୀରାମଙ୍କ ପ୍ରତାପ ଯୋଗୁ ପ୍ରବଳ ବାନର-ଦଳ ରାକ୍ଷସ ଯୋଦ୍ଧାମାନଙ୍କୁ ଦଳ ଦଳ କରି ଦଳି ଦେଉଥା'ନ୍ତି । ବାନରମାନେ

ଚଲେ ନିସାଚର ନିକର ପରାଈ । ପ୍ରବଲ ପବନ ଜିମି ଘନ ସମୁଦାଈ ॥
ହାହାକାର ଭୟଉ ପୁର ଭାରୀ । ରୋଵହିଁ ବାଲକ ଆତୁର ନାରୀ ॥୨॥
ସବ ମିଲି ଦେହିଁ ରାବନହି ଗାରୀ । ରାଜ କରତ ଏହିଁ ମୃତ୍ୟୁ ହଁକାରୀ ॥
ନିଜ ଦଲ ବିଚଲ ସୁନୀ ତେହିଁ କାନା । ଫେରି ସୁଭଟ ଲଂକେସ ରିସାନା ॥୩॥
ଜୋ ରନ ବିମୁଖ ସୁନା ମେଁ କାନା । ସୋ ମେଁ ହତବ କରାଲ କୃପାନା ॥
ସର୍ବସୁ ଖାଇ ଭୋଗ କରି ନାନା । ସମର ଭୂମି ଭଏ ବଲ୍ଲଭ ପ୍ରାନା ॥୪॥
ଉଗ୍ର ବଚନ ସୁନି ସକଲ ଡେରାନେ । ଚଲେ କ୍ରୋଧ କରି ସୁଭଟ ଲଜାନେ ॥
ସନ୍ମୁଖ ମରନ ବୀର କୈ ସୋଭା । ତବ ତିନ୍ହ ତଜା ପ୍ରାନ କର ଲୋଭା ॥୫॥

ବହୁ ଆୟୁଧ ଧର ସୁଭଟ ସବ ଭିରହିଁ ପଚାରି ପଚାରି ॥
ବ୍ୟାକୁଲ କିଏ ଭାଲୁ କପି ପରିଘ ତ୍ରିସୂଲନ୍ହି ମାରି ॥୪୭॥

---

ପଳାଇଲେ ତହୁଁ ନିଶାଚର ସମୁଦାୟ । ପ୍ରବଳ ମାରୁତେ ମେଘ-ସମୂହ ପରାୟ ॥
ହାହାକାର ଶବ୍ଦ ପୁରେ ପଡ଼ିଗଲା ଭାରି । ରୋଦନ୍ତି ଆରତ ସ୍ୱରେ ବାଳ ବୃଦ୍ଧ ନାରୀ ॥୧॥
ସର୍ବେ ରାବଣଙ୍କୁ ଗାଳି ଦିଅନ୍ତି ମିଳିଣ । ରାଜ୍ୟ କରନ୍ତେ ଯେ ମୃତ୍ୟୁ ଆଣିଲା ଦାରୁଣ ॥
ନିଜ ଦଳ ଛନ୍ନଭଙ୍ଗ ଦେଇ ବାହୁଡ଼ନ୍ତି । ଶୁଣି ଶ୍ରବଣେ ସରୋଷେ ବୋଲେ ଲଙ୍କପତି ॥୨॥
ଯାହାକୁ ରଣାଙ୍ଗନରୁ ଫେରିବା ଜାଣିବି । ତାହାକୁ ନିଜ କରାଳ କୃପାଣେ ମାରିବି ॥
ସର୍ବସ୍ୱ ମୋ ଖାଇ ସବୁ ଭୋଗ ଭୋଗ କରି । ପ୍ରାଣ ପ୍ରିୟ ଲାଗେ ରଣ-ଭୂମିରେ ତୁମ୍ଭରି ॥୪॥
ଶୁଣନ୍ତେ ଉଗ୍ର ବଚନ ସକଳେ ଡରିଣ । ଫେରିଲେ ସରୋଷେ ବୀର ସଙ୍କୋଚ ଲଭିଣ ॥
ସମ୍ମୁଖ ମରଣ ଶୋଭା ଅଟଇ ବୀରର । ତହୁଁ ତେଜିଲେ ସେମାନେ ଲୋଭ ଜୀବନର ॥୫॥

ବିବିଧ ଆୟୁଧ ଧରି ବୀରବୃନ୍ଦ ଛୁଟିଲେ ଡାକ ଚକାରି ।
କରିଲେ ବ୍ୟାକୁଳ ଭାଲୁ କପିଦଳ ମୁଦ୍‌ଗର ତ୍ରିଶୂଳ ମାରି ॥୪୭॥

---

ପୁଣି ଯେଉଁଠି ଇଚ୍ଛା ସେଇଠି ଦୁର୍ଗ ଉପରେ ଚଢ଼ିଗଲେ ଏବଂ ପ୍ରତାପରେ ସୂର୍ଯ୍ୟସମ ଶ୍ରୀ ରଘୁବୀରଙ୍କର ଜୟଗାନ କରିବାକୁ ଲାଗିଲେ ॥ ୧ ॥ ଯେପରି ପବନ ଜୋରରେ ବହିଲେ ବାଦଲସମୂହ ଇତସ୍ତତଃ ହୋଇଯାଏ, ରାକ୍ଷସଦଳ ସେହିପରି ଦୌଡ଼ି ପଳାଇଲେ । ଲଙ୍କା ନଗରୀରେ ଭାରି ଘୋଟାଏ ହାହାକାର ବ୍ୟାପିଗଲା । ବାଳକ, ନାରୀ ଓ ରୋଗୀମାନେ ଅସମର୍ଥତା ହେତୁ କାନ୍ଦିବାକୁ ଲାଗିଲେ ॥ ୨ ॥ ସମସ୍ତେ ମିଶି ରାବଣକୁ ଗାଳି ଦେବାକୁ ଲାଗିଲେ ଯେ, ରାଜତ୍ୱ କରୁଥିବା ଅବସ୍ଥାରେ ଏ ପାପିଷ୍ଠ ମୃତ୍ୟୁକୁ ବୃଥାଟାରେ ଡାକି ଆଣିଲା । ରାବଣ ଯେତେବେଳେ କାନରେ ଶୁଣିଲା ଯେ, ତା ସେନା ବିଚଳିତ ହେଉଛନ୍ତି, ସେତେବେଳେ ପଳାଇଥିବା ଯୋଦ୍ଧାମାନଙ୍କୁ ଲେଉଟାଇ ସେ କ୍ରୋଧରେ କହିଲା—॥ ୩ ॥ "ଯେ ଯୁଦ୍ଧରୁ ପଛଘୁଞ୍ଚା ଦେଇ ପଳାଉଅଛି ବୋଲି ମୋ କାନରେ ବାଜିବ, ତାହାକୁ ମୁଁ ନିଜେ ଭୟଙ୍କର ଦୁଧାରୁଆ ତରବାରିରେ ମାରିବି । ମୋର ସବୁ କିଛି ଖାଇଲ, ବିବିଧ ଭୋଗବିଳାସ କଲ ଏବଂ ଏବେ ରଣ-

ଭୟ ଆତୁର କପି ଭାଗନ ଲାଗେ । ଜଦ୍ୟପି ଉମା ଜୀତିହହିଁ ଆଗେ ॥
କୋଉ କହ କହଁ ଅଂଗଦ ହନୁମଂତା । କହଁ ନଲ ନୀଲ ଦୁବିଦ ବଲବଂତା ॥୧॥
ନିଜ ଦଲ ବିକଲ ସୁନା ହନୁମାନା । ପଚ୍ଛିମ ଦ୍ୱାର ରହା ବଲବାନା ॥
ମେଘନାଦ ତହଁ କରଇ ଲରାଈ । ଟୂଟ ନ ଦ୍ୱାର ପରମ କଠିନାଈ ॥୨॥
ପବନତନୟ ମନ ଭା ଅତି କ୍ରୋଧା । ଗର୍ଜେଉ ପ୍ରବଲ କାଲ ସମ ଜୋଧା ॥
କୂଦି ଲଂକ ଗଢ଼ ଊପର ଆଵା । ଗହି ଗିରି ମେଘନାଦ କହୁଁ ଧାଵା ॥୩॥
ଭଂଜେଉ ରଥ ସାରଥୀ ନିପାତା । ତାହି ହୃଦୟ ମହୁଁ ମାରେସି ଲାତା ॥
ଦୁସରେଁ ସୂତ ବିକଲ ତେହି ଜାନା । ସ୍ୟଂଦନ ଘାଲି ତୁରତ ଗୃହ ଆନା ॥୪॥

---

ଭୟାତୁରେ ମରକଟ ଚଳିଲେ ପଳାଇ । ଯଦ୍ୟପି ଉମା ଜିଣିବେ କପି ଆଗେ ଯାଇ ॥
କେ କହେ, କାହିଁ ଅଙ୍ଗଦ କାହିଁ ହନୁମନ୍ତ । କାହାନ୍ତି ଦ୍ୱିବିଧ ନଳନୀଳ ବଳବନ୍ତ ॥୧॥
ନିଜ ଦଳ ଅସ୍ତବ୍ୟସ୍ତ ଶୁଣି ହନୁମାନ । ପଶ୍ଚିମ ଦୁଆରେ ତେବେ ଥିଲେ ବଳବାନ ॥
ମେଘନାଦ ରହି ତହିଁ ସମର କରଇ । ପରମ କଠିନ ସେହି ଦ୍ୱାର ନ ଭାଙ୍ଗଇ ॥୨॥
ପବନ-ତନୟ କ୍ରୋଧେ ହୋଇଣ ଅଧୀର । ପ୍ରଳୟ କାଳ ସମାନ ଗରଜିଲେ ବୀର ॥
ଡେଇଁପଡି ଲଙ୍କାଗଡ ଉପରେ ଆସିଲେ । ଗିରି ଧରି ମେଘନାଦ ନିକଟେ ଧାଇଁଲେ ॥୩॥
ରଥ ଭାଙ୍ଗି ସାରଥିକୁ କରିଣ ନିପାତ । ତାହାର ହୃଦୟ ମଧ୍ୟେ ପ୍ରହାରିଲେ ଲାତ ॥
ଇତର ସାରଥି ତାକୁ ବିଲୋକି ବିକଳ । ସ୍ୟନ୍ଦନ ଘେନି ଗୃହକୁ ଆଣିଲେ ଚଞ୍ଚଳ ॥୪॥

---

ଭୂମିରେ ପ୍ରାଣ ରୂପର ଏତେ ପ୍ରିୟ ହୋଇଗଲା !" ॥ ୪ ॥ ରାବଣର କଠୋର ବଚନ ଶୁଣି, ସମସ୍ତ ବୀର ଡରିଗଲେ ଏବଂ ଲଜ୍ଜିତ ହୋଇ କ୍ରୋଧ କରି ଯୁଦ୍ଧ ନିମନ୍ତେ ଫେରି ଗଲେ । ରଣରେ ଶତ୍ରୁ ସମ୍ମୁଖରେ ଲଢି ଲଢି ମରିବାରେ ହିଁ ବୀରଙ୍କର ଶୋଭା, ଏହା ଭାବି ସେମାନେ ପ୍ରାଣର ଲୋଭ ତ୍ୟାଗ କଲେ ॥ ୫ ॥ ଦୋହା :—ବହୁତ ଅସ୍ତ୍ରଶସ୍ତ୍ର ଧାରଣ କରି ସମସ୍ତ ବୀର ଆହ୍ୱାନ ଦେଇ ଦେଇ ଲଢାଇ କରିବାକୁ ଲାଗିଲେ । ସେମାନେ ଲୌହମୁଖ ମୁଦ୍‌ଗର ଓ ତ୍ରିଶୂଳରେ ମାରି ମାରି ସମସ୍ତ ଭଲ୍ଲୁକ ଓ ବାନରଙ୍କୁ ବ୍ୟାକୁଳ କରି ପକାଇଲେ ॥୪୨॥ ଚୌପାଈ :—ଶିବ କହନ୍ତି, "ହେ ଉମା ! ପରେ ବାନରମାନେ ଅବଶ୍ୟ ଜୟଲାଭ କରିବେ । କିନ୍ତୁ ଏବେ ସେମାନେ ଭୟାତୁର ହୋଇ ପଳାଇବାକୁ ଲାଗିଲେ ।" କେହି କହୁଥାଏ, ଅଙ୍ଗଦ ଓ ହନୁମାନ୍ କେଉଁଠାରେ ? ବଳବାନ୍ ନଳ, ନୀଳ ଓ ଦ୍ୱିବିଦ କେଉଁଠି ?" ॥ ୧ ॥ ବଳବାନ୍ ହନୁମାନ୍ ପଶ୍ଚିମ ଦ୍ୱାରରେ ଥାଇ ତାଙ୍କ ନିଜ ଦଳ ବିଫଳ ହୋଇଥିବା କଥା ଶୁଣିଲେ । ସେଠାରେ ତାଙ୍କ ସହିତ ମେଘନାଦ ଯୁଦ୍ଧ କରୁଥିଲା । ସେହି ଦ୍ୱାର ଭାଙ୍ଗୁ ନ ଥାଏ । ଭାଙ୍ଗିବାକୁ ଅତି କଷ୍ଟ ହେଉଥାଏ ॥ ୨ ॥ ସେତେବେଳେ ହନୁମାନଙ୍କ ମନରେ ଅତିଶୟ କ୍ରୋଧ ଜାତ ହେଲା । ସେହି ଯୋଦ୍ଧା କାଳ ସଦୃଶ ଅତି ଜୋରରେ ଗର୍ଜନ କଲେ । ତତ୍ପରେ ସେ ଡେଇଁପଡି ଲଙ୍କା ଦୁର୍ଗ ଉପରେ ଚଢିଗଲେ ଏବଂ ପାହାଡ଼ଟାଏ ଧରି ମେଘନାଦ

ଅଂଗଦ ସୁନା ପବନ ସୁତ ଗଡ ପର ଗୟଉ ଅକେଲ ।
ରନବାଁକୁରା ବାଲିସୁତ ତରକି ଚଢେଉ କପି ଖେଲ ॥୪୩॥

ଜୁଦ୍ଧ ବିରୁଦ୍ଧ କ୍ରୁଦ୍ଧ ଦ୍ୱୌ ବଂଦର । ରାମ ପ୍ରତାପ ସୁମିରି ଉର ଅଂତର ॥
ରାବନ ଭବନ ଚଢେ ଦ୍ୱୌ ଧାଈ । କରହିଁ କୋସଲାଧୀସ ଦୋହାଈ ॥୧॥
କଲସ ସହିତ ଗହି ଭବନୁ ଢହାୱା । ଦେଖି ନିସାଚରପତି ଭୟ ପାୱା ॥
ନାରି ବୃନ୍ଦ କର ପୀଟହିଁ ଛାତୀ । ଅବ ଦୁଇ କପି ଆଏ ଉତପାତୀ ॥୨॥
କପିଲୀଲା କରି ତିନ୍ହହି ଡେରାୱହିଁ । ରାମଚନ୍ଦ୍ର କର ସୁଜସୁ ସୁନାୱହିଁ ॥
ପୁନି କର ଗହି କଂଚନ କେ ଖଂଭା । କହେନ୍ହି କରିଅ ଉତପାତ ଅରଂଭା ॥୩॥
ଗର୍ଜି ପରେ ରିପୁ କଟକ ମଝାରୀ । ଲାଗେ ମର୍ଦୈ ଭୁଜବଲ ଭାରୀ ॥
କାହୁହି ଲାତ ଚପେଟନ୍ହି କେହୂ । ଭଜହୁ ନ ରାମହି ସୋ ଫଲ ଲେହୂ ॥୪॥

---

ଦୁର୍ଗେ ମହାବୀର ଏକାକୀ ଥିବାର ଅଙ୍ଗଦ ଯହୁଁ ଶୁଣିଲା ।
ସମର ଉନ୍ମତ୍ତ ବୀର ବାଲିସୁତ ଖେଳେ ଚମକି ଚଢିଲା ॥୪୩॥

ଯୁଦ୍ଧରେ ଉନ୍ମତ୍ତ କ୍ରୁଦ୍ଧ ବାନର ଉଭୟେ । ରାମଙ୍କ ପ୍ରତାପ କରି ସ୍ମରଣ ହୃଦୟେ ॥
ରାବଣ ଭବନେ ବେନି ଚଢିଗଲେ ଧାଇଁ । ରାମଙ୍କ ଜୟ ଘୋଷଣା କରନ୍ତି ଶୁଣାଇଁ ॥୧॥
କଳସ ସହ ଭାଙ୍ଗନ୍ତି ଭବନ ନିଚୟ । ଦେଖି ନିଶାଚର-ପତି ଲଭେ ଅତି ଭୟ ॥
ଅବଳାବୃନ୍ଦ ପିଟନ୍ତି ନିଜ କରେ ଛାତି । ଏବେ ଆସିଛନ୍ତି ଦୁଇ ବାନର ଉତ୍ପାତୀ ॥୨॥
କପି ଲୀଳା କରି ପୁଣି ତାହାଙ୍କୁ ଡରାନ୍ତି । ଶ୍ରୀ ରଘୁନାୟକଙ୍କର ସୁଯଶ ଶୁଣାନ୍ତି ॥
କରେ ଉପାଡିଣ ତହୁଁ ସ୍ୱର୍ଣ୍ଣମୟ ସ୍ତମ୍ଭ । ଉଭୟେ ଉତ୍ପାତ କରି ଲାଗିଲେ ଆରମ୍ଭ ॥୩॥
ଶତ୍ରୁଙ୍କ ସେନା ମଧ୍ୟରେ ଡେଇଁ ସେ ପଡିଲେ । ଭୁଜବଳେ ରିପୁଦଳ ମର୍ଦ୍ଦନେ ଲାଗିଲେ ॥
କାହାକୁ ଲାତ କାହାକୁ ଚପୁଡା ପ୍ରହାର । ରାମଙ୍କୁ ଯେ ନ ଭଜିଲା ନିଅ ଫଳ ତାର ॥୪॥

---

ଆଡକୁ ଦୌଡିଲେ ॥ ୩ ॥ ସେ ରଥ ଭାଙ୍ଗି ପକାଇଲେ ଏବଂ ସାରଥିକୁ ମାରି ତଳେ ପକାଇ ଦେଲେ । ମେଘନାଦର ବକ୍ଷରେ ଗୋଟାଏ ଗୋଇଠା ମାରିଲେ । ଅନ୍ୟ ଜଣେ ସାରଥି ମେଘନାଦକୁ ବ୍ୟାକୁଳ ଜାଣି, ତାହାକୁ ରଥରେ ପକାଇ ତୁରନ୍ତ ଘରକୁ ନେଇ ଆସିଲା ॥ ୪ ॥ ଦୋହା —ଏଣେ ଅଙ୍ଗଦ ଯେତେବେଳେ ଶୁଣିଲେ ଯେ, ପବନପୁତ୍ର ହନୁମାନ୍ ଦୁର୍ଗ ଉପରେ ଏକାକୀ ରହିଅଛନ୍ତି, ସେତେବେଳେ ସେ ରଣବୀର ବାଲିପୁତ୍ର ମାଙ୍କଡଖେଳ ପରି ଡେଇଁ ଦୁର୍ଗ ଉପରକୁ ଚଢିଗଲେ ॥ ୪୩ ॥ ଚୌପାଈ —ଯୁଦ୍ଧରେ ବାନର ଦ୍ୱୟ ଶତ୍ରୁଗଣଙ୍କ ବିରୁଦ୍ଧରେ କ୍ରୁଦ୍ଧ ହୋଇ ଉଠିଲେ । ହୃଦୟରେ ଶ୍ରୀରାମଙ୍କ ପ୍ରତାପ ବିଷୟ ସ୍ମରଣ କରି ଉଭୟେ ଧାଇଁ ରାବଣର ମହଲ ଉପରେ ଚଢିଗଲେ ଏବଂ କୋଶଳରାଜ ଶ୍ରୀରାମଙ୍କ ଜୟ ଘୋଷଣା କରିବାକୁ ଲାଗିଲେ ॥୧॥ ସେମାନେ କଳସ ସମେତ ମହଲକୁ ଧରି ଧ୍ୱଂସ କରିଦେଲେ । ଏହା ଦେଖି ରାକ୍ଷସରାଜ ରାବଣ ଡରିଗଲା । ସମସ୍ତ ସ୍ତ୍ରୀ ଛାତିରେ ହାତ ପିଟିବାକୁ ଲାଗିଲେ ଏବଂ କହିଲେ,

ଏକ ଏକ ସୋଁ ମର୍ଦ୍ଦହିଁ ତୋର ଚଲାୱହିଁ ମୁଂଡ ।
ରାବନ ଆଗେଁ ପରହିଁ ତେ ଜନୁ ଫୁଟହିଁ ଦଧିକୁଂଡ ॥୪୩॥
ମହା ମହା ମୁଖିଆ ଜେ ପାୱହିଁ । ତେ ପଦ ଗହି ପ୍ରଭୁ ପାସ ଚଲାୱହିଁ ॥
କହଇ ବିଭୀଷନୁ ତିନ୍ହ କେ ନାମା । ଦେହିଁ ରାମ ତିନ୍ହହୂ ନିଜ ଧାମା ॥୧॥
ଖଲ ମନୁଜାଦ ଦ୍ୱିଜାମିଷ ଭୋଗୀ । ପାୱହିଁ ଗତି ଜୋ ଜାଚତ ଜୋଗୀ ॥
ଉମା ରାମ ମୃଦୁଚିତ କରୁନାକର । ବୟୁର ଭାବ ସୁମିରତ ମୋହି ନିସିଚର ॥୨॥
ଦେହିଁ ପରମ ଗତି ସୋ ଜିୟଁ ଜାନୀ । ଅସ କୃପାଲ କୋ କହହୁ ଭବାନୀ ॥
ଅସ ପ୍ରଭୁ ସୁନି ନ ଭଜହିଁ ଭ୍ରମ ତ୍ୟାଗୀ । ନର ମତିମଂଦ ତେ ପରମ ଅଭାଗୀ ॥୩॥

---

ଏକୁ ଏକ ସଙ୍ଗେ ମରଦ୍ଦଣ ଅଙ୍ଗେ ମୋଡ଼ି ଫିଙ୍ଗି ଦ୍ୟନ୍ତି ମୁଣ୍ଡ ।
ରାବଣ ଅଗ୍ରତେ ପଡ଼ନ୍ତି ତେମନ୍ତେ ଭାଙ୍ଗେ ଯେସନ୍ତେ ଦଧିକୁଣ୍ଡ ॥୪୪॥
ମୁଖ୍ୟ ମୁଖ୍ୟ ଯେଉଁ ସେନାପତିଙ୍କୁ ପାଆନ୍ତି । ପାଦ ଧରି ଫିଙ୍ଗି ପ୍ରଭୁ ନିକଟେ ପଠାନ୍ତି ॥
କହେ ବିଭୀଷଣ ଗଣି ସେମାନଙ୍କ ନାମ । ତାହାଙ୍କୁ ମଧ୍ୟ ଦିଅନ୍ତି ନିଜ ଧାମ ରାମ ॥୧॥
ଖଳ ନରହାରୀ ଯେହୁ ଆମିଷାଦ ଭୋଗୀ । ପାଆନ୍ତି ଗତି, ଯାଚନ୍ତି ଯାହା ସଦା ଯୋଗୀ ॥
ଉମା ! ରାମ ମୃଦୁ ଚିତ୍ତ କରୁଣା-ଆକର ।"ବୈରଭାବରେ ସ୍ମରନ୍ତି ମୋତେ ନିଶାଚର"॥୨॥
ଦିଅନ୍ତି ପରମ ଗତି ଏହା ମନେ ଜାଣି । କହ କେ ଅନ୍ୟ ଏପରି କୃପାଳୁ, ଶର୍ବାଣୀ ॥
ନ ଭଜେ ଏମନ୍ତ ପ୍ରଭୁ ତେଜିଣ ଯେ ଭ୍ରମ । ମତିମନ୍ଦ ସେହି ନର ଅଭାଗ୍ୟ ଅଧମ ॥୩॥

---

"ଏଥର ଦୁଇଟା ଉପଦ୍ରବୀ ବାନର ଏକା ସଙ୍ଗେ ଆସିଅଛନ୍ତି ।" ॥ ୨ ॥ ଉଭୟେ ବାନରଲୀଳା କରି ସେମାନଙ୍କୁ ଡରାଉଥା'ନ୍ତି ଏବଂ ଶ୍ରୀରାମଚନ୍ଦ୍ରଙ୍କ ସ୍ମରଣ ସେମାନଙ୍କୁ ଶୁଣାଉଥା'ନ୍ତି । ତତ୍ପରେ ସ୍ୱର୍ଣ୍ଣ ସ୍ତମ୍ଭ ଗୁଡ଼ିକୁ ହାତରେ ଧରି ପରସ୍ପର କୁହାକୁହି ହେଲେ, "ଏବେ ଉତ୍ପାତ ଆରମ୍ଭ କରାଯାଉ ।" ॥ ୩ ॥ ସେମାନେ ଗର୍ଜନ କରି ଶତ୍ରୁ ସେନାଙ୍କ ମଧ୍ୟରେ ଡେଇଁ ପଡ଼ିଲେ ଏବଂ ଆପଣା ଆପଣାର ଅମିତ ବାହୁବଳରେ ଶତ୍ରୁସେନାକୁ ମର୍ଦ୍ଦନ କରିବାକୁ ଲାଗିଲେ । କାହାକୁ ଗୋଇଠା ଏବଂ କାହାକୁ ଗୁସ୍ତିଆ ମାରି ତାହାର ଖବର ନେଉଥା'ନ୍ତି ଏବଂ କହୁଥା'ନ୍ତି, "ତୁମେ ଶ୍ରୀରାମଙ୍କୁ ଭଜୁନାହଁ, ତାହାର ଏହି ଫଳ ପାଅ ।" ॥୪॥ ଦୋହା:—ସେ ଦୁହେଁ ଜଣକୁ ଅନ୍ୟ ଜଣକ ସଙ୍ଗେ ରଗଡ଼ି ଦଳି ପକାଉଥା'ନ୍ତି ଏବଂ ମୁଣ୍ଡ ସବୁ ଫଟାଇ ଫିଙ୍ଗି ଦେଉଥା'ନ୍ତି । ଉକ୍ତ ଶିରମାନ ଯାଇ ରାବଣର ଆଗରେ ପଡ଼ୁଥାଏ ଏବଂ ଏପରି ଫୁଟୁଥାଏ ସତେ ଯେମିତି ଦହିକୁଣ୍ଡମାନ ଫୁଟୁଛି ' ॥ ୪୪ ॥ ଚୌପାଈ :—ଯେଉଁ ବଡ ବଡ ପ୍ରଧାନ ସେନାପତିମାନଙ୍କୁ ସେମାନେ ଧରୁଥାଆନ୍ତି, ସେମାନଙ୍କ ପାଦ ଧରି ପ୍ରଭୁଙ୍କ ନିକଟକୁ ଫିଙ୍ଗି ଦେଉଥା'ନ୍ତି । ବିଭୀଷଣ ସେମାନଙ୍କ ନାମ କହି କହି ଦେଉଥା'ନ୍ତି ଏବଂ ଶ୍ରୀରାମ ସେମାନଙ୍କୁ ମଧ୍ୟ ଆପଣାର ଧାମ (ପରମ ପଦ) ଦେଉଥାଆନ୍ତି ॥ ୧ ॥ ଯୋଗୀମାନେ ଯେଉଁ ପରମଗତି ଭିକ୍ଷା କରି ମଧ୍ୟ ପାଆନ୍ତି ନାହିଁ, ସେହି ବ୍ରାହ୍ମଣମାଂସଭୋଜୀ ଏବଂ ନରଭକ୍ଷକ ଦୁଷ୍ଟ ରାକ୍ଷସମାନେ ତାହା

ଅଂଗଦ ଅରୁ ହନୁମଂତ ପ୍ରବେସା । ଶାହ୍ଲ ଦୁର୍ଗ ଅସ କହ ଅବଧେସା ॥
ଲଂକା ଦ୍ୱୌ କପି ସୋହହିଁ କୈସେଁ । ମଥହିଁ ସିନ୍ଧୁ ଦୁଇ ମନ୍ଦର ଜୈସେଁ ॥୩॥
ଭୁଜ ବଲ ରିପୁ ଦଲ ଦଲମଲି ଦେଖି ଦିବସ କର ଅଂତ ।
କୂଦେ ଜୁଗଲ ବିଗତ ଶ୍ରମ ଆଏ ଜହଁ ଭଗବଂତ ॥୪୪॥
ପ୍ରଭୁ ପଦ କମଲ ସୀସ ତିନ୍ହ ନାଏ । ଦେଖି ସୁଭଟ ରଘୁପତି ମନ ଭାଏ ॥
ରାମ କୃପା କରି ଜୁଗଲ ନିହାରେ । ଭଏ ବିଗତଶ୍ରମ ପରମ ସୁଖାରେ ॥୧॥
ଗଏ ଜାନି ଅଂଗଦ ହନୁମାନା । ଫିରେ ଭାଲୁ ମର୍କଟ ଭଟ ନାନା ॥
ଜାତୁଧାନ ପ୍ରଦୋଷ ବଲ ପାଈ । ଧାଏ କରି ଦସସୀସ ଦୋହାଈ ॥୨॥

---

ଅଙ୍ଗଦ ଆଉର ବାୟୁତନୟ ପ୍ରବେଶ । କଲେଣି ଦୁର୍ଗେ, କହନ୍ତି ଏହା କୋଶଳେଶ ॥
ଲଙ୍କାଗଡ଼ ମଧ୍ୟେ କପି ଶୋଭନ୍ତି କେମନ୍ତ । ମନ୍ଥନ୍ତି ସିନ୍ଧୁକୁ ବେନି ମନ୍ଦର ଯେମନ୍ତ ॥୩॥
ନିଜ ଭୁଜବଳେ ରିପୁଦଳ ଦଳି ଦେଖି ଦିବସର ଅନ୍ତ ।
ଶ୍ରମ ଦୂର କରି ଡେଇଁ ଆଗମିଲେ ଦୁହେଁ, ଘହିଁ ଭଗବନ୍ତ ॥୪୪॥
ପ୍ରଭୁ ଚରଣ-କମଳେ ନୁଆଁଇଲେ ଶିର । ପ୍ରସନ୍ନ ହୋଇଲେ ରାମ ଦେଖି ଭଲ ବୀର ॥
ରାମ କୃପା କରି ଉଭୟଙ୍କୁ ନିରେଖିଲେ । ରହିତ କ୍ଲାନ୍ତ ପରମ ସୁଖୀ ସେ ହୋଇଲେ ॥୧॥
ଯିବାର ଜାଣି ଅଙ୍ଗଦ ପବନ-ନନ୍ଦନ । ଫେରିଲେ ଋକ୍ଷ ମର୍କଟ ସୈନ୍ୟ ଅଗଣନ ॥
ରଜନୀଚର ପ୍ରଦୋଷ ବଳ ସବେ ପାଇ । ଧାଇଁଲେ ଉଚ୍ଚାରି 'ଜୟ ଜୟ ଲଙ୍କସାଇଁ' ॥୨॥

---

ଅନାୟାସରେ ଲାଭ କରୁଥାଆନ୍ତି । ଶିବ କହନ୍ତି, "ହେ ଉମା ! ଶ୍ରୀରାମ ଅତି କୋମଳ-ହୃଦୟ ଓ କରୁଣାକର । ସେ କହୁଥା'ନ୍ତି, "ଶତ୍ରୁ ଭାବରେ ହେଉ ପଛକେ, ରାକ୍ଷସମାନେ ମୋତେ ସ୍ମରଣ ତ କରୁଅଛନ୍ତି ।" ॥ ୨ ॥ ହୃଦୟରେ ଏହିପରି ବିଚାରି କରି ସେ ସେମାନଙ୍କୁ ପରମ ଗତି (ମୋକ୍ଷ) ଦେଉଥା'ନ୍ତି । ହେ ଭବାନି ! କୁହ ତ ଏପରି କୃପାଳୁ ଆଉ କିଏ ? ପ୍ରଭୁଙ୍କର ଏପରି ସ୍ୱଭାବ ଜାଣି ସୁଦ୍ଧା ଯେଉଁ ମନୁଷ୍ୟ ଭ୍ରମ ତ୍ୟାଗ କରି ତାଙ୍କର ଭଜନ କରେ ନାହିଁ, ସେ ଅତି ମନ୍ଦବୁଦ୍ଧି ଏବଂ ଅତୀବ ଭାଗ୍ୟହୀନ ।" ॥ ୩ ॥ ଶ୍ରୀରାମ କହିଲେ, "ଅଙ୍ଗଦ ଓ ହନୁମାନ୍ ଦୁର୍ଗ ମଧ୍ୟରେ ପଶି ଯାଇଅଛନ୍ତି । ଦୁଇଟି ମନ୍ଦର ପର୍ବତ ସମୁଦ୍ରକୁ ମନ୍ଥନ କଲା ପରି ବାନର ଦୁହେଁ ଲଙ୍କା ଧ୍ୱଂସ କରୁଥିବା ବେଳେ ଶୋଭା ପାଉଅଛନ୍ତି ।" ॥ ୪ ॥ ଦୋହା :—ବାହୁବଳରେ ଶତ୍ରୁସେନାଙ୍କୁ ଦୁହେଁ ଦଳି ରଗଡ଼ି ପକାଇଲେ । ତତ୍ପରେ ଦିନ ଶେଷ ହେବାର ଦେଖି ହନୁମାନ୍ ଓ ଅଙ୍ଗଦ ଦୁହେଁ କୁଦିପଡ଼ିଲେ ଏବଂ କ୍ଲାନ୍ତି ଦୂର କରି ଭଗବାନ୍ ଶ୍ରୀରାମ ଥିବା ସ୍ଥାନକୁ ଆସିଗଲେ ।" ॥ ୪୪ ॥ ଚୌପାଇ :—ସେମାନେ ପ୍ରଭୁଙ୍କ ଚରଣ-କମଳରେ ଶିର ନୁଆଁଇଲେ । ଉତ୍ତମ ଯୋଦ୍ଧାମାନଙ୍କୁ ଦେଖି ଶ୍ରୀ ରଘୁନାଥ ମନେ ମନେ ଅତି ଆନନ୍ଦିତ ହେଲେ । ଶ୍ରୀ ରାମ ଦୟା କରି ଉଭୟଙ୍କ ଆଡ଼କୁ ଦୃଷ୍ଟିପାତ କଲେ । ଫଳରେ ସେମାନେ କ୍ଲାନ୍ତିମୁକ୍ତ ହୋଇ ପରମ ସୁଖ ଲାଭ କଲେ ॥ ୧ ॥

ନିସିଚର ଅନୀ ଦେଖି କପି ଫିରେ । ଜହଁ ତହଁ କଟକଟାଇ ଭଟ ଭିରେ ॥
ଦୁହୌ ଦଲ ପ୍ରବଲ ପଚାରି ପଚାରୀ । ଲରତ ସୁଭଟ ନହିଁ ମାନହିଁ ହାରୀ ॥୩॥
ମହାବୀର ନିସିଚର ସବ କାରେ । ନାନା ବରନ ବଲୀମୁଖ ଭାରେ ॥
ସବଲ ଜୁଗଲ ଦଲ ସମବଲ ଜୋଧା । କୌତୁକ କରତ ଲରତ କରି କ୍ରୋଧା ॥୪॥
ପ୍ରାବିଟ ସରଦ ପୟୋଦ ଘନେରେ । ଲରତ ମନହୁଁ ମାରୁତ କେ ପ୍ରେରେ ॥
ଅନିପ ଅକଂପନ ଅରୁ ଅତିକାୟା । ବିଚଲତ ସେନ କୀହ୍ନି ଇନ୍ହ ମାୟା ॥୫॥
ଭୟଉ ନିମିଷ ମହଁ ଅତି ଅଁଧିଆରା । ବୃଷ୍ଟି ହୋଇ ରୁଧିରୋପଲ ଛାରା ॥୬॥

ଦେଖି ନିବିଡ଼ ତମ ଦସହୁଁ ଦିସି କପିଦଲ ଭୟଉ ଖଭାର ।
ଏକହି ଏକ ନ ଦେଖଈ ଜହଁ ତହଁ କରହିଁ ପୁକାର ॥୪୭॥

---

ନିଶାଚର ସେନା ଦେଖି କପି ଲେଉଟିଲେ । କଟ କଟ ଶବ୍ଦ କରି ଯୁଦ୍ଧ ଆରମ୍ଭିଲେ ॥
ଉଭୟ ଦଳ ପ୍ରବଳ ଡାକି ପରସ୍ପର । ଲଢନ୍ତି ହାରି ନ ମାନି ମଦେ ବୀରବର ॥୩॥
ବୀର ନିଶାଚର ସର୍ବେ କୃଷ୍ଣ ଅତିଶୟ । ବିବିଧ ବର୍ଣ୍ଣର ଭାଲୁ ମର୍କଟ ନିଚୟ ॥
ସବଳ ଯୁଗଳ ଦଳ ସମଯୋଦ୍ଧା ଅଛି । ବହୁତ ପ୍ରକାରେ କ୍ରୋଧ କରିଣ ଯୁଝନ୍ତି ॥୪॥
ବର୍ଷା ଶରଦ କାଳର ଜଳଦ ନିକର । ପବନ ପ୍ରେରିତେ ଯେସନ୍ତେ କରନ୍ତି ସମର ॥
ସେନାପତି ଅକମ୍ପନ ଆଉ ଅତିକାୟା । ବିଚଳିତ ସେନା ଦେଖି କଲେ ନିଜ ମାୟା ॥୫॥
ନିମିଷ ମଧ୍ୟେ ନିବିଡ ଅନ୍ଧାର ଘୋଟିଲା । ରୁଧିର ପଥର ଛାର ବରଷା ହୋଇଲା ॥୬॥

ଦଶ ଦିଗ ତମ ନିବିଡ ଦେଖିଣ କପି ଦଳେ ତ୍ରାସ ଅତି ।
ଏକକୁ ଆରେକ ଦେଖି ନ ପାରନ୍ତି ହାହାକାର ଚିତ୍କାରନ୍ତି ॥୪୭॥

---

ଅଙ୍ଗଦ ଓ ହନୁମାନଙ୍କୁ ଫେରିବାର ଜାଣି ସମସ୍ତ ଭଲ୍ଲୁକ ଓ ବାନର ବୀରମାନେ ଲେଉଟିଲେ । ରାକ୍ଷସମାନେ ପ୍ରଦୋଷକାଳୀନ ବଳ ପାଇ ରାବଣର ଜୟ ଘୋଷଣା ଦେଇ ବାନରମାନଙ୍କ ଉପରେ ଆକ୍ରମଣ କଲେ ॥ ୨ ॥ ରାକ୍ଷସ ସେନାଙ୍କୁ ଆସୁଥିବାର ଦେଖି ବାନରମାନେ ଲେଉଟି ପଡିଲେ ଏବଂ ସେହି ଯୋଦ୍ଧାମାନେ ଏଣେ ତେଣେ ଦାନ୍ତ କଟ କଟ କରି ଲଢିବାକୁ ଲାଗିଲେ । ଦୁଇଟି ଯାକ ଦଳ ଅତି ବଳବାନ୍ । ଯୋଦ୍ଧାମାନେ ଆହ୍ୱାନ ଦେଇ ଲଢୁଥା'ନ୍ତି, କେହି ପରାଜୟ ସ୍ୱୀକାର କରୁ ନ ଥା'ନ୍ତି ॥୩॥ ସମସ୍ତ ରାକ୍ଷସ ମହାବୀର ଏବଂ ଅତି କୃଷ୍ଣକାୟ । ବାନରମାନେ ବିଶାଳକାୟ ଏବଂ ସେମାନଙ୍କ ବର୍ଣ୍ଣ ବିବିଧ ପ୍ରକାର । ଉଭୟ ଦଳ ବଳବାନ୍ ଏବଂ ସମବଳୀ ଯୋଦ୍ଧା । ସେମାନେ କ୍ରୋଧର ସହିତ ଲଢୁଥା'ନ୍ତି ଏବଂ କୌତୁକରେ ବୀରତା ଦେଖାଉଥା'ନ୍ତି ॥୪॥ ରାକ୍ଷସ ଏବଂ ବାନରମାନେ ଯୁଦ୍ଧ କରିବା ସମୟରେ ଏପରି ପ୍ରତୀତ ହେଉଥା'ନ୍ତି ଯେପରି ବର୍ଷା ଓ ଶରତ ଋତୁର ଅନେକ ମେଘ ପବନଦ୍ୱାରା ପ୍ରେରିତ ହୋଇ ପରସ୍ପର ସହିତ ଲଢୁଅଛନ୍ତି ! ଅକମ୍ପନ ଓ ଅତିକାୟ ଆଦି ରାକ୍ଷସ ସେନାପତିଗଣ ଆପଣା ସେନାଙ୍କୁ ବିଚଳିତ ହେବାର ଦେଖି ମାୟା କଲେ ॥ ୫ ॥ କ୍ଷଣକ ମଧ୍ୟରେ ଘୋରଅତେ ଘୋର

ସକଲ ମରମୁ ରଘୁନାୟକ ଜାନା । ଲିଏ ବୋଲି ଅଂଗଦ ହନୁମାନା ॥
ସମାଚ୍ଚର ସବ କହ୍ନି ସମୁଝାଏ । ସୁନତ କୋପି କପିକୁଂଜର ଧାଏ ॥୧॥
ପୁନି କୃପାଲ ହଁସି ଚାପ ଚଢ଼ାୱା । ପାୱକ ସାୟକ ସପଦି ଚଲାୱା ॥
ଭୟଉ ପ୍ରକାସ କତହୁଁ ତମ ନାହୀଁ । ଜ୍ଞାନ ଉଦୟଁ ଜିମି ସଂସୟ ଜାହୀଁ ॥୨॥
ଭାଲୁ ବଲୀମୁଖ ପାଇ ପ୍ରକାସା । ଧାଏ ହରଷି ବିଗତଶ୍ରମ ତ୍ରାସା ॥
ହନୂମାନ ଅଂଗଦ ରନ ଗାଜେ । ହାଁକ ସୁନତ ରଜନୀଚର ଭାଜେ ॥୩॥
ଭାଗତ ଭଟ ପଟକହିଁ ଧରି ଧରନୀ । କରହିଁ ଭାଲୁ କପି ଅଦ୍ଭୁତ କରନୀ ॥
ଗହି ପଦ ଡାରହିଁ ସାଗର ମାହୀଁ । ମକର ଉରଗ ଝଷ ଧରି ଧରି ଖାହୀଁ ॥୪॥

---

ସକଳ ମରମ ଜାଣିପାରି ରଘୁସାଇଁ । ହନୁମାନ ଅଙ୍ଗଦଙ୍କୁ ଆଣିଲେ ଡକାଇ ॥
ସବୁ ସମାଚ୍ଚର ପ୍ରଭୁ କହି ବୁଝାଇଲେ । ଶୁଣନ୍ତେ ସକୋପେ କପି-କୁଞ୍ଜର ଧାଇଁଲେ ॥୧॥
ହସି କୃପାନିଧି ଚାପ ବାନ୍ଧିଣ ଆବର । ପାବକ ଶାୟକ ସନ୍ଧି ଛାଡ଼ିଲେ ସତ୍ୱର ॥
ହୋଇଲା ପ୍ରକାଶ, ତମ ନ ରହିଲା କାହିଁ । ଜ୍ଞାନ ଉଦୟେ ସଂଶୟ ଯଥା ରହେ ନାହିଁ ॥୨॥
ଭଲ୍ଲୁ ମର୍କଟ ବୃନ୍ଦ ପାଇଣ ପ୍ରକାଶ । ଧାଇଁଲେ ହରଷେ ଦୂର ହେଲା ଶ୍ରମ ତ୍ରାସ ॥
ହନୁମାନ ଅଙ୍ଗଦ ଯେ ରଣେ ଗରଜନ୍ତି । ହୁଂକାର ଶୁଣି ରାକ୍ଷସେ ପଳାଇ ଚଳନ୍ତି ॥୩॥
ପଳାନ୍ତେ ଯୋଦ୍ଧାଙ୍କୁ ଧରି ମହୀରେ କଚାଡ଼ି । କରନ୍ତି ଅଦ୍ଭୁତ କାର୍ଯ୍ୟ ଋକ୍ଷ କପି ଧାଡ଼ି ॥
ପଦ ଧରି ଫିଙ୍ଗି ଦିଅନ୍ତି ସାଗର ଭିତରେ । ଧରି ଧରି ଖା'ନ୍ତି ଝଷ ଉରଗ ମକରେ ॥୪॥

---

ଅନ୍ଧକାର ବ୍ୟାପିଗଲା । ରକ୍ତ, ପଥର ଏବଂ ପାଉଁଶ ବର୍ଷା ହେବାକୁ ଲାଗିଲା ॥ ୬ ॥
ଦୋହା —ଦଶ ଦିଗରେ ନିବିଡ଼ ଘନ ଅନ୍ଧକାର ଦେଖି ବାନର ସେନାଙ୍କ ମଧ୍ୟରେ କୋଳାହଳ ବ୍ୟାପିଗଲା । କେହି କାହାରିକୁ ଦେଖି ପାରୁ ନ ଥା'ନ୍ତି ଏବଂ ସମସ୍ତେ ଏଣେ ତେଣେ ଚିତ୍କାର କରୁଥା'ନ୍ତି ॥ ୪୬ ॥ ଚୌପାଈ .—ଶ୍ରୀ ରଘୁନାଥ ସମସ୍ତ ରହସ୍ୟ ଜାଣି ପକାଇଲେ । ସେ ଅଙ୍ଗଦ ଏବଂ ହନୁମାନ୍‌ଙ୍କୁ ଡକାଇ ନେଲେ ଏବଂ ସମସ୍ତ ସମାଚ୍ଚର କହି ବୁଝାଇଲେ । ଶୁଣିବା ମାତ୍ରେ ଉଭୟ କପୀଶ୍ୱର କ୍ରୋଧ କରି ଧାଇଁଲେ ॥୧॥ ତଦନନ୍ତର କୃପାଳୁ ଶ୍ରୀରାମ ହସି ହସି ଧନୁରେ ଶର ଯୋଖିଲେ ଏବଂ ଶୀଘ୍ର ଅଗ୍ନି ବାଣ ଚଳାଇଲେ । ଫଳରେ ଚତୁର୍ଦିଗ ଆଲୋକିତ ହୋଇଗଲା ଏବଂ କେଉଁଠି ହେଲେ ଅନ୍ଧକାର ରହିଲା ନାହିଁ । ଜ୍ଞାନୋଦୟ ହେଲେ ଯେପରି ସମସ୍ତ ପ୍ରକାର ସନ୍ଦେହ ଦୂର ହୋଇଯାଏ, ସେହିପରି ଆଲୋକର ଆବିର୍ଭାବ ମାତ୍ରେ ଅନ୍ଧକାର ଦୂର ହୋଇଗଲା ॥୨॥ ଭଲ୍ଲୁକ ଓ ବାନରମାନେ ଆଲୋକ ପାଇ କ୍ଲାନ୍ତି ଓ ଭୟରୁ ମୁକ୍ତ ହେଲେ ଏବଂ ପ୍ରସନ୍ନ ମନରେ ଧାଇଁଲେ । ଅଙ୍ଗଦ ଓ ହନୁମାନ୍ ଯୁଦ୍ଧରେ ଗର୍ଜି ଉଠିଲେ । ସେ ଦୁହିଁଙ୍କର ହୁଂକାର ଶୁଣିବା ମାତ୍ରେ ରାକ୍ଷସମାନେ ଦୌଡ଼ି ପଳାଇଲେ ॥ ୩ ॥ ପଳାଇ ଯାଉଥିବା ରାକ୍ଷସ ଯୋଦ୍ଧାମାନଙ୍କୁ ବାନର ଓ ଭଲ୍ଲୁକଗଣ ଧରି ମାରି ପୃଥିବୀ ଉପରେ ପକାଇ ଦେଉଥା'ନ୍ତି । ସେମାନେ ଅତି ଅଦ୍ଭୁତ ଯୁଦ୍ଧ-କୌଶଳ ଦେଖାଉଥାଆନ୍ତି । ପାଦ ଧରି ସେମାନଙ୍କୁ

କଛୁ ମାରେ କଛୁ ଘାୟଲ କଛୁ ଗଢ଼ ଚଢ଼େ ପରାଇ ।
ଗର୍ଜହିଁ ଭାଲୁ ବଲୀମୁଖ ରିପୁଦଲ ବଲ ବିଚଲାଇ ॥୪୭॥
ନିସା ଜାନି କପି ଚାରିଉ ଅନୀ । ଆଏ ଜହାଁ କୋସଲା ଧନୀ ॥
ରାମ କୃପା କରି ଚିତବା ସବହୀ । ଭଏ ବିଗତଶ୍ରମ ବାନର ତବହୀ ॥୧॥
ଉହାଁ ଦସାନନ ସଚିବ ହଁକାରେ । ସବ ସନ କହେସି ସୁଭଟ ଜେ ମାରେ ॥
ଆଧା କଟକୁ କପିନ୍ହ ସଁଘାରା । କହହୁ ବେଗି କା କରିଅ ବିଚାରା ॥୨॥
ମାଲ୍ୟବଂତ ଅତି ଜରଠ ନିସାଚର । ରାବନ ମାତୁ ପିତା ମନ୍ତ୍ରୀ ବର ॥
ବୋଲା ବଚନ ନୀତି ଅତି ପାବନ । ସୁନହୁ ତାତ କଛୁ ମୋର ସିଖାବନ ॥୩॥
ଜବ ତେଁ ତୁମ୍ହ ସୀତା ହରି ଆନୀ । ଅସଗୁନ ହୋହିଁ ନ ଜାହିଁ ବଖାନୀ ॥
ବେଦ ପୁରାନ ଜାସୁ ଜସୁ ଗାୟୋ । ରାମ ବିମୁଖ କାହୁଁ ନ ସୁଖ ପାୟୋ ॥୪॥

କେତେକ ଆହତ, ରଣେ କେତେ ହତ, କେତେ ଦୁର୍ଗେ ପଳାଇଲେ ।
ଶତ୍ରୁ-ଦଳ-ବଳ ଛିନ୍ନ ଭିନ୍ନ କରି ଋକ୍ଷ କପି ଗରଜିଲେ ॥୪୭॥
ନିଶାକାଳ ଜାଣି କପି ସେନା ଚାରି ଦଳ । ଆସିଲେ କୋଶଳାଧୀଶ ସମୀପେ ସକଳ ॥
ରାମ କୃପା କରି ନିରେଖିଲେ ଯେଉଁକ୍ଷଣି । ବିଗତ କ୍ଳାନ୍ତ ହୋଇଲେ କପି ସେହି କ୍ଷଣି ॥୧॥
ତେବେଣେ ଦଶାନନ ନିଜ ମନ୍ତ୍ରୀଙ୍କୁ ଡାକିଲା । ଯେଉଁ ବୀର ମଲେ ସମସ୍ତଙ୍କୁ ଶୁଣାଇଲା ॥
ଅର୍ଦ୍ଧ ସେନାଙ୍କୁ ମର୍କଟ କରିଲେ ସଂହାର । କହ ଶୀଘ୍ର ଏବେ କିସ କରିବା ବିଚାର ॥୨॥
ମାଲ୍ୟବନ୍ତ ନାମେ ଥିଲା ଏକ ନିଶାଚର । ରାବଣର ମାତାମହ, ବୃଦ୍ଧ ମନ୍ତ୍ରୀବର ॥
ବୋଲଇ ଅତି ପବିତ୍ର ବାଣୀ ନୀତିଯୁକ୍ତ । ଶୁଣ ମୋର ଉପଦେଶ କଥା କିଛି, ସୁତ ॥୩॥
ଯେ ଦିନୁ ସୀତାଙ୍କୁ ହରି ଆଣିଲୁ ତୁ ଛଳେ । ହୁଅଇ ଯେ ଅଶକୁନ, ନ ହୁଅଇ କଳ ॥
ବେଦ ପୁରାଣ ଯାହାଙ୍କ ସୁଯଶ ଗାଆନ୍ତି । ତାଙ୍କ ପ୍ରତିକୂଳ କେବେ ସୁଖ ନ ପାଆନ୍ତି ॥୪॥

ସମୁଦ୍ରରେ ନିକ୍ଷେପ କରୁଥା'ନ୍ତି । ସମୁଦ୍ରରେ ମଗର, ସର୍ପ ଓ ମତ୍ସ୍ୟମାନେ ସେମାନଙ୍କୁ ଧରି ଖାଇ ଯାଉଥାଆନ୍ତି ॥ ୪ ॥ ଦୋହା :—କେତେକ ନିହତ ହେଲେ, କେତେକ ଆହତ ହେଲେ ଏବଂ କେତେକ ଦୁର୍ଗ ଉପରେ ଚଢ଼ିଗଲେ । ଭଲ୍ଲୁକ ଓ ବାନର ବୀରମାନେ ଆପଣା ଆପଣା ବଳରେ ଶତ୍ରୁ ଦଳକୁ ବିଚଳିତ କରି ଗର୍ଜନ କରୁଥା'ନ୍ତି ॥୪୭॥ ଚୌପାଈ :—ରାତ୍ରି ହେବାର ଜାଣି ବାନରମାନଙ୍କର ଚାରିଦଳ ସେନା ଶ୍ରୀରାମ ଥିବା ସ୍ଥାନକୁ ଆସିଲେ । ଶ୍ରୀରାମ ସମସ୍ତଙ୍କ ପ୍ରତି କୃପା-ଦୃଷ୍ଟି ନିକ୍ଷେପ କରିବା ମାତ୍ରେ ଏହି ବାନରଗଣ କ୍ଳାନ୍ତିମୁକ୍ତ ହୋଇଗଲେ ॥ ୧ ॥ ତେବେଣେ ଲଙ୍କାରେ ରାବଣ ମନ୍ତ୍ରୀମାନଙ୍କୁ ଡକାଇଲା ଏବଂ ଯେଉଁ ଯୋଦ୍ଧାମାନେ ନିହତ ହୋଇଥିଲେ, ସେମାନଙ୍କ କଥା ସମସ୍ତଙ୍କୁ କହି ଶୁଣାଇଲା । ସେ କହିଲା, "ବାନରମାନେ ଅର୍ଦ୍ଧ ସେନା ସଂହାର କରିଦେଲେଣି । ଏବେ ଶୀଘ୍ର କୁହ, କି ଉପାୟ ବା ବିଚାର କରାଯିବ ?" ॥ ୨ ॥ ମାଲ୍ୟବନ୍ତ ନାମକ ଜଣେ ଅତି ବୃଦ୍ଧ ରାକ୍ଷସ ଥିଲା । ସେ ରାବଣର ମାତାର ପିତା, ଅର୍ଥାତ୍ ମାତାମହ (ଅଜା)

ହିରନ୍ୟାଚ୍ଛ ଭ୍ରାତା ସହିତ ମଧୁ କୈଟଭ ବଲବାନ ।
ଜେହିଁ ମାରେ ସୋଇ ଅବତରେଉ କୃପାସିଂଧୁ ଭଗବାନ ॥୪୮(କ)॥

## ମାସପାରାୟଣ, ପଞ୍ଚବିଂଶ ବିଶ୍ରାମ

କାଲରୂପ ଖଲ ବନ ଦହନ ଗୁନାଗାର ଘନବୋଧ ।
ସିବ ବିରଂଚି ଜେହି ସେବହିଁ ତା ସୋଁ କଵନ ବିରୋଧ ॥୪୮(ଖ)॥
ପରିହରି ବୟରୁ ଦେହୁ ବୈଦେହୀ । ଭଜହୁ କୃପାନିଧି ପରମ ସନେହୀ ॥
ତାକେ ବଚନ ବାନ ସମ ଲାଗେ । କରିଆ ମୁହ କରି ଜାହି ଅଭାଗେ ॥୧॥
ବୂଢ଼ ଭଏସି ନ ତ ମରତେଉଁ ତୋହୀ । ଅବ ଜନି ନୟନ ଦେଖାଵସି ମୋହୀ ॥
ତେହିଁ ଅପନେ ମନ ଅସ ଅନୁମାନା । ବଧ୍ୟୋ ଚହତ ଏହି କୃପାନିଧାନା ॥୨॥

---

ଅନୁଜ ସହିତ ହିରଣ୍ୟାକ୍ଷ, ମଧୁ–କଇଟଭ ବଳବାନ ।
ଯେହୁ ବିନାଶିଲେ ସେ ଅବତରିଲେ କୃପାସିନ୍ଧୁ ଭଗବାନ ॥୪୮ (କ)॥

କାଳରୂପ ଖଳ-ବିପିନ ଅନଳ ଗୁଣାଗାର ଘନବୋଧ ।
ଯାହାଙ୍କୁ ସେବନ୍ତି ବିଧି ଉମାପତି ତାଙ୍କ ସଙ୍ଗେ କି ବିରୋଧ ॥୪୮ (ଖ)॥
ବୈର ପରିହରି ବତ୍ସ ! ଦେଇ ବଇଦେହୀ । ଭଜ କରୁଣାସାଗର ପରମ ସେନେହୀ ॥
ଲାଗିଲା ବାଣ ସମାନ ତାହାର ବଚନ । କଳାମୁହଁ କରିଯାଅ ଅଭାଗ୍ୟ, କହନ ॥୧॥
ବୁଢା ତୁ ହେଲୁଣି ନରୁ ମାରିଥାନ୍ତି ତୋତେ । ଏବେ ନିଜ ମୁହଁ ଆଉ ନ ଦେଖାଅ ମୋତେ ॥
ସେ ଆପଣା ମନ ମଧ୍ୟେ କଲା ଅନୁମାନ । ଏହାର ବଧ ଚାହାନ୍ତି କରୁଣାନିଧାନ ॥୨॥

---

ଏବଂ ଶ୍ରେଷ୍ଠ ମନ୍ତ୍ରୀ ଥିଲା । ସେ ଅତି ପବିତ୍ର ନୀତିବାକ୍ୟ କହିବାକୁ ଲାଗିଲା, "ହେ ବତ୍ସ ! ମୋର ମଧ୍ୟ କେତୋଟି ଉପଦେଶ ତୁମକୁ ଦେବାର ଅଛି, ଶୁଣ—॥ ୩ ॥ "ଯେଉଁ ଦିନଠାରୁ ତୁମେ ସୀତାଙ୍କୁ ହରଣ କରି ଆଣିଛ, ସେହି ଦିନଠାରୁ ଏତେ ଅଶୁଭ ଲକ୍ଷଣ ଦେଖାଯାଉଅଛି ଯେ, ତାହାକୁ ବର୍ଣ୍ଣନା କରି ହେବନାହିଁ । ବେଦ-ପୁରାଣମାନେ ଯାହାଙ୍କର ଯଶ ଗାନ କରିଅଛନ୍ତି, ସେହି ଶ୍ରୀରାମଙ୍କ ପ୍ରତି ବିମୁଖ ହୋଇ କେହି କେବେ ସୁଖ ପାଇନାହିଁ ॥ ୪ ॥ ଦୋହା :—ଭାଇ ହିରଣ୍ୟକଶିପୁ ସହିତ ହିରଣ୍ୟାକ୍ଷ ଏବଂ ବଳବାନ୍ ମଧୁକୈଟଭଙ୍କୁ ଯେ ବଧ କରିଅଛନ୍ତି, ସେହି କୃପାସାଗର ଭଗବାନ୍ ଶ୍ରୀରାମଙ୍କ ରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି ॥ ୪୮ (କ) ॥ ସେ କାଳସ୍ୱରୂପ, ଖଳ-ବନ ଦହନ ନିମନ୍ତେ ଅଗ୍ନି, ଗୁଣାକାର ଏବଂ ଜ୍ଞାନଘନ । ଶିବ ଏବଂ ବ୍ରହ୍ମା ସୁଦ୍ଧା ଯାହାଙ୍କୁ ସେବା କରନ୍ତି, ତାଙ୍କ ସହିତ ଶତ୍ରୁତା କାହିଁକି ? ॥୪୮(ଖ)॥ ଚୌପାଈ—ଅତଏବ ଶତ୍ରୁତା ଛାଡି ତାହାଙ୍କ ହସ୍ତରେ ଜାନକୀଙ୍କୁ ସମର୍ପଣ କରିଦିଅ ଏବଂ କୃପାନିଧାନ ପରମସ୍ନେହୀ ଶ୍ରୀରାମଙ୍କୁ ଭଜନ କର ।" ରାବଣକୁ ତାହାର ବଚନ ବାଣ ପରି କଷ୍ଟକର ବୋଧ ହେଲା । ସେ କହିଲା, "ଆରେ ହତଭାଗ୍ୟ ! ମୁହଁ କଳା କରି ଏଠାରୁ ବାହାରିଯାଅ ॥ ୧॥

ସୋ ଉଠି ଗୟଉ କହତ ଦୁର୍ବାଦା । ତବ ସକୋପ ବୋଲେଉ ଘନନାଦା ॥
କୌତୁକ ପ୍ରାତ ଦେଖିଅହୁ ମୋରା । କରିହଉଁ ବହୁତ କହୌଁ କା ଥୋରା ॥୩॥
ସୁନି ସୁତ ବଚନ ଭରୋସା ଆୱା । ପ୍ରୀତି ସମେତ ଅଂକ ବୈଠାୱା ॥
କରତ ବିଚାର ଭୟଉ ଭିନୁସାରା । ଲାଗେ କପି ପୁନି ଚହୂଁ ଦୁଆରା ॥୪॥
କୋପି କପିନ୍ହ ଦୁର୍ଘଟ ଗଢ଼ୁ ଘେରା । ନଗର କୋଲାହଲୁ ଭୟଉ ଘନେରା ॥
ବିବିଧାୟୁଧ ଧରି ନିସିଚର ଧାଏ । ଗଢ଼ ତେଁ ପର୍ବତ ସିଖର ଢହାଏ ॥୫॥

ଢାଏ ମହୀଧର ସିଖର କୋଟିନ୍ହ ବିବିଧ ବିଧି ଗୋଲା ଚଲେ ।
ଘହରାତ ଜିମି ପବିପାତ ଗର୍ଜତ ଜନୁ ପ୍ରଲୟ କେ ବାଦଲେ ॥
ମର୍କଟ ବିକଟ ଭଟ ଜୁଟତ କଟତ ନ ଲଟତ ତନ ଜର୍ଜର ଭଏ ।
ଗହି ସୈଲ ତେହି ଗଢ଼ ପର ଚଲାୱହିଁ ଜହଁ ସୋ ତହଁ ନିସିଚର ହଏ ॥

---

ଉଠି ଦୁର୍ବଚନ କହି ଗଲା ମାଲ୍ୟବନ୍ତ । ବୋଲେ ମେଘନାଦ ରୋଷେ ହୋଇ ଆରକତ ॥
ପ୍ରଭାତେ ଦେଖିବ ମୋର କୌତୁକ, ଲଙ୍କପ । କରିବି ବହୁତ କହି କି ଲାଭ ଅଳପ ॥୩॥
ଶୁଣି କୁମର ବଚନ ଭରସା ଆସିଲା । ପ୍ରୀତି ସହିତ ଆପଣା ଅଙ୍କେ ବସାଇଲା ॥
କରନ୍ତେ ବିଚାର ନିଶି ଶେଷ ହେଲା ଆସି । ପୁରଦ୍ୱାରେ ଠୁଳ ହେଲେ ଋକ୍ଷ କପି ରାଶି ॥୪॥
କୋପିଣ ଦୁର୍ଗମ ଗଡ ଘେରିଲେ ମର୍କଟ । ନଗରରେ କୋଳାହଳ ହୋଇଲା ବିକଟ ॥
ନାନାବିଧ ଅସ୍ତ୍ର ଧରି ଅସୁରେ ଧାଇଁଲେ । ଗଡ ଉପରୁ ପର୍ବତ ଶିଖର ଫିଙ୍ଗିଲେ ॥୫॥

ଫିଙ୍ଗନ୍ତି ପରବତ ଶିଖର ଶତ ଶତ ବିବିଧ ଗୋଳା ପ୍ରହାରନ୍ତି ।
ବଜ୍ରପାତ ପରାୟେ ଶବ୍ଦ ହୁଏ, ପ୍ରଳୟ-ବାରିଦ ସଦୃଶ ଗର୍ଜନ୍ତି ।
ସମ୍ମୁଖେ ବିକଟ ବାନର, ଯୁଝି ହୋଇଲେ ଜରଜର,
ଉଠାଇ ସେହି ଗିରି ଫିଙ୍ଗନ୍ତି ଦୁର୍ଗୋପରି ମରନ୍ତି ବହୁ ନିଶାଚର ॥

---

ତୁ ବୃଢା ହୋଇଗଲୁଣି, ନଚେତ୍ ତୋତେ ମାରି ପକାଇଥା'ନ୍ତି । ଏବେ ମୋ ଆଖି ଆଗରେ ତୋ ମୁହଁ ଦେଖାନାହିଁ ।" ରାବଣର ଏହି ବଚନ ଶୁଣି ମାଲ୍ୟବନ୍ତ ମନେ ମନେ ଅନୁମାନ କଲା ଯେ, କୃପାନିଧାନ ଶ୍ରୀରାମ ଏବେ ଏହାକୁ ବଧ କରିବାକୁ ଚାହିଁଲେଣି ॥ ୨ ॥ ସେ ରାବଣକୁ କଠୋର ବଚନ କହି କହି ଉଠି ଚାଲିଗଲା । ତତ୍ପରେ ମେଘନାଦ କ୍ରୋଧରେ କହିଲା, "ସକାଳେ ମୋ କରାମତି ଦେଖିବ । ମୁଁ ବହୁତ କିଛି କରିବି; ଅଳ୍ପ କହି ବା ଲାଭ କ'ଣ ? ॥ ୩ ॥ ପୁତ୍ରର ବଚନ ଶୁଣି ରାବଣର ମନରେ ଭରସା ଆସିଗଲା । ସେ ପ୍ରେମରେ ତାହାକୁ କୋଳରେ ବସାଇଲା । ବିଚାର କରୁ କରୁ ସକାଳ ହୋଇଗଲା । ବାନରମାନେ ଯାଇ ପୁଣି ପୁରଦ୍ୱାର ନିକଟରେ ଲାଗିଗଲେ ॥ ୪ ॥ ବାନରମାନେ କ୍ରୋଧ କରି ଦୁର୍ଗମ ଗଡକୁ ଘେରିଗଲେ । ନଗରରେ ବଡ କୋଳାହଳ ବ୍ୟାପିଗଲା । ରାକ୍ଷସମାନେ ବହୁବିଧ ଅସ୍ତ୍ରଶସ୍ତ୍ର ଧାରଣ

ମେଘନାଦ ସୁନି ଶ୍ରବନ ଅସ ଗଢ଼ୁ ପୁନି ଛେଂକା ଆଇ ।
ଉତରେ୍ୟା ବୀର ଦୁର୍ଗ ତେଁ ସନ୍ମୁଖ ଚଲେ୍ୟା ବଜାଇ ॥୪୯॥
କହଁ କୋସଲାଧୀସ ଦ୍ୱୌ ଭ୍ରାତା । ଧନ୍ୱୀ ସକଲ ଲୋକ ବିଖ୍ୟାତା ॥
କହଁ ନଲ ନୀଲ ଦୁବିଦ ସୁଗ୍ରୀୱା । ଅଂଗଦ ହନୁମଂତ ବଲ ସୀଁୱା ॥୧॥
କହାଁ ବିଭୀଷନୁ ଭ୍ରାତାଦ୍ରୋହୀ । ଆଜୁ ସବହି ହଠି ମାରଉଁ ଓହୀ ॥
ଅସ କହି କଠିନ ବାନ ସଂଧାନେ । ଅତିସୟ କ୍ରୋଧ ଶ୍ରବନ ଲଗି ତାନେ ॥୨॥
ସର ସମୂହ ସୋ ଛାଡ଼ୈ ଲାଗା । ଜନୁ ସପଚ୍ଛ ଧାୱହିଁ ବହୁ ନାଗା ॥
ଜହଁ ତହଁ ପରତ ଦେଖିଅହିଁ ବାନର । ସନ୍ମୁଖ ହୋଇ ନ ସକେ ତେହି ଅବସର ॥୩॥

---

ଶୁଣି ଇନ୍ଦ୍ରଜିତ ଶ୍ରବଣେ ଏମନ୍ତ ନଗର ଘେରା ହୋଇଲା ।
ଦୁର୍ଗରୁ ବାହାର ହୋଇ ବୀରବର ଡାକି ସମ୍ମୁଖେ ଚଳିଲା ॥୪୯॥
କାହିଁଛନ୍ତି କୋଶଳେଶ ବୀର ବେନିଭ୍ରାତ । ଧନୁର୍ଦ୍ଧାରୀ ଯେ ସକଳ ଲୋକରେ ବିଖ୍ୟାତ ॥
କାହିଁ ନଳ ନୀଳ କାହିଁ ଦ୍ୱିବିଧ ମଇନ୍ଦ । କାହିଁ ହନୁମାନ ବଳୀ ସୁଗ୍ରୀବ ଅଙ୍ଗଦ ॥୧॥
କାହିଁ ଗଲା ଭ୍ରାତା-ଦ୍ରୋହୀ ମନ୍ତ୍ରୀ ବିଭୀଷଣ । ଆଜି ସର୍ବେ, ହଠି ତାଙ୍କୁ କରିବି ନିଧନ ॥
ଏମନ୍ତ କହି କଠିନ ବାଣ ସନ୍ଧାନିଲା । ଅତି କୋପ କରି କର୍ଣ୍ଣ ପର୍ଯ୍ୟନ୍ତେ ଟାଣିଲା ॥ ॥
ଛାଡ଼ିବାକୁ ଲାଗିଲା ସେ ଶର ଅଗଣନ । ସପକ୍ଷ ନାଗ ଅସଂଖ୍ୟ ଧାଆନ୍ତି ଯେସନ ॥
ଯେଣେ ତେଣେ ମରକଟ ପଡ଼ିବା ଦିଶନ୍ତି । ସେକାଳେ କେହି ସମ୍ମୁଖ ହୋଇ ନ ପାରନ୍ତି ॥୩॥

---

କରି ଧାଇଁଲେ ଏବଂ ସେମାନେ ଗଡ଼ ଉପରୁ ପର୍ବତ ଶୃଙ୍ଗମାନ ଖସାଇଲେ ॥ ୫ ॥ ଛନ୍ଦ :—ସେମାନେ କୋଟି କୋଟି ପର୍ବତଶୃଙ୍ଗ ଖସାଇଲେ । ଅନେକ ପ୍ରକାରର ଗୋଲା ଚଳିବାକୁ ଲାଗିଲା । ସେହି ଗୋଲାମାନ ଏପରି ଗର୍ଜନ କରୁଥାଏ, ଯେପରି ବଜ୍ରପାତ ହେଉଛି ! ଯୋଦ୍ଧାମାନେ ପ୍ରଳୟକାଳୀନ ବାଦଲ ପରି ଗର୍ଜନ କରୁଥା'ନ୍ତି । ବିକଟ ବାନର ଯୋଦ୍ଧାମାନେ ଲଢ଼ିବାରେ ଲାଗିଥା'ନ୍ତି, ଆହତ ହେଉଥା'ନ୍ତି ଏବଂ ସେମାନଙ୍କ ଶରୀର ଜର୍ଜର ହେଉଥାଏ । ତଥାପି ସେମାନେ ସାହସ ହରାଉ ନ ଥା'ନ୍ତି । ସେମାନେ ପାହାଡ଼ ଉଠାଇ ଦୁର୍ଗ ଉପରକୁ ଫିଙ୍ଗୁଥା'ନ୍ତି । ରାକ୍ଷସମାନେ ଯେ ଯେଉଁଠାରେ ଥାଆନ୍ତି, ନିହତ ହେଉଥା'ନ୍ତି ॥ ଦୋହା :—ମେଘନାଦ ଯେତେବେଳେ ଶୁଣିଲା ଯେ, ବାନରମାନେ ପୁଣି ଦୁର୍ଗକୁ ଘେରିଗଲେଣି, ସେତେବେଳେ ସେ ବୀର ଦୁର୍ଗରୁ ଓହ୍ଲାଇଲା ଏବଂ ରଣବାଦ୍ୟ ବଜାଇ ସେମାନଙ୍କ ଆଗକୁ ଚାଲିଆସିଲା ॥ ୪୯ ॥ ଚୌପାଇ :—ମେଘନାଦ ଚିତ୍କାର କରି କହିଲା, "ସମସ୍ତ ଲୋକରେ ପ୍ରସିଦ୍ଧ ଧନୁର୍ଦ୍ଧର କୋଶଳାଧୀଶ ଭ୍ରାତା ଦୁହେଁ କେଉଁଠାରେ ? ନଳ, ନୀଳ ଦ୍ୱିବିଦ, ସୁଗ୍ରୀବ ଏବଂ ବଳସୀମା ଅଙ୍ଗଦ ଓ ହନୁମାନ୍ କେଉଁଠି ? ॥ ୧ ॥ ଭ୍ରାତୃଦ୍ରୋହୀ ବିଭୀଷଣ କେଉଁଠି ? ଆଜି ମୁଁ ସମସ୍ତଙ୍କୁ ଏବଂ ସେହି ଦୁଷ୍ଟକୁ ଅବଶ୍ୟ ମାରିବି ।" ଏହା କହି ସେ ଧନୁରେ କଠୋର ବାଣ ଯୋଖିଲା ଏବଂ ଅତ୍ୟଧିକ କ୍ରୋଧ କରି

ସୋ ଉଠି ଗୟଉ କହତ ଦୁର୍ବାଦା । ତବ ସକୋପ ବୋଲେଉ ଘନନାଦା ॥
କୌତୁକ ପ୍ରାତ ଦେଖିଅହୁ ମୋରା । କରିହଉଁ ବହୁତ କହୌଁ କା ଥୋରା ॥୩॥
ସୁନି ସୁତ ବଚନ ଭରୋସା ଆୱା । ପ୍ରୀତି ସମେତ ଅଂକ ବୈଠାୱା ॥
କରତ ବିଚାର ଭୟଉ ଭିନୁସାରା । ଲାଗେ କପି ପୁନି ଚହୂଁ ଦୁଆରା ॥୪॥
କୋପି କପିହ୍ନ ଦୁର୍ଘଟ ଗଢ଼ୁ ଘେରା । ନଗର କୋଲାହଲୁ ଭୟଉ ଘନେରା ॥
ବିବିଧାୟୁଧ ଧର ନିସିଚର ଧାଏ । ଗଢ଼ ତେଁ ପର୍ବତ ଶିଖର ଢହାଏ ॥୫॥

ଢାହେ ମହୀଧର ସିଖର କୋଟିହ୍ନ ବିବିଧ ବିଧି ଗୋଲା ଚଲେ ।
ଘହରାତ ଜିମି ପବିପାତ ଗର୍ଜତ ଜନୁ ପ୍ରଲୟ କେ ବାଦଲେ ॥
ମର୍କଟ ବିକଟ ଭଟ ଜୁଟତ କଟତ ନ ଲଟତ ତନ ଜର୍ଜର ଭଏ ।
ଗହି ସୈଲ ତେହି ଗଢ଼ ପର ଚଲାୱହିଁ ଜହଁ ସୋ ତହଁ ନିସିଚର ହଏ ॥

---

ଉଠି ଦୁର୍ବଚନ କହି ଗଲା ମାଲ୍ୟବନ୍ତ । ବୋଲେ ମେଘନାଦ ରୋଷେ ହୋଇ ଆରକତ ॥
ପ୍ରଭାତେ ଦେଖିବ ମୋର କୌତୁକ, ଲଙ୍କପ । କରିବି ବହୁତ କହି କି ଲାଭ ଅଳପ ॥୩॥
ଶୁଣି କୁମର ବଚନ ଭରସା ଆସିଲା । ପ୍ରୀତି ସହିତ ଆପଣା ଅଙ୍କେ ବସାଇଲା ॥
କରନ୍ତେ ବିଚାର ନିଶି ଶେଷ ହେଲା ଆସି । ଚାରିଦ୍ୱାରେ ଠୁଳ ହେଲେ ଋକ୍ଷ କପି ରାଶି ॥୪॥
କୋପିଣ ଦୁର୍ଗମ ଗଡ ଘେରିଲେ ମର୍କଟ । ନଗରରେ କୋଲାହଳ ହୋଇଲା ବିକଟ ॥
ନାନାବିଧ ଅସ୍ତ୍ର ଧରି ଅସୁରେ ଧାଇଁଲେ । ଗଡ ଉପରୁ ପର୍ବତ ଶିଖର ଫିଙ୍ଗିଲେ ॥୫॥

ଫିଙ୍ଗନ୍ତି ପରବତ ଶିଖର ଶତ ଶତ ବିବିଧ ଗୋଳା ପ୍ରହାରନ୍ତି ।
ବଜ୍ରପାତ ପରାୟେ ଶବ୍ଦ ହୁଏ, ପ୍ରଳୟ-ବାରିଦ ସଦୃଶ ଗର୍ଜନ୍ତି ।
ସମ୍ମୁଖେ ବିକଟ ବାନର, ଯୁଝି ହୋଇଲେ ଜରଜର,
ଉଠାଇ ସେହି ଗିରି ଫିଙ୍ଗନ୍ତି ଦୁର୍ଗୋପରି ମରନ୍ତି ବହୁ ନିଶାଚର ॥

---

ତୁ ବୁଢା ହୋଇଗଲୁଣି, ନଚେତ୍ ତୋତେ ମାରି ପକାଇଥା'ନ୍ତି । ଏବେ ମୋ ଆଖି ଆଗରେ ତୋ ମୁହଁ ଦେଖାନାହିଁ ।” ରାବଣର ଏହି ବଚନ ଶୁଣି ମାଲ୍ୟବନ୍ତ ମନେ ମନେ ଅନୁମାନ କଲା ଯେ, କୃପାନିଧାନ ଶ୍ରୀରାମ ଏବେ ଏହାଙ୍କୁ ବଧ କରିବାକୁ ଚାହିଁଲେଣି ॥ ୨ ॥ ସେ ରାବଣଙ୍କୁ କଠୋର ବଚନ କହି କହି ଉଠି ଚାଲିଗଲା । ତତ୍ପରେ ମେଘନାଦ କ୍ରୋଧରେ କହିଲା, “ସକାଳେ ମୋ କରାମତି ଦେଖିବ । ମୁଁ ବହୁତ କିଛି କରିବି; ଅଳ୍ପ କହି ବା ଲାଭ କ'ଣ ? ॥ ୩ ॥ ପୁତ୍ରର ବଚନ ଶୁଣି ରାବଣର ମନରେ ଭରସା ଆସିଗଲା । ସେ ପ୍ରେମରେ ତାହାଙ୍କୁ କୋଳରେ ବସାଇଲା । ବିଚାର କରୁ କରୁ ସକାଳ ହୋଇଗଲା । ବାନରମାନେ ଯାଇ ପୁଣି ଚାରିଦ୍ୱାର ନିକଟରେ ଲାଗିଗଲେ ॥ ୪ ॥ ବାନରମାନେ କ୍ରୋଧ କରି ଦୁର୍ଗମ ଗଡକୁ ଘେରିଗଲେ । ନଗରରେ ବଡ କୋଳାହଳ ବ୍ୟାପିଗଲା । ରାକ୍ଷସମାନେ ବହୁବିଧ ଅସ୍ତ୍ରଶସ୍ତ୍ର ଧାରଣ

ମେଘନାଦ ସୁନି ଶ୍ରବନ ଅସ ଗଢ଼ୁ ପୁନି ଛେଂକା ଆଇ ।
ଉତରେଉ ବୀର ଦୁର୍ଗ ତେଁ ସନ୍ମୁଖ ଚଲ୍ୟୋ ବଜାଇ ॥୪୯॥

କହଁ କୋସଲାଧୀସ ଦ୍ୱୌ ଭ୍ରାତା । ଧନ୍ୱୀ ସକଲ ଲୋକ ବିଖ୍ୟାତା ॥
କହଁ ନଲ ନୀଲ ଦୁବିଦ ସୁଗ୍ରୀୱା । ଅଂଗଦ ହନୂମଂତ ବଲ ସୀଁୱା ॥୧॥
କହାଁ ବିଭୀଷନୁ ଭ୍ରାତାଦ୍ରୋହୀ । ଆଜୁ ସବହି ହଠି ମାରଉଁ ଓହୀ ॥
ଅସ କହି କଠିନ ବାନ ସଂଧାନେ । ଅତିସୟ କ୍ରୋଧ ଶ୍ରବନ ଲଗି ତାନେ ॥୨॥
ସର ସମୂହ ସୋ ଛାଡ଼ୈ ଲାଗା । ଜନୁ ସପଚ୍ଛ ଧାୱହିଁ ବହୁ ନାଗା ॥
ଜହଁ ତହଁ ପରତ ଦେଖିଅହିଁ ବାନର । ସନ୍ମୁଖ ହୋଇ ନ ସକେ ତେହି ଅବସର ॥୩॥

---

ଶୁଣି ଇନ୍ଦ୍ରଜିତ ଶ୍ରବଣେ ଏମନ୍ତ ନଗର ଘେର ହୋଇଲା ।
ଦୁର୍ଗରୁ ବାହାର ହୋଇ ବୀରବର ଡାକ ସମ୍ମୁଖେ ଚଳିଲା ॥୪୯॥

କାହିଁଛନ୍ତି କୋଶଳେଶ ବୀର ବେନଭ୍ରାତ । ଧନୁର୍ଦ୍ଧାରୀ ଯେ ସକଳ ଲୋକରେ ବିଖ୍ୟାତ ॥
କାହିଁ ନଳ ନୀଳ କାହିଁ ଦ୍ୱିବିଧ ମୟନ୍ଦ । କାହିଁ ହନୁମାନ ବଳୀ ସୁଗ୍ରୀବ ଅଙ୍ଗଦ ॥୧॥
କାହିଁ ଗଲା ଭ୍ରାତା-ଦ୍ରୋହୀ ମନ୍ତ୍ରୀ ବିଭୀଷଣ । ଆଜ ସର୍ବେ, ହଠି ତାଙ୍କୁ କରିବି ନିଧନ ॥
ଏମନ୍ତ କହି କଠିନ ବାଣ ସନ୍ଧାନିଲା । ଅତି କୋପ କରି କର୍ଣ୍ଣ ପର୍ଯ୍ୟନ୍ତେ ଟାଣିଲା ॥ ॥
ଛାଡ଼ିବାକୁ ଲାଗିଲା ସେ ଶର ଅଗଣନ । ସପକ୍ଷ ନାଗ ଅସଂଖ୍ୟ ଧାଆନ୍ତି ଯେସନ ॥
ଯେଉଁଣେ ତେଉଁଣେ ମର୍କଟ ପଡ଼ିବା ଦିଶନ୍ତି । ସେକାଳେ କେହି ସମ୍ମୁଖ ହୋଇ ନ ପାରନ୍ତି ॥୩॥

---

କରି ଧାଇଁଲେ ଏବଂ ସେମାନେ ଗଡ଼ ଉପରୁ ପର୍ବତ ଶୃଙ୍ଗମାନ ଖସାଇଲେ ॥ ୫ ॥ ଛନ୍ଦ :—ସେମାନେ କୋଟି କୋଟି ପର୍ବତଶୃଙ୍ଗ ଖସାଇଲେ । ଅନେକ ପ୍ରକାରର ଗୋଳା ଚଳିବାକୁ ଲାଗିଲା । ସେହି ଗୋଳାମାନ ଏପରି ଗର୍ଜନ କରୁଥାଏ, ଯେପରି ବଜ୍ରପାତ ହେଉଛି ! ଯୋଦ୍ଧାମାନେ ପ୍ରଳୟକାଳୀନ ବାଦଲ ପରି ଗର୍ଜନ କରୁଥା'ନ୍ତି । ବିକଟ ବାନର ଯୋଦ୍ଧାମାନେ ଲଢ଼ିବାରେ ଲାଗିଥା'ନ୍ତି, ଆହତ ହେଉଥା'ନ୍ତି ଏବଂ ସେମାନଙ୍କ ଶରୀର ଜର୍ଜର ହେଉଥାଏ । ତଥାପି ସେମାନେ ସାହସ ହରାଉ ନ ଥା'ନ୍ତି । ସେମାନେ ପାହାଡ଼ ଉଠାଇ ଦୁର୍ଗ ଉପରକୁ ଫିଙ୍ଗୁଥା'ନ୍ତି । ରାକ୍ଷସମାନେ ଯେ ଯେଉଁଠାରେ ଥାଆନ୍ତି, ନିହତ ହେଉଥା'ନ୍ତି ॥ ଦୋହା :— ମେଘନାଦ ଯେତେବେଳେ ଶୁଣିଲା ଯେ, ବାନରମାନେ ପୁଣି ଦୁର୍ଗକୁ ଘେରିଗଲେଣି, ସେତେବେଳେ ସେ ବୀର ଦୁର୍ଗରୁ ଓହ୍ଲାଇଲା ଏବଂ ରଣବାଦ୍ୟ ବଜାଇ ସେମାନଙ୍କ ଆଗକୁ ଚାଲିଆସିଲା ॥ ୪୯ ॥ ଚୌପାଇ :—ମେଘନାଦ ଚିତ୍କାର କରି କହିଲା, "ସମସ୍ତ ଲୋକରେ ପ୍ରସିଦ୍ଧ ଧନୁର୍ଦ୍ଧର କୋଶଳାଧୀଶ ଭ୍ରାତା ଦୁହେଁ କେଉଁଠାରେ ? ନୀଳ, ନଳ ଦ୍ୱିବିଦ, ସୁଗ୍ରୀବ ଏବଂ ବଳସୀମା ଅଙ୍ଗଦ ଓ ହନୁମାନ୍ କେଉଁଠି ? ॥ ୧ ॥ ଭ୍ରାତୃଦ୍ରୋହୀ ବିଭୀଷଣ କେଉଁଠି ? ଆଜି ମୁଁ ସମସ୍ତଙ୍କୁ ଏବଂ ସେହି ଦୁଷ୍ଟକୁ ଅବଶ୍ୟ ମାରିବି ।" ଏହା କହି ସେ ଧନୁରେ କଠୋର ବାଣ ଯୋଖିଲା ଏବଂ ଅତିଶୟ କ୍ରୋଧ କରି

ଜହଁ ତହଁ ଭାଗି ଚଲେ କପି ରୀଛା । ବିସରୀ ସବହି ଜୁଦ୍ଧ କୈ ଈଛା ।
ସୋ କପି ଭାଲୁ ନ ରନ ମହଁ ଦେଖା । କୀନ୍ହେସି ଜେହି ନ ପ୍ରାନ ଅବସେଷା ।୪।
ଦସ ଦସ ସର ସବ ମାରେସି ପରେ ଭୂମି କପି ବୀର ।
ସିଂହନାଦ କରି ଗର୍ଜା ମେଘନାଦ ବଲ ଧୀର ॥୫୦॥
ଦେଖି ପବନସୁତ କଟକ ବିହାଲା । କ୍ରୋଧବଂତ ଜନୁ ଧାୟଉ କାଲା ॥
ମହାସୈଲ ଏକ ତୁରତ ଉପାରା । ଅତି ରିସ ମେଘନାଦ ପର ଡାରା ॥୧॥
ଆୱତ ଦେଖି ଗୟଉ ନଭ ସୋଈ । ରଥ ସାରଥୀ ତୁରଗ ସବ ଖୋଈ ॥
ବାର ବାର ପଚାର ହନୁମାନା । ନିକଟ ନ ଆୱ ମରମୁ ସୋ ଜାନା ।୨।

---

ଭଲ୍ଲୁ ବ୍ୟାକୁଳରେ ବୃକ୍ଷ କପି ପଳାଇଲେ । ଯୁଦ୍ଧ ଅଭିଳାଷ ସର୍ବେ ମନୁ ପାଶୋରିଲେ ।
ସମରେ ଦେଖା ନ ଗଲେ ସେ କପି ଋକ୍ଷେଶ । ନ କଲା ଯାହାଙ୍କୁ ପ୍ରାଣ ମାତ୍ର ଅବଶେଷ ।୪।
ଦଶ ଦଶ ଶର ମାରନ୍ତେ ନିକର ପଡ଼ିଲେ ମର୍କଟ ବୀର ।
ତହୁଁ ସିଂହନାଦ କରି ମେଘନାଦ ଗରଜିଲା ରଣଧୀର ।୫୦।
ବ୍ୟାକୁଳ ସେନାଙ୍କୁ ଦେଖି ପବନନନ୍ଦନ । କ୍ରୋଧାତୁର ହୋଇ କାଳ ଧାଇଁଲେ ଯେହ୍ନ ॥
ଶୀଘ୍ର ସେ ଏକ ବିଶାଳ ଶୈଳ ଉପାଡ଼ିଲେ । ଅତି ରୋଷେ ମେଘନାଦ ଉପରେ ଫିଙ୍ଗିଲେ ।୧।
ଆସିବା ଦେଖି ଆକାଶେ ଗଲା ସେ ପଳାଇ । ରଥ ସାରଥି ତୁରଙ୍ଗ ସକଳ ହରାଇ ।
ବାରମ୍ବାର ଡାକ ଦିଏ ସମୀର କୁମାର । ମରମ ଜାଣି ସେ ପାଶେ ନ ଆସଇ ତାର ।୨।

---

ତାହାଙ୍କୁ ବାକି ପର୍ଯ୍ୟନ୍ତ ଛାଡ଼ିଲା ॥ ୨ ॥ ସେ ଶରସମୂହ ଛୁଟିବାକୁ ଲାଗିଲେ । ଯେପରି ଅବା ବହୁତ ପକ୍ଷଧାରୀ ସର୍ପ ଦୌଡ଼ି ଯାଉଅଛନ୍ତି ! ଏଣେତେଣେ ବାନରମାନେ ଟଳି ପଡ଼ିଯାଉଥିବାର ଦେଖା ଯାଉଥାଆନ୍ତି । ସେହି ସମୟରେ କେହି ମଧ୍ୟ ତାହାର ଆଗରେ ଛିଡ଼ା ହୋଇ ପାରିଲେ ନାହିଁ ॥ ୩ ॥ ଭଲ୍ଲୁକ ଓ ବାନରମାନେ ଏଣେତେଣେ ଦୌଡ଼ି ପଳାଇଗଲେ । ସମସ୍ତେ ଯୁଦ୍ଧ କରିବାର ଇଚ୍ଛା ପାଶୋରି ପକାଇଲେ । ରଣଭୂମିରେ ଏପରି ଗୋଟିଏ ହେଲେ ହେଲେ ବାନର ବା ଭଲ୍ଲୁକ ଦେଖାଗଲେ ନାହିଁ, ଯାହାଙ୍କୁ କି ସେ ପ୍ରାଣମାତ୍ର ଅବଶେଷ ନ କରି ପକାଇଲା । ଅର୍ଥାତ୍ ରଣଭୂମିରେ ପଡ଼ିଥିବା ପ୍ରତ୍ୟେକ ବାନର ବା ଭଲ୍ଲୁକ କେବଳ ପ୍ରାଣ ଧରି ବଞ୍ଚି ରହିଲେ ମାତ୍ର । କିନ୍ତୁ ପ୍ରତ୍ୟେକର ବଳ ଓ ପୁରୁଷାର୍ଥ ସବୁ ଲୁଣ୍ଠିଗଲା ॥ ୪ ॥ ଦୋହା :—ସେ ସମସ୍ତଙ୍କୁ ଦଶ ଦଶ କରି ଶର ମାରିଲା ଏବଂ ବାନର ବୀରମାନେ ପୃଥ୍ବୀ ଉପରେ ଖସି ପଡ଼ିଲେ । ବଳବାନ୍ ଓ ଧୀର ମେଘନାଦ ସିଂହ ସଦୃଶ ନାଦ କରି ଗର୍ଜନ କରିବାକୁ ଲାଗିଲା ॥ ୫୦ ॥ ଚୌପାଈ :—ସମସ୍ତ ସେନାଙ୍କୁ ବ୍ୟାକୁଳ ଦେଖି ପବନପୁତ୍ର ହନୁମାନ୍ କ୍ରୋଧ କରି ଏପରି ଦୌଡ଼ିଲେ, ଯେପରି ଅବା କାଳ ଧାଇଁ ଆସୁଅଛି ! ସେ ତୁରନ୍ତ ଗୋଟିଏ ବଡ଼ ଭାରୀ ପାହାଡ଼ ଉପାଡ଼ି ଆଣିଲେ ଏବଂ ଅତ୍ୟନ୍ତ କ୍ରୋଧର ସହିତ ତାହା ମେଘନାଦ ଉପରକୁ ଛାଡ଼ିଲେ ॥ ୧ ॥ ପାହାଡ଼ ଆସୁଥିବାର ଦେଖି

ରଘୁପତି ନିକଟ ଗୟଉ ଘନନାଦା । ନାନା ଭାଁତି କରେସି ଦୁର୍ବାଦା ॥
ଅସ୍ତ୍ର ସସ୍ତ୍ର ଆୟୁଧ ସବ ଡାରେ । କୌତୁକହିଁ ପ୍ରଭୁ କାଟି ନିବାରେ ॥୩॥
ଦେଖି ପ୍ରତାପ ମୂଢ ଖିସିଆନା । କରୈ ଲାଗ ମାୟା ବିଧି ନାନା ॥
ଜିମି କୋଉ କରୈ ଗରୁଡ ସୈଁ ଖେଲା । ଡରପାୱୈ ଗହି ସ୍ୱଲ୍ପ ସପେଲା ॥୪॥

ଜାସୁ ପ୍ରବଲ ମାୟା ବସ ସିବ ବିରଂଚି ବଡ ଛୋଟ ।
ତାହି ଦେଖାୱଇ ନିସିଚର ନିଜ ମାୟା ମତି ଖୋଟ ॥୫୧॥

ନଭ ଚଢି ବରଷ ବିପୁଲ ଅଂଗାରା । ମହି ତେଁ ପ୍ରଗଟ ହୋହିଁ ଜଲଧାରା ॥
ନାନା ଭାଁତି ପିସାଚ ପିସାଚୀ । ମାରୁ କାଟୁ ଧୁନି ବୋଲହିଁ ନାଚୀ ॥୧॥
ବିଷ୍ଟା ପୂୟ ରୁଧିର କଚ ହାଡା । ବରଷଇ କବହୁଁ ଉପଲ ବହୁ ଛାଡା ॥
ବରଷି ଧୂରି କୀନ୍ହେସି ଅଁଧିଆରା । ସୂଝ ନ ଆପନ ହାଥ ପସାରା ॥୨॥

---

ରଘୁପତି ନିକଟକୁ ଗଲା ଶକ୍ରଜିତ । କହୁ କହୁ ଦୁର୍ବଚନ ପାମର ଅମିତ ॥
ଅସ୍ତ୍ର ଶସ୍ତ୍ରାଦି ଆୟୁଧ ମାରିଲା ବହୁତ । ତିଳ ସମ କାଟି ନିବାରିଲେ ରଘୁସୁତ ॥୩॥
ବିଲୋକି ପ୍ରତାପ ମୂଢ ଅତ୍ୟନ୍ତ କୋପିଲା । ନାନାବିଧ ମାୟା ତହୁଁ ରଚନ କରିଲା ॥
ଯେପରି କେହୁ ଗରୁଡ ସଙ୍ଗେ ଖେଳୁଥାଏ । କ୍ଷୁଦ୍ର ସର୍ପ ଶିଶୁ ଧରି ତାହାକୁ ଡରାଏ ॥୪॥

ଯାହାଙ୍କ ପ୍ରବଳ ମାୟା ବଶୀଭୂତ ବିଧି ଶିବ ଶ୍ରେଷ୍ଠ ବଡ ।
ତାହାଙ୍କୁ ଦେଖାଏ ନିଜ ମାୟା ବଳ ନିଶାଚର ମତି ଜଡ ॥୫୧॥

ଗଗନେ ଚଢି ବରଷେ ବିପୁଳ ଅନଳ । ପ୍ରକଟ ହୁଏ ମହୀରେ ବହୁ ସ୍ରୋତ ଜଳ ॥
ଅନେକ ପ୍ରକାରେ ପୁଣି ପିଶାଚ ପିଶାଚୀ । 'ହାଣ' 'ମାର' 'କାଟ' ଧ୍ୱନି କରୁଥାନ୍ତି ନାଚି ॥୧॥
ବିଷ୍ଠା ପୂଜ ହାଡ ବାଳ ରୁଧିର ଆବର । ବୃଷ୍ଟି କରେ କେବେ କେବେ ଅସଂଖ୍ୟ ପ୍ରସ୍ତର ॥
ଧୂଳି ବରଷାଇ ଦିଗ ଅନ୍ଧାର କରିଲା । ଆପଣା ହସ୍ତ ପ୍ରସାରି ଦେଖା ନ ପଡିଲା ॥୨॥

---

ସେ ଆକାଶକୁ ଉଡିଗଲା । ତାହାର ରଥ, ସାରଥି ଓ ଘୋଡାମାନେ ନଷ୍ଟଭ୍ରଷ୍ଟ ହୋଇଗଲେ । ହନୁମାନ୍ ତାହାକୁ ବାରମ୍ବାର ଆହ୍ୱାନ କରିବାରେ ଲାଗିଥା'ନ୍ତି । କିନ୍ତୁ ତାଙ୍କ ବଳର ରହସ୍ୟ ଜାଣି ମେଘନାଦ ନିକଟକୁ ଆସୁ ନ ଥାଏ ॥ ୨ ॥ ତଦନନ୍ତର ମେଘନାଦ ଶ୍ରୀ ରଘୁନାଥଙ୍କ ନିକଟକୁ ଗଲା ଏବଂ ସେ ତାହାଙ୍କ ପ୍ରତି ଅନେକ ପ୍ରକାର କଠୋର ବଚନ ପ୍ରୟୋଗ କଲା । ତତ୍ପରେ ସେ ତାଙ୍କ ଉପରେ ଅସ୍ତ୍ରଶସ୍ତ୍ର ଓ ସମସ୍ତ ପ୍ରକାର ଆୟୁଧ ପ୍ରୟୋଗ କଲା । ପ୍ରଭୁ ଅବଲୀଳାକ୍ରମେ ସେ ସମସ୍ତଙ୍କୁ କାଟି ଅଲଗା କରିଦେଲେ ॥ ୩ ॥ ଶ୍ରୀରାମଙ୍କ ପ୍ରତାପ ଦେଖି ସେହି ମୂର୍ଖ ଲଜ୍ଜିତ ହେଲା ଏବଂ ନାନାବିଧ ମାୟା କରିବାକୁ ଲାଗିଲା । କୌଣସି ବ୍ୟକ୍ତି ସତେ ଅବା କ୍ଷୁଦ୍ର ସର୍ପ ଶିଶୁକୁ ହସ୍ତରେ ଧରି ଗରୁଡକୁ ଡରାଇ ତାହା ସଙ୍ଗେ କ୍ରୀଡା-କୌତୁକ କରୁଅଛି ' ॥ ୪ ॥
ଦୋହା :—ଶିବ ଓ ବ୍ରହ୍ମା ପର୍ଯ୍ୟନ୍ତ ସାନବଡ ସମସ୍ତ ଦେବତା ଯାହାଙ୍କର ଅତି ବଳବତୀ ମାୟାର ବଶୀଭୂତ, ନୀଚବୁଦ୍ଧି ନିଶାଚର ତାହାଙ୍କୁ ନିଜର ମାୟା

କପି ଅକୁଲାନେ ମାୟା ଦେଖେଁ । ସବ କର ମରନ ବନା ଏହି ଲେଖେଁ ॥
କୌତୁକ ଦେଖି ରାମ ମୁସୁକାନେ । ଭଏ ସଭୀତ ସକଲ କପି ଜାନେ ।୩।
ଏକ ବାନ କାଟୀ ସବ ମାୟା । ଜିମି ଦିନକର ହର ତିମିର ନିକାୟା ॥
କୃପାଦୃଷ୍ଟି କପି ଭାଲୁ ବିଲୋକେ । ଭଏ ପ୍ରବଲ ରନ ରହହିଁ ନ ରୋକେ ॥୪॥

ଆୟସୁ ମାଗି ରାମ ପହିଁ ଅଂଗଦାଦି କପି ସାଥ ।
ଲଛିମନ ଚଲେ କ୍ରୁଦ୍ଧ ହୋଇ ବାନ ସରାସନ ହାଥ ॥୫୨॥

ଛତଜ ନୟନ ଉର ବାହୁ ବିସାଲା । ହିମଗିରି ନିଭ ତନୁ କଛୁ ଏକ ଲାଲା ॥
ଇହାଁ ଦସାନନ ସୁଭଟ ପଠାଏ । ନାନା ଅସ୍ତ୍ର ସସ୍ତ୍ର ଗହି ଧାଏ ॥୧॥

---

ବ୍ୟାକୁଳ ହୋଇଲେ କପି ମାୟା ଦେଖିକରି । ସମସ୍ତଙ୍କ ମୃତ୍ୟୁ ହେବ, ଭାବିଲେ ଏପରି ॥
କଉତୁକ ଦେଖି ରାମ ମନେ ମୃଦୁ ହସି । ସକଳ କପିଙ୍କୁ ଭୟେ କାତର ଜାଣିଣ ॥୩॥
ଏକ ବାଣ ମାରି ମାୟା କାଟିଲେ ସକଳ । ଯେସନ୍ତେ ଦିନକର ହରେ ତିମିର-ପଟଳ ॥
କୃପାଦୃଷ୍ଟି କରି ଭାଲୁ କପିଙ୍କୁ ଦେଖନ୍ତେ । ହେଲେ ରଣେ ପ୍ରବଳ, ନ ରହନ୍ତି ରଖନ୍ତେ ॥୪॥

ମାଗି ଅନୁମତି ପ୍ରଭୁଙ୍କ ନିକଟୁ ଅଙ୍ଗଦାଦିଙ୍କ ସଙ୍ଗତେ ।
ଚଳିଲେ ଲକ୍ଷ୍ମଣ ତହୁଁ ସକୋପିଣ ବାଣ ଶରାସନ ହସ୍ତେ ॥୫୨॥

ଅରୁଣ ନୟନ ହୃଦ ବାହୁ ସୁବିଶାଳ । ହିମଗିରି ସମ ତନୁ ଶ୍ଳେଷେ କିଛି ଲାଲ ॥
ତେଣେ ପଠାଇଲା ବହୁ ବୀର ଲଙ୍କପତି । ନାନା ଅସ୍ତ୍ର ଶସ୍ତ୍ର ଧରି ଧାଇଁଲେ ଝଟତି ॥'॥

---

ଦେଖାଉଛୁ ' ॥ ୫୧ ॥ ଚୌପାଈ :—ଆକାଶରେ ଚଢି ସେ ରାକ୍ଷସ ବହୁତ ଅଗ୍ନି ବୃଷ୍ଟି କରିବାକୁ ଲାଗିଲା । ଭୂମିରୁ ଜଳଧାରା ବାହାରିବାକୁ ଲାଗିଲା । ଅନେକ ପ୍ରକାର ପିଶାଚ ତଥା ପିଶାଚୀମାନେ ନାଚି ନାଚି 'ମାର', 'କାଟ' ଆଦି ଧ୍ୱନି କରିବାକୁ ଲାଗିଲେ ॥୧॥ ସେ ରାକ୍ଷସ କେତେବେଳେ ବିଷ୍ଠା, ପୂଜ, ରକ୍ତ, ବାଳ ଓ ଅସ୍ଥି ବୃଷ୍ଟି କରୁଥାଏ ଏବଂ ଆଉ କେତେବେଳେ ବହୁତ ପଥର ଫିଙ୍ଗି ଦେଉଥାଏ । ପୁଣି ସେ ଧୂଳି ବୃଷ୍ଟି କରି ଏପରି ଭାବରେ ଅନ୍ଧକାର କରିଦେଲା ଯେ, ନିଜର ପ୍ରସାରିତ ହସ୍ତ ମଧ୍ୟ ଦୃଷ୍ଟିଗୋଚର ହେଉନାହିଁ ॥ ୨ ॥ ମାୟା ଦେଖି ବାନରମାନେ ବ୍ୟାକୁଳ ହୋଇ ଉଠିଲେ । ସେମାନେ ଭାବିବାକୁ ଲାଗିଲେ, ଏହିପରି ଭାବରେ ସମସ୍ତଙ୍କ ମରଣ ଆସି ପହଞ୍ଚିଲା । ଏହି କୌତୁକ ଦେଖି ଶ୍ରୀରାମ ମୃଦୁକ ହସିଲେ । ସମସ୍ତ ବାନର ଭୟଭୀତ ହୋଇ ପଡ଼ିଅଛନ୍ତି ବୋଲି ସେ ଜାଣି ପାରିଲେ ॥ ୩ ॥ ସେତେବେଳେ ଶ୍ରୀରାମ ଗୋଟିଏ ମାତ୍ର ଶରରେ ସୂର୍ଯ୍ୟ ଅନ୍ଧକାର-ସମୂହକୁ ହରଣ କରିଦେଲା ପରି ସମସ୍ତ ମାୟା କାଟି ଦୂର କରି ପକାଇଲେ । ତଦନନ୍ତର ସେ କୃପାପୂର୍ଣ୍ଣ ଦୃଷ୍ଟିରେ ବାନର-ଭାଲୁମାନଙ୍କ ଆଡକୁ ଚାହିଁଲେ । ଫଳତଃ ସେମାନେ ଏପରି ପ୍ରବଳ ହୋଇ ଉଠିଲେ ଯେ, ରଣ ନିମନ୍ତେ ସେମାନଙ୍କୁ ବାରଣ କଲେ ମଧ୍ୟ ସେମାନେ ବିରତ ହେଉ ନ ଥା'ନ୍ତି ॥ ୪ ॥ ଦୋହା :—ଶ୍ରୀରାମଙ୍କଠାରୁ ଆଜ୍ଞା ମାଗି ଲକ୍ଷଣ ହସ୍ତରେ ଧନୁଶର ଧରି ଅଙ୍ଗଦ ଆଦି

ଭୂଧର ନଖ ବିଟପାୟୁଧ ଧାରୀ । ଧାଏ କପି ଜୟ ରାମ ପୁକାରୀ ॥
ଭିରେ ସକଲ ଜୋରହିଁ ସନ ଜୋରୀ । ଇତ ଉତ ଜୟ ଇଚ୍ଛା ନହିଁ ଥୋରୀ ॥୨॥
ମୁଠିକହ୍ନ ଲାତନ୍ହ ଦାଁତନ୍ହ କାଟହିଁ । କପି ଜୟସୀଲ ମାରି ପୁନି ଡାଟହିଁ ॥
ମାରୁ ମାରୁ ଧରୁ ଧରୁ ଧରୁ ମାରୂ । ସୀସ ତୋରି ଗହି ଭୁଜା ଉପାରୂ ॥୩॥
ଅସି ରବ ପୂରି ରହୀ ନବ ଖଂଡା । ଧାୱହିଁ ଜହଁ ତହଁ ରୁଂଡ ପ୍ରଚଂଡା ॥
ଦେଖହିଁ କୌତୁକ ନଭ ସୁରବୃଂଦା । କବହୁଁକ ବିସମୟ କବହୁଁ ଅନଂଦା ॥୪॥

ରୁଧିର ଗାଡ ଭରି ଭରି ଜମ୍ୟୋ ଊପର ଧୂରି ଉଡ଼ାଇ ।
ଜନୁ ଅଂଗାର ରାସିନ୍ହ ପର ମୃତକ ଧୂମ ରହ୍ୟୋ ଛାଇ ॥୪୩॥

---

ନଖ ଶଇଳ ଆବର ଦ୍ରୁମାୟୁଧ-ଧାରୀ । ଧାଇଁଲେ ବାନରେ 'ଜୟ ଶ୍ରୀରାମ ଉଚ୍ଚାରି' ॥
ଯୁଝନ୍ତି ସକଳେ ନିଜ ନିଜ ଯୋଡି ଦେଖି । ଦେନି ପକ୍ଷ ପ୍ରବଳ ଜୟ ଲାଭ ଇଚ୍ଛା ଲେଖି ॥୨॥
ଗୋଇଠା ବିଧା ମାରିଣ ଦଶନେ କାଟନ୍ତି । କପି ଜୟଶୀଳ ଶତ୍ରୁ ମାରି ଡାକିକନ୍ତି ॥
'ମାର ମାର' 'ଧର ଧର' 'ଧରିଧରି ମାର' । 'ଶିର ଭାଙ୍ଗି ଶତ୍ରୁ ଭୁଜ ଧରିଣ ଉପାଡ' ॥୩॥
ଏହି ଧ୍ୱନି ପୂରି ରହିଥିଲା ନବଖଣ୍ଡ । ଯେଣେ ତେଣେ ଧାଉଁଥାନ୍ତି କବନ୍ଧ ପ୍ରଚଣ୍ଡ ॥
ବିଲୋକନ୍ତି କଉତୁକ ନଭେ ସୁରବୃନ୍ଦ । କେବେହେଁ ବିଷାଦ କେବେ ହୁଅନ୍ତି ଆନନ୍ଦ ॥୪॥

ପୂରି ପୂରି ଗର୍ତ୍ତି ଜମିଯାଏ ରକ୍ତ ଉପରେ ଧୂଳି ଉଡଇ ।
ଯେସନେ ପାବକ ଉପରେ ମୃତକ ପାଉଁଶ ଢାଙ୍କି ରହଇ ॥୪୩॥

---

ବାନରଗଣଙ୍କ ସଙ୍ଗେ କ୍ରୋଧରେ ଚଳିଲେ ॥ ୫୨ ॥ ଚୌପାଈ '—ତାଙ୍କର ନେତ୍ର ଅରୁଣ, ପ୍ରଶସ୍ତ ବକ୍ଷ ଓ ବିଶାଳ ବାହୁ । ହିମାଚଳ ପର୍ବତ ସମାନ ଉଜ୍ଜ୍ୱଳ (ଗୌର) ଶରୀର ଈଷତ୍ ରକ୍ତିମାଯୁକ୍ତ । ଏଣେ ରାବଣ ମଧ୍ୟ ବଡ ବଡ ଯୋଦ୍ଧା ପଠାଇଲା । ସେମାନେ ଅନେକ ଅସ୍ତ୍ରଶସ୍ତ୍ର ଧରି ଧାଇଁଲେ ॥ ୧ ॥ ପର୍ବତ, ନଖ ଓ ବୃକ୍ଷ ସବୁକୁ ଆୟୁଧ ରୂପେ ଧରି ବାନରମାନେ 'ଶ୍ରୀରାମଚନ୍ଦ୍ରଙ୍କ ଜୟ' ଧ୍ୱନି କରି ଦୌଡିଲେ । ବାନର ଓ ରାକ୍ଷସମାନେ ଯୋଡିଯୋଡି ହୋଇ ଲଢିବାକୁ ଲାଗିଲେ । ଏ ପକ୍ଷ, ସେ ପକ୍ଷ— ଉଭୟ ପକ୍ଷରେ ଜୟ କରିବାର ଇଚ୍ଛା ପ୍ରବଳ ॥ ୨ ॥ ବାନରମାନେ ସେମାନଙ୍କୁ ବିଧା ଓ ଗୋଇଠା ମାରୁଥାଆନ୍ତି, ଦାନ୍ତରେ ଆଘାତ କରୁଥାଆନ୍ତି । ବିଜୟଶୀଳ ବାନରମାନେ ସେମାନଙ୍କୁ ମାରି ପୁଣି ଧମକାଉଥା'ନ୍ତି । 'ମାର', 'ମାର', 'ଧର', 'ଧର' ଧରି ମାରିପକାଅ, ମୁଣ୍ଡ ଫଟାଇଦିଅ ଏବଂ ବାହୁ ଧରି ଉପାଡି ପକାଅ" ଆଦି ଧ୍ୱନି ନବଖଣ୍ଡରେ ପରିପୂର୍ଣ୍ଣ । ପ୍ରଚଣ୍ଡ କବନ୍ଧ (ଗଣ୍ଡି) ସବୁ ଏଣେ ତେଣେ ଦୌଡୁଥା'ନ୍ତି । ଆକାଶରେ ଦେବତାମାନେ ଏହି କୌତୁକ ଦେଖୁଥାଆନ୍ତି । ସେମାନଙ୍କ ମନରେ କେତେବେଳେ କ୍ଷୋଭ ଜାତ ହେଉଥାଏ ଏବଂ କେତେବେଳେ ବା ଆନନ୍ଦ ॥ ୪ ॥ ଦୋହା '—ଗର୍ତ୍ତମାନଙ୍କରେ ରକ୍ତ ଭର୍ତ୍ତି ହୋଇ ଜମିଯାଇଥାଏ ଏବଂ ତାହାର ଉପରେ ଧୂଳି ଉଡି ପଡିଯାଇଥାଏ । ସେହି ଦୃଶ୍ୟ ଦେଖି ମନେ ହେଉଥାଏ, ସତେ ଅବା

ଘାୟଲ ବୀର ବିରାଜହିଁ କୈସେ । କୁସୁମିତ କିଂସୁକ କେ ତରୁ ଜୈସେ ॥
ଲଛିମନ ମେଘନାଦ ଦ୍ୱୌ ଜୋଧା । ଭିରହିଁ ପରସପର କରି ଅତି କ୍ରୋଧା ॥୧॥
ଏକହି ଏକ ସକଇ ନହିଁ ଜୀତୀ । ନିସିଚର ଛଲ ବଲ କରଇ ଅନୀତୀ ॥
କ୍ରୋଧବନ୍ତ ତବ ଭୟଉ ଅନଂତା । ଭଂଜେଉ ରଥ ସାରଥୀ ତୁରଂତା ॥୨॥
ନାନା ବିଧି ପ୍ରହାର କର ସେଷା । ରାଚ୍ଛସ ଭୟଉ ପ୍ରାନ ଅବସେଷା ॥
ରାବନ ସୁତ ନିଜ ମନ ଅନୁମାନା । ସଂକଟ ଭୟଉ ହରିହି ମମ ପ୍ରାନା ॥୩॥
ବୀରଘାତିନୀ ଛାଡ଼ିସି ସାଁଗୀ । ତେଜପୁଂଜ ଲଛିମନ ଉର ଲାଗୀ ॥
ମୁରୁଛା ଭଈ ସକ୍ତି କେ ଲାଗେଁ । ତବ ଚଲି ଗୟଉ ନିକଟ ଭୟ ତ୍ୟାଗେଁ ॥୪॥

ମେଘନାଦ ସମ କୋଟି ସତ ଜୋଧା ରହେ ଉଠାଇ ।
ଜଗଦାଧାର ସେସ କିମି ଉଠୈ ଚଲେ ଖିସିଆଇ ॥୫୪॥

---

ଆହତ ହୋଇଣ ବୀରେ ବିରାଜନ୍ତି ତେମନ୍ତେ । କିଂଶୁକ ବିଟପ ଶୋଭେ କୁସୁମିତେ ଯେମନ୍ତେ ॥
ଲକ୍ଷ୍ମଣ ବାରିଦନାଦ ବେନି ଯୋଦ୍ଧା ଅତି । କ୍ରୋଧ କରି ପରସ୍ପର ସଂଗ୍ରାମେ ଯୁଝନ୍ତି ॥୧॥
ଏକକୁ ଆରେକ ରଣେ ଜିଣି ନ ପାରଇ । ନିଶାଚର ଛଳ ବଳ ଅନୀତି କରଇ ॥
ହୋଇଲେ ଅନନ୍ତ ତହୁଁ ଅତ୍ୟନ୍ତ କ୍ରୋଧିତ । ଭାଙ୍ଗିଲେ ରଥ ସାରଥି ତୁରଙ୍ଗ ତୁରିତ ॥୨॥
ନାନା ପ୍ରକାର ଆୟୁଧ ପ୍ରହାରିଲେ ଶେଷ । ରାକ୍ଷସ ହୋଇଲା ରହି ପ୍ରାଣ ଅବଶେଷ ॥
ରାବଣି ନିଜ ହୃଦୟେ କଲା ଅନୁମାନ । ସଙ୍କଟ ପଡ଼ିଲା ଏବେ ହରିବ ମୋ ପ୍ରାଣ ॥୩॥
ବୀର-ଘାତିନୀ ଶାୟକ ସନ୍ଧାନ ଛାଡ଼ିଲା । ତେଜ-ପୁଞ୍ଜ ଲକ୍ଷ୍ମଣଙ୍କ ହୃଦୟେ ବିନ୍ଧିଲା ॥
ମୂର୍ଚ୍ଛିତ ହୋଇଲେ ଶେଷ ବାଜନ୍ତେ ଶକତି । ତହୁଁ ଭୟ ପରିହରି ଚାଲିଗଲା କତି ॥୪॥

ମେଘନାଦ ପରି କୋଟି ଶତ ଯୋଦ୍ଧା ଉଠାଇ ଥକି ରହିଲେ ।
କେମନ୍ତେ ବିଶ୍ୱାଧାର ଅନନ୍ତ ଉଠିବେ ଲଜ୍ଜା ପାଇ ବାହୁଡ଼ିଲେ ॥୫୪॥

---

ନିଆଁ ରଡ଼ନ୍ତିଙ୍କୁ ପାଉଁଶ ଘୋଡ଼ାଇ ରଖିଛୁ ! ॥ ୫୩ ॥ ଚୌପାଈ :—ଆହତ ବୀରଗଣ କୁସୁମ-ବିକଶିତ ପଲାଶ ବୃକ୍ଷ ସଦୃଶ ସୁଶୋଭିତ ହେଉଥା'ନ୍ତି । ଲକ୍ଷ୍ମଣ ଓ ମେଘନାଦ, ଉଭୟ ଯୋଦ୍ଧା କୋପାନ୍ୱିତ ହୋଇ ପରସ୍ପର ସହିତ ଲଢ଼ୁଥା'ନ୍ତି ॥ ୧ ॥ କେହି କାହାରିକୁ ଜିଣିପାରୁ ନ ଥା'ନ୍ତି । ରାକ୍ଷସ ଛଳବଳ, ମାୟା କୌଶଳ ଓ ଅନୀତି କରୁଥାଏ । ତେଣୁ ଭଗବାନ୍ ଅନନ୍ତ (ଲକ୍ଷ୍ମଣ) କ୍ରୁଦ୍ଧ ହେଲେ । ସେ ଶୀଘ୍ର ତାହାର ରଥ ଭାଙ୍ଗିଦେଲେ ଏବଂ ସାରଥିକୁ ଖଣ୍ଡବିଖଣ୍ଡିତ କରି ପକାଇଲେ ॥ ୨ ॥ ଶେଷ (ଲକ୍ଷ୍ମଣ) ତାହା ଉପରେ ଅନେକ ପ୍ରକାରେ ପ୍ରହାର କରିବାକୁ ଲାଗିଲେ । ରାକ୍ଷସର ପ୍ରାଣ ମାତ୍ର ଅବଶେଷ ରହିଲା । ରାବଣର ପୁତ୍ର ମେଘନାଦ ମନରେ ଅନୁମାନ କଲା, "ଏବେ ମୋ ପ୍ରାଣ ସଙ୍କଟ ଆସି ପହଞ୍ଚିଲାଣି ଏବଂ ଏ ନିଶ୍ଚୟ ମୋର ପ୍ରାଣ ହରଣ କରି ନେବେ ।" ॥ ୩ ॥ ତତ୍ପରେ ସେ ବୀରଘାତିନୀ ଶକ୍ତି ଚଳାଇଲା । ସେହି ତେଜପୂର୍ଣ୍ଣ ଶକ୍ତି ଲକ୍ଷ୍ମଣଙ୍କ ବକ୍ଷରେ ବିଦ୍ଧ ହେଲା । ଶକ୍ତି ଲାଗିବା ମାତ୍ରେ ତାଙ୍କର ମୂର୍ଚ୍ଛା ଆସିଗଲା ।

ସୁନୁ ଗିରିଜା କ୍ରୋଧାନଲ ଜାସୁ । ଜାରଇ ଭୁବନ ଚାରି ଦସ ଆସୂ ॥
ସକ ସଂଗ୍ରାମ ଜୀତି କୋ ତାହୀ । ସେବହିଁ ସୁର ନର ଅଗ ଜଗ ଜାହୀ ॥୧॥
ଯହ କୌତୂହଲ ଜାନଇ ସୋଈ । ଜା ପର କୃପା ରାମ କୈ ହୋଈ ॥
ସଂଧ୍ୟା ଭଇ ଫିରି ଦ୍ୱୌ ବାହ୍ନୀ । ଲଗେ ସଂଭାରନ ନିଜ ନିଜ ଅନୀ ॥୨॥
ବ୍ୟାପକ ବ୍ରହ୍ମ ଅଜିତ ଭୁବନେଶ୍ୱର । ଲଛିମନ କହାଁ ବୂଝ କରୁନାକର ॥
ତବ ଲଗି ଲୈ ଆୟଉ ହନୁମାନା । ଅନୁଜ ଦେଖି ପ୍ରଭୁ ଅତି ଦୁଖ ମାନା ॥୩॥
ଜାମବଂତ କହ ବୈଦ ସୁଷେନା । ଲଂକାଁ ରହଇ କୋ ପଠଈ ଲେନା ॥
ଧରି ଲଘୁ ରୂପ ଗୟଉ ହନୁମଂତା । ଆନେଉ ଭବନ ସମେତ ତୁରଂତା ॥୪॥

---

ଶୁଣ ଗିରିସୁତା, ଯାର କ୍ରୋଧ-ହୁତାଶନ । କ୍ଷଣକେ ଜାଳି ପାରଇ ଚଉଦ ଭୁବନ ॥
ସଂଗ୍ରାମରେ କିଏ ଜିଣି ପାରିବ ତାହାଙ୍କୁ । ସୁରନର ଚରାଚର ସେବନ୍ତି ଯାହାଙ୍କୁ ॥୧॥
ଏହି କଉତୁକ ଜାଣି ସେ ଜନ ପାରଇ । ଯାହା ଉପରେ ରାମଙ୍କ କରୁଣା ହୁଅଇ ॥
ହୁଅନ୍ତେ ସନ୍ଧ୍ୟା ଉଭୟ ବାହିନୀ ଫେରିଲେ । ନିଜ ନିଜ ସେନ୍ୟ ସର୍ବେ ସମ୍ଭାଳି ଲାଗିଲେ ॥୨॥
ବ୍ୟାପକ ବ୍ରହ୍ମ ଅଜିତ ଭୁବନ ଈଶ୍ୱର । "ଲକ୍ଷ୍ମଣ କାହିଁ" ପୁଚ୍ଛିଲେ କରୁଣାସାଗର ॥
ତେତେବେଳେ ନେଇ ଆସିଲା ହନୁମାନ । ଭ୍ରାତାଙ୍କୁ ଦେଖି ଦୁଃଖିତ ହେଲେ ଭଗବାନ॥୩॥
ଲଙ୍କାରେ ରହଇ ବୈଦ୍ୟ, ବୋଲେ ଋକ୍ଷରାଜ । ସୁଷେଣ ନାମ, କାହାକୁ ପଠାଇ ଅଣାଅ ॥
କ୍ଷୁଦ୍ର ରୂପ ଧରି ଗଲା ପବନ କୁମର । ଘେନି ଆସିଲା ଭବନ ସମେତ ସତ୍ୱର ॥୪॥

---

ସେତେବେଳେ ମେଘନାଦ ଭୟ ଖାଇ ତାଙ୍କ ନିକଟକୁ ଚାଲିଗଲା ॥ ୪ ॥ ଦୋହା :— ମେଘନାଦ ପରି ଅଗଣିତ ଯୋଦ୍ଧା ତାହାଙ୍କୁ ଉଠାଉଥା'ନ୍ତି । କିନ୍ତୁ ଜଗଦାଧାର ଶ୍ରୀଶେଷ (ଲକ୍ଷ୍ମଣ) ସେମାନଙ୍କ ଦ୍ୱାରା ଉଠନ୍ତେ ବା କିପରି ? ତେଣୁ ସେମାନେ ସମସ୍ତେ ଲଜ୍ଜିତ ହୋଇ ଚାଲିଗଲେ ॥ ୫୪ ॥ ଚୌପାଈ :—ଶିବ କହନ୍ତି, "ହେ ଗିରିଜେ ! ଶୁଣ । ପ୍ରଳୟ-କାଳରେ ଯେଉଁ ଶେଷନାଗଙ୍କ କ୍ରୋଧାଗ୍ନି ଚଉଦ ଭୁବନକୁ ଜାଳି ପକାଏ ଏବଂ ଦେବତା, ମନୁଷ୍ୟ ଓ ସମସ୍ତ ଚରାଚର ଜୀବ ଯାହାଙ୍କୁ ସେବା କରନ୍ତି, ତାହାଙ୍କୁ ସଂଗ୍ରାମରେ କିଏ ଜିଣି ପାରିବ ? ॥ ୧ ॥ ଶ୍ରୀରାମଙ୍କର ଯାହା ପ୍ରତି କୃପାଦୃଷ୍ଟି ଥିବ, କେବଳ ସେହି ଏହି ଲୀଳାକୁ ଜାଣି ପାରିବ ।" ସନ୍ଧ୍ୟା ହେବାରୁ ଉଭୟ ପକ୍ଷର ସେନାମାନେ ଲେଉଟି ପଡିଲେ । ସେନାପତିମାନେ ଆପଣା ଆପଣାର ସେନାମାନଙ୍କୁ ସମ୍ଭାଳିବାକୁ ଲାଗିଲେ ॥ ୨ ॥ ବ୍ୟାପକ, ବ୍ରହ୍ମ, ଅଜେୟ, ସଂପୂର୍ଣ୍ଣ ବ୍ରହ୍ମାଣ୍ଡର ଈଶ୍ୱର ଏବଂ କରୁଣାକର ଶ୍ରୀରାମଚନ୍ଦ୍ର ପଚାରିଲେ, "ଲକ୍ଷ୍ମଣ କେଉଁଠି ?" ସେତେବେଳକୁ ହନୁମାନ୍ ତାହାଙ୍କୁ ନେଇ ଆସିଥା'ନ୍ତି । ସାନ ଭାଇର ଏପରି ଦଶା ଦେଖି ପ୍ରଭୁ ଅତିଶୟ ଦୁଃଖିତ ହେଲେ ॥ ୩ ॥ ଜାମ୍ବବାନ୍ କହିଲେ "ଲଙ୍କାରେ ସୁଷେଣ ବୈଦ୍ୟ ରହନ୍ତି, ତାଙ୍କୁ ଡାକିଆଣିବା ନିମନ୍ତେ କାହାକୁ ପଠାଯିବ ?" ହନୁମାନ୍ କ୍ଷୁଦ୍ର ରୂପ ଧାରଣ କରି ଗଲେ ଏବଂ ସୁଷେଣଙ୍କୁ ତାଙ୍କ ଗୃହ ସମେତ ତୁରନ୍ତ

ରାମ ପଦାରବିଂଦ ସିର ନାୟଉ ଆଇ ସୁଷେନ ।
କହା ନାମ ଗିରି ଔଷଧୀ ଜାହୁ ପବନସୁତ ଲେନ ॥୫୫॥
ରାମ ଚରନ ସରସିଜ ଉର ରାଖୀ । ଚଲା ପ୍ରଭଂଜନ ସୁତ ବଲ ଭାଷୀ ॥
ଉହାଁ ଦୂତ ଏକ ମରମୁ ଜନାୱା । ରାବନୁ କାଲନେମି ଗୃହ ଆୱା ॥୧॥
ଦସମୁଖ କହା ମରମୁ ତେହିଁ ସୁନା । ପୁନି ପୁନି କାଲନେମି ସିରୁ ଧୁନା ॥
ଦେଖତ ତୁମ୍ହହି ନଗରୁ ଜେହିଁ ଜାରା । ତାସୁ ପଂଥ କୋ ରୋକନ ପାରା ॥୨॥
ଭଜି ରଘୁପତି କରୁ ହିତ ଆପନା । ଛାଁଡ଼ହୁ ନାଥ ମୃଷା ଜଲ୍ପନା ॥
ନୀଲ କଂଜ ତନୁ ସୁନ୍ଦର ସ୍ୟାମା । ହୃଦୟଁ ରାଖୁ ଲୋଚନାଭିରାମା ॥୩॥
ମୈଁ ତୈଁ ମୋର ମୂଢ଼ତା ତ୍ୟାଗୁ । ମହା ମୋହ ନିସି ସୂତତ ଜାଗୁ ॥
କାଲ ବ୍ୟାଲ କର ଭଚ୍ଛକ ଜୋଈ । ସପନେହୁଁ ସମର କି ଜୀତିଅ ସୋଈ ॥୪॥

---

ପ୍ରଭୁଙ୍କ ଚରଣ-ସରୋଜେ ପ୍ରଣାମ କଲା ସୁଷେଣ ଆସିଣ ।
ଗିରି ଔଷଧର ନାମ କହି ବୋଲେ, ଆଣ ମାରୁତି, ଯାଇଣ ॥୫୫॥
ରାମ ଚରଣ-ପଙ୍କଜ ହୃଦ ମଧ୍ୟେ ଆଣି । ଚଳେ ପ୍ରଭଞ୍ଜନ-ସୁତ ସ୍ୱବଳ ବଖାଣି ॥
ତେଣେ ଏକ ଚର ଏହି ଭେଦ ଜଣାଇଲା । ରାବଣ କାଳନେମିର ଗୃହକୁ ଆସିଲା ॥୧॥
ଦଶ-ମୁଖ କଥନର ମରମ ସେ ଶୁଣି । କାଳନେମି ନିଜ ଶିର ପିଟେ ପୁଣି ପୁଣି ॥
ତୁମ୍ଭ ଦେଖୁ ଦେଖୁ ଯେହୁ ପୁର ଜାଳିଗଲା । ତାର ମାର୍ଗ ଅବରୁଦ୍ଧ କରିବ କେ ଭଲା ॥୨॥
ଭଜି ଶ୍ରୀ ରଘୁପତିଙ୍କୁ ନିଜ ହିତ କର । ମିଥ୍ୟା ପ୍ରଳାପ ଲଙ୍କେଶ, ଏବେ ପରିହର ॥
ନୀଳ ସରୋରୁହ ରୁଚି କଳେବର ଶ୍ୟାମ । ହୃଦୟ ମଧ୍ୟେ ସ୍ଥାପନ୍ତୁ ନୟନାଭିରାମ ॥୩॥
ତେଜ ଅହଙ୍କାର ମଦ ମମତା ସମସ୍ତ । ମହାମୋହ-ରାତ୍ରେ ହୁଅ ନିଦ୍ରାରୁ ଜାଗ୍ରତ ॥
କାଳରୂପୀ ବ୍ୟାଳର ଯେ ଭକ୍ଷକ ଅଟଇ । ସ୍ୱପ୍ନେହେଁ ତାହାଙ୍କୁ ଜିଣି ଯାଇ କି ପାରଇ ॥୪॥

---

ଉଠାଇ ଆଣିଲେ ॥ ୪ ॥ ଦୋହା :—ସୁଷେଣ ଆସି ଶ୍ରୀରାମଚନ୍ଦ୍ରଙ୍କ ଚରଣାରବିନ୍ଦରେ ମସ୍ତକ ଅବନତ କଲେ । ସେ ଔଷଧ ଓ ପର୍ବତର ନାମ କହିଦେଲେ ଏବଂ କହିଲେ, "ହେ ପବନପୁତ୍ର ! ତୁମେ ଔଷଧି ଆଣିବା ନିମନ୍ତେ ଯାଅ ।" ॥ ୫୫ ॥ ଚୌପାଈ :—ଶ୍ରୀରାମଙ୍କ ଚରଣ-କମଳ-ଯୁଗଳ ହୃଦୟରେ ଧାରଣ କରି ପବନପୁତ୍ର ହନୁମାନ୍ ନିଜର ବଳ ବଖାଣି ( ଅର୍ଥାତ୍ ଏଇ ମୁଁ ଆଣିଲି, ଏପରି କହି ) ଚାଲିଲେ । ଏଣେ ଜଣେ ଗୁପ୍ତଚର ରାବଣକୁ ଏହି ଖବର ଦେଇଦେଲା । ଖବର ପାଇ ରାବଣ କାଳନେମିର ଘରକୁ ଆସିଲା ॥ ୧ ॥ ରାବଣ ତାହାକୁ ସମସ୍ତ ବୃତ୍ତାନ୍ତ କହିଲା । କାଳନେମି ଶୁଣି ବାରମ୍ବାର ମୁଣ୍ଡ ପିଟିଲା । ସେ କହିଲା, "ତୁମ ଆଖି ଆଗରେ ଯେ ନଗରକୁ ଜଳାଇ ପକାଇଲା, ତାହାର ମାର୍ଗ କିଏ ଅବରୋଧ କରି ପାରିବ ? ॥ ୨ ॥ ଶ୍ରୀ ରଘୁନାଥଙ୍କ ଭଜନ କରି ତୁମେ ଆପଣାର କଲ୍ୟାଣ ସାଧନ କର । ହେ ନାଥ ! ମିଥ୍ୟା ଜଳ୍ପନା ତ୍ୟାଗ କର । ନୟନାଭିରାମ ନୀଳକମଳଶ୍ୟାମଳ ଓ ସୁନ୍ଦର ଶରୀରକୁ

ସୁନି ଦସକଂଠ ରିସାନ ଅତି ତେହିଁ ମନ କୀହ୍ନ ବିଚାର ।
ରାମଦୂତ କର ମରୌଁ ବରୁ ଯହ ଖଲ ରତ ମଲ ଭାର ॥୫୬॥
ଅସ କହି ଚଲା ରଚିସି ମଗ ମାୟା । ସର ମଂଦିର ବର ବାଗ ବନାୟା ॥
ମାରୁତସୁତ ଦେଖା ସୁଭ ଆଶ୍ରମ । ମୁନିହି ବୁଝି ଜଲ ପିୟୌଁ ଜାଇ ଶ୍ରମ ॥୧॥
ରାଚ୍ଛସ କପଟ ବେଷ ତହଁ ସୋହା । ମାୟାପତି ଦୂତହି ଚହ ମୋହା ॥
ଜାଇ ପବନସୁତ ନାୟଉ ମାଥା । ଲାଗ ସୋ କହୈ ରାମ ଗୁନ ଗାଥା ॥୨॥
ହୋତ ମହା ରନ ରାବନ ରାମହିଁ । ଜିତିହହିଁ ରାମ ନ ସଂସୟ ୟା ମହିଁ ॥
ଇହାଁ ଭଏଁ ମୈଂ ଦେଖଉଁ ଭାଈ । ଜ୍ଞାନଦୃଷ୍ଟି ବଲ ମୋହି ଅଧିକାଈ ॥୩॥

---

ଶୁଣି ଲଙ୍କ-ନାଥ ହୁଅନ୍ତେ କ୍ରୋଧିତ, ମନେ ସେ କଲା ବିଚାର ।
ରାମ ଦୂତ କରେ ମୃତ୍ୟୁ ଶ୍ରେୟସ୍କର, ଏ ଖଳ ପାପ ଆଗାର ॥୫୬॥
ଏହା କହି ଯାଇ ପଥେ ମାୟା ବିସ୍ତାରିଲା । ସର, ମନ୍ଦିର, ସୁନ୍ଦର ଉଦ୍ୟାନ, ରଚିଲା ॥
ମରୁତ-ସୁତ ବିଲୋକି ରୁଚିର ଆଶ୍ରମ । ମୁନିଙ୍କୁ ପୁଛି ପିଇବି ଜଳ, ଯିବ ଶ୍ରମ ॥୧॥
ରାକ୍ଷସ କପଟ ବେଶେ ତହିଁ ଶୋଭା ପାଏ । ମାୟାପତି ସେବକଙ୍କୁ ମୋହିବାକୁ ଚାହେଁ ॥
ପବନ ତନୟ ଯାଇ କରନ୍ତେ ପ୍ରଣାମ । କହିବାକୁ ଲାଗିଲା ସେ ରାମ ଗୁଣଗ୍ରାମ ॥୨॥
ରାବଣ ରାମଙ୍କ ମହାସମର ଚାଲିଛି । ଜିଣିବେ ରାମ, ସଂଶୟ ନାହିଁ ଏଥି କିଛି ॥
ଏହି ସ୍ଥାନେ ଥାଇ ମୁହିଁ ଦେଖୁଛି ସମସ୍ତ । ଜ୍ଞାନ ଦୃଷ୍ଟି ବଳ ମୋର ଅଧିକ ଅତ୍ୟନ୍ତ ॥୩॥

---

ତୁମ ହୃଦୟରେ ଧାରଣ କର ॥ ୩ ॥ 'ମୁଁ' ଓ 'ତୁ' ଭେଦଭାବ ଏବଂ ମମତା-ମୂର୍ଖତାକୁ ତ୍ୟାଗ କରିଦିଅ । ମହାମୋହ-ନିଶାରେ ଶୋଇ ରହିଛ । ଏବେ ଜାଗି ଉଠ । ଯେ କାଳ-ସର୍ପର ସୁଦ୍ଧା ଭକ୍ଷକ, ରଣରେ ତାହାଙ୍କୁ ଜିଣି ହୁଏ କି ?" ॥ ୪ ॥ ଦୋହା — ତାହାର ଏହି ସବୁ କଥା ଶୁଣି ରାବଣ ଅତିଶୟ କ୍ରୁଦ୍ଧ ହେଲା । ସେତେବେଳେ କାଳନେମି ମନେ ମନେ ବିଚାର କଲା, "ଏହା ହାତରେ ମରିବା ଅପେକ୍ଷା ଶ୍ରୀରାମଙ୍କ ଦୂତ ହାତରେ ମୃତ୍ୟୁ ବରଣ କରିବା ଶ୍ରେୟସ୍କର । ଏ ଦୁଷ୍ଟ ତ ପାପରାଶିରେ ସର୍ବଦା ରତ ।" ॥ ୫୬ ॥ ଚୌପାଇ :— ମନେ ମନେ ଏପରି କହି ସେ ଚାଲିଲା ଏବଂ ମାର୍ଗରେ ମାୟା ରଚନା କଲା । ସରୋବର, ମନ୍ଦିର ଏବଂ ସୁନ୍ଦର ଉଦ୍ୟାନ ନିର୍ମାଣ କଲା । ହନୁମାନ୍ ସୁନ୍ଦର ଆଶ୍ରମ ଦେଖି ଭାବିଲେ, "ମୁନିଙ୍କୁ ପଚାରି ଜଳପାନ କରିବି, ଫଳତଃ ମୋର କ୍ଲାନ୍ତି ଦୂର ହୋଇଯିବ ।" ॥ ୧ ॥ ରାକ୍ଷସ କପଟରେ ମୁନି ବେଶ ଧାରଣ କରି ସେଠାରେ ବିରାଜମାନ ଥିଲା । ସେହି ମୂର୍ଖ ନିଜ ମାୟାରେ ମାୟାପତିଙ୍କର ଦୂତଙ୍କୁ ମୋହିତ କରିବାକୁ ଚାହୁଁଛି । ମାରୁତି ତାହାର ନିକଟକୁ ଯାଇ ମସ୍ତକ ନୁଆଁଇଲେ । ସେହି ଖଳ ଶ୍ରୀରାମଙ୍କ ଗୁଣଗ୍ରାମ କହିବାକୁ ଲାଗିଲା ॥ ୨ ॥ ସେ କହିଲା, "ରାବଣ ଓ ରାମଙ୍କ ମଧ୍ୟରେ ମହାସମର ହେଉଅଛି । ରାମ ଜୟ ଲାଭ କରିବେ, ଏଥିରେ ସନ୍ଦେହ ନାହିଁ । ହେ ଭାଇ ! ମୁଁ ଏହିଠାରେ ରହି ସବୁ ଦେଖୁଅଛି । ମୋର ଜ୍ଞାନଦୃଷ୍ଟିର

ମାଗା ଜଲ ତେହିଁ ଦୀହ୍ନ କମଂଡଲ । କହ କପି ନହିଁ ଅଘାଉଁ ଥୋରେଁ ଜଲ ॥
ସର ମଜ୍ଜନ କରି ଆତୁର ଆଵହୁ । ଦିଚ୍ଛା ଦେଉଁ ଜ୍ଞାନ ଜେହିଁ ପାଵହୁ ॥୪॥
ସର ପୈଠତ କପି ପଦ ଗହା ମକରୀଁ ତବ ଅକୁଲାନ ।
ମାରୀ ସୋ ଧରି ଦିବ୍ୟ ତନୁ ଚଲୀ ଗଗନ ଚଢ଼ି ଜାନ ॥୫୭॥
କପି ତବ ଦରସ ଭଇଉଁ ନିଷ୍ପାପା । ମିଟା ତାତ ମୁନିବର କର ସାପା ॥
ମୁନି ନ ହୋଇ ୟହ ନିସିଚର ଘୋରା । ମାନହୁ ସତ୍ୟ ବଚନ କପି ମୋରା ॥୧॥
ଅସ କହି ଗଈ ଅପଛରା ଜବହୀଁ । ନିସିଚର ନିକଟ ଗୟଉ କପି ତବହୀଁ ॥
କହ କପି ମୁନି ଗୁରୁଦଛିନା ଲେହୂ । ପାଛେଁ ହମହି ମନ୍ତ୍ର ତୁମ୍ହ ଦେହୂ ॥୨॥
ସିର ଲଂଗୂର ଲପେଟି ପଛାରା । ନିଜ ତନୁ ପ୍ରଗଟେସି ମରତୀ ବାରା ॥
ରାମ ରାମ କହି ଛାଡ଼େସି ପ୍ରାନା । ସୁନି ମନ ହରଷି ଚଲେଉ ହନୁମାନା ॥୩॥

---

ମାଗନ୍ତେ ଜଲ, ବଢାଇଦେଲା କମଣ୍ଡଲ । ବୋଲେ କପି, ତୃପ୍ତି ନ ବାହ୍ଵିବ ସ୍ଵଳ୍ପ ଜଲ ॥
ସରେ ସ୍ନାନ ପାନ କରି ବାହୁଡ ବହ୍ନନ । ଦେବି ଗୁରୁଦୀକ୍ଷା, ଜ୍ଞାନ ପାଇବ ଯେସନ ॥୪॥
ପ୍ରବେଶନ୍ତେ ସରେ ମକରୀ ଆତୁରେ କପି ଚରଣ ଧରିଲା ।
ମାରନ୍ତେ ତାହାଙ୍କୁ, ଧରି ଦିବ୍ୟ ବପୁ ଯାନେ ଗଗନେ ଚଳିଲା ॥୫୭॥
କପି, ତବ ଦରଶନେ ହୋଇଲି ନିଷ୍ପାପ । ନଷ୍ଟ ହେଲା ସୁତ, ମୁନିବର ଅଭିଶାପ ॥
ମୁନି ନ ଅଟଇ, ଏହୁ ନିଶାଚର ଘୋର । ବିଶ୍ଵାସ ମାନ ବଚନ ସତ୍ୟ ଏହୁ ମୋର ॥୧॥
ଏହା କହି ଅପସରା ଗଲା ଯେଉଁ କ୍ଷଣି । ନିଶାଚର ପାଶେ କପି ଆସିଲେ ସେ କ୍ଷଣି ॥
ବୋଲେ କପି ମୁନି ' ଗୁରୁଦକ୍ଷିଣା ଯେ ନିଅ । ପଛେ ପୁଣି ତୁମ୍ଭେ ମୋତେ ଗୁରୁଦୀକ୍ଷା ଦିଅ ॥୨॥
ଲାଙ୍ଗୁଳ ଶିରେ ଗୁଡାଇ ମସ୍ତେରେ ନେଲେ ଟାଣି । ମଲାବେଳେ ନିଜ ତନୁ ପ୍ରକଟ କରିଲା ॥
'ରାମ' 'ରାମ' ଉଚ୍ଚାରିଣ ତେଜିଲା ପରାଣ । ଚଳିଲେ ମନ ହରଷେ ପୁଣି ହନୁମାନ ॥୩॥

---

ବହୁତ ବଳ ।" ॥ ୩ ॥ ହନୁମାନ୍ ତାହାଙ୍କୁ ଜଳ ମାଗିଲେ । ସେ କମଣ୍ଡଳୁଟିଏ ଦେଇଦେଲା । ହନୁମାନ୍ କହିଲେ, "ଅଳ୍ପ ଜଳରେ ମୋର ପରିତୃପ୍ତି ହେବନାହିଁ ।" ତହୁଁ ସେ ଛଦ୍ମବେଶୀ ମୁନି କହିଲା, "ସରୋବରରେ ସ୍ନାନ କରି ଶୀଘ୍ର ଲେଉଟି ଆସ । ମୁଁ ତୁମଙ୍କୁ ଦୀକ୍ଷା ଦେବି । ତଦ୍ଦ୍ଵାରା ତୁମେ ଜ୍ଞାନ ଲାଭ କର ।" ॥ ୪ ॥ ଦୋହା :—ସରୋବରରେ ପ୍ରବେଶ କରିବା ମାତ୍ରେ ଗୋଟିଏ ମଗରୀ ହନୁମାନଙ୍କ ପାଦ ଧରି ପକାଇଲା । ହନୁମାନ୍ ତାହାଙ୍କୁ ମାରିଦେଲେ । ତତ୍ପରେ ସେ ଦିବ୍ୟ ଦେହ ଧାରଣ କରି ବିମାନରେ ଚଢି ଆକାଶ ମାର୍ଗରେ ଚାଲିଗଲା ॥ ୫୭ ॥ ଚୌପାଇ — ସେ କହିଲା, "ହେ ବାନର ! ମୁଁ ତୁମ ଦର୍ଶନରେ ପାପମୁକ୍ତ ହୋଇଗଲି । ହେ ବତ୍ସ ! ମୁନିବରଙ୍କର ମୋ ପ୍ରତି ଅଭିଶାପ ଆଜି ମେଣ୍ଟିଗଲା । ହେ କପି ! ଏ ମୁନି ନୁହେଁ, ଘୋର ନିଶାଚର । ମୋ ବଚନ ସତ୍ୟ ମାନ ।" ॥ ୧ ॥ ଏପରି କହି ସେହି ଅପ୍‌ସରା ଚାଲିଯିବା ମାତ୍ରେ ହନୁମାନ୍ ନିଶାଚର ନିକଟକୁ ଗଲେ । ହନୁମାନ୍ କହିଲେ,

ଦେଖା ସୈଲ ନ ଔଷଧ ଚୀହ୍ନା । ସହସା କପି ଉପାରି ଗିରି ଲୀହ୍ନା ॥
ଗହି ଗିରି ନିସି ନଭ ଧାୱତ ଭୟଊ । ଅୱଧପୁରୀ ଉପର କପି ଗୟଊ ॥୫॥

ଦେଖା ଭରତ ବିସାଲ ଅତି ନିସିଚର ମନ ଅନୁମାନି ।
ବିନୁ ଫର ସାୟକ ମାରେଉ ଚାପ ଶ୍ରବନ ଲଗି ତାନି ॥୫୮॥

ପରେଉ ମୁରୁଛି ମହି ଲାଗତ ସାୟକ । ସୁମିରତ ରାମ ରାମ ରଘୁନାୟକ ॥
ସୁନି ପ୍ରିୟ ବଚନ ଭରତ ତବ ଧାଏ । କପି ସମୀପ ଅତି ଆତୁର ଆଏ ॥୧॥
ବିକଲ ବିଲୋକି କୀସ ଉର ଲାୱା । ଜାଗତ ନହିଁ ବହୁ ଭାଁତି ଜଗାୱା ॥
ମୁଖ ମଲୀନ ମନ ଭଏ ଦୁଖାରୀ । କହତ ବଚନ ଭରି ଲୋଚନ ବାରୀ ॥୨॥

---

ଦେଖିଲେ ଗିରି, ଔଷଧ ଚିହ୍ନି ନ ପାରିଲେ । ସହସା କରି ଶଇଳ ଉପାଡି ଆଣିଲେ ॥
ଗିରି ଧରି ନିଶି ନଭେ ଉଡି ଆରମ୍ଭିଲେ । ଅଯୋଧ୍ୟାପୁରୀ ଉପରେ କପି ପହଞ୍ଚିଲେ ॥୫॥

ବିଲୋକି ଭରତ ବିଶାଳ ଅତ୍ୟନ୍ତ ନିଶାଚର ଅନୁମାନି ।
ବିନା ଫଳ ବାଣ ମାରିଲେ ଶ୍ରବଣ ପର୍ଯ୍ୟନ୍ତ କୋଦଣ୍ଡ ଟାଣି ॥୫୮॥

ପଡିଲେ ମୂର୍ଚ୍ଛି ମହୀରେ ଲାଗନ୍ତେ ଶାୟକ । ସ୍ମରି ‘ରାମ’ ‘ରାମ’ ଶ୍ରୀ ରଘୁନାୟକ ॥
ଶୁଣି ପ୍ରିୟ ବାଣୀ ଉଠି ଭରତ ଧାଇଁଲେ । କପି ସମୀପେ ଅତ୍ୟନ୍ତ ଆତୁରେ ଆସିଲେ ॥୧॥
ବିକଳ ଦେଖି କପିଙ୍କୁ ହୃଦୟେ ଲଗାନ୍ତି । ଉଠନ୍ତି ନାହିଁ, ବହୁତ ପ୍ରକାରେ ଉଠାନ୍ତି ॥
ବଦନ ମଳିନ ମନେ ଦୁଃଖୀ ହୋଇ ଭାରି । କହନ୍ତି ବଚନ ନେତ୍ରେ ପୂର୍ଣ୍ଣ କରି ବାରି ॥୨॥

---

"ହେ ମୁନି ! ପ୍ରଥମେ ଗୁରୁ-ଦକ୍ଷିଣା ନେଇ ନିଅନ୍ତୁ । ପରେ ଆପଣ ମୋତେ ମନ୍ତ୍ର ଦିଅନ୍ତୁ ॥ ୩ ॥ ହନୁମାନ୍ ତାହାର ଶିରକୁ ଲାଞ୍ଜରେ ଗୁଡାଇ ତାହାକୁ ଭୂମିରେ ପକାଇ ଦେଲେ । ମରିବା ସମୟରେ ସେ ନିଜର (ରାକ୍ଷସ) ଶରୀର ପ୍ରକାଶ କଲା । ସେ ‘ରାମ’ ‘ରାମ’ କହି ପ୍ରାଣ ଛାଡିଲା । ତାହାର ମୁହଁରୁ ‘ରାମ’ ‘ରାମ’ ଉଚ୍ଚାରଣ ଶୁଣି ହନୁମାନ ମନେ ମନେ ଆନନ୍ଦିତ ହୋଇ ଚାଲିଲେ ॥ ୪ ॥ ସେ ପର୍ବତକୁ ଦେଖିଲେ । ମାତ୍ର ଔଷଧ ଚିହ୍ନି ପାରିଲେ ନାହିଁ । ତେଣୁ ଅବିଳମ୍ବେ ପର୍ବତକୁ ଉପାଡି ପକାଇଲେ । ପର୍ବତ ଧରି ହନୁମାନ ରାତିରେ ଆକାଶମାର୍ଗରେ ଉଡି ଚାଲିଲେ ଏବଂ ଅଯୋଧ୍ୟାପୁରୀ ଉପରେ ପହଞ୍ଚିଗଲେ ॥୫॥ ଦୋହା :—ଭରତ ଆକାଶରେ ଗୋଟାଏ ଅତ୍ୟନ୍ତ ବିଶାଳ ରୂପ ଦେଖିଲେ । ସେତେବେଳେ ସେ ମନେ ମନେ ଅନୁମାନ କଲେ ଯେ, ଏ କୌଣସି ଗୋଟାଏ ରାକ୍ଷସ ଯାଉଛି । ସେ ଧନୁକୁ କାନ ପର୍ଯ୍ୟନ୍ତ ଟାଣି ଗୋଟାଏ ଫଳହୀନ ଶର ମାରିଲେ ॥ ୫୮ ॥ ଚୌପାଇ :—ଶର ବାଜିବା ମାତ୍ରେ ହନୁମାନ୍ ‘ରାମ’ ‘ରାମ’, ‘ରଘୁପତି’ ଉଚ୍ଚାରଣ କରି ମୂର୍ଚ୍ଛିତ ହୋଇ ଭୂମି ଉପରେ ଖସି ପଡିଲେ । ପ୍ରିୟ ବଚନ (‘ରାମ’ ନାମ) ଶୁଣି ଭରତ ଉଠି ଦୌଡିଲେ ଏବଂ ଅତିଶୟ ଆତୁର ହୋଇ ହନୁମାନଙ୍କ ନିକଟକୁ ଆସିଲେ ॥ ୧ ॥ ହନୁମାନଙ୍କୁ ବ୍ୟାକୁଳ ଅବସ୍ଥାରେ ଦେଖି ସେ ତାହାଙ୍କୁ ଆଲିଙ୍ଗନ କରି ପକାଇଲେ । ବହୁତ ପ୍ରକାରେ

ଜେହିଁ ବିଧି ରାମ ବିମୁଖ ମୋହି କୀହ୍ନା । ତେହିଁ ପୁନି ଯହ ଦାରୁନ ଦୁଖ ଦୀହ୍ନା ॥
ଜୌଁ ମୋରେଁ ମନ ବଚ ଅରୁ କାୟା । ପ୍ରୀତି ରାମ ପଦ କମଲ ଅମାୟା ॥୩॥
ତୌ କପି ହୋଉ ବିଗତ ଶ୍ରମ ସୂଲା । ଜୌଁ ମୋ ପର ରଘୁପତି ଅନୁକୂଲା ॥
ସୁନତ ବଚନ ଉଠି ବୈଠ କପୀସା । କହି ଜୟ ଜୟତି କୋସଲାଧୀସା ॥୪॥

ଲୀହ୍ନ କପିହି ଉର ଲାଇ ପୁଲକିତ ତନୁ ଲୋଚନ ସଜଲ ।
ପ୍ରୀତି ନ ହୃଦୟଁ ସମାଇ ସୁମିରି ରାମ ରଘୁକୁଲ ତିଲକ ॥୫୯॥

ତାତ କୁସଲ କହୁ ସୁଖନିଧାନ କୀ । ସହିତ ଅନୁଜ ଅରୁ ମାତୁ ଜାନକୀ ॥
କପି ସବ ଚରିତ ସମାସ ବଖାନେ । ଭଏ ଦୁଖୀ ମନ ମହୁଁ ପଛିତାନେ ॥୧॥

---

ଯେଉଁ ବିଧି କଲା ମୋତେ ରାମ ପରାଙ୍ମୁଖ । ସେହି ପୁଣି ଦେଲା ଆଜି ଏ ଦାରୁଣ ଦୁଃଖ ॥
ଯେବେ ମୋର ଥାଏ ମନ କର୍ମ ବଚନରେ । ନିଷ୍କପଟ ପ୍ରୀତି ରାମ ପଙ୍କଜ ପଦରେ ॥୩॥
ତେବେ କପି ହୋଇଯାଉ ଶୂନ୍ୟ ଶ୍ରମ ଶୂଳ । ଯେବେ ମୋ ଉପରେ ରଘୁପତି ଅନୁକୂଳ ॥
ଉଠି ବସିଲା ବଚନ ଶୁଣି କପିବର । ଉଚ୍ଚାରି 'ଜୟ ଜୟେତି କୋଶଳାଧୀଶ୍ୱର' ॥୪॥

ତନୁ ପୁଲକିତ ନୟନେ ଲୋତକ କପିକୁ ଲଗାଇ ଉରେ ।
ସ୍ମରି ରାମ, ରଘୁ-କୁଳର ତିଳକ ଅନୁରାଗେ ହୃଦ ପୂରେ ।୫୯॥

ଅନୁଜ ଜାନକୀ ସହ କୃପାନିଧିଙ୍କର । କୁଶଳ ମଙ୍ଗଳ କହ ଭ୍ରାତ, କପିବର ॥
କପି ସଂକ୍ଷେପେ ଭଣିଲା ସକଳ ଚରିତ । ଶୁଣନ୍ତେ ହୋଇଲେ ମନେ ଅତି ସନ୍ତାପିତ ॥୧॥

---

ସେ ତାହାଙ୍କୁ ଉଠାଇବାକୁ ଚେଷ୍ଟା କଲେ । କିନ୍ତୁ ସେ ଉଠୁ ନ ଥା'ନ୍ତି । ତେଣୁ ଭରତଙ୍କ ମୁଖ ମଳିନ ହୋଇ ପଡ଼ିଲା । ସେ ମନେ ମନେ ଅତ୍ୟନ୍ତ ଦୁଃଖିତ ହେଲେ ଏବଂ ନେତ୍ରରେ ବିଷାଦର ଅଶ୍ରୁ ଭରି ବଚନ ବୋଇଲେ—॥ ୨ ॥ "ଯେଉଁ ବିଧାତା ମୋତେ ଶ୍ରୀରାମଙ୍କ ପ୍ରତି ବିମୁଖ କରାଇଲେ, ସେହି ପୁଣି ମୋତେ ଏହି ଭୟାନକ ଦୁଃଖ ଦେଲେ । ଯଦି ମନ, ବଚନ ଓ ଶରୀରରେ ଶ୍ରୀରାମଙ୍କ ଚରଣ-କମଳରେ ମୋର ନିଷ୍କପଟ ପ୍ରେମ ଥାଏ ଏବଂ ଯଦି ଶ୍ରୀ ରଘୁନାଥ ମୋ ପ୍ରତି ଅନୁକୂଳ, ତେବେ ଏହି ବାନର କ୍ଲାନ୍ତି ଓ ପୀଡ଼ାରୁ ମୁକ୍ତି ପାଉ ।" ଏହି ବଚନ ଶୁଣିବା ମାତ୍ରେ କପିରାଜ ହନୁମାନ 'କୋଶଳପତି ଶ୍ରୀରାମଚନ୍ଦ୍ରଙ୍କ ଜୟ ହେଉ, ଜୟ ହେଉ' କହି ଉଠି ବସିଲେ ॥ ୩-୪ ॥ ସୋରଠା :—ଭରତ ହନୁମାନ୍‌ଙ୍କୁ ପ୍ରେମରେ ଆଲିଙ୍ଗନ କରି ପକାଇଲେ । ତାଙ୍କ ଶରୀର ପୁଲକିତ ହୋଇ ଉଠିଲା ଏବଂ ନେତ୍ରରେ ଆନନ୍ଦ ଓ ପ୍ରେମର ଅଶ୍ରୁଜଳ ଭରି ଆସିଲା । ରଘୁକୁଳତିଳକ ଶ୍ରୀରାମଚନ୍ଦ୍ରଙ୍କୁ ସ୍ମରଣ କରି ଭରତଙ୍କ ହୃଦୟରେ ପ୍ରୀତିର ସୀମା ରହୁ ନ ଥାଏ ॥ ୫୯ ॥ ଚୌପାଈ :—ଭରତ କହିଲେ, "ହେ ତାତ ! ସାନ ଭାଇ ଲକ୍ଷ୍ମଣ ଓ ମାତା ଜାନକୀଙ୍କ ସମେତ ସୁଖନିଧାନ ଶ୍ରୀରାମଚନ୍ଦ୍ରଙ୍କ କୁଶଳ ସମାଚାର କୁହ । ହନୁମାନ୍ ସଂକ୍ଷେପରେ ସମସ୍ତ କଥା କହିଲେ । ତାହା ସବୁ ଶୁଣି ଭରତ ଦୁଃଖିତ ହେଲେ ଏବଂ ମନେ ମନେ ଅନୁତାପ କରିବାକୁ ଲାଗିଲେ ॥ ୧ ॥—

ଅହହ ଦୈବ ମୈଁ କତ ଜଗ ଜାୟଉଁ । ପ୍ରଭୁ କେ ଏକହୁ କାଜ ନ ଆୟଉଁ ॥
ଜାନି କୁଅବସରୁ ମନ ଧରି ଧୀରା । ପୁନି କପି ସନ ବୋଲେ ବଲବୀରା ॥୨॥
ତାତ ଗହରୁ ହୋଇହି ତୋହି ଜାତା । କାଜୁ ନସାଇହି ହୋତ ପ୍ରଭାତା ॥
ଚଢ଼ୁ ମମ ସାୟକ ସୈଲ ସମେତା । ପଠବୌଁ ତୋହି ଜହଁ କୃପାନିକେତା ॥୩॥
ସୁନି କପି ମନ ଉପଜା ଅଭିମାନା । ମୋରେଁ ଭାର ଚଲିହି କିମି ବାନା ॥
ରାମ ପ୍ରଭାବ ବିଚାରି ବହୋରୀ । ବଂଦି ଚରନ କହ କପି କର ଜୋରୀ ॥୪॥

ତବ ପ୍ରତାପ ଉର ରାଖି ପ୍ରଭୁ ଜୈହଉଁ ନାଥ ତୁରଂତ ।
ଅସ କହି ଆୟସୁ ପାଇ ପଦ ବଂଦି ଚଲେଉ ହନୁମଂତ ॥୬୦(କ)॥
ଭରତ ବାହୁବଲ ସୀଲ ଗୁନ ପ୍ରଭୁପଦ ପ୍ରୀତି ଅପାର ।
ମନ ମହୁଁ ଜାତ ସରାହତ ପୁନି ପୁନି ପବନକୁମାର ॥୬୦(ଖ)॥

---

ଆହାହା ! ଦୈବ ମୁଁ କିପାଁ ଜଗତେ ଜନ୍ମିଲି । ପ୍ରଭୁଙ୍କ ଗୋଟିଏ ମାତ୍ର କାର୍ଯ୍ୟେ ନ ଆସିଲି ॥
ବିଚାରିଣ କୁସମୟ ମନ କରି ସ୍ଥିର । ଭାଷିଲେ ପୁନଶ୍ଚ କପି ଆଗେ ବଳବୀର ॥୨॥
ତୁମ୍ଭ ଯିବାରେ ବିଳମ୍ବ ହୋଇଯିବ, ଭ୍ରାତ । କାର୍ଯ୍ୟ ନଷ୍ଟ ହେବ ନଟେ ହୋଇଲେ ପ୍ରଭାତ ॥
ଚଢ଼ ମୋ ବାଣ ଉପରେ ଶଇଳ ସହିତ । ପଠାଇବି କୃପାସିନ୍ଧୁ ସମୀପେ ତ୍ୱରିତ ॥୩॥
ଶୁଣି ଅଭିମାନ ଉପୁଜିଲା କପି ମନେ । ମୋ ଭାର ସହିଣ ବାଣ ଚଳିବ କେସନେ ॥
ରାମଙ୍କ ପ୍ରତାପ ହୃଦେ ବିଚାରି ଆବର । ବୋଇଲା ଚରଣ ବନ୍ଦି ଯୋଡ଼ି ଦୁଇ କର ॥୪॥

ତୁମ୍ଭର ପ୍ରତାପ ହୃଦେ ସ୍ମରି ନାଥ, ତଡ଼ି ମୁଁ ଯିବି ସତ୍ୱର ।
ଏହା କହି ଆଜ୍ଞା ପାଇ, ପଦ ବନ୍ଦି ଗମିଲା ବାୟୁକୁମର ॥୬୦ (କ)॥
ଭରତଙ୍କ ଶୀଳ, ଗୁଣ, ବାହୁ ବଳ ପ୍ରଭୁ ପଦେ ପ୍ରୀତି ପୂତ ।
ନିଜ ମନେ ମନେ ପ୍ରଶଂସା କରିଣ ଯାଏ ପ୍ରଭଞ୍ଜନସୁତ ॥୬୦ (ଖ)॥

---

"ହା ଦୈବ ! ମୁଁ ଜଗତରେ କାହିଁକି ଜନ୍ମଲାଭ କଲି ? ପ୍ରଭୁଙ୍କର ଗୋଟିଏ ହେଲେ କାମରେ ଲାଗିଲି ନାହିଁ ।" ପୁଣି କୁସମୟ ଜାଣି ମନରେ ଧୈର୍ଯ୍ୟ ଧରି ବଳବୀର ଭରତ ହନୁମାନଙ୍କୁ କହିଲେ—॥ ୨ ॥ ହେ ତାତ ! ତୁମର ଯିବାରେ ବିଳମ୍ବ ହେବ ଏବଂ ସକାଳ ହେଲା ମାତ୍ରେ କାମ ବିଗିଡ଼ିଗଲା ବୋଲି ଜାଣ । ଅତଏବ ତୁମେ ପର୍ବତ ସମେତ ମୋ ଶର ଉପରେ ଚଢ଼ିଯାଅ ଏବଂ ମୁଁ ତୁମକୁ କୃପାଧାମ ଶ୍ରୀରାମ ଥିବା ସ୍ଥାନକୁ ପଠାଇ ଦେବି ।" ॥ ୩ ॥ ଭରତଙ୍କର ଏହି କଥା ଶୁଣି ହନୁମାନଙ୍କ ମନରେ ଅଭିମାନ ଜାତ ହେଲା—"ମୋ ଭାରରେ ଶର ଚାଲିବ କିପରି ?" କିନ୍ତୁ ପୁଣି ଶ୍ରୀରାମଚନ୍ଦ୍ରଙ୍କ ପ୍ରଭାବ ବିଷୟ ବିଚାର କରି ଭରତଙ୍କ ଚରଣ ବନ୍ଦନା-ପୂର୍ବକ ହାତ ଯୋଡ଼ି ବୋଲିଲେ—॥ ୪ ॥ ଦୋହା :—"ହେ ନାଥ ! ହେ ପ୍ରଭୋ ! ମୁଁ ଆପଣଙ୍କ ପ୍ରତାପ ହୃଦୟରେ ଧାରଣ କରି ତୁରନ୍ତ ଚାଲିଯିବି ।" ଏହିପରି କହି ଭରତଙ୍କ ଆଜ୍ଞା ପାଇ ଓ ତାଙ୍କ ଚରଣ ବନ୍ଦନା କରି ହନୁମାନ୍ ଚାଲିଲେ ॥ ୬୦ (କ) ॥

ଉହାଁ ରାମ ଲଛିମନହି ନିହାରୀ । ବୋଲେ ବଚନ ମନୁଜ ଅନୁସାରୀ ॥
ଅର୍ଧରାତି ଗଇ କପି ନହିଁ ଆୟଉ । ରାମ ଉଠାଇ ଅନୁଜ ଉର ଲାୟଉ ॥୧॥
ସକହୁ ନ ଦୁଖିତ ଦେଖି ମୋହି କାଊ । ବଂଧୁ ସଦା ତବ ମୃଦୁଲ ସୁଭାଊ ॥
ମମ ହିତ ଲାଗି ତଜେହୁ ପିତୁ ମାତା । ସହେହୁ ବିପିନ ହିମ ଆତପ ବାତା ॥୨॥
ସୋ ଅନୁରାଗ କହାଁ ଅବ ଭାଈ । ଉଠହୁ ନ ସୁନି ମମ ବଚ ବିକଲାଈ ॥
ଜୌଂ ଜନତେଉଁ ବନ ବଂଧୁ ବିଛୋହୂ । ପିତା ବଚନ ମନତେଉଁ ନହିଁ ଓହୂ ॥୩॥
ସୁତ ବିତ ନାରି ଭବନ ପରିବାରା । ହୋହିଁ ଜାହିଁ ଜଗ ବାରହିଁ ବାରା ॥
ଅସ ବିଚାରି ଜିୟଁ ଜାଗହୁ ତାତା । ମିଲଇ ନ ଜଗତ ସହୋଦର ଭ୍ରାତା ॥୪॥
ଜଥା ପଂଖ ବିନୁ ଖଗ ଅତି ଦୀନା । ମନି ବିନୁ ଫନି କରିବର କର ହୀନା ॥
ଅସ ମମ ଜିବନ ବଂଧୁ ବିନୁ ତୋହୀ । ଜୌଂ ଜଡ଼ ଦୈବ ଜିଆବୈ ମୋହୀ ॥୫॥

---

ତେବେ ରାମ ଲକ୍ଷ୍ମଣଙ୍କୁ କରି ନିରୀକ୍ଷଣ । ପ୍ରାକୃତ ନର ସଦୃଶ ବୋଲନ୍ତି ବଚନ ॥
ଅର୍ଦ୍ଧ ରାତ୍ରି ଗଲା କପି ନ ଆସିଲ, ଭାଇ । ହୃଦେ ଲଗାଇଲେ ରାମ ଅନୁଜେ ଉଠାଇ ॥୧॥
କେବେହେଲେ ଦୁଃଖେ ଦେଖି ନ ପାରୁ ମୋହର । ଭାଇ, ସବୁ କାଳେ ମୃଦୁ ହୃଦ ତୋହର ॥
ମୋ ହିତ ନିମନ୍ତେ ପିତାମାତାଙ୍କୁ ତେଜିଲୁ । ବିପିନେ ହିମ ଆତପ ବରଷା ସହିଲୁ ॥୨॥
ସେହି ଅନୁରାଗ ଏବେ କାହିଁ ଗଲା, ଭାଇ । ଶୁଣି ମୋ ବିକଳ ବଚ; ନ ଉଠୁ କିପାଇଁ ॥
ବିପିନେ ଭ୍ରାତା ବିଚ୍ଛେଦ ଯେବେ ଜାଣିଥାନ୍ତି । ପିତାଙ୍କ ସେହି ବଚନ ମୁଁ ମାନି ନ ଥାନ୍ତି ॥୩॥
ସଦନ ସମ୍ପଦ ଭାର୍ଯ୍ୟା ସୁତ ପରିବାର । ଜଗତେ ଏସବୁ ହୋଇଯାନ୍ତି ବାରମ୍ବାର ॥
ଉଠ ବେଗେ ଭାଇ ଏହା ବିଚାରି ମନରେ । ନ ମିଳଇ ସହୋଦର ଭ୍ରାତା ଜଗତରେ ॥୪॥
ଯଥା ପକ୍ଷ, ଦୀନ ଅତି ହୁଏ ପକ୍ଷୀଗଣେ । ମଣି ବିନା ଫଣୀ କରିବର କର ହୀନେ ॥
ତଥା ମୋ ଜୀବନ ଭାଇ, ତୋ ବିନା ହୋଇବ । ଯଦି ଦେବ ଜଡ଼ଭାବ ମୋତେ ଜୀଆଇବ ॥୫॥

---

ମନେ ମନେ ଭରତଙ୍କ ବାହୁବଳ, ଶୀଳ, ଗୁଣ ଓ ପ୍ରଭୁଚରଣରେ ତାଙ୍କର ଅପାର ପ୍ରେମର ବାରମ୍ବାର ପ୍ରଶଂସା କରି ମାରୁତି ଶ୍ରୀ ହନୁମାନ୍ ଚାଲିଯାଉଥା'ନ୍ତି । ୬୦ (କ) ॥
ଚୌପାଇ ।—ତେଣେ ଲକ୍ଷ୍ମଣଙ୍କୁ ଦେଖି ଶ୍ରୀରାମ ସାଧାରଣ ମନୁଷ୍ୟ ପରି ବଚନ କହିଲେ "ଅଧ ରାତ୍ରି ବିତିଗଲାଣି, ହନୁମାନ୍ ଆସିଲେ ନାହିଁ ।" ଏହା କହି ଶ୍ରୀରାମ ସାନ ଭାଇ ଲକ୍ଷ୍ମଣଙ୍କୁ ଉଠାଇ ବକ୍ଷରେ ଆଉଜାଇ ଧରିଲେ ॥ ୧ ॥ ଏବଂ କହିଲେ, "ହେ ଭାଇ ! ତୁମେ ମୋତେ କଦାପି ଦୁଃଖିତ ଦେଖିପାରୁନାହିଁ । ତୁମର ସ୍ୱଭାବ ସର୍ବଦା କୋମଳ ଥିଲା । ମୋର ହିତ ନିମନ୍ତେ ତୁମେ ପିତାମାତାଙ୍କୁ ତ୍ୟାଗ କଲ ଏବଂ ବନରେ ଶୀତ, ଗ୍ରୀଷ୍ମ ଓ ପବନ ଆଦି ସବୁ ସହନ କଲ ॥ ୨ ॥ ହେ ଭାଇ ! ସେହି ପ୍ରେମ ଏବେ କାହିଁ ? ମୋର ବିକଳ କଥା ଶୁଣି ତୁମେ ଉଠୁନାହଁ କାହିଁକି ? ବନରେ ଭ୍ରାତୃ-ବିରହ ହେବ ବୋଲି ମୁଁ ଆଗରୁ ଜାଣିଥିଲେ ପିତୃବଚନ ମୁଁ ମାନି ନ ଥା'ନ୍ତି ॥ ୩ ॥ ପୁତ୍ର, ଧନ, ସ୍ତ୍ରୀ, ଘର ଓ ପରିବାର—ଏ ସମସ୍ତେ ଜଗତରେ

ଜୈହଉଁ ଅଉଧ କଉନ ମୁହୁ ଲାଈ । ନାରି ହେତୁ ପ୍ରିୟ ଭାଇ ଗଁଵାଈ ॥
ବରୁ ଅପଜସ ସହତେଉଁ ଜଗ ମାହୀଁ । ନାରି ହାନି ବିସେଷ ଛତି ନାହୀଁ ॥୬॥
ଅବ ଅପଲୋକୁ ସୋକୁ ସୁତ ତୋରା । ସହିହି ନିଠୁର କଠୋର ଉର ମୋରା ॥
ନିଜ ଜନନୀ କେ ଏକ କୁମାରା । ତାତ ତାସୁ ତୁମ୍ହ ପ୍ରାନ ଅଧାରା ॥୭॥
ସୌଁପେସି ମୋହି ତୁମ୍ହହି ଗହି ପାନୀ । ସବ ବିଧି ସୁଖଦ ପରମ ହିତ ଜାନୀ ॥
ଉତରୁ କାହ ଦୈହଉଁ ତେହି ଜାଈ । ଉଠି କିନ ମୋହି ସିଖାଵହୁ ଭାଈ ॥୮॥
ବହୁ ବିଧି ସୋଚତ ସୋଚ ବିମୋଚନ । ସ୍ରବତ ସଲିଲ ରାଜିବ ଦଲ ଲୋଚନ ॥
ଉମା ଏକ ଅଖଂଡ ରଘୁରାଈ । ନର ଗତି ଭଗତ କୃପାଲ ଦେଖାଈ ॥୯॥

---

ଅଯୋଧ୍ୟାକୁ ଫିରି କେଉଁ ମୁଖ ମୁଁ ନେଇଣ । ନାରୀ ହେତୁ ଅତି ପ୍ରିୟ ଭାଇ ହରାଇଣ ॥
ବରଞ୍ଚ ଅକୀର୍ତ୍ତି ଶୁଣି ଥାଆନ୍ତି ମଧ୍ୟରେ । ବେଶି କିଛି କ୍ଷତି ନାହିଁ ରମଣୀ ହାନିରେ ॥୬॥
ଏବେ ଅପଯଶ ସଙ୍ଗରେ ଏ ଶୋକ ତୋହର । ନିଷ୍ଠୁର କଠୋର ମନ ସହିବ ମୋହର ॥
ନିଜ ଜନନୀଙ୍କ ଏକ ମାତ୍ରକ କୁମାର । ଭ୍ରାତ, ତୁମ୍ଭେ ଅଛ ତାଙ୍କ ପ୍ରାଣର ଆଧାର ॥୭॥
ଅର୍ପଣ କଲେ ତୁମ୍ଭଙ୍କୁ ମୋତେ ଧରି ପାଣି । ସକଳ ଭାବେ ସୁଖଦ ହିତକାରୀ ଜାଣି ॥
କେଉଁ ଉତ୍ତର ତାହାଙ୍କୁ ଦେବି ଏବେ ଯାଇ । ଉଠି କିପାଁ ମୋତେ ତାହା ନ ବୁଝାଅ, ଭାଇ ॥୮॥
ବହୁ ପ୍ରକାରେ ଚିନ୍ତନ୍ତି ଚିନ୍ତା-ବିମୋଚନ । ସ୍ରବଇ ସଲିଲ-ବିନ୍ଦୁ, ସରୋଜ-ଲୋଚନ ॥
ଗିରିଜା ! ଏକ ଅଖଣ୍ଡ ରଘୁ କୁଳେଶ୍ୱର । ଦେଖାନ୍ତି ମନୁଷ୍ୟ ଗତି ଭକ୍ତ-କୃପାକର ॥୯॥

---

ବାରମ୍ବାର ଆସନ୍ତି ଏବଂ ଯାଆନ୍ତି । କିନ୍ତୁ ଜଗତରେ ସହୋଦର ଭାଇ ବାରମ୍ବାର ମିଳେନାହିଁ । ହୃଦୟରେ ଏହା ବିଚାର କର ଏବଂ ହେ ବତ୍ସ ! ଉଠ ॥ ୪ ॥ ଡେଣା ବିନା ପକ୍ଷୀ, ମଣି ବିନା ସର୍ପ ଓ ଶୁଣ୍ଢ ବିନା କରିବର ଅତ୍ୟନ୍ତ ଦୀନହୀନ ହୋଇ ଯାଆନ୍ତି । ହେ ଭାଇ ! ଯଦି ଜଡ ଦୈବ ମୋତେ ଜୀବିତ ରଖେ, ତେବେ ତୁମ ବିନା ମୋ ଜୀବନ ମଧ୍ୟ ସେହିପରି ହେବ ॥ ୫ ॥ ସ୍ତ୍ରୀ ନିମନ୍ତେ ପ୍ରିୟ ଭ୍ରାତାକୁ ହରାଇ ମୁଁ କେଉଁ ମୁହଁରେ ଅଯୋଧ୍ୟା ଫିରିବି ? ରାମଠାରେ ବୀରତା କିଛି ନାହିଁ, ଫଳରେ ସେ ସ୍ତ୍ରୀକୁ ହରାଇ ବସିଲେ—ଏହି ଅପବାଦ ମୁଁ ଶୁଣି ଥାଆନ୍ତି ପଛକେ; ଭାଇକୁ ହରାଇ ନ ଥା'ନ୍ତି । ସ୍ତ୍ରୀ ହାନି ବା ହରଣ ଯୋଗେ ମୋର ବିଶେଷ କୌଣସି କ୍ଷତି ନ ଥିଲା ॥ ୬ ॥ ଏବେ ହେ ପୁତ୍ର ! ମୋର ନିଷ୍ଠୁର ଓ କଠୋର ହୃଦୟ ଏହି ଅପଯଶ ଓ ତୁମର ବିରହ-ଜନିତ ଶୋକ, ଉଭୟକୁ ସହନ କରିବ । ହେ ବତ୍ସ ! ତୁମେ ନିଜ ମାତାଙ୍କର ଏକମାତ୍ର ପୁତ୍ର ଓ ତାଙ୍କର ପ୍ରାଣାଧାର ॥ ୭ ॥ ସର୍ବବିଧ ସୁଖଦାୟକ ଓ ପରମ-ହିତକାରୀ ଜାଣି ସେ ମୋତେ ହାତ ଧରି ତୁମକୁ ସମର୍ପଣ କରି ଦେଇଥିଲେ । ମୁଁ ଏବେ ଯାଇ ତାହାଙ୍କୁ କି ଉତ୍ତର ଦେବି ? ହେ ଭାଇ ! ତୁମେ ଉଠି ମୋତେ ଶିଖାଉ ନ କାହିଁକି ?" ॥ ୮ ॥ ଚିନ୍ତା-ବିମୋଚନକାରୀ ଶ୍ରୀରାମ ବହୁ ରୂପେ ଶୋକ କରୁଥା'ନ୍ତି । ତାଙ୍କ କମଳ-ଦଳ-ଲୋଚନରୁ ଜଳ ବହି ଯାଉଥାଏ ।

ପ୍ରଭୁ ପ୍ରଲାପ ସୁନି କାନ ବିକଲ ଭଏ ବାନର ନିକର ।
ଆଇ ଗୟଉ ହନୁମାନ ଜିମି କରୁନା ମହଁ ବୀର ରସ ॥୬୧॥

ହରଷି ରାମ ଭେଟେଉ ହନୁମାନା । ଅତି କୃତଜ୍ଞ ପ୍ରଭୁ ପରମ ସୁଜାନା ॥
ତୁରତ ବୈଦ ତବ କୀହ୍ନି ଉପାଈ । ଉଠି ବୈଠେ ଲଛିମନ ହରଷାଈ ॥୧॥
ହୃଦୟଁ ଲାଇ ପ୍ରଭୁ ଭେଁଟେଉ ଭ୍ରାତା । ହରଷେ ସକଲ ଭାଲୁ କପି ବ୍ରାତା ॥
କପି ପୁନି ବୈଦ ତହାଁ ପହୁଁଚାୱା । ଜେହି ବିଧି ତବହି ତାହି ଲଇ ଆୱା ॥୨॥
ୟହ ବୃତାନ୍ତ ଦସାନନ ସୁନେଊ । ଅତି ବିଷାଦ ପୁନି ପୁନି ସିର ଧୁନେଊ ॥
ବ୍ୟାକୁଲ କୁମ୍ଭକରନ ପହିଁ ଆୱା । ବିବିଧ ଜତନ କରି ତାହି ଜଗାୱା ॥୩॥
ଜାଗା ନିସିଚର ଦେଖିଅ କୈସା । ମାନହୁଁ କାଲୁ ଦେହ ଧରି ବୈସା ॥
କୁମ୍ଭକରନ ବୂଝା କହୁ ଭାଈ । କାହେ ତବ ମୁଖ ରହେ ସୁଖାଈ ॥୪॥

---

ପ୍ରଭୁଙ୍କ ପ୍ରଳାପ ଶୁଣି ଋକ୍ଷ ହରି ବ୍ୟାକୁଳେ ରୋଦନ କଲେ ।
କରୁଣା ମଧ୍ୟରେ ବୀର ରସ ପରି ବାତସୁତ ଆସିଗଲେ ॥୬୧॥

ଭେଟିଲେ ହନୁମାନଙ୍କୁ ହର୍ଷେ ରଘୁତ୍ତମ । ଅତ୍ୟନ୍ତ କୃତଜ୍ଞ ପ୍ରଭୁ ପ୍ରବୀଣ ପରମ ॥
ତତ୍କ୍ଷଣେ ସୁଷେଣ ତହୁଁ କରନ୍ତେ ଯତନ । ଉଠି ବସିଲେ ହରଷେ ସୁମିତ୍ରା ନନ୍ଦନ ॥୧॥
ପ୍ରଭୁ ଅନୁଜଙ୍କୁ ହୃଦେ ଲଗାଇ ଭେଟିଲେ । ଋକ୍ଷ ମର୍କଟ ସମୂହ ପ୍ରମୋଦ ଲଭିଲେ ॥
ପୁଣି କପି ତହିଁ ରଖି ବୈଦ୍ୟଙ୍କୁ ଆସିଲା । ଯେ ଭାବେ ଯେଉଁ ସ୍ଥାନରୁ ତାଙ୍କୁ ଆଣିଥିଲା ॥୨॥
ଶୁଣନ୍ତେ ଦଶବଦନ ଏହି ସମାଚାର । ଅତି ଦୁଃଖେ ନିଜ ଶିର ପିଟେ ବାରମ୍ବାର ॥
ବ୍ୟାକୁଳେ ସେ କୁମ୍ଭକର୍ଣ୍ଣ ନିକଟେ ଗମିଲା । ଅନେକ ଯତନ କରି ଜାଗ୍ରତ କରିଲା ॥୩॥
ଉଠି ନିଶାଚର ଦେଖାଯାଏ ସେହିପରି । ମନେ ହୁଏ ବସିଅଛି କାଳ ଦେହ ଧରି ॥
କୁମ୍ଭକର୍ଣ୍ଣ ପଚାରିଲା, କହ ମୋତେ, ଭାଇ । ବଦନ ତୁମର ଶୁଖି ଯାଇଛି କିପାଇଁ ॥୪॥

---

ଶିବ କହନ୍ତି, "ହେ ଉମା ! ଶ୍ରୀ ରଘୁନାଥ ଏକ ବା ଅଦ୍ୱିତୀୟ ଏବଂ ଅଖଣ୍ଡ ବା ବିରହ-ମୁକ୍ତ । ଭକ୍ତଗଣଙ୍କ କୃପାକାରକ ଭଗବାନ୍ ଲୀଳା କରି ମନୁଷ୍ୟର ଦଶା ଦେଖାଇ ଅଛନ୍ତି ॥ ୯ ॥ ସୋରଠା :—ପ୍ରଭୁଙ୍କ ଲୀଳା-ପ୍ରଲାପ କାନରେ ଶୁଣି ବାନର-ସମୂହ ବ୍ୟାକୁଳ ହୋଇ ପଡିଲେ । ଏହି ସମୟରେ ହନୁମାନ୍ ଆସି ପହଞ୍ଚିଗଲେ । ସତେ ଅବା କରୁଣ ରସ ସହିତ ବୀରରସ ଆସି ମିଶିଗଲା ' ॥ ୬୧ ॥ ଚୌପାଈ :—ଶ୍ରୀରାମ ଆନନ୍ଦିତ ହୋଇ ହନୁମାନଙ୍କୁ ଭେଟିଲେ । ପ୍ରଭୁ ପରମ ସୁଜ୍ଞାନୀ ଏବଂ ଅତ୍ୟନ୍ତ କୃତଜ୍ଞ । ତତ୍ପରେ ବୈଦ୍ୟ ସୁଷେଣ ଶୀଘ୍ର ପ୍ରତିକାର ବିଧାନ କଲେ ଏବଂ ତାଙ୍କ ଚିକିତ୍ସାରେ ଲକ୍ଷ୍ମଣ ଆନନ୍ଦିତ ହୋଇ ଉଠି ବସିଲେ ॥ ୧ ॥ ପ୍ରଭୁ ଭାଇଙ୍କୁ ଆଲିଙ୍ଗନ କରି ଭେଟିଲେ । ଭଲ୍ଲୁକ ଓ ବାନର-ମାନେ ସମସ୍ତେ ଆନନ୍ଦ ଲାଭ କଲେ । ତତ୍ପରେ ହନୁମାନ୍ ବୈଦ୍ୟଙ୍କୁ ଯେମିତି ଆଣିଥିଲେ, ସେହିପରି ନେଇ ତାଙ୍କ ସ୍ଥାନରେ ପହଞ୍ଚାଇ ଦେଲେ ॥ ୨ ॥ ଏହି ସମାଚାର ରାବଣ ଯେତେବେଳେ ଶୁଣିଲା, ସେ

କଥା କହି ସବ ତେହିଁ ଅଭିମାନୀ । ଜେହି ପ୍ରକାର ସୀତା ହରି ଆନୀ ॥
ତାତ କପିହ୍ନ ସବ ନିସିଚର ମାରେ । ମହା ମହା ଜୋଧା ସଂଘାରେ ॥୫॥
ଦୁର୍ମୁଖ ସୁରରିପୁ ମନୁଜ ଅହାରୀ । ଭଟ ଅତିକାୟ ଅକଂପନ ଭାରୀ ॥
ଅପର ମହୋଦର ଆଦିକ ବୀରା । ପରେ ସମର ମହି ସବ ରନଧୀରା ॥୬॥

ସୁନି ଦସକଂଧର ବଚନ ତବ କୁଂଭକରନ ବିଲଖାନ ।
ଜଗଦଂବା ହରି ଆନି ଅବ ସଠ ଚାହତ କଲ୍ୟାନ ॥୬୨॥

ଭଲ ନ କୀହ୍ନ ତେଁ ନିସିଚର ନାହା । ଅବ ମୋହି ଆଇ ଜଗାଏହି କାହା ॥
ଅଜହୁଁ ତାତ ତ୍ୟାଗି ଅଭିମାନା । ଭଜହୁ ରାମ ହୋଇହି କଲ୍ୟାନା ॥୧॥
ହେଁ ଦସସୀସ ମନୁଜ ରଘୁନାୟକ । ଜାକେଁ ହନୂମାନ ସେ ପାୟକ ॥
ଅହହ ବଂଧୁ ତେଁ କୀହ୍ନି ଖୋଟାଈ । ପ୍ରଥମହିଁ ମୋହି ନ ସୁନାଏହି ଆଈ ॥୨॥

---

ସମସ୍ତ ବୃତ୍ତାନ୍ତ ଅଭିମାନୀ ବଖାଣିଲା । ଯେଉଁଭଳି ସୀତାଙ୍କୁ ସେ ହରି ଆଣିଥିଲା ॥
ଭ୍ରାତ, କପିଗଣ ଆମ୍ଭ ସୈନ୍ୟଙ୍କୁ ମାରିଲେ । ମହା ମହା ନିଶାଚର ଯୋଦ୍ଧାଙ୍କୁ ବଧିଲେ ॥୫॥
ଦୁର୍ମୁଖ ଅମର ଶତ୍ରୁ ମନୁଷ୍ୟ ଆହାରୀ । ବୀର ଅତିକାୟ ତଥା ଅକମ୍ପନ ଭାରୀ ॥
ମହୋଦର ଆଦି ଯେତେ ଥିଲେ ଅନ୍ୟ ବୀର । ପଡିଲେ ସମର ମଧ୍ୟେ ସର୍ବେ ରଣଧୀର ॥୬॥

ଶୁଣି କୁମ୍ଭକର୍ଣ୍ଣ ରାବଣ ବଚନ ହୋଇଲା ଅତି ବିକଳ ।
ଜଗତ ଜନନୀ ଶଠ, ହରି ଆଣି କାମନା କର କୁଶଳ ॥୬୨॥

ନିଶାଚର-ରାଜ, ତୁମ୍ଭେ ଭଲ ନ କରିଲ । ଏବେ ବୃଥା ଆସି ସିନା ମୋତେ ଉଠାଇଲ ॥
ଏବେ ସୁଦ୍ଧା ଭ୍ରାତ, ପରିହର ଅଭିମାନ । ଭଜ ଶ୍ରୀରାମେ, ଅବଶ୍ୟ ହୋଇବ କଲ୍ୟାଣ ॥୧॥
ଦଶଶିର, ମନୁଷ୍ୟ କି ଶ୍ରୀ ରଘୁନାୟକ । ଯାହାଙ୍କର ହନୁମାନ ସଦୃଶ ପାୟକ ॥
ଆହାହା ! ମନ୍ଦ କରମ କଲ ତୁମ୍ଭେ ଭାଇ । ପ୍ରଥମରୁ ମୋତେ ଆସି ନ ଦେଲ ଶୁଣାଇ ॥୨॥

---

ଅତ୍ୟନ୍ତ ବିଷାଦରେ ମୁଣ୍ଡ ପିଟିଲା । ସେ ବ୍ୟାକୁଳ ହୋଇ କୁମ୍ଭକର୍ଣ୍ଣ ନିକଟକୁ ଗଲା ଏବଂ ବହୁତ ଉପାୟ କରି ତାହାକୁ ଉଠାଇଲା ॥ ୩ ॥ କୁମ୍ଭକର୍ଣ୍ଣ ଚେଇଁ ଉଠିଲା । ସେ କପରି ଦେଖାଯାଉଥାଏ ନା, ସତେ ଯେପରି କାଳ ଶରୀର ଧାରଣ କରି ବସିଛି । କୁମ୍ଭକର୍ଣ୍ଣ ପଚାରିଲା, "ହେ ଭାଇ ! କୁହ ତ, ତୁମର ମୁଖ-ଗୁଡ଼ିକ ଶୁଖିଯାଇଛି କାହିଁକି ?" ସେହି ଅଭିମାନୀ ରାବଣ ଯେପରି ଭାବରେ ସୀତାଙ୍କୁ ହରଣ କରି ଆଣିଥିଲା, ସେହି ସମୟଠାରୁ ବର୍ତ୍ତମାନ ପର୍ଯ୍ୟନ୍ତ ଘଟିଥିବା ସମସ୍ତ କଥା ତାହାକୁ ବୁଝାଇ କହିଲା । ସେ ପୁଣି କହିଲା, "ହେ ତାତ ! ବାନରମାନେ ସମସ୍ତ ରାକ୍ଷସଙ୍କୁ ମାରି ପକାଇଲେ । ବଡ ବଡ ଯୋଦ୍ଧାମାନଙ୍କୁ ମଧ୍ୟ ସଂହାର କରି ପକାଇଲେ ॥ ୫ ॥ ଦୁର୍ମୁଖ, ଦେବଶତ୍ରୁ (ଦେବାନ୍ତକ), ମନୁଷ୍ୟଭକ୍ଷକ (ନରାନ୍ତକ), ବିରାଟ ଯୋଦ୍ଧା ଅତିକାୟ ଓ ଅକମ୍ପନ ଏବଂ ମହୋଦର ଆଦି ସମସ୍ତ ରଣଧୀର ବୀର ଯୁଦ୍ଧଭୂମିରେ ନିହତ ହେଲେ ।" ॥ ୬ ॥
ଦୋହା —ରାବଣର ବଚନ ଶୁଣି କୁମ୍ଭକର୍ଣ୍ଣ ବ୍ୟାକୁଳ ହୋଇ କହିଲା, "ମୂର୍ଖ !

କୀନ୍ହେହୁ ପ୍ରଭୁ ବିରୋଧ ତେହି ଦେବକ । ସିବ ବିରଂଚି ସୁର ଜାକେ ସେବକ ॥
ନାରଦ ମୁନି ମୋହି ଜ୍ଞାନ ଜୋ କହା । କହତେଉଁ ତୋହି ସମୟ ନିରବହା ॥୩॥
ଅବ ଭରି ଅଂକ ଭେଁଟୁ ମୋହି ଭାଈ । ଲୋଚନ ସୁଫଲ କରୌଁ ମୈଁ ଜାଈ ॥
ସ୍ୟାମ ଗାତ ସରସୀରୁହ ଲୋଚନ । ଦେଖୌଁ ଜାଇ ତାପ ତ୍ରୟ ମୋଚନ ॥୪॥

ରାମ ରୂପ ଗୁନ ସୁମିରତ ମଗନ ଭୟଉ ଛନ ଏକ ।
ରାବନ ମାଗେଉ କୋଟି ଘଟ ମଦ ଅରୁ ମହିଷ ଅନେକ ॥୬୩॥

ମହିଷ ଖାଇ କରି ମଦିରା ପାନା । ଗର୍ଜା ବଜ୍ରାଘାତ ସମାନା ॥
କୁମ୍ଭକରନ ଦୁର୍ମଦ ରନ ରଂଗା । ଚଲା ଦୁର୍ଗ ତଜି ସେନ ନ ସଂଗା ॥୧॥

---

ସେ ଦେବଙ୍କ ସଙ୍ଗେ ବୈର କଲ, ଲଙ୍କେଶ୍ୱର । ଯାହାଙ୍କ ସେବକ ହର ବିରଞ୍ଚି ଶଙ୍କର ॥
ନାରଦ ମୁନି ଯେ ଜ୍ଞାନ କହିଥିଲେ ମୋତେ । ବେଳ ଆଉ ନାହିଁ ତାହା କହିବାକୁ ତୋତେ ॥୩॥
ଏବେ ଅଙ୍କ ପୂର୍ଣ୍ଣ କରି ଭେଟ ମୋତେ ଭାଇ । ନିଜ ଲୋଚନ ସୁଫଳ କରିବି ମୁଁ ଯାଇ ॥
ଶ୍ୟାମଳ ଶରୀର ସରସିଜ ବିଲୋଚନ । ଯାଇ ବିଲୋକିବି ତାପ ତ୍ରୟ ବିମୋଚନ ॥୪॥

ରାମ ରୂପ ଗୁଣ ହୃଦୟେ ସ୍ମରଣି ମଗ୍ନ ହେଲା କ୍ଷଣ ଏକ ।
ମାଗିଲା ରାବଣେ କୋଟି ଘଟ ମଦ୍ୟ ପୁଣି ମହିଷ ଅନେକ ॥୬୩॥

ମହିଷ ଖାଇ ଆବର ମଦ୍ୟ କରି ପାନ । ଗର୍ଜିଲା କଠୋର ବଜ୍ର ନିର୍ଘୋଷ ସମାନ ॥
କୁମ୍ଭକର୍ଣ୍ଣ ମଦୋନ୍ମତ୍ତ ଅତି ରଣ ରଙ୍ଗେ । ଚଳିଲା ଦୁର୍ଗ ତେଜି ସେନା ନ ନେଇଣ ସଙ୍ଗେ ॥୧॥

---

ଜଗଜ୍ଜନନୀ ଜାନକୀଙ୍କୁ ହରଣ କରି ଏବେ ତୁମେ କଲ୍ୟାଣ ଚାହୁଁଛ ? ॥ ୬୨ ॥ ହେ ରାକ୍ଷସରାଜ ! ତୁମେ ଭଲ କାମ କଲନାହିଁ । ଏବେ ଆସି ମୋତେ ଉଠାଇଲ କ'ଣ ? ହେ ତାତ ! ଏବେ ବି ଅଭିମାନ ତ୍ୟାଗ କରି ଶ୍ରୀରାମଙ୍କୁ ଭଜନ କରିବ ତ ତୁମର କଲ୍ୟାଣ ହେବ ॥ ୧ ॥ ହେ ରାବଣ ! ଯାହାଙ୍କର ହନୁମାନ୍ ସଦୃଶ ସେବକ, ସେହି ରଘୁନାଥ କ'ଣ ମନୁଷ୍ୟ ? ହାୟ ଭାଇ ! ପ୍ରଥମରୁ ତୁମେ ମୋତେ ଯାହା ଏହି ସବୁ ଘଟନା ଶୁଣାଇଲ ନାହିଁ, ବଡ଼ ଖରାପ କଲ ॥ ୨ ॥ ହେ ସ୍ୱାମି ! ଶିବ, ବ୍ରହ୍ମା ଆଦି ଯେଉଁ ପରମ ଦେବତାଙ୍କ ସେବକ, ତୁମେ ତାହାଙ୍କ ସହିତ ଶତ୍ରୁତା ଆଚରଣ କଲ । ନାରଦ ମୁନି ମୋତେ ଯେଉଁ ଜ୍ଞାନ ବିଷୟ କହିଥିଲେ, ମୁଁ ତୁମକୁ ତାହା କହୁଥା'ନ୍ତି । କିନ୍ତୁ ଏବେ ତ ସମୟ ଗଡ଼ିଗଲାଣି ॥ ୩ ॥ ହେ ଭାଇ ! ବର୍ତ୍ତମାନ ଶେଷଥର ପାଇଁ ପୂର୍ଣ୍ଣ କୋଳରେ ମୋତେ ଆଲିଙ୍ଗନ କର । ମୁଁ ଯାଇ ନିଜ ନେତ୍ର ସଫଳ କରେ । ତ୍ରିତାପରୁ ମୁକ୍ତିଦାତା ଶ୍ୟାମଶରୀର, କମଳନେତ୍ର ଶ୍ରୀରାମଙ୍କୁ ଯାଇ ଦର୍ଶନ କରେ ।" ॥୪॥ ଦୋହା :—ଶ୍ରୀରାମଙ୍କ ରୂପ ଓ ଗୁଣ ସ୍ମରଣ କରି ସେ କ୍ଷଣକାଳ ପ୍ରେମରେ ମଗ୍ନ ହୋଇଗଲା । ତତ୍ପରେ ରାବଣଙ୍କୁ କହି କୋଟିଏ କଳସ ମଦିରା ଓ ଅନେକ ମହିଷ ମଗାଇଲା ॥ ୬୩ ॥ ଚୌପାଇ :—ମହିଷ ଭୋଜନ ଓ ମଦିରା ପାନ କରି ସେ ବଜ୍ରପାତ ପରି ଗର୍ଜନ କଲା । ମଦୋନ୍ମତ୍ତ ଏବଂ ରଣୋତ୍ସାହ-ପରିପୂର୍ଣ୍ଣ କୁମ୍ଭକର୍ଣ୍ଣ ଦୁର୍ଗ

ଦେଖି ବିଭୀଷନୁ ଆଗେଁ ଆୟଉ । ପରେଉ ଚରନ ନିଜ ନାମ ସୁନାୟଉ ॥
ଅନୁଜ ଉଠାଇ ହୃଦୟଁ ତେହି ଲାୟୋ । ରଘୁପତି ଭକ୍ତ ଜାନି ମନ ଭାୟୋ ॥୨॥
ତାତ ଲାତ ରାବନ ମୋହି ମାରା । କହତ ପରମ ହିତ ମନ୍ତ୍ର ବିଚାରା ॥
ତେହିଁ ଗଲାନି ରଘୁପତି ପହିଁ ଆୟଉଁ । ଦେଖି ଦୀନ ପ୍ରଭୁ କେ ମନ ଭାୟଉଁ ॥୩॥
ସୁନୁ ସୁତ ଭୟଉ କାଲବସ ରାବନ । ସୋ କି ମାନ ଅବ ପରମ ସିଖାୱନ ॥
ଧନ୍ୟ ଧନ୍ୟ ତୈଁ ଧନ୍ୟ ବିଭୀଷନ । ଭୟହୁ ତାତ ନିସିଚର କୁଲ ଭୂଷନ ॥୪॥
ବଂଧୁ ବଂସ ତୈଁ କୀହ୍ନ ଉଜାଗର । ଭଜେହୁ ରାମ ସୋଭା ସୁଖ ସାଗର ॥୫॥
ବଚନ କର୍ମ ମନ କପଟ ତଜି ଭଜେହୁ ରାମ ରନଧୀର ।
ଜାହୁ ନ ନିଜ ପର ସୂଝ ମୋହି ଭୟଉଁ କାଲବସ ବୀର ॥୬୪॥

---

ଦେଖି ତାଙ୍କୁ ବିଭୀଷଣ ସମ୍ମୁଖେ ଆସିଲା । ପ୍ରଣି ପଦ ଧରି ନିଜ ନାମ ଶୁଣାଇଲା ॥
ଅନୁଜେ ଉଠାଇ ହୃଦେ କଲା ଆଲିଙ୍ଗନ । ରଘୁପତି ଭକ୍ତ ଜାଣି ହୋଇଲା ପ୍ରସନ୍ନ ॥୨॥
ତାତ, ଗୋଇଠା ମାରିଲା ମୋତେ ଲଙ୍କେଶ୍ୱର । କହନ୍ତେ ହିତକାରକ ମନ୍ତ୍ରଣା ସୁନ୍ଦର ॥
ଆସିଲି ସେ ଗ୍ଳାନି ବଶ ରଘୁପତି କତି । ଦେଖି ଦୀନ ପ୍ରଭୁ ମନ ତୋଷ ହେଲା ଅତି ॥୩॥
ଶୁଣ ସୁତ, କାଳବଶ ହେଲାଣି ରାବଣ । ସେ କେଉଁ ଭାବେ ମାନିବ ସୁହୃଦ ବଚନ ॥
ଧନ୍ୟ ଧନ୍ୟ ଧନ୍ୟ ତୁହି ଭ୍ରାତ ବିଭୀଷଣ । ହୋଇଲୁ ରଜନୀଚର-କୁଳ-ବିଭୂଷଣ ॥୪॥
ଭାଇ, ବଂଶ ତୁହି ଏବେ ଆଲୋକ କରିଲୁ । ଶୋଭା-ସୁଖ-ପାରାବାର ରାମଙ୍କୁ ଭଜିଲୁ ॥୫॥
ମନ କର୍ମ ବାକ୍ୟ କପଟ ତେଜିଣ ଭଜ ରାମ ରଣଧୀର ।
ଯାଅ, ନିଜ ପର ମୋତେ ନ ଦିଶଇ, କାଳବଶ ହେଲି ବୀର ॥୬୪॥

---

ଯୁଝି ଚାଲିଲା । ସଙ୍ଗରେ ସେନା ସୁଦ୍ଧା ନେଲା ନାହିଁ ॥ ୧ ॥ ତାହାଙ୍କୁ ଦେଖି ବିଭୀଷଣ ସମ୍ମୁଖକୁ ଆସିଲେ ଏବଂ ତାହାର ଚରଣ ତଳେ ପଡ଼ି ଆପଣାର ନାମ ଶୁଣାଇଲେ । ସାନ ଭାଇକୁ ଉଠାଇ ସେ ଆଲିଙ୍ଗନ କଲା । ଶ୍ରୀ ରଘୁନାଥଙ୍କ ଭକ୍ତ ବୋଲି ଜାଣି କୁମ୍ଭକର୍ଣ୍ଣ ତାହାଙ୍କୁ ମନେ ମନେ ଆଦର କଲା ॥ ୨ ॥ ବିଭୀଷଣ କହିଲେ, "ହେ ତାତ ! ପରମ ହିତକର ପରାମର୍ଶ ଏବଂ ବିଚାର କହିବାରୁ ରାବଣ ମୋତେ ଗୋଇଠା ମାରିଲା । ସେହି ଗ୍ଳାନି ହେତୁ ମୁଁ ଶ୍ରୀ ରଘୁନାଥଙ୍କ ପାଖକୁ ଚାଲି ଆସିଛି । ପ୍ରଭୁ ମୋତେ ଦୀନ-ହୀନ ଦେଖି ଅତ୍ୟନ୍ତ ଆଦର କଲେ ଏବଂ ମୁଁ ପ୍ରଭୁଙ୍କର ପ୍ରୀତିପାତ୍ର ହେଲି ।" ॥ ୩ ॥ କୁମ୍ଭକର୍ଣ୍ଣ କହିଲା, "ହେ ପୁତ୍ର ! ଶୁଣ । ରାବଣ ତ କାଳର ବଶ ହୋଇଲାଣି । ସେ କ'ଣ ଏବେ ଉତ୍ତମ ଶିକ୍ଷା ମାନିବ ? ହେ ବିଭୀଷଣ ! ତୁ ଧନ୍ୟ, ଧନ୍ୟ, ଧନ୍ୟ ! ହେ ବତ୍ସ ! ତୁ ରାକ୍ଷସବଂଶର ଭୂଷଣ ହୋଇଗଲୁ ॥ ୪ ॥ ହେ ଭାଇ ! ତୁ ଶୋଭା ଓ ସୁଖସାଗର ଶ୍ରୀରାମଙ୍କୁ ଭଜି ଆପଣାର କୁଳକୁ ଦେଦୀପ୍ୟମାନ କରିଦେଲୁ ॥ ୫ ॥ ଦୋହା —ମନ, ବଚନ ଓ କର୍ମରେ କପଟ ତ୍ୟାଗ କରି ରଣଧୀର ଶ୍ରୀରାମଙ୍କୁ ଭଜନ କର । ହେ ଭାଇ ! ମୁଁ କାଳର ବଶ ହୋଇଲାଣି ।

ବଂଧୁ ବଚନ ସୁନି ଚଲା ବିଭୀଷନ । ଆୟଉ ଜହଁ ତ୍ରୈଲୋକ ବିଭୂଷନ ॥
ନାଥ ଭୂଧରାକାର ସରୀରା । କୁମ୍ଭକରନ ଆୱତ ରନଧୀରା ॥୧॥
ଏତନା କପିହ୍ନ ସୁନା ଜବ କାନା । କିଲକିଲାଇ ଧାଏ ବଲବାନା ॥
ଲିଏ ଉଠାଇ ବିଟପ ଅରୁ ଭୂଧର । କଟକଟାଇ ଡାରହିଁ ତା ଊପର ॥୨॥
କୋଟି କୋଟି ଗିରି ସିଖର ପ୍ରହାରା । କରହିଁ ଭାଲୁ କପି ଏକ ଏକ ବାରା ॥
ମୁରେଉ ନ ମନୁ ତନୁ ଟରେଉ ନ ଟାରେଉ । ଜିମି ଗଜ ଅର୍କ ଫଲନିକୋ ମାରେଉ ॥୩॥
ତବ ମାରୁତସୁତ ମୁଠିକା ହନେଉ । ପରେଉ ଧରନି ବ୍ୟାକୁଲ ସିର ଧୁନେଉ ॥
ପୁନି ଉଠି ତେହିଁ ମାରେଉ ହନୁମଂତା । ଘୁର୍ମିତ ଭୂତଲ ପରେଉ ତୁରଂତା ॥୪॥

---

ବାହୁଡ଼ି ଭାଇ ବଚନ ଶୁଣି ବିଭୀଷଣ । ଆସିଲେ ଯହିଁ ଶ୍ରୀରାମ ତ୍ରୈଲୋକ୍ୟ ଭୂଷଣ ॥
ନାଥ, ମହା ମହୀଧର ଆକାର ଶରୀର । ଆସୁଅଛି କୁମ୍ଭକର୍ଣ୍ଣ ରଣଧୀର ବୀର ॥୧॥
ଏତିକ ମାତ୍ର ଶୁଣନ୍ତେ କପି ବଳବାନ । 'ହୁଉ' 'ହାଆ' ଶବ୍ଦ କରି ହେଲେ ଧାବମାନ ॥
ଉପାଡ଼ି ନେଇ ବିଟପ ଭୂଧର ଆବର । ଫିଙ୍ଗିଲେ ଗରଜି କୁମ୍ଭ ଶ୍ରବଣ ଉପର ॥୨॥
କୋଟି କୋଟି ପରବତ ଶୃଙ୍ଗ ଏକାବେଳେ । ପ୍ରହାର କରନ୍ତି ଋକ୍ଷ କପିବୃନ୍ଦ ହେଲେ ॥
ଟାଳନ୍ତେ ନ ଟଳେ ତନୁ ନ ଟଳଇ ମନ । ଅରଖ ଫଳ ମାରନ୍ତେ ଗଜେନ୍ଦ୍ର ଯେସନ ॥୩॥
ତହୁଁ ହନୁମାନ ଏକ ମୁଷ୍ଟିକ ମାରିଲେ । ଭୂମିରେ ପଡ଼ି ବ୍ୟାକୁଳେ ମୁଣ୍ଡ ସେ ପିଟିଲେ ॥
ପୁଣି ସେ ଉଠି ମାରିଲେ ପବନ କୁମରେ । ଆଘାତେ ମାରୁତି ଭ୍ରମି ପଡ଼ିଲେ ସତ୍ୱରେ ॥୪॥

---

ମୋତେ ଆପଣାପର କିଛି ବାରି ହେଉନାହିଁ । ଏଣୁ ତୁ ବର୍ତ୍ତମାନ ଯାଆ ।" ॥ ୬୪ ॥
ଚୌପାଈ :—ଭାଇର ବଚନ ଶୁଣି ବିଭୀଷଣ ଫେରିଗଲେ ଏବଂ ତ୍ରିଲୋକଭୂଷଣ ଶ୍ରୀରାମ ଯେଉଁଠାରେ ଥିଲେ, ସେହି ସ୍ଥାନକୁ ଆସିଲେ । ବିଭୀଷଣ କହିଲେ, "ହେ ନାଥ ! ପର୍ବତ ସମାନ ବିଶାଳକାୟ ରଣଧୀର କୁମ୍ଭକର୍ଣ୍ଣ ଆସୁଅଛି ।" ॥ ୧ ॥ ବାନରମାନେ ଯେତେବେଳେ କାନରେ ଏତିକ ମାତ୍ର ଶୁଣିଲେ, ସେହି ବଳବାନ୍‌ମାନେ ହର୍ଷଧ୍ୱନି କରି ଧାଇଁଲେ । ସେମାନେ ବୃକ୍ଷ ଓ ପର୍ବତ ସବୁ ଉପାଡ଼ି ଉଠାଇ ଆଣିଲେ ଏବଂ ଦାନ୍ତ କଟକଟ କରି ସେ ସବୁକୁ ତାହାର ଉପରେ ପକାଇବାକୁ ଲାଗିଲେ ॥ ୨ ॥ ଭଲ୍ଲୁକ ଓ ବାନରମାନେ ଗୋଟିଏ ଗୋଟିଏ ଥରରେ କୋଟି କୋଟି ପାହାଡ଼ଶୃଙ୍ଗ ଦ୍ୱାରା ତାହା ଉପରେ ପ୍ରହାର କରୁଥା'ନ୍ତି । କିନ୍ତୁ ଏଥିରେ ତାହାର ମନ ବିଚଳିତ ହେଉ ନ ଥାଏ କିମ୍ବା ଶରୀରକୁ ଟାଳିଲେ ମଧ୍ୟ ତାହା ଟିକିଏ ହେଲେ ଟଳୁ ନ ଥାଏ । ହସ୍ତୀକୁ ଅର୍କ ଫଳରେ ଆଘାତ କଲେ ତାହାର କୌଣସି କ୍ଷତି ହୁଏନାହିଁ । ସେହିପରି ଏହି ସବୁ ପର୍ବତର ଆଘାତରେ ତାହାର କିଛି କ୍ଷତି ହେଉ ନ ଥାଏ ' ॥ ୩ ॥ ତତ୍ପରେ ହନୁମାନ୍ ତାହାକୁ ଗୋଟାଏ ବିଧା ମାରିଲେ । ଫଳରେ ସେ ବ୍ୟାକୁଳ ହୋଇ ପୃଥିବୀ ଉପରେ ପଡ଼ିଗଲା ଏବଂ ମୁଣ୍ଡ ପିଟିବାକୁ ଲାଗିଲା । ତତ୍ପରେ ପୁଣି ଉଠି ସେ ହନୁମାନଙ୍କୁ ମାରିଲେ । ହନୁମାନ୍ ଚକ୍କର ଖାଇ ତୁରନ୍ତ ପୃଥିବୀ ଉପରେ

ପୁନି ନଲ ନୀଲହି ଅବନି ପଛାରେସି । ଜହଁ ତହଁ ପଟକି ପଟକି ଭଟ ଡାରେସି ॥
ଚଲୀ ବଲୀମୁଖ ସେନ ପରାଈ । ଅତି ଭୟ ତ୍ରସିତ ନ କୋଉ ସମୁହାଈ ॥୪॥

ଅଂଗଦାଦି କପି ମୁରୁଛିତ କରି ସମେତ ସୁଗ୍ରୀବ ।
କାଁଖ ଦାବି କପିରାଜ କହୁଁ ଚଲା ଅମିତ ବଲ ସୀଂବ ॥୬୫॥

ଉମା କରତ ରଘୁପତି ନରଲୀଲା । ଖେଲତ ଗରୁଡ଼ ଜିମି ଅହିଗନ ମୀଲା ॥
ଭୃକୁଟି ଭଂଗ ଜୋ କାଲହିଁ ଖାଈ । ତାହି କି ସୋହଇ ଐସି ଲରାଈ ॥୧॥
ଜଗ ପାବନି କୀରତି ବିସ୍ତରିହହିଁ । ଗାଇ ଗାଇ ଭବନିଧି ନର ତରିହହିଁ ॥
ମୁରୁଛା ଗଇ ମାରୁତସୁତ ଜାଗା । ସୁଗ୍ରୀବହି ତବ ଖୋଜନ ଲାଗା ॥୨॥
ସୁଗ୍ରୀବହୁ କୈ ମୁରୁଛା ବୀତୀ । ନିବୁକି ଗୟଉ ତେହି ମୃତକ ପ୍ରତୀତୀ ॥
କାଟେସି ଦସନ ନାସିକା କାନା । ଗରଜି ଅକାସ ଚଲେଉ ତେହିଁ ଜାନା ॥୩॥

---

ପୁନଶ୍ଚ ନଲ ନୀଳଙ୍କୁ ଧରି କଚାଡ଼ିଲା । ଯହିଁ ତହିଁ ଫେଟି କୁଟି ଯୋଦ୍ଧାଙ୍କୁ ମାରିଲା ॥
ମର୍କଟ ସେନା ତହୁଁ ପଳାଇ ଚଳିଲେ । ଅତି ଭୟ ତ୍ରାସେ କେହୁ ପଶି ନ ପାରିଲେ ॥୪॥

ଅଙ୍ଗଦ ସୁଗ୍ରୀବ ସହିତ ସରବ କପିଙ୍କୁ କରି ମୂର୍ଚ୍ଛିତ ।
କପି ଅଧୀଶ୍ବରେ ଜାକିଣ କାଖରେ ଚଳିଲା ବଳୀ ଅମିତ ॥୬୫॥

ଉମା ! ନର ଲୀଳା ରଘୁନାୟକ କରନ୍ତି । ଯେଉଁ ଅହିଗଣ ମେଳେ ଖେଳେ ଖଗପତି ॥
ଭୃକୁଟି ବିଳାସ ଯାର କାଳକୁ ଭକ୍ଷଇ । ତା’ ପକ୍ଷେ ଏମନ୍ତ ଯୁଦ୍ଧ ଶୋଭା କି ହୁଅଇ ॥୧॥
ବିଶ୍ୱପାବନ ସୁଯଶ ବିସ୍ତାର କରିବେ । ଗାଇ ଗାଇ ନର ଭବ-ବାରିଧି ତରିବେ ॥
ମୂର୍ଚ୍ଛା ଭାଙ୍ଗନ୍ତେ ଉଠିଣ ପବନ କୁମର । ସୁଗ୍ରୀବଙ୍କୁ ଖୋଜିବାକୁ ଲାଗିଲା ଆବର ॥୨॥
କପି-ପତି ମୂର୍ଚ୍ଛା ବି ଅତୀତ ହୋଇଲା । ମୃତକ ପ୍ରତୀତି ଦେଇ ତେଣିଁ ସେ ପଡ଼ିଲା ॥
ଦଶନେ ତାହାର କର୍ଣ୍ଣ ନାସିକା କାଟିଣ । ଗରଜି ଆକାଶେ ଯା’ନ୍ତେ ସେ ଜାଣି ପାରିଣ॥୩॥

---

ଖସି ପଡ଼ିଲେ ॥ ୪ ॥ ତତ୍ପରେ ସେ କୁମ୍ଭକର୍ଣ୍ଣ ନଳନୀଳଙ୍କୁ ଭୂମି ଉପରେ ପକାଇଦେଲା ଏବଂ ଅନ୍ୟାନ୍ୟ ଯୋଦ୍ଧାମାନଙ୍କୁ ଯେଉଁଠି ଇଚ୍ଛା ସେହିଠାରେ ତଳେ ପକାଇଦେଲା । ବାନର ସେନା ଦୌଡ଼ି ପଳାଇଲେ । ସମସ୍ତେ ଅତିଶୟ ଭୟଭୀତ ହୋଇ ପଡ଼ିଲେ । କେହି ଆଗକୁ ଆସୁ ନ ଥାଏ ॥ ୫ ॥ ଦୋହା .— କୁମ୍ଭକର୍ଣ୍ଣ ସୁଗ୍ରୀବ ସମେତ ଅଙ୍ଗଦାଦି ବାନରଗଣଙ୍କୁ ମୂର୍ଚ୍ଛିତ କରିଦେଲା । ପୁଣି ସେହି ଅପରିମିତ ବଳର ସୀମା କୁମ୍ଭକର୍ଣ୍ଣ ବାନରରାଜ ସୁଗ୍ରୀବଙ୍କୁ କାଖରେ ଜାକି ଚଳିଲା ॥ ୬୫ ॥ ଚୌପାଈ :— ଶିବ କହନ୍ତି, "ହେ ଉମା ! ଗରୁଡ଼ ସର୍ପସମୂହ ମଧ୍ୟରେ ମିଶି ଖେଳିଲା ପରି ଶ୍ରୀ ରଘୁନାଥ ନରଲୀଳା କରୁଅଛନ୍ତି । ଯେ ଭ୍ରୂଭଙ୍ଗୀର ସଙ୍କେତ ମାତ୍ରକେ କାଳକୁ ସୁଦ୍ଧା ଭକ୍ଷଣ କରି ପକାନ୍ତି, ତାହାଙ୍କୁ କେଉଁଠି ଏପରି ଯୁଦ୍ଧ ଶୋଭାପାଏ କି ? ॥ ୧ ॥ ଭଗବାନ ଏହି ଲୀଳାଯୋଗେ ଜଗତପାବନୀ କୀର୍ତ୍ତି ବିସ୍ତାର କରିବେ ଏବଂ ସେହି କୀର୍ତ୍ତି ଗାଇ ଗାଇ ମନୁଷ୍ୟମାନେ ଭବ-ସାଗରରୁ ତରିଯିବେ ।" ମୂର୍ଚ୍ଛା ଦୂର ହୋଇଗଲା ।

ପଟକେଉ ଚରନ ଗହି ଭୂମି ପଛାରା । ଅତି ଲାଘବଁ ଉଠି ପୁନି ତେହି ମାରା ॥
ପୁନି ଆୟଉ ପ୍ରଭୁ ପହିଁ ବଲବାନା । ଜୟତି ଜୟତି ଜୟ କୃପାନିଧାନା ॥୪॥
ନାକ କାନ କାଟେ ଜିୟଁ ଜାନୀ । ଫିରା କ୍ରୋଧ କରି ଭଇ ମନ ଗ୍ଲାନୀ ॥
ସହଜ ଭୀମ ପୁନି ବିନୁ ଶ୍ରୁତି ନାସା । ଦେଖତ କପି ଦଲ ଉପଜୀ ତ୍ରାସା ॥୫॥

ଜୟ ଜୟ ଜୟ ରଘୁବଂସମନି ଧାଏ କପି ଦୈ ହୂହ ।
ଏକହି ବାର ତାସୁ ପର ଛାଡ଼େନ୍ହି ଗିରି ତରୁ ଜୂହ ॥୬୭॥

କୁଂଭକରନ ରନ ରଂଗ ବିରୁଦ୍ଧା । ସନ୍ମୁଖ ଚଲା କାଲ ଜନୁ କ୍ରୁଦ୍ଧା ॥
କୋଟି କୋଟି କପି ଧରି ଧରି ଖାଈ । ଜନୁ ଟୀଡ଼ୀ ଗିରି ଗୁହାଁ ସମାଈ ॥୧॥

---

ଚରଣ ଧରି ଧରଣୀ ପରେ ପକାଇଲା । ଅତି ଶୀଘ୍ର ଉଠି ପୁଣି ତାକୁ ସେ ମାରିଲା ॥
ପୁଣି ଆସିଲା ପ୍ରଭୁ ପାଖେ ବଳବାନ । 'ଜୟେତୁ ଜୟେତୁ ଜୟ କରୁଣାନିଧାନ' ॥୪॥
ନାସିକା କର୍ଣ୍ଣ ଛେଦନ କୁମ୍ଭକର୍ଣ୍ଣ ଜାଣି । ଅତି କ୍ରୋଧେ ଲେଉଟିଲା ମନେ ମାନି ଗ୍ଲାନି ॥
ସହଜେ ଭୀମ ପୁନଶ୍ଚ ଶ୍ରୁତି-ନାସାହୀନ । ଦେଖି କମ୍ପିତ ହୋଇଲେ ବାନର ସଇନ ॥୫॥

କହି 'ଜୟ ଜୟ ରଘୁବଂଶରାୟ' କପି ଧାଇଁ କରି ହୁ ହୁ ।
ସର୍ବେ ତା ଉପରେ ଏକାସଙ୍ଗେ ତରୁ ଭୂଧର ଛାଡିଲେ ବହୁ ॥୬୭॥

କୁମ୍ଭକର୍ଣ୍ଣ ରଣ ରଙ୍ଗେ ହୋଇ ଉନ୍ମାଦିତ । ସମ୍ମୁଖେ ଆସିଲା ଯେସନ୍ତେ କାଳ କ୍ରୋଧାନ୍ୱିତ ॥
କୋଟି କୋଟି ମର୍କଟଙ୍କୁ ଗିଳେ ଧରି ଧରି । ସମ୍ଭ୍ରାନ୍ତ ଶଲଭ ଗିରି ଗହ୍ୱରେ ଯେପରି ॥୧॥

---

ସେତେବେଳେ ମାରୁତି ହନୁମାନ୍ ଜାଗି ଉଠିଲେ ଏବଂ ପୁଣି ସୁଗ୍ରୀବଙ୍କୁ ଖୋଜିବାକୁ ଲାଗିଲେ ॥ ୨ ॥ ସୁଗ୍ରୀବଙ୍କର ମଧ୍ୟ ମୂର୍ଚ୍ଛା ଦୂର ହେଲା । ସେତେବେଳେ ସେ ମଲାପରି ହୋଇ ତାହାର କାଖରୁ ଖସିଗଲେ । କୁମ୍ଭକର୍ଣ୍ଣ ତାହାଙ୍କୁ ମୃତ ବୋଲି ମନେ କଲା । ସେ ଭ୍ରାନ୍ତିରେ କୁମ୍ଭକର୍ଣ୍ଣର ନାକକାନ କାଟି ପକାଇଲେ ଏବଂ ଗର୍ଜନ କରି ଆକାଶ ଉପରକୁ ଉଠିଗଲେ । ସେତିକବେଳେ କୁମ୍ଭକର୍ଣ୍ଣ ତାଙ୍କ ଚତୁରତା ଜାଣି ପାରିଲା ॥ ୩ ॥ ସେ ସୁଗ୍ରୀବଙ୍କ ପାଦ ଧରି ତାହାଙ୍କୁ ଭୂମି ଉପରେ ପକାଇ ଦେଲା । ସୁଗ୍ରୀବ ଅତି ଫୁର୍ତ୍ତିରେ ଉଠି ତାହାଙ୍କୁ ମାରିଲେ । ତଦନନ୍ତର ବଳବାନ୍ ସୁଗ୍ରୀବ ପ୍ରଭୁଙ୍କ ନିକଟକୁ ଆସିଲେ ଏବଂ କହିଲେ, "କୃପାନିଧାନ ପ୍ରଭୁଙ୍କର ଜୟ ହେଉ, ଜୟ ହେଉ, ଜୟ ହେଉ ।" ॥ ୪ ॥ ନାକକାନ କଟିଯାଇଛି, ଏହା ଜାଣି କୁମ୍ଭକର୍ଣ୍ଣର ମନରେ ଅତିଶୟ ଗ୍ଲାନି ଜାତ ହେଲା ଏବଂ ସେ ଅତିଶୟ କ୍ରୋଧରେ ଲେଉଟିଲା । ଏକେ ତ ତାହାର ଆକୃତି ସହଜେ ଭୟଙ୍କର । ପୁଣି ନାସାକର୍ଣ୍ଣବିହୀନ ହେବାରୁ ଆହୁରି ଭୟାନକ ଦିଶୁଥାଏ । ତାହାଙ୍କୁ ଦେଖିବା ମାତ୍ରେ ବାନରସେନା ମଧ୍ୟରେ ଭୟ ଜାତ ହେଲା ॥ ୫ ॥ ଦୋହା—"ରଘୁବଂଶ-ମଣିଙ୍କର ଜୟ ହେଉ, ଜୟ ହେଉ, ଜୟ ହେଉ"—ଏହିପରି ଧ୍ୱନି ସହିତ ବାନରଗଣ 'ହୁ' 'ହୁ' କରି ଦୌଡ଼ିଲେ ଏବଂ ସମସ୍ତେ ଏକା ସଙ୍ଗେ ତାହା ଉପରକୁ ପର୍ବତ ଓ ବୃକ୍ଷମାନ ଛାଡ଼ିବାକୁ ଲାଗିଲେ ॥ ୬୭ ॥

କୋଟିନ୍ହ ଗହି ସରୀର ସନ ମର୍ଦା । କୋଟିନ୍ହ ମୀଜି ମିଲର୍ୱ ମହି ଗର୍ଦା ॥
ମୁଖ ନାସା ଶ୍ରବନନ୍ହି କୀଁ ବାଟା । ନିସରି ପରାହିଁ ଭାଲୁ କପି ଠାଟା ॥୨॥
ରନ ମଦ ମତ୍ତ ନିଶାଚର ଦର୍ପା । ବିଶ୍ୱ ଗ୍ରସିହି ଜନୁ ଏହି ବିଧି ଅର୍ପା ॥
ମୁରେ ସୁଭଟ ସବ ଫିରହିଁ ନ ଫେରେଁ । ସୂଝ ନ ନୟନ ସୁନହିଁ ନହିଁ ଟେରେଁ ॥୩॥
କୁମ୍ଭକରନ କପି ଫୌଜ ବିଡାରୀ । ସୁନି ଧାଈ ରଜନୀଚର ଧାରୀ ॥
ଦେଖୀ ରାମ ବିକଲ କଟକାଈ । ରିପୁ ଅନୀକ ନାନା ବିଧି ଆଈ ॥୪॥
ସୁନୁ ସୁଗ୍ରୀବ ବିଭୀଷନ ଅନୁଜ ସଁଭାରେହୁ ସୈନ ।
ମୈଁ ଦେଖଉଁ ଖଲ ବଲ ଦଲହି ବୋଲେ ରାଜିବନୈନ ॥୬୨॥

---

କୋଟିଙ୍କୁ ଧରି ଆପଣା ଅଙ୍ଗେ ମରଦିଲା । କୋଟିଙ୍କୁ ମଳି ଧୂଳିରେ ପୁଣି ମିଳାଇଲା ॥
ମୁଖ ନାସିକା ଆବର ଶ୍ରବଣ ବାଟରେ । ବାହାରି ପଳାନ୍ତି ଭାଲୁ ମର୍କଟ ନିକରେ ॥୨॥
ରଣ ମଦୋନ୍ମତ୍ତ ନିଶାଚର କଲା ଦର୍ପ । ଜବା ବିଶ୍ୱ ଗ୍ରାସିବାକୁ କରିଛି ସଙ୍କଳ୍ପ ॥
ପଳାନ୍ତି ବୀରେ ଫେରାନ୍ତେ ଲଣେ ନ ଫେରନ୍ତି । ନ ଦିଶେ ନେତ୍ରେ,ଡାକିଲେ ମୁଦ୍ଧା ନ ଶୁଣନ୍ତି॥୩॥
କପି ସୈନ୍ୟ ଅସ୍ତବ୍ୟସ୍ତ କଲା କୁମ୍ଭକର୍ଣ୍ଣ । ଶୁଣନ୍ତେ ଧାଇଁଲେ ଶୀଘ୍ର ନିଶାଚର ଗଣ ॥
ଦେଖି ରଘୁନାଥ ନିଜ ସେନାଙ୍କୁ ବିକଳ । ପୁଣି ଆସୁଛନ୍ତି ଭରି ରିପୁ ଦଳ ବଳ ॥୪॥
ଶୁଣ ବିଭୀଷଣ ସୁଗ୍ରୀବ ଲକ୍ଷ୍ମଣ, ସମ୍ଭାଳ ତୁମ୍ଭେ ସୈନ୍ୟଙ୍କୁ ।
ଭାଷିଲେ ରାଜୀବ-ନୟନ, ମୁଁ ଯାଇ ଦେଖିବି ଖଳ ଦଳଙ୍କୁ ॥୬୨॥

---

ଚୌପାଈ :—ରଣରଙ୍ଗରେ ଉନ୍ମତ୍ତ କୁମ୍ଭକର୍ଣ୍ଣ ସେମାନଙ୍କ ବିରୁଦ୍ଧରେ ସମ୍ମୁଖରେ ଏପରି ଗର୍ଜୁଥାଏ ଯେ ତାହାକୁ ଦେଖି ବୋଧ ହେଉଥାଏ, ସତେ ଅବା କାଳ ଆସୁଅଛି ! ସେ କୋଟି କୋଟି ବାନରଙ୍କୁ ଏକା ସଙ୍ଗରେ ଧରି ଧରି ଖାଇବାରେ ଲାଗିଲା । ବାନରମାନେ ତାହାର ପାଟିରେ ପର୍ବତ ଗୁମ୍ଫାରେ ପଙ୍ଗପାଳ ଦଳ ସମ୍ଭାଇଗଲା ପରି ପଶି ଯାଉଥା'ନ୍ତି ॥ ୧ ॥ କୋଟି କୋଟି ବାନରଙ୍କୁ ଧରି ସେ ଶରୀରରେ ମର୍ଦ୍ଦନ କରି ପକାଇଲା । କୋଟି କୋଟି ବାନରଙ୍କୁ ହାତରେ ମଳି ପୃଥିବୀର ଧୂଳିରେ ମିଳାଇଦେଲା । ପେଟରେ ପଶିଥିବା ଭାଲୁ ଓ ବାନରମାନେ ପଲ ପଲ ହୋଇ ତାହାର ପାଟି, ନାକ ଓ କାନ ବାଟ ଦେଇ ବାହାରି ପଳାଇ ଯାଉଥା'ନ୍ତି ॥ ୨ ॥ ରଣମଦରେ ଉନ୍ମତ୍ତ ରାକ୍ଷସ କୁମ୍ଭକର୍ଣ୍ଣ ମନେ ମନେ ଅତ୍ୟନ୍ତ ଗର୍ବିତ ହେଲା । ସତେ ଅବା ବିଧାତା ତାହାକୁ ସମଗ୍ର ବିଶ୍ୱ ଅର୍ପଣ କରି ଦେଇଅଛନ୍ତି ଏବଂ ସେ ତାହାକୁ ଗ୍ରାସ କରି ପକାଇବ ' ସମସ୍ତ ଯୋଦ୍ଧା ଦୌଡ଼ି ଛୁଟା ହେଲେ । ସେମାନଙ୍କୁ ଲେଉଟାଇଲେ ମୁଦ୍ଧା ସେମାନେ ଲେଉଟୁ ନ ଥା'ନ୍ତି । ସେମାନଙ୍କ ଆଖିକୁ ବାଟ ଦିଶୁ ନ ଥାଏ ଏବଂ ଡାକିଲେ ମୁଦ୍ଧା ସେମାନେ ଶୁଣୁ ନ ଥା'ନ୍ତି ! ॥ ୩ ॥ କୁମ୍ଭକର୍ଣ୍ଣ ବାନର ସେନାକୁ ଇତସ୍ତତଃ କରି ପକାଇଲା । ଏହା ଶୁଣି ରାକ୍ଷସସେନା ମଧ୍ୟ ଦୌଡ଼ିଲେ । ଶ୍ରୀରାମଚନ୍ଦ୍ର ଦେଖିଲେ ଯେ, ତାଙ୍କର ବାନରସେନା ବ୍ୟାକୁଳ ଏବଂ ଶତ୍ରୁପକ୍ଷର ନାନା ପ୍ରକାର

କର ସାରଂଗ ସାଜି କଟି ଭାଥା । ଅରି ଦଲ ଦଲନ ଚଲେ ରଘୁନାଥା ॥
ପ୍ରଥମ କୀହ୍ନି ପ୍ରଭୁ ଧନୁଷ ଟଁକୋରା । ରିପୁଦଲ ବଧିର ଭୟଉ ସୁନି ସୋରା ॥୧॥
ସତ୍ୟସଂଧ ଛାଁଡେ ସର ଲକ୍ଷା । କାଲସର୍ପ ଜନୁ ଚଲେ ସପକ୍ଷା ॥
ଜହଁ ତହଁ ଚଲେ ବିପୁଲ ନାରାଚା । ଲଗେ କଟନ ଭଟ ବିକଟ ପିସାଚା ॥୨॥
କଟହିଁ ଚରନ ଉର ସିର ଭୁଜଦଂଡା । ବହୁତକ ବୀର ହୋହିଁ ସତ ଖଂଡା ॥
ଘୁର୍ମି ଘୁର୍ମି ଘାୟଲ ମହି ପରହୀଁ । ଉଠି ସଂଭାରି ସୁଭଟ ପୁନି ଲରହୀଁ ॥୩॥
ଲାଗତ ବାନ ଜଲଦ ଜିମି ଗାଜହିଁ । ବହୁତକ ଦେଖି କଠିନ ସର ଭାଜହିଁ ॥
ରୁଁଡ ପ୍ରଚଣ୍ଡ ମୁଁଡ ବିନୁ ଧାୱହିଁ । ଧରୁ ଧରୁ ମାରୁ ମାରୁ ଧୁନି ଗାୱହିଁ ॥୪॥

ଛନ ମହୁଁ ପ୍ରଭୁକେ ସାୟକନ୍ହି କାଟେ ବିକଟ ପିସାଚ ।
ପୁନି ରଘୁବୀର ନିଷଂଗ ମହୁଁ ପ୍ରବିସେ ସବ ନାରାଚ ॥୬୮॥

---

ହସ୍ତରେ ଶାରଙ୍ଗ ସାଜି କଟିରେ ତୂଣୀର । ଅରି ଦଳ ଦଳିବାକୁ ଗଲେ ରଘୁବୀର ॥
ପ୍ରଥମେ ପ୍ରଭୁ କୋଦଣ୍ଡ ଟଙ୍କାର କରିଲେ । ଶବ୍ଦ ଶୁଣି ଶତ୍ରୁ ଦଳ ବଧିର ହୋଇଲେ ॥୧॥
ସତ୍ୟସନ୍ଧ ପ୍ରଭୁ ଶର ପ୍ରହାରିଲେ ଲକ୍ଷ । ମନେହୁଏ କାଳସର୍ପ ଚଳନ୍ତି ସପକ୍ଷ ॥
ଅତ୍ୟନ୍ତ ବେଗେ ଚଳିଣ ନାରାଚ ନିକର । କାଟିବାକୁ ଆରମ୍ଭିଲେ ବୀର ଭୟଙ୍କର ॥୨॥
କଟଇ ଚରଣ ଶିର ଉର ଭୁଜ ଦଣ୍ଡ । ବହୁତ ବୀର ହୁଅନ୍ତି ଶତ ଶତ ଖଣ୍ଡ ॥
ଭ୍ରମି ଭ୍ରମି କ୍ଷତ ବୀରେ ମହୀରେ ପଡନ୍ତି । ସମ୍ଭାଳି ଉଠି ଆବର ଲେଉଟି ଲଢନ୍ତି ॥୩॥
ବାଜନ୍ତେ ବାଣ ଜଳଦ ସଦୃଶ ଗର୍ଜନ୍ତି । ଦେଖି ତୀକ୍ଷ୍ଣ ଶର କେତେ ପଳାଇ ଚଳନ୍ତି ॥
ମସ୍ତକହୀନ ପ୍ରଚଣ୍ଡ ଗଣ୍ଡି ଦଉଡନ୍ତି । 'ଧର ଧର' 'ମାର ମାର' ଶବ୍ଦ ଉଚ୍ଚାରନ୍ତି ॥୪॥

କ୍ଷଣକେ ପ୍ରଭୁଙ୍କ ଶାୟକ-ବୃନ୍ଦକ କାଟି ବିକଟ ପିଶାଚ ।
ଆସି ରଘୁମଣି ତୂଣୀରରେ ପୁଣି ପ୍ରବେଶ ହେଲେ ନାରାଚ ॥୬୮॥

---

ସେନା ଆସିଗଲେଣି ॥ ୪ ॥ ଦୋହା :—ସେତେବେଳେ କମଳନୟନ ଶ୍ରୀରାମ କହିଲେ, "ହେ ସୁଗ୍ରୀବ ! ହେ ବିଭୀଷଣ ! ହେ ଲକ୍ଷ୍ମଣ ! ଶୁଣ, ତୁମ୍ଭେମାନେ ସେନାଙ୍କୁ ସମ୍ଭାଳ । ମୁଁ ଏହି ଦୁଷ୍ଟର ବଳ ଓ ସୈନ୍ୟମାନଙ୍କୁ ଦେଖିନେଉଛି ।" ॥ ୬୭ ॥
ଚୌପାଈ :—ହସ୍ତରେ ଧନୁ ଓ କଟିରେ ତୂଣୀର ସଜାଇ ରଖି ଶ୍ରୀ ରଘୁନାଥ ଶତ୍ରୁ ସେନାକୁ ଦଳନ କରିବାକୁ ଲାଗିଲେ । ପ୍ରଭୁ ପ୍ରଥମେ ତ ଧନୁର ଟଙ୍କାର କଲେ । ଟଙ୍କାରର ଭୟାନକ ଶବ୍ଦ ଶୁଣିବା ମାତ୍ରେ ଶତ୍ରୁ ଦଳ ବଧିର ହୋଇପଡିଲେ ॥ ୧ ॥ ତତ୍ପରେ ସତ୍ୟପ୍ରତିଜ୍ଞ ଶ୍ରୀରାମ ଲକ୍ଷେ ଶର ଛାଡିଲେ । ପକ୍ଷଧାରୀ କାଳସର୍ପ ଚାଲିଲା ପରି ସେହି ସବୁ ଶର ଚାଲୁଥାଏ । ଏଣେତେଣେ ବହୁତ ଶର ଉଡି ଚାଲିଥାଏ ଏବଂ ସେଗୁଡିକରେ ଭୟଙ୍କର ରାକ୍ଷସ ଯୋଦ୍ଧାମାନେ କଟିଯାଉଥା'ନ୍ତି ॥ ୨ ॥ ସେମାନଙ୍କର ପାଦ, ଛାତି ଓ ବାହୁଦଣ୍ଡ କଟିଯାଉଥାଏ । ବହୁତ ବୀର ଶହ ଶହ ଖଣ୍ଡରେ ବିଭକ୍ତ ହୋଇଯାଉଥା'ନ୍ତି । ଆହତମାନେ ଚକ୍କର ଖାଇ ଭୂମି ଉପରେ ଲୋଟି ପଡୁଥା'ନ୍ତି ।

କୁମ୍ଭକରନ ମନ ଦୀଖ ବିଚାରୀ । ହତି ଛନ ମାଝ ନିସାଚର ଧାରୀ ॥
ଭା ଅତି କ୍ରୁଦ୍ଧ ମହାବଲ ବୀରା । କିୟୋ ମୃଗନାୟକ ନାଦ ଗଁଭୀରା ॥୧॥
କୋପି ମହୀଧର ଲେଇ ଉପାରୀ । ଡାରଇ ଜହଁ ମର୍କଟ ଭଟ ଭାରୀ ॥
ଆୱତ ଦେଖି ସୈଲ ପ୍ରଭୁ ଭାରେ । ସରହିଁ କାଟି ରଜ ସମ କରି ଡାରେ ॥୨॥
ପୁନି ଧନୁ ତାନି କୋପି ରଘୁନାୟକ । ଛାଁଡେ ଅତି କରାଲ ବହୁ ସାୟକ ॥
ତନୁ ମହୁଁ ପ୍ରବିସି ନିସରି ସର ଜାହୀଁ । ଜିମି ଦାମିନି ଘନ ମାଝ ସମାହୀଁ ॥୩॥
ସୋନିତ ସ୍ରବତ ସୋହ ତନୁ କାରେ । ଜନୁ କଜ୍ଜଲ ଗିରି ଗେରୁ ପନାରେ ॥
ବିକଲ ବିଲୋକି ଭାଲୁ କପି ଧାଏ । ବିହଁସା ଜବହିଁ ନିକଟ କପି ଆଏ ॥୪॥

---

ତହୁଁ ମନ ମଧ୍ୟେ ବିଚାରିଲା କୁମ୍ଭକର୍ଣ୍ଣ । କ୍ଷଣ ମଧ୍ୟେ ହତ ହେଲେ ନିଶାଚର ଗଣ ॥
ହୋଇଣ ଅତ୍ୟନ୍ତ କ୍ରୁଦ୍ଧ ମହାବଳ ବୀର । କଲଣ ମୃଗନାୟକ ନିନାଦ ଗମ୍ଭୀର ॥୧॥
କୋପି ମହା ମହୀଧର ଉପାଡି ଆଣିଲା । ଯହିଁ ଋକ୍ଷ ମରକଟ ତହିଁ କସ୍ପିଡିଲା ॥
ବିଶାଳ ଶଇଳ ପ୍ରଭୁ ଆସିବା ଦେଖିଣ । ରଜ ପରି ଚୂର୍ଣ୍ଣ କଲେ ନାରାଚେ କାଟିଣ ॥୨॥
ପୁଣି ଧନୁ ଟାଣି କୋପି ଶ୍ରୀ ରଘୁନାୟକ । ଛାଡିଲେ ଅତି କରାଳ ଅସଂଖ୍ୟ ଶାୟକ ॥
ତନୁରେ ପ୍ରବେଶି ଶର ବାହାରି ଯାଆନ୍ତି । ଯେସନେ ଦାମିନୀ ଘନ ମଧ୍ୟେ ମିଳଯାନ୍ତି ॥୩॥
ଶୋଣିତ ସ୍ରବଣ କୃଷ୍ଣ ଶରୀର ଶୋଭଇ । କଜ୍ଜଳ-ଗିରିରୁ ଗେରୁ ଧାର କି ବହଇ ॥
ବିକଳ ଦେଖି ତାହାକୁ ଧାଇଁଲେ ମର୍କଟ । ଅଟ୍ଟହାସ କଲା ସେହି ଆସନ୍ତେ ନିକଟ ॥୪॥

---

ଉତ୍ତମ ଯୋଦ୍ଧାମାନେ ପୁଣି ସମ୍ଭାଳି ଉଠୁଥା'ନ୍ତି ଏବଂ ଲଢୁଥା'ନ୍ତି ॥ ୩ ॥ ବାଣ ବାଜିବା ମାତ୍ରେ ସେମାନେ ମେଘ ପରି ଗର୍ଜନ କରୁଥା'ନ୍ତି । ଅନେକେ କଠୋର ବାଣ ଦେଖିବା ମାତ୍ରେ ପଳାଇ ଯାଉଥା'ନ୍ତି । ଛିନ୍ନମସ୍ତକ ପ୍ରଚଣ୍ଡ କବନ୍ଧ ସବୁ ଦୌଡୁଥା'ନ୍ତି ଏବଂ 'ଧର', 'ଧର', 'ମାର', 'ମାର' ଧ୍ୱନି ଗାନ (ଉଚାରଣ) କରୁଥା'ନ୍ତି ॥୪॥ ଦୋହା :— ପ୍ରଭୁଙ୍କ ବାଣ କ୍ଷଣ ମାତ୍ରକ ମଧ୍ୟରେ ଭୟାନକ ରାକ୍ଷସମାନଙ୍କୁ କାଟି ରଖିଦେଲା । ପୁଣି ସେହି ବାଣ ସବୁ ଫେରି ଶ୍ରୀରାମଙ୍କ ତୂଣୀରରେ ପ୍ରବେଶ କଲା ॥ ୬୮ ॥ ଚୌପାଇ :— କୁମ୍ଭକର୍ଣ୍ଣ ବିଚାର କରି ଦେଖିଲା ଯେ, ଶ୍ରୀରାମ କ୍ଷଣ ମାତ୍ରକ ମଧ୍ୟରେ ରାକ୍ଷସ ସେନାକୁ ସଂହାର କରି ପକାଇଲେଣି । ସେତେବେଳେ ସେ ମହାବଳୀ ଅତ୍ୟନ୍ତ କ୍ରୁଦ୍ଧ ହୋଇ ଗମ୍ଭୀର ସିଂହନାଦ କଲା ॥ ୧ ॥ ସେ କ୍ରୋଧ କରି ପର୍ବତ ଉପାଡି ପକାଉଥାଏ ଏବଂ ଅତି ମହାବୀର ବାନର ଯୋଦ୍ଧା ଥିବା ସ୍ଥାନମାନଙ୍କରେ ତାହା ପକାଇ ଦେଉଥାଏ । ବଡ ବଡ ପର୍ବତ ସବୁ ଆସୁଥିବାର ଦେଖି ପ୍ରଭୁ ସେଗୁଡିକୁ ଶରରେ କାଟି ଧୂଳି ପରି ଚୂର୍ଣ୍ଣ କରି ପକାଇଲେ ॥ ୨ ॥ ପୁଣି ରଘୁନାଥ ଧନୁକୁ ଆକର୍ଷି ଅତ୍ୟନ୍ତ ଭୟାନକ ଶର ଛାଡିଲେ । ସେହି ସବୁ ବାଣ କୁମ୍ଭକର୍ଣ୍ଣର ଶରୀରରେ ପଶି ତାହାର ଅଜ୍ଞାତରେ ପିଠିପଟେ ବାହାରି ଯାଉଥାଏ । ସତେ ଅବା ମେଘ ଦେହରେ ବିଜୁଳି ଲୀନ ହୋଇ-ଯାଉଛି ! ॥୩॥ ତାହାର କଳା ଦେହରୁ ରକ୍ତ ବହି ଏପରି ଶୋଭା ପାଉଥାଏ, ସତେ

ମହାନାଦ କରି ଗର୍ଜା କୋଟି କୋଟି ଗହି କୀସ ।
महि पटकइ गजराज इव सपथ करइ दससीस ॥६९॥
ଭାଗେ ଭାଲୁ ବଲୀମୁଖ ଜୂଥା । ବୃକୁ ବିଲୋକି ଜିମି ମେଷ ବରୂଥା ॥
ଚଲେ ଭାଗି କପି ଭାଲୁ ଭବାନୀ । ବିକଲ ପୁକାରତ ଆରତ ବାନୀ ॥୧॥
ୟହ ନିସିଚର ଦୁକାଲ ସମ ଅହଈ । କପିକୁଲ ଦେସ ପରନ ଅବ ଚହଈ ॥
କୃପା ବାରିଧର ରାମ ଖରାରୀ । ପାହି ପାହି ପ୍ରନତାରତି ହାରୀ ॥୨॥
ସକରୁନ ବଚନ ସୁନତ ଭଗବାନା । ଚଲେ ସୁଧାରି ସରାସନ ବାନା ॥
ରାମ ସେନ ନିଜ ପାଛେଁ ଘାଲୀ । ଚଲେ ସକୋପ ମହା ବଲସାଲୀ ॥୩॥
ଖୈଁଚି ଧନୁଷ ସର ସତ ସଂଧାନେ । ଛୁଟେ ତୀର ସରୀର ସମାନେ ॥
ଲାଗତ ସର ଧାୱା ରିସ ଭରା । କୁଧର ଡଗମଗତ ଡୋଲତି ଧରା ॥୪॥

ମହାନାଦ କରି ଗରଜିଲା ଭରି କୋଟି କୋଟି କପି ମଣ୍ଡ ।
କଚାଡଇ ଧରି ଗଜରାଜ ପରି 'ରାବଣର ଜୟ' କହି ॥୬୯॥
ପଳାଇଲେ ତହୁଁ ଭାଲୁ ମର୍କଟ ସମସ୍ତ । ବୃକକୁ ଦେଖନ୍ତେ ମେଷ ସମୂହ ଯେମନ୍ତ ॥
ପଳାଇ ଚଲିଲେ ଋକ୍ଷ କପି, ପାର୍ବତୀ । ବିକଳେ ଆରତ ବାଣୀ ଚିତ୍କାର କରନ୍ତି ॥୧॥
ଏ ନିଶାଚର ଅକାଳ ସଦୃଶ ଅଟଇ । କପି-କୁଳ-ଦେଶେ ଏବେ ପଡ଼ିବା ଚାହିଁଇ ॥
କୃପା ବାରିଧର ରଘୁନାୟକ ଖରାରି । ତ୍ରାହି ତ୍ରାହି ଦୀନବନ୍ଧୁ ଆର୍ତ୍ତି-ଦୁଃଖ-ହାରି ॥୨॥
ଶୁଣି ପ୍ରଭୁ ଭଗବାନ କରୁଣ ବଚନ । ଚଳିଲେ ସଜାଇ ତହୁଁ ଶରାସନ ।
ରାମ ନିଜ ସୈନ୍ୟଙ୍କୁ କରିଣ ପଛରେ । ମହାବଳ-ଶାଳୀ ଆଗମିଲେ କ୍ରୋଧଭରେ ॥୩॥
ଧନୁ ଆକର୍ଷିଣ ଶତ ଶର ସନ୍ଧାନିଲେ । ଛୁଟନ୍ତେ କୁମ୍ଭକର୍ଣ୍ଣର ଦେହେ ପ୍ରବେଶିଲେ ॥
ବାଜନ୍ତେ ବାଣ କ୍ରୋଧରେ ଦ୍ୱିଗୁଣ ଧାଇଁଲା । ଥର ଥର ଧରାଧର ଧରଣୀ କମ୍ପିଲା ॥୪॥

ଅବା କଜ୍ଜଳ ପର୍ବତରୁ ଗେରୁର ଧାର ବହି ଯାଉଅଛୁ ! ତାହାର ବ୍ୟାକୁଳତା ଦେଖି ଭଲ୍ଲୁକ ଓ ବାନରମାନେ ଧାଇଁଲେ । ସେମାନେ ନିକଟକୁ ଆସିବା ମାତ୍ରେ ସେ ହସିବାକୁ ଲାଗିଲା ॥ ୪ ॥ ଦୋହା —ଏବଂ ଅତି ଘୋର ଶବ୍ଦରେ ଗର୍ଜନ କଲା । କୋଟି କୋଟି ବାନରଙ୍କୁ ଧରି ଗଜରାଜ ପରି ସେ ସେମାନଙ୍କୁ ଭୂମି ଉପରେ କଚାଡ଼ିବାକୁ ଲାଗିଲା ଏବଂ ରାବଣର ଜୟଧ୍ୱନି କରିବାକୁ ଲାଗିଲା ॥ ୬୯ ॥ ଚୌପାଇ :—ଏହା ଦେଖି ଭଲ୍ଲୁକ ଓ ବାନର ଦଳମାନେ ବ୍ୟାଘ୍ରକୁ ଦେଖି ମେଣ୍ଢାପଲ ଦୌଡ଼ି ପଳାଇଲା ପରି ପଳାଇଗଲେ । ଶିବ କହନ୍ତି, "ହେ ଭବାନି ! ବାନର ଓ ଭଲ୍ଲୁକମାନେ ବ୍ୟାକୁଳ ହୋଇ ଆର୍ତ୍ତସ୍ୱରରେ ଚିତ୍କାର କରି ଦୌଡ଼ି ପଳାଇଲେ ।" ॥୧॥ ସେମାନେ କହିବାକୁ ଲାଗିଲେ, "ଏ ରାକ୍ଷସମାନେ ଦୁର୍ଭିକ୍ଷ ପରି । ବାନର-କୁଳ-ଦେଶରେ ସେମାନେ ପଡ଼ିବାକୁ ଚାହାନ୍ତି । ହେ କୃପା-ଜଳଧର ଶ୍ରୀରାମ ! ହେ ଖରାରି ! ହେ ଶରଣାଗତ-ଦୁଃଖହାରକ ! ରକ୍ଷା କରନ୍ତୁ, ରକ୍ଷା କରନ୍ତୁ ॥ ୨ ॥ କରୁଣ ବଚନ

ଲୀନ୍ହ ଏକ ତେହିଁ ସୈଲ ଉପାଟୀ । ରଘୁକୁଲତିଲକ ଭୁଜା ସୋଇ କାଟୀ ॥
ଧାଓ୍ୱା ବାମ ବାହୁ ଗିରି ଧାରୀ । ପ୍ରଭୁ ସୋଉ ଭୁଜା କାଟି ମହି ପାରୀ ॥୫॥
କାଟେଁ ଭୁଜା ସୋହ ଖଲ କୈସା । ପଚ୍ଛହୀନ ମଂଦର ଗିରି ଜୈସା ॥
ଉଗ୍ର ବିଲୋକନି ପ୍ରଭୁହି ବିଲୋକା । ଗ୍ରସନ ଚହତ ମାନହୁଁ ତ୍ରୈଲୋକା ॥୬॥

କରି ଚିକ୍କାର ଘୋର ଅତି ଧାଓ୍ୱା ବଦନୁ ପସାରି ।
ଗଗନ ସିଦ୍ଧ ସୁର ତ୍ରାସିତ ହା ହା ହେତି ପୁକାରି ॥୭୦॥

ସଭୟ ଦେବ କରୁନାନିଧି ଜାନ୍ୟୋ । ଶ୍ରବନ ପ୍ରଜଂତ ସରାସନୁ ତାନ୍ୟୋ ॥
ବିସିଖନିକର ନିସିଚର ମୁଖ ଭରେଊ । ତଦପି ମହାବଲ ଭୂମି ନ ପରେଊ ॥୧॥

---

ନେଲା ସେ ଏକ ଶଇଳ ଶିଖର ଉପାଡ଼ି । ରଘୁକୁଳତିଳକ ସେ ଭୁଜ ଦେଲେ କାଟି ॥
ଧାଇଁଲା ବାମ ବାହୁରେ ଗିରିବର ବହି । ପ୍ରଭୁ ସେହି ଭୁଜ କାଟି ପକାଇଲେ ମହୀ ॥୫॥
ଭୁଜ କଟିଯାନ୍ତେ ଖଳ ଶୋଭିଲା ତେମନ୍ତ । ପକ୍ଷ ରହିତ ମନ୍ଦର ପର୍ବତ ଯେମନ୍ତ ॥
ଉଗ୍ର ଦୃଷ୍ଟିରେ ପ୍ରଭୁଙ୍କୁ ଚହିଁ ବିଲୋକିଲା । ମନେ ହୁଏ, ତିନିଲୋକ ଗ୍ରସିନେ ଚାହିଁଲା ॥୬॥

ଧାଇଁଲା ସେ ଗୁଣ୍ଡ ଅତି ଘୋର ରଡ଼ି ବଦନ କରି ବିସ୍ତାର ।
ନଭେ ସିଦ୍ଧ ସୁର ହୋଇ ଭୟାତୁର କଲେ ସର୍ବେ ହାହାକାର ॥୭୦॥

ସଭୀତ ବିବୁଧ-ବୃନ୍ଦ କୃପାନିଧି ଜାଣି । ଶ୍ରବଣ ପର୍ଯ୍ୟନ୍ତେ ଦୃଢ଼ ଶରାସନ ଟାଣି ॥
ବହୁ ବାଣ ପୂର୍ଣ୍ଣ କଲେ ରାକ୍ଷସ ମୁଖରେ । ତଥାପି ନ ପଡ଼େ ମହାବଳୀ ଭୂତଳରେ ॥୧॥

---

ଶୁଣିବା ମାତ୍ରେ ଭଗବାନ୍ ଧନୁର୍ବାଣ ସଜାଇ ଚାଲିଲେ । ମହାବଳୀ ଶ୍ରୀରାମ ସେନାଙ୍କୁ ପଶ୍ଚାଦ୍ଭାଗରେ ରଖିଲେ ଏବଂ ସେ ଏକାକୀ କ୍ରୋଧରେ ଅଗ୍ରସର ହେଲେ ॥ ୩ ॥ ସେ ଧନୁକୁ ଆକର୍ଷି ତହିଁରେ ଶତେହ ଶର ଯୋଖିଲେ । ବାଣ ସବୁ ଛୁଟିଲା ଏବଂ ତାହାର ଶରୀରରେ ପଶିଗଲା । ବାଣ ବାଜିବା ମାତ୍ରେ ସେ କ୍ରୋଧରେ ପୂର୍ଣ୍ଣ ହୋଇ ଧାଇଁଲା । ସେ ଧାଇଁଲା ବେଳେ ପର୍ବତମାନ ଦୋହଲିବାକୁ ଲାଗିଲେ ଏବଂ ପୃଥିବୀ ହଲିବାକୁ ଲାଗିଲା ॥ ୪ ॥ ସେ ଗୋଟିଏ ପର୍ବତ ଓପାଡ଼ି ନେଲା । ରଘୁକୁଳତିଳକ ଶ୍ରୀରାମ ତାହାର ସେହି ବାହୁଟିକୁ କାଟି ପକାଇଲେ । ତେଣୁ ସେ ବାମ ହସ୍ତରେ ପର୍ବତକୁ ନେଇ ଧାଇଁଲା । ପ୍ରଭୁ ତାହାର ସେ ବାହୁଟିକୁ ମଧ୍ୟ କାଟି ଭୂମି ଉପରେ ପକାଇ ଦେଲେ ॥୫॥ ବାହୁ କଟିଯିବା ପରେ ସେ ପକ୍ଷହୀନ ମନ୍ଦରାଚଳ ପରି ଶୋଭା ପାଇଲା । ସେ ଉଗ୍ର ଦୃଷ୍ଟିରେ ପ୍ରଭୁଙ୍କୁ ଚାହିଁଲା । ସତେ ଅବା ତିନି ଲୋକକୁ ଗିଳି ପକାଇବାକୁ ଉଦ୍‌ଗ୍ରୀବ ! ॥୬॥ ସେ ଅତି ଜୋରରେ ଗର୍ଜନ କରି ପାଟି ମେଲା କରି ଧାଇଁଲା । ଆକାଶରେ ସିଦ୍ଧ ଓ ଦେବତାଗଣ ଡରି 'ହା !' 'ହା !' 'ହା !' କହି ଚିତ୍କାର କରିବାକୁ ଲାଗିଲେ ॥୭୦॥ ଚୌପାଈ :—କରୁଣାନିଧି ଭଗବାନ୍ ଦେବତାମାନେ ଭୟଭୀତ ହୋଇ ପଡ଼ିଛନ୍ତି ବୋଲି ଜାଣିପାରିଲେ । ତେଣୁ ସେ ଧନୁକୁ କାନ ପର୍ଯ୍ୟନ୍ତ ଟାଣି ରାକ୍ଷସର ମୁହଁକୁ ବାଣଗୁଡ଼ିକ ଦ୍ୱାରା ଭରିଦେଲେ । ତଥାପି ସେ ମହାବଳୀ ଭୂମି ଉପରେ ପଡ଼ିଲା ନାହିଁ ॥୧॥

ସରନ୍ହି ଭରା ମୁଖ ସନ୍ମୁଖ ଧାୱା । କାଲ ତ୍ରୋନ ସଜୀବ ଜନୁ ଆୱା ॥
ତବ ପ୍ରଭୁ କୋପି ତୀବ୍ର ସର ଲୀନ୍ହା । ଧର ତେଁ ଭିନ୍ନ ତାସୁ ସିର କୀନ୍ହା ॥୧॥
ସୋ ସିର ପରେଉ ଦସାନନ ଆଗେଁ । ବିକଲ ଭୟଉ ଜିମି ଫନି ମନି ତ୍ୟାଗେଁ ॥
ଧରନି ଧସଇ ଧର ଧାୱ ପ୍ରଚଂଡା । ତବ ପ୍ରଭୁ କାଟି କୀନ୍ହ ଦୁଇ ଖଂଡା ॥୩॥
ପରେ ଭୂମି ଜିମି ନଭ ତେଁ ଭୂଧର । ହେଠ ଦାବି କପି ଭାଲୁ ନିସାଚର ॥
ତାସୁ ତେଜ ପ୍ରଭୁ ବଦନ ସମାନା । ସୁର ମୁନି ସବହିଁ ଅଚଂଭବ ମାନା ॥୪॥
ସୁର ଦୁଂଦୁଭୀଂ ବଜାୱହିଁ ହରଷହିଁ । ଅସ୍ତୁତି କରହିଁ ସୁମନ ବହୁ ବରଷହିଁ ॥
କରି ବିନତୀ ସୁର ସକଲ ସିଧାଏ । ତେହୀ ସମୟ ଦେବରିଷି ଆଏ ॥୫॥
ଗଗନୋପରି ହରି ଗୁନ ଗନ ଗାଏ । ରୁଚିର ବୀରରସ ପ୍ରଭୁ ମନ ଭାଏ ॥
ବେଗି ହତହୁ ଖଲ କହି ମୁନି ଗଏ । ରାମ ସମର ମହି ସୋଭତ ଭଏ ॥୬॥

---

ଶରପୂର୍ଣ୍ଣ ମୁଖ ହୋଇ ସମ୍ମୁଖେ ଧାଇଁଇ । ଜୀବନ୍ତ ତୂଣୀର ରୂପେ କାଲ କି ଆସଇ ॥
ତହୁଁ ପ୍ରଭୁ କୋପ କରି ମାରି ତୀକ୍ଷ୍ଣ ଶର । ବିଚ୍ଛିନ୍ନ କଲେ ତାହାର ଶରୀରରୁ ଶିର ॥୧॥
ସେ ଶିର ପଡ଼ିଲା ଯାଇ ଦଶାନନ ଆଗେ । ବିକଳ ହୋଇଲା ଯଥା ଫଣୀ ମଣି ତ୍ୟାଗେ ॥
ଧରଣୀ ଧସାଇ ଧାଏଁ ତା' ଗଣ୍ଡି ପ୍ରଚଣ୍ଡ । ପୁଣି ପ୍ରଭୁ ଶର ମାରି କଲେ ଦେନିଖଣ୍ଡ ॥୩॥
ପଡ଼ିଲା ଭୂମିରେ ଯେହ୍ନେ ନଭରୁ ଭୂଧର । ତଳେ ମାଡ଼ି ଭାଲୁ ମରକଟ ନିଶାଚର ॥
ତାହାର ତେଜ ମିଳିଲା ପ୍ରଭୁଙ୍କ ବଦନେ । ଦେଖି ଆଶ୍ଚର୍ଯ୍ୟ ମଣିଲେ ସୁର ମୁନି ଜନେ ॥୪॥
ସୁରେ ଦୁନ୍ଦୁଭି ବଜାଇ ହରଷ ହୁଅନ୍ତି । 'ଜୟ ଜୟ' କହି ନଭୁ ପୁଷ୍ପ ବରଷନ୍ତି ॥
ବିନତି କରି ବିବୁଧ ନିକର ଚଳିଲେ । ସେହି ସମୟରେ ଦେବ ଋଷି ଆଗମିଲେ ॥୫॥
ଗଗନେ ଆଇ ଗାଆନ୍ତି ହରି ଗୁଣ ଗଣ । ଦିବ୍ୟ ବୀର-ରସ ଭରି, ପ୍ରଭୁ ମୋଦ ମନ ॥
ଶୀଘ୍ର ଦୁଷ୍ଟେ ମାରି, ମୁନି କହୁଣ ଚଳିଲେ । ରାମ ସମର ଭୂମିରେ ଶୋଭିତ ହୋଇଲେ ॥୬॥

---

ମୁଖ ବାଣରେ ପରିପୂର୍ଣ୍ଣ । ଏହିପରି ଅବସ୍ଥାରେ ସେ ପ୍ରଭୁଙ୍କ ସମ୍ମୁଖରେ ଧାଇଁଲା । ସତେ ଅବା କାଳ ଜୀବନ୍ତ ତୂଣୀର ରୂପ ଧରି ଆସୁଅଛି ! ସେତେବେଳେ ପ୍ରଭୁ କୋପ କରି ତୀକ୍ଷ୍ଣ ବାଣ ନେଲେ ଏବଂ ତାହା ଦ୍ୱାରା ତାହାର ମୁଣ୍ଡକୁ ଗଣ୍ଡିରୁ ପୃଥକ୍ କରି ଦେଲେ ॥ ୧ ॥ ସେହି ମୁଣ୍ଡ ରାବଣ ଆଗରେ ଯାଇ ପଡ଼ିଲା । ତାହାକୁ ଦେଖି ରାବଣ ଏପରି ବ୍ୟାକୁଳ ହେଲା, ସତେ ଯେପରି ସର୍ପ ମଣି ହରାଇଅଛି ! କୁମ୍ଭକର୍ଣ୍ଣର ପ୍ରଚଣ୍ଡ ଗଣ୍ଡି ଧାଇଁଲା । ଭୂମି ଲହରି ଯାଉଥାଏ । ପ୍ରଭୁ ସେହି ସମୟରେ ତାହାର ଗଣ୍ଡିକୁ କାଟି ଦୁଇଖଣ୍ଡ କରି ଦେଲେ ॥ ୩ ॥ ବାନର, ଭଲ୍ଲୁକ ଓ ନିଶାଚର-ମାନଙ୍କୁ ଆପଣାର ପାଦ ତଳେ ଚାପି ସେହି ଦୁଇଟି ଖଣ୍ଡ ଭୂମି ଉପରେ ଆକାଶରୁ ଦୁଇଟି ପାହାଡ଼ ଖସି ପଡ଼ିଲା ପରି ପଡ଼ିଗଲା । ତାହାର ତେଜ ପ୍ରଭୁ ଶ୍ରୀରାମଙ୍କ ମୁଖରେ ବିଲୀନ ହୋଇଗଲା । ଏହା ଦେଖି ଦେବତା ଓ ମୁନିମାନେ ସମସ୍ତେ ଆଶ୍ଚର୍ଯ୍ୟାନ୍ୱିତ ହେଲେ ॥ ୪ ॥ ଦେବତାମାନେ ଦୁନ୍ଦୁଭି ବଜାଉଥା'ନ୍ତି, ଆନନ୍ଦିତ ହେଉଥା'ନ୍ତି ଏବଂ

ସଂଗ୍ରାମ ଭୂମି ବିରାଜ ରଘୁପତି ଅତୁଲବଲ କୋସଲ ଧନୀ ।
ଶ୍ରମ ବିନ୍ଦୁ ମୁଖ ରାଜୀବ ଲୋଚନ ଅରୁନ ତନ ସୋଣିତ କନୀ ॥
ଭୁଜ ଜୁଗଲ ଫେରତ ସର ସରାସନ ଭାଲୁ କପି ଚହୁଁ ଦିସି ବନେ ।
କହ ଦାସ ତୁଳସୀ କହି ନ ସକ ଛବି ସେଷ ଜେହି ଆନନ ଘନେ ॥

ନିସିଚର ଅଧମ ମଲାକର ତାହି ଦୀହ୍ନ ନିଜ ଧାମ ।
ଗିରିଜା ତେ ନର ମନ୍ଦମତି ଜେ ନ ଭଜହିଁ ଶ୍ରୀରାମ ॥୭୧॥
ଦିନ କେ ଅନ୍ତ ଫିରୀଁ ଦୋଉ ଅନୀ । ସମର ଭଈ ସୁଭଟହ୍ନ ଶ୍ରମ ଘନୀ ॥
ରାମ କୃପାଁ କପି ଦଲ ବଲ ବାଢ଼ା । ଜିମି ତୃନ ପାଇ ଲାଗ ଅତି ଡାଢ଼ା ॥୧॥

---

ରଣ-ଭୂମିରେ ଅତି ରାଜନ୍ତି ରଘୁପତି ଅତୁଳ-ବଳୀ ଶୋଭାସିନ୍ଧୁ ।
ବଦନେ ଶ୍ରମ ଜଳ ପଦ୍ମ-ନେତ୍ର ମଞ୍ଜୁଳ ରୁଚିର ଅଙ୍ଗେ ରକ୍ତ ବିନ୍ଦୁ ॥
ବୁଲାନ୍ତି ଚାପ ଶର କରେ, କପି ଭଲ୍ଲୁକ ଚୌଦିଗରେ,
କହେ ଦାସ ତୁଳସୀ ଶୋଭା ନ ପାରେ ଭାଷି ଫଣୀନ୍ଦ୍ର ସହସ୍ର ମୁଖରେ ॥

ଜଡ ନିଶାଚର ପାତକ ଆକର, ତାଙ୍କୁ ଦେଲେ ନିଜ ଧାମ ।
ଶୁଣ ପାର୍ବତି, ସେହି ମନ୍ଦମତି ନ ଭଜଇ ଯେ ଶ୍ରୀରାମ ॥୭୧॥
ବାହୁଡିଲେ ଦୋନସେନା ଦିବସର ଅନ୍ତେ । ସମର କରିଣ ଘୋର ବୀରଙ୍କ ସଙ୍ଗତେ ॥
ରାମ କୃପାରେ ବଢିଲା କପି ଦଳ ବଳ । ଯଥା ତୃଣ ପାଇ ଅଗ୍ନି ବଢେ ଦାବାନଳ ॥୧॥

---

ସ୍ତୁତି ଗାନପୂର୍ବକ ବହୁତ ପୁଷ୍ପ ବୃଷ୍ଟି କରୁଥା'ନ୍ତି । ବିଜୟ କରି ସମସ୍ତ ଦେବତା ଚାଲିଗଲେ । ସେହି ସମୟରେ ଦେବର୍ଷି ନାରଦ ଆସିଲେ ॥ ୫ ॥ ଆକାଶ ମାର୍ଗରୁ ସେ ଶ୍ରୀହରିଙ୍କର ବୀରରସଭରା ଗୁଣାବଳୀ ଗାନ କଲେ । ତାଙ୍କର ଗାନ ପ୍ରଭୁଙ୍କ ମନକୁ ଅତି ରୁଚିକର ବୋଧ ହେଲା । "ଏବେ ଦୁଷ୍ଟ ରାବଣକୁ ଶୀଘ୍ର ମାରନ୍ତୁ"—ଏହା କହି ମୁନି ଚାଲିଗଲେ । ତଦନନ୍ତର ପ୍ରଭୁ ଶ୍ରୀରାମ ରଣଭୂମିକୁ ଆସି ସେଠାରେ ସୁଶୋଭିତ ହେଲେ ॥ ୬ ॥ ଛନ୍ଦ:—ଅତୁଳନୀୟ ବଳଧାମ କୋଶଳପତି ଶ୍ରୀ ରଘୁନାଥ ରଣଭୂମିରେ ସୁଶୋଭିତ । ମୁଖରେ ସ୍ୱେଦବିନ୍ଦୁ । କମଳ ସମାନ ନେତ୍ର ଈଷତ୍ ଲାଲ । ଶରୀର ଉପରେ ରକ୍ତ-କଣିକା ସୁଶୋଭିତ । ସେ ଉଭୟ ହସ୍ତରେ ଧନୁଶର ବୁଲାଉଥା'ନ୍ତି । ଚତୁର୍ଦ୍ଦିଗରେ ଭଲ୍ଲୁକ ଓ ବାନରଗଣ ସୁଶୋଭିତ । ତୁଳସୀଦାସ କହନ୍ତି,—ସହସ୍ରାନନ ସ୍ୱୟଂ ଶେଷଦେବ ସୁଦ୍ଧା ପ୍ରଭୁଙ୍କର ଏହି ଛବି ବର୍ଣ୍ଣନା କରି ପାରିବେ ନାହିଁ ॥ ଦୋହା —ଶିବ କହନ୍ତି,—"ହେ ଗିରିଜେ ! ନୀଚ ରାକ୍ଷସ ଓ ପାପର ଖଣି କୁମ୍ଭକର୍ଣ୍ଣଙ୍କୁ ଶ୍ରୀରାମଚନ୍ଦ୍ର ଆପଣାର ପରମଧାମ ଦେଇଦେଲେ । ଅତଏବ ସେହି ଦୟାଳୁ ଶ୍ରୀରାମଙ୍କୁ ଯେଉଁମାନେ ଭଜନ ନ କରନ୍ତି, ସେହିମାନେ ନିଶ୍ଚୟ ମନ୍ଦ-ବୁଦ୍ଧି ।" ॥ ୭୧ ॥ ଚୌପାଇ :—ଦିନ ଶେଷ ହେବାରୁ ଉଭୟ ସେନା ଫେରିଲେ । ଆଜିର ଯୁଦ୍ଧରେ

ଛୀଜହିଁ ନିସିଚର ଦିନୁ ଅରୁ ରାତୀ । ନିଜ ମୁଖ କହେଁ ସୁକୃତ ଜେହି ଭାଁତୀ ॥
ବହୁ ବିଲାପ ଦସକଂଧର କରଈ । ବଂଧୁ ସୀସ ପୁନି ପୁନି ଉର ଧରଈ ॥୨॥
ରୋଵହିଁ ନାରି ହୃଦୟଁ ହତି ପାନୀ । ତାସୁ ତେଜ ବଲ ବିପୁଲ ବଖାନୀ ॥
ମେଘନାଦ ତେହି ଅଵସର ଆୟଉ । କହି ବହୁ କଥା ପିତା ସମୁଝାୟଉ ॥୩॥
ଦେଖେହୁ କାଲି ମୋରି ମନୁସାଈ । ଅବହିଁ ବହୁତ କା କରୌଁ ବଡ଼ାଈ ॥
ଇଷ୍ଟଦେଵ ସୈଁ ବଲ ରଥ ପାୟଉଁ । ସୋ ବଲ ତାତ ନ ତୋହି ଦେଖାୟଉଁ ॥୪॥
ଏହି ବିଧି ଜଲ୍ପତ ଭୟଉ ବିହାନା । ଚହୁଁ ଦୁଆର ଲାଗେ କପି ନାନା ॥
ଇତ କପି ଭାଲୁ କାଲ ସମ ବୀରା । ଉତ ରଜନୀଚର ଅତି ରନଧୀରା ॥୫॥
ଲରହିଁ ସୁଭଟ ନିଜ ନିଜ ଜୟ ହେତୂ । ବରନି ନ ଜାଇ ସମର ଖଗକେତୂ ॥୬॥

---

ରାକ୍ଷସେ କ୍ଷୟ ଭଜନ୍ତି ଦିବା ବିଭାବରୀ । ନିଜ ବଦନେ କହନ୍ତେ ସୁକୃତ ଯେପରି ॥
ବହୁତ ବିଳାପ ଦଶ ବଦନ କରଇ । ବାରମ୍ବାର ଭ୍ରାତା ଶିର ହୃଦୟେ ଧରଇ ॥୨॥
ରୋଦନ କରନ୍ତି ନାରୀ ବକ୍ଷେ ପିଟି ପାଣି । ତାହାର ତେଜ ପ୍ରତାପ ବିପୁଳ ବଖାଣି ॥
ସେହି ସମୟରେ ମେଘନାଦ ଆଗମିଲା । ବହୁ କଥା ଜନକକୁ କହି ବୁଝାଇଲା ॥୩॥
ଦେଖିବ କାଲି ମୋହର ପରାକ୍ରମ ଥାଇ । କରିବି କଅଣ ଏବେ ବହୁତ ବଡ଼ାଇ ॥
ଇଷ୍ଟଦେବଠାରୁ ବଳ ରଥ ପାଇଥିଲି । ସେ ବଳ ତାତ, ତୁମ୍ଭଙ୍କୁ ଦେଖାଇ ନ ଥିଲି ॥୪॥
ଏ ଭାବେ ଭାଷନ୍ତେ ନିଶି ଶେଷ ହେଲା ଆସି । ଘେରିଲେ ଚାରି ଦୁଆର ଋକ୍ଷ ବୃକ୍ଷବାସୀ ॥
ଏଣେ ଭାଲୁ ମର୍କଟ କାଳ ସମ ବୀର । ତେଣେ ନିଶାଚର-ଗଣ ଅତି ରଣଧୀର ॥୫॥
ଯୁଝନ୍ତି ଯୋଦ୍ଧା ଆପଣା ଜୟ ଯଶ ହେତୁ । ବର୍ଣ୍ଣି ନ ହୁଅଇ ମହାରଣ, ଖଗକେତୁ ॥୬॥

---

ଯୋଦ୍ଧାମାନେ ବିଶେଷ କ୍ଳାନ୍ତ ହୋଇ ପଡ଼ିଥିଲେ । କିନ୍ତୁ ଶୁଖିଲା ଘାସ ପାଇଲେ ଅଗ୍ନିର ତେଜ ଯେପରି ବହୁଗୁଣରେ ବଢ଼ିଯାଏ, ଶ୍ରୀରାମଙ୍କ କୃପାଦୃଷ୍ଟି ପାଇ ବାନର ସେନାଙ୍କ ବଳ ସେହିପରି ବଢ଼ିଗଲା ॥ ୧ ॥ ତେଣେ ଆପଣା ମୁଖରେ ଆପଣାର ପୁଣ୍ୟ କହିଲେ ତାହାର ମୂଲ୍ୟ ଯେପରି ହ୍ରାସ ପାଏ, ସେହିପରି ରାକ୍ଷସମାନଙ୍କର ସଂଖ୍ୟା ଦିନରାତି ହ୍ରାସ ପାଇବାରେ ଲାଗିଥାଏ ! ରାବଣ ଅତିଶୟ ବିଳାପ କରୁଥାଏ । ସେ ବାରମ୍ବାର ଭାଇ କୁମ୍ଭକର୍ଣ୍ଣର ଶିରକୁ ବକ୍ଷରେ ଲଗାଉଥାଏ ॥ ୨ ॥ ସ୍ତ୍ରୀମାନେ ତାହାର ବିପୁଳ ତେଜ ଓ ବଳ ବାଖ୍ୟାନି ହାତରେ ଛାତି ପିଟି କାନ୍ଦୁଥା'ନ୍ତି । ସେହି ସମୟରେ ମେଘନାଦ ଆସିଲା ଏବଂ ସେ ନାନାବିଧ କଥା କହି ପିତାକୁ ବୁଝାଇଲା ॥ ୩ ॥ ସେ କହିଲା, "କାଲି ମୋ ପୁରୁଷାର୍ଥ ଦେଖିବେ । ବର୍ତ୍ତମାନ ବେଶିଗୁଡ଼ାଏ ବଡ଼ାଇ ବା କ'ଣ କରିବି ? ହେ ତାତ ! ମୋ ଇଷ୍ଟଦେବଙ୍କଠାରୁ ଯେଉଁ ବଳ ଓ ରଥ ମୁଁ ପାଇଥିଲି, ତାହା ଏପର୍ଯ୍ୟନ୍ତ ଆପଣଙ୍କୁ ଦେଖାଇ ନାହିଁ ॥ ୪ ॥ ଏହିପରି ଆସ୍ଫାଳନ କରୁ କରୁ ସକାଳ ହୋଇଗଲା । ଲଙ୍କାର ଚାରିଦ୍ୱାରରେ ବହୁତ ବାନର ଆସି ଦୃଢ଼ ଭାବରେ ଜମିଗଲେ । ଏଣେ କାଳ ସମାନ ବୀର ବାନର ଓ ଭଲ୍ଲୁକ ଏବଂ

ମେଘନାଦ ମାୟାମୟ ରଥ ଚଢି ଗୟଉ ଅକାସ ।
ଗର୍ଜେଉ ଅଟ୍ଟହାସ କରି ଭଇ କପି କଟକହି ତ୍ରାସ ॥୭୨॥

ସକ୍ତି ସୂଲ ତରବାରି କୃପାନା । ଅସ୍ତ୍ର ସସ୍ତ୍ର କୁଲିସାୟୁଧ ନାନା ॥
ଡାରଇ ପରସୁ ପରିଘ ପାଷାନା । ଲାଗେଉ ବୃଷ୍ଟି କରୈ ବହୁ ବାନା ॥୧॥
ଦସ ଦିସି ରହେ ବାନ ନଭ ଛାଈ । ମାନହୁଁ ମଘା ମେଘ ଝରି ଲାଈ ॥
ଧରୁ ଧରୁ ମାରୁ ସୁନିଅ ଧୁନି କାନା । ଜୋ ମାରଇ ତେହି କୋଉ ନ ଜାନା ॥୨॥
ଗହି ଗିରି ତରୁ ଅକାସ କପି ଧାୱହିଁ । ଦେଖହିଁ ତେହି ନ ଦୁଖିତ ଫିରି ଆୱହିଁ ॥
ଅବଘଟ ଘାଟ ବାଟ ଗିରି କଂଦର । ମାୟା ବଲ କୀନ୍ହେସି ସର ପଂଜର ॥୩॥
ଜାହିଁ କହାଁ ବ୍ୟାକୁଲ ଭଏ ବଂଦର । ସୁରପତି ବଂଦି ପରେ ଜନୁ ମଂଦର ॥
ମାରୁତସୁତ ଅଂଗଦ ନଲ ନୀଲା । କୀନ୍ହେସି ବିକଲ ସକଲ ବଲସୀଲା ॥୪॥

---

ମାୟାମୟ ରଥ ଚଢି ଇନ୍ଦ୍ରଜିତ ଗମନ କରି ଆକାଶ ।
ଗରଜେ ପ୍ରଳୟ-ପୟୋଦ ପରାୟ ହେଲା କପି ଦଳେ ତ୍ରାସ ॥୭୨॥

ଚଳାଏ ଶକତି, ଶୂଳ ଖଡଗ, କୃପାଣ । ବଜ୍ରାୟୁଧ, ଅସ୍ତ୍ରଶସ୍ତ୍ର ବିବିଧ ବିଧାନ ॥
ପରଶୁ ପରିଘ ମାରେ, ଫିଙ୍ଗଇ ପଥର । ଲାଗିଲା ସେ ବୃଷ୍ଟି କରି ନାନାବିଧ ଶର ॥୧॥
ଦଶ ଦିଗେ ଶରମାଳ ଆଚ୍ଛାଦି ରହିଲା । ମନେ ହୁଏ ମଘା ମେଘ ଝଡି ଲଗାଇଲା ॥
'ଧର ଧର, ମାର' ଧ୍ୱନି ଶ୍ରବଣେ ଶୁଭଇ । ଯେ ମାରଇ ତାକୁ କେହି ଜାଣି ନ ପାରଇ ॥୨॥
ଧରି ଗିରି ତରୁ କପି ଧାଆନ୍ତି ଗଗନେ । ନ ଦେଖି ତାହାକୁ ବାହୁଡନ୍ତି ଦୁଃଖମନେ ॥
ବାଟ ଘାଟ ପରବତ କନ୍ଦର ସଙ୍କଟ । ରଚିଲା ଶର-ପଞ୍ଜୁରି ମାୟାବଳେ କଷ୍ଟ ॥୩॥
କାହିଁ ଯିବେ ଭୟେ ହେଲେ ବ୍ୟାକୁଳ ବାନର । ସୁରେଶ ବନ୍ଦୀରେ ଯେସନେ ପଡିଛି ମନ୍ଦର ॥
ମାରୁତସୁତ ଅଙ୍ଗଦ ନଳ ଆଉ ନୀଳେ । ବିକଳ କଲା ସକଳ ବୀର ବଳଶୀଳେ ॥୪॥

---

ତେଣେ ଅତ୍ୟନ୍ତ ରଣଧୀର ରାକ୍ଷସ ॥ ୫ ॥ ଉଭୟ ପକ୍ଷର ଯୋଦ୍ଧା ଆପଣା ଆପଣାର ବିଜୟ ନିମନ୍ତେ ଲଢିବାରେ ଲଗିଆନ୍ତି । ହେ ଗରୁଡ ! ସେମାନଙ୍କ ଯୁଦ୍ଧ ଭାଷାରେ ବର୍ଣ୍ଣନା କରାଯାଇ ନ ପାରେ ॥ ୬ ॥ ଦୋହା :—ମେଘନାଦ (ପୂର୍ବୋକ୍ତ) ମାୟାମୟ ରଥରେ ଚଢି ଆକାଶକୁ ଗ୍ଲଲିଗଲା ଏବଂ ଅଟ୍ଟହାସ କରି ଗର୍ଜନ କଲା । ଫଳରେ ବାନର ସେନା ମଧ୍ୟରେ ଭୟ ବ୍ୟାପିଗଲା ॥ ୭୨ ॥ ଚୌପାଈ :—ସେ ଶକ୍ତି, ଶୂଳ ତରବାରି, କୃପାଣ ଆଦି ଅସ୍ତ୍ରଶସ୍ତ୍ର ଏବଂ ବଜ୍ର ଆଦି ବହୁବିଧ ଆୟୁଧ ଚଳାଇଲା ଏବଂ ଫାରଶା, ମୁଦ୍‌ଗର, ପଥର ଆଦି ପକାଇ ବହୁବିଧ ବାଣ ବୃଷ୍ଟି କରିବାକୁ ଲାଗିଲା ॥ ୧ ॥ ଆକାଶର ଦଶଦିଗରେ ବାଣ ଛାଇ ହୋଇଗଲା । ସତେ ଅବା ମଘା ନକ୍ଷତ୍ରର ବାଦଲମାନେ ଝଡିବର୍ଷା ଲଗାଇ ଦେଲେ । 'ଧର, ଧର, ମାର' ଏହି ଶବ୍ଦମାନ କାନକୁ ଶୁଣାଯାଉଥାଏ । କିନ୍ତୁ କିଏ ମାରୁଥାଏ, ତାହାକୁ କେହି ଜାଣିପାରୁ ନ ଥା'ନ୍ତି ॥ ୨ ॥ ପର୍ବତ ଓ ବୃକ୍ଷମାନଙ୍କୁ ଧରି ବାନରମାନେ ଆକାଶରେ ଦୌଡି

ପୁନି ଲଛିମନ ସୁଗ୍ରୀବ ବିଭୀଷନ । ସରନ୍ହି ମାରି କୀନ୍ହେସି ଜର୍ଜର ତନ ॥
ପୁନି ରଘୁପତି ସୈଁ ଜୂଝୈ ଲାଗା । ସର ଛାଁଡ଼ଇ ହୋଇ ଲାଗହିଁ ନାଗା ॥୫॥
ବ୍ୟାଲ ପାସ ବସ ଭଏ ଖରାରୀ । ସ୍ୱବସ ଅନନ୍ତ ଏକ ଅବିକାରୀ ॥
ନଟ ଇବ କପଟ ଚରିତ କର ନାନା । ସଦା ସ୍ୱତନ୍ତ୍ର ଏକ ଭଗବାନା ॥୬॥
ରନ ସୋଭା ଲଗି ପ୍ରଭୁହିଁ ବଁଧାୟୋ । ନାଗ ପାସ ଦେବନ୍ହ ଭୟ ପାୟୋ ॥୭॥

ଗିରିଜା ଜାସୁ ନାମ ଜପି ମୁନି କାଟହିଁ ଭବ ପାସ ।
ସୋ କି ବଂଧ ତର ଆୱଇ ବ୍ୟାପକ ବିଶ୍ୱ ନିବାସ ॥୭୩॥

ଚରିତ ରାମ କେ ସଗୁନ ଭବାନୀ । ତର୍କି ନ ଜାହିଁ ବୁଦ୍ଧି ବଲ ବାନୀ ॥
ଅସ ବିଚାରି ଜେ ତଜ୍ଞ ବିରାଗୀ । ରାମହି ଭଜହିଁ ତର୍କ ସବ ତ୍ୟାଗୀ ॥୧॥

---

କପୀଶ୍ୱର ବିଭୀଷଣ ଲକ୍ଷ୍ମଣେ ଆବର । ତନୁ ଜର୍ଜରିତ କଲା ପ୍ରହାରିଣ ଶର ॥
ପୁଣି ସେ ଯୁଝିବି ଲାଗିଲା ରଘୁପତି ସଙ୍ଗ । ଶର ଛାଡ଼ନ୍ତେ ଲାଗନ୍ତି ହୋଇଣ ଭୁଜଙ୍ଗ ॥୫॥
ନାଗପାଶ ବନ୍ଧନରେ ପଡ଼ିଲେ ଖରାରି । ସ୍ୱବଶ ଅନନ୍ତ ପ୍ରଭୁ ଏକ ଅବିକାରୀ ॥
ନାନା କପଟ ଚରିତ ନର୍ତ୍ତକ ସମାନ । କରନ୍ତି ସଦା ସ୍ୱତନ୍ତ୍ର ରାମ ଭଗବାନ ॥୬॥
ରଣଶୋଭା ଲାଗି ଆପଣାକୁ ବନ୍ଧାଇଲେ । ଦେଖି ଦଶା ଦେବେ ଭୟସନ୍ତପ୍ତ ହୋଇଲେ ॥୭॥

ଗିରିଜା ! ଯାହାଙ୍କ ନାମ ଜପି ନର କାଟନ୍ତି ସଂସାର ପାଶ ।
ସେ ପ୍ରଭୁ କେବେ କି ବନ୍ଧନେ ପଡ଼ନ୍ତି ବ୍ୟାପକ ବିଶ୍ୱନିବାସ ? ॥୭୩॥

ସଗୁଣ ଚରିତ ରଘୁନାଥଙ୍କ, ଶର୍ବାଣୀ । ତର୍କଣା କରି ନ ହୁଏ ମନ ବୁଦ୍ଧି ବାଣୀ ॥
ଏମନ୍ତ ବିଚାରି ଯେଉଁ ତତ୍ତ୍ୱଜ୍ଞ ବିରାଗୀ । ଭଜନ୍ତି ରାମ ସକଳ ତର୍କ ପରିତ୍ୟାଗି ॥୧॥

---

ଦୌଡ଼ି ଯାଉଥା'ନ୍ତି । କିନ୍ତୁ ତାହାଙ୍କୁ ଦେଖିପାରୁ ନ ଥା'ନ୍ତି । ଏହି ହେତୁ ଦୁଃଖିତ ହୋଇ ଫେରି ଆସୁଥା'ନ୍ତି । ମେଘନାଦ ମାୟା ବଳରେ ଦୁର୍ଗମ ଘାଟୀ, ରାସ୍ତା ଏବଂ ପର୍ବତ କନ୍ଦରା ସବୁକୁ ଶର-ପଞ୍ଜୁରୀରେ ପରିଣତ କରିଦେଲା ॥ ୩ ॥ "ଏବେ କିବା କରାଯିବ ?—ଏହା ଭାବି ବାନର-ମାନେ ବ୍ୟାକୁଳ ହୋଇ ପଡ଼ିଲେ । ସତେ ଅବା ପର୍ବତମାନେ ଇନ୍ଦ୍ରଙ୍କ ବନ୍ଦୀଖାନାରେ ପଡ଼ିଗଲେ କି ! ମେଘନାଦ ମାରୁତସୁତ ହନୁମାନ୍, ଅଙ୍ଗଦ, ନଳ ଏବଂ ନୀଳ ଆଦି ସମସ୍ତ ବଳବାନ୍ ବୀରଙ୍କୁ ବ୍ୟାକୁଳ କରିଦେଲା ॥ ୪ ॥ ପୁଣି ସେ ଲକ୍ଷ୍ମଣ, ସୁଗ୍ରୀବ ଓ ବିଭୀଷଣଙ୍କୁ ବାଣରେ ମାରି ସେମାନଙ୍କ ଶରୀରକୁ ସଛିଦ୍ର କରିଦେଲା । ତତ୍ପରେ ସେ ଶ୍ରୀ ରଘୁନାଥଙ୍କ ସହିତ ଲଢ଼ିବାକୁ ଲାଗିଲା । ସେ ଯେଉଁ ବାଣ ଛାଡ଼ୁଥାଏ, ତାହା ସବୁ ସାପ ହୋଇ ତାଙ୍କ ଦେହରେ ଆସି ଲାଗୁଥାଏ ॥ ୫ ॥ ଯେଉଁ ପ୍ରଭୁ ସ୍ୱତନ୍ତ୍ର, ଅନନ୍ତ, ଏକ (ଅଖଣ୍ଡ) ଏବଂ ନିର୍ବିକାର, ସେହି ଖରାରି ଶ୍ରୀରାମ ନାଗପାଶ ବନ୍ଧନରେ ପଡ଼ିଗଲେ । ଶ୍ରୀରାମ ସର୍ବଦା ସ୍ୱତନ୍ତ୍ର, ଏକ (ଅଦ୍ୱିତୀୟ) ଭଗବାନ୍ । ସେ ନଟପରି ନାନାବିଧ କପଟ-ଲୀଳା କରୁଥାଆନ୍ତି ॥ ୬ ॥ ରଣଶୋଭା ନିମନ୍ତେ ପ୍ରଭୁ ନିଜକୁ ନାଗପାଶ ବନ୍ଧନରେ ପକାଇଥିଲେ । କିନ୍ତୁ ତଦ୍ୱାରା ଦେବତାମାନଙ୍କ ମନରେ

ବ୍ୟାକୁଲ କଟକୁ କୀନ୍ହ ଘନନାଦା । ପୁନି ଭା ପ୍ରଗଟ କହଇ ଦୁର୍ବାଦା ॥
ଜାମବଂତ କହ ଖଲ ରହୁ ଠାଢ଼ା । ସୁନି କରି ତାହି କ୍ରୋଧ ଅତି ବାଢ଼ା ॥୨॥
ବୂଢ଼ ଜାନି ସଠ ଛାଁଡେଉଁ ତୋହୀ । ଲାଗେସି ଅଧମ ପଚାରୈ ମୋହୀ ॥
ଅସ କହି ତରଲ ତ୍ରିସୂଲ ଚଲାୟୋ । ଜାମବଂତ କର ଗହି ସୋଇ ଧାୟୋ ॥୩॥
ମାରିସି ମେଘନାଦ କୈ ଛାତୀ । ପରା ଭୂମି ଘୁର୍ମିତ ସୁରଘାତୀ ॥
ପୁନି ରିସାନ ଗହି ଚରନ ଫିରାୟୋ । ମହି ପଛାରି ନିଜ ବଲ ଦେଖରାୟୋ ॥୪॥
ବର ପ୍ରସାଦ ସୋ ମରଇ ନ ମାରା । ତବ ଗହି ପଦ ଲଂକା ପର ଡାରା ॥
ଇହାଁ ଦେବରିଷି ଗରୁଡ଼ ପଠାୟୋ । ରାମ ସମୀପ ସପଦି ସୋ ଆୟୋ ॥୫॥

---

ବ୍ୟାକୁଳ ସେନାଙ୍କୁ କରି ମେଘନାଦ ତହିଁ । ପ୍ରକଟ ହୋଇଲା ପୁଣି ଦୁର୍ବଚନ କହି ॥
ବୋଲେ ଜାମ୍ବବନ୍ତ, କ୍ଷଣେ ଛିଡ଼ା ରହ, ଖଳ । ଶୁଣନ୍ତେ ତାହାର କ୍ରୋଧ ବଢ଼ିଲା ପ୍ରବଳ ॥୨॥
ବୁଢ଼ା ଜାଣି ଶଠ, ଛାଡ଼ି ଦେଇଥିଲି ତୋତେ । ଆହ୍ୱାନ କରୁଛୁ ଏବେ ଅଧମ ତୁ ମୋତେ ॥
ଏହା ସେ କହି ସୁତୀକ୍ଷଣ ତ୍ରିଶୂଳ ମେଲିଲା । ଜାମ୍ବବନ୍ତ ତାହା କରେ ଘେନିଣ ଧାଇଁଲା ॥୩॥
ମାରନ୍ତେ ତ୍ରିଶୂଳ ମେଘନାଦର ଛାତିରେ । ଭ୍ରମି ଭ୍ରମି ସୁରଘାତୀ ପଡ଼ିଲା କ୍ଷିତିରେ ॥
ସରୋଷେ ପୁଣି ତା' ପାଦ ଧରି ଋକ୍ଷପତି । ବୁଲାଇ କଚାଡ଼ି ମହୀ ଦେଖାଏ ଶକତି ॥୪॥
ମାରନ୍ତେ ନ ମରେ ସେହୁ ବରର ପ୍ରସାଦେ । ତହୁଁ ଲଙ୍କା ଦୁର୍ଗେ ଫିଙ୍ଗି ଦେଲା ଧରି ପାଦେ ॥
ଏଣେ ନାରଦ ପଠାନ୍ତେ ଖଗନାୟକଙ୍କୁ । ଶୀଘ୍ର ସେ ଆସିଲେ ରଘୁନାଥଙ୍କ ପାଖକୁ ॥୫॥

---

ବଡ଼ ଭୟ ଜାତ ହେଲା ॥ ୭ ॥ ଦୋହା ।—ଶିବ କହନ୍ତି—"ହେ ଗିରିଜେ ! ଯାହାଙ୍କର ନାମ ଜପ କରି ମୁନିଜନମାନେ ଭବ-ବନ୍ଧନ କାଟି ପାରନ୍ତି, ସେହି ସର୍ବ-ବ୍ୟାପକ ଓ ବିଶ୍ୱନିବାସ ପ୍ରଭୁ କେବେ ବନ୍ଧନରେ ପଡ଼ିପାରନ୍ତି କି ? ॥ ୭୩ ॥ ଚୌପାଈ —ହେ ଭବାନି ! ବୁଦ୍ଧି ଓ ବାଣୀ ବଳରେ ଶ୍ରୀରାମଙ୍କ ଏହି ସଗୁଣ ଲୀଳା ବିଷୟରେ ତର୍କ କରାଯାଇ ନ ପାରେ । ଏପରି ବିଚାରି ତତ୍ତ୍ୱଜ୍ଞାନୀ ଓ ବୈରାଗୀ ପୁରୁଷମାନେ ସମସ୍ତ ତର୍କ ଓ ଶଙ୍କା ତ୍ୟାଗ କରି କେବଳ ଶ୍ରୀରାମଙ୍କ ଭଜନ କରନ୍ତି ॥ ୧ ॥ ମେଘନାଦ ସେନାଙ୍କୁ ବ୍ୟାକୁଳ କରିଦେଲା । ତତ୍ପରେ ସେ ଦେଖାଦେଲା ଏବଂ ଦୁର୍ବଚନ କହିବାକୁ ଲାଗିଲା । ତାହା ଶୁଣି ଜାମ୍ବବାନ କହିଲେ—"ଆରେ ଦୁଷ୍ଟ ! ଠିଆ ହୋଇ ରହ ।" ଏହା ଶୁଣି ମେଘନାଦର କ୍ରୋଧ ବହୁ ପରିମାଣରେ ବଢ଼ିଗଲା । ସେ କହିଲା, "ଆରେ ମୂର୍ଖ ! ତୋତେ ବୃଦ୍ଧ ବୋଲି ଜାଣି ମୁଁ ଛାଡ଼ି ଦେଇଥିଲି । ଆରେ ଅଧମ ! ଏବେ ତୁ ମୋତେ ଆହ୍ୱାନ ଦେବାରେ ଲାଗିଛୁ ?" ଏହିପରି କହି ସେ ଚକ ଚକ୍ କରୁଥିବା ତ୍ରିଶୂଳ ଚଳାଇଲା । ଜାମ୍ବବାନ୍ ସେହି ତ୍ରିଶୂଳକୁ ହାତରେ ଧରି ଧାଇଁଲେ ॥ ୩ ॥ ସେ ତାହା ମେଘନାଦର ଛାତିରେ ମାରିଲେ । ସୁର-ଘାତକ ମେଘନାଦ ତ୍ରିଶୂଳର ଆଘାତରେ ଚକ୍କର ଖାଇ ଭୂମି ଉପରେ ଖସିପଡ଼ିଲା । ଜାମ୍ବବାନ୍ ପୁଣି କ୍ରୋଧରେ ପୂର୍ଣ୍ଣ ହୋଇ ପାଦ ଧରି ତାହାକୁ ବୁଲାଇଲେ ଏବଂ

ଖଗପତି ସବ ଧରି ଖାଏ ମାୟା ନାଗ ବରୂଥ ।
ମାୟା ବିଗତ ଭଏ ସବ ହରଷେ ବାନର ଜୂଥ ॥୭୪ (କ)॥
ଗହି ଗିରି ପାଦପ ଉପଲ ନଖ ଧାଏ କୀସ ରିସାଇ ।
ଚଲେ ତମୀଚର ବିକଲତର ଗଢ଼ ପର ଚଢ଼େ ପରାଇ ॥୭୪ (ଖ)॥
ମେଘନାଦ କୈ ମୁରଛା ଜାଗୀ । ପିତହି ବିଲୋକି ଲାଜ ଅତି ଲାଗୀ ॥
ତୁରତ ଗୟଉ ଗିରିବର କଂଦରା । କରୌଁ ଅଜୟ ମଖ ଅସ ମନ ଧରା ॥୧॥
ଇହାଁ ବିଭୀଷନ ମନ୍ତ୍ର ବିଚାରୀ । ସୁନହୁ ନାଥ ବଲ ଅତୁଲ ଉଦାରୀ ॥
ମେଘନାଦ ମଖ କରଇ ଅପାବନ । ଖଲ ମାୟାବୀ ଦେବ ସତାବନ ॥୨॥
ଜୌଁ ପ୍ରଭୁ ସିଦ୍ଧ ହୋଇ ସୋ ପାଇହି । ନାଥ ବେଗି ପୁନି ଜୀତି ନ ଜାଇହି ॥
ସୁନି ରଘୁପତି ଅତିସୟ ସୁଖ ମାନା । ବୋଲେ ଅଂଗଦାଦି କପି ନାନା ॥୩॥

---

ଗରୁଡ଼ ସକଳ ବ୍ୟାଳଙ୍କୁ କବଳ କରନ୍ତେ କ୍ଷଣ ଭିତରେ ।
ମାୟା ଦୂରୀଭୂତ ହୋଇଲା ତୁରିତ ହରଷ ହରି କଟକରେ ॥୭୪ (କ)॥
ଧରି ଗିରିବର ପାଦପ ପ୍ରସ୍ତର କପି ସକୋପେ ଧାଇଁଲେ ।
ବିକଳେ ପଳାଇ ନିଶାଚରେ ଯାଇ ଗଡ଼ ଉପରେ ଚଢିଲେ ॥୭୪ (ଖ)॥
ଏଥୁ ଅନ୍ତେ ମେଘନାଦ ଚୈତନ୍ୟ ଲଭିଲା । ପିତାଙ୍କୁ ବିଲୋକି ଲଜ୍ଜା ଅତ୍ୟନ୍ତ ଲାଗିଲା ॥
ଶୀଘ୍ର ସେ ଗଲା ସୁନ୍ଦର ଶଇଳ କନ୍ଦରେ । କରିବ ଅଜେୟ ଯଜ୍ଞ ଭାବି ସ୍ୱମନରେ ॥୧॥
ସେ ସନ୍ଦେଶ ବିଭୀଷଣ ପାଇଣ କହଇ । ଶୁଣ ପ୍ରଭୁ, ସମାଚାର ଏମନ୍ତ ଅଟଇ ॥
କରେ ଅପାବନ ଯଜ୍ଞ ମେଘନାଦ ପାପୀ । ଖଳ ମାୟାବୀ ବିବୁଧ-ମାନବ-ସନ୍ତାପୀ ॥୨॥
ଯଦି ମହାପ୍ରଭୁ, ସିଦ୍ଧ ହୋଇ ସେ ପାରିବ । ନାଥ, ସହଜେ ଶତ୍ରୁକୁ ଜିଣି ନ ହୋଇବ ॥
ଶୁଣି ରଘୁପତି ଅତି ଆନନ୍ଦ ଲଭିଲେ । ଅଙ୍ଗଦ ହନୁମାନଙ୍କୁ ଡକାଇ ଆଣିଲେ ॥୩॥

---

ତାହାଙ୍କୁ ଭୂମି ଉପରେ କଚାଡ଼ି ନିଜର ବଳ ଦେଖାଇଲେ ॥ ୪ ॥ କିନ୍ତୁ ଯେତେ ମାରିଲେ ହେଁ ବରପ୍ରସାଦରୁ ସେ ମରୁ ନ ଥାଏ । ସେତେବେଳେ ଜାମ୍ବବାନ୍ ତାହାର ପାଦ ଧରି ତାହାଙ୍କୁ ଲଙ୍କା ଦୁର୍ଗ ଉପରକୁ ଫିଙ୍ଗି ଦେଲେ । ଏଣେ ଦେବର୍ଷି ନାରଦ ଗରୁଡ଼ଙ୍କୁ ପଠାଇଲେ । ସେ ଶୀଘ୍ର ଆସି ଶ୍ରୀରାମଙ୍କ ପାଖରେ ପହଞ୍ଚିଲେ ॥ ୫ ॥ ଦୋହା :—ପକ୍ଷୀରାଜ ଗରୁଡ଼ ସମସ୍ତ ମାୟା-ସର୍ପଙ୍କୁ ଧରି ଖାଇଗଲେ । ତେଣୁ ସମସ୍ତ ବାନରଦଳ ମାୟାରୁ ମୁକ୍ତ ହୋଇ ଆନନ୍ଦିତ ହେଲେ ॥ ୭୪ (କ) ॥ ପର୍ବତ, ବୃକ୍ଷ, ପଥର ଓ ନଖ ଆଦି ଧରି ବାନରମାନେ କ୍ରୁଦ୍ଧ ହୋଇ ଧାଇଁଲେ । ନିଶାଚରମାନେ ବ୍ୟାକୁଳତର ହୋଇ ଦୌଡ଼ି ପଳାଇଲେ ଏବଂ ପଳାଇ ଯାଇ ଦୁର୍ଗ ଉପରେ ଚଢିଗଲେ ॥ ୭୪ (ଖ) ॥ ଚୌପାଈ :—ମେଘନାଦର ମୂର୍ଚ୍ଛା ଭାଙ୍ଗିଗଲା । ପିତାଙ୍କୁ ଦେଖି ତାଙ୍କୁ ବଡ଼ ଲଜ୍ଜା ଲାଗିଲା । "ମୁଁ ଅଜେୟ ହେବା ନିମନ୍ତେ ଯଜ୍ଞ କରିବି"— ଏହା ମନରେ ସ୍ଥିର କରି ସେ ଶ୍ରେଷ୍ଠ ପର୍ବତ ଗୁମ୍ଫା ମଧ୍ୟକୁ ଚାଲିଗଲା ॥ ୧ ॥ ଏଣେ

ଲଛିମନ ସଙ୍ଗ ଜାହୁ ସବ ଭାଈ । କରହୁ ବିଧଂସ ଜଗ୍ୟ କର ଜାଈ ॥
ତୁହ୍ମ ଲଛିମନ ମାରେହୁ ରନ ଓହୀ । ଦେଖି ସଭୟ ସୁର ଦୁଖ ଅତି ମୋହୀ ॥୪॥
ମାରେହୁ ତେହି ବଲ ବୁଦ୍ଧି ଉପାଈ । ଜେହିଁ ଛୀଜୈ ନିସିଚର ସୁନୁ ଭାଈ ॥
ଜାମବଂତ ସୁଗ୍ରୀବ ବିଭୀଷନ । ସେନ ସମେତ ରହେହୁ ତୀନିଉ ଜନ ॥୫॥
ଜବ ରଘୁବୀର ଦୀନ୍ହି ଅନୁସାସନ । କଟି ନିଷଂଗ କସି ସାଜି ସରାସନ ॥
ପ୍ରଭୁ ପ୍ରତାପ ଉର ଧରି ରନଧୀରା । ବୋଲେ ଘନ ଇବ ଗିରା ଗଁଭୀରା ॥୬॥
ଜୌଁ ତେହି ଆଜୁ ବଧେଁ ବିନୁ ଆୱୌଁ । ତୌ ରଘୁପତି ସେବକ ନ କହାୱୌଁ ॥
ଜୌଁ ସତ ସଂକର କରହିଁ ସହାଈ । ତଦପି ହତଉଁ ରଘୁବୀର ଦୋହାଈ ॥୭॥

---

ଲକ୍ଷ୍ମଣଙ୍କ ସଙ୍ଗେ ମିଳି ଯାଅ, ସର୍ବେ ଭାଇ । କର ଯଜ୍ଞ ବିଧ୍ୱଂସନ ଏହିକ୍ଷଣି ଯାଇ ॥
ତୁମ୍ଭେ ସଉମିତ୍ରି, ରଣେ ମାରିବ ତାହାକୁ । ଦୁଃଖ ମୋତେ ଲାଗେ ଭୀତ ଦେଖି ଦେବତାଙ୍କୁ ॥୪॥
ହେ ଭାଇ ! ମାରିବ ତାକୁ ବଳେ କଉଶଳେ । ନିଶାଚର ନାଶ ଯିବ ଯେସନେକ ହେଲେ ॥
ଜାମ୍ବବନ୍ତ କପିରାଜ ତୁମ୍ଭେ ବିଭୀଷଣ । ସମୀପେ ରହିବ ସେନା ସହ ତିନଜଣ ॥୫॥
ଯେବେ ଅନୁମତି ଦେଲେ ଶ୍ରୀ ରଘୁନନ୍ଦନ । କଟିରେ ନିଷଙ୍ଗ କରେ ବାଣ ଶରାସନ ॥
ପ୍ରଭୁଙ୍କ ପ୍ରତାପ ହୃଦେ ଧରି ରଣ ଧୀର । ଭାଷିଲେ ଜଳଦ ସମ ବଚନ ଗମ୍ଭୀର ॥୬॥
ଆଜି ଖଳକୁ ନ ବଧି ଫେରିବି ମୁଁ ଯେବେ । କହାଇବି ନାହିଁ ରଘୁପତି ଦାସ ତେବେ ॥
ଯଦ୍ୟପି ସାହାଯ୍ୟ ଶତ କରିବେ ଶଙ୍କର । ତଥାପି ମାରିବି ରାଣ ରଘୁପତିଙ୍କର ॥୭॥

---

ବିଭୀଷଣ ଗୋଟିଏ ପରାମର୍ଶ ବିସ୍ତର କଲେ ଏବଂ ଶ୍ରୀରାମଙ୍କୁ କହିଲେ, "ହେ ଅତୁଳନୀୟ ବଳବାନ୍ ଉଦାର ପ୍ରଭୋ ! ଦେବତାମାନଙ୍କର ଉତ୍ପୀଡ଼କ, ଦୁଷ୍ଟ, ମାୟାବୀ ମେଘନାଦ ଅପାବନ ଯଜ୍ଞ କରୁଅଛି ॥ ୨ ॥ ହେ ପ୍ରଭୋ ! ଯଦି ସେ ଯଜ୍ଞରେ ସିଦ୍ଧି ଲାଭ କରିବ, ହେ ନାଥ ! ତେବେ ମେଘନାଦକୁ ଶୀଘ୍ର (ସହଜରେ) ଆଉ ଜୟ କରାଯାଇ ନ ପାରେ ।" ଏହା ଶୁଣି ଶ୍ରୀ ରଘୁନାଥ ଅତ୍ୟନ୍ତ ସୁଖ ଲାଭ କଲେ ଏବଂ ଅଙ୍ଗଦାଦି ବହୁତ ବାନରଙ୍କୁ ଡକାଇ କହିଲେ— ॥୩॥ "ହେ ଭାଇମାନେ ! ତୁମ୍ଭେମାନେ ସମସ୍ତେ ଲକ୍ଷ୍ମଣ ସଙ୍ଗରେ ଯାଅ ଏବଂ ଯାଇ ମେଘନାଦର ଯଜ୍ଞ ବିଧ୍ୱଂସ କର । ହେ ଲକ୍ଷ୍ମଣ ! ଯୁଦ୍ଧରେ ତୁମେ ତାକୁ ମାର । ଦେବତାମାନେ ଭୟଭୀତ, ଏହା ଦେଖି ମୋତେ ବଡ ଦୁଃଖ ଲାଗୁଅଛି ॥ ୪ ॥ ହେ ଭାଇ ! ଶୁଣ, ଏପରି ବଳ, ବୁଦ୍ଧି ଓ ଉପାୟରେ ତୁମେ ତାକୁ ମାରିବ, ଯେପରି କି ନିଶାଚରର ବିନାଶ ହେବ । ହେ ଜାମ୍ବବାନ୍, ସୁଗ୍ରୀବ ଓ ବିଭୀଷଣ ! ତୁମେ ତିନି ଜଣ ସେନା ସମେତ ଏହାଙ୍କ ସଙ୍ଗରେ ରୁହ ।" ॥ ୫ ॥ ଏହି ରୂପେ ଯେତେବେଳେ ଶ୍ରୀ ରଘୁବୀର ଆଜ୍ଞା ଦେଲେ, ସେତେବେଳେ କଟିରେ ତୂଣୀର କଷି ଏବଂ ଧନୁ ସଜାଇ ରଣଧୀର ଶ୍ରୀ ଲକ୍ଷ୍ମଣ ପ୍ରଭୁଙ୍କ ପ୍ରତାପ ହୃଦୟରେ ଧାରଣ କରି ମେଘ-ଗମ୍ଭୀର ବାଣୀ କହିଲେ —॥ ୬ ॥ "ଯଦି ମୁଁ ଆଜି ତାହାକୁ ନ ମାରି ଫେରିବି, ତେବେ ଶ୍ରୀ ରଘୁବୀରଙ୍କ ସେବକ ନାମରେ ଆଉ ଅଭିହିତ ହେବିନାହିଁ । ପ୍ରଭୁ ଶ୍ରୀ ରଘୁପତିଙ୍କ ନାମରେ ମୁଁ

ରଘୁପତି ଚରନ ନାଇ ସିରୁ ଚଲେଉ ତୁରଂତ ଅନଂତ ।
ଅଂଗଦ ନୀଲ ମୟଂଦ ନଲ ସଂଗ ସୁଭଟ ହନୁମଂତ ॥୭୫॥
ଜାଇ କପିନ୍ହ ସୋ ଦେଖା ବୈସା । ଆହୁତି ଦେତ ରୁଧିର ଅରୁ ଭୈଁସା ॥
କୀନ୍ହ କପିନ୍ହ ସବ ଜଜ୍ଞ ବିଧଂସା । ଜବ ନ ଉଠଇ ତବ କରହିଁ ପ୍ରସଂସା ॥୧॥
ତଦପି ନ ଉଠଇ ଧରେନ୍ହି କଚ ଜାଈ । ଲାତନ୍ହି ହତି ହତି ଚଲେ ପରାଈ ॥
ଲୈ ତ୍ରିସୂଲ ଧାୱା କପି ଭାଗେ । ଆଏ ଜହଁ ରାମାନୁଜ ଆଗେ ॥୨॥
ଆୱା ପରମ କ୍ରୋଧ କର ମାରା । ଗର୍ଜ ଘୋର ରବ ବାରହିଁ ବାରା ॥
କୋପି ମରୁତସୁତ ଅଂଗଦ ଧାଏ । ହତି ତ୍ରିସୂଲ ଉର ଧରନି ଗିରାଏ ॥୩॥
ପ୍ରଭୁ କହଁ ଛାଁଡ଼େସି ସୂଲ ପ୍ରଚଂଡା । ସର ହତି କୃତ ଅନଂତ ଜୁଗ ଖଂଡା ॥
ଉଠି ବହୋରି ମାରୁତି ଜୁବରାଜା । ହତହିଁ କୋପି ତେହି ଘାଉ ନ ବାଜା ॥୪॥

---

ବନ୍ଦି ରଘୁନାଥ-ପଦ-ଜଳ-ଜାତ ଗମିଲେ ଶୀଘ୍ର ଅନନ୍ତ ।
ସଙ୍ଗରେ ଅଙ୍ଗଦ ଦ୍ୱିବିଦ ମୟନ୍ଦ ନଳ ନୀଳ ହନୁମନ୍ତ ॥୭୫॥
ଦେଖିଲେ ତାହାଙ୍କୁ ଯାଇ ବାନର ନିକର । ଆହୁତି ଦିଏ ମହିଷ ରୁଧିର ଆଦର ॥
ତହୁଁ ମରକଟ ଗଣ ଯଜ୍ଞ ବିଧ୍ୱଂସିଲେ । ଯେବେ ନ ଉଠିଲା ତହୁଁ ପ୍ରଶଂସା କରିଲେ ॥୧॥
ତଥାପି ସେ ନ ଉଠନ୍ତେ କେଶ ଧରି ଯାଇ । ଗୋଇଠା ମାରି ମାରିଣ ଯାଆନ୍ତି ପଳାଇ ॥
ତ୍ରିଶୂଳ ନେଇ ଧାଆନ୍ତେ ପଳାଇଲେ କପି । ଆସିଲା ରାମାନୁଜଙ୍କ ଆଗେ କୋପେ କମ୍ପି ॥୨॥
ଅତି କ୍ରୋଧାତୁରେ କରି ତ୍ରିଶୂଳ ପ୍ରହାର । ଘୋର ଗରଜନ କଲା ଶତ ବାରମ୍ବାର ॥
କୋପି ଧାଇଁଲେ ଅଙ୍ଗଦ ପବନ-ତନୟ । ଧରଣୀଶାୟୀ କଲା ମାରି ତ୍ରିଶୂଳ ହୃଦୟ ॥୩॥
ପ୍ରଭୁଙ୍କ ଉପରେ ଶୂଳ ଛାଡ଼ିଲା ପ୍ରଚଣ୍ଡ । ଶରେ କାଟିଣ ଅନନ୍ତ କଲେ ବେନି ଖଣ୍ଡ ॥
ଉଠି ପୁଣି ରୋଷଭରେ ମାରୁତି ଅଙ୍ଗଦ । ମାରନ୍ତେ ତାକୁ, ଆଘାତ ନ ଲଭଇ ମନ୍ଦ ॥୪॥

---

ଶପଥ କରି କହୁଛି—ଯଦି ଶହ ଶହ ଶଙ୍କର ସ୍ୱୟଂ ଆସି ତାହାକୁ ସାହାଯ୍ୟ କରନ୍ତି, ତଥାପି ମୁଁ ତାହାକୁ ଆଜି ନିଶ୍ଚୟ ମାରି ପକାଇବି ।" ॥ ୭ ॥ ଦୋହା — ଶ୍ରୀ ରଘୁନାଥଙ୍କ ଚରଣ-କମଳରେ ଶିର ନୁଆଁଇ ଶେଷାବତାର ଶ୍ରୀ ଲକ୍ଷ୍ମଣ ଶୀଘ୍ର ଚଳିଲେ । ତାଙ୍କ ସହିତ ଅଙ୍ଗଦ, ନୀଳ, ମୟନ୍ଦ, ନଳ ଓ ହନୁମାନ୍ ଆଦି ଉତ୍ତମ ଯୋଦ୍ଧାମାନେ ଥିଲେ ॥ ୭୫ ॥ ଚୌପାଈ —ବାନରମାନେ ଯାଇ ଦେଖିଲେ ଯେ ସେ (ମେଘନାଦ) ବସି ରକ୍ତ ଓ ମହିଷ ଆହୁତି ଦେଉଅଛି । ବାନରମାନେ ସମସ୍ତ ଯଜ୍ଞ ଧ୍ୱଂସ କରିଦେଲେ । ତଥାପି ସେ ନ ଉଠିବାରୁ ସେମାନେ ତାହାର ପ୍ରଶଂସା କରିବାକୁ ଲାଗିଲେ ॥ ୧ ॥ ତଥାପି ସେ ଉଠିଲା ନାହିଁ । ବାନରମାନେ ଯାଇ ତାହାର ବାଳ ଧରିଲେ ଏବଂ ତାହାକୁ ଗୋଇଠା ମାରି ମାରି ପଳାଇ ଚାଲିଲେ । ସେ ତ୍ରିଶୂଳ ଧରି ଧାଇଁଲା । ତେଣୁ ବାନରମାନେ ପଳାଇଲେ ଏବଂ ଲକ୍ଷ୍ମଣ ଯେଉଁଠାରେ ଠିଆ ହୋଇଥିଲେ ସେଠାକୁ ଆସିଗଲେ ॥ ୨ ॥ ସେ ମେଘନାଦ ଅତ୍ୟନ୍ତ କ୍ରୋଧାଧୀନ

ଫିରେ ସାର ଶସ୍ତ୍ର ମରଇ ନ ମାସା । ତବ ଧାଓ୍ୱା କରି ଘୋର ଶିକାସା ॥
ଆଓ୍ୱତ ଦେଖି କ୍ରୁଦ୍ଧ ଜନୁ କାଲା । ଲଛିମନ ଛାଡେ ବିସିଖ କରାଲା ॥୫॥
ଦେଖେସି ଆଓ୍ୱତ ପବି ସମ ବାନା । ତୁରତ ଭୟଉ ଖଲ ଅଂତରଧାନା ॥
ବିବିଧ ବେଷ ଧରି କରଇ ଲରାଈ । କବହୁଁକ ପ୍ରଗଟ କବହୁଁ ଦୁରି ଜାଈ ॥୬॥
ଦେଖି ଅଜୟ ରିପୁ ଡରପେ କୀସା । ପରମ କ୍ରୁଦ୍ଧ ତବ ଭୟଉ ଅହୀସା ॥
ଲଛିମନ ମନ ଅସ ମନ୍ତ୍ର ଦୃଢ଼ାଓ୍ୱା । ଏହି ପାପିହି ମୈଁ ବହୁତ ଖେଲାଓ୍ୱା ॥୭॥
ସୁମିରି କୋସଲାଧୀସ ପ୍ରତାପା । ସର ସଂଧାନ କୀହ୍ନ କରି ଦାପା ॥
ଛାଡ଼ା ବାନ ମାଝ ଉର ଲାଗା । ମରତୀ ବାର କପଟୁ ସବ ତ୍ୟାଗା ॥୮॥

---

ମାରନ୍ତେ ନ ମରେ ଶସ୍ତ୍ର ଘାତରେ ବାହୁତନ୍ତ୍ର । ପୁଣି ଧାଇଁଲା ଗର୍ଜନ କରି ଘୋର ଅତି ॥
ଆସିବାର ଦେଖି ଯଥା କ୍ରୋଧାନ୍ୱିତ କାଳ । ଛାଡିଲେ ସୁମିତ୍ରାସୁତ ଶାୟକ କରାଳ ॥୫॥
ଆସିବା ଅବଲୋକନ ବଜ୍ର ସମ ବାଣ । ସେହିକ୍ଷଣି ହୋଇଗଲା ଖଳ ଅନ୍ତର୍ଦ୍ଧାନ ॥
ନାନାବିଧ ବେଶ ଧରି ସମର କରଇ । କେବେ ଲୁଚିଯାଏ, କେବେ ଦୂରେ ପ୍ରକଟଇ ॥୬॥
ବିଲୋକି ଅଜେୟ ଶତ୍ରୁ ବାନରେ ଡରିଲେ । ପରମ କ୍ରୋଧିତ ତହୁଁ ଅହୀଶ ହୋଇଲେ ॥
ମନ ମଧ୍ୟେ ବିଚାରିଲେ ସୁମିତ୍ରାଙ୍କ ସୁତ । ଖେଳାଇଲିଣି ମୁଁ ଏହି ପାପୀକୁ ବହୁତ ॥୭॥
ସ୍ମରଣ କରି ପ୍ରତାପ କୋଶଳ-ନାଥଙ୍କ । ଅତି ଦର୍ପେ ସନ୍ଧାନିଲେ ଧନୁରେ ଶାୟକ ॥
ଛାଡିଲେ ବାଣ ତାହାର ହୃଦୟେ ବାଜିଲା । ମୃତ୍ୟୁ ସମୟେ ସମସ୍ତ କପଟ ତେଜିଲା ॥୮॥

---

ହୋଇ ଆସିଲା ଏବଂ ବାରମ୍ବାର ଭୟଙ୍କର ଶବ୍ଦ କରି ଗର୍ଜିବାକୁ ଲାଗିଲା । ମାରୁତି (ହନୁମାନ୍) ଓ ଅଙ୍ଗଦ କୋପ କରି ଧାଇଁଲେ । ସେ ଛାତିରେ ତ୍ରିଶୂଳ ମାରି ଦୁହିଁଙ୍କୁ ଭୂମି ଉପରେ ପକାଇ ଦେଲା ॥ ୩ ॥ ପୁଣି ସେ ପ୍ରଭୁ ଲକ୍ଷ୍ମଣଙ୍କ ଉପରକୁ ପ୍ରଚଣ୍ଡ ତ୍ରିଶୂଳ ଛାଡିଲା । ଅନନ୍ତ ଲକ୍ଷ୍ମଣ ଶର ମାରି ତାହାକୁ ଦୁଇଖଣ୍ଡ କରିଦେଲେ । ହନୁମାନ୍ ଓ ଯୁବରାଜ ଅଙ୍ଗଦ ପୁଣି ଉଠି କ୍ରୋଧ କରି ତାହାକୁ ମାରିବାକୁ ଲାଗିଲେ । କିନ୍ତୁ ତାହାଠାରେ ଆଘାତ ଲାଗିଲା ନାହିଁ ॥ ୪ ॥ ଶତ୍ରୁ ମେଘନାଦକୁ ମାରିଲେ ସୁଦ୍ଧା ସେ ମରୁନାହିଁ । ଏହା ଦେଖି ଯେତେବେଳେ ବୀରମାନେ ଲେଉଟିଲେ, ସେତେବେଳେ ସେ ଘୋର ଗର୍ଜ୍ଜନ କରି ଦଉଡ଼ିଲା । ତାହାକୁ କ୍ରୁଦ୍ଧ କାଳ ପରି ଆସୁଥିବାର ଦେଖି ଲକ୍ଷ୍ମଣ ଗୋଟିଏ ଭୟାନକ ଶର ଛାଡିଲେ ॥ ୫ ॥ ବଜ୍ର ସମାନ ବାଣ ଆସୁଥିବାର ଦେଖି ସେ ଦୁଷ୍ଟ ଶୀଘ୍ର ଅନ୍ତର୍ହିତ ହୋଇଗଲା ଏବଂ ପୁଣି ଭିନ୍ନ ଭିନ୍ନ ରୂପ ଧରି ଯୁଦ୍ଧ କରିବାକୁ ଲାଗିଲା । କେତେବେଳେ ସେ ଦେଖା ଦେଉଥାଏ ତ, ଆଉ କେତେବେଳେ ଲୁଚି ଯାଉଥାଏ ॥ ୬ ॥ ଶତ୍ରୁକୁ ଅପରାଜେୟ ଦେଖି ବାନରମାନେ ଡରିଗଲେ । ସେତେବେଳେ ସର୍ପରାଜ ଶେଷ (ଲକ୍ଷ୍ମଣ) ଅତିଶୟ କ୍ରୁଦ୍ଧ ହେଲେ । ଲକ୍ଷ୍ମଣ ମନେ ମନେ ଏହି ବିଚାର ଦୃଢ଼ୀଭୂତ କଲେ—"ଏହି ପାପୀକୁ ମୁଁ ବହୁତ ଖେଳାଇ ସାରିଲିଣି; ଏବେ ଏହାର ଅନ୍ତ କରିବା ଉଚିତ ।" ॥ ୭ ॥ କୋଶଳପତି ଶ୍ରୀରାମଙ୍କ ପ୍ରତାପ ସ୍ମରଣ

ରାମାନୁଜ କହଁ ରାମୁ କହଁ ଅସ କହି ଛାଁଡ଼େସି ପ୍ରାନ ।
ଧନ୍ୟ ଧନ୍ୟ ତବ ଜନନୀ କହ ଅଂଗଦ ହନୁମାନ ॥୭୬॥

ବିନୁ ପ୍ରୟାସ ହନୁମାନ ଉଠାୟୋ । ଲଂକା ଦ୍ୱାର ରାଖି ପୁନି ଆୟୋ ॥
ତାସୁ ମରନ ସୁନି ସୁର ଗଂଧର୍ବା । ଚଢ଼ି ବିମାନ ଆଏ ନଭ ସର୍ବା ॥୧॥
ବରଷି ସୁମନ ଦୁନ୍ଦୁଭୀଂ ବଜାୱହିଁ । ଶ୍ରୀରଘୁନାଥ ବିମଲ ଜସୁ ଗାୱହିଁ ॥
ଜୟ ଅନଂତ ଜୟ ଜଗଦାଧାରା । ତୁମ୍ହ ପ୍ରଭୁ ସବ ଦେବନ୍ହି ନିସ୍ତାରା ॥୨॥
ଅସ୍ତୁତି କରି ସୁର ସିଦ୍ଧ ସିଧାଏ । ଲଛିମନ କୃପାସିଂଧୁ ପହିଁ ଆଏ ॥
ସୁତ ବଧ ସୁନା ଦସାନନ ଜବହୀଂ । ମୁରୁଛିତ ଭୟଉ ପରେଉ ମହି ତବହୀଂ ॥୩॥
ମଂଦୋଦରୀ ରୁଦନ କର ଭାରୀ । ଉର ତାଡ଼ନ ବହୁ ଭାଁତି ପୁକାରୀ ॥
ନଗର ଲୋଗ ସବ ବ୍ୟାକୁଲ ସୋଚା । ସକଲ କହହିଁ ଦସକଂଧର ପୋଚା ॥୪॥

---

'ରାମାନୁଜ କାହିଁ, ରାମ କାହିଁ' କହି ପରିହରିଲା ସେ ପ୍ରାଣ ।
ଧନ୍ୟ ତୋର ମାତ, କହନ୍ତି ଏମନ୍ତ ଅଙ୍ଗଦାଦି ହନୁମାନ ॥୭୬॥

ପ୍ରୟାସ ବିନା ପବନନନ୍ଦନ ଉଠାଇ । ଲଙ୍କାଦ୍ୱାରେ ରଖି ଫେରି ଆସିଲା ସେ ଯାଇ ॥
ତାହାର ମରଣ ଶୁଣି ଅମର ଗନ୍ଧର୍ବେ । ବିମାନେ ଚଢି ଆକାଶେ ଆଗମିଲେ ସର୍ବେ ॥୧॥
ବରଷି ସୁମନ ହର୍ଷେ ଦୁନ୍ଦୁଭି ବଜାନ୍ତି । ଶ୍ରୀ ରଘୁବୀରଙ୍କ ଶୁଭ୍ର ସୁଯଶ ଗାଆନ୍ତି ॥
'ଜୟ ଅନନ୍ତ ଜୟତୁ ଜଗତ ଆଧାର' । ତୁମ୍ଭେ କରିଲ ସକଳ ସୁରଙ୍କ ନିସ୍ତାର ॥୨॥
ସ୍ତୁତି କରି କରି ସିଦ୍ଧ ଅମରେ ଗମିଲେ । ଲକ୍ଷ୍ମଣ କୃପାସିନ୍ଧୁଙ୍କ ନିକଟେ ଅଇଲେ ॥
କୁମର ବଧ ଶୁଣିଲା ଦଶାନନ ଯେବେ । ମୂର୍ଚ୍ଛିତ ହୋଇ ପଡ଼ିଲା ଧରଣୀରେ ତେବେ ॥୩॥
ମନ୍ଦୋଦରୀ ପୁତ୍ରଶୋକେ ରୋଦନ କରଇ । ବହୁ ପ୍ରକାରେ ବାହୁନି ହୃଦୟ ତାଡଇ ॥
ନଗର ଲୋକ ସକଳ ବ୍ୟାକୁଳେ ଚିନ୍ତନ୍ତି । ଅତି ମନ୍ଦ ଦଶକନ୍ଧ, ସମସ୍ତେ କହନ୍ତି ॥୪॥

---

କରି ଲକ୍ଷ୍ମଣ ଖିରୋଶତ ଦର୍ପରେ ଶର ସନ୍ଧାନ କଲେ । ବାଣ ଛୁଟିବା ମାତ୍ରେ ତାହା ତାହାର ବକ୍ଷର ମଧ୍ୟ ଭାଗରେ ଭେଦ କଲା । ମରିବା ସମୟରେ ସେ ସମସ୍ତ କପଟ ତ୍ୟାଗ କଲା ॥ ୮ ॥ ଦୋହା .—"ରାମାନୁଜ ଲକ୍ଷ୍ମଣ କେଉଁଠି ? ରାମ କେଉଁଠି ?"— ଏହିପରି କହି ସେ ପ୍ରାଣତ୍ୟାଗ କଲା । ଅଙ୍ଗଦ ଓ ହନୁମାନ୍ କହିବାକୁ ଲାଗିଲେ, "ତୋର ମାତା ଧନ୍ୟ, ଧନ୍ୟ । କାରଣ ତୁ ଲକ୍ଷ୍ମଣଙ୍କ ହସ୍ତରେ ନିହତ ହେଲୁ ଏବଂ ମରିବା ସମୟରେ ଶ୍ରୀରାମ ଲକ୍ଷ୍ମଣଙ୍କୁ ସ୍ମରଣ କରି ସେମାନଙ୍କ ନାମ ଉଚ୍ଚାରଣ କଲୁ ।" ॥୭୬॥ ଚୌପାଇ '—ହନୁମାନ୍ ଅନାୟାସରେ ତାହାକୁ ଉଠାଇ ନେଲେ ଏବଂ ଲଙ୍କାର ଦ୍ୱାର ଦେଶରେ ତାହାକୁ ରଖି ସେ ଫେରି ଆସିଲେ । ତାହାର ମୃତ୍ୟୁ-ସମ୍ବାଦ ପାଇ ଦେବତା ଓ ଗନ୍ଧର୍ବ ଆଦି ସମସ୍ତେ ବିମାନରେ ଚଢି ଆକାଶ ମାର୍ଗକୁ ଆସିଲେ ॥ ୧ ॥ ସେମାନେ ପୁଷ୍ପବୃଷ୍ଟି କରି ଦୁନ୍ଦୁଭି ବଜାଉଥା'ନ୍ତି ଏବଂ ଶ୍ରୀ ରଘୁନାଥଙ୍କ ନିର୍ମଳ ଯଶ ଗାନ କରୁଥା'ନ୍ତି । "ହେ ଅନନ୍ତ ! ଆପଣଙ୍କର ଜୟ ହେଉ ! ହେ ଜଗଦାଧାର !

ତବ ଦସକଂଠ ବିବିଧ ବିଧି ସମୁଝାଈଁ ସବ ନାରି ।
ନସ୍ୱର ରୂପ ଜଗତ ସବ ଦେଖହୁ ହୃଦୟଁ ବିଚାରି ॥୭୭॥
ତିହ୍ନହିଁ ଜ୍ଞାନ ଉପଦେସା ରାବନ । ଆପୁନ ମଂଦ କଥା ସୁଭ ପାବନ ॥
ପର ଉପଦେସ କୁସଲ ବହୁତେରେ । ଜେ ଆଚରହିଁ ତେ ନର ନ ଘନେରେ ॥୧॥
ନିସା ସିରାନି ଭୟଉ ଭିନୁସାରା । ଲଗେ ଭାଲୁ କପି ଚାରିହୁଁ ଦ୍ୱାରା ॥
ସୁଭଟ ବୋଲାଇ ଦସାନନ ବୋଲା । ରନ ସନ୍ମୁଖ ଜା କର ମନ ଡୋଲା ॥୨॥
ସୋ ଅବହୀଁ ବରୁ ଜାଉ ପରାଈ । ସଂଜୁଗ ବିମୁଖ ଭଏଁ ନ ଭଲାଈ ॥
ନିଜ ଭୁଜବଲ ମୈଁ ବୟରୁ ବଢ଼ାୱା । ଦେହଉଁ ଉତରୁ ଜୋ ରିପୁ ଚଢ଼ି ଆୱା ॥୩॥

---

ତହୁଁ ଦଶଶିର ଅନେକ ପ୍ରକାର ବୁଝାଇଲା ସବୁ ନାରୀ ।
ପ୍ରପଞ୍ଚ ସମସ୍ତ ଅଟେ ନାଶବନ୍ତ, ଦେଖ ହୃଦୟେ ବିଚାରି ॥୭୭॥
ତାଙ୍କୁ ଜ୍ଞାନ ଉପଦେଶ ରାବଣ ଦିଅଇ । ସ୍ୱୟଂ ମନ୍ଦ, ସୁପବିତ୍ର କଥା ସେ କହଇ ॥
ପରୋପଦେଶେ କୁଶଳ ବହୁ ଦେଖାଯାନ୍ତି । ଯେ ଆଚରନ୍ତି ସେ ନର ବିଶେଷ ନାହାନ୍ତି ॥୧॥
ହୋଇଲା ପ୍ରଭାତ ଆସି ନିଶି ହୋଇ ଶେଷ । ଘେରିଲେ ଚାରି ଦୁଆର ଋକ୍ଷ ମର୍କଟେଶ ॥
ଯୋଦ୍ଧାଙ୍କୁ ଡକାଇ ତହୁଁ ବୋଲେ ଦଶାନନ । ସମ୍ମୁଖ ସମରେ ଯା'ର ଭୟ କରେ ମନ ॥୨॥
ଏବେ ସମସ୍ତରୁ ବରଂ ଯାଉ ସେ ପଳାଇ । ଯୁଦ୍ଧେ ପୃଷ୍ଠଭଙ୍ଗ ଦେବା ଭଲ ନୁହେ, ଭାଇ ॥
ନିଜ ଭୁଜବଳେ ମୁହିଁ ବୈର ବଢାଇଛି । ଉତ୍ତର ଦେବି ଶତ୍ରୁ ଯେ ଚଢାଉ କରିଛି ॥୩॥

---

ଆପଣଙ୍କର ଜୟ ହେଉ ! ହେ ପ୍ରଭୋ ! ଆପଣ ସମସ୍ତ ଦେବତାଙ୍କୁ ମହା ବିପତ୍ତିରୁ ଉଦ୍ଧାର କରିଦେଲେ ।'' ॥ ୨ ॥ ଦେବତା ଓ ସିଦ୍ଧମାନେ ସ୍ତୁତି କରି ଚାଲିଗଲେ । ତଦନନ୍ତର ଲକ୍ଷ୍ମଣ କୃପାସାଗର ପ୍ରଭୁ ଶ୍ରୀରାମଙ୍କ ନିକଟକୁ ଆସିଲେ । ରାବଣ ପୁତ୍ରବଧ-ସମାଚାର ପାଇବା ମାତ୍ରେ ମୂର୍ଚ୍ଛିତ ହୋଇ ଭୂମି ଉପରେ ପଡିଗଲା ॥ ୩ ॥ ମନ୍ଦୋଦରୀ ଛାତି ପିଟି ପିଟି ଓ ବହୁତ ପ୍ରକାରେ ବାହୁନି ବାହୁନି ବିଳାପ କରିବାକୁ ଲାଗିଲା । ନଗରର ସମସ୍ତ ଲୋକ ଶୋକରେ ବ୍ୟାକୁଳ ହୋଇପଡିଲେ । ସମସ୍ତେ ରାବଣକୁ ନୀଚ ବୋଲି କହିବାକୁ ଲାଗିଲେ ॥ ୪ ॥ ଦୋହା '—ସେତେବେଳେ ରାବଣ ସମସ୍ତ ସ୍ତ୍ରୀଙ୍କୁ ଅନେକ ପ୍ରକାରେ ବୁଝାଇଲା—"ହୃଦୟ ମଧ୍ୟରେ ବିଚାର କରି ଦେଖ, ଜଗତର ଏହି ଦୃଶ୍ୟ ରୂପ ନାଶବାନ୍ ।'' ॥ ୭୭ ॥ ଚୌପାଇ '—ରାବଣ ସେମାନଙ୍କୁ ଜ୍ଞାନୋପଦେଶ ଦେଲା । ସେ ସ୍ୱୟଂ ନୀଚ । କିନ୍ତୁ ତାହାର କଥା ଶୁଭ ଓ ପବିତ୍ର । ଅନ୍ୟମାନଙ୍କୁ ଉପଦେଶ ଦେବାରେ ତ ବହୁତ ଲୋକ ନିପୁଣ । କିନ୍ତୁ ଉପଦେଶ ଅନୁସାରେ ଆଚରଣ କରିବା ଲୋକ ସେମାନଙ୍କ ମଧ୍ୟରେ ଅଧିକ ନ ଥା'ନ୍ତି ॥ ୧ ॥ ରାତି ବିତିଗଲା, ସକାଳ ହେଲା । ଭଲ୍ଲୁକ ଓ ବାନରମାନେ ପୁଣି ଚାରି ଦ୍ୱାରଦେଶକୁ ଯାଇ ଦୃଢ ରହିଲେ । ଦଶାନନ ରାବଣ ଯୋଦ୍ଧାମାନଙ୍କୁ ଡକାଇ କହିଲା, "ଯୁଦ୍ଧରେ ଶତ୍ରୁ ସମ୍ମୁଖରେ ଯାହାର ମନ ବିଚଳିତ ହୁଏ, ସେ ଏବେଠାରୁ ପଳାଇଗଲେ

ଅସ କହି ମରୁତ ବେଗ ରଥ ସାଜା । ବାଜେ ସକଲ ଜୁଝାଉ ବାଜା ॥
ଚଲେ ବୀର ସବ ଅତୁଲିତ ବଲୀ । ଜନୁ କଜ୍ଜଲ କୈ ଆଁଧୀ ଚଲୀ ॥୪॥
ଅସଗୁନ ଅମିତ ହୋହିଁ ତେହି କାଲା । ଗନଇ ନ ଭୁଜବଲ ଗର୍ବ ବିସାଲା ॥୫॥

ଅତି ଗର୍ବ ଗନଇ ନ ସଗୁନ ଅସଗୁନ ସ୍ରବହିଁ ଆୟୁଧ ହାଥତେଁ ।
ଭଟ ଗିରତ ରଥ ତେଁ ବାଜି ଗଜ ଚିକ୍କରତ ଭାଜହିଁ ସାଥ ତେଁ ॥
ଗୋମାୟୁ ଗୀଧ କରାଲ ଖର ରବ ସ୍ୱାନ ବୋଲହିଁ ଅତି ଘନେ ।
ଜନୁ କାଲଦୂତ ଉଲୂକ ବୋଲହିଁ ବଚନ ପରମ ଭୟାବନେ ॥

ତାହି କି ସଂପତି ସଗୁନ ସୁଭ ସପନେହୁ ମନ ବିଶ୍ରାମ ।
ଭୂତଦ୍ରୋହ ରତ ମୋହବସ ରାମ ବିମୁଖ ରତି କାମ ॥୭୮॥

---

ଏହା କହି ବାୟୁବେଗ ସ୍ୟନ୍ଦନ ସାଜିଲା । ରଣ-ଉନ୍ମାଦକ ବାଦ୍ୟ ସକଲ ବାଜିଲା ॥
ଚଳିଲେ ଅତୁଳନୀୟ ବୀର ବଳବାନ । ମନେ ହୁଏ, ବହିଲା କି କଜ୍ଜଳ ତୋଫାନ ॥୪॥
ଅଶକୁନ ଅମିତ ହୋଇଲା ସେ କାଳେ । ନ ଗଣଇ ଭୁଜବଳ ଗରବ ବିଶାଳେ ॥୫॥

ବଳ ଗର୍ବେ ନ ଗଣେ ଶକୁନ ଅଶକୁନେ ଖସଇ ଆୟୁଧ ହସ୍ତରୁ ।
ବୀରେ ରଥୁ ପଡନ୍ତି ଚିତ୍କାରି ହୟ ହସ୍ତୀ ପଳାଇ ଚଳନ୍ତି ସଙ୍ଗରୁ ।
ଗୃଧ୍ର ଶୃଗାଳ ଶ୍ୱାନ ଖର, ରବ କରନ୍ତି ଭୟଙ୍କର,
କାଳଦୂତ ଯେପରି ଉଲୁକ ଭୟକାରୀ କରନ୍ତି ଧ୍ୱନି ତୀକ୍ଷ୍ଣ ସ୍ୱର ॥

କାହିଁ ତାର ଶୁଭ ଶକୁନ ସମ୍ପତ୍ତି ସ୍ୱପ୍ନେହେଁ ମନେ ବିଶ୍ରାମ ।
ମୋହ ବଶୀଭୂତ କାମରତ ଭୂତ-ଦ୍ରୋହୀ ଯେ ବିମୁଖ ରାମ ॥୭୮॥

---

ଉତ୍ତମ । ଯୁଦ୍ଧଭୂମିକୁ ଯାଇ ବିମୁଖ ହୋଇ ପଛଘୁଞ୍ଚା ଦେବାରେ ମଙ୍ଗଳ ନାହିଁ । ମୁଁ ଆପଣା ବାହୁବଳ ଉପରେ ଭରସା କରି ଶତ୍ରୁତା ବଢାଇଛି । ଯେଉଁ ଶତ୍ରୁ ଚଢି ଆସିଛି, ତାହାକୁ ମୁଁ ମୋ ପକ୍ଷରୁ ହିଁ ଜବାବ ଦେବି ।" ॥ ୨-୩ ॥ —ଏହିପରି କହି ସେ ପବନ ପରି ବେଗଗାମୀ ରଥ ସଜାଇଲା । ସମସ୍ତ ରଣବାଦ୍ୟ ବାଜିବାକୁ ଲାଗିଲା । ସମସ୍ତ ଅତୁଳନୀୟ ବଳବାନ୍ ବୀର ଏପରି ଭାବରେ ଚାଲିବାକୁ ଲାଗିଲେ ଯେ, ଦେଖି ବୋଧ ହେଲା, ସତେ ଅବା କଜ୍ଜଳର ତୋଫାନ ମାଡ଼ିଆସୁଛି ! ॥ ୪ ॥ ସେତେବେଳେ ଅସଂଖ୍ୟ ଅପଶକୁନ ଦୃଷ୍ଟିଗୋଚର ହେଲା । କିନ୍ତୁ ନିଜ ବାହୁବଳ ବିଷୟରେ ଅତ୍ୟଧିକ ଗର୍ବ ଥିବା ହେତୁ ରାବଣ ସେ ସବୁର ଗଣନା କରୁ ନ ଥାଏ ॥ ୫ ॥ ଛନ୍ଦ :— ଅତ୍ୟଧିକ ଗର୍ବ ହେତୁ ସେ ଶକୁନ ଅପଶକୁନ କଥା ବିଚାରକୁ ଆଣୁ ନ ଥାଏ । ଅସ୍ତ୍ରଶସ୍ତ୍ରମାନ ହାତରୁ ଖସି ପଡୁଥାଏ । ଯୋଦ୍ଧାମାନେ ରଥରୁ ଖସିପଡୁଥା'ନ୍ତି । ଘୋଡା ଓ ହାତୀମାନେ ସଙ୍ଗ ଛାଡି ଗର୍ଜନ କରି ପଳାଇ ଯାଉଥା'ନ୍ତି । ବିଲୁଆ, ଶାଗୁଣା, କୁଆ ଓ ଗଧ-ମାନେ ଭୟଙ୍କର ରଡି କରୁଥା'ନ୍ତି ଏବଂ କୁକୁରମାନେ ବହୁ ସଂଖ୍ୟାରେ ବୋବାଉଥା'ନ୍ତି ।

ଚଲେଉ ନିଶାଚର କଟକୁ ଅପାରା । ଚତୁରଂଗିନୀ ଅନୀ ବହୁ ଧାରା ॥
ବିବିଧ ଭାଁତି ବାହନ ରଥ ଜାନା । ବିପୁଲ ବରନ ପତାକ ଧ୍ୱଜ ନାନା ॥୧॥
ଚଲେ ମତ୍ତ ଗଜ ଜୂଥ ଘନେରେ । ପ୍ରାବିଟ ଜଲଦ ମରୁତ ଜନୁ ପ୍ରେରେ ॥
ବରନ ବରନ ବିରଦୈତ ନିକାୟା । ସମର ସୂର ଜାନହିଁ ବହୁ ମାୟା ॥୨॥
ଅତି ବିଚିତ୍ର ବାହିନୀ ବିରାଜୀ । ବୀର ବସଂତ ସେନ ଜନୁ ସାଜୀ ॥
ଚଲତ କଟକ ଦିଗସିଂଧୁର ଡଗହୀଁ । ଛୁଭିତ ପୟୋଧି କୁଧର ଡଗମଗହୀଁ ॥୩॥
ଉଠୀ ରେନୁ ରବି ଗୟଉ ଛପାଈ । ମରୁତ ଥକିତ ବସୁଧା ଅକୁଲାଈ ॥
ପଣବ ନିସାନ ଘୋର ରବ ବାଜହିଁ । ପ୍ରଲୟ ସମୟ କେ ଘନ ଜନୁ ଗାଜହିଁ ॥୪॥
ଭେରି ନଫୀରି ବାଜ ସହନାଈ । ମାରୂ ରାଗ ସୁଭଟ ସୁଖଦାଈ ॥
କେହରି ନାଦ ବୀର ସବ କରହୀଁ । ନିଜ ନିଜ ବଲ ପୌରୁଷ ଉଚରହୀଁ ॥୫॥

---

ଚଳିଲେ ରଜନୀଚର ବାହିନୀ ଅପାର । ଚତୁରଙ୍ଗିଣୀ କଟକ ଅନେକ ପ୍ରକାର ॥
ଯାନ ବାହନ ଆବର ରଥ ଅଗଣିତ । ବିପୁଳ ବର୍ଣ୍ଣର ଧ୍ୱଜା ପତାକା ଅମିତ ॥୧॥
ଚଳିଲେ ମତ୍ତ କୁଞ୍ଜର ଯୂଥ ଅଗଣନ । ମରୁତ ପ୍ରେରିତେ ବର୍ଷା ଜଳଦ ଯେସନ ॥
ବିବିଧ ବର୍ଣ୍ଣର ବଳୀ ନିଶାଚରଚୟ । ସମରେ ଶୂର ଜାଣନ୍ତି ମାୟା ଅତିଶୟ ॥୨॥
ଅତ୍ୟନ୍ତ ଚଣ୍ଡ ବିଚିତ୍ର ବାହିନୀ ବିରାଜେ । ବୀର ବସନ୍ତ ଯେସନେ ନିଜ ସେନା ସାଜେ ॥
ଚଳନ୍ତେ କଟକ ଦିଗ ବାରଣ ଥରନ୍ତି । ଉଦ୍‌ବେଳିତ ନୀରନିଧି ଭୂଧର କମ୍ପନ୍ତି ॥୩॥
ରେଣୁ ଉଡ଼ି ଆଚ୍ଛାଦିତ ହେଲେ ଦିନମଣି । ପବନ ସ୍ତମ୍ଭିତ ହେଲା ଆକୁଳ ଧରଣୀ ॥
ଦୁନ୍ଦୁଭି ନିଶାଣ ଘୋର କରନ୍ତି ଗର୍ଜନ । ମହା ପ୍ରଳୟରେ ଯେସନ୍ତେ ଗରଜଇ ଘନ ॥୪॥
ଭେରୀ ତୂରୀ ପେହେଁକାଳୀ ବିପୁଳ ବାଜଇ । 'ମାରୁ' ରାଗ ଯୋଦ୍ଧାମନ ଉନ୍ମାଦ କରଇ ॥
କେଶରୀ ନିନାଦ ବୀର ସମୂହ କରନ୍ତି । ନିଜ ନିଜ ବଳ ତେଜ ପୌରୁଷ କହନ୍ତି ॥୫॥

---

ଭଲ୍ଲୂକମାନେ ଏପରି ଅତ୍ୟନ୍ତ ଭୟାନକ ଧ୍ୱନି କରୁଥା'ନ୍ତି, ତାହା ଶୁଣି ବୋଧ ହେଉଥାଏ, ସତେ ଯେପରି ସେମାନେ କାଳର ଦୂତ ରୂପେ ମୃତ୍ୟୁ ସନ୍ଦେଶ ଶୁଣାଉ ଅଛନ୍ତି ॥ ଦୋହା '—ଯେ ଜୀବ-ଦ୍ରୋହରେ ରତ, ମୋହବଶ, ରାମବିମୁଖ ଓ କାମାସକ୍ତ, ତାହାଙ୍କୁ ସ୍ୱପ୍ନରେ ସୁଦ୍ଧା ସମ୍ପତ୍ତି, ଶୁଭ ଶକୁନ ଓ ମାନସିକ ବିଶ୍ରାମ ମିଳିପାରେ କି ? ॥ ୭୮ ॥ ଚୌପାଈ —ରାକ୍ଷସଗଣଙ୍କର ଅପାର ସେନା ଚଳିଲେ । ଚତୁରଙ୍ଗିଣୀ ସେନା ଅନେକ ଦଳରେ ବିଭକ୍ତ । ବିବିଧ ବାହନ, ରଥ ଓ ଯାନ ଶୋଭା ପାଉଅଛି । ବିବିଧ ରଙ୍ଗର ଅନେକ ପତାକା ଓ ଧ୍ୱଜା ସୁଶୋଭିତ ॥ ୧ ॥ ଉନ୍ମତ୍ତ ହସ୍ତୀମାନେ ପଲ ପଲ ହୋଇ ଚାଲିଥା'ନ୍ତି । ସତେ ଅବା ପବନ-ପ୍ରେରିତ ବର୍ଷା ଋତୁର ବାଦଲ । ବିବିଧ ରଙ୍ଗର ବାନା-ଧାରୀ ବୀରବୃନ୍ଦ ଚାଲିଅଛନ୍ତି । ସେମାନେ ବଡ ସମରବୀର ଏବଂ ବହୁତ ମାୟା ରଚନା କରି ଜାଣନ୍ତି ॥ ୨ ॥ ଅତି ବିଚିତ୍ର ବାହିନୀ ବିରାଜିତ । ସତେ ଯେମିତି ବୀର ବସନ୍ତ ସେନା ସଜାଇଅଛି । ସେନାମାନେ

କହଇ ଦସାନନ ସୁନହୁ ସୁଭଟ୍ଟା । ମର୍ଦହୁ ଭାଲୁ କପିନ୍ହ କେ ଠଟ୍ଟା ॥
ହୌଁ ମାରିହଉଁ ଭୂପ ଦ୍ୱୌ ଭାଈ । ଅସ କହି ସନ୍ମୁଖ ଫୌଜ ରେଁଗାଈ ॥୭॥
ଯହ ସୁଧି ସକଲ କପିନ୍ହ ଜବ ପାଈ । ଧାଏ କରି ରଘୁବୀର ଦୋହାଈ ॥୮॥

ଧାଏ ବିଶାଲ କରାଲ ମର୍କଟ ଭାଲୁ କାଲ ସମାନ ତେ ।
ମାନହୁଁ ସପଚ୍ଛ ଉଡ଼ାହିଁ ଭୂଧର ବୃଂଦ ନାନା ବାନ ତେ ॥
ନଖ ଦସନ ସୈଲ ମହାଦ୍ରୁମାୟୁଧ ସବଲ ସଂକ ନ ମାନହୀଂ ।
ଜୟ ରାମ ରାବନ ମତ୍ତ ଗଜ ମୃଗରାଜ ସୁଜସୁ ବଖାନହୀଂ ॥

ଦୁହୁ ଦିସି ଜୟ ଜୟକାର କରି ନିଜ ନିଜ ଜୋରୀ ଜାନି ।
ଭିରେ ବୀର ଇତ ରାମହି ଉତ ରାବନହି ବଖାନି ॥୮୧॥

---

ବୋଲେ ଦଶକଣ୍ଠ, ଶୁଣ ସର୍ବେ ବୀରବର । ଭାଲୁ ମର୍କଟଙ୍କ ଥାଟ ତୁମ୍ଭେ ଚୂର୍ଣ୍ଣ କର ॥
ମୁଁ ନିଜେ ମାରିବି ସେହି ଭୂପ ଦୁଇଭାଇ । ଏହା କହି ସେନା ଦେଲା ସମ୍ମୁଖେ ଚଳାଇ ॥୭॥
ଏ ସନ୍ଦେଶ ଯେବେ ଋକ୍ଷ ମର୍କଟ ପାଇଲେ । ରଘୁବୀର ଜୟଘୋଷ କରିଣ ଧାଇଁଲେ ॥୮॥

ଧାଇଁଲେ ବିକଟାଳ କାଳ ସମ ବିଶାଳ ଭାଲୁ ମର୍କଟ ଅଗଣିତେ ।
ଯେସନେ ପକ୍ଷଯୁକ୍ତ ପରବତ ବହୁତ ଉଡନ୍ତି ଶାଙ୍ଗକ ପ୍ରେରିତେ ।
ଆୟୁଧ ନଖ ଦନ୍ତ ପନ୍ତ, ସବଳେ ଶଙ୍କା ନ ମନ୍ତେ,
ଜୟ ରାମ ଲଙ୍କେଶ-ମତ୍ତ-ଗଜ-ମୃଗେଶ ସୁଯଶ ବର୍ଣ୍ଣିନ କରନ୍ତି ॥

ଜରି ଜୟ ଜୟ କଟକ ଉଭୟ ନିଜ ନିଜ ଯୋଡ଼ି ଜାଣି ।
ଏଣେ ରାମଙ୍କର ତେଣେ ରାବଣର ଯୁଝିଲେ ଜୟ ବଖାଣି ॥୮୧॥

---

ଟଳିବାରୁ ଦିଗ୍‌ଗଜମାନେ ଚୋହଲିବାକୁ ଲାଗିଲେ । ସମୁଦ୍ରମାନେ କ୍ଷୁବ୍ଧ ହୋଇ ଉଠିଲେ ଏବଂ ପର୍ବତମାନେ ହଲିବାକୁ ଲାଗିଲେ ॥ ୩ ॥ ଏତେ ଧୂଳି ଉଡ଼ିଲା ଯେ, ସୂର୍ଯ୍ୟ ଲୁଚିଗଲେ । ପବନର ଗତି ସହସା ବନ୍ଦ ହୋଇଗଲା ଏବଂ ପୃଥିବୀ ବ୍ୟାକୁଳ ହୋଇ ଉଠିଲା । ଢୋଲ ଓ ନିଶାଣମାନ ଭୀଷଣ ଧ୍ୱନିରେ ଗର୍ଜନ କରୁଥାଏ । ଯେତେ ଯେମିତି ପ୍ରଳୟକାଳୀନ ବାଦଲମାନେ ଗର୍ଜନ କରୁଅଛନ୍ତି ॥୪॥ ଭେରୀ, ତୂରୀ ଓ ଶହନାଇମାନଙ୍କରେ ଯୋଦ୍ଧାଗଣଙ୍କ ସୁଖଦାୟକ 'ମାରୁ' ରାଗ ବାଜୁଥାଏ । ସମସ୍ତ ବୀର ସିଂହନାଦ କରୁଥା'ନ୍ତି ଏବଂ ଆପଣା ଆପଣାର ବଳ-ପୌରୁଷ ବଖାଣୁଥା'ନ୍ତି ॥ ୫ ॥ ରାବଣ କହିଲା, "ହେ ଉତ୍ତମ ଯୋଦ୍ଧାମାନେ ! ତୁମ୍ଭେମାନେ ଭଲ୍ଲୁକ ଓ ବାନରଦଳ-ମାନଙ୍କୁ ଚକଟି ପକାଅ ଏବଂ ମୁଁ ଦୁଇ ରାଜକୁମାର ଭାଇଙ୍କୁ ମାରିବି ।"—ଏହିପରି କହି ସେ ସମ୍ମୁଖରେ ନିଜ ସେନା ଚଳାଇଲା ॥ ୭ ॥ ଯେତେବେଳେ ସମସ୍ତ ବାନର ଏହି ଖବର ପାଇଲେ, ସେମାନେ ଶ୍ରୀ ରଘୁବୀରଙ୍କ ଜୟଧ୍ୱନି ଡାକି ଦୌଡ଼ିଲେ ॥ ୮ ॥ ଛନ୍ଦ :—ସେହି ବିଶାଳ ଓ କାଳ ସମ କରାଳ ବାନରଭଲ୍ଲୁକମାନେ ଦୌଡ଼ିଲେ ।

ରାବନୁ ରଥୀ ବିରଥ ରଘୁବୀରା । ଦେଖି ବିଭୀଷନ ଭୟଉ ଅଧୀରା ॥
ଅଧିକ ପ୍ରୀତି ମନ ଭା ସଂଦେହା । ବଂଦି ଚରନ କହ ସହିତ ସନେହା ॥୧॥
ନାଥ ନ ରଥ ନହିଁ ତନ ପଦ ତ୍ରାନା । କେହି ବିଧି ଜିତବ ବୀର ବଲବାନା ॥
ସୁନହୁ ସଖା କହ କୃପାନିଧାନା । ଜେହିଁ ଜୟ ହୋଇ ସୋ ସ୍ୟନ୍ଦନ ଆନା ॥୨॥
ସୌରଜ ଧୀରଜ ତେହି ରଥ ଚାକା । ସତ୍ୟ ସୀଲ ଦୃଢ଼ ଧ୍ୱଜା ପତାକା ॥
ବଲ ବିବେକ ଦମ ପରହିତ ଘୋରେ । ଛମା କୃପା ସମତା ରଜୁ ଜୋରେ ॥୩॥
ଈସ ଭଜନୁ ସାରଥୀ ସୁଜାନା । ବିରତି ଚର୍ମ ସଂତୋଷ କୃପାନା ॥
ଦାନ ପରସୁ ବୁଧି ଶକ୍ତି ପ୍ରଚଣ୍ଡା । ବର ବିଜ୍ଞାନ କଠିନ କୋଦଣ୍ଡା ॥୪॥

---

ରାବଣ ସରଥ, ରଥହୀନ ରଘୁବୀର । ଦେଖି ବିଭୀଷଣ ଅତି ହୋଇଲେ ଅଧୀର ॥
ଅଧିକ ପ୍ରୀତି ହୃଦୟେ ହୁଅନ୍ତେ ସନ୍ଦେହ । ଚରଣ ବନ୍ଦନ କରି କହଇ ସସ୍ନେହ ॥୧॥
ନାଥ, ନାହିଁ ରଥ କିମ୍ବା ତନୁ ପଦ ତ୍ରାଣ । କପରି ଭାବେ ଜିଣିବେ ରିପୁ ବଳବାନ ॥
ଶୁଣ ହେ ସଖା ' ଭାଷିଲେ କରୁଣା ନିଧାନ । ଯହିଁରେ ଜୟ ହୁଅଇ ସେ ସ୍ୟନ୍ଦନ ଆନ ॥୨॥
ଶୌର୍ଯ୍ୟ ଧୈର୍ଯ୍ୟ ଚକ୍ରତୁଲ୍ୟ ଅଟେ ସେ ରଥର । ସତ୍ୟ ଶୀଳ ଦୃଢ଼ ଧ୍ୱଜା ପତାକା ଅବର ॥
ବଳ ବିବେକ, ଦମନ ପରହିତ ଘୋଡ଼ା । କ୍ଷମା କରୁଣା ସମତା-ଦଉଡ଼ିରେ ଯୋଡ଼ା ॥୩॥
ଈଶ୍ୱର ଭଜନ ତହିଁ ପ୍ରବୀଣ ସାରଥି । ବୈରାଗ୍ୟ ଢାଲ ସନ୍ତୋଷ ଖଡ୍‌ଗ ତୀକ୍ଷ୍ଣ ଅତି ॥
ଦାନ ପରଶୁ ସୁବୁଦ୍ଧି ଶକ୍ତି ଯେ ପ୍ରଚଣ୍ଡ । ଉତ୍ତମ ବିଜ୍ଞାନ ଅତି କଠିନ କୋଦଣ୍ଡ ॥୪॥

---

ସତେ ଯେମିତି ପକ୍ଷଧାରୀ ପର୍ବତମାନେ ଉଡ଼ୁଅଛନ୍ତି ! ସେମାନଙ୍କର ବର୍ଣ୍ଣ ନାନା ପ୍ରକାର । ନଖ, ଦାନ୍ତ, ପର୍ବତ ଓ ବଡ଼ ବଡ଼ ବୃକ୍ଷ ସବୁ ସେମାନଙ୍କର ଆୟୁଧ । ସେମାନେ ଅତି ବଳବାନ୍ । ସେମାନେ କାହାରି ଭୟ ସ୍ୱୀକାର କରୁ ନ ଥା'ନ୍ତି । ରାବଣ ରୂପୀ ଉନ୍ମତ୍ତ ହସ୍ତୀ ନିମନ୍ତେ ସିଂହ ସ୍ୱରୂପ ଶ୍ରୀରାମଙ୍କ ଜୟ ଜୟକାର କରି ସେମାନେ ତାହାଙ୍କର ସୁନ୍ଦର ଯଶ ବଖାଣୁଥା'ନ୍ତି ॥ ଦୋହା '—ଉଭୟ ପକ୍ଷର ଯୋଦ୍ଧାମାନେ 'ଜୟ ଜୟ' ଧ୍ୱନି କରି ନିଜ ନିଜର ପ୍ରତିଦ୍ୱନ୍ଦ୍ୱୀ ବାଛିନେଲେ ଏବଂ ଏଣେ ଶ୍ରୀରାମଙ୍କ ଓ ତେଣେ ରାବଣର ଯଶ ବଖାଣି ପରସ୍ପର ସହିତ ଯୁଦ୍ଧରେ ବ୍ୟାପୃତ ହେଲେ ॥ ୭୯ ॥ ଚୌପାଈ !—ରାବଣ ରଥୀ ଓ ଶ୍ରୀ ରଘୁନାଥ ବିରଥ—ଏହା ଦେଖି ବିଭୀଷଣ ଅଧୀର ହୋଇ ପଡ଼ିଲେ । ପ୍ରେମାଧିକ୍ୟ ହେତୁ ତାହାଙ୍କ ମନରେ ସନ୍ଦେହ ଜାତ ହେଲା ଯେ, ପ୍ରଭୁ ରଥବିହୀନ ହୋଇ ରଥୀ ରାବଣକୁ ଜିଣିବେ କିପରି ? ଶ୍ରୀରାମଙ୍କ ଚରଣ-କମଳ ବନ୍ଦନା-ପୂର୍ବକ ସେ ସ୍ନେହରେ କହିବାକୁ ଲାଗିଲେ—॥ ୧॥ "ହେ ନାଥ ' ଆପଣଙ୍କର ରଥ ନାହିଁ କିମ୍ବା ଶରୀର-ରକ୍ଷକ କବଚ (ସାଞ୍ଜୁ) ଓ ଯୋତା ନାହିଁ । ସେହି ବଳବାନ୍ ବୀର ରାବଣକୁ ଆପଣ କିପରି ଜୟ କରିବେ ?" କୃପାନିଧାନ ଶ୍ରୀରାମ କହିଲେ, "ହେ ସଖେ ! ଶୁଣ, ଯାହା ଦ୍ୱାରା ଜୟ ହୁଏ, ସେ ରଥ ଭିନ୍ନ ପ୍ରକାର ॥ ୨ ॥ ଶୌର୍ଯ୍ୟ ଓ ଧୈର୍ଯ୍ୟ ଉକ୍ତ ରଥର ଚକ । ସତ୍ୟ ଓ ସଦାଚାର ତାହାର

ଅମଲ ଅଚଲ ମନ ତୋନ ସମାନା । ସମ ଜମ ନିୟମ ସିଲୀମୁଖ ନାନା ॥
କବଚ ଅଭେଦ ବିପ୍ର ଗୁର ପୂଜା । ଏହି ସମ ବିଜୟ ଉପାୟ ନ ଦୂଜା ॥୫॥
ସଖା ଧର୍ମମୟ ଅସ ରଥ ଜାକେଁ । ଜୀତନ କହଁ ନ କତହୁଁ ରିପୁ ତାକେଁ ॥୬॥

ମହା ଅଜୟ ସଂସାର ରିପୁ ଜୀତି ସକଇ ସୋ ବୀର ।
ଜାକେଁ ଅସ ରଥ ହୋଇ ଦୃଢ଼ ସୁନହୁ ସଖା ମତିଧୀର ॥୮୦(କ)॥
ସୁନି ପ୍ରଭୁ ବଚନ ବିଭୀଷନ ହରଷି ଗହେ ପଦ କଂଜ ।
ଏହି ମିସ ମୋହି ଉପଦେସେହୁ ରାମ କୃପା ସୁଖ ପୁଂଜ ॥୮୦(ଖ)॥
ଉତ ପଚାର ଦସକଂଧର ଇତ ଅଂଗଦ ହନୁମାନ ।
ଲରତ ନିସାଚର ଭାଲୁ କପି କରି ନିଜ ନିଜ ପ୍ରଭୁ ଆନ ॥୮୦(ଗ)॥

---

ନିର୍ମଳ ଅଚଳ ମନ ତୂଣୀର ସମାନ । ସଂଯମ ନିୟମ ଶମ ନାନାବିଧ ବାଣ ॥
ଅଭେଦ୍ୟ କବଚ ଗୁରୁ ବିପ୍ର ପୂଜା ବର । ଏହା ସମ ଅନ୍ୟୋପାୟ ନାହିଁ ବିଜୟର ॥୫॥
ସଖା ! ଧର୍ମମୟ ରଥ ଯାହାର ଏମନ୍ତେ । ଶତ୍ରୁ କାହିଁ ନାହିଁ ତାକୁ ଜିଣିବା ନିମନ୍ତେ ॥୬॥

ଅତ୍ୟନ୍ତ ଅଜୟ ଶତ୍ରୁ ଏ ସଂସାର ଜିଣିପାରେ ସେହି ବୀର ।
ଯାହାର ଏମନ୍ତ ଥାଏ ଦୃଢ଼ ରଥ ଶୁଣ ସଖା ! ମତି ଧୀର ॥୮୦ (କ)॥
ଶୁଣି ବିଭୀଷଣ ପ୍ରଭୁଙ୍କ ବଚନ ଧରିଲା ପଦ-ପଙ୍କଜ ।
ଏହି ବାହାନାରେ ଶିକ୍ଷା ଦେଲ ମୋତେ ରାମ କୃପା ସୁଖ ପୁଞ୍ଜ ॥୮୦ (ଖ)॥
କରଇ ଆହ୍ୱାନ ତେଣେ ଦଶାନନ ଏଣେ ଅଙ୍ଗଦ ମାରୁତି ।
ଯୁଝନ୍ତି ବାନର ଭାଲୁ ନିଶାଚର ଘୋଷି ସ୍ୱ ସ୍ୱ ପ୍ରଭୁ ଖ୍ୟାତି ॥୮୦ (ଗ)॥

---

ଦୃଢ ଧ୍ୱଜା ଓ ପତାକା । ବଳ, ବିବେକ, ଇନ୍ଦ୍ରିୟଦମନ ଏବଂ ପରୋପକାର—ଏ ଚାରି-ଗୋଟି ତାହାର ଅଶ୍ୱ । କ୍ଷମା, ଦୟା ଏବଂ ସମତା-ରଜ୍ଜୁ ଦ୍ୱାରା ଏମାନେ ରଥରେ ଯୋଡ଼ି ହୋଇଥା'ନ୍ତି ॥ ୩ ॥ ଈଶ୍ୱରଙ୍କର ଭଜନ ହିଁ ଉକ୍ତ ରଥର ସଞ୍ଚାଳକ ଚତୁର ସାରଥି । ବୈରାଗ୍ୟ, ଢାଲ ଓ ସନ୍ତୋଷ ତରବାରି । ଦାନ ଫାରଶା, ବୁଦ୍ଧି ପ୍ରଚଣ୍ଡ ଶକ୍ତି, ଶ୍ରେଷ୍ଠ ବିଜ୍ଞାନ କଠୋର ଧନୁ ॥ ୪ ॥ ନିର୍ମଳ (ପାପରହିତ) ଓ ଅଚଳ (ସ୍ଥିର) ମନ ତୂଣୀର ସମାନ । ଶମ (ମନର ବଶୀକରଣ), ଅହିଂସାଦି ଯମ ଓ ଶୌଚାଦି ନିୟମ—ଏମାନେ ସମସ୍ତେ ବହୁବିଧ ବାଣ । ବ୍ରାହ୍ମଣ ଓ ଗୁରୁପୂଜନ ଅଭେଦ୍ୟ କବଚ । ଏମାନଙ୍କ ପରି ବିଜୟର ଅନ୍ୟ ଉପାୟ କିଛି ନାହିଁ ॥ ୫ ॥ ହେ ସଖେ ! ଯାହାର ଏହିପରି ଧର୍ମମୟ ରଥ ଥାଏ, ତାହା ପକ୍ଷରେ ଜିଣିବା ନିମନ୍ତେ କେଉଁଠାରେ ହେଲେ ଶତ୍ରୁ ନାହାନ୍ତି ॥ ୬ ॥ ଦୋହା :—ହେ ଧୀରବୁଦ୍ଧି ସଖେ ! ଶୁଣ, ଯାହା ପାଖରେ ଏପରି ଦୃଢ ରଥ ଥାଏ, ସେହି ବୀର ସଂସାର (ଜନ୍ମ ମୃତ୍ୟୁ) ଘଣ ମହା ଦୁର୍ଜୟ ଶତ୍ରୁକୁ ମଧ୍ୟ ଜିଣି ପାରିବ । ରାବଣ କଥା କେତେ ମାତ୍ର ?" ॥ ୮୦ (କ) ॥ ପ୍ରଭୁଙ୍କ ବଚନ ଶୁଣି ବିଭୀଷଣ ହର୍ଷିତ ହୋଇ ତାଙ୍କର ଚରଣ-କମଳ ଧରି ପକାଇଲେ

ସୁର ବ୍ରହ୍ମାଦି ସିଦ୍ଧ ମୁନି ନାନା । ଦେଖତ ରନ ନଭ ଚଢ଼େ ବିମାନା ॥
ହମହୂ ଉମା ରହେ ତେହିଁ ସଂଗା । ଦେଖତ ରାମ ଚରିତ ରନ ରଂଗା ॥୧॥
ସୁଭଟ ସମର ରସ ଦୁହୁଁ ଦିସି ମାତେ । କପି ଜୟସୀଲ ରାମ ବଲ ତାତେ ॥
ଏକ ଏକ ସନ ଭିରହିଁ ପଚାରହିଁ । ଏକନ୍ହ ଏକ ମର୍ଦି ମହି ପାରହିଁ ॥୨॥
ମାରହିଁ କାଟହିଁ ଧରହିଁ ପଛାରହିଁ । ସୀସ ତୋରି ସୀସନ୍ହ ସନ ମାରହିଁ ॥
ଉଦର ବିଦାରହିଁ ଭୁଜା ଉପାରହିଁ । ଗହି ପଦ ଅବନି ପଟକି ଭଟ ଡାରହିଁ ॥୩॥
ନିସିଚର ଭଟ ମହି ଗାଡ଼ହିଁ ଭାଲୂ । ଊପର ଢାରି ଦେହିଁ ବହୁ ବାଲୂ ॥
ବୀର ବଲୀମୁଖ ଜୁଦ୍ଧ ବିରୁଦ୍ଧେ । ଦେଖିଅତ ବିପୁଲ କାଲ ଜନୁ କ୍ରୁଦ୍ଧେ ॥୪॥

---

ବ୍ରହ୍ମା ଆଦି ସୁର ସିଦ୍ଧ ମୁନି ଋଷିଗଣ । ବିମାନେ ଚଢ଼ି ଗଗନେ ବିଲୋକନ୍ତି ରଣ ॥
ମୁଁ ବି ଉମା ସେହି କାଳେ ଥିଲି ତାଙ୍କ ସଙ୍ଗ । ଦେଖିବାକୁ ରଘୁବୀର ଲୀଳା ରଣ ରଙ୍ଗ ॥୧॥
ବେନିପକ୍ଷ ବୀରେ ହେଲେ ଉନ୍ମତ୍ତ ସମରେ । କପି ଜୟଶୀଳ ରାମ ବଳ ତାଙ୍କ ପରେ ॥
ଏକୁ ଏକ ସଙ୍ଗେ ଯୁଝି ଆହ୍ୱାନ କରନ୍ତି । ଏକକୁ ଏକ ମର୍ଦ୍ଦିଣ ମହୀରେ ଫିଙ୍ଗନ୍ତି ॥୨॥
ମାରନ୍ତି କାଟନ୍ତି ଧରଣୀରେ କଚାଡ଼ନ୍ତି । ମୁଣ୍ଡ କାଟି ଅନ୍ୟ ମୁଣ୍ଡ ଉପରେ ମାରନ୍ତି ॥
ପେଟ ବିଦାରନ୍ତି ପୁଣି ଭୁଜ ଉପାଡ଼ନ୍ତି । ବୀର ପଦ ଧରି କ୍ଷିତି ମଧ୍ୟରେ ଛେଚନ୍ତି ॥୩॥
ରାକ୍ଷସ ଯୋଦ୍ଧାଙ୍କୁ କପି ମହୀରେ ପୋତନ୍ତି । ଉପରେ ବହୁତ ବାଲି ଘୋଡ଼ାଇ ଦିଅନ୍ତି ॥
ବୀର ବଳୀ ମର୍କଟ ଯୁଦ୍ଧେ ଉନ୍ମାଦିତ । ଦେଖାଯାନ୍ତି ଯେସନ୍ତେ କାଳ ବିପୁଳ କ୍ରୋଧିତ ॥୪॥

---

ଏବଂ କହିଲେ, "ହେ କୃପା-ସୁଖ-ପୁଞ୍ଜ ଶ୍ରୀରାମ ! ଆପଣ ଏହି ଛଳରେ ମୋତେ ମହାନ୍ ଉପଦେଶ ଦେଲେ ।" ॥ ୮୦ (ଖ) ॥ ସେଆଡ଼ୁ ରାବଣ ଆହ୍ୱାନ ଦେଉଥାଏ ତ ଏଆଡ଼ୁ ଅଙ୍ଗଦ ଓ ହନୁମାନ୍‌ଙ୍କ ଆହ୍ୱାନ । ରାକ୍ଷସ ଓ ଭଲ୍ଲୁକବାନରମାନେ ଆପଣା ଆପଣା ସ୍ୱାମୀଙ୍କର ଦୁହାଇ ଦେଇ ଯୁଦ୍ଧ କରୁଥାଆନ୍ତି ॥ ୮୦ (ଗ) ॥
ଚୌପାଇ !—ବ୍ରହ୍ମା ଆଦି ଦେବତାମାନେ ଏବଂ ଅନେକ ସିଦ୍ଧମୁନି ବିମାନ ଉପରେ ଚଢ଼ି ଆକାଶ ମାର୍ଗରୁ ଯୁଦ୍ଧ ଦେଖୁଥାଆନ୍ତି । ଶିବ କହନ୍ତି, "ହେ ଉମା ! ମୁଁ ମଧ୍ୟ ସେ ସମାଜରେ ଉପସ୍ଥିତ ଥିଲି ଏବଂ ଶ୍ରୀରାମଙ୍କ ରଣ-ରଙ୍ଗ-ଲୀଳା ଦେଖୁଥିଲି ॥ ୧ ॥ ଉଭୟ ପକ୍ଷର ଯୋଦ୍ଧା ରଣ-ରସରେ ଉନ୍ମତ୍ତ । ବାନରମାନଙ୍କର ଶ୍ରୀରାମଙ୍କ ବଳ ଉପରେ ଭରସା । ଏହି ହେତୁ ସେମାନେ ବିଜୟ ଲାଭ କରୁଥା'ନ୍ତି । ବାନର ଓ ରାକ୍ଷସ-ମାନେ ପରସ୍ପର ସହିତ ଲଢ଼ୁଥା'ନ୍ତି, ପରସ୍ପରକୁ ଆହ୍ୱାନ ଦେଉଥା'ନ୍ତି ଏବଂ ପରସ୍ପରକୁ ଦଳି ପୃଥିବୀ ଉପରେ ପକାଇ ଦେଉଥା'ନ୍ତି ॥ ୨ ॥ ସେମାନେ ପରସ୍ପରକୁ ମାରକାଟ କରି ଧରି ପକାଇ ଦେଉଥା'ନ୍ତି ଏବଂ ମୁଣ୍ଡ କାଟି ସେହି ମୁଣ୍ଡ ଦ୍ୱାରା ଅନ୍ୟମାନଙ୍କୁ ମାରୁଥା'ନ୍ତି । ପେଟ ଚିରି ଦେଉଥା'ନ୍ତି, ବାହୁ ଓଟାରି ଦେଉଥା'ନ୍ତି ଏବଂ ଯୋଦ୍ଧାମାନଙ୍କୁ ପାଦ ଧରି ପୃଥିବୀ ଉପରେ ସକାଇ ଦେଉଥା'ନ୍ତି ॥ ୩ ॥ ଭଲ୍ଲୁକମାନେ ରାକ୍ଷସ-ଯୋଦ୍ଧାମାନଙ୍କୁ ଭୂମି ଭିତରେ ପୋତି ଦେଉଥା'ନ୍ତି ଏବଂ ଉପରେ ବହୁତ ବାଲି

କ୍ରୁଦ୍ଧେ କୃତାଂତ ସମାନ କପି ତନ ସ୍ରବତ ସୋନିତ ରାଜହୀଁ ।
ମର୍ଦହିଁ ନିସାଚର କଟକ ଭଟ ବଲବଂତ ଘନ ଜିମି ଗାଜହୀଁ ॥
ମାରହିଁ ଚପେଟହ୍ନି ଡାଟି ଦାତହ୍ନ କାଟି ଲାତହ୍ନ ମୀଜହୀଁ ।
ଚିକ୍କରହିଁ ମର୍କଟ ଭାଲୁ ଛଲ ବଲ କରହିଁ ଜେହିଁ ଖଲ ଛୀଜହୀଁ ॥୧॥

ଧରି ଗାଲ ଫାରହିଁ ଉର ବିଦାରହିଁ ଗଲ ଅଂତାବରି ମେଲହୀଁ ।
ପ୍ରହ୍ଲାଦପତି ଜନୁ ବିବିଧ ତନୁ ଧରି ସମର ଅଂଗନ ଖେଲହୀଁ ॥
ଧରୁ ମାରୁ କାଟୁ ପଛାରୁ ଘୋର ଗିରା ଗଗନ ମହି ଭରି ରହୀ ।
ଜୟ ରାମ ଜୋ ତୃନ ତେ କୁଲିସ କର କୁଲିସ ତେ କର ତୃନ ସହୀ ॥୨॥

---

କ୍ରୋଧେ କୃତାନ୍ତ ପରି କପିଙ୍କ ଦେହୁଁ ଝରି ଶୋଣିତ ଶୋଭା ପାଏ ଅତି ।
ମର୍ଦ୍ଦିଣ ଜାତୁଧାନ କଟକ ବଳବାନ ଘନ ଯେସନେ ଗରଜନ୍ତି ।
ଦନ୍ତେ କାଟି ଲତେ ପେଷନ୍ତି, ଚାପୁଡା ମାରି ଡାଲକନ୍ତି,
ଯେମନ୍ତେ ଛଳ ବଳେ ନଷ୍ଟ ହୋଇବେ ଖଳେ ଚିତ୍କାର ତେମନ୍ତ କରନ୍ତି ॥୧॥

ଗାଲ ଧରି ଚିରନ୍ତି ହୃଦୟ ବିଦାରନ୍ତି ଗଳାରେ ଅନ୍ତ୍ରଡି ପିନ୍ଧନ୍ତି ।
ଯେହ୍ନେ ପ୍ରହ୍ଲାଦ ନାଥ ତନୁ ଧରି ଅମିତ ସଂଗ୍ରାମ ପ୍ରାଙ୍ଗଣେ ଖେଳନ୍ତି ।
ବିକଟ 'ମାର ଧର' ଧ୍ୱନି, ପୂରିଲା ଗଗନ ଅବନୀ,
ଜୟ ଶ୍ରୀ ରଘୁରାଣ, ଅଶନିକୁ ଯେ ତୃଣ କରନ୍ତି ତୃଣକୁ ଅଶନି ॥୨॥

---

ଘୋଡାଇ ଦେଉଥା'ନ୍ତି । ଯୁଦ୍ଧରେ ଶତ୍ରୁଙ୍କ ବିରୁଦ୍ଧରେ ଲଢୁଥିବା ବୀର ବାନରମାନେ ଅନେକ କ୍ରୁଦ୍ଧ କାଳ ପରି ପ୍ରତୀତ ହେଉଥା'ନ୍ତି ॥ ୪ ॥ ଛନ୍ଦ :—କ୍ରୁଦ୍ଧ କାଳ ସମାନ ସେହି ବାନରମାନେ ରକ୍ତ-ସ୍ରବିତ ଶରୀରରେ ଶୋଭିତ ହେଉଥା'ନ୍ତି । ସେମାନେ ବଳବାନ୍ ବୀର ରାକ୍ଷସ ସେନାଙ୍କ ଯୋଦ୍ଧାମାନଙ୍କୁ ଦଳି ପକାଉଥା'ନ୍ତି ଏବଂ ମେଘ ପରି ଗର୍ଜ୍ଜନ କରୁଥା'ନ୍ତି । ଡାଲକ ଚାପୁଡା ମାରୁଥା'ନ୍ତି ଏବଂ ଦାନ୍ତରେ କାଟି ଲାତ ମାରି ପେଷି ପକାଉଥା'ନ୍ତି । ବାନର ଓ ଭଲ୍ଲୁକମାନେ ଚିତ୍କାର କରୁଥା'ନ୍ତି ଏବଂ ଯେପରି ଦୁଷ୍ଟ ରାକ୍ଷସମାନେ ନଷ୍ଟ ହୋଇଯିବେ, ଛଳବଳକୌଶଳ ଯୋଗେ ତହିଁର ଉପାୟ କରୁଥା'ନ୍ତି ॥ ୧ ॥ ସେମାନେ ରାକ୍ଷସମାନଙ୍କ ଗାଲ ଚିରି ପକାଉଥା'ନ୍ତି, ବକ୍ଷ ବିଦାରଣ କରି ଦେଉଥା'ନ୍ତି ଏବଂ ସେମାନଙ୍କର ଅନ୍ତ୍ର ବାହାର କରି ଗଳାରେ ପକାଉଥା'ନ୍ତି । ସେହି ବାନରମାନେ ଏପରି ଦେଖାଯାଉଥା'ନ୍ତି, ସତେ ଯେପରି ପ୍ରହ୍ଲାଦ-ପତି ଶ୍ରୀ ନୃସିଂହ ଭଗବାନ୍ ଅନେକ ଶରୀର ଧାରଣ କରି ରଣ-ପ୍ରାଙ୍ଗଣରେ କ୍ରୀଡା କରୁଅଛନ୍ତି । "ଧର, ମାର, କାଟ, ପକାଇ ଦିଅ" ଆଦି ଘୋର ଶବ୍ଦ ଆକାଶ ଓ ପୃଥିବୀରେ ବ୍ୟାପି ଯାଉଥାଏ । "ବାସ୍ତବରେ ତୃଣକୁ ବଜ୍ର ଏବଂ ବଜ୍ରକୁ ତୃଣ କରିପାରନ୍ତି ଯେଉଁ ଶ୍ରୀରାମ (ଅର୍ଥାତ୍ ଯେ ନିର୍ବଳକୁ ସବଳ ଏବଂ ସବଳକୁ ନିର୍ବଳ କରି ପାରନ୍ତି),

ନିଜ ଦଲ ବିଚଲତ ଦେଖେସି ବୀସ ଭୁଜାଁ ଦସ ଚାପ ।
ରଥ ଚଢ଼ି ଚଲେଉ ଦସାନନ ଫିରହୁ ଫିରହୁ କରି ଦାପ ॥୮୧॥

ଧାୟଉ ପରମ କ୍ରୁଦ୍ଧ ଦସକଂଧର । ସନ୍ମୁଖ ଚଲେ ହୂହ ଦୈ ବଂଦର ॥
ଗହି କର ପାଦପ ଉପଲ ପହାରା । ଡାରେନ୍ହି ତା ପର ଏକହିଁ ବାରା ॥୧॥
ଲାଗହିଁ ସୈଲ ବଜ୍ର ତନ ତାସୂ । ଖଂଡ ଖଂଡ ହୋଇ ଫୂଟହିଁ ଆସୂ ॥
ଚଲା ନ ଅଚଲ ରହା ରଥ ରୋପୀ । ରନ ଦୁର୍ମଦ ରାବନ ଅତି କୋପୀ ॥୨॥
ଇତ ଉତ ଝପଟି ଦପଟି କପି ଜୋଧା । ମର୍ଦୈ ଲାଗ ଭୟଉ ଅତି କ୍ରୋଧା ॥
ଚଲେ ପରାଇ ଭାଲୁ କପି ନାନା । ତ୍ରାହି ତ୍ରାହି ଅଂଗଦ ହନୁମାନା ॥୩॥
ପାହି ପାହି ରଘୁବୀର ଗୋସାଈଁ । ୟହ ଖଲ ଖାଇ କାଲ କୀ ନାଈଁ ॥
ତେହିଁ ଦେଖେ କପି ସକଲ ପରାନେ । ଦସହୁଁ ଚାପ ସାୟକ ସଂଧାନେ ॥୪॥

---

ଦେଖି ନିଜ ବଳ ବିଚଳିତ ଦଶ-ଚାପ ବିଂଶ ଭୁଜେ ଧରି ।
ଚଳିଲା ସ୍ୟନ୍ଦନ ଚଢ଼ି ଦଶାନନ 'ଫେର ଫେର' ଦର୍ପ କରି ॥୮୧॥

ଧାଇଁଲା ପରମ କ୍ରୋଧାତୁରେ ଦଶମୁଖ । କପି ହୁହା ଶବ୍ଦ କରି ଆସିଲେ ସମ୍ମୁଖ ॥
କରେ ଧରିଣ ପାଦପ ପାହାଡ଼ ପ୍ରସ୍ତର । ଫିଙ୍ଗିଲେ ଏକାବେଳକେ ରାବଣ ଉପର ॥୧॥
ବାଜିଣ ଶଇଳ ତାର ବଜ୍ର ଶରୀରରେ । ଖଣ୍ଡ ଖଣ୍ଡ ହୋଇ ଚୂର୍ଣ୍ଣ ହୋଇଲେ ସତ୍ୱରେ ॥
ନ ଚଳି ଅଚଳ ରଥ ସ୍ଥାପି ସେ ସ୍ଥାନରେ । ରଣ ଦୁର୍ମଦ ରାବଣ ଅତି ରୋଷ ଭରେ ॥୨॥
ଇତସ୍ତତଃ ଝମ୍ପି କପି ଯୋଦ୍ଧାଙ୍କୁ ଧରିଣ । ମର୍ଦ୍ଦନ କରିଲା ଦୁଷ୍ଟ ଉନ୍ମତ୍ତ ହୋଇଣ ॥
ଚଳିଲେ ପଳାଇ ଭାଲୁ ମର୍କଟ ନିଚୟ । 'ତ୍ରାହି ତ୍ରାହି ବାଳି-ସୁତ ପବନ-ତନୟ' ॥୩॥
'ପାହି ପାହି ପାହି ପ୍ରଭୁ ରଘୁକୁଳ କାନ୍ତ' । ଏ ଖଳ ଖାଏ ଆମ୍ଭଙ୍କୁ ଯେସନେ କୃତାନ୍ତ ॥
ପଳାନ୍ତି କପିସମୂହ ରାବଣ ଦେଖିଣ । ଦଶ ଦଶ ଶରାସନେ ଶାୟକ ସନ୍ଧିଣ ॥୪॥

---

ହେଉ ଶ୍ରୀରାମଙ୍କର ଜୟ ହେଉ", ଏହି ଧ୍ୱନି ଶୁଣା ଯାଉଥାଏ ॥ ୨ ॥ ଦୋହା :— ରାବଣ ଆପଣାର ସେନାକୁ ବିଚଳିତ ହେବାର ଦେଖିଲା । ତେଣୁ ସେ କୋଡ଼ିଏ ବାହୁରେ ଦଶଗୋଟି ଧନୁ ଧରି ରଥ ଉପରେ ଚଢ଼ିଲା ଏବଂ ଗର୍ବରେ 'ଫେର' 'ଫେର' ବୋଲି କହି ଚାଲିଲା ॥ ୮୧ ॥ ଚୌପାଇ :—ରାବଣ ଅତିଶୟ କ୍ରୁଦ୍ଧ ହୋଇ ଦଉଡ଼ିଲା । ବାନରମାନେ ହୁଙ୍କାର କରି ତାହା ଆଗରେ ଚାଲିଲେ । ସେମାନେ ହାତରେ ଗଛ, ପଥର ଓ ପର୍ବତ ଧରି ରାବଣ ଉପରକୁ ଏକାବେଳକେ ଫିଙ୍ଗିଲେ ॥ ୧ ॥ ପର୍ବତମାନେ ବଜ୍ର ତୁଲ୍ୟ ତାହାର ଶରୀରରେ ଲାଗିବା ମାତ୍ରେ ଶୀଘ୍ର ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ଯାଉଥାଆନ୍ତି । ଅତିଶୟ କ୍ରୋଧୀ ରଣୋନ୍ମତ୍ତ ରାବଣ ରଥ ଅଟକାଇ ଅଚଳ ଭାବରେ ଠିଆ ହେଲା । ନିଜ ସ୍ଥାନରୁ ଟିକିଏ ହେଲେ ଟଳିଲା ନାହିଁ ॥ ୨ ॥ ତାହାର ମନରେ ଅତିଶୟ କ୍ରୋଧ ଜାତ ହେଲା । ସେ ଏଣେତେଣେ ଡେଇଁ ଏବଂ ଝାଟକୁଦ ବାନର-ଯୋଦ୍ଧାମାନଙ୍କୁ ଦଳିବାକୁ ଲାଗିଲା । ଅନେକ ବାନରଭାଲୁ "ହେ ଅଙ୍ଗଦ !

ସଂଧାନ ଧନୁ ସର ନିକର ଛାଡେସି ଉରଗ ଜିମି ଉଡ଼ି ଲାଗହୀଁ ।
ରହେ ପୂରି ସର ଧରନୀ ଗଗନ ଦିସି ବିଦିସି କହଁ କପି ଭାଗହୀଁ ॥
ଭୟୋ ଅତି କୋଲାହଲ ବିକଲ କପି ଦଲ ଭାଲୁ ବୋଲହିଁ ଆତୁରେ ।
ରଘୁବୀର କରୁନା ସିଂଧୁ ଆରତ ବଂଧୁ ଜନ ରଚ୍ଛକ ହରେ ॥

ନିଜ ଦଲ ବିକଲ ଦେଖି କଟି କସି ନିଷଂଗ ଧନୁ ହାଥ ।
ଲଛିମନ ଚଲେ କ୍ରୁଦ୍ଧ ହୋଇ ନାଇ ରାମ ପଦ ମାଥ ॥୮୨॥
ରେ ଖଲ କା ମାରସି କପି ଭାଲୂ । ମୋହି ବିଲୋକୁ ତୋର ମୈଁ କାଲୂ ॥
ଖୋଜତ ରହେଉଁ ତୋହି ସୁତଘାତୀ । ଆଜୁ ନିପାତି ଜୁଡ଼ାୱଉଁ ଛାତୀ ॥୧॥

---

ସନ୍ଧାନି ଧନୁ ବାଣ ଛାଡନ୍ତେ ସେ ଉଡନ୍ତି ଲାଗନ୍ତି ଯେସନ୍ତେ ବିଷଧର ।
ଦିଗ ବିଦିଗମ୍ବର ମଧ୍ୟରେ ପୂର୍ଣ୍ଣ ଶର ଚାହିଁ ପଳାଇବେ ବାନର ।
ହୋଇଲା କୋଲାହଳ ଅତି, ବ୍ୟାକୁଳେ ମର୍କଟ ବୋଲନ୍ତି,
'ରାମ କରୁଣା-ସିନ୍ଧୁ, ଆରତ ଜନ-ବନ୍ଧୁ, ସ୍ୱଜନ-ରକ୍ଷକ ଶ୍ରୀପତି' ॥

ବିଲୋକି ବିକଳ ନିଜ ସୈନ୍ୟ ଦଳ କଟି ତୂଣ ଧନୁ କରେ ।
ଚଳିଲେ ସୌମିତ୍ରି କ୍ରୋଧ କରି ଅତି ପ୍ରଣମି ରାମ ପଦରେ ॥୮୨॥
ରେ ଖଳ ! ମାରୁଛୁ କିସ ଭାଲୁକ ବାନର । ମୋତେ ନିରେଖ, ମୁଁ କାଳ ଅଟଇ ତୋହର ॥
ଖୋଜି ବୁଲୁଥିଲି ତୋତେ ଆରେ ସୁତଘାତୀ । ଆଜି ବଧ କରି ତୃପ୍ତ କରିବି ମୁଁ ଛାତି ॥୧॥

---

ହେ ହନୁମାନ୍ ! ରକ୍ଷା କର, ରକ୍ଷା କର," ଧ୍ୱନି କରି ପଳାଇବାକୁ ଲାଗିଲେ ॥ ୩ ॥ "ହେ ରଘୁବୀର ! ହେ ଗୋସାଇଁ ! ରକ୍ଷା କରନ୍ତୁ, ରକ୍ଷା କରନ୍ତୁ । ଏହି ଦୁଷ୍ଟ କାଳ ପରି ଆମ୍ଭମାନଙ୍କୁ ଖାଇଯାଉଛି !"—ଏହି ଚିତ୍କାର କରି ସମସ୍ତେ ପଳାଇବାରେ ଲାଗିଲେ । ରାବଣ ଦେଖିଲା ଯେ, ସମସ୍ତ ବାନର ପଳାଇବାରେ ଲାଗିଛନ୍ତି । ସେ ଏକାବେଳକେ ଦଶ ଦଶ ଧନୁରେ ଶର ଯୋଖିଲା ॥୪॥ ଛନ୍ଦ :—ସେ ଧନୁ ଉପରେ ଶର-ସମୂହ ଯୋଖି ଛାଡିଲା । ସେହି ଶର ସବୁ ସର୍ପ ପରି ଉଡିଯାଇ ଲକ୍ଷ୍ୟସ୍ଥଳରେ ଲାଗୁଥାଏ । ପୃଥିବୀ, ଆକାଶ ଓ ଦିଗବିଦିଗ ସର୍ବତ୍ର ବାଣ ପୂର୍ଣ୍ଣ ହୋଇଯାଉଥାଏ । ବାନରମାନେ ପଳାଇବେ କୁଆଡେ଼ ? ଅତ୍ୟନ୍ତ କୋଳାହଳ ବ୍ୟାପିଗଲା । ବାନର-ଭାଲୁମାନଙ୍କର ସେନା "ହେ ରଘୁବୀର ! ହେ କରୁଣାସାଗର ! ହେ ଆର୍ତ୍ତବନ୍ଧୁ ! ହେ ଭକ୍ତ ଜନ-ରକ୍ଷକ ଦୁଃଖ-ହାରକ ହରି !" ଆଦି ଆର୍ତ୍ତନାଦ କରିବାକୁ ଲାଗିଲେ ॥ ଦୋହା :—ନିଜ ସେନାଙ୍କର ବ୍ୟାକୁଳତା ଦେଖି କଟିରେ ତୂଣୀର କସି ଏବଂ ହାତରେ ଧନୁ ଧରି ଲକ୍ଷ୍ମଣ ଶ୍ରୀ ରଘୁନାଥଙ୍କ ଚରଣ ତଳେ ମସ୍ତକ ନୁଆଁଇଲେ ଏବଂ କ୍ରୋଧରେ ଚାଲିଲେ ॥ ୮୨ ॥ ଚୌପାଇ :—ଲକ୍ଷ୍ମଣ ରାବଣ ନିକଟକୁ ଯାଇ କହିଲେ, ଆରେ ଦୁଷ୍ଟ ! ବାନର ଓ ଭାଲୁମାନଙ୍କୁ ମାରୁଛୁ କଣ ! ମୋତେ ଦେଖ୍ ! ମୁଁ ତୋର କାଳ ।" ରାବଣ କହିଲା,

ଅସ କହି ଘୁଡେସି ବାନ ପ୍ରଚଂଡା । ଲଛିମନ କଏ ସକଲ ସତ ଖଂଡା ॥
କୋଟିହ୍ନ ଆୟୁଧ ରାବନ ଡାରେ । ତିଲ ପ୍ରମାନ କରି କାଟି ନିବାରେ ॥୨॥
ପୁନି ନିଜ ବାନହ୍ନ କାହ୍ନ ପ୍ରହାରା । ସ୍ୟନ୍ଦନୁ ଭଂଜି ସାରଥୀ ମାରା ॥
ସତ ସତ ସର ମାରେ ଦସ ଭାଲ । ଗିରି ସୃଂଗହ୍ନ ଜନୁ ପ୍ରବିସହିଁ ବ୍ୟାଲ ॥୩॥
ପୁନି ସତ ସର ମାରା ଉର ମାହୀଁ । ପରେଉ ଧରନି ତଲ ସୁଧି କଛୁ ନାହୀଁ ॥
ଉଠା ପ୍ରବଲ ପୁନି ମୁରୁଛା ଜାଗୀ । ଘୁଡସି ବ୍ରହ୍ମ ଦୀହ୍ନି ଜୋ ସାଁଗୀ ॥୪॥

ସୋ ବ୍ରହ୍ମଦତ୍ତ ପ୍ରଚଣ୍ଡ ସକ୍ତି ଅନନ୍ତ ଉର ଲାଗୀ ସହୀ ।
ପରେ୍ୟା ବୀର ବିକଲ ଉଠାଵ ଦସମୁଖ ଅତୁଲ ବଲ ମହିମା ରହୀ ॥
ବ୍ରହ୍ମାଣ୍ଡ ଭବନ ବିରାଜ ଜା କେଁ ଏକ ସିର ଜିମି ରଜ କନୀ ।
ତେହି ଚହ ଉଠାଵନ ମୂଢ଼ ରାବନ ଜାନ ନହିଁ ତ୍ରିଭୁଅନ ଧନୀ ॥

---

ଏହା କହି ପ୍ରହାରିଲା ବିଶିଖ ପ୍ରଚଣ୍ଡ । ଶର ମାରି ସଉମିତ୍ରି କଲେ ଶତ ଖଣ୍ଡ ॥
କୋଟି ଆୟୁଧ ଫିଙ୍ଗିଲା ସରୋଷେ ରାବଣ । ତିଳ ସମ କାଟି ପ୍ରଭୁ କଲେ ନିବାରଣ ॥୨॥
ପୁଣି ନିଜ ବାଣ ରାଶି ପ୍ରହାର କରିଲେ । ରଥ ଭାଙ୍ଗି ସାରଥିର ଜୀବନ ହରିଲେ ॥
ବିନ୍ଧିଲେ ଦଶ ମସ୍ତକେ ଶତ ଶତ ଶର । ଗିରି ଶୃଙ୍ଗେ ପ୍ରବେଶନ୍ତି ଯଥା ବିଷଧର ॥୩॥
ଶତ ଶର ପ୍ରହାରିଲେ ହୃଦୟ ମଧ୍ୟରେ । ଅଚେତ ହୋଇ ପଡ଼ିଲା ଅବନୀ ଉପରେ ॥
ମୂର୍ଚ୍ଛା ଦୂର ହୋଇନ୍ତେ ଉଠି ପ୍ରବଳ ଆବର । ଘୁଞ୍ଚିଲା ବ୍ରହ୍ମାଙ୍କ ଦତ୍ତ ଶକ୍ତି ଭୟଙ୍କର ॥୪॥

ପ୍ରଚଣ୍ଡ ବ୍ରହ୍ମ ଦତ୍ତ ସେହି ଶକ୍ତି ଅନନ୍ତ ହୃଦୟେ ଯାଇଣ ବାଜିଲା ।
ବୀର ପଡ଼ିଲେ ଭଳି ଟେକିଲେ ଅତୁଳ ବଳୀ ରାବଣ, ମହିମା ରହିଲା ।
କରିଲେ ରଜ ସମ ଯାର, ଏକ ମସ୍ତକେ ବିଶ୍ୱାଗାର,
ମୂଢ ରାବଣ ତାଙ୍କୁ ଚାହେଁ ଉଠାଇବାକୁ ନ ଜାଣେ ବ୍ରହ୍ମାଣ୍ଡ ଆଧାର ॥

---

ଆରେ ମୋର ପୁତ୍ର–ଘାତକ ! ମୁଁ ତୋତେ ହିଁ ଖୋଜୁଥିଲି । ଆଜି ତୋତେ ମାରି ମୋ ହୃଦୟ ଶୀତଳ କରିବି ।" ॥ ୧ ॥ ଏହା କହି ସେ ପ୍ରଚଣ୍ଡ ବାଣ ଛାଡ଼ିଲା । ଲକ୍ଷ୍ମଣ ସମସ୍ତ ବାଣକୁ ଶହ ଶହ ଖଣ୍ଡ କରି କାଟିଦେଲେ । ରାବଣ କୋଟି କୋଟି ଅସ୍ତ୍ରଶସ୍ତ୍ର ଚଳାଇଲା । ଲକ୍ଷ୍ମଣ ସେ ସବୁକୁ ତିଳ ପ୍ରମାଣେ ଟିକି ଟିକି କରି କାଟି ହଟାଇ ଦେଲେ ॥ ୨ ॥ ପୁଣି ଆପଣା ବାଣ ଦ୍ୱାରା ତାହା ଉପରେ ପ୍ରହାର କଲେ । ତାହାର ରଥକୁ ଭାଙ୍ଗି ସାରଥିକୁ ମାରି ପକାଇଲେ । ରାବଣର ଦଶ ମୁଣ୍ଡକୁ ଲକ୍ଷ୍ୟ କରି ଶହ ଶହ ବାଣ ମାରିଲେ । ସେହି ସବୁ ବାଣ ତାହାର ମୁଣ୍ଡମାନଙ୍କରେ ଏପରି ପଶିଗଲା, ଯେତେ ଅବା ପର୍ବତ ଶିଖରମାନଙ୍କରେ ସର୍ପମାନେ ପ୍ରବେଶ କରୁଅଛନ୍ତି ' ॥ ୩ ॥ ପୁଣି ସେ ତାହାର ବକ୍ଷକୁ ଲକ୍ଷ୍ୟ କରି ଏକଶହ ବାଣ ମାରିଲେ । ସେ ଭୂମି ଉପରେ ଖସି ପଡ଼ିଲା । ତାହାର ଟିକିଏ ହେଲେ ଚେତା ରହିଲା ନାହିଁ । ପୁଣି ମୂର୍ଚ୍ଛା ଦୂରେଇଯାଅନ୍ତେ,

ଦେଖି ପବନସୁତ ଧାୟଉ ବୋଲତ ବଚନ କଠୋର ।
ଆୱତ କପିହି ହନେଉ ତେହିଁ ମୁଷ୍ଟି ପ୍ରହାର ପ୍ରଘୋର ॥୮୩॥
ଜାନୁ ଟେକି କପି ଭୂମି ନ ଗିରା । ଉଠା ସଁଭାରି ବହୁତ ରିସ ଭରା ॥
ମୁଠିକା ଏକ ତାହି କପି ମାରା । ପରେଉ ସୈଲ ଜନୁ ବଜ୍ର ପ୍ରହାରା ॥୧॥
ମୁରୁଛା ଗୈ ବହୋରି ସୋ ଜାଗା । କପି ବଲ ବିପୁଲ ସରାହନ ଲାଗା ॥
ଧିଗ ଧିଗ ମମ ପୌରୁଷ ଧିଗ ମୋହୀ । ଜୌଁ ତୈଁ ଜିଅତ ରହେସି ସୁରଦ୍ରୋହୀ ॥୨॥
ଅସ କହି ଲଛିମନ କହୁଁ କପି ଲ୍ୟାୟୋ । ଦେଖି ଦସାନନ ବିସମୟ ପାୟୋ ॥
କହ ରଘୁବୀର ସମୁଝୁ ଜିୟଁ ଭ୍ରାତା । ତୁମ୍ହ କୃତାନ୍ତ ଭଚ୍ଛକ ସୁର ତ୍ରାତା ॥୩॥

---

ଧାଇଁଲା ଦେଖିଣ ପବନ-ନନ୍ଦନ କହି ବଚନ କଠୋର ।
ଆସନ୍ତେ ତାହାର ହୃଦୟେ ପ୍ରହାର କଲା ସେ ମୁଷ୍ଟିକ ଘୋର ॥୮୩॥
ଜାନୁ ଟେକି ରହିଗଲା କପି ନ ପଡ଼ିଣ । ପୁଣି ଅତି ରୋଷ ଭରେ ସମ୍ଭାଳି ଉଠିଣ ॥
ମୁଷ୍ଟିକ ଏକ ମାରନ୍ତେ କପି ଦଶାନନେ । ପଡ଼ିଲା ଶଇଳ ବଜ୍ର ପ୍ରହାରେ ଯେସନେ ॥୧॥
ମୂର୍ଚ୍ଛା ଦୂର ହୋଇନ୍ତେ ପୁଣି ଜାଗ୍ରତ ହୋଇଲା । କପିର ବଳ ବିପୁଳ ପ୍ରଶଂସା କରିଲା ॥
'ଧିକ ମୋ ବଳ ପୌରୁଷ ଧିକ ଧିକ ମୁହିଁ । ଜୀବିତ ରହିଲୁ ଯେଣୁ ସୁରଦ୍ରୋହୀ ତୁହି' ॥୨॥
ଏହା କହି କପି ସଉମିତ୍ରିଙ୍କୁ ଆଣିଲା । ଦେଖି ଦଶାନନ ଅତି ଆଶ୍ଚର୍ଯ୍ୟ ମଣିଲା ॥
କହନ୍ତି ରଘୁନାଥଙ୍କ ମନେ ହେଜ ଭ୍ରାତା । ତୁମ୍ଭେ କୃତାନ୍ତ-ଭକ୍ଷକ ଅଟ ସୁର-ତ୍ରାତା ॥୩॥

---

ସେହି ପ୍ରବଳ ରାବଣ ଉଠିଲା ଏବଂ ବ୍ରହ୍ମାଙ୍କ ଦ୍ୱାରା ପ୍ରଦତ୍ତ ଶକ୍ତି ଚଳାଇଲା ॥ ୪ ॥

ଛନ୍ଦ :—ବ୍ରହ୍ମାଙ୍କ ଦତ୍ତ ପ୍ରଚଣ୍ଡ ଶକ୍ତି ଲକ୍ଷ୍ମଣଙ୍କ ବକ୍ଷରେ ବାଜିଲା । ବୀର ଲକ୍ଷ୍ମଣ ବ୍ୟାକୁଳ ହୋଇ ପଡ଼ିଗଲେ, ରାବଣ ତାହାଙ୍କୁ ଉଠାଇବାକୁ ଲାଗିଲା । କିନ୍ତୁ ତାହାର ଅତୁଳନୀୟ ବଳ ମହିମା ବ୍ୟର୍ଥ ହୋଇଗଲା । ଯାହାଙ୍କର ଗୋଟିଏ ମାତ୍ର ଶିର ଉପରେ ବ୍ରହ୍ମାଣ୍ଡରୂପୀ ଭବନ ଗୋଟିଏ ଧୂଳିକଣା ପରି ବିରାଜିତ, ତାହାଙ୍କୁ ମୂର୍ଖ ରାବଣ ଉଠାଇବାକୁ ଚାହୁଁଛି । ସେ ତ୍ରିଭୁବନର ସ୍ୱାମୀ ଲକ୍ଷ୍ମଣଙ୍କୁ ଜାଣିନାହିଁ ॥

ଦୋହା :—ଏହା ଦେଖି ପବନ-ପୁତ୍ର ହନୁମାନ୍ କଠୋର ବଚନ କହି କହି ଧାଇଁଲେ । ହନୁମାନ୍ ଆସିବା ମାତ୍ରେ ରାବଣ ତାଙ୍କ ଉପରେ ଅତି ଭୟଙ୍କର ମୁଷ୍ଟି ପ୍ରହାର କଲା ॥୮୩॥

ଚୌପାଇ :—ହନୁମାନ୍ ଜଙ୍ଘ ଟେକି ରହିଗଲେ, ଭୂମି ଉପରେ ପଡ଼ିଲେ ନାହିଁ ଏବଂ ପୁଣି କ୍ରୋଧରେ ପରିପୂର୍ଣ୍ଣ ହୋଇ ସମ୍ଭାଳି ଉଠିଲେ । ସେ ରାବଣକୁ ଗୋଟିଏ ବିଧା ମାରିଲେ । ବଜ୍ରାଘାତରେ ପର୍ବତ ପଡ଼ିଗଲା ପରି ରାବଣ ତଳେ ଖସିପଡ଼ିଲା ॥ ୧ ॥

ମୂର୍ଚ୍ଛା ଭଙ୍ଗ ହେବା ପରେ ସେ ପୁଣି ଜାଗି ଉଠିଲା ଏବଂ ହନୁମାନଙ୍କ ବିପୁଳ ବଳକୁ ପ୍ରଶଂସା କରିବାକୁ ଲାଗିଲା । ହନୁମାନ୍ କହିଲେ, "ମୋ ପୌରୁଷକୁ ଧିକ୍, ଧିକ୍ ଏବଂ ମୋତେ ମଧ୍ୟ ଧିକ । ଆରେ ଦେବଦ୍ରୋହି ! ତୁ ଏବେ ବି ଜୀବିତ ରହିଛୁ !" ॥ ୨ ॥

ଏପରି କହି ଏବଂ ଲକ୍ଷ୍ମଣଙ୍କୁ ଉଠାଇ ହନୁମାନ୍ ତାହାଙ୍କୁ ଶ୍ରୀ ରଘୁନାଥଙ୍କ ପାଖକୁ ନେଇ

ସୁନତ ବଚନ ଉଠି ବୈଠ କୃପାଲା । ଗଈ ଗଗନ ସୋ ସକତି କରାଲା ॥
ପୁନି କୋଦଣ୍ଡ ବାନ ଗହି ଧାଏ । ରିପୁ ସନ୍ମୁଖ ଅତି ଆତୁର ଆଏ ॥୪॥

ଆତୁର ବହୋରି ବିଭଂଜି ସ୍ୟନ୍ଦନ ସୂତ ହତି ବ୍ୟାକୁଲ କିୟୋ ।
ଗିର୍ୟୋ ଧରନି ଦସକଂଧର ବିକଲତର ବାନ ସତ ବେଧ୍ୟୋ ହିୟୋ ॥
ସାରଥୀ ଦୁସର ଘାଲି ରଥ ତେହି ତୁରତ ଲଂକା ଲୈ ଗୟୋ ।
ରଘୁବୀର ବଂଧୁ ପ୍ରତାପପୁଞ୍ଜ ବହୋରି ପ୍ରଭୁ ଚରନନ୍ହି ନୟୋ ॥

ଉହାଁ ଦସାନନ ଜାଗି କରି କରୈ ଲାଗ କଛୁ ଜଗ୍ୟ ।
ରାମ ବିରୋଧ ବିଜୟ ଚହ ସଠ ହଠ ବସ ଅତି ଅଗ୍ୟ ॥୮୪॥
ଇହାଁ ବିଭୀଷନ ସବ ସୁଧି ପାଈ । ସପଦି ଜାଇ ରଘୁପତିହି ସୁନାଈ ॥
ନାଥ କରଇ ରାବନ ଏକ ଜାଗା । ସିଦ୍ଧ ଭଏଁ ନହିଁ ମରିହି ଅଭାଗା ॥୧॥

---

ଶୁଣନ୍ତେ ବଚନ ଉଠେ ବସିଲେ ଲକ୍ଷ୍ମଣ । ଗଗନେ ଗମନ କଲା ସେ ଶକ୍ତି ଭୀଷଣ ॥
ପୁଣି ଧନୁ ଶର ଧରି ସୌମିତ୍ରି ଧାଇଁଲେ । ଶତ୍ରୁ ସମ୍ମୁଖକୁ ଅତି ଚଞ୍ଚଳେ ଆସିଲେ ॥୪॥

ଚଞ୍ଚଳେ ଆସି ରଥ ଭାଙ୍ଗି ସୂତକୁ ହତ ବ୍ୟାକୁଳ ରାବଣେ କରିଲେ ।
ବିନ୍ଧନ୍ତେ ଶତ ଶର ହୃଦୟେ ରାବଣର ପଡ଼ିଲା ବିକଳେ ଭୂମିରେ ।
ଆନ ସାରଥି ସ୍ୟନ୍ଦନରେ, ଚଢାଇ ଚଳିଲା ନଗରେ,
ଆସି ପ୍ରତାପ-ସିନ୍ଧୁ ଶ୍ରୀ ରଘୁବୀର ବନ୍ଧୁ, ନମିଲେ ରାମଙ୍କ ପଦ୍ମରେ ॥

ତେଣେ ଦଶାନନ ଜାଗ୍ରତ ହୋଇଣ ଆରମ୍ଭିଲା ଏକ ଯଜ୍ଞ ।
ରାମ ପରାଙ୍ମୁଖ ଇଚ୍ଛେ ଜୟ ମୂର୍ଖ ଶଠ ହଠ-ବଶ ଅଜ୍ଞ ॥୮୪
ଏଣେ ବିଭୀଷଣ ସବୁ ସମାଚାର ପାଇ । ସତ୍ୱର ରଘୁନାଥଙ୍କୁ ଜଣାଇଲା ଯାଇ ॥
ନାଥ, କରେ ଦଶାନନ ଯଜ୍ଞ ଏକ ବଡ଼ । ସିଦ୍ଧ ହେଲେ ନ ମରିବ ହତଭାଗ୍ୟ ଜଡ଼ ॥୧॥

---

ଆସିଲେ । ଏହା ଦେଖି ରାବଣ ଆଶ୍ଚର୍ଯ୍ୟାନ୍ୱିତ ହେଲା । ଶ୍ରୀ ରଘୁବୀର ଲକ୍ଷ୍ମଣଙ୍କୁ କହିଲେ, "ହେ ଭାଇ ! ମନ ମଧ୍ୟରେ ବୁଝ, ତୁମେ କାଳର ମଧ୍ୟ ଭକ୍ଷକ ଏବଂ ଦେବଗଣଙ୍କ ରକ୍ଷକ ।" ॥ ୩ ॥ ଏହି ବଚନ ଶୁଣିବା ମାତ୍ରକେ କୃପାଳୁ ଲକ୍ଷ୍ମଣ ଉଠି ବସିଲେ । ସେହି କରାଳ ଶକ୍ତି ଆକାଶକୁ ଚାଲିଗଲା । ଲକ୍ଷ୍ମଣ ପୁଣି ଧନୁଶର ଧରି ଦୌଡ଼ିଲେ ଏବଂ ଅତିଶୀଘ୍ର ଶତ୍ରୁ ସମ୍ମୁଖରେ ଆସି ପହୁଞ୍ଚିଲେ ॥ ୪ ॥ ଛନ୍ଦ :—ପୁଣି ସେ ଅତିଶୀଘ୍ର ରାବଣ ରଥକୁ ଚୂର୍ଣ୍ଣ କରି ସାରଥିକୁ ମାରି ଧକାଇଲେ ଏବଂ ରାବଣକୁ ବ୍ୟାକୁଳ କରିଦେଲେ । ଶହେ ବାଣ ଦ୍ୱାରା ତାହାର ହୃଦୟ ବିଦ୍ଧ କରିଦେଲେ । ଫଳରେ ରାବଣ ଅତି ବ୍ୟାକୁଳ ହୋଇ ଭୂମି ଉପରେ ଖସି ପଡ଼ିଲା । ସେତେବେଳେ ଅନ୍ୟ ଏକ ସାରଥି ତାହାକୁ ରଥରେ ପକାଇ ଶୀଘ୍ର ଲଙ୍କାକୁ ନେଇଗଲା । ପ୍ରତାପ-ପୁଞ୍ଜ ରଘୁବୀରଙ୍କ ଭାଇ ଲକ୍ଷ୍ମଣ ପୁଣି ଆସି ପ୍ରଭୁଙ୍କ ଚରଣରେ ପ୍ରଣାମ କଲେ । ଦୋହା —ତେଣେ

ପଠୱହୁ ନାଥ ବେଗି ଭଟ ବଂଦର । କରହିଁ ବିଧଂସ ଆୱ ଦସକଂଧର ॥
ପ୍ରାତ ହୋତ ପ୍ରଭୁ ସୁଭଟ ପଠାଏ । ହନୁମଦାଦି ଅଂଗଦ ସବ ଧାଏ ॥୨॥
କୌତୁକ କୂଦି ଚଢେ କପି ଲଂକା । ପୈଠେ ରାବନ ଭବନ ଅସଂକା ॥
ଜଗ୍ୟ କରତ ଜବହିଁ ସୋ ଦେଖା । ସକଲ କପିହ୍ନ ଭା କ୍ରୋଧ ବିସେଷା ॥୩॥
ରନ ତେ ନିଲଜ ଭାଜି ଗୃହ ଆୱା । ଇହାଁ ଆଇ ବକଧ୍ୟାନ ଲଗାୱା ॥
ଅସ କହି ଅଂଗଦ ମାରା ଲାତା । ଚିତୱ ନ ସଠ ସ୍ୱାରଥ ମନ ରାତା ॥୪॥

ନହିଁ ଚିତୱ ଜବ କରି କୋପ କପି ଗହି ଦସନ ଲାତହ୍ନ ମାରହୀଁ ।
ଧରି କେସ ନାରି ନିକାରି ବାହେର ତେଽତିଦୀନ ପୁକାରହୀଁ ॥
ତବ ଉଠେଉ କ୍ରୁଦ୍ଧ କୃତାନ୍ତ ସମ ଗହି ଚରନ ବାନର ଡାରଈ ।
ଏହି ବୀଚ କପିହ୍ନ ବିଧଂସ କୃତ ମଖ ଦେଖି ମନ ମହୁଁ ହାରଈ ॥

---

ପଠାନ୍ତୁ ନାଥ, ମର୍କଟ ବୀରଙ୍କୁ ବହନ । ଯଜ୍ଞ ବିଧ୍ୱଂସିଲେ ପୁଣି ଆସିବ ରାବଣ ॥
ପ୍ରଭାତ ହୁଅନ୍ତେ ପ୍ରଭୁ ଯୋଦ୍ଧାଙ୍କୁ ପେଷିଲେ । ହନୁମନ୍ତ ଅଙ୍ଗଦାଦି ସମସ୍ତେ ଧାଇଁଲେ ॥୨॥
କଉତୁକେ ଡେଇଁ କପି ଚଢ଼ିଣ ଲଙ୍କାରେ । ପ୍ରବେଶ କରେ ନିଃଶଙ୍କେ ରାବଣ ଆଗାରେ ॥
ଦେଖନ୍ତେ ତାହାଙ୍କୁ ବସି ଯଜ୍ଞ କରିବାର । କପି-ନିକରଙ୍କ କୋପ ବଢିଲା ଅପାର ॥୩॥
ରଣୁ ପଳାଇ ନିର୍ଲଜ୍ଜ ଗୃହକୁ ଆସିଛୁ । ଏଠାରେ ବସିଣ ବକ-ଧ୍ୟାନ ଲଗାଇଛୁ ॥
ମାରିଲା ଗୋଇଠା କହି ଅଙ୍ଗଦ ଏମନ୍ତ । ଦୃଷ୍ଟି ନ ଚଳାଏ ଶଠ ସ୍ୱାର୍ଥେ ମନ ରତ ॥୪॥

ଦୃଷ୍ଟି ନ କଲା ଯେବେ ସକୋପେ କପି ତେବେ କାମୁଡ଼ି ଗୋଇଠା ମାରିଲେ ।
ନାରୀଙ୍କ କେଶ ଧରି ଘରୁ ବାହାର କରି ଆଣନ୍ତେ ଦୁଃଖେ ଚିତ୍କାରିଲେ ।
ତହୁଁ ଉଠିଣ କାଳ ପରି, ଫିଙ୍ଗେ କପିଙ୍କୁ କୋପେ ଧରି,
ଏହା ମଧ୍ୟେ ବାନରେ ଯଜ୍ଞ ନାଶନ୍ତେ ଖରେ ହାରିଲା ହୃଦେ ଦେଖି କରି ॥

---

ଲଙ୍କାରେ ରାବଣ ମୂର୍ଚ୍ଛାରୁ ଜାଗି ଉଠି କିଛି ଯଜ୍ଞ କରିବାକୁ ଲାଗିଲା । ସେହି ମୂର୍ଖ ଓ ଅତି ଅଜ୍ଞାନୀ ଜିଦ୍‌ରେ ରଘୁନାଥଙ୍କ ସହିତ ଶତ୍ରୁତା କରି ବିଜୟ ଇଚ୍ଛା କରୁଛି ॥ ୮୪ ॥
ଚୌପାଇ --ଏଣେ ବିଭୀଷଣ ସମସ୍ତ ଖବର ପାଇଲେ ଏବଂ ଶୀଘ୍ର ଯାଇ ରଘୁନାଥଙ୍କୁ କହି ଶୁଣାଇଲେ, "ହେ ନାଥ ! ରାବଣ ଗୋଟିଏ ଯଜ୍ଞ କରୁଅଛି । ତାହା ସିଦ୍ଧ ହେଲେ ଅଭାଗା ସହଜରେ ମରିବ ନାହିଁ ॥ ୧ ॥ ହେ ନାଥ ! ତୁରନ୍ତ ବାନର-ଯୋଦ୍ଧାମାନଙ୍କୁ ପଠାନ୍ତୁ । ସେମାନେ ଯାଇ ଯଜ୍ଞ ବିଧ୍ୱଂସ କରନ୍ତୁ । ଫଳରେ ରାବଣ ଯୁଦ୍ଧ-ଭୂମିକୁ ଆସିବ ।" ପ୍ରାତଃ କାଳ ହେବା ମାତ୍ରେ ପ୍ରଭୁ ବୀର ଯୋଦ୍ଧାମାନଙ୍କୁ ପଠାଇଲେ । ହନୁମାନ ଓ ଅଙ୍ଗଦ ଆଦି ସମସ୍ତ ପ୍ରଧାନ ବୀର ଧାଇଁଲେ ॥ ୨ ॥ ବାନରମାନେ ଅବଲୀଳା-କ୍ରମେ ଡେଇଁ ଲଙ୍କା ଦୁର୍ଗ ଉପରେ ଯାଇ ଚଢିଲେ ଏବଂ ନିର୍ଭୟରେ ରାବଣର ମହଲ ମଧ୍ୟରେ ପ୍ରବେଶ କଲେ । ତାହାଙ୍କୁ ଯଜ୍ଞ କରୁଥିବାର

ଜଗ୍ୟ ବିଧଂସି କୁସଲ କପି ଆଏ ରଘୁପତି ପାସ ।
ଚଲେଉ ନିସାଚର କ୍ରୁଦ୍ଧ ହୋଇ ତ୍ୟାଗି ଜିବନ କୈ ଆସ ॥୮୫॥
ଚଲତ ହୋହିଁ ଅତି ଅସୁଭ ଭୟଙ୍କର । ବୈଠହିଁ ଗୀଧ ଉଡାଇ ସିରନ୍ହ ପର ॥
ଭୟଉ କାଲବସ କାହୁ ନ ମାନା । କହେସି ବଜାଵହୁ ଜୁଦ୍ଧ ନିସାନା ॥୧॥
ଚଲୀ ତମୀଚର ଅନୀ ଅପାରା । ବହୁ ଗଜ ରଥ ପଦାତି ଅସଵାରା ॥
ପ୍ରଭୁ ସନ୍ମୁଖ ଧାଏ ଖଲ କୈସେଁ । ସଲଭ ସମୂହ ଅନଲ କହଁ ଜୈସେଁ ॥୨॥

---

ଯଜ୍ଞ କରି ନଷ୍ଟ କୁଶଳେ ମର୍କଟ ରାମଙ୍କ ପାଶେ ଆସନ୍ତେ ।
ତେଜି ଜୀବନର ଆଶା ନିଶାଚର ଚଳିଲା କ୍ରୋଧେ ଅତ୍ୟନ୍ତେ ॥୮୫॥
ଚଳନ୍ତେ ଅଶୁଭ ହୁଏ ଭୟଙ୍କର ଅତି । ଗୃଧ ଉଡି ତା ମସ୍ତକ ଉପରେ ବସନ୍ତି ॥
କାଳ ବିବଶ ତାହାକୁ କିଛି ନ ମାନିଲା । 'ସମର ବାଦ୍ୟ ନିଶାଣ ବଜାଅ' କହିଲା ॥୧॥
ଚଳିଲେ ରଜନୀଚର ସୈନ୍ୟ ଅଗଣିତ । ଗଜ ବାଜି ପଦଚର ସ୍ୟନ୍ଦନ ଅମିତ ॥
ପ୍ରଭୁଙ୍କ ସମ୍ମୁଖେ ଖଳ ଧାଆନ୍ତି ସେପରି । ଅନଳ ଦେଖି ଶଳଭ ସମୂହ ଯେପରି ॥୨॥

---

ଦେଖିବା ମାତ୍ରେ ବାନରମାନଙ୍କର ମନରେ ଅତିଶୟ କ୍ରୋଧ ଜାତ ହେଲା ॥ ୩ ॥ ସେମାନେ କହିଲେ, "ଆରେ ଏ ନିର୍ଲଜ୍ଜ ! ରଣ ଭୂମିରୁ ଘରକୁ ପଳାଇ ଆସିଲୁ ଏବଂ ଏଠାରେ ଆସି ବକ-ଧ୍ୟାନ କରି ବସିଛୁ ।" ଏହା କହି ଅଙ୍ଗଦ ଗୋଇଠା ମାରିଲେ । କିନ୍ତୁ ସେ ଦୁଷ୍ଟର ମନ ସ୍ୱାର୍ଥରେ ଅନୁରକ୍ତ ଥିଲା । ତେଣୁ ସେ ତାହାଙ୍କ ଆଡକୁ ଦୃଷ୍ଟିପାତ ସୁଦ୍ଧା କଲାନାହିଁ ॥ ୪ ॥ ଛନ୍ଦ —ସେ ନ ଉଠିବାରୁ ବାନରମାନେ କୋପ କରି ତାହାକୁ ଦାନ୍ତରେ ଧରି କାମୁଡିବାକୁ ଲାଗିଲେ ଏବଂ ଲାତ ମାରିବାକୁ ଲାଗିଲେ । ସ୍ତ୍ରୀମାନଙ୍କ ବାଳ ଧରି ସେମାନଙ୍କୁ ଘରୁ ବାହାରକୁ ଘୋଷାରି ଆଣିଲେ । ସ୍ତ୍ରୀମାନେ ଅତିଶୟ ଦୀନାହୀନା ଅବସ୍ଥାରେ ଚିତ୍କାର କରିବାକୁ ଲାଗିଲେ । ସେତେବେଳେ ରାବଣ କାଳ ପରି କ୍ରୁଦ୍ଧ ହୋଇ ଉଠିଲା ଏବଂ ବାନରମାନଙ୍କ ପାଦ ଧରି ସେମାନଙ୍କୁ ତଳେ ପକାଇବାରେ ଲାଗିଲା । ଇତି ମଧ୍ୟରେ ବାନରମାନେ ଯଜ୍ଞ ବିଧ୍ୱଂସ କରିପକାଇଲେ । ଏହା ଦେଖି ରାବଣ ମନେ ମନେ ପରାଜୟ ସ୍ୱୀକାର କଲା ॥ ଦୋହା '—ଯଜ୍ଞ ଧ୍ୱଂସ କରି ସମସ୍ତ ଚତୁର ବାନର ରଘୁନାଥଙ୍କ ନିକଟକୁ ଆସିଗଲେ । ସେତେବେଳେ ରାବଣ ଜୀଇବାର ଆଶା ଛାଡି ଅତିଶୟ କ୍ରୋଧରେ ଚାଲିଲା ॥ ୮୫ ॥ ଚୌପାଇ !—ଚାଲିବା ସମୟରେ ଭୟଙ୍କର ଅଶୁଭ ଲକ୍ଷଣ ଦୃଷ୍ଟିଗୋଚର ହେଲା । ଶାଗୁଣାମାନେ ଉଡି ଉଡି ତାହାର ମୁଣ୍ଡମାନଙ୍କ ଉପରେ ବସିବାକୁ ଲାଗିଲେ । କିନ୍ତୁ ସେ କାଳର ବଶ ହୋଇଥିବାରୁ କୌଣସି ପ୍ରକାର ଅଶୁଭ ଲକ୍ଷଣକୁ ମାନୁ ନ ଥାଏ । ସେ କହିଲା, "ରଣନିଶାଣ ବଜାଅ ।" ॥ ୧ ॥ ନିଶାଚରମାନଙ୍କ ଅପାର ସେନା ଚଳିଲା । ତହିଁ ମଧ୍ୟରେ ବହୁତ ହସ୍ତୀ, ରଥ, ଅଶ୍ୱାରୋହୀ ଓ ପଦାତିକ ଥିଲେ । ପତଙ୍ଗସମୂହ ଜଳିବା ନିମନ୍ତେ ଅଗ୍ନି ଆଡକୁ ଧାଇଁଲା ପରି ସେହି ଦୁଷ୍ଟମାନେ ପ୍ରଭୁଙ୍କ ସମ୍ମୁଖରେ ଦୌଡିବାକୁ ଲାଗିଲେ ॥ ୨ ॥

ଇହାଁ ଦେବତନ୍ହ ଅସ୍ତୁତି କୀନ୍ହୀ । ଦାରୁନ ବିପତି ହମହି ଏହିଁ ଦୀନ୍ହୀ ॥
ଅବ ଜନି ରାମ ଖେଲାଅୋ ଏହୀ । ଅତିସୟ ଦୁଖିତ ହୋତି ବୈଦେହୀ ॥୩॥
ଦେବ ବଚନ ସୁନି ପ୍ରଭୁ ମୁସୁକାନା । ଉଠି ରଘୁବୀର ସୁଧାରେ ବାନା ॥
ଜଟା ଜୂଟ ଦୃଢ଼ ବାଁଧେଁ ମାଥେ । ସୋହହିଁ ସୁମନ ବୀଚ ବିଚ ଗାଥେ ॥୪॥
ଅରୁନ ନୟନ ବାରିଦ ତନୁ ସ୍ୟାମା । ଅଖିଲ ଲୋକ ଲୋଚନାଭିରାମା ॥
କଟି ତଟ ପରିକର କସ୍ୟୋ ନିଷଂଗା । କର କୋଦଣ୍ଡ କଠିନ ସାରଂଗା ॥୫॥

ସାରଂଗ କର ସୁନ୍ଦର ନିଷଂଗ ସିଲୀମୁଖାକର କଟି କସ୍ୟୋ ।
ଭୁଜଦଣ୍ଡ ପୀନ ମନୋହରାୟତ ଉର ଧରାସୁର ପଦ ଲସ୍ୟୋ ॥
କହ ଦାସ ତୁଲସୀ ଜବହିଁ ପ୍ରଭୁ ସର ଚାପ କର ଫେରନ ଲଗେ ।
ବ୍ରହ୍ମାଣ୍ଡ ଦିଗ୍‌ଗଜ କମଠ ଅହି ମହି ସିନ୍ଧୁ ଭୂଧର ଡଗମଗେ ॥

---

ଏଣେ ସ୍ତୁତି କଲେ ମିଳି ଦେବତା ସକଳ । ଦାରୁଣ ବିପତ୍ତି ଦେଲା ଆମ୍ଭଙ୍କୁ ଏ ଖଳ ॥
ଏବେ ଏହାକୁ ଖେଳାଅ ନାହିଁ, ରଘୁପତି । ଅତିଶୟ ବଇଦେହୀ ଦୁଃଖିତ ହୁଅନ୍ତି ॥୩॥
ଦେବବାଣୀ ଶୁଣି ପ୍ରଭୁ ମଧୁରେ ହସିଲେ । ଉଠି ରଘୁବୀର ଧନୁ ବାଣ ସମ୍ଭାଳିଲେ ॥
ଶିରେ ଜଟା-ଜୂଟ ଦୃଢେ କରିଲେ ବନ୍ଧନ । ମଧ୍ୟେ ମଧ୍ୟେ ପୁଷ୍ପଗୁଚ୍ଛ ପରମ ଶୋଭନ ॥୪॥
ଅରୁଣ ନୟନ ତନୁ ନୀରଧର ଶ୍ୟାମ । ଅଖିଳ ଭୁବନ ଲୋକ ଲୋଚନାଭିରାମ ॥
ବଦ୍ଧ-ପରିକର ଶୋଭେ କଟିରେ ନିଷଙ୍ଗ । କଠିନ ଶାୟକ କରେ କୋଦଣ୍ଡ ସାରଙ୍ଗ ॥୫॥

ଶାରଙ୍ଗ ଧନୁକର କଟିରେ ଶରାଗାର ତୂଣୀର ନିବଦ୍ଧ ସୁନ୍ଦର ।
ଭୁଜ ଦଣ୍ଡ ପୃଥୁଳ ଆୟତ ବକ୍ଷ ସ୍ଥଳ ଶୋଭଇ ଶ୍ରୀବତ୍ସ ପଦ୍ମର ।
ତୁଳସୀ ଯେବେ ପ୍ରଭୁ ଶର-କୋଦଣ୍ଡେ ସ୍ପର୍ଶ କଲେ କର,
ବ୍ରହ୍ମାଣ୍ଡ ଅହିରାଜ ମହୀ କୂର୍ମ ଦିଗ୍‌ଗଜ କମ୍ପିଲେ ଶଇଳ ସାଗର ॥

---

ଏବେ ଦେବଗଣ ସ୍ତୁତି କଲେ, "ହେ ଶ୍ରୀରାମ ! ଏ ରାବଣ ଆମ୍ଭମାନଙ୍କୁ ବହୁତ ଦୁଃଖ ଦେଲାଣି । ଏବେ ଆପଣ ଏହାକୁ ଆଉ ଅଧିକ ଖେଳାନ୍ତୁ ନାହିଁ । ଜାନକୀ ଅତ୍ୟନ୍ତ ଦୁଃଖ ଭୋଗ କରୁଅଛନ୍ତି ।" ॥ ୩ ॥ ଦେବତାମାନଙ୍କର ବିନୀତ ବଚନ ଶୁଣି ପ୍ରଭୁ ମୃଦୁକ ହସିଲେ । ପୁଣି ସେ ଉଠି ବାଣ ସୁଧାରିଲେ । ନିଜ ମସ୍ତକ ଉପରେ ଜଟାଜୂଟ କଷି କରି ବାନ୍ଧିଅଛନ୍ତି, ତାହାର ମଧ୍ୟେ ମଧ୍ୟେ ପୁଷ୍ପମାନ ଗୁନ୍ଥା ହୋଇ ସୁଶୋଭିତ ହେଉଅଛି ॥ ୪ ॥ ପ୍ରଭୁଙ୍କର ଅରୁଣ ନୟନ ଏବଂ ମେଘଶ୍ୟାମ ଶରୀର ଅଖିଳ ବିଶ୍ୱର ନୟନାଭିରାମକାରୀ । ସେ କଟିରେ ପରିକର ଓ ତୂଣୀର କଷି ବାନ୍ଧିଲେ ଏବଂ ହସ୍ତରେ କଠୋର ଧନୁଶର ଧାରଣ କଲେ ॥ ୫ ॥ ଛନ୍ଦ :—ପ୍ରଭୁ ହସ୍ତରେ ଧନୁ ଓ କଟିରେ ବାଣଖଣି (ଅକ୍ଷୟ) ସୁନ୍ଦର ତୂଣୀର କଷି ଧରିଲେ । ତାଙ୍କର ଭୁଜଦଣ୍ଡ ପୁଷ୍ଟ ଏବଂ ମନୋହର ପ୍ରଶସ୍ତ ବକ୍ଷ ଉପରେ ଭୃଗୁ ବ୍ରାହ୍ମଣଙ୍କର ପଦ-ଚିହ୍ନ (ଶ୍ରୀବତ୍ସ ପଦ) ସୁଶୋଭିତ ।

ସୋଭା ଦେଖି ହରଷି ସୁର ବରଷହିଁ ସୁମନ ଅପାର ।
ଜୟ ଜୟ ଜୟ କରୁନାନିଧି ଛବି ବଲ ଗୁନ ଆଗାର ॥୮୬॥

ଏହିଁ ବୀଚ ନିସାଚର ଅନୀ । କସମସାତ ଆଈ ଅତି ଘନୀ ॥
ଦେଖି ଚଲେ ସନ୍ମୁଖ କପି ଭଟ୍ଟା । ପ୍ରଲୟକାଲ କେ ଜନୁ ଘନ ଘଟା ॥୧॥
ବହୁ କୃପାନ ତରବାରି ଚମଂକହିଁ । ଜନୁ ଦହଁ ଦିସି ଦାମିନୀଂ ଦମଂକହିଁ ॥
ଗଜ ରଥ ତୁରଗ ଚିକାର କଠୋରା । ଗର୍ଜହିଁ ମନହୁଁ ବଲାହକ ଘୋରା ॥୨॥
କପି ଲଂଗୂର ବିପୁଲ ନଭ ଛାଏ । ମନହୁଁ ଇନ୍ଦ୍ରଧନୁ ଉଏ ସୁହାଏ ॥
ଉଠଇ ଧୂରି ମାନହୁଁ ଜଲଧାରା । ବାନ ବୁନ୍ଦ ଭୈ ବୃଷ୍ଟି ଅପାରା ॥୩॥
ଦୁହୁଁ ଦିସି ପର୍ବତ କରହିଁ ପ୍ରହାରା । ବଜ୍ରପାତ ଜନୁ ବାରହିଁ ବାରା ॥
ରଘୁପତି କୋପି ବାନ ଝରି ଲାଈ । ଘାୟଲ ଭୈ ନିସିଚର ସମୁଦାଈ ॥୪॥

---

ଶୋଭା ଦେଖି ଅତି ସୁଖେ ବରଷନ୍ତି ସୁରେ ସୁମନ ଅପାର ।
'ଜୟ ପ୍ରଭୁ ଜ୍ଞାନ-ଗୁଣ-ବଳ-ଧାମ ହରଣ ଧରଣୀ ଭାର' ॥୮୬॥

ଏହି ସମୟରେ ନିଶାଚର ଦଳ ବଳ । ସଘନେ ଆସିଲେ ଆଗେ କରି କୋଳାହଳ ॥
ସମ୍ମୁଖେ ଚଳିଲେ କପି ବୀର ଦେଖିକରି । ପ୍ରଳୟ-କାଳୀନ ଘନଘଟା ଯେଉଁ ପରି ॥୧॥
ବହୁତ କୃପାଣ ଖଡ୍‌ଗ ଶକ୍ତି ଚମକଇ । ଯେସନ୍ତେ ସୌଦାମିନୀ ଦଶଦିଗେ ଦମକଇ ॥
ଗଜ ରଥ ତୁରଙ୍ଗଙ୍କ ଚିତ୍କାର କଠୋର । ମନେ ହୁଏ ଗରଜନ୍ତି ବଳାହକ ଘୋର ॥୨॥
କପିଙ୍କ ଲାଞ୍ଜ ବିପୁଳ ନଭେ ଆଚ୍ଛାଦିତ । ମନେହୁଏ ଇନ୍ଦ୍ରଧନୁ ଉଦିତ ଅମିତ ॥
ଉଡଇ ଧୂଳି ଆକାଶେ ଯେସନ୍ତେ ଜଳଧାର । ବାଣ ବୃନ୍ଦ ବୃଷ୍ଟି ବିନ୍ଦୁ ସଦୃଶ ଅପାର ॥୩॥
ଦେନି ପକ୍ଷ ପର୍ବତ କରନ୍ତି ପ୍ରହାର । ମନେ ହୁଏ ବଜ୍ରପାତ ହୁଏ ବାରମ୍ବାର ॥
ବାଣଝଡି ଲଗାଇଲେ କୋପି ରଘୁରାୟ । ଆହତ ହୁଅନ୍ତି ନିଶାଚର ସମୁଦାୟ ॥୪॥

---

ତୁଳସୀ ଦାସ କହନ୍ତି—ପ୍ରଭୁ ହସ୍ତରେ ଧନୁଶର ଧାରଣ କରି ତାହା ଘୂରାଇବା ମାତ୍ରେ ବ୍ରହ୍ମାଣ୍ଡ, ଦିଗ୍‌ଗଜ, କଚ୍ଛପ, ଶେଷ, ପୃଥିବୀ, ସମୁଦ୍ର ଓ ପର୍ବତ ସମସ୍ତେ ଦୋହଲି ଉଠିଲେ ॥ ଦୋହା —ଭଗବାନଙ୍କ ଶୋଭା ଦେଖି ଦେବତାମାନେ ଆନନ୍ଦିତ ହୋଇ ଅପାର ପୁଷ୍ପବୃଷ୍ଟି କରିବାକୁ ଲାଗିଲେ । ଆଉ ମଧ୍ୟ "ଶୋଭା-ଶକ୍ତି-ଗୁଣ-ଧାମ କରୁଣା-ନିଧାନ ପ୍ରଭୁଙ୍କର ଜୟ ହେଉ, ଜୟ ହେଉ, ଜୟ ହେଉ"—ଏହି ଧ୍ୱନି କରିବାକୁ ଲାଗିଲେ ॥ ୮୬ ॥ ଚୌପାଇ —ଇତି ମଧ୍ୟରେ ନିଶାଚରଗଣଙ୍କ ଅତିଶୟ ନିବିଡ ସେନା ପରସ୍ପରକୁ ଠେଲିପେଲି ଆସିଲେ । ସେନାକୁ ଦେଖି ବାନର ଯୋଦ୍ଧାମାନେ ପ୍ରଳୟକାଳୀନ ବାଦଲସମୂହ ପରି ତାହା ଆଡରେ ଚାଲିଲେ ॥ ୧ ॥ ବହୁତ କୃପାଣ ଓ ତରବାରି ଚମକୁଥାଏ । ସତେ ଅବା ଦଶ ଦିଗରେ ବିଜୁଳି ଚମକୁଅଛି ! ହସ୍ତୀ, ରଥ ଓ ଅଶ୍ୱମାନଙ୍କର କଠୋର ଚିତ୍କାର ଶୁଣି ବୋଧ ହେଉଥାଏ, ସତେ ଯେପରି ବାଦଲମାନେ ଭୟଙ୍କର ଗର୍ଜନ କରୁଅଛନ୍ତି ! ॥ ୨ ॥ ବାନରମାନଙ୍କର

ଲାଗତ ବାନ ବୀର ଚିକ୍କରହୀଁ । ଘୁର୍ମି ଘୁର୍ମି ଜହଁ ତହଁ ମହି ପରହୀଁ ।
ସ୍ରବହିଁ ସୈଲ ଜନୁ ନିର୍ଝର ଭାରୀ । ସୋନିତ ସରି କାଦର ଭୟକାରୀ ॥୫॥

କାଦର ଭୟଂକର ରୁଧିର ସରିତା ଚଲୀ ପରମ ଅପାବନୀ ।
ଦୋଉ କୂଲ ଦଲ ରଥ ରେତ ଚକ୍ର ଅବର୍ତ ବହତି ଭୟାବନୀ ॥
ଜଲ ଜନ୍ତୁ ଗଜ ପଦଚର ତୁରଗ ଖର ବିବିଧ ବାହନ କୋ ଗନେ ।
ସର ସକ୍ତି ତୋମର ସର୍ପ ଚାପ ତରଂଗ ଚର୍ମ କମଠ ଘନେ ॥

ବୀର ପରହିଁ ଜନୁ ତୀର ତରୁ ମଜ୍ଜା ବହୁ ବହ ଫେନ ।
କାଦର ଦେଖି ଡରହିଁ ତହଁ ସୁଭଟନ୍ହ କେ ମନ ଚେନ ॥୮୭॥

---

ଶରଲାଗେ ବୀରେ ଚିତ୍କାର କରନ୍ତି । ଭ୍ରମି ଭ୍ରମି ଯେଉଁ ତେଉଁ ମହୀରେ ପଡ଼ନ୍ତି ॥
ସ୍ରବଇ ନିର୍ଝର ଯେସନେ ଶୈଳରୁ ବହି । ଶୋଣିତ ମହାନଦୀ ଭୀରୁ-ଭୟଦ ସେ ॥୫॥

ଭୀରୁ ଭୟଙ୍କର ରୁଧିର ନଦୀ ବହିଲା ଅତି ଅପାବନ ।
ତଟ ଥାଇ ଉଭୟ ରଥ ବାଲୁକାରୂପ ଚକ୍ର ଆବର୍ତ୍ତ ଭୟାବନ ।
ପଦାତି କୁଞ୍ଜର ତୁରଙ୍ଗ, ଖରଜନ୍ତୁ ଏ ନାନା ରଙ୍ଗ,
ଶକ୍ତି ଶାୟକ ସର୍ପ ଚାପ ଯେତେକ କଚ୍ଛପ ତୋମର ଚର୍ମଚୟ ତରଙ୍ଗ ॥

ପଡ଼ନ୍ତି ଯେ ବୀର ଯେତେକେ ତଟ ତରୁ ମଜ୍ଜା ବହେ ଫେଣ ସମ ।
ଦେଖିକରି ଭୀରୁ ଡରନ୍ତି ଅନ୍ତରେ, ଯୋଦ୍ଧାଙ୍କ ମନ ପ୍ରସନ୍ନ ॥୮୭॥

---

ବହୁତ ବାଣ ଆକାଶରେ ଛୁଟି ହୋଇଯାଉଥାଏ । ଯେତେ ଯତ' ଆକାଶରେ ଛୁଟନ୍ତି ସେତେ ଧନୁମାନ ଉଦିତ ହୋଇଅଛି ! ଧୂଳି ଜଳଧାରା ପରି ଉପରକୁ ଉଠୁଥାଏ । ବାଣରୂପକ ବର୍ଷାବଳାହକମାନଙ୍କର ଅପାର ବୃଷ୍ଟି ହେଉଛି ॥ ୩ ॥ ଉଭୟ ପକ୍ଷ, ଯୋଦ୍ଧାମାନେ ପର୍ବତ ଦ୍ୱାରା ପ୍ରହାର କରୁଥାନ୍ତି । ଯେତେ ଅବା ବାରମ୍ବାର ବଜ୍ରପାତ ହେଉଅଛି ! ଶ୍ରୀ ରଘୁନାଥ ଛୋଟ ବଡ଼ ବାଣର ଝଙ୍କ ଲଗାଇ ଦେଲେ । ଫଳରେ ସମସ୍ତ ରାକ୍ଷସସେନା ଆହତ ହୋଇ ପଡ଼ିଲେ ॥ ୪ ॥ ବାଣ ବାଜିବା ମାତ୍ରେ ବୀରମାନେ ଚିତ୍କାର କରି ଉଠୁଥାନ୍ତି ଏବଂ ଘୂରାଘୂରି ହୋଇ ଭୂମି ଉପରେ ଯେଉଁ ସେଉଁ ପଡ଼ିଯାଉଥାନ୍ତି । ସେମାନଙ୍କ ଶରୀରରୁ ପର୍ବତରୁ ବଡ଼ ନିର୍ଝର-ଧାରା ବହିବା ପରି ରକ୍ତଧାର ଛୁଟି ଯାଉଥାଏ । ଏହା ଭୀରୁମାନଙ୍କ ହୃଦୟରେ ଭୟ ନାତ କରୁଥାଏ । ଛନ୍ଦ :—
ଭୀରୁ-ଭୟଙ୍କର ଅତି ଅପବିତ୍ର ରକ୍ତ-ନଦୀ ବହି ଚାଲିଲା । ଉଭୟ ଦଳ ହିଁ ନଦୀର ଦୁଇଟି କୂଳ । ରଥ ବାଲୁକା ଓ ଚକ୍ର ଜଳ ଭଉଁରି । ସେହି ନଦୀ ଅତି ଭୟଙ୍କର ରୂପରେ ବହି ଯାଉଥାଏ । ହସ୍ତୀ, ପଦାତିକ, ଅଶ୍ୱ, ଗଧ ଆଦି ବିବିଧ ବାହନମାନଙ୍କ ଗଣନା କିଏ କରି ପାରିବ ? ଏମାନେ ନଦୀର ଜଳଜନ୍ତୁ । ବାଣ, ଶକ୍ତି ଓ ତୋମର-ରୂପକ ସର୍ପ, ଧନୁ, ତରଙ୍ଗ ଏବଂ ଢାଲରୂପକ ଅନେକ କଚ୍ଛପ ॥ ଦୋହା :—ନଦୀ-

ମଜ୍ଜନ୍ତି ଭୂତ ପିସାଚ ବେତାଲ । ପ୍ରମଥ ମହା ଝୋଟିଂଗ କରାଲ ॥
କାକ କଙ୍କ ଲେଇ ଭୁଜା ଉଡାହିଁ । ଏକ ତେଁ ଛୀନି ଏକ ଲେଇ ଖାହିଁ ॥୧॥
ଏକ କହହିଁ ଐସିଉ ସୌଂଘାଈ । ସଠହୁ ତୁହ୍ମାର ଦରିଦ୍ର ନ ଜାଈ ॥
କହଁରତ ଭଟ ଘାୟଲ ତଟ ଗିରେ । ଜହଁ ତହଁ ମନହୁଁ ଅର୍ଦ୍ଧ ଜଲ ପରେ ॥୨॥
ଖେଁଚହିଁ ଗୀଧ ଆଁତ ତଟ ଭଏ । ଜନୁ ବଂସୀ ଖେଲତ ଚିତ ଦଏ ॥
ବହୁ ଭଟ ବହହିଁ ଚଢ଼େ ଖଗ ଜାହିଁ । ଜନୁ ନାଓ୍ୱରି ଖେଲହିଁ ସରି ମାହିଁ ॥୩॥
ଜୋଗିନି ଭରି ଭରି ଖପ୍ପର ସଂଚହିଁ । ଭୂତ ପିସାଚ ବଧୂ ନଭ ନଂଚହିଁ ॥
ଭଟ କପାଲ କରତାଲ ବଜାଓ୍ୱହିଁ । ଚାମୁଣ୍ଡା ନାନା ବିଧି ଗାଓ୍ୱହିଁ ॥୪॥

---

ପିଶାଚ ବେତାଳ ଭୂତ ସ୍ନାହାନ କରନ୍ତି । କରାଳ ଯୋଗିନୀ ମନ ଆନନ୍ଦେ ଖେଳନ୍ତି ॥
ଗୃଧ୍ର ବାୟସାଦି ଭୁଜ ଘେନି ଉଡ଼ିଯାନ୍ତି । ଏକ ଅନ୍ୟଠାରୁ ନେଇ ଛଡ଼ାଇ ଖାଆନ୍ତି ॥୧॥
ଅନ୍ୟେ କେହୁ କହେ ଶସ୍ତା ହେଲେ ହେଁ ଖାଦ୍ୟ ଅତି । ଶଠ, ନ ଯାଉଛି ତୁମ୍ଭ ଦରିଦ୍ରତା ମଧ୍ୟ ॥
ଆହତ ବୀରେ ପଡ଼ିଣ ତଟେ ଚିତ୍କାରନ୍ତି । କିବା ଏଣେ ତେଣେ ଅର୍ଦ୍ଧଜଳେ ପଡ଼ିଛନ୍ତି ॥୨॥
ତଟେ ବସି ଗୃଧ୍ର ଶବ ଅନ୍ତ୍ର ଟାଣନ୍ତି । ମନେ ହୁଏ, ମନ ଦେଇ ବନଶୀ ଖେଳନ୍ତି ॥
ଭାସିବା ଶବ ଉପରେ ବିହଙ୍ଗେ ବସନ୍ତି । ତାହା ଯେସନ୍ତେ ନଦୀ ମଧ୍ୟେ ନାଉରୀ ଖେଳନ୍ତି ॥୩॥
ଯୋଗିନୀ ପୂର୍ଣ୍ଣ କରିଣ ଖପ୍ପର ସଞ୍ଚନ୍ତି । ଭୂତ ପିଶାଚଙ୍କ ବଧୂ ଗଗନେ ନାଚନ୍ତି ॥
ବୀରଙ୍କ କପାଳେ କରତାଳ ଯେ ବଜାନ୍ତି । ଚାମୁଣ୍ଡା ସକଳ ନାନା ପ୍ରକାରେ ଗାଆନ୍ତି ॥୪॥

---

ତୀରରେ ବୃକ୍ଷମାନେ ଉପୁଡ଼ି ପଡ଼ିଲା ପରି ବୀରଗଣ ପୃଥିବୀ ଉପରେ ଢଳି ପଡ଼ୁଥା'ନ୍ତି । ଫେଣ ସମାନ ବହୁତ ମଜ୍ଜା ବହୁଥାଏ । ଭୀରୁ ଓ କାପୁରୁଷମାନେ ଏହା ଦେଖି ଡରିଲା ବେଳେ ଉତ୍ତମ ଯୋଦ୍ଧାମାନେ ତାହା ଦେଖି ସୁଖ ଲାଭ କରୁଥା'ନ୍ତି ॥୮୬॥ ଚୌପାଇ.—ଭୂତ, ପିଶାଚ, ବେତାଳ, ମହାଭୟଙ୍କର ଜଟାଧାରୀ ଏବଂ ପ୍ରମଥ (ଶିବଗଣ)ମାନେ ସେହି ନଦୀରେ ସ୍ନାନ କରୁଅଛନ୍ତି । କୁଆ ଓ ଚିଲମାନେ ବାହୁମାନ ଧରି ଉଡ଼ୁଥା'ନ୍ତି ଏବଂ ପରସ୍ପରଠାରୁ ଛଡ଼ାଇ ଖାଇଯାଉଥା'ନ୍ତି ॥ ୧ ॥ କେହି ଜଣେ କହୁଥାଏ, "ଆରେ ମୂର୍ଖ ! ଏପରି ଶସ୍ତା ଖାଦ୍ୟ ବହୁତ, ତଥାପି ତୁମର ଦାରିଦ୍ର୍ୟ ମେଣ୍ଟୁନାହିଁ ।" ଆହତ ଯୋଦ୍ଧାମାନେ ତଟ ଉପରେ ପଡ଼ି କରୁଣ ଚିତ୍କାର କରୁଥା'ନ୍ତି । ସତେ ଅବା ଏଣେତେଣେ ଅର୍ଦ୍ଧଜଳ (ମୃତ୍ୟୁ କାଳରେ ଅର୍ଦ୍ଧଜଳରେ ଫରଷିତ) ବ୍ୟକ୍ତିମାନେ ପଡ଼ିଅଛନ୍ତି ! ॥ ୨ ॥ ଶାଗୁଣାମାନେ ଅନ୍ତ ଟାଣୁଅଛନ୍ତି । ସେମାନେ ନଦୀକୂଳରେ ଧ୍ୟାନମଗ୍ନ ହୋଇ ବନ୍ଶୀ ଖେଳୁଥିବା ମାଛଧରାଳିମାନଙ୍କ ପରି ପ୍ରତୀତ ହେଉଥାଆନ୍ତି । ବହୁତ ଯୋଦ୍ଧା ବହି ଯାଉଥା'ନ୍ତି ଏବଂ ପକ୍ଷୀମାନେ ସେମାନଙ୍କ ଉପରେ ଚଢ଼ି ବୁଲୁଥା'ନ୍ତି । ସେମାନେ ନଦୀରେ ନୌକା ବିହାର କଲା ପରି ଜଣାପଡ଼ୁଥା'ନ୍ତି ॥ ୩ ॥ ଯୋଗିନୀମାନେ ଖପ୍ପରମାନଙ୍କରେ ରକ୍ତ ଭରି ଜମା କରୁଥା'ନ୍ତି । ଭୂତପିଶାଚ ବଧୂମାନେ ଆକାଶରେ ନୃତ୍ୟରତା । ଚାମୁଣ୍ଡାମାନେ ଯୋଦ୍ଧାମାନଙ୍କ କପାଳମାନ ଧରି କରତାଳି ବଜାଉଥା'ନ୍ତି ଏବଂ ନାନା ପ୍ରକାରେ ଗାନ

ଜଂବୁକ ନିକର କଟକ୍କଟ କଟ୍ଟହିଁ । ଖାହିଁ ହୁଆହିଁ ଅଘାହିଁ ଦପଟ୍ଟହିଁ ॥
କୋଟିନ୍ହ ରୁଣ୍ଡ ମୁଣ୍ଡ ବିନୁ ଡୋଲ୍ଲହିଁ । ସୀସ ପରେ ମହି ଜୟ ଜୟ ବୋଲ୍ଲହିଁ ॥୫॥

ବୋଲ୍ଲହିଁ ଜୋ ଜୟ ଜୟ ମୁଣ୍ଡ ରୁଣ୍ଡ ପ୍ରଚଣ୍ଡ ସିର ବିନୁ ଧାୱହୀଁ ।
ଖପ୍ପରିନ୍ହ ଖଗ୍ଗ ଅଲୁଜ୍ଝି ଜୁଜ୍ଝହିଁ ସୁଭଟ ଭଟନ୍ହ ଢହାୱହୀଁ ।
ବାନର ନିସାଚର ନିକର ମର୍ଦହିଁ ରାମ ବଲ ଦର୍ପିତ ଭଏ ।
ସଂଗ୍ରାମ ଅଂଗନ ସୁଭଟ ସୋୱହିଁ ରାମ ସର ନିକରନ୍ହି ହଏ ॥

ରାବନ ହୃଦୟଁ ବିଚାରା ଭା ନିସିଚର ସଂଘାର ।
ମୈଁ ଅକେଲ କପି ଭାଲୁ ବହୁ ମାୟା କରୌଁ ଅପାର ॥୮୮॥

ଦେବନ୍ହ ପ୍ରଭୁହି ପୟାଦେଁ ଦେଖା । ଉପଜା ଉର ଅତି ଛୋଭ ବିସେଷା ॥
ସୁରପତି ନିଜ ରଥ ତୁରତ ପଠାୱା । ହରଷ ସହିତ ମାତଲି ଲୈ ଆୱା ॥୧॥

ଶିବା କଟକଟ କରି ଖାଉଥା'ନ୍ତି ଶବ । ଡାଲକନ୍ତି ପେଟ ଭରି, କରି ହୁଁ ହୁଁ ରବ ॥
କୋଟି କୋଟି ଗଣ୍ଡି ମୁଣ୍ଡରହିତ ଭ୍ରମନ୍ତି । ତଳେ ଶିର ପଡି 'ଜୟ ଜୟ' ଉଚ୍ଚାରନ୍ତି ॥୫॥

ବୋଲନ୍ତି 'ଜୟ ଜୟ' ପ୍ରଚଣ୍ଡ ମୁଣ୍ଡଚୟ ନିର୍ମୁଣ୍ଡ ଗଣ୍ଡି ଦଉଡନ୍ତି ।
ଖଗେ ଖପ୍ପର ପାଇଁ କରୁଥାନ୍ତି ଲଢାଇ, ସୁବୀରେ ବୀରଙ୍କୁ ଲୋଟାନ୍ତି ।
ଦର୍ପିତ ରାମ ବଳେ ଅତି, କପି ଦୈତ୍ୟଙ୍କୁ ମରଦନ୍ତି,
ସଂଗ୍ରାମ ପ୍ରାଙ୍ଗଣରେ ବିଦ୍ଧ ରାମଙ୍କ ଶରେ ଅସୁର ନିକର ଶୁଅନ୍ତି ॥

ହୃଦୟେ ବିଚାର କରେ ଦଶଶିର ରାକ୍ଷସେ ହେଲେ ସଂହାର ।
ମୁଁ ଅଟେ ଏକାକୀ, ବହୁ ଭାଲୁ କପି, ମାୟା କରିବି ବିସ୍ତାର ॥୮୮॥

ପ୍ରଭୁ ପଦଗାମୀ ଅବଲୋକି ଦେବଗଣ । ହୃଦୟେ ଅତ୍ୟନ୍ତ ଗ୍ଲାନି ହୋଇଲା ଉତ୍ପନ୍ନ ॥
ସୁରପତି ନିଜ ରଥ ଶୀଘ୍ର ପଠାଇଲା । ହରଷ ସହିତ ଘେନି ମାତଳି ଆସିଲା ॥୧॥

କରୁଥା'ନ୍ତି ॥ ୪ ॥ ଶୃଗାଳମାନେ କଟକଟ ଶବ୍ଦ କରି ଶବମାନଙ୍କୁ କାମୁଡୁଥା'ନ୍ତି, ଖାଉଥା'ନ୍ତି, ହୁଆଁ, ହୁଆଁ ଗର୍ଜନ କରୁଥା'ନ୍ତି ଏବଂ ପେଟ ପୂରିଗଲେ ପରସ୍ପରକୁ ତର୍ଜନା କରୁଥା'ନ୍ତି । କୋଟି କୋଟି ଗଣ୍ଡି ମୁଣ୍ଡ ବିନା ଏଣେ ତେଣେ ବୁଲୁଥା'ନ୍ତି ଏବଂ ମୁଣ୍ଡମାନେ ପୃଥିବୀ ଉପରେ ପଡି 'ଜୟ ଜୟ' ଧ୍ୱନି କରୁଥାଆନ୍ତି ॥ ୫ ॥ ଛନ୍ଦ —କଟା! ମୁଣ୍ଡମାନେ 'ଜୟ ଜୟ' ବୋଲୁଥା'ନ୍ତି ଏବଂ ପ୍ରଚଣ୍ଡ ଗଣ୍ଡି ମୁଣ୍ଡ ବିନା ଦୌଡିବାରେ ଲାଗିଥା'ନ୍ତି । ପକ୍ଷୀମାନେ ଖପ୍ପର ଲାଗି ପରସ୍ପର ସହିତ କଳିତକରାଳ କରି ଲଢାଇ କରିବାରେ ବ୍ୟସ୍ତ । ଉତ୍ତମ ଯୋଦ୍ଧାମାନେ ଅନ୍ୟ ଯୋଦ୍ଧାମାନଙ୍କୁ ଭୂମିରେ ଲୋଟାଇ ଦେଉଥା'ନ୍ତି । ଶ୍ରୀରାମଙ୍କ ବଳରେ ଦର୍ପିତ ବାନରମାନେ ରାକ୍ଷସଦଳମାନଙ୍କୁ ଦଳି ଚକଟି ପକାଉଥା'ନ୍ତି । ଶ୍ରୀରାମଙ୍କ ବାଣସମୂହ ଦ୍ୱାରା ହତ ଯୋଦ୍ଧାମାନେ ରଣପ୍ରାଙ୍ଗଣରେ ଶୋଇ ଯାଉଥା'ନ୍ତି ॥ ଦୋହା :—ରାବଣ ମନରେ ବିଚାରିଲା, "ରାକ୍ଷସମାନେ ବିନାଶ ହୋଇ ସାରିଲେଣି ।

ତେଜପୁଞ୍ଜ ରଥ ଦିବ୍ୟ ଅନୂପା । ହରଷି ଚଢେ କୋସଲପୁର ଭୂପା ॥
ଚଞ୍ଚଲ ତୁରଗ ମନୋହର ଚାରୀ । ଅଜର ଅମର ମନ ସମ ଗତିକାରୀ ।୨॥
ରଥାରୂଢ ରଘୁନାଥହି ଦେଖୀ । ଧାଏ କପି ବଳୁ ପାଇ ବିସେଷୀ ॥
ସହୀ ନ ଜାଇ କପିନ୍ହ କୈ ମାରୀ । ତବ ରାବନ ମାୟା ବିସ୍ତାରୀ ॥୩॥
ସୋ ମାୟା ରଘୁବୀରହି ବାଁଚୀ । ଲଛିମନ କପିନ୍ହ ସୋ ମାନୀ ସାଁଚୀ ॥
ଦେଖୀ କପିନ୍ହ ନିସାଚର ଅନୀ । ଅନୁଜ ସହିତ ବହୁ କୋସଲଧନୀ ॥୪॥

ବହୁ ରାମ ଲଛିମନ ଦେଖି ମର୍କଟ ଭାଲୁ ମନ ଅତି ଅପଡରେ ।
ଜନୁ ଚିତ୍ର ଲିଖିତ ସମେତ ଲଛିମନ ଜହଁ ସୋ ତହଁ ଚିତବହିଁ ଖରେ ॥
ନିଜ ସେନ ଚକିତ ବିଲୋକି ହଁସି ସର ଚାପ ସଜି କୋସଲ ଧନୀ ।
ମାୟା ହରୀ ହରି ନିମିଷ ମହୁଁ ହରଷୀ ସକଲ ମର୍କଟ ଅନୀ ॥

---

ତେଜ-ପୁଞ୍ଜ ରଥ ଦିବ୍ୟ ପରମ ଅନୁପ । ହର୍ଷି ଚଢିଲେ କୋଶଳ ନଗରର ଭୂପ ॥
ଚପଳ ତୁରଙ୍ଗ ଅତି ମନୋହର ଚାରି । ଅଜର ଅମର ତୁଣି ମନ-ଗତିକାରୀ ॥୨॥
ବିଲୋକି ରଘୁପତିଙ୍କୁ ସ୍ୟନ୍ଦନ ଆରୂଢ । ଧାଇଁଲେ ଋକ୍ଷ ମର୍କଟ ବଳ ପାଇ ଦୃଢ ॥
କପିଙ୍କ ମାଡ ରାବଣ ସହି ନ ପାରିଲା । ତହୁଁ ନିଜ ମାୟା ଜାଲ ବିସ୍ତାରି କରିଲା ॥୩॥
ସେ ମାୟା ଭ୍ରାନ୍ତି ଶ୍ରୀ ରଘୁନାଥଙ୍କୁ କେବଳ । ସତ୍ୟ ମାନିଲେ ଲକ୍ଷ୍ମଣ ମର୍କଟ ସକଳ ॥
ଆସୁରୀ ସେନା ଅପାର ବାନରେ ଦେଖନ୍ତି । ଅନୁଜ ସହିତ ବହୁ କୋଶଳାଧିପତି ॥୪॥

ବହୁ ରାମ ଲକ୍ଷ୍ମଣ ଋକ୍ଷ ମର୍କଟଗଣ ଦେଖିଣ ହୃଦୟେ ଡରିଲେ ।
ଚିତ୍ର ଲିଖିତ ଭାବେ ଲକ୍ଷ୍ମଣ ସହ ସର୍ବେ ସ୍ଥାନରେ ଅନାଇଁ ରହିଲେ ।
ସେନା ଚକିତ ରଘୁବର, ବିଲୋକି ଚାପେ ସାଜି ଶର,
ନିମେଷ ମଧ୍ୟେ ହରି ମାୟା ନିଅନ୍ତେ ହେଲେ ହରଷ ଋକ୍ଷ କପି ଦଳ ॥

---

ମୁଁ ଏକାକୀ ଏବଂ ବାନର-ଭଲ୍ଲୁକମାନେ ଅନେକ । ଅତଏବ ମୁଁ ଏବେ ଅପାର ମାୟା ରଚନା କରିବି ॥ ୮୮ ॥ ଚୌପାଇ —ଦେବତାମାନେ ପ୍ରଭୁଙ୍କୁ ପାଦରେ ଚାଲି ଯୁଦ୍ଧ କରୁଥିବାର ଦେଖିଲେ । ଏହା ଦେଖି ସେମାନଙ୍କ ମନରେ ବଡ ଦୁଃଖ ଜାତ ହେଲା । ଏହି ସମୟରେ ଇନ୍ଦ୍ର ତାଙ୍କ ରଥ ଶୀଘ୍ର ପଠାଇ ଦେଲେ । ତାଙ୍କର ସାରଥି ମାତଳି ଆନନ୍ଦରେ ରଥ ଧରି ଆସିଲେ ॥ ୧ ॥ ସେହି ଦିବ୍ୟ, ଅନୁପମ ଓ ତେଜୋମୟ ରଥ ଉପରେ କୋଶଳପୁରର ରାଜା ଶ୍ରୀରାମ ଆନନ୍ଦିତ ମନରେ ଆରୋହଣ କଲେ । ଉକ୍ତ ରଥରେ ଚାରିଗୋଟି ଚଞ୍ଚଳ, ମନୋହର, ଅଜର, ଅମର ଓ ମନ-ସମାନ ବେଗଗାମୀ ଦେବଲୋକର ଅଶ୍ୱ ଯୋଖା ହୋଇଥିଲେ ॥ ୨ ॥ ଶ୍ରୀ ରଘୁନାଥଙ୍କୁ ରଥ ଉପରେ ଚଢିଥିବାର ଦେଖି ବାନରମାନେ ବିଶେଷ ବଳ ପାଇ ଦୌଡିଲେ । ସେମାନଙ୍କର ଆଘାତ ସହି ହେଉ ନ ଥାଏ । ସେତେବେଳେ ରାବଣ ମାୟା ବିସ୍ତାରି

ବହୁରି ରାମ ସବ ତନ ଚିତଇ ବୋଲେ ବଚନ ଗଁଭୀର ।
ଦ୍ୱନ୍ଦଜୁଦ୍ଧ ଦେଖହୁ ସକଲ ଶ୍ରମିତ ଭଏ ଅତି ବୀର ॥୮୯॥
ଅସ କହି ରଥ ରଘୁନାଥ ଚଲାୱା । ବିପ୍ର ଚରନ ପଙ୍କଜ ସିରୁ ନାୱା ॥
ତବ ଲଙ୍କେସ କ୍ରୋଧ ଉର ଛାୱା । ଗର୍ଜତ ତର୍ଜତ ସନ୍ମୁଖ ଧାୱା ॥୧॥
ଜୀତେହୁ ଜେ ଭଟ ସଂଜୁଗ ମାହୀଂ । ସୁନୁ ତାପସ ମୈଂ ତିନ୍ହ ସମ ନାହୀଂ ॥
ରାବନ ନାମ ଜଗତ ଜସ ଜାନା । ଲୋକପ ଜା କେଁ ବଂଦୀଖାନା ॥୨॥
ଖର ଦୂଷନ ବିରାଧ ତୁମ୍ହ ମାରା । ବଧେହୁ ବ୍ୟାଧ ଇବ ବାଲି ବିଚାରା ॥
ନିସିଚର ନିକର ସୁଭଟ ସଂଘାରେହୁ । କୁମ୍ଭକରନ ଘନନାଦହି ମାରେହୁ ॥୩॥

---

ପୁଣି ରଘୁସାଇଁ ସମସ୍ତଙ୍କୁ ଚାହିଁ କହିଲେ ବାଣୀ ଗମ୍ଭୀର ।
ଦ୍ୱନ୍ଦ୍ୱ ଯୁଦ୍ଧ ଦେଖ ସର୍ବେ କପି ଋକ୍ଷ, ଶ୍ରମିତ ହେଲେଣି ବୀର ॥ ୮୯॥
ଏହା କହି ରଥ ଚଳାଇଲେ ରଘୁବୀର । ବିପ୍ର ଚରଣ-ପଙ୍କଜେ ନୁଆଁଇଣ ଶିର ॥
ତହୁଁ ଲଙ୍କପତି ଅତି ହୋଇ କ୍ରୋଧାନ୍ୱିତ । ଗର୍ଜନ କରି ସମ୍ମୁଖେ ଧାଇଁଲା ତୁରିତ ॥୧॥
ଜିଣିଲୁ ଯେଉଁ ବୀରଙ୍କୁ କରିଣ ସଂଗ୍ରାମ । ଶୁଣ ତାପସ, ମୁଁ ନୁହେଁ ତାହାଙ୍କ ସମାନ ॥
ରାବଣ ନାମ ସୁଯଶ ବିଦିତ ସଂସାରେ । ଲୋକପାଳ ଅବରୁଦ୍ଧ ଯା' ବନ୍ଦୀଶାଳାରେ ॥୨॥
ଖର ଦୂଷଣ ବିରାଧ କବନ୍ଧେ ବଧିଲୁ । ବ୍ୟାଧ ସଦୃଶ ଲୁଚିଣ ବାଲିଙ୍କୁ ମାରିଲୁ ॥
ସଂହାରିଲୁ ସର୍ବ ବୀର ରଜନୀଚରଙ୍କୁ । ବିନାଶିଲୁ କୁମ୍ଭକର୍ଣ୍ଣ ଜଳଦନାଦଙ୍କୁ ॥୩॥

---

କଲି ॥ ୩ ॥ କେବଳ ଏକା ସେହି ରଘୁବୀରଙ୍କୁ ଉକ୍ତ ମାୟା ସ୍ପର୍ଶ କଲନାହିଁ । ସମସ୍ତ ବାନର ଓ ଶ୍ରୀ ଲକ୍ଷ୍ମଣ ପ୍ରଭୃତି ଉକ୍ତ ମାୟାକୁ ସତ୍ୟ ବୋଲି ମନେ କଲେ । ବାନରମାନେ ଆସୁରୀ ସେନା ମଧ୍ୟରେ ଭାଇ ଲକ୍ଷ୍ମଣଙ୍କ ସମେତ ଅନେକ ରାମଙ୍କୁ ଦେଖିଲେ ॥ ୭ ॥ ଛନ୍ଦ :—ବହୁତ ରାମଲକ୍ଷ୍ମଣଙ୍କୁ ଦେଖି ବାନର ଓ ଭଲ୍ଲୁକମାନେ ମିଥ୍ୟା ଭୟରେ ଅତିଶୟ ଡରିଗଲେ । ଲକ୍ଷ୍ମଣଙ୍କ ସହିତ ସେମାନେ ଚିତ୍ର ପ୍ରତିମା ପରି ଯେଉଁଠି ସେଇଠି ଛିଡା ହୋଇ ଦେଖିବାକୁ ଲାଗିଲେ । ଆପଣାର ସେନାକୁ ଆଶ୍ଚର୍ଯ୍ୟ-ଚକିତ ହେବାର ଦେଖି କୋଶଳ-ପତି ଦୁଃଖ-ହାରକ ଭଗବାନ୍ ହରି ହସି ଧନୁ ଉପରେ ଶର ଯୋଗିଲେ ଏବଂ କ୍ଷଣକ ମଧ୍ୟରେ ସମସ୍ତ ମାୟା ହରଣ କରିନେଲେ । ସମସ୍ତ ବାନର ସେନା ଏହା ଦେଖି ଆନନ୍ଦିତ ହେଲେ । ଦୋହା :—ତତ୍ପରେ ଶ୍ରୀରାମ ସମସ୍ତଙ୍କ ଆଡକୁ ଚାହିଁ ଗମ୍ଭୀର ବଚନ କହିଲେ "ହେ ବୀରମାନେ ! ତୁମ୍ଭେମାନେ ଅତ୍ୟନ୍ତ କ୍ଲାନ୍ତ ହୋଇପଡ଼ିଅଛ, ଏଣୁ ବର୍ତ୍ତମାନ ମୋର ଏବଂ ରାବଣର ଦ୍ୱନ୍ଦ୍ୱ ଯୁଦ୍ଧ ଦେଖ ।" ॥ ୮୯ ॥ ଚୌପାଈ :—ଏପରି କହି ଶ୍ରୀ ରଘୁନାଥ ବ୍ରାହ୍ମଣ-ମାନଙ୍କ ଚରଣ-କମଳରେ ଶିର ନୁଆଁଇଲେ ଏବଂ ପୁଣି ରଥ ଚଳାଇଲେ । ସେତେବେଳେ ରାବଣର ହୃଦୟରେ କ୍ରୋଧ ବ୍ୟାପିଗଲା ଏବଂ ସେ ଗର୍ଜନ କରି ଆହ୍ୱାନ ଦେଇ ଆଗରେ ଦୌଡ଼ିଲା ॥ ୧ ॥ ସେ କହିଲା, "ଆରେ ତପସ୍ୱି ! ଶୁଣ,

ଆଜୁ ବୟରୁ ସବୁ ଲେଉଁ ନିବାହୀ । ଜୌଁ ରନ ଭୂପ ଭାଜି ନହିଁ ଜାହୀ ॥
ଆଜୁ କରଉଁ ଖଲୁ କାଲ ହୱାଲେ । ପରେହୁ କଠିନ ରାବନ କେ ପାଲେ ॥୪॥
ସୁନି ଦୁର୍ବଚନ କାଲବସ ଜାନା । ବିହଁସି ବଚନ କହ କୃପାନିଧାନା ॥
ସତ୍ୟ ସତ୍ୟ ସବ ତବ ପ୍ରଭୁତାଈ । ଜଲ୍ପସି ଜନି ଦେଖାଉ ମନୁସାଈ ॥୫॥

ଜନି ଜଲ୍ପନା କରି ସୁଜସୁ ନାସହି ନୀତି ସୁନହି କରହି ଛମା ।
ସଂସାର ମହଁ ପୂରୁଷ ତ୍ରିବିଧ ପାଟଲ ରସାଲ ପନସ ସମା ॥
ଏକ ସୁମନପ୍ରଦ ଏକ ସୁମନ ଫଲ ଏକ ଫଲଇ କେବଲ ଲାଗହୀଁ ।
ଏକ କହହିଁ କହହିଁ କରହିଁ ଅପର ଏକ କରହିଁ କହତ ନ ବାଗହୀଁ ॥

---

ଆଜି ସେ ସବୁ ବୈରର ନେବି ପ୍ରତିଶୋଧ । ଯେବେ ସମରୁ ପଳାଇ ନ ଯିବୁ, ନିର୍ବୋଧ ॥
ଆଜି ତୋତେ ଦେବି ଖଳ, କାଳର ହାତରେ । ପଡ଼ିଛୁ ଆସି କଠୋର ରାବଣ ପାଲରେ ॥୪॥
ଶୁଣି ଦୁର୍ବଚନ ତାକୁ କାଳବଶ ଜାଣି । ହସି ଉଚ୍ଚାରିଲେ କୃପା-ଅମ୍ବୁନିଧି ବାଣୀ ॥
ସତ୍ୟ ସତ୍ୟ ଅଟେ ସବୁ ପ୍ରଭୁତ୍ୱ ତୋହର । ଦେଖାଅ ତୋ ପୌରୁଷ, ପ୍ରଲାପ ନ କର ॥୫॥

ପ୍ରଲାପ କରି ଦୁଷ୍ଟ, ଯଶ ନ କର ନଷ୍ଟ ନୀତି ଶୁଣାଏ, କ୍ଷମ, ମାନ ।
ତିନି ପ୍ରକାର ନର ଜଗତରେ, ପାଟଳ ରସାଳ ପଣସ ସମାନ ।
ପୁଷ୍ପ କେ, ପୁଷ୍ପ ଫଳ କେହୁ, ଫଳହିଁ ଉତ୍ପାଦ୍ୟ ଧରଇ,
ଏକ କହେ ନ କରେ, ଦ୍ୱିତୀୟ କହି କରେ, ନ କହି ତୃତୀୟ କରଇ ॥

---

ତୁମେ ଯେଉଁ ଯୋଦ୍ଧାମାନଙ୍କୁ ଜିଣିଅଛ, ମୁଁ ସେମାନଙ୍କ ସମାନ ନୁହେଁ, ମୋର ନାମ ରାବଣ, ଯେଉଁ ରାବଣର ବନ୍ଦୀଖାନାରେ ଏପରି କି ଲୋକପାଳମାନେ ମୁଦ୍ଧା ବନ୍ଦୀ ହୋଇ ରହିଛନ୍ତି, ମୁଁ ସେହି ରାବଣ । ମୋର ଯଶ ସମଗ୍ର ଜଗତ ଜାଣେ ॥ ୨ ॥ ତୁମେ ଖର, ଦୂଷଣ ଓ ବିରାଧକୁ ମାରିଲ, ବିଚରା ବାଳିକୁ ବ୍ୟାଧ ପରି ବଧ କଲ । ବଡ଼ ବଡ଼ ରାକ୍ଷସ-ଯୋଦ୍ଧା-ସମୂହଙ୍କୁ ସହାର କଲ ଏବଂ କୁମ୍ଭକର୍ଣ୍ଣ ଓ ମେଘନାଦକୁ ମଧ୍ଧ ମାରିଲ ॥ ୩ ॥ ରାଜା ' ଯଦି ତୁମେ ରଣ-ଭୂମିରୁ ପଳାଇ ନ ଯାଅ, ତେବେ ଆଜି ମୁଁ ସେ ସମସ୍ତ ଶତ୍ରୁତାର ପ୍ରତିଶୋଧ ନେବି । ଆଜି ମୁଁ ତୁମ୍ଭଙ୍କୁ ନିଶ୍ଚୟ କାଳର ହାତରେ ସମର୍ପଣ କରିଦେବି । ତୁମେ କଠୋର ରାବଣ ପାଲରେ ଆଜି ପଡ଼ିଯାଇଛ ।" ॥୪॥ ରାବଣର ଦୁର୍ବଚନ ଶୁଣି ଏବଂ ତାହାକୁ କାଳର ବଶୀଭୂତ ହେବାର ଜାଣି ଶ୍ରୀରାମ ହସିଲେ ଏବଂ ଏହି କଥା କହିଲେ—"ତୁମ କହିବା ଅନୁସାରେ ତୁମର ସମସ୍ତ ପ୍ରଭୁତ୍ୱ ଏକାବେଳକେ ସତ୍ୟ । କିନ୍ତୁ ଏବେ ଆଉ ବୃଥାରେ ପ୍ରଲାପ କରନାହିଁ, ଆପଣାର ପୁରୁଷାର୍ଥ ଦେଖାଅ ॥ ୫ ॥ ଛନ୍ଦ —ବୃଥା ବକବାଦ କରି ଆପଣାର ସୁଯଶ ନଷ୍ଟ କରନାହିଁ । କ୍ଷମା କର, ତୁମ୍ଭଙ୍କୁ ନୀତି ଶୁଣାଉଛୁ । ଶୁଣ, ସଂସାରରେ ତିନି ପ୍ରକାର ପୁରୁଷ ଥାଆନ୍ତି —ପାଟଳ (ଗୋଲାପ), ଆମ୍ବ ଓ ପଣସ ପରି । ପ୍ରଥମ ପ୍ରକାର (ପାଟଳ)

ରାମ ବଚନ ସୁନି ବିହଁସା ମୋହି ସିଖାୱତ ଗ୍ୟାନ ।
ବୟରୁ କରତ ନହିଁ ତବ ଡରେ ଅବ ଲାଗେ ପ୍ରିୟ ପ୍ରାନ ॥୯୦॥
କହି ଦୁର୍ବଚନ କ୍ରୁଦ୍ଧ ଦସକଂଧର । କୁଲିସ ସମାନ ଲାଗ ଛାଁଡ଼ୈ ସର ॥
ନାନାକାର ସିଲୀମୁଖ ଧାଏ । ଦିସି ଅରୁ ବିଦିସି ଗଗନ ମହି ଛାଏ ॥୧॥
ପାବକ ସର ଛାଁଡେଉ ରଘୁବୀରା । ଛନ ମହୁଁ ଜରେ ନିସାଚର ତୀରା ॥
ଛାଡ଼ିସି ତୀବ୍ର ସକ୍ତି ଖିସିଆଈ । ବାନ ସଂଗ ପ୍ରଭୁ ଫେରି ଚଲାଈ ॥୨॥
କୋଟିନ୍ହ ଚକ୍ର ତ୍ରିସୂଲ ପବାରୈ । ବିନୁ ପ୍ରୟାସ ପ୍ରଭୁ କାଟି ନିବାରୈ ॥
ନିଫଲ ହୋହିଁ ରାବନ ସର କୈସେଁ । ଖଲ କେ ସକଲ ମନୋରଥ ଜୈସେଁ ॥୩॥

---

ରାମଙ୍କର ବାଣୀ ହସି ବୋଲେ ଶୁଣି, ମୋତେ ଶିଖାଉଛୁ ଜ୍ଞାନ ।
ବୈର କଲବେଳେ ନ ଡରିଲୁ ତଳେ, ଏବେ ପ୍ରିୟ ଲାଗେ ପ୍ରାଣ ॥୧୦॥
କହି ଦୁର୍ବଚନ କୋପେ ସେ ଲଙ୍କାନାୟକ । କୁଳିଶ ସମାନ ତହୁଁ ଛାଡ଼ିଲା ଶାୟକ ।
ନାନା ପ୍ରକାର ଅସଂଖ୍ୟ ନାରାଚ ଧାଇଁଲେ । ଦିଗ ବିଦିଗ ଅବନୀ ଅମ୍ବର ଛାଇଲେ ॥୧॥
ଅନଳ ବାଣ ଛାଡିଲେ ପ୍ରଭୁ ରଘୁବୀର । କ୍ଷଣେ ମଧ୍ୟେ ଭସ୍ମ ହେଲେ ନିଶାଚର ତୀର ॥
ତୀକ୍ଷ୍ଣ ଶକ୍ତି ପ୍ରହାରିଲା କ୍ରୁଦ୍ଧ ପାଇ ଅତି । ବାଣ ସହିତ ପଠାଇ ଦେଲେ ରଘୁପତି ॥୨॥
ଫିଙ୍ଗେ କୋଟି କୋଟି ଚକ୍ର ତ୍ରିଶୂଳ ମୁଦ୍‌ଗର । ଅନାୟାସେ ପ୍ରଭୁ କାଟି ପକାନ୍ତି ସତ୍ୱର ॥
ବିଫଳ ହୁଅଇ ଦଶଶିର ଶର କେମନ୍ତେ । ଖଳ ଲୋକଙ୍କର ସର୍ବ ମନୋରଥ ଯେମନ୍ତେ ॥୩॥

---

କେବଳ ଫୁଲ ଧରନ୍ତି, ଦ୍ୱିତୀୟ ପ୍ରକାର (ଆମ୍ବ) ଫୁଲ ଓ ଫଳ ଉଭୟ ଧରନ୍ତି ଏବଂ ତୃତୀୟ ପ୍ରକାର (ପଣସ)ରେ କେବଳ ଫଳହିଁ ଲାଗେ । ଏହି ରୂପେ ପୁରୁଷମାନଙ୍କ ମଧ୍ୟରେ ପ୍ରଥମ ଜାତିର ପୁରୁଷମାନେ କହନ୍ତି, କିନ୍ତୁ କରନ୍ତି ନାହିଁ; ଦ୍ୱିତୀୟ ଜାତିର ପୁରୁଷମାନେ କହନ୍ତି ଏବଂ କରନ୍ତି ମଧ୍ୟ ଏବଂ ତୃତୀୟ ଜାତିର ପୁରୁଷମାନେ କେବଳ କରନ୍ତି, କିନ୍ତୁ ବାଣୀରେ ପ୍ରକାଶ କରନ୍ତି ନାହିଁ ।" ଦୋହା :—ଶ୍ରୀରାମଙ୍କ ବଚନ ଶୁଣି ରାବଣ ଖୁବ ହସିଲା ଏବଂ କହିଲା, "ମୋତେ ଜ୍ଞାନ ଶିଖାଉଛ ! ସେତେବେଳେ ଶତ୍ରୁତା କଲାବେଳକୁ ଡରିଲ ନାହିଁ; ଏବେ ତୁମକୁ ତୁମର ପ୍ରାଣ ପ୍ରିୟ ବୋଧ ହେଉଅଛି !" ॥ ୯୦ ॥ ଚୌପାଇ :— ଦୁର୍ବଚନ କହି ରାବଣ କ୍ରୁଦ୍ଧ ହୋଇ ବଜ୍ର ସମାନ ବାଣ ଛାଡ଼ିବାକୁ ଲାଗିଲା । ଅନେକ ଆକାରର ବାଣ ଛୁଟି ଦୌଡ଼ିଲା ଏବଂ ଦିଗ-ବିଦିଗ ଏବଂ ଆକାଶ ଓ ପୃଥିବୀ ସବୁ ଛାଇ ହୋଇଗଲା ॥ ୧ ॥ ଶ୍ରୀ ରଘୁବୀର ଅଗ୍ନିବାଣ ଛାଡ଼ିଲେ । ତାହାର ପ୍ରୟୋଗରେ ରାବଣର ସମସ୍ତ ବାଣ କ୍ଷଣକ ମଧ୍ୟରେ ଭସ୍ମୀଭୂତ ହୋଇଗଲା । ତତ୍ପରେ ସେ ଲଜ୍ଜିତ ହୋଇ ତୀକ୍ଷ୍ଣ ଶକ୍ତି ଛାଡ଼ିଲା । କିନ୍ତୁ ଶ୍ରୀରାମଚନ୍ଦ୍ର ତାହାକୁ ଆପଣାର ବାଣ ସହିତ ଫେରାଇ ପଠାଇଦେଲେ ॥ ୨ ॥ ରାବଣ କୋଟି କୋଟି ଚକ୍ର ଓ ତ୍ରିଶୂଳ ଚଲାଉଥାଏ; କିନ୍ତୁ ପ୍ରଭୁ ଅନାୟାସରେ ସେଗୁଡ଼ିକୁ କାଟି ଦୂର କରି ଦେଉଥା'ନ୍ତି । ଦୁଷ୍ଟ ମନୁଷ୍ୟର ସମସ୍ତ ମନୋରଥ ବିଫଳ

ତବ ସତ ବାନ ସାରଥୀ ମାରେସି । ପରେଉ ଭୂମି ଜୟ ରାମ ପୁକାରେସି ॥
ରାମ କୃପା କରି ସୂତ ଉଠାଓ୍ୱା । ତବ ପ୍ରଭୁ ପରମ କ୍ରୋଧ କହୁଁ ପାଓ୍ୱା ॥୪॥

ଭଏ୍ୱ କ୍ରୁଦ୍ଧ ଜୁଦ୍ଧ ବିରୁଦ୍ଧ ରଘୁପତି ତ୍ରୋନ ସାୟକ କସମସେ ।
କୋଦଣ୍ଡ ଧୁନି ଅତି ଚଣ୍ଡ ସୁନି ମନୁଜାଦ ସବ ମାରୁତ ଗ୍ରସେ ॥
ମନ୍ଦୋଦରୀ ଉର କଂପ କଂପତି କମଠ ଭୂ ଭୂଧର ତ୍ରସେ ।
ଚିକ୍କରହିଁ ଦିଗ୍‌ଗଜ ଦସନ ଗହି ମହି ଦେଖି କୌତୁକ ସୁର ହଁସେ ॥

ତାନେଉ ଚାପ ଶ୍ରବନ ଲଗି ଛାଁଡେ ବିସିଖ କରାଲ ।
ରାମ ମାରଗନ ଗନ ଚଲେ ଲହଲହାତ ଜନୁ ବ୍ୟାଲ ॥୯୧॥

ଚଲେ ବାନ ସପଚ୍ଛ ଜନୁ ଉରଗା । ପ୍ରଥମହିଁ ହତେଉ ସାରଥୀ ତୁରଗା ॥
ରଥ ବିଭଂଜି ହତି କେତୁ ପତାକା । ଗର୍ଜା ଅତି ଅଂତର ବଲ ଥାକା ॥୧॥

---

ତହୁଁ ସାରଥିକୁ ଶତ ବିଶିଖ ମାରିଲା । 'ଜୟ ରାମ' ଉଚ୍ଚାରି ସେ ଭୂମିରେ ପଡ଼ିଲା ॥
ରାମ କୃପା କରି ସାରଥିକୁ ଉଠାଇଲେ । ପୁଣି ପ୍ରଭୁ ଅତିଶୟ କ୍ରୋଧରେ ପୂରିଲେ ॥୪॥

କ୍ରୋଧିଲେ ଯୁଦ୍ଧେ କ୍ରୁଦ୍ଧ ରାମ ଶତ୍ରୁ ବିରୁଦ୍ଧ ତୂଣୀରେ ଶର ଶବ୍ଦାୟିତ ।
ମନୁଜାଦ କୋଦଣ୍ଡ ଶବ୍ଦ ଶୁଣି ପ୍ରଚଣ୍ଡ ବାତ ଗ୍ରସନେ ଯଥା ଭୀତ ।
କମ୍ପିଲ ମନ୍ଦୋଦରୀ ଅତି, ଭୂଅବ୍‌ଧି ଗିରି କୂର୍ମ ଭୀତ,
ଦିଗ୍‌ଗଜେ ଚିତ୍କାରନ୍ତି ଦନ୍ତେ ଧରି ଧରଣୀ ନିରେଖି ଅମରେ ହସନ୍ତି ॥

ଶ୍ରବଣ ପର୍ଯ୍ୟନ୍ତେ ଟାଣି ଶରାସନ ଛାଡ଼ନ୍ତେ ବାଣ କରାଳ ।
ଚଳିଲେ ରାମଙ୍କ ଶରଗଣ ଯେସନ୍ତେ ଲହ ଲହ କରି ବ୍ୟାଳ ॥୯୧॥
ଚଳିଲେ ବାଣ ଯେସନେ ସପକ୍ଷ ଉରଗ । ପ୍ରଥମେ ନାଶିଲେ ଯାଇ ସାରଥି ତୁରଗ ॥
ନାଶିଣ କେତୁ ପତାକା ଭାଙ୍ଗିଲେ ସ୍ୟନ୍ଦନ । ମନୋବଳ ଥକିଲେ ବି କଲା ଗରଜନ ॥୧॥

---

ହେଲା ପରି ରାବଣର ବାଣମାନ ନିଷ୍ଫଳ ହେଉଥାଏ ॥ ୩ ॥ ତତ୍ପରେ ସେ ଶ୍ରୀରାମଙ୍କ ସାରଥିକୁ ଏକଶହ ବାଣ ମାରିଲା । ସାରଥି ଶ୍ରୀରାମଙ୍କ ଜୟଧ୍ୱନି କରି ଭୂମି ଉପରେ ଖସି ପଡ଼ିଲା । ଶ୍ରୀରାମ କୃପା କରି ସାରଥିକୁ ଉଠାଇଲେ । ପ୍ରଭୁ ଅତ୍ୟନ୍ତ କୋପ କଲେ ॥ ୪ ॥
ଛନ୍ଦ —ଯୁଦ୍ଧରେ ଶତ୍ରୁ ବିରୁଦ୍ଧରେ ଶ୍ରୀରାମ କୋପ କଲେ । ସେତେବେଳେ ତୂଣୀରସ୍ଥ ବାଣ ସବୁ ବାହାରକୁ ଆସିବାକୁ ଆତୁର ହେଉଥାଏ । ତାଙ୍କ ଧନୁର ଅତି ପ୍ରଚଣ୍ଡ ଶବ୍ଦ ଶୁଣି ମନୁଷ୍ୟ-ଭୋଜୀ ସମସ୍ତ ରାକ୍ଷସ ବାତଗ୍ରସ୍ତ ହେଲା ପରି ଅତିଶୟ ଭୟଭୀତ ହେଲେ । ମନ୍ଦୋଦରୀର ହୃଦୟ କମ୍ପି ଉଠିଲା, ସମୁଦ୍ର କଚ୍ଛପ, ପୃଥିବୀ ଓ ପର୍ବତମାନେ ସମସ୍ତେ ଡରିଗଲେ । ଦିଗ୍‌ଗଜମାନେ ପୃଥିବୀକୁ ଦାନ୍ତରେ ଧରି ଚିତ୍କାର କରିବାକୁ ଲାଗିଲେ । ଏହି କୌତୁକ ଦେଖି ଦେବତାମାନେ ହସିବାକୁ ଲାଗିଲେ ॥
ଦୋହା :—ଧନୁକୁ କାନ ପର୍ଯ୍ୟନ୍ତ ଟାଣି ଶ୍ରୀରାମ ଭୟାନକ ବାଣ ଛାଡ଼ିଲେ । ଶ୍ରୀରାମଙ୍କ

ତୁତତ ଆନ ରଥ ଚଢ଼ି ଖିସିଆନା । ଅସ୍ତ୍ର ଶସ୍ତ୍ର ଛାଁଡ଼େସି ବିଧି ନାନା ॥
ବିଫଲ ହୋହିଁ ସବ ଉଦ୍ୟମ ତାକେ । ଜିମି ପରଦ୍ରୋହ ନିରତ ମନସା କେ ॥୨॥
ତବ ରାବନ ଦସ ସୂଲ ଚଲାୱା । ବାଜି ଚାରି ମହି ମାରି ଗିରାୱା ।
ତୁରଗ ଉଠାଇ କୋପି ରଘୁନାୟକ । ଖୈଁଚି ସରାସନ ଛାଁଡ଼େ ସାୟକ ॥୩॥
ରାବନସିର ସରୋଜ ବନଚାରୀ । ଚଲି ରଘୁବୀର ସିଲୀମୁଖ ଧାରୀ ॥
ଦସ ଦସ ବାନ ଭାଲ ଦସ ମାରେ । ନିସରି ଗଏ ଚଲେ ରୁଧିର ପନାରେ ॥୪॥
ସ୍ରବତ ରୁଧିର ଧାୟଉ ବଲବାନା । ପ୍ରଭୁ ପୁନି କୃତ ଧନୁ ସର ସନ୍ଧାନା ॥
ତୀସ ତୀର ରଘୁବୀର ପବାରେ । ଭୁଜନ୍ହି ସମେତ ସୀସ ମହି ପାରେ ॥୫॥

---

ଅତ୍ୟନ୍ତ କୋପେ ତୁରତ ଚଢ଼ି ରଥ ଆନ । ପ୍ରହାରିଲା ଅସ୍ତ୍ର ଶସ୍ତ୍ର ବିବିଧ ବିଧାନ ॥
ବିଫଳ ହୁଏ ତାହାର ଉଦ୍ୟମ ସକଳ । ଯଥା ସଦା ପର-ଦ୍ରୋହ-ରତ ମନୁଷ୍ୟର ॥୨
ତହୁଁ ଦଶଶିର ଦଶ ଶୂଳ ପକାଇଲା । ଅଶ୍ୱ ଚାରି ମାରି ଧରଣୀରେ ଶୁଆଇଲା ॥
ତୁରଙ୍ଗ ଉଠାଇ କୋପି ଶ୍ରୀ ରଘୁନାୟକ । ଛାଡ଼ିଲେ ଅତି କରାଳ ଅସଂଖ୍ୟ ଶାୟକ ॥୩॥
ରାବଣ ଶିର-ସରୋଜ-ବିପିନ ବିହାରୀ । ଚଳିଲେ ରାମଙ୍କ ବାଣ-ଭ୍ରମରଙ୍କ ଧାଡ଼ି ॥
ଭେଦିଲେ ଲଲାଟ ଦେଶେ ଦଶ ଦଶ ଶର । ବାହାରି ଯାନ୍ତେ ବହିଲା ରୁଧିର ପ୍ରଖର ॥୪॥
ସ୍ରବନ୍ତେ ଶୋଣିତ ବଳୀ ହେଲା ଧାବମାନ । ପ୍ରଭୁ ପୁଣି ରୂପେ ଶର କଲେ ସନ୍ଧାନ ॥
ତିରିଶ ନାରାଚ ରଘୁନନ୍ଦନ ଛାଡ଼ିଲେ । ଭୁଜ ସହିତ ମସ୍ତକ କାଟି ପକାଇଲେ ॥୫॥

---

ବାଣମାନ ସର୍ପଗଣ ତରଙ୍ଗାୟିତ ହୋଇ ଉଠିଲା ପରି ଚଳିବାକୁ ଲାଗିଲା ॥ ୯୧ ॥

ଚୌପାଈ —ବାଣ ସବୁ ଏପରି ଉଡ଼ି ଚାଲୁଥାଏ, ଯେପରି ଅବା ପକ୍ଷଧାରୀ ସର୍ପମାନେ ଉଡ଼ୁଅଛନ୍ତି । ସେଗୁଡ଼ିକ ପ୍ରଥମେ ସାରଥି ଓ ଅଶ୍ୱମାନଙ୍କୁ ମାରିପକାଇଲା । ପୁଣି ରଥକୁ ଚୂର୍ଣ୍ଣବିଚୂର୍ଣ୍ଣ କରି ଧ୍ୱଜା ଓ ପତାକାଗୁଡ଼ିକୁ ତଳେ ପକାଇଦେଲା । ସେତେବେଳେ ରାବଣ ଅତି ଜୋରରେ ଗର୍ଜ୍ଜନ କଲା ସତ, କିନ୍ତୁ ସେତେବେଳକୁ ତାହାର ମନର ବଳ ଥକି ଯାଇଥିଲା ॥ ୧ ॥ ତୁରନ୍ତ ଅନ୍ୟ ଗୋଟିଏ ରଥରେ ଚଢ଼ି ଲଜ୍ଜିତ ହୋଇ ସେ ନାନା ପ୍ରକାର ଅସ୍ତ୍ରଶସ୍ତ୍ର ଛାଡ଼ିଲା । ଯେପରି ପରଦ୍ରୋହ-ନିରତ ମନୁଷ୍ୟର ସମସ୍ତ ଉଦ୍ୟମ ନିଷ୍ଫଳ ହୁଏ, ସେହିପରି ତାହାର ସମସ୍ତ ଉଦ୍ୟମ ବ୍ୟର୍ଥ ହେଉଥାଏ ॥ ୨ ॥ ତଦନନ୍ତର ରାବଣ ଦଶଗୋଟି ତ୍ରିଶୂଳ ଚଳାଇଲା ଏବଂ ଶ୍ରୀରାମଙ୍କର ଚାରିଗୋଟି ଅଶ୍ୱଙ୍କୁ ମାରି ପୃଥିବୀ ଉପରେ ପକାଇଦେଲା । ଶ୍ରୀରାମ ଅଶ୍ୱମାନଙ୍କୁ ଉଠାଇଲେ ଏବଂ କ୍ରୋଧ କରି ଧନୁ ଟାଣି ବାଣ ଛାଡ଼ିଲେ ॥ ୩ ॥ ରାବଣର ମସ୍ତକ-କମଳ-ବନରେ ବିଚରଣ କରିବା ଅଭିପ୍ରାୟରେ ଶ୍ରୀ ରଘୁବୀରଙ୍କ ବାଣ-ଭ୍ରମର-ପଂକ୍ତି ଚାଲିଲା । ଶ୍ରୀରାମଚନ୍ଦ୍ର ତାହାର ଦଶ ଶିରରେ ଦଶ ଦଶ ଲେଖାଏଁ ବାଣ ମାରିଲେ । ଉକ୍ତ ବାଣଗୁଡ଼ିକ ଶିରମାନଙ୍କର ଆର ପାଖରେ ଫୁଟି ବାହାରିଲା ଏବଂ ଶିରମାନଙ୍କରୁ ରକ୍ତର ଧାର ଛୁଟିବାକୁ ଲାଗିଲା ॥ ୪ ॥ ରୁଧିର ବହିବା ମାତ୍ରେ ବଳବାନ୍ ରାବଣ ଦୌଡ଼ିଲା । ପ୍ରଭୁ ପୁଣି ଧନୁରେ

କାଟତହିଁ ପୁନି ଭଏ ନବୀନେ । ରାମ ବହୋରି ଭୁଜା ସିର ଛୀନେ ॥
ପ୍ରଭୁ ବହୁ ବାର ବାହୁ ସିର ହଏ । କଟତ ଝଟିତି ପୁନି ନୂତନ ଭଏ ॥୬॥
ପୁନି ପୁନି ପ୍ରଭୁ କାଟତ ଭୁଜ ସୀସା । ଅତି କୌତୁକୀ କୋସଲାଧୀସା ॥
ରହେ ଛାଇ ନଭ ସିର ଅରୁ ବାହୂ । ମାନହୁଁ ଅମିତ କେତୁ ଅରୁ ରାହୂ ॥୭॥

ଜନୁ ରାହୁ କେତୁ ଅନେକ ନଭ ପଥ ସ୍ରବତ ସୋନିତ ଧାୱହୀଁ ।
ରଘୁବୀର ତୀର ପ୍ରଚଣ୍ଡ ଲାଗହିଁ ଭୂମି ଗିରନ ନ ପାୱହୀଁ ॥
ଏକ ଏକ ସର ସିର ନିକର ଛେଦେ ନଭ ଉଡ଼ତ ଇମି ସୋହହୀଁ ।
ଜନୁ କୋପି ଦିନକର କର ନିକର ଜହଁ ତହଁ ବିଧୁଂତୁଦ ପୋହହୀଁ ॥

ଜିମି ଜିମି ପ୍ରଭୁ ହର ତାସୁ ସିର ତିମି ତିମି ହୋହିଁ ଅପାର ।
ସେବତ ବିଷୟ ବିବର୍ଧ ଜିମି ନିତ ନିତ ନୂତନ ମାର ॥୯୨॥

---

କାଟିବା ମାତ୍ରକେ ପୁଣି ହୋଇଲା ନବୀନ । ପୁନଶ୍ଚ ଶ୍ରୀରାମ କଲେ ଭୁଜ ଶିର ଛିନ୍ନ ॥
କାଟନ୍ତେ ପୁଣି ନୂତନ ହୁଅଇ ଝଟତି । ପ୍ରଭୁ ବାରମ୍ବାର ବାହୁ ମସ୍ତକ ଛେଦନ୍ତି ॥୬॥
ପୁଣି ପୁଣି ପ୍ରଭୁ ଉଚ୍ଛେଦନ୍ତି ଭୁଜ ଶିର । ଅତି କୌତୁକୀ କୋଶଳ ନରବର ବୀର ॥
ଆକାଶରେ ଆଚ୍ଛାଦିତ ହେଲା ଶିର ବାହୁ । ଯେସନେ ଉଦିତ ଅଗଣିତ କେତୁ ରାହୁ ॥୭॥

ରାହୁ କେତୁ ଗଗନେ ବହୁ ଧାବନ୍ତ ଯେହ୍ନେ ବୁହାଇ ଶୋଣିତ ଗଜନ୍ତି ।
ରଘୁବୀରଙ୍କ ତୀକ୍ଷଣ ବାଣବିଦ୍ଧ ହୋଇଣ ଭୂମିରେ ପଡ଼ି ନ ପାରନ୍ତି ।
ଶୋଭନ୍ତି ଏମନ୍ତ ଅମ୍ବରେ, ବିଦ୍ଧ ଅନେକ ଶିର ଶରେ,
କରନିକରେ ଯେହ୍ନେ ଗ୍ରହନ୍ତି ଏଣେତେଣେ ରାହୁଙ୍କୁ ଭାସ୍କର ରୋଷରେ ॥

ଯହୁଁ ଯହୁଁ ଶିର କାଟନ୍ତି ତାହାର ଉପୁଜେ ପୁଣି ଅପାର ।
ବିଷୟ ସେବନ୍ତେ ବଢଇ ଯେମନ୍ତେ ନିତ୍ୟ ନିତ୍ୟ ନବ ମାର ॥୯୨॥

---

ବାଣ ଯୋଖିଲେ । ଶ୍ରୀ ରଘୁବୀର ତିରିଶ ଗୋଟି ବାଣ ମାରିଲେ ଏବଂ ବିଂଶବାହୁ ସମେତ ଦଶଶିରଙ୍କୁ କାଟି ଭୂମି ଉପରେ ପକାଇଦେଲେ ॥ ୫ ॥ ଶିର ଓ ହସ୍ତମାନ କଟିଯିବା ମାତ୍ରେ ପୁଣି ନୂଆ ହୋଇ ବାହାରୁଥା'ନ୍ତି । ଶ୍ରୀରାମ ପୁଣି ବାହୁ ଓ ମସ୍ତକମାନଙ୍କୁ କାଟି ପକାଇଦେଲେ । ଏହିପରି ପ୍ରଭୁ ବହୁତ ବାର ବାହୁ ଓ ମୁଣ୍ଡ କାଟି ପକାଇଦେଲେ । କିନ୍ତୁ କାଟିବା ମାତ୍ରେ ସେଗୁଡ଼ିକ ପୁଣି ନୂଆ ହୋଇଯାଉଥାଏ ॥ ୬ ॥ ପ୍ରଭୁ କୋଶଳ-ପତି ଶ୍ରୀରାମ ଅତି ଲୀଳାପ୍ରିୟ । ତେଣୁ ସେ ବାରମ୍ବାର ତାର ବାହୁ ଓ ଶିରକୁ କାଟି ପକାଉଥା'ନ୍ତି । ଆକାଶରେ ଶିର ଓ ବାହୁମାନେ ଏପରି ଛାଇ ହୋଇ ଯାଉଥା'ନ୍ତି ଯେ, ସେମାନେ ଅସଂଖ୍ୟ କେତୁ ଓ ରାହୁ ପରି ଦେଖା ଯାଉଥା'ନ୍ତି ॥ ୭ ॥ ଛନ୍ଦ .— ସତେ ଅବା ଅନେକ ରାହୁ ଓ କେତୁ ରୁଧିର ବୁହାଇ ଆକାଶ-ମାର୍ଗରେ ଦଉଡ଼ୁଅଛନ୍ତି ! ଶ୍ରୀ ରଘୁବୀରଙ୍କ ପ୍ରଚଣ୍ଡ ବାଣ ସବୁ ବାଜି ସେଗୁଡ଼ିକ ପୃଥିବୀ ଉପରେ ପଡ଼ି ପାରୁ ନ ଥା'ନ୍ତି ।

ଦସମୁଖ ଦେଖି ସିରନ୍ହ କୈ ବାଢ଼ୀ । ବିସରା ମରନ ଭଈ ରିସ ଗାଢ଼ୀ ॥
ଗର୍ଜେଉ ମୂଢ଼ ମହା ଅଭିମାନୀ । ଧାୟଉ ଦସହୁ ସରାସନ ତାନୀ ॥୧॥
ସମରଭୂମି ଦସକଂଧର କୋପ୍ୟୋ । ବରଷି ବାନ ରଘୁପତି ରଥ ତୋପ୍ୟୋ ॥
ଦଣ୍ଡ ଏକ ରଥ ଦେଖି ନ ପରେଉ । ଜନୁ ନିହାର ମହୁଁ ଦିନକର ଦୁରେଉ ॥୨॥
ହାହାକାର ସୁରନ୍ହ ଜବ କୀନ୍ହା । ତବ ପ୍ରଭୁ କୋପି କାରମୁକ ଲୀନ୍ହା ॥
ସର ନିବାରି ରିପୁ କେ ସିର କାଟେ । ତେ ଦିସି ବିଦିସି ଗଗନ ମହି ପାଟେ ॥୩॥
କାଟେ ସିର ନଭ ମାରଗ ଧାୱହିଁ । ଜୟ ଜୟ ଧୁନି କରି ଭୟ ଉପଜାୱହିଁ ॥
କହଁ ଲଛିମନ ସୁଗ୍ରୀବ କପୀସା । କହଁ ରଘୁବୀର କୋସଲାଧୀସା ॥୪॥

---

ଶିର ବୃଦ୍ଧି ଯେବେ ଦଶବଦନ ଦେଖିଲା । ଭୁଲିଲା ମରଣ ଗାଢ଼ କ୍ରୋଧ ଜନ୍ମିଲା ॥
ଗରଜନ କରି ମୂଢ଼ ମହା ଅଭିମାନୀ । ଧାବମାନ ହେଲା ଦଶ ଶରାସନ ଟାଣି ॥୧॥
ସମର ଭୂମିରେ ଦଶ ବଦନ କୋପିଣ । ରାମଙ୍କ ରଥ ଘୋଡ଼ିଲା ବାଣ ବରଷିଣ ॥
ଦଣ୍ଡେକ ପର୍ଯ୍ୟନ୍ତେ ଦେଖା ନ ଗଲା ସ୍ୟନ୍ଦନ । କୁହୁଡ଼ି ମଧ୍ୟେ ଅଦୃଶ୍ୟ ଦିନେଶ ଯେସନ ॥୨॥
ହାହାକାର ଶବ୍ଦ କଲେ ସକଳ ଅମରେ । ତହୁଁ ପ୍ରଭୁ କୋପି ନେଲେ ଶରାସନ କରେ ॥
ଶର କାଟିଣି ଶତ୍ରୁର ମସ୍ତକ ଛେଦିଲେ । ଦିଗ ବିଦିଗ ଗଗନ ମହୀ ଆଚ୍ଛାଦିଲେ ॥୩॥
କାଟୁଥିବା ଶିର ନଭ ମାର୍ଗରେ ଯାଆନ୍ତି । ଜୟ ଜୟ ଧ୍ୱନି କରି ଭୟ ଉପୁଜାନ୍ତି ॥
କାହିଁ ଲକ୍ଷ୍ମଣ ଅଙ୍ଗଦ କପି ଅଧୀଶ୍ୱର ? କାହିଁ ଅଯୋଧ୍ୟାଧିପତି ରାମ ରଘୁବର ॥୪॥

---

ଗୋଟିଏ ଗୋଟିଏ ବାଣଦ୍ୱାରା ଶିର-ସମୂହ ଛିନ୍ନ ହୋଇ ଆକାଶରେ ଉଡ଼ିବା ସମୟରେ ଏପରି ଶୋଭା ପାଉଥା'ନ୍ତି, ସତେ ଯେପରି ସୂର୍ଯ୍ୟ କ୍ରୋଧ କରି ନିଜ କିରଣଜାଳଦ୍ୱାରା ଏଣେ ତେଣେ ରାହୁମାନଙ୍କୁ ଗୁନ୍ଥୁଅଛନ୍ତି । ଦୋହା —ପ୍ରଭୁ ତାହାର ମୁଣ୍ଡଗୁଡ଼ିକୁ କାଟିବା ମାତ୍ରେ ସେଗୁଡ଼ିକ ଅପାର ମାତ୍ରାରେ ବଢ଼ି ଯାଉଥାଏ । ବିଷୟ-ସେବନ-ଯୋଗେ କାମ ଏହିପରି ଭାବରେ ନିତ୍ୟ ନୂତନ ନୂତନ ଭାବରେ ବଢ଼ି ଚାଲେ ॥ ୯୨ ॥ ଚୌପାଇ '—ଶିର-ସମୂହର ବୃଦ୍ଧି ଦେଖି ରାବଣ ମରଣ କଥା ଭୁଲିଗଲା । ତାହାର ମନରେ ଗଭୀର କ୍ରୋଧ ଜାତ ହେଲା । ସେହି ମହା ଅଭିମାନୀ ମୂର୍ଖ ଗର୍ଜନ କଲା ଏବଂ ଦଶଗୋଟି ଧନୁ ଟାଣି ଦୌଡ଼ିଲା ॥ ୧ ॥ ରଣଭୂମିରେ ରାବଣ କ୍ରୋଧ କଲା ଏବଂ ବାଣ ବୃଷ୍ଟି କରି ଶ୍ରୀ ରଘୁନାଥଙ୍କ ରଥକୁ ଆଚ୍ଛାଦିତ କରି ପକାଇଲା । ଏକଦଣ୍ଡ ପର୍ଯ୍ୟନ୍ତ ରଥ ଦେଖାଗଲା ନାହିଁ, ସତେ ଯେମିତି କୁହେଳିକା ମଧ୍ୟରେ ସୂର୍ଯ୍ୟ ଲୁଚିଗଲେ ' ॥ ୨ ॥ ଦେବତାମାନେ ଯେତେବେଳେ ହାହାକାର କଲେ, ସେତେବେଳେ ପ୍ରଭୁ କ୍ରୋଧ କରି ଧନୁ ଉଠାଇଲେ ଏବଂ ଶତ୍ରୁର ବାଣ ସବୁକୁ ହଟାଇ ଦେଇ ସେ ଶତ୍ରୁର ମସ୍ତକ-ଗୁଡ଼ିକୁ କାଟି ପକାଇଲେ ଏବଂ ସେମାନଙ୍କ ଦ୍ୱାରା ଦିଗବିଦିଗ, ଆକାଶ ଓ ପୃଥିବୀ ସବୁକୁ ପୂରାଇଦେଲେ ॥ ୩ ॥ ଛିନ୍ନ ମସ୍ତକମାନ ଆକାଶମାର୍ଗରେ ଦଉଡ଼ୁଥା'ନ୍ତି ଏବଂ 'ଜୟ-ଜୟ' ଧ୍ୱନି କରି ଭୟ ସୃଷ୍ଟି କରୁଥା'ନ୍ତି । "ଲକ୍ଷ୍ମଣ ଓ ବାନର-ରାଜ ସୁଗ୍ରୀବ

କହଁ ରାମୁ କହଁ ସିର ନିକର ଧାଏ ଦେଖି ମର୍କଟ ଭଜି ଚଲେ ।
ସଂଧାନି ଧନୁ ରଘୁବଂସମନି ହଁସି ସରନ୍ହି ସିର ବେଧେ ଭଲେ ॥
ସିର ମାଲିକା କର କାଲିକା ଗହି ବୃନ୍ଦ ବୃନ୍ଦନ୍ହି ବହୁ ମିଲୀଁ ।
କରି ରୁଧିର ସରି ମଜ୍ଜନୁ ମନହୁଁ ସଂଗ୍ରାମ ବଟ ପୂଜନ ଚଲୀଁ ।

ପୁନି ଦସକଂଠ କ୍ରୁଦ୍ଧ ହୋଇ ଛାଁଡୀ ସକ୍ତି ପ୍ରଚଣ୍ଡ ।
ଚଲୀ ବିଭୀଷନ ସନ୍ମୁଖ ମନହୁଁ କାଲ କର ଦଣ୍ଡ ॥୯୩॥

ଆୱତ ଦେଖି ସକ୍ତି ଅତି ଘୋରା । ପ୍ରନତାରତି ଭଂଜନ ପନ ମୋରା ॥
ତୁରତ ବିଭୀଷନ ପାଛେଂ ମେଲା । ସନ୍ମୁଖ ରାମ ସହେଉ ସୋଇ ସେଲା ॥୧॥
ଲାଗି ସକ୍ତି ମୁରୁଛା କଛୁ ଭଈ । ପ୍ରଭୁ କୃତ ଖେଲ ସୁରନ୍ହ ବିକଲଈ ॥
ଦେଖି ବିଭୀଷନ ପ୍ରଭୁ ଶ୍ରମ ପାୟୋ । ଗହି କର ଗଦା କ୍ରୁଦ୍ଧ ହୋଇ ଧାୟୋ ॥୨॥

---

କାହିଁ ରାମ କହିଣ ଧାଆନ୍ତି ମୁଣ୍ଡଗଣ ଦେଖି ବାନରେ ପଳାଇଲେ ।
ସନ୍ଧାନ ଶର ତୁଣି ଶ୍ରୀ ରଘୁବଂଶମଣି ମସ୍ତକ ଛେଦନେ ଲାଗିଲେ ।
ହସ୍ତେ ମୁଣ୍ଡମାଳ ଧରି, କାଳିକା-ସମୂହ ବିଚରି,
ଚଳନ୍ତି ବା ସଂଗ୍ରାମ-ବଟ-ପୂଜା କାରଣ ରୁଧିର-ସରେ ସ୍ନାନ କରି ॥

ତହୁଁ ଲଙ୍କପତି କ୍ରୋଧ କରି ଅତି ଛାଡନ୍ତେ ଶକ୍ତି ପ୍ରଚଣ୍ଡ ।
ବିଭୀଷଣ ଆଗେ ଚଳିଲା ସେ ବେଗେ ମନେ ହୁଏ କାଳ ଦଣ୍ଡ ॥୯୩॥
ନିରେଖି ସବେଗେ ଶକ୍ତି ଆସଇ ଭୀଷଣ । ପ୍ରଣତ ଦୁଃଖ-ଭଞ୍ଜନ ସ୍ୱ ନିଜ ପଣ ॥
ପଛେ ଠେଲିଦେଇ ବିଭୀଷଣଙ୍କୁ ତ୍ୱରିତ । ସମ୍ମୁଖେ ସହିଲେ ରାମ ସେ ତୀକ୍ଷଣ ଶକତି ॥୧॥
ଶକ୍ତିଘାତେ କିଛିକ୍ଷଣ ହୋଇଲେ ମୂର୍ଚ୍ଛିତ । ପ୍ରଭୁ କରନ୍ତି କୌତୁକ ସୁରେ ଭୟ ଭୀତ ॥
ପ୍ରଭୁ ଶ୍ରମ-ପ୍ରାପ୍ତ ଅବଲୋକି ବିଭୀଷଣ । କରେ ଗଦା ଧରି କ୍ରୋଧେ ଧାଇଁଲା ଭୀଷଣ ॥୨॥

---

କେଉଁଠି ? କୋଶଳ-ପତି ରଘୁବୀର କେଉଁଠି ?” ଏହିପରି ଧ୍ୱନି କରି ଶିରମାନେ ଆକାଶରେ ଉଡ଼ୁଥା'ନ୍ତି ॥ ୫ ॥ ଛନ୍ଦ —“ରାମ କେଉଁଠି ?”—ଏହା କହି ଶିର-ସମୂହ ଦଉଡ଼ିଲେ । ସେମାନଙ୍କୁ ଦେଖି ବାନରମାନେ ପଳାଇଗଲେ । ସେତେବେଳେ ରଘୁକୁଳମଣି ଶ୍ରୀରାମ ଧନୁରେ ବାଣ ଯୋଖିଲେ ଏବଂ ହସି ବାଣମାନଙ୍କ ଦ୍ୱାରା ସେହି ଶିରଗୁଡ଼ିକୁ ଭଲ ଭାବରେ ବିଦ୍ଧ କରି ପକାଇଲେ । ବହୁତ କାଳିକା ସ୍ୱ ସ୍ୱ ହସ୍ତରେ ମୁଣ୍ଡମାଳା ଧରି ଦଳ ଦଳ ମିଳି ଏକାଠି ହେଲେ ଏବଂ ସେମାନେ ରୁଧିର-ନଦୀରେ ସ୍ନାନ କରି ଚାଲିଲେ । ସତେ ଅବା ସଂଗ୍ରାମ-ବଟବୃକ୍ଷକୁ ପୂଜା କରିବାକୁ ଯାଉଅଛନ୍ତି !! ଦୋହା .— ପୁଣି ରାବଣ କ୍ରୁଦ୍ଧ ହୋଇ ପ୍ରଚଣ୍ଡ ଶକ୍ତି ଛାଡ଼ିଲା । ତାହା ବିଭୀଷଣ ଆଗରେ କାଳ (ଯମରାଜ)ର ଦଣ୍ଡ ପରି ମାଡ଼ି ଆସିଲା ॥ ୯୩ ॥ ଚୌପାଈ .—ରାମଚନ୍ଦ୍ର ଦେଖିଲେ ଯେ, ବିଭୀଷଣଙ୍କ ଆଡ଼କୁ ଅତି ଭୟାନକ ଶକ୍ତି ମାଡ଼ି ଆସୁଅଛି । ସେ ବିଚାରିଲେ,

ରେ କୁଭାଗ୍ୟ ସଠ ମଂଦ କୁବୁଦ୍ଧେ । ତୈଁ ସୁର ନର ମୁନି ନାଗ ବିରୁଦ୍ଧେ ॥
ସାଦର ସିବ କହୁଁ ସୀସ ଚଢ଼ାଏ । ଏକ ଏକ କେ କୋଟିନ୍ହ ପାଏ ॥୩॥
ତେହି କାରନ ଖଲ ଅବ ଲଗି ବାଁଚ୍ୟୋ । ଅବ ତବ କାଲୁ ସୀସ ପର ନାଚ୍ୟୋ ॥
ରାମ ବିମୁଖ ସଠ ଚହସି ସଂପଦା । ଅସ କହି ହନେସି ମାଝ ଉର ଗଦା ॥୪॥

ଉର ମାଝ ଗଦା ପ୍ରହାର ଘୋର କଠୋର ଲାଗତ ମହି ପର୍ୟୋ ।
ଦସ ବଦନ ସୋନିତ ସ୍ରବତ ପୁନି ସଂଭାରି ଧାୟୋ ରିସ ଭର୍ୟୋ ॥
ଦ୍ୱୌ ଭିରେ ଅତିବଲ ମଲ୍ଲଜୁଦ୍ଧ ବିରୁଦ୍ଧ ଏକୁ ଏକହି ହନୈ ।
ରଘୁବୀର ବଲ ଦର୍ପିତ ବିଭୀଷନୁ ଘାଲି ନହିଁ ତା କହୁଁ ଗନୈ ॥

---

ରେ ଅଭାଗ୍ୟ, ଜଡ ମନ୍ଦ ଅଧମ କୁବୁଦ୍ଧେ । ହୁଇଁଲୁ ତୁ ସୁର ନର ନାଗଙ୍କ ବିରୁଦ୍ଧେ ॥
ସାଦରେ ସଦାଶିବଙ୍କୁ ଶିର ଚଢାଇଲୁ । ଏକ ଏକ ବଦଳରେ ଅସଂଖ୍ୟ ପାଇଲୁ ॥୩॥
ତେଣୁ ଏ ପର୍ଯ୍ୟନ୍ତ ଖଳ ବଞ୍ଚିଅଛୁ, ଖଳ । ଏବେ ତୋ ଶିର ଉପରେ ନାଚଲାଣି କାଳ ॥
ରାମ ବିମୁଖ ସମ୍ପଦ ଇଚ୍ଛା କରୁ, ମୂଢ । ଏହା କହି ହୃଦେ କଲେ ଗଦାଘାତ ଦୃଢ ॥୪॥

ବକ୍ଷ ଉପରେ ଘୋର ଗଦାଘାତ କଠୋର ଲାଗନ୍ତେ ମହୀରେ ପଡ଼ିଲା ।
ଦଶମୁଖୁ ରୁଧିର ବହନ୍ତେ ଦଶଶିର ସମ୍ଭାଳି ସରୋଷେ ଧାଇଁଲା ।
ମଲ୍ଲ ଯୁଦ୍ଧ ଦୁହେଁ କରନ୍ତି, ଏକକୁ ଆରେକ ମାରନ୍ତି,
ରାମଙ୍କ ବଳ ପାଇ ତା' ମାତ୍ର ନ ଗଣଇ ଗର୍ବିତ ବିଭୀଷଣ ଅତି ॥

---

ଶରଣାଗତର ଦୁଃଖ-ବିନାଶ ମୋର ପଣ ।' ଏହା ବିଚାରି ସେ ବିଭୀଷଣଙ୍କୁ ପଛରେ ରଖିନେଲେ ଏବଂ ସମ୍ମୁଖକୁ ଆସି ନିଜେ ଉକ୍ତ ଶକ୍ତି ସହନ କରିନେଲେ ॥୧॥ ଶକ୍ତିର ଆଘାତ ଯୋଗେ ତାଙ୍କର ଟିକିଏ ମୂର୍ଚ୍ଛା ହୋଇଗଲା । ପ୍ରଭୁ ତ ଲୀଳା ମାତ୍ର କରିଥିଲେ, କିନ୍ତୁ ଦେବତାମାନେ ତାହା ବୁଝି ନ ପାରି ବ୍ୟାକୁଳ ହୋଇପଡ଼ିଲେ । ପ୍ରଭୁ ଶାରୀରିକ କଷ୍ଟ ପାଇବାର ଦେଖି ବିଭୀଷଣ କ୍ରୁଦ୍ଧ ହେଲେ ଏବଂ ହାତରେ ଗଦା ଧରି ଦୌଡ଼ିଲେ ॥୨॥ ସେ କହିଲେ, "ଆରେ ଅଭାଗା ! ମୂର୍ଖ, ନୀଚ, ଦୁର୍ବୁଦ୍ଧି ! ତୁ ଦେବତା, ମନୁଷ୍ୟ, ମୁନି, ନାଗ ଆଦି ସମସ୍ତଙ୍କ ସହିତ ଶତ୍ରୁତା ଆଚରଣ କଲୁ । ତୁ ଆଦରରେ ଶିବଙ୍କ ସମ୍ମୁଖରେ ଶିର ବଳି ଦେଲୁ । ଏହା ଫଳରେ ଗୋଟିଏ ଗୋଟିଏ ବଦଳରେ କୋଟିଏ କୋଟିଏ ଶିର ପାଇଲୁ ॥୩॥ ଆରେ ଦୁଷ୍ଟ ! ସେଥିହେତୁ ତୁ ଏତେବେଳ ଯାଏଁ ବଞ୍ଚିଅଛୁ; କିନ୍ତୁ ଏବେ କାଳ ତୋ ମୁଣ୍ଡ ଉପରେ ନାଚଲାଣି । ଆରେ ମୂର୍ଖ ! ତୁ ରାମଙ୍କ ପ୍ରତି ବିମୁଖ ହୋଇ ସୁଖ-ସମ୍ପତ୍ତି ଚାହୁଁଛୁ ?" ଏହା କହି ବିଭୀଷଣ ରାବଣର ବକ୍ଷର ମଧ୍ୟ ସ୍ଥଳରେ ଗଦା ପ୍ରହାର କଲେ ॥୪॥ ଛନ୍ଦ —ବକ୍ଷର ମଧ୍ୟ-ସ୍ଥଳରେ ଗଦାର ଘୋର ଓ କଠୋର ପ୍ରହାର ବାଜିବା ମାତ୍ରେ ରାବଣ ଭୂମି ଉପରେ ଖସି ପଡ଼ିଲା । ତାହାର ଦଶ ମୁଖରୁ ରକ୍ତ ବୋହିବାକୁ ଲାଗିଲା । ସେ ନିଜକୁ ପୁଣି ସମ୍ଭାଳି କ୍ରୋଧରେ

ଉମା ବିଭୀଷନୁ ରାବନହି ସନ୍ମୁଖ ଚିତଵ କି କାଉ ।
ସୋ ଅବ ଭିରତ କାଲ ଜ୍ୟୋଁ ଶ୍ରୀ ରଘୁବୀର ପ୍ରଭାଉ ॥୯୪॥

ଦେଖା ଶ୍ରମିତ ବିଭୀଷନୁ ଭାରୀ । ଧାୟଉ ହନୂମାନ ଗିରି ଧାରୀ ॥
ରଥ ତୁରଂଗ ସାରଥୀ ନିପାତା । ହୃଦୟ ମାଝ ତେହି ମାରେସି ଲାତା ॥୧॥
ଠାଢ଼ ରହା ଅତି କଂପିତ ଗାତା । ଗୟଉ ବିଭୀଷନୁ ଜହଁ ଜନତ୍ରାତା ॥
ପୁନି ରାବନ କପି ହତେଉ ପଚାରୀ । ଚଲେଉ ଗଗନ କପି ପୂଁଛ ପସାରୀ ॥୨॥
ଗହିସି ପୂଁଛ କପି ସହିତ ଉଡ଼ାନା । ପୁନି ଫିରି ଭିରେଉ ପ୍ରବଲ ହନୁମାନା ॥
ଲରତ ଅକାସ ଜୁଗଲ ସମ ଜୋଧା । ଏକହି ଏକୁ ହନତ କରି କ୍ରୋଧା ॥୩॥

---

ଗିରିଜା ! ରାବଣ ଆଗେ ବିଭୀଷଣ ଚାହିଁ କି ପାରନ୍ତା କେବେ ?
ଶ୍ରୀ ରଘୁବୀରଙ୍କ ପ୍ରତାପେ, ଅନ୍ତକ ସମାନ ଲଢେ ସେ ଏବେ ॥୯୪॥

ବିଲୋକିଣ ଶ୍ରମ-କ୍ଳାନ୍ତ ବିଭୀଷଣେ ଭାରି । ଧାଇଁଲା ସତ୍ୱର ହନୁମାନ ଗିରିଧାରୀ ॥
ରଥ ସାରଥି ତୁରଙ୍ଗ କରିଣ ସଂହାର । ଗୋଇଠା ମାରିଲା ବକ୍ଷ ସ୍ଥଳରେ ତାହାର ॥୧॥
ଛିଡ଼ା ରାବଣ କମ୍ପିତ କଳେବର ଅତି । ଗଲା ଜହୁଁ ବିଭୀଷଣ ଜନତ୍ରାତା କତି ॥
ପୁଣି ରାବଣ କପିଙ୍କୁ ଆହ୍ୱାନ ମାରିଲା । କପି ଲାଞ୍ଜ ଲମ୍ବା କରି ଗଗନେ ଚଳିଲା ॥୨॥
ଧରିଣ ପୁଚ୍ଛ ଉଡ଼ିଲା କପି ସଙ୍ଗତରେ । ପ୍ରବଲ ପାବନି ପୁଣି ଯୁଝେ ଆକାଶରେ ॥
ନଭ ପଥେ ସମ ଯୋଦ୍ଧା ଉଭୟେ ଯୁଝନ୍ତି । ଏକ୍କୁ ଏକ କ୍ରୋଧ କରି ପ୍ରହାର କରନ୍ତି ॥୩॥

---

ପରିପୂର୍ଣ୍ଣ ହୋଇ ଦୌଡ଼ିଲା । ଉଭୟ ମହାବଳୀ ଯୋଦ୍ଧା ପରସ୍ପର ସହିତ ଲଢେଇରେ ଲାଗିଗଲେ ଏବଂ ମଲ୍ଲ-ଯୁଦ୍ଧରେ ପରସ୍ପରର ବିରୋଧୀ ହୋଇ ପରସ୍ପରକୁ ଆଘାତ କରିବାକୁ ଲାଗିଲେ । ଶ୍ରୀ ରଘୁବୀରଙ୍କ ବଳରେ ଗର୍ବିତ ବିଭୀଷଣ ରାବଣ ପରି ଜଗଦ୍‌ବିଜୟୀ ଯୋଦ୍ଧାଙ୍କୁ ପାସଙ୍ଗରେ ସୁଦ୍ଧା ପକାଉ ନ ଥା'ନ୍ତି ।' ଦୋହା —ଶିବ କହନ୍ତି, "ହେ ଉମା ! ବିଭୀଷଣ କଣ କେବେ ରାବଣ ଆଗରେ ଆଖି ଉଠାଇ ଚାହିଁ ପାରୁଥା'ନ୍ତେ ? କିନ୍ତୁ ଏବେ ସେ କାଳ ପରି ତା ସହିତ ଲଢୁଅଛନ୍ତି । ଏହା କେବଳ ଶ୍ରୀ ରଘୁବୀରଙ୍କର ପ୍ରଭାବ ।" ॥ ୯୪ ॥ ଚୌପାଈ —ବିଭୀଷଣଙ୍କୁ ଅତିଶୟ କ୍ଳାନ୍ତ ହୋଇ ପଡ଼ିଥିବାର ଦେଖି ହନୁମାନ୍ ପର୍ବତ ଧାରଣ କରି ଦୌଡ଼ିଲେ । ସେ ସେହି ପର୍ବତରେ ରାବଣର ରଥ, ଅଶ୍ୱ ଓ ସାରଥିଙ୍କୁ ସଂହାର କରି ପକାଇଲେ ଏବଂ ତାହାର ଛାତିରେ ଗୋଇଠା ମାରିଲେ ॥ ୧ ॥ ରାବଣ ଛିଡ଼ା ହୋଇ ରହିଲା । କିନ୍ତୁ ତାହାର ଶରୀର ଅତି ମାତ୍ରାରେ କମ୍ପିବାକୁ ଲାଗିଲା । ଭକ୍ତଜନ-ତାରକ ଶ୍ରୀରାମ ଯେଉଁଠାରେ ଥିଲେ, ବିଭୀଷଣ ସେହିଠାକୁ ଗଲେ । ପୁଣି ରାବଣ ଆହ୍ୱାନ ଦେଇ ହନୁମାନ୍‌ଙ୍କୁ ଆଘାତ କଲା । ସେ ଲାଞ୍ଜ ବିସ୍ତାର କରି ଆକାଶ ମଧ୍ୟକୁ ଚାଲିଗଲେ ॥ ୨ ॥ ରାବଣ ତାହାର ଲାଞ୍ଜ ଧରି ପକାଇଲା, ହନୁମାନ୍ ତାହାକୁ ସଙ୍ଗରେ ନେଇ ଉପରେ ଉଡ଼ିଲେ । ପୁଣି ଫେରି ମହାବଳୀ ହନୁମାନ୍ ତାହା ସହିତ ଲଢ଼ିଲେ । ଦୁଇ ସମାନ ଯୋଦ୍ଧା ଆକାଶରେ ପରସ୍ପର ସହିତ

ସୋହହିଁ ନଭ ଛଲ ବଲ ବହୁ କରହୀଂ । କଜ୍ଜଲଗିରି ସୁମେରୁ ଜନୁ ଲରହୀଂ ॥
ବୁଧିବଲ ନିସିଚର ପରଇ ନ ପାରେଉ । ତବ ମାରୁତସୁତ ପ୍ରଭୁ ସଂଭାରେଉ ॥୪॥

ସଂଭାରି ଶ୍ରୀ ରଘୁବୀର ଧୀର ପଚାରି କପି ରାବନୁ ହନ୍ୟୋ ।
ମହି ପରତ ପୁନି ଉଠି ଲରତ ଦେବନ୍ହ ଜୁଗଲ କହୁଁ ଜୟ ଜୟ ଭନ୍ୟୋ ॥
ହନୁମନ୍ତ ସଂକଟ ଦେଖି ମର୍କଟ ଭାଲୁ କ୍ରୋଧାତୁର ଚଲେ ।
ରନମତ୍ତ ରାବନ ସକଲ ସୁଭଟ ପ୍ରଚଣ୍ଡ ଭୁଜବଲ ଦଲମଲେ ॥

ତବ ରଘୁବୀର ପଚାରେ ଧାଏ କୀସ ପ୍ରଚଣ୍ଡ ।
କପି ବଲ ପ୍ରବଲ ଦେଖି ତେହିଁ କୀନ୍ହ ପ୍ରଗଟ ପାଷଣ୍ଡ ॥୯୫॥

ଅନ୍ତରଧାନ ଭୟଉ ଛନ ଏକା । ପୁନି ପ୍ରଗଟେ ଖଲ ରୂପ ଅନେକା ॥
ରଘୁପତି କଟକ ଭାଲୁ କପି ଜେତେ । ଜହଁ ତହଁ ପ୍ରଗଟ ଦସାନନ ତେତେ ॥୧॥

---

ବହୁ ଛଲ ବଲ କରି ନିଶାଚର ଗଗନେ । କଜ୍ଜଳ ଗିରି ସୁମେରୁ ଲଢନ୍ତି ଯେସନେ ॥
ବୁଦ୍ଧି ବଳେ ରାକ୍ଷସକୁ କେହି ନ ପାରନ୍ତି । ତହୁଁ ପବନତନୟ ପ୍ରଭୁଙ୍କୁ ସ୍ମରନ୍ତି ॥୪॥

ସ୍ମରଣ ରଘୁବୀର ପବନସୁତ ଧରି ମାରନ୍ତି ସେ ଲଙ୍କପତିକୁ ।
ଧରଣୀରେ ପଡନ୍ତି, ପୁଣି ଉଠି ଲଢନ୍ତି, ସୁରେ ପ୍ରଶଂସନ୍ତି ଦେବଙ୍କୁ ।
ସଂକଟ ଦେଖି ମାରୁତିର, ସେନେ ଧାଇଁଲେ କପି ବୀର,
ପ୍ରଚଣ୍ଡେ ଭୁଜବଳେ ଯୋଦ୍ଧାଙ୍କୁ ଦଳି ମର୍ଦ୍ଦିଲ ସମରମତ୍ତ ଦଶଶିର ॥

ରାମ ହୁଙ୍କାରରେ ବୀରଙ୍କୁ ଶୁଣନ୍ତେ ଧାଇଁଲେ କପି ପ୍ରଚଣ୍ଡେ ।
ମର୍କଟଙ୍କ ବଳ ଦେଖି ସେ ବହୁଳ ପ୍ରକଟ କଲା ପାଷଣ୍ଡେ ॥୯୫॥

ଅନ୍ତର୍ଦ୍ଧାନ ହୋଇଗଲା କ୍ଷଣ ମାତ୍ର ଏକ । ପୁଣି ପ୍ରକଟିଲା ରୂପ ଧରିଣ ଅନେକ ॥
ରଘୁପତି ବାହିନୀରେ ଭଲ୍ଲୁ କପି ଯେତେ । ଯେତେ ତେତେ ଦେଖାଗଲେ ଦଶାନନ ତେତେ ॥୧॥

---

ଲଢୁଥା'ନ୍ତି ଏବଂ ପରସ୍ପରକୁ କ୍ରୋଧରେ ଆହ୍ୱାନ କରୁଥା'ନ୍ତି । ରାକ୍ଷସ ବହୁ ଛଳବଳ-କୌଶଳ କରି ଆକାଶରେ ଲଢନ୍ତି ହେଲେ ଏପରି ଶୋଭା ପାଉଥା'ନ୍ତି, ସତେଅବା କଜ୍ଜଳଗିରି ଓ ସୁମେରୁ ପର୍ବତ ପରସ୍ପର ସହିତ ଲଢୁ ଅଛନ୍ତି । ଯେତେବେଳେ ବୁଦ୍ଧି ଓ ବଳଦ୍ୱାରା ରାବଣକୁ ପକାଇବାର ଚେଷ୍ଟା କରି ହେଲା ସେ ପଡ଼ନ୍ତି ନାହିଁ, ସେତେବେଳେ ମାରୁତି ହନୁମାନ୍ ପ୍ରଭୁଙ୍କୁ ସ୍ମରଣ କଲେ ॥୪॥ ଛନ୍ଦ —ଶ୍ରୀ ରଘୁବୀରଙ୍କୁ ସ୍ମରଣ କରି ଧୀର ହନୁମାନ ଆହ୍ୱାନ-ପୂର୍ବକ ରାବଣକୁ ଆଘାତ କଲେ । ସେ ଦୁହେଁ ପୃଥିବୀ ଉପରେ ପଡ଼ୁଥା'ନ୍ତି, ପୁଣି ଉଠି ଲଢୁଥା'ନ୍ତି । ଦେବତାମାନେ ଉଭୟଙ୍କର 'ଜୟ ଜୟ' ଧ୍ୱନି କରିବାରେ ଲାଗିଥା'ନ୍ତି । ହନୁମାନଙ୍କ ଉପରେ ସଙ୍କଟ ପଡ଼ିଥିବାର ଦେଖି ବାନର ଓ ଭଲ୍ଲୁକମାନେ କ୍ରୋଧାତୁର ହୋଇ ଧାଇଁଲେ । କିନ୍ତୁ ରଣ-ମଦରେ ଉନ୍ମତ୍ତ ରାବଣ ସମସ୍ତ ଯୋଦ୍ଧାଙ୍କୁ ଆପଣାର ପ୍ରଚଣ୍ଡ ବାହୁବଳରେ ଦଳି ପକାଇଲା ॥

ଦେଖେ କପିନ୍ହ ଅମିତ ଦସସୀସା । ଜହଁ ତହଁ ଭଜେ ଭାଲୁ ଅରୁ କୀସା ॥
ଭାଗେ ବାନର ଧରହିଁ ନ ଧୀରା । ତ୍ରାହି ତ୍ରାହି ଲଛିମନ ରଘୁବୀରା ॥୨॥
ଦହଁ ଦିସି ଧାୱହିଁ କୋଟିନ୍ହ ରାବନ । ଗର୍ଜହିଁ ଘୋର କଠୋର ଭୟାବନ ॥
ଡରେ ସକଲ ସୁର ଚଲେ ପରାଈ । ଜୟ କୈ ଆସ ତଜହୁ ଅବ ଭାଈ ॥୩॥
ସବ ସୁର ଜିତେ ଏକ ଦସକଂଧର । ଅବ ବହୁ ଭଏ ତକହୁ ଗିରି କଂଦର ॥
ରହେ ବିରଂଚି ସଂଭୁ ମୁନି ଗ୍ୟାନୀ । ଜିନ୍ହ ଜିନ୍ହ ପ୍ରଭୁ ମହିମା କଛୁ ଜାନୀ ॥୪॥

ଜାନା ପ୍ରତାପ ତେ ରହେ ନିର୍ଭୟ କପିନ୍ହ ରିପୁ ମାନେ ଫୁରେ ।
ଚଲେ ବିଚଲି ମର୍କଟ ଭାଲୁ ସକଲ କୃପାଲ ପାହି ଭୟାତୁରେ ॥
ହନୁମନ୍ତ ଅଂଗଦ ନୀଲ ନଲ ଅତିବଲ ଲରତ ରନ ବାଁକୁରେ ।
ମର୍ଦହିଁ ଦସାନନ କୋଟି କୋଟିନ୍ହ କପଟ ଭୂ ଭଟ ଅଂକୁରେ ॥

---

ବିଲୋକି କପି ନିକର ବହୁ ଦଶାନନ । ପଳାଇ ଚଳିଲେ ବୀର ସକଳେ ବହନ ॥
ପଳାନ୍ତି କପି ସମୂହ ଧୈର୍ଯ୍ୟ ନ ଧରନ୍ତି । 'ତ୍ରାହି ତ୍ରାହି ଲକ୍ଷ୍ମଣ ପ୍ରଭୁ ରଘୁପତି' ॥୨॥
ଦଶଦିଗେ କୋଟି କୋଟି ଧାଆନ୍ତି ରାବଣ । ଗର୍ଜନ କରନ୍ତି ଅତି କଠୋର ଭୀଷଣ ॥
ଭୟରେ ବିବୁଧ ବୃନ୍ଦ ଚଳିଲେ ପଳାଇ । ଜୟ ଅଭିଳାଷ ଏବେ ପରିହର, ଭାଇ ॥୩॥
ଜିଣିଲା ଏକ ରାବଣ ସକଳ ଅମର । ଏବେ ବହୁ ହେଲେ, ଗିରି ଗୁହା ଆଶ୍ରା କର ॥
ରହିଲେ ନିଭୟେ ବିଧି ଶମ୍ଭୁ ମୁନି ଜ୍ଞାନୀ । ପ୍ରଭୁଙ୍କ ମହିମା କିଛୁ ଯେହୁ ଥିଲେ ଜାଣି ॥୪॥

ମହିମା ଯେ ଜାଣନ୍ତି ନିର୍ଭୟେ ସେ ରହନ୍ତି, ମର୍କଟ ସତ୍ୟ ବିଶ୍ୱସିଲେ ।
ଭୟରେ ବିଚଳିତ ଭାଲୁ କପି ସମସ୍ତ 'ତ୍ରାହି କୃପାଳୁ' ଡାକିଲେ ।
ଅଙ୍ଗଦ ପ୍ରଭଞ୍ଜନ-ସୁତ, ନଳ ନୀଳାଦି ବଳଯୁତ,
କୋଟି ଭଟ ରାବଣ-ଅଙ୍କୁର ମରଦନ କରନ୍ତି, କପଟ-ଭୂଜାତ ॥

---

ଦୋହା —ସେତେବେଳେ ଶ୍ରୀ ରଘବୀରଙ୍କ ଆହ୍ୱାନ-ଶ୍ରମ ପ୍ରଚଣ୍ଡ ବୀର ବାନରମାନେ ଧାଇଁଲେ । ବାନରମାନଙ୍କ ପ୍ରବଳ ଦଳକୁ ଦେଖି ରାବଣ ମାୟା ପ୍ରକାଶ କଲା ॥ ୯୫ ।
ଚୌପାଇ —କ୍ଷଣକ ନିମନ୍ତେ ସେ ଅଦୃଶ୍ୟ ହୋଇଗଲା । ପୁଣି ସେହି ଦୁଷ୍ଟ ଅନେକ ରୂପ ପ୍ରକାଶ କଲା । ଶ୍ରୀ ରଘୁନାଥଙ୍କ ସେନା ମଧ୍ୟରେ ଯେତେ ଭଲ୍ଲୁକ ଓ ବାନର ଥିଲେ, ଚତୁର୍ଦ୍ଦିଗରେ ସେତିକି ସଂଖ୍ୟାରେ ରାବଣ ଆବିର୍ଭୂତ ହୋଇଗଲେ ॥ ୧ ॥ ବାନରମାନେ ଅଗଣିତ ରାବଣ ଦେଖିଲେ । ଭଲ୍ଲୁକ ଓ ବାନରମାନେ ଏଣେତେଣେ ଡରିକି ପଳାଇଗଲେ । ବାନରମାନେ ଧୈର୍ଯ୍ୟ ଧରିପାରୁ ନ ଥା'ନ୍ତି । "ହେ ଲକ୍ଷ୍ମଣ ! ହେ ରଘୁବୀର ! ରକ୍ଷା କରନ୍ତୁ, ରକ୍ଷା କରନ୍ତୁ"—ଏହିପରି ଚିତ୍କାର କରି ସେମାନେ ପଳାଇ ଯାଉଥା'ନ୍ତି ॥ ୨ ॥ ଦଶଦିଗରେ କୋଟି କୋଟି ରାବଣ ଦୌଡୁଥା'ନ୍ତି ଏବଂ ଅତି ଘୋର କଠୋର ଓ ଭୟାନକ ଗର୍ଜ୍ଜନ କରୁଥା'ନ୍ତି । ସମସ୍ତ ଦେବତା ଡରିଗଲେ

ସୁର ବାନର ଦେଖେ ବିକଲ ହଁସ୍ୟୋ କୋସଲାଧୀସ ।
ସଜି ସାରଂଗ ଏକ ସର ହତେ ସକଲ ଦସସୀସ ॥୯୬॥
ପ୍ରଭୁ ଛନ ମହୁଁ ମାୟା ସବ କାଟୀ । ଜିମି ରବି ଉଏଁ ଜାହିଁ ତମ ଫାଟୀ ॥
ରାବନୁ ଏକୁ ଦେଖି ସୁର ହରଷେ । ଫିରେ ସୁମନ ବହୁ ପ୍ରଭୁ ପର ବରଷେ ॥୧॥
ଭୁଜ ଉଠାଇ ରଘୁପତି କପି ଫେରେ । ଫିରେ ଏକ ଏକନ୍ହ ତବ ଟେରେ ॥
ପ୍ରଭୁ ବଲୁ ପାଇ ଭାଲୁ କପି ଧାଏ । ତରଲ ତମକି ସଂଜୁଗ ମହି ଆଏ ॥୨॥
ଅସ୍ତୁତି କରତ ଦେବତନ୍ହି ଦେଖେଁ । ଭୟଉଁ ଏକ ମୈଁ ଇନ୍ହ କେ ଲେଖେଁ ॥
ସଠହୁ ସଦା ତୁମ୍ହ ମୋର ମରାୟଲ । ଅସ କହି କୋପି ଗଗନ ପର ଧାୟଲ ॥୩॥

---

ସୁର ବାନରଙ୍କୁ ବିଲୋକି ବିକଳ ରଘୁନାୟକ ହସିଲେ ।
ସାଜି ଶରାସନ ସକଳ ରାବଣ ନିମେଷ ମଧ୍ୟେ ହଣିଲେ ॥୯୬॥
ପ୍ରଭୁ କ୍ଷଣକରେ ସବୁ ମାୟା ଦେଲେ କାଟି । ତପନ ଉଦୟେ ଯେସନେ ତମ ଯାଏ ଫାଟି ॥
ବିଲୋକି ରାବଣ ଏକ ହରଷେ ଅମରେ । ସୁମନ ବୃଷ୍ଟି କଲେ ପ୍ରଭୁଙ୍କ ଉପରେ ॥୧॥
ରଘୁପତି ଭୁଜ ତୋଳି କପିଙ୍କୁ ଡାକନ୍ତେ । ଏକୁ ଏକ ଡାକ ଡାକି ଫେରିଲେ ସମସ୍ତେ ॥
ପ୍ରଭୁ ବଳ ପାଇ ଋକ୍ଷ ମର୍କଟେ ଧାଇଁଲେ । ଚମକି ଚଞ୍ଚଳ ରଣ ଭୂମିକୁ ଆଇଲେ ॥୨॥
ବିଲୋକି ସେ ଦେବତାଙ୍କୁ ପ୍ରଶଂସୁଥିବାରେ । ବୋଲେ, ଏକାକୀ ହେଲି ମୁଁ ଏହାଙ୍କ ବିଚାରେ ॥
ଶଠ, ସଦା ମାତ୍ର ତୁମ୍ଭେ ଥାଇଛ ମୋ ହସ୍ତେ । ଏହା କହି ଧାଇଁଲା ସେ ଅନ୍ତରୀକ୍ଷ ପଥେ ॥୩॥

---

ଏବଂ "ହେ ଭାଇ ! ଏବେ ଜୟର ଆଶା ଛାଡ଼ିଦିଅ ।"—ଏହିପରି କହି ଦୌଡ଼ି ପଳାଇଲେ ॥୩॥ "ଜଣେ ମାତ୍ର ରାବଣ ସମସ୍ତ ଦେବତାଙ୍କୁ କ୍ଲାନ୍ତି ପକାଉଥିଲା । ଏବେ ତ ବହୁତ ରାବଣ ହୋଇଯାଇଛନ୍ତି । ଏହି ହେତୁ ବର୍ତ୍ତମାନ ପାହାଡ଼ର ଗୁମ୍ଫାମାନଙ୍କରେ ଆଶ୍ରୟ ନିଅ ।" କେବଳ ବ୍ରହ୍ମା ଶମ୍ଭୁ ଓ ଅନ୍ୟାନ୍ୟ ଜ୍ଞାନୀ ମୁନିମାନେ ପ୍ରଭୁଙ୍କର କିଛିକୁ ମହିମା ଜାଣିଥିବାରୁ ନିର୍ଭୟରେ ରହିଥାଆନ୍ତି ॥ ୪ ॥ ଛନ୍ଦ —ଯେଉଁମାନେ ପ୍ରଭୁଙ୍କ ପ୍ରତାପ ଜାଣିଥିଲେ, ସେମାନେ ନିର୍ଭୟରେ ଦୃଢ଼ ହୋଇ ରହିଥା'ନ୍ତି । ବାନରମାନେ ବହୁ ଶତ୍ରୁ ରୂପେ ପରିଦୃଷ୍ଟ ଅନେକ ରାବଣର ରୂପଗୁଡ଼ିକୁ ସତ୍ୟ ମନେ କଲେ । ଏହି ହେତୁ ସମସ୍ତ ବାନର ଓ ଭଲ୍ଲୁକ ବିଚଳିତ ହୋଇ "ହେ କୃପାଳୁ ! ରକ୍ଷା କରନ୍ତୁ"-- ଚିତ୍କାର କରି ଭୟ ଯୋଗୁ ବ୍ୟାକୁଳ ହୋଇ ଦୌଡ଼ି ପଳାଇଲେ । ଅତି ବଳବାନ୍ ରଣଧୀର ହନୁମାନ୍, ଅଙ୍ଗଦ, ନୀଳ ଓ ନଳ ଲଢ଼ୁଥା'ନ୍ତି ଏବଂ କପଟ-ଭୂମିରୁ ଅଙ୍କୁର ରୂପେ ଉତ୍ପନ୍ନ କୋଟି କୋଟି ଯୋଦ୍ଧା-ରାବଣଙ୍କୁ ଦଳି ଦେଉଥା'ନ୍ତି । ଦୋହା .—ଦେବତା ଓ ବାନରମାନଙ୍କ ବ୍ୟାକୁଳତା ଦେଖି କୋଶଳ-ପତି ଶ୍ରୀରାମ ହସିଲେ ଏବଂ ଧନୁରେ ବାଣ ଚଢ଼ାଇ ସମସ୍ତ ମାୟା ରାବଣଙ୍କୁ ମାରି ପକାଇଲେ ॥ ୯୬ । ଚୌପାଈ — ସୂର୍ଯ୍ୟ ଉଦିତ ହେବା ମାତ୍ରେ ଅନ୍ଧକାରରାଶି ଫାଟିଗଲା ପରି ପ୍ରଭୁ କ୍ଷଣକ ମଧ୍ୟରେ ସମସ୍ତ ମାୟା କାଟି ପକାଇଲେ । ବର୍ତ୍ତମାନ ଗୋଟିଏ ମାତ୍ର ରାବଣଙ୍କୁ ଦେଖି

ହାହାକାର କରତ ସୁର ଭାଗେ । ଖଲହୁ ଜାହୁ କହଁ ମୋରେଁ ଆଗେ ॥
ଦେଖି ବିକଲ ସୁର ଅଂଗଦ ଧାୟୋ । କୂଦି ଚରନ ଗହି ଭୂମି ଗିରାୟୋ ॥୪॥

ଗହି ଭୂମି ପାରେ୍ୟା ଲାତ ମାରେ୍ୟା ବାଲିସୁତ ପ୍ରଭୁ ପହିଁ ଗୟୋ ।
ସଂଭାରି ଉଠି ଦସକଂଠ ଘୋର କଠୋର ରବ ଗର୍ଜତ ଭୟୋ ॥
କରି ଦାପ ଚାପ ଚଢ଼ାଇ ଦସ ସଂଧାନି ସର ବହୁ ବରଷଈ ।
କିଏ ସକଲ ଭଟ ଘାୟଲ ଭୟାକୁଲ ଦେଖି ନିଜ ବଲ ହରଷଈ ॥

ତବ ରଘୁପତି ରାବନ କେ ସୀସ ଭୁଜା ସର ଚାପ ।
କାଟେ ବହୁତ ବଢ଼େ ପୁନି ଜିମି ତୀରଥ କର ପାପ ॥୯୭॥

---

ହାହାକାର କରି ତହୁଁ ପଳାଇଲେ ଦେବେ । ମୂର୍ଖେ, କାହିଁ ଯାଅ ମୋର ସମ୍ମୁଖରୁ ଏବେ ॥
ଦେଖି ସୁରଙ୍କୁ ବିକଳ ଅଙ୍ଗଦ ଧାଇଁଲେ । ଡେଇଁ ପାଦ ଧରି ଧରଣୀରେ କଚାଡ଼ିଲେ ॥୪॥

ମହୀ ପକାଇ, ଲାତ ମାରିଣ ବାଳିସୁତ ପ୍ରଭୁଙ୍କ ନିକଟେ ଆଇଲା ।
ସମ୍ଭାଳିଣ ଆବର ଉଠି ଦଶକନ୍ଧର ଘୋର କଠୋର ଗରଜିଲା ।
ସନ୍ଧାନ ବାଣ ଚାପ ଦର୍ଶେ, ଅତ୍ୟନ୍ତ ଧପେ ସେ ବରଷେ,
କରି କରି ସକଳ ଆହତ ଭୟାକୁଳ ସ୍ୱବଳ ବିଲୋକ ହରଷେ ॥
ତହୁଁ ରଘୁବୀର ଦଶବଦନର ଭୁଜ ଶିର ଶର ଚାପ ।
କାଟନ୍ତେ ବର୍ଦ୍ଧିତ ହୁଅନ୍ତି ବହୁତ, ଯେସନେ ତୀର୍ଥରେ ପାପ ॥୯୭॥

---

ଦେବତାମାନେ ଆନନ୍ଦିତ ହେଲେ ଏବଂ ସେମାନେ ଲେଉଟି ପ୍ରଭୁଙ୍କ ଉପରେ ବହୁତ ପୁଷ୍ପ ବୃଷ୍ଟି କଲେ ॥ ୧ ॥ ଶ୍ରୀ ରଘୁନାଥ ବାହୁ ଉଠାଇ ସମସ୍ତ ବାନରଙ୍କୁ ଫେରାଇଲେ । ସେମାନେ ପରସ୍ପରକୁ ଡାକହାକ କେଉଟି ଆସିଲେ । ପ୍ରଭୁଙ୍କ ବଳ ପାଇ ଭଲ୍ଲୁକ ଓ ବାନରମାନେ ଧାଇଁ ପଡ଼ିଲେ । ଶୀଘ୍ର ଡେଇଁ ସେମାନେ ରଣଭୂମି ମଧ୍ୟକୁ ଆସିଗଲେ ॥୨॥ ଦେବତାମାନେ ଶ୍ରୀରାମଙ୍କୁ ସ୍ତୁତି କରୁଥିବାର ଦେଖି ରାବଣ ଭାବିଲା "ଏମାନଙ୍କ ବିଚାରରେ ମୁଁ ଜଣେ ହୋଇଗଲି, କିନ୍ତୁ ମୁଁ ଜଣେ ଯେ ଏମାନଙ୍କ ନିମନ୍ତେ ଯଥେଷ୍ଟ, ଏମାନେ ତାହା ଜାଣିପାରୁ ନାହାନ୍ତି । ସେ କହିଲା, "ଆରେ ମୂର୍ଖମାନେ ! ତୁମେମାନେ ତ ସଦାସର୍ବଦା ମୋ ହାତର ମାଡ଼ ଖାଅ ।" ଏପରି କହି ସେ କ୍ରୋଧ କରି ଆକାଶ-ମାର୍ଗରେ ଦେବତାମାନଙ୍କ ଆଡ଼କୁ ଧାଇଁଲା ॥ ୩ ॥ ଦେବତାମାନେ ହାହାକାର କରି ପଳାଇବାକୁ ଲାଗିଲେ । ରାବଣ କହିଲା, "ଆରେ ଦୁଷ୍ଟମାନେ ! ମୋ ଆଗରୁ କୁଆଡ଼େ ଯାଇପାରିବ ?" ଦେବତାମାନଙ୍କ ବ୍ୟାକୁଳତା ଦେଖି ଅଙ୍ଗଦ ଦୌଡ଼ିଲେ ଏବଂ ଡେଇଁପଡ଼ି ରାବଣର ପାଦ ଧରି ତାହାକୁ ପୃଥିବୀ ଉପରେ ପକାଇଦେଲେ ॥ ୪ ॥ ଛନ୍ଦ '—ବାଳିପୁତ୍ର ଅଙ୍ଗଦ ତାହାକୁ ଧରି ପୃଥିବୀ ଉପରେ ପକାଇ ଦେଲେ ଏବଂ ଗୋଇଠା ମାରିଲେ । ତଦନନ୍ତର ସେ ପ୍ରଭୁଙ୍କ ପାଖକୁ ଚାଲିଗଲେ । ରାବଣ ସମ୍ଭାଳି ଉଠିଲା ଏବଂ ଅତି

ସିର ଭୁଜ ବାଢ଼ି ଦେଖି ରିପୁ କେରୀ । ଭାଲୁ କପିନ୍ହ ରିସ ଭଈ ଘନେରୀ ॥
ମରତ ନ ମୂଢ଼ କଟେହୁଁ ଭୁଜ ସୀସା । ଧାଏ କୋପି ଭାଲୁ ଭଟ କୀସା ॥୧॥
ବାଲିତନୟ ମାରୁତି ନଲ ନୀଲା । ବାନରରାଜ ଦୁବିଦ ବଲସୀଲା ॥
ବିଟପ ମହୀଧର କରହିଁ ପ୍ରହାରା । ସୋଇ ଗିରି ତରୁ ଗହି କପିନ୍ହ ସୋ ମାରା ॥୨॥
ଏକ ନଖନ୍ହି ରିପୁ ବପୁଷ ବିଦାରୀ । ଭାଗି ଚଲହିଁ ଏକ ଲାତନ୍ହ ମାରୀ ॥
ତବ ନଲ ନୀଲ ସିରନ୍ହି ଚଢ଼ି ଗୟଊ । ନଖନ୍ହି ଲିଲାର ବିଦାରତ ଭୟଊ ॥୩॥
ରୁଧିର ଦେଖି ବିଷାଦ ଉର ଭାରୀ । ତିନ୍ହହି ଧରନ କହୁଁ ଭୁଜା ପସାରୀ ॥
ଗହେ ନ ଜାହିଁ କରନ୍ହି ପର ଫିରହୀଁ । ଜନୁ ଜୁଗ ମଧୁପ କମଲବନ ଚରହୀଁ ॥୪॥

---

ବିବର୍ଦ୍ଧିତ ବାହୁ ଶିର ବିଲୋକି ଶତ୍ରୁର । ଋକ୍ଷ କପି ଅତି କ୍ରୋଧେ ହୋଇଲେ ଆତୁର ॥
ଶିର ଭୁଜ କାଟିଲେହେଁ ନ ମରଇ ଶଠ । କହି ସରୋଷେ ଧାଇଁଲେ ଋକ୍ଷ ମର୍କଟ ॥୧॥
ବାଳି ତନୟ ମାରୁତି ନଳ ଆଉ ନୀଳ । ବାନରରାଜ ଦ୍ୱିବିଦ ଆଦି ବଳଶୀଳ ॥
ବିଟପ ଶଇଳ ପ୍ରହାରନ୍ତି ଆଣି କରି । କପିଙ୍କୁ ସେ ମାରେ ସେହି ଗିରି ତରୁ ଧରି ॥୨॥
କେହି ନଖ ଦ୍ୱାରା ଶତ୍ରୁ ବପୁ ବିଦାରନ୍ତି । ଗୋଇଠା ମାରି ଅନ୍ୟ କେ ପଳାଇ ଚଳନ୍ତି ॥
ତହୁଁ ନଳ ନୀଳ ଶିର ଉପରେ ଚଢ଼ିଣ । ନଖରେ ଲଲାଟ ତାର କଲେ ବିଦାର୍ଣ୍ଣ ॥୩॥
ରୁଧିର ଅବଲୋକନ୍ତେ ଦୁଃଖିତ ସୁରାରି । ତାଙ୍କୁ ଧରିବାକୁ ରହେଁ ସ୍ୱଭୁଜ ପ୍ରସାରି ॥
ଧରା ନ ଦିଅନ୍ତି ଶିର ଉପରେ ଭ୍ରମନ୍ତି । ଯେହ୍ନେ ମଧୁପ ଦା ପଦ୍ମ ବନେ ବିଚରନ୍ତି ॥୪॥

---

ଭୟଙ୍କର କଠୋର ଶବ୍ଦରେ ଗର୍ଜ୍ଜନ କରିବାକୁ ଲାଗିଲା । ସେ ତହଁରେ ଦଶଗୋଟି ଧନୁରେ ଗୁଣ ଚଢ଼ାଇଲା ଏବଂ ସେମାନଙ୍କ ଉପରେ ବହୁତ ବାଣ ଯୋଖି ବୃଷ୍ଟି କରିବାକୁ ଲାଗିଲା । ସେ ସମସ୍ତ ଯୋଦ୍ଧାଙ୍କୁ ଆହତ ଓ ଭୟ-ବ୍ୟାକୁଳ କରିଦେଲା ଏବଂ ନିଜର ବଳ ଦେଖି ମନରେ ଆନନ୍ଦ ଲାଭ କଲା ॥ ଦୋହା —ତତ୍ପରେ ଶ୍ରୀ ରଘୁନାଥ ରାବଣର ଶିର, ବାହୁ, ବାଣ ଓ ଧନୁ କାଟି ପକାଇଲେ । କିନ୍ତୁ ତୀର୍ଥରେ ପାପ କଲେ, ତାହା ଯେପରି ବହୁଗୁଣରେ ବୃଦ୍ଧି ପାଏ, ସେହିପରି ରାବଣର ଶିର, ବାହୁ, ଶର ଓ ଧନୁ ଆଦି ପୁଣି ବହୁତ ଗୁଣରେ ବଢ଼ିଗଲା ॥ ୯୨ ॥ ଚୌପାଇ —ଶତ୍ରୁର ଶିର ଓ ବାହୁ ଆଦି ବଢ଼ିବାର ଦେଖି ଭଲ୍ଲୁକ ଓ ବାନରମାନଙ୍କ ମନରେ ଅତ୍ୟନ୍ତ କ୍ରୋଧ ଜାତ ହେଲା । ଏହି ମୂର୍ଖ ବାହୁ ଓ ଶିର କଟିଲେ ସୁଦ୍ଧା ମରୁନାହିଁ—ଏହା କହି ଭଲ୍ଲୁକ ଓ ବାନର ଯୋଦ୍ଧାମାନେ କ୍ରୋଧ କରି ଧାଇଁଲେ ॥୧॥ ବାଳିପୁତ୍ର ଅଙ୍ଗଦ, ମାରୁତି ହନୁମାନ୍, ନଳ, ନୀଳ, ବାନରରାଜ ସୁଗ୍ରୀବ ଓ ଦ୍ୱିବିଦ ଆଦି ବଳବାନ୍ ବୀରମାନେ ତାହା ଉପରେ ବୃକ୍ଷ ଓ ପର୍ବତମାନଙ୍କ ଦ୍ୱାରା ପ୍ରହାର କରୁଥା'ନ୍ତି । ସେ ସେହି ପର୍ବତ ଓ ବୃକ୍ଷମାନଙ୍କୁ ଧରି ତଦ୍ଦ୍ୱାରା ବାନରମାନଙ୍କୁ ମାରୁଥାଏ ॥ ୨ ॥ କୌଣସି ଗୋଟିଏ ବାନର ନଖରେ ଶତ୍ରୁ-ଶରୀରକୁ ବିଦାରି ପଳାଇ ଯାଉଥାଏ ତ ଆଉ କେହି ତାହାକୁ ଗୋଇଠା ମାରି ଚାଲିଯାଉଥାଏ । ତତ୍ପରେ ନଳ ଓ ନୀଳ ରାବଣର ମସ୍ତକ ଉପରେ

କୋପି କୂଦି ଦ୍ୱୌ ଧରେସି ବହୋରୀ । ମହି ପଟକତ ଭଜେ ଭୁଜା ମରୋରୀ ॥
ପୁନି ସକୋପ ଦସ ଧନୁ କର ଲୀନ୍ହେ । ସରନ୍ହି ମାରି ଘାୟଲ କପି କୀନ୍ହେ ॥୫॥
ହନୁମଦାଦି ମୁରୁଛିତ କରି ବଂଦର । ପାଇ ପ୍ରଦୋଷ ହରଷ ଦସକଂଧର ॥
ମୁରୁଛିତ ଦେଖି ସକଲ କପି ବୀରା । ଜାମବଂତ ଧାୟଉ ରନଧୀରା ॥୬॥
ସଂଗ ଭାଲୁ ଭୂଧର ତରୁ ଧାରୀ । ମାରନ ଲଗେ ପଚାରି ପଚାରୀ ॥
ଭୟଉ କ୍ରୁଦ୍ଧ ରାବନ ବଲବାନା । ଗହି ପଦ ମହି ପଟକଇ ଭଟ ନାନା ॥୭॥
ଦେଖି ଭାଲୁପତି ନିଜ ଦଲ ଘାତା । କୋପି ମାଝ ଉର ମାରେସି ଲାତା ॥୮॥

ଉର ଲାତ ଘାତ ପ୍ରଚଣ୍ଡ ଲାଗତ ବିକଲ ରଥ ତେ ମହି ପରା ।
ଗହି ଭାଲୁ ବୀସହୁଁ କର ମନହୁଁ କମଲନ୍ହି ବସେ ନିସି ମଧୁକରା ॥
ମୁରୁଛିତ ବିଲୋକି ବହୋରି ପଦ ହତି ଭାଲୁପତି ପ୍ରଭୁ ପହିଁ ଗୟୋ ।
ନିସି ଜାନି ସ୍ୟନ୍ଦନ ଘାଲି ତେହି ତବ ସୂତ ଜତନୁ କରତ ଭୟୋ ॥

---

କୋପି ଧରିଲା ଆବର ଉଭୟଙ୍କୁ ଡେଇଁ । କଚ୍ଚଡନ୍ତେ ପଳାଇଲେ ଭୁଜ ମୋଡିଦେଇ ॥
ପୁଣି ରୋଷ ସହ ଦଶ ଧନୁ ଘେନି କରେ । ବାଣ ପ୍ରହାରି ଆଘାତ କଲା କପିବରେ ॥୫॥
ହନୁମନ୍ତାଦି କପିଙ୍କୁ କରିଣ ମୂର୍ଚ୍ଛିତ । ପ୍ରଦୋଷ ଜାଣି ରାବଣ ହେଲା ହରଷିତ ॥
ମୂର୍ଚ୍ଛିତ ଦେଖି ସମସ୍ତ ମର୍କଟ ବୀର । ଧାଇଁଲା ସତ୍ୱର ଜାମ୍ବବନ୍ତ ରଣଧୀର ॥୬॥
ସଙ୍ଗତେ ଭାଲୁ ପାଦପ-ପର୍ବତ-ଧାରୀ । ମାରିଲେ ତାହାଙ୍କୁ ଯୁଦ୍ଧେ ଡାକି ମାରି ମାରି ॥
ହୋଇ କ୍ରୋଧାନ୍ୱିତ ବଳବାନ ଦଶାନନ । ଚରଣ ଧରି କଚାଡେ ଭଟ ଅଗଣନ ॥୭॥
ବିଲୋକି ଋକ୍ଷନାୟକ ନିଜ ଦଳ ଘାତ । ତାହାର ବକ୍ଷ ସ୍ଥଳରେ ପ୍ରହାରିଲା ଲାତ ॥୮॥

ହୃଦେ ଲାତ ବାଜନ୍ତେ ଅତି ପ୍ରଚଣ୍ଡାଘାତେ ପଡିଲା ରଥୁ ତଳେ ଢଳି ।
ଋକ୍ଷଙ୍କୁ ବିଂଶହସ୍ତେ ଧରି ଶୋଭେ ଯେମନ୍ତେ ରାତ୍ରିରେ ପଦ୍ମେ ଯେସନ୍ତେ ଅଳି ।
ମୂର୍ଚ୍ଛିତ ଜାଣି ଋକ୍ଷପତି, ମାରି ଚଳିଲା ପ୍ରଭୁ କତି,
ସୂତ ନିଶି ନିରେଖି ଅନ୍ୟ ସ୍ୟନ୍ଦନେ ରଖି ନେଇଣ ଯତ୍ନ କଲା ଅତି ॥

---

ଚଢିଗଲେ ଏବଂ ନଖରେ ତାହାର ଲଲାଟକୁ ବିଦାରିବାକୁ ଲାଗିଲେ ॥ ୩ ॥ ରକ୍ତ ଦେଖି ରାବଣ ମନରେ ବଡ ଦୁଃଖ ଜାତ ହେଲା । ସେ ସେମାନଙ୍କୁ ଧରିବା ନିମନ୍ତେ ହାତ ପସାରିଲା । କିନ୍ତୁ ସେମାନେ ଧରା ପଡୁ ନ ଥା'ନ୍ତି, ହାତଗୁଡିକ ଉପରେ ଉପରେ ବୁଲୁଥା'ନ୍ତି, ସତେ ଅବା ଦୁଇଟି ଭ୍ରମର କମଳ-ବନରେ ବିଚରଣ କରୁଅଛନ୍ତି ! ॥ ୪ ॥ ତତ୍ପରେ ସେ କ୍ରୋଧରେ ଡେଇଁ ଦୁହିଁଙ୍କୁ ଧରି ପକାଇଲା । ପୃଥିବୀ ଉପରେ ଦୁହିଁଙ୍କୁ କଚାଡିଲା ବେଳେ ସେମାନେ ତାହାର ବାହୁଗୁଡିକୁ ମୋଡି ମକଚି ପଳାଇଗଲେ । ପୁଣି ସେ କ୍ରୋଧ କରି ହସ୍ତଗୁଡିକରେ ଦଶଗୋଟି ଧନୁ ଧରିଲା ଏବଂ ବାନରମାନଙ୍କୁ ବାଣରେ ମାରି ଆହତ କରିଦେଲା ॥ ୫ ॥ ହନୁମାନ୍ ଆଦି ସମସ୍ତ ବାନରଙ୍କୁ ମୂର୍ଚ୍ଛିତ

ମୁରୁଛା ବିଗତ ଭାଲୁ କପି ସବ ଆଏ ପ୍ରଭୁ ପାସ ।
ନିସିଚର ସକଲ ରାବନହି ଘେରି ରହେ ଅତି ତ୍ରାସ ॥୯୮॥

## ମାସପାରାୟଣ, ଷଡ଼୍‌ବିଂଶ ବିଶ୍ରାମ

ତେହୀ ନିସି ସୀତା ପହିଁ ଜାଈ । ତ୍ରିଜଟା କହି ସବ କଥା ସୁନାଈ ॥
ସିର ଭୁଜ ବାଢ଼ି ସୁନତ ରିପୁ କେରୀ । ସୀତା ଉର ଭଇ ତ୍ରାସ ଘନେରୀ ॥୧॥
ମୁଖ ମଲୀନ ଉପଜୀ ମନ ଚିଂତା । ତ୍ରିଜଟା ସନ ବୋଲୀଁ ତବ ସୀତା ॥
ହୋଇହି କହା କହସି କିନ ମାତା । କେହି ବିଧି ମରିହି ବିସ୍ୱ ଦୁଖଦାତା ॥୨॥
ରଘୁପତି ସର ସିର କଟେହୁଁ ନ ମରଈ । ବିଧି ବିପରୀତ ଚରିତ ସବ କରଈ ॥
ମୋର ଅଭାଗ୍ୟ ଜିଆୱତ ଓହୀ । ଜେହି ହୌଂ ହରି ପଦ କମଲ ବିଛୋହୀ ॥୩॥

---

ଚୈତନ୍ୟ ଲଭିଣ ଭାଲୁ କପିଗଣ ଆସିଲେ ପ୍ରଭୁଙ୍କ ପାଶେ ।
ରାବଣକୁ ତେଣେ ବେଢ଼ି ଯାତୁଧାନେ ରହିଲେ ଅତ୍ୟନ୍ତ ତ୍ରାସେ ॥୯୮॥
ସେହି ରଜନୀରେ ସୀତା ନିକଟକୁ ଯାଇ । ତ୍ରିଜଟା କହିଲା ସବୁ ବୃତ୍ତାନ୍ତ ବୁଝାଇ ॥
ଶିର ଭୁଜ ବଢିବାର ଶୁଣନ୍ତେ ଶତ୍ରୁର । ସୀତାଙ୍କ ହୃଦୟେ ତ୍ରାସ ହୋଇଲା ପ୍ରଚୁର ॥ ॥
ବଦନ ମଳିନ, ମନେ ଉପୁଜିଲା ଚିନ୍ତା । ତ୍ରିଜଟା ଆଗେ କହିଲେ ଦୁଃଖେ ତହୁଁ ସୀତା ॥
ଏବେ କି ହୋଇବ ପୁଣି କହ ବେଗେ, ମାତା । କେଉଁ ପ୍ରକାରେ ମରିବ ବିଶ୍ୱ-ଦୁଃଖଦାତା ॥ ॥
ରଘୁପତି ଶରେ ଶିର କଟି ନ ମରଇ । ବିଧି ବିପରୀତ ସବୁ ଚରିତ କରଇ ॥
ମୋର ଅଭାଗ୍ୟ ତାହାକୁ ଜୀଆଇ ରଖିଛି । ଯେ ହରି ପଦ-କମଳୁ ବିଚ୍ଛେଦ କରିଛି ॥୩॥

---

କରି ଏବଂ ସନ୍ଧ୍ୟା ସମୟ ପାଇ ରାବଣ ଆନନ୍ଦିତ ହେଲା । ସମସ୍ତ ବାନର ବୀରଙ୍କୁ ମୂର୍ଚ୍ଛିତ ଦେଖି ରଣଧୀର ଜାମ୍ବବାନ୍ ଧାଇଁଲେ ॥ ୬ ॥ ଜାମ୍ବବାନଙ୍କ ସଙ୍ଗରେ ଥିବା ଭାଲୁମାନେ ପର୍ବତ ଓ ବୃକ୍ଷ ଧରି ରାବଣକୁ ଆହ୍ୱାନ କରି କରି ମାରିବାକୁ ଲାଗିଲେ । ବଳବାନ୍ ରାବଣ କ୍ରୁଦ୍ଧ ହେଲା ଏବଂ ପାଦ ଧରି ଧରି ଅନେକ ଯୋଦ୍ଧାଙ୍କୁ ଭୂମି ଉପରେ କଚାଡ଼ିବାକୁ ଲାଗିଲା ॥୭॥ ଆପଣା ଦଳର ବିଧ୍ୱଂସ ଦେଖି ଜାମ୍ବବାନ୍ କ୍ରୋଧ କରି ରାବଣର ଛାତିରେ ଗୋଇଠା ମାରିଲେ ॥ ୮ ॥ ଛନ୍ଦ —ଛାତିରେ ଲାତର ପ୍ରଚଣ୍ଡ ଆଘାତ ଲାଗିବା ମାତ୍ରେ ରାବଣ ବ୍ୟାକୁଳ ହୋଇ ରଥରୁ ପୃଥିବୀ ଉପରେ ଖସିପଡ଼ିଲା । ସେ ବିଂଶ ହସ୍ତରେ ଭାଲୁମାନଙ୍କୁ ଧରି ରଖିଥିଲା । ସତେ ଯେପରି ରାତ୍ରି କାଳରେ ଭ୍ରମରଗଣ କମଳମାନଙ୍କ ଭିତରେ ବାସ କରିଅଛନ୍ତି । ତାହାକୁ ମୂର୍ଚ୍ଛିତ ଦେଖି ଋକ୍ଷରାଜ ଜାମ୍ବବାନ୍ ତାହା ଉପରେ ଗୋଟାଏ ଗୋଇଠା ମାରିଲେ ଏବଂ ପ୍ରଭୁଙ୍କ ପାଖକୁ ଚାଲିଆସିଲେ । ରାତ୍ରି ଉପସ୍ଥିତ ଜାଣି ସାରଥି ରାବଣକୁ ରଥରେ ପକାଇଲା ଏବଂ ତାହାକୁ ଚେତା କରିବା ନିମନ୍ତେ ଉପାୟ କରିବାକୁ ଲାଗିଲା ॥ ଦୋହା :—ମୂର୍ଚ୍ଛା ଦୂର ହେବା ପରେ ସମସ୍ତ ଭାଲୁ ଓ ବାନର ପ୍ରଭୁଙ୍କ ନିକଟକୁ ଆସିଲେ । ତେଣେ ସମସ୍ତ ରାକ୍ଷସ

ଜେହିଁ କୃତ କପଟ କନକ ମୃଗ ଝୂଠା । ଅଜହୁଁ ସୋ ଦୈବ ମୋହି ପର ରୂଠା ॥
ଜେହିଁ ବିଧି ମୋହି ଦୁଖ ଦୁସହ ସହାଏ । ଲଛିମନ କହୁଁ କଟୁ ବଚନ କହାଏ ॥୩॥
ରଘୁପତି ବିରହ ସବିଷ ସର ଭାରୀ । ତକି ତକି ମାର ବାର ବହୁ ମାରୀ ॥
ଐସେହୁଁ ଦୁଖ ଜୋ ରାଖ ମମ ପ୍ରାନା । ସୋଇ ବିଧି ତାହି ଜିଆଓ୍ୱ ନ ଆନା ॥୪॥
ବହୁ ବିଧି କର ବିଲାପ ଜାନକୀ । କରି କରି ସୁରତି କୃପାନିଧାନ କୀ ॥
କହ ତ୍ରିଜଟା ସୁନୁ ରାଜକୁମାରୀ । ଉର ସର ଲାଗତ ମରଇ ସୁରାରୀ ॥୫॥
ପ୍ରଭୁ ତା ତେଁ ଉର ହତଇ ନ ତେହୀ । ଏହି କେ ହୃଦୟଁ ବସତି ବୈଦେହୀ ॥୬॥

---

କନକ କପଟ ମୃଗ ମିଥ୍ୟା କଲା ଯେହୁ । ଅଦ୍ୟାପି ରୁଷ୍ଟ ଦୈବ ମୋ ଉପରେ ସେହୁ ॥
ଯେ ବିଧି ମୋତେ ଦୁଃସହ ଦୁଃଖ ସହାଇଲା । ଲକ୍ଷ୍ମଣଙ୍କୁ ପୁଣି କଟୁ ଶବ୍ଦ କୁହାଇଲା ॥୩॥
ରଘୁପତି ବିରହ ବିଷମ ତୀକ୍ଷଣ ଶର । ଚାହିଁ ଚାହିଁ ବାରମ୍ବାର ମାରେ ମୋ ଉପର ॥
ଏତେ ଦୁଃଖେ ସୁଦ୍ଧା ଯେହୁ ମୋ ପ୍ରାଣ ରଖିଛି । ସେ ବିଧି ତାକୁ ଜିଆଏ, ଅନ୍ୟ ନୁହେ କିଛି ॥୪॥
ବହୁତ ପ୍ରକାରେ ବସି ବିଳପନ୍ତି ସୀତା । କରୁଣାନିଧିଙ୍କ ଛବି ହୃଦେ କରି ଚିନ୍ତା ॥
ବୋଲଇ ତ୍ରିଜଟା, ଶୁଣ ଜନକ କୁମାରୀ । ହୃଦୟେ ବାଣ ବାଜନ୍ତେ ମରିବ ସୁରାରି ॥୫॥
ବାସ କରନ୍ତି ବୈଦେହୀ ହୃଦୟେ ଏହାର । ତେଣୁ ପ୍ରଭୁ ବକ୍ଷେ ଶର ନ ମାରନ୍ତି ତାର ॥୬॥

---

ଅତ୍ୟନ୍ତ ଭୟଭୀତ ହୋଇ ରାବଣଙ୍କୁ ଘେରି ପକାଇଲେ ॥ ୯୮ ॥ ଚୌପାଇ :— ସେହି ରଜନୀରେ ତ୍ରିଜଟା ସୀତାଙ୍କ ନିକଟକୁ ଯାଇ ତାହାଙ୍କୁ ସମସ୍ତ କଥା କହି ଶୁଣାଇଲେ । ଶତ୍ରୁର ଶିର ଓ ବାହୁମାନଙ୍କ ବୃଦ୍ଧି ସମ୍ବାଦ ଶୁଣି ସୀତାଙ୍କ ମନରେ ବଡ ଭୟ ଜାତ ହେଲା ॥ ୧ ॥ ତାହାଙ୍କର ମୁଖ ମଳିନ ହୋଇଗଲା । ମନରେ ଚିନ୍ତା ଜାତ ହେଲା । ସେ ତ୍ରିଜଟାଙ୍କୁ କହିଲେ, "ହେ ମାତା ! କହୁନାହଁ କାହିଁକି ? କ'ଣ ହେବ ? ସମଗ୍ର ବିଶ୍ୱର ଦୁଃଖଦାୟକ ଏହି ରାବଣ କିପରି ମରିବ ? ॥ ୨ ॥ ଶ୍ରୀ ରଘୁନାଥଙ୍କ ବାଣବୃଷ୍ଟି ଯୋଗେ ତାହାର ଶିରସମୂହ କଟିଲେ ସୁଦ୍ଧା ସେ ମରୁନାହିଁ । ବିଧାତା ସମସ୍ତ ଘଟନା ବିପରୀତ କରୁଛନ୍ତି । ପ୍ରକୃତ କଥା ହେଉଛି, ଏହା ମୋର ଦୁର୍ଭାଗ୍ୟ । ମୋର ଦୁର୍ଭାଗ୍ୟ ହିଁ ମୋତେ ପ୍ରଭୁଙ୍କ ଚରଣ-କମଳରୁ ବିଚ୍ଛିନ୍ନ କରି ରଖିଛି ଏବଂ ତାହା ହିଁ ତାହାକୁ ବଞ୍ଚାଉଛି ॥ ୩ ॥ ଯେଉଁ ଦୈବ କପଟରେ ମିଥ୍ୟା-ସ୍ୱର୍ଣ୍ଣ-ମୃଗ ଗଢିଥିଲେ, ସେହି ଦୈବ ଏବେ ବି ମୋ ପ୍ରତି ରୁଷ୍ଟ । ସେହି ବିଧାତା ମୋତେ ଦୁଃସହ ଦୁଃଖ ସହନ କରାଇଲେ । ସେଇ ହିଁ ମୋ ମୁହଁରେ ଲକ୍ଷ୍ମଣଙ୍କ ପ୍ରତି କଟୁ ବଚନ ପ୍ରୟୋଗ କରାଇଲେ ॥ ୪ ॥ ଯେଉଁ ବିଧାତା ଶ୍ରୀରାମଙ୍କ ବିରହ-ଜନିତ ଅତି ବିଷାକ୍ତ ଶରରେ ମୋତେ ଚାହିଁ ଚାହିଁ ବହୁତ ଥର ମାରିଛନ୍ତି ଏବଂ ଏବେ ସୁଦ୍ଧା ମାରୁଛନ୍ତି, ଆଉ ଏପରି ଦୁଃସହ ଦୁଃଖରେ ଯେ ମୋ ପ୍ରାଣ ବଞ୍ଚାଇ ରଖିଛନ୍ତି, କେବଳ ସେହି ବିଧାତା ସେହି ରାବଣକୁ ବଞ୍ଚାଉ ଅଛନ୍ତି, ଅନ୍ୟ କେହି ଏହା କରୁନାହିଁ ।" ॥ ୫ ॥ କୃପାନିଧାନ ଶ୍ରୀରାମଙ୍କୁ ସ୍ମରଣ କରି କରି ଜାନକୀ ବହୁତ

ଏହି କେ ହୃଦୟଁ ବସ ଜାନକୀ ଜାନକୀ ଉର ମମ ବାସ ହୈ ।
ମମ ଉଦର ଭୁଅନ ଅନେକ ଲାଗତ ବାନ ସବ କର ନାସ ହୈ ॥
ସୁନି ବଚନ ହରଷ ବିଷାଦ ମନ ଅତି ଦେଖି ପୁନି ତ୍ରିଜଟାଁ କହା ।
ଅବ ମରିହି ରିପୁ ଏହି ବିଧି ସୁନହି ସୁଂଦରି ତଜହି ସଂସୟ ମହା ॥

କାଟତ ସିର ହୋଇହି ବିକଲ ଛୁଟି ଜାଇହି ତବ ଧ୍ୟାନ ।
ତବ ରାବନହି ହୃଦୟ ମହୁଁ ମରିହହିଁ ରାମୁ ସୁଜାନ ॥୯୯॥
ଅସ କହି ବହୁତ ଭାଁତି ସମୁଝାଈ । ପୁନି ତ୍ରିଜଟା ନିଜ ଭବନ ସିଧାଈ ॥
ରାମ ସୁଭାଉ ସୁମିରି ବୈଦେହୀ । ଉପଜୀ ବିରହ ବିଥା ଅତି ତେହୀ ॥୧॥

---

ଏହାର ହୃଦେ ସୀତା ବାସ କରନ୍ତି, ସୀତା-ହୃଦୟେ ମୋହର ନିବାସ ।
ମୋ ହୃଦୟେ ଭୁବନ ଅନେକ ବାସ, ବାଣ ବାଜିଲେ ହେବ ସର୍ବନାଶ ।
ହର୍ଷ ବିଷାଦ ଏହା ଶୁଣି, ଦେଖି ତ୍ରିଜଟା ବୋଲେ ପୁଣି,
ସୁନ୍ଦରି, ଏହି ଭାବେ ମରିବ ଶତ୍ରୁ ଏବେ, ନ କର ଚିନ୍ତା ମନେ ପୁଣି ॥

କଟୁଥାନ୍ତେ ଶିର ହୋଇବ ଅଧୀର ନ ରହିବ ତୁମ୍ଭ ଧ୍ୟାନ ।
ତେବେ ରାବଣର ବକ୍ଷସ୍ଥଳେ ଶର ମାରିବେ କୃପାନିଧାନ ॥୯୯॥
ଏହା କହି ବୁଝାଇଣ ଅନେକ ପ୍ରକାର । ପୁଣି ତ୍ରିଜଟା ଗୃହକୁ ଗଲା ଆପଣାର ॥
ରାମଙ୍କ ସ୍ୱଭାବ ସ୍ମରି ଜନକ-କୁମାରୀ । ବିରହ-ବେଦନା ହୃଦେ ଉପୁଜିଲା ଭାରୀ ॥୧॥

---

ପ୍ରକାରେ ବିଳାପ କରୁଥା'ନ୍ତି । ତ୍ରିଜଟା କହିଲେ, "ହେ ରାଜକୁମାରି ' ଶୁଣ; ଦେବତାମାନଙ୍କ ଶତ୍ରୁ ରାବଣର ବକ୍ଷରେ ଶର ବାଜିବା ମାତ୍ରେ ସେ ମରି ଯାଆନ୍ତା ॥ ୬ ॥ ତାହାର ହୃଦୟରେ ଜାନକୀ (ଆପଣ) ନିରନ୍ତର ବାସ କରୁଅଛନ୍ତି; ଏହି ହେତୁ ପ୍ରଭୁ ତାହାର ବକ୍ଷକୁ ଶର ମାରୁ ନାହାନ୍ତି ॥ ୭ ॥ ଛନ୍ଦ --ପ୍ରଭୁ ମନରେ ବିଚାର କରୁଅଛନ୍ତି, 'ରାବଣର ହୃଦୟରେ ଜାନକୀଙ୍କ ନିବାସ, ଜାନକୀଙ୍କ ହୃଦୟରେ ମୋର ନିବାସ ଏବଂ ମୋ ଉଦରରେ ଅନେକ ଭୁବନ । ଅତଏବ ରାବଣର ହୃଦୟରେ ବାଣ ବାଜିବା ମାତ୍ରେ ସକଳ ଭୁବନର ନାଶ ହୋଇଯିବ ।' ଏହା ବିଚାର କରି ସେ ବାଣ ମାରିବାରୁ କ୍ଷାନ୍ତ ହୋଇ ପଡୁଛନ୍ତି ।" ଏହି ବଚନ ଶୁଣି ସୀତାଙ୍କ ମନରେ ଅତିଶୟ ହର୍ଷ ଓ ବିଷାଦ ଜାତ ହେଲା । ଏହା ଦେଖି ତ୍ରିଜଟା ପୁଣି କହିଲେ, "ହେ ସୁନ୍ଦରି ! ଏବେ ମହାସଂଶୟ ତ୍ୟାଗ କରିଦିଅ । ଶୁଣ, ଶତ୍ରୁ ଏହିପରି ମରିବ— ॥ ଦୋହା :— ଶିର-ସମୂହ ବାରମ୍ବାର କଟିଯିବା ଫଳରେ ରାବଣ ବ୍ୟାକୁଳ ହୋଇପଡିବ ଏବଂ ତାହାର ହୃଦୟରୁ ତୁମର ଧ୍ୟାନ ଭଗ୍ନ ହୋଇଯିବ । ସେତେବେଳେ ଅନ୍ତର୍ଯାମୀ ଶ୍ରୀରାମ ରାବଣର ବକ୍ଷରେ ବାଣ ବିଦ୍ଧ କରିବେ ।" ॥ ୯୯ ॥ ଚୌପାଇ :—ଏହିପରି କହି ତ୍ରିଜଟା ସୀତାଙ୍କୁ ବହୁ ପ୍ରକାରେ ବୁଝାଇଲେ ଏବଂ ତଦନନ୍ତର ଆପଣାର ଗୃହକୁ

ନିସିହି ସସିହି ନିଂଦତି ବହୁ ଭାଁତି । ଜୁଗ ସମ ଭଈ ସିରାତି ନ ରାତୀ ॥
କରତି ବିଲାପ ମନହିଁ ମନ ଭାରୀ । ରାମ ବିରହଁ ଜାନକୀ ଦୁଖାରୀ ॥୨॥
ଜବ ଅତି ଭୟଉ ବିରହ ଉର ଦାହୂ । ଫରକେଉ ବାମ ନୟନ ଅରୁ ବାହୂ ॥
ସଗୁନ ବିଚାରି ଧରୀ ମନ ଧୀରା । ଅବ ମିଲିହହିଁ କୃପାଲ ରଘୁବୀରା ॥୩॥
ଇହାଁ ଅର୍ଧନିସି ରାବନୁ ଜାଗା । ନିଜ ସାରଥି ସନ ଖୀଝନ ଲାଗା ॥
ସଠ ରନଭୂମି ଛଡ଼ାଇସି ମୋହୀ । ଧିଗ ଧିଗ ଅଧମ ମଂଦମତି ତୋହୀ ॥୪॥
ତେହିଁ ପଦ ଗହି ବହୁ ବିଧି ସମୁଝାଓ୍ୱା । ଭୋରୁ ଭଏଁ ରଥ ଚଢ଼ି ପୁନି ଧାଓ୍ୱା ॥
ସୁନି ଆଗଓ୍ୱନୁ ଦସାନନ କେରା । କପିଦଲ ଖରଭର ଭୟଉ ଘନେରା ॥୫॥
ଜହଁ ତହଁ ଭୂଧର ବିଟପ ଉପାରୀ । ଧାଏ କଟକଟାଇ ଭଟ ଭାରୀ ॥୬॥

---

ନିଶିକୁ ଶଶୀକୁ ନିନ୍ଦା କରନ୍ତି ବିଶେଷ । ଯୁଗ ସଦୃଶ ରଜନୀ ନ ହୁଅଇ ଶେଷ ॥
ମନେ ମନେ ଅତିଶୟ ବିଳାପ କରନ୍ତି । ରାମ ବିଚ୍ଛେଦେ ଜାନକୀ ସନ୍ତାପିତା ଅତି ॥୨॥
ଯେବେ ବିରହେ ହୋଇଲା ହୃଦୟ ଦହନ । କମ୍ପିଲା ସେ କାଳେ ବାମବାହୁ ବିଲୋଚନ ॥
ଶକୁନ ବିଚାରି ଧୈର୍ଯ୍ୟ ଧଇଲେ ହୃଦୟେ । ଏବେ ମିଳିବେ କୃପାଳୁ ଶ୍ରୀରାମ ନିଶ୍ଚୟେ ॥୩॥
ତେଣେ ନିଶାର୍ଦ୍ଧେ ରାବଣ ଚୈତନ୍ୟ ଲଭିଲା । ନିଜ ସାରଥି ଉପରେ କ୍ରୋଧିତ ହୋଇଲା ॥
ଶଠ, ରଣାଙ୍ଗନୁ ନେଇ ଆସିଛୁ ତୁ ମୋତେ । ଅଧମ ମଳିନ-ମତି ଧିକ ଧିକ ତୋତେ ॥୪॥
ଚରଣ ଧରି ସେ ନାନା ଭାବେ ବୁଝାଇଲା । ପ୍ରାତ ହୋନ୍ତେ ରଥ ଚଢ଼ି ପୁଣି ଆଗମିଲା ॥
ଆସଇ ଦଶବଦନ, ଏହା ଶୁଣି ପାରି । କପିଙ୍କ ଦଳେ ହୋଇଲା କୋଳାହଳ ଭାରି ॥୫॥
ଯେଉଁ ତେଉଁ ଉପାଡ଼ିଣ ପାଦପ ପର୍ବତ । ଧାଇଁଲେ ହୁହା କରିଣ କପି ବଳବନ୍ତ ॥୬॥

---

ଚାଲିଗଲେ । ଶ୍ରୀରାମଙ୍କ ସ୍ୱଭାବ ସ୍ମରଣ କରି ଜାନକୀଙ୍କ ମନରେ ଅତ୍ୟନ୍ତ ବିରହାବସ୍ଥା ଜାତ ହେଲା ॥ ୧ ॥ ସେ ରାତ୍ରି ଓ ଚନ୍ଦ୍ରମାଙ୍କୁ ବହୁତ ପ୍ରକାରେ ନିନ୍ଦା କରୁଥା'ନ୍ତି ଏବଂ କହୁଥା'ନ୍ତି—"ରାତ୍ରି ଯୁଗ ସମାନ ବଡ଼ ହୋଇଗଲାଣି, ଆଦୌ କଟୁନାହିଁ ।" ଜାନକୀ ଶ୍ରୀରାମଙ୍କ ବିରହରେ ଦୁଃଖିନୀ ହୋଇ ମନେ ମନେ ଅତିଶୟ ବିଳାପ କରୁଥାଆନ୍ତି ॥ ୨ ॥ ଯେତେବେଳେ ବିରହ ଯୋଗେ ତାଙ୍କ ହୃଦୟରେ ଦାରୁଣ ଦାହ ହେଲା, ସେତେବେଳେ ତାଙ୍କ ବାମ ନେତ୍ର ଓ ବାହୁ ଥରିଉଠିଲା । ଶୁଭ ଲକ୍ଷଣ ଜାଣି ସେ ମନେ ମନେ ଧୈର୍ଯ୍ୟ ଧାରଣ କଲେ ଏବଂ ଏଣିକି କୃପାଳୁ ଶ୍ରୀ ରଘୁବୀର ଅବଶ୍ୟ ମିଳିବେ ବୋଲି ମନରେ ଦୃଢ଼ ଆଶା ପୋଷଣ କଲେ ॥ ୩ ॥ ଏଣେ ଅର୍ଦ୍ଧ ରାତ୍ରିରେ ରାବଣ ମୂର୍ଚ୍ଛାରୁ ଉଠିଲା ଏବଂ ନିଜ ସାରଥି ଉପରେ ରୋଷ କରି କହିଲା, "ଆରେ ମୂର୍ଖ ! ତୁ ମୋତେ ରଣ-ଭୂମିରୁ ଅଲଗା କରିଦେଲୁ ! ଆରେ ଅଧମ ! ଆରେ ମନ୍ଦବୁଦ୍ଧି ! ତୋତେ ଧିକ୍କାର ! ତୋତେ ଧିକ୍କାର !" ॥ ୪ ॥ ସାରଥି ରାବଣର ଚରଣ ଧରି ତାହାଙ୍କୁ ଅନେକ ପ୍ରକାରେ ବୁଝାଇଲା । ସକାଳ ହେବା ମାତ୍ରେ ସେ ରଥରେ ଚଢ଼ି ପୁଣି ରଣଭୂମିକୁ ଧାଇଁଲା । ରାବଣର ଆଗମନ-ସମ୍ବାଦ

ଧାଏ ଜୋ ମର୍କଟ ବିକଟ ଭାଲୁ କରାଲ କର ଭୂଧର ଧରା ।
ଅତି କୋପ କରହିଁ ପ୍ରହାର ମାରତ ଭଜି ଚଲେ ରଜନୀଚରା ॥
ବିଚଲାଇ ଦଲ ବଲବନ୍ତ କୀସହ୍ନ ଘେରି ପୁନି ରାବନୁ ଲିୟୋ ।
ଚହୁଁ ଦିସି ଚପେଟହ୍ନି ମାରି ନଖହ୍ନି ବିଦାରି ତନୁ ବ୍ୟାକୁଲ କିୟୋ ॥

ଦେଖି ମହା ମର୍କଟ ପ୍ରବଲ ରାବନ କୀହ୍ନ ବିଚାର ।
ଅନ୍ତରହିତ ହୋଇ ନିମିଷ ମହୁଁ କୃତ ମାୟା ବିସ୍ତାର ॥୧୦୦॥

ଜବ କୀହ୍ନ ତେହିଁ ପାଷଣ୍ଡ । ଭଏ ପ୍ରଗଟ ଜନ୍ତୁ ପ୍ରଚଣ୍ଡ ॥
ବେତାଲ ଭୂତ ପିସାଚ । କର ଧରେଁ ଧନୁ ନାରାଚ ॥୧॥
ଜୋଗିନି ଗହେଁ କରବାଲ । ଏକ ହାଥ ମନୁଜ କପାଲ ॥
କରି ସଦ୍ୟ ସୋଣିତ ପାନ । ନାଚହିଁ କରହିଁ ବହୁ ଗାନ ॥୨॥

---

ଧାଇଁଲେ ମର୍କଟ ଋକ୍ଷ ବୀର ବିକଟ ବିଶାଳ ଗିରି ଧରି କରେ ।
କୋପ କରି ଅତ୍ୟନ୍ତେ ମାରନ୍ତେ କପିବୃନ୍ଦେ ପଳାଇ ଗଲେ ନିଶାଚରେ ।
ପରାସ୍ତ କରିଣ ସେନାଙ୍କୁ, ଘେରିଲେ ସେ ବିଂଶବାହାଙ୍କୁ,
ଦେଇ ଚପଟ ମାରି କପି ନଖେ ବିଦାରି ବ୍ୟାକୁଳ କରିଲେ ତାହାଙ୍କୁ ॥

ଦେଖି କପି ଦଳ ଅତ୍ୟନ୍ତ ପ୍ରବଳ ରାବଣ କରି ବିଚାର ।
ଅନ୍ତର୍ଦ୍ଧାନ ହୋଇ କ୍ଷଣ ମଧ୍ୟେ ସେହୁ ମାୟା କରିଲା ବିସ୍ତାର ॥୧୦୦॥

ଯେବେ ସେ ରଚିଲା ପାଷଣ୍ଡ । ପ୍ରକଟ ହେଲେ ଜନ୍ତୁ ଚଣ୍ଡ ॥
ବେତାଳ ଭୂତ ଯେ ପିଶାଚ । କରେ ଧରି ଧନୁ ନାରାଚ ॥୧॥
ଯୋଗିନୀ ହସ୍ତେ ଖଣ୍ଡା ଧରେ । ନର କପାଳ ଅନ୍ୟ କରେ ॥
ସଦ୍ୟ ଶୋଣିତ କରି ପାନ । ନାଚ କରନ୍ତି ବହୁ ଗାନ ॥୨॥

---

ଶୁଣି ବାନର-ସେନା ମଧ୍ୟରେ କୋଳାହଳ ବ୍ୟାପିଗଲା ॥ ୫ ॥ ବଡ଼ ବଡ଼ ଯୋଦ୍ଧାମାନେ ଏଣ୍ଡ଼ତେଣ୍ଡ଼ ପର୍ବତ ଓ ବୃକ୍ଷ ଉପାଡ଼ି କ୍ରୋଧରେ ଦାନ୍ତ କଟକଟ କରି ଧାଇଁଲେ ॥ ୬ ॥ ଛନ୍ଦ :—ବିକଟ ଓ ବିକରାଳ ବାନର ଓ ଭଲ୍ଲୁକମାନେ ହାତରେ ପର୍ବତ ଧରି ଧାଇଁଲେ । ଅତ୍ୟନ୍ତ କ୍ରୋଧରେ ସେମାନେ ପ୍ରହାର କରୁଥା'ନ୍ତି । ସେମାନଙ୍କ ଆଘାତରେ ରାକ୍ଷସମାନେ ଦୌଡ଼ି ପଳାଇଗଲେ । ବଳବାନ୍ ବାନରମାନେ ଶତ୍ରୁସେନାକୁ ବିଚଳିତ କରି ପୁଣି ରାବଣକୁ ଘେରି ପକାଇଲେ । ସେମାନେ ଚାରିଆଡ଼ୁ ତାହାକୁ ଚାପୁଡ଼ା ମାରି ଓ ନଖରେ ତାହାର ଶରୀର ବିଦାରିଣ କରି ବ୍ୟାକୁଳ କରି ପକାଇଲେ ॥ ଦୋହା :—ବାନରମାନଙ୍କୁ ବିଶେଷ ପ୍ରବଳ ହୋଇ ପଡ଼ିଥିବାର ଦେଖି ରାବଣ କ'ଣ ବିଚାର କଲା ଏବଂ ଅନ୍ତର୍ହିତ ହୋଇ କ୍ଷଣକ ମଧ୍ୟରେ ସେ ମାୟା ବିସ୍ତାର କଲା ॥ ୧୦୦ ॥ ଚୌପାଇ :—ଯେତେବେଳେ ସେ ମାୟାପ୍ରପଞ୍ଚ ରଚନା କଲା, ସେତେବେଳେ

ଧରୁ ମାରୁ ବୋଲହିଁ ଘୋର । ରହି ପୂରି ଧୁନି ଚହୁଁ ଓର ॥
ମୁଖ ବାଇ ଧାଉଁହିଁ ଖାନ । ତବ ଲଗେ କୀସ ପରାନ ॥୩॥
ଜହଁ ଜାହିଁ ମର୍କଟ ଭାଗି । ତହଁ ବରତ ଦେଖହିଁ ଆଗି ॥
ଭଏ ବିକଲ ବାନର ଭାଲୁ । ପୁନି ଲାଗ ବରଷୈ ବାଲୁ ॥୪॥
ଜହଁ ତହଁ ଥକିତ କରି କୀସ । ଗର୍ଜେଉ ବହୁରି ଦସସୀସ ॥
ଲଛିମନ କପୀସ ସମେତ । ଭଏ ସକଲ ବୀର ଅଚେତ ॥୫॥
ହା ରାମ ହା ରଘୁନାଥ । କହି ସୁଭଟ ମୀଜହିଁ ହାଥ ॥
ଏହି ବିଧି ସକଲ ବଲ ତୋରି । ତେହିଁ କୀହ୍ନ କପଟ ବହୋରି ॥୬॥
ପ୍ରଗଟେସି ବିପୁଲ ହନୁମାନ । ଧାଏ ଗହେ ପାଷାନ ॥
ତିହ୍ନ ରାମୁ ଘେରେ ଜାଇ । ଚହୁଁ ଦିସି ବରୂଥ ବନାଇ ॥୭॥

---

ଚଉଦିଗରେ 'ମାର ଧର' । ବ୍ୟାପିଲା ଧ୍ୱନି ଭୟଙ୍କର ॥
ବଦନ ମେଲାଇ ଧାଆନ୍ତି । ସଭୟେ ବାନରେ ପଳାନ୍ତି ॥୩॥
ପଳାଇ ଯାନ୍ତି କପି ଯହିଁ । ଦେଖନ୍ତି ଅଗ୍ନି ଜଳେ ତହିଁ ॥
ବିକଳ ହେଲେ ଋକ୍ଷ ହରି । ଲାଗିଲା ବାଲି ବର୍ଷା କରି ॥୪॥
ସ୍ଥକିତ କପିଙ୍କୁ କରିଲା । ପୁଣି ରାବଣ ଗରଜିଲା ॥
ଲକ୍ଷ୍ମଣ କପୀଶ ସମେତ । ସମସ୍ତେ ହୋଇଲେ ଅଚେତ ॥୫॥
'ହା ରାମ ହା ରଘୁ ପ୍ରବର' । କହୁ ମଳନ୍ତି ବୀରେ କର ॥
ଏ ଭାବେ ହରି ସର୍ବ ବଳ । ପୁଣି ସେ ଆଚରିଲା ଛଳ ॥୬॥
ପ୍ରକଟ ବହୁ ହନୁମନ୍ତ । ଧାଆନ୍ତି ଧରି ପରବତ ॥
ବେଢିଲେ ରାମଙ୍କୁ ଯାଇ ସେ । ଦଳ ବାନ୍ଧିଣ ଚଉଦିଗେ ॥୭॥

---

ଭୟଙ୍କର ଜୀବମାନେ ଆବିର୍ଭୂତ ହେଲେ । ବେତାଳ, ଭୂତ ଓ ପିଶାଚମାନେ ହାତରେ ଧନୁଶର ଧରି ଆବିର୍ଭୂତ ହେଲେ ॥ ୧ ॥ ଯୋଗିନୀମାନେ ଗୋଟିଏ ହାତରେ ତରବାରି ଓ ଅନ୍ୟ ହାତରେ ମନୁଷ୍ୟମାନଙ୍କର ଖପୁରି ଧରି ସଦ୍ୟ ରକ୍ତ ପିଇ ନୃତ୍ୟ ଓ ବିବିଧ ସଙ୍ଗୀତ ଗାନ କରିବାକୁ ଲାଗିଲେ ॥ ୨ ॥ ସେମାନେ "ଧର, ଧର, ମାର, ମାର" ଆଦି ଘୋର ଧ୍ୱନି କରୁଥାଆନ୍ତି । ଚତୁର୍ଦ୍ଦିଗରେ ସର୍ବତ୍ର ଏହି ଧ୍ୱନି ଭରିଗଲା । ସେମାନେ ପାଟି ମେଲା କରି ଖାଇବାକୁ ଧାଉଁଥା'ନ୍ତି । ଏହା ଦେଖି ବାନରମାନେ ପଳାଇବାକୁ ଲାଗିଲେ ॥ ୩ ॥ ବାନରମାନେ ଯେଉଁଆଡକୁ ଦୌଡି ପଳାଉଥା'ନ୍ତି, ସେ ଆଡେ ଅଗ୍ନି ପ୍ରଜ୍ୱଳିତ ହେଉଥିବାର ଦେଖୁଥାଆନ୍ତି । ବାନର ଓ ଭଲ୍ଲୁକମାନେ ବ୍ୟାକୁଳ ହୋଇ ପଡିଲେ । ଉପରେ ରାବଣ ବାଲୁକା ବୃଷ୍ଟି କରିବାକୁ ଲାଗିଲା ॥ ୪ ॥ ବାନରମାନଙ୍କୁ ବିଭିନ୍ନ ସ୍ଥାନରେ ଶ୍ରାନ୍ତ ଓ କ୍ଳାନ୍ତ କରି ରାବଣ ପୁଣି ଗର୍ଜନ କଲା । ଲକ୍ଷ୍ମଣ ଓ ସୁଗ୍ରୀବ ସମେତ ସମସ୍ତ ବୀର ଅଚେତ ହୋଇ ପଡିଲେ ॥ ୫ ॥ "ହେ ରାମ ! ହା ରଘୁନାଥ !"

ମାରହୁ ଧରହୁ ଜନି ଜାଇ । କଟକଟହିଁ ପୂଁଛ ଉଠାଇ ॥
ଦହଁ ଦିସି ଲଁଗୂର ବିରାଜ । ତେହିଁ ମଧ କୋସଲରାଜ ॥୮॥

ତେହିଁ ମଧ କୋସଲରାଜ ସୁନ୍ଦର ସ୍ୟାମ ତନ ସୋଭା ଲହୀ ।
ଜନୁ ଇନ୍ଦ୍ରଧନୁଷ ଅନେକ କୀ ବର ବାରି ତୁଙ୍ଗ ତମାଲହୀ ।
ପ୍ରଭୁ ଦେଖି ହରଷ ବିଷାଦ ଉର ସୁର ବଦତ ଜୟ ଜୟ ଜୟ କରୀ ।
ରଘୁବୀର ଏକହିଁ ତୀର କୋପି ନିମେଷ ମହୁଁ ମାୟା ହରୀ ॥୧॥

ମାୟା ବିଗତ କପି ଭାଲୁ ହରଷେ ବିଟପ ଗିରି ଗହି ସବ ଫିରେ ।
ସର ନିକର ଛାଡ଼େ ରାମ ରାବନ ବାହୁ ସିର ପୁନି ମହି ଗିରେ ॥
ଶ୍ରୀରାମ ରାବନ ସମର ଚରିତ ଅନେକ କଲ୍ପ ଜୋ ଗାୱହୀଁ ।
ସତ ସେଷ ସାରଦ ନିଗମ କବି ତେଉ ତଦପି ପାର ନ ପାୱହୀଁ ॥୨॥

---

ଯାଇ ନ ପାରୁ, ମାର ହେକ । ଶବ୍ଦ କରନ୍ତି ପୁଚ୍ଛ ଟେକି ।
ବିରାଜେ ଚଉଦିଗେ ଲାଙ୍ଗୁ । ତା ମଧ୍ୟେ କୋଶଳର ରାଜ ॥ ॥

ମଧ୍ୟେ କୋଶଳପାଳ କଳେବର ଶ୍ୟାମଳ ରୁଚିର ସୁଷମା ଲଭନ୍ତି ।
ଇନ୍ଦ୍ରଧନୁ ବିପୁଳ ଯେସନେ ତୁଙ୍ଗ ତମାଳ ତରୁକୁ ବାଡ଼ ବାନ୍ଧିଛନ୍ତି ।
ବିବୁଧେ ସୁଖୀ ଦୁଃଖୀ ହେଲେ, ଦେଖିଣ 'ଜୟ ଜୟ' କଲେ,
କୋପି ଶ୍ରୀ ରଘୁବୀର ସନ୍ଧାନି ଏକ ଶର କ୍ଷଣକେ ମାୟା ହରି ନେଲେ ॥୧॥

ମାୟା ଅପସରନ୍ତେ ଋକ୍ଷ କପି ମୁଦିତେ ଧାଇଁଲେ ଧରି ଗିରିଦ୍ରୁମ ।
ଛାଡ଼ି ଶର ନିକର ରାମ ଦଶାନନର କାଟିଲେ ଶିର ବାହୁ ପୁଣି ।
ରାମ ରାବଣ ରଣ ସାର, ଗାଇଲେ କଳପ ଅପାର,
ଶତ ଶାରଦା ଶେଷ ଶ୍ରୁତି ଶାସ୍ତ୍ର ଅଶେଷ ତଥାପି ନ ପାଇବେ ପାର ॥୨॥

---

ତାଙ୍କ ଶ୍ରେଷ୍ଠ ଯୋଦ୍ଧାଗଣ ହାତ ମଳି ଅନୁତାପ କରୁଥାଆନ୍ତି । ଏହିରୂପେ ସମସ୍ତଙ୍କ ବଳ ଭାଙ୍ଗି ରାବଣ ପୁଣି ଅନ୍ୟ ଏକ ମାୟା ରଚନା କଲା ॥ ୬ ॥ ସେ ବହୁତ ହନୁମାନଙ୍କର ସୃଷ୍ଟି ଓ ଆବିର୍ଭାବ କଲା । ସେମାନେ ପଥର ଧରି ଧାଇଁଲେ । ସେମାନେ ଦଳ ବାନ୍ଧି ଯାଇ ଚାରିଆଡ଼ୁ ଶ୍ରୀରାମଙ୍କୁ ଘେରିଗଲେ ॥ ୭ ॥ ସେମାନେ ଲାଞ୍ଜ ଟେକି ଦାନ୍ତ କଟକଟ କରି ଡାକିବାକୁ ଲାଗିଲେ, "ମାର, ମାର, ଧର, ଯେମିତି କି ଯାଇ ନ ପାରନ୍ତି ।" ସେମାନଙ୍କ ଲାଙ୍ଗୁଳ ସବୁ ଦଶ ଦିଗରେ ଶୋଭା ପାଉଥାଏ ଏବଂ ସେଗୁଡ଼ିକ ମଧ୍ୟରେ କୋଶଳରାଜ ଶ୍ରୀରାମ ବିରାଜମାନ ॥ ୮ ॥ ଛନ୍ଦ '—ସେମାନଙ୍କ ମଧ୍ୟରେ କୋଶଳରାଜ ଶ୍ରୀରାମଚନ୍ଦ୍ରଙ୍କ ଶ୍ୟାମଳ ଶରୀର ଏପରି ସୁଶୋଭିତ ହେଉଥାଏ, ଯେପରି ଅବା ଉଚ୍ଚ ତମାଳବୃକ୍ଷ ନିମନ୍ତେ ଅନେକ ଇନ୍ଦ୍ରଧନୁର ଶ୍ରେଷ୍ଠ ବାଡ଼ ଦିଆଯାଇଛି ! ପ୍ରଭୁଙ୍କୁ ଦେଖି ଦେବତାମାନେ ହର୍ଷ ଓ ବିଷାଦଯୁକ୍ତ ହୃଦୟରେ "ଜୟ, ଜୟ, ଜୟ"—ଏହିପରି

ତାକେ ଗୁନ ଗନ କଛୁ କହେ ଜଡମତି ତୁଲସୀଦାସ ।
ଜିମି ନିଜ ବଲ ଅନୁରୂପ ତେଁ ମାଛୀ ଉଡଇ ଅକାସ ॥୧୦୧(କ)॥
କାଟେ ସିର ଭୁଜ ବାର ବହୁ ମରତ ନ ଭଟ ଲଂକେସ ।
ପ୍ରଭୁ କ୍ରୀଡତ ସୁର ସିଦ୍ଧ ମୁନି ବ୍ୟାକୁଲ ଦେଖି କଲେସ ॥୧୦୧(ଖ)॥
କାଟତ ବଢହିଁ ସୀସ ସମୁଦାଈ । ଜିମି ପ୍ରତି ଲାଭ ଲୋଭ ଅଧିକାଈ ॥
ମରଇ ନ ରିପୁ ଶ୍ରମ ଭୟଉ ବିସେଷା । ରାମ ବିଭୀଷନ ତନ ତବ ଦେଖା ॥୧॥
ଉମା କାଲ ମର ଜାକୀଁ ଈଛା । ସୋ ପ୍ରଭୁ ଜନ କର ପ୍ରୀତି ପରୀଛା ॥
ସୁନୁ ସରବଗ୍ୟ ଚରାଚରନାୟକ । ପ୍ରନତପାଲ ସୁର ମୁନି ସୁଖଦାୟକ ॥୨॥

---

ତାହାଙ୍କ ଗୁଣର କିଛି ଜଡ-ମତି ତୁଲସୀ ଦାସ କହଇ ।
ଯେଉଁପରି ନିଜ ବଳ ଅନୁସାରେ କ୍ଷୁଦ୍ର ମାଛି ଆକାଶେ ଉଡଇ ॥୧୦୧ (କ)॥
କାଟିଲେହେଁ ଶିର ବାହୁ ବହୁବାର ନ ମରେ ବୀର ଲଙ୍କେଶ ।
ପ୍ରଭୁ କ୍ରୀଡା ଖେଳ ବିଲୋକି ବିକଳ ସୁର ମୁନି ଜାଣି କ୍ଲେଶ ॥ ୦୧ (ଖ)॥
କାଟିବା ମାତ୍ରେ ବଢନ୍ତି ମସ୍ତକ ସକଳ । ଯଥା ପ୍ରତି ଲାଭେ ଲୋଭ ବଢଇ ପ୍ରବଳ ॥
ନ ମରଇ ଶତ୍ରୁ, ଶ୍ରମ ବିଶେଷ ଲଭିଲେ । ତହୁଁ ରାମ ବିଭୀଷଣ ଆଡକୁ ଚାହିଁଲେ ॥୧॥
ଉମା ! ଯା ଇଚ୍ଛାରେ କୋଟି କାଳ ବି ମରନ୍ତି । ସେ ପ୍ରଭୁ ଭକ୍ତ ଜନର ପ୍ରୀତି ପରଖନ୍ତି ॥
ଶୁଣ, ସର୍ବଜ୍ଞ ଚରାଚର-ନାୟକ । ସୁର-ମୁନି-ସୁଖଦାତା ପ୍ରଣତ-ପାଳକ ॥୨॥

---

କହିବାକୁ ଲାଗିଲେ । ସେତେବେଳେ ପ୍ରଭୁ ଗୋଟିଏ ମାତ୍ର ବାଣରେ ନିମେଷକ ମଧ୍ୟରେ ରାବଣର ସମସ୍ତ ମାୟା ହରଣ କରିଦେଲେ ॥ ୧ ॥ ମାୟା ଦୂର ହୋଇଯିବା ପରେ ବାନର ଓ ଭଲ୍ଲୁକମାନେ ଆନନ୍ଦିତ ହେଲେ ଏବଂ ବୃକ୍ଷ ଓ ପର୍ବତମାନ ନେଇ ନେଇ ସମସ୍ତେ ଲେଉଟି ପଡିଲେ । ଶ୍ରୀରାମ ବାଣସମୂହ ଛାଡିଲେ । ତଦ୍ଦ୍ୱାରା ରାବଣର ହସ୍ତ ଓ ଶିରମାନ କଟି ଭୂମି ଉପରେ ପଡିଲା । ଯଦି ଶତ ଶତ ଶେଷ, ସରସ୍ୱତୀ, ବେଦ ଓ କବି କଳ୍ପ କଳ୍ପ ଧରି ଶ୍ରୀରାମ ଓ ରାବଣଙ୍କ ଯୁଦ୍ଧଚରିତ ଗାଇବେ, ତଥାପି ସେମାନେ ତାହାର ପାର ପାଇ ପାରିବେ ନାହିଁ ॥ ୨ ॥ ଦୋହା —ଶ୍ରେଷ୍ଠ ମାଛି ଯୁବା ଯେପରି ଆପଣା ବଳ ଅନୁସାରେ ଆକାଶରେ ଉଡେ, ସେହିପରି ମନ୍ଦବୁଦ୍ଧି ତୁଳସୀଦାସ ଉକ୍ତ ଯୁଦ୍ଧ-ପ୍ରସଙ୍ଗର କେତୋଟି ବିଭବ ମାତ୍ର କହୁଅଛି ॥ ୧୦୧ (କ) ॥ ପ୍ରଭୁ ଶିର ଓ ବାହୁମାନ ବହୁତ ଥର କାଟିଲେଣି, ତଥାପି ବୀର ରାବଣ ମରୁନାହିଁ । ପ୍ରଭୁ ତ ଲୀଳା କରୁଅଛନ୍ତି, କିନ୍ତୁ ମୁନି ସିଦ୍ଧ ଓ ଦେବତାମାନେ ପ୍ରଭୁ କ୍ଳେଶ ପାଉଅଛନ୍ତି ବୋଲି ମନେ କରି ବ୍ୟାକୁଳ ହେଉଅ'ନ୍ତି ॥ ୧୦୧ (ଖ) ॥ ଚୌପାଇ —କାଟିବା ମାତ୍ରେ ଶିର-ସମୂହ ପ୍ରତ୍ୟେକ ଲାଭ ଉପରେ ଲୋଭ ବଢିଗଲା ପରି ବଢିଯାଉଥାଏ । ଶତ୍ରୁ ମରୁନାହିଁ ଏବଂ ପରିଶ୍ରମ ବହୁତ ହେଲାଣି । ସେତେବେଳେ ଶ୍ରୀରାମ ବିଭୀଷଣଙ୍କ ଆଡକୁ ଚାହିଁଲେ ॥ ୧ ॥ ଶିବ କହନ୍ତି, "ହେ ଉମା ! ଯାହାର ଇଚ୍ଛା ମାତ୍ରକେ କାଳ ମୃତ୍ୟୁ

ନାଭିକୁଣ୍ଡ ପିୟୂଷ ବସ ୟା କେଁ । ନାଥ ଜିଅତ ରାବନୁ ବଲ ତା କେଁ ॥
ସୁନତ ବିଭୀଷନ ବଚନ କୃପାଲା । ହରଷି ଗହେ କର ବାନ କରାଲା ॥୩॥
ଅସୁଭ ହୋନ ଲଗେ ତବ ନାନା । ରୋଵହିଁ ଖର ସୃକାଲ ବହୁ ସ୍ୱାନା ॥
ବୋଲହିଁ ଖଗ ଜଗ ଆରତି ହେତୂ । ପ୍ରଗଟ ଭଏ ନଭ ଜହଁ ତହଁ କେତୂ ॥୪॥
ଦସ ଦିସି ଦାହ ହୋନ ଅତି ଲାଗା । ଭୟଉ ପରବ ବିନୁ ରବି ଉପରାଗା ॥
ମନ୍ଦୋଦରି ଉର କଂପତି ଭାରୀ । ପ୍ରତିମା ସ୍ରବହିଁ ନୟନ ମଗ ବାରୀ ॥୫॥

ପ୍ରତିମା ରୁଦହିଁ ପବିପାତ ନଭ ଅତି ବାତ ବହ ଡୋଲତି ମହୀ ।
ବରଷହିଁ ବଲାହକ ରୁଧିର କଚ ରଜ ଅସୁଭ ଅତି ସକ କୋ କହୀ ॥
ଉତପାତ ଅମିତ ବିଲୋକି ନଭ ସୁର ବିକଲ ବୋଲହିଁ ଜୟ ଜଏ ।
ସୁର ସଭୟ ଜାନି କୃପାଲ ରଘୁପତି ଚାପ ସର ଜୋରତ ଭଏ ॥

---

ନାଭି କୁଣ୍ଡରେ ଏହାର ଅମୃତ ରହିଛି । ନାଥ, ତାହାରି ବଳରୁ ରାବଣ ବଞ୍ଚିଛି ॥
ଶୁଣି ବିଭୀଷଣ ବାଣୀ କରୁଣାସାଗର । ହରଷେ ଧରିଲେ କରେ ବାଣ ଭୟଙ୍କର ॥୩॥
ଅଶକୁନ ହେଲା ତେବେ ବିବିଧ ବିଧାନ । ରୋଦନ୍ତି ବହୁ ଶୃଗାଳ ପୁଣି ଖର ଶ୍ୱାନ ॥
ରାବନ୍ତି ଖଗ ଜଗତ ଅଲକ୍ଷଣ ହେତୁ । ପ୍ରକଟ ହୋଇଲେ ଯହିଁ ତହିଁ ଧୂମକେତୁ ॥୪॥
ଦଶଦିଗ ତେବେ ଦାହ ହେବାକୁ ଲାଗିଲା । ପର୍ବ ବିନା ରବି ଉପରାଗ ଆରମ୍ଭିଲା ॥
ମନ୍ଦୋଦରୀ ହୃଦ ହେଲା କମ୍ପମାନ ଭାରି । ପ୍ରତିମା ନୟନୁ କଲେ ବିମୋଚନ ବାରି ॥୫॥

ପ୍ରତିମା ସ୍ରବେ ବାରି, ବଜ୍ର ପଡଇ ଭାରି, ଭୂ କମ୍ପେ, ମରୁତ ବହଇ ।
ବର୍ଷନ୍ତି ମେଘମାଳ ରଜ ରୁଧିର ବାଳ, ଅଶୁଭ କେ କହି ପାରଇ ।
ଉତ୍ପାତ ବିବୁଧେ ଦେଖିଲେ, ବିକଳେ 'ଜୟେସ୍ତୁ' ଘୋଷିଲେ,
ସୁରେ ସଭୟ ଜାଣି କୃପାଳୁ ରଘୁମଣି କୋଦଣ୍ଡେ ଶର ସନ୍ଧାନିଲେ ॥

---

ମରିଯାଏ, ସେହି ପ୍ରଭୁ ସେବକର ପ୍ରୀତି ପରୀକ୍ଷା କରୁଅଛନ୍ତି ।" ବିଭୀଷଣ କହିଲେ, "ହେ ସର୍ବଜ୍ଞ ! ହେ ଚରାଚର-ନାୟକ ! ହେ ଶରଣାଗତ-ପାଳକ ! ହେ ଦେବତା-ମୁନି-ସୁଖଦାୟକ ! ଶୁଣନ୍ତୁ— ॥ ୨ ॥ "ଏହାର ନାଭିକୁଣ୍ଡରେ ଅମୃତର ନିବାସ । ହେ ନାଥ ! ରାବଣ ତାହାରି ବଳରେ ଜୀଇ ରହିଛି ।" ବିଭୀଷଣଙ୍କ ବଚନ ଶୁଣିବା ମାତ୍ରେ କୃପାଳୁ ଶ୍ରୀ ରଘୁନାଥ ଆନନ୍ଦିତ ହୋଇ ହସ୍ତରେ ଭୟଙ୍କର ବାଣ ଧାରଣ କଲେ ॥ ୩ ॥ ସେହି ସମୟରେ ନାନା ପ୍ରକାରର ଅଶୁଭ ଲକ୍ଷଣ ଦେଖାଗଲା । ବହୁତ ଗଧ, ଶୃଗାଳ ଓ କୁକୁର ବୋବାଳି ଛାଡିବାକୁ ଲାଗିଲେ । ପକ୍ଷୀମାନେ ଜଗତର ଦୁଃଖ ଜଣାଇବା ନିମନ୍ତେ ବୋବାଇବାକୁ ଲାଗିଲେ । ଆକାଶରେ ଏଣେ ତେଣେ ଧୂମକେତୁ (ଲଞ୍ଜାତାରା) ଦେଖା ଦେଲେ ॥ ୪ ॥ ଦଶଦିଗରେ ଅତ୍ୟନ୍ତ ଦାହ ହେବାକୁ ଲାଗିଲା । ବିନା ଯୋଗରେ ସୂର୍ଯ୍ୟୋପରାଗ ହେବାକୁ ଲାଗିଲା । ମନ୍ଦୋଦରୀର ହୃଦୟ ଅତି ମାତ୍ରାରେ

ଖୈଁଚି ସରାସନ ଶ୍ରବନ ଲଗି ଛାଡ଼େ ସର ଏକତୀସ ।
ରଘୁନାୟକ ସାୟକ ଚଲେ ମାନହୁଁ କାଲ ଫନୀସ ॥୧୦୨॥

ସାୟକ ଏକ ନାଭି ସର ସୋଷା । ଅପର ଲଗେ ଭୁଜ ସିର କରି ରୋଷା ॥
ଲୈ ସିର ବାହୁ ଚଲେ ନାରାଚା । ସିର ଭୁଜ ହୀନ ରୁଣ୍ଡ ମହି ନାଚା ॥୧॥
ଧରନି ଧସଇ ଧର ଧାଵ ପ୍ରଚଣ୍ଡା । ତବ ସର ହତି ପ୍ରଭୁ କୃତ ଦୁଇ ଖଣ୍ଡା ॥
ଗର୍ଜେଉ ମରତ ଘୋର ରବ ଭାରୀ । କହାଁ ରାମୁ ରନ ହତୌଁ ପଚାରୀ ॥୨॥
ଡୋଲୀ ଭୂମି ଗିରତ ଦସକଂଧର । ଛୁଭିତ ସିନ୍ଧୁ ସରି ଦିଗ୍ଗଜ ଭୂଧର ॥
ଧରନି ପରେଉ ଦ୍ୱୌ ଖଣ୍ଡ ବଢ଼ାଈ । ଚାପି ଭାଲୁ ମର୍କଟ ସମୁଦାଈ ॥୩॥

---

ଶ୍ରବଣ ପର୍ଯ୍ୟନ୍ତେ ଆକର୍ଷି ଛାଡନ୍ତେ ନାରାଚ ଏକତିରିଶ ।
ଚଳିଲେ ଶାୟକ-ନିକର ରାମଙ୍କ ଯେସନେ କାଳ ଫଣୀଶ ॥୧୦୨॥

ଶର ଏକ ନାଭିସର ଶୋଷିଲା ହୁଙ୍କାରେ । ସରୋଷେ ଲାଗିଲେ ଅନ୍ୟ ଭୁଜ ମସ୍ତକରେ ॥
ଘେନିଣ ବାହୁ ମସ୍ତକ ଚଳିଲେ ନାରାଚେ । ଭୁଜ ଶିର ବିନା ଗଣ୍ଡି ଧରଣୀରେ ନାଚେ ॥୧॥
ଧରଣୀ ଧସିଲା ଗଣ୍ଡି ଧାଆନ୍ତେ ପ୍ରଚଣ୍ଡ । ତହୁଁ ପ୍ରଭୁ ବାଣ ମାରି କଲେ ବେନି ଖଣ୍ଡ ॥
ମୃତ୍ୟୁ ସମୟରେ ଘୋର ଗରଜିଲା ଭାରି । କାହିଁ ରାମ ? ରଣାଙ୍ଗନେ ଶୁଣାଇବ ମାରି ॥୨॥
କମ୍ପିଲା ମହୀ ପଡନ୍ତେ ସେ ଦଶକନ୍ଧର । କ୍ଷୋଭିତ ସିନ୍ଧୁ ସରିତ ଦିଗ୍ଗଜ ଭୂଧର ॥
ପଡ଼ିଲା ଭୂମିରେ ଦ୍ୱିଗୁ ଖଣ୍ଡ ବିସ୍ତାରିଣ । ତଳେ ଭାଲୁ ମର୍କଟ ଅସଂଖ୍ୟ ମର୍ଦ୍ଦିଣ ॥୩॥

---

କମ୍ପିବାକୁ ଲାଗିଲା । ମୂର୍ତ୍ତିମାନେ ନେତ୍ରପଥରେ ଜଳ ବହାଇବାକୁ ଲାଗିଲେ ॥ ୫ ॥ ଛନ୍ଦ ।—ମୂର୍ତ୍ତିମାନେ କାନ୍ଦିବାକୁ ଲାଗିଲେ, ଆକାଶରୁ ବଜ୍ରପାତ ହେବାକୁ ଲାଗିଲା, ଅତି ପ୍ରଚଣ୍ଡ ବେଗରେ ବାୟୁ ବହିଲା । ପୃଥିବୀ ଦୋହଲିବାକୁ ଲାଗିଲା, ମେଘମାନେ ରକ୍ତ, ବାଳ ଓ ଧୂଳି ବୃଷ୍ଟି କରିବାକୁ ଲାଗିଲେ । ଏହି ରୂପେ ଏତେ ଅଧିକ ମାତ୍ରାରେ ଅମଙ୍ଗଳ ଲକ୍ଷଣ ଦେଖାଗଲା, ତାହାକୁ କିଏ କଥାରେ କହି ପାରିବ ? ଅସଂଖ୍ୟ ଉତ୍ପାତ ଦେଖି ଆକାଶରେ ଦେବତାମାନେ ବ୍ୟାକୁଳ ହେଲେ ଏବଂ "ଜୟ ଜୟ" ଧ୍ୱନି କରିବାକୁ ଲାଗିଲେ । ଦେବତାମାନେ ଭୟଭୀତ ହୋଇ ପଡ଼ିଅଛନ୍ତି ଜାଣି କୃପାଳୁ ଶ୍ରୀ ରଘୁନାଥ ଧନୁ ଉପରେ ଶର ଯୋଖିବାକୁ ଲାଗିଲେ ॥ ଦୋ ।—ଶ୍ରୀ ରଘୁନାଥ କାନ ପର୍ଯ୍ୟନ୍ତ ଧନୁକୁ ଟାଣି ଏକତିରିଶ ଗୋଟି ବାଣ ଛାଡ଼ିଲେ । ଶ୍ରୀରାମଚନ୍ଦ୍ରଙ୍କ ବାଣସମୂହ ଚାଲିଲା ବେଳେ ଶ୍ରେଷ୍ଠ କାଳସର୍ପ ଚାଲିଲା ପରି ବୋଧ ହେଉଥା'ନ୍ତି ॥ ୧୦୨ ॥ ଚୌପାଇ — ଗୋଟିଏ ବାଣ ନାଭିର ଅମୃତ କୁଣ୍ଡକୁ ଶୋଷିନେଲା । ଅନ୍ୟ ତିରିଶଗୋଟି ବାଣ ରୋଷ କରି ତାହାର ଶିର ଓ ବାହୁମାନଙ୍କରେ ବାଜିଲା । ବାଣ ସବୁ ଶିର ଓ ବାହୁମାନଙ୍କୁ ଧରି ଚାଲିଲା । ଶିର-ବାହୁ-ବିହୀନ ଗଣ୍ଡି ପୃଥିବୀ ଉପରେ ନାଚିବାକୁ ଲାଗିଲା ॥ ୧ ॥ ଗଣ୍ଡି ପ୍ରଚଣ୍ଡ ବେଗରେ ଦୌଡୁଥାଏ, ଫଳରେ ଭୂମି ଦବିବାକୁ ଲାଗିଲା । ସେତେବେଳେ ପ୍ରଭୁ ବାଣ ମାରି ତାହାକୁ ଦୁଇଖଣ୍ଡ କରିଦେଲେ । ମରିବା ସମୟରେ ରାବଣ ବଡ

ମନ୍ଦୋଦରି ଆଗେଁ ଭୁଜ ସୀସା । ଧରି ସର ଚଲେ ଜହାଁ ଜଗଦୀସା ॥
ପ୍ରବିସେ ସବ ନିଷଙ୍ଗ ମହୁଁ ଜାଈ । ଦେଖି ସୁରହ୍ନ ଦୁନ୍ଦୁଭୀଁ ବଜାଈ ॥୪॥
ତାସୁ ତେଜ ସମାନ ପ୍ରଭୁ ଆନନ । ହରଷେ ଦେଖି ସମ୍ଭୁ ଚତୁରାନନ ॥
ଜୟ ଜୟ ଧୁନି ପୂରି ବ୍ରହ୍ମଂଡା । ଜୟ ରଘୁବୀର ପ୍ରବଲ ଭୁଜଦଂଡା ॥୫॥
ବରଷହିଁ ସୁମନ ଦେବ ମୁନି ବୃନ୍ଦା । ଜୟ କୃପାଲ ଜୟ ଜୟତି ମୁକୁନ୍ଦା ॥୬॥

ଜୟ କୃପା କଂଦ ମୁକୁନ୍ଦ ଦ୍ୱନ୍ଦ ହରନ ସରନ ସୁଖପ୍ରଦ ପ୍ରଭୋ ।
ଖଲ ଦଲ ବିଦାରନ ପରମ କାରନ କାରୁନୀକ ସଦା ବିଭୋ ॥
ସୁର ସୁମନ ବରଷହିଁ ହରଷ ସଂକୁଲ ବାଜ ଦୁନ୍ଦୁଭି ଗହଗହୀ ।
ସଂଗ୍ରାମ ଅଂଗନ ରାମ ଅଂଗ ଅନଂଗ ବହୁ ସୋଭା ଲହୀ ॥୧॥

---

ମନ୍ଦୋଦରୀ ସମ୍ମୁଖରେ ରଖି ଭୁଜ ଶିର । ଫେରିଲେ ଶାୟକ ଯହିଁ ପ୍ରଭୁ ରଘୁବୀର ॥
ପ୍ରବେଶିଲେ ଆସି ସର୍ବେ ନିଷଙ୍ଗ ମଧ୍ୟରେ । ଦେଖି ନଭେ ବଜାଇଲେ ଦୁନ୍ଦୁଭି ଅମରେ ॥୪॥
ତାର ତେଜ ମିଳିଗଲା ପ୍ରଭୁଙ୍କ ଆନନେ । ଦେଖି ଅଜ ଶିବ ହେଲେ ଉତ୍ଫୁଲ୍ଲ ପ୍ରସନ୍ନେ ॥
ଜୟ ଜୟ ଶବ୍ଦେ ପୂର୍ଣ୍ଣ ହେଲା ନବଖଣ୍ଡ । 'ଜୟ ରଘୁବୀର ପରାକ୍ରମୀ ଭୁଜଦଣ୍ଡ' ॥୫॥
ସୁମନ ବୃଷ୍ଟି କରନ୍ତି ସୁର ମୁନି ବୃନ୍ଦ । 'ଜୟ କୃପାମୟ ଜୟ ଜୟନ୍ତ ମୁକୁନ୍ଦ' ॥୬॥

ଜୟ କୃପାସାଗର ମୁକୁନ୍ଦ ଦ୍ୱନ୍ଦ୍ୱହର ଶରଣ-ସୁଖଦାୟୀ ପ୍ରଭୋ ।
ଖଳ-ଦଳ-ଦାରଣ ପରାତ୍ପର କାରଣ ସତତ କାରୁଣିକ ବିଭୋ ।
ବର୍ଷନ୍ତି ସବୁଧେ ସୁମନ, ଦୁନ୍ଦୁଭି ବାଜେ ଘନ ଘନ,
ସଂଗ୍ରାମ ପ୍ରାଙ୍ଗଣରେ ରାମଙ୍କ ଅଙ୍ଗ ଧରେ ବହୁ ଅନଙ୍ଗ ଶୋଭାଗଣ ॥୧॥

---

ଭୟଙ୍କର ଶବ୍ଦ କରି ଗର୍ଜ୍ଜନ କରି କହିଲା, "ରାମ କେଉଁଠି ? ମୁଁ ତାହାଙ୍କୁ ଆହ୍ୱାନ କରି ଯୁଦ୍ଧରେ ମାରିବି !" ॥ ୨ ॥ ରାବଣ ପଡ଼ିବା ମାତ୍ରେ ପୃଥିବୀ ଦୋହଲିଗଲା । ସମୁଦ୍ର, ନଦୀ, ଦିଗ୍‌ଗଜ ଓ ପର୍ବତମାନେ କ୍ଷୁବ୍ଧ ହୋଇ ଉଠିଲେ । ରାବଣ ଶରୀର ଦୁଇଗଡ଼କୁ ବିସ୍ତାର କରି ତାହାଦ୍ୱାରା ଭଲ୍ଲୁକ ଓ ବାନରମାନଙ୍କୁ ଚାପି ପୃଥିବୀ ଉପରେ ଖସି ପଡ଼ିଲା ॥ ୩ ॥ ରାବଣର ବାହୁ ଓ ଶିରଗୁଡ଼ିକୁ ମନ୍ଦୋଦରୀ ଆଗରେ ରଖି ରାମ-ବାଣ ଜଗଦୀଶ୍ୱର ଶ୍ରୀରାମ ଥିବା ସ୍ଥାନକୁ ଫେରିଗଲା । ସମସ୍ତ ବାଣ ଯାଇ ତୂଣୀରରେ ପ୍ରବେଶ କଲା । ଏହା ଦେଖି ଦେବତାମାନେ ଦୁନ୍ଦୁଭି ବଜାଇଲେ ॥ ୪ ॥ ରାବଣର ତେଜ ପ୍ରଭୁଙ୍କ ମୁଖରେ ସମାଇ ଗଲା । ଏହା ଦେଖି ଶିବ ଓ ବ୍ରହ୍ମା ଆନନ୍ଦିତ ହେଲେ । ସମଗ୍ର ବ୍ରହ୍ମାଣ୍ଡରେ "ଜୟ ଜୟ" ଧ୍ୱନି ଭରିଗଲା । "ପ୍ରବଳ ଭୁଜଦଣ୍ଡ ଶ୍ରୀ ରଘୁବୀରଙ୍କ ଜୟ ହେଉ", ବୋଲି ସମସ୍ତେ କହିବାକୁ ଲାଗିଲେ ॥ ୫ ॥ ଦେବତା ଓ ମୁନି-ବୃନ୍ଦ ପୁଷ୍ପ ବୃଷ୍ଟି କରୁଥା'ନ୍ତି ଏବଂ କହୁଥା'ନ୍ତି—"କୃପାଳୁଙ୍କର ଜୟ ହେଉ, ମୁକୁନ୍ଦଙ୍କର ଜୟ ହେଉ, ଜୟ ହେଉ !" ॥ ୬ ॥ ଛନ୍ଦ :—ହେ କୃପାକନ୍ଦ ! ହେ

ସିର ଜଟା ମୁକୁଟ ପ୍ରସୂନ ବିଚ ବିଚ ଅତି ମନୋହର ରାଜହିଁ ।
ଜନୁ ନୀଲଗିରି ପର ତଡ଼ିତ ପଟଲ ସମେତ ଉଡୁଗନ ଭ୍ରାଜହିଁ ॥
ଭୁଜଦଣ୍ଡ ସର କୋଦଣ୍ଡ ଫେରତ ରୁଧିର କନ ତନ ଅତି ବନେ ।
ଜନୁ ରାୟମୁନୀଁ ତମାଲ ପର ବୈଠୀଁ ବିପୁଲ ସୁଖ ଆପନେ ॥୨॥

କୃପାଦୃଷ୍ଟି କରି ବୃଷ୍ଟି ପ୍ରଭୁ ଅଭୟ କିଏ ସୁରବୃନ୍ଦ ।
ଭାଲୁ କୀସ ସବ ହରଷେ ଜୟ ସୁଖଧାମ ମୁକୁନ୍ଦ ॥୧୦୩॥
ପତି ସିର ଦେଖତ ମଂଦୋଦରୀ । ମୁରୁଛିତ ବିକଲ ଧରନି ଖସି ପରୀ ॥
ଜୁବତି ବୃନ୍ଦ ରୋବତ ଉଠି ଧାଈଁ । ତେହି ଉଠାଇ ରାବନ ପହିଁ ଆଈଁ ॥୧॥

---

ଶିରେ ଜଟା ବନ୍ଧନ ମଧ୍ୟେ ମଧ୍ୟେ ପ୍ରସୂନ ଅତ୍ୟନ୍ତ ସୁନ୍ଦର ସାଜନ୍ତି ।
ଯଥା ନୀଳ ଶୈଳ ଶୃଙ୍ଗେ ତଡ଼ିତ୍ପଟଳ ତାରାଙ୍କ ସହିତ ରାଜନ୍ତି ।
ଶୋଭନ୍ତି ନୃପ ଶର କରେ, ରୁଧିର ବିନ୍ଦୁ କଳେବରେ,
ଅରୁଣ ଶୁକ ଗଣ ମହାସୁଖେ ମଗନ କିବା ତମାଲ ବୃକ୍ଷ ପରେ ॥୨॥

ପ୍ରଭୁ କୃପା-ଦୃଷ୍ଟି କରିଣ ସୁବୃଷ୍ଟି ସୁରଙ୍କୁ କଲେ ଅଭୟ ।
ବୋଲନ୍ତି ଆନନ୍ଦେ ଋକ୍ଷ କପି ବୃନ୍ଦେ 'ସୁଖଧାମ ହରି ଜୟ' ॥୧୦୩॥
ପତି ଶିର ମନ୍ଦୋଦରୀ ଯେବେ ବିଲୋକିଲା । ବିକଳେ ମୂର୍ଚ୍ଛିତ ହୋଇ ମହୀରେ ପଡ଼ିଲା ॥
ଯୁବତୀବୃନ୍ଦ ରୋଦନ କଲେ ଉଠି ଧାଇଁ । ରାବଣ ପାଶେ ତାହାଙ୍କୁ ଆଣିଲେ ଉଠାଇ ॥୧॥

---

ମୋକ୍ଷଦାତା ମୁକୁନ୍ଦ ! ହେ ଦ୍ୱନ୍ଦ୍ୱହାରକ ! ହେ ଶରଣାଗତ-ସୁଖ-ଦାୟକ ପ୍ରଭୋ ! ହେ ଖଳଦଳ-ବିଦାରକ ! ହେ ପରମ କାରଣ ! ହେ ସଦା-କରୁଣାକର ! ହେ ସର୍ବ-ବ୍ୟାପକ ବିଭୋ ! ଆପଣଙ୍କର ଜୟ ହେଉ !" ଦେବତାମାନେ ଆନନ୍ଦରେ ପରିପୂର୍ଣ୍ଣ ହୋଇ ପୁଷ୍ପବୃଷ୍ଟି କରୁଥା'ନ୍ତି । ଘନଘନ ନାଦରେ ଦୁନ୍ଦୁଭିମାନ ବାଜି ଉଠୁଥାଏ । ରଣଭୂମିରେ ଶ୍ରୀରାମଚନ୍ଦ୍ରଙ୍କ ଅଙ୍ଗପ୍ରତ୍ୟଙ୍ଗମାନେ ଅନେକ କାମଦେବଙ୍କ ଶୋଭା ଲାଭ କଲେ ॥ ୧ ॥ ଶିର ଉପରେ ଜଟାମାନଙ୍କ ମୁକୁଟ ବିରାଜିତ । ତାହାର ମଧ୍ୟେ ମଧ୍ୟେ ଅତି ମନୋହର ପୁଷ୍ପ ଶୋଭା ପାଉଥାଏ । ସତେ ଅବା ନୀଳ ପର୍ବତ ଉପରେ ତଡ଼ିତ୍-ସମୂହ ସହିତ ନକ୍ଷତ୍ରମାନେ ସୁଶୋଭିତ ହେଉଅଛନ୍ତି । ଶ୍ରୀରାମ ନିଜ ଭୁଜ-ଦଣ୍ଡରେ ଧନୁ ଓ ଶର ଘୂରାଉଥା'ନ୍ତି । ଶରୀର ଉପରେ ରୁଧିର-କଣମାନ ଅତି ସୁନ୍ଦର ଦିଶୁଥାଏ । ସତେ ଅବା ତମାଳ ବୃକ୍ଷ ଉପରେ ବହୁତ ଲାଲମନ୍ ଶୁକପକ୍ଷୀ ଆପଣା ଆପଣାର ମହା-ସୁଖରେ ମଗ୍ନ ହୋଇ ନିଶ୍ଚଳ ଅବସ୍ଥାରେ ବସିଅଛନ୍ତି ॥ ୨ ॥ ଦୋହା :—ପ୍ରଭୁ ଶ୍ରୀରାମଚନ୍ଦ୍ର କୃପାଦୃଷ୍ଟି ବୃଷ୍ଟି କରି ଦେବବୃନ୍ଦଙ୍କୁ ଅଭୟ କରିଦେଲେ । ବାନର ଓ ଭଲ୍ଲୁକମାନେ ସମସ୍ତେ ଆନନ୍ଦିତ ହେଲେ ଏବଂ "ସୁଖଧାମ ମୁକୁନ୍ଦଙ୍କ ଜୟ ହେଉ", ଏହିପରି ଧ୍ୱନି କରିବାକୁ ଲାଗିଲେ ॥ ୧୦୩ ॥ ଚୌପାଈ :—ପତିଙ୍କର ଶିର ଦେଖିବା

ପତି ଗତି ଦେଖି ତେ କରହିଁ ପୁକାରା । ଛୂଟେ କଚ ନହିଁ ବପୁଷ ସଁଭାରା ॥
ଉର ତାଡ଼ନା କରହିଁ ବିଧି ନାନା । ରୋଵତ କରହିଁ ପ୍ରତାପ ବଖାନା ॥୨॥
ତବ ବଲ ନାଥ ଡୋଲ ନିତ ଧରନୀ । ତେଜହୀନ ପାବକ ସସି ତରନୀ ॥
ସେଷ କମଠ ସହି ସକହିଁ ନ ଭାରା । ସୋ ତନୁ ଭୂମି ପରେଉ ଭରି ଛାରା ॥୩॥
ବରୁନ କୁବେର ସୁରେସ ସମୀରା । ରନ ସନ୍ମୁଖ ଧରି କାହୁଁ ନ ଧୀରା ॥
ଭୁଜବଲ ଜିତେହୁ କାଲ ଜମ ସାଇଁ । ଆଜୁ ପରେହୁ ଅନାଥ କୀ ନାଇଁ ॥୪॥
ଜଗତ ବିଦିତ ତୁମ୍ହାରି ପ୍ରଭୁତାଈ । ସୁତ ପରିଜନ ବଲ ବରନି ନ ଜାଈ ॥
ରାମ ବିମୁଖ ଅସ ହାଲ ତୁମ୍ହାରା । ରହା ନ କୋଉ କୁଲ ରୋଵନିହାରା ॥୫॥

---

ପତି ଗତି ଦେଖି କରେ କରୁଣ ଚିତ୍କାର । ଉନ୍ମୁକ୍ତ କେଶ, ସମ୍ଭାଳି ନୋହେ ଦେହ ଭାର ॥
ତାଡ଼ଇ ନିଜ ହୃଦୟ ବିବିଧ ବିଧାନେ । ରୋଦନ କରି ପତିର ପ୍ରତାପ ବଖାଣେ ॥୨॥
ନାଥ ! ତୁମ୍ଭ ବଳେ ଧରା କମ୍ପୁଥିଲା ନିତ୍ୟ । ନିସ୍ତେଜ ହୋଇଲେ ଶଶୀ, ଅନଳ, ଆଦିତ୍ୟ ॥
ପାରୁ ନ ଥିଲେ କଚ୍ଛପ ଶେଷ ଭାର ସହି । ସେ ତନୁ ପଡ଼ିଛି ଆଜି ଧୂଳିଯୁକ୍ତ ମହୀ ॥୩॥
ବରୁଣ କୁବେର ଶକ୍ର ସମୀର ଅମରେ । ଧୈର୍ଯ୍ୟ କେହି ନ ଧରିଲେ ସମ୍ମୁଖ ସମରେ ॥
ଭୁଜବଳେ କାନ୍ତ, କାଳ ଯମଙ୍କୁ ଜିଣିଲ । ଅନାଥ ସଦୃଶ ଆଜି ଭୂମିରେ ଶୋଇଲ ॥୪॥
ଜଗତେ ତୁମ୍ଭ ପ୍ରତାପ ବିଦିତ ଅଟଇ । ସୁତ ପରିଜନ ବଳ କହି ନ ହୁଅଇ ।
ରାମ ପରାଙ୍ମୁଖେ ତୁମ୍ଭ ଏ ଦଶା ହୋଇଲା । କାନ୍ଦିବ ବୋଲିଣ କେହି କୁଳେ ନ ରହିଲେ ॥୫॥

---

ମାତେ ମନ୍ଦୋଦରୀ ବ୍ୟାକୁଳା ଓ ମୂର୍ଚ୍ଛିତା ହୋଇ ଭୂମି ଉପରେ ଖସିପଡ଼ିଲା । ସ୍ତ୍ରୀମାନେ କାନ୍ଦି କାନ୍ଦି ଉଠି ଧାଇଁଲେ ଏବଂ ତାହାଙ୍କୁ ଉଠାଇ ରାବଣ ପାଖକୁ ଆଣିଲେ ॥ ୧ ॥ ପତିଙ୍କ ଦଶା ଦେଖି ମନ୍ଦୋଦରୀ ଆଦି ସ୍ତ୍ରୀମାନେ ବାହୁନି ବାହୁନି କାନ୍ଦିବାକୁ ଲାଗିଲେ । ସେମାନଙ୍କ ବାଳ ମୁକୁଳି ଗଲା ଏବଂ ଦେହର ଅବସ୍ଥା ସମ୍ଭାଳିବା ଆଡ଼କୁ ସେମାନେ ଦୃଷ୍ଟି ଦେଇପାରୁ ନ ଥା'ନ୍ତି । ସେମାନେ ଅନେକ ପ୍ରକାରେ ଛାତି ପିଟୁଥା'ନ୍ତି ଏବଂ କାନ୍ଦି କାନ୍ଦି ରାବଣର ପ୍ରତାପ ବଖାଣୁଥା'ନ୍ତି ॥୨॥ ମନ୍ଦୋଦରୀ କହୁଥାଏ, "ହେ ନାଥ ! ତୁମ ବଳ ଯୋଗେ ପୃଥିବୀ ସବୁବେଳେ କମ୍ପୁଥିଲା । ଅଗ୍ନି, ଚନ୍ଦ୍ରମା ଓ ସୂର୍ଯ୍ୟ ତୁମ ଆଗରେ ନିସ୍ତେଜ ଥିଲେ । ଶେଷ ଓ କଚ୍ଛପ ସୁଦ୍ଧା ଯାହାଙ୍କ ଶରୀର-ଭାର ସହିପାରୁ ନ ଥିଲେ, ତୁମର ସେହି ଶରୀର ଆଜି ଧୂଳିଧୂସରିତ ହୋଇ ପୃଥିବୀ ଉପରେ ପଡ଼ିଅଛି ॥ ୩ ॥ ବରୁଣ, କୁବେର, ଇନ୍ଦ୍ର ଓ ବାୟୁ ଏମାନଙ୍କ ମଧ୍ୟରୁ କେହି ସୁଦ୍ଧା ରଣରେ ତୁମ ଆଗରେ ଧୈର୍ଯ୍ୟ ଧାରଣ କରିପାରି ନାହାନ୍ତି । ହେ ସ୍ୱାମି ! ତୁମେ ଆପଣା ବାହୁ-ବଳରେ କାଳ ଓ ଯମରାଜଙ୍କୁ ସୁଦ୍ଧା ଜିଣି ପାରିଥିଲ । ତୁମେ ସେହି ମହାପରାକ୍ରମଶାଳୀ ବୀର ଆଜି ଅନାଥ ପରି ପଡ଼ିଅଛ ॥ ୪ ॥ ତୁମର ପ୍ରଭୁତ୍ୱ ସାରା ସଂସାରରେ ପ୍ରସିଦ୍ଧ । ତୁମର ପୁତ୍ର ଓ ଆତ୍ମୀୟ ସ୍ୱଜନଙ୍କ ବଳ ହାୟ, ବର୍ଣ୍ଣନାତୀତ ! ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ବିମୁଖ ହେବାରୁ ତୁମର ଏହି ଦୁର୍ଦ୍ଦଶା ହେଲା । ପରିଣାମରେ ଆଜି କୁଳରେ କାନ୍ଦିବାକୁ କେହି ଜଣେ ସୁଦ୍ଧା

ତବ ବସ ବିଧି ପ୍ରପଞ୍ଚ ସବ ନାଥା । ସଭୟ ଦିସିପ ନିତ ନାୱହିଁ ମାଥା ॥
ଅବ ତବ ସିର ଭୁଜ ଜମ୍ବୁକ ଖାହୀଁ । ରାମ ବିମୁଖ ୟହ ଅନୁଚିତ ନାହୀଁ ॥୬॥
କାଲ ବିବସ ପତି କହା ନ ମାନା । ଅଗ ଜଗ ନାଥୁ ମନୁଜ କରି ଜାନା ॥୭॥

ଜାନ୍ୟୋ ମନୁଜ କରି ଦନୁଜ କାନନ ଦହନ ପାବକ ହରି ସ୍ୱୟଂ ।
ଜେହି ନମତ ସିବ ବ୍ରହ୍ମାଦି ସୁର ପିଅ ଭଜେହୁ ନହିଁ କରୁନାମୟଂ ॥
ଆଜନ୍ମ ତେଁ ପରଦ୍ରୋହ ରତ ପାପୌଘମୟ ତବ ତନୁ ଅୟଂ ।
ତୁମ୍ହହୂ ଦିୟୋ ନିଜ ଧାମ ରାମ ନମାମି ବ୍ରହ୍ମ ନିରାମୟଂ ॥

ଅହହ ନାଥ ରଘୁନାଥ ସମ କୃପାସିନ୍ଧୁ ନହିଁ ଆନ ।
ଜୋଗିବୃନ୍ଦ ଦୁର୍ଲଭ ଗତି ତୋହି ଦୀହ୍ନି ଭଗବାନ ॥୧୦୪॥

---

ବିଧାତା ପ୍ରପଞ୍ଚ ସର୍ବ ତୁମ୍ଭ ବଶ କାନ୍ତ । ମସ୍ତକ ନୁଆଉଁ ଥିଲେ ଭୟେ ଦିଶି-ନାଥ ॥
ଜମ୍ବୁକ ଖାଆନ୍ତି ତୁମ୍ଭ ଭୁଜ ଶିର ଏବେ । ରାମଦ୍ରୋହେ ଏହା ନୁହେ ଅନୁଚିତ କେବେ ॥୬॥
କାଳବଶ ହୋଇ ପତି, କଥା ନ ମାନିଲ । ସକଳ ଲୋକନାଥଙ୍କୁ ମନୁଷ୍ୟ ମଣିଲ ॥୭॥

ମଣିଲ ନର କରି ସ୍ୱୟଂ ପ୍ରଭୁ ଶ୍ରୀ ହରି ଦନୁଜ-ବନ-କୃଶାନୁଙ୍କୁ ।
ଯାହାଙ୍କୁ ବ୍ରହ୍ମା ଶିବ ସୁରେ ନମନ୍ତି ଧବ, ନ ଭଜିଲ ସେ କୃପାଳୁଙ୍କୁ ।
ଆଜନ୍ମ ପରଦ୍ରୋହ ରତ, ତୁମ୍ଭ ଏ ଦେହ ପାପାସକ୍ତ,
ତୁମ୍ଭଙ୍କୁ ନିଜ ଧାମ ଦେଲେ ବ୍ରହ୍ମ ଶ୍ରୀରାମ ନମାମି ବିକାର ବିଗତ ॥

ଆହା ପ୍ରିୟତମ, ରଘୁନାଥ ସମ କୃପାସିନ୍ଧୁ ନାହିଁ ଆନ ।
ଯେ ଗତି ଯୋଗୀଙ୍କୁ ଦୁର୍ଲଭ ତୁମ୍ଭଙ୍କୁ ଦେଲେ ତାହା ଭଗବାନ ॥୧୦୪॥

---

ରହିଲା ନାହିଁ ॥ ୫ ॥ ହେ ନାଥ ! ବିଧାତାଙ୍କର ସମସ୍ତ ସୃଷ୍ଟି ତୁମର ଅଧୀନରେ ଥିଲା । ଲୋକପାଳମାନେ ସଦାସର୍ବଦା ଭୟଭୀତ ହୋଇ ତୁମ୍ଭଙ୍କୁ ମସ୍ତକ ନୁଆଉଁଥିଲେ, କିନ୍ତୁ ହାୟ ! ଆଜି ଶୃଗାଳମାନେ ତୁମ ଶିର ଓ ବାହୁଗୁଡ଼ିକୁ ଭୋଜନ କରୁଅଛନ୍ତି । ରାମ-ବିମୁଖ ନିମନ୍ତେ ଏପରି ଅବସ୍ଥା ଅନୁଚିତ ନୁହେଁ ॥ ୬ ॥ ହେ ପତି ! କାଳର ସମ୍ପୂର୍ଣ୍ଣ ବଶୀଭୂତ ହୋଇଥିବାରୁ ତୁମେ କାହାର କଥା ମାନିଲ ନାହିଁ ଏବଂ ଚରାଚର ନାଥ ପରମାତ୍ମାଙ୍କୁ ମନୁଷ୍ୟ ବୋଲି ମଣିଲ ॥ ୭ ॥ ଛନ୍ଦ —ଦୈତ୍ୟ-ବନକୁ ଜଳାଇବା ନିମନ୍ତେ ଦାବାଗ୍ନି ସ୍ୱରୂପ ସାକ୍ଷାତ୍ ଶ୍ରୀହରିଙ୍କୁ ତୁମେ ମନୁଷ୍ୟ ବୋଲି ମଣିଲ । ଶିବ ଓ ବ୍ରହ୍ମା ଆଦି ଦେବତା ଯାହାଙ୍କୁ ନମସ୍କାର କରନ୍ତି, ସେହି କରୁଣା-ମୟ ଭଗବାନଙ୍କୁ ହେ ପ୍ରିୟତମ ! ତୁମେ ଭଜିଲ ନାହିଁ । ତୁମର ଏହି ଶରୀର ଜନ୍ମକାଳରୁ ହିଁ ଅନ୍ୟମାନଙ୍କ ପ୍ରତି ଦ୍ରୋହ କରିବାରେ ତତ୍ପର ଥିଲା ଏବଂ ପାପ-ସମୂହରେ ପୂର୍ଣ୍ଣଥିଲା । ତଥାପି ଯେଉଁ ନିର୍ବିକାର ବ୍ରହ୍ମ ଶ୍ରୀରାମ ତୁମ୍ଭଙ୍କୁ ତାଙ୍କ ନିଜର ଧାମ ଦେଲେ, ମୁଁ ତାହାଙ୍କୁ ନମସ୍କାର କରୁଅଛି ॥ ଦୋହା —ଆହା ! ନାଥ ! ଶ୍ରୀ ରଘୁନାଥଙ୍କ ସମାନ କୃପା-ସାଗର

ମନ୍ଦୋଦରୀ ବଚନ ସୁନତ କାନା । ସୁର ମୁନି ସିଦ୍ଧ ସବନ୍ହି ସୁଖ ମାନା ॥
ଅଜ ମହେସ ନାରଦ ସନକାଦୀ । ଜେ ମୁନିବର ପରମାରଥବାଦୀ ॥୧॥
ଭରି ଲୋଚନ ରଘୁପତିହି ନିହାରୀ । ପ୍ରେମ ମଗନ ସବ ଭଏ ସୁଖାରୀ ॥
ରୁଦନ କରତ ଦେଖୀ ସବ ନାରୀ । ଗୟଉ ବିଭୀଷନୁ ମନ ଦୁଖ ଭାରୀ ॥୨॥
ବନ୍ଧୁ ଦସା ବିଲୋକି ଦୁଖ କୀନ୍ହା । ତବ ପ୍ରଭୁ ଅନୁଜହି ଆୟସୁ ଦୀନ୍ହା ॥
ଲଛିମନ ତେହି ବହୁବିଧି ସମୁଝାୟୋ । ବହୁରି ବିଭୀଷନ ପ୍ରଭୁ ପହିଁ ଆୟୋ ॥୩॥
କୃପାଦୃଷ୍ଟି ପ୍ରଭୁ ତାହି ବିଲୋକା । କରହୁ କ୍ରିୟା ପରିହରି ସବ ସୋକା ॥
କୀନ୍ହି କ୍ରିୟା ପ୍ରଭୁ ଆୟସୁ ମାନୀ । ବିଧିବତ ଦେସ କାଲ ଜିୟଁ ଜାନୀ ॥୪॥

ମନ୍ଦୋଦରୀ ଆଦି ସବ ଦେଇ ତିଲାଂଜଲି ତାହି ।
ଭବନ ଗଈଁ ରଘୁପତି ଗୁନ ଗନ ବରନତ ମନ ମାହି ॥୧୦୫॥

---

ମନ୍ଦୋଦରୀର ରୋଦନ ଶ୍ରବଣରେ ଶୁଣି । ସୁଖ ମଣିଲେ ସକଳ ସୁର ସିଦ୍ଧ ମୁନି ॥
ବିରଞ୍ଚି ଶମ୍ଭୁ ନାରଦ ଋଷି ସନକାଦି । ଯେ ମୁନିବର ଅଟନ୍ତି ପରମାର୍ଥବାଦୀ ॥୧॥
ନେତ୍ର ପୂରି କରି ରଘୁପତିଙ୍କୁ ଦେଖିଣ । ସମସ୍ତେ ସୁଖୀ ହୋଇଲେ ପ୍ରେମେ ନିମଜ୍ଜିଣ ॥
ରୋଦନ କରନ୍ତି ଅବଲୋକି ସର୍ବେ ନାରୀ । ଗଲେ ବିଭୀଷଣ ତହୁଁ ମନ ଦୁଃଖେ ଭରି ॥୨॥
ଭ୍ରାତା ଦଶା ଦେଖି ଦୁଃଖୀ ହୋଇଲେ ସେ ଅତି । ତହୁଁ ପ୍ରଭୁ ଅନୁଜଙ୍କୁ ଦେଲେ ଅନୁମତି ॥
ଲକ୍ଷ୍ମଣ ତାହାଙ୍କୁ ନାନାଭାବେ ବୁଝାଇଲେ । ପୁଣି ବିଭୀଷଣ ପ୍ରଭୁ ସମୀପେ ଆସିଲେ ॥୩॥
ପ୍ରଭୁ ତାଙ୍କୁ ବିଲୋକିଲେ କୃପା ଦୃଷ୍ଟି କରି । "ଅନ୍ତ୍ୟେଷ୍ଟି କରମ କର ଶୋକ ପରିହରି" ॥
କ୍ରିୟା ସମାପିଲେ ପ୍ରଭୁ ଆଦେଶ ମାନିଣ । ବିଧିମତେ ଦେଶକାଳ ମନେ ବିଚାରିଣ ॥୪॥

ମନ୍ଦୋଦରୀ ଆଦି ରମଣୀ ସରବେ ଦେଇ ତାଙ୍କୁ ତିଳାଞ୍ଜଳି ।
ଫେରିଗଲେ ଭବନ ହୃଦୟେ ସ୍ମରିଣ ରଘୁବୀର ଗୁଣାବଳି ॥୧୦୫॥

---

ଆଉ କେହି ନାହାନ୍ତି । ଯେଉଁ ଭଗବାନ୍ ତୁମ୍ଭଙ୍କୁ ଏହି ଗତି ଦେଲେ, ତାହା ଯୋଗି-ଜନମାନଙ୍କୁ ମଧ୍ୟ ଦୁର୍ଲ୍ଲଭ ॥ ୧୦୪ ॥ ଚୌପାଈ —ମନ୍ଦୋଦରୀଙ୍କ ବଚନ କାନରେ ଶୁଣି ଦେବତା, ମୁନି ଓ ସିଦ୍ଧମାନେ ସମସ୍ତେ ସୁଖ ମଣିଲେ । ବ୍ରହ୍ମା, ମହାଦେବ, ନାରଦ ଓ ସନକାଦି ତଥା ଅନ୍ୟାନ୍ୟ ପରମାର୍ଥବାଦୀ ଶ୍ରେଷ୍ଠ ମୁନିଗଣ ଶ୍ରୀରାମଙ୍କୁ ନେତ୍ର ପୂରାଇ ଦେଖି ପ୍ରେମମଗ୍ନ ହୋଇଗଲେ ଏବଂ ଅତ୍ୟନ୍ତ ସୁଖୀ ହେଲେ । ଆପଣା ଗୃହର ସମସ୍ତ ସ୍ତ୍ରୀଙ୍କୁ କାନ୍ଦୁଥିବାର ଦେଖି ବିଭୀଷଣଙ୍କ ମନରେ ବଡ଼ ଦୟା ହେଲା ଏବଂ ସେ ସେମାନଙ୍କ ନିକଟକୁ ଗଲେ ॥ ୧-୨ ॥ ସେ ଭାଇର ଦଶା ଦେଖି ଦୁଃଖ ପ୍ରକାଶ କଲେ । ପ୍ରଭୁ ଶ୍ରୀରାମ ବିଭୀଷଣଙ୍କୁ ଧୈର୍ଯ୍ୟ ଦେବା ନିମନ୍ତେ ସାନ ଭାଇଙ୍କୁ ଆଜ୍ଞା ଦେଲେ । ଲକ୍ଷ୍ମଣ ତାହାଙ୍କୁ ବହୁ ପ୍ରକାରେ ବୁଝାଇଲେ । ତଦନନ୍ତର ବିଭୀଷଣ ପ୍ରଭୁଙ୍କ ନିକଟକୁ ଫେରି ଆସିଲେ ॥ ୩ ॥ ପ୍ରଭୁ ତାହାଙ୍କୁ କୃପା-ଦୃଷ୍ଟିରେ ଚାହିଁଲେ ଏବଂ କହିଲେ, "ସମସ୍ତ ଶୋକ ତ୍ୟାଗ କରି ରାବଣର ଅନ୍ତ୍ୟେଷ୍ଟି କ୍ରିୟା କର ।" ପ୍ରଭୁଙ୍କ ଆଜ୍ଞା ମାନି ହୃଦୟରେ

ଆଇ ବିଭୀଷନ ପୁନି ସିରୁ ନାୟୋ । କୃପାସିନ୍ଧୁ ତବ ଅନୁଜ ବୋଲାୟୋ ॥
ତୁହ୍ମ କପୀସ ଅଙ୍ଗଦ ନଲ ନୀଲା । ଜାମବନ୍ତ ମାରୁତି ନୟସୀଲା ॥୧॥
ସବ ମିଲି ଜାହୁ ବିଭୀସନ ସାଥା । ସାରେହୁ ତିଲକ କହେଉ ରଘୁନାଥା ॥
ପିତା ବଚନ ମୈଁ ନଗର ନ ଆୱଉଁ । ଆପୁ ସରିସ କପି ଅନୁଜ ପଠାୱଉଁ ॥୨॥
ତୁରତ ଚଲେ କପି ସୁନି ପ୍ରଭୁ ବଚନା । କୀହ୍ନୀ ଜାଇ ତିଲକ କୀ ରଚନା ॥
ସାଦର ସିଂହାସନ ବୈଠାରୀ । ତିଲକ ସାରି ଅସ୍ତୁତି ଅନୁସାରୀ ॥୩॥
ଜୋରି ପାନି ସବହୀଁ ସିର ନାଏ । ସହିତ ବିଭୀଷନ ପ୍ରଭୁ ପହିଁ ଆଏ ॥
ତବ ରଘୁବୀର ବୋଲି କପି ଲୀହ୍ନେ । କହି ପ୍ରିୟ ବଚନ ସୁଖୀ ସବ କୀହ୍ନେ ॥୪॥

କିଏ ସୁଖୀ କହି ବାନୀ ସୁଧା ସମ ବଲ ତୁହ୍ମାରେଁ ରିପୁ ହୟୋ ।
ପାୟୋ ବିଭୀଷନ ରାଜ ତିହୁଁ ପୁର ଜସୁ ତୁହ୍ମାରୋ ନିତ ନୟୋ ॥
ମୋହି ସହିତ ସୁଭ କୀରତି ତୁହ୍ମାରୀ ପରମ ପ୍ରୀତି ଜୋ ଗାଇହେଁ ।
ସଂସାର ସିନ୍ଧୁ ଅପାର ପାର ପ୍ରୟାସ ବିନୁ ନର ପାଇହେଁ ॥

---

ଆସି ବିଭୀଷଣ ପୁଣି ନମିଲେ ଚରଣେ । ଭାଷିଲେ କୃପାଳୁ ତହୁଁ ଡାକିଣ ଲକ୍ଷ୍ମଣେ ॥
ତୁମ୍ଭେ କପୀଶ୍ୱର, ବାଳିସୁତ, ନଳ ନୀଳ । ଜାମ୍ବବନ୍ତ, ହନୁମାନ, ନୀତି-ଧର୍ମ-ଶୀଳ ॥୧॥
ଯାଅ ସର୍ବେ ସଙ୍ଗେ ବିଭୀଷଣଙ୍କୁ ଘେନିଣ । ରାଜ୍ୟାଭିଷେକ କରାଅ ସବିଧି ମିଳିଣ ॥
ପିତାଙ୍କ ବଚନ ମାନି ପୁରେ ମୁଁ ନ ଯାଏ । ଆପଣା ସଦୃଶ କପି ଅନୁଜେ ପଠାଏ ॥୨॥
ଗଲେ କପି ଶୀଘ୍ର ଶୁଣି ପ୍ରଭୁଙ୍କ ବଚନ । କଲେ ଯାଇ ଅଭିଷେକ ସାମଗ୍ରୀ ରଚନ ॥
ସାଦରେ ସିଂହାସନରେ ତାହାଙ୍କୁ ବସାଇ । ସ୍ତୁତି କଲେ ମିଳି ରାଜତିଳକ କରାଇ ॥୩॥
ଯୋଡ଼ି ପାଣି ପୁଣି ସର୍ବେ ପ୍ରଣାମ କରିଲେ । ବିଭୀଷଣ ସହ ପ୍ରଭୁ ପାଶେ ଆଗମିଲେ ॥
ତହୁଁ ଶ୍ରୀ ରଘୁନନ୍ଦନ ଡାକି ବାନରଙ୍କୁ । କହି ପ୍ରିୟ ବାଣୀ ସୁଖୀ କଲେ ସମସ୍ତଙ୍କୁ ॥୪॥

ସୁଖୀ କରିଲେ ଭଣି ସୁଧାସମ ସୁବାଣୀ, ତୁମ୍ଭ ବଳରେ ରିପୁ ଘାତ ।
ଲଭିଲା ବିଭୀଷଣ ରାଜ୍ୟ, ନିତ୍ୟ ନବୀନ ତ୍ରିଲୋକେ ତୁମ୍ଭ ଯଶ ଖ୍ୟାତ ।
ମୋ ସହ ତୁମ୍ଭ ଶୁଭ୍ର କୀର୍ତ୍ତି, ଗାଇବେ ଯେ ପରମ ପ୍ରୀତି,
ଭବ-ସିନ୍ଧୁ ଅପାର ହୋଇ ପାରିବେ ପାର ସେ ନର ସହଜ ସୁରୀତି ॥

---

ଦେଶକାଳର ବିଚାର କରି ବିଭୀଷଣ ଯଥାବିଧି ସମସ୍ତ କ୍ରିୟା ସମ୍ପନ୍ନ କଲେ ॥ ୪ ॥
ଦୋହା :—ମନ୍ଦୋଦରୀ ଆଦି ସ୍ତ୍ରୀମାନେ ରାବଣଙ୍କୁ ଜଳତର୍ପଣ ଦେଇ ଶ୍ରୀ ରଘୁନାଥଙ୍କ ଗୁଣାବଳୀ ବର୍ଣ୍ଣନାପୂର୍ବକ ମହଲକୁ ଗଲେ ॥ ୧୦୫ ॥ ଚୌପାଇ :—ସମସ୍ତ କ୍ରିୟା-କର୍ମ-ସମ୍ପାଦନ ପରେ ବିଭୀଷଣ ପୁଣି ଆସି ପ୍ରଭୁଙ୍କୁ ପ୍ରଣାମ କଲେ । ସେତେବେଳେ କୃପା-ସାଗର ଶ୍ରୀରାମ ସାନ ଭାଇ ଲକ୍ଷ୍ମଣଙ୍କୁ ଡକାଇଲେ । ଶ୍ରୀ ରଘୁନାଥ କହିଲେ, "ବାନରରାଜ ସୁଗ୍ରୀବ, ଅଙ୍ଗଦ, ନଳ, ନୀଳ, ଜାମ୍ବବାନ୍ ଓ ମାରୁତି ଆଦି ତୁମେ ସମସ୍ତେ

ପ୍ରଭୁ କେ ବଚନ ଶ୍ରବନ ସୁନି ନହିଁ ଅଘାହିଁ କପିପୁଞ୍ଜ ।
ବାର ବାର ସିର ନାୱହିଁ ଗହହିଁ ସକଲ ପଦ କଞ୍ଜ ॥୧୦୬॥
ପୁନି ପ୍ରଭୁ ବୋଲି ଲିୟଉ ହନୁମାନା । ଲଙ୍କା ଜାହୁ କହେଉ ଭଗବାନା ॥
ସମାଚାର ଜାନକିହି ସୁନାୱହୁ । ତାସୁ କୁସଲ ଲୈ ତୁହ୍ମ ଚଲି ଆୱହୁ ॥୧॥
ତବ ହନୁମନ୍ତ ନଗର ମହୁଁ ଆଏ । ସୁନି ନିସିଚରୀ ନିସାଚର ଧାଏ ॥
ବହୁ ପ୍ରକାର ତିହ୍ନ ପୂଜା କୀହ୍ନୀ । ଜନକସୁତା ଦେଖାଇ ପୁନି ଦୀହ୍ନୀ ॥୨॥

---

ପ୍ରଭୁଙ୍କ ବଚନ ଶ୍ରବଣେ ଶୁଣିଣ କପି ତୃପ୍ତ ନ ହୁଅନ୍ତି ।
ସର୍ବେ ବାରମ୍ବାର କରି ନମସ୍କାର ପଦ-ରାଜୀବ ଧରନ୍ତି ॥୧୦୬॥
ପବନ-ସୁତଙ୍କୁ ପୁଣି ଡାକି ଭଗବାନ । କହିଲେ, ଲଙ୍କାକୁ ଯାଅ, ବତ୍ସ ହନୁମାନ ॥
ସମାଚାର ଜାନକୀଙ୍କୁ ଶୁଣାଇ ସକଳ । ଫେରି ଆସ ଘେନି ତାଙ୍କ ବାରତା କୁଶଳ ॥୧॥
ତହୁଁ ପୁରେ ଆଗମିଲେ ପବନ-କୁମର । ଶୁଣନ୍ତେ ଧାଇଁଲେ ନିଶାଚରୀ ନିଶାଚର ॥
ବହୁତ ପ୍ରକାରେ ପୂଜି ସେମାନେ ତାହାଙ୍କୁ । ଦେଖାଇ ଦେଲେ ଆଦରେ ଜନକସୁତାଙ୍କୁ ॥୨॥

---

ମୀତ-ନିପୁଣ ଲୋକ ମିଶି ବିଭୀଷଣଙ୍କ ନିକଟକୁ ଯାଅ ଏବଂ ତାହାଙ୍କର ରାଜ୍ୟାଭିଷେକ କରିଦିଅ । ପିତାଙ୍କ ବଚନ ହେତୁ ମୁଁ ନଗର ମଧ୍ୟକୁ ଆସିପାରିବି ନାହିଁ । କିନ୍ତୁ ମୋ ନିଜ ସମାନ ବାନର-ବୃନ୍ଦ ଓ ସାନ ଭାଇଙ୍କୁ ପଠାଉଅଛି ।" ॥ ୧-୨ ॥ ପ୍ରଭୁଙ୍କ ବଚନ ଶୁଣି ବାନରମାନେ ତୁରନ୍ତ ଚାଲିଲେ ଏବଂ ସେମାନେ ଯାଇ ବିଭୀଷଣଙ୍କ ରାଜ୍ୟାଭିଷେକର ସମସ୍ତ ବ୍ୟବସ୍ଥା କରିଦେଲେ । ଆଦରରେ ସେମାନେ ବିଭୀଷଣଙ୍କୁ ସିଂହାସନ ଉପରେ ବସାଇ ଅଭିଷିକ୍ତ କଲେ ଏବଂ ସ୍ତୁତି କଲେ ॥ ୩ ॥ ସମସ୍ତେ ହାତ ଯୋଡ଼ି ତାହାଙ୍କୁ ଶିର ନୁଆଁଇଲେ । ତଦନନ୍ତର ବିଭୀଷଣଙ୍କ ସମେତ ସମସ୍ତେ ପ୍ରଭୁଙ୍କ ନିକଟକୁ ଆସିଲେ । ପ୍ରଭୁ ଶ୍ରୀ ରଘୁବୀର ବାନରମାନଙ୍କୁ ଡାକି ନେଲେ ଏବଂ ପ୍ରିୟ ବଚନ କହି ସମସ୍ତଙ୍କୁ ସୁଖୀ କଲେ ॥ ୪ ॥ ଛନ୍ଦ :—ଭଗବାନ୍ ଅମୃତ ସମ ଏହି ବଚନ କହି ସମସ୍ତଙ୍କୁ ସୁଖୀ କଲେ । —"ତୁମ୍ଭମାନଙ୍କ ବଳରେ ଏହି ପ୍ରବଳ ଶତ୍ରୁ ନିହତ ହୋଇ ପାରିଲା ଏବଂ ବିଭୀଷଣ ରାଜ୍ୟ ପାଇଲେ । ଏହି ହେତୁରୁ ତିନି ଲୋକରେ ତୁମର ଯଶ ନିତ୍ୟ ନୂତନ ହୋଇ ବ୍ୟାପିବ । ଯେଉଁ ବ୍ୟକ୍ତିମାନେ ମୋ ସମେତ ତୁମ୍ଭମାନଙ୍କ ଶୁଭ କୀର୍ତ୍ତି ପରମ ପ୍ରେମରେ ଗାନ କରିବେ, ସେମାନେ ଅନାୟାସରେ ଏହି ଅପାର ସଂସାର-ସାଗରକୁ ପାର ହୋଇଯିବେ ॥ ଦୋହା :—ପ୍ରଭୁଙ୍କ ବଚନ କାନରେ ଶୁଣି ବାନରବୃନ୍ଦଙ୍କ ତୃପ୍ତିର ଅବସାନ ଘଟୁ ନ ଥାଏ । ସେମାନେ ସମସ୍ତେ ବାରମ୍ବାର ପ୍ରଭୁଙ୍କୁ ମସ୍ତକ ନୁଆଁଉଥା'ନ୍ତି ଏବଂ ତାଙ୍କ ଚରଣ-କମଳ ଧରୁଥା'ନ୍ତି ॥ ୧୦୬ ॥ ଚୌପାଇ :—ପୁଣି ପ୍ରଭୁ ହନୁମାନ୍‌ଙ୍କୁ ଡାକି ନେଲେ । ଭଗବାନ୍ କହିଲେ, "ତୁମେ ଲଙ୍କା ଯାଅ । ଜାନକୀଙ୍କୁ ସମସ୍ତ ସମାଚାର ଶୁଣାଅ ଏବଂ ତାଙ୍କ କୁଶଳ ସମ୍ବାଦ ନେଇ ତୁମେ ଚାଲି ଆସ ॥ ୧ ॥ ତଦନନ୍ତର ହନୁମାନ୍ ନଗର ମଧ୍ୟକୁ ଆସିଲେ । ଏହା ଶୁଣି ରାକ୍ଷସରାକ୍ଷସୀମାନେ

ଦୂରହି ତେଁ ପ୍ରନାମ କପି କୀହ୍ନା । ରଘୁପତି ଦୂତ ଜାନକୀଁ ଚୀହ୍ନା ॥
କହହୁ ତାତ ପ୍ରଭୁ କୃପାନିକେତା । କୁସଲ ଅନୁଜ କପି ସେନ ସମେତା ॥୩॥
ସବ ବିଧି କୁସଲ କୋସଲାଧୀସା । ମାତୁ ସମର ଜୀତେଉ ଦସସୀସା ॥
ଅବିଚଲ ରାଜୁ ବିଭୀଷନ ପାୟୋ । ସୁନି କପି ବଚନ ହରଷ ଉର ଛାୟୋ ॥୪॥

ଅତି ହରଷ ମନ ତନ ପୁଲକ ଲୋଚନ ସଜଲ କହ ପୁନି ପୁନି ରମା ।
କା ଦେଉଁ ତୋହି ତ୍ରୈଲୋକ ମହୁଁ କପି କିମପି ନହିଁ ବାନୀ ସମା ॥
ସୁନୁ ମାତୁ ମୈଁ ପାୟୋ ଅଖିଲ ଜଗ ରାଜୁ ଆଜୁ ନ ସଂସୟଂ ।
ରନ ଜୀତି ରିପୁଦଲ ବଂଧୁ ଜୁତ ପସ୍ୟାମି ରାମମନାମୟଂ ॥

---

ଦୂରେ ଥାଇ ହନୁମନ୍ତ ପ୍ରଣାମ କଲେ । ରଘୁପତି ଦୂତ ବୋଲି ଜାନକୀ ଚିହ୍ନିଲେ ॥
ଶୁଣାଅ କୁମର, ପ୍ରଭୁ କରୁଣା-ନିଧିଙ୍କ । କୁଶଳ ଅନୁଜ ସହ ସକଳ କପିଙ୍କ ॥୩॥
ସର୍ବମତେ ସକୁଶଳ କୋଶଳର କାନ୍ତ । ଜିଣିଲେ ଦଶାନନକୁ ସଂଗ୍ରାମରେ, ମାତ ॥
ବିଭୀଷଣ ଅବିଚଳ ସାମ୍ରାଜ୍ୟ ପାଇଲେ । ଶୁଣି କପି ବାଣୀ ହୃଦ ହରଷେ ପୂରିଲା ॥୪॥

ଅତି ହରଷ ମନ ସଜଳ ବିଲୋଚନ ପୁଲକେ ଉଚାରନ୍ତି ରମା ।
କି ଦେବି ତୋତେ କପି, ତିନିଲୋକେ କିମପି ନାହିଁ ଏ ବଚନ ଉପମା ।
ମାତ, ମୁଁ ଆଜି ଅସଂଶୟ, ଲଭିଲି ବିଶ୍ୱ ରାଜ୍ୟଚୟ,
ରଣେ ଶତ୍ରୁ ନିବହ ଜିଣି, ଅନୁଜ ସହ ଦେଖିଲି ରାମ ନିରାମୟ ॥

---

ତାଙ୍କର ସତ୍କାର ନିମନ୍ତେ ଧାଇଁଲେ । ସେମାନେ ବହୁତ ପ୍ରକାରେ ହନୁମାନଙ୍କୁ ପୂଜା କଲେ ଏବଂ ଜାନକୀଙ୍କୁ ଦେଖାଇଦେଲେ ॥ ୨ ॥ ହନୁମାନ୍ ଦୂରରୁ ସୀତାଙ୍କୁ ପ୍ରଣାମ କଲେ । ଜାନକୀ ତାହାଙ୍କୁ ପୂର୍ବ-ପରିଚିତ ରାମ-ଦୂତ ବୋଲି ଚିହ୍ନି ପକାଇଲେ । ସେ ପଚାରିଲେ, "ହେ ବତ୍ସ ! କୁହ ତ, କୃପାଧାମ ମୋର ପ୍ରଭୁ ସାନଭାଇ ଓ ବାନର ସେନାଙ୍କ ସହିତ କୁଶଳ ଅଛନ୍ତି ତ ?" ॥ ୩ ॥ ହନୁମାନ୍ କହିଲେ, "ହେ ମାତ ! କୋଶଳପତି ଶ୍ରୀରାମ ସବୁ ପ୍ରକାରେ କୁଶଳ ଅଛନ୍ତି । ସେ ସଂଗ୍ରାମରେ ଦଶଶିର ରାବଣକୁ ଜୟ କରିଅଛନ୍ତି ଏବଂ ବିଭୀଷଣ ଅଚଳ ରାଜ୍ୟ ଲାଭ କରିଅଛନ୍ତି ।" ହନୁମାନଙ୍କ ବଚନ ଶୁଣି ସୀତାଙ୍କର ହୃଦୟରେ ଆନନ୍ଦର ଲହରୀ ଖେଳିଗଲା ॥ ୪ ॥ ଛନ୍ଦ :—ଜାନକୀଙ୍କ ହୃଦୟରେ ଅତ୍ୟନ୍ତ ହର୍ଷ ହେଲା । ତାଙ୍କ ଶରୀର ପୁଲକିତ ହୋଇଗଲା ଏବଂ ନେତ୍ରରେ ଆନନ୍ଦାଶ୍ରୁର ଜଳ ଭରିଗଲା । ସେ ବାରମ୍ବାର କହୁଥାଆନ୍ତି, "ହେ ହନୁମାନ୍ ! ମୁଁ ତୁମଙ୍କୁ ଦେବି କ'ଣ ? ଏହି ସମାଚାର ସମାନ ପ୍ରିୟ ବିଷୟ ମୋ ନିମନ୍ତେ ତିନି ଭୁବନରେ ଆଉ କିଛି ନାହିଁ ।" ହନୁମାନ୍ କହିଲେ, "ହେ ମାତ ! ଶୁଣନ୍ତୁ, ମୁଁ ଆଜି ନିଃସନ୍ଦେହ ଭାବରେ ସମଗ୍ର ଜଗତର ରାଜତ୍ୱ ଲାଭ କଲି । ରଣରେ ଶତ୍ରୁସେନାକୁ ଜିଣି ଅନୁଜ ସମେତ ନିର୍ବିକାର ଶ୍ରୀରାମଙ୍କୁ ମୁଁ ଦୁଇ ନେତ୍ରରେ ଦେଖୁଅଛି, ଏହା ମୋର

ସୁନୁ ସୁତ ସଦଗୁନ ସକଲ ତବ ହୃଦୟଁ ବସହୁଁ ହନୁମନ୍ତ ।
ସାନୁକୂଲ କୋସଲପତି ରହହୁଁ ସମେତ ଅନନ୍ତ ॥୧୦୭॥
ଅବ ସୋଇ ଜତନ କରହୁ ତୁମ୍ହ ତାତା । ଦେଖୌଁ ନୟନ ସ୍ୟାମ ମୃଦୁ ଗାତା ॥
ତବ ହନୁମାନ ରାମ ପହିଁ ଜାଈ । ଜନକ ସୁତା କୈ କୁସଲ ସୁନାଈ ॥୧॥
ସୁନି ସଂଦେସୁ ଭାନୁକୁଲଭୂଷନ । ବୋଲି ଲିଏ ଜୁବରାଜ ବିଭୀଷନ ॥
ମାରୁତସୁତ କେ ସଂଗ ସିଧାଵହୁ । ସାଦର ଜନକସୁତହି ଲୈ ଆଵହୁ ॥୨॥
ତୁରତହିଁ ସକଲ ଗଏ ଜହଁ ସୀତା । ସେଵହିଁ ସବ ନିସିଚରୀଂ ବିନୀତା ॥
ବେଗି ବିଭୀଷନ ତିନ୍ହହି ସିଖାୟୋ । ତିନ୍ହ ବହୁ ବିଧି ମଜ୍ଜନ କରଵାୟୋ ॥୩॥
ବହୁ ପ୍ରକାର ଭୂଷନ ପହିରାଏ । ସିବିକା ରୁଚିର ସାଜି ପୁନି ଲ୍ୟାଏ ॥
ତା ପର ହରଷି ଚଢ଼ୀ ବୈଦେହୀ । ସୁମିରି ରାମ ସୁଖଧାମ ସନେହୀ ॥୪॥

---

ବତ୍ସ ହନୁମନ୍ତ, ସଦ୍‌ଗୁଣ ସମସ୍ତ ତୋ ହୃଦେ ବାସ କରନ୍ତୁ ।
ଅନୁଜ ସହିତ ରଘୁବଂଶନାଥ ସଦାନୁକୂଳ ରହନ୍ତୁ ॥୧୦୭॥
ଏବେ ସୁତ, ଯାଇ ତୁମ୍ଭେ କର ସେ ଯତନ । ମୃଦୁ ଶ୍ୟାମ ତନୁ ନେତ୍ରେ ଦେଖିବି ଯେସନ ॥
ତହୁଁ ହନୁମାନ ରାମ ସମୀପେ ଆସିଲେ । ସୀତାଙ୍କ କୁଶଳ ସମାଚାର ଶୁଣାଇଲେ ॥୧॥
ଶୁଣନ୍ତେ ସନ୍ଦେଶ ଭାନୁକୁଳ-ବିମଣ୍ଡନ । ଡାକି ଯୁବରାଜ ବିଭୀଷଣଙ୍କୁ ବଚନ ॥
କହିଲେ, ଯାଇ ପବନ ସୁତ ସଙ୍ଗତରେ । ଜନକସୁତାଙ୍କୁ ଘେନି ଆସନ୍ତୁ ସାଦରେ ॥୨॥
ଗମିଲେ ଶୀଘ୍ର ସମସ୍ତେ ଯହିଁ ଥିଲେ ସୀତା । ସେବା କରୁଥିଲେ ବହୁ ରାକ୍ଷସୀ ବିନୀତା ॥
ତହୁଁ ବିଭୀଷଣ ସେମାନଙ୍କୁ ଶିଖାଇଲେ । ସାଦରେ ବଇଦେହୀଙ୍କୁ ସ୍ନାନ କରାଇଲେ ॥୩॥
ଦିବ୍ୟ ବସ୍ତ୍ର ଆଭରଣ ପିନ୍ଧାଇ ଆଦର । ସଜାଇ ଆଣିଲେ ସ୍ୱଚ୍ଛ ଶିବିକା ସୁନ୍ଦର ॥
ତହିଁରେ ବସିଲେ ମନହରଷେ ବୈଦେହୀ । ସ୍ମରି ସୁଖଧାମ ରାମ ପ୍ରାଣପ୍ରିୟ ସ୍ନେହୀ ॥୪॥

---

ସମସ୍ତ ଜଗତର ରାଜତ୍ୱ-ପ୍ରାପ୍ତି ସଙ୍ଗେ ସମାନ ॥" ଦୋହା :—ଜାନକୀ କହିଲେ, "ହେ ପୁତ୍ର ! ଶୁଣ, ତୁମ ହୃଦୟରେ ସମସ୍ତ ସଦ୍‌ଗୁଣ ନିବାସ କରୁ ଏବଂ ହେ ହନୁମାନ୍ ! ଶେଷ (ଲକ୍ଷ୍ମଣ)ଙ୍କ ସମେତ କୋଶଳପତି ପ୍ରଭୁ ଶ୍ରୀରାମ ସଦା ତୁମ ପ୍ରତି ପ୍ରସନ୍ନ ରୁହନ୍ତୁ ॥ ୧୦୭ ॥ ଚୌପାଈ :—ହେ ବତ୍ସ ! ତୁମେ ବର୍ତ୍ତମାନ ସେହି ଉପାୟ କର, ଯାହା ଫଳରେ ମୁଁ ଏହି ନେତ୍ର-ଦ୍ୱୟରେ ପ୍ରଭୁଙ୍କ କୋମଳ ଶ୍ୟାମଳ ଶରୀର ଦର୍ଶନ କରିବି ।" ତତ୍ପରେ ହନୁମାନ୍ ଶ୍ରୀରାମଙ୍କ ନିକଟକୁ ଯାଇ ଜାନକୀଙ୍କ କୁଶଳ ସମାଚାର ଶୁଣାଇଲେ ॥ ୧ ॥ ସୂର୍ଯ୍ୟକୁଳ-ଭୂଷଣ ଶ୍ରୀରାମ ସନ୍ଦେଶ ଶୁଣି ଯୁବରାଜ ଅଙ୍ଗଦ ଓ ବିଭୀଷଣଙ୍କୁ ଡକାଇଲେ ଏବଂ କହିଲେ, "ତୁମେ ଦୁହେଁ ହନୁମାନ୍‌ଙ୍କ ସଙ୍ଗେ ଯାଅ ଏବଂ ଆଦର ସହକାରେ ଜାନକୀଙ୍କୁ ନେଇଆସ ।" ॥ ୨ ॥ ସେ ଦୁହେଁ ଜାନକୀ ଯେଉଁଠାରେ ଥିଲେ, ସେହି ସ୍ଥାନକୁ ତୁରନ୍ତ ଗଲେ । ସମସ୍ତ ରାକ୍ଷସୀ ନମ୍ରତା ସହକାରେ ଜାନକୀଙ୍କୁ ସେବା କରୁଥିଲେ । ବିଭୀଷଣ ଶୀଘ୍ର ସେମାନଙ୍କୁ ବୁଝାଇଦେଲେ । ସେମାନେ ସୀତାଙ୍କୁ

ବେତପାନି ରଛକ ଚହୁଁ ପାସା । ଚଲେ ସକଲ ମନ ପରମ ହୁଲାସା ॥
ଦେଖନ ଭାଲୁ କୀସ ସବ ଆଏ । ରଛକ କୋପି ନିବାରନ ଧାଏ ॥୫॥
କହ ରଘୁବୀର କହା ମମ ମାନହୁ । ସୀତହି ସଖା ପୟାଦେଁ ଆନହୁ ॥
ଦେଖହୁଁ କପି ଜନନୀ କୀ ନାଈଁ । ବିହସି କହା ରଘୁନାଥ ଗୋସାଈଁ ॥୬॥
ସୁନି ପ୍ରଭୁ ବଚନ ଭାଲୁ କପି ହରଷେ । ନଭ ତେଁ ସୁରନ୍ହ ସୁମନ ବହୁ ବରଷେ ॥
ସୀତା ପ୍ରଥମ ଅନଲ ମହୁଁ ରାଖୀ । ପ୍ରଗଟ କୀନ୍ହି ଚହ ଅନ୍ତର ସାଖୀ ॥୭॥

ତେହି କାରନ କରୁନାନିଧି କହେ କଛୁକ ଦୁର୍ବାଦ ।
ସୁନତ ଜାତୁଧାନୀଁ ସବ ଲାଗୀଁ କରୈ ବିଷାଦ ॥୧୦୮॥

ପ୍ରଭୁ କେ ବଚନ ସୀସ ଧରି ସୀତା । ବୋଲୀ ମନ କ୍ରମ ବଚନ ପୁନୀତା ॥
ଲଛିମନ ହୋହୁ ଧରମ କେ ନେଗୀ । ପାବକ ପ୍ରଗଟ କରହୁ ତୁମ୍ହ ବେଗୀ ॥୧॥

---

ବେତପାଣି ରକ୍ଷକ ଯେ ବେଢି ଚଉପାଶେ । ଆସିଲେ ଏହି ପ୍ରକାରେ ପରମ ଉଲ୍ଲାସେ ॥
ଦେଖିବାକୁ ସଙ୍ଗେ ଋକ୍ଷ ମର୍କଟ ଆସନ୍ତି । ରକ୍ଷକ କୋଟି ତାହାଙ୍କୁ ଧାଇଁ ନିବାରନ୍ତି ॥୫॥
ଭାଷିଲେ ରଘୁନନ୍ଦନ ମୋ ବଚନ ମାନ । ସଖା, ଚଲାଇ ଜନକତନୟାଙ୍କୁ ଆଣ ॥
ଦେଖନ୍ତୁ କପି ସକଳେ ଜନନୀ ପରାୟେ । ହସି ଭାଷିଲେ ଏମନ୍ତ ରଘୁକୁଳ-ରାୟେ ॥୬॥
ପ୍ରଭୁ ବାଣୀ ଶୁଣି ଋକ୍ଷ-କପି ହରଷିତ । ନଭୁ ସୁରେ ବରଷନ୍ତି ସୁମନ ଅମିତ ॥
ସୀତାଙ୍କୁ ପ୍ରଥମେ ଅଗ୍ନି ମଧ୍ୟେ ରଖିଥିଲେ । ଅନ୍ତର ସାକ୍ଷୀ ପ୍ରକଟ କରିବା ଚାହିଁଲେ ॥୭॥

ସେହି କାରଣରୁ କୃପାନିଧି କିଛି କହିଲେ କଟୁ ବଚନ ।
ଶୁଣନ୍ତେ ସକଳ ନିଶାଚରୀ ଦଳ ହେଲେ ବିଷାଦିତ ମନ ॥୧୦୮॥

ପ୍ରଭୁଙ୍କ ବଚନ ଶିରେ ଘେନି କରି ସୀତା । ମନ କର୍ମ ବଚନରେ ଭାଷିଲେ ପବିତ୍ରା ॥
ଲକ୍ଷ୍ମଣ, ଧର୍ମ-ପାଳନେ ସାହା ହୁଅ ଏବେ । ପାବକ ପ୍ରକଟ ତୁମ୍ଭେ କର ଯାଇ ବେଗେ ॥୧॥

---

ବହୁବିଧ ସ୍ନାନ କରାଇଲେ ॥ ୩ ॥ ତାହାଙ୍କୁ ବହୁତ ପ୍ରକାର ଅଳଂକାର ପିନ୍ଧାଇଲେ ଏବଂ ଗୋଟିଏ ସୁନ୍ଦର ପାଲିଙ୍କି ସଜାଇ ନେଇ ଆସିଲେ । ସୀତା ପ୍ରସନ୍ନ ହୋଇ ସୁଖଧାମ ପ୍ରିୟତମ ଶ୍ରୀରାମଙ୍କୁ ସ୍ମରଣ କରି ତାହା ଉପରେ ଆନନ୍ଦରେ ଆରୋହଣ କଲେ ॥ ୪ ॥ ଚତୁର୍ଦ୍ଦିଗରେ ରକ୍ଷକମାନେ ହସ୍ତରେ ବେତ ଧରି ଚାଲିଲେ । ସମସ୍ତଙ୍କ ମନରେ ପରମ ଉଲ୍ଲାସ । ଋକ୍ଷ ଓ ବାନରଗଣ ସମସ୍ତେ ଦର୍ଶନ ନିମନ୍ତେ ଆସିଲେ । ସେମାନଙ୍କୁ ନିଷେଧ କରିବା ନିମନ୍ତେ ସମସ୍ତ ରକ୍ଷକ କ୍ରୋଧରେ ଧାଇଁଲେ ॥ ୫ ॥ ଶ୍ରୀ ରଘୁବୀର କହିଲେ, "ହେ ମିତ୍ର ! ମୋ କଥା ମାନ ଏବଂ ସୀତାଙ୍କୁ ପାଦରେ ଚଲାଇ ଆଣ । ଫଳରେ ବାନରମାନେ ମାତା ସଦୃଶ ତାହାଙ୍କୁ ଦର୍ଶନ କରିବେ ।" ଗୋସାଇଁ ଶ୍ରୀରାମ ହସି ଏହିପରି କହିଲେ ॥ ୬ ॥ ପ୍ରଭୁଙ୍କ ବଚନ ଶୁଣି ଋକ୍ଷବାନରବୃନ୍ଦ ଆନନ୍ଦିତ ହୋଇ ଉଠିଲେ । ଆକାଶରୁ ଦେବତାବୃନ୍ଦ ବହୁତ ପୁଷ୍ପ ବୃଷ୍ଟି କଲେ । ସୀତାଙ୍କର ପ୍ରକୃତ ସ୍ୱରୂପ ପୂର୍ବରୁ ଅଗ୍ନିରେ ସଂରକ୍ଷିତ ରହିଥିଲା । ଏବେ ଅନ୍ତରର ସାକ୍ଷୀ ଭଗବାନ

ସୁନି ଲଛିମନ ସୀତା କୈ ବାନୀ । ବିରହ ବିବେକ ଧରମ ନିତି ସାନୀ ॥
ଲୋଚନ ସଜଲ ଜୋରି କର ଦୋଊ । ପ୍ରଭୁ ସନ କଛୁ କହି ସକତ ନ ଓଊ ॥୨॥
ଦେଖି ରାମ ରୁଖ ଲଛିମନ ଧାଏ । ପାବକ ପ୍ରଗଟି କାଠ ବହୁ ଲାଏ ॥
ପାବକ ପ୍ରବଲ ଦେଖି ବୈଦେହୀ । ହୃଦୟଁ ହରଷ ନହିଁ ଭୟ କଛୁ ତେହୀ ॥୩॥
ଜୌଁ ମନ ବଚ କ୍ରମ ମମ ଉର ମାହୀଁ । ତଜି ରଘୁବୀର ଆନ ଗତି ନାହୀଁ ॥
ତୌ କୃସାନୁ ସବ କୈ ଗତି ଜାନା । ମୋ କହୁଁ ହୋଉ ଶ୍ରୀଖଣ୍ଡ ସମାନା ॥୪॥

ଶ୍ରୀଖଣ୍ଡ ସମ ପାବକ ପ୍ରବେସ କିୟୋ ସୁମିରି ପ୍ରଭୁ ମୈଥିଲୀ ।
ଜୟ କୋସଲେସ ମହେସ ବଂଦିତ ଚରନ ରତି ଅତି ନିର୍ମଲୀ ॥
ପ୍ରତିବିମ୍ବ ଅରୁ ଲୌକିକ କଲଂକ ପ୍ରଚଣ୍ଡ ପାବକ ମହୁଁ ଜରେ ।
ପ୍ରଭୁ ଚରିତ କାହୁଁ ନ ଲଖେ ନଭ ସୁର ସିଦ୍ଧ ମୁନି ଦେଖହିଁ ଖରେ ॥୧॥

---

ଶୁଣି ଜନକ-ସୁତାଙ୍କ ବଚନ ଲକ୍ଷ୍ମଣ । ବିରହ ବିବେକ ନୀତି ଧର୍ମ ସଂମିଶ୍ରଣ ॥
ସଜଳ ନୟନ କରି ଯୁଗଳ ଯୋଡ଼ିଲେ । ପ୍ରଭୁଙ୍କ ସମ୍ମୁଖେ କିଛି କହି ନ ପାରିଲେ ॥୨॥
ବିଲୋକି ରାମଙ୍କ ଇଚ୍ଛା ସତ୍ୱରିଣି ଯାଇ । ପାବକ ପ୍ରକଟ କଲେ ଇନ୍ଧନ ଅଣାଇ ॥
ଅନଳ ପ୍ରବଳ ଅତି ବିଲୋକିଣ ସୀତା । ହୃଦୟେ ହରଷ କିଛି ନାହିଁ ଭୟ ଚିନ୍ତା ॥୩॥
ଯେବେ ମନ କର୍ମ ବାକ୍ୟେ ହୃଦୟେ ମୋହର । ତେଜି ରଘୁନାଥ ଗତି ନ ଥାଏ ଇତର ॥
ତେବେ ସମସ୍ତଙ୍କ ଗତି ଜାଣ, ହୁତାଶନ । ମୋ ନିମନ୍ତେ ହୋଇଯାଅ ଶ୍ରୀଖଣ୍ଡ ଯେସନ ॥୪॥

ଶ୍ରୀଖଣ୍ଡ ଅବିକଳେ ପ୍ରବେଶିଲେ ଅନଳେ ପ୍ରଭୁଙ୍କୁ ସ୍ମରିଣ ମୈଥିଳୀ ।
'ଜୟ କୋଶଳେଶ୍ୱର' ବନ୍ଦିତ ମହେଶ୍ୱର, ଯା' ପଦେ ରତି ନିରମଳୀ ।
ଲୋକ-କଳଙ୍କ ବିମ୍ବ ଖରେ, ଜଳିଲେ ତୀବ୍ର ଅନଳରେ,
ପ୍ରଭୁ ଚରିତ କେହି ବୁଝି ପାରିଲେ ନାହିଁ, ଦେଖନ୍ତି ଅମରେ ଅମ୍ବରେ ॥୧॥

---

ତାହାଙ୍କୁ ପ୍ରକାଶ କରିବାକୁ ଇଚ୍ଛୁକ ॥ ୭ ॥ ଦୋହା :—ଏହି ହେତୁ କରୁଣାନିଧାନ ଶ୍ରୀରାମ ଲୀଳାର ଅଧୀନ ହୋଇ ସୀତାଙ୍କୁ କେତେକ ଦୁର୍ବଚନ କହିଲେ । ତାହା ଶୁଣି ରାକ୍ଷସୀଗଣ ବିଷାଦ ପ୍ରକାଶ କଲେ ॥ ୧୦୮ ॥ ଚୌପାଇ —ପ୍ରଭୁଙ୍କ ବଚନ ଶିରୋଧାର୍ଯ୍ୟ କରି ମନ, ବଚନ ଓ କର୍ମରେ ପବିତ୍ରା ସୀତା କହିଲେ, "ହେ ଲକ୍ଷ୍ମଣ ! ତୁମେ ମୋ ଧର୍ମାଚରଣରେ ସହାୟକ ହୁଅ ଏବଂ ଶୀଘ୍ର ଅଗ୍ନି ପ୍ରସ୍ତୁତ କର ।" ॥ ୧ ॥ ଶ୍ରୀସୀତାଙ୍କର ବିରହ-ବିବେକ-ଧର୍ମ-ନୀତି-ସିକ୍ତ ବଚନ ଶୁଣି ଲକ୍ଷ୍ମଣଙ୍କ ନୟନରେ ବିଷାଦର ଅଶ୍ରୁଜଳ ଭରି ଆସିଲା । ସେ ଦୁଇ ହାତ ଯୋଡ଼ି ଛିଡ଼ା ହୋଇ ରହିଲେ । ସେ ମଧ୍ୟ ପ୍ରଭୁଙ୍କୁ କିଛି କହିପାରୁ ନ ଥା'ନ୍ତି ॥ ୨ ॥ ଶ୍ରୀରାମଙ୍କ ଅଭିପ୍ରାୟ ବୁଝି ଲକ୍ଷ୍ମଣ ଦୌଡ଼ିଲେ ଏବଂ ଅଗ୍ନି ପ୍ରସ୍ତୁତ କରି ବହୁତ କାଷ୍ଠ ନେଇ ଆସିଲେ । ଅଗ୍ନିକୁ ଅତ୍ୟନ୍ତ ପ୍ରବଳ ହେବାର ଦେଖି ଜାନକୀଙ୍କ ହୃଦୟରେ ଆନନ୍ଦ ଜାତ ହେଲା । ତାହାଙ୍କ ମନରେ ଭୟ କିମ୍ବା

ଧରି ରୂପ ପାବକ ପାନି ଗହି ଶ୍ରୀ ସତ୍ୟ ଶ୍ରୁତି ଜଗ ବିଦିତ ଜୋ ।
ଜିମି ଛୀରସାଗର ଇନ୍ଦିରା ରାମହି ସମର୍ପୀ ଆନି ସୋ ॥
ସୋ ରାମ ବାମ ବିଭାଗ ରାଜତି ରୁଚିର ଅତି ସୋଭା ଭଲୀ ।
ନବ ନୀଲ ନୀରଜ ନିକଟ ମାନହୁଁ କନକ ପଙ୍କଜ କୀ କଲୀ ॥୨॥

ବରଷହିଁ ସୁମନ ହରଷି ସୁର ବାଜହିଁ ଗଗନ ନିସାନ ।
ଗାୱହିଁ କିଂନର ସୁରବଧୂ ନାଚହିଁ ଚଢ଼ୀଁ ବିମାନ ॥୧୦୯(କ)॥
ଜନକସୁତା ସମେତ ପ୍ରଭୁ ସୋଭା ଅମିତ ଅପାର ।
ଦେଖି ଭାଲୁ କପି ହରଷେ ଜୟ ରଘୁପତି ସୁଖସାର ॥୧୦୯(ଖ)॥

---

ତହୁଁ ଅଗ୍ନି ଶରୀର ଧରି, ଧରିଣ କର ସତ୍ୟଶ୍ରୀ ଶ୍ରୁତି-କ୍ଷିତି-ଖ୍ୟାତ ।
ଇନ୍ଦିରାଙ୍କୁ ଯେସନ ସିନ୍ଧୁ କଲା ଅର୍ପଣ ରାମଙ୍କୁ କଲେ ସମର୍ପିତ ।
ସେ ରାମ ବାମ ଭାଗେ ଜାତ, ରାଜନ୍ତି ଅତି ଶୋଭା ବଢ଼ି,
ନବ ନୀଳ ନୀରଜ ପାଶେ ରାଜେ ବା ହେଜ କନକ ସରସିଜ କଢ଼ି ॥୨॥

ବଜାଇ ନିଶାଣ ନଭେ ସୁର ଗଣ ହରଷେ ପୁଷ୍ପ ବର୍ଷନ୍ତି ।
ଗାଇଣ କିନ୍ନର ଦେବବଧୂବର ବିମାନେ ଚଢ଼ି ନାଚନ୍ତି ॥୧୦୯ (କ)॥
ଜାନକୀ ସହିତ ପ୍ରଭୁ ରଘୁନାଥ ଶୋଭା ଲଭନ୍ତି ଅପାର ।
ନିରେଖି ଆନନ୍ଦ ଋକ୍ଷ-କପି-ବୃନ୍ଦ 'ଜୟ ରାମ ସୁଖ-ସାର' ॥୧୦୯ (ଖ)॥

---

ହେଲେ ଜାତ ହେଲା ନାହିଁ ॥ ୩ ॥ ସୀତା (ଲୀଳାଧୀନା ହୋଇ) କହିଲେ "ଯଦି ମନ, ବଚନ ଓ କର୍ମରେ ମୋ ହୃଦୟରେ ଶ୍ରୀ ରଘୁବୀରଙ୍କୁ ଛାଡ଼ି ଅନ୍ୟର ଗତି ନ ଥାଏ, ତେବେ ସକଳ-ମନ-ଗତିଜ୍ଞାତା ଅଗ୍ନିଦେବ ମୋ ନିମନ୍ତେ ଚନ୍ଦନ ପରି ଶୀତଳ ହୋଇଯାଆନ୍ତୁ ।" ॥ ୪ ॥ ଛନ୍ଦ :— ଯେଉଁ ପ୍ରଭୁ ଶ୍ରୀରାମଙ୍କ ଚରଣ ମହେଶଙ୍କ ଦ୍ୱାରା ବନ୍ଦିତ ଏବଂ ଯାହାଙ୍କ ଚରଣରେ ସୀତାଙ୍କ ଅତି ନିର୍ମଳ ପ୍ରୀତି ନିହିତ, ସୀତା ସେହି ଶ୍ରୀରାମଙ୍କୁ ସ୍ମରଣ କରି ଓ ସେହି 'କୋଶଳପତିଙ୍କର ଜୟ' କହି ଚନ୍ଦନ ସମ ଶୀତଳ ଅଗ୍ନିରେ ପ୍ରବେଶ କଲେ । ପ୍ରତିବିମ୍ବ (ସୀତାଙ୍କ ଛାୟାମୂର୍ତ୍ତି) ଓ ତାହାଙ୍କର ଲୌକିକ କଳଙ୍କ ପ୍ରଚଣ୍ଡ ଅଗ୍ନିରେ ଜଳିଗଲା । କେହି ପ୍ରଭୁଙ୍କର ଏହି ଲୀଳା ସବୁ ଜାଣି ପାରିଲେ ନାହିଁ । ଦେବତା, ସିଦ୍ଧ ଓ ମୁନିଗଣ ସମସ୍ତେ ଆକାଶରେ ଛିଡ଼ା ହୋଇ ଦେଖୁଥାଆନ୍ତି ॥ ୧ ॥ ତଦନନ୍ତର ଅଗ୍ନି ଶରୀରଧାରଣ-ପୂର୍ବକ ବେଦ-ଜଗତ-ପ୍ରସିଦ୍ଧା ବାସ୍ତବିକ ଶ୍ରୀ (ସୀତା)ଙ୍କ ହାତ ଧରି ତାହାଙ୍କୁ ଶ୍ରୀରାମଙ୍କୁ ସମର୍ପଣ କଲେ । ଯେପରି ଅବା କ୍ଷୀରସାଗର ବିଷ୍ଣୁ ଭଗବାନ୍‌ଙ୍କୁ ଲକ୍ଷ୍ମୀଙ୍କୁ ସମର୍ପଣ କରିଦେଲେ । ସେହି ସୀତା ଶ୍ରୀରାମଙ୍କ ବାମ ପାର୍ଶ୍ୱରେ ବିରାଜିତା ହେଲେ । ସେ ଯୁଗଳ ମୂର୍ତ୍ତିଙ୍କ ଶୋଭା ଅତ୍ୟନ୍ତ ରୁଚିର । ଯେପରି ଅବା ନବ ନୀଳ ନୀରଜ ନିକଟରେ ସୁବର୍ଣ୍ଣ ସରୋଜ-କଳି ସୁଶୋଭିତ ହେଉଅଛି । ॥ ୨ ॥

ତବ ରଘୁପତି ଅନୁସାସନ ପାଈ । ମାତଲି ଚଲେଉ ଚରନ ସିରୁ ନାଈ ॥
ଆଏ ଦେବ ସଦା ସ୍ୱାରଥୀ । ବଚନ କହହିଁ ଜନୁ ପରମାରଥୀ ॥୧॥
ଦୀନବନ୍ଧୁ ଦୟାଲ ରଘୁରାୟା । ଦେବ କୀହ୍ନି ଦେବହ୍ନ ପର ଦାୟା ॥
ବିସ୍ୱଦ୍ରୋହ ରତ ୟହ ଖଲ କାମୀ । ନିଜ ଅଘ ଗୟଉ କୁମାରଗଗାମୀ ॥୨॥
ତୁହ୍ମ ସମରୂପ ବ୍ରହ୍ମ ଅବିନାସୀ । ସଦା ଏକରସ ସହଜ ଉଦାସୀ ॥
ଅକଲ ଅଗୁନ ଅଜ ଅନଘ ଅନାମୟ । ଅଜିତ ଅମୋଘସକ୍ତି କରୁନାମୟ ॥୩॥
ମୀନ କମଠ ସୂକର ନରହରୀ । ବାମନ ପରସୁରାମ ବପୁ ଧରୀ ॥
ଜବ ଜବ ନାଥ ସୁରହ୍ନ ଦୁଖୁ ପାୟୋ । ନାନା ତନୁ ଧରି ତୁହ୍ମଇଁ ନସାୟୋ ॥୪॥

---

ତହୁଁ ରଘୁପତି ଅନୁଶାସନ ପାଇଣ । ମାତଲି ଚଳିଲା ପଦେ ପ୍ରଣାମ କରିଣ ॥
ଏଥୁ ଅନ୍ତେ ସଦା ସ୍ୱାର୍ଥୀ ବିବୁଧେ ଆସିଲେ । ପରମାର୍ଥୀ ଯେଉଁପରି ବଚନ ଭାଷିଲେ ॥୧॥
ଦୀନବନ୍ଧୁ ଦୟାନିଧି ରଘୁକୁଳେଶ୍ୱର । କରୁଣା ବିହିଲ ଦେବ ଦେବଙ୍କ ଉପର ॥
ବିଶ୍ୱ-ଦ୍ରୋହ-ରତ ଏହି ଖଳ ଅତିକାମୀ । ନିଜ ପାପେ ନଷ୍ଟ ହେଲା କୁମାରଗଗାମୀ ॥୨॥
ତୁମ୍ଭେ ସର୍ବଙ୍କ ବ୍ୟାପକ ବ୍ରହ୍ମ ଅବିନାଶୀ । ସଦା ଅବିଚ୍ଛିନ୍ନ ଅଟ ସହଜ ଉଦାସୀ ॥
ଅନନ୍ତ ଅଗୁଣ ଅନାହତ ଅନାମୟ । ଅଜିତ ଅମୋଘ ଶକ୍ତି କରୁଣା-ନିଳୟ ॥୩॥
ମତ୍ସ୍ୟ କଚ୍ଛପ ଶୂକର ପୁଣି ନରହରି । ବାମନ ପରଶୁରାମ କଳେବର ଧରି ॥
ଯେବେ ଯେବେ ନାଥ, ଦୁଃଖ ପଡେ ଦେବତାଙ୍କୁ । ନାନାବିଧ ରୂପ ଧରି ରଖ ତୁମ୍ଭେ ତାଙ୍କୁ ॥୪॥

---

ଦୋହା :—ଦେବତାମାନେ ଆନନ୍ଦିତ ହୋଇ ପୁଷ୍ପ ବୃଷ୍ଟି କରିବାକୁ ଲାଗିଲେ । ଆକାଶରେ ନିଶାଣ ନିନାଦିତ ହେବାକୁ ଲାଗିଲା । କିନ୍ନରମାନେ ସଙ୍ଗୀତ ଗାନ କରିବାକୁ ଲାଗିଲେ । ଅପ୍‌ସରାଗଣ ବିମାନମାନଙ୍କରେ ଆରୋହଣ କରି ନୃତ୍ୟ କରିବାକୁ ଲାଗିଲେ ॥ ୧୦୯ (କ) ॥ ଜାନକୀଙ୍କ ସମେତ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ଅପରିମିତ ଓ ଅପାର ଶୋଭା ଦେଖି ଭଲ୍ଲୁକ ଓ ବାନରଗଣ ଆନନ୍ଦିତ ହେଲେ ଏବଂ "ସୁଖସାର ଶ୍ରୀ ରଘୁନାଥଙ୍କ ଜୟ" ଗାନ କରିବାକୁ ଲାଗିଲେ ॥ ୧୦୯ (ଖ) ॥ ଚୌପାଇ :— ତଦନନ୍ତର ଶ୍ରୀ ରଘୁନାଥଙ୍କ ଆଦେଶ ପାଇ ଇନ୍ଦ୍ର-ସାରଥି ମାତଲି ପ୍ରଭୁଙ୍କ ଚରଣରେ ଶିର ନୁଆଁଇ ରଥ ନେଇ ଚାଲିଗଲେ । ତତ୍ପରେ ସଦାସ୍ୱାର୍ଥରତ ଦେବତାମାନେ ଆସିଲେ । ସେମାନେ ସତେ ଯେପରି ବଡ ପରମାର୍ଥୀ, ସେହିପରି କଥାବାର୍ତ୍ତା କରୁଥାଆନ୍ତି ॥ ୧ ॥ "ହେ ଦୀନବନ୍ଧୁ ! ହେ ଦୟାଳୁ ରଘୁରାଜ ! ହେ ପରମଦେବ ! ଆପଣ ଦେବତାମାନଙ୍କ ଉପରେ ବଡ ଦୟା କଲେ । ବିଶ୍ୱଦ୍ରୋହ-ନିରତ ଏହି ଦୁଷ୍ଟ, କାମୁକ ଓ କୁପଥଗାମୀ ରାବଣ କେବଳ ଆପଣାର ପାପଯୋଗେ ହିଁ ନଷ୍ଟ ହୋଇଗଲା ॥ ୨ ॥ ଆପଣ ସମରୂପ, ବ୍ରହ୍ମ, ଅବିନାଶୀ, ନିତ୍ୟ ଏକରସ, ସ୍ୱଭାବତଃ ଉଦାସୀନ (ଶତ୍ରୁ-ମିତ୍ର-ଭାବ-ରହିତ), ଅଖଣ୍ଡ, ନିର୍ଗୁଣ, (ମାୟିକ ଗୁଣରହିତ), ଅଜନ୍ମା, ନିଷ୍ପାପ ନିର୍ବିକାର, ଅଜେୟ, ଅମୋଘଶକ୍ତି (ଅବ୍ୟର୍ଥଶକ୍ତି) ଏବଂ ଦୟାମୟ ॥ ୩ ॥ ଆପଣ ମତ୍ସ୍ୟ, କଚ୍ଛପ, ବରାହ,

ଯୂହ ଖଲ ମଲିନ ସଦା ସୁରଦ୍ରୋହୀ । କାମ ଲୋଭ ମଦ ରତ ଅତି କୋହୀ ॥
ଅଧମ ସିରୋମନି ତବ ପଦ ପାଵା । ଯହ ହମରେଁ ମନ ବିସମୟ ଆଵା ॥୫॥
ହମ ଦେବତା ପରମ ଅଧିକାରୀ । ସ୍ୱାରଥରତ ପ୍ରଭୁ ଭଗତି ବିସାରୀ ॥
ଭବ ପ୍ରବାହଁ ସଂତତ ହମ ପରେ । ଅବ ପ୍ରଭୁ ପାହି ସରନ ଅନୁସରେ ॥୬॥

କରି ବିନତୀ ସୁର ସିଦ୍ଧ ସବ ରହେ ଜହଁ ତହଁ କର ଜୋରି ।
ଅତି ସପ୍ରେମ ତନ ପୁଲକି ବିଧି ଅସ୍ତୁତି କରତ ବହୋରି ॥୧୧୦॥

ଜୟ ରାମ ସଦା ସୁଖଧାମ ହରେ । ରଘୁନାୟକ ସାୟକ ଚାପ ଧରେ ॥
ଭବ ବାରନ ଦାରନ ସିଂହ ପ୍ରଭୋ । ଗୁନ ସାଗର ନାଗର ନାଥ ବିଭୋ ॥୧॥
ତନ କାମ ଅନେକ ଅନୂପ ଛବୀ । ଗୁନ ଗାଵତ ସିଦ୍ଧ ମୁନୀନ୍ଦ୍ର କବୀ ॥
ଜସୁ ପାବନ ରାବନ ନାଗ ମହା । ଖଗନାଥ ଜଥା କରି କୋପ ଗହା ॥୨॥

---

ପାପମୂଳ ଦଶଶିର ବିବୁଧ ବିରୋଧୀ । କାମ-ଲୋଭ-ମଦରତ ଅତିଶୟ କ୍ରୋଧୀ ॥
ସେ କୃପାଳୁ ଆପଣଙ୍କ ଧାମେ ପହଞ୍ଚିଲା । ଦେଖି ଆମ୍ଭ ମନେ ଅତି ଆଶ୍ଚର୍ଯ୍ୟ ଲାଗିଲା ॥୫॥
ପରମାଧିକାରୀ ଆମ୍ଭେ ସକଳ ଅମର । ସ୍ୱାର୍ଥବଶ ହୋଇ ଭକ୍ତି ଭୁଲିଣ ତୁମ୍ଭର ॥
ଭବ ପ୍ରବାହରେ ଆମ୍ଭେ ପଡ଼ିଛୁ ସତତ । ଏବେ ପ୍ରଭୁ ପାହି ପାହି, ଶରଣେ ଆଗତ ॥୬॥

ବିନତି କରିଣ ସୁର ସିଦ୍ଧ ଗଣ ହୋଇ ହେଲେ ଯୋଡ଼ି କର ।
ଅତି ପ୍ରେମେ ମଗ୍ନ କମଳ-ଆସନ ସ୍ତୁତି କଲେ ଆଦର ॥୧୧୦॥

ଜୟ ଶ୍ରୀରାମ ହରି ସୁଖ-ଆକର । ରଘୁନାୟକ ଚାପ ଶାୟକ ଧର ॥
ଭବ-ଗଜ-ବିଦାରେ କେଶରୀ ପ୍ରଭୁ । ଗୁଣ-ସାଗର-ନାଥ ନାଗର ବିଭୁ ॥୧॥
ତନୁ ଅସଂଖ୍ୟ କାମ ଅନୁପ ଛବି । ଗାଆନ୍ତି ଗୁଣ ସିଦ୍ଧ ମୁନୀନ୍ଦ୍ର କବି ॥
ପବିତ୍ର-ଯଶ, ମହାନାଗ ଲଙ୍କେଶ । କୋପ କରି ଧରିଲ ଯଥା ଖଗେଶ ॥୨॥

---

ନୃସିଂହ, ବାମନ ଓ ପରଶୁରାମଙ୍କ ରୂପରେ ଶରୀର ଧାରଣ କରିଅଛନ୍ତି । ହେ ନାଥ ! ଯେବେ ଯେବେ ଦେବତାମାନେ ଦୁଃଖ ପାଇଅଛନ୍ତି, ସେହି ସେହି ସମୟରେ ଆପଣ ଅନେକ ଶରୀର ଧାରଣପୂର୍ବକ ସେମାନଙ୍କ ଦୁଃଖ ନାଶ କରିଅଛନ୍ତି ॥ ୪ ॥ ଏହି ଦୁଷ୍ଟ, ମଳିନ-ହୃଦୟ, ଦେବ-ବୃନ୍ଦଙ୍କ ନିତ୍ୟ ଶତ୍ରୁ, କାମମଦ-ଲୋଭନିରତ ଓ ଅତ୍ୟନ୍ତ କ୍ରୋଧୀ ଥିଲା । ଏପରି ଅଧମ-ଶିରୋମଣି ମଧ୍ୟ ଆପଣଙ୍କ ପରମପଦ ଲାଭ କଲା । ଏହା ଆମ୍ଭମାନଙ୍କ ମନରେ ବିସ୍ମୟ ସୃଷ୍ଟି କରିଅଛି ॥ ୫ ॥ ଆମେ ଦେବତାମାନେ ପରମ ଅଧିକାରୀ ହୋଇ ସୁଦ୍ଧା ସ୍ୱାର୍ଥପର ହୋଇ ପଡ଼ିଥିଲୁ ଏବଂ ଆପଣଙ୍କ ଭକ୍ତି ଭୁଲି ନିରନ୍ତର ଭବ-ସାଗରର ପ୍ରବାହରେ ପଡ଼ିଅଛୁ । ଏବେ ହେ ପ୍ରଭୋ ! ଆମ୍ଭେମାନେ ଆପଣଙ୍କ ଶରଣାଗତ ହୋଇଅଛୁ । ଆମ୍ଭମାନଙ୍କୁ ରକ୍ଷା କରନ୍ତୁ ।” ॥ ୬ ॥ ଦୋହା —ବିନତି କରି ଦେବତା ଓ ସିଦ୍ଧମାନେ ଯେଉଁଠି ସେଇଠି ହାତ ଯୋଡ଼ି ଛିଡ଼ା ହୋଇ ରହିଲେ । ସେତେବେଳେ ଅତିଶୟ ପ୍ରେମରେ ପୁଲକିତ-ଶରୀର ହୋଇ ବ୍ରହ୍ମା ସ୍ତୁତି କରିବାକୁ

ଜନରଞ୍ଜନ ଭଞ୍ଜନ ସୋକ ଭୟଂ । ଗତକ୍ରୋଧ ସଦା ପ୍ରଭୁ ବୋଧମୟଂ ॥
ଅବତାର ଉଦାର ଅପାର ଗୁନଂ । ମହିଭାର ବିଭଂଜନ ଜ୍ଞାନଘନଂ ॥୩॥
ଅଜ ବ୍ୟାପକମେକମନାଦି ସଦା । କରୁନାକର ରାମ ନମାମି ମୁଦା ॥
ରଘୁବଂସ ବିଭୂଷନ ଦୂଷନ ହା । କୃତ ଭୂପ ବିଭୀଷନ ଦୀନ ରହା ॥୪॥
ଗୁନ ଜ୍ଞାନ ନିଧାନ ଅମାନ ଅଜଂ । ନିତ ରାମ ନମାମି ବିଭୁଂ ବିରଜଂ ॥
ଭୁଜଦଣ୍ଡ ପ୍ରଚଣ୍ଡ ପ୍ରତାପ ବଲଂ । ଖଲବୃନ୍ଦ ନିକଂଦ ମହା କୁସଲଂ ॥୫॥
ବିନୁ କାରନ ଦୀନ ଦୟାଲ ହିତଂ । ଛବିଧାମ ନମାମି ରମା ସହିତଂ ॥
ଭବ ତାରନ କାରନ କାଜ ପରଂ । ମନ ସଂଭବ ଦାରୁନ ଦୋଷହରଂ ॥୬॥

---

ଜନ ରଞ୍ଜନ ଭଞ୍ଜନ ଶୋକ ଭୟ । ବିଗତ କ୍ରୋଧ ସଦା ବିବେକମୟ ॥
ଉଦାର ଅବତାର ଗୁଣ ଅପାର । ଜ୍ଞାନ-ଘନ ହରଣ ଧରଣୀ-ଭାର ॥୩॥
ଅଜ ବ୍ୟାପକ ଏକ ଅନାଦି ରାମ । ନମାମି କୃପାକର ଭକ୍ତ-ବିଶ୍ରାମ ॥
ରଘୁବଂଶ-ଭୂଷଣ ଦୋଷ-ନାଶନ । ଦୀନ ବିଭୀଷଣଙ୍କୁ କଲ ରାଜନ ॥ ॥
ଗୁଣ-ଜ୍ଞାନ-ନିଧାନ ଅମାନ ଅଜ । ନିତ୍ୟ ନମାମି ରାମ, ବିଭୁ ବିରଜ ॥
ଭୁଜ-ଦଣ୍ଡ ପ୍ରଚଣ୍ଡ ପ୍ରତାପ ବଳ । ଖଳ-ଦଳ-ଦଳନେ ମହା କୁଶଳ ॥୫॥
ଦୀନ-ଜନ-ହିତୈଷୀ ହେତୁ ରହିତ । ନମାମି ଛବି-ଧାମ ରମା ସହିତ ॥
ଭବ-ତାରଣ କାର୍ଯ୍ୟ କାରଣ ପର । ମନ-ସମ୍ଭବ ଦୋଷ ଦାରୁଣ ହର ॥୬॥

---

ଲାଗିଲେ—॥ ୧୧୦ ॥ ଛନ୍ଦ :—"ହେ ନିତ୍ୟ-ସୁଖଧାମ ଦୁଃଖହାରକ ହରି ! ହେ ଧନୁର୍ବାଣ-ଧାରି ରଘୁନାଥ ! ଆପଣଙ୍କର ଜୟ ହେଉ । ହେ ପ୍ରଭୋ ! ଆପଣ ଭବ-ବାରଣ-ଦାରଣ କେଶରୀ ସଦୃଶ । ହେ ନାଥ ! ହେ ସର୍ବବ୍ୟାପକ ! ଆପଣ ଗୁଣ-ସାଗର ଓ ପରମ ଚତୁର ॥ ୧ ॥ ଆପଣଙ୍କ ଶରୀର ଅନେକ କାମଦେବ ସମାନ ଏବଂ ତାହାର ଛବି ଅନୁପମ । ସିଦ୍ଧ ମୁନୀଶ୍ୱର ଓ କବିମାନେ ଆପଣଙ୍କ ଗୁଣଗାନ କରନ୍ତି । ଆପଙ୍କେ ଯଶ ପବିତ୍ର । ଆପଣ ରାବଣ ପରି ମହାସର୍ପଙ୍କୁ ଗରୁଡ ପରି କ୍ରୋଧ କରି ଧରି ପକାଇଲେ ॥ ୨ ॥ ହେ ପ୍ରଭୋ ! ଆପଣ ଭକ୍ତଜନଙ୍କ ମନୋରଞ୍ଜନକାରକ ଏବଂ ସେମାନଙ୍କ ଶୋକ-ଭୟ-ଭଞ୍ଜନକାରକ । ଆପଣ ସଦା ବିଗତକ୍ରୋଧ ଏବଂ ନିତ୍ୟ ଜ୍ଞାନ-ସ୍ୱରୂପ । ଆପଣଙ୍କ ଅବତାର ଶ୍ରେଷ୍ଠ ଓ ଉଦାର, ଅପାର ଦିବ୍ୟଗୁଣ-ବିଶିଷ୍ଟ, ଭବଭର-ବିଭଞ୍ଜନକାରୀ ଏବଂ ଜ୍ଞାନଘନ ॥ ୩ ॥ ଅବତାର ଗ୍ରହଣ କଲେ ସୁଦ୍ଧା ଆପଣ ନିତ୍ୟ, ଅଜନ୍ମା, ବ୍ୟାପକ, ଏକ (ଅଦ୍ୱିତୀୟ) ଓ ଅନାଦି । ହେ କରୁଣାକର ଶ୍ରୀରାମ ! ମୁଁ ଆପଣଙ୍କୁ ଅତିଶୟ ହର୍ଷରେ ନମସ୍କାର କରୁଅଛି । ହେ ରଘୁକୁଳ-ବିଭୂଷଣ ! ହେ ଦୂଷଣ ରାକ୍ଷସ ହତ୍ୟାକାରି ! ହେ ସକଳ ଦୋଷହାରକ ! ବିଭୀଷଣ ଦୀନ ଥିଲେ । ତାହାଙ୍କୁ ଆପଣ ଲଙ୍କାର ରାଜା କରିଦେଲେ ॥ ୪ ॥ ହେ ଗୁଣଜ୍ଞାନନିଧାନ ! ହେ ଅଜନ୍ମା ! ହେ ବ୍ୟାପକ ବିଭୋ ! ହେ ମାୟିକ-ବିକାର-ରହିତ ଶ୍ରୀରାମ ! ମୁଁ ଆପଣଙ୍କୁ ନିତ୍ୟ

ସର ଚାପ ମନୋହର ତ୍ରୋଣଧରଂ । ଜଲଜାରୁନ ଲୋଚନ ଭୂପବରଂ ॥
ସୁଖମନ୍ଦିର ସୁନ୍ଦର ଶ୍ରୀରମନଂ । ମଦ ମାର ମୁଧା ମମତା ସମନଂ ॥୭॥
ଅନବଦ୍ୟ ଅଖଣ୍ଡ ନ ଗୋଚର ଗୋ । ସବରୂପ ସଦା ସବ ହୋଇ ନ ଗୋ ॥
ଇତି ବେଦ ବଦନ୍ତି ନ ଦନ୍ତକଥା । ରବି ଆତପ ଭିନ୍ନମଭିନ୍ନ ଜଥା ॥୮॥
କୃତକୃତ୍ୟ ବିଭୋ ସବ ବାନର ଏ । ନିରଖନ୍ତି ତବାନନ ସାଦର ଏ ॥
ଧିଗ ଜୀବନ ଦେବ ସରୀର ହରେ । ତବ ଭକ୍ତି ବିନା ଭବ ଭୂଲି ପରେ ॥୯॥
ଅବ ଦୀନଦୟାଲ ଦୟା କରିଐ । ମତି ମୋରି ବିଭେଦକରୀ ହରିଐ ॥
ଜେହି ତେ ବିପରୀତ କ୍ରିୟା କରିଐ । ଦୁଖ ସୋ ସୁଖ ମାନି ସୁଖୀ ଚରିଐ ॥୧୦॥

---

ସୁନ୍ଦର ଶର-ଚାପ-ତୂଣୀର-ଧର । କଞ୍ଜାରୁଣ-ଲୋଚନ ଭୂପତିବର ॥
ରମା-ରମଣ ରମ୍ୟ ସୁଖ ଭବନ । ମହା-ମମତା-ମଦ - ମାର ଶମନ ॥୭॥
ଅନବଦ୍ୟ ଅଗୋଚର ଅଖଣ୍ଡିତ । ସର୍ବ ରୂପ ଶାଶ୍ୱତ ସର୍ବ ରହିତ ॥
ବେଦବାକ୍ୟ, ଏ ନୁହେ କଳ୍ପିତ କଥା । ରବି ଆତପ ଭିନ୍ନ ଅଭିନ୍ନ ଯଥା ॥୮॥
କୃତକୃତ୍ୟ ବିଭୋ, ଏ ସର୍ବ ବାନରେ । ନିରେଖନ୍ତି ଯେ ତୁମ୍ଭ ମୁଖ ସାଦରେ ॥
ଧିକ୍ ଦେବଙ୍କ ଦେହ ପ୍ରାଣ, ଶ୍ରୀପତି । ତୁମ୍ଭ ଭକ୍ତି ଭୁଲିଣ ଭବେ ପଡନ୍ତି ॥୯॥
ଏବେ ଦୀନ ଦୟାଳୁ, କରୁଣା କର । ଭେଦ ଭାବ ମୋହର ମତିରୁ ହର ॥
ଯେଉଁଥି ଏ ପ୍ରପଞ୍ଚ କ୍ରିୟା ନ କରିବି । ଦୁଃଖକୁ ସୁଖ ମାନି ସୁଖେ ଭ୍ରମିବି ॥୧୦॥

---

ନମସ୍କାର କରୁଅଛୁ । ଆପଣଙ୍କ ଭୁଜଦଣ୍ଡର ପ୍ରତାପ ଓ ବଳ ପ୍ରଚଣ୍ଡ । ଦୁଷ୍ଟ ସମୂହଙ୍କୁ ନାଶ କରିବାରେ ଆପଣ ପରମ ନିପୁଣ ॥ ୫ ॥ ହେ ଅହେତୁକୀ-ଦୀନ-ଦୟା-ହିତକାରକ ଓ ଶୋଭାଧାମ ! ରମା (ଜାନକୀ)ଙ୍କ ସମେତ ଆପଣଙ୍କୁ ମୁଁ ନମସ୍କାର କରୁଅଛୁ । ଆପଣ ଭବ-ସାଗର-ତାରଣକାରୀ, କାରଣରୂପ ପ୍ରକୃତି ଓ କାର୍ଯ୍ୟରୂପ ଜଗତ, ଉଭୟର ଊର୍ଦ୍ଧ୍ୱରେ ଏବଂ ମନରୁ ଜାତ ଦାରୁଣ ଦୋଷର ହରଣକାରୀ ॥ ୬ ॥ ଆପଣ ମନୋହର ବାଣ, ଧନୁ ଓ ତୂଣୀର ଧାରଣ କରିଅଛନ୍ତି । ଅରୁଣ କମଳ ସମାନ ରକ୍ତବର୍ଣ୍ଣ ଆପଣଙ୍କ ନେତ୍ର । ଆପଣ ଭୂପବର, ସୁଖମନ୍ଦିର, ସୁନ୍ଦର, ଶ୍ରୀ (ଲକ୍ଷ୍ମୀ)ଙ୍କ ବଲ୍ଲଭ ତଥା ମଦ (ଅହଙ୍କାର), କାମ ଓ ମିଥ୍ୟା ମମତାର ନାଶକାରକ ॥ ୭ ॥ ଆପଣ ଅନବଦ୍ୟ (ଅନିନ୍ଦ୍ୟ ବା ନିର୍ଦ୍ଦୋଷ), ଅଖଣ୍ଡ ଓ ଇନ୍ଦ୍ରିୟୋପଲବ୍ଧ ଜ୍ଞାନର ଊର୍ଦ୍ଧ୍ୱରେ । ଆପଣ ସର୍ବଦା ସର୍ବରୂପ ହୋଇ ମଧ୍ୟ ସେ ସବୁ କେବେ ହୋଇ ନାହାନ୍ତି—ଏହା ବେଦଗଣ କହନ୍ତି । ଏହା କୌଣସି ଦନ୍ତକଥା (କପଟ କଳ୍ପନା ମାତ୍ର) ନୁହେଁ । ଯେପରି ସୂର୍ଯ୍ୟ ଓ ସୂର୍ଯ୍ୟଙ୍କ ପ୍ରକାଶ ପରସ୍ପରଠାରୁ ଭିନ୍ନ ହୋଇ ମଧ୍ୟ ଅଭିନ୍ନ, ସେହିପରି ଆପଣ ସଂସାରଠାରୁ ଉଭୟ ଭିନ୍ନ ଓ ଅଭିନ୍ନ ॥ ୮ ॥ ହେ ବ୍ୟାପକ ପ୍ରଭୋ ! ଏହି ସମସ୍ତ ବାନର ଆପଣଙ୍କ ମୁଖ ଆଦରପୂର୍ବକ ନିରୀକ୍ଷଣ କରୁଅଛନ୍ତି, ଏଣୁ ଏମାନେ କୃତାର୍ଥରୂପ । ହେ ହରେ ! ଆମ ଅମର ଜୀବନ ଓ ଦେବଶରୀରକୁ ଧିକ୍‌କାର । କାରଣ, ଆମ୍ଭେମାନେ ଆପଣଙ୍କ

ଖଲଖଣ୍ଡନ ମଣ୍ଡନ ରମ୍ୟ ଛମା । ପଦ ପଙ୍କଜ ସେବିତ ସମ୍ଭୁ ଉମା ॥
ନୃପନାୟକ ଦେ ବରଦାନମିଦଂ । ଚରନାଂବୁଜ ପ୍ରେମୁ ସଦା ସୁଭଦଂ ॥୧୧॥

ବିନୟ କୀନ୍ହି ଚତୁରାନନ ପ୍ରେମ ପୁଲକ ଅତି ଗାତ ।
ସୋଭାସିଂଧୁ ବିଲୋକତ ଲୋଚନ ନହୀଁ ଅଘାତ ॥୧୧୧॥

ତେହି ଅବସର ଦସରଥ ତହଁ ଆଏ । ତନୟ ବିଲୋକି ନୟନ ଜଲ ଛାଏ ॥
ଅନୁଜ ସହିତ ପ୍ରଭୁ ବନ୍ଦନ କୀହ୍ନା । ଆସିରବାଦ ପିତାଁ ତବ ଦୀହ୍ନା ॥୧॥
ତାତ ସକଲ ତବ ପୁଣ୍ୟ ପ୍ରଭାଊ । ଜୀତେୟାଁ ଅଜୟ ନିସାଚରରାଊ ॥
ସୁନି ସୁତ ବଚନ ପ୍ରୀତି ଅତି ବାଢ଼ୀ । ନୟନ ସଲିଲ ରୋମାବଲି ଠାଢ଼ୀ ॥୨॥

---

ଖର-ଖଣ୍ଡନ ସ୍ୱରୂ ଧରା-ମଣ୍ଡନ । ପଦ-ପଙ୍କଜ ଉମା-ଶମ୍ଭୂ - ବନ୍ଦନ ॥
ଦିଅ ଏ ବରଦାନ, ନୃପ ନାୟକ । ପଦାବ୍ଜ-ପ୍ରେମ ସଦା ସୁଖ-ଦାୟକ ॥୧୧॥

ବିନୟ କରଣ କମଳ-ଆସନ ପ୍ରେମେ ପ୍ରଫୁଲ୍ଲିତ ମନ ।
ଶୋଭା-ନିକେତନ ପ୍ରଭୁଙ୍କୁ ଚାହିଁଣ ତୃପ୍ତ ନ ହୁଏ ନୟନ ॥୧୧୧॥

ସେ ସମୟେ ଦଶରଥ ତହିଁ ଆଗମିଲେ । ତନୟେ ନିରେଖି ନେତ୍ରୁ ନୀର ବୁହାଇଲେ ॥
ଅନୁଜ ସହିତ ପ୍ରଭୁ କରନ୍ତେ ପ୍ରଣାମ । ସ୍ନେହେ ପିତା କଲେ ତହୁଁ ଆଶିଷ ପ୍ରଦାନ ॥୧॥
ତାତ ! ଏ ସମସ୍ତ ତୁମ୍ଭ ପୁଣ୍ୟ ପ୍ରଭାବରେ । ଜିଣିଲି ଅଜେୟ ନିଶାଚର ଅଧୀଶ୍ୱରେ ॥
ଶୁଣି ସୁତ ବାଣୀ ପ୍ରୀତି ଅତ୍ୟନ୍ତ ବଢିଲା । ନୟନେ ନୀର ଶରୀର ରୋମାଞ୍ଚ ହୋଇଲା ॥୨॥

---

ଭକ୍ତିରୁ ବଞ୍ଚିତ ହୋଇ ସାଂସାରିକ ବିଷୟବାସନାରେ ଭ୍ରମି ବୁଲୁଛନ୍ତି ॥ ୯ ॥ ହେ ଦୀନଦୟାଳୁ ! ମୁଁ ନିଜେ ବିଭେଦକାରଣୀ ବୁଦ୍ଧି ଯୋଗେ ବିପରୀତ କର୍ମ କରୁଛି ଏବଂ ଯାହା ଦୁଃଖ, ତାହାକୁ ସୁଖ ମନେ କରି ଆନନ୍ଦରେ ବିଚରଣ କରୁଛି । ମୋତେ ଦୟା କରନ୍ତୁ ଏବଂ ମୋର ଏହି ବିଭେଦକାରିଣୀ ବୁଦ୍ଧି ହରଣ କରି ନିଅନ୍ତୁ ॥ ୧୦ ॥ ଆପଣ ଦୁଷ୍ଟଗଣଙ୍କ ଖଣ୍ଡନକାରୀ ଏବଂ ପୃଥିବୀର ରମଣୀୟ ଭୂଷଣ । ଆପଣଙ୍କ ଚରଣ-କମଳ ଶ୍ରୀ ଶିବ-ପାର୍ବତୀଙ୍କ ଦ୍ୱାରା ସେବିତ । ହେ ନୃପନାୟକ ! ମୋତେ ବରଦାନ ଦିଅନ୍ତୁ, ଯେପରି ଆପଣଙ୍କ ଚରଣ-କମଳରେ ମୋର ସଦା ଶୁଭଦ ( ଅନନ୍ୟ ) ପ୍ରେମ ରହିବ ।” ॥ ୧୧ ॥ ଦୋହା ।—ଏହି ରୂପେ ବ୍ରହ୍ମା ଅତ୍ୟନ୍ତ ପ୍ରେମ-ପୁଲକିତ ଶରୀରରେ ସ୍ତୁତି କଲେ । ଶୋଭା-ସମୁଦ୍ର ଶ୍ରୀରାମଙ୍କ ଦର୍ଶନ କରି କରି ତାଙ୍କ ନେତ୍ର ତୃପ୍ତ ହେଉ ନ ଥାଏ ॥ ୧୧୧ ॥ ଚୌପାଇ ।—ସେତିକି ବେଳେ ଦଶରଥ ସେହି ସ୍ଥାନକୁ ଆସିଲେ । ପୁତ୍ର ଶ୍ରୀରାମଙ୍କୁ ଦେଖି ତାଙ୍କ ନେତ୍ରରେ ପ୍ରେମାଶ୍ରୁ ଜଳ ପୂରିଗଲା । ସାନ ଭାଇ ଲକ୍ଷ୍ମଣ ସମେତ ପ୍ରଭୁ ତାଙ୍କୁ ବନ୍ଦନା କଲେ ଏବଂ ପିତା ସେମାନଙ୍କୁ ଆଶୀର୍ବାଦ ଦେଲେ ॥ ୧ ॥ ଶ୍ରୀରାମ କହିଲେ, “ହେ ପିତଃ ! ଏ ସବୁ ଆପଣଙ୍କ ପୁଣ୍ୟର ପ୍ରଭାବ, ଯାହା ବଳରେ ମୁଁ ଅଜେୟ ରାବଣକୁ ଯୁଦ୍ଧରେ ଜୟ କରି ପାରିଲି ।” ପୁତ୍ରଙ୍କ ବଚନ ଶୁଣି ତାଙ୍କ ପ୍ରୀତି ଅତିଶୟ ବଢ଼ିଗଲା । ନେତ୍ରଯୁଗଳରେ ଜଳ ଭରିଗଲା ଏବଂ ରୋମାବଳୀ

ରଘୁପତି ପ୍ରଥମ ପ୍ରେମ ଅନୁମାନା । ଚିତଇ ପିତହି ଦୀନ୍ହେଉ ଦୃଢ଼ ଗ୍ୟାନା ॥
ତା ତେଁ ଉମା ମୋଚ୍ଛ ନହିଁ ପାୟୋ । ଦସରଥ ଭେଦ ଭଗତି ମନ ଲାୟୋ ॥୩॥
ସଗୁନୋପାସକ ମୋଚ୍ଛ ନ ଲେହୀଁ । ତିହ୍ନ କହୁଁ ରାମ ଭଗତି ନିଜ ଦେହୀଁ ॥
ବାର ବାର କରି ପ୍ରଭୁହି ପ୍ରନାମା । ଦସରଥ ହରଷି ଗଏ ସୁରଧାମା ॥୪॥
ଅନୁଜ ଜାନକୀ ସହିତ ପ୍ରଭୁ କୁସଲ କୋସଲାଧୀସ ।
ସୋଭା ଦେଖି ହରଷି ମନ ଅସ୍ତୁତି କର ସୁର ଈସ ॥୧୧୨॥

ଜୟ ରାମ ସୋଭାଧାମ । ଦାୟକ ପ୍ରନତ ବିଶ୍ରାମ ।
ଧୃତ ତୋନ ବର ସର ଚାପ । ଭୁଜଦଣ୍ଡ ପ୍ରବଲ ପ୍ରତାପ ॥୧॥
ଜୟ ଦୂଷନାରି ଖରାରି । ମର୍ଦ୍ଦନ ନିସାଚର ଧାରି ॥
ୟହ ଦୁଷ୍ଟ ମାରେଉ ନାଥ । ଭଏ ଦେବ ସକଲ ସନାଥ ॥୨॥

---

ପ୍ରଥମେ ପ୍ରଭୁ କରିଣ ପ୍ରେମ ଅନୁମାନ । ନିରେଖି ପିତାଙ୍କୁ ପୁଣି ଦେଲେ ଦୃଢ଼ଜ୍ଞାନ ॥
ସେ କାରଣୁ ଉମା, ମୋକ୍ଷଗତି ନ ଲଭିଲେ । ଦଶରଥ ଭେଦ ଭକ୍ତି ମନେ ଘେନିଥିଲେ ॥୩॥
ସୁଗୁଣ ଉପାସକ ଯେ ମୋକ୍ଷ ନ ଇଚ୍ଛନ୍ତି । ତାହାଙ୍କୁ ରାମ ଆପଣା ଭକ୍ତି ପ୍ରଦାନନ୍ତି ॥
ବାରମ୍ବାର କରି ପୁଣି ପ୍ରଭୁଙ୍କୁ ପ୍ରଣାମ । ହରଷିତେ ଦଶରଥ ଗଲେ ନିଜ ଧାମ ॥୪॥
ଅନୁଜ ଜାନକୀ ସହିତ ରାଜନ୍ତି କୁଶଳେ କୋଶଳାଧୀଶ ।
ଛବି ବିଲୋକିଣ ପ୍ରମୋଦିତ ମନ, ସ୍ତୁତି କରେ ସୁର ଈଶ ॥୧୧୨॥

ଜୟ ଶ୍ରୀରାମ ସୁଖ ଧାମ । ଦାୟକ ପ୍ରଣତ ବିଶ୍ରାମ ॥
ତୂଣୀର-ଶର - ଚାପଧାରୀ । ପ୍ରତାପ ଭୁଜ-ଦଣ୍ଡ ଭାରୀ ॥୧॥
ଜୟ ଦୂଷଣ-ଖର-ଘାତୀ । ମର୍ଦ୍ଦନ ଅମର ଅରାତି ॥
ଏ ଦୁଷ୍ଟେ ବିନାଶିଲ, ନାଥ । ବିବୁଧେ ହୋଇଲେ ସନାଥ ॥୨॥

---

ଟୀକ୍କାର ଉଚିତ୍ ॥ ୨ ॥ ଶ୍ରୀ ରଘୁନାଥ ପ୍ରଥମ (ତାଙ୍କ ଜୀବିତ କାଳର) ପ୍ରେମ କଥା ବିଚାର କରି ପିତାଙ୍କ ଆଡକୁ ଚାହିଁ ତାହାଙ୍କୁ ଆପଣା ଦୃଢ଼ ସ୍ୱରୂପ ବିଷୟରେ ଜ୍ଞାତ କରାଇ ଦେଲେ । ହେ ଉମା ! ଦଶରଥ ଭେଦଭକ୍ତିରେ ନିଜ ମନଧ୍ୟାନ ଲଗାଇଥିଲେ । ଏଣୁ ହେତୁ ସେ ମୋକ୍ଷ ପାଇଲେ ନାହିଁ ॥ ୩ ॥ ଭଗବାନ୍ଙ୍କ ସଗୁଣ ସ୍ୱରୂପର ଉପାସକ ଭକ୍ତ ଏ ରୂପ ମୋକ୍ଷ ନିଅନ୍ତି ନାହିଁ ମଧ୍ୟ । ସେମାନଙ୍କୁ ଶ୍ରୀରାମ ଆପଣାର ଭକ୍ତି ଦିଅନ୍ତି । ପ୍ରଭୁଙ୍କୁ ଇଷ୍ଟବୁଦ୍ଧିରେ ବାରମ୍ବାର ପ୍ରଣାମ କରି ଦଶରଥ ଆନନ୍ଦିତ ହୋଇ ଦେବଲୋକକୁ ଚାଲିଗଲେ ॥ ୪ ॥ ଦୋହା :—ସାନଭାଇ ଲକ୍ଷ୍ମଣ ଓ ଜାନକୀଙ୍କ ସମେତ ପରମକୁଶଳୀ ପ୍ରଭୁ ଶ୍ରୀ କୋଶଳାଧୀଶଙ୍କ ଶୋଭା ଦେଖି ଦେବରାଜ ଇନ୍ଦ୍ର ମନରେ ହର୍ଷିତ ହୋଇ ସ୍ତୁତି କରିବାକୁ ଲାଗିଲେ— ॥ ୧୧୨ ॥ ଛନ୍ଦ :—"ଶୋଭାଧାମ, ଶରଣାଗତ ବିଶ୍ରାମ-ଦାୟକ, ଶ୍ରେଷ୍ଠ-ତୂଣୀର-ଧନୁ-ଶର-ଧାରୀ, ପ୍ରବଳ-ପ୍ରତାପୀ, ଭୁଜଦଣ୍ଡ ଶ୍ରୀରାମଙ୍କର

ଜୟ ହରନ ଧରନୀ ଭାର । ମହିମା ଉଦାର ଅପାର ॥
ଜୟ ରାବନାରି କୃପାଲ । କିଏ ଜାତୁଧାନ ବିହାଲ ॥୩॥
ଲଂକେସ ଅତି ବଲ ଗର୍ବ । କିଏ ବସ୍ୟ ସୁର ଗଂଧର୍ବ ॥
ମୁନି ସିଦ୍ଧ ନର ଖଗ ନାଗ । ହଠି ପନ୍ଥ ସବ କେଁ ଲାଗ ॥୪॥
ପରଦ୍ରୋହ ରତ ଅତି ଦୁଷ୍ଟ । ପାୟୋ ସୋ ଫଲୁ ପାପିଷ୍ଟ ॥
ଅବ ସୁନହୁ ଦୀନ ଦୟାଲ । ରାଜୀବ ନୟନ ବିସାଲ ॥୫॥
ମୋହି ରହା ଅତି ଅଭିମାନ । ନହିଁ କୋଉ ମୋହି ସମାନ ॥
ଅବ ଦେଖି ପ୍ରଭୁ ପଦ କଂଜ । ଗତ ମାନ ପ୍ରଦ ଦୁଖପୁଂଜ ॥୬॥
କୋଉ ବ୍ରହ୍ମ ନିର୍ଗୁନ ଧ୍ୟାୱ । ଅବ୍ୟକ୍ତ ଜେହି ଶ୍ରୁତି ଗାୱ ॥
ମୋହି ଭାୱ କୋସଲଭୂପ । ଶ୍ରୀରାମ ସଗୁନ ସରୂପ ॥୭॥

---

ଜୟ ହରଣ ଭୁବି ଭାର । ମହିମା ଉଦାର ଅପାର ॥
ଜୟ କୃପାଳୁ ରାବଣାରି । ବିନାଶ କରିଲ ସୁରାରି ॥୩॥
ଲଙ୍କେଶ ଅତି ବଳ ଗର୍ବେ । ବାନ୍ଧିଲା ଅମର ଗନ୍ଧର୍ବେ ॥
ମୁନି ମାନବ ଖଗ ନାଗ । ରୋଧିଲା ସମସ୍ତଙ୍କ ମାର୍ଗ ॥୪॥
ଅତ୍ୟନ୍ତ ପରଦ୍ରୋହୀ ଖଳ । ପାପିଷ୍ଠ ପାଇଲା ସେ ଫଳ ॥
ଏବେ ଶୁଣନ୍ତୁ ଦୀନପାଳ । ରାଜୀବଲୋଚନ ବିଶାଳ ॥୫॥
ଥିଲା ଯେ ମୋର ଅଭିମାନ । ମୋ ସମ ନାହିଁ କେହି ଆନ ॥
ଏବେ ବିଲୋକି କଞ୍ଜ ପଦ । ତୁଟିଲା ମାନ ଦୁଃଖପ୍ରଦ ॥୬॥
କେହି ନିର୍ଗୁଣ ବ୍ରହ୍ମ ଧ୍ୟାଏ । ଅବ୍ୟକ୍ତ ଯାରେ ବେଦ ଗାଏ ॥
ମୁଁ ଚାହେଁ ଅଯୋଧ୍ୟାର ଭୂପ । ଶ୍ରୀରାମ ସଗୁଣ ସ୍ୱରୂପ ॥୭॥

---

ଜୟ ହେଉ ! ॥ ୧ ॥ ହେ ଖରଦୂଷଣାରି ଓ ରାକ୍ଷସ ସେନାଙ୍କ ମର୍ଦ୍ଦନକାରି ! ଆପଣଙ୍କର ଜୟ ହେଉ ! ହେ ନାଥ ! ଆପଣ ଏହି ଦୁଷ୍ଟଙ୍କୁ ବଧ କଲେ । ଫଳରେ ସମସ୍ତ ଦେବତା ସନାଥ (ସୁରକ୍ଷିତ) ହୋଇଗଲେ ॥ ୨ ॥ ହେ ଭୂମି-ଭାରହାରକ ! ହେ ଅପାର-ଉଦାର-ମହିମ ! ଆପଣଙ୍କ ଜୟ ହେଉ । ହେ ରାବଣାରି ! ହେ କୃପାଳୁ ! ଆପଣଙ୍କ ଜୟ ହେଉ । ଆପଣ ରାକ୍ଷସମାନଙ୍କୁ ନଷ୍ଟଭ୍ରଷ୍ଟ କରିଦେଲେ ॥ ୩ ॥ ଲଙ୍କାପତି ରାବଣର ଆପଣା ବଳପରାକ୍ରମ ଉପରେ ବଡ ଗର୍ବ ଥିଲା । ସେ ଦେବତା ଓ ଗନ୍ଧର୍ବ ସମସ୍ତଙ୍କୁ ଆପଣାର ବଶୀଭୂତ କରି ନେଇଥିଲା ଏବଂ ମୁନି, ସିଦ୍ଧ, ମନୁଷ୍ୟ, ପକ୍ଷୀ ଓ ନାଗ ଆଦି ସମସ୍ତଙ୍କର ପଥ ବଳପୂର୍ବକ ଅବରୋଧ କରିଥିଲା ॥ ୪ ॥ ଅନ୍ୟ ସହିତ ଦ୍ରୋହ କରିବା ବିଷୟରେ ସେ ଅତି ତତ୍ପର ଥିଲା ଏବଂ ଅତ୍ୟନ୍ତ ଦୁଷ୍ଟ ଥିଲା । ଏବେ ହେ ଦୀନଦୟାଳୁ ! ହେ କମଳ-ବିଶାଳନୟନ ! ଶୁଣନ୍ତୁ ॥ ୫ ॥ ମୋ ମନରେ ଅତି ବଡ ଅଭିମାନ ଥିଲା ଯେ, ମୋ ସମାନ ଆଉ କେହି ନାହାନ୍ତି । କିନ୍ତୁ ବର୍ତ୍ତମାନ ପ୍ରଭୁଙ୍କର ଚରଣ-କମଳ-

ବୈଦେହୀ ଅନୁଜ ସମେତ । ମମ ହୃଦୟଁ କରହୁ ନିକେତ ॥
ମୋହି ଜାନିଐ ନିଜ ଦାସ । ଦେ ଭକ୍ତି ରମାନିବାସ ॥୮॥

ଦେ ଭକ୍ତି ରମାନିବାସ ତ୍ରାସହରନ ସରନ ସୁଖଦାୟକଂ ।
ସୁଖଧାମ ରାମ ନମାମି କାମ ଅନେକ ଛବି ରଘୁନାୟକଂ ॥
ସୁରବୃନ୍ଦ ରଂଜନ ଦ୍ୱନ୍ଦଭଂଜନ ମନୁଜତନୁ ଅତୁଲିତ ବଲଂ ।
ବ୍ରହ୍ମାଦି ସଂକର ସେବ୍ୟ ରାମ ନମାମି କରୁନା କୋମଲଂ ॥

ଅବ କରି କୃପା ବିଲୋକି ମୋହି ଆୟସୁ ଦେହୁ କୃପାଲ ।
କାହ କରୌଁ ସୁନି ପ୍ରିୟ ବଚନ ବୋଲେ ଦୀନଦୟାଲ ॥୧୧୩॥

---

ଅନୁଜ ସୀତା ସଙ୍ଗତରେ । ନିବାସ କର ମୋ ହୃଦରେ ॥
ମୋତେ ବିଚାରି ନିଜ ଦାସ । ଭକ୍ତି ଦିଅନ୍ତୁ ଶ୍ରୀ ନିବାସ ॥୮॥

ଦିଅ ରମାନିବାସ ! ଭକ୍ତି, ହରଣ ତ୍ରାସ ଶରଣ-ସୁଖ-ପ୍ରଦାୟକ ।
ସୁଖଧାମ ଶ୍ରୀରାମ ନମାମି, ବହୁ କାମ-ସୌନ୍ଦର୍ଯ୍ୟ ଶ୍ରୀ ରଘୁନାୟକ ।
ରଞ୍ଜନ ବୃନ୍ଦାରକ-କୁଳ, ନରେଶ ବଳିଷ୍ଠ ଅତୁଳ,
ଅଜ-ଶିବ-ବନ୍ଦନ ଭବ-ଭଞ୍ଜନ ରାମ, ନମାମି କରୁଣା ମୃଦୁଳ ॥

ଏବେ କୃପା ନେତ୍ରେ ଅବଲୋକି ମୋତେ ଆଦେଶ ଦିଅ କୃପାଳୁ ।
କି କରିବି, ଶୁଣି ଅତି ପ୍ରିୟ ବାଣୀ ଭାଷିଲେ ଦୀନ ଦୟାଳୁ ॥୧୧୩॥

---

ଦର୍ଶନ ଯୋଗେ ବହୁ-ଦୁଃଖ-ଦାୟକ ମୋର ଉକ୍ତ ଅଭିମାନ ଚାଲିଯାଇଅଛି ॥ ୬ ॥ ବେଦଗଣ ଯାହାଙ୍କୁ ଅବ୍ୟକ୍ତ (ନିରାକାର) କହନ୍ତି, ସେହି ନିର୍ଗୁଣ ବ୍ରହ୍ମଙ୍କୁ କେହି ଧ୍ୟାନ କରନ୍ତୁ । ପରନ୍ତୁ ହେ ରାମ ! ଆପଣଙ୍କ ଏହି ସଗୁଣ କୋଶଳରାଜ-ସ୍ୱରୂପ ହିଁ ମୋର ଅତି ପ୍ରିୟ ॥ ୭ ॥ ଶ୍ରୀ ଜାନକୀ ଓ ସାନଭାଇ ଲକ୍ଷ୍ମଣଙ୍କ ସମେତ ଆପଣ ମୋ ହୃଦୟରେ ବାସ କରନ୍ତୁ । ହେ ରମାନିବାସ ! ମୋତେ ଆପଣାର ଦାସ ବୋଲି ମନେ କରନ୍ତୁ ଏବଂ ଆପଣାର ଭକ୍ତି ଦାନ କରନ୍ତୁ ॥ ୮ ॥ ଛନ୍ଦ :—ହେ ରମାନିବାସ ! ହେ ଶରଣାଗତ ଭୟହାରକ ! ହେ ଶରଣାଗତ-ସୁଖଦାୟକ ! ମୋତେ ଆପଣାର ଭକ୍ତି ଦିଅନ୍ତୁ । ହେ ସୁଖଧାମ ! ହେ ଅନେକ-କାମଦେବ-ଛବିଧାରି, ରଘୁକୁଳସ୍ୱାମି ଶ୍ରୀରାମ ! ମୁଁ ଆପଣଙ୍କୁ ନମସ୍କାର କରୁଅଛି । ହେ ସୁରବୃନ୍ଦ ଆନନ୍ଦ-ଦାୟକ ! ହେ (ଜନ୍ମ ମୃତ୍ୟୁ, ହର୍ଷବିଷାଦ, ସୁଖ ଦୁଃଖ ଆଦି) ଦ୍ୱନ୍ଦ୍ୱର ନାଶକାରି, ହେ ମନୁଷ୍ୟ-ଶରୀରଧାରି, ଅତୁଳନୀୟ ବଳଶାଳି, ବ୍ରହ୍ମା ଶିବାଦି ସେବ୍ୟ, କରୁଣା-କୋମଳ ଶ୍ରୀରାମ ! ମୁଁ ଆପଣଙ୍କୁ ନମସ୍କାର କରୁଅଛି ॥ ଦୋହା :—ହେ କୃପାଳୁ ! ମୁଁ ବର୍ତ୍ତମାନ ଆପଣଙ୍କର କି ସେବା କରିପାରେ, ମୋ ଆଡକୁ କୃପାଦୃଷ୍ଟି ପକାଇ ମୋତେ ଆଜ୍ଞା କରନ୍ତୁ ।" ଇନ୍ଦ୍ରଙ୍କର ଏହି ପ୍ରିୟ ବଚନ ଶୁଣି ଦୀନଦୟାଳୁ ଶ୍ରୀରାମ କହିଲେ— ॥ ୧୧୩ ॥ ଚୌପାଈ :—

ସୁନୁ ସୁରପତି କପି ଭାଲୁ ହମାରେ । ପରେ ଭୂମି ନିସିଚରହ୍ନି ଜେ ମାରେ ॥
ମମ ହିତ ଲାଗି ତଜେ ଇହ୍ନ ପ୍ରାନା । ସକଲ ଜିଆଉ ସୁରେସ ସୁଜାନା ॥୧॥
ସୁନୁ ଖଗେସ ପ୍ରଭୁ କୈ ୟହ ବାନୀ । ଅତି ଅଗାଧ ଜାନହିଁ ମୁନି ଗ୍ୟାନୀ ॥
ପ୍ରଭୁ ସକ ତ୍ରିଭୁଅନ ମାରି ଜିଆଈ । କେବଲ ସକ୍ରହି ଦୀହ୍ନି ବଡ଼ାଈ ॥୨॥
ସୁଧା ବରଷି କପି ଭାଲୁ ଜିଆଏ । ହରଷି ଉଠେ ସବ ପ୍ରଭୁ ପହିଁ ଆଏ ॥
ସୁଧାବୃଷ୍ଟି ଭୈ ଦୁହୁଁ ଦଲ ଊପର । ଜିଏ ଭାଲୁ କପି ନହିଁ ରଜନୀଚର ॥୩॥
ରାମାକାର ଭଏ ତିହ୍ନ କେ ମନ । ମୁକ୍ତ ଭଏ ଛୂଟେ ଭବ ବନ୍ଧନ ॥
ସୁର ଅଂସିକ ସବ କପି ଅରୁ ରୀଛା । ଜିଏ ସକଲ ରଘୁପତି କୀଁ ଈଛା ॥୪॥
ରାମ ସରିସ କୋ ଦୀନ ହିତକାରୀ । କୀହ୍ନେ ମୁକୁତ ନିସାଚର ଝାରୀ ॥
ଖଲ ମଲଧାମ କାମରତ ରାୱନ । ଗତି ପାଈ ଜୋ ମୁନିବର ପାୱ ନ ॥୫॥

---

ଶୁଣ ସୁରପତି, ଋକ୍ଷ କପିଙ୍କୁ ଆମ୍ଭର । କରିଛନ୍ତି ଧରାଶାୟୀ ମାରି ନିଶାଚର ॥
ମୋ ହିତ ଲାଗି ଏମାନେ ତ୍ୟାଗ କଲେ ପ୍ରାଣ । ଜୀଆଇ ଦିଅ ଏହାଙ୍କୁ ସୁରେଶ ସୁଜାଣ ॥୧॥
ଶୁଣ ଖଗରାଜ, ଏହି ପ୍ରଭୁଙ୍କର ବାଣୀ । ଅତି ଗମ୍ଭୀର, ଜାଣନ୍ତି ମୁନିବର ଜ୍ଞାନୀ ॥
ପ୍ରଭୁ ତ୍ରିଭୁବନ ମାରି ପାରନ୍ତି ଜୀଆଇ । କେବଳ ସୁରରାଜଙ୍କୁ ଦେଲେ ଏ ବଡ଼ାଇ ॥୨॥
ଅମୃତ ବରଷି ଋକ୍ଷ କପି ଜୀଆଇଲେ । ଉଠି ସର୍ବେ ପ୍ରଭୁଙ୍କ ନିକଟେ ଆସିଲେ ॥
ସୁଧା ବୃଷ୍ଟି ହେଲା ବେନି ଦଳଙ୍କ ଉପରେ । ବଞ୍ଚିଲେ ଋକ୍ଷ ମର୍କଟ ମଲେ ନିଶାଚରେ ॥୩॥
ରାମାକାର ହୋଇଥିଲା ତାହାଙ୍କର ମନ । ମୁକ୍ତ ହୋଇଲେ ତେଜିଣ ସଂସାର ବନ୍ଧନ ॥
ଋକ୍ଷ ବାନର ସମସ୍ତେ ଦେବଅଂଶୀ ଥିଲେ । ରଘୁପତିଙ୍କ ଇଚ୍ଛାରେ ସମସ୍ତେ ବଞ୍ଚିଲେ ॥୪॥
ରାମଙ୍କ ସଦୃଶ କିଏ ଦୀନ ହିତକାରୀ । ମୁକ୍ତ ଯେ କଲେ ସକଳ ନିଶାଚରେ ମାରି ॥
ଖଳ ପାପ-ଧାମ କାମରତ ଦଶାନନ । ପାଇଲା ଗତି ନ ପାନ୍ତି ଯାହା ମୁନି ଜନ ॥୫॥

---

"ହେ ଦେବରାଜ ! ଶୁଣ, ନିଶାଚରମାନେ ଆମର ଯେଉଁ ଭଲ୍ଲୁକ ଓ ବାନରମାନଙ୍କୁ ମାରି ପକାଇଅଛନ୍ତି, ସେହିମାନେ ଭୂମି ଉପରେ ପଡ଼ିଅଛନ୍ତି । ଏମାନେ ମୋହର ହିତ ନିମନ୍ତେ ଆପଣା ଆପଣାର ପ୍ରାଣତ୍ୟାଗ କରି ଦେଇଅଛନ୍ତି । ହେ ସୁଜ୍ଞ ସୁରେଶ ! ଏମାନଙ୍କୁ ଜୀଆଇଦିଅ ।" ॥ ୧ ॥ କାକ ଭୁଶୁଣ୍ଡି କହନ୍ତି, "ହେ ଗରୁଡ ! ଶୁଣନ୍ତୁ, ପ୍ରଭୁଙ୍କର ଏହି ବଚନ ଅତି ଗୂଢ଼ । ଜ୍ଞାନୀ ମୁନିମାନେ କେବଳ ଏ ସବୁ ଜାଣି ପାରନ୍ତି । ପ୍ରଭୁ ଶ୍ରୀରାମ ତ୍ରିଲୋକକୁ ମାରି ମଧ୍ୟ ଜୀବିତ କରିପାରନ୍ତି । ଏଠାରେ ତ ସେ କେବଳ ଇନ୍ଦ୍ରଙ୍କୁ ମହତ୍ତ୍ୱ ଦେଇ ଅଛନ୍ତି ।" ॥୨॥ ଇନ୍ଦ୍ର ଅମୃତ ବୃଷ୍ଟି କରି ବାନର ଓ ଭଲ୍ଲୁକମାନଙ୍କୁ ଜୀଆଇ ଦେଲେ । ସମସ୍ତେ ଆନନ୍ଦିତ ହୋଇ ଉଠିଲେ ଏବଂ ପ୍ରଭୁଙ୍କ ନିକଟକୁ ଆସିଲେ । ଉଭୟ ଦଳ ଉପରେ ଅମୃତ ବୃଷ୍ଟି ହେଲା । କିନ୍ତୁ କେବଳ ଭଲ୍ଲୁକ ଓ ବାନରମାନେ ଜୀବିତ ହେଲେ, ରାକ୍ଷସମାନେ ଜୀବିତ ହେଲେ ନାହିଁ ॥ ୩ ॥ କାରଣ, ରାକ୍ଷସମାନଙ୍କ ମନ ମରିବା ବେଳେ ରାମାକାର ହୋଇଯାଇଥିଲା । ଅତଏବ ସେମାନେ ମୁକ୍ତ ହୋଇ-

ସୁମନ ବରଷି ସବ ସୁର ଚଲେ ଚଢ଼ି ଚଢ଼ି ରୁଚିର ବିମାନ ।
ଦେଖି ସୁଅବସରୁ ପ୍ରଭୁ ପହିଁ ଆୟଉ ସମ୍ଭୁ ସୁଜାନ ॥୧୧୪(କ)॥
ପରମ ପ୍ରୀତି କର ଜୋରି ଜୁଗ ନଳିନ ନୟନ ଭରି ବାରି ।
ପୁଲକିତ ତନୁ ଗଦଗଦ ଗିରାଁ ବିନୟ କରତ ତ୍ରିପୁରାରି ॥୧୧୪(ଖ)॥
ମାମଭିରକ୍ଷୟ ରଘୁକୁଲ ନାୟକ । ଧୃତ ବର ଚାପ ରୁଚିର କର ସାୟକ ॥
ମୋହ ମହା ଘନ ପଟଲ ପ୍ରଭଞ୍ଜନ । ସଂସୟ ବିପିନ ଅନଲ ସୁର ରଂଜନ ॥୧॥
ଅଗୁନ ସଗୁନ ଗୁନ ମନ୍ଦିର ସୁଂଦର । ଭ୍ରମ ତମ ପ୍ରବଲ ପ୍ରତାପ ଦିବାକର ॥
କାମ କ୍ରୋଧ ମଦ ଗଜ ପଞ୍ଚାନନ । ବସହୁ ନିରଂତର ଜନ ମନ କାନନ ॥୨॥

---

ସୁମନ ବରଷି ଚଳେ ସ୍ୱର୍ଗବାସୀ ଚଢ଼ି ଚଢ଼ି ସୁବିମାନେ ।
ସୁବେଳ ଦେଖିଣ ଆସିଲେ ପ୍ରବୀଣ ଶିବ ରାମ ସନ୍ନିଧାନେ ॥୧୧୪ (କ)॥
ଅତି ପ୍ରେମେ କର ଯୋଡ଼ିଣ ଯୁଗଳ କଞ୍ଜନେତ୍ରୁ ଢାଳି ବାରି ।
ପୁଲକ ଶରୀରେ ଗଦ୍‌ଗଦ ବାଣୀରେ ସ୍ତୁତି କଲେ ତ୍ରିପୁରାରି ॥୧୧୪ (ଖ)॥
ମୋତେ ରକ୍ଷା କର, ରଘୁକୁଳର ନାୟକ । ବରୁ ଚାପଧାରୀ, କରେ ରୁଚିର ଶାୟକ ॥
ମହା ମୋହ-ଘନ-ପଟଳକୁ ପ୍ରଭଞ୍ଜନ । ସଂଶୟ - ବନ - ଦହନ ବିବୁଧ-ରଞ୍ଜନ ॥୧॥
ଅଗୁଣ ସଗୁଣ ଗୁଣ ମନ୍ଦିର ସୁନ୍ଦର । ଭ୍ରମ-ତମକୁ ପ୍ରବଳ-ପ୍ରତାପ ଭାସ୍କର ॥
କାମ-କ୍ରୋଧ-ମଦ-ମତ୍ତ-ଗଜ ପଞ୍ଚାନନ । ବସ ନିରନ୍ତର ଜନ-ମାନସ-କାନନ ॥୨॥

---

ଗଲେ । ସେମାନଙ୍କ ଭବ-ବନ୍ଧନ କଟି ଗଲା । କିନ୍ତୁ ବାନର ଓ ଭଲ୍ଲୁକମାନେ ତ ଦେବାଂଶିକ ଥିଲେ । ଏଣୁ ସେମାନେ ସମସ୍ତେ ପ୍ରଭୁ ଶ୍ରୀ ରଘୁନାଥଙ୍କ ଇଚ୍ଛାନୁସାରେ ଜୀବିତ ହୋଇ ଉଠିଲେ ॥ ୪ ॥ ଶ୍ରୀରାମଙ୍କ ସମାନ ଦୀନହିତକାରୀ ଆଉ କିଏ ? ସମସ୍ତ ରାକ୍ଷସଙ୍କୁ ସୁଦ୍ଧା ସେ ମୁକ୍ତ କରିଦେଲେ । ମୁନିବର ସୁଦ୍ଧା ଯେଉଁ ଗତି ପାଆନ୍ତି ନାହିଁ, ଦୁଷ୍ଟ, ପାପଗୃହ ଓ କାମୁକ ରାବଣ ତାହା ଲାଭ କଲା ॥ ୫ ॥ ସମସ୍ତ ଦେବତା ପୁଷ୍ପ ବୃଷ୍ଟି କରି ସୁନ୍ଦର ବିମାନମାନଙ୍କ ଉପରେ ଚଢ଼ି ସ୍ୱ ସ୍ୱ ପୁରକୁ ଚାଲିଲେ । ସେତେବେଳେ ସୁଅବସର ଜାଣି ଶିବ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କ ନିକଟକୁ ଆସିଲେ ॥୧୧୪(କ)॥ ପରମ ପ୍ରେମରେ ଦୁଇ ହାତ ଯୋଡ଼ି, କମଳ-ନେତ୍ରରେ ଜଳ ପୂର୍ଣ୍ଣ କରି ପୁଲକିତ-ଶରୀର ଓ ଗଦ୍‌ଗଦ ବାଣୀରେ ଶିବ ସ୍ତୁତି କରିବାକୁ ଲାଗିଲେ— ॥ ୧୧୪ (ଖ) ॥ ଛନ୍ଦ :—"ହେ ରଘୁକୁଳସ୍ୱାମି ! ସୁନ୍ଦର ହସ୍ତରେ ଶ୍ରେଷ୍ଠ ଧନୁ ଓ ବାଣ ଧରି ଆପଣ ମୋତେ ରକ୍ଷା କରନ୍ତୁ । ଆପଣ ମହାମୋହ-ମେଘ-ସମୂହକୁ ଉଡ଼ାଇବା ନିମନ୍ତେ ପ୍ରବଳ ପ୍ରଭଞ୍ଜନ, ସଂଶୟ-ବନକୁ ଭସ୍ମ କରିବା ନିମନ୍ତେ ଦାବାଗ୍ନି ଏବଂ ଦେବବୃନ୍ଦଙ୍କ ଆନନ୍ଦଦାୟକ ॥ ୧ ॥ ଆପଣ ନିର୍ଗୁଣ, ସଗୁଣ, ଦିବ୍ୟଗୁଣର ମନ୍ଦିର ଏବଂ ସୁନ୍ଦର; ଭ୍ରମାନ୍ଧକାର-ବିନାଶ ନିମନ୍ତେ ପ୍ରବଳ ପ୍ରତାପୀ ଦିବାକର; କାମ-କ୍ରୋଧ-ମଦ-ଗଜର ନାଶ ନିମନ୍ତେ ପଞ୍ଚାନନ (ସିଂହ) ଏବଂ ଆପଣ ଏହି ସେବକର ମନ-କାନନରେ

ବିଷୟ ମନୋରଥ ପୁଞ୍ଜ କଞ୍ଜ ବନ । ପ୍ରବଲ ତୁଷାର ଉଦାର ପାର ମନ ॥
ଭବ ବାରିଧି ମଂଦର ପରମଂ ଦର । ବାରୟ ତାରୟ ସଂସୃତି ଦୁସ୍ତର ॥୩॥
ସ୍ୟାମ ଗାତ ରାଜୀବ ବିଲୋଚନ । ଦୀନବନ୍ଧୁ ପ୍ରନତାରତି ମୋଚନ ॥
ଅନୁଜ ଜାନକୀ ସହିତ ନିରଂତର । ବସହୁ ରାମ ନୃପ ମମ ଉର ଅଂତର ॥୪॥
ମୁନିରଂଜନ ମହିମଣ୍ଡଲ ମଣ୍ଡନ । ତୁଲସିଦାସ ପ୍ରଭୁ ତ୍ରାସ ବିଖଣ୍ଡନ ॥୫॥

ନାଥ ଜବହିଁ କୋସଲପୁରୀଁ ହୋଇହି ତିଲକ ତୁମ୍ହାର ।
କୃପାସିନ୍ଧୁ ମୈଁ ଆଉବ ଦେଖନ ଚରିତ ଉଦାର ॥୧୧୫॥

କରି ବିନତୀ ଜବ ସଂଭୁ ସିଧାଏ । ତବ ପ୍ରଭୁ ନିକଟ ବିଭୀଷନୁ ଆଏ ॥
ନାଇ ଚରନ ସିରୁ କହ ମୃଦୁ ବାନୀ । ବିନୟ ସୁନହୁ ପ୍ରଭୁ ସାରଁଗପାନୀ ॥୧॥
ସକୁଲ ସଦଲ ପ୍ରଭୁ ରାବନ ମାର୍ୟୋ । ପାବନ ଜସ ତ୍ରିଭୁବନ ବିସ୍ତାର୍ୟୋ ॥
ଦୀନ ମଲୀନ ହୀନ ମତି ଜାତୀ । ମୋ ପର କୃପା କୀହ୍ନି ବହୁ ଭାଁତୀ ॥୨॥

---

ବିଷୟ-କାମନା-ପୁଞ୍ଜ - ସରସିଜ-ବନ । ପ୍ରବଲ ହିମ ଉଦାର ଅଗୋଚର ମନ ॥
ଭବାବ୍ଧି ମନ୍ଦର, ମହା-ଭୟ-ନିବାରକ । ପରମ ଘୋର ଦୁସ୍ତର ସଂସୃତି ତାରକ ॥୩॥
ଶ୍ୟାମ କଳେବର ନବ ରାଜୀବ ଲୋଚନ । ଦୀନବାନ୍ଧବ ପ୍ରଣତ ସଙ୍କଟ ମୋଚନ ॥
ଅନୁଜ ସୀତାଙ୍କ ସଙ୍ଗେ ଘେନି ନିରନ୍ତରେ । ବସ ରାମ ନୃପ, ମୋର ହୃଦୟ ଅନ୍ତରେ ॥୪॥
ମୁନି-ରଞ୍ଜନ ଅବନୀ - ମଣ୍ଡଳ-ମଣ୍ଡନ । ତୁଳସୀ ଦାସର ପ୍ରଭୁ ତ୍ରାସ-ବିଖଣ୍ଡନ ॥୫॥

ଅଯୋଧ୍ୟାରେ ଯେବେ ତବ ଅଭିଷେକ ହେବ, ହେ କୃପାସାଗର ।
ଆସି ଦେଖିଯିବି କାମନା ମୋହର ତୁମର ଲୀଳା ଉଦାର ॥୧୧୫॥

ବିନତି କରିଣ ଯେବେ ମହେଶ ଚଳିଲେ । ତହୁଁ ବିଭୀଷଣ ପ୍ରଭୁ ନିକଟେ ଆସିଲେ ॥
ଚରଣେ ପ୍ରଣାମ କରି ବୋଲେ ମୃଦୁବାଣୀ । ବିନୟ ଶୁଣନ୍ତୁ ମୋର ହେ, ଶାରଙ୍ଗପାଣି ॥୧॥
ସକୁଳ ସଦଳ ପ୍ରଭୁ ରାବଣେ ମାରିଲେ । ପବିତ୍ର ସୁଯଶ ତିନିଲୋକେ ବିସ୍ତାରିଲେ ॥
ଦୀନ ହୀନ ଜାତି ମତି ମଳିନ ପାମର । ନାନା ପ୍ରକାରେ କରୁଣା କଲେ ମୋ ଉପର ॥୨॥

---

ନିରନ୍ତର ନିବାସ କରନ୍ତୁ ॥ ୨ ॥ ବିଷୟ-କାମନା-ସମୂହ-କମଳ-ବନର ବିନାଶ ନିମନ୍ତେ ଆପଣ ପ୍ରବଳ ତୁଷାର । ଆପଣ ଉଦାର ଓ ମନର ଊର୍ଦ୍ଧ୍ୱରେ । ଭବ-ସାଗର ମନ୍ଥନ ନିମନ୍ତେ ଆପଣ ମନ୍ଦରାଚଳ । ଆପଣ ଆମ ପରମ (ମହା) ଭୟକୁ ଦୂର କରନ୍ତୁ ଏବଂ ଆମ୍ଭଙ୍କୁ ଦୁସ୍ତର ଭବ-ସାଗରରୁ ପାର କରନ୍ତୁ ॥ ୩ ॥ ହେ ଶ୍ୟାମସୁନ୍ଦର ଶରୀର ! ହେ କମଳ-ନୟନ ! ହେ ଦୀନବନ୍ଧୁ ! ହେ ଶରଣାଗତର ଦୁଃଖହାରକ ! ହେ ରାଜା ରାମଚନ୍ଦ୍ର ! ଆପଣ ସାନଭାଇ ଲକ୍ଷ୍ମଣ ଓ ଜାନକୀଙ୍କ ସମେତ ନିରନ୍ତର ମୋ ହୃଦୟ ମଧ୍ୟରେ ବାସ କରନ୍ତୁ । ଆପଣ ମୁନିବୃନ୍ଦଙ୍କ ଆନନ୍ଦଦାୟକ, ମହୀମଣ୍ଡଳ-ଭୂଷଣ, ତୁଳସୀ ଦାସଙ୍କ ପ୍ରଭୁ ଏବଂ ତ୍ରାସନାଶକାରକ ॥ ୪-୫ ॥ ଦୋହା ।—ହେ ନାଥ ! ଯେତେବେଳେ ଅଯୋଧ୍ୟାପୁରୀରେ ଆପଣଙ୍କ ରାଜ୍ୟାଭିଷେକ ହେବ, ସେତେବେଳେ

ଅବ ଜନ ଗୃହ ପୁନୀତ ପ୍ରଭୁ କୀଜେ । ମଜ୍ଜନୁ କରିଅ ସମର ଶ୍ରମ ଛୀଜେ ॥
ଦେଖି କୋସ ମଂଦିର ସଂପଦା । ଦେହୁ କୃପାଲ କପିନ୍ହ କହୁଁ ମୁଦା ॥୩॥
ସବ ବିଧି ନାଥ ମୋହି ଅପନାଇଅ । ପୁନି ମୋହିସହିତ ଅବଧପୁର ଜାଇଅ ॥
ସୁନତ ବଚନ ମୃଦୁ ଦୀନଦୟାଲା । ସଜଲ ଭଏ ଦ୍ୱୌ ନୟନ ବିସାଲା ॥୪॥

ତୋର କୋସ ଗୃହ ମୋର ସବ ସତ୍ୟ ବଚନ ସୁନୁ ଭ୍ରାତ ।
ଭରତ ଦସା ସୁମିରତ ମୋହି ନିମିଷ କଲ୍ପ ସମ ଜାତ ॥୧୧୬(କ)
ତାପସ ବେଷ ଗାତ କୃସ ଜପତ ନିରଂତର ମୋହି ।
ଦେଖୌଁ ବେଗି ସୋ ଜତନୁ କରୁ ସଖା ନିହୋରଉଁ ତୋହି ॥୧୧୬(ଖ)॥

---

ଏବେ ଜନ ଗୃହ ପ୍ରଭୁ ପବିତ୍ର କରନ୍ତୁ । ସ୍ନାନ କରିଣ ସମର ଶ୍ରମ ବିନାଶନ୍ତୁ ॥
ଦେଖ କୋଷ ଧନ ରତ୍ନ ସମ୍ପଦ ନିଳୟ । ଦିଅନ୍ତୁ କପିଙ୍କୁ ପ୍ରମୋଦରେ, କୃପାମୟ ॥୩॥
ସବୁ ଭାବେ ନାଥ, ମୋତେ ଆପଣାର କର । ମୋ ସହ ଚଳନ୍ତୁ ପୁଣି ଅଯୋଧ୍ୟାନଗର ॥
ଶୁଣନ୍ତେ ଦୀନଦୟାଳୁ ମୃଦୁଳ ବଚନ । ସଜଳ ହୋଇଲା ବେନି ବିଶାଳ ଲୋଚନ ॥୪॥

ତୁମ୍ଭ କୋଷାଗାର ସକଳ ମୋହର ଶୁଣ ସତ୍ୟ ବାଣୀ ମମ ।
ଦଶା ଭରତଙ୍କ ସ୍ମରନ୍ତେ ପଲକ ଲାଗେ ମୋତେ କଳ୍ପ ସମ ॥୧୧୬ (କ)॥
ତାପସ ବେଶରେ କୃଶ କଳେବରେ ଜପେ ମୋତେ ନିରନ୍ତର ॥
ନିହୋରେ ତୁମ୍ଭଙ୍କୁ ଦେଖିବି ତାହାଙ୍କୁ ଶୀଘ୍ର ସେ ଯତନ କର ॥୧୧୬ (ଖ)॥

---

ହେ କୃପା-ସାଗର ! ମୁଁ ଆପଣଙ୍କ ଉଦାର ଲୀଳା ଦେଖିବାକୁ ଆସିବି ।" ॥ ୧୧୫ ॥
ଚୌପାଇ :—ଯେତେବେଳେ ଶିବ ସ୍ତୁତି କରି ଚାଲିଗଲେ, ସେତେବେଳେ ବିଭୀଷଣ ପ୍ରଭୁଙ୍କ ନିକଟକୁ ଆସିଲେ ଏବଂ ଚରଣରେ ଶିର ନୁଆଁଇ କୋମଳ ବାଣୀରେ କହିଲେ, "ହେ ଶାରଙ୍ଗପାଣି ପ୍ରଭୋ ! ମୋର ପ୍ରାର୍ଥନା ଶୁଣନ୍ତୁ—॥ ୧ ॥ "ଆପଣ କୁଳ ଓ ସେନା ସମେତ ରାବଣକୁ ବଧ କଲେ । ତ୍ରିଭୁବନରେ ଆପଣାର ପବିତ୍ର ଯଶ ବିସ୍ତାରିଲେ । ମୋ ପରି ଦୀନ, ପାପୀ, ନିର୍ବୋଧ ଓ ବିଜାତିଙ୍କ ଉପରେ ଆପଣ ନାନା ପ୍ରକାରେ କୃପା କଲେ ॥ ୨ ॥ ଏବେ ହେ ପ୍ରଭୋ ! ଏହି ଦାସର ଗୃହକୁ ପବିତ୍ର କରନ୍ତୁ ଏବଂ ସେଇଠାରେ ସ୍ନାନ କରନ୍ତୁ । ଫଳରେ ଯୁଦ୍ଧଶ୍ରମଜନିତ କ୍ଳାନ୍ତି ଦୂର ହୋଇଯିବ । ହେ କୃପାଳୁ ! ରାଜକୋଷ, ମହଲ ଓ ସମ୍ପତ୍ତି ନିରୀକ୍ଷଣ କରି ପ୍ରସନ୍ନ ମନରେ ବାନରମାନଙ୍କୁ ଦିଅନ୍ତୁ ॥ ୩ ॥ ହେ ନାଥ ! ମୋତେ ସବୁ ପ୍ରକାରେ ଆପଣାର କରି ନିଅନ୍ତୁ । ପୁଣି ହେ ପ୍ରଭୋ ! ମୋତେ ସଙ୍ଗରେ ନେଇ ଅଯୋଧ୍ୟାପୁରୀରେ ପଦାର୍ପଣ କରନ୍ତୁ ।" ବିଭୀଷଣଙ୍କ କୋମଳ ବଚନ ଶୁଣିବା ମାତ୍ରେ ଦୀନଦୟାଳୁ ପ୍ରଭୁଙ୍କର ଦୁଇ ବିଶାଳ ନେତ୍ରରେ ପ୍ରେମାଶ୍ରୁ ଜଳ ଭରି ଆସିଲା ॥ ୪ ॥ ଦୋହା :—ଶ୍ରୀରାମ କହିଲେ, "ହେ ଭାଇ ! ଶୁଣ, ତୁମ ରାଜକୋଷ ଓ ଗୃହ ସମସ୍ତ ମୋର, ଏହା ସତ୍ୟ । କିନ୍ତୁ ଭରତଙ୍କ ଦଶା ଦେଖି ମୋର ଗୋଟିଏ ଗୋଟିଏ କ୍ଷଣ କଳ୍ପ ପରି ଅତିବାହିତ

ବୀତେଁ ଅବଧି ଜାଉଁ ଜୌଁ ଜିଅତ ନ ପାଵଉଁ ବୀର ।
ସୁମିରତ ଅନୁଜ ପ୍ରୀତି ପ୍ରଭୁ ପୁନି ପୁନି ପୁଲକ ସରୀର ॥୧୧୬(ଗ)॥
କରେହୁ କଲ୍ପ ଭରି ରାଜୁ ତୁହ୍ମ ମୋହି ସୁମିରେହୁ ମନ ମାହିଁ ।
ପୁନି ମମ ଧାମ ପାଇହହୁ ଜହାଁ ସନ୍ତ ସବ ଜାହିଁ ॥୧୧୬(ଘ)॥

ସୁନତ ବିଭୀଷନ ବଚନ ରାମ କେ । ହରଷି ଗହେ ପଦ କୃପାଧାମ କେ ॥
ବାନର ଭାଲୁ ସକଲ ହରଷାନେ । ଗହି ପ୍ରଭୁ ପଦ ଗୁନ ବିମଲ ବଖାନେ ॥୧॥
ବହୁରି ବିଭୀଷନ ଭବନ ସିଧାୟୋ । ମନିଗନ ବସନ ବିମାନ ଭରାୟୋ ॥
ଲୈ ପୁଷ୍ପକ ପ୍ରଭୁ ଆଗେଁ ରାଖା । ହଁସି କରି କୃପାସିନ୍ଧୁ ତବ ଭାଷା ॥୨॥
ଚଢ଼ି ବିମାନ ସୁନୁ ସଖା ବିଭୀଷନ । ଗଗନ ଜାଇ ବରଷହୁ ପଟ ଭୂଷନ ॥
ନଭ ପର ଜାଇ ବିଭୀଷନ ତବହୀ । ବରଷି ଦିଏ ମନି ଅମ୍ବର ସବହୀ ॥୩॥

---

ଅବଧି କଟାଇ ଯେବେ ଯିବି ଭାଇ ପାଇବି ନାହିଁ ଜୀବିତ ।
ଭରତଙ୍କ ପ୍ରୀତି ସ୍ମରି ରଘୁପତି ବାରମ୍ବାର ପୁଲକିତ ॥୧୧୬ (ଗ)॥
ରାଜ୍ୟ କର ଏକ କଳପ ପର୍ଯ୍ୟନ୍ତ ହୃଦେ ମୋତେ ସ୍ମରୁଥିବ ॥
ପୁଣି ମୋର ଧାମେ ଯହିଁ ସନ୍ଥ ଜନେ ଯାଆନ୍ତି ତୁମ୍ଭେ ଗମିବ ॥୧୧୬ (ଘ)॥
ଶୁଣି ବିଭୀଷଣ ଏହି ବଚନ ରାମଙ୍କ । ହରଷେ ଧରିଲେ ପଦ କରୁଣା-ଧାମଙ୍କ ॥
ଋକ୍ଷ ମର୍କଟ ସକଳେ ହରଷ ହୋଇଲେ । ପ୍ରଭୁ ପଦ ଧରି ଗୁରୁ ସୁଯଶ ଗାଇଲେ ॥୧॥
ପୁଣି ବିଭୀଷଣ ନିଜ ଭବନେ ଯାଇଣ । ବିମାନେ ମଣି ବସନ ପୂର୍ତ୍ତି କରାଇଣ ॥
ଘେନି ପୁଷ୍ପକ ପ୍ରଭୁଙ୍କ ସମ୍ମୁଖେ ରଖନ୍ତେ । ହସି କରୁଣାସାଗର ଭାଷିଲେ ଏମନ୍ତେ ॥୨॥
ବିମାନରେ ବସି ଶୁଣ, ସଖା ବିଭୀଷଣ । ଗଗନେ ଯାଇ ବରଷ ବସନ ଭୂଷଣ ॥
ସେହିକ୍ଷଣି ଅମ୍ବରକୁ ଯାଇ ଲଙ୍କେଶ୍ୱର । ବୃଷ୍ଟି କରି ଦେଲେ ମଣି ଅମ୍ବର ନିକର ॥୩॥

---

ହେଉଛି ॥ ୧୧୬ (କ) ॥ ସେ ତପସ୍ୱୀ ବେଶରେ ଦୁର୍ବଳ ଶରୀରରେ ନିରନ୍ତର ମୋର ନାମ ଜପ କରୁଅଛନ୍ତି । ହେ ସଖେ ! ଯେପରି ମୁଁ ଅତି ଶୀଘ୍ର ତାହାଙ୍କୁ ଦେଖି ପାରିବି, ତହିଁର ଉପାୟ କର । ମୁଁ ତୁମ୍ଭଙ୍କୁ ନିହୋରା ହୋଇ ଏତକ କହୁଛି ॥୧୧୬(ଖ)॥ ଯଦି ଅବଧି ଅତିବାହିତ ହେବା ପରେ ଯାଉଛି, ତେବେ ଭାଇକୁ ଜୀବିତ ଅବସ୍ଥାରେ ପାଇବି ନାହିଁ ।" ସାନ ଭାଇ ଭରତଙ୍କ ପ୍ରୀତି କଥା ସ୍ମରଣ କରି ପ୍ରଭୁଙ୍କ ଶରୀର ବାରମ୍ବାର ପୁଲକିତ ହେଉଥାଏ ॥ ୧୧୬ (ଗ) ॥ ଶ୍ରୀରାମ ପୁଣି କହିଲେ, "ହେ ବିଭୀଷଣ ! ତୁମ୍ଭେ କଳ୍ପେ ପର୍ଯ୍ୟନ୍ତ ରାଜତ୍ୱ କରିବ । ମନ ମଧ୍ୟରେ ନିରନ୍ତର ମୋତେ ସ୍ମରଣ କରୁଥିବ । ତଦନନ୍ତର ସବୁ ସାଧୁସନ୍ଥ ମୋର ଯେଉଁ ପରମଧାମକୁ ଯାଆନ୍ତି, ତୁମ୍ଭେ ସେହିଠାକୁ ଯିବ ।" ॥ ୧୧୬ (ଘ) ॥ ଚୌପାଈ :—ଶ୍ରୀରାମଚନ୍ଦ୍ରଙ୍କ ବଚନ ଶୁଣିବା ମାତ୍ରେ ବିଭୀଷଣ ଆନନ୍ଦିତ ହୋଇ କୃପାଧାମ ଶ୍ରୀରାମଚନ୍ଦ୍ରଙ୍କ ଚରଣ ଧରି ପକାଇଲେ । ସମସ୍ତ ବାନର ଓ ଭଲ୍ଲୁକ ଆନନ୍ଦିତ ହୋଇ ଉଠିଲେ ଏବଂ ପ୍ରଭୁଙ୍କ ଚରଣ ଧରି ତାଙ୍କ

ଜୋଇ ଜୋଇ ମନ ଭାୱଇ ସୋଇ ଲେହୀଁ । ମନି ମୁଖ ମେଲି ଡାରି କପି ଦେହୀଁ ॥
ହଁସେ ରାମୁ ଶ୍ରୀ ଅନୁଜ ସମେତା । ପରମ କୌତୁକୀ କୃପାନିକେତା ॥୪॥

ମୁନି ଜେହି ଧ୍ୟାନ ନ ପାୱହିଁ ନେତି ନେତି କହ ବେଦ ।
କୃପାସିନ୍ଧୁ ସୋଇ କପିନ୍ହ ସନ କରତ ଅନେକ ବିନୋଦ ॥୧୧୭(କ)॥
ଉମା ଜୋଗ ଜପ ଦାନ ତପ ନାନା ମଖ ବ୍ରତ ନେମ ।
ରାମ କୃପା ନହିଁ କରହିଁ ତସି ଜସି ନିଷ୍କେବଲ ପ୍ରେମ ॥୧୧୭(ଖ)॥

ଭାଲୁ କପିନ୍ହ ପଟ ଭୂଷନ ପାଏ । ପହିରି ପହିରି ରଘୁପତି ପହିଁ ଆଏ ॥
ନାନା ଜିନସ ଦେଖି ସବ କୀସା । ପୁନି ପୁନି ହଁସତ କୋସଲାଧୀସା ॥୧॥

---

ଯେ ଯାହା ଭଲ ପାଆନ୍ତି ସେ ତାହା ନିଅନ୍ତି । ମଣି ମୁଖେ ଦେଇ କପି ଲେଖନ୍ତି ତଅନ୍ତି ॥
ହସନ୍ତି ସୀତା ଅନୁଜ ସହିତ ଶ୍ରୀରାମ । ପରମ କୌତୁକୀ ପ୍ରଭୁ ଅନୁକମ୍ପା-ଧାମ ॥୪॥

ଯାହାଙ୍କୁ ନ ପା'ନ୍ତି ଧ୍ୟାନେ ମୁନି ଯତି 'ନେତି' 'ନେତି' କହେ ବେଦ ।
ସେ କରୁଣାକର କପିଙ୍କ ସଙ୍ଗରେ କରନ୍ତି ନାନା ବିନୋଦ ॥୧୧୭(କ)॥
ଉମା ! ଯୋଗ ଜପ-ଯଜ୍ଞ ଦାନ ତପ ନାନାଦି ନିୟମ ବ୍ରତେ ॥
ନ କରନ୍ତି ରାମ କରୁଣା ଯେସନ ଅନନ୍ୟ ପ୍ରେମେ ଯେମନ୍ତେ ॥୧୧୭(ଖ)॥

ବସ୍ତ୍ର ଭୂଷଣ ପାଇଣ ଋକ୍ଷ ମରକଟେ । ପିନ୍ଧି ପିନ୍ଧି ଆଗମିଲେ ପ୍ରଭୁଙ୍କ ନିକଟେ ॥
ବିଲୋକି କପି ବୃନ୍ଦଙ୍କ ନାନାବିଧ ବେଶ । ବିହସନ୍ତି ବାରମ୍ବାର କୋଶଳ ନରେଶ ॥୧॥

---

ନିର୍ମଳ ଗୁଣ ବଖାଣିବାକୁ ଲାଗିଲେ ॥ ୧ ॥ ତତ୍ପରେ ବିଭୀଷଣ ମହଲକୁ ଗଲେ ଏବଂ ସେ ମଣିରତ୍ନ ଓ ବସ୍ତ୍ର-ସମୂହରେ ବିମାନକୁ ପରିପୂର୍ଣ୍ଣ କରିନେଲେ ଏବଂ ସେହି ପୁଷ୍ପକ ବିମାନକୁ ଆଣି ପ୍ରଭୁଙ୍କ ସମ୍ମୁଖରେ ରଖିଲେ । ସେତେବେଳେ କୃପାସାଗର ଶ୍ରୀରାମ ହସି କହିଲେ— ॥ ୨ ॥ ହେ ସଖା ବିଭୀଷଣ ! ଶୁଣ, ବିମାନରେ ଚଢି ଆକାଶକୁ ଯାଅ ଏବଂ ବସ୍ତ୍ର ଓ ଅଳଂକାର ବୃଷ୍ଟି କର ।” ଆଜ୍ଞା ଶୁଣିବା ମାତ୍ରେ ବିଭୀଷଣ ଆକାଶକୁ ଯାଇ ସମସ୍ତ ମଣି ଓ ବସ୍ତ୍ର ବୃଷ୍ଟି କରିଦେଲେ ॥ ୩ ॥ ଯାହାର ମନକୁ ଯାହା ପସନ୍ଦ ଲାଗୁଥାଏ, ସେ ତାହା ନେଇ ଯାଉଥାଏ । ବାନରଗଣ ମଣିଗୁଡିକୁ ପାଟିକୁ ନେଉଥା'ନ୍ତି, କିନ୍ତୁ ତାହା ଖାଦ୍ୟ ଜିନିଷ ନୁହେଁ ବୋଲି ବୁଝି ବାନ୍ତି କରି ଦେଉଥା'ନ୍ତି । ଏହି ଦୃଶ୍ୟ ଦେଖି ପରମବିନୋଦୀ ଓ କୃପାଧାମ ଶ୍ରୀରାମ ସୀତା ଓ ଲକ୍ଷ୍ମଣଙ୍କ ସହିତ ହସିବାକୁ ଲାଗିଲେ ॥ ୪ ॥ ଦୋହା :— ମୁନିଜନ ଧ୍ୟାନରେ ସୁଦ୍ଧା ଯାହାଙ୍କୁ ପାଆନ୍ତି ନାହିଁ, ବେଦଗଣ ଯାହାଙ୍କୁ 'ନେତି' 'ନେତି' କହି ବଖାଣନ୍ତି, ସେହି କୃପାସାଗର ଶ୍ରୀରାମ ବାନରଗଣଙ୍କ ସହିତ ଅନେକ ପ୍ରକାର ବିନୋଦାଳାପ କରୁଥା'ନ୍ତି ॥ ୧୧୭ (କ) ॥ ଶିବ କହନ୍ତି, “ହେ ଉମା ! ଶ୍ରୀରାମ ଅନନ୍ୟ ପ୍ରେମର ବିନିମୟରେ ଭକ୍ତଙ୍କ ପ୍ରତି ଯେପରି କୃପା କରନ୍ତି, ନାନା ପ୍ରକାର ଯୋଗ, ଜପ, ଦାନ, ତପ, ଯଜ୍ଞ, ବ୍ରତ ଓ ନିୟମ ଆଦି କଲେ ସୁଦ୍ଧା ସେପରି କରନ୍ତି ନାହିଁ ॥ ୧୧୭ (ଖ) ॥ ଚୌପାଇ :—

ଶିତଇ ସବହ୍ନି ପର କୀହ୍ନୀ ଦାୟ୍ବା । ବୋଲେ ମୃଦୁଲ ବଚନ ରଘୁରାୟା ॥
ତୁମ୍ହରେଁ ବଲ ମୈଁ ରାବନୁ ମାରେଓ୍ୱା । ତିଲକ ବିଭୀଷନ କହଁ ପୁନି ସାରେଓ୍ୱା ॥୨॥
ନିଜ ନିଜ ଗୃହ ଅବ ତୁମ୍ହ ସବ ଜାହୂ । ସୁମିରେହୁ ମୋହି ଡରପହୁ ଜନି କାହୂ ॥
ସୁନତ ବଚନ ପ୍ରେମାକୁଲ ବାନର । ଜୋରି ପାନି ବୋଲେ ସବ ସାଦର ॥୩॥
ପ୍ରଭୁ ଜୋଇ କହହୁ ତୁମ୍ହହି ସବ ସୋହା । ହମରେଁ ହୋତ ବଚନ ସୁନି ମୋହା ॥
ଦୀନ ଜାନି କପି କିଏ ସନାଥା । ତୁମ୍ହ ତ୍ରୈଲୋକ ଈସ ରଘୁନାଥା ॥୪॥
ସୁନି ପ୍ରଭୁ ବଚନ ଲାଜ ହମ ମରହୀଁ । ମସକ କହୁଁ ଖଗପତି ହିତ କରହୀଁ ॥
ଦେଖି ରାମ ରୁଖ ବାନର ରୀଛା । ପ୍ରେମ ମଗନ ନହିଁ ଗୃହ କୈ ଈଛା ॥୫॥

ପ୍ରଭୁ ପ୍ରେରିତ କପି ଭାଲୁ ସବ ରାମ ରୂପ ଉର ରାଖି ।
ହରଷ ବିଷାଦ ସହିତ ଚଲେ ବିନୟ ବିବିଧ ବିଧି ଭାଷି ॥୧୧୮(କ)॥

---

କୃପା କରି ନିରେଖିଣ ସମସ୍ତଙ୍କ ପ୍ରତି । ଭାଷିଲେ ମୃଦୁ ବଚନ ତହୁଁ ରଘୁପତି ॥
ତୁମ୍ଭ ବଳେ ରାବଣକୁ ବଧ ମୁଁ କରିଲି । ଆବର ବିଭୀଷଣଙ୍କୁ ରାଜ୍ୟ ପ୍ରଦାନିଲି ॥୨॥
ଏବେ ତୁମ୍ଭେ ଯାଅ ସର୍ବେ ନିଜ ନିଜ ବାସ । ସ୍ମରୁଥିବ ମୋତେ, କା'ରେ ନ କରିବ ତ୍ରାସ ॥
ଶୁଣିଣ ବଚନ ପ୍ରେମେ ଆକୁଳ ବାନରେ । କହିଲେ କର ଯୋଡ଼ିଣ ସମସ୍ତେ ସାଦରେ ॥୩॥
ପ୍ରଭୁ, ଯାହା କହ ତାହା ତୁମ୍ଭଙ୍କୁ ସାଜଇ । ବଚନ ଶୁଣି ଆମ୍ଭର ମୋହ ଉପୁଜଇ ॥
ଦୀନ ଜାଣି କଲ କପି-କୁଳକୁ ସନାଥ । ତୁମ୍ଭେ ତିନି ଭୁବନର ନାଥ, ରଘୁନାଥ ॥୪॥
ପ୍ରଭୁ ବାଣୀ ଶୁଣି ମରୁ ଲଜ୍ଜା ଶରମରେ । ମଶକ କେବେ କି ଖଗପତି ହିତ କରେ ॥
ଦେଖିଣ ଋକ୍ଷ ମର୍କଟ ପ୍ରଭୁଙ୍କର ମନ । ଗୃହ ଇଚ୍ଛା ନ କରନ୍ତି ପ୍ରେମରେ ମଗନ ॥୫॥

ପ୍ରଭୁ ପ୍ରେରଣାରେ ରାମ ରୂପ ହୃଦେ ଧରି ଋକ୍ଷ କୃକ୍ଷ-ବାସୀ ।
ଗମିଲେ ହରଷ ବିଷାଦ ବିବଶ ବିବିଧ ବିନୟ ଭାଷି ॥୧୧୮ (କ)॥

---

ଭାଲୁ ଓ ବାନରମାନେ ବସ୍ତ୍ରାଲଂକାର ପ୍ରଭୃତି ପାଇଲେ ଏବଂ ସେ ସବୁ ପରିଧାନ କରି ଶ୍ରୀରାମଙ୍କ ନିକଟକୁ ଆସିଲେ । ଅନେକ ଜାତିର ବାନରଗଣଙ୍କୁ ଦେଖି କୋଶଳପତି ଶ୍ରୀରାମ ବାରମ୍ବାର ହସୁଥାଆନ୍ତି ॥ ୧ ॥ ଶ୍ରୀ ରଘୁନାଥ କୃପାଦୃଷ୍ଟିରେ ଚାହିଁ ସମସ୍ତଙ୍କୁ ଦୟା କଲେ । ସେ କୋମଳ ବଚନ କହିଲେ, "ହେ ଭାଇମାନେ ! ତୁମ୍ଭମାନଙ୍କ ବଳରେ ମୁଁ ରାବଣକୁ ମାରିଲି ଏବଂ ପୁଣି ବିଭୀଷଣଙ୍କର ରାଜ୍ୟାଭିଷେକ କଲି ॥ ୨ ॥ ବର୍ତ୍ତମାନ ତୁମ୍ଭେମାନେ ନିଜ ନିଜ ଘରକୁ ଯାଅ । ମୋତେ ସ୍ମରଣ କରୁଥିବ ଏବଂ କାହାରିକୁ ଡରିବ ନାହିଁ ।" ଏହି ବଚନମାନ ଶୁଣିବା ମାତ୍ରେ ସମସ୍ତ ବାନର ପ୍ରେମରେ ବିହ୍ୱଳ ହୋଇ ହାତ ଯୋଡ଼ି ଆଦରରେ କହିଲେ— ॥ ୩ ॥ "ହେ ପ୍ରଭୋ ! ଆପଣ ଯାହା କିଛି କହନ୍ତୁ ପଛକେ, ସବୁ ଆପଣଙ୍କୁ ଶୋଭା ପାଏ । ଆପଣଙ୍କ ବଚନ ଶୁଣି ଆମ୍ଭମାନଙ୍କୁ ମୋହ ଗ୍ରାସ କରୁଛି । ହେ ରଘୁନାଥ ! ଆପଣ ତିନି ଲୋକର ଈଶ୍ୱର ! ଆମ ବାନରଗଣଙ୍କୁ ଦୀନ ଜାଣି ଆପଣ ସନାଥ (କୃତାର୍ଥ)

କପିପତି ନୀଲ ରୀଛପତି ଅଂଗଦ ନଲ ହନୁମାନ ।
ସହିତ ବିଭୀଷନ ଅପର ଜେ ଜୂଥପ କପି ବଲବାନ ॥୧୧୮(ଖ)॥
କହି ନ ସକହିଁ କଛୁ ପ୍ରେମ ବସ ଭରି ଭରି ଲୋଚନ ବାରି ।
ସନ୍ମୁଖ ଚିତଵହିଁ ରାମ ତନ ନୟନ ନିମେଷ ନିବାରି ॥୧୧୮(ଗ)॥
ଅତିସୟ ପ୍ରୀତି ଦେଖି ରଘୁରାଈ । ଲୀହ୍ନେ ସକଲ ବିମାନ ଚଢ଼ାଈ ॥
ମନ ମହୁଁ ବିପ୍ର ଚରନ ସିରୁ ନାୟୋ । ଉତ୍ତର ଦିସିହି ବିମାନ ଚଲାୟୋ ॥୧॥
ଚଲତ ବିମାନ କୋଲାହଲ ହୋଈ । ଜୟ ରଘୁବୀର କହଇ ସବୁ କୋଈ ॥
ସିଂହାସନ ଅତି ଉଚ ମନୋହର । ଶ୍ରୀ ସମେତ ପ୍ରଭୁ ବୈଠେ ତା ପର ॥୨॥

---

ଜାମ୍ବବାନ ନଲ ନୀଳ କପି-ପାଳ ବାଳିସୁତ ହନୁମାନ ।
ସହ ବିଭୀଷଣ ଯୂଥପ ଅନ୍ୟାନ୍ୟ ଯେ ବାନର ବଳବାନ ॥୧୧୮ (ଖ)॥
ପ୍ରେମ ବଶ କିଛି କହି ନ ପାରନ୍ତି ଗଡ଼ାଇ ନେତ୍ରୁ ଲୋତକ ।
ସମ୍ମୁଖେ ରାମଙ୍କୁ ନିରେଖି ରହାନ୍ତି ଭୁଲି ନୟନ ପଲକ ॥୧୧୮ (ଗ)॥
ଅତିଶୟ ପ୍ରୀତି ଅବଲୋକି ରଘୁସାଇଁ । ନେଲେ ସମସ୍ତଙ୍କୁ ସଙ୍ଗେ ବିମାନେ ବସାଇ ॥
ମନ ମଧ୍ୟେ ବିପ୍ରପଦ ବନ୍ଦନ କରିଲେ । ଉତ୍ତର ଦିଗକୁ ପ୍ରଭୁ ବିମାନ ଚାଳିଲେ ॥୧॥
ଚଳନ୍ତେ ବିମାନ ହୁଏ କୋଳାହଳ ନଭେ । ଜୟ ଜୟ ରଘୁବୀର ଘୋଷନ୍ତି ସରବେ ॥
ସିଂହାସନ ଅତି ଉଚ୍ଚ ପରମ ସୁନ୍ଦର । ସୀତା ସହ ଉପବିଷ୍ଟ ତହିଁ ରଘୁବର ॥୨॥

---

କରିଅଛନ୍ତି ।" ॥ ୪ ॥ ପ୍ରଭୁଙ୍କର ଏପରି ବଚନ ଶୁଣି ଆମ୍ଭେମାନେ ଲଜ୍ଜାରେ ମରି ଯାଉଛୁ । କେଉଁଠି ମଶା ଭଳି ଗରୁଡ଼ଙ୍କର ଉପକାର କରି ପାରିଛୁ ?" ଶ୍ରୀରାମଙ୍କ କୃପାଦୃଷ୍ଟି ଦେଖି ଭଲ୍ଲୁକ ଓ ବାନରମାନେ ପ୍ରେମରେ ମଗ୍ନ ହୋଇ ପଡ଼ିଲେ । ସେମାନଙ୍କର ଘରକୁ ଯିବାକୁ ମନ ହେଉ ନ ଥାଏ ॥ ୫ ॥ ଦୋହା '—କିନ୍ତୁ ପ୍ରଭୁଙ୍କ ପ୍ରେରଣା (ଆଜ୍ଞା)ରେ ସମସ୍ତ ବାନର-ଭାଲୁ ଶ୍ରୀରାମଙ୍କ ରୂପ ହୃଦୟରେ ଧରି ଅନେକ ପ୍ରକାରେ ସ୍ତୁତି କରି ପ୍ରସନ୍ନ ଓ ବିଷଣ୍ଣ ମନରେ ଘରକୁ ଗଲେ ॥୧୧୮ (କ)॥ ବାନରରାଜ ସୁଗ୍ରୀବ, ନୀଳ, ଋକ୍ଷରାଜ ଜାମ୍ବବାନ୍, ବାଳିପୁତ୍ର ଅଙ୍ଗଦ, ନଳ ଓ ପବନସୁତ ହନୁମାନ ତଥା ଲଙ୍କାପତି ବିଭୀଷଣଙ୍କ ସହିତ ଆଉ ଯେଉଁ ବଳବାନ୍ ବାନର ସେନାପତିମାନେ ଥିଲେ, ॥ ୧୧୮ (ଖ) ॥ ସେମାନେ କିଛି କହିପାରୁ ନ ଥା'ନ୍ତି; ସେମାନେ ନେତ୍ରରେ ପ୍ରେମାଶ୍ରୁ-ଜଳ ଭରି ସମ୍ମୁଖରେ ରହି ନିର୍ନିମେଷ ନୟନରେ ଶ୍ରୀରାମଙ୍କ ଆଡ଼କୁ ଚାହୁଁଥା'ନ୍ତି ॥ ୧୧୮ (ଗ) ॥ ଚୌପାଇ '—ଶ୍ରୀ ରଘୁନାଥ ସେମାନଙ୍କର ଅତିଶୟ ପ୍ରେମ ଦେଖି ସମସ୍ତଙ୍କୁ ବିମାନରେ ଚଢ଼ାଇଲେ । ତଦନନ୍ତର ମନେ ମନେ ବିପ୍ରଗଣଙ୍କ ଚରଣରେ ଶିର ନୁଆଁଇ ଉତ୍ତର ଦିଗ ଆଡ଼କୁ ବିମାନ ଚଳାଇଲେ ॥ ୧ ॥ ବିମାନ ଚଳିଲା ବେଳେ ବଡ଼ କୋଳାହଳ ହେଉଥାଏ । ସମସ୍ତେ "ଶ୍ରୀ ରଘୁବୀରଙ୍କ ଜୟ" ବୋଲି କହୁଥା'ନ୍ତି । ବିମାନରେ ଗୋଟିଏ ଅତ୍ୟୁଚ୍ଚ ମନୋହର ସିଂହାସନ ଥାଏ ।

ରାଜତ ରାମୁ ସହିତ ଭାମିନୀ । ମେରୁ ସୃଙ୍ଗ ଜନୁ ଘନ ଦାମିନୀ ॥
ରୁଚିର ବିମାନୁ ଚଲେଉ ଅତି ଆତୁର । କୀହ୍ନୀ ସୁମନ ବୃଷ୍ଟି ହରଷେ ସୁର ॥୨॥
ପରମ ସୁଖଦ ଚଲି ତ୍ରିବିଧ ବୟାରୀ । ସାଗର ସର ସରି ନିର୍ମଲ ବାରୀ ॥
ସଗୁନ ହୋହିଁ ସୁନ୍ଦର ଚହୁଁ ପାସା । ମନ ପ୍ରସନ୍ନ ନିର୍ମଲ ନଭ ଆସା ॥୪॥
କହ ରଘୁବୀର ଦେଖୁ ରନ ସୀତା । ଲଛିମନ ଇହାଁ ହତ୍ୟୋ ଇଁଦ୍ରଜୀତା ॥
ହନୂମାନ ଅଙ୍ଗଦ କେ ମାରେ । ରନମହି ପରେ ନିସାଚର ଭାରେ ॥୫॥
କୁମ୍ଭକରନ ରାବନ ଦ୍ୱୌ ଭାଈ । ଇହାଁ ହତେ ସୁର ମୁନି ଦୁଖଦାଈ ॥୬॥

ଇହାଁ ସେତୁ ବାଁଧ୍ୟୋଁ ଅରୁ ଥାପେଉଁ ସିବ ସୁଖଧାମ ।
ସୀତା ସହିତ କୃପାନିଧି ସମ୍ଭୁହି କୀହ୍ନ ପ୍ରନାମ ॥୧୧୯(କ)॥
ଜହଁ ଜହଁ କୃପାସିନ୍ଧୁ ବନ କୀହ୍ନ ବାସ ବିଶ୍ରାମ ।
ସକଲ ଦେଖାଏ ଜାନକିହି କହେ ସବହ୍ନି କେ ନାମ ॥୧୧୯(ଖ)॥

---

ରାଜନ୍ତି ଶ୍ରୀ ରଘୁରାଜ ସହିତ କାମିନୀ । ମେରୁଶୃଙ୍ଗେ ଶୋଭେ ଯଥା ଘନ ସୌଦାମିନୀ ॥
ରୁଚିର ବିମାନ ତହୁଁ ଉଡ଼ିଲା ଆତୁରେ । ସୁମନ ବୃଷ୍ଟି କରନ୍ତି ହରଷିତେ ସୁରେ ॥୨॥
ପରମ ସୁଖଦ ବହେ ତ୍ରିବିଧ ସମୀର । ସାଗର ସର ସରିତ ସୁନିର୍ମଳ ନୀର ॥
ଚଉପାଶେ ରମ୍ୟ ଶୁଭ ଶକୁନ ହୁଅଇ । ପ୍ରସନ୍ନ ଚିତ୍ତ ଅମ୍ବର ଉଜ୍ଜ୍ୱଳ ଦିଶଇ ॥୪॥
କହନ୍ତି ରଘୁନାୟକ ଦେଖ ରଣେ, ସୀତେ । ଲକ୍ଷ୍ମଣ ବଧିଲେ ଏହି ସ୍ଥାନେ ଇନ୍ଦ୍ରଜିତେ ॥
ବାଲିସୁତ ପ୍ରଭଞ୍ଜନ-ତନୟ ମାଡ଼ରେ । ସଙ୍ଗ୍ରାମେ ଶୋଇଲେ ବଳବନ୍ତ ନିଶାଚରେ ॥୫॥
ରାବଣ ଆବର କୁମ୍ଭକର୍ଣ୍ଣ ଦୁଇ ଭାଇ । ଏ ସ୍ଥାନେ ବଧିଲି ସୁର-ମୁନି-ଦୁଃଖଦାୟୀ ॥୬॥

ସେତୁ ବିରଚି ଏଠାରେ ସ୍ଥାପନ କଲି ଶିବ ସୁଖଧାମ ।
ଜାନକୀ ସହିତ ରଘୁକୁଳ-କାନ୍ତ ଶମ୍ଭୁଙ୍କୁ କଲେ ପ୍ରଣାମ ॥୧୧୯ (କ)॥
କରିଥିଲେ ରାମ ନବଘନ ଶ୍ୟାମ ଯହିଁ ନିବାସ ବିଶ୍ରାମ ।
ଜନକ-ସୁତାଙ୍କୁ ଦେଖାନ୍ତି ସକଳ କହି ସମସ୍ତଙ୍କ ନାମ ॥୧୧୯ (ଖ)॥

---

ତହିଁ ଉପରେ ସୀତାଙ୍କ ସହିତ ପ୍ରଭୁ ଶ୍ରୀରାମଚନ୍ଦ୍ର ବିରାଜମାନ ହେଲେ ॥୧॥ ପତ୍ନୀଙ୍କ ସହ ଶ୍ରୀରାମ ବିମାନର ଉଚ୍ଚ ଆସନରେ ଏପରି ସୁଶୋଭିତ ହେଉଥା'ନ୍ତି, ଯେତେ ଅବା ସୁମେରୁ ଶିଖରରେ ବିଜୁଳି ସହିତ ଶ୍ୟାମ ମେଘ ସୁଶୋଭିତ ହେଉଅଛି ! ସୁନ୍ଦର ବିମାନ ଅତି ଶୀଘ୍ର ଚଳିଲା । ଦେବଗଣ ଆନନ୍ଦିତ ହୋଇ ପୁଷ୍ପ ବୃଷ୍ଟି କଲେ ॥୨॥ ପରମ ସୁଖଦ, ଶୀତଳ, ମନ୍ଦ ଓ ସୁଗନ୍ଧିତ—ତିନି ପ୍ରକାର ବାୟୁ ବହିବାକୁ ଲାଗିଲା । ସମୁଦ୍ର, ସରୋବର ଓ ନଦୀମାନଙ୍କର ଜଳ ନିର୍ମଳ ହୋଇଗଲା । ଚତୁର୍ଦ୍ଦିଗରେ ଶୁଭ ଲକ୍ଷଣ ଦେଖାଗଲା । ସମସ୍ତଙ୍କ ମନ ପ୍ରସନ୍ନ, ଆକାଶ ଓ ଦିଗମାନ ନିର୍ମଳ ॥ ୪ ॥ ଶ୍ରୀ ରଘୁବୀର କହିଲେ, ହେ ସୀତେ ! ରଣଭୂମି ଦେଖ । ଲକ୍ଷ୍ମଣ ଏହିଠାରେ ଇନ୍ଦ୍ରଜିତ ମେଘନାଦକୁ ବଧ କରିଥିଲେ ।

ତୁରତ ବିମାନ ତହାଁ ଚଲି ଆୱା । ଦଣ୍ଡକ ବନ ଜହଁ ପରମ ସୁହାୱା ॥
କୁମ୍ଭଜାଦି ମୁନିନାୟକ ନାନା । ଗଏ ରାମୁ ସବ କେଁ ଅସ୍ଥାନା ॥୧॥
ସକଲ ରିଷିନ୍ହ ସନ ପାଇ ଅସୀସା । ଚିତ୍ରକୂଟ ଆଏ ଜଗଦୀସା ॥
ତହଁ କରି ମୁନିନ୍ହ କେର ସଂତୋଷା । ଚଲା ବିମାନୁ ତହାଁ ତେଁ ଚୋଖା ॥୨॥
ବହୁରି ରାମ ଜାନକିହି ଦେଖାଈ । ଜମୁନା କଲି ମଲ ହରନି ସୁହାଈ ॥
ପୁନି ଦେଖୀ ସୁରସରୀ ପୁନୀତା । ରାମ କହା ପ୍ରନାମ କରୁ ସୀତା ॥୩॥
ତୀରଥପତି ପୁନି ଦେଖୁ ପ୍ରୟାଗା । ନିରଖତ ଜନ୍ମ କୋଟି ଅଘ ଭାଗା ॥
ଦେଖୁ ପରମ ପାବନି ପୁନି ବେନୀ । ହରନି ସୋକ ହରି ଲୋକ ନିସେନୀ ॥୪॥
ପୁନି ଦେଖୁ ଅୱଧପୁରୀ ଅତି ପାୱନି । ତ୍ରିବିଧ ତାପ ଭବରୋଗ ନସାୱନି ॥୫॥

---

ତୁରିତେ ବିମାନ ଆସି ପ୍ରବେଶିଲା ତହିଁ । ଦଣ୍ଡକ ବନ ପରମ ସୁଶୋଭନ ଯହିଁ ॥
କୁମ୍ଭଜାଦି ଋଷି ମୁନିନାୟକ ବହୁତ । ସମସ୍ତଙ୍କ ଆଶ୍ରମକୁ ଗଲେ ରଘୁସୁତ ॥୧॥
ସକଳ ମୁନିଙ୍କଠାରୁ ଲଭିଣ ଆଶିଷ । ଚିତ୍ର-କୂଟେ ଆଗମନ କଲେ ଜଗଦୀଶ ॥
ତହିଁ ଋଷି ମୁନିଙ୍କର କରିଣ ସମ୍ମାନ । ଚଳିଲା ସତ୍ୱର ସେଠୁ ସ୍ଥାନକୁ ବିମାନ ॥୨॥
ପୁନଶ୍ଚ ସୀତାଙ୍କୁ ଦେଖାଇଲେ ରଘୁବର । ଯମୁନା କଳି-କଲୁଷ-ହାରିଣୀ ସୁନ୍ଦର ॥
ବିଲୋକି ପୁଣି ପବିତ୍ର ବିଷ୍ଣୁପଦୀ ରାମ । କହିଲେ ସୀତାଙ୍କୁ ପ୍ରିୟେ, କର ପରଣାମ ॥୩॥
ତୀର୍ଥରାଜ ପ୍ରୟାଗକୁ କରି ବିଲୋକନ । କୋଟି ଜନ୍ମ ପାପ ନାଶେ ଯାହାର ଦର୍ଶନ ॥
ନିରେଖି ଅତି ପାବନୀ ତ୍ରିବେଣୀକୁ ପୁଣି । ଶୋକ-ନିବାରିଣୀ ହରି-ଲୋକକୁ ନିଶ୍ରେଣି ॥୪॥
ବିଲୋକି ଅଯୋଧ୍ୟାପୁରୀ ପରମ ପାବନୀ । ତ୍ରିବିଧ-ସନ୍ତାପ-ଭବ-ରୋଗ-ବିନାଶିନୀ ॥୫॥

---

ହନୁମାନ୍ ଓ ଅଙ୍ଗଦଙ୍କ ଦ୍ୱାରା ନିହତ ଏହି ଅତିକାୟ ନିଶାଚରଗଣ ରଣଭୂମିରେ ପଡ଼ିଆଛନ୍ତି ॥ ୫ ॥ ଦୋହା :—ମୁଁ ଏହିଠାରେ ସେତୁ ବନ୍ଧ ବନ୍ଧାଇଥିଲି ଏବଂ ସୁଖଧାମ ଶିବଙ୍କୁ ସ୍ଥାପନା କରିଥିଲି ।" ତଦନନ୍ତର କୃପାନିଧାନ ଶ୍ରୀରାମ ସୀତାଙ୍କ ସହିତ ଶ୍ରୀ ରାମେଶ୍ୱର ମହାଦେବଙ୍କୁ ପ୍ରଣାମ କଲେ ॥ ୧୧୯ (କ) ॥ ବନରେ ଯେଉଁ ଯେଉଁ ସ୍ଥାନରେ କରୁଣାସାଗର ଶ୍ରୀରାମଚନ୍ଦ୍ର ନିବାସ ଓ ବିଶ୍ରାମ କରିଥିଲେ, ପ୍ରଭୁ ସେ ସବୁ ସ୍ଥାନ ଜାନକୀଙ୍କୁ ଦେଖାଇଲେ ଏବଂ ସବୁ ସ୍ଥାନର ନାମ ବତାଇଲେ ॥ ୧୧୯ (ଖ) ॥ ଚୌପାଈ :—ବିମାନ ଶୀଘ୍ର ପରମ ଶୋଭାବାନ୍ ଦଣ୍ଡକ ବନକୁ ଚାଲି ଆସିଲା । ଅଗସ୍ତ୍ୟ ଆଦି ବହୁତ ମୁନିରାଜ ସେହିଠାରେ ରହୁଥିଲେ । ଶ୍ରୀରାମ ଏ ସମସ୍ତଙ୍କ ସ୍ଥାନକୁ ଗଲେ ॥୧॥ ସକଳ ଋଷିଙ୍କ ନିକଟରୁ ଆଶୀର୍ବାଦ ଲାଭ କରି ଜଗଦୀଶ୍ୱର ଶ୍ରୀରାମ ଚିତ୍ରକୂଟ ଆସିଲେ । ସେଠାରେ ମୁନିମାନଙ୍କୁ ସନ୍ତୁଷ୍ଟ କଲେ । ତଦନନ୍ତର ବିମାନ ସେଠାରୁ ଶୀଘ୍ର ଗତିରେ ଅଗ୍ରସର ହେଲା ॥ ୨ ॥ ପୁଣି ଶ୍ରୀରାମ ଜାନକୀଙ୍କୁ କଳିଯୁଗର ପାପହାରିଣୀ ସୁଶୋଭିତା ଯମୁନା ନଦୀର ଦର୍ଶନ କରାଇଲେ । ତତ୍ପରେ ଗଙ୍ଗାଜୀଙ୍କ ଦର୍ଶନ କଲେ । ଶ୍ରୀରାମ କହିଲେ, "ହେ ସୀତେ ! ଏହାଙ୍କୁ ପ୍ରଣାମ କର ॥ ୩ ॥ ପୁଣି ତୀର୍ଥରାଜ ପ୍ରୟାଗକୁ

ସୀତା ସହିତ ଅଵଧ କହୁଁ କୀହ୍ନ କୃପାଲ ପ୍ରନାମ ।
ସଜଲ ନୟନ ତନ ପୁଲକିତ ପୁନି ପୁନି ହରଷିତ ରାମ ॥୧୨୦(କ)॥
ପୁନି ପ୍ରଭୁ ଆଇ ତ୍ରିବେନୀଁ ହରଷିତ ମଜ୍ଜନୁ କୀହ୍ନ ।
କପିହ୍ନ ସହିତ ବିପ୍ରହ୍ନ କହୁଁ ଦାନ ବିବିଧ ବିଧି ଦୀହ୍ନ ॥୧୨୦(ଖ)॥

ପ୍ରଭୁ ହନୁମନ୍ତହି କହା ବୁଝାଈ । ଧରି ବଟୁ ରୂପ ଅଵଧପୁର ଜାଈ ॥
ଭରତହି କୁସଲ ହମାରି ସୁନାଏହୁ । ସମାଚାର ଲୈ ତୁହ୍ମ ଚଲି ଆଏହୁ ॥୧॥
ତୁରତ ପଵନସୁତ ଗଵନତ ଭୟଊ । ତବ ପ୍ରଭୁ ଭରଦ୍ୱାଜ ପହିଁ ଗୟଊ ॥
ନାନା ବିଧି ମୁନି ପୂଜା କୀହ୍ନୀ । ଅସ୍ତୁତି କରି ପୁନି ଆସିଷ ଦୀହ୍ନୀ ॥୨॥
ମୁନି ପଦ ବଂଦି ଜୁଗଲ କର ଜୋରୀ । ଚଢ଼ି ବିମାନ ପ୍ରଭୁ ଚଲେ ବହୋରୀ ॥
ଇହାଁ ନିଷାଦ ସୁନା ପ୍ରଭୁ ଆଏ । ନାଵ ନାଵ କହଁ ଲୋଗ ବୋଲାଏ ॥୩॥

---

ତହୁଁ ରଘୁସୁତ ଜାନକୀ ସହିତ ପୁରୀକୁ କଲେ ପ୍ରଣାମ ।
ସଜଳ ନୟନ ପୁଲକିତ ତନ ଅତି ହରଷିତ ରାମ ॥୧୨୦ (କ)॥
ପୁଣି ଅବତରି ପ୍ରଭୁ ପ୍ରେମେ ପୂରି ତ୍ରିବେଣୀରେ କରି ସ୍ନାନ ।
କପିଙ୍କ ସମେତ କୃପାଳୁ ବହୁତ ବ୍ରାହ୍ମଣଙ୍କୁ ଦେଲେ ଦାନ ॥୧୨୦ (ଖ)॥

ପ୍ରଭୁ ତହୁଁ ହନୁମନ୍ତେ କହିଲେ ବୁଝାଇ । ଧରି ଦ୍ୱିଜ ରୂପ ତୁମ୍ଭେ ଅଯୋଧ୍ୟାକୁ ଯାଇ ॥
ଭରତଙ୍କୁ ଶୁଣାଇଣ ଆମ୍ଭର କୁଶଳ । ସମାଚାର ଘେନି ଆସ ବାହୁଡ଼ି ଚଞ୍ଚଳ ॥୧॥
ସତ୍ୱର ସମୀର-ସୁତ ଗମନ କରିଲେ । ପ୍ରଭୁ ଭରଦ୍ୱାଜ ମୁନି ଆଶ୍ରମେ ଆସିଲେ ॥
ବିବିଧ ବିଧାନେ ପୂଜା କରିଣ ମୁନୀଶ । ସ୍ତୁତି କରି ପୁଣି କଲେ ପ୍ରଦାନ ଆଶିଷ ॥୨॥
ମୁନିଙ୍କ ଚରଣ ବନ୍ଦି ଯୋଡ଼ି ବେନିକର । ବିମାନେ ଆରୋହି ପ୍ରଭୁ ଚଳିଲେ ଆବର ॥
ଏଣେ ପ୍ରଭୁ ଆଗମନ ନିଷାଦ ଶୁଣିଲା । 'ନାବ କାହିଁ ?' କହି ଧୀବରଙ୍କୁ ଡକାଇଲା ॥୩॥

---

ଦେଖ । ଏହାର ଦର୍ଶନରେ କୋଟି କୋଟି ଜନ୍ମର ପାପ ଦୂର ହୋଇଯାଏ । ପୁଣି ପରମ-ପବିତ୍ର ତ୍ରିବେଣୀଙ୍କୁ ଦର୍ଶନ କର । ଏହା ଶୋକହାରିଣୀ ଓ ଶ୍ରୀହରିଙ୍କ ପରମ-ଧାମରେ ପହଞ୍ଚିବା ସକାଶେ ସୋପାନ ସଦୃଶ । ବର୍ତ୍ତମାନ ଅତି ପବିତ୍ର ଅଯୋଧ୍ୟାପୁରୀକୁ ଦର୍ଶନ କର । ଏହା ତ୍ରିବିଧ ତାପ ଓ ଭବରୋଗର ବିନାଶକାରିଣୀ ।" ॥ ୪-୭ ॥

ଦୋହା :—ଏହିପରି କହି କୃପାଳୁ ଶ୍ରୀରାମ ସୀତାଙ୍କ ସହିତ ଅଯୋଧ୍ୟାପୁରୀକୁ ପ୍ରଣାମ କଲେ । ସଜଳ-ନେତ୍ର ଓ ପୁଲକିତ-ଶରୀର ହୋଇ ଶ୍ରୀରାମ ବାରମ୍ବାର ଆନନ୍ଦ ପ୍ରକାଶ କରୁଥା'ନ୍ତି ॥ ୧୨୦ (କ) ॥ ପ୍ରଭୁ ତ୍ରିବେଣୀକୁ ଆସି ତହିଁରେ ଆନନ୍ଦିତ ମନରେ ସ୍ନାନ କଲେ ଏବଂ ବାନରଗଣଙ୍କ ସହିତ ବ୍ରାହ୍ମଣମାନଙ୍କୁ ବହୁତ ଦାନ ଦେଲେ ॥ ୧୨୦ (ଖ) ॥

ଚୌପାଈ :—ତଦନନ୍ତର ପ୍ରଭୁ ହନୁମାନଙ୍କୁ ବୁଝାଇ କହିଲେ, "ତୁମେ ବ୍ରହ୍ମଚାରୀଙ୍କ ରୂପ ଧରି ଅଯୋଧ୍ୟାପୁରୀ ଯାଅ, ଭରତଙ୍କୁ ଆମର କୁଶଳବାର୍ତ୍ତା ଶୁଣାଅ ଏବଂ ତାଙ୍କ ସମାଚାର ନେଇ ଫେରିଆସ ।" ॥ ୧ ॥ ପବନ-ପୁତ୍ର ହନୁମାନ୍ ଅତିଶୀଘ୍ର ଗମନ କଲେ ।

ସୁରସରି ନାଘି ଜାନ ତବ ଆୟୋ । ଉତରେଉ ତଟ ପ୍ରଭୁ ଆୟସୁ ପାୟୋ ॥
ତବ ସୀତା ପୂଜୀ ସୁରସରୀ । ବହୁ ପ୍ରକାର ପୁନି ଚରନନ୍ହି ପରୀ ॥୪॥
ଦୀନ୍ହି ଅସୀସ ହରଷି ମନ ଗଂଗା । ସୁନ୍ଦରି ତବ ଅହିବାତ ଅଭଂଗା ॥
ସୁନତ ଗୁହା ଧାୟଉ ପ୍ରେମାକୁଲ । ଆୟଉ ନିକଟ ପରମ ସୁଖ ସଂକୁଲ ॥୫॥
ପ୍ରଭୁହି ସହିତ ବିଲୋକି ବୈଦେହୀ । ପରେଉ ଅବନି ତନ ସୁଧି ନହିଁ ତେହୀ ॥
ପ୍ରୀତି ପରମ ବିଲୋକି ରଘୁରାଈ । ହରଷି ଉଠାଇ ଲିୟୋ ଉର ଲାଈ ॥୬॥

ଲିୟୋ ହୃଦୟଁ ଲାଇ କୃପାନିଧାନ ସୁଜାନରାୟଁ ରମାପତି ।
ବୈଠାରି ପରମ ସମୀପ ବୂଝୀ କୁସଲ ସୋ କର ବୀନତୀ ॥
ଅବ କୁସଲ ପଦ ପଙ୍କଜ ବିଲୋକି ବିରଂଚି ସଙ୍କର ସେବ୍ୟ ଜେ ।
ସୁଖଧାମ ପୂରନ କାମ ରାମ ନମାମି ରାମ ନମାମି ତେ ॥୧॥

---

ସୁର ନଦୀ ଲଂଘି ଯେବେ ଆସିଲା ପୁଷ୍ପକ । ତଟେ ଓହ୍ଲାଇଲା ପାଇ ଆଦେଶ ରାମଙ୍କ ॥
ତହୁଁ ସୁର ସରିତକୁ ଜାନକୀ ପୂଜିଲେ । ଅନେକ ପ୍ରକାରେ ବନ୍ଦି ଚରଣେ ପଡିଲେ ॥୪॥
ଆଶିଷ ଦେଲେ ଜାହ୍ନବୀ ହୋଇ ଅନୁରାଗ । ଅଟଳ ହେଉ ସୁନ୍ଦରି, ତୋହର ସୁହାଗ ॥
ଶୁଣିବା ମାତ୍ରକେ ଗୁହ ଧାଇଁ ପ୍ରେମାକୁଳେ । ଆସିଲା ନିକଟେ ପୁଣ ଆନନ୍ଦ ବହୁଳେ ॥୫॥
ଜନକ ସୁତା ସହିତ ପ୍ରଭୁଙ୍କୁ ଦେଖିଣ । ପଡିଲା ଭୂମିରେ ତନୁ ଦଶା ପାଶୋରିଣ ॥
ଅବଲୋକି ଅତିଶୟ ପ୍ରୀତି ରଘୁସ୍ୱାମି । ହରଷେ ଉଠାଇ ନେଲେ ହୃଦୟେ ଲଗାଇ ॥୬॥

ହୃଦୟେ ଆଲିଙ୍ଗନ କରି କୃପାନିଧାନ ପ୍ରବୀଣ ରାମ ରମାପତି ।
ବସାଇ ପାଶେ ଅତି କୁଶଳ ପଚାରନ୍ତି, କହଇ ସେ କରି ବିନତି ।
କୁଶଳ ଦେଖି ସେ ଚରଣ, ସେବ୍ୟ ଯେ ବିଧି ତ୍ରିଲୋଚନ,
ପୂର୍ଣ୍ଣକାମ ଶ୍ରୀରାମ ନମାମି ସୁଖଧାମ, ନମାମି ଜାନକୀ - ରମଣ ॥୧॥

---

ତଦନନ୍ତର ପ୍ରଭୁ ଭରଦ୍ୱାଜଙ୍କ ପାଖକୁ ଗଲେ । ମୁନି ଇଷ୍ଟ ବୁଦ୍ଧିରେ ତାଙ୍କୁ ଅନେକ ପ୍ରକାର ପୂଜା ଓ ସ୍ତୁତି କଲେ ଏବଂ ପ୍ରଣି ଲୀଳା ଦୃଷ୍ଟିରୁ ଆଶୀର୍ବାଦ ଦେଲେ ॥ ୨ ॥ ଦୁଇହାତ ଯୋଡି ମୁନିଙ୍କ ଚରଣ ବନ୍ଦନା କରି ପ୍ରଭୁ ବିମାନରେ ଚଢି ପୁଣି ଅଗ୍ରସର ହେଲେ । ଏଣେ ନିଷାଦରାଜ ପ୍ରଭୁ ଆସିଗଲେଣି ବୋଲି ଶୁଣିବା ମାତ୍ରେ "ନୌକା କେଉଁଠି ? ନୌକା କେଉଁଠି ?" ବୋଲି ବଡ ପାଟିରେ ଲୋକମାନଙ୍କୁ ଡାକିଲେ ॥ ୩ ॥ ଏହି ଅବସରରେ ବିମାନ ଗଙ୍ଗାନଦୀକୁ ଅତିକ୍ରମ କରି ଏ ପାରିକୁ ଆସିଗଲା ଏବଂ ପ୍ରଭୁଙ୍କ ଆଜ୍ଞା ପାଇ ତାହା କୂଳରେ ଓହ୍ଲାଇଲା । ସେତେବେଳେ ସୀତା ବହୁତ ପ୍ରକାରେ ଗଙ୍ଗାଙ୍କୁ ପୂଜା କଲେ ଏବଂ ତାଙ୍କ ଚରଣ ତଳେ ପଡିଲେ ॥ ୪ ॥ ଗଙ୍ଗା ମନରେ ଆନନ୍ଦିତ ହୋଇ ଆଶୀର୍ବାଦ ଦେଲେ—"ହେ ସୁନ୍ଦରି ! ତୁମର ହାତ-କାଚ ବଜ୍ର ହୋଇଥାଉ !" ଭଗବାନ୍ ତଟ ଉପରେ ଓହ୍ଲାଇଛନ୍ତି ବୋଲି ଶୁଣିବା ମାତ୍ରେ ନିଷାଦରାଜ

ସବ ଭାଁତି ଅଧମ ନିଷାଦ ସୋ ହରି ଭରତ ଜ୍ୟୋଁ ଉର ଲାଇୟୋ ।
ମତିମନ୍ଦ ତୁଲସୀ ଦାସ ସୋ ପ୍ରଭୁ ମୋହବସ ବିସରାଇୟୋ ॥
ୟହ ରାବନାରି ଚରିତ ପାବନ ରାମ ପଦ ରତିପ୍ରଦ ସଦା ।
କାମାଦି ହର ବିଜ୍ଞାନକର ସୁର ସିଦ୍ଧ ମୁନି ଗାୱହିଁ ମୁଦା ॥୨॥

ସମର ବିଜୟ ରଘୁବୀର କେ ଚରିତ ଜେ ସୁନହିଁ ସୁଜାନ ।
ବିଜୟ ବିବେକ ବିଭୂତି ନିତ ତିନ୍ହହି ଦେହିଁ ଭଗବାନ ॥୧୨୧(କ)॥

---

ସର୍ବ ଭାବେ ଅଧମ ବ୍ୟାଧେ ଭରତ ସମ ହରି ଲଗାଇଲେ ବକ୍ଷରେ ।
ମତି ମଳିନ ଦାସ ତୁଳସୀ, ମୋହବଶ ଭୁଲି ସେ ପ୍ରଭୁଙ୍କୁ ଭ୍ରମରେ ।
ରାବଣାରି ଯଶ ବିଶଦ, ପ୍ରୀତିଦ ସଦା ରାମପଦ,
କାମ ମଦାଦି-ହର ବିଜ୍ଞାନ-କର, ସୁର-ମୁନିଗଣେ ଗାଆନ୍ତି ସାନନ୍ଦ ॥୨॥

ସମର ବିଜୟ ଚରିତ ରାମଙ୍କ ଶୁଣିବେ ଯେଉଁ ସୁଜାଣ ।
ବିଜୟ ବିବେକ ବିଭୂତି ତାହାଙ୍କୁ ନିତ୍ୟ ଦେବେ ଭଗବାନ ॥୧୨୧ (କ)॥

---

ଶୁଦ୍ଧ ପ୍ରେମରେ ବିହ୍ୱଳ ହୋଇ ଧାଇଁଲେ । ପରମ ସୁଖରେ ପରିପୂର୍ଣ୍ଣ ହୋଇ ସେ ପ୍ରଭୁଙ୍କ ସମୀପକୁ ଆସିଲେ ॥ ୫ ॥ ଜାନକୀଙ୍କ ସମେତ ପ୍ରଭୁଙ୍କୁ ଦେଖି ସେ ଆନନ୍ଦ-ସମାଧିରେ ମଗ୍ନ ହୋଇ ପୃଥିବୀ ଉପରେ ଖସି ପଡିଲେ, ଦେହ ବିଷୟରେ ତାଙ୍କର ଜ୍ଞାନ ରହିଲା ନାହିଁ । ଶ୍ରୀ ରଘୁନାଥ ତାଙ୍କର ପରମ ପ୍ରେମ ଦେଖି ତାଙ୍କୁ ଉଠାଇଲେ ଏବଂ ଆନନ୍ଦରେ ତାହାଙ୍କୁ ଆଲିଙ୍ଗନ କରି ପକାଇଲେ ॥ ୬ ॥ ଛନ୍ଦ :—ସୁଜ୍ଞ-ଶିରୋମଣି, ଲକ୍ଷ୍ମୀକାନ୍ତ, କୃପାନିଧାନ ଭଗବାନ୍ ତାହାଙ୍କୁ ଆଲିଙ୍ଗନ କରି ପକାଇଲେ ଏବଂ ଅତି ନିକଟରେ ବସାଇ କୁଶଳବାର୍ତ୍ତା ପଚାରିଲେ । ସେ ବିନମ୍ର ସହକାରେ କହିଲେ, "ଆପଣଙ୍କର ଯେଉଁ ଚରଣ-କମଳ ବ୍ରହ୍ମା ଓ ଶଙ୍କରଙ୍କ ଦ୍ୱାରା ସେବିତ, ସେହି ଚରଣ-ଯୁଗଳ ଦର୍ଶନ କରି ମୁଁ ଏବେ କୁଶଳ । ହେ ସୁଖଧାମ ! ହେ ପୂର୍ଣ୍ଣକାମ ଶ୍ରୀରାମ ! ମୁଁ ଆପଣଙ୍କୁ ନମସ୍କାର କରୁଛି, ନମସ୍କାର କରୁଅଛି ।" ॥ ୧ ॥ ଭଗବାନ୍ ସବୁ ପ୍ରକାରେ ଅଧମ ନିଷାଦଙ୍କୁ ଭରତଙ୍କ ସମାନ ଆଲିଙ୍ଗନ କଲେ । ତୁଳସୀ ଦାସ କହନ୍ତି—ଏହି ମନ୍ଦବୁଦ୍ଧି ତୁଳସୀ ଦାସ ମୋହ-ବଶତଃ ସେହି ପ୍ରଭୁଙ୍କୁ ବିସ୍ମରଣ କରି ପକାଇଲା । ରାବଣାରିଙ୍କର ଏହି ପାବନ ଚରିତ ସଦାସର୍ବଦା ଶ୍ରୀରାମଙ୍କ ଚରଣ ପ୍ରତି ପ୍ରୀତି ଜନ୍ମାଇବ । ଏହା କାମାଦି ବିକାରର ହରଣକାରୀ ଏବଂ ଭଗବାନ୍‌ଙ୍କ ସ୍ୱରୂପର ବିଶେଷ-ଜ୍ଞାନ-ଉତ୍ପାଦନ-କାରୀ । ଦେବତା, ସିଦ୍ଧ ଓ ମୁନିମାନେ ଆନନ୍ଦିତ ହୋଇ ଏହାକୁ ଗାନ କରନ୍ତି ॥ ୨ ॥ ଦୋହା :—ଯେଉଁ ସୁଜ୍ଞ ଲୋକମାନେ ଶ୍ରୀ ରଘୁବୀରଙ୍କ ସମର-ବିଜୟ-ସମ୍ବନ୍ଧୀ ଲୀଳା ଶୁଣନ୍ତି, ସେମାନଙ୍କୁ ଭଗବାନ୍ ନିତ୍ୟ ବିଜୟ, ବିବେକ ଓ ବିଭୂତି (ଐଶ୍ୱର୍ଯ୍ୟ) ଦାନ

ଯହ କଲିକାଲ ମଲାୟତନ ମନ କରି ଦେଖୁ ବିଚାର ।
ଶ୍ରୀ ରଘୁନାଥ ନାମ ତଜି ନାହିନ ଆନ ଅଧାର ।୧୨୧(ଖ)॥

## ମାସପାରାୟଣ, ସପ୍ତବିଂଶ ବିଶ୍ରାମ

ଇତି ଶ୍ରୀମଦ୍ରାମଚରିତମାନସେ ସକଲକଲିକଲୁଷବିଧ୍ୱଂସନେ
ଷଷ୍ଠଃ ସୋପାନଃ ସମାପ୍ତଃ ।

---

ଏହି କଳିକାଳ ପୂର୍ଣ୍ଣ ପାପ ମଳ ଦେଖ କରି ସୁବିଚାର ।
ପରିହରି ରାମ ରଘୁପତି ନାମ ନାହିଁ ଇତର ଆଧାର ॥୧୨୧ (ଖ)॥

× × × ×

ସୁର-ମୁନି-ତ୍ରାତା ଜନ-ସୁଖଦାତା ଦୁଷ୍ଟ-ସଂହରତା ରାମ ।
ଚରଣ-ପଙ୍କଜ ଅବିରତ ଭଜ ମତି-ମନ୍ଦ ବଳରାମ ॥
ଖଳ ମଳ-ମୂଳ ଦନୁଜ ସକଳ ବିଶ୍ୱଦ୍ରୋହୀ ମୂଢ ଅତି ।
ରାବଣ ସମାନେ ପାମର ଦୁର୍ଜନେ ବଧି ଯେ ଦେଲେ ସୁଗତି ॥
ପତିତ ପାବନ ପ୍ରଭୁଙ୍କୁ ଏସନ ଚିନ୍ତ କାମ ପରିହରି ।
ରେ ମନ ମୂରୁଖ, କଷ୍ଟେ ତୋ ସନ୍ମୁଖ ହୋଇବେ ଦୟାକୁ ହରି ॥
ସୁଜନ-ରଞ୍ଜନ ବିପତ୍ତି-ଭଞ୍ଜନ ଜୟ ଜୟ ରଘୁବୀର ।
ଦୀନବନ୍ଧୁ ଦାସ, ବଳରାମ ଆଶ, ହର ଅଜ୍ଞାନ-ତିମିର ॥

ଇତି ଶ୍ରୀରାମଚରିତ ମାନସେ ସକଳ-କଳି-କଲୁଷ-ବିଧ୍ୱଂସନେ
ଷଷ୍ଠ ସୋପାନ (ଲଙ୍କା କାଣ୍ଡ) ସମାପ୍ତ ।

---

କରନ୍ତି ॥ ୧୨୧ (କ) ॥ ଆରେ ମନ ! ବିଚାର କରି ଦେଖ, ଏହି କଳିକାଳ ପାପ-ସମୂହର ଗୃହ । ଏଥିରେ ପାପରୁ ରକ୍ଷା ପାଇବା ନିମନ୍ତେ ଶ୍ରୀ ରଘୁନାଥଙ୍କ ନାମ ଛଡ଼ା ଅନ୍ୟ କୌଣସି ଆଧାର ନାହିଁ ॥ ୧୨୧ (ଖ) ॥

କଳିଯୁଗର ସମସ୍ତ ପାପର ବିଧ୍ୱଂସନକାରୀ ଶ୍ରୀରାମଚରିତ ମାନସର
ଷଷ୍ଠ ସୋପାନ (ଲଙ୍କାକାଣ୍ଡ) ସମାପ୍ତ ।

ଓଁ

ଶ୍ରୀ ଗଣେଶାୟ ନମଃ

ଶ୍ରୀ ଜାନକୀବଲ୍ଲଭୋ ବିଜୟତେ

ଗୋସ୍ୱାମୀ ତୁଳସୀଦାସକୃତ

# ଶ୍ରୀରାମଚରିତ ମାନସ

## ସପ୍ତମ ସୋପାନ

## ଉତ୍ତର କାଣ୍ଡ

କେକୀକଣ୍ଠାଭନୀଳଂ ସୁରବରବିଲସଦ୍‌ବିପ୍ରପାଦାବ୍‌ଜଚିହ୍ନଂ ।
ଶୋଭାଢ୍ୟଂ ପୀତବସ୍ତ୍ରଂ ସରସିଜନୟନଂ ସର୍ବଦା ସୁପ୍ରସନ୍ନମ୍ ॥
ପାଣୌ ନାରାଚଚାପଂ କପିନିକରଯୁତଂ ବନ୍ଧୁନା ସେବ୍ୟମାନଂ ।
ନୌମୀଡ୍ୟଂ ଜାନକୀଶଂ ରଘୁବରମନିଶଂ ପୁଷ୍ପକାରୂଢ଼ରାମମ୍ ॥୧॥

କୋସଲେନ୍ଦ୍ରପଦକଂଜମଂଜୁଲୌ କୋମଲାବଜମହେଶବନ୍ଦିତୌ ।
ଜାନକୀକର-ସରୋଜଲାଳିତୌ ଚିନ୍ତକସ୍ୟ ମନଭୃଙ୍ଗସଙ୍ଗିନୌ ॥୨॥

---

କେକୀ କଣ୍ଠ ସମ କାନ୍ତି ନୀଳ ବର୍ଣ୍ଣ ବିରାଜେ ଶ୍ରୀବତ୍ସ ଲାଞ୍ଛନ ।
ପୀତ ପଟ କଞ୍ଜ-ନେତ୍ର ଶୋଭା-ପୁଞ୍ଜ ସୁବେଶ ସଦା ସୁପ୍ରସନ୍ନ ।
ନମସ୍ତେ, ଶ୍ରୀରାମ ନୃପ ଶରଧର,
ସଦା ଭ୍ରାତା-ସେବ୍ୟ ଯୁକ୍ତ କପିବୃନ୍ଦ ପୁଷ୍ପକାରୂଢ ରଘୁବର ॥୧॥

କୋଶଳେନ୍ଦ୍ର ଶ୍ରୀ ଚରଣ ମଞ୍ଜୁଳ କମଳ, ଜାନକୀ କର-ସରୋଜ ଲାଳିତ କୋମଳ ।
ବିଧି ମହେଶ ବନ୍ଦିତ, ଚିନ୍ତକ ମନ-ଭୃଙ୍ଗର ସହଚର ନିତ୍ୟ ॥

---

ମୟୂର କଣ୍ଠର ଆଭା ସମାନ ହରିତାଭ ଅର୍ଥାତ୍ ନୀଳବର୍ଣ୍ଣ, ସୁରବର, ବ୍ରାହ୍ମଣ-(ଭୃଗୁ)-ଚରଣ କମଳ-ଚିହ୍ନ-ସୁଶୋଭିତ, ଶୋଭାପୂର୍ଣ୍ଣ, ପୀତାମ୍ବର-ଧାରୀ, କମଳ-ନେତ୍ର, ସଦା-ପରମ-ପ୍ରସନ୍ନ, ଧନୁଶର-ପାଣି, ବାନର-ବୃନ୍ଦ-ଯୁକ୍ତ, ଭ୍ରାତା-ଲକ୍ଷ୍ମଣ-ସେବିତ, ସ୍ତୁତି-ଯୋଗ୍ୟ, ଶ୍ରୀ ଜାନକୀ-ନାଥ, ରଘୁକୁଳ-ଶ୍ରେଷ୍ଠ, ପୁଷ୍ପକ-ବିମାନାରୂଢ ଶ୍ରୀରାମଚନ୍ଦ୍ରଙ୍କୁ ମୁଁ ନିରନ୍ତର ନମସ୍କାର କରୁଅଛି ॥ ୧ ॥ କୋଶଳେନ୍ଦ୍ର ଶ୍ରୀରାମଚନ୍ଦ୍ରଙ୍କର ସୁନ୍ଦର ଓ କୋମଳ ଚରଣ-ଦ୍ୱୟ ବ୍ରହ୍ମା ଓ ଶିବଙ୍କ ଦ୍ୱାରା ବନ୍ଦିତ, ଶ୍ରୀ ଜାନକୀଙ୍କ କର-କମଳ-

କୁନ୍ଦଇନ୍ଦୁଦରଗୌରସୁନ୍ଦରଂ ଅମ୍ବିକାପତିମଭୀଷ୍ଟସିଦ୍ଧିଦମ୍ ।
କାରୁଣୀକକଳକଂଜଲୋଚନଂ ନୌମି ଶଂକରମନଙ୍ଗମୋଚନମ୍ ॥୩॥

ରହା ଏକ ଦିନ ଅବଧି କର ଅତି ଆରତ ପୁର ଲୋଗ ।
ଜହଁ ତହଁ ସୋଚହିଁ ନାରି ନର କୃସତନ ରାମ ବିୟୋଗ ॥
ସଗୁନ ହୋହିଁ ସୁନ୍ଦର ସକଲ ମନ ପ୍ରସନ୍ନ ସବ କେର ।
ପ୍ରଭୁ ଆଗଵନ ଜନାଵ ଜନୁ ନଗର ରମ୍ୟ ଚହୁଁ ଫେର ॥
କୌସଲ୍ୟାଦି ମାତୁ ସବ ମନ ଅନଂଦ ଅସ ହୋଇ ।
ଆୟଉ ପ୍ରଭୁ ଶ୍ରୀ ଅନୁଜ ଜୁତ କହନ ଚହତ ଅବ କୋଇ ॥
ଭରତ ନୟନ ଭୁଜ ଦଚ୍ଛିନ ଫରକତ ବାରହିଁ ବାର ।
ଜାନି ସଗୁନ ମନ ହରଷ ଅତି ଲାଗେ କରନ ବିଚାର ॥

---

କୁନ୍ଦ ଇନ୍ଦୁ ଶଙ୍ଖ ସମ ଗଉର ସୁନ୍ଦର, କଳ-କଞ୍ଜ-ବିଲୋଚନ କରୁଣାସାଗର ।
କାମ-ମୋଚନ ଉମେଶ, ମନୋରଥ-ସିଦ୍ଧି ଦାତା ନମାମି ମହେଶ ॥୩॥

ଦିନେ ମାତ୍ର ବାକି ରହିଲା ଅବଧି, ପୁରଜନ ଆର୍ତ୍ତି ଅତି ।
ଯେଣେ ତେଣେ କୃଶ ରମଣୀ ପୁରୁଷ ରାମ ବିୟୋଗେ ଚିନ୍ତନ୍ତି ॥
ହୁଅଇ ସୁନ୍ଦର ଶକୁନ ନିକର ସଭିଙ୍କ ପ୍ରସନ୍ନ ମନ ।
ଶୋଭେ ପୁର ରମ୍ୟ, ପ୍ରଭୁ ଆଗମନ ଜଣାନ୍ତି ଚିହ୍ନେ ଯେସନ ॥
କୌଶଲ୍ୟାଦି ଯେତେ ସମସ୍ତ ଜନନୀ ଆନନ୍ଦମନା ଏମନ୍ତେ ।
ଶ୍ରୀଅନୁଜ ଧରି ଆସିଲେ ଶ୍ରୀହରି କହିବା ଇଚ୍ଛେ କେ ସତେ ॥
'ଡାହାଣ ପଲକ ଭୁଜ ଭରତଙ୍କ ସ୍ଫୁରୁଥାଇ ବାରମ୍ବାର ।
ଜାଣି ସୁଲକ୍ଷଣ ହରଷ ହୋଇଣ କରନ୍ତି ମନେ ବିଚାର ॥

---

ଦ୍ୱାରା ସେବିତ ଏବଂ ଭାବୁକର ମନ-ଭ୍ରମରର ନିତ୍ୟ ସଙ୍ଗୀ (ଅର୍ଥାତ୍ ଚିନ୍ତା କରିବା ଲୋକର ମନ ରୂପକ ଭ୍ରମର ସଦା ସେହି ଚରଣ-କମଳରେ ବାସ କରେ) ॥ ୨ ॥ କୁନ୍ଦପୁଷ୍ପ, ଚନ୍ଦ୍ରମା ଓ ଶଙ୍ଖ ସମାନ ସୁନ୍ଦର ଗୌରବର୍ଣ୍ଣ, ଜଗଜ୍ଜନନୀ ପାର୍ବତୀଙ୍କ ପତି, ବାଞ୍ଛିତ ଫଳର ଦାତା, ଦୀନ-ଦୟାଳୁ, ସୁନ୍ଦର କମଳ-ନୟନ, କାମଦେବଙ୍କ ମୁକ୍ତିଦାତା ଶ୍ରୀ ଶଙ୍କରଙ୍କୁ ମୁଁ ନମସ୍କାର କରୁଅଛି ॥ ୩ ॥ ଦୋହା —ଶ୍ରୀରାମଙ୍କ ଫେରିବା ସମୟ ଆଉ ଗୋଟିଏ ଦିନ ମାତ୍ର ବାକି ରହିଲା । ଅତଏବ ନଗରର ଲୋକମାନେ ଅତି ଆତୁର ହେଉଥା'ନ୍ତି । ରାମଙ୍କ ବିରହରେ ଦୁର୍ବଳ ସ୍ତ୍ରୀ-ପୁରୁଷମାନେ ଏଣେ ତେଣେ ଚିନ୍ତା ହୋଇ ବିଚାରୁଥା'ନ୍ତି—ଶ୍ରୀରାମ କାହିଁକି ଆସିଲେ ନାହିଁ ? କଥା କ'ଣ ? ଏହି ସମୟରେ ସମସ୍ତ ଶୁଭ ଓ ସୁନ୍ଦର ଲକ୍ଷଣ ଦେଖାଗଲା ଏବଂ ସମସ୍ତଙ୍କ ମନ ପ୍ରସନ୍ନ ହୋଇଗଲା । ନଗର ମଧ୍ୟ ଚତୁର୍ଦ୍ଦିଗରୁ ରମଣୀୟ ହୋଇଗଲା । ଏ ସମସ୍ତ ଲକ୍ଷଣ ସତେ ଯେପରି

ରହେଉ ଏକ ଦିନ ଅବଧି ଅଧାରା । ସମୁଝତ ମନ ଦୁଖ ଭୟଉ ଅପାରା ॥
କାରନ କଵନ ନାଥ ନହିଁ ଆୟଉ । ଜାନି କୁଟିଲ କିଧୌଂ ମୋହି ବିସରାୟଉ ॥୧॥
ଅହହ ଧନ୍ୟ ଲଛିମନ ବଡ଼ଭାଗୀ । ରାମ ପଦାରବିନ୍ଦୁ ଅନୁରାଗୀ ॥
କପଟୀ କୁଟିଲ ମୋହି ପ୍ରଭୁ ଚୀହ୍ନା । ତା ତେଁ ନାଥ ସଂଗ ନହିଁ ଲୀହ୍ନା ॥୨॥
ଜୌଂ କରନୀ ସମୁଝୈ ପ୍ରଭୁ ମୋରୀ । ନହିଁ ନିସ୍ତାର କଲପ ସତ କୋରୀ ॥
ଜନ ଅବଗୁନ ପ୍ରଭୁ ମାନ ନ କାଊ । ଦୀନବନ୍ଧୁ ଅତି ମୃଦୁଲ ସୁଭାଊ ॥୩॥
ମୋରେ ଜିୟଁ ଭରୋସ ଦୃଢ଼ ସୋଈ । ମିଲିହହିଁ ରାମ ସଗୁନ ସୁଭ ହୋଈ ॥
ବୀତେଁ ଅବଧି ରହହିଁ ଜୌଂ ପ୍ରାନା । ଅଧମ କଵନ ଜଗ ମୋହି ସମାନା ॥୪॥

---

ରହିଲା ଗୋଟିଏ ଦିନ ଅବଧି ଆଧାର । ଭାବିଣ ହୃଦୟେ ଦୁଃଖ ହୁଅଇ ଅପାର ॥
କି କାରଣ୍ଡୁ ଏବେ ସୁଦ୍ଧା ନାଥ, ନ ଆସିଲେ । କୁଟିଳ ଜାଣି କି ମୋତେ ପ୍ରଭୁ ପାଶୋରିଲେ ॥୧॥
ଆହାହା, ଧନ୍ୟ ଲକ୍ଷ୍ମଣ, ଭାଗ୍ୟବାନ ଅତି । ରାମଙ୍କ ପଦାରବିନ୍ଦେ ଅନୁରକ୍ତ ମତି ॥
କପଟୀ କୁଟିଳ ମୋତେ ଚହ୍ନିଲେ ଶ୍ରୀକାନ୍ତ । ତେଣୁ ନିଜ ସଙ୍ଗତରେ ନେଲେ ନାହିଁ ନାଥ ॥୨॥
ଯେବେ ମୋ କର୍ମକୁ ପ୍ରଭୁ କରିବେ ବିଚାର । କୋଟି ଶତ କଳ୍ପଯାଏ ନୋହିବ ନିସ୍ତାର ॥
ଜନ ଅବଗୁଣ ପ୍ରଭୁ କେବେ ନ ଧରନ୍ତି । ଦୀନବନ୍ଧୁ ଅତି ମୃଦୁ-ସ୍ୱଭାବ ଅଟନ୍ତି ॥୩॥
ହୃଦୟେ ମୋହର ଦୃଢ ଭରସା ଆସଇ । ମିଳିବେ ରାମ, ଶକୁନ ଏମନ୍ତ ହୁଅଇ ॥
ଅବଧି ପୁରିଲା ପରେ ଯେବେ ରହେ ପ୍ରାଣ । ଜଗତେ ଅଧମ କିଏ ହେବ ମୋ ସମାନ ॥୪॥

---

ପ୍ରଭୁଙ୍କ ଶୁଭାଗମନର ସୂଚନା ହେଉଥାଏ । କୌଶଲ୍ୟା ଆଦି ସମସ୍ତ ମାତାଙ୍କ ମନରେ ଏପରି ଆନନ୍ଦ ହେଉଥାଏ, ସତେ ଯେପରି କେହି ଜଣେ ଏହିକ୍ଷଣି କହିବାକୁ ଯାଉଛି— "ହେଇ ପରି, ଶ୍ରୀମତୀ ସୀତା ଓ ସାନ ଭାଇ ଲକ୍ଷ୍ମଣଙ୍କ ସହିତ ପ୍ରଭୁ ଶ୍ରୀରାମଚନ୍ଦ୍ର ଆସିଗଲେ ।" ଭରତଙ୍କ ଡାହାଣ ଆଖି ଓ ଡାହାଣ ବାହୁ ବାରମ୍ବାର ସ୍ଫୁରିତ ହେଉଥାଏ । ଏହାକୁ ଶୁଭ ଲକ୍ଷଣ ମନେ କରି ତାଙ୍କ ମନରେ ଅପାର ଆନନ୍ଦ ଜାତ ହେଲା ଏବଂ ସେ ବିଚାର କରିବାକୁ ଲାଗିଲେ ॥ — ଚୌପାଇ '—ପ୍ରାଣର ଆଧାର ସଦୃଶ ଅବଧିର ଗୋଟିଏ ମାତ୍ର ଦିନ ବାକି ରହିଲା ।—ଭାବିବା ମାତ୍ରେ ଭରତଙ୍କ ମନରେ ଅପାର ଦୁଃଖ ଜାତ ହେଲା । "ନାଥ କାହିଁକି ଆସିଲେ ନାହିଁ ? ପ୍ରଭୁ ମୋତେ କୁଟିଳ ଜାଣି ଭୁଲି ଯାଇ ନାହାନ୍ତି ତ ? ॥ ୧ ॥ ଆହା ! ଲକ୍ଷ୍ମଣ ଅତି ଧନ୍ୟ ଏବଂ ବଡ଼ ଭାଗ୍ୟବାନ୍ । ଶ୍ରୀରାମ-ଚନ୍ଦ୍ରଙ୍କର ଚରଣାରବିନ୍ଦରେ ସେ ପ୍ରେମୀ ହୋଇ ରହିଲେ । ପ୍ରଭୁ ତ ମୋତେ କପଟୀ ଓ କୁଟିଳ ବୋଲି ଜାଣି ସଙ୍ଗରେ ନେଲେ ନାହିଁ ' ॥ ୨ ॥ ସତରେ ପ୍ରଭୁ ଯଦି ମୋ କୃତକୃ ପ୍ରତି ଧ୍ୟାନ ଦିଅନ୍ତି, ତେବେ ଶହେ କୋଟି (ଅସଂଖ୍ୟ) କଳ୍ପ ଯାଏ ମୋର ନିସ୍ତାର ବା ମୁକ୍ତ ହୋଇ ପାରିବ ନାହିଁ । କିନ୍ତୁ ମୋ ମନରେ ଅବଶ୍ୟ ଏତିକି ମାତ୍ର ଆଶା ଅଛି, ପ୍ରଭୁ ସେବକର ଅବଗୁଣ କେବେ ଧରନ୍ତି ନାହିଁ । ସେ ଦୀନବନ୍ଧୁ ଏବଂ ଅତ୍ୟନ୍ତ କୋମଳ-ସ୍ୱଭାବବିଶିଷ୍ଟ ॥ ୩ ॥ ସୁତରାଂ ମୋର ହୃଦୟରେ ଦୃଢ ଭରସା ଯେ, ପ୍ରଭୁ ଶ୍ରୀରାମ ଅବଶ୍ୟ

ରାମ ବିରହ ସାଗର ମହଁ ଭରତ ମଗନ ମନ ହୋତ ।
ବିପ୍ର ରୂପ ଧରି ପବନସୁତ ଆଇ ଗୟଉ ଜନୁ ପୋତ ॥୧(କ)॥
ବୈଠେ ଦେଖି କୁସାସନ ଜଟା ମୁକୁଟ କୃସ ଗାତ ।
ରାମ ରାମ ରଘୁପତି ଜପତ ସ୍ରବତ ନୟନ ଜଲଜାତ ॥୧(ଖ)॥
ଦେଖତ ହନୂମାନ ଅତି ହରଷେଉ । ପୁଲକ ଗାତ ଲୋଚନ ଜଲ ବରଷେଉ ॥
ମନ ମହଁ ବହୁତ ଭାଁତି ସୁଖ ମାନୀ । ବୋଲେଉ ଶ୍ରବନ ସୁଧା ସମ ବାନୀ ॥୧॥
ଜାସୁ ବିରହଁ ସୋଚହୁ ଦିନ ରାତୀ । ରଟହୁ ନିରଂତର ଗୁନ ଗନ ପାଁତୀ ॥
ରଘୁକୁଲତିଲକ ସୁଜନ ସୁଖଦାତା । ଆୟଉ କୁସଲ ଦେବ ମୁନି ତ୍ରାତା ॥୨॥
ରିପୁ ରନ ଜୀତି ସୁଜସ ସୁର ଗାୱତ । ସୀତା ଅନୁଜ ସହିତ ପ୍ରଭୁ ଆୱତ ॥
ସୁନତ ବଚନ ବିସରେ ସବ ଦୂଖା । ତୃଷାବଂତ ଜିମି ପାଇ ପିୟୂଷା ॥୩॥

---

ରାମଙ୍କ ବିରହ-ସାଗରେ ଭରତ ବୁଡ଼ିଅଛନ୍ତି ନିମଗ୍ନ ମନ ।
ଧରି ବିପ୍ର ରୂପ ସମୀରଣ-ସୁତ ଆସିଲେ ପୋତ ଯେସନ ॥୧(କ)॥
ଦେଖିଲେ ଆସୀନ ପାତି କୁଶାସନ କୃଶ ଗାତ୍ର ଜଟା ଶିର ।
ଜପନ୍ତି ଶ୍ରୀରାମ ରଘୁପତି ରାମ, ସ୍ରବେ ନେତ୍ର-ପଦ୍ମୁ ନୀର ॥୧(ଖ)॥
ଦେଖି ହନୁମାନ ଅତି ହରଷ ହୋଇଲେ । ପୁଲକ ତନୁ ନୟନୁ ଜଳ ବରଷିଲେ ॥
ନିଜ ମନ ମଧ୍ୟେ ସୁଖ ନାନା ମତେ ମାନି । ଭାଷିଲେ ତହୁଁ ଶ୍ରବଣ ସୁଧା ସମ ବାଣୀ ॥୧॥
ଯାହାଙ୍କ ବିରହେ ଦିନ ରାତି ଚିନ୍ତା କର । ନାମ ଗୁଣ ଗଣ ବସି ଘୋଷ ନିରନ୍ତର ॥
ରଘୁକୁଳମଣି ସଜ୍ଜନ - ସୁଖଦାତା । କୁଶଳେ ଆସୁଅଛନ୍ତି ସୁର-ମୁନି-ତ୍ରାତା ॥୨॥
ଶତ୍ରୁ ରଣେ ଜିଣି, ସୁରେ ସୁଯଶ ଭଣନ୍ତି । ସୀତା ଅନୁଜ ସମେତ ପ୍ରଭୁ ଆଗମନ୍ତି ॥
ଶୁଣନ୍ତେ ବଚନ ସବୁ ଦୁଃଖ ପାଶୋରିଲେ । ତୃଷାତୁର ଯେଉଁପରି ପୀୟୂଷ ପାଇଲେ ॥୩॥

---

ମୋତେ ମିଳିବେ । କାରଣ, ମୋତେ ଶୁଭ ଲକ୍ଷଣମାନ ଦୃଷ୍ଟିଗୋଚର ହେଉଅଛି । କିନ୍ତୁ ଅବଧି ଅତିବାହିତ ହୋଇଯିବା ପରେ ଯଦି ମୋର ପ୍ରାଣ ବଞ୍ଚି ରହେ, ତେବେ ଜଗତରେ ମୋ ସମାନ ନୀଚ ଆଉ କିଏ ହେବ ?" ॥ ୪ ॥ ଦୋହା —ଶ୍ରୀରାମଙ୍କ ବିରହ-ସାଗରରେ ଭରତଙ୍କ ମନ ନିମଗ୍ନ ହେଉଥାଏ । ସେତିକିବେଳେ ପବନପୁତ୍ର ହନୁମାନ୍ ବ୍ରାହ୍ମଣର ରୂପ ଧରି ତାଙ୍କ ସମ୍ମୁଖରେ ଆସି ଉପସ୍ଥିତ ହେଲେ । ସତେ ଅବା ସମୁଦ୍ରରେ ବୁଡିବା ଅବସ୍ଥାରୁ ତାହାଙ୍କୁ ରକ୍ଷା କରିବା ନିମନ୍ତେ ନୌକା ଆସିଗଲା ! ॥ ୧ (କ) ॥ ହନୁମାନ୍ ଦେଖିଲେ, ଭରତଙ୍କ ଶରୀର ଅତି ଦୁର୍ବଳ, ସେ ଜଟାମୁକୁଟ ଧାରଣ କରିଅଛନ୍ତି ଏବଂ 'ରାମ', 'ରାମ', 'ରଘୁପତି' ନାମ ଜପ କରୁଛନ୍ତି । ତାଙ୍କର କମଳ-ନେତ୍ର ଅଶ୍ରୁଜଳରେ ପରିପୂର୍ଣ୍ଣ ଏବଂ ସେ କୁଶାସନ ଉପରେ ଆସୀନ ॥ ୧ (ଖ) ॥ ଚୌପାଇ :—ତାହାଙ୍କୁ ଦେଖିବା ମାତ୍ରେ ହନୁମାନ୍ ଅତିଶୟ ଆନନ୍ଦିତ ହୋଇପଡ଼ିଲେ । ତାଙ୍କ ଶରୀର ପୁଲକିତ ହୋଇଗଲା । ନେତ୍ରରୁ ପ୍ରେମାଶ୍ରୁଜଳ

କୋ ତୁମ୍ହ ତାତ କହାଁ ତେଁ ଆଏ । ମୋହି ପରମ ପ୍ରିୟ ବଚନ ସୁନାଏ ॥
ମାରୁତ ସୁତ ମେଁ କପି ହନୁମାନା । ନାମୁ ମୋର ସୁନୁ କୃପାନିଧାନା ॥୪॥
ଦୀନବଂଧୁ ରଘୁପତି କର କିଂକର । ସୁନତ ଭରତ ଭେଁଟେଉ ଉଠି ସାଦର ॥
ମିଲତ ପ୍ରେମ ନହିଁ ହୃଦୟଁ ସମାତା । ନୟନ ସ୍ରବତ ଜଲ ପୁଲକିତ ଗାତା ॥୫॥
କପି ତବ ଦରସ ସକଲ ଦୁଖ ବୀତେ । ମିଲେ ଆଜୁ ମୋହି ରାମ ପିରୀତେ ॥
ବାର ବାର ବୂଝୀ କୁସଲାତା । ତୋ କହୁଁ ଦେଉଁ କାହ ସୁନୁ ଭ୍ରାତା ॥୬॥
ଏହି ସଂଦେସ ସରିସ ଜଗ ମାହୀଁ । କରି ବିଚାର ଦେଖେଉଁ କଛୁ ନାହୀଁ ॥
ନାହିନ ତାତ ଉରିନ ମେଁ ତୋହୀ । ଅବ ପ୍ରଭୁ ଚରିତ ସୁନାଵହୁ ମୋହୀ ॥୭॥

---

କିଏ ତୁମ୍ଭେ ଭ୍ରାତ, କେଉଁ ସ୍ଥାନରୁ ଆସିଲ । ପରମପ୍ରିୟ ବଚନ ମୋତେ ଶୁଣାଇଲ ॥
ମରୁତ-ତନୟ ମୁହିଁ କପି ହନୁମାନ । ଶୁଣ ଏହି ନାମ ମୋର, କରୁଣା-ନିଧାନ ॥୪॥
ଦୀନବନ୍ଧୁ ରଘୁପତିଙ୍କର ମୁଁ କିଙ୍କର । ଶୁଣି ଭରତ ଉଠିଣ ଭେଟିଲେ ସାଦର ॥
ମିଳନ୍ତେ ପ୍ରେମ ହୃଦୟେ ପୂରି ଉଚ୍ଛୁଳିଲା । ପୁଲକ ତନୁ ନୟନୁ ସଲିଳ ସ୍ରବିଲା ॥୫॥
କପି, ତୁମ୍ଭ ଦରଶନେ ଗଲା ଦୁଃଖମାନ । ମିଳିଗଲେ ଆଜି ମୋତେ ପ୍ରିୟତମ ରାମ ॥
ବାରମ୍ବାର ପଚାରନ୍ତି କୁଶଳାଦି ବାର୍ତ୍ତା । ତୁମ୍ଭଙ୍କୁ କି ଅବା ମୁହିଁ ଦେବି ଶୁଣ, ଭ୍ରାତା ॥୬॥
ଜଗତ ମଧ୍ୟରେ ଏହି ସନ୍ଦେଶ ସମାନ । ବିଚାର କରି ଦେଖିଲି, ନାହିଁ କିଛି ଆନ ॥
ତୁମ୍ଭ ଋଣ ମୁକ୍ତ ହୋଇ ନ ପାରିବି କେବେ । ପ୍ରଭୁ ଚରିତ ଶୁଣାଅ ଭ୍ରାତ, ମୋତେ ଏବେ ॥୭॥

---

ବରଷିବାକୁ ଲାଗିଲା । ମନେ ମନେ ବହୁବିଧ ସୁଖ ଅନୁଭବ କରି ସେ କର୍ଣ୍ଣ ପ୍ରତି ଅମୃତ ସମ ପ୍ରିୟ ବଚନ କହିଲେ— ॥ ୧ ॥ "ଯାହାଙ୍କ ବିରହରେ ଆପଣ ଦିନରାତି ଶୋକମଗ୍ନ ଏବଂ ଯାହାଙ୍କ ଗୁଣାବଳୀର ପଂକ୍ତି ଆପଣ ନିରନ୍ତର ରଟୁଅଛନ୍ତି, ସଜ୍ଜନ-ସୁଖଦାୟକ ଓ ମୁନିରକ୍ଷକ ଶ୍ରୀରାମ ସକୁଶଳ ଆସିଗଲେଣି ॥୨॥ ଶତ୍ରୁକୁ ରଣରେ ଜିଣି ସୀତା ଓ ଲକ୍ଷ୍ମଣଙ୍କ ସହିତ ପ୍ରଭୁ ଆସୁଅଛନ୍ତି, ଦେବତାମାନେ ତାହାଙ୍କର ସୁନ୍ଦର ଯଶ ଗାନ କରୁଅଛନ୍ତି ।" ଏହି କଥାମାନ ଶୁଣିବା ମାତ୍ରେ ଭରତ ସମସ୍ତ ଦୁଃଖ ଭୁଲିଗଲେ । ସତେ ଯେମିତି ତୃଷାତୁର ବ୍ୟକ୍ତି ଅମୃତ ପାଇ ତୃଷା ଦୁଃଖକୁ ଭୁଲିଗଲା ! ॥ ୩ ॥ ଭରତ ପଚାରିଲେ, "ହେ ତାତ ! ତୁମେ କିଏ ? ଏବଂ କେଉଁଠାରୁ ଆସିଅଛ ? ମୋତେ ଏପରି ପରମପ୍ରିୟ ବଚନ ଆସି ଶୁଣାଇଲ ! କୁହ, ତୁମେ କିଏ ?" ହନୁମାନ୍ କହିଲେ, "ହେ କୃପାନିଧାନ ! ଶୁଣନ୍ତୁ, ମୁଁ ପବନର ପୁତ୍ର ଓ ଜାତିରେ ବାନର, ମୋର ନାମ ହନୁମାନ୍ ॥ ୪ ॥ ମୁଁ ଦୀନବନ୍ଧୁ ଶ୍ରୀ ରଘୁନାଥଙ୍କ ଦାସ ।" ଏହା ଶୁଣିବା ମାତ୍ରେ ଭରତ ଉଠି ଆଦରରେ ହନୁମାନ୍‌ଙ୍କୁ ଆଲିଙ୍ଗନ କରି ତାଙ୍କ ସହ ମିଳନ କଲେ । ଏହି ମିଳନ ବେଳେ ତାଙ୍କ ହୃଦୟରେ ପ୍ରେମ ସମ୍ଭାଳି ନ ପାରି ଉଚ୍ଛୁଳି ପଡ଼ିଲା । ନେତ୍ରରୁ ଆନନ୍ଦ ଓ ପ୍ରେମର ଅଶ୍ରୁଜଳ ବହିବାକୁ ଲାଗିଲା ଏବଂ ଶରୀର ପୁଲକିତ ହୋଇ ଉଠିଲା ॥ ୫ ॥ ଭରତ କହିଲେ, "ହେ ହନୁମାନ୍ ! ତୁମ ଦର୍ଶନରେ ମୋର ସମସ୍ତ ଦୁଃଖ ଶେଷ ହୋଇଗଲା ।

ତବ ହନୁମନ୍ତ ନାଇ ପଦ ମାଥା । କହେ ସକଲ ରଘୁପତି ଗୁନ ଗାଥା ॥
କହୁ କପି କବହୁଁ କୃପାଲ ଗୋସାଇଁ । ସୁମିରହିଁ ମୋହି ଦାସ କୀ ନାଇଁ ॥୮॥

ନିଜ ଦାସ ଜ୍ୟୋଁ ରଘୁବଂସଭୂଷନ କବହୁଁ ମମ ସୁମିରନ କର୍‌ୟୋ ।
ସୁନି ଭରତବଚନ ବିନୀତ ଅତି କପି ପୁଲକି ତନ ଚରନନ୍ହି ପର୍‌ୟୋ ॥
ରଘୁବୀର ନିଜ ମୁଖ ଜାସୁ ଗୁନ ଗନ କହତ ଅଗ ଜଗ ନାଥ ଜୋ ।
କାହେ ନ ହୋଇ ବିନୀତ ପରମ ପୁନୀତ ସଦଗୁନ ସିଂଧୁ ସୋ ॥

ରାମ ପ୍ରାନ ପ୍ରିୟ ନାଥ ତୁମ୍ହ ସତ୍ୟ ବଚନ ମମ ତାତ ।
ପୁନି ପୁନି ମିଲତ ଭରତ ସୁନି ହରଷ ନ ହୃଦୟଁ ସମାତ ॥୨(କ)॥

---

ଚରଣେ ପ୍ରଣାମ କରି ତହୁଁ ହନୁମନ୍ତ । ରଘୁପତି ଗୁଣ ଗ୍ରାମ କହିଲେ ସମସ୍ତ ॥
କହ କପି, କେବେ କୃପାସିନ୍ଧୁ ରଘୁରାୟ । ସ୍ମରନ୍ତି କି ମୋତେ ତାଙ୍କ ନିଜ ଦାସ ପ୍ରାୟ ? ॥୮॥

ନିଜ ସେବକ ସମ ରଘୁବଂଶ ଭୂଷଣ କେବେ କି କରନ୍ତି ସ୍ମରଣ ।
ଶୁଣି କପି ଭରତ ବଚନ ହୃଷ୍ଟମତି ପୁଲକେ ପଡ଼ିଲେ ଚରଣ ।
ସ୍ୱମୁଖେ ରାମ ବିଶ୍ୱେଶ୍ୱର, କହନ୍ତି ଯା' ଗୁଣ ନିକର ।
ନ ହୋଇବେ କିପାଇଁ ଅତି ବିନୀତ ସେହି ପବିତ୍ର ସଦ୍‌ଗୁଣ ସାଗର ॥

ରାମ ପ୍ରାଣପ୍ରିୟ ତୁମ୍ଭେ ନାଥ, ସତ୍ୟ ମୋ କଥା, କର ପ୍ରତୀତି ।
ଶୁଣି ବାରମ୍ବାର ମିଳନ୍ତି ଭରତ, ହୃଦେ ନ ସମ୍ଭାଏ ପ୍ରୀତି ॥୨(କ)॥

---

ତୁମ ରୂପରେ ପ୍ରିୟ ରାମଚନ୍ଦ୍ର ଆଜି ମୋତେ ମିଳିଗଲେ ।" ଭରତ ବାରମ୍ବାର ତାହାଙ୍କୁ କୁଶଳ-ବାର୍ତ୍ତା ପଚାରିଲେ ଏବଂ କହିଲେ, "ହେ ଭାଇ ! ଶୁଣ, ତୁମର ଏହି ଶୁଭ ସମ୍ବାଦ-ଦାନ ବିନିମୟରେ ତୁମକୁ ଦେବି କ'ଣ ? ॥ ୬ ॥ ଏହି ସନ୍ଦେଶ ସମାନ ଜଗତରେ ଅନ୍ୟ କୌଣସି ପଦାର୍ଥ ନାହିଁ । ଏହା ମୁଁ ବିଚାର କରି ଦେଖିଲିଣି । ଏଣୁ ମୁଁ କୌଣସି ପ୍ରକାରେ ହେଲେ ତୁମଠାରୁ ଋଣମୁକ୍ତ ହୋଇ ପାରିବି ନାହିଁ । ଏବେ ମୋତେ ପ୍ରଭୁଙ୍କ ଚରିତ ଶୁଣାଅ ।" ॥ ୭ ॥ ତେଣୁ ହନୁମାନ୍ ଭରତଙ୍କ ଚରଣତଳେ ମସ୍ତକ ନୁଆଁଇ ଶ୍ରୀ ରଘୁନାଥଙ୍କ ସମସ୍ତ ଗୁଣଗାଥା କହିଲେ । ଭରତ ପଚାରିଲେ, "ହେ ହନୁମାନ୍ ! କୁହ ତ, କୃପାଳୁ ସ୍ୱାମୀ ଶ୍ରୀରାମଚନ୍ଦ୍ର କେବେ କେବେ ମୋତେ ତାଙ୍କ ଦାସ ତୁଲ୍ୟ ମନେ ପକାନ୍ତି କି ? ॥ ୮ ॥ ଛନ୍ଦ '— ରଘୁବଂଶଭୂଷଣ ଶ୍ରୀରାମ କେବେ ମୋତେ ତାଙ୍କ ନିଜ ଦାସ ତୁଲ୍ୟ ସ୍ମରଣ କରୁଥା'ନ୍ତି କି ?" ଭରତଙ୍କ ଅତିଶୟ ନମ୍ର ବଚନ ଶୁଣି ହନୁମାନ୍ ପୁଲକିତ-ଶରୀର ହୋଇ ତାଙ୍କ ଚରଣତଳେ ପଡ଼ିଗଲେ । ସେ ମନେ ମନେ ବିଚାର କରିବାକୁ ଲାଗିଲେ, "ଚରାଚର ସ୍ୱାମୀ ଶ୍ରୀ ରଘୁବୀର ନିଜ ଶ୍ରୀମୁଖରେ ଯେଉଁ ଭରତଙ୍କ ଗୁଣଗ୍ରାମ ବର୍ଣ୍ଣନା କରନ୍ତି, ସେହି ଭରତ ଏପରି ବିନମ୍ର, ପରମ ପବିତ୍ର ଓ ସଦ୍‌ଗୁଣରାଶିର ସାଗର କିମିତି ବା ନ ହୁଅନ୍ତେ ?" ॥

ଭରତ ଚରନ ସିରୁ ନାଇ ତୁରିତ ଗୟଉ କପି ରାମ ପହିଁ ।
କହୀ କୁସଲ ସବ ଜାଇ ହରଷି ଚଲେଉ ପ୍ରଭୁ ଜାନ ଚଢ଼ି ॥୨(ଖ)॥

ହରଷି ଭରତ କୋସଲପୁର ଆଏ । ସମାଚାର ସବ ଗୁରହି ସୁନାଏ ॥
ପୁନି ମଂଦିର ମହଁ ବାତ ଜନାଈ । ଆୱତ ନଗର କୁସଲ ରଘୁରାଈ ॥୧॥
ସୁନତ ସକଲ ଜନନୀଁ ଉଠି ଧାଈଁ । କହି ପ୍ରଭୁ କୁସଲ ଭରତ ସମୁଝାଈଁ ॥
ସମାଚାର ପୁରବାସିହ୍ନ ପାଏ । ନର ଅରୁ ନାରି ହରଷି ସବ ଧାଏ ॥୨॥
ଦଧି ଦୁର୍ବା ରୋଚନ ଫଲ ଫୂଲା । ନବ ତୁଲସୀ ଦଲ ମଂଗଲ ମୂଲା ॥
ଭରି ଭରି ହେମ ଥାର ଭାମିନୀ । ଗାୱତ ଚଲିଁ ସିଂଧୁରଗାମିନୀ ॥୩॥
ଜେ ଜୈସେହିଁ ତୈସେହିଁ ଉଠି ଧାୱହିଁ । ବାଲ ବୃଦ୍ଧ କହଁ ସଂଗ ନ ଲାୱହିଁ ॥
ଏକ ଏକହ୍ନ କହଁ ବୂଝହିଁ ଭାଈ । ତୁହ୍ମ ଦେଖେ ଦୟାଲ ରଘୁରାଈ ॥୪॥

---

ପ୍ରଣମି ଭରତ ପାଦେ ହେ ତ୍ୱରିତ ପ୍ରଭୁଙ୍କ ପାଶେ ଚଳିଲେ ।
ଶୁଣାନ୍ତେ କୁଶଳ ଶ୍ରୀରାମ ଆନନ୍ଦେ ଯାନେ ଚଢ଼ି ଆଗମିଲେ ॥୨(ଖ)॥

ହରଷେ ଭରତ ପୁରୀ ଅଯୋଧ୍ୟାକୁ ଆସି । ଗୁରୁଙ୍କ ଆଗେ ସମସ୍ତ ସମାଚାର ଭାଷି ॥
ପୁଣି ବାର୍ତ୍ତା ଜଣାଇଲେ ଭବନକୁ ଯାଇ । କୁଶଳେ ଆସନ୍ତି ପୁରେ ରଘୁକୁଳସାଇଁ ॥୧॥
ଶୁଣନ୍ତେ ଉଠି ଧାଇଁଲେ ଜନନୀ ସକଳ । ବୁଝାନ୍ତି ଭରତ କହି ପ୍ରଭୁଙ୍କ କୁଶଳ ॥
ସମାଚାର ଯେବେ ପୁରଜନବାସୀ ପାଇଲେ । ପ୍ରମୋଦେ ଉଠ ନାରୀ ପୁରୁଷ ଧାଇଁଲେ ॥୨॥
ମଙ୍ଗଳ ମୂଳ ହଳଦୀ ଦଧି ଦୂର୍ବାଦଳ । ନବ ତୁଳସୀ ମଞ୍ଜରୀ ପତ୍ର ପୁଷ୍ପ ଫଳ ॥
ପୂର୍ଣ୍ଣ କରି କରି ହେମ ଥାଳରେ କାମିନୀ । ଗମିଲେ ମଙ୍ଗଳ ଗାଇ କୁଞ୍ଜର-ଗାମିନୀ ॥୩॥
ଯେ ଭାବେ ଯେ ଥିଲେ ଉଠି ସେ ଭାବେ ଧାଇଁଲେ । ବାଳକ ବୃଦ୍ଧଙ୍କୁ କେହି ସଙ୍ଗେ ନ ଆଣିଲେ ॥
ଏକ ଅନ୍ୟ ସମ୍ମୁଖରେ ପଚାରଇ ଧାଇଁ । ତୁମ୍ଭେ କ ଦେଖିଛ ଦୟା-ସିନ୍ଧୁ ରଘୁସାଇଁ ॥୪॥

---

ଦୋହା :— ହନୁମାନ୍ କହିଲେ, "ହେ ନାଥ ! ଆପଣ ଶ୍ରୀରାମଙ୍କର ପ୍ରାଣସମ ପ୍ରିୟ । ହେ ତାତ ! ମୋ ବଚନ ସତ୍ୟ ।" ଏହା ଶୁଣି ଭରତ ବାରମ୍ବାର ହନୁମାନଙ୍କୁ ଆଲିଙ୍ଗନ କରୁଥା'ନ୍ତି । ତାଙ୍କ ହୃଦୟରେ ହର୍ଷ ନ ସମ୍ଭାଇ ଉଛୁଳି ପଡୁଥାଏ ॥ ୨ (କ) ॥
ସୋରଠା :— ପୁଣି ଭରତଙ୍କ ଚରଣରେ ଶିର ନୁଆଁଇ ହନୁମାନ୍ ତୁରନ୍ତ ଶ୍ରୀରାମଙ୍କ ନିକଟକୁ ଫେରି ଆସିଲେ ଏବଂ ସମସ୍ତ କୁଶଳ ବୋଲି ପ୍ରଭୁଙ୍କୁ ବାର୍ତ୍ତା ଦେଲେ । ତଦନନ୍ତର ପ୍ରଭୁ ଆନନ୍ଦିତ ହୋଇ ବିମାନରେ ଚଢ଼ି ଚଳିଲେ ॥ ୨ (ଖ) ॥
ଚୌପାଇ :— ଏଣେ ଭରତ ଆନନ୍ଦିତ ହୋଇ ଅଯୋଧ୍ୟାପୁରୀକୁ ଆସିଲେ । ସେ ଗୁରୁଙ୍କୁ ସମସ୍ତ ସମାଚାର ଶୁଣାଇଲେ । ପୁଣି ରାଜମହଲରେ ଖବର ଦେଲେ ଯେ, ଶ୍ରୀ ରଘୁନାଥ କୁଶଳରେ ନଗରକୁ ଆସୁଅଛନ୍ତି ॥ ୧ ॥ ଖବର ଶୁଣିବା ମାତ୍ରେ ସମସ୍ତ ମାତା ଉଠି ଧାଇଁଲେ । ଭରତ ପ୍ରଭୁଙ୍କ କୁଶଳବାର୍ତ୍ତା କହି ସମସ୍ତଙ୍କୁ ବୁଝାଇଲେ । ନଗରବାସୀ ନରନାରୀ ସମସ୍ତେ ଏହି ସମାଚାର ପାଇବା ମାତ୍ରେ ଆନନ୍ଦିତ ମନରେ ଧାଇଁଲେ ॥ ୨ ॥

ଅଉଧପୁରୀ ପ୍ରଭୁ ଆଵତ ଜାନୀ । ଭଈ ସକଲ ସୋଭା କୈ ଖାନୀ ॥
ବହଇ ସୁହାଵନ ତ୍ରିବିଧ ସମୀରା । ଭଇ ସରଜୂ ଅତି ନିର୍ମଲ ନୀରା ॥୫॥

ହରଷିତ ଗୁର ପରିଜନ ଅନୁଜ ଭୂସୁରବୃନ୍ଦ ସମେତ ।
ଚଲେ ଭରତ ମନ ପ୍ରେମ ଅତି ସନ୍ମୁଖ କୃପାନିକେତ ॥୩(କ)॥
ବହୁତକ ଚଢ଼ୀଂ ଅଟାରିନ୍ହ ନିରଖହିଁ ଗଗନ ବିମାନ ।
ଦେଖି ମଧୁର ସୁର ହରଷିତ କରହିଁ ସୁମଂଗଲ ଗାନ ॥୩(ଖ)
ରାକା ସସି ରଘୁପତି ପୁର ସିଂଧୁ ଦେଖି ହରଷାନ ।
ବଢ଼୍ୟୋ କୋଲାହଲ କରତ ଜନୁ ନାରି ତରଂଗ ସମାନ ॥୩(ଗ)॥

---

ଅଯୋଧ୍ୟା ନଗରୀ ଜାଣି ପ୍ରଭୁ ଆଗମନ । ହୋଇଲା ସମସ୍ତ ଶୋଭା ଆକର ବହନ ॥
ପ୍ରବାହିତ ସରଯୂରେ ସୁବିମଳ ନୀର । ବହିଲା ସୁଖଦାୟକ ତ୍ରିବିଧ ସମୀର ॥୫॥

ଗୁରୁ, ପୁରଜନ ଅନୁଜ ବ୍ରାହ୍ମଣ-ବୃନ୍ଦଙ୍କୁ ଘେନିଣ ସୁଖେ ।
ଚଳିଲେ ଅତ୍ୟନ୍ତ ପ୍ରେମରେ ଭରତ କୃପାସିନ୍ଧୁଙ୍କ ସନ୍ମୁଖେ ॥୩(କ)॥
ପ୍ରାସାଦ ଉପରେ ଚଢି ନାରୀବୃନ୍ଦେ ବିଲୋକି ନଭେ ବିମାନ ।
ପ୍ରମୋଦିତ ମନେ ସୁମଧୁର ସ୍ୱନେ କରନ୍ତି ମଙ୍ଗଳ ଗାନ ।(ଖ)॥
ରାକାଶଶୀ ରଘୁପତିଙ୍କୁ ନିରେଖି ପୁର-ସିନ୍ଧୁ ହରଷିତ ।
ବଢଇ ଯେସନ କରିଣ ନିଃସ୍ୱନ, ନାରୀ ତରଙ୍ଗ ଅମିତ ॥୩(ଗ)॥

---

ଶ୍ରୀରାମଙ୍କ ସ୍ୱାଗତ ନିମନ୍ତେ ଗଜ-ଗାମିନୀ ସୌଭାଗ୍ୟବତୀ ନାରୀମାନେ ଦଧି, ଦୂବ, ଗୋରୋଚନ, ଫଳ, ପୁଷ୍ପ ଓ ମଙ୍ଗଳର ମୂଳ ନବୀନ ତୁଳସୀଦଳ ଆଦି ବସ୍ତୁମାନ ସୁବର୍ଣ୍ଣ ଥାଳରେ ପୂରାଇ ସଙ୍ଗୀତଗାନପୂର୍ବକ ଚଳିଲେ ॥ ୩ ॥ ଯେ ଯେଉଁ ଦଶାରେ ଅଛନ୍ତି, ଠିକ୍ ସେହି ଦଶାରେ ଉଠି ଦୌଡ଼ୁଛନ୍ତି । ବିଳମ୍ବ ହୋଇଯିବ ବୋଲି ଡର ବାଳକ ଓ ବୃଦ୍ଧମାନଙ୍କୁ କେହି ସଙ୍ଗରେ ନେଉ ନ ଥା'ନ୍ତି । ପରସ୍ପରଙ୍କୁ ପଚାରୁଥା'ନ୍ତି, "ଭାଇ ! ତୁମେ ଦୟାଳୁ ଶ୍ରୀ ରଘୁନାଥଙ୍କୁ ଦେଖିଅଛ କି ?" ॥ ୪ ॥ ପ୍ରଭୁଙ୍କର ଆଗମନ ଜାଣି ଅଯୋଧ୍ୟାପୁରୀ ସକଳ ଶୋଭାର ଖଣି ହୋଇଗଲା । ତ୍ରିବିଧ ମନୋହର ବାୟୁ ବହିବାକୁ ଲାଗିଲା । ସରଯୂ ନଦୀର ଜଳ ଅତିଶୟ ନିର୍ମଳ ହୋଇଗଲା ॥ ୫ ॥ ଦୋହା :—ଗୁରୁ ବଶିଷ୍ଠ, ଆତ୍ମୀୟ ପରିଜନ, ସାନ ଭାଇ ଶତ୍ରୁଘ୍ନ ଏବଂ ବ୍ରାହ୍ମଣବୃନ୍ଦ ସମେତ ଅତ୍ୟନ୍ତ ଆନନ୍ଦ ଓ ପ୍ରେମରେ ପରିପୂର୍ଣ୍ଣ ଭରତ ଶ୍ରୀରାମଙ୍କୁ ସ୍ୱାଗତ କରିବା ନିମନ୍ତେ ଚଳିଲେ ॥ ୩ (କ) ॥ ବହୁତ ସ୍ତ୍ରୀ ଅଟ୍ଟାଳିକାମାନଙ୍କ ଉପରେ ଚଢି ଆକାଶରେ ଉଡୁଥିବା ବିମାନ ଦେଖୁଥା'ନ୍ତି । ତାହା ଦେଖି ସେମାନେ ଆନନ୍ଦିତ ମନରେ ମଧୁର ସ୍ୱରରେ ସୁନ୍ଦର ମଙ୍ଗଳ ସଙ୍ଗୀତ ଗାନ କରୁଥା'ନ୍ତି ॥୩(ଖ)॥ ଶ୍ରୀରଘୁନାଥ ପୂର୍ଣ୍ଣିମାର ଚନ୍ଦ୍ରମା, ଅଯୋଧ୍ୟାପୁର ସମୁଦ୍ର ସମାନ ସେହି ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି ଆନନ୍ଦିତ ହେଉଥାଏ ଏବଂ କୋଳାହଳ କରି ବଢିଯାଉଥାଏ । (ଏଣେତେଣେ ଦୌଡ଼ୁଥିବା) ସ୍ତ୍ରୀମାନେ ଅନେକ ତରଙ୍ଗ ସମାନ ପ୍ରତୀତ ହେଉଥା'ନ୍ତି ॥୩(ଗ)॥

ଇହାଁ ଭାନୁକୁଲ କମଲ ଦିବାକର । କପିନ୍ହ ଦେଖାୱତ ନଗର ମନୋହର ॥
ସୁନୁ କପୀସ ଅଂଗଦ ଲଂକେସା । ପାୱନ ପୁରୀ ରୁଚିର ୟହ ଦେସା ॥୧॥
ଜଦ୍ୟପି ସବ ବୈକୁଣ୍ଠ ବଖାନା । ବେଦ ପୁରାନ ବିଦିତ ଜଗୁ ଜାନା ॥
ଅୱଧପୁରୀ ସମ ପ୍ରିୟ ନହିଁ ସୋଊ । ୟହ ପ୍ରସଂଗ ଜାନଇ କୋଉ କୋଊ ॥୨॥
ଜନ୍ମଭୂମି ମମ ପୁରୀ ସୁହାୱନି । ଉତ୍ତର ଦିସି ବହ ସରଜୂ ପାୱନି ॥
ଜା ମଜ୍ଜନ ତେଂ ବିନହିଁ ପ୍ରୟାସା । ମମ ସମୀପ ନର ପାୱହିଁ ବାସା ॥୩॥
ଅତି ପ୍ରିୟ ମୋହି ଇହାଁ କେ ବାସୀ । ମମ ଧାମଦା ପୁରୀ ସୁଖ ରାସୀ ॥
ହରଷେ ସବ କପି ସୁନି ପ୍ରଭୁ ବାନୀ । ଧନ୍ୟ ଅୱଧ ଜୋ ରାମ ବଖାନୀ ॥୪॥
ଆୱତ ଦେଖି ଲୋଗ ସବ କୃପାସିଂଧୁ ଭଗବାନ ।
ନଗର ନିକଟ ପ୍ରଭୁ ପ୍ରେରେଉ ଉତରେଉ ଭୂମି ବିମାନ ॥୪(କ)॥

---

ଏଣେ ଭାନୁକୁଳ-ପୁଣ୍ଡରୀକ ପ୍ରଭାକର । ଦେଖାନ୍ତି କପିବୃନ୍ଦଙ୍କୁ ପୁରୀ ମନୋହର ॥
ଶୁଣ ସଖା କପୀଶ୍ୱର, ଅଙ୍ଗଦ, ଲଙ୍କେଶ । ପବିତ୍ର ପୁରୀ ରୁଚିର ଅଟେ ଏହି ଦେଶ ॥୧॥
ଯଦ୍ୟପି ସମସ୍ତେ ବୈକୁଣ୍ଠକୁ ବଖାଣନ୍ତି । ବେଦ ପୁରାଣ ବିଦିତ ଜଗତେ ଜାଣନ୍ତି ॥
ଅଯୋଧ୍ୟା ସଦୃଶ ମୋତେ ପ୍ରିୟ ନୁହେ ସେହି । ଜାଣନ୍ତି ଏହି ପ୍ରସଙ୍ଗ ଜନ କେହି କେହି ॥୨॥
ଜନମ ଭୂମି ମୋହର ପୁରୀ ଶୋଭାମୟୀ । ଉତ୍ତର ଦିଗେ ପବିତ୍ର ସରଯୂ ବହଇ ॥
ଯେ ଯାଇ ଅବଗାହନ କରେ ଅନାୟାସେ । ମୋ ସମୀପରେ ସେ ନର ଲଭଇ ନିବାସ ॥୩॥
ଅତିଶୟ ପ୍ରିୟ ମୋତେ ଏହାର ନିବାସୀ । ମମ ଧାମ-ପ୍ରଦାୟିନୀ ପୁରୀ ସୁଖ-ରାଶି ॥
ଶୁଣି ପ୍ରଭୁ ବାଣୀ କପି ହର୍ଷ ହେଲେ ଅତି । ଧନ୍ୟ ଅଯୋଧ୍ୟା ଯାହାକୁ ରାମ ବଖାଣନ୍ତି ॥୪॥
ଲୋକ ସମୂହଙ୍କ ଆଗମନ ଦେଖି କୃପାସିନ୍ଧୁ ଭଗବାନ ।
ପୁର ନିକଟରେ ପ୍ରେରନ୍ତେ ଭୂମିରେ ଅବତରିଲା ବିମାନ ॥୪(କ)॥

---

ଚୌପାଇ :—ଏଣେ ବିମାନ ଉପରୁ ସୂର୍ଯ୍ୟକୁଳ-କମଳ-ଭାସ୍କର ଶ୍ରୀରାମ ବାନରମାନଙ୍କୁ ମନୋହର ନଗର ଦେଖାଉଥା'ନ୍ତି । ସେ କହୁଥା'ନ୍ତି, "ହେ ସୁଗ୍ରୀବ ! ହେ ଅଙ୍ଗଦ ! ହେ ଲଙ୍କପତି ବିଭୀଷଣ ! ଶୁଣ; ଏହି ନଗରୀ ପବିତ୍ର ଓ ଏହି ଦେଶ ସୁନ୍ଦର ॥୧॥ ଯଦ୍ୟପି ସମସ୍ତେ ବୈକୁଣ୍ଠର ପ୍ରଶଂସା କରିଅଛନ୍ତି, ଏହା ବେଦପୁରାଣମାନଙ୍କରେ ପ୍ରସିଦ୍ଧ ଏବଂ ସମଗ୍ର ଜଗତ-ବିଦିତ, କିନ୍ତୁ ଅଯୋଧ୍ୟାପୁରୀ ସମାନ ତାହା ମଧ୍ୟ ମୋର ପ୍ରିୟ ନୁହେଁ । ଏହି ଭେଦ କେହି କେହି ଜାଣନ୍ତି । (ଅର୍ଥାତ୍ ଏହି ଭେଦ ଜାଣିବା ଲୋକ ସଂସାରରେ ବିରଳ) ॥ ୨ ॥ ଏହି ସୁନ୍ଦରପୁରୀ ମୋର ଜନ୍ମଭୂମି । ଏହାର ଉତ୍ତର ଦିଗରେ ପାବନୀ ସରଯୂ ନଦୀ ବହି ଯାଉଅଛି । ତହିଁରେ ସ୍ନାନ କରିବା ଦ୍ୱାରା ମନୁଷ୍ୟମାନେ ଅନାୟାସରେ ମୋର ସମୀପରେ ବାସ (ସାମୀପ୍ୟ ମୁକ୍ତି) ପାଇ ପାରନ୍ତି ॥ ୩ ॥ ଏଠିକାର ଅଧିବାସୀ-ମାନେ ମୋର ଅତିଶୟ ପ୍ରିୟ । ଏହି ପୁରୀ ସୁଖରାଶି ଓ ମୋର ପରମଧାମର ଦାତା ।" ପ୍ରଭୁଙ୍କ ବାଣୀ ଶୁଣି ସମସ୍ତ ବାନର ଆନନ୍ଦିତ ହେଲେ ଏବଂ କହିବାକୁ ଲାଗିଲେ,

ଉତରି କହେଉ ପ୍ରଭୁ ପୁଷ୍ପକହି ତୁମ୍ହ କୁବେର ପହିଁ ଜାହୁ ।
ପ୍ରେରିତ ରାମ ଚଲେଉ ସୋ ହରଷୁ ବିରହୁ ଅତି ତାହୁ ॥୪(ଖ)॥
ଆଏ ଭରତ ସଂଗ ସବ ଲୋଗା । କୃସ ତନ ଶ୍ରୀ ରଘୁବୀର ବିୟୋଗା ॥
ବାମଦେବ ବସିଷ୍ଠ ମୁନିନାୟକ । ଦେଖେ ପ୍ରଭୁ ମହି ଧରି ଧନୁସାୟକ ॥୧॥
ଧାଇ ଧରେ ଗୁର ଚରନ ସରୋରୁହ । ଅନୁଜ ସହିତ ଅତି ପୁଲକ ତନୋରୁହ ॥
ଭେଁଟି କୁସଲ ବୂଝୀ ମୁନିରାୟା । ହମରେଁ କୁସଲ ତୁମ୍ହାରିହିଁ ଦାୟା ॥୨॥
ସକଲ ଦ୍ୱିଜନ୍ହ ମିଲି ନାୟଉ ମାଥା । ଧର୍ମ ଧୁରଂଧର ରଘୁକୁଲନାଥା ॥
ଗହେ ଭରତ ପୁନି ପ୍ରଭୁ ପଦ ପଙ୍କଜ । ନମତ ଜିନ୍ହହି ସୁର ମୁନି ସଙ୍କର ଅଜ ॥୩॥

ଅବତରି ପ୍ରଭୁ, ପୁଷ୍ପକେ କହିଲେ, ଯାଅ ତୁ କୁବେର କତି ।
ରାମଙ୍କ ଆଦେଶେ ଚଳିଲା ହରଷେ, ବିରହେ ଦୁଃଖିତ ଅତି ॥୪(ଖ)॥
ଆସିଲେ ଲୋକ ସକଳେ ଭରତ ସଙ୍ଗରେ । କୃଶ କଳେବର ରଘୁବୀର ବିୟୋଗରେ ॥
ବାମଦେବ, ବଶିଷ୍ଠାଦି ମୁନିଙ୍କୁ ଦେଖିଣ । ପ୍ରଭୁ ଶର ଶରାସନ ମହୀରେ ରଖିଣ ॥୧॥
ଧାଇଁ ଧରିଲେ ଗୁରୁଙ୍କ ଚରଣ ଅମ୍ବୁଜ । ଅତି ପୁଲକିତ ତନୁ ସହିତ ଅନୁଜ ॥
ଭେଟି କୁଶଳାଦି ପ୍ରଶ୍ନ କଲେ ମୁନିବର । ତୁମ୍ଭ କରୁଣାରେ ନାଥ, କୁଶଳ ଆମ୍ଭର ॥୨॥
ମହୀସୁର ସମସ୍ତଙ୍କୁ କଲେ ପ୍ରଣିପାତ । ଧର୍ମ-ଧୁରନ୍ଧର ପ୍ରଭୁ ରଘୁକୁଳ-କାନ୍ତ ॥
ଧରିଲେ ଭରତ ପୁଣି ପ୍ରଭୁ ପଦ-କଞ୍ଜ । ନମନ୍ତି ଯାହାଙ୍କୁ ଶିବ ସୁର ମୁନି ଅଜ ॥୩॥

"ସ୍ୱୟଂ ପ୍ରଭୁ ଶ୍ରୀରାମ ଯେଉଁ ଅଯୋଧ୍ୟାର ବଡ଼ାଇ କଲେ, ତାହା ନିଶ୍ଚୟ ଧନ୍ୟ ।" ॥୪॥ ଦୋହା :—କୃପାସାଗର ଭଗବାନ୍ ଶ୍ରୀରାମଚନ୍ଦ୍ର ସମସ୍ତ ଲୋକଙ୍କୁ ଆସୁଥିବାର ଦେଖିଲେ । ତେଣୁ ପ୍ରଭୁ ବିମାନକୁ ନଗର ସମୀପରେ ଓହ୍ଲାଇବା ନିମନ୍ତେ ପ୍ରେରଣା ଦେଲେ । ବିମାନ ଭୂମି ଉପରେ ଓହ୍ଲାଇଲା ॥ ୪ (କ) ॥ ବିମାନରୁ ଓହ୍ଲାଇ ପ୍ରଭୁ ପୁଷ୍ପକ ବିମାନକୁ କହିଲେ, "ତୁମେ ଏବେ କୁବେରଙ୍କ ନିକଟକୁ ଯାଅ ।" ଶ୍ରୀରାମଙ୍କ ପ୍ରେରଣାରେ ପୁଷ୍ପକ ବିମାନ ଚାଲିଲା । ଆପଣାର ପ୍ରଭୁ (ସ୍ୱାମୀ)ଙ୍କ ନିକଟକୁ ଯିବାରେ ତାହାର ମନରେ ଅବଶ୍ୟ ଆନନ୍ଦ ଜାତ ହେଲା; ମାତ୍ର ତା ସଙ୍ଗେ ସଙ୍ଗେ ପ୍ରଭୁ ଶ୍ରୀରାମଙ୍କଠାରୁ ବିଚ୍ଛିନ୍ନ ହେବାରେ ଅତିଶୟ ଦୁଃଖ ମଧ୍ୟ ହେଲା ॥ ୪ (ଖ) ॥ ଚୌପାଈ :- ଭରତଙ୍କ ସଙ୍ଗେ ସମସ୍ତ ଲୋକ ଆସିଲେ । ଶ୍ରୀ ରଘୁବୀରଙ୍କଠାରୁ ବିରହ ଯୋଗେ ସମସ୍ତଙ୍କ ଶରୀର ଦୁର୍ବଳ ହୋଇ ପଡ଼ିଥାଏ । ପ୍ରଭୁ ବାମଦେବ, ବଶିଷ୍ଠ ଓ ମୁନିନାୟକମାନଙ୍କୁ ଦେଖିଲେ । ସେତେବେଳେ ସେ ଧନୁଶର ଭୂମି ଉପରେ ରଖିଦେଲେ ॥ ୧ ॥ ଏବଂ ସାନଭାଇ ଲକ୍ଷ୍ମଣଙ୍କ ସହିତ ଦୌଡ଼ି ଗୁରୁଙ୍କ ଚରଣ-କମଳ ଧରି ପକାଇଲେ । ତାଙ୍କର ପ୍ରତ୍ୟେକ ରୋମ ଅତି ପୁଲକିତ ହେଉଥାଏ । ମୁନିରାଜ ବଶିଷ୍ଠ ଉଠାଇ ତାହାଙ୍କୁ ଆଲିଙ୍ଗନ କରି କୁଶଳବାର୍ତ୍ତା ପଚାରିଲେ । ପ୍ରଭୁ କହିଲେ, "ଆପଣଙ୍କ ଦୟାରୁ ଆମର ସବୁ କୁଶଳ ।" ॥ ୨ ॥ ଧର୍ମଧୁରନ୍ଧର ରଘୁକୁଳସ୍ୱାମୀ ଶ୍ରୀରାମ ସମସ୍ତ ବ୍ରାହ୍ମଣଙ୍କ ସହିତ

ପରେ ଭୂମି ନହିଁ ଉଠତ ଉଠାଏ । ବର କରି କୃପାସିଂଧୁ ଉର ଲାଏ ॥
ସ୍ୟାମଲ ଗାତ ରୋମ ଭଏ ଠାଢ଼େ । ନବ ରାଜୀବ ନୟନ ଜଲ ବାଢ଼େ ॥୪॥

ରାଜୀବ ଲୋଚନ ସ୍ରବତ ଜଲ ତନ ଲଲିତ ପୁଲକାବଲି ବନୀ ।
ଅତି ପ୍ରେମ ହୃଦୟଁ ଲଗାଇ ଅନୁଜହି ମିଲେ ପ୍ରଭୁ ତ୍ରିଭୁଅନ ଧନୀ ॥
ପ୍ରଭୁ ମିଲତ ଅନୁଜହି ସୋହ ମୋ ପହିଁ ଜାତି ନହିଁ ଉପମା କହୀ ।
ଜନୁ ପ୍ରେମ ଅରୁ ସିଂଗାର ତନୁ ଧରି ମିଲେ ବର ସୁଷମା ଲହୀ ॥୧॥
ବୂଝତ କୃପାନିଧି କୁସଲ ଭରତହି ବଚନ ବେଗି ନ ଆଵଈ ।
ସୁନୁ ସିବା ସୋ ସୁଖ ବଚନ ମନ ତେଁ ଭିନ୍ନ ଜାନ ଜୋ ପାଵଈ ॥
ଅବ କୁସଲ କୋସଲନାଥ ଆରତ ଜାନି ଜନ ଦରସନ ଦିୟୋ ।
ବୂଡ଼ତ ବିରହ ବାରୀସ କୃପାନିଧାନ ମୋହି କର ଗହି ଲିୟୋ ॥୨॥

---

ପଡ଼ିଲେ ଭୂମିରେ ନ ଉଠନ୍ତ ଉଠାଇଲେ । ବଳାତ୍କାରେ କୃପାସିନ୍ଧୁ ହୃଦେ ଲଗାଇଲେ ॥
ଶ୍ୟାମ କଳେବର ରୋମରାଜି ପୁଲକିଲା । ନବ ରାଜୀବ-ନୟନୁ ସଲିଳ ସ୍ରବିଲା ॥୪॥

ରାଜୀବ ବିଲୋଚନୁ ସ୍ରବଇ ଜଳ ତନୁ ଲକ୍ଷିତ ହୋଇଲା ପୁଲକ ।
ଅତି ପ୍ରେମାଲିଙ୍ଗନ ଭରତଙ୍କୁ କରିଣ ମିଳିଲେ ଭୁବନ-ନାୟକ ।
ଅନୁଜେ ମିଳନ୍ତେ ଶୋଭନ୍ତି, ଦେବ କି ଉପମା ମୋ ମତି,
ଯେସନ୍ତେ ପ୍ରେମ ଶୃଙ୍ଗାର ଧରି ଦିବ୍ୟ ଶରୀର ମିଳିଣ ସୁଷମା ଲଭନ୍ତି ॥୧॥
ଭରତଙ୍କୁ କୁଶଳ ପୁଛନ୍ତି ଜନପାଳ ବଚନ ବେଗି ନ ସ୍ଫୁରଇ ।
ଶୁଣ ଭବାନି ! ମନ ବଚନୁ ତାହା ଭିନ୍ନ ସେ ସୁଖ କେ ଜାଣି ପାରଇ ।
କୋଶଳେଶ ହେ, ସବୁ ଭଲ, ଆର୍ତ୍ତି ଜନେ ଯେ ଦେଖା ଦେଲ,
ବିରହ-ସିନ୍ଧୁ ମଧ୍ୟେ ବୁଡନ୍ତେ କୃପାନିଧେ, ମୋହର କର ଧରି ନେଲ ॥୨॥

---

ସାକ୍ଷାତ କରି ସେମାନଙ୍କୁ ମସ୍ତକ ନୁଆଁଇଲେ । ପୁଣି ଭରତ ପ୍ରଭୁଙ୍କର ଯେଉଁ ଚରଣଯୁଗଳକୁ ଦେବତା, ମୁନି, ଶଙ୍କର ଓ ବ୍ରହ୍ମା ନମସ୍କାର କରନ୍ତି, ସେହି ଚରଣ-ଯୁଗଳକୁ ଧରି ପକାଇଲେ ॥ ୩ ॥ ଭରତ ପୃଥିବୀ ଉପରେ ପଡ଼ିଥାଆନ୍ତି, ସେତେ ଉଠାଇଲେ ସୁଦ୍ଧା ଉଠୁ ନ ଥା'ନ୍ତି । ତଦନନ୍ତର କୃପାସିନ୍ଧୁ ଶ୍ରୀରାମ ତାହାଙ୍କୁ ବଳପୂର୍ବକ ଉଠାଇ ଆଲିଙ୍ଗନ କରି ପକାଇଲେ । ତାଙ୍କର ଶ୍ୟାମଳ ଶରୀର ଉପରେ ରୋମ ଟାଙ୍କୁରି ଉଠୁଥାଏ । ନବକମଳ-ନେତ୍ରରେ ପ୍ରେମାଶ୍ରୁ ଜଳର ବନ୍ୟା ଛୁଟି ଆସିଲା ॥ ୪ ॥
ଛନ୍ଦ —କମଳ ସମାନ ନେତ୍ରରୁ ଜଳ ବହି ଚାଲିଥାଏ । ସୁନ୍ଦର ଶରୀରରେ ପୁଲକାବଳୀ ଶୋଭା ପାଉଥାଏ । ତ୍ରିଲୋକସ୍ୱାମୀ ପ୍ରଭୁ ଶ୍ରୀରାମ ସାନଭାଇ ଭରତଙ୍କୁ ଅତି ପ୍ରେମରେ ଆଲିଙ୍ଗନ କରି ତାଙ୍କ ସହିତ ମିଳନ କଲେ । ଭାଇଙ୍କ ସଙ୍ଗେ ମିଳନ କାଳରେ ପ୍ରଭୁ ଯେପରି ଶୋଭା ପାଉଥା'ନ୍ତି, ତାହା ମୁଁ ଭାଷାରେ ବର୍ଣ୍ଣନା କରିପାରୁ ନାହିଁ । ସତେ ଯେମିତି ପ୍ରେମ ଓ ଶୃଙ୍ଗାର ଶରୀର ଧାରଣ କରି ମିଳିତ

ପୁନି ପ୍ରଭୁ ହରଷି ସତ୍ରୁହନ ଭେଁଟେ ହୃଦୟଁ ଲଗାଇ ।
ଲଛିମନ ଭରତ ମିଲେ ତବ ପରମ ପ୍ରେମ ଦୋଉ ଭାଇ ॥୫॥

ଭରତାନୁଜ ଲଛିମନ ପୁନି ଭେଁଟେ । ଦୁସହ ବିରହ ସଂଭବ ଦୁଖ ମେଟେ ॥
ସୀତା ଚରନ ଭରତ ସିରୁ ନାୱା । ଅନୁଜ ସମେତ ପରମ ସୁଖ ପାୱା ॥୧॥
ପ୍ରଭୁ ବିଲୋକି ହରଷେ ପୁରବାସୀ । ଜନିତ ବିୟୋଗ ବିପତି ସବ ନାସୀ ॥
ପ୍ରେମାତୁର ସବ ଲୋଗ ନିହାରୀ । କୌତୁକ କୀନ୍ହ କୃପାଲ ଖରାରୀ ॥୨॥
ଅମିତ ରୂପ ପ୍ରଗଟେ ତେହି କାଲା । ଜଥା ଜୋଗ ମିଲେ ସବହି କୃପାଲା ॥
କୃପାଦୃଷ୍ଟି ରଘୁବୀର ବିଲୋକୀ । କିଏ ସକଲ ନର ନାରି ବିସୋକୀ ॥୩॥

---

ଶତ୍ରୁଘ୍ନଙ୍କୁ ହୃଦେ ଲଗାଇ ପ୍ରମୋଦେ ଭେଟିଲେ ରଘୁପ୍ରବର ।
ଭରତ ସୌମିତ୍ରି ଉଭୟେ ମିଳନ୍ତି ପରମ ପ୍ରେମ ଅନ୍ତର ॥୫॥

ଭରତାନୁଜେ ଲକ୍ଷ୍ମଣ ଆଦର ଭେଟିଲେ । ବିରହ-ଜନିତ ଦୁଃଖ ଦୁଃସହ ନାଶିଲେ ॥
ସୀତାଙ୍କ ଚରଣେ ପୁଣି ପ୍ରଣାମ କରିଲେ । ସାନୁଜ ଭରତ ସୁଖ ପରମ ଲଭିଲେ ॥୧॥
ପ୍ରଭୁଙ୍କୁ ଦେଖି ହରଷ ହେଲେ ପୁରବାସୀ । ବିୟୋଗ-ଜନିତ ସର୍ବ ବିପତ୍ତି ବିନାଶି ॥
ବିଲୋକି ପୁରବାସୀଙ୍କୁ ପ୍ରେମାତୁର ଭାରି । କଉତୁକ କଲେ ପ୍ରଭୁ କୃପାଳୁ ଖରାରି ॥୨॥
ଅନେକ ରୂପେ ପ୍ରକଟ ହୋଇ ରଘୁମଣି । ଯଥାଯୋଗ୍ୟ ସମସ୍ତଙ୍କୁ ମିଳିଲେ ସେକ୍ଷଣି ॥
କରୁଣା ଦୃଷ୍ଟିରେ ଚାହିଁ ଶ୍ରୀ ରଘୁପୁଙ୍ଗବ । କଲେ ନାରୀ ପୁରୁଷଙ୍କୁ ଶୋକଶୂନ୍ୟ ସର୍ବ ॥୩॥

---

ହୋଇ ଶ୍ରେଷ୍ଠ ଶୋଭା ଲଭିଲେ ॥ ୧ ॥ କୃପାନିଧାନ ଶ୍ରୀରାମ ଭରତଙ୍କୁ କୁଶଳବାର୍ତ୍ତା ପଚାରୁଥା'ନ୍ତି; କିନ୍ତୁ ଆନନ୍ଦବଶତଃ ଭରତଙ୍କ ମୁଖରୁ ବଚନ ଶୀଘ୍ର ବାହାରୁ ନ ଥାଏ । ଶିବ କହିଲେ, "ହେ ପାର୍ବତି ! ଶୁଣ; ସେହି ସମୟରେ ଭରତଙ୍କୁ ଯେଉଁ ସୁଖ ମିଳୁଥିଲା, ତାହା ବଚନ ଓ ମନର ଊର୍ଦ୍ଧ୍ୱରେ; ଯେଉଁ ବ୍ୟକ୍ତି ଉକ୍ତ ସୁଖ ଲାଭ କରେ, କେବଳ ସେହି ତାହା ଜାଣେ ।" ଭରତ କହିଲେ, "ହେ କୋଶଳ-ନାଥ ! ଆପଣ ଆର୍ତ୍ତ ମନେ କରି ଏହି ଦାସକୁ ଦର୍ଶନ ଦେଲେ, ଏହି ହେତୁ ବର୍ତ୍ତମାନ ସବୁ କୁଶଳ । ବିରହ-ସମୁଦ୍ରରେ ବୁଡ଼ିଥିବା ଅବସ୍ଥାରେ କୃପାନିଧାନ ମୋ ହାତ ଧରି ମୋତେ ରକ୍ଷା କରିନେଲେ ।" ॥ ୨ ॥ ଦୋହା :—ପୁଣି ପ୍ରଭୁ ଆନନ୍ଦିତ ହୋଇ ଶତ୍ରୁଘ୍ନଙ୍କୁ ଆଲିଙ୍ଗନ କଲେ । ତଦନନ୍ତର ଲକ୍ଷ୍ମଣ ଓ ଭରତ ଦୁଇ ଭାଇ ପରସ୍ପର ସଙ୍ଗେ ପ୍ରେମରେ ମିଳନ କଲେ ॥ ୫ ॥ ଚୌପାଇ :—ପୁଣି ଲକ୍ଷ୍ମଣ ଭରତାନୁଜ ଶତ୍ରୁଘ୍ନଙ୍କୁ ପ୍ରେମାଲିଙ୍ଗନ କରି ଭେଟିଲେ ଏବଂ ଏହି ରୂପେ ବିରହ-ଜନିତ ଦୁଃସହ ଦୁଃଖ ନାଶ କଲେ । ତତ୍ପରେ ଭାଇ ଶତ୍ରୁଘ୍ନଙ୍କ ସହିତ ଭରତ ସୀତାଙ୍କ ଚରଣରେ ଶିର ନୁଆଁଇଲେ ଏବଂ ପରମ ସୁଖ ଲାଭ କଲେ ॥ ୧ ॥ ପ୍ରଭୁଙ୍କୁ ଦେଖି ଅଯୋଧ୍ୟା-ବାସୀ ସମସ୍ତେ ଆନନ୍ଦିତ ହେଲେ । ବିରହ-ଜନିତ ସମସ୍ତ ଦୁଃଖ ନଷ୍ଟ ହୋଇଗଲା । ସମସ୍ତ ଲୋକ ମିଳନ ନିମନ୍ତେ ପ୍ରେମ-ବିହ୍ୱଳ ହୋଇ ପଡ଼ିଛନ୍ତି । ଏହା ଦେଖି ଖରାରି କୃପାଳୁ ଶ୍ରୀରାମ ଗୋଟିଏ ଚମତ୍କାର

ଛନ ମହିଁ ସବହି ମିଲେ ଭଗବାନା । ଉମା ମରମ ୟହ କାହୁଁ ନ ଜାନା ॥
ଏହି ବିଧି ସବହି ସୁଖୀ କରି ରାମା । ଆଗେଁ ଚଲେ ସୀଲ ଗୁନ ଧାମା ॥୪॥
କୌସଲ୍ୟାଦି ମାତୁ ସବ ଧାଈ । ନିରଖି ବଚ୍ଛ ଜନୁ ଧେନୁ ଲୱାଈ ॥୫॥

ଜନୁ ଧେନୁ ବାଲକ ବଚ୍ଛ ତଜି ଗୃହଁ ଚରନ ବନ ପରବସ ଗଈଁ ।
ଦିନ ଅନ୍ତ ପୁର ରୁଖ ସ୍ରବତ ଥନ ହୁଂକାର କରି ଧାୱତ ଭଈଁ ॥
ଅତି ପ୍ରେମ ପ୍ରଭୁ ସବ ମାତୁ ଭେଟୀଁ ବଚନ ମୃଦୁ ବହୁବିଧି କହେ ।
ଗଇ ବିଷମ ବିପତି ବିୟୋଗଭବ ତିନ୍ହ ହରଷ ସୁଖ ଅଗନିତ ଲହେ ॥

ଭେଟେଉ ତନୟ ସୁମିତ୍ରାଁ ରାମ ଚରନ ରତି ଜାନି ।
ରାମହି ମିଲତ କୈକଈ ହୃଦୟଁ ବହୁତ ସକୁଚାନି ॥୬(କ)॥

---

ସମସ୍ତଙ୍କୁ ଭଗବାନ କ୍ଷଣକେ ମିଳିଲେ । ଉମା, ଏ ମରମ କେହୁ ଜାଣି ନ ପାରିଲେ ॥
ଏହି ଭାବେ ସମସ୍ତଙ୍କୁ ସୁଖୀ କରି ରାମ । ଚଳିଲେ ଆଗେ ପରାଣ ଗୁଣଶୀଳ-ଧାମ ॥୪॥
କୌଶଲ୍ୟାଦି ମାତା ସର୍ବେ ଆଗମିଲେ ଧାଇଁ । ନିରେଖି ବତ୍ସାଙ୍କୁ ଯେସନ୍ତେ ପ୍ରସୂତିକା ଗାଈ ॥୫॥

ବତ୍ସାଙ୍କୁ ଗୃହେ ଯେସନ୍ତେ ତେଜି ଧେନୁ ବିପିନେ ପର ଅଧୀନ ହୋଇ ଯାନ୍ତି ।
ଫେରନ୍ତେ ଅସ୍ତଦିନ ବାସେ ସ୍ରବତ ସ୍ତନ ହମ୍ବାଳି ଗୁଞ୍ଜଣ ଧାଆନ୍ତି ।
ମାତାଙ୍କୁ ମିଳି ପ୍ରେମାତୁର, ଭାଷିଲେ ବଚନ ମଧୁର ॥
ବିୟୋଗ-ଭବ ଦୁଃଖ ଦୁଃସହ ନାଶି, ସୁଖ ଲଭିଲେ ସେମାନେ ପ୍ରଚୁର ॥

ଭେଟିଲେ ସୁତଙ୍କୁ ସାଦରେ ସୁମିତ୍ରା ରାମ ପଦେ ପ୍ରୀତି ଜାଣି ।
ରାମଙ୍କୁ ଭେଟନ୍ତେ ଜନନୀ କେକେୟୀ ହୃଦେ ମାନି ବହୁ ଗ୍ଲାନି ॥୬ (କ)॥

---

ସୃଷ୍ଟି କଲେ ॥ ୨ ॥ ସେହି ସମୟରେ କୃପାଳୁ ଶ୍ରୀରାମ ଅସଂଖ୍ୟ ରୂପରେ ପ୍ରକାଶିତ ହେଲେ ଏବଂ ସମସ୍ତଙ୍କ ସହିତ ଏକାବେଳକେ ଯଥାଯୋଗ୍ୟ ମିଳନ କଲେ । ଶ୍ରୀ ରଘୁବୀର କୃପାଦୃଷ୍ଟିରେ ଚାହିଁ ସମସ୍ତ ନରନାରୀଙ୍କୁ ଶୋକମୁକ୍ତ କରି ଦେଲେ ॥ ୩ ॥ ଭଗବାନ୍ କ୍ଷଣମାତ୍ରକ ମଧ୍ୟରେ ସମସ୍ତଙ୍କ ସହିତ ମିଳନ କରି ପକାଇଲେ । ହେ ଉମା ! ଏହି ରହସ୍ୟ କେହି ଜାଣିଲେ ନାହିଁ । ଏହି ରୂପେ ଶୀଳ-ଗୁଣଧାମ ଶ୍ରୀରାମ ସମସ୍ତଙ୍କୁ ସୁଖୀ କରି ଅଗ୍ରସର ହେଲେ ॥ ୪ ॥ କୌଶଲ୍ୟା ଆଦି ମାତାମାନେ ଏପରି ଧାଇଁଲେ, ସତେ ଯେପରି ନୂଆ ଜନ୍ମ କରିଥିବା ଗାଈମାନେ ଆପଣା ବାଛୁରୀଙ୍କୁ ଦେଖି ଦୌଡ଼ି ଅଛନ୍ତି ॥୫॥ ଛନ୍ଦ ।—ସତେ ଯେପରି ନୂଆ ଜନ୍ମ କରିଥିବା ଗାଈମାନେ ସେମାନଙ୍କ ଛୋଟ ବାଛୁରୀଙ୍କୁ ଘରେ ଛାଡ଼ି ପରାଧୀନ ହୋଇ ବନକୁ ଚରିବାକୁ ଯାଇଥା'ନ୍ତି ଏବଂ ଦିନ ଶେଷ ହୁଅନ୍ତେ ବାଛୁରୀମାନଙ୍କ ସହିତ ମିଳିବା ନିମନ୍ତେ ହମ୍ବାରଡ଼ି ଦେଇ ଥନରୁ ଦୁଧ ବୁହାଇ ନଗର ଆଡ଼କୁ ଦୌଡ଼ି ଅଛନ୍ତି । ପ୍ରଭୁ ଅତି ପ୍ରେମରେ ସମସ୍ତ ମାତାଙ୍କ ସଙ୍ଗେ ମିଳନ କରି ସେମାନଙ୍କୁ ବହୁ ପ୍ରକାରେ କୋମଳ ବଚନ କହିଲେ । ବିରହ-ଜାତ ଭୟାନକ ବିପତ୍ତି

ଲଛିମନ ସବ ମାତନ୍ହ ମିଲି ହରଷେ ଆସିଷ ପାଇ ।
କୈକଇ କହଁ ପୁନି ପୁନି ମିଲେ ମନ କର ଛୋଭୁ ନ ଜାଇ ॥୬(ଖ)॥

ସାସୁନ୍ହ ସବନି ମିଲୀ ବୈଦେହୀ । ଚରନନ୍ହି ଲାଗି ହରଷୁ ଅତି ତେହୀ ॥
ଦେହିଁ ଅସୀସ ବୂଝି କୁସଲାତା । ହୋଉ ଅଚଲ ତୁମ୍ହାର ଅହିବାତା ॥୧॥
ସବ ରଘୁପତି ମୁଖ କମଲ ବିଲୋକହିଁ । ମଂଗଲ ଜାନି ନୟନ ଜଲ ରୋକହିଁ ॥
କନକ ଥାର ଆରତୀ ଉତାରହିଁ । ବାର ବାର ପ୍ରଭୁ ଗାତ ନିହାରହିଁ ॥୨॥
ନାନା ଭାଁତି ନିଛାୱରି କରହୀଂ । ପରମାନଂଦ ହରଷ ଉର ଭରହୀଂ ॥
କୌସଲ୍ୟା ପୁନି ପୁନି ରଘୁବୀରହି । ଚିତୱତି କୃପାସିଂଧୁ ରନଧୀରହି ॥୩॥

---

ଲକ୍ଷ୍ମଣ ସକଳ ମାତାଙ୍କୁ ମିଳିଣ ଲଭିଲେ ଆଶିଷ ବର ।
ମିଳନ୍ତି କୈକେୟୀ ସଙ୍ଗେ ପୁଣି ପୁଣି, ନ ଯାଏ କ୍ଷୋଭ ମନର ॥୬(ଖ)॥

ଶାଶୁ ସମସ୍ତଙ୍କୁ ମିଳି ଜନକ-ଦୁହିତା । ଚରଣେ ପଡ଼ି ହୋଇଲେ ଅତି ପ୍ରମୋଦିତା ॥
ଆଶିଷ ଦେଇ ବୁଝନ୍ତି କୁଶଳ ପ୍ରଶନ । ଅଚଳ ହେଉ ତୋହର ଅହିବ ସୁଲକ୍ଷଣ ॥୧॥
ସର୍ବେ ରଘୁପତି ପଦକଞ୍ଜ ବିଲୋକନ୍ତି । ମଙ୍ଗଳ ଜାଣି ନୟନୁ ଲୋତକ ପୋଛନ୍ତି ॥
କନକ ଥାଳରେ ମାତା ଆରତି କରନ୍ତି । ବାରମ୍ବାର ପ୍ରଭୁ ଶ୍ୟାମ ତନୁ ନିରେଖନ୍ତି ॥୨॥
ଅନେକ ପ୍ରକାର ବସ୍ତୁ ଉତ୍ସର୍ଗ କରନ୍ତି । ପରମାନନ୍ଦେ ପୁଲକେ ଉତ୍ଫୁଲ୍ଲ ହୁଅନ୍ତି ॥
କଉଶଲ୍ୟା କ୍ଷଣୁ କ୍ଷଣେ ଶ୍ରୀ ରଘୁବୀରଙ୍କୁ । ନିରେଖନ୍ତି କୃପାସିନ୍ଧୁ ସମର-ଧୀରଙ୍କୁ ॥୩॥

---

ଦୂର ହୋଇଗଲା ଏବଂ ସମସ୍ତେ ଭଗବାନଙ୍କ ସହିତ ମିଳନ କରି ଏବଂ ତାହାଙ୍କ ବଚନ ଶୁଣି ଅସୀମ ସୁଖ ଓ ଆନନ୍ଦ ଲାଭ କଲେ ॥ ଦୋହା :—ସୁମିତ୍ରା ନନ୍ଦନ ପୁଣି ଲକ୍ଷ୍ମଣଙ୍କର ଶ୍ରୀରାମଙ୍କ ଚରଣ-କମଳରେ ପ୍ରୀତି ଥିବାର ଜାଣି ତାଙ୍କ ସହିତ ମିଳିଲେ । ଶ୍ରୀରାମଙ୍କ ସହିତ ସାକ୍ଷାତ ବେଳେ କୈକେୟୀ ମନେ ମନେ ଅତି ସଙ୍କୁଚିତ ହେଲେ ॥ ୬ (କ) ॥ ଲକ୍ଷ୍ମଣ ମଧ୍ୟ ସମସ୍ତ ମାତାଙ୍କ ସହ ମିଳି ସେମାନଙ୍କ ଆଶୀର୍ବାଦ ପାଇଲେ ଏବଂ ଆନନ୍ଦିତ ହେଲେ । ସେ କୈକେୟୀଙ୍କ ସହିତ ବାରମ୍ବାର ମିଳନ କଲେ, କିନ୍ତୁ ତାଙ୍କ ମନରୁ କ୍ଷୋଭ ଯାଉ ନ ଥାଏ ॥ ୬ (ଖ) ॥ ଚୌପାଈ :— ଜାନକୀ ସମସ୍ତ ଶାଶୁଙ୍କ ସହିତ ମିଳନ କଲେ ଏବଂ ସେମାନଙ୍କ ଚରଣରେ ଲାଗି ଅତିଶୟ ଆନନ୍ଦ ଲାଭ କଲେ । ଶାଶୁମାନେ କୁଶଳ ବାର୍ତ୍ତା ପଚାରି ଆଶୀର୍ବାଦ ଦେଉଥା'ନ୍ତି— "ତୋହର ସୁହାଗ-ଭାଗ ଅଚଳ ହୋଇଥାଉ" ॥୧॥ ସମସ୍ତ ମାତା ଶ୍ରୀ ରଘୁନାଥଙ୍କ କମଳ ସମାନ ମୁଖ ଦେଖୁଥା'ନ୍ତି । ସେମାନଙ୍କ ନେତ୍ରରୁ ପ୍ରେମାଶ୍ରୁ-ଜଳ ବହି ଆସୁଥାଏ । କିନ୍ତୁ ମଙ୍ଗଳ ସମୟ ଜାଣି ସେମାନେ ଅଶ୍ରୁ ଜଳକୁ ନେତ୍ରରେ ହିଁ ରୁଦ୍ଧ କରି ରଖୁଥା'ନ୍ତି । ସୁବର୍ଣ୍ଣ ଥାଳରେ ଆରତି କରୁଥା'ନ୍ତି ଏବଂ ବାରମ୍ବାର ପ୍ରଭୁଙ୍କ ଶ୍ରୀଅଙ୍ଗ ଆଡ଼କୁ ଚାହୁଁଥା'ନ୍ତି ॥ ୨ ॥ ଅନେକ ପ୍ରକାର ବସ୍ତୁ ଉତ୍ସର୍ଗ କରୁଥା'ନ୍ତି ଏବଂ ହୃଦୟରେ ପରମାନନ୍ଦ ଓ ହର୍ଷ ଭରୁଥା'ନ୍ତି । କୌଶଲ୍ୟା ବାରମ୍ବାର କୃପା-ସାଗର ଓ ରଣଧୀର

ହୃଦୟଁ ବିଚରତି ବାରହିଁ ବାରା । କଓ୍ଵନ ଭାଁତି ଲଂକାପତି ମାରା ॥
ଅତି ସୁକୁମାର ଜୁଗଲ ମେରେ ବାରେ । ନିସିଚର ସୁଭଟ ମହାବଲ ଭାରେ ॥୪॥

ଲଛିମନ ଅରୁ ସୀତା ସହିତ ପ୍ରଭୁହି ବିଲୋକତି ମାତୁ ।
ପରମାନନ୍ଦ ମଗନ ମନ ପୁନି ପୁନି ପୁଲକିତ ଗାତୁ ॥୭॥

ଲଂକାପତି କପୀସ ନଲ ନୀଲା । ଜାମବନ୍ତ ଅଂଗଦ ସୁଭସୀଲା ॥
ହନୁମଦାଦି ସବ ବାନର ବୀରା । ଧରେ ମନୋହର ମନୁଜ ସରୀରା ॥୧॥
ଭରତ ସନେହ ସୀଲ ବ୍ରତ ନେମା । ସାଦର ସବ ବରନହିଁ ଅତି ପ୍ରେମା ॥
ଦେଖି ନଗରବାସିହ୍ନ କୈ ରୀତୀ । ସକଲ ସରାହହିଁ ପ୍ରଭୁ ପଦ ପ୍ରୀତୀ ॥୨॥
ପୁନି ରଘୁପତି ସବ ସଖା ବୋଲାଏ । ମୁନି ପଦ ଲାଗହୁ ସକଲ ସିଖାଏ ॥
ଗୁର ବସିଷ୍ଠ କୁଲପୂଜ୍ୟ ହମାରେ । ଇନ୍ହ କୀ କୃପାଁ ଦନୁଜ ରନ ମାରେ ॥୩॥

---

ହୃଦ ମଧ୍ୟେ ବାରମ୍ବାର କରନ୍ତି ବିଚାର । ମାରିଲେ ଲଙ୍କପତିଙ୍କୁ କେଉଁଣ ପ୍ରକାର ॥
ଅତି ସୁକୁମାର ମୋର ବାଳୁତ ଯୁଗଲ । ନିଶାଚର ଭାରି ଯୋଦ୍ଧା ବୀର ମହାବଳ ॥୪॥

ଲକ୍ଷ୍ମଣଙ୍କି ସୀତା ସମେତ ପ୍ରଭୁଙ୍କୁ କରି ଜନନୀ ଦର୍ଶନ ।
ପୁଣି ପୁଣି ତନୁ ପୁଲକଇ, ମନ ଅତି ଆନନ୍ଦେ ମଗନ ॥୭॥

ଲଙ୍କାପତି କପି ଅଧୀଶ୍ୱର ନଳ ନୀଳ । ଋକ୍ଷନାୟକ ଅଙ୍ଗଦ ଶୁଭ ଗୁଣ-ଶୀଳ ॥
ହନୁମାନ ଆଦି ସର୍ବେ କପି ମୁଖ୍ୟ ବୀର । ଧରିଣ ସୁମନୋହର ମନୁଷ୍ୟ ଶରୀର ॥୧॥
ଭରତଙ୍କ ଶୀଳ ସ୍ନେହ ସଦାଚାର ବ୍ରତ । ବର୍ଣ୍ଣନ୍ତି ସର୍ବେ ସାଦର ସପ୍ରେମେ ଅତ୍ୟନ୍ତ ॥
ପୁରବାସୀ ଜନଙ୍କର ରୀତି ଦେଖି ଅତି । ପ୍ରଭୁଙ୍କ ଚରଣେ ସ୍ନେହ ପ୍ରଶଂସା କରନ୍ତି ॥୨॥
ପୁଣି ରଘୁନାଥ ନିଜ ସଖାଙ୍କୁ ଡାକିଲେ । ମୁନି ପଦେ ନମିବାକୁ ଶିଖାଇ କହିଲେ ॥
ଗୁରୁ ବଶିଷ୍ଠ ଅଟନ୍ତି ଆମ୍ଭ କୁଳ ପୂଜ୍ୟ । ଏହାଙ୍କ କୃପାରେ ଆମ୍ଭେ ମାରିଲେ ଦନୁଜ ॥୩॥

---

ରଘୁବୀରଙ୍କୁ ଦେଖୁଥା'ନ୍ତି ॥ ୩ ॥ ସେ ବାରମ୍ବାର ହୃଦୟରେ ବିଚାର କରୁଥାନ୍ତି, "ଏମାନେ ଲଙ୍କାପତି ରାବଣଙ୍କୁ କିପରି ମାରିଲେ ? ମୋର ଏ ଦୁଇଟି ବାଳକ ବଡ଼ ସୁକୁମାର ଓ ରାକ୍ଷସମାନେ ତ ବିଶାଳ ଯୋଦ୍ଧା ଓ ମହାବଳୀ ଥିଲେ ।" ॥ ୪ ॥
ଦୋହା —ମାତା ଲକ୍ଷ୍ମଣ ଓ ସୀତାଙ୍କ ସମେତ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ଦେଖୁଥା'ନ୍ତି । ତାଙ୍କ ମନ ପରମାନନ୍ଦରେ ମଗ୍ନ ଓ ଶରୀର ବାରମ୍ବାର ପୁଲକିତ ହେଉଥାଏ ॥୭॥ ଚୌପାଈ :– ଲଙ୍କାପତି ବିଭୀଷଣ, ଋକ୍ଷରାଜ ଜାମ୍ବବାନ୍ ଏବଂ ବାନର-ରାଜ ସୁଗ୍ରୀବ, ନଳ, ନୀଳ ଓ ଅଙ୍ଗଦ ତଥା ହନୁମାନ୍ ଆଦି ସମସ୍ତ ଉତ୍ତମ ସ୍ୱଭାବ-ବିଶିଷ୍ଟ ବୀର ବାନରମାନେ ମନୋହର ମନୁଷ୍ୟ ଶରୀର ଧାରଣ କଲେ ॥ ୧ ॥ ସେମାନେ ସମସ୍ତେ ଭରତଙ୍କ ପ୍ରେମ, ସୁନ୍ଦର ସ୍ୱଭାବ, ତ୍ୟାଗବ୍ରତ ଓ ନିୟମ ଆଦିର ଅତି ପ୍ରେମ ଓ ଆଦର ସହକାରେ ବଡ଼ାଇ କରୁଥାନ୍ତି ଏବଂ ନଗରବାସୀମାନଙ୍କର ପ୍ରେମ, ଶୀଳ ଓ ବିନୟ-ପୂର୍ଣ୍ଣ ରୀତି ଦେଖି ପ୍ରଭୁଙ୍କ ଚରଣ ପ୍ରତି ସେମାନଙ୍କ ପ୍ରେମର ପ୍ରଶଂସା କରୁଥା'ନ୍ତି ॥ ୨ ॥ ତତ୍ପରେ

ଏ ସବ ସଖା ସୁନହୁ ମୁନି ମେରେ । ଭଏ ସମର ସାଗର କହଁ ବେରେ ॥
ମମ ହିତ ଲାଗି ଜନ୍ମ ଇନ୍ହ ହାରେ । ଭରତହୁ ତେଁ ମୋହି ଅଧିକ ପିଆରେ ॥୪॥
ସୁନି ପ୍ରଭୁ ବଚନ ମଗନ ସବ ଭଏ । ନିମିଷ ନିମିଷ ଉପଜତ ସୁଖ ନଏ ॥୫॥

କୌସଲ୍ୟା କେ ଚରନନ୍ହି ପୁନି ତିନ୍ହ ନାୟଉ ମାଥ ।
ଆସିଷ ଦୀନ୍ହି ହରଷି ତୁମ୍ହ ପ୍ରିୟ ମମ ଜିମି ରଘୁନାଥ ॥୮(କ)॥
ସୁମନ ବୃଷ୍ଟି ନଭ ସଂକୁଲ ଭବନ ଚଲେ ସୁଖକନ୍ଦ ।
ଚଢ଼ୀ ଅଟାରିନ୍ହ ଦେଖହିଁ ନଗର ନାରି ବର ବୃନ୍ଦ ॥୮(ଖ)॥

କଞ୍ଚନ କଲସ ବିଚିତ୍ର ସଁୱାରେ । ସବହିଁ ଧରେ ସଜି ନିଜ ନିଜ ଦ୍ୱାରେ ॥
ବନ୍ଦନବାର ପତାକା କେତୂ । ସବନ୍ହି ବନାଏ ମଂଗଲ ହେତୂ ॥୧॥

---

ଏ ସବୁ ସଖା ମୋହର ଶୁଣ, ମୁନିରାଜ । ସଂଗ୍ରାମ-ସାଗର ମଧ୍ୟେ ହୋଇଲେ ଜାହାଜ ॥
ମୋ ହିତ ଲାଗି ଏମାନେ ସମର୍ପିଲେ ପ୍ରାଣ । ଭରତଠାରୁ ଅଧିକ ପ୍ରିୟ ମୋର ଜାଣ ॥୪॥
ଶୁଣି ପ୍ରଭୁ ବାଣୀ ସର୍ବେ ହୋଇଲେ ପ୍ରସନ୍ନ । କ୍ଷଣ କ୍ଷଣେ ନବ ସୁଖ ହୋଇଲା ଉତ୍ପନ୍ନ ॥୫॥

କଉଶଲ୍ୟାଙ୍କର ଚରଣେ ଆଦର କଲେ ସେମାନେ ପ୍ରଣାମ ।
ଦେଲେ ସୁଆଶିଷ ହରଷେ ବିଶେଷ, ତୁମ୍ଭେ ପ୍ରିୟ ଯେସନ୍ତେ ରାମ ॥୮(କ)॥
ବିପୁଳ ସୁମନ ନଭୁ ବୃଷ୍ଟି ହେଲା ପୁରେ ଗଲେ ସୁଖକନ୍ଦ ।
ପ୍ରାସାଦ ଉପରେ ଚଢି ବିଲୋକନ୍ତି ପୁର ବରନାରୀ-ବୃନ୍ଦ ॥୮ (ଖ)।

ବିଚିତ୍ର କନକ କୁମ୍ଭେ ରଚଣ ମଙ୍ଗଳ । ସାଜି ନିଜ ନିଜ ଦ୍ୱାରେ ସ୍ଥାପିଲେ ସକଳ ॥
ବିତାନ ଧ୍ୱଜା ପତାକା ସୁନ୍ଦର ତୋରଣ । ନିର୍ମାଣ କଲେ ସର୍ବେ ମଙ୍ଗଳ କାରଣ ॥୧॥

---

ଶ୍ରୀ ରଘୁନାଥ ସମସ୍ତ ସଖାଙ୍କୁ ଡକାଇଲେ ଏବଂ ମୁନିଙ୍କ ଚରଣରେ ଲାଗିବାକୁ ସମସ୍ତଙ୍କୁ ଉପଦେଶ ଦେଲେ । କହିଲେ, "ଏହି ଗୁରୁ ବଶିଷ୍ଠ ଆମର ସମଗ୍ର କୁଳର ପୂଜ୍ୟ । ଏହାଙ୍କ କୃପାରେ ରଣରେ ରାକ୍ଷସମାନେ ନିହତ ହୋଇ ଅଛନ୍ତି ।" ॥୩॥ ପୁଣି ଗୁରୁଜୀଙ୍କୁ କହିଲେ, "ହେ ମୁନି ! ଶୁଣନ୍ତୁ, ଏମାନେ ସମସ୍ତେ ମୋର ସଖା । ଏମାନେ ସଂଗ୍ରାମ-ସମୁଦ୍ରରେ ମୋ ନିମନ୍ତେ ଭେଳା ବା ଡଙ୍ଗା ପରି କାମ କରିଛନ୍ତି । ମୋହର ହିତ ନିମନ୍ତେ ଏମାନେ ନିଜ ନିଜ ପ୍ରାଣ ପର୍ଯ୍ୟନ୍ତ ଆହୁତ ଦେଇଛନ୍ତି । ଏମାନେ ମୋତେ ଭରତଙ୍କଠାରୁ ସୁଦ୍ଧା ଅଧିକ ପ୍ରିୟ ।" ॥ ୪ ॥ ପ୍ରଭୁଙ୍କ ବଚନ ଶୁଣି ସମସ୍ତେ ପ୍ରେମ ଓ ଆନନ୍ଦରେ ମଗ୍ନ ହୋଇଗଲେ । ଏହି ରୂପେ କ୍ଷଣକ୍ଷଣକେ ସେମାନଙ୍କର ନବ ନବ ସୁଖ ଜାତ ହେଉ-ଥାଏ ॥ ୫ ॥ ଦୋହା :—ପୁଣି ସେହି ସଖାମାନେ କୌଶଲ୍ୟାଙ୍କର ଚରଣରେ ମଥା ନୁଆଇଁଲେ । କୌଶଲ୍ୟା ଆନନ୍ଦିତ ହୋଇ ଆଶୀର୍ବାଦ ଦେଲେ ଏବଂ କହିଲେ, "ତୁମ୍ଭେମାନେ ରଘୁନାଥଙ୍କ ସମାନ ମୋର ଅତି ପ୍ରିୟ ।" ॥୮(କ)॥ ଆନନ୍ଦ-କନ୍ଦ ଶ୍ରୀରାମ ନିଜ ମହଲକୁ ଚାଲିଲେ । ଆକାଶ ପୁଷ୍ପବୃଷ୍ଟି ଯୋଗେ ପୁଷ୍ପ-ପରିପୂର୍ଣ୍ଣ ହୋଇଗଲା । ନଗରର ଶ୍ରେଷ୍ଠନାରୀବୃନ୍ଦ ଅଟ୍ଟାଳିକାମାନଙ୍କ ଉପରେ ଚଢି ତାଙ୍କୁ ଦର୍ଶନ କରୁଥା'ନ୍ତି ॥ ୮ (ଖ) ॥

ବୀଥୀଁ ସକଲ ସୁଗନ୍ଧ ସିଁଚାଈଁ । ଗଜମନି ରଚି ବହୁ ଚୌକ ପୁରାଈଁ ॥
ନାନା ଭାଁତି ସୁମଂଗଲ ସାଜେ । ହରଷି ନଗର ନିସାନ ବହୁ ବାଜେ ॥୨॥
ଜହଁ ତହଁ ନାରି ନିଛାୱରି କରହୀଁ । ଦେହିଁ ଅସୀସ ହରଷ ଉର ଭରହୀଁ ॥
କଞ୍ଚନ ଥାର ଆରତୀଁ ନାନା । ଜୁବତୀଁ ସଜେ କରହିଁ ସୁଭ ଗାନା ॥୩॥
କରହିଁ ଆରତୀ ଆରତିହର କେଁ । ରଘୁକୁଲ କମଲ ବିପିନ ଦିନକର କେଁ ॥
ପୁର ସୋଭା ସଂପତି କଲ୍ୟାନା । ନିଗମ ସେଷ ସାରଦା ବଖାନା ॥୪॥
ତେଉ ୟହ ଚରିତ ଦେଖି ଠଗି ରହହୀଁ । ଉମା ତାସୁ ଗୁନ ନର କିମି କହହୀଁ ॥୫॥

ନାରି କୁମୁଦିନୀଁ ଅବଧ ସର ରଘୁପତି ବିରହ ଦିନେସ ।
ଅସ୍ତ ଭଏଁ ବିଗସତ ଭଈଁ ନିରଖି ରାମ ରାକେସ ॥୯(କ)॥

---

ଗଳିମାନଙ୍କରେ ନାନା ସୁଗନ୍ଧ ସିଞ୍ଚିଲେ । ସୁନ୍ଦର କୋଷ୍ଠକ ଗଜ-ମଣିରେ ରଚିଲେ ॥
ଅନେକ ପ୍ରକାର ବହୁ ସୁମଙ୍ଗଳ ସାଜେ । ହରଷେ ପୁରରେ ନିଷାଣ ଅଗଣିତ ବାଜେ ॥୨॥
ଭବନେ ଭବନେ ନାରୀ ଉତ୍ସର୍ଗ କରନ୍ତି । ଆଶିଷ ଦେଇଣ ଅତି ହରଷ ହୁଅନ୍ତି ॥
କନକ ଥାଳେ ଆଳତି ବିବିଧ ବିଧାନ । ଯୁବତୀ ସାଜି କରନ୍ତି ସୁମଧୁରେ ଗାନ ॥୩॥
ଆରତି କରନ୍ତି ନାରୀ ଆରତି-ହରଙ୍କ । ରଘୁକୁଳ – ସରୋରୁହବନ ଭାସ୍କରଙ୍କ ॥
ନଗର ଶୋଭା ସମ୍ପତ୍ତି କଲ୍ୟାଣ ପରମ । ବର୍ଣ୍ଣନ କରନ୍ତି ଶେଷ ଶାରଦା ନିଗମ ॥୪॥
ସେମାନେ ବି ସ୍ତମ୍ଭୀଭୂତ ଚରିତ ଦେଖନ୍ତେ । ଉମା, ତାଙ୍କ ଗୁଣ ନର କହିବ କେମନ୍ତେ ॥୫॥

ନାରୀ କୁମୁଦିନୀ ପୁର ପୁଷ୍କରିଣୀ ରାମ-ବିରହ ଦିନେଶ ।
ହୋଇଯାନ୍ତେ ଅସ୍ତ ହେଲେ ବିକଶିତ ନିରେଖି ରାମ-ରାକେଶ ॥୯ (କ)॥

---

ଚୌପାଇ ।—ସ୍ୱର୍ଣ୍ଣ କଳସଗୁଡ଼ିକୁ ବିଚିତ୍ର ଭାବରେ ଅଳଂକୃତ କରି ଓ ସଜାଇ ସମସ୍ତ ଲୋକ ନିଜ ନିଜର ଦ୍ୱାର ନିକଟରେ ରଖିଦେଲେ । ସମସ୍ତେ ମଙ୍ଗଳ ନିମନ୍ତେ ତୋରଣ, ଧ୍ୱଜା ଓ ପତାକାମାନ ନିର୍ମାଣ କଲେ ॥ ୧ ॥ ବୀଥିମାନଙ୍କରେ ସୁବାସିତ ଦ୍ରବ୍ୟ ସିଞ୍ଚାଗଲା । ଗଜମୁକ୍ତା-ମାନଙ୍କ ଯୋଗେ ବହୁତ କୋଷ୍ଠକ ନିର୍ମାଣ କରାଗଲା । ଅନେକ ପ୍ରକାର ସୁନ୍ଦର ମଙ୍ଗଳ ସାଜ ସଜାଗଲା ଏବଂ ଆନନ୍ଦର ସୂଚନା ଦେଇ ବହୁତ ନିଶାଣ ନଗରରେ ବାଜିବାକୁ ଲାଗିଲା ॥ ୨ ॥ ସ୍ତ୍ରୀମାନେ ବିଭିନ୍ନ ସ୍ଥାନରେ ଉତ୍ସର୍ଗ କରୁଥା'ନ୍ତି ଏବଂ ହୃଦୟରେ ଆନନ୍ଦିତ ହୋଇ ଆଶୀର୍ବାଦ ଦେଉଥା'ନ୍ତି । ବହୁତ ଯୁବତୀ ସ୍ତ୍ରୀ ସୁବର୍ଣ୍ଣ ଥାଳିରେ ଅନେକ ପ୍ରକାର ଆରତି ସଜାଇ ମଙ୍ଗଳଗାନ କରିବାରେ ଲାଗିଥା'ନ୍ତି ॥ ୩ ॥ ସେମାନେ ଦୁଃଖହାରକ ରଘୁକୁଳ-କମଳ-କାନନ-ଦିନକର ଶ୍ରୀରାମଙ୍କ ଆରତି କରୁ-ଥାଆନ୍ତି । ବେଦ, ଶେଷ ଓ ସରସ୍ୱତୀ ନଗରର ଶୋଭା, ସମ୍ପତ୍ତି ଓ କଲ୍ୟାଣ ବର୍ଣ୍ଣନା କରି ପାରନ୍ତି ॥ ୪ ॥ କିନ୍ତୁ ସେମାନେ ସୁଦ୍ଧା ଏ ଚରିତ ଦେଖି ସ୍ତମ୍ଭୀଭୂତ ହୋଇ ପଡ଼ୁଥା'ନ୍ତି । ଶିବ କହନ୍ତି, "ହେ ଉମା ! ମନୁଷ୍ୟ ଭଲା ତାହାର ଗୁଣାବଳୀ କିପରି ବର୍ଣ୍ଣନା କରିପାରିବ ? ॥ ୫ ॥ ଦୋହା ।—ସ୍ତ୍ରୀମାନେ କୁମୁଦିନୀ, ଅଯୋଧ୍ୟା ସରୋବର

ହୋହିଁ ସଗୁନ ସୁଭ ବିବିଧ ବିଧି ବାଜହିଁ ଗଗନ ନିସାନ ।
ପୁର ନର ନାରି ସନାଥ କରି ଭବନ ଚଲେ ଭଗବାନ ॥୯(ଖ)॥
ପ୍ରଭୁ ଜାନୀ କୈକଈ ଲଜାନୀ । ପ୍ରଥମ ତାସୁ ଗୃହ ଗଏ ଭବାନୀ ॥
ତାହି ପ୍ରବୋଧି ବହୁତ ସୁଖ ଦୀହ୍ନା । ପୁନି ନିଜ ଭବନ ଗୱନ ହରି କୀହ୍ନା ॥୧॥
କୃପାସିଂଧୁ ଜବ ମଂଦିର ଗଏ । ପୁର ନର ନାରି ସୁଖୀ ସବ ଭଏ ॥
ଗୁର ବସିଷ୍ଠ ଦ୍ୱିଜ ଲିଏ ବୋଲାଈ । ଆଜୁ ସୁଘରୀ ସୁଦିନ ସୁଭଦାଈ ॥୨॥
ସବ ଦ୍ୱିଜ ଦେହୁ ହରଷି ଅନୁସାସନ । ରାମଚନ୍ଦ୍ର ବୈଠହିଁ ସିଂଘାସନ ॥
ମୁନି ବସିଷ୍ଠ କେ ବଚନ ସୁହାଏ । ସୁନତ ସକଲ ବିପ୍ରନ୍ହ ଅତି ଭାଏ ॥୩॥
କହହିଁ ବଚନ ମୃଦୁ ବିପ୍ର ଅନେକା । ଜଗ ଅଭିରାମ ରାମ ଅଭିଷେକା ॥
ଅବ ମୁନିବର ବିଲଂବ ନହିଁ କୀଜୈ । ମହାରାଜ କହଁ ତିଲକ କରୀଜୈ ॥୪॥

---

ହୁଏ ସୁଶକୁନ ବିବିଧ ବିଧାନ ନିଷାଣ ବାଜେ ଗଗନେ ।
ପୁର ନର ନାରୀ ସନାଥ କରିଣ ଚଳିଲେ ପ୍ରଭୁ ଭବନେ ॥୯ (ଖ)॥
ପ୍ରଭୁ ଅତ୍ୟନ୍ତ ଲଜ୍ଜିତ କୈକେୟୀଙ୍କୁ ଜାଣି । ପ୍ରଥମେ ଗଲେ ତାହାଙ୍କ ଗୃହକୁ, ଶର୍ବାଣି ॥
ପ୍ରବୋଧ କରିଣ ତାଙ୍କୁ ଦେଇ ବହୁ ସୁଖ । ତହୁଁ ନିଜ ନିଳୟକୁ ଗଲେ ପଦ୍ମମୁଖ ॥୧॥
କରୁଣା-ସାଗର ନିଜ ସଦନେ ଚଳିଲେ । ପୁର ନର ନାରୀ ସୁଖୀ ସରବେ ହୋଇଲେ ॥
ଗୁରୁ ବଶିଷ୍ଠ ବିପ୍ରଙ୍କୁ କହିଲେ ଡକାଇ । ଆଜି ସୁଦିନ ସୁଘଡ଼ି ଅଟଇ ସୁଖଦାୟୀ ॥୨॥
ସକଳ ଦ୍ୱିଜ ଆନନ୍ଦେ ଆଦେଶ ଦିଅନ୍ତୁ । ରାମଚନ୍ଦ୍ର ରାଜ୍ୟ ସିଂହାସନେ ଆରୋହନ୍ତୁ ॥
ମୁନି ବଶିଷ୍ଠଙ୍କ ମୃଦୁ ବଚନ ସୁନ୍ଦର । ଶୁଣି ପ୍ରମୋଦ ଲଭିଲେ ଭୂସୁର ନିକର ॥୩॥
କହନ୍ତି ମଧୁର ବାଣୀ ବ୍ରାହ୍ମଣ ଅନେକ । ଭୁବନ-ଆନନ୍ଦପ୍ରଦ ରାମ ଅଭିଷେକ ॥
ବିଳମ୍ବ ମୁନିପୁଙ୍ଗବ, ଏବେ ନ କରନ୍ତୁ । ମହାରାଜଙ୍କର ରାଜ-ତିଳକ କରନ୍ତୁ ॥୪॥

---

ଓ ଶ୍ରୀରାମଙ୍କଠାରୁ ସେମାନଙ୍କ ବିରହ ରବି । ଏହି ବିରହ-ରବିର ଉତ୍ତାପରେ ସେମାନେ ମଉଳି ଯାଇଥିଲେ । ଏବେ ବିରହ-ରବି ଅସ୍ତ ହୁଅନ୍ତେ ଶ୍ରୀରାମ-ପୂର୍ଣ୍ଣଚନ୍ଦ୍ରଙ୍କୁ ନିରୀକ୍ଷଣ କରି ସେମାନେ ବିକଶିତ ହୋଇ ଉଠିଲେ ॥ ୯ (କ) ॥ ନାନା ପ୍ରକାର ଶୁଭଲକ୍ଷଣ ଦେଖା-ଦେଉଥାଏ, ଆକାଶରେ ନିଷାଣ ବାଜୁଥାଏ । ନଗରର ପୁରୁଷ ଓ ସ୍ତ୍ରୀମାନଙ୍କୁ ସନାଥ (ଦର୍ଶନ ଯୋଗେ କୃତାର୍ଥ) କରି ଭଗବାନ୍ ଶ୍ରୀରାମଚନ୍ଦ୍ର ମହଲକୁ ଚଳିଲେ ॥ ୯ (ଖ) ॥
ଚୌପାଈ :—ଶିବ କହନ୍ତି, "ହେ ଭବାନି ! ପ୍ରଭୁ ଜାଣିଲେ ଯେ, ମାତା କୈକେୟୀ ଲଜ୍ଜିତ ହୋଇ ପଡ଼ିଛନ୍ତି । ଏଣୁ ସେ ପ୍ରଥମେ ତାଙ୍କର ମହଲକୁ ଗଲେ ଏବଂ ତାହାଙ୍କୁ ବୁଝାଇ-ସୁଝାଇ ଅତ୍ୟନ୍ତ ସୁଖୀ କଲେ । ତତ୍ପରେ ଶ୍ରୀହରି ନିଜ ମହଲକୁ ଗମନ କଲେ ।" ॥ ୧ ॥ କୃପାସାଗର ଶ୍ରୀରାମ ନିଜ ମହଲକୁ ଯିବାବେଳେ ନଗରର ନରନାରୀ-ମାନେ ସମସ୍ତେ ସୁଖୀ ହେଲେ । ଗୁରୁ ବଶିଷ୍ଠ ବ୍ରାହ୍ମଣମାନଙ୍କୁ ଡକାଇଲେ ଏବଂ କହିଲେ, "ଆଜି ଶୁଭ ଘଡ଼ି, ସୁନ୍ଦର ଦିବସ ଆଦି ସବୁ ଶୁଭ ଯୋଗ ଅଛି ॥ ୨ ॥ ଆପଣ ସମସ୍ତ

ତବ ମୁନି କହେଉ ସୁମନ୍ତ୍ର ସନ ସୁନତ ଚଲେଉ ହରଷାଇ ।
ରଥ ଅନେକ ବହୁ ବାଜି ଗଜ ତୁରତ ସଁୱାରେ ଜାଇ ॥୧୦(କ)॥
ଜହଁ ତହଁ ଧାୱନ ପଠଇ ପୁନି ମଙ୍ଗଲ ଦ୍ରବ୍ୟ ମଗାଇ ।
ହରଷ ସମେତ ବଶିଷ୍ଠପଦ ପୁନି ସିରୁ ନାୟଉ ଆଇ ॥୧୦(ଖ)॥

## ନବାହ୍ନପାରାୟଣ, ଅଷ୍ଟମ ବିଶ୍ରାମ

ଅୱଧପୁରୀ ଅତି ରୁଚିର ବନାଈ । ଦେବନ୍ହ ସୁମନ ବୃଷ୍ଟି ଝରି ଲାଈ ॥
ରାମ କହା ସେବକନ୍ହ ବୁଲାଈ । ପ୍ରଥମ ସଖନ୍ହ ଅନ୍ହୱାୱହୁ ଜାଈ ॥୧॥
ସୁନତ ବଚନ ଜହଁ ତହଁ ଜନ ଧାଏ । ସୁଗ୍ରୀବାଦି ତୁରତ ଅନ୍ହୱାଏ ॥
ପୁନି କରୁନାନିଧି ଭରତୁ ହଁକାରେ । ନିଜ କର ରାମ ଜଟା ନିରୁଆରେ ॥୨॥

---

ସୁମନ୍ତ୍ରଙ୍କୁ ପୁଣି ଆଦେଶନ୍ତେ ମୁନି ହରଷେ ସେହୁ ଚଳିଲେ ।
ବହୁ ଗଜ ରଥ ତୁରଙ୍ଗ ଅମିତ ସକଳ ଯାଇ ସାଜିଲେ ॥୧୦ (କ)॥
ଯେଣେ ତେଣେ ଦୂତ ପ୍ରେରି ମନ୍ତ୍ରିବର ଶୁଭବସ୍ତୁ ମଗାଇଲେ ॥
ପୁଣି ହରଷଭରେ ବଶିଷ୍ଠ ପଦରେ ଆସି ପ୍ରଣାମ କରିଲେ ॥୧୦ (ଖ)॥

ଅତି ରୁଚିର ଅଯୋଧ୍ୟା ପୁରୀ ସଜାଇଲେ । ବିବୁଧେ ସୁମନ ବୃଷ୍ଟି ଝଡି ଲଗାଇଲେ ॥
ରାମ ସବୁ ସେବକଙ୍କୁ କହିଲେ ବୁଝାଇ । ସଖାଙ୍କୁ ସ୍ନାନ କରାଅ ପ୍ରଥମରେ ଯାଇ ॥୧॥
ଆଜ୍ଞା ଶିରୋଧାର୍ଯ୍ୟ କରି ସମସ୍ତେ ଧାଇଁଲେ । ସୁଗ୍ରୀବ ଆଦିଙ୍କୁ ଶୀଘ୍ର ସ୍ନାନ କରାଇଲେ ॥
ପୁଣି ଭରତଙ୍କୁ ଡାକି ରାମ କୃପାକର । ନିଜ କରେ ଫିଟାଇଲେ ଜଟା ତାହାଙ୍କର ॥୨॥

---

ବ୍ରାହ୍ମଣ ଆନନ୍ଦିତ ହୋଇ ଆଜ୍ଞା ଦିଅନ୍ତୁ—ଶ୍ରୀରାମ ସିଂହାସନ ଉପରେ ବିରାଜମାନ ହୁଅନ୍ତୁ । ବଶିଷ୍ଠ ମୁନିଙ୍କ ସୁନ୍ଦର ବଚନ ଶୁଣି ବ୍ରାହ୍ମଣମାନେ ଅତି ଆନନ୍ଦିତ ହେଲେ ॥୩॥ ଅନେକ ବ୍ରାହ୍ମଣ କୋମଳ ବଚନ କହିବାକୁ ଲାଗିଲେ, "ଶ୍ରୀରାମଙ୍କ ରାଜ୍ୟାଭିଷେକ ସମଗ୍ର ଜଗତର ଆନନ୍ଦଦାୟକ । ହେ ମୁନିବର ! ଏବେ ଆଉ ବିଳମ୍ବ କରନ୍ତୁ ନାହିଁ ଏବଂ ମହାରାଜଙ୍କର ରାଜ୍ୟାଭିଷେକ ଶୀଘ୍ର କରନ୍ତୁ ।" ॥ ୪ ॥ ଦୋହା :—ତଦନନ୍ତର ମୁନି ସୁମନ୍ତ୍ରଙ୍କୁ ଏହି ବିଷୟ କହିଲେ । ସୁମନ୍ତ୍ର ଶୁଣିବା ମାତ୍ରେ ଆନନ୍ଦିତ ହୋଇ ଚାଲିଲେ । ସେ ଅନେକ ରଥ, ଅଶ୍ୱ ଓ ହସ୍ତୀଙ୍କୁ ସୁସଜ୍ଜିତ କଲେ ॥ ୧୦ (କ) ॥ ବିଭିନ୍ନ ସ୍ଥାନକୁ ସନ୍ଦେଶ-ବାହକ ଦୂତମାନଙ୍କୁ ପ୍ରେରଣ କଲେ ଏବଂ ମାଙ୍ଗଳିକ ଦ୍ରବ୍ୟମାନ ମଗାଇଲେ । ତତ୍ପରେ ସେ ଆସି ଆନନ୍ଦରେ ବଶିଷ୍ଠଙ୍କ ଚରଣତଳେ ଶିର ନୁଆଁଇଲେ ॥ ୧୦ (ଖ) ॥ ଚୌପାଇ :—ଅଯୋଧ୍ୟାପୁରୀକୁ ସୁସଜ୍ଜିତ କରାଗଲା । ଦେବତାମାନେ ପୁଷ୍ପବୃଷ୍ଟିର ଝଡି ଲଗାଇଦେଲେ । ଶ୍ରୀରାମଚନ୍ଦ୍ର ସେବକମାନଙ୍କୁ କହିଲେ, "ତୁମ୍ଭେମାନେ ଯାଇ ପ୍ରଥମେ ମୋର ସଖାମାନଙ୍କୁ ସ୍ନାନ କରାଅ ।" ॥ ୧ ॥ ଭଗବାନଙ୍କ ବଚନ ଶୁଣିବା ମାତ୍ରେ ସେବକମାନେ ଏଣେ ତେଣେ ଧାଇଁଲେ ଏବଂ ତୁରନ୍ତ ସେମାନେ

ଅନ୍ହୱାଏ ପ୍ରଭୁ ତୀନିଉଁ ଭାଈ । ଭଗତବଛଲ କୃପାଲ ରଘୁରାଈ ॥
ଭରତ ଭାଗ୍ୟ ପ୍ରଭୁ କୋମଲତାଈ । ସେଷ କୋଟି ସତ ସକହିଁ ନ ଗାଈ ॥୩॥
ପୁନି ନିଜ ଜଟା ରାମ ବିବରାଏ । ଗୁର ଅନୁସାସନ ମାଗି ନହାଏ ॥
କରି ମଜ୍ଜନ ପ୍ରଭୁ ଭୂଷନ ସାଜେ । ଅଂଗ ଅନଂଗ ଦେଖି ସତ ଲାଜେ ॥୪॥
ସାସୁହ୍ନ ସାଦର ଜାନକିହି ମଜ୍ଜନ ତୁରତ କରାଇ ।
ଦିବ୍ୟ ବସନ ବର ଭୂଷନ ଅଁଗ ଅଁଗ ସଜେ ବନାଇ ॥୧୧(କ)॥
ରାମ ବାମ ଦିସି ସୋଭତି ରମା ରୂପ ଗୁନ ଖାନି ।
ଦେଖି ମାତୁ ସବ ହରଷୀଂ ଜନ୍ମ ସୁଫଲ ନିଜ ଜାନି ॥୧୧(ଖ)॥
ସୁନୁ ଖଗେସ ତେହିଁ ଅବସର ବ୍ରହ୍ମା ସିବ ମୁନିବୃନ୍ଦ ।
ଚଢ଼ି ବିମାନ ଆଏ ସବ ସୁର ଦେଖନ ସୁଖକଂଦ ॥୧୧(ଗ)॥

---

ତିନି ଭାଇଙ୍କୁ ଆବର କରାଇଲେ ସ୍ନାନ । ଭକତ-ବତ୍ସଲ ପ୍ରଭୁ କରୁଣା-ନିଧାନ ॥
ଭରତ ଭାଗ୍ୟ ପ୍ରଭୁଙ୍କ କୋମଳତା ଅତି । ଗାଇ ନ ପାରିବେ କୋଟି ଶେଷ ସରସ୍ୱତୀ ॥୩॥
ପୁଣି ରଘୁନାଥ ନିଜ ଜଟା ଫିଟାଇଲେ । ମୁନିଙ୍କ ଆଦେଶ ପାଇ ସ୍ନାହାନ କରିଲେ ॥
ସମାପି ସ୍ନାନ ଭୂଷଣେ ହୋଇଲେ ଭୂଷିତ । ଶ୍ରୀଅଙ୍ଗେ କୋଟି ଅନଙ୍ଗ ହୁଅନ୍ତି ଲଜ୍ଜିତ ॥୪॥
ଶାଶୁମାନେ ତ୍ୱରେ ସୀତାଙ୍କୁ ସାଦରେ ନେଇ ସ୍ନାନ କରାଇଲେ ।
ସୁନ୍ଦର ବସନ ଦିବ୍ୟ ଆଭରଣ ଅଙ୍ଗେ ଅଙ୍ଗେ ସଜାଇଲେ ॥୧୧(କ)॥
ରାମ ବାମ ଭାଗେ ଶୋଭନ୍ତି ସରାଗେ ରମା ରୂପ-ଗୁଣ-ଖଣି ।
ଅବଲୋକି ସାଜ ମୁଦିତ ସମାଜ ଜନମ ସୁଫଳ ମଣି ॥୧୧(ଖ)॥
ଶୁଣ ହେ ଖଗେଶ, ସେ କାଳେ ମହେଶ, ବିଧି, ଜ୍ଞାନୀ ମୁନିବୃନ୍ଦ ।
ଆସିଲେ ବିମାନେ ଚଢି ସୁରଗଣେ ଦରଶନେ ସୁଖକନ୍ଦ ॥୧୧(ଗ)॥

---

ସୁଗ୍ରୀବାଦିଙ୍କୁ ସ୍ନାନ କରାଇଲେ । ପୁଣି କରୁଣା-ନିଧାନ ଶ୍ରୀରାମ ଭରତଙ୍କୁ ଡକାଇଲେ ଏବଂ ଆପଣା ହସ୍ତରେ ତାଙ୍କର ଜଟା ସଜାଡିଦେଲେ ॥ ୨ ॥ ତଦନନ୍ତର ଭକ୍ତବତ୍ସଳ କୃପାଳୁ ପ୍ରଭୁ ଶ୍ରୀ ରଘୁନାଥ ତିନି ଭାଇଙ୍କୁ ସ୍ନାନ କରାଇଲେ । ଶତ କୋଟି ଶେଷ ସୁଦ୍ଧା ଭରତଙ୍କ ଭାଗ୍ୟ ଓ ପ୍ରଭୁଙ୍କ କୋମଳତା ବର୍ଣ୍ଣନା କରି ପାରିବେ ନାହିଁ ॥ ୩ ॥ ପୁଣି ଶ୍ରୀରାମ ଆପଣା ଜଟାଗୁଡ଼ିକ ଖୋଲିଲେ ଏବଂ ଗୁରୁଙ୍କ ଆଜ୍ଞା ମାଗି ସ୍ନାନ କଲେ । ସ୍ନାନ କରି ପ୍ରଭୁ ଆଭୂଷଣ ଧାରଣ କଲେ । ତାଙ୍କ ସୁଶୋଭିତ ଅଙ୍ଗାବଳୀ ଦେଖି ଶତ ଶତ କାମଦେବ ସୁଦ୍ଧା ଲଜ୍ଜିତ ହେଲେ ॥ ୪ ॥ ଦୋହା :—ଏଣେ ଶାଶୁମାନେ ଜାନକୀଙ୍କୁ ଆଦର ସହକାରେ ତୁରନ୍ତ ସ୍ନାନ କରାଇଲେ ଏବଂ ତାଙ୍କର ପ୍ରତ୍ୟେକ ଅଙ୍ଗରେ ଦିବ୍ୟ ବସ୍ତ୍ର ଓ ଶ୍ରେଷ୍ଠ ଭୂଷଣ ଉତ୍ତମ ରୂପେ ସଜାଇ ଦେଲେ ॥ ୧୧ (କ) ॥ ଶ୍ରୀରାମଙ୍କ ବାମପାର୍ଶ୍ୱରେ ରୂପ-ଗୁଣ-ଖଣି ରମା (ଶ୍ରୀ ଜାନକୀ) ଶୋଭିତ ହେଉଥାଆନ୍ତି । ଯୁଗଳ ମୂର୍ତ୍ତିଙ୍କୁ ଦେଖି ସମସ୍ତ ମାତା ନିଜ ନିଜ ଜନ୍ମ ସଫଳ ମନେ କରି ଆନନ୍ଦିତ ହେଉ-

ପ୍ରଭୁ ବିଲୋକି ମୁନି ମନ ଅନୁରାଗା । ତୁରତ ଦିବ୍ୟ ସିଂଘାସନ ମାଗା ॥
ରବି ସମ ତେଜ ସୋ ବରନି ନ ଜାଈ । ବୈଠେ ରାମ ଦ୍ୱିଜନ୍ହ ସିରୁ ନାଈ ॥୧॥
ଜନକସୁତା ସମେତ ରଘୁରାଈ । ପେଖି ପ୍ରହରଷେ ମୁନି ସମୁଦାଈ ॥
ବେଦମନ୍ତ୍ର ତବ ଦ୍ୱିଜନ୍ହ ଉଚାରେ । ନଭ ସୁର ମୁନି ଜୟ ଜୟତି ପୁକାରେ ॥୨॥
ପ୍ରଥମ ତିଲକ ବସିଷ୍ଠ ମୁନି କୀହ୍ନା । ପୁନି ସବ ବିପ୍ରହ୍ନ ଆୟସୁ ଦୀହ୍ନା ॥
ସୁତ ବିଲୋକି ହରଷୀଁ ମହତାରୀ । ବାର ବାର ଆରତୀ ଉତାରୀ ॥୩॥
ବିପ୍ରହ୍ନ ଦାନ ବିବିଧ ବିଧି ଦୀହ୍ନେ । ଜାଚକ ସକଲ ଅଜାଚକ କୀହ୍ନେ ॥
ସିଂଘାସନ ପର ତ୍ରିଭୁଅନସାଈଁ । ଦେଖି ସୁରହ୍ନ ଦୁଂଦୁଭୀଁ ବଜାଈଁ ॥୪॥

---

ପ୍ରଭୁଙ୍କୁ ବିଲୋକି ମୁନି ଅନୁରାଗ ମନ । ସେହିକ୍ଷଣି ମଗାଇଲେ ଦିବ୍ୟ ସିଂହାସନ ॥
ଦିନକର ସମ ତେଜ ନ ହୁଅଇ ବର୍ଣ୍ଣି । ବସିଲେ ରଘୁନାୟକ ବିପ୍ରଙ୍କୁ ପ୍ରଣମି ॥୧॥
ଜନକସୁତା ସମେତ ପ୍ରଭୁ ରଘୁରାଜେ । ଦେଖି ପ୍ରମୋଦ ବଢିଲା ମୁନିଙ୍କ ସମାଜେ ॥
ବେଦ ମନ୍ତ୍ର ଉଚ୍ଚାରଣ ଭୂସୁରେ କରନ୍ତି । ନଭେ ସୁର ମୁନି 'ଜୟ ଜୟେତି' ଭଣନ୍ତି ॥୨॥
ପ୍ରଥମେ ବଶିଷ୍ଠ ମୁନି ତିଲକ କରିଲେ । ପୁଣି ବିପ୍ର-ସମୂହଙ୍କୁ ଆଜ୍ଞା ପ୍ରଦାନିଲେ ॥
ସୁତଙ୍କୁ ବିଲୋକି ମାତା ପ୍ରସନ୍ନ ମନରେ । ବାରମ୍ବାର ବନ୍ଦାପନା କରନ୍ତି ସାଦରେ ॥୩॥
ଅନେକ ପ୍ରକାର ଦାନ ଦେଲେ ବ୍ରାହ୍ମଣଙ୍କୁ । ଅଯାଚକ କଲେ ପୁଣି ଯାଚକଗଣଙ୍କୁ ॥
ସିଂହାସନ ପରେ ବିଜେ ତ୍ରିଭୁବନେଶ୍ୱର । ଦେଖି ଦୁନ୍ଦୁଭି ବଜାନ୍ତି ବିବୁଧ ନିକର ॥୪॥

---

ଥିଆନ୍ତି ॥ ୧୧ (ଖ) ॥ କାକ ଭୁଶୁଣ୍ଡି କହନ୍ତି, "ହେ ପକ୍ଷିରାଜ ଗରୁଡ ! ଶୁଣନ୍ତୁ; ସେହି ସମୟରେ ବ୍ରହ୍ମା, ଶିବ ଓ ମୁନିବୃନ୍ଦ ଏବଂ ବିମାନାରୂଢ ସମସ୍ତ ଦେବତା ଆନନ୍ଦକନ୍ଦ ଭଗବାନ୍‌ଙ୍କ ଦର୍ଶନ କରିବା ନିମନ୍ତେ ଆସିଲେ ॥ ୧୧ (ଗ) ॥ ଚୌପାଈ .—ପ୍ରଭୁଙ୍କୁ ଦେଖି ମୁନି ବଶିଷ୍ଠଙ୍କ ମନରେ ପ୍ରେମ ଭରି ଆସିଲା । ସେ ତୁରନ୍ତ ଦିବ୍ୟ ସିଂହାସନ ମଗାଇଲେ । ତାହା ସୂର୍ଯ୍ୟଙ୍କ ତେଜ ସମାନ ତେଜସ୍ୱୀନ୍ ଥିଲା । ତାହାର ସୌନ୍ଦର୍ଯ୍ୟ ବର୍ଣ୍ଣନା କରାଯାଇ ନ ପାରେ । ବ୍ରାହ୍ମଣମାନଙ୍କୁ ଶିର ନୁଆଁଇ ଶ୍ରୀରାମଚନ୍ଦ୍ର ତହିଁ ଉପରେ ବିରାଜମାନ ହେଲେ ॥ ୧ ॥ ଶ୍ରୀ ଜାନକୀଙ୍କ ସହିତ ଶ୍ରୀ ରଘୁନାଥଙ୍କୁ ଦେଖି ମୁନିବୃନ୍ଦ ଅତିଶୟ ଆନନ୍ଦିତ ହେଲେ । ସେତେବେଳେ ବ୍ରାହ୍ମଣମାନେ ବେଦ ମନ୍ତ୍ରମାନ ଉଚ୍ଚାରଣ କଲେ । ଆକାଶରେ ଦେବତା ଓ ମୁନିମାନେ 'ଜୟ ହେଉ, ଜୟ ହେଉ'—ଏହିପରି ଧ୍ୱନି କରିବାକୁ ଲାଗିଲେ ॥ ୨ ॥ ସର୍ବପ୍ରଥମେ ମୁନି ବଶିଷ୍ଠ ପ୍ରଭୁଙ୍କୁ ଅଭିଷିକ୍ତ କଲେ । ତଦନନ୍ତର ସେ ଅନ୍ୟ ବ୍ରାହ୍ମଣମାନଙ୍କୁ ପ୍ରଭୁଙ୍କ ଅଭିଷେକ କରିବା ନିମନ୍ତେ ଆଜ୍ଞା ଦେଲେ । ପୁତ୍ରଙ୍କୁ ରାଜସିଂହାସନ ଉପରେ ବିରାଜମାନ ହେବାର ଦେଖି ମାତାମାନେ ଆନନ୍ଦିତ ହେଲେ ଏବଂ ସେମାନେ ବାରମ୍ବାର ଆରତି-ବନ୍ଦାପନା କଲେ ॥ ୩ ॥ ସେମାନେ ବ୍ରାହ୍ମଣମାନଙ୍କୁ ବିବିଧ ଦାନ ଦେଲେ ଏବଂ ସମସ୍ତ ଯାଚକଙ୍କୁ ଅଯାଚକ କରି ଦେଲେ । (ଅର୍ଥାତ୍ ଧନବାନ୍ କରି ଦେଲେ) । ତ୍ରିଭୁବନ-ସ୍ୱାମୀ ଶ୍ରୀରାମଚନ୍ଦ୍ରଙ୍କୁ

ନଭ ଦୁନ୍ଦୁଭୀଁ ବାଜହିଁ ବିପୁଲ ଗଂଧର୍ବ କିଂନର ଗାଵହୀଁ ।
ନାଚହିଁ ଅପଛରାବୃନ୍ଦ ପରମାନନ୍ଦ ସୁର ମୁନି ପାଵହୀଁ ॥
ଭରତାଦି ଅନୁଜ ବିଭୀଷନାଂଗଦ ହନୁମଦାଦି ସମେତ ତେ ।
ଗହେଁ ଛତ୍ର ଚାମର ବ୍ୟଜନ ଧନୁ ଅସି ଚର୍ମ ସକ୍ତି ବିରାଜତେ ॥୧॥

ଶ୍ରୀ ସହିତ ଦିନକର ବଂସ ଭୂଷନ କାମ ବହୁ ଛବି ସୋହଈ ।
ନବ ଅଂବୁଧର ବର ଗାତ ଅମ୍ବର ପୀତ ସୁର ମନ ମୋହଈ ॥
ମୁକୁଟାଂଗଦାଦି ବିଚିତ୍ର ଭୂଷନ ଅଂଗ ଅଂଗନ୍ହି ପ୍ରତି ସଜେ ।
ଅଂଭୋଜ ନୟନ ବିସାଲ ଉର ଭୁଜ ଧନ୍ୟ ନର ନିରଖଂତି ଜେ ॥୨॥

ଓହି ସୋଭା ସମାଜ ସୁଖ କହତ ନ ବନଇ ଖଗେସ ।
ବରନହିଁ ସାରଦ ସେଷ ଶ୍ରୁତି ସୋ ରସ ଜାନ ମହେସ ॥୧୨(କ)॥

---

ବାଜେ ଦୁନ୍ଦୁଭି ନଭେ ଅଗଣିତ ଗନ୍ଧର୍ବ କିନ୍ନରେ ଗାୟନ କରନ୍ତି ।
ଲଭନ୍ତି ସୁର ମୁନି ପରମାନନ୍ଦ ପୁଣି ଅପ୍‌ସରା ସମୂହ ନାଚନ୍ତି ।
ଅନୁଜେ ଲଙ୍କେଶ ବିନୀତ, ଅଙ୍ଗଦ ମାରୁତି ସହିତ,
ଧରି ଛତ୍ର ଚାମର ବ୍ୟଞ୍ଜନ ଧନୁଶର କୃପାଣ ଶକ୍ତି ବିରାଜିତ ॥୧॥

ଶ୍ରୀ ସହ ଦିନକର-କୁଳ-ଭୂଷଣଠାରେ ଅସଂଖ୍ୟ ମଦନ ଶୋହନ୍ତି ।
ନବ ନୀରଦ ବର ବପୁ ପୀତ ଅମ୍ବର ନିରେଖି ଅମରେ ମୋହନ୍ତି ।
ମୁକୁଟ ବାହୁଟି ଭୂଷଣ, ପ୍ରତି ଅଙ୍ଗରେ ସୁଶୋଭନ,
ଅମ୍ବୁଜ ବିଲୋଚନ ବକ୍ଷ ବାହୁ ବିସ୍ତୀର୍ଣ୍ଣ, ଯେ ନର ନିରେଖଇ ଧନ୍ୟ ॥୨॥

ସେହି ଶୋଭାସାଜ ସୁଖ ସୁସମାଜ କହି ନୋହେ, ଖଗେଶ୍ୱର ।
ବଖାଣନ୍ତି ଶ୍ରୁତି ଶେଷ ସରସ୍ୱତୀ, ସେ ରସ ଜାଣନ୍ତି ହର ॥୧୨(କ)॥

---

ସିଂହାସନ ଉପରେ ବିରାଜିତ ଦେଖି ଦେବତାମାନେ ଦୁନ୍ଦୁଭି ବଜାଇଲେ ॥ ୪ ॥
ଛନ୍ଦ :—ଆକାଶରେ ଦୁନ୍ଦୁଭିମାନ ବାଜୁଥାଏ । ଗନ୍ଧର୍ବ ଓ କିନ୍ନରମାନେ ସଂଗୀତ ଗାନ କରୁଥା'ନ୍ତି । ଅପ୍‌ସରାଗଣ ଦଳ ଦଳ ହୋଇ ନୃତ୍ୟ କରୁଥା'ନ୍ତି । ଦେବତା ଓ ମୁନିମାନେ ପରମାନନ୍ଦ ଲାଭ କରୁଥା'ନ୍ତି । ଅନୁଜ ଭରତ, ଲକ୍ଷ୍ମଣ ଓ ଶତ୍ରୁଘ୍ନ ବିଭୀଷଣ, ଅଙ୍ଗଦ, ହନୁମାନ୍ ଓ ସୁଗ୍ରୀବ ଆଦିଙ୍କ ସହିତ ଯଥାକ୍ରମେ ଛତ୍ର, ଚାମର, ବ୍ୟଜନ, ଧନୁ, ତରବାରି, ଢାଲ ଓ ଶକ୍ତି ଧରି ସୁଶୋଭିତ ହେଉଥା'ନ୍ତି ॥ ୧ ॥ ଶ୍ରୀ ସୀତା ସମେତ ସୂର୍ଯ୍ୟବଂଶ-ବିଭୂଷଣ ଶ୍ରୀରାମଙ୍କ ଶରୀରରେ ଅନେକ କାମଦେବଙ୍କ ଛବି ଶୋଭା ପାଉଥାଏ । ପ୍ରଭୁଙ୍କ ନବୀନ ନୀରଦ ସମାନ ମନୋରମ ଶ୍ୟାମ ଶରୀର ଉପରେ ପୀତାମ୍ବର ଶୋଭା ପାଉଥାଏ ଏବଂ ତାହା ଦେବତାମାନଙ୍କ ମନକୁ ସୁଦ୍ଧା ବିମୋହିତ କରୁଥାଏ । ମୁକୁଟ, ତାଡଙ୍କ ଆଦି ବିଚିତ୍ର ଭୂଷଣ ପ୍ରତ୍ୟେକ ଅଙ୍ଗରେ ସୁଶୋଭିତ । କମଳ ସମାନ ନେତ୍ର, ବିଶାଳ ବକ୍ଷ ଓ

ଭିନ୍ନ ଭିନ୍ନ ଅସ୍ତୁତି କରି ଗଏ ସୁର ନିଜ ନିଜ ଧାମ ।
ବଂଦୀ ବେଷ ବେଦ ତବ ଆଏ ଜହଁ ଶ୍ରୀରାମ ॥୧୨(ଖ)॥

ପ୍ରଭୁ ସର୍ବଗ୍ୟ କୀହ୍ନ ଅତି ଆଦର କୃପାନିଧାନ ।
ଲଖେଉ ନ କାହୁଁ ମରମ କଛୁ ଲଗେ କରନ ଗୁନ ଗାନ ॥୧୨(ଗ)॥

ଜୟ ସଗୁନ ନିର୍ଗୁନ ରୂପ ରୂପ ଅନୂପ ଭୂପ ସିରୋମନେ ।
ଦସକଂଧରାଦି ପ୍ରଚଣ୍ଡ ନିସିଚର ପ୍ରବଲ ଖଲ ଭୁଜବଲ ହନେ ॥
ଅବତାର ନର ସଂସାରଭାର ବିଭଂଜି ଦାରୁନ ଦୁଖ ଦହେ ।
ଜୟ ପ୍ରନତପାଲ ଦୟାଲ ପ୍ରଭୁ ସଂଜୁକ୍ତ ସକ୍ତି ନମାମହେ ॥୧॥

---

ଭିନ୍ନ ଭିନ୍ନ ଭାବେ ସ୍ତୁତି କରି ଦେବେ ଗଲେ ନିଜ ନିଜ ଧାମ ।
ବନ୍ଦୀ ବେଶ ଧରି ତହୁଁ ବେଦ ଗୁରି ଆସିଲେ ଯହିଁ ଶ୍ରୀରାମ ॥୧୨(ଖ)॥
ଅତ୍ୟନ୍ତ ଆଦର କଲେ ରଘୁବର ସର୍ବଜ୍ଞ କୃପାନିଧାନ ।
କାହାକୁ ଜଣା ନ ପଡିଲା ମରମ, ଗୁଣାବଳୀ କଲେ ଗାନ ॥୧୨(ଗ)॥

ଜୟ ରାମ ନିର୍ଗୁଣ ସଗୁଣ ଅନୁପମ ସ୍ୱରୂପ ନୃପ-ଶିରୋମଣି ।
ରାବଣାଦି ପ୍ରବଳ ପ୍ରଚଣ୍ଡ ଦୈତ୍ୟ ଖଳ ଦଳିଲ ଭୁଜବଳେ ଜିଣି ।
ଧରିଣ ନର ଅବତାର, ଭଞ୍ଜିଲ ସଂସାରର ଭାର,
ଜୟ ପ୍ରଣତପାଳ, ଦୟାଳୁ ପ୍ରଭୁବର, ସଶକ୍ତି କରୁ ନମସ୍କାର ॥୧॥

---

ଲମ୍ବ ବାହୁ, ଯେଉଁମାନେ ତାଙ୍କ ଦର୍ଶନ ଲାଭ କରନ୍ତି, ସେମାନେ ଧନ୍ୟ ॥ ୬ ॥ ଦୋହା :—ହେ ପକ୍ଷିରାଜ ଗରୁଡ ! ଉକ୍ତ ଶୋଭା, ସମାଜ ଓ ସୁଖ ମୋ ଦ୍ୱାରା କହି ହେଉ ନାହିଁ । ସରସ୍ୱତୀ, ଶେଷ ଓ ବେଦ ନିରନ୍ତର ସେ ସବୁ ବର୍ଣ୍ଣନା କରିପାରନ୍ତି ଏବଂ କେବଳ ମହାଦେବହିଁ ଉକ୍ତ ରସ (ଆନନ୍ଦ) ବିଷୟ ଜାଣନ୍ତି ॥ ୧୨ (କ) ॥ ସମସ୍ତ ଦେବତା ଭିନ୍ନ ଭିନ୍ନ ସ୍ତୁତି କରି ଆପଣା ଆପଣା ଲୋକକୁ ଚାଲିଗଲେ । ସେତେବେଳେ ଶ୍ରୀରାମ ଥିବା ସ୍ଥାନକୁ ଭାଟମାନଙ୍କ ରୂପ ଧାରଣ କରି ଚାରି ବେଦ ଆଗମନ କଲେ ॥ ୧୨ (ଖ) ॥ କୃପାନିଧାନ ସର୍ବଜ୍ଞ ପ୍ରଭୁ ସେମାନଙ୍କୁ ଚିହ୍ନି ସେମାନଙ୍କର ବହୁତ ଆଦର-ସତ୍କାର କଲେ । ଏହାର ରହସ୍ୟ କେହି ଜାଣି ପାରିଲେ ନାହିଁ । ବେଦମାନେ ଗୁଣଗାନ କରିବାକୁ ଲାଗିଲେ ॥ ୧୨ (ଗ) ॥ ଛନ୍ଦ :—"ହେ ସଗୁଣ ଓ ନିର୍ଗୁଣରୂପ ! ହେ ଅନୁପମ-ରୂପ-ଲାବଣ୍ୟଯୁକ୍ତ ! ହେ ଭୂପଶିରୋମଣି ! ଆପଣଙ୍କର ଜୟ ହେଉ । ଆପଣ ରାବଣ ଆଦି ପ୍ରଚଣ୍ଡ, ପ୍ରବଳ ଓ ଦୁଷ୍ଟ ନିଶାଚରଗଣଙ୍କୁ ଆପଣା ବାହୁ-ବଳରେ ବଧ କଲେ । ଆପଣ ମନୁଷ୍ୟ ଅବତାର ଗ୍ରହଣ-ପୂର୍ବକ ସଂସାରର ଭାରକୁ ନଷ୍ଟ କରି ଅତ୍ୟନ୍ତ କଠୋର ଦୁଃଖମାନ ଭସ୍ମ କରି ଦେଲେ । ହେ ଦୟାଳୁ ! ହେ ଶରଣାଗତ-ରକ୍ଷକ ପ୍ରଭୋ ! ଆପଣଙ୍କର ଜୟ ହେଉ । ଶକ୍ତି (ସୀତା)ଙ୍କ ସହିତ ଶକ୍ତିମାନ୍ ପ୍ରଭୁଙ୍କୁ

ତବ ବିଷମ ମାୟା ବସ ସୁରାସୁର ନାଗ ନର ଅଗ ଜଗ ହରେ ।
ଭବ ପନ୍ଥ ଭ୍ରମତ ଅମିତ ଦିବସ ନିସି କାଲ କର୍ମ ଗୁନନି ଭରେ ॥
ଜେ ନାଥ କରି କରୁନା ବିଲୋକେ ତ୍ରିବିଧି ଦୁଖ ତେ ନିର୍ବହେ ।
ଭବ ଖେଦ ଛେଦନ ଦଚ୍ଛ ହମ କହୁଁ ରଚ୍ଛ ରାମ ନମାମହେ ॥୨॥

ଜେ ଗ୍ୟାନ ମାନ ବିମତ୍ତ ତବ ଭବ ହରନି ଭକ୍ତି ନ ଆଦରୀ ।
ତେ ପାଇ ସୁର ଦୁର୍ଲଭ ପଦାଦପି ପରତ ହମ ଦେଖତ ହରୀ ॥
ବିସ୍ୱାସ କରି ସବ ଆସ ପରିହରି ଦାସ ତବ ଜେ ହୋଇ ରହେ ।
ଜପି ନାମ ତବ ବିନୁ ଶ୍ରମ ତରହିଁ ଭବ ନାଥ ସୋ ସମରାମହେ ॥୩॥

ଜେ ଚରନ ସିବ ଅଜ ପୂଜ୍ୟ ରଜ ସୁଭ ପରସି ମୁନିପତିନୀ ତରୀ ।
ନଖ ନିର୍ଗତା ମୁନି ବନ୍ଦିତା ତ୍ରୈଲୋକ ପାବନି ସୁରସରୀ ॥
ଧ୍ୱଜ କୁଲିସ ଅଂକୁସ କଂଜ ଜୁତ ବନ ଫିରତ କଂଟକ କିନ ଲହେ ।
ପଦ କଂଜ ଦ୍ୱଂଦ ମୁକୁଂଦ ରାମ ରମେସ ନିତ୍ୟ ଭଜାମହେ ॥୪॥

---

ସୁର ଅସୁର ନର ନାଗ ସଚରାଚର ତୁମ୍ଭ ବିଷମ ମାୟାଧୀନ ।
କରନ୍ତି କାଲ-ଗୁଣ-କର୍ମ-ବଶ ଭ୍ରମଣ ଭବ-ପଥରେ ନିଶି ଦିନ ॥
ଯାହାଙ୍କୁ କୃପାଦୃଷ୍ଟି କର, ତ୍ରିବିଧ ଦୁଃଖ ଦହେ ତାର,
ଭବ-ଖେଦ-ଛେଦନ-ଦକ୍ଷ ରଘୁନନ୍ଦନ, ଆମ୍ଭଙ୍କୁ ରକ୍ଷ, ନମସ୍କାର ॥୨॥

ଭବ-ଭୟ-ହାରିଣୀ ତୁମ୍ଭ ଭକ୍ତି ଯେ ଜ୍ଞାନୀ ମାନ-ବିମତ୍ତ ଅନାଦରେ ।
ସୁର ଦୁର୍ଲ୍ଲଭ ସ୍ଥାନ ଲଭି ସୁଦ୍ଧା ପତନ ହୁଏ ସେ, ଦେଖୁ ଆମ୍ଭେ, ହରେ ।
ଯେ ନର ବିଶ୍ୱାସ କରଇ, ନିଷ୍କାମ ସେବକ ହୁଅଇ,
ଜପିଣ ନାମ ତବ ଅକ୍ଲେଶେ ତରେ ଭବ, ସେ ନାଥେ ସତତ ସ୍ମରଇ ॥୩॥

ଯେଉଁ ଚରଣ ଅଜ ମହେଶ ପୂଜ୍ୟ, ରଜ ସ୍ପର୍ଶେ ତରିଲା ଋଷିପତ୍ନୀ ।
ନଖ କୋଣୁ ନିର୍ଗତା ସୁର-ମୁନି-ବନ୍ଦିତା ଜାହ୍ନବୀ ତ୍ରୈଲୋକ୍ୟ ପାବନୀ ।
ନଳିନ ବଜ୍ରାଙ୍କୁଶ ଧ୍ୱଜେ, ଶୋଭିତ, ବନେ ପଦବ୍ରଜେ,
ଲଭିଲେ ଯେ କଣ୍ଟକ ରାମ ରମାନାଥଙ୍କ ମୁକୁନ୍ଦ ପାଦପଦ୍ମ ଭଜେ ॥୪॥

---

ଆମ୍ଭେମାନେ ନମସ୍କାର କରୁଅଛୁ ॥୧॥ ହେ ହରେ ! ଆପଣଙ୍କ ଦୁସ୍ତର ମାୟାବଶତଃ ଦେବତା, ରାକ୍ଷସ, ନାଗ, ମନୁଷ୍ୟ ଓ ଚରାଚର ସମସ୍ତେ କାଳ-କର୍ମ-ଗୁଣ-ପରିପୂର୍ଣ୍ଣ ହୋଇ ଦିନ-ରାତି ସର୍ବଦା ଅସୀମ ଭବ-ମାର୍ଗରେ ଭ୍ରମନ୍ତି । ହେ ନାଥ ! ଏମାନଙ୍କ ମଧ୍ୟରୁ ଯେଉଁମାନଙ୍କୁ ଆପଣ କୃପାଦୃଷ୍ଟିରେ ଦେଖିଛନ୍ତି, ସେମାନେ ମାୟାଜନିତ ତ୍ରିବିଧ (ଆଧିଦୈବିକ, ଆଧିଭୌତିକ ଓ ଆଧ୍ୟାତ୍ମିକ) ଦୁଃଖରୁ ମୁକ୍ତ ହୋଇଛନ୍ତି । ହେ ଜନ୍ମ-ମରଣ-ଦୁଃଖ-ଛେଦନ-ଦକ୍ଷ ଶ୍ରୀରାମ ! ଆମ୍ଭମାନଙ୍କୁ ରକ୍ଷା କରନ୍ତୁ । ଆମ୍ଭେମାନେ ଆପଣଙ୍କୁ

ଅବ୍ୟକ୍ତମୂଲମନାଦି ତରୁ ତ୍ୱଚ ଚାରି ନିଗମାଗମ ଭନେ ।
ଷଟ କଂଧ ସାଖା ପଞ୍ଚ ବୀସ ଅନେକ ପର୍ନ ସୁମନ ଘନେ ॥
ଫଲ ଜୁଗଲ ବିଧି କଟୁ ମଧୁର ବେଲି ଅକେଲି ଜେହି ଆଶ୍ରିତ ରହେ ।
ପଲ୍ଲୱତ ଫୂଲତ ନୱଲ ନିତ ସଂସାର ବିଟପ ନମାମହେ ॥୫॥

ଜେ ବ୍ରହ୍ମ ଅଜମଦ୍ୱୈତମନୁଭବଗମ୍ୟ ମନପର ଧ୍ୟାୱହୀଁ ।
ତେ କହହୁଁ ଜାନହୁଁ ନାଥ ହମ ତବ ସଗୁନ ଜସ ନିତ ଗାୱହୀଁ ॥
କରୁନାୟତନ ପ୍ରଭୁ ସଦଗୁନାକର ଦେବ ୟହ ବର ମାଗହୀଁ ।
ମନ ବଚନ କର୍ମ ବିକାର ତଜି ତବ ଚରନ ହମ ଅନୁରାଗହୀଁ ॥୬॥

---

ଅବ୍ୟକ୍ତ ମୂଳ ବୃକ୍ଷ ଅନାଦି ଚାରି ତ୍ୱକ ନିଗମ ଆଗମ କଥିତ ।
ଛ' ସ୍କନ୍ଧ ଶାଖା ବଳି ପଞ୍ଚବିଂଶ ନିବିଡ ପର୍ଣ୍ଣ ସୁମନ ଅଗଣିତ ।
କଟୁମିଷ୍ଟ ଫଳ ଲତାର, ସେ ରହେ ଆଶ୍ରିତ ଯାହାର,
ପଲ୍ଲବ ପ୍ରସ୍ଫୁଟଇ ନିତ୍ୟ ନବ ଫଳଇ, ସଂସାର-ତରୁ, ନମସ୍କାର ।୫।

ଯେ ଅଦ୍ୱୈତ ଅଜନ୍ମ ସଦାନୁଭବ-ଗମ୍ୟ ମନ ଗୋଚର ବ୍ରହ୍ମ ଚିନ୍ତି ।
ସେ ଜାଣନ୍ତୁ ତେମନ୍ତ ଆମ୍ଭେ ତୁମ୍ଭର ନାଥ, ସଗୁଣ ଯଶ ଗାଉଁ ନିତି ।
ମାଗୁଛୁ ବର ବାରମ୍ବାର, କରୁଣାସିନ୍ଧୁ ଗୁଣାଗାର,
ମନ କର୍ମ ବଚନେ ହେଉ ତୁମ୍ଭ ଚରଣେ ଆମ୍ଭର ପ୍ରୀତି ନିର୍ବିକାର ।୬।

---

ନମସ୍କାର କରୁଅଛୁ ॥ ୨ ॥ ଯେଉଁମାନେ ମିଥ୍ୟାଜ୍ଞାନାଭିମାନରେ ବିଶେଷ ରୂପେ ଉନ୍ମତ୍ତ ହୋଇ ଭବ-ଭୟ-ହାରିଣୀ ଆପଣଙ୍କ ଭକ୍ତିର ଆଦର କରି ନାହାନ୍ତି, ହେ ହରି ! ସେମାନେ ଦେବଦୁର୍ଲ୍ଲଭ ବ୍ରହ୍ମାଦି ପଦ ଲାଭ କରି ସୁଦ୍ଧା ତହିଁରୁ ତଳେ ଖସି ପଡିବାର ଆମ୍ଭେମାନେ ଦେଖିଥାଉଁ । କିନ୍ତୁ ଯେଉଁମାନେ ସମସ୍ତ ଆଶା ତ୍ୟାଗ କରି ଆପଣଙ୍କ ଉପରେ ବିଶ୍ୱାସ ସ୍ଥାପନ କରି ଆପଣଙ୍କର ଦାସ ହୋଇ ରହନ୍ତି, ସେହିମାନେ କେବଳ ଆପଣଙ୍କର ନାମମାତ୍ର ଜପ କରି ଅନାୟାସରେ ଭବ-ସାଗରରୁ ତରିଯାଆନ୍ତି । ହେ ନାଥ ! ଏତାଦୃଶ ପ୍ରଭୁ ଆପଣଙ୍କୁ ଆମ୍ଭେମାନେ ସ୍ମରଣ କରୁଅଛୁ ॥ ୩ ॥ ଯେଉଁ ଚରଣଯୁଗଳ ଶିବ ଓ ବ୍ରହ୍ମାଙ୍କର ପୂଜ୍ୟ, ତଥା ଯେଉଁ ଚରଣର କଲ୍ୟାଣମୟ ରଜର ସ୍ପର୍ଶ ଲାଭ କରି ଶିଳା-ରୂପିଣୀ ଗୌତମ-ପତ୍ନୀ ଅହଲ୍ୟା ତରିଗଲେ, ଯେଉଁ ଚରଣ-ନଖରୁ ମୁନି-ବୃନ୍ଦ-ବନ୍ଦିତା, ତ୍ରିଭୁବନ-ପାବନୀ, ଅମର-ସରିତ ଗଙ୍ଗା ଉତ୍ପନ୍ନ ଏବଂ ଧ୍ୱଜ-ବଜ୍ରାଙ୍କୁଶ-କମଳ-ଚିହ୍ନିତ ଯେଉଁ ଚରଣ-ଯୁଗଳରେ ବନ-ଭ୍ରମଣ ସମୟରେ କଣ୍ଟା ଫୋଡିହୋଇ କ୍ଷତଚିହ୍ନ ପଡି ଯାଇଅଛି, ହେ ମୁକୁନ୍ଦ, ହେ ରାମ ! ହେ ରମାପତି ! ଆମ୍ଭେମାନେ ଆପଣଙ୍କର ସେହି ଚରଣ-କମଳ-ଯୁଗଳକୁ ନିତ୍ୟ ଭଜନ କରୁଅଛୁ ॥ ୪ ॥ ବେଦଶାସ୍ତ୍ରମାନେ କହୁଅଛନ୍ତି—ଯାହାର ମୂଳ (ପ୍ରକୃତି) ଅବ୍ୟକ୍ତ, ଯେ ଅନାଦି, ଯାହାର ଚାରିଟି ଚର୍ମ

ସବ କେ ଦେଖତ ବେଦନ୍ହ ବିନତୀ କୀନ୍ହି ଉଦାର ।
ଅନ୍ତର୍ଧାନ ଭଏ ପୁନି ଗଏ ବ୍ରହ୍ମ ଆଗାର ॥୧୩(କ)॥
ବୈନତେୟ ସୁନୁ ସଂଭୁ ତବ ଆଏ ଜହଁ ରଘୁବୀର ।
ବିନୟ କରତ ଗଦଗଦ ଗିରା ପୂରିତ ପୁଲକ ସରୀର ॥୧୩(ଖ)॥
ଜୟ ରାମ ରମାରମନଂ ସମନଂ । ଭବ ତାପ ଭୟାକୁଲ ପାହି ଜନଂ ॥
ଅଵଧେସ ସୁରେସ ରମେସ ବିଭୋ । ସରନାଗତ ମାଗତ ପାହି ପ୍ରଭୋ ॥୧॥
ଦସସୀସ ବିନାସନ ବୀସଭୁଜା । କୃତ ଦୂରି ମହା ମହି ଭୂରି ରୁଜା ॥
ରଜନୀଚର ବୃଂଦ ପତଂଗ ରହେ । ସର ପାବକ ତେଜ ପ୍ରଚଣ୍ଡ ଦହେ ॥୨॥

---

ସର୍ବେ ଦେଖୁ ଦେଖୁ ବେଦ ସ୍ତୁତି ପ୍ରେମେ ବିନତି କରି ଉଦାର ।
ପୁଣି ଅନ୍ତର୍ଦ୍ଧାନ ହୋଇଣ ବହନ ଗମିଲେ ବ୍ରହ୍ମ ଆଗାର ॥୧୩(କ)॥
ଶୁଣ ବିହଗେଶ, ସେକାଳେ ମହେଶ ଆସିଲେ ଯହିଁ ଶ୍ରୀରାମ ।
କରନ୍ତି ବିନୟ ଗଦ୍‌ଗଦ ହୃଦୟ ତନୁ ପୁଲକାୟମାନ ॥୧୩(ଖ)॥
ଜୟ ରମାରମଣ ରାମ, ଶମନ । ଭବ ସନ୍ତାପ, ପାହି ସନ୍ତପ୍ତ ଜନ ॥
ଅବଧେଶ ସୁରେଶ ରମେଶ ବିଭୋ । ଶରଣାଗତ ପାହି ମାଗଇ, ପ୍ରଭୋ ॥୧॥
ଦଶମସ୍ତକ ବିଂଶଭୁଜେ ସଂହାରି । କରି ହରିଲ ମହୀ କୁରୋଗ-ଭାର ॥
ରଜନୀଚର-ବୃନ୍ଦ ପତଙ୍ଗ ଥିଲେ । ପ୍ରଚଣ୍ଡ ଶରାନଳ ତେଜେ ଦହିଲେ ॥୨॥

---

(ଜାଗ୍ରତ୍, ସ୍ୱପ୍ନ, ସୁଷୁପ୍ତି ଓ ତୁରୀୟ), ଛ'ଟି ସ୍କନ୍ଧ (କ୍ଷିତି, ଅପ୍, ତେଜ, ମରୁତ୍ ଓ ବ୍ୟୋମ ନାମକ ପଞ୍ଚମହାଭୂତ ଏବଂ ମନ), ପଚିଶ ଶାଖା (ପଞ୍ଚୀକୃତ ପଞ୍ଚମହାଭୂତ), ଅନେକ ପତ୍ର ଓ ବହୁତ ପୁଷ୍ପ (କାମନା-ବାସନା-ସମୂହ) ଅଛି, ଯହିଁରେ କଟୁ ଓ ମଧୁର (ଦୁଃଖ ସୁଖ), ଦୁଇ ପ୍ରକାର ଫଳ ଫଳେ, ଯାହା ଉପରେ ଏକମାତ୍ର ଲତା (ମାୟା) ମାଡିଛି ଏବଂ ଯେଉଁ ଲତା (ମାୟା)ରେ କାମନା ବାସନାଦି ନିତ୍ୟ ନୂତନ ପତ୍ର ଓ ପୁଷ୍ପ ପଲ୍ଲବିତ ଓ ବିକଶିତ ହୁଏ । ଏତାଦୃଶ ସଂସାର-ବୃକ୍ଷ-ସ୍ୱରୂପ (ବିଶ୍ୱ ରୂପରେ ପ୍ରକାଶିତ) ଆପଣଙ୍କୁ ଆମ୍ଭେମାନେ ନମସ୍କାର କରୁଅଛୁ ।" ॥ ୫ ॥ ବ୍ରହ୍ମ ଅଜନ୍ମା, ଅଦ୍ୱୈତ, ଅନୁଭବଜ୍ଞେୟ ଏବଂ ମନର ଉର୍ଦ୍ଧ୍ୱରେ ।"—ଯେଉଁମାନେ ଏପରି କହି ସେହି ବ୍ରହ୍ମଙ୍କର ଧ୍ୟାନ କରନ୍ତି, ସେମାନେ ସେହିପରି କହୁଥା'ନ୍ତୁ ଏବଂ ସେହି ଭାବରେ ବ୍ରହ୍ମଙ୍କୁ ଜାଣୁଥା'ନ୍ତୁ । କିନ୍ତୁ ହେ ନାଥ ! ଆମ୍ଭେମାନେ ତ ନିତ୍ୟ ଆପଣଙ୍କର ସଗୁଣ ଯଶ ହିଁ ଗାନ କରୁ । ହେ କରୁଣାଧାମ ପ୍ରଭୋ ! ହେ ସଦ୍‌ଗୁଣାକର ! ହେ ଦେବ ! ଆମ୍ଭେମାନେ ଏହି ବର ମାଗୁଅଛୁ—ମନ, ବଚନ ଓ କର୍ମରେ ବିକାରସବୁ ତ୍ୟାଗ କରି ଆମେ ଯେପରି ଆପଣଙ୍କ ଚରଣ ମାନଙ୍କରେ ପ୍ରେମ କରିବୁ ।" ॥ ୬ ॥ ଦୋହା :—ବେଦମାନେ ସମସ୍ତଙ୍କ ଆଖି ଆଗରେ ଏହି ଶ୍ରେଷ୍ଠ ସ୍ତୁତି କଲେ । ତଦନନ୍ତର ସେମାନେ ଅନ୍ତର୍ହିତ ହୋଇଗଲେ ଏବଂ ବ୍ରହ୍ମଲୋକକୁ ଚାଲିଗଲେ ॥ ୧୩ (କ) ॥ କାକ ଭୁଶୁଣ୍ଡି କହନ୍ତି,

ମହି ମଣ୍ଡଲ ମଣ୍ଡନ ଚାରୁତରଂ । ଧୃତ ସାୟକ ଚାପ ନିଷଂଗ ବରଂ ॥
ମଦ ମୋହ ମହା ମମତା ରଜନୀ । ତମ ପୁଞ୍ଜ ଦିବାକର ତେଜ ଅନୀ ॥୩॥
ମନଜାତ କିରାତ ନିପାତ କିଏ । ମୃଗ ଲୋଗ କୁଭୋଗ ସରେନ ହିଏ ॥
ହତି ନାଥ ଅନାଥନ ପାହି ହରେ । ବିଷୟା ବନ ପାଓଁର ଭୂଲି ପରେ ॥୪॥
ବହୁ ରୋଗ ବିୟୋଗନ୍ହି ଲୋଗ ହଏ । ଭବଦଂଘ୍ରି ନିରାଦର କେ ଫଲ ଏ ॥
ଭବସିନ୍ଧୁ ଅଗାଧ ପରେ ନର ତେ । ପଦପଙ୍କଜ ପ୍ରେମ ନ ଜେ କରତେ ॥୫॥
ଅତି ଦୀନ ମଲୀନ ଦୁଖୀ ନିତହୀଁ । ଜିନ୍ହ କେଁ ପଦପଙ୍କଜ ପ୍ରୀତି ନହୀଁ ।
ଅବଲଂବ ଭବନ୍ତ କଥା ଜିନ୍ହ କେଁ । ପ୍ରିୟ ସନ୍ତ ଅନନ୍ତ ସଦା ତିନ୍ହ କେଁ ॥୬॥

---

ଭୂ ମଣ୍ଡଳ-ମଣ୍ଡନ ରୁଚିର କର । ସୁନ୍ଦର ଚାପ-ଶର-ତୂଣୀର-ଧର ॥
ମଦ ମୋହ ମମତା-ଘୋର ରଜନୀ । ତମ-ପୁଞ୍ଜ-ନାଶନେ ତେଜ ତରଣି ॥୩॥
କୁଭୋଗ-ବାଣେ ମନୋଭବ-କିରାତ । ମାନବ-ମୃଗ ହୃଦେ କରେ ଆଘାତ ॥
ବଧି ନାଥ, ଅନାଥେ ତାରନ୍ତୁ, ହରେ । ବିଷୟ-ବନେ ଭୁଲିଛନ୍ତି ପାମରେ ॥୪॥
ବହୁ ଲୋକ ବିୟୋଗ-ରୋଗେ କବଳ । ତୁମ୍ଭ ଚରଣ ଅନାଦର ଏ ଫଳ ॥
ଅପାର ଭବାବ୍ଧିରେ ସେହି ପଡନ୍ତି । ପଦ-ପଙ୍କଜେ ପ୍ରେମ ଯେ ନ କରନ୍ତି ॥୫॥
ଅତି ଦୀନ ମଳିନ ଦୁଃଖେ ସେ ନିତି । ପଦାରବିନ୍ଦେ ନାହିଁ ଯାହାଙ୍କ ପ୍ରୀତି ॥
ଅବଲମ୍ବନ ତୁମ୍ଭ କଥା ଯାହାଙ୍କ । ସନ୍ତ ଅନନ୍ତ ପ୍ରିୟ ସଦା ତାହାଙ୍କ ॥୬॥

---

"ହେ ଗରୁଡ ! ଶୁଣନ୍ତୁ, ସେତେବେଳେ ଶ୍ରୀ ରଘୁବୀର ଯେଉଁଠାରେ ଥିଲେ, ସେହି ସ୍ଥାନକୁ ଶିବ ଆସିଲେ ଏବଂ ଗଦ୍‌ଗଦ ବାଣୀରେ ସ୍ତୁତି କରିବାକୁ ଲାଗିଲେ । ତାଙ୍କ ଶରୀର ପୁଲକାବଳୀରେ ପରିପୂର୍ଣ୍ଣ ହୋଇଗଲା— ॥୧୩(ଗ)॥ "ହେ ରାମ ! ହେ ରମାରମଣ ! ହେ ଜନ୍ମମରଣସନ୍ତାପନାଶକାରୀ ! ଆପଣଙ୍କର ଜୟ ହେଉ । ଭବତାପ-ଭୟବ୍ୟାକୁଳ ଏହି ସେବକକୁ ରକ୍ଷା କରନ୍ତୁ । ହେ ଅଯୋଧ୍ୟାପତି ! ହେ ସୁରେଶ ! ହେ ରମେଶ ! ହେ ବିଭୋ ! ମୁଁ ଶରଣାଗତ, ଆପଣଙ୍କୁ ଏତିକି ମାଗୁଛି । ହେ ପ୍ରଭୋ ! ଆପଣ ମୋତେ ରକ୍ଷା କରନ୍ତୁ ॥ ୧ ॥ ହେ ଦଶଶିର-ବିଂଶବାହୁ-ରାବଣ-ବିନାଶକ ! ହେ ମହୀ-ମହାରୋଗ-ଦୂରକାରକ ଶ୍ରୀରାମ ! ରାକ୍ଷସବୃନ୍ଦ ପୃଥିବୀରେ ପତଙ୍ଗ ଥିଲେ । ସେମାନେ ଆପଣଙ୍କ ବାଣାଗ୍ନିର ପ୍ରଚଣ୍ଡ ତେଜରେ ଭସ୍ମୀଭୂତ ହୋଇଗଲେ ॥ ୨ ॥ ଆପଣ ମହୀମଣ୍ଡଳର ଅତି ସୁନ୍ଦର ଭୂଷଣ; ଆପଣ ଶ୍ରେଷ୍ଠ ବାଣ, ଧନୁ ଓ ତୂଣୀର ଧାରଣ କରିଅଛନ୍ତି । ମହା-ମଦ-ମୋହ-ମମତା-ରାତ୍ରିର ନାଶ ନିମନ୍ତେ ଆପଣ ସୂର୍ଯ୍ୟଙ୍କର ତେଜୋମୟ କିରଣ-ସମୂହ ॥ ୩ ॥ କାମଦେବ-କିରାତ ମନୁଷ୍ୟ-ମୃଗର ମନରେ କୁଭୋଗ-ଶର ମାରି ତାହାକୁ ତଳେ ପକାଇ ଦେଇଛି । ହେ ନାଥ ! ହେ ହରେ ! ତାହାକୁ ମାରି ବିଷୟ-ବନରେ ଭ୍ରମି ବୁଲୁଥିବା ଏହି ପାମର ଅନାଥ ପ୍ରାଣୀମାନଙ୍କୁ ରକ୍ଷା କରନ୍ତୁ ॥ ୪ ॥ ଲୋକମାନେ ବହୁବିଧ ରୋଗ ଓ ବିୟୋଗ ଦ୍ୱାରା ହତ ହେଉଛନ୍ତି ।

ନହିଁ ରାଗ ନ ଲୋଭ ନ ମାନ ମଦା । ତିନ୍ହ କେଁ ସମ ବୈଭବ ବା ବିପଦା ॥
ଏହି ତେ ତବ ସେବକ ହୋତ ମୁଦା । ମୁନି ତ୍ୟାଗତ ଜୋଗ ଭରୋସ ସଦା ॥୭॥
କରି ପ୍ରେମ ନିରଂତର ନେମ ଲିଏଁ । ପଦପଙ୍କଜ ସେବତ ସୁଦ୍ଧ ହିଏଁ ॥
ସମ ମାନି ନିରାଦର ଆଦରହୀ । ସବ ସନ୍ତ ସୁଖୀ ବିଚରଂତି ମହୀ ॥୮॥
ମୁନି ମାନସ ପଙ୍କଜ ଭୃଙ୍ଗ ଭଜେ । ରଘୁବୀର ମହା ରନଧୀର ଅଜେ ॥
ତବ ନାମ ଜପାମି ନମାମି ହରୀ । ଭବରୋଗ ମହାଗଦ ମାନ ଅରୀ ॥୯॥
ଗୁନ ସୀଲ କୃପା ପରମାୟତନଂ । ପ୍ରନମାମି ନିରଂତର ଶ୍ରୀରମନଂ ॥
ରଘୁନଂଦ ନିକଂଦୟ ଦ୍ୱଂଦ୍ୱଘନଂ । ମହିପାଲ ବିଲୋକୟ ଦୀନଜନଂ ॥୧୦॥

---

ନାହିଁ ରାଗ ଲୋଭ ବା ମମତା ମଦ । ସମ ତାହାଙ୍କୁ ବଇଭବ ବିପଦ ॥
ଏଥିରେ ତବ ଦାସେ ମୋଦ ଲଭନ୍ତି । ଯୋଗ ଭରସା ସଦା ମୁନି ତେଜନ୍ତି ॥୭॥
ସତତ ନିୟମିତ ପ୍ରେମ କରନ୍ତି । ପଦ-ସରୋଜ ଶୁଦ୍ଧ ହୃଦେ ସେବନ୍ତି ॥
ସମାନ ମାନି ଅନାଦର ଆଦରେ । ସେ ସନ୍ଥ ମହୀ ବିଚରନ୍ତି ସୁଖରେ ॥୮॥
ଭଜେ ମୁନି-ମାନସ-କଞ୍ଜ-ଭ୍ରମର । ଅଜୟ ରଣଧୀର ଶ୍ରୀ ରଘୁବର ॥
ତୁମ୍ଭ ନାମ ଜପଇ ନମଇ ହରି । ଭବ-ରୋଗ-ଔଷଧ ମାନର ଅରି ॥୯॥
ଗୁଣ-ଶୀଳ-କରୁଣା-ସୁଖ-ସଦନ । ପ୍ରଣମାମି ସତତ ଶ୍ରୀ ବିଶ୍ୱବନ ॥
ରଘୁନନ୍ଦନ ସର୍ବ ଦ୍ୱନ୍ଦ୍ୱ-ଶମନ । ମହୀପାଳ, ବିଲୋକ ଅଧମ ଜନ ॥୧୦॥

---

ଏ ସବୁ ଆପଣଙ୍କ ଚରଣ ପ୍ରତି ନିରାଦରର ଫଳ । ଯେଉଁ ମନୁଷ୍ୟମାନେ ଆପଣଙ୍କ ଚରଣ-କମଳ ପ୍ରତି ପ୍ରେମ କରନ୍ତି ନାହିଁ, ସେମାନେ ଅତଳ ଭବ-ସାଗରରେ ପଡ଼ିଅଛନ୍ତି ॥ ୫ ॥ ଆପଣଙ୍କ ଚରଣ-କମଳରେ ଯେଉଁମାନଙ୍କର ପ୍ରୀତି ନାହିଁ, ସେମାନେ ନିତ୍ୟ ଅତି ଦୀନ-ମଳିନ ଓ ଦୁଃଖୀ ରହୁଥା'ନ୍ତି । ଆପଣଙ୍କ ଲୀଳା-ପ୍ରସଙ୍ଗ ଯେଉଁମାନଙ୍କର ଆଶ୍ରୟ, ସେମାନଙ୍କୁ ସନ୍ଥ ଓ ଭଗବାନ୍ ସଦା ପ୍ରିୟ ଲାଗନ୍ତି ॥ ୬ ॥ ସେମାନଙ୍କଠାରେ ରାଗ, ଲୋଭ, ମାନ କିମ୍ବା ମଦ କିଛି ନ ଥାଏ । ସୁଖଦୁଃଖ, ସମ୍ପତ୍ତିବିପତ୍ତି ସେମାନଙ୍କ ପକ୍ଷରେ ସମାନ । ଏହି ହେତୁ ମୁନିମାନେ ଚିରକାଳ ନିମନ୍ତେ ଯୋଗ ଉପରୁ ଭରସା ତ୍ୟାଗ କରିଦିଅନ୍ତି ଏବଂ ପ୍ରସନ୍ନତା ସହକାରେ ଆପଣଙ୍କ ସେବକ ହୋଇଯାଆନ୍ତି ॥ ୭ ॥ ସେମାନେ ପ୍ରେମ ସହକାରେ ନିରନ୍ତର ନିୟମର ବଶବର୍ତ୍ତୀ ହୋଇ ଶୁଦ୍ଧ ହୃଦୟରେ ଆପଣଙ୍କ ଚରଣ-କମଳ ସେବା କରୁଥା'ନ୍ତି ଏବଂ ନିରାଦର ଓ ଆଦରକୁ ସମାନ ମନେ କରି ସେହି ସାଧୁଗଣ ସୁଖୀ ହୋଇ ପୃଥିବୀ ଉପରେ ବିଚରଣ କରନ୍ତି ॥ ୮ ॥ ହେ ମୁନି-ମାନସ-କମଳ-ଭ୍ରମର ! ହେ ମହାନ୍ ରଣଧୀର ଓ ଅଜେୟ ରଘୁବୀର ! ମୁଁ ଆପଣଙ୍କୁ ଭଜନ କରୁଛି । ହେ ହରି ! ଆପଣଙ୍କ ନାମ ଜପୁଛି ଏବଂ ଆପଣଙ୍କୁ ନମସ୍କାର କରୁଛି । ଆପଣ ଜନ୍ମ-ମରଣ ରୋଗର ମହା ଔଷଧ ଓ ଅଭିମାନର ଶତ୍ରୁ ॥ ୯ ॥ ଆପଣ ଗୁଣ-ଶୀଳ-କୃପାର ପରମ ସ୍ଥାନ । ଆପଣ ଲକ୍ଷ୍ମୀପତି, ମୁଁ ଆପଣଙ୍କୁ ନିରନ୍ତର ପ୍ରଣାମ

ବାର ବାର ବର ମାଗଉଁ ହରଷି ଦେହୁ ଶ୍ରୀରଂଗ ।
ପଦ ସରୋଜ ଅନପାୟନୀ ଭଗତି ସଦା ସତସଂଗ ॥୧୪(କ)॥
ବରନି ଉମାପତି ରାମ ଗୁନ ହରଷି ଗଏ କୈଲାସ ।
ତବ ପ୍ରଭୁ କପିନ୍ହ ଦିୱାଏ ସବ ବିଧି ସୁଖପ୍ରଦ ବାସ ॥୧୪(ଖ)॥

ସୁନୁ ଖଗପତି ୟହ କଥା ପାୱନୀ । ତ୍ରିବିଧ ତାପ ଭବ ଭୟ ଦାୱନୀ ॥
ମହାରାଜ କର ସୁଭ ଅଭିଷେକା । ସୁନତ ଲହହିଁ ନର ବିରତି ବିବେକା ॥୧॥
ଜେ ସକାମ ନର ସୁନହିଁ ଜେ ଗାୱହିଁ । ସୁଖ ସଂପତି ନାନା ବିଧି ପାୱହିଁ ॥
ସୁର ଦୁର୍ଲଭ ସୁଖ କରି ଜଗ ମାହୀଁ । ଅନ୍ତକାଲ ରଘୁପତି ପୁର ଜାହୀଁ ॥୨॥
ସୁନହିଁ ବିମୁକ୍ତ ବିରତ ଅରୁ ବିଷଈ । ଲହହିଁ ଭଗତି ଗତି ସଂପତି ନଈ ॥
ଖଗପତି ରାମ କଥା ମୈଁ ବରନୀ । ସ୍ୱମତି ବିଲାସ ତ୍ରାସ ଦୁଖ ହରନୀ ॥୩॥

---

ବାରମ୍ବାର ଏହି ବର ମୁଁ ମାଗଇ, ହରଷେ ଦିଅ ଶ୍ରୀରଙ୍ଗ ।
ଅଲଭ୍ୟ ଅମୂଲ୍ୟ ଚରଣକମଳ ଭକ୍ତି ସଦା ସତସଙ୍ଗ ॥୧୪(କ)॥
ବର୍ଣ୍ଣି ଉମା-ଈଶ ରଘୁପତି ଗୁଣ ହରଷେ ଗଲେ କୈଳାସ ।
ତହୁଁ ପ୍ରଭୁ ସବୁ ମତେ ସୁଖପ୍ରଦ କପିଙ୍କୁ ଦେଲେ ନିବାସ ॥୧୪(ଖ)॥

ଶୁଣ ଖଗପତି, ଏହି କଥା ସୁପାବନୀ । ତ୍ରିବିଧ-ସନ୍ତାପ-ଭବ-ଦୋଷ-ବିନାଶିନୀ ॥
ମହାରାଜଙ୍କର ଶୁଭ ରାଜ୍ୟ ଅଭିଷେକ । ଶୁଣନ୍ତେ ଲଭନ୍ତି ନର ବୈରାଗ୍ୟ ବିବେକ ॥୧॥
ସକାମୀ ପୁରୁଷ ଯେହୁ ଶୁଣନ୍ତି ଗାଆନ୍ତି । ସୁଖ ସମ୍ପତ୍ତି ବହୁତ ପ୍ରକାରେ ପାଆନ୍ତି ॥
ବିବୁଧ ଦୁର୍ଲ୍ଲଭ ଭୋଗ ଭୋଗି ଜଗତରେ । ରଘୁପତି ପୁରେ ଯା'ନ୍ତି ଅନ୍ତ ସମୟରେ ॥୨॥
ବିମୁକ୍ତ ବୈରାଗୀ ଅତି ବିଷୟୀ ଶୁଣନ୍ତି । ନିତ୍ୟ ନବ ଭକ୍ତି ଗତି ସମ୍ପତ୍ତି ଲଭନ୍ତି ॥
ଖଗପତି, ରାମ-କଥା କଲି ମୁଁ ବର୍ଣ୍ଣନ । ସନ୍ତାପ-ତ୍ରାସ-ହାରିଣୀ ସ୍ୱମତି ଯେସନ ॥୩॥

---

କରୁଅଛୁ । ହେ ରଘୁନନ୍ଦନ ! ଆପଣ ଜନ୍ମ-ମରଣ, ସୁଖ-ଦୁଃଖ, ରାଗ-ଦ୍ୱେଷାଦି ଦ୍ୱନ୍ଦ୍ୱ ସମୂହକୁ ନାଶ କରନ୍ତୁ । ହେ ମହୀପାଳ ରାଜନ୍ ! ଏହି ଦୀନଜନ ଆଡକୁ ମଧ୍ୟ ଦୃଷ୍ଟି ପକାନ୍ତୁ ॥ ୧୦ ॥ ଦୋହା :—ମୁଁ ଆପଣଙ୍କୁ ବାରମ୍ବାର ଏହି ବରଦାନ ମାଗୁଛି ଯେ, ମୋତେ ଆପଣଙ୍କ ଚରଣ-କମଳ ପ୍ରତି ଅଚଳା ଭକ୍ତି ଏବଂ ଆପଣଙ୍କ ଭକ୍ତ-ଜନଙ୍କ ସତ୍ସଙ୍ଗ ସର୍ବଦା ମିଳୁ । ହେ ଲକ୍ଷ୍ମୀପତି ! ଆନନ୍ଦିତ ହୋଇ ଆପଣ ମୋତେ ଏତିକି ଦିଅନ୍ତୁ ।" ॥ ୧୪ (କ) ॥ ଶ୍ରୀରାମଚନ୍ଦ୍ରଙ୍କ ଗୁଣାବଳୀ ବର୍ଣ୍ଣନ କରି ଉମାପତି ମହାଦେବ ହରଷ ମନରେ କୈଳାସ ଚାଲିଗଲେ । ତତ୍ପରେ ପ୍ରଭୁ ବାନରମାନଙ୍କୁ ସକଳ ପ୍ରକାରେ ସୁଖଦାୟକ ବାସସ୍ଥାନ ଦାନ କରାଇଲେ ॥ ୧୪ (ଖ) ॥ ଚୌପାଈ :—"ହେ ଗରୁଡ ! ଶୁଣନ୍ତୁ, ଏ କଥା ସମସ୍ତଙ୍କର ପାବନକାରିଣୀ । ଦୈହିକ, ଦୈବିକ ଓ ଭୌତିକ—ଏହି ତିନି ତାପ ଏବଂ ଜନ୍ମମୃତ୍ୟୁ-ଭୟର ନାଶକାରିଣୀ । ମହାରାଜ ଶ୍ରୀରାମଚନ୍ଦ୍ରଙ୍କ କଲ୍ୟାଣମୟ ରାଜ୍ୟାଭିଷେକ-ଚରିତ ନିଷ୍କାମ ଭାବରେ ଶୁଣି ମନୁଷ୍ୟମାନେ ବୈରାଗ୍ୟ ଓ ଜ୍ଞାନ ଲାଭ

ବିରତି ବିବେକ ଭଗତି ଦୃଢ଼ କରନୀ । ମୋହ ନଦୀ କହଁ ସୁନ୍ଦର ତରନୀ ॥
ନିତ ନବ ମଂଗଲ କୋସଲପୁରୀ । ହରଷିତ ରହହିଁ ଲୋଗ ସବ କୁରୀ ॥୪॥
ନିତ ନଇ ପ୍ରୀତି ରାମପଦ ପଙ୍କଜ । ସବକେଁ ଜିହ୍ନହି ନମତ ସିବ ମୁନି ଅଜ ॥
ମଂଗନ ବହୁ ପ୍ରକାର ପହିରାଏ । ଦ୍ୱିଜହ୍ନ ଦାନ ନାନା ବିଧି ପାଏ ॥୫॥

ବ୍ରହ୍ମାନନ୍ଦ ମଗନ କପି ସବ କେଁ ପ୍ରଭୁ ପଦ ପ୍ରୀତି ।
ଜାତ ନ ଜାନେ ଦିବସ ତିହ୍ନ ଗଏ ମାସ ଷଟ ବୀତି ॥୧୫॥

ବିସରେ ଗୃହ ସପନେହୁଁ ସୁଧି ନାହୀଁ । ଜିମି ପରଦ୍ରୋହ ସଂତ ମନ ମାହୀଁ ॥
ତବ ରଘୁପତି ସବ ସଖା ବୋଲାଏ । ଆଇ ସବହ୍ନି ସାଦର ସିରୁ ନାଏ ॥୧॥

---

ଦୃଢ଼କାରିଣୀ ବୈରାଗ୍ୟ ଭକ୍ତି ବିବେକକୁ । ସୁନ୍ଦର ତରଣୀ ମୋହ ରୂପୀ ସରିତକୁ ॥
ହୁଅଇ ମଙ୍ଗଳ ନିତ୍ୟ ନବ କୋଶଳରେ । ରହନ୍ତି ସକଳ କୁଳ ଲୋକେ ହର୍ଷଭରେ ॥୪॥
ନିତ୍ୟ ନବ ପ୍ରୀତି ରାମ ପଙ୍କଜ ପଦ୍ମରେ । ସେବନ୍ତି ଯାହାଙ୍କୁ ଶିବ ବିରଞ୍ଚି ଅମରେ ॥
ଭିକ୍ଷୁକଙ୍କୁ ବହୁବିଧ ବସ୍ତ୍ର ପିନ୍ଧାଇଲେ । ବିପ୍ରଙ୍କୁ ନାନା ପ୍ରକାର ଦାନ ପ୍ରଦାନିଲେ ॥୫॥

ବ୍ରହ୍ମାନନ୍ଦେ କପି-ନିକର ମଗନ ପ୍ରଭୁପଦେ ପ୍ରୀତି ଚିତ୍ତ ।
ଦିନ କିମ୍ବା ରାତି ଯିବା ନ ଜାଣନ୍ତି, ଛ ମାସ ହେଲା ଅତୀତ ॥୧୫॥

ଭୁଲିଲେ ଗୃହ ସ୍ୱପ୍ନେହେଁ ମନେ ନ ପଡ଼ଇ । ଯେସନ୍ତେ ସନ୍ଥ ମନେ ପରଦ୍ରୋହ ନ ଆସଇ ॥
ତହୁଁ ରଘୁପତି ସବୁ ସଖାଙ୍କୁ ଡାକିଲେ । ସାଦରେ ଆସି ସମସ୍ତେ ପ୍ରଣାମ କରିଲେ ॥୧॥

---

କରନ୍ତି ॥ ୧ ॥ ଏବଂ ଯେଉଁ ମନୁଷ୍ୟମାନେ ସକାମ ଭାବରେ ଏହା ଶ୍ରବଣ ଓ ଗାନ କରନ୍ତି, ସେମାନେ ବହୁବିଧ ସୁଖ ଓ ସମ୍ପତ୍ତି ଲାଭ କରନ୍ତି । ସେମାନେ ଜଗତରେ ଦେବ-ଦୁର୍ଲ୍ଲଭ ସୁଖମାନ ଭୋଗ କରି ଅନ୍ତକାଳରେ ଶ୍ରୀ ରଘୁନାଥଙ୍କ ପରମଧାମକୁ ଯାଆନ୍ତି ॥ ୨ ॥ ଯେଉଁ ଜୀବନ୍ମୁକ୍ତ, ବିରକ୍ତ ଓ ବିଷୟୀ ଲୋକମାନେ ଏହା ଶୁଣନ୍ତି, ସେମାନେ ଯଥାକ୍ରମେ ଭକ୍ତି, ମୁକ୍ତି ଓ ନବୀନ ସମ୍ପତ୍ତି (ନିତ୍ୟ ନୂତନ ଭୋଗ) ଲାଭ କରନ୍ତି । ହେ ପକ୍ଷିରାଜ ଗରୁଡ ! ମୁଁ ଆପଣା ବୁଦ୍ଧି-ବିଳାସ ଅନୁସାରେ ଏହା ବର୍ଣ୍ଣନା କରିଅଛି । ଏହା ଭବ-ଭୟ ଓ ଦୁଃଖ ନାଶ କରେ ॥ ୩ ॥ ଏହା ବୈରାଗ୍ୟ, ବିବେକ ଓ ଭକ୍ତିକୁ ଦୃଢ଼ କରେ ଏବଂ ମୋହ-ନଦୀ ପାର କରିବା ନିମନ୍ତେ ସୁନ୍ଦର ନୌକା ।” ଅଯୋଧ୍ୟାପୁରୀରେ ନିତ୍ୟ ନୂତନ ମଙ୍ଗଳୋତ୍ସବ ହେଉଥାଏ । ସମସ୍ତ ଶ୍ରେଣୀର ଲୋକେ ଆନନ୍ଦିତ ମନରେ ଚାଲାଚଳାଚଳ କରୁଥାଆନ୍ତି ॥ ୪ ॥ ଯେଉଁ ଶ୍ରୀରାମଙ୍କ ଚରଣ-କମଳରେ ଶିବ, ମୁନିବୃନ୍ଦ ଓ ବ୍ରହ୍ମା ସୁଦ୍ଧା ନମସ୍କାର କରନ୍ତି, ସେହି ଚରଣ-କମଳ-ଯୁଗଳ ପ୍ରତି ସମସ୍ତଙ୍କର ନିତ୍ୟ ନୂତନ ପ୍ରୀତି ବର୍ଦ୍ଧିତ ହେଉଥାଏ । ଭିକ୍ଷୁକମାନଙ୍କୁ ବହୁବିଧ ବସ୍ତ୍ରଭୂଷଣ ପିନ୍ଧାଗଲା ଏବଂ ବ୍ରାହ୍ମଣମାନେ ନାନା ପ୍ରକାର ଦାନ ପାଇଲେ ॥ ୫ ॥ ଦୋହା :—ବାନରଗଣ ବ୍ରହ୍ମାନନ୍ଦରେ ମଗ୍ନ । ପ୍ରଭୁଙ୍କ ଚରଣରେ ସମସ୍ତଙ୍କ ପ୍ରେମ । ସେମାନେ ଦିନ କିପରି ଯାଉଛି, ଜାଣିପାରୁ ନ ଥା'ନ୍ତି । ଏହିପରି ଏହିପରି ଛ' ମାସ ଅତିବାହିତ ହୋଇଗଲା ॥୧୫॥

ପରମ ପ୍ରୀତି ସମୀପ ବୈଠାରେ । ଭଗତ ସୁଖଦ ମୃଦୁ ବଚନ ଉଚାରେ ॥
ତୁମ୍ହ ଅତି କୀନ୍ହି ମୋରି ସେବକାଈ । ମୁଖ ପର କେହି ବିଧି କରୌଁ ବଡ଼ାଈ ॥୨॥
ତା ତେଁ ମୋହି ତୁମ୍ହ ଅତି ପ୍ରିୟ ଲାଗେ । ମମ ହିତ ଲାଗି ଭବନ ସୁଖ ତ୍ୟାଗେ ॥
ଅନୁଜ ରାଜ ସଂପତି ବୈଦେହୀ । ଦେହ ଗେହ ପରିବାର ସନେହୀ ॥୩॥
ସବ ମମ ପ୍ରିୟ ନହିଁ ତୁମ୍ହହି ସମାନା । ମୃଷା ନ କହଉଁ ମୋର ୟହ ବାନା ॥
ସବ କେଁ ପ୍ରିୟ ସେବକ ୟହ ନୀତୀ । ମୋରେଁ ଅଧିକ ଦାସ ପର ପ୍ରୀତୀ ॥୪॥

ଅବ ଗୃହ ଜାହୁ ସଖା ସବ ଭଜେହୁ ମୋହି ଦୃଢ଼ ନେମ ।
ସଦା ସର୍ବଗତ ସର୍ବହିତ ଜାନି କରେହୁ ଅତି ପ୍ରେମ ॥୧୬॥

---

ପ୍ରେମ ସହିତ ଆପଣା ନିକଟେ ବସାଇ । ଭାଷିଲେ ମୃଦୁ ବଚନ ଭକ୍ତ-ସୁଖ-ଦାୟୀ ॥
ତୁମ୍ଭେ ଅତିଶୟ ସେବା କରିଲ ମୋହର । ମୁହିଁ ଉପରେ ବଡ଼ାଇ କରିବି କିପରି ॥୨॥
ସେ କାରଣରୁ ତୁମ୍ଭେ ମୋତେ ଅତିପ୍ରିୟ ଲାଗ । ମୋ ହିତ ଲାଗି ଭବନ ସୁଖ କଲ ତ୍ୟାଗ ॥
ଅନୁଜ ରାଜ୍ୟ ସମ୍ପତ୍ତି ପୁଣି ବଇଦେହୀ । ଦେହ ଗୃହ ପରିବାର ପରିଜନ ସ୍ନେହୀ ॥୩॥
ଏ ସର୍ବେ ପ୍ରିୟ ନୁହନ୍ତି ତୁମ୍ଭର ସମାନ । ମିଥ୍ୟା ନ କହଇ, ମୋର ରୀତି ଏହି ଜାଣ ॥
ପ୍ରାୟ ସମସ୍ତଙ୍କୁ ଭୃତ୍ୟ ପ୍ରିୟ, ଏହି ନୀତି । ମୋର ଅଧିକ ଅଟଇ ଦାସ ପ୍ରତି ପ୍ରୀତି ॥୪॥

ଯାଅ ସଖା, ଏବେ ସ୍ୱ ଗୃହକୁ ସର୍ବେ ମୋ'ତେ ଦୃଢେ ଭଜୁଥିବ ।
ସଦା ସର୍ବଗତ ସର୍ବ-ହିତ-ରତ ଜାଣି ପ୍ରେମ କରୁଥିବ ॥୧୬॥

---

ଚୌପାଇ :—ସେମାନେ ନିଜ ନିଜ ଗୃହ ବିଷୟ ବିସ୍ମୃତ ହୋଇଗଲେ । ଯେପରି ସାଧୁ-ସନ୍ଥମାନଙ୍କ ମନରେ ପରଦ୍ରୋହ ଚିନ୍ତା ଆସେନାହିଁ, ସେହିପରି ସେମାନଙ୍କର ସ୍ୱପ୍ନରେ ସୁଦ୍ଧା କେବେ ଗୃହ କଥା ମନେ ପଡ଼ୁନାହିଁ । ଦିନେ ଶ୍ରୀରାମ ସମସ୍ତ ସଖାଙ୍କୁ ଡକାଇଲେ । ସମସ୍ତେ ଆସି ଆଦରରେ ଶିର ନୁଆଁଇଲେ ॥ ୧ ॥ ଅତି ପ୍ରେମରେ ଶ୍ରୀରାମ ସେମାନଙ୍କୁ ଆପଣା ପାଖରେ ବସାଇଲେ ଏବଂ ଭକ୍ତ-ସୁଖଦାୟକ କୋମଳ ବଚନ କହିଲେ—"ତୁମ୍ଭେମାନେ ମୋର ବହୁତ ସେବା କରିଅଛ । ମୁହଁରେ କି ରୂପେ ମୁଁ ତୁମ୍ଭମାନଙ୍କର ପ୍ରଶଂସା କରିବି ? ॥ ୨ ॥ ମୋର ହିତ ନିମନ୍ତେ ତୁମେମାନେ ଗୃହ ଓ ସକଳ ପ୍ରକାର ସୁଖ ତ୍ୟାଗ କରି ଦେଇଛ । ଏହି ହେତୁ ତୁମ୍ଭେମାନେ ମୋର ଅତ୍ୟନ୍ତ ପ୍ରିୟ । ସାନ ଭାଇ, ରାଜ୍ୟ, ସମ୍ପତ୍ତି, ଜାନକୀ, ଆପଣା ଶରୀର, ଗୃହ, କୁଟୁମ୍ବ—ଏମାନେ ସମସ୍ତେ ମୋର ଅବଶ୍ୟ ପ୍ରିୟ; କିନ୍ତୁ ତୁମ୍ଭମାନଙ୍କ ସମାନ ପ୍ରିୟ ନୁହନ୍ତି । ମୁଁ ମିଥ୍ୟା କହୁନାହିଁ । ଏହା ମୋର ସ୍ୱଭାବ । ସେବକ ସମସ୍ତଙ୍କୁ ପ୍ରିୟ ଲାଗନ୍ତି— ଏହା ନୀତିବାକ୍ୟ । କିନ୍ତୁ ମୋର ତ ସ୍ୱଭାବତଃ ଦାସ ପ୍ରତି ବିଶେଷ ପ୍ରେମ ॥ ୪ ॥ ଦୋହା :—ହେ ସଖାଗଣ ! ଏବେ ତୁମ୍ଭେମାନେ ସମସ୍ତେ ନିଜ ନିଜ ଘରକୁ ଯାଅ । ସେଠାରେ ଦୃଢ଼ ନିୟମର ସହିତ ମୋତେ ଭଜୁଥାଅ । ମୋତେ ସର୍ବଦା ସର୍ବବ୍ୟାପକ ଓ ସମସ୍ତଙ୍କ ହିତକାରକ ବୋଲି ମନେ କରି ଅତ୍ୟନ୍ତ ପ୍ରେମ କରୁଥିବ ॥ ୧୬ ॥ ଚୌପାଇ :—

ସୁନି ପ୍ରଭୁ ବଚନ ମଗନ ସବ ଭଏ । କୋ ହମ କହାଁ ବିସରି ତନ ଗଏ ॥
ଏକଟକ ରହେ ଜୋରି କର ଆଗେ । ସକହିଁ ନ କଛୁ କହି ଅତି ଅନୁରାଗେ ॥୧॥
ପରମ ପ୍ରେମ ତିନ୍ହ କର ପ୍ରଭୁ ଦେଖା । କହା ବିବିଧ ବିଧି ଗ୍ୟାନ ବିସେଷା ॥
ପ୍ରଭୁ ସନ୍ମୁଖ କଛୁ କହନ ନ ପାରହିଁ । ପୁନି ପୁନି ଚରନ ସରୋଜ ନିହାରହିଁ ॥୨॥
ତବ ପ୍ରଭୁ ଭୂଷନ ବସନ ମଗାଏ । ନାନା ରଂଗ ଅନୂପ ସୁହାଏ ॥
ସୁଗ୍ରୀବହି ପ୍ରଥମହିଁ ପହିରାଏ । ବସନ ଭରତ ନିଜ ହାଥ ବନାଏ ॥୩॥
ପ୍ରଭୁ ପ୍ରେରିତ ଲଛିମନ ପହିରାଏ । ଲଂକାପତି ରଘୁପତି ମନ ଭାଏ ॥
ଅଂଗଦ ବୈଠ ରହା ନହିଁ ଡୋଲା । ପ୍ରୀତି ଦେଖି ପ୍ରଭୁ ତାହି ନ ବୋଲା ॥୪॥

ଜାମବଂତ ନୀଲାଦି ସବ ପହିରାଏ ରଘୁନାଥ ।
ହିୟଁ ଧରି ରାମ ରୂପ ସବ ଚଲେ ନାଇ ପଦ ମାଥ ॥୧୭(କ)॥

---

ଶୁଣି ପ୍ରଭୁବାଣୀ ମଗ୍ନ ସକଳେ ହୋଇଲେ । କିଏ ଆମ୍ଭେ କାହିଁ ? ତନୁ ଦଶା ପାଶୋରିଲେ ॥
ନିରେଖି କରଯୋଡ଼ିଣ ଉଭାହେଲେ ଆଗେ । କହି ନ ପାରନ୍ତି କିଛି ଅତି ଅନୁରାଗେ ॥୧॥
ପରମ ପ୍ରୀତି ତାହାଙ୍କ ଦେଖି କୋଶଳେଶ । କହିଲେ ନାନାପ୍ରକାର ଜ୍ଞାନ ଉପଦେଶ ॥
ପ୍ରଭୁଙ୍କ ସମ୍ମୁଖେ କିଛି କହି ନ ପାରନ୍ତି । ବାରମ୍ବାର ସରୋରୁହ-ପଦ ନିରେଖନ୍ତି ॥୨॥
ତହୁଁ ପ୍ରଭୁ ମଗାଇଲେ ଭୂଷଣ ବସନ । ନାନା ରଙ୍ଗ ଅନୁପମ ବିଚିତ୍ର ଶୋଭନ ॥
ପ୍ରଥମେ ଭରତ ବାଛି ସାଜି ନିଜ କରେ । ପିନ୍ଧାଇଲେ ସୁଗ୍ରୀବଙ୍କୁ ବସନ ସାଦରେ ॥୩॥
ପ୍ରଭୁ ପ୍ରେରିତେ ଲକ୍ଷ୍ମଣ ଲଙ୍କନାୟକଙ୍କୁ । ପିନ୍ଧାଇଲେ, ଦେଖି ଭଲ ଲାଗିଲା ରାମଙ୍କୁ ॥
ଅଙ୍ଗଦ ନିଶ୍ଚଳ ହୋଇ ବସି ରହିଥିଲେ । ପ୍ରୀତି ଜାଣି ପ୍ରଭୁ ତାଙ୍କୁ ପାଶେ ନ ଡାକିଲେ ॥୪॥

ଜାମ୍ବବନ୍ତ ନଳ ନୀଳ ସମସ୍ତଙ୍କୁ ରଘୁପତି ପିନ୍ଧାଇଲେ ।
ରାମ ରୂପ ଉରେ ଧରିଣ ସାଦରେ ପ୍ରଣମି ସର୍ବେ ଚଳିଲେ ॥୧୮(କ)॥

---

ପ୍ରଭୁଙ୍କର ବଚନ ଶୁଣି ସମସ୍ତେ ପ୍ରେମ-ମଗ୍ନ ହୋଇଗଲେ । "ଆମ୍ଭେ କିଏ ଏବଂ କେଉଁଠି ଅଛୁ ?"—ଆଉ ଦେହର ଅସ୍ତିତ୍ୱ ଭୁଲିଗଲେ । ସେମାନେ ପ୍ରଭୁଙ୍କ ସମ୍ମୁଖରେ ହାତ ଯୋଡ଼ି ନିର୍ନିମେଷ ନୟନରେ ତାଙ୍କ ଆଡ଼କୁ ଚାହିଁ ରହିଥା'ନ୍ତି । ଅତ୍ୟନ୍ତ ପ୍ରେମ ହେତୁ କିଛି କହିପାରୁ ନ ଥା'ନ୍ତି ॥ ୧ ॥ ପ୍ରଭୁ ସେମାନଙ୍କର ପରମ ପ୍ରେମ ଦେଖିଲେ । ସେମାନଙ୍କୁ ଅନେକ ପ୍ରକାର ବିଶେଷ ଜ୍ଞାନ ଉପଦେଶସ୍ୱରୂପ ପ୍ରଦାନ କଲେ । ପ୍ରଭୁଙ୍କ ସମ୍ମୁଖରେ ସେମାନେ କିଛି କହିପାରୁ ନ ଥା'ନ୍ତି । ବାରମ୍ବାର ପ୍ରଭୁଙ୍କ ଚରଣ-କମଳ ଦେଖୁଥାଆନ୍ତି ॥୨॥ ତଦନନ୍ତର ପ୍ରଭୁ ବିବିଧ ରଙ୍ଗର ଅନୁପମ ଓ ସୁନ୍ଦର ଭୂଷଣବସନ-ମାନ ମଗାଇଲେ । ସର୍ବପ୍ରଥମେ ଭରତ ନିଜ ହାତରେ ସଜାଡ଼ି ସୁଗ୍ରୀବଙ୍କୁ ବସ୍ତ୍ର ଓ ଅଳଙ୍କାର ପିନ୍ଧାଇଲେ ॥ ୩ ॥ ପୁଣି ପ୍ରଭୁଙ୍କ ପ୍ରେରଣାରେ ଲକ୍ଷ୍ମଣ ବିଭୀଷଣଙ୍କୁ ଅଳଙ୍କାର ଓ ବସ୍ତ୍ର ପିନ୍ଧାଇଲେ । ଏହା ରଘୁନାଥଙ୍କ ମନକୁ ଅତି ରୁଚିକର ବୋଧ ହେଲା । ଅଙ୍ଗଦ ବସି ରହିଥା'ନ୍ତି, ସେ ଆପଣା ସ୍ଥାନରୁ ଟିକିଏ ସୁଦ୍ଧା ଟଳିଲେ ନାହିଁ । ତାଙ୍କର ଉତ୍କଟ ପ୍ରେମ

ତବ ଅଂଗଦ ଉଠି ନାଇ ସିରୁ ସଜଲ ନୟନ କର ଜୋରି ।
ଅତି ବିନୀତ ବୋଲେଉ ବଚନ ମନହୁଁ ପ୍ରେମରସ ବୋରି ॥୧୭(କ)॥
ସୁନୁ ସର୍ବଗ୍ୟ କୃପା ସୁଖ ସିଂଧୋ । ଦୀନ ଦୟାକର ଆରତ ବଂଧୋ ॥
ମରତୀ ବେର ନାଥ ମୋହି ବାଲୀ । ଗୟଉ ତୁମ୍ହାରେହି କୋଁଛେଁ ଘାଲୀ ॥୧॥
ଅସରନ ସରନ ବିରଦୁ ସଂଭାରୀ । ମୋହି ଜନି ତଜହୁ ଭଗତ ହିତକାରୀ ॥
ମୋରେଁ ତୁମ୍ହ ପ୍ରଭୁ ଗୁର ପିତୁ ମାତା । ଜାଉଁ କହାଁ ତଜି ପଦ ଜଲଜାତା ॥୨॥
ତୁମ୍ହହି ବିଚାରି କହହୁ ନରନାହା । ପ୍ରଭୁ ତଜି ଭବନ କାଜ ମମ କାହା ॥
ବାଲକ ଗ୍ୟାନ ବୁଦ୍ଧି ବଲ ହୀନା । ରାଖହୁ ସରନ ନାଥ ଜନ ଦୀନା ॥୩॥
ନୀଚି ଟହଲ ଗୃହ କୈ ସବ କରିହଉଁ । ପଦପଂକଜ ବିଲୋକି ଭବ ତରିହଉଁ ॥
ଅସ କହି ଚରନ ପରେଉ ପ୍ରଭୁ ପାହୀ । ଅବ ଜନି ନାଥ କହହୁ ଗୃହ ଜାହୀ ॥୪॥

---

ତହୁଁ ବାଲିସୁତ ଉଠି ଅଶ୍ରୁ ନେତ୍ର ପ୍ରଣମି ସଜୋଡ଼ ପାଣି ।
ପ୍ରେମ ରସେ ଅବା ବୁଡ଼ାଇ ଭାଷିଲେ ପରମ ବିନୀତ ବାଣୀ ॥୧୭(ଖ)॥
ଶୁଣ ହେ ସର୍ବଜ୍ଞ ପ୍ରଭୁ, କୃପା ସୁଖ-ସିନ୍ଧୁ । ଦୀନ ଦୟାମୟ, ଆର୍ତ୍ତ ଜନଙ୍କର ବନ୍ଧୁ ॥
ନାଥ, ମୋତେ ବାଳି ତନୁ ତେଜିବା କାଳରେ । ତୁମ୍ଭ କୋଳେ ସମର୍ପିଣ ଚଳିଲା ସୁଖରେ ॥୧॥
ଅଶରଣ ଶରଣ ସ୍ୱ ପ୍ରତିଜ୍ଞା ବିଚାରି । ମୋତେ ତ୍ୟାଗ ନ କରନ୍ତୁ, ଭକ୍ତଭୟହାରୀ ॥
ଗୁରୁ ପିତା ମାତା ତୁମ୍ଭେ ସର୍ବସ୍ୱ ମୋହର । କାହିଁ ଯିବି ପ୍ରଭୁ ତେଜି ସରୋଜ ପୟର ॥୨॥
ତୁମ୍ଭେ ମନ ମଧ୍ୟେ ହେଜି କହ ନରରାଜ । ପ୍ରଭୁଙ୍କୁ ତେଜିଣ ମୋର ଭବନେ କି କାର୍ଯ୍ୟ ॥
ବାଳକ ଅବୋଧ ଜ୍ଞାନ-ବଳ-ବୁଦ୍ଧି ହୀନ । ରଖନ୍ତୁ ନିଜ ଶରଣେ ଜାଣି ଜନ ଦୀନ ॥୩॥
ଗୃହର ସମସ୍ତ ନୀଚ କରମ କରିବି । ପଦ ବିଲୋକିଣ ଭବ-ସାଗର ତରିବି ॥
ଯାହି ଯାହି ପ୍ରଭୁ, କହି ପଡ଼ିଲା ଚରଣେ । ଏବେ ନ କହନ୍ତୁ ନାଥ ଯିବାକୁ ଭବନେ ॥୪॥

---

ଦେଖି ପ୍ରଭୁ ତାହାଙ୍କୁ ଡାକିଲେ ନାହିଁ ॥ ୪ ॥ ଦୋହା :— ଜାମ୍ବବାନ୍ ଓ ନୀଳ ଆଦି ସମସ୍ତଙ୍କୁ ପ୍ରଭୁ ଶ୍ରୀ ରଘୁନାଥ ସ୍ୱୟଂ ଅଳଙ୍କାର ଓ ବସ୍ତ୍ର ପିନ୍ଧାଇ ଦେଲେ । ସେମାନେ ସମସ୍ତେ ଆପଣା ଆପଣା ହୃଦୟରେ ଶ୍ରୀରାମଚନ୍ଦ୍ରଙ୍କ ରୂପ ଧାରଣ କରି ତାଙ୍କ ଚରଣ ତଳେ ମଥା ନୁଆଁଇ ଚାଲିଲେ ॥ ୧୭ (କ) ॥ ତତ୍ପରେ ଅଙ୍ଗଦ ଉଠି ମଥା ନୁଆଁଇଲେ ଏବଂ ନେତ୍ରରେ ଜଳ ଭରି ହାତ ଯୋଡ଼ି ଅତ୍ୟନ୍ତ ବିନୀତ ଓ ପ୍ରେମ-ସିକ୍ତ ମଧୁର ବଚନ କହିଲେ— ॥ ୧୭ (ଖ) ॥ "ହେ ସର୍ବଜ୍ଞ ! ହେ କୃପା-ସାଗର ! ହେ ସୁଖସିନ୍ଧୁ ! ହେ ଦୀନ-ଦୟାକର ! ହେ ଆର୍ତ୍ତବନ୍ଧୁ ! ଶୁଣନ୍ତୁ । ହେ ନାଥ ! ମରଣ କାଳରେ ମୋର ପିତା ବାଳି ମୋତେ ଆପଣଙ୍କ କୋଳରେ ସମର୍ପି ଯାଇଥିଲେ ॥ ୧ ॥ ଅତଏବ ହେ ଭକ୍ତଜନ-ହିତକାରୀ ! ଆପଣ ନିଜ ଅଶରଣ-ଶରଣ-ବାନା ସ୍ମରଣ କରି ମୋତେ ତ୍ୟାଗ କରନ୍ତୁ ନାହିଁ । ମୋର ତ ପ୍ରଭୁ, ଗୁରୁ, ପିତା ଓ ମାତା, ସବୁ ଆପଣ । ଆପଣଙ୍କ ଚରଣ-କମଳ ଛାଡ଼ି ମୁଁ ଯିବି କୁଆଡେ ? ॥ ୨ ॥ ହେ ମହାରାଜ ! ଆପଣ ହିଁ ବିଚାର

ଅଂଗଦ ବଚନ ବିନୀତ ସୁନି ରଘୁପତି କରୁନା ସୀଁଵ ।
ପ୍ରଭୁ ଉଠାଇ ଉର ଲାୟଉ ସଜଲ ନୟନ ରାଜୀଵ ॥୧୮(କ)॥
ନିଜ ଉର ମାଲ ବସନ ମନି ବାଲିତନୟ ପହିରାଇ ।
ବିଦା କୀହ୍ନି ଭଗବାନ ତବ ବହୁ ପ୍ରକାର ସମୁଝାଇ ॥୧୮(ଖ)॥
ଭରତ ଅନୁଜ ସୌମିତ୍ରି ସମେତା । ପଠଵନ ଚଲେ ଭଗତ କୃତ ଚେତା ॥
ଅଂଗଦ ହୃଦୟଁ ପ୍ରେମ ନହିଁ ଥୋରା । ଫିରି ଫିରି ଚିତଵ ରାମ କୀଁ ଓରା ॥୧॥
ବାର ବାର କର ଦଣ୍ଡ ପ୍ରନାମା । ମନ ଅସ ରହନ କହହିଁ ମୋହି ରାମା ॥
ରାମ ବିଲୋକନି ବୋଲନି ଚଲନୀ । ସୁମିରି ସୁମିରି ସୋଚତ ହଁସି ମିଲନୀ ॥୨॥

---

ଶୁଣି ଅଙ୍ଗଦର ବିନୀତ ବଚନ ରଘୁପତି କୃପାପୁଞ୍ଜ ।
ଉଠାଇ ସାଦରେ ଆଲିଙ୍ଗିଲେ ଉରେ ସଜଳ ନୟନ-କଞ୍ଜ ॥୧୮(କ)॥
ନିଜ ହୃଦମାଳ ଭୂଷଣ ଦୁକୂଳ ବାଳିସୁତଙ୍କୁ ପିନ୍ଧାଇ ।
କରିଲେ ବିଦାୟ ପ୍ରଭୁ ରଘୁରାୟ ବହୁ ପ୍ରକାରେ ବୁଝାଇ ॥୧୮(ଖ)॥
ଭରତ ଶତ୍ରୁଘ୍ନ ସଉମିତ୍ରିଙ୍କ ସହିତ । ମେଲାଣି କରିବା ପାଇଁ ଗଲେ ଭକ୍ତାଚିତ ॥
ଅଙ୍ଗଦ ହୃଦୟେ ପ୍ରେମ ସାମାନ୍ୟ ନୁହଇ । ଫେରି ଫେରି ଅନୁକ୍ଷଣ ପ୍ରଭୁଙ୍କୁ ଚାହିଁଇ ॥୧॥
ବାରମ୍ବାର କରୁଥାଏ ସାଷ୍ଟାଙ୍ଗ ପ୍ରଣାମ । ମନେ ହୁଏ, ରହିବାକୁ କହିବେ ବା ରାମ ॥
ରାମଙ୍କ ଅବଲୋକନ ବଚନ ଚଳନ । ହାସ୍ୟ ମିଳନ ସ୍ମରଣ କରଇ ଚିନ୍ତନ ॥୨॥

---

କରି ଦିଅନ୍ତୁ—ପ୍ରଭୁଙ୍କୁ ଛାଡ଼ି ମୋର ଘରେ କି କାମ ? ହେ ନାଥ ! ଏହି ଜ୍ଞାନ-ବୁଦ୍ଧି-ବଳ-ହୀନ ବାଳକ ଓ ଦୀନ ସେବକକୁ ଆପଣଙ୍କ ଶରଣରେ ରଖନ୍ତୁ ॥ ୩ ॥ ମୁଁ ଆପଣଙ୍କ ଘରର ସବୁକାମ ସେବା କରିବି ଏବଂ ଆପଣଙ୍କ ଚରଣ-କମଳ-ଯୁଗଳ ଦେଖି ଦେଖି ଭବ-ସାଗରରୁ ତରିଯିବି ।" ଏହାପରେ କହି ସେ ଶ୍ରୀରାମଙ୍କ ଚରଣ ତଳେ ପଡ଼ିଗଲେ ଏବଂ କହିଲେ, "ହେ ପ୍ରଭୋ ! ମୋତେ ରକ୍ଷା କରନ୍ତୁ । ହେ ନାଥ ! ଏବେ "ତୁମେ ଗୃହକୁ ଯାଅ" ବୋଲି ମୋତେ ଆଉ କୁହନ୍ତୁ ନାହିଁ ॥ ୪ ॥ ଦୋହା :—ଅଙ୍ଗଦଙ୍କ ବିନମ୍ର ବଚନ ଶୁଣି କରୁଣା-ସୀମା ପ୍ରଭୁ ଶ୍ରୀରାମ ତାଙ୍କୁ ଉଠାଇ ଆଲିଙ୍ଗନ କଲେ । ପ୍ରଭୁଙ୍କ ନେତ୍ର-କମଳରେ ପ୍ରେମାଶ୍ରୁ ଜଳ ପରିପୂର୍ଣ୍ଣ ହୋଇ ଆସିଲା ॥ ୧୮ (କ) ॥ ଭଗବାନ୍ ଆପଣା ବକ୍ଷର ମାଳା, ବସ୍ତ୍ର ଓ ମଣିମୟ ଆଭୂଷଣ ବାଳିପୁତ୍ର ଅଙ୍ଗଦଙ୍କୁ ପିନ୍ଧାଇଲେ ଏବଂ ବହୁତ ପ୍ରକାରେ ତାଙ୍କୁ ବୁଝାଇ ବିଦାୟ ଦେଲେ ॥ ୧୮ (ଖ) ॥ ଚୌପାଇ :—ଭକ୍ତଙ୍କ କର୍ମ ସ୍ମରଣ କରି ଭରତ ସାନଭାଇ ଶତ୍ରୁଘ୍ନ ଓ ଲକ୍ଷ୍ମଣଙ୍କ ସହିତ ତାଙ୍କୁ ବାଟେଇ ଦେବାକୁ ଚାଲିଲେ । ଅଙ୍ଗଦଙ୍କ ହୃଦୟରେ ପ୍ରେମ ଅଳ୍ପ ନ ଥାଏ । ସେ ଫେରି ଶ୍ରୀରାମଙ୍କ ଆଡ଼କୁ ଚାହୁଁଥା'ନ୍ତି ॥ ୧ ॥ ଏବଂ ତାଙ୍କୁ ବାରମ୍ବାର ଦଣ୍ଡବତ-ପ୍ରଣାମ କରୁଥା'ନ୍ତି । ମନ ହେଉଥାଏ, "ଶ୍ରୀରାମ ମୋତେ ରହିବାକୁ କହି ଦିଅନ୍ତେ ହେଲେ ।" ଶ୍ରୀରାମଙ୍କ ଚାହିଁବା, କଥା କହିବା, ଚାଲିବା ଓ ହସି ମିଳନ କରିବାର ରୀତିକୁ ସ୍ମରଣ

ପ୍ରଭୁ ରୁଖ ଦେଖି ବିନୟ ବହୁ ଭାଷୀ । ଚଲେଉ ହୃଦୟଁ ପଦ ପଙ୍କଜ ରାଖୀ ॥
ଅତି ଆଦର ସବ କପି ପହୁଁଚାଏ । ଭାଇନ୍ହ ସହିତ ଭରତ ପୁନି ଆଏ ॥୩॥
ତବ ସୁଗ୍ରୀବ ଚରନ ଗହି ନାନା । ଭାଁତି ବିନୟ କୀନ୍ହେ ହନୁମାନା ॥
ଦିନ ଦସ କରି ରଘୁପତି ପଦ ସେବା । ପୁନି ତବ ଚରନ ଦେଖିହଉଁ ଦେବା ॥୪॥
ପୁନ୍ୟପୁଞ୍ଜ ତୁମ୍ହ ପବନକୁମାରା । ସେବହୁ ଜାଇ କୃପା ଆଗାରା ॥
ଅସ କହି କପି ସବ ଚଲେ ତୁରଂତା । ଅଂଗଦ କହଇ ସୁନହୁ ହନୁମଂତା ॥୫॥

କହେହୁ ଦଣ୍ଡବତ ପ୍ରଭୁ ସୈଁ ତୁମ୍ହହି କହଉଁ କର ଜୋରି ।
ବାର ବାର ରଘୁନାୟକହି ସୁରତି କରାଏହୁ ମୋରି ॥୧୯(କ)॥
ଅସ କହି ଚଲେଉ ବାଲିସୁତ ଫିରି ଆୟଉ ହନୁମଂତ ।
ତାସୁ ପ୍ରୀତି ପ୍ରଭୁ ସନ କହୀ ମଗନ ଭଏ ଭଗବଂତ ॥୧୯(ଖ)॥

---

ପ୍ରଭୁ ମନ ଜାଣି ବହୁ ଭାଷିଣ ବିନୟେ । ଚଳିଲା ପଦ-ପଙ୍କଜ ରଖିଣ ହୃଦୟେ ॥
ମେଲାଣି କରଣ ବୃନ୍ଦ କପିଙ୍କୁ ସାଦରେ । ଫେରି ଆସିଲେ ଭରତ ଭ୍ରାତାଙ୍କ ସଙ୍ଗରେ ॥୩॥
ତହୁଁ ସୁଗ୍ରୀବ ଚରଣ ଧରି ହନୁମାନ । କହିଲା କରି ବିନୟ ବିବିଧ ବିଧାନ ॥
ଦିନ ଦଶ ପଦ ସେବି ରଘୁପତିଙ୍କର । ବାହୁଡ଼ି ଦେବ, ଦର୍ଶନ କରିବି ପଛର ॥୪॥
ପୁଣ୍ୟ-ପୁଞ୍ଜ ଅଟୁ ତୁହି ପବନ-ତନୟ । ଯାଇ ପ୍ରେମେ ସେବା କର କରୁଣାନିଳୟ ॥
ଏହା କହି କପି ସର୍ବେ ଯାଆନ୍ତେ ବହନ । ଅଙ୍ଗଦ କହିଲା ଶୁଣ, ପବନ-ନନ୍ଦନ ॥୫॥

ପ୍ରଭୁ ଆଗେ ମୋର କହିବୁ ଜୁହାର, କହେ ତୋତେ ଯୋଡ଼ି କର ।
ବାରମ୍ବାର ଦୀନ-ନାଥଙ୍କୁ ସ୍ମରଣ କରାଉଥିବୁ ମୋହର ॥୧୯(କ)॥
ଚଳିଲା ଏମନ୍ତ କହି ବାଳିସୁତ ଫେରି ଆସି ହନୁମାନ ।
ପ୍ରଭୁଙ୍କ ସମକ୍ଷେ ତା' ପ୍ରୀତି କହନ୍ତେ ମଗ୍ନ ହେଲେ ଭଗବାନ ॥୧୯(ଖ)॥

---

କରି ସେ ଦୁଃଖିତ ହେଉଥା'ନ୍ତି । କିନ୍ତୁ ପ୍ରଭୁଙ୍କ ମୁଖ ଆଡ଼କୁ ଚାହିଁ ସେ ବହୁତ ବିନୟ-ପୂର୍ଣ୍ଣ ବଚନ କହି ହୃଦୟରେ ତାଙ୍କ ଚରଣ-କମଳ-ଯୁଗଳ ଧାରଣପୂର୍ବକ ଚାଲି ଯାଉଥା'ନ୍ତି । ଅତ୍ୟନ୍ତ ଆଦର ସହକାରେ ବାନରମାନଙ୍କୁ ବାଟେଇ ଦେଇ ଭାଇମାନଙ୍କ ଗହଣରେ ଭରତ ଫେରି ଆସିଲେ ॥ ୩ ॥ ସେତେବେଳେ ହନୁମାନ୍ ସୁଗ୍ରୀବଙ୍କ ଚରଣ ଧରି ଅନେକ ପ୍ରକାରେ ବିନତି କଲେ ଏବଂ କହିଲେ, "ହେ ଦେବ ! ଦଶ-ପନ୍ଦର ଦିନ ମୁଁ ଶ୍ରୀ ରଘୁନାଥଙ୍କ ଚରଣ-ସେବା କରିବି, ତତ୍ପରେ ଆସି ଆପଣଙ୍କ ଚରଣ ଦର୍ଶନ କରିବି ।" ॥ ୪ ॥ ସୁଗ୍ରୀବ କହିଲେ, "ହେ ପବନକୁମାର ! ଭଗବାନ୍ ତୁମକୁ ତାଙ୍କ ସେବାରେ ନିଯୁକ୍ତ କଲେ । ତେଣୁ ତୁମେ ପୁଣ୍ୟରାଶି । ଯାଇ କୃପାଧାମ ଶ୍ରୀରାମଙ୍କ ସେବାରେ ଲାଗ ।" ସମସ୍ତ ବାନର ଏହିପରି କହି ତୁରନ୍ତ ଚାଲିଗଲେ । ଅଙ୍ଗଦ କହିଲେ, "ହେ ହନୁମାନ୍ ! ଶୁଣ—॥ ୫ ॥ ଦୋହା '—ମୁଁ ତୁମକୁ ହାତ ଯୋଡ଼ି କହୁଛି—ପ୍ରଭୁଙ୍କୁ ମୋର ଦଣ୍ଡବତ କହିବେ ଏବଂ ଶ୍ରୀ ରଘୁନାଥଙ୍କୁ ବାରମ୍ବାର ମୋର ସ୍ମରଣ

କୁଲିସହୁ ଚାହି କଠୋର ଅତି କୋମଲ କୁସୁମହୁ ଚାହି ।
ଚିତ୍ତ ଖଗେସ ରାମ କର ସମୁଝି ପରଇ କହୁ କାହି ॥୧୯(ଗ)॥
ପୁନି କୃପାଲ ଲିୟୋ ବୋଲି ନିଷାଦା । ଦୀନ୍ହେ ଭୂଷନ ବସନ ପ୍ରସାଦା ॥
ଜାହୁ ଭବନ ମମ ସୁମିରନ କରେହୂ । ମନ କ୍ରମ ବଚନ ଧର୍ମ ଅନୁସରେହୂ ॥୧॥
ତୁହ୍ମ ମମ ସଖା ଭରତ ସମ ଭ୍ରାତା । ସଦା ରହେହୁ ପୁର ଆୱତ ଜାତା ॥
ବଚନ ସୁନତ ଉପଜା ସୁଖ ଭାରୀ । ପରେଉ ଚରନ ଭରି ଲୋଚନ ବାରୀ ॥୨॥
ଚରନ ନଲିନ ଉର ଧରି ଗୃହ ଆୱା । ପ୍ରଭୁ ସୁଭାଉ ପରିଜନହ୍ନି ସୁନାୱା ॥
ରଘୁପତି ଚରିତ ଦେଖି ପୁରବାସୀ । ପୁନି ପୁନି କହହିଁ ଧନ୍ୟ ସୁଖରାସୀ ॥୩॥

---

କୁଳିଶ ଅପେକ୍ଷା କଠୋର ଅତ୍ୟନ୍ତ କୁସୁମରୁ ମୃଦୁ ଅତି ।
କେ ବୁଝି ପାରଇ ଏମନ୍ତ ରାମଙ୍କ ଚିତ୍ତ, କହ ଖଗପତି ॥୧୯(ଗ)॥
ଡକାଇ ଅଣି କୃପାଳୁ ନିଷାଦେ ଆଦର । ଦେଲେ ପ୍ରସାଦ ବସନ ଭୂଷଣ ସୁନ୍ଦର ॥
ଗୃହକୁ ଯାଅ ସ୍ମରଣ ମୋତେ କରୁଥିବ । କାୟ ମନ ବାକ୍ୟେ ଧର୍ମ ଅନୁସରୁଥିବ ॥୧॥
ତୁମ୍ଭେ ମୋର ସଖା, ଭାଇ ଭରତ ଯେସନ । ସଦା କରୁଥିବ ପୁରେ ଗମନାଗମନ ॥
ବଚନ ଶୁଣି ପ୍ରମୋଦ ଉପୁଜିଲ ଭାରି । ପଡ଼ିଲା ଚରଣେ ନେତ୍ରୁ ବୁହାଇଣ ବାରି ॥୨॥
ପାଦ-ପଦ୍ମ ହୃଦେ ଧରି ଆସିଣ ଭବନେ । ପ୍ରଭୁଙ୍କ ସ୍ୱଭାବ ଶୁଣାଇଲା ପରିଜନେ ॥
ଚରିତ ରଘୁପତିଙ୍କ ଦେଖି ପୁରବାସୀ । ବାରମ୍ବାର ଉଚ୍ଚାରନ୍ତି ଧନ୍ୟ ସୁଖ-ରାଶି ॥୩॥

---

କରୁଥିବ ।" ॥ ୧୯ (କ) ॥ ଏହାପରେ କପି ବାଳିପୁତ୍ର ଅଙ୍ଗଦ ଚାଲିଲେ । ହନୁମାନ୍ ଫେରି ଆସିଲେ ଏବଂ ଆସି ପ୍ରଭୁଙ୍କ ଆଗରେ ତାଙ୍କ ପ୍ରେମ ବିଷୟ ବର୍ଣ୍ଣନା କଲେ । ଯାହା ଶୁଣି ଭଗବାନ୍ ପ୍ରେମ-ମଗ୍ନ ହୋଇଗଲେ ॥ ୧୯ (ଖ) ॥ କାକ ଭୁଶୁଣ୍ଡି କହନ୍ତି, "ହେ ଗରୁଡ଼ ! ଶ୍ରୀରାମଙ୍କ ହୃଦୟ ବଜ୍ରଠାରୁ ମଧ୍ୟ ଅଧିକ କଠୋର ଏବଂ ଫୁଲଠାରୁ ମଧ୍ୟ ଅଧିକ କୋମଳ । ତେବେ କୁହନ୍ତୁ, ତାହା କିଏ ବୁଝିପାରିବ ?" ॥ ୧୯ (ଗ) ॥
ଚୌପାଈ :—ପୁଣି କୃପାଳୁ ଶ୍ରୀରାମ ନିଷାଦ-ରାଜଙ୍କୁ ଡକାଇ ନେଲେ ଏବଂ ତାହାଙ୍କୁ ଅଲଙ୍କାର, ବସ୍ତ୍ର ଆଦି ପ୍ରସାଦ-ସ୍ୱରୂପ ଦାନ କଲେ । ପ୍ରଭୁ ତାହାଙ୍କୁ କହିଲେ, "ବର୍ତ୍ତମାନ ତୁମେ ମଧ୍ୟ ଘରକୁ ଯାଅ । ସେଠାରେ ମୋତେ ସ୍ମରଣ କରୁଥିବ ଏବଂ ମନ, ବଚନ, ତଥା କର୍ମରେ ଧର୍ମ ଅନୁସାରେ ଚାଲୁଥିବ ॥ ୧ ॥ ତୁମେ ମୋର ମିତ୍ର ଏବଂ ଭରତଙ୍କ ସମାନ ଭାଇ । ଅଯୋଧ୍ୟାକୁ ସଦାସର୍ବଦା ଯିବାଆସିବା କରୁଥିବ ।" ଏହି କଥା ଶୁଣି ନିଷାଦରାଜଙ୍କ ମନରେ ଅତ୍ୟନ୍ତ ସୁଖ ଜାତ ହେଲା । ନୟନରେ ଆନନ୍ଦ ଓ ପ୍ରେମର ଅଶ୍ରୁଜଳ ଭରି ସେ ପ୍ରଭୁଙ୍କ ଚରଣ ତଳେ ପଡ଼ିଗଲେ ॥ ୨ ॥ ତତ୍ପରେ ଭଗବାନ୍‌ଙ୍କ ଚରଣ-କମଳ ହୃଦୟରେ ଧରି ସେ ଘରକୁ ଆସିଲେ ଏବଂ ଆସି ଆପଣାର ପରିବାର-ସ୍ୱଜନଙ୍କୁ ସେ ପ୍ରଭୁଙ୍କ ସ୍ୱଭାବ ଶୁଣାଇଲେ । ଶ୍ରୀ ରଘୁନାଥଙ୍କ ଏହି ଚରିତ ଦେଖି ଅଯୋଧ୍ୟାପୁର-ବାସୀମାନେ ବାରମ୍ବାର କହୁଥା'ନ୍ତି—"ସୁଖରାଶି ଶ୍ରୀରାମଚନ୍ଦ୍ର ଧନ୍ୟ ।" ॥୩॥

ରାମ ରାଜ ବୈଠେଁ ତ୍ରୈଲୋକା । ହରଷିତ ଭଏ ଗଏ ସବ ସୋକା ॥
ବୟରୁ ନ କର କାହୂ ସନ କୋଈ । ରାମ ପ୍ରତାପ ବିଷମତା ଖୋଈ ॥୪॥

ବରନାଶ୍ରମ ନିଜ ନିଜ ଧରମ ନିରତ ବେଦ ପଥ ଲୋଗ ।
ଚଲହିଁ ସଦା ପାୱହିଁ ସୁଖହି ନହିଁ ଭୟ ସୋକ ନ ରୋଗ ॥୨୦॥

ଦୈହିକ ଦୈବିକ ଭୌତିକ ତାପା । ରାମ ରାଜ ନହିଁ କାହୁହି ବ୍ୟାପା ॥
ସବ ନର କରହିଁ ପରସ୍ପର ପ୍ରୀତୀ । ଚଲହିଁ ସ୍ୱଧର୍ମ ନିରତ ଶ୍ରୁତି ନୀତୀ ॥୧॥
ଚାରିଉ ଚରନ ଧର୍ମ ଜଗ ମାହୀଁ । ପୂରି ରହା ସପନେହୁଁ ଅଘ ନାହୀଁ ॥
ରାମ ଭଗତି ରତ ନର ଅରୁ ନାରୀ । ସକଲ ପରମ ଗତି କେ ଅଧିକାରୀ ॥୨॥
ଅଲ୍ପମୃତ୍ୟୁ ନହିଁ କୱନିଉ ପୀରା । ସବ ସୁନ୍ଦର ସବ ବିରୁଜ ସରୀରା ॥
ନହିଁ ଦରିଦ୍ର କୋଉ ଦୁଖୀ ନ ଦୀନା । ନହିଁ କୋଉ ଅବୁଧ ନ ଲଚ୍ଛନହୀନା ॥୩॥

---

ରାମ ରାଜ୍ୟସିଂହାସନେ ବସନ୍ତେ ତିନି ଲୋକ । ହରଷିତ ହେଲେ ଦୂର ହେଲା ଭୟ ଶୋକ ॥
ବୈର ନ କରନ୍ତି କେହି କାହାରି ସଙ୍ଗରେ । ବିଷମତା ବିସର୍ଜିଲେ ରାମ ପ୍ରତାପରେ ॥୪॥

ପାଳି ବର୍ଣ୍ଣାଶ୍ରମ ନିଜ ନିଜ ଧର୍ମ ବେଦ ପଥେ ଚଳି ଲୋକ ।
ଲଭନ୍ତି ପ୍ରଚୁର ସୁଖ ନିରନ୍ତର, ନାହିଁ ଭୟ ରୋଗ ଶୋକ ॥୨୦॥

ଦୈହିକ ଦୈବିକ ଭଉତିକ ତାପ କାହିଁ । ରାମରାଜ୍ୟରେ କାହାକୁ ବ୍ୟାପ୍ତ ହେଉନାହିଁ ॥
ଆଚରଣ ନର ସର୍ବେ ପରସ୍ପର ପ୍ରୀତି । ଚଳନ୍ତି ଧର୍ମାନୁକୂଳ ରତ ଶ୍ରୁତି-ନୀତି ॥୧॥
ଚାରି ପାଦ ଧର୍ମ ପୂରି ଜଗତ ମଧ୍ୟରେ । ରହିଲା, ଦେଖା ନ ଗଲା ପାପ ସ୍ୱପନରେ ॥
ରାମ-ଭକ୍ତି-ପରାୟଣ ହୋଇ ନରନାରୀ । ସମସ୍ତେ ହେଲେ ପରମ-ପଦ-ଅଧିକାରୀ ॥୨॥
ଅପମୃତ୍ୟୁ ନ ରହିଲା କାହିଁ ପୀଡ଼ା ଲବେ । ସର୍ବେ ସୁନ୍ଦର, ନିରୋଗ-ଶରୀର ସରବେ ॥
ନ ଥିଲେ ଦରିଦ୍ର କେହି ଦୁଃଖୀ କିମ୍ବା ଦୀନ । ଦେଖା ନ ଗଲେ ଅବୁଧ, ଲକ୍ଷଣ-ବିହୀନ ॥୩॥

---

ଶ୍ରୀରାମଚନ୍ଦ୍ର ରାଜସିଂହାସନରେ ପ୍ରତିଷ୍ଠିତ ହେବାରୁ ତିନିଲୋକବାସୀ ଆନନ୍ଦିତ ହେଲେ । ସେମାନଙ୍କର ସମସ୍ତ ଦୁଃଖ ଅପସରିଗଲା । କାହାର କାହା ସହିତ ଶତ୍ରୁତା ନ ଥାଏ । ଶ୍ରୀରାମଙ୍କ ପ୍ରତାପ ଯୋଗୁ ସମସ୍ତଙ୍କର ପାରସ୍ପରିକ ବୈଷମ୍ୟ ଦୂର ହୋଇଗଲା ॥ ୪ ॥ ଦୋହା —ସମସ୍ତ ଲୋକ ଆପଣା ଆପଣା ବର୍ଣ୍ଣ ଓ ଆଶ୍ରମର ଅନୁକୂଳ ଧର୍ମରେ ନିରତ ରହି ସର୍ବଦା ବେଦ-ମାର୍ଗରେ ଚାଲୁଥା'ନ୍ତି ଏବଂ ସୁଖ ପାଉଥା'ନ୍ତି । ସେମାନଙ୍କର କୌଣସି ଭୟ କିମ୍ବା ଶୋକ ନ ଥାଏ ଏବଂ କୌଣସି ରୋଗ ସେମାନଙ୍କୁ ପୀଡ଼ା ଦେଉ ନ ଥାଏ ॥ ୨୦ ॥ ଚୌପାଇ :—'ରାମରାଜ୍ୟ'ରେ ଦୈହିକ, ଦୈବିକ ଓ ଭୌତିକ ତାପ କାହାରିକୁ ବ୍ୟାପୁ ନ ଥାଏ । ସମସ୍ତ ମନୁଷ୍ୟ ପରସ୍ପର ପ୍ରତି ପ୍ରେମ କରୁଥା'ନ୍ତି ଏବଂ ବେଦ-ନିର୍ଦ୍ଦିଷ୍ଟ ନୀତିରେ ତତ୍ପର ରହି ଆପଣା ଆପଣା ଧର୍ମ ପାଳନ କରୁଥା'ନ୍ତି ॥ ୧ ॥ ଧର୍ମ ଆପଣାର ଚାରିଚରଣ (ସତ୍ୟ, ଶୌଚ, ଦୟା ଓ ଦାନ) ସହିତ ଜଗତରେ ପରିପୂର୍ଣ୍ଣ ହେଉଥାଏ । ସ୍ୱପ୍ନରେ ସୁଦ୍ଧା କେଉଁଠି ପାପ ନ ଥାଏ । ପୁରୁଷ ଓ

ସବ ନିର୍ଦ୍ଦଂଭ ଧର୍ମରତ ପୁନୀ । ନର ଅରୁ ନାରି ଚତୁର ସବ ଗୁନୀ ॥
ସବ ଗୁନଗ୍ୟ ପଣ୍ଡିତ ସବ ଗ୍ୟାନୀ । ସବ କୃତଗ୍ୟ ନହିଁ କପଟ ସୟାନୀ ॥୪॥

ରାମ ରାଜ ନଭଗେସ ସୁନୁ ସଚରାଚର ଜଗ ମାହିଁ ।
କାଲ କର୍ମ ସୁଭାଓ ଗୁନ କୃତ ଦୁଖ କାହୁହି ନାହିଁ ॥୨୧॥

ଭୂମି ସପ୍ତ ସାଗର ମେଖଲା । ଏକ ଭୂପ ରଘୁପତି କୋସଲା ॥
ଭୁଅନ ଅନେକ ରୋମ ପ୍ରତି ଜାସୂ । ୟହ ପ୍ରଭୁତା କଛୁ ବହୁତ ନ ତାସୂ ॥୧॥
ସୋ ମହିମା ସମୁଝତ ପ୍ରଭୁ କେରୀ । ୟହ ବରନତ ହୀନତା ଘନେରୀ ॥
ସୋଉ ମହିମା ଖଗେସ ଜିହ୍ନ ଜାନୀ । ଫିରି ଏହିଁ ଚରିତ ତିହ୍ନହୁଁ ରତି ମାନୀ ॥୨॥
ସୋଉ ଜାନେ କର ଫଲ ୟହ ଲୀଲା । କହହିଁ ମହା ମୁନିବର ଦମସୀଲା ॥
ରାମରାଜ କର ସୁଖ ସଂପଦା । ବରନି ନ ସକଇ ଫନୀସ ସାରଦା ॥୩॥

---

ସମସ୍ତେ ନିର୍ଦ୍ଦମ୍ଭ, ପୁଣ୍ୟବାନ, ଧର୍ମରତ । ନାରୀ ପୁରୁଷ ଚତୁର, ଶୁଭ ଗୁଣବନ୍ତ ॥
ସର୍ବେ ସୁପଣ୍ଡିତ ଜ୍ଞାନୀ, ସରବେ ଗୁଣଜ୍ଞ । ନାହିଁ କପଟ ଧୂର୍ତ୍ତାମି, ସମସ୍ତେ କୃତଜ୍ଞ ॥୪॥

ରାମରାଜ୍ୟେ ଶୁଣ ଖଗେଶ ପ୍ରବୀଣ, ଚରାଚର ବିଶ୍ୱେ କାହିଁ ।
କାଳ କର୍ମ ଗୁଣ ସ୍ୱଭାବଜ ଦୁଃଖ କାହାକୁ ବ୍ୟାପିଲା ନାହିଁ ॥୨୧॥

ସାଗର ପରିଧି ଆବେଷ୍ଟିତ ସପ୍ତଦ୍ୱୀପ । ଏକ ରାଜା ରଘୁପତି, କୋଶଳ ମହୀପ ॥
ବ୍ରହ୍ମାଣ୍ଡ ଅନେକ ଯା'ର ପ୍ରତି ରୋମେ ଯୁକ୍ତ । ଏ ପ୍ରଭୁତା ନୁହେ କିଛି ତା ପକ୍ଷେ ବହୁତ ॥୧॥
ବୁଝିଣ ପ୍ରଭୁଙ୍କ ସେହି ମହିମା ଅଶେଷ । ଏହା ବର୍ଣ୍ଣିନ୍ତେ ଲାଗଇ ହୀନତା ବିଶେଷ ॥
ସେ ମହିମା ଖଗପତି, ଯେ ଜନ ଜାଣଇ । ଏହି ଚରିତରେ ପ୍ରୀତି ସେହୁ ବି ମଣଇ ॥୨॥
ତାହା ଜାଣିବାର ଫଳ ଏହି ଲୀଳା ଜାଣ । କହନ୍ତି ଦମନ-ଶୀଳ ମହା ମୁନିଗଣ ॥
ରାମରାଜ୍ୟର ଯେ ସୁଖ ସମୃଦ୍ଧ ଅଜସ୍ର । ବର୍ଣ୍ଣି ନ ପାରନ୍ତି ଶେଷ ଶାରଦା ସହସ୍ର ॥୩॥

---

ସ୍ତ୍ରୀ ସମସ୍ତେ ରାଜ-ଭକ୍ତି-ପରାୟଣ ଏବଂ ସମସ୍ତେ ପରମ-ଗତି (ମୋକ୍ଷ)ର ଅଧିକାରୀ ॥ ୨ ॥ ଅପମୃତ୍ୟୁ ନାହିଁ କିମ୍ବା କାହାରି କୌଣସି ପୀଡ଼ା ନାହିଁ । ସମସ୍ତଙ୍କର ଶରୀର ସୁନ୍ଦର ଓ ନୀରୋଗ; ଦରିଦ୍ର, ଦୁଃଖୀ କିମ୍ବା ଦୀନ କେହି ନାହାନ୍ତି । କେହି ମୂର୍ଖ କିମ୍ବା ଶୁଭ-ଲକ୍ଷଣ-ହୀନ ନୁହନ୍ତି ॥ ୩ ॥ ସମସ୍ତେ ଦମ୍ଭ-ରହିତ, ଧର୍ମ-ପରାୟଣ ଓ ପୁଣ୍ୟାତ୍ମା । ପୁରୁଷ ଓ ସ୍ତ୍ରୀମାନେ ସମସ୍ତେ ଚତୁର ଓ ଗୁଣବାନ୍ । ସମସ୍ତେ ଗୁଣଜ୍ଞ, ପଣ୍ଡିତ ଓ ସମସ୍ତେ ଜ୍ଞାନୀ । ସମସ୍ତେ କୃତଜ୍ଞ; କପଟ ଓ ଧୂର୍ତ୍ତତା କାହାଠାରେ ନାହିଁ ॥ ୪ ॥ ଦୋହା :—କାକ ଭୁଶୁଣ୍ଡି କହନ୍ତି, "ହେ ପକ୍ଷିରାଜ ଗରୁଡ । ଶୁଣନ୍ତୁ, ରାମରାଜ୍ୟରେ ଜଡ଼-ଚେତନ ସମଗ୍ର ଜଗତରେ କାଳ, କର୍ମ, ସ୍ୱଭାବ ଓ ଗୁଣରୁ ଜାତ ଦୁଃଖ କାହାରି ହେଲେ ନ ଥାଏ ॥ ୨୧ ॥ ଚୌପାଈ :—ଅଯୋଧ୍ୟାର ଶ୍ରୀରାମଚନ୍ଦ୍ର ସାତ-ସମୁଦ୍ର-ମେଖଳା ପୃଥିବୀର ଏକମାତ୍ର ରାଜା । ତାହାଙ୍କର ପ୍ରତ୍ୟେକ ରୋମରେ ଅନେକ ବ୍ରହ୍ମାଣ୍ଡ ଅବସ୍ଥିତ । ତାହାଙ୍କ ପକ୍ଷରେ ଏହି ପ୍ରଭୁତ୍ୱ ବିଶେଷ କିଛି

ସବ ଉଦାର ସବ ପର ଉପକାରୀ । ବିପ୍ର ଚରନ ସେବକ ନର ନାରୀ ॥
ଏକନାରି ବ୍ରତ ରତ ସବ ଝାରୀ । ତେ ମନ ବଚ କ୍ରମ ପତି ହିତକାରୀ ॥୪॥

ଦଣ୍ଡ ଜତିହ୍ନ କର ଭେଦ ଜହଁ ନର୍ତ୍ତକ ନୃତ୍ୟ ସମାଜ ।
ଜୀତହୁ ମନହି ସୁନିଅ ଅସ ରାମଚନ୍ଦ୍ର କେଁ ରାଜ ॥୨୨॥

ଫୁଲହିଁ ଫରହିଁ ସଦା ତରୁ କାନନ । ରହହିଁ ଏକ ସଁଗ ଗଜ ପଞ୍ଚାନନ ॥
ଖଗ ମୃଗ ସହଜ ବୟରୁ ବିସରାଈ । ସବହ୍ନି ପରସ୍ପର ପ୍ରୀତି ବଢ଼ାଈ ॥୧॥
କୂଜହିଁ ଖଗ ମୃଗ ନାନା ବୃଂଦା । ଅଭୟ ଚରହିଁ ବନ କରହିଁ ଅନଂଦା ॥
ସୀତଲ ସୁରଭି ପବନ ବହ ମଂଦା । ଗୁଞ୍ଜତ ଅଲି ଲୈ ଚଲି ମକରଂଦା ॥୨॥

---

ସର୍ବେ ଉଦାର ସମସ୍ତେ ପର ଉପକାରୀ । ଦ୍ୱିଜ-ସେବା-ପରାୟଣ ନର ଆଉ ନାରୀ ॥
ସକଳ ପୁରୁଷ ଏକ-ପତ୍ନୀବ୍ରତଧାରୀ । ମନ କର୍ମ ବଚନେ ସେ ପତିହିତକାରୀ ॥୪॥

ଯତି କରେ ଦଣ୍ଡ ଦେଖାଯାଏ ଭେଦ ନର୍ତ୍ତକ ନୃତ୍ୟସମାଜେ ।
ଶୁଣାଯାଏ 'ଜିତ' ମନକୁ ଏମନ୍ତ, ରାମଚନ୍ଦ୍ରଙ୍କର ରାଜ୍ୟେ ॥୨୨॥

ଫୁଲନ୍ତି ଫଳନ୍ତି ସଦା ବିଟପ କାନନ । ବିଚରନ୍ତି ଏକ ସଙ୍ଗେ ଗଜ ପଞ୍ଚାନନ ॥
ପଶୁ ପକ୍ଷୀ ସ୍ୱାଭାବିକ ବୈର ପାଶୋରିଲେ । ସର୍ବେ ପରସ୍ପର ମିଳି ପ୍ରୀତି ବଢାଇଲେ ॥୧॥
କୂଜନ୍ତି ମଧୁରେ ଖଗ ମୃଗ ଜୀବ ଗଣ । ନିର୍ଭୟେ ବନେ ଆନନ୍ଦେ କରନ୍ତି ଭ୍ରମଣ ॥
ଶୀତଳ ସୁଗନ୍ଧ ବହେ ସମୀରଣ ମନ୍ଦ । ଗୁଞ୍ଜରି ଘେନି ଯାଆନ୍ତି ଅଳି ମକରନ୍ଦ ॥୨॥

---

ନୁହେଁ ॥ ୧ ॥ ବରଂ ପ୍ରଭୁଙ୍କର ସେହି ମହାମହିମା ବୁଝିନେବା ପରେ ତାଙ୍କୁ (ସପ୍ତସାଗରାବୃତା ଓ ସପ୍ତଦ୍ୱୀପା) ପୃଥିବୀର ଏକଚ୍ଛତ୍ର ସମ୍ରାଟ୍ ବୋଲି ବର୍ଣ୍ଣନା କରିବା ତାଙ୍କର ଅତ୍ୟନ୍ତ ହୀନତା ପ୍ରତିପାଦନ କରିବା । କିନ୍ତୁ ହେ ଗରୁଡ ! ଯେଉଁମାନେ ସେହି ମହିମା ଜାଣି ପାରିଛନ୍ତି, ସେହିମାନେ ମଧ୍ୟ ଏହି ଲୀଳାରେ ଅତି ଅନୁରାଗ ଲାଭ କରନ୍ତି ॥ ୨ ॥ କାରଣ ସେହି ମହିମା-ଜ୍ଞାନର ଫଳ ମଧ୍ୟ ଏହି ଲୀଳାର ଅନୁଭବ ବୋଲି ଇନ୍ଦ୍ରିୟ-ଦମନକାରୀ ମହା ମୁନିବର-ବୃନ୍ଦ କହନ୍ତି । ଶେଷ ଏବଂ ସରସ୍ୱତୀ ସୁଦ୍ଧା ରାମରାଜ୍ୟର ସୁଖସମ୍ପତ୍ତି ବର୍ଣ୍ଣନା କରି ପାରିବେ ନାହିଁ ॥ ୩ ॥ ସମସ୍ତ ନରନାରୀ ଉଦାର, ସମସ୍ତେ ପରୋପକାରୀ ଏବଂ ସମସ୍ତେ ବ୍ରାହ୍ମଣଙ୍କ ଚରଣ-ସେବକ । ପୁରୁଷ ମାନକେ ଏକ-ପତ୍ନୀ-ବ୍ରତ । ଏହି ରୂପେ ସ୍ତ୍ରୀମାନେ ମଧ୍ୟ ମନ ବଚନ ଓ କର୍ମରେ ପତିଙ୍କ ହିତ-କାରିଣୀ ॥ ୪ ॥ ଦୋହା :—ଶ୍ରୀରାମଚନ୍ଦ୍ରଙ୍କ ରାଜ୍ୟରେ ଦଣ୍ଡ କେବଳ ସନ୍ନ୍ୟାସୀମାନଙ୍କ ହାତରେ ଥାଏ ଏବଂ ଭେଦ ନର୍ତ୍ତକମାନଙ୍କ ନୃତ୍ୟ-ସମାଜରେ ଥାଏ । 'ଜୟ' ଶବ୍ଦ କେବଳ ମନକୁ ଜୟ କରିବା ବିଷୟରେ ଶୁଣାଯାଏ ॥ ୨୨ ॥ ଚୌପାଇ :—ବନମାନଙ୍କରେ ବୃକ୍ଷଗୁଡିକ ସର୍ବଦା ପୁଷ୍ପିତ ଓ ଫଳବନ୍ତ । ହସ୍ତୀ ଓ ସିଂହ ପରସ୍ପରର ଶତ୍ରୁତା ଭୁଲି ଏକା ସଙ୍ଗରେ ରହନ୍ତି । ପକ୍ଷୀ ଓ ପଶୁମାନେ ସମସ୍ତେ ସ୍ୱାଭାବିକ ଶତ୍ରୁତା ଭୁଲି ପରସ୍ପର ମଧ୍ୟରେ ପ୍ରେମ ବୃଦ୍ଧି କରୁଥାଆନ୍ତି ॥ ୧ ॥ ପକ୍ଷୀମାନେ କଳରବ କରୁଥାଆନ୍ତି [illegible]

ଲତା ବିଟପ ମାଗେଁ ମଧୁ ଚୱହୀଁ । ମନଭାୱତୋ ଧେନୁ ପୟ ସ୍ରୱହୀଁ ॥
ସସି ସଂପନ୍ନ ସଦା ରହ ଧରନୀ । ତ୍ରେତାଁ ଭଇ କୃତଜୁଗ କୈ କରନୀ ॥୩॥
ପ୍ରଗଟୀଁ ଗିରିନ୍ହ ବିବିଧ ମନି ଖାନୀ । ଜଗଦାତମା ଭୂପ ଜଗ ଜାନୀ ॥
ସରିତା ସକଲ ବହହିଁ ବର ବାରୀ । ସୀତଲ ଅମଲ ସ୍ୱାଦ ସୁଖକାରୀ ॥୪॥
ସାଗର ନିଜ ମରଜାଦାଁ ରହହୀଁ । ଡାରହିଁ ରତ୍ନ ତଟନ୍ହି ନର ଲହହୀଁ ॥
ସରସିଜ ସଂକୁଲ ସକଲ ତଡ଼ାଗା । ଅତି ପ୍ରସନ୍ନ ଦସ ଦିସା ବିଭାଗା ॥୫॥

ବିଧୁ ମହି ପୂର ମୟୂଖନ୍ହି ରବି ତପ ଜେତନେହି କାଜ ।
ମାଗେଁ ବାରିଦ ଦେହିଁ ଜଲ ରାମଚନ୍ଦ୍ର କେଁ ରାଜ ॥୨୩॥

କୋଟିନ୍ହ ବାଜିମେଧ ପ୍ରଭୁ କୀନ୍ହେ । ଦାନ ଅନେକ ଦ୍ୱିଜନ୍ହ କହଁ ଦୀନ୍ହେ ॥
ଶ୍ରୁତିପଥ ପାଲକ ଧର୍ମ ଧୁରଂଧର । ଗୁନାତୀତ ଅରୁ ଭୋଗ ପୁରଂଦର ॥୧॥

---

ଲତା ବିଟପାଦି ମଧୁ ମାଗନ୍ତେ ବର୍ଷନ୍ତି । ମନ ଅନୁସାରେ ପୟ ଧେନୁ ସ୍ରବନ୍ତି ॥
ଶସ୍ୟସମ୍ପନ୍ନ ସତତ ଦିଶେ ବସୁନ୍ଧରା । ହୋଇଲା ତ୍ରେତାର କାର୍ଯ୍ୟ ସତ୍ୟଯୁଗ ପରା ॥୩॥
ପ୍ରକଟ ଶଇଲେ ନାନା ମଣିର ଆକର । ଜଗଦାତ୍ମା ଜଗତରେ ଜାଣି ଭୂପବର ॥
ସରିତା ସର୍ବେ ବହିଲେ ମନୋହର ବାରି । ସୁଶୀତଳ ସୁବିମଳ ସ୍ୱାଦୁ ସୁଖକାରୀ ॥୪॥
ନିଜ ମର୍ଯ୍ୟାଦାନୁସାରେ ସାଗର ରହନ୍ତି । ବିକ୍ଷିନ୍ତି ରତ୍ନ ତଟରେ ମାନବେ ଲଭନ୍ତି ॥
ସରୋଜପୂର୍ଣ୍ଣ ଶୋଭନ୍ତି ସକଳ ତଡାଗ । ପରମ ପ୍ରସନ୍ନ ଦଶ ଦିଗାଦି ବିଭାଗ ॥୫॥

ବିଧୁ ମୟୂଖରେ ବସୁମତୀ ପୂରେ ରବି ତେଜ ଯେତେ କାର୍ଯ୍ୟେ ।
ମାଗନ୍ତେ ଜଳଦ ଦିଅଇ ସଲିଳ ଶ୍ରୀରାମଚନ୍ଦ୍ରଙ୍କ ରାଜ୍ୟେ ॥୨୩॥

କୋଟି ଅଶ୍ୱମେଧ ଯଜ୍ଞ କଲେ ରଘୁସୁତ । ଦାନ ପ୍ରଦାନିଲେ ମହୀଦେବଙ୍କୁ ବହୁତ ॥
ନିଗମ ପଥ-ପାଳକ ଧର୍ମ-ଧୁରନ୍ଧର । ଗୁଣାତୀତ ଭଗବନ୍ତ ଭୋଗେ ପୁରନ୍ଦର ॥୧॥

---

ପଶୁ ବନରେ ନିର୍ଭୟରେ ବିଚରଣ କରି ଆନନ୍ଦ ଲାଭ କରୁଥା'ନ୍ତି । ଶୀତଳ, ମନ୍ଦ ଓ ସୁଗନ୍ଧିତ ପବନ ବହୁଥାଏ । ଭ୍ରମରମାନେ ପୁଷ୍ପ-ରସ ନେଇ ଗୁଞ୍ଜନ କରି ଉଡ଼ି ବୁଲୁଥାଆନ୍ତି ॥ ୨ ॥ ଲତା ଓ ବୃକ୍ଷମାନେ ମାଗିବା ମାତ୍ରେ ମକରନ୍ଦ ବୃଷ୍ଟି କରୁଥା'ନ୍ତି । ଗାଈମାନେ ମନଇଚ୍ଛା ଦୁଧ ଦେଉଥା'ନ୍ତି । ପୃଥିବୀ ସର୍ବଦା ଶସ୍ୟ-ସମ୍ପନ୍ନ, ସତେ ଅବା ତ୍ରେତାରେ ସତ୍ୟ ଯୁଗର ଆବିର୍ଭାବ ହୋଇଅଛି ! ॥ ୩ ॥ ସମସ୍ତ ଜଗତର ଆତ୍ମା ଭଗବାନଙ୍କୁ ଜଗତର ରାଜା ବୋଲି ଜାଣି ପର୍ବତମାନେ ଅନେକ ପ୍ରକାର ମଣିର ଖଣି ପ୍ରକାଶ କଲେ । ସମସ୍ତ ନଦୀ ଶ୍ରେଷ୍ଠ, ଶୀତଳ, ନିର୍ମଳ ଓ ସୁଖପ୍ରଦ ସ୍ୱାଦିଷ୍ଟ ଜଳ ବହାଇବାକୁ ଲାଗିଲେ ॥ ୪ ॥ ସମୁଦ୍ରମାନେ ନିଜ ନିଜ ମର୍ଯ୍ୟାଦାରେ ସ୍ଥିତ । ସେମାନେ ତରଙ୍ଗାବଳୀଦ୍ୱାରା କୂଳ ଉପରେ ରତ୍ନ ବିଛାଇ ଦେଉଥା'ନ୍ତି । ମନୁଷ୍ୟମାନେ ସେ ସବୁ ଲାଭ କରୁଥା'ନ୍ତି । ସମସ୍ତ ସରୋବର କମଳମାନଙ୍କ ଦ୍ୱାରା ପରିପୂର୍ଣ୍ଣ । ଦଶ ଦିଗର ବିଭାଗ (ଅର୍ଥାତ୍ ସମସ୍ତ ପ୍ରଦେଶ ) ଅତ୍ୟନ୍ତ ପ୍ରସନ୍ନ ॥ ୫ ॥ ଦୋହା :—ଶ୍ରୀରାମଚନ୍ଦ୍ରଙ୍କ ରାଜତ୍ୱ

ପତି ଅନୁକୂଲ ସଦା ରହ ସୀତା । ସୋଭା ଖାନି ସୁସୀଲ ବିନୀତା ॥
ଜାନତି କୃପାସିନ୍ଧୁ ପ୍ରଭୁତାଈ । ସେୱତି ଚରନ କମଲ ମନ ଲାଈ ॥୨॥
ଜଦ୍ୟପି ଗୃହଁ ସେବକ ସେବକିନୀ । ବିପୁଲ ସଦା ସେବା ବିଧି ଗୁନୀ ॥
ନିଜ କର ଗୃହ ପରିଚରଜା କରଈ । ରାମଚନ୍ଦ୍ର ଆୟସୁ ଅନୁସରଈ ॥୩॥
ଜେହି ବିଧି କୃପାସିନ୍ଧୁ ସୁଖ ମାନଇ । ସୋଇ କର ଶ୍ରୀ ସେବା ବିଧି ଜାନଇ ॥
କୌସଲ୍ୟାଦି ସାସୁ ଗୃହ ମାହୀଁ । ସେୱଇ ସବନ୍ହି ମାନ ମଦ ନାହୀଁ ॥୪॥
ଉମା ରମା ବ୍ରହ୍ମାଦି ବନ୍ଦିତା । ଜଗଦଂବା ସଂତତମନିଂଦିତା ॥୫॥

ଜାସୁ କୃପା କଟାଚ୍ଛୁ ସୁର ଚାହତ ଚିତୱ ନ ସୋଇ ।
ରାମ ପଦାରବିନ୍ଦ ରତି କରତି ସୁଭାୱହି ଖୋଇ ॥୨୪॥

---

ପତି ଅନୁକୂଳ ସଦା ଆଚରନ୍ତି ସୀତା । ଶୋଭା ସୌନ୍ଦର୍ଯ୍ୟ ଆଗାର ସୁଶୀଳା ବିନୀତା ॥
ଭଲ ରୂପେ କୃପାଳୁଙ୍କ ପ୍ରଭୁତା ଜାଣନ୍ତି । ମନ ଲଗାଇ ଚରଣ-କମଳ ସେବନ୍ତି ॥୨॥
ଯଦ୍ୟପି ଗୃହରେ ଦାସ ଦାସୀ ଅଗଣିତ । ସମସ୍ତ ପ୍ରକାର ସେବା କାର୍ଯ୍ୟେ ନିୟୋଜିତ ॥
ତଥାପି ସ୍ୱକରେ ଗୃହ ଶୁଶ୍ରୂଷା କରନ୍ତି । ଶ୍ରୀରାମଙ୍କ ଆଜ୍ଞା ସଦା ସେ ଅନୁସରନ୍ତି ॥୩॥
ଯେପରି ଭାବେ ଲଭିବେ ସୁଖ କୃପାନିଧି । ତାହାହିଁ କରନ୍ତି ସୀତା ଜାଣି ସେବାବିଧି ॥
କଉଶଲ୍ୟା ଆଦି ଯେତେ ଶାଶୂ ଅନ୍ତଃପୁରେ । ତାହାଙ୍କୁ ସେବନ୍ତି ମାନମଦ ତେଜି ଦୂରେ ॥୪॥
ଉମା ! ରମା ବ୍ରହ୍ମା ଆଦି ଦେବତା-ବନ୍ଦିତା । ଜଗତ-ଜନନୀ ସୀତା ସଦା ଅନିନ୍ଦିତା ॥୫॥

ଯାଙ୍କ କୃପାଦୃଷ୍ଟି ଅମରେ ଇଚ୍ଛନ୍ତି, ସେ ତାହାଙ୍କୁ ନ ଦେଖନ୍ତି ।
ରାମଙ୍କ ଚରଣ-ସରୋଜେ ସେ ଲୀନ ସ୍ୱଭାବ ଭୁଲି ରହନ୍ତି ॥୨୪॥

---

କାଳରେ ଚନ୍ଦ୍ରମା ନିଜର ଅମୃତମୟୀ କିରଣରେ ପୃଥିବୀକୁ ପୂର୍ଣ୍ଣ କରିଦିଅନ୍ତି । ସୂର୍ଯ୍ୟ ଆବଶ୍ୟକତାମତେ ଉତ୍ତାପ ଦେଉଥା'ନ୍ତି ଏବଂ ଯେଉଁଠାରେ ଯେତିକି ଜଳ ଆବଶ୍ୟକ, ମେଘମାନେ ସେତିକି ମାତ୍ର ବୃଷ୍ଟି କରୁଥା'ନ୍ତି ॥ ୨୩ ॥ ଚୌପାଈ —ପ୍ରଭୁ ଶ୍ରୀରାମ କୋଟି କୋଟି ଅଶ୍ୱମେଧ ଯଜ୍ଞ କଲେ ଏବଂ ବ୍ରାହ୍ମଣଙ୍କୁ ଅନେକ ଦାନ ଦେଲେ । ଶ୍ରୀରାମଚନ୍ଦ୍ର ବେଦପଥର ପାଳନ-କର୍ତ୍ତା, ଧର୍ମ-ଧୁରନ୍ଧର, ତ୍ରିଗୁଣର ଅତୀତ ଏବଂ ଭୋଗରେ ଇନ୍ଦ୍ରଙ୍କ ସମାନ ॥ ୧ ॥ ଶୋଭାର ଆକର, ସୁଶୀଳା ଓ ବିନୀତା ସୀତା ସର୍ବଦା ପତିଙ୍କ ଅନୁକୂଳ ଥାଆନ୍ତି । ସେ କୃପାସାଗର ଶ୍ରୀରାମଙ୍କ ପ୍ରଭୁତ୍ୱ (ମହିମା)କୁ ଜାଣିଥା'ନ୍ତି ଏବଂ ମନ ଲଗାଇ ତାଙ୍କ ଚରଣ-କମଳ ସେବା କରୁଥା'ନ୍ତି ॥ ୨ ॥ ଘରେ ବହୁତ ଦାସଦାସୀ ଅଛନ୍ତି । ସେମାନେ ସମସ୍ତ ସେବା-ବିଧିରେ କୁଶଳ । ତଥାପି ସୀତା ସ୍ୱାମୀ-ସେବାର ମହତ୍ତ୍ୱ ଜାଣି ସମସ୍ତ ଗୃହ-ପରିଚର୍ଯ୍ୟା କରନ୍ତି ଏବଂ ଶ୍ରୀରାମଚନ୍ଦ୍ରଙ୍କ ଆଜ୍ଞାକୁ ଅନୁସରି ରହୁଥା'ନ୍ତି ॥ ୩ ॥ କୃପା-ସାଗର ଶ୍ରୀରାମଚନ୍ଦ୍ର ଯେପରି ସୁଖ ମନେ କରନ୍ତି, ଶ୍ରୀମତୀ ସୀତା ସେହିପରି କରୁଥା'ନ୍ତି । କାରଣ ସେ ସେବା-ବିଧି ଭଲ ରୂପେ ଜାଣନ୍ତି । ଘରେ କୌଶଲ୍ୟା ଆଦି ସମସ୍ତ ଶାଶୂଙ୍କର ସେବା ମଧ୍ୟ ସୀତା କରୁଥା'ନ୍ତି । ତାଙ୍କର

ସେବହିଁ ସାନୁକୂଲ ସବ ଭାଈ । ରାମ ଚରନ ରତି ଅତି ଅଧିକାଈ ॥
ପ୍ରଭୁ ମୁଖ କମଲ ବିଲୋକତ ରହହୀଁ । କବହୁଁ କୃପାଲ ହମହି କଛୁ କହହୀଁ ॥୧॥
ରାମ କରହିଁ ଭ୍ରାତନ୍ହ ପର ପ୍ରୀତି । ନାନା ଭାଁତି ସିଖାୱହିଁ ନୀତି ॥
ହରଷିତ ରହହିଁ ନଗର କେ ଲୋଗା । କରହିଁ ସକଲ ସୁର ଦୁର୍ଲଭ ଭୋଗା ॥୨॥
ଅହନିସି ବିଧିହି ମନାୱତ ରହହୀଁ । ଶ୍ରୀ ରଘୁବୀର ଚରନ ରତି ଚହହୀଁ ॥
ଦୁଇ ସୁତ ସୁନ୍ଦର ସୀତାଁ ଜାଏ । ଲବ କୁସ ବେଦ ପୁରାନନ୍ହ ଗାଏ ॥୩॥
ଦୋଉ ବିଜଈ ବିନଈ ଗୁନ ମନ୍ଦିର । ହରି ପ୍ରତିବିମ୍ବ ମନହୁଁ ଅତି ସୁନ୍ଦର ॥
ଦୁଇ ଦୁଇ ସୁତ ସବ ଭ୍ରାତନ୍ହ କେରେ । ଭଏ ରୂପ ଗୁନ ସୀଲ ଘନେରେ ॥୪॥

---

ସେବନ୍ତି ସକଳ ଭ୍ରାତା ସଦା ଅନୁକୂଳ । ରାମଙ୍କ ଚରଣେ ପ୍ରୀତି କରିଣ ବିପୁଳ ॥
ବିଲୋକି ରହନ୍ତି ପ୍ରଭୁ ମୁଖ-କମଳକୁ । କେବେ କୃପାନିଧି କିଛି କହିବେ ଆମ୍ଭଙ୍କୁ ॥୧॥
ରାମ ଅନୁଜଙ୍କ ପ୍ରତି ଆଚରନ୍ତି ପ୍ରୀତି । ଅନେକ ପ୍ରକାରେ ତାଙ୍କୁ ଶିଖାନ୍ତି ସୁନୀତି ॥
ନଗର ଲୋକେ ଅତ୍ୟନ୍ତ ହରଷେ ରହନ୍ତି । ଅମର ଦୁର୍ଲ୍ଲଭ ଭୋଗ ସକଳ ଭୋଗନ୍ତି ॥୨॥
ନିଶିଦିନ ବିନୟ କରନ୍ତି ବିଧି ଆଗେ । ରହିବାକୁ ରଘୁବୀର ଚରଣାନୁରାଗେ ॥
ସୁନ୍ଦର ବେନି ତନୟ ସୀତା କଲେ ଜାତ । ଲବ କୁଶ ନାମ ବେଦ ପୁରାଣ ବିଖ୍ୟାତ ॥୩॥
ବିଜୟୀ ବିନୟୀ ଦୁହେଁ ସଦ୍‌ଗୁଣ ଆକର । ହରି ପ୍ରତିବିମ୍ବ ମନେ ହୁଏ ମନୋହର ॥
ଦୁଇ ଦୁଇ ପୁତ୍ର ସବୁ ଭାଇଙ୍କ ଉପୁନ୍ନ । ସର୍ବେ ରୂପ ଗୁଣ ଶୀଳେ ହୋଇଲେ ସମ୍ପନ୍ନ ॥୪॥

---

କୌଣସି ବିଷୟରେ ଅଭିମାନ ଓ ମଦ ନ ଥାଏ ॥ ୪ ॥ ଶିବ କହନ୍ତି, "ହେ ଉମା ! ଜଗଜ୍ଜନନୀ ରମା (ସୀତା) ବ୍ରହ୍ମା ଆଦି ଦେବଗଣଙ୍କ ଦ୍ୱାରା ବନ୍ଦିତା ଏବଂ ସଦା ଅନିନ୍ଦିତା ॥ ୫ ॥ ଦୋହା :—ଦେବତାମାନେ ଯାହାଙ୍କର କୃପା-କଟାକ୍ଷକୁ ଅନାଇଁ ରହିଥା'ନ୍ତି, କିନ୍ତୁ ଯେ ସେମାନଙ୍କ ଆଡ଼କୁ ଦୃଷ୍ଟିପାତ ସୁଦ୍ଧା କରନ୍ତି ନାହିଁ, ସେହି ଲକ୍ଷ୍ମୀ (ଜାନକୀ) ନିଜ ସ୍ୱଭାବ ତ୍ୟାଗ କରି ଶ୍ରୀରାମଚନ୍ଦ୍ରଙ୍କ ଚରଣାରବିନ୍ଦରେ ପ୍ରୀତି କରନ୍ତି ॥୨୪॥
ଚୌପାଇ :—ସମସ୍ତ ଭାଇ ଅନୁକୂଳ ରହି ପ୍ରଭୁଙ୍କର ସେବା କରୁଥାଆନ୍ତି । ଶ୍ରୀରାମଚନ୍ଦ୍ରଙ୍କ ଚରଣରେ ସେମାନଙ୍କର ଅପାର ପ୍ରୀତି । କାଳେ କେତେବେଳେ ପ୍ରଭୁ ସେମାନଙ୍କୁ କିଛି ସେବା କରିବାକୁ କହିବେ, ଏଥି ନିମନ୍ତେ ସେମାନେ ସର୍ବଦା ତାଙ୍କ ମୁଖାରବିନ୍ଦକୁ ଚକାଇ ରହିଥା'ନ୍ତି ॥୧॥ ଶ୍ରୀରାମଚନ୍ଦ୍ର ମଧ୍ୟ ଭାଇମାନଙ୍କୁ ପ୍ରେମ କରୁଥା'ନ୍ତି ଏବଂ ସେମାନଙ୍କୁ ନାନା ପ୍ରକାର ନୀତି-ଶିକ୍ଷା ଦେଉଥା'ନ୍ତି । ନଗରର ଲୋକମାନେ ଆନନ୍ଦିତ ରହିଥାଆନ୍ତି ଏବଂ ଦେବ ଦୁର୍ଲ୍ଲଭ ଭୋଗୈଶ୍ୱର୍ଯ୍ୟ ଭୋଗ କରୁଥାଆନ୍ତି ॥୨॥ ସେମାନେ ଦିନରାତି ବିଧାତାଙ୍କୁ ମନାଉ-ଥାଆନ୍ତି ଏବଂ ଶ୍ରୀ ରଘୁବୀରଙ୍କ ଚରଣରେ ପ୍ରୀତି କାମନା କରୁଥାଆନ୍ତି । କାଳକ୍ରମେ ସୀତା ଲବ ଓ କୁଶ ନାମରେ ଦୁଇଟି ସୁନ୍ଦର ପୁତ୍ରଙ୍କୁ ଜନ୍ମ ଦେଲେ । ବେଦପୁରାଣମାନେ ସେ ଦୁହିଙ୍କର ଯଶ ବର୍ଣ୍ଣନା କରିଅଛନ୍ତି ॥୩॥ ଉଭୟ ବିଜୟୀ (ଯୋଦ୍ଧା), ନମ୍ରତା ଓ ଗୁଣରେ ଧାମ ଏବଂ ଅତ୍ୟନ୍ତ ସୁନ୍ଦର । ସତେ ଅବା ଶ୍ରୀହରିଙ୍କର ଦୁଇଟି ପ୍ରତିବିମ୍ବ ! ପ୍ରତି ଭାଇଙ୍କର ଦୁଇଟି

ଗ୍ୟାନ ଗିରା ଗୋଗୀତ ଅଜ ମାୟା ମନ ଗୁନ ପାର ।
ସୋଇ ସଚ୍ଚିଦାନଂଦ ଘନ କର ନର ଚରିତ ଉଦାର ॥୨୫॥

ପ୍ରାତକାଲ ସରଊ କରି ମଜ୍ଜନ । ବୈଠହିଁ ସଭାଁ ସଂଗ ଦ୍ୱିଜ ସଜ୍ଜନ ॥
ବେଦ ପୁରାନ ବସିଷ୍ଠ ବଖାନହିଁ । ସୁନହିଁ ରାମ ଜଦ୍ୟପି ସବ ଜାନହିଁ ॥୧॥
ଅନୁଜନ୍ହ ସଂଜୁତ ଭୋଜନ କରହୀଂ । ଦେଖି ସକଲ ଜନନୀଂ ସୁଖ ଭରହୀଂ ॥
ଭରତ ସତ୍ରୁହନ ଦୋନଉ ଭାଈ । ସହିତ ପବନସୁତ ଉପବନ ଜାଈ ॥୨॥
ବୂଝହିଁ ବୈଠି ରାମ ଗୁନ ଗାହା । କହ ହନୁମାନ ସୁମତି ଅବଗାହା ॥
ସୁନତ ବିମଲ ଗୁନ ଅତି ସୁଖ ପାୱହିଁ । ବହୁରି ବହୁରି କରି ବିନୟ କହାୱହିଁ ॥୩॥
ସବ କେଁ ଗୃହ ଗୃହ ହୋହିଁ ପୁରାନା । ରାମ ଚରିତ ପାବନ ବିଧି ନାନା ॥
ନର ଅରୁ ନାରି ରାମ ଗୁନ ଗାନହିଁ । କରହିଁ ଦିବସ ନିସି ଜାତ ନ ଜାନହିଁ ॥୪॥

---

ଯେ ଅଟଇ ଜ୍ଞାନ-ମାୟାଗୁଣ, ମନ-ବଚନ, ଇନ୍ଦ୍ରିୟାତୀତ ।
ସେ ସଚ୍ଚିଦାନନ୍ଦ କରନ୍ତି ବିବିଧ ପ୍ରାକୃତ ନର ଚରିତ ॥୨୫॥

ସ୍ନାନ କରି ସରଯୂରେ ପ୍ରଭାତ କାଳରେ । ବସନ୍ତି ସଭାରେ ସାଧୁ ବିପ୍ରଙ୍କ ସଙ୍ଗରେ ॥
ବେଦ ପୁରାଣ ବଶିଷ୍ଠ ମୁନି ବଖାଣନ୍ତି । ଶୁଣନ୍ତି ରାମ ଯଦ୍ୟପି ସମସ୍ତ ଜାଣନ୍ତି ॥୧॥
ଅନୁଜଙ୍କ ସଙ୍ଗେ ସେନ କରନ୍ତି ଭୋଜନ । ଦେଖି ଜନନୀ ସକଳେ ହୁଅନ୍ତି ପ୍ରସନ୍ନ ॥
ଭରତ ଶତ୍ରୁସୂଦନ ମିଳି ଦୁଇଭାଇ । ପବନ-ସୁତ ସହିତ ଉପବନେ ଯାଇ ॥୨॥
ପଚାରନ୍ତି ବସି ରମ୍ୟ ରାମ ଗୁଣାମୃତ । ବର୍ଣ୍ଣଇ ସୁମତି ଅବଗାହି ବାୟୁସୁତ ॥
ଶୁଣି ଶୁଭ ଗୁଣ, ସୁଖ ଲଭି ଅତିଶୟ । ବାରମ୍ବାର କୁହାଅନ୍ତି କରିଣ ବିନୟ ॥୩॥
ସମସ୍ତଙ୍କ ଗୃହେ ନିତ୍ୟ ହୁଅଇ ପୁରାଣ । ରୁଚିର ରାମ ଚରିତ ବିବିଧ ବିଧାନ ॥
ନରନାରୀ ରାମଗୁଣ ଗାୟନ କରନ୍ତି । ଦିବସ ନିଶି କପରି ଯାଏ, ନ ଜାଣନ୍ତି ॥୪॥

---

ଲେଖାଏଁ ପୁତ୍ର ଜାତ ହେଲେ । ପୁତ୍ରମାନେ ସମସ୍ତେ ସୁନ୍ଦର, ଗୁଣବାନ୍ ଓ ସୁଶୀଳ ॥୪॥
ଦୋହା ।—ଯେଉଁ ପ୍ରଭୁ ଲୌକିକ ଜ୍ଞାନ, ବାଣୀ ଓ ଇନ୍ଦ୍ରିୟମାନଙ୍କ ଊର୍ଦ୍ଧ୍ୱରେ, ଯେ ଅଜନ୍ମା ଏବଂ ମାୟା, ମନ ଏବଂ ଗୁଣର ଅତୀତ, ସେହି ସଚ୍ଚିଦାନନ୍ଦ ଘନ ଭଗବାନ୍ ଉଦାର ନରଲୀଳା ସାଧନ କରୁଅଛନ୍ତି ॥ ୨୫ ॥ ଚୌପାଈ —ସେ ପ୍ରାତଃ କାଳରେ ସରଯୂ ନଦୀରେ ସ୍ନାନ କରି ବ୍ରାହ୍ମଣ ଓ ସଜ୍ଜନମାନଙ୍କ ସହିତ ସଭାରେ ବସନ୍ତି । ବଶିଷ୍ଠ ବେଦ ଓ ପୁରାଣର କଥାମାନ ବର୍ଣ୍ଣନା କରନ୍ତି ଏବଂ ପ୍ରଭୁ ଶ୍ରୀରାମ ସବୁ ଜାଣି ମଧ୍ୟ ଶୁଣନ୍ତି ॥୧॥ ସେ ଭାଇମାନଙ୍କ ସହିତ ଭୋଜନ କରନ୍ତି । ସେମାନଙ୍କୁ ଦେଖି ସମସ୍ତ ମାତା ଆନନ୍ଦରେ ମଗ୍ନ ହୋଇଯାଆନ୍ତି । ଭରତ ଓ ଶତ୍ରୁଘ୍ନ ଭାଇ ଦୁହେଁ ହନୁମାନ୍‌ଙ୍କ ସଙ୍ଗେ ଉପବନ ମଧ୍ୟକୁ ଯାଇ ସେଠାରେ ବସନ୍ତି ଏବଂ ହନୁମାନ୍‌ଙ୍କୁ ଶ୍ରୀରାମଙ୍କ ଗୁଣଗାଥା ପଚାରନ୍ତି । ହନୁମାନ୍ ଆପଣାର ଉତ୍ତମ ବୁଦ୍ଧି ଅନୁସାରେ ସେହି ଗୁଣାବଳୀରେ ଅବଗାହନ କରି ସେଗୁଡ଼ିକ ବର୍ଣ୍ଣନା କରନ୍ତି । ଶ୍ରୀରାମଙ୍କ ନିର୍ମଳ ଗୁଣାବଳୀ ଶ୍ରବଣରେ ଭାଇ ଦୁହେଁ

ଅୱଧପୁରୀ ବାସିହ୍ନ କର ସୁଖ ସଂପଦା ସମାଜ ।
ସହସ ସେଷ ନହିଁ କହି ସକହିଁ ଜହଁ ନୃପ ରାମ ବିରାଜ ॥୨୬॥

ନାରଦାଦି ସନକାଦି ମୁନୀସା । ଦରସନ ଲାଗି କୋସଲାଧୀସା ॥
ଦିନ ପ୍ରତି ସକଲ ଅଯୋଧ୍ୟା ଆୱହିଁ । ଦେଖି ନଗରୁ ବିରାଗୁ ବିସରାୱହିଁ ॥୧॥
ଜାତରୂପ ମନି ରଚିତ ଅଟାରୀଁ । ନାନା ରଂଗ ରୁଚିର ଗଚ ଢାରୀଁ ॥
ପୁର ଚହୁଁ ପାସ କୋଟ ଅତି ସୁଂଦର । ରଚେ କଁଗୂରା ରଂଗ ରଂଗ ବର ॥୨॥
ନବ ଗ୍ରହ ନିକର ଅନୀକ ବନାଈ । ଜନୁ ଘେରୀ ଅମରାବତି ଆଈ ॥
ମହି ବହୁ ରଙ୍ଗ ରଚିତ ଗଚ କାଁଚା । ଜୋ ବିଲୋକି ମୁନିବର ମନ ନାଚା ॥୩॥
ଧବଲ ଧାମ ଊପର ନଭ ଚୁଂବତ । କଲସ ମନହୁଁ ରବି ସସି ଦୁତି ନିଂଦତ ॥
ବହୁ ମନି ରଚିତ ଝରୋଖା ଭ୍ରାଜହିଁ । ଗୃହ ଗୃହ ପ୍ରତି ମନି ଦୀପ ବିରାଜହିଁ ॥୪॥

---

ଅଯୋଧ୍ୟାପୁରୀର ପ୍ରଜାଜନଙ୍କର ସୁଖ ସମ୍ପତ୍ତି ସମାଜ ।
ଶତ ଶେଷ କହି ନ ପାରନ୍ତି, ଯହିଁ ବିଜେ ରାମ ମହାରାଜ ॥୨୬॥

ନାରଦ ସନକ ଆଦି ଜ୍ଞାନୀ ମୁନିବର । ଦର୍ଶନ କରିବା ହେତୁ କୋଶଳାଧୀଶ୍ୱର ॥
ପ୍ରତିଦିନ ଅଯୋଧ୍ୟାକୁ ସମସ୍ତେ ଆସନ୍ତି । ବିଲୋକି ନଗର ଶୋଭା, ବୈରାଗ୍ୟ ଭୁଲନ୍ତି ॥୧॥
ସୁବର୍ଣ୍ଣ ମଣି ରଚିତ ବିଚିତ୍ର ଅଟ୍ଟାଳି । ରଚିତ ବିଚିତ୍ର ଭୂମି ରୁଚି ରଙ୍ଗେ ଢାଳି ॥
ପୁର ଚତୁର୍ଦ୍ଦିଗେ ଉଚ୍ଚ ପ୍ରାଚୀର ସୁନ୍ଦର । ନିର୍ମିତ ରୁଚିର ଶିଖର ରଙ୍ଗ ବିରଙ୍ଗର ॥୨॥
ମନେ ହୁଏ ନବଗ୍ରହ ସୈନ୍ୟ ସଜାଇଣ । ଅମରାବତୀକୁ ଘେରି ଅଛନ୍ତି ଆସିଣ ॥
ମହୀ ବହୁ ରଙ୍ଗ ଭୂମେ ବିଚିତ୍ର ଶୋଭିତ । ଯାହା ବିଲୋକି ନାଚଇ ମୁନିଙ୍କର ଚିତ୍ତ ॥୩॥
ଧବଳ ଧାମ ଉଚ୍ଚରେ ଗଗନ ଚୁମ୍ବନ୍ତି । କଳଶ ରବି ଶଶୀଙ୍କ ଦ୍ୟୁତିକୁ ନିନ୍ଦନ୍ତି ॥
ବିବିଧ ମଣି ରଚିତ ଝରୋଖା ସାଜଇ । ଗୃହ ଗୃହ ପ୍ରତି ମଣି ଦୀପ ବିରାଜଇ ॥୪॥

---

ଅତିଶୟ ସୁଖ ଲାଭ କରନ୍ତି ଏବଂ ହନୁମାନ୍‌ଙ୍କୁ ବିନୟ କରି ତାଙ୍କ ଦ୍ୱାରା ବାରମ୍ବାର ତାହା ଶୁଣାଉଥା'ନ୍ତି ॥ ୨-୩ ॥ ସମସ୍ତଙ୍କ ଘରେ ଘରେ ପୁରାଣ ଓ ପବିତ୍ର ରାମଚରିତର ନାନା କଥା-ପ୍ରସଙ୍ଗ ଚାଲିଥାଏ । ପୁରୁଷ ଓ ସ୍ତ୍ରୀମାନେ ସମସ୍ତେ ଶ୍ରୀରାମଚନ୍ଦ୍ରଙ୍କ ଗୁଣ ଗାନ କରନ୍ତି ଏବଂ ଏହି ଆନନ୍ଦରେ ଦିନରାତି କିପରି ଅତିବାହିତ ହେଉଛି, ଜାଣି ପାରନ୍ତି ନାହିଁ ॥ ୪ ॥ ଦୋହା :—ଯେଉଁଠାରେ ଭଗବାନ୍ ଶ୍ରୀରାମଚନ୍ଦ୍ର ସ୍ୱୟଂ ରାଜା ରୂପେ ବିରାଜମାନ, ସେହି ଅଯୋଧ୍ୟାପୁରୀର ନିବାସୀମାନଙ୍କ ସୁଖ-ସମ୍ପତ୍ତି ସମୁଦାୟର ବର୍ଣ୍ଣନା ସହସ୍ର ସହସ୍ର ଶେଷ ସୁଦ୍ଧା କରି ପାରିବେ ନାହିଁ ॥ ୨୬ ॥ ଚୌପାଇ :—ନାରଦ ଓ ସନକାଦି ମୁନୀଶ୍ୱରମାନେ ସମସ୍ତେ କୋଶଳରାଜ ଶ୍ରୀରାମଙ୍କ ଦର୍ଶନ ନିମନ୍ତେ ପ୍ରତିଦିନ ଅଯୋଧ୍ୟାକୁ ଆସୁଥା'ନ୍ତି ଏବଂ ସେହି ଦିବ୍ୟ ନଗରକୁ ଦେଖି ବୈରାଗ୍ୟ ବିସ୍ମୃତ ହୋଇ ଯାଉଥାଆନ୍ତି ॥ ୧ ॥ ଦିବ୍ୟ ସ୍ୱର୍ଣ୍ଣ ଓ ରତ୍ନରେ ନିର୍ମିତ ସୁନ୍ଦର ଅଟ୍ଟାଳିକା । ତନ୍ମଧ୍ୟରେ ମଣି-ରତ୍ନର ବିବିଧ ରଙ୍ଗର ସୁନ୍ଦର ଢଳା ମେଜିଆ । ନଗରର ଚତୁର୍ଦ୍ଦିଗରେ ଅତି ସୁନ୍ଦର

ମଣି ଦୀପ ରାଜହିଁ ଭବନ ଭ୍ରାଜହିଁ ଦେହରୀଁ ବିଦ୍ରୁମ ରଚୀ ।
ମଣିଖମ୍ଭ ଭିତ୍ତି ବିରଂଚି ବିରଚୀ କନକ ମଣି ମରକତ ଖଚୀ ॥
ସୁନ୍ଦର ମନୋହର ମଂଦିରାୟତ ଅଜିର ରୁଚିର ଫଟିକ ରଚେ ।
ପ୍ରତି ଦ୍ୱାର ଦ୍ୱାର କପାଟ ପୁରଟ ବନାଇ ବହୁ ବଜ୍ରହିଁ ଖଚେ ॥

ଚାରୁ ଚିତ୍ରସାଲା ଗୃହ ଗୃହ ପ୍ରତି ଲିଖେ ବନାଇ ।
ରାମଚରିତ ଜେ ନିରଖତେ ମୁନି ମନ ଲେହିଁ ଚୋରାଇ ॥୨୭॥
ସୁମନ ବାଟିକା ସବହିଁ ଲଗାଈଁ । ବିବିଧ ଭାଁତି କରି ଜତନ ବନାଈଁ ॥
ଲତା ଲଲିତ ବହୁ ଜାତି ସୁହାଈଁ । ଫୂଲହିଁ ସଦା ବସନ୍ତ କି ନାଈଁ ॥୧॥

ମଣିଦୀପ ବିରାଜେ ପ୍ରତି ଭବନେ ସାଜେ ଏରୁଣ୍ଡି ବିଦ୍ରୁମ ରଚିତ ।
ମଣିସ୍ତମ୍ଭ, ବିରଞ୍ଚି ଭିତ୍ତି ବା ଅଛୁ ରଚି କନକ ମର୍କତ ଖଚିତ ।
ଭବନ ବିଶାଳ ଶୋଭିତ, ପ୍ରାଙ୍ଗଣ ସ୍ଫଟିକ ନିର୍ମିତ,
ପ୍ରତି ଦ୍ୱାରେ ପୁରଟ ମନୋହର କପାଟ କୁନ୍ଦିତ ହୀରକ ଜଟିତ ॥

ଭବନେ ଭବନେ ଚିତ୍ର-ଶାଳା ରମ୍ୟ ରହି ହୋଇଛି ସଜାଇ ।
ଚରିତ ରାମଙ୍କ ନିରେଖନ୍ତେ ମୁନି ମନ ନିଅଇ ଚୋରାଇ ॥୨୭॥
ଲଗାଇ ଅଛନ୍ତି ସର୍ବେ ସୁମନ ଉଦ୍ୟାନ । ଯତ୍ନ ସହିତ ସଜାଇ ବିବିଧ ବିଧାନ ॥
ଲଳିତ ଲତା ଅନେକ ପ୍ରକାର ଶୋଭନ୍ତି । ବସନ୍ତ ସଦୃଶ ସଦାସର୍ବଦା ଫୁଟନ୍ତି ॥'॥

---

ପ୍ରାଚୀର ନିର୍ମିତ । ତାହା ଉପରେ ସୁନ୍ଦର ରଙ୍ଗ-ବିରଙ୍ଗ ଗମ୍ବୁଜ ନିର୍ମିତ ॥ ୨ ॥ ସତେ ଅବା ନବଗ୍ରହ ଅତି ବିରାଟ ସେନା ସହିତ ଅମରାବତୀକୁ ଘେରି ରହିଅଛନ୍ତି । ଭୂମି ଉପରେ ସଡ଼କମାନଙ୍କରେ ବିବିଧ ରଙ୍ଗର କାଚ ଓ ରତ୍ନର ମେଜିଆ ନିର୍ମିତ । ତାହା ଦେଖି ମୁନିବର-ବୃନ୍ଦଙ୍କ ମନ-ମୟୂର ମଧ୍ୟ ନାଚି ଉଠୁଥାଏ ॥୩॥ ଉଜ୍ଜ୍ୱଳ ମହଲ ଉପରେ (ଉଚ୍ଚଭାବରେ) ନଭକୁ ଚୁମ୍ବନ କରୁଥାଏ । ମହଲ ଉପରେ ସ୍ଥାପିତ କଳସମାନ ଆପଣା ଆପଣା ଦିବ୍ୟ ଜ୍ୟୋତିରେ ସତେ ଯେପରି ସୂର୍ଯ୍ୟଚନ୍ଦ୍ରଙ୍କ କିରଣକୁ ନିନ୍ଦା କରୁଥାଏ । ମହଲମାନଙ୍କରେ ବିବିଧ-ମଣି-ରଚିତ ବହୁତ ଝରକା ସୁଶୋଭିତ । ପ୍ରତି ଘରେ ମଣି-ନିର୍ମିତ ଦୀପ ଶୋଭା ପାଉଥାଏ ॥ ୪ ॥ ଛନ୍ଦ —ଗୃହେ ଗୃହେ ମଣି-ମୟ ଦୀପ ଶୋଭା ପାଉଥାଏ । ପ୍ରବାଳ-ନିର୍ମିତ ଦେହଳୀ ଦେଦୀପ୍ୟମାନ । ମଣିରତ୍ନ-ନିର୍ମିତ ସ୍ତମ୍ଭ । ମରକତମଣି-ଜଡ଼ିତ ସୁବର୍ଣ୍ଣ କାନ୍ଥମାନ ଏପରି ସୁନ୍ଦର ଦେଖାଯାଉଥାଏ, ସତେ ଅବା ବ୍ରହ୍ମା ସେହିଗୁଡ଼ିକୁ ବିଶେଷ (ସ୍ୱତନ୍ତ୍ର) ଭାବରେ ନିର୍ମାଣ କରିଅଛନ୍ତି । ମହଲଗୁଡ଼ିକ ସୁନ୍ଦର, ମନୋହର ଓ ବିଶାଳ । ସେ ଗୁଡ଼ିକ ମଧ୍ୟରେ ସୁନ୍ଦର ସ୍ଫଟିକର ପ୍ରାଙ୍ଗଣ । ପ୍ରତ୍ୟେକ ଦ୍ୱାର ଦେଶରେ କୁନ୍ଦା ହୀରକରେ ଜଡ଼ିତ ସୁବର୍ଣ୍ଣର ବହୁତ କବାଟ ନିର୍ମିତ ॥ ଦୋହା '—ପ୍ରତି ଗୃହରେ ସୁନ୍ଦର ଚିତ୍ରଶାଳାମାନ ସୁଶୋଭିତ । ସେଗୁଡ଼ିକରେ ଶ୍ରୀରାମଙ୍କ ଚରିତ ଅତି ରମଣୀୟ ଭାବରେ

ଗୁଂଜତ ମଧୁକର ମୁଖର ମନୋହର । ମାରୁତ ତ୍ରିବିଧି ସଦା ବହ ସୁନ୍ଦର ॥
ନାନା ଖଗ ବାଲକନ୍ହି ଜିଆଏ । ବୋଲତ ମଧୁର ଉଡ଼ାତ ସୁହାଏ ॥୨॥
ମୋର ହଂସ ସାରସ ପାରାୱତ । ଭବନନ ପର ସୋଭା ଅତି ପାୱତ ॥
ଜହଁ ତହଁ ଦେଖହ୍ନିଁ ନିଜ ପରିଛାହ୍ନୀଁ । ବହୁବିଧି କୂଜହ୍ନିଁ ନୃତ୍ୟ କରାହ୍ନୀଁ ॥୩॥
ସୁକ ସାରିକା ପଢ଼ାୱହ୍ନିଁ ବାଲକ । କହହୁ ରାମ ରଘୁପତି ଜନପାଲକ ॥
ରାଜ ଦୁଆର ସକଲ ବିଧି ଚାରୂ । ବୀଥୀଂ ଚୌହଟ ରୁଚିର ବଜାରୂ ॥୪॥

ବାଜାର ରୁଚିର ନ ବନଇ ବରନତ ବସ୍ତୁ ବିନୁ ଗଥ ପାଇଏ ।
ଜହଁ ଭୂପ ରମାନିବାସ ତହଁ କୀ ସଂପଦା କିମି ଗାଇଏ ॥
ବୈଠେ ବଜାଜ ସରାଫ ବନିକ ଅନେକ ମନହୁଁ କୁବେର ତେ ।
ସବ ସୁଖୀ ସବ ସଚ୍ଚରିତ ସୁନ୍ଦର ନାରି ନର ସିସୁ ଜରଠ ଜେ ॥

---

ଗୁଞ୍ଜରନ୍ତି କଳରବେ ଅଳି ମନୋହର । ବହଇ ସଦା ତ୍ରିବିଧ ସମୀର ସୁନ୍ଦର ॥
ନାନା ବିଧ ଖଗ ପୋଷିଛନ୍ତି ଶିଶୁ ବୃନ୍ଦେ । ବୋଲନ୍ତି ମଧୁର ସ୍ୱରେ ଉଡନ୍ତି ଆନନ୍ଦେ ॥୨॥
ମୟୂର ହଂସ ସାରସ ପାରା ଖଗପନ୍ତି । ପ୍ରାସାଦ ଉପରେ ଅତି ସୌନ୍ଦର୍ଯ୍ୟ ଲଭନ୍ତି ॥
ଯହିଁ ତହିଁ ନିଜ ପ୍ରତିବିମ୍ବ ବିଲୋକନେ । ନାନା ଭାବେ କୂଜି ନୃତ୍ୟ କରନ୍ତି ପ୍ରସନ୍ନେ ॥୩॥
ଶୁକ ଶାରୀ ପ୍ରତିପାଳି ପଢାନ୍ତି ବାଳକ । କହ 'ରାମ ରଘୁପତି ସୁଜନ-ପାଳକ' ॥
ସକଳ ପ୍ରକାରେ ସୁଶୋଭିତ ରାଜଦ୍ୱାର । ଗଳି ଚତୁଷ୍ପଥ ଚାରୁ ରୁଚିର ବଜାର ॥୪॥

ବଜାର ସୁଶୋଭନ ଜଣା ନୁହେଁ ବର୍ଣ୍ଣିବ ବିନା ମୂଲ୍ୟେ ବସ୍ତୁ ମିଳଇ ।
ଯହିଁ କମଳାବର ନୃପ, ସେହି ସ୍ଥାନର ସମ୍ପଦ ବର୍ଣ୍ଣି କି ହୁଅଇ ।
ବସନ୍ତି କୁବେର ଯେସନ, ବହୁ ବଣିକ ମହାଜନ,
ସର୍ବେ ସୁଖୀ ସୁନ୍ଦର ସୁଶୀଳ ନାରୀନର ବାଳକ ବୃଦ୍ଧ ଆଦି ଜନ ॥

---

ଅଙ୍କିତ । ମୁନିମାନେ ସେଗୁଡିକୁ ଦେଖୁଥାଆନ୍ତି । ସେ ସବୁ ସେମାନଙ୍କର ମନ ମଧ୍ୟ ହରଣ କରି ନେଉଥାଏ ॥ ୨୭ ॥ ଚୌପାଈ :—ସମସ୍ତ ନଗରବାସୀ ବିବିଧ ପୁଷ୍ପ-ବାଟିକାମାନ ଯତ୍ନ ସହକାରେ ଲଗାଇ ଅଛନ୍ତି । ସେ ସବୁ ଉଦ୍ୟାନରେ ବହୁ ଜାତିର ଲଳିତ ଲତା ସୁଶୋଭିତ । ସଦା ବସନ୍ତ ବିରାଜିତ ଥିବା ପରି ସେହି ଲତାଗୁଡ଼ିକ ସର୍ବଦା ବିକଶିତ ॥ ୧ ॥ ଭ୍ରମରଗଣ ମନୋହର ସ୍ୱରରେ ଗୁଞ୍ଜନ କରୁଥାଆନ୍ତି । ସର୍ବଦା ତ୍ରିବିଧ ସୁନ୍ଦର ବାୟୁ ବହୁଥାଏ । ବାଳକମାନେ ବହୁତ ପକ୍ଷୀ ପାଳନ କରି ରଖିଥାଆନ୍ତି । ପକ୍ଷୀମାନେ ମଧୁର ସ୍ୱରରେ ରବ କରୁଥା'ନ୍ତି ଏବଂ ଉଡ଼ିଲା ବେଳେ ଶୋଭା ପାଉଥା'ନ୍ତି ॥ ୨ ॥ ମୟୂର, ହଂସ, ସାରସ ଓ କପୋତ-ପାରାବତମାନେ ଗୃହ ଉପରେ ଅତିଶୟ ଶୋଭା ପାଉଥାଆନ୍ତି । ସେମାନେ ମଣିମୟ କାନ୍ଥ ଓ ଛାତମାନଙ୍କରେ ଆପଣା ଆପଣାର ପ୍ରତିବିମ୍ବ ଦେଖି ସେମାନଙ୍କୁ ଅନ୍ୟ ପକ୍ଷୀ ବୋଲି ମନେ କରି ମଧୁର ରବ ଓ ନୃତ୍ୟ

ଉତ୍ତର ଦିସି ସରଜୂ ବହ ନିର୍ମଲ ଜଲ ଗଂଭୀର ।
ବାଁଧେ ଘାଟ ମନୋହର ସ୍ୱଲ୍ପ ପଙ୍କ ନହିଁ ତୀର ॥୨୮॥

ଦୂରି ଫରାକ ରୁଚିର ସୋ ଘାଟା । ଜହଁ ଜଲ ପିଅହିଁ ବାଜି ଗଜ ଠାଟା ॥
ପନିଘଟ ପରମ ମନୋହର ନାନା । ତହାଁ ନ ପୁରୁଷ କରହିଁ ଅସ୍ନାନା ॥୧॥
ରାଜଘାଟ ସବ ବିଧି ସୁନ୍ଦର ବର । ମଜ୍ଜହିଁ ତହାଁ ବରନ ଚାରିଉ ନର ॥
ତୀର ତୀର ଦେବନ୍ହ କେ ମଂଦିର । ଚହୁଁ ଦିସି ତିନ୍ହ କେ ଉପବନ ସୁଂଦର ॥୨॥
କହୁଁ କହୁଁ ସରିତା ତୀର ଉଦାସୀ । ବସହିଁ ଗ୍ୟାନରତ ମୁନି ସଂନ୍ୟାସୀ ॥
ତୀର ତୀର ତୁଲସିକା ସୁହାଈ । ବୃନ୍ଦ ବୃନ୍ଦ ବହୁ ମୁନିନ୍ହ ଲଗାଈ ॥୩॥

---

ଉତ୍ତର ଦିଗରେ ବହଇ ସରଯୂ ନିର୍ମଳ ନୀର ଗମ୍ଭୀର ।
ସ୍ଥାନେ ସ୍ଥାନେ ରମ୍ୟ ଘାଟ ବିରଚନ, ସଲପ ପଙ୍କ ନାହିଁ ତୀର ॥୨୮॥

ଦୂରେ ରଚିତ ରୁଚିର ଦୀର୍ଘ ଏକ ଘାଟ । ପିଅନ୍ତି ସଲିଳ ତହିଁ ଗଜବାଜି ଥାଟ ॥
ପାଣିଘାଟ ମନୋରମ ବିବିଧ ବିଧାନ । ତହିଁ ପୁରୁଷ କଦାପି ନ କରନ୍ତି ସ୍ନାନ ॥୧॥
ସକଳ ପ୍ରକାରେ ରାଜଘାଟ ମନୋହର । ସ୍ନାନ କରନ୍ତି ସେ ଘାଟେ ଚାରି ବର୍ଣ୍ଣ ନର ॥
ତୀରେ ତୀରେ ବହୁ ଦେବମନ୍ଦିର ସ୍ଥାପିତ । ତାର ଚଉଦିଗେ ଉପବନ ସୁଶୋଭିତ ॥୨॥
କାହିଁ କାହିଁ ନଦୀ ତୀରେ ତାପସ ଉଦାସୀ । ନିବସନ୍ତି ଜ୍ଞାନରତ ମୁନି ଯେ ସନ୍ନ୍ୟାସୀ ॥
କୂଳେ କୂଳେ ପୁଣି ରମ୍ୟ ତୁଳସୀ ବିରାଜେ । ବହୁ ଯତ୍ନ କରି ରୋପିଛନ୍ତି ମୁନିରାଜେ ॥୩॥

---

କରୁଥା'ନ୍ତି ॥ ୭ ॥ ବାଳକମାନେ ଶୁକ-ଶାରୀଙ୍କୁ ପଢାଉଥା'ନ୍ତି, "କହ, 'ରାମ', 'ରଘୁପତି' 'ଜନପାଳକ' ।" ରାଜଦ୍ୱାର ସକଳ ପ୍ରକାରେ ସୁନ୍ଦର । ବୀଥି, ଚଉବାଟ ଓ ବଜାର ସବୁ ସୁନ୍ଦର ॥୮॥ ଛନ୍ଦ ।—ସୁନ୍ଦର ବଜାର, ଯାହାର ଶୋଭା ବର୍ଣ୍ଣନାତୀତ । ବିନା ମୂଲ୍ୟରେ ସେଠାରେ ଦ୍ରବ୍ୟମାନ ମିଳୁଥାଏ । ଯେଉଁଠାରେ ସ୍ୱୟଂ ଲକ୍ଷ୍ମୀପତି ରାଜା, ସେଠିକାର ସମ୍ପତ୍ତିର ବର୍ଣ୍ଣନା କିପରି କରାଯାଇ ପାରେ ? ବସ୍ତ୍ର-ବ୍ୟବସାୟୀ, ଟଙ୍କାପଇସା ଆଦି କାରବାରରେ ବ୍ୟସ୍ତ ମହାଜନ ଓ ଅଳଙ୍କାର-ବିକ୍ରେତାମାନେ ସତେ ଯେପରି ଅନେକ କୁବେର । ସ୍ତ୍ରୀ, ପୁରୁଷ, ବାଳକ ଓ ବୃଦ୍ଧ ଆଦି ଯେତେ ମନୁଷ୍ୟ, ସମସ୍ତେ ସୁଖୀ, ସଦାଚାରୀ ଓ ସୁନ୍ଦର ॥ ଦୋହା ।—ନଗରର ଉତ୍ତର ଦିଗରେ ସରଯୂ ନଦୀ ପ୍ରବାହିତା । ତାହାର ଜଳ ନିର୍ମଳ ଓ ଗଭୀର । ମନୋହର ଘାଟମାନ ବନ୍ଧା ଯାଇଅଛି । କୂଳରେ ଟିକିଏ ହେଲେ ସୁଦ୍ଧା ପଙ୍କ ନାହିଁ ॥ ୨୮ ॥ ଚୌପାଇ ।—କିଛି ଦୂରରେ ଅଲଗା ହୋଇ ଗୋଟିଏ ସୁନ୍ଦର ଘାଟ ଥାଏ । ସେଠାରେ ଘୋଡ଼ା ଓ ହାତୀମାନେ ଦଳ ଦଳ ହୋଇ ପାଣି ପିଉଥାଆନ୍ତି । ପାଣି ଭରି ନେବା ନିମନ୍ତେ ଅନେକ ସ୍ତ୍ରୀଘାଟ ଥାଏ । ସେଗୁଡ଼ିକ ଅତ୍ୟନ୍ତ ମନୋହର । ସେହି ଘାଟମାନଙ୍କରେ ପୁରୁଷ ଲୋକେ ସ୍ନାନ କରନ୍ତି ନାହିଁ ॥ ୧ ॥ ରାଜଘାଟ ସକଳ ପ୍ରକାରେ ସୁନ୍ଦର ଓ ଶ୍ରେଷ୍ଠ । ସେଠାରେ ଚାରି ବର୍ଣ୍ଣର ପୁରୁଷ ସ୍ନାନ କରନ୍ତି । ସରଯୂର କୂଳେ କୂଳେ ବହୁ ଦେବମନ୍ଦିର ବିରାଜିତ ।

ପୁର ସୋଭା କଛୁ ବରନି ନ ଜାଈ । ବାହେର ନଗର ପରମ ରୁଚିରାଈ ॥
ଦେଖତ ପୁରୀ ଅଖିଲ ଅଘ ଭାଗା । ବନ ଉପବନ ବାପିକା ତଡ଼ାଗା ॥୪॥

ବାପୀଂ ତଡ଼ାଗ ଅନୂପ କୂପ ମନୋହରାୟତ ସୋହହୀଂ ।
ସୋପାନ ସୁନ୍ଦର ନୀର ନିର୍ମଲ ଦେଖି ସୁର ମୁନି ମୋହହୀଂ ॥
ବହୁ ରଙ୍ଗ କଂଜ ଅନେକ ଖଗ କୂଜହିଁ ମଧୁପ ଗୁଂଜାରହୀଂ ।
ଆରାମ ରମ୍ୟ ପିକାଦି ଖଗ ରବ ଜନୁ ପଥିକ ହଂକାରହୀଂ ॥

ରମାନାଥ ଜହଁ ରାଜା ସୋ ପୁର ବରନି କି ଜାଇ ।
ଅନିମାଦିକ ସୁଖ ସଂପଦା ରହୀଂ ଅବଧ ସବ ଛାଇ ॥୨୯॥

---

ନଗର ସୌନ୍ଦର୍ଯ୍ୟ କିଛି କହି ନ ହୁଅଇ । ପୁର ବାହାର ପରମ ସୁଷମା ଲଭଇ ॥
ଦେଖନ୍ତେ ପୁରୀ ପଳାନ୍ତି ପାପ ସମୁଚୟ । ବନ ଉପବନ ବାପୀ ତଡ଼ାଗ ନିଚୟ ॥୪॥

ବାପୀ ତଡ଼ାଗ କୂପ ଉପବନ ଅନୁପ ସୁନ୍ଦର ବିଶାଳ ପ୍ରଚୁର ।
ସୋପାନ ମନୋହର ଅତି ନିର୍ମଳ ନୀର ଦେଖି ମୋହିତ ମୁନି ସୁର ।
ସରେ ସରୋଜେ ଗୁଞ୍ଜରନ୍ତି; ମଧୁପ, ବିହଙ୍ଗେ କୂଜନ୍ତି,
ରମଣୀୟ ଆରାମେ ପିକାଦିଙ୍କ କୂଜନେ କି ଅବା ପଥିକେ ଡାକନ୍ତି ॥

ଯହିଁ ରମାପତି ରାଜା ବିରାଜନ୍ତି ସେ ପୁର କେ ବର୍ଣ୍ଣିପାରେ ।
ଅଣିମାଦି ସୁଖ ସମ୍ପତ୍ତି ଅନେକ ପୂରିଅଛି ଅଯୋଧ୍ୟାରେ ॥୨୯॥

---

ସେମାନଙ୍କର ଚତୁର୍ଦ୍ଦିଗରେ ସୁନ୍ଦର ଉପବନରାଜି ସୁଶୋଭିତ ॥ ୨ ॥ ନଦୀ ତୀରରେ କୌଣସି କୌଣସି ସ୍ଥାନରେ ବୈରାଗୀ ଓ ଜ୍ଞାନରତ ମୁନି-ସନ୍ନ୍ୟାସୀମାନେ ନିବାସ କରୁଥାଆନ୍ତି । ମୁନିମାନେ ନଦୀକୂଳରେ ସୁନ୍ଦର ତୁଳସୀ ଗଛ ଓ ବଡ ବଡ ବୃକ୍ଷମାନ ଲଗାଇଥାଆନ୍ତି ॥୩॥ ନଗର ଭିତରର ଶୋଭା ତ କିଛି କୁହାଯାଇ ନ ପାରେ । ନଗରର ବାହାରେ ମଧ୍ୟ ଅନୁପମ ଶୋଭାରାଜି ବିରାଜିତ । ଅଯୋଧ୍ୟାପୁରୀର ଦର୍ଶନ ମାତ୍ରେ ସମସ୍ତ ପାପ ଦୂର ହୋଇଯାଏ । ସେଠାରେ ବନ, ଉପବନ, ବାପୀ ଓ ସରୋବରମାନ ସୁଶୋଭିତ ॥ ୪ ॥ ଛନ୍ଦ '—ଅନୁପମ ବାପୀ ଓ ସରୋବର ଏବଂ ମନୋହର, ବିଶାଳ କୂପମାନ ଶୋଭା ପାଉଥାଏ । ସେମାନଙ୍କର ସୁନ୍ଦର ରତ୍ନ ସୋପାନ ଓ ନିର୍ମଳ ଜଳ ଦେଖି ଦେବତା ଓ ମୁନିମାନେ ମୁଗ୍ଧ ହୋଇଯାଆନ୍ତି । ସରୋବରମାନଙ୍କରେ ବିବିଧ ବର୍ଣ୍ଣର କମଳ ପ୍ରସ୍ଫୁଟିତ । ଅନେକ ପକ୍ଷୀ କୂଜନ କରୁଥାଆନ୍ତି ଏବଂ ଭ୍ରମରମାନେ ମଧ୍ୟ ଗୁଞ୍ଜନ କରୁଥାଆନ୍ତି । ପରମରମ୍ୟ ଉପବନମାନେ ସତେ ଯେପରି କୋକିଳର କଳରବଚ୍ଛଳରେ ପଥଚାରୀମାନଙ୍କୁ ଆହ୍ୱାନ କରୁଅଛନ୍ତି ॥ ଦୋହା '—ସ୍ୱୟଂ ରମାପତି ଭଗବାନ୍ ଯେଉଁଠାରେ ରାଜା, ସେହି ନଗରର ବର୍ଣ୍ଣନା କାହୁଁ କରାଯାଇ ପାରିବ ? ଅଣିମାଦି ଅଷ୍ଟ ସିଦ୍ଧି ଏବଂ ସମସ୍ତ ସୁଖ-ସମ୍ପତ୍ତି ଅଯୋଧ୍ୟାରେ ସତେ ଯେମିତି ଛାଇ ହୋଇ-

ଜହଁ ତହଁ ନର ରଘୁପତି ଗୁନ ଗାୱହିଁ । ବୈଠି ପରସପର ଇହଇ ସିଖାୱହିଁ ॥
ଭଜହୁ ପ୍ରନତ ପ୍ରତିପାଲକ ରାମହି । ସୋଭା ସୀଲ ରୂପ ଗୁନ ଧାମହି ॥୧॥
ଜଲଜ ବିଲୋଚନ ସ୍ୟାମଲ ଗାତହି । ପଲକ ନୟନ ଇବ ସେବକ ତ୍ରାତହି ॥
ଧୃତ ସର ରୁଚିର ଚାପ ତୂନୀରହି । ସଂତ କଂଜ ବନ ରବି ରନଧୀରହି ॥୨॥
କାଲ କରାଲ ବ୍ୟାଲ ଖଗରାଜହି । ନମତ ରାମ ଅକାମ ମମତା ଜହି ॥
ଲୋଭ ମୋହ ମୃଗଜୂଥ କିରାତହି । ମନସିଜ କରି ହରି ଜନ ସୁଖଦାତହି ॥୩॥
ସଂସୟ ସୋକ ନିବିଡ ତମ ଭାନୁହି । ଦନୁଜ ଗହନ ଘନ ଦହନ କୃସାନୁହି ॥
ଜନକସୁତା ସମେତ ରଘୁବୀରହି । କସ ନ ଭଜହୁ ଭଞ୍ଜନ ଭବ ଭୀରହି ॥୪॥
ବହୁ ବାସନା ମସକ ହିମ ରାସିହି । ସଦା ଏକରସ ଅଜ ଅବିନାସିହି ॥
ମୁନି ରଂଜନ ଭଂଜନ ମହି ଭାରହି । ତୁଲସିଦାସ କେ ପ୍ରଭୁହି ଉଦାରହି ॥୫॥

---

ଯେଣେତେଣେ ଲୋକେ ବସି ରାମଙ୍କ ଗୁଣକୁ । ଗାଇ ପରସ୍ପରେ ଏହା ଶିଖାନ୍ତି ଅନ୍ୟଙ୍କୁ ॥
ଭଜନ କର ଆରତ-ପାଳକ ରାମଙ୍କୁ । ରୂପ ଗୁଣ ବଳଶୀଳ ସୌନ୍ଦର୍ଯ୍ୟ-ଧାମଙ୍କୁ ॥୧॥
ସଜଳ କଞ୍ଜଲୋଚନ ଶ୍ୟାମ ଶରୀରଙ୍କୁ । ପଲକ ନୟନ ସମ ଭୃତ୍ୟ-ରକ୍ଷକଙ୍କୁ ॥
ରୁଚିର ଚାପ ଶାୟକ ତୂଣୀର-ଧରଙ୍କୁ । ସନ୍ଥ-କଞ୍ଜବନ ଭାନୁ, ସମର-ଧୀରଙ୍କୁ ॥୨॥
କାଳ-କରାଳ-ଭୁଜଙ୍ଗ ବିହଙ୍ଗରାଜଙ୍କୁ । ନମ ନିଷ୍କାମଙ୍କ ସ୍ନେହୀ ଶ୍ରୀ ରଘୁରାଜଙ୍କୁ ॥
ଲୋଭ ମୋହ ରୂପୀ ମୃଗଯୂଥ କିରାତଙ୍କୁ । କାମ-ଗଜ ପଞ୍ଚାନନ ଜନ-ସୁଖଦଙ୍କୁ ॥୩॥
ସଂଶୟ-ଶୋକ-ନିବିଡ-ତମ ତପନଙ୍କୁ । ରଜନୀଚର - ଗହନ - ବନ - ଦହନଙ୍କୁ ॥
ଜନକ-ସୁତା ସମେତ ରଘୁନନ୍ଦନଙ୍କୁ । କି ପାଇଁ ନ ଭଜ ଭବ-ଭୟ-ଭଞ୍ଜନଙ୍କୁ ॥୪॥
ବହୁ ବାସନା-ମଶକ ତୁଷାର-ରାଶିଙ୍କୁ । ସଦା ଅବିଚ୍ଛିନ୍ନ ଅଜ ଶ୍ରୀ ଅବିନାଶୀଙ୍କୁ ॥
ମୁନି-ରଞ୍ଜନ ଭଞ୍ଜନ ଧରଣୀଭାରଙ୍କୁ । ତୁଲସୀ ଦାସଙ୍କ ପ୍ରଭୁ ରାମ ଉଦାରଙ୍କୁ ॥୫॥

---

ଯାଇଛି ॥ ୨୯ ॥ ଚୌପାଇ —ଯେଉଁଠି ଦେଖ, ସେଇଠି ଲୋକେ ଶ୍ରୀ ରଘୁନାଥଙ୍କ ଗୁଣଗାନରେ ରତ ଏବଂ ପରସ୍ପରକୁ ଏହି ଉପଦେଶ ଦେଉଥା'ନ୍ତି —"ଶରଣାଗତ-ପାଳକ ଶ୍ରୀରାମଙ୍କୁ ଭଜନ କର, ଶୋଭା, ଶୀଳ, ରୂପ ଓ ଗୁଣର ଧାମ ଶ୍ରୀରାମଙ୍କୁ ଭଜ ॥ ୧ ॥ କମଳ-ନୟନ ଓ ଶ୍ୟାମଳ-ଶରୀରଙ୍କୁ ଭଜ । ପଲକ ନୟନ-ଯୁଗଳକୁ ରକ୍ଷା କଲା ପରି ଯେଉଁ ପ୍ରଭୁ ନିଜ ସେବକମାନଙ୍କୁ ରକ୍ଷା କରନ୍ତି, ତାହାଙ୍କୁ ଭଜ । ରୁଚିର ଶର-ଚାପ-ତୂଣୀର-ଧାରୀଙ୍କୁ ଭଜ । ସନ୍ଥ-ସରୋଜ-ବିକାଶ ସକାଶେ ସୂର୍ଯ୍ୟ-ସ୍ୱରୂପ ଏବଂ ସମର-ଧୀର ଶ୍ରୀରାମଙ୍କୁ ଭଜନ କର ॥ ୨ ॥ କରାଳ କାଳ-ରୂପକ ସର୍ପର ଭକ୍ଷକ ଶ୍ରୀରାମ-ରୂପକ ଗରୁଡଙ୍କୁ ଭଜନ କର । ଲୋଭ-ମୋହ-ମୃଗ-ସମୂହଙ୍କ ବିନାଶକାରୀ ଶ୍ରୀରାମ-କିରାତଙ୍କୁ ଭଜ । କାମଦେବ-ଗଜ ନିମନ୍ତେ ସିଂହ-ସ୍ୱରୂପ ତଥା ସେବକ-ସୁଖଦାୟକ ଶ୍ରୀରାମଙ୍କୁ ଭଜ ॥ ୩ ॥ ସଂଶୟ-ଶୋକ ରୂପକ ଘନ ଅନ୍ଧକାରର ବିନାଶକ ସୂର୍ଯ୍ୟ ସ୍ୱରୂପ ଶ୍ରୀରାମଙ୍କୁ ଭଜନ କର । ରାକ୍ଷସ ରୂପକ ଘନ ବନର ଦହନକାରୀ ଶ୍ରୀରାମ-ରୂପକ ଅଗ୍ନିଙ୍କୁ ଭଜ ।

ଏହି ବିଧି ନଗର ନାରି ନର କରହିଁ ରାମ ଗୁନ ଗାନ ।
ସାନୁକୂଲ ସବ ପର ରହହିଁ ସଂତତ କୃପାନିଧାନ ॥୩୦॥
ଜବ ତେଁ ରାମ ପ୍ରତାପ ଖଗେସା । ଉଦିତ ଭୟଉ ଅତି ପ୍ରବଲ ଦିନେସା ॥
ପୂରି ପ୍ରକାସ ରହେଉ ତିହୁଁ ଲୋକା । ବହୁତେହ୍ନ ସୁଖ ବହୁତନ ମନ ସୋକା ॥୧॥
ଜିହ୍ନହି ସୋକ ତେ କହଉଁ ବଖାନୀ । ପ୍ରଥମ ଅବିଦ୍ୟା ନିସା ନସାନୀ ॥
ଅଘ ଉଲୂକ ଜହଁ ତହାଁ ଲୁକାନେ । କାମ କ୍ରୋଧ କୈରବ ସକୁଚାନେ ॥୨॥
ବିବିଧ କର୍ମ ଗୁନ କାଲ ସୁଭାଊ । ଏ ଚକୋର ସୁଖ ଲହହିଁ ନ କାଊ ॥
ମତ୍ସର ମାନ ମୋହ ମଦ ଚୋରା । ଇନ୍ହ କର ହୁନର ନ କଵନିହୁଁ ଓରା ॥୩॥

---

ଗାଆନ୍ତି ଏ ଭାବେ ରାମ ଗୁଣ ସର୍ବେ ପୁରବାସୀ ନାରୀ ନର ।
ଅନୁକୂଳ ସଦା ସମସ୍ତଙ୍କ ପ୍ରତି ରହନ୍ତି କରୁଣାକର ॥୩୦॥
ଯେଉଁ ଦିନଠାରୁ ରାମ ପ୍ରତାପ, ଖଗେଶ । ଉଦିତ ହୋଇଲେ ଅତି ପ୍ରବଳ ଦିନେଶ ॥
ପ୍ରକାଶରେ ପୂର୍ଣ୍ଣ ହୋଇ ରହିଲା ତ୍ରିଲୋକ । ବହୁତଙ୍କୁ ସୁଖ ବହୁତଙ୍କ ମନେ ଶୋକ ॥୧॥
ଯାହାଙ୍କୁ ଶୋକ ହୋଇଲା କହୁଅଛି ବର୍ଣ୍ଣି । ପ୍ରଥମେ ନାଶ ପାଇଲା ଅବିଦ୍ୟା-ରଜନୀ ॥
ଯହିଁ ତହିଁ ପାପରୂପୀ ଉଲୂକ ଲୁଚିଲେ । କାମ-କ୍ରୋଧ-କଇରବ ସଙ୍କୋଚ ଲଭିଲେ ॥୨॥
ନାନା ପ୍ରକାର ସ୍ୱଭାବ କାଳ କର୍ମ ଗୁଣ । ଏ ଚକୋର କେବେ ସୁଖ ନ ପାଇଲେ, ଶୁଣ ॥
ଚୋର ମାନ ମଦ ମୋହ ମତ୍ସର ନିକର । କାହିଁ ନ ଚଳିଲା କିଛି ଏହାଙ୍କ ହୁନର ॥୩॥

---

ଜନ୍ମ-ମୃତ୍ୟୁ ଭୟର ବିନାଶକାରୀ ଶ୍ରୀଜାନକୀଙ୍କ ସମେତ ଶ୍ରୀରାମଙ୍କୁ କାହିଁକି ଭଜନ କରୁନାହଁ ? ॥୪॥ ବହୁ ବାସନା-ମଶକ-ବିନାଶକ ଶ୍ରୀରାମ ରୂପୀ ଧୂମରାଶିଙ୍କୁ ଭଜନ କର । ନିତ୍ୟ ଏକରସ, ଅଜନ୍ମା ଓ ଅବିନାଶୀ ଶ୍ରୀ ରଘୁନାଥଙ୍କୁ ଭଜନ କର । ମୁନିବୃନ୍ଦ-ଆନନ୍ଦଦାୟକ ଭୂଭାର-ହାରକ ଓ ତୁଳସୀ ଦାସର ଉଦାର ସ୍ୱାମୀ ଶ୍ରୀରାମଙ୍କୁ ଭଜନ କର ।" ॥ ୫ ॥
ଦୋହା :—ଏହି ରୂପେ ନଗରର ସ୍ତ୍ରୀ ପୁରୁଷମାନେ ଶ୍ରୀରାମଙ୍କ ଗୁଣ ଗାନ କରନ୍ତି ଏବଂ କୃପାନିଧାନ ଶ୍ରୀରାମ ସଦାସର୍ବଦା ସେମାନଙ୍କ ଉପରେ ଅତିଶୟ ପ୍ରସନ୍ନ ଥାଆନ୍ତି ॥ ୩୦ ॥
ଚୌପାଇ :—କାକ ଭୁଶୁଣ୍ଡି କହନ୍ତି, "ହେ ପକ୍ଷିରାଜ ଗରୁଡ଼ ! ଯେଉଁଦିନଠାରୁ ରାମ-ପ୍ରତାପ ରୂପକ ଅତ୍ୟନ୍ତ ପ୍ରଚଣ୍ଡ ରବି ଉଦିତ ହେଲେ, ସେହିଦିନଠାରୁ ତିନିଲୋକରେ ସମ୍ପୂର୍ଣ୍ଣ ପ୍ରକାଶ ଭରି ଯାଇଅଛି । ଏହା ଯୋଗେ ଅନେକଙ୍କ ମନରେ ସୁଖ ଏବଂ ଅନେକଙ୍କ ମନରେ ଶୋକ ଜାତ ହୋଇଅଛି ॥ ୧ ॥ ଯେଉଁ ଯେଉଁମାନଙ୍କ ମନରେ ଶୋକ ଜାତ ହେଲା, ସେ ସବୁଙ୍କୁ ମୁଁ ବର୍ଣ୍ଣନା କରି କହୁଅଛି । ସର୍ବତ୍ର ପ୍ରକାଶ ପରିବ୍ୟାପ୍ତ ହୋଇଯାଆନ୍ତେ, ସର୍ବପ୍ରଥମେ ଅବିଦ୍ୟା-ରଜନୀ ନଷ୍ଟ ହୋଇଗଲା । ପାପ-ଉଲୂକ ଏଣେତେଣେ ଲୁଚିଗଲେ ଏବଂ କାମ-କ୍ରୋଧ-କୁମୁଦଗଣ ମୁଦ୍ରିତ ହୋଇଗଲେ ॥ ୨ ॥ ବିବିଧ (ବନ୍ଧନକାରକ) କର୍ମ, ଗୁଣ, କାଳ ଓ ସ୍ୱଭାବ ଏମାନେ ଚକୋର । ଏମାନେ ରାମ-ପ୍ରତାପ-ସୂର୍ଯ୍ୟଙ୍କ ପ୍ରକାଶରେ କଦାପି ସୁଖ ଲାଭ କରନ୍ତି ନାହିଁ । ମାତ୍ସର୍ଯ୍ୟ (ଈର୍ଷ୍ୟା),

ଧରମ ତଡ଼ାଗ ଜ୍ଞାନ ବିଜ୍ଞାନା । ଏ ପଙ୍କଜ ବିକସେ ବିଧି ନାନା ॥
ସୁଖ ସନ୍ତୋଷ ବିରାଗ ବିବେକା । ବିଗତ ସୋକ ଏ କୋକ ଅନେକା ॥୪॥
ୟହ ପ୍ରତାପ ରବି ଜାକେଁ ଉର ଜବ କରଇ ପ୍ରକାସ ।
ପଛିଲେ ବାଢ଼ହିଁ ପ୍ରଥମ ଜେ କହେ ତେ ପାୱହିଁ ନାସ ॥୩୧॥
ଭ୍ରାତନ୍ହ ସହିତ ରାମୁ ଏକ ବାରା । ସଂଗ ପରମ ପ୍ରିୟ ପବନକୁମାରା ॥
ସୁନ୍ଦର ଉପବନ ଦେଖନ ଗଏ । ସବ ତରୁ କୁସୁମିତ ପଲ୍ଲବ ନଏ ॥୧॥
ଜାନି ସମୟ ସନକାଦିକ ଆଏ । ତେଜପୁଞ୍ଜ ଗୁନ ସୀଲ ସୁହାଏ ॥
ବ୍ରହ୍ମାନନ୍ଦ ସଦା ଲୟଲୀନା । ଦେଖତ ବାଲକ ବହୁକାଲୀନା ॥୨॥
ରୂପ ଧରେଁ ଜନୁ ଚାରିଉ ବେଦା । ସମଦରସୀ ମୁନି ବିଗତ ବିଭେଦା ॥
ଆସା ବସନ ବ୍ୟସନ ୟହ ତିନ୍ହହୀଁ । ରଘୁପତି ଚରିତ ହୋଇ ତହଁ ସୁନହୀଁ ॥୩॥

---

ଧର୍ମ-ସରସୀରେ ଜ୍ଞାନ ଆଉର ବିଜ୍ଞାନ । ଏ ସରୋଜ ବିକଶିଲେ ବିବିଧ ବିଧାନ ॥
ସୁଖ ସନ୍ତୋଷ ବୈରାଗ୍ୟ ଉକଣ୍ଠ ବିବେକ । ଶୋକ ଶୂନ୍ୟ ଏ ଚକୁଆ ଚକୁଈ ଅନେକ ॥୪॥
ଏ ପ୍ରତାପ-ରବି ଯାହାର ହୃଦୟେ ଯେବେ କରଇ ପ୍ରକାଶ ।
ବଢନ୍ତି ସମସ୍ତ ପାଶ୍ଚାତ କଥିତ, ପ୍ରଥମ ଲଭନ୍ତି ନାଶ ॥୩୧॥
ଏକଦା ଭ୍ରାତାଙ୍କ ସହ ଶ୍ରୀ ରଘୁ ପ୍ରବର । ସଙ୍ଗତେ ପରମ ପ୍ରିୟ ପବନ-କୁମର ॥
ବିଲୋକିବା ପାଇଁ ଗଲେ ଉଦ୍ୟାନ ଲଳିତ । ସର୍ବ ତରୁ କୁସୁମିତ ନବ ପଲ୍ଲବିତ ॥୧॥
ଆଗମିଲେ ସନକାଦି ଜାଣି ସୁସମୟ । ତେଜ-ପୁଞ୍ଜ ଗୁଣଶୀଳ ସୁରୂ ସମନ୍ୱୟ ॥
ବ୍ରହ୍ମାନନ୍ଦେ ଋଷିଗଣ ସଦା ଲୟ ଲୀନ । ଦେଖନ୍ତେ ବାଳକ, କିନ୍ତୁ ବହୁତ-କାଳୀନ ॥୨॥
ମନେ ହୁଏ, ଦେହ ଧରିଛନ୍ତି ଚାରିବେଦ । ସମଦର୍ଶୀ ମୁନିବର ବିଗତ ବିଭେଦ ॥
ଦିଗ ବସନ, ଏତିକି ତାହାଙ୍କ ବ୍ୟସନ । ଯହିଁ ହୁଏ ରାମ-କଥା, କରନ୍ତି ଶ୍ରବଣ ॥୩॥

---

ମାନ, ମୋହ ଓ ମଦ ଆଦି ଚୋରଙ୍କର ହୃଦର କୌଣସି ସ୍ଥାନରେ ଚଳିପାରେନାହିଁ ॥୩॥ ଧର୍ମ-ସରୋବରରେ ଜ୍ଞାନ, ବିଜ୍ଞାନ ଆଦି ବିବିଧ କମଳ ବିକଶିତ ହୋଇ ଉଠିଲେ । ସୁଖ, ସନ୍ତୋଷ, ବୈରାଗ୍ୟ ଓ ବିବେକ ଆଦି ଅନେକ ଚକ୍ରବାକ ଶୋକମୁକ୍ତ (ଆନନ୍ଦିତ) ହୋଇଗଲେ ॥ ୪ ॥ ଦୋହା —ଏହି ଶ୍ରୀରାମ-ପ୍ରତାପ-ରବି ଶେଷୋକ୍ତ ଧର୍ମ, ଜ୍ଞାନ, ବିଜ୍ଞାନ, ସୁଖ, ସନ୍ତୋଷ, ବୈରାଗ୍ୟ, ବିବେକ ଆଦିର ହୃଦୟରେ ଯେତେବେଳେ କିରଣ ପ୍ରକାଶ କରନ୍ତି, ସେମାନେ ବୃଦ୍ଧି ଲାଭ କରନ୍ତି ଏବଂ ପ୍ରଥମୋକ୍ତ ଅବିଦ୍ୟା, ପାପ, କାମ, କ୍ରୋଧ, କର୍ମ, କାଳ, ଗୁଣ, ସ୍ୱଭାବ ଆଦି (ଅନ୍ଧକାର) ବିନାଶ ଭଜନ୍ତି ॥୩୧॥ ଚୌପାଈ —ଏକଦା ଭାଇମାନଙ୍କ ଗହଣରେ ଶ୍ରୀରାମଚନ୍ଦ୍ର, ପରମପ୍ରିୟ ହନୁମାନଙ୍କୁ ସଙ୍ଗରେ ନେଇ ସୁନ୍ଦର ଉପବନ ଦେଖିବାକୁ ଗଲେ । ସେଠାର ସମସ୍ତ ବୃକ୍ଷ ନବ କୁସୁମରେ ବିକଶିତ ଏବଂ ନବ ପଲ୍ଲବରେ ପଲ୍ଲବିତ ॥ ୧ ॥ ସୁଅବସର ଜାଣି ସନକାଦି ମୁନିମାନେ ଆସିଲେ । ସେମାନେ ତେଜର ପୁଞ୍ଜ, ସୁନ୍ଦର ଗୁଣ-ଶୀଳ-ଯୁକ୍ତ ଏବଂ ସର୍ବଦା

ତହାଁ ରହେ ସନକାଦି ଭବାନୀ । ଜହଁ ଘଟସଂଭବ ମୁନିବର ଜ୍ଞାନୀ ॥
ରାମ କଥା ମୁନି ବହୁବିଧି ବରନୀ । ଜ୍ଞାନଜୋନି ପାବକ ଜିମି ଅରନୀ ॥୪॥
ଦେଖି ରାମ ମୁନି ଆୱତ ହରଷି ଦଣ୍ଡୱତ କୀହ୍ନ ।
ସ୍ୱାଗତ ପୂଁଛି ପୀତ ପଟ ପ୍ରଭୁ ବୈଠନ କହଁ ଦୀହ୍ନ ॥୩୨॥
କୀହ୍ନ ଦଣ୍ଡବତ ତୀନିଉଁ ଭାଈ । ସହିତ ପବନସୁତ ସୁଖ ଅଧିକାଈ ॥
ମୁନି ରଘୁପତି ଛବି ଅତୁଲ ବିଲୋକୀ । ଭଏ ମଗନ ମନ ସକେ ନ ରୋକୀ ॥୧॥
ସ୍ୟାମଲ ଗାତ ସରୋରୁହ ଲୋଚନ । ସୁନ୍ଦରତା ମନ୍ଦିର ଭବ ମୋଚନ ॥
ଏକଟକ ରହେ ନିମେଷ ନ ଲାୱହିଁ । ପ୍ରଭୁ କର ଜୋରେ ସୀସ ନୱାୱହିଁ ॥୨॥

---

ସନକାଦି ଯାଇଥିଲେ ସେ ସ୍ଥାନେ, ଭବାନି ! ଯେଉଁଠାରେ ଥିଲେ ଘଟଭବ ମୁନି ଜ୍ଞାନୀ ॥
ରାମ-କଥା ମୁନିରାଜ କରିଲେ ବର୍ଣ୍ଣନ । ଜ୍ଞାନଯୋନି ପାବକକୁ ଅରଣୀ ଯେସନ ॥୪॥
ମୁନି ଆଗମନ ଦେଖି ମୋଦେ ରାମ ଦଣ୍ଡ ପ୍ରଣାମ କରିଲେ ।
ପଚାରି ସ୍ୱାଗତ ବସିବାକୁ ପୀତ ବସ୍ତ୍ର ପ୍ରଭୁ ବିଛାଇଲେ ॥୩୨॥
କଲେ ଦଣ୍ଡବତ ତିନି ଅନୁଜ ଆଦର । ଅଧିକ ଆନନ୍ଦେ, ସହି ପବନ-କୁମର ॥
ମୁନି ଅନୁପମ ରାମ ଛବି ବିଲୋକିଣ । ମଗ୍ନ ହେଲେ, ମନ ସ୍ଥିର କରି ନ ପାରିଣ ॥୧॥
ଶ୍ୟାମଲ ଶରୀର ସରୋରୁହ ବିଲୋଚନ । ସୌନ୍ଦର୍ଯ୍ୟ-ନିବାସ ସ୍ଥାନ ଭବ-ବିମୋଚନ ॥
ନିରେଖି ରହିଲେ ହୋଇ ଅପଲକ । ପ୍ରଭୁ କର ଯୋଡି ପୁଣି ନୁଆନ୍ତି ମସ୍ତକ ॥୨॥

---

ବ୍ରହ୍ମାନନ୍ଦରେ ତଲ୍ଲୀନ । ଦେଖିବାକୁ ତ ବାଳକ ଭଳି, କିନ୍ତୁ ବାସ୍ତବରେ ବହୁତ ବୟସର ॥ ୨ ॥ ସତେ ଅବା ଚାରିବେଦ ବାଳକ ରୂପ ଧାରଣ କରିଅଛନ୍ତି ! ସେହି ମୁନିମାନେ ସମଦର୍ଶୀ ଏବଂ ଭେଦଭାବ-ରହିତ । ଦିଗମାନ ତାହାଙ୍କର ବସ୍ତ୍ର । ସେମାନଙ୍କର ଗୋଟିଏ ମାତ୍ର ବ୍ୟସନ (ବିଳାସ) ହେଉଛି, ଯେଉଁଠାରେ ଶ୍ରୀରାମଙ୍କ ଲୀଳା-ଚରିତ ଗାନ କରାଯାଏ, ସେଠାକୁ ସେମାନେ ଆସି ତାହା ଅବଶ୍ୟ ଶୁଣନ୍ତି ॥ ୩ ॥ ଶିବ କହନ୍ତି, "ହେ ଭବାନି ! ସନକାଦି ମୁନି ଜ୍ଞାନୀ ମୁନିବର ଶ୍ରୀ ଅଗସ୍ତ୍ୟଙ୍କର ବାସ-ସ୍ଥାନ ଆଶ୍ରମକୁ ଯାଇଥିଲେ । ମୁନିବର ଶ୍ରୀରାମଙ୍କ ଅପାର ଲୀଳା-କଥା ବର୍ଣ୍ଣନା କରିଥିଲେ । ଭକ୍ତ ପ୍ରସଙ୍ଗ ଅରଣି ଅଗ୍ନି ଉତ୍ପନ୍ନ କଲା ପରି ଜ୍ଞାନ ଉତ୍ପନ୍ନ କରିବାକୁ ସମର୍ଥ ।" ॥ ୪ ॥

ଦୋହା :—ସନକାଦି ମୁନିମାନଙ୍କର ଆଗମନ ଦେଖି ଶ୍ରୀରାମଚନ୍ଦ୍ର ଆନନ୍ଦିତ ହୋଇ ସେମାନଙ୍କୁ ଦଣ୍ଡବତ କଲେ । ସେମାନଙ୍କର ସ୍ୱାଗତ ସ୍ୱରୂପ କୁଶଳାଦି ବାର୍ତ୍ତା ପଚାରି ପ୍ରଭୁ ସେମାନଙ୍କ ବସିବା ନିମନ୍ତେ ତାଙ୍କ ପୀତାମ୍ବର ବିଛାଇ ଦେଲେ ॥ ୩୨ ॥

ଚୌପାଈ :—ପୁଣି ହନୁମାନଙ୍କ ସମେତ ତିନି ଭାଇ ମୁନିମାନଙ୍କୁ ଦଣ୍ଡବତ କଲେ । ସମସ୍ତଙ୍କୁ ଅତି ସୁଖ ମିଳିଲା । ମୁନିମାନେ ଶ୍ରୀ ରଘୁନାଥଙ୍କ ଅନୁପମ ଛବି ଦେଖି ତହିଁରେ ନିମଗ୍ନ ହୋଇଗଲେ । ସେମାନେ ମନକୁ ରୁଦ୍ଧ କରି ପାରିଲେ ନାହିଁ ॥ ୧ ॥ ସେମାନେ ଭବ-ଭୟ-ବିମୋଚନ, ଶ୍ୟାମଶରୀର, କମଳ-ନୟନ, ସୌନ୍ଦର୍ଯ୍ୟ-ସଦନ ଶ୍ରୀରାମଙ୍କୁ

ତିନ୍ହ କୈ ଦଶା ଦେଖି ରଘୁବୀରା । ସ୍ରବତ ନୟନ ଜଲ ପୁଲକ ସରୀରା ॥
କର ଗହି ପ୍ରଭୁ ମୁନିବର ବୈଠାରେ । ପରମ ମନୋହର ବଚନ ଉଚାରେ ॥୩॥
ଆଜୁ ଧନ୍ୟ ମୈଁ ସୁନହୁ ମୁନୀସା । ତୁମ୍ହରେଁ ଦରସ ଜାହିଁ ଅଘ ଖୀସା ॥
ବଡ଼େ ଭାଗ ପାଇବ ସତସଙ୍ଗା । ବିନହିଁ ପ୍ରୟାସ ହୋହିଁ ଭବ ଭଂଗା ॥୪॥

ସଂତ ସଂଗ ଅପବର୍ଗ କର କାମୀ ଭବ କର ପନ୍ଥ ।
କହହିଁ ସନ୍ତ କବି କୋବିଦ ଶ୍ରୁତି ପୁରାନ ସଦଗ୍ରନ୍ଥ ॥୩୩॥

ସୁନି ପ୍ରଭୁ ବଚନ ହରଷି ମୁନି ଚାରୀ । ପୁଲକିତ ତନ ଅସ୍ତୁତି ଅନୁସାରୀ ॥
ଜୟ ଭଗବଂତ ଅନଂତ ଅନାମୟ । ଅନଘ ଅନେକ ଏକ କରୁନାମୟ ॥୧॥
ଜୟ ନିର୍ଗୁନ ଜୟ ଜୟ ଗୁନସାଗର । ସୁଖମନ୍ଦିର ସୁନ୍ଦର ଅତି ନାଗର ॥
ଜୟ ଇନ୍ଦିରାରମନ ଜୟ ଭୂଧର । ଅନୁପମ ଅଜ ଅନାଦି ସୋଭାକର ॥୨॥

---

ସେମାନଙ୍କ ଦଶା ଅବଲୋକି ରଘୁବୀର । ସ୍ରବନ୍ତି ନୟନରୁ ନୀର, ପୁଲକ ଶରୀର ॥
କର ଧରଣ ମୁନିଙ୍କୁ ପ୍ରଭୁ ବସାଇଲେ । ଅତି ମନୋହର ମୃଦୁ ବଚନ ଭାଷିଲେ ॥୩॥
ଆଜି ଧନ୍ୟ ମୁହିଁ ଶୁଣ, ମୁନି ମହୋଦୟ । ତୁଅନ୍ତ ତବ ଦର୍ଶନେ ନଷ୍ଟ ପାପଚୟ ॥
ବଡ଼ ଭାଗ୍ୟ ହେଲେ କାହିଁ ସତ୍ସଙ୍ଗ ମିଳଇ । ଅନାୟାସେ ଭବ-ଭୟ ବିନାଶ ହୁଅଇ ॥୪॥

ଅଟଇ ସନ୍ତଙ୍କ ଅପବର୍ଗ ମାର୍ଗ, କାମିଙ୍କ ଭବ ପଥ ।
କହନ୍ତି ପଣ୍ଡିତ କବି ଶ୍ରୁତି ସନ୍ଥ ଶାସ୍ତ୍ର ପୁରାଣ ସଦ୍ ଗ୍ରନ୍ଥ ॥୩୩॥

ଶୁଣି ପ୍ରଭୁ ବାଣୀ ଚାରି ମୁନି ପ୍ରମୋଦରେ । ସ୍ତୁତି ଆରମ୍ଭିଲେ ପୁଲକିତ କଳେବରେ ॥
ଜୟ ଭଗବନ୍ତ ଅନନ୍ତ ଯେ ଅନାମୟ । ଅନଘ ଅନେକ ରୂପ ଏକ କୃପାମୟ ॥୧॥
ଜୟ ନିର୍ଗୁଣ ଜୟସ୍ତୁ ଜୟ ଗୁଣାକର । ସୁଖ-ମନ୍ଦିର ସୁନ୍ଦର ପରମ ନାଗର ॥
ଜୟ ଇନ୍ଦିରା-ରମଣ ଜୟ ମହୀଧର । ଅନୁପ, ଅଜ, ଅନାଦି, ଶୋଭା-ରତ୍ନାକର ॥୨॥

---

ନିନିମେଷ ନୟନରେ ଦେଖୁ ଦେଖୁ ରହିଗଲେ । ସେମାନଙ୍କ ପଲକ ପଡ଼ୁ ନ ଥାଏ ଏବଂ ପ୍ରଭୁ ହାତ ଯୋଡ଼ି ମସ୍ତକ ଅବନତ କରି ରହିଥାଆନ୍ତି ॥ ୨ ॥ ସେମାନଙ୍କର ପ୍ରେମ-ବିହ୍ୱଳ ଦଶା ଦେଖି ଶ୍ରୀରାମଙ୍କ ନେତ୍ରରୁ ମଧ୍ୟ ପ୍ରେମାଶ୍ରୁ ଜଳ ବହିବାକୁ ଲାଗିଲା ଏବଂ ତାଙ୍କ ଶରୀର ପୁଲକିତ ହୋଇଗଲା । ତଦନନ୍ତର ପ୍ରଭୁ ହାତ ଧରି ଶ୍ରେଷ୍ଠ ମୁନିମାନଙ୍କୁ ବସାଇଲେ ଏବଂ ପରମ ମନୋହର ବଚନ କହିଲେ—॥ ୩ ॥ "ହେ ମୁନୀଶ୍ୱର-ଗଣ ! ଶୁଣନ୍ତୁ, ଆଜି ମୁଁ ଧନ୍ୟ । ଆପଣଙ୍କ ଦର୍ଶନ ଯୋଗେ ସମସ୍ତ ପାପ ନଷ୍ଟ ହୋଇଯାଏ । ବଡ଼ ଭାଗ୍ୟବଳରେ ସତ୍ସଙ୍ଗ ମିଳେ । ସତ୍ସଙ୍ଗ ବଳରେ ଅନାୟାସରେ ଜନ୍ମ-ମୃତ୍ୟୁର ଚକ୍ର ନଷ୍ଟ ହୋଇଯାଏ ॥ ୪ ॥ ଦୋହା '—ସାଧୁ ସଙ୍ଗ ମୋକ୍ଷର ମାର୍ଗ ଏବଂ କାମୁକର ସଙ୍ଗ ଜନ୍ମ-ମୃତ୍ୟୁର ବନ୍ଧନରେ ପଡ଼ିବାର ପଥ । ସନ୍ଥ, କବି ଓ ପଣ୍ଡିତମାନେ ଏବଂ ବେଦ ପୁରାଣ ଆଦି ସମସ୍ତ ସଦ୍‌ଗ୍ରନ୍ଥ ଏହିପରି କହନ୍ତି ॥ ୩୩ ॥ ଚୌପାଈ '—ପ୍ରଭୁଙ୍କ ବଚନ ଶୁଣି ଚାରି ମୁନି ଆନନ୍ଦିତ ହୋଇ ପୁଲକିତ ଶରୀରରେ ସ୍ତୁତି କରିବାକୁ

ଜ୍ଞାନନିଧାନ ଅମାନ ମାନପ୍ରଦ । ପାୱନ ସୁଜସ ପୁରାନ ବେଦ ବଦ ॥
ତଜ୍ଞ କୃତଜ୍ଞ ଅଜ୍ଞତା ଭଂଜନ । ନାମ ଅନେକ ଅନାମ ନିରଂଜନ ॥୩॥
ସର୍ବ ସର୍ବଗତ ସର୍ବ ଉରାଲୟ । ବସସି ସଦା ହମ କହୁଁ ପରିପାଲୟ ॥
ଦ୍ୱନ୍ଦ ବିପତି ଭବଫନ୍ଦ ବିଭଂଜୟ । ହୃଦି ବସି ରାମ କାମ ମଦ ଗଂଜୟ ॥୪॥
ପରମାନନ୍ଦ କୃପାୟତନ ମନ ପରିପୂରନ କାମ ।
ପ୍ରେମ ଭଗତି ଅନପାୟନୀ ଦେହୁ ହମହି ଶ୍ରୀରାମ ॥୩୪॥
ଦେହୁ ଭଗତି ରଘୁପତି ଅତି ପାୱନି । ତ୍ରିବିଧ ତାପ ଭବଦାପ ନସାୱନି ॥
ପ୍ରନତ କାମ ସୁରଧେନୁ କଲପତରୁ । ହୋଇ ପ୍ରସନ୍ନ ଦୀଜୈ ପ୍ରଭୁ ୟହ ବରୁ ॥୧॥

---

ଜ୍ଞାନ-ନିଧାନ ଅମାନ, ମାନଦ, ଅଜିତ । ପବିତ୍ର ସୁଯଶ ଶ୍ରୁତି ପୁରାଣ ବିଦିତ ॥
ତଜ୍ଞ କୃତଜ୍ଞ ଆଉର ଅଜ୍ଞତା-ଭଞ୍ଜନ । ଅନେକ ନାମ, ଅନାମ ତୁମ୍ଭେ ନିରଞ୍ଜନ ॥୩॥
ସର୍ବ ସର୍ବଗତ ସର୍ବ ହୃଦାଳୟ-ବାସୀ । ସତତ ଆମ୍ଭଙ୍କୁ ପ୍ରତିପାଳ ସୁଖରାଶି ॥
କର ଭବ ଦ୍ୱନ୍ଦ୍ୱ ଦୁଃଖ-ଫାନ୍ଦ ବିଭଞ୍ଜନ । ହୃଦେ ବସି ରାମ, କାମ-ମଦାଦି-ଗଞ୍ଜନ ॥୪॥
ପରମ ଆନନ୍ଦ କୃପା ସୁଖକନ୍ଦ ପରିପୂର୍ଣ୍ଣ ମନସ୍କାମ ।
ପ୍ରେମ ଭକ୍ତିଧନ ଦୁର୍ଲ୍ଲଭ ପ୍ରଦାନ କର ଆମ୍ଭଙ୍କୁ ଶ୍ରୀରାମ ॥୩୪॥
ଦିଅ ଭକ୍ତି ରଘୁପତି, ପରମ ପାବନି । ତ୍ରିବିଧ ସନ୍ତାପ ଭବରୋଗ-ବିନାଶିନି ॥
ପ୍ରଣତ-କାମ-ସୁରଭି କଳ୍ପବଟ ରମ୍ୟ । ପ୍ରସନ୍ନ ହୋଇ ଏ ବର ଦିଅ, ସୁରୋତ୍ତମ ॥୧॥

---

ଲାଗିଲେ—"ହେ ଭଗବାନ୍ ! ଆପଣଙ୍କର ଜୟ ହେଉ । ଆପଣ ଅନନ୍ତ, ଅନାମୟ, ପାପରହିତ, ଅନେକ, ଏକ (ଅଦ୍ୱିତୀୟ) ଏବଂ କରୁଣାମୟ ॥ ୧ ॥ ହେ ନିର୍ଗୁଣ ! ଆପଣଙ୍କର ଜୟ ହେଉ । ହେ ଗୁଣସାଗର ! ଆପଣଙ୍କର ଜୟ ହେଉ, ଜୟ ହେଉ । ଆପଣ ସୁଖର ଧାମ, ଅତି ସୁନ୍ଦର ଏବଂ ଚତୁର । ହେ ଲକ୍ଷ୍ମୀପତି ! ଆପଣଙ୍କର ଜୟ ହେଉ । ହେ ପୃଥିବୀ-ଧାରକ ! ଆପଣଙ୍କର ଜୟ ହେଉ । ଆପଣ ଅନୁପମ, ଅଜନ୍ମା, ଅନାଦି ଏବଂ ଶୋଭାର ଆକର ॥ ୨ ॥ ଆପଣ ଜ୍ଞାନର ଭଣ୍ଡାର, ସ୍ୱୟଂ ମାନ-ରହିତ ଏବଂ ଅନ୍ୟଙ୍କୁ ମାନ ପ୍ରଦାନ କରନ୍ତି । ବେଦ ଏବଂ ପୁରାଣ ଆପଣଙ୍କର ପାବନ ସୁଯଶ ଗାନ କରନ୍ତି । ଆପଣ ତତ୍ତ୍ୱଜ୍ଞ, କୃତଜ୍ଞ ଏବଂ ଅଜ୍ଞାନର ବିନାଶକ । ହେ ନିରଞ୍ଜନ ! ଆପଣଙ୍କର ନାମ ଅନେକ, ତଥାପି ଆପଣ ଅନାମ ॥ ୩ ॥ ଆପଣ ସର୍ବରୂପ, ସମସ୍ତଙ୍କଠାରେ ପରିବ୍ୟାପ୍ତ ଏବଂ ସମସ୍ତଙ୍କ ହୃଦୟ-ଭବନରେ ଆପଣ ସଦା ନିବାସ କରନ୍ତି । ଅତଏବ ଆପଣ ଆମ୍ଭମାନଙ୍କର ପରିପାଳନ କରନ୍ତୁ । ଦ୍ୱନ୍ଦ୍ୱ, ବିପତ୍ତି ଏବଂ ଜନ୍ମ-ମୃତ୍ୟୁର ଜାଲକୁ କାଟି ଦିଅନ୍ତୁ । ହେ ରାମ ! ଆପଣ ଆମ୍ଭମାନଙ୍କ ହୃଦୟରେ ବାସ କରି କାମ ଓ ମଦକୁ ନାଶ କରିଦିଅନ୍ତୁ ॥ ୪ ॥ ଦୋହା :—ଆପଣ ପରମାନନ୍ଦ-ସ୍ୱରୂପ, କୃପାର ଭବନ ଏବଂ ଯାବତୀୟ ମନସ୍କାମନାର ପରିପୂରଣକାରୀ । ହେ ଶ୍ରୀରାମ ! ଆମ୍ଭମାନଙ୍କୁ ଆପଣଙ୍କର ଅବିଚଳ ପ୍ରେମ-ଭକ୍ତି ଦିଅନ୍ତୁ ॥ ୩୪ ॥ ଚୌପାଇ :—ହେ

ଭବ ବାରିଧି କୁଂଭଜ ରଘୁନାୟକ । ସେୱତ ସୁଲଭ ସକଲ ସୁଖଦାୟକ ॥
ମନ ସଂଭବ ଦାରୁନ ଦୁଖ ଦାରୟ । ଦୀନବଂଧୁ ସମତା ବିସ୍ତାରୟ ॥୨॥
ଆସ ତ୍ରାସ ଇରିଷାଦି ନିବାରକ । ବିନୟ ବିବେକ ବିରତି ବିସ୍ତାରକ ॥
ଭୂପ ମୌଲି ମନି ମଣ୍ଡନ ଧରନୀ । ଦେହି ଭଗତି ସଂସୃତି ସରି ତରନୀ ॥୩॥
ମୁନି ମନ ମାନସ ହଂସ ନିରଂତର । ଚରନ କମଲ ବଂଦିତ ଅଜ ସଂକର ॥
ରଘୁକୁଲ କେତୁ ସେତୁ ଶ୍ରୁତି ରଚ୍ଛକ । କାଲ କରମ ସୁଭାଉ ଗୁନ ଭଚ୍ଛକ ॥୪॥
ତାରନ ତରନ ହରନ ସବ ଦୂଷନ । ତୁଲସିଦାସ ପ୍ରଭୁ ତ୍ରିଭୁବନ ଭୂଷନ ॥୫॥
ବାର ବାର ଅସ୍ତୁତି କରି ପ୍ରେମ ସହିତ ସିରୁ ନାଇ ।
ବ୍ରହ୍ମଭବନ ସନକାଦି ଗେ ଅତି ଅଭୀଷ୍ଟ ବର ପାଇ ॥୩୪॥

---

ଭବ-ବାରିଧି କୁମ୍ଭଜ ଶ୍ରୀ ରଘୁନାୟକ । ସେବାରେ ସୁଲଭ ସଦା ସୁଖ-ପ୍ରଦାୟକ ॥
ମନ ଉତ୍ପନ୍ନ ଦାରୁଣ ଦୁଃଖ ବିଭଞ୍ଜନ । ଦୀନ-ବାନ୍ଧବ କୃପାଳୁ ସମତା ବର୍ଦ୍ଧନ ॥୨॥
ଆଶା ତ୍ରାସ ଈର୍ଷ୍ୟା ଦ୍ୱେଷ ମୋହନିବାରକ । ବିନୟ-ବିବେକ-ବଇରାଗ୍ୟ - ବିସ୍ତାରକ ॥
ମହୀପ - ମଉଳିମଣି ମଣ୍ଡନ ଧରଣୀ । ଦିଅନ୍ତୁ ଭକ୍ତି, ସଂସୃତି-ସରିତ ତରଣୀ ।୩॥
ମୁନି ମନ-ମାନସର ହଂସ ନିରନ୍ତର । ଚରଣ-କଞ୍ଜ ବନ୍ଦିତ ବିରଞ୍ଚି ଶଙ୍କର ॥
ରଘୁକୁଳ-କେତୁ ଶ୍ରୁତି-ସେତୁ ସଂରକ୍ଷକ । କାଳ କରମ ସ୍ୱଭାବ ଗୁଣର ଭକ୍ଷକ ॥୪॥
ତାରଣ ତରଣ ସର୍ବ ଦୂଷଣ ହରଣ । ତୁଳସୀ ଦାସଙ୍କ ପ୍ରଭୁ ତ୍ରୈଲୋକ୍ୟ ଭୂଷଣ ॥୫॥
ବାରମ୍ବାର ସ୍ତୁତି କରଣ ସପ୍ରୀତି ସାଦରେ ଶିର ନୁଆଁଇ ।
ବ୍ରହ୍ମ ଭବନକୁ ଗଲେ ସନକାଦି ଅଭିମତ ବର ପାଇ ॥୩୪॥

---

ରଘୁନାଥ ! ଆପଣ ଆମ୍ଭମାନଙ୍କୁ ଅତି ପାବନୀ ଏବଂ ତ୍ରିବିଧ ତାପ ଓ ଜନ୍ମମରଣର କ୍ଳେଶ-ବିନାଶ-କାରିଣୀ ଭକ୍ତି ଦିଅନ୍ତୁ । ହେ ଶରଣାଗତ-କାମନା-ପୂରଣକାରୀ କାମଧେନୁ ଏବଂ କଳ୍ପବୃକ୍ଷ-ସ୍ୱରୂପ ପ୍ରଭୋ ! ପ୍ରସନ୍ନ ହୋଇ ଆମ୍ଭମାନଙ୍କୁ ଏହି ବର ଦିଅନ୍ତୁ ॥ ୧ ॥ ହେ ରଘୁନାଥ ! ଆପଣ ସଂସାରର ଜନ୍ମ-ମୃତ୍ୟୁ-ରୂପ ସମୁଦ୍ରକୁ ଶୋଷିବା ନିମନ୍ତେ ଅଗସ୍ତ୍ୟ ମୁନିଙ୍କ ସମାନ । ଆପଣ ସେବା ଯୋଗେ ସୁଲଭ ହୁଅନ୍ତି ଏବଂ ସମସ୍ତ ସୁଖ ଦାନ କରନ୍ତି । ହେ ଦୀନବନ୍ଧୁ ! ମନରୁ ଜାତ ଦାରୁଣ ଦୁଃଖ-ସମୂହକୁ ନାଶ କରନ୍ତୁ ଏବଂ ଆମ୍ଭମାନଙ୍କ ମଧ୍ୟରେ ସମଦୃଷ୍ଟି ବିସ୍ତାର କରନ୍ତୁ ॥ ୨ ॥ ଆପଣ (ବିଷୟବାସନା-ସମ୍ବନ୍ଧୀ) ଆଶା, ଭୟ ଓ ଈର୍ଷ୍ୟା ଆଦି ନିବାରଣ କରନ୍ତି ଏବଂ ବିନୟ, ବିବେକ ଓ ବୈରାଗ୍ୟ ବିସ୍ତାର କରନ୍ତି । ହେ ନୃପ-ଶିରୋମଣି ଏବଂ ଧରଣୀ-ମଣ୍ଡନ ଶ୍ରୀରାମ ! ସଂସାରର ଜନ୍ମ-ମୃତ୍ୟୁ-ରୂପୀ ନଦୀ ନିମନ୍ତେ ନୌକା ସ୍ୱରୂପ ଆପଣଙ୍କର ଭକ୍ତି ଆମ୍ଭଙ୍କୁ ପ୍ରଦାନ କରନ୍ତୁ ॥ ୩ ॥ ହେ ମୁନି-ମନ-ମାନସରୋବର-ନିରନ୍ତର-ନିବାସୀ ହଂସ ! ଆପଣଙ୍କ ଚରଣ-କମଳ-ଯୁଗଳ ବ୍ରହ୍ମା ଓ ଶିବଙ୍କ ଦ୍ୱାରା ବନ୍ଦିତ । ଆପଣ ରଘୁ-କୁଳର କେତନ, ବେଦ-ମର୍ଯ୍ୟାଦାର ରକ୍ଷକ ଏବଂ କାଳ, କର୍ମ,

ସନକାଦିକ ବିଧିଲୋକ ସିଧାଏ । ଭ୍ରାତନ୍ହ ରାମ ଚରନ ସିରୁ ନାଏ ॥
ପୂଛତ ପ୍ରଭୁହି ସକଲ ସକୁଚାହୀଁ । ଚିତଵହିଁ ସବ ମାରୁତସୁତ ପାହୀଁ ॥୧॥
ସୁନୀ ଚହହିଁ ପ୍ରଭୁ ମୁଖ କୈ ବାନୀ । ଜୋ ସୁନି ହୋଇ ସକଲ ଭ୍ରମ ହାନୀ ॥
ଅନ୍ତରଜାମୀ ପ୍ରଭୁ ସବ ଜାନା । ବୂଝତ କହହୁ କାହ ହନୁମାନା ॥୨॥
ଜୋରି ପାନି କହ ତବ ହନୁମଂତା । ସୁନହୁ ଦୀନଦୟାଲ ଭଗବଂତା ॥
ନାଥ ଭରତ କଛୁ ପୂଁଛନ ଚହହୀଁ । ପ୍ରସ୍ନ କରତ ମନ ସକୁଚତ ଅହହୀଁ ॥୩॥
ତୁହ୍ମ ଜାନହୁ କପି ମୋର ସୁଭାଊ । ଭରତହି ମୋହି କଛୁ ଅନ୍ତର କାଊ ॥
ସୁନି ପ୍ରଭୁ ବଚନ ଭରତ ଗହେ ଚରନା । ସୁନହୁ ନାଥ ପ୍ରନତାରତି ହରନା ॥୪॥

---

ସନକାଦି ମୁନି ବ୍ରହ୍ମ ଲୋକକୁ ଗମିଲେ । ଅନୁଜେ ରାମ ଚରଣେ ପ୍ରଣାମ କରିଲେ ॥
ପ୍ରଭୁଙ୍କୁ ପଚାରିବାକୁ ମନେ ସଙ୍କୋଚନ୍ତି । ମରୁତସୁତ ମୁଖକୁ ସର୍ବେ ନିରେଖନ୍ତି ॥୧॥
ଶୁଣିବା ପାଇଁ ଚାହାନ୍ତି ପ୍ରଭୁ ମୁଖ ବାଣୀ । ଯାହା ଶୁଣନ୍ତେ ହୁଅଇ ଭ୍ରମତମ ହାନି ॥
ଅନ୍ତର୍ଯ୍ୟାମୀ ପ୍ରଭୁ ଜାଣି ପାରିଲେ ନିକର । କିସ ପଚାରୁଛ କହ, ପବନ-କୁମର ॥୨॥
ଯୋଡି ବେନିପାଣି ତହୁଁ ବୋଲେ ହନୁମାନ । ଶୁଣ ଦୀନବନ୍ଧୁ ଦୟାନିଧି ଭଗବାନ ॥
ନାଥ, କିଛୁ ପୁଚ୍ଛିବାକୁ ଭରତ ଇଚ୍ଛନ୍ତି । ପ୍ରଶ୍ନ କରିବାକୁ ମନେ ସଙ୍କୋଚ ଲଭନ୍ତି ॥୩॥
ତୁମ୍ଭେ ହନୁମନ୍ତ, ଜାଣ ସ୍ୱଭାବ ମୋହର । ଭରତ ମୋ ମଧ୍ୟେ କିଛି ଅଛି କି ଅନ୍ତର ॥
ପ୍ରଭୁ ବଚନେ ଭରତ ଧରି ଶ୍ରୀ ଚରଣ । କହିଲେ, ନାଥ, ପ୍ରଣତ ଆରତି-ହରଣ ॥୪॥

---

ସ୍ୱଭାବ ଓ ଗୁଣରୂପ ବନ୍ଧନ-ସମୂହର ଭକ୍ଷକ (ବିନାଶକାରୀ) ॥ ୪ ॥ ଆପଣ ନିଜେ ତରି ଅନ୍ୟମାନଙ୍କୁ ତାରଣ କରନ୍ତି ଏବଂ ସମସ୍ତ ଦୋଷ ହରଣ କରନ୍ତି । ତିନିଲୋକର ବିଭୂଷଣ ଆପଣ ହିଁ ତୁଳସୀ ଦାସର ସ୍ୱାମୀ ।" ॥ ୫ ॥ ଦୋହା —ସନକାଦି ମୁନିମାନେ ପ୍ରେମ ସହକାରେ ବାରମ୍ବାର ସ୍ତୁତି କରି ପ୍ରଭୁଙ୍କ ଆଗରେ ମସ୍ତକ ନୁଆଁଇଲେ ଏବଂ ସେମାନଙ୍କର ଅତି ଅଭୀଷ୍ଟ ବର ଲାଭ କରି ବ୍ରହ୍ମଲୋକକୁ ଚାଲିଗଲେ । ୩୬॥ ଚୌପାଈ :—ସନକାଦି ମୁନିମାନେ ବ୍ରହ୍ମଲୋକକୁ ଚାଲିଗଲେ । ତଦନନ୍ତର ଭାଇମାନେ ଶ୍ରୀ ରାମଙ୍କ ଚରଣରେ ଶିର ନୁଆଁଇଲେ । ସମସ୍ତ ଭାଇ ପ୍ରଭୁଙ୍କୁ ପଚାରିବାକୁ ସଙ୍କୋଚ-ବୋଧ କରୁଥା'ନ୍ତି । ଏଣୁ ସମସ୍ତେ ହନୁମାନଙ୍କ ଆଡକୁ ଚାହୁଁଥା'ନ୍ତି ॥ ୧ ॥ ସେମାନେ ପ୍ରଭୁଙ୍କ ଶ୍ରୀମୁଖର ସେହି ବାଣୀ ଶୁଣିବା ପାଇଁ ଇଚ୍ଛୁକ, ଯାହାକୁ ଶୁଣି ସମସ୍ତ ଭ୍ରମ ଦୂର ହୋଇଯାଏ । ଅନ୍ତର୍ଯ୍ୟାମୀ ପ୍ରଭୁ ସବୁ ଜାଣି ପକାଇଲେ ଏବଂ ପଚାରିଲେ "କହ ହନୁମାନ୍ ! କଥା କ'ଣ ?" ॥ ୨ ॥ ତେଣୁ ହନୁମାନ୍ ହାତ ଯୋଡି କହିଲେ, "ହେ ଦୀନ-ଦୟାଳୁ ଭଗବାନ୍ ! ଶୁଣନ୍ତୁ: ହେ ନାଥ ! ଭରତ କିଛି ପଚାରିବାକୁ ଇଚ୍ଛା କରନ୍ତି; କିନ୍ତୁ ପ୍ରଶ୍ନ କରିବାକୁ ମନ ମଧ୍ୟରେ ସଙ୍କୋଚ କରୁଅଛନ୍ତି ।' ॥ ୩ ॥ ଭଗବାନ୍ କହିଲେ, "ହନୁମାନ୍ ! ତୁମେ ତ ମୋ ସ୍ୱଭାବ ନିଶ୍ଚୟ ଜାଣିଅଛ । ଭରତ ଓ ମୋ ମଧ୍ୟରେ କେବେ ସୁଦ୍ଧା କିଛି ପ୍ରଭେଦ ଅଛି କି ?" ପ୍ରଭୁଙ୍କ ବଚନ ଶୁଣି ଭରତ

ନାଥ ନ ମୋହି ସଂଦେହ କଛୁ ସପନେହୁଁ ସୋକ ନ ମୋହ ।
କେବଲ କୃପା ତୁମ୍ହାରିହି କୃପାନନ୍ଦ ସଂଦୋହ ॥୩୬॥
କରଉଁ କୃପାନିଧି ଏକ ଢିଠାଈ । ମୈଁ ସେବକ ତୁମ୍ହ ଜନ ସୁଖଦାଈ ॥
ସଂତନ୍ହ କୈ ମହିମା ରଘୁରାଈ । ବହୁ ବିଧି ବେଦ ପୁରାନନ୍ହ ଗାଈ ॥୧॥
ଶ୍ରୀମୁଖ ତୁମ୍ହ ପୁନି କୀନ୍ହି ବଡ଼ାଈ । ତିନ୍ହ ପର ପ୍ରଭୁହି ପ୍ରୀତି ଅଧିକାଈ ॥
ସୁନା ଚହଉଁ ପ୍ରଭୁ ତିନ୍ହ କର ଲଚ୍ଛନ । କୃପାସିନ୍ଧୁ ଗୁନ ଜ୍ଞାନ ବିଚଚ୍ଛନ ॥୨॥
ସଂତ ଅସଂତ ଭେଦ ବିଲଗାଈ । ପ୍ରନତପାଲ ମୋହି କହହୁ ବୁଝାଈ ॥
ସଂତନ୍ହ କେ ଲଚ୍ଛନ ସୁନୁ ଭ୍ରାତା । ଅଗନିତ ଶ୍ରୁତି ପୁରାନ ବିଖ୍ୟାତା ॥୩॥
ସଂତ ଅସଂତନ୍ହି କୈ ଅସି କରନୀ । ଜିମି କୁଠାର ଚନ୍ଦନ ଆଚରନୀ ॥
କାଟଇ ପରସୁ ମଲୟ ସୁନୁ ଭାଈ । ନିଜ ଗୁନ ଦେଇ ସୁଗନ୍ଧ ବସାଈ ॥୪॥

---

ନାଥ, ଶୋକ ମୋହ କିମ୍ବା ସନ୍ଦେହ ସ୍ୱପ୍ନେହେଁ ନାହିଁ ମୋହର ।
କେବଳ ତୁମ୍ଭର ଅନୁଗ୍ରହ ପ୍ରଭୁ, କୃପାନନ୍ଦ-ରତ୍ନାକର ॥୩୬॥
କରୁଛି ଧୃଷ୍ଟତା କିଛି କୃପାଳୁ ଗୋସାଇଁ । ମୁଁ ସେବକ ତୁମ୍ଭେ ଅଟ ଭକ୍ତ-ସୁଖଦାୟୀ ॥
ସନ୍ତ ଜନଙ୍କ ମହିମା, ଶ୍ରୀ ରଘୁନନ୍ଦନ । ବେଦ ପୁରାଣ ବହୁତ କରନ୍ତି ବର୍ଣ୍ଣନ ॥୧॥
ଶ୍ରୀମୁଖେ ଆପଣ କଲ ବଡ଼ାଇ ଆଦର । ତାଙ୍କ ଉପରେ ଅଧିକ ପ୍ରୀତି ପ୍ରଭୁଙ୍କର ॥
ଶୁଣିବାକୁ ଚାହେଁ ପ୍ରଭୁ ତାହାଙ୍କ ଲକ୍ଷଣ । କରୁଣାସାଗର ଗୁଣ-ଜ୍ଞାନ - ବିଚକ୍ଷଣ ॥୨॥
ସନ୍ତ ଅସନ୍ତଙ୍କ ଗୁଣ ପୃଥକ ପୃଥକ । ବୁଝାଇ କହନ୍ତୁ ମୋତେ ପ୍ରଣତ-ପାଳକ ॥
ଶୁଣ ସନ୍ତଜନଙ୍କର ଲକ୍ଷଣ, ହେ ଭ୍ରାତ । ଅଗଣିତ ଶ୍ରୁତି ସ୍ମୃତି ପୁରାଣ ବିଖ୍ୟାତ ॥୩॥
ସନ୍ତ ଅସନ୍ତଙ୍କ କାର୍ଯ୍ୟ କଳାପ ଏପରି । ଅଟେ ଚନ୍ଦନ କୁଠାର ସ୍ୱଭାବ ଯେପରି ॥
କାଟନ୍ତେ କୁଠାର ଚନ୍ଦନକୁ ଶୁଣ, ଭାଇ । ନିଜ ଗୁଣେ ଦେହେ ଦିଏ ସୁଗନ୍ଧ ବସାଇ ॥୪॥

---

ତାହାଙ୍କ ଚରଣ ଧରି ପକାଇଲେ ଏବଂ କହିଲେ, "ହେ ନାଥ ' ହେ ଶରଣାଗତ-ଦୁଃଖ-ହାରକ ' ଶୁଣନ୍ତୁ ॥ ୪ ॥ ଦୋହା —ହେ ନାଥ ! ମୋ ମନରେ କୌଣସି ସନ୍ଦେହ ନାହିଁ ଏବଂ ସ୍ୱପ୍ନରେ ସୁଦ୍ଧା ମୋର ଶୋକ ଓ ମୋହ ନାହିଁ । ହେ କୃପା ଓ ଆନନ୍ଦର ସମୂହ ! ଏହା କେବଳ ଆପଣଙ୍କର ହିଁ କୃପାର ଫଳ ॥ ୩୬ ॥ ଚୌପାଇ :—ତଥାପି ହେ କୃପା-ନିଧାନ ' ମୁଁ ଆପଣଙ୍କଠାରେ ଗୋଟିଏ ଧୃଷ୍ଟତା କରୁଅଛି । ମୁଁ ସେବକ ଓ ଆପଣ ସେବକର ସୁଖଦାୟକ । ଏ କଥା ସ୍ମରଣ କରି ମୋ ଧୃଷ୍ଟତା କ୍ଷମା କରନ୍ତୁ ଏବଂ ମୋ ପ୍ରଶ୍ନର ଉତ୍ତର ଦେଇ ମୋତେ ସୁଖଦାନ କରନ୍ତୁ । ହେ ରଘୁନାଥ ! ବେଦ ପୁରାଣମାନେ ସାଧୁସନ୍ତଙ୍କ ମହିମା ବହୁତ ପ୍ରକାର ଗାଇ-ଅଛନ୍ତି ॥ ୧ ॥ ଆପଣ ମଧ୍ୟ ଆପଣାର ଶ୍ରୀମୁଖରେ ସେମାନଙ୍କର ବଡ଼ାଇ ଓ ପ୍ରଶଂସା କରିଅଛନ୍ତି । ସେମାନଙ୍କ ଉପରେ ପ୍ରଭୁଙ୍କର ଅପାର ପ୍ରେମ । ହେ ପ୍ରଭୋ ' ମୁଁ ସେହିମାନଙ୍କ ଲକ୍ଷଣ ଶୁଣିବାକୁ ଇଚ୍ଛୁକ । ଆପଣ କୃପା-ସାଗର ଏବଂ ଗୁଣ ଓ ଜ୍ଞାନରେ ଅତି

ତା ତେଁ ସୁର ସୀସନ୍ହ ଚଢ଼ତ ଜଗ ବଲ୍ଲଭ ଶ୍ରୀଖଣ୍ଡ ।
ଅନଲ ଦାହି ପୀଟତ ଘନହିଁ ପରସୁ ବଦନ ଯହ ଦଣ୍ଡ ॥୩୭॥
ବିଷୟ ଅଲଂପଟ ସୀଲ ଗୁନାକର । ପର ଦୁଖ ଦୁଖ ସୁଖ ସୁଖ ଦେଖେ ପର ॥
ସମ ଅଭୂତରିପୁ ବିମଦ ବିରାଗୀ । ଲୋଭାମରଷ ହରଷ ଭୟ ତ୍ୟାଗୀ ॥୧॥
କୋମଲଚିତ ଦୀନନ୍ହ ପର ଦାୟା । ମନ ବଚ କ୍ରମ ମମ ଭଗତି ଅମାୟା ॥
ସବହି ମାନପ୍ରଦ ଆପୁ ଅମାନୀ । ଭରତ ପ୍ରାନ ସମ ମମ ତେ ପ୍ରାନୀ ॥୨॥
ବିଗତ କାମ ମମ ନାମ ପରାୟନ । ସାଂତି ବିରତି ବିନତୀ ମୁଦିତାୟନ ॥
ସୀତଲତା ସରଲତା ମୟତ୍ରୀ । ଦ୍ୱିଜ ପଦ ପ୍ରୀତି ଧର୍ମ ଜନୟତ୍ରୀ ॥୩॥

---

ତେଣୁ ଦେବତାଙ୍କ ମସ୍ତକେ ଚଢଇ ଜଗତପ୍ରିୟ ଶ୍ରୀଖଣ୍ଡ ।
ଅନଳେ ଦହନ ପିଟନ୍ତି କଠିନ କୁଠାର ମୁଖେ ଏ ଦଣ୍ଡ ॥୩୭॥
ବିଷୟେ ଅଲିପ୍ତ ଯେହୁ ଶୀଳ ଗୁଣାକର । ପର ଦୁଃଖେ ଦୁଃଖୀ, ସୁଖୀ ଦେଖି ସୁଖ ପର ॥
ନିର୍ବୈର ସମଦରଶୀ ବିମଦ ବୈରାଗୀ । ଲୋଭ କ୍ରୋଧ ହର୍ଷ ଭୂତ ଭୟ-ପରିତ୍ୟାଗୀ ॥୧॥
କୋମଲ-ଚିତ୍ତ ଦୀନଙ୍କ ପ୍ରତି ଦୟା ଅତି । ମନ କର୍ମ ବାକ୍ୟେ ନିଷ୍କପଟ ମୋ ଭକତି ॥
ସମସ୍ତଙ୍କୁ ମାନପ୍ରଦ ଆପଣେ ଅମାନୀ । ଭରତ, ମୋହର ପ୍ରାଣ ସମାନ ସେ ପ୍ରାଣୀ ॥୨॥
କାମନା ଶୂନ୍ୟ, ସଦା ମୋ ନାମ-ପରାୟଣ । ଶାନ୍ତ ବିରତ ବିନତ ଆନନ୍ଦ-ସଦନ ॥
ଶୀତଳତା ସରଳତା ଆବର ମଇତ୍ରୀ । ବିପ୍ରପଦ-ଅନୁରାଗୀ ଧର୍ମ - ଜନୟିତ୍ରୀ ॥୩॥

---

ନିପୁଣ ॥ ୨ ॥ ହେ ଶରଣାଗତ-ପାଳକ ! ସାଧୁ ଓ ଅସାଧୁଙ୍କ ମଧ୍ୟରେ ଥିବା ପ୍ରଭେଦ ଆପଣ ମୋତେ ବୁଝାଇ କୁହନ୍ତୁ ।" ଶ୍ରୀରାମ କହିଲେ, "ହେ ଭାଇ ! ସାଧୁଜନଙ୍କ ଲକ୍ଷଣ ଓ ଗୁଣ ଅସଂଖ୍ୟ । ବେଦ ଓ ପୁରାଣମାନଙ୍କରେ ଉକ୍ତ ଗୁଣମାନ ବିଖ୍ୟାତ ॥ ୩ ॥ ସାଧୁ ଓ ଅସାଧୁମାନଙ୍କର କାର୍ଯ୍ୟ ଯଥାକ୍ରମେ ଚନ୍ଦନ କାଷ୍ଠ ଓ କୁରାଢ଼ିର ଆଚରଣ ପରି । ହେ ଭାଇ ! ଶୁଣ, କୁରାଢ଼ି ନିଜ ସ୍ୱଭାବର ବଶବର୍ତ୍ତୀ ହୋଇ ଚନ୍ଦନ କାଠକୁ କାଟେ । କିନ୍ତୁ ଚନ୍ଦନ ନିଜ ସ୍ୱଭାବବଶତଃ ତାହାକୁ ଆପଣାର ଗୁଣ ଦେଇ ସୁଗନ୍ଧରେ ସୁବାସିତ କରେ ॥ ୪ ॥ ଦୋହା '—ଏହି ଗୁଣ ହେତୁ ଚନ୍ଦନ ଦେବତାମାନଙ୍କ ଶିର ଉପରେ ଚଢେ ଏବଂ ଜଗତର ପ୍ରିୟ ହୁଏ । କିନ୍ତୁ କୁରାଢ଼ିର ମୁଖକୁ ଦଣ୍ଡ ମିଳିଥାଏ; ତାହାକୁ ଅଗ୍ନିରେ ଜଳାଇ ପୁଣି ହାତୁଡ଼ିରେ ପିଟନ୍ତି ॥ ୩୭ ॥ ଚୌପାଈ —ସନ୍ଥମାନେ ବିଷୟ-ବାସନାରେ ଲମ୍ପଟ ବା ଲିପ୍ତ ହୁଅନ୍ତି ନାହିଁ । ସେମାନେ ଶୀଳ ଓ ସଦ୍‌ଗୁଣାବଳୀର ଆକର (ଖଣି) । ପରର ଦୁଃଖରେ ସେମାନେ ଦୁଃଖୀ ଏବଂ ପରର ସୁଖରେ ସୁଖୀ । ସର୍ବଦା ସର୍ବତ୍ର ସେମାନେ ସମସ୍ତଙ୍କ ପ୍ରତି ସମତା ରଖନ୍ତି । ସେମାନଙ୍କ ମତରେ କେହି ତାଙ୍କର ଶତ୍ରୁ ନୁହନ୍ତି । ସେମାନେ ମଦରହିତ ଓ ବୈରାଗ୍ୟବାନ୍ ଏବଂ ଲୋଭ, କ୍ରୋଧ, ହର୍ଷ ଓ ଭୟ ପରିତ୍ୟାଗ କରି ରହନ୍ତି ॥୧॥ ସେମାନଙ୍କର ଚିତ୍ତ ଅତି କୋମଳ । ସେମାନେ ଦୀନଜନମାନଙ୍କୁ ଦୟା କରନ୍ତି ଏବଂ ମନ, ବଚନ ଓ କର୍ମରେ

ଏ ସବ ଲଚ୍ଛନ ବସହିଁ ଜାସୁ ଉର । ଜାନେହୁ ତାତ ସଂତ ସଂତତ ଫୁର ॥
ସମ ଦମ ନିୟମ ନୀତି ନହିଁ ଡୋଲହିଁ । ପରୁଷ ବଚନ କବହୂଁ ନହିଁ ବୋଲହିଁ ॥୪॥
ନିନ୍ଦା ଅସ୍ତୁତି ଉଭୟ ସମ ମମତା ମମ ପଦ କଂଜ ।
ତେ ସଜ୍ଜନ ମମ ପ୍ରାନପ୍ରିୟ ଗୁନ ମନ୍ଦିର ସୁଖ ପୁଂଜ ॥୩୮॥
ସୁନହୁ ଅସନ୍ତନ୍ହ କେର ସୁଭାଊ । ଭୂଲେହୁଁ ସଂଗତି କରିଅ ନ କାଊ ॥
ତିନ୍ହ କର ସଂଗ ସଦା ଦୁଖଦାଈ । ଜିମି କପିଲହି ଘାଲଇ ହରହାଈ ॥୧॥
ଖଲନ୍ହ ହୃଦୟଁ ଅତି ତାପ ବିସେଷୀ । ଜରହିଁ ସଦା ପର ସଂପତି ଦେଖୀ ॥
ଜହଁ କହୁଁ ନିନ୍ଦା ସୁନହିଁ ପରାଈ । ହରଷହିଁ ମନହୁଁ ପରୀ ନିଧି ପାଈ ॥୨॥

---

ଏ ସବୁ ଲକ୍ଷଣ ନିବସନ୍ତି ଯା' ହୃଦୟେ । ଜାଣ ତାକୁ ସନ୍ଥ ଭ୍ରାତ, ସତତ ନିଶ୍ଚୟେ ॥
ସମ ଦମ ନିୟମ ନୀତିରୁ ନ ଟଳନ୍ତି । ପରୁଷ ବଚନ ମୁଖେ କେବେ ନ ବୋଲନ୍ତି ॥୪॥
ନିନ୍ଦା ସ୍ତୁତି ଦେନି ସନ୍ଦେ ସମ ମଣି ମମତା ମୋ ପଦକଞ୍ଜ ।
ସେହି ସନ୍ଥଜନ ମୋ ପ୍ରାଣ ସମାନ ଗୁଣାଗାର ସୁଖପୁଞ୍ଜ ॥୩୮॥
ଶୁଣ ଭ୍ରାତ, ଅସନ୍ଥଙ୍କ ସ୍ୱଭାବ ଯେ ଏବେ । ଏହାଙ୍କ ସଙ୍ଗତି ଭୁଲି ନ କରିବ କେବେ ॥
ଏହାଙ୍କର ସଙ୍ଗ ସଦା ଅଟେ ଦୁଃଖଦାୟୀ । ଯେସନେ କପିଳାକୁ ନାଶେ ଯେ ଓଲିଆ ଗାଈ ॥୧॥
ବିଶେଷ ତାପ ହୃଦୟେ ଅଟେ ଖଳଙ୍କର । ଜଳନ୍ତି ସଦା ବିଲୋକି ସମ୍ପତ୍ତି ପରର ॥
ପର ନିନ୍ଦା କର୍ଣ୍ଣେ ଶୁଣି ହରଷ ହୁଅନ୍ତି । ମନେ ହୁଏ ପଡିଥିବା ନିଧି ପାଇଛନ୍ତି ॥୨॥

---

ମୋ ପ୍ରତି ଅମାୟିକ ଭକ୍ତି କରନ୍ତି । ସେମାନେ ସମସ୍ତଙ୍କୁ ସମ୍ମାନ ଦିଅନ୍ତି, କିନ୍ତୁ ନିଜେ ମାନରହିତ ହୋଇ ଆଚରଣ କରନ୍ତି । ହେ ଭରତ ! ସେହି ପ୍ରାଣୀମାନେ (ସାଧୁଜନମାନେ) ମୋର ପ୍ରାଣସମ ପ୍ରିୟ ॥୨॥ ସେମାନଙ୍କର କୌଣସି କାମନା ନ ଥାଏ । ସେମାନେ ମୋର ନାମ-ପରାୟଣ ଏବଂ ଶାନ୍ତି, ବୈରାଗ୍ୟ, ବିନୟ ଓ ପ୍ରସନ୍ନତାର ସଦନ । ସେମାନଙ୍କଠାରେ ଶୀତଳତା, ସରଳତା, ସମସ୍ତଙ୍କ ପ୍ରତି ମିତ୍ରତା ଏବଂ ବ୍ରାହ୍ମଣମାନଙ୍କ ଚରଣ ପ୍ରତି ପ୍ରୀତି ଥାଏ । ଏହି ସବୁ ଗୁଣ ସେମାନଙ୍କଠାରେ ଧର୍ମଭାବ ଉତ୍ପନ୍ନ କରେ ॥ ୩ ॥ ହେ ବତ୍ସ ! ଯାହାର ହୃଦୟରେ ଏହି ସବୁ ଗୁଣ ବାସ କରେ, ତାହାକୁ ସର୍ବଦା ପ୍ରକୃତ ସାଧୁ ବୋଲି ଜାଣିବ । ସେହିମାନେ ଶମ, ଦମ, ନିୟମ ଓ ନୀତିରୁ କେତେବେଳେ ହେଲେ ବିଚଳିତ ହୁଅନ୍ତି ନାହିଁ, କିମ୍ବା ମୁଖରେ କେବେ ସୁଦ୍ଧା କଠୋର ବଚନ ବୋଲନ୍ତି ନାହିଁ ॥ ୪ ॥ ଦୋହା —ଯେଉଁମାନଙ୍କ ପକ୍ଷରେ ନିନ୍ଦା ଓ ସ୍ତୁତି ଉଭୟ ସମାନ ଏବଂ ମୋର ଚରଣ-କମଳରେ ଯେଉଁମାନଙ୍କର ପ୍ରୀତି, ସେହି ଗୁଣ-ମନ୍ଦିର ଏବଂ ସୁଖପୁଞ୍ଜ ସାଧୁଜନମାନେ ମୋର ପ୍ରାଣ ସମାନ ପ୍ରିୟ ॥୩୮॥ ଚୌପାଈ —ଏବେ ଅସାଧୁଙ୍କର ସ୍ୱଭାବ ଶୁଣ । କେବେ ହେଲେ ଭୁଲ୍‌ରେ ସୁଦ୍ଧା ସେମାନଙ୍କର ସଙ୍ଗ କରିବା ଉଚିତ ନୁହେଁ । ସେମାନଙ୍କ ସଙ୍ଗ ସଦା ଦୁଃଖ-ଦାୟକ । ଓଲିଆ ଗାଈ ଆପଣା ସଙ୍ଗ ଯୋଗେ କପିଳା (ଧଳା ଓ ଉତ୍ତମ) ଗାଈକୁ ନଷ୍ଟ କରିଦେଲା ପରି ଅସାଧୁର

କାମ କ୍ରୋଧ ମଦ ଲୋଭ ପରାୟନ । ନିର୍ଦ୍ଦୟ କପଟୀ କୁଟିଲ ମଲାୟନ ॥
ବୟରୁ ଅକାରନ ସବ କାହୂ ସୋଁ । ଜୋ କର ହିତ ଅନହିତ ତାହୂ ସୋଁ ॥୩॥
ଝୂଠଇ ଲେନା ଝୂଠଇ ଦେନା । ଝୂଠଇ ଭୋଜନ ଝୂଠ ଚବେନା ॥
ବୋଲହିଁ ମଧୁର ବଚନ ଜିମି ମୋରା । ଖାଇ ମହା ଅହି ହୃଦୟ କଠୋରା ॥୪॥

ପରଦ୍ରୋହୀ ପରଦାର ରତ ପରଧନ ପର ଅପବାଦ ।
ତେ ନର ପାଁଵର ପାପମୟ ଦେହ ଧରେଁ ମନୁଜାଦ ॥୩୯॥

ଲୋଭଇ ଓଢ଼ନ ଲୋଭଇ ଡାସନ । ସିସ୍ନୋଦର ପର ଜମପୁର ତ୍ରାସ ନ ॥
କାହୂ କୀ ଜୌଁ ସୁନହିଁ ବଡ଼ାଈ । ସ୍ୱାସ ଲେହିଁ ଜନୁ ଜୂଡ଼ୀ ଆଈ ॥୧॥

---

କାମ କ୍ରୋଧ ମଦ ତଥା ଲୋଭ-ପରାୟଣ । ନିର୍ଦ୍ଦୟ କୁଟିଳ ପାପ କପଟ-ଭବନ ॥
ଅକାରଣେ ବୈର ସମସ୍ତଙ୍କ ସହିତରେ । ଯେ ହିତ କରେ ଅହିତ ରତ ତା ସଙ୍ଗରେ ॥୩॥
ଦାନ ତାଙ୍କ ମିଥ୍ୟା, ମିଥ୍ୟା ତାହାଙ୍କ ଗ୍ରହଣ । ଆଉର ଭୋଜନ ମିଥ୍ୟା, ମିଥ୍ୟା ଚରବଣ ॥
ବୋଲନ୍ତି ବଚନ ଯେହ୍ନେ ମଧୁର ମୟୂର । ଖାଆନ୍ତି ବିଷମ ବ୍ୟାଳ ସୁକଠୋର ଉର ॥୪॥

ପରଦ୍ରୋହୀ, ପର ଦାରରତ, ପର ଧନ, ଅପବାଦ ପର ।
ସେ ଅଧମ ପାମର ପାପମୟ ନର ଦେହଧାରୀ, ନିଶାଚର ॥୩୯॥

ଲୋଭ ଯେ ଚଦର ଲୋଭ ବିଛଣା ଆଉର । ଶିଶ୍ନୋଦର ରତ, ଭୟ ନାହିଁ ଶମନର ॥
ଶ୍ରବଣେ ଯେବେ କାହାର ବଡ଼ାଇ ଶୁଣନ୍ତି । ଜ୍ୱର ଆସିଲା ପରାୟେ ଶ୍ୱାସ ସେ ନିଅନ୍ତି ॥୧॥

---

ସଙ୍ଗ ସାଧୁଙ୍କୁ ନଷ୍ଟ କରିଦିଏ ॥ ୧ ॥ ଖଳଙ୍କ ହୃଦୟରେ ଅତ୍ୟଧିକ ମାତ୍ରାରେ ସନ୍ତାପ ଥାଏ । ସେମାନେ ପରର ସୁଖ-ସମ୍ପତ୍ତି ଦେଖି ସର୍ବଦା ଈର୍ଷ୍ୟାରେ ଜଳି ଯାଉଥା'ନ୍ତି । ଯେଉଁ ସେଉଁ ସ୍ଥାନରେ ସେମାନେ ଅନ୍ୟର ନିନ୍ଦା ଶୁଣନ୍ତି, ସେଠାରେ ଏପରି ଆନନ୍ଦ ଲାଭ କରନ୍ତି, ସତେ ଯେପରି ବାଟରେ ପଡ଼ିଥିବା କୋଟିନିଧି ପାଇଗଲେ ' ॥ ୨ ॥ ସେମାନେ କାମ-କ୍ରୋଧ-ମଦ-ପରାୟଣ ଏବଂ ନିର୍ଦ୍ଦୟ, କପଟି, କୁଟିଳ ଓ ପାପର ଆଳୟ । ଅକାରଣେ ସେମାନେ ସମସ୍ତଙ୍କ ସହିତ ଶତ୍ରୁତା କରନ୍ତି । ଯେ ହିତ କରେ, ତାହା ପ୍ରତି ମଧ୍ୟ ସେମାନେ ଅହିତ କରନ୍ତି ॥ ୩ ॥ ସେମାନଙ୍କ ଗ୍ରହଣ ମିଥ୍ୟା ଏବଂ ଦାନ ମଧ୍ୟ ମିଥ୍ୟା । ଭୋଜନ ମିଥ୍ୟା, ଚର୍ବଣ ମିଥ୍ୟା । ମୟୂର ଯେପରି ମଧୁର ସ୍ୱରରେ ରବ କରେ, କିନ୍ତୁ ମହା ବିକଟ ସର୍ପକୁ ଗିଳି ଭକ୍ଷଣ କରି ତାହାର ହୃଦୟକୁ ଅତି କଠୋର କରିଥାଏ, ସେହିପରି ସେମାନେ ମଧୁର ବଚନ ବୋଲନ୍ତି ସତ, କିନ୍ତୁ ହୃଦୟରେ ଅତି ନିର୍ଦ୍ଦୟ ॥ ୪ ॥ ଦୋହା ।—ସେମାନେ ଅନ୍ୟମାନଙ୍କ ସହିତ ଦ୍ରୋହାଚରଣ କରନ୍ତି ଏବଂ ପରସ୍ତ୍ରୀ, ପରଧନ ଓ ପରନିନ୍ଦାରେ ଆସକ୍ତ ରହନ୍ତି । ସେହି ପାମର ଓ ପାପମୟ ମନୁଷ୍ୟମାନେ ନରଶରୀର-ଧାରଣକାରୀ ରାକ୍ଷସ ॥ ୩୯ ॥ ଚୌପାଈ —ଲୋଭ ହିଁ ସେମାନଙ୍କର ଚାଦର ଏବଂ ଲୋଭ ହିଁ ସେମାନଙ୍କର ବିଛଣା । ଅର୍ଥାତ୍ ସେମାନେ ସର୍ବଦା ଲୋଭରେ ଆଚ୍ଛାଦିତ ରହନ୍ତି । ସେମାନେ ପଶୁମାନଙ୍କ ସମାନ ଆହାର ଓ ମୈଥୁନରେ

ଜବ କାହୁ କୈ ଦେଖହିଁ ବିପତୀ । ସୁଖୀ ଭଏ ମାନହୁଁ ଜଗ ନୃପତୀ ॥
ସ୍ୱାରଥରତ ପରିବାର ବିରୋଧୀ । ଲଂପଟ କାମ ଲୋଭ ଅତି କ୍ରୋଧୀ ॥୨॥
ମାତୁ ପିତା ଗୁର ବିପ୍ର ନ ମାନହିଁ । ଆପୁ ଗଏ ଅରୁ ଘାଲହିଁ ଆନହିଁ ॥
କରହିଁ ମୋହବସ ଦ୍ରୋହ ପରାୱା । ସଂତ ସଂଗ ହରି କଥା ନ ଭାୱା ॥୩॥
ଅବଗୁନ ସିନ୍ଧୁ ମନ୍ଦମତି କାମୀ । ବେଦ ବିଦୂଷକ ପରଧନ ସ୍ୱାମୀ ॥
ବିପ୍ରଦ୍ରୋହ ପରଦ୍ରୋହ ବିସେଷା । ଦମ୍ଭ କପଟ ଜିୟଁ ଧରେଁ ସୁବେଷା ॥୪॥

ଐସେ ଅଧମ ମନୁଜ ଖଲ କୃତଜୁଗ ତ୍ରେତାଁ ନାହିଁ ।
ଦ୍ୱାପର କଛୁକ ବୃନ୍ଦ ବହୁ ହୋଇହହିଁ କଲିଜୁଗ ମାହିଁ ॥୪୦॥

---

ନସ୍ୱନେ ଯେବେ କାହାର ଦେଖନ୍ତି ବିପତ୍ତି । ସୁଖୀ ହୁଅନ୍ତି ଯେସନେ ଜଗତ ନୃପତି ॥
ସ୍ୱାର୍ଥ-ପରାୟଣ ସଦା ସଜ୍ଜନ ବିରୋଧୀ । ଲମ୍ପଟୀ ବିଷୟୀ ଲୋଭୀ ଅତିଶୟ କ୍ରୋଧୀ ॥୨॥
ମାତା, ପିତା, ଗୁରୁ, ବିପ୍ର, ବନ୍ଧୁ ନ ମାନନ୍ତି । ଆପଣେ ମରନ୍ତି, ପୁଣି ଅନ୍ୟଙ୍କୁ ମାରନ୍ତି ॥
ମୋହ ବଶ ଆଚରନ୍ତି ପରଦ୍ରୋହ ବ୍ୟଥା । ଭଲ ନ ଲାଗଇ ସତସଙ୍ଗ ହରିକଥା ॥୩॥
ଅବଗୁଣ-ସିନ୍ଧୁ ଅତି ମନ୍ଦମତି କାମୀ । ବେଦ-ନିନ୍ଦୁକ ଆବର ପରଧନ-ସ୍ୱାମୀ ॥
ବିପ୍ରଦ୍ରୋହ ପରଦ୍ରୋହ କରନ୍ତି ବିଶେଷ । ଦମ୍ଭ କପଟ ହୃଦୟ, ଧରନ୍ତି ସୁବେଶ ॥୪॥

ଏମନ୍ତ ଅଧମ ଖଳ ଦୁଷ୍ଟ ଜନ ସତ୍ୟ ତ୍ରେତା ଯୁଗେ ନାହିଁ ।
ଅଳପ ଦ୍ୱାପରେ, ହୋଇବେ କଳିରେ ବୃନ୍ଦ ବୃନ୍ଦ ଯହିଁ ତହିଁ ॥୪॥

---

ସର୍ବଦା ଆସକ୍ତ ରହନ୍ତି । ସେମାନଙ୍କୁ ଯମପୁରର ଭୟ ଲାଗେ ନାହିଁ । ଯଦି ସେମାନେ କାହାର ବଡାଇ ଶୁଣନ୍ତି, ତେବେ ଦୁଃଖରେ ଏପରି ଦୀର୍ଘ ଶ୍ୱାସ ନିଅନ୍ତି, ସତେ ଯେପରି ସେମାନଙ୍କୁ କମ୍ପଜ୍ୱର ଆସିଗଲା ॥ ୧ ॥ ଯେତେବେଳେ ସେମାନେ କାହାର ବିପତ୍ତି ଦେଖନ୍ତି, ସେତେବେଳେ ସତେ ଯେପରି ସମସ୍ତ ଜଗତର ରାଜା ହୋଇ ପଡ଼ିଛନ୍ତି, ସେହିପରି ସୁଖ ଲାଭ କରନ୍ତି । ସେମାନେ ସ୍ୱାର୍ଥପରାୟଣ, ପରିବାରଜନଙ୍କ ବିରୋଧୀ, କାମ ଓ ଲୋଭ ହେତୁ ଲମ୍ପଟ ଏବଂ ଅତିଶୟ କ୍ରୋଧୀ ହୁଅନ୍ତି ॥ ୨ ॥ ସେମାନେ ମାତା, ପିତା, ଗୁରୁ ଓ ବ୍ରାହ୍ମଣ କାହାରିକୁ ମାନନ୍ତି ନାହିଁ । ନିଜେ ତ ସେମାନେ ନଷ୍ଟ ହୋଇ ଯାଆନ୍ତି, ପୁଣି ନିଜ ସଙ୍ଗରେ ଅନ୍ୟମାନଙ୍କୁ ମଧ୍ୟ ନଷ୍ଟ କରନ୍ତି । ମୋହବଶତଃ ସେମାନେ ଅନ୍ୟମାନଙ୍କ ସହିତ ଦ୍ରୋହ କରନ୍ତି । ସେମାନଙ୍କୁ ସାଧୁ-ସନ୍ଥମାନଙ୍କର ସଙ୍ଗ ଭଲ ଲାଗେ ନାହିଁ କିମ୍ବା ଭଗବାନଙ୍କ କଥା ସେମାନଙ୍କୁ ରୁଚେ ନାହିଁ ॥ ୩ ॥ ସେମାନେ ଅବଗୁଣର ସାଗର, ମନ୍ଦବୁଦ୍ଧି, କାମୁକ ଓ ବେଦ-ନିନ୍ଦୁକ ଏବଂ ବଳାତ୍କାରରେ ସେମାନେ ପରଧନ ଉପରେ ପ୍ରଭୁ (ମାଲିକ) ହୁଅନ୍ତି । ସେମାନେ ପରଦ୍ରୋହ ତ କରନ୍ତି, କିନ୍ତୁ ବିଶେଷ କରି ବ୍ରାହ୍ମଣ-ଦ୍ରୋହ କରନ୍ତି । ସେମାନଙ୍କ ହୃଦୟରେ ଦମ୍ଭ ଓ କପଟ ପୂର୍ଣ୍ଣ ହୋଇ ରହିଥାଏ । କିନ୍ତୁ ଉପରେ ସେମାନେ ସୁନ୍ଦର ବେଶ ଧାରଣ କରିଥା'ନ୍ତି ॥୪॥
ଦୋହା —ଏହିପରି ନୀଚ ଓ ଦୁଷ୍ଟ ମନୁଷ୍ୟ ସତ୍ୟ ଓ ତ୍ରେତାଯୁଗରେ ଜନ୍ମ ଲଭନ୍ତି ନାହିଁ,

ପରହିତ ସରିସ ଧର୍ମ ନହିଁ ଭାଈ । ପରପୀଡ଼ା ସମ ନହିଁ ଅଧମାଈ ॥
ନିର୍ଣ୍ଣୟ ସକଲ ପୁରାନ ବେଦ କର । କହେଉଁ ତାତ ଜାନହିଁ କୋବିଦ ନର ॥୧॥
ନର ସରୀର ଧରି ଜେ ପର ପୀରା । କରହିଁ ତେ ସହହିଁ ମହା ଭବ ଭୀରା ॥
କରହିଁ ମୋହବସ ନର ଅଘ ନାନା । ସ୍ୱାରଥରତ ପରଲୋକ ନସାନା ॥୨॥
କାଲରୂପ ତିନ୍ହ କହଁ ମୈଁ ଭ୍ରାତା । ସୁଭ ଅରୁ ଅସୁଭ କର୍ମ ଫଲଦାତା ॥
ଅସ ବିଚାରି ଜେ ପରମ ସୟାନେ । ଭଜହିଁ ମୋହି ସଂସୃତ ଦୁଖ ଜାନେ ॥୩॥
ତ୍ୟାଗହିଁ କର୍ମ ସୁଭାସୁଭ ଦାୟକ । ଭଜହିଁ ମୋହି ସୁର ନର ମୁନି ନାୟକ ॥
ସଂତ ଅସଂତନ୍ହ କେ ଗୁନ ଭାଷେ । ତେ ନ ପରହିଁ ଭବ ଜିନ୍ହ ଲଖି ରାଖେ ॥୪॥

ସୁନହୁ ତାତ ମାୟା କୃତ ଗୁନ ଅରୁ ଦୋଷ ଅନେକ ।
ଗୁନ ୟହ ଉଭୟ ନ ଦେଖିଅହିଁ ଦେଖିଅ ସୋ ଅବିବେକ ॥୪୧॥

---

ପରହିତ ସମ ଭାଇ ନାହିଁ ଅନ୍ୟ ଧର୍ମ । ନାହିଁ କିଛି ଅଧମତା ପରପୀଡ଼ା ସମ ॥
ନିର୍ଣ୍ଣୟ ସକଳ ଶ୍ରୁତି ଶାସ୍ତ୍ର ପୁରାଣରେ । କହିଲି ଭ୍ରାତା, ଜାଣନ୍ତି ବିଜ୍ଞ ସଜ୍ଜନର ॥୧॥
ନର ତନୁ ଧରି ଯେହୁ ପରକୁ ପୀଡ଼ନ୍ତି । ଭୀଷଣ ଭବ ଯାତନା ସେମାନେ ସହନ୍ତି ॥
କରନ୍ତି ବିବିଧ ପାପ ମୋହବଶ ଲୋକ । ସ୍ୱାର୍ଥରତ ହୋଇ ବିନାଶନ୍ତି ପରଲୋକ ॥୨॥
ତାହାଙ୍କ ନିମନ୍ତେ ମୁହିଁ କାଳରୂପ, ଭ୍ରାତା । ଶୁଭ ଆବର ଅଶୁଭ କର୍ମ-ଫଳ-ଦାତା ॥
ଏମନ୍ତ ବିଚାରି ଯେ ପ୍ରବୀଣ ଅତିଶୟ । ଭଜନ୍ତି ମୋତେ ସଂସୃତି ଜାଣି ଦୁଃଖମୟ ॥୩॥
ପରିହରି କର୍ମ ଶୁଭ-ଅଶୁଭ-ଦାୟକ । ଭଜନ୍ତି ମୋତେ ସଚର ଅଚର ନାୟକ ॥
ସନ୍ତ ଅସନ୍ତଙ୍କ ମୁହିଁ ବଖାଣିଲି ଗୁଣ । ଯେ ଏହା ଜାଣନ୍ତି ଭବେ ନ ପଡ଼ନ୍ତି ପୁଣ ॥୪॥

ଶୁଣ ହେ ଭରତ, ଅଟେ ମାୟାକୃତ ଗୁଣ ଦୂଷଣ ଅନେକ ।
ଏହି ଉଭୟଙ୍କୁ ନ ଦେଖିବା ଗୁଣ, ଦେଖନ୍ତି ସେ ଅବିବେକ ॥୪୧॥

---

ଦ୍ୱାପରରେ ଅଳ୍ପ ଜାତ ହେବେ ଏବଂ କଳିଯୁଗରେ ପଲ ପଲ ହୋଇ ଦେଖା ଦେବେ ॥ ୪୦ ॥ ଚୌପାଈ :—ହେ ଭାଇ ! ପରୋପକାର ସମାନ କୌଣସି ଧର୍ମ ନାହିଁ ଏବଂ ଅନ୍ୟଙ୍କୁ ପୀଡ଼ା ଦେବା ପରି କୌଣସି ଅଧମତା ଆଉ ନାହିଁ । ହେ ବତ୍ସ ! ମୁଁ ତୁମ୍ଭଙ୍କୁ ସମସ୍ତ ପୁରାଣ ଓ ବେଦର ଏହି ନିର୍ଣ୍ଣିତ ସିଦ୍ଧାନ୍ତ କହୁଅଛି । ପଣ୍ଡିତମାନେ ଏହି କଥା ଜାଣନ୍ତି ॥ ୧ ॥ ମନୁଷ୍ୟ ଶରୀର ଧାରଣ କରି ଯେଉଁମାନେ ଅନ୍ୟମାନଙ୍କୁ ଦୁଃଖ ଦିଅନ୍ତି, ସେମାନଙ୍କୁ ଜନ୍ମ-ମୃତ୍ୟୁର ମହାସଙ୍କଟ ସହିବାକୁ ପଡ଼େ । ମନୁଷ୍ୟମାନେ ମୋହବଶତଃ ସ୍ୱାର୍ଥପରାୟଣ ହୋଇ ଅନେକ ପାପ କରନ୍ତି । ଏହି ହେତୁ ସେମାନଙ୍କର ପରଲୋକ ନଷ୍ଟ ହୋଇ ରହିଥାଏ ॥ ୨ ॥ ହେ ଭାଇ ! ମୁଁ ସେମାନଙ୍କ ନିମନ୍ତେ କାଳ ସ୍ୱରୂପ ଭୟଙ୍କର ଏବଂ ସେମାନଙ୍କ ଶୁଭାଶୁଭ କର୍ମର ଯଥାଯୋଗ୍ୟ ଫଳଦାତା । ଏହିପରି ବିଚାର କରି ଯେଉଁମାନେ ପରମ ଚତୁର, ସେମାନେ ସଂସାରକୁ ଦୁଃଖର ରୂପ ବୋଲି ଜାଣି ମୋତେ ହିଁ ଭଜନ କରନ୍ତି ॥ ୩ ॥ ଏହି ହେତୁ ସେମାନେ ଶୁଭ ଓ ଅଶୁଭ

ଶ୍ରୀମୁଖ ବଚନ ସୁନତ ସବ ଭାଈ । ହରଷେ ପ୍ରେମୁ ନ ହୃଦୟଁ ସମାଈ ॥
କହହିଁ ବିନୟ ଅତି ବାରହିଁ ବାରା । ହନୂମାନ ହିୟଁ ହରଷ ଅପାରା ॥୧॥
ପୁନି ରଘୁପତି ନିଜ ମନ୍ଦିର ଗଏ । ଏହି ବିଧି ଚରିତ କରତ ନିତ ନଏ ॥
ବାର ବାର ନାରଦ ମୁନି ଆୱହିଁ । ଚରିତ ପୁନୀତ ରାମ କେ ଗାୱହିଁ ॥୨॥
ନିତ ନବ ଚରିତ ଦେଖି ମୁନି ଜାହୀଁ । ବ୍ରହ୍ମଲୋକ ସବ କଥା କହାହୀଁ ॥
ସୁନି ବିରଞ୍ଚି ଅତିସୟ ସୁଖ ମାନହିଁ । ପୁନି ପୁନି ତାତ କରହୁ ଗୁନ ଗାନହିଁ ॥୩॥
ସନକାଦିକ ନାରଦହି ସରାହହିଁ । ଜଦ୍ୟପି ବ୍ରହ୍ମ ନିରତ ମୁନି ଆହହିଁ ॥
ସୁନି ଗୁନଗାନ ସମାଧି ବିସାରୀ । ସାଦର ସୁନହିଁ ପରମ ଅଧିକାରୀ ॥୪॥

---

ଶୁଣି ଅନୁଜେ ଶ୍ରୀମୁଖ ଅମୃତ ବଚନ । ହୃଦେ ନ ସମ୍ଭାଏ ପ୍ରେମ ହୋଇଲେ ପ୍ରସନ୍ନ ॥
କରନ୍ତି ବିନୟ ଅନୁରାଗେ ବାରମ୍ବାର । ପବନ-ସୁତ ହୃଦୟେ ହରଷ ଅପାର ॥୧॥
ପୁଣି ରଘୁପତି ନିଜ ଭବନେ ଆସିଲେ । ଏହି ଭାବେ ନିତ୍ୟ ନବ ଚରିତ ରଚିଲେ ॥
ବାରମ୍ବାର ମୁନିବର ନାରଦ ଆସନ୍ତି । ପବିତ୍ର ରାମ ଚରିତ ଗାୟନ କରନ୍ତି ॥୨॥
ନିତ୍ୟ ନବ ଲୀଳା ଅବଲୋକି ମୁନିନାଥ । ବ୍ରହ୍ମଲୋକେ ଯାଇ ସବୁ ଶୁଣାନ୍ତି ବୃତ୍ତାନ୍ତ ॥
କହନ୍ତି ବିଧାତା ସୁଖ ଲଭି ଅତିଶୟ । ବାରମ୍ବାର ଗୁଣ କର ବର୍ଣ୍ଣନ ତନୟ ॥୩॥
ସନକାଦି ନାରଦଙ୍କୁ ପ୍ରଶଂସନ୍ତି ଶୁଣି । ଯଦ୍ୟପି ଅଟନ୍ତି ବ୍ରହ୍ମପରାୟଣ ମୁନି ॥
ଶୁଣନ୍ତେ ଗୁଣ-ଗାୟନ ସମାଧି ଭୁଲନ୍ତି । ପରମାଧିକାରୀ ଅତି ସାଦରେ ଶୁଣନ୍ତି ॥୪॥

---

କର୍ମ ତ୍ୟାଗ କରି ଦେବତା, ମନୁଷ୍ୟ ଓ ମୁନିଜନଙ୍କ ନାୟକ ମୋତେ ହିଁ ଭଜନ୍ତି । ଏହିରୂପେ ସାଧୁ ଓ ଅସାଧୁଙ୍କ ଗୁଣାବଳୀ କହିଲି । ଯେଉଁମାନେ ଏହି ଗୁଣାବଳୀ ହୃଦୟଙ୍ଗମ କରିଛନ୍ତି, ସେମାନେ ଜନ୍ମ-ମରଣର ଚକ୍ରରେ ପଡନ୍ତି ନାହିଁ ॥ ୪ ॥ ଦୋହା —ହେ ବତ୍ସ ! ଶୁଣ, ମାୟା-ରଚିତ ଅନେକ ଗୁଣ ଓ ଦୋଷ ଅଛି । ଏମାନଙ୍କର କୌଣସି ବାସ୍ତବିକ ସତ୍ତା ନାହିଁ । ଉଭୟଙ୍କୁ ନ ଦେଖିବା ହିଁ ଗୁଣ ବା ବିବେକ । ଏମାନଙ୍କୁ ଦେଖିବା ହିଁ ଅବିବେକ ।" ॥ ୪୧ ॥ ଚୌପାଈ —ଭଗବାନଙ୍କ ଶ୍ରୀମୁଖରୁ ଏ ସବୁ ବଚନ ଶୁଣି ସମସ୍ତ ଭାଇ ଆନନ୍ଦିତ ହେଲେ । ସେମାନଙ୍କ ହୃଦୟରୁ ପ୍ରେମ ଉଚ୍ଛୁଳି ପଡୁଥାଏ । ସେମାନେ ବାରମ୍ବାର ଅତିଶୟ ବିନତି କରୁଥାଆନ୍ତି । ବିଶେଷତଃ ହନୁମାନଙ୍କ ହୃଦୟରେ ଅପାର ହର୍ଷ ॥ ୧ ॥ ତଦନନ୍ତର ପ୍ରଭୁ ଶ୍ରୀରାମ ତାଙ୍କର ମହଲକୁ ଗଲେ । ଏହି ରୂପେ ସେ ନିତ୍ୟ ନୂତନ ଲୀଳା କରନ୍ତି । ନାରଦ ମୁନି ବାରମ୍ବାର ଅଯୋଧ୍ୟାକୁ ଆସୁଥାଆନ୍ତି ଏବଂ ଆସି ଶ୍ରୀ ରାମଚନ୍ଦ୍ରଙ୍କ ପାବନ ଚରିତ ଗାନ କରନ୍ତି ॥ ୨ ॥ ମୁନି ଏହି ସ୍ଥାନରେ ନିତ୍ୟ ନବ ନବ ଚରିତ ଦେଖି ଫେରି ଯାଆନ୍ତି ଏବଂ ଫେରି ବ୍ରହ୍ମଲୋକରେ ସମସ୍ତ କଥା କହନ୍ତି । ବ୍ରହ୍ମା ଏ ସବୁ ଶୁଣି ଅତିଶୟ ସୁଖ ମଣନ୍ତି ଏବଂ କହନ୍ତି, "ହେ ବତ୍ସ ! ବାରମ୍ବାର ଶ୍ରୀରାମଙ୍କ ଗୁଣଗାନ କର ।" ॥୩॥ ସନକାଦି ମୁନି ନାରଦଙ୍କର ପ୍ରଶଂସା କରନ୍ତି । ସନକାଦି ମୁନି ବ୍ରହ୍ମନିଷ୍ଠ । ତଥାପି ସେମାନେ ଶ୍ରୀରାମଙ୍କ

ଜୀବନମୁକ୍ତ ବ୍ରହ୍ମପର ଚରିତ ସୁନହିଁ ତଜି ଧ୍ୟାନ ।
ଜେ ହରିକଥାଁ ନ କରହିଁ ରତି ତିହ୍ନ କେ ହିୟ ପାଷାନ ॥୪୨॥
ଏକ ବାର ରଘୁନାଥ ବୋଲାଏ । ଗୁର ଦ୍ୱିଜ ପୁରବାସୀ ସବ ଆଏ ॥
ବୈଠେ ଗୁର ମୁନି ଅରୁ ଦ୍ୱିଜ ସଜ୍ଜନ । ବୋଲେ ବଚନ ଭଗତ ଭବଭଂଜନ ॥୧॥
ସୁନହୁ ସକଲ ପୁରଜନ ମମ ବାନୀ । କହଉଁ ନ କଛୁ ମମତା ଉର ଆନୀ ॥
ନହିଁ ଅନୀତି ନହିଁ କଛୁ ପ୍ରଭୁତାଈ । ସୁନହୁ କରହୁ ଜୋ ତୁମ୍ହହି ସୋହାଈ ॥୨॥
ସୋଇ ସେବକ ପ୍ରିୟତମ ମମ ସୋଈ । ମମ ଅନୁସାସନ ମାନୈ ଜୋଈ ॥
ଜୌଂ ଅନୀତି କଛୁ ଭାଷୌଂ ଭାଈ । ତୌ ମୋହି ବରଜହୁ ଭୟ ବିସରାଈ ॥୩॥

---

ଶୁଣନ୍ତି ଚରିତ ଯେ ଜୀବନ ମୁକ୍ତ ବ୍ରହ୍ମରତ ତେଜି ଧ୍ୟାନ ।
ହରି କଥା ପ୍ରତି ଯାର ନାହିଁ ପ୍ରୀତି ତାହାର ହୃଦ ପାଷାଣ ॥୪୨॥
ଏକବାର ପ୍ରଭୁ ରଘୁନନ୍ଦନ ଗାଇଲେ । ଗୁରୁ ଦ୍ୱିଜ ପୁରବାସୀ ସମସ୍ତେ ଆସିଲେ ॥
ବସନ୍ତେ ଗୁରୁ ବ୍ରାହ୍ମଣ ମୁନି ସାଧୁଜନ । କହିଲେ ବଚନ ଭକ୍ତ-ଭୟ-ବିଭଞ୍ଜନ ॥୧॥
ଶୁଣନ୍ତୁ ସକଳ ପୁର ଜନ, ମୋର ବାଣୀ । ନ କହେ କିଛି ମମତା ହୃଦୟରେ ଆଣି ॥
ନୁହେଁ କିଛି ଅନୀତି ବା ପ୍ରଭୁତ୍ୱ ନୁହଇ । ଶୁଣି କର ଯାହା ଭଲ ତୁମ୍ଭଙ୍କୁ ଲାଗଇ ॥୨॥
ସେ ଅଟେ ସେବକ ମୋର ପ୍ରିୟତମ ସେହୁ । ମୋହର ଅନୁଶାସନ ପ୍ରତିପାଳେ ଯେହୁ ॥
ଅନୀତି କିଛି ମୁଁ ଭାଇ, କହୁଅଛି ଯେବେ । ଭୟ ତ୍ୟାଗ କରି ମୋତେ ପରିହର ତେବେ ॥୩॥

---

ମୁନିଗଣ ଶୁଣି ଆପଣା ଆପଣାର ବ୍ରହ୍ମସମ୍ବନ୍ଧକୁ ଭୁଲି ଯାଉଥା'ନ୍ତି ଏବଂ ଆଦର-ସହକାରେ ତାହା ଶୁଣୁଥା'ନ୍ତି, ସନ୍ତେ ଯେଉଁ ରାମ କଥା ଶୁଣିବା ପାଇଁ ସେମାନଙ୍କର ପରମ ଅଧିକାର ରହିଅଛି ॥ ୪ ॥ ଦୋହା :—ସନକାଦି ମୁନିମାନଙ୍କ ତୁଲ୍ୟ ଜୀବନ୍ମୁକ୍ତ ଓ ବ୍ରହ୍ମନିଷ୍ଠ ପୁରୁଷମାନେ ମଧ୍ୟ ଧ୍ୟାନ (ବ୍ରହ୍ମ ସମାଧି) ତ୍ୟାଗ କରି ଶ୍ରୀରାମଙ୍କ ଚରିତ ଶୁଣନ୍ତି । ଏହା ଜାଣି ମଧ୍ୟ ଯେଉଁମାନେ ଶ୍ରୀହରିଙ୍କ କଥାରେ ପ୍ରେମ କରନ୍ତି ନାହିଁ, ସେମାନଙ୍କ ହୃଦୟ ବାସ୍ତବିକ ପଥର ॥ ୪୨ ॥ ଚୌପାଇ :—ଏକଦା ଶ୍ରୀ ରଘୁନାଥଙ୍କ ଆହ୍ୱାନ କ୍ରମେ ଗୁରୁ ବଶିଷ୍ଠ, ବ୍ରାହ୍ମଣ ଓ ଅନ୍ୟାନ୍ୟ ନଗର-ନିବାସି-ବୃନ୍ଦ ସଭାକୁ ଆସିଲେ । ଗୁରୁ, ମୁନି, ବ୍ରାହ୍ମଣ ଓ ଅନ୍ୟାନ୍ୟ ସମସ୍ତ ସଜ୍ଜନ ସେମାନଙ୍କର ଯଥା-ଯୋଗ୍ୟ ଆସନରେ ବସି ପଡ଼ିଲେ । ତଦନନ୍ତର ଭକ୍ତଜନଙ୍କ ଭବ-ଭୟ-ବିଭଞ୍ଜନକାରୀ ଶ୍ରୀରାମ ବଚନ ବୋଇଲେ—॥ ୧ ॥ "ହେ ସକଳ ନଗରନିବାସି ! ମୋ କଥା ତୁମ୍ଭେମାନେ ଶୁଣ । ଏହି କଥା ହୃଦୟ ମଧ୍ୟରେ କିଛି ମମତା ଆଣି ଯେ ମୁଁ କହୁଛି, ତାହା ନୁହେଁ । ମୁଁ ଅନୀତି କଥା କହୁ ନାହିଁ, କିମ୍ବା ଏଥିରେ ମୋର କୌଣସି ପ୍ରଭୁତ୍ୱ ମଧ୍ୟ ନାହିଁ । ଅତଏବ ସଙ୍କୋଚ ଓ ଭୟ ତ୍ୟାଗ କରି ଧ୍ୟାନ ସହକାରେ ମୋର କଥାମାନ ଶୁଣ ଏବଂ ଯଦି ତୁମ୍ଭମାନଙ୍କୁ ରୁଚିକର ହୁଏ, ତଦନୁସାରେ କର୍ମ କର ॥ ୨ ॥ ଯେଉଁ ବ୍ୟକ୍ତି ମୋର ଆଜ୍ଞା ପାଳନ କରେ, ସେହି ମୋର ସେବକ ଏବଂ ସେହି ମୋର ପ୍ରିୟତମ ।

ବଡ଼େଁ ଭାଗ ମାନୁଷ ତନୁ ପାୱା । ସୁର ଦୁର୍ଲଭ ସବ ଗ୍ରନ୍ଥନ୍ହି ଗାୱା ॥
ସାଧନ ଧାମ ମୋଚ୍ଛ କର ଦ୍ୱାରା । ପାଇ ନ ଜେହିଁ ପରଲୋକ ସଁୱାରା ॥୪॥
ସୋ ପରତ୍ର ଦୁଖ ପାୱଇ ସିର ଧୁନି ଧୁନି ପଛିତାଇ ।
କାଲହି କର୍ମହି ଈସ୍ୱରହି ମିଥ୍ୟା ଦୋଷ ଲଗାଇ ॥୪୩॥
ଏହି ତନ କର ଫଲ ବିଷୟ ନ ଭାଈ । ସ୍ୱର୍ଗଉ ସ୍ୱଳ୍ପ ଅନ୍ତ ଦୁଖଦାଈ ॥
ନରତନୁ ପାଇ ବିଷୟଁ ମନ ଦେହୀଂ । ପଲଟି ସୁଧା ତେ ସଠ ବିଷ ଲେହୀଂ ॥୧॥
ତାହି କବହୁଁ ଭଲ କହଇ ନ କୋଈ । ଗୁଞ୍ଜା ଗ୍ରହଇ ପରସମନି ଖୋଈ ॥
ଆକର ଚାରି ଲକ୍ଷ ଚୌରାସୀ । ଜୋନି ଭ୍ରମତ ଯହ ଜିବ ଅବିନାସୀ ॥୨॥
ଫିରତ ସଦା ମାୟା କର ପ୍ରେରା । କାଲ କର୍ମ ସୁଭାୱ ଗୁନ ଘେରା ॥
କବହୁଁକ କରି କରୁନା ନରଦେହୀ । ଦେତ ଈସ ବିନୁ ହେତୁ ସନେହୀ ॥୩॥

---

ବଡ ଭାଗ୍ୟେ ପ୍ରାପ୍ତ ହୁଏ ନର କଳେବର । ସୁର ଦୁର୍ଲଭ, ଭଣନ୍ତି ସଦ୍‌ଗ୍ରନ୍ଥ ନିକର ॥
ସାଧନାର ଧାମ ମୋକ୍ଷ ଦ୍ୱାର ଏ ଅଟଇ । ପାଇ ପରଲୋକ ପଥ ଯେହୁ ନ ରଚଇ ॥୪॥
ଶିର ପିଟି ସେହୁ ପଶ୍ଚାତ୍ତାପ କରେ ପରତ୍ର ଦୁଃଖ ପାଇଣ ।
କାଳକୁ କର୍ମକୁ ପୁଣି ଈଶ୍ୱରଙ୍କୁ ମିଥ୍ୟା ଦୋଷ ଲଗାଇଣ ॥୪୩॥
ବିଷୟ ଏ ତନୁଲାଭ ଫଳ ନୁହେଁ ଭାଇ । ସ୍ୱର୍ଗ-ସୁଖ କ୍ଷଣସ୍ଥାୟୀ ଅନ୍ତେ ଦୁଃଖଦାୟୀ ॥
ନରତନୁ ପାଇଣ ଯେ ବିଷୟେ ମାତନ୍ତି । ସୁଧା ବଦଳେ ସେ ଶଠ ବିଷ ଆଦରନ୍ତି ॥୧॥
ତାହାଙ୍କୁ କେବେହେଁ କେହି ଭଲ ନ କହଇ । ସ୍ପର୍ଶ-ମଣି ତେଜିଣ ଯେ କାଇଞ୍ଚ ଘେନଇ ॥
ଚାରି ପ୍ରକାର ଆକର ଲକ୍ଷ ଚଉରାଶୀ । ଯୋନିରେ ପଡ଼ତ ଏହି ଜୀବ ଅବିନାଶୀ ॥୨॥
ଭ୍ରମନ୍ତି ସତତ ମାୟା ପ୍ରେରିତ ହୋଇଣ । କାଳ କରମ ସ୍ୱଭାବ ଗୁଣେ ନିବନ୍ଧଣ ॥
କେବେ କାହିଁ କୃପା କରି ନର ଦେହ ଏହି । ଦିଅନ୍ତି ପରମେଶ୍ୱର ଅକାରଣ ସ୍ନେହୀ ॥୩॥

---

ହେ ଭାଇ ! ଯଦି ମୁଁ କୌଣସି ଅନୀତିସଙ୍ଗତ କଥା କହୁଛି, ତେବେ ନିର୍ଭୟରେ ମୋତେ ବାରଣ କର ॥ ୩ ॥ ବଡ ଭାଗ୍ୟବଳରେ ଏହି ମନୁଷ୍ୟ ଶରୀର ମିଳିଅଛି । ଏହି ଦେହ ଏପରି କି ଦେବଦୁର୍ଲଭ ବୋଲି ସମସ୍ତ ଗ୍ରନ୍ଥ କହୁଅଛନ୍ତି । ଏହା ସାଧନାର ଧାମ ଏବଂ ମୋକ୍ଷର ଦ୍ୱାର । ଏହା ପାଇ ସୁଦ୍ଧା ଯେ ପରଲୋକକୁ ଗଢି ନ ପାରେ, ସେ ଅନୁତାପ କରେ ॥ ୪ ॥ ଦୋହା .—ସେ ପରଲୋକରେ ଦୁଃଖ ପାଏ, ମୁଣ୍ଡ ପିଟି ପିଟି ଅନୁତାପ କରେ ଏବଂ ଆପଣାର ଦୋଷ ନ ବୁଝି କାଳ, କର୍ମ ଓ ଈଶ୍ୱରଙ୍କ ଉପରେ ମିଥ୍ୟା ଦୋଷାରୋପଣ କରେ ॥ ୪୩ ॥ ଚୌପାଈ .— ହେ ଭାଇ ! ଏହି ଶରୀରପ୍ରାପ୍ତିର ଫଳ ବିଷୟ-ଭୋଗ ନୁହେଁ । ଏହି ଜାଗତିକ ଭୋଗ କଥା ବା କ'ଣ କହିବା ? ଏପରି କି ସ୍ୱର୍ଗଭୋଗ ମଧ୍ୟ ଅତି ତୁଚ୍ଛ ଏବଂ ପରିଣାମରେ ଦୁଃଖଦାୟକ । ସୁତରାଂ ଯେଉଁ ଲୋକମାନେ ମନୁଷ୍ୟ ଶରୀର ପାଇ ବିଷୟ-ବାସନାରେ ମନ ଲଗାଇ ଦିଅନ୍ତି, ସେହିମାନେ ମୂର୍ଖ ଏବଂ ସେମାନେ ଅମୃତ ବିନିମୟରେ ବିଷ ଲାଭ କରନ୍ତି ॥ ୧ ॥

ନରତନୁ ଭବବାରିଧି କହୁଁ ବେରୋ । ସନ୍ମୁଖ ମରୁତ ଅନୁଗ୍ରହ ମେରୋ ॥
କରନଧାର ସଦଗୁର ଦୃଢ଼ ନାଵା । ଦୁର୍ଲଭ ସାଜ ସୁଲଭ କରି ପାଵା ॥୪॥
ଜୋ ନ ତରୈ ଭବସାଗର ନର ସମାଜ ଅସ ପାଇ ।
ସୋ କୃତ ନିନ୍ଦକ ମନ୍ଦମତି ଆତ୍ମାହନ ଗତି ଜାଇ ॥୪୪॥
ଜୌଁ ପରଲୋକ ଇହାଁ ସୁଖ ଚହହୂ । ସୁନି ମମ ବଚନ ହୃଦୟଁ ଦୃଢ଼ ଗହହୂ ॥
ସୁଲଭ ସୁଖଦ ମାରଗ ଯହ ଭାଈ । ଭଗତି ମୋରି ପୁରାନ ଶ୍ରୁତି ଗାଈ ॥୧॥
ଜ୍ଞାନ ଅଗମ ପ୍ରତ୍ୟୂହ ଅନେକା । ସାଧନ କଠିନ ନ ମନ କହୁଁ ଟେକା ॥
କରତ କଷ୍ଟ ବହୁ ପାଵଇ କୋଊ । ଭକ୍ତିହୀନ ମୋହି ପ୍ରିୟ ନହିଁ ସୋଊ ॥୨॥

---

ଭବ-ସିନ୍ଧୁ କୁ ବୋଇତ ମନୁଷ୍ୟ ଶରୀର । ମୋର ଅନୁଗ୍ରହ ଅଟେ ସମ୍ମୁଖ ସମୀର ॥
କର୍ଣ୍ଣଧାର ସଦଗୁରୁ ଦୃଢ ବୋଇତରେ । ଦୁର୍ଲ୍ଲଭ ଏ ସାଜ ପ୍ରାପ୍ତ ସୁଲଭ ଭାବରେ ॥୪॥
ଯେଉଁ ନ ତରଇ ଭବ-ସିନ୍ଧୁ, ପାଇ ନର ଶରୀର ଏମନ୍ତ ।
ସେ କୃତ ନିନ୍ଦକ କୁମତି ଚଞ୍ଚଳ ଲଭେ ଗତି ଆତ୍ମହତ ॥୪୪॥
ଯେବେ ଇହ ପରଲୋକ ସୁଖ ଇଚ୍ଛା କର । ଶୁଣି ମୋ ବଚନ ହୃଦେ ଦୃଢ ଭାବେ ଧର ॥
ସୁଲଭ ସୁଖଦ ଏହୁ ମାର୍ଗ ଅଟେ ଭାଇ । ଭକ୍ତି ମୋର, ଶ୍ରୁତି ଶାସ୍ତ୍ର ଯାହା ଛନ୍ତି ଗାଇ ॥୧॥
ଜ୍ଞାନ ଅଗମ୍ୟ ଅନେକ ବାଧା ବିଘ୍ନ ମୟ । ସାଧନ କଷ୍ଟ, ନ ମିଳେ ମନକୁ ଆଶ୍ରୟ ॥
କରନ୍ତେ ବହୁତ ଶ୍ରମ କେହୁ ବା ଲଭଇ । ଭକ୍ତିହୀନ ତାହା ମୋତେ ପ୍ରିୟ ନ ଲାଗଇ ॥୨॥

---

ସେମାନେ ପରଶମଣି ହରାଇ, ତାହାର ପରିବର୍ତ୍ତେ ଗୁଞ୍ଜା ଫଳ ଗ୍ରହଣ କରନ୍ତି । ଏହିପରି ବ୍ୟକ୍ତିଙ୍କୁ କେହି କଦାପି ବୁଦ୍ଧିମାନ୍ ବୋଲି କହନ୍ତି ନାହିଁ । ଏହି ଅବିନାଶୀ ଜୀବ ଅଣ୍ଡଜ, ସ୍ୱେଦଜ, ଜରାୟୁଜ ଏବଂ ଉଦ୍ଭିଜ୍ଜ ନାମକ ଚାରିଗୋଟି ଆକର ଏବଂ ଚୌରାଶୀ ଲକ୍ଷ ଯୋନିରେ ଭ୍ରମୁଥାଏ ॥୨॥ ମାୟାର ପ୍ରେରଣାରେ କାଳ, କର୍ମ, ସ୍ୱଭାବ ଓ ଗୁଣର ବଶବର୍ତ୍ତୀ ହୋଇ ଏହା ସର୍ବଦା ଭ୍ରମୁଥାଏ । ଅହେତୁକ ସ୍ନେହୀ ଈଶ୍ୱର କ୍ୱଚିତ୍ ଦୟା କରି ଏହି ଜୀବକୁ ମନୁଷ୍ୟ ଶରୀର ଦେଇଥାଆନ୍ତି ॥୩॥ ଏହି ମନୁଷ୍ୟ ଶରୀର ଭବ-ସାଗର ତରିବା ନିମନ୍ତେ ତରୀ । ମୋହର କୃପା ଅନୁକୂଳ ବାୟୁ । ସଦ୍‌ଗୁରୁ ଏହି ସୁଦୃଢ ନୌକାର କର୍ଣ୍ଣଧାର । ଏହି ପ୍ରକାର ଦୁର୍ଲ୍ଲଭ ସାଧନମାନ ଭଗବତ୍ କୃପାରେ ତାହାକୁ ସୁଲଭ ହୋଇ ମିଳିଥାଏ ॥ ୪ ॥ ଦୋହା —ଯେଉଁ ମନୁଷ୍ୟ ଏପରି ସାଧନମାନ ପାଇ ସୁଦ୍ଧା ଭବ-ସାଗରରୁ ତରି ପାରେ ନାହିଁ, ସେ କୃତଘ୍ନ ଓ ମନ୍ଦମତି ଏବଂ ସେ ଆତ୍ମଘାତୀର ଦୁର୍ଦ୍ଦଶା ଭୋଗ କରେ ॥ ୪୪ ॥ ଚୌପାଇ —ଯଦି ପରଲୋକ ଓ ଇହଲୋକ ଉଭୟ ଲୋକରେ ସୁଖ ଇଚ୍ଛା କର, ତେବେ ମୋ ବଚନ ଶୁଣି ଉକ୍ତ ସାଧନମାନଙ୍କୁ ହୃଦୟରେ ଦୃଢତା ସହକାରେ ଧରି ରଖ । ହେ ଭାଇ ! ମୋର ଭକ୍ତିର ଏହି ମାର୍ଗ ସୁଲଭ ଓ ସୁଖଦାୟକ । ପୁରାଣ ବେଦମାନେ ଏହା ଗାଇଅଛନ୍ତି ॥୧॥ ଜ୍ଞାନ ଅଗମ ଏବଂ ତାହାର ଲାଭ-ପଥରେ ଅନେକ ବିଘ୍ନ । ତାହାର ସାଧନା ଅତି କଠିନ ଏବଂ ତହିଁରେ ମନ

ଭକ୍ତି ସ୍ୱତନ୍ତ୍ର ସକଲ ସୁଖ ଖାନୀ । ବିନୁ ସତସଂଗ ନ ପାୱହିଁ ପ୍ରାନୀ ॥
ପୁନ୍ୟପୁଞ୍ଜ ବିନୁ ମିଲହିଁ ନ ସନ୍ତା । ସତସଂଗତି ସଂସୃତି କର ଅନ୍ତା ॥୩॥
ପୁନ୍ୟ ଏକ ଜଗ ମହୁଁ ନହିଁ ଦୂଜା । ମନ କ୍ରମ ବଚନ ବିପ୍ର ପଦ ପୂଜା ॥
ସାନୁକୂଲ ତେହି ପର ମୁନି ଦେବା । ଜୋ ତଜି କପଟୁ କରଇ ଦ୍ୱିଜ ସେବା ॥୪॥

ଔରଉ ଏକ ଗୁପୁତ ମତ ସବହି କହଉଁ କର ଜୋରି ।
ସଙ୍କର ଭଜନ ବିନା ନର ଭଗତି ନ ପାୱଇ ମୋରି ॥୪୫॥

କହହୁ ଭଗତି ପଥ କୱନ ପ୍ରୟାସା । ଜୋଗ ନ ମଖ ଜପ ତପ ଉପବାସା ॥
ସରଲ ସୁଭାୱ ନ ମନ କୁଟିଲାଈ । ଜଥା ଲାଭ ସନ୍ତୋଷ ସଦାଈ ॥୧॥

---

ସମସ୍ତ ସୁଖ ଆଗାର ସ୍ୱତନ୍ତ୍ର ଭକତି । ସତ୍ସଙ୍ଗ ବିହୁନେ ପ୍ରାଣୀ ପାଇ ନ ପାରନ୍ତି ॥
ପୁଣ୍ୟପୁଞ୍ଜ ବିନା କେବେ ନ ମିଳନ୍ତି ସନ୍ଥ । ସତ୍ସଙ୍ଗ କରଇ ସଦା ସଂସୃତିର ଅନ୍ତ ॥୩॥
ପୁଣ୍ୟ ଏହି ଏକ, ଅନ୍ୟ ନାହିଁ ଜଗତରେ । ବିପ୍ର-ପଦ-ପୂଜା ମନ କର୍ମ ବଚନରେ ॥
ଅନୁକୂଳ ଦେବଗଣ ତା ପ୍ରତି ରହନ୍ତି । ଯେ ଦ୍ୱିଜ ସେବା କପଟ ତେଜିଣ କରନ୍ତି ॥୪॥

ଆଉ ଏକ ଗୁପ୍ତ ମତ କହେ ବ୍ୟକ୍ତ ସମସ୍ତଙ୍କୁ ଯୋଡି କର ।
ଶଙ୍କର ଭଜନ ବିନା ମୋର ଭକ୍ତି ଲଭି ନ ପାରନ୍ତି ନର ॥୪୫॥

କହ ଭକ୍ତି ମାର୍ଗେ କେଉଁ କଠିନ ପ୍ରୟାସ । ନାହିଁ ଯୋଗ ଜପ ତପ ଯଜ୍ଞ ଉପବାସ ॥
ସରଳ ସ୍ୱଭାବ ପୁଣି ଅକୁଟିଳ ମନ । ଯଥା ଲାଭରେ ସତତ ସନ୍ତୋଷ କରଣ ॥୧॥

---

ନମନ୍ତେ କୌଣସି ଆଧାର ନାହିଁ । ବହୁତ ପରିଶ୍ରମ ଓ କଷ୍ଟ ସ୍ୱୀକାର କରିବା ପରେ କେହି ତାହା ଅବଶ୍ୟ ଲାଭ କରେ । କିନ୍ତୁ ତାହା ମଧ୍ୟ ଭକ୍ତି-ଶୂନ୍ୟ ହୋଇଥିବାରୁ ମୋର ପ୍ରିୟ ନୁହେଁ ॥ ୨ ॥ ଭକ୍ତି ସ୍ୱତନ୍ତ୍ର ଏବଂ ସମସ୍ତ ସୁଖର ଖଣି । କିନ୍ତୁ ସତ୍ସଙ୍ଗ ବିନା ପ୍ରାଣୀମାନେ ଏହାକୁ ପାଇ ପାରନ୍ତି ନାହିଁ । ଆଉ ମଧ୍ୟ ପୁଣ୍ୟପୁଞ୍ଜ ବିନା ସାଧୁ ମିଳନ୍ତି ନାହିଁ । ସତ୍ସଙ୍ଗତି କେବଳ ଜନ୍ମ ମରଣ-ଚକ୍ର ସମାପ୍ତ କରେ ॥ ୩ ॥ ଜଗତରେ ପୁଣ୍ୟ ଏକମାତ୍ର ସାଧନ । ତାହା ପରି ଅନ୍ୟ କୌଣସି ସାଧନ ନାହିଁ । ତାହା ହେଉଛି, ମନ, ବଚନ ଓ କର୍ମରେ ବ୍ରାହ୍ମଣମାନଙ୍କ ଚରଣ-ପୂଜା କରିବା । ଯେଉଁ ବ୍ୟକ୍ତି କପଟ ତ୍ୟାଗ କରି ବ୍ରାହ୍ମଣମାନଙ୍କ ସେବା କରେ, ତାହା ଉପରେ ମୁନି ଓ ଦେବତାମାନେ ପ୍ରସନ୍ନ ରହନ୍ତି ॥୪॥ ଦୋହା :—ଆଉ ମଧ୍ୟ ଗୋଟିଏ ଗୁପ୍ତ ମତ ରହିଛି । ସମସ୍ତଙ୍କୁ ହାତ ଯୋଡି ମୁଁ ତାହା କହୁଅଛି । ତାହା ହେଉଛି, ଶଙ୍କରଙ୍କ ଭଜନ ବିନା ମନୁଷ୍ୟ ମୋର ଭକ୍ତି ପାଏ ନାହିଁ ॥ ୪୫ ॥ ଚୌପାଈ —କୁହ ତ, ଭକ୍ତି ମାର୍ଗରେ କେଉଁ ବଡ ପରିଶ୍ରମଟାଏ ବା ରହିଛି ? ଏଥିରେ ଯୋଗର ଆବଶ୍ୟକତା ନାହିଁ କିମ୍ବା ଯଜ୍ଞ, ଜପ, ତପ ଓ ଉପବାସର ମଧ୍ୟ ଆବଶ୍ୟକତା ନାହିଁ । ଏତିକି ମାତ୍ର ତହିଁରେ ଆବଶ୍ୟକ—ମନୁଷ୍ୟର ସ୍ୱଭାବ ସରଳ ହେବା ଉଚିତ, ମନରେ କୁଟିଳତା ରହିବା ଉଚିତ ନୁହେଁ ଏବଂ ଯାହା କିଛି ମିଳୁ ପଛକେ, ତହିଁରେ ସର୍ବଦା ସନ୍ତୁଷ୍ଟ

ମୋର ଦାସ କହାଇ ନର ଆସା । କରଇ ତୌ କହହୁ କହା ବିସ୍ୱାସା ॥
ବହୁତ କହଉଁ କା କଥା ବଢ଼ାଈ । ଏହି ଆଚରନ ବସ୍ୟ ମୈଁ ଭାଈ ॥୨॥
ବୈର ନ ବିଗ୍ରହ ଆସ ନ ତ୍ରାସା । ସୁଖମୟ ତାହି ସଦା ସବ ଆସା ॥
ଅନାରମ୍ଭ ଅନିକେତ ଅମାନୀ । ଅନଘ ଅରୋଷ ଦଚ୍ଛ ବିଜ୍ଞାନୀ ॥୩॥
ପ୍ରୀତି ସଦା ସଜ୍ଜନ ସଂସର୍ଗା । ତୃନ ସମ ବିଷୟ ସ୍ୱର୍ଗ ଅପବର୍ଗା ॥
ଭଗତି ପଚ୍ଛ ହଠ ନହିଁ ସଠତାଈ । ଦୁଷ୍ଟ ତର୍କ ସବ ଦୂରି ବହାଈ ॥୪॥

ମମ ଗୁନ ଗ୍ରାମ ନାମ ରତ ଗତ ମମତା ମଦ ମୋହ ।
ତା କର ସୁଖ ସୋଇ ଜାନଇ ପରାନନ୍ଦ ସଂଦୋହ ॥୪୬॥

---

ମୋ ଦାସ କୁହାଇ ନର ଆଶା କରେ ଯେବେ । କହ ମୋଠାରେ ବିଶ୍ୱାସ କାହିଁ ତାର ତେବେ ॥
ବହୁତ କଅଣ କଥା କହିବି ବଢାଇ । ଏହି ଆଚରଣେ ବଶ ଅଟେ ମୁହିଁ, ଭାଇ ॥୨॥
ନାହିଁ ଦ୍ୱନ୍ଦ୍ୱ ବୈର ଅନ୍ୟ ଆଶା ତ୍ରାସ ଯାର । ସୁଖେ ପରିପୂର୍ଣ୍ଣ ସଦା ସର୍ବ ଦିଗ ତାର ॥
ଉଦ୍ୟମ-ରହିତ ବାସ-ବିହୀନ ଅମାନୀ । ଅନଘ ଅରୋଷ ଦକ୍ଷ ଆଦର ବିଜ୍ଞାନୀ ॥୩॥
ସଜ୍ଜନ ସଂସର୍ଗେ ସଦା ପ୍ରୀତି ସୁଖ ମଣେ । ସ୍ୱର୍ଗ ଅପବର୍ଗ ଭୋଗ ତୃଣ ସମ ଗଣେ ॥
ଭକ୍ତି ପକ୍ଷେ ପ୍ରେମ, ହଠ ଶଠତା ରହିତ । ସମସ୍ତ ପ୍ରକାର ଦୁଷ୍ଟ ତର୍କ ବିବର୍ଜିତ ॥୪॥

ମୋହ-ମଦ-ମାନ-ମମତା-ବିହୀନ ମୋ ନାମ ଗୁଣେ ମଗନ ।
ତାହାର ସୁଖକୁ ସେ ଜାଣି ପାରଇ, ଚିଦାନନ୍ଦ ନିକେତନ ॥୪୬॥

---

ରହିବା ଉଚିତ ॥ ୧ ॥ ମୋର ଦାସ କୁହାଇ ଯଦି କେହି ମନୁଷ୍ୟଙ୍କଠାରୁ କୌଣସି ଆଶା ରଖେ, ତାହାର ମୋ ଉପରେ କେଉଁ ଭଳି ବିଶ୍ୱାସ ? ତୁମ୍ଭେମାନେ କୁହ ତ । ବହୁତ ଗୁଡାଏ କଥା ବଢାଇ କ'ଣ ବା କହିବି ? ହେ ଭାଇମାନେ ! ମୁଁ ତ ଏହି ଆଚରଣରେ ଅଧୀନ ॥ ୨ ॥ ମୋର ଦାସ କାହା ସଙ୍ଗରେ ଶତ୍ରୁତା କିମ୍ବା ଲଢାଇ-ଝଗଡା କରେ ନାହିଁ, ସେ କିଛି ଆଶା ରଖେ ନାହିଁ କିମ୍ବା ଭୟ କରେ ନାହିଁ । ତାହା ସକାଶେ ସବୁ ଦିଗ ସର୍ବଦା ସୁଖମୟ । ଯେଉଁ ବ୍ୟକ୍ତି କୌଣସି କର୍ମ ଆରମ୍ଭ କରେ ନାହିଁ, ଯାହାର ଆପଣାର ଘର ବୋଲି କିଛି ନାହିଁ, ଯେ ମାନହୀନ, ପାପହୀନ ଓ କ୍ରୋଧହୀନ, ଯେ ଭକ୍ତି କରିବାରେ ନିପୁଣ ଏବଂ ବିଜ୍ଞାନୀ, ଯାହାର ସଜ୍ଜନଙ୍କ ସଂସର୍ଗରେ ସର୍ବଦା ପ୍ରେମ, ଯାହା ମନରେ ସମସ୍ତ ବିଷୟ-ବାସନା ଏପରି କି ସ୍ୱର୍ଗ ଏବଂ ମୁକ୍ତି ପର୍ଯ୍ୟନ୍ତ (ଭକ୍ତି ଆଗରେ) ତୃଣବତ୍, ଯେ ଭକ୍ତି ସପକ୍ଷରେ ଦୃଢ ମତ ପୋଷଣ କରେ, କିନ୍ତୁ ଅନ୍ୟର ମତ ଖଣ୍ଡନ କରିବାର ମୂର୍ଖତା କରେ ନାହିଁ ଏବଂ ଯେ ସମସ୍ତ କୁତର୍କକୁ ଦୂରକୁ ଭସାଇ ଦେଇଥାଏ, ସେହି ମୋର ପ୍ରକୃତ ଭକ୍ତ-ପଦବାଚ୍ୟ ॥୩-୪॥ ଦୋହା '—ଯେଉଁ ବ୍ୟକ୍ତି ମୋର ଗୁଣଗ୍ରାମ ଏବଂ ମୋର ନାମ-କୀର୍ତ୍ତନରେ ସର୍ବଦା ରତ ଏବଂ ମମତା, ମଦ ଓ ମୋହରୁ ରହିତ, ତାହାର ସୁଖ ସେହି ଜାଣେ ଏବଂ ସେହି ବ୍ୟକ୍ତି

ସୁନତ ସୁଧାସମ ବଚନ ରାମ କେ । ଗହେ ସବନି ପଦ କୃପାଧାମ କେ ॥
ଜନନି ଜନକ ଗୁର ବନ୍ଧୁ ହମାରେ । କୃପାନିଧାନ ପ୍ରାନ ତେଁ ପ୍ୟାରେ ॥୧॥
ତନୁ ଧନୁ ଧାମ ରାମ ହିତକାରୀ । ସବ ବିଧି ତୁମ୍ହ ପ୍ରନତାରତି ହାରୀ ॥
ଅସି ସିଖ ତୁମ୍ହ ବିନୁ ଦେଇ ନ କୋଊ । ମାତୁ ପିତା ସ୍ୱାରଥରତ ଓଊ ॥୨॥
ହେତୁ ରହିତ ଜଗ ଜୁଗ ଉପକାରୀ । ତୁମ୍ହ ତୁମ୍ହାର ସେବକ ଅସୁରାରୀ ॥
ସ୍ୱାରଥ ମୀତ ସକଲ ଜଗ ମାହୀଁ । ସପନେହୁଁ ପ୍ରଭୁ ପରମାରଥ ନାହୀଁ ॥୩॥
ସବ କେ ବଚନ ପ୍ରେମରସ ସାନେ । ସୁନି ରଘୁନାଥ ହୃଦୟଁ ହରଷାନେ ॥
ନିଜ ଗୃହ ଗଏ ଆୟସୁ ପାଈ । ବରନତ ପ୍ରଭୁ ବତକହୀ ସୁହାଈ ॥୪॥

ଉମା ଅଉଧବାସୀ ନର ନାରି କୃତାରଥ ରୂପ ।
ବ୍ରହ୍ମ ସଚ୍ଚିଦାନନ୍ଦ ଘନ ରଘୁନାୟକ ଜହଁ ଭୂପ ॥୪୭॥

---

ଶୁଣନ୍ତେ ସୁଧା ସଦୃଶ ବଚନ ରାମଙ୍କ । ସମସ୍ତେ ଧରିଲେ ପଦ କରୁଣା-ଧାମଙ୍କ ॥
ଜନନୀ ଜନକ ଗୁରୁ ସୁହୃଦ ଆମ୍ଭର । କୃପାନିଧି ପ୍ରାଣଠାରୁ ବଳି ପ୍ରିୟତର ॥୧॥
ତନୁ ସମ୍ପଦ ସଦନ ରାମ, ହିତକାରୀ । ସକଳ ପ୍ରକାରେ ତୁମ୍ଭେ ଦୁଃଖୀ-ଦୁଃଖହାରୀ ॥
ତୁମ୍ଭ ବିନା ଶିକ୍ଷା ଦେବ ଅନ୍ୟ କେ ଏମନ୍ତ । ପିତା ମାତା ସ୍ୱାର୍ଥରତ ଅଟନ୍ତି ସତତ ॥୨॥
କାରଣ ବିନା ଉଭୟେ ବିଶ୍ୱ ଉପକାରୀ । ତୁମ୍ଭେ, ତୁମ୍ଭର ସେବକ, ଶୁଣ, ଅସୁରାରି ॥
ସ୍ୱାର୍ଥର ମିତ୍ର ସମସ୍ତେ ଜଗତ ମଧ୍ୟରେ । ପରମାର୍ଥ ମିତ୍ର ପ୍ରଭୁ ନାହିଁ ସ୍ୱପନରେ ॥୩॥
ସମସ୍ତଙ୍କ ବାଣୀ ପ୍ରେମରସେ ଆପ୍ଲାବିତ । ଶୁଣି ରଘୁନାଥ ହେଲେ ହୃଦେ ହରଷିତ ॥
ନିଜ ନିଜ ଗୃହେ ଗଲେ ଆଦେଶ ପାଇଣ । ପ୍ରଭୁଙ୍କ ସୁନ୍ଦର ବାର୍ତ୍ତାଳାପ ବଖାଣିଣ ॥୪॥

ଉମା, ଅଯୋଧ୍ୟାର ସର୍ବେ ନାରୀ ନର ଅଟନ୍ତି କୃତାର୍ଥ ରୂପ ।
ସଚ୍ଚିଦାନନ୍ଦ-ବ୍ରହ୍ମ ସୁଖ-କନ୍ଦ ରଘୁନାଥ ଯହିଁ ଭୂପ ॥୪୭॥

---

( ପରମାତ୍ମା-ସ୍ୱରୂପ ) ପରମାନନ୍ଦରାଶି ଅଟେ ।" ॥ ୪୬ ॥ ଚୌପାଇ :— ଶ୍ରୀରାମଙ୍କ ଅମୃତ ସମାନ ବଚନ ଶୁଣି ସମସ୍ତେ କୃପାଧାମଙ୍କ ଚରଣ ଧରି ପକାଇଲେ ଏବଂ କହିଲେ, "ହେ କୃପାନିଧାନ ! ଆପଣ ଆମର ମାତା, ପିତା, ଗୁରୁ, ଭାଇ, ସବୁ କିଛି ଏବଂ ପ୍ରାଣଠାରୁ ମଧ୍ୟ ଅଧିକ ପ୍ରିୟ ॥ ୧ ॥ ହେ ଶରଣାଗତ-ଦୁଃଖ-ହାରକ ଶ୍ରୀରାମ ! ଆପଣ ହିଁ ଆମର ଶରୀର, ଧନ, ଘରଦ୍ୱାର ଏବଂ ସବୁ ପ୍ରକାରେ ହିତକାରକ । ଏହିପରି ଶିକ୍ଷା ଆପଣଙ୍କ ବିନା ଅନ୍ୟ କେହି ଆମ୍ଭଙ୍କୁ ଦେଇ ନ ପାରେ । ମାତାପିତା ଆମର ହିତୈଷୀ ଏବଂ ଆମକୁ ଶିକ୍ଷା ମଧ୍ୟ ଦିଅନ୍ତି । କିନ୍ତୁ ସେମାନେ ସୁଦ୍ଧା ସ୍ୱାର୍ଥରତ । ତେଣୁ ପରମ-ହିତକାରୀ ଶିକ୍ଷା ଦିଅନ୍ତି ନାହିଁ ॥ ୨ ॥ ହେ ଅସୁରାରି ! ଜଗତରେ ଅହେତୁକୀ (ନିଃସ୍ୱାର୍ଥପର) ଉପକାରୀ ଜନ କେବଳ ଦୁଇ ଜଣ—ଜଣେ ଆପଣ, ଅନ୍ୟ ଜଣେ ଆପଣଙ୍କ ସେବକ । ଜଗତରେ ବାକି ସମସ୍ତେ ସ୍ୱାର୍ଥର ମିତ୍ର । ହେ ପ୍ରଭୋ ! ସେମାନଙ୍କଠାରେ ସ୍ୱପ୍ନରେ ସୁଦ୍ଧା ପରମାର୍ଥଭାବ ନ ଥାଏ ।" ॥ ୩ ॥ ସମସ୍ତଙ୍କର

ଏକ ବାର ବସିଷ୍ଠ ମୁନି ଆଏ । ଜହାଁ ରାମ ସୁଖଧାମ ସୁହାଏ ॥
ଅତି ଆଦର ରଘୁନାୟକ କୀହ୍ନା । ପଦ ପଖାରି ପାଦୋଦକ ଲୀହ୍ନା ॥୧॥
ରାମ ସୁନହୁ ମୁନି କହ କର ଜୋରୀ । କୃପାସିନ୍ଧୁ ବିନତୀ କଛୁ ମୋରୀ ॥
ଦେଖି ଦେଖି ଆଚରନ ତୁହ୍ମାରା । ହୋତ ମୋହ ମମ ହୃଦୟଁ ଅପାରା ॥୨॥
ମହିମା ଅମିତ ବେଦ ନହିଁ ଜାନା । ମୈଁ କେହି ଭାଁତି କହଉଁ ଭଗବାନା ॥
ଉପରୋହିତ୍ୟ କର୍ମ ଅତି ମନ୍ଦା । ବେଦ ପୁରାନ ସୁମୃତି କର ନିନ୍ଦା ॥୩॥
ଜବ ନ ଲେଉଁ ମୈଁ ତବ ବିଧି ମୋହୀ । କହା ଲାଭ ଆଗେଁ ସୁତ ତୋହୀ ॥
ପରମାତମା ବ୍ରହ୍ମ ନର ରୂପା । ହୋଇହି ରଘୁକୁଲ ଭୂଷନ ଭୂପା ॥୪॥

---

ଏଥୁ ଅନ୍ତେ ଦିନକରେ ବଶିଷ୍ଠ ଆସିଲେ । ଯହିଁ ସୁଖଧାମ ଶୋଭା-ସିନ୍ଧୁ ରାମ ଥିଲେ ॥
ଅତ୍ୟନ୍ତ ଆଦର କରି ଶ୍ରୀ ରଘୁନାୟକ । ପଦ ପ୍ରକ୍ଷାଳି ପିଇଲେ ଚରଣ-ଉଦକ ॥୧॥
ବୋଇଲେ କର ଯୋଡ଼ିଣ ତହୁଁ ମୁନିବର । ଶୁଣ ମୋ ବିନତି କିଛି, ରାମ କୃପାକର ॥
ଦେଖି ଦେଖି ଆଚରଣ ଚରିତ ତୁମ୍ଭର । ଉପୁଜେ ଅପାର ମୋହ ହୃଦୟେ ମୋହର ॥୨॥
ମହିମା ଅମିତ ବେଦ ନ ପାରଇ ଜାଣି । କେପରି ମୁଁ ଭଗବାନ, କହିବି ବଖାଣି ॥
ପୁରୋହିତ କର୍ମ ପ୍ରଭୁ, ମନ୍ଦ ଅତିଶୟ । ନିନ୍ଦା କରନ୍ତି ପୁରାଣ ଶ୍ରୁତି ସ୍ମୃତି ଚୟ ॥୩॥
ଯେବେ ମୁଁ ନେଉନଥିଲି ତେବେ ବିଧି ମୋତେ । କହିଲେ ଲାଭ ହୋଇବ ଆଗେ ସୁତ, ତୋତେ ॥
ପରଂବ୍ରହ୍ମ ପରମାତ୍ମା ଧରି ନର ରୂପ । ଜନମିବେ ରଘୁକୁଳ - ବିଭୂଷଣ-ଭୂପ ॥୪॥

---

ପ୍ରେମରସ-ସିକ୍ତ ବଚନ ଶୁଣି ଶ୍ରୀ ରଘୁନାଥ ହୃଦୟରେ ଆନନ୍ଦିତ ହେଲେ । ପୁଣି ଆଜ୍ଞା ପାଇ ସମସ୍ତେ ପ୍ରଭୁଙ୍କର ସୁନ୍ଦର ବାର୍ତ୍ତାଳାପ ବର୍ଣ୍ଣନା କରି ଆପଣା ଆପଣା ଘରକୁ ଗଲେ ॥ ୪ ॥ ଦୋହା :—ଶିବ କହନ୍ତି, “ହେ ଉମା ! ଅଯୋଧ୍ୟାରେ ସ୍ୱୟଂ ସଚ୍ଚିଦାନନ୍ଦ ଘନ ବ୍ରହ୍ମ ଶ୍ରୀ ରଘୁନାଥ ରାଜା, ତେଣୁ ସେ ନଗରର ନିବାସୀ ପୁରୁଷ ଓ ସ୍ତ୍ରୀମାନେ ସମସ୍ତେ କୃତାର୍ଥ-ସ୍ୱରୂପ ॥ ୪୭ ॥ ଚୌପାଇ —ଏକଦା ମୁନି ବଶିଷ୍ଠ ସୁନ୍ଦର ସୁଖଧାମ ଶ୍ରୀରାମ ଥିବା ସ୍ଥାନକୁ ଆସିଲେ । ଶ୍ରୀରାମ ତାହାଙ୍କର ବହୁତ ଆଦର-ସତ୍କାର କଲେ ଏବଂ ତାହାଙ୍କ ଚରଣ ଧୋଇ ଚରଣାମୃତ ଗ୍ରହଣ କଲେ ॥ ୧ ॥ ମୁନି ହାତ ଯୋଡ଼ି କହିଲେ, “ହେ କୃପାସାଗର ଶ୍ରୀରାମ ! ମୋର କିଛି ବିନତି ଶୁଣନ୍ତୁ । ଆପଣଙ୍କ ଆଚରଣ ଦେଖି ଦେଖି ମୋ ହୃଦୟରେ ଅପାର ମୋହ ଜାତ ହେଉଛି ॥ ୨ ॥ ହେ ଭଗବାନ୍ ! ଆପଣଙ୍କର ମହିମାର ସୀମା ନାହିଁ, ବେଦମାନେ ସୁଦ୍ଧା ତାହାକୁ ଜାଣନ୍ତି ନାହିଁ; ତେବେ ମୁଁ କେପରି କହି ପାରିବି ? ପୌରୋହିତ୍ୟ ଅତି ନୀଚ କର୍ମ । ବେଦ, ପୁରାଣ ଓ ସ୍ମୃତି— ସମସ୍ତେ ଏହାର ନିନ୍ଦା କରନ୍ତି ॥ ୩ ॥ ଯେତେବେଳେ ମୁଁ ଉକ୍ତ କର୍ମ ଗ୍ରହଣ କରୁ ନ ଥିଲି, ସେତେବେଳେ ବ୍ରହ୍ମା ସ୍ୱୟଂ ମୋତେ କହିଥିଲେ, “ହେ ପୁତ୍ର ! ଏହାଦ୍ୱାରା ଭବିଷ୍ୟତରେ ତୁମର ବହୁତ ଲାଭ ହେବ । ସ୍ୱୟଂ ବ୍ରହ୍ମ ପରମାତ୍ମା ମନୁଷ୍ୟ ରୂପ ଧାରଣ କରି ରଘୁକୁଳ-ଭୂଷଣ ରୂପେ ରାଜା ହେବେ ॥ ୪ ॥

ତବ ମୈଁ ହୃଦୟଁ ବିଚାରା ଜୋଗ ଜଗ୍ୟ ବ୍ରତ ଦାନ ।
ଜା କହୁଁ କରିଅ ସୋ ପୈହଉଁ ଧର୍ମ ନ ଏହି ସମ ଆନ ॥୪୯॥

ଜପ ତପ ନିୟମ ଜୋଗ ନିଜ ଧର୍ମା । ଶ୍ରୁତି ସଂଭବ ନାନା ସୁଭ କର୍ମା ॥
ଗ୍ୟାନ ଦୟା ଦମ ତୀରଥ ମଜ୍ଜନ । ଜହଁ ଲଗି ଧର୍ମ କହତ ଶ୍ରୁତି ସଜ୍ଜନ ॥୧॥
ଆଗମ ନିଗମ ପୁରାନ ଅନେକା । ପଢ଼େ ସୁନେ କର ଫଲ ପ୍ରଭୁ ଏକା ॥
ତବ ପଦ ପଙ୍କଜ ପ୍ରୀତି ନିରଂତର । ସବ ସାଧନ କର ୟହ ଫଲ ସୁଂଦର ॥୨॥
ଛୂଟଇ ମଲ କି ମଲହି କେ ଧୋଏଁ । ଘୃତ କି ପାଵ କୋଇ ବାରି ବିଲୋଏଁ ॥
ପ୍ରେମ ଭଗତି ଜଲ ବିନୁ ରଘୁରାଈ । ଅଭିଅନ୍ତର ମଲ କବହୁଁ ନ ଜାଈ ॥୩॥
ସୋଇ ସର୍ବଗ୍ୟ ତଗ୍ୟ ସୋଇ ପଣ୍ଡିତ । ସୋଇ ଗୁନ ଗୃହ ବିଗ୍ୟାନ ଅଖଣ୍ଡିତ ॥
ଦଚ୍ଛ ସକଲ ଲଚ୍ଛନ ଜୁତ ସୋଈ । ଜା କେଁ ପଦସରୋଜ ରତି ହୋଈ ॥୪॥

---

ତହୁଁ ଭାବି ସ୍ଥିର କଲି ନିଜ ହୃଦେ ଯୋଗ ଯଜ୍ଞ ବ୍ରତ ଦାନ ।
ଯା' ଲାଗି କରନ୍ତି, ତାହାଙ୍କୁ ପାଇବି ଏ ସମ ଧର୍ମ କି ଆନ ॥୪୯॥

ଯୋଗ ଜପ ତପ ବ୍ରତ ନିୟମ ଧରମ । ଶ୍ରୁତି-ସମ୍ଭବ ଅନେକ ପ୍ରକାର କରମ ॥
ଜ୍ଞାନ ଦୟା ଦମ ଆଉ ତୀର୍ଥାବଗାହନ । ଯେତେ ଧର୍ମ ବଖାଣନ୍ତି ଶ୍ରୁତି ସନ୍ଥଜନ ॥୧॥
ଆଗମ ନିଗମ ଶାସ୍ତ୍ର ପୁରାଣ ଅନେକ । ପଢିବାର ଲେଖିବାର ଫଳ ପ୍ରଭୁ, ଏକ ॥
ତୁମ୍ଭ ପଦ-ସରୋରୁହେ ପ୍ରୀତି ନିରନ୍ତର । ସର୍ବ ସାଧନର ଏହି ଫଳ ମନୋହର ॥୨॥
ମଳରେ ଧୋଇଲେ ମଳ କେବେ କି ଛୁଟଇ । ବାରି ବିଲୋଡନେ କେହି ଘୃତ କି ଲଭଇ ॥
ପ୍ରେମ-ଭକ୍ତି-ଜଳ ବିନା ରଘୁକୁଳେଶ୍ୱର । ଅଭ୍ୟନ୍ତର ମଳ କେବେ ନ ହୁଅଇ ଦୂର ॥୩॥
ସେ ଅଟେ ସର୍ବଜ୍ଞ ବିଜ୍ଞ ସେହି ସୁପଣ୍ଡିତ । ସେହି ଗୁଣଜ୍ଞ ବିଜ୍ଞାନ-ମୂର୍ତ୍ତି ଅଖଣ୍ଡିତ ॥
ସମସ୍ତ ଲକ୍ଷଣ-ଯୁକ୍ତ ଦକ୍ଷ ସେ ଅଟଇ । ପଦ-ପଙ୍କଜେ ଯାହାର ପ୍ରୀତି ଉପୁଜଇ ॥୪॥

---

ଦୋହା —ସେତେବେଳେ ମୁଁ ହୃଦୟରେ ବିଚାର କଲି ଯେ, ଯାହାଙ୍କ ନିମନ୍ତେ ଯୋଗ, ଯଜ୍ଞ, ବ୍ରତ ଏବଂ ଦାନ ଆଦି କରାଯାଉଅଛି, ତାହାଙ୍କୁ ଏହି କର୍ମ ସାଧନ ଯୋଗେ ମୁଁ ପାଇଯିବି । ତେବେ ଏହା ସମାନ ଅନ୍ୟ କୌଣସି ଧର୍ମ ନାହିଁ ॥ ୪୯ ॥
ଚୌପାଈ — ଜପ, ତପ, ନିୟମ, ଯୋଗ, ଆପଣାର ବର୍ଣ୍ଣାଶ୍ରମ ଧର୍ମ, ବେଦ-ବିହିତ ବହୁତ ଶୁଭ କର୍ମ, ଜ୍ଞାନ, ଦୟା, ଦମ (ଇନ୍ଦ୍ରିୟ ନିଗ୍ରହ) ତୀର୍ଥ-ସ୍ନାନ ଆଦି ବିଭିନ୍ନ ବେଦ-ବର୍ଣ୍ଣିତ ଏବଂ ସାଧୁଜନ-ସମ୍ମତ ଧର୍ମ-ପାଳନର ଏକମାତ୍ର ଲକ୍ଷ୍ୟ, ଆପଣଙ୍କ ଚରଣ-କମଳରେ ପ୍ରେମ ॥ ୧ ॥ ହେ ପ୍ରଭୁ ! ଅନେକ ତନ୍ତ୍ର, ବେଦ ଓ ପୁରାଣର ଅଧ୍ୟୟନ ଏବଂ ଶ୍ରବଣର ସର୍ବୋତ୍ତମ ଫଳ ମାତ୍ର ଗୋଟିଏ, ଆଉ ମଧ୍ୟ ସମସ୍ତ ସାଧନାର ସୁଫଳ ହେଉଛି ଗୋଟିଏ, ତାହା ହେଉଛି ଆପଣଙ୍କ ଚରଣ-କମଳରେ ନିରନ୍ତର ପ୍ରେମ ॥ ୨ ॥ ମଳ ଦ୍ୱାରା ଧୋଇଲେ କ'ଣ ମଇଳା ଦୂର ହୁଏ ? ଜଳ ମନ୍ଥନ କଲେ କେହି ଘିଅ ପାଇପାରେ କି ? ହେ ରଘୁନାଥ ! ସେହି ରୂପେ ପ୍ରେମ-ଭକ୍ତି-ସ୍ୱରୂପ

ନାଥ ଏକ ବର ମାଗଉଁ ରାମ କୃପା କରି ଦେହୁ ।
ଜନ୍ମ ଜନ୍ମ ପ୍ରଭୁ ପଦକମଲ କବହୁଁ ଘଟୈ ଜନି ନେହୁ ॥୪୯॥
ଅସ କହି ମୁନି ବସିଷ୍ଠ ଗୃହ ଆଏ । କୃପାସିନ୍ଧୁ କେ ମନ ଅତି ଭାଏ ॥
ହନୂମାନ ଭରତାଦିକ ଭ୍ରାତା । ସଂଗ ଲିଏ ସେବକ ସୁଖଦାତା ॥୧॥
ପୁନି କୃପାଲ ପୁର ବାହେର ଗଏ । ଗଜ ରଥ ତୁରଗ ମଗାଓ୍ୱତ ଭଏ ॥
ଦେଖି କୃପା କରି ସକଲ ସରାହେ । ଦିଏ ଉଚିତ ଜିନ୍ହ ଜିନ୍ହ ତେଇ ଚାହେ ॥୨॥
ହରନ ସକଲ ଶ୍ରମ ପ୍ରଭୁ ଶ୍ରମ ପାଈ । ଗଏ ଜହାଁ ସୀତଲ ଅୱଁରାଈ ॥
ଭରତ ଦୀନ୍ହ ନିଜ ବସନ ଡସାଈ । ବୈଠେ ପ୍ରଭୁ ସେୱହିଁ ସବ ଭାଈ ॥୩॥

---

ନାଥ ! ଏକ ବର ମାଗୁଅଛୁ ମୁହିଁ ଦିଅନ୍ତୁ କରି କରୁଣା ।
ଜନ୍ମେ ଜନ୍ମେ ପ୍ରଭୁ ପଦ୍ମପାଦରୁ ସ୍ନେହ ନ ହେଉ କେବେହେଁ ଊଣା ॥୪୯॥
ଏହା କହି ବଶିଷ୍ଠ ଗୃହକୁ ଆସିଲେ । କୃପାସିନ୍ଧୁ ମନେ ଅତି ପ୍ରମୋଦ ଲଭିଲେ ॥
ପବନସୁତ ଲକ୍ଷ୍ମଣ ଭରତାଦି ଭ୍ରାତା । ସଙ୍ଗେ ଘେନି ସମସ୍ତଙ୍କ ଭୃତ୍ୟ-ସୁଖଦାତା ॥୧॥
ନଗର ବାହାରେ ପୁଣି ଆସି କୃପାକର । ମଗାଇଲେ ଗଜ ରଥ ତୁରଙ୍ଗ ସତ୍ୱର ॥
କୃପାଦୃଷ୍ଟି କରି ସମସ୍ତଙ୍କୁ ପ୍ରଶଂସିଲେ । ଦେଲେ ଯଥା ଅନୁରୂପ ଯେ ଯାହା ଇଚ୍ଛିଲେ ॥୨॥
ହରଣ ସକଳ ଶ୍ରମ ପ୍ରଭୁ ଶ୍ରମ ପାଇ । ଗଲେ ଯହିଁ ଆମ୍ରବନ ସୁଶୀତଳ ଛାଇ ॥
ଭରତ ଦେଲେ ଆପଣା ବସନ ବିଛାଇ । ବସିଲେ ପ୍ରଭୁ, ସେବନ୍ତି ପ୍ରେମେ ସବୁ ଭାଇ ॥୩॥

---

ନିର୍ମଳ ଜଳ ବିନା ହୃଦୟର ମଳ କଦାପି ଦୂର ହୁଏ ନାହିଁ ॥ ୩ ॥ ଯାହାର ଆପଣଙ୍କ ଚରଣ-କମଳରେ ପ୍ରେମ ଥାଏ, ସେହି ସର୍ବଜ୍ଞ, ସେହି ତତ୍ତ୍ୱଜ୍ଞ ଓ ପଣ୍ଡିତ, ସେହି ଗୁଣାବଳୀର ଗୃହ ଏବଂ ଅଖଣ୍ଡ ବିଜ୍ଞାନୀ, ସେହି ଚତୁର, ଦକ୍ଷ ଏବଂ ସମସ୍ତ ସୁଲକ୍ଷଣ-ଯୁକ୍ତ ॥ ୪ ॥ ଦୋହା ।—ହେ ନାଥ ! ହେ ଶ୍ରୀରାମ ! ମୁଁ ଆପଣଙ୍କୁ ଗୋଟିଏ ବର ମାଗୁଅଛି, କୃପା କରି ଦିଅନ୍ତୁ । ପ୍ରଭୁଙ୍କ ଚରଣ-କମଳରେ ମୋର ପ୍ରେମ ଜନ୍ମ-ଜନ୍ମାନ୍ତରରେ ସୁଦ୍ଧା କେବେ କମ୍ ନ ହେଉ ।" ॥ ୪୯ ॥ ଚୌପାଇ —ଏହିପରି କହି ମୁନି ବଶିଷ୍ଠ ଘରକୁ ଆସିଲେ । ତାଙ୍କ ବଚନ କୃପାସାଗର ଶ୍ରୀରାମଙ୍କ ମନକୁ ଅତି ରୁଚିକର ବୋଧ ହେଲା । ତଦନନ୍ତର ସେବକମାନଙ୍କ ସୁଖ-ଦାତା ଶ୍ରୀରାମ ହନୁମାନ୍ ଓ ଭରତ ଆଦି ଭାଇଙ୍କୁ ସଙ୍ଗରେ ନେଇ ବାହାରିଲେ ॥ ୧ ॥ ପୁଣି କୃପାଳୁ ଶ୍ରୀରାମ ନଗର ବାହାରକୁ ଗଲେ ଏବଂ ସେଠାରେ ସେ ହାତୀ, ରଥ ଓ ଘୋଡା ମଗାଇଲେ । ସେମାନଙ୍କୁ ଦେଖି ପ୍ରଭୁ କୃପାପୂର୍ବକ ସମସ୍ତଙ୍କୁ ପ୍ରଶଂସା କଲେ ଏବଂ ଯିଏ ଯାହା ଚାହିଁଲେ, ତାହାକୁ ତାହା ଉଚିତ ଜାଣି ଦେଲେ ॥ ୨ ॥ ସଂସାରର ସମସ୍ତ ଶ୍ରମ ହରଣକାରୀ ପ୍ରଭୁ ହାତୀ, ଅଶ୍ୱ ଆଦି ବିତରଣ କରୁ କରୁ କ୍ଲାନ୍ତ ଅନୁଭବ କଲେ ଏବଂ କ୍ଲାନ୍ତ ଦୂର କରିବା ପାଇଁ ଶୀତଳ ଆମ୍ବତୋଟା ତଳକୁ ଗଲେ । ସେହିଠାରେ ଭରତ ତାଙ୍କର ବସ୍ତ୍ର ବିଛାଇ ଦେଲେ । ପ୍ରଭୁ ତାହା ଉପରେ ବସିପଡିଲେ ଏବଂ

ମାରୁତସୁତ ତବ ମାରୁତ କରଈ । ପୁଲକ ବପୁଷ ଲୋଚନ ଜଲ ଭରଈ ॥
ହନୂମାନ ସମ ନହିଁ ବଡଭାଗୀ । ନହିଁ କୋଉ ରାମ ଚରନ ଅନୁରାଗୀ ॥୪॥
ଗିରିଜା ଜାସୁ ପ୍ରୀତି ସେବକାଈ । ବାର ବାର ପ୍ରଭୁ ନିଜ ମୁଖ ଗାଈ ॥୫॥
ତେହିଁ ଅବସର ମୁନି ନାରଦ ଆଏ କରତଲ ବୀନ ।
ଗାଓ୍ୱନ ଲଗେ ରାମ କଲ କୀରତି ସଦା ନବୀନ ॥୫୦॥
ମାମବଲୋକୟ ପଙ୍କଜ ଲୋଚନ । କୃପା ବିଲୋକନି ସୋଚ ବିମୋଚନ ॥
ନୀଲ ତାମରସ ସ୍ୟାମ କାମ ଅରି । ହୃଦୟ କଂଜ ମକରନ୍ଦ ମଧୁପ ହରି ॥୧॥
ଜାତୁଧାନ ବରୂଥ ବଲ ଭଂଜନ । ମୁନି ସଜ୍ଜନ ରଂଜନ ଅଘ ଗଂଜନ ॥
ଭୂସୁର ସସି ନବ ବୃନ୍ଦ ବଲାହକ । ଅସରନ ସରନ ଦୀନ ଜନ ଗାହକ ॥୨॥

---

ପବନ-ନନ୍ଦନ ତହିଁ କରଇ ପବନ । ପୁଲକିତ ତନୁ ପୂର୍ଣ୍ଣ ସଲିଳେ ଲୋଚନ ॥
ହନୁମାନ ସମ ଆଉ ପରମ ସୌଭାଗୀ । ନାହିଁ କେହି ରଘୁବୀର ଚରଣାନୁରାଗୀ ॥୪॥
ପ୍ରୀତି ସୁସେବକପଣ ଗିରିଜା ! ଯାହାର । ନିଜ ମୁଖେ କହିଛନ୍ତି ପ୍ରଭୁ ବାରମ୍ବାର ॥୫॥
ସେହି ସମୟରେ ବୀଣା ଧରି କରେ ନାରଦ ମୁନି ଆସିଲେ ।
ନିତ୍ୟ ରାମଙ୍କର ନବୀନ ସୁନ୍ଦର କୀରତି ଗାନ କରିଲେ ॥୫୦॥
ମୋତେ ବିଲୋକନ କର, ପଙ୍କଜଲୋଚନ । କୃପା ବିଲୋକନ ମାତ୍ରେ ଶୋକ-ବିମୋଚନ ॥
ନୀଳ ତାମରସ ସମ ଶ୍ୟାମ, କାମ-ଅରି । ହୃଦ - କଞ୍ଜ - ମକରନ୍ଦ-ମଧୁପ ହେ ହରି ॥୧॥
ରଜନୀଚର-ସୈନ୍ୟ - ନିକର - ଗଞ୍ଜନ । ମୁନି-ସଜ୍ଜନ - ରଞ୍ଜନ, କଲୁଷ-ଭଞ୍ଜନ ॥
ଭୂସୁର-ନବଶସ୍ୟକୁ ବୃନ୍ଦ ବଳାହକ । ଅଶରଣ ଶରଣ ଦୀନ ଜନ ଗ୍ରାହକ ॥୨॥

---

ସମସ୍ତ ଭାଇ ତାଙ୍କର ସେବା କରିବାକୁ ଲାଗିଲେ ।୩॥ ସେହି ସମୟରେ ପବନ-ପୁତ୍ର ହନୁମାନ୍ ପଙ୍ଖା କରିବାକୁ ଲାଗିଲେ । ତାଙ୍କର ଶରୀର ପୁଲକିତ ହୋଇଗଲା ଏବଂ ନୟନରେ ପ୍ରେମାଶ୍ରୁ ଜଳ ଭରି ଆସିଲା । ଶିବ କହି ଗଲେ, "ହେ ଗିରିଜେ ! ହନୁମାନଙ୍କ ସମାନ ବଡ ଭାଗ୍ୟବାନ୍ ଆଉ କେହି ନାହାନ୍ତି କିମ୍ବା ତାଙ୍କ ପରି ଶ୍ରୀରାମଙ୍କ ଚରଣ ପ୍ରତି ଆଉ କାହାର ଏତେ ପ୍ରେମ ନ ଥାଏ । ସ୍ୱୟଂ ପ୍ରଭୁ ତାଙ୍କର ପ୍ରେମ ଓ ସେବାକୁ ଆପଣା ଶ୍ରୀମୁଖରେ ବାରମ୍ବାର ପ୍ରଶଂସା କରିଅଛନ୍ତି ॥ ୪-୫ ॥ ଦୋହା :— ଏହି ଅବସରରେ ନାରଦ ମୁନି ହାତରେ ବୀଣା ଧରି ଆସିଲେ । ସେ ଶ୍ରୀରାମଙ୍କ ସୁନ୍ଦର ଓ ନିତ୍ୟ - ନୂତନ କୀର୍ତ୍ତିରାଜି ଗାନ କରିବାକୁ ଲାଗିଲେ ॥ ୫୦ ॥ ଚୌପାଇ — ହେ କୃପା-କଟାକ୍ଷ-ଶୋକ-ବିମୋଚନ କମଳ-ନୟନ ! ମୋତେ କୃପାଦୃଷ୍ଟିରେ ଦେଖନ୍ତୁ । ହେ ହରି ! ଆପଣ ନୀଳ କମଳ ସମାନ ଶ୍ୟାମଳ ବର୍ଣ୍ଣ ଏବଂ କାମଦେବ-ଶତ୍ରୁ ମହାଦେବଙ୍କ ହୃଦୟ-କମଳର ମକରନ୍ଦ (ପ୍ରେମରସ)-ପାନକାରୀ ଭ୍ରମର ॥ ୧ ॥ ଆପଣ ରାକ୍ଷସ-ସେନାଙ୍କ ବଳ-ବିଭଞ୍ଜନକାରୀ । ମୁନି ଓ ସଜ୍ଜନମାନଙ୍କର ଆନନ୍ଦଦାତା ଏବଂ ପାପରାଶିର ନାଶକାରକ । ବ୍ରାହ୍ମଣ ରୂପୀ ଶସ୍ୟ ନିମନ୍ତେ ଆପଣ

ଭୁଜବଲ ବିପୁଲ ଭାର ମହି ଖଣ୍ଡିତ । ଖର ଦୂଷନ ବିରାଧ ବଧ ପଣ୍ଡିତ ॥
ରାବନାରି ସୁଖରୂପ ଭୂପବର । ଜୟ ଦସରଥକୁଲ କୁମୁଦ ସୁଧାକର ॥୩॥
ସୁଜସ ପୁରାନ ବିଦିତ ନିଗମାଗମ । ଗାୱତ ସୁର ମୁନି ସନ୍ତ ସମାଗମ ॥
କାରୁନୀକ ବ୍ୟଲୀକ ମଦ ଖଣ୍ଡନ । ସବ ବିଧି କୁସଲ କୋସଲା ମଣ୍ଡନ ॥୪॥
କଲିମଲ ମଥନ ନାମ ମମତାହନ । ତୁଲସିଦାସ ପ୍ରଭୁ ପାହି ପ୍ରନତ ଜନ ॥୫॥

ପ୍ରେମ ସହିତ ମୁନି ନାରଦ ବରନି ରାମ ଗୁନ ଗ୍ରାମ ।
ସୋଭାସିନ୍ଧୁ ହୃଦୟଁ ଧରି ଗଏ ଜହାଁ ବିଧି ଧାମ ॥୫୧॥

ଗିରିଜା ସୁନହୁ ବିସଦ ୟହ କଥା । ମୈଁ ସବ କହୀ ମୋରି ମତି ଜଥା ॥
ରାମଚରିତ ସତ କୋଟି ଅପାରା । ଶ୍ରୁତି ସାରଦା ନ ବରନୈ ପାରା ॥୧॥

---

ଭୁଜବଳ ବିପୁଳ ଭୂଭାର ବିଖଣ୍ଡିତ । ଖର ଦୂଷଣ ବିରାଧ ବଧେ ସୁପଣ୍ଡିତ ॥
ରାବଣାରି, ସୁଖ-ରୂପ, ଅବନୀପାଳେଶ । ଜୟ ଦଶରଥ କୁଳ-କୁମୁଦ – ନିଶେଶ ॥୩॥
ସୁଯଶ ଖ୍ୟାତ ପୁରାଣ ନିଗମ ଆଗମ । ଗାଆନ୍ତି ମୁନି ବିବୁଧ ସନ୍ଥ ସମାଗମ ॥
ଅତି କାରୁଣିକ, ଛଳୀ ମଦ ବିଖଣ୍ଡନ । ସର୍ବ ପ୍ରକାରେ କୁଶଳ କୋଶଳ-ମଣ୍ଡନ ॥୪॥
କଳି-ଅଘ-ହାରି, ନାମ ମମତା-ହନନ । ତୁଳସୀ ଦାସର ପ୍ରଭୁ, ତ୍ରାହି ଦୀନଜନ ॥୫॥

ପ୍ରେମ ସହି ମୁନି ନାରଦ ବଖାଣି ରଘୁପତି ଗୁଣ ଗ୍ରାମ ।
ଶୋଭା-ରତ୍ନାକରେ ସ୍ମରଣ ଅନ୍ତରେ ଗମିଲେ ବିରଞ୍ଚି ଧାମ ॥୫୧॥

ଶୁଣ ପାର୍ବତି, ଏହି ମନୋହର କଥା । କହିଲି ସକଳ ମୁହିଁ ମତି ମୋର ଯଥା ॥
ରାମଙ୍କ ଚରିତ ଶତ କୋଟି ଯେ ଅପାର । ଶ୍ରୁତି ସରସ୍ୱତୀ ବର୍ଣ୍ଣି ନ ପାଆନ୍ତି ପାର ॥୧॥

---

ନୂତନ ମେଘ-ସମୂହ । ଆପଣ ଅଶରଣର ଶରଣ ଏବଂ ଦୀନଜନଙ୍କ ଗ୍ରାହକ ॥ ୨ ॥ ଆପଣାର ବାହୁ ବଳରେ ଆପଣ ପୃଥିବୀର ବିପୁଳ ଭାର-ଖଣ୍ଡନକାରୀ, ଖର-ଦୂଷଣ ଓ ବିରାଧ ଆଦି ରାକ୍ଷସଙ୍କ ବଧରେ ନିପୁଣ, ରାବଣର ଶତ୍ରୁ, ଆନନ୍ଦ-ସ୍ୱରୂପ ଏବଂ ଭୂପବର । ହେ ଦଶରଥ-କୁଳ-କୁମୁଦ-ଚନ୍ଦ୍ରମା ଶ୍ରୀରାମଚନ୍ଦ୍ର, ' ଆପଣଙ୍କର ଜୟ ହେଉ ॥ ୩ ॥ ଆପଣଙ୍କର ସୁନ୍ଦର ଯଶ, ପୁରାଣ, ବେଦ ଓ ତନ୍ତ୍ରାଦି ଶାସ୍ତ୍ରମାନଙ୍କରେ ବିଦିତ । ଦେବତା ମୁନି ଓ ସନ୍ଥସମୂହ ତାହା ଗାନ କରନ୍ତି । ଆପଣ କରୁଣାକର ଏବଂ ମିଥ୍ୟା-ଦମ୍ଭର ବିନାଶକ । ଆପଣ ସକଳ ପ୍ରକାରେ ନିପୁଣ ଏବଂ ଅଯୋଧ୍ୟାର ଭୂଷଣ ॥ ୪ ॥ ଆପଣଙ୍କର ନାମ କଳିଯୁଗର ପାପସମୂହର ମନ୍ଥନକାରୀ ଏବଂ ମମତାର ହନନକାରୀ । ହେ ତୁଳସୀ-ଦାସର ପ୍ରଭୁ ! ଶରଣାଗତଙ୍କୁ ରକ୍ଷା କରନ୍ତୁ ॥ ୫ ॥ ଦୋହା :—ମୁନି ନାରଦ ପ୍ରେମରେ ଶ୍ରୀରାମଚନ୍ଦ୍ରଙ୍କ ଗୁଣାବଳୀ ବର୍ଣ୍ଣନା କଲେ ଏବଂ ଶୋଭା-ସମୁଦ୍ର ପ୍ରଭୁଙ୍କୁ ହୃଦୟରେ ଧାରଣ କରି ଯେଉଁଠାରେ ବିଧାତାଙ୍କ ଧାମ, ସେଠାକୁ ଚାଲିଗଲେ ॥ ୫୧ ॥ ଚୌପାଇ :—ଶିବ କହନ୍ତି, "ହେ ଗିରିଜେ ! ଶୁଣ, ମୁଁ ଏହି ଉଜ୍ଜ୍ୱଳ ଚରିତ ମୋହର ବୁଦ୍ଧି ଅନୁସାରେ ସଂପୂର୍ଣ୍ଣ ରୂପେ କହିଲି । ଶ୍ରୀରାମ ଚରିତ ଶତକୋଟି ବା ଅପାର ।

ରାମ ଅନନ୍ତ ଅନନ୍ତ ଗୁନାନୀ । ଜନ୍ମ କର୍ମ ଅନନ୍ତ ନାମାନୀ ॥
ଜଲସୀକର ମହିରଜ ଗନି ଜାହୀଁ । ରଘୁପତି ଚରିତ ନ ବରନି ସିରାହୀଁ ॥୨॥
ବିମଲ କଥା ହରି ପଦ ଦାୟନୀ । ଭଗତି ହୋଇ ସୁନି ଅନପାୟନୀ ॥
ଉମା କହିଉଁ ସବ କଥା ସୁହାଈ । ଜୋ ଭୁସୁଣ୍ଡି ଖଗପତିହି ସୁନାଈ ॥୩॥
କଛୁକ ରାମ ଗୁନ କହେଉଁ ବଖାନୀ । ଅବ କା କହୌଁ ସୋ କହହୁ ଭବାନୀ ॥
ସୁନି ସୁଭ କଥା ଉମା ହରଷାନୀ । ବୋଲୀ ଅତି ବିନୀତ ମୃଦୁ ବାନୀ ॥୪॥
ଧନ୍ୟ ଧନ୍ୟ ମୈଁ ଧନ୍ୟ ପୁରାରୀ । ସୁନେଉଁ ରାମ ଗୁନ ଭବଭୟହାରୀ ॥୫॥

ତୁମ୍ହରୀ କୃପାଁ କୃପାୟତନ ଅବ କୃତକୃତ୍ୟ ନ ମୋହ ।
ଜାନେଉଁ ରାମ ପ୍ରତାପ ପ୍ରଭୁ ଚିଦାନନ୍ଦ ସଂଦୋହ ॥୫୨ (କ)॥
ନାଥ ତବାନନ ସସି ସ୍ରବତ କଥା ସୁଧା ରଘୁବୀର ।
ଶ୍ରବନ ପୁଟନ୍ହି ମନ ପାନ କରି ନହିଁ ଅଘାତ ମତିଧୀର ॥୫୨ (ଖ)॥

---

ରାମ ଅନନ୍ତ, ଅନନ୍ତ ଅଟେ ଗୁଣ ଗ୍ରାମ । ଅନନ୍ତ ତାହାଙ୍କ ଜନ୍ମ କର୍ମ ପୁଣି ନାମ ॥
ଜଳ ଶୀକର ପୃଥ୍ୱୀ ରଜ ହେବ ଗଣି । ଚରିତ ରଘୁପତିଙ୍କ ନ ହୋଇବ ବର୍ଣ୍ଣି ॥୨॥
ହରି-ପଦ-ପ୍ରଦାୟିନୀ ଏ କଥା ବିମଳା । ଶୁଣି ଉପୁଜଇ ମନେ ଭକତି ଅଚଳା ॥
ଉମା ! ଶୁଣାଇଲି ରମ୍ୟ ସେ କଥା ତୁମ୍ଭଙ୍କୁ । ଭୁଷୁଣ୍ଡି ଶୁଣାଇଥିଲେ ଯାହା ଖଗେଶଙ୍କୁ ॥୩॥
ରଘୁପତି ଗୁଣ କିଛି କହିଲି ବଖାଣି । ଏବେ ଆଉ କହ କଣ କହିବି, ଭବାନି ॥
ଶୁଣି ଶୁଭ କଥା ଉମା ହରଷ ହୋଇଲେ । ପରମ ବିନୀତ ମୃଦୁ ବଚନ ଭାଷିଲେ ॥୪॥
ଧନ୍ୟ ଧନ୍ୟ ଆଜ ମୁହିଁ ଧନ୍ୟ, ତ୍ରିପୁରାରି । ଶୁଣିଲି ଶ୍ରୀରାମ ଗୁଣ ଭବ-ଭୟ-ହାରୀ ॥୫॥

କୃତକୃତ୍ୟ ତୁମ୍ଭ କୃପାରେ କୃପାଳୁ, ନ ରହିଲା ମୋହ ମନ ।
ଜାଣିଲି ମୁଁ ପ୍ରଭୁ, ରାମଙ୍କ ପ୍ରତାପ ଚିଦାନନ୍ଦ ନିକେତନ ॥୫୨ (କ)॥
ନାଥ, ତବାନନ-ଶଶୀରୁ ସ୍ରବିତ ରଘୁବୀର - କଥାମୃତ ॥
କର୍ଣ୍ଣପୁଟେ ପିଇ ମନ ନ ହୁଅଇ ମତିଧୀର ! କେବେ ତୃପ୍ତ ॥୫୨ (ଖ)॥

---

ଶ୍ରୁତି ଓ ଶାରଦା ସୁଦ୍ଧା ତାହା ବର୍ଣ୍ଣନା କରି ପାରିବେ ନାହିଁ ॥ ୧ ॥ ଭଗବାନ୍ ଶ୍ରୀରାମ ଅନନ୍ତ, ତାଙ୍କ ଗୁଣ ଅନନ୍ତ, ତାଙ୍କ ଜନ୍ମ, କର୍ମ ଓ ନାମ ମଧ୍ୟ ଅନନ୍ତ । ଜଳବିନ୍ଦୁ ଓ ପୃଥିବୀର ରଜ-କଣ ଗଣାଯାଇ ପାରିବ ପଛକେ, କିନ୍ତୁ ରଘୁନାଥଙ୍କ ଚରିତ୍ର ବର୍ଣ୍ଣନା କଲେ ବି ଶେଷ ହୁଏ ନାହିଁ ॥ ୨ ॥ ଏହି ପବିତ୍ର କଥା ଭଗବାନ୍‌ଙ୍କ ପରମପଦ ଦାନ କରେ । ଏହା ଶୁଣିଲେ ଅବିଚଳ ଭକ୍ତି ଲାଭ ହୁଏ । ହେ ଉମା ! ମୁଁ ଉକ୍ତ ସୁନ୍ଦର କଥା ତୁମ ଆଗରେ କହିଲି । କାକ ଭୁଷୁଣ୍ଡି ଗରୁଡଙ୍କୁ ଏହା ଶୁଣାଇଥିଲେ ॥ ୩ ॥ ମୁଁ ଶ୍ରୀରାମଙ୍କ କେତୋଟି ମାତ୍ର ଗୁଣ ବଖାଣି କହିଲି । ହେ ଭବାନି ! ଏବେ ଆଉ କ'ଣ କହିବି, ତାହା କୁହ ତ ।" ଶ୍ରୀରାମଙ୍କ ମଙ୍ଗଳମୟୀ କଥା ଶୁଣି ପାର୍ବତୀ ଆନନ୍ଦିତ ହେଲେ ଏବଂ ଅତ୍ୟନ୍ତ ବିନମ୍ର ଓ କୋମଳ ବାଣୀରେ କହିଲେ— ॥ ୪ ॥ "ହେ ତ୍ରିପୁରାରି !

ରାମ ଚରିତ ଜେ ସୁନତ ଅଘାହୀଁ । ରସ ବିସେଷ ଜାନା ତିନ୍ହ ନାହୀଁ ॥
ଜୀବନମୁକ୍ତ ମହାମୁନି ଜେଊ । ହରି ଗୁନ ସୁନହିଁ ନିରନ୍ତର ତେଊ ॥୧॥
ଭବସାଗର ଚହ ପାର ଜୋ ପାୱା । ରାମ କଥା ତା କହଁ ଦୃଢ଼ ନାୱା ॥
ବିଷଇନ୍ହ କହଁ ପୁନି ହରି ଗୁନଗ୍ରାମା । ଶ୍ରବନ ସୁଖଦ ଅରୁ ମନ ଅଭିରାମା ॥୨॥
ଶ୍ରବନବନ୍ତ ଅସ କୋ ଜଗ ମାହୀଁ । ଜାହି ନ ରଘୁପତି ଚରିତ ସୋହାହୀଁ ॥
ତେ ଜଡ଼ ଜୀବ ନିଜାତ୍ମକ ଘାତୀ । ଜିନ୍ହହି ନ ରଘୁପତି କଥା ସୋହାତୀ ॥୩॥
ହରିଚରିତ୍ର ମାନସ ତୁମ୍ହ ଗାୱା । ସୁନି ମୈଁ ନାଥ ଅମିତି ସୁଖ ପାୱା ॥
ତୁମ୍ହ ଜୋ କହୀ ୟହ କଥା ସୁହାଈ । କାକଭୁସୁଣ୍ଡି ଗରୁଡ଼ ପ୍ରତି ଗାଈ ॥୪॥

---

ରାମଙ୍କ ଚରିତ ଶୁଣି ତୃପ୍ତି ଯେ ଲଭନ୍ତି । ରସ ବିଶେଷ ସେମାନେ ଜାଣି ନ ପାରନ୍ତି ॥
ଜୀବନ-ମୁକ୍ତ ବିଜ୍ଞାନୀ ମୁନିବର ଯେତେ । ଶ୍ରୀ ହରି ଗୁଣ ଶୁଣନ୍ତି ନିରନ୍ତର ସେତେ ॥୧॥
ଭବ-ସିନ୍ଧୁ ଯେ ଇଚ୍ଛନ୍ତି ପାର ପାଇବାକୁ । ରାମ କଥା ଅଟେ ଦୃଢ଼ ତରଣୀ ତାହାଙ୍କୁ ॥
ବିଷୟୀ ଲୋକଙ୍କୁ ପୁଣି ହରି ଗୁଣ ଗ୍ରାମ । ଶ୍ରବଣ-ସୁଖଦ ମନେ ଦାୟକ ବିଶ୍ରାମ ॥୨॥
ଶ୍ରବଣବନ୍ତ ଏମନ୍ତ ବିଶ୍ୱେ କେ ଅଛଇ । ଯାହାକୁ ରାମ ଚରିତ ଭଲ ନ ଲାଗଇ ॥
ସେ ଜଡ଼ ଜୀବ ଅଟନ୍ତି ନିଜ ଆତ୍ମଘାତୀ । ଯେହୁ ରଘୁପତି କଥା ଭଲ ନ ପାଆନ୍ତି ॥୩॥
ହରି ଚରିତ ମାନସ ତୁମ୍ଭେ କଲ ବ୍ୟକ୍ତ । ଶୁଣି ମୁହିଁ ନାଥ, ସୁଖ ଲଭିଲି ଅତ୍ୟନ୍ତ ॥
ତୁମ୍ଭେ ଯେ କହିଲ ଏହି କଥା ସୁଶୋଭନ । ଗରୁଡ଼ ଆଗେ ଭୁଶୁଣ୍ଡି କରିଲେ ବର୍ଣ୍ଣନ ॥୪॥

---

ମୁଁ ଧନ୍ୟ, ଧନ୍ୟ, ଧନ୍ୟ । ଭବ-ଭୟ-ହରଣକାରୀ ଶ୍ରୀରାମଙ୍କ ଗୁଣଗାଥା ଶୁଣି ମୁଁ ଆଜି ଧନ୍ୟ ॥ ୫ ॥ ଦୋହା —ହେ କୃପାଧାମ ! ଏବେ ଆପଣଙ୍କ କୃପାଯୋଗେ ମୁଁ କୃତକୃତ୍ୟ ହୋଇଗଲି । ଏଣିକି ମୋର ଆଉ ମୋହ ନାହିଁ । ହେ ପ୍ରଭୋ ! ମୁଁ ସଚ୍ଚିଦାନନ୍ଦଘନ ପ୍ରଭୁ ଶ୍ରୀରାମଙ୍କ ପ୍ରତାପ ବିଷୟ ଜାଣିଗଲି ॥ ୫୨ (କ) ॥ ହେ ନାଥ ! ଆପଣଙ୍କ ମୁଖ-ଚନ୍ଦ୍ର ଶ୍ରୀରାମ-କଥାମୃତ ବୃଷ୍ଟି କରେ । ହେ ମତିଧୀର ! ମୋ ମନ କର୍ଣ୍ଣପୁଟରେ ତାହା ପିଇ ସୁଦ୍ଧା ତୃପ୍ତ ହେଉ ନାହିଁ ॥୫୨ (ଖ)॥ ଚୌପାଇ :—ଶ୍ରୀରାମଙ୍କ ଚରିତ ଶୁଣି ଶୁଣି ଯେଉଁମାନେ ତୃପ୍ତ ହୋଇ ଯାଆନ୍ତି, ସେମାନେ ତାହାର ବିଶେଷ ରସ ହୃଦୟଙ୍ଗମ କରି ପାରିଲେ ନାହିଁ ବୋଲି ଧରିନେବାକୁ ହେବ । ଯେଉଁମାନେ ଜୀବନ୍ମୁକ୍ତ ମହାମୁନି, ସେମାନେ ବି ଭଗବାନଙ୍କ ଗୁଣ ନିରନ୍ତର ଶୁଣନ୍ତି ॥ ୧ ॥ ସଂସାର-ସାଗରକୁ ଯେଉଁ ବ୍ୟକ୍ତି ପାରି ହେବାକୁ ଚାହେଁ, ତାହା ନିମନ୍ତେ ଶ୍ରୀରାମକଥା ଦୃଢ଼ ନୌକା ସମାନ । ଶ୍ରୀହରିଙ୍କ ଗୁଣଗ୍ରାମ ବିଷୟୀ ଲୋକମାନଙ୍କର ସୁଦ୍ଧା ଶ୍ରବଣ ପ୍ରତି ସୁଖଦାୟକ ଏବଂ ମନ ପ୍ରତି ଆନନ୍ଦଦାୟକ ॥୨॥ ଜଗତରେ କାନ ଥିବା ପ୍ରାଣୀ ଏପରି କିଏ ଯାହାକୁ କି ଶ୍ରୀ ରଘୁନାଥଙ୍କ ଚରିତ ରୁଚିକର ନ ଲାଗେ ? ଯେଉଁମାନଙ୍କୁ ଶ୍ରୀ ରଘୁନାଥଙ୍କ କଥା ରୁଚିକର ହୁଏ ନାହିଁ, ସେହିମାନେ ମୂର୍ଖ ଜୀବ । ସେହିମାନେ ଆତ୍ମଘାତୀ ॥ ୩ ॥ ହେ ନାଥ ! ଆପଣ ଶ୍ରୀରାମ ଚରିତ ମାନସ ଗାନ କଲେ । ତାହା ଶୁଣି ମୁଁ ଅପାର

ବିରତି ଜ୍ଞାନ ବିଜ୍ଞାନ ଦୃଢ଼ ରାମ ଚରନ ଅତି ନେହ ।
ବାୟସ ତନ ରଘୁପତି ଭଗତି ମୋହି ପରମ ସଂଦେହ ॥୫୩॥
ନର ସହସ୍ର ମହଁ ସୁନହୁ ପୁରାରୀ । କୋଉ ଏକ ହୋଇ ଧର୍ମ ବ୍ରତ-ଧାରୀ ॥
ଧର୍ମସୀଲ କୋଟିକ ମହଁ କୋଈ । ବିଷୟ ବିମୁଖ ବିରାଗ ରତ ହୋଈ ॥୧॥
କୋଟି ବିରକ୍ତ ମଧ୍ୟ ଶ୍ରୁତି କହଈ । ସମ୍ୟକ ଜ୍ଞାନ ସକୃତ କୋଉ ଲହଈ ॥
ଜ୍ଞାନବନ୍ତ କୋଟିକ ମହଁ କୋଊ । ଜୀବନମୁକ୍ତ ସକୃତ ଜଗ ସୋଊ ॥୨॥
ତିନ୍ହ ସହସ୍ର ମହୁଁ ସବ ସୁଖ ଖାନୀ । ଦୁର୍ଲଭ ବ୍ରହ୍ମଲୀନ ବିଜ୍ଞାନୀ ॥
ଧର୍ମସୀଲ ବିରକ୍ତ ଅରୁ ଜ୍ଞାନୀ । ଜୀବନମୁକ୍ତ ବ୍ରହ୍ମପର ପ୍ରାନୀ ॥୩॥
ସବ ତେ ସୋ ଦୁର୍ଲଭ ସୁରରାୟା । ରାମଭଗତି ରତ ଗତ ମଦ ମାୟା ॥
ସୋ ହରିଭଗତି କାଗ କିମି ପାଈ । ବିସ୍ୱନାଥ ମୋହି କହହୁ ବୁଝାଈ ॥୪॥

---

ବୈରାଗ୍ୟ ବିଜ୍ଞାନ ଜ୍ଞାନେ ରତ ମନ ରାମ ପଦେ ଅତି ସ୍ନେହ ।
ବାୟସ ଶରୀରେ ରଘୁପତି ଭକ୍ତି, ଉପୁଜେ ମୋର ସନ୍ଦେହ ॥୫୩॥
ନର ସହସ୍ର ମଧ୍ୟରେ ଶୁଣ, ହେ ପୁରାରି । ହୁଅଇ କୌଣସି ଏକ ଧର୍ମ ବ୍ରତଧାରୀ ॥
କୋଟି ଧର୍ମଶୀଳ ମଧ୍ୟେ ଜଣେ କେ ଏମନ୍ତ । ବିଷୟ-ବିମୁଖ ହୁଏ ବଇରାଗ୍ୟ-ବନ୍ତ ॥୧॥
କୋଟି ବିରକ୍ତ ମଧ୍ୟରେ ଶ୍ରୁତି ବଖାଣଇ । ସମ୍ୟକ ଜ୍ଞାନ କ୍ୱଚିତ ଜଣେ କେ ଲଭଇ ॥
କୋଟି ଜ୍ଞାନବନ୍ତ ମଧ୍ୟେ ଏକମାତ୍ର କେହି । ଜୀବନମୁକ୍ତ ଜଗତେ ଭାଗ୍ୟବାନ ସେହି ॥୨॥
କୋଟି ମୁକ୍ତ ମଧ୍ୟେ କେହି ସୁଖ ନିକେତନ । ଦୁର୍ଲ୍ଲଭ ବ୍ରହ୍ମ-ବିଲୀନ ବିଜ୍ଞାନୀ ଏସନ ॥
ଧରମଶୀଳ ବିରକ୍ତ ଜ୍ଞାନୀ ଯେ ଆବର । ଜୀବନମୁକ୍ତ ବିଜ୍ଞାନୀ ବ୍ରହ୍ମରତ ନର ॥୩॥
ସମସ୍ତଙ୍କଠାରୁ ସେହି ଦୁର୍ଲ୍ଲଭ, ସୁରାରି । ମଦ ମାୟା ରହିତ ଯେ ରାମ-ଭକ୍ତି-ଧାରୀ ॥
ଲଭିଲା କେମନ୍ତେ କାକ ସେ ହରିଭକତି ? ବୁଝାଇ କହନ୍ତୁ ତାହା ମୋତେ, କାଶୀନାଥ ॥୪॥

---

ସୁଖ ଲାଭ କଲି । ଆପଣ କହିଲେ ଯେ, କାକ ଭୁଶୁଣ୍ଡି ଗରୁଡଙ୍କୁ ଏହି ସୁନ୍ଦର କଥା କହିଥିଲେ— ॥ ୪ ॥ ଦୋହା —କାକ ଶରୀର ପାଇ ସୁଦ୍ଧା କାକ ଭୁଶୁଣ୍ଡି ବୈରାଗ୍ୟ, ଜ୍ଞାନ ଓ ବିଜ୍ଞାନରେ ଦୃଢ଼, ଶ୍ରୀରାମଙ୍କ ଚରଣ-କମଳରେ ତାଙ୍କର ଅତ୍ୟନ୍ତ ପ୍ରେମ ଏବଂ ଶ୍ରୀରାମଙ୍କ ଭକ୍ତି ମଧ୍ୟ ସେ ଲାଭ କରିଅଛନ୍ତି । ଏହି କଥାରେ ମୋର ପରମ ସନ୍ଦେହ ହେଉଅଛି ॥ ୫୨ ॥ ଚୌପାଈ —ହେ ତ୍ରିପୁରାରି ! ଶୁଣନ୍ତୁ, ହଜାର ମନୁଷ୍ୟଙ୍କ ମଧ୍ୟରେ କୌଣସି ଜଣେ ମାତ୍ର ବ୍ୟକ୍ତି ଧର୍ମବ୍ରତଧାରୀ ହୁଏ ଏବଂ କୋଟିଏ ଧର୍ମାତ୍ମା ମଧ୍ୟରେ କେହି ଜଣେ ମାତ୍ର ବ୍ୟକ୍ତି ବିଷୟ-ବିମୁଖ ଓ ବୈରାଗ୍ୟ-ପରାୟଣ ହୋଇ-ଥାଏ ॥ ୧ ॥ ଶ୍ରୁତି କହେ—କୋଟିଏ ବୈରାଗୀଙ୍କ ମଧ୍ୟରେ କେହି ଜଣେ ମାତ୍ର ସମ୍ୟକ୍ ଜ୍ଞାନ ଲାଭ କରେ ଏବଂ କୋଟିଏ ଜ୍ଞାନୀଙ୍କ ମଧ୍ୟରେ କେହି ଜଣେ ମାତ୍ର ଜୀବନ୍ମୁକ୍ତ ହୁଏ । ଜଗତରେ ଏପରି ଜୀବନ୍ମୁକ୍ତ ବ୍ୟକ୍ତି ବିରଳ ॥ ୨ ॥ ହଜାର ଜୀବନ୍ମୁକ୍ତଙ୍କ ମଧ୍ୟରେ ସୁଖ-ଖଣି, ବ୍ରହ୍ମ-ଲୀନ ଓ ବିଜ୍ଞାନୀ ପୁରୁଷ ଆହୁରି ମଧ୍ୟ ଦୁର୍ଲ୍ଲଭ ।

ରାମ - ପରାୟନ ଜ୍ଞାନରତ ଗୁନାଗାର ମତି ଧୀର ।
ନାଥ କହହୁ କେହି କାରନ ପାୟଉ କାକ ସରୀର ॥୫୪॥
ୟହ ପ୍ରଭୁ ଚରିତ ପବିତ୍ର ସୁହାଓ୍ୱା । କହହୁ କୃପାଲ କାଗ କହଁ ପାଓ୍ୱା ॥
ତୁମ୍ହ କେହି ଭାଁତି ସୁନା ମଦନାରୀ । କହହୁ ମୋହି ଅତି କୌତୁକ ଭାରୀ ॥୧॥
ଗରୁଡ଼ ମହାଜ୍ଞାନୀ ଗୁନରାସୀ । ହରିସେବକ ଅତି ନିକଟ ନିବାସୀ ॥
ତେହିଁ କେହି ହେତୁ କାଗ ସନ ଜାଈ । ସୁନୀ କଥା ମୁନି ନିକର ବିହାଈ ॥୨॥
କହହୁ କଓ୍ୱନ ବିଧି ଭା ସଂବାଦା । ଦୋଉ ହରିଭଗତ କାଗ ଉରଗାଦା ॥
ଗୌରି ଗିରା ସୁନି ସରଲ ସୁହାଈ । ବୋଲେ ସିବ ସାଦର ସୁଖ ପାଈ ॥୩॥
ଧନ୍ୟ ସତୀ ପାଓ୍ୱନ ମତି ତୋରୀ । ରଘୁପତି ଚରନ ପ୍ରୀତି ନହିଁ ଥୋରୀ ॥
ସୁନହୁ ପରମ ପୁନୀତ ଇତିହାସା । ଜୋ ସୁନି ସକଲ ଲୋକ ଭ୍ରମ ନାସା ॥୪॥
ଉପଜଇ ରାମ ଚରନ ବିସ୍ୱାସା । ଭବନିଧି ତର ନର ବିନହିଁ ପ୍ରୟାସା ॥୫॥

---

ରାମ-ପରାୟଣ, ଜ୍ଞାନରତ ମନ, ଗୁଣାଗାର, ମତି ସ୍ଥିର ।
କରନ୍ତୁ ବର୍ଣ୍ଣନ ନାଥ, କି କାରଣେ ପାଇଲା କାକ ଶରୀର ॥୫୪॥
ପ୍ରଭୁଙ୍କ ଏହି ଚରିତ ପବିତ୍ର ସୁନ୍ଦର । କେମନ୍ତେ କାକ ପାଇଲା କହ, କୃପାକର ॥
ଆପଣ କିପରି ଭାବେ ଶୁଣିଲ, କାମାରି । କହନ୍ତୁ ମୋ ଆଗେ ଏହି କଉତୁକ ଭାରି ॥୧॥
ବିହଙ୍ଗନାୟକ ମହାଜ୍ଞାନୀ ଗୁଣରାଶି । ହରିଙ୍କ ସେବକ ଅତି ନିକଟ ନିବାସୀ ॥
ସେ କେଉଁ ହେତୁ ବାୟସ ସମୀପେ ଯାଇଣ । ଶୁଣିଲା କଥା ମୁନିଙ୍କ ସମାଜ ତେଜିଣ ॥୨॥
କହନ୍ତୁ, ଏହି ସମ୍ବାଦ ହୋଇଲା କିପରି । ଦୁହେଁ ହରି-ଭକ୍ତ, କାକ, ପନ୍ନଗ ଅରି ॥
ଶୁଣି ଗଉରୀଙ୍କ ବାଣୀ ସରଳ ସୁନ୍ଦର । ଭାଷିଲେ ସାଦରେ ସୁଖ ଲଭିଣ ଶଙ୍କର ॥୩॥
ଧନ୍ୟ ସତୀ, ସୁପବିତ୍ର ତୁମ୍ଭ ମତି ଗତି । ରଘୁପତି ପଦେ ଅଳପ ନୁହେ ପ୍ରୀତି, ଅତି ॥
ଶୁଣ ପରମ-ପାବନ ଏହି ଇତିହାସ । ଯାହା ଶୁଣନ୍ତେ ସମସ୍ତ ଭ୍ରମ ହୁଏ ନାଶ ॥୪॥
ଉପୁଜଇ ରଘୁନାଥ ଚରଣେ ବିଶ୍ୱାସ । ଭବ-ପାରାବାର ତରିଯାଏ ଅନାୟାସ ॥୫॥

---

ଧର୍ମାତ୍ମା, ବୈରାଗୀ, ଜ୍ଞାନୀ, ଜୀବନ୍ମୁକ୍ତ ଓ ବ୍ରହ୍ମଲୀନ—ଏ ସମସ୍ତଙ୍କ ମଧ୍ୟରେ ହେ ଦେବାଧି-ଦେବ ମହାଦେବ ! ଯେ ମଦ-ମାୟାରୁ ବିମୁକ୍ତ ହୋଇ ଶ୍ରୀରାମ ଭକ୍ତି-ପରାୟଣ ହୁଏ, ସେହି ପ୍ରାଣୀ ଆହୁରି ମଧ୍ୟ ଦୁର୍ଲ୍ଲଭ । ହେ ବିଶ୍ୱନାଥ ! କୁଆ କିପରି ଏହିପରି ଦୁର୍ଲ୍ଲଭ ହରିଭକ୍ତି ପାଇ ପାରିଲା, ତାହା ମୋତେ ବୁଝାଇ କୁହନ୍ତୁ ॥୩-୪॥ ଦୋହା:—ହେ ନାଥ ! ଏପରି ଶ୍ରୀରାମପରାୟଣ, ଜ୍ଞାନରତ, ଗୁଣଧାମ ଓ ଧୀରବୁଦ୍ଧି ଭୁଶୁଣ୍ଡି କାକଶରୀର କିପରି ପାଇଲେ, ମୋତେ କୁହନ୍ତୁ ॥ ୫୪ ॥ ଚୌପାଈ :—ହେ କୃପାଳୁ ! ସେହି କାକ ପ୍ରଭୁଙ୍କ ଏହି ପବିତ୍ର ଓ ସୁନ୍ଦର ଚରିତ କେଉଁଠାରୁ ପାଇଲେ ? ମୋତେ କୁହନ୍ତୁ । ହେ କାମଦେବ-ଶତ୍ରୁ ! ଆପଣ ଏହା କିପରି ଶୁଣିଲେ ତାହା ମଧ୍ୟ ମୋତେ କୁହନ୍ତୁ । ମୋ ମନରେ ବଡ଼ କୌତୁହଳ ଜାତ ହେଉଅଛି ॥ ୧ ॥ ଗରୁଡ଼ ତ ମହାଜ୍ଞାନୀ,

ଜୌସିଅ ପ୍ରଶ୍ନ ବିହଙ୍ଗପତି କୀନ୍ହି କାଗ ସନ ଜାଇ ।
ସୋ ସବ ସାଦର କହିହଉଁ ସୁନହୁ ଉମା ମନ ଲାଇ ॥୫୫॥
ମୈଁ ଜିମି କଥା ସୁନୀ ଭବମୋଚନ । ସୋ ପ୍ରସଙ୍ଗ ସୁନୁ ସୁମୁଖି ସୁଲୋଚନି ॥
ପ୍ରଥମ ଦଚ୍ଛ ଗୃହ ତବ ଅବତାରା । ସତୀ ନାମ ତବ ରହା ତୁମ୍ହାରା ॥୧॥
ଦଚ୍ଛ ଜଗ୍ୟ ତବ ଭା ଅପମାନା । ତୁମ୍ହ ଅତି କ୍ରୋଧ ତଜେ ତବ ପ୍ରାନା ॥
ମମ ଅନୁଚରନ୍ହ କୀନ୍ହ ମଖ ଭଙ୍ଗା । ଜାନହୁ ତୁମ୍ହ ସୋ ସକଲ ପ୍ରସଙ୍ଗା ॥୨॥
ତବ ଅତି ସୋଚ ଭୟଉ ମନ ମୋରେଁ । ଦୁଖୀ ଭୟଉଁ ବିୟୋଗ ପ୍ରିୟ ତୋରେଁ ॥
ସୁନ୍ଦର ବନ ଗିରି ସରିତ ତଡ଼ାଗା । କୌତୁକ ଦେଖତ ଫିରଉଁ ବିରାଗା ॥୩॥

---

ଯେଉଁ ଭାବେ ପ୍ରଶ୍ନ ବିହଙ୍ଗରାଜନ କଲେ କାକ ଆଗେ ଯାଇ ।
ସେ ସବୁ ସାଦରେ କହୁଅଛି ଶୁଣ ଗିରିଜା, ମନ ଲଗାଇ ॥୫୫॥
ମୁଁ ଯେମନ୍ତେ ଶୁଣିଲି କଥା ଭବବିମୋଚନୀ । ସେ ପ୍ରସଙ୍ଗ ଶୁଣ, ସୁମୁଖି, ସୁଲୋଚନି ॥
ପ୍ରଥମେ ତୁମ୍ଭ ଜନମ ଦକ୍ଷ ଭବନରେ । ସତୀ ନାମ ଥିଲା ତହିଁ ସେହି ସମୟରେ ॥୧॥
ଦକ୍ଷ ଯଜ୍ଞରେ ହୁଅନ୍ତେ ମୋର ଅପମାନ । ତୁମ୍ଭେ ଅତି କ୍ରୋଧେ ତହିଁ ତେଜିଲ ପରାଣ ॥
ମୋର ଅନୁଚର-ଚୟ ଯଜ୍ଞ କଲେ ଭଙ୍ଗ । ଜାଣିଅଛ ତୁମ୍ଭେ ସେହି ସକଳ ପ୍ରସଙ୍ଗ ॥୨॥
ତହୁଁ ଅତି ଚିନ୍ତା ମନେ ଉପୁଜିଲା ମୋର । ଦୁଃଖିତ ହୋଇଲି ପ୍ରିୟେ, ବିୟୋଗରୁ ତୋର ॥
ସୁନ୍ଦର ବନ ଶଇଳ ତଡ଼ାଗ ସରିତ । ଭ୍ରମିଲି ବିରାଗେ ଦେଖି କୌତୁକ ଅମିତ ॥୩॥

---

ସଦ୍‌ଗୁଣରାଶି, ଶ୍ରୀ ହରିଙ୍କ ସେବକ ଏବଂ ତାହାଙ୍କର ଅତି ନିକଟ ନିବାସୀ ବାହନ । ସେ ମୁନିବୃନ୍ଦଙ୍କୁ ଛାଡ଼ି କାକ ନିକଟକୁ ଯାଇ ତାଙ୍କଠାରୁ ହରିକଥା କି ହେତୁ ଶୁଣିଲେ ? ॥୨॥ କାକ ଭୁଶୁଣ୍ଡି ଓ ଗରୁଡ଼—ଏହି ହରିଭକ୍ତ ଦୁହିଁଙ୍କର କଥାବାର୍ତ୍ତା କିପରି ହେଲା ?" ପାର୍ବତୀଙ୍କର ସରଳ ସୁନ୍ଦର ବାଣୀ ଶୁଣି ଶିବ ସୁଖ ପାଇଲେ ଏବଂ ଆଦର ସହକାରେ କହିଲେ— ॥ ୩ ॥ "ହେ ସତି ! ତୁମେ ଧନ୍ୟ, ତୁମ ବୁଦ୍ଧି ଅତି ପବିତ୍ର । ଶ୍ରୀ ରଘୁନାଥଙ୍କ ଚରଣରେ ତୁମର କମ ପ୍ରୀତି ନାହିଁ । ଯେଉଁ ପରମ ପବିତ୍ର ଇତିହାସ ଶୁଣିଲେ ସମସ୍ତ ଲୋକର ଭ୍ରମ ନାଶ ଯାଏ, ଶ୍ରୀରାମଙ୍କ ଚରଣ-ଯୁଗଳରେ ବିଶ୍ୱାସ ଜାତ ହୁଏ ଏବଂ ମନୁଷ୍ୟ ଅନାୟାସରେ ସଂସାର-ସାଗରରୁ ତରି ଯାଏ, ଏବେ ତାହା ଶୁଣ ॥୪॥
ଦୋହା :—ପକ୍ଷିରାଜ ଗରୁଡ଼ ମଧ୍ୟ ଯାଇ କାକ ଭୁଶୁଣ୍ଡିଙ୍କୁ ଏହିପରି ପ୍ରଶ୍ନ କରିଥିଲେ । ହେ ଉମା ! ମୁଁ ଉକ୍ତ ପ୍ରସଙ୍ଗମାନ ଆଦରରେ କହିବି, ତୁମେ ମନ ଲଗାଇ ଶୁଣ ॥୫୫॥
ଚୌପାଇ :—ହେ ସୁମୁଖି ! ହେ ସୁଲୋଚନି ! ମୁଁ ଭବ (ଜନ୍ମ ମରଣ)-ବିମୋଚନ-କାରିଣୀ ଉକ୍ତ କଥା କିପରି ଶୁଣିଲି, ସେ ପ୍ରସଙ୍ଗ ଶୁଣ । ପ୍ରଥମେ ଦକ୍ଷଙ୍କ ଗୃହରେ ତୁମେ ଅବତାର (ଜନ୍ମ) ଗ୍ରହଣ କରିଥିଲ । ସେତେବେଳେ ତୁମର ନାମ ସତୀ ଥିଲା ॥ ୧ ॥ ଦକ୍ଷ ଯଜ୍ଞରେ ତୁମର ଅପମାନ ହେଲା । ତୁମେ ଅତି କ୍ରୋଧ କରି ପ୍ରାଣ ତ୍ୟାଗ କରିଥିଲ ଏବଂ ମୋର ଅନୁଚରମାନେ ଯଜ୍ଞ ଧ୍ୱଂସ କରି ଦେଇଥିଲେ । ଉକ୍ତ ପ୍ରସଙ୍ଗ ସବୁ ତୁମେ

ଗିରି ସୁମେରୁ ଉତ୍ତର ଦିସି ଦୂରୀ । ନୀଲ ସୈଲ ଏକ ସୁନ୍ଦର ଭୂରୀ ॥
ତାସୁ କନକମୟ ସିଖର ସୁହାଏ । ଚାରି ଚାରୁ ମୋରେ ମନ ଭାଏ ॥୪॥
ତିନ୍ହ ପର ଏକ ଏକ ବିଟପ ବିସାଲା । ବଟ ପୀପର ପାକରୀ ରସାଲା ॥
ସୈଲୋପରି ସର ସୁନ୍ଦର ସୋହା । ମନିସୋପାନ ଦେଖି ମନ ମୋହା ॥୫॥

ସୀତଲ ଅମଲ ମଧୁର ଜଲ ଜଲଜ ବିପୁଲ ବହୁରଙ୍ଗ ।
କୂଜତ କଲ ରବ ହଂସଗନ ଗୁଂଜତ ମଂଜୁଲ ଭୃଙ୍ଗ ॥୫୬॥

ତେହି ଗିରି ରୁଚିର ବସଇ ଖଗ ସୋଈ । ତାସୁ ନାସ କଲ୍ପାନ୍ତ ନ ହୋଈ ॥
ମାୟାକୃତ ଗୁନ ଦୋଷ ଅନେକା । ମୋହ ମନୋଜ ଆଦି ଅବିବେକା ॥୧॥
ରହେ ବ୍ୟାପି ସମସ୍ତ ଜଗ ମାହୀଁ । ତେହି ଗିରି ନିକଟ କବହୁଁ ନହିଁ ଜାହୀଁ ॥
ତହଁ ବସି ହରିହି ଭଜଇ ଜିମି କାଗା । ସୋ ସୁନୁ ଉମା ସହିତ ଅନୁରାଗା ॥୨॥

---

ସୁମେରୁ ଗିରି ଉତ୍ତର ଦିଗରେ ଦୂରରେ । ନୀଳ ପରବତ ଏକ ପୂର୍ଣ୍ଣ ସୌନ୍ଦର୍ଯ୍ୟରେ ॥
ବହୁ ସ୍ୱର୍ଣ୍ଣ ଶୃଙ୍ଗେ ଶ୍ରେଷ୍ଠ ଚାରୋଟି ଶିଖର । ନିରେଖି ମନକୁ ଭଲ ଲାଗିଲା ମୋହର ॥୪॥
ଶୃଙ୍ଗ ସ୍ଥିତ ଏକ ଏକ ବିଟପ ବିଶାଳ । ବଟ ପିପ୍ପଳ ଆବର ଡିମିରି ରସାଳ ॥
ଶଇଳ ଉପରେ ସର ସୁନ୍ଦର ଶୋଭଇ । ମଣି ସୋପାନ ଦେଖନ୍ତେ ମନକୁ ମୋହଇ ॥୫॥

ଶୀତଳ ବିମଳ ସୁମଧୁର ଜଳ ଫୁଟେ କଞ୍ଜ ବହୁ ରଙ୍ଗ ।
ମଧୁରେ କୂଜନ୍ତି କାକ ହଂସ ପନ୍ତି, ଗୁଞ୍ଜରନ୍ତି ମଞ୍ଜୁ ଭୃଙ୍ଗ ॥୫୬॥

ସେହି ରୁଚିର ଶଇଳେ ସେ କାକ ରହଇ । କଲ୍ପାନ୍ତରେ ସୁଦ୍ଧା ତାର ନାଶ ନ ହୁଅଇ ॥
ମାୟା ବିରଚିତ ଗୁଣ ଦୂଷଣ ଅନେକ । କାମ ମୋହ ମଦ ଆଦି ଯେତେ ଅବିବେକ ॥୧॥
ସମସ୍ତ ଜଗତ ମଧ୍ୟେ ବ୍ୟାପିଣ ରହନ୍ତି । ସେ ଗିରି ନିକଟେ କେବେ ପଶି ନ ପାରନ୍ତି ॥
ତହିଁ ରହି କାକ ଯେମନ୍ତେ ହରିଙ୍କୁ ସ୍ମରଣ । କରଇ ଉମା, ସାଦରେ କର ତା' ଶ୍ରବଣ ॥୨॥

---

ଜାଣ ॥ ୨ ॥ ସେତେବେଳେ ମୋ ମନରେ ବଡ ଚିନ୍ତା ହେଲା ଏବଂ ହେ ପ୍ରିୟେ ! ମୁଁ ତୁମର ବିୟୋଗରେ ଦୁଃଖିତ ହେଲି । ମୁଁ ବିରକ୍ତ ମନରେ ସୁନ୍ଦର ବନ, ପର୍ବତ, ନଦୀ ଓ ସରୋବର ଆଦିର ଦୃଶ୍ୟ ଦେଖି ଦେଖି ବୁଲୁଥାଏ ॥ ୩ ॥ ସୁମେରୁ ପର୍ବତର ଉତ୍ତର ଦିଗରେ, ଆହୁରି ଦୂରରେ, ଗୋଟିଏ ଅତି ସୁନ୍ଦର ନୀଳ ପର୍ବତ ଅଛି । ତାହାର ଅନେକଗୁଡିଏ ସ୍ୱର୍ଣ୍ଣ ଶିଖର ସୁଶୋଭିତ । ତନ୍ମଧ୍ୟରେ ଚାରିଗୋଟି ସୁନ୍ଦର ଶିଖର ମୋ ମନକୁ ଅତି ରୁଚିକର ବୋଧ ହେଲା ॥ ୪ ॥ ସେହି ଶିଖରମାନଙ୍କ ମଧ୍ୟରୁ ପ୍ରତ୍ୟେକଟି ଉପରେ ବର, ପିପ୍ପଳ (ଅଶ୍ୱତ୍ଥ), ଡିମିରି ଏବଂ ଆମ୍ବର ଗୋଟିଏ ଗୋଟିଏ ବିଶାଳ ବୃକ୍ଷ । ପର୍ବତ ଉପରେ ଗୋଟିଏ ସୁନ୍ଦର ସରୋବର ସୁଶୋଭିତ, ତାହାର ମଣିମୟ ସୋପାନ ଦେଖି ମନ ମୋହିତ ହୋଇଯାଏ ॥ ୫ ॥ ଦୋହା '—ତାହାର ଜଳ ଶୀତଳ, ନିର୍ମଳ ଓ ମଧୁର । ତହିଁରେ ବିବିଧ ରଙ୍ଗର ବହୁତ ପଦ୍ମଫୁଲ ଫୁଟିଥାଏ, ହଂସଗଣ ମଧୁର ସ୍ୱରରେ କଳରବ କରୁଥା'ନ୍ତି ଏବଂ ଭ୍ରମରମାନେ ମଞ୍ଜୁଳ ଗୁଞ୍ଜନ କରୁଥା'ନ୍ତି ॥ ୫୬ ॥

ପୀପର ତରୁ ତର ଧ୍ୟାନ ସୋ ଧରଈ । ଜାପ ଜଗ୍ୟ ପାକରି ତର କରଈ ॥
ଆଁବ ଛାଁହ କର ମାନସ ପୂଜା । ତଜି ହରିଭଜନୁ କାଜୁ ନହିଁ ଦୂଜା ॥୩॥
ବର ତର କହ ହରି କଥା ପ୍ରସଙ୍ଗା । ଆୱହିଁ ସୁନହିଁ ଅନେକ ବିହଙ୍ଗା ॥
ରାମ ଚରିତ ବିଚିତ୍ର ବିଧି ନାନା । ପ୍ରେମ ସହିତ କର ସାଦର ଗାନା ॥୪॥
ସୁନହିଁ ସକଲ ମତି ବିମଲ ମରାଲା । ବସହିଁ ନିରନ୍ତର ଜେ ତେହିଁ ତାଲା ॥
ଜବ ମୈଁ ଜାଇ ସୋ କୌତୁକ ଦେଖା । ଉର ଉପଜା ଆନନ୍ଦ ବିସେଷା ॥୫॥

ତବ କଛୁ କାଲ ମରାଲ ତନୁ ଧରି ତହଁ କୀନ୍ହ ନିବାସ ।
ସାଦର ସୁନି ରଘୁପତି ଗୁନ ପୁନି ଆୟଉଁ କୈଲାସ ॥୫୭॥

ଗିରିଜା କହେଉଁ ସୋ ସବ ଇତିହାସା । ମୈଁ ଜେହିଁ ସମୟ ଗୟଉଁ ଖଗ ପାସା ॥
ଅବ ସୋ କଥା ସୁନହୁ ଜେହି ହେତୂ । ଗୟଉ କାଗ ପହିଁ ଖଗକୁଲ କେତୂ ॥୧॥

---

ଅଶ୍ୱତ୍ଥ ତରୁ ତଳରେ ଧ୍ୟାନ ସେ ଧରଇ । ଡିମିରି ତଳରେ ଜପ ଯୋଗାଦି କରଇ ॥
ଆମ୍ର ଛାୟା ତଳେ କରେ ମାନସ ଅର୍ଚ୍ଚନ । ଅନ୍ୟ କାର୍ଯ୍ୟ ନାହିଁ ତେଜି ହରିଙ୍କ ଭଜନ ॥୩॥
ବଟ ତଳେ କହେ ହରି ଚରିତ ପ୍ରସଙ୍ଗ । ଆସନ୍ତି ଶୁଣିବା ପାଇଁ ଅନେକ ବିହଙ୍ଗ ॥
ନାନା ପ୍ରକାର ବିଚିତ୍ର ଶ୍ରୀରାମ ଚରିତ । ସାଦରେ କରଇ ଗାନ ସେ ପ୍ରୀତି ସହିତ ॥୪॥
ଶୁଣନ୍ତି ବିମଳମତି ମରାଳ ନିକରେ । ଯେହୁ ନିରନ୍ତର ବାସ କରନ୍ତି ସେ ସରେ ॥
ଯେବେ ଯାଇ ଦେଖିଲି ମୁଁ ସେ କୌତୁକ ବର । ହୃଦେ ଉପୁଜିଲା ଅତି ଆନନ୍ଦ ମୋହର ॥୫॥

ତହୁଁ କିଛି କାଳ ଧରିଣ ମରାଳ-ତନୁ ତହିଁ କରି ବାସ ।
ଶୁଣି ରଘୁବର ଚରିତ ସାଦର ଆସିଲି ପୁଣି କୈଳାସ ॥୫୭॥

ଗିରିଜା, ସେ ସବୁ ଇତିହାସ ବଖାଣିଲି । ମୁଁ ଯେଉଁ ସମୟେ କାକ ପାଶେ ଯାଇଥିଲି ॥
ଏବେ ସେ କଥା ଶ୍ରବଣ କର ଯେଉଁ ହେତୁ । ଗଲେ କାକ ନିକଟକୁ ଖଗକୁଳକେତୁ ॥୧॥

---

ଚୌପାଇ ।—ଉକ୍ତ ସୁନ୍ଦର ପର୍ବତ ଉପରେ ଏହି ପକ୍ଷୀ (କାକ ଭୁଶୁଣ୍ଡି) ବାସ କରନ୍ତି । କଳ୍ପାନ୍ତରେ ସୁଦ୍ଧା ତାଙ୍କର ନାଶ ହୁଏ ନାହିଁ । ମାୟା-ବିରଚିତ ଅନେକ ଗୁଣ-ଦୋଷ, ମୋହ, କାମ ଓ ଅବିବେକ ପ୍ରଭୃତି ସମସ୍ତ ଜଗତରେ ପରିବ୍ୟାପ୍ତ; କିନ୍ତୁ ଉକ୍ତ ପର୍ବତ ନିକଟକୁ ତାହା ପ୍ରବେଶ କରିପାରେ ନାହିଁ । ସେଠାରେ ବାସ କରି ସେହି କାକ ଯେଉଁପରି ଭାବରେ ହରିଙ୍କୁ ଭଜନ କରନ୍ତି, ହେ ଉମା ! ତାହା ପ୍ରେମ ସହିତ ଶୁଣ ॥ ୧-୨ ॥ ସେ ପିପ୍ପଳ ବୃକ୍ଷ ତଳେ ଧ୍ୟାନମଗ୍ନ ହୁଅନ୍ତି, ଡିମିରି ବୃକ୍ଷ ମୂଳରେ ଜପଯଜ୍ଞ କରନ୍ତି ଏବଂ ଆମ୍ବ ଗଛର ଛାଇରେ ମାନସିକ ପୂଜା କରନ୍ତି । ଶ୍ରୀ ହରିଙ୍କ ଭଜନକୁ ଛାଡ଼ି ତାଙ୍କର ଅନ୍ୟ କୌଣସି କାମ ନ ଥାଏ ॥ ୩ ॥ ବରଗଛ ତଳେ ସେ ଶ୍ରୀ ହରିଙ୍କ କଥା ପ୍ରସଙ୍ଗ କହନ୍ତି । ସେଠାକୁ ଅନେକ ପକ୍ଷୀ ଆସନ୍ତି ଏବଂ କଥା ଶୁଣନ୍ତି । ସେ ବିଚିତ୍ର ରାମ-ଚରିତକୁ ଅନେକ ପ୍ରକାରେ ପ୍ରେମ ଓ ଆଦର ସହକାରେ ଗାନ କରନ୍ତି ॥ ୪ ॥ ଏହି ସରୋବରରେ ବାସ କରୁଥିବା ସମସ୍ତ ନିର୍ମଳ-ମତି ହଂସମାନେ

ଜବ ରଘୁନାଥ କୀହ୍ନି ରନକ୍ରୀଡ଼ା । ସମୁଝତ ଚରିତ ହୋତି ମୋହି ବ୍ରୀଡ଼ା ।
ଇନ୍ଦ୍ରଜୀତ କର ଆପୁ ବଁଧାୟୋ । ତବ ନାରଦ ମୁନି ଗରୁଡ଼ ପଠାୟୋ ॥୨॥
ବନ୍ଧନ କାଟି ଗୟୋ ଉରଗାଦା । ଉପଜା ହୃଦୟଁ ପ୍ରଚଣ୍ଡ ବିଷାଦା ॥
ପ୍ରଭୁ ବନ୍ଧନ ସମୁଝତ ବହୁ ଭାଁତୀ । କରତ ବିଚାର ଉରଗ ଆରାତୀ ॥୩॥
ବ୍ୟାପକ ବ୍ରହ୍ମ ବିରଜ ବାଗୀସା । ମାୟା ମୋହ ପାର ପରମୀସା ॥
ସୋ ଅବତାର ସୁନେଉଁ ଜଗ ମାହୀଁ । ଦେଖେଉଁ ସୋ ପ୍ରଭାବ କଛୁ ନାହୀଁ ॥୪॥
ଭବ ବନ୍ଧନ ତେଁ ଛୂଟହିଁ ନର ଜପି ଜା କର ନାମ ।
ଖର୍ବ ନିସାଚର ବାଁଧେଉ ନାଗପାସ ସୋଇ ରାମ ॥୫୮॥

---

ଯେବେ ଶ୍ରୀରଘୁନାଥଙ୍କ କଲେ ରଣକ୍ରୀଡ଼ା । ସ୍ମରି ସେ ଚରିତ ମୋତେ ଲାଗେ ଅତି ବ୍ରୀଡ଼ା ॥
ନିଜକୁ ଶତ୍ରୁଙ୍କ ନାଗପାଶେ ବନ୍ଧାଇଲେ । ତହୁଁ ଗରୁଡ଼ଙ୍କୁ ମୁନି ନାରଦ ପେଷିଲେ ॥୨॥
ବନ୍ଧନ କାଟି ଫେରନ୍ତେ ବିହଙ୍ଗ ରାଜନ । ହୃଦେ ପ୍ରଚଣ୍ଡ ବିଷାଦ ହୋଇଲା ଉତ୍ପନ୍ନ ॥
ପ୍ରଭୁଙ୍କ ବନ୍ଧନ ଦେଖି ଅନେକ ପ୍ରକାର । ପନ୍ନଗାରି ନିଜ ମନେ କରଇ ବିଚାର ॥୩॥
ବ୍ୟାପକ ବ୍ରହ୍ମ ବିରଜ ବାଗୀଶ ଆଦର । ମୋହ-ମାୟାତୀତ ପ୍ରଭୁ ପରମ-ଈଶ୍ୱର ॥
ଜଗତେ ସେ ଅବତରି ଅଛନ୍ତି ଶୁଣିଲି । ସେ ପ୍ରଭାବ କିଛି ମାତ୍ର ମୁହିଁ ନ ଦେଖିଲି ॥୪॥
ଭବ-ବନ୍ଧନରୁ ନିସ୍ତରନ୍ତି ନର ଜପି ଯାହାଙ୍କ ନାମକୁ ।
ଖର୍ବ ଯାତୁଧାନ କରିଲା ବନ୍ଧନ ନାଗପାଶେ ସେ ରାମଙ୍କୁ ॥୫ ॥

---

ତାହା ଶୁଣନ୍ତି । ଯେତେବେଳେ ମୁଁ ସେଠାକୁ ଯାଇ ଏହି ଦୃଶ୍ୟ ଦେଖିଲି, ସେତେବେଳେ ମୋ ହୃଦୟରେ ବିଶେଷ ଆନନ୍ଦ ଜାତ ହେଲା ॥ ୫ ॥ ଦୋହା —ସେହି ସମୟରେ ମୁଁ ହଂସ ଶରୀର ଧାରଣ କରି କିଛି କାଳ ସେହିଠାରେ ବାସ କଲି ଏବଂ ଶ୍ରୀରଘୁନାଥଙ୍କ ଗୁଣାବଳୀ ଆଦରରେ ଶୁଣି, କୈଳାସକୁ ଫେରି ଆସିଲି ॥ ୫୭ ॥ ଚୌପାଇ '— ହେ ଗିରିଜେ ' ମୁଁ ଯେତେବେଳେ କାକ ଭୁଶୁଣ୍ଡିଙ୍କ ପାଖକୁ ଯାଇଥିଲି, ସେହି ସମୟର ସମସ୍ତ ଇତିହାସ କହିଲି । ବର୍ତ୍ତମାନ ପକ୍ଷିକୁଳକେତନ ଗରୁଡ଼ କି ହେତୁ ସେହି କାକ ନିକଟକୁ ଯାଇଥିଲେ, ଉକ୍ତ ପ୍ରସଂଗ ଶୁଣ ॥ ୧ ॥ ଯେତେବେଳେ ଶ୍ରୀ ରଘୁନାଥ ଏପରି ରଣ-କ୍ରୀଡ଼ା କଲେ, ଯାହା ସ୍ମରଣ କଲେ ମୋ ମନରେ ଲଜ୍ଜା ହୁଏ—ମେଘନାଦ ହାତରେ ଆପଣାକୁ ବନ୍ଧାଇ ନେଲେ—ସେତେବେଳେ ନାରଦ ମୁନି ଗରୁଡ଼ଙ୍କୁ ପ୍ରେରଣ କଲେ । ସର୍ପଭକ୍ଷକ ଗରୁଡ଼ ବନ୍ଧନ କାଟି ଫେରିଲାବେଳେ ତାଙ୍କ ମନରେ ଅତ୍ୟନ୍ତ ବିଷାଦ ଜାତ ହେଲା । ପ୍ରଭୁଙ୍କ ବନ୍ଧନକୁ ସ୍ମରଣ କରି ସର୍ପ-ଶତ୍ରୁ ଗରୁଡ଼ ବହୁତ ପ୍ରକାରେ ବିଚାର କରିବାକୁ ଲାଗିଲେ— ॥ ୩ ॥ "ଯେ ବ୍ୟାପକ, ବିକାର-ରହିତ, ବାଗୀଶ ଏବଂ ମାୟାମୋହର ଊର୍ଦ୍ଧ୍ୱରେ ସ୍ଥିତ ବ୍ରହ୍ମ ପରମେଶ୍ୱର, ଜଗତରେ ସେ ଅବତାର ଗ୍ରହଣ କରନ୍ତି ବୋଲି ମୁଁ ଶୁଣିଥିଲି । କିନ୍ତୁ ମୁଁ ସେ ଅବତାରର ପ୍ରଭାବ କିଛି ହିଁ ଦେଖି ନ ଥିଲି ॥ ୪ ॥ ଦୋହା :—ଯାହାଙ୍କର ନାମ ଜପି, ମନୁଷ୍ୟ

ନାନା ଭାଁତି ମନହି ସମୁଝାଓ୍ଵା । ପ୍ରଗଟ ନ ଜ୍ଞାନ ହୃଦୟଁ ଭ୍ରମ ଛାଓ୍ଵା ॥
ଖେଦ ଖିନ୍ନ ମନ ତର୍କ ବଢ଼ାଈ । ଭୟଉ ମୋହବସ ତୁହ୍ମରହିଁ ନାଈ ॥୧॥
ବ୍ୟାକୁଲ ଗୟଉ ଦେବରିଷି ପାହୀଁ । କହେସି ଜୋ ସଂସୟ ନିଜ ମନ ମାହୀଁ ॥
ସୁନି ନାରଦହି ଲାଗି ଅତି ଦାୟା । ସୁନୁ ଖଗ ପ୍ରବଲ ରାମ କୈ ମାୟା ॥୨॥
ଜୋ ଜ୍ଞାନିହ୍ନ କର ଚିତ ଅପହରଈ । ବରିଆଈଁ ବିମୋହ ମନ କରଈ ॥
ଜେହିଁ ବହୁ ବାର ନଚାଓ୍ଵା ମୋହୀ । ସୋଇ ବ୍ୟାପୀ ବିହଂଗପତି ତୋହୀ ॥୩॥
ମହାମୋହ ଉପଜା ଉର ତୋରେଁ । ମିଟିହି ନ ବେଗି କହେଁ ଖଗ ମୋରେଁ ॥
ଚତୁରାନନ ପହିଁ ଜାହୁ ଖଗେସା । ସୋଇ କରେହୁ ଜେହି ହୋଇ ନିଦେସା ॥୪॥

ଅସ କହି ଚଲେ ଦେବରିଷି କରତ ରାମ ଗୁନ ଗାନ ।
ହରି ମାୟା ବଲ ବରନତ ପୁନି ପୁନି ପରମ ସୁଜାନ ॥୫୯॥

---

ବୁଝାଇଲେ ହେଁ ମନକୁ ନାନାବିଧ ରକମ । ପ୍ରକଟ ନୋହିଣ ଜ୍ଞାନ ବ୍ୟାପିଲା ଭରମ ॥
ଖେଦେ ଖିନ୍ନ ହୋଇ ମନେ ତରକ ବଢାଏ । ହେଲେ ମୋହ ବଶୀଭୂତ ତୁମରି ପରାଏ ॥୧॥
ବ୍ୟାକୁଳେ ଦେବ ଋଷିଙ୍କ ନିକଟେ ଚଳିଲେ । ନିଜ ହୃଦୟେ ଉତ୍ପନ୍ନ ସଂଶୟ କହିଲେ ॥
ଶୁଣନ୍ତେ ଦୟା ଲାଗିଲା ନାରଦଙ୍କୁ ଅତି । ପ୍ରବଳ ରାମଙ୍କ ମାୟା ଶୁଣ, ଖଗପତି ॥୨॥
ଯେହୁ ଜ୍ଞାନୀ ଜନଙ୍କର ଚିତ୍ତ ଅପହରେ । ବଳ ପୂର୍ବକ ତାହାଙ୍କୁ ମୋହ ବଶ କରେ ॥
ଯେଉଁ ମାୟା ବହୁବାର ନଚାଇଲା ମୋତେ । ଏବେ ତାହା ବ୍ୟାପିଅଛି ବିହଙ୍ଗେଶ,ତୋତେ॥୩॥
ମହା ମୋହ ଉପୁଜିଛି ମନ ମଧ୍ୟେ ତୋର । ବେଗି ଦୂର ନ ହୋଇବ କହିବାରେ ମୋର ॥
ଚତୁରାନନଙ୍କ ପାଶେ ଯାଅ, ବିହଙ୍ଗେଶ । ତାହା କରିବ ଯାହା ସେ କରିବେ ଆଦେଶ ॥୪॥

ଏହା କହି ଚଳେ ଗଲେ ଦେବ ଋଷି ରାମ ଗୁଣ ଗାନ କରି ।
ହରି ମାୟା ବଳ ପରମ ଚତୁର ମନେ ବାରମ୍ବାର ସ୍ମରି ॥୫୯॥

---

ସାଂସାରିକ ବନ୍ଧନରୁ ମୁକ୍ତି ଲାଭ କରନ୍ତି, ସେହି ରାମଙ୍କୁ ଗୋଟିଏ ତୁଚ୍ଛ ରାକ୍ଷସ ନାଗପାଶରେ ବାନ୍ଧି ପକାଇଲା ।" ॥ ୫୮ ॥ ଚୌପାଈ :—ଗରୁଡ ଅନେକ ପ୍ରକାରରେ ଆପଣା ମନକୁ ବୁଝାଇଲେ । କିନ୍ତୁ ତାହାଙ୍କର ଜ୍ଞାନ ହେଲା ନାହିଁ, ହୃଦୟରେ ଭ୍ରମ ଆହୁରି ଅଧିକ ବି ବ୍ୟାପିଗଲା । ସନ୍ଦେହ-ଜନିତ ଦୁଃଖରେ ଦୁଃଖିତ ହୋଇ ମନ ମଧ୍ୟରେ ସେ କୁତର୍କ ବଢାଇଲେ ଏବଂ ତୁମ ପରି ମୋହର ବଶବର୍ତ୍ତୀ ହୋଇ ପଡିଲେ ॥ ୧ ॥ ବ୍ୟାକୁଳ ହୋଇ ସେ ଦେବର୍ଷି ନାରଦଙ୍କ ନିକଟକୁ ଗଲେ ଏବଂ ମନରେ ଯେଉଁ ସନ୍ଦେହ ଥିଲା, ତାହା ତାହାଙ୍କୁ କହିଲେ । ତାହା ଶୁଣି ନାରଦଙ୍କ ମନରେ ଅତିଶୟ ଦୟା ହେଲା । ସେ କହିଲେ, "ହେ ଗରୁଡ ! ଶୁଣନ୍ତୁ, ଶ୍ରୀରାମଙ୍କ ମାୟା ଅତି ବଳବତୀ ॥ ୨ ॥ ଉକ୍ତ ମାୟା ଜ୍ଞାନୀମାନଙ୍କ ଚିତ୍ତକୁ ମଧ୍ୟ ଭଲ ରୂପେ ହରଣ କରି ନିଏ ଏବଂ ସେମାନଙ୍କ ମନରେ ଜବରଦସ୍ତି ଅତିଶୟ ମୋହ ଜାତ କରେ । ଉକ୍ତ ମାୟା ମୋତେ ମଧ୍ୟ ବହୁତ ଥର ନଚାଇଅଛି । ହେ ପକ୍ଷିରାଜ ! ସେହି ମାୟା ତୁମ୍ଭଙ୍କୁ ମଧ୍ୟ

ତବ ଖଗପତି ବିରଂଚି ପହିଁ ଗୟଉ । ନିଜ ସନ୍ଦେହ ସୁନାଵତ ଭୟଉ ॥
ସୁନି ବିରଞ୍ଚି ରାମହି ସିରୁ ନାଵା । ସମୁଝି ପ୍ରତାପ ପ୍ରେମ ଅତି ଛାଵା ॥୧॥
ମନ ମହୁଁ କରଇ ବିଚାର ବିଧାତା । ମାୟାବସ କବି କୋବିଦ ଗ୍ୟାତା ॥
ହରିମାୟା କର ଅମିତି ପ୍ରଭାଵା । ବିପୁଲ ବାର ଜେହିଁ ମୋହି ନଚାଵା ॥୨॥
ଅଗ ଜଗମୟ ଜଗ ମମ ଉପରାଜା । ନହିଁ ଆଚରଜ ମୋହ ଖଗରାଜା ॥
ତବ ବୋଲେ ବିଧି ଗିରା ସୁହାଈ । ଜାନ ମହେସ ରାମ ପ୍ରଭୁତାଈ ॥୩॥
ବୈନତେୟ ସଂକର ପହିଁ ଜାହୂ । ତାତ ଅନତ ପୂଛହୁ ଜନି କାହୂ ॥
ତହଁ ହୋଇହି ତବ ସଂସୟ ହାନୀ । ଚଲେଉ ବିହଂଗ ସୁନତ ବିଧି ବାନୀ ॥୪॥

---

ତହୁଁ ଖଗପତି ବିଧି ସମୀପେ ଆସିଲ । ଆପଣା ହୃଦ ସନ୍ଦେହ କହି ଶୁଣାଇଲ ॥
ଶୁଣି ବିରଞ୍ଚି ରାମଙ୍କୁ ନମିଲେ ବିନୟେ । ସ୍ମରଣି ପ୍ରତାପ ପ୍ରେମ ବଢିଲ ହୃଦୟେ ॥୧॥
ମନ ମଧ୍ୟରେ ବିଚାର କରନ୍ତି ବିଧାତା । ମାୟା ବଶୀଭୂତ କବି, ସୁପଣ୍ଡିତ, ଜ୍ଞାତା ॥
ଅମିତ ପ୍ରଭାବ ଅଟେ ହରିଙ୍କ ମାୟାର । ମୋତେ ନଚାଇଛି ଯେହୁ ଅଗଣିତ ବାର ॥୨॥
ଜଡ ଚେତନ ଜଗତ ମୋହର ସୃଜନ । ନୁହଇ ଆଶ୍ଚର୍ଯ୍ୟ, ମୋହେ ବିହଙ୍ଗ-ରାଜନ ॥
ପୁଣି ବୋଇଲେ ବିଧାତା ବାଣୀ ମନୋହର । ଜାଣନ୍ତି ରାମ ପ୍ରତାପ କେବଳ ମହେଶ୍ୱର ॥୩॥
ଯାଅ ବୈନତେୟ, ତୁମ୍ଭେ ଯହିଁ ଉମାକାନ୍ତ । ଅନ୍ୟତ୍ର କାହାକୁ ପଚାରିବ ନାହିଁ, ତାତ ॥
ତୁମ୍ଭ ମନର ସଂଶୟ ତହିଁ ହେବ ହାନି । ଚଳିଲ ବିହଙ୍ଗବର ଶୁଣି ବିଧି ବାଣୀ ॥୪॥

---

ବ୍ୟାପିଲାଣି ॥ ୩ ॥ ହେ ଗରୁଡ ! ତୁମର ହୃଦୟରେ ଅତି ବଡ଼ ମୋହ ଜାତ ହୋଇଅଛି । ମୁଁ ବୁଝାଇଲେ ଉକ୍ତ ମାୟା ଶୀଘ୍ର ମେଣ୍ଟିବ ନାହିଁ । ଅତଏବ ହେ ପକ୍ଷିରାଜ ! ତୁମେ ବ୍ରହ୍ମାଙ୍କ ନିକଟକୁ ଯାଅ ଏବଂ ସେଠାରେ ଯେଉଁ କାମ ନିମନ୍ତେ ଆଦେଶ ମିଳିବ, ତାହାହିଁ କର ।" ॥ ୪ ॥ ଦୋହା :—ଏହାପରେ କହି ପରମ ଜ୍ଞାନୀ ଦେବର୍ଷି ନାରଦ ଶ୍ରୀରାମଙ୍କ ଗୁଣଗାନ ଏବଂ ବାରମ୍ବାର ଶ୍ରୀ ହରିଙ୍କ ମାୟାର ବଳ ବର୍ଣ୍ଣନା କରି ଚାଲିଲେ ॥ ୫୯ ॥ ଚୌପାଈ :—ତଦନନ୍ତର ପକ୍ଷିରାଜ ଗରୁଡ ବ୍ରହ୍ମାଙ୍କ ନିକଟକୁ ଗଲେ ଏବଂ ଆପଣାର ସନ୍ଦେହ ତାହାଙ୍କୁ କହି ଶୁଣାଇଲେ । ତାହା ଶୁଣି ବ୍ରହ୍ମା ଶ୍ରୀରାମଙ୍କୁ ସ୍ମରଣ କରି ପ୍ରଣାମ କଲେ । ପ୍ରଭୁଙ୍କ ପ୍ରତାପ ସ୍ମରଣ କରିବା ମାତ୍ରେ ତାହାଙ୍କ ହୃଦୟରେ ଅତିଶୟ ପ୍ରେମ ବ୍ୟାପିଗଲା ॥ ୧ ॥ ବ୍ରହ୍ମା ମନରେ ବିଚାର କରିବାକୁ ଲାଗିଲେ—କବି, କୋବିଦ ଓ ଜ୍ଞାନୀ ସମସ୍ତେ ମାୟାର ବଶବର୍ତ୍ତୀ । ଭଗବାନ୍‌ଙ୍କ ମାୟାର ପ୍ରଭାବ ଅସୀମ । ଏହା ଏପରି କି ମୋତେ ମଧ୍ୟ ଅନେକ ବାର ନଚାଇଛି ॥ ୨ ॥ ଏ ସମସ୍ତ ଚରାଚର ଜଗତ ତ ମୋଦ୍ୱାରା ରଚିତ । ଯେତେବେଳେ ମୁଁ ମାୟାବଶତଃ ନାଚୁଛି, ତେବେ ପକ୍ଷିରାଜ ଗରୁଡଙ୍କର ମୋହ ହେବାରେ କୌଣସି ଆଶ୍ଚର୍ଯ୍ୟ ନାହିଁ । ତଦନନ୍ତର ବ୍ରହ୍ମା ସୁନ୍ଦର ବାଣୀ କହିଲେ—"ଶ୍ରୀରାମଙ୍କ ମହିମାକୁ ମହାଦେବ ଜାଣନ୍ତି ॥ ୩ ॥ ହେ ଗରୁଡ ! ତୁମେ ଶଙ୍କରଙ୍କ ନିକଟକୁ ଯାଅ । ହେ ବତ୍ସ ! ଆଉ କେଉଁଠି କାହାରିକୁ ପଚାରିବ ନାହିଁ । ସେହଠି

ପରମାତୁର ବିହଙ୍ଗପତି ଆୟଉ ତବ ମୋ ପାସ ।
ଜାତ ରହେଉଁ କୁବେର ଗୃହ ରହିହୁ ଉମା କୈଲାସ ॥୬୦॥
ତେହିଁ ମମ ପଦ ସାଦର ସିରୁ ନାଓ୍ୱା । ପୁନି ଆପନ ସଂଦେହ ସୁନାଓ୍ୱା ॥
ସୁନି ତା କରି ବିନତି ମୃଦୁ ବାନୀ । ପ୍ରେମ ସହିତ ମୈଁ କହେଉଁ ଭବାନୀ ॥୧॥
ମିଲେହୁ ଗରୁଡ଼ ମାରଗ ମହଁ ମୋହୀ । କଓ୍ୱନ ଭାଁତି ସମୁଝାଓ୍ୱୌଁ ତୋହୀ ॥
ତବହିଁ ହୋଇ ସବ ସଂସୟ ଭଂଗା । ଜବ ବହୁ କାଲ କରିଅ ସତସଂଗା ॥୨॥
ସୁନିଅ ତହାଁ ହରିକଥା ସୁହାଈ । ନାନା ଭାଁତି ମୁନିନ୍ହ ଜୋ ଗାଈ ॥
ଜେହି ମହୁଁ ଆଦି ମଧ୍ୟ ଅବସାନା । ପ୍ରଭୁ ପ୍ରତିପାଦ୍ୟ ରାମ ଭଗବାନା ॥୩॥
ନିତ ହରିକଥା ହୋତ ଜହଁ ଭାଈ । ପଠଓ୍ୱଉଁ ତହାଁ ସୁନହୁ ତୁମ୍ହ ଜାଈ ॥
ଜାଇହି ସୁନତ ସକଲ ସଂଦେହା । ରାମ ଚରନ ହୋଇହି ଅତି ନେହା ॥୪॥

---

ପରମ ଆତୁରେ ଖଗପତି ଖରେ ଆଗମିଲେ ମୋର ପାଶେ ।
ଯାଉଥିଲି ମୁହିଁ କୁବେର ପୁରକୁ, ଉମା, ଥିଲ କଇଲାଶେ ॥୬୦॥
ସେ ମୋର ପାଦେ ସାଦରେ ଶିର ନୁଆଁଇଲେ । ଆପଣା ସନ୍ଦେହ ପୁଣି କହି ଶୁଣାଇଲେ ॥
ଶୁଣି ତାହାର ବିନୀତ ଅତି ମୃଦୁବାଣୀ । ପ୍ରେମ ସହିତ ମୁଁ ତାଙ୍କୁ କହିଲି, ଭବାନି ॥୧॥
ମିଳିଲ ବିନତାସୁତ ପଥ ମଧ୍ୟେ ମୋତେ । କିପରି ପ୍ରକାରେ ମୁହିଁ ବୁଝାଇବି ତୋତେ ॥
ଯେବେ କିଛୁକାଳ ସତସଙ୍ଗ କରାଯାଏ । ତେବେ ସମସ୍ତ ସଂଶୟ ନାଶ କାହିଁ ପାଏ ॥୨॥
ଶୁଣ ଯାଇ ତହିଁ ହରି କଥା ମନୋହର । ନାନା ମତେ ବର୍ଣ୍ଣିଛନ୍ତି ଯାହା ମୁନିବର ॥
ଯେଉଁ କଥାରେ ଆଦି ମଧ୍ୟ ଅବସାନ । ପ୍ରତିପାଦ୍ୟ ହୋଇଛନ୍ତି ରାମ ଭଗବାନ ॥୩॥
ପ୍ରତିଦିନ ହରି କଥା ହୁଏ ଯହିଁ ଭାଇ । ପଠାଉଅଛି ତୁମ୍ଭଙ୍କୁ ଶୁଣ ତହିଁ ଯାଇ ॥
ଶୁଣି ନଷ୍ଟ ହେବ ତୁମ୍ଭ ସକଳ ସନ୍ଦେହ । ଉପୁଜିବ ରାମ ଚରଣରେ ଦୃଢ଼ ସ୍ନେହ ॥୪॥

---

ତୁମର ସନ୍ଦେହ ନାଶ ହେବ ।" ବ୍ରହ୍ମାଙ୍କ ବଚନ ଶୁଣିବା ମାତ୍ରେ ଗରୁଡ଼ ପ୍ରସ୍ଥାନ କଲେ ॥ ୪ ॥ ଦୋହା —ପକ୍ଷିରାଜ ଗରୁଡ଼ ଅତି ଉତ୍କଣ୍ଠାର ସହିତ ମୋ ନିକଟକୁ ଆସିଲେ । ହେ ଉମା ! ସେ ସମୟରେ ମୁଁ କୁବେରଙ୍କ ଘରକୁ ଯାଉଥିଲି ଏବଂ ତୁମେ କୈଳାସ ପର୍ବତ ଉପରେ ଥିଲ ॥ ୬୦ ॥ ଚୌପାଇ —ଗରୁଡ଼ ଆଦରରେ ମୋ ଚରଣରେ ଶିର ନୁଆଁଇଲେ ଏବଂ ମୋତେ ତାଙ୍କର ସନ୍ଦେହ ଶୁଣାଇଲେ । ହେ ଭବାନି ! ତାଙ୍କ ବିନତି ଓ କୋମଳ ବାଣୀ ଶୁଣି ମୁଁ ପ୍ରେମ ସହକାରେ ତାଙ୍କୁ କହିଲି— ॥ ୧ ॥ "ହେ ଗରୁଡ଼ ! ତୁମେ ମୋତେ ପଥରେ ସାକ୍ଷାତ କଲ । ରାସ୍ତାରେ ଚାଲିଲାବେଳେ ମୁଁ ତୁମକୁ କିପରି ବୁଝାଇବି ? ଯେତେବେଳେ ଦୀର୍ଘକାଳ ପର୍ଯ୍ୟନ୍ତ ସତ୍ସଙ୍ଗ କରାଯାଏ, ସେତିକବେଳେ ଯାଇ ସମସ୍ତ ସନ୍ଦେହର ନାଶ ହୁଏ ॥ ୨॥ ଯେଉଁ ହରିକଥାକୁ ମୁନିଜନମାନେ ଅନେକ ପ୍ରକାରେ ଗାଇଅଛନ୍ତି ଏବଂ ଯାହାର ଆଦି, ମଧ୍ୟ ଓ ଅନ୍ତରେ ଭଗବାନ୍ ଶ୍ରୀରାମଚନ୍ଦ୍ର ହିଁ ପ୍ରତିପାଦ୍ୟ ପ୍ରଭୁ, ସତ୍ସଙ୍ଗ ମଧ୍ୟରେ ସେହି ସୁନ୍ଦର ହରିକଥା ଶୁଣାଯାଏ । ହେ ଭାଇ ! ଯେଉଁ-

ବିନୁ ସତସଙ୍ଗ ନ ହରିକଥା ତେହି ବିନୁ ମୋହ ନ ଭାଗ ।
ମୋହ ଗଏଁ ବିନୁ ରାମ ପଦ ହୋଇ ନ ଦୃଢ଼ ଅନୁରାଗ ॥୬୧॥
ମିଲହିଁ ନ ରଘୁପତି ବିନୁ ଅନୁରାଗା । କିଏଁ ଜୋଗ ତପ ଗ୍ୟାନ ବିରାଗା ॥
ଉତ୍ତର ଦିସି ସୁନ୍ଦର ଗିରି ନୀଲା । ତହଁ ରହ କାକଭୁସୁଣ୍ଡି ସୁସୀଲା ॥୧॥
ରାମ ଭଗତିପଥ ପରମ ପ୍ରବୀନା । ଗ୍ୟାନୀ ଗୁନ ଗୃହ ବହୁକାଲୀନା ॥
ରାମ କଥା ସୋ କହଇ ନିରଂତର । ସାଦର ସୁନହିଁ ବିବିଧ ବିହଂଗବର ॥୨॥
ଜାଇ ସୁନହୁ ତହଁ ହରି ଗୁନ ଭୂରୀ । ହୋଇହି ମୋହଜନିତ ଦୁଖ ଦୂରୀ ॥
ମୈଁ ଜବ ତେହି ସବ କହା ବୁଝାଈ । ଚଲେଉ ହରଷି ମମ ପଦ ସିରୁ ନାଈ ॥୩॥
ତା ତେଁ ଉମା ନ ମୈଁ ସମୁଝାଓଁ । ରଘୁପତି କୃପାଁ ମରମୁ ମୈଁ ପାଓଁ ॥
ହୋଇହି କୀନ୍ହ କବହୁଁ ଅଭିମାନା । ସୋ ଖୋଵୈ ଚହ କୃପାନିଧାନା ॥୪॥

---

ସତ୍ସଙ୍ଗ ବିହୁନେ ହରି କଥା ନାହିଁ ତା ବିନୁ ମୋହ ନ ହରେ ।
ମୋହ ନ ତୁଟିଲେ ଦୃଢ଼ ଅନୁରାଗ ନ ହୁଏ ରାମ ପଦ୍ମରେ ॥୬୧॥
ନ ମିଳନ୍ତି ରଘୁପତି ଅନୁରାଗ ବିନା । କୋଟି ଜ୍ଞାନ ଧ୍ୟାନ ଯୋଗ ଜପ କରି ଜନା ॥
ଉତ୍ତର ଦିଗରେ ରମ୍ୟ ଗିରିବର ନୀଳ । ତହିଁ ବାସ କରେ କାକ ଭୁଶୁଣ୍ଡି ସୁଶୀଳ ॥୧॥
ରାମଙ୍କ ଭକ୍ତି ମାର୍ଗରେ ପରମ ପ୍ରବୀଣ । ଜ୍ଞାନୀ ଗୁଣ ନିକେତନ ବହୁତ ପ୍ରାଚୀନ ॥
ରାମ କୀର୍ତ୍ତି କଥା ସେହି କହେ ନିରନ୍ତର । ସାଦରେ ଶୁଣନ୍ତି ଆସି ନାନା ପକ୍ଷିବର ॥୨॥
ତହିଁ ଯାଇ ଶୁଣ ହରି ଚରିତ ବିସ୍ତୃତ । ହୋଇବ ମୋହ ଜନିତ ଦୁଃଖ ନିରାକୃତ ॥
ମୁଁ ଯେବେ ତାହାଙ୍କୁ ସବୁ କହିଲି ବୁଝାଇ । ଚଳିଲା ମୋ ପଦେ ଶିର ହରଷେ ନୁଆଁଇ ॥୩॥
ସେହି କାରଣରୁ ଉମା, ମୁଁ ନ ବୁଝାଇଲି । ରଘୁପତି କୃପାବଳେ ମର୍ମ ମୁଁ ଜାଣିଲି ॥
କେବେ ଏହୁ କରିଥିବ ମନେ ଅଭିମାନ । ହରଣେ ଚାହାନ୍ତି ତାହା କରୁଣାନିଧାନ ॥୪॥

---

ଠାରେ ପ୍ରତିଦିନ ହରିକଥା ହୁଏ, ତୁମ୍ଭଙ୍କୁ ମୁଁ ସେହି ସ୍ଥାନକୁ ପଠାଉଛି । ତୁମେ ଯାଇ ତାହା ଶୁଣ । ତାହା ଶୁଣିବାମାତ୍ରେ ତୁମର ସମସ୍ତ ସନ୍ଦେହ ଦୂର ହୋଇଯିବ ଏବଂ ଶ୍ରୀରାମଙ୍କ ଚରଣ-କମଳରେ ତୁମର ପ୍ରଗାଢ ପ୍ରେମ ଜାତ ହେବ ॥୪॥ ଦୋହା :—ସତ୍ସଙ୍ଗ ବିନା ହରିକଥା ଶୁଣିବାକୁ ମିଳେ ନାହିଁ, ତାହା ବିନା ମୋହ ଦୂର ହୁଏ ନାହିଁ ଏବଂ ମୋହ ଦୂର ନ ହେଲେ ଶ୍ରୀରାମଙ୍କ ଚରଣରେ ଦୃଢ ବା ଅଟଳ ପ୍ରେମ ଜାତ ହୁଏ ନାହିଁ ॥ ୬୧ ॥ ଚୌପାଈ :—ପ୍ରେମ ବିନା କେବଳ ଯୋଗ, ତପ, ଜ୍ଞାନ ଓ ବୈରାଗ୍ୟାଦି କଲେ ଶ୍ରୀ ରଘୁନାଥ ମିଳନ୍ତି ନାହିଁ । ସୁତରାଂ ତୁମ ପକ୍ଷରେ ସତ୍ସଙ୍ଗ ସର୍ବପ୍ରଥମେ ଆବଶ୍ୟକ । ଉତ୍ତର ଦିଗରେ ଗୋଟିଏ ସୁନ୍ଦର ନୀଳ ପର୍ବତ ଅଛି । ସେହିଠାରେ ପରମ ସୁଶୀଳ କାକ ଭୁଶୁଣ୍ଡି ରହନ୍ତି ॥ ୧ ॥ ସେ ରାମଭକ୍ତି-ମାର୍ଗରେ ପରମ ପ୍ରବୀଣ, ଜ୍ଞାନୀ, ଗୁଣଧାମ ଏବଂ ବହୁ ପୁରୁଣା କାଳର । ସେ ନିରନ୍ତର ଶ୍ରୀରାମଚନ୍ଦ୍ରଙ୍କ କଥା କହୁଥା'ନ୍ତି । ତାହାଙ୍କୁ ବିବିଧ ଶ୍ରେଷ୍ଠ ପକ୍ଷୀ ଆଦରରେ ଶୁଣନ୍ତି ॥ ୨ ॥ ସେଠାକୁ ଯାଇ ଶ୍ରୀ ହରିଙ୍କ ଗୁଣାବଳୀ

କଛୁ ତେହି ତେଁ ପୁନି ମୈଂ ନହିଁ ରାଖା । ସମୁଝଇ ଖଗ ଖଗ ହୀ କୈ ଭାଷା ॥
ପ୍ରଭୁ ମାୟା ବଲବନ୍ତ ଭବାନୀ । ଜାହି ନ ମୋହ କଵ୍ନ ଅସ ଗ୍ୟାନୀ ॥୫॥
ଗ୍ୟାନୀ ଭଗତ ସିରୋମନି ତ୍ରିଭୁବନପତି କର ଜାନ ॥
ତାହି ମୋହ ମାୟା ନର ପାଵଁର କରହିଁ ଗୁମାନ ॥୭୧ (କ)॥

## ମାସପାରାୟଣ, ଅଷ୍ଟାବିଂଶ ବିଶ୍ରାମ

ସିବ ବିରଞ୍ଚି କହୁଁ ମୋହଇ କୋ ହୈ ବପୁରା ଆନ ।
ଅସ ଜିୟଁ ଜାନି ଭଜହିଁ ମୁନି ମାୟାପତି ଭଗବାନ ॥୭୧ (ଖ)॥
ଗୟଉ ଗରୁଡ଼ ଜହଁ ବସଇ ଭୁସୁଣ୍ଡା । ମତି ଅକୁଂଠ ହରି ଭଗତି ଅଖଣ୍ଡା ॥
ଦେଖି ସୈଲ ପ୍ରସନ୍ନ ମନ ଭୟଉ । ମାୟା ମୋହ ସୋଚ ସବ ଗୟଉ ॥୧॥

---

କିଛି ସେ କାରଣରୁ ମୁହିଁ ନ ରଖିଲି ତାଙ୍କୁ । ପକ୍ଷୀ ଜାଣିପାରେ ଅନ୍ୟ ପକ୍ଷୀର ଭାଷାକୁ ॥
ପ୍ରଭୁଙ୍କ ମାୟା ଭବାନି, ଅତି ବଳବନ୍ତ । ଯାହାକୁ ମୋହି ନ ପାରେ ଜ୍ଞାନୀ କେ ଏମନ୍ତ ॥୫॥
ବୈନତେୟ ଜ୍ଞାନୀ ଭକ୍ତ-ଶିରୋମଣି ତ୍ରିଭୁବନପତି ଯାନ ।
ତାହାଙ୍କୁ ପ୍ରବଳ ମାୟା ବିମୋହଇ ପାମର କରେ ଗୁମାନ ॥୭୧ (କ)॥
ଶିବ ବିରଞ୍ଚିଙ୍କୁ କରଇ ମୋହିତ କେ ଅଛି ବାପୁଡ଼ା ଆନ ।
ଏହା ମନେ ଜାଣି ସୁମରନ୍ତି ମୁନି ମାୟାପତି ଭଗବାନ ॥୭୧ (ଖ)॥
ଗମିଲା ଗରୁଡ଼ ଯହିଁ ଭୁଶୁଣ୍ଡି ଆସୀନ । ମତି ଅକୁଣ୍ଠ ଅଖଣ୍ଡ ହରି-ଭକ୍ତି-ଲୀନ ॥
ନିରେଖି ଶଇଳ ମନ ପ୍ରସନ୍ନ ହୋଇଲା । ମାୟା ମୋହ ଶୋକ ଭ୍ରମ ସକଳ ତୁଟିଲା ॥୧॥

---

ଶୁଣ । ସେ ସବୁ ଶୁଣିଲେ ମୋହ-ଜାତ ତୁମର ଦୁଃଖ ଦୂର ହୋଇଯିବ ।' ମୁଁ ଯେତେବେଳେ ତାହାଙ୍କୁ ସମସ୍ତ ବୁଝାଇ କହିଲି, ସେ ମୋ ଚରଣରେ ଶିର ନୁଆଁଇ ଆନନ୍ଦିତ ହୋଇ ଚାଲିଗଲେ ॥ ୩ ॥ ହେ ଉମା ! ଶ୍ରୀ ରଘୁନାଥଙ୍କ ଦୟାରୁ ତାହାର ମର୍ମ ମୁଁ ପାଇପାରିଥିଲି । ସେ କେବେ ଅଭିମାନ କରିଥିବେ ଏବଂ କୃପାନିଧାନ ଶ୍ରୀରାମ ତାହା ହରଣ କରିବାକୁ ଇଚ୍ଛା କରନ୍ତି । ଏହି ହେତୁ ମୁଁ ତାହାଙ୍କୁ ହରିଙ୍କ ଗୁଣାବଳୀ ବୁଝାଇଲି ନାହିଁ ॥ ୪ ॥ ପୁଣି ପକ୍ଷୀ ପକ୍ଷୀର ଭାଷାକୁ ବୁଝିପାରନ୍ତି । ଏହିପରି କେତେକ କାରଣରୁ ମୁଁ ତାହାଙ୍କୁ ମୋ ପାଖରେ ମଧ୍ୟ ରଖିଲି ନାହିଁ । ହେ ଭବାନି ! ପ୍ରଭୁଙ୍କ ମାୟା ଅତି ବଳବତୀ । ଏପରି ଜ୍ଞାନୀ କିଏ ଯାହାକୁ ତାହା ମୋହି ନ ନିଏ ? ॥୫॥ ଦୋହା :— ଯେ ଜ୍ଞାନୀ ଏବଂ ଭକ୍ତମାନଙ୍କ ମଧ୍ୟରେ ଶିରୋମଣି ଏବଂ ତ୍ରିଭୁବନପତି ଭଗବାନଙ୍କର ବାହନ, ସେହି ଗରୁଡ଼ଙ୍କୁ ମଧ୍ୟ ମାୟା-ମୋହ ଗ୍ରାସ କରିପକାଇଲା । ତେବେ ମୂର୍ଖ ନୀଚ ମନୁଷ୍ୟମାନେ ମୂର୍ଖତା-ବଶତଃ ଗର୍ବ କରନ୍ତି ॥ ୭୧ (କ) ॥ ଏହି ମାୟା ଶିବ ଏବଂ ବ୍ରହ୍ମାଙ୍କୁ ମଧ୍ୟ ମୋହି ପକାଏ । ତେବେ ଅନ୍ୟ କେଉଁ ବିଚରା ପ୍ରାଣୀର କି ସାମର୍ଥ୍ୟ ଅଛି ? ମନରେ ଏହିପରି ଜାଣି, ମୁନି ଲୋକମାନେ ସେହି ମାୟାପତି

କରି ତଡ଼ାଗ ମଜ୍ଜନ ଜଲପାନା । ବଟ ତର ଗୟଉ ହୃଦୟଁ ହରଷାନା ॥
ବୃଦ୍ଧ ବୃଦ୍ଧ ବିହଙ୍ଗ ତହଁ ଆଏ । ସୁନୈ ରାମ କେ ଚରିତ ସୁହାଏ ॥୨॥
କଥା ଆରଂଭ କରୈ ସୋଇ ଚାହା । ତେହି ସମୟ ଗୟଉ ଖଗନାହା ॥
ଆୱତ ଦେଖି ସକଲ ଖଗରାଜା । ହରଷେଉ ବାୟସ ସହିତ ସମାଜା ॥୩॥
ଅତି ଆଦର ଖଗପତି କର କୀହ୍ନା । ସ୍ୱାଗତ ପୂଛି ସୁଆସନ ଦୀହ୍ନା ॥
କରି ପୂଜା ସମେତ ଅନୁରାଗା । ମଧୁର ବଚନ ତବ ବୋଲେଉ କାଗା ॥୪॥
ନାଥ କୃତାରଥ ଭୟଉଁ ମୈଁ ତବ ଦରସନ ଖଗରାଜ ।
ଆୟସୁ ଦେହୁ ସୋ କରୌଁ ଅବ ପ୍ରଭୁ ଆୟହୁ କେହି କାଜ ॥୭୩ (କ)॥
ସଦା କୃତାରଥ ରୂପ ତୁମ୍ହ କହ ମୃଦୁ ବଚନ ଖଗେସ ।
ଜେହି କୈ ଅସ୍ତୁତି ସାଦର ନିଜ ମୁଖ କୀହ୍ନି ମହେସ ॥୭୩ (ଖ)॥

ତଡ଼ାଗେ ସ୍ନାନ କରିଣ ପାନ କରି ଜଳ । ହରଷ ହୃଦୟେ ଗଲ୍ ବଟ ତରୁ ତଳ ॥
ତହିଁ ଆସିଥିଲେ ବହୁ ବୃଦ୍ଧ ପକ୍ଷିବର । ଶୁଣିବା ନିମନ୍ତେ ରାମ ଚରିତ ସୁନ୍ଦର ॥୨॥
କଥା ଆରମ୍ଭ ବା ପାଇଁ କାକ ଯାଉଥିଲ୍ । ଏ ସମୟେ ଖଗପତି ଆସି ପ୍ରବେଶିଲ୍ ॥
ତହିଁ ଖଗପତିଙ୍କର ଦେଖି ଆଗମନ । ସକଳ ସମାଜ ସହ କାକ ପରସନ୍ନ ॥୩॥
ଅତ୍ୟନ୍ତ ଆଦର ପକ୍ଷିରାଜଙ୍କୁ କରିଲ୍ । ସ୍ୱାଗତ ପଚାରି ସୁଆସନ ପ୍ରଦାନିଲ୍ ॥
ପୂଜା କରି ଅତିଶୟ ଅନୁରାଗ ଭରେ । ଭାଷିଲ୍ କାକ ଆଦର ବଚନ ମଧୁରେ ॥୪॥
ହୋଇଲି କୃତାର୍ଥ ଆଜ ମୁହିଁ ନାଥ, ତୁମ୍ଭ ଦର୍ଶନେ, ଖଗେଶ ।
ଆଗମନ ହେତୁ ଏବେ ବଖାଣନ୍ତୁ ପାଳିବି ସେହି ଆଦେଶ ॥୭୩ (କ)॥
ତୁମ୍ଭେ କୃତାରଥ ସ୍ୱରୂପ ସତତ, ବୋଲେ ମୃଦୁ ବାଣୀ ତାର୍କ୍ଷ୍ୟ ।
ଯାହାଙ୍କର ସ୍ତୁତି ସାଦରେ କରନ୍ତି ନିଜ ମୁଖେ ବିରୂପାକ୍ଷ ॥୭୩ (ଖ)॥

ଭଗବାନଙ୍କୁ ମନରେ ଭଜନ କରନ୍ତି ।" ॥ ୭୨ (ଖ) ॥ ଚୌପାଇ .—ଯେଉଁଠାରେ ଅକୁଣ୍ଠ-ମତି ଏବଂ ଅଖଣ୍ଡ-ହରି-ଭକ୍ତି-ଜ୍ଞାନ କାକ ଭୁଷୁଣ୍ଡି ବାସ କରୁଥିଲେ, ଗରୁଡ଼ ସେହିଠାକୁ ଗଲେ । ସେହି ପର୍ବତକୁ ଦେଖି ତାଙ୍କର ମନ ପ୍ରସନ୍ନ ହୋଇଗଲା ଏବଂ ତାହାର ଦର୍ଶନ ମାତ୍ରେ ତାଙ୍କର ସମସ୍ତ ମାୟା, ମୋହ ଓ ଚିନ୍ତା ଅପସରି ଗଲା ॥ ୧ ॥ ସରୋବରରେ ସ୍ନାନ ଏବଂ ଜଳପାନ କରି ସେ ପ୍ରସନ୍ନ ଚିତ୍ତରେ ବଟବୃକ୍ଷ ତଳକୁ ଗଲେ । ଶ୍ରୀରାମଙ୍କ ସୁନ୍ଦର ଚରିତ ଶୁଣିବା ନିମନ୍ତେ ସେଠାକୁ ବୁଢ଼ା ବୁଢ଼ା ପକ୍ଷୀମାନେ ଆସିଥିଲେ ॥ ୨ ॥ ଭୁଷୁଣ୍ଡି କଥା ଆରମ୍ଭ କରିବାକୁ ଯାଉଛନ୍ତି, ଏହି ସମୟରେ ପକ୍ଷିରାଜ ଗରୁଡ଼ ସେଠାରେ ଆସି ପହଞ୍ଚିଲେ । ପକ୍ଷିରାଜ ଗରୁଡ଼ଙ୍କ ଆଗମନ ଦେଖି କାକ ଭୁଷୁଣ୍ଡିଙ୍କ ସମେତ ସମସ୍ତ ପକ୍ଷିସମାଜ ଆନନ୍ଦିତ ହେଲା ॥ ୩ ॥ ସେମାନେ ପକ୍ଷିରାଜ ଗରୁଡ଼ଙ୍କର ବହୁତ ଆଦର-ସତ୍କାର କଲେ ଏବଂ ସ୍ୱାଗତ-କୁଶଳାଦି ବାର୍ତ୍ତା ପଚାରି ବସିବା ନିମନ୍ତେ ତାଙ୍କୁ ସୁନ୍ଦର ଆସନ ଦେଲେ । ପୁଣି ପ୍ରେମ ସହକାରେ ଗରୁଡ଼ଙ୍କୁ ପୂଜା କରିବା ପରେ କାକ ଭୁଷୁଣ୍ଡି

ସୁନହୁ ତାତ ଜେହିଁ କାରଜ ଆୟଉଁ । ସୋ ସବ ଭୟଉ ଦରସ ତବ ପାୟଉଁ ॥
ଦେଖି ପରମ ପାବନ ତବ ଆଶ୍ରମ । ଗୟଉ ମୋହ ସଂସୟ ନାନା ଭ୍ରମ ॥୧॥
ଅବ ଶ୍ରୀରାମ କଥା ଅତି ପାବନି । ସଦା ସୁଖଦ ଦୁଖପୁଂଜ ନସାୱନି ॥
ସାଦର ତାତ ସୁନାୱହୁ ମୋହୀ । ବାର ବାର ବିନୱଉଁ ପ୍ରଭୁ ତୋହୀ ॥୨॥
ସୁନତ ଗରୁଡ଼ କୈ ଗିରା ବିନୀତା । ସରଲ ସୁପ୍ରେମ ସୁଖଦ ସୁପୁନୀତା ॥
ଭୟଉ ତାସୁ ମନ ପରମ ଉଛାହା । ଲାଗ କହୈ ରଘୁପତି ଗୁନ ଗାହା ॥୩॥
ପ୍ରଥମହି ଅତି ଅନୁରାଗ ଭବାନୀ । ରାମଚରିତ ସର କହେସି ବଖାନୀ ॥
ପୁନି ନାରଦ କର ମୋହ ଅପାରା । କହେସି ବହୁରି ରାବନ ଅବତାରା ॥୪॥
ପ୍ରଭୁ ଅବତାର କଥା ପୁନି ଗାଈ । ତବ ସିସୁଚରିତ କହେସି ମନ ଲାଈ ॥୫॥

---

ଶୁଣ ଭ୍ରାତ, ମୁହିଁ ଯେଉଁ କାରଣ ଆସିଲି । ସେ ସବୁ ହୋଇଲା ତୁମ୍ଭ ଦର୍ଶନ ପାଇଲି ॥
ବିଲୋକି ତବ ପରମ ପାବନ ଆଶ୍ରମ । ନଷ୍ଟ ହେଲା ମୋହ ନାନା ସଂଶୟ ଭରମ ॥୧॥
ଏବେ ଶ୍ରୀରାମଙ୍କ କଥା ପରମ ପାବନୀ । ସଦା ସୁଖ-ପ୍ରଦାୟିନୀ ଦୁଃଖ-ବିନାଶିନୀ ॥
ସାଦରେ ଶୁଣାଅ ତାତ, ଭୁଶୁଣ୍ଡି, ମୋହକୁ । ବାରମ୍ବାର ସବିନୟେ କହୁଛି ତୁମ୍ଭକୁ ॥୨॥
ଶୁଣନ୍ତେ ଖଗପତିର ବିନୀତ ବଚନ । ସରଳ ସପ୍ରେମ ସୁଖଦାୟୀ ସୁପାବନ ॥
ପରମ ଉତ୍ସାହ ତାର ମନେ ଉପୁଜିଲା । ରଘୁନାଥ ଗୁଣାବଳୀ ବର୍ଣ୍ଣିବେ ଲାଗିଲା ॥୩॥
ଅତି ଅନୁରାଗ ସହ ପ୍ରଥମେ, ଭବାନି । ଶ୍ରୀରାମ ଚରିତ ସର କହିଲା ବଖାଣି ॥
ପୁଣି ନାରଦଙ୍କ ଯେମନ୍ତେ ମୋହ ହେଲା ଜାତ । କହିଲା ରାବଣାଦିଙ୍କ ଜନମ ବୃତ୍ତାନ୍ତ ॥୪॥
ପ୍ରଭୁ ଅବତାର କଥା ପ୍ରସଙ୍ଗ ଭାଷିଲା । ପୁନଶ୍ଚ ଶିଶୁ ଚରିତ ବୁଝାଇ କହିଲା ॥୫॥

---

ମଧୁର ବଚନ ବୋଇଲେ—॥ ୪ ॥ ଦୋହା —"ହେ ନାଥ ! ହେ ପକ୍ଷିରାଜ ! ଆପଣଙ୍କ ଦର୍ଶନ ଯୋଗେ ମୁଁ କୃତାର୍ଥ ହୋଇଗଲି । ଆପଣ ଯାହା ଆଜ୍ଞା ଦେବେ, ମୁଁ ତାହାହିଁ କରିବି । ହେ ପ୍ରଭୋ ! ଆପଣ କେଉଁ କାର୍ଯ୍ୟ ନିମନ୍ତେ ଆସିଅଛନ୍ତି ?" ॥୬୩ (କ)॥ ପକ୍ଷିରାଜ ଗରୁଡ଼ କୋମଳ ବଚନ କହିଲେ- -"ଆପଣ ତ ସର୍ବଦା କୃତାର୍ଥ-ସ୍ୱରୂପ, ଯାହାଙ୍କର ବଡ଼ାଇ ସ୍ୱୟଂ ମହାଦେବ ଆଦରରେ ଆପଣା ଶ୍ରୀମୁଖରେ ବର୍ଣ୍ଣନା କରି ଅଛନ୍ତି ॥ ୬୩ (ଖ) ॥ ଚୌପାଈ —ହେ ତାତ ! ଶୁଣନ୍ତୁ, ମୁଁ ଯେଉଁ କାରଣ ନିମନ୍ତେ ଆସିଥିଲି, ସେ ସବୁ କାର୍ଯ୍ୟ ଏଠାକୁ ଆସିବା ମାତ୍ରେ ସମ୍ପୂର୍ଣ୍ଣ ହୋଇଗଲା । ପୁଣି ଆପଣଙ୍କ ଦର୍ଶନ ମିଳିଗଲା । ଆପଣଙ୍କ ପରମ ପବିତ୍ର ଆଶ୍ରମ ଦେଖି ମୋର ମୋହ, ସନ୍ଦେହ ଓ ନାନା ପ୍ରକାର ଭ୍ରମ ଦୂର ହୋଇଗଲା ॥ ୧ ॥ ବର୍ତ୍ତମାନ ହେ ତାତ ! ଆପଣ ମୋତେ ଶ୍ରୀରାମଙ୍କ ଅତି ପାବନୀ, ସଦା-ସୁଖ-ଦାୟିନୀ ଏବଂ ଦୁଃଖ-ସମୂହ-ନାଶ-କାରିଣୀ କଥା ଆଦରରେ ଶୁଣାନ୍ତୁ । ହେ ପ୍ରଭୋ ! ମୁଁ ବାରମ୍ବାର ଆପଣଙ୍କୁ ଏହି ପ୍ରାର୍ଥନା କରୁଅଛି" ॥ ୨ ॥ ଗରୁଡ଼ଙ୍କ ବିନମ୍ର, ସରଳ, ସୁନ୍ଦର, ପ୍ରେମଯୁକ୍ତ, ସୁଖପ୍ରଦ ଏବଂ ଅତି ପବିତ୍ର ବାଣୀ ଶୁଣିବା ମାତ୍ରେ ଭୁଶୁଣ୍ଡିଙ୍କ ମନରେ ପରମ ଉତ୍ସାହ ଜାତ ହେଲା

ବାଲଚରିତ କହି ବିବିଧ ବିଧି ମନ ମହଁ ପରମ ଉଛାହ ।
ରିଷି ଆଗୱନ କହେସି ପୁନି ଶ୍ରୀରଘୁବୀର ବିବାହ ॥୬୪॥
ବହୁରି ରାମ ଅଭିଷେକ ପ୍ରସଂଗା । ପୁନି ନୃପବଚନ ରାଜରସ ଭଂଗା ॥
ପୁରବାସିହ୍ନ କର ବିରହ ବିଷାଦା । କହେସି ରାମ ଲଛିମନ ସଂବାଦା ॥୧॥
ବିପିନ ଗୱନ କେୱଟ ଅନୁରାଗା । ସୁରସରି ଉତରି ନିବାସ ପ୍ରୟାଗା ॥
ବାଲମୀକ ପ୍ରଭୁ ମିଲନ ବଖାନା । ଚିତ୍ରକୂଟ ଜିମି ବସେ ଭଗବାନା ॥୨॥
ସଚିବାଗୱନ ନଗର ନୃପ ମରନା । ଭରତାଗୱନ ପ୍ରେମ ବହୁ ବରନା ॥
କରି ନୃପକ୍ରିୟା ସଂଗ ପୁରବାସୀ । ଭରତ ଗଏ ଜହଁ ପ୍ରଭୁ ସୁଖରାସୀ ॥୩॥

---

ବର୍ଣ୍ଣିଲେ ସେ ବାଲ ଚରିତ ବିପୁଳ ମନେ ପରମ ଉତ୍ସାହ ।
ଋଷି ଆଗମନ ବଖାଣିଲେ ପୁଣ ଶ୍ରୀ ରଘୁବୀର ବିବାହ ॥୬୪॥
ଏଥୁ ଅନ୍ତେ ରାମ ଅଭିଷେକର ପ୍ରସଙ୍ଗ । ନୃପଙ୍କ ବଚନ-ବଳ, ରାଜ୍ୟ-ରସ-ଭଙ୍ଗ ॥
ନଗର-ନିବାସୀଙ୍କର ବିରହ ବିଷାଦ । କହିଲେ ବଖାଣି ରାମ-ଲକ୍ଷ୍ମଣ-ସମ୍ବାଦ ॥୧॥
ବିପିନ ଯାତ୍ରା କୈବର୍ତ୍ତରାଜ ଅନୁରାଗ । ସୁରନଦୀ ପାରି ପରେ ନିବାସ ପ୍ରୟାଗ ॥
ବାଲ୍ମୀକି ପ୍ରଭୁ ମିଳନ କରିଲେ ବର୍ଣ୍ଣନ । ଚିତ୍ରକୂଟେ ଭଗବାନ ରହିଲେ ଯେସନ ॥୨॥
ସଚିବାଗମନ ପୁରେ ମୃତ୍ୟୁ ନୃପତିଙ୍କ । ଭରତାଗମନ ପ୍ରୀତି ଭରିଲା ଅଧିକ ॥
ନୃପ କ୍ରିୟା କରି ସଙ୍ଗେ ଘେନି ପୁରବାସୀ । ଭରତ ଚଳିଲେ ଯହିଁ ପ୍ରଭୁ ସୁଖରାଶି ॥୩॥

---

ଏବଂ ସେ ଶ୍ରୀରଘୁନାଥଙ୍କ ଗୁଣ-ଗାଥା କହିବାକୁ ଲାଗିଲେ ॥୩॥ ହେ ଭବାନି ! ପ୍ରଥମେ ତ କାକ ଭୁଶୁଣ୍ଡି ଅତି ପ୍ରେମରେ ରାମଚରିତ-ମାନସ-ସରୋବରର ରୂପକ ବୁଝାଇ କହିଲେ । ପୁଣି ନାରଦଙ୍କ ଅପାର ମୋହ ଓ ତଦନନ୍ତର ରାବଣର ଜନ୍ମ ଆଦି ବିଷୟ କହିଲେ ॥ ୪ ॥ ତତ୍ପରେ ପ୍ରଭୁଙ୍କ ଅବତାର କଥା ବର୍ଣ୍ଣନା କଲେ । ତତ୍ପରେ ମନ ଲଗାଇ ଶ୍ରୀରାମଙ୍କ ବାଲଲୀଳା ପ୍ରସଙ୍ଗ କହିଲେ ॥ ୫ ॥ ଦୋହା :—ମନରେ ପରମ ଉତ୍ସାହର ସହିତ ସେ ପ୍ରଭୁଙ୍କ ବହୁବିଧ ବାଲଲୀଳା ବର୍ଣ୍ଣନା କଲେ । ତତ୍ପରେ ଋଷି ବିଶ୍ୱାମିତ୍ରଙ୍କ ଅଯୋଧ୍ୟା-ଆଗମନ ଏବଂ ଶ୍ରୀ ରଘୁବୀରଙ୍କ ବିବାହ ପ୍ରସଙ୍ଗ ବର୍ଣ୍ଣନା କଲେ ॥୬୪॥ ଚୌପାଇ :—ତଦନନ୍ତର ଶ୍ରୀରାମଙ୍କ ରାଜ୍ୟାଭିଷେକ ପ୍ରସଙ୍ଗ, ରାଜା ଦଶରଥଙ୍କ ବଚନ ଯୋଗୁଁ ରାଜରସ-ଭଙ୍ଗ, ନଗରବାସି-ବୃନ୍ଦଙ୍କ ବିରହ ଓ ବିଷାଦ ଏବଂ ଶ୍ରୀରାମ-ଲକ୍ଷ୍ମଣଙ୍କ ସମ୍ବାଦ ବିଷୟ କହିଲେ ॥୧॥ ଶ୍ରୀରାମଙ୍କ ବନଗମନ, କେଉଟର ପ୍ରେମ, ଗଙ୍ଗାପାରି ପରେ ପ୍ରୟାଗରେ ନିବାସ, ବାଲ୍ମୀକି ଓ ପ୍ରଭୁ ଶ୍ରୀରାମଙ୍କ ମିଳନ କଥା କହିଲେ ଏବଂ ଯେପରି ଭାବରେ ଭଗବାନ୍ ଚିତ୍ରକୂଟରେ ଯାଇ ବାସ କଲେ ଉକ୍ତ ପ୍ରସଙ୍ଗ ବି କହିଲେ ॥୨॥ ତଦନନ୍ତର ମନ୍ତ୍ରୀ ସୁମନ୍ତ୍ରଙ୍କର ନଗର-ପ୍ରତ୍ୟାବର୍ତ୍ତନ, ରାଜା ଦଶରଥଙ୍କ ମରଣ, ଭରତଙ୍କର ମାମୁଁ ଘରୁ ଅଯୋଧ୍ୟା-ପ୍ରତ୍ୟାବର୍ତ୍ତନ ଏବଂ ତାଙ୍କ ପ୍ରେମର ବହୁ ବର୍ଣ୍ଣନା କଲେ । ରାଜାଙ୍କ ଅନ୍ତ୍ୟେଷ୍ଟି-କ୍ରିୟା ସମ୍ପାଦନ ପରେ ନଗରବାସୀମାନଙ୍କ ସହିତ ଭରତ ସୁଖରାଶି ପ୍ରଭୁ ଶ୍ରୀରାମ ଥିବା

ପୁନି ରଘୁପତି ବହୁ ବିଧି ସମୁଝାଏ । ଲୈ ପାଦୁକା ଅଉଧପୁର ଆଏ ॥
ଭରତ ରହନି ସୁରପତିସୁତ କରନୀ । ପ୍ରଭୁ ଅରୁ ଅତ୍ରି ଭେଁଟୀ ପୁନି ବରନୀ ॥୪॥

କହି ବିରାଧବଧ ଜେହି ବିଧି ଦେହ ତଜୀ ସରଭଙ୍ଗ ।
ବରନି ସୁତୀଛନ ପ୍ରୀତି ପୁନି ପ୍ରଭୁ ଅଗସ୍ତି ସତସଙ୍ଗ ॥୬୪॥

କହି ଦଣ୍ଡକ ବନ ପାବନତାଈ । ଗୀଧ ମଇତ୍ରୀ ପୁନି ତେହି ଗାଈ ॥
ପୁନି ପ୍ରଭୁ ପଞ୍ଚବଟୀ କୃତ ବାସା । ଭଂଜୀ ସକଲ ମୁନିହ୍ନ କୀ ତ୍ରାସା ॥୧॥
ପୁନି ଲଛିମନ ଉପଦେସ ଅନୂପା । ସୂପନଖା ଜିମି କୀହ୍ନି କୁରୂପା ॥
ଖର ଦୂଷନ ବଧ ବହୁରି ବଖାନା । ଜିମି ସବୁ ମରମୁ ଦସାନନ ଜାନା ॥୨॥
ଦସକଂଧର ମାରୀଚ ବତକହୀ । ଜେହି ବିଧି ଭଈ ସୋ ସବ ତେହିଁ କହୀ ॥
ପୁନି ମାୟାସୀତା କର ହରନା । ଶ୍ରୀରଘୁବୀର ବିରହ କଛୁ ବରନା ॥୩॥

---

ପୁଣି ରଘୁପତି ନାନା ମତେ ବୁଝାଇଲେ । ପାଦୁକା ଘେନି ଅଯୋଧ୍ୟା ବାହୁଡ଼ି ଆସିଲେ ॥
ଭରତ ସ୍ଥିତି ଜୟନ୍ତ କୁକର୍ମ କହିଲା । ପ୍ରଭୁ ଅତ୍ରି ମୁନିଙ୍କର ଭେଟ ସେ ବର୍ଣ୍ଣିଲା ॥୪॥

କହିଲା ବିରାଧ-ବଧ, ତନୁ ତ୍ୟାଗ କଲେ ଯେସନ୍ତେ ଶରଭଙ୍ଗ ।
ଭଣିଲା ସୁତୀକ୍ଷ୍ଣ ପ୍ରେମ ଅତି ପୁଣ ପ୍ରଭୁ ଅଗସ୍ତି ସତ୍ସଙ୍ଗ ॥୬୪॥

ଦଣ୍ଡକ ବନ ପବିତ୍ରୀକରଣ କହିଲା । ଗୃଧ୍ର ସଙ୍ଗତରେ ମୈତ୍ରୀ ପୁଣି ବଖାଣିଲା ॥
ପଞ୍ଚବଟୀରେ ଆବର ପ୍ରଭୁ କଲେ ବାସ । ଭଞ୍ଜିଲେ ସକଳ ମୁନି ଜନଙ୍କର ତ୍ରାସ ॥୧॥
ଲକ୍ଷ୍ମଣଙ୍କୁ ଉପଦେଶ ଦେଲେ ଯେ ଅନୂପ । ଶୂର୍ପଣଖାକୁ ଯେ ଭାବେ କଲେ କୁରୂପ ॥
ଖର ଦୂଷଣାଦି ବଧ ପୁଣି ସେ ବର୍ଣ୍ଣିଲା । ଯେସନ୍ତେ ଦଶାନନ ସବୁ ବୃତ୍ତାନ୍ତ ଜାଣିଲା ॥୨॥
ଦଶଶିର ମାରୀଚଙ୍କ ବାର୍ତ୍ତାଳାପ କଥା । ଯେମନ୍ତେ ହେଲା, ବର୍ଣ୍ଣିଲା ସେ ସବୁ ବ୍ୟବସ୍ଥା ॥
ପୁଣି ମାୟା ସୀତାଙ୍କର ହରଣ କହିଲା । ଶ୍ରୀ ରଘୁବୀର ବିରହ କିଛି ବଖାଣିଲା ॥୩॥

---

ସ୍ଥାନକୁ ଅର୍ଥାତ୍ ଚିତ୍ରକୂଟକୁ ଗଲେ ॥ ୩ ॥ ପ୍ରଭୁ ଶ୍ରୀ ରଘୁନାଥ ତାହାଙ୍କୁ କିପରି ବହୁ ପ୍ରକାରେ ବୁଝାଇଲେ, ଫଳରେ ସେ ପାଦୁକା ନେଇ କିପରି ଅଯୋଧ୍ୟାପୁରୀ ଫେରି ଆସିଲେ, ଆଦି ସମସ୍ତ କଥା କହିଲେ । ଭରତଙ୍କ ନନ୍ଦିଗ୍ରାମରେ ନିବାସର ରୀତିନୀତି, ଇନ୍ଦ୍ରପୁତ୍ର ଜୟନ୍ତର ନୀଚ କାର୍ଯ୍ୟ ଏବଂ ପ୍ରଭୁ ଶ୍ରୀରାମ ଓ ଅତ୍ରିଙ୍କର ମିଳନ ପ୍ରସଙ୍ଗ ବର୍ଣ୍ଣନା କଲେ ॥ ୪ ॥ ଦୋହା —ଯେଉଁ ରୂପେ ବିରାଧ ରାକ୍ଷସର ବଧ ହେଲା ଏବଂ ଶରଭଙ୍ଗ ଶରୀର ତ୍ୟାଗ କଲେ, ସେହି ପ୍ରସଙ୍ଗ କହିଲେ ଏବଂ ପୁଣି ସୁତୀକ୍ଷ୍ଣ ମୁନିଙ୍କ ପ୍ରେମ ବର୍ଣ୍ଣନା କରି ପ୍ରଭୁ ଓ ଅଗସ୍ତ୍ୟଙ୍କ ସତ୍ସଙ୍ଗ ବୃତ୍ତାନ୍ତ କହିଲେ ॥ ୬୪ ॥ ଚୌପାଈ —ଦଣ୍ଡକାରଣ୍ୟକୁ ପବିତ୍ର କରିବା ବିଷୟ କହି ସାରିବା ପରେ ପୁଣି ଭୁଶୁଣ୍ଡି ଗୃଧ୍ରରାଜଙ୍କ ସହିତ ପ୍ରଭୁଙ୍କ ମିତ୍ରତା ପ୍ରସଙ୍ଗ ବର୍ଣ୍ଣନା କଲେ । ତତ୍ପରେ ପ୍ରଭୁ ଯେପରି ଭାବରେ ପଞ୍ଚବଟୀରେ ବାସ କଲେ ଏବଂ ସମସ୍ତ ମୁନିଙ୍କ ଭୟ ନାଶ କଲେ, ଉକ୍ତ ପ୍ରସଙ୍ଗମାନ ମଧ୍ୟ କହିଲେ ॥ ୧ ॥ ତଦନନ୍ତର ପ୍ରଭୁଙ୍କର ଲକ୍ଷ୍ମଣଙ୍କୁ ଅନୁପମ ଉପଦେଶ-ଦାନ ଏବଂ

ପୁନି ପ୍ରଭୁ ଗୀଧ କ୍ରିୟା ଜିମି କୀହ୍ନୀ । ବଧି କବଂଧ ସବରିହି ଗତି ଦୀହ୍ନୀ ॥
ବହୁରି ବିରହ ବରନତ ରଘୁବୀରା । ଜେହି ବିଧି ଗଏ ସରୋବର ତୀରା ॥୪॥

ପ୍ରଭୁ ନାରଦ ସଂବାଦ କହି ମାରୁତି ମିଲନ ପ୍ରସଂଗ ।
ପୁନି ସୁଗ୍ରୀବ ମିତାଈ ବାଲି ପ୍ରାନ କର ଭଂଗ ॥୬୬ (କ)॥
କପିହି ତିଲକ କରି ପ୍ରଭୁ କୃତ ସୈଲ ପ୍ରବରଷନ ବାସ ।
ବରନନ ବର୍ଷା ସରଦ ଅରୁ ରାମ ରୋଷ କପି ତ୍ରାସ ॥୬୬ (ଖ)॥

ଜେହି ବିଧି କପିପତି କୀସ ପଠାଏ । ସୀତା ଖୋଜ ସକଲ ଦିସି ଧାଏ ॥
ବିବର ପ୍ରବେସ କୀହ୍ନ ଜେହି ଭାଁତୀ । କପିହ୍ନ ବହୋରି ମିଲା ସଂପାତୀ ॥୧॥

---

ଗୃଧ୍ର କ୍ରିୟା କଲେ ଯେମନ୍ତେ ପ୍ରଭୁ ରଘୁପତି । ବଧି କବନ୍ଧକୁ ଦେଲେ ଶବରୀକି ଗତି ॥
ବିରହ ବର୍ଣ୍ଣନ କରି ପ୍ରଭୁ ରଘୁବୀର । ଯେଉଁ ଭାବେ ଗଲେ ପମ୍ପା ସରୋବର ତୀର ॥୪॥

ପ୍ରଭୁ ନାରଦଙ୍କ ସମ୍ବାଦ ବଖାଣି ମାରୁତି ଭେଟ ପ୍ରସଙ୍ଗ ।
ସୁଗ୍ରୀବ ସଙ୍ଗରେ ମିତ୍ରତା ଆବର ବାଲିର ଜୀବନ ଭଙ୍ଗ ॥୬୬ (କ)॥
ସୁଗ୍ରୀବଙ୍କୁ ରାଜା କରି ପ୍ରଭୁ କଲେ ପ୍ରବର୍ଷଣ ଶୈଳେ ବାସ ।
ବରଷା ଶରତ ଋତୁର ବର୍ଣ୍ଣନ, ରାମ ରୋଷ କପି ତ୍ରାସ ॥୬୬ (ଖ)॥

ପଠାଇଲେ କପିପତି କପିଙ୍କୁ ଯେସନେ । ସକଳ ଦିଗେ ଧାଇଁଲେ ସୀତା ଅନ୍ୱେଷଣେ ॥
ଯେଭାବେ ପ୍ରବେଶ କଲେ ଯାଇଣ ବିବରେ । କପିଙ୍କ ଭେଟ ହୋଇଲା ସମ୍ପାତି ସଙ୍ଗରେ ॥୧॥

---

ଲକ୍ଷ୍ମଣଙ୍କ ଦ୍ୱାରା ଶୂର୍ପଣଖାକୁ କୁରୂପ କରିବା ଆଦି ସମସ୍ତ ବିଷୟ ବର୍ଣ୍ଣନା କଲେ । ତଦନନ୍ତର ଖର-ଦୂଷଣ-ବଧ ଏବଂ ଯେପରି ଭାବରେ ରାବଣ ସମସ୍ତ ସମାଚାର ଜାଣିଲା, ଆଦି ସମସ୍ତ ପ୍ରସଙ୍ଗ ବଖାଣି କହିଲେ ॥ ୨ ॥ ରାବଣ ଓ ମାରୀଚର ଯେପରି ଭାବରେ କଥାବାର୍ତ୍ତା ହୋଇଥିଲା, ତାହା ମଧ୍ୟ କହିଲେ । ତଦନନ୍ତର ମାୟା ସୀତା ହରଣ ଏବଂ ଶ୍ରୀ ରଘୁବୀରଙ୍କ ବିରହ ପ୍ରସଙ୍ଗ ବର୍ଣ୍ଣନା କଲେ ॥ ୩ ॥ ତଦନନ୍ତର ପ୍ରଭୁ ଗୃଧ ଜଟାୟୁଙ୍କର ଯେପରି କ୍ରିୟା କଲେ, କବନ୍ଧକୁ ବଧ କରି ଯେପରି ଭାବରେ ଶବରୀକୁ ପରମ ଗତି ଦେଲେ ଏବଂ ପୁଣି ଯେପରି ଭାବରେ ବିରହ ବର୍ଣ୍ଣନା କରି କରି ଶ୍ରୀ ରଘୁବୀର ପମ୍ପା ସରୋବରକୁ ଗଲେ, ତାହା ସବୁ ମଧ୍ୟ କହିଲେ ॥ ୪ ॥ ଦୋହା :—ପ୍ରଭୁ ଓ ନାରଦଙ୍କ ସମ୍ବାଦ ଏବଂ ମାରୁତିଙ୍କ ମିଳନ ପ୍ରସଙ୍ଗ କହିଲେ । ପୁଣି ପ୍ରଭୁଙ୍କର ସୁଗ୍ରୀବଙ୍କ ସହିତ ମିତ୍ରତା ଏବଂ ବାଲିର ପ୍ରାଣନାଶ ପ୍ରସଙ୍ଗ ମଧ୍ୟ ବର୍ଣ୍ଣନା କଲେ ॥ ୬୬ (କ) ॥ ସୁଗ୍ରୀବଙ୍କର ରାଜ୍ୟାଭିଷେକ କରି ପ୍ରଭୁଙ୍କର ପ୍ରବର୍ଷଣ ପର୍ବତ ଉପରେ ନିବାସ ତଥା ବର୍ଷା ଓ ଶରତ ଋତୁର ବର୍ଣ୍ଣନ ଏବଂ ଶ୍ରୀରାମଙ୍କର ସୁଗ୍ରୀବଙ୍କ ଉପରେ କୋପ ଓ ସୁଗ୍ରୀବଙ୍କ ଭୟ ଆଦି ବିବିଧ ପ୍ରସଙ୍ଗ କହିଲେ ॥ ୬୬ (ଖ) ॥ ଚୌପାଇ —ଯେଉଁ ରୂପେ ବାନରରାଜ ସୁଗ୍ରୀବ ବାନରମାନଙ୍କୁ ପ୍ରେରଣ କଲେ ଏବଂ ସେମାନେ ସୀତାଙ୍କ ଅନୁସନ୍ଧାନରେ ଯେଉଁ ରୂପେ ସମସ୍ତ ଦିଗକୁ ଗଲେ, ଯେଉଁପରି ଭାବରେ ସେମାନେ ବିଳରେ ପ୍ରବେଶ କଲେ ଏବଂ

ସୁନି ସବ କଥା ସମୀରକୁମାରା । ନାଘତ ଭୟଉ ପୟୋଧି ଅପାରା ॥
ଲଂକାଁ କପି ପ୍ରବେସ ଜିମି କୀନ୍ହା । ପୁନି ସୀତହି ଧୀରଜୁ ଜିମି ଦୀନ୍ହା ॥୨॥
ବନ ଉଜାରି ରାବନହି ପ୍ରବୋଧୀ । ପୁର ଦହି ନାଘେଉ ବହୁରି ପୟୋଧୀ ॥
ଆଏ କପି ସବ ଜହଁ ରଘୁରାଈ । ବୈଦେହୀ କୀ କୁସଲ ସୁନାଈ ॥୩॥
ସେନ ସମେତ ଜଥା ରଘୁବୀରା । ଉତରେ ଜାଇ ବାରିନିଧି ତୀରା ॥
ମିଲା ବିଭୀଷନ ଜେହି ବିଧି ଆଈ । ସାଗର ନିଗ୍ରହ କଥା ସୁନାଈ ॥୪॥

ସେତୁ ବାଁଧି କପିସେନ ଜିମି ଉତରୀ ସାଗର ପାର ।
ଗୟଉ ବସୀଠୀ ବୀରବର ଜେହି ବିଧି ବାଲିକୁମାର ॥୬୭ (କ)॥
ନିସିଚର କୀସ ଲରାଈ ବରନିସି ବିବିଧ ପ୍ରକାର ।
କୁମ୍ଭକରନ ଘନନାଦ କର ବଲ ପୌରୁଷ ସଂଘାର ॥୬୭ (ଖ)॥

---

ସମସ୍ତ ପ୍ରସଙ୍ଗ ଶୁଣି ସମୀରକୁମାର । ହେଲେ ଲଂଘି ପାର ହେଲା ଜଳଧି ଅପାର ॥
ଲଙ୍କାପୁରେ ପ୍ରବେଶିଲ ଯେମନ୍ତେ ହନୁମନ୍ତ । ପୁଣି ଜାନକୀଙ୍କୁ ଧୈର୍ଯ୍ୟ ଦେଲ ସେ ଯେମନ୍ତ ॥୨॥
ବିପିନ ଉଜାଡି ଦଶଶିରଙ୍କୁ ପ୍ରବୋଧି । ପୁର ଦହି ଯେଉଁ ଭାବେ ଲଂଘିଲ ପୟୋଧି ॥
ଆସି ରଘୁପତି ପାଶେ ମର୍କଟ ସକଳ । ଶୁଣାଇଲେ ବୈଦେହୀଙ୍କ ସମସ୍ତ କୁଶଳ ॥୩॥
ଯେମନ୍ତେ ରଘୁବୀର ସେନା କପିଙ୍କ ସଙ୍ଗରେ । ପହଞ୍ଚିଲେ ଯାଇ ଶୀଘ୍ର ସାଗର ତଟରେ ॥
ଯେଉଁ ଭାବେ ବିଭୀଷଣ ଆସିଣ ମିଳିଲ । ସାଗର ବନ୍ଧନ କଥା ପୁଣି ଶୁଣାଇଲ ॥୪॥

ସେତୁ ବାନ୍ଧି ଯେମନ୍ତେ ଋକ୍ଷ କପି ସେନା ପାର ହେଲେ ପାରାବାର ।
ଦୂତ ରୂପ ଧରି ଚଳିଲ ଯେସନେ ବୀରେଶ ବାଳିକୁମାର ॥୬୭ (କ)॥
ନିଶାଚର କପି-ନିକରଙ୍କ ଯୁଦ୍ଧ ବର୍ଣ୍ଣିଲ ବହୁ ପ୍ରକାର ॥
କୁମ୍ଭକର୍ଣ୍ଣ ତଥା ଜଳଦନାଦର ବଳ, ପୌରୁଷ, ସଂହାର ॥୬୭ (ଖ)॥

---

ପୁଣି ଯେଉଁପରି ଭାବରେ ସମ୍ପାତି ବାନରମାନଙ୍କ ସହିତ ମିଳିଲେ, ସେ ସବୁ କଥା କହିଲେ ॥ ୧ ॥ ସମ୍ପାତିଙ୍କଠାରୁ ସମସ୍ତ କଥା ଶୁଣି ପବନପୁତ୍ର ହନୁମାନ୍ ଯେଉଁପରି ଭାବରେ ଅପାର ସମୁଦ୍ରକୁ ଲଙ୍ଘନ କରି ଗଲେ, ହନୁମାନ୍ ଯେପରି ଭାବରେ ଲଙ୍କାରେ ପ୍ରବେଶ କଲେ ଏବଂ ପୁଣି ଯେପରି ସୀତାଙ୍କୁ ଧୈର୍ଯ୍ୟ ଦେଲେ, ସେହି ପ୍ରସଙ୍ଗ ସବୁ କହିଲେ ॥ ୨ ॥ ଅଶୋକ ବନ ଉଜାଡି, ରାବଣକୁ ବୁଝାଇ, ଲଙ୍କାପୁରୀ ଜଳାଇ ହନୁମାନ୍ ଯେପରି ସମୁଦ୍ରକୁ ପୁଣି ଲଙ୍ଘି ଫେରିଲେ, ରଘୁନାଥ ଥିବା ସ୍ଥାନକୁ ସମସ୍ତ ବାନର ଯେପରି ଆସିଲେ ଏବଂ ଆସିବା ପରେ ହନୁମାନ୍ ଯେପରି ଭାବରେ ଜାନକୀଙ୍କର କୁଶଳ ବାର୍ତ୍ତା ଶୁଣାଇଲେ, ଆଦି ସମସ୍ତ ପ୍ରସଙ୍ଗ ଭୁଶୁଣ୍ଡି କହିଲେ ॥ ୩ ॥ ତଦନନ୍ତର ଯେଉଁପରି ଭାବରେ ଶ୍ରୀ ରଘୁବୀର ସେନାଙ୍କ ସହିତ ଯାଇ ସମୁଦ୍ର କୂଳରେ ଉତୁରିଲେ ଏବଂ ଯେଉଁପରି ଭାବରେ ବିଭୀଷଣ ଆସି ତାହାଙ୍କ ସହିତ ମିଳନ କଲେ, ସେହି ସବୁ ପ୍ରସଙ୍ଗ ଓ ସମୁଦ୍ର-ବନ୍ଧ ବାନ୍ଧିବା ପ୍ରସଙ୍ଗ ସେ କହି ଶୁଣାଇଲେ ॥ ୪ ॥ ଦୋହା ।—

ନିସିଚରନିକର ମରନ ବିଧି ନାନା । ରଘୁପତି ରାବନ ସମର ବଖାନା ॥
ରାବନ ବଧ ମଂଦୋଦରି ସୋକା । ରାଜ ବିଭୀଷନ ଦେବ ଅସୋକା ॥୧॥
ସୀତା ରଘୁପତି ମିଲନ ବହୋରୀ । ସୁରନ୍ହ କୀନ୍ହି ଅସ୍ତୁତି କର ଜୋରୀ ॥
ପୁନି ପୁଷ୍ପକ ଚଢ଼ି କପିନ୍ହ ସମେତା । ଅବଧ ଚଲେ ପ୍ରଭୁ କୃପାନିକେତା ॥୨॥
ଜେହି ବିଧି ରାମ ନଗର ନିଜ ଆଏ । ବାୟସ ବିସଦ ଚରିତ ସବ ଗାଏ ॥
କହେସି ବହୋରି ରାମ ଅଭିଷେକା । ପୁର ବରନତ ନୃପନୀତି ଅନେକା ॥୩॥
କଥା ସମସ୍ତ ଭୁସୁଣ୍ଡି ବଖାନୀ । ଜୋ ମୈଁ ତୁମ୍ହ ସନ କହୀ ଭବାନୀ ॥
ସୁନି ସବ ରାମକଥା ଖଗନାହା । କହତ ବଚନ ମନ ପରମ ଉଛାହା ॥୪॥

---

ବିବିଧ ପ୍ରକାରେ ନିଶାଚରଙ୍କ ମରଣ । ବଖାଣିଲା ରଘୁପତି ରାବଣଙ୍କ ରଣ ॥
ରାବଣ ନିଧନ କଥା ମନ୍ଦୋଦରୀ ଶୋକ । ବିଭୀଷଣ ରାଜ୍ୟ ପ୍ରାପ୍ତି ଦେବଙ୍କ ନିଃଶୋକ ॥୧॥
ସୀତା ରଘୁନନ୍ଦନଙ୍କ ମିଳନ ଆବର । ବିବୁଧେ ଯେମନ୍ତେ ସ୍ତୁତି କଲେ ଯୋଡ଼ି କର ॥
ପୁଷ୍ପକେ ଆରୋହି ପୁଣି ଜାନକୀ ସଙ୍ଗରେ । ଫେରିଲେ କରୁଣାନିଧି ଅଯୋଧ୍ୟା ନଗରେ ॥୨॥
ଆପଣା ପୁରୀକୁ ରାମ ଆସିଲେ ଯେମନ୍ତ । ଉଜ୍ଜ୍ୱଳ ଚରିତ କାକ ବର୍ଣ୍ଣିଲା ସମସ୍ତ ॥
କହିଲା ଆବର ରାମ ରାଜ୍ୟ ଅଭିଷେକ । ନଗର ବର୍ଣ୍ଣନ ନୃପ-ନୀତି ଯେ ଅନେକ ॥୩॥
ସମସ୍ତ କଥା ଭୁଷୁଣ୍ଡି କହିଲା ବଖାଣି । ଯାହା ମୁଁ ତୁମ୍ଭ ଆଗରେ କହିଲି, ଭବାନି ॥
ଶୁଣି ଶୁଭ ରଘୁପତି କଥା, ବିହଗେଶ । ବୋଲଇ ବଚନ ମନେ ଉତ୍ସାହ ବିଶେଷ ॥୪॥

---

ସେତୁ ବାନ୍ଧି ଯେଉଁପରି ଭାବରେ ବାନର ସେନା ସମୁଦ୍ର ଏ ପାରିରେ ଉତୁରିଲେ ଏବଂ ଯେଉଁପରି ଭାବରେ ବୀରବର ବାଳିପୁତ୍ର ଅଙ୍ଗଦ ଦୂତ ରୂପେ ଗଲେ, ସେ ସବୁ କହିଲେ ॥ ୬୭ (କ) ॥ ତଦନନ୍ତର ଅନେକ ପ୍ରକାରରେ ରାକ୍ଷସ ଓ ବାନର-ଗଣଙ୍କ ଯୁଦ୍ଧର ବର୍ଣ୍ଣନା କଲେ । ତଦନନ୍ତର କୁମ୍ଭକର୍ଣ୍ଣ ଓ ମେଘନାଦର ବଳ, ପୁରୁଷାର୍ଥ ଓ ସଂହାର କଥା କହିଲେ ॥ ୬୭ (ଖ) ॥ ଚୌପାଇ —ସେହି କାକ ରାକ୍ଷସବୃନ୍ଦଙ୍କ ନାନା ପ୍ରକାର ମରଣ ଏବଂ ଶ୍ରୀରଘୁନାଥଙ୍କ ଓ ରାବଣଙ୍କ ଅନେକ ପ୍ରକାର ଯୁଦ୍ଧର ବର୍ଣ୍ଣନା କଲେ । ରାବଣ-ବଧ, ମନ୍ଦୋଦରୀର ଶୋକ, ବିଭୀଷଣଙ୍କ ରାଜ୍ୟାଭିଷେକ ଓ ଦେବତାମାନଙ୍କ ଶୋକରୁ ମୁକ୍ତ ହେବା ପ୍ରସଙ୍ଗ କହିଲେ ॥ ୧ ॥ ଶେଷରେ ସୀତା ଓ ରଘୁନାଥଙ୍କ ମିଳନ ପ୍ରସଙ୍ଗ କହିଲେ । ଯେଉଁପରି ଭାବରେ ଦେବତାମାନେ ହାତ ଯୋଡ଼ି ସ୍ତୁତି କଲେ ଏବଂ ଯେଉଁପରି ଭାବରେ ବାନରମାନଙ୍କ ସମେତ ପୁଷ୍ପକ ବିମାନରେ ଚଢ଼ି କୃପାଧାମ ପ୍ରଭୁ ଅଯୋଧ୍ୟାପୁରୀକୁ ଫେରିଲେ, ତାହା ମଧ୍ୟ କହିଲେ ॥୨॥ ଯେଉଁପରି ଭାବରେ ଶ୍ରୀରାମଚନ୍ଦ୍ର ଅଯୋଧ୍ୟାକୁ ଆସିଲେ, ସେ ସମସ୍ତ ବିଶଦ ଚରିତ କାକ ଭୁଷୁଣ୍ଡି ବିସ୍ତାର ସହିତ ବର୍ଣ୍ଣନା କଲେ । ପୁଣି ସେ ଶ୍ରୀରାମଙ୍କ ରାଜ୍ୟାଭିଷେକ ପ୍ରସଙ୍ଗ କହିଲେ । (ଶିବ କହନ୍ତି) "ତଦନନ୍ତର କାକ ଭୁଷୁଣ୍ଡି ଅଯୋଧ୍ୟାପୁରୀ ଏବଂ ଅନେକ ପ୍ରକାର ରାଜନୀତି ବିଷୟର ବର୍ଣ୍ଣନା କଲେ ॥ ୩ ॥ ଏବଂ ହେ ଭବାନି ! ମୁଁ ତୁମକୁ ଯେଉଁ ସବୁ କଥା କହିଲି, ଉକ୍ତ

ଗୟଉ ମୋର ସଂଦେହ ସୁନେଉଁ ସକଲ ରଘୁପତି ଚରିତ ।
ଭୟଉ ରାମ ପଦ ନେହ ତବ ପ୍ରସାଦ ବାୟସ ତିଲକ ॥୬୮ (କ)॥
ମୋହି ଭୟଉ ଅତି ମୋହ ପ୍ରଭୁ ବନ୍ଧନ ରନ ମହୁଁ ନିରଖି ।
ଚିଦାନନ୍ଦ ସନ୍ଦୋହ ରାମ ବିକଲ କାରନ କଵନ ॥୬୮ (ଖ)॥
ଦେଖି ଚରିତ ଅତି ନର ଅନୁସାରୀ । ଭୟଉ ହୃଦୟଁ ମମ ସଂସୟ ଭାରୀ ॥
ସୋଇ ଭ୍ରମ ଅବ ହିତ କରି ମୈଁ ମାନା । କୀନ୍ହ ଅନୁଗ୍ରହ କୃପାନିଧାନା ॥୧॥
ଜୋ ଅତି ଆତପ ବ୍ୟାକୁଲ ହୋଈ । ତରୁଛାୟା ସୁଖ ଜାନଇ ସୋଈ ॥
ଜୌଁ ନହିଁ ହୋତ ମୋହ ଅତି ମୋହୀ । ମିଲତେଉଁ ତାତ କଵନ ବିଧି ତୋହୀ ॥୨॥
ସୁନତେଉଁ କିମି ହରିକଥା ସୁହାଈ । ଅତି ବିଚିତ୍ର ବହୁ ବିଧି ତୁମ୍ହ ଗାଈ ॥
ନିଗମାଗମ ପୁରାନ ମତ ଏହା । କହହିଁ ସିଦ୍ଧ ମୁନି ନହିଁ ସଂଦେହା ॥୩॥

---

ଶୁଣିଲି ଚରିତ ଶ୍ରୀ ରଘୁନାଥଙ୍କ ତୁଟିଲା ମୋର ସନ୍ଦେହ ।
ତୁମ୍ଭ ପ୍ରସାଦରୁ ବାୟସ-ତିଲକ, ହେଲା ରାମ ପଦେ ସ୍ନେହ ॥୬୮ (କ)॥
ପ୍ରଭୁଙ୍କ ବନ୍ଧନ ଅବଲୋକଣ ରଣେ ହେଲି ମୁଁ ମୋହ କବଳ ।
ଚିଦାନନ୍ଦ ଧାମ ରାମ କି କାରଣେ ହୁଅନ୍ତି ଏତେ ବିକଳ ॥୬୮ (ଖ)॥
ଦେଖି ନର ଅନୁରୂପ ଅନେକ ଚରିତ । ଉପୁଜିଲା ହୃଦେ ମୋର ସଂଶୟ ଅମିତ ॥
ସେ ଭ୍ରମକୁ ଜାଣିଲି ମୁଁ ଏବେ ହିତକର । କରୁଣାନିଧାନ କଲେ କୃପା ମୋ ଉପର ॥୧॥
ଯେ ଅତି ଆତପ ତାପେ ବ୍ୟାକୁଳ ହୁଅଇ । ତରୁ ଛାୟା ସୁଖ ଏକା ସେ ଜାଣି ପାରଇ ॥
ଯେବେଅତିମୋହ ମୋତେହୋଇନଥାଆନ୍ତା । ମିଳିଥାନ୍ତି ତୁମ୍ଭଙ୍କୁ ମୁଁ କେଉଁଭାବେ,ଭ୍ରାତା ॥୨॥
ଶୁଣିଥାନ୍ତି ହରିକଥା ସୁନ୍ଦର କେମନ୍ତେ । ଅତି ବିଚିତ୍ର ଗାଇଲ ତୁମ୍ଭେ ନାନା ମତେ ॥
ନିଗମାଗମ ପୁରାଣ ଏମନ୍ତ ଭଣନ୍ତି । ସଂଶୟ ନ ରଖି ସିଦ୍ଧ ମୁନିଗଣେ କହନ୍ତି ॥୩॥

---

ପ୍ରସଙ୍ଗ ସବୁ କହିଲେ ।" ସମସ୍ତ ରାମ କଥା ଶୁଣି, ପକ୍ଷିରାଜ ଗରୁଡ଼ ମନରେ ଅତି ଉତ୍ସାହିତ ହୋଇ ବଚନ କହିବାକୁ ଲାଗିଲେ—॥୪॥ ସୋରଠା :—"ମୁଁ ଶ୍ରୀ ରଘୁନାଥଙ୍କ ସମସ୍ତ ଚରିତ ଶୁଣିଲି । ତାହା ଯୋଗେ ମୋର ସମସ୍ତ ସନ୍ଦେହ ଦୂର ହୋଇଯାଇଛି । ହେ କାକଶିରୋମଣି ! ଆପଣଙ୍କ ଅନୁଗ୍ରହ ଯୋଗୁଁ ଶ୍ରୀରାମଙ୍କ ଚରଣରେ ମୋର ପ୍ରେମ ଜାତ ହେଲା ॥ ୬୮ (କ) ॥ ଯୁଦ୍ଧରେ ପ୍ରଭୁଙ୍କ ନାଗପାଶ-ବନ୍ଧନ ଦେଖି ମୋର ଅତ୍ୟନ୍ତ ମୋହ ହୋଇଯାଇଥିଲା ଯେ, ଶ୍ରୀରାମଚନ୍ଦ୍ର ତ ସଚ୍ଚିଦାନନ୍ଦଘନ, ସେ କି ହେତୁ ବ୍ୟାକୁଳ ? ॥ ୬୮ (ଖ) ॥ ଚୌପାଇ :—ତାଙ୍କର ଅବିକଳ ଲୌକିକ ମନୁଷ୍ୟ ଚରିତ ଦେଖି ମୋର ହୃଦୟରେ ଭାରି ସନ୍ଦେହ ହୋଇଗଲା । ଏବେ ଉକ୍ତ ଭ୍ରମ ବା ସନ୍ଦେହ ମୋ ପକ୍ଷରେ ହିତକର ହେଲା ବୋଲି ମୁଁ ବୁଝୁଅଛି । କୃପାନିଧାନ ମୋ ଉପରେ ଏହି ବଡ଼ ଅନୁଗ୍ରହ କଲେ ॥୧॥ ଯେ ଆତପ-ଦୁଃଖରେ ବ୍ୟାକୁଳ, ସେହି କେବଳ ବୃକ୍ଷ-ଛାୟାର ସୁଖ ଜାଣେ । ହେ ତାତ ! ଯଦି ମୋ ମନରେ ଅତିଶୟ ମୋହ ହୋଇ

ସନ୍ତ ବିଶୁଦ୍ଧ ମିଳହିଁ ପରି ତେହୀ । ଚିତଵହିଁ ରାମ କୃପା କରି ଜେହୀ ॥
ରାମ କୃପାଁ ତବ ଦରସନ ଭୟଊ । ତବ ପ୍ରସାଦ ସବ ସଂସୟ ଗୟଊ ॥୪॥
ସୁନି ବିହଂଗପତି ବାନୀ ସହିତ ବିନୟ ଅନୁରାଗ ।
ପୁଲକ ଗାତ ଲୋଚନ ସଜଲ ମନ ହରଷେଉ ଅତି କାଗ ॥୬୯ (କ)॥
ଶ୍ରୋତା ସୁମତି ସୁସୀଲ ସୁଚି କଥାରସିକ ହରି ଦାସ ॥
ପାଇ ଉମା ଅତି ଗୋପ୍ୟମପି ସଜ୍ଜନ କରହିଁ ପ୍ରକାସ ॥୬୯ (ଖ)॥
ବୋଲେଉ କାକଭୁସୁଣ୍ଡି ବହୋରୀ । ନଭଗନାଥ ପର ପ୍ରୀତି ନ ଥୋରୀ ॥
ସବ ବିଧି ନାଥ ପୂଜ୍ୟ ତୁମ୍ହ ମେରେ । କୃପାପାତ୍ର ରଘୁନାୟକ କେରେ ॥୧॥
ତୁମ୍ହହି ନ ସଂସୟ ମୋହ ନ ମାୟା । ମୋ ପର ନାଥ କୀହ୍ନି ତୁମ୍ହ ଦାୟା ॥
ପଠଇ ମୋହ ମିସ ଖଗପତି ତୋହୀ । ରଘୁପତି ଦୀହ୍ନି ବଡାଈ ମୋହୀ ॥୨॥

---

ଶୁଦ୍ଧ ସନ୍ଥଜନ ପ୍ରାପ୍ତ ହୁଅନ୍ତି ତାହାଙ୍କୁ । କୃପା ଦୃଷ୍ଟି କଲ ରାମ ଯାହାଙ୍କୁ ॥
ରାମଙ୍କ କୃପାରେ ତୁମ୍ଭ ଦର୍ଶନ ମିଳିଲା । ତୁମ୍ଭ ପ୍ରସାଦରୁ ମୋର ସଂଶୟ ତୁଟିଲା ॥୪॥
ଶୁଣି ଗରୁଡର ଅନୁରାଗ-ଭରା ବିନୟବାଣୀ ଏସନ ।
ପୁଲକ ଶରୀର ନୟନ ସନୀର କାକ ହରଷିତ ମନ ॥୬୯ (କ)॥
ଶ୍ରୋତା ବୁଦ୍ଧିମନ୍ତ କଥା-ସୁରସିକ ଶୁଚି ଶୀଳ ହରି-ଦାସ ।
ପାଇଣ ସଜ୍ଜନ ଅତି ଗୋପ୍ୟ ସୁଦ୍ଧା କରନ୍ତି ଉମା, ପ୍ରକାଶ ॥୬୯ (ଖ)॥
ବୋଲଇ କାକଭୁଶୁଣ୍ଡି ବଚନ ଆଦର । ପ୍ରୀତି ଅତିଶୟ ଖଗ-ନାୟକ ଉପର ॥
ସମସ୍ତ ପ୍ରକାରେ ନାଥ, ତୁମ୍ଭେ ପୂଜ୍ୟ ମମ । କୃପା-ପାତ୍ର ଅଟ ରଘୁନାଥଙ୍କ ଉତ୍ତମ ॥୧॥
ନାହିଁ ତୁମ୍ଭମନେ ମୋହମାୟା ବା ସନ୍ଦେହ । ମୋ ଉପରେ ନାଥ, ତୁମ୍ଭେ କଲ କୃପା ସ୍ନେହ ॥
ମୋହ ବାହାନା କରିଣ ତୁମ୍ଭଙ୍କୁ ପଠାଇ । ମୋତେ ଦାନ କଲେ ରଘୁନାୟକ ବଡାଇ ॥୨॥

---

ନ ଥା'ନ୍ତା, ତେବେ ମୁଁ ଆପଣଙ୍କୁ କିପରି ଭେଟି ଥାଆନ୍ତି ? ॥ ୨ ॥ ଏବଂ କିପରି ଏହି ଅତି ବିଚିତ୍ର ସୁନ୍ଦର ହରିକଥା ଶୁଣିଥା'ନ୍ତି—ଯାହା ଆପଣ ବହୁତ ପ୍ରକାରେ ଗାଇଅଛନ୍ତି ? ବେଦ ଶାସ୍ତ୍ର ଏବଂ ପୁରାଣମାନଙ୍କର ଏହି ମତ; ସିଦ୍ଧ ଏବଂ ମୁନିମାନେ ମଧ୍ୟ ଏହା ହିଁ ନିଃସଂଶୟ ଭାବରେ କହୁଥା'ନ୍ତି । ଏଥିରେ ସନ୍ଦେହ ନାହିଁ ଯେ, ଶ୍ରୀରାମ ଯାହା ପ୍ରତି କୃପା-ଦୃଷ୍ଟି ପକାନ୍ତି, ତାହାଙ୍କୁ ହିଁ ଶୁଦ୍ଧ ସାଧୁ ମିଳନ୍ତି । ଶ୍ରୀରାମଙ୍କ କୃପା ଯୋଗେ ମୋତେ ଆପଣଙ୍କ ଦର୍ଶନ ମିଳିଲା ଏବଂ ଆପଣଙ୍କ କୃପାରେ ମୋର ସନ୍ଦେହ ଗୁଲିଗଲା ।" ॥ ୩-୪ ॥ ଦୋହା :—ପକ୍ଷିରାଜ ଗରୁଡଙ୍କ ବିନୟ ଓ ପ୍ରେମଭରା ବାଣୀ ଶୁଣି କାକ ଭୁଶୁଣ୍ଡିଙ୍କ ଶରୀର ପ୍ରେମରେ ପୁଲକିତ ହୋଇଗଲା । ତାହାଙ୍କ ନେତ୍ର ସଜଳ ହୋଇ ଆସିଲା ଏବଂ ସେ ମନେ ମନେ ଅତିଶୟ ଆନନ୍ଦିତ ହେଲେ ॥ ୬୯ (କ) ॥ ହେ ଉମା ! ସୁମତି, ସୁଶୀଳ, ପବିତ୍ର କଥା-ପ୍ରେମୀ ଏବଂ ହରିଙ୍କ ସେବକ ଶ୍ରୋତାଙ୍କୁ ପାଇ ସଜ୍ଜନମାନେ ଅତି ଗୋପନୀୟ ରହସ୍ୟକୁ ମଧ୍ୟ ପ୍ରକାଶ କରି ଦିଅନ୍ତି ॥ ୬୯ (ଖ) ॥

ତୁମ୍ହ ନିଜ ମୋହ କହୀ ଖଗସାଇଁ । ସୋ ନହିଁ କଛୁ ଆଚରଜ ଗୋସାଇଁ ॥
ନାରଦ ଭବ ବିରଂଚି ସନକାଦୀ । ଜେ ମୁନିନାୟକ ଆତମବାଦୀ ॥୩॥
ମୋହ ନ ଅନ୍ଧ କୀହ୍ନ କେହି କେହୀ । କୋ ଜଗ କାମ ନଚାୱ ନ ଜେହୀ ॥
ତୃଷ୍ଣାଁ କେହି ନ କୀହ୍ନ ବୌରାହା । କେହି କର ହୃଦୟ କ୍ରୋଧ ନହିଁ ଦାହା ॥୪॥

ଗ୍ୟାନୀ ତାପସ ସୂର କବି କୋବିଦ ଗୁନ ଆଗାର ।
କେହି କୈ ଲୋଭ ବିଡମ୍ବନା କୀହ୍ନି ନ ଏହିଁ ସଂସାର ॥୭୦ (କ)॥
ଶ୍ରୀ ମଦ ବକ୍ର ନ କୀହ୍ନ କେହି ପ୍ରଭୁତା ବଧିର ନ କାହି ॥
ମୃଗଲୋଚନି କେ ନୈନ ସର କୋ ଅସ ଲାଗ ନ ଜାହି ॥୭୦ (ଖ)॥

ଗୁନ କୃତ ସନ୍ୟପାତ ନହିଁ କେହୀ । କୋଉ ନ ମାନ ମଦ ତଜେଉ ନିବେହୀ ॥
ଜୋବନ ଜ୍ୱର କେହି ନହିଁ ବଲକାୱା । ମମତା କେହି କର ଜସ ନ ନସାୱା ॥୫॥

---

ତୁମ୍ଭେ ନିଜ ମୋହ ବଖାଣିଲ ଖଗସାଇଁ । ଆଶ୍ଚର୍ଯ୍ୟ ନୁହଇ ତାହା, ବୁଝେଁ ମୁଁ ଗୋସାଇଁ ॥
ନାରଦ ଶିବ ବିରଞ୍ଚି ପ୍ରଭୃତି ସନକାଦି । ଅଟନ୍ତି ଯେ ସବୁ ମୁନିବର ଆତ୍ମବାଦୀ ॥୩॥
ମୋହ ଅନ୍ଧ ନ କରିଛି କାହାକୁ କାହାକୁ । କେ ବିଶ୍ୱେ ? କାମ ନଚାଇ ନାହିଁ ବା ଯାହାକୁ ॥
ତୃଷ୍ଣା କରି ପାରିନାହିଁ କାହାକୁ ପାଗଳ । କାହାର ହୃଦୟ ଦହିନାହିଁ କ୍ରୋଧାନଳ ? ॥୪॥

ଜ୍ଞାନୀ ଶୂର କବି କୋବିଦ ତାପସ ଯେ ସମସ୍ତ ଗୁଣାଗାର ।
ଲୋଭ କରିନାହିଁ ଏ ସଂସାର ମଧ୍ୟେ ବିଡମ୍ବନା ବା କାହାର ॥୭୦ (କ)॥
ଶ୍ରୀମଦ କାହାକୁ ବକ୍ର ନ କରିଛି ପ୍ରଭୁତ୍ୱ କାହାରେ ବଧିର ।
ମୃଗନୟନୀର ବିଲୋଚନ-ଶର ନ ଲାଗିଛି, କିଏ ବୀର ? ॥୭୦ (ଖ)॥

ଗୁଣ କୃତ ସନ୍ନିପାତ କା'ର ନ ହୋଇଛି । କାହାକୁ ବା ମାନମଦ ନ ଛୁଇଁ ଛାଡିଛି ॥
ଯୌବନ-ଜ୍ୱର କାହାକୁ କରିନାହିଁ ମତ୍ତ । ମମତା କାହାର ଯଶ ନ କରିଛି ହତ ॥୫॥

---

ଚୌପାଇ —କାକ ଭୁଶୁଣ୍ଡି ପୁଣି କହିଲେ—ପକ୍ଷିରାଜଙ୍କ ପ୍ରତି ତାହାଙ୍କର ପ୍ରେମ କମ୍ ନ ଥିଲା—"ହେ ନାଥ ! ଆପଣ ସମସ୍ତ ପ୍ରକାରେ ମୋର ପୂଜ୍ୟ ଏବଂ ଶ୍ରୀରଘୁନାଥଙ୍କ କୃପାର ପାତ୍ର ॥ ୧ ॥ ଆପଣଙ୍କର ସନ୍ଦେହ, ମୋହ ଅଥବା ମାୟା କିଛି ନାହିଁ । ହେ ନାଥ ! ଆପଣ ତ ମୋ ଉପରେ ଦୟା କରିଅଛନ୍ତି । ହେ ପକ୍ଷିରାଜ ! ମୋହ-ଛଳରେ ଶ୍ରୀ ରଘୁନାଥ ଆପଣଙ୍କୁ ଏଠାକୁ ପ୍ରେରଣ କରି ମୋତେ ବଡାଇ ଦେଇ-ଅଛନ୍ତି ॥ ୨ ॥ ହେ ଖଗସ୍ୱାମି ! ଆପଣ ନିଜର ମୋହ-କଥା କହିଲେ । ହେ ଗୋସାଇଁ ! ଏଥିରେ କୌଣସି ଆଶ୍ଚର୍ଯ୍ୟ ନାହିଁ । ନାରଦ, ଶିବ, ବ୍ରହ୍ମା ଏବଂ ସନକାଦି ମୁନିନାୟକ ଆତ୍ମତତ୍ତ୍ୱର ମର୍ମଜ୍ଞ ଓ ଉପଦେଷ୍ଟା ଅଟନ୍ତି ॥ ୩ ॥ ମୋହ ସେହିମାନଙ୍କ ମଧ୍ୟରୁ କି କାହାକୁ ଅନ୍ଧ କରିନାହିଁ ? ଜଗତରେ ଏପରି କିଏ ଅଛି, ଯାହାକୁ କାମ ନ ନଚାଇଛି ? ତୃଷ୍ଣା କାହାକୁ ପାଗଳ ନ କରିଛି ? କ୍ରୋଧ କାହାର ହୃଦୟକୁ ଜଳାଇ ନାହିଁ ? ॥ ୪ ॥ ଦୋହା —ଏହି ସଂସାରରେ ଏପରି ଜ୍ଞାନୀ, ତପସ୍ୱୀ, ଶୂରବୀର,

ମଚ୍ଛର କାହି କଲଂକ ନ ଲାୱା । କାହି ନ ସୋକ ସମୀର ଡୋଲାୱା ॥
ଚିନ୍ତା ସାଁପିନି କୋ ନହିଁ ଖାୟା । କୋ ଜଗ ଜାହି ନ ବ୍ୟାପୀ ମାୟା ॥୨॥
କୀଟ ମନୋରଥ ଦାରୁ ସରୀରା । ଜେହି ନ ଲାଗ ଘୁନ କୋ ଅସ ଧୀରା ॥
ସୁତ ବିତ ଲୋକ ଈଷନା ତୀନୀ । କେହି କୈ ମତି ଇନ୍ହ କୃତ ନ ମଲୀନୀ ॥୩॥
ୟହ ସବ ମାୟା କର ପରିବାରା । ପ୍ରବଲ ଅମିତି କୋ ବରନୈ ପାରା ॥
ସିବ ଚତୁରାନନ ଜାହି ଡେରାହୀଁ । ଅପର ଜୀବ କେହି ଲେଖେ ମାହୀଁ ॥୪॥

ବ୍ୟାପି ରହେଉ ସଂସାର ମହୁଁ ମାୟା କଟକ ପ୍ରଚଣ୍ଡ ।
ସେନାପତି କାମାଦି ଭଟ ଦମ୍ଭ କପଟ ପାଷଣ୍ଡ ॥୭୧ (କ)॥

---

ମତ୍ସର ଲଗାଇ ନାହିଁ କାହାକୁ ଲାଞ୍ଛନ । କାହାକୁ ହଲାଇ ନାହିଁ ଶୋକ-ପ୍ରଭଞ୍ଜନ ॥
ଚିନ୍ତା-ସର୍ପିଣୀ କାହାକୁ ଗ୍ରାସ ନ କରିଛି । କିଏ ଜଗତେ ଯାହାକୁ ମାୟା ନ ବ୍ୟାପିଛି ॥୨॥
କୀଟ ମନୋରଥ ଦାରୁ ଅଟଇ ଶରୀର । ଘୁଣ ଖାଇନାହିଁ ଯା'ରେ ଏପରି କେ ସ୍ଥିର ॥
ସୁତ ବିତ୍ତ ଲୋକ ଏହି ତିନି ଇଚ୍ଛା ପୀନ । କାହାର ମତିକୁ କରି ନାହାନ୍ତି ମଳିନ ॥୩॥
ଏ ସବୁ ଅଟନ୍ତି ଜାଣ ମାୟା ପରିବାର । ପ୍ରବଳ ଅମିତ କିଏ ବର୍ଣ୍ଣି ପାଏ ପାର ॥
ଶିବ ଚତୁରାନନ-ସମ୍ଭବ ଯାହାକୁ ଡରନ୍ତି । ଇତର ଜୀବ ବା କେଉଁ ଲେଖାରେ ଆସନ୍ତି ॥୪॥

ବ୍ୟାପି ରହିଛନ୍ତି ସଂସାର ମଧ୍ୟରେ ମାୟାର ସେନା ପ୍ରଚଣ୍ଡ ।
ସେନାପତି କାମ ମଦ ଆଦି ବୀର ଦମ୍ଭ କପଟ ପାଷଣ୍ଡ ॥୭୧ (ଖ)॥

---

କବି, ବିଦ୍ୱାନ୍ ଏବଂ ଗୁଣାଗାର କିଏ ଯାହାକୁ ଲୋଭ ପ୍ରତାରିତ ନ କରିଛି ? ॥ ୭୦ (କ) ॥ ଶ୍ରୀମଦ ( ସମ୍ପତ୍ତିର ଗର୍ବ ) କାହାକୁ କୁଟିଳ ନ କରିଛି ଏବଂ ପ୍ରଭୁତ୍ୱ କାହାକୁ ବଧିର ନ କରି ଦେଇଛି ? ଯାହାକୁ ମୃଗନୟନୀ (ସୁନ୍ଦରୀ ସ୍ତ୍ରୀ)ର ନେତ୍ରବାଣ ଆଘାତ ନ କରିଛି, ଏପରି ବ୍ୟକ୍ତି ସଂସାରରେ କିଏ ଅଛି ? ॥ ୭୦ (ଖ) ॥ ଚୌପାଇ :- ରଜ, ତମ ଆଦି ଗୁଣକୃତ ସନ୍ନିପାତ କାହାକୁ ବା ହୋଇ ନାହିଁ ? କାହାକୁ ମାନ ଓ ମଦ ନ ଛୁଇଁ ଛାଡ଼ିଛି ? ଯୌବନ-ଜ୍ୱର କାହାକୁ ଉନ୍ମତ୍ତ ନ କରିଛି ? ମମତା କାହାର ଯଶ ନାଶ ନ କରିଛି ? ॥ ୧ ॥ ମାତ୍ସର୍ଯ୍ୟ କାହାକୁ କଳଙ୍କିତ ନ କରିଛି ? ଶୋକ-ସମୀର କାହାକୁ ଦୋହଲାଇ ନ ପକାଇଛି ? ଚିନ୍ତା-ସର୍ପିଣୀ କାହାକୁ ଗ୍ରାସ ନ କରିଛି ? ଜଗତରେ ଏପରି କିଏ ଅଛି, ଯାହାକୁ ମାୟା ନ ବ୍ୟାପିଛି ? ॥ ୨ ॥ ମନୋରଥ କୀଟ, ଶରୀର କାଷ୍ଠ ! ଏପରି ଧୈର୍ଯ୍ୟବାନ୍ କିଏ, ଯାହାର ଶରୀରରେ ଏ କୀଟ ନ ଲାଗିଛି ? ପୁତ୍ର, ଧନ ଓ ଲୋକପ୍ରତିଷ୍ଠା ଏ ତିନୋଟିଙ୍କର ପ୍ରବଳ କାମନା କାହାର ବୁଦ୍ଧିକୁ ଭ୍ରଷ୍ଟ ବା ମଳିନ କରି ଦେଇନାହିଁ ? ॥ ୩ ॥ ଏ ସବୁ ମାୟାର ଅତି ବଳବାନ୍ ପରିବାର । ଏହା ଅପାର । ଏହାକୁ କିଏ ବର୍ଣ୍ଣନା କରି ପାରିବ ? ଶିବ ଓ ବ୍ରହ୍ମା ସୁଦ୍ଧା ଯାହାକୁ ଡରନ୍ତି, ତାହା ଆଗରେ ଅନ୍ୟ ପ୍ରାଣୀଙ୍କୁ ବା କାହିଁରେ ଗଣିବା ? ॥ ୪ ॥ ଦୋହା :— ମାୟାର ପ୍ରଚଣ୍ଡ ସେନା ସମଗ୍ର ସଂସାରରେ ବ୍ୟାପିଅଛି । କାମାଦି (କାମ, କ୍ରୋଧ ଓ

ସୋ ଦାସୀ ରଘୁବୀର କୈ ସମୁଝେଁ ମିଥ୍ୟା ସୋପି ।
ଛୁଟ ନ ରାମ କୃପା ବିନୁ ନାଥ କହଉଁ ପଦ ରୋପି ॥୭୧ (ଖ)॥
ଜୋ ମାୟା ସବ ଜଗହି ନଚାୱା । ଜାସୁ ଚରିତ ଲଖି କାହୁଁ ନ ପାୱା ॥
ସୋଇ ପ୍ରଭୁ ଭ୍ରୂ ବିଲାସ ଖଗରାଜା । ନାଚ ନଟୀ ଇବ ସହିତ ସମାଜା ॥୧॥
ସୋଇ ସଚ୍ଚିଦାନନ୍ଦ ଘନ ରାମା । ଅଜ ବିଗ୍ୟାନ ରୂପ ବଲ ଧାମା ॥
ବ୍ୟାପକ ବ୍ୟାପ୍ୟ ଅଖଣ୍ଡ ଅନଂତା । ଅଖିଲ ଅମୋଘସକ୍ତି ଭଗବଂତା ॥୨॥
ଅଗୁନ ଅଦଭ୍ର ଗିରା ଗୋତୀତା । ସବଦରସୀ ଅନବଦ୍ୟ ଅଜୀତା ॥
ନିର୍ମମ ନିରାକାର ନିରମୋହା । ନିତ୍ୟ ନିରଞ୍ଜନ ସୁଖ ସଂଦୋହା ॥୩॥
ପ୍ରକୃତି ପାର ପ୍ରଭୁ ସବ ଉର ବାସୀ । ବ୍ରହ୍ମ ନିରୀହ ବିରଜ ଅବିନାସୀ ॥
ଇହାଁ ମୋହ କର କାରନ ନାହୀଂ । ରବି ସନ୍ମୁଖ ତମ କବହୁଁ କି ଜାହୀଂ ॥୪॥

---

ସେ ଅଟଇ ଦାସୀ ରଘୁପତିଙ୍କର, ବୁଝନ୍ତେ ମିଥ୍ୟା ସେ ପୁଣ ।
ରାମ କୃପା ବିନା ନ ଯାଏ ଖଗେଶ, ପଣ କରି କହେ, ଶୁଣ ॥୭୧ (ଖ)
ନଚାଏ ଯେବଣ ମାୟା ସାରା ଜଗତକୁ । ବୁଝି ନ ପାରନ୍ତି କେହି ଯା'ର ଚରିତକୁ ॥
ସେ ପ୍ରଭୁଙ୍କ ଭ୍ରୂ ବିଳାସ ମାତ୍ରେ, ଖଗରାଜ । ନାଚଇ ନଟୀ ସଦୃଶ ସହିତ ସମାଜ ॥୧॥
ସେ ରାମ ସଚ୍ଚିଦାନନ୍ଦ ନବଘନ ଶ୍ୟାମ । ଅଜ ବିଜ୍ଞାନ ସ୍ୱରୂପ ଗୁଣ-ଶୀଳ-ଧାମ ॥
ବ୍ୟାପକ ବ୍ରହ୍ମ ଆବର ଅଖଣ୍ଡ ଅନନ୍ତ । ଅଖିଳ ରୂପ ଅନଘ ଏକ ଭଗବନ୍ତ ॥୨॥
ଅଗୁଣ ଅଦଭ୍ର ମନ-ବଚନ-ଗୋତୀତ । ସମଦର୍ଶୀ ଅକଳଙ୍କ ଅବ୍ୟକ୍ତ ଅଜିତ ॥
ନିର୍ମମ ନିର୍ମୋହ ନିରାକାର ନିରଞ୍ଜନ । ନିତ୍ୟ ସନାତନ ଶୋଭା-ସୁଖ-ନିକେତନ ॥୩॥
ପ୍ରକୃତି-ପର ସେ ପ୍ରଭୁ ସର୍ବ ହୃଦବାସୀ । ନିରୀହ ନିରୁଜ ବ୍ରହ୍ମ ସଦା ଅବିନାଶୀ ॥
ମୋହର ନାହିଁ କୌଣସି କାରଣ ଏଠାରେ । ରବି ସମ୍ମୁଖେ କେବେ କି ତମ ଯାଇପାରେ ? ॥୪॥

---

ଲୋଭ) ତାହାର ସେନାପତି ଏବଂ ଦମ୍ଭ, କପଟ ଓ ପାଷଣ୍ଡତା ଯୋଦ୍ଧା ॥ ୭୧ (କ) ॥ ଉକ୍ତ ମାୟା ଶ୍ରୀ ରଘୁବୀରଙ୍କ ଦାସୀ । ବୁଝି ବିଚାର କଲେ, ତାହା ମିଥ୍ୟା; କିନ୍ତୁ ଶ୍ରୀରାମଙ୍କ କୃପା ବିନା ତାହା ବି ଦୂର ହୁଏ ନାହିଁ । ହେ ନାଥ ! ଏହା ମୁଁ ପ୍ରତିଜ୍ଞା କରି କହୁଅଛି ॥ ୭୧ (ଖ) ॥ ଯେଉଁ ମାୟା ସମସ୍ତ ସଂସାରକୁ ନଚାଉଛି ଏବଂ କେହି ଯାହାର କୃତିତ୍ୱକୁ ଦେଖି ପାରନ୍ତି ନାହିଁ, ହେ ଖଗରାଜ ଗରୁଡ ! ସେହି ମାୟା ପ୍ରଭୁ ଶ୍ରୀରାମଙ୍କ ଭ୍ରୂକୁଟିର ଇଙ୍ଗିତରେ ତାହାର ସମାଜ ସହିତ ନଟୀ ପରି ନାଚେ ॥ ୧ ॥ ଶ୍ରୀରାମ ସେହି ସଚ୍ଚିଦାନନ୍ଦଘନ ଯେ, ଅଜନ୍ମା, ବିଜ୍ଞାନ-ସ୍ୱରୂପ, ରୂପ ଓ ବଳଧାମ, ସର୍ବବ୍ୟାପକ ତଥା ବ୍ୟାପ୍ୟ (ସର୍ବରୂପ), ଅଖଣ୍ଡ, ଅନନ୍ତ, ସମ୍ପୂର୍ଣ୍ଣ ଅମୋଘ-ଶକ୍ତି ଏବଂ ଷଡ ଐଶ୍ୱର୍ଯ୍ୟରେ ଯୁକ୍ତ ॥ ୨ ॥ ସେ ନିର୍ଗୁଣ (ମାୟା-ଗୁଣ-ରହିତ), ମହାନ ବାଣୀ ଓ ଇନ୍ଦ୍ରିୟର ଉର୍ଦ୍ଧ୍ୱରେ, ସର୍ବଦ୍ରଷ୍ଟା, ନିର୍ଦ୍ଦୋଷ, ଅଜେୟ, ମମତା-ରହିତ, ନିରାକାର, ମୋହରହିତ, ନିତ୍ୟ, ମାୟାରହିତ ଏବଂ ସୁଖରାଶି ॥ ୩ ॥ ସେ ପ୍ରକୃତିଠାରୁ ଉର୍ଦ୍ଧ୍ୱରେ, ସର୍ବସମର୍ଥ

ଭଗତ ହେତୁ ଭଗବାନ ପ୍ରଭୁ ରାମ ଧରେଉ ତନୁ ଭୂପ ।
କିଏ ଚରିତ ପାବନ ପରମ ପ୍ରାକୃତ ନର ଅନୁରୂପ ॥୭୨ (କ)॥
ଜଥା ଅନେକ ବେଷ ଧରି ନୃତ୍ୟ କରଇ ନଟ କୋଇ ।
ସୋଇ ସୋଇ ଭାବ ଦେଖାୱଇ ଆପୁନ ହୋଇ ନ ସୋଇ ॥୭୨ (ଖ)॥

ଅସି ରଘୁପତି ଲୀଲା ଉରଗାରୀ । ଦନୁଜ ବିମୋହନି ଜନ ସୁଖକାରୀ ॥
ଜେ ମତି ମଲିନ ବିଷୟ ବସ କାମୀ । ପ୍ରଭୁ ପର ମୋହ ଧରହିଁ ଇମି ସ୍ୱାମୀ ॥୧॥
ନୟନ ଦୋଷ ଜା କହଁ ଜବ ହୋଈ । ପୀତ ବରନ ସସି କହୁଁ କହ ସୋଈ ॥
ଜବ ଜେହି ଦିସି ଭ୍ରମ ହୋଇ ଖଗେସା । ସୋ କହ ପଚ୍ଛିମ ଉୟଉ ଦିନେସା ॥୨॥
ନୌକାରୂଢ଼ ଚଲତ ଜଗ ଦେଖା । ଅଚଲ ମୋହ ବସ ଆପୁହି ଲେଖା ॥
ବାଲକ ଭ୍ରମହିଁ ନ ଭ୍ରମହିଁ ଗୃହାଦୀ । କହହିଁ ପରସ୍ପର ମିଥ୍ୟାବାଦୀ ॥୩॥

---

ଭକ୍ତଙ୍କ କାରଣେ ପ୍ରଭୁ ଭଗବାନ ରାମ ଧରି ତନୁ ଭୂପ ।
ପରମ ପବିତ୍ର କରନ୍ତି ଚରିତ୍ର ପ୍ରାକୃତ ନରାନୁରୂପ ॥୭୨ (କ)॥
ଅନେକ ପ୍ରକାର ବେଶ ଧରି ଯେସନ୍ତେ ନୃତ୍ୟ କରେ ନଟ କେହି ।
ସେହି ସେହି ଭାବ ଦେଖାଉଥାଏ ସେ, ନିଜେ ନ ହୁଅଇ ସେହି ॥୭୨(ଖ)॥

ଏମନ୍ତେ ରଘୁପତିଙ୍କ ଚରିତ୍ର, ବ୍ୟାଳାରି । ନିଶାଚର-ବିମୋହନ ଭକ୍ତ-ସୁଖ-କାରୀ ॥
ଯେ ମତି-ମନ୍ଦ ବିଷୟ-ବଶ ସଦା କାମୀ । ଧରନ୍ତି ଏମନ୍ତ ମୋହ ପ୍ରଭୁ ପ୍ରତି, ସ୍ୱାମି ! ॥୧॥
ନୟନ ରୋଗ ଯାହାଙ୍କୁ ହୋଇଯାଏ ଯେବେ । ଚନ୍ଦ୍ରମାକୁ ପୀତବର୍ଣ୍ଣ କହଇ ସେ ତେବେ ॥
ଯାହାଙ୍କୁ ଯେବେ ଦିଗ୍‌ଭ୍ରମ ହୁଅଇ, ଖଗେଶ । ସେ କହଇ ପଶ୍ଚିମରୁ ଉଦିତ ଦିନେଶ ॥୨॥
ନଉକାରୂଢ ପୃଥିବୀ ଚଳିବା ଦେଖଇ । ମୋହ-ବଶ ଆପଣାକୁ ଅଚଳ ଲେଖଇ ॥
ବାଳକେ ଭ୍ରମନ୍ତି, ନ ଭ୍ରମନ୍ତି ଭବନାଦି । କହନ୍ତି ପରସ୍ପରେ ସେହି ମିଥ୍ୟାବାଦୀ ॥୩॥

---

ପ୍ରଭୁ, ସମସ୍ତଙ୍କ ହୃଦୟରେ ନିରନ୍ତର ନିବାସୀ, ଇଚ୍ଛା-ରହିତ, ବିକାର-ରହିତ ଏବଂ ଅବିନାଶୀ ବ୍ରହ୍ମ । ଶ୍ରୀରାମଙ୍କଠାରେ ମୋହର କାରଣ ନାହିଁ । ଅନ୍ଧକାର ସୂର୍ଯ୍ୟଙ୍କ ସମ୍ମୁଖକୁ କେବେ ଆସିପାରେ କି ? ॥ ୦ ॥ ଦୋହା :—ଭଗବାନ୍ ପ୍ରଭୁ ଶ୍ରୀରାମଚନ୍ଦ୍ର ଭକ୍ତଜନଙ୍କ ନିମନ୍ତେ ନୃପଶରୀର ଧାରଣ କଲେ ଏବଂ ସାଧାରଣ ମନୁଷ୍ୟ ପରି ଅନେକ ପାବନ ଚରିତ କଲେ ॥ ୭୨ (କ) ॥ କୌଣସି ନଟ ଅନେକ ବେଶ ଧାରଣପୂର୍ବକ ନୃତ୍ୟ କରେ ଏବଂ ବେଶାନୁକୂଳ ଭାବଭଙ୍ଗୀ ଦେଖାଏ । କିନ୍ତୁ ସ୍ୱୟଂ ସେ ତନ୍ମଧ୍ୟରୁ କୌଣସି ଗୋଟିଏ ହେଲେ ହୋଇଯାଏ ନାହିଁ ॥ ୭୨ (ଖ) ॥ ଚୌପାଈ :—ହେ ଗରୁଡ଼ ! ସେହିପରି ଶ୍ରୀ ରଘୁନାଥଙ୍କର ଏ ଲୀଳା । ଏହା ରାକ୍ଷସମାନଙ୍କୁ ବିଶେଷ ଭାବରେ ମୋହଗ୍ରସ୍ତ କରି ପକାଏ ଏବଂ ଭକ୍ତବୃନ୍ଦଙ୍କୁ ସୁଖ ଦାନ କରେ । ହେ ସ୍ୱାମି ! ଯେଉଁ ମନୁଷ୍ୟମାନେ ମଳିନମତି, ଯେଉଁମାନେ ବିଷୟର ବଶବର୍ତ୍ତୀ ଏବଂ କାମୁକ, ସେହିମାନେ ପ୍ରଭୁଙ୍କ ଉପରେ ଏହି ପ୍ରକାର ମୋହ ଆରୋପ କରିଥା'ନ୍ତି ॥ ୧ ॥

ହରି ବିଷଇକ ଅସ ମୋହ ବିହଂଗା । ସପନେହୁଁ ନହିଁ ଅଗ୍ୟାନ ପ୍ରସଂଗା ॥
ମାୟାବସ ମତିମନ୍ଦ ଅଭାଗୀ । ହୃଦୟଁ ଜମନିକା ବହୁବିଧି ଲାଗୀ ॥୩॥
ତେ ସଠ ହଠ ବସ ସଂସୟ କରହୀଁ । ନିଜ ଅଗ୍ୟାନ ରାମ ପର ଧରହୀଁ ॥୪॥

କାମ କ୍ରୋଧ ମଦ ଲୋଭ ରତ ଗୃହାସକ୍ତ ଦୁଖରୂପ ।
ତେ କିମି ଜାନହିଁ ରଘୁପତିହି ମୂଢ଼ ପରେ ତମ କୂପ ॥୭୩ (କ)॥
ନିର୍ଗୁନ ରୂପ ସୁଲଭ ଅତି ସଗୁନ ଜାନ ନହିଁ କୋଇ ।
ସୁଗମ ଅଗମ ନାନା ଚରିତ ସୁନି ମୁନି ମନ ଭ୍ରମ ହୋଇ ॥୭୩(ଖ)॥

ସୁନୁ ଖଗେସ ରଘୁପତି ପ୍ରଭୁତାଈ । କହଉଁ ଜଥାମତି କଥା ସୁହାଈ ॥
ଜେହି ବିଧି ମୋହ ଭୟଉ ପ୍ରଭୁ ମୋହୀ । ସୋଉ ସବ କଥା ସୁନାୱଉଁ ତୋହୀ ॥୧॥

---

ରାମ ବିଷୟକ ମୋହ ଏମନ୍ତ, ବିହଙ୍ଗ । ସ୍ୱପନେହେଁ ନାହିଁ ତହିଁ ଅଜ୍ଞାନ ପ୍ରସଙ୍ଗ ॥
ମାୟା-ବଶ ମନ୍ଦମନ୍ଦ ଯେ ଭାଗ୍ୟ-ରହିତ । ନାନାବିଧ ଆବରଣେ ହୃଦ ଆଚ୍ଛାଦିତ ॥୪॥
ସେ ଶଠ ହଠ-ବିବଶ ସଂଶୟ କରନ୍ତି । ନିଜ ଅଜ୍ଞାନ ରାମଙ୍କ ଉପରେ ଧରନ୍ତି ॥୫॥

କାମ କ୍ରୋଧ ମଦ ଲୋଭ ନିରତ ଯେ ଗୃହାସକ୍ତ ଦୁଃଖ ରୂପ ।
ସେ ମୂଢ଼ କେମନ୍ତେ ଜାଣିବେ ରାମଙ୍କୁ ପଡ଼ିଛନ୍ତି ଅନ୍ଧ କୂପ ॥୭୩ (କ)॥
ନିର୍ଗୁଣ ଅତ୍ୟନ୍ତ ସୁଲଭ, ସଗୁଣ ରୂପ କେହି ନ ଜାଣନ୍ତି ।
ସୁଗମ ଅଗମ୍ୟ ଚରିତ ଅନେକ, ଶୁଣି ମୁନିମାନେ ଭ୍ରମନ୍ତି ॥୭୩ (ଖ)॥

ଶୁଣ ଖଗେଶ, ମହିମା ରଘୁପତିଙ୍କର । କହେ ମତି ଅନୁରୂପ କଥା ମନୋହର ॥
ଭ୍ରମ ହୋଇଲା ଗୋସାଇଁ, ଯେଉଁଭାବେ ମୋତେ । ସେହି ସମସ୍ତ ଚରିତ ଶୁଣାଉଛି ତୋତେ ॥୧॥

---

ଯେତେବେଳେ କାହାଠାରେ କାମଳ ଆଦି ନେତ୍ରରୋଗ ହୁଏ, ସେତେବେଳେ ସେ ଚନ୍ଦ୍ରମାର ବର୍ଣ୍ଣ ପୀତ ବୋଲି କହେ । ହେ ପକ୍ଷିରାଜ ! ଯେତେବେଳେ କୌଣସି ବ୍ୟକ୍ତିର ଦିଗଭ୍ରମ ହୁଏ, ସେତେବେଳେ ସେ ସୂର୍ଯ୍ୟ ପଶ୍ଚିମ ଦିଗରେ ଉଦିତ ହୋଇ-ଅଛନ୍ତି ବୋଲି କହେ ॥୨॥ ନୌକାରୋହୀ ମନୁଷ୍ୟ ଜଗତକୁ ଚଳୁଥିବାର ଦେଖେ ଏବଂ ମୋହବଶତଃ ଆପଣକୁ ଅଚଳ ମନେ କରେ । ବାଳକମାନେ ଚକାଚକା ଭଉଁରି ଖେଳନ୍ତି । ଘର ପ୍ରଭୃତି ବୁଲେ ନାହିଁ । କିନ୍ତୁ ସେମାନେ ପରସ୍ପରକୁ ମିଥ୍ୟାବାଦୀ ବୋଲି କହନ୍ତି ॥ ୩ ॥ ହେ ଗରୁଡ଼ ! ଶ୍ରୀହରିଙ୍କ ବିଷୟରେ ମୋହର କଳ୍ପନା ମଧ୍ୟ ସେହିପରି ମିଥ୍ୟା । ଭଗବାନଙ୍କଠାରେ ତ ସ୍ୱପ୍ନରେ ସୁଦ୍ଧା ଅଜ୍ଞାନର ଅବକାଶ ନାହିଁ । କିନ୍ତୁ ଯେଉଁମାନେ ମାୟାର ବଶ, ମନ୍ଦମତି ଓ ଭାଗ୍ୟହୀନ ଏବଂ ଯାହାଙ୍କ ହୃଦୟ ଉପରେ ଅନେକ ପ୍ରକାରର ପରଦା ପଡ଼ିଅଛି, ସେହି ମୂର୍ଖମାନେ ଜବରଦସ୍ତି କରି ବଶବର୍ତ୍ତୀ ହୋଇ ସନ୍ଦେହ କରନ୍ତି ଏବଂ ଆପଣା ଆପଣାର ଅଜ୍ଞାନ ଶ୍ରୀରାମଙ୍କ ଉପରେ ଆରୋପ କରନ୍ତି ॥ ୪-୫ ॥ ଦୋହା :—ଯେଉଁମାନେ କାମ, କ୍ରୋଧ, ମଦ ଓ ଲୋଭରେ ରତ ଏବଂ ଦୁଃଖ ରୂପକ ଗୃହ ପ୍ରତି ଆସକ୍ତ, ସେମାନେ ରଘୁନାଥଙ୍କୁ କିପରି ଜାଣି

ରାମ କୃପା ଭାଜନ ତୁମ୍ହ ତାତା । ହରି ଗୁନ ପ୍ରୀତି ମୋହି ସୁଖଦାତା ॥
ତାତେଁ ନହିଁ କଛୁ ତୁମ୍ହହି ଦୁରାୱଉଁ । ପରମ ରହସ୍ୟ ମନୋହର ଗାୱଉଁ ॥୨॥
ସୁନହୁ ରାମ କର ସହଜ ସୁଭାଊ । ଜନ ଅଭିମାନ ନ ରାଖହିଁ କାଊ ॥
ସଂସୃତ ମୂଲ ସୂଲପ୍ରଦ ନାନା । ସକଲ ସୋକ ଦାୟକ ଅଭିମାନା ॥୩॥
ତାତେଁ କରହିଁ କୃପାନିଧି ଦୂରୀ । ସେବକ ପର ମମତା ଅତି ଭୂରୀ ॥
ଜିମି ସିସୁ ତନ ବ୍ରନ ହୋଇ ଗୋସାଈଂ । ମାତୁ ଚିରାୱ କଠିନ କୀ ନାଈଂ ॥୪॥

ଜଦପି ପ୍ରଥମ ଦୁଖ ପାୱଇ ରୋୱଇ ବାଲ ଅଧୀର ।
ବ୍ୟାଧି ନାସ ହିତ ଜନନୀ ଗନତି ନ ସୋ ସିସୁ ପୀର ॥୭୪ (କ)॥

---

ରାମଙ୍କ କୃପା-ଭାଜନ ତୁମ୍ଭେ ଅଟ, ଭ୍ରାତା । ହରିଗୁଣ-ଅନୁରାଗୀ ମୋର ସୁଖ-ଦାତା ॥
ତେଣୁ ତୁମ୍ଭ ଆଗେ କିଛି ଗୁପ୍ତ ନ ରଖିବି । ପରମ ସୁନ୍ଦର ଏହି ରହସ୍ୟ କହିବି ॥୨॥
ଶୁଣ ରଘୁମଣିଙ୍କର ସହଜ ସ୍ୱଭାବ । କେବେ ନ ରଖନ୍ତି ଭକ୍ତ-ଅଭିମାନ-ଭାବ ॥
ସଂସୃତି ମୂଳ ଶୂଳଦ ବିବିଧ ବିଧାନ । ସକଳ ଶୋକ-ଦାୟକ ଅଟେ ଅଭିମାନ ॥୩॥
ସେ ହେତୁ କରନ୍ତି କୃପାନିଧି ଦୂରୀଭୂତ । ସେବକ ଉପରେ ତାଙ୍କ ମମତା ବହୁତ ॥
ବାଳକ ଶରୀରେ ବ୍ରଣ ଉଠନ୍ତେ ଯେସନ । ନିଷ୍ଠୁର ହୋଇ ଜନନୀ ଚିରାଏ ବହନ ॥୪॥

ଯଦ୍ୟପି ପ୍ରଥମେ ଲଭି ଅତି କଷ୍ଟ ଅଧୀରେ ଶିଶୁ କାନ୍ଦଇ ।
ବ୍ୟାଧି ନାଶ ହେତୁ ସେ ଶିଶୁ ପୀଡ଼ାକୁ ମାତା କିଛି ନ ଗଣଇ ॥୭୪ (କ)॥

---

ପାରିବେ ? ସେହି ମୂର୍ଖମାନେ ଅନ୍ଧକାର କୂପରେ ପଡ଼ିଥା'ନ୍ତି ॥ ୭୩ (କ) ॥ ନିର୍ଗୁଣ ରୂପ ଅତି ସୁଲଭ, କିନ୍ତୁ ସଗୁଣ ରୂପକୁ କେହି ଜାଣନ୍ତି ନାହିଁ । ସୁତରାଂ ସେହି ସଗୁଣ ଭଗବାନ୍‌ଙ୍କ ନାନାବିଧ ସୁଗମ ଓ ଅଗମ ଚରିତ ଶୁଣି ମୁନିଜନଙ୍କ ମନରେ ମଧ ଭ୍ରମ ଜାତ ହୁଏ ॥ ୭୩ (ଖ) ॥ ଚୌପାଇ :—ହେ ପକ୍ଷିରାଜ ଗରୁଡ଼ ! ଶ୍ରୀ ରଘୁନାଥଙ୍କ ପ୍ରଭୁତ୍ୱ ବିଷୟ ଶୁଣନ୍ତୁ । ମୋ ବୁଦ୍ଧି ଅନୁରୂପ ମୁଁ ସେହି ସୁନ୍ଦର କଥା କହୁଅଛି । ହେ ପ୍ରଭୋ ! ମୋ ମନରେ ଯେପରି ମୋହ ଜାତ ହେଲା, ସେହି ସବୁ କଥା ଆପଣଙ୍କୁ ଶୁଣାଉଛି ॥ ୧ ॥ ହେ ତାତ ! ଆପଣ ଶ୍ରୀରାମଙ୍କ କୃପାପାତ୍ର । ଶ୍ରୀହରିଙ୍କ ଗୁଣ ପ୍ରତି ଆପଣଙ୍କର ପ୍ରୀତି । ଅତଏବ ଆପଣ ମୋ ପ୍ରତି ସୁଖଦାୟକ । ଏହି ହେତୁ ମୁଁ ଆପଣଙ୍କ ପାଖରେ କିଛି ଗୁପ୍ତ ରଖୁନାହିଁ ଏବଂ ଅତି ରହସ୍ୟମୟୀ କଥା ଗାଇ ଆପଣଙ୍କୁ ଶୁଣାଉଅଛି ॥ ୨ ॥ ଶ୍ରୀରାମଚନ୍ଦ୍ରଙ୍କ ସହଜ ସ୍ୱଭାବ କଥା ଶୁଣନ୍ତୁ । ସେ ଭକ୍ତଠାରେ କଦାପି ଅଭିମାନ ରଖାଇ ଦିଅନ୍ତି ନାହିଁ । କାରଣ, ଅଭିମାନ ଜନ୍ମ-ମରଣ ସଂସାରର ମୂଳ ଉପାଦାନ । ତାହା ବହୁବିଧ କ୍ଳେଶ ଓ ସମସ୍ତ ପ୍ରକାର ଶୋକ ଦାନ କରେ ॥ ୩ ॥ ଏଣୁ କୃପାନିଧି ତାହାକୁ ଦୂର କରିଦିଅନ୍ତି । କାରଣ, ସେବକ ଉପରେ ତାଙ୍କର ଅପାର ମମତା । ହେ ଗୋସାଇଁ ! ଶିଶୁର ଶରୀରରେ ବ୍ରଣ ହେଲେ, ମାତା କଠୋର - ହୃଦୟା ହୋଇ ତାହା ଚିରିଦିଅନ୍ତି ॥ ୪ ॥ ଦୋହା :—

ତମି ରଘୁପତି ନିଜ ଦାସ କର ହରହିଁ ମାନ ହିତ ଲାଗି ।
ତୁଲସିଦାସ ଐସେ ପ୍ରଭୁହି କସ ନ ଭଜହୁ ଭ୍ରମ ତ୍ୟାଗି ॥୭୪ (ଖ)॥
ରାମ କୃପା ଆପନ ଜଡ଼ତାଈ । କହଉଁ ଖଗେସ ସୁନହୁ ମନ ଲାଈ ॥
ଜବ ଜବ ରାମ ମନୁଜ ତନୁ ଧରହୀଁ । ଭକ୍ତ ହେତୁ ଲୀଲା ବହୁ କରହୀଁ ॥୧॥
ତବ ତବ ଅବଧପୁରୀ ମୈଁ ଜାଉଁ । ବାଲଚରିତ ବିଲୋକି ହରଷାଉଁ ॥
ଜନ୍ମ ମହୋତ୍ସବ ଦେଖଉଁ ଜାଈ । ବରଷ ପାଁଚ ତହଁ ରହଉଁ ଲୋଭାଈ ॥୨॥
ଇଷ୍ଟଦେବ ମମ ବାଲକ ରାମା । ସୋଭା ବପୁଷ କୋଟି ସତ କାମା ॥
ନିଜ ପ୍ରଭୁ ବଦନ ନିହାରି ନିହାରୀ । ଲୋଚନ ସୁଫଲ କରଉଁ ଉରଗାରୀ ॥୩॥
ଲଘୁ ବାୟସ ବପୁ ଧରି ହରି ସଂଗା । ଦେଖଉଁ ବାଲଚରିତ ବହୁ ରଂଗା ॥୪॥

---

ହରନ୍ତି ତେସନ ରଘୁପତି, ମାନ ନିଜ ଦାସହିତ ଲାଗି ।
ତୁଲସୀ ଏମନ୍ତ ପ୍ରଭୁଙ୍କୁ ନ ଭଜ କିପାଁ ଭ୍ରମ ପରିତ୍ୟାଗି ? ॥୭୪ (ଖ)॥
ରାମଙ୍କର ଅନୁଗ୍ରହ ନିଜ ମୂର୍ଖପଣ । କହୁଛି ଖଗ-ନାୟକ, ଶୁଣ ଦେଇ ମନ ॥
ଯେବେ ଯେବେ ରାମ ନର ଶରୀର ଧରନ୍ତି । ନାନାବିଧ ଲୀଳା ଭକ୍ତ ନିମନ୍ତେ କରନ୍ତି ॥୧॥
ତେବେ ତେବେ ମୁଁ ଅଯୋଧ୍ୟା ନଗରୀକୁ ଯାଏ । ଶିଶୁଲୀଳା ଅବଲୋକି ଅତି ସୁଖ ପାଏ ॥
ଜନ୍ମ ମହୋତ୍ସବ ଯାଇ ଦର୍ଶନ କରଇ । ବର୍ଷ ପାଞ୍ଚ ଲୁବ୍ଧ ଚିତ୍ତେ ଆନନ୍ଦେ ରହଇ ॥୨॥
ଅଟନ୍ତି ମୋ ଇଷ୍ଟଦେବ ବାଳକ ଶ୍ରୀରାମ । କଳେବର ଶୋଭା କୋଟି କୋଟି ଶତକାମ ॥
ନିରେଖି ନିରେଖି ନିଜ ପ୍ରଭୁଙ୍କ ବଦନ । ଲୋଚନ ସୁଫଳ କରେ ପନ୍ନଗ-ଅଶନ ॥୩॥
କ୍ଷୁଦ୍ର କାକ-ଦେହ ଧରି ବୁଲି ପ୍ରଭୁ ସଙ୍ଗ । ଦେଖଇ ବାଲ-ଚରିତ ନାନାବିଧ ରଙ୍ଗ ॥୪॥

---

ଶିଶୁ ବ୍ରଣ ଚିରିବା ସମୟରେ ପ୍ରଥମେ ଦୁଃଖ ପାଏ ଏବଂ ଅଧୀର ହୋଇ କାନ୍ଦେ ସତ, ଇଆପି ମାତା ତାହାର ରୋଗ-ନାଶ ଦୃଷ୍ଟିରୁ ଶିଶୁର ସେହି ପୀଡ଼ା ଆଦୌ ଗଣନ୍ତି ନାହିଁ ଏବଂ ବେପରୁଆ ହୋଇ ଘାଆକୁ ଚିରି ଦିଅନ୍ତି ॥ ୭୪ (କ) ॥ ସେହିପରି ଶ୍ରୀରଘୁନାଥ ତାଙ୍କ ଦାସର ଅଭିମାନ ତାହାର ହିତ ନିମନ୍ତେ ହରଣ କରିନିଅନ୍ତି । ତୁଳସୀଦାସ କହନ୍ତି—ଏପରି ପ୍ରଭୁଙ୍କୁ ଭ୍ରମ-ତ୍ୟାଗ କରି କାହିଁକି ଭଜୁନାହଁ ? ॥ ୭୪ (ଖ) ॥ ଚୌପାଈ :—ହେ ପକ୍ଷିରାଜ ଗରୁଡ ! ଶ୍ରୀରାମଙ୍କ କୃପା ଓ ମୋ ନିଜ ଜଡ଼ତା (ମୂର୍ଖତା) କଥା କହୁଅଛି । ମନ ଲଗାଇ ଶୁଣନ୍ତୁ । ଯେବେ ଯେବେ ଶ୍ରୀରାମ ମନୁଷ୍ୟ ଶରୀର ଧାରଣ କରନ୍ତି, ସେତେବେଳେ ସେ ଭକ୍ତଜନଙ୍କ ନିମନ୍ତେ ବହୁତ ଲୀଳା କରନ୍ତି ॥ ୧ ॥ ସେତି ସେହି ସମୟରେ ମୁଁ ଅଯୋଧ୍ୟାପୁରୀ ଯାଏ ଏବଂ ପ୍ରଭୁଙ୍କ ବାଲଲୀଳା ଦେଖି ଆନନ୍ଦ ଉପଭୋଗ କରେ । ସେଠାକୁ ଯାଇ ମୁଁ ଜନ୍ମମହୋତ୍ସବ ଦେଖେ ଏବଂ ଭଗବାନଙ୍କ ଶିଶୁଲୀଳାରେ ପ୍ରଲୁବ୍ଧ ହୋଇ ସେହିଠାରେ ପାଞ୍ଚବର୍ଷ ଯାଏ ରହେ ॥ ୨ ॥ ବାଲକ ରୂପେ ଶ୍ରୀରାମଚନ୍ଦ୍ର ମୋର ଇଷ୍ଟଦେବ, ତାହାଙ୍କ ଶରୀରରେ ଶତକୋଟି କାମଦେବଙ୍କ ଶୋଭା ବିରାଜିତ । ହେ ଗରୁଡ ! ମୋ ପ୍ରଭୁଙ୍କର ମୁଖ ଦେଖି ଦେଖି

ଲରିକାଇଁ ଜହଁ ଜହଁ ଫିରହିଁ ତହଁ ତହଁ ସଂଗ ଉଡ଼ାଉଁ ।
ଜୂଠନି ପରଇ ଅଜିର ମହଁ ସୋ ଉଠାଇ କରି ଖାଉଁ ॥୭୫ (କ)॥
ଏକ ବାର ଅତିସୟ ସବ ଚରିତ କିଏ ରଘୁବୀର ।
ସୁମିରତ ପ୍ରଭୁ ଲୀଲା ସୋଇ ପୁଲକିତ ଭୟଉ ସରୀର ॥୭୫ (ଖ)॥
କହଇ ଭସୁଣ୍ଡି ସୁନହୁ ଖଗନାୟକ । ରାମ ଚରିତ ସେବକ ସୁଖଦାୟକ ॥
ନୃପ ମନ୍ଦିର ସୁନ୍ଦର ସବ ଭାଁତୀ । ଖଚିତ କନକ ମନି ନାନା ଜାତୀ ॥୧॥
ବରନି ନ ଜାଇ ରୁଚିର ଅଁଗନାଈ । ଜହଁ ଖେଲହିଁ ନିତ ଚାରିଉ ଭାଈ ॥
ବାଲ ବିନୋଦ କରତ ରଘୁରାଈ । ବିଚରତ ଅଜିର ଜନନି ସୁଖଦାଈ ॥୨॥
ମରକତ ମୃଦୁଲ କଲେବର ସ୍ୟାମା । ଅଙ୍ଗ ଅଙ୍ଗ ପ୍ରତି ଛବି ବହୁ କାମା ॥
ନବ ରାଜୀବ ଅରୁନ ମୃଦୁ ଚରନା । ପଦଜ ରୁଚିର ନଖ ସସି ଦୁତି ହରନା ॥୩॥

---

ପିଲାଦିନେ ଯେଣେ ଯେଣେ ବିଚରନ୍ତି ତେଣେ ତେଣେ ସଙ୍ଗେ ଯାଏ।
ଅଗଣାରେ ଯେଉଁ ଉଚ୍ଛିଷ୍ଟ ପଡ଼ଇ ତାହା ଉଠାଇଣ ଖାଏ ॥୭୫ (କ)॥
କଲେ ଏକ ବାର ଅତ୍ୟନ୍ତ ପ୍ରବଳ ଚରିତ ଶ୍ରୀ ରଘୁବୀର ।
କରନ୍ତେ ସ୍ମରଣ ପ୍ରଭୁଙ୍କ ସେ ଲୀଳା ପୁଲକ ହୁଏ ଶରୀର ॥୭୫ (ଖ)॥
କହଇ ଭୁଶୁଣ୍ଡି, ଶୁଣ, ବିହଗ-ନାୟକ । ରାମ ଚରିତ ସେବକ-ସୁଖ-ପ୍ରଦାୟକ ॥
ନୃପଙ୍କ ମନ୍ଦିର ସବୁ ପ୍ରକାରେ ସୁନ୍ଦର । ଖଚିତ କନକ ମଣି ବିବିଧ ରଙ୍ଗର ॥୧॥
ରୁଚିର ପ୍ରାଙ୍ଗଣ ବର୍ଣ୍ଣି ନ ହୁଅଇ କହି । ପ୍ରତିଦିନ ବିହରନ୍ତି ଚାରି ଭାଇ ସହି ॥
ବାଳକ-ବିନୋଦ ରଘୁନନ୍ଦନ କରନ୍ତି । ଜନନୀ-ସୁଖଦ, ପ୍ରାଙ୍ଗଣରେ ବିଚରନ୍ତି ॥୨॥
ମୃଦୁ ମରକତ ଶ୍ୟାମ କଳେବର ରାମ । ଅଙ୍ଗ ଅଙ୍ଗ ପ୍ରତି ଲଜ୍ଜା ଲଭେ ବହୁ କାମ ॥
ନବୀନ ରାଜୀବ ମୃଦୁ ଅରୁଣ ପଯୁର । ଅଙ୍ଗୁଳି ନଖ ରୁଚିର ଶଶୀ-ଦ୍ୟୁତି-ହର ॥୩॥

---

ମୁଁ ନେଇ ସଫଳ କରେ ॥ ୩ ॥ କ୍ଷୁଦ୍ର କାକଶରୀର ଧାରଣ କରି ଭଗବାନଙ୍କ ସଙ୍ଗେ ସଙ୍ଗେ ବୁଲି ବୁଲି ମୁଁ ତାହାଙ୍କର ବିବିଧ ପ୍ରକାରର ବାଳଚରିତ ଦେଖେ ॥ ୪ ॥
ଦୋହା :—ବାଲ୍ୟକାଳରେ ସେ ଯେଉଁ ଯେଉଁ ସ୍ଥାନରେ ବୁଲନ୍ତି, ମୁଁ ସେହି ସେହି ସ୍ଥାନକୁ ତାଙ୍କ ସହିତ ଉଡ଼ିଉଡ଼ିକା ଯାଏ ଏବଂ ଅଗଣାରେ ତାଙ୍କର ଯେଉଁ ଅଇଁଠା ପଡ଼ିଥାଏ, ତାହା ଉଠାଇ ଖାଏ ॥ ୭୫ (କ) ॥ ଏକଦା ଶ୍ରୀ ରଘୁବୀର ସମସ୍ତ ଲୀଳା ଅତ୍ୟଧିକ ମାତ୍ରାରେ ସମ୍ପାଦନ କଲେ । ପ୍ରଭୁଙ୍କର ସେହି ଲୀଳା ସ୍ମରଣ କରିବା ମାତ୍ରେ କାକ ଭୁଶୁଣ୍ଡିଙ୍କର ଶରୀର ପ୍ରେମାନନ୍ଦବଶତଃ ପୁଲକିତ ହୋଇଗଲା ॥ ୭୫ (ଖ) ॥
ଚୌପାଇ :—ଭୁଶୁଣ୍ଡି କହି ଚାଲିଲେ—"ହେ ପକ୍ଷିରାଜ ! ଶୁଣନ୍ତୁ, ଶ୍ରୀରାମଙ୍କ ଚରିତ ସେବକମାନଙ୍କୁ ସୁଖଦାୟକ । ଅଯୋଧ୍ୟାର ରାଜମହଲ ସମସ୍ତ ପ୍ରକାରେ ସୁନ୍ଦର । ସ୍ୱର୍ଣ୍ଣ ମହଲରେ ନାନା ପ୍ରକାର ରତ୍ନ ଜଡ଼ିତ ॥ ୧ ॥ ସୁନ୍ଦର ଅଗଣାର ବର୍ଣ୍ଣନା କରାଯାଇ ନ ପାରେ । ସେହିଠାରେ ଚାରିଭାଇ ପ୍ରତିଦିନ ଖେଳନ୍ତି । ମାଆଙ୍କୁ

ଲଲିତ ଅଙ୍କ କୁଲିସାଦିକ ଚାରୀ । ନୂପୁର ଚାରୁ ମଧୁର ରବକାରୀ ॥
ଚାରୁ ପୁରଟ ମନି ରଚିତ ବନାଈ । କଟି କିଂକିନି କଲ ମୁଖର ସୁହାଈ ॥୪॥
ରେଖା ତ୍ରୟ ସୁନ୍ଦର ଉଦର ନାଭି ରୁଚିର ଗଁଭୀର ।
ଉର ଆୟତ ଭ୍ରାଜତ ବିବିଧି ବାଲ ବିଭୂଷନ ଚୀର ॥୭୬॥
ଅରୁନ ପାନି ନଖ କରଜ ମନୋହର । ବାହୁ ବିସାଲ ବିଭୂଷନ ସୁଂଦର ॥
କଂଧ ବାଲ କେହରି ଦର ଗ୍ରୀବା । ଚାରୁ ଚିବୁକ ଆନନ ଛବି ସୀଁବା ॥୧॥
କଲବଲ ବଚନ ଅଧର ଅରୁନାରେ । ଦୁଇ ଦୁଇ ଦସନ ବିସଦ ବର ବାରେ ॥
ଲଲିତ କପୋଲ ମନୋହର ନାସା । ସକଲ ସୁଖଦ ସସିକର ସମ ହାସା ॥୨॥
ନୀଲ କଂଜ ଲୋଚନ ଭବମୋଚନ । ଭ୍ରାଜତ ଭାଲ ତିଲକ ଗୋରୋଚନ ॥
ବିକଟ ଭୃକୁଟି ସମ ଶ୍ରବନ ସୁହାଏ । କୁଞ୍ଚିତ କଚ ମେଚକ ଛବି ଛାଏ ॥୩॥

---

ଲଳିତ ଚିହ୍ନ କୁଳିଶ ଅଙ୍କୁଶାଦି ଚାରି । ନୂପୁର ମଧୁର ମନୋହର ଧ୍ୱନି-କାରୀ ॥
ସୁନ୍ଦର କନକ ମଣି ଖଚିତ ନିର୍ମିତ । କଟିରେ କିଙ୍କିଣୀ କଳରବ ସୁଶୋଭିତ ॥୪॥
ଉଦରେ ତ୍ରିବଳୀ-ରେଖା ମନୋହର ନାଭି ସୁନ୍ଦର ଗଭୀର ।
ଆୟତ ହୃଦୟେ ରାଜଇ ବିବିଧ ବାଳ ବିଭୂଷଣ ଚୀର ॥୭୬॥
ଅରୁଣ ପାଣି ଅଙ୍ଗୁଳି ନଖ ମନୋହର । ବିଶାଳ ବାହୁରେ ଶୋଭେ ଭୂଷଣ ସୁନ୍ଦର ॥
ବାଳସିଂହ ସ୍କନ୍ଧ କମ୍ବୁଗ୍ରୀବ ମନୋରମ । ଚାରୁ ଚିବୁକ ଆନନ ଛବିସୀମା ରମ୍ୟ ॥୧॥
ଅରୁଣ ଅଧର ମୃଦୁ ଦରେଟି ବଚନ । ଶ୍ରେଷ୍ଠ ଶ୍ରେଷ୍ଠ ଦୁଇ ଦୁଇ ବିଶଦ ଦଶନ ॥
ଲଳିତ କପୋଳ ନାସା ଅତି ମନୋହର । ସକଳ ସୁଖଦ, ହାସ୍ୟ ଯେସନ୍ତେ ଶଶିକର ॥୨॥
ନୀଳ ନୀରଜ ନୟନ ଭବ-ବିମୋଚନ । ବିରାଜଇ ଭାଲପଟେ ଟୀକା ଗୋରୋଚନ ॥
ବିକଟ ଭ୍ରୂକୁଟୀ ସମ ଶ୍ରବଣ ଶୋଭଇ । କୁଞ୍ଚିତ ଶ୍ୟାମଳ କେଶ ଛବି ବିରାଜଇ ॥୩॥

---

ସୁଖଦାୟକ ବାଳବିନୋଦ କ୍ରୀଡ଼ା କରି ଶ୍ରୀ ରଘୁନାଥ ଅଗଣାରେ ବିଚରଣ କରୁଥା'ନ୍ତି ॥୨॥ ମର୍କତମଣି ସମାନ ଶ୍ୟାମଳ ଓ କୋମଳ ଶରୀର । ଅଙ୍ଗେ ଅଙ୍ଗେ ଅନେକ କାମଦେବଙ୍କ ଛବି ବିରାଜିତ । ନବୀନ ରକ୍ତ କମଳ ସମାନ ଅରୁଣ ଓ କୋମଳ ଚରଣ-ଯୁଗଳ । ସୁନ୍ଦର ଅଙ୍ଗୁଳି ଏବଂ ନଖ ଜ୍ୟୋତିରେ ଚନ୍ଦ୍ରମାର କାନ୍ତି ହରଣ କରି ଆଣୁଥାଏ ॥ ୩ ॥ ପାଦ ତଳପାରେ ବଜ୍ର, ଅଙ୍କୁଶ, ଧ୍ୱଜ ଓ କମଳର ଚାରିଗୋଟି ସୁନ୍ଦର ଚିହ୍ନ । ଚରଣରେ ମଧୁର-ରବକାରୀ ସୁନ୍ଦର ନୂପୁର ସୁଶୋଭିତ । ମଣି ରତ୍ନ-ବିଜଡ଼ିତ ସୁବର୍ଣ୍ଣ-ନିର୍ମିତ କମନୀୟ କଟି-ମେଖଳାର ସ୍ୱର ସୁମଧୁର ଶୁଣାଯାଉଥାଏ ॥ ୪ ॥ ଦୋହା '—ଉଦରରେ ସୁନ୍ଦର ତ୍ରିବଳୀ ରେଖା, ନାଭି ସୁନ୍ଦର ଓ ଗଭୀର । ବିଶାଳ ବକ୍ଷସ୍ଥଳରେ ଅନେକ ପ୍ରକାର ଶିଶୁ-ବାଳକ-ଯୋଗ୍ୟ ଭୂଷଣ ଓ ବସ୍ତ୍ର ସୁଶୋଭିତ ॥ ୭୬ ॥ ଚୌପାଈ '— ଅରୁଣ ରଙ୍ଗର ହାତ ପାପୁଲି । ନଖ ଓ ଅଙ୍ଗୁଳିମାନ ମନୋହର ଏବଂ ବିଶାଳ ବାହୁ ଉପରେ ସୁନ୍ଦର ଭୂଷଣ । ଶିଶୁ ସିଂହର ସ୍କନ୍ଧ ପରି ସ୍କନ୍ଧ ଏବଂ ଶଙ୍ଖସଦୃଶ ତ୍ରିରେଖାଯୁକ୍ତ

ପୀତ ଝୀନି ଝଗୁଲୀ ତନ ସୋହୀ । କିଲକନି ଚିତୱନି ଭାୱତି ମୋହୀ ॥
ରୂପ ରାସି ନୃପ ଅଜିର ବିହାରୀ । ନାଚହିଁ ନିଜ ପ୍ରତିବିମ୍ବ ନିହାରୀ ॥୪॥
ମୋହି ସନ କରହିଁ ବିବିଧ ବିଧି କ୍ରୀଡ଼ା । ବରନତ ମୋହି ହୋତି ଅତି ବ୍ରୀଡ଼ା ॥
କିଲକତ ମୋହି ଧରନ ଜବ ଧାୱହିଁ । ଚଲଉଁ ଭାଗି ତବ ପୂପ ଦେଖାୱହିଁ ॥୫॥

ଆୱତ ନିକଟ ହଁସହିଁ ପ୍ରଭୁ ଭାଜତ ରୁଦନ କରାହିଁ ।
ଜାଉଁ ସମୀପ ଗହନ ପଦ ଫିରି ଫିରି ଚିତଇ ପରାହିଁ ॥୭୭(କ)॥
ପ୍ରାକୃତ ସିସୁ ଇବ ଲୀଲା ଦେଖି ଭୟଉ ମୋହି ମୋହ ।
କୱନ ଚରିତ୍ର କରତ ପ୍ରଭୁ ଚିଦାନଂଦ ସଂଦୋହ ॥୭୭(ଖ)॥

---

ପୀତ ଝୀନ କୁରୁତାଟି ଅଙ୍ଗେ ଶୋଭୁଥାଏ । କିଲକିଲି ଚାହାଣି ମୋ ମନ ହରି ନିଏ ॥
ନୃପ ପ୍ରାଙ୍ଗଣ ବିହାରୀ ସୌନ୍ଦର୍ଯ୍ୟ ଆଗାର । ନାଚନ୍ତି ନିରେଖି ପ୍ରତିବିମ୍ବ ଆପଣାର ॥୪॥
ନାନା ପ୍ରକାର କରନ୍ତି ମୋ ସଙ୍ଗରେ କ୍ରୀଡ଼ା । ଚରିତ ବର୍ଣ୍ଣନ୍ତେ ମୋତେ ଲାଗେ ଅତି ବ୍ରୀଡ଼ା ॥
କିଲିକାରି ମୋତେ ଯେବେ ଧରିବାକୁ ଧାନ୍ତି । ପଳାଇ ଯାଆନ୍ତେ ମୋତେ ପିଷ୍ଟକ ଦେଖାନ୍ତି ॥୫॥

ପ୍ରଭୁଙ୍କ ନିକଟେ ଆସିଲେ ହସନ୍ତି ପଳାଇଗଲେ କାନ୍ଦନ୍ତି ।
ପାଦ ଛୁଇଁବାକୁ ଯାଆନ୍ତେ, ପଛକୁ ଚାହିଁ ଚାହିଁ ପଳାଅନ୍ତି ॥୭୭ (କ)॥
ପ୍ରାକୃତ ସଦୃଶ ଶିଶୁ ଲୀଳା ଦେଖି ହେଲି ମୁଁ ମୋହିତ ମନ ।
ଏ କେଉଁ ଚରିତ କରୁଛନ୍ତି ପ୍ରଭୁ ଚିଦାନନ୍ଦ ନିକେତନ ॥୭୭ (ଖ)॥

---

ଗଳା । ମନୋହର ଚିବୁକ । ବଦନ ଛବିର ସୀମା ॥ ୧ ॥ ଦନ୍ତୁରିଟି ବଚନ ଓ ଅରୁଣ ଅଧର । ଉପରେ ଓ ତଳେ ଉଜ୍ଜ୍ୱଳ, ସୁନ୍ଦର ଓ କ୍ଷୁଦ୍ର କ୍ଷୁଦ୍ର ଦୁଇଟି ଲେଖାଏଁ ଦୁଧଦାନ୍ତ । ସୁନ୍ଦର ଗାଲ, ମନୋହର ନାସିକା ଏବଂ ସକଳ-ସୁଖଦାୟକ ଶଶିକର ସମାନ ସୁମଧୁର ହାସ୍ୟ ॥ ୨ ॥ ନୀଳକମଳ ସମାନ ନେତ୍ର ଜନ୍ମ-ମୃତ୍ୟୁର ବନ୍ଧନରୁ ମୁକ୍ତି ଦାନ କରେ, ଲଲାଟ ଉପରେ ଗୋରୋଚନର ତିଳକ ସୁଶୋଭିତ । ଭ୍ରୂଲତା ନତ, ଶ୍ରବଣ-ଯୁଗଳ ସମାନ ଓ ସୁନ୍ଦର । କଳା ଓ କୁଞ୍ଚିତ କେଶରାଶିର ଛବି ମୁଖମଣ୍ଡଳକୁ ଆଚ୍ଛାଦିତ କରିଥାଏ ॥ ୩ ॥ ପୀତ ଓ ଝୀନ କୁରୁତା ଶରୀର ଉପରେ ଶୋଭା ପାଉଥାଏ । ତାଙ୍କର କିଲକିଲା ହସ ଧ୍ୱନି ଓ ଚାହାଣି ମୋର ଅତି ପ୍ରିୟ । ରାଜା ଦଶରଥଙ୍କ ଅଗଣାରେ ବିହାର କରୁଥିବା ରୂପରାଶି ଶ୍ରୀରାମଚନ୍ଦ୍ର, ତାଙ୍କ ନିଜର ପ୍ରତିବିମ୍ବ ଦେଖି ନାଚୁଥା'ନ୍ତି ॥୪॥ ମୋ ସହିତ ସେ ନାନାବିଧ କ୍ରୀଡ଼ା କରୁଥା'ନ୍ତି । ସେ ଲୀଳା ସବୁ ବର୍ଣ୍ଣନା କରିବାକୁ ମୋତେ ଲଜ୍ଜା ଲାଗୁଛି । କିଲକିଲି ହସି ସେ ଯେତେବେଳେ ମୋତେ ଧରିବାକୁ ଦୌଡ଼ି ଆସନ୍ତି, ମୁଁ ଧାଇଁ ପଳାଇଯାଏ । ସେତେବେଳେ ସେ ମୋତେ ମାଲପୁଆ ଦେଖାନ୍ତି ॥ ୫ ॥ ଦୋହା :—ମୁଁ ପ୍ରଭୁଙ୍କ ନିକଟକୁ ଆସିଲେ ପ୍ରଭୁ ହସନ୍ତି ଏବଂ ପଳାଇ ଯିବାରେ ସେ କାନ୍ଦନ୍ତି । ଯେତେବେଳେ ମୁଁ ତାହାଙ୍କର ଚରଣ ସ୍ପର୍ଶ କରିବା ନିମନ୍ତେ ତାଙ୍କ ନିକଟକୁ ଯାଏ, ସେତେବେଳେ ସେ ପଛକୁ ଚାହିଁ ଫେରାଇ ମୋ ଆଡ଼କୁ

ଏତନା ମନ ଆନତ ଖଗରାୟା । ରଘୁପତି ପ୍ରେରିତ ବ୍ୟାପୀ ମାୟା ॥
ସୋ ମାୟା ନ ଦୁଖଦ ମୋହି କାହୀଁ । ଆନ ଜୀବ ଇବ ସଂସୃତ ନାହୀଁ ॥୧॥
ନାଥ ଇହାଁ କଛୁ କାରନ ଆନା । ସୁନହୁ ସୋ ସାବଧାନ ହରିଜାନା ॥
ଗ୍ୟାନ ଅଖଣ୍ଡ ଏକ ସୀତାବର । ମାୟା ବସ୍ୟ ଜୀବ ସଚରାଚର ॥୨॥
ଜୌଁ ସବ କେଁ ରହ ଜ୍ଞାନ ଏକରସ । ଈସ୍ୱର ଜୀବହି ଭେଦ କହହୁ କସ ॥
ମାୟାବସ୍ୟ ଜୀବ ଅଭିମାନୀ । ଈସ ବସ୍ୟ ମାୟା ଗୁନ ଖାନୀ ॥୩॥
ପରବସ ଜୀବ ସ୍ୱବସ ଭଗବଂତା । ଜୀବ ଅନେକ ଏକ ଶ୍ରୀକଂତା ॥
ମୁଧା ଭେଦ ଜଦ୍ୟପି କୃତ ମାୟା । ବିନୁ ହରି ଜାଇ ନ କୋଟି ଉପାୟା ॥୪॥
ରାମଚନ୍ଦ୍ର କେ ଭଜନ ବିନୁ ଜୋ ଚହ ପଦ ନିର୍ବାନ ।
ଗ୍ୟାନବନ୍ତ ଅପି ସୋ ନର ପସୁ ବିନୁ ପୁଁଛ ବିଷାନ ॥୭୮(କ)॥

---

ଏତିକି ମାତ୍ର ମନରେ ଭାବନ୍ତେ, ଖଗେଶ । ରାମଙ୍କ ପ୍ରେରିତେ ମାୟା ଘୋଟିଲା ବିଶେଷ ॥
ସେ ମାୟା ମୋତେ ଦୁଃଖଦ ନ ହୋଇଲା କାହିଁ । ଅନ୍ୟ ଜୀବ ପରି ଜନ୍ମ ମୃତ୍ୟୁ ହେଲ ନାହିଁ ॥୧॥
ନାଥ, ଏହା ମଧ୍ୟେ ଅଛି ହେତୁ କିଛି ଆନ । ସାବଧାନ ହୋଇ ତାହା ଶୁଣ, ହରିଯାନ ॥
ଅଖଣ୍ଡ ଜ୍ଞାନ-ସ୍ୱରୂପ ଏକ ସୀତାବର । ମାୟା-ବିବଶ ଅଟନ୍ତି ଜୀବ ଚରାଚର ॥୨॥
ହୁଅନ୍ତା ଜୀବଙ୍କ ଅବିଚ୍ଛିନ୍ନ ଜ୍ଞାନ ଯେବେ । ଜୀବ ଈଶ୍ୱରଙ୍କ ଭେଦ ରହନ୍ତା କି ତେବେ ? ॥
ମାୟାଧୀନ ଅଭିମାନୀ ଏ ଜୀବ ଅଟଇ । ଈଶ୍ୱରଙ୍କ ବଶୀଭୂତ ମାୟା ଗୁଣମୟୀ ॥୩॥
ପରାଧୀନ ଜୀବ ସଦା, ସ୍ୱାଧୀନ ଅନନ୍ତ । ଅଟନ୍ତି ଜୀବ ଅନେକ, ଏକ ଭଗବନ୍ତ ॥
ମାୟାକୃତ ଭେଦ ମିଥ୍ୟା ଯଦ୍ୟପି ଅଟଇ । ହରି ବିନା କୋଟି ଯତ୍ନେ ଦୂର ନ ହୁଅଇ ॥୪॥
ରାମଚନ୍ଦ୍ରଙ୍କର ଭଜନ ବିହୁନେ ଯେ ଲୋଡ଼ନ୍ତି ପଦ ନିର୍ବାଣ ।
ଶୃଙ୍ଗ ପୁଚ୍ଛହୀନ ପଶୁ ତାଙ୍କୁ ଜାଣ ହେଲେ ସୁଦ୍ଧା ଜ୍ଞାନବାନ ॥୭୮ (କ)॥

---

ଅନାଇଁ ଅନାଇଁ ପଳାଇ ଯାଆନ୍ତି ॥ ୭୭ (ଙ) ॥ ସାଧାରଣ ଶିଶୁ-ବାଳକୋଚିତ ଲୀଳା ଦେଖି ମୋର ମନରେ ମୋହ (ଶଙ୍କା) ଜାତ ହେଲା—ସଚ୍ଚିଦାନନ୍ଦଘନ ପ୍ରଭୁ ଏ କି ଲୀଳା କରୁଅଛନ୍ତି ? ॥ ୭୭ (ଖ) ॥ ଚୌପାଈ —ହେ ପକ୍ଷିରାଜ ! ମନରେ ଏତିକି ଶଙ୍କା କରିବା ମାତ୍ରେ ଶ୍ରୀ ରଘୁନାଥ-ପ୍ରେରିତ ମାୟା ମୋତେ ଘାରି ପକାଇଲା । କିନ୍ତୁ ଉକ୍ତ ମାୟା ମୋ ପ୍ରତି ଦୁଃଖଦାୟିନୀ ହେଲାନାହିଁ କିମ୍ବା ଅନ୍ୟ ଜୀବଙ୍କ ପରି ମୋତେ ସଂସାର-ବନ୍ଧନରେ ପକାଇଲା ନାହିଁ ॥ ୧ ॥ ହେ ନାଥ ! ଏଥିର ଆଉ ଗୋଟିଏ କାରଣ ଅଛି । ହେ ହରିବାହନ ଗରୁଡ ! ତାହା ସାବଧାନ ହୋଇ ଶୁଣନ୍ତୁ । ଏକମାତ୍ର ସୀତାପତି ଶ୍ରୀରାମ ଅଖଣ୍ଡ ଜ୍ଞାନ-ସ୍ୱରୂପ ଏବଂ ଜଡଚେତନ ସମସ୍ତ ଜୀବ ମାୟାର ଅଧୀନ ॥ ୨ ॥ ଯଦି ଜୀବମାନଙ୍କର ଏକରସ (ଅଖଣ୍ଡ) ଜ୍ଞାନ ଲାଭ ହୋଇଯାଏ, ତେବେ କୁହନ୍ତୁ—ଈଶ୍ୱର ଓ ଜୀବ ମଧ୍ୟରେ ପ୍ରଭେଦ ଆଉ କ'ଣ ରହିଲା ? ଅଭିମାନୀ ଜୀବ ମାୟାର ଅଧୀନ ଏବଂ ସତ୍ତ୍ୱ, ରଜ, ତମ—ଏହି ତିନି ଗୁଣର ଖଣି ମାୟା ଈଶ୍ୱରଙ୍କର

ରାକାପତି ଷୋଡ଼ସ ଉଅହିଁ ତାରାଗନ ସମୁଦାଇ ।
ସକଲ ଗିରିହ୍ନ ଦବ ଲାଇଅ ବିନୁ ରବି ରାତି ନ ଜାଇ ।।୭୮(ଖ)।।
ଐସେହିଁ ବିନୁ ହରିଭଜନ ଖଗେସା । ମିଟଇ ନ ଜୀବହ୍ନ କେର କଲେସା ।।
ହରି ସେବକହି ନ ବ୍ୟାପ ଅବିଦ୍ୟା । ପ୍ରଭୁ ପ୍ରେରିତ ବ୍ୟାପଇ ତେହି ବିଦ୍ୟା ।।୧।।
ତାତେଁ ନାସ ନ ହୋଇ ଦାସ କର । ଭେଦ ଭଗତି ବାଢ଼ଇ ବିହଙ୍ଗବର ।।
ଭ୍ରମ ତେଁ ଚକିତ ରାମ ମୋହି ଦେଖା । ବିହଁସେ ସୋ ସୁନୁ ଚରିତ ବିସେଷା ।।୨।।
ତେହି କୌତୁକ କର ମରମୁ ନ କାହୂଁ । ଜାନା ଅନୁଜ ନ ମାତୁ ପିତାହୂଁ ।।
ଜାନୁ ପାନି ଧାଏ ମୋହି ଧରନା । ସ୍ୟାମଲ ଗାତ ଅରୁନ କର ଚରନା ।।୩।।

---

ପୂର୍ଣ୍ଣ ଶଶୀ ହେଉ ଷୋଡ଼ଶେ ଉଦୟ ତ ତାରାଗଣ ସମୁଦାଏ ।
ସମସ୍ତ ଗିରିରେ ଲଗ୍ନ ଦାବ, ରବି ବିନା ରଜନୀ ନ ଯାଏ ।।୭୮ (ଖ)।।
ଏମନ୍ତେ ବିନା ହରିଙ୍କ ଭଜନ, ଖଗେଶ । ନଷ୍ଟ ହୋଇ ନ ପାରଇ ଜୀବନର କ୍ଳେଶ ।।
ପ୍ରଭୁ ସେବକଙ୍କୁ ବ୍ୟାପି ଅବିଦ୍ୟା ନ ପାରେ । ବ୍ୟାପଇ ବିଦ୍ୟା ତାହାଙ୍କୁ ପ୍ରଭୁ ପ୍ରେରଣାରେ ।।୧।।
ତେଣୁ ନାଶ ନ ହୁଅଇ ହରି ଦାସଙ୍କର । ଭେଦ ଭକ୍ତି ବୃଦ୍ଧି ହୁଏ, ବିହଙ୍ଗ-ପ୍ରବର ।।
ବିଲୋକିଣ ରାମ ମୋତେ ଭ୍ରମରେ ଚକିତ । ହସିଦେଲେ, ଶୁଣ ସେହି ଅଦ୍ଭୁତ ଚରିତ ।।୨।।
କେହି ହେଲେ ନ ଜାଣିଲେ ସେହି କୌତୁକର । ମରମ, ଅନୁଜ କିମ୍ବା ଜନନୀ ପିତୃର ।।
ଗୁରୁଣ୍ଡି ଧାଇଁଲେ ମୋତେ ଧରିବା କାରଣେ । ଶ୍ୟାମଳ ଶରୀର ମୃଦୁ ଅରୁଣ ଚରଣେ ।।୩।।

---

ଅଧୀନ ।। ୩ ।। ଜୀବ ପରାଧୀନ; ଭଗବାନ୍ ସ୍ୱାଧୀନ ଓ ସ୍ୱତନ୍ତ୍ର । ଜୀବ ଅନେକ । ଶ୍ରୀପତି ଭଗବାନ୍ ଏକ । ମାୟାକୃତ ଏହି ଭେଦ ଅସତ୍ୟ ହେଲେ ମଧ୍ୟ ଭଗବାନଙ୍କ ଭଜନ ବିନା କୋଟି କୋଟି ଉପାୟ କଲେ ସୁଦ୍ଧା ଉକ୍ତ ଭେଦ ଦୂର କରି ହୁଏ ନାହିଁ ।।୪।। ଦୋହା :—ଶ୍ରୀରାମଚନ୍ଦ୍ରଙ୍କ ଭଜନ ବିନା ଯେଉଁ ମନୁଷ୍ୟ ମୋକ୍ଷପଦ ଇଚ୍ଛା କରେ, ସେହି ମନୁଷ୍ୟ ଜ୍ଞାନବାନ୍ ହୋଇପାରେ ସତ, ମାତ୍ର ସେ ଗୋଟିଏ ଲାଙ୍ଗୁଳ ଓ ଶୃଙ୍ଗହୀନ ପଶୁ ।। ୭୮ (କ) ।। ସମସ୍ତ ତାରାଗଣ ସହିତ ଷୋଳକଳା-ପୂର୍ଣ୍ଣ ଚନ୍ଦ୍ରମା ଉଦିତ ହୁଅନ୍ତୁ ଏବଂ ଯେତେ ପର୍ବତ, ସେ ସବୁଥିରେ ଦାବାଗ୍ନି ସଂଯୋଗ କରାଯାଉ ପଛକେ; ତଥାପି ସୂର୍ଯ୍ୟୋଦୟ ବିନା ରାତ୍ରି ଦୂର ହୁଏ ନାହିଁ ।। ୭୮ (ଖ) ।। ଚୌପାଈ —ହେ ପକ୍ଷିରାଜ ! ଏହି ରୂପେ ଶ୍ରୀହରିଙ୍କ ଭଜନ ବିନା ଜୀବମାନଙ୍କ କ୍ଳେଶ ମେଣ୍ଟେ ନାହିଁ । ଶ୍ରୀ ହରିଙ୍କ ସେବକଙ୍କୁ ଅବିଦ୍ୟା ବ୍ୟାପି ପାରେ ନାହିଁ । ପ୍ରଭୁଙ୍କ ପ୍ରେରଣାରେ ତାହାଙ୍କୁ ବିଦ୍ୟା ବ୍ୟାପେ ।। ୧ ।। ହେ ପକ୍ଷିବର ! ଏହାଦ୍ୱାରା ଦାସର ନାଶ ହୁଏ ନାହିଁ ଏବଂ ଭେଦ-ଭକ୍ତି ବଢେ । ଶ୍ରୀରାମ ମୋତେ ଭ୍ରମରେ ଚକିତ ହେବାର ଦେଖି ହସିଲେ । ସେହି ବିଶେଷ ଚରିତ ଶୁଣନ୍ତୁ ।। ୨ ।। ଉକ୍ତ କୌତୁକର ମର୍ମ ସାନ ଭାଇମାନେ କିମ୍ବା ମାତାପିତା କେହି ହେଲେ ଜାଣିଲେ ନାହିଁ । ସେହି ଶ୍ୟାମଶରୀର ଓ ଅରୁଣ-କର-ଚରଣ ବାଳରୂପ ଶ୍ରୀରାମ ଗୁରୁଣ୍ଡି ଗୁରୁଣ୍ଡି ମୋତେ ଧରିବା ପାଇଁ ଦୌଡ଼ିଲେ ।। ୩ ।। ହେ

ତବ ମୈଁ ଭାଗି ଚଲେଉଁ ଉରଗାରୀ । ରାମ ଗହନ କହଁ ଭୁଜା ପସାରୀ ॥
ଜିମି ଜିମି ଦୂରି ଉଡ଼ାଉଁ ଅକାସା । ତହଁ ଭୁଜ ହରି ଦେଖଉଁ ନିଜ ପାସା ॥୪॥

ବ୍ରହ୍ମଲୋକ ଲଗି ଗୟଉଁ ମୈଁ ଚିତୟଉଁ ପାଛ ଉଡ଼ାତ ।
ଜୁଗ ଅଙ୍ଗୁଲ କର ବୀଚ ସବ ରାମ ଭୁଜହି ମୋହି ତାତ ॥୭୯(କ)॥
ସପ୍ତାବରନ ଭେଦ କରି ଜହାଁ ଲଗେଁ ଗତି ମୋରି ।
ଗୟଉଁ ତହାଁ ପ୍ରଭୁ ଭୁଜ ନିରଖି ବ୍ୟାକୁଲ ଭୟଉଁ ବହୋରି ॥୭୯(ଖ)॥

ମୂଦେଉଁ ନୟନ ତ୍ରସିତ ଜବ ଭୟଉଁ । ପୁନି ଚିତବତ କୋସଲପୁର ଗୟଉଁ ॥
ମୋହି ବିଲୋକି ରାମ ମୁସୁକାହୀଁ । ବିହଁସତ ତୁରତ ଗୟଉଁ ମୁଖ ମାହୀଁ ॥୧॥
ଉଦର ମାଝ ସୁନୁ ଅଣ୍ଡଜରାୟା । ଦେଖେଉଁ ବହୁ ବ୍ରହ୍ମାଣ୍ଡ ନିକାୟା ॥
ଅତି ବିଚିତ୍ର ତହଁ ଲୋକ ଅନେକା । ରଚନା ଅଧିକ ଏକ ତେଁ ଏକା ॥୨॥

---

ପଳାଇ ଗଲି ମୁଁ ତହୁଁ, ଶୁଣ, ଖଗନାଥ । ମୋତେ ଧରିବାକୁ ପ୍ରଭୁ ବଢାଇଲେ ହାତ ॥
ଯେମନ୍ତେ ଯେମନ୍ତେ ଦୂରେ ଉଡ଼ଇ ଆକାଶେ । ତେମନ୍ତେ ତେମନ୍ତେ ଭୁଜ ଦେଖେ ନିଜ ପାଶେ ॥୪॥

ପଛେ ଚାହିଁ ଚାହିଁ ଉଡ଼ି ଉଡ଼ି ମୁହିଁ ଗଲି ବ୍ରହ୍ମଲୋକ ଯାଏ ।
ତାତ, ରାମ ଭୁଜ ମୋ ମଧ୍ୟେ ଅନ୍ତର ଉଭୟ ଅଙ୍ଗୁଳି ଥାଏ ॥୭୯ (କ)॥
ସପ୍ତ ଆବରଣ ଭେଦ କରି ମୋର ଯେ ପର୍ଯ୍ୟନ୍ତ ଥିଲା ଗତି ।
ଗଲି, ତହିଁ ପୁଣି ପ୍ରଭୁ ଭୁଜ ଦେଖି ଆକୁଳ ହୋଇଲି ଅତି ॥୭୯ (ଖ)॥

ବୁଜିଲି ନୟନ ଯହୁଁ ତ୍ରସିତ ହୋଇଲି । ପୁଣି ଚାହାନ୍ତେ କୋଶଳ ପୁରୀକୁ ଆସିଲି ॥
ମୋତେ ଦେଖି ହସିଦେଲେ ଶ୍ରୀରାମ ଆଦର । ହସନ୍ତେ ମୁଖେ ପ୍ରବେଶ କଲି ମୁଁ ସତ୍ୱର ॥୧॥
ଉଦର ମଧ୍ୟରେ ଶୁଣ ଅଣ୍ଡଜ-ରାଜନ । ବହୁତ ବ୍ରହ୍ମାଣ୍ଡ ଯାଇ କଲି ବିଲୋକନ ॥
ଅତ୍ୟନ୍ତ ବିଚିତ୍ର ତହିଁ ଲୋକ ଯେ ଅନେକ । ରଚନା ଦିବ୍ୟ ସୁନ୍ଦର ଏକୁ ବଳି ଏକ ॥୨॥

---

ହେ ଉରଗାରି ଗରୁଡ଼ ! ସେତେବେଳେ ମୁଁ ଦୌଡ଼ି ପଳାଇଗଲି । ଶ୍ରୀରାମ ମୋତେ ଧରିବା ନିମନ୍ତେ ବାହୁ ବିସ୍ତାର କଲେ । ମୁଁ ଆକାଶରେ ଯେତେ ଯେତେ ଦୂର ଉଡ଼ୁଥିଲି, ଶ୍ରୀହରିଙ୍କ ବାହୁକୁ ମୋର ସେତେ ସେତେ ନିକଟରେ ଦେଖୁଥାଏ ॥ ୪ ॥ ଦୋହା :—ମୁଁ ବ୍ରହ୍ମଲୋକ ପର୍ଯ୍ୟନ୍ତ ଗଲି ଏବଂ ହେ ତାତ ! ଉଡ଼ୁ ଉଡ଼ୁ ଯେତେବେଳେ ପଛ ଆଡ଼କୁ ଚାହିଁଦିଏ, ଦେଖିଲି, ଶ୍ରୀରାମଙ୍କ ବାହୁ ଓ ମୋ ମଧ୍ୟରେ ଦୁଇ ଅଙ୍ଗୁଳି ମାତ୍ର ବ୍ୟବଧାନ ରହିଅଛି ॥ ୭୯ (କ) ॥ ସପ୍ତ ଆବରଣ ଭେଦ ମୋର ଗତି ଯେତେ ଦୂର ଥିଲା, ସେତେ ଦୂର ମୁଁ ଗଲି । କିନ୍ତୁ ସେଠାରେ ମଧ୍ୟ ପ୍ରଭୁଙ୍କ ବାହୁକୁ ମୋ ପଛରେ ଦେଖି ମୁଁ ବ୍ୟାକୁଳ ହୋଇପଡ଼ିଲି ॥ ୭୯ (ଖ) ॥ ଚୌପାଇ :—ଯେତେବେଳେ ମୁଁ ଭୟଭୀତ ହୋଇପଡ଼ିଲି, ସେତେବେଳେ ମୁଁ ଆଖି ବୁଜିଦେଲି । ପୁଣି ଆଖି ଖୋଲି ଦେଖେ ତ, ଅଯୋଧ୍ୟାପୁରରେ ପହଞ୍ଚି ଯାଇଛି । ମୋତେ ଦେଖି ଶ୍ରୀରାମଚନ୍ଦ୍ର ମୁରୁକି ହସିବାକୁ ଲାଗିଲେ । ସେ ହସିବା ମାତ୍ରେ ମୁଁ ତୁରନ୍ତ ତାଙ୍କ ମୁଖ ମଧ୍ୟରେ ପଶିଗଲି ॥୧॥

କୋଟିନ୍ହ ଚତୁରାନନ ଗୌରୀସା । ଅଗନିତ ଉଡଗନ ରବି ରଜନୀସା ॥
ଅଗନିତ ଲୋକପାଲ ଜମ କାଲା । ଅଗନିତ ଭୂଧର ଭୂମି ବିସାଲା ॥୩॥
ସାଗର ସରି ସର ବିପିନ ଅପାରା । ନାନା ଭାଁତି ସୃଷ୍ଟି ବିସ୍ତାରା ॥
ସୁର ମୁନି ସିଦ୍ଧ ନାଗ ନର କିଂନର । ଚାରି ପ୍ରକାର ଜୀବ ସଚରାଚର ॥୪॥

ଜୋ ନହିଁ ଦେଖା ନହିଁ ସୁନା ଜୋ ମନହୂଁ ନ ସମାଇ ।
ସୋ ସବ ଅଦ୍ଭୁତ ଦେଖେଉଁ ବରନି କଵନି ବିଧି ଜାଇ ॥୮୦(କ)॥
ଏକ ଏକ ବ୍ରହ୍ମାଣ୍ଡ ମହୁଁ ରହଉଁ ବରଷ ସତ ଏକ ।
ଏହି ବିଧି ଦେଖତ ଫିରଉଁ ମୈଁ ଅଣ୍ଡକଟାହ ଅନେକ ॥୮୦(ଖ)॥

ଲୋକ ଲୋକ ପ୍ରତି ଭିନ୍ନ ବିଧାତା । ଭିନ୍ନ ବିଷ୍ଣୁ ଶିବ ମନୁ ଦିସିତ୍ରାତା ॥
ନର ଗଂଧର୍ବ ଭୂତ ବେତାଲା । କିଂନର ନିସିଚର ପସୁ ଖଗ ବ୍ୟାଲା ॥୧॥

---

ଦେଖିଲି କୋଟି ଚତୁରାନନ ଗଉରୀଶ । ନକ୍ଷତ୍ର ଅପରିମିତ, ରବି, ରଜନୀଶ ॥
ଅଗଣିତ ଲୋକପାଳ, ପୁଣି ଯମ କାଳ । ଅଗଣିତ ମହୀଧର ଅବନୀ ବିଶାଳ ॥୩॥
ସାଗର ସରିତ, ବନ ବିଟପ ଅପାର । ବିବିଧ ପ୍ରକାର ସୃଷ୍ଟି ରଚନ ବିସ୍ତାର ॥
ସୁର, ମୁନି, ସିଦ୍ଧ, ନାଗ, ମନୁଷ୍ୟ, କିନ୍ନର । ଚାରି ପ୍ରକାରର ଜୀବ ସଚର ଅଚର ॥୪॥

ଯାହା କେବେ ଦେଖି ଶୁଣି ମୁଁ ନ ଥିଲି ଯାହା ନ ଆସଇ ମନେ ।
ଦେଖିଲି ଏମନ୍ତ ଭଙ୍ଗୀ ଅଦଭୁତ ବର୍ଣ୍ଣି କହିବି କେମନେ ॥୮୦ (କ)॥
ଏକେକ ବ୍ରହ୍ମାଣ୍ଡ ମଧ୍ୟରେ ରହିଲି ବର୍ଷ ଶତ ଏକ ଏକ ।
ଏହି ଭାବେ ମୁହିଁ ଦେଖିଣ ଭ୍ରମିଲି ବ୍ରହ୍ମାଣ୍ଡ-ଖଣ୍ଡ ଅନେକ ॥୮୦ (ଖ)॥

ପ୍ରତି ଲୋକରେ ପୃଥକ ପୃଥକ ବିଧାତା । ପୃଥକ ବିଷ୍ଣୁ ମହେଶ ମନୁ ଦିଗ-ତ୍ରାତା ॥
ମାନବ ଗନ୍ଧର୍ବ ଭୂତ ଆବର ବେତାଳ । କିନ୍ନର ରଜନୀଚର ପଶୁ ପକ୍ଷୀ ବ୍ୟାଳ ॥୧॥

---

ହେ ପକ୍ଷିରାଜ ! ଶୁଣନ୍ତୁ, ମୁଁ ତାଙ୍କ ଉଦର ଭିତରେ ଅନେକ ବ୍ରହ୍ମାଣ୍ଡ-ସମୂହ ଦେଖିଲି । ସେହି ସମସ୍ତ ବ୍ରହ୍ମାଣ୍ଡ ମଧ୍ୟରେ ଅନେକ ବିଚିତ୍ର ଲୋକ ଥିଲେ । ସେମାନଙ୍କର ରଚନା ଏକରୁ ବଳି ଆରେକ ବିଚିତ୍ର ॥ ୨ ॥ କୋଟି କୋଟି ବ୍ରହ୍ମା ଓ ଶିବ, ଅଗଣିତ ତାରାଗଣ, ସୂର୍ଯ୍ୟଚନ୍ଦ୍ର, ଅସଂଖ୍ୟ ଲୋକପାଳ, ଯମ ଓ କାଳ, ଅଗଣିତ ବିଶାଳ ପର୍ବତ ଓ ଭୂମି, ଅସଂଖ୍ୟ ସମୁଦ୍ର, ନଦୀ, ସରୋବର ଓ ବନ ଏବଂ ଆହୁରି ମଧ୍ୟ ନାନା ପ୍ରକାରେ ସୃଷ୍ଟିର ବିସ୍ତାର ଦେଖିଲି । ଦେବତା, ମୁନି, ସିଦ୍ଧ, ନାଗ, ନର, କିନ୍ନର ତଥା ଚାରି ପ୍ରକାରର ଜଡ଼ ଓ ଚେତନା ଜୀବମାନଙ୍କୁ ଦେଖିଲି ॥ ୩-୪ ॥ ଦୋହା :—ଯାହା କେବେ ଦେଖି ନ ଥିଲି କି ଶୁଣି ନ ଥିଲି ଏବଂ ଯାହା ମନରେ ମଧ୍ୟ କେବେ କଳ୍ପନା କରି ନ ଥିଲି, ସେହି ସବୁ ଅଦ୍ଭୁତ ସୃଷ୍ଟି ମୁଁ ଦେଖିଲି । ତେବେ ତାହାର ବର୍ଣ୍ଣନା କିପରି କରାଯାଇ ପାରିବ ! ॥୮୦ (କ)॥ ମୁଁ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ଶହେ ଶହେ ବର୍ଷ ପର୍ଯ୍ୟନ୍ତ ରହୁଥାଏ । ଏହିପରି ମୁଁ ଅନେକ ବ୍ରହ୍ମାଣ୍ଡ-ଖଣ୍ଡ ଦେଖି ଦେଖି ଭ୍ରମିଲି ॥ ୮୦ (ଖ) ॥

ଦେବ ଦନୁଜ ଗନ ନାନା ଜାତୀ । ସକଲ ଜୀବ ତହଁ ଆନହି ଭାଁତୀ ॥
ମହି ସରି ସାଗର ସର ଗିରି ନାନା । ସବ ପ୍ରପଞ୍ଚ ତହଁ ଆନହି ଆନା ॥୨॥
ଅଣ୍ଡକୋସ ପ୍ରତି ପ୍ରତି ନିଜ ରୂପା । ଦେଖେଉଁ ଜିନସ ଅନେକ ଅନୂପା ॥
ଅୱଧପୁରୀ ପ୍ରତି ଭୁବନ ନିନାରୀ । ସରଜୂ ଭିନ୍ନ ଭିନ୍ନ ନର ନାରୀ ॥୩॥
ଦସରଥ କୌସଲ୍ୟା ସୁନୁ ତାତା । ବିବିଧ ରୂପ ଭରତାଦିକ ଭ୍ରାତା ॥
ପ୍ରତି ବ୍ରହ୍ମାଣ୍ଡ ରାମ ଅବତାରା । ଦେଖଉଁ ବାଲବିନୋଦ ଅପାରା ॥୪॥

ଭିନ୍ନ ଭିନ୍ନ ମୈଁ ଦୀଖ ସବୁ ଅତି ବିଚିତ୍ର ହରିଜାନ ।
ଅଗନିତ ଭୁବନ ଫିରେଉଁ ପ୍ରଭୁ ରାମ ନ ଦେଖେଉଁ ଆନ ॥୮୧(କ)॥
ସୋଇ ସିସୁପନ ସୋଇ ସୋଭା ସୋଇ କୃପାଲ ରଘୁବୀର ॥
ଭୁବନ ଭୁବନ ଦେଖତ ଫିରଉଁ ପ୍ରେରିତ ମୋହ ସମୀର ॥୮୧ (ଖ)॥

---

ନାନା ବର୍ଣ୍ଣର ସକଳ ଦେବତା ମାନବ । ଅନ୍ୟ ପ୍ରକାର ଦେଖିଲି ତହିଁ ଜୀବ ସର୍ବ ॥
ଅବନୀ ସିନ୍ଧୁ ସରିତ ସର ଗିରି ସ୍ଥାନ । ସମସ୍ତ ପ୍ରପଞ୍ଚ ତହିଁ ଦିଶେ ଆନ ଆନ ॥୨॥
ପ୍ରତ୍ୟେକ ବ୍ରହ୍ମାଣ୍ଡ କୋଷେ ନିଜ ଅନୁରୂପ । ଦେଖିଲି ଅନ୍ୟ ପଦାର୍ଥ ଅନେକ ଅନୁପ ॥
ଦେଖିଲି ଅଯୋଧ୍ୟାପୁରୀ ପ୍ରତି ଭୁବନରେ । ସରଯୂ ସରିତ ଭିନ୍ନ ଭିନ୍ନ ନାରୀ ନରେ ॥୩॥
ଦଶରଥ କଉଶଲ୍ୟା ଆଦି ସବୁ ମାତା । ନାନା-ବିଧ ରୂପେ ତହିଁ ଭରତାଦି ଭ୍ରାତା ॥
ପ୍ରତି ବ୍ରହ୍ମାଣ୍ଡ ମଧ୍ୟରେ ରାମ ଅବତାର । ଦେଖିଲି ଲଳିତ ବାଲ-ବିନୋଦ ଅପାର ॥୪॥

ସର୍ବ ଭିନ୍ନ ଭିନ୍ନ ଦେଖିଲି, ପରମ-ବିଚିତ୍ର, ହରି-ବାହାନ ।
ଅମିତ ଭୁବନ କଲେହେଁ ଭ୍ରମଣ ରାମ ନ ଦେଖିଲି ଆନ ॥୮୧ (କ)॥
ସେହି ଶିଶୁପଣ ସେ ଶୋଭାନିଧାନ ସେ କୃପାଳୁ ରଘୁବୀର ।
ଭୁବନ ଭୁବନ ଦେଖିଣ ଭ୍ରମିଲି ପ୍ରେରିତ ମୋହ ସମୀର ॥୮୧ (ଖ)॥

---

ଚୌପାଈ — ପ୍ରତ୍ୟେକ ଲୋକରେ ଭିନ୍ନ ଭିନ୍ନ ବ୍ରହ୍ମା, ଭିନ୍ନ ଭିନ୍ନ ବିଷ୍ଣୁ, ଶିବ, ମନୁ, ଦିଗପାଳ, ମନୁଷ୍ୟ, ଗନ୍ଧର୍ବ, ଭୂତ, ବେତାଳ, କିନ୍ନର, ରାକ୍ଷସ, ପଶୁ, ପକ୍ଷୀ, ସର୍ପ ତଥା ନାନା ଜାତିର ଦେବତା ଓ ଦୈତ୍ୟଗଣ ଥିଲେ । ସେଠାରେ ସମସ୍ତ ଜୀବ ଅନ୍ୟ ପ୍ରକାରର ଥିଲେ । ସେଠିକାର ଅନେକ ପୃଥିବୀ, ନଦୀ, ସମୁଦ୍ର, ସରୋବର, ପର୍ବତ ଆଦି ସମସ୍ତ ସୃଷ୍ଟି ଭିନ୍ନ ଭିନ୍ନ ପ୍ରକାରର ଥିଲା ॥ ୧-୨ ॥ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ମୁଁ ମୋ ନିଜ ରୂପ ଦେଖିଲି ଏବଂ ଅନେକ ଅନୁପମ ବସ୍ତୁ ଦେଖିଲି । ପ୍ରତ୍ୟେକ ଭୁବନରେ ସ୍ୱତନ୍ତ୍ର ଅଯୋଧ୍ୟାପୁରୀ, ଭିନ୍ନ ସରଯୂ ଏବଂ ଭିନ୍ନ ପ୍ରକାରର ନରନାରୀ ଥିଲେ ॥୩॥ ହେ ତାତ ! ଶୁଣନ୍ତୁ, ଦଶରଥ, କୌଶଲ୍ୟା ଓ ଭରତାଦି ଭାଇମାନେ ମଧ୍ୟ ଭିନ୍ନ ଭିନ୍ନ ରୂପଧାରୀ ହୋଇଥିଲେ । ମୁଁ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ରାମାବତାର ଏବଂ ତାହାଙ୍କର ଅପାର ବାଲଲୀଳା ଦେଖି ଭ୍ରମଣ କରୁଥାଏ ॥ ୪ ॥ ଦୋହା — ହେ ହରିବାହନ ! ମୁଁ ସବୁ କିଛି ଭିନ୍ନ ଭିନ୍ନ ଓ ଅତି ବିଚିତ୍ର ଦେଖିଲି । ମୁଁ ଅଗଣିତ ବ୍ରହ୍ମାଣ୍ଡରେ

କୋଟିନ୍ହ ଚତୁରାନନ ଗୌରୀସା । ଅଗନିତ ଉଡ଼ଗନ ରବି ରଜନୀସା ॥
ଅଗନିତ ଲୋକପାଲ ଜମ କାଲା । ଅଗନିତ ଭୂଧର ଭୂମି ବିସାଲା ॥୩॥
ସାଗର ସରି ସର ବିପିନ ଅପାରା । ନାନା ଭାଁତି ସୃଷ୍ଟି ବିସ୍ତାରା ॥
ସୁର ମୁନି ସିଦ୍ଧ ନାଗ ନର କିଂନର । ଚାରି ପ୍ରକାର ଜୀବ ସଚରାଚର ॥୪॥

ଜୋ ନହିଁ ଦେଖା ନହିଁ ସୁନା ଜୋ ମନହୂଁ ନ ସମାଇ ।
ସୋ ସବ ଅଦ୍ଭୁତ ଦେଖେଉଁ ବରନି କଵନି ବିଧି ଜାଇ ॥୮୦(କ)॥
ଏକ ଏକ ବ୍ରହ୍ମାଣ୍ଡ ମହୁଁ ରହଉଁ ବରଷ ସତ ଏକ ।
ଏହି ବିଧି ଦେଖତ ଫିରଉଁ ମୈଁ ଅଣ୍ଡକଟାହ ଅନେକ ॥୮୦(ଖ)॥

ଲୋକ ଲୋକ ପ୍ରତି ଭିନ୍ନ ବିଧାତା । ଭିନ୍ନ ବିଷ୍ଣୁ ଶିବ ମନୁ ଦିସିତ୍ରାତା ॥
ନର ଗଂଧର୍ବ ଭୂତ ବେତାଲା । କିଂନର ନିସିଚର ପସୁ ଖଗ ବ୍ୟାଲା ॥୫॥

---

ଦେଖିଲି କୋଟି ଚତୁରାନନ ଗଉରୀଶ । ନକ୍ଷତ୍ର ଅପରିମିତ, ରବି, ରଜନୀଶ ॥
ଅଗଣିତ ଲୋକପାଳ, ପୁଣି ଯମ କାଳ । ଅଗଣିତ ମହୀଧର ଅବନୀ ବିଶାଳ ॥୩॥
ସାଗର ସରିତ, ବନ ବିଟପ ଅପାର । ବିବିଧ ପ୍ରକାର ସୃଷ୍ଟି ରଚନା ବିସ୍ତାର ॥
ସୁର, ମୁନି, ସିଦ୍ଧ, ନାଗ, ମନୁଷ୍ୟ, କିନ୍ନର । ଚାରି ପ୍ରକାରର ଜୀବ ସଚର ଅଚର ॥୪॥

ଯାହା କେବେ ଦେଖି ଶୁଣି ମୁଁ ନ ଥିଲି ଯାହା ନ ଆସଇ ମନେ ।
ଦେଖିଲି ଏମନ୍ତ ତହିଁ ଅଦଭୁତ ବର୍ଣ୍ଣି କହିବି କେସନେ ॥୮୦ (କ)॥
ଏକେକ ବ୍ରହ୍ମାଣ୍ଡ ମଧ୍ୟରେ ରହିଲି ବର୍ଷ ଶତ ଏକ ଏକ ।
ଏହି ଭାବେ ମୁହିଁ ଦେଖିଣ ଭ୍ରମିଲି ବ୍ରହ୍ମାଣ୍ଡ-ଭାଣ୍ଡ ଅନେକ ॥୮୦ (ଖ)॥

ପ୍ରତି ଲୋକରେ ପୃଥକ ପୃଥକ ବିଧାତା । ପୃଥକ ବିଷ୍ଣୁ, ମହେଶ ମନୁ ଦିଗ-ତ୍ରାତା ॥
ମାନବ ଗନ୍ଧର୍ବ ଭୂତ ଆବର ବେତାଳ । କିନ୍ନର ରଜନୀଚର ପଶୁ ପକ୍ଷୀ ବ୍ୟାଳ ॥୫॥

---

ହେ ପକ୍ଷିରାଜ ! ଶୁଣନ୍ତୁ, ମୁଁ ତାଙ୍କ ଉଦର ଭିତରେ ଅନେକ ବ୍ରହ୍ମାଣ୍ଡ-ସମୂହ ଦେଖିଲି । ସେହି ସମସ୍ତ ବ୍ରହ୍ମାଣ୍ଡ ମଧ୍ୟରେ ଅନେକ ବିଚିତ୍ର ଲୋକ ଥିଲେ । ସେମାନଙ୍କର ରଚନା ଏକରୁ ବଳି ଆରେକ ବିଚିତ୍ର ॥ ୨ ॥ କୋଟି କୋଟି ବ୍ରହ୍ମା ଓ ଶିବ, ଅଗଣିତ ତାରାଗଣ, ସୂର୍ଯ୍ୟଚନ୍ଦ୍ର, ଅସଂଖ୍ୟ ଲୋକପାଳ, ଯମ ଓ କାଳ, ଅଗଣିତ ବିଶାଳ ପର୍ବତ ଓ ଭୂମି, ଅସଂଖ୍ୟ ସମୁଦ୍ର, ନଦୀ, ସରୋବର ଓ ବନ ଏବଂ ଆହୁରି ମଧ୍ୟ ନାନା ପ୍ରକାରେ ସୃଷ୍ଟିର ବିସ୍ତାର ଦେଖିଲି । ଦେବତା, ମୁନି, ସିଦ୍ଧ, ନାଗ, ନର, କିନ୍ନର ତଥା ଚାରି ପ୍ରକାରର ଜଡ଼ ଓ ଚେତନ ଜୀବମାନଙ୍କୁ ଦେଖିଲି ॥ ୩-୪ ॥ ଦୋହା '—ଯାହା କେବେ ଦେଖି ନ ଥିଲି କି ଶୁଣି ନ ଥିଲି ଏବଂ ଯାହା ମନରେ ସୁଦ୍ଧା କେବେ କଳ୍ପନା କରି ନ ଥିଲି, ସେହି ସବୁ ଅଦ୍ଭୁତ ସୃଷ୍ଟି ମୁଁ ଦେଖିଲି । ତେବେ ତାହାର ବର୍ଣ୍ଣନା କିପରି କରାଯାଇ ପାରିବ ! ॥୮୦ (କ)॥ ମୁଁ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ଶହେ ଶହେ ବର୍ଷ ପର୍ଯ୍ୟନ୍ତ ରହୁଥାଏ । ଏହିପରି ମୁଁ ଅନେକ ବ୍ରହ୍ମାଣ୍ଡ-ଖଣ୍ଡ ଦେଖି ଦେଖି ଭ୍ରମିଲି ॥ ୮୦ (ଖ) ॥

ଦେବ ଦନୁଜ ଗନ ନାନା ଜାତୀ । ସକଲ ଜୀବ ତହଁ ଆନହି ଭାଁତୀ ॥
ମହି ସରି ସାଗର ସର ଗିରି ନାନା । ସବ ପ୍ରପଞ୍ଚ ତହଁ ଆନଇ ଆନା ॥୨॥
ଅଣ୍ଡକୋସ ପ୍ରତି ପ୍ରତି ନିଜ ରୂପା । ଦେଖେଉଁ ଜିନସ ଅନେକ ଅନୂପା ॥
ଅବଧପୁରୀ ପ୍ରତି ଭୁବନ ନିନାରୀ । ସରଜୂ ଭିନ୍ନ ଭିନ୍ନ ନର ନାରୀ ॥୩॥
ଦସରଥ କୌସଲ୍ୟା ସୁନୁ ତାତା । ବିବିଧ ରୂପ ଭରତାଦିକ ଭ୍ରାତା ॥
ପ୍ରତି ବ୍ରହ୍ମାଣ୍ଡ ରାମ ଅବତାରା । ଦେଖଉଁ ବାଲବିନୋଦ ଅପାରା ॥୪॥

ଭିନ୍ନ ଭିନ୍ନ ମୈଁ ଦୀଖ ସବୁ ଅତି ବିଚିତ୍ର ହରିଜାନ ।
ଅଗନିତ ଭୁବନ ଫିରେଉଁ ପ୍ରଭୁ ରାମ ନ ଦେଖେଉଁ ଆନ ॥୮୧(କ)॥
ସୋଇ ସିସୁପନ ସୋଇ ସୋଭା ସୋଇ କୃପାଲ ରଘୁବୀର ॥
ଭୁବନ ଭୁବନ ଦେଖତ ଫିରଉଁ ପ୍ରେରିତ ମୋହ ସମୀର ॥୮୧ (ଖ)॥

---

ନାନା ବର୍ଣ୍ଣର ସକଳ ଦେବତା ମାନବ । ଅନ୍ୟ ପ୍ରକାର ଦେଖିଲି ତହିଁ ଜୀବ ସର୍ବ ॥
ଅବନୀ ସିନ୍ଧୁ ସରିତ ସର ଗିରି ସ୍ଥାନ । ସମସ୍ତ ପ୍ରପଞ୍ଚ ତହିଁ ଦିଶେ ଆନ ଆନ ॥୨॥
ପ୍ରତ୍ୟେକ ବ୍ରହ୍ମାଣ୍ଡ କୋଷେ ନିଜ ଅନୁରୂପ । ଦେଖିଲି ଅନ୍ୟ ପଦାର୍ଥ ଅନେକ ଅନୁପ ॥
ଦେଖିଲି ଅଯୋଧ୍ୟାପୁରୀ ପ୍ରତି ଭୁବନରେ । ସରୟୂ ସରିତ ଭିନ୍ନ ଭିନ୍ନ ନାରୀ ନରେ ॥୩॥
ଦଶରଥ କଉଶଲ୍ୟା ଆଦି ସବୁ ମାତା । ନାନା-ବିଧ ରୂପେ ତହିଁ ଭରତାଦି ଭ୍ରାତା ॥
ପ୍ରତି ବ୍ରହ୍ମାଣ୍ଡ ମଧ୍ୟରେ ରାମ ଅବତାର । ଦେଖିଲି ଲଳିତ ବାଲ-ବିନୋଦ ଅପାର ॥୪॥

ସର୍ବ ଭିନ୍ନ ଭିନ୍ନ ଦେଖିଲି, ପରମ-ବିଚିତ୍ର, ହରି-ବାହାନ ।
ଅମିତ ଭୁବନ କଲେହେଁ ଭ୍ରମଣ ରାମ ନ ଦେଖିଲି ଆନ ॥୮୧ (କ)॥
ସେହି ଶିଶୁପଣ ସେ ଶୋଭାନିଧାନ ସେ କୃପାଳୁ ରଘୁବୀର ।
ଭୁବନ ଭୁବନ ଦେଖିଣ ଭ୍ରମିଲି ପ୍ରେରିତ ମୋହ ସମୀର ॥୮୧ (ଖ)॥

---

ଚୌପାଇ — ପ୍ରତ୍ୟେକ ଲୋକରେ ଭିନ୍ନ ଭିନ୍ନ ବ୍ରହ୍ମା, ଭିନ୍ନ ଭିନ୍ନ ବିଷ୍ଣୁ, ଶିବ, ମନୁ, ଦିଗପାଳ, ମନୁଷ୍ୟ, ଗନ୍ଧର୍ବ, ଭୂତ, ବେତାଳ, କିନ୍ନର, ରାକ୍ଷସ, ପଶୁ, ପକ୍ଷୀ, ସର୍ପ ତଥା ନାନା ଜାତିର ଦେବତା ଓ ଦୈତ୍ୟଗଣ ଥିଲେ । ସେଠାରେ ସମସ୍ତ ଜୀବ ଅନ୍ୟ ପ୍ରକାରର ଥିଲେ । ସେଠିକାର ଅନେକ ପୃଥିବୀ, ନଦୀ, ସମୁଦ୍ର, ସରୋବର, ପର୍ବତ ଆଦି ସମସ୍ତ ସୃଷ୍ଟି ଭିନ୍ନ ଭିନ୍ନ ପ୍ରକାରର ଥିଲା ॥ ୧-୨ ॥ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ମୁଁ ମୋ ନିଜ ରୂପ ଦେଖିଲି ଏବଂ ଅନେକ ଅନୁପମ ବସ୍ତୁ ଦେଖିଲି । ପ୍ରତ୍ୟେକ ଭୁବନରେ ସ୍ୱତନ୍ତ୍ର ଅଯୋଧ୍ୟାପୁରୀ, ଭିନ୍ନ ସରଯୂ ଏବଂ ଭିନ୍ନ ପ୍ରକାରର ନରନାରୀ ଥିଲେ ॥୩॥ ହେ ତାତ ! ଶୁଣନ୍ତୁ, ଦଶରଥ, କୌଶଲ୍ୟା ଓ ଭରତାଦି ଭାଇମାନେ ମଧ୍ୟ ଭିନ୍ନ ଭିନ୍ନ ରୂପଧାରୀ ହୋଇଥିଲେ । ମୁଁ ପ୍ରତ୍ୟେକ ବ୍ରହ୍ମାଣ୍ଡରେ ରାମାବତାର ଏବଂ ତାହାଙ୍କର ଅପାର ବାଲଲୀଳା ଦେଖି ଭ୍ରମଣ କରୁଥାଏ ॥ ୪ ॥ ଦୋହା — ହେ ହରିବାହନ ! ମୁଁ ସବୁ କିଛି ଭିନ୍ନ ଭିନ୍ନ ଓ ଅତି ବିଚିତ୍ର ଦେଖିଲି । ମୁଁ ଅଗଣିତ ବ୍ରହ୍ମାଣ୍ଡରେ

ଭ୍ରମତ ମୋହି ବ୍ରହ୍ମାଣ୍ଡ ଅନେକା । ବୀତେ ମନହୁଁ କଲ୍ପ ସତ ଏକା ॥
ଫିରତ ଫିରତ ନିଜ ଆଶ୍ରମ ଆୟଉଁ । ତହଁ ପୁନି ରହି କଛୁ କାଲ ଗଁୱାୟଉଁ ॥୧॥
ନିଜ ପ୍ରଭୁ ଜନ୍ମ ଅୱଧ ସୁନି ପାୟଉଁ । ନିର୍ଭର ପ୍ରେମ ହରଷି ଉଠି ଧାୟଉଁ ॥
ଦେଖଉଁ ଜନ୍ମ ମହୋତ୍ସବ ଜାଈ । ଜେହି ବିଧି ପ୍ରଥମ କହା ମୈଁ ଗାଈ ॥୨॥
ରାମ ଉଦର ଦେଖେଉଁ ଜଗ ନାନା । ଦେଖତ ବନଇ ନ ଜାଇ ବଖାନା ॥
ତହଁ ପୁନି ଦେଖେଉଁ ରାମ ସୁଜାନା । ମାୟାପତି କୃପାଲ ଭଗବାନା ॥୩॥
କରଉଁ ବିଚାର ବହୋରି ବହୋରୀ । ମୋହ କଲିଲ ବ୍ୟାପିତ ମତି ମୋରୀ ॥
ଉଭୟ ଘରୀ ମହଁ ମୈଁ ସବ ଦେଖା । ଭୟଉଁ ଭ୍ରମିତ ମନ ମୋହ ବିସେଷା ॥୪॥
ଦେଖି କୃପାଲ ବିକଲ ମୋହି ବିହଁସେ ତବ ରଘୁବୀର ।
ବିହଁସତହୀଁ ମୁଖ ବାହେର ଆୟଉଁ ସୁନୁ ମତିଧୀର ॥୮୨(କ)॥

ଭ୍ରମଣ କରନ୍ତେ ମୋତେ ବ୍ରହ୍ମାଣ୍ଡ ଅନେକ । ମନେ ହୁଏ କଟିଗଲା କଳ୍ପଶତ ଏକ ॥
ବୁଲି ବୁଲି ତହୁଁ ନିଜ ଆଶ୍ରମେ ଆସିଲି । ତହିଁ ପୁଣି ରହି କିଛି କାଳ କଟାଇଲି ॥୧॥
ଅଯୋଧ୍ୟାରେ ନିଜ ପ୍ରଭୁ ଜନମ ଶୁଣିଣ । ଧାଇଁଲି ଅତ୍ୟନ୍ତ ପ୍ରେମ ହରଷେ ଉଠିଣ ॥
ଦେଖିଲି ଆବର ଜନ୍ମ ମହୋତ୍ସବ ଯାଇ । ଯେଉଁ ଭାବେ ପ୍ରଥମେ ମୁଁ କହିଲି ବୁଝାଇ ॥୨॥
ରାମ ଉଦରେ ଦେଖିଲି ବିବିଧ ଭୁବନ । ଦେଖିବାକୁ ହୁଏ, କରି ନ ହୁଏ ବର୍ଣ୍ଣନ ॥
ତହିଁ ପୁଣି ବିଲୋକିଲି ପ୍ରବୀଣ ଶ୍ରୀରାମ । ମାୟା-ଅଧିପତି ଭଗବାନ କୃପାଧାମ ॥୩॥
ବାରମ୍ବାର ମନ ମଧ୍ୟେ କରଇ ଚିନ୍ତନ । ମୋହ ସମ୍ପନ୍ନ ମତି ମୋହର ଆଚ୍ଛନ୍ନ ॥
ଉଭୟ ଘଡ଼ି ମଧ୍ୟରେ ମୁଁ ସବୁ ଦେଖିଲି । ଅତଏବ ମୋହ ମନେ ଭ୍ରମିତ ହୋଇଲି ॥୪॥
ବିଲୋକି ବିକଳ ମୋତେ କୃପାକର ହସି ଦେଲେ ରଘୁବୀର ।
ହସିବା ମାତ୍ରକେ ମୁଖରୁ ବାହାର ହେଲି ଶୁଣ, ମତି ଧୀର ॥୮୨ (କ)॥

ବୁଲିଲି । କିନ୍ତୁ ପ୍ରଭୁ ଶ୍ରୀରାମଚନ୍ଦ୍ରଙ୍କୁ ମୁଁ ଦ୍ୱିତୀୟ ପ୍ରକାରେ ଦେଖିଲି ନାହିଁ ॥ ୮୧ (କ) ॥ ସବୁଠି ସେହି ଶୈଶବ, ସେହି ଶୋଭା ଏବଂ ସେହି କୃପାଳୁ ରଘୁବୀର । ଏହିପରି ଭାବରେ ମୋହ-ପବନର ପ୍ରେରଣାରେ ମୁଁ ଭୁବନ ଭୁବନ ଦେଖି ଭ୍ରମୁଥାଏ ॥ ୮୧ (ଖ) ॥
ଚୌପାଈ :—ଅନେକ ବ୍ରହ୍ମାଣ୍ଡରେ ଭ୍ରମି ଭ୍ରମି, ମନେ କରି, ଶହେ କଳ୍ପ ଅତିବାହିତ ହୋଇଗଲା । ବୁଲି ବୁଲି ମୋ ଆଶ୍ରମକୁ ଫେରି ଆସିଲି ଏବଂ ସେଠାରେ କିଛି କାଳ ବାସ କରି ଅତିବାହିତ କଲି ॥୧॥ ପୁଣି ଯେତେବେଳେ ମୋ ପ୍ରଭୁ ଅଯୋଧ୍ୟାପୁରରେ ଜନ୍ମ (ଅବତାର) ଗ୍ରହଣ କଲେଣି ବୋଲି ଶୁଣି ପାରିଲି, ସେତେବେଳେ ମୁଁ ପ୍ରେମରେ ପରିପୂର୍ଣ୍ଣ ହୋଇ ହର୍ଷରେ ଉଠି ଧାଇଁଲି । ଯାଇ ମୁଁ ପୂର୍ବ ବର୍ଣ୍ଣନାନୁକ୍ରମେ ଜନ୍ମ-ମହୋତ୍ସବ ଦେଖିଲି ॥୨॥ ଶ୍ରୀରାମଚନ୍ଦ୍ରଙ୍କ ଉଦରରେ ମୁଁ ବହୁତ ଜଗତ ଦେଖିଲି; ସେ ସବୁ କେବଳ ଦର୍ଶନ-ଯୋଗ୍ୟ, ବର୍ଣ୍ଣନାତୀତ । ସେଠାରେ ପୁଣି ମୁଁ ସୁଜ୍ଞ ମାୟାପତି କୃପାଳୁ ଭଗବାନ୍ ଶ୍ରୀରାମଙ୍କୁ ଦେଖିଲି ॥ ୩ ॥ ମୁଁ ବାରମ୍ବାର ବିଚାର କରୁଥାଏ । ମୋର ବୁଦ୍ଧି ମୋହ-ପଙ୍କ-ଲିପ୍ତ

ସୋଇ ଲରିକାଈ ମୋ ସନ କରନ ଲଗେ ପୁନି ରାମ ।
କୋଟି ଭାଁତି ସମୁଝାଓଁ ମନୁ ନ ଲହଇ ବିଶ୍ରାମ ॥୮୨(ଖ)॥
ଦେଖି ଚରିତ ୟହ ସୋ ପ୍ରଭୁତାଈ । ସମୁଝତ ଦେହ ଦସା ବିସରାଈ ॥
ଧରନି ପରେଉଁ ମୁଖ ଆୱ ନ ବାତା । ତ୍ରାହି ତ୍ରାହି ଆରତ ଜନ ତ୍ରାତା ॥୧॥
ପ୍ରେମାକୁଲ ପ୍ରଭୁ ମୋହି ବିଲୋକୀ । ନିଜ ମାୟା ପ୍ରଭୁତା ତବ ରୋକୀ ॥
କର ସରୋଜ ପ୍ରଭୁ ମମ ସିର ଧରେଉ । ଦୀନଦୟାଲ ସକଲ ଦୁଖ ହରେଉ ॥୨॥
କୀନ୍ହ ରାମ ମୋହି ବିଗତ ବିମୋହା । ସେବକ ସୁଖଦ କୃପା ସଂଦୋହା ॥
ପ୍ରଭୁତା ପ୍ରଥମ ବିଚାରି ବିଚାରୀ । ମନ ମହଁ ହୋଇ ହରଷ ଅତି ଭାରୀ ॥୩॥
ଭଗତବଛଲତା ପ୍ରଭୁ କୈ ଦେଖୀ । ଉପଜୀ ମମ ଉର ପ୍ରୀତି ବିସେଷୀ ॥
ସଜଲ ନୟନ ପୁଲକିତ କର ଜୋରୀ । କୀନ୍ହିଉଁ ବହୁ ବିଧି ବିନୟ ବହୋରୀ ॥୪॥

---

ସେହି ଶିଶୁପଣ ମୋ ସଙ୍ଗରେ ପୁଣି କରି ଲାଗିଲେ ଶ୍ରୀରାମ ॥
ଅନେକ ପ୍ରକାରେ ବୁଝାଏ ନିଜକୁ, ମନ ନ ଲଭେ ବିଶ୍ରାମ ॥୮୨ (ଖ)॥
ଦେଖି ଏ ଚରିତ ସେହି ମହିମା ଆବର । ବିସ୍ମରନ୍ତେ ଦେହ ଦଶା ଭୁଲିଲି ମୋହର ॥
ଭୂମିରେ ପଡ଼ିଲି ମୁଖେ ନ ଆସଇ ବାଣୀ । ତ୍ରାହି ତ୍ରାହି କୃପାସିନ୍ଧୁ ଆର୍ତ୍ତଜନ-ତ୍ରାତା ॥୧॥
ପ୍ରେମାକୁଳ ପ୍ରଭୁ ମୋତେ କରି ବିଲୋକନ । ଆପଣା ମାୟା ପ୍ରଭୁତ୍ୱ କଲେ ନିବାରଣ ॥
କର-ସରୋରୁହ ପ୍ରଭୁ ମୋ ଶିରେ ରଖିଲେ । ଦୀନ-ଦୟାଳୁ ସକଳ ସନ୍ତାପ ହରିଲେ ॥୨॥
ମୋହରୁ ଉଦ୍ଧାର ମୋତେ କଲେ ତହୁଁ ରାମ । ସେବକ-ସୁଖଦାୟକ ପ୍ରଭୁ ସୁଖ-ଧାମ ॥
ପ୍ରଥମ ପ୍ରଭୁତା ହୃଦେ ବିଚାରି ବିଚାରି । ମନ ମଧ୍ୟରେ ହରଷ ହୁଏ ଅତି ଭାରି ॥୩॥
ଭକ୍ତ-ବତ୍ସଳତା କରି ପ୍ରଭୁଙ୍କ ଦର୍ଶନ । ହୃଦୟେ ଅତ୍ୟନ୍ତ ପ୍ରୀତି ହୋଇଲା ଉତ୍ପନ୍ନ ॥
ସଜଳ ନୟନ ପୁଲକିତେ ଯୋଡ଼ି କର । କରିଲି ନାନା ପ୍ରକାର ବିନୟ ଆବର ॥୪॥

---

ହୋଇଥିଲା । ମୁଁ ଏହି ସବୁ ଦୁଇ ଘଡ଼ି ମଧ୍ୟରେ ଦେଖିଲି । ମନରେ ବିଶେଷ ମୋହ ହେବାରୁ ମୁଁ ଭ୍ରାନ୍ତ ହୋଇ ପଡ଼ିଲି ॥ ୪ ॥ ଦୋହା :—ମୋର ବ୍ୟାକୁଳତା ଦେଖି କୃପାଳୁ ଶ୍ରୀ ରଘୁବୀର ହସି ଦେଲେ । ହେ ଧୀରବୁଦ୍ଧି ଗରୁଡ଼ ! ଶୁଣନ୍ତୁ, ସେ ହସିଦେବା ମାତ୍ରେ ମୁଁ ତାଙ୍କ ମୁଖ ମଧ୍ୟରୁ ବାହାରି ଆସିଲି ॥ ୮୨ (କ) ॥ ଶ୍ରୀରାମଚନ୍ଦ୍ର ମୋ ସହିତ ପୁଣି ସେହି ବାଲ୍ୟକ୍ରୀଡ଼ା କରିବାକୁ ଲାଗିଲେ । ମୁଁ କୋଟିଏ ପ୍ରକାରେ ମନକୁ ବୁଝାଉଥାଏ, ମାତ୍ର ଶାନ୍ତି ପାଉ ନ ଥାଏ ॥ ୮୨ (ଖ) ॥ ଚୌପାଇ :—ଏହି ବାଲଲୀଳା ଦେଖି ଏବଂ ଉଦର ମଧ୍ୟରେ ଦେଖିଥିବା ପ୍ରଭୁତ୍ୱକୁ ସ୍ମରଣ କରି ମୁଁ ଶରୀରର ଅସ୍ତିତ୍ୱ ଭୁଲିଗଲି ଏବଂ "ହେ ଆର୍ତ୍ତଜନ-ରକ୍ଷକ ! ରକ୍ଷା କରନ୍ତୁ, ରକ୍ଷା କରନ୍ତୁ," ଚିତ୍କାର କରି ଭୂମି ଉପରେ ପଡ଼ିଗଲି । ମୁହଁରୁ କଥା ବାହାରୁ ନ ଥାଏ ! ॥ ୧ ॥ ତଦନନ୍ତର ପ୍ରଭୁ ମୋତେ ପ୍ରେମ-ବିହ୍ୱଳ ଦେଖି ତାଙ୍କ ମାୟାର ପ୍ରଭୁତ୍ୱ (ପ୍ରଭାବ)କୁ ବନ୍ଦ କରିଦେଲେ । ପ୍ରଭୁ ତାଙ୍କ କର-କମଳ ମୋର ମସ୍ତକ ଉପରେ ରଖିଲେ । ଦୀନଦୟାଳୁ ମୋର ସମ୍ପୂର୍ଣ୍ଣ

ସୁନି ସପ୍ରେମ ମମ ବାନୀ ଦେଖି ଦୀନ ନିଜ ଦାସ ।
ବଚନ ସୁଖଦ ଗମ୍ଭୀର ମୃଦୁ ବୋଲେ ରମାନିବାସ ॥୮୩(କ)॥
କାକଭୁସୁଣ୍ଡି ମାଗୁ ବର ଅତି ପ୍ରସନ୍ନ ମୋହି ଜାନି ।
ଅନିମାଦିକ ସିଧି ଅପର ରିଧି ମୋଚ୍ଛ ସକଲ ସୁଖ ଖାନି ॥୮୩(ଖ)॥
ଗ୍ୟାନ ବିବେକ ବିରତି ବିଗ୍ୟାନା । ମୁନି ଦୁର୍ଲଭ ଗୁନ ଜେ ଜଗ ନାନା ॥
ଆଜୁ ଦେଉଁ ସବ ସଂସୟ ନାହୀଁ । ମାଗୁ ଜୋ ତୋହି ଭାର୍ଓ ମନ ମାହୀଁ ॥୧॥
ସୁନି ପ୍ରଭୁ ବଚନ ଅଧିକ ଅନୁରାଗେଉଁ । ମନ ଅନୁମାନ କରନ ତବ ଲାଗେଉଁ ॥
ପ୍ରଭୁ କହ ଦେନ ସକଲ ସୁଖ ସହୀ । ଭଗତି ଆପନୀ ଦେନ ନ କହୀ ॥୨॥

---

ପ୍ରେମାପ୍ଲୁତ ଶୁଣି ମୋର ଦୀନ ବାଣୀ ଅବଲୋକି ନିଜ ଦାସ ।
ବଚନ ମଧୁର ସୁଖଦ ଗମ୍ଭୀର ଭାଷିଲେ ରମା-ନିବାସ ॥୮୩ (କ)॥
ପରମ ପ୍ରସନ୍ନ ଜାଣି ମୋତେ, କାକଭୁଶୁଣ୍ଡି ମାଗ ଯେ ବର ।
ଅଣିମାଦି ସିଦ୍ଧି ଇତର ଯେ ରିଧି ମୋକ୍ଷ ସର୍ବ ସୁଖାକର ॥୮୩ (ଖ)॥
ଜ୍ଞାନ ବିଜ୍ଞାନ ବିବେକ ବୈରାଗ୍ୟ ଆଦର । ବିଶ୍ୱ-ବିଦିତ ଦୁର୍ଲଭ ଗତି ମୁନିଙ୍କର ॥
ସଂଶୟ ନ ମଣ ଆଜି ଦେବି ତୋତେ ତାହା । ମାଗି ନେନ ମନ ମଧ୍ୟେ ଭଲ ଲାଗେ ଯାହା ॥୧॥
ଶୁଣି ପ୍ରଭୁ ବାଣୀ ପ୍ରେମ ଅଧିକ ଲଭିଲି । ମନେ ଅନୁମାନ କରିବାକୁ ମୁଁ ଲାଗିଲି ॥
ପ୍ରଭୁ ସମୁଦାୟ ସୁଖ ଦେବାକୁ କହିଲେ । ଆପଣା ଭକ୍ତିର କିଛି ଚର୍ଚ୍ଚା ନ କରିଲେ ॥୨॥

---

ଦୁଃଖ ହରଣ କରିନେଲେ ॥ ୨ ॥ ସେବକମାନଙ୍କ ସୁଖଦାତା, କୃପାମୟ ଶ୍ରୀରାମ ମୋତେ ମୋହରୁ ସର୍ବଥା ମୁକ୍ତ କରିଦେଲେ । ତାହାଙ୍କର ପୂର୍ବୋକ୍ତ ପ୍ରଭୁତ୍ୱ ବିଷୟ ସ୍ମରଣ କରି କରି ମୁଁ ମନେ ମନେ ଅପାର ହର୍ଷ ଲାଭ କରୁଥାଏ ॥ ୩ ॥ ପ୍ରଭୁଙ୍କ ଭକ୍ତ-ବତ୍ସଳତା ଦେଖି ମୋର ହୃଦୟରେ ଅପାର ପ୍ରେମ ଜାତ ହେଲା । ପୁଣି ମୁଁ ନେତ୍ରରେ ଆନନ୍ଦାଶ୍ରୁ ଭରି ପୁଲକିତ ହେଲି ଏବଂ ହାତ ଯୋଡ଼ି ବହୁ ପ୍ରକାରେ ପ୍ରାର୍ଥନା କଲି ॥ ୪ ॥ ଦୋହା :—ମୋର ପ୍ରେମମୟୀ ବାଣୀ ଶୁଣି ଏବଂ ଆପଣା ଦାସର ଦୈନ୍ୟ ଦେଖି ରମାନିବାସ ଶ୍ରୀରାମ ସୁଖଦାୟକ, ଗମ୍ଭୀର ଓ କୋମଳ ବଚନ ବୋଇଲେ—॥ ୮୩ (କ) ॥ "ହେ କାକଭୁଶୁଣ୍ଡି, ତୁ ମୋତେ ଅତି ପ୍ରସନ୍ନ ବୋଲି ଜାଣି ବର ମାଗ୍ । ଅଣିମାଦି ଅଷ୍ଟସିଦ୍ଧି, ଅନ୍ୟାନ୍ୟ ଋଦ୍ଧି ତଥା ସମ୍ପୂର୍ଣ୍ଣ ସୁଖର ଖଣି ମୋକ୍ଷ ମାଗ୍ ॥ ୮୩ (ଖ) ॥ ଚୌପାଇ :—ଜ୍ଞାନ, ବିବେକ, ବୈରାଗ୍ୟ, ବିଜ୍ଞାନ (ତତ୍ତ୍ୱଜ୍ଞାନ) ଏବଂ ଜଗତରେ ମୁନିଜନ-ଦୁର୍ଲ୍ଲଭ ଅନେକ ଗୁଣ—ମୁଁ ଏ ସବୁ ଆଜି ତୋତେ ଦାନ କରିବି । ଏଥିରେ ସନ୍ଦେହ ନାହିଁ । ତୋ ମନ ରୁଚି ଅନୁସାରେ ବର ମାଗି ନେ ।" ॥୧॥ ପ୍ରଭୁଙ୍କ ବଚନ ଶୁଣି ମୁଁ ଅତିଶୟ ପ୍ରେମରେ ପରିପୂର୍ଣ୍ଣ ହୋଇଗଲି । ସେତେବେଳେ ମନେ ମନେ ଅନୁମାନ କଲି—ପ୍ରଭୁ ସବୁ ସୁଖ ଦେବା ନିମନ୍ତେ ତ ପ୍ରତିଶ୍ରୁତି ଦେଇ ଦେଲେ । ଏହା ସତ୍ୟ । ମାତ୍ର ଆପଣାର ଭକ୍ତି ଦେବା କଥା ତ ମୋତେ କହିଲେ

ଭଗତିହୀନ ଗୁନ ସବ ସୁଖ ଐସେ । ଲବନ ବିନା ବହୁ ବିଂଜନ ଜୈସେ ॥
ଭଜନହୀନ ସୁଖ କୱନେ କାଜା । ଅସ ବିଚାରି ବୋଲେଉଁ ଖଗରାଜା ॥୩॥
ଜୌଁ ପ୍ରଭୁ ହୋଇ ପ୍ରସନ୍ନ ବର ଦେହୂ । ମୋ ପର କରହୁ କୃପା ଅରୁ ନେହୂ ।
ମନ ଭାୱତ ବର ମାଗଉଁ ସ୍ୱାମୀ । ତୁମ୍ହ ଉଦାର ଉର ଅନ୍ତରଜାମୀ ॥୪॥

ଅବିରଲ ଭଗତି ବିସୁଦ୍ଧ ତବ ଶ୍ରୁତି ପୁରାନ ଜୋ ଗାୱ ।
ଜେହି ଖୋଜତ ଜୋଗୀସ ମୁନି ପ୍ରଭୁ ପ୍ରସାଦ କୋଉ ପାୱ ॥୮୪(କ)॥
ଭଗତ କଲ୍ପତରୁ ପ୍ରନତ ହିତ କୃପାସିନ୍ଧୁ ସୁଖଧାମ ।
ସୋଇ ନିଜ ଭଗତି ମୋହି ପ୍ରଭୁ ଦେହୁ ଦୟା କରି ରାମ ॥୮୪(ଖ)॥

ଏବମସ୍ତୁ କହି ରଘୁକୁଲନାୟକ । ବୋଲେ ବଚନ ପରମ ସୁଖଦାୟକ ॥
ସୁନୁ ବାୟସ ତୈଁ ସହଜ ସୟାନା । କାହେ ନ ମାଗସି ଅସ ବରଦାନା ॥୧॥

---

ଭକ୍ତି-ହୀନ ଗୁଣ ସୁଖ ସକଳ ଏମନ୍ତ । ଲବଣ-ବିହୀନ ବହୁ ବ୍ୟଞ୍ଜନ ଯେମନ୍ତ ॥
ଭଜନହୀନ ସମସ୍ତ ସୁଖରେ କି କାର୍ଯ୍ୟ । ଏହା ବିଚାରି କହିଲି ଶୁଣ, ଖଗରାଜ ॥୩॥
ଯେବେ ପ୍ରଭୁ ତୋଷ ହୋଇ ବର ପ୍ରଦାନନ୍ତି । ମୋ ପ୍ରତି କରନ୍ତୁ ସ୍ନେହ ଅନୁକମ୍ପା ଅତି ॥
ମନ-ସୁଖଦାୟୀ ବର ମାଗୁଅଛି, ସ୍ୱାମି ! ପରମ ଉଦାର ତୁମ୍ଭେ ଅଟ ଅନ୍ତର୍ଯ୍ୟାମୀ ॥୪॥

ଅବିରଳ ତୁମ୍ଭ ଭକ୍ତି ସୁବିଶୁଦ୍ଧ ଶ୍ରୁତି ପୁରାଣ ଗାଆନ୍ତି ।
ଯାହାକୁ ଖୋଜନ୍ତି ଯୋଗୀ ମୁନି, ପ୍ରଭୁ-ପ୍ରସାଦେ କେହି ପାଆନ୍ତି ।· ୪ (କ)॥
ଭକ୍ତ-କଳ୍ପତରୁ, ପ୍ରଣତ-ପାଳକ, କୃପାସିନ୍ଧୁ, ସୁଖଧାମ ॥
ସେହି ନିଜ ଭକ୍ତି ମୋତେ ପ୍ରଦାନନ୍ତୁ ଦୟା କରି ପ୍ରଭୁ ରାମ ॥୮· (ଖ)।

'ଏବମସ୍ତୁ' କହି ତହୁଁ ଶ୍ରୀ ରଘୁନାୟକ । ଭାଷିଲେ ବଚନ ଅତି ସୁଖ-ପ୍ରଦାୟକ ॥
ଶୁଣ କାକ, ଅଟୁ ତୁହି ଚତୁର ପରମ । କିପାଁ ନ ମାଗିବୁ ବର ଏମନ୍ତ ଉତ୍ତମ ॥୧॥

---

ନାହିଁ ॥ ୨ ॥ ଲବଣ ବିନା ବହୁବିଧ ବ୍ୟଞ୍ଜନ ଯେପରି ଅସ୍ୱାଦକର, ସେହିପରି ଭକ୍ତିରହିତ ସମସ୍ତ ଗୁଣ ଓ ସମସ୍ତ ସୁଖ ନୀରସ । ଭଜନ-ରହିତ ସୁଖ କେଉଁ କାମର ? ହେ ପକ୍ଷିରାଜ ! ଏହିପରି ବିଚାର କରି ମୁଁ କହିଲି—॥୩॥ "ହେ ପ୍ରଭୋ ! ଯଦି ଆପଣ ପ୍ରସନ୍ନ ହୋଇ ମୋତେ ବରଦାନ କରୁଅଛନ୍ତି ଏବଂ ମୋ ଉପରେ କୃପା ଓ ସ୍ନେହ କରୁଅଛନ୍ତି, ତେବେ ହେ ସ୍ୱାମି ! ମୁଁ ମୋହର ମନରୁଚି ବର ମାଗୁଛି । ଆପଣ ଉଦାର ଏବଂ ହୃଦୟର ଅନ୍ତର୍ଯ୍ୟାମୀ ॥ ୪ ॥ ଦୋହା '—ଶ୍ରୁତି ଓ ପୁରାଣଗଣ ଆପଣଙ୍କର ଯେଉଁ ଅବିରଳ (ପ୍ରଗାଢ଼) ଏବଂ ବିଶୁଦ୍ଧ ( ଅନନ୍ୟ ନିଷ୍କାମ ) ଭକ୍ତିକୁ ଗାନ କରନ୍ତି, ଯାହାକୁ ଯୋଗୀଶ୍ୱର ମୁନି ଅନୁସନ୍ଧାନ କରନ୍ତି ଏବଂ ପ୍ରଭୁଙ୍କ ପ୍ରସାଦରୁ କେହି କ୍ୱଚିତ୍ ଯେଉଁ ଭକ୍ତି ପାଇଥା'ନ୍ତି, ହେ ଭକ୍ତଗଣ - କଳ୍ପବୃକ୍ଷ, ହେ ଶରଣାଗତ-ହିତକାରକ ! ହେ କୃପାସାଗର ! ହେ ସୁଖଧାମ ଶ୍ରୀରାମ ! ଦୟା କରି ମୋତେ ଆପଣଙ୍କର ସେହି ଭକ୍ତି ଦିଅନ୍ତୁ ।" ॥୮୪(କ),(ଖ)॥ ଚୌପାଇ .—'ଏବମସ୍ତୁ' (ଏହାହିଁ ହେଉ) କହି ରଘୁକୁଳନାୟକ ପରମ ସୁଖକର ବଚନ

ସବ ସୁଖ ଖାନି ଭଗତି ତେଁ ମାଗୀ । ନହିଁ ଜଗ କୋଉ ତୋହି ସମ ବଡ଼ଭାଗୀ ॥
ଜୋ ମୁନି କୋଟି ଜତନ ନହିଁ ଲହହୀଁ । ଜେ ଜପ ଜୋଗ ଅନଲ ତନ ଦହହୀଁ ॥୨॥
ରୀଝେଉଁ ଦେଖି ତୋରି ଚତୁରାଈ । ମାଗେହୁ ଭଗତି ମୋହି ଅତି ଭାଈ ॥
ସୁନୁ ବିହଙ୍ଗ ପ୍ରସାଦ ଅବ ମୋରେଁ । ସବ ସୁଭ ଗୁନ ବସିହହିଁ ଉର ତୋରେଁ ॥୩॥
ଭଗତି ଗ୍ୟାନ ବିଗ୍ୟାନ ବିରାଗା । ଜୋଗ ଚରିତ୍ର ରହସ୍ୟ ବିଭାଗା ॥
ଜାନବ ତେଁ ସବହୀ କର ଭେଦା । ମମ ପ୍ରସାଦ ନହିଁ ସାଧନ ଖେଦା ॥୪॥

ମାୟା ସମ୍ଭବ ଭ୍ରମ ସବ ଅବ ନ ବ୍ୟାପିହହିଁ ତୋହି ।
ଜାନେସୁ ବ୍ରହ୍ମ ଅନାଦି ଅଜ ଅଗୁନ ଗୁନାକର ମୋହି ॥୮୫(କ)॥
ମୋହି ଭଗତ ପ୍ରିୟ ସନ୍ତତ ଅସ ବିଚାରି ସୁନୁ କାଗ ।
କାୟଁ ବଚନ ମନ ମମ ପଦ କରେସୁ ଅଚଲ ଅନୁରାଗ ॥୮୫(ଖ)॥

---

ମାଗିଲୁ ଭକ୍ତି ସମସ୍ତ ସୁଖର ନିଧାନ । ନାହିଁ ତୋ ସମାନ କେହି ବଡ଼ ଭାଗ୍ୟବାନ ॥
କୋଟି ଯତ୍ନ କରି ମୁନି ଯାହା ନ ଲଭନ୍ତି । କରି ଜପ ଯୋଗ ତନୁ ଅନଳେ ଦହନ୍ତି ॥୨॥
ଦେଖି ତୋର ଚତୁରତା ପ୍ରସନ୍ନ ହୋଇଲି । ମାଗିଲୁ ଯେ ଭକ୍ତି ଅତି ତୋଷ ମୁଁ ଲଭିଲି ॥
ଶୁଣ ଖଗ, ଆଜଠାରୁ ପ୍ରସାଦେ ମୋହର । ସର୍ବ ଶୁଭ ଗୁଣ ହୃଦେ ବସିବେ ତୋହର ॥୩॥
ଭକତି ବୈରାଗ୍ୟ ଜ୍ଞାନ ବିଜ୍ଞାନ ବିବେକ । ଜପ ଯୋଗାଦି ଚରିତ ରହସ୍ୟ ଅନେକ ॥
ବୁଝି ତୁ ପାରିବୁ ସେହି ସମସ୍ତଙ୍କ ଭେଦ । ମୋ ଅନୁଗ୍ରହେ ନୋହିବ ସାଧନରେ ଖେଦ ॥୪॥
ମାୟା ସମୁତ୍ପନ୍ନ ନାନାବିଧ ଭ୍ରମ ଏବେ ନ ବ୍ୟାପିବ ତୋତେ ।
ଜାଣିବୁ ତୁ ଅଜ ଅନାଦି ଅଗୁଣ ଗୁଣାକର ବ୍ରହ୍ମ ମୋତେ ॥ ୫ (କ)॥
ଭକ୍ତ ଅଟନ୍ତି ପ୍ରିୟ ଲାଗେ ମୋତେ ଏହା ଜାଣି କାକ ବର ।
କାୟ ମନ ବାକ୍ୟ ଦୃଢ଼ ଅନୁରାଗ କରିବୁ ପଦେ ମୋହର ॥ ୫ (ଖ)॥

---

ବୋଇଲେ—"ହେ କାକ ! ଶୁଣ୍, ତୁ ସ୍ୱଭାବତଃ ବୁଦ୍ଧିମାନ୍, ଏପରି ବର କପରି ବା ନ ମାଗନ୍ତୁ ? ॥ ୧ ॥ ତୁ ସମସ୍ତ ସୁଖର ଖଣି ଭକ୍ତି ମାଗି ନେଲୁ, ଜଗତରେ ତୋ ପରି ବଡ଼ ଭାଗ୍ୟବାନ୍ ଆଉ କେହି ନାହିଁ । ମୁନିମାନେ ଜପ-ଯୋଗାଗ୍ନିରେ ନିଜ ନିଜ ଶରୀର ଜଳାଇ କୋଟି କୋଟି ଯତ୍ନ କରି ସୁଦ୍ଧା ଯେଉଁ ଭକ୍ତି ପାଆନ୍ତି ନାହିଁ, ସେହି ଭକ୍ତି ତୁ ମାଗିଲୁ । ତୋର ଚତୁରତା ଦେଖି ମୁଁ ପ୍ରସନ୍ନ ହେଲି । ଏହି ଚତୁରତା ମୋତେ ଅତି ଭଲ ଲାଗିଲା । ହେ ପକ୍ଷି ! ଶୁଣ୍, ମୋ କୃପାରୁ ଏବେ ସମସ୍ତ ଶୁଭ ଗୁଣ ତୋ ହୃଦୟରେ ବାସ କରିବ ॥ ୨—୩ ॥ ଭକ୍ତି, ଜ୍ଞାନ, ବୈରାଗ୍ୟ, ଯୋଗ, ମୋର ଲୀଳାଦି ଅନେକ ରହସ୍ୟ ତଥା ବିଭାଗ—ଏ ସବୁ ଭେଦ ତୁ ମୋହର କୃପାରୁ ଜାଣି ପାରିବୁ । ତୋତେ ସାଧନାର କଷ୍ଟ ବାଧିବ ନାହିଁ ॥ ୪ ॥ ଦୋହା :—ମାୟାରୁ ଉତ୍ପନ୍ନ ଯାବତୀୟ ଭ୍ରମ ତୋତେ ଏବେ ଆଉ ବ୍ୟାପିବ ନାହିଁ । ମୋତେ ଅନାଦି, ଅଜନ୍ମା, ଅଗୁଣ ଓ ଗୁଣର ଆକର ବ୍ରହ୍ମ ବୋଲି ଜାଣିବୁ ॥ ୮୫ (କ) ॥ ହେ କାକ ! ଶୁଣ୍, ଭକ୍ତ ମୋର ନିରନ୍ତର

ଅବ ସୁନୁ ପରମ ବିମଲ ମମ ବାନୀ । ସତ୍ୟ ସୁଗମ ନିଗମାଦି ବଖାନୀ ॥
ନିଜ ସିଦ୍ଧାନ୍ତ ସୁନାଓଁ ତୋହୀ । ସୁନୁ ମନ ଧରୁ ସବ ତଜି ଭଜୁ ମୋହୀ ॥୧॥
ମମ ମାୟା ସଂଭବ ସଂସାରା । ଜୀବ ଚରାଚର ବିବିଧି ପ୍ରକାରା ॥
ସବ ମମ ପ୍ରିୟ ସବ ମମ ଉପଜାଏ । ସବ ତେଁ ଅଧିକ ମନୁଜ ମୋହି ଭାଏ ॥୨॥
ତିନ୍ହ ମହଁ ଦ୍ୱିଜ ଦ୍ୱିଜ ମହଁ ଶ୍ରୁତିଧାରୀ । ତିନ୍ହ ମହୁଁ ନିଗମ ଧରମ ଅନୁସାରୀ ॥
ତିନ୍ହ ମହଁ ପ୍ରିୟ ବିରକ୍ତ ପୁନି ଗ୍ୟାନୀ । ଗ୍ୟାନିହୁ ତେଁ ଅତି ପ୍ରିୟ ବିଗ୍ୟାନୀ ॥୩॥
ତିନ୍ହ ତେଁ ପୁନି ମୋହି ପ୍ରିୟ ନିଜ ଦାସା । ଜେହି ଗତି ମୋରି ନ ଦୂସରି ଆସା ॥
ପୁନି ପୁନି ସତ୍ୟ କହଉଁ ତୋହି ପାହୀଁ । ମୋହି ସେବକ ସମ ପ୍ରିୟ କୋଉ ନାହୀଁ ॥୪॥
ଭଗତିହୀନ ବିରଞ୍ଚି କିନ ହୋଈ । ସବ ଜୀବହୁ ସମ ପ୍ରିୟ ମୋହି ସୋଈ ॥
ଭଗତିବନ୍ତ ଅତି ନୀଚଉ ପ୍ରାନୀ । ମୋହି ପ୍ରାନପ୍ରିୟ ଅସି ମମ ବାନୀ ॥୫॥

---

ପରମ ବିମଳ ଏବେ ଶୁଣ ମୋ ବଚନ । ସତ୍ୟ ସୁଗମ ନିଗମ ଆଗମ କଥନ ॥
ଆପଣା ସିଦ୍ଧାନ୍ତ ଏବେ ଶୁଣାଉଛୁ ତୋତେ । ଶୁଣି ମନେ ଧର ସବୁ ତେଜି ଭଜ ମୋତେ ॥୧॥
ମମ ମାୟା ସମୁଦ୍‌ଭବ ସକଳ ସଂସାର । ଜଡ ଚେତନାଦି ଜୀବ ଅସଂଖ୍ୟ ପ୍ରକାର ॥
ସମସ୍ତେ ମୋ ପ୍ରିୟ ମୋର ଉତ୍ପନ୍ନ ସରବେ । ସମସ୍ତଙ୍କଠାରୁ ଭଲ ଲାଗନ୍ତି ମାନବେ ॥୨॥
ତାଙ୍କ ମଧ୍ୟେ ଦ୍ୱିଜ, ଦ୍ୱିଜ ମଧ୍ୟେ ଶ୍ରୁତିଧାରୀ । ତାହାଙ୍କ ମଧ୍ୟେ ନିଗମ ଧର୍ମ ପଥଚାରୀ ॥
ତାଙ୍କ ମଧ୍ୟେ ପ୍ରିୟ ବଇରାଗୀ, ପୁଣି ଜ୍ଞାନୀ । ଜ୍ଞାନୀଠାରୁ ବଳି ପ୍ରିୟ ପରମ ବିଜ୍ଞାନୀ ॥୩॥
ତହିଁ ମଧ୍ୟେ ପ୍ରିୟ ମୋତେ ଦାସ ଆପଣାର । ନାହିଁ ଅନ୍ୟ ଆଶ୍ରା କିଛୁ ଗତି ମୁହିଁ ଯାର ॥
ପୁଣି ପୁଣି ତୋ ଆଗରେ ସତ୍ୟ ମୁଁ କହଇ । ସେବକ ସମ ମୋ ପ୍ରିୟ ଇତର ନୁହଇ ॥୪॥
ଭକ୍ତି-ରହିତ ବିରଞ୍ଚି ନ ହେଉ କାହିଁକି । ଅନ୍ୟ ଜୀବ ଯେତେ ମୋର ପ୍ରିୟ ସେ ସେତିକି ॥
ଅତି ନୀଚ ପ୍ରାଣୀ ସୁଦ୍ଧା ହେଲେ ଭକ୍ତିବନ୍ତ । ସେ ପ୍ରାଣପ୍ରିୟ ମୋହର ବଚନ ଏମନ୍ତ ॥୫॥

---

ପ୍ରିୟ; ଏହା ବିଚାର କରି କାୟମନୋ-ବାକ୍ୟରେ ମୋ ଚରଣରେ ଅଟଳ ପ୍ରେମ କରିବୁ ॥ ୮୫ (ଖ) ॥ ଚୌପାଇ :—ବର୍ତ୍ତମାନ ସତ୍ୟ, ସୁଗମ ଓ ବେଦାଦି ଦ୍ୱାରା ବର୍ଣ୍ଣିତ ମୋର ପରମ ନିର୍ମଳ ବାଣୀ ଶୁଣ୍, ମୁଁ ତୋତେ ଏହି "ନିଜ ସିଦ୍ଧାନ୍ତ" ଶୁଣାଉଛି । ଶୁଣି ମନରେ ଧାରଣା କର ଏବଂ ସବୁ ତ୍ୟାଗ କରି ମୋହରି ଭଜନ କର ॥ ୧ ॥ ଏହି ସଂସାର ମୋହରି ମାୟାରୁ ସୃଷ୍ଟ । ଏଥିରେ ବହୁବିଧ ଚରାଚର ଜୀବ ଅଛନ୍ତି । ସେମାନେ ସମସ୍ତେ ମୋହରିଠାରୁ ଜାତ ହୋଇଥିବାରୁ ମୋର ଅତି ପ୍ରିୟ । କିନ୍ତୁ ମନୁଷ୍ୟ ମୋର ସବୁଠାରୁ ଅଧିକ ପ୍ରିୟ ॥ ୨ ॥ ସେହି ମନୁଷ୍ୟମାନଙ୍କ ମଧ୍ୟରେ ମଧ୍ୟ ଦ୍ୱିଜ, ଦ୍ୱିଜମାନଙ୍କ ମଧ୍ୟରେ ଶ୍ରୁତିଧାରୀ, ଶ୍ରୁତିଧାରୀମାନଙ୍କ ମଧ୍ୟରେ ବେଦୋକ୍ତ-ଧର୍ମ-ମାର୍ଗାନୁଗାମୀ ଏବଂ ସେହିମାନଙ୍କ ମଧ୍ୟରେ ମଧ୍ୟ ବୈରାଗୀ ମୋର ବେଶି ପ୍ରିୟ । ପୁଣି ବୈରାଗୀମାନଙ୍କ ମଧ୍ୟରେ ଜ୍ଞାନୀ ମୋର ଅଧିକ ପ୍ରିୟ ଏବଂ ଜ୍ଞାନୀମାନଙ୍କ ଅପେକ୍ଷା ଅଧିକ ପ୍ରିୟ ବିଜ୍ଞାନୀ ॥ ୩ ॥ ବିଜ୍ଞାନୀମାନଙ୍କଠାରୁ ମଧ୍ୟ ମୋର ଦାସ ମୋତେ ଅଧିକ ପ୍ରିୟ ।

ସୁଚି ସୁସୀଲ ସେବକ ସୁମତି ପ୍ରିୟ କହୁ କାହି ନ ଲଗତ ।
ଶ୍ରୁତି ପୁରାନ କହ ନୀତି ଅସି ସାବଧାନ ସୁନୁ କାକ ॥୮୬॥
ଏକ ପିତା କେ ବିପୁଲ କୁମାରା । ହୋହିଁ ପୃଥକ ଗୁନ ସୀଲ ଅଚାରା ॥
କୋଉ ପଣ୍ଡିତ କୋଉ ତାପସ ଗ୍ୟାତା । କୋଉ ଧନବନ୍ତ ସୂର କୋଉ ଦାତା ॥୧॥
କୋଉ ସର୍ବଜ୍ଞ ଧର୍ମରତ କୋଈ । ସବ ପର ପିତହି ପ୍ରୀତି ସମ ହୋଈ ॥
କୋଉ ପିତୁ ଭଗତ ବଚନ ମନ କର୍ମା । ସପନେହୁଁ ଜାନ ନ ଦୂସର ଧର୍ମା ॥୨॥
ସୋ ସୁତ ପ୍ରିୟ ପିତୁ ପ୍ରାନ ସମାନା । ଜଦ୍ୟପି ସୋ ସବ ଭାଁତି ଅୟାନା ॥
ଏହି ବିଧି ଜୀବ ଚରାଚର ଜେତେ । ତ୍ରିଜଗ ଦେବ ନର ଅସୁର ସମେତେ ॥୩॥

---

ସୁମତି ସୁଶୀଳ ଶୁଚି ସୁସେବକ ଯାହାଙ୍କୁ ପ୍ରିୟ ନ ଲଗେ ।
ଶ୍ରୁତି ଶାସ୍ତ୍ର ନୀତି ଏମନ୍ତ କହନ୍ତି ଶୁଣ କାକ, ପଳୁସ୍ରଗେ ॥୮୬॥
ଯେମନ୍ତେ ଏକ ପିତାର ଅନେକ କୁମାର । ହୁଅଇ ପୃଥକ ଗୁଣ ସ୍ୱଭାବ ଆଚାର ॥
କିଏ ସେ ପଣ୍ଡିତ, କିଏ ତପରତ ଜ୍ଞାତା । କିଏ ଧନବନ୍ତ, କିଏ ଶୂର, କିଏ ଦାତା ॥୧॥
କେହୁ ବା ସର୍ବଜ୍ଞ କେହି ନିରତ ଧରମ । ସମସ୍ତଙ୍କ ପ୍ରତି ପ୍ରୀତି ପିତାଙ୍କର ସମ ॥
କେହୁ ପିତୃଭକ୍ତ ମନ କରମ ବଚନେ । ଜାଣଇ ନାହିଁ ଇତର ଧରମ ସ୍ୱପନେ ॥୨॥
ସେ ପୁତ୍ର ପିତାଙ୍କ ପ୍ରିୟ ଜୀବନ ସମାନ । ସମସ୍ତ ପ୍ରକାରେ ସେହି ହୋଇଲେହେଁ ଅଜ୍ଞାନ ॥
ଏହି ଭାବେ ହେକ ଜୀବ ଚରାଚର ଯେତେ । ତିର୍ଯ୍ୟକ ଦେବ ଦାନବ ମାନବ ସମେତେ ॥୩॥

---

ତାହାଙ୍କୁ କେବଳ ମୋହରି ଗତି ଓ ଭରସା, ଆଉ କୌଣସି ଆଶା ଭରସା ତାହାଙ୍କୁ ନ ଥାଏ । ମୁଁ ତୋତେ ବାରମ୍ବାର ସତ୍ୟ ('ନିଜ ସିଦ୍ଧାନ୍ତ') କହୁଅଛି ହେ, ମୋହର ସେବକ ସମାନ ପ୍ରିୟ ମୋର ଆଉ କେହି ନାହିଁ ॥ ୪ ॥ ଏପରି କି ବ୍ରହ୍ମା ହୁଡା ଯଦ ଭକ୍ତିହୀନ ହୁଅନ୍ତି, ସେ ସାଧାରଣ ସମସ୍ତ ଜୀବଙ୍କ ପରି ମୋର ପ୍ରିୟ । କିନ୍ତୁ ଭକ୍ତିମାନ୍ ଅତି ନୀଚ ପ୍ରାଣୀ ହୁଡା ମୋର ପ୍ରାଣ ସମ ପ୍ରିୟ । ଏହା ମୋର ଘୋଷଣା । ୫ ॥
ଚୌପାଇ :—ପବିତ୍ର, ସୁଶୀଳ ଓ ସୁମତି ସେବକ କାହାକୁ ପ୍ରିୟ ନ ଲାଗେ ? କହ ତ । ବେଦ ଓ ପୁରାଣମାନେ ଏହିପରି ନୀତି କହନ୍ତି । ହେ କାକ ! ସାବଧାନ ହୋଇ ଶୁଣ ॥ ୮୬ ॥ ଚୌପାଇ :—ଜଣେ ପିତାଙ୍କର ବହୁତ ପୁତ୍ର ଥାଆନ୍ତି ଏବଂ ସେମାନଙ୍କର ଗୁଣ, ସ୍ୱଭାବ ଓ ଆଚରଣ ପୃଥକ୍ ପୃଥକ୍ । କେହି ପଣ୍ଡିତ, କେହି ତପସ୍ୱୀ, କେହି ଜ୍ଞାନୀ, କେହି ଧନୀ, କେହି ଶୂରବୀର, କେହି ଦାନୀ, କେହି ସର୍ବଜ୍ଞ ଏବଂ କେହି ଧର୍ମପରାୟଣ ହୋଇଥାଏ । ପିତାଙ୍କର ପ୍ରେମ ଏ ସମସ୍ତଙ୍କ ଉପରେ ସମାନ । କିନ୍ତୁ ଏମାନଙ୍କ ମଧ୍ୟରୁ ଯଦି କେହି ମନ, ବଚନ ଓ କର୍ମରେ କେବଳ ପିତାଙ୍କର ଭକ୍ତ ହୋଇଥାଏ, ସ୍ୱପ୍ନରେ ହୁଡା ଅନ୍ୟ ଧର୍ମ ଜାଣେ ନାହିଁ, ଉକ୍ତ ପୁତ୍ର ଅଜ୍ଞାନ ବା ମୂର୍ଖ ହୋଇଥାଉ ପଛକେ, ପିତାଙ୍କ ପକ୍ଷରେ ପ୍ରାଣସମ ପ୍ରିୟ । ଏହି ରୂପେ ତିର୍ଯ୍ୟକ (ପଶୁପକ୍ଷୀ), ଦେବତା, ମନୁଷ୍ୟ ଓ ଅସୁର ସମେତ ଯେତେ ବି ଚେତନ ଓ ଜଡ଼ ଜୀବ ଅଛନ୍ତି,

ଅଖିଲ ବିଶ୍ୱ ୟହ ମୋର ଉପାୟା । ସବ ପର ମୋହି ବରାବରି ଦାୟା ॥
ତିନ୍ହ ମହଁ ଜୋ ପରିହରି ମଦ ମାୟା । ଭଜଇ ମୋହି ମନ ବଚ ଅରୁ କାୟା ॥୪॥
ପୁରୁଷ ନପୁଂସକ ନାରି ବା ଜୀବ ଚରାଚର କୋଇ ।
ସର୍ବ ଭାବ ଭଜ କପଟ ତଜି ମୋହି ପରମ ପ୍ରିୟ ସୋଇ ॥୮୭(କ)॥
ସତ୍ୟ କହଉଁ ଖଗ ତୋହି ସୁଚି ସେବକ ମମ ପ୍ରାନପ୍ରିୟ ।
ଅସ ବିଚାରି ଭଜୁ ମୋହି ପରିହରି ଆସ ଭରୋସ ସବ ॥୮୭(ଖ)॥
କବହୁଁ କାଲ ନ ବ୍ୟାପିହି ତୋହୀ । ସୁମିରେସୁ ଭଜେସୁ ନିରନ୍ତର ମୋହୀ ॥
ପ୍ରଭୁ ବଚନାମୃତ ସୁନି ନ ଅଘାଉଁ । ତନୁ ପୁଲକିତ ମନ ଅତି ହରଷାଉଁ ॥୧॥
ସୋ ସୁଖ ଜାନଇ ମନ ଅରୁ କାନା । ନହିଁ ରସନା ପହିଁ ଜାଇ ବଖାନା ॥
ପ୍ରଭୁ ସୋଭା ସୁଖ ଜାନହିଁ ନୟନା । କହି କିମି ସକହିଁ ତିନ୍ହହି ନହିଁ ବୟନା ॥୨॥

---

ଏ ଅଖିଳ ବିଶ୍ୱ ମୁହିଁ କରିଛି ଉତ୍ପନ୍ନ । ସମସ୍ତଙ୍କ ପ୍ରତି ମୋର ଅନୁକମ୍ପା ସମ ॥
ତହିଁ ମଧ୍ୟେ ଯେହୁ ମଦ ମାୟା ପରିହରି । କାୟ ମନ ବାକ୍ୟ କରେ ଭଜନ ମୋହରି ॥୪॥
ନର ବା ନାରୀ ବା ନପୁଂସକ କିମ୍ବା ଜୀବ ଚରାଚର କେହି ।
ଯେ ତେଜି କପଟ ଭଜେ ସଦା ମୋତେ ମୋ ପରମପ୍ରିୟ ସେହି ॥୮୭ (କ)॥
ପ୍ରାଣପ୍ରିୟ ଶୁଚି ସେବକ ମୋହର ସତ୍ୟ କହେ ଖଗ, ତୋତେ ।
ଏହା ଭାବି ଆଶା ଭରସା ନିକର ପରିହରି ଭଜ ମୋତେ ॥୮୭ (ଖ)॥
କାଳ ବ୍ୟାପି ନ ପାରିବ ତୋତେ କଦାଚତେ । ସ୍ମରୁଥିବୁ ଭଜୁଥିବୁ ମୋତେ ସଦା ଚିତ୍ତେ ॥
ପ୍ରଭୁଙ୍କ ବଚନାମୃତେ ତୃପ୍ତି ନ ଲଭିଲି । ତନୁ ପୁଲକିତ ମନେ ହରଷ ହୋଇଲି ॥୧॥
ସେ ସୁଖ ଜାଣନ୍ତି ମନ ଆଉ ଶ୍ରବଣ । ରସନାରେ ତାହା କରି ନ ହୁଏ ବର୍ଣ୍ଣନ ॥
ପ୍ରଭୁଙ୍କର ଶୋଭା ସୁଖ ଜାଣେ ଲୋଚନ । କେମନ୍ତେ କହିବ ? ନାହିଁ ତାହାର ବଚନ ॥୨॥

---

ସେ ସମସ୍ତଙ୍କୁ ନେଇ ଏ ସମ୍ପୂର୍ଣ୍ଣ ବିଶ୍ୱ ମୋହର ସୃଷ୍ଟି । ଅତଏବ ସମସ୍ତଙ୍କ ଉପରେ ମୋର ସମାନ ଦୟା । କିନ୍ତୁ ଏମାନଙ୍କ ମଧ୍ୟରୁ ଯେ ମଦ ଓ ମାୟା ଛାଡ଼ି କାୟମନୋ-ବାକ୍ୟରେ ମୋତେ ଭଜନ କରେ, ସେ ମୋର ସବୁଠାରୁ ଅଧିକ ପ୍ରିୟ ॥ ୧-୪ ॥ ଦୋହା :—ସେ ପୁରୁଷ ହେଉ, ନପୁଂସକ ହେଉ, ସ୍ତ୍ରୀ ହେଉ ଅଥବା ଚରାଚର ଯେ କୌଣସି ଜୀବ ହେଉ, କପଟ ଛାଡ଼ି ଯିଏ ବି ସର୍ବତୋଭାବରେ ମୋତେ ଭଜନ କରେ, ସେହି ମୋର ପରମ ପ୍ରିୟ ॥ ୮୭ (କ) ॥ ସୋରଠା :—ହେ ପକ୍ଷି ! ମୁଁ ତୋତେ ସତ୍ୟ କହୁଛି, ପବିତ୍ର ସେବକ ମୋର ପ୍ରାଣ ସମାନ ପ୍ରିୟ । ଏହା ବିଚାରି କରି ସମସ୍ତ ଆଶାଭରସା ଛାଡ଼ି ମୋତେ ହିଁ ଭଜ ॥ ୮୭ (ଖ) ॥ ଚୌପାଇ :—ତୋତେ କାଳ କେତେବେଳେ ହେଲେ ବ୍ୟାପିବ ନାହିଁ । ନିରନ୍ତର ମୋତେ ସ୍ମରଣ ଓ ଭଜନ କରୁଥିବୁ ।" ପ୍ରଭୁଙ୍କ ବଚନାମୃତ ଶୁଣି ମୁଁ ପରିତୃପ୍ତ ହେଉ ନ ଥାଏ । ମୋର ଶରୀର ପୁଲକିତ ହେଉଥାଏ ଏବଂ ମନରେ ମୁଁ ଅପାର ହର୍ଷ ଲାଭ କରୁଥାଏ ॥ ୧ ॥ ଉକ୍ତ ସୁଖ ମନ ଓ

ବହୁ ବିଧି ମୋହି ପ୍ରବୋଧି ସୁଖ ଦେଈ । ଲଗେ କରନ ସିସୁ କୌତୁକ ତେଈ ॥
ସଜଲ ନୟନ କଛୁ ମୁଖ କରି ରୁଖା । ଚିତଇ ମାତୁ ଲଗୀ ଅତି ଭୂଖା ॥୩॥
ଦେଖି ମାତୁ ଆତୁର ଉଠି ଧାଈ । କହି ମୃଦୁ ବଚନ ଲିଏ ଉର ଲାଈ ॥
ଗୋଦ ରାଖି କରାୱ ପୟ ପାନା । ରଘୁପତି ଚରିତ ଲଲିତ କର ଗାନା ॥୪॥

ଜେହି ସୁଖ ଲାଗି ପୁରାରି ଅସୁଭ ବେଷ କୃତ ସିବ ସୁଖଦ ।
ଅୱଧପୁରୀ ନର ନାରି ତେହି ସୁଖ ମହୁଁ ସନ୍ତତ ମଗନ ॥୮୮(କ)॥
ସୋଈ ସୁଖ ଲବଲେସ ଜିହ୍ନ ବାରକ ସପନେହୁଁ ଲହେଉଁ ।
ତେ ନହିଁ ଗନହିଁ ଖଗେସ ବ୍ରହ୍ମସୁଖହି ସଜ୍ଜନ ସୁମତି ॥୮୮(ଖ)॥

ମୈଁ ପୁନି ଅୱଧ ରହେଉଁ କଛୁ କାଲା । ଦେଖେଉଁ ବାଲବିନୋଦ ରସାଲା ॥
ରାମ ପ୍ରସାଦ ଭଗତି ବର ପାୟଉଁ । ପ୍ରଭୁ ପଦ ବନ୍ଦି ନିଜାଶ୍ରମ ଆୟଉଁ ॥୧॥

---

ନାନାଭାବେ ରାମ ମୋତେ ଉପଦେଶ ଦେଇ । ଆରମ୍ଭ କରିଲେ ପୁଣି ଶିଶୁଲୀଳା ସେଇ ॥
ବଦନ ଶୁଖାଇ ନେତ୍ରୁ ବୁହାଇଣ ବାରି । ଚାହିଁଲେ ମାତାଙ୍କ ଆଡେ, କ୍ଷୁଧା ଲାଗେ ଭାରି ॥୩॥
ବିଲୋକି ଜନନୀ ଉଠି ଆତୁରେ ଧାଇଁଲେ । କହିଣ ମୃଦୁ ବଚନ ହୃଦେ ଆଲିଙ୍ଗିଲେ ॥
କୋଳରେ ବସାଇ ପୟ କରାଇଲେ ପାନ । ରଘୁପତିଙ୍କ ଲଳିତ ଲୀଳା କରି ଗାନ ॥୪॥

ଯେଉଁ ସୁଖ ଲାଗି ସୁଖଦ ଶଙ୍କର ଅଶୁଭ ବେଷ ବହନ୍ତି ।
ସେହି ସୁଖେ ସଦା ଅଯୋଧ୍ୟାର ନର-ନାରୀ ନିମଗ୍ନ ରହନ୍ତି ॥୮୮ (କ)॥
ବାରେ ମାତ୍ର ସେହି ସୁଖ ଲବଲେଶ ସ୍ୱପ୍ନରେ ଲଭିଛି ଯେହୁ ।
ନ ଗଣଇ ବ୍ରହ୍ମ-ସୁଖକୁ ଖଗେଶ, ସୁମତି ସଜ୍ଜନ ସେହୁ ॥୮୮ (ଖ)॥

ମୁଁ ପୁଣି ଅଯୋଧ୍ୟାପୁରେ ରହି କିଛି କାଳ । ଦେଖିଲି ବାଲ ବିନୋଦ ରୁଚିର ରସାଳ ॥
ରାମଙ୍କ ପ୍ରସାଦେ ଭକ୍ତି ବର ମୁଁ ପାଇଲି । ପ୍ରଭୁ ପଦ ବନ୍ଦି ନିଜ ଆଶ୍ରମେ ଆସିଲି ॥୧॥

---

କର୍ଣ୍ଣ ହିଁ ଜାଣନ୍ତି । ରସନା ଯୋଗେ ତାହା ଅଭିବ୍ୟକ୍ତ କରାଯାଇ ପାରିବ ନାହିଁ । ଦୁଇ ନୟନ ହିଁ ପ୍ରଭୁଙ୍କ ଶୋଭାର ସେହି ସୁଖ ଜାଣନ୍ତି । କିନ୍ତୁ ସେମାନେ କହି ପାରିବେ ନାହିଁ; କାରଣ, ସେମାନଙ୍କର ତ ବାଣୀ ନାହିଁ ॥ ୨ ॥ ପ୍ରଭୁ ମୋତେ ବହୁତ ପ୍ରକାରେ ଭଲ ଭାବରେ ବୁଝାଇ ଆନନ୍ଦ ଦେଲେ । ପୁଣି ବାଳକୋଚିତ ସେହି କ୍ରୀଡ଼ା-କୌତୁକ କରିବାକୁ ଲାଗିଲେ । ତତ୍ପରେ ସଜଳ ନୟନରେ ମୁଖକୁ ଟିକିଏ ବିରସ କରି ସେ ମାତାଙ୍କ ଆଡକୁ ଚାହିଁଲେ । ମୁଖମୁଦ୍ରା ଓ ଦୃଷ୍ଟି ଯୋଗେ ମାତାଙ୍କୁ ଜଣାଇଦେଲେ ଯେ, ତାହାଙ୍କୁ ବଡ କ୍ଷୁଧା ଲାଗିଲାଣି ॥ ୩ ॥ ଏହା ଦେଖି ମାତା ତୁରନ୍ତ ଉଠି ଧାଇଁଲେ ଏବଂ କୋମଳ ବଚନ କହି ସେ ଶ୍ରୀରାମଙ୍କୁ ବକ୍ଷରେ ଆଲିଙ୍ଗନ କରି ପକାଇଲେ । ସେ କୋଳରେ ଧରି ତାହାଙ୍କୁ ଦୁଧ ପିଆଇବାକୁ ଲାଗିଲେ ଏବଂ ଶ୍ରୀ ରଘୁନାଥଙ୍କ ଲଳିତ ଲୀଳା ଗାଇବାକୁ ଲାଗିଲେ ॥ ୪ ॥ ସୋରଠା :—ଯେଉଁ ସୁଖ ନିମନ୍ତେ ସର୍ବସୁଖଦ କଲ୍ୟାଣରୂପ ତ୍ରିପୁରାରି ଶିବ ଅଶୁଭ ବେଶ ଧାରଣ କଲେ, ଅଯୋଧ୍ୟାପୁରୀର

ତବ ତେଁ ମୋହି ନ ବ୍ୟାପୀ ମାୟା । ଜବ ତେଁ ରଘୁନାୟକ ଅପନାୟା ॥
ୟହ ସବ ଗୁପ୍ତ ଚରିତ ମୈଁ ଗାୱା । ହରି ମାୟାଁ ଜିମି ମୋହି ନଚାୱା ॥୨॥
ନିଜ ଅନୁଭବ ଅବ କହଉଁ ଖଗେସା । ବିନୁ ହରିଭଜନ ନ ଜାହିଁ କଲେସା ॥
ରାମ କୃପା ବିନୁ ସୁନୁ ଖଗରାଈ । ଜାନି ନ ଜାଇ ରାମ ପ୍ରଭୁତାଈ ॥୩॥
ଜାନେ ବିନୁ ନ ହୋଇ ପରତୀତୀ । ବିନୁ ପରତୀତି ହୋଇ ନହିଁ ପ୍ରୀତୀ ॥
ପ୍ରୀତି ବିନା ନହିଁ ଭଗତି ଦୃଢ଼ାଈ । ଜିମି ଖଗପତି ଜଲ କୈ ଚିକନାଈ ॥୪॥

ବିନୁ ଗୁର ହୋଇ କି ଜ୍ଞାନ ଜ୍ଞାନ କି ହୋଇ ବିରାଗ ବିନୁ ।
ଗାୱହିଁ ବେଦ ପୁରାନ ସୁଖ କି ଲହିଅ ହରିଭଗତି ବିନୁ ॥୮୯(କ)॥

---

ବ୍ୟାପି ନାହିଁ ମାୟା ମୋତେ କେବେହେଁ ସେଦିନୁ । ଆପଣାର କଲେ ରଘୁନାୟକ ଯେ ଦିନୁ ॥
ବର୍ଣ୍ଣିଲି ଏ ସବୁ ଗୁପ୍ତ ଚରିତ ତେମନ୍ତେ । ହରି ମାୟା ନଚାଇଲା ମୋତେ ଯେଉଁ ମତେ ॥୨॥
ନିଜ ଅନୁଭବ ଏବେ କହୁଛି, ଖଗେଶ । ହରିଙ୍କ ଭଜନ ବିନା ନ ତୁଟଇ କ୍ଳେଶ ॥
ରାମ କୃପା ବିନା ଶୁଣ ବିହଙ୍ଗ ନାୟକ । ଜଣାଯାଇ ପାରେ ନାହିଁ ମହିମା ରାମଙ୍କ ॥୩॥
ନ ଜାଣନ୍ତେ ନ ହୁଅଇ କଦାପି ପ୍ରତୀତି । ପ୍ରତୀତି ବିହୁନେ କେବେ ନ ଉପୁଜେ ପ୍ରୀତି ॥
ପ୍ରୀତି ବିନା ଭକ୍ତି ଦୃଢ଼ ନ ହୁଅଇ ମନେ । ଜଳରେ ଚିକ୍କଣପଣ, ଖଗେଶ, ଯେସନେ ॥୪॥

ଗୁରୁ ବିନା ଜ୍ଞାନ ହୋଇ ନ ପାରଇ ବୈରାଗ୍ୟ ବିନା ନ ଜ୍ଞାନ ।
ହରି-ଭକ୍ତି ବିନା ସୁଖ ନ ମିଳଇ ଭଣନ୍ତି ବେଦ ପୁରାଣ ॥୮୯ (କ)॥

---

ନରନାରୀଗଣ ସେହି ସୁଖରେ ନିରନ୍ତର ନିମଗ୍ନ ॥୮୮ (କ)॥ ଯେଉଁମାନେ ଥରେ ସୁଦ୍ଧା ସ୍ୱପ୍ନରେ ସେହି ସୁଖର ଲବଲେଶମାତ୍ର ପାଇଅଛନ୍ତି, ହେ ପକ୍ଷିରାଜ ! ସେହି ସୁମତି ସଜ୍ଜନ ପୁରୁଷମାନେ ତାହା ଆଗରେ ବ୍ରହ୍ମସୁଖକୁ ସୁଦ୍ଧା ଟିକିଏ ହେଲେ ଗଣନ୍ତି ନାହିଁ ॥୮୮ (ଖ)॥ ଚୌପାଇ —ମୁଁ ଆଉ କିଛି ସମୟ ଅଯୋଧ୍ୟାପୁରୀରେ ରହିଲି ଏବଂ ଶ୍ରୀରାମଙ୍କ ରସାଳ ବାଳଲୀଳା ଦେଖିଲି । ଶ୍ରୀରାମଙ୍କ କୃପା ହେତୁ ମୁଁ ଭକ୍ତିର ବରଦାନ ପାଇଲି । ତଦନନ୍ତର ପ୍ରଭୁଙ୍କ ଚରଣ-ଯୁଗଳ ବନ୍ଦନା କରି ମୁଁ ମୋହର ଆଶ୍ରମକୁ ଫେରି ଆସିଲି ॥୧॥ ଏହି ରୂପେ ଯେଉଁଦିନଠାରୁ ଶ୍ରୀରାମ ମୋତେ ଆପଣାର କରିନେଲେ, ସେହି ଦିନୁ ମାୟା ମୋତେ ଆଉ ଘାରିନାହିଁ । ଶ୍ରୀହରିଙ୍କ ମାୟା ମୋତେ ଯେପରି ଭାବରେ ନଚାଇଥିଲା, ସେହି ସମସ୍ତ ଗୁପ୍ତ ଚରିତ ମୁଁ କହିଲି ॥୨॥ ହେ ପକ୍ଷିରାଜ ଗରୁଡ଼ ! ବର୍ତ୍ତମାନ ମୁଁ ଆପଣଙ୍କୁ ମୋ ନିଜ ଅନୁଭବ କହୁଅଛି । ତାହା ହେଉଛି, ଭଗବାନଙ୍କ ଭଜନ ବିନା କ୍ଳେଶ ଦୂର ହୁଏନାହିଁ । ହେ ପକ୍ଷିରାଜ ! ଶୁଣନ୍ତୁ, ଶ୍ରୀରାମଙ୍କ କୃପା ବିନା ତାହାଙ୍କର ପ୍ରଭୁତ୍ୱ ହୃଦୟଙ୍ଗମ କରି ହୁଏନାହିଁ ॥୩॥ ପ୍ରଭୁତ୍ୱ ନ ଜାଣିଲେ ବିଶ୍ୱାସ ଜନ୍ମେ ନାହିଁ । ବିଶ୍ୱାସ ବିନା ପ୍ରୀତି ହୁଏନାହିଁ । ହେ ପକ୍ଷିରାଜ ! ଜଳର ଚିକ୍କଣତା ଯେପରି ରହେନାହିଁ, ପ୍ରୀତି ନ ହେଲେ ଭକ୍ତି ସେହିପରି ଦୃଢ଼ ହୁଏନାହିଁ ॥୪॥ ସୋରଠା :— ବିନା ଗୁରୁରେ ଜ୍ଞାନ କେଉଁଠି ହୋଇ ପାରିଲାଣି ?

କୋଉ ବିଶ୍ରାମ କି ପାୱ ତାତ ସହଜ ସଂତୋଷ ବିନୁ ।
ଚଲୈ କି ଜଲ ବିନୁ ନାୱ କୋଟି ଜତନ ପଚି ପଚି ମରିଅ ॥୮୯(ଖ)॥
ବିନୁ ସଂତୋଷ ନ କାମ ନସାହୀଁ । କାମ ଅଛତ ସୁଖ ସପନେହୁଁ ନାହୀଁ ॥
ରାମଭଜନ ବିନୁ ମିଟହିଁ କି କାମା । ଥଲବିହୀନ ତରୁ କବହୁଁ କି ଜାମା ॥୧॥
ବିନୁ ବିଜ୍ଞାନ କି ସମତା ଆୱଇ । କୋଉ ଅବକାସ କି ନଭ ବିନୁ ପାୱଇ ॥
ଶ୍ରଦ୍ଧା ବିନା ଧର୍ମ ନହିଁ ହୋଈ । ବିନୁ ମହି ଗନ୍ଧ କି ପାୱଇ କୋଈ ॥୨॥
ବିନୁ ତପ ତେଜ କି କର ବିସ୍ତାରା । ଜଲ ବିନୁ ରସ କି ହୋଇ ସଂସାରା ॥
ସୀଲ କି ମିଲ ବିନୁ ବୁଧ ସେବକାଈ । ଜିମି ବିନୁ ତେଜ ନ ରୂପ ଗୋସାଁଈ ॥୩॥
ନିଜ ସୁଖ ବିନୁ ମନ ହୋଇ କି ଥୀରା । ପରସ କି ହୋଇ ବିହୀନ ସମୀରା ॥
କୱନିଉ ସିଦ୍ଧି କି ବିନୁ ବିସ୍ୱାସା । ବିନୁ ହରିଭଜନ ନ ଭବ ଭୟ ନାସା ॥୪॥

---

କେହି ବିଶ୍ରାମ କି ଲଭେ ଖଗରାୟ, ସହଜ ସନ୍ତୋଷ ବିନେ ।
ଚଳିପାରେ କୋଟି କଲେହେଁ ଉପାୟ ନାବ କି ଜଳ ବିହୀନେ ॥୮୯ (ଖ)॥
ସନ୍ତୋଷ ବିନା କାମନା ନାଶ ନ ହୁଅଇ । କାମ ରହନ୍ତେ ସ୍ୱପ୍ନେହେଁ ସୁଖ ନ ମିଳଇ ॥
ରାମଙ୍କ ଭଜନ ବିନା କାମ ନ ତୁଟଇ । ସ୍ଥଳ ବିହୁନେ କେବେ କି ତରୁ ଉପୁଜଇ ॥୧॥
ବିଜ୍ଞାନ ବିନା କେବେ କି ସମତା ଆସଇ । ନଭ ବିନା ଅବକାଶ କେବେ କି ମିଳଇ ॥
ଶ୍ରଦ୍ଧା ବିନା ଧର୍ମ କଦାଚିତେ ନ ହୁଅଇ । ଗନ୍ଧ କିଏ ପାଇପାରେ ? ଯହିଁ ନାହିଁ ମହୀ ॥୨॥
ତପ ବିହୁନେ କି ତେଜ ବିସ୍ତାର ହୁଅଇ । ଜଳ ବିନା ସଂସାରେ କି ରସ ଉପୁଜଇ ॥
ବୁଧ ଜନ ସେବା ବିନୁ ଶୀଳ କି ମିଳଇ । ତେଜ ବିନା ସ୍ୱାମି, କାହିଁ ରୂପ କି ଶୋଭଇ ॥୩॥
ନିଜ ସୁଖ ବିନା ମନ ସ୍ଥିର କି ହୁଅଇ । ସମୀର ବିହୁନେ ସ୍ପର୍ଶ ହୋଇ କି ପାରଇ ॥
ବିଶ୍ୱାସ ବିନା କୌଣସି ସିଦ୍ଧି କି ମିଳଇ । ବିନା ହରି ଭଜନ ନ ଭବଭୟ ତୁଟଇ ॥୪॥

---

ଅଥବା ବୈରାଗ୍ୟ ବିନା ଜ୍ଞାନ କେଉଁଠି ହୋଇ ପାରଛି ? ଏହିପରି ବେଦ ଓ ପୁରାଣମାନେ କହନ୍ତି ଯେ, ଶ୍ରୀହରିଙ୍କ ଭକ୍ତି ବିନା ସୁଖ କାହିଁ ? ॥ ୯ (କ) ॥ ହେ ତାତ ! ସ୍ୱାଭାବିକ ସନ୍ତୋଷ ବିନା କେହି ଶାନ୍ତି ପାଇପାରେ କି ? କୋଟି କୋଟି ଯତ୍ନ କରି ଥକି ମରିଯାଅ ପଛକେ, ଜଳ ବିନା କେବେ ନୌକା ଚଳିପାରେ କି ? ॥ ୮୯ (ଖ) ॥ ଚୌପାଇ :—ସନ୍ତୋଷ ବିନା କାମନାର ନାଶ ହୁଏନାହିଁ ଏବଂ କାମନା ରହିଲେ ସ୍ୱପ୍ନରେ ସୁଦ୍ଧା ସୁଖ ମିଳିପାରେ ନାହିଁ । ଶ୍ରୀରାମଙ୍କ ଭଜନ ବିନା କାମନାସମୂହ କାହୁଁ ମେଣ୍ଟି ପାରିବ ? ଭୂମି ବିନା ବୃକ୍ଷ କାହୁଁ ଅଙ୍କୁରିତ ହୋଇ ପାରିବ ? ॥ ୧ ॥ ବିଜ୍ଞାନ (ତତ୍ତ୍ୱଜ୍ଞାନ) ବିନା ସମତା କାହୁଁ ଆସିପାରେ ? ଆକାଶ ବିନା କେହି ଅବକାଶ (ଶୂନ୍ୟତା) ପାଇପାରେ କି ? ଶ୍ରଦ୍ଧା ବିନା ଧର୍ମାଚରଣ ହୁଏନାହିଁ । ଭୂତତ୍ତ୍ୱ ବିନା କେହି ଗନ୍ଧ ପାଇପାରେ କି ? ॥ ୨ ॥ ତପସ୍ୟା ବିନା ତେଜ ବିସ୍ତାର ଲାଭ କରିପାରେ କି ? ଜଳତତ୍ତ୍ୱ ବିନା ସଂସାରରେ ରସ ହୋଇପାରେ କି ? ପଣ୍ଡିତଜନଙ୍କ

ବିନୁ ବିସ୍ୱାସ ଭଗତି ନହିଁ ତେହି ବିନୁ ଦ୍ରବହିଁ ନ ରାମୁ ।
ରାମ କୃପା ବିନୁ ସପନେହୁଁ ଜୀବ ନ ଲହ ବିଶ୍ରାମୁ ॥୯୦(କ)॥
ଅସ ବିଚାରି ମତିଧୀର ତଜି କୁତର୍କ ସଂସୟ ସକଲ ।
ଭଜହୁ ରାମ ରଘୁବୀର କରୁନାକର ସୁନ୍ଦର ସୁଖଦ ॥୯୦(ଖ)॥
ନିଜ ମତି ସରିସ ନାଥ ମୈଁ ଗାଈ । ପ୍ରଭୁ ପ୍ରତାପ ମହିମା ଖଗରାଈ ॥
କହେଉଁ ନ କଛୁ କରି ଜୁଗୁତି ବିସେଷୀ । ୟହ ସବ ମୈଁ ନିଜ ନୟନନ୍ହି ଦେଖୀ ॥୧॥
ମହିମା ନାମ ରୂପ ଗୁନ ଗାଥା । ସକଲ ଅମିତ ଅନନ୍ତ ରଘୁନାଥା ॥
ନିଜ ନିଜ ମତି ମୁନି ହରି ଗୁନ ଗାୱହିଁ । ନିଗମ ସେଷ ସିବ ପାର ନ ପାୱହିଁ ॥୨॥
ତୁମ୍ହହି ଆଦି ଖଗ ମସକ ପ୍ରଜଂତା । ନଭ ଉଡ଼ାହିଁ ନହିଁ ପାୱହିଁ ଅଂତା ॥
ତିମି ରଘୁପତି ମହିମା ଅବଗାହା । ତାତ କବହୁଁ କୋଉ ପାୱ କି ଥାହା ॥୩॥

ବିଶ୍ୱାସ ବିହୁନେ ଭକ୍ତି ନ ହୁଅଇ, ତେଣୁ ନ ଦ୍ରବନ୍ତି ରାମ ।
ରାମ କୃପା ବିନେ କେବେହେଁ ସ୍ୱପନେ ଜୀବ ନ ଲଭେ ବିଶ୍ରାମ ॥୯୦ (କ)॥
ଏହା ଜାଣି ସର୍ବ କୁତର୍କ ସଂଶୟ ପରିହରି, ମତି-ଧୀର ।
ସୁଖଦ, ସୁନ୍ଦର, କରୁଣା-ନିଳୟ, ଭଜ ରାମ ରଘୁବୀର ॥୯୦ (ଖ)॥
ନିଜ ମତି ଅନୁସାରେ କଲି ମୁଁ ବର୍ଣ୍ଣନ । ପ୍ରଭୁ ପ୍ରତାପ ମହିମା, ବିହଙ୍ଗ-ରାଜନ ॥
ଯୁକ୍ତି ବିଶେଷ ଗଢ଼ିଣ କହି ନାହିଁ କିଛି । ଏହା ସବୁ ମୁହିଁ ନିଜ ନୟନେ ଦେଖିଛି ॥୧॥
ମହିମା ପ୍ରତାପ ରୂପ ଗୁଣ ଗଣ ନାମ । ସର୍ବେ ଅମିତ ଅନନ୍ତ ରଘୁପତି ରାମ ॥
ନିଜ ମତି ରୂପେ ମୁନି ହରି ଗୁଣ ଗାନ୍ତି । ନିଗମ ଶେଷ ମହେଶ ପାର ନ ପାଆନ୍ତି ॥୨॥
ତୁମ୍ଭ ଆଦି ଖଗ ଯେନି ମଶକ ପର୍ଯ୍ୟନ୍ତ । ଆକାଶେ ଉଡ଼ନ୍ତି କେହି ନ ଲଭନ୍ତି ଅନ୍ତ ॥
ଏହିପରି ରଘୁପତି ମହିମା ଅପାର । କେହି କି କଦାପି ଭ୍ରାତ, ପାଇପାରେ ପାର ॥୩॥

ସେବା ବିନା ଶୀଳ ବା ସଦାଚାର ଲାଭ କରାଯାଇ ପାରେ କି ? ହେ ଗୋସାଇଁ ! ତେଜ ବିନା ଅଗ୍ନି ତତ୍ତ୍ୱର ରୂପ ମିଳେନାହିଁ ॥ ୩ ॥ ଆପଣାର ସୁଖ (ଆତ୍ମାନନ୍ଦ) ବିନା ମନ ସ୍ଥିର ହୋଇପାରେ କି ? ବାୟୁତତ୍ତ୍ୱ ବିନା ସ୍ପର୍ଶ ହୋଇପାରେ କି ? ବିଶ୍ୱାସ ବିନା ଯେ କୌଣସି ପ୍ରକାର ସିଦ୍ଧି ମିଳିପାରେ କି ? ଏହି ରୂପେ ଶ୍ରୀହରିଙ୍କ ଭଜନ ବିନା ଭବଭୟ ନାଶ ହୁଏନାହିଁ ॥ ୪ ॥ ଦୋହା —ବିଶ୍ୱାସ ବିନା ଭକ୍ତି ହୁଏନାହିଁ, ଭକ୍ତି ବିନା ଶ୍ରୀରାମ ଦ୍ରବୀଭୂତ ହୁଅନ୍ତି ନାହିଁ । ଶ୍ରୀରାମଙ୍କ କୃପା ବିନା ଜୀବ ସ୍ୱପ୍ନରେ ସୁଦ୍ଧା ଶାନ୍ତି ପାଏନାହିଁ ॥ ୯୦ (କ) ॥ ସୋରଠା —ହେ ଧୀରମତି ! ଏହା ବିଚାର କରି ସମସ୍ତ କୁତର୍କ ଓ ସନ୍ଦେହକୁ ତ୍ୟାଗ କରି କରୁଣାକର, ସୁନ୍ଦର ଓ ସୁଖଦାୟକ ଶ୍ରୀରାମଙ୍କୁ ଭଜନ କରନ୍ତୁ ॥ ୯୦ (ଖ) । ଚୌପାଇ —ହେ ପକ୍ଷିରାଜ ! ହେ ନାଥ ! ମୁଁ ମୋ ନିଜ ବୁଦ୍ଧି ଅନୁସାରେ ପ୍ରଭୁଙ୍କ ପ୍ରତାପ ଓ ମହିମା ଗାନ କଲି । ଯୁକ୍ତି ଯୋଗେ ବଢ଼ା-ଚଢ଼ା କୌଣସି କଥା ମୁଁ ଏଥିରେ କହିନାହିଁ । ଏହା ସବୁ ମୋ ନିଜର ଆଖି-

ରାମ କାମ ସତ କୋଟି ସୁଭଗ ତନ । ଦୁର୍ଗା କୋଟି ଅମିତ ଅରିମର୍ଦ୍ଦନ ॥
ସକ୍ର କୋଟି ସତ ସରିସ ବିଲାସା । ନଭ ସତ କୋଟି ଅମିତ ଅବକାସା ॥୪॥
ମରୁତ କୋଟି ସତ ବିପୁଲ ବଲ ରବି ସତ କୋଟି ପ୍ରକାସ ।
ସସି ସତ କୋଟି ସୁସୀତଲ ସମନ ସକଲ ଭବ ତ୍ରାସ ॥୯୧(କ)॥
କାଲ କୋଟି ସତ ସରିସ ଅତି ଦୁସ୍ତର ଦୁର୍ଗ ଦୁରନ୍ତ ।
ଧୂମକେତୁ ସତ କୋଟି ସମ ଦୁରାଧରଷ ଭଗବନ୍ତ ॥୯୧(ଖ)॥
ପ୍ରଭୁ ଅଗାଧ ସତ କୋଟି ପତାଲା । ସମନ କୋଟି ସତ ସରିସ କରାଲା ॥
ତୀରଥ ଅମିତ କୋଟି ସମ ପାୱନ । ନାମ ଅଖିଲ ଅଘ ପୂଗ ନସାୱନ ॥୧॥

---

ରାମ କାମ ଶତକୋଟି ତନୁ ସୁଶୋଭନ । ଦୁର୍ଗା ଶତକୋଟି ସମ ବଇରି-ମର୍ଦ୍ଦନ ॥
ଶକ୍ର ଶତକୋଟି ପ୍ରାୟେ ବୈଭବ ବିଳାସ । ନଭ ଶତ-କୋଟି ତୁଲ୍ୟ ଅମିତାବକାଶ ॥୪॥
ବାୟୁ କୋଟି ଶତ ସଦୃଶ ବଳିଷ୍ଠ କୋଟି ଶତାର୍କ ପ୍ରକାଶ ।
ଶଶୀ କୋଟି ଶତ ଶୀତଳ ସତତ ଶମନ ସଂସୃତି ତ୍ରାସ ॥୯୧ (କ)॥
କାଳ କୋଟି ଶତ ସମାନ ଅତ୍ୟନ୍ତ ଦୁସ୍ତର ଦୁର୍ଗ ଦୁରନ୍ତ ।
ଶତ କୋଟି ଧୂମକେତୁ ସମ ଜାଣ ଦୁରାଧର୍ଷ ଭଗବନ୍ତ ॥୯୧ (ଖ)॥
ପ୍ରଭୁ ଯେସନ୍ତେ କୋଟି ଶତ ଗମ୍ଭୀର ପାତାଳ । ଶତକୋଟି ମୃତ୍ୟୁ ପ୍ରାୟେ ଅତି ବିକରାଳ ॥
କୋଟି ଶତ ତୀର୍ଥ ସମ ଅମିତ ପାବନ । ନାମ ଅଖିଲ କଲୁଷ-ପୁଞ୍ଜ ବିନାଶନ ॥୧॥

---

ଦେଖା ଘଟନା ॥ ୧ ॥ ଶ୍ରୀ ରଘୁନାଥଙ୍କ ମହିମା, ନାମ, ରୂପ ଓ ଗୁଣର କଥା ସବୁ ଅପାର ଏବଂ ଅନନ୍ତ, ତଥା ଶ୍ରୀ ରଘୁନାଥ ସ୍ୱୟଂ ବି ଅନନ୍ତ । ମୁନିଗଣ ଆପଣା ଆପଣା ବୁଦ୍ଧି ଅନୁସାରେ ଶ୍ରୀହରିଙ୍କ ଗୁଣଗାନ କରନ୍ତି । ବେଦ, ଶେଷ ଓ ଶିବ ସୁଦ୍ଧା ସେ ସବୁର ପାର ପାଆନ୍ତି ନାହିଁ ॥ ୨ ॥ ଆପଣଙ୍କଠାରୁ ଆରମ୍ଭ କରି ମଶା ପର୍ଯ୍ୟନ୍ତ ସମସ୍ତ କ୍ଷୁଦ୍ର ଜୀବ ଆକାଶରେ ଉଡନ୍ତି, କିନ୍ତୁ ଆକାଶର ଅନ୍ତ କେହି ପାଆନ୍ତି ନାହିଁ । ହେ ନାଥ ! ସେହିପରି ଶ୍ରୀ ରଘୁନାଥଙ୍କ ମହିମା ମଧ୍ୟ ଅପାର । କେହି ଏହାର ପାର ପାଇପାରେ କି ? ॥ ୩ ॥ ଶ୍ରୀରାମଚନ୍ଦ୍ରଙ୍କର ଶରୀର ଶତକୋଟି କାମଦେବଙ୍କ ଶରୀର ସମାନ ସୁନ୍ଦର । ସେ ଅସଂଖ୍ୟ କୋଟି ଦୁର୍ଗାଙ୍କ ସମାନ ଶତ୍ରୁନାଶକ । ଶତକୋଟି ଇନ୍ଦ୍ରଙ୍କ ସମାନ ତାହାଙ୍କର ବିଳାସ । ଶତକୋଟି ଆକାଶ ସମାନ ତାଙ୍କଠାରେ ଅନନ୍ତ ଶୂନ୍ୟତା (ସ୍ଥାନ) ବିଦ୍ୟମାନ ॥ ୪ ॥ ଦୋହା :—ଶତକୋଟି ମରୁତ ସମ ତାଙ୍କଠାରେ ମହାବଳ ଏବଂ ଶତକୋଟି ସୂର୍ଯ୍ୟ ସମାନ ତାଙ୍କର ପ୍ରକାଶ । ଶତକୋଟି ଚନ୍ଦ୍ରମା ସମାନ ସେ ସୁଶୀତଳ । ସେ ସଂସାରର ସମସ୍ତ ଭୟର ନାଶକାରକ ॥ ୯୧ (କ) ॥ ଶତକୋଟି କାଳ ସମ ସେ ଅତି ଦୁସ୍ତର, ଦୁର୍ଗମ ଓ ଦୁରନ୍ତ । ସେହି ଭଗବାନ୍ ଶତକୋଟି ଧୂମକେତୁ ସମାନ ଅତି ଦୁର୍ଦ୍ଧର୍ଷ ॥ ୯୧ (ଖ) ॥ ଚୌପାଇ :—ଶତକୋଟି ପାତାଳ ସମାନ ପ୍ରଭୁ ଅତଳ । ଶତକୋଟି ଯମରାଜଙ୍କ ସମାନ ସେ ଅତି ଭୟାନକ । ଅସଂଖ୍ୟ କୋଟି ତୀର୍ଥ

ହିମଗିରି କୋଟି ଅଚଲ ରଘୁବୀରା । ସିନ୍ଧୁ କୋଟି ସତ ସମ ଗଂଭୀରା ॥
କାମଧେନୁ ସତ କୋଟି ସମାନା । ସକଲ କାମଦାୟକ ଭଗବାନା ॥୨॥
ସାରଦ କୋଟି ଅମିତ ଚତୁରାଈ । ବିଧି ସତ କୋଟି ସୃଷ୍ଟି ନିପୁନାଈ ॥
ବିଷ୍ଣୁ କୋଟି ସମ ପାଲନ କର୍ତ୍ତା । ରୁଦ୍ର କୋଟି ସତ ସମ ସଂହର୍ତ୍ତା ॥୩॥
ଧନଦ କୋଟି ସତ ସମ ଧନବାନା । ମାୟା କୋଟି ପ୍ରପଞ୍ଚ ନିଧାନା ॥
ଭାର ଧରନ ସତ କୋଟି ଅହୀସା । ନିରବଧି ନିରୁପମ ପ୍ରଭୁ ଜଗଦୀସା ॥୪॥

ନିରୁପମ ନ ଉପମା ଆନ ରାମ ସମାନ ରାମୁ ନିଗମ କହୈ ।
ଜିମି କୋଟି ସତ ଖଦ୍ୟୋତ ସମ ରବି କହତ ଅତି ଲଘୁତା ଲହୈ ॥
ଏହି ଭାଁତି ନିଜ ନିଜ ମତି ବିଲାସ ମୁନୀସ ହରିହି ବଖାନହୀଁ ।
ପ୍ରଭୁ ଭାବଗ୍ରାହକ ଅତି କୃପାଲ ସପ୍ରେମ ସୁନି ସୁଖ ମାନହୀଁ ॥

---

ହିମାଚଳ କୋଟି ଶତ ସ୍ଥିର ରଘୁବୀର । ଶତ-କୋଟି ଜଳ-ନିଧି ସଦୃଶ ଗମ୍ଭୀର ॥
ପ୍ରଭୁ ଶତକୋଟି କାମଧେନୁ ସମାନ । ସକଳ କାମନା-ପ୍ରଦାୟକ ଭଗବାନ ॥୨॥
ବହନ୍ତି ଅମିତ କୋଟି ବାଣୀ ଚତୁରତା । ଶତ କୋଟି ବିଧି ସମ ସୃଷ୍ଟି ନିପୁଣତା ॥
ବିଷ୍ଣୁ ଶତକୋଟି ସମ ପାଳନ କରତା । ରୁଦ୍ର ଶତକୋଟି ପ୍ରାୟ ପ୍ରଭୁ ସଂହରତା ॥୩॥
ଧନାଧ୍ୟକ୍ଷ କୋଟି ଶତ ସମ ଧନବାନ । ମାୟା ଶତ କୋଟି ତୁଲ୍ୟ ପ୍ରପଞ୍ଚ ନିଧାନ ॥
ଭାର ବହିବାକୁ କୋଟି ଶତେକ ଅହୀଶ । ନିରବଧି ନିରୁପମ ପ୍ରଭୁ ଜଗଦୀଶ ॥୪॥

ନିରୁପମ ଅନ୍ୟାନ୍ୟ ଉପମା ଶୂନ୍ୟ ରାମ-ସମାନ ରାମ ଶ୍ରୁତି ଗାଏ ।
ଖଦ୍ୟୋତ କୋଟି ଶତ ସମ ରବି ଯେମନ୍ତ କହନ୍ତେ ହୀନତ୍ୱ ବୁଝାଏ ।
ପ୍ରଭୁଙ୍କୁ ଏମନ୍ତ ଭଣନ୍ତି, ମୁନିଗଣେ ଯେତେହୁଁ ନିଜ ମତି,
ଭାବ-ଗ୍ରାହକ ଅତି କୃପାଳୁ ରଘୁପତି ପ୍ରେମରେ ପ୍ରସନ୍ନ ଲଭନ୍ତି ॥

---

ସମାନ ସେ ପାବନ । ତାହାଙ୍କର ନାମ ସମସ୍ତ ପାପସମୂହର ନାଶକାରକ ॥ ୧ ॥
ଶ୍ରୀ ରଘୁବୀର କୋଟି କୋଟି ହିମାଳୟ ସମାନ ଅଚଳ (ସ୍ଥିର) ଏବଂ ଶତକୋଟି ସମୁଦ୍ର
ସମାନ ଗମ୍ଭୀର । ଶତକୋଟି କାମଧେନୁ ସମାନ ଭଗବାନ୍ ସମସ୍ତ କାମନାର
ଫଳଦାତା ॥ ୨ ॥ ତାଙ୍କଠାରେ ଅସଂଖ୍ୟ କୋଟି ସରସ୍ୱତୀଙ୍କ ଚାତୁର୍ଯ୍ୟ ନିହିତ ।
ଶତକୋଟି ବ୍ରହ୍ମାଙ୍କ ସୃଷ୍ଟି-ନୈପୁଣ୍ୟ ତାଙ୍କଠାରେ ରହିଅଛି । ଶତକୋଟି ବିଷ୍ଣୁଙ୍କ
ସମାନ ସେ ପାଳନକର୍ତ୍ତା ଏବଂ ଶତକୋଟି ରୁଦ୍ରଙ୍କ ସମାନ ସେ ସଂହାରକର୍ତ୍ତା ॥ ୩ ॥
ସେ ଶତକୋଟି କୁବେରଙ୍କ ସମାନ ଧନବାନ୍ ଏବଂ କୋଟି କୋଟି ମାୟା ସମାନ
ସୃଷ୍ଟିର ନିଦାନ । ଭାର ବହନ କରିବାରେ ସେ ଶତକୋଟି ଶେଷଙ୍କ ସମାନ । ଅଧିକ
କ'ଣ କହିବା ? ଜଗଦୀଶ୍ୱର ପ୍ରଭୁ ଶ୍ରୀରାମ ସମସ୍ତ ବିଷୟରେ ସୀମାରହିତ ଓ ନିରୁପମ ॥୪॥
ଛନ୍ଦ —ଶ୍ରୀରାମ ନିରୁପମ, ତାହାଙ୍କର ଅନ୍ୟ କୌଣସି ଉପମା ନାହିଁ । ବେଦମାନେ

ରାମୁ ଅମିତ ଗୁନସାଗର ଥାହ କି ପାଵଇ କୋଇ ।
ସଂତନ୍ହ ସନ ଜସ କଛୁ ସୁନେଉଁ ତୁମ୍ହହି ସୁନାୟଉଁ ସୋଇ ॥୯୨(କ)॥
ଭାବ ବସ୍ୟ ଭଗବାନ ସୁଖନିଧାନ କରୁନାଭଵନ ।
ତଜି ମମତା ମଦ ମାନ ଭଜିଅ ସଦା ସୀତାରଵନ ॥୯୨(ଖ)॥
ସୁନି ଭୁସୁଣ୍ଡି କେ ବଚନ ସୁହାଏ । ହରଷିତ ଖଗପତି ପଙ୍ଖ ଫୁଲାଏ ॥
ନୟନ ନୀର ମନ ଅତି ହରଷାନା । ଶ୍ରୀରଘୁପତି ପ୍ରତାପ ଉର ଆନା ॥୧॥
ପାଛିଲ ମୋହ ସମୁଝି ପଛିତାନା । ବ୍ରହ୍ମ ଅନାଦି ମନୁଜ କରି ମାନା ॥
ପୁନି ପୁନି କାଗଚରନ ସିରୁ ନାଵା । ଜାନି ରାମ ସମ ପ୍ରେମ ବଢ଼ାଵା ॥୨॥

---

ରାମ ଅପରିମିତ ଗୁଣ ପାରାବାର, ତଳ କି କେ ପାରେ ପାଇ ।
ସନ୍ଥ ମୁଖୁ ଯାହା ଶୁଣିଅଛି ତାହା ତୁମ୍ଭଙ୍କୁ କହେ ଶୁଣାଇ ॥୯୨ (କ)॥
କରୁଣା-ନିଧାନ ସୁଖ-ନିକେତନ ଭାବ-ବଶ ଭଗବାନ ।
ଭଜ ସଦା ରାମ ଜାନକୀ-ଜୀବନ ପରିହରି ମଦ ମାନ ॥୯ (ଖ)॥
ଶୁଣି ଭୁଶୁଣ୍ଡିର ମୃଦୁ ବଚନ ସୁନ୍ଦର । ହରଷିତେ ଫୁଲାଇଲା ପକ୍ଷ ଖଗବର ॥
ନୟନେ ସଲିଳ, ମନେ ଆନନ୍ଦ ହୋଇଲା । ଶ୍ରୀ ରଘୁପତି ପ୍ରତାପ ହୃଦୟେ ଧ୍ୟାଇଲା ॥୧॥
ଅନୁତାପ କଲା ସ୍ମରି ଅତୀତ ମୋହକୁ । ନର ରୂପେ ମଣିଲି ମୁଁ ଅନାଦି ବ୍ରହ୍ମଙ୍କୁ ॥
ପୁଣି ପୁଣି କାକ ପଦେ ପ୍ରଣାମ କରିଲା । ରାମ ସମ ଜାଣି ଅତି ପ୍ରେମ ବଢାଇଲା ॥୨॥

---

କହନ୍ତି—କେବଳ ଶ୍ରୀରାମ ହିଁ ଶ୍ରୀରାମଙ୍କ ସମାନ । ସୂର୍ଯ୍ୟ ଶତକୋଟି ଖଦ୍ୟୋତ (ଜୁଳୁଜୁଳିଆ ପୋକ) ସମାନ—ଏହା କହିଲେ ସୂର୍ଯ୍ୟ ଅତି ଲଘୁତା ବା କ୍ଷୁଦ୍ରତା ଲାଭ କରନ୍ତି । ତଦ୍ଦ୍ୱାରା ସୂର୍ଯ୍ୟଙ୍କର ପ୍ରଶଂସା ପରିବର୍ତ୍ତେ ବରଂ ନିନ୍ଦା ହୁଏ । ସେହିପରି ମୁନୀଶ୍ୱରମାନେ ଆପଣା ଆପଣା ବୁଦ୍ଧିର ବିକାଶ ଅନୁସାରେ ଶ୍ରୀହରିଙ୍କୁ ବର୍ଣ୍ଣନା କରିଥା'ନ୍ତି । କିନ୍ତୁ ପ୍ରଭୁ ଭକ୍ତଗଣଙ୍କ ଭାବମାନଙ୍କୁ ଗ୍ରହଣ କରନ୍ତି ଏବଂ ଅତିଶୟ କୃପାଳୁ । ସେ ସେହି ବର୍ଣ୍ଣନାକୁ ପ୍ରେମ ସହିତ ଶୁଣି ସୁଖଲାଭ କରନ୍ତି ॥ ଦୋହା :—ଶ୍ରୀରାମ ଅପାର ଗୁଣର ସାଗର । କେହି ତାଙ୍କର ପାର ପାଇପାରେ କି ? ସାଧୁସନ୍ଥମାନଙ୍କଠାରୁ ମୁଁ ଯେପରି ଶୁଣିଥିଲି, ସେହିପରି ଆପଣଙ୍କୁ ଶୁଣାଇଲି ॥ ୯୨ (କ) ॥ ସୋରଠା '—ସୁଖନିଧାନ, କରୁଣାଧାମ ଭଗବାନ୍ ଭାବ (ପ୍ରେମ)ର ବଶ । ଅତଏବ ମମତା, ମଦ ଓ ମାନ ତ୍ୟାଗ କରି ସଦାସର୍ବଦା କେବଳ ଶ୍ରୀ ଜାନକୀନାଥଙ୍କୁ ଭଜନ କରିବା ଉଚିତ ।" ॥ ୯୨ (ଖ) ॥ ଚୌପାଈ '—ଭୁଶୁଣ୍ଡିଙ୍କ ସୁନ୍ଦର ବଚନ ଶୁଣି ପକ୍ଷିରାଜ ଆନନ୍ଦିତ ହୋଇ ଆପଣାର ଡେଣା ଫୁଲାଇ ଦେଲେ । ତାଙ୍କ ନେତ୍ରରେ ପ୍ରେମାନନ୍ଦର ଅଶ୍ରୁଜଳ ପୂରିଗଲା ଏବଂ ମନ ଅତିଶୟ ଆନନ୍ଦିତ ହୋଇଗଲା । ସେ ଶ୍ରୀ ରଘୁନାଥଙ୍କ ପ୍ରତାପର ମହିମା ହୃଦୟରେ ଧାରଣ କଲେ ॥ ୧ ॥ ସେ ଆପଣାର ଅତୀତର ମୋହ ବିଷୟ ସ୍ମରଣ କଲେ ଏବଂ ଅନାଦି ବ୍ରହ୍ମଙ୍କୁ ମନୁଷ୍ୟ କରି ଜାଣିଥିଲେ ବୋଲି ଅନୁତାପ

ଗୁର ବିନୁ ଭବନିଧି ତରଇ ନ କୋଈ । ଜୌଁ ବିରଂଚି ସଙ୍କର ସମ ହୋଈ ॥
ସଂସୟ ସର୍ପ ଗ୍ରସେଉ ମୋହି ତାତା । ଦୁଖଦ ଲହରି କୁତର୍କ ବହୁ ବ୍ରାତା ॥୩॥
ତବ ସରୂପ ଗାରୁଡ଼ି ରଘୁନାୟକ । ମୋହି ଜିଆୟଉ ଜନ ସୁଖଦାୟକ ॥
ତବ ପ୍ରସାଦ ମମ ମୋହ ନସାନା । ରାମ ରହସ୍ୟ ଅନୂପମ ଜାନା ॥୪॥

ତାହି ପ୍ରସଂସି ବିବିଧି ବିଧି ସୀସ ନାଇ କର ଜୋରି ।
ବଚନ ବିନୀତ ସପ୍ରେମ ମୃଦୁ ବୋଲେଉ ଗରୁଡ଼ ବହୋରି ॥୯୩(କ)॥
ପ୍ରଭୁ ଅପନେ ଅବିବେକ ତେଁ ବୂଝଉଁ ସ୍ୱାମୀ ତୋହି ।
କୃପାସିନ୍ଧୁ ସାଦର କହହୁ ଜାନି ଦାସ ନିଜ ମୋହି ॥୯୩(ଖ)॥

ତୁମ୍ହ ସର୍ବଜ୍ଞ ତଜ୍ଞ ତମ ପାରା । ସୁମତି ସୁସୀଲ ସରଲ ଆଚାରା ॥
ଜ୍ଞାନ ବିରତି ବିଜ୍ଞାନ ନିବାସା । ରଘୁନାୟକ କେ ତୁମ୍ହ ପ୍ରିୟ ଦାସା ॥୧॥

---

ଗୁରୁ ବିନା ଭବ-ନିଧି କେହି ନ ତରଇ । ବିରଞ୍ଚି ଶଙ୍କର ସମ ଯଦ୍ୟପି ହୁଅଇ ॥
ସଂଶୟ-ସର୍ପ ଦଂଶିଲା ମୋତେ, ଭ୍ରାତାବର । ଦୁଃଖଦ ଲହରୀ ହେଲା କୁତର୍କ - ନିକର ॥୩॥
ତୁମ୍ଭ ରୂପ ଗାରୁଡ଼ିରେ ଶ୍ରୀ ରଘୁନାୟକ । ମୋତେ ଜିଆଇଲେ ଜନ-ସୁଖ- ପ୍ରଦାୟକ ॥
ତୁମ୍ଭର ପ୍ରସାଦେ ମୋର ମୋହ ହେଲା ଶମ । ଜାଣିଲି ରାମ ରହସ୍ୟ ଅଛି ଅନୁପମ ॥୪॥

ତାହାଙ୍କୁ ପ୍ରଶଂସି ଅନେକ ପ୍ରକାରେ ପ୍ରଣମି ସଜୋଡ଼ି କର ।
ବିନୟ ସପ୍ରେମ ମଧୁର ବଚନ ବୋଲେ ଗରୁଡ଼ ଆବର ॥୯୩ (କ)॥
ପ୍ରଭୁ ମୁହିଁ ନିଜ ଅବିବେକ-ପଣ୍ଡ ତୁମ୍ଭଙ୍କୁ ଜିଜ୍ଞାସା କରେ ।
କରୁଣା ନିବାସ, ମୋତେ ନିଜଦାସ ଜାଣି କହନ୍ତୁ ସାଦରେ ॥୯୩ (ଖ)॥

ତୁମ୍ଭେ ସରବଜ୍ଞ ଅଛ ତଜ୍ଞ ତମ-ପାର । ସୁମତି ସୁଶୀଳ ଅଟ ସରଳ ଆଚାର ॥
ଜ୍ଞାନବିଜ୍ଞାନ ଆବର ବୈରାଗ୍ୟ ନିବାସ । ଶ୍ରୀ ରଘୁନାଥଙ୍କ ତୁମ୍ଭେ ଅଛ ପ୍ରିୟ ଦାସ ॥୧॥

---

କରିବାକୁ ଲାଗିଲେ । ଗରୁଡ଼ ବାରମ୍ବାର କାକ ଭୁଶୁଣ୍ଡିଙ୍କ ଚରଣ ତଳେ ଶିର ନୁଆଁଇଲେ ଏବଂ ତାହାଙ୍କୁ ରାମଙ୍କ ସମାନ ମନେ କରି ପ୍ରେମ ବଢ଼ାଇଲେ ॥ ୨ ॥ ଗୁରୁଙ୍କ ବିନା, ଏପରି କି ବ୍ରହ୍ମା ବା ଶଙ୍କରଙ୍କ ସମାନ ସୁଦ୍ଧା କେହି ହୁଅନ୍ତୁ ପଛକେ, କେହି ଭବ-ସାଗର ତରି ପାରନ୍ତି ନାହିଁ । ଗରୁଡ଼ କହିଲେ, "ହେ ତାତ ! ମୋତେ ସଂଶୟ-ସର୍ପ ଦଂଶନ କରିଥିଲା ଏବଂ ବହୁତ କୁତର୍କର ଦୁଃଖ-ଦାୟକ ତରଙ୍ଗ ମୋ ହୃଦୟରେ ଖେଳୁଥିଲା ॥ ୩ ॥ ଆପଣଙ୍କ ସ୍ୱରୂପ ଗାରୁଡ଼ି ମନ୍ତ୍ର ଯୋଗେ ଭକ୍ତଜନ-ସୁଖଦାୟକ ଶ୍ରୀ ରଘୁନାଥ ମୋତେ ଜିଆଇ ଦେଲେ । ଆପଣଙ୍କ କୃପା ଯୋଗେ ମୋର ମୋହ ନାଶ ହୋଇଗଲା ଏବଂ ମୁଁ ଶ୍ରୀରାମଙ୍କ ଅନୁପମ ରହସ୍ୟ ଜାଣିଲି ।" ॥ ୪ ॥ ଦୋହା —ତାହାଙ୍କୁ (କାକ ଭୁଶୁଣ୍ଡି)ଙ୍କୁ ବହୁତ ପ୍ରକାରେ ପ୍ରଶଂସା କରି ଗରୁଡ଼ ତାହାଙ୍କ ଚରଣତଳେ ମସ୍ତକ ଅବନତ କଲେ ଏବଂ ହାତ ଯୋଡ଼ି ପ୍ରେମସହକାରେ ବିନମ୍ର ଓ କୋମଳ ବଚନ ବୋଇଲେ—॥ ୯୩ (କ) ॥ "ହେ ପ୍ରଭୋ ! ହେ ସ୍ୱାମି !

କାରନ କଵନ ଦେହ ଯହ ପାଈ । ତାତ ସକଲ ମୋହି କହହୁ ବୁଝାଈ ॥
ରାମ ଚରିତ ସର ସୁନ୍ଦର ସ୍ୱାମୀ । ପାୟହୁ କହାଁ କହହୁ ନଭଗାମୀ ॥୨॥
ନାଥ ସୁନା ମୈଁ ଅସ ସିଵ ପାହୀଁ । ମହାପ୍ରଲୟହୁଁ ନାସ ତଵ ନାହୀଁ ॥
ମୁଧା ବଚନ ନହିଁ ଈସ୍ୱର କହଈ । ସୋଉ ମୋରେଁ ମନ ସଂସୟ ଅହଈ ॥୩॥
ଅଗ ଜଗ ଜୀଵ ନାଗ ନର ଦେଵା । ନାଥ ସକଲ ଜଗୁ କାଲ କଲେଵା ॥
ଅଣ୍ଡକଟାହ ଅମିତ ଲୟକାରୀ । କାଲୁ ସଦା ଦୁରତିକ୍ରମ ଭାରୀ ॥୪॥
ତୁମ୍ହହି ନ ବ୍ୟାପତ କାଲ ଅତି କରାଲ କାରନ କଵନ ।
ମୋହି ସୋ କହହୁ କୃପାଲ ଜ୍ଞାନ ପ୍ରଭାଵ କି ଜୋଗ ବଲ ॥୯୪(କ)॥

---

କେଉଁ କାରଣରୁ ଏହି ଦେହ ଅଛ ପାଇ । କହ ତାତ, ମୋତେ ସବୁ ବୃତ୍ତାନ୍ତ ବୁଝାଇ ॥
ରାମଚରିତ ମାନସ ମନୋହର, ସ୍ୱାମି ! ପାଇଲ କେଉଁ ସ୍ଥାନରୁ କହ, ନଭଗାମି ! ॥୨॥
ନାଥ ଶୁଣିଛି ମୁଁ ଏହା ଶିବଙ୍କ ମୁଖରେ । ତୁମ୍ଭ ନାଶ ନ ହୁଅଇ ମହା ପ୍ରଳୟରେ ॥
ମିଥ୍ୟା ବଚନ କହନ୍ତି ନାହିଁ ମୃତ୍ୟୁଞ୍ଜୟ । ତେଣୁ ମୋର ମନେ ଏହି ଉପୁଜେ ସଂଶୟ ॥୩॥
ନାଗ ନର ଦେବ ଚର-ଅଚର ସମସ୍ତ । ନାଥ, କାଳ-କବଳିତ ଏ ଜୀବ-ଜଗତ ॥
ଅପରିମିତ ବ୍ରହ୍ମାଣ୍ଡ-ଖଣ୍ଡ ଲୟକାରୀ । ଅଟଇ କାଳ ଦୁରତିକ୍ରମ ସଦା ଭାରୀ ॥୪॥
କେଉଁ କାରଣରୁ ତୁମ୍ଭଙ୍କୁ ସେ ଅତି କରାଳ କାଳ ନ ବ୍ୟାପେ ?
କୁହ ହେ କୃପାଳୁ, ମୋତେ, ଯୋଗ ବଳେ ଅଥବା ଜ୍ଞାନ-ପ୍ରତାପେ ? ୯୪(କ)॥

---

ମୁଁ ମୋ ନିଜ ଅବିବେକତା ହେତୁ ଆପଣଙ୍କୁ ପଚାରୁଛି । ହେ କୃପା-ସାଗର ! ମୋତେ ଆପଣାର 'ନିଜ ଦାସ' ବୋଲି ମନେ କରି ଆଦରରେ ମୋ ପ୍ରଶ୍ନର ଉତ୍ତର କୁହନ୍ତୁ ॥ ୯୩ (କ) ॥ ଚୌପାଇ :—ଆପଣ ସର୍ବଜ୍ଞ, ତତ୍ତ୍ୱଜ୍ଞ, ଅନ୍ଧକାର (ମାୟା)ର ଊର୍ଦ୍ଧ୍ୱରେ, ସୁମତି, ସୁଶୀଳ, ସରଳାଚାରୀ, ଜ୍ଞାନ, ବୈରାଗ୍ୟ ଓ ବିଜ୍ଞାନର ଧାମ ଏବଂ ଶ୍ରୀ ରଘୁନାଥଙ୍କ ପ୍ରିୟ ଦାସ ॥ ୧ ॥ ଆପଣ କି ହେତୁ ଏହି କାକ ଶରୀର ପାଇଲେ ? ହେ ତାତ ! ସବୁ ବୁଝାଇ ମୋତେ କୁହନ୍ତୁ । ହେ ସ୍ୱାମି ! ହେ ଆକାଶଗାମି ! ଏହି ସୁନ୍ଦର ରାମଚରିତମାନସ ଆପଣ କେଉଁଠାରୁ ପାଇଲେ, ତାହା ମୋତେ କୁହନ୍ତୁ ॥ ୨ ॥ ହେ ନାଥ ! ମୁଁ ଶିବଙ୍କଠାରୁ ଶୁଣିଛି ଯେ, ମହାପ୍ରଳୟରେ ସୁଦ୍ଧା ଆପଣଙ୍କର ନାଶ ହୁଏନାହିଁ ଏବଂ ଈଶ୍ୱର (ଶିବ) କଦାପି ମିଥ୍ୟା ବଚନ ବୋଲନ୍ତି ନାହିଁ । ତାହା ମଧ୍ୟ ମୋ ମନରେ ସନ୍ଦେହ ସୃଷ୍ଟି କରିଛି ॥ ୩ ॥ ହେ ନାଥ ! ନାଗ, ମନୁଷ୍ୟ, ଦେବତା ଆଦି ଚରାଚର ଜୀବ ତଥା ଏହି ସମସ୍ତ ସଂସାର କାଳର ପ୍ରାତଃକାଳୀନ ଜଳପାନ । ଅସଂଖ୍ୟ ବ୍ରହ୍ମାଣ୍ଡର ବିନାଶକାରୀ କାଳ ସଦା ଅତିଶୟ ଦୁରତିକ୍ରମ୍ୟ ॥ ୪ ॥ ସୋରଠା :—ସେହିପରି ଅତି ଭୟଙ୍କର କାଳ ଆପଣଙ୍କୁ ବ୍ୟାପେନାହିଁ । ଅର୍ଥାତ୍ ଆପଣଙ୍କ ଉପରେ ପ୍ରଭାବ ପକାଇ ପାରେନାହିଁ । ଏହାର କାରଣ କ'ଣ ? ହେ କୃପାଳୁ ! ମୋତେ କୁହନ୍ତୁ—ଏହା ଜ୍ଞାନର ପ୍ରଭାବ କିମ୍ବା ଯୋଗର ବଳ ? ॥ ୯୪ (କ) ॥

ପ୍ରଭୁ ତବ ଆଶ୍ରମ ଆଏଁ ମୋର ମୋହ ଭ୍ରମ ଭାଗ ।
କାରନ କଵନ ସୋ ନାଥ ସବ କହହୁ ସହିତ ଅନୁରାଗ ॥୯୪(ଖ)॥
ଗରୁଡ଼ ଗିରା ସୁନି ହରଷେଉ କାଗା । ବୋଲେଉ ଉମା ପରମ ଅନୁରାଗା ॥
ଧନ୍ୟ ଧନ୍ୟ ତବ ମତି ଉରଗାରୀ । ପ୍ରସ୍ନ ତୁମ୍ହାରି ମୋହି ଅତି ପ୍ୟାରୀ ॥୧॥
ସୁନି ତବ ପ୍ରସ୍ନ ସପ୍ରେମ ସୁହାଈ । ବହୁତ ଜନମ କୈ ସୁଧି ମୋହି ଆଈ ॥
ସବ ନିଜ କଥା କହଉଁ ମୈଁ ଗାଈ । ତାତ ସୁନହୁ ସାଦର ମନ ଲାଈ ॥୨॥
ଜପ ତପ ମଖ ସମ ଦମ ବ୍ରତ ଦାନା । ବିରତି ବିବେକ ଜୋଗ ବିଜ୍ଞାନା ॥
ସବ କର ଫଲ ରଘୁପତି ପଦ ପ୍ରେମା । ତେହି ବିନୁ କୋଉ ନ ପାଵଇ ଛେମା ॥୩॥
ଏହିଁ ତନ ରାମ ଭଗତି ମୈଁ ପାଈ । ତା ତେଁ ମୋହି ମମତା ଅଧିକାଈ ॥
ଜେହି ତେଁ କଛୁ ନିଜ ସ୍ୱାରଥ ହୋଈ । ତେହି ପର ମମତା କର ସବ କୋଈ ॥୪॥

---

ତୁମ୍ଭ ଆଶ୍ରମରେ ପ୍ରବେଶନ୍ତେ ହେଲି ମୋହ-ଭ୍ରମରୁ ରହିତ ।
କହ ନାଥ, କେଉଁ କାରଣ ଏଥିର, ମୋ ଆଗେ ପ୍ରେମ ସହିତ ॥୯୦ (ଖ)॥
ଗରୁଡ଼ ବଚନ ଶୁଣି କାକ ହରଷିତେ । କହିଲା ଉମା, ଅତ୍ୟନ୍ତ ଆଦର ସହିତେ ॥
ଧନ୍ୟ ଧନ୍ୟ ଧନ୍ୟ ତୁମ୍ଭ ମତି, ଉରଗାରି । ତୁମ୍ଭର ପ୍ରଶ୍ନ ଲାଗିଲା ମୋତେ ପ୍ରିୟ ଭାରି ॥୧॥
ଶୁଣି ପ୍ରେମ-ଯୁକ୍ତ ତୁମ୍ଭ ପ୍ରଶ୍ନ ମନୋହର । ବହୁ ଜନ୍ମର ସ୍ମରଣ ହୋଇଲା ମୋହର ॥
ନିଜ ପୂର୍ବକଥା ସବୁ କହୁଛି ମୁଁ ଗାଇ । ଶୁଣ ଖଗନାଥ ମନ ସାଦରେ ଲଗାଇ ॥୨॥
ଜପ ତପ ବ୍ରତ ଯଜ୍ଞ ସଂଯମାଦି ଦାନ । ବୈରାଗ୍ୟ ବିବେକ ଯୋଗ ଆବର ବିଜ୍ଞାନ ॥
ସମସ୍ତଙ୍କ ଫଳ ରଘୁପତି ପଦେ ପ୍ରେମ । ତାହା ବିନା କେହି କେବେ ନ ଲଭଇ କ୍ଷେମ ॥୩॥
ଏହି ଦେହେ ପାଇଛି ମୁଁ ଶ୍ରୀରାମ ଭକତି । ଅଧିକ ମମତା ମୋର ତେଣୁ ଏଥିପ୍ରତି ॥
ଯାହାଦ୍ୱାରା ସ୍ୱାର୍ଥ କିଛି ହୁଅଇ ନିଜର । କରନ୍ତି ମମତା ପ୍ରୀତି ସର୍ବେ ତା ଉପର ॥୪॥

---

ଦୋହା —ହେ ପ୍ରଭୋ ! ଆପଣଙ୍କ ଆଶ୍ରମକୁ ଆସିବା ମାତ୍ରେ ମୋର ମୋହ ଓ ଭ୍ରମ ଅପସରିଗଲା । ଏହାର କାରଣ କ'ଣ ? ହେ ନାଥ ! ଏହା ସବୁ ପ୍ରେମ ସହକାରେ ମୋତେ କୁହନ୍ତୁ ।" ॥ ୯୪ (ଖ) ॥ ଚୌପାଈ .—ହେ ଉମା ! ଗରୁଡଙ୍କ ବାଣୀ ଶୁଣି କାକ ଭୁଶୁଣ୍ଡି ଆନନ୍ଦିତ ହେଲେ ଏବଂ ପରମ ପ୍ରେମରେ କହିଲେ, "ହେ ସର୍ପଶତ୍ରୁ ! ଆପଣଙ୍କ ବୁଦ୍ଧି ଧନ୍ୟ । ଆପଣଙ୍କ ପ୍ରଶ୍ନ ମୋତେ ଅତି ପ୍ରିୟ (ରୁଚିକର) ବୋଧ ହେଲା ॥ ୧ ॥ ଆପଣଙ୍କ ପ୍ରେମଯୁକ୍ତ ସୁନ୍ଦର ପ୍ରଶ୍ନ ଶୁଣି ମୋ ନିଜର ବହୁତ ଜନ୍ମର କଥା ମନେ ପଡିଗଲା । ମୁଁ ଆପଣାର ସମସ୍ତ କଥା ସବିସ୍ତାର କହୁଅଛି । ହେ ତାତ ! ଆଦର ଓ ମନୋଯୋଗ ସହକାରେ ଶୁଣନ୍ତୁ ॥ ୨ ॥ ଅନେକ ଜପ, ତପ, ଯଜ୍ଞ, ଶମ, ଦମ, ବ୍ରତ, ଦାନ, ବୈରାଗ୍ୟ, ବିବେକ, ଯୋଗ, ବିଜ୍ଞାନ ଆଦି ସମସ୍ତର ଫଳ ଶ୍ରୀ ରଘୁନାଥଙ୍କ ଚରଣ-ଯୁଗଳରେ ପ୍ରେମଲାଭ । ଏହା ବିନା କେହି କଲ୍ୟାଣ ପାଇ ନ ପାରେ ॥ ୩ ॥ ମୁଁ ଏହି ଶରୀରରେ ଶ୍ରୀ ରାମଙ୍କ ଭକ୍ତି ଲାଭ କରିଅଛି । ଏହି ହେତୁ

ପନ୍ନଗାରି ଅସି ନୀତି ଶ୍ରୁତି ସମ୍ମତ ସଜ୍ଜନ କହହିଁ ।
ଅତି ନୀଚହୁ ସନ ପ୍ରୀତି କରିଅ ଜାନି ନିଜ ପରମ ହିତ ॥୯୫(କ)॥
ପାଟ କୀଟ ତେଁ ହୋଇ ତେହି ତେଁ ପାଟମ୍ବର ରୁଚିର ।
କୃମି ପାଲଇ ସବୁ କୋଇ ପରମ ଅପାବନ ପ୍ରାନ ସମ ॥୯୫(ଖ)॥
ସ୍ୱାରଥ ସାଁଚ ଜୀବ କହୁଁ ଏହା । ମନ କ୍ରମ ବଚନ ରାମ ପଦ ନେହା ॥
ସୋଇ ପାବନ ସୋଇ ସୁଭଗ ସରୀରା । ଜୋ ତନୁ ପାଇ ଭଜିଅ ରଘୁବୀରା ॥୧॥
ରାମ ବିମୁଖ ଲହି ବିଧି ସମ ଦେହୀ । କବି କୋବିଦ ନ ପ୍ରସଂସହିଁ ତେହୀ ॥
ରାମ ଭଗତି ଏହିଁ ତନ ଉର ଜାମୀ । ତା ତେଁ ମୋହି ପରମ ପ୍ରିୟ ସ୍ୱାମୀ ॥୨॥
ତଜଉଁ ନ ତନୁ ନିଜ ଇଚ୍ଛା ମରନା । ତନ ବିନୁ ବେଦ ଭଜନ ନହିଁ ବରନା ॥
ପ୍ରଥମ ମୋହଁ ମୋହି ବହୁତ ବିଗୋୱା । ରାମ ବିମୁଖ ସୁଖ କବହୁଁ ନ ସୋୱା ॥୩॥

ଶୁଣ ପନ୍ନଗାରି, ଶ୍ରୁତି-ମତ ନୀତି-କଥନ ସଜ୍ଜନଙ୍କର ।
ଅତି ନୀଚ ସଙ୍ଗେ କରାଯାଏ ପ୍ରୀତି ଜାଣି ନିଜ ହିତକର ॥୯୫ (କ)।
ପାଟ କୀଟୋତ୍ପନ୍ନ, ତହିଁରେ ରଚନ ପାଟାମ୍ବର ମନୋରମ ॥
ସର୍ବେ ଅପାବନ କୃମିକୁ ପାଳନ କରନ୍ତି ସ୍ୱପ୍ରାଣ ସମ ॥୯୫ (ଖ)।
ସତ୍ୟ ସ୍ୱାର୍ଥ ଅଟେ ଏହା ଜୀବଗଣ ଲାଗି । ମନ କର୍ମ ବାକ୍ୟେ ରାମ-ପଦ-ଅନୁରାଗୀ ॥
ସେହି ସୁପାବନ ସେହି ସୁଭଗ ଶରୀର । ଯେଉଁ ତନୁ ପାଇ ଭଜାଯାଏ ରଘୁବୀର ॥୧॥
ରାମଦ୍ରୋହୀ ଲଭିଲେ ହେଁ ବିଧିସମ ଦେହୀ । ତାକୁ ପ୍ରଶଂସନ୍ତି ନାହିଁ କବି ବୁଧ କେହି ॥
ରାମ ଭକ୍ତି ଏହି ଦେହ ଉରେ ହେଲା ଜାତ । ସେ ହେତୁ ପରମପ୍ରିୟ ମୋତେ ତନୁ, ତାତ ॥୨॥
ସ୍ୱେଚ୍ଛା-ମରଣ, ତଥାପି ତନୁ ନ ତେଜଇ । ତନୁ ବିହୁନେ ଭଜନ ବେଦ ନ କହଇ ॥
ପ୍ରଥମରେ ମୋହ ମୋତେ ହେଲା ବହୁ ଦୁଃଖ । ରାମ ପରାଙ୍ମୁଖ, କେବେ ନ ଲଭିଲି ସୁଖ ॥୩॥

ଏହା ପ୍ରତି ମୋର ମମତା ଅଧିକ । ଯାହା ଦ୍ୱାରା କେହି ନିଜର କୌଣସି ସ୍ୱାର୍ଥ ସାଧନ କରେ, ତାହା ପ୍ରତି ସମସ୍ତେ ପ୍ରେମ କରନ୍ତି ॥ ୪ ॥ ସୋରଠା .—ହେ ଗରୁଡ ! ବେଦମାନଙ୍କରେ ଏହି ନୀତି ସ୍ୱୀକୃତ ଏବଂ ସଜ୍ଜନମାନେ ମଧ୍ୟ କହନ୍ତି—ନିଜ ପ୍ରତି ପରମ ହିତକର ବୋଲି ଜାଣି ଅତ୍ୟନ୍ତ ନୀଚଠାରେ ମଧ୍ୟ ପ୍ରେମ କରିବା ବାଞ୍ଛନୀୟ ॥ ୯୫ (କ) ॥ ରେଶମ ପୋକଠାରୁ ଉତ୍ପାଦନ କରାଯାଏ, ତହିଁରୁ ସୁନ୍ଦର ରେଶମୀ ବସ୍ତ୍ର ତିଆରି ହୁଏ । ଏହି ହେତୁ ସେହି ଅତି ଅପବିତ୍ର କୀଟକୁ ମଧ୍ୟ ସମସ୍ତେ ପ୍ରାଣ ସମାନ ଆଦରରେ ପାଳନ କରନ୍ତି ॥ ୯୫ (ଖ) ॥ ଚୌପାଈ ‘—ମନ, ବଚନ ଓ କର୍ମରେ ଶ୍ରୀରାମଙ୍କ ଚରଣଠାରେ ପ୍ରେମ କରିବା ବିଧେୟ; ଜୀବ ପକ୍ଷରେ ଏହା ସତ୍ ସ୍ୱାର୍ଥ । ଯେଉଁ ଶରୀରକୁ ପାଇ ଶ୍ରୀ ରଘୁବୀରଙ୍କ ଭଜନ କରାଯାଏ, ସେହି ଶରୀର ପବିତ୍ର ଓ ସୁନ୍ଦର ॥ ୧ ॥ ଯେଉଁ ଜୀବ ଶ୍ରୀରାମଙ୍କ ପ୍ରତି ବିମୁଖ, ସେ ବ୍ରହ୍ମାଙ୍କ ତୁଲ୍ୟ ଶରୀର ପାଇଥାଇ ପଛକେ, ତଥାପି କବି ଓ ପଣ୍ଡିତମାନେ ତାହାର ପ୍ରଶଂସା କରନ୍ତି

ନାନା ଜନମ କର୍ମ ପୁନ ନାନା । କିଏ ଜୋଗ ଜପ ତପ ମଖ ଦାନା ॥
କଉନ ଜୋନି ଜନମେଉଁ ଜହଁ ନାହୀଁ । ମୈଁ ଖଗେସ ଭ୍ରମି ଭ୍ରମି ଜଗ ମାହୀଁ ॥୪॥
ଦେଖେଉଁ କରି ସବ କରମ ଗୋସାଈଁ । ସୁଖୀ ନ ଭୟଉଁ ଅବହିଁ କୀ ନାଈଁ ॥
ସୁଧି ମୋହି ନାଥ ଜନମ ବହୁ କେରୀ । ସିବ ପ୍ରସାଦ ମତି ମୋହଁ ନ ଘେରୀ ॥୫॥

ପ୍ରଥମ ଜନ୍ମ କେ ଚରିତ ଅବ କହଉଁ ସୁନହୁ ବିହଗେସ ।
ସୁନି ପ୍ରଭୁ ପଦ ରତି ଉପଜଇ ଜାତେଁ ମିଟହିଁ କଲେସ ॥୯୬(କ)॥
ପୂରୁବ କଲ୍ପ ଏକ ପ୍ରଭୁ ଜୁଗ କଲିଜୁଗ ମଲ ମୂଲ ।
ନର ଅରୁ ନାରି ଅଧର୍ମରତ ସକଲ ନିଗମ ପ୍ରତିକୂଲ ॥୯୬(ଖ)॥

---

ନାନାବିଧ ଜନ୍ମରେ କର୍ମ ବିବିଧ ବିଧାନ । କଲି ଯୋଗ ଜପ ତପ ଯଜ୍ଞ ବ୍ରତ ଦାନ ॥
କେଉଁ ଯୋନି ଜଗତରେ, ବିହଙ୍ଗ ଉତ୍ତମ । ଭ୍ରମି ଭ୍ରମି ଯହିଁ ମୁହିଁ ନ ହେଲି ଜନମ ॥୪॥
ସକଳ କର୍ମ କରିଣ ଗୋସାଇଁ, ଦେଖିଲି । ଏବେ ପରି କାହିଁ କେବେ ସୁଖୀ ନ ହୋଇଲି ॥
ବହୁତ ଜନ୍ମର ମୋର ସ୍ମରଣ ରହିଛି । ଶିବ ପ୍ରସାଦେ ମତିକୁ ମୋହ ନ ଘେରିଛି ॥୫॥

କହୁଛି ପ୍ରଥମ ଜନ୍ମର ଚରିତ ଶୁଣ, ଏବେ ବିହଙ୍ଗେଶ ।
ଶୁଣି ପ୍ରଭୁପଦେ ଉପୁଜଇ ପ୍ରୀତି, ଯହିଁରେ ତୁଟଇ କ୍ଳେଶ ॥୯୬ (କ)॥
ପୂର୍ବ କଳ୍ପେ ପ୍ରଭୁ କଳି ନାମେ ଏକ ଯୁଗ ଥିଲା ପାପମୂଳ ।
ନର ନାରୀ ସର୍ବେ ଅଧର୍ମରେ ରତ ସଦା ଶ୍ରୁତି ପ୍ରତିକୂଳ ॥୯୬ (ଖ)॥

---

ନାହିଁ । ଏହି ଶରୀର ପାଇ ମୋ ହୃଦୟରେ ରାମଭକ୍ତି ଜାତ ହେଲା । ହେ ସ୍ୱାମି ! ଏହି ହେତୁ ଏହା ମୋର ପରମ ପ୍ରିୟ ॥ ୨ ॥ ମୋ ମରଣ ମୋହର ନିଜ ଇଚ୍ଛା ଉପରେ ନିର୍ଭର କରେ । ତଥାପି ମୁଁ ଏହି ଶରୀର ତ୍ୟାଗ କରୁନାହିଁ । କାରଣ, ବେଦମାନେ ବର୍ଣ୍ଣନା କରିଅଛନ୍ତି ଯେ, ଶରୀର ବିନା ଭଜନ ହୁଏନାହିଁ । ପ୍ରଥମେ ମୋହ ମୋର ଅତି ଦୁର୍ଦ୍ଦଶା ଘଟାଇଥିଲା । ଶ୍ରୀରାମଙ୍କ ପ୍ରତି ବିମୁଖ ହୋଇ ମୁଁ କେବେ ସୁଖରେ ଶୋଇପାରି ନ ଥିଲି ॥ ୩ ॥ ଅନେକ ଜନ୍ମରେ ମୁଁ ଅନେକ ପ୍ରକାର ଯୋଗ, ଜପ, ତପ, ଯଜ୍ଞ ଓ ଦାନ ଆଦି କର୍ମ କଲି । ହେ ଖଗେଶ ଗରୁଡ଼ ! ଜଗତରେ ଏପରି ଯୋନି କାହିଁ ଯେଉଁଥିରେ ମୁଁ ଭ୍ରମି ଭ୍ରମି ଜନ୍ମ ଗ୍ରହଣ କରିନାହିଁ ? ॥ ୪ ॥ ହେ ଗୋସାଇଁ ! ମୁଁ ସବୁ କର୍ମ କରି ଦେଖିସାରିଛି—ବର୍ତ୍ତମାନର ଜନ୍ମ ପରି ମୁଁ ଆଉ କେବେ ସୁଖଲାଭ କରିନାହିଁ । ହେ ନାଥ ! ମୋର ବହୁତ ଜନ୍ମ ସ୍ମରଣ ଅଛି । ଶିବଙ୍କ ପ୍ରସାଦରୁ ମୋର ବୁଦ୍ଧି ମୋହ-ଗ୍ରସ୍ତ ହୋଇନାହିଁ ॥ ୫ ॥ ଦୋହା :—ହେ ପକ୍ଷିରାଜ ! ଶୁଣନ୍ତୁ, ବର୍ତ୍ତମାନ ମୁଁ ମୋର ପ୍ରଥମ ଜନ୍ମର ଚରିତ କହୁଛି । ତାହା ସବୁ ଶୁଣି ପ୍ରଭୁଙ୍କ ଚରଣରେ ପ୍ରୀତି ଜାତ ହୁଏ । ଫଳରେ ସବୁ କ୍ଳେଶ ମେଣ୍ଟିଯାଏ ॥ ୯୬ (କ) ॥ ହେ ପ୍ରଭୋ ! ପୂର୍ବେ ଗୋଟିଏ କଳ୍ପରେ ସମସ୍ତ ପାପର ମୂଳ କଳିଯୁଗର ଆବିର୍ଭାବ ହୋଇଥିଲା । ତହିଁରେ ପୁରୁଷ ଓ ନାରୀ ସମସ୍ତେ ଅଧର୍ମପରାୟଣ ଓ ବେଦବିରୋଧୀ ଥିଲେ ॥ ୯୬ (ଖ) ॥

ତେହିଁ କଲିଜୁଗ କୋସଲପୁର ଜାଈ । ଜନ୍ମତ ଭୟଉଁ ସୂଦ୍ର ତନୁ ପାଈ ॥
ସିବସେବକ ମନ କ୍ରମ ଅରୁ ବାନୀ । ଆନ ଦେବ ନିନ୍ଦକ ଅଭିମାନୀ ॥୧॥
ଧନ ମଦ ମତ୍ତ ପରମ ବାଚାଲା । ଉଗ୍ରବୁଦ୍ଧି ଉର ଦମ୍ଭ ବିସାଲା ॥
ଜଦପି ରହେଉଁ ରଘୁପତି ରଜଧାନୀ । ତଦପି ନ କଛୁ ମହିମା ତବ ଜାନୀ ॥୨॥
ଅବ ଜାନା ମୈଁ ଅଉଧ ପ୍ରଭାଉ । ନିଗମାଗମ ପୁରାନ ଅସ ଗାଉ ॥
କଉନେହୁଁ ଜନ୍ମ ଅଉଧ ବସ ଜୋଈ । ରାମପରାୟନ ସୋ ପରି ହୋଈ ॥୩॥
ଅଉଧ ପ୍ରଭାବ ଜାନ ତବ ପ୍ରାନୀ । ଜବ ଉର ବସହିଁ ରାମୁ ଧନୁପାନୀ ॥
ସୋ କଲିକାଲ କଠିନ ଉରଗାରୀ । ପାପପରାୟନ ସବ ନର ନାରୀ ॥୪॥

କଲିମଲ ଗ୍ରସେ ଧର୍ମ ସବ ଲୁପ୍ତ ଭଏ ସଦଗ୍ରନ୍ଥ ।
ଦମ୍ଭିନ୍ହ ନିଜ ମତି କଲ୍ପି କରି ପ୍ରଗଟ କିଏ ବହୁ ପନ୍ଥ ॥୯୭(କ)॥

---

ସେ କଳି ଯୁଗେ କୋଶଳପୁରେ ମୁଁ ଯାଇଣ। ଜନମ ହୋଇଲି ଶୂଦ୍ର ଶରୀର ପାଇଣ ॥
ମନ କର୍ମ ବଚନରେ ଶଙ୍କର ସେବକ । ଅତି ଅଭିମାନୀ, ଅନ୍ୟ ଦେବତା-ନିନ୍ଦକ ॥୧॥
ଧନ ମଦେ ମତ୍ତ ଥିଲି ପରମ ବାଚାଳ । ଉଗ୍ର ବୁଦ୍ଧି-ଯୁକ୍ତ, ଦମ୍ଭ ହୃଦୟେ ବିଶାଳ ॥
ଯଦ୍ୟପି ମୁଁ ରାମ ରାଜଧାନୀରେ ରହିଲି । ତଥାପି ମହିମା କିଛି ହୃଦେ ନ ହେଜିଲି ॥୨॥
ଏବେ ମୁଁ ଜାଣି ପାରିଲି ଅଯୋଧ୍ୟା ପ୍ରଭାବ । ନିଗମାଗମ ପୁରାଣେ ବଦନ୍ତି ଏ ଭାବ ॥
କୌଣସି ଜନ୍ମରେ କେହି ଅବଧେ ରହଇ । ରାମ-ପରାୟଣ ସେହି ଅବଶ୍ୟ ହୁଅଇ ॥୩॥
ଅଯୋଧ୍ୟାପୁରୀ ପ୍ରଭାବ ଜାଣେ ତେବେ ପ୍ରାଣୀ। ହୃଦୟେ ବସନ୍ତି ଯେବେ ରାମ ଧନୁପାଣି ॥
ସେ କଳି କାଳ କଠିନ ଅଟେ, ଉରଗାରି । ପାପ-ପରାୟଣ ସଦା ସର୍ବେ ନରନାରୀ ॥୪॥

ଗ୍ରାସିଲା ସକଳ ଧର୍ମ କଳି-ମଳ, ଲୁପ୍ତ ହେଲେ ସଦଗ୍ରନ୍ଥ ।
ଦମ୍ଭୀ ଲୋକ ନିଜ ମତି କଳ୍ପି କରି ପ୍ରକଟିଲେ ବହୁ ପନ୍ଥ ॥୯୭ (କ)॥

---

ଚୌପାଈ :—ସେହି କଳିଯୁଗରେ ମୁଁ ଅଯୋଧ୍ୟାପୁରୀରେ ଯାଇ ଶୂଦ୍ର ଶରୀର ପାଇ ଜନ୍ମ ଲାଭ କରିଥିଲି । ମୁଁ ମନ, ବଚନ ଓ କର୍ମରେ ଶିବଙ୍କ ସେବକ ଓ ଅନ୍ୟ ଦେବତାମାନଙ୍କର ଅଭିମାନୀ ନିନ୍ଦକ ଥିଲି ॥ ୧ ॥ ଧନ-ମଦରେ ମୁଁ ଉନ୍ମତ୍ତ ହୋଇ ପଡ଼ିଥିଲି । ଅତିଶୟ ବାଚାଳ ଓ ଉଗ୍ରବୁଦ୍ଧି ଥିଲି ଏବଂ ମୋ ହୃଦୟରେ ଅତି ବିଶେଷ ମାତ୍ରାରେ ଦମ୍ଭ ଥିଲା । ଯଦ୍ୟପି ଶ୍ରୀ ରଘୁନାଥଙ୍କ ରାଜଧାନୀରେ ମୁଁ ରହୁଥାଏ, ତଥାପି ସେହି ସମୟରେ ମୁଁ ତାହାର ମାହାତ୍ମ୍ୟ କିଛି ହେଲେ ଜାଣି ନ ଥିଲି ॥ ୨ ॥ ଏବେ ମୁଁ ଅଯୋଧ୍ୟାର ପ୍ରଭାବ ଜାଣିଲି । ବେଦ, ଶାସ୍ତ୍ର ଓ ପୁରାଣମାନେ ଏପରି ଗାଇଅଛନ୍ତି ଯେ, କୌଣସି ଜନ୍ମରେ କେହି ଯଦି ଅଯୋଧ୍ୟାରେ ବାସ ପାଇଯାଏ, ସେ ଅବଶ୍ୟ ଶ୍ରୀରାମଙ୍କ ପରାୟଣ ହୋଇଯାଏ ॥ ୩ ॥ ଯେତେବେଳେ ଧନୁପାଣି ଶ୍ରୀରାମ ଜୀବର ହୃଦୟରେ ନିବାସ କରନ୍ତି, ସେତିକିବେଳେ ସେ ଅଯୋଧ୍ୟାର ପ୍ରଭାବ ଜାଣିପାରେ । ହେ ଉରଗାରି ଗରୁଡ ! ସେହି କଳିକାଳ ଅତି କଠିନ ଥିଲା । ତହିଁରେ ସମସ୍ତ ନରନାରୀ ପାପ-ପରାୟଣ

ଭଏ ଲୋଗ ସବ ମୋହ ବସ ଲୋଭ ଗ୍ରସେ ସୁଭ କର୍ମ ।

ସୁନୁ ହରିଜାନ ଜ୍ଞାନନିଧି କହଉଁ କଛୁକ କଲିଧର୍ମ ॥୯୭(ଖ)

ବରନ ଧର୍ମ ନହିଁ ଆଶ୍ରମ ଚାରୀ । ଶ୍ରୁତି ବିରୋଧ ରତ ସବ ନର ନାରୀ ॥
ଦ୍ୱିଜ ଶ୍ରୁତିବେଚକ ଭୂପ ପ୍ରଜାସନ । କୋଉ ନହିଁ ମାନ ନିଗମ ଅନୁସାସନ ॥୧॥
ମାରଗ ସୋଇ ଜା କହୁଁ ଜୋଇ ଭାବା । ପଣ୍ଡିତ ସୋଇ ଜୋ ଗାଲ ବଜାବା ॥
ମିଥ୍ୟାରମ୍ଭ ଦମ୍ଭରତ ଜୋଈ । ତା କହୁଁ ସଂତ କହଇ ସବ କୋଈ ॥୨॥
ସୋଇ ସୟାନ ଜୋ ପରଧନହାରୀ । ଜୋ କର ଦମ୍ଭ ସୋ ବଡ଼ ଆଚାରୀ ॥
ଜୋ କହ ଝୁଁଠ ମସଖରୀ ଜାନା । କଲିଜୁଗ ସୋଇ ଗୁନବନ୍ତ ବଖାନା ॥୩॥
ନିରାଚାର ଜୋ ଶ୍ରୁତିପଥ ତ୍ୟାଗୀ । କଲିଜୁଗ ସୋଇ ଜ୍ଞାନୀ ସୋ ବିରାଗୀ ॥
ଜାକେଁ ନଖ ଅରୁ ଜଟା ବିସାଲା । ସୋଇ ତାପସ ପ୍ରସିଦ୍ଧ କଲିକାଲା ॥୪॥

---

ମୋହ ବଶୀଭୂତ ହେଲେ ସବୁ ଲୋକ ଲୋଭ ଗ୍ରାସେ ଶୁଭକର୍ମ ।

ଶୁଣ ହରିଯାନ ବିଜ୍ଞାନ, ନିଧାନ, କହେ କିଛି କଳି ଧର୍ମ ॥୯୭ (ଖ)॥

ନ ରହିଲା ବର୍ଣ୍ଣ ଧର୍ମ ଆଶ୍ରମ ଯେ ଚାରି । ଶ୍ରୁତି-ବିରୋଧ-ନିରତ ସର୍ବେ ନର ନାରୀ ॥
ବିପ୍ର ବିକେ ବେଦ, ପ୍ରଜା-ଭକ୍ଷକ ଭୂପତି । ନିଗମ ଅନୁଶାସନ କେହି ନ ମାନନ୍ତି ॥୧॥
ମାର୍ଗ ସେହି ଯାହା ଭଲ ଯାହାକୁ ଲାଗଇ । ପଣ୍ଡିତ ସେହି ଯେ ବ୍ୟର୍ଥ ପ୍ରଲାପ କରଇ ॥
ମିଥ୍ୟାରମ୍ଭ ଦମ୍ଭେ ଲିପ୍ତ ସଦା ଯେ ରହନ୍ତି । ସନ୍ଥ ବୋଲିଣ ତାହାକୁ ସମସ୍ତେ କହନ୍ତି ॥୨॥
ସେ ଧୂର୍ତ୍ତ ଚତୁର ଯେହୁ ପରଧନ-ହାରୀ । ଯେ କରେ ଦମ୍ଭ ସେ ବଡ ଅଟଇ ଆଚାରୀ ॥
ଯେ ମିଛ କହଇ ପରିହାସ ଯେ ଜାଣଇ । କଳି ଯୁଗେ ଗୁଣବନ୍ତ ସେହି ବଖାଣଇ ॥୩॥
ଆଚାର-ରହିତ ଯେହୁ ଶ୍ରୁତି ପଥତ୍ୟାଗୀ । କଳିରେ କୁହାଏ ସେହି ଜ୍ଞାନୀ ବଇରାଗୀ ॥
ଯାହାର ଜଟା ବିଶାଳ ଦୀର୍ଘ ନଖ-ପନ୍ତି । କଳିକାଳେ ସେ ତାପସ ପ୍ରସିଦ୍ଧ ଅଟନ୍ତି ॥୪॥

---

ଥିଲେ ॥ ୪ ॥ ଦୋହା .—କଳି ଯୁଗର ପାପରାଶି ସମସ୍ତ ଧର୍ମକୁ ଗ୍ରାସ କରି ପକାଇଲା । ସଦ୍‌ଗ୍ରନ୍ଥମାନ ଲୋପ ପାଇ ଯାଇଥିଲା । ଦାମ୍ଭିକମାନେ ନିଜ ନିଜ ବୁଦ୍ଧି ଅନୁସାରେ କଳ୍ପନା କରି କରି ବହୁତ ପନ୍ଥା ଆବିଷ୍କାର କରିଦେଲେ ॥ ୯୭ (କ) ॥ ସମସ୍ତ ଲୋକ ମୋହର ବଶବର୍ତ୍ତୀ ହୋଇପଡିଲେ । ଲୋଭ ସମସ୍ତ ଶୁଭ କର୍ମକୁ ଆତ୍ମସାତ୍ କରି ପକାଇଲା । ହେ ଜ୍ଞାନନିଧି ! ହେ ଶ୍ରୀହରିବାହନ ! ଶୁଣନ୍ତୁ, ଏବେ ମୁଁ କଳିର କେତେକ ଧର୍ମ ବିଷୟରେ କହୁଅଛି ॥ ୯୭ (ଖ) ॥ ଚୌପାଇ —‘କଳିଯୁଗରେ ବର୍ଣ୍ଣଧର୍ମ କିମ୍ବା ଚାରି ଆଶ୍ରମ ନ ଥାଏ । ସମସ୍ତ ନରନାରୀ ବେଦର ବିରୋଧ କରିବାରେ ନିରତ । ବ୍ରାହ୍ମଣମାନେ ବେଦଗଣର ବିକ୍ରେତା ଏବଂ ରାଜା ପ୍ରଜାମାନଙ୍କ ଭକ୍ଷକ ହୁଅନ୍ତି । କେହି ବେଦର ଆଜ୍ଞା ମାନନ୍ତି ନାହିଁ ॥ ୧ ॥ ଯାହାର ଇଚ୍ଛା ବା ରୁଚି ଯେମିତି, ସେଇଟା ହେଲା ମାର୍ଗ । ଯେ ଗାଲୁ ମାରେ, ସେହି ପଣ୍ଡିତ; ଯେ ମିଥ୍ୟା ଆଡମ୍ବର କରେ ଏବଂ ଯେ ଦମ୍ଭରତ, ତାହାକୁ ହିଁ ସମସ୍ତେ ସନ୍ଥ ବୋଲି କହନ୍ତି ॥ ୨ ॥ ଯେ କୌଣସି ନା କୌଣସି

ଅସୁଭ ବେଷ ଭୂଷନ ଧରେଁ ଭଚ୍ଛାଭଚ୍ଛ ଜେ ଖାହିଁ ।
ତେଇ ଜୋଗୀ ତେଇ ସିଦ୍ଧ ନର ପୂଜ୍ୟ ତେ କଲିଜୁଗ ମାହିଁ ॥୯୮(କ)॥
ଜେ ଅପକାରୀ ଚାର ତିହ୍ନ କର ଗୌରବ ମାନ୍ୟ ତେଇ ।
ମନ କ୍ରମ ବଚନ ଲବାର ତେଇ ବକତା କଲିକାଲ ମହୁଁ ॥୯୮(ଖ)॥
ନାରି ବିବସ ନର ସକଲ ଗୋସାଈଂ । ନାଚହିଁ ନଟ ମର୍କଟ କୀ ନାଈଂ ॥
ସୂଦ୍ର ଦ୍ୱିଜହ୍ନ ଉପଦେସହିଁ ଗ୍ୟାନା । ମେଲି ଜନେଊ ଲେହିଁ କୁଦାନା ॥୧॥
ସବ ନର କାମ ଲୋଭରତ କ୍ରୋଧୀ । ଦେବ ବିପ୍ର ଶ୍ରୁତି ସନ୍ତ ବିରୋଧୀ ॥
ଗୁନ ମନ୍ଦିର ସୁନ୍ଦର ପତି ତ୍ୟାଗୀ । ଭଜହିଁ ନାରି ପର ପୁରୁଷ ଅଭାଗୀ ॥୨॥

---

ଯେ ଅଶୁଭ ବେଷ ଭୂଷଣ ଧରଇ ଭକ୍ଷ୍ୟାଭକ୍ଷ୍ୟ ଯେତୁ ଖାଏ ।
ସେହୁ ଯୋଗୀ ସିଦ୍ଧ ପୁରୁଷ କୁହାଏ, କଳିରେ ସେ ପୂଜା ପାଏ ॥୯୮(କ)॥
ପର ଅପକାର କରନ୍ତି ଯେ ସେହୁ ଲଭେ ଗୌରବ ମାନ୍ୟତା ॥
ମନ କର୍ମ ବାକ୍ୟେ ମିଛ ଗପୁଡ଼ି ସେ କଳି ଯୁଗେ ସେ ବକତା ॥୯୮ (ଖ)॥
ନାରୀ ବଶୀଭୂତ ନର ନକର ଅଟନ୍ତି । ନାଥ, ନଟ ମରକଟ ସଦୃଶ ନାଚନ୍ତି ॥
ବିପ୍ରଙ୍କୁ ଦିଅନ୍ତି ଶୂଦ୍ର ଉପଦେଶ ଜ୍ଞାନ । ଯଜ୍ଞୋପବୀତ ପିନ୍ଧିଣ ନିଅନ୍ତି କୁଦାନ ॥୧॥
ସର୍ବେ ନର କାମମଦଲୋଭରତ କ୍ରୋଧୀ । ବିବୁଧ ବ୍ରାହ୍ମଣ ଗୁରୁ ସଜ୍ଜନ ବିରୋଧୀ ॥
ସୁନ୍ଦର ଗୁଣ-ମନ୍ଦିର ପରିହରି ପତି । ଅଭାଗ୍ୟ ପର ପୁରୁଷେ ଭଜନ୍ତି ଯୁବତୀ ॥୨॥

---

ଉପାୟରେ ଅନ୍ୟର ଧନ ହରଣ କରିନିଏ, ସେହି ବୁଦ୍ଧିମାନ୍ । ଯେ ଦମ୍ଭ କରେ, ସେହି ବଡ଼ ଆଚାରବାନ୍ । ଯେ ମିଥ୍ୟା କହେ ଏବଂ ଥଟ୍ଟା-ରହସ୍ୟ କରି ଜାଣେ, କଳିଯୁଗରେ ତାହାକୁ ଗୁଣବାନ୍ ବୋଲି କହନ୍ତି ॥ ୩ ॥ ଯେ ଆଚାରହୀନ ଏବଂ ବେଦମାର୍ଗକୁ ତ୍ୟାଗ କରିଅଛି, କଳିଯୁଗରେ ସେହି ଜ୍ଞାନୀ ଓ ସେହି ବୈରାଗ୍ୟବାନ୍ । ଯାହାର ବଡ଼ ବଡ଼ ନଖ ଓ ଲମ୍ବ ଲମ୍ବ ଜଟା, ସେହି କଳିଯୁଗରେ ପ୍ରସିଦ୍ଧ ତପସ୍ୱୀ ॥ ୪ ॥ ଦୋହା :—ଯେଉଁମାନେ ଅମଙ୍ଗଳ ବେଶ ଓ ଅଶୁଭ ଭୂଷଣ ଧାରଣ କରନ୍ତି ଏବଂ ଭକ୍ଷ୍ୟ-ଅଭକ୍ଷ୍ୟ ସବୁ କିଛି ଖାଆନ୍ତି, ସେହିମାନେ ଯୋଗୀ, ସେହିମାନେ ସିଦ୍ଧ ଏବଂ କଳିଯୁଗରେ ସେହି ମନୁଷ୍ୟମାନେ ପୂଜ୍ୟ ॥ ୯୮ (କ) ॥ ସୋରଠା :—ଅନ୍ୟର ଅପକାର କରିବା ଯେଉଁମାନଙ୍କର ଆଚରଣ, ସେହିମାନଙ୍କର ବଡ଼ ଗୌରବ ଏବଂ ସେହିମାନେ ସମ୍ମାନର ଯୋଗ୍ୟ । ଯେଉଁମାନେ ମନ, ବଚନ ଓ କର୍ମରେ ମିଛ ଗପ ମାରନ୍ତି, ସେହିମାନେ କଳିଯୁଗରେ ବକ୍ତା ନାମରେ ପରିଗଣିତ ହୁଅନ୍ତି ॥୯୮(ଖ)॥ ଚୌପାଇ :—ହେ ଗୋସାଇଁ ! ସମସ୍ତ ନର ବିଶେଷ ରୂପେ ନାରୀବଶ ହୁଅନ୍ତି ଏବଂ ବାଜିଗରର ବାନର ପରି ସେହିମାନଙ୍କ ଇଶାରାରେ ନାଚନ୍ତି । ଶୂଦ୍ରମାନେ ବ୍ରାହ୍ମଣମାନଙ୍କୁ ଜ୍ଞାନୋପଦେଶ ଦିଅନ୍ତି ଏବଂ ବେକରେ ପଇତା ପକାଇ କୁତ୍ସିତ ଦାନ ଗ୍ରହଣ କରନ୍ତି ॥୧॥ ସମସ୍ତ ପୁରୁଷ କାମ ଓ ଲୋଭରେ ତତ୍ପର ଏବଂ କ୍ରୋଧୀ ହୁଅନ୍ତି । ସେମାନେ ଦେବତା,

ସୌଭାଗିନୀଁ ବିଭୂଷନହୀନା । ବିଧବନ୍ହ କେ ସିଂଗାର ନବୀନା ॥
ଗୁର ସିଷ ବଧିର ଅନ୍ଧ କା ଲେଖା । ଏକ ନ ସୁନଇ ଏକ ନହିଁ ଦେଖା ॥୩॥
ହରଇ ସିଷ୍ୟ ଧନ ସୋକ ନ ହରଈ । ସୋ ଗୁର ଘୋର ନରକ ମହୁଁ ପରଈ ॥
ମାତୁ ପିତା ବାଲକନ୍ହି ବୋଲାୱହିଁ । ଉଦର ଭରୈ ସୋଇ ଧର୍ମ ସିଖାୱହିଁ ॥୪॥

ବ୍ରହ୍ମଜ୍ଞାନ ବିନୁ ନାରି ନର କହହିଁ ନ ଦୂସରି ବାତ ।
କୌଡ଼ୀ ଲାଗି ଲୋଭ ବସ କରହିଁ ବିପ୍ର ଗୁର ଘାତ ॥୯୯(କ)॥
ବାଦହିଁ ସୂଦ୍ର ଦ୍ୱିଜନ୍ହ ସନ ହମ ତୁମ୍ହ ତେ କଛୁ ଘାଟି ।
ଜାନଇ ବ୍ରହ୍ମ ସୋ ବିପ୍ରବର ଆଁଖି ଦେଖାୱହିଁ ଡାଟି ॥୯୯(ଖ)॥

ପର ତ୍ରିୟ ଲଂପଟ କପଟ ସୟାନେ । ମୋହ ଦ୍ରୋହ ମମତା ଲପଟାନେ ॥
ତେଇ ଅଭେଦବାଦୀ ଜ୍ଞାନୀ ନର । ଦେଖା ମୈଁ ଚରିତ୍ର କଲିଜୁଗ କର ॥୧॥

---

ସୌଭାଗିନୀ ନାରୀ ଅଙ୍ଗ ଆଭୂଷଣ-ହୀନ । ବିଧବା ସାଜନ୍ତି ନିତ୍ୟ ଶୃଙ୍ଗାର ନବୀନ ॥
ଗୁରୁ ଶିଷ୍ୟ ଲେଖା ଅନ୍ଧ ବଧିର ରୂପରେ । ଏକ ନ ଦେଖଇ ଏକ ନ ଶୁଣେ କାନରେ ॥୩॥
ହରଇ ଯେ ଶିଷ୍ୟଧନ ଶୋକ ନ ହରଇ । ସେ ଗୁରୁ ଘୋର ନରକ ମଧ୍ୟରେ ପଡଇ ॥
ଜନନୀ ଜନକ ନିଜ ବାଳକଙ୍କୁ ଧରି । ଉଦର ଭରଣ କର୍ମ କହନ୍ତି ଶିଖାଇ ॥୪॥

ବ୍ରହ୍ମଜ୍ଞାନ ବିନା ନରନାରୀ କେହି ଅନ୍ୟ କଥା ନ କହନ୍ତି ।
କଉଡି ନିମନ୍ତେ ମୋହ ବଶୀଭୂତେ ଗୁରୁ ବ୍ରାହ୍ମଣ ବଧନ୍ତି ॥୯୯ (କ)॥
ଶୂଦ୍ର ବିପ୍ର ସଙ୍ଗେ ବିବାଦନ୍ତି, ଆମ୍ଭେ ତୁମ୍ଭଠାରୁ ନିଉନ କି ।
ଜାଣନ୍ତି ଯେ ବ୍ରହ୍ମ ବ୍ରାହ୍ମଣେ ସେ ଗଣ୍ୟ, ଆଖି ଦେଖାନ୍ତି ଧମକି ॥୯୯ (ଖ)॥

ପରନାରୀ ଲମ୍ପଟ ଯେ କପଟେ ପ୍ରବୀଣ । ମୋହ ଦ୍ରୋହ ମମତାରେ ରତ ନିଶି ଦିନ ॥
ଅଟନ୍ତି ଅଭେଦବାଦୀ ଜ୍ଞାନୀ ସେହି ନର । ଦେଖିଲି ନାଥ, ଚରିତ ମୁଁ କଳି ଯୁଗର ॥୧॥

---

ବ୍ରାହ୍ମଣ, ବେଦ ଓ ସନ୍ଥଜନଙ୍କ ବିରୋଧୀ । ଅଭାଗିନୀ ନାରୀମାନେ ଗୁଣମନ୍ଦିର ସୁନ୍ଦର ସ୍ୱାମୀଙ୍କୁ ତ୍ୟାଗ କରି ପରପୁରୁଷଙ୍କୁ ଭଜନ୍ତି ॥ ୨ ॥ ସୁଲକ୍ଷଣୀ, ସୌଭାଗ୍ୟବତୀ ସ୍ତ୍ରୀମାନେ ଭୂଷଣହୀନା ହୁଅନ୍ତି । କିନ୍ତୁ ବିଧବାମାନଙ୍କର ନିତ୍ୟ ନୂତନ ନୂତନ ଶୃଙ୍ଗାର ହୁଏ । ଶିଷ୍ୟ ଓ ଗୁରୁ ମଧ୍ୟରେ କାଲ ଓ ଅନ୍ଧର ସମ୍ବନ୍ଧ ରହେ । ଜଣେ (ଶିଷ୍ୟ) ଗୁରୁଙ୍କ ଉପଦେଶ ଶୁଣେ ନାହିଁ ଓ ଅନ୍ୟ ଜଣେ (ଗୁରୁ) ଶିଷ୍ୟଙ୍କୁ ଦେଖନ୍ତି ନାହିଁ । ତାହାଙ୍କୁ ଜ୍ଞାନଚକ୍ଷୁ ମିଳି ନ ଥାଏ ॥ ୩ ॥ ଯେଉଁ ଗୁରୁ ଶିଷ୍ୟର ଧନ ହରଣ କରେ, କିନ୍ତୁ ଶୋକ ହରଣ 'କରେ ନାହିଁ, ସେ ଘୋର ନର୍କରେ ପଡେ । ମାତାପିତାମାନେ ବାଲକମାନଙ୍କୁ ଡାକି ଯେଉଁଥିରେ ଉଦରର ଭରଣପୋଷଣ ହେବ, ସେହିପରି ଧର୍ମ ଶିକ୍ଷା ଦିଅନ୍ତି ॥ ୪ ॥ ଦୋହା —ସ୍ତ୍ରୀପୁରୁଷମାନେ ବ୍ରହ୍ମଜ୍ଞାନ ବିନା ଅନ୍ୟ କୌଣସି କଥା କହନ୍ତି ନାହିଁ । କିନ୍ତୁ ସେମାନେ ଲୋଭବଶତଃ କଉଡି କାଣିକାଏ ଲାଭ ନିମନ୍ତେ ବ୍ରାହ୍ମଣ ଓ ଗୁରୁଙ୍କୁ ପ୍ରବା ହତ୍ୟା କରିପକାନ୍ତି ॥ ୯୯ (କ) ॥ ଶୂଦ୍ରମାନେ ବ୍ରାହ୍ମଣମାନଙ୍କ

ଆପୁ ଗଏ ଅରୁ ତିନ୍ହହୂ ଘାଲହିଁ । ଜେ କହୁଁ ସତମାରଗ ପ୍ରତିପାଲହିଁ ॥
କଲ୍ପ କଲ୍ପ ଭରି ଏକ ଏକ ନରକା । ପରହିଁ ଜେ ଦୂଷହିଁ ଶ୍ରୁତି କରି ତରକା ॥୨॥
ଜେ ବରନାଧମ ତେଲି କୁମ୍ହାରା । ସ୍ୱପଚ କିରାତ କୋଲ କଲବାରା ॥
ନାରି ମୁଈ ଗୃହ ସଂପତି ନାସୀ । ମୂଡ଼ ମୁଡ଼ାଇ ହୋହିଁ ସଂନ୍ୟାସୀ ॥୩॥
ତେ ବିପ୍ରନ୍ହ ସନ ଆପୁ ପୁଜାୱହିଁ । ଉଭୟ ଲୋକ ନିଜ ହାଥ ନସାୱହିଁ ॥
ବିପ୍ର ନିରଚ୍ଛର ଲୋଲୁପ କାମୀ । ନିରାଚାର ସଠ ବୃଷଲୀ ସ୍ୱାମୀ ॥୪॥
ସୂଦ୍ର କରହିଁ ଜପ ତପ ବ୍ରତ ନାନା । ବୈଠି ବରାସନ କହହିଁ ପୁରାନା ॥
ସବ ନର କଲ୍ପିତ କରହିଁ ଅଚାରା । ଜାଇ ନ ବରନି ଅନୀତି ଅପାରା ॥୫॥

---

ଆପେ ନାଶ ଯାଇ ପୁଣି ତାହାଙ୍କୁ ନାଶନ୍ତି । ଯେ କେହି ଅବା ସାଦରେ ସତ୍‌ପଥ ପାଳନ୍ତି ॥
ପଡ଼ନ୍ତି କଳ୍ପ ପର୍ଯ୍ୟନ୍ତେ ଏକ ଏକ ନର୍କେ । ଶ୍ରୁତିରେ ଦୋଷାରୋପଣ କରନ୍ତି ଯେ ତର୍କେ ॥୨॥
ବର୍ଣ୍ଣାଧମ ଯେହୁ ତେଲି କୁମ୍ଭାର କମାର । କୋହ୍ଲ କଣ୍ଡରା କିରାତ ଶ୍ୱପଚ ଚମାର ॥
ନାରୀ ମଲେ ଅବା ଗୃହ ଧନ ଗଲେ ନାଶ । ଲଣ୍ଡାମୁଣ୍ଡ କରି ଆଚରନ୍ତି ସେ ସନ୍ନ୍ୟାସ ॥୩॥
ସେମାନେ ପାଦ ପୂଜାନ୍ତି ବିପ୍ରଙ୍କ ହସ୍ତରେ । ଉଭୟ ଲୋକ ବିନଷ୍ଟ କରନ୍ତି ସ୍ୱକରେ ॥
ବିପ୍ର ପରମ ଲୋଲୁପ, ନିରକ୍ଷର, କାମୀ । ଆଚାର-ବିହୀନ, ଶଠ ବୃଷଳୀର ସ୍ୱାମୀ ॥୪॥
ଶୂଦ୍ର ଆଚରନ୍ତି ଜପ ତପ ବ୍ରତ ଦାନ । ବସିଣ ସିଂହାସନରେ କହନ୍ତି ପୁରାଣ ॥
ନର ସର୍ବେ ଆଚରନ୍ତି କଳ୍ପିତ ଆଚାର । ବର୍ଣ୍ଣି ନ ହୁଅଇ ଅତି ଅନୀତି ଅପାର ॥୫॥

---

ସଙ୍ଗେ ବିବାଦ କରନ୍ତି ଏବଂ କହନ୍ତି, "ଆମ୍ଭେମାନେ ତୁମ୍ଭଠାରୁ କୌଣସି ଗୁଣରେ ନ୍ୟୂନ କି ? ଯେ ବ୍ରହ୍ମଙ୍କୁ ଜାଣେ, ସେହି ଶ୍ରେଷ୍ଠ ବ୍ରାହ୍ମଣ";—ଏହା କହି ସେମାନେ ସେମାନଙ୍କୁ ଧମକଚମକ ଦେଇ ଆଖି ଦେଖାନ୍ତି ॥ ୯୯ (ଖ) ॥ ଚୌପାଇ :—
ଯେଉଁମାନେ ପର ସ୍ତ୍ରୀଠାରେ ଆସକ୍ତ, କୂଟ-କପଟ କରିବାରେ ଚତୁର ଏବଂ ମୋହ, ଦ୍ରୋହ ଓ ମମତାରେ ଲିପ୍ତ, ସେହି ମନୁଷ୍ୟମାନେ ଅଭେଦବାଦୀ (ବ୍ରହ୍ମ ଓ ଜୀବ ଏକ ବୋଲି ଯେଉଁମାନେ ପ୍ରତିପାଦନ କରନ୍ତି) ଜ୍ଞାନୀ । ମୁଁ ସେହି କଳିଯୁଗର ଏହି ଚରିତ ଦେଖିଲି ॥ ୧ ॥ ସେମାନେ ନିଜେ ତ ନଷ୍ଟ ହୋଇ ରହୁଥା'ନ୍ତି । ଯେଉଁମାନେ କଦବା କାହିଁ ସନ୍ମାର୍ଗ ପ୍ରତିପାଳନ କରୁଥା'ନ୍ତି, ସେମାନଙ୍କୁ ମଧ୍ୟ ନଷ୍ଟ କରିଦିଅନ୍ତି । ଯେଉଁମାନେ ତର୍କ ବିତର୍କ କରି ବେଦ ନିନ୍ଦା କରନ୍ତି, ସେହି ଲୋକେ କଳ୍ପ କଳ୍ପ ଧରି ଗୋଟିଏ ଗୋଟିଏ ନର୍କରେ ପଡ଼ି ରହନ୍ତି ॥ ୨ ॥ ତେଲି, କୁମ୍ଭାର, ଚଣ୍ଡାଳ, କିରାତ, କୋହ୍ଲ ଓ ଗଣ୍ଡ ଆଦି ଯେଉଁମାନେ ବର୍ଣ୍ଣରେ ନୀଚ, ସ୍ତ୍ରୀର ମୃତ୍ୟୁ ହେଲେ ଅଥବା ଘରର ସମ୍ପତ୍ତି ନଷ୍ଟ ହୋଇଗଲେ ସେହିମାନେ ମସ୍ତକ ମୁଣ୍ଡନ କରି ସନ୍ନ୍ୟାସୀ ହୋଇଯାଆନ୍ତି ॥ ୩ ॥ ସେମାନେ ନିଜ ନିଜକୁ ବ୍ରାହ୍ମଣଙ୍କ ହାତରେ ପୂଜିତ କରାନ୍ତି ଏବଂ ଆପଣା ହସ୍ତେ ଉଭୟ ଲୋକ ନଷ୍ଟ କରନ୍ତି । ବ୍ରାହ୍ମଣମାନେ ଅପାଠୁଆ, ଲୋଭୀ, କାମୀ, ଆଚାରହୀନ, ମୂର୍ଖ ଏବଂ ନୀଚ ଜାତିର ବ୍ୟଭିଚାରିଣୀ ସ୍ତ୍ରୀମାନଙ୍କର ସ୍ୱାମୀ ହୁଅନ୍ତି ॥୪॥

ଭଏ ବରନସଙ୍କର କଲି ଭିନ୍ନସେତୁ ସବ ଲୋଗ ।
କରହିଁ ପାପ ପାୱହିଁ ଦୁଖ ଭୟ ରୁଜ ସୋକ ବିୟୋଗ ॥୧୦୦(କ)॥
ଶ୍ରୁତିସମ୍ମତ ହରିଭକ୍ତିପଥ ସଂଜୁତ ବିରତି ବିବେକ ।
ତେହିଁ ନ ଚଲହିଁ ନର ମୋହ ବସ କଲ୍ପହିଁ ପନ୍ଥ ଅନେକ ॥୧୦୦(ଖ)॥

ବହୁ ଦାମ ସଁୱାରହିଁ ଧାମ ଜତୀ । ବିଷୟା ହରି ଲୀହ୍ନି ନ ରହି ବିରତୀ ॥
ତପସୀ ଧନବନ୍ତ ଦରିଦ୍ର ଗୃହୀ । କଲି କୌତୁକ ତାତ ନ ଜାତ କହୀ ॥୧॥
କୁଲବଂତି ନିକାରହିଁ ନାରି ସତୀ । ଗୃହ ଆନହିଁ ଚେରି ନିବେରି ଗତୀ ॥
ସୁତ ମାନହିଁ ମାତୁ ପିତା ତବ ଲୌଁ । ଅବଲାନନ ଦୀଖ ନହୀଁ ଜବ ଲୌଁ ॥୨॥
ସସୁରାରି ପିଆରି ଲଗୀ ଜବ ତେଁ । ରିପୁରୂପ କୁଟୁଂବ ଭଏ ତବ ତେଁ ॥
ନୃପ ପାପପରାୟନ ଧର୍ମ ନହୀଁ । କରି ଦଣ୍ଡ ବିଡମ୍ବ ପ୍ରଜା ନିତହୀଁ ॥୩॥

ସମସ୍ତେ ହୋଇଲେ ବରଣସଙ୍କର, ମର୍ଯ୍ୟାଦା-ବିଚ୍ୟୁତ ଲୋକ ।
ପାପ କରି ଭୋଗ କରନ୍ତି ବିୟୋଗ, ରୋଗ, ଦୁଃଖ, ଭୟ, ଶୋକ ॥୧୦୦ (କ)॥
ଶ୍ରୁତିର ସମ୍ମତ ହରି ଭକ୍ତି ପଥ ସହ ବୈରାଗ୍ୟ ବିବେକ ।
ମୋହବଶ୍ୟ ନର ନ ଚଳି ସେ ମାର୍ଗେ କଳ୍ପନ୍ତି ପଥ ଅନେକ ॥୧୦୦ (ଖ)॥

ସଜାନ୍ତି ଯତି ବହୁ ଧନେ ଭବନ । ବିଷୟ ହରିନେଲା ବୈରାଗ୍ୟମନ ॥
ତପସ୍ୱୀ ଧନବନ୍ତ ଦରିଦ୍ର ଗୃହୀ । କଳି କୌତୁକ ନାଥ, ନ ହୁଏ କହି ॥୧॥
କୁଳୀନ ତଡିଦେଇ ସତୀ ସ୍ତ୍ରୀନାରୀ । ତେଜି ସ୍ୱଧର୍ମ ଗୃହେ ରଖନ୍ତି ଦାସୀ ॥
ମାତା ପିତାଙ୍କୁ ମାନ ରହେ ନନ୍ଦନ । ଯେ ପର୍ଯ୍ୟନ୍ତ ନ ଦେଖେ ଅବଲାନନ ॥୨॥
ଶ୍ୱଶୁରାଳୟ ପ୍ରିୟ ଲାଗେ ଯେ ଦିନୁ । କୁଟୁମ୍ବ ଶତ୍ରୁ ରୂପ ହୋନ୍ତି ସେ ଦିନୁ ॥
ନୃପ ପାପ-ନିରତ ଧର୍ମ ନ କରେ । ପ୍ରଜାଙ୍କୁ ଦଣ୍ଡି ନିତ୍ୟ ଦୁର୍ଦ୍ଦଶା କରେ ॥୩॥

ଶୂଦ୍ରମାନେ ନାନାବିଧ ଜପ, ତପ ଓ ବ୍ରତ କରନ୍ତି ଏବଂ ଉଚ୍ଚ ଆସନ (ବ୍ୟାସାସନ) ଉପରେ ବସି ପୁରାଣ କହନ୍ତି । ସମସ୍ତ ମନୁଷ୍ୟ ମନ ଇଚ୍ଛା ଆଚରଣ କରନ୍ତି । ଅପାର ଅନୀତି, ତାହା ଅବର୍ଣ୍ଣନୀୟ ॥୫॥ ଦୋହା :— କଳିଯୁଗରେ ସମସ୍ତ ଲୋକ ବର୍ଣ୍ଣସଙ୍କର ହୁଅନ୍ତି ଓ ମର୍ଯ୍ୟାଦାରୁ ବିଚ୍ୟୁତ ହୁଅନ୍ତି । ସେମାନେ ପାପ କରନ୍ତି ଏବଂ ପାପର ଫଳ ସ୍ୱରୂପ ଦୁଃଖ, ଭୟ, ରୋଗ, ଶୋକ ଏବଂ ବିୟୋଗ ପ୍ରଭୃତି ଦୁରବସ୍ଥାର ସମ୍ମୁଖୀନ ହୁଅନ୍ତି ॥ ୧୦୦ (କ) ॥ ଯେଉଁ ହରି-ଭକ୍ତିର ମାର୍ଗ ବେଦସମ୍ମତ ତଥା ବୈରାଗ୍ୟ-ଜ୍ଞାନ-ଯୁକ୍ତ, ମୋହବଶତଃ ମନୁଷ୍ୟ ତାହା ଉପରେ ଚାଲନ୍ତି ନାହିଁ ଏବଂ ଅନେକ ନୂତନ ନୂତନ ପନ୍ଥର ପରିକଳ୍ପନା କରନ୍ତି ॥ ୧୦୦ (ଖ) ॥ ଛନ୍ଦ :—ସନ୍ନ୍ୟାସୀମାନେ ବହୁତ ଧନ-ବ୍ୟୟରେ ଘର ସଜାନ୍ତି, ସେମାନଙ୍କଠାରେ ବୈରାଗ୍ୟ ରହେ ନାହିଁ । ବିଷୟବାସନାମାନ ବୈରାଗ୍ୟକୁ ହରଣ କରି ନେଇଥାଏ । ତପସ୍ୱୀମାନେ ଧନବନ୍ତ ହୋଇଯାଆନ୍ତି ଏବଂ ଗୃହସ୍ଥମାନେ ଦରିଦ୍ର ହୁଅନ୍ତି । ହେ ତାତ ! କଳି କାଳର କୌତୁକ ଅକଥନୀୟ ॥ ୧ ॥ କୁଳବତୀ ଓ

ଧନବନ୍ତ କୁଲୀନ ମଲୀନ ଅପୀ । ଦ୍ୱିଜ ଚିହ୍ନ ଜନେଉ ଉଘାର ତପୀ ॥
ନହିଁ ମାନ ପୁରାନ ନ ବେଦହି ଜୋ । ହରିସେବକ ସନ୍ତ ସହୀ କଲି ସୋ ॥୪॥
କବିବୃନ୍ଦ ଉଦାର ଦୁନୀ ନ ସୁନୀ । ଗୁନ ଦୂଷକ ବ୍ରାତ ନ କୋପି ଗୁନୀ ॥
କଲି ବାରହିଁ ବାର ଦୁକାଲ ପରୈ । ବିନୁ ଅନ୍ନ ଦୁଖୀ ସବ ଲୋଗ ମରୈ ॥୫॥

ସୁନୁ ଖଗେସ କଲି କପଟ ହଠ ଦମ୍ଭ ଦ୍ୱେଷ ପାଷଂଡ ।
ମାନ ମୋହ ମାରାଦି ମଦ ବ୍ୟାପି ରହେ ବ୍ରହ୍ମଂଡ ॥୧୦୧(କ)॥
ତାମସ ଧର୍ମ କରହିଁ ନର ଜପ ତପ ବ୍ରତ ମଖ ଦାନ ।
ଦେବ ନ ବରଷହିଁ ଧରନୀଁ ବଏ ନ ଜାମହିଁ ଧାନ ॥୧୦୧(ଖ)॥

---

ଧନବନ୍ତ ମଳିନ ଅଟେ କୁଳୀନ । ତପସ୍ୱୀ ନଗ୍ନ, ଦ୍ୱିଜ ପଇତା ଚିହ୍ନ ॥
ମାନନ୍ତି ନାହିଁ ବେଦ ପୁରାଣ ଯେହୁ । ହରି-ସେବକ ସନ୍ଥ କଳିରେ ସେହୁ ॥୪॥
କବି ଅନେକ, ନାହିଁ ଉଦାର ଦିଶେ । ବହୁ ଗୁଣ-ଦୂଷକ, ଗୁଣୀ ନ ଦିଶେ ॥
କଳିରେ ବାରମ୍ବାର ପଡେ ଅକାଳ । ଅନ୍ନ ବିନା ମରନ୍ତି ଲୋକ ସକଳ ॥୫॥

ଶୁଣ ଖଗବର, କଳିରେ ପ୍ରଚୁର କପଟ ଦ୍ୱେଷ ପାଷାଣ୍ଡ ।
କାମ କ୍ରୋଧ ଲୋଭ ମଦ ମୋହ ଦମ୍ଭ ବ୍ୟାପି ରହିଲା ବ୍ରହ୍ମାଣ୍ଡ ॥୧୦୧(କ)॥
କରନ୍ତି ତାମସ ଧରମ ମନୁଷ୍ୟ ଜପ ତପ ଯଜ୍ଞ ଦାନ ।
ଦେବ ଧରଣୀରେ ବର୍ଷା ନ କରନ୍ତି ବୁଣିଲେ ନ ଉଠେ ଧାନ ॥୧୦୧(ଖ)॥

---

ସଧବା ସ୍ତ୍ରୀଙ୍କୁ ପୁରୁଷ ଗୃହରୁ ବାହାର କରି ଦିଅନ୍ତି ଏବଂ ସଦାଚାର ତ୍ୟାଗ କରି ଗୃହରେ ଦାସୀ ଆଣି ରଖନ୍ତି । ପୁତ୍ର ଯେତେବେଳ ଯାଏ ସ୍ତ୍ରୀର ମୁଖ ଦେଖି ନ ଥାଏ, ସେତିକବେଳ ପର୍ଯ୍ୟନ୍ତ ମାତାପିତାଙ୍କୁ ମାନୁଥାଏ ॥ ୨ ॥ ଯେଉଁଦିନୁ ଶ୍ୱଶୁରାଳୟ ପ୍ରିୟ ହେଲା, ସେହି ଦିନୁ କୁଟୁମ୍ବୀ ଜନେ ଶତ୍ରୁରୂପ ଧାରଣ କଲେ ବୋଲି ଜାଣ । ରାଜାମାନେ ପାପପରାୟଣ ହୁଅନ୍ତି, ସେମାନଙ୍କଠାରେ ଧର୍ମ ରହେ ନାହିଁ । ସେମାନେ ପ୍ରଜାଙ୍କୁ ପ୍ରତିଦିନ ବିନା ଅପରାଧରେ ଦଣ୍ଡ ଦେଇ ସେମାନଙ୍କର ବିଡମ୍ବନା (ଦୁର୍ଦ୍ଦଶା) ଘଟାନ୍ତି ॥ ୩ ॥ ଧନୀ ଲୋକେ ମଳିନ (ନୀଚଜାତିର) ହୋଇ ମଧ୍ୟ କୁଳୀନ ରୂପେ ପରିଚିତ ହୁଅନ୍ତି । ଦ୍ୱିଜର ଚିହ୍ନ ରୂପେ ଉପବୀତ ମାତ୍ର ରହିଥାଏ ଏବଂ ନଗ୍ନ ଶରୀର ମାତ୍ର ତପସ୍ୱୀର ନିଦର୍ଶନ । ବେଦ ଓ ପୁରାଣମାନଙ୍କୁ ମାନୁ ନ ଥିବା ଲୋକମାନେ ହିଁ କଳିଯୁଗରେ ହରିଭକ୍ତ ଓ ସତ୍ୟ ସାଧୁ ନାମରେ ଅଭିହିତ ହୁଅନ୍ତି ॥ ୪ ॥ କବିମାନେ ଦଳ ଦଳ ହୋଇ ବାହାରନ୍ତି, କିନ୍ତୁ ସଂସାରରେ ସେମାନଙ୍କ ନିମନ୍ତେ ଉଦାର (କବିମାନଙ୍କ ଆଶ୍ରୟଦାତା)ଙ୍କ ନାମ ଶୁଣାଯାଏ ନାହିଁ । ଗୁଣରେ ଦୋଷ ଲଗାଇବା ଲୋକ ବହୁତ, କିନ୍ତୁ ଗୁଣୀ କେହି ଜଣେ ମଧ୍ୟ ବାହାରନ୍ତି ନାହିଁ । କଳିଯୁଗରେ ବାରମ୍ବାର ଅକାଳ ପଡେ । ଅନ୍ନ ବିନା ଲୋକମାନେ ସମସ୍ତେ ଦୁଃଖୀ ହୋଇ ମରନ୍ତି ॥ ୫ ॥ ଦୋହା :—ହେ ପକ୍ଷିରାଜ ଗରୁଡ ! ଶୁଣନ୍ତୁ; କଳିଯୁଗରେ କପଟ, ଜିଦ୍ (ଦୁରାଗ୍ରହ),

ଅବଲା କଚ ଭୂଷନ ଭୂରି ଛୁଧା । ଧନହୀନ ଦୁଖୀ ମମତା ବହୁଧା ॥
ସୁଖ ଚାହହିଁ ମୂଢ଼ ନ ଧର୍ମରତା । ମତି ଥୋରି କଠୋରି ନ କୋମଲତା ॥୧॥
ନର ପୀଡ଼ିତ ରୋଗ ନ ଭୋଗ କହୀଁ । ଅଭିମାନ ବିରୋଧ ଅକାରନହୀଁ ॥
ଲଘୁ ଜୀବନ ସଂବତୁ ପଞ୍ଚ ଦସା । କଲପାନ୍ତ ନ ନାସ ଗୁମାନୁ ଅସା ॥୨॥
କଲିକାଲ ବିହାଲ କିଏ ମନୁଜା । ନହିଁ ମାନତ କ୍ୱୌ ଅନୁଜା ତନୁଜା ॥
ନହିଁ ତୋଷ ବିଚାର ନ ସୀତଲତା । ସବ ଜାତି କୁଜାତି ଭଏ ମଗତା ॥୩॥
ଇରିଷା ପରୁଷାଚ୍ଛର ଲୋଲୁପତା । ଭରି ପୂରି ରହୀ ସମତା ବିଗତା ॥
ସବ ଲୋଗ ବିୟୋଗ ବିସୋକ ହଏ । ବରନାଶ୍ରମ ଧର୍ମ ଅଚାର ଗଏ ॥୪॥

---

ନାରୀ ଭୂଷଣ କେଶ, ବିଶେଷ କ୍ଷୁଧା । ଧନ ବିହୀନେ ଦୁଃଖୀ ସ୍ପୃହା ବହୁଧା ॥
ଧରମହୀନା ମୂଢା ସୁଖ ଇଚ୍ଛନ୍ତି । ମୃଦୁତାହୀନା ସ୍ୱଳ୍ପ କଠୋର ମତି ॥୧॥
ଭୋଗ ନାହିଁ ମନୁଷ୍ୟ ରୋଗେ ପୀଡ଼ିତ । ଅଭିମାନୀ ବିରୋଧୀ ହେତୁ - ରହିତ ॥
ପଞ୍ଚଦଶ ବରଷ ସ୍ୱଳ୍ପ ଜୀବନ । କଳ୍ପାନ୍ତେ ନ ମରିବ, ମାନ ଏସନ ॥୨॥
କଳି କଲା ଲୋକଙ୍କୁ ନିର୍ଲଜ୍ଜ ଅତି । କନ୍ୟା ଭଗିନୀ କେହି ନ ବିଚାରନ୍ତି ॥
ନାହିଁ ତୋଷ ବିଚାର ସୁଶୀତଳତା । ସବୁ ଜାତି କୁଜାତି ହେଲେ ମାଗତା ॥୩॥
ଈର୍ଷ୍ୟା ଦ୍ୱେଷ ଲୋଲୁପ ଛଳ ପ୍ରଚୁର । ପୂର୍ଣ୍ଣ ରହିଲା, ହେଲା ସମତା ଦୂର ॥
ଲୋକ ସମୂହ ଶୋକ ବିୟୋଗେ ମଲେ । ବର୍ଣ୍ଣାଶ୍ରମ ଧରମ ଆଚାର ଗଲେ ॥୪॥

---

ଦମ୍ଭ, ଦ୍ୱେଷ, ପାଷଣ୍ଡତା, ମାନ, ମୋହ ଓ କାମାଦି (କାମ, କ୍ରୋଧ, ଲୋଭ ପ୍ରଭୃତି) ଏବଂ ମଦ ବ୍ରହ୍ମାଣ୍ଡ ମଧ୍ୟରେ ପରିବ୍ୟାପ୍ତ ହୋଇଯାଇଥାଏ ॥ ୧୦୧ (କ) ॥ ମନୁଷ୍ୟମାନେ ଜପ, ତପ, ଯଜ୍ଞ, ବ୍ରତ ଓ ଦାନ ଆଦି ଧର୍ମ ତାମସିକ ଭାବରେ କରିବାରେ ଲାଗନ୍ତି । ଦେବତା (ଇନ୍ଦ୍ର) ପୃଥିବୀ ଉପରେ ଜଳବୃଷ୍ଟି କରନ୍ତି ନାହିଁ ଏବଂ ବୁଣାଯାଇଥିବା ଧାନ ଅଙ୍କୁରିତ ହୁଏନାହିଁ ॥ ୧୦୧ (କ) ॥ ଛନ୍ଦ :—ଅବଳାମାନଙ୍କର ବାଳ ହିଁ ଭୂଷଣ (ସେମାନଙ୍କ ଶରୀରରେ ଅନ୍ୟ କୌଣସି ଭୂଷଣ ନ ଥାଏ) ଏବଂ ସେମାନଙ୍କୁ ଅତିଶୟ କ୍ଷୁଧା ଲାଗେ । (ସେମାନେ ସର୍ବଦା ଅତୃପ୍ତ ରହନ୍ତି) । ସେମାନେ ଧନହୀନା ଓ ବହୁତ ପ୍ରକାରର ମମତା ହେତୁ ସର୍ବଦା ଦୁଃଖିତା ଥାଆନ୍ତି । ସେହି ମୂଢାମାନେ ସୁଖ କାମନା କରନ୍ତି । କିନ୍ତୁ ଧର୍ମଠାରେ ସେମାନଙ୍କ ପ୍ରେମ ନ ଥାଏ । ସେମାନଙ୍କ ବୁଦ୍ଧି ଅତି ଅଳ୍ପ ଏବଂ କଠୋର; ସେମାନଙ୍କଠାରେ କୋମଳତା ନ ଥାଏ ॥ ୧ ॥ ମନୁଷ୍ୟମାନେ ରୋଗରେ ପୀଡ଼ିତ, ଭୋଗ ବା ସୁଖ କେଉଁଠି ହେଲେ ନ ଥାଏ । ଅକାରଣରେ ସେମାନେ ଅଭିମାନ ଓ ବିରୋଧ କରନ୍ତି । ପାଞ୍ଚ ଦଶ ବର୍ଷର ଅଳ୍ପ କାଳର ଜୀବନ, କିନ୍ତୁ ମନରେ ଗର୍ବ ଏମିତି ସତେ ଯେପରି କଳ୍ପାନ୍ତ (ପ୍ରଳୟ) ହେଲେ ସୁଦ୍ଧା ସେମାନଙ୍କର ବିନାଶ ହେବ ନାହିଁ ॥ ୨ ॥ କଳିକାଳ ମନୁଷ୍ୟଙ୍କୁ ଅସ୍ତବ୍ୟସ୍ତ କରି ପକାଏ । କେହି ଭଗିନୀ-କନ୍ୟାର ବିଚାର ସୁଦ୍ଧା କରେ ନାହିଁ । ଲୋକମାନଙ୍କଠାରେ ସନ୍ତୋଷ, ବିବେକ ଓ

ଦମ ଦାନ ଦୟା ନହିଁ ଜାନପନୀ । ଜଡ଼ତା ପରବଂଚନତାତି ଘନୀ ॥
ତନୁ ପୋଷକ ନାରି ନରା ସଗରେ । ପରନିନ୍ଦକ ଜେ ଜଗ ମୋ ବଗରେ ॥୫॥
ସୁନୁ ବ୍ୟାଲାରି କାଲ କଲି ମଲ ଅବଗୁନ ଆଗାର ।
ଗୁନଉ ବହୁତ କଲିଜୁଗ କର ବିନୁ ପ୍ରୟାସ ନିସ୍ତାର ॥୧୦୨(କ)॥
କୃତଜୁଗ ତ୍ରେତାଁ ଦ୍ୱାପର ପୂଜା ମଖ ଅରୁ ଜୋଗ ।
ଜୋ ଗତି ହୋଇ ସୋ କଲି ହରିନାମ ତେଁ ପାୱହିଁ ଲୋଗ ॥୧୦୨(ଖ)॥
କୃତଜୁଗ ସବ ଜୋଗୀ ବିଜ୍ଞାନୀ । କରି ହରିଧ୍ୟାନ ତରହିଁ ଭବ ପ୍ରାନୀ ॥
ତ୍ରେତାଁ ବିବିଧ ଜଗ୍ୟ ନର କରହୀଁ । ପ୍ରଭୁହି ସମର୍ପି କର୍ମ ଭବ ତରହୀଁ ॥୧॥

---

ନାହିଁ କରୁଣା ଦମ ସଂଯମ ଦାନ । ଜଡତା ବଞ୍ଚକତା ଅମିତ ଜାଣ ॥
ତନୁ-ପୋଷକ ନର ନାରୀ ସମସ୍ତେ । ପର ନିନ୍ଦକ ବ୍ୟାପ୍ତ ସାରା ଜଗତେ ॥୫॥
ଶୁଣ ପନ୍ନଗାରି, ବିକରାଳ କଳି ଅଘ-ଅବଗୁଣାଗାର ।
ସୁଗୁଣ ବି କଳି କାଳର ବହୁତ ବିନା ପ୍ରୟାସେ ନିସ୍ତାର ॥୧୦୨(କ)॥
ସତ୍ୟ ତ୍ରେତା ତଥା ଦ୍ୱାପର ଯୁଗରେ ଯୋଗ ଯଜ୍ଞ ପୂଜାଦ୍ୱାରେ ।
ଯେଉଁ ଗତି ହୁଏ, ହରି ନାମେ ତାହା ଲଭନ୍ତି ନର କଳିରେ ॥୧୦୨(ଖ)॥
ସତ୍ୟଯୁଗରେ ସମସ୍ତେ ଯୋଗୀ ସୁବିଜ୍ଞାନୀ । କରି ହରିଧ୍ୟାନ ଭବୁ ନିସ୍ତରନ୍ତି ପ୍ରାଣୀ ॥
ତ୍ରେତାରେ ନର ବିବିଧ ଯଜ୍ଞ ଆଚରନ୍ତି । ପ୍ରଭୁଙ୍କୁ ସମର୍ପି କର୍ମ ସଂସାରୁ ତରନ୍ତି ॥୧॥

---

ଶୀତଳତା ନ ଥାଏ । ଜାତି, କୁଜାତି, ସମସ୍ତ ଲୋକ ଭିକ୍ଷୁକ ହୋଇଯାଆନ୍ତି ॥ ୩ ॥ ଈର୍ଷ୍ୟା, କଠୋର ବଚନ ଓ ଲୋଲୁପତା ଲୋକମାନଙ୍କଠାରେ ପୂର୍ଣ୍ଣ ମାତ୍ରାରେ ରହିଥାଏ । ସମତା ଦୂର ହୋଇଯାଏ । ସମସ୍ତ ଲୋକ ବିରହ, ବିୟୋଗ ଓ ବିଶୋକରେ ଅଭିଭୂତ । ବର୍ଣ୍ଣାଶ୍ରମ ଧର୍ମର ଆଚରଣ ନଷ୍ଟ ହୋଇଯାଏ ॥ ୪ ॥ କାହାରିଠାରେ ଇନ୍ଦ୍ରିୟ ଦମନ, ଦାନ, ଦୟା ଓ ବିଚକ୍ଷଣତା ରହେନାହିଁ । ମୂର୍ଖତା ଓ ପର-ପ୍ରତାରଣା ବହୁ ପରିମାଣରେ ବଢିଯାଏ । ସ୍ତ୍ରୀ ପୁରୁଷମାନେ ସମସ୍ତେ ଶରୀରର ପାଳନ-ପୋଷଣରେ ବ୍ୟସ୍ତ ରହନ୍ତି । ପରନିନ୍ଦୁକମାନେ ଜଗତରେ ପରିବ୍ୟାପ୍ତ ହୋଇଯାଆନ୍ତି ॥ ୫ ॥
ଦୋହା :—ହେ ସର୍ପଶତ୍ରୁ ଗରୁଡ ! ଶୁଣନ୍ତୁ; କଳିକାଳ ପାପ ଓ ଅବଗୁଣର ଗୃହ । କିନ୍ତୁ କଳିଯୁଗରେ ଗୋଟିଏ ବଡ ଗୁଣ ହେଉଛି—ମନୁଷ୍ୟକୁ ଏହି ଯୁଗରେ ବିନା ପରିଶ୍ରମରେ ଭବ-ବନ୍ଧନରୁ ମୁକ୍ତି ମିଳିଯାଏ ॥୧୦୨(କ)॥ ସତ୍ୟଯୁଗ, ତ୍ରେତା ଓ ଦ୍ୱାପରରେ ଯଥାକ୍ରମେ ଯୋଗ, ଯଜ୍ଞ ଓ ପୂଜା ଦ୍ୱାରା ମନୁଷ୍ୟ ଯେଉଁ ଗତି ଲାଭ କରେ, କଳିଯୁଗରେ କେବଳ ଭଗବାନଙ୍କ ନାମ ଯୋଗେ ମନୁଷ୍ୟ ସେହି ଗତି ଲାଭ କରେ ॥ ୧୦୨ (ଖ) ॥
ଚୌପାଈ :—ସତ୍ୟ ଯୁଗରେ ସମସ୍ତେ ଯୋଗୀ ଓ ବିଜ୍ଞାନୀ ହୁଅନ୍ତି । ହରିଙ୍କୁ ଧ୍ୟାନ କରି ସମସ୍ତ ପ୍ରାଣୀ ଭବ-ସାଗରରୁ ତରିଯାଆନ୍ତି । ତ୍ରେତାରେ ମନୁଷ୍ୟ ଅନେକ ପ୍ରକାର ଯଜ୍ଞ କରନ୍ତି ଏବଂ ସମସ୍ତ କର୍ମ ପ୍ରଭୁଙ୍କୁ ସମର୍ପଣ କରି ଭବସାଗରରୁ ପାର ହୋଇ-

ଦ୍ୱାପର କରି ରଘୁପତି ପଦ ପୂଜା । ନର ଭବ ତରହିଁ ଉପାୟ ନ ଦୂଜା ॥
କଲିଜୁଗ କେବଲ ହରି ଗୁନ ଗାହା । ଗାୱତ ନର ପାୱହିଁ ଭବ ଥାହା ॥୨॥
କଲିଜୁଗ ଜୋଗ ନ ଜଜ୍ଞ ନ ଜ୍ଞାନା । ଏକ ଅଧାର ରାମ ଗୁନ ଗାନା ॥
ସବ ଭରୋସ ତଜି ଜୋ ଭଜ ରାମହି । ପ୍ରେମ ସମେତ ଗାୱ ଗୁନଗ୍ରାମହି ॥୩॥
ସୋଇ ଭବ ତର କଛୁ ସଂସୟ ନାହୀଁ । ନାମ ପ୍ରତାପ ପ୍ରଗଟ କଲି ମାହୀଁ ॥
କଲି କର ଏକ ପୁନୀତ ପ୍ରତାପା । ମାନସ ପୁଣ୍ୟ ହୋହିଁ ନହିଁ ପାପା ॥୪॥

କଲିଜୁଗ ସମ ଜୁଗ ଆନ ନହିଁ ଜୌଁ ନର କର ବିସ୍ୱାସ ।
ଗାଇ ରାମ ଗୁନ ଗନ ବିମଲ ଭବ ତର ବିନହିଁ ପ୍ରୟାସ ॥୧୦୩(କ)॥
ପ୍ରଗଟ ଚାରି ପଦ ଧର୍ମ କେ କଲି ମହୁଁ ଏକ ପ୍ରଧାନ ।
ଜେନ କେନ ବିଧି ଦୀନ୍ହେଁ ଦାନ କରଇ କଲ୍ୟାନ ॥୧୦୩(ଖ)॥

---

ଦ୍ୱାପରେ ପୂଜିଣ ରଘୁପତି ପଦ ନର । ନିସ୍ତରନ୍ତି ଭବୁ, ନାହିଁ ଉପାୟ ଇତର ॥
କଳି ଯୁଗେ ହରି ଗୁଣ ଗାଇଣ କେବଳ । ପାଆନ୍ତି ନର ସଂସାର ପାରିବାରୁ ଥଳ ॥୨॥
କଳି କାଳେ ନାହିଁଅଇ ଯୋଗ ଯଜ୍ଞ ଜ୍ଞାନ । କେବଳ ମାତ୍ର ଆଧାର ରାମଗୁଣ-ଗାନ ॥
ସମସ୍ତ ଭରସା ତେଜି ଯେ ରାମ ଭଜନ୍ତି । ପ୍ରେମ ସହ ଗୁଣ ଗ୍ରାମ ଗାୟନ କରନ୍ତି ॥୩॥
ତରନ୍ତି ସେ ଭବୁ, ନାହିଁ ସଂଶୟ ଏଥିରେ । ନାମ ପ୍ରତାପ ପ୍ରତ୍ୟକ୍ଷ ଅଟଇ କଳିରେ ॥
କଳି ଯୁଗର ଏ ଏକ ପବିତ୍ର ପ୍ରତାପ । ମାନସିକ ପୁଣ୍ୟ ଜାଣ, ହୁଏ ନାହିଁ ପାପ ॥୪॥

କଳିଯୁଗ ସମ ଯୁଗ ନାହିଁ ଅନ୍ୟ, ଯେ ନର କରି ବିଶ୍ୱାସ ।
ଗାଇ ସୁବିମଳ ରାମ ଗୁଣ-ଗଣ ଭବ ତରେ ଅନାୟାସ ॥୧୦୩(କ)॥
ଧର୍ମର ଚାରି ଚରଣ ଅଟଇ କଳିରେ ଏକ ପ୍ରଧାନ ।
ଯେ କୌଣସି ଭାବେ ଦାନ ପ୍ରଦାନଲେ କରଇ ତାହା କଲ୍ୟାଣ ॥୧୦୩(ଖ)॥

---

ଯାଆନ୍ତି ॥ ୧ ॥ ଦ୍ୱାପରରେ ଶ୍ରୀ ରଘୁନାଥଙ୍କ ଚରଣପୂଜା କରି ମନୁଷ୍ୟମାନେ ସଂସାରରୁ ତରିଯାଆନ୍ତି, ଅନ୍ୟ କୌଣସି ଉପାୟ ନାହିଁ ଏବଂ କଳିଯୁଗରେ ତ କେବଳ ଶ୍ରୀହରିଙ୍କ ଗୁଣଗାଥାସମୂହ ଗାନ କରିବା ଦ୍ୱାରା ହିଁ ମନୁଷ୍ୟ ଭବ-ସାଗରର ସୀମା (ଅଳକୂଳ) ପାଇପାରେ ॥ ୨ ॥ କଳିଯୁଗରେ ଯୋଗ, ଯଜ୍ଞ ଓ ଜ୍ଞାନ କିଛି ନ ଥାଏ । ଶ୍ରୀରାମଙ୍କ ଗୁଣଗାନ ହିଁ ଏକମାତ୍ର ଅବଲମ୍ବନ । ଅତଏବ ସମସ୍ତ ଭରସା ତ୍ୟାଗ କରି ଯେ ଶ୍ରୀରାମଙ୍କୁ ଭଜେ ଏବଂ ପ୍ରେମ ସହକାରେ ତାହାଙ୍କର ଗୁଣାବଳୀ ଗାନ କରେ, ସେହି ଭବ-ସାଗରରୁ ତରିଯାଏ । ଏଥିରେ କିଛି ହେଲେ ସନ୍ଦେହ ନାହିଁ । ନାମର ପ୍ରଭାବ କଳିଯୁଗରେ ପ୍ରତ୍ୟକ୍ଷ । କଳିଯୁଗର ଏକ ପବିତ୍ର ମାହାତ୍ମ୍ୟ ହେଉଛି, ମାନସିକ ପୁଣ୍ୟ ତ ଏହି ଯୁଗରେ ଅବଶ୍ୟ ହୁଏ, କିନ୍ତୁ ମାନସିକ ପାପ ହୁଏ ନାହିଁ ॥ ୩-୪ ॥ ଯଦି ମନୁଷ୍ୟ ବିଶ୍ୱାସ କରେ, ତେବେ କଳିଯୁଗ ସମାନ ଅନ୍ୟ ଯୁଗ ଆଉ ନାହିଁ । ଏହି ଯୁଗରେ ମନୁଷ୍ୟ ଶ୍ରୀରାମଙ୍କ ନିର୍ମଳ ଗୁଣ-ସମୂହ ଗାଇ ଗାଇ ଅନାୟାସରେ ସଂସାର-ସାଗରରୁ

ନିତ ଜୁଗ ଧର୍ମ ହୋହିଁ ସବ କେରେ । ହୃଦୟଁ ରାମ ମାୟା କେ ପ୍ରେରେ ॥
ସୁଦ୍ଧ ସତ୍ତ୍ୱ ସମତା ବିଜ୍ଞାନା । କୃତ ପ୍ରଭାବ ପ୍ରସନ୍ନ ମନ ଜାନା ॥୧॥
ସତ୍ତ୍ୱ ବହୁତ ରଜ କଛୁ ରତି କର୍ମା । ସବ ବିଧି ସୁଖ ତ୍ରେତା କର ଧର୍ମା ॥
ବହୁ ରଜ ସ୍ୱଳ୍ପ ସତ୍ତ୍ୱ କଛୁ ତାମସ । ଦ୍ୱାପର ଧର୍ମ ହରଷ ଭୟ ମାନସ ॥୨॥
ତାମସ ବହୁତ ରଜୋଗୁନ ଥୋରା । କଲି ପ୍ରଭାବ ବିରୋଧ ଚହୁଁ ଓରା ॥
ବୁଧ ଜୁଗ ଧର୍ମ ଜାନି ମନ ମାହୀଁ । ତଜି ଅଧର୍ମ ରତି ଧର୍ମ କରାହୀଁ ॥୩॥
କାଲ ଧର୍ମ ନହିଁ ବ୍ୟାପହିଁ ତାହୀ । ରଘୁପତି ଚରନ ପ୍ରୀତି ଅତି ଜାହୀ ॥
ନଟ କୃତ ବିକଟ କପଟ ଖଗରାୟା । ନଟ ସେବକହି ନ ବ୍ୟାପଇ ମାୟା ॥୪॥

ହରି ମାୟା କୃତ ଦୋଷ ଗୁନ ବିନୁ ହରି ଭଜନ ନ ଜାହିଁ ।
ଭଜିଅ ରାମ ତଜି କାମ ସବ ଅସ ବିଚାରି ମନ ମାହିଁ ॥୧୦୪(କ)॥

---

ଉପୁଜେ ଯୁଗ ଧରମ ହୃଦେ ସମସ୍ତଙ୍କ । ନିତ୍ୟ ମାୟା ପ୍ରେରଣାରେ ଶ୍ରୀ ରଘୁନାଥଙ୍କ ॥
ବିଶୁଦ୍ଧ ସତ୍ତ୍ୱତା ତଥା ସମତା ବିଜ୍ଞାନ । ମନ ପ୍ରସନ୍ନତା ସତ୍ୟ ପ୍ରଭାବ ଏ ଜାଣ ॥୧॥
ବହୁତ ସତ୍ତ୍ୱ, ଅଳପ ରଜ, ରତି କର୍ମ । ସମସ୍ତ ପ୍ରକାରେ ସୁଖ ତ୍ରେତାଯୁଗ ଧର୍ମ ॥
ବହୁ ରଜ, ସ୍ୱଳ୍ପ ସତ୍ତ୍ୱ, ଅଳପ ତାମସ । ହର୍ଷ-ଶୋକ-ଭୟଯୁକ୍ତ ଦ୍ୱାପର ମାନସ ॥୨॥
ତାମସ ବହୁତ, ଅତି ଅଳ୍ପ ରଜ ଗୁଣ । କଳି ପ୍ରଭାବ ବିରୋଧ ଚତୁର୍ଦ୍ଦିଗେ ଶୁଣ ॥
ବୁଧ ମନ ମଧ୍ୟେ ବୁଝି ଯୁଗର ଧରମ । ଧର୍ମରେ ପ୍ରୀତି କରନ୍ତି ତେଜି ଅଧରମ ॥୩॥
କାଳର ଧର୍ମ ତାହାଙ୍କୁ ବ୍ୟାପି ନ ପାରନ୍ତି । ରଘୁପତି ଶ୍ରୀ ଚରଣେ ପ୍ରୀତି ଯା'ର ଅତି ॥
ନଟ କର୍ତ୍ତୃକ ବିକଟ କପଟ, ଖଗେଶ । ନଟ-ସେବକଙ୍କୁ ମାୟା ବ୍ୟାପେ ନାହିଁ ଲେଶ ॥୪॥

ହରି ମାୟାକୃତ ଗୁଣ ଦୋଷ, ହରି-ଭଜନ ବିନା ନ ଯାଏ ।
ଭଜ ରାମ ଏହା ମନେ ବିଚାରିଣ ତେଜି କାମ ସମୁଦାଏ ॥୧୦୪(କ)॥

---

ତରିଯାଏ ॥ ୧୦୩ (କ) ॥ ଧର୍ମର ଚାରିଗୋଟି ଚରଣ (ସତ୍ୟ, ଦୟା, ତପ ଓ ଦାନ) ପ୍ରସିଦ୍ଧ । ଏମାନଙ୍କ ମଧ୍ୟରୁ ଗୋଟିଏ (ଦାନ) ଚରଣ ହିଁ କଳିଯୁଗରେ ପ୍ରଧାନ । ଯେ କୌଣସି ପ୍ରକାରେ ଦିଆଯାଉ ନା କାହିଁକି, ଦାନ ହିଁ ଏହି ଯୁଗରେ କଲ୍ୟାଣ କରିଥାଏ ॥୧୦୩ (ଖ)॥

ଚୌପାଇ :—ଶ୍ରୀରାମଙ୍କ ମାୟାଦ୍ୱାରା ପ୍ରେରିତ ହୋଇ ସମସ୍ତଙ୍କ ହୃଦୟରେ ଯୁଗର ଧର୍ମ ନିତ୍ୟ ସାଧିତ ହେଉଥାଏ । ଶୁଦ୍ଧ ସତ୍ତ୍ୱଗୁଣ, ସମତା, ବିଜ୍ଞାନ ଓ ମନର ପ୍ରସନ୍ନତା—ଏ ସବୁକୁ ସତ୍ୟ ଯୁଗର ପ୍ରଭାବ ବୋଲି ଜାଣ ॥ ୧ ॥ ସତ୍ତ୍ୱଗୁଣର ଆଧିକ୍ୟ, କିଛି ମାତ୍ରାରେ ରଜୋଗୁଣ, କର୍ମରେ ପ୍ରୀତି ଏବଂ ସବୁ ପ୍ରକାର ସୁଖଲାଭ—ଏହା ସବୁ ତ୍ରେତାଯୁଗର ଧର୍ମ । ରଜୋଗୁଣ ବହୁତ, ସତ୍ତ୍ୱଗୁଣ ଅତ୍ୟଳ୍ପ, କିଛି ମାତ୍ରାରେ ତମୋଗୁଣ, ମନରେ ହର୍ଷ ଓ ଭୟ—ଏ ସବୁ ଦ୍ୱାପରର ଧର୍ମ ॥ ୨ ॥ ଅଧିକ ତମୋଗୁଣ, ଅଳ୍ପ ରଜୋଗୁଣ, ଚତୁର୍ଦ୍ଦିଗରେ ବୈର-ବିରୋଧ—ଏହା କଳିଯୁଗର ପ୍ରଭାବ । ପଣ୍ଡିତମାନେ ଯୁଗଧର୍ମକୁ ମନ ମଧ୍ୟରେ ଜାଣି ଅଧର୍ମ ଛାଡ଼ି ଧର୍ମଠାରେ ପ୍ରୀତି ଆଚରଣ

ତେହିଁ କଳିକାଲ ବରଷ ବହୁ ବସେଉଁ ଅଉଧ ବିହଗେସ ।
ପରେଉ ଦୁକାଲ ବିପତି ବସ ତବ ମୈଁ ଗୟଉଁ ବିଦେସ ॥୧୦୪(ଖ)॥
ଗୟଉଁ ଉଜେନୀ ସୁନୁ ଉରଗାରୀ । ଦୀନ ମଲୀନ ଦରିଦ୍ର ଦୁଖାରୀ ॥
ଗଏଁ କାଲ କଛୁ ସଂପତି ପାଈ । ତହଁ ପୁନି କରଉଁ ସମ୍ଭୁ ସେବକାଈ ॥୧॥
ବିପ୍ର ଏକ ବୈଦିକ ସିବ ପୂଜା । କରଇ ସଦା ତେହି କାଜୁ ନ ଦୂଜା ॥
ପରମ ସାଧୁ ପରମାରଥ ବିନ୍ଦକ । ସମ୍ଭୁ-ଉପାସକ ନହିଁ ହରି-ନିନ୍ଦକ ॥୨॥
ତେହି ସେବଉଁ ମୈଁ କପଟ ସମେତା । ଦ୍ୱିଜ ଦୟାଲ ଅତି ନୀତି ନିକେତା ॥
ବାହିଜ ନମ୍ର ଦେଖି ମୋହି ସାଈଁ । ବିପ୍ର ପଢ଼ାଵ ପୁତ୍ର କୀ ନାଈଁ ॥୩॥

---

ସେ କଳି କାଳରେ ଥିଲି ଅଯୋଧ୍ୟାରେ ବହୁତ ବର୍ଷ, ଖଗେଶ ।
ପଡନ୍ତେ ଅକାଳ ବିପତ୍ତି ବିବଶ ଚାଲି ମୁଁ ଗଲି ବିଦେଶ ॥୧୦୪(ଖ)॥
ଗଲି ଉଜ୍ଜୟିନୀ ମୁହିଁ ଶୁଣ, ଭୁଜଙ୍ଗାରି । ଦୀନ ମଳିନ ଦରିଦ୍ର ଦୁଃଖୀ ଅତି ଭାରି ॥
କିଛୁକାଳ ଅନନ୍ତର ପାଇଣ ସମ୍ପତ୍ତି । ତହିଁ ପୁଣି ସେବା କଲି ପାରବତୀ ପତି ॥୧॥
ବୈଦିକ ବ୍ରାହ୍ମଣ ଏକ ସେ ସ୍ଥାନେ ରହିଣ । ଶିବେ ସେବୁଥିଲେ ଅନ୍ୟ କାର୍ଯ୍ୟାଦି ତେଜିଣ ॥
ପରମାର୍ଥଜ୍ଞାତା ସାଧୁ ପରମ ସେ ଥିଲେ । ଶମ୍ଭୁ-ଉପାସକ, ହରି-ନିନ୍ଦୁକ ନ ଥିଲେ ॥୨॥
ସକପଟେ ହେଲି ତାଙ୍କ ସେବାରେ ମୁଁ ରତ । ଦ୍ୱିଜ ନୀତି-ନିକେତନ ଦୟାଳୁ ଅତ୍ୟନ୍ତ ॥
ବାହ୍ୟିକ ନମ୍ରତା ବିପ୍ର ବିଲୋକି ମୋହର । ପଢାଉଥିଲେ ଯେସନେ ଆପଣା କୁମର ॥୩॥

---

କରନ୍ତି ॥ ୩ ॥ ଶ୍ରୀ ରଘୁନାଥଙ୍କ ଚରଣରେ ଯାହାର ଅତ୍ୟନ୍ତ ପ୍ରେମ ଥାଏ, ତାହାକୁ କାଳଧର୍ମ ବା ଯୁଗଧର୍ମ ବ୍ୟାପେନାହିଁ । ହେ ପକ୍ଷିରାଜ ! ନଟ (ବାଜିଗର)-କୃତ କପଟ-ଲୀଳା (ଇନ୍ଦ୍ରଜାଲ) ଦର୍ଶକମାନଙ୍କ ପକ୍ଷରେ ଅତି ବିକଟ (ଦୁର୍ବୋଧ) ହୋଇଥାଏ । କିନ୍ତୁ ନଟର ସେବକ ନାଟୁଆକୁ ତାହାର ମାୟା ବ୍ୟାପେ ନାହିଁ ॥ ୪ ॥ ଦୋହା :— ଶ୍ରୀହରିଙ୍କ ଦ୍ୱାରା ରଚିତ ଦୋଷଗୁଣ ଶ୍ରୀହରିଙ୍କ ଭଜନ ବିନା ଯାଏ ନାହିଁ । ମନରେ ଏହିପରି ବିଚାରି କରି ସମସ୍ତ କାମନା ତ୍ୟାଗ କରି ନିଷ୍କାମ ଭାବରେ ଶ୍ରୀରାମଙ୍କ ଭଜନ କରିବା ଉଚିତ ॥ ୧୦୪ (କ) ॥ ହେ ପକ୍ଷିରାଜ ! ସେହି କଳିକାଳରେ ମୁଁ ବହୁତ ବର୍ଷ ଯାଏ ଅଯୋଧ୍ୟାରେ ରହିଲି । ଏକଦା ସେଠାରେ ଅକାଳ ପଡ଼ିଲା । ସେତେବେଳେ ମୁଁ ବିପତ୍ତିବଶତଃ ବିଦେଶ ଚାଲିଗଲି ॥ ୧୦୪ (ଖ) ॥ ଚୌପାଈ :— ହେ ସର୍ପଶତ୍ରୁ ଗରୁଡ ! ଶୁଣନ୍ତୁ; ମୁଁ ଦୀନ, ମଳିନ, ଦରିଦ୍ର ଓ ଦୁଃଖୀ ହୋଇ ଉଜ୍ଜୟିନୀ ଗଲି । କିଛି କାଳ ଅତିବାହିତ ହେବା ପରେ ମୁଁ କିଛି ସମ୍ପତ୍ତି ପାଇ ଭଗବାନ୍ ଶଙ୍କରଙ୍କ ଆରାଧନା କରିବାକୁ ଲାଗିଲି ॥ ୧ ॥ ଜଣେ ବ୍ରାହ୍ମଣ ସର୍ବଦା ବେଦବିଧି ଅନୁସାରେ ଶିବଙ୍କୁ ପୂଜା କରୁଥା'ନ୍ତି । ତାଙ୍କର ଅନ୍ୟ କୌଣସି କାମ ନ ଥାଏ । ସେ ପରମ ସାଧୁ ଓ ପରମାର୍ଥଜ୍ଞ । ସେ ଶମ୍ଭୁଙ୍କ ଉପାସକ ଥିଲେ, କିନ୍ତୁ ଶ୍ରୀହରିଙ୍କର ନିନ୍ଦୁକ ନ ଥିଲେ ॥ ୨ ॥ ମୁଁ କପଟରେ ତାଙ୍କର ସେବା କରୁଥାଏ । ବ୍ରାହ୍ମଣ ଅତି ଦୟାଳୁ ଓ ନୀତି-ନିକେତନ

ସମ୍ଭୁ ମନ୍ତ୍ର ମୋହି ଦ୍ୱିଜବର ଦୀହ୍ନା । ସୁଭ ଉପଦେସ ବିବିଧ ବିଧି କୀହ୍ନା ॥
ଜପଉଁ ମନ୍ତ୍ର ସିବ ମନ୍ଦିର ଜାଈ । ହୃଦୟଁ ଦମ୍ଭ ଅହମିତି ଅଧିକାଈ ॥୪॥
ମୈଁ ଖଲ ମଲ ସଂକୁଲ ମତି ନୀଚ ଜାତି ବସ ମୋହ ।
ହରିଜନ ଦ୍ୱିଜ ଦେଖେଁ ଜରଉଁ କରଉଁ ବିଷ୍ଣୁ କର ଦ୍ରୋହ ॥୧୦୫(କ)॥
ଗୁର ନିତ ମୋହି ପ୍ରବୋଧ ଦୁଖିତ ଦେଖି ଆଚରନ ମମ ।
ମୋହି ଉପଜଇ ଅତି କ୍ରୋଧ ଦମ୍ଭିହି ନୀତି କି ଭାୱଈ ॥୧୦୫(ଖ)॥
ଏକ ବାର ଗୁର ଲୀହ୍ନ ବୋଲାଈ । ମୋହି ନୀତି ବହୁ ଭାଁତି ସିଖାଈ ॥
ସିବ ସେବା କର ଫଲ ସୁତ ସୋଈ । ଅବିରଲ ଭଗତି ରାମ ପଦ ହୋଈ ॥୧॥
ରାମହି ଭଜହିଁ ତାତ ସିବ ଧାତା । ନର ପାୱଁର କୈ କେତିକ ବାତା ॥
ଜାସୁ ଚରନ ଅଜ ସିବ ଅନୁରାଗୀ । ତାସୁ ଦ୍ରୋହଁ ସୁଖ ଚହସି ଅଭାଗୀ ॥୨॥

---

ଶମ୍ଭୁ ମନ୍ତ୍ର ମୋତେ କରି ପ୍ରଦାନ ବିପ୍ରେଶ । ବିବିଧ ପ୍ରକାରେ ଦେଲେ ଶୁଭ ଉପଦେଶ ॥
ଜପୁଥିଲି ମନ୍ତ୍ର ଶିବ ମନ୍ଦିରକୁ ଯାଇ । ହୃଦେ ଦମ୍ଭ ଅଭିମାନ ଅଧିକ ବଢାଇ ॥୪॥
ମୁଁ ପାପ-ସଙ୍କୁଳ ମତି ମନ୍ଦ ଖଲ ନୀଚ ଜାତି ବଶ ମୋହ ।
ଦ୍ୱିଜ ହରିଜନ ଦେଖି ଜଳୁଥିଲି କରୁଥିଲି ବିଷ୍ଣୁ-ଦ୍ରୋହ ॥୧୦୫(କ)॥
ଦେଖି ମୋ ସ୍ୱଭାବ ଦୁଃଖେ ଗୁରୁ ନିତି ଦେଉଥିଲେ ମୋତେ ବୋଧ ।
ଦମ୍ଭୀଙ୍କୁ କେବେ କି ଭଲ ଲାଗେ ନୀତି ? ବଢୁଥିଲା ମୋର କ୍ରୋଧ ॥୧୦୫(ଖ)॥
ଏକବାର ଗୁରୁ ମୋତେ ଡକାଇ ଆଣିଲେ । ନାନା ପ୍ରକାରେ ସୁନ୍ଦର ନୀତି ଶିଖାଇଲେ ॥
ଶିବ ସେବା କରିବାର ସୁତ ଏହି ଫଳ । ରାମ ପଦେ ଉପୁଜଇ ଭକ୍ତି ଅବିରଳ ॥୧॥
ରାମଙ୍କୁ ଭଜନ୍ତି ବତ୍ସ ! ବିରିଞ୍ଚି ଶଙ୍କର । କି ଛାର କଥା ପ୍ରାକୃତ ନର ପାମରର ॥
ଶିବ ଅଜ ଯାହାଙ୍କର ଚରଣାନୁରାଗୀ । ତାଙ୍କ ଦ୍ରୋହୀ ହୋଇ ସୁଖ ଚାହୁଁ, ହତଭାଗୀ ॥୨॥

---

ଥିଲେ । ହେ ସ୍ୱାମି ! ବାହାରରୁ ନମ୍ର ଦେଖି ବ୍ରାହ୍ମଣ ମୋତେ ପୁତ୍ର ପରି ଆଦର କରି ପଢାଉଥା'ନ୍ତି ॥ ୩ ॥ ସେହି ଦ୍ୱିଜବର ମୋତେ ଶିବମନ୍ତ୍ର ଏବଂ ଅନେକ ପ୍ରକାର ଶୁଭ ଉପଦେଶ ଦେଲେ ! ମୁଁ ଶିବ ମନ୍ଦିରକୁ ଯାଇ ମନ୍ତ୍ର ଜପୁଥାଏ । ମୋର ହୃଦୟରେ ଦମ୍ଭ ଓ ଅହଙ୍କାର ବଢିଗଲା ॥ ୪ ॥ ଦୋହା :—ମୁଁ ଦୁଷ୍ଟ ଓ ନୀଚ ଜାତିର, ମୋର ମତି ପାପମୟ ଓ ମଳିନ । ମୋହବଶତଃ ମୁଁ ଶ୍ରୀହରିଙ୍କ ଭକ୍ତ ଓ ଦ୍ୱିଜମାନଙ୍କୁ ଦେଖିବା ମାତ୍ରେ ଜଳି ଉଠୁଥାଏ ଏବଂ ବିଷ୍ଣୁ ଭଗବାନଙ୍କ ସହିତ ଦ୍ରୋହାଚରଣ କରୁଥାଏ ॥ ୧୦୫ (କ) ॥ ସୋରଠା :—ଗୁରୁ ମୋ ଆଚରଣ ଦେଖି ଦୁଃଖିତ ହେଉଥିଲେ । ସେ ମୋତେ ନିତି ଭଲ ଭାବରେ ବୁଝାଉଥିଲେ । କିନ୍ତୁ ମୁଁ କିଛି ବୁଝୁ ନ ଥାଏ । ଓଲଟି ମୋ ମନରେ ଅତିଶୟ କ୍ରୋଧ ଜାତ ହେଉଥାଏ । ଦାମ୍ଭିକକୁ କଦାପି ନୀତି ଭଲ ଲାଗେ କି ? ॥ ୧୦୫ (ଖ) ॥ ଚୌପାଈ :—ଏକଦା ଗୁରୁ ମୋତେ ଡାକିନେଲେ ଏବଂ ବହୁତ ପ୍ରକାରେ ନୀତିଶିକ୍ଷା ଦେଲେ—"ହେ ପୁତ୍ର !

ହର କହୁଁ ହରି ସେବକ ଗୁର କହେଉ । ସୁନି ଖଗନାଥ ହୃଦୟ ମମ ଦହେଉ ॥
ଅଧମ ଜାତି ମୈଁ ବିଦ୍ୟା ପାଏଁ । ଭୟଉଁ ଜଥା ଅହି ଦୂଧ ପିଆଏଁ ॥୩॥
ମାନୀ କୁଟିଲ କୁଭାଗ୍ୟ କୁଜାତୀ । ଗୁର କର ଦ୍ରୋହ କରଉଁ ଦିନୁ ରାତୀ ॥
ଅତି ଦୟାଲ ଗୁର ସ୍ୱଲ୍ପ ନ କ୍ରୋଧା । ପୁନି ପୁନି ମୋହି ସିଖାୱ ସୁବୋଧା ॥୪॥
ଜେହି ତେ ନୀଚ ବଡ଼ାଈ ପାୱା । ସୋ ପ୍ରଥମହିଁ ହତି ତାହି ନସାୱା ॥
ଧୂମ ଅନଲ ସମ୍ଭବ ସୁନୁ ଭାଈ । ତେହି ବୁଝାୱ ଘନ ପଦବୀ ପାଈ ॥୫॥
ରଜ ମଗ ପରୀ ନିରାଦର ରହଈ । ସବ କର ପଦ ପ୍ରହାର ନିତ ସହଈ ॥
ମରୁତ ଉଡ଼ାୱ ପ୍ରଥମ ତେହି ଭରଈ । ପୁନି ନୃପ ନୟନ କିରୀଟନ୍ହି ପରଈ ॥୬॥

---

ହରଙ୍କୁ କହିଲେ ଗୁରୁ ହରିଙ୍କ ସେବକ । ଶୁଣି ମୋ ହୃଦ ଦହିଲା, ବିହଙ୍ଗ-ନାୟକ ॥
ଅଧମ ଜାତି ମୁଁ ମୂଢ଼ ସୁବିଦ୍ୟା ପାଆନ୍ତେ । ହୋଇଲି ଯେସନେ ଦୁଗ୍ଧ ଅହିକୁ ପିଆନ୍ତେ ॥୩॥
ଅଭିମାନୀ କୁଟିଳ ମୁଁ କୁଭାଗ୍ୟ କୁଜାତି । ଗୁରୁଙ୍କ ଦ୍ରୋହାଚରଣ କରେ ଦିନ ରାତି ॥
ଅତ୍ୟନ୍ତ ଦୟାଳୁ ଗୁରୁ, ସ୍ୱଳ୍ପ ନାହିଁ କ୍ରୋଧ । ପୁଣି ପୁଣି ଡାକ ମୋତେ ଶିଖାନ୍ତି ସୁବୋଧ ॥୪॥
ଯାହାଠାରୁ ନୀଚ ପ୍ରାଣୀ ବଡ଼ାଇ ଲଭଇ । ପ୍ରଥମେ ସେ ହଠ କରି ତାହାକୁ ନାଶଇ ॥
ଅନଳୁ ଉତ୍ପନ୍ନ ଧୂମ, ଖଗେଶ ପ୍ରବୀଣ । ତାହାକୁ ଲିଭାଏ ଘନ ପଦବୀ ପାଇଣ ॥୫॥
ଧୂଳି ପଥ ମଧ୍ୟେ ପଡ଼ି ନିରାଦରେ ରହେ । ସମସ୍ତ ପ୍ରାଣୀଙ୍କ ନିତ୍ୟ ପଦାଘାତ ସହେ ॥
ମରୁତେ ଉଡ଼ି ପ୍ରଥମେ ତାକୁ ପୂର୍ଣ୍ଣ କରେ । ପୁଣି ପଡ଼େ ନୃପ ନେତ୍ର ମୁକୁଟ ଉପରେ ॥୬॥

---

ଶିବ-ସେବାର ଫଳ ହେଉଛି ଶ୍ରୀରାମଙ୍କ ଚରଣରେ ପ୍ରଗାଢ଼ ଭକ୍ତି ॥ ୧ ॥ ହେ ତାତ ! ଶିବ ଓ ବ୍ରହ୍ମା ମଧ୍ୟ ଶ୍ରୀରାମଙ୍କୁ ଭଜନ୍ତି; ତେବେ ନୀଚ ମନୁଷ୍ୟର କଥା କେତେ ? ବ୍ରହ୍ମା ଓ ଶିବ ଯାହାଙ୍କ ଚରଣରେ ପ୍ରେମୀ, ଆରେ ଅଭାଗା ! ତାଙ୍କ ସହିତ ଦ୍ରୋହ କରି ତୁ ସୁଖ ଇଚ୍ଛା କରୁଛୁ ?" ॥ ୨ ॥ ଗୁରୁଜୀ ଶିବ ହରିଙ୍କ ସେବକ ବୋଲି କହିଲେ । ହେ ପକ୍ଷିରାଜ ! ଏହା ଶୁଣି ମୋ ହୃଦୟ ଜଳି ଉଠିଲା । ଅଧମ ଜାତିର ଲୋକ ମୁଁ । ସର୍ପକୁ ଦୁଗ୍ଧ ପାନ କରାଇଲେ ତାର ବିଷ ଯେପରି ବୃଦ୍ଧି ପାଏ, ବିଦ୍ୟା ପାଇ ମୋର ଅବସ୍ଥା ସେହିପରି ହୋଇଗଲା ॥ ୩ ॥ ମୁଁ ଅଭିମାନୀ, କୁଟିଳ, କୁଭାଗ୍ୟ ଓ କୁଜାତି ଏବଂ ଦିନରାତି ଗୁରୁଦ୍ରୋହ କରୁଥାଏ । ଗୁରୁ ଅତିଶୟ ଦୟାଳୁ ଥିଲେ, ତାଙ୍କର ଟିକିଏ ହେଲେ କ୍ରୋଧ ଜାତ ହେଉ ନ ଥାଏ । ମୋର ଦ୍ରୋହାଚରଣ ସତ୍ତ୍ୱେ ସେ ବାରମ୍ବାର ମୋତେ ଉତ୍ତମ ଜ୍ଞାନ ଶିକ୍ଷା ଦେଉଥା'ନ୍ତି ॥ ୪ ॥ ନୀଚ ମନୁଷ୍ୟ ଯାହାଠାରୁ ବଡ଼ାଇ ପାଏ, ସର୍ବପ୍ରଥମେ ସେ ତାକୁଇ ମାରି ତାହାର ସର୍ବନାଶ କରିଥାଏ । ହେ ଭାଇ ! ଶୁଣନ୍ତୁ, ଅଗ୍ନିରୁ ଜାତ ଧୂମ ମେଘ ପଦ ପାଇ ସେହି ଅଗ୍ନିକୁ ଲିଭାଇଦିଏ ॥୫॥ ଧୂଳି ପଥରେ ନିରାଦର ଭାବରେ ପଡ଼ି ରହିଥାଏ ଏବଂ ସଦାସର୍ବଦା ସମସ୍ତଙ୍କ ପଦପ୍ରହାର ସହୁଥାଏ । କିନ୍ତୁ ଯେତେବେଳେ ପବନ ତାହାକୁ ଉଡ଼ାଇ ଉପରକୁ ଉଠାଇଦିଏ, ସେତେବେଳେ ସେ ସର୍ବପ୍ରଥମେ ସେହି ପବନରେ ଭରିଯାଏ ଏବଂ ପୁଣି ରାଜାମାନଙ୍କ

ସୁନୁ ଖଗପତି ଅସ ସମୁଝି ପ୍ରସଂଗା । ବୁଧ ନହିଁ କରହିଁ ଅଧମ କର ସଂଗା ॥
କବି କୋବିଦ ଗାଓ୍ୱହିଁ ଅସି ନୀତି । ଖଲ ସନ କଲହ ନ ଭଲ ନହିଁ ପ୍ରୀତି ॥୭॥
ଉଦାସୀନ ନିତ ରହିଅ ଗୋସାଈଁ । ଖଲ ପରିହରିଅ ସ୍ୱାନ କୀ ନାଈଁ ॥
ମୈଁ ଖଲ ହୃଦୟଁ କପଟ କୁଟିଲାଈ । ଗୁର ହିତ କହଇ ନ ମୋହି ସୋହାଈ ॥୮॥
ଏକ ବାର ହରମନ୍ଦିର ଜପତ ରହେଉଁ ସିବନାମ ।
ଗୁର ଆୟଉ ଅଭିମାନ ତେଁ ଉଠି ନହିଁ କୀହ୍ନ ପ୍ରନାମ ॥୧୦୬(କ)॥
ସୋ ଦୟାଲ ନହିଁ କହେଉ କଛୁ ଉର ନ ରୋଷ ଲବଲେସ ।
ଅତି ଅଘ ଗୁର ଅପମାନତା ସହି ନହିଁ ସକେ ମହେସ ॥୧୦୬(ଖ)॥
ମନ୍ଦିର ମାଝ ଭଈ ନଭବାନୀ । ରେ ହତଭାଗ୍ୟ ଅଜ୍ଞ ଅଭିମାନୀ ॥
ଜଦ୍ୟପି ତବ ଗୁର କେଁ ନହିଁ କ୍ରୋଧା । ଅତି କୃପାଲ ଚିତ ସମ୍ୟକ ବୋଧା ॥୧॥

---

ଶୁଣ ଖଗେଶ, ଏମନ୍ତ ବୁଝିଣ ପ୍ରସଙ୍ଗ । ବୁଧ ନ କରନ୍ତି କେବେ ଅଧମଙ୍କ ସଙ୍ଗ ॥
କବି କୋବିଦ ଏପରି ବଖାଣନ୍ତି ନୀତି । ଭଲ ନୁହେଁ ଖଳ ସଙ୍ଗେ କଲହ ବା ପ୍ରୀତି ॥୭॥
ଉଦାସୀନ ରହିବାର ବରଂ ଭଲ ନୀତି । ଶ୍ୱାନ ସଦୃଶ ଖଳଙ୍କୁ ତେଜିବା ଉଚିତ ॥
ମୁଁ ଖଳ କପଟ ହୃଦ କୁଟିଳ ବିଶେଷ । ଭଲ ନ ପାଏ ଗୁରୁଙ୍କ ହିତ ଉପଦେଶ ॥୮॥
ଏକଦା ମୁଁ ହର-ମନ୍ଦିରେ ବସିଣ ଜପୁଥିଲି ଶିବ ନାମ ।
ଗୁରୁ ଆଗମନ୍ତେ ଅଭିମାନ ବଶ ଉଠି ନ କଲି ପ୍ରଣାମ ॥୧୦୬(କ)॥
ସେ ଦୟାଳୁ ଗୁରୁ ନ କହିଲେ କିଛି ନ କଲେ ବା ରୋଷ ଲେଶ ।
ଗୁରୁ ଅପମାନ ମହାପାପ, ସହି-ପାରିଲେ ନାହିଁ ମହେଶ ॥୧୦୬(ଖ)॥
ମନ୍ଦିର ମଧ୍ୟୁ ସେକ୍ଷଣି ହେଲା ନଭବାଣୀ । ରେ ହତଭାଗ୍ୟ, ଅଧମ, ଜଡ଼, ଅଭିମାନ ! ॥
ଯଦ୍ୟପି ତୋ ଗୁରୁ ସ୍ୱଳ୍ପ ନ କରନ୍ତି କ୍ରୋଧ । ଅତ୍ୟନ୍ତ କୃପାଳୁ ଚିତ୍ତ ଯଥାର୍ଥ ସୁବୋଧ ॥୧॥

---

ନେଇ ଓ କଣ୍ଟାମାନଙ୍କ ଉପରେ ପଡେ ॥ ୬ ॥ ହେ ପକ୍ଷିରାଜ ଗରୁଡ ! ଶୁଣନ୍ତୁ, ଏହିପରି କଥା ବୁଝି ବୁଦ୍ଧିମାନ୍ ଲୋକେ ଅଧମର ସଙ୍ଗ କରନ୍ତି ନାହିଁ । କବି ଓ ପଣ୍ଡିତମାନେ ଏପରି ନୀତି କହନ୍ତି ଯେ, ଦୁଷ୍ଟ ସହିତ କଳହ କିମ୍ବା ପ୍ରୀତି, କୌଣସିଟି କରିବା ଭଲ ନୁହେଁ ॥ ୭ ॥ ହେ ଗୋସାଇଁ ! ତାହାଠାରୁ ତ ସର୍ବଦା ଉଦାସୀନ ରହିବା ଉଚିତ । ଦୁଷ୍ଟଙ୍କୁ କୁକୁର ପରି ଦୂରରୁ ହିଁ ତ୍ୟାଗ କରିବା ଉଚିତ । ମୁଁ ଦୁଷ୍ଟ ଥିଲି, ହୃଦୟରେ କପଟ ଓ କୁଟିଳତା ଭରି ରହିଥିଲା । ଏଣୁ ଗୁରୁ ହିତକର କଥା କହୁଥିଲେ ସୁଦ୍ଧା ତାହା ମୋତେ ରୁଚିକର ହେଉ ନ ଥିଲା ॥ ୮ ॥ ଦୋହା :— ଏକଦା ମୁଁ ଶିବ ମନ୍ଦିରରେ ଶିବନାମ ଜପ କରୁଥିଲି । ସେହି ସମୟରେ ଗୁରୁଜୀ ସେଠାକୁ ଆସିଲେ । କିନ୍ତୁ ଅଭିମାନ ହେତୁ ମୁଁ ଉଠି ତାହାଙ୍କୁ ପ୍ରଣାମ କଲି ନାହିଁ ॥ ୧୦୬ (କ) ॥ ଗୁରୁ ଦୟାଳୁ ଥିଲେ । ମୋର ଦୋଷ ଦେଖି ସୁଦ୍ଧା ସେ କିଛି କହିଲେ ନାହିଁ । ତାହାଙ୍କ ହୃଦୟରେ ଲେଶମାତ୍ର କ୍ରୋଧ ସୁଦ୍ଧା ଜାତ ହେଲାନାହିଁ ।

ତଦପି ସାପ ସଠ ଦୈହଉଁ ତୋହୀ । ନୀତି ବିରୋଧ ସୁହାଇ ନ ମୋହୀ ॥
ଜୌଁ ନହିଁ ଦଣ୍ଡ କରୌଁ ଖଲ ତୋରା । ଭ୍ରଷ୍ଟ ହୋଇ ଶ୍ରୁତିମାରଗ ମୋରା ॥୨॥
ଜେ ସଠ ଗୁର ସନ ଇରିଷା କରହୀଁ । ରୌରବ ନରକ କୋଟି ଜୁଗ ପରହୀଁ ॥
ତ୍ରିଜଗ ଜୋନି ପୁନି ଧରହିଁ ସରୀରା । ଅୟୁତ ଜନ୍ମ ଭରି ପାୱହିଁ ପୀରା ॥୩॥
ବୈଠ ରହେହି ଅଜଗର ଇବ ପାପୀ । ସର୍ପ ହୋହି ଖଲ ମଲ ମତି ବ୍ୟାପୀ ॥
ମହା ବିଟପ କୋଟର ମହୁଁ ଜାଈ । ରହୁ ଅଧମାଧମ ଅଧଗତି ପାଈ ॥୪॥

ହାହାକାର କୀହ୍ନ ଗୁର ଦାରୁନ ସୁନି ସିବ ସାପ ।
କଂପିତ ମୋହି ବିଲୋକି ଅତି ଉର ଉପଜା ପରିତାପ ॥୧୦୭(କ)॥
କରି ଦଣ୍ଡବତ ସପ୍ରେମ ଦ୍ୱିଜ ସିବ ସନ୍ମୁଖ କର ଜୋରି ।
ବିନୟ କରତ ଗଦଗଦ ସ୍ୱର ସମୁଝି ଘୋର ଗତି ମୋରି ॥୧୦୭(ଖ)॥

---

ତଥାପି ଶଠ, ଦେବି ମୁଁ ଅଭିଶାପ ତୋତେ । ନୀତି ଉଲ୍ଲଂଘନ ଭଲ ନ ଲାଗଇ ମୋତେ ॥
ଯେବେ ନ କରିବି ଦଣ୍ଡ-ବିଧାନ ତୋହର । ଭ୍ରଷ୍ଟ ହେବ ନିଶ୍ଚେ ଶ୍ରୁତି ମାରଗ ମୋହର ॥୨॥
ଯେ ଶଠ ଗୁରୁଙ୍କ ପ୍ରତି ଈର୍ଷ୍ୟା ଆଚରଇ । କଳ୍ପ ଶତ ରଉରବ ନରକେ ପଡଇ ॥
ତିର୍ଯ୍ୟକ ଯୋନିରେ ପୁଣି ଶରୀର ସେ ଧରେ । ଅୟୁତ ଜନ୍ମ ପର୍ଯ୍ୟନ୍ତେ କଷ୍ଟ ଭୋଗ କରେ ॥୩॥
ବସି ଯେ ରହିଲୁ ପାପି ! ଅଜଗର ପରି । ଖଳ, ମଳବ୍ୟାପ୍ତମତି, ସର୍ପ ହୋଇ କରି ॥
ବିଶାଳ ବୃକ୍ଷ କୋଟର ମଧ୍ୟେ ରହ ଯାଇ । ଅଧମାଧମ, ଅତ୍ୟନ୍ତ ଅଧୋଗତି ପାଇ ॥୪॥

ଗୁରୁ ହାହାକାର କଲେ ଶୁଣି ଘୋର ଶିବଙ୍କର ଅଭିଶାପ ।
କମ୍ପିତ ବିଲୋକି ମୋତେ, ହୃଦେ ଅତି ଉପୁଜିଲା ପରିତାପ ॥୧୦୭(କ)॥
କରି ପ୍ରଣିପାତ ପ୍ରେମେ ଯୋଡି ହସ୍ତ ଗୁରୁ ମହେଶଙ୍କୁ ଅତି ।
ଗଦ୍‌ଗଦ କଣ୍ଠରେ ବିନୟ କରିଲେ ବୁଝି ମୋର ଘୋର ଗତି ॥୦୭(ଖ)॥

---

କିନ୍ତୁ ଗୁରୁଙ୍କ ପ୍ରତି ଅପମାନ ଅତି ବଡ ପାପ, ସୁତରାଂ ମହାଦେବ ତାହା ସହନ କରି ପାରିଲେ ନାହିଁ ॥ ୧୦୬ (ଖ) ॥ ଚୌପାଈ —ମନ୍ଦିର ମଧ୍ୟରୁ ଆକାଶବାଣୀ ଶୁଣାଗଲା—"ଆରେ ହତଭାଗ୍ୟ ! ମୂର୍ଖ ! ଅଭିମାନି ! ତୋର ଗୁରୁଙ୍କର ମନରେ କ୍ରୋଧ ନାହିଁ । ତାଙ୍କ ହୃଦୟ ଅତି ଦୟାଳୁ ଏବଂ ତାଙ୍କର ଯଥାର୍ଥ ଜ୍ଞାନ ଅଛି ॥ ୧ ॥ ତଥାପି ରେ ମୂର୍ଖ ! ତୋତେ ମୁଁ ଅଭିଶାପ ଦେବି, କାରଣ ନୀତିର ବିରୁଦ୍ଧାଚରଣ ମୋତେ ଭଲ ଲାଗେନାହିଁ । ଆରେ ଦୁଷ୍ଟ ! ଯଦି ମୁଁ ତୋତେ ଦଣ୍ଡ ନ ଦିଏ, ତେବେ ମୋର ବେଦମାର୍ଗ ଭ୍ରଷ୍ଟ ହୋଇଯିବ ॥ ୨ ॥ ଯେଉଁ ମୂର୍ଖମାନେ ଗୁରୁଙ୍କ ପ୍ରତି ଈର୍ଷ୍ୟା କରନ୍ତି, ସେମାନେ କୋଟିଏ ଯୁଗ ଯାଏ ରୌରବ ନର୍କରେ ପଡି ରହନ୍ତି । ପୁଣି ସେଠାରୁ ବାହାରି ତିର୍ଯ୍ୟକ (ପଶୁ, ପକ୍ଷୀ ଆଦି) ଯୋନିମାନଙ୍କରେ ଶରୀର ଧାରଣ କରନ୍ତି ଏବଂ ଦଶ ହଜାର ଜନ୍ମ ପର୍ଯ୍ୟନ୍ତ ଦୁଃଖ ପାଉଥା'ନ୍ତି ॥ ୩ ॥ ଆରେ ପାପିଷ୍ଠ ! ଗୁରୁଙ୍କ ସମ୍ମୁଖରେ ତୁ ଅଜଗର ପରି ବସି ରହିଲୁ । ଆରେ ଦୁଷ୍ଟ ! ତୋ ବୁଦ୍ଧି ପାପରେ ଆଚ୍ଛନ୍ନ

ନମାମୀଶମୀଶାନ ନିର୍ବାଣରୂପଂ । ବିଭୁଂ ବ୍ୟାପକଂ ବ୍ରହ୍ମ ବେଦସ୍ୱରୂପଂ ॥
ନିଜଂ ନିର୍ଗୁଣଂ ନିର୍ବିକଳ୍ପଂ ନିରୀହଂ । ଚିଦାକାଶମାକାଶବାସଂ ଭଜେଽହଂ ॥୧॥
ନିରାକାରମୋଙ୍କାରମୂଳଂ ତୁରୀୟଂ । ଗିରାଜ୍ଞାନଗୋତୀତମୀଶଂ ଗିରୀଶଂ ॥
କରାଳଂ ମହାକାଳକାଳଂ କୃପାଳଂ । ଗୁଣାଗାର ସଂସାରପାରଂ ନତୋଽହଂ ॥୨॥
ତୁଷାରାଦ୍ରି ସଂକାଶ ଗୌରଂ ଗଭୀରଂ । ମନୋଭୂତ କୋଟି ପ୍ରଭା ଶ୍ରୀଶରୀରଂ ॥
ସ୍ଫୁରନ୍ମୌଳିକଲ୍ଲୋଳିନୀ ଚାରୁ ଗଙ୍ଗା । ଲସଦ୍ଭାଲ ବାଲେନ୍ଦୁ କଂଠେ ଭୁଜଂଗା ॥୩॥
ଚଲତ୍କୁଣ୍ଡଳଂ ଭ୍ରୂ ସୁନେତ୍ରଂ ବିଶାଳଂ । ପ୍ରସନ୍ନାନନଂ ନୀଳକଂଠଂ ଦୟାଳଂ ॥
ମୃଗାଧୀଶ ଚର୍ମାମ୍ବରଂ ମୁଣ୍ଡମାଳଂ । ପ୍ରିୟଂ ଶଂକରଂ ସର୍ବନାଥଂ ଭଜାମି ॥୪॥

---

ନମଇ ଈଶ ଈଶାନ ନିର୍ବାଣ ରୂପଙ୍କୁ । ବିଭୁ ଯେ ବ୍ୟାପକ ବ୍ରହ୍ମ ବେଦ ସ୍ୱରୂପଙ୍କୁ ॥
ସ୍ୱସ୍ଥିତ ନିର୍ଗୁଣ ନିର୍ବିକଳ୍ପ ନିରୀହଙ୍କୁ । ଭଜଇ ମୁଁ ଚିଦାକାଶ ଆକାଶ-ବାସଙ୍କୁ ॥୧॥
ଆକାର-ଶୂନ୍ୟ ଓଁକାର ମୂଳ ତୁରୀୟଙ୍କୁ । ଜ୍ଞାନ-ବଚନ-ଗୋତୀତ ଈଶ ଗିରୀଶଙ୍କୁ ॥
କୃପାଳୁ, କରାଳ ମହାକାଳର କାଳଙ୍କୁ । ନମଇ ମୁଁ ଗୁଣାଗାର ସଂସାରପାରଙ୍କୁ ॥୨॥
ତୁଷାର ଅଦ୍ରି ସଦୃଶ ଗୌର, ଗମ୍ଭୀରଙ୍କୁ । କୋଟି କାମ ତୁଲ୍ୟ ତେଜବନ୍ତ ଶରୀରଙ୍କୁ ॥
ଚାରୁ କଲ୍ଲୋଳିନୀ ଗଙ୍ଗା-ଧୃତ ମସ୍ତକଙ୍କୁ । ଶୋଭିତ ବାଲେନ୍ଦୁ ଭାଲ, ଭୁଜଙ୍ଗ-କଣ୍ଠଙ୍କୁ ॥୩॥
ଚଞ୍ଚଳ କୁଣ୍ଡଳ ଶୁଭ୍ର ନେତ୍ର ବିଶାଳଙ୍କୁ । ପ୍ରସନ୍ନ ଆନନ ନୀଳକଣ୍ଠ ଦୟାଳୁଙ୍କୁ ॥
ମୁଣ୍ଡମାଳ, ମୃଗରାଜ -ଚର୍ମ-ଅମ୍ବରଙ୍କୁ । ଭଜେ ସମସ୍ତଙ୍କ ନାଥ ଶିବ ଶଙ୍କରଙ୍କୁ ॥୪॥

---

ହୋଇଯାଇଛୁ । ଅତଏବ ତୁ ସର୍ପ ହୋଇ ଯା' । ଆରେ ଅଧମାଧମ ! ଏହି ଅଧୋଗତି ପାଇ କୌଣସି ବଡ ବୃକ୍ଷର କୋଟରରେ ଯାଇ ତୁ ରହ ।" ॥ ୪ ॥ ଦୋହା '— ଶିବଙ୍କର ଭୟାନକ ଅଭିଶାପ ଶୁଣି ଗୁରୁଜୀ ହାହାକାର କଲେ । ମୋତେ କମ୍ପୁଥିବାର ଦେଖି ତାହାଙ୍କ ହୃଦୟରେ ବଡ ସନ୍ତାପ ଜାତ ହେଲା ॥ ୧୦୭ (କ) ॥ ସେହି ବ୍ରାହ୍ମଣ ପ୍ରେମରେ ଦଣ୍ଡବତ କରି ଶିବଙ୍କ ସମ୍ମୁଖରେ ହାତ ଯୋଡିଲେ ଏବଂ ମୋର ଭୟଙ୍କର ଦୁର୍ଗତି (ଦଣ୍ଡ) ବିଷୟ ବିଚାର କରି ଗଦ୍‌ଗଦ ବାଣୀରେ ବିନତି କରିବାକୁ ଲାଗିଲେ—॥ ୧୦୭ (ଖ) ॥ ଛନ୍ଦ—"ହେ ମୋକ୍ଷସ୍ୱରୂପ, ବିଭୁ, ବ୍ୟାପକ, ବ୍ରହ୍ମ ଓ ବେଦସ୍ୱରୂପ, ସର୍ବଶାସକ ଈଶ୍ୱର ଶ୍ରୀ ଶିବ ! ମୁଁ ଆପଣଙ୍କୁ ନମସ୍କାର କରୁଅଛି । ନିଜ-ସ୍ୱରୂପ-ସ୍ଥିତ, ( ମାୟିକ ) ଗୁଣରହିତ, ଭେଦରହିତ, ଇଚ୍ଛା - ରହିତ, ଚେତନ-ଆକାଶରୂପ ଏବଂ ଆକାଶ-ବାସ (ଦିଗମ୍ବର) ! ମୁଁ ଆପଣଙ୍କୁ ଭଜନ କରୁଅଛି ॥ ୧ ॥ ଆପଣ ନିରାକାର, ଓଙ୍କାର-ମୂଳ, ତୁରୀୟ (ତିନି ଗୁଣାତୀତ), ବାଣୀ, ଜ୍ଞାନ ଓ ଇନ୍ଦ୍ରିୟର ଊର୍ଦ୍ଧ୍ୱ, କୈଳାସପତି, ବିକରାଳ, ମହାକାଳର ବି କାଳ, କୃପାଳୁ, ଗୁଣଧାମ ଏବଂ ସଂସାରର ପର ପାରରେ ଅବସ୍ଥିତ ପରମେଶ୍ୱର । ଆପଣଙ୍କୁ ମୁଁ ନମସ୍କାର କରୁଅଛି ॥ ୨ ॥ ଯେ ହିମାଚଳ ସଦୃଶ ଗୌରବର୍ଣ୍ଣ ଓ ଗମ୍ଭୀର, ଯାହାଙ୍କ ଶରୀରରେ କୋଟି କନ୍ଦର୍ପଙ୍କ ଜ୍ୟୋତି ଓ ଶୋଭା ବିରାଜିତ, ଯାହାଙ୍କ ଶିର ଉପରେ ସୁନ୍ଦର ନଦୀ

ପ୍ରଚଣ୍ଡଂ ପ୍ରକୃଷ୍ଟଂ ପ୍ରଗଲ୍‌ଭଂ ପରେଶଂ । ଅଖଣ୍ଡଂ ଅଜଂ ଭାନୁକୋଟିପ୍ରକାଶଂ ॥
ତ୍ରୟଃ ଶୂଳନିର୍ମୂଳନଂ ଶୂଳପାଣିଂ । ଭଜେଽହଂ ଭବାନୀପତିଂ ଭାବଗମ୍ୟଂ ॥୫॥
କଳାତୀତ କଲ୍ୟାଣ କଲ୍ପାନ୍ତକାରୀ । ସଦା ସଜ୍ଜନାନନ୍ଦଦାତା ପୁରାରୀ ॥
ଚିଦାନନ୍ଦ ସନ୍ଦୋହ ମୋହାପହାରୀ । ପ୍ରସୀଦ ପ୍ରସୀଦ ପ୍ରଭୋ ମନ୍ମଥାରୀ ॥୬॥
ନ ଯାବଦ୍ ଉମାନାଥ ପାଦାରବିନ୍ଦଂ । ଭଜନ୍ତୀହ ଲୋକେ ପରେ ବା ନରାଣାଂ ॥
ନ ତାବତ୍ସୁଖଂ ଶାନ୍ତି ସନ୍ତାପନାଶଂ । ପ୍ରସୀଦ ପ୍ରଭୋ ସର୍ବଭୂତାଧିବାସଂ ॥୭॥
ନ ଜାନାମିଂ ଯୋଗଂ ଜପଂ ନୈବ ପୂଜାଂ । ନତୋଽହଂ ସଦା ସର୍ବଦା ଶମ୍ଭୁ ତୁଭ୍ୟଂ ॥
ଜରା ଜନ୍ମ ଦୁଃଖୌଘ ତାତପ୍ୟମାନଂ । ପ୍ରଭୋ ପାହି ଆପନ୍ନମାମୀଶ ଶମ୍ଭୋ ॥୮॥

---

ରୁଦ୍ର ଶୁଭ ପ୍ରଦ ବୁଦ୍ଧିବନ୍ତ ପରେଶଙ୍କୁ । ଅଖଣ୍ଡ ଅଜନ୍ମା କୋଟି ଭାନୁ ପ୍ରକାଶଙ୍କୁ ॥
ତାପ-ତ୍ରୟ-ନିର୍ମୂଳନ ତ୍ରିଶୂଳ-ହସ୍ତଙ୍କୁ । ଭଜଇ ମୁଁ ଭାବ-ଗମ୍ୟ ଭବାନୀନାଥଙ୍କୁ ॥୫॥
କଳା-ଅତୀତ କଲ୍ୟାଣ କଳ୍ପ-ଅନ୍ତକାରୀ । ସଦା ସଜ୍ଜନ-ଆନନ୍ଦଦାତା ତ୍ରିପୁରାରି ॥
ଚିଦାନନ୍ଦ-ନିକେତନ ମୋହ-ଅପହାରୀ । ପ୍ରସନ୍ନ ହୁଅ ମୋ ପ୍ରତି, ପ୍ରଭୁ ମନ୍ମଥାରି ॥୬॥
ଯେ ପର୍ଯ୍ୟନ୍ତ ତୁମ୍ଭ ପାଦ-ପଦ୍ମ, ଉମାବର । ନ ଭଜନ୍ତି ଇହଲୋକେ ପରଲୋକେ ନର ॥
ସେ ପର୍ଯ୍ୟନ୍ତ ସୁଖ ଶାନ୍ତି ନାହିଁ ଦୁଃଖ ନାଶ । ପ୍ରସନ୍ନ ହୁଅ ସମସ୍ତ ଭୂତ-ଅଧିବାସ ॥୭॥
ଯୋଗ ଜପ ତପ ପୂଜା କିଛି ନ ଜାଣଇ । ତୁମ୍ଭଙ୍କୁ ମୁଁ ସଦା ଶମ୍ଭୁ, ପ୍ରଣାମ କରଇ ॥
ଜରା ଜନ୍ମ ଦୁଃଖ ତାପେ ତପ୍ତ ଅତିଶୟ । ପ୍ରଭୁ, ଦୁଃଖୁ ତ୍ରାଣ କର, ନମେ, ମୃତ୍ୟୁଞ୍ଜୟ ॥୮॥

---

ଗଙ୍ଗା ବିରାଜମାନ, ଯାହାଙ୍କ ଲଲାଟରେ ଦ୍ୱିତୀୟା ଚନ୍ଦ୍ର ଏବଂ ଗଳାରେ ସର୍ପ ସୁଶୋଭିତ, ଯାହାଙ୍କ କର୍ଣ୍ଣରେ କୁଣ୍ଡଳ ଦୋଳାୟମାନ, ଯାହାଙ୍କର ସୁନ୍ଦର ଭ୍ରୂକୁଟି ଓ ବିଶାଳ ନେତ୍ର, ଯେ ପ୍ରସନ୍ନ-ବଦନ, ନୀଳକଣ୍ଠ ଓ ଦୟାଳୁ, ଯେ ସିଂହ ଚର୍ମର ବସ୍ତ୍ର ପରିଧାନ ଓ ମୁଣ୍ଡମାଳା ଧାରଣ କରିଅଛନ୍ତି, ସେହି ସର୍ବଜନପ୍ରିୟ ଓ ସର୍ବନାଥ ଶ୍ରୀ ଶଙ୍କରଙ୍କୁ ମୁଁ ଭଜନ କରୁଅଛି ॥ ୩-୪ ॥ ପ୍ରଚଣ୍ଡ (ରୁଦ୍ରରୂପ), ଶ୍ରେଷ୍ଠ ତେଜସ୍ୱୀ ପରମେଶ୍ୱର, ଅଖଣ୍ଡ, ଅଜନ୍ମା, କୋଟି ସୂର୍ଯ୍ୟସମ ପ୍ରକାଶମାନ, ତିନି ପ୍ରକାର ଶୂଳ (ଦୁଃଖ)ର ନିର୍ମୂଳକାରୀ, ଶୂଳପାଣି, ଭାବ (ପ୍ରେମ) ଯୋଗେ ଲବ୍ଧ, ଭବାନୀପତି ଶ୍ରୀ ଶଙ୍କରଙ୍କୁ ମୁଁ ଭଜନ କରୁଛି ॥ ୫ ॥ କଳାତୀତ, କଲ୍ୟାଣ-ସ୍ୱରୂପ, କଳ୍ପାନ୍ତକାରୀ, ସଦା-ସଜ୍ଜନାନନ୍ଦଦାତା, ତ୍ରିପୁରାରି, ସଚ୍ଚିଦାନନ୍ଦଘନ, ମୋହହରଣକାରୀ, କାମାରି, ହେ ପ୍ରଭୋ ! ପ୍ରସନ୍ନ ହୁଅନ୍ତୁ, ପ୍ରସନ୍ନ ହୁଅନ୍ତୁ ॥ ୬ ॥ ହେ ଉମାନାଥ ! ଯେତେବେଳଯାଏ ମନୁଷ୍ୟମାନେ ଆପଣଙ୍କ ଚରଣ-କମଳ-ଯୁଗଳ ନ ଭଜନ୍ତି, ସେତେବେଳଯାଏ ସେମାନଙ୍କୁ ଇହଲୋକ କିମ୍ବା ପରଲୋକରେ ସୁଖଶାନ୍ତି ମିଳେନାହିଁ ଏବଂ ସେମାନଙ୍କ ସନ୍ତାପସମୂହର ନାଶ ହୁଏ ନାହିଁ । ଅତଏବ ହେ ସର୍ବଭୂତ-ହୃଦୟ-ନିବାସି ପ୍ରଭୋ ! ପ୍ରସନ୍ନ ହୁଅନ୍ତୁ ॥ ୭ ॥ ମୁଁ ଯୋଗ ଜାଣେ ନାହିଁ କିମ୍ବା ଜପ ଓ ପୂଜା କିଛି ଜାଣେ ନାହିଁ । ହେ ଶମ୍ଭୋ ! ମୁଁ ସଦାସର୍ବଦା ଆପଣଙ୍କୁ ନମସ୍କାର କରୁଅଛି । ହେ ପ୍ରଭୋ !

ରୁଦ୍ରାଷ୍ଟକମିଦଂ ପ୍ରୋକ୍ତଂ ବିପ୍ରେଣ ହରତୋଷୟେ ।
ଯେ ପଠନ୍ତି ନରା ଭକ୍ତ୍ୟା ତେଷାଂ ଶମ୍ଭୁଃ ପ୍ରସୀଦତି ॥୯॥

ସୁନି ବିନତୀ ସର୍ବଜ୍ଞ ସିବ ଦେଖି ବିପ୍ର ଅନୁରାଗୁ ।
ପୁନି ମନ୍ଦିର ନଭବାନୀ ଭଇ ଦ୍ୱିଜବର ବର ମାଗୁ ॥୧୦୮(କ)॥
ଜୌଁ ପ୍ରସନ୍ନ ପ୍ରଭୁ ମୋ ପର ନାଥ ଦୀନ ପର ନେହୁ ।
ନିଜ ପଦ ଭଗତି ଦେଇ ପ୍ରଭୁ ପୁନି ଦୂସର ବର ଦେହୁ ॥୧୦୮(ଖ)॥
ତବ ମାୟା ବସ ଜୀବ ଜଡ଼ ସନ୍ତତ ଫିରଇ ଭୁଲାନ ।
ତେହି ପର କ୍ରୋଧ ନ କରିଅ ପ୍ରଭୁ କୃପାସିନ୍ଧୁ ଭଗବାନ ॥୧୦୮(ଗ)॥
ସଙ୍କର ଦୀନଦୟାଲ ଅବ ଏହି ପର ହୋହୁ କୃପାଲ ।
ସାପ ଅନୁଗ୍ରହ ହୋଇ ଜେହିଁ ନାଥ ଥୋରେହିଁ କାଲ ॥୧୦୮(ଘ)॥

---

ଏ ରୁଦ୍ର ଅଷ୍ଟକ ବିପ୍ର ବିରଚିତ ତୋଷିବାକୁ ଉମାପତି ।
ଯେ ନର ଭକ୍ତିରେ ପଢେ, ତା ଉପରେ ଶମ୍ଭୁ ପ୍ରସନ୍ନ ହୁଅନ୍ତି ॥୯॥

ସର୍ବଜ୍ଞ ଈଶାନ ବିନତି ଶୁଣିଲେ ଦେଖିଲେ ବିପ୍ରାନୁରାଗ ।
ମନ୍ଦିର ମଧ୍ୟରୁ ହେଲା ନଭବାଣୀ, ଦ୍ୱିଜବର, ବର ମାଗ ॥୧୦୮ (କ)॥
ଯେବେ ଦୀନ ପ୍ରତି ପ୍ରସନ୍ନ କୃପାଳୁ, ସ୍ନେହ ଥାଏ ମୋ ଉପର ।
ନିଜ ଶ୍ରୀଚରଣ-ଭକ୍ତି ଦେଇ ପୁଣି ଦିଅ ପ୍ରଭୁ, ଅନ୍ୟ ବର ॥୧୦୮ (ଖ)॥
ତୁମ୍ଭ ମାୟାଧୀନ ଜଡ଼ ଜୀବ ଏହି ଭୁଲି ଭ୍ରମଇ ସଂତତ ।
ଏହାର ଉପରେ ନ କରନ୍ତୁ କୋପ, କୃପାସିନ୍ଧୁ ଭଗବନ୍ତ ॥୧୦୮ (ଗ)॥
ଏହା ପ୍ରତି ଏବେ କରୁଣା କରନ୍ତୁ, ଶିବ ଦୀନ-ଦୟାପାଳ ।
ଶାପ ଅନୁଗ୍ରହ ହେଉ ଯେ ପ୍ରକାର ନାଥ, ଭୋଗି ସ୍ୱଳ୍ପକାଳ ॥୧୦୮ (ଘ)॥

---

ବାର୍ଦ୍ଧକ୍ୟ ଓ ଜନ୍ମ-ମୃତ୍ୟୁର ଦୁଃଖ-ସମୂହରେ ବାରମ୍ବାର ସନ୍ତପ୍ତ ମୋ ପରି ଦୁଃଖୀଙ୍କୁ ରକ୍ଷା କରନ୍ତୁ । ହେ ଈଶ୍ୱର ! ହେ ଶମ୍ଭୋ ! ମୁଁ ଆପଣଙ୍କୁ ନମସ୍କାର କରୁଅଛି ।" ॥ ୮ ॥ ଶ୍ଲୋକାର୍ଥ—ଭଗବାନ୍ ରୁଦ୍ରଙ୍କ ଏହି ସ୍ତୁତି ଅଷ୍ଟକ ସେହି ଶଙ୍କରଙ୍କ ପରିତୋଷ ନିମନ୍ତେ ବ୍ରାହ୍ମଣଙ୍କ ଦ୍ୱାରା ଉକ୍ତ ହେଲା । ଯେଉଁ ମନୁଷ୍ୟମାନେ ଏହାକୁ ଭକ୍ତିପୂର୍ବକ ପଢ଼ନ୍ତି, ସେମାନଙ୍କ ପ୍ରତି ଭଗବାନ୍ ଶମ୍ଭୁ ପ୍ରସନ୍ନ ହୁଅନ୍ତି ॥ ୯ ॥ ଦୋହା—ସର୍ବଜ୍ଞ ଶିବ ବିନତି ଶୁଣିଲେ ଏବଂ ବ୍ରାହ୍ମଣଙ୍କ ପ୍ରେମ ଦେଖିଲେ । ସେତିକିବେଳେ ମନ୍ଦିରରେ ଆକାଶବାଣୀ ଶୁଣାଗଲା—ହେ ଦ୍ୱିଜବର ! ବର ମାଗ ॥ ୧୦୮ (କ) ॥ ବ୍ରାହ୍ମଣ କହିଲେ, "ହେ ପ୍ରଭୋ ! ଯଦି ଆପଣ ମୋ ପ୍ରତି ପ୍ରସନ୍ନ ଥାଆନ୍ତି ଏବଂ ହେ ନାଥ ! ଯଦି ଏହି ଦୀନ ପ୍ରତି ଆପଣଙ୍କର ସ୍ନେହ ଥାଏ, ତେବେ ପ୍ରଥମେ ଏହାକୁ ଆପଣଙ୍କ ଚରଣ-ଭକ୍ତି ଦେଇ ତଦନନ୍ତର ଅନ୍ୟ ବର ଦିଅନ୍ତୁ ॥ ୧୦୮ (ଖ) ॥ ହେ ପ୍ରଭୋ ! ଏହି ଅଜ୍ଞାନୀ ଜୀବ ଆପଣଙ୍କ ମାୟାର ବଶବର୍ତ୍ତୀ ହୋଇ ନିରନ୍ତର

ଏହ୍ନି କର ହୋଇ ପରମ କଲ୍ୟାନା । ସୋଇ କରହୁ ଅବ କୃପାନିଧାନା ॥
ବିପ୍ର ଗିରା ସୁନି ପରହିତ ସାନୀ । ଏବମସ୍ତୁ ଇତି ଭଇ ନଭବାନୀ ॥୧॥
ଜଦପି କୀହ୍ନ ଏହିଁ ଦାରୁନ ପାପା । ମେଁ ପୁନି ଦୀହ୍ନି କୋପ କରି ସାପା ॥
ତଦପି ତୁହ୍ମାରି ସାଧୁତା ଦେଖୀ । କରିହଉଁ ଏହି ପର କୃପା ବିସେଷୀ ॥୨॥
ଛମାସୀଲ ଜେ ପର ଉପକାରୀ । ତେ ଦ୍ୱିଜ ମୋହି ପ୍ରିୟ ଜଥା ଖରାରୀ ॥
ମୋର ଶ୍ରାପ ଦ୍ୱିଜ ବ୍ୟର୍ଥ ନ ଜାଇହି । ଜନ୍ମ ସହସ ଅବସ୍ୟ ୟହ ପାଇହି ॥୩॥
ଜନମତ ମରତ ଦୁସହ ଦୁଖ ହୋଈ । ଏହି ସ୍ୱଲ୍ପଉ ନହିଁ ବ୍ୟାପିହି ସୋଈ ॥
କୱନେଉଁ ଜନ୍ମ ମିଟିହି ନହିଁ ଗ୍ୟାନା । ସୁନହି ସୂଦ୍ର ମମ ବଚନ ପ୍ରୱାନା ॥୪॥
ରଘୁପତିପୁରୀଁ ଜନ୍ମ ତବ ଭୟଊ । ପୁନି ତେଁ ମମ ସେବା ମନ ଦୟଊ ॥
ପୁରି ପ୍ରଭାବ ଅନୁଗ୍ରହ ମୋରେଁ । ରାମ ଭଗତି ଉପଜିହି ଉର ତୋରେଁ ॥୫॥

ଏହାର ଯେପରି ହେବ ପରମ କଲ୍ୟାଣ । ତାହା ତୁମେ କର, ଶିବ କରୁଣାନିଧାନ ।
ପରହିତ-ସିକ୍ତ ବାଣୀ ବ୍ରାହ୍ମଣର ଶୁଣି । 'ଏବମସ୍ତୁ' ହେଲା ତେଣେ ନଭବାଣୀ ପୁଣି ॥୧॥
"ଯଦ୍ୟପି କରିଛି ଏହୁ ଭୟାନକ ପାପ । ସେହି ହେତୁ ଏହାକୁ ମୁଁ ଦେଲି ଅଭିଶାପ ॥
ତୁମର ସାଧୁତା ଦେଖି ହେଲି ବଶୀଭୂତ । କରିବି ଏହାକୁ କୃପା ନିଶ୍ଚେ ମୁଁ ବହୁତ ॥୨॥
ଦ୍ୱିଜ ! କ୍ଷମାଶୀଳ ଯେହୁ ପର ଉପକାରୀ । ସେହୁ ମୋର ପ୍ରିୟ ଅଟି ଯେସନେ ଖରାରି ॥
ମୋର ଅଭିଶାପ କେବେ ବିଫଳ ନୋହିବ । ସହସ୍ର ଜନ୍ମ ଅବଶ୍ୟ ଭବେ ଏ ପାଇବ ॥୩॥
କିନ୍ତୁ ଯେ ଦୁଃସହ ଦୁଃଖ ଜନମ ମରଣେ । ଏହାକୁ ବ୍ୟାପିବ ନାହିଁ, ରଖ ଏହା ମନେ ॥
କୌଣସି ଜନମେ ନ ତୁଟିବ ଏହା ଜ୍ଞାନ । ଶୁଣ ହେ ଶୂଦ୍ର ! ମୋହର ବଚନ ପ୍ରମାଣ ॥୪॥
ଶ୍ରୀରାମପୁରୀରେ ହେଲା ତୋ ଜନ୍ମ ପ୍ରଥମେ । ପୁଣି ଲଗାଇଲୁ ମନ ମୋ ସେବା-କରମେ ॥
ପୁରୀର ମହିମା ପୁଣି ମୋର କୃପାବଶ । ହୃଦୟେ ତୋ ରାମଭକ୍ତି ଜନ୍ମିବ ଅବଶ୍ୟ ॥୫॥

ତୁମି ବୁଲୁଛି । ହେ କୃପାସାଗର ଭଗବାନ୍ ! ତାହା ଉପରେ କ୍ରୋଧ କରନ୍ତୁ ନାହିଁ ॥ ୧୦୮ (ଗ) ॥ ହେ ଦୀନ-ଦୟାଳୁ ଶଙ୍କର ! ବର୍ତ୍ତମାନ ଏହା ପ୍ରତି କୃପା କରନ୍ତୁ, ଯାହା ଫଳରେ ହେ ନାଥ ! ଅତ୍ୟଳ୍ପ ସମୟରେ ଏହା ପ୍ରତି ଦଉ ଆପଣଙ୍କ ଅଭିଶାପ ଅନୁଗ୍ରହ ହୋଇଯାଉ ॥ ୧୦୮ (ଘ) ॥ ଚୌପାଇ :—ହେ କୃପାନିଧାନ ! ଏବେ ଯଦ୍ୱାରା ଏହାର ପରମ କଲ୍ୟାଣ ହେବ, ତାହାହିଁ କରନ୍ତୁ ।" ପରହିତ-ସିକ୍ତ ବ୍ରାହ୍ମଣଙ୍କ ବାଣୀ ଶୁଣି ଆକାଶବାଣୀ ହେଲା—"ଏବମସ୍ତୁ ।" (ଏହାହିଁ ହେଉ) ॥ ୧ ॥ ଏ ଭୟାନକ ପାପ କରିଅଛି ଏବଂ ମୁଁ କ୍ରୋଧ ସହକାରେ ଏହାକୁ ଅଭିଶାପ ଦେଇଅଛି; ତଥାପି ତୁମ ସାଧୁତା ଦେଖି ମୁଁ ଏହା ପ୍ରତି ବିଶେଷ କୃପା କରିବି ॥ ୨ ॥ ହେ ଦ୍ୱିଜ ! ଯେଉଁମାନେ କ୍ଷମାଶୀଳ ଏବଂ ପରୋପକାରୀ ହୁଅନ୍ତି, ସେହିମାନେ ଖରାରି ଶ୍ରୀରାମଚନ୍ଦ୍ରଙ୍କ ପରି ମୋର ପ୍ରିୟ । ହେ ଦ୍ୱିଜ ! ମୋର ଅଭିଶାପ ବ୍ୟର୍ଥ ଯିବନାହିଁ । ଏ ହଜାର ଜନ୍ମ ଅବଶ୍ୟ ପାଇବ ॥ ୩ ॥ କିନ୍ତୁ ଜନ୍ମମରଣରେ ଯେଉଁ ଦୁଃସହ ଦୁଃଖ ହୁଏ,

ସୁନୁ ମମ ବଚନ ସତ୍ୟ ଅବ ଭାଈ । ହରିତୋଷନ ବ୍ରତ ଦ୍ୱିଜ ସେବକାଈ ॥
ଅବ ଜନି କରହି ବିପ୍ର ଅପମାନା । ଜାନେସୁ ସନ୍ତ ଅନନ୍ତ ସମାନା ॥୬॥
ଇନ୍ଦ୍ର କୁଲିସ ମମ ସୂଲ ବିସାଲା । କାଲଦଣ୍ଡ ହରି ଚକ୍ର କରାଲା ॥
ଜୋ ଇନ୍ହ କର ମାରା ନହିଁ ମରଈ । ବିପ୍ର ଦ୍ରୋହ ପାବକ ସୋ ଜରଈ ॥୭॥
ଅସ ବିବେକ ରାଖେହୁ ମନ ମାହୀଁ । ତୁମ୍ହ କହଁ ଜଗ ଦୁର୍ଲଭ କଛୁ ନାହୀଁ ॥
ଔରଉ ଏକ ଆସିଷା ମୋରୀ । ଅପ୍ରତିହତ ଗତି ହୋଇହି ତୋରୀ ॥୮॥
ସୁନି ସିବ ବଚନ ହରଷି ଗୁର ଏବମସ୍ତୁ ଇତି ଭାଷି ।
ମୋହି ପ୍ରବୋଧି ଗୟଉ ଗୃହ ସମ୍ଭୁ ଚରନ ଉର ରାଖି ॥୧୦୯(କ)॥
ପ୍ରେରିତ କାଲ ବିନ୍ଧ୍ୟ ଗିରି ଜାଇ ଭୟଉଁ ମୈଁ ବ୍ୟାଲ ।
ପୁନି ପ୍ରୟାସ ବିନୁ ସୋ ତନୁ ତଜେଉଁ ଗଏଁ କଛୁ କାଲ ॥୧୦୯(ଖ)॥

---

ଶୁଣ ହେ ଭାଇ ! ମୋହର ବଚନ ଏ ସତ । ଦ୍ୱିଜ-ସେବା ହରିଭକ୍ତି ପାଇଁ ଦୃଢବ୍ରତ ॥
ଆଜଠୁ କରିବୁ ନାହିଁ ଦ୍ୱିଜେ ଅପମାନ । ସନ୍ତଙ୍କୁ ବୁଝିବୁ ତୁହି ଅନନ୍ତ ସମାନ ॥୬॥
ଇନ୍ଦ୍ରଙ୍କ କୁଲିଶ, ମୋର ତ୍ରିଶୂଳ ବିଶାଳ । କାଳଦଣ୍ଡ ଅବା ଚକ୍ର ହରିଙ୍କ କରାଳ ॥
ମାରିଲେ କି ମରି ନ ପାରଇ ନର ଯେହୁ । ଏବା ବିପ୍ରଦ୍ରୋହାନଳେ ଭସ୍ମ ହୁଏ ସେହୁ ॥୭॥
ମନରେ ରଖିବୁ ତୁମ୍ଭି ଏମନ୍ତ ବିବେକ । ନ ହୋଇବ ବସ୍ତୁ ଭବେ ଦୁର୍ଲଭ ବି ଏକ ॥
ଆଉ ଗୋଟିଏ ଆଶିଷ ତୋ ପ୍ରତି ମୋହର । ସର୍ବତ୍ର ହୋଇବ ଗତି ଅବାଧ ତୋହର ॥୮॥
ନଭ ଶିବ ବାଣୀ ଶୁଣି 'ଏବମସ୍ତୁ' କହି ଗୁରୁ ହର୍ଷଭରେ ।
ପ୍ରବୋଧିଣ ମୋତେ ଗଲେ ଗୃହେ ଶିବ-ପଦ ରଖି ହୃଦୟରେ ॥୧୦୯(କ)॥
କାଳ ପ୍ରେରଣାରେ ଯାଇ ବିନ୍ଧ୍ୟାଚଳେ ଜନମିଲି ହୋଇ ବ୍ୟାଳ ।
ପୁଣି ଅନାୟାସେ ତେଜିଲି ସେ ଦେହ ବିତିଯା'ନ୍ତେ କିଛି କାଳ ॥୧୦୯(ଖ)॥

---

ତାହାକୁ ଜନ୍ମ ମୃତ୍ୟୁର ଦୁଃଖ ଟିକିଏ ହେଲେ ବ୍ୟାପିବ ନାହିଁ ଏବଂ କୌଣସି ଜନ୍ମରେ ଏହାର ଜ୍ଞାନ ଲୋପ ପାଇବ ନାହିଁ । ହେ ଶୂଦ୍ର ! ମୋର ପ୍ରାମାଣିକ (ସତ୍ୟ) ବଚନ ଶୁଣ ॥ ୪ ॥ ପ୍ରଥମେ ତ ତୋର ଜନ୍ମ ଶ୍ରୀ ରଘୁନାଥଙ୍କ ପୁରୀରେ ହେଲା । ପୁଣି ତୁ ମୋ ସେବାରେ ମନ ଲଗାଇଲୁ । ପୁରୀର ପ୍ରଭାବ ଓ ମୋର କୃପା ଯୋଗେ ତୋ ହୃଦୟରେ ରାମଭକ୍ତି ଉତ୍ପନ୍ନ ହେବ ॥ ୫ ॥ ହେ ଭାଇ ! ଏବେ ମୋର ସତ୍ୟ ବଚନ ଶୁଣ । ଦ୍ୱିଜସେବା ହିଁ ଭଗବାନଙ୍କ ସନ୍ତୋଷପ୍ରଦ ବ୍ରତ । ଏଣିକି କଦାପି ବ୍ରାହ୍ମଣଙ୍କର ଅପମାନ କରିବୁ ନାହିଁ । ସାଧୁସନ୍ଥମାନଙ୍କୁ ଅନନ୍ତ ଶ୍ରୀ ଭଗବାନଙ୍କ ସମାନ ଜାଣିବୁ ॥ ୬ ॥ ଇନ୍ଦ୍ରଙ୍କ ବଜ୍ର, ମୋର ବିଶାଳ ତ୍ରିଶୂଳ, କାଳର ଦଣ୍ଡ ଓ ଶ୍ରୀହରିଙ୍କ କରାଳ ଚକ୍ରରେ ମରିଲା ଯେ ମରେନାହିଁ, ସେ ବିପ୍ରଦ୍ରୋହାଗ୍ନିରେ ଭସ୍ମୀଭୂତ ହୋଇଯାଏ ॥ ୭ ॥ ଏହିପରି ବିଚାର-ବିବେକ ମନରେ ରଖ । ତାହା ହେଲେ ତୋ ନିମନ୍ତେ ଜଗତରେ କୌଣସି ବସ୍ତୁ ଦୁର୍ଲଭ ହେବନାହିଁ । ମୋର ଆହୁରି ମଧ୍ୟ ଗୋଟିଏ ଆଶୀର୍ବାଦ

ଜୋଇ ତନୁ ଧରଉଁ ତଜଉଁ ପୁନି ଅନାୟାସ ହରିଜାନ ।
ଜିମି ନୂତନ ପଟ ପହିରଇ ନର ପରିହରଇ ପୁରାନ ॥୧୦୯(ଗ)॥
ସିବଁ ରାଖୀ ଶ୍ରୁତି ନୀତି ଅରୁ ମୈଁ ନହିଁ ପାଵା କଲେସ ।
ଏହିବିଧି ଧରେଉଁ ବିବିଧ ତନୁ ଜ୍ଞାନ ନ ଗୟଉ ଖଗେସ ॥୧୦୯(ଘ)॥
ତ୍ରିଜଗ ଦେଵ ନର ଜୋଇ ତନୁ ଧରଉଁ । ତହଁ ତହଁ ରାମଭଜନ ଅନୁସରଉଁ ॥
ଏକ ସୂଲ ମୋହି ବିସର ନ କାଊ । ଗୁର କର କୋମଲ ସୀଲ ସୁଭାଊ ॥୧॥
ଚରମ ଦେହ ଦ୍ୱିଜ କୈ ମୈଁ ପାଈ । ସୁର ଦୁର୍ଲଭ ପୁରାନ ଶ୍ରୁତି ଗାଈ ॥
ଖେଲଉଁ ତହୁଁ ବାଲକନ୍ହ ମୀଲା । କରଉଁ ସକଲ ରଘୁନାୟକ ଲୀଲା ॥୨॥

---

ଯେ ଦେହ ଧରଇ ତାହାକୁ ତେଜଇ ଅନାୟାସେ ମକ୍ଷିବର ।
ଯେସନେ ନବୀନ ବସନ ପିନ୍ଧଣ ତେଜେ ପୁରାତନ ନର ॥୧୦୯(ଗ)॥
ଶ୍ରୁତି ନୀତି, ହର ରଖିଲେ ଆଦର ମୁହିଁ ନ ଲଭିଲି କ୍ଲେଶ ।
ଧରିଲି ଏମନ୍ତେ ତନୁ ନାନା ମତେ ଜ୍ଞାନ ନ ଗଲା, ଖଗେଶ ॥୧୦୯(ଘ)॥
ତିର୍ଯ୍ୟକ ଯୋନିରେ ଯେଉଁଯେଉଁ ତନୁ ଧରେ । ଶ୍ରୀରାମ ଭଜନ ତହିଁ ତହିଁ ଅନୁସରେ ॥
ଭୁଲି ମୁଁ ପାରିଲି ନାହିଁ କାହିଁ ଏକ ଶୂଳ । ଦ୍ୱିଜ ଗୁରୁଙ୍କର ଶୀଳ ସ୍ୱଭାବ ମୃଦୁଳ ॥୧॥
ଅନ୍ତକୁ ବିପ୍ର ଶରୀର କଲି ମୁଁ ଧାରଣ । ଦେବତା-ଦୁର୍ଲ୍ଲଭ ଶ୍ରୁତି ପୁରାଣ ବର୍ଣ୍ଣିନ ॥
ସେ ଶରୀରେ ବାଳକଙ୍କ ସଙ୍ଗେ ଖେଳୁଥିଲି । ସକଳ ରଘୁନାଥଙ୍କ ଲୀଳା କରୁଥିଲି ॥୨॥

---

ହେଉନ୍ତୁ—ସର୍ବଦା ତୋର ଅବାଧ ଗତି ହେବ ।" ॥ ୮ ॥ ଦୋହା '—ଆକାଶବାଣୀ ଯୋଗେ ଶିବଙ୍କ ବଚନ ଶୁଣି ଗୁରୁ ଆନନ୍ଦିତ ହୋଇ "ତଥାସ୍ତୁ" କହିଲେ ଏବଂ ମୋତେ ବହୁତ ବୁଝାଇ ଶିବଙ୍କ ଚରଣଯୁଗଳ ହୃଦୟରେ ଧାରଣ କରି ନିଜ ଘରକୁ ଗଲେ ॥ ୧୦୯ (କ) ॥ କାଳର ପ୍ରେରଣାରେ ମୁଁ ବିନ୍ଧ୍ୟାଚଳରେ ଯାଇ ସର୍ପ ହେଲି । ପୁଣି କିଛି କାଳ ଅତିବାହିତ ହେବା ପରେ ଅନାୟାସରେ ମୁଁ ସେହି ଶରୀର ତ୍ୟାଗ କରିଦେଲି ॥ ୧୦୯ (ଖ) ॥ ହେ ହରିବାହନ ! ମୁଁ ଯେ କୌଣସି ଶରୀର ଧାରଣ କରୁଥାଏ, ତାହାକୁ ଅନାୟାସରେ ସେହିପରି ସୁଖରେ ତ୍ୟାଗ କରି ଦେଉଥାଏ, ଯେପରି ମନୁଷ୍ୟ ପୁରାତନ ବସ୍ତ୍ର ତ୍ୟାଗ କରି ନୂତନ ପରିଧାନ କରେ ॥ ୧୦୯ (ଗ) ॥ ଶିବ ବେଦମର୍ଯ୍ୟାଦା ରକ୍ଷା କଲେ ଏବଂ ମୁଁ କ୍ଲେଶ ମଧ୍ୟ ପାଇଲି ନାହିଁ । ହେ ପକ୍ଷିରାଜ ! ଏହିପରି ମୁଁ ବହୁତ ଶରୀର ଧାରଣ କଲି । କିନ୍ତୁ ମୋର ଜ୍ଞାନ ଲୋପ ପାଇ ନ ଥାଏ ॥ ୧୦୯ (ଘ) ॥ ଚୌପାଈ —ମୁଁ ତିର୍ଯ୍ୟକ ଯୋନି (ପଶୁପକ୍ଷୀ , ଦେବତା ବା ମନୁଷ୍ୟ, ଯେ କୌଣସି ଶରୀର ଧାରଣ କରୁଥାଏ, ସେହି ସେହି ଶରୀରରେ ଶ୍ରୀରାମଙ୍କ ଭଜନ ଅନୁସରଣ କରେ । ଏହି ରୂପେ ମୁଁ ଅବଶ୍ୟ ସୁଖ ଲାଭ କରୁଥାଏ । କିନ୍ତୁ ଗୋଟିଏ କଷ୍ଟ ମୋର ସବୁବେଳେ ରହିଥାଏ । ଗୁରୁଙ୍କର କୋମଳ ଓ ସୁଶୀଳ ସ୍ୱଭାବ ମୋର ମନରୁ କେବେ ଯାଉ ନ ଥାଏ । ଅର୍ଥାତ୍ ଏପରି କୋମଳସ୍ୱଭାବ ଓ ଦୟାଳୁ

ପ୍ରୌଢ଼ ଭଏଁ ମୋହି ପିତା ପଢ଼ାୱା । ସମୁଝଉଁ ସୁନଉଁ ଗୁନଉଁ ନହିଁ ଭାୱା ॥
ମନ ତେଁ ସକଲ ବାସନା ଭାଗୀ । କେବଲ ରାମ ଚରନ ଲୟ ଲାଗୀ ॥୩॥
କହୁ ଖଗେସ ଅସ କୱନ ଅଭାଗୀ । ଖରୀ ସେବ ସୁରଧେନୁହି ତ୍ୟାଗୀ ॥
ପ୍ରେମମଗନ ମୋହି କଛୁ ନ ସୋହାଈ । ହାରେଉ ପିତା ପଢ଼ାଇ ପଢ଼ାଈ ॥୪॥
ଭଏ କାଲବସ ଜବ ପିତୁ ମାତା । ମୈଁ ବନ ଗୟଉଁ ଭଜନ ଜନତ୍ରାତା ॥
ଜହଁ ଜହଁ ବିପିନ ମୁନୀସ୍ୱର ପାୱଉଁ । ଆଶ୍ରମ ଜାଇ ଜାଇ ସିରୁ ନାୱଉଁ ॥୫॥
ବୂଝଉଁ ତିନ୍ହହି ରାମ ଗୁନ ଗାହା । କହହିଁ ସୁନଉଁ ହରଷିତ ଖଗନାହା ॥
ସୁନତ ଫିରଉଁ ହରିଗୁନ ଅନୁବାଦା । ଅବ୍ୟାହତ ଗତି ସମ୍ଭୁ ପ୍ରସାଦା ॥୬॥

---

ପଢାଇଲେ ପିତା ମୋତେ ପୌଢ ହେବାପରେ । ଶୁଣେ, ଗୁଣେ ବୁଝେ ଭଲ ନ ଲାଗେ ଅନ୍ତରେ ॥
ମନ ମଧ୍ୟୁ ଦୂର ହେଲା ବାସନା ସକଳ । ରାମ ପଦାମ୍ବୁଜେ ଲୟ ଲାଗିଲା କେବଳ ॥୩॥
କହ କେଉଁ ହତଭାଗ୍ୟ ଖଗେଶ, ଏପରି । କାମଧେନୁ ତ୍ୟାଗି ଯେହୁ ସେବା କରେ ଖରୀ ॥
ପ୍ରେମ-ମଗ୍ନ, ଭଲ କିଛି ନ ଲାଗେ ମନକୁ । ପଢାଇ ପଢାଇ ପିତା ହାରିଲେ ଶେଷକୁ ॥୪॥
ହୋଇଲେ କାଳବଶ ଯେବେ ପିତା ମାତା । ବନକୁ ମୁଁ ଗଲି ଭଜିବାକୁ ଜନତ୍ରାତା ॥
ଯହିଁ ଯହିଁ ବନ ମଧ୍ୟେ ମୁନୀଶ୍ୱର ପାଏ । ଆଶ୍ରମେ ଯାଇ ଯାଇଣ ମସ୍ତକ ନୁଆଁଏ ॥୫॥
ରଘୁପତି ଗୁଣ କଥା ତାଙ୍କୁ ପଚ୍ଚାରଇ । କହନ୍ତି ସେ ଖଗନାଥ, ହର୍ଷେ ମୁଁ ଶୁଣଇ ॥
ଶୁଣି ବାହୁଡଇ ହରିଗୁଣ ଅନୁବାଦେ । ଅବ୍ୟାହତ ଗତି ମୋର ମହେଶ ପ୍ରସାଦେ ॥୬॥

---

ଗୁରୁଙ୍କୁ ମୁଁ ଅପମାନିତ କରିଥିଲି ବୋଲି ମୋ ମନରେ ସର୍ବଦା ଦୁଃଖ ରହୁଥାଏ ॥ ୧ ॥ ମୁଁ ଶେଷରେ ବ୍ରାହ୍ମଣ ଶରୀର ପାଇଲି । ଏହି ଶରୀର ଦେବତାମାନଙ୍କୁ ଦୁର୍ଲ୍ଲଭ ବୋଲି ପୁରାଣ ଓ ବେଦମାନେ କହନ୍ତି । ବ୍ରାହ୍ମଣ ଶରୀରରେ ମୁଁ ବାଳକମାନଙ୍କ ସଙ୍ଗରେ ମିଳି ଖେଳୁଥାଏ ଏବଂ ସେତେବେଳେ ଶ୍ରୀ ରଘୁନାଥଙ୍କ ସମସ୍ତ ଲୀଳା କରୁଥାଏ ॥ ୨ ॥ ବୟଃପ୍ରାପ୍ତ ହେବା ପରେ ପିତା ମୋତେ ପଢାଇବାକୁ ଲାଗିଲେ । ମୁଁ ବୁଝେ, ଶୁଣେ ଓ ବିଚାର କରେ । କିନ୍ତୁ ପଢିବାକୁ ମୋତେ ଭଲ ଲାଗୁ ନ ଥାଏ । ମୋର ମନର ସମସ୍ତ ବାସନା ଚାଲିଗଲା । କେବଳ ଶ୍ରୀରାମଙ୍କ ଚରଣ-ଯୁଗଳରେ ଧ୍ୟାନ ଲାଗିଗଲା ॥ ୩ ॥ ହେ ଗରୁଡ ! କୁହନ୍ତୁ, ଏପରି ହତଭାଗ୍ୟ କିଏ—ଯେ କାମଧେନୁକୁ ଛାଡି ଗଧୀର ସେବା କରିବ ? ପ୍ରେମରେ ମଗ୍ନ ରହିବା ହେତୁ ମୋତେ ଆଉ କିଛି ରୁଚିକର ବୋଧ ହେଉ ନ ଥାଏ । ପିତା ପଢାଇ ପଢାଇ ହାରିଗଲେ ॥ ୪ ॥ ଯେତେବେଳେ ପିତାମାତା କାଳର ବଶ ହେଲେ, ସେତେବେଳେ ମୁଁ ଭକ୍ତରକ୍ଷକ ଶ୍ରୀରାମଙ୍କ ଭଜନ କରିବା ନିମନ୍ତେ ବନକୁ ଚାଲିଗଲି । ବନରେ ଯେଉଁ ଯେଉଁ ସ୍ଥାନରେ ମୁନୀଶ୍ୱରମାନଙ୍କ ଆଶ୍ରମ ଦେଖେ, ସେହି ସେହି ସ୍ଥାନକୁ ଯାଇ ସେମାନଙ୍କୁ ପ୍ରଣାମ କରେ ॥ ୫ ॥ ହେ ଗରୁଡ ! ସେମାନଙ୍କୁ ମୁଁ ଶ୍ରୀରାମଙ୍କ ଗୁଣଗାଥା ପଚାରେ । ସେମାନେ କହନ୍ତି ଏବଂ ମୁଁ ଆନନ୍ଦିତ ହୋଇ ଶୁଣେ । ଏହି ରୂପେ ମୁଁ ସଦାସର୍ବଦା ଶ୍ରୀହରିଙ୍କ ଗୁଣାନୁବାଦ

ଛୁଟୀ ତ୍ରିବିଧି ଈଷନା ଗାଢ଼ୀ । ଏକ ଲାଲସା ଉର ଅତି ବାଢ଼ୀ ॥
ରାମ ଚରନ ବାରିଜ ଜବ ଦେଖୌଁ । ତବ ନିଜ ଜନ୍ମ ସଫଲ କରି ଲେଖୌଁ ॥୭॥
ଜେହି ପୂଁଛଉଁ ସୋଇ ମୁନି ଅସ କହଈ । ଈସ୍ୱର ସର୍ବଭୂତମୟ ଅହଈ ॥
ନିର୍ଗୁନ ମତ ନହିଁ ମୋହି ସୋହାଈ । ସଗୁନ ବ୍ରହ୍ମ ରତି ଉର ଅଧିକାଈ ॥୮॥

ଗୁର କେ ବଚନ ସୁରତି କରି ରାମ ଚରନ ମନୁ ଲାଗ ।
ରଘୁପତି ଜସ ଗାୱତ ଫିରଉଁ ଛନ ଛନ ନବ ଅନୁରାଗ ॥୧୧୦(କ)॥
ମେରୁ ସିଖର ବଟ ଛାୟାଁ ମୁନି ଲୋମସ ଆସୀନ ।
ଦେଖି ଚରନ ସିରୁ ନାୟଉଁ ବଚନ କହେଉଁ ଅତି ଦୀନ ॥୧୧୦(ଖ)॥
ସୁନି ମମ ବଚନ ବିନୀତ ମୃଦୁ ମୁନି କୃପାଲ ଖଗରାଜ ।
ମୋହି ସାଦର ପୂଁଛତ ଭଏ ଦ୍ୱିଜ ଆୟହୁ କେହି କାଜ ॥୧୧୦(ଗ)॥

---

ଅପସରିଲା ତ୍ରିବିଧ ଗାଢ଼ ଅଭିଳାଷା । ବଢ଼ିଲା ହୃଦୟ ମଧ୍ୟେ ଏହି ଏକ ଆଶା ॥
ରାମ ଚରଣ-ପଙ୍କଜ ବିଲୋକନ୍ତି ଯେବେ । ସଫଳ ନିଜ ଜନମ ମଣନ୍ତି ମୁଁ ତେବେ ॥୭॥
ଯାହାଙ୍କୁ ପୁଚ୍ଛେ, ସେ ମୁନି ଏମନ୍ତ କହନ୍ତି । ସର୍ବ-ଭୂତ-ମୟ ସେହି ଈଶ୍ୱର ଅଟନ୍ତି ॥
ନିର୍ଗୁଣ ମତ ପସନ୍ଦ ମୋତେ ନ ଲାଗଇ । ସଗୁଣ ବ୍ରହ୍ମରେ ପ୍ରୀତି ଅଧିକ ହୁଅଇ ॥୮॥

ଗୁରୁଙ୍କ ବଚନ ସ୍ମରଣ କରିଣ ରାମ ପଦେ ଲାଗେ ମନ ।
ରଘୁପତି ଯଶ ଗାଇ ଗାଇ ଭ୍ରମେ ନବ ସ୍ନେହେ କ୍ଷଣ କ୍ଷଣ ॥୧୧୦(କ)॥
ସୁମେରୁ ଶିଖରେ ବଟ ଛାୟା ତଳେ ଲୋମଶ ମୁନି ଆସୀନ ।
ବିଲୋକି ଚରଣେ ପ୍ରଣାମ କରିଣ ଭାଷିଲି ବଚନ ଦୀନ ॥୧୧୦(ଖ)॥
ମୁନି କୃପା-ମୟ ଶୁଣି ସବିନୟ ମୋ ବଚନ, ଖଗ-କେତୁ !
ପଚାରିଲେ ମୋତେ ଆଦର ସହିତେ ଦ୍ୱିଜ ଆସିଲ କି ହେତୁ ॥୧୧୦(ଗ)॥

---

ଶୁଣି ଶୁଣି ବୁଲୁଥାଏ । ଶିବଙ୍କ କୃପାରୁ ମୋର ସର୍ବତ୍ର ଅବାଧିତ ଗତି ଥିଲା ॥ ୬ ॥ ମୋ ମନରୁ ପୁତ୍ର, ଧନ ଓ ମାନସମ୍ମାନ—ଏହି ତିନି ପ୍ରକାରର ପ୍ରବଳ ବାସନା ଦୂର ହୋଇଗଲା ଏବଂ ହୃଦୟରେ ଏହି ଗୋଟିଏ ମାତ୍ର ଲାଲସା ବଢ଼ିଗଲା ଯେ, ଯେତେବେଳେ ଶ୍ରୀରାମଙ୍କ ଚରଣ-କମଳ ଦର୍ଶନ କରିବି, ସେତିକିବେଳେ ଯାଇ ନିଜର ଜନ୍ମ ସଫଳ ହେଲା ବୋଲି ବୁଝିବି ॥ ୭ ॥ ଯାହାଙ୍କୁ ମୁଁ ପଚାରେ, ସେ କହନ୍ତି—"ଈଶ୍ୱର ସର୍ବଭୂତମୟ ।" ଏହି ନିର୍ଗୁଣ ମତ ମୋତେ ରୁଚିକର ବୋଧ ହେଉ ନ ଥାଏ । ହୃଦୟରେ ସଗୁଣ ବ୍ରହ୍ମଙ୍କ ପ୍ରତି ପ୍ରୀତି ବଢ଼ୁଥାଏ ॥ ୮ ॥ ଦୋହା '—ଗୁରୁଙ୍କ ବଚନ ସ୍ମରଣ କରି ମୋର ମନ ଶ୍ରୀରାମଙ୍କ ଚରଣରେ ଲାଗିଗଲା । ମୁଁ ପ୍ରତିକ୍ଷଣ ନୂଆ ନୂଆ ଅନୁରାଗ ପାଇ ରଘୁନାଥଙ୍କ ଯଶ ଗାଇ ବୁଲୁଥାଏ ॥ ୧୧୦ (କ) ॥ ସୁମେରୁ ପର୍ବତର ଶିଖର ଦେଶରେ ବଟବୃକ୍ଷର ଛାୟାରେ ଲୋମଶ ମୁନି ବସିଥିଲେ । ତାଙ୍କୁ ଦେଖି ମୁଁ ତାଙ୍କ ଚରଣରେ ପ୍ରଣାମ କଲି ଏବଂ ଅତି ଦୀନ ବଚନ କହିଲି ॥ ୧୧୦ (ଖ) ॥ ହେ

ତବ ମୈଁ କହା କୃପାନିଧି ତୁମ୍ହ ସର୍ବଜ୍ଞ ସୁଜାନ ।
ସଗୁନ ବ୍ରହ୍ମ ଅବରାଧନ ମୋହି କହହୁ ଭଗବାନ ॥୧୧୦(ଘ)॥
ତବ ମୁନୀସ ରଘୁପତି ଗୁନ ଗାଥା । କହେ କଛୁକ ସାଦର ଖଗନାଥା ॥
ବ୍ରହ୍ମଜ୍ଞାନ ରତ ମୁନି ବିଜ୍ଞାନୀ । ମୋହି ପରମ ଅଧିକାରୀ ଜାନୀ ॥୧॥
ଲାଗେ କରନ ବ୍ରହ୍ମ ଉପଦେସା । ଅଜ ଅଦ୍ୱୈତ ଅଗୁନ ହୃଦୟେସା ॥
ଅକଲ ଅନୀହ ଅନାମ ଅରୂପା । ଅନୁଭବଗମ୍ୟ ଅଖଣ୍ଡ ଅନୂପା ॥୨॥
ମନ ଗୋତୀତ ଅମଲ ଅବିନାସୀ । ନିର୍ବିକାର ନିରବଧି ସୁଖରାସୀ ॥
ସୋ ତୈଁ ତାହି ତୋହି ନହିଁ ଭେଦା । ବାରି ବୀଚି ଇବ ଗାୱହିଁ ବେଦା ॥୩॥
ବିବିଧ ଭାଁତି ମୋହି ମୁନି ସମୁଝାୱା । ନିର୍ଗୁନ ମତ ମମ ହୃଦୟଁ ନ ଆୱା ॥
ପୁନି ମୈଁ କହେଉଁ ନାଇ ପଦ ସୀସା । ସଗୁନ ଉପାସନ କହହୁ ମୁନୀସା ॥୪॥

---

ତହୁଁ ମୁଁ କହିଲି ଶୁଣ ସୁପ୍ରବୀଣ, ସର୍ବଜ୍ଞ ଦୟା-ନିଧାନ ।
ସଗୁଣ ବ୍ରହ୍ମଙ୍କ ଆରାଧନା ମୋତେ କହ ମୁନି ଭଗବାନ ॥୧୧୦(ଘ)॥
ତହୁଁ ରଘୁପତି ଗୁଣ କଥା ମୁନିବର । ସାଦରେ କିଛି ବର୍ଣ୍ଣିନ କଲେ, ଖଗେଶ୍ୱର ॥
ବ୍ରହ୍ମ-ଜ୍ଞାନ-ରତ ସଦା ସେ ମୁନି ବିଜ୍ଞାନୀ । ହୃଦୟେ ମୋତେ ପରମ ଅଧିକାରୀ ଜାଣି ॥୧॥
ଦେବାକୁ ଆରମ୍ଭ କଲେ ବ୍ରହ୍ମ ଉପଦେଶ । ଅଗୁଣ, ଅଜ, ଅଦ୍ୱୈତ, ସର୍ବ-ହୃଦୟେଶ ॥
ଅକଳ, ଅନୀହ, ତଥା ଅନାମ ଅରୂପ । ଅନୁଭବ-ଗମ୍ୟ ସେହି ଅଖଣ୍ଡ ଅନୁପ ॥୨॥
ଇନ୍ଦ୍ରିୟ-ମନ-ଅତୀତ ଶୁଦ୍ଧ ଅବିନାଶୀ । ନିର୍ବିକାର ନିରବଧି ଚିଦାନନ୍ଦ-ରାଶି ॥
ସେହି ତୁହି, ତାର ତୋର ନାହିଁ କିଛି ଭେଦ । ଜଳ-କଲ୍ଲୋଳ ସଦୃଶ, ବଖାଣଇ ବେଦ ॥୩॥
ମୁନି ମୋତେ ବୁଝାଇଲେ ନାନାବିଧ ରକମ । ନିର୍ଗୁଣ ମତ ହୃଦୟେ ନ ଆସିଲା ମମ ॥
ଚରଣେ ପ୍ରଣମି ପୁଣି କହିଲି ଆବର । ସଗୁଣୋପାସନା ମୋତେ କହ, ମୁନିବର ॥୪॥

---

ପକ୍ଷିରାଜ ! ମୋର ଅତି ନମ୍ର ଓ କୋମଳ ବଚନ ଶୁଣି କୃପାଳୁ ମୁନି ମୋତେ ଆଦରରେ ପଚାରିବାକୁ ଲାଗିଲେ, "ହେ ବ୍ରାହ୍ମଣ ! ଆପଣ କି କାର୍ଯ୍ୟ ହେତୁ ଏଠାକୁ ଆସିଅଛନ୍ତି ?" ॥ ୧୧୦ (ଗ) ॥ ସେତେବେଳେ ମୁଁ କହିଲି, "ହେ କୃପାନିଧି ! ଆପଣ ସର୍ବଜ୍ଞ ଓ ସୁଜ୍ଞ । ହେ ଭଗବାନ୍ ! ମୋତେ ସଗୁଣ ବ୍ରହ୍ମ ଆରାଧନାର ପ୍ରଣାଳୀ କୁହନ୍ତୁ ॥୧୧୦(ଘ)॥ ଚୌପାଇ :—ହେ ପକ୍ଷିରାଜ ! ସେତେବେଳେ ମୁନୀଶ୍ୱର ଆଦରରେ ରଘୁନାଥଙ୍କ ଗୁଣ ବିଷୟରେ କେତୋଟି କଥା କହିଲେ । ତପରେ ସେ ବ୍ରହ୍ମଜ୍ଞାନପରାୟଣ ଓ ବିଜ୍ଞାନୀ ମୁନି ମୁଁ ଜ୍ଞାନର ପ୍ରକୃତ ଅଧିକାରୀ ବୋଲି ଜାଣିଲେ ॥୧॥ ସେ ମୋତେ ବ୍ରହ୍ମ-ଉପଦେଶ ଦେବାକୁ ଲାଗିଲେ । ସେ କହିଲେ—ବ୍ରହ୍ମ ଅଜନ୍ମା, ଅଦ୍ୱୈତ, ନିର୍ଗୁଣ ଓ ହୃଦୟର ନାଥ । ବୁଦ୍ଧି ଯୋଗେ ତାହାଙ୍କୁ କେହି କଳନା କରି ପାରିବ ନାହିଁ । ସେ ଅନୀହ (ଇଚ୍ଛାରହିତ), ଅନାମ (ନାମରହିତ), ଅରୂପ (ରୂପରହିତ); ଅନୁଭବ ଯୋଗେ ଜାଣିବାର ଯୋଗ୍ୟ, ଅଖଣ୍ଡ ଓ ଅନୁପମ ॥ ୨ ॥ ସେ ମନ ଓ ଇନ୍ଦ୍ରିୟମାନଙ୍କର

ରାମ ଭଗତି ଜଲ ମମ ମନ ମୀନା । କିମି ବିଲଗାଇ ମୁନୀସ ପ୍ରବୀନା ॥
ସୋଇ ଉପଦେଶ କହହୁ କରି ଦାୟା । ନିଜ ନୟନନ୍ହି ଦେଖୌଁ ରଘୁରାୟା ॥୫॥
ଭରି ଲୋଚନ ବିଲୋକି ଅଓ୍ୱଧେସା । ତବ ସୁନିହଉଁ ନିର୍ଗୁନ ଉପଦେସା ॥
ମୁନି ପୁନି କହି ହରିକଥା ଅନୂପା । ଖଣ୍ଡି ସଗୁନ ମତ ଅଗୁନ ନିରୂପା ॥୬॥
ତବ ମୈଁ ନିର୍ଗୁନ ମତ କର ଦୂରୀ । ସଗୁନ ନିରୂପଉଁ କରି ହଠ ଭୂରୀ ॥
ଉତ୍ତର ପ୍ରତିଉତ୍ତର ମୈଁ କୀହ୍ନା । ମୁନି ତନ ଭଏ କ୍ରୋଧ କେ ଚୀହ୍ନା ॥୭॥
ସୁନୁ ପ୍ରଭୁ ବହୁତ ଅବଜ୍ଞା କିଏଁ । ଉପଜ କ୍ରୋଧ ଗ୍ୟାନିହ୍ନ କେ ହିଏଁ ॥
ଅତି ସଂଘରଷନ ଜୌଁ କର କୋଈ । ଅନଲ ପ୍ରଗଟ ଚନ୍ଦନ ତେଁ ହୋଈ ॥୮॥

---

ରାମ ଭକ୍ତି-ଜଳ ମଧ୍ୟେ ମନ ମୋର ମୀନ । କେମନ୍ତେ ପୃଥକ ହେବ, ମୁନୀଶ ପ୍ରବୀଣ ॥
କରୁଣା ବହିଣ ସେହି ଉପଦେଶ କର । ନିଜ ନୟନେ ଦେଖିବି ଯେମନ୍ତେ ରଘୁବର ॥୫॥
ନେତ୍ର ପୂର୍ଣ୍ଣ କରି ଅବଲୋକି ଅବଧେଶ । ପଛକୁ ଶୁଣିବି ଆମି ନିର୍ଗୁଣୋପଦେଶ ॥
ମୁନି ପୁଣି ହରି କଥା ଅନୂପ କହିଲେ । ସଗୁଣେ ଖଣ୍ଡି ଅଗୁଣ ମତ ନିରୂପିଲେ ॥୬॥
ତହୁଁ ମୁଁ ତାଙ୍କ ନିର୍ଗୁଣ ମତକୁ କାଟିଣ । ସଗୁଣ ନିରୂପେ ହଠ ବହୁତ କରିଣ ॥
ଉତ୍ତର ପ୍ରତି ଉତ୍ତର କଲି ମୁଁ ଯହୁଁ । ମୁନି ଦେହେ କ୍ରୋଧ ଚିହ୍ନ ଦେଖାଗଲା ତହୁଁ ॥୭॥
ବହୁତ ଅବଜ୍ଞା କଲେ, ଶୁଣ, ସର୍ପାଶନ । ଜ୍ଞାନୀ ହୃଦେ ସୁଦ୍ଧା କ୍ରୋଧ ହୁଅଇ ଉତ୍ପନ୍ନ ॥
ଯେବେ କେହି ଅତିଶୟ ଘର୍ଷଣ କରଇ । ଚନ୍ଦନୁ ସୁଦ୍ଧା ଅନଳ ପ୍ରକଟ ହୁଅଇ ॥୮॥

---

ଈଶ୍ୱର, ନିର୍ମଳ, ଅବିନାଶୀ, ନିର୍ବିକାର, ଅସୀମ ଓ ସୁଖରାଶି । ବେଦମାନେ ଏହିପରି ଗାଆନ୍ତି—ସେହି ବ୍ରହ୍ମ ବା ବ୍ରହ୍ମ ସେହି (ତତ୍ତ୍ୱମସି), ଜଳ ଓ ଜଳଲହରୀ ପରି ତାଙ୍କ ଓ ତୋ ଭିତରେ କୌଣସି ପ୍ରଭେଦ ନାହିଁ ।" ॥୩॥ ମୁନି ମୋତେ ଅନେକ ପ୍ରକାରେ ବୁଝାଇଲେ । କିନ୍ତୁ ନିର୍ଗୁଣ ମତ ମୋର ହୃଦୟରେ ଜମିଲା ନାହିଁ । ମୁଁ ପୁଣି ମୁନିଙ୍କ ଚରଣରେ ଶିର ନୁଆଁଇ କହିଲି, "ହେ ମୁନୀଶ୍ୱର ! ମୋତେ ସଗୁଣ ବ୍ରହ୍ମଙ୍କ ଉପାସନା କଥା କୁହନ୍ତୁ ॥ ୪ ॥ ମୋ ମନ ରାମଭକ୍ତି-ଜଳରେ ମୀନ ହୋଇ ତହିଁରେ କ୍ରୀଡାରତ । ହେ ପ୍ରବୀଣ ମୁନୀଶ୍ୱର ! ଏପରି ଅବସ୍ଥାରେ ତାହା ତହିଁରୁ ଅଲଗା କିପରି ହୋଇପାରେ ? ଆପଣ ଦୟା କରି ମୋତେ ସେହି ଉପଦେଶ ଦିଅନ୍ତୁ, ଯାହା ଫଳରେ ମୁଁ ଶ୍ରୀ ରଘୁନାଥଙ୍କୁ ଆପଣା ନେତ୍ରରେ ଦେଖି ପାରିବି ॥ ୫ ॥ ପ୍ରଥମେ ନେତ୍ର ପୂରାଇ ଶ୍ରୀ ଅଯୋଧ୍ୟାନାଥଙ୍କୁ ଦେଖି ତତ୍ପରେ ନିର୍ଗୁଣ ଉପଦେଶ ଶୁଣିବି । ମୁନି ପୁଣି ଅନୁପମ ହରିକଥା କହିଲେ ଏବଂ ସଗୁଣ ମତ ଖଣ୍ଡନ କରି ନିର୍ଗୁଣର ନିରୂପଣ କଲେ ॥ ୬ ॥ ସେତେବେଳେ ମୁଁ ନିର୍ଗୁଣ ମତକୁ କାଟି ବହୁତ ଜିଦ୍ କରି ସଗୁଣ ମତ ନିରୂପଣ କରିବାକୁ ଲାଗିଲି । ମୁଁ ଉତ୍ତର-ପ୍ରତ୍ୟୁତ୍ତର (ବାକ୍‌ବିତଣ୍ଡା) କଲି । ଏହି ହେତୁ ମୁନିଙ୍କ ଶରୀରରେ କ୍ରୋଧର ଚିହ୍ନ ଜାତ ହେଲା ॥ ୭ ॥ ହେ ପ୍ରଭୋ ! ଶୁଣନ୍ତୁ, ବହୁତ ଅପମାନ ବା ଅବଜ୍ଞା କଲେ ଜ୍ଞାନୀଙ୍କ ହୃଦୟରେ ମଧ୍ୟ କ୍ରୋଧ ଜାତ ହୁଏ । ଯଦି କେହି ଚନ୍ଦନକାଷ୍ଠକୁ ଅତି

ବାରଂବାର ସକୋପ ମୁନି କରଇ ନିରୂପନ ଜ୍ଞାନ ।
ମୈଁ ଅପନେଁ ମନ ବୈଠ ତବ କରଉଁ ବିବିଧ ଅନୁମାନ ॥୧୧୧(କ)॥
କ୍ରୋଧ କି ଦ୍ୱୈତବୁଦ୍ଧି ବିନୁ ଦ୍ୱୈତ କି ବିନୁ ଅଜ୍ଞାନ ।
ମାୟାବସ ପରିଛିନ୍ନ ଜଡ଼ ଜୀବ କି ଈସ ସମାନ ॥୧୧୧(ଖ)॥

କବହୁଁ କି ଦୁଖ ସବ କର ହିତ ତାକେଁ । ତେହି କି ଦରିଦ୍ର ପରସମନି ଜାକେଁ ॥
ପରଦ୍ରୋହୀ କୀ ହୋହିଁ ନିସଂକା । କାମୀ ପୁନି କି ରହହିଁ ଅକଲଂକା ॥୧॥
ବଂଶ କି ରହ ଦ୍ୱିଜ ଅନହିତ କୀନ୍ହେ । କର୍ମ କି ହୋହିଁ ସ୍ୱରୂପହି ଚୀହ୍ନେଁ ॥
କାହୂ ସୁମତି କି ଖଲ ସଁଗ ଜାମୀ । ସୁଭ ଗତି ପାଵ କି ପରତ୍ରିୟ ଗାମୀ ॥୨॥
ଭଵ କି ପରହିଁ ପରମାତ୍ମାବିଂଦକ । ସୁଖୀ କି ହୋହିଁ କବହୁଁ ହରିନିଂଦକ ॥
ରାଜୁ କି ରହଇ ନୀତି ବିନୁ ଜାନେଁ । ଅଘ କି ରହହିଁ ହରିଚରିତ ବଖାନେଁ ॥୩॥

---

କୋପ କରି ବାରମ୍ବାର ମୁନିବର ନିରୂପନ୍ତି ବ୍ରହ୍ମଜ୍ଞାନ ।
ନିଜ ମନେ ମୁହିଁ ବସି ବସି ତହିଁ କରେ ନାନା ଅନୁମାନ ॥୧୧୧(କ)॥
କ୍ରୋଧ କି ହୁଅଇ ଦ୍ୱୈତବୁଦ୍ଧି ବିନୁ ଦ୍ୱୈତ କି ବିନା ଅଜ୍ଞାନ ।
ମାୟା-ବଶୀଭୂତ ପରିଛିନ୍ନ ଜଡ଼-ଜୀବ କି ଈଶ ସମାନ ॥୧୧୧(ଖ)॥

ଦୁଃଖ କି ରହଇ ହିତ ସଭିଙ୍କ ଚାହିଁଲେ । ଦରିଦ୍ର କି ସେହୁ ପାଶେ ସ୍ପର୍ଶ ମଣି ଥିଲେ ? ॥
ପର-ଦ୍ରୋହୀ କେବେହେଁ କି ହୁଅଇ ନିଃଶଙ୍କ । କାମୀ ପୁଣି କଦାପି କି ରହେ ନିଷ୍କଳଙ୍କ ॥୧॥
ଦ୍ୱିଜ ଅପକାର କଲେ କୁଳ କି ରହଇ । ନିଜ ସ୍ୱରୂପ ଚିହ୍ନନ୍ତେ କର୍ମ କି ହୁଅଇ ॥
ଖଳ ସଙ୍ଗେ କାହାର କି ଉପୁଜେ ସୁମତି । ପରସ୍ତ୍ରୀ ଗାମୀ କେବେହେଁ ପାଏ ଶୁଭ ଗତି ॥୨॥
ପରମାର୍ଥ ଜ୍ଞାତା କେବେ ଭବେ କି ପଡ଼ଇ । ପରନିନ୍ଦୁକ କଦାପି ସୁଖ କି ଲଭଇ ॥
ରାଜ୍ୟ କି ରହି ପାରଇ ନୀତି ନ ଜାଣିଲେ । ପାପ କି ରହଇ ହରି ଚରିତ ଗାଇଲେ ॥୩॥

---

ମାଝାରେ ଘର୍ଷଣ କରେ, ତେବେ ତହିଁରୁ ମଧ୍ୟ ଅଗ୍ନିର ପ୍ରକାଶ ହୁଏ ॥୮॥

ଦୋହା :—ମୁନି ବାରମ୍ବାର କ୍ରୋଧ ସହକାରେ ଜ୍ଞାନ ନିରୂପଣ କରିବାକୁ ଲାଗିଲେ । ସେତେବେଳେ ମୁଁ ବସି ବସି ନିଜ ମନରେ ଅନେକ ପ୍ରକାର ଅନୁମାନ କରିବାକୁ ଲାଗିଲି ॥ ୧୧୧ (କ) ॥ ଦ୍ୱୈତବୁଦ୍ଧି ବିନା କ୍ରୋଧ ଏବଂ ଅଜ୍ଞାନ ବିନା ଦ୍ୱୈତବୁଦ୍ଧି ହୋଇପାରେ କି ? ମାୟାଦ୍ୱାରା ଆଚ୍ଛନ୍ନ ଜଡ଼ ଜୀବ କ'ଣ ଈଶ୍ୱରଙ୍କ ସମାନ ହୋଇପାରେ ? ॥ ୧୧୧ (ଖ) ॥ ଚୌପାଈ :—ସମସ୍ତଙ୍କ ହିତ କାମନା କଲେ କେବେ ଦୁଃଖ ରହେ କି ? ଯାହାର ପାଖରେ ପରଶମଣି ଥାଏ, ସେ କେବେ ଦରିଦ୍ର ହୁଏ କି ? ପରଦ୍ରୋହୀ ନିର୍ଭୟରେ ରହିପାରେ କି ? କାମୀ କ'ଣ ନିଷ୍କଳଙ୍କ ରହିପାରେ ? ॥ ୧ ॥ ବ୍ରାହ୍ମଣର ଅହିତ କଲେ ବଂଶ ରହିପାରେ କି ? ସ୍ୱରୂପର ପରିଚୟ (ଆତ୍ମଜ୍ଞାନ) ହେବା ପରେ ଆଉ କ'ଣ (ଆସକ୍ତିପୂର୍ବକ) କର୍ମ ହୋଇପାରେ ? ଦୁଷ୍ଟଙ୍କ ସଙ୍ଗରେ କାହାର ସଦ୍‌ବୁଦ୍ଧି ଉତ୍ପନ୍ନ ହୋଇଛି କି ? ପରନାରୀଗାମୀ ପୁରୁଷ

ପାବନ ଜସ କି ପୁଣ୍ୟ ବିନୁ ହୋଈ । ବିନୁ ଅଘ ଅଜସ କି ପାୱଇ କୋଈ ॥
ଲାଭୁ କି କିଛୁ ହରିଭଗତି ସମାନା । ଜେହି ଗାୱହିଁ ଶ୍ରୁତି ସନ୍ତ ପୁରାନା ॥୪॥
ହାନି କି ଜଗ ଏହି ସମ କିଛୁ ଭାଈ । ଭଜିଅ ନ ରାମହି ନର ତନୁ ପାଈ ॥
ଅଘ କି ପିସୁନତା ସମ କଛୁ ଆନା । ଧର୍ମ କି ଦୟା ସରିସ ହରିଜାନା ॥୫॥
ଏହି ବିଧି ଅମିତି ଜୁଗତି ମନ ଗୁନଉଁ । ମୁନି ଉପଦେସ ନ ସାଦର ସୁନଉଁ ॥
ପୁନି ପୁନି ସଗୁନ ପଚ୍ଛ ମୈଁ ରୋପା । ତବ ମୁନି ବୋଲେଉ ବଚନ ସକୋପା ॥୬॥
ମୂଢ଼ ପରମ ସିଖ ଦେଉଁ ନ ମାନସି । ଉତ୍ତର ପ୍ରତିଉତ୍ତର ବହୁ ଆନସି ॥
ସତ୍ୟ ବଚନ ବିସ୍ୱାସ ନ କରହୀ । ବାୟସ ଇବ ସବହୀ ତେଁ ଡରହୀ ॥୭॥
ସଠ ସ୍ୱପଚ୍ଛ ତବ ହୃଦୟଁ ବିସାଲା । ସପଦି ହୋହି ପଚ୍ଛୀ ଚଂଡାଲା ॥
ଲୀନ୍ହ ଶ୍ରାପ ମୈଁ ସୀସ ଚଢ଼ାଈ । ନହିଁ କଛୁ ଭୟ ନ ଦୀନତା ଆଈ ॥୮॥

---

ପୁଣ୍ୟ ବିନା ହୁଅଇ କି ସୁପବିତ୍ର ଯଶ । ପାପ ବିହୁନେ କେହୁ କି ଘେନଇ ଅଯଶ ॥
ଲାଭ କି ଇତର କିଛି ହରିଭକ୍ତି ସମ । ଯାହାକୁ ଗାଆନ୍ତି ସନ୍ଥ ପୁରାଣ ନିଗମ ॥୪॥
ହାନି କି ଜଗତେ କିଛି ଏହା ତୁଲ୍ୟ, ଭାଇ । ନ କଲେ ରାମ ଭଜନ ନରତନୁ ପାଇ ॥
କୌଣସି ପାପ କି ଅଛି ଚୁଗୁଲି ସମାନ । ଦୟା ସମାନ କି ଆନ ଧର୍ମ, ହରିଯାନ ॥୫॥
ଏ ଭାବେ ଅନେକ ଯୁକ୍ତି ମନେ ମୁଁ ଗୁଣିଲି । ମୁନି ଉପଦେଶ ପ୍ରେମ ସହ ନ ଶୁଣିଲି ॥
ବାରମ୍ବାର ମୁଁ ସଗୁଣ ପକ୍ଷ ହଠି ରୋପେ । ତହୁଁ ବୋଇଲେ ମୁନୀଶ, ବଚନ ସକୋପେ ॥୬॥
ମୂଢ଼, ଦେଲେହେଁ ପରମ ଶିକ୍ଷା ନ ମାନୁଛୁ । ଉତ୍ତର ପ୍ରତି ଉତ୍ତର ବହୁତ ଆଣୁଛୁ ॥
ସତ୍ୟ ବଚନକୁ ତୁହି ବିଶ୍ୱାସ ନ କର । ସମସ୍ତଙ୍କୁ କରୁ ଶଙ୍କା ବାୟସ ଯେପର ॥୭॥
ଶଠ, ତୋ ହୃଦୟେ ଅଟେ ସ୍ୱପକ୍ଷ ବିଶାଳ । ସତ୍ୱର ହୁଅ ତୁ କାକ ବିହଗ ଚଣ୍ଡାଳ ॥
ମୁନି ଅଭିଶାପ ଶିରୋଧାର୍ଯ୍ୟ ମୁଁ କରିଲି । କୌଣସି ଭୟ ଦୀନତା ହୃଦେ ନ ପଶିଲି ॥୮॥

---

କ'ଣ ସୁଗତି ପାଇପାରେ ? ॥ ୨ ॥ ପରମାତ୍ମାଙ୍କ ଜ୍ଞାତା କେବେ ଜନ୍ମ-ମରଣ-ଚକ୍ରରେ ପଡ଼ିପାରେ କି ? ଭଗବାନଙ୍କ ନିନ୍ଦୁକ କେବେ ସୁଖ ପାଇପାରେ କି ? ନୀତି ବିନା ରାଜାର ରାଜତ୍ୱ ଚାଲିପାରେ କି ? ଶ୍ରୀହରିଙ୍କ ଚରିତ ବର୍ଣ୍ଣନା କଲେ ପାପ ରହିପାରେ କି ? ॥ ୩ ॥ ପୁଣ୍ୟ ବିନା ପବିତ୍ର ଯଶ ଲାଭ ହୋଇପାରେ କି ? ପାପ ବିନା କେହି ଅପଯଶ ପାଇ ପାରନ୍ତି କି ? ଯାହାର ମହିମା ବେଦ, ସନ୍ଥ ଓ ପୁରାଣ ଗାନ କରନ୍ତି, ସେହି ହରିଭକ୍ତି ସମାନ ଆଉ ଅନ୍ୟ ଲାଭ କିଛି ଅଛି କି ? ॥ ୪ ॥ ହେ ଭାଇ ! ମନୁଷ୍ୟ-ଶରୀର ପାଇ ସୁଦ୍ଧା ଶ୍ରୀରାମଙ୍କ ଭଜନ କରା ନ ଗଲେ ଜଗତରେ ଏହା ଭଳି ଆଉ କ୍ଷତି କ'ଣ ଅଛି ? ଚୁଗୁଲି ସମାନ ଅନ୍ୟ ପାପ ଆଉ ଅଛି କି ? ହେ ଗରୁଡ଼ ! ଦୟା ସମାନ ଅନ୍ୟ କୌଣସି ଧର୍ମ ଅଛି କି ? ॥ ୫ ॥ ଏହି ରୂପେ ମୁଁ ଅଗଣିତ ଯୁକ୍ତି ମନ ମଧ୍ୟରେ ବିଚାର କରୁଥାଏ ଏବଂ ଆଦର ସହକାରେ ମୁନିଙ୍କ ଉପଦେଶ ଶୁଣୁ ନ ଥାଏ । ଯେତେବେଳେ ମୁଁ ବାରମ୍ବାର ସଗୁଣର ପକ୍ଷ ଉପସ୍ଥାପିତ କଲି,

ତୁରତ ଭୟଉଁ ମୈଁ କାଗ ତବ ପୁନି ମୁନି ପଦ ସିରୁ ନାଇ ।
ସୁମିରି ରାମ ରଘୁବଂସମନି ହରଷିତ ଚଲେଉଁ ଉଡ଼ାଇ ॥୧୧୨(କ)॥
ଉମା ଜେ ରାମ ଚରନ ରତ ବିଗତ କାମ ମଦ କ୍ରୋଧ ।
ନିଜ ପ୍ରଭୁମୟ ଦେଖହିଁ ଜଗତ କେହି ସନ କରହିଁ ବିରୋଧ ॥୧୧୨(ଖ)॥
ସୁନୁ ଖଗେସ ନହିଁ କଛୁ ରିଷି ଦୂଷନ । ଉର ପ୍ରେରକ ରଘୁବଂସ ବିଭୂଷନ ॥
କୃପାସିନ୍ଧୁ ମୁନି ମତି କରି ଭୋରୀ । ଲୀନ୍ହୀ ପ୍ରେମ ପରିଚ୍ଛା ମୋରୀ ॥୧॥
ମନ ବଚ କ୍ରମ ମୋହି ନିଜ ଜନ ଜାନା । ମୁନି ମତି ପୁନି ଫେରୀ ଭଗବାନା ॥
ରିଷି ମମ ମହତ ସୀଲତା ଦେଖୀ । ରାମ ଚରନ ବିସ୍ୱାସ ବିସେଷୀ ॥୨॥

---

ତହୁଁ ସେହିକ୍ଷଣ କାକ ମୁଁ ହୋଇଣ ପ୍ରଣମି ମୁନିଙ୍କ ପଦେ ;
ସ୍ମରି ରାମଚନ୍ଦ୍ର ରଘୁବଂଶମଣି ଉଡ଼ି ଚଳିଲି ଆନନ୍ଦେ ॥୧୧୨(କ)॥
ଉମା, ଯେ ଶ୍ରୀରାମ ଚରଣାନୁଗତ, ଗତ କାମ ମଦ କ୍ରୋଧ ।
ନିଜ ପ୍ରଭୁମୟ ଦେଖନ୍ତି ଜଗତ କା' ସଙ୍ଗେ କରେ ବିରୋଧ ॥୧୧୨(ଖ)॥
ଶୁଣ ତାର୍କ୍ଷ୍ୟ, ନାହିଁ କିଛୁ ଋଷିଙ୍କ ଦୂଷଣ । ହୃଦୟେ ପ୍ରେରକ ରଘୁବଂଶ-ବିଭୂଷଣ ॥
କରୁଣାନିଧାନ ମୁନି ମତି ଭୋଳ କରି । ନେଇଥିଲେ ପ୍ରଭୁ ପ୍ରେମ-ପରୀକ୍ଷା ମୋହରି ॥୧॥
ମନ କର୍ମ ବଚନରେ ଜାଣି ମୋତେ ଜନ । ମୁନି ମତି ଫେରାଇଲେ ପୁଣି ଜନାର୍ଦ୍ଦନ ॥
ସହନ-ଶୀଳତା ମୋର ଦେଖି ଋଷିବର । ରାମ-ଚରଣାରବିନ୍ଦେ ବିଶ୍ୱାସ ପ୍ରଖର ॥୨॥

---

ସେତେବେଳେ ମୁନି କ୍ରୋଧଯୁକ୍ତ ବଚନ କହିଲେ—॥ ୬ ॥ ଆରେ ମୂଢ଼ ! ମୁଁ ତୋତେ ସର୍ବୋତ୍ତମ ଶିକ୍ଷା ଦେଉଅଛି; ତଥାପି ତୁ ତାହା ମାନୁନାହୁଁ ଏବଂ ବହୁତ ଯୁକ୍ତିତର୍କ ଆଣି ଉପସ୍ଥାପନ କରୁଛୁ । ମୋର ସତ୍ୟ ବଚନ ଉପରେ ତୁ ବିଶ୍ୱାସ କରୁନାହୁଁ ! କାକ ପରି ସମସ୍ତଙ୍କୁ ଶଙ୍କା କରୁଛୁ ! ॥୭॥ ଆରେ ମୂର୍ଖ ! ତୋ ହୃଦୟରେ ଆପଣା ପକ୍ଷ ଉପରେ ଅଡ଼ି ବସିବା ନିମନ୍ତେ ବଡ଼ ଜିଦ୍ । ଅତଏବ ତୁ ଶୀଘ୍ର ଚଣ୍ଡାଳ ପକ୍ଷୀ (କାକ) ହୋଇଯାଅ ।” ମୁଁ ଆନନ୍ଦରେ ମୁନିଙ୍କର ଅଭିଶାପକୁ ଶିରୋଧାର୍ଯ୍ୟ କରିନେଲି । ତଦ୍ୱାରା ମୋର କିଛି ଭୟ ହେଲା ନାହିଁ କିମ୍ବା ଦୈନ୍ୟ ସୁଦ୍ଧା ଆସିଲା ନାହିଁ ॥ ୮ ॥ ଦୋହା :—ସେତେବେଳେ ମୁଁ ଶୀଘ୍ର କାକ ହୋଇଗଲି । ପୁଣି ମୁନିଙ୍କ ଚରଣରେ ଶିର ନୁଆଁଇ ଏବଂ ରଘୁକୁଳ-ଶିରୋମଣି ଶ୍ରୀରାମଙ୍କୁ ସ୍ମରଣ କରି ଆନନ୍ଦିତ ହୋଇ ଉଡ଼ି ଚାଲିଲି ।” ॥ ୧୧୨ (କ) ॥ ଶିବ କହନ୍ତି, “ହେ ଉମା ! ଯେଉଁମାନେ ଶ୍ରୀରାମଙ୍କ ଚରଣରେ ପ୍ରେମୀ ଏବଂ କାମ, ଅଭିମାନ ତଥା କ୍ରୋଧରୁ ରହିତ, ସେହିମାନେ ଜଗତକୁ ନିଜ ପ୍ରଭୁଙ୍କ ଦ୍ୱାରା ପରିପୂର୍ଣ୍ଣ ଦେଖନ୍ତି । ତେବେ ସେମାନେ କାହା ସହିତ ଶତ୍ରୁତାଚରଣ କରିବେ ?” ॥ ୧୧୨ (ଖ) ॥ ଚୌପାଈ :— କାକ ଭୁଶୁଣ୍ଡି କହିଲେ, “ହେ ପକ୍ଷିରାଜ ଗରୁଡ଼ ! ଶୁଣନ୍ତୁ, ଏଥିରେ ଋଷିଙ୍କର କିଛି ହେଲେ ବି ଦୋଷ ନ ଥିଲା । ରଘୁବଂଶ-ବିଭୂଷଣ ଶ୍ରୀରାମ ହିଁ ସମସ୍ତଙ୍କ ହୃଦୟରେ ପ୍ରେରଣା ଦିଅନ୍ତି । କୃପାସାଗର

ଅତି ବିସମୟ ପୁନି ପୁନି ପଛିତାଈ । ସାଦର ମୁନି ମୋହି ଲୀନ୍ହ ବୋଲାଈ ॥
ମମ ପରିତୋଷ ବିବିଧି ବିଧି କୀନ୍ହା । ହରଷିତ ରାମମନ୍ତ୍ର ତବ ଦୀନ୍ହା ॥୩॥
ବାଲକରୂପ ରାମ କର ଧ୍ୟାନା । କହେଉ ମୋହି ମୁନି କୃପାନିଧାନା ॥
ସୁନ୍ଦର ସୁଖଦ ମୋହି ଅତି ଭାଓ୍ୱା । ସୋ ପ୍ରଥମହିଁ ମୈଁ ତୁମ୍ହହି ସୁନାଓ୍ୱା ॥୪॥
ମୁନି ମୋହି କଛୁକ କାଲ ତହଁ ରାଖା । ରାମଚରିତମାନସ ତବ ଭାଷା ॥
ସାଦର ମୋହି ୟହ କଥା ସୁନାଈ । ପୁନି ବୋଲେ ମୁନି ଗିରା ସୁହାଈ ॥୫॥
ରାମଚରିତ ସର ଗୁପ୍ତ ସୁହାଓ୍ୱା । ସମ୍ଭୁ ପ୍ରସାଦ ତାତ ମୈଁ ପାଓ୍ୱା ॥
ତୋହି ନିଜ ଭଗତ ରାମ କର ଜାନୀ । ତାତେଁ ମୈଁ ସବ କହେଉଁ ବଖାନୀ ॥୬॥
ରାମ ଭଗତି ଜିନ୍ହ କେ ଉର ନାହୀଁ । କବହୁଁ ନ ତାତ କହିଅ ତିନ୍ହ ପାହୀଁ ॥
ମୁନି ମୋହି ବିବିଧି ଭାଁତି ସମୁଝାଓ୍ୱା । ମୈଁ ସପ୍ରେମ ମୁନି ପଦ ସିରୁ ନାଓ୍ୱା ॥୭॥

---

ପୁଣି ପୁଣି ଅନୁତାପି ବିସ୍ମୟେ ଅତି । ସାଦରେ ଡକାଇ ଆଣି ମୋତେ ନିଜ କତି ॥
ମୋର ପରିତୋଷ କଲେ ବିବିଧ ଭାବରେ । ପୁଣି ରାମ ମନ୍ତ୍ର ଦେଲେ ଅତି ଆନନ୍ଦରେ ॥୩॥
ବାଳକ-ରୂପ ଶ୍ରୀରାମଚନ୍ଦ୍ରଙ୍କର ଧ୍ୟାନ । କହିଲେ ମୋ ଆଗେ ମୁନି କରୁଣାନିଧାନ ॥
ସୁନ୍ଦର ସୁଖଦ ମୋତେ ବଡ ଭଲ ଲାଗେ । ପ୍ରଥମେ କହିଛି ମୁହିଁ ତାହା ତୁମ୍ଭ ଆଗେ ॥୪॥
ମୁନି ମୋତେ ତହିଁ କିଛୁକାଳ ରଖାଇଲେ । ରାମ-ଚରିତ-ମାନସ ବିସ୍ତାରି କହିଲେ ॥
ସାଦରେ ଶୁଣାଇ ମୋତେ ଏ କଥା ଉତ୍ତମ । ଭାଷିଲେ ମୁନି ଆବର ବାଣୀ ମନୋରମ ॥୫॥
ଶ୍ରୀରାମଚରିତ-ସର ସୁନ୍ଦର ଗୁପତ । ଶମ୍ଭୁ ପ୍ରସାଦରୁ ତାତ, ହେଲି ମୁଁ ପ୍ରାପତ ॥
ତୋତେ ରଘୁପତିଙ୍କର ନିଜ ଭକ୍ତ ଜାଣି । ସମସ୍ତ କଥା ତୋ ଆଗେ କହିଲି ବଖାଣି ॥୬॥
ରାମ ଭକ୍ତି ନାହିଁ ଯାର ହୃଦୟ ମଧ୍ୟରେ । କେବେହେଁ ବତ୍ସ, କହିବ ନାହିଁ ତା' ଆଗରେ ॥
ମୁନି ମୋତେ ବୁଝାଇଲେ ଅନେକ ପ୍ରକାର । ସପ୍ରେମେ ମୁଁ ମୁନି ପଦେ କଲି ନମସ୍କାର ॥୭॥

---

ପ୍ରଭୁ ମୁନିଙ୍କ ବୁଦ୍ଧି ଭ୍ରଷ୍ଟ କରି ମୋର ପ୍ରେମର ପରୀକ୍ଷା ନେଲେ ॥ ୧ ॥ ମନ, ବଚନ ଓ କର୍ମରେ ପ୍ରଭୁ ମୋତେ ତାଙ୍କ ନିଜର ଦାସ ବୋଲି ଜାଣିନେଲେ । ସେତେବେଳେ ଭଗବାନ୍ ମୁନିଙ୍କ ବୁଦ୍ଧି ପୁଣି ପରିବର୍ତ୍ତନ କରିଦେଲେ । ଋଷି ମୋଠାରେ ମହାପୁରୁଷଙ୍କ ଚରିତ୍ର (ଧୈର୍ଯ୍ୟ, ଅକ୍ରୋଧ, ବିନୟ ଆଦି) ଏବଂ ଶ୍ରୀରାମଙ୍କ ଚରଣରେ ବିଶେଷ ପ୍ରେମ ଥିବାର ଦେଖିଲେ ॥ ୨ ॥ ସେତେବେଳେ ସେ ଅତି ବିସ୍ମୟର ସହିତ ବାରମ୍ବାର ପଶ୍ଚାତ୍ତାପ କଲେ ଏବଂ ମୋତେ ଆଦରରେ ଡାକିନେଲେ । ସେ ଅନେକ ପ୍ରକାରରେ ମୋର ସନ୍ତୋଷବିଧାନ କଲେ ଏବଂ ଆନନ୍ଦିତ ହୋଇ ମୋତେ ରାମମନ୍ତ୍ର ଦେଲେ ॥ ୩ ॥ କୃପାନିଧାନ ମୁନି ମୋତେ ବାଳକ-ସ୍ୱରୂପ ଶ୍ରୀରାମଙ୍କ ଧ୍ୟାନବିଧି ଶିଖାଇଲେ । ସୁନ୍ଦର ଓ ସୁଖଦାୟକ ଏହି ଧ୍ୟାନ ମୋତେ ଅତିଶୟ ଭଲ ଲାଗିଲା । ଉକ୍ତ ଧ୍ୟାନ ମୁଁ ଆପଣଙ୍କୁ ପ୍ରଥମେ ହିଁ ଶୁଣାଇ ସାରିଛି ॥ ୪ ॥ ମୁନି କିଛି ସମୟ ଯାଏ ମୋତେ ସେହିଠାରେ ତାଙ୍କରି ପାଖରେ ରଖିଲେ । ତଦନନ୍ତର ସେ ରାମଚରିତ ମାନସ ବର୍ଣ୍ଣନା କଲେ ।

ନିଜ କର କମଲ ପରସି ମମ ସୀସା । ହରଷିତ ଆସିଷ ଦୀହ୍ନ ମୁନୀସା ॥
ରାମଭଗତି ଅବିରଲ ଉର ତୋରେଁ । ବସିହି ସଦା ପ୍ରସାଦ ଅବ ମୋରେଁ ॥୮॥
ସଦା ରାମପ୍ରିୟ ହୋହୁ ତୁହ୍ମ ସୁଭ ଗୁନ ଭବନ ଅମାନ ।
କାମରୂପ ଇଚ୍ଛା ମରନ ଜ୍ଞାନ ବିରାଗ ନିଧାନ ॥୧୧୩(କ)॥
ଜେହିଁ ଆଶ୍ରମ ତୁହ୍ମ ବସବ ପୁନି ସୁମିରତ ଶ୍ରୀ ଭଗବନ୍ତ ।
ବ୍ୟାପିହି ତହଁ ନ ଅବିଦ୍ୟା ଜୋଜନ ଏକ ପ୍ରଜନ୍ତ ॥୧୧୩(ଖ)॥
କାଲ କର୍ମ ଗୁନ ଦୋଷ ସୁଭାଉ । କଛୁ ଦୁଖ ତୁହ୍ମହି ନ ବ୍ୟାପିହି କାଉ ॥
ରାମ ରହସ୍ୟ ଲଲିତ ବିଧି ନାନା । ଗୁପ୍ତ ପ୍ରଗଟ ଇତିହାସ ପୁରାନା ॥୧॥

---

ନିଜ କର-କଞ୍ଜେ କରି ମୋ ଶିର ସ୍ପର୍ଶ । ଆଶିଷ ଦେଲେ ମୁନୀଶ ହୋଇଣ ହରଷ ॥
ରାମ ଭକ୍ତି ଅବିରଲ ହୃଦୟେ ତୋହର । ନିବାସ କରିବ ଏବେ ପ୍ରସାଦେ ମୋହର ॥୮॥
ସଦା ରାମପ୍ରିୟ ହୋଇବ ତନୟ, ସଦ୍‌ଗୁଣାଳୟ ଅମାନ ।
କାମ-ରୂପ ପୁଣ ସ୍ୱଇଚ୍ଛା ମରଣ ଜ୍ଞାନ-ବୈରାଗ୍ୟ-ନିଧାନ ॥୧୧୩(କ)॥
ଯେଉଁ ଆଶ୍ରମରେ ନିବାସ କରିବ ସ୍ମରଣ ଶ୍ରୀ ଭଗବନ୍ତ ।
ଅବିଦ୍ୟା କଦାପି ନ ପାରିବ ବ୍ୟାପି ଏକ ଯୋଜନ ପର୍ଯ୍ୟନ୍ତ ॥୧୧୩(ଖ)॥
କାଳ କର୍ମ ଗୁଣ ଦୋଷ ସ୍ୱଭାବ-ଜନିତ । କିଛୁ ଦୁଃଖ ନ ବ୍ୟାପିବ ତୋତେ କଦାଚିତ ॥
ରାମ ରହସ୍ୟ ଲଳିତ ନାନା ପ୍ରକାରରେ । ଗୁପ୍ତ ପ୍ରକଟ ଯେ ଇତିହାସ ପୁରାଣରେ ॥୧॥

---

ଆଦର ସହକାରେ ମୋତେ ଏହି କଥା ଶୁଣାଇ ପୁଣି ମୁନି ମୋତେ ସୁନ୍ଦର ବାଣୀ କହିଲେ—॥ ୫ ॥ "ହେ ବତ୍ସ ! ମୁଁ ଶିବଙ୍କ କୃପାରୁ ଏହି ଗୁପ୍ତ ରାମଚରିତ ମାନସ ପାଇଥିଲି । ତୋତେ ଶ୍ରୀରାମଙ୍କ 'ନିଜ ଭକ୍ତ' ଜାଣିଲି । ଏହି ହେତୁ ମୁଁ ତୋତେ ସମସ୍ତ ଚରିତ ବିସ୍ତାରପୂର୍ବକ କହିଲି ॥ ୬ ॥ ହେ ବତ୍ସ ! ଯେଉଁମାନଙ୍କ ହୃଦୟରେ ଶ୍ରୀରାମଙ୍କ ପ୍ରତି ଭକ୍ତି ନାହିଁ, ସେହିମାନଙ୍କ ଆଗରେ ଏହା କଦାପି କହିବା ଉଚିତ ନୁହେଁ ।" ମୁନି ମୋତେ ବହୁତ ପ୍ରକାରେ ବୁଝାଇଲେ । ତତ୍ପରେ ମୁଁ ପ୍ରେମ ସହକାରେ ମୁନିଙ୍କ ଚରଣରେ ମସ୍ତକ ଅବନତ କଲି ॥ ୭ ॥ ମୁନୀଶ୍ୱର ଆପଣା କର-କମଳରେ ମୋର ଶିର ସ୍ପର୍ଶ କରି ଆନନ୍ଦିତ ମନରେ ମୋତେ ଆଶୀର୍ବାଦ ଦେଲେ, "ଏଣିକି ମୋର କୃପାରେ ତୋର ହୃଦୟରେ ସଦା ପ୍ରଗାଢ ରାମଭକ୍ତି ନିବାସ କରିବ ॥ ୮ ॥ ଦୋହା :—ତୁମେ ସଦା ଶ୍ରୀରାମଙ୍କ ପ୍ରିୟ ହୁଅ ଏବଂ କଲ୍ୟାଣ-ସ୍ୱରୂପ, ଗୁଣଧାମ, ମାନରହିତ, ଇଚ୍ଛାନୁସାରେ ରୂପ-ଧାରଣରେ ସମର୍ଥ, ସ୍ୱେଚ୍ଛାମରଣ ଏବଂ ଜ୍ଞାନ ବୈରାଗ୍ୟର ଭଣ୍ଡାର ହୁଅ ॥ ୧୧୩ (କ) ॥ କେବଳ ଏତିକି ନୁହେଁ, ଶ୍ରୀ ଭଗବାନ୍‌ଙ୍କୁ ସ୍ମରଣ କରି ତୁମେ ଯେଉଁ ଆଶ୍ରମରେ ନିବାସ କରିବ, ସେହିଠାରୁ ଏକ ଯୋଜନ ପର୍ଯ୍ୟନ୍ତ ଅବିଦ୍ୟା (ମାୟାମୋହ) ବ୍ୟାପିବ ନାହିଁ ॥ ୧୧୩ (ଖ) ॥ ଚୌପାଈ :—କାଳ, କର୍ମ, ଗୁଣ, ଦୋଷ ଓ ସ୍ୱଭାବରୁ ଜାତ କୌଣସି ଦୁଃଖ ତୁମକୁ କଦାପି ବ୍ୟାପିବ ନାହିଁ । ନାନାବିଧ

ବିନୁ ଶ୍ରମ ତୁମ୍ହ ଜାନବ ସବ ସୋଊ । ନିତ ନବ ନେହ ରାମପଦ ହୋଊ ॥
ଜୋ ଇଚ୍ଛା କରିହହୁ ମନ ମାହୀଁ । ହରି ପ୍ରସାଦ କଛୁ ଦୁର୍ଲଭ ନାହୀଁ ॥୨॥
ସୁନି ମୁନି ଆସିଷ ସୁନୁ ମତିଧୀରା । ବ୍ରହ୍ମଗିରା ଭଇ ଗଗନ ଗଁଭୀରା ॥
ଏବମସ୍ତୁ ତବ ବଚ ମୁନି ଜ୍ଞାନୀ । ୟହ ମମ ଭଗତ କର୍ମ ମନ ବାନୀ ॥୩॥
ସୁନି ନଭଗିରା ହରଷ ମୋହି ଭୟଊ । ପ୍ରେମ ମଗନ ସବ ସଂସୟ ଗୟଊ ॥
କରି ବିନତୀ ମୁନି ଆୟସୁ ପାଈ । ପଦସରୋଜ ପୁନି ପୁନି ସିରୁ ନାଈ ॥୪॥
ହରଷ ସହିତ ଏହିଁ ଆଶ୍ରମ ଆୟଊଁ । ପ୍ରଭୁ ପ୍ରସାଦ ଦୁର୍ଲଭ ବର ପାୟଊଁ ॥
ଇହାଁ ବସତ ମୋହି ସୁନୁ ଖଗଈସା । ବୀତେ କଲପ ସାତ ଅରୁ ବୀସା ॥୫॥
କରଊଁ ସଦା ରଘୁପତି ଗୁନ ଗାନା । ସାଦର ସୁନହିଁ ବିହଙ୍ଗ ସୁଜାନା ॥
ଜବ ଜବ ଅଓ୍ୱଧପୁରୀଁ ରଘୁବୀରା । ଧରହିଁ ଭଗତ ହିତ ମନୁଜ ସରୀରା ॥୬॥

ଅନାୟାସେ ତୁମ୍ଭେ ସେହି ସକଳ ଜାଣିବୁ । ନିତ୍ୟ ନବ ପ୍ରେମ ରାମ-ଚରଣେ ଲଭିବୁ ॥
ଯାହା ଇଚ୍ଛା ତୋର ମନ ମଧ୍ୟରେ ହୋଇବ । ହରିଙ୍କ ପ୍ରସାଦେ କିଛୁ ଦୁର୍ଲ୍ଲଭ ନୋହିବ ॥୨॥
ଶୁଣି ମୁନି ଆଶୀର୍ବାଦ ଶୁଣ, ମତି ଧୀର । ବ୍ରହ୍ମବାଣୀ ହେଲା ତହୁଁ ଗଗନୁ ଗମ୍ଭୀର ॥
ଏବମସ୍ତୁ ତବ ଗିର, ମୁନିବର ଜ୍ଞାନୀ । ଏ ମୋର ଭକତ ଅଟେ ମନ କର୍ମ ବାଣୀ ॥୩॥
ଶୁଣନ୍ତେ ନଭ ବଚନ ହେଲି ପ୍ରମୋଦିତ । ମଗନ ପ୍ରେମେ, ସକଳ ସଂଶୟ ରହିତ ॥
ବିନୟ କରି ମୁନିଙ୍କ ଆଦେଶ ପାଇଣ । ପଦକଞ୍ଜେ ବାରମ୍ବାର ଶିର ନୁଆଁଇଣ ॥୪॥
ହରଷିତ ମନେ ଏହି ଆଶ୍ରମେ ଆସିଲି । ପ୍ରଭୁଙ୍କ ପ୍ରସାଦେ ବର ଦୁର୍ଲ୍ଲଭ ପାଇଲି ॥
ଏଠାରେ ରହନ୍ତେ ମୋତେ ଶୁଣ, ଖଗ ଈଶ । ଅତୀତ ହୋଇଗଲାଣି କଳ୍ପ ସପ୍ତବିଂଶ ॥୫॥
କରଇ ସତତ ରଘୁପତି ଗୁଣ ଗାନ । ସାଦରେ ଶୁଣନ୍ତି ଖଗବୃନ୍ଦ ସାବଧାନ ॥
ଅଯୋଧ୍ୟାପୁରୀରେ ଯେବେ ଯେବେ ରଘୁବୀର । ଧରନ୍ତି ଭକତ ହିତେ ମନୁଷ୍ୟ ଶରୀର ॥୬॥

ସୁନ୍ଦର ଶ୍ରୀରାମ ରହସ୍ୟ, ଯାହା ଇତିହାସ ଓ ପୁରାଣମାନଙ୍କରେ ଗୁପ୍ତ ଓ ପ୍ରକାଶିତ (ବର୍ଣ୍ଣିତ ଓ ଲକ୍ଷିତ), ତାହା ତୁମେ ଅନାୟାସରେ ଜାଣିପାରିବ । ଶ୍ରୀରାମଙ୍କ ଚରଣରେ ତୁମର ନିତ୍ୟ ନୂତନ ପ୍ରେମ ଜାତ ହେବ । ଆପଣା ମନରେ ତୁମେ ଯାହା କିଛି ଇଚ୍ଛା କରିବ, ଶ୍ରୀହରିଙ୍କ କୃପାରୁ ତାହା ଦୁର୍ଲ୍ଲଭ ହେବନାହିଁ ॥ ୧-୨ ॥ ହେ ଧୀରମତି ଗରୁଡ଼ ! ଶୁଣନ୍ତୁ, ମୁନିଙ୍କ ଆଶୀର୍ବାଦ ଶୁଣି ଆକାଶରେ ଗମ୍ଭୀର ବ୍ରହ୍ମବାଣୀ ହେଲା—"ହେ ଜ୍ଞାନୀ ମୁନି ! ତୁମ ବଚନ ସତ୍ୟ ହେଉ । ଏ ମନ, କର୍ମ ଓ ବଚନରେ ମୋର ଭକ୍ତ ।" ॥ ୩ ॥ ଆକାଶବାଣୀ ଶୁଣି ମୋ ମନରେ ଅତି ଆନନ୍ଦ ଜାତ ହେଲା । ମୁଁ ପ୍ରେମମଗ୍ନ ହୋଇଗଲି ଏବଂ ମୋର ସମସ୍ତ ସନ୍ଦେହ ଅପସରି ଗଲା । ତଦନନ୍ତର ମୁନିଙ୍କୁ ବିନତି କରି ଆଜ୍ଞା ପାଇ ମୁଁ ବାରମ୍ବାର ତାଙ୍କ ଚରଣ-କମଳରେ ପ୍ରଣାମ କରି ସହର୍ଷ ଏହି ଆଶ୍ରମକୁ ଆସିଲି । ପ୍ରଭୁ ଶ୍ରୀରାମଙ୍କ କୃପାରୁ ମୁଁ ଦୁର୍ଲ୍ଲଭ ବର ପାଇଲି । ହେ ପକ୍ଷିରାଜ ! ମୋର ଏହିଠାରେ ବାସ କରିବାର ସତାଇଶ କଳ୍ପ ଅତିବାହିତ ହୋଇଗଲାଣି ॥ ୪-୫ ॥ ମୁଁ ଏହିଠାରେ

ତବ ତବ ଜାଇ ରାମପୁର ରହଉଁ । ସିସୁଲୀଲା ବିଲୋକି ସୁଖ ଲହଉଁ ॥
ପୁନି ଉର ରାଖି ରାମ ସିସୁରୂପା । ନିଜ ଆଶ୍ରମ ଆୟଉଁ ଖଗଭୂପା ॥୭॥
କଥା ସକଲ ମୈଁ ଭୁସୁଣ୍ଡି ସୁନାଈ । କାଗ ଦେହ ଜେହିଁ କାରନ ପାଈ ॥
କହିଉଁ ତାତ ସବ ପ୍ରଶ୍ନ ତୁମ୍ହାରୀ । ରାମ ଭଗତି ମହିମା ଅତି ଭାରୀ ॥୮॥
ତା ତେଁ ୟହ ତନ ମୋହି ପ୍ରିୟ ଭୟଉ ରାମପଦ ନେହ ।
ନିଜ ପ୍ରଭୁ ଦରସନ ପାୟଉଁ ଗଏ ସକଲ ସଂଦେହ ॥୧୧୪(କ)॥

## ମାସପାରାୟଣ, ଊନତିଂଶ ବିଶ୍ରାମ

ଭଗତି ପଚ୍ଛ ହଠ କରି ରହେଉଁ ଦୀହ୍ନି ମହାଋଷି ସାପ ।
ମୁନି ଦୁର୍ଲଭ ବର ପାୟଉଁ ଦେଖହୁ ଭଜନ ପ୍ରତାପ ॥୧୧୪(ଖ)॥

---

ତେବେ ତେବେ ରାମପୁରେ ଯାଇ ମୁଁ ରହଇ । ଶିଶୁ-ଲୀଳା ଅବଲୋକି ଆନନ୍ଦ ଲଭଇ ॥
ପୁଣି ହୃଦ ମଧ୍ୟେ ରଖି ରାମ-ଶିଶୁ-ରୂପ । ଆପଣା ଆଶ୍ରମେ ଫେରି ଆସେ ଖଗ-ଭୂପ ॥୭॥
ସକଳ କଥା ଭୁଶୁଣ୍ଡି କହିଲି ବୁଝାଇ । ଯେଉଁ କାରଣରୁ କାକ ତନୁ ଅଛି ପାଇ ॥
କହିଲି ତାତ, ମୁଁ ତବ ସକଳ ପ୍ରଶନ । ରାମ ଭକତି ମହିମା ଅପାର ଗହନ ॥ ॥
ତେଣୁ ଏହି ଦେହ ମୋତେ ଲାଗେ ପ୍ରିୟ ହେଲା ରାମପଦେ ସ୍ନେହ ।
ନିଜ ପ୍ରଭୁଙ୍କର ଦର୍ଶନ ପାଇଲି ତୁଟିଲା ସବୁ ସନ୍ଦେହ ॥୧୧୪(କ)॥
ଭକ୍ତି ପକ୍ଷେ ହଠ କରିଣ ରହନ୍ତେ ଦେଲେ ମହାମୁନି ଶାପ ।
ମୁନି ସୁଦୁର୍ଲଭ ବର କଲି ଲାଭ, ଦେଖ ଭଜନ ପ୍ରତାପ ॥୧୧୪(ଖ)॥

---

ସର୍ବଦା ଶ୍ରୀରାମଙ୍କ ଗୁଣାବଳୀ ଗାନ କରେ ଏବଂ ଲାଂପ ପକ୍ଷୀମାନେ ଆଦରରେ ତାହା ଶୁଣନ୍ତି । ଅଯୋଧ୍ୟାପୁରୀରେ ଶ୍ରୀ ରଘୁବୀର ଭକ୍ତ ନିମନ୍ତେ ଯେବେ ଯେବେ ମନୁଷ୍ୟ ଶରୀର ଧାରଣ କରନ୍ତି, ସେହି ସେହି ସମୟରେ ମୁଁ ଯାଇ ଶ୍ରୀରାମଙ୍କ ନଗରୀରେ ବାସ କରେ ଏବଂ ପ୍ରଭୁଙ୍କର ଶିଶୁ-ଲୀଳା ଦେଖି ସୁଖଲାଭ କରେ । ହେ ପକ୍ଷିରାଜ ! ତଦନନ୍ତର ଶ୍ରୀରାମଙ୍କ ଶିଶୁ-ରୂପକୁ ହୃଦୟରେ ଧାରଣ କରି ମୁଁ ଆପଣା ଆଶ୍ରମକୁ ଫେରିଆସେ ॥୬-୭॥ ଯେଉଁ କାରଣରୁ ମୁଁ କାକ-ଶରୀର ପାଇଲି, ସେହି ସମସ୍ତ କଥା ଆପଣଙ୍କୁ ଶୁଣାଇ ଦେଲି । ହେ ବତ୍ସ ! ମୁଁ ଆପଣଙ୍କ ସମସ୍ତ ପ୍ରଶ୍ନର ଉତ୍ତର କହିଲି । ଆହା, ଶ୍ରୀରାମ-ଭକ୍ତିର ଅତି ବିରାଟ ମହିମା । ॥ ୮ ॥ ଦୋହା :—ଏହି ଶରୀରରେ ମୋତେ ଶ୍ରୀରାମଙ୍କ ଚରଣରେ ପ୍ରେମ ମିଳିଅଛି । ସୁତରାଂ ଏହି କାକ-ଶରୀର ମୋର ଅତି ପ୍ରିୟ ଅଟେ । ଏହି ଶରୀରରେ ମୁଁ ନିଜ ପ୍ରଭୁଙ୍କ ଦର୍ଶନ ପାଇଲି ଏବଂ ମୋର ସମସ୍ତ ସନ୍ଦେହ ଦୂର ହେଲା ॥ ୧୧୪ (କ) ॥ ମୁଁ ଜିଦ୍ କରି ଭକ୍ତିପକ୍ଷ ଉପରେ ଦୃଢ ରହିଲି । ସେହି ହେତୁ ଲୋମଶ ମହର୍ଷି ମୋତେ ଅଭିଶାପ ଦେଲେ । କିନ୍ତୁ ତାହାର ଫଳ ଏହା ହେଲା ଯେ, ମୁନିଜନ-ଦୁର୍ଲଭ ଏହି ବରଦାନ ମୁଁ ପାଇଲି । ଭଜନର ପ୍ରତାପ ତ

ଜେ ଅସି ଭଗତି ଜାନି ପରିହରହୀଁ । କେବଲ ଜ୍ଞାନ ହେତୁ ଶ୍ରମ କରହୀଁ ॥
ତେ ଜଡ଼ କାମଧେନୁ ଗୃହଁ ତ୍ୟାଗୀ । ଖୋଜତ ଆକୁ ଫିରହିଁ ପୟ ଲାଗୀ ॥୧॥
ସୁନୁ ଖଗେସ ହରିଭଗତି ବିହାଈ । ଜେ ସୁଖ ଚାହହିଁ ଆନ ଉପାଈ ॥
ତେ ସଠ ମହାସିନ୍ଧୁ ବିନୁ ତରନୀ । ପୈରି ପାର ଚାହହିଁ ଜଡ଼ କରନୀ ॥୨॥
ସୁନି ଭୁସୁଣ୍ଡି କେ ବଚନ ଭବାନୀ । ବୋଲେଉ ଗରୁଡ଼ ହରଷି ମୃଦୁ ବାନୀ ॥
ତବ ପ୍ରସାଦ ପ୍ରଭୁ ମମ ଉର ମାହୀଁ । ସଂସୟ ସୋକ ମୋହ ଭ୍ରମ ନାହୀଁ ॥୩॥
ସୁନେଉଁ ପୁନୀତ ରାମ ଗୁନ ଗ୍ରାମା । ତୁମ୍ହରୀ କୃପା ଲହେଉଁ ବିଶ୍ରାମା ॥
ଏକ ବାତ ପ୍ରଭୁ ପୂଁଛଉଁ ତୋହୀ । କହହୁ ବୁଝାଇ କୃପାନିଧି ମୋହୀ ॥୪॥
କହହିଁ ସନ୍ତ ମୁନି ବେଦ ପୁରାନା । ନହିଁ କଛୁ ଦୁର୍ଲଭ ଜ୍ଞାନ ସମାନା ॥
ସୋଇ ମୁନି ତୁମ୍ହ ସନ କହେଉ ଗୋସାଈଁ । ନହିଁ ଆଦରେହୁ ଭଗତି କୀ ନାଈଁ ॥୫॥

---

ଜାଣି ସୁଦ୍ଧା ଯେ ଏମନ୍ତ ଭକ୍ତି ପରିହରେ । କେବଳ ଜ୍ଞାନ ନିମନ୍ତେ ପରିଶ୍ରମ କରେ ॥
ସେ ଜଡ଼ ଗୃହରେ ଥିବା କାମଧେନୁ ତ୍ୟାଗି । ଖୋଜି ବୁଲୁଥାଏ ଅର୍କବନେ, କ୍ଷୀର ଲାଗି ॥୧॥
ଶୁଣ ଖଗପତି, ତେଜି ହରିଙ୍କ ଭକତି । ଅନ୍ୟ ଉପାୟରେ ସୁଖ ଯେ ଅଭିଳଷନ୍ତି ॥
ସେ ମୂର୍ଖ ତରଣୀ ବିନା ଅପାର ସାଗର । ପହଁରି ପାରି ଯିବାକୁ ଇଚ୍ଛନ୍ତି ପାମର ॥୨॥
ଶୁଣି କାକ ଭୁଶୁଣ୍ଡିର ବଚନ, ଭବାନି ! ଭାଷିଲେ ଗରୁଡ଼ ହରଷିତେ ମୃଦୁ ବାଣୀ ॥
ତୁମ୍ଭ ପ୍ରସାଦରେ ପ୍ରଭୁ, ହୃଦୟେ ମୋହର । ନାହିଁ ଶୋକ ମୋହ ଭ୍ରମ ସଂଶୟ ନିକର ॥୩॥
ଶୁଣିଲି ପବିତ୍ର ରଘୁପତି ଗୁଣଗ୍ରାମ । ତୁମ୍ଭ ଅନୁଗ୍ରହେ ଏବେ ଲଭିଲି ବିଶ୍ରାମ ॥
ପଚାରେ ନାଥ, ତୁମ୍ଭଙ୍କୁ ମୁଁ ଏକ ବିଷୟ । କହନ୍ତୁ ବୁଝାଇ ମୋତେ, କରୁଣାନିଳୟ ॥୪॥
ବଖାଣନ୍ତି ସନ୍ଥ ମୁନି ନିଗମ ପୁରାଣ । ଜ୍ଞାନ ସମାନ ଦୁର୍ଲ୍ଲଭ ନାହିଁ କିଛି ଆନ ॥
ତାହା ମୁନି ତୁମ୍ଭ ଆଗେ କହିଲେ ଗୋସାଇଁ । ଭକତି ସମ ଆଦର ନ କଲ କିପାଇଁ ॥୫॥

---

ହେଉନ୍ତୁ ! ॥ ୧୧୪ (ଖ) ॥ ଚୌପାଇ '—ଯେଉଁମାନେ ଭକ୍ତିର ଏହି ମହିମା ଜାଣି ସୁଦ୍ଧା ତାହାକୁ ପରିହାର କରନ୍ତି ଏବଂ କେବଳ ଜ୍ଞାନ ନିମନ୍ତେ ଶ୍ରମସାଧନ କରନ୍ତି, ସେହି ମୂର୍ଖମାନେ ଘରେ ଥିବା କାମଧେନୁକୁ ଛାଡ଼ି ଦୁଧ ନିମନ୍ତେ ଅରଖଗଛ ଖୋଜି ଖୋଜି ବୁଲନ୍ତି ॥ ୧ ॥ ହେ ପକ୍ଷୀରାଜ ! ଶୁଣନ୍ତୁ; ଯେଉଁମାନେ ହରି-ଭକ୍ତି ଛାଡ଼ି ଅନ୍ୟ ଉପାୟରେ ସୁଖ କାମନା କରନ୍ତି, ସେହି ମୂର୍ଖ ଓ ଜଡ଼କର୍ମା (ହତଭାଗ୍ୟ)ମାନେ ମହାସମୁଦ୍ରକୁ ବିନା ଜାହାଜରେ ପାର ହେବାକୁ ଚାହାନ୍ତି ।" ॥ ୨ ॥ ଶିବ କହନ୍ତି, "ହେ ଭବାନି ! ଭୁଶୁଣ୍ଡିଙ୍କ ବଚନ ଶୁଣି ଗରୁଡ଼ ଆନନ୍ଦିତ ହେଲେ ଏବଂ କୋମଳ ବାଣୀରେ କହିଲେ—'ହେ ପ୍ରଭୋ ! ଆପଣଙ୍କ ପ୍ରସାଦରୁ ମୋର ହୃଦୟରେ ଏବେ ସନ୍ଦେହ, ଶୋକ, ମୋହ ଓ ଭ୍ରମ ଆଉ କିଛି ହେଲେ ରହିଲା ନାହିଁ ॥ ୩ ॥ ମୁଁ ଆପଣଙ୍କ କୃପାରୁ ଶ୍ରୀରାମଙ୍କ ପବିତ୍ର ଗୁଣାବଳୀ ଶୁଣିଲି ଏବଂ ଶାନ୍ତି ଲାଭ କଲି । ହେ ପ୍ରଭୋ ! ଏବେ ମୁଁ ଆପଣଙ୍କୁ ଆଉ ଗୋଟିଏ ବିଷୟ ପଚାରୁଛି । ହେ କୃପାସାଗର ! ମୋତେ

ଜ୍ଞାନହି ଭଗତିହି ଅନ୍ତର କେତା । ସକଲ କହହୁ ପ୍ରଭୁ କୃପା-ନିକେତା ॥
ସୁନି ଉରଗାରି ବଚନ ସୁଖ ମାନା । ସାଦର ବୋଲେଉ କାଗ ସୁଜାନା ॥୬॥
ଭଗତିହି ଜ୍ଞାନହି ନହିଁ କଛୁ ଭେଦା । ଉଭୟ ହରହିଁ ଭବସଂଭବ ଖେଦା ॥
ନାଥ ମୁନୀସ କହହିଁ କଛୁ ଅନ୍ତର । ସାବଧାନ ସୋଉ ସୁନୁ ବିହଂଗବର ॥୭॥
ଜ୍ଞାନ ବିରାଗ ଜୋଗ ବିଜ୍ଞାନା । ଏ ସବ ପୁରୁଷ ସୁନହୁ ହରିଜାନା ॥
ପୁରୁଷ ପ୍ରତାପ ପ୍ରବଲ ସବ ଭାଁତି । ଅବଲା ଅବଲ ସହଜ ଜଡ଼ ଜାତି ॥୮॥

ପୁରୁଷ ତ୍ୟାଗି ସକ ନାରିହି ଜୋ ବିରକ୍ତ ମତି ଧୀର ।
ନ ତୁ କାମୀ ବିଷୟାବସ ବିମୁଖ ଜୋ ପଦ ରଘୁବୀର ॥୧୧୫(କ)॥
ସୋଉ ମୁନି ଜ୍ଞାନନିଧାନ ମୃଗନୟନୀ ବିଧୁ ମୁଖ ନିରଖି ।
ବିବସ ହୋଇ ହରିଜାନ ନାରି ବିଷ୍ଣୁ ମାୟା ପ୍ରଗଟ ॥୧୧୫(ଖ)॥

---

ନାଥ, ଜ୍ଞାନ ଭକ୍ତି ମଧ୍ୟେ କେତେ ବା ଅନ୍ତର । କହନ୍ତୁ ବୁଝାଇ ତାହା, କରୁଣାସାଗର ॥
ଶୁଣି ବୈନତେୟ ବାଣୀ ପ୍ରମୋଦ ଲଭିଣ । ସାଦରେ ଭଣିଲ୍ଲ କାକ ଭୁଶୁଣ୍ଡି ପ୍ରବୀଣ ॥୬॥
ଜ୍ଞାନ ଆଉ ଭକ୍ତି ମଧ୍ୟେ ନାହିଁ କିଛି ଭେଦ । ଉଭୟେ ହରନ୍ତି ଭବ-ସମ୍ଭୂତ ଖେଦ ॥
ନାଥ, ମୁନିବର କିଛି କହନ୍ତି ଅନ୍ତର । ସାବଧାନେ ଶୁଣ ତାହା, ବିହଙ୍ଗ ପ୍ରବର ॥୭॥
ଜ୍ଞାନ, ବଇରାଗ୍ୟ, ଯୋଗ, ଆବର ବିଜ୍ଞାନ । ଏ ସର୍ବେ ପୁରୁଷ ରୂପ ଶୁଣ, ହରିଯାନ ॥
ପୁରୁଷ ସବୁ ପ୍ରକାରେ ପ୍ରତାପୀ ପ୍ରବଳ । ଅବଳା ସହଜେ ଜଡ଼ ଜାତି ହୀନ-ବଳ ॥୮॥

ପୁରୁଷ ନାରୀଙ୍କୁ ତ୍ୟାଗ କରିପାରେ ଯେ ବିରକ୍ତ ମତି ଧୀର ।
ନ ପାରନ୍ତି କାମୀ, ବିଷୟେ ଆସକ୍ତ, ପରାଙ୍ମୁଖ ରଘୁବୀର ॥୧୧୫(କ)॥
ବିଲୋକି ବି ଜ୍ଞାନ-ନିଧାନ ମୁନୀଶ ମୃଗାକ୍ଷୀ ବିଧୁବଦନୀ ।
ହୁଅନ୍ତି ବିବଶ, ପ୍ରକଟ ପକ୍ଷୀଶ, ବିଷ୍ଣୁଙ୍କ ମାୟା-ରମଣୀ ॥୧୧୫(ଖ)॥

---

ବୁଝାଇ କୁହନ୍ତୁ ॥ ୪ ॥ ସନ୍ଥ, ମୁନି ଓ ପୁରାଣମାନେ କହନ୍ତି—ଜ୍ଞାନ ସମାନ ଦୁର୍ଲ୍ଲଭ ଆଉ କିଛି ନାହିଁ । ହେ ଗୋସାଇଁ ! ମୁନି ସେହି ଜ୍ଞାନ ଆପଣଙ୍କୁ କହିଲେ, କିନ୍ତୁ ଆପଣ ଭକ୍ତି ଭଳି ତାହାକୁ ଆଦର କଲେ ନାହିଁ ॥ ୫ ॥ ହେ କୃପାଧାମ ! ଜ୍ଞାନ ଓ ଭକ୍ତି ମଧ୍ୟରେ କେତେ ଅନ୍ତର ? ଏ ସବୁ ମୋତେ କୁହନ୍ତୁ ।" ଗରୁଡ଼ଙ୍କ ବଚନ ଶୁଣି ସୁଜ୍ଞାନୀ କାକଭୁଶୁଣ୍ଡି ସୁଖ ପାଇଲେ ଏବଂ ଆଦରରେ କହିଲେ—"ଭକ୍ତି ଓ ଜ୍ଞାନ ମଧ୍ୟରେ କିଛି ହେଲେ ପ୍ରଭେଦ ନାହିଁ । ସଂସାରରୁ ଜାତ କ୍ଲେଶକୁ ଉଭୟେ ହରଣ କରନ୍ତି । ହେ ନାଥ ! ମୁନୀଶ୍ୱରମାନେ ଏ ଦୁଇଟି ମଧ୍ୟରେ କିଛି ପ୍ରଭେଦ କହନ୍ତି । ହେ ବିହଙ୍ଗମ-ବର ! ତାହା ସାବଧାନ ହୋଇ ଶୁଣନ୍ତୁ ॥ ୭ ॥ ହେ ହରିବାହନ ! ଶୁଣନ୍ତୁ; ଜ୍ଞାନ, ବୈରାଗ୍ୟ, ଯୋଗ ଓ ବିଜ୍ଞାନ—ଏ ସମସ୍ତେ ପୁରୁଷ । ପୁରୁଷର ପ୍ରତାପ ସମସ୍ତ ପ୍ରକାରେ ପ୍ରବଳ । ଅବଳା ( ମାୟା ) ସ୍ୱାଭାବିକ ଭାବରେ ନିର୍ବଳ ଓ ଜନ୍ମରୁ ଜଡ଼ ବା ମୂର୍ଖ ॥ ୮ ॥ ଦୋହା :—ପରନ୍ତୁ ଯେ ବୈରାଗ୍ୟବାନ୍ ଓ ଧୀରମତି ପୁରୁଷ, ସେ ସ୍ତ୍ରୀକୁ ତ୍ୟାଗ

ଇହାଁ ନ ପଚ୍ଛପାତ କଛୁ ରାଖଉଁ । ବେଦ ପୁରାନ ସନ୍ତ ମତ ଭାଷଉଁ ॥
ମୋହ ନ ନାରି ନାରି କେଁ ରୂପା । ପନ୍ନଗାରି ୟହ ରୀତି ଅନୂପା ॥୧॥
ମାୟା ଭଗତି ସୁନହୁ ତୁହ୍ମ ଦୋଊ । ନାରିବର୍ଗ ଜାନଇ ସବ କୋଊ ॥
ପୁନି ରଘୁବୀରହି ଭଗତି ପିଆରୀ । ମାୟା ଖଲୁ ନର୍ତକୀ ବିଚାରୀ ॥୨॥
ଭଗତିହି ସାନୁକୂଲ ରଘୁରାୟା । ତା ତେଁ ତେହି ଡରପତି ଅତି ମାୟା ॥
ରାମ ଭଗତି ନିରୁପମ ନିରୁପାଧୀ । ବସଇ ଜାସୁ ଉର ସଦା ଅବାଧୀ ॥୩॥
ତେହି ବିଲୋକି ମାୟା ସକୁଚାଈ । କରି ନ ସକଇ କଛୁ ନିଜ ପ୍ରଭୁତାଈ ॥
ଅସ ବିଚାରି ଜେ ମୁନି ବିଜ୍ଞାନୀ । ଜାଚହିଁ ଭଗତି ସକଲ ସୁଖ ଖାନୀ ॥୪॥
ୟହ ରହସ୍ୟ ରଘୁନାଥ କର ବେଗି ନ ଜାନଇ କୋଇ ।
ଜୋ ଜାନଇ ରଘୁପତି କୃପାଁ ସପନେହୁଁ ମୋହ ନ ହୋଇ ॥୧୧୬(କ)॥

---

ଏଠାରେ ମୁଁ ପକ୍ଷପାତ କିଛି ନ ରଖୁଛି । ବେଦ ପୁରାଣ ସନ୍ଥଙ୍କ ମତ ବଖାଣୁଛି ॥
ମୋହିତ ନ ହୁଏ ନାରୀ ରୂପ ଦେଖି ନାରୀ । ଅନୁପମ ଅଟେ ଏହି ନୀତି, ପନ୍ନଗାରି ॥୧॥
ମାୟା ଭକତି ଉଭୟେ ଶୁଣ, ଖଗପତି । ନାରୀବର୍ଗରେ ଗଣନା, ସମସ୍ତେ ଜାଣନ୍ତି ॥
ପୁଣି ଶ୍ରୀରାମଙ୍କୁ ଭକ୍ତି ପ୍ରିୟ ଅତିଶୟ । ମାୟା ବିଚାରୀ ଅଟଇ ନର୍ତ୍ତକୀ ନିଶ୍ଚୟ ॥୨॥
ସାନୁକୂଳ ରଘୁମଣି ଭକତି ଉପରେ । ସେ ହେତୁ ମାୟା ତାହାଙ୍କୁ ଅତି ଭୟ କରେ ॥
ନିରୁପମ ନିରୁପାଧି ଶ୍ରୀରାମ-ଭକତି । ଯା'ର ହୃଦେ କରେ ସଦା ଅବାଧ ବସତି ॥୩॥
ତାହାଙ୍କୁ ବିଲୋକି ମାୟା ସଙ୍କୋଚ ଲଭଇ । ଆପଣା ପ୍ରଭୁତ୍ୱ କିଛି କରି ନ ପାରଇ ॥
ଏମନ୍ତ ବିଚାରି ଯେ ବିଜ୍ଞାନୀ ମୁନିବର । ମାଗନ୍ତି ଭକ୍ତି, ସକଳ ଶୁଭ ସୁଖାକର ॥୪॥
ଏ ଗୂଢ଼ ରହସ୍ୟ ଶ୍ରୀ ରଘୁନାଥଙ୍କ ଶୀଘ୍ର ଜାଣି ନ ହୁଅଇ ।
ରାମଙ୍କ କୃପାରେ ଯେ ଜାଣି ପାରଇ ସ୍ୱପ୍ନେ ମୋହ ନ ଲଭଇ ॥୧୧୬(କ)॥

---

କରି ପାରନ୍ତି । ବିଷୟାଧୀନ ଏବଂ ରଘୁବୀରଙ୍କ ଚରଣ ପ୍ରତି ବିମୁଖ କାମୁକ ପୁରୁଷ ତାହାଙ୍କୁ ତ୍ୟାଗ କରି ପାରନ୍ତି ନାହିଁ ॥ ୧୧୫ (କ) ॥ ଜ୍ଞାନ-ଭଣ୍ଡାର ମୁନି ମଧ୍ୟ ମୃଗନୟନୀର ଚନ୍ଦ୍ରବଦନ ଦେଖି ତାହାର ଅଧୀନ ହୋଇ ପଡନ୍ତି । ହେ ଗରୁଡ଼ ! ସାକ୍ଷାତ୍ ଭଗବାନ୍ ବିଷ୍ଣୁଙ୍କର ମାୟା ହିଁ ନାରୀ ରୂପରେ ପ୍ରକାଶ ଲାଭ କରେ ॥୧୧୫ (ଖ)॥ ଚୌପାଇ—ଏଠାରେ ମୁଁ କିଛି ପକ୍ଷପାତ ରଖୁ ନାହିଁ । ବେଦ, ପୁରାଣ ଓ ସାଧୁ-ସନ୍ଥମାନଙ୍କର ମତ ( ସିଦ୍ଧାନ୍ତ ) ହିଁ କହୁଛି । ହେ ଗରୁଡ଼ ! ଏହା ଅନୁପମ ରୀତି ଯେ ଜଣେ ସ୍ତ୍ରୀର ରୂପରେ ଅନ୍ୟ ଜଣେ ସ୍ତ୍ରୀ ମୋହିତ ହୁଏ ନାହିଁ ॥ ୧ ॥ ଆପଣ ଶୁଣନ୍ତୁ, ମାୟା ଓ ଭକ୍ତି—ଏ ଦୁହେଁ ସ୍ତ୍ରୀ-ସ୍ୱରୂପା । ଏହା ସମସ୍ତେ ଜାଣନ୍ତି । ପୁଣି ଭକ୍ତି ରଘୁବୀରଙ୍କର ପ୍ରିୟ ଅଟେ । ବିଚାରୀ ମାୟା ତ ନିଶ୍ଚୟ ନଟୀ ॥ ୨ ॥ ଶ୍ରୀ ରଘୁନାଥ ଭକ୍ତିର ବିଶେଷ ଅନୁକୂଳ । ଏହି ହେତୁ ମାୟା ସେହି ଭକ୍ତିକୁ ଅତି ମାତ୍ରାରେ ଡରେ । ଯାହାର ହୃଦୟରେ ଉପମାରହିତ ଓ ଉପାଧିରହିତ ( ବିଶୁଦ୍ଧ ) ରାମ-ଭକ୍ତି ସଦାସର୍ବଦା ଅବାଧରେ ନିବାସ

ଉରେଜ୍ ଜ୍ଞାନ ଭଗତି କର ଭେଦ ସୁନହୁ ସୁପ୍ରବୀନ ।
ଜୋ ସୁନି ହୋଇ ରାମପଦ ପ୍ରୀତି ସଦା ଅବିଛୀନ ॥୧୧୬(ଖ)॥
ସୁନହୁ ତାତ ଯହ ଅକଥ କହାନୀ । ସମୁଝତ ବନଇ ନ ଜାଇ ବଖାନୀ ॥
ଈସ୍ୱର ଅଂସ ଜୀବ ଅବିନାସୀ । ଚେତନ ଅମଲ ସହଜ ସୁଖରାସୀ ॥୧॥
ସୋ ମାୟାବସ ଭୟଉ ଗୋସାଇଁ । ବଁଧ୍ୟୋ କୀର ମରକଟ କୀ ନାଇଁ ॥
ଜଡ଼ ଚେତନହି ଗ୍ରନ୍ଥି ପରି ଗଈ । ଜଦପି ମୃଷା ଛୂଟତ କଠିନଈ ॥୨॥
ତବ ତେଁ ଜୀବ ଭୟଉ ସଂସାରୀ । ଛୂଟ ନ ଗ୍ରନ୍ଥି ନ ହୋଇ ସୁଖାରୀ ॥
ଶ୍ରୁତି ପୁରାନ ବହୁ କହେଉ ଉପାଈ । ଛୂଟ ନ ଅଧିକ ଅଧିକ ଅରୁଝାଈ ॥୩॥

---

ଜ୍ଞାନ ଭକ୍ତି ମଧ୍ୟେ ପ୍ରଭେଦ ଆବର ଶୁଣ ନାଥ, ସୁପ୍ରବୀଣ ।
ଯାହା ଶୁଣି ହୁଏ ରଘୁବୀର ପଦେ ପ୍ରୀତି ସଦା ଅବିଚ୍ଛିନ୍ନ ॥୧୧୬(ଖ)॥
ଶୁଣ ବୈନତେୟ, ଏହି ଅକଥ-କାହାଣୀ । ଅନୁଭବ-ଯୋଗ୍ୟ, କହି ନ ହୁଏ ବଖାଣି ॥
ଈଶ୍ୱର ଅଂଶ ଅଟଇ ଜୀବ ଅବିନାଶୀ । ଚେତନ ନିର୍ମଳ ସ୍ୱଭାବେ ସୁଖ-ରାଶି ॥୧॥
ସେ ମାୟାଧୀନ ହୋଇଣ, ବିହଙ୍ଗ ନନ୍ଦନ । ଶୁକ ମର୍କଟ ସଦୃଶ ହୋଇଛି ବନ୍ଧନ ॥
ଜଡ଼ ଚେତନ ମଧ୍ୟରେ ଗ୍ରନ୍ଥି ଯେ ପଡ଼ିଛି । ଯଦ୍ୟପି ମିଥ୍ୟା, ଫିଟିବା କଠିନ ହୋଇଛି ॥୨॥
ସେଦିନୁ ଜୀବ ହୋଇଛି ସଂସାରୀ ବିଶେଷ । ଗ୍ରନ୍ଥି ନ ଫିଟଇ, ସୁଖ ନ ଲଭଇ ଲେଶ ॥
ଶ୍ରୁତି ପୁରାଣ ବତାନ୍ତି ଉପାୟ ଅନେକ । ନ ଫିଟି ଅଝୁଡ଼ ହୁଏ ଅଧିକ ଅଧିକ ॥୩॥

---

କରେ, ତାହାଙ୍କୁ ଦେଖି ମାୟା ସଙ୍କୋଚ କରେ । ତାହା ଉପରେ ସେ କଦାପି ନିଜ ପ୍ରଭୁତ୍ୱ ଚଳାଇପାରେ ନାହିଁ । ଏହା ବିଚାରି କରି ବିଜ୍ଞାନୀ ମୁନିମାନେ ସକଳ ସୁଖର ଖଣି ଭକ୍ତି ହିଁ ମାଗନ୍ତି ॥୪॥ ଶ୍ରୀ ରଘୁନାଥଙ୍କ ଏହି ଗୁପ୍ତ ରହସ୍ୟ ଶୀଘ୍ର କେହି ଜାଣିପାରେ ନାହିଁ । ଶ୍ରୀ ରଘୁନାଥଙ୍କ କୃପା ହେତୁ ଯେଉଁ ବ୍ୟକ୍ତି ଏହା ଜାଣିଯାଏ, ତାହାକୁ ସ୍ୱପ୍ନରେ ହେଁ ମୋହ ଗ୍ରାସ କରେ ନାହିଁ ॥୧୧୬ (କ)॥ ହେ ସୁପ୍ରବୀଣ ଗରୁଡ଼ ! ଜ୍ଞାନ ଓ ଭକ୍ତିର ଆଉରି ମଧ୍ୟ ପ୍ରଭେଦ ଶୁଣନ୍ତୁ, ଯାହା ଶୁଣିଲେ ଶ୍ରୀରାମଙ୍କ ଚରଣ-କମଳରେ ସଦା ଅବିଚ୍ଛିନ୍ନ ପ୍ରେମ ହୋଇଯାଏ ॥୧୧୬ (ଖ)॥ ଚୌପାଈ :— ହେ ତାତ ! ଏହି ଅକଥନୀୟ କାହାଣୀ (ସମ୍ବାଦ) ଶୁଣନ୍ତୁ । ଏହା ବୁଝିବା ବା ଅନୁଭବ କରିବାର ବିଷୟ, କୁହାଯାଇ ନ ପାରେ । ଜୀବ ଈଶ୍ୱରଙ୍କ ଅଂଶ । ଅତଏବ ଏହା ଅବିନାଶୀ, ଚେତନ, ନିର୍ମଳ ଓ ସ୍ୱଭାବତଃ ସୁଖ-ରାଶି ॥୧॥ ହେ ଗୋସାଇଁ ! ଏହା ମାୟାଧୀନ ହୋଇ ଶୁକ ଓ ବାନର ପରି ଆପେ ଆପେ ବନ୍ଧନରେ ପଡ଼ିଯାଏ । ଏହି ରୂପେ ଚେତନ ଓ ଜଡ଼ ମଧ୍ୟରେ ଗ୍ରନ୍ଥି ପଡ଼ିଯାଏ । ଯଦିଓ ଗ୍ରନ୍ଥି ମିଥ୍ୟା ହେଲେ ହେଁ ତାହିଁରୁ ମୁକ୍ତିଲାଭ କରିବା ଏହା ପକ୍ଷରେ କଷ୍ଟକର ହୋଇପଡ଼େ ॥୨॥ ସେହି ସମୟଠାରୁ ଜୀବ ସଂସାରୀ (ଜନ୍ମ-ମରଣ-ଶୀଳ) ହୋଇଗଲା ବୋଲି ଜାଣ । ଏବେ ଜଡ଼ ଗ୍ରନ୍ଥି ଆଉ ନ ଖୋଲେ କି ସେ ସୁଖୀ ନ ହୁଏ । ବେଦ ଓ ପୁରାଣମାନେ

ଜୀବ ହୃଦୟଁ ତମ ମୋହ ବିସେଷୀ । ଗ୍ରନ୍ଥି ଛୂଟ କିମି ପରଇ ନ ଦେଖୀ ॥
ଅସ ସଂଜୋଗ ଈସ ଜବ କରଈ । ତବହୁଁ କଦାଚିତ ସୋ ନିରୁଅରଈ ॥୪॥
ସାତ୍ତ୍ୱିକ ଶ୍ରଦ୍ଧା ଧେନୁ ସୁହାଈ । ଜୌଁ ହରି କୃପାଁ ହୃଦୟଁ ବସ ଆଈ ॥
ଜପ ତପ ବ୍ରତ ଜମ ନିୟମ ଅପାରା । ଜେ ଶ୍ରୁତି କହ ସୁଭ ଧର୍ମ ଅଚାରା ॥୫॥
ତେଇ ତୃନ ହରିତ ଚରୈ ଜବ ଗାଈ । ଭାବ ବଚ୍ଛ ସିସୁ ପାଇ ପେହ୍ନାଈ ॥
ନୋଇ ନିବୃତ୍ତି ପାତ୍ର ବିସ୍ୱାସା । ନିର୍ମଲ ମନ ଅହୀର ନିଜ ଦାସା ॥୬॥
ପରମ ଧର୍ମମୟ ପୟ ଦୁହି ଭାଈ । ଅଵଟୈ ଅନଲ ଅକାମ ବନାଈ ॥
ତୋଷ ମରୁତ ତବ ଛମାଁ ଜୁଡ଼ାୱୈ । ଧୃତି ସମ ଜାୱନୁ ଦେଇ ଜମାୱୈ ॥୭॥
ମୁଦିତାଁ ମଥୈ ବିଚାର ମଥାନୀ । ଦମ ଅଧାର ରଜୁ ସତ୍ୟ ସୁବାନୀ ॥
ତବ ମଥି କାଢ଼ି ଲେଇ ନବନୀତା । ବିମଲ ବିରାଗ ସୁଭଗ ସୁପୁନୀତା ॥୮॥

---

ଜୀବ ହୃଦେ ମୋହ ଘୋର ତମିର ଆଚ୍ଛନ୍ନ । ଦେଖା ନ ପଡଇ ଗ୍ରନ୍ଥି ଫିଟିବ କେସନ ॥
ଏମନ୍ତ ସଂଯୋଗ ଯେବେ ଈଶ୍ୱର କରଇ । ତେବେ କାହିଁ କଦାଚିତ ସେ ଗ୍ରନ୍ଥି ଫିଟଇ ॥୪॥
ସାତ୍ତ୍ୱିକ ଶ୍ରଦ୍ଧା-ସୁରଭି ହୃଦୟରେ ଯେବେ । ଶ୍ରୀହରି କୃପାରେ ଆସି ବାସ କରେ କେବେ ॥
ଜପ ତପ ବ୍ରତ ଶମ ନିୟମ ଅପାର । ଶ୍ରୁତି ଯାହା କହେ ଶୁଭ ଧରମ ଆଚାର ॥୫॥
ସେ ହରିତ ତୃଣ ଗାଈ ଯେବେ ଚରି ଖାଏ । ପୁଣି ଭାବ-ବତ୍ସତଣ୍ଣ ପାଇଣ ପହ୍ନାଏ ॥
ନିବୃତ୍ତି ଛନ୍ଦଣି, ପାତ୍ର ହୁଅଇ ବିଶ୍ୱାସ । ନିର୍ମଳ ମନ ଗୋପାଳ ହୋଇ ନିଜ ଦାସ ॥୬॥
ପରମ ଧରମ-ମୟ ପୟ ଦୁହିଁ, ଭାଇ । ଆଉଟାଏ ସେ ନିଷ୍କାମ ଅନଳ ଜଳାଇ ॥
ସନ୍ତୋଷ-ପବନ ଦ୍ୱାରା ଶୀତଳ କରଣ । ବସାଏ ଧଇର୍ଯ୍ୟ-ଶମ-ଜାଆଣ ଦେଇଣ ॥୭॥
ହରଷ-ଭାଣ୍ଡେ ମନ୍ଥନ-ଦଣ୍ଡ ସୁବିଚାର । ରଜ୍ଜୁ ସତ୍ୟ ଶୁଭ ବାଣୀ ଦମନ ଆଧାର ॥
ମନ୍ଥିଣ ତହିଁରୁ କାଢି ନଅଇ ସେ ପୁଣି । ବିମଳ ପୁନୀତ ସୁରୁ ବୈରାଗ୍ୟ-ଲହୁଣୀ ॥୮॥

---

ବହୁତ ଉପାୟ ବତାଇ ଅଛନ୍ତି । କିନ୍ତୁ ଉକ୍ତ ଗ୍ରନ୍ଥି ଦୂର ହୁଏ ନାହିଁ; ବରଂ ଅଧିକରୁ ଅଧିକତର ଅଜୁଆଡୁଆ ହୋଇଯାଏ ॥୩॥ ଜୀବର ହୃଦୟକୁ ମୋହାନ୍ଧକାର ବିଶେଷ ରୂପେ ଆଚ୍ଛନ୍ନ କରି ରହିଥାଏ । ଏହି ହେତୁ ସେହି ଗ୍ରନ୍ଥି ଦେଖାଯାଏ ନାହିଁ । ତେବେ ତାହା ଦୂର ହେବ କିପରି ? ଯେତେବେଳେ ଈଶ୍ୱର ( ପରବର୍ଣ୍ଣିତ ) ସୁଯୋଗ ଜୁଟାଇ ଦିଅନ୍ତି, ସେତେବେଳେ କ୍ୱଚିତ୍ ଅବା ଏହି ଗ୍ରନ୍ଥି ଦୂର ହୁଏ ॥୪॥ ଯଦି ଶ୍ରୀହରିଙ୍କ କୃପାରୁ ସାତ୍ତ୍ୱିକ ଶ୍ରଦ୍ଧାରୂପୀ ସୁନ୍ଦର ଗାଈ ହୃଦୟ-ସଦନରେ ଆସି ବାସ କରେ, ବେଦୋକ୍ତ ଅସଂଖ୍ୟ ଜପ, ତପ, ବ୍ରତ, ଯମ ଓ ନିୟମାଦି ଶୁଭଧର୍ମ ଏବଂ ଆଚାର-ବ୍ୟବହାର ରୂପକ ସବୁଜ ଘାସକୁ ଯେତେବେଳେ ଉକ୍ତ ଶ୍ରଦ୍ଧା-ଗାଈ ଚରେ ଏବଂ (ଆସ୍ତିକ) ଭାବରୂପୀ ସାନ ବାଛୁରିକୁ ପାଇ ସେ ପହ୍ନାଏ, ନିବୃତ୍ତି ପଘା ହୁଏ, ବିଶ୍ୱାସ ଦୁଧଦୁହାଁ ପାତ୍ର ହୁଏ, ନିଜ ବଶୀଭୂତ ନିର୍ମଳ ମନ (ଦୋହନକାରୀ) ଗଉଡ ହୁଏ; ହେ ଭାଇ ! ଏହି ରୂପେ ଯଦି ଉକ୍ତ ମନରୂପୀ ଗଉଡ ପରମ ଧର୍ମମୟ ଦୁଗ୍ଧ ଦୁହିଁ

ଜୋଗ ଅଗିନି କରି ପ୍ରଗଟ ତବ କର୍ମ ସୁଭାସୁଭ ଲାଇ ।
ବୁଦ୍ଧି ସିରାବୈଁ ଜ୍ଞାନ ଘୃତ ମମତା ମଲ ଜରି ଜାଇ ॥୧୧୭(କ)॥
ତବ ବିଜ୍ଞାନ ରୂପିନି ବୁଦ୍ଧି ବିସଦ ଘୃତ ପାଇ ।
ଚିତ୍ତ ଦିଆ ଭରି ଧରୈ ଦୃଢ଼ ସମତା ଦିଅଟି ବନାଇ ॥୧୧୭(ଖ)॥
ତୀନି ଅବସ୍ଥା ତୀନି ଗୁନ ତେହି କପାସ ତେଁ କାଢ଼ି ।
ତୂଲ ତୁରୀୟ ସଁୱାରି ପୁନି ବାତୀ କରୈ ସୁଗାଢ଼ି ॥୧୧୭(ଗ)॥
ଏହି ବିଧି ଲେସୈ ଦୀପ ତେଜ ରାସି ବିଜ୍ଞାନମୟ ।
ଜାତହିଁ ଜାସୁ ସମୀପ ଜରହିଁ ମଦାଦିକ ସଲଭ ସବ ॥୧୧୭(ଘ)॥

ଯୋଗାନଳ ତହୁଁ ପରକାଶି ଜାଳି ଶୁଭାଶୁଭ କର୍ମାବଳୀ ।
ବୁଦ୍ଧିରେ ଶୀତଳେ ଜ୍ଞାନ-ଘୃତ, ଜଳିଗଲେ ମମତାର ମଳ ॥୧୧୭(କ)॥
ତଦନ୍ତେ ବିଜ୍ଞାନ-ରୂପିଣୀ ସୁବୁଦ୍ଧି ବିମଳ ଘୃତ ପାଇଣ ।
ଚିତ୍ତ-ଦୀପେ ଭରି ରଖେ ଦୃଢ଼ କରି ସମତା-ଝାଡ଼ ରଚିଣ ॥୧୧୭(ଖ)॥
ତିନି ଯେ ଅବସ୍ଥା ତିନିଗୁଣ କପା ତହିଁ ମଧ୍ୟରୁ କାଢିଣ ।
ତୁରୀୟ-ତୁଳାରେ କରଇ ଯତ୍ନରେ ଦୃଢ ବତୀ ସମ୍ଭାଳିଣ ॥ ୧୭(ଗ)॥
ଜାଳନ୍ତେ ଏମନ୍ତ ପୂର୍ଣ୍ଣ ତେଜବନ୍ତ ସେ ବିଜ୍ଞାନମୟ ଦୀପ ।
ଜଳନ୍ତି ମଦାଦି-ଶଲଭ ସମସ୍ତ ଯାଆନ୍ତେ ତାର ସମୀପ ॥୧୧୭(ଘ)॥

ତାହାକୁ ନିଷ୍କାମ-ଭାବ ରୂପକ ଅଗ୍ନିରେ ଭଲ ରୂପେ ଆଉଟେ, ପୁଣି କ୍ଷମା ଓ ସନ୍ତୋଷ ରୂପକ ପବନ ଯୋଗେ ତାହାକୁ ଥଣ୍ଡା କରେ ଏବଂ ଧୈର୍ଯ୍ୟ ଓ ଶମ (ମନ-ନିଗ୍ରହ)-ରୂପୀ ମହି ଦେଇ ତାହାକୁ ଦହି ବସାଏ, ତତ୍ପରେ ପ୍ରସନ୍ନତା ରୂପକ ହାଣ୍ଡିରେ ତତ୍ତ୍ୱବିଚାରରୂପକ ମନ୍ଥନଦଣ୍ଡ ଯୋଗେ ଇନ୍ଦ୍ରିୟ-ଦମନ ଆଧାରରେ (ଦମନ ରୂପକ ଖମ୍ବ ଆଦିର ସାହାଯ୍ୟରେ) ସତ୍ୟ ଓ ସୁନ୍ଦର ବାଣୀ ରୂପକ ରଜ୍ଜୁ ଲଗାଇ ତାହାକୁ ମନ୍ଥନ କରେ ଏବଂ ମନ୍ଥନ କରି ତହିଁ ମଧ୍ୟରୁ ନିର୍ମଳ, ସୁନ୍ଦର ଓ ଅତି ପବିତ୍ର ବୈରାଗ୍ୟ ରୂପକ ଲବଣୀ ବାହାର କରିନିଏ, ॥ ୫-୮ ॥ ଦୋହା :—ସେତେବେଳେ ସେ ଯୋଗରୂପୀ ଅନଳ ପ୍ରକାଶ କରି ତହିଁରେ ସମସ୍ତ ଶୁଭାଶୁଭ କର୍ମରୂପକ ଇନ୍ଧନ ଲଗାଇଦିଏ (ସମସ୍ତ କର୍ମକୁ ଯୋଗରୂପକ ଅନଳରେ ଭସ୍ମ କରିଦିଏ) । ଯେତେବେଳେ ବୈରାଗ୍ୟ-ଲବଣୀର ମମତା-ମଳ ଜଳିଯାଏ, ସେତେବେଳେ ସେ ଅବଶିଷ୍ଟ ଜ୍ଞାନ-ଘୃତକୁ ନିଶ୍ଚୟାତ୍ମିକା ବୁଦ୍ଧିଯୋଗେ ଶୀତଳ କରେ ॥ ୧୧୭ (କ) ॥ ସେତେବେଳେ ବିଜ୍ଞାନ-ରୂପୀ ବୁଦ୍ଧି ସେହି ନିର୍ମଳ ଘୃତକୁ ପାଇ ତାହାଦ୍ୱାରା ଚିତ୍ତରୂପୀ ଦୀପକୁ ପୂର୍ଣ୍ଣ କରି ସମତାର ଗୋଟିଏ ଝାଡ଼ (ଦୀପବୃକ୍ଷ) ନିର୍ମାଣ କରି, ତାହା ଉପରେ ତାହାକୁ ଜମାଇ (ଦୃଢ ଭାବରେ) ରଖେ, ॥ ୧୧୭ (ଖ) ॥ ତିନି ଅବସ୍ଥା (ଜାଗ୍ରତ୍, ସ୍ୱପ୍ନ ଓ ସୁଷୁପ୍ତି) ଓ ତିନି ଗୁଣ (ସତ୍ତ୍ୱ, ରଜ ଓ ତମ) ରୂପକ କପାରୁ ତୁରୀୟାବସ୍ଥା ରୂପକ ତୁଳାକୁ ବାହାର କରି ଏବଂ

ସୋହମସ୍ମି ଇତି ବୃତ୍ତି ଅଖଣ୍ଡା । ଦୀପସିଖା ସୋଇ ପରମ ପ୍ରଚଣ୍ଡା ॥
ଆତମ ଅନୁଭବ ସୁଖ ସୁପ୍ରକାସା । ତବ ଭବ ମୂଲ ଭେଦ ଭ୍ରମ ନାସା ॥୧॥
ପ୍ରବଲ ଅବିଦ୍ୟା କର ପରିବାରା । ମୋହ ଆଦି ତମ ମିଟଇ ଅପାରା ॥
ତବ ସୋଇ ବୁଦ୍ଧି ପାଇ ଉଜିଆରା । ଉର ଗୃହଁ ବୈଠି ଗ୍ରନ୍ଥି ନିରୁଆରା ॥୨॥
ଛୋରନ ଗ୍ରନ୍ଥି ପାୱ ଜୌଁ ସୋଈ । ତବ ଯହ ଜୀବ କୃତାରଥ ହୋଈ ॥
ଛୋରତ ଗ୍ରନ୍ଥି ଜାନି ଖଗରାୟା । ବିଘ୍ନ ଅନେକ କରଇ ତବ ମାୟା ॥୩॥
ରିଦ୍ଧି ସିଦ୍ଧି ପ୍ରେରଇ ବହୁ ଭାଈ । ବୁଦ୍ଧିହି ଲୋଭ ଦିଖାୱହିଁ ଆଈ ॥
କଲ ବଲ ଛଲ କରି ଜାହିଁ ସମୀପା । ଅଞ୍ଚଲ ବାତ ବୁଝାୱହିଁ ଦୀପା ॥୪॥
ହୋଇ ବୁଦ୍ଧି ଜୌଁ ପରମ ସୟାନୀ । ତିନ୍ହ ତନ ଚିତୱ ନ ଅନହିତ ଜାନୀ ॥
ଜୌଁ ତେହି ବିଘ୍ନ ବୁଦ୍ଧି ନହିଁ ବାଧୀ । ତୌ ବହୋରି ସୁର କରହିଁ ଉପାଧୀ ॥୫॥

---

ସୋଽହମସ୍ମି ଇତି ଲକ୍ଷ ବୃତ୍ତି ଯେ ଅଖଣ୍ଡ । ଦୀପ-ଶିଖା ଅଟେ ସେହି ପରମ ପ୍ରଚଣ୍ଡ ॥
ନିଜ ଆତ୍ମା ଅନୁଭବ ସୁଖ ସୁପ୍ରକାଶ । ତେବେ ଭବ ମୂଳ ଭେଦ-ଭ୍ରମ ହୁଏ ନାଶ ॥୧॥
ଯେତେକ ପ୍ରବଳ ଅବିଦ୍ୟାର ପରିବାର । ମୋହ ତମ ଆଦି ନଷ୍ଟ ହୁଅନ୍ତି ଅପାର ॥
ତହୁଁ ସେହି ବୁଦ୍ଧି-ଦୀପ ଆଲୋକ ପାଇଣ । ଫିଟାଏ ଗ୍ରନ୍ଥି ହୃଦୟ-ଭବନେ ବସିଣ ॥୨॥
ସେହି ବୁଦ୍ଧି ଗ୍ରନ୍ଥି ଯଦି ଫିଟାଇ ପାରଇ । ତେବେ ଏହି ଜୀବ ଯାଇ କୃତାର୍ଥ ହୁଅଇ ॥
ଗ୍ରନ୍ଥି ଫିଟାଇବା ଜାଣି ବିହଙ୍ଗ-ପୁଙ୍ଗବ । ଅନେକ ପ୍ରକାରେ ମାୟା କରେ ଉପଦ୍ରବ ॥୩॥
ପ୍ରେରଣା କରଇ ବହୁ ଋଦ୍ଧି ସିଦ୍ଧି, ଭାଇ । ବୁଦ୍ଧିକୁ ଦେଖାଏ ଲୋଭ ନାନାମତେ ଯାଇ ॥
କଲ ବଲ ଛଲ କରି ଯାଇ ସେ ସମୀପ । ଲିଭାଇ ଦିଏ ଅଞ୍ଚଳ-ସମୀରଣେ ଦୀପ ॥୪॥
ପରମ ଚତୁରୀ ବୁଦ୍ଧି ହୋଇଥାଏ ଯେବେ । ତାହାକୁ ନ ଚାହେଁ ଜାଣି ଅପକାରୀ ତେବେ ॥
ଯେବେ ତା ବିଘ୍ନ ବୁଦ୍ଧିକୁ ନ ପାରନ୍ତି ବାଧି । ପୁଣି ସୁରଗଣ ବହୁ କରନ୍ତି ଉପାଧି ॥୫॥

---

ତାହାକୁ ଦିଲ ତାହାଯୋଗେ ସୁନ୍ଦର ବର୍ତ୍ତି ତିଆରି କରେ, ॥ ୧୧୭ (ଗ) ॥ ସୋରଠା :—ଏହି ରୂପେ ତେଜରାଶି ବିଜ୍ଞାନମୟ ଦୀପକୁ ଜଳାଏ ଏବଂ ତାହାର ସମୀପକୁ ଯିବା ମାତ୍ରେ ମଦ ଆଦି ପତଙ୍ଗ ଜଳିଯାଆନ୍ତି ॥ ୧୧୭ (ଘ) ॥ ଚୌପାଇ :— "ସୋଽହମସ୍ମି" ("ସେହି ବ୍ରହ୍ମ ମୁଁ")—ଏହି ଯେଉଁ ଅଖଣ୍ଡ ବୃତ୍ତି, ତାହା ସେହି ଜ୍ଞାନ-ଦୀପର ପରମ ପ୍ରଚଣ୍ଡ ଦୀପଶିଖା । ଏହି ରୂପେ ଯେତେବେଳେ ଆତ୍ମାନୁଭବ-ସୁଖର ଉତ୍ତମ ପ୍ରକାଶ ବିସ୍ତାର ଲାଭ କରେ, ସେତେବେଳେ ସଂସାରର ମୂଳ ଭେଦ-ଭ୍ରମ ନାଶ ଯାଏ ॥ ୧ ॥ ଏବଂ ମହାନ୍ ବଲବନ୍ତ ଅବିଦ୍ୟା-ପରିବାରର ଅନ୍ତର୍ଗତ ମୋହ ଆଦିର ଅପାର ଅନ୍ଧକାର ଲୋପ ପାଏ । ସେତେବେଳେ ସେହି ବିଜ୍ଞାନରୂପିଣୀ ବୁଦ୍ଧି ଆତ୍ମାନୁଭବ-ପ୍ରକାଶକୁ ପାଇ ହୃଦୟ-ଗୃହରେ ବସି ସେହି (ଜଡଚେତନର) ଗ୍ରନ୍ଥିକୁ ଖୋଲେ ॥ ୨ ॥ ଯଦି ସେହି ବିଜ୍ଞାନରୂପିଣୀ ବୁଦ୍ଧି ଉକ୍ତ ଗ୍ରନ୍ଥିକୁ ଖୋଲିପାରେ, ତେବେ ଏହି ଜୀବ କୃତାର୍ଥ ହୁଏ । କିନ୍ତୁ ହେ ପକ୍ଷିରାଜ ଗରୁଡ ! ଗ୍ରନ୍ଥି ଖୋଲିବାର

ଇନ୍ଦ୍ରୀ-ଦ୍ୱାର ଝରୋଖା ନାନା । ତହଁ ତହଁ ସୁର ବୈଠେ କରି ଥାନା ॥
ଆୱତ ଦେଖହିଁ ବିଷୟ ବୟାରୀ । ତେ ହଠି ଦେହିଁ କପାଟ ଉଘାରୀ ।୬॥
ଜବ ସୋ ପ୍ରଭଞ୍ଜନ ଉର ଗୃହଁ ଜାଈ । ତବହିଁ ଦୀପ ବିଜ୍ଞାନ ବୁଝାଈ ॥
ଗ୍ରନ୍ଥି ନ ଛୁଟି ମିଟା ସୋ ପ୍ରକାସା । ବୁଦ୍ଧି ବିକଲ ଭଇ ବିଷୟ ବତାସା ॥୭॥
ଇନ୍ଦ୍ରିନ୍ହ ସୁରନ୍ହ ନ ଜ୍ଞାନ ସୋହାଈ । ବିଷୟ ଭୋଗ ପର ପ୍ରୀତି ସଦାଈ ॥
ବିଷୟ ସମୀର ବୁଦ୍ଧି କୃତ ଭୋରୀ । ତେହି ବିଧି ଦୀପ କୋ ବାର ବହୋରୀ ॥୮॥

ତବ ଫିରି ଜୀବ ବିବିଧି ବିଧି ପାୱଇ ସଂସୃତି କ୍ଲେସ ।
ହରି ମାୟା ଅତି ଦୁସ୍ତର ତରି ନ ଜାଇ ବିହଗେସ ॥୧୧୮(କ)॥

---

ଇନ୍ଦ୍ରିୟ ଦ୍ୱାର ଝରକା ବିବିଧ ବିଧାନ । ଯହିଁ ତହିଁ ସୁରେ ବସି କରିଛନ୍ତି ସ୍ଥାନ ॥
ବିଷୟ-ବତାସ ଯେବେ ଆସିବା ଦେଖନ୍ତି । ହଠି ସେମାନେ କବାଟ ଫିଟାଇ ଦିଅନ୍ତି ॥୬॥
ଯଦି ସେହି ପ୍ରଭଞ୍ଜନ ହୃଦ-ଗୃହେ ଯାଏ । ସେ କ୍ଷଣି ବିଜ୍ଞାନ-ମୟ ଦୀପକୁ ଲିଭାଏ ॥
ଗ୍ରନ୍ଥି ନ ଫିଟୁଣୁ ଲିଭିଯାଏ ସେ ପ୍ରକାଶ । ବୁଦ୍ଧିକୁ ବିକଳ କରେ ବିଷୟ-ବତାସ ॥୭॥
ଇନ୍ଦ୍ରିୟ ସୁରଙ୍କୁ ଜ୍ଞାନ ଭଲ ନ ଲାଗଇ । ବିଷୟ-ଭୋଗରେ ପ୍ରୀତି ସତତ ରହଇ ॥
ବୁଦ୍ଧି ଭୋଳି କରିଦିଏ ବିଷୟ-ପବନ । ପୁନର୍ବାର ଦୀପ କିଏ ଜାଳିବ ତେସନ ॥୮॥

ଜୀବ ଏହା ପରେ ଅନେକ ପ୍ରକାରେ ଲଭଇ ସଂସୃତି କ୍ଲେଶ ।
ହରିମାୟା ଅତି ଦୁସ୍ତର ଅଟଇ ତରି ନ ହୁଏ, ଖଗେଶ ॥୧୧୮(କ)॥

---

ଜାଣି ମାୟା ପୁଣି ଅନେକ ବିଘ୍ନ ଘଟାଏ ॥ ୩ ॥ ହେ ଭାଇ ! ସେ ଋଦ୍ଧି-ସିଦ୍ଧିମାନଙ୍କୁ ପଠାଏ, ସେମାନେ ଆସି ବୁଦ୍ଧିକୁ ଲୋଭ ଦେଖାନ୍ତି; ସେହି ଋଦ୍ଧିସିଦ୍ଧିଗଣ କଳ, ବଳ ଓ ଛଳ କରି ସମୀପକୁ ଯାଆନ୍ତି ଏବଂ ପଣନ୍ତର ପବନରେ ସେହି ଜ୍ଞାନ-ଦୀପକୁ ଲିଭାଇ ଦିଅନ୍ତି ॥ ୪ ॥ ଯଦି ବୁଦ୍ଧି ଅତିଶୟ ପରିପକ୍ୱ ହୋଇଥାଏ, ତେବେ ସେ ସେହି ଋଦ୍ଧିସିଦ୍ଧିମାନଙ୍କୁ ଅହିତକର (କ୍ଷତିକାରକ) ବୋଲି ବିଚାର କରି ସେମାନଙ୍କ ଆଡ଼କୁ ଅନାଏଁ ନାହିଁ । ଏହି ରୂପେ ଯଦି ମାୟାର ବିଘ୍ନ ଯୋଗେ ବୁଦ୍ଧି ବାଧାପ୍ରାପ୍ତ ନ ହୁଏ, ତେବେ ଦେବତାମାନେ ପୁଣି ଉପାଧି (ବିଘ୍ନ) ସୃଷ୍ଟି କରନ୍ତି ॥ ୫ ॥ ବିଭିନ୍ନ ଇନ୍ଦ୍ରିୟ ହୃଦୟ-ଗୃହର ଅନେକ ଦ୍ୱାର ଓ ଝରକା ପରି । ସେହି ସେହି ସ୍ଥାନରେ (ପ୍ରତ୍ୟେକ ଦ୍ୱାର ଓ ଝରକାରେ) ଦେବତାମାନେ ଆଡ୍ଡା ଜମାଇ ବସିଥାଆନ୍ତି । ସେମାନେ ଯେମିତି ବିଷୟ-ପବନକୁ ଆସୁଥିବାର ଦେଖନ୍ତି, ସେମିତି ବଳପ୍ରୟୋଗ କରି ଦ୍ୱାର-ଗୁଡ଼ିକ ଖୋଲି ଦିଅନ୍ତି ॥ ୬ ॥ ସେହି ପ୍ରଭଞ୍ଜନ ହୃଦୟ-ଗୃହରେ ପ୍ରବେଶ କରିବା ମାତ୍ରେ ବିଜ୍ଞାନ-ଦୀପ ଲିଭିଯାଏ। ଫଳତଃ ଗ୍ରନ୍ଥି ତ ଖୋଲେନାହିଁ ଏବଂ ସେହି ଆତ୍ମାନୁଭବ-ପ୍ରକାଶ ସୁଦ୍ଧା ଲୋପ ପାଇଯାଏ । ବିଷୟ-ସମୀର ଯୋଗେ ବୁଦ୍ଧି ବ୍ୟାକୁଳ ହୋଇପଡେ ଏବଂ ବାରବର୍ଷର ତପସ୍ୟା ଶୁଖୁଆପୋଡାରେ ଲୋପ ପାଇଯାଏ ॥ ୭ ॥ ଇନ୍ଦ୍ରିୟଗଣ ଓ ସେମାନଙ୍କ ଦେବତାଗଣଙ୍କୁ ସ୍ୱଭାବତଃ ଜ୍ଞାନ ରୁଚେନାହିଁ । କାରଣ, ବିଷୟଭୋଗରେ

କହତ କଠିନ ସମୁଝତ କଠିନ ସାଧତ କଠିନ ବିବେକ ।
ହୋଇ ଘୁନାଚ୍ଛର ନ୍ୟାୟ ଜୌଁ ପୁନି ପ୍ରତ୍ୟୂହ ଅନେକ ॥୧୧୮(ଖ)॥
ଜ୍ଞାନ ପନ୍ଥ କୃପାନ କୈ ଧାରା । ପରତ ଖଗେସ ହୋଇ ନହିଁ ବାରା ॥
ଜୋ ନିବିଘ୍ନ ପନ୍ଥ ନିବଂହଈ । ସୋ କୈବଲ୍ୟ ପରମପଦ ଲହଈ ॥୧॥
ଅତି ଦୁର୍ଲଭ କୈବଲ୍ୟ ପରମପଦ । ସନ୍ତ ପୁରାନ ନିଗମ ଆଗମ ବଦ ॥
ରାମ ଭଜତ ସୋଇ ମୁକୁତି ଗୋସାଈଁ । ଅନଇଚ୍ଛିତ ଆୱଇ ବରିଆଈଁ ॥୨॥
ଜିମି ଥଲ ବିନୁ ଜଲ ରହି ନ ସକାଈ । କୋଟି ଭାଁତି କୋଉ କରଇ ଉପାଈ ॥
ତଥା ମୋଚ୍ଛ ସୁଖ ସୁନୁ ଖଗରାଈ । ରହି ନ ସକଇ ହରିଭଗତି ବିହାଈ ॥୩॥

---

କହିବା କଠିନ ବୁଝିବା କଠିନ କଠିନ ଜ୍ଞାନ-ସାଧନ ।
ଘୁଣାକ୍ଷର ନ୍ୟାୟେ ଯେବେ ହୋଇଯାଏ, ପୁଣି ବିଘ୍ନ ଅଗଣନ ॥୧୧୮(ଖ)॥
ଜ୍ଞାନର ପଥ ଅଟଇ ଖଡ୍ଗ ଧାର ପ୍ରାୟ । ପଡିବାକୁ ଡେରି ନ ଲାଗଇ, ଖଗରାୟ ॥
ଯେହୁ ନିର୍ବିଘ୍ନରେ ପଥ ଅତିକ୍ରମି ଯାଏ । ପରମ ପଦ କୈବଲ୍ୟ ସେ ମନୁଷ୍ୟ ପାଏ ॥୧॥
କୈବଲ୍ୟ ପରମ ପଦ ଦୁର୍ଲ୍ଲଭ ଅତ୍ୟନ୍ତ । ବଖାଣନ୍ତି ସନ୍ଥ ଶ୍ରୁତି ପୁରାଣ ସମସ୍ତ ॥
ରାମ ଭଜନେ ସେ ମୁକ୍ତି ନାଥ, ଅନାୟାସେ । ଇଚ୍ଛା ନ କଲେହେଁ ଆସେ ବଳାତ୍କାରେ ପାଶେ ॥୨॥
ଯେହ୍ନେ ସ୍ଥଳ ବିନା ରହି ନ ପାରଇ ଜଳ । ଅନେକ ପ୍ରକାରେ କେହି କଲେହେଁ କୌଶଳ ॥
ତେହ୍ନେ ମୋକ୍ଷସୁଖ ତେଜି ହରିଙ୍କ ଭକତି । ରହି ନ ପାରଇ କେବେ, ଶୁଣ, ଖଗପତି ॥୩॥

---

ସେମାନଙ୍କର ସର୍ବଦା ପ୍ରୀତି ରହିଥାଏ ଏବଂ ବିଷୟ-ସମୀର ବୁଦ୍ଧିକୁ ସୁଦ୍ଧା ଭ୍ରଷ୍ଟ କରିଦିଏ । ସେତେବେଳେ ସେହି ଜ୍ଞାନ-ଦୀପକୁ ସେହି ରୂପେ ଆଉ ଜଳାଇବ କିଏ ? ॥ ୮ ॥ ଦୋହା :—ଏହି ରୂପେ ଜ୍ଞାନ-ଦୀପ ନିର୍ବାପିତ ହେଲେ ଜୀବ ପୁଣି ଅନେକ ପ୍ରକାରେ ସଂସୃତି (ଜନ୍ମମରଣାଦି) କ୍ଳେଶ ପାଏ । ହେ ପକ୍ଷିରାଜ ! ହରିଙ୍କର ମାୟା ଅତି ଦୁସ୍ତର । ତାହା ସହଜରେ ତରି ହୁଏନାହିଁ ॥ ୧୧୮ (କ) ॥ ଜ୍ଞାନ କହିବାକୁ ବା ବୁଝେଇବାକୁ କଠିନ, ବୁଝିବାକୁ କଠିନ ଏବଂ ସାଧନା କରିବାକୁ ମଧ୍ୟ କଠିନ । ଯଦି ଘୁଣାକ୍ଷର ନ୍ୟାୟରେ (ଦୈବାତ୍) କ୍ୱଚିତ୍ ଏହି ଜ୍ଞାନ ଲାଭ ହୋଇଯାଏ, ତଥାପି ତାହାକୁ ପୁଣି ବଞ୍ଚାଇ ରଖିବାରେ ଅନେକ ବିଘ୍ନ ଆସି ପଡନ୍ତି ॥ ୧୧୮ (ଖ) ॥ ଚୌପାଈ :— ଜ୍ଞାନର ମାର୍ଗ ତରବାରିର ଧାରପରି । ହେ ପକ୍ଷିରାଜ ! ଏହି ମାର୍ଗରୁ ସ୍ଖଳିତ ହେବାକୁ ବିଳମ୍ବ ଲାଗେନାହିଁ । ହେ ପକ୍ଷିରାଜ ! ଯେ ଏହି ମାର୍ଗକୁ ନିର୍ବିଘ୍ନରେ ନିର୍ବାହ କରିପାରେ, ସେହି ଏକା କୈବଲ୍ୟ (ମୋକ୍ଷ) ରୂପ ପରମପଦ ଲାଭ କରେ ॥ ୧ ॥ ସନ୍ଥ, ପୁରାଣ, ବେଦ ଓ ତନ୍ତ୍ରାଦି ଶାସ୍ତ୍ର କହନ୍ତି ଯେ କୈବଲ୍ୟରୂପ ପରମପଦ ଅତ୍ୟନ୍ତ ଦୁର୍ଲ୍ଲଭ । କିନ୍ତୁ ହେ ଗୋସାଇଁ ! ସେହି ଅତି ଦୁର୍ଲ୍ଲଭ ମୁକ୍ତି ଶ୍ରୀରାମଙ୍କ ଭଜନ ଯୋଗେ ବିନା ଇଚ୍ଛାରେ ବି ଜବରଦସ୍ତି ଆସିଯାଏ ॥ ୨ ॥ କେହି କୋଟି ଉପାୟ କଲେ ସୁଦ୍ଧା ଯେପରି ସ୍ଥଳ ବିନା ଜଳ ରହିପାରେ ନାହିଁ, ହେ ପକ୍ଷିରାଜ ! ଶୁଣନ୍ତୁ, ସେହିପରି ମୋକ୍ଷସୁଖ

ଅସ ବିଚାରି ହରିଭଗତ ସୟାନେ । ମୁକ୍ତି ନିରାଦରି ଭଗତି ଲୁଭାନେ ॥
ଭଗତି କରତ ବିନୁ ଜତନ ପ୍ରୟାସା । ସଂସୃତି ମୂଲ ଅବିଦ୍ୟା ନାସା ॥୪॥
ଭୋଜନ କରିଅ ତୃପିତି ହିତ ଲାଗୀ । ଜିମି ସୋ ଅସନ ପଚବୈ ଜଠରାଗୀ ॥
ଅସି ହରିଭଗତି ସୁଗମ ସୁଖଦାଈ । କୋ ଅସ ମୂଢ଼ ନ ଜାହି ସୋହାଈ ॥୫॥

ସେବକ ସେବ୍ୟ ଭାବ ବିନୁ ଭବ ନ ତରିଅ ଉରଗାରି ।
ଭଜହୁ ରାମପଦ-ପଙ୍କଜ ଅସ ସିଦ୍ଧାନ୍ତ ବିଚାରି ॥୧୧୯(କ)॥
ଜୋ ଚେତନ କହଁ ଜଡ଼ କରଇ ଜଡ଼ହି କରଇ ଚୈତନ୍ୟ ।
ଅସ ସମର୍ଥ ରଘୁନାୟକହି ଭଜହିଁ ଜୀବ ତେ ଧନ୍ୟ ॥୧୧୯(ଖ)॥

କହେଉଁ ଜ୍ଞାନ ସିଦ୍ଧାନ୍ତ ବୁଝାଈ । ସୁନହୁ ଭଗତି ମନି କୈ ପ୍ରଭୁତାଈ ॥
ରାମ-ଭଗତି ଚିନ୍ତାମନି ସୁନ୍ଦର । ବସଇ ଗରୁଡ଼ ଜା କେ ଉର ଅନ୍ତର ॥୧॥

---

ସୁଚତୁର ହରିଭକ୍ତ ବୁଝିଣ ଏପରି । ଭକ୍ତିରେ କରନ୍ତି ଲୋଭ ମୁକ୍ତି ଅନାଦରି ॥
ଭକ୍ତି କରନ୍ତେ ଯତନ ବିନା, ଅନାୟାସ । ସଂସୃତି-ମୂଳ ଅବିଦ୍ୟା ହୁଅଇ ବିନାଶ ॥୪॥
ଆତ୍ମତୃପ୍ତି ହେତୁ ସର୍ବେ କରନ୍ତି ଭୋଜନ । ଯେମନ୍ତେ ଜଠରାଗ୍ନି କରେ ସେ ଅନ୍ନ ପାଚନ ॥
ଏହିପରି ହରିଭକ୍ତି ସୁଗମ ସୁଖଦ । ଯାହାକୁ ଭଲ ନ ଲାଗେ ଏମନ୍ତ କେ ମନ୍ଦ ॥୫॥

ସେବକର ସେବ୍ୟ-ଭାବ ବିନା ଭବ ତରି ନ ହୁଏ, ବ୍ୟାଳାରି ।
ଭଜ ରଘୁରାଜ-ଚରଣ-ସରୋଜ ଏହି ସିଦ୍ଧାନ୍ତ ବିଚାରି ॥୧୧୯(କ)॥
ଚେତନକୁ ଯେହୁ ଜଡ କରିପାରେ ଜଡକୁ କରେ ଚୈତନ୍ୟ ।
ଏମନ୍ତ ସମର୍ଥ ରାମ ରଘୁନାଥ, ସେ ଜୀବ ଭଜେ ସେ ଧନ୍ୟ ॥୧୧୯(ଖ)॥

କହିଲି ଜ୍ଞାନ-ସିଦ୍ଧାନ୍ତ ତୁମ୍ଭଙ୍କୁ ବୁଝାଇ । ଭକତି ମଣି ମହିମା ଶୁଣ ଏବେ ଭାଇ ॥
ରାମ-ଭକ୍ତି ଅଟେ ଚିନ୍ତାମଣି ମନୋହର । ନିବାସ କରେ ଯାହାର ହୃଦେ, ଖଗବର ॥୧॥

---

ମଧ୍ୟ ହରିଭକ୍ତି ଛାଡି ରହିପାରେ ନାହିଁ ॥ ୩ ॥ ଏହିପରି ବିଚାର କରି ବୁଦ୍ଧିମାନ୍ ହରିଭକ୍ତମାନେ ଭକ୍ତିରେ ପ୍ରଲୁବ୍ଧ ରହନ୍ତି ଏବଂ ମୁକ୍ତିକୁ ଅନାଦର କରନ୍ତି । ଭକ୍ତି କଲେ ଜନ୍ମମୃତ୍ୟୁ ରୂପ ସଂସାରର ଜଡ଼ ଅବିଦ୍ୟା ଯତ୍ନ ଓ ପରିଶ୍ରମ ବିନା ସ୍ୱତଃ ନଷ୍ଟ ହୋଇଯାଏ ॥ ୪ ॥ ଯେପରି ତୃପ୍ତି ନିମନ୍ତେ ଭୋଜନ କରାଯାଏ ଏବଂ ଉକ୍ତ ଭୋଜନକୁ ଜଠରାଗ୍ନି ଆମର ଚେଷ୍ଟା ବିନା ସ୍ୱତଃ ହଜମ କରି ଆମକୁ ସୁଖ ଦିଏ, ସେହିପରି ସୁଗମ ହରିଭକ୍ତି ଅନାୟାସରେ ଅବିଦ୍ୟା ନାଶ କରି ଆମମାନଙ୍କୁ ପରମ ସୁଖ ଦାନ କରେ । ଏହିପରି ସୁଗମ ଓ ସୁଖଦାୟିନୀ ହରିଭକ୍ତି ଯାହାକୁ ରୁଚିକର ନୁହେଁ, ସେପରି ମୂଢ଼ କିଏ ହେବ ? ॥ ୫ ॥ ଦୋହା :—ହେ ସର୍ପଶତ୍ରୁ ଗରୁଡ଼ ! "ମୁଁ ସେବକ ଏବଂ ଭଗବାନ୍ ମୋର ସେବ୍ୟ (ସ୍ୱାମୀ) ।" —ଏହି ଭାବନା ବିନା ସଂସାର-ସାଗରରୁ କେହି ତରିପାରିବେ ନାହିଁ । ଏହି ସିଦ୍ଧାନ୍ତ ବିଚାରି ଶ୍ରୀରାମଚନ୍ଦ୍ରଙ୍କ ଚରଣ-କମଳକୁ ଭଜନ କର ॥ ୧୧୯ (କ) ॥ ଯେ ଚେତନକୁ ଜଡ କରି ଦିଅନ୍ତି ଏବଂ ଜଡକୁ ଚେତନ କରି ଦିଅନ୍ତି, ଏହିପରି ସମର୍ଥ ଶ୍ରୀ ରଘୁନାଥଙ୍କୁ ଯେଉଁ ଜୀବମାନେ ଭଜନ

ପରମ ପ୍ରକାସ ରୂପ ଦିନ ରାତୀ । ନହିଁ କଛୁ ଚହିଅ ଦିଆ ଘୃତ ବାତୀ ॥
ମୋହ ଦରିଦ୍ର ନିକଟ ନହିଁ ଆୱା । ଲୋଭ-ବାତ ନହିଁ ତାହି ବୁଝାୱା ॥୨॥
ପ୍ରବଲ ଅବିଦ୍ୟା ତମ ମିଟି ଜାଈ । ହାରହିଁ ସକଲ ସଲଭ ସମୁଦାଈ ॥
ଖଲ କାମାଦି ନିକଟ ନହିଁ ଜାହୀଁ । ବସଇ ଭଗତି ଜା କେ ଉର ମାହୀଁ ॥୩॥
ଗରଲ ସୁଧାସମ ଅରି ହିତ ହୋଈ । ତେହି ମନି ବିନୁ ସୁଖ ପାୱ ନ କୋଈ ॥
ବ୍ୟାପହିଁ ମାନସରୋଗ ନ ଭାରୀ । ଜିନ୍ହ କେ ବସ ସବ ଜୀବ ଦୁଖାରୀ ॥୪॥
ରାମଭଗତି-ମନି ଉର ବସ ଜାକେଁ । ଦୁଖ ଲବଲେସ ନ ସପନେହୁଁ ତାକେଁ ॥
ଚତୁରସିରୋମନି ତେଇ ଜଗ ମାହୀଁ । ଜେ ମନି ଲାଗି ସୁଜତନ କରାହୀଁ ॥୫॥

---

ସ୍ୱୟଂ ସେ ପ୍ରକାଶ ରୂପ ଦିନରାତି ଅଟି । ନାହିଁ ପ୍ରୟୋଜନ ତହିଁ ଦୀପ ଘୃତ ବତି ॥
ମୋହ ଦରିଦ୍ର ତାହାର ପାଶେ ନ ଆସଇ । ଲୋଭ ବାତ ତାହାକୁ ଲିଭାଇ ନ ପାରଇ ॥୧॥
ପ୍ରବଳ ଅବିଦ୍ୟା-ତମ ନଷ୍ଟ ହୋଇଯାଏ । ହାରନ୍ତି ପୁଣି ପତଙ୍ଗ ଜାତି ସମୁଦାଏ ॥
କାମାଦି ଖଳ ନ ଯାନ୍ତି ନିକଟେ ତାହାର । ବାସ କରେ ଭକ୍ତି-ମଣି ହୃଦୟେ ଯାହାର ॥୨॥
ଗରଳ ସୁଧା ସମାନ ଶତ୍ରୁ ହୁଏ ମିତ । ସୁଖ ନ ଲଭଇ କେହି ସେ ମଣି ବ୍ୟତୀତ ॥
ବ୍ୟାପଇ ନାହିଁ ମାନସ ରୋଗ ଅତିଶୟ । ଯାହାର ବଶେ ଦୁଃଖିତ ଜୀବ ସମୁଦୟ ॥୩॥
ରାମ ଭକ୍ତି-ମଣି ଯାର ହୃଦେ ବାସ କରେ । ଦୁଃଖ ଲବ ଲେଶ ତାଙ୍କୁ ନ ହୁଏ ସ୍ୱପ୍ନରେ ॥
ଚତୁର ଶିରୋମଣି ସେ କୁହାଏ ଜଗତେ । ଯେଉଁ ଜନ ଯତ୍ନ କରେ ମଣିର ନିମନ୍ତେ ॥୪॥

---

କରନ୍ତି, ସେହିମାନେ ଧନ୍ୟ ॥ ୧୧୯ (ଖ) ॥ ଚୌପାଈ :— ମୁଁ ଜ୍ଞାନର ସିଦ୍ଧାନ୍ତ ବୁଝାଇ କହିଲି । ବର୍ତ୍ତମାନ ଭକ୍ତିରୂପୀ ମଣିର ମହିମା ଶୁଣନ୍ତୁ । ଶ୍ରୀରାମଙ୍କ ଭକ୍ତି ସୁନ୍ଦର ଚିନ୍ତାମଣି । ହେ ଗରୁଡ ! ଏହା ଯାହାର ହୃଦୟ ଭିତରେ ନିବାସ କରେ, ସେ ଦିନରାତି ସ୍ୱତଃ ପରମ ପ୍ରକାଶ-ରୂପ ହୋଇ ରହେ । ତାହାର ଦୀପ, ଘୃତ ଓ ବତି ଆଦି କିଛି ହେଲେ ଦରକାର ନାହିଁ । ଏହି ରୂପେ ଏବେ ତ ମଣିର ସ୍ୱାଭାବିକ ଜ୍ୟୋତି ରହିଥାଏ । ପୁଣି ମଣି ସ୍ୱୟଂ ଧନରୂପ ହୋଇଥିବାରୁ ମୋହ-ଦାରିଦ୍ର୍ୟ ତାହାର ସମୀପକୁ ଆସିପାରେ ନାହିଁ । ତୃତୀୟତଃ ଲୋଭ-ବାୟୁ ସେହି ମଣିମୟ ଦୀପକୁ ନିର୍ବାପିତ କରିପାରେନାହିଁ ॥ ୧-୨ ॥ ତାହାର ପ୍ରକାଶ ଯୋଗେ ଅବିଦ୍ୟାର ପ୍ରବଳ ଅନ୍ଧକାର ଲୋପ ପାଇଯାଏ । ମଦାଦି ପତଙ୍ଗ ସମୂହ ହାରିଯାଆନ୍ତି । ଯାହାର ହୃଦୟରେ ଭକ୍ତି ନିବାସ କରେ, କାମ, କ୍ରୋଧ ଓ ଲୋଭ ଆଦି ଦୁଷ୍ଟ ତାହା ପାଖ ସୁଦ୍ଧା ମାଡନ୍ତି ନାହିଁ ॥୩॥ ତାହା ନିମନ୍ତେ ବିଷ ଅମୃତ ତୁଲ୍ୟ ଓ ଶତ୍ରୁ ମିତ୍ର ହୋଇଯାଏ । ସେହି ମଣି ବିନା କେହି ସୁଖ ପାଏନାହିଁ । ବଡ ବଡ ମାନସିକ ରୋଗ, ଯେଉଁମାନଙ୍କର ବଶୀଭୂତ ହୋଇ ସମସ୍ତ ଜୀବ ଦୁଃଖୀ ହୁଅନ୍ତି, ତାହାକୁ ଆକ୍ରମଣ କରନ୍ତି ନାହିଁ ॥ ୪ ॥ ଶ୍ରୀରାମଙ୍କ ଭକ୍ତିରୂପିଣୀ ମଣି ଯାହାର ହୃଦୟରେ ନିବାସ କରେ, ତାହାର ସ୍ୱପ୍ନରେ ସୁଦ୍ଧା ଲେଶ ମାତ୍ର ଦୁଃଖ ରହେନାହିଁ । ସେହି ଭକ୍ତି-ମଣି ନିମନ୍ତେ ଯେଉଁମାନେ ଭଲ ରୂପେ ଯତ୍ନ

ସୋ ମନି ଜଦପି ପ୍ରଗଟ ଜଗ ଅହଈ । ରାମକୃପା ବିନୁ ନହିଁ କୋଉ ଲହଈ ॥
ସୁଗମ ଉପାୟ ପାଇବେ କେରେ । ନର ହତଭାଗ୍ୟ ଦେହିଁ ଭଟଭେରେ ॥୬॥
ପାବନ ପର୍ବତ ବେଦ ପୁରାନା । ରାମ-କଥା ରୁଚିରାକର ନାନା ॥
ମର୍ମୀ ସଜ୍ଜନ ସୁମତି କୁଦାରୀ । ଜ୍ଞାନ ବିରାଗ ନୟନ ଉରଗାରୀ ॥୭॥
ଭାବ ସହିତ ଖୋଜଇ ଜୋ ପ୍ରାନୀ । ପାଵ ଭଗତି-ମନି ସବ ସୁଖ ଖାନୀ ॥
ମୋରେଁ ମନ ପ୍ରଭୁ ଅସ ବିସ୍ୱାସା । ରାମ ତେଁ ଅଧିକ ରାମ କର ଦାସା ॥୮॥
ରାମ ସିନ୍ଧୁ ଘନ ସଜ୍ଜନ ଧୀରା । ଚନ୍ଦନତରୁ ହରି ସନ୍ତ ସମୀରା ॥
ସବ କର ଫଲ ହରିଭଗତି ସୁହାଈ । ସୋ ବିନୁ ସନ୍ତ ନ କାହୁଁ ପାଈ ॥୯॥
ଅସ ବିଚାରି ଜୋଇ କର ସତସଙ୍ଗା । ରାମଭଗତି ତେହି ସୁଲଭ ବିହଂଗା ॥୧୦॥

---

ସେ ମଣି ଯଦ୍ୟପି ବିଶ୍ୱେ ପ୍ରକଟ ଅଟଇ । ରାମ କୃପାବିନା କେହି ପାଇ ନ ପାରଇ ॥
ସୁଗମୋପାୟ ଥିଲେହେଁ ପାଇବାର ଅତି । ଅଭାଗା ମନୁଷ୍ୟ ପାଦେ ଠେଲିଣ ଦିଅନ୍ତି ॥୬॥
ବେଦ ପୁରାଣାଦି ପୂତ ପରବତ ସମ । ରାମକଥା ନାନାବିଧ ଆକର ଉତ୍ତମ ॥
ମର୍ମଜ୍ଞ ସଜ୍ଜନଗଣ, ସୁମତି ଖଣିତ୍ର । ଜ୍ଞାନ ବୈରାଗ୍ୟ ନୟନ ପ୍ରାୟେ, ଖଗପତି ॥୭॥
ଭାବ ସହ ଯେଉଁ ପ୍ରାଣୀ ଖନନ କରଇ । ସର୍ବ ସୁଖରାଶି ଭକ୍ତି-ମଣି ସେ ଲଭଇ ॥
ପ୍ରଭୁ, ମୋ ମନ ମଧ୍ୟରେ ଏମନ୍ତ ବିଶ୍ୱାସ । ରାମଙ୍କଠାରୁ ଅଧିକ ରାମଙ୍କର ଦାସ ॥୮॥
ରାମ ସିନ୍ଧୁ ସମ, ଘନ ସଜ୍ଜନଙ୍କ ଗଣ । ଚନ୍ଦନ ତରୁ ଶ୍ରୀହରି, ସନ୍ଥ ସମୀରଣ ॥
ସମସ୍ତଙ୍କ ଫଳ ଅଟେ ଶ୍ରୀହରି ଭକତି । ତାହା ସନ୍ଥ ବିନା କେହି ପାଇ ନ ପାରନ୍ତି ॥୯॥
ଏହା ବିଚାରିଣ ଯେହୁ କରଇ ସତ୍ସଙ୍ଗ । ରାମ-ଭକ୍ତି ତା ନିମନ୍ତେ ସୁଲଭ, ବିହଙ୍ଗ ॥୧୦॥

---

କରନ୍ତି, ଜଗତରେ ସେହି ମନୁଷ୍ୟମାନେ ଚତୁର-ଶିରୋମଣି ॥ ୫ ॥ ଯଦ୍ୟପି ଭକ୍ତି ମଣି ଜଗତରେ ପ୍ରତ୍ୟକ୍ଷ ଅଛି, କିନ୍ତୁ ଶ୍ରୀରାମଙ୍କ କୃପା ବିନା କେହି ତାହା ପାଇପାରେନାହିଁ । ତାହା ପାଇବାର ଉପାୟ ସୁଗମ; କିନ୍ତୁ ହତଭାଗ୍ୟ ମନୁଷ୍ୟ ସେଗୁଡ଼ିକୁ ଗୋଡ଼ରେ ଠେଲିଦିଏ ॥ ୬ ॥ ବେଦପୁରାଣ ପବିତ୍ର ପର୍ବତ । ଶ୍ରୀରାମଙ୍କ ନାନା ପ୍ରକାର କଥା ସେହି ସମସ୍ତ ପର୍ବତରେ ଥିବା ଅନେକ ସୁନ୍ଦର ଖଣି । ସନ୍ଥ ପୁରୁଷମାନେ ଏହି ସମସ୍ତ ଖଣିର ମର୍ମଜ୍ଞ ଏବଂ ସୁବୁଦ୍ଧି କୋଦାଳ । ହେ ଗରୁଡ ! ଜ୍ଞାନ ଓ ବୈରାଗ୍ୟ—ଏ ଦୁହେଁ ସେମାନଙ୍କର ନେତ୍ର ॥ ୭ ॥ ଯେଉଁ ପ୍ରାଣୀ ତାହାକୁ ପ୍ରେମସହକାରେ ଅନୁସନ୍ଧାନ କରେ, ସେହି ସମସ୍ତ ସୁଖର ଖଣି ଏହି ଭକ୍ତି-ମଣିକୁ ପାଏ । ହେ ପ୍ରଭୋ ! ମୋର ମନରେ ଏହିପରି ବିଶ୍ୱାସ ଯେ, ଶ୍ରୀରାମଙ୍କ ଦାସ ଶ୍ରୀରାମଙ୍କଠାରୁ ମଧ୍ୟ ବଳି ଶ୍ରେଷ୍ଠ ॥ ୮ ॥ ଶ୍ରୀରାମଚନ୍ଦ୍ର ସମୁଦ୍ର ଏବଂ ଧୀର ସନ୍ଥ ପୁରୁଷ ମେଘ । ଶ୍ରୀହରି ଚନ୍ଦନବୃକ୍ଷ ଓ ସନ୍ଥଜନ ପବନ । ସମସ୍ତ ସାଧନାର ଫଳ ସୁନ୍ଦର ହରିଭକ୍ତି । ସନ୍ଥବିନା ତାହାକୁ କେହି ପାଇନାହାନ୍ତି ॥ ୯ ॥ ହେ ଗରୁଡ ! ଏହା ବିଚାର କରି ଯିଏ ସୁଜ୍ଞ ସାଧୁସନ୍ଥଙ୍କ ସଙ୍ଗ କରେ, ତାହା ନିମନ୍ତେ ଶ୍ରୀରାମ-ଭକ୍ତି ସୁଲଭ ହୋଇଯାଏ ॥ ୧୦ ॥ ଦୋହା :—

ବ୍ରହ୍ମ ପୟୋନିଧି ମନ୍ଦର ଜ୍ଞାନ ସନ୍ତ ସୁର ଆହିଁ ।
କଥା ସୁଧା ମଥି କାଢ଼ହିଁ ଭଗତି ମଧୁରତା ଜାହିଁ ॥୧୨୦(କ)॥
ବିରତି ଚର୍ମ ଅସି ଜ୍ଞାନ ମଦ ଲୋଭ ମୋହ ରିପୁ ମାରି ।
ଜୟ ପାଇଅ ସୋ ହରିଭଗତି ଦେଖୁ ଖଗେସ ବିଚାରି ॥୧୨୦(ଖ)॥

ପୁନି ସପ୍ରେମ ବୋଲେଉ ଖଗରାଊ । ଜୌଁ କୃପାଲ ମୋହି ଊପର ଭାଊ ॥
ନାଥ ମୋହି ନିଜ ସେବକ ଜାନୀ । ସପ୍ତ ପ୍ରସ୍ନ ମମ କହହୁ ବଖାନୀ ॥୧॥
ପ୍ରଥମହିଁ କହହୁ ନାଥ ମତିଧୀରା । ସବ ତେଁ ଦୁର୍ଲଭ କବନ ସରୀରା ॥
ବଡ଼ ଦୁଖ କବନ କବନ ସୁଖ ଭାରୀ । ସୋଉ ସଂଛେପହିଁ କହହୁ ବିଚାରୀ ॥୨॥
ସନ୍ତ ଅସନ୍ତ ମରମ ତୁମ୍ହ ଜାନହୁ । ତିନ୍ହ କର ସହଜ ସୁଭାଉ ବଖାନହୁ ॥
କବନ ପୁଣ୍ୟ ଶ୍ରୁତି ବିଦିତ ବିସାଲା । କହହୁ କବନ ଅଘ ପରମ କରାଲା ॥୩॥

---

ବେଦ ପୟୋନିଧି, ବିଜ୍ଞାନ ମନ୍ଦର, ସାଧୁ ସୁରଗଣ ଯଥା ।
କଥା-ସୁଧା ମନ୍ଥି ବାହାର କରନ୍ତି, ଭକ୍ତି ତହିଁ ମଧୁରତା ॥ ୨୦(କ)॥
ବଇରାଗ୍ୟ-ଢାଲେ, ଜ୍ଞାନ-ଖଡ୍‌ଗେ ମଦ-ଲୋଭ-ମୋହ-ରିପୁ ମାରି ॥
ବିଜୟ ଯେ ଲଭେ ତାହା ହରିଭକ୍ତି, ଦେଖ ଖଗେଶ, ବିଚାରି ॥ ୨୦(ଖ)॥
ପୁଣି ସପ୍ରେମେ ଭାଷିଲ୍ଲ ବିନତା-କୁମର । ଯେବେ ମୋ ଉପରେ ସ୍ନେହ କୃପାଳୁ, ତୁମ୍ଭର ॥
ନାଥ, ଏବେ ମୋତେ ନିଜ ଅନୁଚର ଜାଣି । କହନ୍ତୁ ମୋ ସପ୍ତ ପ୍ରଶ୍ନ ଉତ୍ତର ବଖାଣି ॥୧॥
ପ୍ରଥମେ କହନ୍ତୁ ଏହା ନାଥ, ମତି ଧୀର । ସମସ୍ତଙ୍କଠାରୁ କେଉଁ ଦୁର୍ଲ୍ଲଭ ଶରୀର ॥
କେବଣ ଦୁଃଖ ବିଶାଳ କେଉଁ ସୁଖ ଭାରି । ନାଥ, ସଂକ୍ଷେପରେ ତାହା କହନ୍ତୁ ବିଚାରି ॥୨॥
ତୁମ୍ଭେ ସାଧୁ ଅସାଧୁଙ୍କ ମର୍ମ ସବୁ ଜାଣ । ଏବେ ତାହାଙ୍କ ସହଜ ସ୍ୱଭାବ ବଖାଣ ॥
କେବଣ ପୁଣ୍ୟ ଶ୍ରୁତିରେ ବିଦିତ ବିଶାଳ । କହ କେବଣ ପାତକ ପରମ କରାଳ ॥୩॥

---

ବ୍ରହ୍ମ (ବେଦ) ସମୁଦ୍ର, ଜ୍ଞାନ ମନ୍ଦରାଚଳ ଏବଂ ସନ୍ଥମାନେ ଦେବତା । ଏହି ସନ୍ଥ-ଦେବତାଗଣ ସେହି ସମୁଦ୍ରକୁ ମନ୍ଥନ କରି କଥାମୃତ ବାହାର କରନ୍ତି, ତହିଁରେ ଭକ୍ତି-ମାଧୁରୀ ବାସ କରେ ॥ ୧୨୦ (କ) ॥ ବୈରାଗ୍ୟରୂପୀ ଢାଲ ଯୋଗେ ନିଜକୁ ରକ୍ଷା କରି ଜ୍ଞାନ-ତରବାରି ଯୋଗେ ମଦ, ଲୋଭ ଓ ମୋହ—ବୈରୀମାନଙ୍କୁ ମାରି ଯେ ବିଜୟ ଲାଭ କରେ, ତାହାହିଁ ହରିଭକ୍ତି; ହେ ପକ୍ଷିରାଜ ! ଏହାକୁ ବିଚାରି ଦେଖନ୍ତୁ ।" ॥ ୧୨୦ (ଖ) ॥ ଚୌପାଇ :—ପକ୍ଷିରାଜ ଗରୁଡ ପୁଣି ପ୍ରେମ ଭାବରେ କହିଲେ, "ହେ କୃପାଳୁ ! ଯଦି ମୋ ପ୍ରତି ଆପଣଙ୍କ ପ୍ରେମ ଥାଏ, ତେବେ ହେ ନାଥ ! ମୋତେ ନିଜ ସେବକ ବୋଲି ଜାଣି ମୋର ସାତଗୋଟି ପ୍ରଶ୍ନର ଉତ୍ତର ବଖାଣି କୁହନ୍ତୁ ॥ ୧ ॥ ହେ ନାଥ ! ହେ ଧୀରବୁଦ୍ଧି ! ପ୍ରଥମେ କୁହନ୍ତୁ—ସବୁଠାରୁ ଦୁର୍ଲ୍ଲଭ କେଉଁ ଶରୀର ? ପୁଣି ସବୁଠାରୁ ବଡ ଦୁଃଖ କ'ଣ ଏବଂ ସବୁଠାରୁ ବଡ ସୁଖ କ'ଣ ? ଏହା ମଧ୍ୟ ବିଚାର କରି ସଂକ୍ଷେପରେ କୁହନ୍ତୁ ॥ ୨ ॥ ସନ୍ଥ ଓ ଅସନ୍ଥଙ୍କ ରହସ୍ୟ (ଭେଦ)

ମାନସରୋଗ କହହୁ ସମୁଝାଈ । ତୁହ୍ମ ସର୍ବଜ୍ଞ କୃପା ଅଧିକାଈ ॥
ତାତ ସୁନହୁ ସାଦର ଅତି ପ୍ରୀତି । ମୈଁ ସଂଛେପ କହଉଁ ୟହ ନୀତୀ ॥୪॥
ନର ତନ ସମ ନହିଁ କୱନିଉ ଦେହୀ । ଜୀବ ଚରାଚର ଜାଚତ ତେହୀ ॥
ନରକ ସ୍ୱର୍ଗ ଅପବର୍ଗ ନିସେନୀ । ଜ୍ଞାନ ବିରାଗ ଭଗତି ସୁଭ ଦେନୀ ॥୫॥
ସୋ ତନୁ ଧରି ହରି ଭଜହିଁ ନ ଜେ ନର । ହୋହିଁ ବିଷୟରତ ମନ୍ଦ ମନ୍ଦତର ॥
କାଁଚ କିରିଚ ବଦଲେଁ ତେ ଲେହୀଁ । କର ତେଁ ଡାରି ପରସମନି ଦେହୀଁ ॥୬॥
ନହିଁ ଦରିଦ୍ର ସମ ଦୁଖ ଜଗ ମାହୀଁ । ସନ୍ତମିଲନ ସମ ସୁଖ ଜଗ ନାହୀଁ ॥
ପର ଉପକାର ବଚନ ମନ କାୟା । ସନ୍ତ ସହଜ ସୁଭାଉ ଖଗରାୟା ॥୭॥
ସନ୍ତ ସହହିଁ ଦୁଖ ପରହିତ ଲାଗୀ । ପର ଦୁଖ ହେତୁ ଅସନ୍ତ ଅଭାଗୀ ॥
ଭୂର୍ଜ ତରୁ ସମ ସନ୍ତ କୃପାଲା । ପରହିତ ନିତି ସହ ବିପତି ବିସାଲା ॥୮॥

ମାନସ ରୋଗ ସମସ୍ତ କରନ୍ତୁ ପ୍ରକଟ । ତୁମ୍ଭେ ସର୍ବଜ୍ଞ କୃପାଳୁ-ଶିରୋମଣି ଅଟ ॥
ତାତ ! ସାଦରେ ଶ୍ରବଣ କର ଅତି ପ୍ରୀତି । ସଂକ୍ଷେପ ଭାବରେ ମୁହିଁ କହୁଛି ଏ ନୀତି ॥୪॥
ନର ସମ ନାହିଁ ଅନ୍ୟ କେଉଁ କଳେବର । ଯାଚନା କରନ୍ତି ଯାହା ଜୀବ ଚରାଚର ॥
ସ୍ୱର୍ଗ ନର୍କ ଅପବର୍ଗ ନିଶ୍ରୁଣି ସମାନ । ପ୍ରଦାନ କରେ ବୈରାଗ୍ୟ, ଶୁଭ ଭକ୍ତି ଜ୍ଞାନ ॥୫॥
ଏ ତନୁ ପାଇ ଯେ ହରି ନ ଭଜଇ ନର । ହୁଅଇ ବିଷୟରତ ମନ୍ଦୁ ମନ୍ଦତର ॥
ସେ କାଚ-କଣିକା ତାର ବଦଳେ ନିଅଇ । ପରଶ-ମଣିକୁ ଫିଙ୍ଗି ହସ୍ତରୁ ଦିଅଇ ॥୬॥
ଦରିଦ୍ର ସମ ଜଗତେ ନାହିଁ ଅନ୍ୟ ଦୁଃଖ । ସନ୍ଥ-ମିଳନ ସମାନ ନାହିଁ କିଛି ସୁଖ ॥
ମନ କର୍ମ ବଚନରେ ପର-ଉପକାରୀ । ସନ୍ଥ ସହଜ ସ୍ୱଭାବ ଶୁଣ, ଉରଗାରି ॥୭॥
ସହନ୍ତି ସନ୍ତାପ ସନ୍ଥ ପରହିତ ଅର୍ଥେ । ଅଭାଗ୍ୟ ଅସନ୍ଥ ପର ପୀଡନ ନିମନ୍ତେ ॥
ଭୋଜ ବୃକ୍ଷ ପରି ସାଧୁ ଦୟାଳୁ ଅଟନ୍ତି । ପରହିତେ ନିତ୍ୟ ଦୁଃଖ ଦୁଃସହ ସହନ୍ତି ॥୮॥

ଆପଣ ଜାଣନ୍ତି । ସେମାନଙ୍କର ସହଜ ସ୍ୱଭାବ ବର୍ଣ୍ଣନା କରନ୍ତୁ । ଆହୁରି ମଧ୍ୟ କୁହନ୍ତୁ— ଶ୍ରୁତି-ବିଦିତ ସବୁଠାରୁ ମହାନ୍ ପୁଣ୍ୟ କ'ଣ ଏବଂ ସବୁଠାରୁ ମହାଭୟଙ୍କର ପାପ କ'ଣ ? ॥ ୩ ॥ ମାନସିକ ରୋଗମାନଙ୍କର କଥା ବୁଝାଇ କୁହନ୍ତୁ । ଆପଣ ସର୍ବଜ୍ଞ ଏବଂ ମୋ ଉପରେ ଆପଣଙ୍କର କୃପା ମଧ୍ୟ ବହୁତ ।" କାକ ଭୁଶୁଣ୍ଡି କହିଲେ, "ହେ ତାତ ! ଅତି ଆଦର ଓ ପ୍ରେମ ସହକାରେ ଶୁଣନ୍ତୁ । ମୁଁ ଏହି ନୀତି ସଂକ୍ଷେପରେ କହୁଅଛି ॥ ୪ ॥ ମନୁଷ୍ୟ-ଶରୀର ସମାନ କୌଣସି ଶରୀର ଆଉ ନାହିଁ । ଚରାଚର ସମସ୍ତ ପ୍ରାଣୀ ସେହି ଶରୀର ଭିକ୍ଷା (କାମନା) କରନ୍ତି । ସେହି ମନୁଷ୍ୟ-ଶରୀର ନର୍କ, ସ୍ୱର୍ଗ ଓ ମୋକ୍ଷର ସୋପାନ ଏବଂ ତାହାହିଁ କଲ୍ୟାଣକାରୀ ଜ୍ଞାନ, ବୈରାଗ୍ୟ ଓ ଭକ୍ତି ଦାନ କରେ ॥ ୫ ॥ ଏହିପରି ମନୁଷ୍ୟ-ଶରୀର ପାଇ ଯେଉଁ ଲୋକମାନେ ଶ୍ରୀହରିଙ୍କ ଭଜନ ନ କରନ୍ତି ଏବଂ ହୀନରୁ ହୀନତର ବିଷୟ-ବାସନା ପ୍ରତି ଅନୁରକ୍ତ ରହନ୍ତି, ସେମାନେ ପରଶମଣିକୁ ହାତରୁ ଫିଙ୍ଗି ଦିଅନ୍ତି ଏବଂ ତତ୍ପରିବର୍ତ୍ତେ କାଚଖଣ୍ଡ ଗ୍ରହଣ କରନ୍ତି ॥ ୬ ॥

ସନ ଇବ ଖଲ ପର ବନ୍ଧନ କରଈ । ଖାଲ କଢ଼ାଇ ବିପତି ସହି ମରଈ ॥
ଖଲ ବିନୁ ସ୍ୱାରଥ ପର ଅପକାରୀ । ଅହି ମୂଷକ ଇବ ସୁନୁ ଉରଗାରୀ ॥୯॥
ପର ସଂପଦା ବିନାସି ନସାହିଁ । ଜିମି ସସି ହତି ହିମ ଉପଲ ବିଲାହିଁ ॥
ଦୁଷ୍ଟ ଉଦୟ ଜଗ ଆରତି ହେତୂ । ଜଥା ପ୍ରସିଦ୍ଧ ଅଧମ ଗ୍ରହ କେତୂ ॥୧୦॥
ସନ୍ତ ଉଦୟ ସନ୍ତତ ସୁଖକାରୀ । ବିସ୍ୱ ସୁଖଦ ଜିମି ଇନ୍ଦୁ ତମାରୀ ॥
ପରମ ଧର୍ମ ଶ୍ରୁତି ବିଦିତ ଅହିଂସା । ପର ନିନ୍ଦା ସମ ଅଘ ନ ଗରୀସା ॥୧୧॥
ହର ଗୁର ନିନ୍ଦକ ଦାଦୁର ହୋଈ । ଜନ୍ମ ସହସ୍ର ପାଵ ତନ ସୋଈ ॥
ଦ୍ୱିଜ ନିନ୍ଦକ ବହୁ ନରକ ଭୋଗ କରି । ଜଗ ଜନମଇ ବାୟସ ସରୀର ଧରି ॥୧୨॥

---

ଶଣ ପରି ଖଲ ପର ବନ୍ଧନ କରଇ । ଛାଲ କଢାଇ ବିପତ୍ତି ସହିଣ ମରଇ ॥
ଖଲ ବିନା ସ୍ୱାର୍ଥ ସଦା ପର-ଅପକାରୀ । ଅହି ମୂଷିକ ସମାନ ଶୁଣ, ପନ୍ନଗାରି ॥୯॥
ପର ସମ୍ପତ୍ତି ବିନାଶି ଆପେ ନାଶ ଯାଏ । ଯେସନ୍ତେ କୃଷି ନାଶି ହିମ ଉପଲ ମିଳାଏ ॥
ଦୁଷ୍ଟଙ୍କ ଉଦୟ ବିଶ୍ୱ ଭୟଦାନ ହେତୁ । ଯେମନ୍ତେ ପ୍ରସିଦ୍ଧ ଅଟେ ଗ୍ରହ ଧୂମକେତୁ ॥୧୦॥
ସାଧୁଙ୍କ ଉଦୟ ସଦା ଅଟେ ସୁଖକର । ବିଶ୍ୱ ସୁଖଦ ଯେସନେ ଇନ୍ଦୁ, ଦିବାକର ॥
ଶ୍ରୁତି-ବିଦିତ ଅହିଂସା ପରମ ଧରମ । ଗରିଷ୍ଠାନ ପାପ ନାହିଁ ପରନିନ୍ଦା ସମ ॥୧୧॥
ହର-ଗୁରୁ-ନିନ୍ଦୁକ ଯେ ମଣ୍ଡୂକ ହୁଅଇ । ସହସ୍ର ଜନମ ସେହି ସେ ତନୁ ଧରଇ ॥
ଦ୍ୱିଜ-ନିନ୍ଦୁକ ନରକ ବହୁ ଭୋଗ କରି । ଜଗତେ ଜନମେ କାକ କୁଶରୀର ଧରି ॥୧୨॥

---

ଜଗତରେ ଦରିଦ୍ରତା ସମାନ ଦୁଃଖ ଆଉ ନାହିଁ ଏବଂ ସାଧୁସନ୍ଥଙ୍କ ମିଳନ ସମାନ ଜଗତରେ ଆଉ ସୁଖ ନାହିଁ । ହେ ପକ୍ଷିରାଜ ! କାୟମନୋବାକ୍ୟରେ ପରୋପକାର କରିବା ସନ୍ଥମାନଙ୍କର ସହଜ ସ୍ୱଭାବ ॥ ୭ ॥ ସନ୍ଥ ପରର ହିତ ନିମନ୍ତେ ଦୁଃଖ ସହନ୍ତି ଏବଂ ହତଭାଗ୍ୟ ଅସନ୍ଥମାନେ ଅନ୍ୟର ଦୁଃଖର କାରଣ ହୁଅନ୍ତି । କୃପାଳୁ ସନ୍ଥମାନେ ପରର ହିତ ନିମନ୍ତେ ଭୋଜବୃକ୍ଷ ସମାନ ଭୟାନକ ବିପତ୍ତି ସହନ୍ତି ॥ ୮ ॥ କିନ୍ତୁ ଦୁଷ୍ଟମାନେ ଛଣପଟ ପରି ଅନ୍ୟମାନଙ୍କୁ ବନ୍ଧନ କରନ୍ତି ଏବଂ ସେମାନଙ୍କୁ ବାନ୍ଧିବା ନିମନ୍ତେ ନିଜ ନିଜର ବି ଚମଡ଼ା କଢାଇ ବିପତ୍ତି ସହି ମରିଯାଆନ୍ତି । ହେ ସର୍ପଶତ୍ରୁ ଗରୁଡ଼ ! ଶୁଣନ୍ତୁ, ଦୁଷ୍ଟମାନେ ସ୍ୱାର୍ଥ ନ ଥାଇ ସୁଦ୍ଧା ସର୍ପ ଓ ମୂଷିକ ପରି ବୃଥାରେ ଅନ୍ୟର ଅପକାର କରନ୍ତି ॥ ୯ ॥ ଯେପରି କରକା (କୁଆପଥର) ଶସ୍ୟ ନାଶ କରି ଆପେ ନଷ୍ଟ ହୋଇଯାଏ, ସେହିପରି ସେମାନେ ପରର ସମ୍ପତ୍ତି ନାଶ କରି ନିଜେ ନିଜେ ମଧ୍ୟ ନଷ୍ଟ ହୋଇଯାଆନ୍ତି । ପ୍ରସିଦ୍ଧ ଅଧମ ଗ୍ରହ କେତୁର ଉଦୟ ପରି ଜଗତରେ ଦୁଃଖ ନିମନ୍ତେ ଦୁଷ୍ଟର ଅଭ୍ୟୁଦୟ ଘଟିଥାଏ ॥ ୧୦ ॥ ସୂର୍ଯ୍ୟଚନ୍ଦ୍ରଙ୍କ ଉଦୟ ସମଗ୍ର ଜଗତ ନିମନ୍ତେ ସୁଖଦାୟକ ହେଲା ପରି ସାଧୁସନ୍ଥମାନଙ୍କ ଅଭ୍ୟୁଦୟ ସର୍ବଦା ସୁଖକର ହୋଇଥାଏ । ବେଦମାନେ ଅହିଂସାକୁ ପରମଧର୍ମ ରୂପେ ସ୍ୱୀକାର କରିଅଛନ୍ତି । ପରନିନ୍ଦା ସମାନ ଗରିଷ୍ଠ ପାପ ଆଉ ନାହିଁ ବୋଲି ସେମାନଙ୍କର ମତ ॥ ୧୧ ॥ ଶଙ୍କର ଓ ଗୁରୁଙ୍କ ନିନ୍ଦୁକ ମନୁଷ୍ୟ

ସୁର ଶ୍ରୁତି ନିନ୍ଦକ ଜେ ଅଭିମାନୀ । ରୌରବ ନରକ ପରହିଁ ତେ ପ୍ରାନୀ ॥
ହୋହିଁ ଉଲୂକ ସନ୍ତ ନିନ୍ଦା ରତ । ମୋହ ନିସା ପ୍ରିୟ ଜ୍ଞାନ ଭାନୁ ଗତ ॥୧୩॥
ସବ କୈ ନିନ୍ଦା ଜେ ଜଡ଼ କରହୀଁ । ତେ ଚମଗାଦୁର ହୋଇ ଅବତରହୀଁ ॥
ସୁନହୁ ତାତ ଅବ ମାନସ ରୋଗା । ଜିହ୍ନ ତେଁ ଦୁଖ ପାୱହିଁ ସବ ଲୋଗା ॥୧୪॥
ମୋହ ସକଲ ବ୍ୟାଧିହ୍ନ କର ମୂଲା । ତିହ୍ନ ତେଁ ପୁନି ଉପଜହିଁ ବହୁ ସୂଲା ॥
କାମ ବାତ କଫ ଲୋଭ ଅପାରା । କ୍ରୋଧ ପିତ୍ତ ନିତ ଛାତୀ ଜାରା ॥୧୫॥
ପ୍ରୀତି କରହିଁ ଜୌଂ ତୀନିଉ ଭାଈ । ଉପଜଇ ସନ୍ୟପାତ ଦୁଖଦାଈ ॥
ବିଷୟ ମନୋରଥ ଦୁର୍ଗମ ନାନା । ତେ ସବ ସୂଲ ନାମ କୋ ଜାନା ॥୧୬॥
ମମତା ଦାଦୁ କଣ୍ଡୁ ଇରଷାଈ । ହରଷ ବିଷାଦ ଗରହ ବହୁତାଈ ॥
ପର ସୁଖ ଦେଖି ଜରନି ସୋଇ ଛଈ । କୁଷ୍ଟ ଦୁଷ୍ଟତା ମନ କୁଟିଲଈ ॥୧୭॥

---

ବେଦ-ବିବୁଧ-ନିନ୍ଦୁକ ଯେତୁ ଅଭିମାନୀ । ରୌରବ ନରକ ମଧ୍ୟେ ପଡନ୍ତି ସେ ପ୍ରାଣୀ ॥
ହୁଅନ୍ତି ଉଲୂକ ଯେତୁ ସନ୍ଥ-ନିନ୍ଦାରତ । ମୋହ-ନିଶା ପ୍ରିୟ, ଜ୍ଞାନ-ଦିନେଶ ବିଗତ ॥୧୩॥
ସମସ୍ତ ପ୍ରାଣୀଙ୍କ ନିନ୍ଦା ଯେଉଁ ଜଡ କରେ । ଚେମଣି ଚଢେଇ ହୋଇ ସେହୁ ଜନ୍ମ ଧରେ ॥
ମାନସ ରୋଗ ଶ୍ରବଣ କର, ଖଗବର । ଯହିଁରେ ଦୁଃଖ ପାଆନ୍ତି ମାନବ ନିକର ॥୧୪॥
ମୋହ ଅଟଇ ସମସ୍ତ ବ୍ୟାଧିଙ୍କର ମୂଳ । ତହିଁରୁ ହୁଅନ୍ତି ଜାତ ନାନାବିଧ ଶୂଳ ॥
କାମ ବାତ, ଲୋଭ କଫ, ପୁଣି କ୍ରୋଧ ପିତ୍ତ । ଅପାର ପ୍ରାଣୀଙ୍କ ଛାତି ଜଳାନ୍ତି ଏ ନିତ୍ୟ ॥୧୫॥
ପ୍ରୀତି କରନ୍ତି ଶରୀରେ ଯେବେ ତିନି ଭାଇ । ଉପୁଜଇ ସନ୍ନିପାତ ମହା ଦୁଃଖ-ଦାୟୀ ॥
ବିଷୟ ଇଚ୍ଛା ଦୁର୍ଗମ ଅନେକ ପ୍ରକାରେ । ସେ ସବୁ ଶୂଳ କିଏ ସେ ନାମ ଜାଣିପାରେ ॥୧୬॥
ମମତାକୁ ଦାଦୁ, କଣ୍ଡୁ ଈର୍ଷ୍ୟାକୁ ବିଚାର । ହରଷ ବିଷାଦ କଣ୍ଠ ରୋଗ ଏ ଅପାର ॥
କ୍ଷୟ-ରୋଗୀ, ପର ସୁଖ ଦେଖି ଯେ ଜଳଇ । କୁଷ୍ଠ ମନ କୁଟିଳତା ଦୁଷ୍ଟତା ଅଟଇ ॥୧୭॥

---

ପରବର୍ତ୍ତୀ ଜନ୍ମରେ ବେଙ୍ଗ ହୁଏ ଏବଂ ସେ ହଜାର ଜନ୍ମଯାଏ ସେହି ବେଙ୍ଗ ଶରୀର ପାଏ । ବ୍ରାହ୍ମଣ-ନିନ୍ଦୁକ ବ୍ୟକ୍ତି ବହୁତ ନର୍କ ଭୋଗ କରି ପୁଣି ଜଗତରେ କାକ-ଶରୀର ଧରି ଜନ୍ମ ଲାଭ କରେ ॥ ୧୨ ॥ ଯେଉଁ ଅଭିମାନୀ ଜୀବମାନେ ଦେବତା ଓ ବେଦମାନଙ୍କ ନିନ୍ଦା କରନ୍ତି, ସେମାନେ ରୌରବ ନର୍କରେ ପଡ଼ନ୍ତି । ସନ୍ଥମାନଙ୍କ ନିନ୍ଦାରେ ନିରତ ଲୋକମାନେ ଉଲୂକ ହୁଅନ୍ତି । ସେମାନଙ୍କ ପକ୍ଷରେ ମୋହ-ରଜନୀ ପ୍ରୀତିକର ଏବଂ ଜ୍ଞାନ-ରବି ଅସ୍ତମିତ ପ୍ରାୟ ॥ ୧୩ ॥ ଯେଉଁ ମୂର୍ଖମାନେ ସମସ୍ତଙ୍କର ନିନ୍ଦା କରନ୍ତି, ସେମାନେ ଚେମଣିଆ ହୋଇ ଜନ୍ମ ଗ୍ରହଣ କରନ୍ତି । ହେ ତାତ ! ସମସ୍ତ ଲୋକ ଯାହାଯୋଗେ ଦୁଃଖ ଭୋଗ କରନ୍ତି, ଆପଣ ସେହି ମାନସିକ ରୋଗ କଥା ଶୁଣନ୍ତୁ ॥୧୪॥ ସମସ୍ତ ରୋଗର ମୂଳ ହେଲା ମୋହ ବା ଅଜ୍ଞାନ । ସେହି ସବୁ ବ୍ୟାଧିରୁ ପୁଣି ଅନେକ ଶୂଳ ଜାତ ହୁଏ; କାମ ବାତ, ଲୋଭ ଅପାର (ବର୍ଦ୍ଧିତ) କଫ ଏବଂ କ୍ରୋଧ ପିତ୍ତ । ଏହି କ୍ରୋଧ-ପିତ୍ତ ସର୍ବଦା ଛାତିକୁ ଜଳାଉଥାଏ ॥ ୧୫ ॥ ଯଦି କେଉଁଠି ବାତ, ପିତ୍ତ ଓ

ଅହଙ୍କାର ଅତି ଦୁଖଦ ଡମରୁଆ । ଦମ୍ଭ କପଟ ମଦ ମାନ ନେହରୁଆ ॥
ତୃଷ୍ନା ଉଦରବୃଦ୍ଧି ଅତି ଭାରୀ । ତ୍ରିବିଧି ଈଷନା ତରୁନ ତିଜାରୀ ॥୧୮॥
ଜୁଗ ବିଧି ଜ୍ୱର ମତ୍ସର ଅବିବେକା । କହଁ ଲଗି କହୌଁ କୁରୋଗ ଅନେକା ॥୧୯॥

ଏକ ବ୍ୟାଧି ବସ ନର ମରହିଁ ଏ ଅସାଧି ବହୁ ବ୍ୟାଧି ।
ପୀଡ଼ହିଁ ସନ୍ତତ ଜୀବ କହୁଁ ସୋ କିମି ଲହଇ ସମାଧି ॥୧୨୧(କ)॥
ନେମ ଧର୍ମ ଆଚାର ତପ ଜ୍ଞାନ ଜଜ୍ଞ ଜପ ଦାନ ।
ଭେଷଜ ପୁନି କୋଟିହ୍ନ ନହିଁ ରୋଗ ଜାହିଁ ହରିଜାନ ॥୧୨୧(ଖ)॥

ଏହି ବିଧି ସକଲ ଜୀବ ଜଗ ରୋଗୀ । ସୋକ ହରଷ ଭୟ ପ୍ରୀତି ବିୟୋଗୀ ॥
ମାନସ ରୋଗ କଛୁକ ମୈଁ ଗାଏ । ହହିଁ ସବ କେ ଲଖି ବିରଲେହ୍ନ ପାଏ ॥୧॥

---

ଅହଂକାର ଗଣ୍ଠିବାତ ଅତି ଦୁଃଖପ୍ରଦ । ଶିରୋବେମାରି କପଟ ଦମ୍ଭ ମାନ ମଦ ॥
ତୃଷ୍ଣାକୁ ଉଦରବୃଦ୍ଧି ରୋଗ ବୋଲି ଜାଣ । ତ୍ରିବିଧ କାମନା ପାଳିଜ୍ୱରର ସମାନ ॥୧୮॥
ଶୀତୋଷ୍ଣ ମିଶ୍ରିତ ଜ୍ୱର ମତ୍ସରାବିବେକ । କେତେ ଅବା କହିବି ମୁଁ କୁରୋଗ ଅନେକ ॥୧୯॥

ଏକ ବ୍ୟାଧିବଶ ମରଇ ମନୁଷ୍ୟ ଏ ଅସାଧ୍ୟ ବହୁ ବ୍ୟାଧି ।
ଜୀବକୁ ସତତ ପୀଡ଼ନ୍ତି, କେମନ୍ତେ ଲଭିବ ସେହୁ ସମାଧି ॥୧୨୧(କ)॥
ନିୟମ ଧରମ ସଦାଚାର ଜ୍ଞାନ ଯଜ୍ଞ ଜପ ତପ ଦାନ ।
ପୁଣି କୋଟି କୋଟି ଔଷଧରେ ରୋଗ ନ ତୁଟଇ, ହରିଯାନ ॥୧୨୧(ଖ)॥

ଏମନ୍ତେ ଜଗତ ମଧ୍ୟେ ଜୀବ ସର୍ବେ ରୋଗୀ । ଶୋକ-ଭୟ-ହର୍ଷପ୍ରୀତି ସଂଯୋଗୀ ବିୟୋଗୀ ॥
ମାନସ ରୋଗ ମୁଁ ନାଥ, ବର୍ଣ୍ଣିଲି ସମ୍ୟକ । ଜାଣି ପାରନ୍ତି ବିରଳ, ଅଛି ସମସ୍ତଙ୍କ ॥୧॥

---

ଅର୍ଥ—ଏ ତିନି ଯାକ ପରସ୍ପର ପ୍ରୀତି କରି ଏକାଠି ମିଳିତ ହୁଅନ୍ତି, ତେବେ ଦୁଃଖଦାୟକ ସନ୍ନିପାତ ରୋଗ ଜାତ ହୁଏ । ବିଷୟ-ବାସନା-ସମ୍ବନ୍ଧୀ ଦୁର୍ଗମ ଓ ଦୁର୍ଲ୍ଲଭ ମନୋରଥମାନେ ସମସ୍ତେ ଶୂଳ (କଷ୍ଟଦାୟକ ରୋଗ); ସେମାନଙ୍କର ନାମ କିଏ ଜାଣେ ? ( ଅର୍ଥାତ୍ ସେମାନେ ଅସଂଖ୍ୟ । ) ॥ ୧୬ ॥ ମମତା ଯାଦୁ, ଈର୍ଷ୍ୟା କୁଣ୍ଡିଆ ଏବଂ ହର୍ଷବିଷାଦ ଗଳାରୋଗ । ପରର ସୁଖ ଦେଖି ଜଳିବା କ୍ଷୟ ରୋଗ । ଦୁଷ୍ଟତା ଓ ମନର କୁଟିଳତା ହିଁ କୁଷ୍ଠରୋଗ । ୧୭ ॥ ଅହଙ୍କାର ଅତି ଦୁଃଖଦାୟକ ଗଣ୍ଠିବାତ । ଦମ୍ଭ, କପଟ, ମଦ ଓ ମାନ ଶିରୋରୋଗ । ତୃଷ୍ଣା ଅତିଶୟ ଉଦର ବୃଦ୍ଧି (ଜଳୋଦର) ରୋଗ । ପୁତ୍ର, ଧନ ଓ ପ୍ରତିଷ୍ଠା ପାଇଁ ତ୍ରିବିଧ କାମନା ପ୍ରବଳ ପାଳିଜ୍ୱର ॥ ୧୮ ॥ ମାତ୍ସର୍ଯ୍ୟ ଓ ଅବିବେକ ଦୁଇ ପ୍ରକାର ଜ୍ୱର । ଏହିପରି ଅନେକ ଖରାପ ରୋଗ ଅଛି, ସେଗୁଡ଼ାକ କେତେ କହିବି ? ॥ ୧୯ ॥ ଦୋହା'—ଗୋଟିଏ ମାତ୍ର ରୋଗର ବଶ ହୋଇ ମନୁଷ୍ୟ ମରିଯାଏ । ପୁଣି ଏମାନେ ତ ନାନାବିଧ ଅସାଧ୍ୟ ରୋଗ । ଏମାନେ ଜୀବକୁ ନିରନ୍ତର କଷ୍ଟ ଦେଉଥା'ନ୍ତି । ଏପରି ଅବସ୍ଥାରେ ସେ ସମାଧି (ଶାନ୍ତି) କିପରି ଲାଭ କରିପାରେ ? ୧୨୧ (କ) ॥ ନିୟମ, ଧର୍ମ, ଆଚାର (ସଦାଚାର) ତପ, ଜ୍ଞାନ, ଯଜ୍ଞ, ଜପ,

ଜାନେ ତେଁ ଛୀଜହିଁ କଛୁ ପାପୀ । ନାସ ନ ପାୱହିଁ ଜନ ପରିତାପୀ ॥
ବିଷୟ କୁପଥ୍ୟ ପାଇ ଅଂକୁରେ । ମୁନିହୁ ହୃଦୟଁ କା ନର ବାପୁରେ ॥୨॥
ରାମ କୃପାଁ ନାସହିଁ ସବ ରୋଗା । ଜୌଁ ଏହି ଭାଁତି ବନୈ ସଂଜୋଗା ॥
ସଦଗୁର ବୈଦ ବଚନ ବିସ୍ୱାସା । ସଂଜମ ୟହ ନ ବିଷୟ କୈ ଆସା ॥୩॥
ରଘୁପତି ଭଗତି ସଜୀବନ ମୂରୀ । ଅନୂପାନ ଶ୍ରଦ୍ଧା ମତି ପୂରୀ ॥
ଏହି ବିଧି ଭଲେହିଁ ସୋ ରୋଗ ନସାହୀଁ । ନାହିଁ ତ ଜତନ କୋଟି ନହିଁ ଜାହୀଁ ॥୪॥
ଜାନିଅ ତବ ମନ ବିରୁଜ ଗୋସାଁଈ । ଜବ ଉର ବଲ ବିରାଗ ଅଧିକାଈ ॥
ସୁମତି ଛୁଧା ବାଢ଼ଇ ନିତ ନଈ । ବିଷୟ ଆସ ଦୁର୍ବଲତା ଗଈ ॥୫॥

---

ଜାଣନ୍ତେ କେତେକ କ୍ଷୟ ଲଭନ୍ତି ଏ ପାପୀ । ପୁଣି ନଷ୍ଟ ନ ହୁଅନ୍ତି ଜନ-ପରିତାପୀ ॥
ବିଷୟ-କୁପଥ୍ୟ ପାଇ ଲଭନ୍ତି ପ୍ରସାର । ମୁନିଙ୍କ ହୃଦୟେ, ନର ବାପୁଡ଼ା କି ଛାର ॥୨॥
ରାମ କୃପାରେ ହୁଅନ୍ତି ନଷ୍ଟ ସବୁ ରୋଗ । ଯେବେ ଏହିପରି ଆସି ଘଟଇ ସଂଯୋଗ ॥
ହୁଏ ସତ ଗୁରୁ ବୈଦ୍ୟ ବଚନେ ପ୍ରତୀତି । ବିଷୟାଶା-ତ୍ୟାଗ ରୂପୀ ସଂଯମରେ ପ୍ରୀତି ॥୩॥
ରଘୁପତି-ଭକ୍ତି ହୁଏ ସଞ୍ଜୀବନୀ ମୂଳ । ପୁଣି ଶ୍ରଦ୍ଧା ମତି ଅନୁପାନ ଅନୁକୂଳ ॥
ଏହି ଭାବେ ବରଂଚ ସେ ରୋଗ ନାଶପାଏ । ଅନ୍ୟଥା କୋଟି ଯତନ କଲେହେଁ ନ ଯାଏ ॥୪॥
ମନକୁ ନୀରୋଗ ତେବେ ଜାଣ, ଉରଗାରି । ହୃଦୟେ ଯେବେ ବୈରାଗ୍ୟ ବଳ ହୁଏ ଭାରି ॥
ସୁମତି କ୍ଷୁଧା ବର୍ଦ୍ଧିତ ହୁଏ ନବ ନିତ୍ୟ । ବିଷୟାଶା ଦୁର୍ବଳତା ହୁଅଇ ରହିତ ॥୫॥

---

ଦ୍ୱାନ ତଥା ଆତୁର କୋଟି କୋଟି ଔଷଧ ଅବଶ୍ୟ ରହିଅଛି । କିନ୍ତୁ ହେ ହରିଯାନ ଗରୁଡ଼ । ସେମାନଙ୍କ ଦ୍ୱାରା ଏହି ସବୁ ରୋଗ ଭଲ ହୁଏନାହିଁ ॥ ୧୨୧ (ଖ) ॥
ଚୌପାଈ :—ଏହି ରୂପେ ଜଗତରେ ସମସ୍ତ ଜୀବ ରୋଗୀ । ସେମାନେ ଶୋକ, ହର୍ଷ, ଭୟ, ପ୍ରୀତି ଓ ବିୟୋଗ-ବିରହ ଦୁଃଖରେ ଆହୁରି ମଧ୍ୟ ଦୁଃଖୀ ହେଉଅଛନ୍ତି । ମୁଁ ଏ ଅଳ୍ପ କେତୋଟି ମାନସିକ ରୋଗ କଥା କହିଛି ମାତ୍ର । ଏମାନେ ସମସ୍ତଙ୍କୁ ତ ପୀଡ଼ିତ କରନ୍ତି; କିନ୍ତୁ କ୍ୱଚିତ୍ କେହି କମିତ ଏମାନଙ୍କୁ ଜାଣି ପାରିଅଛନ୍ତି ॥ ୧ ॥ ଜୀବର ଜ୍ୱଳନକାରୀ ଏହି ପାପୀ ରୋଗମାନଙ୍କୁ ଚିହ୍ନି ପାରିଲେ ଏମାନେ କିଛି ମାତ୍ରାରେ ଅବଶ୍ୟ କ୍ଷୀଣ ହୋଇଯାଆନ୍ତି, କିନ୍ତୁ ବିନାଶ ଲଭନ୍ତି ନାହିଁ । ବିଷୟ-କୁପଥ୍ୟ ପାଇ ଏମାନେ ମୁନିଜନଙ୍କ ହୃଦୟରେ ମଧ୍ୟ ଅଙ୍କୁରିତ ହୋଇ ଉଠନ୍ତି । ତେବେ ବିଚରା ସାଧାରଣ ମନୁଷ୍ୟର କି କଥା ? ॥୨॥ ଯଦି ଶ୍ରୀରାମଚନ୍ଦ୍ରଙ୍କ କୃପାଯୋଗେ ସେମିତି ସୁଯୋଗ ମିଳିଯାଏ, ତେବେ ଏହି ସମସ୍ତ ରୋଗ ନାଶ ଯାଇ ପାରନ୍ତି । ସଦ୍‌ଗୁରୁ ରୂପକ ବୈଦ୍ୟଙ୍କ ବଚନରେ ବିଶ୍ୱାସ ହେବା ଉଚିତ । ବିଷୟବାସନା ଚରିତାର୍ଥ ଲାଗି ଆଶା କରିବା ଉଚିତ ନୁହେଁ । ଏହା ହେଉଛି ସଂଯମ ॥ ୩ ॥ ଶ୍ରୀ ରଘୁନାଥଙ୍କଠାରେ ଭକ୍ତି ସଞ୍ଜୀବନୀ ମୂଳୀ । ଶ୍ରଦ୍ଧାପୂର୍ଣ୍ଣ ବୁଦ୍ଧି ହିଁ ମଧୁ ଆଦି ଅନୁପାନ । ଏହି ପ୍ରକାର ସଂଯୋଗ ହେଲେ ସେହି ରୋଗମାନେ ଭଲଭାବରେ ନଷ୍ଟ ହୋଇଯାଆନ୍ତି । ଅନ୍ୟଥା କୋଟି କୋଟି ଯତ୍ନ କଲେ ହେଁ ସେମାନେ

ବିମଲ ଜ୍ଞାନ ଜଲ ଜବ ସୋ ନହାଈ । ତବ ରହ ରାମଭଗତି ଉର ଛାଈ ॥
ସିବ ଅଜ ସୁକ ସନକାଦିକ ନାରଦ । ଜେ ମୁନି ବ୍ରହ୍ମ ବିଚାର ବିସାରଦ ॥୬॥
ସବ କର ମତ ଖଗନାୟକ ଏହା । କରିଅ ରାମ ପଦ-ପଙ୍କଜ ନେହା ॥
ଶ୍ରୁତି ପୁରାନ ସବ ଗ୍ରନ୍ଥ କହାହୀଁ । ରଘୁପତିଭଗତି ବିନା ସୁଖ ନାହୀଁ ॥୭॥
କମଠ ପୀଠ ଜାମହିଁ ବରୁ ବାରା । ବନ୍ଧ୍ୟା ସୁତ ବରୁ କାହୁହି ମାରା ॥
ଫୂଲହିଁ ନଭ ବରୁ ବହୁବିଧି ଫୂଲା । ଜୀବ ନ ଲହ ସୁଖ ହରି ପ୍ରତିକୂଲା ॥୮॥
ତୃଷା ଜାଇ ବରୁ ମୃଗଜଲ ପାନା । ବରୁ ଜାମହିଁ ସସ ସୀସ ବିଷାନା ॥
ଅନ୍ଧକାରୁ ବରୁ ରବିହି ନସାଵୈ । ରାମ ବିମୁଖ ନ ଜୀବ ସୁଖ ପାଵୈ ॥୯॥
ହିମ ତେଁ ଅନଲ ପ୍ରଗଟ ବରୁ ହୋଈ । ବିମୁଖ ରାମ ସୁଖ ପାଵ ନ କୋଈ ॥୧୦॥

---

ବିମଳଜ୍ଞାନସଲିଳେ ସ୍ନାନ କରେ ଯେବେ । ରାମ ଭକ୍ତି ହୃଦ ମଧ୍ୟେ ବ୍ୟାପି ରହେ ତେବେ ॥
ଶୁକ ସନକାଦି ଶିବ ବିରଞ୍ଚି ନାରଦ । ଯେ ମୁନି ବ୍ରହ୍ମ-ବିଚାରେ ବିଜ୍ଞ ବିଶାରଦ ॥୬॥
ସମସ୍ତଙ୍କ ମତ ଏହା ଶୁଣ ବୈନତେୟ । ରାମ ପଦ-କଞ୍ଜେ ପ୍ରୀତି କରିବା ବିଧେୟ ॥
ଶ୍ରୁତି ପୁରାଣାଦି ସବୁ ଗ୍ରନ୍ଥ ବଖାଣନ୍ତି । ସୁଖ ନାହିଁ କାହିଁ ବିନା ଶ୍ରୀରାମ-ଭକତି ॥୭॥
କଚ୍ଛପ ପୃଷ୍ଠରେ ବରଂ ବାଳ ଉଠିପାରେ । ବନ୍ଧ୍ୟାତନୟ କାହାକୁ ବରଂ କେବେ ମାରେ ॥
ଗଗନେ ଫୁଟିବ ବରଂ ସୁମନ ବିପୁଳ । ସୁଖ ନ ଲଭିବ ଜୀବ ହରି-ପ୍ରତିକୂଳ ॥୮॥
ମରୀଚିକା ଜଳେ ବରଂ ତୃଷା ହେବ ଶାନ୍ତ । ଶଶକ ଶିରେ ଉଠିବ ଶୃଙ୍ଗ ବରଂ, ଭ୍ରାନ୍ତ ॥
ଅନ୍ଧକାର ବରଂ ନାଶି ରବିକୁ ପାରିବ । ରାମ-ପରାଙ୍ମୁଖ ଜୀବ ସୁଖ ନ ଲଭିବ ॥୯॥
ହିମରୁ ଅନଳ ବରଂ ପ୍ରକଟ ହୋଇବ । ରାମ ପ୍ରତିକୂଳେ କେହି ସୁଖ ନ ପାଇବ ॥୧୦॥

---

ଦୂର ହୁଅନ୍ତି ନାହିଁ ॥ ୪ ॥ ହେ ଗୋସାଇଁ ! ଯେତେବେଳେ ହୃଦୟରେ ବୈରାଗ୍ୟ-ବଳ ବୃଦ୍ଧି ପାଏ, ସୁବୁଦ୍ଧି-କ୍ଷୁଧା ନିତି ପ୍ରତି ବର୍ଦ୍ଧିତ ହୁଏ ଏବଂ ବିଷୟମାନଙ୍କର ଆଶା-ଦୁର୍ବଳତା ମେଣ୍ଟିଯାଏ, ସେତିକିବେଳେ ଯାଇ ମନ ନିରୋଗ ହେଲା ବୋଲି ଜାଣିବା ଉଚିତ ॥ ୫ ॥ ଏହି ରୂପେ ସମସ୍ତ ରୋଗରୁ ମୁକ୍ତ ପାଇ ଯେତେବେଳେ ମନୁଷ୍ୟ ନିର୍ମଳ ଜ୍ଞାନ-ଜଳରେ ସ୍ନାନ କରିନିଏ, ସେତିକିବେଳେ ତାହାର ହୃଦୟରେ ରାମ-ଭକ୍ତି ବ୍ୟାପିଯାଏ । ହେ ପକ୍ଷିରାଜ ! ଶିବ, ବ୍ରହ୍ମା, ଶୁକଦେବ, ସନକାଦି ଓ ନାରଦ ଆଦି ବ୍ରହ୍ମବିଚାର-ବିଶାରଦ ମୁନିମାନଙ୍କର ମତ—ଶ୍ରୀରାମଙ୍କ ଚରଣ-କମଳରେ ପ୍ରେମ କରିବା ବିଧେୟ । ବେଦ, ପୁରାଣ ଓ ସମସ୍ତ ଗ୍ରନ୍ଥ କହନ୍ତି ଯେ, ଶ୍ରୀରାମଙ୍କ ଭକ୍ତି ବିନା ସୁଖ ନାହିଁ ॥ ୬-୭ ॥ କଇଁଛ ପିଠିରେ ବାଳ ଉଠୁ ପଛକେ, ବନ୍ଧ୍ୟାପୁତ୍ର ବରଂ କାହାକୁ ମାରି ପକାଉ, ଆକାଶରେ ଅନେକ ପ୍ରକାର ଫୁଲ ଫୁଟୁ ପଛକେ, କିନ୍ତୁ ଶ୍ରୀହରିଙ୍କ ପ୍ରତି ବିମୁଖ ହୋଇ ଜୀବ କଦାପି ସୁଖ ଲାଭ କରିପାରେ ନାହିଁ ॥୮॥ ମୃଗତୃଷ୍ଣା ଜଳକୁ ପାନ କରି ତୃଷା ମେଣ୍ଟିଯାଉ ପଛକେ, ଶଶକର ଶିର ଉପରେ ଶିଙ୍ଗ ବାହାରୁ ପଛକେ, ଅନ୍ଧକାର ସୂର୍ଯ୍ୟଙ୍କୁ ବିନାଶ କରିଦେଉ ପଛକେ, କିନ୍ତୁ ଶ୍ରୀରାମଙ୍କ ପ୍ରତି ବିମୁଖ ହୋଇ ଜୀବ ସୁଖ

ବାରି ମଥେଁ ଘୃତ ହୋଇ ବରୁ ସିକତା ତେଁ ବରୁ ତେଲ ।
ବିନୁ ହରି ଭଜନ ନ ଭବ ତରିଅ ଯହ ସିଦ୍ଧାନ୍ତ ଅପେଲ ॥୧୨୨(କ)॥
ମସକହି କରଇ ବିରଂଚି ପ୍ରଭୁ ଅଜହି ମସକ ତେଁ ହୀନ ।
ଅସ ବିଚାରି ତଜି ସଂସୟ ରାମହି ଭଜହିଁ ପ୍ରବୀନ ॥୧୨୨(ଖ)॥
ବିନିଶ୍ଚିତଂ ବଦାମି ତେ ନ ଅନ୍ୟଥା ବଚାଂସି ମେ ।
ହରିଂ ନରା ଭଜନ୍ତି ଯେଽତିଦୁସ୍ତରଂ ତରନ୍ତି ତେ ॥୧୨୨(ଗ)॥
କହେଉଁ ନାଥ ହରିଚରିତ ଅନୂପା । ବ୍ୟାସ ସମାସ ସ୍ୱମତି ଅନୁରୂପା ॥
ଶ୍ରୁତି ସିଦ୍ଧାନ୍ତ ଇହଇ ଉରଗାରୀ । ରାମ ଭଜିଅ ସବ କାଜ ବିସାରୀ ॥୧॥
ପ୍ରଭୁ ରଘୁପତି ତଜି ସେଇଅ କାହୀ । ମୋହି ସେ ସଠ ପର ମମତା ଜାହୀ ॥
ତୁମ୍ହ ବିଜ୍ଞାନରୂପ ନହିଁ ମୋହା । ନାଥ କୀନ୍ହି ମୋ ପର ଅତି ଛୋହା ॥୨॥

---

ବାରି ମନ୍ଥି ଘୃତ ବାଲି ପେଡ଼ି ତୈଳ ମିଳି ଜଗପାରେ କେହି ।
ଶ୍ରୀହରି-ଭଜନ ବିନା ଗତି ନାହିଁ, ଅଟଳ ସିଦ୍ଧାନ୍ତ ଏହି ॥୧୨୨(କ)॥
ପ୍ରଭୁ ମଶକକୁ କରନ୍ତି ବିରଞ୍ଚି ବିଧିକୁ ମଶାରୁ ହୀନ ।
ଏହା ବିଚାରି ସଂଶୟ ତେଜିଣ ରାମ ଭଜନ୍ତି ପ୍ରବୀଣ ॥୧୨୨(ଖ)॥
ନିଶ୍ଚିତେ ତୁମ୍ଭଙ୍କୁ କହୁଛି, ମିଥ୍ୟା ମୋ ବଚନ ନୁହଇ ।
ହରିଙ୍କୁ ଯେ ନର ଭଜନ୍ତି, ଦୁସ୍ତର ଭବ ସେ ତରନ୍ତି ॥୧୨୨(ଗ)॥
କହିଲି ନାଥ ହରିଙ୍କ ଚରିତ ଅନୁପ । ବିସ୍ତାର-ସଂକ୍ଷେପ ନିଜ ମତି ଅନୁରୂପ ॥
ଶ୍ରୁତି ସିଦ୍ଧାନ୍ତ ଏହାହିଁ ବିହଙ୍ଗ-ପୁଙ୍ଗବ । ରାମ ଭଜିବା ଉଚିତ ତେଜି ଦୁହା ସବ ॥୧॥
କାହାକୁ ଭଜିବା ତେଜି ପ୍ରଭୁ ରଘୁବର । ମୋ ସମ ଶଠ ଉପରେ ସ୍ନେହ ଯାହାଙ୍କର ॥
ତୁମ୍ଭେ ବିଜ୍ଞାନ ସ୍ୱରୂପ, ନାହିଁ ମୋହ ମତି । ମୋ ଉପରେ କଲ ଅତି ସ୍ନେହ, ଖଗପତି ॥୨॥

---

ପାଇ ନ ପାରେ ॥ ୯ ॥ ବରଫରୁ ଅଗ୍ନିର ପ୍ରକାଶ ହେଉ ପଛକେ, କିନ୍ତୁ ଶ୍ରୀରାମଙ୍କ ପ୍ରତି ବିମୁଖ ହୋଇ କେହି ସୁଖ ପାଇ ପାରିବେ ନାହିଁ ॥ ୧୦ ॥ ଦୋହା :— ଜଳ ମନ୍ଥନ କଲେ, ତହିଁରୁ ଘୃତ ଜାତ ହେଉ ପଛକେ, ବାଲି ପେଡ଼ିବା ଯୋଗେ ତୈଳ ବାହାରୁ ପଛକେ; କିନ୍ତୁ ଶ୍ରୀହରିଙ୍କ ଭଜନ ବିନା ସଂସାର-ସାଗରରୁ ପାର ପାଇବା ଆଦୌ ସମ୍ଭବ ନୁହେଁ । ଏହି ସିଦ୍ଧାନ୍ତ ଅଟଳ ॥ ୧୨୨ (କ) । ପ୍ରଭୁ ମଶାକୁ ବ୍ରହ୍ମା କରି ପାରନ୍ତି ଏବଂ ବ୍ରହ୍ମାଙ୍କୁ ମଶାଠାରୁ ତୁଚ୍ଛ ଜୀବରେ ମଧ୍ୟ ପରିଣତ କରି ପାରନ୍ତି । ଏଭଳି ବିଚାର କରି ଚତୁର ପୁରୁଷ ସମସ୍ତ ସନ୍ଦେହ ତ୍ୟାଗ କରି କେବଳ ଶ୍ରୀରାମଙ୍କୁ ହିଁ ଭଜନ କରନ୍ତି ॥ ୧୨୨ (ଖ) ॥ ଶ୍ଲୋକାର୍ଥ :— ମୁଁ ଆପଣଙ୍କୁ ବିଶେଷ ରୂପେ ନିଶ୍ଚିତ ସିଦ୍ଧାନ୍ତ କହୁଅଛି, ମୋର ବଚନ ଅନ୍ୟଥା (ମିଥ୍ୟା) ନୁହେଁ । ଯେଉଁ ମନୁଷ୍ୟମାନେ ଶ୍ରୀହରିଙ୍କୁ ଭଜନ କରନ୍ତି, ସେମାନେ ଅତି ଦୁସ୍ତର ସଂସାର-ସାଗରକୁ ସହଜରେ ପାର ହୋଇ ଯାଆନ୍ତି ॥ ୧୨୨ (ଗ) ॥ ଚୌପାଈ :— ହେ ନାଥ ! ମୁଁ ଶ୍ରୀହରି-ଚରିତ

ପୁଁଛିହୁ ରାମକଥା ଅତି ପାୱନି । ସୁକ ସନକାଦି ସମ୍ଭୁ ମନ ଭାୱନି ॥
ସତ ସଂଗତି ଦୁର୍ଲଭ ସଂସାରା । ନିମିଷ ଦଣ୍ଡ ଭରି ଏକଉ ବାରା ॥୩॥
ଦେଖୁ ଗରୁଡ଼ ନିଜ ହୃଦୟଁ ବିଚାରୀ । ମୈଁ ରଘୁବୀର ଭଜନ ଅଧିକାରୀ ॥
ସକୁନାଧମ ସବ ଭାଁତି ଅପାୱନ । ପ୍ରଭୁ ମୋହି କୀହ୍ନ ବିଦିତ ଜଗପାୱନ ॥୪॥

ଆଜୁ ଧନ୍ୟ ମୈଁ ଧନ୍ୟ ଅତି ଜଦ୍ୟପି ସବ ବିଧି ହୀନ ।
ନିଜ ଜନ ଜାନି ରାମ ମୋହି ସନ୍ତ ସମାଗମ ଦୀନ ॥୧୨୩(କ)॥
ନାଥ ଜଥାମତି ଭାଷେଉଁ ରାଖେଉଁ ନହିଁ କଛୁ ଗୋଇ ।
ଚରିତ ସିନ୍ଧୁ ରଘୁନାୟକ ଥାହ କି ପାୱଇ କୋଇ ॥୧୨୩(ଖ)॥

---

ପଚାରିଲ ରାମ-କଥା ପରମ-ପାବନୀ । ଶୁକ-ସନକାଦି-ଶମ୍ଭୁ-ମାନସ-ମୋହିନୀ ॥
ସତ୍ସଙ୍ଗ ଅଟଇ ଜାଣ ଦୁର୍ଲ୍ଲଭ ଜଗତେ । ବାରେ ମାତ୍ର ଲବ ଦଣ୍ଡ ନିମେଷ ନିମନ୍ତେ ॥୩॥
ଦେଖ ଖଗପତି, ନିଜ ହୃଦୟେ ବିଚାରି । ମୁହିଁ କି ଶ୍ରୀ ରଘୁବୀର ଭଜନାଧିକାରୀ ॥
ଶକୁନାଧମ ସକଳ ମତେ ଅପାବନ । ପ୍ରଭୁ ମୋତେ କଲେ ବିଶ୍ୱବିଦିତ ପାବନ ॥୪॥

ଯଦ୍ୟପି ମୁଁ ଅଟେ ସର୍ବଭାବେ ହୀନ ଆଜ ଧନ୍ୟ, ଅତି ଧନ୍ୟ ।
ସନ୍ଥ-ସମାଗମ ଦେଲେ ପ୍ରଭୁ ରାମ ଜାଣି ମୋତେ ନିଜ ଜନ ॥୧୨୩(କ)॥
ନାଥ, ଯଥାମତି କଲି ମୁଁ ବର୍ଣ୍ଣନ ଗୁପ୍ତ କିଛି ରଖିନାହିଁ ।
ଶ୍ରୀ ରଘୁପତିଙ୍କ ଚରିତ-ସିନ୍ଧୁର ତଳ କି ପାଏ କେ କାହିଁ ॥୧୨୩(ଖ)॥

---

କେଉଁଠି ବିସ୍ତୃତ ଭାବରେ ତ କେଉଁଠି ସଂକ୍ଷେପରେ କହିଲି । ହେ ସର୍ପଶତ୍ରୁ ଗରୁଡ଼ ! ସମସ୍ତ ଶ୍ରୁତିର ସିଦ୍ଧାନ୍ତ ହେଉଛି—ସମସ୍ତ କାର୍ଯ୍ୟ ଭୁଲି ଶ୍ରୀରାମଙ୍କ ଭଜନ କରିବା ଉଚିତ ॥ ୧ ॥ ପ୍ରଭୁ ଶ୍ରୀରାମଙ୍କୁ ଛାଡ଼ି ଆଉ କାହାର ସେବା କରିବା ଉଚିତ ? ଯେଉଁ ପ୍ରଭୁଙ୍କର ମୋପରି ମୂର୍ଖ ପ୍ରତି ସ୍ନେହ-ମମତା ଅଛି, ସେହି ପ୍ରଭୁଙ୍କୁ ଛାଡ଼ି ଆଉ କାହାକୁ ଭଜନ କରାଯିବ ? ହେ ନାଥ ! ଆପଣ ବିଜ୍ଞାନ-ସ୍ୱରୂପ, ଆପଣଙ୍କର ମୋହ ନାହିଁ; ଆପଣ ମୋ ପ୍ରତି ବିଶେଷ ଦୟା କରିଅଛନ୍ତି ॥ ୨ ॥ କାରଣ, ଆପଣ ମୋତେ ଶୁକଦେବ, ସନକାଦି ଓ ଶିବଙ୍କ ମନକୁ ରୁଚିକର ଅତି ପବିତ୍ର ରାମକଥା ପଚାରିଲେ । ସଂସାରରେ ଘଡ଼ିଏ ବା ନିମିଷକ ଲାଗି ଥରେ ମାତ୍ର ଶୁଦ୍ଧା ସତ୍ସଙ୍ଗ ଦୁର୍ଲ୍ଲଭ ॥ ୩ ॥ ହେ ଗରୁଡ଼ ! ଆପଣ ହୃଦୟରେ ବିଚାର କରି ଦେଖନ୍ତୁ—ମୁଁ କ'ଣ ଶ୍ରୀରାମଙ୍କ ଭଜନର ଅଧିକାରୀ ? ପକ୍ଷୀମାନଙ୍କ ମଧ୍ୟରେ ମୁଁ ସମସ୍ତଙ୍କଠାରୁ ନୀଚ ଓ ସମସ୍ତ ପ୍ରକାରରେ ଅପବିତ୍ର । କିନ୍ତୁ ଏହିପରି ଅପବିତ୍ର ହୋଇଥିଲେ ହେଁ ପ୍ରଭୁ ମୋତେ ଭୁବନପାବନ ରୂପେ ପ୍ରସିଦ୍ଧ କରିଦେଲେ । ( ଅଥବା ମୋତେ ଭୁବନ-ପ୍ରସିଦ୍ଧ ପାବନ କରିଦେଲେ । ) ॥ ୪ ॥ ଦୋହା '—ମୁଁ ସବୁମତେ ହୀନ ବା ନୀଚ ହେଲେ ଶୁଦ୍ଧା ଆଜି ଧନ୍ୟ, ଅତ୍ୟନ୍ତ ଧନ୍ୟ; କାରଣ ଶ୍ରୀରାମ ମୋତେ 'ନିଜ ଜନ' (ଭକ୍ତ) ବୋଲି ଜାଣି ସନ୍ଥ-ସମାଗମ ଦେଲେ । ( ଅର୍ଥାତ୍ ଆପଣଙ୍କ ସହିତ ମୋତେ ଭେଟ କରାଇଲେ । ) ॥ ୧୨୩ (କ) ॥

ସୁମିରି ରାମ କେ ଗୁନ ଗନ ନାନା । ପୁନି ପୁନି ହରଷ ଭୁସୁଣ୍ଡି ସୁଜାନା ॥
ମହିମା ନିଗମ ନେତି କରି ଗାଈ । ଅତୁଲିତ ବଲ ପ୍ରତାପ ପ୍ରଭୁତାଈ ॥୧॥
ସିବ ଅଜ ପୂଜ୍ୟ ଚରନ ରଘୁରାଈ । ମୋ ପର କୃପା ପରମ ମୃଦୁଲାଈ ॥
ଅସ ସୁଭାଉ କହୁଁ ସୁନଉଁ ନ ଦେଖଉଁ । କେହି ଖଗେସ ରଘୁପତି ସମ ଲେଖଉଁ ॥୨॥
ସାଧକ ସିଦ୍ଧ ବିମୁକ୍ତ ଉଦାସୀ । କବି କୋବିଦ କୃତଜ୍ଞ ସନ୍ୟାସୀ ॥
ଜୋଗୀ ସୂର ସୁତାପସ ଜ୍ଞାନୀ । ଧର୍ମ ନିରତ ପଣ୍ଡିତ ବିଜ୍ଞାନୀ ॥୩॥
ତରହିଁ ନ ବିନୁ ସେଏଁ ମମ ସ୍ୱାମୀ । ରାମ ନମାମି ନମାମି ନମାମୀ ॥
ସରନ ଗଏଁ ମୋ ସେ ଅଘରାସୀ । ହୋହିଁ ସୁଦ୍ଧ ନମାମି ଅବିନାସୀ ॥୪॥

ଜାସୁ ନାମ ଭବ ଭେଷଜ ହରନ ଘୋର ତ୍ରୟ ସୂଲ ।
ସୋ କୃପାଲ ମୋହି ତୋ ପର ସଦା ରହଉ ଅନୁକୂଲ ॥୧୨୪(କ)॥

---

ସ୍ମରି ନାନା ପ୍ରକାରେ ରଘୁବୀର ଗୁଣ । ବାରମ୍ବାର ହର୍ଷ ହୁଏ ଭୁଷୁଣ୍ଡି ନିପୁଣ ॥
'ନେତି' 'ନେତି' କହି ଶ୍ରୁତି ମହିମା ବର୍ଣ୍ଣଇ । ଅତୁଳ୍ୟ ବଳ ପ୍ରତାପ ପ୍ରଭୁତା ଅଟଇ ॥୧॥
ବିରଞ୍ଚି ମହେଶ ପୂଜ୍ୟ ପଦ ରଘୁପତି । ମୋ ଉପରେ ଅନୁକମ୍ପା ମୃଦୁତର ଅତି ॥
ଦେଖି ଶୁଣି ନାହିଁ କାହିଁ ସ୍ୱଭାବ ଏସନ । କାହାକୁ ରାମଙ୍କ ସମ କହିବି, ସୁପର୍ଣ୍ଣ ॥୨॥
ସାଧକ ସିଦ୍ଧ ଆବର ବିମୁକ୍ତ ଉଦାସୀ । କବି କୋବିଦ ବିରକ୍ତ ତାପସ ସନ୍ନ୍ୟାସୀ ॥
ଯୋଗୀ ବଡ ଧୁରୀଣର ସୁପଣ୍ଡିତ ଜ୍ଞାନୀ । ଧର୍ମ-ନିରତ ଯେ ସଦା କୃତଜ୍ଞ ବିଜ୍ଞାନୀ ॥୩॥
ନ ତରନ୍ତି ଭବ ସ୍ୱାମୀ ନ ସେବି ମୋହର । ନମଇଁ ନମଇଁ ରାମ ନମଇଁ ପସୁର ॥
ଶରଣ ଯାଆନ୍ତେ ମୋ ସମାନ ପାପରାଶି । ଶୁଦ୍ଧ ହୁଅନ୍ତି, ନମଇଁ ପ୍ରଭୁ ଅବିନାଶୀ ॥୪॥

ଯାହାଙ୍କର ନାମ ଭବୌଷଧ ସମ ହରେ ଘୋର ତ୍ରୟଶୂଳ ।
ସେ କୃପାଳୁ ଅତି ତୁମ୍ଭ ଆମ୍ଭ ପ୍ରତି ରହନ୍ତୁ ସଦାନୁକୂଳ ॥୧୨୪(କ)॥

---

ହେ ନାଥ ! ମୁଁ ମୋ ନିଜ ବୁଦ୍ଧି ଅନୁସାରେ କହିଲି, କିଛି ହେଲେ ଗୁପ୍ତ ରଖିନାହିଁ । (ତଥାପି) ଶ୍ରୀ ରଘୁବୀରଙ୍କ ଚରିତ ସମୁଦ୍ର ସମାନ ଅଗାଧ ଓ ଅତଳ, ତାହାର ତଳ କେହି ପାଇ ପାରିବେ ନାହିଁ ।" ॥୧୨୩ (ଖ)॥ ଚୌପାଈ —ଶ୍ରୀରାମଙ୍କ ବହୁ ଗୁଣାବଳୀ ସ୍ମରଣ କରି କରି ସୁଜ୍ଞାନୀ ଭୁଷୁଣ୍ଡି ବାରମ୍ବାର ଆନନ୍ଦିତ ହେଉଥାଆନ୍ତି— "ବେଦମାନେ ଯାହାଙ୍କର ମହିମାକୁ 'ନେତି ନେତି' କହି ଗାଇଅଛନ୍ତି, ଯାହାଙ୍କର ବଳ, ପ୍ରତାପ ଓ ପ୍ରଭୁତ୍ୱ ଅତୁଳନୀୟ, ଯେଉଁ ରଘୁନାଥଙ୍କ ଚରଣ ଶିବ ଓ ବ୍ରହ୍ମାଙ୍କର ପୂଜ୍ୟ, ତାହାଙ୍କର ମୋ ପ୍ରତି କୃପା ହେବା ତାଙ୍କ ପରମ କୋମଳତାର ନିଦର୍ଶନ । ଅନ୍ୟ କାହାର ଏପରି ସ୍ୱଭାବ ମୁଁ କେଉଁଠି ଶୁଣି ନାହିଁ କିମ୍ବା ଦେଖି ନାହିଁ । ଅତଏବ ହେ ପକ୍ଷିରାଜ ଗରୁଡ ! ମୁଁ ଶ୍ରୀ ରଘୁନାଥଙ୍କ ସମାନ ଅନ୍ୟ କାହାକୁ ଗଣିବି ? ॥୧-୨॥ ସାଧକ, ସିଦ୍ଧ, ଜୀବନ୍ମୁକ୍ତ, ଉଦାସୀନ (ବୈରାଗୀ) କବି, ବିଦ୍ୱାନ୍, କର୍ମରହସ୍ୟ-ଜ୍ଞାନୀ, ସନ୍ନ୍ୟାସୀ, ଯୋଗୀ, ଶୂରବୀର, ବଡ ତପସ୍ୱୀ, ଜ୍ଞାନୀ, ଧର୍ମପରାୟଣ, ପଣ୍ଡିତ ଓ ବିଜ୍ଞାନୀ—

ସୁନି ଭୁସୁଣ୍ଡି କେ ବଚନ ସୁଭ ଦେଖି ରାମପଦ ନେହ ॥
ବୋଲେଉ ପ୍ରେମ ସହିତ ଗିରା ଗରୁଡ ବିଗତ ସଂଦେହ ॥୧୨୪(ଖ)॥
ମୈଁ କୃତକୃତ୍ୟ ଭୟଉଁ ତବ ବାନୀ । ସୁନି ରଘୁବୀର ଭଗତି ରସ ସାନୀ ॥
ରାମ ଚରନ ନୂତନ ରତି ଭଈ । ମାୟାଜନିତ ବିପତି ସବ ଗଈ ॥୧॥
ମୋହ ଜଲଧି ବୋହିତ ତୁମ୍ହ ଭଏ । ମୋ କହଁ ନାଥ ବିବିଧ ସୁଖ ଦଏ ॥
ମୋ ପହିଁ ହୋଇ ନ ପ୍ରତି ଉପକାରା । ବଂଦଉଁ ତବ ପଦ ବାରହିଁ ବାରା ॥୨॥
ପୂରନ କାମ ରାମ ଅନୁରାଗୀ । ତୁମ୍ହ ସମ ତାତ ନ କୋଉ ବଡ଼ଭାଗୀ ॥
ସନ୍ତ ବିଟପ ସରିତା ଗିରି ଧରନୀ । ପରହିତ ହେତୁ ସବନ୍ହ କୈ କରନୀ ॥୩॥

---

ଶୁଣି ଭୁଶୁଣ୍ଡିର ବାଣୀ ମନୋହର ଦେଖି ରାମ-ପଦେ ସ୍ନେହ ।
ସପ୍ରେମେ ବଚନ ବିନତା ନନ୍ଦନ ବୋଲେ ବିଗତ ସନ୍ଦେହ ॥୧୨୪(ଖ)॥
ଶୁଣି ତୁମ୍ଭ ବାଣୀ ମୁହିଁ ହେଲି କୃତକୃତ୍ୟ । ଆପ୍ଲାବିତ ରଘୁପତି ଭକ୍ତି-ରସାମୃତ ॥
ରାମଙ୍କ ଚରଣେ ନବ ପ୍ରୀତି ଉପୁଜିଲା । ମାୟା-ଜନିତ ସକଳ ବିପତ୍ତି ତୁଟିଲା ॥୧॥
ମୋହଜଲଧିରେ ତୁମ୍ଭେ ବୋଇତ ହୋଇଲ । ମୋତେ ନାଥ, ନାନାବିଧ ସୁଖ ପ୍ରଦାନିଲ ॥
ମୋଦ୍ୱାରା ନୋହିବ କେବେ ପ୍ରତିଉପକାର । ବନ୍ଦନ କରଇ ତବ ପଦ ବାରମ୍ବାର ॥୨॥
ପୂର୍ଣ୍ଣକାମ ରାମଙ୍କର ଶ୍ରୀଚରଣ-ସ୍ନେହୀ । ତୁମ୍ଭ ସମ ଭାଗ୍ୟବାନ ନାଥ, ନାହିଁ କେହି ॥
ସନ୍ଥ ବିଟପ ଧରଣୀ ଶଇଳ ସରିତ । ଏହାଙ୍କର କର୍ମ ପର କଲ୍ୟାଣ ନିମିତ୍ତ ॥୩॥

---

ଏମାନଙ୍କ ମଧ୍ୟରୁ କେହି ହେଲେ ସୁଦ୍ଧା ମୋ ପ୍ରଭୁ ଶ୍ରୀରାମଙ୍କ ସେବା ବା ଭଜନ ନ କରି ରହି ନ ପାରନ୍ତି । ମୁଁ ସେହି ଶ୍ରୀରାମଙ୍କୁ ବାରମ୍ବାର ନମସ୍କାର କରୁଅଛି । ଯାହାଙ୍କର ଶରଣ ଗଲେ ମୋ ପରି ପାପରାଶି ସୁଦ୍ଧା ଶୁଦ୍ଧ (ପାପମୁକ୍ତ) ହୋଇଯାଏ, ସେହି ଅବିନାଶୀ ଶ୍ରୀରାମଙ୍କୁ ମୁଁ ନମସ୍କାର କରୁଅଛି ॥ ୩-୪ ॥ ଦୋହା '—ଯାହାଙ୍କର ନାମ ଜନ୍ମମରଣ-ରୋଗ ନିମନ୍ତେ ଅବ୍ୟର୍ଥ ଔଷଧ ଏବଂ ଆଧିଦୈବିକ, ଆଧିଭୌତିକ ଓ ଆଧ୍ୟାତ୍ମିକ ଦୁଃଖର ହରଣକାରକ, ସେହି କୃପାଳୁ ଶ୍ରୀରାମଚନ୍ଦ୍ର ମୋ ଉପରେ ଓ ଆପଣଙ୍କ ଉପରେ ସଦା ପ୍ରସନ୍ନ ରହନ୍ତୁ ।" ॥ ୧୨୪ (କ) ॥ ଭୁଶୁଣ୍ଡିଙ୍କ ମଙ୍ଗଳମୟ ବଚନ ଶୁଣି ଓ ଶ୍ରୀରାମଙ୍କ ଚରଣରେ ତାହାଙ୍କର ଅତିଶୟ ପ୍ରେମ ଦେଖି ଗରୁଡ ଭଲ ରୂପେ ସନ୍ଦେହରୁ ମୁକ୍ତ ହୋଇ ପ୍ରେମସହକାରେ 'ବଚନ ବୋଇଲେ— ॥ ୧୨୪ (ଖ) ॥ ଚୌପାଇ '—"ଶ୍ରୀ ରଘୁବୀରଙ୍କ ଭକ୍ତି-ରସ-ସିକ୍ତ ଆପଣଙ୍କ ବାଣୀ ଶୁଣି ମୁଁ କୃତକୃତ୍ୟ ହୋଇଗଲି । ଶ୍ରୀରାମଙ୍କ ଚରଣରେ ମୋର ନୂତନ ପ୍ରୀତି ହୋଇଗଲା ଏବଂ ମାୟା-ଜନିତ ସମସ୍ତ ବିପତ୍ତି ଦୂର ହୋଇଗଲା ॥ ୧ ॥ ମୋହ-ସମୁଦ୍ରରେ ନିମଜ୍ଜିତ ହେଉଥିଲି ବେଳେ ଅପଣ ମୋ-ନିମନ୍ତେ ଜାହାଜ ହୋଇଗଲେ । ହେ ନାଥ ! ଆପଣ ମୋତେ ବିବିଧ ସୁଖ ଦାନ କଲେ । ( ମୋତେ ପରମ ସୁଖୀ କରିଦେଲେ । ) ମୁଁ ଏହାର ପ୍ରତ୍ୟୁପକାର ଆପଣଙ୍କୁ ଦେଇ ପାରିବି ନାହିଁ । ମୁଁ ତ ଆପଣଙ୍କ ଚରଣଯୁଗଳ ବାରମ୍ବାର ବନ୍ଦନା

ସନ୍ତ ହୃଦୟ ନବନୀତ ସମାନା । କହା କବିନ୍ହ ପରି କହୈ ନ ଜାନା ॥
ନିଜ ପରିତାପ ଦ୍ରବଇ ନବନୀତା । ପର ଦୁଖ ଦ୍ରବହିଁ ସନ୍ତ ସୁପୁନୀତା ॥୩॥
ଜୀବନ ଜନ୍ମ ସୁଫଲ ମମ ଭୟଊ । ତବ ପ୍ରସାଦ ସଂସୟ ସବ ଗୟଊ ॥
ଜାନେହୁ ସଦା ମୋହି ନିଜ କିଂକର । ପୁନି ପୁନି ଉମା କହଇ ବିହଙ୍ଗବର ॥୪॥

ତାସୁ ଚରନ ସିରୁ ନାଇ କରି ପ୍ରେମ ସହିତ ମତିଧୀର ।
ଗୟଉ ଗରୁଡ଼ ବୈକୁଣ୍ଠ ତବ ହୃଦୟଁ ରାଖି ରଘୁବୀର ॥୧୨୫(କ)॥
ଗିରିଜା ସନ୍ତ ସମାଗମ ସମ ନ ଲାଭ କଛୁ ଆନ ।
ବିନୁ ହରିକୃପା ନ ହୋଇ ସୋ ଗାୱହିଁ ବେଦ ପୁରାନ ॥୧୨୫(ଖ)॥

କହେଉଁ ପରମ ପୁନୀତ ଇତିହାସା । ସୁନତ ଶ୍ରବନ ଛୂଟହିଁ ଭବ ପାସା ॥
ପ୍ରନତ କଲ୍ପତରୁ କରୁନା-ପୁଞ୍ଜା । ଉପଜଇ ପ୍ରୀତି ରାମ ପଦ-କଞ୍ଜା ॥୧॥

---

ସନ୍ଥ ହୃଦ ନବନୀତ ସମାନ କହିଲେ । କିନ୍ତୁ ଏ ଉପମା କବି କହି ନ ଜାଣିଲେ ।
ବିଦ୍ରବଇ ନବନୀତ ନିଜ ସନ୍ତାପରେ । ଦ୍ରବନ୍ତି ପବିତ୍ର ସନ୍ଥ ପରର ଦୁଃଖରେ ॥୩॥
ଜୀବନ ଜନମ ମୋର ହୋଇଲା ସୁଫଳ । ତୁମ୍ଭ ପ୍ରସାଦେ ତୁଟିଲା ସଂଶୟ ସକଳ ॥
ଜାଣିବ ମୋତେ ସତତ ଆପଣା କିଙ୍କର । ବାରମ୍ବାର ଉମା, ଏହା କହି ଖଗବର ॥୪॥

ଚରଣେ ତାହାର କରିଣ ଜୁହାର ପ୍ରେମ ସହ ମତିଧୀର ।
ଗରୁଡ ଗମିଲା ବୈକୁଣ୍ଠକୁ ତହୁଁ ହୃଦେ ସ୍ମରି ରଘୁବୀର ॥୧୨୫(କ)॥
ଶୁଣ ଉମା, ସନ୍ଥ-ସମାଗମ ସମ ଲାଭ ନାହିଁ କିଛି ଆନ ॥
ହରି କୃପା ବିନା ନ ହୁଅଇ ତାହା, ଭଣନ୍ତି ବେଦ ପୁରାଣ ॥୧୨୫(ଖ)॥

ବର୍ଣ୍ଣନ କଲି ପରମ ପୂତ ଇତିହାସ । ଶୁଣନ୍ତେ ଶ୍ରବଣେ ଛିନ୍ନ ହୁଏ ଭବପାଶ ॥
ପ୍ରଣତ-କଳପତରୁ କରୁଣା - ସଦନ । ରାମ ପଦ-କଞ୍ଜେ ପ୍ରୀତି ହୁଏ ଉତପନ୍ନ ॥୧॥

---

କରୁଅଛନ୍ତି ॥ ୨ ॥ ଆପଣ ପୂର୍ଣ୍ଣକାମ ଓ ଶ୍ରୀରାମଙ୍କ ପ୍ରେମୀ । ହେ ତାତ ! ଆପଣଙ୍କ ସମାନ କେହି ବଡ଼ ଭାଗ୍ୟବାନ୍ ଅଛି ନାହାନ୍ତି । ସନ୍ଥ, ବୃକ୍ଷ, ନଦୀ, ପର୍ବତ ଓ ପୃଥିବୀ— ଏହି ସମସ୍ତଙ୍କ କ୍ରିୟା-କଳାପ ପରହିତ ନିମନ୍ତେ ହିଁ ଉଦ୍ଦିଷ୍ଟ ॥ ୩ ॥ ସନ୍ଥଙ୍କ ହୃଦୟ ଲବଣୀ ସମାନ ବୋଲି କବିମାନେ କହିଅଛନ୍ତି । କିନ୍ତୁ ସେମାନେ ଅସଲ କଥା କହି ଜାଣିନାହାନ୍ତି । ଲହୁଣୀ ନିଜକୁ ତାପ ମିଳିବା ଯୋଗେ ତରଳିଯାଏ । ମାତ୍ର ପରମ-ପବିତ୍ର ସନ୍ଥ-ହୃଦୟ ପରର ଦୁଃଖ-ଦର୍ଶନ ମାତ୍ରକେ ତରଳି ଯାଏ ॥ ୪ ॥ ମୋର ଜୀବନ ଓ ଜନ୍ମ ସଫଳ ହୋଇଗଲା । ଆପଣଙ୍କ କୃପା ହେତୁ ମୋର ସମସ୍ତ ସନ୍ଦେହ ଦୂର୍ ହୋଇଗଲା । ମୋତେ ସଦା ଆପଣଙ୍କ ନିଜର ଦାସ ବୋଲି ଜାଣନ୍ତୁ ।" ଶିବ କହନ୍ତି, "ହେ ଉମା ! ପକ୍ଷିବର ଗରୁଡ ବାରମ୍ବାର ଏହିପରି କହୁଥାଆନ୍ତି ॥ ୫ ॥
ଦୋହା :—ସେହି ଭୁଶୁଣ୍ଡିଙ୍କ ଚରଣରେ ପ୍ରେମ ସହକାରେ ଶିର ନୁଆଁଇ ଏବଂ ହୃଦୟରେ ଶ୍ରୀ ରଘୁବୀରଙ୍କୁ ଧାରଣ କରି ଗରୁଡ ସେତେବେଳେ ବୈକୁଣ୍ଠଧାମ

ମନ କ୍ରମ ବଚନ ଜନିତ ଅଘ ଜାଈ । ସୁନହିଁ ଜେ କଥା ଶ୍ରବନ ମନ ଲାଈ ॥
ତୀର୍ଥାଟନ ସାଧନ ସମୁଦାଈ । ଜୋଗ ବିରାଗ ଜ୍ଞାନ ନିପୁନାଈ ॥୨॥
ନାନା କର୍ମ ଧର୍ମ ବ୍ରତ ଦାନା । ସଂଜମ ଦମ ଜପ ତପ ମଖ ନାନା ॥
ଭୂତ ଦୟା ଦ୍ୱିଜ ଗୁର ସେବକାଈ । ବିଦ୍ୟା ବିନୟ ବିବେକ ବଡ଼ାଈ ॥୩॥
ଜହଁ ଲଗି ସାଧନ ବେଦ ବଖାନୀ । ସବ କର ଫଲ ହରି ଭଗତି ଭବାନୀ ॥
ସୋ ରଘୁନାଥ ଭଗତି ଶ୍ରୁତି ଗାଈ । ରାମକୃପାଁ କାହୂଁ ଏକ ପାଈ ॥୪॥
ମୁନି ଦୁର୍ଲଭ ହରି ଭଗତି ନର ପାୱହିଁ ବିନହିଁ ପ୍ରୟାସ ।
ଜେ ୟହ କଥା ନିରନ୍ତର ସୁନହିଁ ମାନି ବିସ୍ୱାସ ॥୧୨୬॥

---

ମନ କର୍ମ ବାକ୍ୟ କୃତ ପାପ ହୁଏ କ୍ଷୟ । ମନ କର୍ଣ୍ଣ ଦେଇ କଥା ଶୁଣେ ଯେ ନିଶ୍ଚୟ ॥
ଯୋଗ ବୈରାଗ୍ୟ ଅସଂଖ୍ୟ ତୀର୍ଥ ପର୍ଯ୍ୟଟନ । ଜ୍ଞାନ–ନିପୁଣତା ଆଦି ବିବିଧ ସାଧନ ॥୨॥
ବହୁ ବ୍ରତ ଉପବାସ ଧରମ କରମ । ଯଜ୍ଞ ଦାନ ଜପ ତପ ସଂଯମ ନିୟମ ॥
ଭୂତ ଦୟା ଦ୍ୱିଜ-ଗୁରୁ-ସେବାରେ ତତ୍ପର । ବିଦ୍ୟା ବିନୟ ବିବେକ ବଡ଼ାଇ ଆଦର ॥୩॥
ବେଦରେ ପର୍ଯ୍ୟନ୍ତ ଯେତେ ସାଧନ କହନ୍ତି । ସମସ୍ତଙ୍କ ଫଳ ହରି-ଭକ୍ତି, ପାର୍ବତୀ ॥
ସେହି ରଘୁପତିଙ୍କର ଭକ୍ତି ଶ୍ରୁତି ଗାଏ । ରାମଙ୍କ ଅନୁକମ୍ପାରେ କେହି ଏକ ପାଏ ॥୪॥
ମୁନିଙ୍କ ଦୁର୍ଲଭ ହରି-ଭକ୍ତି, ନର ବିନା ପ୍ରୟାସେ ଲଭନ୍ତି ।
ଯେନ୍ତୁ ନିରନ୍ତରେ ଏ କଥା ସାଦରେ ବିଶ୍ୱାସ ମଣି ଶୁଣନ୍ତି ॥୧୨୬॥

---

ଚାଲିଗଲେ ॥ ୧୨୫ (କ) ॥ ହେ ଗିରିଜେ ! ସନ୍ଥ-ସମାଗମ ସମାନ ଅନ୍ୟ ଲାଭ ନାହିଁ । ସନ୍ଥସମାଗମ ମଧ୍ୟ ଶ୍ରୀହରିଙ୍କ କୃପାବିନା ହୋଇ ନ ପାରେ । ବେଦ ଓ ପୁରାଣମାନେ ଏହିପରି କହନ୍ତି ॥ ୧୨୫ (ଖ) ॥ ଚୌପାଇ '—ମୁଁ ଏହି ପରମ ପବିତ୍ର ଇତିହାସ କହିଲି । ଏହାକୁ କର୍ଣ୍ଣରେ ଶୁଣିବା ମାତ୍ରେ ଭବବନ୍ଧନ ଉନ୍ମୁକ୍ତ ହୋଇଯାଏ ଏବଂ ଶରଣାଗତମାନଙ୍କ କଳ୍ପବୃକ୍ଷ ତଥା କରୁଣାପୁଞ୍ଜ ଶ୍ରୀରାମଙ୍କ ଚରଣ-କମଳରେ ପ୍ରେମ ଜାତ ହୁଏ ॥ ୧ ॥ ଯେଉଁମାନେ କର୍ଣ୍ଣ ଓ ମନ ଦେଇ ଏହି କଥାକୁ ଶୁଣନ୍ତି, ମନ, ବଚନ ଓ କର୍ମରୁ ଜାତ ସେମାନଙ୍କ ସମସ୍ତ ପାପ ନଷ୍ଟ ହୋଇଯାଏ । ତୀର୍ଥଯାତ୍ରା ଆଦି ବହୁତ ସାଧନ, ଯୋଗ, ବୈରାଗ୍ୟ ଓ ଜ୍ଞାନରେ ନିପୁଣତା, ଅନେକ ପ୍ରକାର କର୍ମ, ଧର୍ମ, ବ୍ରତ ଓ ଦାନ, ଅନେକ ସଂଯମ, ଦମ, ଜପ, ତପ ଓ ଯଜ୍ଞ; ପ୍ରାଣୀମାନଙ୍କ ପ୍ରତି ଦୟା, ବ୍ରାହ୍ମଣ ଓ ଗୁରୁଙ୍କ ସେବା, ବିଦ୍ୟା ବିନୟ ଓ ବିବେକର ବଡ଼ାଇ ଆଦି ଯେତେ ସାଧନ ବେଦମାନେ ବଖାଣିଅଛନ୍ତି, ହେ ଭବାନି ! ସେ ସମସ୍ତର ଫଳ କେବଳ ଶ୍ରୀହରିଙ୍କ ପ୍ରତି ଭକ୍ତି । କିନ୍ତୁ ଶ୍ରୁତି-ବର୍ଣ୍ଣିତ ସେହି ଶ୍ରୀ ରଘୁନାଥ-ଭକ୍ତି ଶ୍ରୀରାମଙ୍କ କୃପା ହେତୁ କ୍ୱଚିତ୍ କେହି ଜଣେ ମାତ୍ର ପାଇଥାଆନ୍ତି ॥ ୨-୪ ॥ ଦୋହା . -କିନ୍ତୁ ଯେଉଁ ମନୁଷ୍ୟମାନେ ବିଶ୍ୱାସର ସହିତ ଏହି କଥା ନିରନ୍ତର ଶୁଣନ୍ତି, ସେହିମାନେ ଅନାୟାସରେ ମୁନିଦୁର୍ଲଭ ହରିଭକ୍ତି ଲାଭ କରନ୍ତି ॥ ୧୨୬ ॥ ଚୌପାଇ .-

ସୋଇ ସର୍ବଜ୍ଞ ଗୁନୀ ସୋଇ ଜ୍ଞାତା । ସୋଇ ମହି ମଣ୍ଡିତ ପଣ୍ଡିତ ଦାତା ॥
ଧର୍ମ-ପରାୟନ ସୋଇ କୁଲ୍‌ତ୍ରାତା । ରାମଚରନ ଜା କର ମନ ରାତା ॥୧॥
ନୀତିନିପୁନ ସୋଇ ପରମ ସୟାନା । ଶ୍ରୁତି ସିଦ୍ଧାନ୍ତ ନୀକ ତେହିଁ ଜାନା ॥
ସୋଇ କବି କୋବିଦ ସୋଇ ରନଧୀରା । ଜୋ ଛଲ ଛାଡ଼ି ଭଜଇ ରଘୁବୀରା ॥୨॥
ଧନ୍ୟ ଦେସ ସୋ ଜହଁ ସୁରସରୀ । ଧନ୍ୟ ନାରି ପତିବ୍ରତ ଅନୁସରୀ ॥
ଧନ୍ୟ ସୋ ଭୂପୁ ନୀତି ଜୋ କରଈ । ଧନ୍ୟ ସୋ ଦ୍ୱିଜ ନିଜ ଧର୍ମ ନ ଟରଈ ॥୩॥
ସୋ ଧନ ଧନ୍ୟ ପ୍ରଥମ ଗତି ଜାକୀ । ଧନ୍ୟ ପୁନ୍ୟରତ ମତି ସୋଇ ପାକୀ ॥
ଧନ୍ୟ ଘରୀ ସୋଇ ଜବ ସତସଙ୍ଗା । ଧନ୍ୟ ଜନ୍ମ ଦ୍ୱିଜ ଭଗତି ଅଭଙ୍ଗା ॥୪॥

ସୋ କୁଲ ଧନ୍ୟ ଉମା ସୁନୁ ଜଗତପୂଜ୍ୟ ସୁପୁନୀତ ।
ଶ୍ରୀ ରଘୁବୀର-ପରାୟନ ଜେହିଁ ନର ଉପଜ ବିନୀତ ॥୧୨୭॥

---

ଅଟଇ ସର୍ବଜ୍ଞ ସେହି ଗୁଣୀଯୁକ୍ତ ଜ୍ଞାତା । ସେ ମହୀ-ମଣ୍ଡନ ସେହି ସୁପଣ୍ଡିତ ଦାତା ॥
କୁଳରକ୍ଷକ ସେ ଅଟେ ଧରମ-ନିରତ । ଶ୍ରୀରାମ ଚରଣେ ମନ ଯା ଅନୁରକତ ॥୧॥
ନୀତିରେ ନିପୁଣ ସେହି ଚତୁର ପରମ । ଶ୍ରୁତି ସିଦ୍ଧାନ୍ତ ସେ ଏକା ଜାଣେ ଉତ୍ତମ ॥
ସେ କବି କୋବିଦ ସେହି ନର ରଣଧୀର । ଛଳ ପରିହରି ଯେହୁ ଭଜେ ରଘୁବୀର ॥୨॥
ଧନ୍ୟ ସେହି ଦେଶ ଯହିଁ ଅମର ତଟିନୀ । ଧନ୍ୟ ସେ ନାରୀ ଯେ ପତିବ୍ରତାନୁଗାମିନୀ ॥
ଧନ୍ୟ ସେହି ନୃପ, ନୀତି ଯେ ପ୍ରତିପାଳଇ । ଧନ୍ୟ ସେ ଦ୍ୱିଜ ଯେ ନିଜ ଧର୍ମ ନ ଟଳଇ ॥୩॥
ଧନ୍ୟ ସେହି ଧନ ଲଭେ ଯେ ପ୍ରଥମ ଗତି । ଧନ୍ୟ ପୁଣ୍ୟେରତ ସେହି ପରିପକ୍ୱ-ମତି ॥
ଧନ୍ୟ ସେହି ଘଡ଼ି ଯେବେ ମିଳଇ ସତ୍ସଙ୍ଗ । ଧନ୍ୟ ଜନ୍ମ, ଦ୍ୱିଜେ ଭକ୍ତି ଯାହାର ଅଭଙ୍ଗ ॥୪॥

ସେହି କୁଳ ଧନ୍ୟ ଅଟେ ଉମା, ଶୁଣ ଜଗତେ ପୂଜ୍ୟ ପବିତ୍ର ।
ଶ୍ରୀ ରଘୁନାଥଙ୍କ-ପରାୟଣ, ଯେଉଁ କୁଳେ ଉପୁଜେ ବିନୀତ ॥୧୨୭॥

---

ଯାହାର ମନ ଶ୍ରୀରାମଙ୍କ ଚରଣପ୍ରତି ଅନୁରକ୍ତ, ସେହି ସର୍ବଜ୍ଞ, ସେହି ଗୁଣୀ ଏବଂ ସେହି ଜ୍ଞାନୀ । ସେହି ପୃଥିବୀର ଭୂଷଣ, ପଣ୍ଡିତ ଓ ଦାନୀ । ସେହି ଧର୍ମପରାୟଣ ଓ ସେହି କୁଳରକ୍ଷକ ॥ ୧ ॥ ଯେଉଁ ଜନ ଛନ୍ଦ-କପଟ ତ୍ୟାଗ କରି ଶ୍ରୀ ରଘୁବୀରଙ୍କ ଭଜନ କରେ, ସେହି ନୀତିରେ ନିପୁଣ, ସେହି ପରମ ବୁଦ୍ଧିମାନ ଏବଂ ସେହି ବେଦ-ସିଦ୍ଧାନ୍ତକୁ ଭଲ ରୂପେ ଜାଣିଅଛି । ସେହି କବି, ସେହି ବିଦ୍ୱାନ୍ ଏବଂ ସେହି ରଣଧୀର ॥ ୨ ॥ ଯେଉଁ ଦେଶରେ ଗଙ୍ଗା ଅଛନ୍ତି, ସେହି ଦେଶ ଧନ୍ୟ; ଯେଉଁ ସ୍ତ୍ରୀ ପତିବ୍ରତା-ଧର୍ମ ପାଳନ କରେ, ସେହି ସ୍ତ୍ରୀ ଧନ୍ୟ । ଯେଉଁ ରାଜା ନ୍ୟାୟ କରେ, ସେହି ରାଜା ଧନ୍ୟ । ଯେଉଁ ବ୍ରାହ୍ମଣ ଆପଣା ଧର୍ମରୁ ଟଳେନାହିଁ, ସେହି ବ୍ରାହ୍ମଣ ଧନ୍ୟ ॥ ୩ ॥ ଯେଉଁ ଧନର ପ୍ରଥମ ଗତି (ଦାନ-କର୍ମରେ ବ୍ୟୟ) ହୁଏ, ସେହି ଧନ ଧନ୍ୟ । ଧନର ତିନିଗୋଟି ଗତି—ଦାନ, ଭୋଗ ଓ ନାଶ । ଦାନ ଉତ୍ତମ ବା ପ୍ରଥମ, ଭୋଗ ମଧ୍ୟମ ଓ ନାଶ ନିମ୍ନ (ନୀଚ) ଗତି । ଯେଉଁ ପୁରୁଷ ଦିଏନାହିଁ କିମ୍ବା ଭୋଗ କରେନାହିଁ, ତାହାର

ମତି ଅନୁରୂପ କଥା ମୈଁ ଭାଷୀ । ଜଦ୍ୟପି ପ୍ରଥମ ଗୁପ୍ତ କରି ରାଖୀ ॥
ତବ ମନ ପ୍ରୀତି ଦେଖି ଅଧିକାଈ । ତବ ମୈଁ ରଘୁପତି କଥା ସୁନାଈ ॥୧॥
ୟହ ନ କହିଅ ସଠହୀ ହଠସୀଲହି । ଜୋ ମନ ଲାଇ ନ ସୁନ ହରିଲୀଲହି ॥
କହିଅ ନ ଲୋଭିହି କ୍ରୋଧିହି କାମିହି । ଜୋ ନ ଭଜଇ ସଚରାଚର ସ୍ୱାମିହି ॥୨॥
ଦ୍ୱିଜଦ୍ରୋହିହି ନ ସୁନାଇଅ କବହୂଁ । ସୁରପତି ସରିସ ହୋଇ ନୃପ ଜବହୂଁ ॥
ରାମକଥା କେ ତେଇ ଅଧିକାରୀ । ଜିନ୍ହ କେ ସତ ସଂଗତି ଅତି ପ୍ୟାରୀ ॥୩॥
ଗୁରପଦ ପ୍ରୀତି ନୀତିରତ ଜେଈ । ଦ୍ୱିଜ ସେବକ ଅଧିକାରୀ ତେଈ ॥
ତା କହଁ ୟହ ବିସେଷ ସୁଖଦାଈ । ଜାହି ପ୍ରାନପ୍ରିୟ ଶ୍ରୀ ରଘୁରାଈ ॥୪॥

---

ମତି ଅନୁସାରେ ସବୁ କଥା ବଖାଣିଲି । ଯଦ୍ୟପି ପ୍ରଥମେ ଗୁପ୍ତ କରି ରଖିଥିଲି ॥
ତୁମ୍ଭ ମନ ମଧ୍ୟେ ପ୍ରୀତି ବିଲୋକି ପ୍ରବଳ । ଶୁଣାଇଲି ରଘୁପତି କଥା ମୁଁ ସକଳ ॥୧॥
ଏହା ନ କହିବ ଶଠ ହଠଶୀଳ ଆଗେ । ଯେ ହରି-ଲୀଳା ନ ଶୁଣେ ମନ-ଅନୁରାଗେ ॥
କହିବ ନାହିଁ ଲୋଭୀଙ୍କି କ୍ରୋଧୀଙ୍କି କାମୀଙ୍କି । ନ ଭଜନ୍ତି ଯେ ସଚର-ଅଚର-ସ୍ୱାମୀଙ୍କି ॥୨॥
ଶୁଣାଇବ ନାହିଁ ଦ୍ୱିଜଦ୍ରୋହୀଙ୍କୁ କେବେହେଁ । ସୁରପତି ସମ ହୁଙ୍କା ନୃପତି ହେଲେହେଁ ॥
ରାମକଥା-ଅଧିକାରୀ ସେମାନେ ଅଟନ୍ତି । ଯାହାଙ୍କୁ ସଦା ସତ୍ସଙ୍ଗ ପ୍ରିୟ ଲାଗେ ଅତି ॥୩॥
ଗୁରୁପଦେ ପ୍ରୀତି, ନୀତିରତ ଅଟେ ଯେହୁ । ଦ୍ୱିଜ-ସେବା-ପରାୟଣ ଅଧିକାରୀ ସେହୁ ॥
ତାହାଙ୍କୁ କଥା ବିଶେଷ ଆନନ୍ଦଦାୟକ । ଯାହାଙ୍କୁ ପରମପ୍ରିୟ ଶ୍ରୀ ରଘୁନାୟକ ॥୪॥

---

ଧନର ତୃତୀୟ ଗତି (ଦଶା) ହୁଏ । ଯେଉଁ ବୁଦ୍ଧି ପରପଦ୍ମ ଓ ପୁଣ୍ୟରେ ନିୟୋଜିତ, ସେହି ବୁଦ୍ଧି ଧନ୍ୟ । ଯେଉଁ ଘଡ଼ି ବା ମୁହୂର୍ତ୍ତରେ ସତ୍ସଙ୍ଗ ଲାଭ ହୁଏ, ସେହି ଘଡ଼ି ବା ମୁହୂର୍ତ୍ତ ଧନ୍ୟ । ଯେଉଁ ଜନ୍ମରେ ବ୍ରାହ୍ମଣଙ୍କ ପ୍ରତି ଅଖଣ୍ଡ ଭକ୍ତି ହୁଏ, ସେହି ଜନ୍ମ ମଧ୍ୟ ଧନ୍ୟ ॥ ୪ ॥ ଦୋହା :—ହେ ଉମା ! ଶୁଣ, ଯେଉଁ କୁଳରେ ଶ୍ରୀ ରଘୁବୀର-ପରାୟଣ (ଅନନ୍ୟ ରାମଭକ୍ତ) ବିନମ୍ର ପୁରୁଷ ଜାତ ହୁଅନ୍ତି, ସେହି କୁଳ ଧନ୍ୟ, ସମଗ୍ର ସଂସାର ପକ୍ଷରେ ତାହା ପୂଜ୍ୟ ଓ ପରମ ପବିତ୍ର ॥ ୧୨୭ ॥ ଚୌପାଈ :—ମୁଁ ଆପଣା ବୁଦ୍ଧି ଅନୁସାରେ ଏହି କଥା କହିଲି, ଯଦ୍ୟପି ପ୍ରଥମେ ଏହାକୁ ଗୁପ୍ତ କରି ରଖିଥିଲି, ଏବେ ତାହା ପ୍ରକାଶ କଲି । ଯେତେବେଳେ ତୁମ ମନରେ ପ୍ରେମର ଆଧିକ୍ୟ ଦେଖିଲି, ସେତେବେଳେ ଶ୍ରୀ ରଘୁନାଥଙ୍କ ଏହି କଥା ତୁମକୁ ଶୁଣାଇଲି ॥ ୧ ॥ ଯେଉଁ ବ୍ୟକ୍ତି ଶଠ ବା ଧୂର୍ତ୍ତ, ଯାହାର ଜିଦ୍‌ଖୋରିଆ ସ୍ୱଭାବ ଏବଂ ଶ୍ରୀହରିଙ୍କ ଲୀଳାକୁ ଯେ ମନ ଲଗାଇ ଶୁଣେନାହିଁ, ଏହି କଥା ତାହାକୁ କହିବା ଅନୁଚିତ । ଯେଉଁ ବ୍ୟକ୍ତି ଚରାଚର-ସ୍ୱାମୀ ଶ୍ରୀରାମଙ୍କୁ ଭଜନ କରେନାହିଁ, ଏହିପରି ଲୋଭୀ, କ୍ରୋଧୀ ଓ କାମୀକୁ ଏହି କଥା କହିବା ଉଚିତ ନୁହେଁ ॥ ୨ ॥ ଦେବରାଜ ଇନ୍ଦ୍ରଙ୍କ ସମାନ ଐଶ୍ୱର୍ଯ୍ୟବାନ୍ ରାଜା ହୋଇଥା'ନ୍ତୁ ପଛକେ; ଯଦି ସେ ବ୍ରାହ୍ମଣଦ୍ରୋହୀ, ତେବେ ତାହାଙ୍କୁ ମଧ୍ୟ ଏହି କଥା ଶୁଣାଇବା ଉଚିତ ନୁହେଁ । ଯେଉଁମାନଙ୍କର ସତ୍‌ସଙ୍ଗତି ଅତି ପ୍ରିୟ, ଶ୍ରୀରାମଙ୍କ କଥା ଶୁଣିବା

ରାମ ଚରନ ରତି ଜୋ ଚହ ଅଥବା ପଦ ନିର୍ବାନ ।
ଭାବ ସହିତ ସୋ ଯହ କଥା କରଉ ଶ୍ରବନ-ପୁଟ ପାନ ॥୧୨୮॥
ରାମକଥା ଗିରିଜା ମୈଁ ବରନୀ । କଲିମଲ ସମନି ମନୋମଲ ହରନୀ ॥
ସଂସୃତି ରୋଗ ସଜୀବନ ମୂରୀ । ରାମକଥା ଗାୱହିଁ ଶ୍ରୁତି ସୂରୀ ॥୧॥
ଏହି ମହଁ ରୁଚିର ସପ୍ତ ସୋପାନା । ରଘୁପତି ଭଗତି କେର ପଂଥାନା ॥
ଅତି ହରିକୃପା ଜାହି ପର ହୋଈ । ପାଉ ଦେଇ ଏହି ମାରଗ ସୋଈ ॥୨॥
ମନକାମନା ସିଦ୍ଧି ନର ପାୱା । ଜେ ଯହ କଥା କପଟ ତଜି ଗାୱା ॥
କହହିଁ ସୁନହିଁ ଅନୁମୋଦନ କରହୀଁ । ତେ ଗୋପଦ ଇବ ଭବନିଧି ତରହୀଁ ॥୩॥
ସୁନି ସବ କଥା ହୃଦୟ ଅତି ଭାଈ । ଗିରିଜା ବୋଲୀ ଗିରା ସୁହାଈ ॥
ନାଥ କୃପାଁ ମମ ଗତ ସଂଦେହା । ରାମଚରନ ଉପଜେଉ ନବ ନେହା ॥୪॥

---

ରାମ ପଦ୍ମରେ ଯେ ପ୍ରୀତି ବାଞ୍ଛା କରେ ଅଥବା ପଦ ନିର୍ବାଣ ।
ଭାବ ସହିତ ସେ ଏହି କଥା କରୁ ଶ୍ରବଣପୁଟରେ ପାନ ॥୧୨୮॥
ରାମ କଥା ବର୍ଣ୍ଣିଲି ମୁଁ, ଶଇଳ-ନନ୍ଦନୀ । କଳିର କଲୁଷ ମନୋମଳ-ବିନାଶିନୀ ॥
ସଂସୃତି ରୋଗକୁ ଯେଉଁଟି ସଞ୍ଜୀବନୀ ମୂଳ । ରାମ-କଥା ଶ୍ରୁତି ଗାନ କରଇ ବିପୁଳ ॥୧॥
ଏହା ମଧ୍ୟେ ସୁରୁଚିର ସୋପାନ ସପତ । ରଘୁପତିଙ୍କ ଭକ୍ତିର ମନୋହର ପଥ ॥
ଅତି ହରିକୃପା ଯାହା ଉପରେ ହୁଅଇ । ଏହି ମାର୍ଗରେ ସେ ପ୍ରାଣୀ ପଦୁର ଦିଅଇ ॥୨॥
ନିଜ ମନୋରଥ ସିଦ୍ଧି ମନୁଷ୍ୟ ଲଭନ୍ତି । କପଟ ତେଜିଣ ଯେହୁ ଏ କଥା କହନ୍ତି ॥
କହନ୍ତି ଶୁଣନ୍ତି ଅନୁମୋଦନ କରନ୍ତି । ଗୋଷ୍ପଦ ତୁଲ୍ୟ ସେ ଭବ-ସାଗର ତରନ୍ତି ॥୩॥
ଶୁଣି ଶୁଭ କଥା ହୃଦେ ହୋଇଣ ପ୍ରସନ୍ନ । ଭାଷିଲେ ଗିରିଜା ତହୁଁ ସୁନ୍ଦର ବଚନ ॥
ନାଥଙ୍କ କୃପାରେ ନାଶହେଲା ମୋ ସନ୍ଦେହ । ଶ୍ରୀରାମଚରଣେ ନବ ଉପୁଜିଲା ସ୍ନେହ ॥୪॥

---

ନିମନ୍ତେ କେବଳ ଅଧିକାରୀ ସେହିମାନେ ॥ ୩ ॥ ଗୁରୁଙ୍କ ଚରଣରେ ଯେଉଁମାନଙ୍କର ପ୍ରୀତି, ଯେଉଁମାନେ ନୀତିପରାୟଣ ଏବଂ ବ୍ରାହ୍ମଣ-ସେବକ, ସେହିମାନେ ହିଁ ଏହି କଥା ଶୁଣିବାର ଅଧିକାରୀ । ଶ୍ରୀ ରଘୁନାଥ ଯାହାର ପ୍ରାଣସମ ପ୍ରିୟ, ତାହାକୁ ଏହି କଥା ଅତ୍ୟନ୍ତ ସୁଖଦାୟିନୀ ॥ ୪ ॥ ଦୋହା '—ଯେ ଶ୍ରୀରାମଙ୍କ ଚରଣରେ ପ୍ରେମ ବା ମୋକ୍ଷପଦ କାମନା କରୁଥାଏ, ସେ ଏହି କଥାମୃତକୁ ପ୍ରେମରେ ତାହାର କର୍ଣ୍ଣପୁଟରେ ପାନ କରୁ ॥ ୧୨୮ ॥ ଚୌପାଈ '—ହେ ଗିରିଜେ ! ମୁଁ କଳିଯୁଗର ସମସ୍ତ ପାପର ନାଶକାରିଣୀ ଏବଂ ମନର ମଳ-ହରଣକାରିଣୀ ଶ୍ରୀରାମ-କଥା ବର୍ଣ୍ଣନା କଲି । ଏହି ରାମକଥା ସଂସାରର ଜନ୍ମ-ମରଣ ରୂପକ ରୋଗର ବିନାଶ ନିମନ୍ତେ ସଞ୍ଜୀବନୀ ମୂଳୀ ବୋଲି ବେଦ ଓ ବିଦ୍ୱାନ୍ ପୁରୁଷମାନେ କହନ୍ତି ॥ ୧ ॥ ଏଥିରେ ସାତ ଗୋଟି ସୁନ୍ଦର ସିଡ଼ି ଅଛି । ଏହି ସିଡ଼ିଗୁଡ଼ିକ ଶ୍ରୀ ରଘୁନାଥ-ଭକ୍ତି ପାଇବା ନିମନ୍ତେ ମାର୍ଗ । ଯାହା ଉପରେ ଶ୍ରୀହରିଙ୍କ ଅତିଶୟ କୃପା ହୁଏ, କେବଳ ସେହି ଏହି ମାର୍ଗରେ ପଦାର୍ପଣ

ମୈଁ କୃତକୃତ୍ୟ ଭଇଉଁ ଅବ ତବ ପ୍ରସାଦ ବିସ୍ୱେସ ।
ଉପଜୀ ରାମଭଗତି ଦୃଢ଼ ବୀତେ ସକଲ କଲେସ ॥୧୨୯॥
ୟହ ସୁଭ ସମ୍ଭୁ ଉମା ସଂବାଦା । ସୁଖ ସଂପାଦନ ସମନ ବିଷାଦା ॥
ଭବ ଭଞ୍ଜନ ଗଞ୍ଜନ ସଂଦେହା । ଜନରଞ୍ଜନ ସଜ୍ଜନ-ପ୍ରିୟ ଏହା ॥୧॥
ରାମ ଉପାସକ ଜେ ଜଗ ମାହୀଁ । ଏହି ସମ ପ୍ରିୟ ତିନ୍ହକେ କଛୁ ନାହୀଁ ॥
ରଘୁପତି କୃପାଁ ଜଥାମତି ଗାୱା । ମୈଁ ୟହ ପାୱନ ଚରିତ ସୁହାୱା ॥୨॥
ଏହିଁ କଲି କାଲ ନ ସାଧନ ଦୂଜା । ଜୋଗ ଜଜ୍ଞ ଜପ ତପ ବ୍ରତ ପୂଜା ॥
ରାମହି ସୁମିରିଅ ଗାଇଅ ରାମହି । ସନ୍ତତ ସୁନିଅ ରାମ ଗୁନ-ଗ୍ରାମହି ॥୩॥

---

ଏବେ କୃତ-କୃତ୍ୟ ହୋଇଲି ମୁଁ ନାଥ, ତୁମ୍ଭ ପ୍ରସାଦେ ବିଶ୍ୱେଶ ।
ଉପୁଜିଲା ଦୃଢ ରଘୁପତି-ଭକ୍ତି ନଷ୍ଟ ହେଲା ସର୍ବ କ୍ଳେଶ ॥୧୨୯॥
ଏହି ଶୁଭ ସଦାଶିବ-ଗିରିଜା-ସମ୍ବାଦ । ସୁଖ-ସମ୍ପାଦକ ପୁଣି ଶମନ - ବିଷାଦ ॥
ଭବ-ଭଞ୍ଜନ ସନ୍ଦେହ-ଗଞ୍ଜନ ଆବର । ଜନ-ରଞ୍ଜନ ସଜ୍ଜନ ମନ - ପ୍ରୀତିକର ॥୧॥
ରାମ-ଉପାସକ ଯେତେ ଜଗତରେ ଜାଣ । ଏହା ସମ ପ୍ରିୟ ତାଙ୍କ ନାହିଁ କିଛି ଆନ ॥
ରଘୁପତି କୃପାରେ ମୁଁ ମତି ଅନୁରୂପ । ଗାଇଲି ଏହି ପବିତ୍ର ଚରିତ୍ର ଅନୁପ ॥୨॥
ଏହି କଳିକାଳେ ନାହିଁ ସାଧନ ଇତର । ଯୋଗ, ଯଜ୍ଞ, ଜପ, ତପ, ବ୍ରତ, ପୂଜାବର ॥
ରାମଙ୍କୁ ସ୍ମରଣ କର, ଗାଅ ସଦା ରାମ । ସତତ ଶ୍ରବଣ କର ରାମ-ଗୁଣ-ଗ୍ରାମ ॥୩॥

---

କରିପାରେ ॥ ୨ ॥ ଯେଉଁମାନେ ଛଳକପଟ ତେଜି ଏହି କଥା ଗାନ କରନ୍ତି, ସେହି ମନୁଷ୍ୟମାନେ ଆପଣା ଆପଣାର ମନସ୍କାମନାରେ ସିଦ୍ଧି ଲାଭ କରନ୍ତି । ଯେଉଁମାନେ ଏହାକୁ କହନ୍ତି ଓ ଶୁଣନ୍ତି ଏବଂ ଅନୁମୋଦନ (ସମର୍ଥନ ବା ପ୍ରଶଂସା) କରନ୍ତି, ସେମାନେ ସଂସାର-ସାଗରକୁ ଗୋଷ୍ପଦ ପରି ଅନାୟାସରେ ତରିଯାଆନ୍ତି ।" ॥ ୩ ॥ (ଯାଜ୍ଞବଲ୍କ୍ୟ କହନ୍ତି—) ସମସ୍ତ କଥା ଶୁଣି ପାର୍ବତୀଙ୍କ ହୃଦୟ ଅତି ଆନନ୍ଦରେ ଉଚ୍ଛୁଳି ପଡ଼ିଲା ଏବଂ ସେ ସୁନ୍ଦର ବାଣୀ ବୋଇଲେ—"ସ୍ୱାମୀଙ୍କ କୃପା ଯୋଗେ ମୋ ସନ୍ଦେହ ଅପସରିଗଲା ଏବଂ ଶ୍ରୀରାମଙ୍କ ଚରଣରେ ମୋର ନବ ପ୍ରେମ ଜାତ ହେଲା ॥ ୪ ॥ ଦୋହା :—ହେ ବିଶ୍ୱନାଥ ! ଆପଣଙ୍କ କୃପା ହେତୁ ମୁଁ କୃତାର୍ଥ ହୋଇଗଲି । ମୋଠାରେ ଦୃଢ଼ ରାମଭକ୍ତି ଜାତ ହେଲା ଏବଂ ମୋର ସମସ୍ତ କ୍ଳେଶ ଦୂର ହୋଇଗଲା ।" ॥ ୧୨୯ ॥ ଚୌପାଈ —(ତୁଳସୀ ଦାସ କହନ୍ତି—) ଶମ୍ଭୁ-ଉମାଙ୍କର ଏହି କଲ୍ୟାଣକାରୀ ସମ୍ବାଦ ସୁଖ-ସମ୍ପାଦନକାରୀ ଏବଂ ଶୋକନାଶକାରୀ । ଏହା ଜନ୍ମମରଣର ମଧ୍ୟ ଅନ୍ତକ, ସନ୍ଦେହ-ବିନାଶକ, ଭକ୍ତଜନଙ୍କ ମନୋରଞ୍ଜନକାରକ ଏବଂ ସନ୍ଥପୁରୁଷଙ୍କ ପ୍ରୀତିକାରକ ॥ ୧ ॥ ଜଗତରେ ଯେତେ ବି ରାମ-ଉପାସକ ଅଛନ୍ତି, ଏହି ରାମକଥା ସମାନ ସେମାନଙ୍କର ଆଉ କିଛି ପ୍ରିୟ ନୁହେଁ । ଶ୍ରୀ ରଘୁନାଥଙ୍କ କୃପା ହେତୁ ମୁଁ ଏହି ସୁନ୍ଦର ଓ ପାବନ ଚରିତ ଆପଣା ବୁଦ୍ଧି ଅନୁସାରେ ଗାଇଲି ॥ ୨ ॥ ଏହି କଳିକାଳରେ ଯୋଗ, ଯଜ୍ଞ,

ଜାସୁ ପତିତପାବନ ବଡ଼ ବାନା । ଗାୱହିଁ କବି ଶ୍ରୁତି ସନ୍ତ ପୁରାନା ॥
ତାହି ଭଜହି ମନ ତଜି କୁଟିଲାଈ । ରାମ ଭଜେଁ ଗତି କେହିଁ ନହିଁ ପାଈ ॥୪॥

ପାଈ ନ କେହିଁ ଗତି ପତିତପାବନ ରାମ ଭଜି ସୁନୁ ସଠ ମନା ।
ଗନିକା ଅଜାମିଲ ବ୍ୟାଧ ଗୀଧ ଗଜାଦି ଖଲ ତାରେ ଘନା ॥
ଆଭୀର ଜମନ କିରାତ ଖସ ସ୍ୱପଚାଦି ଅତି ଅଘରୂପ ଜେ ।
କହି ନାମ ବାରକ ତେପି ପାୱନ ହୋହିଁ ରାମ ନମାମି ତେ ॥୧॥

ରଘୁବଂସ-ଭୂଷନ ଚରିତ ୟହ ନର କହହିଁ ସୁନହିଁ ଜେ ଗାୱହୀଁ ।
କଲିମଲ ମନୋମଲ ଧୋଇ ବିନୁ ଶ୍ରମ ରାମଧାମ ସିଧାୱହୀଁ ॥
ସତ ପଞ୍ଚ ଚୌପାଈଂ ମନୋହର ଜାନି ଜୋ ନର ଉର ଧରୈ ।
ଦାରୁନ ଅବିଦ୍ୟା ପଞ୍ଚ ଜନିତ ବିକାର ଶ୍ରୀ ରଘୁବର ହରୈ ॥୨॥

---

ପତିତପାବନ ଡକ ଯାହାଙ୍କର ବାନା । ଗାଆନ୍ତି ବେଦ ପୁରାଣ କବି ସନ୍ଥ ନାନା ॥
ତାଙ୍କୁ ମନ ଭଜ ତେଜି କୁଟିଳତା ମତି । ରାମଙ୍କୁ ଭଜନେ କେହୁ ନ ପାଇଛି ଗତି ॥୪॥

ପାଇନାହିଁ କେ ଗତି ଭଜି ରେ ଶଠମତି, ପତିତପାବନ ରାମଙ୍କୁ ।
ଗଣିକା ଅଜାମିଲ ତାରିଲେ ବହୁ ଖଳ ଯେ ଗୃଧ୍ର ବ୍ୟାଧ ଗଜେଶଙ୍କୁ ।
ଯବନ କିରାତ ଆଭୀର, ଶ୍ୱପଚ ପାତକୀ ନିକର,
ବାରେ ବୋଲି ଯା' ନାମ ହୋଇଲେ ସୁପାବନ, ନମଇଁ ସେ ରାମ ସୁନ୍ଦର ॥୧॥

ରଘୁବଂଶ ଭୂଷଣ-ଚରିତ ଯେଉଁଜନ କହିବେ ଶୁଣିବେ ଗାଇବେ ।
ସହଜେ କଳିମଳ ଧୋଇଣ ମନୋମଳ ରାମଙ୍କ ଧାମକୁ ପାଇବେ ।
ପାଞ୍ଚ ସାତ ଯେ ଚଉପାଇ, ଜାଣି ଯେ ହୃଦୟେ ଧରଇ,
ପଞ୍ଚ ଅବିଦ୍ୟା ଘୋର ଜନିତ ଯେ ବିକାର ଶ୍ରୀ ରଘୁବର ତା' ହରଇ ॥୨॥

---

ଜପ, ତପ, ବ୍ରତ ଓ ପୂଜନ ଆଦି ଅନ୍ୟ କୌଣସି ସାଧନ ନାହିଁ । ବେଶ୍, ଶ୍ରୀରାମଙ୍କୁ କେବଳ ସ୍ମରଣ କରିବା, ଶ୍ରୀରାମଙ୍କର ହିଁ ଗୁଣଗାନ କରିବା ଏବଂ ନିରନ୍ତର ଶ୍ରୀରାମଙ୍କ ଗୁଣାବଳୀ ଶୁଣିବା ବିଧେୟ ॥ ୩ ॥ କବି, ବେଦ, ସନ୍ଥ ଓ ପୁରାଣମାନେ କହନ୍ତି— "ପତିତଙ୍କୁ ପବିତ୍ର କରିବା ଯାହାଙ୍କର ମହାନ ବାନା, ହେ ମନ ! କୁଟିଳତା ତ୍ୟାଗ କରି ତାଙ୍କୁ ହିଁ ଭଜନ କର । ଶ୍ରୀରାମଙ୍କୁ ଭଜନ କରି ପରମ ଗତି ନ ପାଇଛି କିଏ ? ॥ ୪ ॥ ଛନ୍ଦ :—ଆରେ ମୂର୍ଖ ମନ ! ଶୁଣ; ପତିତପାବନ ଶ୍ରୀରାମଙ୍କୁ ଭଜି କିଏ ପରମଗତି ନ ପାଇଛି ? ଗଣିକା, ଅଜାମିଲ, ବ୍ୟାଧ, ଗୃଧ୍ର, ଗଜ ଆଦି ବହୁତ ଦୁଷ୍ଟଙ୍କୁ ସେ ତାରଣ କରିଦେଲେ । ଆଭୀର, ଯବନ, କିରାତ, ଖସ, ଶ୍ୱପଚ (ଚଣ୍ଡାଳ) ଆଦି ଯେଉଁମାନେ ଅତିଶୟ ପାପରୂପ, ସେମାନେ ସୁଦ୍ଧା ଯାହାଙ୍କର ନାମ ଥରେ ମାତ୍ର ନେଇ ପବିତ୍ର ହୋଇଯାଆନ୍ତି, ସେହି ଶ୍ରୀରାମଚନ୍ଦ୍ରଙ୍କୁ ମୁଁ ନମସ୍କାର କରୁଅଛି ॥ ୧ ॥

ସୁନ୍ଦର ସୁଜାନ କୃପାନିଧାନ ଅନାଥ ପର କର ପ୍ରୀତି ଜୋ ।
ସୋ ଏକ ରାମ ଅକାମହିତ ନିର୍ବାନପ୍ରଦ ସମ ଆନ କୋ ॥
ଜାକୀ କୃପା ଲବଲେସ ତେଁ ମତିମନ୍ଦ ତୁଲସୀଦାସହୂଁ ।
ପାୟୋ ପରମ ବିଶ୍ରାମୁ ରାମ ସମାନ ପ୍ରଭୁ ନାହୀଁ କହୂଁ ॥୩॥

ମୋ ସମ ଦୀନ ନ ଦୀନହିତ ତୁମ୍ହ ସମାନ ରଘୁବୀର ।
ଅସ ବିଚାରି ରଘୁବଂସମନି ହରହୁ ବିଷମ ଭବଭୀର ॥୧୩୦(କ)॥
କାମିହି ନାରି ପିଆରି ଜିମି ଲୋଭିହି ପ୍ରିୟ ଜିମି ଦାମ ।
ତିମି ରଘୁନାଥ ନିରନ୍ତର ପ୍ରିୟ ଲାଗହୁ ମୋହି ରାମ ॥୧୩୦(ଖ)॥

---

ସୁନ୍ଦର ସୁଚତୁର, ଅନାଥ ପ୍ରତି ଯା'ର ସ୍ନେହ, ଯେ କରୁଣାନିଧାନ ।
ସେହି ଏକ ନିଷ୍କାମ-ସୁହୃଦ ରାମ ସମ ନିର୍ବାଣପ୍ରଦ କେ ବା ଆନ ।
ଲଭି ଯା'କୃପା ଲବଲେଶ, ମନ୍ଦମତି ତୁଲସୀଦାସ,
ଲଭି କଲା ପରମ ବିଶ୍ରାମ, ରାମ ସମ କାହିଁ ହେଲେ ନାହାନ୍ତି ଈଶ ॥୩॥

ମୋ ସମାନ ଦୀନ ନାହିଁ ତୁମ୍ଭ ସମ ଦୀନବନ୍ଧୁ ରଘୁବର ।
ଏହା ମନେ ଗୁଣି ହର ରଘୁମଣି, ଘୋର ଭୟ ସଂସାରର ॥୧୩୦(କ)॥
କାମୀକୁ ଯେମନ୍ତେ ପ୍ରିୟ ଲାଗେ ନାରୀ, ଲୋଭୀକୁ ଯେମନ୍ତେ ଧନ ॥
ଲାଗନ୍ତୁ ତେମନ୍ତେ ପ୍ରିୟ ସଦା ମୋତେ ଶ୍ରୀରାମ ରଘୁନନ୍ଦନ ॥୧୩୦(ଖ)॥

---

ଯେଉଁ ଲୋକମାନେ ରଘୁବଂଶଭୂଷଣ ଶ୍ରୀରାମଙ୍କ ଏହି ଚରିତ କହନ୍ତି, ଗାଆନ୍ତି ଓ ଶୁଣନ୍ତି, ସେମାନେ କଳିଯୁଗର ପାପ ଓ ମନର ମଳ ଧୋଇ ଅନାୟାସରେ ଶ୍ରୀରାମଙ୍କ ପରମଧାମକୁ ଚାଲିଯାଆନ୍ତି । ଅଧିକ ବା କ'ଣ ? ଯେଉଁ ବ୍ୟକ୍ତି ମନୋହର ପାଞ୍ଚ-ସାତ ଚୌପାଈକୁ ଜାଣି ହୃଦୟରେ ଧାରଣ କରିନିଏ, ଶ୍ରୀରାମ ତାହାର ମଧ୍ୟ ପାଞ୍ଚ ପ୍ରକାର ଦାରୁଣ ଅବିଦ୍ୟା (ଅହଂତା, ଅସ୍ମିତା, ରାଗ, ଦ୍ୱେଷ ଓ ଅଭିନିବେଶ)ରୁ ଜାତ ବିକାର ହରଣ କରି ନିଅନ୍ତି ॥ ୨ ॥ ସୁନ୍ଦର, ସୁଜ୍ଞ ଓ କୃପାନିଧାନ ତଥା ଅନାଥପ୍ରେମୀ ଅଟନ୍ତି ଏକମାତ୍ର ଶ୍ରୀରାମଚନ୍ଦ୍ର । ଏହାଙ୍କ ସମାନ ଅହୈତୁକ (ନିଃସ୍ୱାର୍ଥପର) ହିତକାରୀ ଓ ମୋକ୍ଷଦାତା ଆଉ କିଏ ଅଛି ? ଯାହାଙ୍କର ଲେଶମାତ୍ର କୃପାହେତୁ ମନ୍ଦମତି ତୁଳସୀଦାସ ମଧ୍ୟ ପରମଶାନ୍ତି ପାଇ ପାରିଲା, ସେହି ଶ୍ରୀରାମଙ୍କ ସମାନ ପ୍ରଭୁ କେଉଁଠି ହେଲେ ନାହାନ୍ତି ॥୩॥ ଦୋହା .—ହେ ରଘୁବୀର ' ମୋ ସମାନ କେହି ଦୀନ ନାହାନ୍ତି ଏବଂ ଆପଣଙ୍କ ସମାନ ଆଉ କେହି ଦୀନ-ହିତକାରୀ ନାହାନ୍ତି । ହେ ରଘୁବଂଶମଣି ! ଏହିପରି ବିଚାର କରି ମୋର ଜନ୍ମମରଣର ଭୟାନକ ଦୁଃଖ ହରଣ କରି ନିଅନ୍ତୁ ॥ ୧୩୦ (କ) ॥ ଯେପରି କାମୀକୁ ସ୍ତ୍ରୀ ପ୍ରିୟ ଲାଗେ ଏବଂ ଲୋଭୀକୁ ଧନ ପ୍ରିୟ ଲାଗେ, ସେହିପରି ହେ ରଘୁନାଥ ! ହେ ରାମ ' ଆପଣ ନିରନ୍ତର ମୋତେ ପ୍ରିୟ ଲାଗନ୍ତୁ ॥ ୧୩୦ (ଖ) ॥ ଶ୍ଳୋକାର୍ଥ :—

ଯତ୍ପୂର୍ବଂ ପ୍ରଭୁଣା କୃତଂ ସୁକବିନା ଶ୍ରୀଶମ୍ଭୁନା ଦୁର୍ଗମଂ
ଶ୍ରୀମଦ୍ରାମପଦାବ୍ଜଭକ୍ତିମନିଶଂ ପ୍ରାପ୍ତ୍ୟୈ ତୁ ରାମାୟଣମ୍ ।
ମତ୍ୱା ତଦ୍ରଘୁନାଥନାମନିରତଂ ସ୍ୱାନ୍ତସ୍ତମଃଶାନ୍ତୟେ
ଭାଷାବଦ୍ଧମିଦଂ ଚକାର ତୁଲସୀଦାସସ୍ତଥା ମାନସମ୍ ॥୧॥
ପୁଣ୍ୟଂ ପାପହରଂ ସଦା ଶିବକରଂ ବିଜ୍ଞାନଭକ୍ତିପ୍ରଦଂ
ମାୟାମୋହମଳାପହଂ ସୁବିମଳଂ ପ୍ରେମାଂବୁପୂରଂ ଶୁଭମ୍ ।
ଶ୍ରୀମଦ୍ରାମଚରିତ୍ରମାନସମିଦଂ ଭକ୍ତ୍ୟାବଗାହନ୍ତି ଯେ
ତେ ସଂସାରପତଂଗଘୋରକିରଣୈର୍ଦହ୍ୟନ୍ତି ନୋ ମାନବାଃ ॥୨॥

## ମାସପାରାୟଣ, ତ୍ରିଂଶ ବିଶ୍ରାମ

## ନବାହ୍ନ ପାରାୟଣ, ନବମ ବିଶ୍ରାମ

ଇତି ଶ୍ରୀମଦ୍ରାମଚରିତମାନସେ ସକଳକଳିକଳୁଷ-ବିଧ୍ୱଂସନେ
ସପ୍ତମଃ ସୋପାନଃ ସମାପ୍ତଃ ।

---

ଯାହା ପୂର୍ବେ ପ୍ରଭୁ କବିବର ଶମ୍ଭୁ ରଚିଲେ, ଯେ ପୁଣି ଦୁର୍ଗମ ।
ରାମ-ପଦାମ୍ବୁଜ-ଭକତି ପ୍ରାପତି ହେତୁ ମାନସ ରାମାୟଣ ।
ବୁଝିଣ, ରଘୁନାଥ ନାମ ନିରତ ॥
ନିଜ ହୃଦ-ତମ ନାଶିବାକୁ ଭଣେ ଭାଷାରେ ତୁଳସୀ ତେମନ୍ତ ॥୧॥
ପୁଣ୍ୟ, ପାପହର, ସଦା ଶୁଭକର, ବିଜ୍ଞାନଭକ୍ତିଦ, ଶୋଭିତ ।
ମାୟା-ମୋହ-ମଳ-ହାରୀ, ପ୍ରେମଜଳ-ପୂର୍ଣ୍ଣ ସ୍ୱଚ୍ଛ ରାମ-ଚରିତ ।
ମାନସେ, ଭକ୍ତିରେ ଯେ ଅବଗାହନ୍ତି,
ସଂସାର ତପନ ପ୍ରଚଣ୍ଡ କିରଣେ ସେହି ମାନବେ ନ ଜଳନ୍ତି ॥୨॥

---

ଶ୍ରେଷ୍ଠ କବି ଭଗବାନ୍ ଶଙ୍କର ଶ୍ରୀରାମଙ୍କ ଚରଣ-କମଳରେ ନିରନ୍ତର ଭକ୍ତି ପାଇବା ନିମନ୍ତେ ପୂର୍ବେ ଯେଉଁ ଦୁର୍ଗମ ରାମାୟଣ ରଚନା କରିଥିଲେ, ତୁଳସୀଦାସ ତାହାକୁ ଶ୍ରୀ ରଘୁନାଥଙ୍କର ନାମ-ନିରତ ମନେ କରି ନିଜର ଅନ୍ତଃକରଣର ଅନ୍ଧକାରକୁ ଉପଶମ କରିବା ଉଦ୍ଦେଶ୍ୟରେ ଏହାକୁ 'ମାନସ' ରୂପରେ ଭାଷାବଦ୍ଧ କଲେ ॥ ୧ ॥ ଏହି 'ଶ୍ରୀରାମଚରିତ ମାନସ' ପୁଣ୍ୟରୂପ, ପାପ-ହରଣକାରୀ, ସଦା-କଲ୍ୟାଣକାରୀ, ବିଜ୍ଞାନପ୍ରଦ ଓ ଭକ୍ତିପ୍ରଦ, ମାୟାମୋହରୂପୀ ମଳର ବିନାଶକ, ପରମ ନିର୍ମଳ, ପ୍ରେମ-ଜଳରେ ପରିପୂର୍ଣ୍ଣ ତଥା ମଙ୍ଗଳମୟ । ଯେଉଁ ଲୋକମାନେ ଏହି ଶ୍ରୀରାମଚରିତ-ମାନସ-ସରୋବରରେ ଭକ୍ତିପୂର୍ବକ ଅବଗାହନ କରନ୍ତି, ସେମାନେ ସଂସାର-ସୂର୍ଯ୍ୟର ଅତି ପ୍ରଚଣ୍ଡ କିରଣ ଯୋଗେ ଜଳନ୍ତି ନାହିଁ ॥ ୨ ॥

କଳିଯୁଗର ସମସ୍ତ ପାପର ବିନାଶକାରୀ 'ଶ୍ରୀରାମଚରିତ ମାନସ'ର
ସପ୍ତମ ସୋପାନ ( ଉତ୍ତର କାଣ୍ଡ ) ସମାପ୍ତ ।

❋ ❋ ❋ ❋

ଶରଣ-ସୁଖଦ ଭକ୍ତ-ଅଭୟଦ ସୀତା ଲକ୍ଷ୍ମଣ ଶ୍ରୀରାମ ।
ପ୍ରଭୁ ବିଶ୍ୱବାସ, ବଳରାମ ଦାସ- ହୃଦୟେ କର ବିଶ୍ରାମ ॥

କରୁଣା-ସାଗର ସୁଶୀଳ ସୁନ୍ଦର ଦୀନ-ବନ୍ଧୁ ସତ୍ୟ-ଗତି ।
ଜନ ପ୍ରତି ବୃଷ୍ଟି କର କୃପା ଦୃଷ୍ଟି ଦିଅ ସୁପ୍ରେମ ଭକତି ॥

ନ ଜାଣଇ ଜପ ଯୋଗ ଯଜ୍ଞ ତପ ନ ଜାଣେ ଅନ୍ୟ ସାଧନ ।
ଜନ୍ମ ଜନ୍ମାନ୍ତରେ ତବ ଶ୍ରୀପଦ୍ମରେ ଲାଗୁ ମୋ ମନ ଯେସନ ॥

ପ୍ରଦେଶ ଉତ୍କଳ ଗଡ଼ଜ ଢେଙ୍କାନାଳ ହେଳ ଧଳପୁର ଗ୍ରାମ ।
ବିପ୍ର ବଂଶେ ଜନ୍ମ ପାପୀ ଦୀନାଧମ ନିତାଇ ଚରଣ ନାମ ॥

ମାତା ପିତା ଭ୍ରାତା ଭଗିନୀ ଜାମାତା ପିତୃବ୍ୟ ମିତ୍ର ମାତୁଳ ।
ବାନ୍ଧବାଦି ଜନେ କୁଳ ପୂର୍ଣ୍ଣ ଯେହ୍ନେ ସମୁଦ୍ରେ ଜୀବ ସଙ୍କୁଳ ॥

ଶ୍ରୀ ଚନ୍ଦ୍ରଶେଖର ନାମ ପିତାଙ୍କର ମାତା ଶ୍ରୀ ରାଧିକା ଦେବୀ ।
ଏ ଭକ୍ତି-ସାଗର ମାନସୋପହାର ଅର୍ପି ଶ୍ରୀଚରଣ ସେବି ॥

ଧର୍ମ ଅର୍ଥ କାମ- ମୋକ୍ଷଦାତା ରାମ- ଚରିତ ମାନସ ଜାଣି ।
ବୁଧ ନିଜ ଜନ୍ମ ସୁଫଳ କାରଣ ଶୁଣି ଗାଇବେ ସୁବାଣୀ ॥

ଗାଇବେ ସୁବଚନେ ଭକତ ବୁଧ ଜନେ ଇଚ୍ଛିତ ସୁଫଳ ଲଭିବେ ।
ଶୂନ୍ୟ ଭବବନ୍ଧନ ନିତ୍ୟାନନ୍ଦ-ସଦନ ପବିତ୍ର ରାମ-ଧାମେ ଯିବେ ।
ତୁଳସୀଦାସ କୃତ ରାମ,—ଚରିତ ମାନସ ବିଶ୍ରାମ,
ଅବ୍ୟକ୍ତ ଗୁରୁ ରାମ-ଦାସ ଶରଣାପନ୍ନ ଗୋସାଇଁ ଦାସ ବଳରାମ ॥

ଘଟ ଘଟ-ବାସୀ ଚିଦାନନ୍ଦ-ରାଶି ଜନ-ପ୍ରତିପାଳ ରାମ ।
ପ୍ରଭୁ, ଦିଅ ଦୀନ-ଜନେ ଦରଶନ, ଧର ଦୀନବନ୍ଧୁ ନାମ ॥
ସ୍ୱାତୀ ବଳାହକେ ସ୍ୱାନ୍ତ ଚାତକେ, ଚକୋର ଯେହ୍ନେ ଚନ୍ଦ୍ରଙ୍କୁ ।
ଦୀନ ବଳରାମ ଚାହିଁଇ ତେସନ ସ୍ୱପ୍ରଭୁ ରାମଚନ୍ଦ୍ରଙ୍କୁ ॥

❋ ❋ ❋ ❋

ଇତି ଶ୍ରୀରାମଚରିତ ମାନସ ରାମାୟଣେ ସକଳ କଳି-
କଲୁଷବିଧ୍ୱଂସନେ ସପ୍ତମ ସୋପାନ (ଉତ୍ତରକାଣ୍ଡ) ସମାପ୍ତ ।

---

# ଶ୍ରୀରାମାୟଣଜୀ କୀ ଆରତୀ

ଆରତି ଶ୍ରୀରାମାୟନଜୀ କୀ । କୀରତି କଲିତ ଲଲିତ ସିୟ ପୀ କୀ ॥

ଗାୱତ ବ୍ରହ୍ମାଦିକ ମୁନି ନାରଦ ।
ବାଲମୀକ ବିଗ୍ୟାନ ବିସାରଦ ॥
ସୁକ ସନକାଦି ସେଷ ଅରୁ ସାରଦ ।
ବରନି ପବନସୁତ କୀରତି ନୀକୀ ॥୧॥

ଗାୱତ ବେଦ ପୁରାନ ଅଷ୍ଟଦସ ।
ଛଓ ସାସ୍ତ୍ର ସବ ଗ୍ରନ୍ଥନ କୋ ରସ ॥
ମୁନି ଜନ ଧନ ସଂତନକୋ ସରବସ ।
ସାର ଅଂସ ସଂମତ ସବହୀ କୀ ॥୨॥

ଗାୱତ ସଂତତ ସଂଭୁ ଭବାନୀ ।
ଅରୁ ଘଟସଂଭବ ମୁନି ବିଗ୍ୟାନୀ ॥
ବ୍ୟାସ ଆଦି କବିବର୍ଜ ବଖାନୀ ।
କାଗଭୁସୁଂଡି ଗରୁଡ କେ ହୀ କୀ ॥୩॥

କଲି ମଲ ହରନି ବିଷୟ ରସ ଫୀକୀ ।
ସୁଭଗ ସିଂଗାର ମୁକ୍ତି ଜୁବତୀ କୀ ॥
ଦଲନ ରୋଗ ଭବ ମୂରି ଅମୀ କୀ ।
ତାତ ମାତ ସବ ବିଧି ତୁଲସୀ କୀ ॥୪॥

# ବିଶ୍ୱଭାଷା-ସେତୁ

# ଭୁବନବାଣୀ ଟ୍ରଷ୍ଟ

'ପ୍ରଭାକର ନିଲୟମ୍', ୪୦୫/୧୨୮, ଚୌପଟିୟାଁ ରୋଡ, ଲକ୍ଷ୍ନୌ-୨୨୬୦୦୩

## ବିବିଧ ଭାଷାର ଅମୂଲ୍ୟ ବିଶାଳ ଗ୍ରନ୍ଥ

**ସମସ୍ତ ଗ୍ରନ୍ଥରେ ମୂଳପାଠ ତଦ୍‌ବତ୍ ଉଚ୍ଚାରଣ ସହିତ ଦେବନାଗରୀ ଲିପିରେ ଏବଂ ଅନୁବାଦ ହିନ୍ଦୀ ଭାଷାରେ ପ୍ରଦତ୍ତ ।**

### ସଂପୂର୍ଣ୍ଣ ଓ ପ୍ରକାଶିତ ଗ୍ରନ୍ଥ —

**ମଲୟାଲମ୍-'ମହାଭାରତ':**—ଏଜୁତ୍ତଚ୍ଛନ କୃତ, ରଚନାକାଳ—ପଞ୍ଚଦଶ ଶତାବ୍ଦୀ, ଲିପ୍ୟନ୍ତରଣକାର ଓ ହିନ୍ଦୀ ଅନୁବାଦକ—ଶ୍ରୀ କେ. ଏ. ସୁବ୍ରହ୍ମଣ୍ୟନ୍ ଅୟ୍ୟର, ଭୂତପୂର୍ବ ଉପକୁଲପତି, ସଂସ୍କୃତ ବିଶ୍ୱବିଦ୍ୟାଳୟ, ବାରାଣସୀ ଏବଂ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟ, ଲକ୍ଷ୍ନୌ । ମଲୟାଲମ ଭାଷାର ମୂଳ ମଧ୍ୟର ପାଠ ଦେବନାଗରୀ ଲିପିରେ ଏବଂ ଅନୁବାଦ ହିନ୍ଦୀ ଭାଷାରେ ପ୍ରଦତ୍ତ ହୋଇଅଛି । ପୃଷ୍ଠା ସଂଖ୍ୟା ୧୨୧୬, ମୂଲ୍ୟ ୪୦ ଟଙ୍କା ।

**ବଙ୍ଗଳା-'କୃତ୍ତିବାସ ରାମାୟଣ' :**—( ଆଦି, ଅଯୋଧ୍ୟା, ଅରଣ୍ୟ, କିଷ୍କିନ୍ଧା ଓ ସୁନ୍ଦରକାଣ୍ଡ ) ରଚନାକାଳ—ପଞ୍ଚଦଶ ଶତାବ୍ଦୀ, ମୂଳ ବଙ୍ଗଳା ପାଠର ଦେବନାଗରୀ ଲିପ୍ୟନ୍ତରଣ ତଥା ଅବଧୀ ଦୋହା-ଚୌପାଈ ପଦ୍ଧତିରେ ତାହାର ଲଳିତ ପଦ୍ୟାନୁବାଦ ପ୍ରଦତ୍ତ । ଲିପ୍ୟନ୍ତରଣକାର ଓ ଅନୁବାଦକ—ଶ୍ରୀ ନନ୍ଦକୁମାର ଅୱସ୍ଥୀ, ପ୍ରତିଷ୍ଠାତା, ଭୁବନବାଣୀ ଟ୍ରଷ୍ଟ ଓ ସମ୍ପାଦକ, 'ବାଣୀ-ସରୋବର' । ପାଠକ ଦେବନାଗରୀ ଲିପିରେ ଲିଖିତ ଗ୍ରନ୍ଥରେ ବଙ୍ଗଳା ଭାଷାର ମୂଳପାଠ ସୁବୋଧ, ସୁଲଳିତ ପୟାର ଛନ୍ଦରେ ପଢ଼ିପାରେ କିମ୍ବା ଅବଧୀ ଭାଷାରେ ପଦ୍ୟାନୁବାଦ ପଢ଼ିପାରେ । ପ୍ରତ୍ୟେକକୁ ପାଠ କରିବାରେ ପାଠକ ସ୍ୱତନ୍ତ୍ର ରୂପେ ଅଭୂତ ଆନନ୍ଦ ଲାଭ କରେ । ପୃଷ୍ଠା ସଂଖ୍ୟା ୬୨୪, ମୂଲ୍ୟ ୨୫ ଟଙ୍କା ।

**ବଙ୍ଗଳା-'କୃତ୍ତିବାସ (ଲଙ୍କାକାଣ୍ଡ)'** —ରଚନାକାଳ—ପଞ୍ଚଦଶ ଶତାବ୍ଦୀ, ବଙ୍ଗଳା ମୂଳ ପାଠ ଦେବନାଗରୀ ଲିପିରେ ତଥା ଗଦ୍ୟାନୁବାଦ ହିନ୍ଦୀ ଭାଷାରେ ପ୍ରଦତ୍ତ—କ୍ରମଶଃ । ଲିପ୍ୟନ୍ତରଣକାର ଓ ଅନୁବାଦକ—ଶ୍ରୀ ନନ୍ଦକୁମାର ଅୱସ୍ଥୀ ଓ ଶ୍ରୀ ପ୍ରବୋଧ ମଜୁମଦାର । ପୃଷ୍ଠା ସଂଖ୍ୟା ୪୮୮, ମୂଲ୍ୟ ୧୫ ଟଙ୍କା ।

**କାଶ୍ମୀରୀ-'ରାମାବତାରଚରିତ' :**—ପ୍ରକାଶରାମ କୁର୍ଯଗ୍ରାମୀକୃତ । ରଚନାକାଳ—ଅଷ୍ଟାଦଶ ଶତାବ୍ଦୀ । ମୂଳ କାଶ୍ମୀରୀ ପାଠର ଦେବନାଗରୀ ଲିପ୍ୟନ୍ତରଣ ତଥା ହିନ୍ଦୀ ଅନୁବାଦ ପ୍ରଦତ୍ତ । ଲିପ୍ୟନ୍ତରଣକାର ତଥା ଅନୁବାଦକ—ଡକ୍ଟର ଶିବନକୃଷ୍ଣ ରୈଣା, ହିନ୍ଦୀ ବିଭାଗାଧ୍ୟକ୍ଷ, ରାଜକୀୟ ମହାବିଦ୍ୟାଳୟ, ନାଥଦ୍ୱାର । ଭୂମିକାଲେଖକ—

ଡକ୍ଟର ସୁବରାଜ କର୍ଣ୍ଣସିଂହ, ଭୂତପୂର୍ବ ସ୍ୱାସ୍ଥ୍ୟମନ୍ତ୍ରୀ, ଭାରତ ସରକାର । ପୃଷ୍ଠା ସଂଖ୍ୟା ୪୮୯, ମୂଲ୍ୟ ୨୦ ଟଙ୍କା ।

**ଆରବୀ-'ଜାଦେ ସଫର'** —ଆରବୀ ଭାଷାର ସୁପ୍ରାମାଣିକ ହଜ୍ରତ ଶଯ୍ଖ୍ ଇମାମ୍ ... ଉର୍ଦ୍ଦୁ ଅନୁବାଦର ଦେବନାଗରୀ ଲିପ୍ୟନ୍ତରଣ—ଶ୍ରୀ ନନ୍ଦକୁମାର ଅବସ୍ଥୀକୃତ । ପୃଷ୍ଠା ସଂଖ୍ୟା ୩୩୬, ମୂଲ୍ୟ ୧୨ ଟଙ୍କା ।

**ଫାରସୀ-'ସିର୍ରେ ଅକ୍ବର'** —( ଦାରାଶିକୋହକୃତ ଉପନିଷଦ୍-ଭାଷ୍ୟ ) ପ୍ରଥମ ଖଣ୍ଡ ( ଈଶ, କେନ, କଠ, ପ୍ରଶ୍ନ, ମୁଣ୍ଡକ ମାଣ୍ଡୂକ୍ୟ, ଐତରେୟ, ତୈତ୍ତିରୀୟ, ଶ୍ୱେତାଶ୍ୱତର ) । ସାନୁବାଦ ଲିପ୍ୟନ୍ତରଣକାର—ଡକ୍ଟର ହର୍ଷନାରାୟଣ । ପୃଷ୍ଠା ସଂଖ୍ୟା ୨୮୦, ମୂଲ୍ୟ ୧୦ ଟଙ୍କା ।

**ଉର୍ଦ୍ଦୁ-'ଶରୀଫଜାଦ'** .—( ଡକ୍ଟର ରୁସ୍ଓ୍ୱାକୃତ ) ଏହା ଗୋଟିଏ ସାମାଜିକ ଉପନ୍ୟାସ, ଯୁବକମାନଙ୍କ ମନରେ ସ୍ୱାବଲମ୍ବନଶୀଳତା ସୃଷ୍ଟି କରେ । ଉର୍ଦ୍ଦୁ ଭାଷାରୁ ଦେବନାଗରୀ ଲିପ୍ୟନ୍ତରଣକାର ଶ୍ରୀ ବିନୟକୁମାର ଅବସ୍ଥୀ । ପୃଷ୍ଠା ସଂଖ୍ୟା ୧୩୬. ମୂଲ୍ୟ ୫ ଟଙ୍କା ।

**ଗୁରୁମୁଖୀ-'ଶ୍ରୀ ଜପୁଜୀ ସୁଖମନୀ ସାହବ'** —ଦେବନାଗରୀ ଲିପିରେ ମୂଳ ଗୁରୁମୁଖୀ ପାଠ ଏବଂ ସ୍ୱାଜୀ ହରିହରାନନ୍ଦ କୃତ ପଦ୍ୟାନୁବାଦ । ଲିପ୍ୟନ୍ତରଣକାର—ଶ୍ରୀ ନନ୍ଦକୁମାର ଅବସ୍ଥୀ । ପୃଷ୍ଠା ସଂଖ୍ୟା ୧୬୪, ମୂଲ୍ୟ ୫ ଟଙ୍କା ।

**ମରାଠି-'ଶ୍ରୀରାମ-ବିଜୟ'** —ଶ୍ରୀଧରକୃତ, ରଚନାକାଳ—ସପ୍ତଦଶ ଶତାବ୍ଦୀ । ମୂଳପାଠ ସହିତ ହିନ୍ଦୀ ଅନୁବାଦ—ଡକ୍ଟର ଗଜାନନ ନରସିଂହ ସାଠେ, ହିନ୍ଦୀ ବିଭାଗାଧ୍ୟକ୍ଷ, ପୋଦାର କଲେଜ ଅଫ୍ କମର୍ସ, ବମ୍ବେ । ଭୂମିକା-ଲେଖକ—ଶ୍ରୀ ଯଶୋବନ୍ତରାଓ ଚୌହାନ, ଭୂତପୂର୍ବ ବୈଦେଶିକ ବ୍ୟାପାର ମନ୍ତ୍ରୀ, ଭାରତ ସରକାର । ପୃଷ୍ଠା ସଂଖ୍ୟା ୧୨୨ , ମୂଲ୍ୟ ୪୫ ଟଙ୍କା ।

**ତାମିଲ-'ତିରୁକ୍କୁରଲ୍'** —ମହାସନ୍ତ ତିରୁବଲ୍ଲୁବର କୃତ 'ଦୁଇ ହଜାର ବର୍ଷର ପ୍ରାଚୀନ ନୀତି' ଗ୍ରନ୍ଥର ମୂଳ ପାଠର ଦେବନାଗରୀ ଲିପ୍ୟନ୍ତରଣ ଏବଂ ହିନ୍ଦୀରେ ଗଦ୍ୟପଦ୍ୟାନୁବାଦ । ଲିପ୍ୟନ୍ତରଣ ଓ ଗଦ୍ୟାନୁବାଦ—ଶ୍ରୀମତୀ ରାଜମ୍ ପିଲ୍ଲେ, ପଦ୍ୟାନୁବାଦ—ଶ୍ରୀ ନନ୍ଦକୁମାର ଅବସ୍ଥୀ । ପୃଷ୍ଠା ସଂଖ୍ୟା ୩୫୨, ମୂଲ୍ୟ ୨୦ ଟଙ୍କା ।

**ନେପାଳୀ-'ଭାନୁଭକ୍ତ ରାମାୟଣ'** —କବି ଭାନୁଭକ୍ତ ବିରଚିତ; ମୂଳପାଠର ଲିପ୍ୟନ୍ତରଣ ସହିତ ହିନ୍ଦୀ ଅନୁବାଦ । ଅନୁବାଦକ—ଶ୍ରୀ ନନ୍ଦକୁମାର ଆମାତ୍ୟ ଏବଂ ଶ୍ରୀ ତପେଶ୍ୱରୀ ଆମାତ୍ୟ । ପୃଷ୍ଠା ସଂଖ୍ୟା ୩୪୪, ମୂଲ୍ୟ ୨୦ ଟଙ୍କା ।

**କନ୍ନଡ଼-'ରାମଚନ୍ଦ୍ର-ଚରିତ ପୁରାଣଂ'** —ଅଭିନବ ପମ୍ପ ନାଗଚନ୍ଦ୍ର କୃତ ଜୈନ ସମ୍ପ୍ରଦାୟର ରାମାୟଣ । ରଚନାକାଳ—ଏକାଦଶ ଶତାବ୍ଦୀ । ଦେବନାଗରୀ ଲିପିରେ ମୂଳପାଠ ଏବଂ ହିନ୍ଦୀ ଅନୁବାଦ ସହିତ । ଲିପ୍ୟନ୍ତରଣକାର ଓ ଅନୁବାଦକ—

ଡକ୍ଟର ଭି. ବି ଦ୍ବିଜନ୍, ଏମ୍ ଏ., ପି-ଏଚ୍ ଡି. । ପୃଷ୍ଠା ସଂଖ୍ୟା ୬୧୬, ମୂଲ୍ୟ ୪୦ ଟଙ୍କା ।

**କାଶ୍ମୀରୀ-'ଲଲ୍ଲଦ୍ୟଦ୍'** .—କାଶ୍ମୀରର ଆଦି କବୟିତ୍ରୀ ପରମହଂସ ଲଲ୍ଲଦ୍ୟଦଙ୍କ ବାକ୍ୟାବଳୀର ସଂକଳନ । ରଚନାକାଳ—ଚତୁର୍ଦ୍ଦଶ ଶତାବ୍ଦୀ । ଦେବନାଗରୀ ଲିପିରେ ମୂଳପାଠ ସାହିତ ହିନ୍ଦୀ ଗଦ୍ୟ ଏବଂ ସଂସ୍କୃତ ପଦ୍ୟାନୁବାଦ । ଲିପ୍ୟନ୍ତରଣ ଓ ହିନ୍ଦୀ ଗଦ୍ୟାନୁବାଦ—ଡକ୍ଟର ଶିବନକୃଷ୍ଣ ରୈଣା, ସଂସ୍କୃତ ପଦ୍ୟାନୁବାଦ—ଆଚାର୍ଯ୍ୟ ରାମଜୀ ଶାସ୍ତ୍ରୀ । ପୃଷ୍ଠା ସଂଖ୍ୟା ୧୨୦, ମୂଲ୍ୟ ୭ ଟଙ୍କା ।

**ରାଜସ୍ଥାନୀ-'ରୁକ୍ମିଣୀ ମଙ୍ଗଳ'** .— ପଦମ ଭଗତ ବିରଚିତ; ରାଜସ୍ଥାନୀ ମୂଳପାଠ ସହିତ ହିନ୍ଦୀ ଅନୁବାଦ । ଅନୁବାଦକ—ଶ୍ରୀ ସତ୍ୟନାରାୟଣ ସ୍ୱାମୀ ବୀକାନେର । ପୃଷ୍ଠା ସଂଖ୍ୟା ୩୦୦, ମୂଲ୍ୟ ୧୫ ଟଙ୍କା ।

**ତେଲୁଗୁ-'ମୋଲ୍ଲ ରାମାୟଣ'** —ମୋଲ୍ଲ ବିରଚିତ, ରଚନାକାଳ—ଚତୁର୍ଦ୍ଦଶ ଶତାବ୍ଦୀ, ଦେବନାଗରୀ ଲିପିରେ ତେଲୁଗୁ ମୂଳପାଠ ସହିତ ହିନ୍ଦୀ ଅନୁବାଦ । ଅନୁବାଦକ—ଡକ୍ଟର ସି. ଏଚ ରାମୁଲୁ, ବାରଙ୍ଗଲ । ପୃଷ୍ଠା ସଂଖ୍ୟା ୪୦୦, ମୂଲ୍ୟ ୨୦ ଟଙ୍କା ।

* **ଆରବୀ-'କୁରାନଶରୀଫ' (ସଟୀକ)** —ଆରବୀ ଓ ଦେବନାଗରୀ, ଉଭୟ ଲିପିରେ ମୂଳପାଠ, ହିନ୍ଦୀ ଅନୁବାଦ ଏବଂ ଟିପ୍ପଣୀ (ଦ୍ୱିତୀୟ ସଂସ୍କରଣ) ।

ପୃଷ୍ଠା ସଂଖ୍ୟା ୧୦୨୪ ୪୦ ଟଙ୍କା

* " " " (ମୁଅର୍ରା-ମୂଳ) ଆରବୀ ୫୨୬ ୨୦ ଟଙ୍କା

* କୁରାନ ଶରୀଫ—କେବଳ ହିନ୍ଦୀ ଅନୁବାଦ ସଟିପ୍ପଣ ୫୩୦ ୨୦ ଟଙ୍କା

<u>ଡାକ ଖର୍ଚ୍ଚ ସ୍ୱତନ୍ତ୍ର</u>

* (୧) କୌରାନିକ କୋଷ ପଠନକ୍ରମ (୨) କୌରାନିକ କୋଷ ବର୍ଣ୍ଣାନୁକ୍ରମ
(୩) ନାଗରୀ ଉର୍ଦ୍ଦୂ-ହିନ୍ଦୀ କୋଷ—( ଏହି ତିନଗୋଟି କୋଷ ଅଲଭ୍ୟ । )

## ଏହି ସାନୁବାଦ ଲିପ୍ୟନ୍ତରଣ-ଗ୍ରନ୍ଥମାନ ପ୍ରକାଶିତ ହେଉଅଛି —

| ଭାଷା | ବିବରଣ | ଆନୁମାନିକ ପୃଷ୍ଠା ସଂଖ୍ୟା |
|---|---|---|
| ଗୁଜରାଟୀ | ଗିରଧର ରାମାୟଣ (ଊନବିଂଶ ଶତାବ୍ଦୀ) | ୧୫୦୦ |
| ତେଲୁଗୁ | ରଙ୍ଗନାଥ ରାମାୟଣ (ତ୍ରୟୋଦଶ ଶତାବ୍ଦୀ) | ୧୫୦୦ |
| " | ପୋତନକୃତ ମହାଭାଗବତମ୍ ( " ) | ୨୦୦୦ |

* ଟ୍ରଷ୍ଟ୍‌ଠାରୁ ପୃଥକ୍, ଟ୍ରଷ୍ଟ୍‌ର ପ୍ରତିଷ୍ଠାତା ( ଶ୍ରୀ ନନ୍ଦକୁମାର ଅର୍ଡ୍ଡିଷ୍ଟୀ )ଙ୍କର ଏହା ଆଦିମ ପ୍ରୟାସ । ସୁତରାଂ 'ନିଉ ଟେଷ୍ଟାମେଣ୍ଟ ସହିତ ଓଲ୍ଡ୍ ଟେଷ୍ଟାମେଣ୍ଟ୍'ର ଲିପ୍ୟନ୍ତରଣ ପରେ ଟ୍ରଷ୍ଟ୍‌ର ପରବର୍ତ୍ତୀ କୃତି ସହିତ ଏହାର ଚର୍ଚ୍ଚା ଅନିବାର୍ଯ୍ୟ । ଏହି କାର୍ଯ୍ୟ ଟ୍ରଷ୍ଟ୍‌ଠାରୁ ପୃଥକ୍ ହୋଇଥିଲେ ହିଁ ଏହା ଟ୍ରଷ୍ଟ୍‌ର ଭିତ୍ତିପ୍ରସ୍ତର ।

| | | |
|---|---|---|
| ତାମିଲ | କମ୍ବ ରାମାୟଣ (ଚତୁର୍ଦ୍ଦଶ ଶତାବ୍ଦୀ) | ୨୫୦୦ |
| ବଙ୍ଗଳା | କୃତ୍ତିବାସ ରାମାୟଣ (ପଞ୍ଚଦଶ ଶତାବ୍ଦୀ) ଉତ୍ତରକାଣ୍ଡ | ୪୦୦ |
| ମଲୟାଲମ | ଏଲୁତ୍ତଚ୍ଛନକୃତ ଅଧ୍ୟାତ୍ମ ରାମାୟଣ (ପଞ୍ଚଦଶ ଶତାବ୍ଦୀ) | ୧୫୦୦ |
| ଆସାମୀ | ମାଧବକନ୍ଦଲୀ ରାମାୟଣ (ଚତୁର୍ଦ୍ଦଶ ଶତାବ୍ଦୀ) | ୧୧୦୦ |
| ଓଡ଼ିଆ | ବୈଦେହୀଶ-ବିଳାସ (ଉପେନ୍ଦ୍ର ଭଞ୍ଜକୃତ-ଅଷ୍ଟାଦଶ ଶତାବ୍ଦୀ) | ୧୦୦୦ |
| ସିନ୍ଧୀ | 'ସାମୀ', 'ଶେଖ', 'ସଚଲ' ଙ୍କ ତ୍ରିବେଣୀ | ୧୫୦୦ |
| ଗୁରୁମୁଖୀ | ଶ୍ରୀ ଗୁରୁଗ୍ରନ୍ଥ ସାହିବ-ହିନ୍ଦୀ ଅନୁବାଦ ସହିତ | ୫୨୦୦ |
| ଉର୍ଦ୍ଦୁ | ଗୁଜସ୍ତଃ ଲଖନଊ—ମୌ. ଅବ୍ଦୁଲ ହଲୀମ ଶରର | ୩୫୦ |
| ଫାରସୀ | ସିର୍ରେ ଅକବର (ଦାରାଶିକୋହକୃତ ୫୦ ଉପନିଷଦର ହିନ୍ଦୀରେ ବ୍ୟାଖ୍ୟା) ଦ୍ୱିତୀୟ ଓ ତୃତୀୟ ଖଣ୍ଡ | ୧୦୦୦ |
| ଇଂରାଜୀ | ଦି ହୋଲି ବାଇବେଲ—ସାନୁବାଦ ନାଗରୀ ଲିପ୍ୟନ୍ତରଣ | ୫୦୦ |
| ସଂସ୍କୃତ | **ରାମଚରିତ ମାନସ**—ମୂଳପାଠ ତଥା ସଂସ୍କୃତ ପଦ୍ୟାନୁବାଦ | ୧୨୦୦ |
| ଓଡ଼ିଆ | " " ମୂଳପାଠ (ଓଡ଼ିଆ ଲିପିରେ) ତଥା ଓଡ଼ିଆ ଗଦ୍ୟ-ପଦ୍ୟ ଅନୁବାଦ | ୧୪୨୦ |
| ବଙ୍ଗଳା | " " ମୂଳପାଠ (ବଙ୍ଗଳା ଲିପିରେ) ତଥା ବଙ୍ଗଳା ପଦ୍ୟାନୁବାଦ | ୧୩୦୦ |

# ବାଣୀ-ସରୋବର

## ( ଅନୁପମ ତ୍ରୈମାସିକ ପତ୍ରିକା )

ଏହି ପତ୍ରିକାରେ ହିନ୍ଦୀ, ଉର୍ଦ୍ଦୁ, ଆରବୀ, ଫାରସୀ, ସଂସ୍କୃତ, ପାଲୀ, ବଙ୍ଗଳା, ଓଡ଼ିଆ, ମରାଠି, ଗୁରୁମୁଖୀ, ତାମିଲ, ମଲୟାଲମ, ଆସାମୀ, ଗୁଜୁରାଟୀ, ତେଲୁଗୁ, କନ୍ନଡ, ସିନ୍ଧୀ, କାଶ୍ମୀରୀ, ରାଜସ୍ଥାନୀ, ନେପାଳୀ ଆଦି ଭାଷାର ଅନୁପମ ଗ୍ରନ୍ଥମାନଙ୍କର ମୂଳପାଠ ଦେବନାଗରୀ ଲିପିରେ ଏବଂ ଅନୁବାଦ ହିନ୍ଦୀରେ ଧାରାବାହିକ ରୂପେ ପ୍ରକାଶିତ ହେଉଅଛି । ବାର୍ଷିକ ମୂଲ୍ୟ ୧୦-୦୦ ଟଙ୍କା ।

ନୂତନ ଗ୍ରାହକ ହେବାକୁ ଇଚ୍ଛୁକ ସଜ୍ଜନମାନଙ୍କ ପକ୍ଷେ ସନ ୧୯୭୦ ମସିହାଠାରୁ ଅଦ୍ୟାବଧି ବର୍ଷ ପ୍ରତି ଟ ୧୦-୦୦ ହିସାବରେ ମୂଲ୍ୟପ୍ରେରଣ ସେହିମାନଙ୍କର ହିତଦୃଷ୍ଟିରୁ ବାଧେୟ । ଅତିବାହିତ ବର୍ଷମାନଙ୍କର ସଂଖ୍ୟା ନ ମଗାଇଲେ ସେମାନଙ୍କ ସଂଗ୍ରହାଳୟରେ ପୂର୍ବରୁ ଆରମ୍ଭ ହୋଇଥିବା ଅନେକ ଗ୍ରନ୍ଥ ଅପୂର୍ଣ୍ଣ ରହିଯିବ । ଅବଶ୍ୟ ଏଥିରେ ଟ୍ରଷ୍ଟଙ୍କ ତରଫରୁ ସେପରି କୌଣସି ଆପତ୍ତି ନାହିଁ । ପାଠକ ଯେଉଁ ବର୍ଷରୁ ଇଚ୍ଛା, ସେହି ବର୍ଷରୁ ଗ୍ରାହକ ହୋଇ ପାରନ୍ତି ।

ସମ୍ପାଦକ :—**ନନ୍ଦକୁମାର ଅଓ୍ୱସ୍ଥୀ**